# ଗୋବିନ୍ଦଚନ୍ଦ୍ର ରଚନାବଳୀ



ଗୋବିନ୍ଦଚନ୍ଦ୍ର ମହାନ୍ତି

# ଗୋବିନ୍ଦଚନ୍ଦ୍ର ରଚନାବଳୀ

ଗୋବିନ୍ଦଚନ୍ଦ୍ର ମହାନ୍ତି

ସଂକଳନ

ସୁଧାଂଶୁ କୁମାର ମହାନ୍ତି

ପ୍ରଶାନ୍ତ ଦାସ

ସମ୍ପାଦନା

ବୈଷ୍ଣବ ଚରଣ ମହାନ୍ତି

ଗୋବିନ୍ଦଚନ୍ଦ୍ର ମହାନ୍ତି ସ୍ମୃତି କମିଟି

ସାତପୁରା, ତରିକୁନ୍ଦ, ଜଗତସିଂହପୁର

# ଗୋବିନ୍ଦଚନ୍ଦ୍ର ରଚନାବଳୀ

ଗୋବିନ୍ଦଚନ୍ଦ୍ର ମହାନ୍ତି


ସଂକଳନ : ସୁଧାଂଶୁ କୁମାର ମହାନ୍ତି
ପ୍ରଶାନ୍ତ ଦାସ

ସମ୍ପାଦନା : ବୈଷ୍ଣବ ଚରଣ ମହାନ୍ତି

ପ୍ରକାଶକ : ଗୋବିନ୍ଦଚନ୍ଦ୍ର ମହାନ୍ତି ସ୍ମୃତି କମିଟି
ସାତପୁରା, ତରିକୁନ୍ଦ, ଜଗତସିଂହପୁର

ପ୍ରଥମ ପ୍ରକାଶ : ୧୮ ଅକ୍ଟୋବର ୨୦୧୬

ଅକ୍ଷର ସଜ୍ଜା : ସୂର୍ଯ୍ୟ, ଆଲୋକ, ସରୋଜ

ପ୍ରଚ୍ଛଦ : ଜ୍ୟୋତିରଞ୍ଜନ ପଟ୍ଟନାୟକ

ମୂଲ୍ୟ : ଟ୧୦୦୦/-ଙ୍କା ମାତ୍ର


---

# GOVINDACHANDRA RACHANABALI

## Gobindachandra Mohanty


*Compiled by* **Sudhansu Kumar Mohanty**
**Prasant Das**

*Edited by* **Baishnaba Charan Mohanty**

*Published by* **Govindachandra Mohanty Smruti Committee**
Satapura, Tarikunda, Jagatsinghpur

*First Edition* 18 October 2016

*Type Setting* Suryamani, Alok, Saroj

*Cover Design* Jyotiranjan Pattanayak

*Price* *Rs. 1000/- Only*

## ସମ୍ପାଦକୀୟ

ପରାଧୀନ ଭାରତରେ ଯେଉଁମାନେ ନେତୃତ୍ୱ ନେଉଥିଲେ, ସେମାନଙ୍କୁ 'ନେତା' କୁହାଯାଉଥିଲା। ସ୍ୱାଧୀନତା ପରବର୍ତ୍ତୀକାଳରେ କିଏ କୋଉଦିନ ସେ 'ନେତା'ଶବ୍ଦ ପୂର୍ବରୁ 'ରାଜ'ଶବ୍ଦଟାଏ ଯୋଡ଼ି ଦେଇ ନେତାମାନଙ୍କୁ 'ରାଜନେତା' କରିଦେଲା ଏବଂ ଏଇ ବିଶେଷଣରେ ବିଶେଷିତ ହେଇ ବର୍ତ୍ତମାନ କିଛି ଅଶିଷ୍ଟ ରାଜନେତା ବି ନିଜକୁ ବିଶିଷ୍ଟ ମନେକରୁଛନ୍ତି, ଗର୍ବିତ ଗୌରବାନ୍ୱିତ ମନେକରୁଛନ୍ତି। କ୍ଷମତା, ପ୍ରତିପତ୍ତି, ଅୟସ, ଐଶ୍ୱର୍ଯ୍ୟ, ଗୋଠ, ଗହନ୍ଦଳ ଭିତରେ ଗତିକରି ଜନସାଧାରଣଙ୍କ ଉପରେ ରାଜ୍ କରୁଥିବା ନେତାମାନେ 'ରାଜନେତା' ନ ହୋଇ କ'ଣ ଆଉ 'ଦୀନନେତା' ହେଇଥାନ୍ତେ ? ଏଇ ନେତାମାନେ କିନ୍ତୁ ବହୁ ବାଦ, ବିବାଦ, ଅପବାଦ, ପ୍ରତିବାଦ ଆଉ ନିନ୍ଦାବାଦ ଭିତରେ ବୁଡ଼ି ରହୁଛନ୍ତି ସିନା କିନ୍ତୁ ସାଧାରରଣଙ୍କଠାରୁ ସାଧୁବାଦଟିଏ ଅସୁଲ୍ କରିବାକୁ ଏମାନେ ଅନେକତଃ ଅସମର୍ଥ।

ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ଗୋବିନ୍ଦଚନ୍ଦ୍ର ମହାନ୍ତି ବି ନେତା ଥିଲେ କିନ୍ତୁ ରାଜନେତା ନଥିଲେ। ତାଙ୍କ ବ୍ୟକ୍ତିତ୍ୱରେ ନେତୃତ୍ୱର ଅଙ୍କୁରୋଦ୍ଗମ ଘଟିଥିଲା ସେ ହାଇସ୍କୁଲ୍ ଛାତ୍ର ଥିବାବେଳେ। ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ୧୯୩୭ରେ ଓଡ଼ିଶାରୁ ମାଟ୍ରିକ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରିଥିବା ମାତ୍ର ୧୩ଜଣ ପିଲାଙ୍କ ଭିତରୁ ଗୋବିନ୍ଦଚନ୍ଦ୍ର ଥିଲେ ଅନ୍ୟତମ। ରେଭେନ୍ସା କଲେଜରୁ ପଢ଼ା ଛାଡ଼ି ସେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲେ। ସେଇଠୁ ଆରମ୍ଭ ହେଲା ତାଙ୍କର ସଂଘର୍ଷ ଓ ସଂଗ୍ରାମର ଜୀବନ।

ସ୍ୱର୍ଗତ ମହାନ୍ତିଙ୍କ ଜୀବନର ଅବଧି ଥିଲା ୮୪ବର୍ଷ ୭ମାସ ୧୬ଦିନ; ତାଙ୍କ ଏକୁଡ଼ିରୁ ଅନ୍ତ୍ୟେଷ୍ଟିର ଦୀର୍ଘତା ଥିଲା ଯଥାକ୍ରମେ ୧୯୧୬ ଅକ୍ଟୋବର ୧୬ତାରିଖରୁ ୨୦୦୧ ଜୁନ୍ ୪ତାରିଖ ପର୍ଯ୍ୟନ୍ତ। ଜୀବନର ଏଇ ଦୀର୍ଘ ପଥ ଅତିକ୍ରମ କଲାବେଳେ ସେ ଯେଉଁ ବ୍ୟକ୍ତିତ୍ୱର ବୁଜୁଳିଟି ମୁଣ୍ଡେଇ ଚାଲିଥିଲେ ତାକୁ ବ୍ୟବଚ୍ଛେଦ କଲେ ଦେଖାଯିବ ସେଥିରେ କେବଳ ବାଦ ହିଁ ଭର୍ତ୍ତିହେଇ ରହିଥିଲା; ଆଉ ସେ ବାଦସବୁ ସାମ୍ୟବାଦ, ସମାଜବାଦ, ଜାତୀୟତାବାଦ, ରାଷ୍ଟ୍ରବାଦ, ମାନବବାଦ, ନୀତିବାଦ, ଆଦର୍ଶବାଦ ଏବଂ ଶେଷକୁ ଅନୁବାଦ ବି। ସେବା, ସଂଗ୍ରାମ ଓ ସାହିତ୍ୟ- ଏହି ତ୍ରିବିଦ୍ୟାର ବିଦ୍ୟାପତି ଥିଲେ ସ୍ୱର୍ଗତ ମହାନ୍ତି।

ବହୁ ଘଟଣାରେ ଘଟଣାବହୁଳ ଥିଲା ତାଙ୍କ ଜୀବନ, ବହୁ କ୍ଷତରେ କ୍ଷତାକ୍ତ ତାଙ୍କ ଜୀବନ, ବହୁ ବର୍ଣ୍ଣରେ ବର୍ଣ୍ଣିଳ ତାଙ୍କ ଜୀବନ, ବହୁ ବିପ୍ଳବରେ ବିକ୍ଷୁବ୍ଧ ବି ଥିଲା ତାଙ୍କ ଜୀବନ। ବଡ଼ ବିଚିତ୍ର ତାଙ୍କ ବ୍ୟକ୍ତିତ୍ୱର ବିନ୍ୟାସ, ବଡ଼ ବିସ୍ତୀର୍ଣ୍ଣ ବିସ୍ତାରିତ ତାଙ୍କ ମଣିଷପଣିଆର ମୁଲକ। ଶିକ୍ଷା, ସଂସ୍କାର, ସଂଗ୍ରାମ,

ସାହିତ୍ୟ, ସାମ୍ବାଦିକତା, ସଂପାଦନା, ରାଜନୀତି, ସମାଜନୀତି, ଅର୍ଥନୀତି, ଇତିହାସ, ଦର୍ଶନ, କ୍ରୀଡ଼ା, ଅଭିନୟ, ଅନୁବାଦ – ସବୁଥିରେ ତାଙ୍କର ପ୍ରବେଶ, ସବୁଥିରେ ତାଙ୍କର ପ୍ରତିଷ୍ଠା ଓ ପ୍ରସିଦ୍ଧି। ମାନବତାର ସକଳ ସୀମାନ୍ତକୁ ଛୁଇଁ ସେ ଜୀବନ ଜିଉଥିଲେ ସୁଖ ଆଉ ସ୍ୱାଚ୍ଛନ୍ଦ୍ୟଠାରୁ, ଆରାମ ଆଉ ଅୟସଠାରୁ, ଉପାଧି ଆଉ ଉପାୟନଠାରୁ ଆପେ ଆପଣାକୁ ଦୂରେଇ ରଖି। ସେହି ବୈରାଗ୍ୟ ହିଁ ବଳିଷ୍ଠ କରିଛି ତାଙ୍କ ଜୀବନକୁ। ସ୍ୱାଧୀନତା ସଂଗ୍ରାମ ସମୟରେ ଦୁଇ ଦଫାରେ ୪ବର୍ଷ ୬ମାସର ଜେଲ୍ ଜୀବନ ତାଙ୍କ ବ୍ୟକ୍ତିତ୍ୱକୁ ଆହୁରି ଜ୍ୱଳମାନ କରିଛି।

'ସ୍ୱାଧୀନତା ସଂଗ୍ରାମର ଇତିହାସ', 'ଯୁଗେଯୁଗେ ଚୀନ୍', 'ରୁଷ୍ ବିପ୍ଳବ', 'ଅମର ଷ୍ଟାଲିନ୍', 'ଡିଆଗୋ ଗ୍ରାସିଆ' ଆଦି ଆହୁରି ଅନେକ ପୁସ୍ତକର ଲେଖକ ସ୍ୱର୍ଗତ ମହାନ୍ତି ମଧ୍ୟ 'ଭଲ୍ଗାରୁ ଗଙ୍ଗା', 'କବି ନଜରୁଲ୍', 'ଗାନ୍ଧୀ ରଚନାବଳୀ', 'ଲେନିନ୍ ଓ ଦୁଇ ବିପ୍ଳବ' ଆଦି ଆହୁରି ଅଧିକ ବହିର ଅନୁବାଦକ। ତା'ଛଡ଼ା ସେ 'ମୁକ୍ତିଯୁଦ୍ଧ', 'ଜନଶକ୍ତି', 'ସୋଭିଏତ୍ ଦେଶ'ଓ 'ନୂଆ ଦୁନିଆ' ଆଦି ପତ୍ରପତ୍ରିକାର ସଂପାଦନା ସହିତ ସକ୍ରିୟ ସଂପୃକ୍ତ ଥିଲେ। ତାଙ୍କ କଲମର କୃତି କତିପୟକୁ ଏପରି କଳନା କରିବା ସାଧ୍ୟାତୀତ। ତାଙ୍କର ପ୍ରକାଶିତ ଲେଖାରୁ କିଛି ଶ୍ରୀ ପ୍ରଶାନ୍ତ ଦାସ ସାଇତା ସମ୍ପତ୍ତି କରି ରଖିଥିବାରୁ ପ୍ରଥମେ ୨୦୧୩ରେ "ସ୍ୱାଧୀନତା ସଂଗ୍ରାମୀ ଗୋବିନ୍ଦଚନ୍ଦ୍ର ମହାନ୍ତିଙ୍କ ରଚନାସମଗ୍ର" ଶୀର୍ଷକ ପୁସ୍ତକ ସୀମିତ ସଂଖ୍ୟାରେ ପ୍ରକାଶ କରାଯାଇଥିଲା। ବର୍ତ୍ତମାନର ଏହି ଗ୍ରନ୍ଥାବଳୀ ମଧ୍ୟ ସ୍ୱର୍ଗତ ମହାନ୍ତିଙ୍କ ସବୁ ଲେଖାକୁ ପୃଷ୍ଠାଗତ କରିପାରିନି। ହୁଏତ ସମୟ ସୁଯୋଗ ଦେଖି ଏଥିପାଇଁ ପରବର୍ତ୍ତୀ ପ୍ରୟାସ କରାଯାଇପାରେ। ସ୍ୱର୍ଗତ ମହାନ୍ତିଙ୍କ ପୂର୍ବପ୍ରକାଶିତ 'ଢେଙ୍କାନାଳ ଗଣବିଦ୍ରୋହ' ଆଦି ପୁସ୍ତକରେ ବହୁ ସ୍ୱାଧୀନତା ସଂଗ୍ରାମୀଙ୍କ କିଛି ବିରଳ ଫଟୋ ବ୍ଲକ୍ କରି ଛପାଯାଇଥିଲା। ମୂଳ ଫଟୋଗୁଡ଼ିକ ଏବେ ଦୁଷ୍ପ୍ରାପ୍ୟ ଏବଂ ବହିଫଟୋରୁ ସ୍କାନ୍ କଲେ ଫଟୋଗୁଡ଼ିକ ସ୍ପଷ୍ଟ ଆସୁ ନଥିବାରୁ ସେଗୁଡ଼ିକ ବର୍ତ୍ତମାନ ଏଥିରେ ଦିଆଯାଇ ପାରୁନାହିଁ। ସେଥିପାଇଁ ଆମେ ଦୁଃଖିତ।

ଏ ବହି ପ୍ରକାଶନରେ ସ୍ୱର୍ଗତ ମହାନ୍ତିଙ୍କ ଧର୍ମପତ୍ନୀ ଶ୍ରୀମତୀ ଶରତକୁମାରୀ ମହାନ୍ତିଙ୍କ ପ୍ରେରଣା ପ୍ରୋତ୍ସାହନ ହିଁ ମୂଳଧନ। ଶ୍ରୀ ସୁଧାଂଶୁ କୁମାର ମହାନ୍ତି, ଶ୍ରୀମତୀ କସ୍ତୁରୀ ରାଓ, ଶ୍ରୀମତୀ ଅହଲ୍ୟାକୁମାରୀ ମୁଦାଲି, ଡାକ୍ତର ହିମାଂଶୁ କୁମାର ମହାନ୍ତି ଏବଂ ଶ୍ରୀ ଶୀତାଂଶୁ କୁମାର ମହାନ୍ତିଙ୍କ ସହଯୋଗ ପୁସ୍ତକକୁ ପ୍ରାକାଶକ୍ଷମ କରିଛି। ସମସ୍ତଙ୍କୁ କୃତଜ୍ଞତା ଓ ସାଧୁବାଦ।

# ମୁଖବନ୍ଧ

ସହିତ ଶବ୍ଦରୁ ସାହିତ୍ୟ ଆସିଛି ବୋଲି କୁହାଯାଏ । ସମାଜ ଓ ବ୍ୟକ୍ତି ଜୀବନ ସହିତ ସାହିତ୍ୟ ଓତପ୍ରୋତ ଭାବେ ଯୋଡ଼ିହୋଇ ରହିଛି । ସମାଜ ସହିତ ରାଜନୀତି ବି ଯୋଡ଼ିହୋଇ ରହିଛି । ଦେଖାଯାଇଛି ଯେଉଁମାନେ ରାଜନୀତି କରିଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠାଲାଭ କରିଛନ୍ତି । କେତେକ ପୁଣି ରାଜନୀତିରୁ ସନ୍ୟାସ ନେଇ କେବଳ ନିରୁତା ସାହିତ୍ୟକୁ ଆଦରି ନେଇଛନ୍ତି ତ କିଏ ସାହିତ୍ୟକୁ ଛାଡ଼ି ପୂରାପୂରି ରାଜନୀତିରେ ବୁଡ଼ିଯାଇଛି । ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ଗୋବିନ୍ଦଚନ୍ଦ୍ର ମହାନ୍ତି କିନ୍ତୁ ଆପଣାର ବ୍ୟକ୍ତିଗତ ସୁଖସୁବିଧା, ଉନ୍ନତି ଉତ୍ତରଣ, ପଦପଦବୀ ପ୍ରତିପତ୍ତି, ସ୍ୱାର୍ଥ, ସମ୍ମାନ ଓ ସମ୍ବର୍ଦ୍ଧନାଠାରୁ ଦୂରେଇ ରହୁଥିଲେ ।

ସ୍ୱର୍ଗତ ମହାନ୍ତିଙ୍କ ରଚନା ଥିଲା ରଚନାତ୍ମକ, ଅର୍ଥାତ୍ ସମାଜକୁ ଏକ ସକାରାତ୍ମକ ମାର୍ଗରେ ଆଗେଇନେବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ତାଙ୍କ ରଚନା ଥିଲା ତଥ୍ୟ ଓ ଇତିହାସଭିତ୍ତିକ । କେବଳ ଭାଷା ସାହିତ୍ୟ ନୁହେଁ, ଇତିହାସ, ଭୂଗୋଳ, ଅର୍ଥନୀତି, ସମାଜନୀତି, ରାଜନୀତି, ରାଷ୍ଟ୍ରନୀତି ଉପରେ ଗଭୀର ଜ୍ଞାନ, ଅଧ୍ୟୟନ, ଅଧ୍ୟବସାୟ, ଅନୁଶୀଳନ ଓ ଅଭିଜ୍ଞତାରୁ ହିଁ ସେ ଯେଉଁ ସାହିତ୍ୟ ସର୍ଜ୍ଜନା କରିଯାଇଛନ୍ତି ତାହା ଆଗାମୀ ପିଢ଼ି ପାଇଁ ସମ୍ପାଦି ରଖିବାକୁ ଆମର ଏ ପ୍ରୟାସ ଓ ପ୍ରକାଶନ । ଆଗାମୀ ଦିନର ସାହିତ୍ୟିକ ରାଜନୈତିକ ଓ ଇତିହାସ ଛାତ୍ରମାନଙ୍କ ପାଇଁ ଏହା ଅନେକ ଅଜଣା ତଥ୍ୟ ଓ ସତ୍ୟର ସନ୍ଧାନ ତଥା ସୂଚନା ଦିଏ ଗବେଷଣା ଓ ବିଶ୍ଳେଷଣ ପାଇଁ ।

ଜଣଙ୍କର ଯଦି ସେତିକି ସତ୍‌ସାହାସ ଓ ତଥ୍ୟଗତ ସାମର୍ଥ୍ୟ ନଥିବ ସେ ଅନ୍ୟ କାହାର କଥାକୁ କାଟିବା ପାଇଁ ଅଣ୍ଟା ଭିଡ଼ିବ ନାହିଁ । ଅବଶ୍ୟ ମିଥ୍ୟାକୁ କାଟିବା ପାଇଁ ସତ୍ୟ ଓ ତଥ୍ୟର ଶାଣିତ ଲେଖନୀ ଦରକାର, ଯାହା ଗୋବିନ୍ଦଚନ୍ଦ୍ର ମହାନ୍ତିଙ୍କର ଥିଲା । ସତ୍ୟର ସାମାନ୍ୟତମ ଅପଲାପ ତାଙ୍କ ପାଇଁ ଅସହ୍ୟ ହେଉଥିଲା । ସତ୍ୟ ଓ ତଥ୍ୟରୁ ସୂତାଏ ଖସିଲେ ସେ ଚିତ୍‌କାର କରୁଥିଲେ ଯେମିତି, ତାଙ୍କ ଲେଖନୀ ସେମିତି ଚାବୁ ଚଳାଉଥିଲା ମିଥ୍ୟାର ମୂଳୋତ୍ପାଟନ ପାଇଁ । ଏବେସୁଦ୍ଧା ମିଳିଥିବା ତାଙ୍କର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ କିଛି ରଚନା ଏବଂ ପ୍ରକାଶିତ କିଛି ପୁସ୍ତକକୁ ନେଇ 'ଗୋବିନ୍ଦଚନ୍ଦ୍ର ରଚନାବଳୀ'ର ସଂକଳନ। ଏହାର ସଂକଳନ ପାଇଁ ଶ୍ରଦ୍ଧାସ୍ପଦ ସୁଧାଂଶୁ ଏବଂ ଶ୍ରୀ ପ୍ରଶାନ୍ତ ଦାସଙ୍କୁ ଧନ୍ୟବାଦ ଜଣାଉଛି। ଏହାର ସମ୍ପାଦନା ପାଇଁ ଶ୍ରୀ ବୈଷ୍ଣବ ଚରଣ ମହାନ୍ତିଙ୍କ ପ୍ରଚେଷ୍ଟା ପ୍ରଶଂସନୀୟ।

ପ୍ରତିବର୍ଷ ତାଙ୍କ ଜନ୍ମମାଟି ସାତପୁରାରେ ସ୍ୱାଧୀନତା ସଂଗ୍ରାମୀ ଗୋବିନ୍ଦଚନ୍ଦ୍ର ମହାନ୍ତିଙ୍କ ଜୟନ୍ତୀ ଓ ଶ୍ରାଦ୍ଧସଭା ପାଳିତ ହୋଇଆସୁଛି । ତାଙ୍କ ଜୟନ୍ତୀର ଶତବାର୍ଷିକ ପାଳନ ଅବସରରେ ଆମର ଏ ପ୍ରକାଶନ 'ଗୋବିନ୍ଦଚନ୍ଦ୍ର ରଚନାବଳୀ'।

॥ ଇତି ॥

**ନଦିଆବିହାରୀ ମହାନ୍ତି**
ସଭାପତି
ସ୍ୱାଧୀନତା ସଂଗ୍ରାମୀ ଗୋବିନ୍ଦଚନ୍ଦ୍ର ମହାନ୍ତି ସ୍ମୃତି କମିଟି
ସାତପୁରା, ତରିକୁନ୍ଦ, ଜଗତସିଂହପୁର

# ବିଷୟ ସୂଚୀ


| ବିଷୟ | ପୃଷ୍ଠା |
|---|---|
| **ସ୍ୱାଧୀନତା ସଂଗ୍ରାମର ଇତିହାସ** | |
| ୧. ଭାରତୀୟ ସ୍ୱାଧୀନତା ସଂଗ୍ରାମ | ୧୧ |
| ୨. ଭାରତରେ ମାନବ ମୈତ୍ରୀର ସଂହାରକ ସାମ୍ପ୍ରଦାୟିକ ବିଦ୍ୱେଷ | ୪୬ |
| ୩. ସେକାଳରେ ଏକ ବତୀଘର ବାଗଲପୁର | ୫୭ |
| ୪. ଶହୀଦ ଦିବସର ଅନୁଚିନ୍ତା | ୬୦ |
| ୫. ମୁକ୍ତି ସଂଗ୍ରାମର ଅଲିଭା ଶିଖା - ଜାଲିଆନାୱାଲାବାଗ | ୬୪ |
| ୬. ଗଡ଼ଜାତ ପ୍ରଜାମୁକ୍ତି ଆନ୍ଦୋଳନ ଓ ସାରଙ୍ଗଧର | ୭୧ |
| ୭. ଓଡ଼ିଶାରେ ଅଗଷ୍ଟ କ୍ରାନ୍ତିର କେତେକ ସ୍ମୃତି - ୧୯୯୮ | ୯୨ |
| ୮. ଓଡ଼ିଶା ଗଡ଼ଜାତ ଆନ୍ଦୋଳନର କେତୋଟି ଦିଗ | ୯୯ |
| ୯. ଅଗଷ୍ଟ ୯ ଭାରତଛାଡ଼ ଆନ୍ଦୋଳନ | ୧୨୧ |
| ୧୦. ସଂଗ୍ରାମୀ ସଂସାର | ୧୨୭ |
| ୧୧. ସ୍ୱାଧୀନତା ସଂଗ୍ରାମ ସହିଦ ସାରଣୀରେ ଓଡ଼ିଶା | ୧୩୦ |
| ୧୨. ନେତାଜୀଙ୍କ ସଂପର୍କରେ ଶ୍ରୀ ଦ୍ୱିବେଦୀ | ୧୩୫ |
| ୧୩. ଓଡ଼ିଶା କୃଷକ ଆନ୍ଦୋଳନ ଇତିହାସରୁ ଖିଏ | ୧୩୭ |
| **କମ୍ୟୁନିଷ୍ଟ ଆନ୍ଦୋଳନ ତା'ର ଇତିହାସ** | |
| ୧୪. ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଜନ୍ମର ଆଦ୍ୟ ବୃତ୍ତାନ୍ତ | ୧୫୫ |
| ୧୫. ଓଡ଼ିଶାରେ ସାମନ୍ତବାଦୀ ପ୍ରଥା ବିରୋଧରେ ସଂଗ୍ରାମ ଓ କମ୍ୟୁନିଷ୍ଟ ପାର୍ଟିର ଭୂମିକା | ୧୯୦ |
| ୧୬. ଓଡ଼ିଶା କମ୍ୟୁନିଷ୍ଟ ଇତିହାସର କିୟଦଂଶ - ପ୍ରଥମ ଭାଗ | ୨୦୩ |

୧୭. ଓଡ଼ିଶା କମ୍ୟୁନିଷ୍ଟ ଇତିହାସର କିୟଦଂଶ – ଦ୍ୱିତୀୟ ଭାଗ ୩୦୦
୧୮. ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ୭୦ ବର୍ଷର ସଂଗ୍ରାମ ଓ ସାଫଲ୍ୟ ୩୧୭
୧୯. ଏକ ପ୍ରଭାବଶାଳୀ ବାମପନ୍ଥୀ ଦଳର ବିଲୟ କାହିଁକି ? ୩୪୫
୨୦. ଓଡ଼ିଶାରେ ଚାଷୀ ଆନ୍ଦୋଳନ ୩୬୧
୨୧. ରାଜ୍ୟ ସିପିଆଇ ଓ ସିପିଆଇ(ଏମ୍)ର ମିଳିତ ଜନସମାବେଶ ୩୭୯

**ସମ୍ପ୍ରତିକ ରାଜନୀତି**

୨୨. ଏଇ ଆମ ଦେଶ ଭାରତବର୍ଷ ୩୮୮
୨୩. ୧୯୩୫ ଜୁଲାଇରୁ ୧୯୬୬ ଅଗଷ୍ଟ ୩୯୨
୨୪. ପଚାଶ ବର୍ଷ ସ୍ୱାଧୀନତା ପରେ ୪୦୦
୨୫. ସେଦିନ ତୁମ ଘିଅ ବୋତଲ ଭଙ୍ଗା ଆଜିର ସ୍କାମ ୪୦୩
୨୬. ଦେଶର ସ୍ୱାଧୀନତା ଗଣତାନ୍ତ୍ରିକ ବ୍ୟବସ୍ଥା ବିପଦାପନ୍ନ ୪୦୭
୨୭. ଆମ ଦେଶରେ କମ୍ୟୁନିଷ୍ଟ ଗୋଷ୍ଠୀର ପ୍ରଭାବ ସନ୍ଦର୍ଭର ଇଙ୍ଗିତ କ'ଣ ? ୪୧୧
୨୮. ସ୍ୱାଧୀନତା ସଂଗ୍ରାମ, ସମାଜବାଦୀ ଆନ୍ଦୋଳନ ଓ କମ୍ୟୁନିଷ୍ଟ ପାର୍ଟିର ବିକୃତିକରଣର ଜବାବ ୪୧୭
୨୯. ଲଗାତାର ମରୁଡ଼ିଗ୍ରସ୍ତ ଅଞ୍ଚଳ ପାଇଁ ମାଷ୍ଟରପ୍ଲାନ୍ ପ୍ରସ୍ତୁତ କରାଯାଉ ୪୩୮
୩୦. ଦେଶ ସମାଜ ବିଭାଜନକାରୀ ହିନ୍ଦୁତ୍ୱବାଦୀଙ୍କୁ ପଚାର ୪୪୦
୩୧. ଦେଶର ଐକ୍ୟ ଓ ସଂହତି ଏବଂ କେନ୍ଦ୍ର ରାଜ୍ୟ ସଂପର୍କ ୪୫୦

**ଆନ୍ତର୍ଜାତିକ ରାଜନୀତି**

୩୨. ପାଲେଷ୍ଟାଇନ୍‌ରେ ଆଂଶିକ ସ୍ୱାୟତ୍ତଶାସନର ପୃଷ୍ଠଭୂମି ଓ ଭବିଷ୍ୟତ ୪୬୧
୩୩. ଫାସିଷ୍ଟବାଦ ବିଲୋପରେ ମାନବଜାତିର ଜୟଯାତ୍ରା ୪୭୦

**ସମାଜ ଓ ସାହିତ୍ୟ**

୩୪. ଅନନ୍ତ ପଟ୍ଟନାୟକଙ୍କ କାବ୍ୟିକ ଅଙ୍ଗୀକାର ୪୯୮
୩୫. କମ୍ୟୁନିଷ୍ଟ ଆନ୍ଦୋଳନ ବିକାଶରେ ବିପ୍ଳବୀ ଗୀତ, କବିତା ୫୦୭
୩୬. ଜଣେ ସ୍ୱାଧୀନତା ସଂଗ୍ରାମୀଙ୍କୁ ଚିଠି ୫୨୪
୩୭. ଓଡ଼ିଶାରେ କମ୍ୟୁନିଷ୍ଟ ସମ୍ବାଦପତ୍ରଗୁଡ଼ିକର ଇତିହାସ ୫୨୮

୩୮. ଓଡ଼ିଆ ନାଟ୍ୟକଳାର ଅମ୍ଳାନ ପ୍ରତିଭା ରାମଚନ୍ଦ୍ର ସ୍ୱାଇଁ ୫୩୬
୩୯. ମାୟା ମମତାର ସେହି ବିଦ୍ୟା ନିକେତନ ୫୪୧
ସ୍ମୃତିର ଆଇନାରେ ବ୍ୟକ୍ତିବିଶେଷ
୪୦. ଅନମନୀୟ ମୁକ୍ତିଯୋଦ୍ଧା ଗୌରାଙ୍ଗ ଚରଣ ଦାସ ୫୪୭
୪୧. ତାଙ୍କୁ ଯେମିତି ଦେଖିଛି ଜାଣିଛି ୫୫୦
୪୨. ଏକ ବିରଳ ବ୍ୟକ୍ତିତ୍ୱ ନବକୃଷ୍ଣ ଚୌଧୁରୀ ୫୫୭
୪୩. ସ୍ୱାଧୀନତା ସଂଗ୍ରାମୀ କଳ୍ପତରୁ ଦାସଙ୍କ ପୁଣ୍ୟତିଥିରେ ଶ୍ରଦ୍ଧାର୍ଘ୍ୟ ୫୬୦
୪୪. ସାଥୀ ଭଗବତୀଙ୍କ ସ୍ମୃତି ଉଦ୍ଦେଶ୍ୟରେ ୫୬୫
୪୫. ଅକାଳ ମୃତ୍ୟୁରେ ବି ଚିରଅମର ୫୭୪
୪୬. ମରି ଅମର ୫୮୩
୪୭. ବହୁବିଧ ସଂଗ୍ରାମର ଏକ ଅନନ୍ୟ ଯୋଦ୍ଧା ୫୮୮
୪୮. ଗଗନ ତମ ସ୍ମୃତି ପଖାଳି ଏହି ଦ୍ୱିପଦ ୫୯୨
୪୯. ମୁଁ ତାଙ୍କୁ ଯେପରି ଦେଖିଆସିଛି ୫୯୫
୫୦. ଚଞ୍ଚଳ ଚାଲିଗଲୁରେ ରାମ ୬୦୪
୫୧. ଏପ୍ରିଲ ୧୦ରେ ଏହି ବ୍ୟକ୍ତି ପୁରୁଷ ୬୦୮
୫୨. ବିନୋଦ କାନୁନ୍‌ଗୋ ୬୧୧
୫୩. ସ୍ୱାଧୀନତା ସଂଗ୍ରାମୀ ଜଣେ ପିଉସାଙ୍କ ସ୍ମୃତିତର୍ପଣ ୬୨୦
୫୪. ମୁକ୍ତି ସୈନିକ ବିଶ୍ୱମ୍ଭର ପରିଡ଼ା ୬୨୩
୫୫. ଅକ୍ଷୟକୁ କ୍ଷୟ କରିବୁନି ସଂକଳ୍ପ ନିଅ ୬୨୭
୫୬. ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ଆଉ ନାହାନ୍ତି ୬୩୦
୫୭. ସାଥୀ ହରିହର ଦାଶ ୬୩୬
୫୮. ଏକ ମହାନ ବିପ୍ଳବୀର ଅବସାନ ୬୪୦
୫୯. ଭୁଲିନାହୁଁ - ଭୁଲିବୁ ନାହିଁ ୬୪୬
୬୦. ବିଦାୟ ସାଥୀ ବିଦାୟ ୬୫୬
୬୧. ସେ କାହିଁକି ସ୍ମରଣୀୟ ? ୬୬୦

୬୨. ଅମାୟିକ ସମାଜସେବୀଙ୍କ ଅକସ୍ମାତ ଅନ୍ତର୍ଦ୍ଧାନ ୬୬୭
୬୩. କମ୍ରେଡ୍ ପ୍ରବୀର ପାଲିତ ୬୭୦
୬୪. ତମ ସ୍ମୃତିରୁ ଖିଏ ୬୭୩
୬୫. କମ୍ରେଡ ରାମକୃଷ୍ଣ ପତିଙ୍କ ଶେଷ ଅଭିଳାଷ ୬୮୧
୬୬. ସ୍ୱାଧୀନତା ସଂଗ୍ରାମ କାଳରେ ହରେକୃଷ୍ଣ ମହତାବଙ୍କ ଭୂମିକା ୬୮୮
୬୭. ଜାତୀୟ କବି ବାଞ୍ଛାନିଧି ୬୯୬
୬୮. ସୁବିଧାବାଦୀ ରାଜନୀତି ଛୁଇଁନଥିବା ଏକ ବିଶିଷ୍ଟ ଜନନେତା ୬୯୯
୬୯. A Tribute to the Memory of the Father of Indian Renaissance ୭୦୨

## ❒ ପ୍ରକାଶିତ ପୁସ୍ତକାବଳୀର ପୁନରାବୃତ୍ତି ❒

୭୦. ଢେଙ୍କାନାଳ ଗଣବିଦ୍ରୋହ ୭୧୩
୭୧. ସ୍ୱାଧୀନତା ସଂଗ୍ରାମର ଇତିହାସ ୮୧୫
୭୨. ସ୍ୱାଧୀନତା ସଂଗ୍ରାମକାଳର କାହାଣୀ ୯୮୯

❒❒❒

# ଭାରତୀୟ ସ୍ୱାଧୀନତା ସଂଗ୍ରାମ

ସୁଦୀର୍ଘ, ରୋମାଞ୍ଚକର ରକ୍ତକ୍ଷୟୀ-ବୀରତ୍ୱପୂର୍ଣ୍ଣ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇତିହାସ । ଏହି ସଂଗ୍ରାମରେ ଶହଶହ ବା ହଜାରହଜାର ପ୍ରାଣବଳି ଦେଇଛନ୍ତି ବୋଲି ସାଧାରଣ ପ୍ରଚଳିତ ଧାରଣାକୁ ଖଣ୍ଡନ କରେ ବାସ୍ତବ ଇତିହାସ । ପରାଧୀନ ହେବା ପରେ ଭାରତର ବିଭିନ୍ନ ପ୍ରାନ୍ତ, ବିଭିନ୍ନ ଅଞ୍ଚଳରେ ଅଗଣିତ ଖଣ୍ଡ ସଂଗ୍ରାମରେ ବିଦେଶୀ ଶାସକ ଗୋଷ୍ଠୀଙ୍କ ଦମନର ଶିକାର ହୋଇଛନ୍ତି ଲକ୍ଷଲକ୍ଷ ଭାରତବାସୀ ।

ସାମାଜିକ ଅଲଂଘନୀୟ ନିୟମ ରୂପେ ପ୍ରମାଣିତ ଯେ ଦେଶ ପରାଧୀନ ହେଲେ, ସ୍ୱାଧୀନତା ସଂଗ୍ରାମର କାରଣ ଉପୁଜେ । ଆଉ ସେହି ବାସ୍ତବ କାରଣ ହେତୁ ଭାରତବର୍ଷ କେବଳ ନୁହଁ, ପ୍ରତ୍ୟେକଟି ପରାଧୀନ ଦେଶରେ ବିଭିନ୍ନ ସମୟରେ, ଭିନ୍ନଭିନ୍ନ ତତ୍କାଳୀନ ସାମାଜିକଶ୍ରେଣୀ ସ୍ୱାଧୀନତାସଂଗ୍ରାମର ଯଜ୍ଞବେଦୀକୁ ଡେଇଁ ପଡ଼ିଛନ୍ତି । ସାମାଜିକ ବିକାଶର ବସ୍ତୁନିଷ୍ଠ ନିୟମ ଅନୁସାରେ ଯାହା ପୁରାତନ, ଯାହା ପଶ୍ଚାତଗାମୀ ତାହାର ସ୍ଥାନ ନିଏ ଯାହା ପ୍ରଗତିଶୀଳ ଓ ଯାହା ଅଗ୍ରଗାମୀ । ସେହି ହେତୁ ଯେତେ ବିଦେଶୀ ଶକ୍ତିଶାଳୀ ଶକ୍ତି ଦେଶକୁ ପରାଧୀନ କଲେ ହେଁ ପରିଶେଷରେ ସ୍ୱାଧୀନତା ସଂଗ୍ରାମର ବିଜୟ ହୁଏ । ଭାରତବର୍ଷର ସ୍ୱାଧୀନତା ଅପହରଣ ଓ ସ୍ୱାଧୀନତା ପୁନରୁଦ୍ଧାର ପାଇଁ ସଂଗ୍ରାମ ମଧ୍ୟ ଏହି ସତ୍ୟକୁ ପ୍ରମାଣସିଦ୍ଧ କରି ଦେଇଛି ।

ବିଶାଳ, ବିପୁଳ ସମ୍ପଦଭରା ଓ ବହୁଜନ ଅଧ୍ୟୁଷିତ ଆମ ଦେଶକୁ କ୍ଷୁଦ୍ର ଏକ ଦେଶର ତତ୍କାଳୀନ ଶାସକଶ୍ରେଣୀ କାହିଁକି ପରାଧୀନ କରି ପାରିଲେ ? ୟୁରୋପର ସେପରି କେତେକ ଦେଶ କିପରି ଓ କାହିଁକି ସେମାନଙ୍କଠାରୁ ବୃହତ୍ ଦେଶକୁ ପରାଧୀନ ଦେଶରେ ସୀମିତ ହେଲା ନୁହଁ, ସବୁ ପରାଧୀନ ଦେଶରେ ଅର୍ଥାତ୍ ପୃଥିବୀର ଶତାଧିକ ଦେଶରେ ପ୍ରଖର ହୋଇ ଉଠିଲା ? ଏ ସବୁର ସାମାଜିକ ନୀତିନିୟମ ମୌଳିକ ଭାବରେ ସମାଜ ଏବଂ ପ୍ରତ୍ୟେକଟି ଦେଶରେ ମୌଳିକ ଲକ୍ଷଣଗୁଡିକ ସାଙ୍ଗକୁ ବୈଶିଷ୍ଟ୍ୟ ଓ ସ୍ୱତନ୍ତ୍ରତା ମଧ୍ୟ ରହିଛି ।

ପୁରାତନ ସାମନ୍ତବାଦୀ ସମାଜର ବିକାଶର ଯୁଗ ଶେଷ ହୋଇ ଭାରତ ନୂଆ ସାମାଜିକ,

ଆର୍ଥିକ ବ୍ୟବସ୍ଥା ଦେଇ ସ୍ୱାଭାବିକ ଭାବରେ ଗତି କରିବା ପୂର୍ବରୁ ଆଭ୍ୟନ୍ତରୀଣ ଭାବରେ ଦୁର୍ବଳ ହୋଇ ପଡ଼ିଥିଲା । ମୋଗଲ କର୍ତ୍ତୃତ୍ୱ ଆଉରଙ୍ଗଜେବଙ୍କ ରାଜୁତି ପରେ (୧୭୦୭) ଖଣ୍ଡଖଣ୍ଡ ହୋଇପଡ଼ିଲା । ସୁବେଦାରମାନେ ବିଭିନ୍ନ ପ୍ରାନ୍ତରେ ଅଧିକ କ୍ଷମତାଶାଳୀ ହୋଇ ପରସ୍ପର ବିରୋଧରେ ଯୁଦ୍ଧ କନ୍ଦଳରେ ମାତିଲେ । ସେ କାଳର ସହରଗୁଡ଼ିକ ଏହି ଯୁଦ୍ଧ କାରଣରୁ ଦୁର୍ବଳ ହେଲା । ପୁରୁଣା ସ୍ୱୟଂସମ୍ପୂର୍ଣ୍ଣ ଗାଁ' ଅର୍ଥନୀତି ଓ ପୁରୁଣା ବର୍ଣ୍ଣାଶ୍ରମ ଅନୁସାରେ ଚାଲି ଆସିଥିବା ସମାଜରେ ଘୂଣ ଧରିଯାଇଥିଲା ।

ଏପରି ପରିସ୍ଥିତିରେ ବିଦେଶର ନୂତନ ପୁଞ୍ଜିବାଦୀ ଶ୍ରେଣୀ ପ୍ରଥମେ ବଣିକପୁଞ୍ଜି ରୂପରେ ଏ ଦେଶକୁ ଆସିଲା । ପୁଞ୍ଜିବାଦର ଏକ ନୂତନ ଓ ଆଗୁଆ ସାମାଜିକ ଗଠନବିନ୍ୟାସ ହେତୁ ତାହା ଭାରତରେ ଭାଜି ପଡୁଥିବା ସାମନ୍ତବାଦୀ ଶାସନରେ ଅନ୍ତର୍ଦ୍ୱନ୍ଦ୍ୱ, ଯୁଦ୍ଧ, କନ୍ଦଳ, ସ୍ଥାଣୁତ୍ୱର ସୁଯୋଗ ନେଇ ଶେଷରେ ଏ ଦେଶକୁ ପରାଧୀନ କରିଦେଲା । ପଶ୍ଚିମ ୟୁରୋପର ସ୍ପେନୀଶ, ପର୍ତ୍ତୁଗୀଜ, ଦିନାମାର, ଓଲନ୍ଦାଜ, ଫରାସୀ ଜର୍ମାନୀର ଓ ସର୍ବୋପରି ବ୍ରିଟିଶ ଦ୍ୱୀପପୁଞ୍ଜର ନୂଆ ବଣିକ ଶ୍ରେଣୀ, ପୂର୍ବକାଳର ବିପଣୀ ନୁହେଁ, ନୂଆ ବଣିକପୁଞ୍ଜି ପସରାକୁ ଧରି ଖେଦିଗଲେ ପୃଥିବୀର ଅବଶିଷ୍ଟ ବିଶାଳ ଦେଶ ମହାଦେଶକୁ । ଦେଶ ପରେ ଦେଶ ଦଖଲ କରିନେଲେ । ନିଜନିଜ ଭିତରେ ପୁଣି ଏକଚାଟିଆ ବାଣିଜ୍ୟ ଅଧିକାର, ପ୍ରଭୁତ୍ୱ ପ୍ରତିଷ୍ଠା ଲାଗି ଯୁଦ୍ଧ କଲେ । ଯିଏ ସବଳ ସିଏ ଦୁର୍ବଳକୁ ହଟେଇ ଦେଲା । ସେଇଠୁ ଆରମ୍ଭ ହେଲା ନୂତନ ଏକ ଐତିହାସିକ ଯୁଗ । ସାମ୍ରାଜ୍ୟବାଦ ଆଉ ଉପନିବେଶ । ପ୍ରଭୁ ଦେଶ ଏବଂ ଅନ୍ୟ ଦିଗରେ ପରାଧୀନ ଦେଶ ।

ଷୋଡଶ ଶତାବ୍ଦୀରେ ଭାରତବର୍ଷରେ ୟୁରୋପୀୟ ବଣିକପୁଞ୍ଜିର ଅନୁପ୍ରବେଶ ଆରମ୍ଭ ଓ ଶେଷରେ ବ୍ରିଟିଶ ବଣିକପୁଞ୍ଜି ଅଧୀନରେ ଭାରତରେ ଔପନିବେଶ ବ୍ୟବସ୍ଥାର ପ୍ରବର୍ତ୍ତନ ତଥା ଭାରତର ପରାଧୀନତାର ଶତାବ୍ଦୀଶତାବ୍ଦୀ ଇତିହାସ ଦୀର୍ଘତର । ୧୫୦୦ ଖ୍ରୀଷ୍ଟାବ୍ଦରେ ଆଧୁନିକ କେରଳର କାଲିକଟଠାରେ ପର୍ତ୍ତୁଗୀଜ ଫ୍ୟାକ୍ଟରୀ ପ୍ରତିଷ୍ଠା, ୧୫୧୦ରେ ପର୍ତ୍ତୁଗୀଜମାନେ ଗୋଆରେ ପ୍ରବେଶ, ୧୬୦୨ରେ ଦିନାମାର ଓ ୧୬୬୪ରେ ଫରାସୀ ବଣିକପୁଞ୍ଜିର ଭାରତ ପ୍ରବେଶ ଏବଂ ୧୬୦୦ ଶତାବ୍ଦୀରେ ବ୍ରିଟିଶ ବଣିକପୁଞ୍ଜିର ପ୍ରବେଶ ।

ପରସ୍ପରବିରୋଧୀ ସାମନ୍ତବାଦୀ ରଜା, ନବାବମାନଙ୍କୁ ଏପଟସେପଟ ଧରି ସେ କାଳର ସାମନ୍ତବାଦୀ ଶାସନରେ ଉତ୍ପୀଡ଼ିତ ପ୍ରଜାମାନଙ୍କର ଚେତନା ଅଭାବର ସୁଯୋଗ ଘେନି ପ୍ରଲୋଭନ, ଲାଞ୍ଚ, ଧମକ, ଚକ୍ରାନ୍ତର ଆଶ୍ରୟ ନେଇ ଏହି ମାଟିରେ ଉପନିବେଶବାଦୀ, ସାମ୍ରାଜ୍ୟବାଦୀ ନିଜନିଜ ଭିତରେ ଯୁଦ୍ଧ ଚଳେଇଲେ । ଇଂରେଜ ଫରାସୀ ଯୁଦ୍ଧ ତାର ଦୃଷ୍ଟାନ୍ତ । ପରିଶେଷରେ ୧୭୫୭ ପଲାସୀ ଯୁଦ୍ଧ; ଅର୍ଥାତ୍ ବଙ୍ଗଳାର ନବାବ ସିରାଜଉଦ୍ଦୌଲାଙ୍କର ପରାଜୟ ପରେ ସାରା ଦେଶରେ ଏକମାତ୍ର ବ୍ରିଟିଶ ଶାସନ କାଏମ ହେଲା । ଶେଷରେ ୧୮୦୩ରେ ଓଡିଶା ଓ ସେହି ସମୟରେ ପଞ୍ଜାବ ବ୍ରିଟିଶ ସାମ୍ରାଜ୍ୟର ଅଙ୍ଗୀଭୂତ ହୋଇଗଲା ।

ପର୍ତ୍ତୁଗୀଜ ସାମ୍ରାଜ୍ୟବାଦୀମାନଙ୍କ କର୍ତ୍ତୃତ୍ୱରେ ଗୋଆ-ଦାମନ-ଦିଉ ଏବଂ ଫରାସୀ ସାମ୍ରାଜ୍ୟବାଦୀଙ୍କ କର୍ତ୍ତୃତ୍ୱରେ ପଣ୍ଡିଚେରୀ, ମାହେ, ଚନ୍ଦନନଗର ଭଳି କ୍ଷୁଦ୍ର ଭୂଖଣ୍ଡକୁ ଛାଡ଼ିଦେଲେ ଆକୁମାରୀ ହିମାଳୟ ବ୍ରିଟିଶ ଦଖଲରେ ରହିଲା । ଭାରତବର୍ଷ ସାଙ୍ଗକୁ ବର୍ମା, ମାଳୟ, ସିଂହଳ ପ୍ରଭୃତି ଦେଶ ବ୍ରିଟିଶ ପୁଞ୍ଜିବାଦୀ ଶ୍ରେଣୀଙ୍କ ସାମ୍ରାଜ୍ୟରେ ପରିଣତ ହେଲା । ଏସିଆର ଇନ୍ଦୋଚୀନରେ ଫରାସୀ, ଇନ୍ଦୋନେସିଆର ଦିନାମାର ସାମ୍ରାଜ୍ୟବାଦୀମାନେ ଔପନିବେଶିକ ବ୍ୟବସ୍ଥା ପ୍ରତିଷ୍ଠା କଲେ । ଏହି ପ୍ରକ୍ରିୟାରେ ସାରା ପୃଥିବୀର ପଞ୍ଚ ମହାଦେଶରେ ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହେଲାନାହିଁ । ଆଫ୍ରିକା, ଅଷ୍ଟ୍ରେଲିଆ, ଲାଟିନ ଆମେରିକାରେ ସାମ୍ରାଜ୍ୟବାଦର ଧ୍ୱଜା ଉଡ଼ିଲା ।

ବ୍ରିଟିଶ ବଣିକପୁଞ୍ଜି ଇଷ୍ଟଇଣ୍ଡିଆ କମ୍ପାନୀ ଗଢ଼ି ଭାରତରେ ବଣିଜ କଲେ । କ୍ରମେ ଏହି ବଣିକପୁଞ୍ଜିର ପ୍ରତ୍ୟକ୍ଷ ଶାସନ ଓ ତାହା ବିରୋଧରେ ଅତୀତ କାଳରେ ଜନଆନ୍ଦୋଳନ ଯୋଗୁଁ ବ୍ରିଟିଶ ସାମ୍ରାଜ୍ଞୀ ଭିକ୍ଟୋରିଆଙ୍କ ନାମରେ ବ୍ରିଟିଶ ବଣିକପୁଞ୍ଜିର ଶାସନ ବରଂ ଭାରତରେ ଔପନିବେଶିକ ବ୍ୟବସ୍ଥାକୁ ଅଧିକ ସୁଦୃଢ଼ କଲା । କେବଳ ଆର୍ଥିକ ନୁହେଁ, ବ୍ରିଟିଶ ସାମ୍ରାଜ୍ୟବାଦୀମାନେ ଏ ଦେଶକୁ ଦଖଲ କରି ନିଜ ସାମ୍ରାଜ୍ୟ ଉପଯୋଗୀ ଆମ ଦେଶରେ ନୂତନ ସାମାଜିକ, ସାଂସ୍କୃତିକ, ସାମରିକ ଓ ପ୍ରଶାସନିକ ବ୍ୟବସ୍ଥା କାଏମ କଲେ । ଏହି ଶାସକ ଗୋଷ୍ଠୀ ଭାରତରୁ ଲୁଣ୍ଠିତ ଧନରେ ନିଜ ଦେଶର କେତେକ ଉପର ଗୋଷ୍ଠୀଙ୍କୁ ତୋଷ କରି ସାରା ଦେଶବାସୀଙ୍କ ମ[illegible]ଷ୍କ ଧୁଲେଇ କଲେ ଯେ ଭାରତ ଭଳି ବର୍ବର, ଅଶିକ୍ଷିତ, ପଶ୍ଚାତପଦଦେଶ ଓ ଦେଶବାସୀଙ୍କୁ ଶାସନ କରିବା ଲାଗି ବ୍ରିଟିଶ ଜାତିର ଅଧିକାର ରହିଛି ।

ଫ୍ରାନ୍ସ, ଜର୍ମାନୀ, ପର୍ତ୍ତୁଗାଲ, ହଲାଣ୍ଡ ପ୍ରଭୃତି ଦେଶରେ ନୂଆ ପୁଞ୍ଜିପତିମାନେ ମଧ୍ୟ ନିଜନିଜର ପ୍ରଭୁତ୍ୱ ଜାହିର କରିବାକୁ ଦେଶର ନୂଆ ପୁଞ୍ଜିପତିମାନେ ମଧ୍ୟ ନିଜନିଜ ଉପନିବେଶର ଯଥାର୍ଥତା ଦର୍ଶାଇବାକୁ ନିଜ ଦେଶବାସୀଙ୍କ ଭିତରେ ପରିବେଶ ପ୍ରତି, ପରାଧୀନ ଲୋକଙ୍କ ପ୍ରତି ଦ୍ୱେଷ, ବିକାର ସୃଷ୍ଟି କରେଇଲେ । ଭାରତର ପରାଧୀନତା ଓ ତା'ର ସ୍ୱାଧୀନତା ସଂଗ୍ରାମର ଇତିହାସକୁ ପ୍ରଥମେ ସାମ୍ରାଜ୍ୟବାଦ ଇତିହାସକାରମାନେ ବିକୃତ କରି କହିଥାନ୍ତି ଯେ ଭାରତ ବ୍ରିଟିଶ ଆସିବା ପୂର୍ବରୁ ପରାଧୀନ ଥିଲା; ତେଣୁ ବ୍ରିଟିଶ ପୁଞ୍ଜିପତିମାନେ ନୂଆ କରି ଭାରତକୁ ପରାଧୀନ କରିବା ପ୍ରଶ୍ନ ଉଠୁନାହିଁ । ବରଂ ବ୍ରିଟିଶ ଶାସନ ଭାରତକୁ ଶିକ୍ଷା, ସଭ୍ୟତା ଆଣିଦେଲା । ଏହି ବିକୃତ ଏବଂ ପୁଞ୍ଜିବାଦୀ ସାମ୍ରାଜ୍ୟବାଦୀ ସହାୟକ ତତ୍ତ୍ୱର ଗଣ୍ଡିରୁ ମୁକ୍ତ ଆବଶ୍ୟକ ।

ବିଶେଷତଃ ଉତ୍କଟ ସାଂପ୍ରଦାୟିକତାବାଦୀମାନେ କହନ୍ତି ଯେ ଭାରତର ପରାଧୀନତାର ଇତିହାସ ଦୁଇ ହଜାର ବର୍ଷ ତଳର । ଦାସ, ଖିଲଜି, ଲୋଧିମାନଙ୍କ ଶାସନ ଓ ତାପରେ ମୋଗଲ ଶାସନକାଳରୁ ଦେଶ ପରାଧୀନ ହୋଇଅଛି । ତା ପରେ ବ୍ରିଟିଶ ଶାସନ ଆସିଛି । ଇତିହାସର ଏହି ଖଣ୍ଡିତ ବିଚାରକୁ ଯଥାର୍ଥ ପ୍ରମାଣ କରିବାକୁ ଯାଇ ସେମାନେ ଦେଶରେ

ସାମ୍ପ୍ରଦାୟିକ ଦଙ୍ଗା ବିଦ୍ୱେଷ ସୃଷ୍ଟି କରାନ୍ତି ଆଉ ଇତିହାସକୁ ବ୍ରିଟିଶ ଶାସକମାନେ ନିଜ ସ୍ୱାର୍ଥ ଦୃଷ୍ଟିରୁ ଯେପରି ବିକୃତ କରିଥିଲେ, ତାହାକୁ ହିଁ ସଂକୀର୍ଣ୍ଣ ସ୍ୱାର୍ଥ ଲାଗି ଗ୍ରହଣ କରି ନିଅନ୍ତି ।

ଭାରତବର୍ଷକୁ ଦାସ, ଖିଲଜି, ଲୋଧି, ଏପରି ଭିନ୍ନ ଧର୍ମାବଲମ୍ବୀ ସାମନ୍ତବାଦୀମାନେ ଆସିବା ପୂର୍ବରୁ, ଭିନ୍ନଭିନ୍ନ ସଂସ୍କୃତି, ଧର୍ମ ବିଶ୍ୱାସର ଶକ, ହୁନ, କୁଷାଣ ମଧ୍ୟ ଭାରତବର୍ଷକୁ ଆସିଥିଲେ । ଭାରତ ଭୂମିକୁ ଆର୍ଯ୍ୟମାନେ ସହସ୍ରସହସ୍ର ବର୍ଷ ପୂର୍ବେ କାସ୍ପିଆନ ହ୍ରଦ ତଟରୁ ଆସିଥିଲେ । ମଙ୍ଗୋଲମାନେ ଚେଙ୍ଗିଜ ଖାଁଙ୍କ ନେତୃତ୍ୱରେ ଏସିଆ ଓ ୟୁରୋପ ଦଖଲ କରିଯାଇଥିଲେ । ୟୁରୋପରୁ ଗେଲସମାନେ ବ୍ରିଟିଶ ଦ୍ୱିପପୁଞ୍ଜ ଦଖଲ କରିଥିଲେ । ସାମନ୍ତବାଦୀ ସାମ୍ରାଜ୍ୟ ବିସ୍ତାର ଓ ଦିଗବିଜୟର ଯୁଗ ଏହା ବୁଝାଏ ।

ଏହିପରି ଭାବରେ ସମାଜ ବିକାଶର ଏହି ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ବଣିକପୁଞ୍ଜି ଆବିର୍ଭାବର ବହୁ ପୂର୍ବରୁ ଋଷ ସାମ୍ରାଜ୍ୟ, ଚୀନ ସାମ୍ରାଜ୍ୟ, ବିଜେଣ୍ଟାଇନ ସାମ୍ରାଜ୍ୟ, ଗ୍ରୀକ ସାମ୍ରାଜ୍ୟ, ଏସିରୀୟ ସାମ୍ରାଜ୍ୟ, ଅଟୋମାନ ସାମ୍ରାଜ୍ୟ, ଅଷ୍ଟ୍ରୋ ହଙ୍ଗେରୀୟ ସାମ୍ରାଜ୍ୟ ଗଠିତ ହୋଇଥିଲା । ଭାରତରେ ମୌର୍ଯ୍ୟ ସାମ୍ରାଜ୍ୟ, ଅଶୋକ ସାମ୍ରାଜ୍ୟ, ମୋଗଲ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା । ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ, ସାମରିକ ସକଳ ଦିଗରୁ ଏହା ସାମନ୍ତବାଦୀ ଦିଗ୍‌ବିଜୟର ସାମ୍ରାଜ୍ୟ । ବଣିକପୁଞ୍ଜି ଓ ଶିଳ୍ପପୁଞ୍ଜିରଆବିର୍ଭାବ ପରେ ତାରି ସ୍ୱାର୍ଥ ସାଧନ ପାଇ ବଜାର ଦଖଲ ଓ ଦଖଲି ବଜାରରେ ପ୍ରଭୁଦେଶ ପକ୍ଷରୁ ଶାସନ ପ୍ରତିଷ୍ଠା ଓ ସେହି ଉପନିବେଶକୁ ସବୁ ଦିଗରୁ କାବୁ କରି ଲୁଣ୍ଠନ ଓ ସ୍ୱଦେଶକୁ ଲୁଣ୍ଠିତ ସମ୍ପଦର ଚାଲାଣ ସାମ୍ରାଜ୍ୟବାଦୀ ଔପନିବେଶିକ ଯୁଗର ସଂକେତ ।

ଭାରତବର୍ଷରେ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନ ଏହି ପରି ଏକ ଅର୍ଥନୈତିକ, ସାମାଜିକ ସାଂସ୍କୃତିକ ବ୍ୟବସ୍ଥା । ଅତୀତ ସାମନ୍ତବାଦୀ ଯୁଗର ସାମ୍ରାଜ୍ୟ ଓ ତାର ଶାସକ, ସେମାନେ ଶକ, ହୁନ, କୁଷାଣ, ପଠାଣ, ମୋଗଲ ହୁଅନ୍ତୁ ଏହି ଦେଶର ଅଧିବାସୀ ହେଲେ । ସ୍ୱଦେଶକୁ ଏ ଦେଶର ଧନ ରତ୍ନ ବୋହି ନେଉନଥିଲେ । ଅକଥନୀୟ ଦମନ, ଅତ୍ୟାଚାର ସବୁ ସାମନ୍ତବାଦୀ ଶାସନରେ ଚାଲେ । ଭାରତ ସେଥିରୁ ବାହାର ନୁହଁ । ଗ୍ରୀକ୍ ଆମନ୍ତଣେ, ପାରସ୍ୟର ନାଦିରଶାହ ଆକ୍ରମଣ ଲୁଣ୍ଠନକାରୀ ସାମନ୍ତବାଦୀ ସାମ୍ରାଜ୍ୟ ବିସ୍ତାରିତ ଅଙ୍ଗ । ସେମାନେ ଲୁଣ୍ଠନ କରି ଏ ଦେଶରେ ରହିଲେ ନାହିଁ । ସ୍ୱଦେଶକୁ ଗଲେ । ତେଣୁ ଆର୍ଯ୍ୟଙ୍କଠାରୁ ଭାରତର ସର୍ବ ପୁରାତନ ଆଦିମ ଅଧିବାସୀ ଉପଜାତି-ଆଦିବାସୀ, ଶକ, ହୁନ, କୁଶାଣ, ପଠାଣ ମୋଗଲ ବା ଭିନ୍ନଭିନ୍ନ ବିଶ୍ୱାସ, ଜାତି, ବର୍ଣ୍ଣର ସମ୍ମିଶ୍ରଣ ହେଲା ଭାରତବର୍ଷରେ । ବିଭିନ୍ନତା ଓ ସ୍ୱତନ୍ତ୍ରତା ସତ୍ତ୍ୱେ ଗଢିଉଠିଲା ଏକ ସାମୂହିକ ସଂସ୍କୃତି, ସମ୍ମିଶ୍ରଣ, ସମନ୍ୱୟ । ଦେଶରେ ସେ ହିନ୍ଦୁ, ଜୈନ, ମୁସଲିମ, ଖ୍ରୀଷ୍ଟାନ, ଶିଖ ଯିଏ ଯେଉଁ ଧର୍ମ ବିଶ୍ୱାସୀ ହୁଅନ୍ତୁ, ଯେଉଁ ଭାଷାଭାଷୀ ହୁଅନ୍ତୁ ଯେଉଁ ପ୍ରଦେଶ ବା ଅଞ୍ଚଳବାସୀ ହୁଅନ୍ତୁ ସମସ୍ତେ ଭାରତବାସୀ । ଏହି ଦେଶର ନାଗରିକ ।

ଭାରତବର୍ଷ ବ୍ରିଟିଶ ବଣିକ ପୁଞ୍ଜି ଓ ଶିଳ୍ପପୁଞ୍ଜି ଓ ତାପରେ ଅର୍ଥପୁଞ୍ଜିର ଶୋଷଣ ଲୁଣ୍ଠନର

ଭୂଇଁରେ ପରିଣତ ହେଲା । ଭାରତବର୍ଷରେ ସେହି କାଳରୁ ହିଁ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ବିଭିନ୍ନ ସମୟରେ ବିଭିନ୍ନ ଅଞ୍ଚଳରେ ଅର୍ଦ୍ଧଚେତନରୁ, ଚେତନ ଅସଙ୍ଗଠିତରୁ ସଙ୍ଗଠିତ କୌଣସି ସୁସ୍ପଷ୍ଟ ରାଜନୈତିକ ଓ ଅର୍ଥନୈତିକ ଲକ୍ଷ୍ୟ ଆଦର୍ଶ ନଥାଇ ଏବଂ ପରେପରେ ଭିନ୍ନଭିନ୍ନ ରାଜନୈତିକ ଅର୍ଥନୈତିକ ଓ ସାମାଜିକ ଆଦର୍ଶର ଉଦ୍‌ଭବ ଘଟି ସ୍ୱାଧୀନତା ସଂଗ୍ରାମ ଆଗେଇଲା । ପୁରୁଣା ଜାଗାରେ ନୂଆ ସାମାଜିକ ଗୋଷ୍ଠୀ, ଆର୍ଥିକ ଶ୍ରେଣୀ ନୂଆ ଆଦର୍ଶ, ଲକ୍ଷ୍ୟ, ଦାବୀ ଧରି ଏ ସଂଗ୍ରାମରେ ଝାସ ଦେଲେ ।

୧୮୫୭ ଯାହାକୁ ସାମ୍ରାଜ୍ୟବାଦୀ ଇତିହାସକାରମାନେ ସିପାହୀ ବିଦ୍ରୋହ ବୋଲି ବଦନାମ କରିଥିଲେ, ତାହାକୁ କାର୍ଲ ମାର୍କସ ହିଁ ସର୍ବପ୍ରଥମ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ନାମରେ ଅଭିହିତ କରିଥିଲେ । ସେହି ମହାନ ସଂଗ୍ରାମର ବହୁ ଆଗରୁ ବ୍ରିଟିଶ ସାମ୍ରାଜ୍ୟରେ ବିସ୍ତାର ଶୋଷଣ ନିର୍ଯାତନାର ବିକ୍ଷୁବ୍‌ଧ ଲୋକେ ଯେ ଅଗଣିତ ସଂଗ୍ରାମ କରିଛନ୍ତି ଏବଂ ଲକ୍ଷଲକ୍ଷ ସଂଖ୍ୟାରେ ପ୍ରାଣ ଦେଇଛନ୍ତି, ତାହା ଆମ ମହାନ ସ୍ୱାଧୀନତା ସଂଗ୍ରାମର ଗୌରବମୟ ଅଧ୍ୟାୟ । ଏହି ଅଧ୍ୟାୟଗୁଡ଼ିକ ପ୍ରତି ପରବର୍ତ୍ତୀ କାଳରେ ନୂତନ ଶାସକ ଶ୍ରେଣୀମାନ ରାଜନୈତିକ କାରଣରୁ ସେତେ ଗୁରୁତ୍ୱ ଦିଅନ୍ତି ନାହିଁ ।

ଏହି ସଂଗ୍ରାମଗୁଡ଼ିକର ପରିସର ଦେଶବ୍ୟାପୀ ହୋଇପାରନ୍ତା ନାହିଁ, ହୋଇନଥିଲା । ଭୌଗୋଳିକ ଅବସ୍ଥିତି ଗମନାଗମନ ଓ ଯୋଗାଯୋଗ ସ୍ଥାପନର ଅସୁବିଧା, ବିଦେଶୀ ଶାସକଶ୍ରେଣୀର ଦମନ ଏବଂ ବିଦେଶୀ ଶାସକ ଗୋଷ୍ଠୀରେ ଅନୁଗତ ହୋଇ ତା'ର ସହଯୋଗୀ, ହୋଇଥିବା ସାମନ୍ତବାଦୀ ରାଜା ଜମିଦାରଙ୍କ ବିଶ୍ୱାସଘାତକତା ଓ ଗୁଇନ୍ଦାଗିରି ଏହି ସଂଗ୍ରାମଗୁଡ଼ିକର ପ୍ରସାରରେ ପ୍ରତିବନ୍ଧକ ଥିଲା ଏବଂ ତାହା ସ୍ୱାଭାବିକ ମଧ୍ୟ ।

ବିଭିନ୍ନ ପର୍ଯ୍ୟାୟରେ ଭାରତବାସୀଙ୍କ ବିଦେଶୀ ସାମ୍ରାଜ୍ୟବାଦୀ ଶାସନ ବିରୋଧରେ ସଂଗ୍ରାମ ୧୮୫୭ ଭଳି ସଶସ୍ତ୍ର ହୋଇଛି, ନିରସ୍ତ୍ର ହୋଇଛି, ହିଂସ୍ର ହୋଇଛି, ଅହିଂସ ହୋଇଛି । ଏ ଯୁଗର ରାଜନୈତିକ ନେତା ଓ ରାଜନୈତିକ ଦଳମାନେ ରଣଧ୍ୱନି ଦେବା ପୂର୍ବରୁ ଲୋକେ ଜମିଦାରି ଦଖଲ, ବ୍ରିଟିଶକୁ ଖଜଣା ବନ୍ଦ ଆନ୍ଦୋଳନ, ଅସହଯୋଗ - ବାସନ୍ଦ ଆନ୍ଦୋଳନ କରିଛନ୍ତି । ପ୍ରତିଷ୍ଠିତ ନେତା ନଥାଇ, ରାସ୍ତାଘାଟ ନଥାଇ ଅଗମ୍ୟ ନଦୀ ନାଳ ଓ ପର୍ବତ ଜଙ୍ଗଲ ପାର ହୋଇ ପ୍ରତିବାଦ ସମାବେଶ କରାଇଛନ୍ତି ।

ଆମ ସ୍ୱାଧୀନତା ସଂଗ୍ରାମର ଇତିହାସକୁ ତେଣୁ ଗୋଟାଏ ନିର୍ଦ୍ଦିଷ୍ଟ କାଳ ଭିତରେ ଆବଦ୍ଧ କରିବା ଉଦ୍ଦେଶ୍ୟମୂଳକ । ୧୮୮୫ରୁ କଂଗ୍ରେସ ଏବଂ ଗାନ୍ଧୀଜୀ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମର ଉଦ୍ଦୀପନାମୟ ଇତିହାସ ପ୍ରଚ୍ଛଦପଟରେ ରହି ଆସିଛି ଅଗଣିତ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ । ଅଧୁନା କାଳ ତୁଳନାରେ ସହସ୍ରଗୁଣ ଅଧିକ ସ୍ୱଦେଶବାସୀ ଓ ତତ୍କାଳୀନ ଦେଶପ୍ରେମୀଙ୍କୁ ବ୍ରିଟିଶ ଗୁଳିରେ, ଫାଶୀରେ ହତ୍ୟା କରାଯାଇଛି ।

## ସ୍ୱାଧୀନତା ସଂଗ୍ରାମର ପୃଷ୍ଠଭୂମି

ବ୍ରିଟିଶ ଶାସନ ଆରମ୍ଭ କାଳରେ ଦେଶରେ ରାଜନୈତିକ ଓ ପ୍ରଶାସନିକ ଅବାଧ ଦମନ ଅତ୍ୟାଚାର କରିବା କ୍ଷମତା ହରାଇଥିବା ରଜା, ନବାବ, ଜମିଦାର ଓ ସେମାନଙ୍କ ଆଶ୍ରିତ ଓ ଅନୁଗତ ଲୋକଗୋଷ୍ଠୀ ଏକ ଶ୍ରେଣୀ ଭୁକ୍ତ । ଆଉ ରହିଲେ ଦେଶର ବିଶାଳ ଚାଷୀ ଓ ଗ୍ରାମ୍ୟ କାରିଗର, ହସ୍ତଶିଳ୍ପୀ ଓ କୁଟୀର ଶିଳ୍ପୀ । ତାପରେ ଏ ସାମନ୍ତବାଦ ସମାଜରେ ବା ଦରବାରଗୁଡ଼ିକରେ ଥିବା ସାଂସ୍କୃତିକ, ଧାର୍ମିକ ସେବାକାରୀ, ବୁଦ୍ଧିଜୀବୀ ଗୋଷ୍ଠୀ, ସଙ୍ଗୀତଜ୍ଞ, କବି, ଧର୍ମପୁରୋହିତ, ବ୍ରାହ୍ମଣ, ମୁଲ୍ଲାମୌଲବୀ । ଏହା ଏକ ସାମାଜିକ ଗୋଷ୍ଠୀ ।

ବ୍ରିଟିଶ ଶାସନ, ଔପନିବେଶିକ ଅର୍ଥନୀତି, ତା'ର ବିଚାର ଓ ନ୍ୟାୟ ବିଭାଗ, ତା'ର ଶାସନ ବିଭାଗର କର୍ତ୍ତା, ହାକିମ ଓ ପୋଲିସ ଓ ସୈନ୍ୟଙ୍କ ବ୍ୟବସ୍ଥା ଫଳରେ ଉପରବର୍ଣ୍ଣିତ ଶ୍ରେଣୀଗୁଡ଼ିକ ହିଁ ଆଘାତ ପାଇଲେ । ସମାନ ଧରଣର ଆଘାତ ନୁହେଁ । ପୂର୍ବର ସାମନ୍ତବାଦୀ ରଜା, ନବାବ, ଜମିଦାରମାନଙ୍କର କ୍ଷମତା ଗଲା । ଅୟସଭୋଗ, ସଂଭୋଗ ଗଲା । ସେମାନଙ୍କ ସ୍ଥାନ ନେଲେ ବ୍ରିଟିଶ ଶାସକ, ନୂତନ ବଣିକ ଗୋଷ୍ଠୀ, ନୂତନ ମହାଜନ ଓ ନୂତନ ଔପନିବେଶିକ ଅମଲାତନ୍ତ୍ର ।

ଚାଷୀମାନଙ୍କ ଉପରେ ପୂର୍ବାପେକ୍ଷା ବହୁଗୁଣ ଖଜଣା, ସେମାନଙ୍କ ଘରଦ୍ୱାର ନିଲାମ । କୁଟୀର ଶିଳ୍ପୀମାନଙ୍କ ଧନ୍ଦାଲୋପ । ଜମିଦାରୀ ଦମନ ଅତ୍ୟାଚାର ସାଙ୍ଗକୁ ବ୍ରିଟିଶ ଅମଲାତନ୍ତ୍ର, ପୁଲିସର ବେତମାଡ଼, ଜେଲ୍, ଦମନ ଅତ୍ୟାଚାର ବଞ୍ଚିତ ଚାଷୀ ଓ କାରିଗର ମଧ୍ୟରେ ସ୍ୱତଃ ବ୍ରିଟିଶ ବିରୋଧୀ ଅସନ୍ତୋଷ ଜାଗ୍ରତ କଲା । ଏହାର ସୁଯୋଗ ନେଲେ କ୍ଷମତା ଓ ସଂପଦରୁ ବଞ୍ଚିତ ରାଜା ନବାବମାନେ, ଜମିଦାରମାନେ; ସେମାନେ ହିଁ ବିଦ୍ରୋହର ଧ୍ୱଜା ସ୍ଥାନୀୟ ଭାବରେ ଉଠେଇଲେ । ବ୍ରିଟିଶ ପକ୍ଷରୁ ସଶସ୍ତ୍ର ପ୍ରତିରୋଧ, ଅସମ ପ୍ରତିରୋଧରେ ସେମାନେ ହାରିଲେ । ସେମାନେ ଦେଶକୁ ଆଗେଇ ନେବାକୁ ବା ସାମନ୍ତବାଦୀ ପ୍ରଥାକୁ ଭାଙ୍ଗିବାକୁ ବିଦ୍ରୋହ କରୁନଥିଲେ । କରୁଥିଲେ ନିଜ ହୃତ କ୍ଷମତା ଓ ଶାସନ ଫେରାଇ ଆଣିବାକୁ । କିନ୍ତୁ ଏଠି ସ୍ମରଣୀୟ ଯେ ସେମାନଙ୍କ ସଂଗ୍ରାମର ପୃଷ୍ଠଭୂମି ହେଲେ ଚାଷୀ, କାରିଗର, ବଞ୍ଚିତ କ୍ଷୁଦ୍ର ବୁଦ୍ଧିଜୀବୀ ଗୋଷ୍ଠୀ । ଏହିମାନେ ହିଁ ପରବର୍ତ୍ତୀକାଳରେ ବହୁ ସଂଗ୍ରାମରେ ଅବତୀର୍ଣ୍ଣ ହେଲେ ।

ବ୍ରିଟିଶ ବିରୋଧରେ ବଞ୍ଚିତ ରାଜା ନବାବମାନଙ୍କ ପ୍ରତିରୋଧ, ସଶସ୍ତ୍ର ଯୁଦ୍ଧର ଇତିହାସ ଦୀର୍ଘ । ୧୭୬୩ରୁ ୧୮୫୬ ଅର୍ଥାତ୍ ୧୮୫୭ର ପ୍ରଥମ ସ୍ୱାଧୀନତା ସମର ପର୍ଯ୍ୟନ୍ତ ଦେଶରେ ୧୨ ଥର ଭୟାବହ ଦୁର୍ଭିକ୍ଷ ଓ ଅଗଣିତ କ୍ଷୁଦ୍ର ଧରଣର ଦୁର୍ଭିକ୍ଷରେ ୨ କୋଟି ଲୋକ ମୃତ୍ୟୁବରଣ କରିଥିଲେ । ଠିକ୍ ଏହି ସମୟରେ ଅର୍ଥାତ୍ ୧୭୫୭ର ପଲାସୀ ଯୁଦ୍ଧରେ ୧୮୫୭ ସ୍ୱାଧୀନତା ସମର ମଧ୍ୟବର୍ତ୍ତୀ ସମୟରେ ବଡ଼ବଡ଼ ୪୦ଟି ବିଦ୍ରୋହ ଓ ଶହଶହ କ୍ଷୁଦ୍ର ବିଦ୍ରୋହ ସୃଷ୍ଟି ହୋଇଥିଲା ।

ବଙ୍ଗଳାର ବିଖ୍ୟାତ ସନ୍ୟାସୀ ବିଦ୍ରୋହ ୧୬୬୩ରୁ ୧୮୦୦ ଶତାବ୍ଦୀ ଯାଏ ବ୍ରିଟିଶ ଶାସନକୁ ଅସ୍ଥିର କରି ପକେଇ ଥିଲା । ଅବଶ୍ୟ ତାକୁ ନିର୍ମମ ହସ୍ତରେ ଦମନ କରାଗଲା । ସନ୍ୟାସୀ ବେଶରେ ବିଦ୍ରୋହୀମାନେ ଭିକ୍ଷାଥାଳ ଧରି ଗାଁ ଗାଁରେ ଗୀତ ଗାଇ ବଞ୍ଚିତ ଚାଷୀ ଓ ଚାକିରିରୁ ବରଖାସ୍ତ ସୈନ୍ୟଙ୍କୁ ବିଦ୍ରୋହ ପାଇଁ ଉଦ୍‌ବୁଦ୍ଧ କରୁଥିଲେ । ଅବଶ୍ୟ କ୍ଷମତାଚ୍ୟୁତ ଜମିଦାରମାନେ ମଧ୍ୟ ଏହି ବିଦ୍ରୋହରେ ସାମିଲ ହୋଇଥିଲେ । ଏହି ସମୟ ଭିତରେ ବଙ୍ଗଦେଶରେ ରଙ୍ଗପୁର ଓ ଦୀନାଜପୁରରେ ୧୬୮୩ରେ, ବିଷ୍ଣୁପୁର ଓ ବୀରଭୂମିରେ ୧୭୯୯ ଏବଂ ଓଡ଼ିଶାର ରାଜାରାଜୁଡ଼ାମାନଙ୍କ ବିଦ୍ରୋହ ଖୋର୍ଦ୍ଧାରେ ବ୍ରିଟିଶ ବିରୋଧୀ ପାଇକଙ୍କ (୧୮୧୨) ସମର ଏବଂ ୧୮୨୬-୪୦ରେ ସମ୍ବଲପୁରରେ ବିଦ୍ରୋହର ଅଗ୍ନି ଜଳି ଉଠିଲା ।

୧୮୧୬ରୁ ୧୮୩୨ରେ ସୌରାଷ୍ଟ୍ରରେ ୧୮୨୪-୨୮ରେ ଗୁଜୁରାଟରେ ଏବଂ ମରହଟ୍ଟା ଯୁଦ୍ଧରେ ପେଶବାଙ୍କ ପରାଜୟ ପରେ ବି ୧୮୩୯-୧୮୪୯ ମଧ୍ୟରେ ମହାରାଷ୍ଟ୍ରରେ ଭିଲ ବିଦ୍ରୋହ, କିଟୁରୂପୁ ବିଦ୍ରୋହ ଏବଂ ୧୮୪୨ ସତାରା ଏବଂ ୧୮୪୪ରେ ଗଦକାରୀ ବିଦ୍ରୋହରୁ ଦେଖାଯାଏ ଯେ ପୂର୍ବଭାରତ ଓ ପଶ୍ଚିମ ଭାରତରେ ବିଭିନ୍ନ ଅଞ୍ଚଳରେ ଓ ବିଭିନ୍ନ ସମୟରେ ବ୍ରିଟିଶ ବିରୋଧୀ ବିଦ୍ରୋହ ସଂଘଟିତ ହୋଇଥିଲା ।

ଦକ୍ଷିଣ ଭାରତ ଓ ଉତ୍ତର ଭାରତ ମଧ୍ୟ ଏଥିରୁ ବାଦ ପଡ଼ିନଥିଲା । ଉତ୍ତର ପ୍ରଦେଶର ପଶ୍ଚିମାଞ୍ଚଳ ଓ ଆଧୁନିକ ହରିଆନା ଅଞ୍ଚଳରେ, ୧୮୦୫ରେ ବିଳାସପୁରରେ, ୧୮୧୪-୧୭ରେ ଆଲିଗଡ଼ର ତାଲୁକଦାରମାନଙ୍କର ଏବଂ ଜବଲପୁରରେ ୧୮୪୨ରେ ବୁନ୍ଦେଲମାନଙ୍କର ଏବଂ ୧୮୫୨ରେ ଖାନ୍ଦେଶରେ ଅନୁରୂପ ବିଦ୍ରୋହ ତଥା ୧୮୪୮-୪୯ରେ ପଞ୍ଜାବ ଯୁଦ୍ଧ ଏହି ପ୍ରକାର ବିଦ୍ରୋହ । ସ୍ଥାନ ଓ ସମୟ ଭେଦରେ, ଅନ୍ୟ କାରଣଗୁଡ଼ିକୁ ଧରି ସ୍ଥାନୀୟ ଚାଷୀ, କୁଟୀରଶିଳ୍ପମାନଙ୍କ ସମର୍ଥନରେ ବ୍ରିଟିଶ ବିରୋଧୀ ବିଦ୍ରୋହ ପରସ୍ପରଠାରୁ ବିଭିନ୍ନ ହେଲେ ବି ଦେଶ ସାରା ସଂଘଟିତ ହୋଇଥିଲା ।

ଦେଶର ଦକ୍ଷିଣାଞ୍ଚଳରେ ସେହିପରି ୧୭୯୪ରେ ବିଜୟନଗର ରାଜାଙ୍କ ବିଦ୍ରୋହ, ମାଲବାର ଓ ଆନ୍ଧ୍ରପ୍ରଦେଶର ଉପକୂଳ ଅଞ୍ଚଳରେ ୧୮୦୫ରେ, ତ୍ରିବାଙ୍କୁଡ଼ରେ ଏବଂ ୧୮୩୧-୩୧ରେ ମହୀଶୁରର ଚାଷୀ ବିଦ୍ରୋହ ସାଙ୍ଗକୁ ୧୮୩୦-୩୪ରେ ବିଶାଖାପାଟଣା ଓ ୧୮୩୫ରେ ଗଞ୍ଜାମ ଓ ୧୮୪୬-୪୭ରେ କୁର୍ଣ୍ଣୁଲରେ ଏହିପ୍ରକାର ବିଦ୍ରୋହ ସଂଘଟିତ ହୋଇଥିଲା ।

ଏସବୁ ବିଦ୍ରୋହର ଅବତାରଣା କରିବାର ଯଥାର୍ଥତା ହେଲା, ଯଦିଚ କ୍ଷମତାଚ୍ୟୁତ ସାମନ୍ତବାଦୀମାନେ ମୁଖ୍ୟତଃ ନିଜର ଅଧିକାର ଫେରିପାଇବାକୁ ବିଦ୍ରୋହର ଧ୍ୱଜା ଉଠାଇଥିଲେ କିନ୍ତୁ ପୂର୍ବାପେକ୍ଷା ବ୍ରିଟିଶ ଶାସନରେ ଅଧିକ ନଗ୍ନ ଉତ୍ପୀଡନ, ଶୋଷଣରେ ଶିକାର ହୋଇ ଚାଷୀ ଓ ଅନ୍ୟ ସାମାଜିକ ଗୋଷ୍ଠୀ ବିଦ୍ରୋହରେ ଭାଗ ନେଇଥିଲେ । ଏହା ହିଁ ଦେଶରେ ତୁଣ୍ଡବାଇଦ

ସହସ୍ରକୋଶ ନ୍ୟାୟରେ ପ୍ରସାର ପାଇଁ ବ୍ରିଟିଶ ଶାସନ ବିରୋଧୀ ମନୋଭାବକୁ ରୂପ ଦେଇଥିଲା ।

**ବିଦ୍ରୋହର ନୂତନ ପର୍ଯ୍ୟାୟ**

ବିଦେଶୀ ଶାସନ ଯେ ସାମ୍ରାଜ୍ୟବାଦ ଶାସନ, ଭାରତ ଯେ ଉପନିବେଶ, ଏପରି ଚିନ୍ତା ବା ଚେତନା ସେତେବେଳେ ତତ୍ତ୍ୱ ଉପରେ ପ୍ରକାଶ ପାଇପାରିଥାନ୍ତା । କାହିଁକି ପାଇନଥିଲା ? କିନ୍ତୁ ବିଦେଶୀ, ବଣିକ ପୁଞ୍ଜି ଶାସନ କ'ଣ ତାହା ନିଜର ଅଭିଜ୍ଞତାରୁ ଲୋକେ ବୁଝି ପାରିଥିଲେ । ତେଣୁ ଏହି ବିଦ୍ରୋହଗୁଡ଼ିକୁ ନିର୍ମମ, କ୍ରୂର ଭାବରେ ଦମନ କରାଗଲା ପରେ କିଛିଟା ଭଟ୍ଟା ପଡ଼ିବା, କ୍ଳାନ୍ତି ଆସିବା ସ୍ୱାଭାବିକ । ତାହା ଆସିଥିଲା । ମାତ୍ର ଇତିହାସ ଦୃଷ୍ଟିରୁ ସେ କାଳ ଅତି ସ୍ୱଳ୍ପ । ଭାରତବର୍ଷରେ ଜନଜାତି ଅର୍ଥାତ୍ ଗିରିଜନ ଆଦିବାସୀମାନେ ବହୁ ସଂଖ୍ୟାରେ ବିରାଟ ବିରାଟ ଚକଡ଼ା ଧରି ବାସ କରୁଥିଲେ ଓ ଏବେ ବି କରୁଛନ୍ତି ।

ସେମାନଙ୍କ ଭିତରେ ବ୍ରିଟିଶ ସରକାର ଭାଗଭାଗ ଆଣି ଆଦିବାସୀ ମୁଖିଆମାନଙ୍କୁ ଜମିଦାର କରିଦେଇ ନୂଆ ଧରଣର ରାଜସ୍ୱ ବସେଇଲା । ଆଦିବାସୀମାନେ ଉପୁଜାଉଥିବା ବା ଜଙ୍ଗଲରୁ ସଂଗ୍ରହ କରୁଥିବା ପଦାର୍ଥ ଉପରେ ଟିକସ ବସାଗଲା । ସେମାନଙ୍କ ସରଳ ଅର୍ଥନୀତିରେ ପ୍ରବେଶ କଲେ ବାହାରୁ ଅଣାଯିବା ବ୍ୟବସାୟୀ, ମହାଜନ ଓ ରାଜସ୍ୱ ଆଦାୟକାରୀ ସରକାରୀ କର୍ମଚାରୀ ଓ ପୋଲିସ । ବେଠି, ବେଗାରୀ, ଅତ୍ୟଧିକ କର ଟିକସ, ମହାଜନୀ ସୁଧ ଓ ଦମନ ଅତ୍ୟାଚାର ଗିରିଜନମାନଙ୍କର ପାରମ୍ପରିକ ସମାଜ ଉପରେ ଆକ୍ରମଣ ଚଳେଇ ଉକ୍ତ ସମାଜକୁ ଅସ୍ତବ୍ୟସ୍ତ କରି ପକେଇଲା ।

ନୂତନ ଧରଣର, ଅତି ସାହସିକ ଜନବିଦ୍ରୋହର ଜୁଆର ଛୁଟେଇଲେ ବିଭିନ୍ନ ଇଲାକାର ଆଦିମ ଅଧିବାସୀ ଓ ଗିରିଜନମାନେ । ଏହି ବ୍ୟବସ୍ଥା ପ୍ରବର୍ତ୍ତନ ଫଳରେ ସେମାନେ ଜମିବାଡ଼ି ହରାଇଲେ । ବାହାରୁ ଯାଇଥିବା ମହାଜନ, ବ୍ୟବସାୟୀମାନେ ସେମାନଙ୍କୁ ଋଣ ଦେଇ ଲୁଣ୍ଠନ ଓ ପ୍ରତାରିତ କଲେ । ବ୍ରିଟିଶ ସରକାରର ଆଇନ, ପୋଲିସ ଓ ହାକିମହୁକୁମାଙ୍କ ସାହାଯ୍ୟରେ ସେମାନଙ୍କ ଅର୍ଥନୈତିକ ଜୀବନନାଟିକା ଉପରେ ଅକ୍ତିଆର ପ୍ରତିଷ୍ଠା କଲେ । ବ୍ରିଟିଶ ଶାସନର ବାହୁଛାୟା ତଳେ ଆଦିବାସୀ ଅଞ୍ଚଳକୁ ଆସିଥିବା ନୂତନ ଶୋଷକ, ବ୍ରିଟିଶ ଲୋକ ଓ ବ୍ୟବସାୟୀ, ମହାଜନ, ରାଜସ୍ୱ କର୍ମଚାରୀଙ୍କୁ ଆଦିବାସୀମାନେ ସାକ୍ଷାତ ଯମ ରୂପେ ଦେଖି ସେମାନଙ୍କୁ ଦିକୁ ଆଖ୍ୟା ଦେଲେ । ଏମାନଙ୍କ ଦ୍ୱାରା ଅତ୍ୟଧିକ ସୁଧ, ବେଆଇନ ପାଉଣା, ହାଟ ବଜାରରେ ଓଜନରେ ଠକେଇ, ଚଞ୍ଚକତା ଏବଂ ଗିରଫ, ଜେଲ୍ ପ୍ରଭୃତି ଯାବତୀୟ ଅତ୍ୟାଚାର ଭୋଗି ଆଦିବାସୀମାନେ ବିଦ୍ରୋହୀ ହୋଇଉଠିଲେ ।

ସେତେବେଳେ ପରିସ୍ଥିତି ଓ ସାମାଜିକ ଚେତନାର ସ୍ତରରେ ଯାହା ହେବା ସ୍ୱାଭାବିକ, ତାହା ହିଁ ହେଲା । ଉପଜାତିମାନେ ବିଦ୍ରୋହର ନିଆଁ ଜାଳିଦେଲେ । ଦିକୁ ଶୋଷକ, ଲୁଣ୍ଠନକାରୀମାନଙ୍କ ବିରୋଧରେ ଏହି ବିଦ୍ରୋହରେ ଦୁଇଟି କଥା ସ୍ପଷ୍ଟ ହୋଇଗଲା । ଏହି ଦିକୁ

ଶୋଷକମାନଙ୍କ ପକ୍ଷରେ ବ୍ରିଟିଶ ଶାସନ ଗଲା, ଲକ୍ଷଲକ୍ଷ ସଂଖ୍ୟାରେ ଆଦିବାସୀଙ୍କୁ ହତ୍ୟା କଲା ।

ଅନ୍ୟ ଦିଗରେ ଏହି ବିଦ୍ରୋହୀମାନେ ବିଭିନ୍ନ ଉପଜାତିଭୁକ୍ତ ହେଲେ ମଧ୍ୟ ପରସ୍ପର ପ୍ରତି ପୁରୁଣା ସଂଘର୍ଷର ବାଟ ଧରି ନଥିଲେ କି ଅନ୍ୟ ଉପଜାତି ବରୋଧରେ ଯାଉନଥିଲେ ।

ସେମିତି ବହିରାଗତ, ଅଣଆଦିବାସୀ, ଯେଉଁମାନେ ତେଲି, ଗୋପାଳ, କହ୍ନାଉ, କୁମ୍ଭାର, ରଜକ, ବାରିକ, ବାଜାବାଲା ଏବଂ ଯେଉଁମାନେ ଶୋଷକ ଦିକୁ ଅବା ବ୍ରିଟିଶ ଶାସକଙ୍କ ଘରୋଇ ନୌକର ଅବା ଗୋତି ଶ୍ରମିକ ଥିଲେ, ସେମାନଙ୍କୁ ଆକ୍ରମଣ କରୁ ନଥିଲେ । ଅପରପକ୍ଷରେ ଅଣଦିକୁ ଏବଂ ସାମାଜିକ ଗୋଷ୍ଠୀଗୁଡ଼ିକ ଆଦିବାସୀ ବିଦ୍ରୋହର ପ୍ରକାଶ୍ୟ ବା ପରୋକ୍ଷ ସମର୍ଥକ ଥିଲେ । ଏହା ଏକପ୍ରକାର ସ୍ୱଭାବଗତ ଶ୍ରେଣୀ ସଂହତିର ପରିଚୟ ଦିଏ ।

ବିଦ୍ରୋହୀ ଆଦିବାସୀମାନେ ସମୂହ ଚିତ୍ର ବିରୋଧରେ କିପରି ସଂଗ୍ରାମୀ ଐକ୍ୟ ଗଢ଼ାଯିବା ଦରକରା, ନିଜର ସହଜାତ ବୁଦ୍ଧି ଓ କୌଶଳ ପ୍ରୟୋଗ କରି ଏପରି ସଂହତି ଆଣିଥିଲେ । ଏକପ୍ରକାରର ଶ୍ରେଣୀ ଐକ୍ୟ ସମ୍ଭ୍ରାନ୍ତ ବିଦ୍ରୋହ କୋହ୍ଲ ଅବା ମୁଣ୍ଡା ବିଦ୍ରୋହ ବେଳେ ଗଠିତ ହୋଇଥିଲା । ଏହି ବିଦ୍ରୋହଗୁଡ଼ିକ ମୁଖ୍ୟତଃ ସଶସ୍ତ୍ର ଓ ସଂଗଠନ ଏଥିଲାଗି ଅତି ପ୍ରାଥମିକ । ଏମାନଙ୍କ ହାତରେ ଧନୁତୀର, ପଥର, ଖଣ୍ଡା, କାତି ଏବଂ ଦମନକାରୀ ବ୍ରିଟିଶ ରେଜିମେଣ୍ଟ ହାତରେ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର । ପୁଣି ସେମାନେ ସାମରିକ ତାଲିମରେ ଦୋରସ୍ତ । ପକ୍ଷ ଅସମାନ, ସଂଗ୍ରାମ ଅସମାନ ସତ, ମାତ୍ର ବିଦ୍ରୋହୀମାନଙ୍କ ସାହସ ଓ ଆତ୍ମୋତ୍ସର୍ଗର ପଟାନ୍ତର ନଥିଲା ।

୧୮୫୭ ପୂର୍ବରୁ ୧୮୫୪ରେ ସାନ୍ତାଳ ପ୍ରଗଣାର ଆଦିବାସୀ ମୁଖ୍ୟ ମାଝି ଓ ପ୍ରଗଣା ଅଧିକାରୀମାନେ ଏକଜୁଟ ହେଲେ । ସେମାନଙ୍କ ଡାକରାରେ ୪୦୦ ଗାଁର ୬ ହଜାର ଆଦିବାସୀ ପ୍ରତିନିଧି ୧୮୫୫ ଜୁନ ୩୦ରେ ଭାଗନିଧିଠାରେ ସମବେତ ହେଲେ ।

ସିଦୋ ଏବଂ କାନୁ ନାମକ ଦୁଇ ନେତାଙ୍କ ଆବିର୍ଭାବ ଘଟିଲା । ସେମାନେ ହେଲେ ସାନ୍ତାଳ ବିଦ୍ରୋହ ସର୍ଦ୍ଦାର । ମାତ୍ର ଅସମ ସମରରେ ଲକ୍ଷଲକ୍ଷ ସଂଖ୍ୟାରେ ସାନ୍ତାଳ ଆଦିବାସୀ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ନିହତ ହୋଇଥିଲେ । ଏହା କ'ଣ ଆଗାମୀ ସଂଗଠିତ ସ୍ୱାଧୀନତା ସଂଗ୍ରାମ ପାଇଁ ଖୋରାକ ଯୋଗାଇ ନାହିଁ ?

ସାନ୍ତାଳମାନେ କେବଳ ପୁରୁଷ ନୁହଁ, ମହିଳାମାନଙ୍କୁ ସଂଗଠିତ କରିଥିଲେ । ଦଶ ହଜାର ସାନ୍ତାଳ ବିଦ୍ରୋହୀ ପୁରାତନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହେବାର ଦିକୁ ଶୋଷଣର ପ୍ରତୀକ ମହାଜନ, ଜମିଦାର, ରେଳବାଇ ନିର୍ମାଣସ୍ଥଳୀ, ଡାକବାହକ, ଥାନା, କଚେରୀ ଉପରେ ଆକ୍ରମଣ କରୁଥିଲେ ।

ସର୍ଦ୍ଦାର ସିଦୋ ୧୮୫୫ରେ ଶତ୍ରୁ ହାତରେ ନିହତ ହୋଇଥିଲେ ଏବଂ ୧୮୮୬ କାନୁ ଶତ୍ରୁ ହାତରେ ଧରା ପଡ଼ିଗଲେ । ଏକ ସମ୍ମୁଖ ସମରରେ ୧୫ ହଜାର ସାନ୍ତାଳ ପ୍ରାଣବଳି ଦେଇଥିଲେ ।

ସେମିତି ଛୋଟନାଗପୁରର କୋହ୍ଲ ଏବଂ ଆନ୍ଧ୍ରର ସମୁଦ୍ର ତଟବର୍ତ୍ତୀ ରମ୍ପାର ଗିରିଜନମାନଙ୍କ ରୋମାଞ୍ଚକ, ବୀରତ୍ୱପୂର୍ଣ୍ଣ ବିଦ୍ରୋହ ଇତିହାସର ପୃଷ୍ଠା ମଣ୍ଡନ କରିଛି ।

ରୁରକେଲା, ଆଜିର ରାଉରକେଲା, ଇସ୍ପାତ ନଗରୀ । ସେଠାରେ ଆଜି ବି ଶ୍ରଦ୍ଧା ନିବେଦନ କରାଯାଏ ବିର୍ସା ମୁଣ୍ଡାଙ୍କୁ ବିର୍ସା ମଇଦାନରେ । ଆଦିବାସୀ ମୁଣ୍ଡା ଜାତିର ବିର୍ସା ମୁଣ୍ଡା ୧୮୯୯-୧୯୦୦ରେ ଜାଗିରଦାର, ଠିକାଦାର, ବଣିକ ଓ ମହାଜନମାନଙ୍କ ବିରୋଧରେ ବିଦ୍ରୋହ କରିଥିଲେ । ୬ ହଜାର ଯାଏ ମୁଣ୍ଡା ବିଦ୍ରୋହୀ କାତି, ଟାଙ୍ଗିଆ ଖଣ୍ଡା, ଧନୁତୀର ଧରି ବ୍ରିଟିଶ ସୈନ୍ୟଙ୍କ ବିରୋଧରେ ଲଢ଼ି ପରାସ୍ତ ହୋଇଥିଲେ । ୧୯୦୦ ଫେବୃଆରୀରେ ବିର୍ସା ମୁଣ୍ଡାଙ୍କ ଜେଲଖାନାରେ ମୃତ୍ୟୁ ହେଲା ।

**ନୀଳ ବିଦ୍ରୋହରେ ଆଦ୍ୟ ଚାଷୀ ସଂଗ୍ରାମର ଜୁଆର**

ଚାଷୀମାନେ ଜମି ପାଇଁ, ଖଜଣା ହ୍ରାସ କରିବା ଲାଗି, ଜମିଦାରି, ମହାଜନି, ମଠ ମହନ୍ତଙ୍କ ବିରୋଧରେ ଆନ୍ଦୋଳନ କଲାବେଳେ, ଚଳିତ ଶତାବ୍ଦୀର ସ୍ୱାଧୀନତା ସଂଗ୍ରାମ କାଳରେ ବି କେଉଁଠିକେଉଁଠି ହିଂସାକାଣ୍ଡ ଘଟିବା ବେଳେ ଓ ବ୍ରିଟିଶ ସରକାର ତାହାକୁ ହିଂସାଭାବ ଡାକୁଗିରି ବର୍ଣ୍ଣନା କରି ଦମନ କରୁଥିଲା ଏବଂ ସ୍ୱାଧୀନତା ସଂଗ୍ରାମର କେତେକ ତୁଙ୍ଗ ନେତା ମଧ୍ୟ ତାହାର ନିନ୍ଦା କରୁଥିଲେ ଏବଂ ଏମିତିକି ଜମିଦାରମାନଙ୍କୁ ଖଜଣା ଦେବା ଲାଗି କଂଗ୍ରେସ କମିଟିରେ ପ୍ରସ୍ତାବ ପାଶ୍ ହୋଇଥିଲା । ବ୍ରିଟିଶ ସାମ୍ରାଜ୍ୟବାଦ ତା'ର ଔପନିବେଶିକ ଶାସନ ବସାଇ, ଲର୍ଡ଼ କର୍ଣ୍ଣୱାଲିସଙ୍କ ପ୍ରବର୍ତ୍ତିତ ଜମିଜମା ସ୍ୱତ୍ୱ ଓ ଖଜଣା ବ୍ୟବସ୍ଥା ନୂତନ କିସମର ସାମନ୍ତବାଦୀ ପ୍ରଥା ଜାହିର କଲା । ତା'ରି ଫଳରେ ଖଜଣା ହାର ବଢ଼ିଗଲା । ଖଜଣା ପୈଠ କରିବା ପାଇଁ ଚାଷୀ ମହାଜନମାନଙ୍କ ଦ୍ୱାରସ୍ଥ ହେଲା । ଏହି ପ୍ରକ୍ରିୟାରେ ଅନେକ ଚାଷୀଙ୍କ ହାତରୁ ଜମି ଗଲା । ଚାଷୀ ତଳି ରଇତ ଓ ଭାଗଚାଷୀରେ ପରିଣତ ହେଲା । ବେଠି, ବେଗାରୀ, ମାଗଣ, ବେଆଇନ ପାଉଣା, ପୁଲିସ ପିଆଦାଙ୍କ ଜୁଲୁମ ଓ ପ୍ରତିବାଦ କଲେ ହତ୍ୟା, ମାଡ଼, ବରଗଛରେ ଟଙ୍ଗା, ଜେଲ୍, ଜରିମାନା ଚାଲିଲା ।

ସେତେବେଳେ ଚାଷୀ ଏକ ସର୍ବଭାରତୀୟ ବା ପ୍ରାଦେଶିକ ସ୍ତରରେ ସଂଗଠନ ଗଢ଼ି ଲଢ଼ିବାର ଚେତନା ଆସି ନଥିଲା ବା ସୁଯୋଗ ନଥିଲା । କିନ୍ତୁ ସାରା ଭାରତରେ ଚାଷୀମାନେ ଅଞ୍ଚଳଅଞ୍ଚଳ ଭିତ୍ତିରେ ସ୍ୱତଃସ୍ଫୂର୍ତ୍ତ ଭାବେ ବିଦ୍ରୋହର ଧ୍ୱଜା ଉଡ଼ାଉଥିଲେ । ସାମାଜିକ ଅତ୍ୟାଚାର ସହି ନପାରି, ଦମନର ଶିକାର ହୋଇ ଏବଂ ଜମି ଓ ଧନ୍ଦା ହରେଇ କେତେକ ମଧ୍ୟ ସାମାଜିକ ଡକେଇତି ଯେମିତି ଠଗ ଓ ପିଣ୍ଡାରୀ ସେମିତି କାମଦାମର ଆଶ୍ରା ନେଲେ । ଏସବୁ ବ୍ରିଟିଶ ରାଜୁତି ବିରୋଧରେ ଅଭିପ୍ରେତ ।

ସେତେବେଳେ ଆଜିକାଲିର ସାଂଶ୍ଲେଷିକ ରଂଗ ଉତ୍ପାଦନ ହେଉ ନଥିଲା । ପଶ୍ଚିମବଙ୍ଗ, ବିହାରର କେତେକ ଅଞ୍ଚଳରେ ବ୍ରିଟିଶ ଶାସକ ଗୋଷ୍ଠୀର ଲୋକେ ଜମିଦାର ପାଲଟିଗଲେ ।

ଚାଷୀମାନଙ୍କୁ ବେଦଖଲ କରି ଏବଂ ଅନ୍ୟ ଚାଷୀମାନଙ୍କୁ ମଧ୍ୟ ଧମକ, ଗିରଫ, ହତ୍ୟା, ମାଡ଼ ଯୋଗେ କରାୟତ୍ତ କଲେ । ନୀଳବଡ଼ି ଚାଷ ବ୍ୟାପିଲା । ଚାଷୀ ତା'ର ଜମିରେ ଧାନ ନକରି ନୀଳବଡ଼ି ଚାଷ କରିବାକୁ ବାଧ୍ୟ ହେଲା । ନୀଳ ଚାଷର ଗୋରା ମାଲିକମାନେ ଦାସଯୁଗ ଭଳି ନୀଳ ଚାଷୀମାନଙ୍କୁ ଚାଷ ଫାର୍ମରେ ବନ୍ଧକ ରଖି ଗଣ୍ଡାଏ ଖାଇବାକୁ ଦେଇ ସପରିବାର ଖଟେଇଲେ ରାତିଦିନ । ନ ପାରିଲେ ମାଡ଼, ହତ୍ୟା ବେତ୍ରାଘାତ ଓ ଚାଷୀ ଘରର ଝିଅ ବୋହୂଙ୍କ ଇଜ୍ଜତ ନଷ୍ଟ । ନୀଳ ଚାଷର ମାଲିକମାନଙ୍କ ହାତରେ ଲାଠିଆଳ ଗୁଣ୍ଡାବାହିନୀ ଧର୍ମକୁ ଆଖିମିଟିକା ମାରିବା ପରେ ନୀଳଚାଷୀମାନଙ୍କ ଉପରେ ହେଉଥିବା ଅତ୍ୟାଚାର ସଂକ୍ରାନ୍ତ ମକଦ୍ଦମା ବୁଝିବା ପାଇଁ ମାଜିଷ୍ଟ୍ରେଟ ନିଯୁକ୍ତିରେ ଦେଖାଗଲା ଯେ ୨୯ ଜଣଙ୍କ ମଧ୍ୟରୁ ୨୮ ଜଣଙ୍କ ଖୋଦ ନୀଳଚାଷର ଗୋରା ମାଲିକ ଓ ଜଣେ ମାତ୍ର ଭାରତୀୟ । ଲୋକେ କହିଲେ ଯିଏ ଭକ୍ଷକ, ସିଏ ପୁଣି ରକ୍ଷକ ।

୧୮୫୯ରେ ବଙ୍ଗଳାରେ ଜଣେ ଭାରତୀୟ ଡେପୁଟି ମାଜିଷ୍ଟ୍ରେଟ ହେମଚନ୍ଦ୍ର କରଙ୍କ ନୀଳଚାଷୀଙ୍କ ସପକ୍ଷରେ ରାୟ ଫଳରେ ନୀଳଚାଷୀଙ୍କ ଭିତରେ ଚହଳ ବ୍ୟାପିଗଲା । ହିନ୍ଦୁ ପାଟ୍ରିୟଟ ନାମକ ଖବର କାଗଜର ସଂପାଦକ ହରିଶ୍ଚନ୍ଦ୍ର ମୁଖାର୍ଜୀଙ୍କ ନିର୍ଭୀକ ଲେଖା ଏବଂ ଦୀନବନ୍ଧୁ ମିତ୍ରଙ୍କ ରଚିତ ବିଦ୍ରୋହୀ ବିପ୍ଳବୀ ନାଟକ ନୀଳ ଦର୍ପଣ ଚାଷୀମାନଙ୍କ ଉପରେ ବର୍ବର ଅତ୍ୟାଚାର ଓ ତାର ପ୍ରତିରୋଧର ଚିତ୍ର ନୀଳଚାଷୀମାନଙ୍କୁ ଉଦ୍‌ବୁଦ୍ଧ କଲା ।

ଦିଗମ୍ବର ବିଶ୍ୱାସ ଓ ବିଷ୍ଣୁ ବିଶ୍ୱାସ ହୋଇଗଲେ ସେ କାଳର ନୀଳ ଚାଷୀ ବିଦ୍ରୋହର ଐତିହାସିକ ନେତା । ନଦିୟା ଜିଲ୍ଲା ଗୋବିନ୍ଦପୁର ଗାଁର ଗୋରା ନୀଳଜମିଦାରଙ୍କ ବିରୋଧରେ ତାଙ୍କରି ଖଳାରେ ରହି ଏମାନେ ୧୮୫୯ରେ ବିଦ୍ରୋହର ଯେଉଁ ସୂତ୍ରପାତ କରି ସଶସ୍ତ୍ର ପ୍ରତିରୋଧ କରିଥିଲେ ତାହାର ସ୍ଫୁଲିଙ୍ଗ ବଙ୍ଗ, ବିହାରର ନୀଳଚାଷୀଙ୍କ ମଧ୍ୟରେ ଦାବାଗ୍ନି ଜାଳିଦେଲା । ଧର୍ମଘଟ ଆଜିର କଥା ନୁହଁ । ସେହି ୧୮୬୦ରେ ସମସ୍ତ ନୀଳଚାଷୀ ଧର୍ମଘଟର ଆଶ୍ରୟ ନେଇଥିଲେ । ପୁଣି ହିନ୍ଦୁ ମୁସଲମାନ ଐକ୍ୟ କଥା ଆଜି ଉଠୁଛି । ସେ କାଳରେ ହିନ୍ଦୁ ଓ ମୁସଲମାନ ନୀଳଚାଷୀ ଏକତ୍ର ଲଢ଼ିଥିଲେ । ଉଭୟଙ୍କ ରକ୍ତ ଗୋଟିଏ ଧାରରେ ମିଶିଥିଲା । ଆଉ ଏକ ଲକ୍ଷଣୀୟ ବିଷୟ ଯେ ସେ ଯୁଗରେ କେତେକ ପ୍ରଗତିଧର୍ମୀ ବୁଦ୍ଧିଜୀବୀ ନୀଳଚାଷୀମାନଙ୍କ ସମର୍ଥନରେ ଓ ବ୍ରିଟିଶ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ ଓ ଲେଖନୀ ଚଳାଇ ଏକ ଦେଶପ୍ରେମୀ ବାୟୁମଣ୍ଡଳ ସୃଷ୍ଟି କରିଥିଲେ ।

କେବଳ ନୀଳଚାଷୀ ନୁହନ୍ତି, ପୂର୍ବବଙ୍ଗ ଅଞ୍ଚଳର ପାବନାରେ, ଆଜି ବି ଚିନ୍ତାର ବାହାରେ, ଚାଷୀମାନେ ସ୍ୱକୀୟ ଶ୍ରେଣୀ ସଂଗଠନ, କୃଷକ ସମିତି ୧୮୭୩ ମଇ ମାସରେ ଗଢ଼ି ବଡ଼ବଡ଼ ସଭା ଓ ପଟୁଆର କରି ଜମିଦାରମାନଙ୍କ ବିରୋଧରେ ଖଜଣା ବନ୍ଦ ଆନ୍ଦୋଳନ କରିଥିଲେ । କୃଷକ ସମିତି ଅନେକ ସ୍ଥାନରେ ଗଢ଼ାଗଲା ଓ ଜମିଦାରମାନଙ୍କ ଅତ୍ୟାଚାର ଓ ମାଲିମକଦ୍ଦମା ବିରୋଧରେ ପ୍ରତ୍ୟକ୍ଷ ସଂଗ୍ରାମ ସାଙ୍ଗକୁ ଏହି ସମିତି କଚେରୀର ଚାଷୀମାନଙ୍କୁ ସହାୟତା ଦେଲେ ।

ଜମିଦାରମାନେ ପ୍ରବଳ ହିଂସାଚରଣ କଲେ ଯାଇଁ ଚାଷୀମାନେ ପ୍ରତି ଆକ୍ରମଣ କରୁଥିଲେ । ନଚେତ୍ ଜମିଦାରମାନେ ଚାଷୀଙ୍କ ଘରୁ ଓ ଜମିରୁ କୋର୍ଟ ଜରିଆରେ ବେଦଖଲ କଲାବେଳେ କୌଣସି ଜମିଦାର ବା ତାଙ୍କ ଗୁଣ୍ଡା ନିହତ ହେଉନଥିଲେ ।

ବ୍ରିଟିଶ ସରକାର ଜମିଦାରମାନଙ୍କ ପକ୍ଷରେ ଗଲା ସତ, ମାତ୍ର କେତେକ ଅତି ଜଘନ୍ୟ ଜମିଦାରୀ ଅତ୍ୟାଚାର ନିରାକରଣ ଲାଗି ୧୮୮୫ରେ ବଙ୍ଗଳା ପ୍ରଜାସ୍ୱତ୍ୱ ଆଇନ ପାଶ୍ କରାଗଲା । ନୀଳ ବିଦ୍ରୋହ କାଳ ପରି ପୁନଶ୍ଚ ଜମିଦାରୀ ଅତ୍ୟାଚାର ଓ ସରକାରୀ ଦମନ ବିରୋଧରେ ହିନ୍ଦୁ, ମୁସଲମାନ ଚାଷୀ ଐକ୍ୟବଦ୍ଧ ଭାବରେ ଲଢ଼ିବାର ଦେଖାଗଲା ।

ସେ କାଳର ପ୍ରଗତିପନ୍ଥୀ ବୁଦ୍ଧିଜୀବୀମାନେ ମଧ୍ୟ ଚାଷୀଙ୍କ ସଂଗ୍ରାମକୁ ସମର୍ଥନ ଦେଲେ । ବଙ୍କିମଚନ୍ଦ୍ର ଚାଟର୍ଜୀ, ରମେଶ ଚନ୍ଦ୍ର ଦତ୍ତଙ୍କ ଛଡ଼ା ଇଣ୍ଡିଆନ ଆସୋସିଏସନ ନାମକ ସଂସ୍ଥାର ନେତା ସୁରେନ୍ଦ୍ର ନାଥ ବାନାର୍ଜୀ, ଆନନ୍ଦ ମୋହନ ବୋଷ ଓ ଦ୍ୱାରକାନାଥ ଗାଙ୍ଗୁଲି ଯୋଗ ଦେଇଥିବା ୨୦ ହଜାର ଚାଷୀଙ୍କ ସଭାସମିତିରେ ଲାଗି ସ୍ଥାୟୀ ରାଜସ୍ୱ ଓ ଦାଖଲ ସ୍ୱତ୍ୱ ଦାବି କଲେ । ଏହି ସଂଗ୍ରାମ ଦେଖି ବ୍ରିଟିଶ ସରକାର ଚାଷୀମାନଙ୍କ ଜମି ନେଇ, ଜମିଦାରଙ୍କ ସ୍ୱାର୍ଥ ଜଗୁଥିବା ଜୋତଦାର, ତାଲୁକଦାର, ଦେଶମୁଖ, ଲାଖରାଜଦାର, ବାହିଲଦାର, ରୟତଓ୍ୱାରି ଅଞ୍ଚଳରେ ସର୍ବରାକାର, ଗୌନ୍ତିଆ ଏମିତି ମଧ୍ୟବର୍ତ୍ତୀ ଶୋଷକ ଶ୍ରେଣୀଟିଏ ସୃଷ୍ଟି କରିଦେଲା ।

ମହାରାଷ୍ଟ୍ର, ଗୁଜରାଟ, ଆନ୍ଧ୍ର, ପଞ୍ଜାବ, ମାଲବାର ବା ଆଧୁନିକ କେରଳ, ଆସାମ ପ୍ରଭୃତିରେ ଚାଷୀ ବିଦ୍ରୋହ ଅତ୍ୟନ୍ତ ସଂଗ୍ରାମୀ ରୂପ ନେଲା । କେଉଁଠିକେଉଁଠି ଯାହାକୁ ଗାନ୍ଧିଜୀ ଖଳଶକ୍ତି ବିରୋଧରେ ଅସହଯୋଗ ଅସ୍ତ୍ର ପ୍ରୟୋଗର ଡାକରା ଦେଇଥିଲେ, ଚାଷୀମାନେ ନିଜେ ସେପରି ଖଳଶକ୍ତି ବିରୋଧରେ ଅସହଯୋଗ କରିଥିଲେ; ଯେମିତିକି ବଦମାସ ଜମିଦାରରେ କେହି ଦାଢ଼ି କାଟିବେ ନାହିଁ, ଧୋବା ଲୁଗା କାଚିବ ନାହିଁ, ଦୋକାନୀ ସଉଦା ଦେବ ନାହିଁ, ଘରୋଇ ଚାକର କାମ କରିବ ନାହିଁ । କେହି ଜମିଦାରର ଗାଡ଼ି ଚଳେଇବେ ନାହିଁ । ଏପରି ଏକ ଦୃଷ୍ଟାନ୍ତ ଡେକାନର ସିରୁର ତାଲୁକ କରଦହ ଗାଁରେ ୧୮୭୪ ଡିସେମ୍ବରର ଘଟଣା । କାଲୁରାମ ନାମକ ମହାଜନ ବିରୋଧରେ ଏହି ସଂଗ୍ରାମ ଚାଲିଥିଲା । ଡେକାନରେ ଅଂସଖ୍ୟ ଚାଷୀ ବିଦ୍ରୋହ ସଂଘଟିତ ହୋଇଥିଲା ।

ମହାରାଷ୍ଟ୍ର ପୁଣେ ଓ ଅହମ୍ମଦନଗର ଜିଲ୍ଲାରେ ୧୮୭୫ରେ ମାରବାଡ଼ି ଓ ଗୁଜୁରାଟୀ ମହାଜନମାନଙ୍କ ବିରୁଦ୍ଧରେ ଏହି ଆନ୍ଦୋଳନ ଚାଲିଥିଲା; କାରଣ ଚାଷୀମାନେ ମହାଜନୀ ଋଣ ହେତୁ ଜମିରୁ ଉଚ୍ଛେଦ ହେଲେ । ବ୍ରିଟିଶ କଚେରୀ ମହାଜନମାନଙ୍କ ପକ୍ଷରେ ଗଲା ।

ଏହି ସମୟରେ ପୁଣେ ସର୍ବାଜନିକ ସଭା ଓ ନ୍ୟାୟପତି ରାଣାଦେଙ୍କ ନେତୃତ୍ୱରେ ୧୮୭୩-୭୪ରେ ୧୮୬୭ର ବ୍ରିଟିଶ ପ୍ରବର୍ତ୍ତିତ ଭୂରାଜସ୍ୱ ସେଟଲମେଣ୍ଟ ବିରୋଧରେ ଚାଷୀମାନଙ୍କ ସଫଳ ଆନ୍ଦୋଳନ ହେଲା । ବର୍ଦ୍ଧିତ ଖଜଣା ଚାଷୀମାନେ ଦେଲେନାହିଁ ।

୧୮୭୯ରେ ବାସୁଦେବ ବଳବନ୍ତ ଫାଡ଼କେଙ୍କ ନେତୃତ୍ୱରେ ମହାରାଷ୍ଟ୍ରରେ ଚାଷୀ ବିଦ୍ରୋହ ହେଲା । ପଞ୍ଜାବରେ ବାବା ରାମସିଂହଙ୍କ ନେତୃତ୍ୱରେ କୁକା ବିଦ୍ରୋହ ବେଳେ ଏକ ନାରକୀୟ ହତ୍ୟାର ଲୋମହର୍ଷଣକାରୀ ବିବରଣୀ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନର ନିର୍ମମତାର ପ୍ରମାଣ । ୧୮୭୨ରେ ବିଦ୍ରୋହୀମାନଙ୍କ ମଧ୍ୟରୁ ୪୯ ଜଣଙ୍କୁ ବାନ୍ଧିଆଣି ତୋପ ମୁହଁରେ ଛିଡ଼ା କରେଇ ଉଡ଼େଇ ଦିଆଗଲା । ୧୯୨୧ରେ ମଧ୍ୟ କେରଳ ବା ମାଲବାରରେ ମୋପଲା ଚାଷୀଙ୍କ ଐତିହାସିକ ସଂଗ୍ରାମକୁ ବ୍ରିଟିଶ ଐତିହାସିକ ଓ ସାଂପ୍ରଦାୟିକତାବାଦୀମାନେ ମୁସଲିମ ଚାଷୀଙ୍କ ବିରୋଧରେ ସାଂପ୍ରଦାୟିକତାର କେତେକ ହିଂସାକାଣ୍ଡକୁ ଦର୍ଶାଇ ଅଭିଯୋଗ ଆଣି ବଦନାମ କରିଥାନ୍ତି । ମାତ୍ର ଏହା ଏକ ବିଶାଳ ଚାଷୀ ବିଦ୍ରୋହ । ଆସାମରେ ମଧ୍ୟ ୧୮୯୩-୯୪ ଅନେକ ଚାଷୀ ବିଦ୍ରୋହରେ ଶହଶହ ଚାଷୀଙ୍କୁ ବ୍ରିଟିଶ ଗୁଳି ଓ ତୋପ ମୁହଁରେ ପ୍ରାଣ ଦେବାକୁ ପଡ଼ିଥିଲା । ୧୮୭୫ରେ ଡେକାନ ଚାଷୀ ବିଦ୍ରୋହ ଏପରି ପ୍ରବଳ ଆକାର ଧରିଥିଲା, ଯାହା ଫଳରେ ଚାଷୀ ଅସନ୍ତୋଷ ତଦନ୍ତ କରିବା ଲାଗି ବ୍ରିଟିଶ ସରକାର କମିଶନ ବସେଇଥିଲା ।

**୧୮୫୭ ପ୍ରଥମ ସ୍ୱାଧୀନତା ସଂଗ୍ରାମ**

ବ୍ରିଟିଶ ଶାସନ ଇଷ୍ଟଇଣ୍ଡିଆ କମ୍ପାନୀ ନାମରେ ପ୍ରଚଳିତ ହେବା କାଳରୁ ଭାରତର ସଂଗ୍ରାମର ଇତିହାସରେ ଦେଶବ୍ୟାପୀ ଆଦିବାସୀ, ହରିଜନ, ଗିରିଜନ ବିଦ୍ରୋହ, ଚାଷୀ ବିଦ୍ରୋହ, ସେହିସବୁ ବିଦ୍ରୋହ ଓ ସଂଗ୍ରାମରେ ପରବର୍ତ୍ତୀକାଳ ସ୍ୱାଧୀନତା ସଂଗ୍ରାମ ଓ ଜନ ଆନ୍ଦୋଳନ ଲାଗି ଉପଯୋଗୀ ପନ୍ଥା ପଦ୍ଧତିର କିଛିଟା ରୂପ ଆଲୋଚନା କରାଗଲା ।

୧୮୫୭ ଭାରତରବର୍ଷର ସ୍ୱାଧୀନତା ସଂଗ୍ରାମରେ ଏକ ମାଇଲଖୁଣ୍ଟ । ଯାହାକୁ ଦେଢ଼ଶହ ବର୍ଷ ପୂର୍ବେ ମାର୍କସବାଦ ଲେନିନବାଦର ଅଦ୍ୟସ୍ରଷ୍ଟା ମାର୍କସ ଏବଂ ତାଙ୍କ ଅନ୍ତରଙ୍ଗ ସହକର୍ମୀ ଓ ବିପ୍ଳବୀ ଏଙ୍ଗେଲସ ଦେଖିପାରି କେତେ ଲେଖା ପ୍ରକାଶ କରିଥିଲେ । ଏହାକୁ ମାର୍କସ ହିଁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ଆଖ୍ୟା ଦେଇଥିଲେ ଏବଂ ବ୍ରିଟିଶ ଶାସନ ବିଷୟରେ ସେ ଯାହା କହିଥିଲେ ତାର ସାମାନ୍ୟ ଅଂଶ ଏଠାରେ ଉଦ୍ଧାର କରିବା ପ୍ରୟୋଜନ । ସେ ଲେଖିଥିଲେ – ହିନ୍ଦୁସ୍ଥାନରେ ଏକପରେ ଏକ ଘଟିଥିବା ସମସ୍ତ ଗୃହଯୁଦ୍ଧ ଯୁଦ୍ଧାଭିଯାନ, ବିପ୍ଳବ, ଦେଶଜୟ, ଦୁର୍ଭିକ୍ଷ, ଯେତେ ଜଟିଳ, ଯେତେ ଦ୍ରୁତ ଓ ଧ୍ୱଂସାତ୍ମକ ହେଲେ ହେଁ ସେଗୁଡ଼ିକ ତାହାର ପୃଷ୍ଠ ଦେଶରୁ ଗଭୀରତର ପ୍ରଦେଶକୁ ଯାଇନଥିଲା । ଇଂଲଣ୍ଡ କିନ୍ତୁ ସମଗ୍ର ଭାରତର ସାମାଜିକ ଗଠନ ପ୍ରଣାଳୀକୁ ଚୂରମାର କରି ଦେଇଛି ଏବଂ ତାହାର ପୁନର୍ନିର୍ମାଣର କୌଣସି ସୂଚନା ଏଯାଏ ଦେଖାଯାଇନାହିଁ । ଭାରତ ତାହାର ପୁରାତନ ଦୁନିଆ ହରେଇଛି । ନୂଆ କିଛି ଲାଭ କରିନାହିଁ । ହିନ୍ଦୁମାନଙ୍କ ହିନ୍ଦୁସ୍ତାନର ଅଧିବାସୀଙ୍କୁ ମାର୍କସ ଏହି ଶବ୍ଦରେ ବର୍ଣ୍ଣନା କରିଥିଲେ । 'ବର୍ତ୍ତମାନର ଦୁଃଖ ଦୁର୍ଦ୍ଦଶାକୁ ଏକ ଦୟନୀୟ ରୂପ ଦେଇଛି ଏବଂ ବ୍ରିଟେନ ଦ୍ୱାରା ଶାସିତ ହିନ୍ଦୁସ୍ତାନକୁ ତାହାର ସମସ୍ତ ପୁରାତନ ପରମ୍ପରାଠାରୁ, ତାହାର ସମଗ୍ର ଇତିହାସଠାରୁ ବିଚ୍ଛିନ୍ନ କରିଦେଇଛି ।'

୧୮୫୭ ପୂର୍ବରୁ ଗିରିଜନ, ଆଦିବାସୀ, ଚାଷୀମାନଙ୍କ ଅଂସଖ୍ୟ ସଂଗ୍ରାମ ସାଙ୍ଗକୁ ଆଉ କେତେକ ନୂତନ ଶକ୍ତିର ଆବିର୍ଭାବ ଘଟିଥିଲା । ତତ୍କାଳୀନ ବିଜ୍ଞାନସମ୍ମତ ସାମାଜିକ ଦୃଷ୍ଟିଭଙ୍ଗୀ ନେଇ ପୁନର୍ଜାଗରଣ, ଯାହାକୁ ରେନେସାଁ କୁହାଯାଏ, ତାହା ସମାଜ ଜୀବନରେ ନୂତନ ଆଲୋକ ରଶ୍ମି ଢାଳି ଦେଇଥିଲା । ୧୮୨୮ରେ ରାଜା ରାମମୋହନ ରାୟଙ୍କ ପ୍ରତିଷ୍ଠିତ ବ୍ରାହ୍ମ ସମାଜ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ମହାରାଷ୍ଟ୍ରରେ ଏମ.ଜି. ରାଣାଡେ ଏବଂ ଏବଂ ଆନ୍ଧ୍ରରେ ଭିରେଶାଲିଙ୍ଗମ ପାନ୍ତୁଲୁଙ୍କ ଆନ୍ଦୋଳନ ଏହି ପର୍ଯ୍ୟାୟଭୁକ୍ତ । ବ୍ରିଟିଶ ବିଦେଶୀ, ଇଷ୍ଟଇଣ୍ଡିଆ କମ୍ପାନୀର ଦୁର୍ଦ୍ଧର୍ଷ ଶାସନ, ନିର୍ମମ ଶୋଷଣ, ଅତ୍ୟାଚାର ବିରୋଧରେ ପ୍ରଥମ ଥର ପାଇଁ ଚାଷୀ ପୋଷାକରେ ଥିବା ସୈନ୍ୟମାନେ ବିଦ୍ରୋହରେ ଉଭା ହେଲେ ।

୧୮୫୭ ମଇ ୯ ତାରିଖରେ ମିରଟ ସେନା ଛାଉଣୀରେ ଥିବା ଭାରତୀୟ ସୈନ୍ୟମାନେ ଦିଲ୍ଲୀ ଅଭିମୁଖେ ଯାତ୍ରାକଲେ ଏବଂ ବ୍ରିଟିଶ ଶାସନ ଜାଗାରେ ସର୍ବଶେଷ କ୍ଷମତାଚ୍ୟୁତ ମୋଗଲ ବାହାଦୂରଶାହା ଜାଫରଙ୍କୁ ସମ୍ରାଟ ବୋଲି ଘୋଷଣା କଲେ । ସୁବେଦାର ବକ୍ତଖାଁଙ୍କ ନେତୃତ୍ୱରେ ବରେଲିରୁ ଆଉ ଏକ ସୈନ୍ୟବାହିନୀ ଆସି ରାଜଧାନୀରେ ବ୍ରିଟିଶ ବିରୋଧରେ ଲଢ଼େଇ କଲେ । ବଙ୍ଗଳାର ବାରାକପୁର ସୈନ୍ୟ ଛାଉଣିରେ ମଙ୍ଗଳ ପାଣ୍ଡେଙ୍କ ନେତୃତ୍ୱରେ ବିଦ୍ରୋହର ଧ୍ୱଜା ଉଡ଼ିଲା । ଦିଲ୍ଲୀ ଅଧୁନାତନ ହରିଆଣା, ଉତ୍ତର ପ୍ରଦେଶ, ବିହାର ପ୍ରଭୃତି ହିନ୍ଦୀଭାଷୀ ଅଞ୍ଚଳରେ ସୈନ୍ୟମାନଙ୍କ ସଂଗ୍ରାମ ବ୍ୟାପକ ରୂପ ନେଲା । ଏହା ଏକ ଇତିହାସ ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମ । କେତେ ବୀରତ୍ୱପୂର୍ଣ୍ଣ କାହାଣୀ ଏଥିରେ ଗୁନ୍ଥା । ହିନ୍ଦୁ ଓ ମୁସଲମାନ ସୈନ୍ୟ ଏକତ୍ର ଲଢ଼ିଲେ । ବାହାରିଲେ ଅସଂଖ୍ୟ ନେତା; ଯେମିତି ଝାନସୀ ରାଣୀ ଲକ୍ଷ୍ମୀବାଇ, ତାନ୍ତିଆ ଟୋପେ, ବଖତ ଖାଁ, କୁନୱାର ସିଂହ, ଅହମେଦୁଲ୍ଲା, ଓଡିଶାରେ ସୁରେନ୍ଦ୍ର ସାଏ, ଚାଖି ଖୁଣ୍ଟିଆ, ଲୋକନାଥ ଗଡ଼ତିଆ, ସମ୍ବଲପୁର ଓ ପୁରୀର ବୀରମାନେ ଏହି ସଂଗ୍ରାମରେ ଝାସ ଦେଇଥିଲେ ।

ସ୍ୱଭାବତଃ ଏହି ସୈନିକ ପୋଷାକରେ ହିନ୍ଦୁ ମୁସଲମାନ ଚାଷୀମାନଙ୍କ ଐତିହାସିକ ବିଜୟର ଉପର ନେତୃତ୍ୱ କେତେକ କ୍ଷମତାଚ୍ୟୁତ ପୂର୍ବର ସାମନ୍ତବାଦୀ ରାଜାଙ୍କ ହାତରେ ପଡ଼ିଥିଲା । କିନ୍ତୁ ଦକ୍ଷିଣ ଭାରତର ନିଜାମ, ପଞ୍ଜାବର ସାମନ୍ତବାଦୀ ରାଜା ଓ ବ୍ରିଟିଶ ସୃଷ୍ଟ ନୂଆ ସାମନ୍ତବାଦୀ ଶ୍ରେଣୀ ଏହି ବିଦ୍ରୋହ ପ୍ରତି ବିଶ୍ୱାସଘାତକତା କରିଥିଲେ । ସୈନିକ ବିଦ୍ରୋହର ନେତୃତ୍ୱ କେନ୍ଦ୍ରୀୟ ରୂପ ନେଇ ପାରିନଥିଲା ଏବଂ ବ୍ରିଟିଶ ସୈନ୍ୟଙ୍କର ଅପରିମିତ ଆଗ୍ନେୟାସ୍ତ୍ର ଓ ନିର୍ମମତାର ଇୟତ୍ତା ନଥିଲା । ଦିଲ୍ଲୀରେ ପୁରୁଣା ଦିଲ୍ଲୀ ଦ୍ୱାରଦେଶରେ ଖୁନୀ ଦରୱାଜା ସେହି ନିର୍ମମତାକୁ ସ୍ମରଣ କରାଇଦିଏ । ବିଦ୍ରୋହୀ ସୈନ୍ୟ ଓ ବାହାଦୂରଶାହା ଜାଫରଙ୍କ ପୁତ୍ର ପୌତ୍ରାଦିକୁ ବ୍ରିଟିଶ ସୈନ୍ୟ ଧରିଆଣି ନିର୍ମମ ଭାବରେ ହତ୍ୟା କରିଥିଲେ । ୧୮୫୭ରେ ଏହି ସଂଗ୍ରାମ ପରାଜିତ ହେଲା ସତ, କିନ୍ତୁ ଭବିଷ୍ୟତ ସ୍ୱାଧୀନତା ସଂଗ୍ରାମ ଲାଗି ଏହା ଥିଲା ମହାପ୍ରେରଣାଦାୟକ । ସଶସ୍ତ୍ର ସ୍ୱାଧୀନତା ସଂଗ୍ରାମ ଏବଂ ହିନ୍ଦୁ ମୁସଲିମ ଐକ୍ୟ ଏହାର ବିଶେଷତ୍ୱ ।

ବ୍ରିଟିଶ ଦ୍ୱୀପ ପୁଞ୍ଜରେ ଶିଳ୍ପ ବିପ୍ଳବ ହେତୁ ନୂତନ ଭାବେ ସେହି ଦେଶର ବଣିକପୁଞ୍ଜି ଓ ଶିଳ୍ପପୁଞ୍ଜି ମଧ୍ୟରେ ପ୍ରତିଯୋଗିତା ହେତୁ ନୂତନ ଶିଳ୍ପପୁଞ୍ଜି ପକ୍ଷରେ ୧୮୧୩ରୁ ଇଷ୍ଟଇଣ୍ଡିଆ କମ୍ପାନୀ ଭାରତରେ ଭୋଗ କରୁଥିବା ଏକଚାଟିଆ ବାଣିଜ୍ୟ ଅଧିକାର ଯାଇ ଅବାଧ (ଫ୍ରି ଟ୍ରେଡ) ବାଣିଜ୍ୟ ବ୍ୟବସ୍ଥା ଲାଗୁ ହେଲା । ଭାରତ ଉପରେ ଶୋଷଣ ଅତି ଉତ୍କଟ ହେବାକୁ ଲାଗିଲା । ୧୮୫୭ ବିପ୍ଳବର ପରାଜୟ ପରେ ବ୍ରିଟିଶ ସାମ୍ରାଜ୍ଞୀ, ଅର୍ଥାତ୍ ସେ କାଳର ନୂତନ ଶିଳ୍ପପୁଞ୍ଜର ମାଲିକ ପୁଞ୍ଜିପତି ଶ୍ରେଣୀର ପ୍ରତିନିଧିଙ୍କ ହାତରେ ଭାରତର ଶାସନ କ୍ଷମତାକୁ ନ୍ୟସ୍ତ କରାଗଲା । କମ୍ପାନୀର ପ୍ରତ୍ୟକ୍ଷ ଶାସନର ଅବସାନ ଘଟିଲା । ଭାରତ ଉପନିବେଶ ଉପରେ ସାମ୍ରାଜ୍ୟବାଦୀ ବ୍ରିଟିଶ ପାର୍ଲିଆମେଣ୍ଟର ଅଧିକ କ୍ଷମତା ଜାହିର ହେଲା ।

**ନୂତନ ଶ୍ରେଣୀର ଜନ୍ମ - ୧୮୮୫ରେ କଂଗ୍ରେସର ଗଠନ**

ଉନବିଂଶ ଶତାବ୍ଦୀର ତ୍ରିଶ ଓ ଚାଳିଶ ଦଶକରେ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଏକ ମଧ୍ୟବିତ୍ତ ଶ୍ରେଣୀର ଜନ୍ମ, ଫରାସୀ ବିପ୍ଳବର ପ୍ରଭାବ ଏକ ନୂତନ ଚେତନା, ଗଣତାନ୍ତ୍ରିକ ଚେତନା ଆଣି ଦେଲା । ଏହା ବୁର୍ଜୁୟା ଗଣତାନ୍ତ୍ରିକ ଚେତନା । ଏହି ଶ୍ରେଣୀର ମୁଖପାତ୍ର ରୂପେ ସଂଗଠନ ଗଢ଼ିଉଠିଲା । ୧୮୪୩ରେ ଗଠିତ ବ୍ରିଟିଶ ଇଣ୍ଡିଆ ସୋସାଇଟି (ବଙ୍ଗଳା) ୧୮୫୦ରେ ଏହି ନୂଆ ଶ୍ରେଣୀର ଆଉ ଏକ ସଂସ୍ଥା ବ୍ରିଟିଶ ଇଣ୍ଡିଆନ ଆସୋସିଏସନ ସହିତ ମିଶିଗଲା । ଆବେଦନ ନିବେଦନ ଜରିଆରେ ଏହି ଶ୍ରେଣୀ ବ୍ରିଟିଶ ବୁର୍ଜୁୟା ଗଣତନ୍ତ୍ରଠାରୁ ନ୍ୟାୟ ପାଇବ ବୋଲି ଆଶା ବାନ୍ଧି ୧୮୫୨ରେ ବ୍ରିଟିଶ ପାର୍ଲିଆମେଣ୍ଟକୁ ଆବେଦନ କଲା ।

୧୮୫୭ରେ ଅଭିଜ୍ଞତାରୁ ବ୍ରିଟିଶ ତାର ସୈନ୍ୟ ଚାଳନା ତ୍ୱରାନ୍ୱିତ କରି ଭବିଷ୍ୟତ ସ୍ୱାଧୀନତା ସଂଗ୍ରାମକୁ ଜବତ କରିବ ଏବଂ ବ୍ରିଟିଶ ବଣିକ ଓ ଶିଳ୍ପପୁଞ୍ଜର ଏ ଦେଶରୁ କଞ୍ଚା ମାଲ ଲୁଟ ଓ ସେ ଦେଶରୁ ତିଆରି ପଦାର୍ଥ ଆମଦାନୀ ସ୍ୱାର୍ଥରେ ରେଳବାଇ ବସେଇଲା, ଡାକତାର ବ୍ୟବସ୍ଥା କଲା । ଏହି ରେଳବାଇ ପ୍ରତିଷ୍ଠାକୁ ଏବେ ବି ସ୍କୁଲ କଲେଜରେ ଓ କେତେକ ତୁଙ୍ଗ ନେତାଙ୍କ ମୁହଁରେ ବ୍ରିଟିଶର ଅବଦାନ ବୋଲି କୁହାଯାଉଛି । ମାତ୍ର ଶହେ ବର୍ଷ ପୂର୍ବେ ଜି.ଭି. ଯୋଷୀ ଏହାକୁ ବ୍ରିଟିଶ ଶିଳ୍ପ ଲାଗି ଭାରତୀୟ ସବସିଡି ବା ସାହାଯ୍ୟ ବୋଲି ବର୍ଣ୍ଣନା କରିଥିଲେ ଏବଂ ତିଳକ ମହାରାଜ ବ୍ୟଙ୍ଗ କରି କହିଥିଲେ, ଏହା ଅନ୍ୟ ଜଣକର ପତ୍ନୀଙ୍କୁ ବେଶଭୂଷା କରିବା ସଙ୍ଗେ ସମାନ । ଯେତେ ରୁଦ୍ଧଦ୍ୱାର କଲେ ବି ଭାରତରେ ୧୮୮୦ ବେଳକୁ ୧୫୬ଟି ଯାଏ ଫାକ୍ଟ୍ରିରେ ୪୪ ହଜାର ଶ୍ରମିକ କାମ କଲେ ଓ ଶତାବ୍ଦୀ ଶେଷ ବେଳକୁ ଫ୍ୟାକ୍ଟ୍ରୀ ସଂଖ୍ୟା ୧୯୩ଟି ଓ ଶ୍ରମିକ ସଂଖ୍ୟା ୧୬୧୦୦୦ରେ ପହଞ୍ଚିଲା ।

ଏକ ନୂତନ ଶ୍ରେଣୀ ବୁର୍ଜୁୟା-ପୁଞ୍ଜିପତି ଶ୍ରେଣୀ ଯେମିତି ଜନ୍ମ ନେଲା, ତାହାର ଅବିଚ୍ଛେଦ୍ୟ ଓ ଆନୁଷଙ୍ଗିକ ଅଙ୍ଗ ହିସାବରେ ଜମିବାଡ଼ି, ଘରଦ୍ୱାର, ଗାଁ'ଗଣ୍ଡାରୁ ଉଚ୍ଛେଦ ହୋଇଥିବା ଶ୍ରମିକ ଶ୍ରେଣୀର ମଧ୍ୟ ଜନ୍ମ ହେଲା । ନୂତନ ଶିକ୍ଷିତ, ଅଗ୍ରଗାମୀ ଏହି ଶ୍ରେଣୀ ତତ୍କାଳୀନ ଭାରତୀୟ

ସ୍ୱାର୍ଥର ସ୍ୱଭାବତଃ ନେତା ହେଲା । ଆଉ କିଏ ସେତେବେଳେ ହୋଇପାରନ୍ତା ନାହିଁ; କାରଣ ସେପରି ଅବସ୍ଥା ଉପୁଜିନଥିଲା ।

୧୮୮୫ରେ ଏହି ନୂତନ ଶ୍ରେଣୀର ରାଜନୈତିକ ନେତାମାନଙ୍କୁ ଘେନି ଭାରତୀୟ ଜାତୀୟ କଂଗ୍ରେସ ଗଠିତ ହେଲା । ବ୍ରିଟିଶ ସାମ୍ରାଜ୍ୟବାଦ ଦେଶରେ ଫାଟି ପଡୁଥିବା ଅସନ୍ତୋଷକୁ ସାମ୍ବିଧାନିକ, ନରମା ସଙ୍ଗଠନ ଜରିଆରେ ଆୟତ୍ତ କରିବାକୁ ଚାହିଁଲା । ଭାଇସରାୟ ଲର୍ଡ଼ ଡଫରିନଙ୍କ ସହିତ ପରାମର୍ଶ କରି ବ୍ରିଟିଶ ଅଫିସର ଏ.ଓ. ହ୍ୟୁମ ଏହି ନୂତନ ସଙ୍ଗଠନର ଜଣେ ଆୟୋଜକ ଓ ପ୍ରଥମ ସଭାପତି ହୋଇଥିବାରୁ ରକ୍ଷଣଶୀଳ ନେତାମାନେ ଏବେ ବି ତାଙ୍କୁ ଭାରତର ବନ୍ଧୁ ଆଖ୍ୟା ଦିଅନ୍ତି ।

୧୯୦୫ରେ ବଙ୍ଗଭଙ୍ଗ ଓ ସ୍ୱଦେଶୀ ଆନ୍ଦୋଳନ ଓ ପ୍ରଥମ ଦଫା ସନ୍ତ୍ରାସବାଦୀ ଆନ୍ଦୋଳନର ଅନୁଶୀଳନ, ଯୁଗାନ୍ତର ପରି ସଙ୍ଗଠନ, ମହାରାଷ୍ଟ୍ର ପ୍ରଭୃତି ସ୍ଥାନରେ ଅନୁରୂପ ସଙ୍ଗଠନ ଗଢ଼ି ଉଠିବାଯାଏ କୋଡ଼ିଏ ବର୍ଷ କାଳ କଂଗ୍ରେସ ସଙ୍ଗଠନର ତୁଙ୍ଗ ନେତାମାନେ ପ୍ରତିବର୍ଷ ଅଧିବେଶନ କରି ଭାରତୀୟମାନଙ୍କୁ ବ୍ରିଟିଶ ସାମ୍ରାଜ୍ୟବାଦର ଏକଚାଟିଆ ଶାସନରେ ଭାଗୀଦାର କରିବାକୁ ପ୍ରସ୍ତାବମାନ କରନ୍ତି ।

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଭାରତୀୟ ଜାତୀୟତାବୋଧର ଉନ୍ମେଷ ଘଟିଲା ଏବଂ ତାହାର ପ୍ରଚାର ସେ କାଳର କେତେକ ଅଗ୍ରଗାମୀ ଶିକ୍ଷିତ ବୁଦ୍ଧିଜୀବୀଙ୍କ ଦ୍ୱାରା ସମ୍ପାଦିତ ହେଲା । ସେମାନଙ୍କର ଚିନ୍ତା ବ୍ରିଟିଶ ସାମ୍ରାଜ୍ୟରେ ବିଲାତର ଲୋକେ ଯେତିକି ଗଣତାନ୍ତ୍ରିକ ଅଧିକାର ପାଇଛନ୍ତି, ତାହାର ଅବିଚ୍ଛେଦ୍ୟ ଅଂଶ ହିସାବରେ ଭାରତର ଲୋକେ ପାଇବା ଲାଗି ହକଦାର । ବ୍ରିଟିଶ ଶାସନ ଯାଉ – ଏପରି ଚିନ୍ତା ଆସିନଥିଲା । ମାତ୍ର ଏପରି ମୋହ ତୁଟିଗଲା ଏବଂ ସେମାନେ କ୍ରମଶଃ ଉପଲବ୍‌ଧି କଲେ ଯେ ବ୍ରିଟିଶ ଶାସନରେ ବିଲାତ ଭଳି ଭାରତ ଅର୍ଥନୈତିକ ନ୍ୟାୟ ପାଉନାହିଁ । ଭାରତରେ ଶିଳ୍ପର ବିକାଶ, ଭାରତରୁ କଞ୍ଚାମାଲ ଯାଇ ବିଲାତରେ ତିଆରି ହୋଇ ଏଠାରେ ବିକ୍ରୟ, ଭାରତର ଦାରିଦ୍ର୍ୟ, ଭାରତରେ ବିଦେଶୀ ପୁଞ୍ଜି ଲଗାଣ, ଏହିସବୁ ଅର୍ଥନୈତିକ ସମସ୍ୟା ପ୍ରତି ସେମାନଙ୍କର ଦୃଷ୍ଟି ପଡ଼ିଲା । ଦାଦାଭାଇ ନାରୋଜି, ମାଧବ ଗୋବିନ୍ଦ ରାଣାଦେ, ରମେଶ ଚନ୍ଦ୍ର ଦତ୍ତ, ଗୋପାଳକୃଷ୍ଣ ଗୋଖଲେ, ସୁରେନ୍ଦ୍ର ନାଥ ବାନାର୍ଜୀ, ସି.ସୁବ୍ରମଣ୍ୟମ ଆୟାର ବିପିନ ଚନ୍ଦ୍ର ପାଲ, ଜି.ଭି. ଯୋଷୀ, ପୃଥ୍ୱୀଶ ଚନ୍ଦ୍ର ରାୟ, ପ୍ରମୁଖ କିଏ ଭାରତର ଦାରିଦ୍ର୍ୟ ଓ ତାର କାରଣ, କିଏ ଭାରତରେ ଆଧୁନିକ ଶିଳ୍ପ ବିକାଶର, ପ୍ରୟୋଜନୀୟତା, କିଏ ଭାରତରେ ବିଦେଶୀ ପୁଞ୍ଜିପତିମାନଙ୍କର ଶୋଷଣ, କିଏ ଔପନିବେଶିକ ଅର୍ଥ ବ୍ୟବସ୍ଥା ଓ କର ଟିକସ, କିଏ ଭାରତରୁ କଞ୍ଚାମାଲର ଅବାରିତ ଚାଲାଣ ଓ ବିଲାତରେ ସେଗୁଡ଼ିକ ତିଆରି ହୋଇ ଏ ଦେଶରେ ଚଢ଼ାରେ ବିକ୍ରି ଓ କୋହଳ ଶୁଳ୍‌କ ବ୍ୟବସ୍ଥା ଏବଂ ଏ ଦେଶରେ ପୁରାତନ ଧନ୍ଦା ବେଉଷାର ଧ୍ୱଂସ ସମ୍ପର୍କରେ ବିଶେଷତା ଅର୍ଜନ କଲେ । ଆଲୋଚନାଚକ୍ର,

ସମ୍ବାଦପତ୍ରଗୁଡ଼ିକର ପ୍ରବନ୍ଧ ପ୍ରକାଶ, ଲେକ୍‌ଚର, ଛୋଟ ଛୋଟ ପୁସ୍ତିକା, ନାଟକ, ଗୀତ ଓ ପ୍ରଭାତଫେରି ଏକ ଜାତୀୟତାବାଦୀ ବ୍ରିଟିଶ ଶାସନ ବିରୋଧୀ ବାୟୁମଣ୍ଡଳ ସୃଷ୍ଟି କରିଥିଲା । ଏକ ସମ୍ବାଦପତ୍ରରେ ବ୍ରିଟିଶ ଶାସନ ବିରୋଧୀ ଲେଖା ପ୍ରକାଶ କରାଯିବାରୁ ଭାରତରେ ସର୍ବ ପ୍ରଥମେ ସୁରେନ୍ଦ୍ର ନାଥ ବାନାର୍ଜୀଙ୍କୁ ଜେଲ ଦଣ୍ଡ ଭୋଗିବାକୁ ପଡ଼ିଲା ।

ଅନ୍ୟ ଦିଗରେ ୧୮୬୧ରେ ଭାରତୀୟ କାଉନସିଲ ଆଇନ ଅନୁସାରେ ଗଭର୍ଣ୍ଣର ଜେନେରାଲଙ୍କ ଏକଜିକ୍ୟୁଟିଭ କାଉନସିଲରେ ୬ ଜଣରୁ ୧୨ ଜଣ ଅଧିକା ସଦସ୍ୟ ରହିବେ ଓ ତହିଁରୁ ଅର୍ଦ୍ଧେକ ବେସରକାରୀ ଲୋକ ହୋଇଥିବେ ବୋଲି କୌଶଳ ନିଆଗଲା । ବେସରକାରୀ ଲୋକ ବୋଇଲେ ରଜା, ଜମିଦାର, ବଡ଼ ବ୍ୟବସାୟୀଙ୍କ ପ୍ରତିନିଧି । ହସମାଡ଼ିବ ଯେ ଜଣେ ଏପରି କାଉନସିଲର, ବଳରାମପୁରର ରାଜା ଦିଗବିଜୟ ସିଂହ ଇଂରେଜୀ ବୁଝୁଥିଲେ । ସେ କିପରି ହାତ ଟେକନ୍ତି ପଚାରନ୍ତେ କହିଲେ ଗଭର୍ଣ୍ଣର ଜେନେରାଲଙ୍କ ହାତ ବା ସାହେବଙ୍କ ହାତ ଯେମିତି ଉଠେ, ମୁଁ ହାତ ଟେକି ଦିଏ ।

ତଥାପି ଏହି କାଉନସିଲରେ ବଜେଟ ପେଶ ହେବାବେଳେ କେତେକ ବିଶିଷ୍ଟ ବୁଦ୍ଧିଜିବୀ ଫିରୋଜଶାହା ମେହେଟ୍ଟା, ଗୋଖଲେ ପ୍ରମୁଖଙ୍କ ଦ୍ୱାରା ସରକାରୀ ନୀତିର ତୀବ୍ର ସମାଲୋଚନା, ବଳିଷ୍ଠ ଯୁକ୍ତି ଏବଂ ସମ୍ବାଦପତ୍ରଗୁଡିକରେ ସେଗୁଡ଼ିକର ପ୍ରକାଶନ, ସମାଜର ମଧ୍ୟବିତ୍ତ, ଶିକ୍ଷିତ ଜନଗୋଷ୍ଠୀ ମଧ୍ୟରେ ଆଲୋଡ଼ନ ସୃଷ୍ଟି କରୁଥିଲା । ଏମିତି ସର୍ବଶକ୍ତିମାନ ଗଭର୍ଣ୍ଣର ଜେନେରାଲ ସେଥିଲାଗି ଚିନ୍ତିତ ହୋଇ ସେମାନଙ୍କୁ ଉତ୍ତର ଦେବାଲାଗି ଟାଣୁଆଟାଣୁଆ ସେକ୍ରେଟାରୀଙ୍କୁ ନିଯୁକ୍ତ କରୁଥିଲେ । ଚାରିଆଡ଼େ ଅସନ୍ତୋଷର ବହ୍ନି ଜଳିଲା । ସରକାରୀ ଶୁଳ୍କ, ଦୁର୍ଭିକ୍ଷ, ମୁଦ୍ରାନୀତି ବିରୋଧରେ ସମ୍ବାଦପତ୍ରଗୁଡ଼ିକ ମୁଖର ହୋଇ ଉଠିଥିଲା । ପ୍ଲେଗ ରୋଗ ନିବାରଣ ନାମରେ ପୁଣେରେ ଲୋକଙ୍କ ଉପରେ ଅତ୍ୟାଚାରର ପ୍ରତିବାଦ କରି ବିପ୍ଳବୀ ଚାପେକାର ଭାଇଦ୍ୱୟ ୧୮୯୮ ଜୁନ ୨୭ରେ ପ୍ଲେଗ କମିଟିର ବ୍ରିଟିଶ ଚେୟାରମେନ ର୍ୟାଣ୍ଡ ଏବଂ ଲେଫଟନାଣ୍ଟ ଆୟେରଷ୍ଟଙ୍କୁ ହତ୍ୟା କରିବା ଏହି ଅସନ୍ତୋଷ ପ୍ରକାଶର ଏକ ଚରମ ଅଭିବ୍ୟକ୍ତି ।

୧୮୯୭ ଜୁଲାଇ ୨୭ରେ ବାଳ ଗଙ୍ଗାଧର ତିଳକ ତାଙ୍କ କେଶରୀ ସମ୍ବାଦପତ୍ରରେ 'ଶିବାଜୀଙ୍କ ବାଣୀ' ନାମକ କବିତା ପ୍ରକାଶ କରିଥିବାରୁ ଗିରଫ ହୋଇ ପ୍ରଥମ ୧୮ ମାସ ଜେଲ ଦଣ୍ଡ ପାଇଲେ । ଉକ୍ତ ମକଦ୍ଦମା ବିଚାର ଓ ତିଳକଙ୍କ କାଠଗଡ଼ାରେ ଦମ୍ଭ, ସାହସ ଓ ପ୍ରତିଯୁକ୍ତି ସେତେବେଳେ ତାଙ୍କୁ ଦେଶର ଅଦ୍ୱିତୀୟ ନେତାର ଆସନ ଦେଲା । ପ୍ରଥମଥର ପାଇଁ ଏହି ରାଜନୈତିକ ଗିରଫର ପ୍ରତିବାଦ ଝଂକୃତ ହେଲା । ସଭାସମିତି ମାଧ୍ୟମରେ ନାଗରିକ ସ୍ୱାଧୀନତା, ସମ୍ବାଦପତ୍ର ସ୍ୱାଧୀନତା ଦାବି କରାଗଲା । ୧୯୦୮ ଜୁନ ୨୪ରେ ପୁନଶ୍ଚ ଉକ୍ତ ଲେଖାଗୁଡ଼ିକ ପ୍ରକାଶ କରିବାରୁ ତାଙ୍କୁ ୬ ବର୍ଷ ଦ୍ୱୀପାନ୍ତର ଦଣ୍ଡ ଦେଇ ବର୍ମାର ମାଣ୍ଡେଲେ ଜେଲକୁ ପଠାଗଲା ।

ତିଳକ କାଠଗଡ଼ାରେ କହିଥିଲେ – 'ସରକାର ସାରା ଦେଶକୁ ବନ୍ଦୀଶାଳାରେ ପରିଣତ କରିଛନ୍ତି ଏବଂ ଆମେ ସମସ୍ତେ ବନ୍ଦୀ । ଜେଲଖାନାକୁ ଯିବା ଅର୍ଥ ଏକ ବଡ଼ ସେଲ୍‌ରୁ ଗୋଟିଏ ଛୋଟ ସେଲ୍‌ରେ ଆବଦ୍ଧ ହୋଇ ରହିବା ।' ସାରାଦେଶରେ ଏହାର ପ୍ରତିବାଦ ଗର୍ଜି ଉଠିଲା । ବମ୍ବେରେ ସେହି ବର୍ଷ ଜୁଲାଇ ୨୨ରେ ହରତାଳ ହେଲା ଏବଂ ବମ୍ବେର ୮୦ଟି ଲୁଗାକଳ ଶ୍ରମିକ ଧର୍ମଘଟ କଲେ ।

ବଲଶେଭିକ ବିପ୍ଳବର ନେତା, ମହାନ୍ ଲେନିନ୍ ଭାରତର ସ୍ୱାଧୀନତା ସଂଗ୍ରାମରେ ରାଜନୈତିକ କାରଣ ହେତୁ ଶ୍ରମିକମାନଙ୍କର ମୂଲ୍ୟାୟନ କରି କହିଥିଲେ ଯେ ଭାରତରେ ଶ୍ରମିକ ଶ୍ରେଣୀର ଏହା ପରିପକ୍ୱତାର ପରିଚୟ ଦିଏ । ପ୍ରଥମଥର ପାଇଁ ଭାରତରେ ଆବିର୍ଭୂତ ନୂଆ ଏକ ଶ୍ରେଣୀ ରାଜନୈତିକ ସଂଗ୍ରାମରେ ଭାଗ ନେଲା ।

୧୮୫୭ ପରବର୍ତ୍ତୀ ୧୯୦୫ ମସିହା ଯାଏ ବିଶେଷତଃ ୧୮୮୫ରୁ କଂଗ୍ରେସର ଜନ୍ମ କାଳରୁ ୨୦ ବର୍ଷଯାଏ ଭାରତରେ ଜନଜାଗରଣର, ସ୍ୱାଧୀନତା ସଂଗ୍ରାମର ଇତିହାସ ମୂଳତଃ ନୂତନ ଶ୍ରେଣୀ-ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ, ଆଗାମୀ କାଳର ଆଧୁନିକ ଶିକ୍ଷାୟନ ପ୍ରୟାସୀମାନଙ୍କ ଦରଖାସ୍ତ, ସମାଲୋଚନା, ଆଲୋଚନାଚକ୍ର, ଭାଷଣ ଓ ସମ୍ବାଦପତ୍ରଗୁଡ଼ିକରେ ଜାତୀୟତାବୋଧର ପ୍ରଚାର ଓ ପ୍ରସାର ଭିତରେ ସୀମିତ ଥିଲା । ବ୍ରିଟିଶ ସାମ୍ରାଜ୍ୟର ଅଂଗ ହୋଇ ତା'ଠାରୁ ବିଲାତ ଭଳି ନ୍ୟାୟ ହାସଲ କରିବା ଥିଲା ଲକ୍ଷ୍ୟ । କିନ୍ତୁ ଅନ୍ୟ ଦିଗରେ ସେହି ପୂର୍ବସୁରୀ, ଦେଶପ୍ରେମୀମାନଙ୍କର ସେ କାଳର ପରିସ୍ଥିତିରେ ସାହସିକତା, ନିର୍ଭିକତା ଆଗାମୀ ଦିନର ସଂଗ୍ରାମ ଲାଗି ନୂତନ ଚିନ୍ତା, ଆଦର୍ଶ ଓ ଲକ୍ଷ୍ୟ ନିର୍ଣ୍ଣୟର ପଥ ପ୍ରଦର୍ଶକ ହେଲା ।

ଏହାର ଉତ୍ତର ଦେଲା ବ୍ରିଟିଶ ସରକାର । ହିନ୍ଦୁ ମୁସଲମାନ ଜାତୀୟ ବୀରମାନଙ୍କ ବ୍ରିଟିଶ ଶାସନବିରୋଧୀ ମନୋଭାବ ଏବଂ ଦେଶରେ ନବଜାଗରଣ ଉପରେ କୁଠାରଘାତ କରିବା ଲାଗି ବଙ୍ଗଳାକୁ ଦୁଇଭାଗ କରି ଏକ ହିନ୍ଦୁ ଅଧ୍ୟୁଷିତ ଓ ପୂର୍ବ ପାଖ ଢାକାକୁ କେନ୍ଦ୍ର କରି ମୁସଲମାନ ଅଧ୍ୟୁଷିତ ପ୍ରଦେଶରେ ପରିଣତ କରିବାର ଘୋଷଣା ପ୍ରକାଶିତ ହେଲା ।

ସ୍ମରଣ କରାଯିବ ଯେ ଠିକ୍ ଏତିକିବେଳେ ଦୁଇଟି ସାମ୍ପ୍ରଦାୟିକତାବାଦୀ ଅନୁଷ୍ଠାନ ୧୯୦୫ରେ ହିନ୍ଦୁ ମହାସଭା ଓ ୧୯୦୬ରେ ମୁସଲିମ ଲିଗ ବ୍ରିଟିଶର ଭିତିରି ଷଡଯନ୍ତ୍ର ଓ ପ୍ରୋତ୍ସାହନରେ ଗଠିତ ହେଲା ।

ପ୍ରଥମ ଅବସ୍ଥାରେ କଂଗ୍ରେସ ପ୍ରତି ବ୍ରିଟିଶ ମୂଳରୁ ସନ୍ଦେହ ଓ ଶତ୍ରୁତା ପୋଷଣ କରୁଥିଲେ ହେଁ ଆଦ୍ୟ ଭାଗରେ ତାହାର କାର୍ଯ୍ୟକଳାପର ନିରୀହତା, ମୃଦୁ ସମାଲୋଚନା, ସାମ୍ରାଜ୍ୟ ପ୍ରତି ସମାଲୋଚକ ହେଲେ ହେଁ ତାହା ପ୍ରତି ଆନୁଗତ୍ୟ ଦେଖି ବିଚଳିତ ହେଉ ନଥିଲେ ।

ମାତ୍ର ପରବର୍ତ୍ତୀ କାଳରେ ଜାତୀୟତାବୋଧର ପ୍ରଚାର ଓ ପ୍ରସାର ଏବଂ ଉତ୍କଟ ସମାଲୋଚନା ଓ ହିନ୍ଦୁ ମୁସଲମାନ ଐକ୍ୟରେ ଆଶଙ୍କିତ ସାମ୍ରାଜ୍ୟବାଦର ବଙ୍ଗଭଙ୍ଗ ପରିକଳ୍ପନା

ଆଣିଦେଲା ଏକ ନୂଆ ରକମର ଆନ୍ଦୋଳନ, ସ୍ୱଦେଶୀ ଆନ୍ଦୋଳନ । ୧୯୦୫ ଅକ୍ଟୋବର ୧୬ରେ ବଙ୍ଗଭଙ୍ଗ କରାଯିବ ବ୍ରିଟିଶ ନିଷ୍ପତ୍ତି ବିରୋଧରେ କଲିକତା ଟାଉନ୍ ହଲ୍‌ରେ ସଭା, ସେହିବର୍ଷ ଅଗଷ୍ଟ ୭ରେ ବ୍ରିଟିଶ ଦ୍ରବ୍ୟ; ବିଶେଷତଃ ମାଞ୍ଚେଷ୍ଟର ଲୁଗା ଓ ଲିଭରପୁରଲ ଲୁଣ ବୟକଟ ପ୍ରସ୍ତାବ, ପ୍ରତି ସ୍ଥାନରେ ୧୦ରୁ ୧୨ ହଜାର ଲୋକଙ୍କ ପ୍ରତିବାଦ ସଭାର ବ୍ୟାପକତା, ଦେଶବତ୍ସଳମାନଙ୍କୁ ଏହି ଆନ୍ଦୋଳନକୁ ଭାରତବ୍ୟାପୀ କରିବାକୁ ଉଦ୍‌ବୁଦ୍ଧ କଲା । ଆତ୍ମଶକ୍ତି ବା ଆତ୍ମନିର୍ଭରଶୀଳତାର ମନୋଭାବର ଉଦ୍ରେକ ହେଲା । ତା' ସାଙ୍ଗକୁ ଆସିଲା ସ୍ୱାଧୀନତା ଆନ୍ଦୋଳନର ଆଉ ଏକ ପ୍ରବୃତ୍ତି । ତାହା ବୈପ୍ଳବିକ ସନ୍ତ୍ରାସବାଦ । ଏଥି ସଙ୍ଗେସଙ୍ଗେ ମଧ୍ୟ ଆସିଗଲା କଂଗ୍ରେସ ଭିତରେ ବିଭେଦ-ଭଙ୍ଗନ । କଂଗ୍ରେସ ଅନୁଷ୍ଠାନ ଉପରେ ଖୋଲାଖୋଲି ଲର୍ଡ଼ ଡଫରିନ୍, ଭାରତ ସଚିବ ହାମିଲଟନ ପ୍ରଭୃତି ଆକ୍ରମଣ କଲେ । କଂଗ୍ରେସର ତତ୍କାଳୀନ ସଭାପତିଙ୍କ ସହ ଯାଇଥିବା ପ୍ରତିନିଧି ଦଳକୁ ମାନ୍ଦ୍ରାଜ ଗଭର୍ଣ୍ଣର ୧୯୦୩ରେ ଦେଖା କରିବାକୁ ମନା କରିଦେଲେ ।

ବଙ୍ଗଳାରେ ସ୍ୱଦେଶୀ ଆନ୍ଦୋଳନ ଅର୍ଥାତ୍ ବିଦେଶୀ ବଏକଟ୍ ଆନ୍ଦୋଳନ ଏପରି ପ୍ରବଳ ହେଲା ଯେ ବିଲାତରେ ଶିଳ୍ପପତି ବ୍ୟବସାୟୀଙ୍କ ମହଲରେ ଭାଳେଣି ପଡ଼ିଗଲା ।

ଏତିକିବେଳେ ୧୯୦୭ରେ ଶିକ୍ଷିତ ବଙ୍ଗୀୟ ତରୁଣମାନେ ଦରଖାସ୍ତ, ନିବେଦନ, ବ୍ରିଟିଶର ମୃଦୁ ବା କଟୁ ସମାଲୋଚନାର ଅସନ୍ତୁଷ୍ଟ ହୋଇ ଓ ତାହାର ବିରୋଧ କରି ଅନ୍ୟ ଦିଗରେ ଜନସାଂ ଣଙ୍କୁ ବୈପ୍ଳବିକ ସଙ୍ଗଠନ ଓ ଆନ୍ଦୋଳନରେ ସାମିଲ କରିବାର ପଥ ଧରି ନପାରି ବୈପ୍ଳବିକ ବ୍ୟକ୍ତି ସନ୍ତ୍ରାସର ପଥ ନେଇ ଜୀବନ ବଳିଦେଲେ । ଅନୁଶୀଳନ, ଯୁଗାନ୍ତର ପ୍ରଭୃତି ସନ୍ତ୍ରାସବାଦୀ ସଂଗଠନ ଗଢ଼ିଉଠିଲା । ଅରବିନ୍ଦ ଘୋଷ, ଯିଏ ଜାପାନରୁ ଫେରି ରାଜନୀତିରେ ବୀତସ୍ପୃହ ହୋଇ ସନ୍ୟାସୀ ହେଲେ ଏବଂ ଭି.ଡି. ସବରକର ଯିଏ ପରେ ଉଗ୍ରଟ ସାମ୍ପ୍ରଦାୟିକତାବାଦର ଆଶ୍ରୟ ନେଲେ, ସେମାନେ ଏହି ସନ୍ତ୍ରାସବାଦର ଆଶ୍ରୟ ନେଇଥିଲେ । ଖୁଦୀରାମ ଓ ପ୍ରଫୁଲ୍ଲ ଚାକି ୧୯୦୮ ଏପ୍ରିଲରେ ବଙ୍ଗଳାର ଛୋଟଲାଟଙ୍କ ଉପରେ ଅସଫଳ ଆକ୍ରମଣ କରି ଖୁଦିରାମ ଫାଶି ପାଇଲେ । ପ୍ରଫୁଲ ନିଜକୁ ଗୁଳି କରି ହତ୍ୟା କଲେ ।

ୟୁରୋପରେ ରହୁଥିବା ଏପରି ସନ୍ତ୍ରାସବାଦୀମାନଙ୍କ ମଧ୍ୟରେ ମ୍ୟାଡ଼ାମ କାମା, ଶ୍ୟାମଜୀ କୃଷ୍ଣ ବର୍ମା, ହରଦୟାଲ, ଅଜିତ ସିଂହ ପ୍ରସିଦ୍ଧ । କୃଷ୍ଣବର୍ମା ଓ ମାଡ଼ାମ କାମା ବଲଶେଭିକ ବିପ୍ଳବ ପରେ କମ୍ୟୁନିଜିମ ପ୍ରତି ଆକୃଷ୍ଟ ହୋଇଥିଲେ ଓ ଭୂପେନ୍ଦ୍ରନାଥ ଘୋଷ, ଭି. ଚଟ୍ଟୋପାଧ୍ୟାୟଙ୍କ ସହିତ ଭାରତ ପାଇଁ ଗୁପ୍ତ କମ୍ୟୁନିଷ୍ଟ ସଙ୍ଗଠନ ଗଢ଼ୁଥିଲେ ।

**ନରମପନ୍ଥୀ-ଚରମପନ୍ଥୀ ଓ ସୁରାଟ କଂଗ୍ରେସର ବିଭାଜନ**

ସ୍ୱଦେଶୀ ଆନ୍ଦୋଳନ ଓ ବୟକଟ୍ ଆନ୍ଦୋଳନକୁ ବଙ୍ଗଳାରୁ ସାରା ଦେଶକୁ ପ୍ରସାରିତ କରିବାକୁ ଚାହିଁଲାରୁ ସମାନ ରାଜନୈତିକ ଲକ୍ଷ୍ୟ ଆଶ୍ରୟୀ ହେଲେ ହେଁ କଂଗ୍ରେସ ଭିତରେ

ସ୍ୱଦେଶୀ ଆନ୍ଦୋଳନ ପ୍ରସାର ସପକ୍ଷରେ ଓ ବିପକ୍ଷରୁ ଉପୁଜିଥିବା ମତଭେଦ ହିଁ ନରମପନ୍ଥୀ ଚରମପନ୍ଥୀ ରାଜନୀତି ରୂପେ ପରିଚିତ । ୧୯୦୬ କଲିକତା କଂଗ୍ରେସରେ ଏଥିଲାଗି ଦୁଇଭାଗ ହୋଇଯିବା ପରିସ୍ଥିତିକୁ କୌଣସି ମତେ ଦାଦାଭାଇ ନାରୋଜିଙ୍କୁ ସଭାପତି କରି ରକ୍ଷା କରାଗଲା । ମାତ୍ର ୧୯୦୭ରେ ସୁରାଟ କଂଗ୍ରେସରେ ଫିରୋଜଶାହା ମେହେଟାଙ୍କ ନେତୃତ୍ୱରେ ନରମପନ୍ଥୀମାନେ ନେତୃତ୍ୱ ନେଲେ । ଗୋଖଲେ ବିଶେଷତଃ ତିଳକ ଏପରି ବିଭାଜନରେ ବ୍ରିଟିଶ ସରକାରର ଲାଭ ହେବ ଦେଖି ବିଭାଜନ ଏଡ଼ିବାକୁ ଉଦ୍ୟମ କରି ପ୍ରାୟ ବ୍ୟର୍ଥ ହେଲେ । ତିଳକଙ୍କ ସ୍ୱାଭାବିକ ଝୁଙ୍କ ଥିଲା ଚରମପନ୍ଥୀଙ୍କ ଆଡ଼େ ।

ଚରମପନ୍ଥୀମାନଙ୍କ ପକ୍ଷରୁ ଚାରୋଟି ପ୍ରସ୍ତାବକୁ ନରମପନ୍ଥୀମାନେ ଗ୍ରହଣ କରାଇ ଦେବେ ନାହିଁ ଆଶଙ୍କା କରି, ଏମିତିକି ନିର୍ବାଚିତ ସଭାପତି ରାସବିହାରୀ ବୋଷଙ୍କ ସଭାପତିତ୍ୱର ପ୍ରତିବାଦ କଲେ ।

୧୬୦୦ ସମବେତ ପ୍ରତିନିଧିମାନଙ୍କ ଭିତରେ ଗାଳିଗୁଲଜ ଚୌକି ଫିଙ୍ଗାଫିଙ୍ଗି, ମୁଥାମୁଥି ଓ ଜୋତା ଫିଙ୍ଗା (ଯାହା କି ମେହେଟା ଓ ସୁରେନ୍ଦ୍ରନାଥ ବାନାର୍ଜୀଙ୍କୁ ଆଘାତ କରିଥିଲା ।) ଚାଲିଲା । ପୋଲିସ ଆସି ସମ୍ମିଳନୀ ଭାଙ୍ଗି ଦେଲା ।

ସରକାର ତାର ସୁଯୋଗ ନେଇ ଚରମପନ୍ଥୀ ସମ୍ବାଦପତ୍ର ଉପରେ ଆକ୍ରମଣ କଲା । ତିଳକଙ୍କ ଗିରଫ ଓ ୬ ବର୍ଷ ଜେଲ ଦଣ୍ଡ । ଲାଲା ଲଜପତ ରାୟ କିଛି କରି ନପାରି ବିଲାତ ଚାଲିଗଲେ ।

ନରମପନ୍ଥୀମାନେ ବନାରସ ଓ କଲିକତା ଅଧିବେଶନରେ ଗୃହୀତ ପ୍ରଗତିଶୀଳ ପ୍ରସ୍ତାବକୁ ଅକାମୀ କରି, ଐକ୍ୟ ଲାଗି ଆବେଦନକୁ ପ୍ରତ୍ୟାଖ୍ୟାନ କରି କଂଗ୍ରେସକୁ ପଙ୍ଗୁ କରିଦେଲେ । ତିଳକଙ୍କୁ ମଧ୍ୟ କଂଗ୍ରେସରେ ନିଆଗଲା ନାହିଁ ।

ଲର୍ଡ ମିଣ୍ଟୋ ଭାରତ ସଚିବ ମର୍ଲେଙ୍କୁ ଲେଖିଲେ କଂଗ୍ରେସ ଭୁଷୁଡ଼ିବା ଆମର ଏକ ବିରାଟ ବିଜୟ । ମାତ୍ର ସାମ୍ରାଜ୍ୟବାଦର ଏ ଉଲ୍ଲାସ ଅସ୍ଥାୟୀ ହେଲା ।

ବ୍ରିଟିଶ ସାମ୍ରାଜ୍ୟବାଦ ଏହି ସୁଯୋଗଉଣ୍ଡି ମିଣ୍ଟୋ-ମର୍ଲେ ଶାସନ ସଂସ୍କାର (୧୯୦୯)ରେ ଆଣି ନରମପନ୍ଥୀମାନଙ୍କୁ ସନ୍ତୁଷ୍ଟ କରି ଚରମପନ୍ଥୀମାନଙ୍କୁ, ସନ୍ତ୍ରାସବାଦୀଙ୍କୁ ମାଡ଼ ଦେବାକୁ ଉଦ୍ୟମ କଲା । ଇମ୍ପିରିଆଲ ଲେଜିସଲେଟିଭ କାଉନସିଲରେ ସଭ୍ୟ ସଂଖ୍ୟା ୬୮କୁ ବଢ଼ାଗଲା । ସେଥିରେ ୩୬ ଜଣ ସରକାରୀ ଓ ୫ ଜଣ ସରକାରୀ ମନୋନୀତ ଜମିଦାର ଓ ବ୍ରିଟିଶ ପୁଞ୍ଜିପତି ରହିବେ ଓ ଅନ୍ୟମାନେ ସୀମିତ ଭୋଟରେ ନିର୍ବାଚିତ ହେବେ । କେବଳ ପ୍ରସ୍ତାବ ପେଶ୍ କରିବା ଓ ପ୍ରଶ୍ନ ପଚାରିବା ବ୍ୟତୀତ ଏହି କାଉନସିଲ ଥିଲା କ୍ଷମତାହୀନ । ଅଧିକାଂଶ ନରମପନ୍ଥୀ ନେତା; ଯେମିତି ଗୋଖଲେ ଭାରତ ସେବକ ସମାଜ ନାମକ ଜନ ହିତୈଷୀ ସଂସ୍ଥା ଗଠନ କଲେ ।

ଅନ୍ୟ ପକ୍ଷରେ ଚରମପନ୍ଥୀମାନେ ନରମପନ୍ଥୀମାନଙ୍କ ରାଜନୀତି ଓ କାମଦାମର ତୀବ୍ର ସମାଲୋଚନା କଲେ ମଧ୍ୟ ଆନ୍ଦୋଳନକୁ ଗଣମୁଖୀ କରିବା ପଥ ନେଇ ପାରିନଥିଲେ । ବ୍ରିଟିଶ ଅର୍ଥନୀତି ଉପରେ ସିଧାସଳଖ ଆକ୍ରମଣ କରିବାକୁ ଉଦ୍ୟମ କଲେ ସୁଦ୍ଧା ସେଥିଲାଗି ଆନ୍ଦୋଳନର ରୂପ ପ୍ରକୃତି କଣ ହେବ ଓ ସେଥିଲାଗି କି ପ୍ରକାର ସାଙ୍ଗଠନିକ ବ୍ୟବସ୍ଥା ଗ୍ରହଣ କରାଯିବ ତାହା ଦର୍ଶାଇବାକୁ ଅସମର୍ଥ ହେଲେ ।

ବାସ୍ତବ ପକ୍ଷେ ବଙ୍ଗଭଙ୍ଗ ବନ୍ଦ ନ ହେଲେ ବି, ବ୍ରିଟିଶ "ସିଂହ" ପଛଘୁଞ୍ଚା ଦେଲେ ବି ଏହି ବିଭାଜନ ପରେ ଆଉ ଅନ୍ୟ ବିକଳ୍ପ ନଥିବା ହେତୁ ୧୯୧୪ ଯାଏ ତିଳକ ଜେଲରୁ ଖଲାସ ହେବା ଓ ଗାନ୍ଧୀଙ୍କ ଦକ୍ଷିଣ ଆଫ୍ରିକାରୁ ଆସିବା ଏବଂ ପ୍ରଥମ ସାମ୍ରାଜ୍ୟବାଦ ଯୁଦ୍ଧ ଆରମ୍ଭ ଯାଏ ଭାରତରେ ରାଜନୈତିକ ମଞ୍ଚ ନିସ୍ତବ୍ଧ ରହିଥିଲା ।

**୧୯୧୪ ପରବର୍ତ୍ତୀ କାଳ ଓ ଗାନ୍ଧିଜୀଙ୍କ ନେତୃତ୍ୱ**

ବାରିଷ୍ଟର ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କର ୧୮୮୩ରେ ଦକ୍ଷିଣ ଆଫ୍ରିକାର ଡରବାନରୁ ପ୍ରିଟୋରିଆ ଯାତ୍ରା ବେଳେ କଳାରଙ୍ଗ ଭାରତୀୟ ବୋଲି ରେଳଡବାର ପ୍ରଥମ ଶ୍ରେଣୀରୁ ଶ୍ୱେତାଙ୍ଗଦ୍ୱାରା ବିତାଡ଼ନର ଏବଂ ହୋଟେଲମାନଙ୍କରେ ତାଙ୍କୁ ପ୍ରବେଶ ନିଷେଧ ଭଳି ଅପମାନଜନକ ଶ୍ୱେତାଙ୍ଗ, ବର୍ଣ୍ଣ ବିଦ୍ୱେଷୀ ବ୍ୟବହାରର ଅଭିଜ୍ଞତା ପ୍ରଥମେ ତାଙ୍କୁ ମନ ଭିତରେ ବିଦ୍ରୋହୀ କରିଥିଲା ।

କୃଷ୍ଣକାୟ ଦକ୍ଷିଣ ଆଫ୍ରିକାବାସୀଙ୍କ ଉପରେ ଶ୍ୱେତାଙ୍ଗ ଶାସନ ପ୍ରତିଷ୍ଠା କଲାବେଳେ ସେମାନଙ୍କର ଆଖୁଚାଷ ଇତ୍ୟାଦିରେ କାମଦାମ କରିବାକୁ ନିଆଯାଇଥିବା ଭାରତୀୟ ଓ ତାପରେ ଭାରତୀୟ ବଣିକ ବ୍ୟବସାୟୀଙ୍କୁ ଭୋଟାଧିକାରରୁ ବଞ୍ଚିତ କରିବା ଲାଗି ଆଇନ, ଭାରତୀୟମାନଙ୍କୁ ରେଜିଷ୍ଟ୍ରେସନ ସାର୍ଟିଫିକେଟ୍ ବହନ କରିବାକୁ ଆଇନ, ଦକ୍ଷିଣ ଆଫ୍ରିକାର ଏକ ଅଞ୍ଚଳରୁ ଅନ୍ୟ ଏକ ଅଞ୍ଚଳକୁ ଯିବା ଉପରେ ନିଷେଧାଦେଶ ଓ ପାଶ୍ ଆଇନ ଭାରତୀୟମାନଙ୍କ ଉପରେ ୩ ପାଉଣ୍ଡ ପୁଲ୍ ଟିକସ, ଏସବୁର ପ୍ରତିରୋଧ ଓ ସେଥିଲାଗି ସଂଗଠନ, ସତ୍ୟାଗ୍ରହ, ଗାନ୍ଧିଜୀ ଓ ତାଙ୍କ ପତ୍ନୀ କସ୍ତୁରବା ଓ ବହୁ ଭାରତୀୟ ପୁରୁଷ ଓ ନାରୀଙ୍କ କାରାବରଣ, ଭାରତୀୟ ବନ୍ଦିମାନଙ୍କୁ ମୁକ୍ତି ପରେ ଥଇଥାନ ପାଇଁ ଗାନ୍ଧିଜୀଙ୍କ ଦ୍ୱାରା ଟଲଷ୍ଟୟ ଫାର୍ମ ଗଠନ ଏବଂ ମାସକ ପାଇଁ ମକଦ୍ଦମାଟିଏ ଚଳାଇବାକୁ ଯାଇ ଦୀର୍ଘ ୨୦ ବର୍ଷ କାଳ ସେଠାରେ ବର୍ଣ୍ଣ ବିଦ୍ୱେଷ ବିରୋଧରେ ସତ୍ୟାଗ୍ରହ, ଆଇନଅମାନ୍ୟ ଆନ୍ଦୋଳନ ତାଙ୍କୁ ଭାରତରେ କାହିଁକି, ବିଲାତରେ ତଥା ତତ୍କାଳୀନ ବିଶ୍ୱ ରାଜନୀତିରେ ଏକ ଉଚ୍ଚ ଆସନ ଦେଇଥିଲା । କିନ୍ତୁ ଗାନ୍ଧିଜୀ ବ୍ରିଟିଶଙ୍କ ଖ୍ରୀଷ୍ଟିୟାନ ଆଚରଣ, ବ୍ରିଟିଶ ନ୍ୟାୟବୋଧକୁ ଆବେଦନ କରିବାର କର୍ମକୌଶଳ ନେଉଥିଲେ ଓ ସମସ୍ତ ଆନ୍ଦୋଳନ ସତ୍ତ୍ୱେ ବ୍ରିଟିଶ ଦରବାର ନ୍ୟାୟ ଦେବ ବୋଲି ଆଶା କରୁଥିଲେ । ଏହି ଆନ୍ଦୋଳନର ଏକ ପର୍ଯ୍ୟାୟରେ ଗାନ୍ଧିଜୀ, ଗୋଖଲେ, ସି.ଏଫ. ଆଣ୍ଡ୍ରୁଜ, ଭାରତର ଭାଇସରାୟ ଲର୍ଡ ହାର୍ଡିଞ୍ଜ ଓ

ଦକ୍ଷିଣ ଆଫ୍ରିକାର ଗୋରା ବର୍ଣ୍ଣବିଦ୍ୱେଷୀ ଶାସକ ଜେନେରାଲ ସ୍ମଟସ୍‌ଙ୍କ ମଧ୍ୟରେ ଆଲୋଚନା ପରେ ଭାରତୀୟମାନଙ୍କର କେତେକ ଦାବି ଗୃହୀତ ହୋଇଥିଲା ।

ଏହି ପ୍ରକାର ଅଭିଜ୍ଞତାକୁ ଘେନି, ଗାନ୍ଧିଜୀ ୧୯୧୫ ଜାନୁଆରୀରେ ଭାରତରେ ପ୍ରବେଶ କଲେ । ଦେଶବାସୀ ତାଙ୍କୁ ବୀରୋଚିତ ସମ୍ବର୍ଦ୍ଧନା ଦେଲେ । ଗାନ୍ଧିଜୀଙ୍କ ଭାରତ ପ୍ରତ୍ୟାବର୍ତ୍ତନ ବେଳକୁ ୧୯୧୪ରେ ଜେଲ୍‌ରୁ ଖଲାସ ପରେ ତିଳକ ଦେଶବାସୀଙ୍କ ସମୀପରେ ଏକ ବଳିଷ୍ଠ ନେତାର ଆସନ ଲାଭ କରିଥିଲେ । ସ୍ୱରାଜ ଆମର ଜନ୍ମଗତ ଅଧିକାର ବୋଲି ତିଳକଙ୍କ ସେକାଳର ଘୋଷଣା ଅତୀତର ବ୍ରିଟିଶ ଶାସନରୁ ନ୍ୟାୟ ପାଇବା ମୋହ ଉପରେ ଏକ ବଡ଼ ଆଘାତ ଦେଇଥିଲା ।

ଏହି ସମୟରେ ଆନିବେସାନ୍ତ ଏବଂ ଅନ୍ୟାନ୍ୟ ନେତାଙ୍କ ଉଦ୍ୟୋଗରେ ହୋମ୍ ରୁଲ୍ ଆନ୍ଦୋଳନ ଆରମ୍ଭ ହୋଇଥିଲା । ବିଭିନ୍ନ ସ୍ଥାନରେ ହୋମ୍ ରୁଲ୍ ଲିଗ ସ୍ଥାପିତ ହୋଇଥିଲା । ଏତିକିବେଳେ ପ୍ରଥମ ମହାସମର ଘଟିଲା, ଏହା ଏକ ସାମ୍ରାଜ୍ୟବାଦୀ ଯୁଦ୍ଧ । ମୁଖ୍ୟତଃ ବ୍ରିଟିଶ ସାମ୍ରାଜ୍ୟବାଦଠାରେ ଜର୍ମାନ ସାମ୍ରାଜ୍ୟବାଦ ଉପନିବେଶ ଓ ବଜାର ଛଡ଼େଇନବା ଲାଗି ଏ ଯୁଦ୍ଧ । ଗାନ୍ଧିଜୀ ଏହି ବିଚାରକୁ ଗ୍ରହଣ କରିନଥିଲେ । ଏପରି ଏକ ଯୁଦ୍ଧରେ ବିଲାତ ବିପଦରେ ପଡ଼ିଥିବାବେଳେ ତାକୁ ପରାସ୍ତ କରିବା ଭଳି କୌଣସି ଆନ୍ଦୋଳନର ସେ ପକ୍ଷପାତୀ ନଥିଲେ । ଯୁଦ୍ଧରେ ବିଜୟ ପରେ ଭାରତୀୟମାନଙ୍କ ଦାବିର ସୁବିଚାର ହେବ, ବ୍ରିଟିଶ ପ୍ରତିଶ୍ରୁତି ଓ ବ୍ରିଟିଶ ନ୍ୟାୟ ଉପରେ ବିଶ୍ୱାସ ଏବଂ ଦକ୍ଷିଣ ଆଫ୍ରିକାରେ ରାଜିନାମାର ଅନୁଭୂତି ଘେନି ସେ ବ୍ରିଟିଶ ପକ୍ଷରୁ ଯୁଦ୍ଧରେ ସାହାଯ୍ୟ କରିବା ଲାଗି ସ୍ୱେଚ୍ଛାସେବକ ସଂଗ୍ରହର ଅଭିଯାନ ଆରମ୍ଭ କରିଥିଲେ । ଏହି ସମୟରେ ସେ ବିଭିନ୍ନ ସ୍ଥାନରେ ଆଗାମୀ ଦିନ ପାଇଁ ସଦାବେଳିଆ ନେତା ଓ କର୍ମୀ ତାଲିମ ଲକ୍ଷ୍ୟରେ ତାଙ୍କ ଆଦର୍ଶରେ ଆଶ୍ରମମାନ ପ୍ରତିଷ୍ଠା କଲେ । ସାବରମତୀ ଆଶ୍ରମ ତା'ର ବଡ଼ ନମୁନା ।

ଏତିକିବେଳେ ଋଷିଆରେ ବଲଶେଭିକ ବିପ୍ଳବର ବିଜୟ, ଋଷ ଜାରଶାହୀ ଶାସନର ପତନ, ସେଠାରେ ସମାଜବାଦର ପ୍ରତିଷ୍ଠା ଓ ଲେନିନଙ୍କ ମହାନ ବ୍ୟକ୍ତିତ୍ୱର ସମ୍ବାଦ ଓ ଋଷ ସାମ୍ରାଜ୍ୟ ଭିତରେ ଥିବା ପରାଧୀନ ଜାତିମାନଙ୍କର ମୁକ୍ତିର ସମ୍ବାଦ ବ୍ରିଟିଶ ପକ୍ଷରୁ ସମସ୍ତ ବାଧାବିଘ୍ନ ସତ୍ତ୍ୱେ ଭାରତରେ ପହଞ୍ଚି ପ୍ରଗତୀଶିଳ ବିଭିନ୍ନ ଚିନ୍ତାର ବୁଦ୍ଧିଜୀବୀମାନଙ୍କୁ ଅନୁପ୍ରେରଣା ଯୋଗାଇଲା ।

ଗାନ୍ଧିଜୀ ୧୯୧୭ ଓ ୧୯୧୮ରେ ସ୍ଥାନୀୟ ଭାବରେ ହେଲେ ବି ତାଙ୍କ ପଛାରେ ଗୁଜୁରାଟର ଖେଦା ଚାଷୀଙ୍କର ଖଜଣା ଛାଡ଼ର ଅର୍ଥନୈତିକ ଦାବି ଲାଗି ଆନ୍ଦୋଳନ ଏବଂ ବିହାରର ଚମ୍ପାରଣରେ ତିନିକଠିଆ ବ୍ୟବସ୍ଥା ଥିବା ନୀଳ ଚାଷରୁ ମୁକ୍ତ ଜମିରେ ବ୍ରିଟିଶ ଚାଷୀଙ୍କ ପକ୍ଷରୁ ଖଜଣାହାର ବୃଦ୍ଧି ବିରୋଧୀ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଏବଂ ଆନ୍ଦୋଳନ

ଫଳରେ ଆଂଶିକ ଦାବି ହାସଲ ତାଙ୍କୁ ସେକାଳର ଏକ ନୂତନ ଧରଣ ନେତାର ଆସ୍ଥାନ ଦେଲା । ଅହମ୍ମଦାବାଦରେ ଲୁଗାକଳ ଶ୍ରମିକଙ୍କ ଧର୍ମଘଟ ଆନ୍ଦୋଳନର ନେତୃତ୍ୱଦାନ ତାଙ୍କୁ ଭବିଷ୍ୟତ ଆନ୍ଦୋଳନ କିପରି ତାଙ୍କ ନିଜସ୍ୱ ମାର୍ଗରେ ମଜଦୁର ମହାଜନ ଗଢ଼ି ସେ ଚଳେଇବେ ତାହା ଶିକ୍ଷା ଦେଇଥିଲା । ଶିଳ୍ପପତି ହେବେ ଟ୍ରଷ୍ଟି – ଶ୍ରମିକ ମାଲିକ ସହଯୋଗର ଚିନ୍ତା – ସେ ଏଥିରୁ ନେଇଥିଲେ ।

**ଜାଲିଆନାବାଗ ହତ୍ୟା, ଅସହଯୋଗ ଆନ୍ଦୋଳନ, କଂଗ୍ରେସ-ଖିଲାପତ ଐକ୍ୟ**

ବ୍ରିଟିଶ ସାମ୍ରାଜ୍ୟବାଦ ପ୍ରଥମ ମହାସମରରେ ବିଜୟୀ ହେବାପରେ ବ୍ରିଟିଶ ସରକାର ଭାରତବାସୀଙ୍କୁ ଉପହାର ଦେଲା ରାଓଲାଟ୍ ଆଇନ । ଯେତିକି ସାମାନ୍ୟ ନାଗରିକ ସ୍ୱାଧୀନତା ଥିଲା, ତାକୁ ଓ ସନ୍ତ୍ରାସବାଦୀ ଆନ୍ଦୋଳନକୁ ଖର୍ବ କରିବା ଉଦ୍ଦେଶ୍ୟରେ ଦୁଇଟି ବିଲ୍, କେନ୍ଦ୍ର କାଉନସିଲ୍‌ରେ ଆସିବା, ଭାରତୀୟ ସଭ୍ୟମାନଙ୍କର ତା' ବିରୋଧରେ ପ୍ରତିବାଦ ଏବଂ ଏହି ଆଇନ ଧାର୍ଯ୍ୟ ସାରା ଭାରତରେ ଏକ ବିସ୍ଫୋରକ ପରିସ୍ଥିତି ସୃଷ୍ଟି କଲା । ଆମେରିକା ଓ କାନାଡ଼ାରେ ଭାରତର ମୁକ୍ତି ପାଇଁ ଶିଖ୍ ଓ ଅନ୍ୟାନ୍ୟ ପଞ୍ଜାବୀ ବହିରାଗତଙ୍କ ଗଦ୍ଦର ପାର୍ଟି ଗଠନ, କାମାଗାଟାମାରୁ ଜାହାଜର ରୋମାଞ୍ଚକ ଘଟଣାବଳୀ ସେହି କାଳରେ ଏକ ଅଗ୍ନି ଶିଖା ପ୍ରଜ୍ୱଳିତ କରିଦେଲା ।

ଗାନ୍ଧିଜୀ ୧ ୯ ୧ ୯ ଫେବୃଆରୀରେ ଜାତିବ୍ୟାପୀ ପ୍ରତିବାଦର ଓ ସତ୍ୟାଗ୍ରହର ଆହ୍ୱାନ ଦେଲେ । ଏକ ସତ୍ୟାଗ୍ରହ ସଭା ଗଠିତ ହେଲା । ହୋମ୍ ରୁଲ୍ ଲିଗ୍‌ର ଶାଖା ଓ ସଦସ୍ୟମାନଙ୍କ ତାଲିକା ବାହାର କରି ତରୁଣମାନଙ୍କୁ ସେଥିରେ ସାମିଲ୍ କରାଗଲା । ୧ ୯ ୧ ୯ ଏପ୍ରିଲ ୬ରେ ଦେଶବ୍ୟାପୀ ହରତାଳ, ଅନଶନ ଓ ପ୍ରାର୍ଥନାର ଡାକରା ଦିଆଗଲା । ମାତ୍ର ମାର୍ଚ୍ଚ ୩୦ରେ ଆଗତୁରା ଦିଲ୍ଲୀରେ ପ୍ରତିବାଦ ଓ ତା' ଉପରେ ନିର୍ମମ ଦମନ ଚାଲିଲା ।

ବୈଶାଖୀ ଦିବସ । ୧ ୯ ୧ ୯ ଏପ୍ରିଲ ୧୩ରେ ଜାଲିଆନାବାଗ (ଅମୃତସର)ରେ ହିନ୍ଦୁ ଶିଖ୍ ମୁସଲିମଙ୍କ ବିଶାଳ ଜନତାଙ୍କ ପ୍ରତିବାଦ ସଭା । ଜେନେରାଲ ଡାୟରଙ୍କ ନେତୃତ୍ୱରେ ବ୍ରିଟିଶ ସୈନ୍ୟମାନେ ୧ ୦ ମିନିଟ୍ କାଳ ଗୁଳିକରି ବିରାଟ ପାଚେରୀ ଘେରା ଓ ଛୋଟ ରାସ୍ତାଥିବା ଏହି ମଇଦାନରେ ଶହଶହ ନାଗରିକଙ୍କୁ ହତ୍ୟା କଲେ ।

ସାରା ଦେଶରେ କ୍ରୋଧ ପ୍ରଜ୍ୱଳିତ ହୋଇଉଠିଲା । ଏକ ହସ୍ତରେ ଦମନ, ଗୁଳି ଓ ଅନ୍ୟ ହସ୍ତରେ କିଛି ଉପର ଅଂଶକୁ ମୋହଗ୍ରସ୍ତ କରିବା ଲାଗି ନିରର୍ଥକ ସାମ୍ବିଧାନିକ ସଂସ୍କାରର ଥୋପ । ତଦନୁସାରେ ୧ ୯ ୧ ୯ ଶେଷ ଭାଗରେ ମଣ୍ଟେଗ୍ୟୁ ଚେମସଫୋର୍ଡ଼ ଶାସନ ସଂସ୍କାର ପ୍ରବର୍ତ୍ତିତ ହେଲା । ଯାହା ଦ୍ୱୈତ ଶାସନ ନାମରେ ଅଭିହିତ ।

ଯୁଦ୍ଧବେଳେ ତୁର୍କୀର ଖଲିଫ; ଯାହାଙ୍କୁ ମୁସଲମାନମାନେ ସର୍ବତ୍ର ଧର୍ମଗୁରୁ ମାନୁଥିଲେ, ତାଙ୍କ ପ୍ରତି ଭାରତବର୍ଷରେ ମୁସଲମାନଙ୍କ ଭିତରେ ଖିଲାଫତ ଆନ୍ଦୋଳନ ମଧ୍ୟ ବ୍ରିଟିଶ ବିରୋଧୀ ଆସ୍ଥାନ ନେଲା ।

ଗାନ୍ଧିଜୀ ଏହାର ସୁଯୋଗ ଘେନି ତାଙ୍କ ଆଗାମୀ ଅସହଯୋଗ ଆନ୍ଦୋଳନର ପ୍ରସ୍ତୁତି ଲାଗି ଖିଲାଫତ ନେତାମାନଙ୍କ ସହିତ ସଂପର୍କ ସ୍ଥାପନ କଲେ ଏବଂ ୧୯୧୯ ନଭେମ୍ବରରେ ଅନୁଷ୍ଠିତ ଖିଲାଫତ ସମ୍ମିଳନୀରେ ନିମନ୍ତ୍ରିତ ହୋଇ ଯୋଗଦେଲେ ।

ଜାଲିଆନାବାଗ ହତ୍ୟା ପରେ ଗାନ୍ଧୀଜୀ ଘୋଷଣା କଲେ, ଏହି ସଇତାନ ସରକାରକୁ ସଂଶୋଧନ କରିହେବ ନାହିଁ, ଏହାର ଅବସାନ ଆଣିବାକୁ ହେବ । ଆରମ୍ଭ ହେଲା ସ୍ୱରାଜ ଆନ୍ଦୋଳନ, ଡାକରା ହେଲା ଡୋମିନିୟନ ଷ୍ଟାଟସ; ଅର୍ଥାତ୍ ବ୍ରିଟିଶ ସାମ୍ରାଜ୍ୟରେ କାନାଡ଼ା, ଅଷ୍ଟ୍ରେଲିଆ, ଆୟରଲାଣ୍ଡ ଯେପରି କେତେକ ସ୍ୱାୟତ୍ତଶାସନ ପାଇଛନ୍ତି, ସେପରି ଏକ ଶାସନ । ଯାହା ବ୍ରିଟିଶ ସାମ୍ରାଜ୍ୟରେ ହେବ ଏକ ସ୍ୱଶାସିତ ଦେଶ । ଗାନ୍ଧିଜୀଙ୍କ ପ୍ରବର୍ତ୍ତନାରେ ସାମ୍ବିଧାନିକ ଓ ବୈଧାନିକ ଉପାୟରେ ସ୍ୱାୟତ୍ତଶାସନ ପରିବର୍ତ୍ତେ ଶାନ୍ତିପୂର୍ଣ୍ଣ ଓ ନ୍ୟାୟସଂଗତ ଉପାୟରେ ସ୍ୱରାଜ୍ୟ ହାସଲ କଂଗ୍ରେସର ରାଜନୈତିକ ଲକ୍ଷ୍ୟ ଘୋଷିତ ହେଲା ।

କଂଗ୍ରେସକୁ ଏକ ହୁଗୁଳା ସଂଗଠନରୁ ଦୃଢ ସଂଗଠନରେ ପରିଣତ କରାଗଲା । ୧୫ଜଣିଆ କାର୍ଯ୍ୟକାରୀ କମିଟି (ଯାହାକି ୧୯୧୬ରେ ତିଳକ ପ୍ରସ୍ତାବ କରିଥିଲେ) ଗଠନ, ଚାରିଅଣିଆ କଂଗ୍ରେସ ସଭ୍ୟ ସଂଗ୍ରହ, ଚରଖା, ବ୍ରିଟିଶ ପଦକ ପଦବୀ ପରିତ୍ୟାଗ, ଆଇନ ଅଦାଲତ ଓ ସ୍କୁଲ କଲେଜ ବର୍ଜନ, ଜାତୀୟ ବିଦ୍ୟାଳୟ ସ୍ଥାପନ, ସରକାରୀ ଚାକିରିରୁ ଇସ୍ତଫା, ବିଦେଶୀ ବସ୍ତ୍ର ବର୍ଜନ, ଗ୍ରାମପଞ୍ଚାୟତ ଗଠନ, ଟିକସ ବନ୍ଦ ଡାକରା ପାଇଁ ପ୍ରସ୍ତୁତି ଚାଲିଲା । ସେତେବେଳେ ଏହି କାର୍ଯ୍ୟକ୍ରମର କେତେକ ଦଫାକୁ ବିଶେଷତଃ ବିଧାନସଭା ନିର୍ବାଚନ ବର୍ଜନ ସର୍ତ୍ତକୁ ଚିତ୍ତରଞ୍ଜନ ଦାସଙ୍କ ନେତୃତ୍ୱରେ କେତେକ ପ୍ରଥମେ ବିରୋଧ କରୁଥିଲେ ହେଁ ୧୯୨୦ ନାଗପୁର କଂଗ୍ରେସ ଅଧିବେଶନରେ ଏହି କାର୍ଯ୍ୟକ୍ରମ ଗୃହୀତ ହେଲା ।

ସି.ଆର. ଦାସ, ଏମ.ଆର. ଜୟକାର, ମୋତିଲାଲ ନେହରୁ, ବଲ୍ଲଭଭାଇ ପଟେଲ, ସି. ରାଜଗୋପାଳଚାରୀ, ଟି. ପ୍ରକାଶମ, ଆସଫ ଅଲି ପ୍ରମୁଖ ସୁବିଖ୍ୟାତ ଆଇନଜୀବୀଙ୍କ ବ୍ୟବସାୟ ତ୍ୟାଗ, ସୁବାଷ ବୋଷ ପ୍ରଭୃତିଙ୍କ ଆଇସିଏସ ପଦବୀ ତ୍ୟାଗ, ରବୀନ୍ଦ୍ରନାଥ ଠାକୁରଙ୍କ ଭଳି ସାର୍ ପ୍ରଭୃତି ଖେତାବ ତ୍ୟାଗ ସାଙ୍ଗକୁ ସରକାରୀ ହାକିମ କେତେକଙ୍କର ବଡ଼ ଚାକିରି ତ୍ୟାଗ, ମେଧାବୀ ଛାତ୍ରମାନଙ୍କ ଶିକ୍ଷାୟତନ ତ୍ୟାଗ ଏବଂ ଓଡ଼ିଶା, ଉତ୍ତରପ୍ରଦେଶ, ବିହାର, ବମ୍ବେ, ଆସାମ ପ୍ରଭୃତିରେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ଏବଂ ଗୋପବନ୍ଧୁ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ସୁବାଷ ବୋଷ, ରାଜେନ୍ଦ୍ର ପ୍ରସାଦ, କ୍ରିପାଲିନୀ, ସଂପୂର୍ଣ୍ଣା ନନ୍ଦ, ଶ୍ରୀ ପ୍ରକାଶଙ୍କ ପରି ବିଦ୍ୱାନମାନଙ୍କ ଦ୍ୱାରା ଏପରି ବିଦ୍ୟାଳୟରେ ଶିକ୍ଷାଦାନ ଏକ ନୂତନ ଜାତ୍ୟାଭିମାନୀ ଦେଶପ୍ରେମୀ ବାୟୁମଣ୍ଡଳ ସୃଷ୍ଟି କଲା ।

କଂଗ୍ରେସ ଖିଲାଫତ ଚୁକ୍ତି ଏବଂ ଖିଲାଫତ ନେତା ମହମ୍ମଦ ଅଲ୍ଲି, ସୌକତ ଅଲିଙ୍କର ୧୬୨୧ରେ ବ୍ରିଟିଶ ସୈନ୍ୟବାହିନୀରେ ମୁସଲମାନ ଯୋଗ ନଦେବାକୁ ଡାକରା ଓ ଗାନ୍ଧିଜୀଙ୍କ

ସମର୍ଥନ ଓ ମହମ୍ମଦ ଅଲିଙ୍କ ଗିରଫ ଏବଂ ସେହି ବର୍ଷ ପ୍ରିନ୍ସ ଅଫ୍ ୱେଲ୍ସଙ୍କ ଭାରତ ଗସ୍ତକୁ କଂଗ୍ରେସ କମିଟି ଆହ୍ୱାନରେ ଲୋକଙ୍କ ବର୍ଜନ ଓ ବମ୍ବେରେ ହରତାଳ ସ୍ୱାଧୀନତା ସଂଗ୍ରାମରେ ନୂତନନୂତନ ଉପାଦାନ ଆଣିଦେଲା । ସି.ଆର. ଦାସ ଓ ଦେଶର ୩୦ ହଜାର ଯାଏ ସଂଗ୍ରାମୀ କାରାରୁଦ୍ଧ ହେଲେ ।

ବ୍ରିଟିଶ ସହିତ ଆଲୋଚନା ଫଳବତୀ ନହେବାରୁ ୧୯୨୨ ଜାନୁଆରୀରେ ସର୍ବ ପାର୍ଟି ସମ୍ମିଳନୀ ଓ ୧୬୨୧ର ଅହମ୍ମଦାବାଦ କଂଗ୍ରେସରେ ଗାନ୍ଧିଜୀଙ୍କ ହାତରେ ସମ୍ପୂର୍ଣ୍ଣ ଅର୍ପିତ ହେବା ପରେ ଯେଉଁ ଗଣଆଇନ ଅମାନ୍ୟର ଘୋଷଣା ଗାନ୍ଧିଜୀ କରିଥିଲେ ତାହା ଏକ ଘଟଣା ଯୋଗୁଁ ପ୍ରତ୍ୟାହାର କରାଗଲା ।

ବମ୍ବେରେ ରାଜକୁମାର ଗସ୍ତ ବର୍ଜନ ବେଳେ ଘଟିଥିବା ସାମାନ୍ୟ ହିଂସାକାଣ୍ଡ ହୋଇଗଲା ବୋଲି ଗାନ୍ଧିଜୀ ୩ ଦିନ ଅନଶନ କରିଥିଲେ । ଉତ୍ତରପ୍ରଦେଶର ଗୋରଖପୁର ଜିଲ୍ଲା ଚୌରୀଚୌରାଥାନା ପୋଲିସର ଅସଦବ୍ୟବହାର ଓ ଲୋକଙ୍କର ପ୍ରତିବାଦ, ପୋଲିସର ଗୁଳି ଓ ଉତ୍‌କ୍ଷିପ୍ତ ଜନତା ପକ୍ଷରୁ ଥାନା ପୋଡ଼ି ଓ କେତେକ ହତ୍ୟା (୧୯୨୨ ଫେବୃୟାରୀ ୫) ଘଟଣା ପରେ ହିଂସା ହୋଇଗଲା ନାମରେ ଫେବୃଆରୀ ୧୨ରେ ଆନ୍ଦୋଳନର ପ୍ରତ୍ୟାହାର ସ୍ୱାଧୀନତା ସଂଗ୍ରାମୀଙ୍କ ମହଲରେ ଘୋର ନୈରାଶ୍ୟ ଆଣିଦେଲା । ବର୍ଷକ ଭିତରେ ସ୍ୱରାଜ ଆସିବ ବୋଲି ଗାନ୍ଧିଜୀଙ୍କ ଆହ୍ୱାନରେ ଲୋକେ ଅଶେଷ ତ୍ୟାଗ କରି ଆନ୍ଦୋଳନକୁ ଉଚ୍ଚ ପର୍ଯ୍ୟାୟକୁ ଘେନିଗଲା ବେଳେ ଓ ହିନ୍ଦୁ ମୁସଲମାନ ଐକ୍ୟ ପରିସ୍ଫୁଟ ହୋଇଥିବା ବେଳେ ଗାନ୍ଧିଜୀଙ୍କ ଆନ୍ଦୋଳନର ଏପରି ପ୍ରତ୍ୟାହାର ଜନସାଧାରଣଙ୍କ ମନରେ ହତାଶା ଆଣିଦେଲା ।

ଆନ୍ଦୋଳନ ପ୍ରତ୍ୟାହାର ସଙ୍ଗେସଙ୍ଗେ ବ୍ରିଟିଶ ସରକାର ଗାନ୍ଧିଜୀଙ୍କ ଗିରଫ କରି ୬ ବର୍ଷ କାରାଦଣ୍ଡରେ ଦଣ୍ଡିତ କଲା ।

## କଂଗ୍ରେସ ଭିତରେ ସ୍ୱରାଜ ପାର୍ଟି ଗଠନ

ଏହିପରି ବାୟୁମଣ୍ଡଳରେ ଔପନିବେଶିକ ଶାସନ ପ୍ରତି ଅଳୀକ ବିଧାନସଭାଗୁଡ଼ିକରେ ମଧ୍ୟ ପ୍ରତିରୋଧ କରାଯିବା ଲାଗି କର୍ମକୌଶଳ ଓ ତାହାର ବିରୋଧ ଘେନି କଂଗ୍ରେସ ଭିତରେ ବିଭାଜନ ଦେଖାଗଲା । କଂଗ୍ରେସ ସଭାପତି ଚିତ୍ତରଂଜନ ଦାସ ଓ ସାଧାରଣ ସଂପାଦକ ମୋତିଲାଲ ନେହେରୁ ନିଜନିଜ ପଦବୀରୁ ଇସ୍ତଫା ଦେଇ ୧୯୨୩ ଜାନୁଆରୀରେ କଂଗ୍ରେସ ଖିଲାଫତ ସ୍ୱରାଜ ପାର୍ଟି ଗଠନ କଲେ । ରାଜେନ୍ଦ୍ର ପ୍ରସାଦ, ସି. ରାଜଗୋପାଳଚାରୀ, ବଲ୍ଲଭଭାଇ ପଟେଲ ପ୍ରମୁଖ ତା'ର ବିରୋଧ କଲେ । ୧୯୨୩ରେ କାଉନସିଲଗୁଡିକୁ ନିର୍ବାଚନ ବେଳେ ଭିତରୁ ଅଳୀକ ସଂସ୍କାରଗୁଡ଼ିକରୁ ଚୁରମାର କରିଦେବେ ବୋଲି ଇସ୍ତାହାର ଦିଆଗଲା । ମାତ୍ର ସେମାନେ କଂଗ୍ରେସ ଭିତରେ ରହି ତାହାର ଅନ୍ୟ ସମସ୍ତ କାର୍ଯ୍ୟକ୍ରମ ମାନିବେ ବୋଲି ଘୋଷଣା କଲେ ।

ଦେଶରେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ମନୋଭାବ ଏପରି ଉଚ୍ଚସ୍ତରକୁ ଯାଇଥିଲା ଯେ ମାତ୍ର ଶହେକେ ୩ ଜଣ (ସୀମିତ) ଭୋଟାଧିକାର ସତ୍ତ୍ୱେ ସ୍ୱରାଜପାର୍ଟି କେନ୍ଦ୍ର ଆସେମ୍ବ୍ଲିରେ ୧୦୧ଟି ମଧ୍ୟରୁ ୪୨ଟି ଆସନ ଏବଂ ମଧ୍ୟପ୍ରଦେଶରେ ସଂଖ୍ୟା ଗରିଷ୍ଠତା ଓ ବଙ୍ଗଳା, ବମ୍ବେ, ଉତ୍ତରପ୍ରଦେଶର ଭଲ ସଂଖ୍ୟାରେ ଆସିଲେ ଏବଂ କଂଗ୍ରେସ ପରିତ୍ୟାଗ କରି ମୁସଲିମ ଲିଗ ନେତା ଏମ୍.ଏ. ଜିନ୍ନାଙ୍କ ନେତୃତ୍ୱରେ, ଯେମିତି କି ମଦନମୋହନ ମାଲବ୍ୟଙ୍କ ପରି ସ୍ୱାଧୀନ ସଦସ୍ୟମାନଙ୍କୁ ଘେନି ମେଣ୍ଟ ଗଠିତ ହେଲା । ସରକାର ଉପରେ ବିଧାନସଭାଗୁଡ଼ିକ ଭିତରୁ ସ୍ୱରାଜ ପାର୍ଟି ଆକ୍ରମଣ ଚଳେଇଲେ ।

ସେହି ସମୟରେ ମଧ୍ୟ ଦେଶର ବହୁ ପୌରସଭା କଂଗ୍ରେସ ଦଖଲରେ ଆସିଗଲା । ଜବାହରଲାଲ ନେହରୁ ଆହ୍ଲାବାଦର ରାଜେନ୍ଦ୍ର ପ୍ରସାଦ ପାଟନାର, ବଲ୍ଲଭଭାଇ ପଟେଲ ଅହମ୍ମଦାବାଦର, ସି.ଆର. ଦାସ କଲିକତାର, ଭିଠଲଭାଇ ପଟେଲ ବମ୍ବେର ପୌରପତି ନିର୍ବାଚିତ ହେଲେ । ସ୍ୱରାଜ ପାର୍ଟିର ଲୋକଙ୍କୁ ପ୍ରୋଚେଞ୍ଜର ବା ପରିବର୍ତ୍ତନପନ୍ଥୀ ଏବଂ ଏହାର ବିରୋଧୀଙ୍କୁ ନୋଚେଞ୍ଜର ବା ପରିବର୍ତ୍ତନ ବିରୋଧୀ କୁହାଯାଉଥିଲା ।

କେନ୍ଦ୍ର ଓ ପ୍ରାଦେଶିକ କାଉନସିଲଗୁଡ଼ିକରେ ଏମାନେ ବ୍ରିଟିଶ ପକ୍ଷରୁ ଆଗତ ପ୍ରତିକ୍ରିୟାଶୀଳ ବିଲ୍ ତା'ର ଆର୍ଥିକ ଓ କର ଟିକସର ପ୍ରସ୍ତାବ, ପୋଲିସ, ଶିକ୍ଷା, କୃଷି ନୀତିର ତୀବ୍ର ସମାଲୋଚନା କରିଥିଲେ । ମାତ୍ର ତନ୍ମଧ୍ୟରୁ ଜୟକାର ଓ କେଲକାରଙ୍କ ଏକ ଗୋଷ୍ଠୀ ସରକାର ସହିତ ସହଯୋଗର ବାଟ ଧରିଲେ । ଏହା ସ୍ୱରାଜ ପାର୍ଟି ମଧ୍ୟରେ ଗୁରୁତର ମତଭେଦ ଆଣିଦେଲା । ଲଜପତରାୟ ପ୍ରମୁଖ ଏହାର ବିରୋଧ କଲେ । ସି.ଆର୍. ଦାସଙ୍କର ୧୯୨୫ରେ ମୃତ୍ୟୁ ପରେ ୧୯୨୬ରେ ପୁଣି ନିର୍ବାଚନବେଳକୁ ସ୍ୱରାଜ ପାର୍ଟି ଦୁର୍ବଳ ହୋଇଗଲା । ଗାନ୍ଧିଜୀଙ୍କ ଦ୍ୱାରା ଅସହଯୋଗ ଆନ୍ଦୋଳନର ପ୍ରତ୍ୟାହାର, ସ୍ୱରାଜ ପାର୍ଟିରେ ସରକାର ସହିତ ସହଯୋଗୀ ଗୋଷ୍ଠୀର ଅଭ୍ୟୁଦୟ ବ୍ରିଟିଶ ଶାସକମାନଙ୍କୁ ହିନ୍ଦୁ ମୁସଲମାନ ଭିତରେ ବିଭେଦ ସୃଷ୍ଟି କରିବାକୁ ଏବଂ କଂଗ୍ରେସ ଓ ସ୍ୱରାଜ ପାର୍ଟିକୁ ହିନ୍ଦୁପ୍ରଧାନ ବୋଲି ମୁସଲମାନ ସାଂପ୍ରଦାୟିକତାବାଦୀମାନଙ୍କ ମଧ୍ୟରେ ବିଷ ପ୍ରଚାର କରିବାକୁ ସୁଯୋଗ ଦେଲା । ହିନ୍ଦୁ ସାଂପ୍ରଦାୟିକତାବାଦୀମାନଙ୍କର ମଧ୍ୟ ଏସବୁ କାଉନସିଲରେ ପ୍ରତିନିଧିତ୍ୱ ବଢ଼ିଲା ।

ବ୍ରିଟିଶ ସରକାର ଏହି ସମୟରେ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନର ଭାବଧାରା, ସମାଜବାଦୀ ଚିନ୍ତାଧାରାର ପ୍ରବେଶକୁ ବନ୍ଦ କରିବା ଲାଗି ୧୯୨୮ରେ ସାଧାରଣ ନିରାପତ୍ତା ବିଲ୍ ପବ୍ଲିକ୍ ସେଫ୍‌ଟି ବିଲ୍‌କୁ ସ୍ୱରାଜିଷ୍ଟ ଓ ଅନ୍ୟମାନେ ଗୃହୀତ କରାଇ ଦେଲେ ନାହିଁ । ଲାଲା ଲଜପତରାୟ କାଉନସିଲ୍‌ରେ କହିଲେ, ଆମେ ବଲଶେଭିକବାଦ ଅବା ଲେନିନବାଦଠାରୁ ନୁହଁ, ପୁଞ୍ଜିପତି ଓ ଶୋଷକମାନଙ୍କଠାରୁ ବିପଦ ଦେଖୁଛୁ । ଟି. ପ୍ରକାଶମ କହିଲେ ଏହା ସିଧାସଳଖ ଭାରତୀୟ ଜାତୀୟତା ଓ ଜାତୀୟ କଂଗ୍ରେସ ଉପରେ ଆକ୍ରମଣ । ଦେବାନ ଚମନଲାଲ କହିଲେ

ସମାଜବାଦ ବିରୋଧରେ ଆପଣମାନେ ପ୍ରଚାର କରିବାକୁ ଚାହୁଁଛନ୍ତି । ଯଦି ସମାଜବାଦକୁ ଆପଣ ଦମନ କରିବାକୁ କ୍ଷମତା ଚାହୁଁଛନ୍ତି, ତେବେ ସେପରି କ୍ଷମତା ପାଇବା ପୂର୍ବରୁ ଆମ ଶବ ଉପରେ ଆପଣମାନଙ୍କୁ ଚାଲିବାକୁ ପଡ଼ିବ । ମୋତିଲାଲ ନେହେରୁ ସୋଭିଏତ୍ ୟୁନିଅନର ଅଭିଜ୍ଞତା ବର୍ଣ୍ଣନା କରି ସୋଭିଏତ ବିରୋଧୀ ପ୍ରଚାରର ଖଣ୍ଡନ କରିଥିଲେ ।

ଏହି ବିଲ୍‌ଟିକୁ ପାଶ୍ ନ କରାଇପାରି ସରକାର ୩୧ ଜଣ ନେତୃତ୍ୱକାରୀ କମ୍ୟୁନିଷ୍ଟ ଓ ବାମପନ୍ଥୀଙ୍କୁ ଗିରଫ କରି ବିଖ୍ୟାତ ମିରଟ ଷଡ଼ଯନ୍ତ୍ର ମକଦ୍ଦମା ଆରମ୍ଭ କରିଦେଲା । ଗାନ୍ଧିଜୀ ଏହି ଗିରଫଦାରୀକୁ ଆଇନର ଢାଙ୍କୁଣିରେ ଆଇନହୀନତାର ରାଜୁତି ବୋଲି ଆଖ୍ୟା ଦେଇଥିଲେ ।

୧ ୯ ୨ ୭ରେ ବ୍ରିଟିଶ ସରକାର ସାଇମନ କମିଶନ ନିଯୁକ୍ତ କରି ଭାରତବାସୀଙ୍କୁ ହିନ୍ଦୁ ମୁସଲମାନରେ ବିଭକ୍ତ କରିବା ଉଦ୍ଦେଶ୍ୟ ସାଧନରେ ପ୍ରୟାସୀ ହେଲା । ସାଇମନ କମିଶନ ଫେରିଯାଅ ଡାକରା ସାରା ଦେଶରେ ଚହଲ ପକାଇଦେଲା । ୧ ୯ ୨ ୭ରେ ମାନ୍ଦ୍ରାଜ କଂଗ୍ରେସ ଅଧିବେଶନରେ ପୂର୍ଣ୍ଣ ସ୍ୱାଧୀନତା ପ୍ରସ୍ତାବ ଆସିଥିଲେ ସୁଦ୍ଧା ଗାନ୍ଧିଜୀ ଓ କଂଗ୍ରେସ ନେତୃତ୍ୱ କାର୍ଯ୍ୟକାରୀ କଲେନାହିଁ । ବରଂ ମୋତିଲାଲ ନେହରୁଙ୍କ ନେତୃତ୍ୱରେ ସର୍ବଦଳୀୟ କମିଟି ଡୋମିନିୟନ ଷ୍ଟାଟସ ଲକ୍ଷ୍ୟ ବୋଲି ଗ୍ରହଣ କଲା । ୧ ୯ ୨ ୮ରେ କଲିକତା କଂଗ୍ରେସରେ ପୁନଶ୍ଚ ପୂର୍ଣ୍ଣ ସ୍ୱାଧୀନତାର ପ୍ରସ୍ତାବ ଜବାହରଲାଲ ଆଗତ କଲାରୁ ସଭାପତି ପିତା ମୋତିଲାଲ ତାହାର ବିରୋଧ କଲେ । ୧ ୯ ୨ ୯ରେ ଲାହୋର କଂଗ୍ରେସରେ ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ଗୃହୀତ ହେଲା । ବର୍ଷକ ମଧ୍ୟରେ ତାହା ଗୃହୀତ ନ ହେଲେ ଆନ୍ଦୋଳନ କରାଯିବ ବୋଲି ଶେଷରେ ଗାନ୍ଧିଜୀ ଘୋଷଣା କଲେ ଏବଂ ୧ ୯୩୦ ଜାନୁଆରୀ ୨୬ରେ ସ୍ୱାଧୀନତା ଦିବସ ଦେଶ ସାରା ପାଳନ କରାଯିବ ବୋଲି ନିଷ୍ପତ୍ତି ହେଲା ।

**ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ଧାର୍ଯ୍ୟ, ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନର ଉନ୍ମେଷ**

ଅକ୍ଟୋବର ସମାଜବାଦୀ ବିପ୍ଳବ ଓ ସୋଭିଏତ ୟୁନିଅନରେ ସମାଜବାଦର ପ୍ରତିଷ୍ଠା ସମଗ୍ର ପୃଥିବୀ କ୍ଷେତ୍ରରେ ମାର୍କସ ଏଙ୍ଗେଲସ୍‌ଙ୍କ ଆବିଷ୍କାର, ସମାଜବାଦ ପ୍ରତି ପ୍ରବଳ ଆକର୍ଷଣ ଆଣିଦେଲା । ୟୁରୋପ, ଆମେରିକା, ଏସିଆ, ପ୍ରଭୃତି ବିଭିନ୍ନ ଦେଶରେ ତାହା ଆଲୋଡ଼ନ ସୃଷ୍ଟି କଲା । ତାହାର ସମ୍ବାଦ ମଧ୍ୟ ଭାରତରେ ପହଞ୍ଚିଲା । ହିମାଳୟ ସେପଟୁ ବିପ୍ଳବର ସମ୍ବାଦ ଯେପରି ନ ଆସିବ ଏବଂ ବଲଶେଭିକମାନେ ନର ରାକ୍ଷସ, ମାନବତାଦ୍ରୋହୀ, ହିଂସ୍ର, ବର୍ବର ଏମିତି ବ୍ରିଟିଶ ସରକାରର ପ୍ରଚାର ସତ୍ତ୍ୱେ ଭାରତରେ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଲିପ୍ତ ହୁଏତ କଂଗ୍ରେସରେ ଥାଇ, ବା ସନ୍ତ୍ରାସବାଦୀ ଥାଇ, ଅବା ଖିଲାଫତ ଆନ୍ଦୋଳନରେ ଥାଇ ନୂତନ ବୁଦ୍ଧିଜୀବୀ ଯୁବକମାନଙ୍କ ମଧ୍ୟରେ କମ୍ୟୁନିଷ୍ଟ ଆଦର୍ଶର ପ୍ରସାର ଘଟିଲା । ବିଦେଶରେ ମାନବେନ୍ଦ୍ରନାଥ ରାୟ, ଭୂପେନ୍ଦ୍ର ବୋଷ (ବିବେକାନନ୍ଦଙ୍କ ବଡଭାଇ) ମାଡାମ କାମା, ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ ପ୍ରଭୃତିଙ୍କର ଭାରତୀୟ ବିପ୍ଳବୀମାନଙ୍କ ସହିତ ପ୍ରତ୍ୟକ୍ଷ ଓ ପରୋକ୍ଷ ଯୋଗାଯୋଗ

କଲେ । ଋଷ ବିପ୍ଲବ ପରେ ଖିଲାଫତ ଆନ୍ଦୋଳନର ନେତାମାନେ ଓ ପୃଥୀ ସିଂହ ଆଜାଦଙ୍କ ଭଳି ସ୍ୱାଧୀନତା ସଂଗ୍ରାମୀ, ବରଖତ ଉଲ୍ଲା, ସଭରକର ପ୍ରଭୃତି ଖାଇବର ଗିରି ସଙ୍କଟ ଦେଇ ସୋଭିଏତ ଋଷିଆ ଗଲେ । ଲେନିନଙ୍କ ସହିତ ସେମାନଙ୍କ ମଧ୍ୟରୁ କେତେକଙ୍କ ସହ ଆଲୋଚନା ହେଲା । ଏମିତିକି ୧୯୨୧ରେ ତାସକେଣ୍ଟଠାରେ ଭାରତ ପାଇଁ ଏକ ବିପ୍ଲବୀ ସରକାର ଗଠିତ ହେଲା । ତାହାର ଇତିହାସ ଦୀର୍ଘ । ବହୁ ମୁଜାହିଦ ସୋଭିଏତ ଋଷ ଗୋପନରେ ଯାଇଥିଲେ ।

ତେବେ ଭାରତବର୍ଷରେ ବମ୍ବେ, କଲିକତା, ମାନ୍ଦ୍ରାଜ, କାନପୁରଠାରେ ମାର୍କସବାଦ-ଲେନିନବାଦ ପ୍ରତି ଆକୃଷ୍ଟ ଯୁବକମାନେ କାହାରି ସହିତ ସଂପର୍କ ନଥାଇ ମଧ୍ୟ ସ୍ୱାଧୀନତା ସଂଗ୍ରାମ ଭିତରେ ଥାଇ, କଂଗ୍ରେସ କାର୍ଯ୍ୟ କରି, ଗାନ୍ଧିଜୀଙ୍କ ଡାକରାରେ ପାଠ ଛାଡ଼ି ଏପରି ଗୋଷ୍ଠୀ ଗଠନ କଲେ । ନୂତନ ଭାବରେ ଜାତ ହୋଇଥିବା ଶ୍ରମିକ ଶ୍ରେଣୀକୁ ଓ ଚାଷୀମାନଙ୍କୁ ସଂଗଠିତ କଲେ ଓ ଆନ୍ଦୋଳନ ଚଳେଇଲେ । ଲାଲା ଲଜପତ ରାୟ ଓ ପଣ୍ଡିତ ନେହରୁଙ୍କ ପ୍ରାଥମିକ ଉଦ୍ୟୋଗରେ ଗଠିତ ନିଖିଳ ଭାରତ ଟ୍ରେଡ ୟୁନିଅନ କଂଗ୍ରେସ ଗଠନ ଓ ତା'ର କାର୍ଯ୍ୟକଳାପରେ ସକ୍ରିୟ ଅଂଶ ନେଲେ । କମ୍ୟୁନିଷ୍ଟ ଯୁବକ ବିପ୍ଲବୀମାନଙ୍କୁ ବ୍ରିଟିଶ ପୋଲିସ ଏକାଠି କରାଇ ଦେଉନଥିଲେ ।

ଏହି ଯୁବଗୋଷ୍ଠୀମାନେ ଦେଶର ରାଜନୈତିକ ବାତାବରଣରେ ସମାଜବାଦର ଭାବଧାରା ପ୍ରଚାର କରାଇଲେ । କଂଗ୍ରେସ ଅଧିବେଶନରେ ଏମାନେ ହିଁ ହୋମ୍ ରୁଲ୍ ନୁହଁ ଡୋମିନିୟନ ଷ୍ଟାଟସ ନୁହଁ, ସ୍ୱରାଜର ପ୍ରକୃତ ମର୍ମ ପୂର୍ଣ୍ଣ ସ୍ୱାଧୀନତା ଅର୍ଥାତ୍ ବ୍ରିଟିଶ ସାମ୍ରାଜ୍ୟବାଦ କବଳରୁ ସଂପୂର୍ଣ୍ଣ ମୁକ୍ତି ଓ ସଂପର୍କ ଛେଦର ଦାବୀ ଉଠାଇଲେ । ୧୯୨୧ ଅହମ୍ମଦାବାଦ କଂଗ୍ରେସରେ ଏବଂ ୧୯୨୨ ଗୟା କଂଗ୍ରେସରେ ଏବଂ ୧୯୨୭ ମାନ୍ଦ୍ରାଜ କଂଗ୍ରେସରେ ଏହି କମ୍ୟୁନିଷ୍ଟମାନେ ଗଠନ କରିଥିବା ପେଜାଣ୍ଟ ଏଣ୍ଡ ୱାର୍କର୍ସ ପାର୍ଟିର ଆହ୍ୱାନରେ ପୂର୍ଣ୍ଣ ସ୍ୱାଧୀନତା ଦାବି ଉଠାଇ ୫୦ ହଜାର ଜନତା ବସ୍ତୁତଃ କଂଗ୍ରେସ ମଞ୍ଚକୁ ଦଖଲ କରିଥିଲେ । ଏହି ଦାବି ପ୍ରତି ପଣ୍ଡିତ ନେହରୁ, ସୁବାଷ ଚନ୍ଦ୍ର ବୋଷଙ୍କର ସମର୍ଥନ ଏବଂ ଗାନ୍ଧିଜୀଙ୍କ ସମେତ ବଲ୍ଲଭ ଭାଇ, ରାଜେନ୍ଦ୍ର ପ୍ରସାଦ, ରାଜଗୋପାଳଚାରୀ ପ୍ରମୁଖଙ୍କ ନାପସନ୍ଦ ଇତିହାସର ବିଷୟବସ୍ତୁ । ୧୯୨୮ରେ ବମ୍ବେରେ ୧୦ ମାସ କାଳ ୨ ଲକ୍ଷ ସୂତାକଳ ଶ୍ରମିକଙ୍କ ଧର୍ମଘଟ ସ୍ୱାଧୀନତା ସଂଗ୍ରାମରେ, ବ୍ରିଟିଶ ବିରୋଧୀ ଓ ପୁଞ୍ଜିବାଦ ବିରୋଧୀ ସଂଗ୍ରାମରେ ଏକ ନୂତନ ଦିଗନ୍ତ ସୃଷ୍ଟି କଲା ।

ବ୍ରିଟିଶ ସାମ୍ରାଜ୍ୟବାଦ ପ୍ରମାଦ ଗଣିଲା । ପେଶାୱାର ଷଡଯନ୍ତ୍ର ମକଦ୍ଦମା (୧୯୨୨-୨୩), କାନପୁର ଷଡ଼ଯନ୍ତ୍ର ମକଦ୍ଦମା (୧୯୨୪), ଭଗତ ସିଂହ, ରାଜଗୁରୁ, ଶୁକଦେବଙ୍କ ବିରୋଧରେ ଇତିହାସର ଷଡ଼ଯନ୍ତ୍ର ମକଦ୍ଦମା ଏବଂ ୧୯୨୯-୩୦ରେ ବିଖ୍ୟାତ ମିରଟ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାରୁ ଓ ତତ୍‌ପରବର୍ତ୍ତୀ କାଳରେ ୧୯୪୦ରେ କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର

ମକଦ୍ଦମା ପ୍ରମାଣିତ ଯେ କମ୍ୟୁନିଷ୍ଟମାନେ, ଭଗତ ସିଂହ (ଯିଏ କି ଫାଶି ପାଇବା ପୂର୍ବରୁ ଲେନିନଙ୍କ ରାଷ୍ଟ୍ର ଓ ବିପ୍ଳବ ପୁସ୍ତକ ପଢ଼ି ବେକରେ ଦଉଡ଼ି ଲଗେଇଲେ) ପ୍ରଭୃତି ବୀର ବିପ୍ଳବୀମାନେ ୧୯୨୦ରୁ ୧୯୨୯ରେ ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ କଂଗ୍ରେସ ଗ୍ରହଣ କରିବାକୁ ଏକ ପ୍ରଚଣ୍ଡ ବାୟୁମଣ୍ଡଳ ଓ ଚାପ ସୃଷ୍ଟି କରିଥିଲେ । ମିରଟ ଷଡ଼ଯନ୍ତ୍ର ମକଦ୍ଦମାର ଆସାମୀମାନଙ୍କୁ ମହାତ୍ମା ଗାନ୍ଧୀ ଜେଲ୍‌ଖାନାରେ ଭେଟି ସେମାନଙ୍କ ମତ ବଦଳାଇ ପାରିନଥିଲେ ।

ଆହୁରି ଉଲ୍ଲେଖନୀୟ ଯେ ଭଗତ ସିଂହଙ୍କ ଲାହୋର ଷଡ଼ଯନ୍ତ୍ର ମକଦ୍ଦମାରେ ଦଣ୍ଡିତ ଅଜୟ ଘୋଷଙ୍କ ସମେତ ବହୁ ନେତା, ଗଦ୍ଦର ପାର୍ଟିର ତୁଙ୍ଗ ନେତା, ପୃଥ୍ୱୀ ସିଂହ ଆଜାଦ, ଗୁରୁମୁଖ ସିଂହ, ସୋହାନ ସିଂ ବାଖନା, ସୋହାନ ସିଂହ ଘୋଷ ପ୍ରମୁଖ ପରବର୍ତ୍ତୀ କାଳରେ ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନ ମକଦ୍ଦମାରେ କଳାପାଣିରେ ଦଣ୍ଡିତ ତୁଙ୍ଗ ନେତୃବୃନ୍ଦ, ଏମିତିକି ଅଗଷ୍ଟ ବିପ୍ଳବରେ ଉତ୍ତରପ୍ରଦେଶ, ଓଡ଼ିଶା, ବିହାର, ପଶ୍ଚିମବଙ୍ଗ ମହାରାଷ୍ଟ୍ରରେ ଅଂଶ ନେଇଥିବା ବହୁ ତୁଙ୍ଗ ନେତା କମ୍ୟୁନିଷ୍ଟ ହେଲେ । ବ୍ରିଟିଶ ହୁକୁମକୁ ଅମାନ୍ୟ କରି ଖାଁ ଅବଦୁଲ ଗଫର ଖାଁଙ୍କ ଲାଲକୁର୍ତ୍ତା ବାହିନୀ ଉପରେ ଗୁଳି ନ ଚଳାଇ ଦଣ୍ଡିତ ବୀର ଠାକୁର ଚନ୍ଦ୍ର ସିଂ ଘରୱାଲି କମ୍ୟୁନିଷ୍ଟ ହେଲେ । ସ୍ୱାଧୀନତା ସଂଗ୍ରାମରେ ଏକ ଶକ୍ତିଶାଳୀ ବୈପ୍ଳବିକ ପ୍ରବୃତ୍ତିର ଆବିର୍ଭାବ ଘଟିଲା । କଂଗ୍ରେସ ନେତୃତ୍ୱର ରକ୍ଷଣଶୀଳ ଅଂଶ ଏଥିରେ ଆତଙ୍କିତ ହୋଇ ଉଠିଲା ଏବଂ ସେହି ପ୍ରବୃତ୍ତିର ବିରୋଧ କରି କଂଗ୍ରେସକୁ ଯେପରି ସେମାନଙ୍କ ପକ୍ଷରେ ଅସ୍ପୃଶ୍ୟ କରିଦେବ ତାହାର ଉଦ୍ୟମ କଲା ।

୧୯୩୦-୩୨ରେ ଆଇନ ଅମାନ୍ୟ ଆନ୍ଦୋଳନ, ଗୁଜୁରାଟ, ଓଡ଼ିଶା ଓ ଅନ୍ୟତ୍ର ଲବଣ ସତ୍ୟାଗ୍ରହ, ମହାତ୍ମା ଗାନ୍ଧୀଙ୍କ ଦାଣ୍ଡି ମାର୍ଚ୍ଚ ଏକ ସାମ୍ରାଜ୍ୟବାଦ ବିରୋଧୀ ପ୍ରଚଣ୍ଡ ବାୟୁମଣ୍ଡଳ ସୃଷ୍ଟି କଲା । ୧୯୩୧ ରେ କରାଚୀ କଂଗ୍ରେସରେ କଂଗ୍ରେସର ଚାଷୀ, ଶ୍ରମିକଙ୍କ ସପକ୍ଷରେ ଓ ଶିଳ୍ପାୟନ ସମ୍ପର୍କରେ ଅର୍ଥନୈତିକ ପ୍ରସ୍ତାବ ଗ୍ରହଣ, ଏହି ନୂତନ ବୈପ୍ଳବିକ ପ୍ରବୃତ୍ତିର ପ୍ରଭାବରେ ସମ୍ଭବପର ହୋଇଥିଲା । ୧୯୩୦-୩୨ ଆନ୍ଦୋଳନ ବେଳେ ୧୫୦୦୦୦ ଲୋକ କାରାବରଣ କରିଥିଲେ । ଖାଁ ଅବଦୁଲ ଖାଁଙ୍କ ଲାଲକୁର୍ତ୍ତା ସଙ୍ଗଠନକୁ ବେଆଇନ କରାଗଲା ଓ ୧୯୩୩ରେ କମ୍ୟୁନିଷ୍ଟମାନଙ୍କ ପ୍ରଭାବ ଖର୍ବ କରିବାକୁ ୧୯୨୫ ଡିସେମ୍ବର ୨୫ରେ ମୁଷ୍ଟିମେୟ କମ୍ୟୁନିଷ୍ଟଙ୍କୁ (ଅନେକ ଜେଲ୍‌ଖାନାରେ) ଗଠିତ କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ କରାଗଲା ।

କଂଗ୍ରେସ ଓ ଗାନ୍ଧିଜୀଙ୍କ ନେତୃତ୍ୱରେ ୧୯୩୦-୩୨ ନିର୍ଦ୍ଧାରିତ ପନ୍ଥାରେ ଆନ୍ଦୋଳନ ବାହାରେ ଶ୍ରମିକଶ୍ରେଣୀ ନୂତନ ଭାବରେ ଜାଗ୍ରତ ଜନତା ଆନ୍ଦୋଳନର ନୂତନ ରୂପ ପ୍ରକାଶ କଲେ । ମହାରାଷ୍ଟ୍ରର ସୋଲାପୁରରେ ଲୁଗାକଳ ଶ୍ରମିକ ଶ୍ରେଣୀ ଓ ଅନ୍ୟ ସାମ୍ରାଜ୍ୟବାଦ ବିରୋଧୀ ଶକ୍ତି ମିଶି ଦୁଇ ମାସ କାଳ ଭାରତର ଇତିହାସରେ ପ୍ରଥମ ଥର ନିଜସ୍ୱ ସରକାର ପ୍ରତିଷ୍ଠା

କଲେ । ବ୍ରିଟିଶ ପୁଲିସ, ଅଦାଲତର ପତ୍ତା ରହିଲା ନାହିଁ । ଉତ୍ତର ପ୍ରଦେଶରେ ଜମିଦାରମାନଙ୍କୁ ଚାଷୀ ଖଜଣା ଦେଲେ ନାହିଁ (ଯଦିଚ୍ ବର୍ଦ୍ଦୋଲି ପ୍ରସ୍ତାବର କଂଗ୍ରେସ ଜମିଦାରମାନଙ୍କୁ ଖଜଣା ଦେବା ଉଚିତ ବୋଲି ପ୍ରସ୍ତାବ ନେଇଥିଲା) ପେଶାବାରରେ ହିନ୍ଦୁ ସୈନ୍ୟମାନେ ଚନ୍ଦ୍ର ସିଂହ ଘରୱାଲିଙ୍କ ନେତୃତ୍ୱରେ ମୁସଲମାନ ଜନତା ଉପରେ ଗୁଳି କରିବାକୁ ଅସ୍ୱୀକାର କଲେ । ଗାନ୍ଧିଜୀ ଏହାକୁ ନାପସନ୍ଦ କରି ବ୍ରିଟିଶ ସେନାପତିଙ୍କ ଆଦେଶ ମାନିବା ଉଚିତ ବୋଲି ମନ୍ତବ୍ୟ ଦେଇଥିଲେ । ଏ ପ୍ରକାର ଅଣଗାନ୍ଧୀ ବାଟରେ ବହୁ ସଂଗ୍ରାମର ରୂପ ପ୍ରକାଶ ପାଇଥିଲା । ପୁନଶ୍ଚ ଚତୁର୍ଥ ଦଶକର ଆଦ୍ୟ ଭାଗରେ ବୈପ୍ଳବିକ ସନ୍ତ୍ରାସବାଦୀ ଆନ୍ଦୋଳନ, ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନ, ମେଛୁଆ ବଜାର ବୋମା ମକଦ୍ଦମାମାନ ବ୍ରିଟିଶ ସରକାର ଆରମ୍ଭ କରି ବୈପ୍ଳବିକ ସଂଗ୍ରାମଗୁଡ଼ିକର କଣ୍ଠରୋଧ କଲା ।

ଯେତେବେଳେ ଆଇନ ଅମାନ୍ୟର ସୀମିତ ପରିସରକୁ ଡେଇଁ ଦେଶରେ ଶ୍ରମିକ, ଚାଷୀ, ନୂତନ ବିପ୍ଳବୀ ବୁଦ୍ଧିଜୀବୀ ବୈପ୍ଳବିକ ମାର୍ଗ ନେଉଥିଲେ କଂଗ୍ରେସ ଓ ଗାନ୍ଧିଜୀ ଆଇନ ଅମାନ୍ୟ ଆନ୍ଦୋଳନକୁ ପ୍ରତ୍ୟାହାର କରିନେଲେ । ଏହା ମଧ୍ୟ ଜେଲ୍‌ଖାନାରେ ବନ୍ଦୀମାନଙ୍କ ଭିତରେ ଏବଂ ବାହାରେ କଂଗ୍ରେସ ନେତୃତ୍ୱ ପ୍ରତି ଅସନ୍ତୋଷ ଜାତ କଲା । ନୂତନ ମାର୍ଗ ଓ ନୂତନ ଆଦର୍ଶ ପାଇଁ ଆଲୋଡ଼ନ ସୃଷ୍ଟି ହେଲା ।

କମ୍ୟୁନିଷ୍ଟ ପାର୍ଟି ବେଆଇନ । ଜେଲ୍‌ଖାନାରେ ବହୁ କମ୍ୟୁନିଷ୍ଟ, କଂଗ୍ରେସ ଭିତରେ ବାମପନ୍ଥୀ ମନୋଭାବାପନ୍ନ ଓ ସୋଭିଏତ ସମାଜବାଦୀ ବିପ୍ଳବର ସାଫଲ୍ୟ ପ୍ରତି ଆକୃଷ୍ଟ କେତେକ ତୁଙ୍ଗ ଯୁବନେତା ଜେଲ୍‌ଖାନାରୁ ବାହାରି ଆସିବା ପରେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠନ କଲେ । ସେମାନେ ସେହି କଂଗ୍ରେସ ଭିତରେ ଥାଇ ଏହି ପାର୍ଟି ଗଠନ କରିଥିଲେ । କମ୍ୟୁନିଷ୍ଟ ମନୋଭାବାପନ୍ନ ଓ ଭବିଷ୍ୟତରେ କମ୍ୟୁନିଷ୍ଟ ମତବାଦକୁ ଅର୍ଥାତ ମାର୍କସବାଦ ଲେନିନବାଦ ଆଦର୍ଶକୁ ଗ୍ରହଣ କରିନେବା ନେତା ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ । ତେଣୁ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ କଂଗ୍ରେସରେ ରହି ଓ ତା'ର ସମାନ୍ତରାଳ ଭାବରେ ଅନେକ ସଂଗ୍ରାମ ଏମାନଙ୍କ ଦ୍ୱାରା ସଂଘଟିତ ହୋଇଥିଲା ।

୧୯୩୫ ଶାସନ ଖସଡ଼ା ଆସିଗଲା । କଂଗ୍ରେସ ୯ଟି ରାଜ୍ୟରେ ସୀମିତ ଭୋଟାଧିକାର ଥିଲେ ସୁଦ୍ଧା ସଂଖ୍ୟା ଗରିଷ୍ଠତା ହାସଲ କଲା ଏବଂ କିଛି ସମୟ ବ୍ରିଟିଶ ସରକାର ସହିତ ଦର କଷାକଷି କରି କଂଗ୍ରେସ ରାଜ୍ୟମାନଙ୍କରେ ମନ୍ତ୍ରୀମଣ୍ଡଳ ଗଠନ କଲା । ସାଧାରଣ କଂଗ୍ରେସ ଅନୁଷ୍ଠାନ ଓ ଗାନ୍ଧିଜୀଙ୍କ ରଚନାତ୍ମକ କର୍ମୀମାନେ ଯେତେବେଳେ ରଚନାତ୍ମକ କାର୍ଯ୍ୟରେ ଲିପ୍ତ ହେଲେ, ଅନ୍ୟମାନେ ଜିଲ୍ଲା ବୋର୍ଡ ପୌରସଭାରେ ଭର୍ତ୍ତି ହେଲେ, ସେତେବେଳେ ସାମ୍ରାଜ୍ୟବାଦ ବିରୋଧୀ ଉଦ୍‌ବେଗଜନକ ସୃଷ୍ଟି କରିବାରେ କମ୍ୟୁନିଷ୍ଟ ଓ ସି.ଏସ୍.ପି.ରେ ଥିବା ବାମପନ୍ଥୀମାନେ ଅଗ୍ରଣୀ ଭୂମିକା ନେଇଥିଲେ ।

ଏହି ସମୟରେ ନିଖିଳ ଭାରତ କୃଷକସଭା, ଅଖିଳ ଭାରତ ଛାତ୍ରସଂଘ ପ୍ରଭୃତି ସଂଗଠନ ଗଠନ ହେଲା । ଦେଶବ୍ୟାପୀ ଜମିଦାର ମଠ, ମହନ୍ତ, ମହାଜନ ବିରୋଧୀ ଆନ୍ଦୋଳନ ଓ ବ୍ୟାପକ ସାମ୍ରାଜ୍ୟବାଦ ବିରୋଧୀ ଛାତ୍ର ଆନ୍ଦୋଳନ ଦେଶରେ ନୂତନ ପ୍ରଗତିଶୀଳ ବାୟୁମଣ୍ଡଳ ସୃଷ୍ଟି କଲା । ପୁନଶ୍ଚ ସୁବାଷ ବୋଷଙ୍କର ପରଓ୍ୱାର୍ଡ ବ୍ଲକ ଗଠନ, ଗାନ୍ଧିଜୀଙ୍କର ସୁବାଷଙ୍କ ବିରୋଧରେ କଂଗ୍ରେସ ସଭାପତି ପଦ ପାଇଁ ପଟ୍ଟାଭିସୀତାରାମୟାଙ୍କୁ ସମର୍ଥନ ଓ ଗାନ୍ଧିଜୀଙ୍କ ପରାଜୟ ସ୍ୱାଧୀନତା ଆନ୍ଦୋଳନ ଭିତରେ ଦକ୍ଷିଣପନ୍ଥୀ ଓ ବାମପନ୍ଥୀ, ଦୁଇ ଧାରାର ସଂଘର୍ଷ ଘଟେଇଲା । ୧୯୩୬ରେ ଲକ୍ଷ୍ନୌ କଂଗ୍ରେସରେ ଜବାହରଲାଲ ନେହରୁଙ୍କ ସଭାପତିତ୍ୱରେ ଏହିସବୁ ବିଷୟ ବିଚାର କରି କଂଗ୍ରେସ ଚାଷୀ, ଶ୍ରମିକଙ୍କ ପାଇଁ ସ୍ୱାଧୀନତା ପରେ କଣ କରାଯିବ ତାହା ଉଲ୍ଲେଖ କରିଥିଲା । ନେହରୁଙ୍କ ନେତୃତ୍ୱରେ ଜର୍ମାନୀ, ଇଟାଲୀ-ଜାପାନରେ ଫାସିଷ୍ଟବାଦ ଓ ସାମରିକବାଦ ବିରୋଧରେ କଂଗ୍ରେସ ସାମ୍ରାଜ୍ୟବାଦ ବିରୋଧୀ ଆସ୍ଥାନ ନେବ ବୋଲି ସ୍ଥିର ହେଲା । କୃଷକ ସଭା, ଟ୍ରେଡ୍ ୟୁନିଅନ କଂଗ୍ରେସ ପ୍ରଭୃତି ଅନୁଷ୍ଠାନକୁ କଂଗ୍ରେସର ସହଯୋଗୀ ସଂଗଠନ କରିବାକୁ କମ୍ୟୁନିଷ୍ଟ ଓ ବାମପନ୍ଥୀମାନଙ୍କର ଦାବୀ ପ୍ରତି ନେହେରୁଙ୍କ ଅନୁକୂଳ ମନୋଭାବକୁ ରକ୍ଷଣଶୀଳ ଗାନ୍ଧିବାଦୀ ବୋଲାଉଥିବା ନେତାମାନେ ବିରୋଧ କଲେ ।

ଠିକ୍ ମୋଗଲବନ୍ଦୀରେ କଂଗ୍ରେସର ୯ଟି ପ୍ରଦେଶରେ ଶାସନ କରୁଥିବା ବେଳେ ଭାରତ କାଶ୍ମୀରଠାରୁ କନ୍ୟାକୁମାରୀ, ଓଡ଼ିଶାଠାରୁ ମଧ୍ୟପ୍ରଦେଶ, ପଞ୍ଜାବ, ତ୍ରିବାଙ୍କୁଡ଼ କୋଚିନଠାରୁ ହାଇଦ୍ରାବାଦ, ସୁବୃହତ୍, ବୃହତ, ମଧ୍ୟମ ଓ କ୍ଷୁଦ୍ର ୬୦୦ଟି ଯାଏ ଗଡ଼ଜାତରେ ବିଶାଳ ଜନ ଉଦ୍‌ବେଳନ । କଂଗ୍ରେସର ଏକାଂଶ ନେତୃତ୍ୱ ଏହାକୁ ଭଲ ଚକ୍ଷୁରେ ଦେଖୁ ନଥିଲେ । ମାତ୍ର କମ୍ୟୁନିଷ୍ଟ, ସୋସଲିଷ୍ଟ ପ୍ରଗତିଶୀଳ କଂଗ୍ରେସ ବ୍ୟକ୍ତି ଓ ନବୀନ, ତରୁଣ ସ୍ୱାଧୀନତା ସଂଗ୍ରାମର ଯୁବକମାନେ ୧୯୩୮-୩୯ରେ ଯେଉଁ ଗଡ଼ଜାତ ପ୍ରଜା ଆନ୍ଦୋଳନ କରିଥିଲେ, ଗୁଳି, ଫାଶି, ଦମନର ଶିକାର ହୋଇଥିଲେ ତାହା ସାମ୍ରାଜ୍ୟବାଦର ଖୁଣ୍ଟ, ସାମନ୍ତବାଦର ଦୁର୍ଗ ଉପରେ ପ୍ରଚଣ୍ଡ ଆଘାତ ଦେଇଥିଲା । ତ୍ରିବାଙ୍କୁଡ଼ କୋଚିନରେ, ହାଇଦ୍ରାବାଦର ନିଜାମ ବିରୁଦ୍ଧରେ, ମଧ୍ୟପ୍ରଦେଶରେ ଏବଂ ଓଡ଼ିଶାର ଢେଙ୍କାନାଳ, ନୀଳଗିରି, ରଣପୁର ପ୍ରଭୃତିରେ କମ୍ୟୁନିଷ୍ଟମାନେ ଏହି ଆନ୍ଦୋଳନର ଅଗ୍ରଭାଗରେ ଥିଲେ । ବ୍ରିଟିଶ ସାମ୍ରାଜ୍ୟବାଦ ପ୍ରମାଦ ଗଣିଥିଲା ।

୧୯୩୯ରେ ଦ୍ୱିତୀୟ ମହାସମର ଆରମ୍ଭ ହେଲା ଏବଂ ଜାତୀୟ ସରକାର ଅର୍ପଣ କଲେ ବ୍ରିଟିଶ ପକ୍ଷକୁ କଂଗ୍ରେସ ସମର୍ଥନ କରିବା ଏବଂ ବ୍ରିଟିଶ ସରକାର ତାହା ନ କରିବା ଫଳରେ କଂଗ୍ରେସ ମନ୍ତ୍ରୀମଣ୍ଡଳଗୁଡ଼ିକର ଇସ୍ତଫା ଦେବା ଓ ବ୍ୟକ୍ତିଗତ ସତ୍ୟାଗ୍ରହ ହେବା ଘଟଣାବଳୀ ବେଳେ ଏହି ଯୁଦ୍ଧର ଏହି ପର୍ଯ୍ୟାୟର ଚରିତ୍ର ସମ୍ପର୍କରେ କଂଗ୍ରେସ ଭିତରେ ଓ କଂଗ୍ରେସ ବାହାରେ ବିଶେଷତଃ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ ଦୃଷ୍ଟିକୋଣ ଥିଲା । ଫାସିଷ୍ଟ ପକ୍ଷ ଓ ବ୍ରିଟିଶ ଫରାସୀ ଆମେରିକା ସାମ୍ରାଜ୍ୟ ପକ୍ଷଙ୍କ ମଧ୍ୟରେ ଯୁଦ୍ଧର ଲକ୍ଷ୍ୟ ସାମ୍ରାଜ୍ୟ

ରକ୍ଷା ଓ ସାମ୍ରାଜ୍ୟ ଛଡ଼େଇ ନେଇ ନିଜର ସାମ୍ରାଜ୍ୟର ପ୍ରତିଷ୍ଠା । ଦୁଇପକ୍ଷ ସାମ୍ରାଜ୍ୟବାଦୀ ଓ ଲକ୍ଷ୍ୟ ସାମ୍ରାଜ୍ୟବାଦର ରକ୍ଷା ।

କମ୍ୟୁନିଷ୍ଟମାନେ ଏହି ସାମ୍ରାଜ୍ୟବାଦୀ ପର୍ଯ୍ୟାୟରେ ଯୁଦ୍ଧର ସମ୍ପୂର୍ଣ୍ଣ ବିରୋଧ କରି ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଶ୍ରମିକ, କୃଷକ, ସମସ୍ତ ମେହନତ୍କାରୀ ବୁଦ୍ଧିଜୀବୀଙ୍କ ପ୍ରବଳ ସଂଗ୍ରାମ କରି କ୍ଷମତା ଦଖଲର ଦାବୀକୁ ଗାନ୍ଧିଜୀ ଓ କଂଗ୍ରେସ ପ୍ରତ୍ୟାଖ୍ୟାନ କଲେ ଓ ନିରୀହ ବ୍ୟକ୍ତିଗତ ସତ୍ୟାଗ୍ରହର ଆଶ୍ରୟରେ ଜେଲ ବରଣ ବା ମୃଦୁ ପ୍ରତିବାଦର ରାସ୍ତା ନେଲେ । ଅବଶ୍ୟ ଫାସିଷ୍ଟ ବିପଦ ପ୍ରତି ନେହେରୁଙ୍କ ନେତୃତ୍ୱରେ କଂଗ୍ରେସ ପ୍ରସ୍ତାବରେ ସତର୍କ ରହିବାକୁ କୁହାଯାଇଥିଲା ।

୧୯୪୧ ଜୁନ୍‌ରେ ସୋଭିଏତ୍ ୟୁନିଅନ ଉପରେ ଫାସିଷ୍ଟ ଜର୍ମାନୀର ଆକ୍ରମଣ ଓ ସେତେବେଳକୁ ସମଗ୍ର ପା୍ଚିମ ୟୁରୋପ ଦଖଲ, ଜାପାନର ଦକ୍ଷିଣପୂର୍ବ ଏସିଆ ଦଖଲ ଓ ଭାରତକୁ ଦଖଲ କରିଯିବାକୁ ଜର୍ମାନୀ-ଜାପାନର ଭିତିରି ଚୁକ୍ତି ଖାଲି ଭାରତବର୍ଷ ନୁହେଁ, ସାରା ପୃଥିବୀର ସ୍ୱାଧୀନତା, ଗଣତନ୍ତ୍ର ପାଇଁ କି ବିପଦ ଏବଂ ପୃଥିବୀର ଏକମାତ୍ର ସମାଜବାଦୀ ଦେଶ ଓ ମୁକ୍ତି ସ୍ୱାଧୀନତାର ଦୁର୍ଗ ଓ ଆଲୋକବ ୍ତି ସୋଭିଏତ୍ ୟୁନିଅନର ପରାଜୟ ହେଲେ ମାନବଜାତି ଓ ଭାରତର ସ୍ୱାଧୀନତା କିପରି ସୁଦୂର ପରାହତ ହେବ ତାହା ବିଶ୍ଳେଷଣ କରିଥିଲେ କମ୍ୟୁନିଷ୍ଟମାନେ । ସୋଭିଏତ୍ ୟୁନିଅନ ଉପରେ ଆକ୍ରମଣ ପରେ ଯୁଦ୍ଧର ଚରିତ୍ର ବଦଳିଗଲା । ଜନଯୁଦ୍ଧରେ ପରିଣତ ହେଲା ।

ଅର୍ଥାତ୍ ଫାସିଷ୍ଟବାଦର ପରାଜୟ ହେଲେ ସାମ୍ରାଜ୍ୟବାଦୀ ବିଶ୍ୱ ବ୍ୟବସ୍ଥା ଦୁର୍ବଳ ହୋଇଯିବ ଓ ପୃଥିବୀରେ ପରାଧୀନ ଦେଶମାନଙ୍କର ମୁକ୍ତିର ପ୍ରକ୍ରିୟା ଓ ସମାଜବାଦ ପ୍ରତିଷ୍ଠାର ଯୁଦ୍ଧ ଆରମ୍ଭ ହୋଇଯିବ । ଫାସିଷ୍ଟବାଦର ପରାଜୟ ପରେ ଏହାହିଁ ସତରେ ପରିଣତ ହେଲା । ଚୀନରେ ଓ ୟୁରୋପର ବହୁ ଦେଶରେ ସମାଜବାଦୀ ବିପ୍ଳବ ସଫଳ ହେଲା । ଭାରତବର୍ଷ ବ୍ରିଟିଶ ସାମ୍ରାଜ୍ୟବାଦଠାରୁ କଂଗ୍ରେସ-ଲିଗ ମେ[ ଓ ବ୍ୟାପକ ଜନସଂଗ୍ରାମ ଜରିଆରେ ଜାତୀୟ ସରକାର ହାସଲ କରିବାର କର୍ମକୌଶଳ ଓ ଅନ୍ୟଦିଗରେ ଜାପାନ ଓ ଜର୍ମାନୀର ପ୍ରତିରୋଧ କରିବାର ପଥ ନେବା ଉଚିତ ହେବ ବୋଲି କମ୍ୟୁନିଷ୍ଟମାନେ ପ୍ରସ୍ତାବ ଦେଲେ ।

୧୯୪୨ ଅଗଷ୍ଟ ୮ ତାରିଖରେ ବମ୍ବେ ଅଧିବେଶନରେ ୧୩ଜଣ କମ୍ୟୁନିଷ୍ଟ ଏଆଇସିସି ସଦସ୍ୟ ଏହି ପ୍ରସ୍ତାବ ବାଢ଼ିଥିଲେ । ଗାନ୍ଧିଜୀ କର ଅବା ମର ଡାକରା ଦେଇ ଆନ୍ଦୋଳନ ଆରମ୍ଭ କରିବା ପୂର୍ବରୁ ବ୍ରିଟିଶ ସରକାର ପ୍ରଚଣ୍ଡ ଆକ୍ରମଣ କରି ସବୁ ନେତାଙ୍କୁ ଗିରଫ କରିନେଲା । ଦେଶବ୍ୟାପୀ ନେତାମାନଙ୍କ ଗିରଫରେ ପ୍ରଚଣ୍ଡ ବିକ୍ଷୋଭ ଫାଟି ପଡ଼ିଲା । ଅବାରିତ ଭାବରେ ଗୁଳି, ଫାଶି ଦମନ ଚାଲିଲା । କଂଗ୍ରେସ, ସୋସଲିଷ୍ଟ, ଫରୱାର୍ଡ଼ ବ୍ଲକ, କମ୍ୟୁନିଷ୍ଟ ସମସ୍ତଙ୍କୁ ଜେଲ୍‌ଖାନାରେ ଭର୍ତ୍ତି କରାଗଲା ।

## ଭାରତର ଯୁଦ୍ଧୋତ୍ତର ଦାବାନଳ

୧୯୪୫ରେ ଫାସିଷ୍ଟବାଦର ପରାଜୟ, ସୋଭିଏତ୍ ୟୁନିଅନର ଏହି ସମରରେ ନିଷ୍ପତ୍ତିମୂଳକ ଭୂମିକା ଏବଂ ପୂର୍ବ ୟୁରୋପରେ ପୂର୍ବର ସାମ୍ରାଜ୍ୟବାଦୀ ଏବଂ ଯୁଦ୍ଧରେ ଜୟ କରି ଜର୍ମାନୀ, ଇଟାଲୀ ଶାସନାଧୀନ ଦେଶମାନଙ୍କର ସୋଭିଏତ୍ ସେନାନୀଙ୍କ ସହାୟତା ଯୋଗେ ମୁକ୍ତି ଏବଂ ଦକ୍ଷିଣପୂର୍ବ ଏସିଆରେ ଇଣ୍ଡୋନେସିଆ, ଇଣ୍ଡୋଚୀନ, ବର୍ମା ପ୍ରଭୃତିରେ ଜାପାନ, ବିଲାତ, ଫରାସୀ ଶାସନ ବିରୁଦ୍ଧରେ ଜନ ଜାଗରଣ ଓ ଚୀନରେ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ଯୁଗାନ୍ତକାରୀ ବିପ୍ଳବାତ୍ମକ ସମର ଭାରତରେ ପ୍ରବଳ ଜନଜାଗରଣ ପାଇଁ ଖୋରାକ ହେଲା ।

୧୯୪୬ ଫେବୃଆରୀ ୧୯ରେ ବମ୍ବେରେ ନୌସେନା ବିଦ୍ରୋହ, କରାଚୀକୁ ତା'ର ପ୍ରସାର, ପୁଲିସ ଧର୍ମଘଟ ଏବଂ କମ୍ୟୁନିଷ୍ଟ ପାର୍ଟି ଓ ଅନ୍ୟାନ୍ୟ ପ୍ରଗତିଶୀଳଙ୍କ ନେତୃତ୍ୱରେ ବମ୍ବେରେ ଶ୍ରମିକ, ସୈନିକ ଓ ଜନତାର ପଟୁଆର ଓ ତା' ଉପରେ ଗୁଳି ସୂଚାଇ ଦେଲା ଯେ ବ୍ରିଟିଶ ସରକାର ଶେଷ ଅସ୍ତ୍ର ସୈନ୍ୟବାହିନୀ ବିଦ୍ରୋହୀ । ଅବଶ୍ୟ କଂଗ୍ରେସ ଏହି ନୌ-ବିଦ୍ରୋହୀମାନଙ୍କୁ ଆତ୍ମ ସମର୍ପଣ କରିବାକୁ ନିର୍ଦ୍ଦେଶ ଦେଇଥିଲା । କିନ୍ତୁ ଲୋକେ କଂଗ୍ରେସ, କମ୍ୟୁନିଷ୍ଟ ଓ ଲିଗ୍ ପତାକାକୁ ଧରି ବିକ୍ଷୋଭ କରିଥିଲେ । ଜାତୀୟ ନେତାମାନଙ୍କର ମୁକ୍ତି ଏବଂ କମ୍ୟୁନିଷ୍ଟମାନଙ୍କ କର୍ମକୌଶଳର ସଠିତାକୁ ଗ୍ରହଣ କରି ଅଗଷ୍ଟ ବିପ୍ଳବୀ ଅରୁଣା ଆସଫଅଲି, ସତାରାରେ ପ୍ରତି ସରକାର ଗଢ଼ିଥିବା ଅଗଷ୍ଟ ବିପ୍ଳବୀ ନାନା ପଟିଲ, ବାଲିଆରେ ସମାନ୍ତରାଳ ସରକାର ଗଢ଼ିଥିବା ସରଜୁପାଣ୍ଡେ ଓ ଶହଶହ ସ୍ୱାଧୀନତା ସଂଗ୍ରାମୀ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ ।

କଂଗ୍ରେସ ଓ ଅପର ପକ୍ଷରେ ଲିଗ୍ କ୍ଷମତା ଆସନ୍ନ ଜାଣି ତ୍ରିପ୍‌ସ ମିଶନ, କାବିନେଟ୍ ମିଶନ, ମାଉଣ୍ଟବାଟେନ୍‌ଙ୍କ ସଙ୍ଗେ ଦର କଷାକଷି କଲାବେଳେ ଦିଲ୍ଲୀ, କଲିକତା, ବମ୍ବେ ଏବଂ ଅନ୍ୟାନ୍ୟ ନଗରନଗରୀରେ ଆଜାଦ ହିନ୍ଦ୍ ଫୌଜର ରସିଦ ଅଲ୍ଲି ଖାଁ ମୁକ୍ତି ପାଇଁ, ଲାଲକିଲ୍ଲାରେ ଆଜାଦ ହିନ୍ଦ ଫୌଜର ବିଚାର ବିରୋଧରେ, କଂଗ୍ରେସ ଲିଗ୍ ଐକ୍ୟ ଗଠନ କରି ବ୍ରିଟିଶ ସରକାରଠାରୁ ଜାତୀୟ ସରକାର ଆଦାୟ ପାଇଁ ଆନ୍ଦୋଳନ କରିବା କମ୍ୟୁନିଷ୍ଟମାନେ ଏହି ସମୟରେ ଅଭିଯାନ ଚଳାଇଥିଲେ ।

ବିଶାଳ ଜନବିକ୍ଷୋଭ, ସମାବେଶ, ଛାତ୍ର ଯୁବକ ବିକ୍ଷୋଭ, ବ୍ରିଟିଶ ଓ ପୁଲିସ ଗୁଳିରେ ହତ୍ୟା ଦେଶରେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ଉଦ୍‌ବେଳକୁ ନୂତନ ରୂପ ଦେଇଥିଲା । ସର୍ବତ୍ର କମ୍ୟୁନିଷ୍ଟମାନେ ହିଁ ଏସବୁର ଅଗ୍ରଭାଗରେ ଥିଲେ । ଫାସିଷ୍ଟବାଦ ବିରୋଧରେ ସୋଭିଏତ ୟୁନିଅନର ବିଜୟ, ଜାପାନର ପରାଜୟ ଓ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ନୌ ବିଦ୍ରୋହ ଓ ଯୁଦ୍ଧୋତ୍ତର ଜନ ଉଦ୍‌ବେଳନ ବ୍ରିଟିଶ ଶାସନର ମରଣ ଘଣ୍ଟି ବଜେଇଲା । କ୍ଷମତା ହସ୍ତାନ୍ତର ପୂର୍ବରୁ ନିଜ ଆସ୍ଥାନକୁ ଭାରତରେ କିଛିଟା ରକ୍ଷା କରିବା ଲାଗି କାହାରି ପ୍ରରୋଚନାରେ ୧୯୪୬ର

ଜଘନ୍ୟ ସାଂପ୍ରଦାୟିକ ଦଙ୍ଗା ଚଳେଇ ହିନ୍ଦୁ ମୁସଲମାନ, ଶ୍ରମିକ, ବୁଦ୍ଧିଜୀବୀ, ଚାଷୀ, ଗଡ଼ଜାତ ପ୍ରଜାଙ୍କ ଆନ୍ଦୋଳନର ଜୁଆରକୁ ବିଭେଦଗ୍ରସ୍ତ କରିବାକୁ ବ୍ରିଟିଶ ସରକାର ଉଦ୍ୟମ ଭାରତକୁ ଦୁଇଖଣ୍ଡ କରି ଭାରତ ଓ ପାକିସ୍ଥାନ ସୃଷ୍ଟି କରିବାରେ ଏବଂ ଏକ ପକ୍ଷରେ ଭାରତୀୟ ବୁର୍ଜୁୟା ଶ୍ରେଣୀର ରାଜନୈତିକ ପ୍ରତିନିଧି କଂଗ୍ରେସ ଓ ଅନ୍ୟ ପକ୍ଷରେ ପାକିସ୍ତାନର ବୁର୍ଜୁୟା ଶ୍ରେଣୀର ପ୍ରତିନିଧି ଲିଗ ହାତରେ ଗଡ଼ଜାତମାନଙ୍କୁ ସ୍ୱତନ୍ତ୍ର ରଖି କ୍ଷମତା ଅର୍ପଣ କଲା । ପରବର୍ତ୍ତୀ କାଳରେ କିପରି ଏହି ସ୍ୱାଧୀନତା ଗତିକଲା ତାହା ସ୍ୱତନ୍ତ୍ର ବିଷୟ ।

## ଉପସଂହାର

ଭାରତର ସ୍ୱାଧୀନତା ସଂଗ୍ରାମର ଦୀର୍ଘ ଇତିହାସରୁ ପ୍ରମାଣିତ ଯେ ବିଭିନ୍ନ ସମୟରେ ବିଭିନ୍ନ ସାମାଜିକ ଶ୍ରେଣୀ ଏହି ସଂଗ୍ରାମରେ ଭାଗ ନେଇଛନ୍ତି । ବ୍ରିଟିଶ ଶାସନ କାଳରେ ସବୁ ପ୍ରତିବନ୍ଧକ ସତ୍ତ୍ୱେ ଭାରତରେ ପୁଞ୍ଜିପତି ଶ୍ରେଣୀ ଓ ତା' ସହିତ ଶ୍ରମିକଶ୍ରେଣୀ ଜନ୍ମ ନେଇଛନ୍ତି । ସ୍ୱାଧୀନତା ସଂଗ୍ରାମରେ ଚାଷୀ, ଶ୍ରମିକ, ବୁଦ୍ଧିଜୀବୀ, ଗଡ଼ଜାତ ପ୍ରଜା, ହିନ୍ଦୁ, ମୁସଲମାନ, ଶିଖ୍‌ମାନେ ଲଢ଼ିଛନ୍ତି । ବିଭିନ୍ନ ସମୟରେ ଏହିସବୁ ସାମାଜିକ ଗୋଷ୍ଠୀ ସ୍ୱାଧୀନତା ସଂଗ୍ରାମରେ ସାମିଲ ହୋଇ, କଂଗ୍ରେସ ଭିତରେ ଥାଇ ଓ ବାହାରେ ରହି ଆଦର୍ଶର ଭିନ୍ନତା ଯୋଗୁଁ ଭିନ୍ନ ଭିନ୍ନ ରାଜନୈତିକ ମଞ୍ଚ ଗଢ଼ିଛନ୍ତି । ଶ୍ରମିକ, ଚାଷୀ, ଛାତ୍ର, ଯୁବକ, ଗଡ଼ଜାତ ପ୍ରଜା ନିଜସ୍ୱ ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦୀ ବିରୋଧୀ, ପୁଞ୍ଜିବାଦ ବିରୋଧୀ ଗଣ ସଙ୍ଗଠନ ଗଢ଼ିଛନ୍ତି । ସ୍ୱାଧୀନତା ସଂଗ୍ରାମ କାଳରେ ସଶସ୍ତ୍ର, ଅହିଂସ, ବୈପ୍ଳବିକ ସନ୍ତ୍ରାସବାଦୀ ଆନ୍ଦୋଳନ, ତଥା କମ୍ୟୁନିଷ୍ଟ ସୋସଲିଷ୍ଟ ଆନ୍ଦୋଳନ ସଞ୍ଚାଳିତ ହୋଇଛି ।

କଂଗ୍ରେସ ଅନୁଷ୍ଠାନ ଶ୍ରମିକ, ଚାଷୀ, ବୁଦ୍ଧିଜୀବୀ ବିପ୍ଳବୀମାନଙ୍କର ଏକ ମଞ୍ଚରେ ପରିଣତ ହେଲେ ବି ଏହାର ନେତୃତ୍ୱ ଐତିହାସିକ କାରଣଗୁଡ଼ିକ ଯୋଗୁଁ ବୁର୍ଜୁୟାଶ୍ରେଣୀ ହାତରେ ହିଁ ରହିଆସିଛି ।

ପୁଣି ପ୍ରମାଣିତ ଯେ କଂଗ୍ରେସ ଭିତରେ କମ୍ୟୁନିଷ୍ଟମାନଙ୍କ ଆସିବା ପୂର୍ବରୁ, କଂଗ୍ରେସ ସୋସଲିଷ୍ଟମାନଙ୍କ ଆବିର୍ଭାବ ପୂର୍ବରୁ ନରମପନ୍ଥୀ, ଚରମପନ୍ଥୀ ଏବଂ ନୋଚେଞ୍ଜର, ପ୍ରୋଚେଞ୍ଜର ଓ ସ୍ୱରାଜପାର୍ଟି ଗଠିତ ହୋଇ ବିଭାଜନ ଘଟିଛି । କଂଗ୍ରେସର ତୁଙ୍ଗ ନେତା ଓ ଦୁଇଥର କଂଗ୍ରେସ ସଭାପତି ହୋଇଥିବା ସୁଭାଷ ଚନ୍ଦ୍ର ବୋଷ ମଧ୍ୟ କଂଗ୍ରେସ ଛାଡ଼ି ଅଲଗା ଦଳ ଗଢ଼ିଛନ୍ତି ।

ସ୍ୱାଧୀନତା ପରେ ୧୯୪୭ରୁ ଏଯାଏ ସମସ୍ତ ରାଷ୍ଟ୍ର କ୍ଷମତା ଏ ଦେଶର ବୁର୍ଜୁୟା ଶ୍ରେଣୀ ହାତରେ ହିଁ ପଡ଼ିଛି ଏବଂ ସେହି ରାଷ୍ଟ୍ର କ୍ଷମତା ବୁର୍ଜୁୟା ଶ୍ରେଣୀ ହାତରୁ ଶ୍ରମିକ-ଚାଷୀ ଶ୍ରେଣୀକୁ ଆସିବାର ଲଢ଼େଇ ନାନା ଆଡ଼ବାଙ୍କ, ଘାତପ୍ରତିଘାତ, ଅଗ୍ରଗତି ଓ ପଶ୍ଚାତ୍‌ଗତି ଦେଇ ଆଗେଇ ଚାଲିଛି । ଇତିହାସ ସେହି ଶ୍ରେଣୀ ହାତକୁ ବହୁ ବୈପ୍ଳବିକ ସଂଗ୍ରାମ ଜରିଆରେ

କ୍ଷମତା ଆଣିଦେବ । ସମାଜର ଏହି ବିକାଶଧାରା ବ୍ୟାହତ ହୋଇନପାରେ । କମ୍ୟୁନିଷ୍ଟ ଆନ୍ଦୋଳନରେ ଐକ୍ୟ ଏବଂ ବଳିଷ୍ଠ କମ୍ୟୁନିଷ୍ଟ ପାର୍ଟି ବାମ ଓ ଗଣତାନ୍ତ୍ରିକ ଐକ୍ୟ ଓ ବ୍ୟାପକ ଶ୍ରମିକ-କୃଷକ, କ୍ଷେତ ମଜଦୂର, ବୁଦ୍ଧିଜୀବୀଙ୍କ ସମାଜ ରୂପାନ୍ତକାରୀ ସଂଗ୍ରାମ ଜରିଆରେ ଆମ ଗୌରବମୟ ସ୍ୱାଧୀନତା ସଂଗ୍ରାମର ପରମ ଓ ଚରମ ଲକ୍ଷ୍ୟ ଶୋଷଣବିହୀନ, ଶ୍ରେଣୀବିହୀନ ସମାଜ ଲାଭ କରାଯିବ । ଏ ସଂଗ୍ରାମ ଅତି କଠୋର ମାତ୍ର ଅନିବାର୍ଯ୍ୟ ।



ରଚନା କାଳ – ୧୯୮୫

# ଭାରତରେ ମାନବ ମୈତ୍ରୀର ସଂହାରକ ସାମ୍ପ୍ରଦାୟିକ ବିଦ୍ୱେଷ

**ବିବିଧତାର ସମନ୍ୱୟ ଭୂମି**

ଆଜି ଭାରତବର୍ଷ ଶତକୋଟି ନରନାରୀଙ୍କ ବାସଭୂମି । ଦୁଇ ଶତାଧିକ କାଳ ସାମ୍ରାଜ୍ୟବାଦୀ ଦାସତ୍ୱ ବନ୍ଧନରୁ ମୁକ୍ତ କରିବା ପାଇଁ ଲକ୍ଷଲକ୍ଷ ନୁହଁ କୋଟିକୋଟି ଭାରତବାସୀ ଅଞ୍ଚଳ, ପ୍ରଦେଶ, ରାଷ୍ଟ୍ର, ଜାତି, ଧର୍ମ, ସମ୍ପ୍ରଦାୟ ନିର୍ବିଶେଷରେ ଆସୁମାରୀ ସଂଗ୍ରାମ ଚଳେଇ ଆସିଥିଲେ । ଆକୁମାରୀ ହିମାଳୟ, ଅଜସ୍ର ସଂଖ୍ୟାରେ ଆମ ଦେଶବାସୀ ପ୍ରାଣବଳି ଦେଇ, କାରାଦଣ୍ଡ, ନିର୍ଜନ ଦ୍ୱୀପରେ ଦ୍ୱୀପାନ୍ତର, ଅକଥନୀୟ ଅବର୍ଣ୍ଣନୀୟ ଶାରୀରିକ ଯନ୍ତ୍ରଣାକୁ ବରଣ କରି ଦେଶକୁ ସ୍ୱାଧୀନ କରିଥିଲେ । ସାମ୍ରାଜ୍ୟବାଦୀ ଶକୁନିର ଚକ୍ରାନ୍ତ ହେତୁ ଦେଶ ବିଭକ୍ତ ହେଲାବେଳେ ଆମେ ଥିଲୁ ଖୁବ୍ ହେଲେ ୩୦ କୋଟି ଅଧିବାସୀ । ଆମ ଏହି ଦେଶରେ ବାସ କରୁଛୁ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ଶିଖ୍, ଜୈନ, ବୌଦ୍ଧ, ଜୋରାଷ୍ଟିଆନ୍, ପାର୍ଶୀ – ଏମିତି କାଳର ପ୍ରବାହରେ ସଂଗଠିତ ଧର୍ମର ଉପାସକ । ପୁଣି ବିପୁଳ ଜନସଂଖ୍ୟାର ବନବନାନୀ ଅଧିବାସୀ, ଅସଂଖ୍ୟ ମାନବ ଗୋଷ୍ଠୀ; ଯେଉଁମାନେ କି କୌଣସି ସଂଗଠିତ ଧର୍ମାନୁସରଣ ନକରି ଆନିମିଷ୍ଟ ବା ପ୍ରକୃତି ଉପାସକ ହୋଇ ଶତାବ୍ଦୀଶତାବ୍ଦୀ କାଳ ରହି ଆସିଛନ୍ତି ।

ପୁଣି ପ୍ରତ୍ୟେକଟି ସଂଗଠିତ ଧର୍ମରେ କେତେ ଧର୍ମୀୟ ସମ୍ପ୍ରଦାୟ ଓ ଗୋଷ୍ଠୀ ରହିଛନ୍ତି । ହିନ୍ଦୁ ମତାବଲମ୍ବୀଙ୍କ ମଧ୍ୟରେ ବୈଷ୍ଣବ, ଶୈବ, ଶାକ୍ତ, ବ୍ରାହ୍ମ, ଗାଣପତ୍ୟ ଇତ୍ୟାଦି । ସେଗୁଡ଼ିକ ମଧ୍ୟ ପ୍ରତ୍ୟେକଟି ନାନା ସମ୍ପ୍ରଦାୟରେ ବିଭକ୍ତ । ପୁଣି ସଂଖ୍ୟାଗରିଷ୍ଠ ହିନ୍ଦୁ ସମ୍ପଦାୟ ମଧ୍ୟରେ ବିବେକାନନ୍ଦ ପନ୍ଥୀ, ଅରବିନ୍ଦ ପନ୍ଥୀ, ଅନୁକୂଳଚନ୍ଦ୍ର ପନ୍ଥୀ, ନିଗମାନନ୍ଦ ପନ୍ଥୀ, ସାଇବାବା ପନ୍ଥୀ, ଚୈତନ୍ୟ ପନ୍ଥୀ, ଶିବାନନ୍ଦ ପନ୍ଥୀ, ରାମାନୁଜ ପନ୍ଥୀଙ୍କ ସାଙ୍ଗକୁ ବିଭିନ୍ନ ମହର୍ଷି, ଶଙ୍କରାଚାର୍ଯ୍ୟ ମହାରାଜ ପ୍ରମୁଖଙ୍କ ଅନୁଗାମୀ ସମ୍ପ୍ରଦାୟ । ମୁସଲମାନମାନଙ୍କ ଭିତରେ ସିହା, ସୁନି, କାଜିୟାତ, ଭୋରା ଏମତି ବହୁଳ ଧର୍ମୀୟ ସମ୍ପ୍ରଦାୟ । ଜୈନ ମତାବଲମ୍ବୀମାନଙ୍କ ମଧ୍ୟରେ ମହାଯାନ, ହୀନଯାନ ପ୍ରଭୃତି ଧର୍ମୀୟ ସମ୍ପ୍ରଦାୟ । ଶିଖମାନଙ୍କ ମଧ୍ୟରେ ଶିଖ୍, ମଜହବୀ ଶିଖ, ନିରଙ୍କରୀ ଇତ୍ୟାଦି ଉପଗୋଷ୍ଠୀ । ଆଉ ମଧ୍ୟ ରହିଛନ୍ତି ନାସ୍ତିକ, ନୈଶ୍ୱରବାଦୀ, ବସ୍ତୁବାଦୀ । ମନ୍ଦିର, ମସ୍‌ଜିଦ୍ ଗୀର୍ଜା ଗୁରୁଦ୍ୱାର, ସିନାଗଗ, ବିହାର, ବୌଦ୍ଧପୀଠ – ଏମତି ବିବିଧ ଶତଶତ ଉପାସନା

ମନ୍ଦିର । ପୁଣି ଅଛନ୍ତି ପିତୁଳା ପୂଜକ, ବ୍ରହ୍ମ ପୂଜକ, ଅଲେଖ ପୂଜକ, ସୂର୍ଯ୍ୟ ଉପାସକ । କିଏ କେବଳ ବାଇବେଲକୁ ପୂଜା କରେ, କିଏ କେବଳ କୋରାନ୍‌କୁ ପୂଜା କରେ । ଅନ୍ୟ କିଏ ଗୁରୁ ଗ୍ରନ୍ଥ ସାହେବଙ୍କୁ ପୂଜା କରେ । କିଏ ଦେବାଦେବୀ ବିଗ୍ରହମାନଙ୍କରେ ପୂଜାର୍ଚ୍ଚନା କରେ ।

ସବୁପ୍ରକାର ଧର୍ମାଚରଣରେ ସମାନତା ରହିଛି ଏବଂ ବିବିଧତା ମଧ୍ୟ ରହିଛି । ଯେକୌଣସି ଧର୍ମବିଶ୍ୱାସୀ ହୁଅନ୍ତୁ ପୂଜନ, ପ୍ରାର୍ଥନା କାଳରେ ସ୍ନାନ, ହାତପାଦ ଧୂଆଠାରୁ ଆରମ୍ଭ କରି ସମସ୍ତେ କୌଣସି ନା କୌଣସି ଢଙ୍ଗରେ ମଥାନତ କରନ୍ତି, ଆଣ୍ଠୁ ମାଡ଼ି ବସନ୍ତି, ଆଖି ବୁଜନ୍ତି, କିଏ ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି । କୀର୍ତ୍ତନ, ଭଜନ, ଆଜାନ ଆବୃତ୍ତି କରନ୍ତି ।

ଏହାହିଁ ବିବିଧ ଧର୍ମୀୟ ବିଭିନ୍ନତାରେ ସମାନତା ପ୍ରକାଶ କରେ । କିଏ ଦୀପ ପ୍ରଜ୍ୱଳନ କରେ, କିଏ ମହମବତୀ ଜଳାଏ, କିଏ ଶିରିଣି ପାଏ । ଭାସ୍କର୍ଯ୍ୟର ଆଦାନ ପ୍ରଦାନରେ ମସ୍‌ଜିଦ୍ ଅଗ୍ରଭାଗ, ଟୋପର, ଗୁରୁଦ୍ୱାର ଶିଖରରେ ସାଦୃଶ୍ୟ ଆଣିଦିଏ । ଏମିତି ଅନେକ ସାଦୃଶ୍ୟ ।

ଏଇ ଭାରତଭୂମିରେ ସାଧାରଣ ମଣିଷ, ସେ ଯେଉଁ ଧର୍ମାବଲମ୍ବୀ ହେଉ ପଛେ ଅନ୍ୟ ଧର୍ମାନୁଷ୍ଠାନ ପ୍ରତି ସମ୍ମାନ ଜଣାଏ । ଏହି ଭାରତବର୍ଷର ପ୍ରତ୍ୟେକଟି ଅଞ୍ଚଳରେ ଏମତି ସବୁ ଧର୍ମପୀଠ ରହିଛି (ଓଡ଼ିଶାରେ କାଇପଦର ଭଳି) ଯେଉଁଠି ହିନ୍ଦୁ, ମୁସଲମାନ ଉଭୟ ଧର୍ମର ପୀଠରେ ଏକତ୍ର ପୂଜାର୍ଚ୍ଚନା କରନ୍ତି । କେତେକ ସ୍ଥାନରେ ହିନ୍ଦୁ ମନ୍ଦିର, ଅବା ମୁସଲମାନ ପୀରଙ୍କ ପୂଜାର୍ଚ୍ଚନାରେ କିଏ କେଉଁ ଦାୟିତ୍ୱ ବହନ କରିବ ତାହା ଧର୍ମ ବିଶ୍ୱାସର ବିଭିନ୍ନତା ସତ୍ତ୍ୱେ ନିଜନିଜ ଭିତରେ ବାଣ୍ଟି ନିଆ ଯାଇଛି । ମଧ୍ୟ ଭାରତର ହିନ୍ଦୁ ପବିତ୍ର ପୀଠ ସବରବାଲୀ ଦର୍ଶନରେ ଯିବା ପୂର୍ବରୁ ଲକ୍ଷ ଲକ୍ଷ ହିନ୍ଦୁ ଭାଉରଠାରେ ଥିବା ମସ୍‌ଜିଦ୍‌ରେ ପ୍ରାର୍ଥନା କରନ୍ତି । ଆଜମିରରେ ଅବସ୍ଥିତ ସରିଫଠାରେ ଉଭୟ ସମ୍ପ୍ରଦାୟର ଲୋକେ ପ୍ରାର୍ଥନା କରନ୍ତି । ବିଚିତ୍ରତା ସତ୍ତ୍ୱେ ସମାନତାର ଏହି ନିଦର୍ଶନ । ଏପରି ଦୃଷ୍ଟାନ୍ତ ଜାମ୍ମୁ କାଶ୍ମୀରଠାରୁ, ଉତ୍ତର ଭାରତ, ଦକ୍ଷିଣଭାରତ, ଓଡ଼ିଶା, ବଙ୍ଗଳା ସର୍ବତ୍ର ଦେଖିବାକୁ ମିଳେ ।

**ମାନବିକତାର ଶତ୍ରୁ ସାମ୍ପ୍ରଦାୟିକତା**

ଆମ ଏହି ମହାନ୍ ଦେଶରେ ବାସ କରୁଥିବା ଏହି ପ୍ରକାର ବିଭିନ୍ନ ମାନବଗୋଷ୍ଠୀ, ଧର୍ମବିଶ୍ୱାସୀ ଜନତାର ପରସ୍ପର ମଧ୍ୟରେ ମୈତ୍ରୀ, ସଦ୍‌ଭାବନା, ଭାଇଚାରା, ସ୍ନେହସୌହାର୍ଦ୍ଦ୍ୟର ପରମ ଶତ୍ରୁ ସାମ୍ପ୍ରଦାୟିକତା । ସ୍ୱାଧୀନତା ସଂଗ୍ରାମ କାଳରେ ଆମ ଦେଶର ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ପାର୍ଶୀ, ସମ୍ପ୍ରଦାୟର ସଂଗ୍ରାମ, ଚାଳକ ଜନନେତାମାନେ ପ୍ରାଚୀନପନ୍ଥୀ, ରକ୍ଷଣଶୀଳ, ପଶ୍ଚାତଗାମୀ, ଅନ୍ଧବିଶ୍ୱାସୀ, କଟ୍ଟରପନ୍ଥୀମାନଙ୍କର ମୁକାବିଲା କରିଥିଲେ । ସେମାନେ ଏକାଠି ସମ୍ବିଧାନ ସଭାରେ ମିଳିତ ହୋଇ ସ୍ୱାଧୀନତା ପରେ ସମ୍ବିଧାନ ଗଢ଼ି ଭାରତ ଏକ ଗଣତାନ୍ତ୍ରିକ, ସଂଘୀୟ, ଧର୍ମନିରପେକ୍ଷ, ଶାନ୍ତିକାମୀ ରାଷ୍ଟ୍ର ରୂପେ ରହିବ ବୋଲି ଜାତିର ଅଙ୍ଗୀକାରକୁ ସାମ୍ବିଧାନିକ, ନ୍ୟାୟିକ ରୂପ ଦେଇଛନ୍ତି । କଟ୍ଟରପନ୍ଥୀ ସାମ୍ପ୍ରଦାୟିକତାବାଦୀମାନେ ସ୍ୱାଧୀନତା

ସମର କାଳରେ ସ୍ୱାଧୀନତା ଓ ମୁକ୍ତି ତୀର୍ଥରେ କିପରି ଅଜସ୍ର ପ୍ରତିବନ୍ଧକ ସୃଷ୍ଟି କରିଥିଲେ, କିପରି ଦେଶର ଶତ୍ରୁ ବ୍ରିଟିଶ ସାମ୍ରାଜ୍ୟବାଦର ଚାଟୁକାର ଓ ସେବକ ହୋଇଥିଲେ, ତାହାର ଭୁରିଭୁରି ଦୃଷ୍ଟାନ୍ତ ପ୍ରମାଣ ଓ ତଥ୍ୟ ରହିଛି । ସେମାନେ ହିନ୍ଦୁ ହୁଅନ୍ତୁ, ଅବା ମୁସଲମାନ ହୁଅନ୍ତୁ, ମାତ୍ର ସ୍ୱାଧୀନତାର ମହାନ ସ୍ରୋତକୁ ଅଟକାଇ ପାରି ନଥିଲେ ।

ଜାତି, ଧର୍ମ ନିର୍ବିଶେଷରେ ସବୁ ସମ୍ପ୍ରଦାୟର ଜନତା ସଂଗ୍ରାମରେ ସାମିଲ ହୋଇଥିଲେ ହେଁ, ହିନ୍ଦୁ ସାମ୍ପ୍ରଦାୟିକତାବାଦୀମାନେ ଅନ୍ୟ ଧର୍ମର ଅର୍ଥାତ୍ ମୁସଲମାନମାନଙ୍କୁ ଏବଂ ମୁସଲମାନ ସାମ୍ପ୍ରଦାୟିକତାବାଦୀମାନେ ହିନ୍ଦୁମାନଙ୍କୁ ଶରବ୍ୟ କରି ଆସୁଥିଲେ । ଏପରି ଭାଗଭାଗ କରିବାର ଗୋଟି ଚାଳକ ଥିଲା ବ୍ରିଟିଶ ସାମ୍ରାଜ୍ୟବାଦ । ଭାଗଭାଗ କରି ଶାସନ କରିବା ଥିଲା ବ୍ରିଟିଶ ସାମ୍ରାଜ୍ୟବାଦର ଘୋଷିତ ନୀତି । ତାହା ହିଁ ସେତେବେଳେ ଉଭୟ ଧର୍ମର ସାମ୍ପ୍ରଦାୟିକତାବାଦୀଙ୍କୁ ପରସ୍ପର ବିରୋଧରେ ଲଗେଇ ଦଙ୍ଗା ସୃଷ୍ଟି କରୁଥିଲା ।

ଯେଉଁଯେଉଁ ଦେଶରେ ଏକମାତ୍ର ଧର୍ମ ପ୍ରଚଳିତ, ସେହି ଧର୍ମର ବିଭିନ୍ନ ଗୋଷ୍ଠୀ ମଧ୍ୟରେ ଯିଏ ସଂଖ୍ୟାଗରିଷ୍ଠ, ତାହାର ସାମ୍ପ୍ରଦାୟିକତା ଅଧିକ ବିପଜ୍ଜନକ ଓ ସଂଖ୍ୟାନ୍ୟୁନ ଧର୍ମୀୟ ଗୋଷ୍ଠୀର ସାମ୍ପ୍ରଦାୟିକତାକୁ ତାହା ପରିପୁଷ୍ଟ କରେ । ଭାରତରେ ବିଭିନ୍ନ ଧର୍ମର କୋଟିକୋଟି ଲୋକଙ୍କ ମଧ୍ୟରେ ସଂଖ୍ୟାନ୍ୟୁନଙ୍କ ସାମ୍ପ୍ରଦାୟିକତା ସାଙ୍ଗକୁ ସଂଖ୍ୟାଗରିଷ୍ଠ ଧର୍ମବିଶ୍ୱାସୀଙ୍କ ସାମ୍ପ୍ରଦାୟିକତା ଦେଶର ଐକ୍ୟ ଓ ସଂହତିକୁ ଅଧିକ ବିପନ୍ନ, ଭାଗଭାଗ କରି ସମାଜର ମୈତ୍ରୀ ଭାବକୁ ବିନଷ୍ଟ କରିଥାଏ । ଏପରି ସାମ୍ପ୍ରଦାୟିକ ମାନସିକତା, ଦ୍ୱେଷ, ଦଙ୍ଗାର ଅସଲ କର୍ତ୍ତା; ସାଧାରଣ ସରଳ ଧର୍ମବିଶ୍ୱାସ ପଲ୍ଲୀ ପ୍ରାନ୍ତରର, ଗାଁଗହଳର, ସହର ଶିଳ୍ପାଞ୍ଚଳର ନିଷ୍କପଟ ମଣିଷ ନୁହଁନ୍ତି । ଏହାର ସଂଗଠନ, ସଞ୍ଚାଳକ ସମାଜରେ ଥିବା ନ୍ୟସ୍ତସ୍ୱାର୍ଥ, ଉପରପାହ୍ୟାର ବ୍ୟକ୍ତି । ସେମାନେ ପ୍ରଚୁର ଅର୍ଥ ଦିଅନ୍ତି, ହିଂସା, ଦ୍ୱେଷ ସୃଷ୍ଟିକରି ଅତୀତର ଘଟଣାଗୁଡିକୁ ପ୍ରଚାର ଯନ୍ତ୍ର ଜରିଆରେ ପ୍ରଚାର କରି ଧର୍ମଭୀରୁ ଜନତାକୁ ଉନ୍ମାଦ କରିଦିଅନ୍ତି, ଯେପରି ଅନ୍ୟ ଧର୍ମର ପ୍ରଭୁପଣିଆ ବଜାୟ ରହିବ । ଆଉ ମଧ୍ୟ ଯେପରି ଅନ୍ୟ ଧର୍ମର ସେମାନଙ୍କ ପରି ଦର୍ଜାର ଲୋକଙ୍କ ସମସ୍ତ ଆର୍ଥିକ ସମ୍ବଳ ନିଜ ହାତକୁ ଆସିବ ।

ସମାଜରେ ଧନୀ, ଦରିଦ୍ରର ବ୍ୟବଧାନ ଦୂର କରିବା ଲାଗି, ସାମାଜିକ ନ୍ୟାୟ, ଅର୍ଥନୈତିକ ସମତା ଓ ଅଧିକାର ପାଇଁ ଯେଉଁ ଜନ ବିସ୍ଫୋରଣ ଦେଖାଦେଇଛି ତାକୁ ଧର୍ମାନ୍ଧତାର ମାନସିକତା ସୃଷ୍ଟି କରି ରୋଧ କରାଯାଇପାରିବ । ଏହାହିଁ ସାମ୍ପ୍ରାଦାୟିକତାବାଦୀମାନଙ୍କର ଅସଲ ଅର୍ଥନୈତିକ ଓ ସାମାଜିକ ଲକ୍ଷ୍ୟ । ସାମାନ୍ୟ ସାମାନ୍ୟ ଆଳରେ ଧର୍ମୀୟ ଉତ୍ତେଜନା ସୃଷ୍ଟି କରିଦେଲେ, ସେହି ନିଆଁରେ ଆହୁତି ହୁଅନ୍ତି ସାଧାରଣ, ସରଳ, ଧର୍ମବିଶ୍ୱାସୀ ମଣିଷ । ଆଉ ବିଦ୍ୱେଷ ସୃଷ୍ଟିର ନାୟକମାନେ ସେମାନଙ୍କ ଚକ୍ରାନ୍ତ ସଫଳ ହେଲା ବୋଲି ଆତ୍ମସନ୍ତୋଷ ଲାଭକରିନ୍ତି । ଉଲ୍ଲସିତ ହୁଅନ୍ତି । ଧର୍ମାନ୍ଧ, ଦୁଷ୍କୃତକାରୀମାନେ ହତ୍ୟା, ଧର୍ଷଣ, ଲୁଣ୍ଠନରେ

ମାଟି ମାନବିକତା ହରାନ୍ତି । ପରେ ଏପରି ମାନସିକତା କେବଳ ଅପର ଧର୍ମାବଲମ୍ବୀଙ୍କ ବିରୋଧରେ ସୀମିତ ରହେ ନାହିଁ । ସୁଯୋଗ ଦେଖି ଏପରି ଦୁଷ୍କୃତକାରୀମାନେ ସମାଜର ସବୁ ସ୍ତରରେ, ସବୁ କ୍ଷେତ୍ରରେ ଏପରି ଅସ୍ତ୍ରକୁ ପ୍ରୟୋଗ କରନ୍ତି । ଅର୍ଥାତ୍ ସମାଜରେ ଅପରାଧୀକରଣ ବ୍ୟାପେ । ସାମ୍ପ୍ରଦାୟିକ ବିଦ୍ୱେଷ ତେଣୁ ସମାଜର ଅପରାଧୀକରଣର ଅସ୍ତ୍ର ହୋଇଯାଏ ।

ଧର୍ମାନ୍ଧତା, ମତାନ୍ଧତା, ସାମ୍ପ୍ରଦାୟିକତା ଏହିପରି ଭାବରେ ଭାରତର ସାମାଜିକ ଜୀବନକୁ ପ୍ରତ୍ୟେକ୍ଷ ଓ ପରୋକ୍ଷ ଭାବରେ କଳୁଷିତ କରିଦେଇଛି ।

ଆମ ଦେଶରେ ହେଉ ଅବା ପୃଥିବୀରେ ଯେଉଁ ଦେଶରେ, ଯେଉଁ ଧର୍ମାବଲମ୍ବୀଙ୍କ ମଧ୍ୟରେ ହେଉ, ସାମ୍ପ୍ରଦାୟିକତା, ଧର୍ମୀୟ ବିଦ୍ୱେଷ, ଘୃଣା ସମାଜରେ ମୈତ୍ରୀ, ଭ୍ରାତୃଭାବ, ସଂହତି, ମାନବିକ ଦରଜ, ସ୍ନେହ, ମମତା ଉପରେ କୁଠାରଘାତ କରେ ।

**ସାମ୍ପ୍ରଦାୟିକତାବାଦୀଙ୍କୁ କେତୋଟି ପ୍ରଶ୍ନ ?**

ଭାରତରେ ସଂଖ୍ୟାଗରିଷ୍ଠ ହିନ୍ଦୁସମ୍ପ୍ରଦାୟିକତାବାଦୀମାନେ ଅତୀତରେ ହିନ୍ଦୁ ଧର୍ମ ଉପରେ ମୁସଲିମ ଆକ୍ରମଣର ପ୍ରତିଶୋଧ ନେବାର ଆହ୍ୱାନ ଦେଇଆସିଛନ୍ତି । ଅତୀତ, ଯାହାକୁ ଇତିହାସରେ ମଧ୍ୟ ଯୁଗ କୁହାଯାଏ, ସେତେବେଳେ ଭାରତରେ ଏସବୁ ନିଶ୍ଚୟ ଘଟିଛି । ପାରସ୍ୟର ନାଦିରଶାହ ହିନ୍ଦୁଙ୍କ ଦ୍ୱାରିକା ପୀଠକୁ ଧ୍ୱଂସ କରିଥିଲେ । ଓଡ଼ିଶାରେ କଳାପାହାଡ଼ ମୁସଲିମ ରାଜତ୍ୱରେ ହିଁ ଜଗନ୍ନାଥଙ୍କଠାରୁ ଆରମ୍ଭ କରି ହିନ୍ଦୁ ଦେବାଦେବୀଙ୍କ ଉପରେ ଆକ୍ରମଣ କରିଥିଲେ । ଏମିତି ବିବିଧ ପ୍ରଶ୍ନ ଉଠାଇ ଦ୍ୱେଷ ବୃଦ୍ଧିର ବାୟୁମଣ୍ଡଳ ସୃଷ୍ଟି କରାଯାଏ । ଅବଶ୍ୟ କଳାପାହାଡ ଦୃଷ୍ଟାନ୍ତ ଦେଲାବେଳେ ହିନ୍ଦୁ ଧର୍ମକୁ ଫେରି ଆସିବା ପାଇଁ ହିନ୍ଦୁ ବ୍ରାହ୍ମଣ କଳାପାହାଡକୁ ବାରଣ କଲେ କଟ୍ଟରପନ୍ଥୀ ହିନ୍ଦୁମାନେ । ସେ ଉନ୍ମତ୍ତ ହୋଇ ପ୍ରତିଶୋଧ ନେଇ ଏପରି ବର୍ବରୋଚିତ କାର୍ଯ୍ୟରେ ଲିପ୍ତ ହେଲା ।

ଏଇଠି ପ୍ରଶ୍ନ ଉଠେ ! ଏହା ବିଶ୍ୱ ଇତିହାସରେ କେଉଁ ଯୁଗରେ, କେଉଁ ସାମାଜିକ ପରିସ୍ଥିତିରେ ସମ୍ଭବ ହେଲା । "ମହତୀ ଦେବତା ହ୍ୟେଷା ନରରୂପେଣ ତିଷ୍ଠତି," ଅର୍ଥାତ୍ ସାମନ୍ତବାଦୀ ଯୁଗରେ ରାଜା ନରପତିମାନେ ଦେବତା, ନରରୂପରେ ଶାସନ କରି ପ୍ରଜାକୂଳଙ୍କୁ ଅମଣିଷ, ଦାସ କରି ରଖିଥିବା ଯୁଗରେ ଏହାସବୁ ଘଟିଥିଲା । ଭାରତବର୍ଷରେ ହିନ୍ଦୁ ଧର୍ମାବଲମ୍ବୀଙ୍କ ମଧ୍ୟରେ ଘଟିଥିବା ଘଟଣାବଳୀର କେତେକ ଦୃଷ୍ଟାନ୍ତ ନିଆଯାଉ ।

ସପ୍ତମ, ଅଷ୍ଟମ ଶତାବ୍ଦୀରେ ବେଦ ବିଶାରଦ, ଶ୍ରବଣ, ଭିକ୍ଷୁ ଓ ଜୈନ ମତାବଲମ୍ବୀଙ୍କ ମଧ୍ୟରେ ଧର୍ମ-ଧର୍ମାନ୍ତରର ବିତର୍କ ଓ ହିଂସାକାଣ୍ଡମାନ ଘଟି ନାହିଁକି ? ଦକ୍ଷିଣାତ୍ୟରେ ଜୈନମାନଙ୍କୁ ଶୈବମାନେ ହତ୍ୟା କରିଥିବା ଦୃଷ୍ଟାନ୍ତ ସେକାଳର ଇତିହାସ ବହନ କରେ । ଅଷ୍ଟମ ଶତାବ୍ଦୀରେ ଆଦି ଶଙ୍କର ଓ ବୌଦ୍ଧମାନଙ୍କ ମଧ୍ୟରେ ବିତର୍କ ହୋଇ ଧର୍ମାନ୍ତରୀକରଣ ହୋଇନାହିଁ କି ? ରାମାନୁଜଚାର୍ଯ୍ୟ ଜୈନମାନଙ୍କୁ ବୈଦିକ ଧର୍ମରେ ଦୀକ୍ଷିତ କରାଇ ନାହାନ୍ତି କି ? ବାସବେଶ୍ୱର

ସବୁ ସମ୍ପ୍ରଦାୟର ପୂଜକ ପୁରୋହିତଙ୍କଠାରୁ ଆରମ୍ଭ କରି ଅସ୍ପୃଶ୍ୟ ଝାଡୁଦାରମାନଙ୍କୁ ଶୈବଧର୍ମରେ ଦୀକ୍ଷିତ କରାଇ ନାହାନ୍ତି କି ?

ଅତୀତର ହିନ୍ଦୁ ରାଜା, ମହାରାଜା, ଆଉ ଧର୍ମଗୁରୁମାନଙ୍କ କାର୍ଯ୍ୟର କେତେକ ଦୃଷ୍ଟାନ୍ତନିଆଯାଉ । ସପ୍ତମ ଶତାବ୍ଦୀରେ ବଙ୍ଗଳାର ହିନ୍ଦୁ ରାଜା ଶଶାଙ୍କ ବୌଦ୍ଧ ଧର୍ମର ପବିତ୍ର ବୋଧିଦ୍ରୁମକୁ ପୋଡ଼ିଥିଲେ, ବହୁ ବୌଦ୍ଧ ମନ୍ଦିର ଭାଙ୍ଗିଥିଲେ । ଦକ୍ଷିଣ ଭାରତରେ ରାଜା ନନ୍ଦୀବର୍ମା ଅନେକ ଜୈନମୁନି ଓ ବୌଦ୍ଧଭିକ୍ଷୁଙ୍କୁ ଫାଶି ଦେଇଥିଲେ । ଆନ୍ଧ୍ର ରାଜ୍ୟରେ ବିଶ୍ୱବିଖ୍ୟାତ ନାଗାର୍ଜୁନ କୁଣ୍ଡ ସମେତ ଅନେକ ବୌଦ୍ଧ ବିହାରକୁ ଧ୍ୱଂସ କରାଯାଇ ହିନ୍ଦୁ ମନ୍ଦିରରେ ପରିଣତ କରାଯାଇଥିଲା । ରାମାନୁଜଚାର୍ଯ୍ୟ ବୈଷ୍ଣବଚାର୍ଯ୍ୟଙ୍କ ଉପରେ ଶୈବ ଭକ୍ତ ଚୋଳରାଜା କୁଲତୁଙ୍ଗ ଅତ୍ୟାଚାର କରିବାରୁ ସେ ଶ୍ରୀରଂଗମଠାରୁ ପ୍ରାଣ ରକ୍ଷା ପାଇଁ ମହୀଶୂର ପଳାୟନ କରିଥିଲେ । ଓଡ଼ିଶା କଥା ବିଚାର କରାଯାଉ । ଲଳିତଗିରି, ଉଦୟଗିରି, ରତ୍ନଗିରି, କୋଲଣଗିରି ପରି ବିଶ୍ୱବିଖ୍ୟାତ ବୌଦ୍ଧପୀଠଗୁଡିକରେ ଶୈବ ପୀଠର ସ୍ଥାପନା ଓ ବିହାରଗୁଡିକ ଭଗ୍ନାବଶେଷ ଆଜି ବି ଦୃଶ୍ୟ । ସେହି ବିହାରଗୁଡ଼ିକର ଭଗ୍ନାବଶେଷ ଶିଳାକୁ ବ୍ୟବହାର କରି ଶିବ ମନ୍ଦିରମାନ ଏବେ ବି ବିଦ୍ୟମାନ । ବୋଧଗୟା ବିହାରରେ ଜୋର ଜବରଦସ୍ତ ପଞ୍ଚପାଣ୍ଡବଙ୍କ ମନ୍ଦିର ସ୍ଥାପନ କରାଯାଇଥିଲା । ଏପର୍ଯ୍ୟନ୍ତ ମଧ୍ୟ ଏହାର ପରିଚାଳନାରେ ହିନ୍ଦୁମାନଙ୍କ ପ୍ରାଧାନ୍ୟ, ପ୍ରତିପତ୍ତି ଜାହିର ରହିଛି । ବସ୍ତୁତଃ ଏହାରି ଫଳରେ ବୌଦ୍ଧଧର୍ମକୁ ଭାରତବର୍ଷରୁ ନିଷ୍କାସିତ କରାଯାଇଛି ।

କେବଳ ସେତିକି ନୁହେଁ, ଧର୍ମ ମନ୍ଦିରମାନଙ୍କ ଲୁଣ୍ଠନ ମଧ୍ୟ କେତେକ ରାଜାଙ୍କ ଦ୍ୱାରା ସମ୍ପାଦିତ ହୋଇଛି । ୧୧୩୩ ଓ ୧୨୧୦ ମସିହା ମଧ୍ୟରେ ଗୁଜରାଟରେ ଥିବା ପାରମର ରାଜ୍ୟର ରାଜା ଶୁଭତବର୍ମନ ଆବୋଲି ଓ କାମ୍ବେରେ ବହୁ ଜୈନମନ୍ଦିର ଲୁଣ୍ଠନ କରିଥିଲେ । କାଶ୍ମୀର ରାଜା ହର୍ଷ ନିଜର ଧନ ବଢ଼େଇବା ଲାଗି ନିଜ ରାଜ୍ୟର ବହୁ ହିନ୍ଦୁ ମନ୍ଦିର ଲୁଣ୍ଠନ କରିଥିଲେ । ସାମନ୍ତବାଦୀ ମଧ୍ୟଯୁଗରେ ଧର୍ମ ନିର୍ବିଶେଷରେ ସେକାଳର ଶାସକ ଓ ଧର୍ମଗୁରୁମାନେ ଯାହାସବୁ କରିଛନ୍ତି, ସେସବୁ କଥାକୁ ଲୁଚାଇ ରଖି ସାମ୍ପ୍ରଦାୟିତାବାଦୀମାନେ ଆଜିର ଯୁଗରେ ନିଜର ସଂକୀର୍ଣ୍ଣ ସ୍ୱାର୍ଥ ଲାଗି ଧର୍ମାନ୍ଧତା, ଧର୍ମୀୟ ବିଦ୍ୱେଷ, ଦଙ୍ଗା, ଲୁଣ୍ଠନ, ହତ୍ୟାର ତାଣ୍ଡବ ସୃଷ୍ଟି କରି ଆସୁଛନ୍ତି ।

**ସ୍ୱାଧୀନତା ଓ ଗଣସଂଗ୍ରାମରେ ସାମ୍ପ୍ରଦାୟିକତାବାଦୀଙ୍କ ବିରୋଧୀ ଭୂମିକା**

ରାଷ୍ଟ୍ର ସ୍ୱୟଂସେବକର ତତ୍ତ୍ୱ ବିଶାରଦ ଗୁରୁ ଗୋଲଓ୍ୱାଲକର ତାଙ୍କ ରଚିତ "ଆମ ରାଷ୍ଟ୍ରୀୟତା ସପକ୍ଷରେ" ଲେଖିଗଲେ "ହିନ୍ଦୁ ଜନତା ବିରାଟ ପୁରୁଷ, ସର୍ବଶକ୍ତିମାନ ରୂପେ ପ୍ରକଟିତ" । ବ୍ରାହ୍ମଣମାନେ ହେଲେ ମସ୍ତିଷ୍କ, ରାଜାମାନେ ହେଲେ ହସ୍ତ, ବୈଶ୍ୟମାନେ ହେଲେ ଜଂଘ, ଶୂଦ୍ରମାନେ ହେଲେ ପାଦ । ଏବେ ତାଙ୍କର ଏହି ବୟାନ ଦର୍ଶାଏ ଯେ ଭାରତରେ କେବଳ ହିନ୍ଦୁମାନେ ହିଁ ରହିବେ - ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ ଉଚ୍ଚ ଜାତିର ଲୋକେ ସର୍ବମୟ

କର୍ତ୍ତୃତ୍ୱରେ ରହିବେ । ଆଉ ଶୂଦ୍ରମାନେ ପାଦ ହୋଇ ଅର୍ଥାତ୍ ସେବାକରି ଅସ୍ପୃଶ୍ୟ, ଅଚ୍ଛୁଟ, ବନବାସୀ, ଦାସ ହୋଇ ରହିବେ । ଏପରି ଏକ ସମାଜ ହୋଇ ରହିବ ଭାରତବର୍ଷ ।

ଦେଶର ସ୍ୱାଧୀନତା ଲାଗି ତାଙ୍କର ଡାକରା ନାହିଁ । ୧୯୦୫ରୁ ୧୯୦୯ ମଧ୍ୟରେ ଯେତେବେଳେ ସ୍ୱଦେଶୀ ଆନ୍ଦୋଳନ ବ୍ରିଟିଶ ବିରୋଧରେ ଶିଖରେ ଉଠିଥିଲା, ସେତିକିବେଳେ ସାମ୍ରାଜ୍ୟବାଦୀ ବ୍ରିଟିଶ ପ୍ରୋତ୍ସାହନରେ ପ୍ରଥମେ ମୁସଲିମ ଲିଗ୍ ଓ ହିନ୍ଦୁ ମହାସଭା ଗଠିତ ହୋଇଥିଲା । ୧୯୦୯ରେ ପଞ୍ଜାବ ହିନ୍ଦୁ ମହାସଭା ପ୍ରତିଷ୍ଠିତ ହେଲା । ୧୯୧୫ରେ ହିନ୍ଦୁ ମହାସଭାର ପ୍ରଥମ ଅଧିବେଶନ କାଶିମ ବଜାରର ମହାରାଜାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା ।

ଅନ୍ୟ ପକ୍ଷରେ ଆଗା ଖାଁଙ୍କ ନେତୃତ୍ୱରେ ସାମ୍ପ୍ରଦାୟିକତାବାଦୀ ମୁସଲିମ୍ ଲିଗ୍‌ର ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଉଭୟ ବ୍ରିଟିଶ ଶାସକବର୍ଗର କୃପାଭିକ୍ଷା କରି ବ୍ରିଟିଶ ଶାସିତ ଭାରତରେ ଏକ ଦିଗରେ ହିନ୍ଦୁ ଓ ଅନ୍ୟ ଦିଗରେ ମୁସଲମାନ ନ୍ୟସ୍ତସ୍ୱାର୍ଥ, ଜମିଦାର, ମହାରାଜା, ନବାବ, ନିଜାମ, ଉଭୟ ସମ୍ପ୍ରଦାୟର ବଣିକ ବ୍ୟବସାୟୀଙ୍କ ସ୍ୱାର୍ଥ ପାଇଁ, ନିଜ ସାମନ୍ତବାଦୀ ପ୍ରଭୁତ୍ୱ ରକ୍ଷା ସପକ୍ଷରେ ବ୍ରିଟିଶ ଶାସକଙ୍କ ନିକଟରେ ଦାବୀ ବାଢୁଥିଲେ । ଅତୀତରେ ଦୁଇଶହ ବର୍ଷ ବ୍ୟାପୀ ମିଳିତ ଭାବରେ ଏବଂ ସ୍ୱତନ୍ତ୍ର ରୀତିରେ ଉଭୟ ହିନ୍ଦୁ ଓ ମୁସଲମାନ ଚାଷୀ, ଦରିଦ୍ର ଜନତା ବ୍ରିଟିଶ ବିରୋଧରେ ଦେଶର କୋଣେ ଅନୁକୋଣେ ଯେଉଁ ମେଳି, ବିଦ୍ରୋହ କରିଥିଲେ, ସେମାନଙ୍କୁ ଧର୍ମ ନାମରେ ଭାଗଭାଗ କରି ବ୍ରିଟିଶ ଶାସନକୁ ଏମାନେ ସହାୟତା ଦେବା ଆରମ୍ଭ କରିଦେଲେ ।

୧୯୨୫ରେ ନାଗପୁରଠାରେ ହିନ୍ଦୁ ସାମ୍ପ୍ରଦାୟିକତାବାଦୀମାନଙ୍କର ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ଗଠିତ ହେଲା ଏବଂ ବ୍ରିଟିଶ ଶାସନରେ ହିନ୍ଦୁମାନେ କିପରି ଅଧିକ ସଂଖ୍ୟାରେ ଶାସନର ଉଚ୍ଚ ପଦ ପଦବୀରେ ରହିବେ, ଉଚ୍ଚବର୍ଣ୍ଣର ସମାଜପତିମାନଙ୍କ ଅର୍ଥନୈତିକ, ସାମାଜିକ ପ୍ରତିପତ୍ତି ରହିବ ଏହା ହିଁ ମୁଖ୍ୟତଃ ଥିଲା ସେମାନଙ୍କ ଦାବୀ । ଦେଶରେ ଅସହଯୋଗ ଅନ୍ଦୋଳନ, ଆଇନ ଅମାନ୍ୟ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହ, ୧୯୪୨ ଅଗଷ୍ଟ ଆନ୍ଦୋଳନ, ଦେଶର ପୂର୍ଣ୍ଣ ସ୍ୱାଧୀନତା ଦାବୀ, ଆନ୍ଦୋଳନରେ ହିନ୍ଦୁତ୍ୱବାଦୀମାନଙ୍କର ତତ୍କାଳୀନ ସଂଗଠନ ଆର.ଏସ.ଏସ., ହିନ୍ଦୁମହାସଭା, ଅବା ଅନ୍ୟ ଦିଗରେ ମୁସଲିମ୍ ଲିଗ୍ ଖାଲି ଅଲଗା ରହିଲେ ନୁହେଁ, ସେସବୁର ବିରୋଧ କଲେ । ଏହି ସତ୍ୟକୁ ଏବର ହିନ୍ଦୁ ସାମ୍ପ୍ରଦାୟିକତାବାଦୀମାନେ ଲୋକଙ୍କଠାରୁ ଲୁଚେଇ ରଖିବାକୁ ଉଦ୍ୟମ ଆରମ୍ଭ କରି ଆସିଛନ୍ତି ।

ସ୍ୱାଧୀନତା ସଂଗ୍ରାମ କାଳରେ ଓ ତା'ପରେ ମଧ୍ୟ ଦେଶବ୍ୟାପୀ ଜମିଦାର, ମହାଜନ ବିରୋଧରେ ଯେଉଁ ଉତ୍ତାଳ ତରଙ୍ଗ ବୋହିଲା ଏବଂ ସେହି ଉଦ୍‌ବେଳନରେ ସଂଗ୍ରାମରତ ଚାଷୀ, ଗରିବ ଲୋକେ, ପ୍ରଜା, ଆଦିବାସୀ ଅତ୍ୟାଚାରିତ ନିହତ ହେଲେ । ସେଥିରେ ସେସବୁ

ସମ୍ପ୍ରାଦାୟିକ ସଂଗଠନ ଭାଗ ନେଇଛନ୍ତି କି ? ସ୍ୱାଧୀନତା କାଳରେ ଓ ତାହା ପରେପରେ ଭାରତର ୫୬୪ଟି ରାଜା, ନବାବ, ମହାରାଜା, ନିଜାମ, ବିରୋଧୀ ଯୁଗାନ୍ତକାରୀ ପ୍ରଜା ଆନ୍ଦୋଳନରେ ସେମାନେ ଭାଗ ନେଇଛନ୍ତି କି ?

ଅନ୍ୟ ପକ୍ଷରେ ଲକ୍ଷଲକ୍ଷ ହିନ୍ଦୁ, ମୁସଲମାନ, ଶିଖ, ସ୍ୱାଧୀନତା ସଂଗ୍ରାମ, ଜମିଦାରୀ ପ୍ରଥା ବିରୋଧୀ ଆନ୍ଦୋଳନ, ଗଡ଼ଜାତ ପ୍ରଜା ମୁକ୍ତି ଆନ୍ଦୋଳନରେ ଭାଗ ନେଲାବେଳେ ହିନ୍ଦୁ ସାମ୍ପ୍ରଦାୟିକତାବାଦୀ ଆର.ଏସ.ଏସ., ହିନ୍ଦୁ ମହାସଭା ଓ ଅନ୍ୟ ପକ୍ଷରେ ମୁସଲିମ୍ ଲିଗ୍ ରାଜା ରାଜୁଡ଼ାଙ୍କ ପକ୍ଷରେ, ଜମିଦାରମାନଙ୍କ ପକ୍ଷରେ ଯାଇଛନ୍ତି । ଅସଂଖ୍ୟ ଦୃଷ୍ଟାନ୍ତ ମଧ୍ୟରୁ ଦୁଇଟି ଦୃଷ୍ଟାନ୍ତ ନିଆଯାଉ । (୧୯୩୦ରେ ବ୍ରିଟିଶ ସରକାର ଦ୍ୱାରା ଆହୂତ ପ୍ରଥମ ଗୋଲଟେବୁଲ ବୈଠକକୁ ଗାନ୍ଧିଜୀ, କଂଗ୍ରେସ ଓ ଅନ୍ୟାନ୍ୟ ବୈପ୍ଳବିକ ରାଜନୈତିକ ଦଳ ବର୍ଜନ କରିଥିଲାବେଳେ ହିନ୍ଦୁ ମହାସଭା, ମୁସଲିମ୍ ଲିଗ୍ ଓ ଶିଖ୍ ଫେଡ଼େରେସନ ସେଥିରେ ଯୋଗଦେଇ ସ୍ୱାଧୀନତା ସଂଗ୍ରାମର ଐକ୍ୟ ଉପରେ କୁଠାରଘାତ କରିଥିଲେ । ହିନ୍ଦୁତ୍ୱବାଦୀମାନଙ୍କର ଏକ ପ୍ରତିଷ୍ଠାନ ଜାମୁ ପ୍ରଜା ପରିଷଦ ଆଉ କାଶ୍ମୀରର ତତ୍କାଳୀନ ଶାସକ ହରି ସିଂହ ଯଦି ୧୯୪୭ରେ ଭାରତ ମିଶ୍ରଣ ସହିତ କାଶ୍ମୀର ତତ୍‌କ୍ଷଣାତ୍ ଭାରତ ସହିତ ମିଶ୍ରଣରେ ସମ୍ମତ ହୋଇଥାନ୍ତେ ତେବେ ଜାମ୍ମୁ କାଶ୍ମୀର ଭାରତବର୍ଷରେ ହିଁ ରହିଥାନ୍ତା । ବ୍ରିଟିଶ ଚକ୍ରାନ୍ତ ପଣ୍ଡ ହୋଇଥାନ୍ତା । ମିଶି ପାରିଲା ନାହିଁ । ବ୍ରିଟିଶ ଚାଲ୍‌କୁ ପରାସ୍ତ କରିବା ଲାଗି କାଶ୍ମୀରରେ ଶେଖ ଅବଦୁଲାଙ୍କ ଜାତୀୟ ସମ୍ମିଳନୀ, କଂଗ୍ରେସ ଓ ଦେଶର ଅନ୍ୟାନ୍ୟ ବାମପନ୍ଥୀ ରାଜନୈତିକ ଦଳ ଓ ଗଡ଼ଜାତ ପ୍ରଜା ସମ୍ମିଳନର ଦାବୀକୁ ଏମାନେ ବିରୋଧ କରିବାର ଅଥଚ ହିନ୍ଦୁ ସମ୍ପ୍ରାଦାୟିକତାବାଦୀମାନେ, ବି.ଜେ.ପି., ବିଶ୍ୱ ହିନ୍ଦୁ ପରିଷଦ ଇତ୍ୟାଦି ସଂଗଠନ ଏଥିଲାଗି ନେହେରୁ, ଗାନ୍ଧୀ ପ୍ରଭୃତି ଦାୟୀ ବୋଲି ତାହା ମିଛ ପ୍ରଚାର କରିଚାଲିଛନ୍ତି ।

ହିନ୍ଦୁ ସାମ୍ପ୍ରଦାୟିକତାବାଦୀମାନେ ଏ ପ୍ରଚାରରେ ଶତମୁଖ ଯେ ବୀର ସଭରକର, ଅଟଳ ବିହାରୀ ବାଜପେୟୀ ଏମିତି କେତେକ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଛନ୍ତି । ନିଶ୍ଚିତ ଯେ ଉନ୍ନବିଂଶ ଶତାବ୍ଦୀର ଶେଷ ଭାଗରେ ସଭରକର ବ୍ରିଟିଶ ବିରୋଧରେ ଆନ୍ଦୋଳନରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ । ମାତ୍ର ପରବର୍ତ୍ତୀ କାଳରେ ସେ ହିନ୍ଦୁତ୍ୱ ଓ ସାମ୍ପ୍ରଦାୟିକତାର ଆଶ୍ରୟ ନେଇଥିଲେ । ୧୯୨୦-୨୧, ୧୦୩୦-୩୨ ଓ ତା' ପୂର୍ବ ଜାଲିଆନାୱାଲାବାଗ ନରସଂହାର ବେଳକୁ ସେ ଅନ୍ୟ ପନ୍ଥା ଧରିଥିଲେ । ତାହା ହିନ୍ଦୁ ମହାସଭାର ପନ୍ଥା । ଏହାକୁ ଯଦି ଯୁକ୍ତି ବୋଲି ଧରାଯାଏ ତେବେ ଭାରତ ବିଭାଜନ, ଧର୍ମ ଭିତ୍ତିରେ ଦୁଇ ରାଷ୍ଟ୍ରର ପ୍ରଧାନ ବ୍ୟକ୍ତି ମହମ୍ମଦ ଅଲ୍ଲି ଜିନ୍ନା ୧୯୨୦-୨୧ ଯାଏ କଂଗ୍ରେସରେ ଥିଲେ । ୧୯୧୩ ରେ କଂଗ୍ରେସର ସଭାପତି ହୋଇଥିଲେ । କିନ୍ତୁ ଆଦର୍ଶ ଓ ମତ ପରିବର୍ତ୍ତନ କରି ସେ ହେଲେ ମୁସଲିମ୍ ସମ୍ପ୍ରଦାୟିକତାବାଦୀମାନଙ୍କ କ୍ୱାଦି ଆଜାମ-ମହାନ ନେତା, ପାକିସ୍ତାନର ପ୍ରଧାନ ପ୍ରବକ୍ତା

ଓ ରଚୟିତା । ଭାରତ ବିଭାଜନରେ ବ୍ରିଟିଶ ଶାସକଙ୍କ ପ୍ରଧାନ ଆୟୁଧ । ହିନ୍ଦୁ କଟ୍ଟରପନ୍ଥୀମାନଙ୍କ ବକ୍ତବ୍ୟ ଓ ଯୁକ୍ତି ଥିଲା ଭାରତ ଏକ ଜାତିର ନୁହେଁ, ଦୁଇଟି ଜାତି–ହିନ୍ଦୁ ଓ ମୁସଲମାନ । ଭାଇ ପରମାନନ୍ଦ ସଭରକର (ଯିଏ ପ୍ରଖ୍ୟାତ ବିପ୍ଳବୀ ଥିଲେ) ଏମିତି ବହୁ ହିନ୍ଦୁ ନେତାଙ୍କ ଘୋଷଣା ।

ସେମିତି ଆଜିର ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ । ୧୯୪୨ ଆନ୍ଦୋଳନରେ ସେ ୧୦/୧୨ ଦିନ ଲାଗି ଗିରଫ ହୋଇଥିଲେ । ଅନ୍ୟମାନଙ୍କ ସଙ୍ଗରେ ଯାଇ ଧରା ପଡ଼ିଥିଲେ । ମାତ୍ର ୧.୯.୪୨ରେ ଦ୍ୱିତୀୟ ଶ୍ରେଣୀ ମାଜିଷ୍ଟ୍ରେଟ୍ ଏସ୍.ହାସାନଙ୍କ ଇଜଲାସରେ ବାଜପେୟୀ ଦେଇଥିବା ବୟାନ ଅନୁସାରେ ସେ ନିଜେ ଖଲାସ ହୋଇଥିଲେ । ଅନ୍ୟମାନଙ୍କ ନାମରେ ବିଚାର ଚାଲିଲା । ଅଟଳ ବିହାରୀ ବାଜପେୟୀ ଚିହ୍ନଟ କରିଥିବା ସ୍ୱାଧୀନତା ସଂଗ୍ରାମୀ ଲୀଳାଧର (ଡାକନାମ କକୁଆ) ଏବଂ ମଥାନଙ୍କୁ ୫ ବର୍ଷ ଜେଲ୍‌ଦଣ୍ଡ ଓ ମେଳି କରିଥିବା ବଟେଶ୍ୱର ଗାଁ (ସମୂହ) ଉପରେ ୫ ହଜାର ଟଙ୍କା (ବର୍ତ୍ତମାନ ୫ ଲକ୍ଷ ଯାଏ ହେବ) ପିଟୁଣି ଜୋରିମାନା ବସିଲା । ଅଥଚ ଅଗଷ୍ଟ ଆନ୍ଦୋଳନ କାଳରେ ଭାରତରେ ୬୦୨୨୯ ଜଣଙ୍କୁ ଗିରଫ କରାଯାଇଥିଲା । ୧୮ ହଜାର ସ୍ୱାଧୀନତା ସଂଗ୍ରାମୀ ଦୀର୍ଘକାଳ ଅଟକ ବନ୍ଦୀ ଜୀବନ ଯାପନ କଲେ । ୯୪୦ ଜଣଙ୍କୁ ବ୍ରିଟିଶ ହତ୍ୟା କଲା ଓ ୧୬୩୦ ଜଣଙ୍କୁ ଗୁଳିରେ ଆହତ କରି ଅକର୍ମଣ୍ୟ କରିଦେଲା । ସେହି ଆନ୍ଦୋଳନକୁ ଏକ ପକ୍ଷରେ ମୁସଲିମ ଲିଗ୍ ଓ ଅନ୍ୟ ପକ୍ଷରେ ଆର.ଏସ.ଏସ. ହିନ୍ଦୁ ମହାସଭା ଓ ପରବର୍ତ୍ତୀ କାଳରେ ଏଗୁଡ଼ିକର କର୍ମୀମାନଙ୍କୁ ଘେନି ଗଠିତ ଜନସଂଘର ସ୍ୱାଧୀନତା ସଂଗ୍ରାମ, ଜମିଦାରୀ ପ୍ରଥା, ରାଜାରାଜୁଡ଼ା ପ୍ରଥା ବିରୋଧରେ ଏହା ହିଁ ଥିଲା ଭୂମିକା । ଏହାକୁ ପ୍ରମାଣ ଦେଇ ଅସ୍ୱୀକାର କରିବାର ଦମ୍ଭ, ସାହସ ହିନ୍ଦୁମାନଙ୍କର ନଥିଲା, ଯାବତୀୟ ମିଥ୍ୟା ପ୍ରଚାର କରି ସେମାନେ ଜନସାଧାରଣଙ୍କୁ ବିଭ୍ରାନ୍ତ କରନ୍ତି ।

**ସମାଜ ଆଗେଇବାବେଳେ ପଛକୁ ନେବାର ଦୁଇଟି ପ୍ରଧାନ ପ୍ରଚାର**

ସ୍ୱାଧୀନତାର ପଚାଶ ବର୍ଷରୁ ଉର୍ଦ୍ଧ୍ୱକାଳ ଜୀବନ ଧାରାରେ ଯାହା ସାଫଲ୍ୟ ଅର୍ଜିତ ହୋଇଛି, ତାହାର କିପରି ଦୁରୁପଯୋଗ ହେଉଛି, ଦେଶରେ କୋଟିକୋଟି ଲକ୍ଷଲକ୍ଷ ଏବେ ବି ନିରକ୍ଷର, ପୁଣି ତୃତୀୟ ସହସ୍ରାବ୍ଦୀରେ ପୃଥିବୀରେ ନିରକ୍ଷରଙ୍କ ସଂଖ୍ୟା ଭାରତ ଉର୍ଦ୍ଧ୍ୱରେ ରହିବ, ତାହାକୁ ଦୂର କରିବା ଲାଗି ସଂଗ୍ରାମ ହେଉଛି ପ୍ରକୃତ ଦେଶପ୍ରେମ । କୋଟିକୋଟି ଲୋକଙ୍କର ଏବେ ବି ବାସସ୍ଥାନ ନାହିଁ । ସହର ଗାଁ ଗହଳିରେ କୋଟି ସଂଖ୍ୟାର ଭିକାରି, କୋଟି ସଂଖ୍ୟାର ଶିକ୍ଷିତ, ଅର୍ଦ୍ଧଶିକ୍ଷିତ, ବେକାର । ପିଇବାର ପାଣି ନାହିଁ – ଏବେ ବି ସାଧାରଣ ସ୍ୱାସ୍ଥ୍ୟ ସେବାରୁ ଅଗଣିତ ଦେଶବାସୀ ବଞ୍ଚିତ । ଅଥଚ ଉପର ସ୍ତରରେ ମୁଷ୍ଟିମେୟଙ୍କ ହାତରେ ଦେଶରୁ ଉତ୍ପନ୍ନ ସମ୍ପଦର ବିପୁଳ ଭାଗ ନ୍ୟସ୍ତ । ଏପରି ଅସଂଖ୍ୟ ମାନବିକ ସମସ୍ୟାର ସମାଧାନ ଲାଗି ଚେତନା ସୃଷ୍ଟି କରିବା ହିଁ ପ୍ରକୃତ ଦେଶପ୍ରେମ ଓ ଜନପ୍ରେମ । ପୁଣି ବିଦେଶ ସାମ୍ରାଜ୍ୟବାଦୀ ଦେଶ ସେମାନଙ୍କ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ବିଶ୍ୱବ୍ୟାଙ୍କ, ବାଣିଜ୍ୟ ସଂଗଠନର ସର୍ବଗ୍ରାସୀ ଥାବର୍ତ୍ତରେ ଦେଶକୁ ନିଆଚାଲିଛି ।

ସାମ୍ପ୍ରଦାୟିକତାବାଦୀମାନେ ତୁଣ୍ଡରେ ଏସବୁ ଦରକାର ବୋଲି କହି କିପରି ସରଳ ଧର୍ମବିଶ୍ୱାସୀଙ୍କୁ ଏପରି ଜୀବନ ରକ୍ଷାର ସମସ୍ୟାଗୁଡ଼ିକଠାରୁ ଧର୍ମ ନାମରେ ଦୃଷ୍ଟି ଫେରାଇ ସାମ୍ପ୍ରଦାୟିକ ବିଦ୍ୱେଷ ସୃଷ୍ଟି କରନ୍ତି; ଅନେକ ମଧ୍ୟରୁ ଦୁଇଟି ଉଦାହରଣ ବିଚାର କରାଯାଉ ।

ଆର.ଏସ.ଏସ୍., ବିଶ୍ୱ ହିନ୍ଦୁ ପରିଷଦ ଓ ସହଯୋଗୀ ସଂଗଠନମାନେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଭେଦ, ବିଦ୍ୱେଷର ପାଚେରୀ ଛିଡ଼ା କରାଇବା ଲାଗି ମୁସଲମାନ ଓ ଖ୍ରୀଷ୍ଟିୟାନମାନେ ହିନ୍ଦୁମାନଙ୍କ ଆରାଧ୍ୟ ଗୋମାତାଙ୍କ ହତ୍ୟା ଓ ଭକ୍ଷଣ କଥା ପ୍ରଚାର କରି ଉତ୍ତେଜନା ସୃଷ୍ଟି କରନ୍ତି । ତାହା ସରଳ ଧର୍ମବିଶ୍ୱାସୀ, ଗାଭୀକୁ ମାତା ରୂପେ ପୂଜା କରୁଥିବା ଜନତାକୁ ମତେଇବା ପାଇଁ ଅସ୍ତ୍ର ରୂପେ ବ୍ୟବହାର କରାଯାଏ । ହିନ୍ଦୁ ସମ୍ପ୍ରଦାୟର ଯେଉଁମାନେ ଗୋମାତା ପୂଜକ ସେମାନଙ୍କର ଉକ୍ତ ବିଶ୍ୱାସକୁ ଅସମ୍ମାନ କରାଯାଇପାରିବ ନାହିଁ । କିନ୍ତୁ ପ୍ରଶ୍ନ ଉଠେ, ଯାହାଙ୍କୁ ହିନ୍ଦୁ ସମ୍ପ୍ରଦାୟଭୁକ୍ତ ବୋଲି ଧରାଯାଏ, ସେପରି ଅନେକ ପ୍ରକୃତି ଉପାସକ ଆଦିବାସୀ ଗୋମାଂସ ଭକ୍ଷଣ କରନ୍ତି । ଆମ ଓଡ଼ିଶାରେ ମଧ୍ୟ କେତେକ ଆଦିବାସୀ ସମ୍ପ୍ରଦାୟରେ ବିବାହ ବେଳେ ଗୋମାଂସ ଭକ୍ଷଣ ଲାଗି ବରପକ୍ଷକୁ ଗୋରୁ ଅର୍ପଣ କରାଯାଏ । ପୁଣି ଖ୍ରୀଷ୍ଟିୟାନମାନେ ସାଧାରଣତଃ ଗୋରୁ ଓ ଘୁଷୁରୀ ମାଂସ ଖାଇବାବେଳେ ମୁସଲମାନମାନେ ଘୁଷୁରି ମାଂସ ଅଖାଦ୍ୟ, ଧର୍ମବିରୋଧୀ ବିଚାରନ୍ତି ।

ହିନ୍ଦୁ ସମ୍ପ୍ରଦାୟର ଉଚ୍ଚବର୍ଗର ଲୋକେ ଘୁଷୁରି ନଖାଇ ବନ୍ୟ ଘୁଷୁରି ବରାହ (ବାରହା) ମାଂସ ଖାଆନ୍ତି । ଦକ୍ଷିଣାଞ୍ଚଳ, ଉତ୍ତରାଞ୍ଚଳର ବ୍ରାହ୍ମଣମାନନେ ମାଛ ନାଁ ଶୁଣିଲେ ଚିହିଙ୍କି ପଡିବାବେଳେ, ଅନ୍ୟ ସକଳ ପ୍ରକାର ହିନ୍ଦୁଙ୍କ ସହିତ ବଙ୍ଗଳା, ଓଡିଶା, ଆସାମ ରାଜ୍ୟର ବ୍ରାହ୍ମଣମାନଙ୍କୁ ମାଛ ନଖାଇଲେ ଭାତ ରୁଚେ ନାହିଁ । ସାରା ପୃଥିବୀରେ ଘୋଡା, ଓଟ, କୁକୁର ଏମିତି ଅନେକ ଜୀବଜନ୍ତୁ ଆହାର୍ଯ୍ୟ ମଧ୍ୟ । ଏମିତିକି ସାରା ପୃଥିବୀରେ ମାଛ, ମାଂସ, ଅଣ୍ଡା ସ୍ପର୍ଶ କରୁନଥିବା ନିରାମିଷାଷୀ ଅଛନ୍ତି । ଖୋଦ ଭାରତରେ ତଥା ପୃଥିବୀରେ ଏପରି ଖାଦ୍ୟ ରୁଚି ଥିବାବେଳେ ଯିଏ ସେସବୁ ମାଂସ ଭକ୍ଷଣ କରେ, ଯିଏ ଭକ୍ଷଣ ନକରେ, ସେମାନେ କାହିଁକି ଏ ପ୍ରଶ୍ନ ଉଠାଇ ଜନତା ମନରେ ବିଷ ରୋପଣ କରନ୍ତି ?

ଭାରତର ଅତୀତର ଖାଦ୍ୟ ବିଚାରକୁ ନୈଷ୍ଠିକ ହିନ୍ଦୁମାନେ ଏକଦା ପ୍ରତ୍ୟାଖ୍ୟାନ କରି ଗୋମାଂସକୁ ଭକ୍ଷଣରୁ ଗୋରୁଙ୍କୁ ପୂଜାକରି "ଗୋମାତା" ଆଖ୍ୟା ଦେବା କ'ଣ ମନଗଢ଼ା କଥା ନା ଆମ ବେଦ, ସଂହିତା, ଆଚାର୍ଯ୍ୟଗଣଙ୍କ କଥନ, ଲିଖନ ଅସତ୍ୟ । ଆର୍ଯ୍ୟମାନେ ଦେବତାଗଣ, ଋଷିଗଣ ଯେ ଗୋମାଂସ ଭକ୍ଷଣ କରୁଥିଲେ, ତାହାର ବିଶଦ ବର୍ଣ୍ଣନା ରହିଛି । ତାହା ଏକ ସ୍ୱତନ୍ତ୍ର ପୁସ୍ତିକାରେ ସରିବ ନାହିଁ । ତେବେ କେତୋଟି ଦୃଷ୍ଟାନ୍ତ ନିଆଯାଉ । ତୈତ୍ତରେୟ ବ୍ରାହ୍ମଣରେ କାମେଷ୍ଟି ଯଜ୍ଞ ବଳିଦାନ ବର୍ଣ୍ଣନାରେ ଅଛି – ବିଷ୍ଣୁଙ୍କୁ କ୍ଷୁଦ୍ରାବୟବ ବଳଦ, ଇନ୍ଦ୍ରଙ୍କୁ ହୃଷ୍ଟପୁଷ୍ଟ ଗାଭୀ ବା ମସ୍ତକରେ ଧଳା ଚିହ୍ନ ଥିବା ବଳଦ, ବରୁଣଙ୍କୁ ଧଳା ରଙ୍ଗର ବନ୍ଧ୍ୟା ଗାଭୀ

ଅର୍ପଣ କରାଯିବ ବୋଲି ଉଲ୍ଲେଖ ଅଛି । ଗାଭୀକୁ ହତ୍ୟା କଲାବେଳେ ୨୫ଖଣ୍ଡ କରାଯିବ । ଦେହର କେଉଁ ଅଂଶ କେଉଁ ଦେବତା ପାଇବେ ତାହା ଓ ହନନକାରୀ ଚମଡ଼ା ପାଇବ ବୋଲି ଉଲ୍ଲେଖ ଅଛି । ଦେବତାଙ୍କ ଭୋଜନର ମଧୁପର୍କରେ ସୋମରସ ଓ ଗୋମାଂସ ଭୋଜନର ବର୍ଣ୍ଣନା ରହିଛି । ପୂର୍ବ କାଳରେ ରାଜନମାନେ ସହସ୍ର ବ୍ରାହ୍ମଣଙ୍କୁ ଗୋମାଂସରେ ଆପ୍ୟାୟିତ କରୁଥିଲେ । ବଶିଷ୍ଠ ପରି ଋଷିମାନେ ଗୋମାଂସରେ ଅତିଥି ଚର୍ଚ୍ଚା କରୁଥିଲେ । କାଳକ୍ରମେ ଶସ୍ୟ ଉତ୍ପାଦନ, କ୍ଷୀରପାନ, ଜମି କର୍ଷଣ ଲାଗି ଗୋରୁଙ୍କୁ ଗୋମାତା ରୂପେ ପୂଜା କରି ସମାଜର ବୈଷୟିକ ଆବଶ୍ୟକତାକୁ ପୂରଣ କରାଗଲା । ଏହି ବିଶ୍ୱାସରେ କାହାରି ହସ୍ତକ୍ଷେପ କରିବାର ଯେମିତି ଅଧିକାର ନାହିଁ, ସେମିତି ଧର୍ମ ନାମରେ ଅନ୍ୟମାନଙ୍କର ଓ ଭୋଜନ ବ୍ୟବସ୍ଥାକୁ ବିରୋଧ କରାଯିବା ସୁସ୍ଥ ସମାଜ ଗଠନରେ ସହାୟକ ନୁହେଁ । ଏହା ସାମ୍ପ୍ରଦାୟିକ ଭାବରେ ଲୋକଙ୍କୁ ଭାଗଭାଗ କରି ବିଦ୍ୱେଷ ସୃଷ୍ଟି କରିବାର ଆୟୁଧ । ଏକଦା ନିଜସ୍ୱ ଧର୍ମାଚରଣରେ ଯାହା ବିଶେଷ ଆଦୃତ ଥିଲା ତାହାକୁ ପ୍ରତ୍ୟାଖ୍ୟାନ କରାଯାଇଛି । ଅନ୍ୟ ଧର୍ମାନୁସରଣକାରୀ ନିଜ ରୀତିକୁ ବଜାୟ ରଖିଲାବେଳେ ସେମାନଙ୍କୁ ତାକୁ ପରିହାର କରିବାକୁ କାହିଁକି ବାଧ କରାଯାଏ ? ଏହା କେଉଁ ପ୍ରକାର ନ୍ୟାୟ ?

ଧର୍ମାନ୍ତରୀକରଣର ପ୍ରଶ୍ନକୁ ତିଳରୁ ତାଳ କରି ଉଠାଇ ଦେଶରେ ହିନ୍ଦୁ ସାମ୍ପ୍ରଦୟିକତାବାଦୀମାନେ ଯେଉଁ ଅଭିଯାନ, ଦଙ୍ଗା, ହତ୍ୟା, ପୋଡ଼ାଜଳାକୁ ପ୍ରଶୟ ଦେଉଛନ୍ତି, ଉସୁକାଉଛନ୍ତି, ସେହି ସ୍ପର୍ଶକାତର ପ୍ରଶ୍ନଟିକୁ ସମଗ୍ର ମାନବ ସମାଜର ବିକାଶର ଇତିହାସକୁ ଅନୁଶୀଳନ କରି ବିଚାର କରାଯାଉ ।

ଧର୍ମର ଚେତନା ନଥିଲା । ସେପରି ଚେତନା ଆସିଲା । ବୈଦିକ ଧର୍ମଠାରୁ ବହୁ ଧର୍ମର ଉତ୍ପତ୍ତି ହେଲା । ଆମ ପୁରାଣ ଶାସ୍ତ୍ରରେ ହିନ୍ଦୁ ଧର୍ମର ଉଲ୍ଲେଖ ନଥିଲା କି ନାହିଁ । ପରେ ସନାତନ ଧର୍ମାବଲମ୍ବୀମାନେ ନିଜକୁ ସିନ୍ଧୁ ନଦୀରୁ ହିନ୍ଦୁସ୍ଥାନ ହେଲାପରି ହିନ୍ଦୁ ରୂପେ ନିଜକୁ ପ୍ରତିପାଦିତ କଲେ ।

ଅତୀତରେ ଧର୍ମ ନାମରେ, ଧର୍ମାନ୍ତରୀକରଣ ନାମରେ ସବୁ ପୃଥିବୀର ବିଭିନ୍ନ ଅଞ୍ଚଳରେ ଜୋର ଜବରଦସ୍ତି ଯେ ହୋଇଛି, ଏହା ଇତିହାସରେ ଲିପିବଦ୍ଧ । ସେମିତି ଭଗବାନ ପ୍ରାପ୍ତି ମୋକ୍ଷ ପ୍ରାପ୍ତି, ବିଶ୍ୱାସରେ ବିଭିନ୍ନ ଧର୍ମପ୍ରତି ଲୋକେ ଆକୃଷ୍ଟ ହୋଇଛନ୍ତି । ଭାରତରେ ମଧ ଏହା ହିନ୍ଦୁ, ବୌଦ୍ଧ, ଜୈନ କ୍ଷେତ୍ରରେ ହୋଇଛି । ଇସଲାମ ଓ ଖ୍ରୀଷ୍ଟ ଧର୍ମରେ ମଧ ହୋଇଛି । କିନ୍ତୁ ମୁଖ୍ୟତଃ ବିଶ୍ୱାସର ପରିବର୍ତ୍ତନ ଘଟିଛି,.... ମୁକ୍ତି ପାଇଁ, ମୋକ୍ଷ ପାଇଁ, ମୁକ୍ତିଲାଭ ବିଶ୍ୱାସ ଘେନି ।

ସାମାଜିକ ବିକାଶକୁ ଏପରି ବସ୍ତୁନିଷ୍ଠ, ସତ୍ୟନିଷ୍ଠ ଭାବରେ ବିଚାର କଲେ, ସମାଜରେ ବିଭିନ୍ନ ଧର୍ମାବଲମ୍ବୀ, ବିଭିନ୍ନ ଧରଣର ବିଶ୍ୱାସରେ ମଜ୍ଜିଥିବା ଜନତା ମଧ୍ୟରେ ଐକ୍ୟ ପ୍ରୀତି,

ସଂହତି ରହିବ । ଏ ଦେଶରେ ଯେଉଁମାନେ ମୁସଲିମ ବା ଖ୍ରୀଷ୍ଟିୟାନ ହୋଇଛନ୍ତି, ମୁଖ୍ୟତଃ ସେମାନେ ହିନ୍ଦୁ, ବୌଦ୍ଧ, ଜୈନଙ୍କ ପରି ଏହି ଦେଶରେ ଜନ୍ମ ହୋଇଛନ୍ତି । ଧର୍ମରେ ବିଶ୍ୱାସର ବିଭିନ୍ନତା ସତ୍ତ୍ୱେ ସେମାନେ ଭାରତୀୟ । ଅନ୍ୟସବୁ ଧର୍ମ ବିଶ୍ୱାସର ଭାରତୀୟଙ୍କ ପରି ସେମାନଙ୍କର ସମାନ ଅଧିକାର ରହିଛି । ଏପରି ସାମ୍ପ୍ରଦାୟିକ ବିଦ୍ୱେଷର ବାତାବରଣ ସୃଷ୍ଟି କରାଯିବାରୁ ଏକ ଧର୍ମ ଅନୁସରଣ କରୁଥିବା ବିଶ୍ୱାସୀଙ୍କ ମଧ୍ୟରେ ମଧ୍ୟ ଦଙ୍ଗା ବିଦ୍ୱେଷ ସୃଷ୍ଟି ହୋଇଥାଏ । ତାହାର ଦୃଷ୍ଟାନ୍ତ ଦିଆଯାଉ ।

ଏକା ଧର୍ମକୁ ଅନୁସରଣ କରୁଥିବା ଉନ୍ନତ ହିନ୍ଦୁଲୋକେ ଦୋଳ ମେଲଣରେ ଅନ୍ୟ ଗାଁର କୃଷ୍ଣଙ୍କ ବିମାନକୁ ଭାଙ୍ଗନ୍ତି । ଏକ ସାହିର ଉନ୍ନତମାନେ ଛୁରା ମରାମରି ହୁଅନ୍ତି । ସେମିତି କୋଉ ବସ୍ତିର ତାଜିଆ ଆଗ ଯିବ, ସେଥିଲାଗି ଦୁଇଗୋଷ୍ଠୀ ମୁସଲମାନ ଦଙ୍ଗା କରନ୍ତି । ଏହା କ'ଣ ସତ୍ୟ ନୁହଁ ?

ଧର୍ମାନ୍ତରୀକରଣର ପ୍ରଶ୍ନକୁ ଭାରତରେ କଟ୍ଟରପନ୍ଥୀ ହିନ୍ଦୁ ସାମ୍ପ୍ରଦାୟିକବାଦୀ ଗୋଷ୍ଠୀ ସାମାନ୍ୟ ସାମାନ୍ୟ ଘଟଣାକୁ ଧରି ବିଦ୍ୱେଷ, ବିବାଦ ଓ ରକ୍ତାକ୍ତ ସଂଘର୍ଷ ପାଇଁ ଖୋରାକ ଯୋଗାଉଥିବାବେଳେ ନିଜ ଧର୍ମ ବିଶ୍ୱାସ ଉପରେ ମଧ୍ୟ ଅନ୍ଧହୋଇ ଆଘାତ କରୁଛନ୍ତି । ଆମ ଦେଶ ପ୍ରତି ପୃଥିବୀର ବିଭିନ୍ନ ଦେଶରେ ଘୃଣା, ବିତୃଷ୍ଣା ସୃଷ୍ଟି କରାଉଛନ୍ତି । ଇଂଲଣ୍ଡ ହେଉ, ଆମେରିକା ହେଉ, ବିଦେଶରେ ସ୍ୱାମୀ ବିବେକାନନ୍ଦଙ୍କ ଅମଳରୁ ହିନ୍ଦୁ ପ୍ରଚାରକମାନଙ୍କ ପ୍ରଚାର ଚାଲିଛି । ଆଜି ସେସବୁ ଦେଶରେ କେତେ ହିନ୍ଦୁ ମନ୍ଦିର, ଜଗନ୍ନାଥ ମନ୍ଦିର, ଗୁରୁଦ୍ୱାର ମସ୍‌ଜିଦ୍ ବିରାଜିତ । ସେସବୁ ଖ୍ରିଷ୍ଟିୟାନ ପ୍ରଧାନ ଦେଶ । ପୁଣି କୃଷ୍ଣ ଚେତନାର ଏକ ଆନ୍ଦୋଳନ । ଭାରତର ଧର୍ମଗୁରୁ, ସ୍ୱାମୀମାନେ ସେସବୁ ଦେଶରେ ନିଜ ଧର୍ମର ପ୍ରଚାର କରି ଅନ୍ୟ ଧର୍ମୀମାନଙ୍କୁ ଦୀକ୍ଷା ଦେଇଛନ୍ତି । ଭାରତରେ ଯଦି ବିଭିନ୍ନ ଧର୍ମାନୁଷ୍ଠାନ, ଧର୍ମାବଲମ୍ବୀମାନଙ୍କ ଉପରେ ସଂଖ୍ୟାଗରିଷ୍ଠ ସମ୍ପ୍ରଦାୟ ଆକ୍ରମଣ କରେ, ତେବେ ଏହାର ପ୍ରତିକ୍ରିୟା ସେସବୁ ଦେଶରେ ହିନ୍ଦୁ ଶିଖ ମନ୍ଦିର ଅନୁଷ୍ଠାନ ଉପରେ ଘଟିବ ନାହିଁ କି ?

ଏହା ସେସବୁ ଦେଶର ସାମ୍ପ୍ରଦାୟିକତାବାଦୀମାନଙ୍କୁ ଭାରତୀୟଙ୍କ ଉପରେ ଆକ୍ରମଣ କରିବାକୁ ଖୋରାକ ଯୋଗାଇବ ନାହିଁକି ?

ଭାରତର ଐକ୍ୟ, ସଂହତି,ଗଣତନ୍ତ୍ର, ସାର୍ବଭୌମତ୍ୱ, ସଂସଦୀୟ ବ୍ୟବସ୍ଥା, ବିଧିବିଧାନକୁ ସାମ୍ପ୍ରିଦାୟିକତାବାଦୀମାନେ ହିନ୍ଦୁରାଷ୍ଟ୍ର ଧ୍ୱନି ଦେଇ ଯେପରି ବାତାବରଣ ସୃଷ୍ଟିକରି ରାଜନୈତିକ କ୍ଷମତାକୁ ଦଖଲ କରିଚାଲିଛନ୍ତି, ତାହାର କିପରି ପ୍ରତିରୋଧ କରାଯାଇପାରିବ, ତାହା ହିଁ ପ୍ରଗତିଶୀଳ, ମାନବିକତାପ୍ରେମୀ, ଦେଶପ୍ରେମୀଙ୍କ ସମୀପରେ ପ୍ରଶ୍ନ ।

❏❏❏

ରଚନା କାଳ – ୧୯୯୯

# ସେ କାଳର ଏକ ବତୀଘର ବାଗଲପୁର

ଉଚ୍ଛୁଳା ସାଗର ବକ୍ଷରେ, ଘନ ଅନ୍ଧାର, ଝଡ଼ବର୍ଷା କାଟି ଲଙ୍ଗର ପକେଇବାକୁ ଜାହାଜର କପ୍ତାନ ଦୂର ବତୀଘରକୁ ଠାବ କରେ । ଆମ ଦେଶର ସ୍ୱାଧୀନତା ସଂଗ୍ରାମ କାଳରେ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନର କଳାଅନ୍ଧାର ଘୋଟିଲାବେଳେ ଦେଶ ତଥା ଆମ ଓଡ଼ିଶାରେ ଏମିତି କେତେ ବତୀଘର ।

ସେ ବତୀଘର ସ୍ୱତନ୍ତ୍ର ଧରଣର । ପ୍ରେରଣା, ଉତ୍ସାହ, ସାହସ, ଆତ୍ମୋତ୍ସର୍ଗ ସଂକଳ୍ପ, ସହଯୋଗୀ, ସହଯୋଦ୍ଧା, ସହବନ୍ଦୀ ହେବାର ପଥ ପ୍ରଦର୍ଶକ ବତୀଘର ।

ସେ କାଳରେ କଟକ ଜିଲ୍ଲା ଧୋୟା ସାଇବିରି ବାଇଶି-ମୌଜାର ଏକ ଗ୍ରାମ ସେପରି ଏକ ବତୀଘରର ମର୍ଯ୍ୟାଦା ଲାଭ କରିଥିଲା । ସେହି ବତୀଘରର ଆଲୋକରେ ବଡ଼ ଗାଡ଼ିର ଆବାଳବୃଦ୍ଧବନିତା ଯିଏ ଯେଉଁ ସାହି ହେଉ, ଯେଉଁ ପଡ଼ା ହେଉ, କୋଉ ମଣିଷଟି ବାଦ୍ ପଡ଼ିଲା ନାହିଁ । ମାତିଲା ସାରା ଗାଁ । ଯେଉଁ ଝିଅବୋହୂମାନେ ଘରକୋଣରୁ ବାହାରୁ ନଥିଲେ, ପରଦା ଭିତରେ ରହୁଥିଲେ, ସେପରି ଘରର ଝିଅ ବୋହୂ, ଆଉ ବିଲକାମ, ଚାଷକାମ, ଟୋକେଇ ପାଚିଆ ତିଆରିକଲା ଲୋକ, ମାଛଧରା, ଚୁଡ଼ାହୁଡୁମ ବେଉଷା କରୁଥିବା ଲୋକ, ପଇତାପିନ୍ଧା କର୍ମକଲା ଲୋକ ସମସ୍ତେ ଏକାଠି ହୋଇଗଲେ ସେହି ବତାଘର ଆଲୁଅ ତଳେ । ସେହି ବତୀଘରର ଆଲୋକ ଆଖପାଖ, ଗାଁ'ଗହଳିରେ କେଉଁଠି ଉଜାଲା କେଉଁଠି ଝାପ୍‌ସା ହୋଇ ପଡ଼ିଲା । ଧାଇଁଲେ ସେହି ଗାଁକୁ ଓଡ଼ିଶାର କୋଉ କୋଉ ମୁଲକରୁ ଶହ ନୁହଁ, ହଜାର ହଜାର ଲୋକ । କେତେ ସଭା ସମାବେଶ, ସମିତି, ସୂତାକଟା, ପଟୁଆର ପ୍ରଦର୍ଶନୀ ।

ସେହି ବତୀଘରରେ ପ୍ରଥମବତୀ ଜଳାଇଥିବା ବ୍ୟକ୍ତି ସ୍ୱାଧୀନତା ସଂଗ୍ରାମୀ ଗୌରାଙ୍ଗ ଚରଣ ଦାସଙ୍କ ତିରୋଧାନର ୨୬ ବର୍ଷ ପୂର୍ତ୍ତି ଉତ୍ସବବେଳେ ଯିଏ ସବୁ ସେ କାଳର ଏବେବି ଜିଇ ରହିଛନ୍ତି, ବା ଯିଏ ଦେଖି ଅଙ୍ଗେ ନିଭେଇଛନ୍ତି, ସେମାନେ ସେ କାଳର ସେହି ଗାଁର ଉଦ୍‌ବେଳନକୁ ପାସୋରି ନାହାନ୍ତି ।

ଗାଁଟିଯାକର ଗୋଟିଏ ମନ ଗୋଟିଏ ପଣ । ଦେଶରୁ ବିଦେଶୀ ଶାସନ ଯାଉ, ଆମେ ସ୍ୱାଧୀନ ହେଉ, ସେମାନେ ସମସ୍ତେ କାୟମନୋବାକ୍ୟ କର୍ମରେ ସ୍ୱାଧୀନତା ସଂଗ୍ରାମୀ । ଜେଲ୍ ଯାଆନ୍ତୁ ବା ନ ଯାଆନ୍ତୁ, ପୁଲିସ ଲାଠିମାଡ଼ ଖାନ୍ତୁ ବା ନ ଖାନ୍ତୁ । ଅନ୍ୟଠି ତ ଗୁଳି, ଗଣ୍ଡା ଗଣ୍ଡା

ସ୍ୱାଧୀନତା ସଂଗ୍ରାମୀଙ୍କୁ ଜୀବନ ଦେବାକୁ ପଡ଼ିଛି । ଫାଶୀ, ବର, ଓସ୍ତ, ତେନ୍ତୁଳି ଗଛରେ ବେକରେ ରସି ଲଗେଇ ଟଙ୍ଗାଇବାର କେତେ ନିର୍ମମ କାହାଣୀ । ତେବେ ଏହି ଗାଁଟିରୁ ବ୍ରିଟିଶ ପୁଲିସ ଧରିନେଲା ଏକା ଗୌରାଙ୍ଗଦାସଙ୍କୁ ନୁହଁ, ଅଠର ଜଣକୁ ।

ଦୀର୍ଘ ଜେଲ୍ ଦଣ୍ଡ ପରେ ଓ ଜେଲ୍ ମୁକ୍ତି ପରେ ଆଜି ସେମାନଙ୍କ ମଧ୍ୟରୁ କେତେକ ଗୌରାଙ୍ଗଙ୍କ ଅଣଲେଉଟା ବାଟରେ ଆଗେଇ ଗଲେଣି । ଏଇବର୍ଷ ସେ ବାଟ ଧରିଲେ ଅନ୍ୟ ଏକ ନିଷ୍ଠାବାନ୍, ସଂଗ୍ରାମୀ କଳ୍ପତରୁ ଦାସ । ଆଗରୁ ଯାଇଥିଲେ ଅନ୍ୟ ଏକ ସାରଥୀ ଇନ୍ଦ୍ରମଣି ମହାନ୍ତି । ଯାଇଛନ୍ତି କ୍ଷେତ୍ରମଣି ଦେଇ, ପୀତବାସ ଦାସ, କୃତିବାସ ଦାସ, ଏକ ମା' ପେଟର ଦୁଇଭାଇ । ଯାଇଛନ୍ତି ଏକ କୁଟୁମ୍ବର ଶରତ ଦାସ, ସୁବଳ ଦାସ, ଆଉ ଗୌରାଙ୍ଗର ପୁତୁରା ଅମ୍ବିକା ଚରଣ ଦାସ । ଯାଇଛନ୍ତି ଚନ୍ଦ୍ରମଣି ସାମଲ ଆଉ ନିତ୍ୟାନନ୍ଦ ଭୋଇ । (ନିଖୋଜ ହୋଇ ପତ୍ତାନାହିଁ) । ଏକା ଗାଁର ସହଯୋଗୀ ସହବନ୍ଧୀ ଭାବେ ଆଜି ବି ରହିଛନ୍ତି ସାହିତ୍ୟିକ ଅଧ୍ୟାପକ ଚିତ୍ତରଂଜନ ଦାସ, ଶିଳ୍ପୀ ଜଗନ୍ନାଥ ଦାସ, ବିମଳା ଚରଣ ଦାସ, ନୃସିଂହ ଚରଣ ଦାସ, ଶଶିଭୂଷଣ ଦାସ, ଭ୍ରମରବର ଦାସ ଓ ଗୁଣନିଧି ସାମଲ । ଆଜି ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ସମ୍ବତ୍ସରରେ ଦୁଇଶହ ବର୍ଷବ୍ୟାପୀ ମୁକ୍ତି ସଂଗ୍ରାମର ଲକ୍ଷ ଲକ୍ଷ ଶହୀଦଙ୍କ ସ୍ମୃତି ପ୍ରତି ଦେଶବ୍ୟାପୀ ଶ୍ରଦ୍ଧାଞ୍ଜଳି ଅର୍ପଣ ଚାଲିଛି । ଏପରି ସ୍ମୃତିଚାରଣ କଲାବେଳେ ଏହି ଗାଁର ଜଣେ ଓଡ଼ିଆ କାହିଁକି ଭାରତର ଜଣେ ବିଖ୍ୟାତ ଆଇନଜ୍ଞ ଗଙ୍ଗାଧରଙ୍କ ସେ ଗ୍ରନ୍ଥଟି "ଭୁଲିନାହୁଁ", ଏହି ଗାଁଟିର ଗରିମା ବର୍ଣ୍ଣନା କଲାବେଳେ ସ୍ୱାଧୀନତା ସଂଗ୍ରାମରେ ଗାଁଟିର ଅବଦାନକୁ ସଂକ୍ଷିପ୍ତ ହେଲେ ବି ନିଖୁଣ ଭାବରେ ସେ ରଖିଛନ୍ତି ।

ଯେଉଁସବୁ ଏହି ଗାଁର ସଂଗ୍ରାମୀ କାରାବରଣ ନ କରିଥିଲେ ହେଁ ସ୍ୱାଧୀନତା ସଂଗ୍ରାମ ବାର୍ତ୍ତାକୁ ଚତୁର୍ଦ୍ଦିଗରେ ଧ୍ୱନିତ କରି ଜାଗରଣ ସୃଷ୍ଟି କରୁଥିଲେ ସେମାନଙ୍କ ଅବଦାନ ମଧ୍ୟ ଊଣା ନୁହେଁ । ଗୌରାଙ୍ଗଙ୍କ ଘନିଷ୍ଠ ମିତ ଲକ୍ଷ୍ମୀଧର ଶତପଥୀ, କାହ୍ନୁଚରଣ ଦାସ, ବାମନ ଚରଣ ଦାସ, ପ୍ରାଣକୃଷ୍ଣ ଦାସ, ନରେନ୍ଦ୍ର ମହାନ୍ତି, ବୀରକିଶୋର ଶତପଥୀ, ବଳରାମ ଦାସ, ଭୈରବ ଚରଣ ଦାସ, ବିଶ୍ୱମ୍ଭର ଦାସ, ଶ୍ୟାମସୁନ୍ଦର ଦାସ, ଦନେଇ ଚରଣ ଦାସ, ଦୂତିକା ଦେଇ ଏମିତି ଅନେକ ତାଙ୍କ ଗଲାବାଟରେ ଗଲେଣି । ଏହି ଅବସରରେ ସେମାନଙ୍କ ସ୍ମୃତି ତର୍ପଣ ।

ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଇତିହାସ ରୋମାଞ୍ଚକ । କେତେକେତେ ଏପରି ବଡୀଘର ସେତେବେଳେ ଗଢାଯାଇ ଥିଲା କିଛିଟା ସ୍ମରଣୀୟ । ପାରଳାଖେମୁଣ୍ଡି, ଘୁମୁସର, କେଉଁଝରେ କଳାହାଣ୍ଡି କନ୍ଧ ଆଦିବାସୀ ବିଦ୍ରୋହରୁ ଯେଉଁ ସମ୍ବଲପୁରରେ ମାଧୋସିଂହ, ବୀରସୁରେନ୍ଦ୍ର ସାଏଙ୍କ ଗରିଳା ସମର ଇତିହାସ ପ୍ରସିଦ୍ଧ ପାଇକ ବିଦ୍ରୋହ, ଜୟ ରାଜଗୁରୁ ଫାଶୀଠାରୁ ବକ୍‌ସି ଜଗବନ୍ଧୁ ବିଦ୍ୟାଧର, କୃତ୍ତିବାସ ପାଟଶାଣୀ ବୀରତ୍ୱର ଗାଥା, ବିର୍ସାମୁଣ୍ଡା ବିଦ୍ରୋହଠାରୁ ଚକ୍ରଧରପୁର କୋହ୍ଲ ବିଦ୍ରୋହ, ଏତ ଦୂର ଅତୀତର ଶତସଂଗ୍ରାମ ଭିତରୁ କେତେକ ମନେପଡ଼େ । ପରବର୍ତ୍ତୀ

କାଳର ବାଘାଯତୀନର ଚଷାଖଣ୍ଡ, ଇଞ୍ଚୁଡ଼ି, ଇରମ, କୋଟ ସାହି, କାଇପଡ଼ା, ମଡ଼ି ନୀଳକଣ୍ଠପୁର, ନିମାପଡ଼ା, ରଣପୁର, ପୋପଡ଼ାହାଣ୍ଡି, ନୟାଗଡ଼ ଏମିତି ଗଣ୍ଡା ଗଣ୍ଡା ସ୍ଥାନର ଗୁଳି ହତ୍ୟା-ଫାଶୀ । ମନେପଡ଼େ ଚାଷୀ ବିଦ୍ରୋହ, କନିକାମେଳି, ଜମିଦାରୀ ପ୍ରଥା ଉଚ୍ଛେଦର ସଂଗ୍ରାମ, ବହ୍ମପୁର, କଟକ, ପାଟନା, ହଜାରିବାଗ, ସମ୍ବଲପୁର, ଭେଲୋର, ବାଲେଶ୍ୱର, ପୁରୀ ଆଉ ଦେଶୀୟ ରାଜ୍ୟର ବନ୍ଦୀଶାଳାରେ ଓଡ଼ିଆମାନଙ୍କର ସବୁଠି ଏମିତି ବତୀଘରମାନ ଗଢ଼ାହୋଇଥିଲା । ଆଲୋକ ଦେଖାଉଥିଲା ।

ସ୍ୱାଧୀନତା ସଂଗ୍ରାମର ହୋମାଗ୍ନି ବେଳେ ସମଗ୍ର ପରିବାର ପତିପତ୍ନୀ, ପିତାପୁତ୍ର, ଭାଇଭାଇ, କୁଟୁମ୍ବ ବିରାଦରର ଅନେକ ବନ୍ଦୀ ହୋଇଚନ୍ତି; ନାନା ନିର୍ଯ୍ୟାତନା, ଲାଠିବେତ, ଜରିମାନା ଭୋଗିଛନ୍ତି । ଗୋଟିଏ ଗୋଟିଏ ଅଞ୍ଚଳର ଏକ, କୋଡ଼ିଏ, ପଚିଶ, ପଚାଶ, ଶହ କାରାବରଣ କରିଛନ୍ତି । ତା' ସାଙ୍ଗକୁ ଗୋଟିଏ ଗୋଟିଏ ଗାଁ'ର ବ୍ୟାପକ ଗିରଫଦାରୀ ହୋଇଛି । ସେପରି କେତେକ ଗାଁ' ଭିତରୁ ଦୁଇଟି ଉଲ୍ଲେଖଯୋଗ୍ୟ । ବରଗଡ଼ର ପାଣିମୋରା ଗାଁ' ଯେଉଁଠି ସମଗ୍ର ଗାଁ'ର ଲୋକେ ଏକ ହୋଇଥିଲେ, ୩୩ ଜଣ ବନ୍ଦୀ ହୋଇଥିଲେ । ସେହିପରି ଆଉ କେତେକ ଗାଁ' ମଧ୍ୟରେ ବାଗଲପୁରର ବତୀଘର ଅନ୍ୟତମ । ସେ ଗାଁ'ରୁ ୧୯୩୦-୩୨ ବ୍ୟତୀତ ୧୯୪୨ରେ ୧୮ ଜଣ କାରାବରଣ କରିଥିଲେ ।

□□□

ରଚନା କାଳ – ୧୯୯୮

# ଶହୀଦ ଦିବସର ଅନୁଚିନ୍ତା

ସେମାନେ ଆମ ଦେଶର ସ୍ୱାଧୀନତା ସଂଗ୍ରାମର ଆତ୍ମବଳୀ ଦେଇଥିବା ଶହୀଦ । ସେମାନଙ୍କ ସଂଖ୍ୟା ଲକ୍ଷ ସଂଖ୍ୟାରେ । ୧୯୪୮ ଜାନୁଆରୀ ୩୦ରେ ସେହି ଶହୀଦ ବାହିନୀ ସଙ୍ଗରେ ମିଶିଲେ ଆଉ ଜଣେ ବ୍ୟକ୍ତି । ତାଙ୍କୁ ଶହୀଦମାନେ ଶିରୋମଣି ଗଣ୍ୟକଲୁ । ଆମ ମହାନ ସ୍ୱାଧୀନତା ସଂଗ୍ରାମର ସର୍ବଶ୍ରେଷ୍ଠ ପୁରୋଧାର ମାନ୍ୟତା ଦେଇ ମହାତ୍ମା ବୋଲି ଆଦର କଲୁ । ସେତିକି ତାଙ୍କ ପାଇଁ ଯଥେଷ୍ଟ ନୁହେଁ ବିଚାରି ତାଙ୍କୁ ଜାତୀୟ ପିତା ଆସନରେ ବସାଇଲୁ । ବ୍ରିଟିଶ୍ ପରାଧିନତାରୁ ମୁକ୍ତ ସ୍ୱାଧୀନ ଭାରତର ଜନକ ବିବେଚିତ ମୋହନ ଦାସ କରମଚାନ୍ଦ ଗାନ୍ଧୀ ହେଲେ ଶହୀଦ, କାହିଁକି କିପରି ?

ଲକ୍ଷାଧିକ ଶହୀଦଙ୍କ ଶହୀଦତ୍ୱ ଓ ଜାତୀୟ ପିତାଙ୍କ ଶହୀଦତ୍ୱ ମଧ୍ୟରେ ଗୁଣଗତ ବୈଶିଷ୍ଟ୍ୟ କ'ଣ ଓ ଆମ ଶହୀଦମାନେ ଯେ ଲକ୍ଷ ସଂଖ୍ୟାରେ, ଏହି ଅବଧାରଣା କ'ଣ ତାହାକୁ ସ୍ୱାଧୀନତା ସଂଗ୍ରାମ ବେଳର ଓ ସ୍ୱାଧୀନତା ପରବର୍ତ୍ତୀ କାଳର ପୀଢ଼ିମାନଙ୍କ ମନରେ, ହୃଦୟରେ ଆମେ ଆଙ୍କି ଦେଇପାରିଛୁ କି ?

ଲକ୍ଷାଧିକ ଶହୀଦ କଥାଟି ଲେଖିଲେ ଆଜି ଦେଶର ପାଠୁଆ ଲୋକେ ଏମିତିକି ଅଧିକାଂଶ ଏହାକୁ ଇତିହାସର ବିକୃତି ବୋଲି ନାସିକ କୁଞ୍ଚନ କରିବେ । ସେମାନେ ବହୁ କସରତ କରି ଶହୀଦମାନଙ୍କ ମଧ୍ୟରୁ କିଏ ଦଶ କୋଡ଼ିଏ ଜଣଙ୍କ ନାମ କହିବେ । ଏଥିଲାଗି କ'ଣ ସେମାନଙ୍କୁ ଦୋଷ ଦେଇ ହେବ ? ସ୍ୱାଧୀନତା ପରବର୍ତ୍ତୀ କାଳରେ ଯେଉଁମାନେ ଦେଶର କର୍ଣ୍ଣଧାର ହେଲେ, ସେମାନେ କ'ଣ ନୂତନ ନୂତନ ପୀଢ଼ିଙ୍କ ଆଗରେ ସେହି ଶହୀଦମାନେ କିପରି ଲକ୍ଷାଧିକ ସଂଖ୍ୟାରେ ତାହା ବାଢିଛନ୍ତି ? ବ୍ରିଟିଶ ଶାସନ ଆରମ୍ଭ କାଳରୁ ୧୭୫୭ ପଲାସୀ ଯୁଦ୍ଧ, ୧୮୫୭ ପ୍ରଥମ ସ୍ୱାଧୀନତା ସମର, ୧୯୦୫ ସନ୍ତ୍ରାସବାଦୀ ଆନ୍ଦୋଳନ, ୧୯୨୦-୨୧ ଅସହଯୋଗ, ୧୯୩୦-୩୨ ଆଇନ ଅମାନ୍ୟ, ୧୯୪୦-୪୨ ବ୍ୟକ୍ତିଗତ ସତ୍ୟାଗ୍ରହ - ଅଗଷ୍ଟ ଆନ୍ଦୋଳନ, ୧୯୪୬ ନୌବିଦ୍ରୋହ, ୧୯୪୫-୪୬ ଜାତୀୟ ବାହିନୀ ମୁକ୍ତି ଅଭିଯାନ,

ଜାତୀୟ ବାହିନୀର ସଶସ୍ତ୍ର ସଂଗ୍ରାମର ବହୁ ପୂର୍ବରୁ ଯେ ଦେଶବ୍ୟାପୀ ଅସଂଖ୍ୟ ମେଳି ବିଦ୍ରୋହ, ସଶସ୍ତ୍ର ସଂଗ୍ରାମ ହୋଇଛି ଏବଂ ସେଥିରେ ଗୋଟିଏ ଗୋଟିଏ ବିଦ୍ରୋହରେ ୧୦ରୁ ୧୫ ହଜାର ଦେଶବାସୀ ବ୍ରିଟିଶ ଗୁଳି, କମାଣର ଖୋରାକ ହୋଇଛନ୍ତି, ସେମାନଙ୍କର ନାମ ଠିକଣା ନାହିଁ, ବଂଶ ପରିଚୟ ନାହିଁ– ତାହା କ'ଣ ଆମ ଦେଶର ଉତ୍ତରପୀଢ଼ି ଜାଣନ୍ତ ? ଛ'ଶହ ଗଡ଼ଜାତର ମୁକ୍ତି ପାଇଁ ଅହିଂସାଠାରୁ ସଶସ୍ତ୍ର ସଂଗ୍ରାମରେ ଚାଷୀ ଶ୍ରମିକ ଛାତ୍ରମାନଙ୍କ ଆନ୍ଦୋଳନରେ ଯେଉଁମାନେ ଶହୀଦ ହୋଇଛନ୍ତି, ଫାଶୀ କାଠରେ ଝୁଲିଛନ୍ତି, ସେମାନଙ୍କ ନାମ କ'ଣ ଆମେ ଜାଣୁ ? ଏହାହିଁ ଏକ ମସ୍ତବଡ଼ ବିଡ଼ମ୍ବନା । କିପରି ନୂତନ ବଂଶଧର ଅତୀତର ତାଙ୍କ ପୂର୍ବପୁରୁଷଙ୍କ ଶହୀଦତ୍ୱ ଓ ସେମାନଙ୍କର ଅମରତ୍ୱର ଗରିମାରେ ଉଦ୍‌ବୁଦ୍ଧ ହେବେ ?

ପୁଣି ଆମର ଶହୀଦ ଶିରୋମଣି ଜାତିର ପିତା ଗାନ୍ଧୀଙ୍କ ଶହୀଦତ୍ୱ । ତାଙ୍କୁ ତ ବ୍ରିଟିଶ କମାଣର ଶିକାର ହେବାକୁ ପଡ଼ିନାହିଁ । କାହିଁକି ସେ ଶହୀଦ ହେଲେ ? ଯେଉଁ ଗୁଳି ତାଙ୍କୁ ଆମ ଭିତରୁ ଅପସରେଇ ନେଲା, ସେହି ଗୁଳି ଥିଲା ଦୁଇଶହ ବର୍ଷ ବ୍ୟାପୀ ଲକ୍ଷାଧିକ ଶହୀଦଙ୍କ ଆଦର୍ଶ, ମୂଲ୍ୟବୋଧ ବିରୋଧରେ । ସେହି ଗୌରବମୟ, ମହାନ ଐତିହ୍ୟବାହି ମୁକ୍ତି ସଂଗ୍ରାମର ମୂଲ୍ୟବୋଧ ଉପରେ ଚରମ ଆଘାତ ଦେବାର ଶିକାର ହେଲେ ଗାନ୍ଧିଜୀ । ଦେଶର ଐକ୍ୟ, ସଂହତି, ସାଂପ୍ରଦାୟିକ ପ୍ରୀତି ସୌହାର୍ଦ୍ଦ୍ୟକୁ ଧ୍ୱଂସ କରିବାର ଏହି ଗୁଳି ଫୁଟିଥିଲା ରାଷ୍ଟ୍ରିୟ ସ୍ୱୟଂସେବକ ସଂ ଘ ଆଦର୍ଶରେ ଦୀକ୍ଷିତ ନାଥୁରାମ ଗଡ଼ସେଙ୍କ ଭଳି ଯୁବକଙ୍କ ହାତରୁ ।

ବିଡ଼ମ୍ବନା ଯେ ସ୍ୱାଧୀନତାର ୪୬ ବର୍ଷ ପରେ ଗାନ୍ଧିଜୀ ଓ ମହାନ ସ୍ୱାଧୀନତା ସଂଗ୍ରାମର ଆଦର୍ଶ ଉପରେ ହୋଇଥିବା ଗୁଳି ଚାଳକଙ୍କୁ ଦେଶରେ ଶହୀଦ ଓ ମହାତ୍ମାଗାନ୍ଧୀ ଦେଶର ଶତ୍ରୁ (ଟ୍ରେଟର) ବିଶ୍ୱାସଘାତକ କୁହାଯାଇ ସଭା ହେଉଛି । ସମ୍ବାଦପତ୍ରରେ ସମ୍ବାଦ ପ୍ରକାଶ ପାଉଛି । ସେହି ଆଦର୍ଶକୁ ଧରି ମସ୍‌ଜିଦ ଭଙ୍ଗାଯାଉଛି, ତା'ର ପ୍ରତିଶୋଧରେ ଅନ୍ୟପଟୁ ମନ୍ଦିର ଭଙ୍ଗାଯାଉଛି । ସେହି ଆଦର୍ଶର ରାଜନୈତିକ ବାହକ ଦଳ ଓ ସଙ୍ଗଠନମାନଙ୍କ ଦ୍ୱାରା ସାଂପ୍ରଦାୟିକ ଦଙ୍ଗା, ରଥଯାତ୍ରା, ଉଦଣ୍ଡ ନାଚ ଅନୁଷ୍ଠିତ ହେଉଛି । ଧର୍ମବିଶ୍ୱାସକୁ ରାଜନୈତିକ କ୍ଷମତାର ଆୟୁଧ କରାଯାଇଛି ।

ସେହି ଗାନ୍ଧୀ – ଯିଏ ନୋହାଖାଲି ଯାଇ ସାଂପ୍ରଦାୟକତାବାଦୀ ମୁସଲମାନଙ୍କ ପ୍ରଚାରରୁ ମାଧେପୁର, ଶ୍ରୀରାମପୁର ଏମିତି ଶହଶହ ଗାଁ' ଏକାକୀ ଘୋର ସାଂପ୍ରଦାୟିକ ବିଦ୍ୱେଷର ନିଆଁ ଜଳୁଥିବା ବେଳେ ବୁଲି ସାଧାରଣ ମୁସଲମାନମାନଙ୍କ ହୃଦୟ ଜିଣି ଥିଲେ । ପୁଣି ପାଟଣା ଆସି ମୁସଲମାନ୍‌ମାନଙ୍କ ଉପରେ ଆକ୍ରମଣ କରୁଥିବା ହିନ୍ଦୁ ସାଂପ୍ରଦାୟିକତାବାଦୀମାନଙ୍କର ବିଷ ପ୍ରଚାରରୁ ହିନ୍ଦୁ ଧର୍ମବିଶ୍ୱାସୀଙ୍କୁ ମୁକ୍ତ କରିଥିଲେ । ସେହି ଗାନ୍ଧୀ ଯିଏ କି ଦିଲ୍ଲୀରେ ଖ୍ୱାଜାକୁତବୁଦ୍ଦିନ

ମୁସଲିମ ଧର୍ମପୀଠକୁ ହିନ୍ଦୁମାନେ ଭାଙ୍ଗିଥିବାରୁ ଅନଶନ କରିଥିଲେ ଏବଂ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଭାଙ୍ଗି ଯାଇଥିବା ସଂପ୍ରୀତିର ପୁନଃ ପ୍ରତିଷ୍ଠା କରିଥିଲେ । ସେଥିଯୋଗୁଁ ତ ହିନ୍ଦୁତ୍ୱର ପୁରୋଧାମାନେ ୧୯୪୮ ଜାନୁଆରୀ ୩୦ ସନ୍ଧ୍ୟାରେ ତାଙ୍କୁ ନିର୍ମମ ଭାବେ ହତ୍ୟା କରିଥିଲେ ।

ଜାତୀୟ ମୁକ୍ତି ସଂଗ୍ରାମ କାଳର ଏହି ମହାନ ମୂଲ୍ୟବୋଧ ଗତି ଆଜି କେଉଁଆଡ଼େ ? ଶହୀଦ୍ ଦିବସରେ କାହିଁକି ଗାନ୍ଧୀଙ୍କୁ ହତ୍ୟା କରାଗଲା, କିଏ କଲା ତାହା ସରକାରୀ ପ୍ରଚାର ମାଧ୍ୟମରେ କିମ୍ବା ସମ୍ବାଦପତ୍ର ମାଧ୍ୟମରେ ପ୍ରକାଶ ପାଏ କି ? ଏପରି ଏବର୍ଷ ଦୂରଦର୍ଶନରେ ଶହୀଦ୍ ଦିବସର ସମ୍ବାଦ ସମସ୍ତ ସମ୍ବାଦର ତାଲିକାର ପ୍ରଥମ ନୁହେଁ ତୃତୀୟ ସ୍ଥାନରେ ରଖାଯାଇ ପରିବେଷଣ କରାଯାଇଛି ।

ସେହିପରି ଶହୀଦମାନଙ୍କ ଉଦ୍ଦେଶ୍ୟରେ ମାମୁଲି ଶ୍ରଦ୍ଧାଞ୍ଜଳି ଜଣାଇ ଯଦି ଆମେ ସ୍ୱାଧୀନତା ସଂଗ୍ରାମର ଅସଲ ମୂଲ୍ୟବୋଧକୁ ରକ୍ଷା କରିନପାରିବୁ, ତେବେ ଆଜି କଂଗ୍ରେସ ସରକାରଙ୍କ ନୂତନ ଅର୍ଥନୀତି ଫଳରେ ଦେଶ ଯେପରି ପୁଣି ଏକ ନୂଆ ପରାଧିନତାର ଆବର୍ତ୍ତରେ ପଡ଼ିଗଲାଣି ଓ ସାମ୍ପ୍ରଦାୟିକତାବାଦୀ ବିଚ୍ଛିନ୍ନତାବାଦୀ ଓ ଧର୍ମୀୟ ମୌଳବାଦୀ ରାଷ୍ଟ୍ର ଓ ଶକ୍ତିଙ୍କ ଦ୍ୱାରା ଚାଲିଥିବା ଷଡ଼ଯନ୍ତ୍ରକୁ ବ୍ୟର୍ଥ କରିପାରିବୁ ନାହିଁ । ଏହାହିଁ ଶହୀଦ ଦିବସରେ ଅନୁଚିନ୍ତା । ସଂଗ୍ରାମୀ ଫୋରମ୍‌ର ଆଦର୍ଶରେ ଅନୁପ୍ରାଣିତ ଆମ ସମସ୍ତଙ୍କୁ ସ୍ୱାଧୀନତା ସଂଗ୍ରାମର ଶହୀଦମାନଙ୍କ ଏହି ପବିତ୍ର ମୂଲ୍ୟବୋଧକୁ ରକ୍ଷା କରିବା ଲାଗି ସଙ୍କଳ୍ପ ନେବାକୁ ହେବ ।

**ଫାଶି ମଞ୍ଚରୁ ........**

"ଅମାବାସ୍ୟାର ଶ୍ମଶାନରେ ଭୀରୁ ଭୟ ପାଏ, କିନ୍ତୁ ସେଠାରେ ସିଦ୍ଧିଲାଭ କରେ । ସତେ ମୃତ୍ୟୁ କେଡ଼େ ସୁନ୍ଦର ତା' ନିକଟରେ ମୋ'ର ଅନନ୍ତ ଜୀବନର ବାର୍ତ୍ତା" ।

- ଶହୀଦ୍ ଭବାନୀ ଭଟ୍ଟାଚାର୍ଯ୍ୟ

ଫାଶୀଦିବସ ୩୧ ଜାନୁୟାରୀ, ୧୯୩୫

"ମୁଁ ତୁମ୍ଭମାନଙ୍କ ପାଇଁ ରଖିଗଲି ଗୋଟିଏ ମାତ୍ର ଜିନିଷ - ତାହା ହେଉଛି ମୋ'ର ସ୍ୱପ୍ନ - ଗୋଟିଏ ସୁନେଲି ସ୍ୱପ୍ନ - ସ୍ୱାଧୀନ ଭାରତର ସ୍ୱପ୍ନ । ଅସୀମ ଉତ୍ସାହର ସହକାରେ ମୁଁ ସେହି ସ୍ୱପ୍ନ ପଛରେ ଦୌଡ଼ିଛି । ଜାଣେନା, ଏ ସ୍ୱପ୍ନକୁ କେତେଦୂର ସଫଳ କରିପାରିଛି" ।

- ଶହୀଦ ମାଷ୍ଟରଦା ସୂର୍ଯ୍ୟସେନ

ଫାଶୀ ଦିବସ ୧୧ ଜାନୁୟାରୀ ୧୯୩୪

ଚଟ୍ଟଗ୍ରାମ ଜେଲ

## ସ୍ୱାଧୀନତା ସଂଗ୍ରାମୀଙ୍କୁ ନିବେଦନ

ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ଘଟଣାବଳୀକୁ ସଂଗ୍ରହ କରାଯିବାର ଉଦ୍ୟମ 'ସଂଗ୍ରାମ ଫୋରମ୍' ପକ୍ଷରୁ ଆରମ୍ଭ ହୋଇଛି । ସଂଗ୍ରାମକାଳର ଉଲ୍ଲେଖନୀୟ ଘଟଣାବଳୀ ଓ ଜୀବନ ସହିତ ଫଟୋ ପଠାଇବାକୁ ସ୍ୱାଧୀନତା ସଂଗ୍ରାମୀ, ସେମାନଙ୍କର ବଂଶଧର ଓ ଉତ୍ସାହୀ ବନ୍ଧୁଙ୍କୁ ଅନୁରୋଧ । ସଂଗ୍ରାମୀର ପରବର୍ତ୍ତୀ ସଂଖ୍ୟାଗୁଡ଼ିକରେ ଏହା ପ୍ରକାଶ କରାଯିବ ଓ ଇତିହାସ ସଙ୍କଳନ କରିବାର ଉଦ୍ୟମ କରାଯିବ ।

□□□

ରଚନା କାଳ – ୧୯୯୪

# ମୁକ୍ତି ସଂଗ୍ରାମର ଅଲିଭା ଶିଖା - ଜାଲିଆନାୱାଲାବାଗ

ପଚଷ୍ଠରୀ ବର୍ଷ ତଳର ମର୍ମଭେଦୀ ନାରକୀୟ ଘଟଣା । ଜାତିର ଇତିହାସରେ ସେ ଦିନଟି ଗୌରବ, ଗାରିମା, ଗର୍ବର ବୈଜୟନ୍ତୀ ଉଡ଼ାଇଥିଲା । ଅନ୍ୟ ପକ୍ଷରେ ସେ ଦିନ ବର୍ବରତା, ନିର୍ମମତା, ପାଶବିକତାର ଅଟ୍ଟହାସ; ଉଲ୍ଲାସର, କଳଙ୍କର ମେଘ, କଳା ବାଦଲର ଦିନ ।

୧୯୧୯ ଏପ୍ରିଲ୍ ୧୩ ତାରିଖ । ସେଦିନ ରବିବାର ବୈଶାଖ ପୂର୍ଣ୍ଣିମା ।

ହଁ ସେ କାଳର ଅବିଭକ୍ତ ପଞ୍ଚନଦୀର ପଞ୍ଜାବ । ପଞ୍ଜାବର ଚାଷୀ କୁଳର ମହା ମହୋତ୍ସବ ଦିବସ । ଭାଙ୍ଗଡ଼ା ନାଚ ଗୀତ, ଭୋଜିଭାତ, ବନ୍ଧୁସଙ୍ଖୋଳା, ପ୍ରୀତି ମୈତ୍ରୀର ସମ୍ଭାଷଣ ମଉଜ ମଜଲିସ୍‌ର ଦିନ । ବହୁ ଆକାଂକ୍ଷିତ ସେହି ଦିନଟି । ପୁଣି ସେହି ବର୍ଷ ସେହି ଦିନଟିରେ ପଡ଼ିଥାଏ ଶିଖମାନଙ୍କର ଖାଲପା ବାର୍ଷିକୀ ।

ଅମୃତସରର ପ୍ରସିଦ୍ଧ ସ୍ୱର୍ଣ୍ଣମନ୍ଦିର । ଶିଖ୍‌ମାନଙ୍କର ପ୍ରଧାନ ଗୁରୁଦ୍ୱାର । ଏକ ଦିଗରେ ପହିଲା ବୈଶାଖ, ଅନ୍ୟ ଦିଗରେ ସମଗ୍ର ଜାତିର ଆହ୍ୱାନ । ପ୍ରଥମ ବିଶ୍ୱଯୁଦ୍ଧ ସରିଥାଏ । ବ୍ରିଟିଶ ସାମ୍ରାଜ୍ୟବାଦ ଏହି ଯୁଦ୍ଧରେ ବିଜୟୀ । ତତ୍କାଳୀନ ଜାତୀୟ ସଂଗ୍ରାମର କେତେକ ନେତାଙ୍କର ବିଶ୍ୱାସ ଯେ ବ୍ରିଟିଶ ସରକାର ଭାରତବାସୀଙ୍କୁ ହୋମରୁଲ, ଅଥବା ଡୋମିନିୟନ ଷ୍ଟାଟସ ଦେବ । କିଛି କ୍ଷମତା ହସ୍ତାନ୍ତର କରିବ । ଅଳୀକ ସେ ସ୍ୱପ୍ନ । ଉପନିବେଶବାଦ, ସାମ୍ରାଜ୍ୟବାଦ ପୁଞ୍ଜିବାଦ ଏମିତି କ୍ଷମତା ସହଜରେ ଅର୍ପଣ କରେନାହିଁ । ସାମ୍ରାଜ୍ୟବାଦର ଧର୍ମ, ପ୍ରକୃତି, ସ୍ୱଭାବ ତା' ନୁହେଁ ।

ବ୍ରିଟିଶ ସାମ୍ରାଜ୍ୟବାଦ ଭାରତବାସୀଙ୍କୁ ଉପହାର ଦେଲା ରାଓଲଟ ଆଇନ, କ୍ରଲିଂ ଆଦେଶ । ତାରି ବିରୁଦ୍ଧରେ ଦେଶବ୍ୟାପୀ କ୍ରୋଧ । ଦିଲ୍ଲୀରେ ମଇ ୩୦ରେ ବିଶାଳ ବିକ୍ଷୋଭ ହୋଇଯାଇଥାଏ । ଆଗାମୀ ୧୩ ଏପ୍ରିଲ ବ୍ରିଟିଶ୍ ବର୍ବରତାର ସୁରାକ ମିଳିଥାଏ ସେଦିନ ।

୧୯୧୯ ଏପ୍ରିଲ ୧୦, ୧୧, ୧୨ ତିନିଦିନବ୍ୟାପୀ ଅମୃତସରରେ ବ୍ରିଟିଶ ବିରୋଧୀ ବିଶାଳ ବିକ୍ଷୋଭମାନ ଅନୁଷ୍ଠିତ ହୋଇଥାଏ । ବିକ୍ଷୋଭର ନେତା, ହୋମରୁଲ ଆନ୍ଦୋଳନର କର୍ତ୍ତା ଡକ୍ଟର ସୈଫଦ୍ଦିନ କିଚୁଲୁ, ଡକ୍‌ଟର ସତ୍ୟପାଳଙ୍କ ପରି ଜନପ୍ରିୟ ନେତାଙ୍କୁ ଗିରଫ କରିନିଆଗଲା । ଗୁଳି, ହତ୍ୟା, ଗିରଫର ସ୍ରୋତ ଛୁଟିଲା ।

ଏହି ଦିବସଟିରେ ବୈଶାଖୀ ଉତ୍ସବ ମନେଇବା ସଙ୍ଗେ ସଙ୍ଗେ ହେବ ପ୍ରତିବାଦ ସଭା । ସ୍ଥାନ ଜାଲିଆନାବାଗ୍ । ସ୍ୱର୍ଣ୍ଣମନ୍ଦିରର ଅନତି ଦୂରରେ ଏଥିପାଇଁ କିରାସିନୀ ଟିଣ ବାଡ଼େଇ ପ୍ରଚାର । ଛୁଟିଲେ କେବଳ ଅମୃତସରବାସୀ ନୁହଁ- ଗାଁ ଗହଳରୁ ଚାଷୀ, ପୁରୁଷ, ମହିଳା କାନ୍ଧରେ ଶିଶୁ । ହିନ୍ଦୁ, ଶିଖ୍ । ମୁସଲ୍‌ମାନ ସବୁ ଧର୍ମାବଲମ୍ବୀଙ୍କ ଜନଜୁଆର ।

ଜାଲିଆନାବାଗ ସହରରେ ଏକ ଭ୍ରମଣ ଉଦ୍ୟାନ । ଚାରିପାଖେ ବସ୍ତି, ବଦ୍ଧ ସାନ କୋଠା । ପ୍ରବେଶଦ୍ୱାର ଗୋଟିଏ । ଖୁବ୍ ହେଲେ ଧାଡ଼ିବାନ୍ଧି, କାନ୍ଧରେ ହାତ ପକେଇ ୪/୫ ଜଣ ଲୋକ ଗୋଟିଏ ଧାଡ଼ିରେ ପ୍ରବେଶ କରିବେ । ଏବେ ବି ସେହି ସଂକୀର୍ଣ୍ଣ ପ୍ରବେଶ ଦ୍ୱାର ଦୁଇପଟେ ଦ୍ୱିତଳ ଅଟ୍ଟାଳିକା ମୂକସାକ୍ଷୀ ରୂପେ ଦଣ୍ଡାୟମାନ ।

ଖୁବ୍‌ହେଲେ ଖୁନ୍ଦିଖାନ୍ଦି ୨୦ରୁ ୨୪ ହଜାର ଲୋକ ଧାରଣ କରିବ ଜାଲିଆନାବାଗ । ପ୍ରବେଶ ଦ୍ୱାରରେ ବାମପଟେ ଏକ ସୁଗଭୀର ବାମ୍ପି ।

ଏକେତ ଲୋକପର୍ବ ପହିଲା ବୈଶାଖ । ଅନ୍ୟପକ୍ଷରେ କଳା ରାଓଲାଟ ଆଇନ, କ୍ରଲିଂ ଆଦେଶ ଓ ଗିରଫଦାରୀର ପ୍ରତିବାଦ ।

କୌଣସି ସଭାସମିତିକୁ ଅନୁମତି ନାହିଁ ବୋଲି ବ୍ରିଟିଶ ସାମ୍ରାଜ୍ୟର ନରହନ୍ତା ଜେନେରାଲ୍ ଡାୟାର ନିଷେଧାଜ୍ଞା ଜାରି କରିଥାନ୍ତି । ସେଥିପ୍ରତି ଭ୍ରୂକ୍ଷେପ ନାହିଁ ବିଶାଳ ଜନତାର ।

ଭାରତୀୟମାନେ ବ୍ରିଟିଶ ସାମ୍ରାଜ୍ୟବାଦ ଗୋଲାମ । ଦାସାନୁଦାସ ସେମାନେ ଅସଭ୍ୟ, ଅମଣିଷ, ପଶୁତୁଲ୍ୟ । ବାରବୁଲା କୁକୁରଙ୍କଠାରୁ ହୀନ ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କ ଚକ୍ଷୁରେ । ସାମ୍ରାଜ୍ୟବାଦର ରକ୍ଷକ ଗୋରା ସାହେବ-ବଡ଼ଲାଟ, ମାଜିଷ୍ଟ୍ରେଟ, ପୁଲିସ୍, ସୈନ୍ୟ; ସଭ୍ୟ ସେମାନେ ମଣିଷ, ସମ୍ମାନିତ । ସେମାନେ ବାଟରେ ଗଲାବେଳେ ଭାରତୀୟମାନେ ସିଧା ଚାଲିପାରିବେ ନାହିଁ । ଗୁରୁଣ୍ଡି ଗୁରୁଣ୍ଡି କରି ଯିବେ, ସମ୍ମାନ ଜଣାଇବେ ବ୍ରିଟିଶ ସାମ୍ରାଜ୍ୟବାଦକୁ । ଏହା ହିଁ କ୍ରଲିଂ ଆଦେଶ । ପୁଣି ସଲାମ ଆଦେଶ । ସାହେବ ଦେଖିଲାମାତ୍ରେ ସାହେବ ସଲାମ କହିବେ, ନଇଁପଡ଼ି ସେଥିଲାଗି ସଲାମ ଆଇନ ଜାରି । ସାମରିକ ଆଇନକୁ ବିଦ୍ରୂପ କରି କେହି କବିତା ଲେଖିବେ ନାହିଁ । ସଭାସମିତି କରିବେ ନାହିଁ । ବରଂ ସାମରିକ ଆଇନ ସପକ୍ଷରେ ଲେଖିବାକୁ ହେବ ଯଦି କିଏ ଅମାନ୍ୟ କଲା ତେବେ ସେପରି ଭାରତୀୟମାନଙ୍କୁ ଧରିଆଣ । ବେଶ୍ୟାମାନଙ୍କ ଆଗରେ ଛିଡ଼ା କରାଅ । ସେମାନଙ୍କ ପିଠିରେ ବେତମାଡ଼, ରକ୍ତ ବୋହିଯାଏ, ବେହୋସ ହେବାଯାଏ ଚାଲେ ବେତମାଡ଼ ।

ଏପରି ନାରକୀୟ ବର୍ବରତା ବିରୁଦ୍ଧରେ ପ୍ରତିବାଦ କରିବା ଲାଗି ଏହି ସମାବେଶ ।

**ସହସ୍ର ସହସ୍ରଙ୍କ ଶବ ଉପରେ ବ୍ରିଟିଶ ତାଣ୍ଡବ**

ବ୍ରିଟିଶ ସାମ୍ରାଜ୍ୟବାଦର କରାମତି କ'ଣ ଏ ଭାରତବାସୀ ଏଯାଏ ଜାଣିନାହାନ୍ତି । ସେମାନଙ୍କୁ ଜଣେଇ ଦେବାକୁ ହେବ । ସୂର୍ଯ୍ୟାସ୍ତ ହୁଏ ନାହିଁ ବ୍ରିଟିଶ ସାମ୍ରାଜ୍ୟରୁ । ଏଇ ଭାରତୀୟମାନଙ୍କର ଏପରି ଅହମିକା । ଦେଖିନେବାକୁ ହେବ ।

ସମାବେଶକୁ ଭୟଭୀତ କରେଇବା ଲାଗି ଜେନେରାଲ ଡାୟାର ଉପରୁ ଉଡ଼ାଜାହାଜ ଉଡ଼େଇଲେ । ଜନସମୁଦ୍ର ଅଟଳ । ପ୍ରତିବାଦକାରୀ ନେତାମାନଙ୍କ ଭାଷଣ ଶୁଣିବା ପାଇଁ ସେମାନେ ଉଦ୍‌ଗ୍ରୀବ ।

ଆଦେଶ ଦେଲେ, ଚଳା ଗୁଳି । ଗୁଡୁମ୍ ଗୁଡୁମ୍ କରି ବନ୍ଧୁକରୁ ଗୁଳି ନିର୍ଗତ ହେଲା ଅବିରାମ ଭାବରେ, ନିର୍ବିକାରରେ, ନିର୍ବିଚାରରେ । ଉଚ୍ଚ ପାଚେରୀ ଘେରା ଏହି ଉଦ୍ୟାନର ଉଚ୍ଚସ୍ଥାନରୁ ଏକାବେଳେକେ ବ୍ରିଟିଶ ସୈନ୍ୟମାନଙ୍କ ଗୁଳି ଚାଲିଥାଏ ଟଳିପଡୁଥାନ୍ତି ଜଣକୁ ଜଣ । ହିନ୍ଦୁ, ଶିଖ୍, ମୁସଲମାନ, ପୁରୁଷ, ମହିଳା ଶିଶୁ, ଡାୟାର ହସୁଥାନ୍ତି । ଉପଭୋଗ କରୁଥାନ୍ତି ଭାରତୀୟ ମଣିଷର ରକ୍ତ, ତା'ର ଜୀବନ କେଡ଼େ ଶସ୍ତା । ସଂକୀର୍ଣ୍ଣ ପ୍ରବେଶ ଦ୍ୱାରକୁ ଜଗି ନେଇଥାନ୍ତି ୯୦ ଜଣ ସଶସ୍ତ୍ର ପ୍ରହରୀ ଓ ଦୁଇଟି ସାଞ୍ଜୁଆ ଗାଡ଼ି । ୧୬୫୦ ରାଉଣ୍ଡ ଗୁଳି ଫୁଟିଲା । ଆଉ ଗୁଳି ନାହିଁ । ଡାୟାରଙ୍କ ଅବଶୋଷ । ଆଉ ଅଧିକ ଶବର କୁଢ଼ ସେ ଦେଖିଲେ ନାହିଁ । ଅବାରିତ ଗୁଳିରୁ ତ୍ରାହି ପାଇବା ଲାଗି କାଳେ ବଞ୍ଚିଯିବେ ବୋଲି ସେହି ଗଭୀର ବାମ୍ଫିକୁ ଡେଇଁ ପଡ଼ିଥିଲେ ଦୁଇ ଶତାଧିକ ବ୍ୟକ୍ତି । ସମସ୍ତଙ୍କ ସଲିଳ ସମାଧି ।

ଉଲ୍ଲାସରେ ବ୍ରିଟିଶ ସୈନ୍ୟମାନେ ଛାଉଣିକୁ ବାହୁଡ଼ିଲେ । ଯୁଦ୍ଧରେ ନିୟମ ଅଛି ମୃତାହତଙ୍କୁ ଖୋଜିବା । ମୃତକଙ୍କୁ କବର ଦେବା, ଆହତଙ୍କୁ ଚିକିତ୍ସା ଦେବା, ତୃଷାର୍ତ୍ତଙ୍କୁ ମୁନ୍ଦାଏ ପାଣିଦେବା ।

ଏ ଅଲଗା ରକମର ଯୁଦ୍ଧ । ସୁପରିକଳ୍ପିତ ହତ୍ୟା, ନରସଂହାର, ଗଣହତ୍ୟା । ସଂଧ୍ୟା ନଇଁ ଆସିଲା । ମୃତ ଦୁଇ ହଜାର ସଂଖ୍ୟାରେ ଆହତମାନଙ୍କ ମର୍ମଭେଦୀ ବେଦନା ଯନ୍ତ୍ରଣାଜନିତ ଚିତ୍କାର ।

ଅମୃତସରର ଘରେ ଘରେ ରୋଦନ, କ୍ରୋଧ, ଅଭିଶାପ । ତଥାପି କାଳେ କିଏ ବଂଚିଥିବେ, ଧାଇଁଲେ ଲୋକେ । ବିଜୁଳିବତୀ ଯୁଗ ଆସି ନଥାଏ । ଲଣ୍ଠନ ଡିବିଧରି ଲୋକେ ଶବ ପରେ ଶବ ଉଣ୍ଡାଳୁଥାନ୍ତି । ମା' ମରିଛି, ମା' କୋଳରୁ ଶିଶୁ ମରିଛି ବା ବଂଚିଥାଏ, ମା' ସ୍ତନ୍ୟ ଦରାଣ୍ଡୁଛି ବଂଚିବା ପାଇଁ ଶବ ଡେଇଁ ଡେଇଁ ଆତ୍ମୀୟଙ୍କୁ ଖୋଜା । ନିଖୋଜ ହୋଇଗଲେ ସ୍ୱାମୀ, ପୁଅ, ଭାଇ, ପତ୍ନୀ, ବାପା । ହିନ୍ଦୁ କୋଳରେ ଶିଖ୍, ଶିଖ୍ କୋଳରେ ମୁସଲମାନ୍ ଜୀବନ ବିକଳରେ ପରସ୍ପରକୁ ଧରି ଶୀତଳ ମୃତ୍ୟୁବରଣ କରିଛନ୍ତି, ଦେଶ ମାତୃକାର ମୁକ୍ତି ପାଇଁ ।

ଯେଉଁମାନେ ପ୍ରତ୍ୟକ୍ଷଦର୍ଶୀ, ଗୁଳି ମୁହଁରୁ ବଂଚି ଯାଇଥିଲେ ସେମାନଙ୍କ ଦ୍ୱାରା ପ୍ରଦତ୍ତ ବିବରଣୀ ହିଁ ଏହି ମହାନ ଦେଶପ୍ରେମୀ ସଂଗ୍ରାମର ରକ୍ତ ରଂଜିତ ଇତିହାସ କହେ । ଏପରି ପ୍ରତ୍ୟକ୍ଷଦର୍ଶୀ ପୁରୁଷ ଓ ସ୍ୱାମୀ ବିଧୁରା, କ୍ରନ୍ଦନରତା ମହିଳା ଅନେକ ।

ଗରିଧାରୀ ଲାଲ, ପ୍ରତାପ ସିଂହ, ଜ୍ଞାନଚାନ୍ଦ, ମିଆଁ ସିକନ୍ଦର ଅଲି, କରନଚାନ୍ଦ ହାସାନ, ଉତ୍ତନ ଦେବୀ, ଅତର କାଉର, ଆସେ ରାମ ଏମିତି ବହୁ ପ୍ରତ୍ୟକ୍ଷଦର୍ଶୀ, ଭୁକ୍ତ ଭୋଗୀଙ୍କ କରୁଣ, ମର୍ମଭେଦୀ ବର୍ଣ୍ଣନା ।

କୁଢ଼ କୁଢ଼ ଶବ । କାହାର ଖପୁରି ଉଡ଼ିଯାଇଛି, କାହାର ଆଖି ଫୁଟିଛି, କାହାର ଅନ୍ତନାଡ଼ି ପଦାକୁ ବାହାରିପଡ଼ିଛି । ଅଳ୍ପ ବୟସର ଅନେକ ଶିଶୁ । ପାଖ କେନାଲରେ ଅନେକ ଶବ ଭାସୁଥାଏ । ବାମ୍ଫି ଭିତରୁ କିଛିଦିନ ପରେ ଶହରୁ ଅଧିକ ଶବ ଉଦ୍ଧାର କରାଯାଏ ।

**ଅପମାନ ହିଂସା-ବର୍ବରତା**

ନରସଂହାର କରି ବ୍ରିଟିଶ ଶାସନ ସେହି ସଂଧ୍ୟାରେ ସାନ୍ଧ୍ୟ ଆଇନ୍ ଜାରିକଲା । ଏହି ରକ୍ତକ୍ଷୟୀ ସଂଗ୍ରାମର ଏମିତିକି ବ୍ରିଟିଶ ସରକାର ଦ୍ୱାରା ଅନୁମୋଦିତ ବିବରଣୀରୁ ଜଣାଯାଏ ଯେ ୫୮୧ ଜଣ ସ୍ୱାଧୀନତା ସଂଗ୍ରାମୀଙ୍କୁ ଅପରାଧୀ ସାବ୍ୟସ୍ତ କରାଯାଇ ୧୦୯ ଜଣଙ୍କୁ ମୃତ୍ୟୁଦଣ୍ଡ, ୨୬୫ ଜଣଙ୍କୁ ଆଜୀବନ କାରାଦଣ୍ଡ ଏବଂ ପାଞ୍ଚ ଜଣଙ୍କୁ ୧୦ ବର୍ଷ ଓ ୮୫ ଜଣଙ୍କୁ ୭ ବର୍ଷ, ଅବଶିଷ୍ଟ ୧୦୪ ଜଣଙ୍କୁ କମ ସମୟ ଲାଗି କାରାଦଣ୍ଡ ଦିଆଗଲା । ଏହି ନରହତ୍ୟା ଜେନେରାଲ୍ ଡାୟାର, ଜେନେରାଲ କ୍ୟାମ୍‌ବେଲ, କାପ୍ତାନ ଡୋଭଟନ ପ୍ରମୁଖ ବ୍ରିଟିଶ ସାମ୍ରାଜ୍ୟର ବର୍ବରମାନ ଭାରତବାସୀଙ୍କୁ, ସ୍ୱାଧୀନତା ସଂଗ୍ରାମର ଯୋଦ୍ଧାମାନଙ୍କୁ ବିଶେଷତଃ ଅଗ୍ନିଗର୍ଭା ପଞ୍ଜାବକୁ ଯେପରି ଲଜ୍ଜିତ, ଅପମାନିତ କରୁଥିଲେ ତାହା ଅବର୍ଣ୍ଣନୀୟ । ଏପରି ଅପମାନଜନକ, ବର୍ବରୋଚିତ ସାମ୍ରାଜ୍ୟବାଦୀ ଆଚରଣର କେତୋଟି ଦୃଷ୍ଟାନ୍ତ ଅତ୍ୟନ୍ତ ମର୍ମଭେଦୀ ।

ସେହିବର୍ଷ ୧୯୧୯ ଏପ୍ରିଲ ୧୮ର ଘଟଣା କସୁର ସହରର ସବ୍‌ଡିଭିଜନାଲ୍ ଗୋରା ମାଜିଷ୍ଟ୍ରେଟଙ୍କ ହୁକୁମ । ପ୍ରଧାନ ଶିକ୍ଷକଙ୍କୁ ଧରି ବିଦ୍ୟାଳୟର ଛାତ୍ରମାନଙ୍କୁ ବାନ୍ଧିଆଣି ପାରେଡ଼ କରାଗଲା । ତନ୍ମଧ୍ୟରୁ ଛଅଟି ହୃଷ୍ଟପୁଷ୍ଟ ପିଲାଙ୍କୁ ବଛାଗଲା । ସେମାନଙ୍କ ଉପରେ ଚାଲିଲା ନିର୍ମମ ନିଦାରୁଣ ପ୍ରହାର । ଦୋଷ ସେହି ବିଦ୍ୟାଳୟର ଛାତ୍ରମାନେ ବ୍ରିଟିଶ ବିରୋଧୀ ଆନ୍ଦୋଳନର ସମର୍ଥନରେ ବାହାରି ପଡ଼ିଥିଲେ ।

ସାଂଧ ଆଇନ ପଞ୍ଜାବ ସାରା ଲୋକଙ୍କୁ ଗାଁ'ଗଣ୍ଡାରୁ ଧରିଆଣି ଗଛରେ ବାନ୍ଧି ଦିଆଗଲା । ଡକାହେଲେ ଦର୍ଶକ ହିସାବରେ ବ୍ରିଟିଶ ମହିଳା । ପିଠି ଦେହରୁ ସେମାନଙ୍କର ଲୁଗାପଟା ଖୋଲିଦେଇ ରକ୍ତସ୍ନାନ ହେବାଯାଏ ଚାଲେ ବେତ୍ରାଘାତ, ଲାଠିମାଡ଼ । ଡାକ୍ତରମାନେ ଯଦି ଏପରି ଆହତଙ୍କୁ ଚିକିତ୍ସା କରନ୍ତି, ସେମାନଙ୍କୁ ଗିରଫ କରି ନିଆଯାଏ ।

ବ୍ରିଟିଶ ବର୍ବରତାର ଆଉ ଏକ ନମୁନା । ତାହା ପୁଣି ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ।

ପଞ୍ଜାବର ଲାହୋର ସହର । ଆଜି ତାହା ପାକିସ୍ତାନରେ । ଦେଶକୁ ଭାଗ ଭାଗ କରିବାରେ ବ୍ରିଟିଶ ସାମ୍ରାଜ୍ୟବାଦ ସଫଳ ହେବାର ଫଳଶ୍ରୁତି । ଭାରତ ଆଉ ପାକିସ୍ତାନ ସୃଷ୍ଟି । ସ୍ୱାଧୀନତା ସଂଗ୍ରାମର, ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମର ୩ ଶତାଧିକ ବର୍ଷ କାଳ ଅସଂଖ୍ୟ ସଂଗ୍ରାମ, ମେଳି ବିଦ୍ରୋହରେ ପ୍ରାଣ ଦେଇଥିଲେ ଦେଶର ହିନ୍ଦୁ, ମୁସଲିମ୍, ଶିଖ୍, ଚାଷୀ, ଆଦିବାସୀ, ଅପାମର ମାନବ ସଂପ୍ରଦାୟ ।

ଲାହୋର ନଗରୀର କାଲୁବାଡ଼ରେ ବ୍ରିଟିଶ ସାମ୍ରାଜ୍ୟବାଦ ଜାରି କରିଥିବା ସାଂଧ ଆଇନର

ବିଜ୍ଞାପନ ମରା ହୋଇଥାଏ । କଲେଜ୍‌ର ହିନ୍ଦୁ, ଶିଖ୍, ମୁସଲିମ୍ ଛାତ୍ରମାନେ ତାହାକୁ ଚିରିଦେଲେ, ଅପରାଧ ହୋଇଗଲା । କର୍ଣ୍ଣେଲ ଜନସନଙ୍କ ଆଦେଶ । ମଇ ମାସରେ ପ୍ରଚଣ୍ଡ ରୌଦ୍ରତାପ । ତଳୁ ପାଦ ଜଳିଯାଉଛି । ଉପରୁ ସୂର୍ଯ୍ୟର ଅଗ୍ନିବାଣ । ସବୁ ଛାତ୍ରଙ୍କୁ ପ୍ରତ୍ୟହ ୧୬ ମାଇଲ ଖାଲି ପାଦରେ ପରେଡ୍ କରାଇବାର ଆଦେଶ ହେଲା । ଲାହୋରର ଆଉ ଏକ କଲେଜର ୬୫ ଜଣ ଛାତ୍ର ଓ ଶିକ୍ଷକଙ୍କୁ ଏହି ଜନସନ୍ ସାହେବ ଗିରଫ କରାଇ ୩ ମାଇଲ ଦୀର୍ଘ ରାସ୍ତାରେ ଚଲେଇ ଉଦ୍‌ଭୁଉଦିଆ ଖରାରେ ସାରାଦିନ ଠିଆ କରେଇଥିଲେ ।

ହିଟ୍‌ଲର, ମୁସୋଲିନୀର ବର୍ବରତା ଦ୍ୱିତୀୟ ମହାସମର କାଳର । ହିଟଲର ରୁଷ, ପୋଲାଣ୍ଡ, ଫ୍ରାନ୍‌ସ, ବିଲାତ, ଚେକ୍, ବୁଲଗେରିଆ, ଅଷ୍ଟ୍ରିଆର ଲକ୍ଷଲକ୍ଷ ଲୋକଙ୍କୁ, ଯୁଦ୍ଧବନ୍ଦୀଙ୍କୁ, ୟୁହୁଦୀମାନଙ୍କୁ ମାସ ମାସ କାଳ ନିର୍ଯ୍ୟାତିତ କରି ଖାଇବାକୁ ନଦେଇ ଅସ୍ଥିକଙ୍କାଳ କରିଦେଇ ମଣିଷଜଳା ଫାକ୍‌ଟରୀରେ ଜୀଅନ୍ତା ପୋଡ଼ି ଦେଉଥିଲା । ସେହି ପାଉଁଶକୁ ଜର୍ମାନୀ ଭୂଇଁରେ ସାରରୂପେ ବ୍ୟବହାର କରୁଥିଲା ।

ଏହିପରି ନାରକୀୟତାର ଦୀକ୍ଷା ହିଟଲର ନେଇଥିଲେ ବ୍ରିଟିଶ ସାମ୍ରାଜ୍ୟବାଦୀ-ମାନଙ୍କଠାରୁ । ପଞ୍ଜାବରେ, ଭାରତରେ, ତା'ର ନିର୍ମମତାର ଇତିହାସ ତାହା ହିଁ ଦର୍ଶାଇଦିଏ ।

ସାଂଘ ଆଇନ, କ୍ରଲିଂ ଆଦେଶ, ଗୁଳିଗୁଳା, ଜାଲିଆନାବାଗର ନରସଂହାର, ଗଣହତ୍ୟାର ଜବାବ ଦେଲେ ପଞ୍ଜାବବାସୀ ।

ଜାତିର ଦେଶପ୍ରେମ ଅଧିକ ପ୍ରଜ୍ୱଳିତ ହେଲା । ପଞ୍ଜାବର ବୀର ଯୋଦ୍ଧାମାନେ ବ୍ରିଟିଶ ଦମନ ଅତ୍ୟାଚାରର ଜବାବରେ ଠିକ୍ ପରେ ପରେ ଓଲଟା ଆକ୍ରମଣ କଲେ । ବ୍ରିଟିଶ ସରକାରୀ ବାସଭବନଗୁଡ଼ିକ ଉପରେ ଆକ୍ରମଣ କରି ଧ୍ୱଂସ କଲେ । ବ୍ରିଟିଶ କର୍ତ୍ତୃପକ୍ଷ ଚାହିଁଲେ ହିନ୍ଦୁ ମୁସଲିମ୍ ଦଙ୍ଗା ଲଗେଇ ଏହି ଆନ୍ଦୋଳନକୁ ଦିଗଭ୍ରଷ୍ଟ କରିବେ । ଏପ୍ରିଲ ୧୪ରେ ଗୁଜରାନୱାଲା ରେଳ ପୋଲ ଉପରେ ବାଛୁରୀର ମୁଣ୍ଡହାଣି ଟାଙ୍ଗି ଦିଆଗଲା, ଯେମିତି ହିନ୍ଦୁମାନେ ମାତିବେ । ମାତ୍ର ଏପରି ହୀନ ଉଦ୍ୟମ ବ୍ୟର୍ଥ ହେଲା । ସମଗ୍ର ସହରବାସୀ ହିନ୍ଦୁ, ଶିଖ୍, ମୁସଲମାନ ନିର୍ବିଶେଷରେ ସହର ଶାସନକୁ ଅଚଳ କରିଦେଲେ । ବ୍ରିଟିଶ ରାଓଲପିଣ୍ଡିରୁ ଗୋରା ପଲଟନ ଆଣି ଗାଁ'କୁ ଗାଁ ଉପରେ ବୋମା ଅଜାଡ଼ିଲା । ଜନ ବିଦ୍ରୋହ ଉତ୍ତର ପଶ୍ଚିମ ସୀମାନ୍ତ ଓ ପଶ୍ଚିମରେ ଲୟାଲପୁରକୁ ବିସ୍ତାରିତ ହେଲା ।

ଜାଲିଆନାବାଗର ଗଣହତ୍ୟା ଓ ଜନ ପ୍ରତିରୋଧ ଆମ ସ୍ୱାଧୀନତା ସଂଗ୍ରାମର ଇତିହାସରେ ଅକ୍ଷୟ ଅମର ହୋଇରହିବ ।

ଏହି ସଂଗ୍ରାମ, ଏହି ଶହୀଦତ୍ୱ ଆକସ୍ମିକ ନୁହେଁ । ୧୮୫୭ର ପ୍ରଥମ ସ୍ୱାଧୀନତା ସଂଗ୍ରାମ ଯାହାକୁ ସାମ୍ରାଜ୍ୟବାଦୀ ଇତିହାସକାରମାନେ ସିପାହୀ ବିଦ୍ରୋହ ବୋଲି ଆଖ୍ୟା ଦେଇ ବନ୍ଧୁକ ଟୋଟାରେ ଗାଈ ଚର୍ବି, ଘୁଷୁରି ଚର୍ବିରୁ ଆରମ୍ଭ ବୋଲି ଚିତ୍ରଣ କରି ଓଡ଼ିଶା ପ୍ରାନ୍ତରୁ ବିହାର,

ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ ଦେଇ ଦିଲ୍ଲୀ ଓ ଅନ୍ୟତ୍ର ଲକ୍ଷାଧିକ ଲୋକଙ୍କୁ ହତ୍ୟା କରିଥିଲେ, ତାହାର ଆଉ ଏକ ପାହାଚ ଜାଲିଆନାବାଗ । ୧୮୫୭ ପୂର୍ବରୁ ଦକ୍ଷିଣରୁ ଉତ୍ତର ସୀମାନ୍ତ, ପୂର୍ବରୁ ପଶ୍ଚିମ ସୀମାନ୍ତଯାଏ ଅଜସ୍ର ବିଦ୍ରୋହ, ମେଳିର ଇତିହାସ । ନୀଳ ବିଦ୍ରୋହ, ଓ୍ୱାହାବି ବିଦ୍ରୋହ, ସନ୍ନ୍ୟାସୀ ଆନ୍ଦୋଳନ, ଭିଲ ବିଦ୍ରୋହ, ମୁଣ୍ଡା ବିଦ୍ରୋହ, କୁକି ବିଦ୍ରୋହ ଓଡ଼ିଶା ପାଇକ ବିଦ୍ରୋହ ଏମିତି ରକ୍ତକ୍ଷୟୀ ଅନେକ ବିଦ୍ରୋହର ଇତିହାସ ଜାଲିଆନାବାଗର ପ୍ରଚ୍ଛଦପଟ ଇତିବୃ ।

ଜାଲିଆନାବାଗ ହିଁ ସ୍ୱାଧୀନତା ଆନ୍ଦୋଳନରେ ଦିଗ ମୋଡ଼ ଆଣିଦେଲା । ୧୯୨୦-୨୧ ଅସହଯୋଗ ଆନ୍ଦୋଳନ, ୧୯୩୦-୩୨ ଆଇନ ଅମାନ୍ୟ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ ଆନ୍ଦୋଳନ, ବିପ୍ଳବୀ ସନ୍ତାସବାଦୀ ଆନ୍ଦୋଳନ, ଲାହୋର ଷଡ଼ଯନ୍ତ୍ର ମକଦ୍ଦମା, ଭଗତସିଂହ, ଶୁକଦେବ ରାଜଗୁରୁ, ପେଶବାର ଷଡ଼ଯନ୍ତ୍ର ମକଦ୍ଦମା, କାନପୁର ଷଡ଼ଯନ୍ତ୍ର ମକଦ୍ଦମା, ମିରଠ ମେଛୁଆବଜାର ଷଡ଼ଯନ୍ତ୍ର ମକଦ୍ଦମା, ଚିଟାଗଙ୍ଗ ଷଡ଼ଯନ୍ତ୍ର ମକଦ୍ଦମା, କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା, ଏମିତି କେତେ ମକଦ୍ଦମା – ଫାଶିକାଠ, ଦୀର୍ଘ ଜେଲଦଣ୍ଡ ।

ସହସ୍ର ସହସ୍ର ସଂଖ୍ୟାରେ ଆନ୍ଦାମାନ ସେଲୁଲାର ଜେଲରେ ବନ୍ଦୀ ।

ସ୍ୱାଧୀନତା ସଂଗ୍ରାମ ଲାଗି ଖାଲି କଂଗ୍ରେସ ନୁହଁ, ଆଉ କେତେ କେତେ ବିପ୍ଳବ ସଂଗଠନ, ଗୋଷ୍ଠୀର ଉଦ୍‌ଭବ । ଗଦ୍ଦର ପାର୍ଟି, କୀର୍ତ୍ତିକିଷାନ ପାର୍ଟି, ହିନ୍ଦୁସ୍ତାନ ରିପବ୍ଲିକାନ୍ ପାର୍ଟି, କାମାଗଡ଼ାମାରୁ ବିଦ୍ରୋହ, ଅନୁଶୀଳନ, ଯୁଗାନ୍ତର, କୃଷକ ସଭା, ଶ୍ରମିକ ସଂଘ, ଗଡ଼ଜାତ ପ୍ରଜାମୁକ୍ତି ଆନ୍ଦୋଳନ, ଛାତ୍ରସଂଘ, ଯୁବକ ସଂଘ ପ୍ରଭୃତି ବିପ୍ଳବୀ ସଂଗଠନ, ଆତ୍ମବଳିଦାନ । ୧୯୪୦ର ବ୍ୟକ୍ତିଗତ ସତ୍ୟାଗ୍ରହ–୧୯୪୨ ଭାରତଛାଡ଼ ଆନ୍ଦୋଳନ, ସୁଭାଷ ବୋଷଙ୍କ ଜାତୀୟ ମୁକ୍ତିବାହିନୀ ଆଇ.ଏନ୍.ଏ.ର ସଂଗ୍ରାମ । ନୌବିଦ୍ରୋହ, ଅଗଣିତ ଜନସଂଗ୍ରାମ, ସହସ୍ର ସହସ୍ର ଦେଶପ୍ରେମୀଙ୍କ ଆତ୍ମବଳିଦାନ ।

ବିଭାଜିତ ହେଲେ ବି ଭାରତ ସ୍ୱାଧୀନ । ୧୯୪୭ ଅଗଷ୍ଟ ୧୫ ତାରିଖ ପାଇଁ ଜାଲିଆନାବାଗ୍‌ର ଶହୀଦଙ୍କର ଅବଦାନ ଐତିହାସିକ । ତାହାହିଁ ଦୁଇଶହ ବର୍ଷବ୍ୟାପୀ ସ୍ୱାଧୀନତା ସଂଗ୍ରାମର ଗତି ବେଗକୁ ପ୍ରଖର କରିଦେଲା । ତାହାହିଁ ଆକୁମାରୀ ହିମାଳୟ ଜନମାନସରେ ବିଦ୍ରୋହର ବହ୍ନି ପ୍ରଜ୍ୱଳିତ କରି ଦେଇଥିଲା ।

ଆଜି ସେହି ଜାଲିଆନାବାଗ ଆଉ ଲକ୍ଷ ଲକ୍ଷ ଶହୀଦଙ୍କ ରକ୍ତଦାନରେ ଅର୍ଜିତ ସ୍ୱାଧୀନତା ପ୍ରତି ଆଉ ଏକ ମହାବିପଦ ମାଡ଼ିଆସୁଛି । ଆଉ ପୁରୁଣା ଢଙ୍ଗରେ ଦେଶ ପରାଧୀନ ହେବ ନାହିଁ । ନୂଆ ଢଙ୍ଗରେ, ଆର୍ଥିକ ସାମ୍ରାଜ୍ୟବାଦର ମାୟା ଜାଲରେ ଛନ୍ଦିଦେଇ ଦେଶର ସ୍ୱାଧୀନତା, ସାର୍ବଭୌମତ୍ୱ, ଆତ୍ମନିର୍ଭରଶୀଳତାର ମହାନ୍ ଉପଲବ୍ଧକୁ ଉଦାରୀକରଣ, ମୁକ୍ତ ଅର୍ଥନୀତି, ଜାତୀୟକରଣ ନାମରେ ଜଳାଞ୍ଜଳି ଦିଆଯାଉଛି । ଆଇ.ଏମ୍.ଏଫ୍., ବିଶ୍ୱବ୍ୟାଙ୍କ, ଗାଟ୍ ଚୁକ୍ତିର ମାୟାଜାଲ ।

ସଂଗ୍ରାମ ତେଣୁ ନୂତନ ଧରଣର । ଶତ୍ରୁ ଅଦୃଶ୍ୟ – ମାତ୍ର ତା'ର କାୟା ସର୍ବବ୍ୟାପୀ । ପୁଣି ଆମନ୍ତ୍ରଣ କରୁଛନ୍ତି ସେମାନଙ୍କୁ ଶାସକ ଶ୍ରେଣୀ । ନୂତନ କଂଗ୍ରେସର କର୍ଣ୍ଣଧାରମାନେ । ତାହା ୧୯୪୭ ପୂର୍ବର କଂଗ୍ରେସ ନୁହଁ । ତିଳକ, ଗାନ୍ଧୀ, ନେହେରୁ, ଆଜାଦ, ଗଫର ଖାଁ କଂଗ୍ରେସ ନୁହଁ । ସଂଗ୍ରାମ ଅତି କଠିନ । ଦେଶକୁ ସାଂପ୍ରଦାୟକତାବାଦ, ବିଚ୍ଛିନ୍ନତାବାଦ, ଛିନ୍ନ ଛିନ୍ନ କରିଦେଇଛି ।

ଜାଲିଆନାବାଗ୍‌ର ସ୍ମରଣରେ ଲକ୍ଷ ଲକ୍ଷ ଶହୀଦଙ୍କ ସମ୍ମାନରେ ଦେଶର ସ୍ୱାଧୀନତା ସାର୍ବଭୌମତ୍ୱ, ଅଖଣ୍ଡତା, ଧର୍ମନିରପେକ୍ଷତା, ଗଣତନ୍ତ୍ରକୁ ରକ୍ଷା କରିବାର ନୂତନ ସଂକଳ୍ପ, ନୂତନ ଧରଣର ଐକ୍ୟବଦ୍ଧ ସଂଗ୍ରାମ ଆବଶ୍ୟକ ।

❒❒❒

# ଓଡ଼ିଶା ଗଡ଼ଜାତ ପ୍ରଜାମୁକ୍ତି ଆନ୍ଦୋଳନ ଓ ସାରଙ୍ଗଧର

ଛପନ ବର୍ଷ ପୂର୍ବେ ଓଡ଼ିଶାରେ ଏକ ରାଜନୈତିକ ସଂଗଠନ ସର୍ବଭାରତୀୟ ସଂଗଠନର ଅଂଗ ରୂପେ ଆବିର୍ଭୂତ ହେଲା । ଓଡ଼ିଶାର ସେହି ସଂଗଠନର ଯେଉଁ ବ୍ୟକ୍ତି ପୁରୁଷଟି ସାଧାରଣ ସଂପାଦକ ହେଲେ ତାଙ୍କରି ଶତବାର୍ଷିକୀ । ୧୯୩୬ରେ ଉକ୍ତ ସର୍ବଭାରତୀୟ ରାଜନୈତିକ ସଂଗଠନ ଆମ ପରାଧୀନ ଦେଶ ମାତୃକାକୁ ବ୍ରିଟିଶ ସାମ୍ରାଜ୍ୟବାଦ କବଳରୁ ମୁକ୍ତି ସହିତ, ବ୍ରିଟିଶ ଶାସନର ଏକ ପ୍ରଧାନ ସ୍ତମ୍ଭ ଦେଶର ଛ'ଶହ ଗଡ଼ଜାତରେ ସାମନ୍ତବାଦୀ ରାଜରାଜୁଡ଼ା ଶାସନକୁ ଲୋପ କରିବାର ଲକ୍ଷ୍ୟ ଘେନି ଗଠିତ ହୁଏ । ତାହାର ନାମ ଅଲଇଣ୍ଡିଆ ଷ୍ଟେଟସ୍ ପିପୁଲସ୍ କନଫରେନସ୍ । ପଣ୍ଡିତ ଜବାହରଲାଲ ନେହେରୁ ତା'ର ସଭାପତି ଏବଂ ଜାମ୍ମୁ ଓ କାଶ୍ମୀର ଦେଶୀୟ ରାଜ୍ୟର ମୁକ୍ତି ଆନ୍ଦୋଳନର ପ୍ରଖ୍ୟାତ ନେତା ଶେଖ୍ ଅବଦୁଲା ସାଧାରଣ ସଂପାଦକ । ଏହାର ଉଦ୍‌ଘାଟନୀ ସମ୍ମିଳନୀରେ ଓଡ଼ିଶା ଗଡ଼ଜାତଗୁଡ଼ିକର ପ୍ରତିନିଧିମାନଙ୍କ ନେତୃତ୍ୱରେ ଥିଲେ ସାରଙ୍ଗଧର ଦାସ । ସେହି ବ୍ୟକ୍ତିଟି ୧୯୩୭ ଜୁନ୍ ୨୩ରେ କଟକଠାରେ କଂଗ୍ରେସର ଅନ୍ୟତମ ତୁଙ୍ଗନେତା ପଟ୍ଟାଭି ସୀତାରାମାୟାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ସମ୍ମିଳନୀରେ ନିର୍ବାଚିତ ହେଲେ ଓଡ଼ିଶା ଶାଖାର ସାଧାରଣ ସଂପାଦକ । ଏହାକୁ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀର ଦ୍ୱିତୀୟ ଅଧିବେଶନ କୁହାଯାଏ । ଓଡ଼ିଶା ଗଡ଼ଜାତଗୁଡ଼ିକର ବିଶିଷ୍ଟ ବିଶିଷ୍ଟ ସଂଗ୍ରାମୀ ଅନ୍ୟ ପଦବୀ ଗୁଡ଼ିକରେ ଅଧିଷ୍ଠିତ ହେଲେ ।

୧୯୩୬ ଏପ୍ରିଲ ପହିଲାରେ ବିହାରଠାରୁ ଅଲଗା କରାଯାଇ ଓଡ଼ିଶା ପ୍ରଦେଶ ଗଠିତ ହେବା କାଳରେ ଏହି ପ୍ରଦେଶରେ ୨୪ଟି ବ୍ରିଟିଶ ଆଶ୍ରିତ ଗଡ଼ଜାତ ଥିଲା । ସେଗୁଡ଼ିକ ହେଲେ – ମୟୂରଭଞ୍ଜ, ନୀଳଗିରି, କେନ୍ଦୁଝର, ତାଳଚେର, ପାଲଲହଡ଼ା, ଗାଙ୍ଗପୁର, ବଣେଇ, ବାମଡ଼ା, ସୋନପୁର, କଳାହାଣ୍ଡି, ପାଟନା, ବୌଦ୍ଧ, ଆଠମଲ୍ଲିକ, ରେଢ଼ାଖୋଲ, ଆଠଗଡ଼, ତିଗିରିଆ, ବଡ଼ମ୍ବା, ନରସିଂହପୁର, ଢେଙ୍କାନାଳ, ହିନ୍ଦୋଳ, ନୟାଗଡ଼, ଖଣ୍ଡପଡ଼ା, ଦଶପଲ୍ଲା, ରଣପୁର । ବହୁଳ ସଂଖ୍ୟାର ଓଡ଼ିଆଭାଷୀ ଲୋକ ଥିବା ଷଢ଼େଇକଳା, ଖରସୁଆଁ ବିହାରରେ ରହିଥିଲା । ଏପରି ୨୬ଟି ଏବଂ ମଧ୍ୟପ୍ରଦେଶର ୧୪ଟି ଗଡ଼ଜାତକୁ ଘେନି ବ୍ରିଟିଶ୍ ସରକାର ଏକ ଇଷ୍ଟର୍ଣ୍ଣ ଷ୍ଟେଟସ ଏଜେନସି ଗଢ଼ିଥିଲେ । ବ୍ରିଟିଶ ବଡ଼ଲାଟଙ୍କ ପ୍ରତିନିଧି ରୂପେ ଗୋରା

ପଲିଟିକାଲ ଏଜେଣ୍ଟ ଥିଲେ ଏହାର ସର୍ବମୟ ହର୍ତ୍ତା-କର୍ତ୍ତା । ଏହି ଗଡ଼ଜାତର ରାଜା ମହାରାଜାମାନେ ବ୍ରିଟିଶ ସାମ୍ରାଜ୍ୟବାଦର ବଟ୍ଟଛାୟାରେ ରହି ପ୍ରଜାମାନଙ୍କୁ ଲୁଣ୍ଠନ କରୁଥିଲେ । ପାନଠାରୁ ଘାସ ପର୍ଯ୍ୟନ୍ତ କରଟିକସ ବସାଉଥିଲେ । ଗୋଟିଏ ଗୋଟିଏ ଗଡ଼ଜାତରେ ଶହେ କିସମର କରଟିକସ । ଏହାଛଡ଼ା ମାଗଣା ବେଠି, ଭେଟି, ରସଦ । ଅଥଚ ଏମାନେ ଲକ୍ଷ ଲକ୍ଷ ଟଙ୍କା ଲୁଟି କରୁଥିବାବେଳେ ବ୍ରିଟିଶ ସରକାରକୁ ନାମମାତ୍ର ସଲାମି ଦେଉଥିଲେ । ଆଜିର ଯିଏ ବଡ଼ବଡ଼ ଜିଲ୍ଲାରେ ପରିଣତ ହୋଇଛନ୍ତି ଯେପରିକି କଳାହାଣ୍ଡି, କେଉଁଝର, ମୟୂରଭଂଜ ସେସବୁ ଗଡ଼ଜାତର ତଥାକଥିତ ରାଜା ମହାରାଜାଙ୍କ ଶୋଷଣ ଲୁଣ୍ଠନର ମାତ୍ରା ସେମାନେ ଦେଉଥିବା ସଲାମିରୁ ପ୍ରତିଭାତ । କଳାହାଣ୍ଡି ବାର୍ଷିକ ୧୬୦୦ ଟଙ୍କା, କେଉଁଝର ୧୭୧୦ ଟଙ୍କା, ମୟୁରଭଂଜ ୧୦୬୭ ଟଙ୍କା ଦେଉଥିଲେ । ପାଲଲହଡ଼ା ପରି ରାଜ୍ୟ ୬୬ ଟଙ୍କା, ଆଠମଲିକ ୪୮୦ ଟଙ୍କା, ହିନ୍ଦୋଳ ୫୫୧ ଟଙ୍କା, ଦଶପଲ୍ଲା ୬୬୧ ଟଙ୍କା, ତିଗିରିଆ ୮୮୦ ଟଙ୍କା, ବୌଦ୍ଧ ୮୦୦ ଟଙ୍କା, ନରସିଂହପୁର ୧୪୪୫ ଟଙ୍କା, ରେଢ଼ାଖୋଲ ୨୦୦୦ ଟଙ୍କା, ବଡ଼ମ୍ବା ୧୩୯୭ ଟଙ୍କା, ବଣେଇ ୨୭ ଶହ ଟଙ୍କା, ଆଠଗଡ଼ ୨୮ ଶହ, ଖଣ୍ଡପଡ଼ା ୪୨୧୧ ଟଙ୍କା, ଢେଙ୍କାନାଳ ୫୦୯୯ ଟଙ୍କା, ନୀଳଗିରି ୩୯ ଶହ, ନୟାଗଡ଼ ୫୫୨୫ ଟଙ୍କା, ବାମଡ଼ା ଦେଉଥିଲା ୭୫୦୦ ଟଙ୍କା କେବଳ ମାତ୍ର ପାଟନା ୧୩ ହଜାର, ସୋନପୁର ୧୨ ହଜାର ଓ ଗଙ୍ଗପୁର ୧୦ ହଜାର ଟଙ୍କା ଦେଉଥିଲେ ।

**ପ୍ରଥମ ଉଦ୍ୟମ**

୧୯୩୭ ଜୁନ୍‌ରେ ଅନୁଷ୍ଠିତ ସମ୍ମିଳନୀକୁ ଦ୍ୱିତୀୟ ଅଧିବେଶନର ଆଖ୍ୟା ଦିଆଯାଏ । କାରଣ ଓଡ଼ିଶାରେ ୧୯୩୧ ମସିହାରେ କଟକଠାରେ ହିଁ ରାଜାମାନଙ୍କ ଦ୍ୱାରା ନିଗୃହୀତ କେତେକ ଗଡ଼ଜାତର ବିଶିଷ୍ଟ ବିଶିଷ୍ଟ ବ୍ୟକ୍ତି ଏକ ସମ୍ମିଳନୀ କରାଇଥିଲେ । ସେଥିରେ ଅନ୍ୟମାନଙ୍କ ମଧ୍ୟରେ ଅଂଶ ଗ୍ରହଣ କରିଥିଲେ ଦଶପଲ୍ଲାର ଗୋବିନ୍ଦଚନ୍ଦ୍ର ମିଶ୍ର, ଆଠଗଡ଼ର ରାଧାନାଥ ରଥ, (ଅଧୁନା ସମାଜର ସଂପାଦକ), ବିଶିଷ୍ଟ କବିରାଜ ବାଲୁକେଶ୍ୱର ଆଚାର୍ଯ୍ୟ, ତିଗିରିଆର ମଧୁସୂଦନ ପଟ୍ଟନାୟକ ପ୍ରମୁଖ । ଏହି ସମ୍ମିଳନୀର ପରବର୍ତ୍ତୀ କାଳରେ ଉକ୍ତ ସଂଗଠନର ବିଭିନ୍ନ ଐତିହାସିକ କାରଣ ହେତୁ ଗଡ଼ଜାତ ପ୍ରଜାମାନଙ୍କର ଏକ ଶକ୍ତିଶାଳୀ ମୁଖପାତ୍ର ହୋଇପାରି ନଥିଲେ ହେଁ ଏବଂ ଏହାର ରାଜନୈତିକ ଅର୍ଥନୈତିକ ଓ ସାମାଜିକ ଲକ୍ଷ୍ୟ ସେତେ ସ୍ପଷ୍ଟ ନଥିଲେ ହେଁ, ଏହା ଯେ ଗଡ଼ଜାତ ପ୍ରଜାମାନଙ୍କ ମଧ୍ୟରେ ଆଦ୍ୟ ଜାଗରଣର ସୂଚନା ଦେଇଥିଲା ଏଥିରେ ସନ୍ଦେହ ନାହିଁ । ଗଡ଼ଜାତର ବ୍ୟକ୍ତି ହେଲେ ହେଁ ତତ୍କାଳୀନ କଂଗ୍ରେସ ନେତା ଓ କେନ୍ଦ୍ର ଆସେମ୍ଲି ସଦସ୍ୟ ଭୁବନାନନ୍ଦ ଦାସ ଏହାର ସଭାପତି ଥିଲେ ।

ସର୍ବଭାରତୀୟ ସ୍ତରରେ ଏବଂ ପ୍ରାଦେଶିକ କ୍ଷେତ୍ରରେ ଗଡ଼ଜାତ ପ୍ରଜା ସମ୍ମିଳନୀ ଗଠିତ ହେବା ପରେ ବନାଗ୍ନି ପରି ଭାରତର ବିଭିନ୍ନ ପ୍ରାନ୍ତରେ ଏବଂ ଆ[illegible] ଗଡ଼ିକରେ

ପ୍ରଜାମଣ୍ଡଳର ଆବିର୍ଭାବ ଘଟିଲା । ଏହି ପ୍ରକ୍ରିୟାରେ ସାରଙ୍ଗଧର ଦାସଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ । ପ୍ରତ୍ୟେକଟି ରାଜ୍ୟ ରାଜ୍ୟମଣ୍ଡଳ ପ୍ରାଦେଶିକ ଗଡ଼ଜାତ ସମ୍ମିଳନୀରେ ଅଂଗୀଭୂତ ହେଲେ । ଅବଶ୍ୟ ପ୍ରତ୍ୟେକଟି ଦେଶୀୟ ରାଜ୍ୟ ପ୍ରଜାମଣ୍ଡଳର ନିଜସ୍ୱ କର୍ମକର୍ତ୍ତା ରହିଲେ, ନିଜସ୍ୱ ଦାବୀ ସନନ୍ଦ ରଚିତ ହେଲା । ଏହାର ସେତେବେଳ ଗଠନ ସହଜସାଧ୍ୟ ନଥିଲା । ସ୍ଥାନୀୟ ନେତାମାନେ ରଜାମାନଙ୍କ ବିଷ ଚକ୍ଷୁରେ ପଡ଼ିଥିଲେ । ରଜାଙ୍କ ପୁଲିସ ରାଜଭକ୍ତ ପ୍ରଭାବଶାଳୀ, ବିତ୍ତବାନ ଲୋକଙ୍କ ଦ୍ୱାରା ନିଯୁକ୍ତ ଗୁଣ୍ଡାମାନେ ସେମାନଙ୍କର ପିଛା ଧରିଥିଲେ । ଘରଦ୍ୱାର ଲୁଟି ନେଉଥିଲେ, ଧରାପଡ଼ିଲେ ମାଡ଼ମାରି ଗିରଫ କରି ନେଉଥିଲେ । ସାରଙ୍ଗଧର ଦାସଙ୍କୁ କୌଣସି ଗଡ଼ଜାତରେ ପହଞ୍ଚିବାର ସୁଯୋଗ ନଥିଲା । ମୋଗଲବନ୍ଦୀ ଓଡ଼ିଶାରେ ବିଶେଷତଃ କଟକରେ ରହି ଏବଂ ଗଡ଼ଜାତଗୁଡ଼ିକୁ ଲାଗିଥିବା ମୋଗଲବନ୍ଦୀର ଜିଲ୍ଲାକୁ ଯାଇ ତାଙ୍କୁ ଓ ପ୍ରଜା ଆନ୍ଦୋଳନର ଅନ୍ୟାନ୍ୟ ସହଯୋଗୀଙ୍କୁ ସ୍ଥାନୀୟ ପ୍ରଜାମଣ୍ଡଳ କର୍ମୀମାନଙ୍କ ସହିତ ସମ୍ପର୍କ ରଖିବାକୁ, ପରାମର୍ଶ ଦେବାକୁ ପଡୁଥିଲା ।

ଗଡ଼ଜାତ ଗୁଡ଼ିକରେ କଂଗ୍ରେସ କମିଟି ଗଢ଼ାଯାଇ ପାରିବ ନାହିଁ ବୋଲି ନିଷ୍ପତ୍ତି ସେତେବେଳେ କଂଗ୍ରେସରେ ଅନ୍ତର୍ଭୁକ୍ତ ଥିବା କଂଗ୍ରେସ ସୋସାଲିଷ୍ଟ, କମ୍ୟୁନିଷ୍ଟମାନଙ୍କୁ କେବଳ ବ୍ୟଥିତ କରି ନଥିଲା, ନେହେରୁଙ୍କ ସମେତ ବହୁ କଂଗ୍ରେସ ନେତା ଏବଂ ପ୍ରତ୍ୟକ୍ଷ ବ୍ରିଟିଶ ଶାସିତ ଭାରତର ବିଭିନ୍ନ ପ୍ରଦେଶ ଓ ବିଭିନ୍ନ ଗଡ଼ଜାତର କଂଗ୍ରେସ କର୍ମୀ ଓ ନେତାଙ୍କ ମଧ୍ୟରେ ନୈରାଶ୍ୟ ଆଣିଥିଲା ।

ଏପରି ଏକ ପରିସ୍ଥିତିରେ ଓଡ଼ିଶାର ଗଡ଼ଜାତମାନଙ୍କରେ ବିଭିନ୍ନ ମତାଦର୍ଶର, ଭିନ୍ନ ଭିନ୍ନ ରାଜନୈତିକ ଆଭିମୁଖ୍ୟର ନେତା ଓ କର୍ମୀଙ୍କୁ ସଂଘବଦ୍ଧ କରିବା ଦାୟିତ୍ୱର ଶୀର୍ଷ ସ୍ଥାନରେ ସାରଙ୍ଗଧର ଦାସ ରହିଲେ – ତାହାହିଁ ତାଙ୍କୁ ଓଡ଼ିଶାର ରାଜନୈତିକ ଜୀବନରେ ଜଣେ ପ୍ରତିଷ୍ଠାବାନ ନେତାର ଆସ୍ଥାନ ଆଣିଦେଲା ।

**ଆଗାମୀ ସଂଗ୍ରାମର ସୁଦୃଢ଼ ଭିତ୍ତି**

୧୯୩୭ରେ ସାରଙ୍ଗଧର ଦାସ ସାଧାରଣ ସଂପାଦକ ଥାଇ ସର୍ବ ଭାରତୀୟ ସଂଗଠନର ଶାଖାରୂପେ ପ୍ରତିଷ୍ଠିତ ଏହି ସମ୍ମିଳନୀ ହିଁ ଗଡ଼ଜାତ ପ୍ରଜା ଆନ୍ଦୋଳନର ସଂଜିବନୀ ହେଲା । ପ୍ରତ୍ୟେକଟି ଦେଶୀୟ ରାଜ୍ୟରେ ପ୍ରଜାମଣ୍ଡଳ ଗଢ଼ିଉଠିଲା । କେବଳ ପାଟନା ରାଜ୍ୟରେ ହିଁ ଏହାର ନାମ ପ୍ରଜାମଣ୍ଡଳ ନଥାଇ ବଲାଙ୍ଗୀର ପାଟନା କୃଷକ ସଂଘ ଥିଲା । ଏହି ପ୍ରଜାମଣ୍ଡଳ ଗୁଡ଼ିକର ନିଜସ୍ୱ କର୍ମକର୍ତ୍ତା, କାର୍ଯ୍ୟକାରୀ କମିଟି ଓ ବିଭିନ୍ନ ଇଲାକାରେ ଶାଖା ପ୍ରଜାମଣ୍ଡଳ ଗଠିତ ହେଲା । ସର୍ବଭାରତୀୟ ଲକ୍ଷ୍ୟ, ଆଦର୍ଶ ଓ ଦାବୀ ସାଙ୍ଗକୁ ପ୍ରତ୍ୟେକଟି ଗଡ଼ଜାତର ପ୍ରଜାମାନଙ୍କ ମୌଳିକ ମାନବିକ ଅଧିକାର, ଅର୍ଥନୈତିକ ଓ ସାମାଜିକ ଅଧିକାର ସମ୍ବଳିତ ଦାବୀ ସାଙ୍ଗକୁ ମୋଗଲବନ୍ଦୀ ଓଡ଼ିଶାରେ ଓ ଅନ୍ୟ ରାଜ୍ୟମାନଙ୍କରେ ୧୯୩୫ ମସିହା ଖସଡ଼ା

ଅନୁସାରେ ପ୍ରତିଷ୍ଠିତ ଲୋକ ପ୍ରତିନିଧିମୂଳକ ଶାସନ ଅନୁରୂପ ପ୍ରତ୍ୟେକଟି ଦେଶୀୟ ରାଜ୍ୟରେ 'ହୁଙ୍କାପିଟା ମନମୁଖୀ' ଅତ୍ୟାଚାରୀ ରାଜାଶାସନ ପରିବର୍ତ୍ତେ ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା କରାଯାଉ ବୋଲି ଦାବୀ କରାଗଲା । ସେତେବେଳେ ରାଜ୍ୟରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଥାଏ । ସ୍ମରଣ କରାଯିବା କଥା ଯେ ୧୯୩୭ ନିର୍ବାଚନ ପରେ କଂଗ୍ରେସ ୬୦ଟି ବିଧାନସଭା ଆସନରୁ ୩୭ଟି ଆସନ ଲାଭ କରି ସଂଖ୍ୟାଗରିଷ୍ଠତା ଅର୍ଜନ କରିଥିଲେ ହେଁ ସର୍ବଭାରତୀୟ ନୀତି ହେତୁ କଂଗ୍ରେସ ଜିଣିଥିବା ରାଜ୍ୟମାନଙ୍କରେ କ୍ଷମତା ଗ୍ରହଣ କରିନଥିଲା । ମନ୍ତ୍ରିମଣ୍ଡଳଗୁଡ଼ିକଙ୍କ କାର୍ଯ୍ୟରେ ଗଭର୍ଣ୍ଣରମାନଙ୍କ ହସ୍ତକ୍ଷେପ ବନ୍ଦ ଘେନି ବ୍ରିଟିଶ ସରକାରର ପ୍ରତିଶ୍ରୁତି ମିଳିବା ପରେ ଓଡ଼ିଶା ଓ ଅନ୍ୟାନ୍ୟ ରାଜ୍ୟ ଯେପରି ବମ୍ବେ, ଉତ୍ତର ପ୍ରଦେଶ, ବିହାର, ମାନ୍ଦ୍ରାଜ, ସୀମାନ୍ତ ପ୍ରଦେଶ, ଆସାମରେ କଂଗ୍ରେସ କ୍ଷମତା ଗ୍ରହଣ କଲା ।

ଏହି ପ୍ରକ୍ରିୟା ଭାରତର ଦକ୍ଷିଣରୁ ମଧ୍ୟଭାଗ, ଉତ୍ତରରୁ ପଶ୍ଚିମ ଓ ପୂର୍ବାଂଚଳରେ ଥିବା ବୃହତ, କ୍ଷୁଦ୍ର ସବୁ ଦେଶୀୟ ରାଜ୍ୟରେ ପ୍ରଜାମାନଙ୍କୁ ଓ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବଳ ଯୋଗାଇଲା । ଓଡ଼ିଶାରେ ଥିବା ଗଡ଼ଜାତଗୁଡ଼ିକର ଶାସକମାନେ ଗଣ ଅଭ୍ୟୁତ୍‌ଥାନର ଆଶଙ୍କା କରି ସେମାନଙ୍କ ଶାସନ କଳକୁ ଅଧିକ ନିର୍ମମ ଭାବରେ ନିୟୋଗ କରିବାକୁ ସଜବାଜ ହେଲେ । ମୋଗଲବନ୍ଦୀରେ କଂଗ୍ରେସ ଶାସନ ସେମାନଙ୍କ ମଧ୍ୟରେ ହୃଦ୍‌କମ୍ପ ଆଣିଦେଲା । ଗଡ଼ଜାତଗୁଡ଼ିକରେ ପ୍ରଜାମଣ୍ଡଳ ଗଠନକୁ ମୋଗଲବନ୍ଦୀ ଓଡ଼ିଶାରେ ସେହି ସମୟରେ ଗଢ଼ିଉଠିଥିବା ଆଉ ଏକ ଆନ୍ଦୋଳନ ବିଶେଷ ଅନୁପ୍ରେରଣା ଯୋଗାଇଥିଲା । ତାହା ହେଉଚି ମୁଖ୍ୟତଃ କୃଷକ ସଭା ନେତୃତ୍ୱରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ନେତୃତ୍ୱରେ ପରିଚାଳିତ ଜମିଦାରୀ ପ୍ରଥା ବିରୋଧୀ ଆନ୍ଦୋଳନ । ବେଠି, ବେଗାରୀ, ସୁନିଆ, ଦଶହରା ଭେଟି ବିରୁଦ୍ଧରେ, ଜମିଦାରୀ ଅତ୍ୟାଚାର, ଯାବତୀୟ ପାଶବିକତା ବିରୁଦ୍ଧରେ ଦୁର୍ବାର ଆନ୍ଦୋଳନ ।

କଂଗ୍ରେସ-ସୋସାଲିଷ୍ଟ୍ ପାର୍ଟି ନେତୃତ୍ୱରେ ପରିଚାଳିତ କୃଷକ ସଭା ଆନ୍ଦୋଳନର ମୌଳିକ କେତେକ ଅର୍ଥନୈତିକ ଓ ସାମାଜିକ ଦାବୀ ପ୍ରଜାମଣ୍ଡଳର ଦାବୀଗୁଡ଼ିକ ସହିତ ସମ୍ପୂର୍ଣ୍ଣ ମେଳ ଖାଉଥିବାରୁ, ସେହି ଦୁଇ ସଙ୍ଗଠନ ଭିତରେ ଏକ ଆତ୍ମୀକ ସମ୍ପର୍କ ଗଢ଼ି ଉଠିଥିଲା । କଂଗ୍ରେସ-ସୋସାଲିଷ୍ଟ୍ ପାର୍ଟି ସେତେବେଳେ ଏକ ସ୍ୱତନ୍ତ୍ର ରାଜନୈତିକ, ଆଦର୍ଶଗତ ଗଣ ସଙ୍ଗଠନ ହେଲେ ହେଁ ଏହାର ନାଭୀନାଡ଼ ସେତେବେଳର କଂଗ୍ରେସ ସହିତ ରହିଥିଲା । ଏହି ସଙ୍ଗଠନରେ କମ୍ୟୁନିଷ୍ଟ୍, ସୋସାଲିଷ୍ଟ ମନୋଭାବାପନ୍ନ ସ୍ୱାଧୀନତା ସଂଗ୍ରାମୀ ଐକ୍ୟବଦ୍ଧ ହୋଇ ଚାଷୀ ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ, ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ଛାତ୍ର ଆନ୍ଦୋଳନର ନେତୃତ୍ୱ ଦେଉଥିଲେ । କେତେକ ଗଡ଼ଜାତର ପ୍ରଜାମଣ୍ଡଳର ତୁଙ୍ଗ ନେତୃତ୍ୱ ଏବଂ କେତେକ ପ୍ରଜାମଣ୍ଡଳର କର୍ମୀମାନେ ଏହି ସଙ୍ଗଠନର ନେତାମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ରଖୁଥିଲେ । ସାରଙ୍ଗଧର ଦାସ ସେହେତୁ କଂଗ୍ରେସର ଅନୁଗାମୀ, ପ୍ରଜାମଣ୍ଡଳ ଆନ୍ଦୋଳନର ସପକ୍ଷବାଦୀ

କଂଗ୍ରେସ ନେତା ଓ କର୍ମୀଙ୍କ ସହିତ ସଂଯୋଗ ପ୍ରତିଷ୍ଠା ସାଙ୍ଗକୁ କଂଗ୍ରେସ-ସୋସାଲିଷ୍ଟ ପାର୍ଟିର ନେତୃବର୍ଗ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୁରୁଚରଣ ପଟ୍ଟନାୟକ, ବୈଦ୍ୟନାଥ ରଥ, ଗୌରାଙ୍ଗଚରଣ ଦାସ, ରବି ଘୋଷ, ପ୍ରାଣନାଥ, ଗୋକୁଳମୋହନ ପ୍ରମୁଖଙ୍କ ଏବଂ ଢେଙ୍କାନାଳ, ନୀଳଗିରି, ରଣପୁର, ବଲାଙ୍ଗୀର, ଦଶପଲ୍ଲା ପ୍ରଭୃତି ଗଡ଼ଜାତ ପ୍ରଜା ଆନ୍ଦୋଳନରେ ନେତୃତ୍ୱକୁ ଆସିଥିବ । କଂଗ୍ରେସ-ସୋସାଲିଷ୍ଟ ପାର୍ଟି, ସୋସାଲିଷ୍ଟ ଓ କମ୍ୟୁନିଷ୍ଟଙ୍କ ସହିତ ଆନ୍ଦୋଳନର ସ୍ୱାର୍ଥ ଦୃଷ୍ଟିରୁ ଘନିଷ୍ଠ ସମ୍ପର୍କ ରଖିଥିଲେ । ଏଥି ସକାଶେ ତାଙ୍କୁ ଖୁବ୍ ବିଚକ୍ଷଣତା ଓ ସତର୍କତାର ସହ କାମ କରିବାକୁ ପଡ଼ିଥିଲା । କାରଣ କଂଗ୍ରେସ ଓ କେତେକ ପ୍ରଜାମଣ୍ଡଳର ତତ୍କାଳୀନ ନେତା ପ୍ରଜାମଣ୍ଡଳ ଆନ୍ଦୋଳନକୁ ସମାଜବାଦୀ ପ୍ରଭାବରୁ ନିବୃତ୍ତ କରି ରଖିବାର ପକ୍ଷପାତୀ ଥିଲେ ।

ସାରଙ୍ଗଧରଙ୍କ ଜୀବନୀ ସଙ୍କଳନର ଏହା ପ୍ରୟାସ ନୁହେଁ । ତେବେ ତାଙ୍କ ଜୀବନର ଘାତ ପ୍ରତିଘାତ ଓ ରାଜ୍ୟରେ ଏକ ଶୀର୍ଷ ନେତୃସ୍ଥାନୀୟ ବ୍ୟକ୍ତିତ୍ୱର ପରିଚୟ ଲାଗି କେତେକ ସଂକ୍ଷିପ୍ତ ତଥ୍ୟ ଆବଶ୍ୟକ ।

ଢେଙ୍କାନାଳ ଭଳି ଏକ ଅନ୍ଧାରୀ ଶାସନରେ ମେଧାବୀ ଛାତ୍ର ସାରଙ୍ଗଧର ଢେଙ୍କାନାଳ ପ୍ରଶାସନ ଦ୍ୱାରା ପ୍ରେରିତ ହୋଇ ଆମେରିକା ଯାଇ ଉଚ୍ଚଶିକ୍ଷା ଲାଭ କରି ଯେ ଦେଶପ୍ରେମୀ ହେବେ, ଗଡ଼ଜାତଗୁଡ଼ିକର ମୁକ୍ତି ଆନ୍ଦୋଳନରେ ଏକ ଅଗ୍ରଣୀ ଭୂମିକା ନେବେ, ତାହା ସେ ପ୍ରଥମେ କଳ୍ପନା କରି ନଥିଲେ ବୋଲି କହିବାର ଶୁଣିଛି । ଆମେରିକା ଭଳି ଧନାଢ୍ୟ ଦେଶରେ କଳାଲୋକ ଭାରତୀୟ ଓ ହିସପାନିକ୍ ଲୋକେ କିପରି ଦୁଃଖ ଦୁର୍ଦ୍ଦଶାରେ ଲାଞ୍ଛିତ ଶୋଷିତ ହୋଇ ପଶୁଭଳି ରହନ୍ତି, ତାହା ସ୍ୱଚକ୍ଷୁରେ ଦେଖି ଓ ସେମାନଙ୍କ ମୁକ୍ତି ଲାଗି କମ୍ୟୁନିଷ୍ଟ ଓ ସୋସାଲ୍ ଡିମୋକ୍ରାଟ୍ (ଯେଉଁମାନେ ସଂଖ୍ୟାରେ ନଗଣ୍ୟ) ସେମାନଙ୍କ ସାହସ, ନିଷ୍ଠା ଦେଖି ସେ ରାଜନୀତି ଆଡ଼କୁ ଆକୃଷ୍ଟ ହୋଇଥିଲେ । ଭାରତର ପରାଧୀନତାର ମୁକ୍ତି ସଂଗ୍ରାମ ଓ ସଙ୍ଗେ ସଙ୍ଗେ ବ୍ରିଟିଶ ସାମ୍ରାଜ୍ୟବାଦ ପରିପୁଷ୍ଟ ରାଜାରାଜୁଡ଼ା ଶାସନର ଅବସାନ କଥା ସୁଦୂର ଆମେରିକାରେ ବିଚାରୁଥିଲେ । କିନ୍ତୁ ହଠାତ୍ ସଂଗ୍ରାମରେ ଝାମ୍ପ ଦେଇ ନପାରି ନିଜେ ଆତ୍ମନିର୍ଭରଶୀଳ ହେବା ଲାଗି ତାଙ୍କର ଶିକ୍ଷା ଓ ତାଲିମ୍ ବଳରେ ଜାପାନ, ହଙ୍ଗକଙ୍ଗ, କଲିକତାରେ ବିଭିନ୍ନ ଶିଳ୍ପାନୁଷ୍ଠାନରେ ସଂଚାଳକ ପଦପଦବୀରେ ରହି ନିଜ ଜନ୍ମସ୍ଥଳୀ ଢେଙ୍କାନାଳରେ ରହି ଆଦର୍ଶ କୃଷି ଫାର୍ମ କରିବାକୁ ବିଚାରିଲେ । ଓଡ଼ିଶାରେ ଆଖୁଚାଷୀମାନଙ୍କ ସ୍ୱାର୍ଥରକ୍ଷା ଓ ଶିଳ୍ପ ପ୍ରତିଷ୍ଠାରେ ଆଗ୍ରହୀ ସାରଙ୍ଗଧର ଚିନି ଶିଳ୍ପ ପ୍ରତିଷ୍ଠା ଓ ପ୍ରସାରର ରୂପରେଖ ଆଙ୍କିଲେ । ମାତ୍ର ରାଜ ଅତ୍ୟାଚାର ତାଙ୍କୁ ରାଜ୍ୟାନ୍ତର କରିଦେଲା ଏବଂ କଟକରେ ସେ ସେତେବେଳର ସ୍ୱନାମଧନ୍ୟ କଂଗ୍ରେସ ନେତା ଓ ଉଦାରପନ୍ଥୀ ସମାଜସେବୀ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ କୁଣିଆ ହୋଇଗଲେ । ୧୯୩୦-୩୨ ଆଇନ୍ ଅମାନ୍ୟ ଆନ୍ଦୋଳନରେ ସକ୍ରିୟ ଭାଗ ନେବାର

ସୁଯୋଗ ତାଙ୍କୁ ଅନ୍ୟତ୍ର ଥିବାରୁ ମିଳିନଥିଲା । ଢେଙ୍କାନାଳରୁ ନିର୍ବାସିତ ସାରଙ୍ଗଧର କୃଷକ ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନ ମଧ୍ୟ ଦେଇ ୧୯୪୨ ଅଗଷ୍ଟ ବିପ୍ଳବ କାଳରେ ବ୍ରହ୍ମପୁର କେନ୍ଦ୍ର ଜେଲ୍‌ରେ ଦୀର୍ଘ କାରାବାସ ଭୋଗ କରିଥିଲେ । ମୁଖ୍ୟତଃ ଓଡ଼ିଶାରେ ଯୁଗାନ୍ତକାରୀ ଯେଉଁ ସଂଗ୍ରାମର ଜଣେ କର୍ଣ୍ଣଧାର ହୋଇ ସେ ନେତୃତ୍ୱର ଉଚ୍ଚ ସୋପାନକୁ ଉଠିଲେ, ବିଧାନସଭାର ସଦସ୍ୟ ହେଲେ, ଶାସକ ବିଧାୟକ ସଭାର ସଦସ୍ୟ ହେଲେ ପୁଣି ପ୍ରଜା ସୋସାଲିଷ୍ଟ୍ ପାର୍ଟିର ଲୋକସଭା ସଦସ୍ୟ ହୋଇ ଉକ୍ତ ଦଳର ନେତା ପଦରେ ଅଧିଷ୍ଠିତ ହେଲେ, ଏହା ସବୁ ତାଙ୍କ କୃତି-କୃତିତ୍ୱର ସାମଗ୍ରିକ ପରିଚୟ ନୁହେଁ । ଓଡ଼ିଶା ଗଡ଼ଜାତ ପ୍ରଜାମାନଙ୍କ ମୁକ୍ତି ଆନ୍ଦୋଳନର ବଳିଷ୍ଠ ଜନନେତା ରୂପେ ତାଙ୍କର ଭୂମିକା ଓ ଅବଦାନ ଏବଂ ସ୍ୱାଧୀନତା ପ୍ରାପ୍ତି ଓ ସାମ୍ରାଜ୍ୟବାଦ-ପୁଞ୍ଜିବାଦ, ସାମନ୍ତବାଦ ଦ୍ୱାରା ଶୋଷିତ, ନିର୍ଯ୍ୟାତିତ ଚାଷୀ-ମୂଲିଆ-ଶ୍ରମିକ-ଗରିବ ଜନତାର ଆର୍ଥିକ, ସାମାଜିକ ମୁକ୍ତି ପାଇଁ ତାଙ୍କର ଦୃଷ୍ଟିକୋଣ, ସଂଗ୍ରାମ ଓ ସଙ୍ଗଠନ ତାଙ୍କ ସାମଗ୍ରିକ ଜୀବନର ପରିଚୟ ।

ସାରଙ୍ଗଧରଙ୍କ ରାଜନୈତିକ ଜୀବନର ଉତ୍ତରଣ ପ୍ରକୃତପକ୍ଷେ ଆରମ୍ଭ ହୁଏ ୧୯୩୭ ଜୁନ୍ ୨୩ରେ । କଟକଠାରେ ପଟ୍ଟାଭି ସୀତାରାମାୟଙ୍କ ଅଧ୍ୟକ୍ଷତାରେ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀରେ ବିଭିନ୍ନ ଗଡ଼ଜାତରୁ ଆଗତ ପ୍ରତିନିଧିମାନେ ତାଙ୍କୁ ସମ୍ମିଳନୀରେ ସାଧାରଣ ସମ୍ପାଦକ ପଦରେ ଅଧିଷ୍ଠିତ କରାଇଥିଲେ । ଏଥିପୂର୍ବରୁ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ସଭାପତିତ୍ୱରେ ଭାରତର ପ୍ରାୟ ପାଞ୍ଚ ଶତାଧିକ ଗଡ଼ଜାତ ପ୍ରଜାମାନଙ୍କ ରାଜନୈତିକ ସମ୍ମିଳନୀ ଅନୁଷ୍ଠିତ ହୋଇଯାଇଥାଏ । ଜାମ୍ମୁ ଓ କାଶ୍ମୀରର ଜାତୀୟ ସମ୍ମିଳନୀର ପ୍ରଖ୍ୟାତ ଶେର-ଇ-କାଶ୍ମୀର ଶେଖ ଅବଦୁଲ୍ଲା ତାହାର ସାଧାରଣ ସମ୍ପାଦକ । ସାରଙ୍ଗଧର ଓଡ଼ିଶା ଗଡ଼ଜାତର ଅନ୍ୟାନ୍ୟ ନେତାଙ୍କ ସହ ସେଥିରେ ଯୋଗଦେଇଥିଲେ । ସେ ମଧ୍ୟ ଉକ୍ତ କେନ୍ଦ୍ରୀୟ ସଂଗଠନର କାର୍ଯ୍ୟନିର୍ବାହୀ କମିଟିର ସଦସ୍ୟ ନିର୍ବାଚିତ ହେଲେ ।

ଓଡ଼ିଶାର ଏହି ସମ୍ମିଳନୀ ଗଡ଼ଜାତଗୁଡ଼ିକରେ ରାଜଅତ୍ୟାଚାର ଶୋଷଣର ତଦନ୍ତ କରି ଏକ ରିପୋର୍ଟ ପ୍ରସ୍ତୁତ କରିବା ପାଇଁ ଏକ ତଦନ୍ତ କମିଟି ଗଠନ କରିଥିଲା । ଅନେକ ପ୍ରସ୍ତାବ ଗୃହୀତ ହୋଇଥିଲା । ସାରଙ୍ଗଧର ଦାସ ଆବାହକ ଥାଇ ଏହି ତଦନ୍ତ କମିଟିରେ ଥିଲେ ସ୍ୱନାମଧନ୍ୟ କଂଗ୍ରେସ ନେତା ବଳବନ୍ତରାୟ ମେହେଟ୍ଟା, ସତୀଶଚନ୍ଦ୍ର ବୋଷ ଓ ପୂର୍ବତନ ବିହାର-ଓଡ଼ିଶା ଆସେମ୍ବ୍ଲି ସଦସ୍ୟ ଡଃ ବ୍ରଜସୁନ୍ଦର ଦାସ ।

ଏହାର କାର୍ଯ୍ୟପରିସର ବୃଦ୍ଧିପାଇଲା ପରେ ତଦନ୍ତ କମିଟିର ପୁନର୍ଗଠନ ହେଲା । ଡଃ ହରେକୃଷ୍ଣ ମହତାବ ଚେୟାରମେନ ଏବଂ ସାରଙ୍ଗଧର ଦାସ ସମ୍ପାଦକ ରହିଲେ । ବଳବନ୍ତରାୟ ମେହେଟ୍ଟା ଓ ଲାଲମୋହନ ପଟ୍ଟନାୟକ ସଦସ୍ୟ ରହିଲେ ।

୧୯୩୬ରେ ବିହାର ରାଜ୍ୟରୁ ଓଡ଼ିଶା ସ୍ୱତନ୍ତ୍ର ହୋଇ ଛଅଟି ଜିଲ୍ଲା ଓଡ଼ିଶା ରୂପେ

ଗଠିତ ହେଲା । ସମ୍ବଲପୁର (ଯାହାକୁ ବ୍ରିଟିଶ ସରକାର ମଧ୍ୟ ପ୍ରଦେଶରେ ରଖିଥିଲେ, ତାହା ବହୁ ଆନ୍ଦୋଳନ ପରେ ୧୯୦୫ରେ ଓଡ଼ିଶା ଅନ୍ତର୍ଭୁକ୍ତ ହୋଇଥିଲା), କୋରାପୁଟ (ମାନ୍ଦ୍ରାଜରେ ମିଶାଇ ଦିଆଯାଇଥିଲା), କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ (ତାହା ମଧ୍ୟ ମାନ୍ଦ୍ରାଜ ଅନ୍ତର୍ଭୁକ୍ତ ଥିଲା) ଏହି ୬ଟି ଜିଲ୍ଲା । ଗୋପନରେ ଅତ୍ୟାଚାରିତ ପ୍ରଜାମାନେ ମୋଗଲବନ୍ଦୀର କଟକ ଆସି ଅତ୍ୟାଚାର, ଶୋଷଣର ଲୋକହର୍ଷଣକାରୀ ବିବରଣୀମାନ ସାରଙ୍ଗଧରଙ୍କ ବାସସ୍ଥଳୀ ଡଗରପଡ଼ା ପଲ୍ଲିକବି ନନ୍ଦକିଶୋର ବଳଙ୍କ ଭଡ଼ାଘରେ ଘଣ୍ଟା ଘଣ୍ଟା ବସି ଦେଇ ଯାଉଥିଲେ । ତଦନ୍ତ କମିଟିର ସଦସ୍ୟମାନେ ସାରଙ୍ଗଧରଙ୍କ ନେତୃତ୍ୱରେ ମଧ୍ୟ ମୋଗଲବନ୍ଦୀର ଖୋର୍ଦ୍ଧା, ବାଲେଶ୍ୱର, ସମ୍ବଲପୁରରେ ଅବସ୍ଥାନ କରି ଆଖପାଖ ଗଡ଼ଜାତରୁ ବିବରଣୀ ସଂଗ୍ରହ କରୁଥିଲେ । ଅବସ୍ଥା ଏପରି ଥିଲା ଯେ ମୋଗଲବନ୍ଦୀର ନେତାମାନେ ଥିବା ମୋଲବନ୍ଦୀରେ ରଜାଙ୍କ ଗିରଫଦାରୀ ଏଡ଼ିବାକୁ ରହିଥିବା ଗଡ଼ଜାତର ନେତାମାନେ ଗଡ଼ଜାତରେ ପ୍ରବେଶ କରିପାରୁନଥିଲେ ।

୧୯୩୭ ଜୁନ୍‌ରେ ଅନୁଷ୍ଠିତ ଏହି ଦ୍ୱିତୀୟ ସମ୍ମିଳନୀ ଏବଂ ତଦନ୍ତ କମିଟି ତଥା ମୋଗଲବନ୍ଦୀରେ ପ୍ରତିନିଧିମୂଳକ କଂଗ୍ରେସ ସରକାର ହିଁ ପ୍ରଜାମାନଙ୍କର ଭୟ ଦୂରକଲା । ପ୍ରତ୍ୟେକଟି ଗଡ଼ଜାତରେ ପ୍ରଜାମଣ୍ଡଳ ଶାଖା ଗଢ଼ିଉଠିଲା । ପ୍ରତ୍ୟେକଟି ଶାଖା ନିଜ ନିଜର ସମ୍ବିଧାନ ଓ ଦାବୀପତ୍ର ପ୍ରସ୍ତୁତ କଲେ ଏବଂ ସଭାପତି, ଉପସଭାପତି, ସମ୍ପାଦକ, କୋଷାଧ୍ୟକ୍ଷ ଓ କାର୍ଯ୍ୟକାରୀ କମିଟିର ସଦସ୍ୟ ନିର୍ବାଚିତ କଲେ । କେବଳ ସେତିକି ନୁହେଁ ପ୍ରତ୍ୟେକ ଗଡ଼ଜାତର ଆଞ୍ଚଳିକ ସ୍ତରରେ ମଧ୍ୟ ଏହାର ଶାଖା ପ୍ରତିଷ୍ଠିତ ହେଲା । ସାଧାରଣ ସମ୍ପାଦକ ଭାବରେ ସାରଙ୍ଗଧରଙ୍କୁ ସବୁ ଶାଖା ସଂସ୍ଥା ସହିତ ଘନିଷ୍ଠ ସହଯୋଗ ପ୍ରତିଷ୍ଠା କରିବାକୁ ପଡୁଥିଲା ।

ଏହି ଛଅଟି ଜିଲ୍ଲାକୁ ନେଇ ଗଠିତ ହୋଇଥିବା ଓଡ଼ିଶା ପ୍ରଦେଶ ପୂର୍ବରୁ ଯେମିତି ଓଡ଼ିଶା ବୋଲି କେବଳ କଟକ, ପୁରୀ, ବାଲେଶ୍ୱର, ଅନୁଗୋଳକୁ ବୁଝାଉଥିଲା, ସେମିତି ଓଡ଼ିଶା ଗଡ଼ଜାତଗୁଡ଼ିକୁ ମଧ୍ୟ ଓଡ଼ିଶା ବାହାରେ ମଧ୍ୟପ୍ରଦେଶରେ ରଖାଯାଇଥିଲା । ଏହା ୧୮୪୮ର କଥା । ଓଡ଼ିଶାରେ ପ୍ରଥମେ ୧୬ ଓ ତହିଁରୁ ଗୋଟିଏ ରାଜ୍ୟ ଦୁଇଭାଗ କରି ଏପରି ୧୭ଟି ଗଡ଼ଜାତ ରହିଥିଲା । ମଧ୍ୟପ୍ରଦେଶରୁ ବାମଡ଼ା, ରେଢ଼ାଖୋଲ ପ୍ରଭୃତି ସାତଟି ରାଜ୍ୟ ମିଶିଗଲା ପରେ ଓଡ଼ିଶା ଗଡ଼ଜାତ ସଂଖ୍ୟା ୨୪ରେ ପହଞ୍ଚିଥିଲା । ଏହି ଦୀର୍ଘ ସମୟ ଭିତରେ ଗଡ଼ଜାତଗୁଡ଼ିକ ଉପରେ ବ୍ରିଟିଶ ସରକାରର ସାର୍ବଭୌମ ଅଧିକାର ଘେନି ପ୍ରଶାସନରେ ବିଭିନ୍ନ ପରିବର୍ତ୍ତନ କରାଯାଇଥିଲା । ମାତ୍ର ୧୯୩୮-୩୯ ବେଳକୁ ଓଡ଼ିଶାର ୨୪ଟି ଏବଂ ଷଢ଼େଇକଳା-ଖରସୁଆଁ ଏପରି ୨୬ଟି ରାଜ୍ୟ ରହିଲା ବ୍ରିଟିଶ ପଲିଟିକାଲ ଏଜେଣ୍ଟଙ୍କ ତତ୍ତ୍ୱାବଧାନରେ, ଯାହାର ମୁଖ୍ୟ କାର୍ଯ୍ୟାଳୟ ଓଡ଼ିଶାରେ ନୁହେଁ, କଲିକତାରେ ଥିଲା ।

ଏସବୁ ଉଲ୍ଲେଖ ପ୍ରାସଙ୍ଗିକ । କାରଣ ଓଡ଼ିଶାରେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ପ୍ରତ୍ୟେକ ଗଡ଼ଜାତରେ ରାଜଶାସନର ଓ ଶୀର୍ଷରେ ପଲିଟିକାଲ ଏଜେଣ୍ଟଙ୍କର ମୁକାବିଲା କରିବାକୁ

ପଡ଼ିଥିଲା । ବ୍ରିଟିଶ ପଲିଟିକାଲ ଏଜେଣ୍ଟ ନଥିଲେ ଗଡ଼ଜାତଗୁଡ଼ିକରେ ପ୍ରଜାମଣ୍ଡଳ ଆନ୍ଦୋଳନ ଅତି ସହଜରେ ଜୟଯୁକ୍ତ ହୋଇପାରିଥାନ୍ତା । ଏହାକୁ ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍‌ସି କୁହାଯାଉଥିଲା ।

**ଦୁଇ ପର୍ଯ୍ୟାୟ ଓ ତିନୋଟି ପ୍ରବୃତ୍ତି :**

୧୯୩୮-୩୯ ଏବଂ ୧୯୪୬-୪୮ ଏହି ଦୁଇଟି ପର୍ଯ୍ୟାୟ ଦେଇ ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନ ଗତି କରିଥିଲା । ଏହି ଦୁଇ ପର୍ଯ୍ୟାୟରେ ଅନେକ ବଙ୍କା, ଢଙ୍କା, ଅନେକ ଉତ୍‌ଥାନ ପତନ, ଅନେକ ମତମେଳ ଓ ଅମତ ଭିତର ଦେଇ ଯାଇଥିଲା । ଏହି ଦୁଇ ପର୍ଯ୍ୟାୟର ସଂଗ୍ରାମକାଳରେ ସାରଙ୍ଗଧର ଦାସହିଁ ସାଧାରଣ ସମ୍ପାଦକ ଥିବାରୁ ସେ ଆନୁଷ୍ଠାନିକ କେନ୍ଦ୍ରବିନ୍ଦୁ ହୋଇଥିଲେ ।

ଏହି ଐତିହାସିକ ଆନ୍ଦୋଳନରେ ତିନୋଟି ସୁସ୍ପଷ୍ଟ ରାଜନୈତିକ ପ୍ରବୃତ୍ତି ରହିଥିଲା । ଓଡ଼ିଶା ଗଡ଼ଜାତଗୁଡ଼ିକର ନେତା ଏବଂ ମୋଗଲବନ୍ଦୀର କଂଗ୍ରେସ ଓ ପୂର୍ବରୁ ଯେପରି କୁହାଯାଉଛି କଂଗ୍ରେସ ସୋସଲିଷ୍ଟ, କମ୍ୟୁନିଷ୍ଟ ନେତା ଓ କର୍ମୀମାନଙ୍କ ଆନ୍ଦୋଳନର ସଂଗଠନ, ଆଶୁ ଓ ପରମଲକ୍ଷ୍ୟ ଏବଂ ଆନ୍ଦୋଳନ ପରିଚାଳନାର ପନ୍ଥା ପଦ୍ଧତି ମାର୍ଗ ଘେନି ମତଭେଦ ପରିଦୃଷ୍ଟ ହେଉଥିଲା । ସାରଙ୍ଗଧର ସାଧାରଣ ସଂପାଦକ । ତେଣୁ ବିଭିନ୍ନ ପ୍ରବୃତ୍ତିର ସମସ୍ତଙ୍କୁ ଧରି ଏକ ସଂଗଠନରେ ସେ ରଖିବାକୁ ପ୍ରଗାଢ଼ ଉଦ୍ୟମ କରୁଥିଲେ । ସେ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରବୃତ୍ତିର ନିକଟତର ଥିଲେ, ସାଂଗଠନିକ ଭାବରେ ନହେଲେ ହେଁ ଆଦର୍ଶଗତ ଭାବରେ ।

ସେତେବେଳେ କଂଗ୍ରେସ-ସୋସାଲିଷ୍ଟ ପାର୍ଟିର ମୁଖପତ୍ର ଯାହାକି ରାଜ୍ୟରେ ସାମନ୍ତବାଦୀ ଜମିଦାରୀ ଅତ୍ୟାଚାରର ଅବସାନ ଆଣି ଜମିଦାରୀ ପ୍ରଥାର ସମୂଳ ଉଚ୍ଛେଦ ଚାହୁଁଥିଲା, ତାହା ସହିତ ସାମନ୍ତବାଦର ଆଉ ଏକ ବଡ଼ ସ୍ତମ୍ଭ ରାଜା-ରାଜୁଡ଼ା ଉଚ୍ଛେଦ ଲକ୍ଷ୍ୟର ଅଙ୍ଗାଙ୍ଗୀ ସଂପର୍କ ଥିବାରୁ ସାରଙ୍ଗଧର ଏହି ପ୍ରବୃତ୍ତି ସହିତ ସାମିଲ ହେଲେ । ୧୯୩୬-୩୭-୩୮ ବେଳେ ଏହି କୃଷକ ଆନ୍ଦୋଳନର ଜନ୍ମ । ତା'ର ବଳିଷ୍ଠ ମୁଖପତ୍ର ଥିଲା 'କୃଷକ' ସାପ୍ତାହିକ । ଏହାର ସଂପାଦକ ମଣ୍ଡଳୀରେ ମାଳତୀ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୁରୁଚରଣ ପଟ୍ଟନାୟକ ଓ ସାରଙ୍ଗଧର ଦାସ । ସଂପାଦକ ଥିଲେ ଭଗବତୀ ଚରଣ ପାଣିଗ୍ରାହୀ ଓ ପରିଚାଳନା ସଂପାଦକ ଗୁଚରଣ ପଟ୍ଟନାୟକ । ଅର୍ଥାତ୍ ନବକୃଷ୍ଣ ଚୌଧୁରୀ ଭଗବତୀ ପ୍ରମୁଖ ପ୍ରଗତିଶୀଳ ସୋସଲିଷ୍ଟ କମ୍ୟୁନିଷ୍ଟ ଭାବାଦର୍ଶର ସେ ନିକଟତର ହେଲେ । 'କୃଷକ' ପତ୍ରିକା ଗଡ଼ଜାତ ପ୍ରଜା ଆନ୍ଦୋଳନର ଏକ ମୁଖପତ୍ର ରୂପେ ଖୋଦ ଗଡ଼ଜାତଗୁଡ଼ିକର ଅନେକ ନେତା ଓ କର୍ମୀଙ୍କ ଦ୍ୱାରା ବିବେଚିତ ହେଲା । ଏହାର ଆଉ ଏକ କାରଣ ହେଲା ସାରଙ୍ଗଧର ଦାସ "ଲଣ୍ଡା ଦେହୁରୀ" ଛଦ୍ମନାମରେ ଯେଉଁ ସାପ୍ତାହିକ ସ୍ତମ୍ଭ ଲେଖୁଥିଲେ ତାହା ଆନ୍ଦୋଳନକାରୀଙ୍କ ଦ୍ୱାରା ବିଶେଷ ଭାବରେ ଆଦୃତ ହେଉଥିଲା । ଲଣ୍ଡା ଦେହୁରୀକୁ ପଢ଼ିବାକୁ

ଲୋକ ଅନେକ ବସୁଥିଲେ ।

ଦ୍ୱିତୀୟ ପ୍ରବୃତ୍ତିଟିର ଶୀର୍ଷରେ ଥିଲେ ହରେକୃଷ୍ଣ ମହତାବ । ସେ ଥିଲେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ଓ ତଦନ୍ତ କମିଟିର ଚେୟାରମେନ । ଏହି ପ୍ରବୃତ୍ତି ଓ ତୃତୀୟ ପ୍ରବୃତ୍ତି ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ଥିଲା । ତୃତୀୟଟିର ଶୀର୍ଷରେ ଥିଲେ ରାଧାନାଥ ରଥ ।

ତିନୋଟିଯାକ ପ୍ରବୃତ୍ତିରେ ଆନ୍ଦୋଳନର ଲକ୍ଷ୍ୟ, ଆଦର୍ଶ, ପନ୍ଥା-ପଦ୍ଧତି ସଂପର୍କରେ ପାର୍ଥକ୍ୟ ଥିଲା ଓ ସାମଞ୍ଜସ୍ୟ ମଧ୍ୟ ଥିଲା । ସାମଞ୍ଜସ୍ୟ ହେଲା ରାଜାରାଜୁଡ଼ାଙ୍କ ଦ୍ୱାରା ପ୍ରଜାପୀଡ଼ନ, ଦମନ, ଅତ୍ୟାଚାରର ବିଲୋପ ଅଣାଯିବ । ରସଦ, ମାଗଣ, ବେଠି, ଭେଟି ଲୋପ ହେବ । ପ୍ରଜାମାନେ ପ୍ରଥମାବସ୍ଥାରେ ସଭାସମିତି କରିବାର, ସଂଗଠନ ଗଢ଼ିବାର ଅଧିକାର ପାଇବେ । ସେମାନଙ୍କୁ ପ୍ରଶାସନରେ ସାମିଲ କରାଯିବ । ଦାୟିତ୍ୱମୂଳକ ଶାସନ ସ୍ଥାନ ନେବ 'ମନମୁଖୀ', 'ହୁକ୍କାପିଟା' ଅନ୍ଧାରୀ ଶାସନର । ପ୍ରଥମ ପ୍ରବୃତ୍ତିର ଏଥିରୁ ଅଧିକ ଆଭିମୁଖ୍ୟ ହେଲା ରାଜାରାଜୁଡ଼ା ଶାସନର ସଂପୂର୍ଣ୍ଣ ଅବସାନ । ସେମାନଙ୍କ ଶୋଷଣରୁ ଉଦ୍‌ଭବ ସଂପଦ, ରାଜପ୍ରାସାଦ, ଅମାର, ଖମାର, ରାଣୀମା, ରାଜାଙ୍କ ଭାଇ ବିରାଦର, ପଟାୟତ, ଟିକାୟତଙ୍କ ହଜାର ହଜାର ଏକର ଜମି ଓ ମୋତି ମାଣିକ୍ୟର ବିନା କ୍ଷତିପୂରଣରେ ବାଜ୍ୟାପ୍ତ । ଓଡ଼ିଶା ସହିତ ଗଡ଼ଜାତଗୁଡ଼ିକର ସମ୍ପୂର୍ଣ୍ଣ ମିଶ୍ରଣ ଏବଂ ପ୍ରଜାମାନଙ୍କୁ ନିଜ ଘରବାରି ଜମିରେ ଅସଲ ପ୍ରଜାସ୍ୱତ୍ୱ ଅର୍ପଣ । ଅର୍ଥାତ୍ ସାମନ୍ତବାଦର ସଂପୂର୍ଣ୍ଣ ବିଲୋପ ।

ଦ୍ୱିତୀୟ ପ୍ରବୃତ୍ତି ହେଲା, ରାଜାମାନଙ୍କ ଗଡ଼ଜାତକୁ ଖାସ କରାଯିବ ଓ ଓଡ଼ିଶା ସହିତ ମିଶ୍ରଣହେବ; ମାତ୍ର କ୍ଷତିପୂରଣ ଦିଆଯିବ ଏବଂ ଓଡ଼ିଶାରେ ଯେପରି ଆଳି, କନିକା, ଖଲିକୋଟ, ପାରଳାଖେମୁଣ୍ଡି, ଜୟପୁର ପ୍ରଭୃତି ସ୍ଥାୟୀ ଜମିଦାରୀ ରହିଛି, ରାଜାମାନଙ୍କର ଶାସନ କ୍ଷମତା କାଢ଼ିନେଇ ସେମାନେ ସେହିପରି ଜମିଦାର ପର୍ଯ୍ୟାୟରେ ରହିବେ । ମାତ୍ର ଆନ୍ଦୋଳନର ଅଗ୍ରଗତି ଫଳରେ ଶ୍ରୀ ମହତାବ ପ୍ରବୃତ୍ତିର ନେତାମାନେ ଗଡ଼ଜାତଗୁଡ଼ିକର ସଂପୂର୍ଣ୍ଣ ମିଶ୍ରଣ ହୋଇ ଓଡ଼ିଶା ସହିତ ଏକ ଶାସନାଧୀନ ରହିବ ବୋଲି ମତପୋଷଣ କଲେ ।

ତୃତୀୟ ପ୍ରବୃତ୍ତିଟି ହେଲା, ରଜାମାନଙ୍କର ଶାସନ ଯିବ, ସେସବୁ ରାଜ୍ୟରେ ପ୍ରତିନିଧିମୂଳକ ପ୍ରଜାଶାସନ ପ୍ରତିଷ୍ଠା କରାଯିବ । ରଜାମାନଙ୍କୁ ଥଇଥାନ କରାଯିବ । ଓଡ଼ିଶା ପ୍ରଶାସନ ସହିତ ଗଡ଼ଜାତ ପ୍ରଶାସନଗୁଡ଼ିକର ଏକ ଗଣତାନ୍ତ୍ରିକ ସମ୍ପର୍କ ପ୍ରତିଷ୍ଠା ହେବ । ଅର୍ଥାତ୍ ସେଠାରେ ଓଡ଼ିଶା ଭଳି ଲୋକ ପ୍ରତିନିଧି ଶାସନ ରହିବ – ପ୍ରତ୍ୟେକ ଗଡ଼ଜାତ ପ୍ରଜାମାନଙ୍କର ପ୍ରତିନିଧି ରୂପେ ସେମାନେ ଶାସନ ଚଳେଇବେ ।

ତେଣୁ ପ୍ରଥମ ପ୍ରବୃତ୍ତି ଓ ଦ୍ୱିତୀୟ ପ୍ରବୃତ୍ତି ମଧ୍ୟରେ ଅସାମଞ୍ଜସ୍ୟ ଥିଲେ ହେଁ, ଓଡ଼ିଶା ସହିତ ମିଶି ଏକ ଶାସନାଧୀନ ସମସ୍ତେ ହେବେ, ଏହାହିଁ ମେଳ । ଦୁଇଟିଯାକ ପର୍ଯ୍ୟାୟରେ ଗଡ଼ଜାତ ପ୍ରଜା ଆନ୍ଦୋଳନ ବେଳେ ଏହି ପ୍ରବୃତ୍ତିଗୁଡ଼ିକର ସଂଘର୍ଷ ଘଟୁଥିଲା । ତୃତୀୟ ପ୍ରବୃତ୍ତିର

ମୁଖପତ୍ର ରୂପେ କଟକରୁ 'ଗଡ଼ଜାତ ସମାଚାର' ନାମକ ପାକ୍ଷିକ ପ୍ରକାଶ ପାଉଥିଲା । ସମ୍ପାଦକ ଥିଲେ ବାସୁଦେବ ମହାପାତ୍ର ।

ପ୍ରଜାମଣ୍ଡଳଗୁଡ଼ିକର ନେତାମାନେ ଏହି ତିନୋଟି ପ୍ରବୃତ୍ତିରେ ମଧ୍ୟ ବିଭକ୍ତ ହୋଇଥିଲେ । କିନ୍ତୁ ସଂଗ୍ରାମ କାଳରେ ପ୍ରବୃତ୍ତି ଘେନି ବାଦବିବାଦ ଊଣା ଥିଲା ।

ସେତେବେଳେ ବିଭିନ୍ନ ଗଡ଼ଜାତ ପ୍ରଜାମଣ୍ଡଳରେ ଯେଉଁମାନେ ନେତୃତ୍ୱକାରୀ ଭୂମିକାରେ ଥିଲେ ସେ ସମସ୍ତଙ୍କ ନାମ ଦେଇ ହେଉନାହିଁ । ତେବେ ନୀଳଗିରିରେ କୈଳାସଚନ୍ଦ୍ର ମହାନ୍ତି, ବନମାଳୀ ଦାସ; ଢେଙ୍କାନାଳରେ ମହେଶ୍ୱନ୍ଦ୍ର ସୁବାହୁ ସିଂହ, ବୈଷ୍ଣବ ପଟ୍ଟନାୟକ, ହରମୋହନ ପଟ୍ଟନାୟକ, ବ୍ରଜକିଶୋର ଧଳ, ଲକ୍ଷ୍ମୀଧର ସାହୁ; ତାଳଚେରରେ ପବିତ୍ର ମୋହନ ପ୍ରଧାନ, ମଦନ ମୋହନ ପ୍ରଧାନ, ବିଚ୍ଛନ୍ଦ ପ୍ରଧାନ, କୃତ୍ତିବାସ ରଥ; ଆଠଗଡ଼ରେ ରାଧାନାଥ ରଥ, ବ୍ରଜକିଶୋର ପଟ୍ଟନାୟକ, ବିବେକ ରଥ, ଅଚ୍ୟୁତାନନ୍ଦ ଦାସ, ଲିଙ୍ଗରାଜ ଜେନା, ତିଗିରିଆରେ ମଧୁସୂଦନ ପଟ୍ଟନାୟକ, ବଂଶୀଧର ପଟ୍ଟନାୟକ, ରଣପୁରରେ ବନମାଳୀ ରାମ, ଗଙ୍ଗାଧର ମିଶ୍ର, ଅଗାଧୁ ବରାଳ, ନରସିଂହପୁରରେ ବନମାଳୀ ପଣ୍ଡା, ଦଶପଲ୍ଲାରେ ଗୋବିନ୍ଦ ପଣ୍ଡା, ଖଣ୍ଡପଡ଼ାରେ ରଘୁନାଥ ସିଂହସାମନ୍ତ, ନୟାଗଡ଼ରେ ଶ୍ରୀଧର ଦାଶ, ନାରାୟଣ ନନ୍ଦ, ଲକ୍ଷ୍ମଣ ମହାରଣା, ସୋନପୁରରେ ଭୀମଭୋଇ, ଲକ୍ଷ୍ମଣ ଶତପଥୀ, ଆଠମଲ୍ଲିକରେ ଭଗବାନ ବେହେରା, ମୟୂରଭଞ୍ଜରେ ଶରତ ଦାସ, ଗିରିଶଚନ୍ଦ୍ର ରାୟ, ଗୌର ମହାପାତ୍ର, ବଲାଙ୍ଗୀରରେ କପିଳେଶ୍ୱର ନନ୍ଦ, ଯୁଧିଷ୍ଠିର ମିଶ୍ର, ସ୍ୱପ୍ନାନନ୍ଦ ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର ମିଶ୍ର, କେନ୍ଦୁଝରରେ କୀର୍ତ୍ତନ ପଟ୍ଟନାୟକ ପ୍ରମୁଖ ।

**ପ୍ରଥମ ପ୍ରକାଶ୍ୟ ରଣଦୁନ୍ଦୁଭି :**

୧୯୩୮ ଗ୍ରୀଷ୍ମର ଆଦ୍ୟପାଦ । ସବୁ ପ୍ରଜାମଣ୍ଡଳ ନିଜ ନିଜର ଦାବୀପତ୍ର ରାଜ ଦରବାରରେ ପେଶ୍ କଲେ । ନୀଳଗିରିରେ ପ୍ରଜାମଣ୍ଡଳର ଦାବୀପତ୍ର ପେଶ୍ ପରେ ପରେ ହିଁ ରାଜ ଶାସନ ପକ୍ଷରୁ ପ୍ରଚଣ୍ଡ ଆକ୍ରମଣ, ଦମନ, ଗିରଫଦାରୀ, ମାଡ଼, ଜୋରିମାନା, ସମ୍ପଦ ବାଜ୍ୟାପ୍ତି ଚାଲିଲା । ଦମନ ଅତ୍ୟାଚାରରେ ପ୍ରଜା ଦବିଗଲେ ନାହିଁ । ବନମାଳୀ ଦାସଙ୍କ ନେତୃତ୍ୱରେ ତିରିଶ ହଜାର ଯାଏ ପ୍ରଜା ଅଯୋଧ୍ୟାଠାରେ ସମବେତ ହୋଇ ରାଜପ୍ରସାଦ ଦଖଲ କରିବା ଲାଗି ପ୍ରସ୍ତୁତ ହୋଇଗଲେ । ଠିକ୍ ଏହି ସମୟରେ ତଦନ୍ତ କମିଟିର ଚେୟାର୍‌ମେନ୍ ଶ୍ରୀ ହରେକୃଷ୍ଣ ମହତାବ ପହଂଚିଲେ । ପଲିଟିକାଲ୍ ଏଜେଣ୍ଟଙ୍କ ସହିତ ନୀଳଗିରି ସମସ୍ୟା ବିଷୟରେ ସେ ଆଲୋଚନା କରି ଏକ ସମାଧାନ ଆଣିବେ, ରାଜପ୍ରାସାଦ ଦଖଲ ଅଭିଯାନ ଅଧିକ ଦମନ ଅଣାଇବ – ଏପରି ପ୍ରବର୍ତ୍ତନା ଦେବାରୁ ଉପସ୍ଥିତ ଜନତା ଆଉ ଆଗେଇ ପାରିଲେ ନାହିଁ । ବନମାଳୀ ଦାସ ଏଥିରେ ସହମତ ନଥିଲେ ହେଁ ରାଜାମାନଙ୍କର ଚେତନାର ସ୍ତରକୁ ଦେଖି କ୍ଷାନ୍ତ ରହିଲେ । ନୀଳଗିରି ରଜା ଚାପ ଫଳରେ କେତେକ ପ୍ରତିଶ୍ରୁତି ଦେଇ ଆନ୍ଦୋଳନ ସାମାନ୍ୟ

ଶିଥିଳ ହେବା ଦେଖି ପୁଣି ଦମନ ଅତ୍ୟାଚାର ସୁଅ ଛୁଟେଇଲେ । ନୀଳଗିରି ରଜାର ବିଶ୍ୱାସଘାତକତା ଅନ୍ୟ ଗଡ଼ଜାତ ପ୍ରଜାମଣ୍ଡଳର ନେତାମାନଙ୍କୁ ଏକ ଚେତାବନୀ ଦେଲା । ସେମାନେ ନିଜ ନିଜ ସଙ୍ଗଠନକୁ ଦୃଢ଼ କରିବାକୁ ଉଦ୍ୟମ କଲେ ।

ସାରଙ୍ଗଧର, ନବକୃଷ୍ଣ ଚୌଧୁରୀ, ଭଗବତୀ ପାଣିଗ୍ରାହୀ ପ୍ରମୁଖ ନୀଳଗିରିର ଅଯୋଧ୍ୟାରେ ମହତାବ ବାବୁଙ୍କ ହସ୍ତକ୍ଷେପକୁ ପସନ୍ଦ କରିନଥିଲେ । କିନ୍ତୁ ଆନ୍ଦୋଳନର ଐକ୍ୟ ଦୃଷ୍ଟିରୁ ଏହାକୁ ବିବାଦୀୟ ପ୍ରଶ୍ନ କରି ନଥିଲେ ।

ସେହି ବର୍ଷ ସେପ୍‌ଟେମ୍ବର ୧ରେ ଅଖିଳ ଭାରତ କୃଷକ ଦିବସ । କୃଷକ ସଂଘର ଆହ୍ୱାନ । ମୋଗଲବନ୍ଦୀ ଓଡ଼ିଶା ବିଶେଷତଃ ପୁରୀ, କଟକ, ବାଲେଶ୍ୱର, ଗଞ୍ଜାମରେ ଚାଷୀମାନଙ୍କ ଭିତରେ ଅଭୂତପୂର୍ବ ଉଦ୍‌ବେଳନ । କଟକ ଜିଲ୍ଲା ଧର୍ମଶାଳା ଥାନା ଜେନାପୁରଠାରେ ଏହି ଦିନର ପାଳନ ଲାଗି ଆୟୋଜନ । ଏହା ଢେଙ୍କାନାଳର ନିକଟବର୍ତ୍ତୀ । ସେଦିନ ୫୦ ହଜାର ଚାଷୀଙ୍କୁ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ସାରଙ୍ଗଧର ଦାସ, ଭଗବତୀ ଚରଣ ପାଣିଗ୍ରାହୀ, ଗୌରାଙ୍ଗଚରଣ ଦାସ, ପ୍ରାଣକୃଷ୍ଣ ପଡ଼ିଆରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଫନୀପାଲ ପ୍ରମୁଖ ଉଦ୍‌ବୋଧନ ଦିଅନ୍ତି । ସେହି ପଚାଶ ହଜାର ଜନତାଙ୍କ ମଧ୍ୟରେ ଢେଙ୍କାନାଳରୁ ପାୟ ୨୫ ହଜାର ପ୍ରଜା । ଆଖପାଖ ଆଠଗଡ଼, ତିଗିରିଆ ପ୍ରଭୃତି ଗଡ଼ଜାତରୁ ମଧ କେତେକ ନେତାଙ୍କ ଗୋପନ ଉପସ୍ଥିତି ।

କୃଷକ ପତ୍ରିକାର ବିଶେଷ ସଂଖ୍ୟା– ଗଡ଼ଜାତ ପ୍ରଜାମାନଙ୍କୁ ଆନ୍ଦୋଳନ ଲାଗି ଆହ୍ୱାନ ସେଥିରେ । ସେଠାରେ ଦୁଇ ହଜାର କପି ବିକ୍ରି ହୋଇଗଲା । ସେହି ପତ୍ରିକାର ପ୍ରଭାବ ଏପରି ପଡ଼ିଲା ଯେ, ଓଡ଼ିଶା କଂଗ୍ରେସ ସରକାରର ସ୍ୱରାଷ୍ଟ୍ର ମନ୍ତ୍ରୀ ନିତ୍ୟାନନ୍ଦ କାନୁନଗୋ ଚିଠି ଲେଖି ସରକାରଙ୍କ ପକ୍ଷରୁ ତିନିଶହ ଖଣ୍ଡ କିଣିନେଲେ । ତା'ର ମୂଲ୍ୟ ଥାଏ ଅଣାଏ ।

କୃଷକ ଦିବସରେ ଏହି ନେତାମାନଙ୍କ ଆହ୍ୱାନ ପରେ ଠିକ୍ ଏହି ମାସରେ ତାଳଚେର, ଢେଙ୍କାନାଳ, ଆଠଗଡ଼ରେ ପ୍ରଜାମଣ୍ଡଳର କର୍ମୀମାନେ ତତ୍ପର ହୋଇପଡ଼ିଲେ । ସେପ୍‌ଟେମ୍ବର ୬ରେ ଗୋପନରେ ଅନୁଗୋଳର କୋଶଳାଠାରେ ତାଳଚେର ନେତାମାନେ ଏକତ୍ର ହୋଇ, ୧୬ ତାରିଖରେ ହଜାର ହଜାର ପ୍ରଜାଙ୍କୁ ଧରି ରାଜ ଦରବାରରେ ଦାବୀପତ୍ର ପେଶ୍ କରନ୍ତେ, ଶାସନ ପକ୍ଷରୁ ଅମାନୁଷିକ ଅତ୍ୟାଚାର, ଗିରଫ, ପ୍ରଜାଙ୍କ ଘର ଲୁଟ୍ ପାଟ୍, ଗୁଳି, ଜୋରିମାନା ହେଲା ।

ସେପ୍ଟେମ୍ବର ୧୧ରେ ଆଠଗଡ଼ର ନୂଆପଟଣାଠାରୁ ଏକ ବଡ଼ ପଟୁଆର ବାହାରି ଖୁଣ୍ଟୁଣି ବଜାରରେ ପହଂଚିଲାକ୍ଷଣି ୧୪୪ ଧାରା ଜାରି କରାଯାଇ ଗୁଳିଚାଳିଲା, ଗିରଫଦାରୀ ଚାଲିଲା । ଧନେଶ୍ୱର ଧଳ ଗୁଳି ଖାଇଲେ ।

ଢେଙ୍କାନାଳ ରାଜପ୍ରସାଦ ଘେରାଉର ଦିନ । ସେଦିନ ସେପ୍ଟେମ୍ବର ୧୨ ।

ଢେଙ୍କାନାଳର ୨୪ଟି ବିଶ, ସେପଟୁ ପରଜଙ୍ଗ, ପଳାଶୁଣିଠାରୁ ଭୁବନ-ପାରିମାଳ, ଗୋବିନ୍ଦପୁର, ବଳରାମ ପ୍ରସାଦ, ସବୁଆଡୁ ୫୦ ହଜାର ପ୍ରଜା ଗୁଣ୍ଡ । ରାଜଶାସନ ପକ୍ଷରୁ କେବଳ ଗିରଫଦାରୀ ଚାଲିଲା ନାହିଁ; ଲୋକଙ୍କ ଉପରେ ହାତୀ ମଡ଼େଇ, ଘୋଡ଼ସବାର ମଡ଼େଇ, ନିର୍ଘୁମ୍ ପିଟା ଚାଲିଲା । ଶହ ଶହ ଆହତ ହେଲେ । ଏସବୁ ଅତ୍ୟାଚାରର ସମ୍ବାଦ ମୋଗଲବନ୍ଦୀ ଓଡ଼ିଶାରେ ଲୋକଙ୍କ ଭିତରେ ଭୟଙ୍କର କ୍ରୋଧ ଓ ଘୃଣା ଜାତ କରେଇଲା ।

ଦମନ ଅତ୍ୟାଚାର ଅସହ୍ୟ ହେବାରୁ ତାଳଚେର ପ୍ରଜାମଣ୍ଡଳ ଏକ ନିଷ୍ପତ୍ତି ନେଇ ରାଜଶାସନକୁ ଅଚଳ କରି ଦେବା ଲାଗି ସମଗ୍ର ରାଜ୍ୟବାସୀଙ୍କୁ ଘରଦ୍ୱାର, ଜମିବାଡ଼ି, ଗୋରୁଗାଈ ଛାଡ଼ି ମୋଗଲବନ୍ଦୀ ଅନୁଗୋଳର ଛେଣ୍ଡିପଦା ଅଂଚଳରେ ପତ୍ରକୁଡ଼ିଆ ବାନ୍ଧି ୫୦ ହଜାରରୁ ଅଧିକ ପ୍ରଜା ଦୀର୍ଘ ନଅମାସ କାଳ ପଡ଼ିରହିଲେ । ସାରା ଭାରତରେ ଚହଳ ପଡ଼ିଗଲା । ମହାତ୍ମାଗାନ୍ଧୀଙ୍କ ନିର୍ଦ୍ଦେଶରେ ଠକ୍‌କର ବାପା, ମହାତ୍ମାଜୀଙ୍କ ବ୍ରିଟିଶ ମହିଳା ଗୃହକର୍ମୀ ଆଗାଥା ହାରିସନ, ବିଶିଷ୍ଟ କୃଷକ ନେତା ଏନ୍.ଜି. ରଙ୍ଗା ପ୍ରମୁଖ ଶିବିରକୁ ମହତାବବାବୁଙ୍କ ସଙ୍ଗେ ଯାଇ ସ୍ୱଚକ୍ଷୁରେ ଅବସ୍ଥା ପର୍ଯ୍ୟବେକ୍ଷଣ କରିଥିଲେ । ଏହା ଫଳରେ ଓଡ଼ିଶାରୁ ଓ ଅନ୍ୟଆଡୁ ଶରଣାର୍ଥୀମାନଙ୍କ ନିକଟରେ କିଛି କିଛି ସାହାଯ୍ୟ ପହଞ୍ଚିଥିଲା । ପଲିଟିକାଲ ଏଜେଣ୍ଟଙ୍କ ଜରିଆରେ ଏକ ରାଜିନାମା ପରେ ପ୍ରଜାମାନେ ରାଜ୍ୟକୁ ସିନା ଫେରିଗଲେ, ମାତ୍ର ରାଜଅତ୍ୟାଚାର କିଛି ସମୟ ବନ୍ଦ ପରେ ଆହୁରି ଜଘନ୍ୟ ରୂପ ନେଲା ।

**କଟକ ସହର ଉଦ୍‌ବେଳିତ :**

ଢେଙ୍କାନାଳରେ ହାତୀମଡ଼ା, ଘୋଡ଼ସବାର ଚାର୍ଜ କିନ୍ତୁ ପ୍ରଜାମାନଙ୍କ ମନୋବଳକୁ ଭାଙ୍ଗି ଦେଇ ନଥିଲା । ଚାରିଆଡ଼େ ବିକ୍ଷୋଭ । ଏହି ବିକ୍ଷୋଭକୁ ଦମନ କରିବା ଲାଗି ପଲିଟିକାଲ ଏଜେଣ୍ଟଙ୍କ ଦ୍ୱାରା ପ୍ରେରିତ ଗୁର୍ଖା ସୈନ୍ୟ ଭୁବନ ନିକଟ ନୀଳକଣ୍ଠପୁର ଠାରେ ଅକ୍ଟୋବର ୧୨ରେ ଉଛୁଳା ବ୍ରାହ୍ମଣୀ ନଦୀ ପାରହୋଇ ସେପଟକୁ ଯିବାକୁ ପ୍ରସ୍ତୁତ । ଡଙ୍ଗାରେ ଯିବେ । ଡଙ୍ଗାର ନାଉରୀମାନେ ପ୍ରଜାମଣ୍ଡଳର ସମର୍ଥକ । ବନ୍ଧୁକ ଦେଖାଇ ଜବରଦସ୍ତ ଡଙ୍ଗା ଚଢ଼ିବାକୁ ଚାହିଁଲାରୁ ଉପସ୍ଥିତ ନାଉରୀଙ୍କ ମଧ୍ୟରୁ ୧୨ ବର୍ଷର ବାଜି ରାଉତ ଓ ଅନ୍ୟମାନେ ଘୋଷଣା କଲେ, 'ପ୍ରଜାମଣ୍ଡଳର ହୁକୁମ ନାହିଁ ।' ଚାଲଲା ଗୁଳି । ବାଜି, ନଟ, ହୁରୁଷି, ଗୁରି, ରଘୁ, ଲକ୍ଷ୍ମଣ ଛ'ଜଣ ଟଳିପଡ଼ିଲେ । ଢେଙ୍କାନାଳ ସାରା ଗାଆଁକୁ ଗାଁ ସିଙ୍ଘାବାଜି ପ୍ରଜାମଣ୍ଡଳ ପକ୍ଷରୁ ସମ୍ବାଦ ପ୍ରଚାରିତ ହୋଇଗଲା । ଗୁଳିକରି ଆକ୍ରମଣର ଆଶଙ୍କାରେ ଗୁର୍ଖା ସୈନ୍ୟମାନେ ପଳାଇଗଲେ । ଶବଗୁଡ଼ିକୁ ନଦୀ ପାର କରେଇ ଆଣିଲେ ବୈଷ୍ଣବ ପଟ୍ଟନାୟକ । ଜେନାପୁର ରେଳ ଷ୍ଟେସନରେ ବୈଷ୍ଣବ ପଟ୍ଟନାୟକ, ଫନୀ ପାଲ, ବଳଦେବ ଲାଲା ୧୩ ତାରିଖରେ ଶବଗୁଡ଼ିକୁ ମାଲ୍ ଡବାରେ କଟକ ପଠାଇଲେ । ସେମାନଙ୍କ ସଙ୍ଗେ ଯୋଗାଯୋଗ ହୋଇ ୧୪ ତାରିଖରେ କଟକ ଷ୍ଟେସନଠାରୁ ଶବ ପଟୁଆରର ବ୍ୟବସ୍ଥା କଂଗ୍ରେସ-ସୋସଲିଷ୍ଟ ପାର୍ଟିରେ

ନେତାମାନେ କରିଥାନ୍ତି । ଛଅଟି ଶଗଡ଼ଗାଡ଼ିରେ ଛଅଟି ଶବ । ଶଗଡ଼ ଆଗରେ ଜାତୀୟ ପତାକା । ଛଅଜଣ ଶବବାହୀ ଅନନ୍ତ ପଟ୍ଟନାୟକ, ସଚ୍ଚିରାଉତରାୟ, ରବି ଘୋଷ, ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାଏତ, ଗୋବିନ୍ଦ ଚନ୍ଦ୍ର ମହାନ୍ତି । ସମ୍ମୁଖ ଧାଡ଼ିରେ ସାରଙ୍ଗଧର, ନବକୃଷ୍ଣ ଚୌଧୁରୀ, ଭଗବତୀ, ଗୁରୁଚରଣ, ସୁରେନ୍ଦ୍ର ଦ୍ୱିବେଦୀ ଏବଂ ବହୁ କଂଗ୍ରେସନେତା, କର୍ମୀ, ଛାତ୍ର, ଯୁବକ ଓ ସହରବାସୀ । ଅପୂର୍ବ ଶବପଟୁଆର । ଗଗନପବନ ରାଜତନ୍ତ୍ରକୁ, ବ୍ରିଟିଶ ସାମ୍ରାଜ୍ୟବାଦକୁ ଧିକ୍‌କାର ଧ୍ୱନିରେ ମୁଖରିତ । ଏପରି ପଟୁଆର ପୂର୍ବରୁ କଟକ ପ୍ରତ୍ୟକ୍ଷ କରିନଥିଲା । ଷ୍ଟେସନରୁ ମଙ୍ଗଳାବାଗ, ବକ୍‌ସିବଜାର, ଚୌଧୁରୀବଜାର, ତେଲେଙ୍ଗାବଜାର ଦେଇ ଖାନ୍‌ନଗର ଶ୍ମଶାନଘାଟରେ ଗୋଟିଏ ଚିତାରେ ସବା ଉପରେ ବାଜିର ଶବକୁ ରଖି ଦାହ କଲା ବେଳେ ସଚ୍ଚିରାଉତରାଙ୍କ ଅମର 'ବାଜିରାଉତ' କବିତାର ଉନ୍ମେଷ । ବାଜି ରାଉତରା ଶହୀଦତ୍ୱ ଆଣିଦେଲା ଏକ ନୂତନ ସାଂସ୍କୃତିକ ଅଭ୍ୟୁତଥାନ । କାଳିନ୍ଦୀ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକଙ୍କ ଅମୂଲ୍ୟ ଉଦ୍ଦୀପନାମୟୀ କବିତାର ଜନ୍ମ ।

ଗାଙ୍ଗପୁରରେ ଏହି ସମୟରେ ଖୋଦ ପଲିଟିକାଲ ଏଜେଣ୍ଟଙ୍କ ନିର୍ଦ୍ଦେଶରେ ୩୩ ଜଣ ପ୍ରଜାଙ୍କର ଶହୀଦତ୍ୱ । ପ୍ରତ୍ୟେକଟି ଗଡ଼ଜାତରେ ଏହା ପରେ ପରେ ପ୍ରଜାଙ୍କ ବିଦ୍ରୋହ । ଏହି ସମୟରେ କଟକରୁ 'ରଣଭେରୀ' ନାମକ ଲିଥୋକରା ବୁଲେଟିନ୍ ବାଙ୍କାବଜାରର ଏକ ନିଭୃତ କୋଠରୀରୁ ଅନନ୍ତ, ବିଶ୍ୱନାଥ ପ୍ରମୁଖଙ୍କ ସଂପାଦନାରେ ପ୍ରକାଶିତ ହୋଇ ଆନ୍ଦୋଳନ କିପରି ଚଳାଇବାକୁ ହେବ ତାହା ଉଲ୍ଲେଖ କରି ପ୍ରକାଶ ପାଉଥାଏ । ସାରଙ୍ଗଧର ଥିଲେ ଏହାର ଉପଦେଷ୍ଟା ।

୧୯୩୮ ଅକ୍ଟୋବର ୨୯ ତାରିଖରେ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀ ଆହ୍ୱାନରେ ପ୍ରତିପାଳିତ ହେଲା । ସେତେବେଳେ ରଜାମାନଙ୍କର ସୁରକ୍ଷା ଆଇନ ପ୍ରବର୍ତ୍ତିତ ଥିଲା । ସେହି ଆଇନ୍ ବଳରେ ଏମିତିକି ମୋଗଲବନ୍ଦୀ ଓଡ଼ିଶାର ଯେକୌଣସି ସ୍ଥାନରୁ ଗଡ଼ଜାତ ନେତାମାନଙ୍କୁ ଗିରଫ କରାଯାଉଥିଲା । ପଣ୍ଡିତ ନେହେରୁ କଂଗ୍ରେସର ସଭାପତି । ସେ ନିର୍ଦ୍ଦେଶ ଦେଲେ ଯେ କୌଣସି କଂଗ୍ରେସ ସରକାର ନିଜ ରାଜ୍ୟରେ ଏହି ଆଇନ ପ୍ରୟୋଗ କରିବେ ନାହିଁ । ଏହା ପ୍ରଜାଆନ୍ଦୋଳନକୁ ସାହାଯ୍ୟକାରୀ ହେଲା । ମୋଗଲବନ୍ଦୀ ଓଡ଼ିଶାରେ ଥିବା ଏପରି ବନ୍ଦୀ ଖଲାସ ହୋଇଗଲେ ।

କଟକ ଟାଉନହଲଠାରେ ଢେଙ୍କାନାଳରେ ମୋଗଲବନ୍ଦୀରୁ ନେତାମାନେ ଯାଇ ଆଇନଅମାନ୍ୟ କରିବେ ବୋଲି ଘୋଷଣା କରାଗଲା । କଂଗ୍ରେସ ସୋସଲିଷ୍ଟ ପାର୍ଟିର ତୁଙ୍ଗନେତା ନବକୃଷ୍ଣ ଚୌଧୁରୀ, ତାହାର ସଂପାଦକ ଭଗବତୀ ଚରଣ ପାଣିଗ୍ରାହୀ ଓ ସ୍ୱନାମଧନ୍ୟ କୃଷକନେତା ଗୌରାଙ୍ଗ ଦାସ ତିନି ଦଳରେ ତିନୋଟି ଦିନରେ ଢେଙ୍କାନାଳରେ ପ୍ରବେଶ କରି ଆଇନ ଅମାନ୍ୟ କଲେ । ୧୯୩୮ ଅକ୍ଟୋବର ୨୯ରୁ ଏହା ଆରମ୍ଭ କରାଗଲା । ଅନ୍ୟ ଦୁଇ ଜଣଙ୍କୁ

ରାଜ ଶାସନ ଗିରଫ କରି ମୋଗଲବନ୍ଦୀରେ ଛାଡ଼ି ଦେଇଥିଲା । ମାତ୍ର ଗୌରାଙ୍ଗବାବୁଙ୍କ ଉପରେ ପ୍ରବଳ ମାଡ଼ ଦିଆଯାଇ କିଛିଦିନ ଜେଲ୍‌ରେ ରଖି ଛାଡ଼ିଦିଆଗଲା ।

ତାଳଚେର ପରି ଢେଙ୍କାନାଳରେ ଆନ୍ଦୋଳନ ଚଳାଇବା ଲାଗି ୩ଟି ଶିବିର ମୋଗଲବନ୍ଦୀରେ ଖୋଲାଗଲା । ଅନୁଗୋଳର ଦାୟିତ୍ୱରେ ୩ ମାସର ଝିଅଟିଏ (ଯାହାର ନାମ ତିନୁ ବା କୃଷ୍ଣାଚୌଧୁରୀ) ଧରି ମାଳତୀ ଦେବୀ ଓ ରବିଘୋଷ, ତା'ର ଦାୟିତ୍ୱରେ ଥିଲେ । ବାଙ୍କୀ ସୁବର୍ଣ୍ଣପୁର ନିକଟସ୍ଥ ଆଠଗଡ଼ ସଂଲଗ୍ନ ଘୋଳପୁର ଶିବିର ଦାୟିତ୍ୱରେ ବିଶ୍ୱନାଥ ପଶାଏତ୍, ଗୋବିନ୍ଦ ଚନ୍ଦ୍ର ମହାନ୍ତି ଏବଂ ଧର୍ମଶାଳାର କଲାଣ୍ଡ ଶିବିର ଦାୟିତ୍ୱରେ ଅନନ୍ତ ପଟ୍ଟନାୟକ ଓ ବୈଦ୍ୟନାଥ ରଥ । ସାରଙ୍ଗଧର ଦାସ ଉଭୟ ତାଳଚେର ଓ ଢେଙ୍କାନାଳ ଆନ୍ଦୋଳନ ଲକ୍ଷ୍ୟରଖିବା ଲାଗି ଏସବୁ ଶିବରକୁ ଯାଉଥିଲେ । ଏ ଭିତରେ ରବି ଘୋଷ ଅନୁଗୋଳରୁ ଆସିବାବେଳେ ତାଙ୍କୁ ଗିରଫ କରି ନିଆଗଲା । କଲାଣ୍ଡ ଶିବିରକୁ କଟକ ଅଭିମୁଖେ ରାତ୍ରିରେ ସାଇକେଲ ଯୋଗେ ଅନନ୍ତ ଓ ବୈଦନାଥ ଆସୁଥିବା ବେଳେ ବ୍ରାହ୍ମଣୀ ନଦୀ ଏପଟେ ଥିବା ଢେଙ୍କାନାଳର କବାଟବନ୍ଧ ଗାଁ'ରୁ ରଜାପକ୍ଷ ଅନନ୍ତ ପଟ୍ଟନାୟକଙ୍କୁ ଧରିନେଇ ନାନା ନିର୍ଯ୍ୟାତନା ଦେଲେ ଓ ରବି ଘୋଷ ଓ ଅନନ୍ତଙ୍କୁ ପ୍ରଥମେ ଢେଙ୍କାନାଳରେ ଏକ ଚାଳ ଖଞ୍ଜାରେ ସ୍ପେଶାଲ ଜେଲ୍ କରି ଏସ୍.ପି. ନୀଳମଣି ଧଳଙ୍କ ଦାୟିତ୍ୱରେ ରଖାଯାଇ ଜେଲରେ ରଖାଗଲା ।

**ରଘୁଦିବାକର ଫାଶି :**

୧୯୩୯ ଜାନୁୟାରୀ ୫ ତାରିଖ । ନୟାଗଡ଼ର ପ୍ରଜାଆନ୍ଦୋଳନକୁ ଜବତ୍ କରିବା ଲାଗି ପଲିଟିକାଲ ଏଜେଣ୍ଟ୍ ମେଜର ଆର୍.ଏଲ୍. ବେଜେଲଗେଟ ଯାଇଥିବା ବେଳେ ଠିକ୍ ସେହି ସମୟରେ ରଣପୁରରେ ରାଜାପ୍ରସାଦ ଦଖଲ ଲାଗି ହଜାର ହଜାର ପ୍ରଜା ସମବେତ ସମ୍ବାଦ ପାଇ ବେଜେଲଗେଟ ପହଞ୍ଚି ସଙ୍ଗେ ସଙ୍ଗେ ନିର୍ବିଚାରରେ ଗୁଳିକରି ଦୁଇଜଣଙ୍କୁ ହତ୍ୟା କରନ୍ତେ ଜନତା ବିକ୍ଷୁବ୍‌ଧ ହୋଇଉଠି ତାଙ୍କଠାରୁ ରାଇଫଲ ଛଡେଇ ଆଣି ପିଟି ପିଟି ହତ୍ୟା କରିଦେଲେ ।

ନୟାଗଡ଼ରେ ବେଜେଲଗେଟ୍ ସଙ୍ଗେ ଆଲୋଚନା କରିବା ପାଇଁ ଶ୍ରୀ ହରେକୃଷ୍ଣ ମହତାବ, ସେତେବେଳେ ପ୍ରାଦେଶିକ କଂଗ୍ରେସ କାର୍ଯ୍ୟାଳୟ ଥିବା ସୁବାଷବୋଷଙ୍କ ଜନ୍ମସ୍ଥଳୀକୁ ଜାନକୀର୍ଣ୍ଣ ସ୍ୱରାଜ ଭବନରୁ ବାହାରି ଲାଲବାଗ ଥାନାରେ ସେ ଯାଉଛନ୍ତି ବୋଲି ଲେଖାଇ ବାଟରେ ଖୋର୍ଦ୍ଧା ପାଖରେ ବେଜେଲଗେଟ୍ ହତ୍ୟା ସମ୍ବାଦ ପାଇଲେ । ସେ ବାଟଭାଙ୍ଗି ରଣପୁରଗଡ଼ ଅଭିମୁଖେ ଗଲା ବେଳକୁ ପ୍ରଜାମାନେ ଆକ୍ରମଣ ଆଶଙ୍କାକରି ଗଛକାଟି ରାସ୍ତା ଅବରୋଧ କରି ଦେଇଥିଲେ । ତାଙ୍କୁ ଚିହ୍ନି ଲୋକେ ଆସି ବାଟ ସଫା କରିଦେଲେ । ଗଡ଼ରେ ପହଂ ସେ ରଣପୁରବାସୀଙ୍କୁ ରାତି ଭିତରେ ରାଜ୍ୟ ଛାଡ଼ିଯିବାକୁ ପରାମର୍ଶ ଦେଇ ଗଭୀର ରାତ୍ରିରେ କଟକ ଫେରିଲେ । ସାରଙ୍ଗଧର ଦାସ, ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ

ପାଣିଗ୍ରାହୀ ପ୍ରମୁଖ ଏହି ପରିସ୍ଥିତିର ମୁକାବିଲା ପାଇଁ ଓ ଶରଣାର୍ଥୀମାନଙ୍କର ଥଇଥାନ ଲାଗି ଖୋର୍ଦ୍ଧା ଅଂଚଳର ନେତାମାନଙ୍କ ସହିତ ଯୋଗାଯୋଗ ପ୍ରତିଷ୍ଠା କଲେ । ହଜାର ହଜାର ରଣପୁରବାସୀ ଗୋଟିଏ ପଟେ ଟାଙ୍ଗି ଓ ଅନ୍ୟପଟେ ବୋଲଗଡ଼ ବେଗୁନିଆରେ ଆସି ଆଶ୍ରୟ ନେଲେ । ଏସବୁ ସ୍ଥାନରେ କୃଷକ ସଭାର ଆନ୍ଦୋଳନ ଜୋରଦାର୍ । କଂଗ୍ରେସ ସୋସାଲିଷ୍ଟ ପାର୍ଟି ଓ କୃଷକ ସଂଘର ନେତା ଯେଉଁମାନେ କଂଗ୍ରେସର ପ୍ରସିଦ୍ଧ ନେତା ପ୍ରାଣନାଥ ପଟ୍ଟନାୟକ, ଗୋକୁଳମୋହନ ରାୟ ଚୂଡ଼ାମଣି, ଦାମୋଦର ମିଶ୍ର, ଗଙ୍ଗାଧର ପାଇକରାୟ, ପରଶୁରାମ ପଦାତିକରାୟ ଙ୍କୁ ସଂଗଠିତ କରି ସାହାଯ୍ୟ ବ୍ୟବସ୍ଥା କଲେ ।

ସାତ ତାରିଖରେ କଲିକତାରୁ ଗାଡ଼ିଭରା ଗୋରାପଲଟନ ଆସି ରଣପୁରକୁ ମାଡ଼ିଗଲେ । ବ୍ୟାପକ ଅତ୍ୟାଚାର, ଲୁଟପାଟ୍, ଧ୍ୱଂସନାଶନ, ଗିରଫଦାରୀ ଓ ହତ୍ୟା ଷଡ଼ଯନ୍ତ୍ର ମକଦ୍ଦମା – ବୀର ରଘୁ ଦିବାକର ଓ ଅନ୍ୟମାନଙ୍କ ସହିତ ମହତାବଙ୍କୁ ସେଥିରେ ଜଡ଼ିତ କରିବା ଲାଗି ଓଡ଼ିଶାର ତଦନ୍ତକାରୀ ପୁଲିସ ଅଫିସର ମନବୋଧ ପଣ୍ଡା ଓ ରଣପୁରର ପୁଲିସ ଗଙ୍ଗାଧର ଚକ୍ରାନ୍ତ କରିଥିଲେ । ମହତାବଙ୍କ ଲାଲବାଗ ଥାନା ଡାଏରୀ, ବ୍ରିଟିଶ ମହିଳା ଆଗାଥା ହରିସନଙ୍କ ଉଦ୍ୟମ ଓ ତତ୍କାଳୀନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କ ହସ୍ତକ୍ଷେପ ଓ ମହାତ୍ମା ଗାନ୍ଧୀ ଓ ନେହେରୁଙ୍କ ଉଦ୍ୟମ ହେତୁ ମହତାବଙ୍କୁ ସେଥିରେ ଜଡ଼ିତ କରାଯାଇ ପାରିନଥିଲା । ୧୯୪୬ରେ ମହତାବବାବୁ ଓଡ଼ିଶା ପ୍ରଧାନମନ୍ତ୍ରୀ ହୋଇ ଉକ୍ତ ମନବୋଧ ପଣ୍ଡାଙ୍କୁ ପଦୋନ୍ନତି ଦେବାରୁ କଂଗ୍ରେସ ମହଲରେ ଏହାର ସମାଲୋଚନା ପ୍ରକାଶ ପାଇଥିଲା । ରଘୁ ଓ ଦିବାକରଙ୍କୁ ହଜାରୀବାଗ ଜେଲରେ ଫାଶୀ ଦିଆଗଲା । ଗଡ଼ଜାତ ପ୍ରଜାମଣ୍ଡଳ ଆନ୍ଦୋଳନର ତଥା ଓଡ଼ିଶାରେ ସେତେବେଳେ ଘୋର ଅସନ୍ତୋଷ ଓ କ୍ରୋଧ ପ୍ରକାଶ ପାଇଥିଲା ।

ଅନ୍ୟପକ୍ଷରେ ବେଜେଲଗେଟ୍ ହତ୍ୟାରେ ରାଜାମାନେ ମଧ୍ୟ ଭୟଭୀତ, ଆତଙ୍କିତ ହୋଇ ଚାଲ ଖେଳିବାକୁ ଉଦ୍ୟମ କଲେ । ହିନ୍ଦୋଳ, ଢେଙ୍କାନାଳ, ବଲାଙ୍ଗିର ପାଟଣା ଏମିତି ବିଭିନ୍ନ ଗଡ଼ଜାତରେ ନାମକୁ ମାତ୍ର ପ୍ରତିନିଧିମୂଳକ ଶାସନ ନାମରେ କିଛି ସଂସ୍କାରର ଘୋଷଣା କଲେ । ମାତ୍ର ତାହା ପ୍ରତ୍ୟାଖ୍ୟାତ ହେଲା ।

ବ୍ରିଟିଶ ସାମ୍ରାଜ୍ୟବାଦର ଭାରତରେ ଅବସ୍ଥାପିତ ପ୍ରତୀକ ଭାଇସରାୟ ଲର୍ଡ଼ ଲିନ ଲିଥଗୋ ଓଡ଼ିଶାର ତତ୍କାଳୀନ ରାଜଧାନୀ କଟକ ପରିଦର୍ଶନରେ ଆସୁଥିବା ଜାଣି ଗଡ଼ଜାତଗୁଡ଼ିକରେ ଚାଲିଥିବା ହତ୍ୟା, ଗୁଳି, ଦମନ, ଫାଶି ବିରୁଦ୍ଧରେ ବିଶେଷତଃ ଏକ ପ୍ରତିବାଦ ପଟୁଆର ତାଙ୍କ ଅଗଷ୍ଟ ମାସ ଗମନ କାଳରେ ଅନୁଷ୍ଠିତ ହେଲା । ଗଡ଼ଜାତଗୁଡ଼ିକର ଅନେକ ନେତା ଓ କର୍ମୀ ସାରଙ୍ଗଧରଙ୍କ ନେତୃତ୍ୱରେ ଏଥିରେ ଯୋଗଦେଇଥିଲେ । କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ଓ ଛାତ୍ର ସଂଘ ପକ୍ଷରୁ ଏହି ବିକ୍ଷୋଭର ନେତୃତ୍ୱରେ ରହିଲେ ସାରଙ୍ଗଧର, ନବକୃଷ୍ଣ ଚୌଧୁରୀ, ଭଗବତୀ ପାଣିଗ୍ରାହୀ ପ୍ରମୁଖ ।

୧୯୩୯ ସେପ୍ଟେମ୍ବର ୩୧ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ଭାରତର ଏବଂ ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ଘୋର ପରିବର୍ତ୍ତନ । କଂଗ୍ରେସ ନିର୍ଦ୍ଦେଶରେ ବିଭିନ୍ନ ରାଜ୍ୟର କଂଗ୍ରେସ ମନ୍ତ୍ରିମଣ୍ଡଳଗୁଡ଼ିକ ଇସ୍ତଫା ଦେଲେ । ବ୍ରିଟିଶ ପକ୍ଷରୁ ଯୁଦ୍ଧକାଳୀନ ଦମନଲୀଳାର ଅସ୍ତ୍ର ଭାରତରକ୍ଷା ଆଇନ ପ୍ରବର୍ତ୍ତିତ ହୋଇ ସବୁପ୍ରକାରର ଜନ ଆନ୍ଦୋଳନର କଣ୍ଠରୋଧ କରାଗଲା । ଓଡ଼ିଶାରେ ଗଡ଼ଜାତ ପ୍ରଜାଆନ୍ଦୋଳନରେ ମୋଗଲବନ୍ଦୀରୁ ଥାଇ ସହଯୋଗ କରୁଥିବା ଅନେକ ନେତା ଓ ଯୁବକଙ୍କୁ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାରେ ପକାଗଲା । ଅନ୍ୟପକ୍ଷରେ କଂଗ୍ରେସର ଯେଉଁ ନେତାମାନେ ସାହାଯ୍ୟ କରୁଥିଲେ, ସେମିତି ନେତାମାନେ ମଧ୍ୟ ବ୍ୟକ୍ତିଗତ ସତ୍ୟାଗ୍ରହରେ କାରାବରଣ କଲେ ।

୧୯୪୨ ଅଗଷ୍ଟ ଭାରତଛାଡ଼ ଆନ୍ଦୋଳନ ପର୍ଯ୍ୟନ୍ତ ଗଡ଼ଜାତ ପ୍ରଜାଆନ୍ଦୋଳନରେ ଏହିସବୁ କାରଣରୁ ଶିଥିଳତା ଆସିଥିଲେ ହେଁ ନିଆଁ କୁହୁଳି କୁହୁଳି ରହିଥିଲା ।

ଅଗଷ୍ଟ ଆନ୍ଦୋଳନର ଭାରତଛାଡ଼ ଆନ୍ଦୋଳନ ଗଡ଼ଜାତଗୁଡ଼ିକୁ ମଧ୍ୟ ବ୍ୟାପିଗଲା । ବହୁ ଗଡ଼ଜାତରେ ନେତାମାନଙ୍କୁ ଗିରଫ କରି ନିଆଗଲା । ସେତେବେଳେ ମୁଖ୍ୟତଃ ଦୁଇଟି ଗଡ଼ଜାତ ଢେଙ୍କାନାଳ ଓ ତାଳଚେରରେ ରାଜାଙ୍କ ପ୍ରାସାଦ ଦଖଲ କରିବା ଲାଗି ତାଳଚେରରେ ପ୍ରଜାମେଳି ଆରମ୍ଭ ହୋଇଗଲା । ବ୍ରିଟିଶ ସରକାର ପକ୍ଷରୁ ଆକାଶମାର୍ଗରୁ ବୋମାପଡ଼ିଲା । ଗୁଳି ଚାଳିଲା । କେତେକ ନିହତ ହେଲେ । ନେତାମାନଙ୍କୁ ଗିରଫ କରି ନିଆଗଲା । ପବିତ୍ର ମୋହନ ପ୍ରଧାନ ଖସି ଆସି ଦୀର୍ଘକାଳ କଲିକତାରେ ଗୋପନରେ ରହିଲେ । ଢେଙ୍କାନାଳର ମଡ଼ିଢେଲ ଦଖଲ କରିବାକୁ ଯାଇ ବୈଷ୍ଣବ ପଟ୍ଟନାୟକ ପୁଲିସ ଗୁଳିରେ ଆହତ ହେଲେ । ତାଙ୍କୁ କଲିକତାରେ କମ୍ୟୁନିଷ୍ଟ ପାର୍ଟି ୩ ବର୍ଷ କାଳ ଗୋପନରେ ରଖିଲେ । ତାଙ୍କୁ ଓ ତାଙ୍କ ସାଥି ମୂଷାମଲିକଙ୍କ ବିଚାର ହୋଇ ଫାଶିଦଣ୍ଡାଦେଶ ହୋଇଥିଲା । ମୂଷାମଲିକ ଜେଲରେ ରହି ପରବର୍ତ୍ତୀ କାଳରେ ଅନ୍ୟ ଗଡ଼ଜାତର ରାଜବନ୍ଦୀମାନଙ୍କ ପରି ଖଲାସ ହେଲେ ।

**ଯୁଦ୍ଧୋତ୍ତର ପ୍ରଜାଆନ୍ଦୋଳନ :**

ଯୁଦ୍ଧୋତ୍ତର ୧୯୪୬ରେ ସୀମିତ ଭୋଟଦାନ ପ୍ରଥାରେ ନିର୍ବାଚନ ମୋଗଲବନ୍ଦୀରେ ଅନୁଷ୍ଠିତ ହେଲା । ତାହାର ପ୍ରଭାବ ବ୍ରିଟିଶ ମିଶନ ପ୍ରଭୃତିର ପ୍ରଭାବ ଦେଖି ରଜାମାନେ ଆତଙ୍କିତ ହୋଇ କୌଣସିମତେ ପ୍ରଜାମାନଙ୍କୁ ହାତକରିବା ଲାଗି ଦାୟିତ୍ୱମୂଳକ ଶାସନର ମନ୍ତ୍ରିମଣ୍ଡଳ ଗଢ଼ିବାର ପ୍ରଲୋଭନ ଦେଖାଇଲେ । ଗଡ଼ଜାତରେ ବଲାଙ୍ଗୀର ଠାରୁ ମୟୂରଭଞ୍ଜ, ଆଠଗଡ଼, ତିଗିରିଆ, ଢେଙ୍କାନାଳ ପ୍ରଭୃତି ଗଡ଼ଜାତରେ ତଥାକଥିତ ମନ୍ତ୍ରିମଣ୍ଡଳ ଗଠିତ ହେଲା । ତଥାକଥିତ ପ୍ରଧାନମନ୍ତ୍ରୀମାନେ ରଜାଙ୍କ ବୋଲ ମାନିଲେ । ସାରଙ୍ଗଧର ଦାସ ଏପରି ମନ୍ତ୍ରୀପଦ ଗ୍ରହଣ କରିବାର ପକ୍ଷପାତୀ ନଥିଲେ ।

ଏହି ସମୟକାଳ ଭିତରେ ବମ୍ବେ ନୌବିଦ୍ରୋହ ଓ ଦିଲ୍ଲୀର ପୁଲିସ ଧର୍ମଘଟ ଏବଂ

ବିଶ୍ୱଯୁଦ୍ଧରେ ହିଟଲର, ଜାପାନ, ଇଟାଲୀର ପରାଜୟ, ସୋଭିଏଟ ବିଜୟ, ପୃଥିବୀରେ ଶକ୍ତି ଭାରସାମ୍ୟ ବଦଳେଇ ଦେଇଥିବାରୁ ବ୍ରିଟିଶ ସରକାର ଭାରତକୁ କ୍ୟାବିନେଟ ମିଶନ ଓ ମାଉଣ୍ଟବାଟେନ ଆଓ୍ୱାର୍ଡ଼ ଅନୁସାରେ ସ୍ୱାଧୀନତା ଦେବାକୁ ଘୋଷଣା କଲେ । ମାତ୍ର ଭାରତକୁ ଦ୍ୱିଖଣ୍ଡ କରି ପାକିସ୍ତାନ ସୃଷ୍ଟି କରାଗଲା ଓ ରଜାମାନଙ୍କୁ ସାର୍ବଭୌମ ବୋଲି ଘୋଷଣା କରାଗଲା । ବ୍ରିଟିଶର ଏହି ଚାଲକୁ ଗଡ଼ଜାତ ପ୍ରଜାମାନେ ନିଜ ଚରମ ସଂଗ୍ରାମ ଦ୍ୱାରା ଭଣ୍ଡୁର କରିଦେଲେ । କାଶ୍ମୀରଠାରୁ ହାଇଦ୍ରାବାଦ, ରାଜକୋଟଠାରୁ କୋଚିନ, ତ୍ରିବାଙ୍କୁଡ଼, ଭୋପାଳ, ପାତିଆଲା, ସବୁ ଗଡ଼ଜାତରେ ବିଦ୍ରୋହର ଦାବାଗ୍ନି । ତ୍ରିବାଙ୍କୁଡ଼ରେ ପୁନାପ୍ରା-ଡାୟାଲାରରେ ପ୍ରଜା ଉପରେ ଗୁଳିରେ ଶହଶହ କମ୍ୟୁନିଷ୍ଟ ପ୍ରଜାମଣ୍ଡଳ କର୍ମୀ ନିହତ । ହାଇଦ୍ରାବାଦରେ ନିଜାମ ବିରୁଦ୍ଧରେ ଆନ୍ଧ୍ର ମହାସଭା ଓ କମ୍ୟୁନିଷ୍ଟ ପାର୍ଟିର ସଶସ୍ତ୍ର ବାହିନୀର ମୁକାବିଲାରେ ସହସ୍ର ସହସ୍ର ନିହତ ହେଲେ । ଜାମ୍ମୁ କାଶ୍ମୀରରେ ଜାତୀୟ ସମ୍ମିଳନୀ ନେତୃତ୍ୱରେ ଅଭୂତପୂର୍ବ ଆନ୍ଦୋଳନ ।

ଓଡ଼ିଶାର ଶାସକମାନେ ଭବିଷ୍ୟତର ବିପଦକୁ ଦେଖି ୧୯୪୬ ଡିସେମ୍ବରରେ ମଧ୍ୟପ୍ରଦେଶର ଛତିଶଗଡ଼ର ଗଡ଼ଜାତଙ୍କ ସହିତ ମିଶି, ଓଡ଼ିଶାରେ ମିଶ୍ରଣର ବିରୋଧ କରିବା ଲାଗି ପୂର୍ବରାଜ୍ୟ ୟୁନିଅନ ଗଠନ କରିଦେଲେ । ଏହାକୁ ଆଶ୍ରୟ କରି ପରେ ସେମାନେ ଗଣତନ୍ତ୍ର ପରିଷଦ ଗଢ଼ି ଓଡ଼ିଶାରୁ ଅଲଗା ହୋଇ ମହାକୋଶଳ ରାଜ୍ୟ ଗଠନର ଧ୍ୱନି ଦେଇଥିଲେ ।

୧୯୪୬-୪୭ ବେଳକୁ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ସଂଗ୍ରାମଶୀଳତା ପରିପକ୍ୱ ହୋଇଆସୁଥିଲା । କଂଗ୍ରେସ ସୋସାଲିଷ୍ଟ ପାର୍ଟି ଭାଙ୍ଗି ଯାଇଥିଲା । କମ୍ୟୁନିଷ୍ଟମାନେ ଅଲଗା ହୋଇଯାଇଥିଲେ । ସୋସାଲିଷ୍ଟମାନେ ପ୍ରଥମେ କଂଗ୍ରେସରେ ରହିଥିଲେ । ମାତ୍ର କଂଗ୍ରେସ ନୀତି ଓ କର୍ମପନ୍ଥା ସହିତ ସେମାନଙ୍କର ମତଭେଦ ଥିବାରୁ ପରେ ପ୍ରଜାସୋସାଲିଷ୍ଟ ପାର୍ଟି ଗଠନ କଲେ । ସାରଙ୍ଗଧର ଦାସ ପ୍ରଜାସୋସାଲିଷ୍ଟ ପାର୍ଟିର ହେଲେ ଅନ୍ୟତମ ତୁଙ୍ଗନେତା । ଏଠି ଏହାର ଉଲ୍ଲେଖ ପ୍ରାସଙ୍ଗିକ ଯେ ଏହି ଦ୍ୱିତୀୟ ପର୍ଯ୍ୟାୟ ପ୍ରଜାଆନ୍ଦୋଳନ ବେଳ ଗଡ଼ଜାତ ପ୍ରଜାମାନଙ୍କ ଭିତରେ କାମ କରିବାକୁ ମୋଗଲବନ୍ଦୀରେ ବହୁ ତରୁଣ ବାହାରିପଡ଼ିଲେ । ସେପରି ତରୁଣମାନଙ୍କ ମଧ୍ୟରୁ କେତେକ ବିଶିଷ୍ଟ ବ୍ୟକ୍ତି ହେଲେ – ବିଶ୍ୱନାଥ ପଣ୍ଡିତ, ବାଙ୍କବିହାରୀ ଦାସ, ଭାଗବତ ବେହେରା, କୁଳମଣି ମହାପାତ୍ର, ପ୍ରଦୀପ୍ତ କିଶୋର ମହାନ୍ତି, ବୈକୁଣ୍ଠନାଥ ମହାନ୍ତି, ରବି ରାୟ, ଧୂଳେଶ୍ୱର ବଷ୍ଟିଆ, ପ୍ରସନ୍ନ କୁମାର ଦାସ, ଗିରୀଶ ରାୟ, ଯୁଧିଷ୍ଠିର ଦାଶ, ମାଧବାନନ୍ଦ ପାଳ, କୃଷ୍ଣଚନ୍ଦ୍ର ପାତ୍ର ପ୍ରମୁଖ ।

ଆଉ ମଧ୍ୟ ଅନ୍ୟ ଦିଗରେ ରାମଚନ୍ଦ୍ର ରାମ, ଗିରିଧାରୀ ମିଶ୍ର, ମୋହିନୀ ବୋଷ, ପ୍ରଭାତ ମହାନ୍ତି, ତାଳଚେରର ରାଜକିଶୋର ଦାସ, ସଚ୍ଚି ଦାସ, ଲୋକନାଥ ଚୌଧୁରୀ, ବାସୁଦେବ ଦୋରା, ଦୀନବନ୍ଧୁ ମିଶ୍ର ଏମିତି ଅନେକ କମ୍ୟୁନିଷ୍ଟ ଯୁବକ ଦ୍ୱିତୀୟ ପର୍ଯ୍ୟାୟ ଗଡ଼ଜାତ ପ୍ରଜାଆନ୍ଦୋଳନରେ ସାହାଯ୍ୟ କଲେ ।

ଓଡ଼ିଶା ରଜାମାନଙ୍କ ଏହି ଚକ୍ରାନ୍ତକୁ ପଣ୍ଡ କରିବା ଲାଗି ବିଭିନ୍ନ ସ୍ତରରେ ଆଲୋଚନା ଚାଲିଲା । ସେତେବେଳେ ପ୍ରଧାନମନ୍ତ୍ରୀ ମହତାବ ଥାଇ ମନ୍ତ୍ରିମଣ୍ଡଳ ଗଢ଼ାଯାଇଥାଏ । ନବକୃଷ୍ଣ ଚୌଧୁରୀ ରାଜସ୍ୱମନ୍ତ୍ରୀ ଥାଆନ୍ତି । ସାରଙ୍ଗଧର ଦାସ ବିଭିନ୍ନ ମହଲର ପ୍ରସ୍ତୁତି ସମ୍ପର୍କରେ ଅବଗତ ହେଉଥାନ୍ତି ।

**ନୀଳଗିରି ହିଁ ପୁଣି ପ୍ରଥମ :**

ନୀଳଗିରିର ପ୍ରଜାମଣ୍ଡଳ କୈଳାଶ ଚନ୍ଦ୍ର ମହାନ୍ତି ଓ ବନମାଳି ଦାସଙ୍କ ନେତୃତ୍ୱରେ ରାଜାମାନଙ୍କର ଏହି ଚକ୍ରାନ୍ତକୁ ପଣ୍ଡ କରିଦେବା ଲାଗି ବିଦ୍ରୋହର ଧ୍ୱଜା ଉଡ଼େଇଲେ । ରାଜପ୍ରସାଦ ଦଖଲ କରିବାର ଆୟୋଜନ ଜାଣି ରାଜାପକ୍ଷରୁ ଭୟାବହ ଦମନ ଚାଲିଲା । ଅଣ ଆଦିବାସୀ-ଆଦିବାସୀ ଭେଦ ସୃଷ୍ଟି କରି ସାନ୍ଦିଆ ସିଂହ ନେତୃତ୍ୱରେ 'କଳାପିଠିଆ' ସଂଗଠନ ଗଢ଼ି ପ୍ରଜାମଣ୍ଡଳ ପ୍ରଭାବିତ ଗାଁ'ଗୁଡ଼ିକ ଉପରେ ଚାଲିଲା ଲୁଣ୍ଠନ, ଘରଦ୍ୱାର ଭଙ୍ଗା ।

କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ନୀଳଗିରି ପ୍ରଜାମଣ୍ଡଳକୁ ସାହାଯ୍ୟ କରିବା ଲାଗି ଓଡ଼ିଶାର କେତେକ ଯୁବକଙ୍କୁ ପୁରୀ ଜିଲ୍ଲା ଚନ୍ଦକା ଥାନାର ମେଣ୍ଢାଶାଳଠାରେ ବ୍ରିଟିଶ ସୈନ୍ୟବାହିନୀରୁ ଫେରନ୍ତା ଆସାମର ଜଣେ ଅଫିସର ଯିଏକି କମ୍ୟୁନିଷ୍ଟ ମତବାଦର, ସେହି ବ୍ୟକ୍ତି ବିପୁଳ ଚୌଧୁରୀ ସେମାନଙ୍କୁ ଗରିଲା ଯୁଦ୍ଧର ତାଲିମ ଦେଲେ ।

କଂଗ୍ରେସ ମନ୍ତ୍ରିମଣ୍ଡଳ ଥିଲେ ସୁଦ୍ଧା କେନ୍ଦ୍ରର ଅନୁମତି ବିନା ନୀଳଗିରିରେ ପ୍ରବେଶ କରିପାରୁ ନଥିଲେ । ରାଜସ୍ୱମନ୍ତ୍ରୀ ଶ୍ରୀ ଚୌଧୁରୀଙ୍କୁ ନୀଳଗିରି ପରିସ୍ଥିତିର ସାମନା କରିବାକୁ ବାଲେଶ୍ୱରରେ ଅନେକ ସମୟରେ ରହିବାକୁ ପଡୁଥିଲା । ନବବାବୁ କମ୍ୟୁନିଷ୍ଟମାନଙ୍କ ସଶସ୍ତ୍ର ପ୍ରସ୍ତୁତିର ସୂଚନା ପାଇ କଟକ ଚାନ୍ଦିନୀଚୌକ ଠାରେ ଉକ୍ତ ପାର୍ଟିର ଅଫିସରେ ପହଞ୍ଚି ସରକାର ପକ୍ଷରୁ ସେମାନଙ୍କୁ ସାହାଯ୍ୟ ସହଯୋଗ ମିଳିବ ବୋଲି ସଂପାଦକ ଶରତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକଙ୍କ ସହିତ ଆଲୋଚନା କଲେ । ରଜାବାହିନୀ ସହିତ ସେମାନଙ୍କ ସଶସ୍ତ୍ର ସଂଘର୍ଷ ଏବଂ ତାହା ଫଳରେ ମୋଗଲବନ୍ଦୀ ଓଡ଼ିଶାରେ ଶାନ୍ତିଶୃଙ୍ଖଳା ବିପର୍ଯ୍ୟସ୍ତ ହେବ ବୋଲି ମହତାବ ମନ୍ତ୍ରିମଣ୍ଡଳରୁ ସମ୍ବାଦ ପାଇ କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ନିର୍ଦ୍ଦେଶ ଦେବାରୁ ଏହି ସଶସ୍ତ୍ର ସଂଘର୍ଷ ପରଦିନ ହିଁ ଓଡ଼ିଶା ପୁଲିସ ନୀଳଗିରିରେ ପ୍ରବେଶ କଲେ ଓ ରାଜ୍ୟର ପ୍ରଶାସନ ଭାରତ ରାଜାଙ୍କ ହାତରୁ କାଢ଼ିଆଣି ଦୁର୍ଗାଚରଣ ଦାସଙ୍କୁ ପ୍ରଶାସକ ନିଯୁକ୍ତି କଲେ ।

ଏହି ସଶସ୍ତ୍ର ସଂଘର୍ଷର ସଂକ୍ଷିପ୍ତ ବର୍ଣ୍ଣନା ଦେବାବେଳେ ପ୍ରଜାମଣ୍ଡଳର କଂଗ୍ରେସ ନେତା ଓ କମ୍ୟୁନିଷ୍ଟମାନଙ୍କର ଏହି ସଂଗ୍ରାମରେ ଐକ୍ୟ ଏବଂ ବିପ୍ଳବୀ ନାରୀନେତ୍ରୀ ମାଳତୀ ଚୌଧୁରୀଙ୍କ ଭୂମିକାର ସଂକ୍ଷିପ୍ତ ବିବରଣୀ ଦେବା ପ୍ରାସଙ୍ଗିକ ହେବ ।

୧୯୪୭ ନଭେମ୍ବର ୧୨ରେ କଟକରୁ ଯାଇଥିବା ଗରିଲା [illegible] ସାମିଲ ବୈଷ୍ଣବ ପଟ୍ଟନାୟକ, ନନ୍ଦକିଶୋର ପଟ୍ଟନାୟକ, ହରିହର ଦାଶ (ଯିଏ ୧

ହେଲେ), ସ୍ୱାଧୀନତା ସଂଗ୍ରାମୀ ବାଲେଶ୍ୱରର ସଏଦ ଅବଦୁଲ କାଦେର, ନୀଳଗିରିର ଈଶ୍ୱର ଦାଶ, ଖୋର୍ଦ୍ଧାର ଦିଗମ୍ବର ହରିଚନ୍ଦନ, ପୁରୀ ସହରର ଗୋପୀନାଥ ବ୍ରହ୍ମଚାରୀ, ଗଞ୍ଜାମର ବେନୁଗୋପାଳ ରାଓ ନୀଳଗିରିର ବ୍ରହ୍ମପୁର ନିକଟସ୍ଥ ଛାଉଣିରେ ପହଂଚିଲେ । ପୂର୍ବ ନିର୍ଦ୍ଧାରଣ ଅନୁସାରେ କୈଳାସବାବୁ ଦେଢ଼ଶହ ଓ ବନମାଳି ଦାସଙ୍କ ନେତୃତ୍ୱରେ ତାଙ୍କ ସାଥୀଙ୍କ ସହ ଦେଢ଼ଶହ ବ୍ୟକ୍ତି ଉପସ୍ଥିତ । ଏମାନେ ରଣପ୍ରାଙ୍ଗଣର ପଶ୍ଚାତଭାଗ ଓ ସମ୍ମୁଖଭାଗରେ ତାଲିମପ୍ରାପ୍ତ ଗରିଲା ବାହିନୀ ବିପୁଳ ଚୌଧୁରୀଙ୍କ ନେତୃତ୍ୱରେ ସଜବାଜ । ମାଳତୀ ଦେବୀ କଳାପିଠିଆ ଗୁଣ୍ଡାବାହିନୀ ଠାରୁ ଆସିବା ସମସ୍ତ ବିପଦକୁ ବେଖାତିର କରି ଗାଁ କୁ ଗାଁ ବୁଲି ଲୋକଙ୍କୁ ଅଭୟ ଦେଉଥାନ୍ତି ସେତେବେଳେ । ସେ ଆସି ଶିବିରରେ ପହଞ୍ଚି ଗୋଟିଏ ରିଭଲଭର ଦେଇଗଲେ । ସେଦିନ ଆକ୍ରମଣ ଓ ପ୍ରତିଆକ୍ରମଣ – ଅନ୍ୟପକ୍ଷରୁ ତୀର ଆସି ଗୋପୀନାଥ ବ୍ରହ୍ମଚାରୀ ଆହତ – ଅନ୍ୟପକ୍ଷରୁ ମଧ୍ୟ କ୍ଷୟକ୍ଷତି । ଗରିଲା ବାହିନୀ ସମର୍ଥ ହେଲେ ସାନ୍ଦିଆ ସିଂହକୁ ବାନ୍ଧିପକାଇବାକୁ । ତା'ର ଗିରଫ ପରେ କଳାପିଠିଆ ବାହିନୀ କିଳିକିଳା ରବ କରି ପଛଘୁଞ୍ଚା ଦେଲେ । ସୁଦର୍ଶନ ରାଉତ କଳାପିଠିଆର ଆକ୍ରମଣରେ ଗୋଟାଏ ପୁଷ୍କରିଣୀରେ ପଡ଼ିଗଲେ । ତାଙ୍କୁ ଉଦ୍ଧାର କରାଗଲା । ଗୋପୀନାଥଙ୍କୁ ଶିବିରକୁ ଅଣାଗଲା । କାଦେର ତାଙ୍କ ଜଙ୍ଘରୁ ତୀର କାଢ଼ି ଆଣି ପ୍ରାଥମିକ ଚିକିତ୍ସା ଦେଲେ । ଦେଶୀ ବନ୍ଧୁକ ଅଚଳ ହେବାରୁ ମେଦିନୀପୁର ଯାଇ ବନ୍ଧୁକ ଯୋଗାଡ଼ କରିବାର ପରିକଳ୍ପନା ଆଉ କାର୍ଯ୍ୟକାରୀ ହେଲା ନାହିଁ । ତହିଁଆର ଦିନ ଓଡ଼ିଶା ସରକାରଙ୍କ ପୁଲିସ ନୀଳଗିରିରେ ପହଞ୍ଚିଗଲେ ।

**ଭାରତରେ ଓଡ଼ିଶା ହିଁ ପ୍ରଥମ :**

ମାତ୍ର ବନମାଳି ଦାସ ଓ ତାଙ୍କ ସାଥୀମାନଙ୍କୁ ଓଡ଼ିଶା ପ୍ରଶାସନ ନରହତ୍ୟା ଅଭିଯୋଗରେ ଗିରଫ କରି ନୀଳଗିରି ଜେଲ୍‌ରେ ରଖିଲେ । ବନମାଳି ପାଚେରୀ ପାରି ହୋଇ ଜେଲ୍‌ଖାନାରୁ ପଳାଇ ଆସି ଆତ୍ମଗୋପନ କଲେ ।

ଏହି ସଂବାଦ ଓ ନୀଳଗିରିରେ ଓଡ଼ିଶା ସରକାରୀ ପ୍ରଶାସନ ଯୋଗୁ ଗଡ଼ଜାତଗୁଡ଼ିକରେ ପ୍ରବଳ ଆନ୍ଦୋଳନ ତେଜି ଉଠିଲା । ଡିସେମ୍ବର ୧୦ରେ ଢେଙ୍କାନାଳ ପ୍ରାସାଦ ଦଖଲ କରିବାକୁ ସହସ୍ର ସହସ୍ର ଜନତାର ସମାବେଶ । ତାଳଚେର, ନୟାଗଡ଼, ଦଶପଲ୍ଲା, ସୋନପୁର, ବଲାଙ୍ଗିର, ପାଲଲହଡ଼ା ଏମିତି ସବୁ ରାଜ୍ୟରେ ରାଜାମାନଙ୍କ ଷଡ଼ଯନ୍ତ୍ର ବିରୁଦ୍ଧରେ ପ୍ରଚଣ୍ଡ ବିକ୍ଷୋଭ । ଠିକ୍ ଏତିକିବେଳେ ଡିସେମ୍ବର ୧୩ ତାରିଖରେ ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ପଟେଲ ତାଙ୍କ ସେକ୍ରେଟେରୀ ମେନନଙ୍କ ସଙ୍ଗେ ଆସି କଟକରେ ମହତାବ ନବବାବୁଙ୍କ ପରାମର୍ଶରେ ଉପସ୍ଥିତ ହୋଇ ସେଦିନ କଟକ ମ୍ୟୁନିସିପାଲିଟି ପଡ଼ିଆରେ ବିରାଟ ସମାବେଶରେ ଭାଷଣ ଦେଲେ । ରାଜାମାନଙ୍କୁ ଚେତାବନୀ ଦେଇ କହିଲେ, ସେ ସୁରୁଖୁରୁରେ ରାଜ୍ୟଶାସନ ଭାର ରାଜିନାମା କରି ହସ୍ତାନ୍ତର କରନ୍ତୁ, ନୋହିଲେ ସେମାନେ ଧନ ସମ୍ପଦ ବିଭବ ସହ ବିଲୁପ୍ତ ହେବେ । ତାକୁଙ୍କ ହାତରେ ଗଡ଼ଜାତଗୁଡ଼ିକୁ ପଡ଼ିବାକୁ ଦିଅନ୍ତୁ ନାହିଁ ।

୧୪ ଡିସେମ୍ବରରେ କଟକ ରାଜଭବନଠାରେ ଓଡ଼ିଶାର ରଜାମାନଙ୍କ ସହିତ ଆଲୋଚନା କରାଗଲା । ଓଡ଼ିଶା ଗଡ଼ଜାତଗୁଡ଼ିକ କ, ଖ, ଗ ଏହି ତିନି ଶ୍ରେଣୀରେ ବିଭକ୍ତ । ଖ ଓ ଗ ଶ୍ରେଣୀଭୁକ୍ତ ୧୫ଟି ରାଜ୍ୟ ମଧ୍ୟରୁ ୧୨ଟି 'ଗ' ଶ୍ରେଣୀ ରାଜା ରାଜିନାମାରେ ସ୍ୱାକ୍ଷର କଲେ । ତହିଁପରଦିନ ୨ଟି ଶ୍ରେଣୀର ରଜା ଅନୋନ୍ୟପାୟ ହୋଇ ସ୍ୱାକ୍ଷର କଲେ । ମାତ୍ର ମୟୁରଭଞ୍ଜ ମହାରାଜା ହରିଶ୍ଚନ୍ଦ୍ର ଦାସଙ୍କୁ ଧରି ଗଢ଼ିଥିବା ପ୍ରଜାମଣ୍ଡଳ ସହିତ ରାଜିନାମା କରି କ୍ଷମତା ହସ୍ତାନ୍ତର କରିଛନ୍ତି । ତାଙ୍କର କିଛି କରିବାର ନାହିଁ ବୋଲି ଯୁକ୍ତି ଦର୍ଶାଇ ରାଜିନାମାରେ ସ୍ୱାକ୍ଷର କଲେ ନାହିଁ । ମୟୁରଭଞ୍ଜକୁ ବର୍ତ୍ତମାନ ପାଇଁ ବାଦଦେଇ ଆଉ ଷଢ଼େଇକଳା, ଖରସୁଆଁ (ବିହାରରୁ ଆସି) ସମେତ ଅନ୍ୟସବୁ ଗଡ଼ଜାତ ଓଡ଼ିଶା ସହିତ ମିଶ୍ରଣ ହେବ । ୧୯୪୮ ଜାନୁୟାରୀ ପହିଲାରୁ ଏହା କାର୍ଯ୍ୟକାରୀ ହେବ ବୋଲି ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ ନିଷ୍ପତ୍ତି ଜଣାଇ ଦେଲେ । ୧୯୪୮ ଅକ୍ଟୋବରରେ ମୟୁରଭଞ୍ଜର ମିଶ୍ରଣ ଓଡ଼ିଶାରେ ହେବା ପରେ ଓଡ଼ିଶା ସହିତ ଗଡ଼ଜାତଗୁଡ଼ିକର ମିଶ୍ରଣ ଲାଗି ରାଜ୍ୟ ପ୍ରଜା ସମ୍ମିଳନୀ ଯେଉଁ ଆହ୍ୱାନ ଦେଇଥିଲା ତାହା ସଫଳ ହେଲା ।

ମାତ୍ର ରଜାମାନଙ୍କ ଉଆସ, ଖମାର, ଅମାର, ହଜାର ହଜାର ଏକର ଜମି, ମୋତିମାଣିକ୍ୟ କେବଳ ସେମାନଙ୍କର ରହିଲା ନୁହଁ, ସେମାନଙ୍କ ପାଇଁ ଭତ୍ତା ଖଞ୍ଜି ଦିଆଗଲା । ଓଡ଼ିଶା ରାଜକୋଷରୁ ସେମାନଙ୍କ ଝିଅ ବାହାଘର ଓ ଅନ୍ୟାନ୍ୟ ବ୍ୟୟ ଲାଗି ଅର୍ଥ ବରାଦ ହେଉଥିଲା । ସାମନ୍ତବାଦକୁ ଏହିପରି ଭାବରେ ଜିଆଇ ରଖାଗଲା । ୧୯୭୨ରେ ଯାଇ ଭତ୍ତା କାଟ ହେଲା । ଭାରତରେ ଅନ୍ୟାନ୍ୟ ଗଡ଼ଜାତଗୁଡ଼ିକର ମିଶ୍ରଣ ଓ ହାଇଦ୍ରାବାଦରେ ସୈନ୍ୟବାହିନୀର ପ୍ରବେଶ ଏବଂ କାଶ୍ମୀରରେ ମହାରାଜା ହରି ସିଂହଙ୍କ ଗାଦିଚ୍ୟୁତ, ଏସବୁ ଓଡ଼ିଶାରେ ଗଡ଼ଜାତଗୁଡ଼ିକର ମିଶ୍ରଣର ପରବର୍ତ୍ତୀ ଘଟଣାବାଳୀ । ଓଡ଼ିଶା ହିଁ ଏ କ୍ଷେତ୍ରରେ ପଥପ୍ରଦର୍ଶକ ରୂପେ କାର୍ଯ୍ୟ କଲା ।

ସାରଙ୍ଗଧର ଦାସ ଓ ପ୍ରଥମ ପ୍ରବୃତ୍ତିର ନେତାମାନେ ରାଜାଙ୍କ ପ୍ରତ୍ୟକ୍ଷ ଶାସନର ଅବସାନ ଓ ମିଶ୍ରଣକୁ ସ୍ୱାଗତ କଲେ ହେଁ ଭତ୍ତା ଉଆସ ଓ ସେମାନଙ୍କ ଦ୍ୱାରା ଲୁଟି ସମ୍ପଦ ବାଜ୍ୟାପ୍ତି ନହେବାରୁ କ୍ଷୁବ୍ଧ ହେଲେ । ଦ୍ୱିତୀୟ ପ୍ରବୃତ୍ତିର ମିଶ୍ରଣ ଲକ୍ଷ୍ୟ ସାଧିତ ହେଲା । ତୃତୀୟ ପ୍ରବୃତ୍ତି ପକ୍ଷରେ ଏହି ବାସ୍ତବତାକୁ ଗ୍ରହଣ କରିବା ବ୍ୟତୀତ ଅନ୍ୟ ପନ୍ଥା ନଥିଲା ।

ଏହି ରଜା ମହାରାଜାମାନେ ଏହି କାରଣରୁ ପରବର୍ତ୍ତୀ କାଳରେ କଂଗ୍ରେସ, ବି.ଜେ.ପି., ଜନସଙ୍ଘ ପ୍ରଭୃତି ବିଭିନ୍ନ ଦଳରେ ସାମିଲ ହୋଇ ଅବା ଅନ୍ୟ ଦଳ ସହିତ ମିଳିତ ହୋଇ ବିଭିନ୍ନ ରାଜ୍ୟରେ ଓ କେନ୍ଦ୍ରରେ ଶାସନର ଭାଗୀଦାର ହେବାର ସୁଯୋଗ ନେଲେ ।

ସାରଙ୍ଗଧର ଦାସଙ୍କ ରାଜନୈତିକ ଜୀବନରେ କୃତି କୃତିତ୍ୱର ଉଲ୍ଲେଖ କଲାବେଳେ ତାଙ୍କ ଶତବାର୍ଷିକୀରେ ତାଙ୍କ ଜୀବନର ଆଉ କେତେକ ଘଟଣା, କେତେକ ବୈଶିଷ୍ଟ୍ୟ ମନେପଡ଼େ ।

ଢେଙ୍କାନାଳରେ ତାଙ୍କର ଉଚ୍ଚ ପ୍ରଯୁକ୍ତି ବିଦ୍ୟାର ଓ ଶିକ୍ଷାର ଉପଯୋଗ କରି ଆଦର୍ଶ ଫାର୍ମ କରିବେ – ଫାର୍ମ ହେଲା । ମାତ୍ର ସ୍ୱାଧୀନଚେତା, ଦେଶପ୍ରେମୀ ସାରଙ୍ଗଧର ହେଲେ ରଜାର ଚକ୍ଷୁଶୂଳ । ରାଜ ନିର୍ଯ୍ୟାତନା ଢେଙ୍କାନାଳ ଓ ତାଙ୍କ ଫାର୍ମ ଛାଡ଼ିବାକୁ ତାଙ୍କୁ ବାଧ କଲା । ଏହା ନହୋଇଥିଲେ ହୁଏତ ତାଙ୍କ ଜୀବନର ଗତି ଅନ୍ୟପ୍ରକାର ହୋଇଥାନ୍ତା । ତେଣୁ ରାଜ ଅତ୍ୟାଚାର ତାଙ୍କ ଲାଗି ଏକ ଆଶୀର୍ବାଦ ହେଲା ।

ପତ୍ନୀ ଫ୍ରେଡ଼ା ଦାସଙ୍କ ବିଚ୍ଛେଦ ତାଙ୍କୁ ଯେତେ ବାଧି ନଥିଲା, ବାଧିଥିଲା ଭାରତବର୍ଷର ଜୀବନଧାରାକୁ ସମାଲୋଚନା କରି ଶ୍ରୀମତୀ ଦାସଙ୍କ-ଲେଖିଥିବା ଇଂରେଜୀ ପୁସ୍ତକ । ଅନ୍ତରଙ୍ଗ ମହଲରେ ସାରଙ୍ଗବାବୁ କହନ୍ତି, ଉକ୍ତ ଘଟଣା ମଧ ତାଙ୍କୁ ରାଜନୈତିକ ଜୀବନ, ତ୍ୟାଗ, ଦୁଃଖକଷ୍ଟ ପାଇଁ ଖୋରାକ ଯୋଗାଇଲା । ଦେଶର ସ୍ୱାଧୀନତାଠାରୁ ବ୍ୟକ୍ତିଗତ ଆବେଗ ତାଙ୍କ ପାଇଁ ବଡ଼ ହେଲା ନାହିଁ ।

ତାଙ୍କ ଜୀବନରେ ଏକ ସବୁଠାରୁ ମର୍ମନ୍ତୁଦ ଘଟଣାଟି ମନେପଡ଼େ । ଗଡ଼ଜାତ ପ୍ରଜାମାନଙ୍କର ଆନ୍ଦୋଳନ କାଳରେ ତାଙ୍କ ଭାଇ ଗଙ୍ଗାଧର ଦାସଙ୍କ ଝିଅର ଯକ୍ଷ୍ମା ରୋଗରେ କଟକରେ ମୃତ୍ୟୁ । ସାରଙ୍ଗଧରଙ୍କର ସେ ଅଲିଅଳୀ ଝିଆରୀ । କଟକ ବାଖରାବାଦ ଧୂଆଁପତ୍ରିଆ ଗଳିରେ ସେ ଡଗରପଡ଼ା ଛାଡ଼ି ଅଳ୍ପ ଭଡ଼ାରେ ରହୁଥାଆନ୍ତି । ସେଇଠି ସେ ଭାଙ୍ଗିପଡ଼ିବାର, ତଳେ କୋହ କୋହ ହୋଇ ଲୋଟିବାର ଦେଖା ଯାଇଥିଲା । ମାତ୍ର ତେଣେ ନେତୃତ୍ୱ ଦାନର କର୍ତ୍ତବ୍ୟ ।

ସାରଙ୍ଗଧରଙ୍କୁ ତାଙ୍କ ଜୀବନର ଏକମାତ୍ର ସଉକ ସିଗାର ବା ଚୁରୁଟ ଛାଡ଼ିବାକୁ ପଡ଼ିଲା । ବିଡ଼ି ତାଙ୍କର ଏକମାତ୍ର ଆଶ୍ରୟ । ଭଣଜା ନରୋତ୍ତମ ଦାସ ହିଁ ହୋଇ ରହିଲେ ତାଙ୍କର ଅତ୍ୟନ୍ତ ଅନ୍ତରଙ୍ଗ, ସାହାଯ୍ୟକାରୀ ।

ନୀତିନିଷ୍ଠ ସାରଙ୍ଗଧର କଂଗ୍ରେସ ଟିକେଟରେ ନିର୍ବାଚିତ ହୋଇ ଯେତେବେଳେ ପ୍ରଜା ସୋସଲିଷ୍ଟ ପାର୍ଟିରେ ଯୋଗଦେଲେ, ସେ ବିଧାନସଭା ସଭ୍ୟପଦରୁ ମଧ ଇସ୍ତଫା ଦେଇଥିଲେ । ଆଜି ଏମ୍.ଏଲ୍.ଏ., ଏମ୍.ପି. ଦଳବଦଳ ପାଇଁ ଲକ୍ଷ ଲକ୍ଷ ଟଙ୍କାରେ କିଣା ହେଉଛନ୍ତି ।

ଏହି ବ୍ୟକ୍ତି ତେଣୁ ଜୀବନର ସାୟାହ୍ନ ଜାଣି ନିଜର ସମ୍ପତ୍ତିକୁ ଦେଶ ଓ ଜାତି ହାତରେ ଏକ ଟ୍ରଷ୍ଟ ଜରିଆରେ ଅର୍ପଣ କରିଦେଲେ ସମାଜର ପରିବର୍ତ୍ତନ ଲାଗି ସେଥିରୁ ଉତ୍ପନ୍ନ ଅର୍ଥର ବିନିଯୋଗ ଉଦ୍ଦେଶ୍ୟରେ ।

❐❐❐

ରଚନା କାଳ – ୧୯୯୩

# ଓଡ଼ିଶାରେ ଅଗଷ୍ଟ କ୍ରାନ୍ତିର କେତେକ ସ୍ମୃତି

୧୯୪୨ ଅଗଷ୍ଟ ୮ ତାରିଖ । ବମ୍ବେରେ ଅନୁଷ୍ଠିତ ଐତିହାସିକ ଏ.ଆଇ.ସି.ସି. ଅଧିବେଶନର ସମାପ୍ତି ଦିବସ । ସେଠାରୁ ଝଙ୍କୃତ ହେଲା ମହାତ୍ମା ଗାନ୍ଧୀଙ୍କ 'କର ଅବା ମର' ଆହ୍ୱାନ । ଭାରତର ପରାଧୀନତାର ଶୃଙ୍ଖଳକୁ ଛିନ୍ନ କରିଦେବା ପାଇଁ ଆମର ସଂଗ୍ରାମର ସଂକଳ୍ପ ।

ସେହି ବାର୍ତ୍ତା ଘେନି ବିପ୍ଳବିଣୀ ମାଳତୀ ଚୌଧୂରୀ ଆତ୍ମଗୋପନ କରି ଧାଇଁଲେ ଓଡ଼ିଶା ଅଭିମୁଖେ । କେତେ ଆଡ଼ବାଙ୍କ ରେଳରାସ୍ତା ଦେଇ ଗୋପନରେ ଉଚ୍ଛୁଳା କାଠଯୋଡ଼ି ନଦୀ ପାର ହୋଇ ପହଞ୍ଚୁ ପହଞ୍ଚୁ ସନ୍ଧାନ ପାଇଗଲା ବ୍ରିଟିଶ ପୋଲିସ ଛଂାଣ । ଗିରଫ ହେଲେ ମାଳତୀ ଦେବୀ । ସ୍ୱାମୀ, ଦେଢ଼ଶୁର, ଯାଆ, ପୁତୁରା, ଝିଆରୀ ଆଉ ଆଉ ନେତାନେତ୍ରୀଙ୍କୁ ଆଗରୁ ଧରି ନିଆଯାଇଥାଏ ।

ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ, ବରଂ ସପ୍ତଦଶକ କାଳ, ବିଶ୍ୱକବି ରବୀନ୍ଦ୍ରଙ୍କ ଅଲିଅଳୀ ଶିଷ୍ୟା ବିପ୍ଳବିଣୀ ମାଳତୀ ଚୌଧୁରୀ ଓଡ଼ିଶାକୁ ଘର କରିନେଲେ । ୧୯୩୦-୩୨ର ବିଖ୍ୟାତ ଲବଣ ସତ୍ୟାଗ୍ରହ, ଆଇନଅମାନ୍ୟ ଆନ୍ଦୋଳନରେ ସେକାଳର ଅସାଧାରଣ ଜନଉନ୍ମାଦନା ସୃଷ୍ଟିକାରୀ ଜମିଦାର ବିରୋଧୀ ଚାଷୀ ଆନ୍ଦୋଳନ, ଗଡ଼ଜାତ ପ୍ରଜାମୁକ୍ତି ସଂଗ୍ରାମ, ସର୍ବୋଦୟ ଆନ୍ଦୋଳନ, ସବୁଥିରେ ରହିଛି ତାଙ୍କର ନେତୃତ୍ୱ, ସାହସିକତା, ଦୃଢ଼ତାର ଅଲିଭା ସ୍ୱାକ୍ଷର । ଯୁଗ ଯୁଗ ଧରି ଅବହେଳିତ ଆଦିବାସୀ, ହରିଜନ ଓ ଗରିବ ଘରର ପିଲାଙ୍କୁ ସ୍ୱାବଲମ୍ବୀ, ଦେଶାଭିମାନୀ ମଣିଷ କରି ଗଢ଼ିବେ ବୋଲି ପ୍ରତିଷ୍ଠିତ ବାଜିରାଉତ ଛାତ୍ରାବାସର ଅଧିଷ୍ଠାତ୍ରୀ ନୁମା ପ୍ରତିଶ୍ରୁତିବଦ୍ଧ ଥିଲେ । ଏହି ବିପ୍ଳବିଣୀଙ୍କ ରୂପକୁ ଦେଖିଛି ବ୍ରିଟିଶ ସରକାର । ଦେଖିଛନ୍ତି ଲକ୍ଷ କୋଟି ଜନତାର ତତ୍କାଳୀନ ଶୋଷକବର୍ଗ । ଅନ୍ୟପକ୍ଷରେ ତାଙ୍କୁ ପାଛୋଟି ନେଇଛନ୍ତି – ଓଡ଼ିଶାର ପୁରପଲ୍ଲୀର ଲକ୍ଷ ଲକ୍ଷ ଦରିଦ୍ର, ନିଷ୍ପେଷିତ, ନିର୍ଯ୍ୟାତିତ, ବଂଚିତ, ଲୁଣ୍ଠିତ, ପ୍ରବଂଚିତ ନରନାରୀ, ଯୁବକ ଯୁବତୀ ।

୧୯୯୮ ମାର୍ଚ୍ଚ ୧୫ ସନ୍ଧ୍ୟା ଅନୁଗୋଳ ସହରର ଉପକଣ୍ଠ ସିସୁଆ ଶ୍ମଶାନରେ ସ୍ୱାମୀଙ୍କ ସମାଧି ସନ୍ନିକଟ ସଜଡ଼ା ଚିତାରେ ଏହି ବିପ୍ଳବିଣୀଙ୍କୁ ମୁଖାଗ୍ନି ଦେଉଛନ୍ତି ପୁତୁରା, ସର୍ବୋଦୟ

ନେତା ମନମୋହନ ଚୌଧୁରୀ । ଦୀର୍ଘ ଶବ ପଟୁଆରରେ ଏବଂ ଶ୍ମଶାନ ଭୂଇଁରେ ଅଗଣିତ ଶୋକାତୁର, ଶୋକାତୁରା ଶ୍ରଦ୍ଧାଳୁ । ମାନସ ଚକ୍ଷୁରେ ଭାସିଉଠିଲା ଏହି ବିପ୍ଳବିଣୀଙ୍କ ଅତ୍ୟନ୍ତ ରୋମାଞ୍ଚକ, ଅଗଣିତ ବୈପ୍ଳବିକ ଘଟଣା । ତାଙ୍କର ୯୭ତମ ଜନ୍ମଜୟନ୍ତୀ ଉପଲକ୍ଷ୍ୟେ ସ୍ମରଣିକାଟିଏ ପ୍ରକାଶ ପାଇବ । ମୋ' ପାଇଁ ସର୍ବୋଦୟ ନେତା ବୁଲୁଭାଇଙ୍କ ବରାଦ, ଅଗଷ୍ଟ କ୍ରାନ୍ତିର ସଂକ୍ଷିପ୍ତ ସ୍ମୃତିଚାରଣ କରିବାକୁ । ତେଣୁ ସେଇଥିରେ ହିଁ ସୀମିତ ରହିବ ।

**ଉତ୍ତାଳ ଭାରତ ଭୂଇଁ**

ଦେଶମାତୃକାର ମୁକ୍ତି ଓ ସ୍ୱାଧୀନତା ଲାଗି ଜାତି ଉଦ୍ଦେଶ୍ୟରେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନ ଆଉ ପ୍ରବଳ ପରାକ୍ରମୀ ବିବେଚିତ ବ୍ରିଟିଶ ସରକାରକୁ ଚରମବାଣୀ । "ଏ ଦେଶବାସୀ ଦାସତ୍ୱ ବନ୍ଧନର ଶୃଙ୍ଖଳ ଛିନ୍ନ କର, କର ବା ମରର ପଣ ନେଇ । ହଟିଯା ଏ ଦେଶରୁ ।" ତାଙ୍କ ଚିରାଚରିତ ନୀତି ସତ୍ୟ ଅହିଂସାର ଆଦର୍ଶରେ ସେ ପତ୍ର ଲେଖିବେ, ଭାରତରେ ଅବସ୍ଥାପିତ ବ୍ରିଟିଶ ପ୍ରତିନିଧି ତତ୍କାଳୀନ ଭାଇସରାୟ ଲର୍ଡ଼ ଲିନଲିଅଗୋଙ୍କୁ । ନକାରାତ୍ମକ ଉତ୍ତର ମିଳିଲେ ଭାରତବାସୀ "କର ଅବା ମର"ର ଆହ୍ୱାନକୁ କାର୍ଯ୍ୟକାରୀ କରିବେ ।

ମାତ୍ର ଶାଗୁଣା ଶବ କେଉଁଠି ପଡ଼ିଛି, ଠାବ କଲାପରି ବ୍ରିଟିଶ ସରକାର ବହୁ ଆଗରୁ ଦେଶସାରା କେଉଁଠି କ'ଣ କରିବ ଠାବ କରିସାରିଛି । ଠିକଣା କରିନେଇଛି । କଂଗ୍ରେସ ବେଆଇନ ଘୋଷିତ । ଗାନ୍ଧିଜୀ ଗିରଫ । ଆଗାଖାଁ ପ୍ରସାଦ ଜେଲରେ ଅନ୍ୟ ନେତାମାନଙ୍କଠାରୁ ବିଚ୍ଛିନ୍ନ କରି ତାଙ୍କୁ ରଖାଗଲା । କାର୍ଯ୍ୟକାରୀ କମିଟିର ସମସ୍ତ ସଦସ୍ୟ ନେହେରୁ, ଆଜାଦ, ପଟେଲ, ଭୁଲାଭାଇ, ବଜାଜ୍ ମ...ଠାବ ସମସ୍ତେ ଗିରଫ ହୋଇ ଅହମ୍ମଦନଗର ଦୁର୍ଗରେ ବନ୍ଦୀ । ଅଗଷ୍ଟ ୮ ରାତିରେ ଚାଲିଲା ବ୍ରିଟିଶ ଶାସନର ନୃଶଂସ ବର୍ବର ଆକ୍ରମଣ ।

୧୯୪୨, ଅଗଷ୍ଟ ୯ ତାରିଖ । ସୂର୍ଯ୍ୟୋଦୟ ଆରମ୍ଭ ମାତ୍ରେ ହିମାଳୟଠାରୁ କୁମାରିକାଯାଏ ଭାରତର କୋଣେ ଅନୁକୋଣେ ନେତା, କର୍ମୀଙ୍କ ଗିରଫଦାରୀର ସ୍ରୋତ ଛୁଟିଲା । ସତେ ଯେପରି ସମଗ୍ର ଭାରତ ଏକ ଯୁଦ୍ଧଭୂଇଁ । ନଗରନଗରୀ, ସହରାଂଚଳ, ଗ୍ରାମମାନଙ୍କରେ ପୁଲିସ ଓ ମିଲିଟାରୀ ପଇଁତରା । ସବୁ କଂଗ୍ରେସ ଦପ୍ତର, ଆଶ୍ରମ, କର୍ମକେନ୍ଦ୍ରରେ ତାଲା ପଡ଼ିଗଲା ।

ବ୍ରିଟିଶ ସାମ୍ରାଜ୍ୟବାଦର ଏହି ନୃଶଂସ, ନରସଂହାରୀ ଓ ବର୍ବର ଆକ୍ରମଣର ଉତ୍ତର ଦେଲେ ଭାରତର ଲକ୍ଷଲକ୍ଷ ସ୍ୱାଧୀନତା ସଂଗ୍ରାମୀ । ଚାରିଆଡ଼େ ବିପୁଳ ଜନ ସମର୍ଥନ । ପଲ୍ଲୀ, ପ୍ରାନ୍ତର, ସହର, ଶିଳ୍ପାଞ୍ଚଳ, ଶିକ୍ଷାୟତନଗୁଡ଼ିକରେ ପ୍ରବଳ ପ୍ରତିବାଦ, ପ୍ରତିରୋଧ ଓ କ୍ରୋଧାଗ୍ନି । ସାରା ଦେଶ ଉତ୍ତାଳ । ପ୍ରତିବାଦର ପଟୁଆର, ପ୍ରତିବାଦ ସଭା । ନୃଶଂସ ବ୍ରିଟିଶ ପୁଲିସ, ସାମରିକ ପୁଲିସର ବର୍ବର ଆକ୍ରମଣକୁ ତୁଚ୍ଛଜ୍ଞାନ କରି ଅପରସୀମ ସାହସିକତା, ଦମ୍ଭ ଓ ଦୃଢ଼ତା ସହ ଲୋକମାନେ ସେ ଆକ୍ରମଣର କେବଳ ଯେ ମୁକାବିଲା କଲେ ସେତିକି ନୁହେଁ

ଲୋକଙ୍କ ପ୍ରତିରୋଧର ଉଗ୍ରତାକୁ ଭୟ କରି ଗିରଫ, ଗୁଳି ପରେ ପୁଲିସ ଓ ମିଲିଟାରୀ ପ୍ରାଣଭୟରେ ପଳାୟନ କରିଥିଲେ । ତେଣୁ ଦେଶର ବିଭିନ୍ନ ଅଂଚଳକୁ ଧରି ଦେଶବତ୍ସଳ ଜନତା ଓ ସ୍ୱାଧୀନତା ସଂଗ୍ରାମର ସୈନିକ ମାନେ ନିଜ ନିଜ ଇଲାକାରେ ସ୍ୱାଧୀନ ସରକାର ପ୍ରତିଷ୍ଠା କରନ୍ତି । ସେ କାଳରେ ଏପରି ସ୍ୱାଧୀନ ସରକାରଗୁଡ଼ିକ ମଧ୍ୟରେ ମେଦିନୀପୁରର ତମଲକ, ମହାରାଷ୍ଟ୍ରର ସତାରା ଓ ଉତ୍ତର ପ୍ରଦେଶର ବାଲିଆ ଜିଲ୍ଲାରେ ପ୍ରତିଷ୍ଠିତ ପତ୍ର (ସ୍ୱାଧୀନ) ସରକାର ବ୍ରିଟିଶ ଶାସକବର୍ଗଙ୍କ ଛାତିରେ ହାଲୁକ ସୃଷ୍ଟି କରିଥିଲା ।

ଅତି ଚତୁରତା ଓ ସତର୍କତାର ସହ ବ୍ରିଟିଶ ପୁଲିସ ହାବୁଡ଼କୁ ଏଡ଼ି ଭାରତର ଅନେକ ତୁଙ୍ଗନେତା ଓ କର୍ମୀ ଆତ୍ମଗୋପନ କରି ସଂଘର୍ଷ ସଂଗ୍ରାମକୁ ନେତୃତ୍ୱ ଦେଉଥାନ୍ତି ।

ସ୍ୱାଧୀନତା ସଂଗ୍ରାମର ଦୁଇ ଶହ ବର୍ଷବ୍ୟାପୀ ଇତିହାସରେ ଲକ୍ଷ ଲକ୍ଷ ଭାରତୀୟ ଜାତି, ଧର୍ମ, ବର୍ଣ୍ଣ, ଭାଷା, ପ୍ରଦେଶ, ଅଞ୍ଚଳ ନିର୍ବିଶେଷରେ ବ୍ରିଟିଶ ତୋପ କମାଣ ମୁହଁରେ ପ୍ରାଣ ଦେଇଛନ୍ତି । ସହସ୍ର ସଂଖ୍ୟାରେ ଫାଶୀରେ ଝୁଲିଛନ୍ତି ହସି ହସି । ୧୯୪୨ ଅଗଷ୍ଟ ୯ ରୁ ପାଳିପଡ଼ିଛି, ସେମାନଙ୍କ ଦାୟାଦଙ୍କ ଉପରେ । ସ୍ୱାଧୀନ ଭାରତକି ଜୟ । ମହାତ୍ମାଗାନ୍ଧୀଜୀକି ଜୟ, ବ୍ରିଟିଶ ଭାରତ ଛାଡ଼, କରିବୁ ଅବା ମରିବୁ, ରଣଧ୍ୱନିରେ ।

**ଆମ ଓଡ଼ିଶାରେ**

ଏ ଜାତିର ମୁକ୍ତି ଓ ସ୍ୱାଧୀନତା ପାଇଁ ଏହି ମହାମହନୀୟ ସଂଗ୍ରାମରେ ଆମ ପ୍ରଦେଶ ଓଡ଼ିଶା ଯଥାର୍ଥ ଭୂମିକା ନେଇଛି । ଅଗଷ୍ଟ ୯ ତାରିଖ ସକାଳୁ କଟକ ସ୍ୱରାଜ-ଆଶ୍ରମରେ ବ୍ରିଟିଶ ପୁଲିସର ତାଲା ଝୁଲିଲା । ଓଡ଼ିଶାର ବିଭିନ୍ନ ଜାଗାରେ ନେତାମାନଙ୍କ ଗିରଫଦାରୀ ଆରମ୍ଭ ହୋଇଗଲା । ନବକୃଷ୍ଣ ଚୌଧୁରୀଙ୍କୁ ଧରିନେବା ପାଇଁ ତାଙ୍କ କାଠଯୋଡ଼ି ନଦୀ ତଟ ଘରେ ଦଳକୁ ଦଳ ପୁଲିସ ପହଞ୍ଚିଗଲେ । ଲୁଗାପଟା ପିନ୍ଧି ଜେଲ୍ ଯିବାକୁ ସଜିଲ ହେବା ବାହାନାରେ ସେ ଖଣ୍ଡେ କାଗଜରେ ଲେଖିଗଲେ ଏକ ନିର୍ଦ୍ଦେଶାବଳୀ । କ'ଣ କରିବାକୁ ହେବ ଓ କ'ଣ କରାଯିବା ଉଚିତ ନୁହଁ । ଏପରି ଏକ ନିର୍ଦ୍ଦେଶନାମା, ତାଙ୍କର ଏହି ନିର୍ଦ୍ଦେଶାବଳୀ, କିପରି ଏକ ବହନ କଲା, କେଉଁଠି ପହଞ୍ଚିଲା, କିପରି ବିନୋଦ କାନୁନଗୋଙ୍କ ମଲ୍ଲିପୁରରେ ପ୍ରଥମ ଗୋପନ କେନ୍ଦ୍ରରୁ ନିର୍ଦ୍ଦେଶାବଳୀଗୁଡ଼ିକୁ ଲିଫଲେଟ୍ କରି ଓଡ଼ିଶାର ବିଭିନ୍ନ ସ୍ଥାନରେ ବିତରଣ କରାଗଲା, କିପରି କଟକ ଅଲିଶାବଜାର ନନ୍ଦୀ ସାହୁଙ୍କ ଭଡ଼ାଘରେ ଏକ ଦୃଢ଼ ଗୋପନକେନ୍ଦ୍ର ଖୋଲାଗଲା ଓ ସଂଗ୍ରାମ ବ୍ୟାପିଚାଲିଲା ତାହାହେବ ଏକ ଦୀର୍ଘ କାହାଣୀ ।

ସାରା ଭାରତବର୍ଷ ଏବଂ ଓଡ଼ିଶାର ଏପରି ଗିରଫଦାରୀ ସର୍ବତ ଚହଳ ସୃଷ୍ଟି କଲା । ଅଗଷ୍ଟ ୧୦ ତାରିଖ । ରେଭେନ୍‌ସା ମହାବିଦ୍ୟାଳୟର ଛାତ୍ର ସମାଜ ଆରମ୍ଭ କରିଦେଲେ ବିଦ୍ରୋହ । ସମସ୍ତ କଲେଜ ଅଫିସ୍ ଧ୍ୱସ୍ତବିଧ୍ୱସ୍ତ । ଝାମ୍ପି ପଡ଼ିଲା ବ୍ରିଟିଶ ପୁଲିସ । ସ୍ୱାଧୀନତାକାମୀ ଛାତ୍ରନେତା, କିଏ ଗାନ୍ଧୀବାଦୀ, କିଏ ସୋସାଲିଷ୍ଟ କିଏ କଂଗ୍ରେସପ୍ରେମୀ, କିଏ ଫରୱାର୍ଡ଼ ବ୍ଲକ୍, କିଏ କମ୍ୟୁନିଷ୍ଟ ସମସ୍ତେ ଗିରଫ ହେଲେ ।

ତେଣିକି ଚାଲିଲା ବ୍ରିଟିଶ ପୁଲିସର ଅଭିଯାନ । ଚାରିଆଡ଼େ ପ୍ରତିବାଦ, ବିକ୍ଷୋଭକୁ ନିର୍ମମଭାବରେ ଦମନ କରିବାର ଯନ୍ତ୍ରକୁ ପ୍ରୟୋଗ କରାଗଲା । ଖବର ପହଂଚ ବରୀର ପ୍ରସିଦ୍ଧ, ସୁବିଶାଳ ଆଶ୍ରମରେ । ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ଆଚର୍ଯ୍ୟ ହରିହର ପ୍ରମୁଖଙ୍କ ଦ୍ୱାରା ପରିଚାଳିତ ସ୍ୱାଧୀନତା ସଂଗ୍ରାମର ଏହି ପୀଠକୁ ମାଟିରେ ମିଶେଇ ଦିଆଗଲା । ଚାରିଆଡ଼େ କଂଗ୍ରେସ ଆଶ୍ରମଗୁଡ଼ିକ ଉପରେ ଚଢ଼ଉ ଓ ଗିରଫ ଚାଲିଲା । ବରୀ ଓ ରାମଚନ୍ଦ୍ରପୁରର ପ୍ରସିଦ୍ଧ ଖଦୀ ଗ୍ରାମୋଦ୍ୟୋଗ କେନ୍ଦ୍ର ଉପରେ ମଧ୍ୟ ପୁଲିସ ପକ୍ଷରୁ ଚଢ଼ଉ ହେଲା ।

ସମ୍ବଲପୁରଠାରୁ କୋରାପୁଟ, ବାଲେଶ୍ୱର, କଟକ, ପୁରୀ, ଗଞ୍ଜାମ ଆଦି ଅଂଚଳକୁ କୁହାଯାଉଥିଲା ବ୍ରିଟିଶ ଓଡ଼ିଶା । ଯେମିତି ବ୍ରିଟିଶ ଇଣ୍ଡିଆ । ବ୍ରିଟିଶ ଇଣ୍ଡିଆ-ବାହାରେ ବ୍ରିଟିଶ ସାମ୍ରାଜ୍ୟବାଦ ପୁଷ୍ଟ ରାଜନ୍ୟ ଇଣ୍ଡିଆ । ଖାଲି ବ୍ରିଟିଶ ଓଡ଼ିଶା ବା ବ୍ରିଟିଶ ଭାରତରେ ନୁହଁ, ଓଡ଼ିଶାର ବିଭିନ୍ନ ଗଡ଼ଜାତ, ଭାରତର ବିଭିନ୍ନ କ୍ଷୁଦ୍ର ବୃହତ ଦେଶୀୟ ରାଜ୍ୟରେ, ମାତି ଉଠିଲେ ସ୍ୱାଧୀନତାକାମୀ ଜନତା । ଓଡ଼ିଶାର ଗଡ଼ଜାତଗୁଡ଼ିକରେ ମଧ୍ୟ ବିକ୍ଷୋଭ, କ୍ରୋଧ, ସରକାରୀ ଦପ୍ତର, ଥାନା ଡାକବଙ୍ଗଳା, ପୋଷ୍ଟ ଅଫିସ୍‌କୁ ଘେରାଉ, ଆକ୍ରମଣ କଲେ ବିକ୍ଷୁବ୍‌ଧ ଜନତା ।

୧୯୪୨ ରେ ଓଡ଼ିଶାରେ ବ୍ରିଟିଶ ଗୁଳିରେ ନିହତ ଓ ବ୍ରିଟିଶ ପୁଲିସ ଦ୍ୱାରା ଗିରଫଙ୍କ ସଂଖ୍ୟା ସର୍ବଭାରତୀୟ ତୁଳନାରେ ଉଲ୍ଲେଖନୀୟ । ବ୍ରିଟିଶ ଶାସିତ ଓଡ଼ିଶା ଓ ରାଜରାଜୁଡ଼ା ପ୍ରଶାସିତ ଗଡ଼ଜାତଗୁଡ଼ିକର ସହସ୍ର ସହସ୍ର ସଂଖ୍ୟାରେ ଗିରଫଦାରୀ, ଗାଁଗୁଡ଼ିକ ଉପରେ ସମୂହ ଜୋରିମାନା, ଗୁଳି ଓ ଲୋକମାନେ ବିମାନର ବୋମା ଆକ୍ରମଣର ମଧ୍ୟ ସମ୍ମୁଖୀନ ହୋଇଛନ୍ତି, ଆମ ରାଜ୍ୟବାସୀ ଜନସାଧାରଣଙ୍କ ନିକଟରେ ତାହାର ଅନେକ ଦୃଷ୍ଟାନ୍ତ ରହିଛି । ଆଖିଆଗରେ ନାଚିଯାଏ । କେଉଁ ଅଞ୍ଚଳରେ, କେଉଁ ଗାଁରେ, କେଉଁ ସହରରେ ଗିରଫ ଓ ଅତ୍ୟାଚାରର ଦୃଶ୍ୟ । କେଉଁ ଅଞ୍ଚଳରୁ, କେଉଁ ଗାଁରୁ କେତେ ବ୍ରିଟିଶ ପୁଲିସର ମୁକାବିଲା କରି ଗିରଫ ହେବେ, ଗୁଳି ଖାଇବେ ଯେମିତି ଚାଲିଥାଏ ପ୍ରତିଯୋଗିତା । ଏମିତି କେତୋଟି ଦୃଷ୍ଟାନ୍ତ ଦେଲେ ସମଗ୍ର ଚିତ୍ରଟିକୁ ଅନୁମାନ କରିହେବ । ସମ୍ବଲପୁର ଜିଲ୍ଲା ବରପାଲି ଅଂଚଳର ପାଣିମୋରା ଗାଁର ୩୨ ଜଣ ସଂଗ୍ରାମୀଙ୍କୁ ବାନ୍ଧି ନିଆଗଲା । ଏରସମା ଆଉ ମଣିକୁଣ୍ଡଳ ଗାଁର ୬୩ ଜଣ ସଂଗ୍ରାମୀଙ୍କୁ ଓ ବରୀ, ହଳଦୀବସନ୍ତ, ଧାରଗୁର, ହାଟସାହି ପ୍ରଭୃତି ଏଇ ଆଖପାଖ ଗାଁର ୭୨ ଜଣଙ୍କୁ ଗରିଫ କରି ନିଆଗଲା । ସାଇବିରି ବାଲଗପୁରରୁ ୧୮ ଜଣଙ୍କୁ ବନ୍ଦୀ କରି ନିଆଗଲା । ଧର୍ମଶାଳା, କଲ୍ୟାଣପୁର, ତିର୍ତ୍ତୋଲର ଢେରଡାଙ୍ଗ ଏମିତି ଗୋଟିଏ ଗୋଟିଏ ଗାଁରୁ ୧୦/୧୨ ସ୍ୱାଧୀନତା ସଂଗ୍ରାମୀଙ୍କୁ ଗିରଫ କରି ନିଆଗଲା । ନାରୀ, ପୁରୁଷ, ଯୁବକଯୁବତୀ, ଆଦିବାସୀ, ହିନ୍ଦୁ, ମୁସଲମାନ ନିର୍ବିଶେଷରେ ଓଡ଼ିଶାରେ ଗିରଫଦାରୀ ଚାଲିଲା । ସବୁଠୁ ବଳିଗଲା କୋରାପୁଟର ମାତିଲି, ପାପଡ଼ାହାଣ୍ଡି ଅଞ୍ଚଳ ।

**ରକ୍ତର ତାଣ୍ଡବ**

ଓଡ଼ିଶାର ଜାଲିଆନାବାଗ ବାସୁଦେବପୁରର ଇରମ । ସେଇଠି ରକ୍ତର ସ୍ରୋତ ଛୁଟିଲା । ବାଲେଶ୍ୱରରର ଇରମ ବ୍ୟତୀତ ତୁଡ଼ିଗାଡ଼ିଆ, କଟସାହି· (ଧାମନଗର) ଭଣ୍ଡାରିପୋଖରୀ, ଲୁଣିଆ, ଲକ୍ଷ୍ମଣନାଥ, ବରୀ ସନ୍ନିକଟ କାଇପଡ଼ା-ହାଟସାହି, ନିମାପଡ଼ା ଢେଙ୍କାନାଳର ମଡ଼ି, ତାଳଚେର, ଆଉ ସର୍ବୋପରି କୋରାପୁଟର ପାପଡ଼ାହାଣ୍ଡିରେ ବ୍ରିଟିଶ ଗୁଳିରେ ଆହତ ଓ ନିହତଙ୍କ ସଂଖ୍ୟା ଅନେକ ।

ଇରମ ଅଞ୍ଚଳକୁ ଅଗଷ୍ଟ ବିପ୍ଳବୀମାନେ ସ୍ୱାଧୀନ ଘୋଷଣା କରିଦେଲେ । ଜାତୀୟ କବି ବାଞ୍ଛାନିଧି ମହାନ୍ତି ନାମରେ ଶାସନର ନାମ ହେଲା ବାଞ୍ଛାନିଧି ଚକଡ଼ା ସ୍ୱାଧୀନ ସରକାର । ୧୯୪୨ ସେପ୍ଟେମ୍ବର ୨୮ରେ ରକ୍ତପିପାସୁ ବ୍ରିଟିଶ ପୁଲିସଙ୍କ ଚଢ଼ଉ ଆରମ୍ଭ । ସମବେତ ସହସ୍ର ସହସ୍ର ପଟୁଆର ଓ ସଭା କରୁଥିବା ନରନାରୀ, ବୃଦ୍ଧବୃଦ୍ଧା, ଯୁବକଯୁବତୀଙ୍କୁ ଚାରଆଡୁ ପୁଲିସ ଘେରିନେଲା, ଚାଲିଲା ଅବାରିତ ଗୁଳିବର୍ଷଣ । ୨୯ ଜଣ ବିପ୍ଳବୀଙ୍କ ପ୍ରାଣବାୟୁ ଉଡ଼ିଗଲା । ୫୮ ଜଣ ଗୁରୁତର ଭାବରେ ଆହତ ହୋଇ ମରଣାପନ୍ନ ହେଲେ । ଆଉ କେତେ ଯେ ଖଣ୍ଡିଆଖାବରା ହେଲେ, ତା'ର ଇୟତ୍ତା ନାହିଁ ।

ସେହି ସେପ୍ଟେମ୍ବର ୨୮ରେ ତୁଡ଼ିଗାଡ଼ିଆଠାରେ ଅନୁଷ୍ଠିତ ଜନସମାବେଶ ଉପରେ ଗୁଳି କରି ୯ ଜଣଙ୍କୁ ହତ୍ୟା କରାଗଲା । ସେପ୍ଟେମ୍ବର ୨୧ରେ ଧାମନଗର କଟସାହିରେ ବିକ୍ଷୁବ୍ଧ ଜନତା ଉପରେ ନିର୍ବିଚାର ଭାବରେ ଗୁଳି କରି ୮ ଜଣଙ୍କୁ ମାରି ଦିଆଗଲା । ଆହତ ହେଲେ ଅନେକ । ତନ୍ମଧ୍ୟରୁ ୩ ଜଣ ବହୁଦିନ ପରେ ଆରୋଗ୍ୟ ଲାଭ କରି ବଞ୍ଚିଗଲେ । ଅଗଷ୍ଟ ୨୬ ତାରିଖରେ କାଇପଡ଼ାଠାରେ ଚାଲିଛି ସଭା ସମାବେଶ । ଚାଲିଲା ଗୁଳି । ଅନେକ ଆହତ । ଚାରିଜଣ ହେଲେ ବ୍ରିଟିଶି ଗୁଳିରେ ଶହିଦ ।

ଭଦ୍ରକର ଲୁଣିଆଠାରେ ହଜାର ହଜାର ସଂଖ୍ୟାରେ ବିକ୍ଷୁବ୍ଧ ଜନତାର ସମାବେଶ । ସେପ୍ଟେମ୍ବର ୨୩ ସେ ଦିନ । ଗୁଳି ବର୍ଷଣରେ କେହି ମୃତ ନ ହେଲେ ବି ଅନେକ ଆହତ ହେଲେ । ସେହି ମାସରେ ଓଡ଼ିଶାର ଶେଷ ସୀମାନ୍ତ ଲକ୍ଷ୍ମଣନାଥଠାରେ ଚାଲିଛି ସଭା ପୁଲିସ ଘେରିଯାଇ ଚଳାଇଲା ଗୁଳି – ଅନେକ ରକ୍ତାକ୍ତ ହେଲେ ।

୧୯୪୨ ଅଗଷ୍ଟ ୨୪ ରେ ଢେଙ୍କାନାଳ ମଡ଼ି ଥାନା ଉପରେ ବିପ୍ଳବୀମାନେ ଆକ୍ରମଣ କରି ପୁଲିସ ଓ ଅଫିସରଙ୍କୁ ବନ୍ଦୀ କରିଦେଲେ । ସ୍ୱରାଜ ସରକାର ଘୋଷିତ ହେଲା, ୧୦ ହଜାର ଲୋକଙ୍କ ସଭାରେ । ପରେ ବିରାଟ ପୁଲିସ ବାହିନୀର ଗାଁ'କୁ ଗାଁ ଆକ୍ରମଣ, ବିପ୍ଳବୀଙ୍କ ମଧ୍ୟରୁ ୨ ଜଣ ନିହତ, ବିପ୍ଳବୀ ବୈଷ୍ଣବ ପଟ୍ଟନାୟକଙ୍କ ବାହୁରେ ଗୁଳି – ସେହି ଆଘାତକୁ ପରବାୟ ନକରି ସେ ଫେରାର ହେଲେ । ମୂଷା ମଳିକଙ୍କୁ ଫାଶୀଦଣ୍ଡ ଓ ଅନ୍ୟମାନଙ୍କୁ ୭ ରୁ ୧୪ ବର୍ଷ ଜେଲଦଣ୍ଡ । ଜନକ୍ରୋଧକୁ ଡରି ଫାଶୀ ବିଳମ୍ବିତ ହେଲା । ସୁଯୋଗ ଯେ ସ୍ୱାଧୀନତା ଆସିଗଲା । ମୂଷା ଫାଶୀରୁ ରକ୍ଷା ପାଇଲେ ।

ତାଳଚେରରେ ବିମାନରୁ ବୋମା ଅଜାଡ଼ି ଅନେକ ଘରଦ୍ୱାରକୁ ଜାଳି ଦିଆଗଲା । ୪ ଜଣଙ୍କ ଜୀବନ ନାଟିକା ଧପ ହୋଇଗଲା । ନିମାପଡ଼ାରେ ଗୁଳିରେ ଜଣେ ଶହିଦ ହେଲେ ।

ନରସଂହାରର ସୀମା ଟପିଗଲା କୋରାପୁଟ ଜିଲ୍ଲା ମାତିଲି ଥାନାରେ ଓ ପାପଡ଼ାହାଣ୍ଡିରେ । ମାତିଲି ଥାନା ଉପରେ ବିକ୍ଷୁବ୍‌ଧ ଜନତାର ଆକ୍ରମଣ ଓ ପୁଲିସର ପ୍ରତି ଆକ୍ରମଣ । ସମସ୍ତ ଆଦିବାସୀ ବିକ୍ଷୁବ୍‌ଧ ଜନତାକୁ ଉଚିତ ଶିକ୍ଷା ଦେବା ଲାଗି ଚାଲିଲା ପୁଲିସ ସନ୍ତ୍ରାସ । ସମସ୍ତ ଆକ୍ରମଣକୁ ପ୍ରତ୍ୟକ୍ଷ କରିଥିବା, ଅଙ୍ଗେ ନିଭାଇଥିବା ସରଳବିଶ୍ୱାସୀ ଆଦିବାସୀ ଜନତାଙ୍କ ଅଭିଜ୍ଞତା । ପୁଲିସ ଗୁଳିରେ ନିହତ ଶତାଧିକ ବିପ୍ଲବୀଙ୍କ ଶବକୁ ଘନ ଜଙ୍ଗଲରେ ବାଘ ସିଂହଙ୍କ ଖାଦ୍ୟ କରିଦେଲା ଏହି ନୃଶଂସତା । ସରକାରୀ ହିସାବରେ ମାତ୍ର ୬ ଜଣ ମୃତ ବୋଲି ବିଜ୍ଞପ୍ତି ପ୍ରକାଶ କରାଗଲା ।

ମାତିଲିର ବୀର ବିପ୍ଳବୀ ଲକ୍ଷ୍ମଣ ନାୟକଙ୍କ ନାମରେ ପୁଲିସ ହତ୍ୟାର ମନଗଢ଼ା ଅଭିଯୋଗ ଆଣି ଶହ ଶହ ବନ୍ଦୀ ସ୍ୱାଧୀନତା ସଂଗ୍ରାମୀଙ୍କ ମଧ୍ୟରୁ ଟାଣି ନେଇ ବ୍ରହ୍ମପୁର ଜେଲରେ ୧୯୪୪ରେ ତାଙ୍କୁ ଫାଶୀରେ ଝୁଲାଇ ଦିଆଗଲା । ତାଙ୍କ ତୁଣ୍ଡରୁ ମହାତ୍ମା ଗାନ୍ଧୀଙ୍କର ସ୍ୱାଧୀନ ଭାରତକୀ ଜୟ ଧ୍ୱନି ନିନାଦିତ ହେଲାବେଳେ କଣ୍ଠରେ ଫାଶି ଦଉଡ଼ି ଚିରଦିନ ଲାଗି ପାଟି ବନ୍ଦ କରିଦେଲା । ଏପରି ହତ୍ୟା, ଅତ୍ୟାଚାର ସାଙ୍ଗକୁ ମିଶିଲା ଆଉ ଏକ ଦଣ୍ଡ । କାହିଁକି ଗାଁ' ଗାଁ'ର ଲୋକେ ବିପ୍ଲବୀମାନଙ୍କୁ ସାହାଯ୍ୟ କରୁଛନ୍ତି, ଲୁଚାଇ ରଖୁଛନ୍ତି, ଖାଇବାକୁ ଦେଉଛନ୍ତି, ସେଥିଲାଗି ସେମାନଙ୍କୁ ଡଣ୍ଡ ଦେବାକୁ ହେବ । ତା'ର ନାମ ପିଟୁଣି ଟିକସ । ସାରା ଭାରତବର୍ଷର ଏମୁଣ୍ଡରୁ ସେମୁଣ୍ଡ ଯାଏ ଶହ ଶହ ଗାଁ' ଉପରେ ଏପରି ଟିକସ ବସାଗଲା । ଓଡ଼ିଶାରେ ଭଣ୍ଡାରିପୋଖରୀ ଅଂଚଳରେ ୧୨ଟି ଗାଁ'ର ଚାଷୀଙ୍କ ଉପରେ ୬ ହଜାର ଟଙ୍କା (ଆଜିର ମୂଲ୍ୟରେ ହୁଏତ ୬ ଲକ୍ଷ ଟଙ୍କା ହେବ) ଏବଂ ଢେଙ୍କାନାଳ ମଢ଼ି ଅଂଚଳର କେତେକ ଗାଁ' ଉପରେ ୬୦ ହଜାର ୫୦୦ ଟଙ୍କା ସମୂହ ଜରିମାନା ଧାର୍ଯ୍ୟ କରି ଚାଷୀଙ୍କ ଆସବାବପତ୍ର ଘରଦ୍ୱାର କ୍ରୋକ୍ ନିଲାମ କରାଯାଇଥିଲା । ଏମିତି ଆଉ ଅନେକ ରେକର୍ଡ଼ ଅଭୁକ୍ତ ଅତ୍ୟାଚାରର କାହାଣୀ ରହିଛି ।

ଏହା ବ୍ୟତୀତ ଅଗଷ୍ଟ ବିପ୍ଲବୀଙ୍କ ନାମରେ ଓଡ଼ିଶାରେ ବ୍ରିଟିଶ ସରକାରକୁ ଗାଦିଚ୍ୟୁତ କରିବା ଅଭିଯୋଗ ଆଣି ଷଡ଼ଯନ୍ତ୍ର ମକଦ୍ଦମା ଚାଲିଲା – ବିଚାର ହେଲା ସୁଦୂର କୋରାପୁଟରେ । ସୁରେନ୍ଦ୍ରନାଥ ଦ୍ୱିବେଦୀ ହେଲେ ମୁଖ୍ୟ ଆସାମୀ । ବିଚାରର ପ୍ରହସନ କରି ଧୃତ ବନ୍ଦୀମାନଙ୍କୁ ୪ ବର୍ଷରୁ ୧୬ ବର୍ଷ ଯାଏ ଜେଲ ଦଣ୍ଡ ଦିଆଗଲା ।

ଓଡ଼ିଶାର ବ୍ରହ୍ମପୁର କେନ୍ଦ୍ର ଜେଲରେ ପାଂଶତାଧିକ ରାଜବନ୍ଦୀ । ଏହି ରାଜବନ୍ଦୀମାନଙ୍କୁ ଖୁଆଡ଼ରେ ଭର୍ତ୍ତି କରିବା ପାଇଁ ଏକ ନୂଆ ଜେଲ ଆଗରୁ ସଜଡ଼ା ସରିଥାଏ । ଲମ୍ୱା ଲମ୍ୱା ୯ ଧାଉଡ଼ି ଘର – ପ୍ରତ୍ୟେକ ଧାଉଡ଼ି, କ, ଖ ଦୁଇ ଭାଗରେ ବିଭକ୍ତ । ଚାଳଘର ଚାରିଆଡ଼େ କଡ଼ା

ପହରା । କେବଳ ବ୍ରହ୍ମପୁର ନୁହଁ, କୋରାପୁଟ ଜେଲରେ ଶତାଧିକ ରାଜବନ୍ଦୀ । ଅନୁଗୋଳ, ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର ଜେଲଗୁଡ଼ିକ ରାଜବନ୍ଦୀରେ ଭରପୁର । ଢେଙ୍କାନାଳ, ତାଳଚେର, ନୀଳଗିରି, ନୟାଗଡ଼, ଆଠଗଡ଼, ଦଶପଲ୍ଲା, ଏମିତି ଅନେକ ଗଡ଼ଜାତ ରାଜ୍ୟ ଜେଲରେ ଅଗଷ୍ଟ ବିପ୍ଳବୀମାନେ ବର୍ଷ ବର୍ଷ କାଳ ବନ୍ଦୀ । ଭାରତ ରକ୍ଷା ଆଇନ ନାମରେ ନାମିତ ବେଆଇନ ଆଇନରେ କିଏ ଦୁଇ ବର୍ଷ, ତିନି ବର୍ଷ, ଚାରିବର୍ଷ ଯାଏ ବନ୍ଦୀ ରହିଲେ ।

' ନାରକୀୟ ହତ୍ୟା, ଅତ୍ୟାଚାର, ଜେଲ ଜରିମାନା, ଫାଶୀର ତାଣ୍ଡବକୁ ବ୍ରିଟିଶ ସରକାର ଅତି ନ୍ୟୁନ ଭାବରେ ଦର୍ଶାଇଛି । ତଥାପି କେନ୍ଦ୍ର ଆସେମ୍ବ୍ଲିରେ ତତ୍କାଳୀନ ବ୍ରିଟିଶ ହୋମ ମେମ୍ବରଙ୍କ ବିବୃତିରେ ତଥ୍ୟ ସଂଖ୍ୟା ପରିମାଣ ଅଗଷ୍ଟ କ୍ରାନ୍ତିର ବ୍ୟାପକତାକୁ ଘୋଡ଼ାଇ ପାରି ନାହିଁ ।

ଏହି ତଥ୍ୟ ଅନୁସାରେ ସାରା ଭାରତରେ ୬୦ ହଜାର ସ୍ୱାଧୀନତା ସଂଗ୍ରାମୀଙ୍କୁ ବନ୍ଦୀ କରାଯାଇଥିଲା ଏବଂ ୧୮ ହଜାରଙ୍କୁ ଭାରତ ରକ୍ଷା ଆଇନ ବଳରେ ବର୍ଷ ବର୍ଷ ଅଟକ ରଖାଯାଇଥିଲା । ପୁଲିସ ଓ ସୈନ୍ୟଙ୍କ ଗୁଳିରେ ୯୪୦ଜଣ ନିହତ ହୋଇଥିଲେ ଏବଂ ୧୬୩୦ ଜଣ ଗୁରୁତର ଭାବରେ ଆହତ ହୋଇଥିଲେ । ୬୦ଟି ସ୍ଥାନରେ ସାମରିକ ବାହିନୀ ପକ୍ଷରୁ ଆକ୍ରମଣ ଏବଂ ୫୩୮ଟି ସ୍ଥାନରେ ପୁଲିସ ପକ୍ଷରୁ ଗୁଳି ଚାଳନା କରାଯାଇଥିଲା । ଚିମୁର, ମେଦିନୀପୁର, ନନ୍ଦୁରବାର, ପୁନେ ଓ ଅହମ୍ମଦାବାଦରେ ବୋମା ଓ ମେସିନଗନ୍ ଦ୍ୱାରା ଲୋକଙ୍କ ଉପରେ ଆକ୍ରମଣ କରାଯାଇଥିଲା । ଶତ ଶତ ଗାଁ ଉପରେ ସମୂହ ଜରିମାନା ଧାର୍ଯ୍ୟ କରାଯାଇ କ୍ରୋକନିଲାମ କରି ସମ୍ପତ୍ତି ବାଜ୍ୟାପ୍ତ କରାଯାଇଥିଲା । ଏହାର ହିସାବକୁ ସରକାର ଲୁଚେଇ ରଖିଥିଲା ।

ସେହି ବିବରଣୀରେ ଭାରତବାସୀଙ୍କ ଅଗଷ୍ଟ କ୍ରାନ୍ତି ବେଳେ ବୀରତ୍ୱକୁ ମଧ୍ୟ ନ୍ୟୁନ କରି ଦର୍ଶାଯାଇଛି । ତଥାପି ଯେତିକି ତଥ୍ୟ ଦିଆଯାଇଛି, ତାହା ଏହି କ୍ରାନ୍ତିର ପରିସର କେତେ ବ୍ୟାପକ ତାହା ଦର୍ଶାଇ ଦେଇଛି । ସେଥିରେ କୁହାଯାଇଛି ଦେଶରେ ମାତ୍ର ୧୫୦ଟି ଥାନା ଉପରେ ଆକ୍ରମଣ କରାଯାଇଛି । ୫୦୦ ପୋଷ୍ଟ ଅଫିସ, ୨୫୦ଟି ରେଲଷ୍ଟେସନ୍ ଉପରେ ଆକ୍ରମଣ ହୋଇଛି । ମାତ୍ର କେତେ ସରକାରୀ ଦପ୍ତର, ଡାକବଙ୍ଗଳା, ବିକ୍ଷୁବ୍ଧ ଜନତାଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ଧୂଳିସାତ୍ ହୋଇଛି ତାହାର ବିବରଣୀ ତଳେ ଦିଆଯାଇ ନାହିଁ ।

ସର୍ବ ଭାରତୀୟ ତୁଳନାରେ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀମାନଙ୍କର ଅଗଷ୍ଟ କ୍ରାନ୍ତିକୁ ଅବଦାନ ଅନନ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅଗଷ୍ଟ କ୍ରାନ୍ତିର ସ୍ମୃତି ପଖାଳାର ସୁଯୋଗ ମିଳିଥିବାରୁ ବିପ୍ଳବିଣୀ ମାଳତୀ ଦେବୀଙ୍କ ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

□□□

ରଚନା କାଳ – ୧୯୯୮

# ଓଡ଼ିଶା ଗଡ଼ଜାତ ଆନ୍ଦୋଳନର କେତୋଟି ଦିଗ

୧୯୩୮-୩୯ ଆଉ ୧୯୪୨ ତଥା ୧୯୪୭ ଓଡ଼ିଶାର ରାଜନୈତିକ, ସାମାଜିକ ଜୀବନକୁ ଆନ୍ଦୋଳିତ କରିଥିବା ସେହି ଦିନଗୁଡ଼ିକ । ସେ ଏକ ଅପାସୋରା ଜନଉଦ୍‌ବେଳନ । ଭାରତବର୍ଷବ୍ୟାପୀ ସେଇ ମହଉଦ୍‌ବେଳନର ଉଚ୍ଛ୍ୱାସ । ଗୁଳି, ବନ୍ଧୁକ, ହାତୀମଡ଼ା, ଘୋଡ଼ାମଡ଼ା ଜେଲ, ଫାଶିଖୁଣ୍ଟକୁ ବେଖାତିର କରି ସେ ସଂଗ୍ରାମ । ଘର ଘର ଲୁଟି, ଗାଁ'କୁ ଗାଁ ଉଚ୍ଛନ୍ନ କରି ଦିଆଯିବା ସତ୍ତ୍ୱେ ଜନତାର ବିଦ୍ରୋହ । ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ । ଐତିହାସିକ ସେ ଆନ୍ଦୋଳନ । ସମଗ୍ର ଭାରତବର୍ଷର ଆକୁମାରୀ ହିମାଳୟର ବ୍ରିଟିଶ ସାମ୍ରାଜ୍ୟବାଦ ପରିପୁଷ୍ଟ ଛଅ ଶହଟି ଦେଶୀୟ ରାଜ୍ୟର ମହା ବିଦ୍ରୋହର ସୂତ୍ରପାତ କଲା ଏହି ଓଡ଼ିଶାର ମାଟି । ଏଇ ଓଡ଼ିଶାର ୨୬ଟି ଗଡ଼ଜାତର ପ୍ରଜା । ପୁନଶ୍ଚ ଏଇ ଗଡ଼ଜାତ ଆନ୍ଦୋଳନ ଓଡ଼ିଶା ମାଟିରୁ ହିଁ ସ୍ୱାଧୀନ ଭାରତର ଅଂଗରୂପେ ସମସ୍ତ ଦେଶୀୟ ରାଜ୍ୟକୁ ଏକୀଭୂତ କରିବାର ପ୍ରକ୍ରିୟା ଆରମ୍ଭ କରିଦେଲା । ଇତିହାସର ଏହି ଅକାଟ୍ୟ ସତ୍ୟକୁ ମନେହୁଏ, କାହିଁକି କେଜାଣି ଏ ଦେଶର ଶାସକବର୍ଗ ଇତିହାସକାରମାନେ ତଥ୍ୟ ଦେଇ ପ୍ରମାଣସିଦ୍ଧ କରି ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନର ଯୁଗାନ୍ତକାରୀ, ଐତିହାସିକ ଭୂମିକାକୁ ଭାରତବର୍ଷର ସ୍ୱାଧୀନତା ସଂଗ୍ରାମର ଇତିହାସରେ ପ୍ରତିପାଦନ କରିବାକୁ କୁଣ୍ଠାବୋଧ କରିଛନ୍ତି ଅବା ସମର୍ଥ ହୋଇପାରିନାହାନ୍ତି ।

ସେ ଯାହାହେଉ, ଓଡ଼ିଶା ପାଇଁ ଏହାର ତାତ୍ପର୍ଯ୍ୟ କ'ଣ ବିଚାର କରାଯାଉ । ଭାଗ ଭାଗ କରି ଶାସନ କରିବା ବ୍ରିଟିଶ ସାମ୍ରାଜ୍ୟବାଦର ନୀତି ହିସାବରେ ଅତୀତରେ ଗୁଜୁରାଟ ସହିତ ମହାରାଷ୍ଟ୍ରକୁ ବା ବଙ୍ଗଳା ସହିତ ଆସାମକୁ ଏବଂ କେରଳ, ଆନ୍ଧ୍ର, କର୍ଣ୍ଣାଟକ ସହିତ ତାମିଲନାଡୁକୁ ଗୋଟାଏ ସୂତାରେ ବାନ୍ଧି ସମସ୍ତଙ୍କ ଭାଷା, ସଂସ୍କୃତି, ଜାତୀୟତାବୋଧକୁ ଖର୍ବ କରାଯାଉଥିଲା । ଆମ ଓଡ଼ିଶାକୁ ଅନ୍ୟ ଭାବରେ ଖଣ୍ଡ ଖଣ୍ଡ କରି ପ୍ରଥମେ କେତେକାଞ୍ଚଳକୁ ବଙ୍ଗଳା ପ୍ରେସିଡ଼େନ୍‌ସିରେ ଆଉ କେତେକ ଅଂଶକୁ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସିରେ, ଆଉ ଏକ ଅଂଶକୁ ମଧ୍ୟ ଭାରତରେ ରଖି ଏବଂ ଓଡ଼ିଶା ଭିତରେ ୨୬ଟି ଗଡ଼ଜାତ ରାଜ୍ୟକୁ ବସେଇ ବ୍ରିଟିଶ ସାମ୍ରାଜ୍ୟର ସ୍ୱାର୍ଥରେ ଲୋକଙ୍କ ଉପରେ ଅବର୍ଣ୍ଣନୀୟ ଦମନ ଅତ୍ୟାଚାର କରାଯାଉଥିଲା । ଓଡ଼ିଶାର ଭାଷା, ସଂସ୍କୃତି, ଅର୍ଥନୀତି, ରାଜନୈତିକ ଚେତନା ବିକାଶରେ ଅନ୍ତରାୟ ସୃଷ୍ଟି କରାଯାଉଥିଲା । ସେ ସଂକ୍ରାନ୍ତରେ ବିଶଦ ଆଲୋଚନା ଆଜିର ବିଷୟବସ୍ତୁର ପ୍ରଧାନ ଉପାଦାନ

ନୁହଁ ସତ, ମାତ୍ର ଓଡ଼ିଶା ଗଡ଼ଜାତର ପ୍ରଜାମାନଙ୍କ ଆନ୍ଦୋଳନ ଯେ ଆଜିର ଭୌଗୋଳିକ, ରାଜନୈତିକ, ପ୍ରଶାସନିକ ଓ ସେହେତୁ ଏକ ସାମାଜିକ ଏକ ସାଂସ୍କୃତିକ ଓଡ଼ିଶା ଗଠନରେ ରକ୍ତ କ୍ଷୟ କରି ଅବଦାନ ଦେଇଛି, ଓଡ଼ିଶାର ଏଇ ବଂଶଧର ଓ ଆଗାମୀ ବଂଶଧର ଯେପରି ତାହା ପାସୋରି ନ ଯା'ନ୍ତି ।

୧୯୦୫ରୁ ସମ୍ବଲପୁରକୁ ଓଡ଼ିଶାରେ ମିଶାଇବାବେଳୁ ସେ କାଳର ଓଡ଼ିଶା ୨୬ ଗଡ଼ଜାତକୁ ଏବଂ ଆଜିର ଗଞ୍ଜାମ ଓ କୋରାପୁଟକୁ ଛାଡ଼ି ଥିଲା ବିହାର-ଓଡ଼ିଶା ରାଜ୍ୟରେ, ନାମ ଥିଲା ବିହାର ଓ ଓଡ଼ିଶା ପ୍ରଦେଶ । ୧୯୩୬ ଏପ୍ରିଲ ୧ରେ ଓଡ଼ିଶା ପ୍ରଦେଶ ମାତ୍ର ଛଅଟି ଜିଲ୍ଲା ବାଲେଶ୍ୱର, କଟକ, ସମ୍ବଲପୁର, ପୁରୀ, ଗଞ୍ଜାମ, କୋରାପୁଟକୁ ଘେନି ଗଠିତ ହେଲା । ଆଉ ୧୯୩୮ରୁ ୨୬ଟି ଗଡ଼ଜାତରେ ଯେଉଁ ମହାବିଦ୍ରୋହ ଆରମ୍ଭ ହୋଇ ୧୯୪୭ରେ ଏକ ନିର୍ଦ୍ଦିଷ୍ଟ ପରିଣତ ପର୍ଯ୍ୟାୟରେ ପହଂଚିଲା ତାହା ହିଁ ଆଉ ଆଠଟି ଜିଲ୍ଲାକୁ ଆଣି ଆଜିର ଓଡ଼ିଶାରେ ପରିଣତ କଲା । ଅବଶ୍ୟ ସ୍ୱାଧୀନତା ପରବର୍ତ୍ତୀ କାଳର ବିହାର ଓ ଓଡ଼ିଶା କଂଗ୍ରେସ ଶାସକଙ୍କ ଭିତରେ ଏଥିଲାଗି କନ୍ଦଳ, ମହତାବଙ୍କ ଶାସନରେ ଷଢ଼େଇକଳା ଜିଲ୍ଲାରେ ବାହାରୁ ଉତ୍ସାହିତ ଆଦିବାସୀ ଆନ୍ଦୋଳନ ଉପରେ ନିର୍ମମ ଦମନ ଲୀଳା ପରବର୍ତ୍ତୀ ପର୍ଯ୍ୟାୟରେ ଓଡ଼ିଶାର କଂଗ୍ରେସ ଶାସନ କାଳରେ ଚୌଧୁରୀ ମନ୍ତ୍ରୀମଣ୍ଡଳଙ୍କ ଷଢ଼େଇକଳା-ଖରସୁଆଁକୁ ଓଡ଼ିଶାରେ ରଖିବା ଉଦ୍ୟମ ପ୍ରତି ଓଡ଼ିଶାର ଶାସନକୁ ଫେରିବା ଲାଗି ମହତାବଙ୍କ ଭୂମିକା ଓ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ ନୀତି ଯୋଗୁଁ ଷଢ଼େଇକଳା ଜିଲ୍ଲା କାଳ କାଳ ଲାଗି ଓଡ଼ିଶାରୁ ଗଲା । ଏହା ସବୁ ଇତିହାସ ନଥିପତ୍ରର କଥା । କାହାର ମନ କୁହା କଥା ନୁହଁ ।

ତଥାପି ଏହି ଗଡ଼ଜାତ ଆନ୍ଦୋଳନର ପରିଣତି ସ୍ୱରୂପ ଓଡ଼ିଶାରେ ଆଉ ସାତଟି ଜିଲ୍ଲାର ଯେ ସମ୍ମିଶ୍ରଣ ଘଟିଲା, ଏହି ସତ୍ୟକୁ କେହି ଭୁଲିପାରିବେ ନାହିଁ । ଏଥିପାଇଁ ବ୍ୟକ୍ତି ବିଶେଷଙ୍କ ଭୂମିକାକୁ କେହି ନ୍ୟୁନ କରୁନାହିଁ । କିନ୍ତୁ ଦେଖାଯାଏ ଗଡ଼ଜାତ ଆନ୍ଦୋଳନ ସଂପର୍କରେ ଯେତେସବୁ ଲେଖା ବା ବହି ପ୍ରକାଶ ପାଇଛି ସେଥିରେ ନିଜର କୃତିତ୍ୱକୁ (ଯାହା କେହି ଅସ୍ୱୀକାର କରୁନାହିଁ) ହିଁ ସର୍ବସ୍ୱ ଦର୍ଶାଇ ସମଗ୍ର ଗଡ଼ଜାତ ପ୍ରଜାଙ୍କ ଭୂମିକାକୁ ନ୍ୟୁନ କରାଯାଇଛି । ଅନ୍ୟ ଯେଉଁ ରାଜନୈତିକ ଶକ୍ତି, ବ୍ୟକ୍ତି ଓ ରାଜନୈତିକ ଚିନ୍ତାଧାରା ଏହି ମହାସଂଗ୍ରାମରେ ଭାଗ ନେଇଛନ୍ତି, ନେତୃତ୍ୱ ଦେଇଛନ୍ତି ସେମାନଙ୍କ ଭୂମିକାକୁ ଅବଜ୍ଞା କରିବାର ଅପଚେଷ୍ଟା ହୋଇଛି । ଇତିହାସ ବ୍ୟକ୍ତି ନୁହଁ ସମାଜର–ସହସ୍ର ଜନତା ସୃଷ୍ଟି କରିଥାନ୍ତି ଉତ୍ପାଦନ କରି, ନିର୍ମାଣ କରି, ସଂଗ୍ରାମ କରି, ସେହି ମହା ନିର୍ମାଣ ସଂଗ୍ରାମରେ ବ୍ୟକ୍ତିର ଭୂମିକା ଥାଏ, ଯିଏ ସେହି ନିର୍ମାଣ ଓ ସଂଗ୍ରାମୀମାନଙ୍କୁ ସେତେବେଳର ଚାହିଦା ଅନୁସାରେ ନେତୃତ୍ୱ ଦିଏ ।

ଓଡ଼ିଶା ଗଡ଼ଜାତ ଆନ୍ଦୋଳନର ଇତିହାସକୁ ନୂଆ କରି ଏହି କଷଟି ପଥରରେ କଷି ତା'ର ସଠିକ୍ ମୂଲ୍ୟାଙ୍କନ କରିବା ଇତିହାସ ବିଜ୍ଞାନୀମାନଙ୍କ କର୍ତ୍ତବ୍ୟ । ସେହି ଦୃଷ୍ଟିରୁ ଏପର୍ଯ୍ୟନ୍ତ

ପ୍ରକାଶ ପାଇଥିବା ଗଡ଼ଜାତ ଆନ୍ଦୋଳନର ଇତିହାସରେ ଯାହା ଆଦୌ ସ୍ଥାନ ପାଇ ନାହିଁ, ଅବା ଉପଯୁକ୍ତ ସ୍ଥାନ ପାଇ ନାହିଁ, ସେଥିରୁ କେତୋଟି ଅତି ଅକାଟ୍ୟ ଦୃଷ୍ଟାନ୍ତ ଦେବା ଏହି ଲେଖାଟିର ମଧ୍ୟ ଉଦ୍ଦେଶ୍ୟ ।

ସମଗ୍ର ଗଡ଼ଜାତ ଆନ୍ଦୋଳନର, ପ୍ରତ୍ୟେକଟି ଗଡ଼ଜାତ ପ୍ରଜା ଆନ୍ଦୋଳନର ଟିଖିନିଖି ବିବରଣୀ ଦେବା ଏବଂ ପ୍ରଜାମାନଙ୍କର ନେତୃତ୍ୱ ନେଉଥିବା ବିଭିନ୍ନ ମତାବଲମ୍ବୀ, ବିଭିନ୍ନ ଆଦର୍ଶର ନେତା ଓ କର୍ମୀମାନଙ୍କ ସଂପର୍କରେ ସବୁ ତଥ୍ୟ ବାଢ଼ିଦେବା ଏହି କ୍ଷୁଦ୍ର ଲେଖାର ପରିସର ବାହାରେ । ସେମାନଙ୍କର ମତାଦର୍ଶ ଯାହା ଥାଉନା କାହିଁକି ଓ ପରବର୍ତ୍ତୀ କାଳରେ ସେମାନେ କିଏ କେଉଁ ଭୂମିକା ନେଲେ ତାହା ବିଚାରକୁ ନ ନେଇ ଗୋଟିଏ କଥା କୁହାଯାଇପାରେ ଯେ ଗଡ଼ଜାତ ଭିତରୁ ଅସଂଖ୍ୟ ଜନନେତା ଓ ବ୍ରିଟିଶ ଓଡ଼ିଶା (ସେତେବେଳେ ଗଡ଼ଜାତକୁ ଛାଡ଼ି ଓଡ଼ିଶାକୁ ବ୍ରିଟିଶ ଓଡ଼ିଶା କୁହାଯାଉଥିଲା)ର ତୁଙ୍ଗ କଂଗ୍ରେସ ନେତା, କଂଗ୍ରେସ ସୋସଲିଷ୍ଟ ନେତା, କମ୍ୟୁନିଷ୍ଟ ନେତା ଏହି ମୁକ୍ତି ଆନ୍ଦୋଳନକୁ ନିଶ୍ଚିତ ଅବଦାନ ଦେଇଛନ୍ତି ।

**ଗଡ଼ଜାତ ସୃଷ୍ଟିର ପୃଷ୍ଠଭୂମି**

୧୮୦୩ରେ ଦ୍ୱିତୀୟ ମରହଟ୍ଟା ଯୁଦ୍ଧରେ ଜୟ କଲା ପରେ ଓଡ଼ିଶା ବ୍ରିଟିଶ ସାମ୍ରାଜ୍ୟ ଶାସନାଧୀନ ହେଲା । ୧୮୧୪ରେ ଓଡ଼ିଶାର ଟ୍ରିବ୍ୟୁଟରି ମାହାଲ ବା ଗଡ଼ଜାତଗୁଡ଼ିକର ରଜାଙ୍କ ଉପରେ ଜଣେ ବ୍ରିଟିଶ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ରଖାଗଲା । ୧୮୩୭ରେ ଓଡ଼ିଶାରେ ଥିବା ୧୮ଟି କରଦ ରାଜ୍ୟ ବା ଟିବ୍ୟୁଟରି ମାହାଲକୁ କଟକରେ ଅବସ୍ଥାପିତ ବ୍ରିଟିଶ କମିଶନରଙ୍କୁ ସୁପରିନ୍‌ଟେଣ୍ଡେ[ ନିଯୁକ୍ତ କରି ତାଙ୍କ କର୍ତ୍ତୃତ୍ୱରେ ରଖାଗଲା ।

୧୮୪୦ ଓ ୧୮୪୮ରେ ଯଥାକ୍ରମେ ବାଙ୍କୀ ଏବଂ ଅନୁଗୋଳକୁ ଖାସମାହାଲ କରାଗଲା ଓ ରେଗୁଲେସନ ୩ ଅନୁସାରେ ଏକ କଠୋର ଶାସନ ଜାହିର କରାଗଲା । ରହିଥିବା ୧୬ଟି ଗଡ଼ଜାତକୁ ବିଭାଗ କରି ୧୭ଟି କରଦ ରାଜ୍ୟ କରାଗଲା ଏବଂ ୧୮୬୨ରେ ପୋଷ୍ୟପୁତ୍ର ଗ୍ରହଣ କରି ଏହି କରଦ ରାଜ୍ୟଗୁଡ଼ିକରେ ବଂଶାନୁକ୍ରମିକ ବ୍ରିଟିଶ ଅଧୀନରେ ସାମନ୍ତବାଦୀ ଶାସନର ମୂଳଦୁଆ ଦୃଢ଼ କରାଗଲା । ବ୍ରିଟିଶ ଭାରତ ଓ ଦେଶୀୟ ରାଜ୍ୟ ଏହିପରି ଭାବରେ ଭାରତବର୍ଷକୁ ଦୁଇ ବିଚ୍ଛିନ୍ନ ଭୌଗୋଳିକ ଭାଗରେ ବିଭକ୍ତ କରାଯାଇ ସାମ୍ରାଜ୍ୟବାଦର ଖୁଣ୍ଟ ରାଜାରାଜୁଡ଼ାମାନଙ୍କୁ ସୀମିତ ଶାସନ ମାତ୍ର ଅବାଧ ଶୋଷଣର ଅଧିକାରକୁ ଓଡ଼ିଶା କ୍ଷେତ୍ରରେ ଜାହିର କରାଗଲା । ୧୮୮୮ରେ ତତ୍କାଳୀନ କଲିକତା ହାଇକୋର୍ଟର ଇଂରେଜ ବିଚାରକମଣ୍ଡଳୀ ଓଡ଼ିଶା ଗଡ଼ଜାତ ୧୭ଟି ଯାକ ବ୍ରିଟିଶ ଭାରତର ଅଂଗ ନୁହଁ ବୋଲି ରାୟ ଦେଲେ । ୧୯୦୫ରେ କେନ୍ଦ୍ର ପ୍ରଦେଶରୁ ୭ଟି ଓଡ଼ିଆଭାଷୀ ରାଜ୍ୟ ଆସି ଓଡ଼ିଶାର ଗଡ଼ଜାତ ସଂଖ୍ୟା ୧୭ରୁ ୨୪କୁ ବୃଦ୍ଧି ପାଇଲା ଏବଂ ୧୯୦୬ରେ କମିଶନଙ୍କ ଅଧୀନରେ ଓଡ଼ିଶା ଗଡ଼ଜାତ ଲାଗି ବ୍ରିଟିଶ ରାଜୁତି ଜଣେ ପଲିଟିକାଲ ଏଜେ[ ସୃଷ୍ଟି କଲା । ୧୯୧୬ରେ

ଷଢ଼େଇକଳା ଖରସୁଆଁ ମୁଖ୍ୟତଃ ଓଡ଼ିଆ ଭାଷୀ ରାଜ୍ୟ ଓଡ଼ିଶା ଗଡ଼ଜାତରେ ମିଶି ସଂଖ୍ୟା ୨୬ରେ ପରିଣତ ହେଲା ଏବଂ ୧୯୨୨ରେ ଓଡ଼ିଶାର କମିଶନରଙ୍କ ହାତରୁ ଗଡ଼ଜାତ ତତ୍ତ୍ୱାବଧାନ ଓ ଶାସନର ଦାୟିତ୍ୱ ଯାଇ ଭାରତର ଗଭର୍ଣ୍ଣର ଜେନେରାଲ୍‌ଙ୍କ ହାତରେ ନ୍ୟସ୍ତ କରାଗଲା । ଗଭର୍ଣ୍ଣର ଜେନେରାଲଙ୍କ ଅଧୀନରେ ପଲିଟିକାଲ ଏଜେଣ୍ଟ ନିଯୁକ୍ତ ହେଲେ । ୧୯୩୩ରେ ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍‌ସି ଗଢ଼ାଗଲା ଓ ତହିଁରେ ଓଡ଼ିଶାର ୨୬ଟି ରାଜ୍ୟ ସହିତ ମଧ୍ୟ ରାତିରେ ୧୪ଟି ରାଜ୍ୟକୁ ମିଶାଇ କଲିକତାଠାରେ ଅବସ୍ଥାପିତ ବ୍ରିଟିଶ ପଲିଟିକାଲ ଏଜେଣ୍ଟ କର୍ତ୍ତୃତ୍ୱାଧୀନରେ ରଖାଗଲା ।

ଏହିପରି ଭାବରେ ଓଡ଼ିଶାକୁ ଦୁଇଭାଗରେ ବିଭକ୍ତ କରାଯାଇ ମଝିରେ ମେଘନାଦ ପାଚେରୀ ଗଢ଼ାଗଲା । ତଥାକଥିତ ବ୍ରିଟିଶ ଓଡ଼ିଶାରେ ଅନ୍ତର୍ଭୁକ୍ତ ସମ୍ବଲପୁର ଉପକୂଳ ଜିଲ୍ଲାମାନଙ୍କଠାରୁ ଏକଶହ, କେଉଁଠି ୧୫୦ ମାଇଲ ଦୂରତ୍ୱରେ ବିଛିନ୍ନ । ଠିକ୍ ବ୍ରିଟିଶ ସୃଷ୍ଟ ପୂର୍ବ ପାକିସ୍ତାନ, ପଶ୍ଚିମ ପାକିସ୍ତାନ ଯେପରି ପରସ୍ପରଠାରୁ ହଜାର ହଜାର ମାଇଲ ଦୂରରେ ଅପ୍ରାକୃତିକ ଭାବରେ ଏକ ଦେଶ ରୂପେ ବ୍ରିଟିଶ ସାମ୍ରାଜ୍ୟବାଦର ଷଡ଼ଯନ୍ତ୍ର ସୃଷ୍ଟି କରିଥିଲା ଠିକ୍ ସେହିପରି ।

ଏହି ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍‌ସି ଗଠନ ଓ ସମ୍ବଲପୁରକୁ ପ୍ରାକୃତିକ, ଭୌଗୋଳିକ ଓଡ଼ିଶାରୁ ବିଛିନ୍ନ ରଖିବା ପରବର୍ତ୍ତୀ କାଳରେ ଏକ ବିଚ୍ଛିନ୍ନତାବାଦୀ ବାତାବରଣ ଯେ ସୃଷ୍ଟିକଲା ତାହାର ଉଲ୍ଲେଖ ଲେଖାଟିର ଉପସଂହାରରେ ହେବ ।

**୧୯୩୮ ଏକ ମାଇଲ ଖୁଣ୍ଟ**

ଓଡ଼ିଶା ଗଡ଼ଜାତଗୁଡ଼ିକରେ ବ୍ରିଟିଶ ସାମ୍ରାଜ୍ୟବାଦ ପୁଷ୍ଟ ରାଜରାଜୁଡ଼ାମାନଙ୍କ ମଧ୍ୟଯୁଗୀୟ ବର୍ବରତା ବିରୁଦ୍ଧରେ ଯେ ବିଦ୍ରୋହ ନ ହୋଇଛି ନୁହଁ, ଦଶପଲ୍ଲା ମେଳି କେଉଁଝର ଭୂୟାଁପୀଢ଼ ବିଦ୍ରୋହ ଏମିତି ଡଜନ ଡଜନ ବିଦ୍ରୋହ ବା ମେଳି । ଏ ସମସ୍ତ ପରସ୍ପରଠାରୁ ବିଚ୍ଛିନ୍ନ । ଏକ ଗଡ଼ଜାତର ଗୋଟିଏ ଅଂଚଳଠାରୁ ଅନ୍ୟ ଅଂଚଳ ବିଚ୍ଛିନ୍ନ । ନିର୍ମମ କଠୋର ଦମନ, ଶୂଳୀ ହତ୍ୟାରେ ସେସବୁ ମେଳି ଓ ବିଦ୍ରୋହକୁ ଦମନ କରାଯାଇଛି । ମାତ୍ର ସମଗ୍ର ଗଡ଼ଜାତ ଆଉ ପ୍ରତିଟି ଗଡ଼ଜାତର ପ୍ରତିଟି ଗାଁ, ଆଉ ପ୍ରତିଟି ଲୋକ (ଗାଁ'ର ରଜାର ପୋଷା ପଧାନ, ଢେଙ୍କାନାଳର ନନ୍ଦ ପେଷାରଙ୍କ ଭଳି ମୁଷ୍ଟିମେୟଙ୍କୁ ଛାଡ଼ିଦେଲେ) ଆବାଳ ବୃଦ୍ଧବନିତାଙ୍କ ମହା ଉଦ୍‌ବେଳନ ସେତେବେଳେ ବସ୍ତୁନିଷ୍ଠ କାରଣରୁ ସମ୍ଭବ ହୋଇନଥାନ୍ତା କି ସମ୍ଭବ ହୋଇନାହିଁ । ତାହା ଚେତନାର ସ୍ତର, ସଙ୍ଗଠନର ସ୍ତର, ଲକ୍ଷ୍ୟ ଓ ଆଦର୍ଶର ସ୍ପଷ୍ଟତା ଉପରେ ନିର୍ଭର କରେ । ଏ ରଜାଟା ଖରାପ-ଦୁଷ୍ଟ-ଅତ୍ୟାଚାରୀ । ତାକୁ ତଡ଼ି, ତାକୁ ମାରି ଆଉ ଗୋଟିଏ ରଜା ଥାପିଲେ ପ୍ରଜାରଞ୍ଜନ କରିବ, ଏହା ହିଁ ସେତେବେଳେ ଥିଲା ଲୋକଚେତନାର ସ୍ତର ।

ଓଡ଼ିଶା କ୍ଷେତ୍ରରେ ଏଇ ଗଡ଼ଜାତମାନଙ୍କୁ ଟିକିଏ ଉଚ୍ଚୁଁ କରି ବିତାଡ଼ିତ ଅନେକ ଲୋକ

ମୋଗଲବନ୍ଦୀ ଓଡ଼ିଶାରେ ରହୁଥିଲେ । ଏମିତିକି ନିଜ ଗାଁ'କୁ ପ୍ରବେଶ କରିବାର ସୁଯୋଗ ନଥିଲା । ପ୍ରବେଶ କଲେ କେବଳ ଦୈହିକ ନିର୍ଯ୍ୟାତନା ଅପମାନର ସୀମା ରହୁନଥିଲା । ୧୯୩୧ରେ ମୁଖ୍ୟତଃ ମୋଗଲବନ୍ଦୀ ବାଧ ହୋଇ ଆସିଥିବା ବ୍ୟକ୍ତିମାନଙ୍କ ଉଦ୍ୟମରେ ଏକ କ୍ଷୁଦ୍ର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଆଠଗଡ଼ର ଶ୍ରୀ ରାଧାନାଥ ରଥ, ହିନ୍ଦୋଳର କବିରାଜ ଶ୍ରୀ ବାଲୁଙ୍କେଶ୍ୱର ଆଚାର୍ଯ୍ୟ, ଦଶପଲ୍ଲାର ଗୋବିନ୍ଦ ଚନ୍ଦ୍ର ମିଶ୍ର ଓ ତିଗିରିଆର ଶ୍ରୀ ମଧୁସୂଦନ ପଟ୍ଟନାୟକ ପ୍ରମୁଖଙ୍କ ଉଦ୍ୟମରେ ଶ୍ରୀ ଭୁବନାନନ୍ଦ ଦାସଙ୍କ ଅଧକ୍ଷତାରେ ଏହି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହାର କୌଣସି ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ବା ଆର୍ଥିକ ଦାବୀ ନଥିଲା । ନିରୀହ, ନିଷ୍କ୍ରିୟ ପ୍ରତିବାଦମୂଳକ ପ୍ରସ୍ତାବମାନ ଗୃହୀତ ହୋଇଥିଲା । ତେବେ ଏହା ହିଁ ଥିଲା ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନର ପୂର୍ବସୂଚୀ ।

୧୯୩୫ ଶାସନ ଖସଡ଼ା ଅନୁସାରେ ଓଡ଼ିଶାର ତତ୍କାଳୀନ ବିଧାନସଭାର ୬୦ ଜଣ ସଭ୍ୟଙ୍କ ମଧ୍ୟରୁ ୩୭ ଜଣ କଂଗ୍ରେସ ଏମ୍.ଏଲ୍.ଏ. ୧୯୩୭ ନିର୍ବାଚନରେ ଜିଣିଥାନ୍ତି । ଭାରତରେ ସେତେବେଳର ୧୧ଟି ପ୍ରଦେଶରୁ ୭ଟିରେ କଂଗ୍ରେସ ସଂଖ୍ୟା ଗରିଷ୍ଠ ଓ ମନ୍ତ୍ରିମଣ୍ଡଳର ଶାସନ । ମୋଗଲବନ୍ଦୀ ଓଡ଼ିଶାରେ ବ୍ରିଟିଶ ସାମ୍ରାଜ୍ୟ-ପକ୍ଷପାତୀ ଶକ୍ତିମାନଙ୍କର ପରାଜୟ ଓ ଅତି ସଂକୀର୍ଣ୍ଣ ଭୋଟ ପ୍ରଥା ସତ୍ତ୍ୱେ କଂଗ୍ରେସର ବିଜୟ ଗଡ଼ଜାତମାନଙ୍କରେ ଏକ ନୂତନ ରାଜନୈତିକ ବାତାବରଣ ଆଣିଦେଲା ।

ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍ସି ଗଢ଼ି, ଗଡ଼ଜାତଗୁଡ଼ିକୁ ବିଚ୍ଛିନ୍ନ କରି, ଡରେଇ ଥରେଇ ବ୍ରିଟିଶ ସରକାର ୧୯୩୦-୩୨ରେ ଭାରତରେ ଗାନ୍ଧିଜୀ ଓ କଂଗ୍ରେସ ନେତୃତ୍ୱରେ ଚାଲି ଥିବା ସଂଗ୍ରାମକୁ ମୋଟାମୋଟି ଭାବରେ ଗଡ଼ଜାତଗୁଡ଼ିକୁ ଓ ସେଠାର ନିର୍ଯ୍ୟାତିତ ପ୍ରଜାମାନଙ୍କୁ ଅଲଗା ରଖାଇବାକୁ ସଫଳ ହୋଇଥିଲା ।

ମାତ୍ର ସେ ବନ୍ଧ ଭାଙ୍ଗିଗଲା । ନୂଆ ଦିଗନ୍ତ ସୃଷ୍ଟି ହେଲା । ଓଡ଼ିଶାରେ କଂଗ୍ରେସର ବିଜୟ ବେଳ ୧୯୩୭ ଜୁନ୍ ୨୩ରେ ଏହି ଗଡ଼ଜାତମାନଙ୍କର ପ୍ରଜା ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହେଲା । ଢେଙ୍କାନାଳ ରଜାଙ୍କ ଦ୍ୱାରା ନିର୍ଯ୍ୟାତିତ ସାରଙ୍ଗଧର ଦାସ ଏବଂ ଓଡ଼ିଶା ଗଡ଼ଜାତର ବହୁ ନେତାଙ୍କ ଗହଣରେ ଏହି ସମ୍ମିଳନୀର ଥିଲା ରାଜନୈତିକ ଡାକରା । କଂଗ୍ରେସ ନେତା ଡକ୍ଟର ପଟ୍ଟାଭି ସୀତାରାମାୟାଙ୍କ ଅଧକ୍ଷତାରେ ଅନୁଷ୍ଠିତ ଏହି ସମ୍ମିଳନୀ ପ୍ରଥମ ଥର ପାଇଁ ଗଡ଼ଜାତ ପ୍ରଜା ଆନ୍ଦୋଳନ ସହିତ ଏକାଂଶ କଂଗ୍ରେସର ଯୋଗାଯୋଗ ସ୍ଥାପନ କଲା । ଏକାଂଶ କହିବାର ତାତ୍ପର୍ଯ୍ୟ ଯେ ସମଗ୍ର କଂଗ୍ରେସର ବା ଜାତୀୟ ଆନ୍ଦୋଳନର ଗଡ଼ଜାତ ପ୍ରଜାଙ୍କ ଆନ୍ଦୋଳନ ପ୍ରତି ସହାନୁଭୂତି ଥିଲେ ହେଁ ଏହା ଯେ ସ୍ୱାଧୀନତା ସମରର ଏକ ବିପୁଳ ଅଂଶ, ଏହି ଉପଲବ୍ଧି ସମଗ୍ର କଂଗ୍ରେସ ନେତୃତ୍ୱ ଗ୍ରହଣ କରୁନଥିଲା । ଭାରତବର୍ଷ କ୍ଷେତ୍ରରେ ମଧ୍ୟ ଅନୁରୂପ ସ୍ଥିତି । ପଣ୍ଡିତ ଜବାହାରଲାଲ ନେହେରୁ

ଏବଂ କଂଗ୍ରେସରେ ବାମପନ୍ଥୀ ଚିନ୍ତାଧାରା ପୋଷଣ କରୁଥିବା ନେତା ଓ ବ୍ୟକ୍ତିଙ୍କ ଛଡ଼ା ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏମିତି କି ଗାନ୍ଧିଜୀ ସମଗ୍ର ଭାରତର ଏହି ବିଶାଳ ଜନ ଉଦ୍‌ବେଳନକୁ ବ୍ରିଟିଶ ଭାରତର ସ୍ୱାଧୀନତା ସଂଗ୍ରାମ ସହିତ ଏକାକାର କରିବାର କର୍ମପନ୍ଥୀ ନେଇ ନଥିଲେ । ସେମିତି ମୋଗଲବନ୍ଦୀ ଓଡ଼ିଶାର କଂଗ୍ରେସର ନେତା ଓ କର୍ମୀମାନେ ଏହାକୁ ଗଡ଼ଜାତ ପ୍ରଜା ଆନ୍ଦୋଳନ ବିଚାର ତାହା ଯେ ବ୍ରିଟିଶ ସାମ୍ରାଜ୍ୟବାଦକୁ ଚରମ ଆଘାତ ଦେଉଛି, ଏପରି ଉପଲବ୍‌ଧି ଆଣି ପାରୁ ନ ଥିଲେ । ଅବଶ୍ୟ ବ୍ୟକ୍ତିଗତ ଭାବରେ ମୋଗଲବନ୍ଦୀ ଓଡ଼ିଶାର ଶ୍ରୀ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ପରି କେତେଜଣ ପ୍ରମୁଖ ନେତାଙ୍କୁ ଛାଡ଼ିଦେଲେ ଗଡ଼ଜାତ ପ୍ରଜା ଆନ୍ଦୋଳନରେ କଂଗ୍ରେସ ନେତା ଓ କର୍ମୀ ହିସାବରେ ସମସ୍ତେ ସକ୍ରିୟ ଭାଗ ନେବେ, ମୋଗଲବନ୍ଦୀରେ ସେହି ଆନ୍ଦୋଳନକୁ ସମର୍ଥନ ଜଣାଇ ସଂହତି ଆନ୍ଦୋଳନ କରି ତାକୁ ପରିପୁଷ୍ଟ କରିବେ, ଏପରି ଚିନ୍ତା ଅନୁଷ୍ଠାନ ହିସାବରେ କଂଗ୍ରେସର ଯେ ନଥିଲା, ଏହା ନିଃସନ୍ଦେହରେ କୁହାଯିବ । ଏହାକୁ ପୁଟଦେଇ ବୁଲେଇ ବଙ୍କେଇ ଅସ୍ୱୀକାର କଲେ ସତ୍ୟର ଅପଳାପ ହେବ; ଏହା ହିଁ ବାସ୍ତବ ଅଭିଜ୍ଞତା । କିନ୍ତୁ ଏହାର ଆଦୌ ଅର୍ଥ ନୁହଁ ଯେ ଜାତୀୟ ଆନ୍ଦୋଳନର ଓ କଂଗ୍ରେସ ଅନୁଷ୍ଠାନର ଗଡ଼ଜାତ ପ୍ରଜା ଆନ୍ଦୋଳନ ପ୍ରତି ବିରୁପଭାବ ଥିଲା ବା ସହାନୁଭୂତି ନଥିଲା ।

ତେବେ ମୋଗଲବନ୍ଦୀ ଓଡ଼ିଶାରେ ତଥା ଭାରତରେ କଂଗ୍ରେସର ତତ୍କାଳୀନ ନିର୍ବାଚନରେ ବିଜୟ ଏବଂ ୧୯୩୭ ଜୁଲାଇରେ ଓଡ଼ିଶାରେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ, ନିତ୍ୟାନନ୍ଦ କାନୁନଗୋ ଓ ବୋଧରାମ ଦୁବେଙ୍କୁ ଘେନି ମନ୍ତ୍ରୀମଣ୍ଡଳ ଗଠନ ଗଡ଼ଜାତ ପ୍ରଜାମାନଙ୍କ ମନରେ ଗଭୀର ରେଖାପାତ କଲା ଏବଂ ପରୋକ୍ଷରେ ୧୯୩୮-୩୯ରେ ପ୍ରଥମ ପର୍ଯ୍ୟାୟ, ଯୁଗାନ୍ତକାରୀ ଗଡ଼ଜାତ ପ୍ରଜା ଆନ୍ଦୋଳନ ଲାଗି ଅନୁପ୍ରେରଣା ଯୋଗାଇଦେଲା ।

**ବିହୁଡ଼ି ଜଳି ଉଠିଲା**

ଛବିଶ ଗଡ଼ଜାତ । ଆଠଗଡ଼, ତିଗିରିଆ, ବଡ଼ମ୍ବା, ନରସିଂହପୁର, ନୟାଗଡ଼, ଖଣ୍ଡପଡ଼ା, ଦଶପଲ୍ଲା, ରଣପୁର, ନୀଳଗିରି, ମୟୂରଭଞ୍ଜ, କେଉଁଝର, ଢେଙ୍କାନାଳ, ହିନ୍ଦୋଳ, ତାଳଚେର, ପାଲଲହଡ଼ା, ରେଢ଼ାଖୋଲ, ଆଠମଲ୍ଲିକ, ବାମଡ଼ା, ବଣେଇ, ସୋନପୁର, ଗାଙ୍ଗପୁର, ବୌଦ, କଳାହାଣ୍ଡି, ବଲାଙ୍ଗିର ପୁଣି ଷଢ଼େଇକଳା-ଖରସୁଆଁ । ଓଡ଼ିଶାରେ ଗଡ଼ଜାତ ପ୍ରଜା ସମ୍ମିଳନୀର ଡାକରାରେ ଊଣା ଅଧିକ ପ୍ରାୟ ଏକ ସମୟରେ ପ୍ରଜାମଣ୍ଡଳମାନ ଗଠିତ ହୋଇଗଲା । ଗଡ଼ଜାତ ପ୍ରଜାମାନଙ୍କ ଆନ୍ଦୋଳନ ଏକ ରାଜନୈତିକ ଓ ସାଙ୍ଗଠନିକ ରୂପ ନେଲା ।

ଏହିସବୁ ଗଡ଼ଜାତ । ଘୋର ଅନୁନ୍ନତ ଓଡ଼ିଶାରେ ଏହି ଗଡ଼ଜାତ ଆହୁରି ଅଧିକ ଅନୁନ୍ନତ । ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନର ଅର୍ଥନୀତି, ଔପନିବେଶିକ ଅର୍ଥନୀତି । ସବୁ କଂଚାମାଲ ଏ ଦେଶରୁ ଶସ୍ତାରେ ଛଣା ହୋଇଯିବ – ଆଉ ପ୍ରଭୁଦେଶରୁ ୮ାର୍ଥ

ଚଢ଼ାରେ ବିକ୍ରି ହେବ । ତା' ସାଙ୍ଗକୁ କର ଟିକସର ଭାର । ବ୍ରିଟିଶ ସରକାରର ପୋଷ୍ୟ ଗଡ଼ଜାତ ରଜା ତଣ୍ଡିବେ, ଜମିଦାର ତାଲୁକଦାର, ଦେଶମୁଖ୍ୟଙ୍କ ଶୋଷଣ କରିବେ । ଶୋଷଣ ଜାହିର କରିବାକୁ ହେଲେ ଦମନ, ଅତ୍ୟାଚାର କରିବାକୁ ହେବ ।

ଓଡ଼ିଶାରେ ସେହି ୧୯୩୮-୩୯ରେ କେତୋଟି ଧାନ କଳକୁ ଶିଳ୍ପ ବୋଲି କୁହାଯାଉଥିଲା । ତହିଁରେ ପୁଣି ଗଡ଼ଜାତ–ଯେଉଁଠି ଜଙ୍ଗଲ, ଖଣି ସମ୍ପଦ ଭରପୁର । ମୟୂରଭଞ୍ଜରେ ଟାଟା କମ୍ପାନୀକୁ ସେଠାର ମହାରାଜା ଲିଜ ଦେଇଥିବା ବାଦାମପାହାଡ଼, ଗୋରୁମହିଷାଣୀ ଲୁହାଖଣି ଓ ବ୍ରିଟିଶ ମାଲିକମାନଙ୍କୁ ତାଳଚେରରେ ଦିଆଯାଇଥିବା କୋଇଲା ଖଣି ବ୍ୟତୀତ ଅନ୍ୟ କୌଣସି ଖଣିଜ ଶିଳ୍ପ ସମ୍ପଦଭରା ଗଡ଼ଜାତ ମୁଲକରେ ନ ଥିଲା ।

ତେଣୁ ମୋଗଲବନ୍ଦୀ ଓଡ଼ିଶା ଭଳି ଗଡ଼ଜାତରେ ଶିଳ୍ପ ଶ୍ରମିକ ନ ଥିଲେ । ଶ୍ରମିକ ଶ୍ରେଣୀର ଉଦ୍‌ଭବ ହୋଇ ନ ଥିଲା । ପୁନଶ୍ଚ ଜଙ୍ଗଲଭରା ଗଡ଼ଜାତଗୁଡ଼ିକର ଜନସଂଖ୍ୟାର ଏକ ଗରିଷ୍ଠ ଅଂଶ ଆଦିବାସୀ, ଜୁଆଙ୍ଗ, କନ୍ଧ, କୋହ୍ଲ, ସାନ୍ତାଳ, ମୁଣ୍ଡାରି, ପରିଜା ପ୍ରଭୃତି ଆଦିବାସୀ ଗୋଷ୍ଠୀର । ଯେଉଁମାନେ ବଣ ଜଙ୍ଗଲର ମହୁଲ, ସଉପ, ଫଳମୂଳ, ଚେର ଓ ଚଢ଼େଇ ବା ପଶୁ ଶିକାର କରି ଆଦିମ ଯୁଗ ଭଳି ବଂଚିବାକୁ ବାଧ ହେଉଥିଲେ । ପାହାଡ଼ ଜଙ୍ଗଲ କାଟି କେଉଁଠି ସୋରିଷ, କାନ୍ଦୁଲ, ହରଡ଼, ହଳଦୀ, କଦବା କେଉଁଠି ସାମାନ୍ୟ ଧାନ ଫସଲ ଉତାରି ରଜା ଓ ରଜାଙ୍କ ଦ୍ୱାରା ନିଯୁକ୍ତ ଗାଁ ପଧାନ, ବରକନ୍ଦାଜ, ସିପେହୀଙ୍କ ନିର୍ମମ ଅତ୍ୟାଚାର ଭୋଗୁଥିଲେ । ଅଧିକାଂଶ ଅଉଲ ଜମି ଥିଲା ରଜାଙ୍କର, ରାଣୀଙ୍କର ରାଣୀମାନଙ୍କର ଓ ରାଜକୁମାର, ରାଜକୁମାରୀଙ୍କର । ଆଉ ଜମିଥିଲା ରାଜାଙ୍କ ପଧାନ ହାତରେ । ଚାଷୀର ସ୍ୱତ୍ୱାସତ୍ୱ ରଜାଙ୍କ ମଜ ଉପରେ । ଅତି ଗରିବ ଚାଷୀଙ୍କ ସଂଖ୍ୟା ସର୍ବାଧିକ ।

ଏପରି ସାମାଜିକ ଆର୍ଥିକ ବ୍ୟବସ୍ଥା, ପୁଣି ପ୍ରତ୍ୟେକଟି ଗଡ଼ଜାତରେ କିଛି ସାଦୃଶ୍ୟ ଥିଲେ ବି ସ୍ୱତ୍ୱାସତ୍ୱରେ ଭିନ୍ନତା ଓଡ଼ିଶା ଗଡ଼ଜାତରେ ପ୍ରାକୃତିକ ଅର୍ଥନୀତି, ଅର୍ଥାତ ଅତି ଅନୁନ୍ନତ ଅର୍ଥନୀତି ମୁଖ୍ୟସ୍ଥାନ ନେଇଥିଲା । ବିନିମୟ ଥିଲା ମୁଖ୍ୟତଃ ବଦଳ । ହାଟରେ ରଜାଙ୍କ ପଣି ଦେଇ, ରଜା ଅଫିସରଙ୍କ ଭାଗ ଦେଇ ଚାଷୀ ଯାହା ସାମାନ୍ୟ ଉପୁଜାଉଥିଲା ତାକୁ ବଦଳ କରି ସେଇ ହାଟରୁ ତେଲ ଲୁଣ କିଣୁଥିଲା । ଘାସ କର, ଛେଳିକର, ଗାଈ ବଳଦ କର, ପାନକର ଏମିତି କେଉଁଠି ଶହେ ରକମର କର, ଖଜଣା ।

ତା' ସାଙ୍ଗକୁ ରଜାଙ୍କ ବେଠି । ଚାଷୀକୁ ବର୍ଷକୁ ୩/୪ ମାସ ରଜାଙ୍କ ଜମି ଚଷିବା, ତାଙ୍କ ଉଆସ, ଅମାର ଖମାର ଗଢ଼ିବା, ଧଉଳେଇବା ବା ଛପର କରିବା, ରଜାଙ୍କ ପୁଅ ଝିଅ ବାହାଘରରେ ବେଠି ବେଗାରି, ମାଗଣ । ପୁଣି ରଜାଙ୍କ ଶିକାରବେଳେ ଘରକୁ ଘର ଯାଇ ବାଦ୍ୟ ଠେଙ୍ଗାବାଡ଼ି ଧରି ହାତୀ, ବାଘ, ସାପ ମେଳରେ ରାତି ରାତି ଦିନ ଦିନ ଜଙ୍ଗଲ ଘେରାଉ । ଟିକିଏ ଉଁଚୁକଲେ ଉଆସକୁ ନେଇ ଢେଙ୍କାନାଳ ଭଳି ନାଟ ମନ୍ଦିରକୁ ନେଇ ନିଶ ଉପଡ଼ା, ଛାତିରୁ ଲୋମ ଉପୁଡ଼ା,

ଦାନ୍ତ ଉପୁଡ଼ା, ପିଟା । ରଜାଙ୍କ ମନସାଧ ନ ମେଣ୍ଟିଲେ ଝିଅବୋହୂଙ୍କୁ ଆଣି ବାପ ଦ୍ୱାରା ପିଟିପିଟି ସେମାନଙ୍କ ଇଜ୍ଜତ ନେବାକୁ ବାଧ କରିବା । ସେତିକି ନୁହ, ରାଜାଙ୍କ ସନ୍ଧାନୀ କୁକୁରମାନେ କାହା ଘରେ ସୁନ୍ଦରୀ ଝିଅବୋହୂ ଅଛନ୍ତି, ଖବର ଦେଲେ ସବାର ପଠାଇ ସେମାନଙ୍କ ଉଆସକୁ ଆଣି ଧର୍ଷଣ କରିବା । ଭାଷା ଅଣ୍ଟିବ ନାହିଁ ରଜାଙ୍କ ଗଡ଼ଜାତରେ ଯେଉଁସବୁ ଆଶବିକ କାଣ୍ଡ ଓ ଅତ୍ୟାଚାର ହୁଏ, ତାହା ବର୍ଣ୍ଣନା କରିବାକୁ ।

ସେହି ଗଡ଼ଜାତରେ ତେଣୁ ଅର୍ଥନୀତି ଥିଲା ସରଳ ପଣ୍ୟ ବିନିମୟର ଅର୍ଥନୀତି । ଅତି ପଛୁଆ, ଅତି ଅନଗ୍ରସର । ଏହାକୁ ପୁଣି ଆମ ଦେଶର କେତେକ ତଥାକଥିତ ବୁଦ୍ଧିଜୀବୀ ସମାଜସେବୀ ଓ ରାଜନୀତିଜ୍ଞ ସରଳ ଗ୍ରାମ୍ୟ ଜୀବନ, ରାମ ରାଇଜ ବୋଲି ଆଖ୍ୟା ଦିଅନ୍ତି । ଛନ୍ଦକପଟ ନ ଥିବା ଲୋକ ସେମାନେ । ସେମାନେ ଯେ ଯୁଗ ଯୁଗ ଧରି ଅତ୍ୟାଚାରିତ ଓ ବଂ୍ଚିତ ହୋଇ ନିର୍ବାକ, ମୂକ ପାଲଟି ଭାଗ୍ୟ ହିଁ ଭଗବାନ ବିଚାରି ପଡ଼ି ରହିଥିଲେ, ସେ ବିଚାର କରାଯାଏ ନାହିଁ ।

ତେଣୁ ୧୯୩୮-୩୯ରେ ଗଡ଼ଜାତରେ ଯେଉଁ ଆନ୍ଦୋଳନ ହେଲା, ତାହା ବୈଜ୍ଞାନିକ, ଅର୍ଥନୈତିକ, ସାମାଜିକ ଦୃଷ୍ଟିରୁ ଚାଷୀ ବିଦ୍ରୋହ । ସାମନ୍ତବାଦ, ସାମ୍ରାଜ୍ୟବାଦ ବିରୁଦ୍ଧରେ ସଙ୍ଗଠିତ ଚାଷୀ ବିଦ୍ରୋହ । ନେତା ଯିଏ ଥାଆନ୍ତୁ ନା କାହିଁକି, ସେ କାଳରେ ମୁଣ୍ଡ ଟେକୁଥିବା ଟିକିଏ ଆଲୋକ ପାଇଥିବା ମଧ୍ୟବିତ୍ତ, ନିମ୍ନମଧ୍ୟବିତ୍ତ ଶ୍ରେଣୀ ହାତରେ ହିଁ ନେତୃତ୍ୱ ବସ୍ତୁଗତ ଭାବରେ ରହିବା କଥା ଓ ତାହା ହିଁ ଥିଲା । ସେହି ମଧ୍ୟବିତ୍ତ ନେତୃତ୍ୱରେ ସାଧାରଣ ଗଣତନ୍ତ୍ର ଚେତନା ବ୍ୟତୀତ ସମାଜ, ଅର୍ଥନୀତିକୁ ପୂରା ଓଲଟପାଲଟ କରି ରଜା ଶାସନକୁ କେବଳ ନୁହଁ, ସାମନ୍ତବାଦୀ ଭୂସ୍ୱାମୀ ପ୍ରଥା, ମହାଜନୀ, ଜମିଦାରୀ, ଜାଗିରଦାରୀ ଲୋପ କରି ଏକ ନୂତନ ଅର୍ଥନୀତି ଓ ନୂତନ ସମାଜ ପାଇଁ ଡାକରା ଦେବାର ମାନସିକ ଓ ଆଦର୍ଶଗତ ପ୍ରସ୍ତୁତି ନଥିଲା । ଏହା ହିଁ ଗଡ଼ଜାତ ପ୍ରଜା ଆନ୍ଦୋଳନର ପରବର୍ତ୍ତୀ କାଳ ପ୍ରମାଣ କରେ ।

ପ୍ରଥମ ଉନ୍ମେଷ । ଦିହୁଡ଼ି ଜଳି ଉଠିଲା । ମନେଅଛି ୧୯୩୮ ମଧ୍ୟଭାଗ – ଜୁନ୍ ଜୁଲାଇ । ମୋଗଲବନ୍ଦୀ ବାଲେଶ୍ୱର ସଂଲଗ୍ନ ନୀଳଗିରିର ପ୍ରଜା ଆନ୍ଦୋଳନ । ନୀଳଗିରିର ଅଯୋଧ୍ୟାଠାରେ କୈଳାସଚନ୍ଦ୍ର ମହାନ୍ତି, ବନମାଳୀ ଦାସଙ୍କ ନେତୃତ୍ୱରେ ୧୦ ହଜାର ପ୍ରଜା ଧନୁଶର ଧରି ଗୋଟିଏ ପକ୍ଷରେ ଉଭା । ଅନ୍ୟପକ୍ଷରେ ହଜାର ବନ୍ଧୁକ, ପଲିଟିକାଲ ଏଜେଣ୍ଟଙ୍କ ବାହିନୀ ।

ସଂଘର୍ଷ ଅନିବାର୍ଯ୍ୟ ହୋଇପଡ଼ିଲା । ଗିରଫଦାରୀ, ଦୈହିକ ଅତ୍ୟାଚାର ଓ ଜରିମାନା, ଘରଦ୍ୱାର ଲୁଟିର ତାଣ୍ଡବ । ହଜାର ହଜାର ନୀଳଗିରି ପ୍ରଜା ଆଇନ ଅମାନ୍ୟ ଆନ୍ଦୋଳନ କରିବାକୁ ତିଆର । କିନ୍ତୁ ସେତେବେଳେ ଡଃ ହରେକୃଷ୍ଣ ମହତାବ ଆନ୍ଦୋଳନ ହିଂସାମୁଖୀ ହୋଇଯାଇଛି ଓ କରଛଡ଼ା ହୋଇଯାଉଛି ବୋଲି ଅନୁଭବ କରି ପ୍ରଜାମାନଙ୍କ ଏହି ଆନ୍ଦୋଳନର

ଏକପ୍ରକାର ଭଟ୍ଟା ପକେଇଦେଲେ । ଓଡ଼ିଶା ଗଡ଼ଜାତ ତଦନ୍ତ କମିଟିର ଚେୟାରମେନ ଥାଇ ରଜା ଓ ପଲିଟିକାଲ ଏଜେଣ୍ଟଙ୍କ ସହିତ ସାଲିସ କରେଇଲେ । ପ୍ରଜାମାନଙ୍କୁ କିଛି ମିଳିଯିବ ବୋଲି ମିଥ୍ୟା ମୋହ ସୃଷ୍ଟି ହେଲା । କିଛିଦିନ ଲାଗି ଆନ୍ଦୋଳନର ଭଟ୍ଟା ପଡ଼ିଗଲା ସତ ମାତ୍ର ନୀଳଗିରି ହିଁ ଦିହୁଡ଼ିରେ ଅଗ୍ନି ସଂଯୋଗ କରିଦେଲା । ସେ ସ୍ଫୁଲିଙ୍ଗ ବ୍ୟାପିଲା, ଢେଙ୍କାନାଳ, ତାଳଚେର, ରଣପୁର ଏବଂ ଆଉ ଆଉ ଗଡ଼ଜାତକୁ ।

ଗଡ଼ଜାତ ପ୍ରଜା ଆନ୍ଦୋଳନର ଏହି ସଂକ୍ଷିପ୍ତ ବିବରଣୀ ଦେବାବେଳେ ଲେଖକଙ୍କୁ କେବଳ ନୀଳଗିରି, ଢେଙ୍କାନାଳ, ରଣପୁର, ତାଳଚେର ସମ୍ପର୍କରେ ଐତିହାସିକ, ରାଜନୈତିକ ଗୁରୁତ୍ୱପୂର୍ଣ୍ଣ କାରଣରୁ ଉଲ୍ଲେଖ କରିବାକୁ ପଡୁଛି; ଅନ୍ୟ ସବୁ ଗଡ଼ଜାତର ପ୍ରଜା ଆନ୍ଦୋଳନକୁ ନ୍ୟୂନ କରି ଦେଖିବା ଅଭିପ୍ରାୟରେ ନୁହଁ ।

**୧୯୩୮ ସେପ୍ଟେମ୍ବର ୧ – ଜେନାପୁର**

ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନରେ ମୋଗଲବନ୍ଦୀ ଓଡ଼ିଶାର ଚାଷୀ ଆନ୍ଦୋଳନ । ସେତେବେଳେ ଜାତୀୟ କଂଗ୍ରେସ ଭିତରେ ଗଢ଼ି ଉଠିଥିବା କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନେତା ଏବଂ ସେଥିରେ ରହି ବେଆଇନ ହୋଇଥିବା କମ୍ୟୁନିଷ୍ଟ ପାର୍ଟିର ନେତା ଓ କର୍ମୀମାନଙ୍କ ଭୂମିକା, ଉତ୍କଳ କୃଷକ ସଭାର ମୁଖପତ୍ର ତତ୍‌କାଳୀନ କୃଷକ ସାପ୍ତାହିକର ଭୂମିକା, ଲିଥୋ ହୋଇ କଟକର ବାଲୁବଜାରର ଅନ୍ଧାରିଆ ଡିବି ଆଲୁଅ ଜଳା ଘରେ ପ୍ରକାଶ ପାଉଥିବା 'ରଣଭେରୀ'ର ଭୂମିକାକୁ ଏବଂ ୧୯୪୬ରେ ନୀଳଗିରି ରଜାବାହିନୀ ସହିତ କମ୍ୟୁନିଷ୍ଟମାନଙ୍କର ସଶସ୍ତ୍ର ଯୁଦ୍ଧର ଭୂମିକାକୁ ନିଜର ଶ୍ରେଣୀଗତ ଚରିତ୍ରରୁ ଗଡ଼ଜାତ ଆନ୍ଦୋଳନ ସଂପର୍କରେ ଯେଉଁମାନେ ଲେଖାଲେଖି କରିଛନ୍ତି, ସେଗୁଡ଼ିକୁ ଉଲ୍ଲେଖ ସୁଦ୍ଧା କରି ନାହାନ୍ତି । ଏମିତିକି ଢେଙ୍କାନାଳରେ ବାହାରୁ ଯାଇ ଯେଉଁ ୩ ଦଫା ସତ୍ୟାଗ୍ରହ ଆନ୍ଦୋଳନ ହେଲା, ତାହାର ତାତ୍ପର୍ଯ୍ୟକୁ ଉଡ଼େଇ ଦିଅନ୍ତି ।

କଂଗ୍ରେସ ଭିତରେ ଭାରତବର୍ଷରେ ଯେଉଁ ବାମପନ୍ଥୀ ଭାବାପନ୍ନ ହେଲା ଭାରତର ମୁକ୍ତି ପାଇଁ ଖାଲି ସତ୍ୟାଗ୍ରହ କାରାବରଣ, ସୂତାକଟା ନୁହଁ, ଗଣ ସଂଗ୍ରାମର ବାଟ ଖୋଜୁଥିଲେ, ସେମାନେ ହିଁ ଗଠନ କରିଥିଲେ କଂଗ୍ରେସ ସୋସଲିଷ୍ଟ ପାର୍ଟି । ଓଡ଼ିଶାରେ ୧୯୩୬/୩୭/ ୩୮ରେ ଏହି ପାର୍ଟିର ଉଦ୍ୟୋଗରେ ମୋଗଲବନ୍ଦୀରେ ଥିବା ଜମିଦାରୀଗୁଡ଼ିକରେ, ମକଦମାଗୁଡ଼ିକରେ ବିରାଟ ଚାଷୀ ଆନ୍ଦୋଳନର ଜୁଆର । ଭେଟି ବେଠି ବିରୁଦ୍ଧରେ, ନିଜ ଘରଡିହରେ ଗଛ, ନିଜ ପୋଖରୀର ମାଛରେ, ଅଧିକାର; ଦଖଲଖାରଜ ରୋଷମ ଛାଡ଼, ଏହି ଅତି ମାମୁଲି ଦାବୀ । ଚାଷୀ ଆନ୍ଦୋଳନ ଏ ପର୍ଯ୍ୟନ୍ତ ଲଙ୍ଗଳ ଯା'ର ଜମି ତା'ର । ମଠ ଧନ କୋଠ ହେଉ, ଜମିଦାରୀ ପ୍ରଥା ଉଚ୍ଛେଦ କର, ଭାଗରେ ଦଶଣା ଛଅଣା କର, ଭୂସଂସ୍କାର କରି ଜମି ବା[, ଦାବୀ ଉଠାଇ ନାହିଁ ।

ଏହି କୃଷକସଭା ଡାକରାରେ ଜେନାପୁରଠାରେ ଅନ୍ତତଃ ୫୦ ହଜାର ଚାଷୀଙ୍କ ବିରାଟ ସମାବେଶ । ଏହି ସମାବେଶରେ ପାଖ ଢେଙ୍କାନାଳରୁ ଅନ୍ୟୁନ ୩୦ ହଜାର ପ୍ରଜା ଯୋଗ ଦେଇଥାନ୍ତି । ସେହି ସମାବେଶରେ ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ମାଳତୀ ଚୌଧୁରୀ, ଗୌରାଙ୍ଗ ଚରଣ ଦାସ, ସାରଙ୍ଗଧର ଦାସଙ୍କ ଉଦ୍‌ବୋଧନୀ ଓ ଗଡ଼ଜାତ ପ୍ରଜାଙ୍କୁ ବିଶେଷତଃ ଢେଙ୍କାନାଳ ପ୍ରଜାଙ୍କୁ ରାଜଶାସନ ବିରୁଦ୍ଧରେ ଲଢ଼ିବାକୁ ଆହ୍ୱାନ, ଢେଙ୍କାନାଳ ପ୍ରଜାଙ୍କ ଭିତରେ ଚହଳ ପକାଇଦେଲା । ସୁବାହୁ ସିଂହ, ବୈଷ୍ଣବ ପଟ୍ଟନାୟକ, ହରମୋହନ ପଟ୍ଟନାୟକ, ବ୍ରଜକିଶୋର ଧଳ ପ୍ରମୁଖଙ୍କୁ ଘେନି ଗଠିତ ଢେଙ୍କାନାଳ ପ୍ରଜାମଣ୍ଡଳ ସେପ୍ଟେମ୍ବର ୧୨ ତାରିଖରେ ଡାକରା ଦିଏ । ସୁଦୂର ପରଜଙ୍ଗ ପଳାସୁଣୀଠାରୁ ମଢ଼ି, ଭୁବନ ଡେଣେ ଛଦେଶ, ବଳରାମପୁର, ପାରିମାଳ, ପ୍ରଭୃତି ୨୪ବିଶରୁ ପ୍ରଜା ବ୍ରାହ୍ମଣୀ ନଈର ଉଭୟ ପଟୁ ୫୦ ହଜାରରୁ ଊର୍ଦ୍ଧ୍ୱ ପ୍ରଜାମଣ୍ଡଳର ନ୍ୟୂନତମ ଦାବୀ ପାଇଁ ହାଜର । ସେଦିନ ଢେଙ୍କାନାଳର ରାସ୍ତାରେ ରକ୍ତର ସ୍ରୋତ । ଲୋକଙ୍କୁ କେବଳ ପିଟା ନୁହେଁ, ହାତୀମଡ଼ାଠାରୁ ଆରମ୍ଭ କରି ଅବର୍ଣ୍ଣନୀୟ ଅତ୍ୟାଚାର । ପ୍ରଜାମଣ୍ଡଳ ନେତାମାନଙ୍କ ଘରଦ୍ୱାର ଧ୍ୱଂସ, ଜମିବାଡ଼ି ବାଜ୍ୟାପ୍ତି ।

ଏହି ଆନ୍ଦୋଳନକୁ ସଂଗଠିତ ରୂପ ଦେବା, ତାକୁ ସାମନ୍ତବାଦୀ ରାଜରାଜୁଡ଼ା ଶାସନର ଲୋପ ଓ ତା' ସ୍ଥାନରେ ପ୍ରଜାଶାସନ ଯେଉଁଥିରେ ପ୍ରଜା ଜମି ପାଇବେ, ଜଙ୍ଗଲରେ ଅଧିକାର ପାଇବେ, ସଭାସମିତି କରିବାର, ସଙ୍ଗଠନ ଗଢ଼ିବାର ଅଧିକାର ପାଇବେ, ସେଥିଲାଗି ଢେଙ୍କାନାଳ ପ୍ରଜା ଆନ୍ଦୋଳନର ଅଦମ୍ୟ ସ୍ରୋତ ଓଡ଼ିଶାର ସମସ୍ତ ଗଡ଼ଜାତ ପ୍ରଜାଙ୍କୁ ଉଦ୍‌ବୁଦ୍ଧ କଲା ।

ଢେଙ୍କାନାଳର ଏହି ଆନ୍ଦୋଳନର ପ୍ରଭାବ ତାଳଚେରରେ ପଡ଼ିଲା । ଅନୁଗୋଳ କୋଶଳାଠାରେ ସେପ୍ଟେମ୍ବର ୬ରେ ଗଠିତ ତାଳଚେର ପ୍ରଜାମଣ୍ଡଳ ଯାହାର ନେତୃତ୍ୱ ନେଇଥିଲେ ପବିତ୍ର ମୋହନ ପ୍ରଧାନ, ବିଛନ୍ଦ ପ୍ରଧାନ, କୃତିବାସ ରଥ, ମାଗୁଣୀ ପ୍ରଧାନ ପ୍ରମୁଖ । ଢେଙ୍କାନାଳରେ ସେପ୍ଟେମ୍ବର ୧୨ ସମାବେଶ ଉପରେ ଅକଥନୀୟ ଅତ୍ୟାଚାର ସତ୍ତ୍ୱେ ସେପ୍ଟେମ୍ବର ୧୬ରେ ତାଳଚେର ପ୍ରଜା ସମାବେଶ । ତା'ଉପରେ ଲାଠି, ଗୁଳି, ଲୁଟି, ଗୃହଦାହ । ଅସହ୍ୟ ହୋଇଉଠିଲା । ନଭେମ୍ବର ମାସ ବେଳକୁ ରାଜ୍ୟର ୮୦ ହଜାର ଯାଏ ଲୋକଙ୍କ ମଧ୍ୟରୁ ଅର୍ଦ୍ଧେକ ରାଜ୍ୟ ଛାଡ଼ି ଆସି ଅନୁଗୋଳରେ ଶରଣାର୍ଥୀ ହୋଇ ରହିଲେ । ସେ ଏକ ଦୀର୍ଘ କାହାଣୀ । ଅସୁମାରି ଅବର୍ଣ୍ଣନୀୟ ଦୁର୍ଦ୍ଦଶା । ଏହି ରାଜ୍ୟତ୍ୟାଗ ଭାରତବର୍ଷରେ ଚହଳ ପକେଇ ଦେଲା । ମହାତ୍ମା ଗାନ୍ଧୀ ମଧ୍ୟ ଏଥିଲାଗି ବ୍ୟଥିତ ହୋଇଥିଲେ । ସି.ଏଫ୍. ଏଣ୍ଡ୍ରୁଜ, ଅଧ୍ୟାପକ ରଂଗା, ଠକରବାପା ପ୍ରମୁଖ ଆସି ସେମାନଙ୍କ ଦୁର୍ଗତି ଦେଖିଥିଲେ । ଶେଷରେ ୫ ମାସ ପରେ ଶ୍ରୀ ମହାତାବ ଓ ସହକାରୀ ପଲିଟିକାଲ ଏଜେଣ୍ଟ ହେନେରି ସାହେବଙ୍କ ସାଲିସ ପରେ ପ୍ରଜାମାନେ ୧୯୩୯ ମାର୍ଚ୍ଚ ୨୧ରେ ରାଜ୍ୟକୁ ବାହୁଡ଼ିଲେ । ମାତ୍ର ହେନେରିଙ୍କ ପ୍ରତିଶ୍ରୁତି ପ୍ରତିଶ୍ରୁତିରେ ରହି ରହିଲା ।

ଢେଙ୍କାନାଳ ଏବଂ ତାଳଚେର ଦୁଇଟି ଲଗାଲଗା ରାଜ୍ୟରେ ପ୍ରଜା ଆନ୍ଦୋଳନର ଏବଂ ତେଣେ ନୀଳଗିରି ଓ ରଣପୁରର ପ୍ରଜା ଆନ୍ଦୋଳନ ଭିତରେ ସାମଞ୍ଜସ୍ୟ ସାଙ୍ଗକୁ କେତେକ ବୈଶିଷ୍ଟ୍ୟ ରହିଛି, ନେତୃତ୍ୱର ଭିନ୍ନ ଭିନ୍ନ ଆଭିମୁଖ୍ୟ ରହିଛି । ଠିକ୍ ସେମିତି ଓଡ଼ିଶାର ସମଗ୍ର ଗଡ଼ଜାତ ପ୍ରଜା ଆନ୍ଦୋଳନ ଘେନି ରାଜ୍ୟ ଭିତରେ ଓ ରାଜ୍ୟ ବାହାରେ ଉକ୍ତ ଆନ୍ଦୋଳନକୁ ସମର୍ଥନ ଦେଉଥିବା, ପରିଚାଳନା କରୁଥିବା ସ୍ୱାଧୀନତା ସଂଗ୍ରାମର ଦେଖା ଦେଇଥିବା ଭିନ୍ନ ଭିନ୍ନ ରାଜନୈତିକ ଦୃଷ୍ଟିଭଙ୍ଗୀର ମଧ୍ୟ ପ୍ରଭାବ ପଡ଼ିଥିଲା ।

କଂଗ୍ରେସ ସୋସାଲିଷ୍ଟ ପାର୍ଟିମାନେ ଯେଉଁଥିରେ ଥିଲେ କମ୍ୟୁନିଷ୍ଟ ସେମାନଙ୍କ ଦୃଷ୍ଟିଭଙ୍ଗୀ ଏବଂ ଡଃ ମହତାବ ଓ ତାଙ୍କ ସମର୍ଥକଙ୍କ ଦୃଷ୍ଟିଭଙ୍ଗୀ ଏବଂ ଏ ଦୁଇ ଦୃଷ୍ଟିଭଙ୍ଗୀଠାରୁ ଭିନ୍ନ ଅନ୍ୟ ଏକ ମାନ୍ଦା ଅଧିକ ସାଲିସପନ୍ଥୀ, ସ୍ୱତନ୍ତବାଦୀ ଦୃଷ୍ଟିଭଙ୍ଗୀର ପ୍ରତିଫଳନ ଘଟିଥିଲା ।

ତାଳଚେର ପ୍ରଜାମାନେ ଅତ୍ୟନ୍ତ ଦୁଃଖବରଣ କରି ବାହାରେ ପଡ଼ିରହିଲେ – ରାଜ୍ୟରେ ଥିବା ଅନ୍ୟ ଲୋକଙ୍କ ଉପରେ ଅଧିକତର ଦମନଲୀଳା ଚାଲିଲା । ନେତାମାନେ ମୁଖ୍ୟତଃ ପଦାରେ ରହିଲେ ।

କିନ୍ତୁ ଢେଙ୍କାନାଳରେ ଆନ୍ଦୋଳନ ଅନ୍ୟ ଧରଣର ଚାଲିଲା । ଅବଶ୍ୟ ବୁଢ଼ାପଙ୍କ, ଘୋଳପୁର, ପେଙ୍ଗୁଆ ଓ ଜେନାପୁରର କଲାଣ୍ଡଠାରେ ଶିବିରମାନ ପ୍ରତିଷ୍ଠିତ ହୋଇ ରଜା ଅତ୍ୟାଚାରରେ ଖଣ୍ଡିଆଖାବରା ନରନାରୀ, ରାଜକର୍ମଚାରୀମାନଙ୍କ ଦ୍ୱାରା ଧର୍ଷିତା ଯୁବତୀ ଝିଅବୋହୂଙ୍କୁ ଆଶ୍ରୟ ଦିଆଯାଉଥିଲା, ଚିକିତ୍ସା କରାଯାଉଥିଲା ଏବଂ ବଳବନ୍ତରାୟ ମେହେଟା ଲାଲମୋହନ ପଟ୍ଟନାୟକ, ମହତାବ , ସାରଙ୍ଗଧରଦାସ ପ୍ରମୁଖଙ୍କୁ ଘେନି ଗଠିତ ତଦନ୍ତ କମିଟିକୁ ସାକ୍ଷ୍ୟ ପ୍ରସ୍ତୁତ କରି ଦିଆଯାଉଥିଲା । ସେଠାରୁ ହିଁ ଆନ୍ଦୋଳନକୁ ଢେଙ୍କାନାଳ ଭିତରେ ଚାଲୁ ରଖିବା ଲାଗି ନିର୍ଦ୍ଦେଶମାନ ଦିଆଯାଉଥିଲା ।

କଟକରୁ ପ୍ରକାଶିତ ଭବଗତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ ପ୍ରମୁଖ ଦ୍ୱାରା ବେଆଇନ ଘୋଷିତ ଲିଥୋକରା "ରଣଭେରୀ" କାଗଜକୁ ସବୁ ଗଡ଼ଜାତରେ ଥିବା କମ୍ୟୁନିଷ୍ଟ ଓ କଂଗ୍ରେସ ସୋସଲିଷ୍ଟ ମନୋଭାବାପନ୍ନ ଲଢୁଆ କର୍ମୀମାନଙ୍କୁ ଯୋଗାଣ, ଏହି ଶିବିର ଓ ନୀଳଗିରିଠାରୁ ରଣପୁର, ନୟାଗଡ଼, ଖଣ୍ଡପଡ଼ା, ଆଠଗଡ଼, ତିଗିରିଆ ପ୍ରଭୃତିକୁ ପ୍ରେରଣ, ଏକ ଗୋପନ ସଙ୍ଗଠନର ରୂପ ନେଲା । କଲାଣ୍ଡ ଶିବିରଟି ଡେଇଁ ଜେନାପୁରକୁ ଆସିବାବେଳେ ବ୍ରାହ୍ମଣୀ ଏପଟ ଢେଙ୍କାନାଳ ଅର୍ନ୍ତଭୁକ୍ତ କବାଟବନ୍ଧ ଗାଁ'ଟିରେ ଗୋପନରେ ରାତି ପାରି ହେଉ ହେଉ ଅନନ୍ତ ପଟ୍ଟନାୟକ, ରବି ଘୋଷଙ୍କୁ ଢେଙ୍କାନାଳ ପୋଲିସ ମାଡ଼ିବସି ଗିରଫ କରି ନେଲା ଓ ଢେଙ୍କାନାଳରେ ଗୋଟିଏ ଚାଳଘରେ ଡିଙ୍କିଶା ପାଖରେ ସ୍ପେଶାଲ ଜେଲ ନାମ ଦେଇ ବର୍ଷାଧିକ କାଳ କାରାଦଣ୍ଡ ଏହି ଆନ୍ଦୋଳନର ଏକ ବିଶିଷ୍ଟ ଘଟଣା । ବୈଦ୍ୟନାଥ ରଥ ଚାଲାକ ପଡ଼ି ପୁଲିସ ହାତରୁ ଖସି ଚାଲିଆସି ଏ ସମ୍ବାଦ ଦେଇ ନ ଥିଲେ, ସେ ଦୁଇଜଣଙ୍କ ପତ୍ତା

ମିଳି ନ ଥାନ୍ତା । ହୁଏତ ରାଜା ସେ ଦୁହିଁଙ୍କୁ ଖତମ କରିଦେଇଥାନ୍ତା । ସେମାନଙ୍କ ଗିରଫ ସମ୍ବାଦ ଓ ପ୍ରତିବାଦ ସମ୍ଭବତଃ ହନ୍ତାର ହାତକୁ ବାନ୍ଧିଦେଲା ।

ଏତିକିବେଳେ କମ୍ୟୁନିଷ୍ଟ ପାର୍ଟି (ବେଆଇନ)ର ସମ୍ପାଦକ ଏବଂ "ନାସନାଲ ଫ୍ରଣ୍ଟ" ନାମକ ଇଂରେଜ ସାପ୍ତାହିକର ସମ୍ପାଦକ ପି ସି ଯୋଷୀ ଆସି ନବକୃଷ୍ଣ ଚୌଧୁରୀ ଭଗବତୀ ଚରଣ ପାଣିଗ୍ରାହୀ ଏବଂ ଅନ୍ୟମାନଙ୍କ ସଙ୍ଗେ ଗଡ଼ଜାତ ଆନ୍ଦୋଳନକୁ କିପରି ଲଢୁଆ ରୂପ ଦିଆଯିବ ତାହାର ଆଲୋଚନା କରିଥିଲେ । ଯୋଷୀ ସାମ୍ବାଦିକ ସାଜି ଢେଙ୍କାନାଳରେ ପହଞ୍ଚି ଢେଙ୍କାନାଳର ରଜା ଶଙ୍କର ପ୍ରତାପ ଦେଓଙ୍କୁ ସାକ୍ଷାତ କରି ସେହି ସୁଯୋଗରେ ସେ ଢେଙ୍କାନାଳ ଅତ୍ୟାଚାରର ସମସ୍ତ କରୁଣ କାହାଣୀକୁ ଭାରତବର୍ଷ ବ୍ୟାପୀ ପ୍ରଚାର କରାଇଥିଲେ ।

"ନୁହେଁ ବନ୍ଧୁ ନୁହେଁ ଏହା ଚିତା
ଏ ଦେଶ ତିମିର ତଳେ ଏ ଅଲିଭା ମୁକତି ସଳିତା ।"
"ନୁହେଁ ଏହା ଜଳିବାର ପାଇଁ
ଜନମ ଏହାର ଏଥି ଜାଳି ପୋଡ଼ି ଦେବାକୁ ଧସାଇ ।"

(ସଚ୍ଚି ରାଉତରାୟ)

"ଛାତିକୁ ଫୁଲାଇ କହିଲା ତ ସିଏ ନାହିଁ ରଜା ନାହିଁ ରଜା
କହକହ ବାଜି କାହାଲାଗି ଆଜି ବଳିଦେଲୁ ତୋରମଥା ।"

(କାଳିନ୍ଦୀ ପାଣିଗ୍ରାହୀ)

ଏହି ପର୍ଯ୍ୟାୟ ଢେଙ୍କାନାଳ ଆନ୍ଦୋଳନର ୧୯୩୮ ଅକ୍ଟୋବର ୧୧ରେ ବ୍ରିଟିଶ ପୁଲିସ ଆନ୍ଦୋଳନକୁ ଦମନ କରିବାକୁ ସଜବାଜ ହୋଇ ଭୁବନକୁ ଗଲାବେଳେ ନୀଳକଣ୍ଠପୁର ଘାଟ ପାରି କରିଦେବାକୁ ବାଜି ରାଉତର ଅସ୍ୱୀକାର ଏବଂ ବ୍ରିଟିଶ ଗୁଳିରେ ବାଜିର ଅନ୍ତବୁଜୁଳା ବାହାରି ପଡ଼ିବା ଓ ରଘୁ, ଲକ୍ଷ୍ମଣ, ନଟ, ଗୁରୁବାରିଆ, ହୁରୁଷୀଙ୍କ ପ୍ରାଣ ବଳିଦାନ ରାଜତନ୍ତ୍ର ବିରୁଦ୍ଧରେ ଘୃଣା ଓ ପ୍ରତିଶୋଧର ବହ୍ନି ଜାଳିଦେଲା ଢେଙ୍କାନାଳ ପ୍ରଜା ଆନ୍ଦୋଳନର ନେତା ଆଉ ପି.ସି.ସି. ସଭ୍ୟ ମାତ୍ର କମ୍ୟୁନିଷ୍ଟ ଭାବାପନ୍ନ ଡକ୍ଟର ଫନୀପାଲଙ୍କ ଦ୍ୱାରା ଛ'ଟି ଯାକ ଶବ ରେଳ ବାଗନରେ କଟକ ଅଣାଯିବା ଏବଂ କଟକ ସହରରେ ୬ଟି ଶଗଡ଼ ଗାଡ଼ିରେ ଷ୍ଟେସନଠାରୁ ଖାନନଗର ଶ୍ମଶାନକୁ ଅଣାଯିବା ଓ ସେଥିରେ ହଜାର ହଜାର କଟକର ଛାତ୍ରଯୁବକ ଓ ସାହିବସ୍ତିବାଲାଙ୍କ ଅଂଶଗ୍ରହଣ ସମଗ୍ର ଓଡ଼ିଶାକୁ ଥରେଇଦେଲା ।

ପ୍ରସଙ୍ଗକ୍ରମେ କୁହାଯାଇପାରେ ଯେ ସେତେବେଳର କମ୍ୟୁନିଷ୍ଟ ସାଥୀ ସଚ୍ଚି ରାଉତରାୟଙ୍କ କଲମରୁ ଯେଉଁ ଅମର କବିତା ସୃଷ୍ଟି ହେଲା – କାଳିନ୍ଦୀବାବୁଙ୍କ ଅନିର୍ବଚନୀୟ କବିତା ସୃଷ୍ଟି ହେଲା, ତାହା ଓଡ଼ିଶାର ରାଜନୈତିକ ଓ ସାଂସ୍କୃତିକ ଜୀବନକୁ ପ୍ରଗତି ଅଭିମୁଖୀ କରେଇଦେଲା । ପି.ସି. ଯୋଷୀଙ୍କ ଦ୍ୱାରା ପ୍ରେରିତ ବିଖ୍ୟାତ କବି ଶ୍ରୀମତୀ ସରୋଜିନୀ ନାଇଡୁଙ୍କ ଭାଇ ହରେନ୍ଦ୍ରନାଥ

ଚଟ୍ଟୋପାଧ୍ୟାୟଙ୍କ ଦ୍ୱାରା ବାଜିରାଉତ କବିତାର ଇଂରେଜୀ ଅନୁବାଦ ସାରା ଭାରତରେ ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନ ଓ ବିଶେଷତଃ ଢେଙ୍କାନାଳ ଆନ୍ଦୋଳନର ତାତ୍ପର୍ଯ୍ୟକୁ ପରିଚିତ କରାଇ ଦେଲା ।

ଏହି ଗୁଳିକାଣ୍ଡ ଓ ହତ୍ୟା ପରେ ହତ୍ୟା–ମାଡ଼ର ସୁଅ ଛୁଟିଲା । ଘୋଳପୁର ଶିବିରରୁ, ଢେଙ୍କାନାଳରୁ ଆଠଗଡ଼ ବାଟେ ବୋହି ଆଣି ଶେଷରେ କଟକ ହାସପାତାଳରେ ପହଂଚାଇବା ଏସବୁ ମୋଗଲବନ୍ଦୀ କଂଗ୍ରେସ ସୋସାଲିଷ୍ଟ ଓ କମ୍ୟୁନିଷ୍ଟ କର୍ମୀମାନଙ୍କର ମର୍ଯ୍ୟାଦାକୁ ଗଡ଼ଜାତରେ ବଢ଼େଇଦେଲା ।

୧୯୩୮ ଡିସେମ୍ବର ୩ ଠାରୁ ଏହି କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନିର୍ଦ୍ଦେଶ ଅନୁସାରେ ଓଡ଼ିଶା ବିଧାନ ସଭାର ସଭ୍ୟ ଥାଇ ନବକୃଷ୍ଣ ଚୌଧୁରୀ, ଉକ୍ତ ପାର୍ଟିର ସମ୍ପାଦକ ଓ କୃଷକ ସାପ୍ତାହିକର ସମ୍ପାଦନମଣ୍ଡଳୀର ସମ୍ପାଦକ ଭଗବତୀ ଚରଣ ପାଣିଗ୍ରାହୀ ଏବଂ କୃଷକ ନେତା ଓ ଉକ୍ତ ପାର୍ଟିର ଅନ୍ୟତମ ଯୋଦ୍ଧା ଗୌରାଙ୍ଗଚରଣ ଦାସ ତିନି ଦଫାରେ ମୋଗଲବନ୍ଦୀରୁ ଢେଙ୍କାନାଳ ଭିତରେ ପଶି ସତ୍ୟାଗ୍ରହ କଲେ । ପ୍ରଥମ ଦୁଇ ଜଣଙ୍କୁ ଗିରଫ କରି ଛାଡ଼ି ଦିଆଗଲା ମାତ୍ର ଗୌରାଙ୍ଗ ଦାସଙ୍କ ଉପରେ ମାଡ଼ ଦେଇ ତାଙ୍କୁ ଅଶେଷ ନିର୍ଯ୍ୟାତନା ଦିଆଗଲା ।

ଅକ୍ଟୋବର ୨୯ରେ ଗଡ଼ଜାତ ପ୍ରଜା ସମ୍ମିଳନୀ ଓ ବିଶେଷତଃ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଉଦ୍ୟମରେ ଓଡ଼ିଶା ଗଡ଼ଜାତ ଦିବସରୂପେ ପାଳିତ ହୋଇଥିଲା ।

ଢେଙ୍କାନାଳ ଓ ନୀଳଗିରି ପ୍ରଜାମଣ୍ଡଳ କର ଛଡ଼ା ହୋଇଯାଉଛି ଏବଂ ସାରଙ୍ଗଧର ଦାସ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ଏବଂ କମ୍ୟୁନିଷ୍ଟମାନଙ୍କ ପ୍ରଭାବାଧୀନରେ ରହିଚି, ଏହି ସତ୍ୟକୁ ଉପଲବ୍ଧି କରି ସେତେବେଳେ ଶ୍ରୀ ମହତାବ ଖୋଲାଖୋଲି ବିରୋଧ କରିପାରୁ ନ ଥିଲେ ହେଁ ଏହାର ଅନ୍ୟ ନେତାମାନଙ୍କୁ କିପରି ନିଜ ପ୍ରଭାବାଧୀନରେ ରଖିବେ ସେଥିଲାଗି ଆପ୍ରାଣ ଉଦ୍ୟମ କରିଥିଲେ । ତାଳଚେରରେ ଯେପରି ଏମାନଙ୍କ ପ୍ରବେଶ ହୋଇପାରିବ ନାହିଁ, ସେଥିସକାଶେ ତାଳଚେର ନେତାମାନଙ୍କୁ ପ୍ରଭାବିତ କରିଥିଲେ । ଢେଙ୍କାନାଳକୁ କରଗତ କରିବା ଲାଗି ସେଠାର ଲୋକପ୍ରିୟ ପ୍ରଜାମଣ୍ଡଳ ନେତା ମହେଶ୍ୱର ସୁବାହୁ ସିଂହଙ୍କୁ ଜାନକୀ ନାଥ ସ୍ୱରାଜଭବନ (ସେତେବେଳର ପ୍ରାଦେଶିକ କଂଗ୍ରେସ କମିଟି ଅଫିସ)ରେ ବସ୍ତୁତଃ ୪ ଦିନ କାଳ ଲୋକ ଲୋଚନରୁ ଅଟକାଇ ରଖିଥିବା ଘଟଣାକୁ ସେ ଅସ୍ୱୀକାର କରିପାରନ୍ତି ମାତ୍ର ଏହା ନିରାଟ ବାସ୍ତବତା ।

ଢେଙ୍କାନାଳ ଆନ୍ଦୋଳନ କଥାର ବିଶେଷ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ଯେ ଓଡ଼ିଶା କଂଗ୍ରେସରେ ଗଡ଼ଜାତ ଆନ୍ଦୋଳନକୁ ସମର୍ଥନ କରୁଥିବା ଶ୍ରୀ ମହତାବ ଓ ଅନ୍ୟ ପକ୍ଷରେ ତତ୍କାଳୀନ କଂଗ୍ରେସ ସୋସାଲିଷ୍ଟ (ସୋସାଲିଷ୍ଟ ବା ପ୍ରଜା ସୋସାଲିଷ୍ଟ ନୁହ । ତାହା ପରବର୍ତ୍ତୀ କାଳର ଘଟଣା)ଙ୍କ ମଧ୍ୟରେ ଆନ୍ଦୋଳନର ପନ୍ଥା ପଦ୍ଧତି, ଲକ୍ଷ୍ୟ ଘେନି ମତପାର୍ଥକ୍ୟ ।

## ରଘୁ ଦିବାକର ଫାଶୀର – ରାଜ୍ୟ ରଣପୁର

ପ୍ରଜାମଣ୍ଡଳ ଆନ୍ଦୋଳନର ନେତାମାନଙ୍କୁ ଖଲାସ କରି ଏହି ଦାବୀ କରି ରଣପୁର ଗଡ଼ରେ ପ୍ରଜାମାନଙ୍କ ସମାବେଶ । ବନମାଳୀ ରାମ, ଅଗାଧୁ ବରାଳ, ଗଙ୍ଗାଧର ମିଶ୍ର ପ୍ରମୁଖ ନେତା ଏହି ସମ୍ବାଦ ପୁଣି ନୟାଗଡ଼ରେ ପହଞ୍ଚି ସେଠା ପ୍ରଜା ଆନ୍ଦୋଳନକୁ ଦମନ କରିବାକୁ ପରାମର୍ଶ ଦେଇଥିବା ପଲିଟିକାଲ ଏଜେଣ୍ଟ୍ ମେଜର ବେଜେଲଗେଟ୍ ଆସି ରଣପୁରରେ ପହଞ୍ଚିଗଲେ । ପ୍ରଜାମାନେ ସେମାନଙ୍କ ଦାବୀରେ ଅଟଳ ରହିବା ଦେଖି କ୍ରୋଧାନ୍ୱିତ ବେଜେଲଗେଟ ରିଭଲଭର ଫୁଟାଇ ଦୁଇଜଣଙ୍କୁ ହତ୍ୟା କଲେ । ପ୍ରଜାମାନେ ଏଥିରେ ଦବି ନଯାଇ ଲାଠି ଟେକା ପଥର ମାରି ପ୍ରତିଶୋଧ ସ୍ୱରୂପ ବେଜେଲଗେଟଙ୍କୁ ପିଟିଲେ । ସେଥିରେ ତାଙ୍କର ପ୍ରାଣ ଗଲା । ବ୍ରିଟିଶ ସାମ୍ରାଜ୍ୟବାଦର ଖୁଣ୍ଟକୁ ଗୁଳି । ତୃତୀୟ ଦିନ କଲିକତାରୁ ହଜାର ହଜାର ଗୋରା ସୈନ୍ୟଙ୍କୁ ମଗାଗଲା ।

ରଣପୁରରେ ସେଦିନ ଏହି ପ୍ରଜା ସମାବେଶ କଥା ମହତାବ ଜାଣିଥିଲେ । ସେ କଟକରୁ ସେଦିନ ଲାଲବାଗ ଥାନାରେ କଟକ ଛାଡ଼ିବା ଡାଏରୀ ଲେଖେଇ ଉପରଓଳି ବାହାରି ରଣପୁରରେ ପହଞ୍ଚିବା ବେଳକୁ ଦେଖନ୍ତି ଚାନ୍ଦପୁରଠାରୁ ରଣପୁରଗଡ଼ ଯାଏ ରାସ୍ତାଯାକ ଗଛକଟା ହୋଇ ବାଟ ବନ୍ଦ । ବେଜେଲଗେଟ ହତ୍ୟା ସମ୍ବାଦ ପାଇ ଲୋକଙ୍କୁ ଡାକି, କାଠଗଡ଼ ଉଠାଇ ସେ ରଣପୁର ଗଡ଼କୁ ଗଲେ । ସେଠାର ଏହି ଦୃଶ୍ୟ ଦେଖି ନିଶ୍ଚିତ ପ୍ରଚଣ୍ଡ ଦମନ ହେବ ଜାଣି ସେ ପ୍ରଜାମାନଙ୍କୁ ରାଜ୍ୟ ଛାଡ଼ି ମୋଗଲବନ୍ଦୀ ଅଂଚଳକୁ ଚାଲିଯିବାକୁ ପରାମର୍ଶ ଦେଲେ ଓ ରାତାରାତି କଟକ ଜାନକୀନାଥ ସ୍ୱରାଜ ଭବନକୁ ଫେରିଆସିଲେ । ସ୍ମରଣ ଅଛି, ତହିଁ ପରଦିନ କୃଅମୂଳେ ଦାନ୍ତ ଘସୁ ଘସୁ ରଣପୁରର ଏପରି ଘଟଣା କହିବା ମାତ୍ରେ ଏ ସମ୍ବାଦକୁ ଲେଖକ ଭଗବତୀ ଚରଣ ପାଣିଗ୍ରାହୀ ଓ ନବକୃଷ୍ଣ ଚୌଧୁରୀଙ୍କୁ ଜଣାଇଲେ । ନବବାବୁ ଝୁଅର ହେଉଥାନ୍ତି, ଭଗବତୀବାବୁଙ୍କ ଉପସ୍ଥିତିରେ ତାଙ୍କର ପ୍ରତିକ୍ରିୟା ହେଲା – "ଯା' ବଦମାସ ମଲା । ତା' ପାଇଁ ମୁଁ ଝୁଅର ହେଉଛି ।"

ରଣପୁର ଖାଲି ହୋଇଗଲା । ମୋଗଲବନ୍ଦୀ ଟାଙ୍ଗୀ ଆଉ ରାଜସୁନାଖଳା ଆସି ବୋଲଗଡ଼-ବେଗୁନିଆରେ ଘରଦ୍ୱାର, ଜାଏ ଯୋଡ଼ ଛାଡ଼ି ସ୍ତ୍ରୀ ପୁରୁଷ ବୁଢ଼ାପିଲା ସମସ୍ତେ ରାଜ୍ୟଛଡ଼ା । ସ୍ୱ ଚକ୍ଷୁରେ ଦେଖିବାର କଥା ଏମାନଙ୍କ ଥଇଥାନର ମୁଖ୍ୟ ଦାୟିତ୍ୱ ପଡ଼ିଗଲା ଟାଙ୍ଗୀରେ ପ୍ରାଣନାଥ ପଟ୍ଟନାୟକ, ଗୋକୁଳ ମୋହନ ରାୟ ଚୂଡ଼ାମଣି ଏବଂ ସେପଟେ ଗଙ୍ଗାଧର ମିଶ୍ର, ଗଙ୍ଗାଧର ପାଇକରାୟ, ପରଶୁରାମ ପଦାତିକରାୟ ପ୍ରମୁଖ ଆଜିର କମ୍ୟୁନିଷ୍ଟମାନଙ୍କ ଉପରେ ଅବା ସେକାଳର କଂଗ୍ରେସ ସୋସଲିଷ୍ଟଙ୍କ ଉପରେ । ରଣପୁରରେ ବ୍ରିଟିଶ ପୁଲିସ ଅତ୍ୟାଚାରର ସୀମା ରହିଲା ନାହିଁ ।

କଂଗ୍ରେସ ନେତୃତ୍ୱ କିପରି ଏହି ସଂଗ୍ରାମକୁ ଦେଖିଲେ ତାହା ଉଲ୍ଲେଖନୀୟ ।

ବେଜେଲଗେଟ ଯେ ପ୍ରଥମେ ହତ୍ୟା କଲେ ତା'ର ନିନ୍ଦାବାଦ ନ କରି ଲୋକେ ହିଂସା ଆଚରଣ କଲେ, ସେଥିରୁ କ୍ଷାନ୍ତ ହେବା ଉଚିତ ବୋଲି କଂଗ୍ରେସ କାର୍ଯ୍ୟକାରୀ କମିଟି ପ୍ରସ୍ତାବ କଲେ । କେବଳ ରାଜ୍ୟମାନଙ୍କରେ ପ୍ରଜା ଜାଗରଣକୁ ସ୍ୱାଗତ କରାଗଲା । କଂଗ୍ରେସ ସଭାପତି ସୁବାଷ ବୋଷ, ଗାନ୍ଧିଜୀ ଏମିତିକି ନେହେରୁ ଓ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ବେଜେଲଗେଟ ହତ୍ୟାକାଣ୍ଡକୁ ନିନ୍ଦା କଲେ ।

ତେଣୁ ବେଜେଲଗେଟ ହତ୍ୟାରେ ଜଡ଼ିତ ନଥିବା ରଘୁ ଦିବାକର ଯେ ଫାସି ପାଇଲେ, କଂଗ୍ରେସର ଓ କଂଗ୍ରେସ ନେତାମାନଙ୍କ ଏପରି ବିବୃତି ସେଥିରେ ସାହାଯ୍ୟ କଲାକି, ଏ ପ୍ରଶ୍ନ ନିଶ୍ଚିତ ଉଠିବା ପ୍ରାସଙ୍ଗିକ । ଅବଶ୍ୟ ୧୯୩୯ ଫେବୃଆରୀ ୧୫-୧୬ରେ ଲୁଧିଆନାଠାରେ ଅନୁଷ୍ଠିତ ଭାରତୀୟ ଦେଶୀୟ ରାଜ୍ୟ ସମ୍ମିଳନୀରେ ସଭାପତି ଅଭିଭାଷଣରେ ପଣ୍ଡିତ ନେହେରୁ ରଣପୁରରେ ଚାଲିଥିବା ଦମନର ତୀବ୍ର ନିନ୍ଦା କରିଥିଲେ ।

ତେଣୁ ବେଜେଲଗେଟ ହତ୍ୟାରେ ଜଡ଼ିତ ନଥିବା ରଘୁ ଦିବାକର ଯେ ଫାସି ପାଇଲେ, କଂଗ୍ରେସର ଓ କଂଗ୍ରେସ ନେତାମାନଙ୍କ ଏପରି ବିବୃତି ସେଥିରେ ସାହାଯ୍ୟ କଲାକି, ଏ ପ୍ରଶ୍ନ ନିଶ୍ଚିତ ଉଠିବା ପ୍ରାସଙ୍ଗିକ । ଅବଶ୍ୟ ୧୯୩୯ ଫେବୃଆରୀ ୧୫-୧୬ରେ ଲୁଧିଆନାଠାରେ ଅନୁଷ୍ଠିତ ଭାରତୀୟ ଦେଶୀୟ ରାଜ୍ୟ ସମ୍ମିଳନୀରେ ସଭାପତି ଅଭିଭାଷଣରେ ପଣ୍ଡିତ ନେହେରୁ ରଣପୁରରେ ଚାଲିଥିବା ଦମନର ତୀବ୍ର ନିନ୍ଦା କରିଥିଲେ ।

ବେଜେଲଗେଟ ହତ୍ୟାକାଣ୍ଡରେ ଗିରଫ ରଘୁ ଦିବାକର ଓ ରଣପୁରର ଅନ୍ୟମାନଙ୍କ ସାଙ୍ଗକୁ ଶ୍ରୀ ମହତାବଙ୍କୁ ଜଡ଼ିତ କରିବା ଲାଗି ଓଡ଼ିଶା ପୁଲିସ ଅଫିସର ଶ୍ରୀ ମନବୋଧ ପଣ୍ଡା, ଉଦ୍ୟମ କରିଥିଲେ । ଇଂଲଣ୍ଡ ରିକନସିଲିଏସନ୍ ଗ୍ରୁପ୍‌ର କୁମାରୀ ଆଗାଥା ହାରିସନ, ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳ, ଗାନ୍ଧିଜୀ, ନେହେରୁଙ୍କ ପ୍ରତିବାଦ ହେତୁ ମହତାବଙ୍କୁ ଜଡ଼ିତ କରାଗଲା ନାହିଁ । ମନବୋଧ ପଣ୍ଡା ଯେ ଜଣେ ଦକ୍ଷ ଅଫିସର, ସେ ଯାହାର ଖାଇବେ, ତାହାର ଗାଇବେ ଏହି ବିଚାରରେ ଶ୍ରୀ ମହତାବ ଯେତେବେଳେ ୧୯୪୬ରେ ପ୍ରଧାନମନ୍ତ୍ରୀ ହେଲେ ସେତେବେଳେ ପଣ୍ଡାଙ୍କୁ ପ୍ରମୋଶନ ଦେଲେ ବୋଲି ଯୁକ୍ତି ବାଢ଼ିବା ଭାରତର ନୂତନ ଶାସକ ଗୋଷ୍ଠୀଙ୍କ ଶାସନର ତାତ୍ପର୍ଯ୍ୟ ସୂଚିତ କରେ । କଂଗ୍ରେସର ଏହି ନେତୃତ୍ୱ ଯେ ଭବିଷ୍ୟତରେ କିପରି ଶାସନ କରିବ ଓ ଯେଉଁମାନେ ସ୍ୱାଧୀନତା ଆନ୍ଦୋଳନ, ପ୍ରଜା ଆନ୍ଦୋଳନକୁ ନିର୍ମମ ଦମନ କରିଛନ୍ତି ସେମାନଙ୍କୁ ପୁରସ୍କାର ଦେବ ଏହା ତାହାର ଏକ ଆଭାସ ।

ଏହା ପରେ ପରେ ଗାଙ୍ଗପୁରରେ ବ୍ରିଟିଶ ଆସିଷ୍ଟାଣ୍ଟ ପଲିଟିକାଲ ଏଜେଣ୍ଟଙ୍କ ନିର୍ଦ୍ଦେଶରେ ଗୁଳି କରି ୩୦ ଜଣ ପ୍ରଜାଙ୍କୁ ହତ୍ୟା କରାଗଲା ।

୧୯୩୯ ସେପ୍ଟେମ୍ବର ୩୦ରେ ଦ୍ୱିତୀୟ ମହାସମର ଆରମ୍ଭ ହୋଇଗଲା । ୧୯୪୦ରେ କଂଗ୍ରେସ ମନ୍ତ୍ରୀମଣ୍ଡଳଗୁଡ଼ିକ ଇସ୍ତଫା ଦେଲେ । ୧୯୪୨ ଯାଏ ଓଡ଼ିଶା ଗଡ଼ଜାତ

ପ୍ରଜା ଆନ୍ଦୋଳନର ଏକ ପ୍ରକାର ଭଙ୍ଗା ପଡ଼ିଗଲା ସତ ମାତ୍ର ଅବସ୍ଥା କୁହୁଳି କୁହୁଳି ରହିଥିଲା ।

ରଜାର ଆକ୍ରମଣକାରୀ ଆସିଲେ ଗୋଟିଏ ଗାଁ'ରୁ ସିଙ୍ଗା ବାଜି ଅନ୍ୟ ଗାଁ'କୁ ଜଣେଇ ଦିଆଯାଉଥିଲା ଓ ସାରା ରାଜ୍ୟରେ ବାର୍ତ୍ତା ଏହିପରି ପହଞ୍ଚି ଯାଉଥିଲା । ଅତ୍ୟାଚାରକୁ ବେଖାତିର କରି ଆଦିବାସୀ ଅଣ ଆଦିବାସୀ ଗରିବ ପ୍ରଜା ଗୋପନରେ ରହୁଥିବା ନେତା ଓ ମୋଗଲବନ୍ଦୀରୁ ଯାଉଥିବା ନେତା ଓ କର୍ମୀଙ୍କୁ ଲୁଚାଇ ଲୁଚାଇ ଯେଉଁଠି ଦରକାର ସେଠାରେ ପହଞ୍ଚାଇ ଦେଉଥିବାର ପ୍ରତ୍ୟକ୍ଷ ଅଭିଜ୍ଞତା ରହିଛି ।

୧୯୪୨ ଭାରତ ଛାଡ଼ ଆନ୍ଦୋଳନବେଳେ ଢେଙ୍କାନାଳ ଓ ତାଳଚେରରେ ପୁଣି ପ୍ରଜା ଆନ୍ଦୋଳନ । ବୈଷ୍ଣବ ପଟ୍ଟନାୟକଙ୍କ ନେତୃତ୍ୱରେ ମଢ଼ି (ବର୍ତ୍ତମାନ କାମାକ୍ଷାନଗର) ଉପରେ ଆକ୍ରମଣ । ଗୁଳି ବିନିମୟରେ ବୈଷ୍ଣବ ପଟ୍ଟନାୟକ ହାତରେ ଆଘାତ । ଦୁଇ ସପ୍ତାହ କାଳ ମଢ଼ି ଅଞ୍ଚଳରେ ରାଜଶାସନ ଲୋପ ପାଇଲା । ପରେ ଅମାନୁଷିକ ଅତ୍ୟାଚାର କରି ମଢ଼ି ଅଞ୍ଚଳକୁ ରାଜଶାସନାଧୀନ କରାଗଲା । ବୈଷ୍ଣବ ପଟ୍ଟନାୟକଙ୍କୁ ୧୯୪୨ରୁ ୧୯୪୬ ମଧ୍ୟଭାଗ ଯାଏ କଲିକତାରେ କମ୍ୟୁନିଷ୍ଟ ପାର୍ଟି ଗୋପନରେ ରଖି ବଞ୍ଚାଇଥିଲା । କାରଣ ରାଜଶାସନ ତାଙ୍କୁ ଓ ମୂଷା ମଲିକଙ୍କୁ ଫାସିଦଣ୍ଡ ଦେଇଥିଲା । ପରିବର୍ତ୍ତିତ ରାଜନୈତିକ ଅବସ୍ଥାରେ ପରେ ମୂଷା ମଲିକ ଓ ବୈଷ୍ଣବଙ୍କ ପ୍ରାଣରକ୍ଷା ହେଲା ।

ତାଳଚେରରେ ମଧ୍ୟ ୧୯୪୨ ସେପ୍ଟେମ୍ବର ୭ରେ ପ୍ରଜାମାନେ ଧନୁ ତୀର ଧରି ରାଜପ୍ରାସାଦ ଦଖଲ କରିବାକୁ ଉଦ୍ୟମ କରିଥିଲେ ଏବଂ ବ୍ରିଟିଶ ସରକାର ଆକାଶ ମାର୍ଗରୁ ବୋମା ଓ ମେସିନଗନ ଯୋଗେ ଉକ୍ତ ଆକ୍ରମଣକୁ ପ୍ରତିହତ କରିଥିଲା ଓ ଶ୍ରୀ ପବିତ୍ର ମୋହନ ପ୍ରଧାନଙ୍କୁ କଲିକତାରେ ଆତ୍ମଗୋପନ କରି ଟିଉସନ କରି ରହିବାକୁ ପଡ଼ିଥିଲା ।

ରାଜନ୍ୟବର୍ଗ ସୁରକ୍ଷା ଆଇନ ବଳରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥିଲେ ବି ମୋଗଲ ବନ୍ଦୀ ଓଡ଼ିଶାରୁ ବ୍ରିଟିଶ କର୍ତ୍ତୃପକ୍ଷ ଗଡ଼ଜାତ ପ୍ରଜା ନେତା କେତେକଙ୍କୁ ବନ୍ଦୀ ରଖାଯାଉଥିଲା । ପଣ୍ଡିତ ନେହେରୁଙ୍କ ନିର୍ଦ୍ଦେଶ ଯୋଗୁଁ ଓଡ଼ିଶା କଂଗ୍ରେସ ମନ୍ତ୍ରୀମଣ୍ଡଳ ସେମାନଙ୍କୁ ଖଲାସ କରିଦେଇଥିଲା । ଏମିତିକି କେଉଁଝର ପ୍ରଜାମାନଙ୍କ ଆନ୍ଦୋଳନକୁ ସମର୍ଥନ କରି କୋରେଇରେ ସଭା କରାଇବାକୁ ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳ ଡକ୍ଟର ଫନୀପାଲଙ୍କ ଉପରେ ୧୪୪ ଜାରି କରି ଗିରଫ କରିଥିଲେ । ତାହା ଫଳରେ କଂଗ୍ରେସ ଓ କଂଗ୍ରେସ ସୋସାଲିଷ୍ଟ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ କଂଗ୍ରେସ ଭିତରେ ତୁମୂଳ ସଂଘର୍ଷ ହୋଇଥିଲା ।

ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନକୁ ସଙ୍ଗଠିତ ଭାବରେ ବିରୋଧ କରିବାକୁ ୧୯୩୮ରେ ରଜାମାନେ ଷଢ଼େଇକଳା ରଜାଙ୍କ ଅଧ୍ୟକ୍ଷତାରେ ଏକ ସଂଘ ଗଠନ କରିଥିଲେ । ଷଢ଼େଇକଳା ରାଜପରିବାରରୁ ପୋଷ୍ୟପୁତ୍ର ହୋଇ ଯାଇଥିବା ବଲାଙ୍ଗିର ମହାରାଜା ଓଡ଼ିଶାକୁ ଭାଗ ଭାଗ କରିବା ଓ ପଶ୍ଚିମ ଓଡ଼ିଶା ପୂର୍ବ ଓଡ଼ିଶାର ଭାବ ଉଦ୍ରେକ କରାଇ ଓଡ଼ିଶା ଗଡ଼ଜାତ

ଏବଂ ସମ୍ବଲପୁରକୁ ଘେନି ମହାକୌଶଳର ବିଚ୍ଛିନ୍ନତାବାଦୀ ଆନ୍ଦୋଳନ ସୃଷ୍ଟି କରିଥିଲେ ଏବଂ ତାହା ହିଁ ଶେଷରେ ଗଣତନ୍ତ୍ର ଏବଂ ତା'ପରେ ସ୍ୱତନ୍ତ୍ର ପାର୍ଟିର ରୂପ ନେଲା ଓ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଥିବା ଦକ୍ଷିଣପନ୍ଥୀମାନେ ଓ କେତେକ କଂଗ୍ରେସ ଲୋକ ମଧ୍ୟ ଏପରି ଏକ ପ୍ରତିକ୍ରିୟାଶୀଳ ଦଳରେ ଯୋଗଦେଲେ ଏବଂ ସେହି ସିଂହଦେଓ ପୁଣି କଂଗ୍ରେସ ସହିତ ମିଳିତ ମନ୍ତ୍ରୀମଣ୍ଡଳ ଗଠନ କଲେ ଏବଂ ପରବର୍ତ୍ତୀକାଳରେ କଂଗ୍ରେସ ବିରୋଧୀ ମିଳିତ ମନ୍ତ୍ରୀମଣ୍ଡଳରେ ମୁଖ୍ୟମନ୍ତ୍ରୀ ହୋଇ ସମଗ୍ର ଓଡ଼ିଶାକୁ ଶାସନ କଲେ ।

**ଯୁଦ୍ଧୋତ୍ତରକାଳ ଏବଂ ନୀଳଗିରି ସଶସ୍ତ୍ର ସଂଘର୍ଷରେ କିଏ କେଉଁଠି ?**

ଦ୍ୱିତୀୟ ମହାସମରରେ ହିଟଲର, ମୁସୋଲିନୀ ଫାସିଷ୍ଟବାଦର ପରାଜୟ, ବ୍ରିଟିଶ ଫରାସୀ ସାମ୍ରାଜ୍ୟବାଦର ଶକ୍ତି ହ୍ରାସ ଏବଂ ସର୍ବୋପରି ସମାଜବାଦୀ ସୋଭିଏତ୍ ୟୁନିଅର ବିଜୟ ସାରା ଦୁନିଆରେ ଉପନିବେଶବାଦ କବଳରୁ ଶତାଧିକ ଏସିଆ, ଆଫ୍ରିକା, ଦକ୍ଷିଣଆମେରିକା ପରାଧୀନ ଉପନିବେଶର ମୁକ୍ତି ସଂଗ୍ରାମକୁ ଅମିତ ନୈତିକ ବଳ ଯୋଗାଇଦେଲା ।

ଭାରତବର୍ଷରେ ୧୯୪୫ ଶେଷ ବେଳକୁ ଜାତୀୟ ମୁକ୍ତି ସଂଗ୍ରାମ ଏକ ନୂତନ ପର୍ଯ୍ୟାୟରେ ଉପନୀତ ହେଲା । ଜାତୀୟ ସେନାବାହିନୀର ନେତାମାନଙ୍କ ମୁକ୍ତି ଲାଗି ସାରା ଦେଶରେ ମହା ଉଦ୍‌ବେଳନ । ପୁଣି ୧୯୪୬ ଫେବୃଆରୀ ୧୯ରେ ବମ୍ବେରେ ନୌସେନାର ବିଦ୍ରୋହ ।

ଏହି ପ୍ରେକ୍ଷାପଟରେ ପୁନର୍ବାର ସାରା ଭାରତରେ ଏବଂ ଓଡ଼ିଶାରେ ଗଡ଼ଜାତ ପ୍ରଜାମାନଙ୍କ ସଂଗ୍ରାମ ଦ୍ୱିତୀୟ ଓ ଚୂଡ଼ାନ୍ତ ପର୍ଯ୍ୟାୟରେ ପହଞ୍ଚିଲା । ଜାମ୍ମୁ ଓ କାଶ୍ମୀରରେ ଶେଖ ଅବଦୁଲାଙ୍କ ନେତୃତ୍ୱରେ କାଶ୍ମୀର ମହାରାଜା (ଯେଉଁ ମହାରାଜା ପୁଣି କଂଗ୍ରେସକୁ ନିଆଯାଇ କେନ୍ଦ୍ରରେ ମନ୍ତ୍ରୀ ହେଲେ)ଙ୍କ ବିରୁଦ୍ଧରେ ମୁକ୍ତି ସଂଗ୍ରାମର ବହ୍ନି ଜଳିଉଠିଲା । ତ୍ରିବାଙ୍କୁଡ଼, କୋଚିନରେ ମୁଖ୍ୟତଃ କମ୍ୟୁନିଷ୍ଟ ଓ ଅନ୍ୟମାନଙ୍କ ନେତୃତ୍ୱରେ ଦୁର୍ବାର ସଂଗ୍ରାମରେ ଭୟାଲାର, ପୁନ୍ନାପ୍ରାରେ ବହୁ କମ୍ୟୁନିଷ୍ଟ ପ୍ରାଣ ଦେଲେ ।

ହାଇଦ୍ରାବାଦର ନିଜାମ, ସେତେବେଳେ ଯିଏ ଆମେରିକାର ଶ୍ରେଷ୍ଠ ଅର୍ବୁଦପତି ରକଫେଲରଙ୍କ ପରେ ପୃଥିବୀରେ ଦ୍ୱିତୀୟ ଧନାଢ଼୍ୟ ବ୍ୟକ୍ତିରୂପେ ପରିଗଣିତ ଓ ବ୍ରିଟିଶ ସାମ୍ରାଜ୍ୟବାଦର ଦକ୍ଷିଣ ଭାରତରେ ପ୍ରଧାନ ଖୁଣ୍ଟ, ତାଙ୍କର ରାଜକରବାହିନୀ ବିରୁଦ୍ଧରେ ଐତିହାସିକ ତେଲେଙ୍ଗାନା ବିଦ୍ରୋହ । ଏକପଟେ ନିଜାମଙ୍କ ଦୁର୍ଦ୍ଧର୍ଷ ରାଜକର ବାହିନୀ । ଅନ୍ୟପଟେ ମୁକ୍ତି ମଶାଲଧାରୀ କମ୍ୟୁନିଷ୍ଟଙ୍କ ନେତୃତ୍ୱରେ ଲାଲସେନା । ୪ ହଜାର କମ୍ୟୁନିଷ୍ଟ ଏହି ସଂଗ୍ରାମରେ ପ୍ରାଣଦେଲେ ସତ ମାତ୍ର ୨ ହଜାର ଗାଁ'କୁ ମୁକ୍ତ କରି ନିଜାମ ଓ ଦେଶମୁଖମାନଙ୍କ ଲକ୍ଷ ଲକ୍ଷ ଏକର ଜମି ଚାଷୀଙ୍କୁ ବାଣ୍ଟିଦେଲେ । ଏକ ସମାନ୍ତରାଳ ଶାସନ । ଭାରତ ସରକାରଙ୍କ ଅଭିଯାନ ଓ ତେଲେଙ୍ଗାନାର ଭାରତ ସହିତ ମିଶ୍ରଣର ପଥ ପରିଷ୍କାର କରିଦେଲେ ରକ୍ତ ଦେଇ କମ୍ୟୁନିଷ୍ଟମାନେ ।

ମୋଗଲବନ୍ଦୀ ଓଡ଼ିଶାରେ ସେତେବେଳେ ସୀମିତ ଭୋଟ ଦାନ ପ୍ରଥା ଅନୁସାରେ ଶ୍ରୀ ମହତାବଙ୍କ ମନ୍ତ୍ରୀମଣ୍ଡଳ । ଶ୍ରୀ ନବକୃଷ୍ଣ ଚୌଧୁରୀ ରାଜସ୍ୱମନ୍ତ୍ରୀ । ଦୁହେଁ ଦୁଇ ଭିନ୍ନ ଭିନ୍ନ ଦୃଷ୍ଟିକୋଣ ନେଉଥିଲେ ସୁଦ୍ଧା ୧୯୩୮-୩୯ରୁ ଗଡ଼ଜାତ ପ୍ରଜା ଆନ୍ଦୋଳନ ସହିତ ଦୁହେଁ ଓତଃପୋତ ଭାବରେ ସଂପୃକ୍ତ ।

ପୁନର୍ବାର ଓଡ଼ିଶାର ୨୬ଟି ଗଡ଼ଜାତ ଜାଗ୍ରତ ହୋଇଉଠିଲା । ମୟୁରଭଞ୍ଜଠାରୁ କେଉଁଝର, ବଲାଙ୍ଗିର, କଳାହାଣ୍ଡି ସୋନପୁର ପ୍ରଭୃତି ସେପଟ ଏବଂ ଏପଟ ନୀଳଗିରିଠାରୁ ଆଠଗଡ଼, ନୟାଗଡ଼, ରଣପୁର, ଦଶପଲ୍ଲା ସର୍ବତ୍ର ।

ଏଥର ପ୍ରଜା ଆନ୍ଦୋଳନ ଆଉ ବେଠି ବେଗାରି ନିଶ ଉପୁଡ଼ା, ଘୋଡ଼ା ଚାବୁକମରା ବନ୍ଦକର ଦାବୀରେ ସୀମିତ ରହିଲା ନାହିଁ । ଦାୟିତ୍ୱମୂଳକ ସରକାରର ଧ୍ୱନି ପ୍ରବଳ ହୋଇଉଠିଲା । ଅର୍ଥାତ ରାଜତନ୍ତ୍ର ରହିବ । ତା' ଅଧୀନରେ ପ୍ରଜା ଆନ୍ଦୋଳନର ପ୍ରତିନିଧିମାନଙ୍କୁ ଘେନି ଦାୟିତ୍ୱମୂଳକ ସରକାର ମାନ ଗଢ଼ା ହେବ । ଏଇଠି କହି ରଖିବା ପ୍ରାସଙ୍ଗିକ ଯେ ଏହି ଦାବୀ ସହିତ ପ୍ରଜାମଣ୍ଡଳଗୁଡ଼ିକର ଦକ୍ଷିଣପନ୍ଥୀ ନେତାଙ୍କର ଏକ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ରହିଥିଲା । ତାହାର ମୁଖପାତ୍ରଥିଲା ୧୯୩୮-୩୯ରେ କଟକରୁ ଶ୍ରୀ ବାସୁଦେବ ମହାପାତ୍ରଙ୍କ ସମ୍ପାଦନାରେ ପ୍ରକାଶିତ ଗଡ଼ଜାତ ବାର୍ତ୍ତା । ଆଠଗଡ଼ ପ୍ରଜାମଣ୍ଡଳର ସଭାପତି ଥିଲେ ସମାଜ ସମ୍ପାଦକ ଶ୍ରୀ ରାଧାନାଥ ରଥ । ଗଡ଼ଜାତ ଆନ୍ଦୋଳନର ସମ୍ବାଦଗୁଡ଼ିକ ସମାଜରେ ଯଥାଯଥ ପ୍ରକାଶ ପାଉଥିଲେ ହେଁ ମହତାବଙ୍କ ଦୃଷ୍ଟିଭଙ୍ଗୀ ଓ ତାଙ୍କ ଦୃଷ୍ଟିଭଙ୍ଗୀରେ ପାର୍ଥକ୍ୟ ରହିଥିଲା । ବାମପନ୍ଥୀ ଅର୍ଥାତ୍ କଂଗ୍ରେସ ସୋସଲିଷ୍ଟ ପାର୍ଟିର ସୋସାଲିଷ୍ଟ ଅଂଶ ଓ କମ୍ୟୁନିଷ୍ଟ ଅଂଶ ସହିତ ତାଙ୍କର ମତଭେଦ ଆଦର୍ଶଗତ କାରଣରୁ ଠିକ୍ ମହତାବଙ୍କ ଦୃଷ୍ଟିକୋଣ ସହିତ ସମାନ । ଓଡ଼ିଶା ସହିତ ଗଡ଼ଜାତଗୁଡ଼ିକର ମିଶ୍ରଣ ସଂକ୍ରାନ୍ତରେ ମହାତାବଙ୍କ ଆସ୍ଥାନ ଦୃଢ଼ଥିଲେ ହେଁ ଶ୍ରୀ ରାଧାନାଥ ରଥଙ୍କ ଆସ୍ଥାନ ଅସ୍ପଷ୍ଟ ଥିଲା । ବରଂ ଗଡ଼ଜାତ ଆନ୍ଦୋଳନରେ ତୃତୀୟ ଆଭିମୁଖ୍ୟ ଅର୍ଥାତ ଗଡ଼ଜାତଗୁଡ଼ିକର ସ୍ୱତନ୍ତତା ରହିଛି; ସେ ଦୃଷ୍ଟିରୁ ମୋଗଲବନ୍ଦୀ ଓଡ଼ିଶା ସହିତ ମିଶ୍ରଣ ବାଞ୍ଛନୀୟ ନୁହେଁ, ତଳେ ତଳେ ଚାଲିଥିବା ଏ ପ୍ରକାର ଅଭିଯାନ ସହିତ ତାଙ୍କ ଆସ୍ଥାନର ମେଳ ଖାଇଯାଉଥିଲା । ସେତେବେଳକୁ କ୍ରିପ୍ସ ମିଶନପରେ ବ୍ରିଟିଶ କାବିନେଟ ମିଶନ ଆସିସାରିଥାଏ । ଗଡ଼ଜାତଗୁଡ଼ିକର ମିଶ୍ରଣ ପାଇଁ ଗଡ଼ଜାତ ତଦନ୍ତ କମିଟି ପକ୍ଷରୁ ସ୍ମାରକଲିପି ଦିଆଯାଇ ସାରିଥାଏ । ଭାରତରେ କ୍ଷମତାର ପ୍ରଶ୍ନ ପ୍ରମୁଖ ହୋଇ ଉଠିଥାଏ । ତାହାର ପ୍ରତିଫଳନ ମଧ୍ୟ ଗଡ଼ଜାତ ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟ ଅର୍ଥାତ୍ ୧୯୪୬-୪୭ରେ ଘଟିଲା । ସଂପୂର୍ଣ୍ଣ ମିଶ୍ରଣ ନା ମୋଗଲବନ୍ଦୀ ଓଡ଼ିଶା ସହିତ ଏକପ୍ରକାର ପ୍ରଶାସନକ ଯୋଗସୂତ୍ର ଥାଇ ଗଡ଼ଜାତଗୁଡ଼ିକର ସ୍ଥିତି ? ରାଜନୈତିକ ଦୃଷ୍ଟିରୁ ବିଚାରକଲେ ଏହି ପ୍ରକାର ପ୍ରଶ୍ନ କମ୍ୟୁନିଷ୍ଟ ଓ କଂଗ୍ରେସ ସୋସଲିଷ୍ଟ ମନୋଭାବାପନ୍ନ ନେତାମାନଙ୍କୁ ଛାଡ଼ି ଗଡ଼ଜାତ ଆନ୍ଦୋଳନର ବିଚାରରିତେ

ନେତାଙ୍କ ମନରେ ମୁଖ୍ୟସ୍ଥାନ ଅଧିକାର କରିଥିଲା । ଏ ସଂପର୍କରେ ତଥ୍ୟ ଦେଇ ପ୍ରତ୍ୟେକ ଗଡ଼ଜାତର ନେତାମାନଙ୍କ ନାମ ଦିଆଯାଇପାରେ । ମାତ୍ର ତାହା ଅପ୍ରାସଙ୍ଗିକ ନହେଲେ ହେଁ ଅଯଥା ଲେଖାଟିର କଳେବର ବୃଦ୍ଧିକରିବ । କେତୋଟି ରାଜନୈତିକ ପ୍ରବୃତ୍ତି ଏହି ଆନ୍ଦୋଳନରେ ପରିସ୍ଫୁଟ ହୋଇଥିଲା । ତାହା ହିଁ ଅତୀତର ଏହି ମହାଉଦ୍‌ବେଳନକୁ ଇତିହାସ ଦୃଷ୍ଟିରୁ ଏବେ ବିଚାର କଲାବେଳେ ଅଧିକ ପ୍ରୟୋଜନ ।

୧୯୪୭ ଅଗଷ୍ଟ ୧୫ରେ କ୍ଷମତା ହସ୍ତାନ୍ତର ଓ ଦେଶୀୟ ଗଡ଼ଜାନ ରାଜାମାନଙ୍କ ସ୍ୱତନ୍ତ୍ର ସ୍ଥିତିକୁ ଆଲୋଚନା ବେଳେ କଂଗ୍ରେସ ନେତୃତ୍ୱ ମାନି ନେଇଥିଲେ ହେଁ, ଭାରତର ଗଡ଼ଜାତଗୁଡ଼ିକର ପ୍ରଜାମାନେ ମାନିବାକୁ ପ୍ରସ୍ତୁତ ନଥିଲେ । ତେଣୁ ସାରା ଭାରତ ପରି ଓଡ଼ିଶା ଗଡ଼ଜାତ ମୁଲକରେ ପୁଣି ଦାବାଗ୍ନି ଜଳିଉଠିଲା । ୧୯୩୮ରେ ଯେଉଁ ନୀଳଗିରିରେ ବିଦ୍ରୋହର ଅଗ୍ନି ସ୍ଫୁଲିଙ୍ଗ ଦେଖା ଦେଇଥିଲା ଏଥର ମଧ୍ୟ ସେଇ ନୀଳଗିରିରୁ ଆରମ୍ଭ ।

ନୀଳଗିରି, ଢେଙ୍କାନାଳ, ରଣପୁର, ଆଠଗଡ଼, ବଲାଙ୍ଗୀର ପ୍ରଭୃତି ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଏଥର କମ୍ୟୁନିଷ୍ଟମାନଙ୍କ ଭୂମିକା ସ୍ପଷ୍ଟ ହୋଇଗଲା । ଦେଶର ରାଜନୈତିକ ସ୍ଥିତିରେ ପରିବର୍ତ୍ତନ, କଂଗ୍ରେସ ସୋସଲିଷ୍ଟ ପାର୍ଟିର ବିଲୟ, କଂଗ୍ରେସରୁ କମ୍ୟୁନିଷ୍ଟମାନଙ୍କୁ ବିତାଡ଼ନ ପ୍ରକ୍ରିୟା ପରେ ଦେଶସାରା କାଶ୍ମୀରଠାରୁ ତେଲେଙ୍ଗାନା ତ୍ରିବାଙ୍କୁଡ଼ କୋଚିତ ଏମିତିକି ପ୍ରତ୍ୟେକଟି ଦେଶୀୟ ରାଜ୍ୟ ପ୍ରଜା ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କୁ ଅନ୍ୟ ନେତାଏ ସୁଖ ପାଉ ନଥିଲେ ହେଁ ବିଚ୍ଛିନ୍ନ କରିବାର ତାକତ୍ ସେମାନଙ୍କର ନଥିଲା । ହାଇଦ୍ରାବାଦ ନିଜାମ ବିରୁଦ୍ଧରେ, କୋଚିନ ଓ ତ୍ରିବାଙ୍କୁଡ଼ ମହାରଜାମାନଙ୍କ ଶାସନ ବିରୁଦ୍ଧରେ, ଅତ୍ୟୁକ୍ତି ହେବ ନାହିଁ ଯେ, ଏକାକୀ କମ୍ୟୁନିଷ୍ଟମାନେ ହିଁ ପ୍ରାଣପାତ ସଂଗ୍ରାମ କରି ବ୍ରିଟିଶ ସାମ୍ରାଜ୍ୟବାଦର ଷଡ଼ଯନ୍ତ୍ରକୁ ପଣ୍ଡ କରୁଥିଲେ ।

ନୀଳଗିରିରେ ଅନୁରୂପ ପରିସ୍ଥିତି । ୧୯୪୭ ସେପ୍ଟେମ୍ବର-ଅକ୍ଟୋବର ମାସ ବେଳକୁ ବସ୍ତୁତଃ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱାଧୀନ ପ୍ରଜାମଣ୍ଡଳ ନୀଳଗିରିରେ ସମାନ୍ତରାଳ ସରକାର ଗଢ଼ିବାର ଉଦାତ୍ତ ଡାକରା ଦେଲା । ସେ ଏକ ରୋମାଞ୍ଚକର କାହାଣୀ । ରଜା ଏହାର ପ୍ରତ୍ୟୁତ୍ତରରେ ଏକ ଆତଙ୍କ ସୃଷ୍ଟି କଲା ।

ଭଡ଼ାଟିଆ ଗୁଣ୍ଡା ଓ ସାନ୍ଦିଆ ସିଂହ ନାମକ ଏକ ଦୁର୍ଦ୍ଧର୍ଷ ଆଦିବାସୀ ସର୍ଦ୍ଦାର ଓ ତା'ର ଦନ୍ତାବାହିନୀକୁ ଧରି ସାରା ରାଜ୍ୟରେ ରାଜା ଲୁଟପାଟ ଘରପୋଡ଼ି, ହଣାକଟା ଚଳେଇଲେ । ଭଡ଼ାଟିଆମାନେ ହାତହତିଆରରେ ସଜ୍ଜିତ । ନିଜର ଏହି ଗୁଣ୍ଡାବାହିନୀର ନାମ ଦିଆଗଲା 'କଳାପିଠିଆ' । ଏମାନେ ଗାଁ'କୁ ଗାଁ' ପଶି କଳାପତାକା ପୋଡ଼ିଦେଇ ଏ ଗାଁ'ର ଜମିବାଡ଼ି, ଘରଦ୍ୱାର ସବୁ ରଜାଙ୍କର-ଯା ବିରୁଦ୍ଧରେ ଯିବ ଯିବ ତା'ର ସର୍ବନାଶ କରାଯିବ ବୋଲି ଘୋଷଣା କରିବା ସଙ୍ଗେ ସଙ୍ଗେ ଅତ୍ୟାଚାରର ସୁଅ ଛୁଟାଇଲେ ।

ପ୍ରଜାମଣ୍ଡଳ ସମୀପରେ ପନ୍ଥା କ'ଣ ? ମୋଗଲବନ୍ଦୀର କଂଗ୍ରେସ ସରକାର ମାଉଣ୍ଟବାଟେନ ଆଉଆର୍ଡ଼୍‌କୁ ମାନି ରାଜ୍ୟରେ ଏଡ଼େବଡ଼ ଆଇନ ଶୃଙ୍ଖଳା ଭଙ୍ଗ ପରିସ୍ଥିତିରେ ଉଦ୍‌ବେଗ ପ୍ରକାଶ କରୁଥିଲେ ହେଁ ହସ୍ତକ୍ଷେପ କରୁ ନଥାନ୍ତି । କମ୍ୟୁନିଷ୍ଟ ପାର୍ଟି ଏହାର ମୁକାବିଲା କରିବ ବୋଲି ସ୍ଥିର କଲା । ନୀଳଗିରି ପ୍ରଜା ମଣ୍ଡଳର କମ୍ୟୁନିଷ୍ଟ କର୍ମୀ ଓ ରାଜ୍ୟର ବିଭିନ୍ନ ଅଞ୍ଚଳର ବଛା ବଛା ଟାଗଡ଼ା, ସାହସୀ ସାଥୀଙ୍କୁ ଚନ୍ଦକାର ମେଣ୍ଢାଶାଳଠାରେ କିଛିଦିନ ସାମରିକ ତାଲିମ ଦିଆଗଲା । କଃ ବିପୁଳ ଚୌଧୁରୀ କଲିକତାରୁ ଆସି ୨୬ ଜଣ ସାଥୀଙ୍କୁ ତାଲିମ ଦେଉଥିଲେ । ଏହି ଶିବିରକୁ କଂଗ୍ରେସ ମନୋଭାବାପନ୍ନ ମାତ୍ର କମ୍ୟୁନିଷ୍ଟ ବିରୋଧୀ ନୁହନ୍ତି, ଏମିତି ନୀଳଗିରି ପ୍ରଜାମଣ୍ଡଳ ଶ୍ରୀ କୈଳାସଚନ୍ଦ୍ର ମହାନ୍ତିଙ୍କୁ ଧରି ସାଥୀ ବନମାଳୀ ଦାସ ରାଜ୍ୟ ପାର୍ଟିର ନେତୃବୃନ୍ଦ ଶରତ ପଟ୍ଟନାୟକ ପ୍ରମୁଖଙ୍କ ସହିତ ଲାଲସେନା ଶିବିର ପରିଦର୍ଶନ କରି ନୀଳଗିରିରେ ପ୍ରତି ଆକ୍ରମଣରେ ନିଷ୍ପତ୍ତି ନେଲେ ।

ଠିକ୍ ଏହି ସମୟ କାଳ ଭିତରେ ନୀଳଗିରିରେ କମ୍ୟୁନିଷ୍ଟମାନେ ରଜାର ସଶସ୍ତ୍ର ବାହିନୀର ସଶସ୍ତ୍ର ମୁକାବିଲା କରୁଥିବା ଜାଣି ରାଜସ୍ୱ ମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ଚାନ୍ଦନିଚୌକ ପାର୍ଟି ଅଫିସ୍‌କୁ ଆସି ପ୍ରତିଶ୍ରୁତି ଦେଲେ ଯେ, ଯେହେତୁ ଓଡ଼ିଶା ସରକାର ନୀଳଗିରିରେ ପ୍ରବେଶ କରି ପାରୁନାହାନ୍ତି, ତେଣୁ ନୀଳଗିରି ପ୍ରଜାମଣ୍ଡଳକୁ ଗୋପନରେ ସରକାର ଅସ୍ତ୍ରଶସ୍ତ୍ର ଯୋଗାଇ ଦେବାକୁ ପ୍ରସ୍ତୁତ । ଅତି ମନଖୋଲା ପରିବେଶରେ ସରକାର ପକ୍ଷରୁ ନବବାବୁଙ୍କର ସହିତ ପାର୍ଟିର ତୁଙ୍ଗ ନେତା ଶରତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ରାମକୃଷ୍ଣ ପତି ପ୍ରମୁଖଙ୍କର ଏହି ଆଲୋଚନା ହୋଇଥିଲା ।

ନଭେମ୍ବର ୧୨ । ରାଜାଙ୍କ ସଶସ୍ତ୍ରବାହିନୀକୁ ମୁକାବିଲା କରିବା ପାଇଁ କମ୍ୟୁନିଷ୍ଟବାହିନୀ ରାତିରେ ଫର୍ମେସନ କରି ରଜାବାହିନୀର ଘାଟୀ ଉପରେ ଆକ୍ରମଣ କଲେ । ଶତ୍ରୁପକ୍ଷର କିଛି ଲୋକ ନିହତ ହେଲେ । ସେମାନେ ପୃଷ୍ଠଭଙ୍ଗ ଦେଲେ । କମ୍ୟୁନିଷ୍ଟ ସେନା ପ୍ରଜାମାନଙ୍କ ମଧ୍ୟରେ ପ୍ରତ୍ୟୟ ଆଣିଲେ ଓ ପରବର୍ତ୍ତୀ କାଳର ନୀଳଗିରି ଦଖଲର ବାଟ ସଫା କରିଦେଲେ ।

ସେହି ସଶସ୍ତ୍ର ସଂଗ୍ରାମରେ ଭାଗ ନେଇଥିବା ସାଥୀମାନେ ଦୁଇ ଜଣଙ୍କୁ ଛାଡ଼ି ସମସ୍ତେ ଆଜି ବି ଜୀବିତ । କଃ ହରିହର ଦାସ ଆଜି ସତୁରି ଟପିଲେଣି । ତାଙ୍କ ସାଙ୍ଗରେ ଥିଲେ ନନ୍ଦକିଶୋର ପଟ୍ଟନାୟକ, ସୟଦ ଅବଦୁଲ କାଦର, ବୈଷ୍ଣବଚରଣ ପଟ୍ଟନାୟକ, ଗୋପୀନାଥ ବ୍ରହ୍ମଚାରୀ (ମୃତ), ବେନୁଗୋପାଳ ରାଓ (ମୃତ), ଈଶ୍ୱର ଦାସ, ଗୋବିନ୍ଦ ସିଂ ପ୍ରମୁଖ । ଈଶ୍ୱର ଦାସ ଓ ଗୋବିନ୍ଦ ସିଂ ନୀଳଗିରିର । ଅନ୍ୟ ସମସ୍ତେ ବାହାରର । ସେନାପତି ଥିଲେ ବିପୁଳ ଚୌଧୁରୀ ।

ଏହାର ରାଜନୈତିକ ନେତୃତ୍ୱ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ନେଇଥାନ୍ତି ବନମାଳୀ ଦାସଙ୍କ ନେତୃତ୍ୱରେ ଗୋକୁଳି ନାୟକ, ପୂର୍ଣ୍ଣଚନ୍ଦ୍ର ବାଗ ପ୍ରମୁଖ ନୀଳଗିରି ପ୍ରଜା ଆନ୍ଦୋଳନର ପ୍ରଖ୍ୟାତ ନେତୃବୃନ୍ଦ ।

ଓଡ଼ିଶା ରାଜ୍ୟ ସରକାରଙ୍କ ପ୍ରତିଶ୍ରୁତିର ଫଳ ବିପରୀତ ହେଲା । ଏହି ସଶସ୍ତ୍ରବାହିନୀ ଉପରେ ୧୪୪ ଜାରିହେଲା । ଗିରଫ ପରଓ୍ୱାନା ବାହାରିଲା । ଶେଷରେ କେନ୍ଦ୍ରରେ ଦେଶୀୟ ରାଜ୍ୟଗୁଡ଼ିକର ଦାୟିତ୍ୱରେ ଥିବା ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କ ନିର୍ଦ୍ଦେଶରେ ଓଡ଼ିଶା ପୁଲିସ ଯାଇ ନୀଳଗିରି ଦଖଲ କଲେ । କମ୍ୟୁନିଷ୍ଟଙ୍କ ସଶସ୍ତ୍ର ଆକ୍ରମଣର ଦୁଇଦିନ ପରେ ନଭେମ୍ବର ୧୪ରେ । ବାଲେଶ୍ୱରରେ ଥାଇ ରାଜସ୍ୱମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ପୁଲିସ କାର୍ଯ୍ୟାନୁଷ୍ଠାନକୁ ପରିଚାଳନା କରୁଥାନ୍ତି । କମ୍ୟୁନିଷ୍ଟମାନେ ରଜା ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ କରି ସମଗ୍ର ଭାରତବର୍ଷରେ ସର୍ବପ୍ରଥମ ନୀଳଗିରି ଗଡ଼ଜାତ ଦଖଲର ପଥ ସୁଗମ କରିଥିବାରୁ ତା'ର ପୁରସ୍କାର ସ୍ୱରୂପ କଂଗ୍ରେସ ସରକାର ବନମାଳୀ ଦାସ ପ୍ରମୁଖ ନେତାମାନଙ୍କୁ ୩୦୨- ଅର୍ଥାତ ନରହତ୍ୟା ଅଭିଯୋଗରେ ଗିରଫ କରି ଜେଲରେ ଆବଦ୍ଧ କଲେ । ନୀଳଗିରିର ଦାବାନଳ ପୁଣି ଢେଙ୍କାନାଳରେ ଜଳିଉଠିଲା । ପ୍ରଜାମଣ୍ଡଳ ନେତୃତ୍ୱରେ ରାଜପ୍ରାସାଦ ଦଖଲ କରିବାର ପ୍ରସ୍ତୁତି ।

ଆନ୍ଦୋଳନର ପ୍ରଥମ ଧାଡ଼ିରେ ଥିଲେ । ଶ୍ରୀ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଗୌରାଙ୍ଗ ଚରଣ ଦାସ ଓ ରବିଘୋଷ ହିଁ ସୋସଲିଷ୍ଟ ଅଂଶର ନେତାମାନେ ଏହି ଆନ୍ଦୋଳନରେ ପ୍ରମୁଖ ଅଂଶ ନେଇଥିଲେ । ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଗୌରଚନ୍ଦ୍ର ଦାସ, ମନମୋହନ ଚୌଧୁରୀ ପ୍ରମୁଖ କଂଗ୍ରେସ ସୋସଲିଷ୍ଟମାନେ ଏହି ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ନ ଥିଲେ ହେଁ ସେମାନଙ୍କର ଗଡ଼ଜାତ ପ୍ରଜା ଆନ୍ଦୋଳନ ପ୍ରତି ଦୃଢ଼ ସମର୍ଥନ ଥିଲା ।

ବିଗତ ବିଶ୍ୱନାଥ ପଶାଏତଙ୍କ ସମେତ ଏହି ଲେଖାଟିରେ ଆଗରୁ ଯେଉଁମାନଙ୍କ ନାମୋଲ୍ଲେଖ ହୋଇଛି, କଂଗ୍ରେସ ସୋସାଲିଷ୍ଟ ପାର୍ଟି ଅନ୍ତର୍ଭୁକ୍ତ ସବୁ କମ୍ୟୁନିଷ୍ଟ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାଗ ନେଇଛନ୍ତି । କଂଗ୍ରେସ ଆନୁଷ୍ଠାନିକ ଭାବରେ ଏହି ଆନ୍ଦୋଳନରେ ଭାଗ ନେବାକୁ ନିର୍ଦ୍ଦେଶ ନ ଥିଲା, ବରଂ ନିଷେଧ ଥିଲା । ବ୍ୟକ୍ତିଗତ ଭାବରେ କଂଗ୍ରେସ ନେତା ଭାଗ ନେଉଥିଲେ ମାତ୍ର । ତେଣୁ ତତ୍କାଳୀନ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଓଡ଼ିଶା ଗଡ଼ଜାତ ଆନ୍ଦୋଳନର ଭୂମିକା ଏବଂ କମ୍ୟୁନିଷ୍ଟମାନଙ୍କର ଭୂମିକାକୁ ଉଲ୍ଲେଖ ନ କରିବା ଅର୍ଥ ଇତିହାସକାରମାନେ ସତ୍ୟକୁ ବିକୃତ କରିବା ସହିତ ସମାନ ହେବ ।

ଗଡ଼ଜାତ ପ୍ରଜା ଆନ୍ଦୋଳନରେ ସମାଜବାଦୀ ଚିନ୍ତାଧାରାର ପ୍ରଭାବ ହେତୁ ବଲାଙ୍ଗିରରେ ଯୁଧିଷ୍ଠିର ମିଶ୍ର, କୃଷ୍ଣ ପ୍ରସାଦ ମିଶ୍ର ପ୍ରମୁଖ କମ୍ୟୁନିଷ୍ଟ କୃଷକ ଦଳ ଗଠନ କରି ପ୍ରଜା ଆନ୍ଦୋଳନରେ ପ୍ରମୁଖ ଭାଗ ନେଲେ । ଆଠଗଡ଼ରେ ବ୍ରଜକିଶୋର ପଟ୍ଟନାୟକଙ୍କ ଭୂମିକା ଆଜି ପ୍ରଶଂସାର୍ହ । ଗଡ଼ଜାତ ପ୍ରଜା ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କର ଭୂମିକା ପରବର୍ତ୍ତୀ କାଳରେ ବାମଡ଼ାର ପ୍ରଖ୍ୟାତ ପ୍ରଜା ନେତା ଦୟାନନ୍ଦ ଶତପଥୀ, ଲକ୍ଷ୍ମଣ ପୁଜାରୀଙ୍କର, ମୟୂରଭଞ୍ଜର ପ୍ରଖ୍ୟାତ ପ୍ରଜା ନେତା ଗିରୀଶ ଚନ୍ଦ୍ର ରାୟଙ୍କୁ, ନୟାଗଡ଼ର ବାସୁଦେବ ଦୋରା ପ୍ରମୁଖଙ୍କୁ କମ୍ୟୁନିଷ୍ଟ ପାର୍ଟିକୁ ଆକୃଷ୍ଟ କରିଥିଲା ।

**ପ୍ରତିକ୍ରିୟାର ପ୍ରତିଆକ୍ରମଣ :**

ଗଡ଼ଜାତ ପ୍ରଜାମାନଙ୍କର ଏକ ପ୍ରକାର ରାଜନୈତିକ ମୁକ୍ତି ହେଲା । ମାତ୍ର କଂଗ୍ରେସ ଶାସନ ଯେ ସେମାନଙ୍କର ସାମାଜିକ ଅର୍ଥନୈତିକ ମୁକ୍ତି ଆଣିପାରିବ ନାହିଁ, ଏକଥା ଉପଲବ୍ଧି କରିବାକୁ ପୂର୍ବର ଗଡ଼ଜାତ ପ୍ରଜାମାନଙ୍କୁ ବେଶିଦିନ ଲାଗିଲା ନାହିଁ । ପୂର୍ବର ରାଜାମାନଙ୍କୁ କଂଗ୍ରେସରେ ସାମିଲ କରିବା ପ୍ରକ୍ରିୟା ଆରମ୍ଭ ହୋଇ ରଣପୁର ରାଜମାତାଙ୍କୁ ମନ୍ତ୍ରୀ, ଅନ୍ୟମାନଙ୍କୁ ଏମ୍.ଏଲ୍.ଏ. କରାଗଲା । ପୂର୍ବତନ ରାଜାମାନେ ପ୍ରଜାମାନଙ୍କ କଂଗ୍ରେସ ପ୍ରତି ମୋହ ମୁକ୍ତି ଦେଖି ବଲାଙ୍ଗିର; କଳାହାଣ୍ଡି ପ୍ରଭୃତିର ପୂର୍ବତନ ଶାସକମାନେ ଆଗରୁ ଷଢ଼େଇକଳା ରାଜାଙ୍କ ଅଧ୍ୟକ୍ଷତାରେ ଗଠିତ ପୂର୍ବାଞ୍ଚଳ ରାଜନ୍ୟବର୍ଗ ଆସୋସିଏସନ୍‌କୁ ଅନ୍ୟରୂପ ଦେଇ ମହାକୋଶଳର ଦୁଆ ଉଠାଇଲେ ଏବଂ ସମ୍ବଲପୁର, ବଲାଙ୍ଗିର, କଳାହାଣ୍ଡିରେ ବିଶେଷତଃ ଓଡ଼ିଶାଠାରୁ ବିଚ୍ଛିନ୍ନ ଏକ ରାଜ୍ୟଗଠନର ବିଷ ବୁଣିଦେଲେ ।

କଂଗ୍ରେସ ନୀତି ବଳରେ କେବଳ ଶାସନକୁ ଛାଡ଼ି ସମସ୍ତ ବିଭବର ଅଧିକାରୀ ଏମାନେ ଘୋର ଦକ୍ଷିଣପନ୍ଥୀ ପ୍ରତିକ୍ରିୟାଶୀଳ ଗଣତନ୍ତ୍ର ଦଳ ଓ ପରେ ସ୍ୱତନ୍ତ୍ର ଦଳରେ ରୂପାନ୍ତରିତ କରି ଉପକୂଳ ଅଞ୍ଚଳକୁ ଏବଂ ସବୁ ପୂର୍ବତନ ଗଡ଼ଜାତକୁ ପ୍ରତିକ୍ରିୟାଶୀଳ ରାଜନୀତିର ପ୍ରସାର ଘଟେଇଲେ । ଏମିତିକି ପଣ୍ଡିତ ନେହେରୁ ଆସି ବଲାଙ୍ଗିର ସଭାରେ ପୂର୍ବତନ ରାଜାମାନଙ୍କୁ କଂଗ୍ରେସ ସହିତ ସାମିଲ ହେବାକୁ ଆବେଦନ କଲେ । ତାହା ଏକ ସ୍ୱତନ୍ତ୍ର ବିଷୟ । କିନ୍ତୁ ଅବଧାରିତ ସତ୍ୟ ଯେ ଗଡ଼ଜାତ ଆନ୍ଦୋଳନ ପ୍ରତି ନୂତନ ଶାସକ ଶ୍ରେଣୀ, କଂଗ୍ରେସର ଶ୍ରେଣୀଗତ ଦୃଷ୍ଟିଭଙ୍ଗୀ ଓଡ଼ିଶା ରାଜନୀତିରେ ସାମନ୍ତବାଦୀ କର୍ତ୍ତୃତ୍ୱକୁ ବଜାୟ ରଖିଲା । ହତାଶାଗ୍ରସ୍ତ ଦକ୍ଷିଣପନ୍ଥୀ ପ୍ରଜା ଆନ୍ଦୋଳନର କେତେକ ନେତା ଏମିତିକି ପୂର୍ବର କେତେକ କଂଗ୍ରେସ ନେତା ମଧ୍ୟ ଏପରି ..... ସହିତ ସଂଶ୍ଳିଷ୍ଟ ହେବାକୁ କୁଣ୍ଠାବୋଧ କଲେ ନାହିଁ ।



ରଚନା କାଳ – ୧୯୮୨

# ଅଗଷ୍ଟ ୯ ଭାରତଛାଡ଼ ଆନ୍ଦୋଳନର କେତେକ ଉଦ୍ଦୀପନାମୟୀ ଘଟଣା

୧୯୪୨ ଅଗଷ୍ଟ ୮- ବମ୍ବେ ମହାନଗରୀରେ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ । ସାରା ଦେଶ ଉତ୍କଣ୍ଠିତ । ଦ୍ୱିତୀୟ ବିଶ୍ୱ ଯୁଦ୍ଧର କାଳ- ୧୯୩୯ ସେପ୍ଟେମ୍ବର ୩୧ରେ ଏ ଯୁଦ୍ଧ ଆରମ୍ଭ । ଏକ ପକ୍ଷରେ ହିଟଲର-ମୁସୋଲିନୀଙ୍କ ନାନୀ ଫାସିଷ୍ଟବାହିନୀ ଓ ସାମରିକବାଦୀ ଜାପାନର ମେଣ୍ଟ । ଅନ୍ୟ ପକ୍ଷରେ ଚିରାଚରିତ ସାମ୍ରାଜ୍ୟବାଦୀ ଦେଶ, ବ୍ରିଟେନ, ଫ୍ରାନ୍‌ସ, ଜର୍ମାନୀ ଓ ଅନ୍ୟ ୟୁରୋପୀୟ ସାମ୍ରାଜ୍ୟବାଦୀ ଦେଶ । ବ୍ରିଟେନ୍ ଉପନିବେଶ ଭାରତ, ଅଷ୍ଟ୍ରେଲିଆ, ଦକ୍ଷିଣ ଆଫ୍ରିକା, ଶ୍ରୀଲଙ୍କା, ବର୍ମା, ମାଲୟ ପ୍ରଭୃତିଙ୍କୁ ଯୁଦ୍ଧରେ ସାମିଲ କରି ଦେଇଥାଏ ।

ଭାରତବର୍ଷର ସ୍ୱାଧୀନତା ଆନ୍ଦୋଳନର ପ୍ରଧାନ ମଞ୍ଚ ଜାତୀୟ କଂଗ୍ରେସ ୧୯୪୦ରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ବ୍ୟକ୍ତିଗତ ସତ୍ୟାଗ୍ରହର ଡାକ ଦେଇଥିଲା । ଆମେ କାୟମନୋବାକ୍ୟରେ ଯୁଦ୍ଧର ପ୍ରତିବାଦ କରୁଛୁ, ଆମେ ଚାହୁଁ ଆମର ସ୍ୱାଧୀନତା ଏହି ଧ୍ୱନି ଦେଇ ବିନୋବା, ନେହେରୁ ଏବଂ ସହସ୍ର ସହସ୍ର ନେତା- କର୍ମୀ କାରାବରଣ କରିଥିଲେ । ସେତେବେଳେ ୧୯୩୫ ଶାସନ ଖସଡ଼ା ଅନୁସାରେ ବିଭିନ୍ନ ରାଜ୍ୟରେ ଯେଉଁ କଂଗ୍ରେସ ମନ୍ତ୍ରିମଣ୍ଡଳ ଥିଲା, ସେଗୁଡ଼ିକ ଇସ୍ତଫା ଦେଇଦେଲେ । ବିଧାୟକ ଓ ମନ୍ତ୍ରୀମାନେ ମଧ୍ୟ କାରାବରଣ କଲେ । ବ୍ୟକ୍ତିଗତ ସତ୍ୟାଗ୍ରହ କରିଥିଲେ ।

ଯୁଦ୍ଧ ଆରମ୍ଭ ହେଉହେଉ ଭାରତର ଶହଶହ କମ୍ୟୁନିଷ୍ଟଙ୍କୁ ମଧ୍ୟ ବ୍ରିଟିଶ ସରକାର ଅଟକବନ୍ଦୀ କରି କାରାନିକ୍ଷେପ କରିଥିଲା । ଓଡ଼ିଶାରେ ୧୯୪୦ରେ ହିଁ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାରେ ଉକ୍ତ ଦଳର ବହୁ ନେତାଙ୍କୁ କାରାରୁଦ୍ଧ କରାଯାଇଥିଲା ।

୧୯୪୧ଜୁନ୍ ମାସରେ ବିଶ୍ୱ ଯୁଦ୍ଧର ଢଙ୍ଗ ଓ ଚରିତ୍ରମାନଙ୍କର ପରିବର୍ତ୍ତନ ଦେଖାଦେଲା । ସମାଜବାଦୀ ସୋଭିଏତ ୟୁନିଅନ ଉପରେ ହିଟ୍‌ଲର ବାହିନୀ ଆକ୍ରମଣ କଲା । ଫାସିଷ୍ଟ ମେଣ୍ଟର ସମରବାଦୀ ଜାପାନ, ଚୀନ, ମଙ୍ଗୋଲିଆ, କୋରିଆ ଉପରେ ଆକ୍ରମଣ କରି ସମଗ୍ର ଦକ୍ଷିଣ ପୂର୍ବ ଏସିଆକୁ ଦଖଲରେ ଆଣିଲା । ଇଣ୍ଡୋଚୀନ୍, ମାଳୟ, ଶ୍ୟାମଦେଶ, ବର୍ମାଦେଶ ଦଖଲ କଲେ ।

୧୯୪୨ ବେଳକୁ ବ୍ରିଟିଶ ସରକାର ବିରୁଦ୍ଧରେ ଆଉ ଏକ ଅନ୍ତିମ ସଂଗ୍ରାମ ଡାକରାର ଆହ୍ୱାନ ଆସିଲା ଅଗଷ୍ଟ ୯ରେ, ଭାରତଛାଡ଼ ଓ ଆଉ କର ବା ମରର ଡାକରା- ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ । ଏ ପ୍ରସ୍ତାବ ଆଗତ କରିଥିଲେ ପଣ୍ଡିତ ଜବାହରଲାଲ ନେହେରୁ ।

ଏହି ପ୍ରସ୍ତାବରେ ଯୁଦ୍ଧର ପରବର୍ତ୍ତୀ କାଳ ଚରିତ୍ରରେ ପରିବର୍ତ୍ତନ ଆସିଥିବାର ଉଲ୍ଲେଖ ଥାଇ ହିଟଲର-ଫାସିଷ୍ଟବାଦ ଓ ଜାପାନ ସମରବାଦ ବିରୁଦ୍ଧରେ ଲଢ଼ିବା ପାଇଁ ଆଗ ଭାରତ ସ୍ୱାଧୀନ ହେବା ଗୁହ, ସ୍ୱାଧୀନ ଭାରତ ହିଁ ଏହି ଯୁଦ୍ଧରେ ଫାସିଷ୍ଟବାଦ ଓ ଜାପାନ ସମରବାଦ ବିରୁଦ୍ଧରେ ଲଢ଼ି ପାରିବ, ପଦାନତ, ପଦଦଳିତ, ନିର୍ଯ୍ୟାତିତ, ପରାଧୀନ ଭାରତ ନୁହଁ ବୋଲି ଉଲ୍ଲେଖ ଥିଲା । ଏଥିଲାଗି ସ୍ୱାଧୀନତା ପାଇଁ ଏକ ଅସ୍ଥାୟୀ ସରକାର ଏହି ଯୁଦ୍ଧ ପରିଚାଳନା କରିବ ବୋଲି ଉଲ୍ଲେଖ ଥିଲା । ଏଥିଲାଗି ସ୍ୱାଧୀନତା ପାଇଁ ଏକ ଅସ୍ଥାୟୀ ସରକାର ଏହି ଯୁଦ୍ଧ ପରିଚାଳନା କରିବ ବୋଲି ଘୋଷଣା କରାଯାଇଥିଲା । ମହାତ୍ମା ଗାନ୍ଧୀଙ୍କୁ ହିଁ ଏହି କର ବା ମର ଆନ୍ଦୋଳନ ଚଳାଇବାର ଦାୟିତ୍ୱ ଦିଆଯାଇଥିଲା । ଏହି ଘୋଷଣା ମହାତ୍ମାଗାନ୍ଧୀ କହିଥିଲେ ।

ମାତ୍ର ରକ୍ତମୁଖା ବ୍ରିଟିଶ ସାମ୍ରାଜ୍ୟବାଦ ଅଗଷ୍ଟ ୮ ତାରିଖ ରାତିରେ ବମ୍ବେରେ ମହାତ୍ମାଗାନ୍ଧୀ, ନେହେରୁ, ପଟେଲ, ଆଜାଦ, ମହତାବ, ଗୋବିନ୍ଦ ବଲ୍ଲଭ ପନ୍ଥ ପ୍ରମୁଖ କଂଗ୍ରେସ ନେତୃବର୍ଗଙ୍କୁ ଗିରଫ କରି ଅହମଦାବାଦ ଜେଲ୍‌ରେ ନିକ୍ଷେପ କଲା ଓ ସାରା ଦେଶରେ ତା'ର ଦମନଯନ୍ତ୍ର, ପୁଲିସ, ସୈନ୍ୟବାହିନୀ ଗୁପ୍ତଚରମାନଙ୍କୁ ଜବତ୍ କରିବା ପାଇଁ ପ୍ରତି ରାଜ୍ୟରେ ଅଗଷ୍ଟ ୯ ତାରିଖରୁ ଗିରଫ ଆରମ୍ଭ କରିଦେଲା । ସେତେବେଳେ ଆଜିପରି ଦୂରଦର୍ଶନ ନ ଥିଲା କି ବେତାର ନ ଥିଲା- ଜାତୀୟତାବାଦୀ ସମ୍ବାଦପତ୍ରଗୁଡ଼ିକ ଉପରେ କଟକଣା । କିନ୍ତୁ ତୁଣ୍ଡବାଇଦ ସହସ୍ରକୋଶ ପରି ଜାତୀୟ ନେତାମାନଙ୍କ ଗିରଫ ଓ ସବୁ ରାଜ୍ୟରେ ନେତାମାନଙ୍କର ଗିରଫଦାରୀ ହେତୁ ଜନତାର କ୍ରୋଧ ସାରା ଭାରତର ସହର ଶିଳ୍ପାଞ୍ଚଳ, ପଲ୍ଲୀପ୍ରାନ୍ତରରେ ପ୍ରଜ୍ୱଳିତ ହୋଇ ଉଠିଲା । ତାହାର ସଂକ୍ଷିପ୍ତ ବିବରଣୀ ଦେବାର ଏହି ପ୍ରୟାସ ।

ଓଡ଼ିଶାରେ ଘଞ୍ଚ ବନାନୀଘେରା – ମୁଖ୍ୟତଃ ଆଦିବାସୀ ଅଧ୍ୟୁଷିତ କୋରାପୁଟ ଠାରୁ ଉପକୂଳବର୍ତ୍ତୀ ଜିଲ୍ଲା, ୨୪ଟି ଯାକ ଗଡ଼ଜାତ, ପଶ୍ଚିମରେ ସମ୍ବଲପୁରରେ ବିଦ୍ରୋହର ନିଆଁ ଜଳି ଉଠିଲା । ସେତେବେଳେ କୌଣସି ସଂଗଠିତ ଉପର ନିର୍ଦ୍ଦେଶ ନ ଥାଏ । ପ୍ରତ୍ୟେକ ସ୍ଥାନରେ ସ୍ୱାଧୀନତା ସଂଗ୍ରାମୀମାନେ ନିଜେ ନିଜେ ସ୍ଥାନୀୟ ନେତା ହୋଇଥିଲେ । ସେମାନଙ୍କୁ ଶହଶହ ହଜାରହଜାର ଲୋକ ସମର୍ଥନ କଲେ । ଆଜି ଭଳି ନଦୀନାଳ ଭରା ଓଡ଼ିଶାରେ ରାସ୍ତାଘାଟ ଦୂରର କଥା, ବ୍ରାହ୍ମଣୀ, ଖରସୁଆଁ, ବୁଢ଼ାବଳଙ୍ଗ, ବୈତରଣୀ, ବିରୂପା, ମହାନଦୀ, କାଠଯୋଡ଼ି, କୁଆଖାଇ, ଦୟା ଇତ୍ୟାଦିରେ ପୋଲ ମଧ୍ୟ ନ ଥିଲା । କେବଳ ରେଳପଥ- ତାହା ପୁଣି ଉପକୂଳବର୍ତ୍ତୀ ଅଞ୍ଚଳରେ । ମାତ୍ର ଗୋଟିଏ ଜାଗାରେ ଅଗଷ୍ଟ ଆନ୍ଦୋଳନର ବାର୍ତ୍ତା ବିଜୁଳି ବେଗରେ କର୍ମୀଙ୍କ ପାଦଚାଲିରେ, ଲୋକଙ୍କ ମୁଖରେ ପ୍ରଚାରିତ ହୋଇଯାଉଥିଲା- ଗାଁ'

ଗାଁ'ରେ ଚଉକିଦାର, ଦଫାଦାରଠାରୁ ଆରମ୍ଭ କରି ପୁଲିସବାଲାଙ୍କ ତାଣ୍ଡବର ବିରୋଧ ହୋଇଥିଲା ।

କଟକ ରେଭେନ୍ସା କଲେଜରେ ଛାତ୍ରମାନଙ୍କ ଅଭିଯାନ, ଭଙ୍ଗାରୁଜାରେ ଗିରଫ ହେଲେ ଛାତ୍ରନେତାମାନେ । ବରୀ ସମ୍ବଲପୁର ଅଞ୍ଚଳରେ ବ୍ରିଟିଶ ଶାସନ ଭାଜିପଡ଼ିଲା । ଯାଜପୁର କଚେରୀ ଦଖଲ ଅଭିଯାନ ଉପରେ ଆକ୍ରମଣ ହେଲା । ଏରସମାର ଥାନା ଉପରେ ବିରାଟ ଜନତାର ଆକ୍ରମଣ- ଡାକଘର, ଡାକବଙ୍ଗଳାମାନଙ୍କ ଉପରେ, ଥାନାଗୁଡ଼ିକ ଉପରେ ଚଢ଼ଉ ଓ ଚଢ଼ଉର ଉଦ୍ୟମ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଚାଲିଲା । କୋରାପୁଟରେ ମାଥିଲି ଥାନା ଉପରେ ସହସ୍ରାଧିକ ଜନତା ବୀର ଲକ୍ଷ୍ମଣ ନାୟକଙ୍କ ନେତୃତ୍ୱରେ ଆକ୍ରମଣ କଲେ । ପୁଲିସ ଗୁଳିରେ ବହୁ ସଂଖ୍ୟାରେ ନିହତ ହେଲେ, ଯାହାର ଠିକ୍ ହିସାବ ଏ ପର୍ଯ୍ୟନ୍ତ ଜଣାପଡିନାହିଁ । ବାଲେଶ୍ୱରରେ ଇରମ, ତୁଠଗାଡ଼ିଆ, ପାପଡାହାଣ୍ଡି, ଲୁଣିଆଠାରୁ ଆରମ୍ଭ କରି ନିମାପଡ଼ା, ଯାଜପୁର, କାଇପଡ଼ା ଏମିତି ଅନେକ ସ୍ଥାନରେ ପୁଲିସ ଗୁଳିରେ ଶହୀଦ ହେଲେ ବହୁତ । କେବଳ ଇରମରେ ୨୯ ଜଣଙ୍କୁ ହତ୍ୟା କରାଯାଇଥିଲା । ଢେଙ୍କାନାଳର ମଢ଼ି ଜେଲ୍ ଉପରେ ଆକ୍ରମଣ ଓ ସେଠାର ଗୁଳିରେ ନିହତ ଓ ଆହତ । ତାଳଚେରରେ ଆକାଶରୁ ବୋମାବର୍ଷଣ । ସମ୍ବଲପୁରଠାରୁ ଗଞ୍ଜାମ, ବାଲେଶ୍ୱର, ପୁରୀ, କଟକ ଆଉ ଲକ୍ଷ୍ମଣ ନାୟକଙ୍କ ମାଟି କୋରାପୁଟରୁ ଶହଶହ ନେତା ଓ କର୍ମୀଙ୍କୁ ଗିରଫ କରାଗଲା । ଗଡ଼ଜାତମାନଙ୍କରେ ନୀଳଗିରି ଢେଙ୍କାନାଳ, ତାଳଚେର, ଆଠଗଡ଼, ନୟାଗଡ଼, କେନ୍ଦୁଝର, ରଣପୁର, ଖଣ୍ଡପଡ଼ା, ବାମରା, ବଡ଼ମ୍ବା, ନରସିଂହପୁର, ତିଗିରିଆ, ହିନ୍ଦୋଳ, ବଣାଇ ପ୍ରଭୃତିରେ ମଧ ଜନଜାଗରଣ, ବିଦ୍ରୋହ ଓ ଗିରଫଦାରୀ ।

ଗଡ଼ଜାତଗୁଡ଼ିକ ଓଡ଼ିଶାରେ ସେତେବେଳେ ମିଶି ନ ଥାଏ । ସେ ସବୁରେ ଗିରଫ ସଂଗ୍ରାମୀମାନଙ୍କୁ ସେଠା ଜେଲ୍‌ମାନଙ୍କରେ ବର୍ଷବର୍ଷ ଧରି ଆବଦ୍ଧ କରି ରଖାଗଲା । ମୋଗଲବନ୍ଦୀରେ ଗିରଫ ବ୍ୟକ୍ତିମାନଙ୍କୁ କଟକ, ଅନୁଗୋଳ, ବାଲେଶ୍ୱର, ପୁରୀ, କୋରାପୁଟ, ସମ୍ବଲପୁର ଜେଲ୍‌ରୁ ନିଆଯାଇ ବ୍ରହ୍ମପୁରରେ ୯ଟି ଲମ୍ବାଲମ୍ବା ଧାଡ଼ିରେ ଚାଳ ଘରେ ଆବଦ୍ଧ କରି ରଖାଗଲା । ଓଡ଼ିଶାରେ ଗିରଫ ହୋଇଥିବା ମହିଳା ନେତ୍ରୀମାନଙ୍କୁ କଟକ ଜେଲ୍‌ରେ ୨/ ୩ ବର୍ଷରୁ ଅଧିକ କାଳ ଅଟକବନ୍ଦୀ କରି ରଖାଗଲା । ଷଡ଼ଯନ୍ତ୍ର ମୋକଦ୍ଦମାରେ ଜଡ଼ିତ ବନ୍ଦୀମାନଙ୍କୁ କୋରାପୁଟ ଜେଲ୍‌ରେ ଆବଦ୍ଧ କରାଯାଇଥିଲା ।

ଓଡ଼ିଶାରେ ଗଡ଼ଜାତ ଓ ମୋଗଲବନ୍ଦୀଙ୍କୁ ମିଶାଇ ୪ ହଜାରରୁ ଊର୍ଦ୍ଧ୍ୱ ବ୍ୟକ୍ତିଙ୍କୁ ଗିରଫ କରାଯାଇଥିଲା । କେନ୍ଦ୍ର ଜେଲରେ ବଛାବଛା ନେତା, ପ୍ରମୁଖ ଓ ବିପ୍ଳବୀମାନଙ୍କୁ ରଖାଯାଇଥିଲା । ସେମାନଙ୍କ ସଂଖ୍ୟା ପାଞ୍ଚ ଶହ ଯାଏ । ଏହି ବନ୍ଦୀମାନଙ୍କ ଭିତରେ ଥିଲେ କଂଗ୍ରେସ ସଂଗଠନର ତୁଙ୍ଗ ନେତା ଓ କର୍ମୀ, ଗାନ୍ଧୀବାଦୀ, ସୋସାଲିଷ୍ଟ ପନ୍ଥୀ, ଫରୱାର୍ଡ଼ବ୍ଲକପନ୍ଥୀ ଓ କମ୍ୟୁନିଷ୍ଟ ।

ବ୍ରହ୍ମପୁର ଜେଲ୍‌ରେ ହିଁ ବିପ୍ଳବୀ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆଯାଇଥିଲା । ସେ ଦିନ ଓ ତହିଁ ପରଦିନ ବନ୍ଦୀମାନଙ୍କର ରଣଧ୍ୱନି, ଶୋକଛାୟା, ଅନଶନ, ଜେଲ୍‌ଖାନାରେ ଜାତୀୟ ପତାକା ଉତ୍ତୋଳନ ବେଳେ ପ୍ରଚଣ୍ଡ ଆକ୍ରମଣ ଓ ରକ୍ତର ସ୍ରୋତ କେତେକ ଅବିସ୍ମରଣୀୟ ଘଟଣା । ଏହି ଜେଲ୍ ଉପରେ ୧୯୪୪ ମସିହାରେ ଅର୍ଦ୍ଧରାତ୍ରିରେ ବନ୍ଦୀମାନେ ଶୋଇଥିବା ବେଳେ ଏକ ଶକ୍ତିଶାଳୀ ଜାପାନୀ ବୋମା ନିକ୍ଷିପ୍ତ ହୋଇଥିଲା । ଓଡ଼ିଶାର ସମଗ୍ର ନେତୃବର୍ଗ ସେଠାରେ ସେ ଦିନ ମୃତ୍ୟୁମୁଖରେ ପଡ଼ିଥାନ୍ତେ । ବୋମାଟି ସାମାନ୍ୟ ଲକ୍ଷ୍ୟଭ୍ରଷ୍ଟ ହୋଇଥିଲା । ବିଶାଳ ପାଚେରୀ- ପଛପଟେ ଏକ ବିରାଟ ଗହୀର ଗୋବରଖାତ (ଜେଲ୍‌ଖାନାରେ) ତାହା ବିସ୍ଫୋରିତ ହୋଇଗଲା । ତା'ର ଲକ୍ଷ୍ୟ ସ୍ଥଳରୁ ମାତ୍ର ୧୦/୧୫ ଫୁଟ ଦୂରରେ ଗଭୀର ଖାତରେ ପଡ଼ି ବିସ୍ଫୋରିତ ହେବାରୁ ରାଜବନ୍ଦୀମାନଙ୍କ ପ୍ରାଣ ସୂତାଖିଅକେ ବଞ୍ଚିଗଲା ।

**ସମଗ୍ର ଭାରତର ସେଦିନର ସଂକ୍ଷିପ୍ତ ଚିତ୍ର**

ବମ୍ବେ ନଗରୀରୁ ଅର୍ଦ୍ଧରାତ୍ରିରେ ନେତାମାନଙ୍କୁ ଗିରଫ କରି କଂଗ୍ରେସ ଓ ତା'ର ସଂଗଠନଗୁଡ଼ିକୁ ବେଆଇନ ଘୋଷଣା କରି ବ୍ରିଟିଶ ସାମ୍ରାଜ୍ୟବାଦ ତହିଁ ପରଦିନ ଭୋର୍‌ରୁ ସମସ୍ତ ନଗର ନଗରୀରୁ ମେସିନଗନ, ରାଇଫଲ ଧରି ସାଞ୍ଜୁଆ ଗାଡ଼ିରେ ସଶସ୍ତ୍ର ପୁଲିସବାହିନୀ ରାସ୍ତା ଘାଟରେ ମାର୍ଚ୍ଚ କଲେ ଭୀତତ୍ରସ୍ତ କରିବା ଲାଗି, ନେତା ଓ କର୍ମୀମାନଙ୍କୁ ଗିରଫ କରି ନେବା ପାଇଁ । ଆଦେଶ ଥିଲା ଦେଖିବା ମାତ୍ରେ ଗୁଳିକର ।

ଅବାରିତ ଭାବରେ ଚାଲିଲା ଲାଠି, ଗୁଳି । ବ୍ରିଟିଶ ତତ୍କାଳୀନ ବଡ଼ଲାଟଙ୍କ ଲିନଲିଖରୋମଙ୍କ ଗୋପନ ତାରବାର୍ତ୍ତାକୁ ଉଦ୍ଧାର କଲେ ଦେଖାଯିବ ଯେ ଅଗଷ୍ଟ ୯ରୁ ୧୭ ଭିତରେ ଭାରତର ସବୁ ବଡ଼ ସହର କଲିକତା, ଲକ୍ଷ୍ନୌ, ପାଟଣା, ମାନ୍ଦ୍ରାଜ, ଏହ୍ଲାବାଦ, ଅନ୍ୟ ଶତ ଶହ ଜାଗାରେ ଲକ୍ଷଲକ୍ଷ ଲୋକଙ୍କ ବିକ୍ଷୋଭ । ଜାମସେଦପୁର ୧୫ଦିନବ୍ୟାପୀ ଶ୍ରମିକ ଶ୍ରେଣୀର ପ୍ରତିବାଦ ଧର୍ମଘଟ ।

୧୯୪୨ ଅଗଷ୍ଟ ୯ରୁ ୧୯୪୩ ମସିହା ଆରମ୍ଭ ବେଳକୁ ୯୧ ହଜାର ୮୩୬ ଜଣ ବ୍ୟକ୍ତିଙ୍କୁ ସରକାରୀ ହିସାବରେ ଗିରଫ କରାଯାଇଥିଲା ଭାରତର ଛୋଟ ଓ ବଡ଼ବଡ଼ ଗଡ଼ଜାତରେ, ଆଉ ଅନେକ ସହସ୍ର ଲୋକଙ୍କୁ ଗିରଫ କରାଗଲା । ସେ କାଳର ସରକାରୀ ନଥିପତ୍ରରୁ ଜଣାଯାଏ – ଆନ୍ଦୋଳନକାରୀମାନେ ୨୦୮ଟି ପୁଲିସ ଥାନା, ୩୩୨ଟି ରେଳ ଷ୍ଟେସନ, ୯୪୫ଟି ଡାକଘର ଓ ବହୁ ଡଜନ ପୋଲ ଉଡ଼ାଇ ଦେଇଥିଲେ ।

କିପରି ଭୟାବହ ଅତ୍ୟାଚାର ଦମନ ଚାଲିଥିଲା, ନିଜ ଡାଏରୀରେ ଉତ୍ତର ପ୍ରଦେଶର ଅଜମଗଡ଼ ଜିଲ୍ଲା ଗୋରା ମାଜିଷ୍ଟ୍ରେଟ ଯାହା ଲେଖିଛନ୍ତି ତାହା ଲୋମହର୍ଷଣକାରୀ । ସେ ଲେଖିଛନ୍ତି – ଭାରତ ସରକାର ଚଳାଇଥିବା ସନ୍ତ୍ରାସର ତୁଳନା ନାହିଁ । ଆଜମଗଡ଼ ଜିଲ୍ଲାରେ ମାଇଲମାଇଲ

ଧରି ସଶସ୍ତ୍ର ପୁଲିସ ଗାଁ'ଗଣ୍ଡା ପୋଡ଼ିଦେଲେ । ଘରୁ ଘୋଷାରି ଆଣି ଶହ ଶହ ମହିଳାଙ୍କୁ ଧର୍ଷଣ କଲେ, ଖୋଲାଖୋଲି ପିଲାଗୁଡାଙ୍କୁ ଚାବୁକମାଡ଼ ଦେଲେ ଓ ଆଉ ଅନେକ ନୃଶଂସତା କଲେ ।

ପ୍ରଚଣ୍ଡ ଦମନ ଗିରଫଦାରୀ ହତ୍ୟାଲୀଳା ଘଟେଇ ବ୍ରିଟିଶ ସାମ୍ରାଜ୍ୟବାଦ ୨୩ ମାସ ମଧ୍ୟରେ ବିପ୍ଳବର ମୁଖ୍ୟ ସ୍ରୋତକୁ ଅଟକାଇବାକୁ ସମର୍ଥ ହୋଇଥିଲେ ହେଁ ବିଦ୍ରୋହର ନିଆଁ ଭାରତର ବିଭିନ୍ନ ସ୍ଥାନରେ ହୁହୁ ଜଳି ଉଠୁଥିଲା । କେତେ ସ୍ଥାନରେ ସ୍ଥାନୀୟ ସରକାର ପ୍ରତିଷ୍ଠିତ ହୋଇଗଲା । ବ୍ରିଟିଶ ଶାସନ ସେ ସବୁ ଜାଗାରେ ମାସ ମାସ ଧରି ତିଷ୍ଠି ନ ଥିଲା । ଆଜମଗଡ଼ ବାଲିଆ ବନାରସରେ ସମାନ୍ତରାଳ ସରକାର- ବିହାରର ମୁଙ୍ଗେର, ହଜାରିବାଗ, ଗୟାରେ ମଧ୍ୟ କିଛିକାଳ ସମାନ୍ତରାଳ ସରକାର, ମହାରାଷ୍ଟ୍ରର ସାତରା ଜିଲ୍ଲାରେ, ବଙ୍ଗଳାର ମେଦିନୀପୁର ଜିଲ୍ଲା ମେଲୁକ, କାନ୍ଥି, ମହିଷା ଦଳରେ, ସମାନ୍ତରାଳ ସରକାରମାନ ଗଠିତ ହୋଇଥିଲା । କିଛିଦିନ ଲାଗି ମଢ଼ି, ତାଳଚେର, ନୀଳଗିରି ପ୍ରଭୃତିରେ ଗଡ଼ଜାତ ରାଜାଙ୍କ ଶାସନର ଅସ୍ତିତ୍ୱ ନଥିଲା ଭଳି ହୋଇଥିଲା । କେବଳ ଉତ୍ତର ଭାରତରେ ନୁହେଁ, ବମ୍ବେ, ପୁନା, ଅହମ୍ମଦାବାଦର ନଗର ନଗରୀରେ ବିଦ୍ରୋହ- ଯେତେବେଳେ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ଅନ୍ତର୍ଭୁକ୍ତ ଆଜିର ତାମିଲନାଡୁ, ଆନ୍ଧ୍ର, କର୍ଣ୍ଣାଟକ, କେରଳରେ ସହର ଓ ଗା'ମାନଙ୍କରେ ବ୍ରିଟିଶ ଶାସନ ବିରୁଦ୍ଧରେ ବିଦ୍ରୋହ- ସାରା ଦେଶ ସଂଗ୍ରାମର ଅଗ୍ନିକାଣ୍ଡରେ । ସୁଭାଷଚନ୍ଦ୍ର ବୋଷଙ୍କ ନେତୃତ୍ୱରେ ଭାରତୀୟ ଜାତୀୟ ବାହିନୀ ବ୍ରିଟିଶ ସୈନ୍ୟଙ୍କ ବିରୁଦ୍ଧରେ ସଂଗ୍ରାମ ଚାଲିଥାଏ ଦକ୍ଷିଣ-ପୂର୍ବ ଏସିଆ ଦେଶରେ । ଏହି ସମ୍ବାଦ ଲୋକଙ୍କ ମନରେ ଗଭୀର ରେଖାପାତ କରୁଥାଏ ।

**ହଜାରହଜାର ସଂଖ୍ୟାର ଶହୀଦ -**

୧୪ ବର୍ଷର ହେମୁ କଲ୍ୟାଣୀ ଜୀରାଗୀରେ ଜାତୀୟ ପତାକା ସରକାରୀ ଦପ୍ତର ଉପରେ ଉଡ଼ାଇଲେ କଲା । ତାଙ୍କୁ ଗୁଳି କରି ହତ୍ୟା କରାଗଲା । ଭାରତର କୋଣେ ଅନୁକୋଣେ ସେକାଳରେ ହେମୁ କଲ୍ୟାଣୀ ହୋଇଗଲେ ବିପ୍ଳବୀ ଜନତାର ଜପାମାଳି । କେତେ ଲୋକଙ୍କୁ ଯେ ଗୁଳିରେ ହତ୍ୟା କରାଗଲା, ତାହାର ଏକ ସଂକ୍ଷିପ୍ତ ଉଦାହରଣ ଉତ୍ତରପ୍ରଦେଶ ଓ ବିହାରର ହ୍ୟାଲୀଳାରୁ ମିଳେ । ବିହାରରେ ୧୯୪୨ରେ ୧୬୬୧ ଜଣଙ୍କୁ ହତ୍ୟା କରାଯାଇଥିଲା । ଆମ ଓଡ଼ିଶାରେ କୋରାପୁଟ ମାଥିଲି ପରି ଏହି ନିହତଙ୍କ ମଧ୍ୟରେ ଅନେକ ଥିଲେ ଆଦିବାସୀ । ଉତ୍ତର ପ୍ରଦେଶ ଓ ବିହାରରେ ୧୬ଟି ଜିଲ୍ଲାରେ ସବୁଠାରୁ ଅଧିକ ବ୍ୟାପକ ଗଣବିଦ୍ରୋହ ଅନୁଷ୍ଠିତ ହୋଇଥିଲା । ୧୯୪୪ରେ, ୨ ବର୍ଷକାଳ ସମସ୍ତ ଦମନ ହତ୍ୟା ସତ୍ତ୍ୱେ ବିଭିନ୍ନ ଜାଗାରେ ବ୍ରିଟିଶ ସରକାରର ଅସ୍ତିତ୍ୱ ନ ଥିଲା । ଉତ୍ତର ପ୍ରଦେଶର ଆଜମଗଡ଼, ବାଲିଆ-ବାରଣାସୀ ଓ ବିହାରର ଭଗଲପୁର, ମୁଙ୍ଗେର, ମୁଜାଫରପୁର, ହାଜାରିବାଗ ଓ ଗୟା ଜିଲ୍ଲା ଏକ ମୁକ୍ତ ଅଞ୍ଚଳର ରୂପେ ନେଇଥିଲା ।

ଉତ୍ତର ପ୍ରଦେଶର ବାଲିଆ ଜିଲ୍ଲାରେ ୧୦ଟି ଥାନାକୁ ଜାତୀୟ ସରକାର ଦଖଲ

କରିଥିଲା । ଆଜମଗଡ଼ରେ ଜନତାଙ୍କ ଆକ୍ରମଣ ସମ୍ବନ୍ଧରେ ଜଣେ ବ୍ରିଟିଶ ଅଫିସର ଲେଖିଛନ୍ତି - ୧୯୪୨ ଅଗଷ୍ଟ ୧୭ ତାରିଖରେ ବର୍ଚ୍ଛା, ଲାଠିଧରି ୫ ହଜାର ଗରିବ ଚାଷୀଙ୍କୁ ହସ୍ତ ପଟୁଆର ଥାନା ଘେରାଉ କଲେ । ଆମେ ଅବରୁଦ୍ଧ । ୨ ଜଣ ଜମିଦାର ଗୋଷ୍ଠୀରେ ଆମକୁ ଖାଦ୍ୟ ଯୋଗାଉଥିଲେ । ଆମର ମନେ ହେଉଥିଲା ଯେମିତି ସମଗ୍ର ଜଙ୍ଗଲଟା ଆମ ଆଡ଼େ ମାଡ଼ି ଆସୁଛି ।

ମହାରାଷ୍ଟ୍ରର ସାକରାରେ ପ୍ରତିଷ୍ଠିତ ପତ୍ରି ସରକାର । ସମଗ୍ର ଜିଲ୍ଲାଟି ବିପ୍ଳବୀମାନଙ୍କ ଦଖଲରେ ଥିଲା । ମେଦିନୀପୁର ଜିଲ୍ଲାର ଜାତୀୟ ସରକାର ଥିଲା । ତାମ୍ରଲିପି ଜାତୀୟ ସରକାର । ବିପ୍ଳବୀମାନେ ୪ଟି ବିରାଟ ପଟୁଆରରେ ଆସି ତମଲୁନ, ମହିଷାଦଳ, ସୂତାହାଟ ଓ ନନ୍ଦୀଗ୍ରାମ ଥାନା ଆଡ଼େ ଧସି ଆସି ସୂତାହାଟା ଥାନାକୁ ଦଖଲ କଲା ବେଳେ ୪୪ ଜଣ ପ୍ରାଣବଳି ଦେଇଥିଲେ । ୭୩ ବର୍ଷର ବୃଦ୍ଧା ମାତଙ୍ଗିନୀ ହାଜରା ଗୁଳିବିଦ୍ଧ ହେଲା ପରେ ବି ଜାତୀୟପତାକା ତଳୁ ଉପରକୁ ଉଠାଇ ଟଳିପଡ଼ିଥିଲେ । ୨ ବର୍ଷକାଳ ତାମ୍ରଲିପି ଜାତୀୟ ସରକାର ବସ୍ତୁତଃ ଶାସନରେ ଥିଲା । ଏହି ସରକାର ଧନୀ, ମହଜୁତକାରୀ, ବଡ଼ ଜମି ମାଲିକମାନଙ୍କଠାରୁ ଧାନ ଓ ଅର୍ଥ ଆଣି ଗରିବମାନଙ୍କ ମଧ୍ୟରେ ବିତରଣ କରି ଦେଉଥିଲା ।

ଓଡ଼ିଶାରେ ବସ୍ତୁତଃ ବ୍ରିଟିଶ ସରକାର ନିଶ୍ଚିହ୍ନ ହୋଇଥିଲା କୋରାପୁଟର ମାଥିଲି ଅଞ୍ଚଳରେ । ଥାନାରେ ପୁଲିସ ଲୁଚିକରି ରହୁଥିଲେ । ଗାଁ'ଗୁଡ଼ିକ ବୀର ଲକ୍ଷ୍ମଣ ନାୟକ ଓ ଅନ୍ୟମୁକ୍ତି ସଂଗ୍ରାମୀମାନଙ୍କ କର୍ତ୍ତୃତ୍ୱରେ । ୪୦୦ ବର୍ଗମାଇଲ ଅଞ୍ଚଳରେ ଯେପରି ବ୍ରିଟିଶ ଶାସନ ନ ଥିଲା । ୧୯୪୩ ସେପ୍ଟେମ୍ବର ୧୬ ତାରିଖରେ ଲକ୍ଷ୍ମଣ ନାୟକଙ୍କୁ ବ୍ରିଟିଶ ସରକାର ଫାଶିକାଠରେ ଝୁଲାଇଥିଲା ।

□□□

# ସଂଗ୍ରାମୀ ସଂସାର

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଅବସରରେ ଲକ୍ଷ ଲକ୍ଷ ଶହୀଦ, ତଥା କାରାବନ୍ଦୀଙ୍କୁ ସ୍ମରଣ କଲାବେଳେ ସଂଗ୍ରାମକାଳୀନ ଏକ ବୈଶିଷ୍ଟ୍ୟ ମଧ୍ୟ ଆଖି ଆଗରେ ଭାସିଉଠେ । ଏହି ବୈଶିଷ୍ଟ୍ୟ ସର୍ବଭାରତୀୟ । ଓଡ଼ିଶାର ସେପରି ଏକ ବୈଶିଷ୍ଟ୍ୟ ହେଲା ସଂଗ୍ରାମ କାଳରେ ସମଗ୍ର ପରିବାର, ପତିପତ୍ନୀ, ପିତାପୁତ୍ର, ଭାଇଭାଇ, କୁଟୁମ୍ବୀ ବିରାଦର ଆନ୍ଦୋଳନରେ ଝାସ ଦେଇ କାରାବରଣ କରିଛନ୍ତି ପ୍ରତ୍ୟକ୍ଷ ଅଭିଜ୍ଞତା ଓ ଆହୃତ ତଥ୍ୟକୁ ଆଧାର କରି ସେସବୁର ସ୍ମୃତିଚାରଣ କରାଯାଇଛି । ହୁଏତ ଏହା ସଂପୂର୍ଣ୍ଣ ଚିତ୍ର ଦେଇନପାରେ । ଗବେଷକ ଅବା ବିଜ୍ଞ ଜୀବିତ ସ୍ୱାଧୀନତା ସଂଗ୍ରାମୀ ଏହାକୁ ପରିପୁଷ୍ଟ କରିବାକୁ ଅନୁରୋଧ ।

ପରିବାର (୧) ଗୋପବନ୍ଧୁ ଚୌଧୁରୀ, ପତ୍ନୀ ରମାଦେବୀ, ପୁତ୍ର- ମନମୋହନ ଚୌଧୁରୀ, କନ୍ୟା, ଅନ୍ନପୂର୍ଣ୍ଣା ମହାରଣା, ଜାମାତା- ଶରତ ମହାରଣା ଓ ଭାଇ, ଗ୍ରାମ-ଖେରସ, ଜଗତସିଂହପୁର, କଟକ । (୨) ନବକୃଷ୍ଣ ଚୌଧୁରୀ, ପତ୍ନୀ- ମାଳତୀ ଚୌଧୁରୀ, କନ୍ୟା, ଉତ୍ତରା ଦେଶାଇ, ମାଙ୍କ କୋଳରେ କାରାଗାରରେ ବିନାୟକ ଚୌଧୁରୀ ଓ କୃଷ୍ଣା ମହାନ୍ତି । ଗ୍ରାମ- ଖେରସ, ଜଗତ୍‌ସିଂହପୁର, କଟକ (୩) ପଣ୍ଡିତ ନୀଳକଣ୍ଠ ଦାସ, ପତ୍ନୀ- ରାଧାମଣି ଦେବୀ, ପୁତ୍ର- ଅଶୋକ ଦାସ, ପୁରୀ (୪) ଭାଗିରଥୀ ମହାପାତ୍ର, ପତ୍ନୀ- ସାରଳା ଦେବୀ, ପୁତ୍ର- ଅମିତାଭ ମହାପାତ୍ର, ଚାଟରା, ଜଗତ୍‌ସିଂହପୁର (୫) ରଘୁନାଥ ମହାନ୍ତି, ପତ୍ନୀ- ସରସ୍ୱତୀ ମହାନ୍ତି, ଭାଇ- ରାଜକିଶୋର ମହାନ୍ତି, ଗରାପୁର, କେନ୍ଦ୍ରାପଡ଼ା (୬) ମହମ୍ମଦ ହନିଫ, ପୁତ୍ର- ମହମ୍ମଦ ଆଜାଦ, ଭଣଜା ସୟଦ ଅବଦୁଲ କାଦର, ଭଦ୍ରକ (୭)କରୁଣାକର ପାଣିଗ୍ରାହୀ, ପତ୍ନୀ କୁମୁଦିନୀ ଦେବୀ, ଭାଇ- ଶ୍ରୀଧର ପାଣିଗ୍ରାହୀ, ବାଲେଶ୍ୱର (୮) ଗୌରାଙ୍ଗ ଚରଣ ଦାସ, ପୁତ୍ର ଶଶିଭୂଷଣ ଦାସ, ପୁତୁରା- ଅମ୍ବିକା ଚରଣ ଦାସ, ବାଗଲପୁର, ଜଗତ୍‌ସିଂହପୁର ।

ପତିପତ୍ନୀ (୧) ହରେକୃଷ୍ଣ ମହତାବ, ପତ୍ନୀ- ସୁଭଦ୍ରା ମହତାବ, ଅଗରପଡ଼ା, ଭଦ୍ରକ (୨) ବିନୋଦ କାନୁନ୍‌ଗୋ, ପତ୍ନୀ- ଶଶିବାଳା କାନୁନ୍‌ଗୋ, ମଲ୍ଲିପୁର, କେଶନଗର, କଟକ (୩) ମୁରଲୀଧର କାନୁନ୍‌ଗୋ, ପତ୍ନୀ- ହାରାମଣି କାନୁନ୍‌ଗୋ, ଉତ୍ତାରଣ, ଗୋବିନ୍ଦପୁର, କଟକ (୪) ଭଗିରଥ ଦାସ, ପତ୍ନୀ- ପ୍ରିୟମ୍ବଦା ଦେବୀ, ବରୀ, ଯାଜପୁର (୫) ଅଟଳ ବିହାରୀ

ଆଚାର୍ଯ୍ୟ, ପତ୍ନୀ- ଆଶାଦେବୀ, କଟକ ସହର (୬) ଲାଲ ବିହାରୀ ଦାସ, ପତ୍ନୀ ଗୁଣମଣି ଦେବୀ, ସାକ୍ଷୀଗୋପାଳ, ପୁରୀ (୭) ଗଦାଧର ଦତ୍ତ, ପତ୍ନୀ ବିମଳା ଦତ୍ତ, ପୁରୁଷୋତ୍ତମପୁର, ଯାଜପୁର (୮) ବିଶ୍ୱନାଥ ପରିଡ଼ା, ପତ୍ନୀ- ଛାୟା ପରିଡ଼ା, ଡେଲାଙ୍ଗ, ପୁରୀ, (୯) ଅନନ୍ତ ପ୍ରସାଦ ପଣ୍ଡା, ପତ୍ନୀ- ଶୋଭା ପଣ୍ଡା, ବ୍ରହ୍ମପୁର, ଗଞ୍ଜାମ (୧୦) ସୁବୋଧ ଦାସ, ପତ୍ନୀ- କୃଷ୍ଣକାମିନୀ ଦେବୀ, ଯାଜପୁର (୧୧) ନରସିଂହ ପଟ୍ଟନାୟକ, ପତ୍ନୀ- ସୁନ୍ଦରମଣି ପଟ୍ଟନାୟକ, ଖୋର୍ଦ୍ଧା (୧୨) ଭୋଳାନାଥ ମହାନ୍ତି, ପତ୍ନୀ- କ୍ଷେତ୍ରମଣି ମହାନ୍ତି, ସରମଙ୍ଗା, ଭଦ୍ରକ (୧୩) ମୁରଲୀଧର ମହାନ୍ତି, ପତ୍ନୀ- ଅମ୍ବିକାଦେବୀ, ସମରଙ୍ଗା, ଭଦ୍ରକ (୧୪) ସୂର୍ଯ୍ୟମଣି ମହାନ୍ତି, ପତ୍ନୀ- ତୁଳସୀ ଦେବୀ, ସମରଙ୍ଗା, ଭଦ୍ରକ (୧୫) ସଚ୍ଚିଦାନନ୍ଦ ଜେନା, ପତ୍ନୀ- ନିରୁପମା ଦେବୀ, କୁସୁପୁର, ମାହାଙ୍ଗା, କଟକ ।

ପିତା ପୁତ୍ର ବା କନ୍ୟା (୧) ଭୈରବ ଚନ୍ଦ୍ର ମହାପାତ୍ର, ସୁବାସ ମହାପାତ୍ର, ବାଲେଶ୍ୱର (୨) କୃଷ୍ଣ ପ୍ରସାଦ ଘୋଷ, ନିରଞ୍ଜନ ଘୋଷ (ଜେଲ୍‌ରେ ମୃତ) ଅନୀଲ କୁମାର ଘୋଷ, ବହୁଗ୍ରାମ, ସାଲେପୁର (୩) କୈଳାସ ଚନ୍ଦ୍ର ମହାନ୍ତି, ପ୍ରଭାତ ମହାନ୍ତି, ନୀଳଗିରି, ବାଲେଶ୍ୱର (୪) ନନ୍ଦକିଶୋର ସାହୁ, ମଥୁରାନ୍ଦ ସାହୁ, ଅଲିଶା ବଜାର, କଟକ (୫) ଆର୍ତ୍ତତ୍ରାଣ ପାତ୍ର, ଦେବରାଜ ପାତ୍ର, ପାଣିମରା, ଢ଼େଙ୍କାନାଳ (୬) ଜାହ୍ନବୀ ଦେବୀ, ଗୌରଗୋପାଳ, ଦାସ, ବାଲେଶ୍ୱର (୭) ଉଦୟନାଥ ମହାନ୍ତି, କନ୍ୟା- କ୍ଷେତ୍ରମଣି ଦେଇ, ତେନ୍ଦୁଳିପଦା, ତିର୍ତ୍ତୋଲ, କଟକ (୮) ରାମସିଂହ, ରବିସିଂହ, ନବାପାଟଣା, ଜଗତ୍‌ସିଂହପୁର ଭାଇ ଭାଇ (୧) ଲୋକନାଥ ମିଶ୍ର, ଦ୍ୱାରିକାମୋହନ ମିଶ୍ର, କୁଦିଆରୀ, ପାଟକୁରା (୨) ନିତ୍ୟାନନ୍ଦ ମହାପାତ୍ର, ଗୌରଚନ୍ଦ୍ର ମହାପାତ୍ର, ଭଦ୍ରକ (୩) ଅନନ୍ତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ଗରୋହଟା, ବାଲିପାଟଣା, ପୁରୀ (୪) ବ୍ରଜ କିଶୋର ପଟ୍ଟନାୟକ, ନନ୍ଦ କିଶୋର ପଟ୍ଟନାୟକ, ଆଠଗଡ଼ (୫) ଜଗନ୍ନାଥ ଦାସ, ଦ୍ୱାରିକା ମୋହନ ଦାସ, କର୍ଣ୍ଣଧାରି, ଭଦ୍ରକ (୬) ରବୀନ୍ଦ୍ର ମୋହନ ଦାସ, ରାଜେନ୍ଦ୍ର ମୋହନ ଦାସ, ଗୋପାଳଗାଁ, ବାଲେଶ୍ୱର (୭) ନୃସିଂହ ଗୁରୁ, ଦୁର୍ଗାପ୍ରସାଦ ଗୁରୁ, ସମ୍ବଲପୁର (୮) ପୀତାମ୍ବର ଦାସ, କୃତ୍ତିବାସ ଦାସ, ବାଗଲପୁର, ଜଗତ୍‌ସିଂହପୁର (୯) ରାମପ୍ରସାଦ ସିଂହ, ଭାରତ ସିଂହ, କଟକ (୧୦) ପୂର୍ଣ୍ଣଚନ୍ଦ୍ର ଗିରି, ବାଞ୍ଛାନିଧି ଗିରି, ବାଲେଶ୍ୱର (୧୧) ଗୋବିନ୍ଦ ମିଶ୍ର, ଜଗନ୍ନାଥ ମିଶ୍ର, ହିଞ୍ଜିଳିକାଟୁ, ଗଞ୍ଜାମ ।

ଏକ କୁଟୁମ୍ବୀ ଭାଇ, ନିକଟସଂପର୍କୀୟ (୧) ବିଶ୍ୱନାଥ ଦାସ- ପୁତୁରା ଭଗବାନ ଦାସ, ବ୍ରହ୍ମପୁର, ଗଞ୍ଜାମ (୨) ସର୍ବାଣୀ ସେନଗୁପ୍ତା, ମଙ୍ଗଳୀସେନ, ନୃପେସ ସେନ, କିରଣବାଳୀ ସେନ, ଝାରପଡ଼ା, ଗୋବିନ୍ଦପୁର, କଟକ (୩) କଳ୍ପତରୁ ଦାସ, ଚିତ୍ତରଞ୍ଜନ ଦାସ, ଜଗନ୍ନାଥ ଦାସ, ନୃସିଂହଚରଣ ଦାସ, ବାଗଲପୁର, ଜଗତ୍‌ସିଂହପୁର (୪) ଶରତ ଚନ୍ଦ୍ର ଦାସ, ସୁବଳ ଚରଣ ଦାସ, ଭ୍ରମରବର ଦାସ, ବାଗଲପୁର, ଜଗତ୍‌ସିଂହପୁର (୫) ବ୍ରହ୍ମାନନ୍ଦ ଶତପଥୀ,

ସୋମନାଥ ଶତପଥୀ, ରାୟସୁଙ୍ଗଡ଼ା, ସାଲେପୁର (୬) ଆଚାର୍ଯ୍ୟ ହରିହର ଦାସ- ଭିଣୋଇ ଜଗନ୍ନାଥ ମିଶ୍ର, ପୁରୀ (୭) ପୂର୍ଣ୍ଣାନନ୍ଦ ସ୍ୱାଇଁ- ଭିଣୋଇ ଗତିକୃଷ୍ଣ ସ୍ୱାଇଁ, କାକଟପୁର, ପୁରୀ (୮) ଦୟାନନ୍ଦ ଶତପଥୀ, ଜାମାତା ଭାଗିରଥୀ ନନ୍ଦ, ସମ୍ବଲପୁର (୯) ମନୋହର ଦାସ, ଗଣେଶ ପ୍ରସାଦ ଦାସ, ହରିପୁର, ଧର୍ମଶାଳା, ଯାଜପୁର (୧୦) କୃପାସିନ୍ଧୁ ହୋତା, ଭାଇବୋହୂ- ସୁନାମଣିଦେବୀ, ଡେଲାଙ୍ଗ, ପୁରୀ (୧୧) ବେଲଦେଇ, ପୁତୁରା- ଉଚ୍ଛବାନନ୍ଦ ଦାସ, ପଣ୍ଡୁଆ, ତିର୍ତ୍ତୋଲ (୧୨) ।

ଏକ କୁଟୁମ୍ବୀ ପରିବାରର - ବୃନ୍ଦାବନ ନାୟକ, ଶ୍ରୀନାଥ ନାୟକ, ବୈଦ୍ୟନାଥ ନାୟକ, ବାଳକୃଷ୍ଣ ନାୟକ, ସୁର୍ଯ୍ୟୋଧନ ନାୟକ, ତେରତଙ୍ଗ, ତିର୍ତ୍ତୋଲ, କଟକ ।

ଜେଲ୍‌ବରଣ ନ କରିଥିଲେ ହେଁ କାରାଦଣ୍ଡିତ ବହୁ ସ୍ୱାଧୀନତା ସଂଗ୍ରାମୀଙ୍କ ପତ୍ନୀ, ସଂଗ୍ରାମରେ ସକ୍ରିୟ ଅଂଶଗ୍ରହଣ କରିଥିଲେ । ଏମାନଙ୍କ ବ୍ୟତୀତ ଓଡ଼ିଶାର ବହୁ ମହିଳା କାରାବରଣ କରିଛନ୍ତି, ସହସ୍ର ସହସ୍ର ପୁରୁଷଙ୍କ ସଙ୍ଗରେ ଉଭୟ ତତ୍କାଳୀନ ମୋଗଲବନ୍ଦୀ ଓ ଗଡ଼ଜାତଗୁଡ଼ିକର ପ୍ରଜାମଣ୍ଡଳ ଆନ୍ଦୋଳନରେ । ତାହା ଏକ ସ୍ୱତନ୍ତ୍ର ବିଷୟ ।



# ସ୍ୱାଧୀନତା ସଂଗ୍ରାମ ସହିଦ ସାରଣୀରେ ଓଡ଼ିଶା

ଆମ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ । ଦୁଇ ଶହ ବର୍ଷବ୍ୟାପୀ ସ୍ୱାଧୀନତା ସଂଗ୍ରାମର ଇତିହାସ । ବ୍ରିଟିଶ ସାମ୍ରାଜ୍ୟବାଦର ଔପନିବେଶିକ ଦାସତ୍ୱର ମୁକ୍ତ ହେବା ଲାଗି, ଆମକୁ ସ୍ୱାଧୀନତା ଆଣି ଦେବା ପାଇଁ ଲକ୍ଷ ଲକ୍ଷ ଭାରତବାସୀ ପ୍ରାଣ ଦେଇଛନ୍ତି । ସହିଦ ହୋଇଛନ୍ତି ।

ଏହି ସୁବର୍ଣ୍ଣ ଜୟନ୍ତୀ ଅବସରରେ କୃତଜ୍ଞ ଦେଶବାସୀ ଆବାଳବୃଦ୍ଧବନିତା ଚାଲନ୍ତୁ ସେମାନଙ୍କୁ ସ୍ମରଣ କରିବା, ଶ୍ରଦ୍ଧା ନିବେଦନ କରିବା । ସେମାନଙ୍କର ଐତିହ୍ୟ, ମୂଲ୍ୟବୋଧ, ମାନବିକ ପରମ୍ପରାର ଉପଯୁକ୍ତ ଉତ୍ତରାଧିକାରକୁ ସାବ୍ୟସ୍ତ କରିବା ପାଇଁ ସଂକଳ୍ପ ନେବା ।

ଭାରତବର୍ଷର ସ୍ୱାଧୀନତା ସଂଗ୍ରାମରେ ସ୍ୱାଧୀନତା ପରେ ବି ସହିଦ ଶିରୋମଣି ହେଲେ ଜାତିର ପିତା ମହାତ୍ମା ଗାନ୍ଧୀ । ଧର୍ମୀୟ ସମ୍ପ୍ରଦାୟ ସଂକୀର୍ଣ୍ଣତାର ଶିକାର ହୋଇ ସେ ଟିଳିପଡ଼ିଲେ । ଦୁଇଶହବ୍ୟାପୀ ସ୍ୱାଧୀନତା ସଂଗ୍ରାମ, ଲକ୍ଷ ଲକ୍ଷ ସହିଦଙ୍କ ଆତ୍ମ ବଳିଦାନ ପକ୍ଷରେ ଏପରି କଳଙ୍କ କାଳିମାର ପଟାନ୍ତର ନାହିଁ ।

ଭାରତର ସହିଦ ସାରଣୀକୁ ସ୍ମରଣ କଲାବେଳେ ଇତିହାସ ସୂଚିତ କରେ ।

ଆଦ୍ୟ କାଳର ରାଶି ରାଶି ଜନବିଦ୍ରୋହ - ଭିଲ, କୁକି, ସାନ୍ତାଳ, ମୁଣ୍ଡା, ଓ୍ୟାହାବି, ସନ୍ନ୍ୟାସୀ, କୋହଲ, ରମ୍ପା, ନୀଳ ବିଦ୍ରୋହ ପ୍ରଭୃତି ବ୍ରିଟିଶ ସରକାର ବିରୋଧ ସଂଗ୍ରାମରେ ସହସ୍ର ସହସ୍ରଙ୍କୁ ହତ୍ୟା । ୧୮୫୭ ପ୍ରଥମ ସ୍ୱାଧୀନତା ସଂଗ୍ରାମରେ ଅନ୍ୟୁନ ଦୁଇଲକ୍ଷ ହିନ୍ଦୁ, ମୁସଲମାନ, ବଙ୍ଗାଳୀ, ବିହାରୀ, ହିନ୍ଦୁସ୍ଥାନୀ, ଓଡ଼ିଆ ଶିଖ ବୀରଙ୍କ ପ୍ରାଣ ବଳିଦାନ । ସ୍ମରଣରେ ଆସେ 'କାମାଗାତାମାରୁ' ଜାହାଜର ସହିଦମାନଙ୍କ କଥା । ୧୯୧୯ ଜୁନ୍ ୬ର ଜାଲିଆନାବାଗରେ ସହସ୍ର ସହସ୍ର ସହିଦ, ମହିଳା, ଶିଶୁ, ହିନ୍ଦୁ, ଶିଖ, ମୁସଲମାନଙ୍କ ହଣ୍ଟର ଗୁଳିରୁ ପ୍ରାଣ ବଞ୍ଚାଇବା ଲାଗି ବାଗରେ ଥିବା ବାମ୍ଫିରେ ଶତଶତ ମୃତ ଦେହ । ସେମାନେ ଆମର ସ୍ମରଣୀୟ ସହିଦ ।

ସହିଦ ହେଲେ ଭଗତସିଂହ, ଶୁକଦେବ ଆଉ ରାଜଗୁରୁ ଫାଶିମଞ୍ଚରେ ଲାହୋର ଷଡ଼ଯନ୍ତ୍ର ମକଦମାରେ ଦଣ୍ଡିତ ହୋଇ । ସହିଦ ହେଲେ ଫାଶି ମଂଚରେ ଚଢ଼ି ଆସଫୌଲା, ରୋଷନ ଲାଲା, ରାମପ୍ରସାଦ ବିସମିଲ କାକୋରି ଷଡ଼ଯନ୍ତ୍ର ମକଦମାରେ । ବମ୍ବେରେ ଚାପେକର ଦୁଇ ଭାଇଙ୍କୁ ଫାଶି ମଂଚରେ ଝୁଲାଇ ସହିଦ କରାଗଲା ।

କେତେ ଷଡ଼ଯନ୍ତ୍ର ମକଦମା, କେତେ ଫାଶି, ଆଜୀବନ ଜେଲଦଣ୍ଡ କଳାପାଣି, ଆଣ୍ଡାମାନ ନିଭୃତ କୋଠରୀରେ ଶତଶତ ସ୍ୱାଧୀନତା ସଂଗ୍ରାମୀଙ୍କ ସହିଦତ୍ୱ । କାନପୁର, ମିରଠ, ଚିତାଗଙ୍ଗ ମେଛୁଆ ବଜାର, କଟକ ଏମିତି କେତେ ଷଡ଼ଯନ୍ତ୍ର ମକଦମା ।

ଖୁଦିରାମଠାରୁ ଚନ୍ଦ୍ରଶେଖର ଆଜାଦ, ମାଷ୍ଟର ତାଙ୍କ ଗୁରୁ ୧୨ ବର୍ଷ ହିମୁ କଲ୍ୟାଣ ଏମିତି ସହିଦମାନଙ୍କ ସଂଖ୍ୟା ଅଗଣିତ । ୧୯୪୬ ନୌଚି ଦ୍ରୋହ କାଳରେ କେବଳ ବମ୍ବେ ନଗରୀରେ ଦୁଇଶହ ଭାରତବାସୀ ସହିଦ ହେଲେ ବ୍ରିଟିଶ ଗୁଳିରେ । ୧୯୪୨ରେ ବ୍ରିଟିଶ ସରକାରୀ ହିସାବ (ଯାହାକି ଅର୍ଦ୍ଧସତ୍ୟ) ସହିଦ ହେଲେ ୯୪୦ ଜଣ ବ୍ରିଟିଶ ଗୁଳିରେ ।

ଏମାନେ ହିଁ କ'ଣ ସହିଦ ସାରଣୀର ପୂର୍ଣ୍ଣାଙ୍ଗ ଚିତ୍ର ଦିଅନ୍ତି, ନୁହେଁ । ସେସବୁର ସବିଶେଷ ବିବରଣୀ ଏକ ବିରାଟ ଗ୍ରନ୍ଥରେ ପରିଣତ ହେବ । ଓଡ଼ିଶାରେ ଆମେ ଆମ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ କଲାବେଳେ, ଆମେ ଯେଉଁମାନେ ବଞ୍ଚିଛେ ସେମାନେ ଓ ଆମ ଉତ୍ତରାଧିକାରୀମାନେ ଗର୍ବବୋଧ କରିବେ ଯେ ଓଡ଼ିଶା ମଧ୍ୟ ସ୍ୱାଧୀନତା ସଂଗ୍ରାମର ସହିଦ ସାରଣୀରେ ତା'ର ଉପଯୁକ୍ତ ସ୍ଥାନ ଦେଇଛି ।

ବ୍ରିଟିଶ ଗୁଳି କମାଣରେ ଓଡ଼ିଶାର ସହସ୍ର ସହସ୍ର ପ୍ରାଣ ଦେଇଛନ୍ତି । ଆଣ୍ଡାମାନର ନିର୍ମିତ ସେଲୁଲାର ଜେଲରେ ଆଜୀବନ ବନ୍ଦୀ ରହି ସହିଦ ହୋଇଛନ୍ତି । ଫାଶି ମଞ୍ଚରେ ଚଢ଼ି ଦେଶମାତୃକାର ସ୍ୱାଧୀନତା ପାଇଁ ପ୍ରାଣବଳୀ ଦେଇଛନ୍ତି । ଜେଲ ଜରିମାନା, ସଂପତ୍ତି ବ୍ୟାଜ୍ୟାପ୍ତ, ବେତମାଡ଼, ଖଣ୍ଡିଆଖାବରା ହୋଇ ପଙ୍ଗୁ ହୋଇଯିବା ସ୍ୱାଧୀନତା ସଂଗ୍ରାମର ଯୋଦ୍ଧାଙ୍କ ସଂଖ୍ୟା ସହସ୍ର ସହସ୍ର ।

ବ୍ରିଟିଶ ଓଡ଼ିଶା ଦଖଲ କଲାପରେ ୧୮୧୭ ପାଇକ ବିଦ୍ରୋହ କାଳରେ ଫାଶି କାଠରେ ଝୁଲିଥିଲେ ଜୟି ରାଜଗୁରୁ । ବକ୍ସି ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ବ୍ରିଟିଶ ଦ୍ୱାରା ଅନ୍ତରୀଣ ବନ୍ଦୀ ଅବସ୍ଥାରେ ୧୮୨୫ ମଇ ୨୭ରେ ସହିଦତ୍ୱ ବରଣ କରିଥିଲେ । ତାଙ୍କର ସହକର୍ମୀ, ସହଯୋଦ୍ଧା ନଟବର ସୁନ୍ଦରାଏଙ୍କ ସମେତ ୧୦୨ ଜଣ ଓଡ଼ିଆ ପାଇକବୀରଙ୍କୁ ଆଜୀବନ କାରାଦଣ୍ଡ ଦେଇ ମୃତ୍ୟୁ ପର୍ଯ୍ୟନ୍ତ ଆଣ୍ଡାମାନି ବନ୍ଦୀଶାଳା (କଳାପାଣି)ରେ ରଖାଗଲା । ସେମାନେ ହେଲେ ଅମର ସହିଦ । ମୃତ୍ୟୁ ପର୍ଯ୍ୟନ୍ତ ଅର୍ଥାତ୍ ସହିଦତ୍ୱ ପ୍ରାପ୍ତି ପର୍ଯ୍ୟନ୍ତ ବକ୍ସି ଜଗବନ୍ଧୁଙ୍କ ସହଯୋଗୀ ପିନାଙ୍କ, ବାହୁବଳେନ୍ଦ୍ର, ପଦ୍ମନାଭ ଛୋଟରାୟ, ଗୋପାଳ ଛୋଟରାୟଙ୍କୁ ଅନ୍ତରୀଣ ବନ୍ଦୀ ଭାବରେ ରଖାଗଲା । ଏମାନଙ୍କର ତ ନାମ ଅଛି, ଠିକଣା ଅଛି । ମାତ୍ର ଓଡ଼ିଶାର ଗୋପ, ପିପିଲି, ହରିଶପୁର, ଘିଷିଲି, ଘୁମସର, କୁଜଙ୍ଗ, ରାହଙ୍ଗ ସାଙ୍ଗକୁ ଆମ ଓଡ଼ିଶା ଜାତି ଗର୍ବ ଓ ଗୌରବର ବରୁଣେଇ ପାହାଡ଼ ଶିଖରରେ ଯେଉଁ ପାଇକ ପୁଅମାନେ ସ୍ୱାଧୀନତା ପାଇଁ ଲଢ଼େଇ କରି ସହିଦ ହେଲେ, ସେମାନଙ୍କ ନାମ ଓ ଠିକଣା କ'ଣ ଆମେ ଏ ଯାଏ ରଖିପାରିଛେ ? ମନେ ଅଛନ୍ତି ଖୁଦୀରାମ, ଅନନ୍ତ କାନାରେ ଦେଶପାଣ୍ଡେ, କାର୍ବେ ଏମିତି ଫାଶି ପାଇଛନ୍ତି ସହିଦଗଣ ।

ପ୍ରଥମ ସ୍ୱାଧୀନତା ସମର ୧୮୫୭ । ବାରାକପୁରର ବିହାର, ଅଯୋଧ୍ୟା, ଉତ୍ତର ପ୍ରଦେଶ ମିରଠରୁ ଦିଲ୍ଲୀ । ସହିଦ ହେଲେ ୨ ଲକ୍ଷ । କେବଳ ଅଯୋଧ୍ୟା, ଅନ୍ତକୋଠରେ ଦେଢ଼ଲକ୍ଷ ହିନ୍ଦୁ ମୁସଲମାନ । ଶହଶହଙ୍କୁ ରାସ୍ତାକଡ଼ ବରଗଛ, ତେନ୍ତୁଳି ଗଛରେ ଟଙ୍ଗାଇ ଦିଆଗଲା । ଦିଲ୍ଲୀରେ ବ୍ରିଟିଶ କମାଣ ମୁହଁରେ ୩୦ ହଜାର ହିନ୍ଦୁ, ମୁସଲିମ୍, ଶିଖ୍‌ଙ୍କ ଆତ୍ମ ବଳିଦାନ ।

୧୮୫୭ରେ ଓଡ଼ିଶା ପଛରେ ପଡ଼ିନି । ବୀର ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ବ୍ରିଟିଶ ଦାସତ୍ୱ ବିରୁଦ୍ଧରେ ଓଡ଼ିଆ ବୀରଙ୍କ ସଂଗ୍ରାମ । ଚାଖି ଖୁଣ୍ଟିଆ, ଲୋକନାଥ ଗଡ଼ତିଆ ବୀର ସୁରେନ୍ଦ୍ର ସାଏଙ୍କ ସହଯୋଗୀ । କେତେ ସହିଦ ହେଲେ । ଓଡ଼ିଆ ଜାତିର ଗର୍ବ ଗୌରବର ଅଧିକାରୀ ବୀର ସୁରେନ୍ଦ୍ର ସାଏ ହେଲେ ସହିଦ । ଜବଲପୁରର କାରାଗାରରେ ମୃତ୍ୟୁଯାଏ ବନ୍ଦୀ କରାଗଲା । ସେଇଠି ପ୍ରାଣବାୟୁ ଉଡ଼ିଗଲା ।

ଆମର ଓଡ଼ିଶାରେ ୧୯୦୧ରେ ବିର୍ଶା ମୁଣ୍ଡାଙ୍କ ନେତୃତ୍ୱରେ ମୁଣ୍ଡା ବିଦ୍ରୋହ । ସହିଦ ହେଲେ ଶତଶତ ।

ପାରଳାଖେମୁଣ୍ଡି କେଉଁଝରର ଭୂୟାଁପୀଢ଼ ନୟାଗଡ଼, କଳାହାଣ୍ଡିର ବ୍ରିଟିଶ ବିରୁଦ୍ଧରେ କନ୍ଧ ବିଦ୍ରୋହର ସହିଦ । ଧରଣୀଧର ଭୂୟାଁଙ୍କ ସମେତ ତାଙ୍କର ସହଯୋଗୀ ସହିଦ ।

**ନିକଟ ଅତୀତର ଓଡ଼ିଶାର ସହିଦ**

ବ୍ରିଟିଶ ସାମ୍ରାଜ୍ୟବାଦ ଆଶ୍ରିତ ଓଡ଼ିଶାର ଦେଶୀୟ ରାଜ୍ୟର ସାମନ୍ତଗୋଷ୍ଠୀ, ଅତ୍ୟାଚାରୀ ରାଜାମହାରାଜାଙ୍କ ଅନ୍ଧାରୀ ରାଜୁତି ବିରୁଦ୍ଧରେ ୧୯୩୮-୩୯ରେ ଜନଉଦ୍‌ବେଳନ । ସହିଦ ତାଲିକାରେ ଢେଙ୍କାନାଳ ହେଲା ଅଗ୍ରଣୀ । ରଣପୁରରେ ବୀରଯୋଦ୍ଧା ରଘୁନାଥ ଦିବାକର ଫାଶି ଖୁଣ୍ଟରେ ଝୁଲିଲେ । ୧୯୩୮ ସେପ୍ଟେମ୍ବର ୧୨ରୁ ନଭେମ୍ବର ୧୦ ଅବଧି ଢେଙ୍କାନାଳର ନୀଳକଣ୍ଠପୁର, ହିନ୍ଦୋଳରୋଡ଼ ଢେଙ୍କାନାଳ ସହର । ଡୁମୁରସିଂହା, ସିରିମୂଳା, ହିନ୍ଦୋଳରୋଡ଼, କନ୍ଦରସିଂହାରେ ବ୍ରିଟିଶ ଶିଖ, ଡୋଗ୍ରା ସୈନିକଙ୍କ ଗୁଳିରେ ମୋଟ ସହିଦ ହେଲେ ୨୦ ଜଣ । ଅନ୍ୟ ନିହତମାନଙ୍କର ପରିଚୟ ମିଳିଲା ନାହିଁ । ଭାଗଲପୁର ଜେଲ୍‌ରେ ୧୯୫୦ ଏପ୍ରିଲ ୪ରେ ରଘୁଦିବାକର ଫାଶି ପାଇଲେ । ୧୮୪୩ ମାର୍ଚ୍ଚ ୨୩ ତାରିଖରେ ବ୍ରହ୍ମପୁର ଜେଲରେ ହସି ହସି ମହାତ୍ମା ଗାନ୍ଧୀ କୀ ଜୟ, ସ୍ୱାଧୀନ ଭାରତ କୀ ଜୟ ଧ୍ୱନି ଉଠାଇ ଫାଶି କାଠରେ ଲଟକି ପଡ଼ିଲେ ଲକ୍ଷ୍ମଣ ନାୟକ । ୧୯୨୨ରେ କନିକା ପ୍ରଜା ଆନ୍ଦୋଳନର ସହିଦ ବାସୁ ଶେଠୀ, ବିସୁନି ମଲ୍ଲୁଳା । ଓଡ଼ିଶାର ଜାଲିଆନାବାଗ ଇରମ, ବାଲେଶ୍ୱରର ବାସୁଦେବପୁର ଅଞ୍ଚଳରେ ଏହି ରକ୍ତତୀର୍ଥ । ଆମରି ଓଡ଼ିଶା ମାଟିରେ ସେପ୍ଟେମ୍ବର ୧୯୧୫ରେ ବାଲେଶ୍ୱରର ଚଷାଖଣ୍ଡଠାରେ ସହିଦ ହୋଇଥିଲେ ବାଘା ଯତୀନ ଓ ତାଙ୍କ ସାଥୀମାନେ । ସେହି ବାଲେଶ୍ୱର ଜିଲ୍ଲାର ଇରମ । ୨୯ ଜଣଙ୍କ ଜୀବନ ବ୍ରିଟିଶ ଗୁଳିରେ ଟଳିପଡ଼ିଲା । ୫୮ ଜଣ ମରଣାନ୍ତକ

ଆହତ ହେଲେ । ସେପ୍ଟେମ୍ବର ୨୮ର ସେହି ସଂଧ୍ୟାର ସହିଦମାନଙ୍କ ପ୍ରାଣବଳି ଏକକ ଘଟଣା ନୁହେଁ । ବାଲେଶ୍ୱର ଜିଲ୍ଲାର ଧାମନଗର-କଟସାହି । ଆଠଜଣ ସହିଦ ତାଲିକାଭୁକ୍ତ ହେଲେ । ସେହି ସେପ୍ଟେମ୍ବର ମାସ ୨୮ ତାରିଖ । ତୁଡ଼ିଗାଡ଼ିଆରେ ବ୍ରିଟିଶ ଗୁଳିରେ ନିହତ ୯ ଜଣ ସହିଦ । ପୁରୀ ଜିଲ୍ଲାର ନିମାପଡ଼ାରେ ଉଛବ ମଳିକର ବ୍ରିଟିଶ ଗୁଳିରେ ପ୍ରାଣବିସର୍ଜନ ସେହି ୧୯୪୨ ଆନ୍ଦୋଳନ କାଳରେ ।

କୋରାପୁଟର ମାତିଲି-ପାପଡ଼ାହାଣ୍ଡି । ସରକାରୀ ହିସାବରେ ସିନା ୬ ଜଣ ବ୍ରିଟିଶ ସୈନ୍ୟଙ୍କ ଦ୍ୱାରା ନିହତ, ମାତ୍ର ସେମାନଙ୍କ ସଠିକ ସଂଖ୍ୟା ଏଯାଏ ନିର୍ଦ୍ଧାରିତ ହୋଇନାହିଁ । ପାପଡ଼ାହାଣ୍ଡି ମାତଲିର ଫାଶିଖୁଣ୍ଟରେ ଝୁଲିଥିବା ଲକ୍ଷ୍ମଣ ନାୟକ କହିଯାଇଛନ୍ତି ଏହି ସହିଦମାନଙ୍କ ସଂଖ୍ୟା ଅଧିକ ।

ଢେଙ୍କାନାଳରେ ମଢ଼ି ଦଖଲ କାଳରେ ୧୯୪୨ ଅଗଷ୍ଟ ମାସରେ ବୀର ସାହୁ, ବେଣୁ ସାହୁ ବ୍ରିଟିଶ ଗୁଳିରେ ଟଳିପଡ଼ିଥିଲେ । ତାଳଚେରରେ ନାହିଁ ନଥିବା ବ୍ରିଟିଶ ଫଉଜ ଆକ୍ରମଣରେ ଚାରିଜଣ ସହିଦ ହୋଇଥିଲେ ।

ଲୁଣିଆ ଭଣ୍ଡାରିପୋଖରୀ, ଲକ୍ଷ୍ମଣନାଥ, ତାଳଚେର ପ୍ରଭୃତି ଅନେକ ଜାଗାରେ ଗୁଳିରେ ଏହି ସମୟରେ ଶତଶତ ଆହତ । ଅନେକ ପରେ ଏଥିସକାଶେ ଅଳ୍ପଦିନରେ ପ୍ରାଣ ଛାଡ଼ିଲେ ।

କଟକ ଜିଲ୍ଲା (ବର୍ତ୍ତମାନ ଯାଜପୁର) ହାଟସାହି ପାଖ କାଇପଡ଼ାରେ ଚାରିଜଣ-ମାୟାଧର, ହାଡ଼ିବନ୍ଧୁ, ସାନନ୍ଦ ଓ ସାଉଁଟି ମଳିକ ସହିଦ ହେଲେ ।

ଭାରତର ସ୍ୱାଧୀନତା ସଂଗ୍ରାମରେ ଯେଉଁ ଲକ୍ଷଲକ୍ଷ ଦେଶବାସୀ ପ୍ରାଣ ଦେଇ ସହିଦ ହେଲେ ଓଡ଼ିଶା ତହିଁରେ ନିଜର ଅଭୁଲା ସ୍ୱାତନ୍ତ୍ୟ ରଖିଆସିଛି ।

ଯେଉଁ ସ୍ୱାଧୀନତା ସଂଗ୍ରାମୀମାନେ ସ୍ୱାଧୀନତା ପରେ ବଂଚିଯାଇଛନ୍ତି, ଅବା ଏବେବି ବଂଚି ରହିଛନ୍ତି ସେମାନେ ଯେତେ କାରାବାସରେ ନିର୍ଯ୍ୟାତନା ଭୋଗନ୍ତୁ, ମାଡ଼ ଖାଆନ୍ତୁ, ମୁଣ୍ଡ ଫଟେଇଆନ୍ତୁ ପଛକେ ସେମାନେ ସହିଦ ହୋଇନାହାନ୍ତି । ସହିଦତ୍ୱର ସୌଭାଗ୍ୟରୁ ସେମାନେ ବଂଚିତ ହେଲେ ବି ଲକ୍ଷ ଲକ୍ଷ ସହିଦ ସେମାନଙ୍କର ନମସ୍ୟ ହୋଇ ରହି ଆସିଛନ୍ତି । ଦେଶବାସୀ ଯେ ଆଜି ସ୍ୱାଧୀନ । ଭାରତ ଯେ ଆଜି ତା'ର ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଛି, ତାହା ସମ୍ଭବପର ହୋଇଛି ଆକାତରରେ ଏହି ବୀରମାନେ ପ୍ରାଣ ଦେଇଛନ୍ତି ବୋଲି ।

ଆଜି ସେହି ସହିଦମାନଙ୍କୁ ସ୍ମରଣ କଲାବେଳେ ଓଡ଼ିଶାର କେତେକ ସହିଦଙ୍କ ଜୀବିତାବସ୍ଥାରେ ଅବା ସହିଦତ୍ୱ କାଳରେ ମୁଁ ଓ ମୋ'ଭଳି ଅନେକେ (ଯେଉଁମାନଙ୍କ ଭିତରୁ ଏବେ ବି କେତେକ ଜୀବିତ, ସେହି ସହିଦମାନଙ୍କ ସଂପର୍କରେ ଆସିବା କଥା

ମନରେ ଜାଗିଉଠେ । କାଇପଡ଼ାର ସହିଦମାନଙ୍କ ଅନ୍ତ୍ୟେଷ୍ଟି କ୍ରିୟାରେ ଗୋପନରେ ଯୋଗ ଦେବା ମନେପଡ଼େ ।

ରଘୁ ଦିବାକରଙ୍କ ସହିତ ରଣପୁର ପ୍ରଜା ଆନ୍ଦୋଳନ କାଳରେ ଦେଖା ସାକ୍ଷାତ ହୋଇଥିଲା । ସେମାନଙ୍କ ମୁହଁ ମନେପଡ଼ିଯାଉଛି । ଲକ୍ଷ୍ମଣନାୟକ ବ୍ରହ୍ମପୁର ଜେଲରେ ଫାଶି ପାଇବାଦିନ ଓଡ଼ିଶାର ପାଞ୍ଚ ଶହଯାଏ ରାଜବନ୍ଦୀଙ୍କର କ୍ରୋଧ ଓ ସଂକଳ୍ପ ସହିତ ଜଡ଼ିତ ହେବାର ସୁଯୋଗ ଘଟିଛି । ସାରାରାତି ଏପଟୁ ବନ୍ଦୀ ଶିବିରରୁ ଲକ୍ଷ୍ମଣ ନାୟକ ଜିନ୍ଦାବାଦ ଲକ୍ଷ୍ମଣ ନାଏକ ଅମର ରହେ ଧ୍ୱନି ଆଉ ତହିଁ ପରଦିନ ସାମଗ୍ରିକ ଖାଦ୍ୟ ବର୍ଜନ କଥା ମନକୁ ଆସେ ।

ଢେଙ୍କାନାଳର ବାଜି, ନଟ, ରଘୁ, ଗୁରି, ହୁରୁଷି, ବରଜୁ ଏମିତି ଛଅଟି ସହିଦଙ୍କ ଶବକୁ କଟକରେ ୧୯୩୮ ସେପ୍ଟେମ୍ବର ୧୨ ତାରିଖରେ ବିରାଟ ପଟୁଆରର ଦୃଶ୍ୟ ଆଖି ଆଗରେ ଭାସିଉଠିଛି । ନେତାମାନଙ୍କ ଗହଣରେ ଛଅଟି ଶଗଡ଼ବାହୀ ଶବ ପଟୁଆରରେ କବି ସଚ୍ଚିରାଉତରା, ଅନନ୍ତ ପଟ୍ଟନାୟକ ତଥା ବିପ୍ଳବୀର ବିକ୍ଷୋଭ, ବିଶ୍ୱନାଥ ପଶାଏତ୍, ଡାକ୍ତର ମୋତିଲାଲ ତ୍ରିପାଠୀଙ୍କ ସଙ୍ଗରେ ମୁଁ ଯେ ଜଣେ ଶଗଡ଼ିଆ ଥିଲି, ତାହା ଆଜି ମନେପଡୁଛି । ଆମ ଦେଶର ସ୍ୱାଧୀନତା ସଂଗ୍ରାମର ଲକ୍ଷଲକ୍ଷ ସହିଦଙ୍କ ଉଦ୍ଦେଶ୍ୟରେ ସମଗ୍ର ଦେଶବାସୀ ଶ୍ରଦ୍ଧାଞ୍ଜଳି ଦେବେ । ଆଉ ସେମାନଙ୍କର ଆଦର୍ଶ, ଲକ୍ଷ୍ୟ, ମୂଲ୍ୟବୋଧଗୁଡ଼ିକ ଯେପରି ଭୂଲୁଣ୍ଠିତ ହେଉଛି, ତାହାର ଦୃଢ଼ ମୁକାବିଲା କରିବେ ବୋଲି ଆଶା ପୋଷଣ କରୁଛି ।



# ନେତାଜୀଙ୍କ ସଂପର୍କରେ ଶ୍ରୀ ଦ୍ୱିବେଦୀ

ନେତାଜୀ ସୁଭାଷବୋଷଙ୍କ ଜନ୍ମ ଶତବାର୍ଷିକୀ ଉପଲକ୍ଷେ ଜାନୁଆରୀ ୨୩ ତାରିଖ ସମାଜର ଦୈନିକ ସଂସ୍କରଣରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ନେତାଜୀଙ୍କ ନୀତିଗତ ସଂଗ୍ରାମ ପ୍ରବନ୍ଧଟି ପଢ଼ିଲି । ଗୋଟିଏ ସ୍ଥାନରେ ଏକ ସନ୍ଦେହ ଉପୁଜିବାରୁ ତାଙ୍କର ଗୁଣଗ୍ରାହୀ ଭାବରେ ସନ୍ଦେହଟି ମୋଚନ କରିବେ ବୋଲି ଏତକ ଲେଖୁଛି । ଆଦ୍ୟରେ ସେ ତାଙ୍କ ନିଜସ୍ୱ ରୀତିରେ ନେତାଜୀଙ୍କୁ ମୂଲ୍ୟାୟନ କରିଛନ୍ତି । ସେଥିରେ କିଛି କହିବାର ନାହିଁ । ମାତ୍ର ନେତାଜୀଙ୍କ ସଂପର୍କରେ ଏତେ ଘନିଷ୍ଠ ଥାଇ ନେତାଜୀ ଜେଲ୍‌ରୁ ଖସି ବିଦେଶ ଚାଲିଗଲେ ବୋଲି ତାଙ୍କର ବକ୍ତବ୍ୟ କ'ଣ ଠିକ୍ । ଜେଲ୍‌ରେ ଅନଶନ, ତା'ପରେ ତାଙ୍କ ବାସଘରେ ନିଭୃତ ଭାବରେ ରହିବାର ସୁଯୋଗ ପାଇଲେ ଏହି ଅନଶନ କାରଣରୁ । ବ୍ରିଟିଶ ସରକାର ବାଧ ହେଲା ଏଥିଲାଗି । ନିଭୃତ କକ୍ଷରୁ ସର୍ବତ୍ର ଘେରା ବ୍ରିଟିଶ ଗୁଇନ୍ଦାଙ୍କ ଆଖିରେ ଧୂଳିଦେଇ ସେ ଚାଲିଗଲେ ତାହା ଏକ ଚମକପ୍ରଦ ଘଟଣା । ସେ ଜେଲ୍‌ରୁ ଖସି ପଳାଇନାହାନ୍ତି ।

ଆହୁରି ଶ୍ରୀ ଦ୍ୱିବେଦୀ ଲେଖିଛନ୍ତି ଯେ ସେ ନିଜେ ଲୁଚିଛପି ରହି ଭାରତଛାଡ଼ ଆନ୍ଦୋଳନ କରୁଥିବା ବେଳେ ସନ୍ଦେହ କରିଥିଲେ । ମାତ୍ର ନେତାଜୀଙ୍କ ହସ୍ତାକ୍ଷର ସହିତ ସେ ପରିଚିତ ଥିବାରୁ ଓ ନେତାଜୀ ପଠାଇଥିବା ଦେଶପ୍ରେମୀମାନଙ୍କର ତାଲିକା ଦେଖି ସେ ବିଶ୍ୱାସ କରିଗଲେ । ଏଠାରେ ହିଁ ସଂଶୟ ଜାତ ହେବା ସ୍ୱାଭାବିକ । ପୂର୍ବରୁ ଶ୍ରୀ ଦ୍ୱିବେଦୀଙ୍କର ଅଗଷ୍ଟ ଆନ୍ଦୋଳନ ସଂକ୍ରାନ୍ତ ପୁସ୍ତକରେ ଏପରି ଏକ ମୂଲ୍ୟବାନ ତଥ୍ୟର ଉଲ୍ଲେଖ ଦୃଷ୍ଟିକୁ ଆସିନାହିଁ । ତାହା ବଡ଼କଥା ନୁହଁ । କାଳ ନିରୂପଣରେ ହିଁ ଅସଲ ପ୍ରଶ୍ନ, ତାହାହିଁ ସନ୍ଦେହ ଦୂର କରିବ ।

୧୯୪୨ ଅଗଷ୍ଟ ୯ରେ ଭାରତଛାଡ଼ ଆନ୍ଦୋଳନ । ଶ୍ରୀ ଦ୍ୱିବେଦୀ ତାହାର ସଂଗଠକ ଥାଇ ୧୯୪୨ ନଭେମ୍ବର ଯାଏ ବାହାରେ ଥିଲେ । ବାହାରେ ରହିବା ୩ ମାସରୁ କିଛି ଅଧିକ ଦିନ ।

କିନ୍ତୁ ନେତାଜୀ ଭାରତ ଛାଡ଼ିଲେ ୧୯୪୧ ଜାନୁଆରୀ ୧୬ ତାରିଖରେ ପେଶାୱାର କାବୁଲ । ତାସକନ୍ଦ ଦେଇ ବର୍ଲିନରେ ରହିଲେ । ୧୯୪୩ ଜୁଲାଇ ମାସ ଯାଏ ସେଠାରେ ରହି ସେହିମାସ ୨ ତାରିଖରେ ସିଙ୍ଗାପୁରରେ ପହଞ୍ଚିଲେ । କେଉଁଠୁ ଏପରି ଚିଠି ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ଯାବତୀୟ ପ୍ରତିବନ୍ଧକ, କଟକଣା ସତ୍ତ୍ୱେ ଦ୍ୱିବେଦୀଙ୍କ ଗୋପନରେ କଟକରେ ଅଛନ୍ତି ଜାଣି ତାଙ୍କ ଗୋପନବାସର ତିନିମାସ ମଧ୍ୟରେ ତାଙ୍କ ନିକଟକୁ ଦୂତ ଓ ବାର୍ତ୍ତା ପଠାଇଲେ, ଅଗଷ୍ଟ ଆନ୍ଦୋଳନରେ ସେତେବେଳର ସର୍ବ ଭାରତୀୟ ନେତା ଅରୁଣା ଆସଫଅଲ୍ଲି, ରାମନନ୍ଦନ ମିଶ୍ର, ରାମମନୋହର ଲୋହିଆ, ଜେଲ୍‌ରୁ ଖସି ଆସିଥିବା ଜୟପ୍ରକାଶ ନାରାୟଣ ପ୍ରଭୃତିଙ୍କୁ ପଠାଇଥିବେ । ଏକଥା ନିଶ୍ଚୟ ଶ୍ରୀ ଦ୍ୱିବେଦୀଙ୍କ ଅବଗତିକୁ ଆସିଥିବ ?

ଶ୍ରୀ ଦ୍ୱିବେଦୀ ଯେପରି ତାଙ୍କ ରଚିତ ପୁସ୍ତକଗୁଡ଼ିକରେ ଦଲିଲଗୁଡ଼ିକର (ଯାହା ତାଙ୍କ ବିରୁଦ୍ଧରେ ବ୍ରିଟିଶ ସରକାର ମକଦ୍ଦମା କରି ପ୍ରମାଣ ସ୍ୱରୂପ ବ୍ୟବହାର କରିଥିଲା) ନକଲ ପ୍ରକାଶ କରିଛନ୍ତି, ସୁଭାଷବାବୁଙ୍କ ଏପରି ଚିଠି ଯଦି ପ୍ରକାଶ କରିଦିଅନ୍ତି ତେବେ ସେହି ଚିଠି ନେତାଜୀଙ୍କ ସଂପର୍କରେ ସଂଗୃହୀତ ଦଲିଲମାନଙ୍କ ମଧ୍ୟରୁ ଅନ୍ୟତମ ହେବ ଏବଂ ତାଙ୍କର ଉଲ୍ଲେଖ ପ୍ରତ୍ୟୟସିଦ୍ଧ ହେବ ।

□□□

# ଓଡ଼ିଶାରେ କୃଷକ ଆନ୍ଦୋଳନର ଇତିହାସରୁ ଖିଏ

୧୯୩୫ ଜୁନ୍‌ଠାରୁ ୧୯୩୬ ନଭେମ୍ବର ଯାଏ ଉତ୍କଳ ପ୍ରାଦେଶିକ କୃଷକ ସଙ୍ଘର କାର୍ଯ୍ୟ ବିବରଣୀ ସେତେବେଳେ ସଙ୍ଘ ପକ୍ଷରୁ ସାରସ୍ୱତ ପ୍ରେସ୍‌ରେ ପ୍ରକାଶ କରାଯାଇଥିଲା ।

ସେହି ବିବରଣୀ ବଡ଼ ଚମକପ୍ରଦ । ଜମିଦାରମାନଙ୍କ ଅତ୍ୟାଚାର ଓ ଶୋଷଣ କିପରି ଚାଲିଥିଲା ଓ କିପରି ପ୍ରଥମେ, କେଉଁଠି ଓ କିପରି ଭାବରେ କୃଷକ ସଙ୍ଘ ଗଠନ କରାଗଲା, କେଉଁଠି ସଭା ସମ୍ମିଳନୀ ହେଲା, କି କି ଦାବୀ ଉପସ୍ଥାପନ କରାଗଲା ଏବଂ ସେତେବେଳେ କୃଷକ ଆନ୍ଦୋଳନର ଆଦ୍ୟାବସ୍ଥାରେ କେଉଁକେଉଁମାନେ ମୁଖ୍ୟତଃ ଯୋଗ ଦେଇଥିଲେ ତାହାର ସଂକ୍ଷିପ୍ତ ବିବରଣୀ ରହିଛି । ସ୍ୱାଧୀନତା ସଂଗ୍ରାମ ଚାଲିଥିବା ବେଳେ ଚାଷୀମାନଙ୍କର ଗଣତାନ୍ତ୍ରିକ ଦାବୀ ଘେନି ଓ ମାନବିକ ଦୃଷ୍ଟିକୋଣ ଘେନି ସେତେବେଳେ ସମାଜବାଦୀ ଚିନ୍ତାଧାରା ପୋଷଣ ନ କରୁଥିବା ଏବଂ ତାହାର ବିରୋଧରେ ଥିବା କଂଗ୍ରେସ ନେତା ଓ ଜନନେତା ମଧ୍ୟ ଏଥିରେ ସାମିଲ ହୋଇଥିଲେ । ଏହି ଆଦ୍ୟ କୃଷକ ଆନ୍ଦୋଳନ ଏକ ବିରାଟ ଜନଜାଗରଣର ରୂପ ନେଲା । ମାତ୍ର ପରେ, ବିଶେଷତଃ ଗଡ଼ଜାତ ପ୍ରଜା ଆନ୍ଦୋଳନ ପରେ ଏବଂ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଓ ସ୍ୱାଧୀନତା ପରେ କୃଷକ ଆନ୍ଦୋଳନ କେବଳ ଏକ ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ଗଣତାନ୍ତ୍ରିକ ଆନ୍ଦୋଳନରୁ ଉଚ୍ଚତର ସୋପାନ କୃଷକର ଶ୍ରେଣୀ ସଂଗ୍ରାମ, ଶ୍ରେଣୀ ଅଧିକାର, ବିନା କ୍ଷତିପୂରଣରେ ଜମିଦାରୀ ପ୍ରଥା ଉଚ୍ଛେଦ, ଭାଗଚାଷୀଙ୍କୁ ସ୍ୱତ୍ୱ, ଜମିଦାରମାନଙ୍କର ଜମିବଣ୍ଟନ, ମହାଜନୀ ପ୍ରଥାର ଅବସାନ, ସରକାରୀ ପତିତ ଓ ଅନାବାଦୀ ଜମି ବଣ୍ଟନର ସମସ୍ୟା ଉଠିଲା, ସେତେବେଳେ କୃଷକ ଆନ୍ଦୋଳନର ଯେଉଁମାନେ ପ୍ରଥମେ ପ୍ରଥମେ କଂଗ୍ରେସ ଭିତରୁ ଆସୁଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଦୂରେଇଗଲେ । କେତେକ ପ୍ରକାଶ୍ୟରେ ବିରୋଧ କଲେ, ଏମିତିକି ରାଜନୈତିକ କାରଣରୁ କେଉଁ କେଉଁ ଜମିଦାରଙ୍କ ସହିତ ମେଣ୍ଟ ବାନ୍ଧିଲେ ।

ମାତ୍ର କୃଷକ ଆନ୍ଦୋଳନରେ ଶ୍ରେଣୀ ଚେତନା ବଢ଼ିଲା, କୃଷକ ଉତ୍ପାଦନ ହିସାବରେ ରାଜନୈତିକ କ୍ଷମତାରେ ଅଂଶୀଦାର ହେବ ଏବଂ ଶ୍ରମିକ କୃଷକ, ମେହନତୀ ଲୋକଙ୍କ ଶାସନ ପ୍ରତିଷ୍ଠା ହେବ ଏବଂ ପୁଞ୍ଜିବାଦ ଓ ସାମନ୍ତବାଦକୁ ବିଲୋପ କରାଯିବ, ଏହି ଆଦର୍ଶ ଆଭିମୁଖ୍ୟ କୃଷକ ସଭା ହେବା ପୂର୍ବର ସହକର୍ମୀ ଏଥିରୁ ଓହରିଗଲେ ।

ଏକ ବିବରଣୀ ପ୍ରଦାନର ଲକ୍ଷ୍ୟ ହେଲା, ଓଡିଶାରେ ଯେଉଁମାନେ, ବିଶେଷତଃ କମ୍ୟୁନିଷ୍ଟମାନେ କୃଷକ ଆନ୍ଦୋଳନ କରୁଛନ୍ତି, ସେମାନେ ଅତୀତ ସଂଗ୍ରାମ ସହିତ ପରିଚିତ ହୁଅନ୍ତୁ । ଅତୀତ ନ ଥିଲେ ବର୍ତ୍ତମାନ ନଥା'ନ୍ତା । ଅତୀତର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ବ୍ୟବସ୍ଥାରେ ପରିବର୍ତ୍ତନ ହୋଇଛି । ପୂର୍ବର ସାମନ୍ତବାଦ ନାହିଁ । ମାତ୍ର ଅର୍ଥନୀତି ଓ ସାମାଜିକ ଦୃଷ୍ଟିକୋଣରୁ ସାମନ୍ତବାଦର ଅବଶେଷଗୁଡ଼ିକ ଲୋପ ହୋଇନି । ଅଥଚ କୃଷିରେ ପୁଞ୍ଜିବାଦୀ ଅର୍ଥନୀତି ଜୋର୍‌ସୋର୍‌ରେ ପ୍ରବେଶ କରିଛି । ପୂର୍ବରୁ କୃଷକ ଭିତରେ ମଧ୍ୟ ସାମାଜିକ, ଆର୍ଥିକ ସ୍ଥିତିରେ ପରିବର୍ତ୍ତନ ଦେଖାଦେଇଛି । ଜମିଦାରଙ୍କ ବଦଳରେ ପୁଞ୍ଜିବାଦୀ ବା ଧାନଚାଷୀ ବଢ଼ିଛନ୍ତି ।

ଏହି ପରିପ୍ରେକ୍ଷୀରେ ୧୯୩୫-୩୬ରେ ଓଡ଼ିଶାର କେଉଁ କେଉଁ ଜିଲ୍ଲାରେ କେଉଁ କେଉଁ ଜମିଦାରୀ ଇଷ୍ଟେଟରେ ଆନ୍ଦୋଳନ ଆରମ୍ଭ ହୋଇଥିଲା ଓ କେଉଁମାନେ ସେହି ବର୍ଷର ସଭା ସମିତି, ସମ୍ମିଳନୀରେ ଯୋଗ ଦେଇଥିଲେ ତାହାର ବିବରଣ ଦିଆଗଲା ।

କଟକ ଜିଲ୍ଲାର ଗୋବିନ୍ଦପୁର ଥାନା ତଣ୍ଡିକଣା ଗ୍ରାମକୁ କେନ୍ଦ୍ର କରି ସଂଗଠିତ କୃଷକ ଆନ୍ଦୋଳନ ଆରମ୍ଭ ପୂର୍ବରୁ କଟକର ଗୋବିନ୍ଦପୁର, ଜଗତ୍‌ସିଂହପୁର ଥାନାର କେତେକ ଅଞ୍ଚଳରେ, ବାଲେଶ୍ୱରରେ ଏବଂ ଗଞ୍ଜାମରେ ସେହିବର୍ଷ ଭିତରେ କୃଷକ ସଙ୍ଘ ପକ୍ଷରୁ ସଭା ସମିତି ହୋଇଥିଲା । କଟକରେ ଏକ ପ୍ରାଦେଶିକ ସମ୍ମିଳନୀ ହୋଇଥିଲା ।

ଏକ ପ୍ରଶ୍ନାବଳୀ ତିଆରି କରାଯାଇ ତଥ୍ୟ ସଂଗ୍ରହ କରାଯାଇଥିଲା, ସେତେବେଳେ ଦାବୀଗୁଡ଼ିକ କେଡ଼େ ପ୍ରାଥମିକ ସେସବୁ ଦିଆଯାଇଥିଲା, କି କି ପ୍ରକାର ବେଆଇନ୍ ପାଉଣା ଓ କି ରକମର ଅତ୍ୟାଚାର କରାଯାଉଥିଲା ତା'ର ଏକ ବିବରଣୀ ଦିଆ ଯାଇଥିଲା । କୃଷକ ଆନ୍ଦୋଳନର ଆଭିମୁଖ୍ୟ କ'ଣ ତାହା ଉପସଂହାରରେ ଲେଖାଯାଉଥିଲା ।

ଏହି ରିପୋର୍ଟଟି କେତୋଟି ଅଂଶରେ ବିଭକ୍ତ କରାଯାଇ ପ୍ରକାଶ କରାଯିବ (ଏହାକୁ ସାମଗ୍ରିକ ଭାବରେ ଗଢ଼ିବାକୁ ଏକ କୃଷକ ଆନ୍ଦୋଳନ କରୁଥିବା ସାଥୀମାନେ କଟିଙ୍ଗ କରି ରଖିବା ଉଚିତ ।)

ଏଥର ପୁରୀ ଜିଲ୍ଲାରେ ସେହିବର୍ଷ ପ୍ରାଥମିକ ଆନ୍ଦୋଳନର ରୂପରେଖ କ'ଣ ଥିଲା ତାହା ଏବଂ ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲାର ବିବରଣୀ ପ୍ରଥମେ ଦିଆଯାଉଛି । ତା'ପରେ କଟକ ଜିଲ୍ଲାର ବିସ୍ତୃତ ବିବରଣୀ ଦିଆଯିବ । ପ୍ରଥମ ପ୍ରଚାରପତ୍ର ବା ପ୍ରଶ୍ନାବଳୀ, ଦାବୀପତ୍ର, ଅତ୍ୟାଚାର ଫର୍ଦ୍ଦ ମଧ୍ୟ କ୍ରମେ ପ୍ରକାଶ କରାଯିବ ।

ପୁରୀ ଜିଲ୍ଲାରେ କାର୍ଯ୍ୟ "ଶ୍ରୀ ମୋହନ ଦାସ ଅଞ୍ଚଳରେ (ନିମାପଡ଼ା-ଗୋପ-କାକଟପୁର) "ଲୋକସଭା" ସଙ୍ଗଠନ କରି ପ୍ରଜାମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ୨।୩ ବର୍ଷ ହେଲା ଆନ୍ଦୋଳନ ଚଳାଉଥିଲେ । ବର୍ତ୍ତମାନ ସେ ଉତ୍କଳ କୃଷକ ସଂଘରେ ଯୋଗ ଦେଇ ପୁରୀ ଜିଲ୍ଲାର କୃଷକ ସଙ୍ଗଠନ କାର୍ଯ୍ୟରେ ଅଗ୍ରଣୀ ।

**କାକଟପୁର**

ଏ ଜିଲ୍ଲାର କାକଟପୁର ଥାନାଟି ସବୁଠାରୁ ଅନ୍ଧାରି କହିଲେ ଚଳେ । ପ୍ରତି ବଢ଼ିରେ ଏଠାକାର ଚାଷୀ କ୍ଷତିଗ୍ରସ୍ତ ହୁଅନ୍ତି । ଭିଙ୍ଗାରପୁର ଚୌଧୁରୀ, ଜାହାଜ କାଦରବେଗ, ଏମାରମଠ, ଉତ୍ତରପାର୍ଶ୍ୱ ମଠ, ମହୀ ପ୍ରକାଶମଠ, ଏ ଥାନାର ମୁଖ୍ୟ ଜମିଦାର । ନିରୀହ ପ୍ରଜାଙ୍କ ଉପରେ ଅଶେଷ ପ୍ରକାର ଅତ୍ୟାଚାର ହୁଏ । ଅନେକ ଥର ଖବର କାଗଜମାନଙ୍କରେ ଏକଥା ପ୍ରକାଶ ପାଇଛି । ସାମାଜିକ ବାସନ୍ଦ ଏ ଅଞ୍ଚଳର ଜମିଦାରଙ୍କର ଗୋଟିଏ ପ୍ରଧାନ ଅସ୍ତ୍ର । ହୁକୁମ ଅମାନ୍ୟ କଲେ ଧୋବା ଭଣ୍ଡାରି ବାସନ୍ଦ କରି ହଇରାଣରେ ପକାନ୍ତି । ସାମାନ୍ୟ ଅପରାଧରେ ୨୦।୨୫ ଟଙ୍କା ପର୍ଯ୍ୟନ୍ତ (ବର୍ତ୍ତମାନ ମୁଦ୍ରା ମୂଲ୍ୟର ୧ ହଜାର ଟଙ୍କାରୁ ଅଧିକ) ଜରିମାନା ଅସୁଲ ହୁଏ । ଶ୍ରୀ ପୂର୍ଣ୍ଣାନନ୍ଦ ସ୍ୱାଇଁ ପ୍ରଭୃତିଙ୍କ ଉଦ୍ୟମରେ (ପୂର୍ଣ୍ଣାନନ୍ଦ ବାବୁ ଜଣେ ନିଷ୍ପାପର କଂଗ୍ରେସ କର୍ମୀ ଓ ରଚନାତ୍ମକ କାମଦାମରେ ଆତ୍ମୋତ୍ସର୍ଗ କରି ଲବଣ ସତ୍ୟାଗ୍ରହଠାରୁ ୧୯୪୨ ଆନ୍ଦୋଳନ ବେଳେ ଜେଲ୍ ଯାଇଥିଲେ ଓ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇ ମୃତ୍ୟୁ ପର୍ଯ୍ୟନ୍ତ କମ୍ୟୁନିଷ୍ଟମାନଙ୍କ ସଂଗରେ ରହି କୃଷକ ଆନ୍ଦୋଳନରେ ଭାଗ ନେଇଥିଲେ) ଲୋକେ ସଙ୍ଘଠିତ ହୋଇ ବାସନ୍ଦକୁ ଖାତିର ନ କରି ନିଜ ନିଜ ହାତରେ ଲୁଗା ପଟା କାଚିବା ଓ ଖିଅର ହେବା ଆଦି କାର୍ଯ୍ୟ କରୁଛନ୍ତି । ଉତ୍କଳ କୃଷକ ସଙ୍ଘ ତରଫରୁ କାକଟପୁରରେ ଗୋଟିଏ ସ୍ଥାୟୀ କେନ୍ଦ୍ର ଅଛି । ଗତିକୃଷ୍ଣ ସ୍ୱାଇଁ, ଲୋକନାଥ ରାୟ ଆଦି କର୍ମୀ ଏ ଅଞ୍ଚଳରେ କାର୍ଯ୍ୟ କରୁଛନ୍ତି । ଅନେକଗୁଡ଼ିଏ ଗ୍ରାମରେ କୃଷକ ସଙ୍ଘ ସ୍ଥାପିତ ହୋଇଯାଇଛି ।

**ନୟାହାଟ କୃଷକ ସମ୍ମିଳନୀ**

ଗୋପ, ନିମାପଡ଼ା, କାକଟପୁର ଏହି ତିନୋଟି ଥାନାର ଗୋଟିଏ କୃଷକ ସମ୍ମିଳନୀ ନୟାହାଟଠାରେ ହୋଇଥିଲା । ଶ୍ରୀ ସାଧୁଚରଣ ମହାନ୍ତି ଅଭ୍ୟର୍ଥନା ସମିତିର ସଭାପତି ହୋଇଥିଲେ ଏବଂ ଶ୍ରୀ ରାଜକୃଷ୍ଣ ବୋଷ ସଭାପତି ନିର୍ବାଚିତ ହୋଇଥିଲେ । ବର୍ଷା ପାଗ ସତ୍ତ୍ୱେ ସମ୍ମିଳନୀରେ ପ୍ରାୟ ୩୦୦୦ ଚାଷୀ ଯୋଗ ଦେଇଥିଲେ । କେତେକ ଚାଷୀ ଜମିଦାରଙ୍କ ଅତ୍ୟାଚାରରେ କିପରି ପ୍ରପୀଡ଼ିତ ହେଉଛନ୍ତି ତାହା ସଭାରେ ଜଣାଇଥିଲେ । ସେ ଅଞ୍ଚଳର ସ୍ଥାୟୀ ସମ୍ମିଳନୀ କରାଗଲା ଏବଂ ଶ୍ରୀ ପୁରୁଷୋତ୍ତମ ମୁଦୁଲି ଏହାର ସମ୍ପାଦକ ନିଯୁକ୍ତ ହେଲେ ।

"ସମ୍ମିଳନୀର ପ୍ରସ୍ତାବ ଅନୁଯାୟୀ ଶ୍ରୀ ଗତିକୃଷ୍ଣ ସ୍ୱାଇଁ, ଶ୍ରୀ ଲୋକନାଥ ରାୟ ଜାହାଜ କାଦରବେଗଙ୍କ ଜମିଦାରୀର କୃଷ୍ଟି, ସୁହାଗପୁର ଓ ଫକୀର ସାହି ମୌଜାମାନଙ୍କୁ ଅନୁସନ୍ଧାନ କରିବାକୁ ଯାଇଥିଲେ । ସେମାନେ ଗୋଟିଏ ଦୀର୍ଘ ରିପୋର୍ଟ କୃଷକ ସଙ୍ଘ ନିକଟରେ ଦେଇଛନ୍ତି । ସେଥିରେ ୧୮ ପ୍ରକାର ବେଆଇନ ପାଉଣା ଓ ଆବୁଆରି ଆଦାୟ ହୁଏ ବୋଲି ବର୍ଣ୍ଣନା ଅଛି । ଦାଖଲ ଖାରଜ ରୋସମ ଅଧିକ ନେବା, ତରରିର, ବାହାଚିନା ଆଦି ଓଡ଼ିଶାର ପ୍ରତି ଜମିଦାରୀରେ ଘଟୁଥିବା ବେଳେ କେତେକ ମାମୁଲି କଥା ଛାଡ଼ିଦେଲେ ଜମିଦାରଙ୍କ

କଚେରୀରେ ନାଟ କରିବା ପାଇଁ ଯାତ୍ରାଦଳଙ୍କ ଖର୍ଚ୍ଚ ସକାଶେ ପ୍ରତ୍ୟେକ ପ୍ରଜାଙ୍କଠାରୁ ଚାରିଅଣା, ଆଠ ଅଣା ପର୍ଯ୍ୟନ୍ତ ଅସୁଲ କରାହୁଏ ଓ ଖଜଣା ଆଦାୟ ସମୟରେ ଏହା ଆଗରୁ କାଟି ନିଆଯାଏ । ପିଲାଙ୍କୁ ବାଧ କରି ନାଟ ପାଇଁ ବେଶ ଓ ସେଥି ସକାଶେ ଖୋରାକ ଆଦାୟ କରିବା, କଚେରୀ ଘର ଛପର ପାଇଁ ଜବରଦସ୍ତି ପ୍ରଜାର ପାଳଗଦା ଭାଙ୍ଗି ଛଣ ନେଇଯିବା, ଜଙ୍ଗଲ କର ଆଦାୟ କରି ସୁଦ୍ଧା ପୁନର୍ବାର କାଠ ମୂଲ ଅସୁଲ କରିବା, ହୁକୁମ ଅମାନ୍ୟ କଲେ ମୁହଁରେ ଲଙ୍କା ମରିଚ ଧୂଆଁ, ବିଛୁଆତି ପ୍ରାହାର ଆଦି ଜଘନ୍ୟ ଅତ୍ୟାଚାର ହୁଏ । ପୂର୍ବେ ସ୍ଥିତିବାନ ସତ୍ତ୍ୱରେ ପ୍ରଜାମାନେ ପାନ ବରଜ କରୁଥିଲେ । ବର୍ତ୍ତମାନ ବେଶି ଆଦାୟ କରିବା ଆଶାରେ ପାନ ବରଜ ପାଇଁ ୫୦ରୁ ୧୦୦ ଟଙ୍କା ଲେଖାଏଁ ସଲାମୀ ଦାବୀ କରାଯାଉଛି ।

**କଣାସ ଓ ବ୍ରହ୍ମଗିରୀ**

ପୁରୀ ଜିଲ୍ଲାର କଣାସ ଓ ବ୍ରହ୍ମଗିରୀ ଥାନା ଦୁଇଟି ବିଶେଷ ଭାବରେ ବନ୍ୟା ପ୍ରପୀଡ଼ିତ । ହଜାର ହଜାର ଏକର ଜମି ପାଣି ପାଟ ହୋଇ ଛିଡ଼ା ହୋଇଥାଏ ଏବଂ କୌଣସି ଫସଲ ହୁଏ ନାହିଁ । ୩୨ଟି ଗ୍ରାମର ଲୋକେ ଦାଣ୍ଡର ଭିକାରି ହୋଇସାରିଲାଣି । ଏକ ଦୁଇ ଥାନାର ଶ୍ରୀ ଜନାର୍ଦ୍ଦନ ବିଶ୍ୱାଳଙ୍କ ଉଦ୍ୟମରେ ଦୁଇଟି କୃଷକ ସମ୍ମିଳନୀ ହୋଇଥିଲା । ଶ୍ରୀ ସତ୍ୟବାଦୀ ନନ୍ଦ (ଏବେ ବି ଜୀବିତ ଓ କଂଗ୍ରେସ ନେତା) ପୂର୍ବତନ ଏମ୍.ଏଲ୍.ଏ ସଭାପତି ହୋଇଥିଲେ । ଶ୍ରୀ ଜନାର୍ଦ୍ଦନ ବିଶ୍ୱାଳ ଅଭ୍ୟର୍ଥନା ସମିତିର ସଭାପତି ହୋଇଥିଲେ । ଚାଷୀମାନଙ୍କ ମଧ୍ୟରୁ ଗୋଟିଏ ଡେପୁଟେସନ ପୁରୀ ଜିଲ୍ଲା ମେଜେଷ୍ଟରଙ୍କ ନିକଟକୁ ଯିବା ନିମିତ୍ତ ସ୍ଥିର ହୋଇଥିଲା ଓ ସ୍ଥାୟୀ ସଙ୍ଗଠନ ନିମନ୍ତେ ଗୋଟିଏ କମିଟି ମଧ୍ୟ ଗଢ଼ାଯାଇଛି ।

କେତେକ ପ୍ରଜା ପୁରୀ ଜିଲ୍ଲା ମେଜେଷ୍ଟରଙ୍କ ନିକଟରେ ବନ୍ୟାଗ୍ରସ୍ତ ଗ୍ରାମମାନଙ୍କରେ ଦୁରବସ୍ଥା ବର୍ଣ୍ଣନା କରିଥିଲେ ଏବଂ ସେଥିପାଇଁ ପୁରୀରୁ ଜଣେ ଡେପୁଟି ତଦନ୍ତ କରିବାକୁ ଆସିଥିଲେ । ଲୋକଙ୍କର ଏପରି ଶୋଚନୀୟ ଅବସ୍ଥାରେ ମଧ୍ୟ ଖଜଣା ଆଦି ରୀତିମତ ଆଦାୟ କରାଯାଉଛି ।

**ଖୋର୍ଦ୍ଧା**

"ଖୋର୍ଦ୍ଧା ସବଡ଼ିଭିଜନର ଗୋଟିଏ କୃଷକ ସମ୍ମିଳନୀ ଶ୍ରୀ ପ୍ରାଣନାଥ ପଟ୍ଟନାୟକ ଓ ଗୋକୁଳ ମୋହନ ରାୟଚୂଡ଼ାମଣି ପ୍ରଭୃତିଙ୍କ ଉଦ୍ୟମରେ ଖୋର୍ଦ୍ଧାଠାରେ ଅନୁଷ୍ଠିତ ହୋଇଥିଲା । ପ୍ରାୟ ୮୦୦୦ ଚାଷୀ ଯୋଗଦେଇଥିଲେ । ଶ୍ରୀ ପ୍ରାଣନାଥ ପଟ୍ଟନାୟକ ଅଭ୍ୟର୍ଥନା ସମିତିର ସଭାପତି ଓ ଶ୍ରୀ ନବକୃଷ୍ଣ ଚୌଧୁରୀ ସମ୍ମିଳନୀରେ ସଭାପତି ହୋଇଥିଲେ । ଅନ୍ୟାନ୍ୟ ପ୍ରସ୍ତାବ ମଧ୍ୟରେ ଜଙ୍ଗଲ ଛାଡ଼ ପାଇଁ ବିଶେଷ ଦାବୀ କରାଯାଇଥିଲା ଓ ସ୍ଥାୟୀ ସଂଗଠନ ପାଇଁ ଗୋଟିଏ ସଂଘ ଗଢ଼ାହେଲା ।

**ପୁରୀ ଜିଲ୍ଲା କୃଷକ ସଂଘ**

ପୁରୀ ଜିଲ୍ଲାରେ କାର୍ଯ୍ୟ ପରିଚାଳନା ପାଇଁ ପୁରୀ ଜିଲ୍ଲା କୃଷକ ସଂଘ ଗଢ଼ାଯାଇଛି । ଶ୍ରୀ

ଲୋକନାଥ ମିଶ୍ର (ପଙ୍କବାବୁ ଓ ପୂର୍ବତନ କଂଗ୍ରେସ ଏମ୍.ପି. ଏବେ ଜୀବିତ ସଭାପତି ଶ୍ରୀ ଗଙ୍ଗାଧର ମିଶ୍ର (ଏକଦା ପୁରୀ ଜିଲ୍ଲା କଂଗ୍ରେସର ସମ୍ପାଦକ ଓ କମ୍ୟୁନିଷ୍ଟ ନେତା ଜୀବିତ) ସମ୍ପାଦକ ହୋଇଛନ୍ତି ।

**ବାଲେଶ୍ୱର ଜିଲ୍ଲାରେ କାର୍ଯ୍ୟ**

ଏହି ଜିଲ୍ଲାରେ ବ୍ୟାପକ ଭାବରେ ଚାଷୀ ଆନ୍ଦୋଳନ ନ ହୋଇଥିଲେ ମଧ୍ୟ ଅନ୍ୟାନ୍ୟ ଜିଲ୍ଲା ଅପେକ୍ଷା ଚାଷୀ ଶ୍ରେଣୀ ଟିକିଏ ସଚେତନ । କନିକା ଜମିଦାର ଛୁମୁକା ଅଞ୍ଚଳର ଅତ୍ୟାଚାର ଓ କନିକାର କର ବଢ଼ାଇବାର ଉଦ୍ୟମ ଦିନୁ ସେଠାରେ ଜମିଦାର ପ୍ରଜାଙ୍କ ମଧ୍ୟରେ ବରାବର ସଂଘର୍ଷ ଲାଗି ରହିଛି । ସେଥି ସକାସେ ସେମାନେ ନାନା ଦୁଃଖ କଷ୍ଟ ସହି ସୁଦ୍ଧା ବର୍ତ୍ତମାନ ପର୍ଯ୍ୟନ୍ତ ଦୃଢ଼ ରହିଛନ୍ତି । କନିକାର ପ୍ରଜାମାନେ ଶ୍ରୀ ଚକ୍ରଧର ବେହେରା (ଏକଦା କଂଗ୍ରେସ ଏମ୍.ଏଲ.ଏ ଓ ବର୍ତ୍ତମାନ ମୃତ)ଙ୍କ ନେତୃତ୍ୱରେ କନିକାର ପ୍ରଜାମାନେ ଅଦ୍ଭୁତ ସାହସ ଓ ଧୈର୍ଯ୍ୟର ସହିତ ଏହି ଆନ୍ଦୋଳନ ଚଳାଇ ଆସିଛନ୍ତି ।

**ବାଲେଶ୍ୱର ଥାନା**

ସୁରେନ୍ଦ୍ର ନାଥ ଦାସ (ସର୍ଦ୍ଦାର ସୁରେନ୍ଦ୍ର ଦାସ, ଜଣେ ବିଶିଷ୍ଟ ସ୍ୱାଧୀନତା ସଗ୍ରାମର ନେତା, ଏକଦା ଏମ୍.ଏଲ୍.ଏ. ଓ ବର୍ତ୍ତମାନ ମୃତ) ପ୍ରଭୃତିଙ୍କ ଉଦ୍ୟମରେ କୃଷକ ସମ୍ମିଳନୀ ରଥସାହିଠାରେ ହୋଇଥିଲା; ଡାକ୍ତର କୃଷ୍ଣପ୍ରସାଦ ମହାନ୍ତି ଅଭ୍ୟର୍ଥନା ସମିତିର ସଭାପତି ଓ ଶ୍ରୀମତି ମାଳତୀ ଚୌଧୁରୀ ଏହି ସମ୍ମିଳନୀର ସଭାନେତ୍ରୀ । ପ୍ରାୟ ଦୁଇ ପ୍ରକାର ଚାଷୀ ଯୋଗ ଦେଇଥିଲେ ଏବଂ ସ୍ଥାୟୀ କାର୍ଯ୍ୟ ..ଙ୍କ ଗୋଟିଏ କମିଟି ସ୍ଥାପନ କରାଗଲା ।

ଏହି କେତେଦିନ ମଧ୍ୟରେ ଏଠାକାର ଚାଷୀମାନଙ୍କ ମଧ୍ୟରେ ଅଦ୍ଭୁତ ଜାଗରଣ ଦେଖାଦେଇଛି । ଏହି ଥାନାର ଦୁଇଟି ଗ୍ରାମର ଲୋକେ ନିଜେ ସଭା କରି ସୁନିଆ ଭେଟି ଏ ବର୍ଷ ବନ୍ଦ କରିଦେଇଛନ୍ତି ଏବଂ ଆଉ ଏଣିକି କୌଣସି ପ୍ରକାର ବେଆଇନ ପାଉଣା, ବେଠି ଆଦି ଦେବେ ନାହିଁ ବୋଲି ସ୍ଥିର କରିଅଛନ୍ତି ।

**ଖଇରା ଥାନା**

ଶ୍ରୀ ନିଳାମ୍ବର ଦାସ (ଜଣେ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ, ଏକଦା କଂଗ୍ରେସ ଏମ୍.ଏଲ୍.ଏ. ଓ ଏବେ ଜୀବିତ)ଙ୍କ ଉଦ୍ୟମରେ ବାଲେଶ୍ୱର ଜିଲ୍ଲା ଖଇରା ଥାନାରେ ଗୋଟିଏ କୃଷକ ସମ୍ମିଳନୀ ହୋଇଥିଲା । ବାଲେଶ୍ୱରରେ ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ (ଓଡିଶା ଆସେମ୍ବ୍ଲିର ଏକଦା ବାଚସ୍ପତି ଥିଲେ ଓ ଏବେ ମୃତ) ଅଭ୍ୟର୍ଥନା ସମିତିର ସଭାପତି ଓ ଶ୍ରୀ ହରେକୃଷ୍ଣ ମହତାବ ସମ୍ମିଳନୀର ସଭାପତି ହୋଇଥିଲେ । ଜମିଦାରର ବେଆଇନ ପାଉଣା ବିଷୟରେ ଏହି ସମ୍ମିଳନୀରେ ବିଶେଷ ପ୍ରତିବାଦ କରି ପ୍ରସ୍ତାବ ହୋଇଥିଲେ ଓ ସ୍ଥାୟୀ ସଂଗଠନ ନିମନ୍ତେ କୃଷକ ସଂଘ ସ୍ଥାପିତ ହେଲା । ସେପ୍ଟେମ୍ବର ପହିଲା ଦିନ 'ଭାରତ ଚାଷୀ ଦିବସ' ଏହି ଥାନାର ଅନେକ ଗ୍ରାମରେ ପ୍ରତି ପାଳିତ ହୋଇଥିଲା ।

**ଗଞ୍ଜାମ ଜିଲ୍ଲା କୋଦଳା ସମ୍ମିଳନୀ**

ଗଞ୍ଜାମର ଦିବାକର ପଟ୍ଟନାୟକ, ଗୌରୀଶଙ୍କର ସାମନ୍ତ ଆଦି କର୍ମୀମାନେ କୋଦଳାଠାରେ ଗୋଟିଏ ରଇତ ସମ୍ମିଳନୀ ଆୟୋଜନ କରିଥିଲେ । ସେଥିରେ ପ୍ରାୟ ୫୦୦୦ ଚାଷୀ ଆସି ଉପସ୍ଥିତ ହୋଇଥିଲେ ଏବଂ ଆସେଂବ୍ଲି ସଦସ୍ୟ ଶ୍ରୀଯୁକ୍ତ ଭି.ଭି. ଗିରୀ (ପରେ ରାଷ୍ଟ୍ରପତି) ସଭାପତି ହୋଇଥିଲେ । କଟକରୁ ଶ୍ରୀ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ଓ ଗୌରାଙ୍ଗ ଚରଣ ଦାସ ମଧ ଯୋଗ ଦେଇଥିଲେ । ଖଲିକୋଟ ରାଜାଙ୍କ କର୍ମୀମାନେ ସେହି ସମ୍ମିଳନୀ କରିବାରେ ବହୁତ ବାଧା ଦେଇଥିଲେ ଏବଂ ଶେଷରେ ସମ୍ମିଳନୀ ହୋଇପାରି ନଥିଲା । ଉଦ୍ୟୋକ୍ତାମାନେ ମକଦ୍ଦମାରେ ପଡ଼ିଛନ୍ତି । ନୂଆ ମକଦ୍ଦମା ଆଜି ପର୍ଯ୍ୟନ୍ତ ଚାଲିଛି ।

ଏହାପରେ ଉକ୍ତ କର୍ମୀମାନେ ମୁଖ୍ୟତଃ କଂଗ୍ରେସ କାର୍ଯ୍ୟରେ ବ୍ୟାପୃତ ଥିବାରୁ ଓ ଅନ୍ୟ କୌଣସି କର୍ମୀ ଏହି କାର୍ଯ୍ୟ କରିବାକୁ ଉକ୍ତ ଜିଲ୍ଲାରେ ନ ଥିବାରୁ କୃଷକ ସଂଘର କାର୍ଯ୍ୟରେ ଜିଲ୍ଲାରେ ଅଗ୍ରସର ହୋଇନାହିଁ ।

ଅଥଚ ପରବର୍ତ୍ତୀ କାଳର ଗଞ୍ଜାମ ଜିଲ୍ଲାରେ ଉତ୍କଳ ପ୍ରାଦେଶିକ କୃଷକ ସଭାର ଶାଖା ଗଞ୍ଜାମ ରଇତ ସଭା ନେତୃତ୍ୱରେ ବିଶାଳ ମୁସ୍ତାଦାରୀ ପ୍ରଥା, ଇନାମଦାରୀ ପ୍ରଥା ଉଚ୍ଛେଦ ଆନ୍ଦୋଳନ, ପରବର୍ତ୍ତୀ କାଳରେ ଜମିଦାରୀ ଉଚ୍ଛେଦ, ଭାଗ ଚାଷ ଆନ୍ଦୋଳନ ସାରା ରାଜ୍ୟରେ ଚହଲ ପକାଇଥିଲା ।

**ସେତେବେଳେ କୃଷକ ସଭାର ଦାବୀ**

୧୯୫୩ ମସିହା ଅଗଷ୍ଟ ୧୦ ତାରିଖରେ କଟକ ଟାଉନ୍‌ହଲରେ କୃଷକ ନେତା ମୋହନ ଲାଲ ଗୌତମଙ୍କ ଅଧକ୍ଷତାରେ ପ୍ରଥମ ଥର ଓଡ଼ିଶାରେ କୃଷକ ସମ୍ମିଳନୀ କରିବା ପରେ ସେହିଦିନ ଏକ କୃଷକ କମିଟି ଗଠିତ ହୋଇଥିଲା । (ବିବରଣୀ ପରେ ପ୍ରକାଶ ପାଇବ) । ଏହି କୃଷକ ସଂଘ ସେ କାଳର ଅବସ୍ଥାକୁ ଦେଖି ଯେଉଁ ୧୪ଟି ଦାବୀ ଉଠାଇଥିଲେ, ତାହାର ଅବିକଳ ନକଲ ନିମ୍ନରେ ଦିଆଗଲା ।

ଜମିଦାରୀ ପ୍ରଥା ଉଚ୍ଛେଦ, ଭାଗଚାଷୀକୁ ସ୍ୱତ୍ତ୍ୱ, ଜମି ବଣ୍ଟନ, ସାମନ୍ତବାଦର ବିଲୋପ ଏସବୁ ତ ବଡ଼ବଡ଼ ମୌଳିକ ଦାବୀ । କିନ୍ତୁ ସେସବୁ ଦାବୀ ଉଠାଇବା ସେତେବେଳର ଚାଷୀଙ୍କ ଚେତନାରେ ଆସି ନଥାନ୍ତା ଓ ଯେଉଁମାନେ ଚାଷୀ ଆନ୍ଦୋଳନରେ ଆସି ନେତୃତ୍ୱ ନେଉଥିଲେ । ସେମାନେ ମଧ ଶ୍ରେଣୀ ଆସ୍ଥାନ ଓ ରାଜନୈତିକ ଦୃଷ୍ଟିଭଙ୍ଗୀ ଓ ଆଦର୍ଶ ଯୋଗୁ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ । ଆଜି ସେ କାଳର ଦାବୀଗୁଡ଼ିକ କେତେ ନରମା ଥିଲା ଜାଣି ହୁଏତ କିଏ କିଏ ହସି ପାରନ୍ତି, ନାକ ଟେକି ପାରନ୍ତି । ମାତ୍ର ସେସବୁ ଦାବୀ ସେତେବେଳେ ଥିଲା ବୈପବ୍ଲିକ । ହଜାର ହଜାର ଜମିଦାରୀ ଅତ୍ୟାଚାର ପ୍ରପୀଡ଼ିତ ଚାଷୀଙ୍କ ଭିତରେ ଉଦ୍‌ବେଳନ ଖେଳିଗଲା । ଆଶା ପ୍ରତ୍ୟୟ ଜାଗ୍ରତ ହେଲା । ବହୁ ସଭାସମିତି ଚାଲିଲା । ଜମିଦାର, ମଠ

ମହନ୍ତ, ବ୍ରିଟିଶ ସରକାର ଓ ତା' ପୁଲିସର ମଧ୍ୟ ଦମନ ଚାଲିଲା । ତେଣୁ ଏହି ଦାବୀଗୁଡ଼ିକ କ'ଣ ଥିଲା, ତାହାର ଆଜି ମଧ୍ୟ ତାତ୍ପର୍ଯ୍ୟ ରହିଛି ।

ପୁସ୍ତକଟିର ପରିଶିଷ୍ଟ(କ)ରେ ଦିଆଯାଇଥିବା ଦାବୀ ।

୧ । ନାମ-ଏହି ସଂସ୍ଥାର ନାମ ଉତ୍କଳ ପ୍ରାଦେଶିକ କୃଷକ ସଂଘ ରହିବ ।

୨ । ଉଦ୍ଦେଶ୍ୟ ।

ଅ) ଦେଶର ଶାସନରେ କୃଷକମାନଙ୍କ ଅଧିକାର କାଏମ କରିବା ଉଦ୍ଦେଶ୍ୟରେ ସେମାନଙ୍କ ସଂଗଠିତ କରିବା ।

ଆ) କୃଷକମାନଙ୍କର ଅର୍ଥିକ ସାମାଜିକ ଓ ରାଜନୈତିକ ଉନ୍ନତି କରିବା ।

୩ । ସଂଘ ବର୍ତ୍ତମାନ ନିମ୍ନଲିଖିତ ବିଷୟ ପ୍ରତି ବିଶେଷ ଧ୍ୟାନ ଦେବ ।

୧) ଯେଉଁ କୃଷକମାନେ ନିଜର ଆର୍ଥିକ ଅବସ୍ଥା ଯୋଗୁ ବାକି ଖଜଣା ଦେବାକୁ ଅପାରଗ, ସେମାନଙ୍କୁ ତାହା ଛାଡ଼ କରାଯାଉ ।

୨) ଗୋଟିଏ କୃଷକ ବା ଛୋଟ ଜମିଦାରର ପରିବାରକୁ କୌଣସିମତେ ପ୍ରତିପୋଷଣ କରିବା ପରେ ଯେଉଁ ଜମିରୁ କୌଣସି ଉଦ୍‌ବୃତ୍ତ ଆୟ ହୁଏ ନାହିଁ, ସେ ଜମିର ଖଜଣା ବା ରାଜସ୍ୱ ଛାଡ଼ି ଦିଆଯାଉ ।

୩) ବର୍ତ୍ତମାନ ଖଜଣା ଦର ଏତେ କମାଇ ଦିଆଯାଉ, ଯେପରିକି କୃଷକମାନେ ତାହା ସୁବିଧାରେ ଦେଇପାରିବେ ।

୪) ବର୍ତ୍ତମାନ ଜମିଦାରୀ, ତାଲୁକଦାରୀ, ବାହେଲଦାର ପ୍ରଥା ପରିବର୍ତ୍ତନରେ ଏପରି ପ୍ରଥା ସ୍ଥାପନ କରାଯାଉ । ଯେଉଁଥିରେ କୃଷକମାନେ ନିଜେ ଯେତେ ଜମି ଚାଷ କରୁଛନ୍ତି, ତାହାର ମାଲିକ ନିଜେ ହୋଇ ପାରିବେ ।

୫) ନିଜର ଆର୍ଥିକ ଅବସ୍ଥା ଦୃଷ୍ଟିରେ ଯେଉଁ କୃଷକମାନେ କରଜ ଶୁଝିବା ପାଇଁ ଅପାରଗ, ସେମାନଙ୍କର ପୂରା ଋଣ ଛାଡ଼ କରାଯାଉ । ଆଉ ଅନ୍ୟ କୃଷକମାନଙ୍କର ଋଣ ସେମାନଙ୍କ ଅବସ୍ଥାକୁ ଚାହିଁ କମାଇ ଦିଆଯାଉ ।

୬) ଖଜଣା ବା କରଜ ଆଦାୟ କରିବା ପାଇଁ କୃଷକ ଉପରେ ଡିଗ୍ରୀ ଜାରି ହେଲେ କୃଷକର ଘରକରଣା ଜିନିଷମାନ ବା ଚାଷ ପାଇଁ ଆବଶ୍ୟକ ଜନିଷମାନ ବା ତା'ର ପରିବାରର ଭରଣପୋଷଣ ପାଇଁ ନିତାନ୍ତପକ୍ଷେ ଯେତିକି ଜମି ଆବଶ୍ୟକ, ସେତକ କ୍ରୋକ କରାଯାଇ ପାରିବ ନାହିଁ ।

୭) ସଲାମି, ବେଠି, ବେଗାରି, ଭେଟି ପ୍ରଭୃତି ଯେ ସବୁ ଆବୁଆବ ବା ଅନ୍ୟାୟ ଆଦାୟ କରଯାଉଛି, ତାହା ସବୁ ଏକଦମ ବନ୍ଦ କରାଯାଉ ।

୮) ଜଳକର ବର୍ତ୍ତମାନ ଦରପ୍ରତି ଅଧା କରି ଦିଆଯାଉ ।

୯)	ଚାଷ କାମ କରୁଥିବା ମୂଲିଆମାନଙ୍କୁ ନିଜର ଭରଣପୋଷଣ ପାଇଁ ଯଥେଷ୍ଟ ମୂଲ ଯେପରି ମିଳିବ ସେଥିରେ ବନ୍ଦୋବସ୍ତ କରାଯାଉ ।

୧୦) ଗୋଚର ପାଇଁ ପ୍ରତି ଗ୍ରାମରେ ଯଥେଷ୍ଟ ଜମି ଛାଡି ଦିଆଯାଉ ।

୧୧) ଗ୍ରାମମାନଙ୍କରେ ବିନା ବେତନରେ ସବୁ ପିଲାଙ୍କୁ ବାଧ କରି ପ୍ରାଥମିକ ଶିକ୍ଷା ଦିଆଯାଉ ।

୧୨) ଗ୍ରାମମାନଙ୍କରେ ମନ୍ଦ ଅବସ୍ଥା ସୁଧାରିବା ପାଇଁ କୃଷକମାନଙ୍କୁ ଅନ୍ୟ ଧନ୍ଦା ଜୁଟାଇ ଦିଆଯାଉ ।

୧୩) ଲୁଣ ଉପରୁ ଶୁଳ୍କ ଛାଡ଼ କରାଯାଉ ।

୧୪) ଓଡ଼ିଶା ବନ୍ୟା ସମସ୍ୟାର ଆଶୁ ପ୍ରତିକାର କରାଯାଉ ।

**ଆନ୍ଦୋଳନ ସୂତ୍ରପାତ**

"୧୯୩୫ ମସିହାରେ ସଙ୍ଗଠିତ ଭାବରେ କୃଷକ ଆନ୍ଦୋଳନ ଆରମ୍ଭ କରିବା ନିମନ୍ତେ କଟକ ଜିଲ୍ଲା ଗୋବିନ୍ଦପୁର ଥାନା ତଣ୍ଡିକଣା ଗ୍ରାମକୁ କେନ୍ଦ୍ର ନିକଟବର୍ତ୍ତୀ କେତେଗୁଡ଼ିଏ ଗ୍ରାମରେ ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଚୌଧୁରୀ, ଗୌରଚନ୍ଦ୍ର ଦାସ, ଗୌରାଙ୍ଗ ଚରଣ ଦାସ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ବିଶ୍ୱନାଥ ପରିଡ଼ା (ପୁରୀ କଣାସର ନୁହେଁ, ଗୋବିନ୍ଦପୁର ତଣ୍ଡିକଣାର କଂଗ୍ରେସ କର୍ମୀ) ଅନ୍ତର୍ଯ୍ୟମୀ ପ୍ରଧାନ ଆଦି ସମିତି କରିବାର ଉଦ୍ୟମ କଲେ । ତାହା ପୂର୍ବରୁ ଶ୍ରୀମତୀ ଚୌଧୁରୀଙ୍କ ଉଦ୍ୟମରେ କଟକର ଗୋବିନ୍ଦପୁର ଓ ଜଗତ୍‌ସିଂହପୁର ଥାନାର କେତେକ ଗ୍ରାମରେ ସଭା ସମିତି ହୋଇଥିଲା । ଓଡ଼ିଶାର ଚାରିଆଡ଼େ ବଡ଼ବଡ଼ ସଭାସମିତି କରି ଏହି ସମସ୍ୟାକୁ ଆଗକୁ ନ ଆଣିବା ପର୍ଯ୍ୟନ୍ତ ଓ ଏଥିରେ ଶିକ୍ଷିତ ଲୋକଙ୍କର ସାହାଯ୍ୟ ସହାନୁଭୂତି ନ ମିଳିବା ପର୍ଯ୍ୟନ୍ତ ଆନ୍ଦୋଳନ ଗଢ଼ି ଉଠିବା ସହଜ ନୁହେଁ । ଲୋକଙ୍କ ମଧ୍ୟରେ ଯେଉଁ ଭୟ ସଞ୍ଚାର ହୋଇଛି ତାହା ବଡ଼ ବଡ଼ ସଭାସମିତିରେ କେତେକ ପରିମାଣରେ ଦୂର ହେବ ଏବଂ ଦୃଷ୍ଟିକୋଣ ମଧ୍ୟ ବଦଳିବ । ଏହି ହେତୁ ଓଡ଼ିଶାର ବିଭିନ୍ନ ଜିଲ୍ଲାର ପ୍ରତିନିଧି ସ୍ଥାନୀୟ କର୍ମୀ ଓ କୃଷକମାନଙ୍କୁ ଡାକି ଗୋଟିଏ ପ୍ରାରମ୍ଭିକ କୃଷକ ସମ୍ମିଳନୀ କଟକରେ କରିବା ସ୍ଥିର ହେଲା । ଏଥିରେ ଯୁକ୍ତ ପ୍ରଦେଶ (ଅଧୁନା ଉତ୍ତର ପ୍ରଦେଶ) ର କୃଷକ ନେତା ମୋହନଲାଲ୍ ଗୌତମ ସଭାପତି ହୋଇଥିଲେ । ଶ୍ରୀ ଗୋଦାବରୀଶ ମିଶ୍ର ଓ ନବକୃଷ୍ଣ ଚୌଧୁରୀ ଯଥାକ୍ରମେ ଅଭ୍ୟର୍ଥନା ସମିତିର ସଭାପତି ଓ ସମ୍ପାଦକ ନିଯୁକ୍ତ ହୋଇଥିଲେ । ସମ୍ମିଳନୀକୁ ସଫଳ କରିବା ପାଇଁ ଶ୍ରୀମତୀ ମାଳତୀ ଦେବୀ, ଗୌରାଙ୍ଗ ଚରଣ ଦାସ କଟକ ଜିଲ୍ଲାର ମଫସଲ ଅଞ୍ଚଳରେ ଏବଂ ଗୌରଚନ୍ଦ୍ର ଦାସ ବାଲେଶ୍ୱର ଜିଲ୍ଲା ମଫସଲ ଅଞ୍ଚଳରେ ବୁଲିଥିଲେ । ଫଳରେ ଦେଖାଗଲା ଯେ ସବୁ ଜିଲ୍ଲାରୁ (ସେତେବେଳେ ମାତ୍ର ୬ଟି ଜିଲ୍ଲା ୧୯୬୩ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଓ ଗଡ଼ଜାତ ମିଶ୍ରଣ ୧୯୪୭ ପରେ ୧୩ଟି ଜିଲ୍ଲା ହେଲା ଛ'ଟି ହେଲା କଟକ, ପୁରୀ, ବାଲେଶ୍ୱର

ଗଞ୍ଜାମ, ସମ୍ବଲପୁର ଅନୁଗୋଳଙ୍କୁ ମିଶେଇ ଏହାକୁ ମୋଗଲବନ୍ଦୀ କୁହାଯାଉଥିଲା) ୩୫୦ ଜଣ କୃଷକ ପ୍ରତିନିଧି ଯୋଗ ଦେଇଛନ୍ତି । ସମ୍ମିଳନୀର ଅଧିବେଶନ କଟକ ଟାଉନ୍ ହଲରେ ୧୯୩୫ ମସିହା ଜୁନ ୧୦ ତାରିଖରେ ହୋଇଥିଲା । ଏଭଳି ସମ୍ମିଳନୀ ଓଡ଼ିଶାରେ ନୂତନ । ଅନ୍ୟ ଶ୍ରେଣୀର ଲୋକେ ବହୁ ସଂଖ୍ୟାରେ ସମ୍ମିଳନୀରେ ଉପସ୍ଥିତ ଥିଲେ । ଏଥିରେ ଯେତେଗୁଡ଼ିଏ ପ୍ରସ୍ତାବ ଗୃହୀତ ହୋଇଥିଲା, ସେଥି ମଧ୍ୟରେ ଜମିଦାରୀ ପ୍ରଥା ଉଠାଇ ଦିଆଯିବା ପ୍ରସ୍ତାବଟି ମଧ୍ୟ ସପକ୍ଷ ବିପକ୍ଷ ଆଲୋଚନା ପରେ ବହୁ ମତରେ ଗୃହୀତ ହୋଇଥିଲା । ଏହି ସମ୍ମିଳନୀରେ ୨୪ ଜଣ ଲୋକଙ୍କୁ ନେଇ ଗୋଟିଏ ଉତ୍କଳ ପ୍ରାଦେଶିକ କୃଷକ ସଙ୍ଘ ଗଠିତ ହୋଇଥିଲା ।"

**ଉତ୍କଳ ପ୍ରାଦେଶିକ କୃଷକ ସଙ୍ଘ**

"ଏହି ସଂଘର ପ୍ରଥମ ବୈଠକ ଅଗଷ୍ଟ ମାସ ୧୦ ତାରିଖରେ କଟକରେ ବସିଥିଲା । ହରେକୃଷ୍ଣ ମହତାବ ଏହି ସଙ୍ଘର ସଭାପତି ଓ ଶ୍ରୀମତୀ ମାଳତୀ ଚୌଧୁରୀ ଏବଂ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଯୁଗ୍ମ ସମ୍ପାଦକ ନିର୍ବାଚିତ ହେଲେ ।"

(ଠିକ୍ ଏହି ସମୟରେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠିତ ହୋଇଥିଲା ଏବଂ ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀ ସମ୍ପାଦକ ମନୋନୀତ ହୋଇଥିଲେ । ଉଭୟ ସୋସଲିଷ୍ଟ ଓ କମ୍ୟୁନିଷ୍ଟ ଯୁବକଙ୍କୁ ଘେନି ଏହି ପାର୍ଟି ହିଁ କୃଷକ ଆନ୍ଦୋଳନକୁ ପ୍ରଖର କରେଇଲା । ନବକୃଷ୍ଣ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଗୌର ଦାସ, ଗୌରାଙ୍ଗ ଚରଣ ଦାସ, ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଗୁରୁଚରଣ ପଟ୍ଟନାୟକ, ଗୋକୁଳ ମୋହନ ରାୟଚୂଡ଼ାମଣି, ଗତିକୃଷ୍ଣ ସ୍ୱାଇଁ, ଗଙ୍ଗାଧର ମିଶ୍ର, ସାଧୁଚରଣ ମହାନ୍ତି ପ୍ରମୁଖ ଏହି ୨୪ ଜଣିଆ କମିଟିରେ ଥିଲେ ।)

"ସଙ୍ଘର ନିୟମାବଳୀ ସ୍ଥିର କରାଯାଇଥିଲା । ପ୍ରାଥମିକ କାର୍ଯ୍ୟ ପାଇଁ ସଙ୍ଘ ତରଫରୁ ଗୋଟିଏ ପ୍ରଶ୍ନାବଳୀ ଚିଠା କରି ଓଡ଼ିଶାର ବିଭିନ୍ନ ଜିଲ୍ଲାମାନଙ୍କର ଜମିଦାରୀ ଅଞ୍ଚଳରୁ ତଥ୍ୟ ସଂଗ୍ରହର ଚେଷ୍ଟା ହେଲା । ତା'ପରେ ବିଭିନ୍ନ ଜିଲ୍ଲାରୁ ସମ୍ମିଳନୀମାନ କରି କୃଷକ ସମିତି ଗଢ଼ି ପ୍ରଚାର ସଂଗଠନ କାର୍ଯ୍ୟରେ ହିଁ ବିଶେଷ ଜୋର ଦିଆଯାଇଛି । ଏହା ଫଳରେ ଅନେକଗୁଡ଼ିଏ ସମିତି ଗଢ଼ିଉଠିଛି । କେଉଁ ଜିଲ୍ଲାରେ କିପରି କାର୍ଯ୍ୟ ହୋଇଛି ତାହାର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।"

"ଓଡ଼ିଶାର ପ୍ରଜାସ୍ୱତ୍ୱ ଆଇନ ସମ୍ବନ୍ଧରେ ଭୂତପୂର୍ବ ବିହାର କାଉନ୍‌ସିଲ୍‌ରେ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ରାୟବାହାଦୂର ଲୋକନାଥ ମିଶ୍ର (ପୁରୀର ଏକ ବଡ଼ ଜମିଦାର) ପ୍ରଜାସ୍ୱତ୍ୱ ଆଇନରେ ଯେଉଁ ସଂଶୋଧନ ପ୍ରସ୍ତାବମାନ ଆଣିଥିଲେ ତାହା ସମ୍ପର୍କରେ ସଙ୍ଘ ପକ୍ଷରୁ ମତବ୍ୟକ୍ତ କରାଯାଇଥିଲା । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ସଂଶୋଧନର କେତୋଟି ଦଫା ସଙ୍ଘ ଅନୁମୋଦନ କଲା ଆଉ କେତୋଟି ଅଗ୍ରାହ୍ୟ କରିଥିଲା, ମାତ୍ର ଲୋକନାଥ ବାବୁଙ୍କର

ସଂଶୋଧନଟି ସମ୍ପୂର୍ଣ୍ଣରୂପେ ଆଗ୍ରାହ୍ୟ ବୋଲି ମତ ଦେଇଥିଲେ । ସଙ୍ଘ ତରଫରୁ କାକଟପୁର, ବାଗଲପୁର ଆଦି ସ୍ଥାନରେ ସଭା ହୋଇ ଲୋକମତ ବ୍ୟକ୍ତ କରାଯାଇଥିଲା । ଏହାଛଡ଼ା ସାଲେପୁର ଆଦି ସ୍ଥାନରେ ମଧ୍ୟ ସଭା ହୋଇଥିଲା ।"

"ଓଡ଼ିଶା ପ୍ରଜାସ୍ୱତ୍ୱ ଓ ଜମିଜମା ସଂକ୍ରାନ୍ତ ଆଇନ ସଂଶୋଧନ କରି ସମସ୍ତ ପ୍ରଦେଶ ପାଇଁ ଗୋଟିଏ ବ୍ୟାପକ ପ୍ରଜାସ୍ୱତ୍ୱ ଆଇନ ଖସଡ଼ା ପ୍ରସ୍ତୁତ କରିବା ପାଇଁ ଗୋଟିଏ କମିଟି ନିଯୁକ୍ତ ହୋଇଛି ଏବଂ ସେହି କମିଟି ତରଫରୁ ବିଭିନ୍ନ ଅଞ୍ଚଳରୁ ଉତ୍ତର ସଂଗ୍ରହ ପାଇଁ ଗୋଟିଏ ପ୍ରଶ୍ନାବଳୀ ଛାପା ହୋଇ ବିତରିତ ହୋଇଛି ।"

**ନିଖିଳ ଭାରତ କୃଷକ ଦିବସ**

ଗତ ସେପ୍‌ଟେମ୍ବର ପହିଲା ଦିନ ନିଖିଳ ଭାରତ କୃଷକ କମିଟିର ନିର୍ଦ୍ଦେଶ ଅନୁଯାୟୀ ଓଡ଼ିଶାର କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲାର ବିଭିନ୍ନ ଗ୍ରାମରେ ପ୍ରାୟ ୧୫୦ଟି ସ୍ଥାନରେ ସଭା ହୋଇଥିଲା ଓ ଖଜଣା କମାଇବା, ଜଳକର କମାଇବା, ବନ୍ୟା ସମସ୍ୟାର ପ୍ରତିକାର କରିବା ବାକି ଖଜଣା ମାଫ, ଋଣ ଭାରରୁ ମୁକ୍ତି, ପ୍ରଜାସ୍ୱତ୍ୱ ଆଇନର ସଂଶୋଧନ ବେଠି, ବେଗାରୀ ଆଦି ବନ୍ଦ ପାଇଁ କଡ଼ା ଆଇନ ଜାରି, ଲୁଣ ଉପରୁ ଶୁଳ୍କ ଉଠିଯିବା ଦାବୀ କରି ପ୍ରସ୍ତାବମାନ ପାସ୍ ହୋଇଥିଲା, ପ୍ରତି ସଭାର ସଭାପତିଙ୍କ ଦସ୍ତଖତ୍‌ରେ ପ୍ରସ୍ତାବର ନକଲ ଓଡ଼ିଶା ଗଭର୍ଣ୍ଣମେଣ୍ଟର ଚିଫ୍ ସେକ୍ରେଟାରୀଙ୍କ ନିକଟକୁ ପଠା ଯାଇଥିଲା ଓ ଖବରକାଗଜରେ ମଧ୍ୟ ପ୍ରକାଶ ହୋଇଥିଲା ।

ଶ୍ରୀ ଗୌରାଙ୍ଗ ଚରଣ ଦାସ ସମ୍ପାଦକ ମାଳତୀ ଦେବୀଙ୍କ ସହିତ ଏହି ସଙ୍ଘର କାର୍ଯ୍ୟପାଇଁ ସବୁଠାରୁ ବେଶି ଉତ୍ସାହ ଓ ସମୟ ଦେଇ କାର୍ଯ୍ୟ କରିଛନ୍ତି ଏବଂ ସେମାନଙ୍କର ଉଦ୍ୟମରେ ଏହାର କାର୍ଯ୍ୟ କେତେଦୂର ଅଗ୍ରସର ହୋଇଛି ।

**କଟକ ଜିଲ୍ଲାର କୃଷକ କାର୍ଯ୍ୟ, ବାଗଲପୁର ସମ୍ମିଳନୀ**

"ପ୍ରାଦେଶିକ କୃଷକ ସମ୍ମିଳନୀ ପରେ କେତେଗୁଡ଼ିଏ ସ୍ଥାନରେ ଛୋଟ ଛୋଟ ସଭା ସମିତି କରାଯାଉଥିଲା, କିନ୍ତୁ ବଡ଼ଧରଣର ସଭା ଓ ସମ୍ମିଳନୀ ବସି ପରିସ୍ଥିତି ପରିବର୍ତ୍ତନ କରିବା ଉଦ୍ଦେଶ୍ୟରେ ପ୍ରଥମେ କଟକ ଜିଲ୍ଲାର ଗୋବିନ୍ଦପୁର ଥାନା ବାଗଲପୁର ଗ୍ରାମରେ (ଏବେ ତାହା ଜଗତ୍‌ସିଂହପୁର ଥାନାରେ) ଗୋଟିଏ କୃଷକ ସମ୍ମିଳନୀର ଆୟୋଜନ କରାଗଲା । ଜଗତ୍‌ସିଂହପୁର ବାଲିକୁଦା, ତିର୍ତ୍ତୋଲ, ଏରସମା, ଗୋବିନ୍ଦପୁର ଏହି ପାଞ୍ଚଟି ଥାନାରୁ ପ୍ରତିନିଧି ଆଣିବାର ବ୍ୟବସ୍ଥା ହେଲା ଏବଂ ବାଗଲପୁରର ଯୁବକ ସଙ୍ଘର କର୍ମୀମାନେ ଖୁବ୍ ଉତ୍ସାହର ସହିତ ଏହି କାର୍ଯ୍ୟରେ ଲାଗି ଯାଇଥିଲେ । ବାଗଲପୁର ଗ୍ରାମର ଶ୍ରୀଯୁକ୍ତ ଚନ୍ଦ୍ରମଣି ଦାସ ଅଭ୍ୟର୍ଥନା ସମିତିର ସଭାପତି ଓ ଶ୍ରୀଯୁକ୍ତ ରାଧାକୃଷ୍ଣ ଦାସ ସମ୍ପାଦକ ନିଯୁକ୍ତ ହୋଇଥିଲେ । ସଭାପତି ରୂପେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ନିର୍ବାଚିତ ହୋଇଥିଲେ । ସମ୍ମିଳନୀରେ ପ୍ରାୟ ୫୦୦୦

ଚାଷୀ ଉପସ୍ଥିତ ଥିଲେ ଏବଂ ଦୂରଦୂରାନ୍ତ ଚାଷୀ ପ୍ରତିନିଧିମାନଙ୍କର ଖାଦ୍ୟପେୟର ଯୋଗାଡ଼ ଗୋବିନ୍ଦପୁର ଥାନାର ଅନେକ ଗ୍ରାମରୁ ଚାନ୍ଦା ଦାୟ କରି ଗ୍ରାମବାସୀମାନେ ଦେଇଥିଲେ । ବନ୍ୟା ସମସ୍ୟାର ପ୍ରତିକାର, ଖଜଣା କମାଇବା, ଋଣଭାର କମାଇବା ପାଇଁ ଅନୁସନ୍ଧାନ କମିଟି ସ୍ଥାପନ, ପ୍ରଜାସ୍ୱତ୍ୱ ଆଇନ ସଂଶୋଧନ, ଜମିଦାରୀ ପ୍ରଥା ଉଠାଇବା ପାଇଁ ପ୍ରସ୍ତାବମାନ ସମ୍ମିଳନୀରେ ଆଲୋଚିତ ହୋଇ ଗୃହୀତ ହୋଇଥିଲା । ଆହୁରି ମଧ୍ୟ ପ୍ରଜାମାନଙ୍କଠାରୁ ଜମିଦାରମାନେ ଯେ ଆଇନ୍ ଅତିରିକ୍ତ ପାଉଣା ଆଦାୟ କରୁଛନ୍ତି, ତାକୁ ଫୌଜଦାରୀ ଦଣ୍ଡବିଧି ଆଇନରେ ଦଣ୍ଡନୀୟ କରିବା ପାଇଁ ଗୋଟିଏ ସ୍ମାରକପତ୍ର ସରକାରଙ୍କଠାରେ ଉପସ୍ଥାପିତ କରିବା ନିମିତ୍ତ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା ।

**ହରିଶପୁର**

"ଏହା ଗୋଟିଏ ଚିରସ୍ଥାୟୀ ବନ୍ଦୋବସ୍ତ ମାହାଲ (କଟକ ଜିଲ୍ଲା ବାଲିକୁଦା ଓ କାକଟପୁର ତଳ ଅଞ୍ଚଳରେ) ବର୍ତ୍ତମାନ କଲିକତାର ଲାହା ପରିବାରଙ୍କ ଅଧୀନରେ ଅଛି । ୧୮୦୫ ସାଲରୁ ଜମିଦାର ସରକାରଙ୍କୁ ୩୬୩୫ ଟଙ୍କା ଛଅଣା ୬ ପଇସା ଖଜଣା ଦେଉଛନ୍ତି ଏବଂ ସେହି ପରିମାଣ ବର୍ତ୍ତମାନ ସୁଦ୍ଧା ଧାର୍ଯ୍ୟ ରହିଛି । ଏହି କିଲ୍ଲାରେ ଆବାଦୀ ଜମିର ଆୟତନ ୧୨୪୮ ମାଣ (ଏକର) ଅର୍ଥାତ୍ ସମସ୍ତ ଜମିର ଶତକଡ଼ା ୩୮ ଭାଗ । ଏହି କିଲ୍ଲାର ଆୟତନ ୪୦ ବର୍ଗ ମାଇଲ ଓ ଏଥିରେ ୬୩ଟି ଗ୍ରାମ ରହିଛି । ଜମିଦାର ବଂଶ ଧନୀ ଓ ସେମାନେ ନ ବୁଝି ସ୍ଥାନୀୟ କର୍ମଚାରୀଙ୍କ ଉପରେ ନିର୍ଭର କରନ୍ତି । ଜମିଦାରମାନେ କେବେହେଲେ ଇଲାକାକୁ ଆସନ୍ତି ନାହିଁ । ପ୍ରଜାମାନଙ୍କର ଖଜଣା ଅନ୍ତତଃପକ୍ଷେ ୩୨ ହଜାର ଟଙ୍କା ହେବ ଏବଂ ଏହାଛଡ଼ା ଜଳକର, ବଣକର, ମତ୍ସ୍ୟଦିଆ ଆଦି ନାନାପ୍ରକାର ଦର ଆଦାୟ ହୁଏ । କର୍ମଚାରୀମାନେ ବଡ଼ ଅତ୍ୟାଚାରୀ, ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଏଠା ପ୍ରଜାମାନେ ଅନୁନ୍ନତ ଥିବାରୁ ପାଉତି ଖର୍ଚ୍ଚ ବା ଖରଡ଼ାପଣି ଟଙ୍କାକେ ଦି ପଇସା, ତହସିଲଦାରଙ୍କ ସିଧା ଖର୍ଚ୍ଚ ଆଠଅଣା କିମ୍ବା ୧ଟଙ୍କା, ନାଏବ ଦେଖା ଫିସ୍ ପ୍ରତିଥର ୧ଟଙ୍କା, କୂଅ ଖୋଳିବା ଫିସ୍ ୨ ଟଙ୍କା ଏପରି ନାନାପ୍ରକାର କର ଆଦାୟ କରି ଚାଷୀ କୁଳର ସର୍ବସ୍ୱାନ୍ତ କରୁଛନ୍ତି । ହାଲ୍ ସନମାନଙ୍କର ଟଙ୍କା ନେବାବେଳେ ବାକିଥିବା ଖଜଣା, ନାଲିସ ହୋଇ ଟଙ୍କା ଆଦାୟ ହୋଇଯାଇଥିବା କିମ୍ବା ତମାଦି ହୋଇଥିବା ଖଜଣା ବାବଦକୁ ମଜୁରା କରି ନିଅନ୍ତି । ଏପରି ଅଭିଯୋଗ ପାଇ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ (ସେତେବେଳେ ଭାରତ ସେବକ ସମାଜ ଓ ଏବେ ହିନ୍ଦ୍ ସମାଜ ସେବକ ସଂଘର ଓଡ଼ିଶାରେ ପ୍ରଖ୍ୟାତ ଉଦାରପନ୍ଥୀ ଜନ ସେବକ) ଶ୍ରୀମତୀ ମାଳତୀଦେବୀ ଓ ଶ୍ରୀ ଗୌରାଙ୍ଗ ଚରଣ ଦାସ ଅନୁସନ୍ଧାନ କରିବା ପାଇଁ ଉକ୍ତ ଅଞ୍ଚଳକୁ ଯାଇଥିଲେ ଏବଂ ଏହା ସତ୍ୟ ବୋଲି ପ୍ରମାଣ ପାଇ ଖବରକାଗଜ ଜରିଆରେ ସାଧାରଣରେ ପ୍ରକାଶ କରିଥିଲେ ଓ ସରକାରଙ୍କ ଦୃଷ୍ଟି ସେଥିରେ ଆକୃଷ୍ଟ କରାଯାଇଥିଲା । (ସେତେବେଳେ ବିଭିନ୍ନ ଅଞ୍ଚଳ ସହିତ ଯୋଗାଯୋଗ କାକଟପୁର,

ନିମାପଡ଼ା, ଗୋପ ପ୍ରକୃତିକୁ ଗଣ୍ଡା ଗଣ୍ଡା ଘାଇ କାଦୁଅ ପଙ୍କ ଥିବା କଚାରାସ୍ତା ସେମିତି ହରିଶପୁରକୁ ଜଗତ୍‌ସିଂହପୁରଠାରୁ କାଦୁଅ ଓ ବିଲ ଶଗଡ଼ଗୁଳାରେ ଚାଲି ଚାଲି ବା ଖରାଦିନେ ଶୂନଗାଡ଼ି (ସାଇକେଲ) ରେ ଯିବାକୁ ପଡୁଥିଲା । ମଟର ସାତ ସପନ ଥିଲା) ।

ଏହି କିଲାରେ ଗୋଟିଏ କୃଷକ ସମ୍ମିଳନୀ ହୋଇଥିଲା । ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିଆରୀ ସଭାପତି ହୋଇଥିଲେ । ଦୁଆନିବାସୀ ଶ୍ରୀ ନାରାୟଣ ସାହୁ କିଲାରେ ଅଗ୍ରଣୀ ହୋଇ ସମସ୍ତ କାର୍ଯ୍ୟର ଭାର ନେଇଥିଲେ ଓ ଖୁବ୍ ଉତ୍ସାହର ସହିତ କାର୍ଯ୍ୟ କରିଥିଲେ । ଆଜି ପର୍ଯ୍ୟନ୍ତ ମଧ ସେ ଏ କାର୍ଯ୍ୟରେ ନିଯୁକ୍ତ ଅଛନ୍ତି । ଲାହା ପରିବାରଙ୍କ ମଧରୁ ଶୀଘ୍ର କେହି ଆସି ସ୍ଥାନୀୟ ଅବସ୍ଥା ତଦନ୍ତ କରିବା ପାଇଁ ଅନୁରୋଧ କରାଯାଇଛି । କିଲାର ପ୍ରାୟ ୨୦୦ ପ୍ରଜାଙ୍କ ଦସ୍ତଖତ୍‌ରେ ଗୋଟିଏ ଦରଖାସ୍ତ ଜମିଦାରଙ୍କ ନିକଟରୁ ପଠାଯାଇଥିଲା । କୃଷକ ସଙ୍ଘ ତରଫରୁ ମଧ ସେଠାକାର ଅବସ୍ଥା ବର୍ଣ୍ଣନା କରି ଗୋଟିଏ ଚିଠି ଯାଇଥିଲା । ଫଳରେ କିଛିଦିନ ପରେ ଜମିଦାରଙ୍କ ତରଫରୁ ତାଙ୍କର ଜନୈକ ଆତ୍ମୀୟ ଅବସ୍ଥା ତଦନ୍ତ କରିବାକୁ ଆସିଥିଲେ । ମାତ୍ର ସେ ଗ୍ରାମମାନଙ୍କରେ ବୁଲି ଲୋକଙ୍କୁ ଗୋପନରେ ପଚାରି କୌଣସି ବିଶେଷ ତଦନ୍ତ କରି ନ ଥିଲେ । କେବଳ କୂଅ ଖୋଳାଇବା ପାଇଁ ଅଧିକାର ଦେଇଗଲେ ଓ କେତେକ ତହସିଲଦାରଙ୍କୁ ବଦଳି ହୁକୁମ ଦେଲେ, କିନ୍ତୁ ଅସଲ ଆପତ୍ତି ସବୁ ପ୍ରତି ଦୃଷ୍ଟି ନ ଦେବାରୁ ଅବସ୍ଥା ପୂର୍ବରେ ଯେପରି ଥିଲା ସେପରି ରହିଛି ।

**ସାଲେପୁର**

"କଟକ ଜିଲ୍ଲାର ବଡ଼ ଥାନାମାନଙ୍କରୁ ଅନ୍ୟତମ । ନନ୍ଦ କୁମାର ଷ୍ଟେଟ, ଚୌଧୁରୀ ଗୋପବନ୍ଧୁ ମିଶ୍ର, ଖାଁ ବାହାଦୂର ଅହମ୍ମଦ ବକ୍‌ସ, ଅନ୍ନପୂର୍ଣ୍ଣା ଇଷ୍ଟେଟ, ଏହି ଥାନାର ବଡ଼ ଜମିଦାରୀ । ଦଖଲ ଖାରଜ ରୋସମ ଅଧିକା ନେବା, ବେଠି ଖଟାଇବା, ବେଆଇନ ପାଉଣା ଆଦାୟ ଇତ୍ୟାଦି ନାନାରକମ ଅଭିଯୋଗ ଏହି ଅଞ୍ଚଳରୁ ମିଳେ ଏବଂ ଚୌଧୁରୀ ଗୋପବନ୍ଧୁ ମିଶ୍ରଙ୍କ ଜମିଦାରୀରେ ଜଳକର; ଜରିମାନା ଇତ୍ୟାଦି ନାନାପ୍ରକାରର ଆବୁଆବ ଆଦାୟ କରାଯାଏ ବୋଲି ଅଭିଯୋଗ । ଏହି ଥାନାର ଗୋଟିଏ କୃଷକ ସମ୍ମିଳନୀ ବହୁକୁଦଠାରେ ଅନୁଷ୍ଠିତ ହୋଇଥିଲା ଏବଂ ପୁରୀରେ ଶ୍ରୀ ମୋହନ ଦାସ ଏଥିରେ ସଭାପତି ହୋଇଥିଲେ । ଏହି କମିଟିରେ ଅନ୍ୟାନ୍ୟ ପ୍ରସ୍ତାବମାନଙ୍କ ମଧରେ ଫସଲ ଦର ହ୍ରାସ ସଙ୍ଗେ ସଙ୍ଗେ ଖଜଣା ରେଟ କମାଇ ଦିଆଯାଇ ପାରିବ ବୋଲି ଯେଉଁ ପ୍ରସ୍ତାବ ମାନ୍ଦ୍ରାଜ କାଉନ୍‌ସିଲରେ ପାସ୍ ହୋଇଛି ଏବଂ ଯାହା ଓଡ଼ିଶାର ଗଞ୍ଜାମ ଓ କୋରାପୁଟ ଜିଲ୍ଲାମାନଙ୍କରେ ଚାଲୁ ହେବ, ସେହି ଆଇନକୁ ଓଡ଼ିଶାର ଅନ୍ୟ ଜିଲ୍ଲାମାନଙ୍କରେ ପ୍ରବର୍ତ୍ତନ କରିବା ନିମିତ୍ତ ଗୋଟିଏ ପ୍ରସ୍ତାବ ପାଶ୍ ହୋଇଥିଲା । ବିଭିନ୍ନ ଗ୍ରାମର ୪୦ ଜଣ ଲୋକଙ୍କୁ ନେଇ ସାଲେପୁର ଥାନା କୃଷକ ସଂଘ ଗଢ଼ାଯାଇଛି । ଏହି କମିଟିର ଦୁଇ ଚାରିଟି ଅଧିବେଶନ ଏଥି ମଧରେ ହୋଇଯାଇଛି । ଡ଼ାକ୍ତର ବ୍ରଜନାଥ ମିଶ୍ର

ସ୍ୱାଧୀନତା ସଂଗ୍ରାମରେ କାରାବରଣ କରିଥିଲେ ଏବଂ ସୋମନାଥ ଶତପଥୀ (କଂଗ୍ରେସର ଜଣେ ବିଶିଷ୍ଟ କର୍ମୀ—ଘର ରାଏସୁଙ୍ଗୁଡ଼ା ସାଲେପୁର)—ସମ୍ପାଦକ ।

**ଟାଙ୍ଗୀ**

"ଏହି ଥାନାରେ (ଚୌଦ୍ୱାର ଅଞ୍ଚଳରେ କଟକ ଜିଲ୍ଲାର ଟାଙ୍ଗୀ ଥାନା—ପୁରୀରେ ଖୋର୍ଦ୍ଧା ପରେ ଆଉ ଏକ ଟାଙ୍ଗିଥାନା) ସଫା ଗ୍ରାମନିବାସୀ ସୂର୍ଯ୍ୟନାରାୟଣ ମହାନ୍ତି (କଂଗ୍ରସ କର୍ମୀ-ଏବେବି ଜୀବିତ) ସୂର୍ଯ୍ୟନାରାୟଣ ମହାନ୍ତିଙ୍କ ଉଦ୍ୟମରେ ସେ ଅଞ୍ଚଳର ଜମିଦାର (କଲିକତାର ମଣ୍ଡଳ ଷ୍ଟେଟ) କର୍ମଚାରୀମାନେ ଖଜଣା ଅସୁଲ ସକାଶେ ପାଚିଲା ଧାନ କିଆରି ଆଦିରେ "ଝୁଣ୍ଡା" (ଜମିଦାର ପକ୍ଷରୁ ଲେଖି ବାଡ଼ିରେ ନିଷେଧାଦେଶ ଝୁଲାଇ ପୋଡ଼ି ଦେବାକୁ "ଝୁଣ୍ଡା" କୁହାଯାଏ । ଝୁଣ୍ଡା ଥାଇ ଧାନ କାଟିଲେ ପ୍ରଜାର ଅପରାଧ ହୁଏ । ଜରିମାନା, ମାଡ଼, ନାନାପ୍ରକାର ଜୁଲୁମ ଜମିଦାର ପକ୍ଷରୁ ଚାଲେ) ଦେଇ ବନ୍ଦ କରି ଦେଉଥିଲେ । କୃଷକ ସଙ୍ଘ ତରଫରୁ ଶ୍ରୀମତୀ ମାଳତୀ ଦେବୀ ଓ ରାଜକୃଷ୍ଣ ବୋଷ ତଦନ୍ତ କରି ଏହା ସତ୍ୟ ବୋଲି ପ୍ରମାଣ ପାଇଥିଲେ ଏବଂ ଖବରକାଗଜରେ ଏହା ପ୍ରକାଶ ପାଇଥିଲା । ସେହି ହେତୁ ପରେ ଏହି ପ୍ରଥା ଅନେକ ପରିମାଣରେ କମ୍ ହୋଇଗଲା, ମାତ୍ର ସୂର୍ଯ୍ୟନାରାୟଣଙ୍କ ଉପରେ ଆକ୍ରୋଶ ରଖି ସେ ଖଜଣା ଦେଇଥିବା ସତ୍ତ୍ୱେ ତାଙ୍କ ଜମିର ଫସଲ ଅକଟ ରଖିଲେ । କୃଷକ ସଙ୍ଘ ସାହାଯ୍ୟରେ ସୂର୍ଯ୍ୟନାରାୟଣ ମକଦ୍ଦମା ଲଢ଼ିଲେ । (ସେ ଏବେ ବି ଜୀବିତ ସେ ଦୀର୍ଘଦିନ ଜେଲ୍ ଯାଇଥିଲେ ଓ ସତ୍ୟାଗ୍ରହ ବୋଲି ଗୋପନ ନାମ ନେଇଥିଲେ । ସବୁ ପ୍ରମାଣ ସତ୍ତ୍ୱେ ତାଙ୍କୁ ସ୍ୱାଧୀନତା ସଂଗ୍ରାମୀ ପେନସନ ଦିଆଯାଉ ନାହିଁ ) ଏବଂ ଜମିଦାରଙ୍କ ମକଦ୍ଦମା ଖାରଜ ହେଲା ଓ ବେଆଇନ ବୋଲି ପ୍ରମାଣ ହେଲା । କୋର୍ଟ ତରଫରୁ ଜମିଦାରଙ୍କ ଏଜେଣ୍ଟଙ୍କୁ ଅନଧିକାର ପ୍ରବେଶ ସକାଶେ ଫୌଜଦାରୀ ସୁପର୍ଦ୍ଦ କରାଯାଉଥିଲା ପରେ ଜମିଦାର ସୂର୍ଯ୍ୟନାରାୟଣଙ୍କ ସହିତ ଆପୋଷ ମିଟମାଟ କରିଦେଲେ ।

"ଏହି ଅଞ୍ଚଳରେ ଗୋଟିଏ କୃଷକ ସମ୍ମିଳନୀ ଅଗଷ୍ଟ ମାସରେ ହୋଇଥିଲା । ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ (କଟକ ସହରର ସେ କାଳରେ ଜଣେ ଖ୍ୟାତନାମା, ଜନ ସେବୀ ସ୍ୱାଧୀନତା ସଂଗ୍ରାମୀ), ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ଅଭ୍ୟର୍ଥନା ସମିତିର ସଭାପତି ହୋଇଥିଲେ । ଘୋର ବର୍ଷା ସତ୍ତ୍ୱେ ପ୍ରାୟ ୧୦୦୦ ଲୋକ ଉପସ୍ଥିତ ଥିଲେ । ସମ୍ମିଳନୀରେ ନାନା ପ୍ରସ୍ତାବ ସଙ୍ଗରେ ଗୋଟିଏ ଥାନା କୃଷକ ସଙ୍ଘ ସ୍ଥାପିତ ହେଲା । ଏହି କମିଟିର ଦୁଇ ତିନୋଟି ବୈଠକ ହୋଇଗଲାଣି । ଶ୍ରୀଯୁକ୍ତ ଗଜେନ୍ଦ୍ରନାଥ ନାୟକ ଏହାର ସଭାପତି ଓ ଶ୍ରୀ ରମେଶ ଚନ୍ଦ୍ର ସୁବୁଦ୍ଧି ଓ ସୂର୍ଯ୍ୟନାରାୟଣ ମହାନ୍ତି ଯୁଗ୍ମ ସମ୍ପାଦକ । ଏହାର ଅଧୀନରେ ଅନେକଗୁଡ଼ିଏ ଗ୍ରାମ ସମିତି ଗଢ଼ା ହୋଇ କାର୍ଯ୍ୟ ଆରମ୍ଭ ହୋଇଛି ।

"ମଣ୍ଡଳ ଇଷ୍ଟେଟ" ଏହି ଅଞ୍ଚଳରେ ସବୁଠାରୁ ବଡ଼ ଜମିଦାର । ଏ ସମ୍ମିଳନୀ ପରେ

ମଧ୍ୟ ସେମାନେ କେତେ ଜଣ ଶଅରଙ୍କୁ ଜଙ୍ଗଲ କାଠ ଓ କୋଇଲା ଆଣିବାକୁ ବାଧା ଦେଉଛନ୍ତି । ଅଥଚ ଏ ଅଧିକାର ପ୍ରଜାମାନେ ଅନେକ କାଳରୁ ଭୋଗ କରି ଆସୁଛନ୍ତି ।

**ତିର୍ତ୍ତୋଲ ଓ ଏରସମା**

"ଏହି ଦୁଇ ଥାନାର ସମ୍ମିଳନୀ ରାହାମାଠାରେ ହୋଇଥିଲା । ପ୍ରାୟ ୬୦୦ ଲୋକ ସମ୍ମିଳନୀରେ ଉପସ୍ଥିତ ଥିଲେ । ଶ୍ରୀ ହରେକୃଷ୍ଣ ମହତାବ ସମ୍ମିଳନୀର ସଭାପତି ହୋଇଥିଲେ । କୁଜଙ୍ଗ ଷ୍ଟେଟ (ବର୍ଦ୍ଧମାନର ଜମିଦାର ଉଦୟଚନ୍ଦ୍ର ମହତାବଙ୍କ ବିରାଟ ଜମିଦାରୀ), ପଣ୍ଡୁଆ ଷ୍ଟେଟ(ରବୀନ୍ଦ୍ରନାଥ ଠାକୁର ପରିବାରର ଜମିଦାରୀ) ଲାହା ପରିବାର ହିଁ ଏହି ଅଞ୍ଚଳର ବଡ଼ ଜମିଦାର । ଏହି ସମ୍ମିଳନୀଟି ଗତ ଅକ୍ଟୋବର ମାସରେ ହୋଇଛି ଏବଂ ଏହି ଥାନାରେ କାର୍ଯ୍ୟ କରିବା ସକାଶେ ଗୋଟିଏ କମିଟି ସ୍ଥାପନ କରାଯାଇଛି । କୁଜଙ୍ଗ ଅଞ୍ଚଳରେ ଗୋଟିଏ ଚିକିତ୍ସାଳୟ ସ୍ଥାପନ ପାଇଁ ସରକାରଙ୍କୁ ଅନୁରୋଧ କରାଯାଇ ମଧ୍ୟ ପ୍ରସ୍ତାବ ଗୃହୀତ ହୋଇଛି । ଶ୍ରୀ ଚୌଧୁରୀ ବାଳମୁକୁନ୍ଦ ମହାପାତ୍ର ଅଭ୍ୟର୍ଥନା କମିଟିର ସଭାପତି ଓ ଶ୍ୟାମସୁନ୍ଦର ମହାନ୍ତି ଓ ବାବାଜି ଭୀମ ଦାସ (ଜଣେ ସ୍ୱାଧୀନତା ସଂଗ୍ରାମୀ ଏବେ ମୃତ) ସମ୍ପାଦକ ନିର୍ବାଚିତ ହୋଇଥିଲେ ।

**ପଟିଆ**

"ପଟିଆ ବର୍ତ୍ତମାନ କନିକା ରାଜାଙ୍କର ହସ୍ତଗତ ହୋଇଛି । ତାହା ପୂର୍ବରୁ ପଟିଆ ଏକ ଜମିଦାରୀ ଥିଲା, ଜମିଦାର ରାଜା ବୋଲାଉ ଥିଲେ । ଦେବୀନଦୀ ଓ ପ୍ରାଚୀନଦୀ ଉପତ୍ୟକାରେ ବାରଙ୍ଗ ଚନ୍ଦକା ସୀମାନ୍ତରୁ ସମୁଦ୍ର କୂଳଯାଏ ଲମ୍ବିଥିଲା । ତାହା ପୁଣି ନିଲାମ ହୋଇ ଭିଙ୍ଗାରପୁର ଇଷ୍ଟେଟ ଗଠିତ ହେଲା ଓ ଭିଙ୍ଗାରପୁର ଚୌଧୁରୀବଂଶ ଶତାଧିକ ଗାଁ'ର ଜମିଦାର ହେଲେ । ପଟିଆ ଜିଲ୍ଲା ପନ୍ଦରଟି ମୌଜାରେ ସୀମାବଦ୍ଧ ହେଲା ଓ କନିକା ରାଜା ତାଙ୍କୁ ପଟିଆ ରାଜା ଖଜଣା ନବାନ୍ଧିବାକୁ ନିଲାମ ଧରି ସେଠାରେ ଜମିଦାର ହେଲେ ।

"ସେଠାରେ କିଛି ଜମିର ସତ୍ୱାସତ୍ୱ ନେଇ କେତେକ ପ୍ରଜା ଓ ଜମିଦାରଙ୍କ ସଙ୍ଗରେ ବିବାଦ ଲାଗିଥିଲା । ପଟିଆର ସଅରମାନେ ଜଣେ ପ୍ରଜାଙ୍କଠାରୁ ଜମି ନେଇ ଭାଗ ଚାଷ କରୁଥିଲେ । ସେହି ଜମିର ଧାନ ପାଚିବା ଅବସ୍ଥାରେ କନିକା ଲୋକେ ଜମିର ଦଖଲ ଦେବା ପାଇଁ ପୁଲିସ ନେଇ ଜବରଦସ୍ତ ଧାନ କଟାଇବାକୁ ଗଲେ । ଏପରି ହଠାତ୍ ପାଚିଲା ଧାନ ନଷ୍ଟ ନ କରିବାକୁ ସଅରମାନେ ସେମାନଙ୍କୁ ଅନୁରୋଧ କଲେ, ମାତ୍ର ତାଙ୍କର ଆପତ୍ତି ନ ଶୁଣିବାରୁ ସେମାନେ ଅଧୀର ହୋଇ ପଡ଼ିଲେ ଏବଂ ପୁଲିସ, ଜମିଦାର ତରଫ ଲୋକ ଓ ସଅରଙ୍କ ମଧ୍ୟରେ ସଂଘର୍ଷ ହେଲା । ପୁଲିସ ସେମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରିଥିଲେ । ଉକ୍ତ ଘଟଣା ଭାରତ ସେବକ ସମିତିର ସଦସ୍ୟ ଲକ୍ଷ୍ମୀନାରାୟଣ ସାହୁ ପ୍ରମୁଖ କେତେଜଣ ଲୋକ ଓ କୃଷକ ସଙ୍ଘ ତରଫରୁ ନବକୃଷ୍ଣ ଚୌଧୁରୀ ଆଦି ମଧ୍ୟ ତଦନ୍ତ କରିଥିଲେ ଓ ସ୍ୱଚକ୍ଷୁରେ ଅବସ୍ଥା ଦେଖି ଆସିଥିଲେ । କଟକରେ ଗୋଟିଏ ବିରାଟ ସାଧାରଣ ସଭାରେ ପୁଲିସ କାର୍ଯ୍ୟ

ନିନ୍ଦାବାଦ କରାଯାଇଥିଲା ଏବଂ ତଦନ୍ତ ପାଇଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା । ସରକାର ନିରପେକ୍ଷ ତଦନ୍ତ କଲେ ନାହିଁ । ସଅରମାନଙ୍କୁ ଫୌଜଦାରୀରେ ପକାଇ ଜେଲ୍ ଦିଆଗଲା ।

**କୃଷକମାନଙ୍କ ଅବସ୍ଥା ସମ୍ପର୍କରେ ପ୍ରଶ୍ନାବଳୀ**

(ପ୍ରଶ୍ନଗୁଡ଼ିକର ଉତ୍ତର ପ୍ରତ୍ୟେକ ଜମିଦାରୀ ବା ଲାଖରାଜ ମାହାଲ ପାଇଁ ସ୍ୱତନ୍ତ୍ର ଦେବାକୁ ହେବ ।)

୧। ମାହାଲର ନାମ ? କେଉଁ ଥାନ, କେଉଁ ଜିଲ୍ଲାରେ ?

୨। ମାହାଲର ଜମିଦାର ବା ଲାଖରାଜଦାର କିଏ ? ସ୍ଥାୟୀ ନା ଅସ୍ଥାୟୀ ବନ୍ଦୋବସ୍ତ ? ସଦର ଜମା ବା ପେଶକସ କେତେ ? ମଫସଲ ଜମା କେତେ ?

୩। ପଟ୍ଟାରେ ଯାହା ଖଜଣା ଉଲ୍ଲେଖ ଅଛି, ପ୍ରଜାମାନଙ୍କଠାରୁ ତା'ଠାରୁ ଅଧିକ ଅସୁଲ ହେଉଥିଲେ କିପରି ଭାବରେ କେତେ ଅସୁଲ କରାଯାଏ ?

୪। ବେଠି ପ୍ରଥା ଥିଲେ କେଉଁ ସମୟରେ କିପରି ଭାବରେ କେତେ ବେଠି କରାଯାଏ ? ବେଠି କରିବା ସକାଶେ ଜାଗିରୀ ପ୍ରଭୃତି ଖଞ୍ଜାଥିଲେ କଅଣ କେତେ ଖଞ୍ଜା ଅଛି ? ପ୍ରଚଳିତ ରେଟ୍‌ରେ ବା ଦରଠାରୁ ଜମା ରେଟ୍‌ରେ ମୂଲ ଲାଗୁଥିଲେ ବା ଜିନିଷ ବିକ୍ରି କରୁଥିଲେ ତାହାର ବିବରଣୀ ।

୫। କୃଷକ ପରିବାରର ବାହାଘର ହେଲେ ସେଥିପାଇଁ ଜମିଦାରଙ୍କୁ ବାହାଚିନା ବା ଅନ୍ୟ କିଛି ପାଉଣା ଦିଆଯାଏ କି ନାହିଁ । ଦିଆଯାଉଥିଲେ କଅଣ କେତେ ଦିଆଯାଏ ? ପ୍ରଜାମାନେ ତା' ବଦଳରେ କିଛି ପାଆନ୍ତି କି ନାହିଁ ? କଅଣ ପାଆନ୍ତି ?

୬। ଦାଖଲ ଖାରଜ ସମୟରେ ସାଧାରଣତଃ କେତେ ରୋସମ ଦେବାକୁ ପଡ଼େ । (ଜଣେ ଚାଷୀ ଯଦି କିଛି ଜମି କିଣିଲା, ତେବେ ପୂର୍ବ ମାଲିକ ଯାହାଙ୍କୁ ବାୟା କୁହାଯାଏ, ତା'ର ନାମ ଜମିଦାରୀ ସିରସ୍ତାରୁ କଟି, କିଣିବା ଚାଷୀ ଯାହାଙ୍କୁ ମୁସ୍ତରି କୁହାଯାଏ; ତାଙ୍କ ନାମ ଜମିଦାରୀ ଖାତା ପତ୍ରରେ ଦରଜ କରାଇବାକୁ ହୁଏ । ସେତେବେଳେ ଜମିଦାର ଉକ୍ତ ଜମି ଖଜଣାର ଛ' ଗୁଣଠାରୁ ୧୨ ଗୁଣ ଅର୍ଥ ନେଇ ବାୟା ନାମ କାଟି ମୁସ୍ତରୀ ନାମ ଦରଜ କରାଉଥିଲେ ।

୭। ଜମିଦାର କଚେରୀରେ ଖାତା ଫଡ଼େଇବା ପାଇଁ କେତେ ଫିସ୍ ଦେବାକୁ ପଡ଼େ ? (ଭାଇ ବଣ୍ଟୁଆରା ହେଲେ ଯାହାର ଯାହା ଭାଗ ପଡ଼ିଲା, ସେହି ଅନୁସାରେ ସେ ଖଜଣା ଦେଇ ପାଉତି କାଟିଲେ ତାହାର ସ୍ୱତ୍ୱ ସ୍ୱତନ୍ତ୍ର ହୁଏ, ନଚେତ ଇଜମାଲି ବା କୋଠରେ ରହିଲେ, ଅଂଶୀଦାରମାନେ ଖଜଣା ନଦେଇ ପାରିଲେ ସମସ୍ତଙ୍କ ଜମି ନିଲାମ ହୋଇଯାଏ ।

୮। ସୁନିଆ ଜମିଦାର ଲାଖରାଜଦାରମାନଙ୍କର ଏକ ଉତ୍ସବ । ଜମିଦାରମାନେ ସୁନିଆ ବେଦୀରେ ବସନ୍ତି, ଭୋଜି ଭାତ ହୁଏ, ପ୍ରଜାମାନେ ଚାଉଳ, ପରିବା, ଦହି, ଦୁଧ, ଟଙ୍କା ପଇସା, ଖଟ, ଚୌକି, ଯାହାର ଯାହା ଧନ୍ଦା ସେହି ଅନୁସାରେ ଭେଟି ଦିଏ । ଦଶହରା ବା ଅନ୍ୟ କିଛି ଉପଲକ୍ଷରେ ଭେଟି (ଅନ୍ୟ ଉପଲକ୍ଷ ହେଲା ରାଜା ଜମିଦାରଙ୍କ ପୁଅ ଝିଅ ବାହାଘର, ଗାଦୀନସୀନ, ଜମିଦାର ରାଜାଙ୍କ ମୃତ୍ୟୁରେ ଏକାଦଶାହରେ) ଦେବା ପ୍ରଥା ଅଛି କି ନାହିଁ ? ଥିଲେ କେତେ କଅଣ ଦେବାକୁ ପଡ଼େ ? ଭେଟି ବଦଳରେ ଜମିଦାରଙ୍କ ଆଡୁ କଅଣ ମିଳେ ? (ଭୋଜି ଭାତରେ ଖାଇବାଗଣ୍ଡାଏ ଦିଆଯାଏ ।)

୯। ଜମିଦାରମାନଙ୍କ ବା ତାଙ୍କ ଅମଲାମାନଙ୍କ ସଲାମି ବା ରସଦ ପ୍ରଭୃତି କେଉଁ ସମୟରେ ଦିଆଯାଏ ? ତହସିଲଦାର, ପିଅଦା ବା ବରକନ୍ଦାଜ ମୌଜାକୁ ଅସୁଲ ପାଇଁ ଆସିଲେ ବା ଜମିଦାର ତାଙ୍କ କଚେରୀକୁ ଆସିଲେ ପ୍ରଜାଏ ସଲାମି ଅର୍ଥ ଦିଅନ୍ତି, ଦିବ୍ୟ ଚାଉଳ, ପରିବା, ଘିଅ, ଦହି ରସଦ ଆକାରରେ ପଠାନ୍ତି ?)

୧୦। ମାଲି ମକଦମା ନିଷ୍ପତ୍ତି କରି ଜମିଦାର ବା ତହସିଲଦାର ପ୍ରଭୃତି ପ୍ରଜାଙ୍କଠାରୁ ଜରିମାନା ଆଦାୟ କରନ୍ତି କି ନାହିଁ ? କରୁଥିଲେ ତାହାର କେତୋଟି ଦୃଷ୍ଟାନ୍ତ–କାହାଠାରୁ କେଉଁ ମକଦମାରେ କେତେ ଆଦାୟ କରିଛନ୍ତି ? କୌଣସି ପାପ କାମ କରିଥିବା ଅପରାଧରେ ଜୋରିମାନା ଦିଆଯାଏ କି ନାହିଁ ?

୧୧। ଖଜଣା ନେଇ ବିଧିମତେ ପାଉତି ଦିଆଯାଏ କି ନାହିଁ ? ପ୍ରଜା ଖଜଣା ଦେଲାବେଳେ କେଉଁ ବର୍ଷକୁ ମଜୁରା ଦେବାକୁ କହେ, ସେ ବର୍ଷକୁ ଦିଆଯାଏ କି ନାହିଁ ?

୧୨। ଗଛ କାଟିବା, ପୋଖରୀ ଖୋଳିବାରେ ପ୍ରଜାର ସ୍ୱତ୍ତ୍ୱାସ୍ୱତ୍ତ୍ୱ କ'ଣ ଅଛି ?

୧୩। ଅନ୍ୟ ପ୍ରକାର ଜୁଲୁମ କିଛି ହୁଏ କି ? ଯଥା ମାଡ଼, ବେଜିତ କରିବା, ସାଦା କାଗଜରେ ଟିପ ଚିହ୍ନ ନେବା, ପ୍ରଜା ଜମିରେ ଗୋରୁ ଛାଡ଼ିବା, ସାମାଜିକ ବାସନ୍ଦ କରାଇବା ଇତ୍ୟାଦି ।

୧୪। ପ୍ରଜାସ୍ୱତ୍ତ୍ୱ ନେଇ ପ୍ରଜା ଜମିଦାର ମଧ୍ୟରେ ମୋକଦମା ହୋଇଥିଲେ ତା'ର ବିଷୟ କଅଣ ଥିଲା ଏବଂ ଆଇନ ଅଦାଲତରେ କ'ଣ ସିଦ୍ଧ ହେଲା ?

**ଜମିଦାରୀ-ମକଦମିରେ ଆଇନ ବିହିର୍ଭୂତ ଆଦାୟ ଅତ୍ୟାଚର**

ଓଡ଼ିଶାରେ ଜମିଦାରୀମାନଙ୍କରେ ନାନାପ୍ରକାର ଅତ୍ୟାଚର ହୁଏ । ନିମ୍ନଲିଖିତ କେତୋଟି ଆଇନ ବହିର୍ଭୂତ ଆଦାୟ ଓ ଅତ୍ୟାଚାର ପ୍ରାୟ ସବୁ ଜମିଦାରୀରେ ଦେଖାଯାଏ ।

୧। ଟଙ୍କାକେ ଦୁଇ ଅଣାଠାରୁ ଛ ଅଣା (ଟଙ୍କାକ ଷୋଳଣା) ପର୍ଯ୍ୟନ୍ତ ଆବୁଆବ ଆଦାୟ ହୁଏ ।

୨। ଜମିଦାରଙ୍କ ନିଜ ଚାଷ ଓ ଜମି ଚାଷ କରିବା ପାଇଁ ବେଠି ନିଆଯାଏ ? (ପ୍ରତ୍ୟେକ ଜମିଦାରୀ ମୌଜାରେ ଜମିଦାରଙ୍କର ସ୍ୱତନ୍ତ୍ର ନିଜ ଚାଷ ଓ ନିଜ ଜୋତ ନାମରେ ଦୁଇଟି ସ୍ୱତ୍ୱରେ ଜମି ଥାଏ । ତାହା ପ୍ରଜାଙ୍କର ନୁହଁ । ଉକ୍ତ ଜମିରେ ଜମିଦାର ପ୍ରଜାମାନଙ୍କୁ ବେଠି ଲଗେଇ ଚାଷ କରାନ୍ତି, ଧାନ କଟାନ୍ତି, ଅମଳ କରାନ୍ତି, ପୁଣି ସେହି ଧାନ ଦେଢ଼ି ବା କରଜ ଦେଇ ଚାଷୀଙ୍କଠାରୁ ବର୍ଷକୁ ଦେଢ଼ ଗୁଣା ଧାନ ଆଦାୟ କରନ୍ତି । ନ ଦେଇ ପାରିଲେ ନାଲିସ, ଜୋରିମାନା ଜମି ନିଲାମ ନେଉଥିଲେ ତାହା ନିଜ ଜୋତ ହୋଇଯାଉଥିଲା ।)

୩। ନିୟମ ମୁତାବକ ପାଉତି ଦିଆଯାଏ ନାହିଁ । ଖଜଣା ଦେଇଥିଲେ ସୁଧା ପୁଣି ବାକୀ ଖଜଣା ପାଇଁ ପ୍ରଜା ଉପରେ ନାଲିସ ହୁଏ ।

୪। ଖଜଣା ମନିଅର୍ଡ଼ର କରି ପଠାଇଲେ ଗ୍ରହଣ କରନ୍ତି ନାହିଁ ।

୫। ଖଜଣା ଅସୁଲ ପାଇଁ ଅତି ଅଳ୍ପ ଦରମାରେ ଗୁମାସ୍ତା ଓ ପିଆଦା ନିଯୁକ୍ତ କରି ପିଆଦା, ଖରଡ଼ା ପଣି ଆଦି ନାନାପ୍ରକାର ପାଉଣା ଆଦାୟ କରାଯାଏ ।

୬। ସୁନିଆ ଓ ଅଭିଷେକ (ପୁଷ ମାସ) ଦିନ ଭେଟି ସ୍ୱରୂପ ପାଉଣା ଆଦାୟ କରାଯାଏ । କୌଣସି ପ୍ରଜା ଉପସ୍ଥିତ ନ ହେଲେ ତାକୁ ଜୋରିମାନା କରାଯାଏ । କୌଣସି କୌଣସି ଜମିଦାରୀରେ ଖଜଣା ଅସୁଲ ବେଳେ ମଧ୍ୟ ଆଗ ଏଥିପାଇଁ କାଟି ନିଆଯାଏ ।

୭। ପ୍ରଜାର ପୁଅ ଝିଅ ବିଭାଘର ବାହାଚିହ୍ନା ଅସୁଲ ହୁଏ । ନଦେଲେ ପୁରୋହିତ, ନାହାକ, ଧୋବା ଓ ଭଣ୍ଡାରି ଅଟକ କରିଦିଅନ୍ତି । କୌଣସି କୌଣସି ଜମିଦାରୀରେ ୪ଟଙ୍କାରୁ ୭ଟଙ୍କା ପର୍ଯ୍ୟନ୍ତ ଅସୁଲ ହେବାର ପ୍ରମାଣ ମିଳେ ।

୮। ପ୍ରଜା ବାଡ଼ିରୁ ପରିବା, ଘିଅ ଓ ଧାନ ଆଦି ଅଳ୍ପ ଦାମରେ ଜବରଦସ୍ତି ଅସୁଲ ହୁଏ ।

୯। ମଜୁରୀ ଖଟିବାକୁ ଡାକି ନେଇ ଅଧା ଦରରେ ମୂଲ୍ୟ ଦିଆଯାଏ ।

୧୦। ଉଚିତ ପଥକରର ପ୍ରାୟ ଦୁଇ ଗୁଣ ଅସୁଲ ହୁଏ ।

୧୧। ଛାପା ପାଉତି ଦେଇ ସେଥିପାଇଁ ପାଉତି ଖର୍ଚ୍ଚ । ଏକ ପଇସା କରି ଅସୁଲ ହୁଏ ।

୧୨। କୌଣସି ପ୍ରଜା ଉପରେ ଅକସ ସାଧିବା ପାଇଁ ଅନ୍ୟାୟ ଭାବରେ ବଳପୂର୍ବକ ଧୋବା, ଭଣ୍ଡାରୀ, ନିଆଁ ପାଣି (ଅର୍ଥାତ୍ ନିଜର କୂଅ ନଥିଲେ ଅନ୍ୟ କୂଅରୁ ପାଣି ନେବା ବା ଘରେ ଝକମକି, ଦିଆସିଲି ନଥିଲେ, କୁଟା ଲୁଣ୍ଡାରେ ଅନ୍ୟ ଘର ଚୁଲୀରୁ ରୋଷେଇ ପାଇଁ ନିଆଲୁଣ୍ଡା ନେବା ଉପରେ ନିଷେଧ) ବନ୍ଦ କରାଯାଏ ।

୧୩। କୌଣସି କ୍ଷମତା ନଥାଇ ସୁଦ୍ଧା ମାଲି ମକଦ୍ଦମା ନିଷ୍ପତ୍ତି କରି ବହୁତ ବେଶି ଜୋରିମାନା ଅସୁଲ କରାଯାଏ ।

୧୪। ଜମିଦାରଙ୍କ ପୁଅ ଝିଅ ବାହାଘର ବେଳେ ମାଗଣ (ବେ-ଆଇନ ଏକପ୍ରକାର ପାଉଣା) ଅସୁଲ ହୁଏ ।

୧୫। ଜମିଦାରଙ୍କ ମିଛ ମକଦମାରେ ସାକ୍ଷୀ ନହେଲେ ତାଙ୍କୁ ମକଦମା ଆଦିରେ ପକାଇ ନାନାପ୍ରକାର ହଇରାଣ କରନ୍ତି ।

୧୬। ଅନେକ ହକ ପାଉଣାରୁ ୧ ଟଙ୍କା କିମ୍ବା ୨ ଟଙ୍କା ବେଶି ପ୍ରତି ମାଣ (ଏକର)ରେ ଅସୁଲ କରନ୍ତି ଓ ସେଥିପାଇଁ ପ୍ରଜାକୁ ପାଉତି ଦିଅନ୍ତି ନାହିଁ ।

୧୮। ରୟତମାନେ ଠିକ୍ ପଣା କିମ୍ବା ଗର୍ଭଣା ସଂକ୍ରାନ୍ତି ଦିନ ଅସୁଲ ନଦେଲେ ଖଜଣା ଉପରେ ଶତକରା ୨୫ ଟଙ୍କା ହାରରେ ସୁଧ ଅସୁଲ ହୁଏ ।

୧୯। କୌଣସି ରୟତ ନିଃସନ୍ତାନ ହୋଇ ମଲେ ତା'ର ସମ୍ପତ୍ତି ସମୟ ସମୟରେ ଜମିଦାର ନିଜେ ନେଇ ନିଅନ୍ତି ଓ ତା'ର ବଂଶଧରମାନଙ୍କୁ ଦିଅନ୍ତି ନାହିଁ ।

୨୦। ଖଜଣା ଆଦି ଅସୁଲ କରିବା ସକାଶେ କୃଷକମାନଙ୍କୁ ଖରାରେ ଖାଲି ଗୋଡ଼ରେ ଓ ଖାଲି ମୁଣ୍ଡରେ ଠିଆ କରାହୁଏ, ହାତ ବାନ୍ଧି ଦେଇ ବେକରେ ଜୋତାମାଳ ପକାଇ ଦିଆହୁଏ, ଭଙ୍ଗା ହାଣ୍ଡିର ମୁହଁ ତା' ବେକରେ ଗଳାଇ ଦିଆ ହୁଏ ଇତ୍ୟାଦି ।

୨୧। ଜମିଦାରଙ୍କ ମଇଁଷି, ଗୋରୁ, ହାତୀ ଆଦିଙ୍କ ପାଇଁ ଜବରଦସ୍ତ ରୟତର ଫସଲ କାଟି ନେଇ ଯାଆନ୍ତି ।

୨୨। ଦୁଇ ଚାରିଅଣା ପକେଇ ରୟତର ପୋଷା ଛେଳି, ମେଣ୍ଢା, କୁକୁଡ଼ା ଆଦି ନେଇଯାଆନ୍ତି ।

୨୩। ତେଲି ପ୍ରଜାକୁ ଅଧା ଦାମ୍‌ରେ ତେଲ ଯୋଗାଇବାକୁ ହୁଏ ।

୨୪। ଜମିଦାରଙ୍କ ବିବାହ ଉତ୍ସବରେ କୁମ୍ଭାରଠାରୁ ମାଗଣା ହାଣ୍ଡି ନିଆଯାଏ ଏବଂ ସମୟ ସମୟରେ ଖୁବ୍ କମ୍ ପଇସା ଦିଅନ୍ତି ।

୨୫। ଦାଖଲ ଖାରଜ ରୋଷମ ବଡ଼ ଉଚ୍ଚ ହାରରେ ଅସୁଲ ହୁଏ ।



# ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଜନ୍ମର ଆଦ୍ୟ ବୃତ୍ତାନ୍ତ

ପଚାଶ ବର୍ଷ ତଳର କଥା । ୧୯୩୫-୩୬ ଭାରତ ଏବଂ ତହିଁରେ ସେ କାଳର ଓଡ଼ିଶା । ସେହି ଓଡ଼ିଶାରେ ମଧ୍ୟ ମାନବ ସମାଜର ମୁକ୍ତିର ମହାନ ଆଦର୍ଶ, ମାର୍କସବାଦ-ଲେନିନବାଦର ବାର୍ତ୍ତା ପହଞ୍ଚିଗଲା । ମାର୍କସ ଓ ଏଙ୍ଗେଲସଙ୍କ ଯେଉଁ ମହାନ୍ ସିଦ୍ଧାନ୍ତଗୁଡ଼ିକୁ ଲେନିନ ଆହୁରି ସମୃଦ୍ଧ କରି ସେଗୁଡ଼ିକୁ ମହାନ୍ ବଲେଶେଭିକ ପାର୍ଟି ମାଧ୍ୟମରେ ପ୍ରୟୋଗ କରି ଅକ୍ଟୋବର ସମାଜବାଦୀ ବିପ୍ଳବକୁ ବିଜୟମଣ୍ଡିତ କଲେ । ସେହି ଯୁଗାନ୍ତକାରୀ ବିପ୍ଳବର ବାର୍ତ୍ତା ଓଡ଼ିଶା ମାଟିରେ ନୂତନ ରୋମାଞ୍ଚ, ନୂତନ ପୁଲକ ସୃଷ୍ଟି କଲା । ସ୍ୱଭାବତଃ ସେ କାଳରେ ଯିଏ ଦେଶପ୍ରେମୀ, ବ୍ରିଟିଶ ସାମ୍ରାଜ୍ୟବାଦକୁ ଏ ଦେଶରୁ ନିକାଲିବାକୁ ଚାହାନ୍ତି, ଏ ଦେଶକୁ ସ୍ୱାଧୀନ କରିବାକୁ ଚାହାନ୍ତି ଓ ସେହି ଲକ୍ଷ୍ୟ ହାସଲ ଲାଗି ନିଜକୁ ଉତ୍ସର୍ଗ କରି ଥାଆନ୍ତି ବା କରିବାକୁ ପ୍ରସ୍ତୁତ ହେଉଥାନ୍ତି, ସେପରି କେତେକ ଶିକ୍ଷିତ ଯୁବ ଦେଶପ୍ରେମୀଙ୍କୁ ହିଁ ଏହି ମହାନ୍ ଆଦର୍ଶ ଅନୁପ୍ରାଣିତ କରିଥିଲା ।

ସେହି ସମୟରେ କଟକ ଡଗରପଡ଼ାର ଏକ କୋଠାଘର ଶିଢ଼ିରେ ୫ଜଣ ଯୁବକ । ବେଶ୍ ସୁଶିକ୍ଷିତ । ସେ କାଳର ବି.ଏ., ଏମ୍.ଏ. ପଢ଼ା ଯୁବକ । ଖଦଡ଼ ପୋଷାକ । କାରଣ ଦେଶପ୍ରେମୀମାନେ ଏହି ପୋଷାକରେ ସେତେବେଳେ ବାରି ହୋଇ ପଡୁଥିଲେ । ଜଣେ ତନ୍ମଧ୍ୟରୁ କଲେଜ ଛୁଇଁ ନଥିଲେ । ଅର୍ଥାତ୍ ଆନୁଷ୍ଠାନିକ ଉଚ୍ଚ ଶିକ୍ଷା ତାଙ୍କର ନଥିଲା । ମାତ୍ର ୧୯୩୦-୩୨ ଆଇନ ଅମାନ୍ୟ ଆନ୍ଦୋଳନରେ ସ୍କୁଲ ପାଠ ଛାଡ଼ି କଟକ ଓ ପାଟନା କ୍ୟାମ୍ପ୍ ଜେଲ୍‌ରେ ଓଡ଼ିଶାର ତଥା ବିହାରର ହଜାର ହଜାର ରାଜବନ୍ଦୀଙ୍କ ସଙ୍ଗରେ ରହି ସେ ଗଲେ ବନାରସ କାଶୀ ବିଦ୍ୟାପୀଠକୁ । ତାଙ୍କ ସଙ୍ଗରେ ମଧ୍ୟ ଥିଲେ କଲେଜ ପାଠ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ କାରାବରଣ କରି ଜେଲମୁକ୍ତ ଆଉ ଜଣେ । ପ୍ରଥମ ଜଣକ ଗୁରୁଚରଣ ପଟ୍ଟନାୟକ ଓ ଅନ୍ୟ ଜଣେ ପ୍ରାଣନାଥ ପଟ୍ଟନାୟକ । ଏହା ପୂର୍ବରୁ ଆବଶ୍ୟ ଆଉ ଜଣେ କାଶୀ ବିଦ୍ୟାପୀଠରେ ଅଧ୍ୟୟନ କରି ତାଙ୍କ କର୍ମ ଭୂଇଁ ଉତ୍ତର ପ୍ରଦେଶ, ବିହାର ପ୍ରଭୃତିକୁ କରି ନେଇଥାନ୍ତି । ସେ ହେଉଛନ୍ତି ଶରତ ପଟ୍ଟନାୟକ ।

କାଶୀ ବିଦ୍ୟାପୀଠ । ଜାତୀୟ ଶିକ୍ଷାୟତନ । ଯେମିତି ଆମ ପୁଣ୍ୟଶ୍ଳୋକ ଗୋପବନ୍ଧୁଙ୍କ ବକୁଳବନ । ସେମିତି ପାଟନାରେ ଓ ଅନ୍ୟତ୍ର ମଧ୍ୟ ଏପରି ଜାତୀୟ ବିଦ୍ୟାଳୟମାନ ଉନ୍ମୋଚିତ

ହୋଇଥାଏ । କାଶୀ ବିଦ୍ୟାପୀଠ କିନ୍ତୁ ସେ କାଳରେ ଏକ ସ୍ୱତନ୍ତ୍ରତା ଲାଭ କରିଥାଏ । ସେଠାରେ ଅଧ୍ୟାପନା କରୁଥିଲେ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଶ୍ରୀପ୍ରକାଶ, ସମ୍ପୂର୍ଣ୍ଣାନନ୍ଦଙ୍କ ଭଳି ବିଦ୍ୱାନମାନେ । ସେହି ବିଦ୍ୟାଳୟରେ ଭାରତୀୟ ଦର୍ଶନ ସାଙ୍ଗକୁ ମାର୍କସୀୟ ଦର୍ଶନ, ପୁଞ୍ଜିବାଦୀ ଅର୍ଥନୀତି, ବିକଳ୍ପରେ ମାର୍କସବାଦୀ ଅର୍ଥନୀତି, ରୁଷ ସମାଜବାଦୀ ବିପ୍ଳବ, ଫରାସୀ ବିପ୍ଳବ ଇତ୍ୟାଦି ସମ୍ପର୍କରେ ଶିକ୍ଷାଦାନ ଓ ଆଲୋଚନାଚକ୍ର ।

ଗୁରୁଚରଣ ଏହି ଆଲୋଚନାଚକ୍ରରେ ପ୍ରାଣନାଥଙ୍କ ସମେତ ବଲଶେଭିକ ପାର୍ଟି ଓ ରୁଷ ବିପ୍ଳବ ଏବଂ ଲେନିନଙ୍କ ମତାଦର୍ଶ ପ୍ରତି ଦେଖାଇଥିବା ଝୁଙ୍କି ସେ ଦୁହିଁଙ୍କ ଆଗାମୀ ଦିନର ରାଜନୈତିକ ଜୀବନର ବାଟ ପରିଷ୍କାର କରିଥିଲା ।

ସେହି ସନ୍ଧ୍ୟାର ପାଞ୍ଚଜଣଙ୍କ ମଧ୍ୟରେ ଆଉ ଜଣେ ତୀକ୍ଷ୍ଣ ବୁଦ୍ଧିମାନ ଦେଶପ୍ରେମୀ ଯୁବକ । ତାଙ୍କର ଦେଶପ୍ରେମର ଦୀକ୍ଷା ଘଟିଥାଏ ସାକ୍ଷୀଗୋପାଳ ବନ ବିଦ୍ୟାଳୟରେ । ଏହି ଶିକ୍ଷାୟତନର ପୁଣି ସ୍ୱେଚ୍ଛାସେବୀ ଅବୈତନିକ, ଦେଶବତ୍ସଳ, ଶିକ୍ଷକ ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ । ବହୁ ଯୁବକ ଏହିଠାରେ ରାଜନୈତିକ ଶିକ୍ଷାର ଅ, ଆ, କ, ଖ ଶିଖି ପରବର୍ତ୍ତୀ ଜୀବନରେ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିଲେ । ତନ୍ମଧ୍ୟରୁ ଭଗବତୀ ଚରଣ ପାଣିଗ୍ରାହୀ ଜଣେ । ପାଟନାରୁ ଏମ୍.ଏ. ପାଶ କରି ଆସିଥାନ୍ତି । ନିଜର ସୃଜନୀ ପ୍ରତିଭାର, ଦେଶପ୍ରେମିକତାର ପରିଚୟ ଦେଇଥାନ୍ତି ଛାତ୍ରସାଥୀ ସତୀର୍ଥମାନଙ୍କ ମଧ୍ୟରେ ।

ଆଉ ଦୁଇ ଜଣ ଅନନ୍ତ ପଟ୍ଟନାୟକ ଓ ବିଶ୍ୱନାଥ ପଶାଏତ ସେଦିନ ମଧ୍ୟ ସେହି ଡଗରପଡ଼ା ଆସରରେ ଉପସ୍ଥିତ—ସେମାନେ ମଧ୍ୟ ଉଦ୍ୟୋକ୍ତା ।

ଏପରି ମିଳନ ଆକସ୍ମିକ ନୁହେଁ । ଏହା ଏକ ପ୍ରକ୍ରିୟା । ଅନନ୍ତ, ବିଶ୍ୱନାଥ ସେଦିନ ଉପସ୍ଥିତ ହୋଇପାରି ନଥିବା ବୈଦ୍ୟନାଥ ରଥ କଟକରୁ ନୂତନ ପ୍ରଗତିପନ୍ଥୀ ବୁଦ୍ଧିଜୀବୀ ଦେଶପ୍ରେମୀ ଛାତ୍ର ଓ ଯୁବକ ମହଲରେ ପରିଚିତ । ଗୁରୁଚରଣ, ଭଗବତୀ, ପ୍ରାଣନାଥ ବାହାରୁ କଟକରୁ କଟକକୁ ପୂରାପୂରି ଭାବରେ ଆସିବା ଆଗରୁ ଏହି ଯୁବକ ତିନିଜଣଙ୍କ ସାଙ୍ଗରେ ଆଉ ଅନେକ ଶିକ୍ଷିତ ଯୁବକ ଏକତ୍ର ବସନ୍ତି । ରାଜନୀତି ଆଲୋଚନା କରନ୍ତି । ୧୯୩୦-୩୨ ଆନ୍ଦୋଳନ ପରବର୍ତ୍ତୀ ରାଜନୈତିକ ବାୟୁମଣ୍ଡଳରେ ହତାଶା ଏବଂ ସେହି ହତାଶାକୁ ଦୂର କରିବା ପାଇଁ ପନ୍ଥା ଅନ୍ୱେଷଣ କରନ୍ତି । ଭସା ଭସା ସମାଜବାଦୀ ଚିନ୍ତାରେ ଉଦ୍‌ବୁଦ୍ଧ ହୁଅନ୍ତି ।

ଏପରି ନବୀନ ଚିନ୍ତାର ଆକର୍ଷଣୀ ସେମାନଙ୍କ ପକ୍ଷରେ ଥାଆନ୍ତି କଂଗ୍ରେସର ଅନ୍ୟତମ ତୁଙ୍ଗ ନେତା ଓ ନେତ୍ରୀ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ । କିଛି ପତ୍ରିକା ବାହାର କରିବା, ସାଙ୍ଗସାଥୀମାନଙ୍କୁ ସମାଜବାଦ ବିଷୟରେ ଯେତିକି ଶୁଣାପଢ଼ା ଅଭିଜ୍ଞତା ଅଛି ସେ ବିଷୟରେ କହିବା ଏବଂ ଏହି ପ୍ରକ୍ରିୟାରେ ଏକ ହୁଗୁଳା ପ୍ରଗତିଶୀଳ ଯୁବ ଗୋଷ୍ଠୀ ଛାଏଁ ଛାଏଁ ଗଢ଼ାହେବା ସେ କାଳର କେତୋଟି ବିଶିଷ୍ଟ ଘଟଣା । କଟକର ଏହି ନବୀନ ଯୁବକମାନେ ମାର୍କସବାଦୀ

ସାହିତ୍ୟ ଓ ରୁଷ ବିପ୍ଳବର ସାଫଲ୍ୟର କାହାଣୀ ପାଇଁ ଅଣ୍ଡାଳି ହୋଇ ଯାହା ଯେଉଁଠି ମିଳେ ତାକୁ ପଢ଼ି ନିଜକୁ ଭବିଷ୍ୟତ୍ ଲାଗି ଯେମିତି ପ୍ରସ୍ତୁତ କରୁଥାନ୍ତି ।

ସ୍ୱାଧୀନତା ପାଇଁ ଦେଶକୁ ବ୍ରିଟିଶ ସାମ୍ରାଜ୍ୟବାଦ କବଳରୁ ମୁକ୍ତ କରିବା ଲାଗି ଭାରତର ଅତୀତ ସଂଗ୍ରାମଗୁଡ଼ିକର ଅଭିଜ୍ଞତା, ଅସହଯୋଗ ଆନ୍ଦୋଳନ ଓ ଚୌରିଚୌରା ଘଟଣା ପରେ ଗାନ୍ଧିଜୀଙ୍କ ଦ୍ୱାରା ହିଂସା ଆଳରେ ତାହାର ପ୍ରତ୍ୟାହାର; ୧୯୩୦-୩୨ ଆଇନ ଅମାନ୍ୟ ଆନ୍ଦୋଳନ ଏବଂ ବ୍ରିଟିଶ ସହିତ ସାଲିସ ପାଇଁ ମହତ୍ମା ଗାନ୍ଧୀଙ୍କ ଗୋଲ ଟେବୁଲ ବୈଠକରେ ଲଣ୍ଡନରେ ଯୋଗଦାନ, ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ଘୋଷଣା ଲାଗି କଂଗ୍ରେସ ଅନୁଷ୍ଠାନରେ ଅତୀତରେ ବିରୋଧ ଏବଂ ପ୍ରଗତିଶୀଳ ସଂଗ୍ରାମୀମାନଙ୍କ ଚାପ ଫଳରେ ସେହି ଲକ୍ଷ୍ୟ ଧାର୍ଯ୍ୟ । ଏମିତି ଦେଶ ଭିତରର ଘଟଣାବଳୀର ଅନୁଶୀଳନ କରିବା ସାଙ୍ଗକୁ ଏହି ଯୁବକମାନେ ୧୯୧୭ରେ ରୁଷିଆ ଦେଶରେ ଲେନିନ ଓ ବଲଶେଭିତ ପାର୍ଟି ନେତୃତ୍ୱରେ ସଂଗଠିତ ସମାଜବାଦୀ ବିପ୍ଳବର ବିଜୟ ଏବଂ ସେ ଦେଶରେ ଶୋଷଣ ବିହୀନ, ଶ୍ରେଣୀ ବିହୀନ ସମାଜ ଗଠନର ଜୟଯାତ୍ରା ସମ୍ପର୍କରେ ଉଡ଼ାଉଡ଼ା ତଥ୍ୟ ସମ୍ବାଦରେ ଉତ୍ଫୁଲ୍ଲିତ ହେଉଥାନ୍ତି । ରୁଷ ବିପ୍ଳବ ଓ ସମାଜବାଦ ସମ୍ପର୍କରେ ଯେପରି ସତ୍ୟ ସମ୍ବାଦ, ପତ୍ର ପତ୍ରିକା, ଲେଖା ବା ବହି ଏ ଦେଶରେ ପ୍ରବେଶ ନ କରିପାରିବ ସେଥିଲାଗି ବ୍ରିଟିଶ ସରକାର କଡ଼ା କଟକଣା କରିଥାଏ । ବଲଶେଭିକମାନେ ମଣିଷ ପଦବାଚ୍ୟ ନୁହନ୍ତି, ନରରାକ୍ଷସ, ନିର୍ମ୍ମମ, ଧର୍ମଦ୍ରୋହୀ, ସଭ୍ୟତା ଓ ସଂସ୍କୃତିର ସମସ୍ତ ମହନୀୟତାର ବିଧ୍ୱଂସକାରୀ ବୋଲି ଚିତ୍ରଣ କରା ଯାଉଥାଏ । ବୁଢ଼ାଙ୍କୁ ମାରିଦେବେ, ପତି ପତ୍ନୀ, ବହୁ ପରିବାର ରହିବ ନାହିଁ । ବ୍ୟଭିଚାରର ଅନ୍ୟ ନାମ ସମାଜବାଦ । ଏହିପରି ଅପପ୍ରଚାର ଏବଂ କଟକଣା ସତ୍ତ୍ୱେ ଏହି ବିପ୍ଳବର ବାର୍ତ୍ତା ଦେଶ ମହାଦେଶ ପରି ଭାରତରେ ମଧ୍ୟ ପହଞ୍ଚି ଯାଇଥିଲା । କଂଗ୍ରେସ ସଂଗଠନର ରକ୍ଷଣଶୀଳ ନୁହଁନ୍ତି ପ୍ରଗତି ଅନ୍ୱେଷଣକାରୀ ଅନେକ ଯୋଦ୍ଧାଙ୍କୁ ମଧ୍ୟ ଏହି ଆଦର୍ଶ ଆକୃଷ୍ଟ କରିଥିଲା ।

ଗୁରୁଚରଣ ୧୯୩୪ରୁ ୨ବର୍ଷ ଯାଏଁ କାଶୀ ବିଦ୍ୟାପୀଠରେ ସମାଜବାଦୀ ଆଦର୍ଶ ପ୍ରତି ଆକୃଷ୍ଟ ହୋଇଥିଲେ ନୁହଁ, ବୈଜ୍ଞାନିକ ସମାଜବାଦକୁ ବାସ୍ତବ ରୂପ କେବଳ ବଲଶେଭିକ ପାର୍ଟି ପରି କମ୍ୟୁନିଷ୍ଟ ପାର୍ଟି ଦେଇପାରିବ ଏହି ବିଶ୍ୱାସ ଘେନି କଲିକତା ପଟେ ସ୍ୱ-ଗୃହକୁ ଫେରିବା ବେଳେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟଭୁକ୍ତ ହେବା ପାଇଁ ଆବେଦନ କରିଥିଲେ । ତାଙ୍କ ପୂର୍ବରୁ କାଶୀ ବିଦ୍ୟାପୀଠ ଛାଡ଼ି ଆସିଥିବା, ପ୍ରାଣନାଥବାବୁ ଗୁରୁଚରଣଙ୍କଠାରୁ ଏ ସମ୍ବାଦ ପାଇ ନିଜେ କଲିକତା ଯାଇଁ ସେଠାରେ ପାର୍ଟିର ସଦସ୍ୟଭୁକ୍ତ ହେବା ସେ କାଳର ଦ୍ୱିତୀୟ ଘଟଣା । ସାମାନ୍ୟ କିଛିଦିନ ପରେ ଭଗବତୀ ଚରଣ ପାଣିଗ୍ରାହୀ କଲିକତାରେ ପାର୍ଟି ସଭ୍ୟଭୁକ୍ତ ହେବା ତୃତୀୟ ଘଟଣା । ତିନିଜଣ କମ୍ୟୁନିଷ୍ଟ ହେଲେ ସେଲ୍‌ଟିଏ ଗଠିତ ହେବ ଏବଂ ତାହା କମ୍ୟୁନିଷ୍ଟ ହେବାକୁ ଯୁବକମାନଙ୍କୁ ପାର୍ଟିଭୁକ୍ତ କରିପାରିବ । କମ୍ୟୁନିଷ୍ଟ ପାର୍ଟି ସଂଗଠନର ଏହି ପ୍ରାଥମିକ

ମୌଳିକ ନିୟମକୁ ଧରି ସେଦିନ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ମଞ୍ଜି ପୋତା ହେଲା । ବୈଦ୍ୟନାଥ ସେଦିନ ଉପସ୍ଥିତ ନ ଥିଲେ ହେଁ ମହତାବଙ୍କ ଅଗରପଡ଼ା ହାଇସ୍କୁଲର ପ୍ରଧାନ ଶିକ୍ଷକତ୍ୱ ପରିତ୍ୟାଗ କରି ପୁରୁଣା ସାଥୀମାନଙ୍କ ସହିତ ମିଳିତ ହୋଇଗଲେ । କମ୍ୟୁନିଷ୍ଟ ଓ କମ୍ୟୁନିଷ୍ଟ ସମର୍ଥକ ଯୁବକ ଗୋଷ୍ଠୀ କଟକର ରାଜନୈତିକ ସାମାଜିକ-ସଂସ୍କୃତିକ ଜୀବନରେ ଭବିଷ୍ୟତରେ ଏକ ଯୁଗାନ୍ତକାରୀ ଭୂମିକା ନେବାର ପ୍ରାରମ୍ଭିକ ମାଲମସଲା ସତେଯେପରି ଯୋଗାଡ଼ ହୋଇଗଲା । ଏହି କ୍ଷୁଦ୍ର କମ୍ୟୁନିଷ୍ଟ ଗୋଷ୍ଠୀଟିର ସମ୍ପାଦକ ହେଲେ ଭଗବତୀ ଚରଣ ପାଣିଗ୍ରାହୀ ।

ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ଏହି କ୍ଷୁଦ୍ର ଅଙ୍କୁରଟି ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଅଂଗ । ଏହି ପାର୍ଟିଟି ଆନୁଷ୍ଠାନିକ ଭାବରେ ୧୯୨୫ କାନପୁରଠାରେ ଅନୁଷ୍ଠିତ ସମ୍ମିଳନୀରେ ପ୍ରତିଷ୍ଠା ଲାଭ କରିଥିଲା । ସେତେବେଳେ ମଧ୍ୟ ଭାରତ ଭୂଇଁରେ କମ୍ୟୁନିଷ୍ଟ ଆନ୍ଦୋଳନର ଅଭ୍ୟୁଦୟକୁ ମୂଳରୁ ମାରିଦେବା ପାଇଁ ବ୍ରିଟିଶ ସାମ୍ରାଜ୍ୟବାଦ କାନପୁର ଷଡ଼ଯନ୍ତ୍ର ମକଦ୍ଦମା କରି କମ୍ୟୁନିଷ୍ଟ ନେତାମାନଙ୍କୁ କାରାଦଣ୍ଡିତ କରିଥିଲା । ହାତରେ ଗଣିଦେଲେ ସେତେବେଳେ ସମଗ୍ର ଭାରତବର୍ଷରେ ଶହେ ଜଣ ଦେଶପ୍ରେମୀ ବି କମ୍ୟୁନିଷ୍ଟ ହୋଇ ନଥିଲେ । ୧୯୨୦-୨୧ରେ ବମ୍ବେ, କଲିକତା, ମାନ୍ଦ୍ରାଜ, କାନପୁର ପ୍ରଭୃତି ଅଳ୍ପ କେତେକ ସ୍ଥାନରେ ଏବଂ ଅଳ୍ପ କେତେକ ଦେଶପ୍ରେମୀ ଯୁବକ ଉଦ୍‌ବୁଦ୍ଧ ହେଲେ ଆକ୍ଟୋବର ବିପ୍ଳବର ସାଫଲ୍ୟରେ । ସାମ୍ରାଜ୍ୟବାଦୀ ବ୍ରିଟିଶ ଶାସନକୁ ଲୋପ କରି ସ୍ୱାଧୀନତା ପ୍ରତିଷ୍ଠା କରିବା ଏବଂ ସେହି ସଂଗ୍ରାମକୁ ଉଚ୍ଚତର ସୋପାନକୁ ଘେନିଯାଇ ଭାରତରେ ସ୍ୱାଧୀନତା ପରେ ପୁଞ୍ଜିବାଦ ସାମନ୍ତବାଦର ରାଜୁତି ନୁହେଁ, ସମାଜବାଦୀ ବ୍ୟବସ୍ଥା ପ୍ରତିଷ୍ଠା କରିବା, ମଣିଷ ଉପରେ ମଣିଷର ଶୋଷଣ ଲୋପ କରିବା ଓ ସମାଜକୁ ପ୍ରଗତି ପଥରେ ଆଗେଇ ନେବା ଏହି ପ୍ରକାର ଚିନ୍ତା ଘେନି ଭାରତର କମ୍ୟୁନିଷ୍ଟ ପାର୍ଟିର ଉଦ୍ଭବ । ସେହି ବିପ୍ଳବୀମାନେ ଏକାଧାରରେ ଦେଶପ୍ରେମୀ, ସ୍ୱାଧୀନତା ସଂଗ୍ରାମୀ ଏବଂ ଅନ୍ୟ ପକ୍ଷରେ ସମାଜକୁ ରୂପାନ୍ତର ଆଣିବା ପାଇଁ ମାର୍କସ, ଏଙ୍ଗେଲ୍‌ସ ଦ୍ୱାରା ଆବିଷ୍କୃତ ଏବଂ ଲେନିନଙ୍କଦ୍ୱାରା ସମୃଦ୍ଧ ଓ ବିକଶିତ ଏବଂ କାର୍ଯ୍ୟରେ ରୂପାୟିତ ମାତାଦର୍ଶ ମାର୍କସବାଦ ଲେନିନବାଦକୁ ଗ୍ରହଣ କରିଥାନ୍ତି ।

ଯେଉଁ ବ୍ରିଟିଶ ସାମ୍ରାଜ୍ୟବାଦ ଦେଶର ସ୍ୱାଧୀନତା ସଂଗ୍ରାମରେ ବିଭିନ୍ନ ସମୟରେ ଅବତୀର୍ଣ୍ଣ ହୋଇଥିବା ହଜାର ହଜାର ନୁହେଁ, ଲକ୍ଷ ଲକ୍ଷ ଦେଶପ୍ରେମୀଙ୍କୁ ହତ୍ୟା କରିଛି, ଜେଲ୍ ଦେଇଛି, ଶତାଧିକଙ୍କୁ ଫାଶିରେ ଝୁଲେଇଛି, ବେତମାଡ଼, ଲାଠିମାଡ଼ ଦେଇ ହାତଗୋଡ଼ ଭାଙ୍ଗିଛି ତାହା କ'ଣ ରୁଷ ବିପ୍ଳବର ବାର୍ତ୍ତାବାହୀ ମୁଷ୍ଟିମେୟ କମ୍ୟୁନିଷ୍ଟମାନଙ୍କୁ ଛାଡ଼ିଦିଅନ୍ତ ? ଯାବତୀୟ ଅପପ୍ରଚାର, ମିଥ୍ୟା, ପ୍ରବଞ୍ଚନା ସାଙ୍ଗକୁ ଗୋଟିଗୋଟି ଷଡ଼ଯନ୍ତ୍ର ମକଦ୍ଦମା କରି ସେମାନଙ୍କୁ ଦୀର୍ଘ କାରାବାସରେ ନିକ୍ଷେପ କରିବା, ସ୍ୱାଧୀନତା ସଂଗ୍ରାମରେ ସେ କାଳର ମିଳିତ ମହାମଞ୍ଚ କଂଗ୍ରେସର ରକ୍ଷଣଶୀଳ ନେତାମାନଙ୍କଠାରେ କମ୍ୟୁନିଷ୍ଟମାନଙ୍କ ପ୍ରତି ଅତି ଚତୁରତାରେ ଘୃଣା ଓ ବିଦ୍ୱେଷ

ସୃଷ୍ଟି କରାଇ ସେମାନଙ୍କୁ ବିଚ୍ଛିନ୍ନ କରିବା ଏମିତି ଯାବତୀୟ କୌଶଳ ବ୍ରିଟିଶ ସରକାର କରିଥିଲା । ମିରଟ ଷଡ଼ଯନ୍ତ୍ର ମକଦ୍ଦମାରେ ଭଗତ୍ ସିଂହ, ଶୁକଦେବ, ରାଜଗୁରୁଙ୍କୁ ଫାଶି । ପରବର୍ତ୍ତୀ କାଳରେ ପେଶାବାର ଷଡ଼ଯନ୍ତ୍ର ମକଦ୍ଦମା, ସନ୍ତ୍ରାସବାଦ ନିରୋଧ ନାମରେ ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନ ମକଦ୍ଦମା, ମେଛୁଆ ବଜାର ବୋମା ଷଡ଼ଯନ୍ତ୍ର ମକଦ୍ଦମା ଏମିତି ନାନା ଦମନ ଅତ୍ୟାଚାର ଚଳେଇ ବ୍ରିଟିଶ ସାମ୍ରାଜ୍ୟବାଦ କେବଳ ସ୍ୱାଧୀନତା ସଂଗ୍ରାମର କଣ୍ଠରୋଧ କରୁ ନଥିଲା; ଭବିଷ୍ୟତରେ ଏହି ବିପ୍ଳବୀମାନେ ଯେପରି ରୁଷ ବିପ୍ଳବ ଓ କମ୍ୟୁନିଷ୍ଟ ଆଦର୍ଶ ପ୍ରତି ସଂପୂର୍ଣ୍ଣ ଭାବରେ ଅନୁପ୍ରାଣିତ ନହେବେ ତାହାର ଚକ୍ରାନ୍ତ ଚଳେଇ ଥିଲା । ମାତ୍ର ଯେକୌଣସି ଦେଶର ବିଦେଶୀ ସାମ୍ରାଜ୍ୟବାଦ କବଳରୁ ସ୍ୱାଧୀନତା ପ୍ରୟାସକୁ ଯେପରି କୌଣସି ଦମନ ଅତ୍ୟାଚ୍ଚର ଅବରୋଧ କରିପାରେ ନାହିଁ, ସେମିତି ଶୋଷଣରୁ ମୁକ୍ତିର ମତାଦର୍ଶ ସାମ୍ୟବାଦକୁ ଦମନ, କୁତ୍ସାଭିଯାନ, ହତ୍ୟା ଫାଶି, ଷଡ଼ଯନ୍ତ୍ର ମକଦ୍ଦମା କ'ଣ ନିବର୍ତ୍ତେଇ ପାରିବ ? ପାରିଲା ନାହିଁ । ଓଡ଼ିଶା ବା ସେଥିରୁ ବାଦ ଯାଆନ୍ତା କିପରି ?

## ରାଜ୍ୟରେ ବୈପ୍ଳବିକ ଚିନ୍ତାର ପ୍ରସାର ଓ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ପ୍ରତିଷ୍ଠା

୧୯୨୦-୨୨ ଅସହଯୋଗ ଆନ୍ଦୋଳନବେଳେ ଚୌରିଚୌରା ଘଟଣାରେ ଗାନ୍ଧିଜୀଙ୍କ ଦ୍ୱାରା ଆନ୍ଦୋଳନ ପ୍ରତ୍ୟାହାର ସେ କାଳରେ କେତେକ କଂଗ୍ରେସ ଯୁବକ ମନରେ ସାମାନ୍ୟ ଦ୍ୱନ୍ଦ୍ୱ ସୃଷ୍ଟି କରିଥିଲା । ୧୯୩୦-୩୨ ଆଇନ ଅମାନ୍ୟ ଆନ୍ଦୋଳନର ପ୍ରତ୍ୟାହାର, ଗାନ୍ଧିଜୀଙ୍କ ଗୋଲଟେବୁଲ ବୈଠକରେ ଯୋଗଦାନ, ଅର୍ଥାତ୍ ସଂଗ୍ରାମକୁ ଉଚ୍ଚ ସୋପାନକୁ ନନେଇ ସାଲିସର ପନ୍ଥା ଅବଲମ୍ବନ, ୧୯୩୪ ବେଳକୁ ସମଗ୍ର ଦେଶରେ ଏକ ହତାଶା ଓ ନୈରାଶ୍ୟର ବାତାବରଣ ସୃଷ୍ଟି କରିଥିଲା । ଜେଲଖାନାରେ ପ୍ରଗତିଶୀଳ ଯୁବକମାନେ ସନ୍ଦିଗ୍ଧ ହୋଇ ରୁଷ୍ ବିପ୍ଳବ ଓ ସୋଭିଏତ ରୁଷିଆ ପ୍ରତି ଆକୃଷ୍ଟ ହେଲେ । କଂଗ୍ରେସର ତୁଙ୍ଗନେତା ଥାଇ ପଣ୍ଡିତ ନେହେରୁ ସେତେବେଳେ ସ୍ୱାଧୀନତା ସାଙ୍ଗକୁ ଭାରତରେ ସମାଜବାଦ ଏକମାତ୍ର ଦାରିଦ୍ର୍ୟରୁ ମୁକ୍ତିର ପଥ ବୋଲି ଘୋଷଣା କଲେ । ଗାନ୍ଧିଜୀ ଆନ୍ଦୋଳନ ପ୍ରତ୍ୟାହାର ପରେ କଂଗ୍ରେସ କର୍ମୀମାନଙ୍କୁ ଗଠନମୂଳକ କାମ ସୂତାକଟା, ଅସ୍ପୃଶ୍ୟତା ନିବାରଣ ପ୍ରଭୃତି ୧୪ଦଫା କର୍ମସୂଚୀରେ ଲାଗିଯିବାକୁ ପରାମର୍ଶ ଦେଲେ । ବସ୍ତୁତଃ ରାଜନୈତିକ ମଞ୍ଚରେ ଏକ ଶୂନ୍ୟତା ଦେଖାଦେଲା । ଏହି ପରିସ୍ଥିତିରେ କଂଗ୍ରେସ ଅନୁଷ୍ଠାନ ଭିତରେ ରହି, କିନ୍ତୁ ଉକ୍ତ ଅନୁଷ୍ଠାନଠାରୁ ସ୍ୱତନ୍ତ୍ର ଏକ ରାଜନୈତିକ ମଞ୍ଚ, ଏକ ସ୍ୱତନ୍ତ୍ର ରାଜନୈତିକ ଦଳ ଗଠନର ଚିନ୍ତାକୁ ଏହି ନବୀନ ତରୁଣ ସ୍ୱାଧୀନତା ସଂଗ୍ରାମୀ କେତେକ କାର୍ଯ୍ୟକାରୀ କଲେ । ଗଢ଼ିଉଠିଲା କଂଗ୍ରେସ ସୋସାଲିଷ୍ଟ ପାର୍ଟି ।

ଏଇଠି ପ୍ରଶ୍ନ ଉଠେ, ଭାରତବର୍ଷରେ ତ କମ୍ୟୁନିଷ୍ଟ ପାର୍ଟି ଗଠିତ ହେବା ଓ କମ୍ୟୁନିଷ୍ଟମାନେ କଂଗ୍ରେସରେ ଥାଇ ତାହାରି ମଞ୍ଚରୁ ବ୍ରିଟିଶ ସାମ୍ରାଜ୍ୟ ଅଧୀନରେ ଡୋମିନିୟନ ଷ୍ଟାଟସ ବଦଳରେ ପୂର୍ଣ୍ଣ ସ୍ୱାଧୀନତା ଦାବୀ କରୁଥିବା କଥା ଏବଂ ଶ୍ରମିକମାନଙ୍କୁ ସଂଗଠିତ କରିବା ଓ ସେମାନଙ୍କ

ସଂଗ୍ରାମ ଚଳେଇବା କଥା ଏହି ନବୀନ ଯୁବକମାନେ ଜାଣିଥିଲେ । ତେବେ ଉକ୍ତ ପାର୍ଟିରେ ନ ମିଶି ସ୍ୱତନ୍ତ୍ର ଦଳ ଗଢ଼ିଲେ କାହିଁକି ? ତାହାର ଉତ୍ତର ଅତି ସରଳ । ସମାଜବାଦକୁ ଏକ ଲକ୍ଷ୍ୟ ହିସାବରେ ଗ୍ରହଣ କଲେ ସୁଦ୍ଧା ସମାଜବାଦ ଲାଗି ମାର୍କସ-ଏଙ୍ଗେଲସ ଲେନିନ ଯେଉଁ ବିଜ୍ଞାନସମ୍ମତ ପନ୍ଥା ଦର୍ଶାଇଥିଲେ, ସେମାନେ ନୂତନ ସମାଜର ଦର୍ଶନ, ଅର୍ଥନୀତି ଓ ସାମାଜିକ ବ୍ୟବସ୍ଥା ଯେପରି ହେବାକୁ ବାଧ ବୋଲି ସିଦ୍ଧାନ୍ତ କରିଥିଲେ ଓ ଲେନିନ ତାହାକୁ କାର୍ଯ୍ୟରେ ପ୍ରମାଣିତ କଲେ, ସେ ସବୁକୁ ସେମାନେ ସଂପୂର୍ଣ୍ଣ ଗ୍ରହଣ କରୁ ନଥିଲେ ।

ଓଡ଼ିଶାରେ ମଧ୍ୟ ଏହି ଦଳର ଆନୁଷ୍ଠାନିକ ପ୍ରତିଷ୍ଠା ପୂର୍ବରୁ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ଏହି ଦୁଇ ଜଣ ସୁପ୍ରତିଷ୍ଠିତ କଂଗ୍ରେସ ନେତାନେତ୍ରୀ ଥିଲେ । ଯେଉଁ ସ୍ୱାଧୀନତା ପ୍ରେମୀ ଯୁବକମାନେ ଭସାଭସା ସମାଜବାଦୀ ଚିନ୍ତା ପ୍ରତି ସୋଭିଏତ୍ ବିପ୍ଳବ ପ୍ରତି ଆକୃଷ୍ଟ ହେଉଥିଲେ ସେମାନଙ୍କ ଭିତରେ ସାମାଜବାଦକୁ ଉପଲବ୍ଧି କରିବାରେ ଭିନ୍ନତା ଥିଲା । କେତେକ ବିଲାତ ବା ଫ୍ରାନ୍‌ସ ବା ଜର୍ମାନୀର ଲେବର ପାର୍ଟି ବା ସୋସାଲ ଡିମୋକ୍ରାଟିକ ପାଟି ଢାଞ୍ଚାରେ ଏବଂ ଆଉ କେତେକ ବଲଶେଭିକ ପାର୍ଟି, ସୋଭିଏତ୍ ବିପ୍ଳବର ଶିକ୍ଷା ଓ ଲେନିନ୍‌ଙ୍କ ଆଦର୍ଶରେ ସମାଜବାଦର କଳ୍ପନା କରୁଥିଲେ ।

ଏହି ଧରଣର ଚିନ୍ତାଥିବା ଯୁବକମାନେ ନବକୃଷ୍ଣ ଚୌଧୁରୀଙ୍କ ତରିକୁନ୍ଦ ଚାଷ ଘରେ ୧୯୩୪ରେ ପ୍ରଥମେ ଏକ ସାମ୍ୟବାଦୀ କର୍ମୀସଂଘ ଗଠନ କରିଥିଲେ ।

କମ୍ୟୁନିଷ୍ଟ ପାର୍ଟି ଶାଖା ଗଠନ କରିଥିବା ଉପରୋକ୍ତ ଯୁବକ ଭଗବତୀ, ଗୁରୁଚରଣ, ଅନନ୍ତ, ବିଶ୍ୱନାଥ, ପ୍ରାଣନାଥ, ବୈଦ୍ୟନାଥଙ୍କ ସାଙ୍ଗକୁ ଗୌରାଙ୍ଗଚରଣ ଦାସ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଗୌରଚନ୍ଦ୍ର, ଦାସ, ରବି ଘୋଷ, ପରମାନନ୍ଦ ମହାନ୍ତି, ଗତିକୃଷ୍ଣ ସ୍ୱାଇଁ, ଗୋକୁଳ ମୋହନ ରାୟଚୂଡ଼ାମଣି, ଅଶୋକ ରାଓ, ସୁଧୀର ଘୋଷ, ନୃପେନ ସେନ, ମନମୋହନ ଚୌଧୁରୀ, ମନମୋହନ ପଟ୍ଟନାୟକ, ଗୌରୀଶଙ୍କର ସାମନ୍ତ, ଅନସୂୟା ପ୍ରସାଦ ପାଠକ ପ୍ରଭୃତି ଉଦ୍ଦାମ ସ୍ୱାଧୀନତା ସଂଗ୍ରାମୀ ସ୍ୱାଧୀନତାପ୍ରେମୀ ଯୁବକମାନଙ୍କ ପକ୍ଷରେ ନବବାବୁ ଓ ମାଳତୀ ଦେବୀ ଏକ ସେତୁରୂପେ ପ୍ରତିପନ୍ନ ହୋଇଥିଲେ । ପରେ ତାଙ୍କର ରାଜନୈତିକ ଦର୍ଶନରେ ଯାହା ପରିବର୍ତ୍ତନ ହେଉପଛେ ସେତେବେଳେ ଏକ "ଗୁପ୍ତ ସଂଗଠନ" ଗଢ଼ିବା ପ୍ରୟୋଜନ ବୋଲି ସହକର୍ମୀମାନଙ୍କୁ ପରାମର୍ଶ ଦେଉଥିଲେ ଓ ପଣ୍ଡିତ ନେହେରୁଙ୍କୁ ମଧ୍ୟ ଏକଥା ଲେଖିଥିଲେ ।

ଓଡ଼ିଶାରେ ସେତେବେଳେ ରାଜନୀତିରେ ଏହି ପରିବର୍ତ୍ତନ ଆରମ୍ଭ ହୋଇଗଲା । ୧୯୩୪ରେ ବମ୍ବେ କଂଗ୍ରେସ ଅଧିବେଶନ ବେଳେ ଆନୁଷ୍ଠାନିକ ଭାବରେ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ପୌରୋହିତ୍ୟରେ କଂଗ୍ରେସ ସମାଜବାଦୀ ଦଳ ବା ସି.ଏସ୍.ପି. ପ୍ରତିଷ୍ଠିତ ହେଲା । ତାହାର କାର୍ଯ୍ୟକାରୀ କମିଟି ଓ ତୁଙ୍ଗ ନେତାମାନଙ୍କ ମଧ୍ୟରେ ମଧ୍ୟ ସମାଜବାଦ ସଂପର୍କରେ

ଉପର ବର୍ଣ୍ଣିତ ଦୁଇ ପ୍ରବୃତ୍ତିର ବ୍ୟକ୍ତି ଥିଲେ । ଜୟପ୍ରକାଶ ନରାୟଣ, ନରେନ୍ଦ୍ର ଦେବ, ନବକୃଷ୍ଣ ଚୌଧୁରୀ, ମାଶାନୀ, ମେହେର, ଅଲ୍ଲି ପ୍ରମୁଖଙ୍କ ସାଙ୍ଗକୁ ଯେଉଁମାନେ ଦ୍ୱିତୀୟ ପ୍ରବୃତ୍ତିର ଅନୁସାରୀ ଥିଲେ, ସେପରି ବ୍ୟକ୍ତି ନମ୍ବୁଦ୍ରିପଦ, ସୁନ୍ଦରାୟା, ଜେଡ୍ ଏ. ଅହମ୍ମଦ ପ୍ରମୁଖ ଏହି ପାର୍ଟିର ତୁଙ୍ଗ ନେତା ରୂପେ ଗଣ୍ୟ ହେଉଥିଲେ ।

କେନ୍ଦ୍ରୀୟସ୍ତରରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠନ ପରେପରେ ୧୯୩୫ ଶେଷଭାଗରେ ଆଉ କଂଗ୍ରେସ ସାମ୍ୟବାଦୀ କର୍ମୀସଂଘ ନାମକ ପୂର୍ବ ସଂଗଠନର ଆବଶ୍ୟକତା ରହିଲା ନାହିଁ । ଏକ ବ୍ୟାପକ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠନ ପାଇଁ ସମ୍ମିଳନୀ ଅନୁଷ୍ଠିତ ହେଲା । ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀ ଉକ୍ତ ପାର୍ଟିର ସଂପାଦକ ନିର୍ବାଚିତ ହେଲେ । ଏହି ସମୟଠାରୁ ୧୯୪୦ ଫେବୃଆରୀ-ମାର୍ଚ୍ଚ ପର୍ଯ୍ୟନ୍ତ ଏହି ପାର୍ଟି ହିଁ ଓଡ଼ିଶାର ରାଜନୈତିକ-ସାମାଜିକ-ସଂସ୍କୃତିକ ଜୀବନରେ ଏକ ନୂତନ ଯୁଗର ପ୍ରବର୍ତ୍ତନ କଲା । ଏହି ପାର୍ଟିରେ ସମାଜବାଦୀ ସଂପର୍କରେ ଉଭୟ ପ୍ରବୃତ୍ତିର ଅର୍ଥାତ୍ କମ୍ୟୁନିଷ୍ଟ ଓ ସୋସାଲିଷ୍ଟମୋକ୍ରାଟିକ ପ୍ରବୃତ୍ତିର ଯୁବକମାନେ ସମବେତ ହେଲେ ।

ସର୍ବପ୍ରଥମ ମାର୍କ୍ସୀୟ ମୂଳଗ୍ରନ୍ଥ ମାର୍କସ ଏବଂ ଏଙ୍ଗେଲସଙ୍କ ଦ୍ୱାରା ଲିଖିତ ନୂତନ ସମାଜବାଦୀ ସମାଜ ଗଠନ ଓ ସେଥିଲାଗି ଶ୍ରମିକ ଶ୍ରେଣୀର ସଂଗଠନ ଓ ସମାଜବାଦୀ ବିପ୍ଳବର ଦିଗ ନିର୍ଦ୍ଦେଶକ କମ୍ୟୁନିଷ୍ଟ ଇସ୍ତାହାର ଭଗବତୀ ଚରଣ ପାଣିଗ୍ରାହୀଙ୍କ ଦ୍ୱାରା ଅନୂଦିତ ହୋଇ ନବୀନ ଦେଶପ୍ରେମୀ ଯୁବକ ଓ ନୂତନ ପଥ ଅନ୍ୱେଷଣ କରୁଥିବା କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ଆଲୋଡ଼ନ ସୃଷ୍ଟି କଲା । ଏହି ପାର୍ଟିର ଗଠନ, ଏହାର ସମଗ୍ର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଜୀବନରେ ବର୍ଦ୍ଧିଷ୍ଣୁ ପ୍ରଭାବ ମଧ୍ୟ କଂଗ୍ରେସର ଘୋର ରକ୍ଷଣଶୀଳ ବ୍ୟକ୍ତି ବିଶେଷଙ୍କ ମଧ୍ୟରେ ଏଥିପ୍ରତି ଅସୂୟା ସୃଷ୍ଟି କଲା ।

ନୂଆ ସମାଜବାଦୀ ଚିନ୍ତା ଏବଂ ସମାଜବାଦୀ ଚିନ୍ତା ଅନୁସାରେ ଚାଷୀ ଓ ଅନ୍ୟାନ୍ୟ ସାମାଜିକ ସ୍ତରର ଆର୍ଥିକ ମୁକ୍ତି, ସେମାନଙ୍କ ସମସ୍ୟା ସଂକ୍ରାନ୍ତରେ ସର୍ବପ୍ରଥମ 'ସାରଥୀ' ନାମକ ପତ୍ରିକା ନବକୃଷ୍ଣ ଚୌଧୁରୀଙ୍କ ସମ୍ପାଦନାରେ ଆତ୍ମପ୍ରକାଶ କରିଥିଲା । କଂଗ୍ରେସ ସମାଜବାଦୀ ଦଳ ଗଠନ ପୂର୍ବରୁ ଏହି ପତ୍ରିକାଟିରେ ଭଗବତୀ ଚରଣ ପାଣିଗ୍ରହୀ, ଗୁରୁଚରଣ ପଟ୍ଟନାୟକଙ୍କ ପ୍ରବନ୍ଧମାନ ମଧ୍ୟ ପ୍ରକାଶ ପାଉଥିଲା ।

ସାରଥୀର ପ୍ରକାଶନ ବନ୍ଦ ହେବା ପରେ ଏବଂ ସି.ଏସ.ପି. ଗଠନ ପରେ ପାର୍ଟିର ମୁଖପତ୍ରରୂପେ ୧୯୩୭ କୃଷକ, ସେହି ବର୍ଷ ଆଧୁନିକ ପତ୍ରିକା ଓ ଢେଙ୍କାନାଳ ଆନ୍ଦୋଳନ ବେଳେ ମୁଦ୍ରିତ ବୁଲେଟିନ 'ରଣଭେରୀ' ଏବଂ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ କାଳରେ ଲିଥୋକରା ବେଆଇନ ପତ୍ରିକା 'ଆଗେଇ ଚାଲ' କମ୍ୟୁନିଷ୍ଟ ସାମ୍ବାଦିକତାର ଏକ ଗୌରବମୟ ପର୍ଯ୍ୟାୟ । କଂଗ୍ରେସ ସମାଜବାଦୀ ଦଳ ପକ୍ଷରୁ 'କୃଷକ' ପ୍ରକାଶ ପାଉଥିଲେ ହେଁ କମ୍ୟୁନିଷ୍ଟମାନେ ହିଁ

ତାହାର ପ୍ରଥମାବସ୍ଥା ସଂପାଦନାରେ ମୁଖ୍ୟ ଅଂଶ ନେଉଥିଲେ ଏବଂ ଅନ୍ୟ ସମସ୍ତ ପତ୍ରପତ୍ରିକା ଓ ବୁଲେଟିନ ସମ୍ପାଦନାରେ ସମସ୍ତ ଦାୟିତ୍ୱ ବହନ କରୁଥିଲେ । ଅବଶ୍ୟ ପରବର୍ତ୍ତୀ କାଳରେ 'ମୁକ୍ତିଯୁଦ୍ଧ' ଏବଂ 'ମୁକ୍ତିଯୁଦ୍ଧ' ଉପରେ ଜରିମାନା ହେବା ପରେ 'ସଂବାଦ' ଓ ତା' ଉପରେ ଜରିମାନା ହେବା ପରେ 'ସପ୍ତାହ', 'ସଂକେତ' ଇତ୍ୟାଦି ଯୁଦ୍ଧକାଳରେ ପ୍ରକାଶ ପାଇ ବ୍ରିଟିଶ ସାମ୍ରାଜ୍ୟବାଦର କମ୍ୟୁନିଷ୍ଟ ସାମ୍ୟାଦିକତା ଉପରେ ଆକ୍ରମଣକୁ ପ୍ରତିହତ କରିଥିଲା । ପ୍ରସଙ୍ଗକ୍ରମେ ମଧ୍ୟ କୁହାଯିବ ଯେ ସ୍ୱାଧୀନତୋର କାଳରେ କଂଗ୍ରେସ ଶାସନର ଆରମ୍ଭ ଯୁଗରେ କମ୍ୟୁନିଷ୍ଟମାନଙ୍କୁ ଗିରଫ, ଜେଲ ଓ ସେମାନଙ୍କର ଅଜ୍ଞାତବାସ ବେଳେ କମ୍ୟୁନିଷ୍ଟ ପତ୍ରପତ୍ରିକା ବାହାର ହୋଇପାରିଲା ନାହିଁ । କମ୍ୟୁନିଷ୍ଟ ପାର୍ଟିର ବିଶିଷ୍ଟ ସମର୍ଥକ, ଦରଦୀ ଓ ବାହାରେ ରହିଯାଇଥିବା କମ୍ୟୁନିଷ୍ଟଙ୍କ ଉଦ୍ୟମରେ 'ନୂଆ ଦୁନିଆ' ଏକ ପ୍ରଗତିଶୀଳ ସାପ୍ତାହିକର ରୂପ ନେଲା ଓ ପାର୍ଟି ଆଇନସମ୍ମତ ଭାବରେ କାର୍ଯ୍ୟ କଲାପରେ ଏହି ପତ୍ରିକାଟିକୁ ତାହାର ପୃଷ୍ଟପୋଷକମାନେ ପାର୍ଟିକୁ ହସ୍ତାନ୍ତର କରିଦେଲେ ଏବଂ ୧୯୫୧ରୁ ଏହା ପାର୍ଟିର ମୁଖପତ୍ର ହୋଇ ରହିଛି ।

ଏତେବେଳେଯାଏ କଂଗ୍ରେସ ନାମରେ ସଭାସମିତି ହୋଇ ଆସୁଥିଲା, ମାତ୍ର ୧୯୩୪ ପ୍ରଥମ କରି କୃଷକସଂଘ ଆନୁକୂଲ୍ୟରେ କଟକ ଟାଉନ ହଲରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଅଧକ୍ଷତାରେ ଅନୁଷ୍ଠିତ କୃଷକ ସମ୍ମିଳନୀ ପରବର୍ତ୍ତୀ କୃଷକ ଆନ୍ଦୋଳନକୁ ଏକ ଶ୍ରେଣୀ ସଂଗଠନର ରୂପ ଦେଇଥିଲା । ପଣ୍ଡିତ ମିଶ୍ର ବିହାର ଓଡ଼ିଶା କାଉନସିଲର ସଦସ୍ୟ ଥିବାରୁ ସେ କାଳରେ କୃଷି ଆଇନ କ'ଣ ତାହା ବୁଝାଇବା ପାଇଁ ସମ୍ମିଳନୀର ଏହି ସମାଜବାଦୀ ଉଦ୍ୟୋକ୍ତାମାନେ ତାଙ୍କୁ ସଭାପତି କରିଥିଲେ ।

**ସେ କାଳର ଭୌଗୋଳିକ, ରାଜନୈତିକ, ସାଂସ୍କୃତିକ ପରିସ୍ଥିତି**

୧୯୩୪-୩୫-୩୬ରେ ଓଡ଼ିଶା ଭୌଗୋଳିକ; ରାଜନୈତିକ, ସାଂସ୍କୃତିକ, ତଥା ଆର୍ଥିକ ଦୃଷ୍ଟିରୁ କି ଅବସ୍ଥାରେ ଥିଲା, ସେ ସମ୍ପର୍କରେ ବିଶଦ ବା ବିସ୍ତାରିତ ନ ହେଲେହେଁ ଅତି ସାଧାରଣ ଧାରଣା ମନରେ ଆଙ୍କିବା ପ୍ରୟୋଜନ । ତାହାହେଲେ ଯାଇ କି ପରିସ୍ଥିତିରେ କମ୍ୟୁନିଷ୍ଟ କେତେ ଜଣ ଓ ସେମାନେ ବସ୍ତୁତଃ ନେତୃତ୍ୱରେ ଥିବା କଂଗ୍ରେସ ସମାଜବାଦୀ ଦଳ କାମ କରିବାକୁ, କିପ୍ରକାର ବାଧା ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡୁଥିଲା ତାହାର ଏକ ଚିତ୍ର ମିଳିପାରିବ ।

୧୯୩୬ ଏପ୍ରିଲ ପୂର୍ବର ରାଜନୈତିକ ଓଡ଼ିଶାର ଭୂଗୋଳରେ ସମ୍ବଲପୁର ୧୯୦୫ରୁ ମଧ୍ୟପ୍ରଦେଶରୁ ଆସି ଓଡ଼ିଶାରେ ମିଶିଥିଲା । ବସ୍ତୁତଃ ଓଡ଼ିଶା ଥିଲା କଟକ, ପୁରୀ, ବାଲେଶ୍ୱର ଓ ସମ୍ବଲପୁର । କଟକରେ ଅନୁଗୋଳ ଏକ ସ୍ୱତନ୍ତ୍ର ଆଇନ ଦ୍ୱାରା ଶାସିତ । ଏଗୁଡ଼ିକ ଥିଲା ପୁଣି ବିହାର ସଙ୍ଗରେ, ଓଡ଼ିଶା ଡିଭିଜନ ନାମରେ । ୧୯୩୬ ଏପ୍ରିଲ-୧ ରେ ଓଡ଼ିଶା ପ୍ରଦେଶ ସ୍ୱତନ୍ତ୍ର ଭାବରେ ଗଠିତ ହେବା ପରେ ବିହାର ଓଡ଼ିଶା ପ୍ରଦେଶରୁ ଏହି ଜିଲ୍ଲାମାନଙ୍କ ସାଙ୍ଗକୁ

ମାନ୍ଦ୍ରାଜ ପ୍ରଦେଶରୁ ଗଞ୍ଜାମ ଓ କୋରାପୁଟ ମିଶି ୭ଟି ଜିଲ୍ଲା ହେଲା ରାଜନୈତିକ ଓଡ଼ିଶା । ଅନୁଗୋଳ ସବ୍‌ଡ଼ିଭିଜନ ଓ ସମ୍ବଲପୁର ଜିଲ୍ଲା ଅନ୍ୟ ଜିଲ୍ଲାମାନଙ୍କଠାରୁ ରାଜନୈତିକ ଭୂଗୋଳ ଦୃଷ୍ଟିରୁ ବିଚ୍ଛିନ୍ନ । ଦୂରତା ୧୦୦ରୁ ୨୫୦ କିଲୋମିଟର ।

ଓଡ଼ିଶା ରାଜ୍ୟ ପଦବାଚ୍ୟ ହେଲେ ହେଁ ରାଜନୈତିକ ଓଡ଼ିଶାଠାରୁ ୨୧ଟି ଗଡ଼ଜାତ ବିଚ୍ଛିନ୍ନ । ଢେଙ୍କାନାଳ, ତାଳଚେର, ଆଠଗଡ଼, ରଣପୁର, ତିଗିରିଆ, ବଡ଼ମ୍ବା, ନରସିଂହପୁର, ନୟାଗଡ଼, ଖଣ୍ଡପଡ଼ା, ଦଶପଲ୍ଲା, ଆଠମଲ୍ଲିକ, ପାଲଲହଡ଼ା, ବଣେଇ, ସୋନପୁର, ବାମଣ୍ଡା, ବଲାଙ୍ଗୀର, କଳାହାଣ୍ଡି, କେଉଁଝର, ମୟୁରଭଞ୍ଜ, ନୀଳଗିରି, ହିନ୍ଦୋଳ ଏସବୁଗୁଡ଼ିକ ବ୍ରିଟିଶ ସାମ୍ରାଜ୍ୟବାଦର କରଦ ରାଜ୍ୟ । ସାମନ୍ତବାଦୀ ରାଜରାଜୁଡ଼ା ଶାସିତ । ପ୍ରତ୍ୟେକଟି ରାଜ୍ୟ ସେଠାର ଜନସାଧାରଣଙ୍କ ପାଇଁ ଏକ ଏକ ଯମପୁରୀ ।

ଏହାକୁ ଗଡ଼ଜାତ ଓଡ଼ିଶା ଓ ଅନ୍ୟ ଭାଗକୁ ମୋଗଲବନ୍ଦୀ ଓଡ଼ିଶା କୁହାଯାଉଥିଲା । ଉତ୍କଟ ସାମନ୍ତବାଦୀ ଶୋଷଣର ଚରାଭୂଇଁ ଯେ ଗଡ଼ଜାତଗୁଡ଼ିକ ଥିଲେ ଆଉ ମୋଗଲବନ୍ଦୀର ଏହି ୬ଟି ଜିଲ୍ଲା ସେଥିରୁ ବାଦପଡ଼ିଥିଲେ, ସେପରି ନୁହଁ । ଏହି ମୋଗଲବନ୍ଦୀ ଅଞ୍ଚଳରେ ଗଡ଼ଜାତଭଳି ବ୍ରିଟିଶ କିଙ୍କର ରାଜ୍ୟ ଶାସକ ନ ଥିଲେ ହେଁ ମହାରାଜା ଉପାଧି ଭୂଷିତ ଜୟପୁର, ପାରଳାଖେମଣ୍ଡି ସମେତ ରାଜା ଉପାଧି ଭୂଷିତ ଖଲ୍ଲିକୋଟ, ସାନଖେମଣ୍ଡି, ବଡ଼ଖେମଣ୍ଡି, ବଡ଼ଗଡ଼, ଚିକିଟି, ଶେରଗଡ଼, ଧରାକୋଟ, କନିକା, ଆଳି, ମଧୁପୁର, ପଚ୍ଛିକୋଟ ଏଗୁଡ଼ିକ ସବୁ ସ୍ଥାୟୀ ବନ୍ଦୋବସ୍ତ ଜମିଦାରୀ । ଏମାନଙ୍କ ପଛକୁ ପୁଣି ବଡ଼ ବଡ଼ ଜମିଦାର ଯେମିତି ଏମାର ମଠ, ଉତ୍ତରପାର୍ଶ୍ୱ, ଦକ୍ଷିଣପାର୍ଶ୍ୱ ମଠ, କୋଠଦେଶ ଇଷ୍ଟେଟ, ରାଜା ବୈକୁଣ୍ଠନାଥ ଦେ ଇଷ୍ଟେଟ, ବର୍ଦ୍ଧମାନ ଇଷ୍ଟେଟ, ହରିଶପୁର ଇଷ୍ଟେଟ, ଜେ. ଏନ. ବୋଷ ଇଷ୍ଟେଟ ଏମିତି ଅନେକ । ଏହା ପଛକୁ ରହିଲେ ଲକ୍ଷାଧିକ ଅସ୍ଥାୟୀ ବନ୍ଦୋବସ୍ତି ଜମିଦାର ଏବଂ ଜମିଦାରଙ୍କ ଆଉ ଏକ ନିମ୍ନପାହାଚ ପଇସିକିଆ, ଅଧୁଲିକିଆ ଅଂଶୀଦାରଠାରୁ ଷୋଳଣା ମକଦ୍ଦମ । ଏହାପରେ ମୁସ୍ତାଦାର, ଲାଖରାଜଦାର ସର୍ବରାକାର, ଗୌନ୍ତିଆ, ପ୍ରଧାନ ଏମିତି ସାମନ୍ତବାଦର କେତେ ପାହାଚ ।

ଯେଉଁଠି ଜମିଦାର ବା ରଜା ନ ଥିଲେ, ସେସବୁ ଅଞ୍ଚଳକୁ ରୟତୱାରୀ କୁହାଯାଉଥିଲା । ଯଦିଚ ପ୍ରଜା ଆଉ ବ୍ରିଟିଶ ସରକାରଙ୍କ ସିଧାସଳଖ ସଂପର୍କ ବୋଲି ଏହାକୁ ଧରାଯାଉଥିଲା, ସେଥିରେ ନିଯୁକ୍ତ ସର୍ବରାକାର, ଗୌନ୍ତିଆ ସାକ୍ଷାତ ଯମ । ଟଙ୍କିମାହାଲ, ନିମକହାରମ ଜାଗିରୀ (ଅର୍ଥାତ୍ ୧୮୧୨-୧୭ରେ ଓଡ଼ିଶା ପାଇକ ବିପ୍ଳବବେଳେ ଯେଉଁମାନେ ଦେଶଦ୍ରୋହୀତା କରିଥିଲେ । ବ୍ରିଟିଶ ସରକାର ପକ୍ଷରେ ଥିଲେ, ସେମାନେ ପାଇଥିବା ଜାଗିରୀ) ଦେବୋତ୍ତର, ପୀରୋତ୍ତର ସାମନ୍ତବାଦୀ ଶୋଷଣର ଗୋଟିଏ ଗୋଟିଏ ଆୟୁଧ ଥିଲା ।

କମ୍ୟୁନିଷ୍ଟ ପାର୍ଟି ଗଠନର ଇତିହାସ ସହିତ ଏହାର ସମ୍ପର୍କ କ'ଣ ଆଜିର ଦେଶପ୍ରେମୀ

ପ୍ରଗତିକାମୀ ଏହି ପୁରୁଷର ଲୋକେ ଜାଣିବା ପ୍ରୟୋଜନ; କାରଣ ସେମାନଙ୍କୁ ସାମନ୍ତବାଦୀ ପ୍ରଥା ଓ ତା'ର ଉତ୍କଟ୍ ଶୋଷଣ ବିରୁଦ୍ଧରେ ଶ୍ରେଣୀ ସଂଗଠନ କରି ସଂଗ୍ରାମ ଆରମ୍ଭ କରିବାକୁ ପଡ଼ିଥିଲା ଏବଂ ସେହି ସଂଗ୍ରାମର ଚାପ, ବେଗ ଓ ଅଜସ୍ର ତ୍ୟାଗ ଏବଂ ବ୍ରିଟିଶ ତଥା କଂଗ୍ରେସୀ ଶାସନର ପ୍ରଚଣ୍ଡ ଦମନ ସତ୍ତ୍ୱେ ଜମିଦାରୀ ପ୍ରଥା ଉଚ୍ଛେଦ, ରାଜରାଜଡ଼ା ପ୍ରଥା ଉଚ୍ଛେଦ, ସର୍ବୋଚ୍ଚ ସୀମା ଧାର୍ଯ୍ୟ ଆଇନ ଉଦ୍‌ବୃତ୍ତ ଜମି ବଣ୍ଟନ ଆଇନ ହେଲା ଏବଂ ତହିଁରେ ପୁଣି ଧପ୍‌ପାବାଜି ଚାଲିଥିବାରୁ ସଂଗ୍ରାମ ଅବ୍ୟାହତ ରହିଛି ।

ଏହି ସାମନ୍ତବାଦୀ ବ୍ୟବସ୍ଥାର ଆଉ ଏକ ଅଂଗ ଥିଲା ବେଢ଼ି ମହାଜନୀ କାରବାର । ମହାଜନ ଓ ଜମିଦାର ଛୋଟ ହେଉ, ବଡ଼ ହେଉ ସେମାନେ ସଙ୍ଗାତମିତ୍ର-ବ୍ରିଟିଶ ସାମ୍ରାଜ୍ୟବାଦର ଗାଁ' ଗହଳରେ ଦୁଇଟି ପ୍ରଧାନ ଖୁଣ୍ଟି ।

ଖୋଦ ଜମିଦାର, ରଜାଙ୍କ କଥା ଛାଡ଼ନ୍ତୁ, ରଜା ଅମଳରେ ତାଙ୍କ ଗାଁ' ପ୍ରଧାନ ଚୌକିଆ ଏବଂ ଜମିଦାରମାନଙ୍କ ତହସିଲଦାର, ବରକନ୍ଦାଜ ବା ଖମାର ଜଗୁଆଳଙ୍କ ଲୁଣ୍ଠନ, ଅତ୍ୟାଚାର, ହାକିମିରେ ଋଷୀ ସର୍ବସ୍ୱାନ୍ତ, ଭୀତତ୍ରସ୍ତ, ନିଃସ୍ୱ ହୋଇ ପଡୁଥିଲେ । ଘରଡ଼ିହରେ ଗଛ, ବାରି ପୋଖରୀର ମାଛ ପ୍ରଜାର ହୋଇପାରୁ ନ ଥିଲା । ବେଠି, ଭେଟି, ବେଗାରୀ ସାଙ୍ଗକୁ ରଜା ଓ ବଡ଼ ଜମିଦାରମାନେ ଯେଉଁ ଘରର ଝିଅ ବୋହୂ ହେଉ, ଚାହିଁଲେ ହରଣଚାଳ କରି ନେଉଥିଲେ ନିର୍ବିକାରରେ ସବାରି ପଠାଇ । ବ୍ରିଟିଶ ପୁଲିସ, ଏମିତିକି ନାଲିପଗଡ଼ିଆ କନଷ୍ଟେବଲ, ଦଫାଦାରଙ୍କୁ ଋଷୀ ଭୟ କରୁଥିଲା ।

ଏହିପରି ବ୍ୟବସ୍ଥା ବିରୁଦ୍ଧରେ ସେ କାଳରେ ତୁଣ୍ଡ ଖୋଲିବାକୁ ଯେତେବେଳେ ଲୋକଙ୍କର କ୍ରୋଧ ଥିଲେ ହେଁ ଭୟ, ସେହି ଅବସ୍ଥାରେ ଓଡ଼ିଶାରେ କୃଷକ ଆନ୍ଦୋଳନ ସି.ଏସ୍.ପି. ଏବଂ କମ୍ୟୁନିଷ୍ଟମାନଙ୍କ କାମଦାମ, ଜୟ ପରାଜୟକୁ ବିଚାରିବାକୁ ହେବ ।

ଏପରି ସାମାଜିକ ଅବସ୍ଥାକୁ ଉତ୍କଟ କରିଥାଏ ରାସ୍ତାଘାଟ । କାଁ ଭାଁ ଜିଲ୍ଲା ବୋର୍ଡ଼ ଲୋକାଲ ବୋର୍ଡ଼ କଚ୍ଚା ରାସ୍ତା ବା ଖୁବ୍ ହେଲେ ନାଲିଗୋଡ଼ି । ମଟର ଯାନର ପ୍ରଚଳନ ଆରମ୍ଭ ମାତ୍ର ସାଇକେଲ ବା 'ଶୂନଗାଡ଼ି' ଖଣ୍ଡେ କାହାର ଥିଲେ ବଡ଼ କଥା । ସେ କାଳରେ ବଙ୍ଗଳା ନାଗପୁର ରେଳବାଇ ହାଉଡ଼ାରୁ ମାନ୍ଦ୍ରାଜ ଯାଏ, ତାହା ପୁଣି ସମୁଦ୍ର ଦାଢ଼େ ଦାଢ଼େ ଏବଂ ବିହାର, ମଧ୍ୟପ୍ରଦେଶ ସୀମାନ୍ତରେ ନାଗପୁର ଯାଏ । ଭିତରର ବିଶାଳ ଓଡ଼ିଶା ଭୂଇଁ ରେଳପଥରୁ ବଂଚିତ । ପାତି ରେଳ ଟାଟା କମ୍ପାନୀ ଯୋଗୁଁ ରୂପସାରୁ ବାଦାମପାହାଡ଼ ଯାଏ । ତାହା ମୟୁରଭଞ୍ଜ ଗଡ଼ଜାତରେ । ଆଉ ଅନ୍ୟ ଦିଗରେ ପାତିରେଳ ପଲାସାରୁ ପାରଳାଖେମଣ୍ଡି । ପ୍ରାୟ ସମସ୍ତ ଅଂଶ ଆନ୍ଧ୍ରରେ । ରେଳ କଟକ-ତାଳଚେର ୬୦ ମାଇଲ ରାଜ୍ୟ ଭିତରେ ତାହା ପୁଣି ଢେଙ୍କାନାଳ, ଆଠଗଡ଼, ତାଳଚେର ଗଡ଼ଜାତ ଭିତରେ । ମୋଗଲ ବନ୍ଦୀରେ ତାହାର ପ୍ରସାର ୧୦ ମାଇଲରୁ ଊଣା ।

କୃଷି ଅର୍ଥନୀତି ଅତ୍ୟନ୍ତ ପ୍ରାଥମିକ । ରଜା-ଜମିଦାର ବଡ଼ ଜମି ମାଲିକଙ୍କ ଜମିରେ ଚାଷୀଙ୍କୁ ବେଠି କରିବାକୁ ପଡୁଥିଲା । ପ୍ରସାଦ, ଖମାର କଚେରୀ ଘର, ଥାନା ମାଗଣାରେ ଛପର କରିବାକୁ ପଡୁଥିଲା । ବାଡିରେ କଦଳୀ, ବାଇଗଣ ଫଳିଲେ, ପୋଖରୀରୁ ମାଛ ଧରିଲେ ରଜା, ଜମିଦାର, ତହସିଲଦାର, ବରକନ୍ଦାଜ ମହାଜନଙ୍କୁ ଆଗ ଭେଟି ଦେବା ଏକ ବାଧ୍ୟତାମୂଳକ ରୀତି ହୋଇଥିଲା । ସୁନିଆ ଭେଟି, ଦଶହରା ଭେଟି, ରଜା ଜମିଦାରଙ୍କ ପୁଅ ଝିଅ ବାହା, କର୍ଣ୍ଣବିନ୍ଧା, ଉପନୟନ ତଥାକଥିତ ଅଭିଷେକବେଳେ ଚାଷୀମାନଙ୍କ ଘରୁ ଚାଉଳ, ଦହି ଚୂଡ଼ା ଆମ୍ବ, ପରିବା ବୋଝଭାର । ବେଆଇନ ଓ ଆଇନଗତ ଟିକସ, କର, ମାଗଣ ତ ଅଛି । ଅର୍ଥକାରୀ ଫସଲ ବୋଇଲେ କିଛି ନ ଥିଲା । ଗାଁ'ର ବିକ୍ରିବଟା ସଉଦା ପାଇଁ ହାଟ ହିଁ ମାଧ୍ୟମ । ବିଜୁଳିବତୀ ତ ସାତ ସପନ । ୧୯୩୫-୩୬ ରେ କଟକରେ ବିଜୁଳି ନ ଥିଲା ଆଉ ଅନ୍ୟ ଅଞ୍ଚଳ କଥା ଛାଡ଼ । ଚାଷୀମାନେ ଧାନ ବିରି ମାଣ୍ଡିଆ ମୁଣ୍ଡେଇ ହାଟରେ ବିକି ମୁଖ୍ୟତଃ କିରାସିନୀ, ଲୁଣ ଆଉ ଖଣ୍ଡେ ଅଧେ ଆଠହାତି ଲୁଗା, ଗାମୁଛା ଆଦି ଅତି ଅପରିହାର୍ଯ୍ୟ ପଦାର୍ଥ କିଣୁଥିଲେ । ଘୋର ଆର୍ଥିକ ସଂକଟ । ପୁଞ୍ଜିବାଦୀ ବିଶ୍ୱବଜାରର ସଂକଟ ପ୍ରଥମ ବିଶ୍ୱଯୁଦ୍ଧ ପରେ ୧୯୩୦-୩୧ରେ ସଂଗୀନ ହୋଇ ଉଠିଥାଏ । ବ୍ରିଟିଶ ଶୋଷଣ, ଜମିଦାର ମହାଜନମାନଙ୍କ ଶୋଷଣ ଅତ୍ୟାଚାରର ସୀମା ନ ଥାଏ ।

ଜଳସେଚନ ବୋଇଲେ ୧୮୬୬ ଓଡ଼ିଶାର ଦୁର୍ଭିକ୍ଷ ପରେ ଋଷିକୁଲ୍ୟା କେନାଲ ଗଞ୍ଜାମରେ ଏବଂ କଟକରେ ମହାନଦୀରୁ ତାଳଦଣ୍ଡା-ମାଛଗାଁ, ପଟାମୁଣ୍ଡାଇ, କେନ୍ଦ୍ରାପଡ଼ା ଓ ହାଇଲେଭଲ କେନାଲ । ହାଇଲେଭଲ କେନାଲବାଟେ ନୌକାରେ ଯାଇ ବାଲେଶ୍ୱରରୁ କଲିକତା ସହିତ ନୌସଂଯୋଗ । ପୂର୍ବର ଜଳସେଚନ ପାଇଁ ଥିବା ବଡ଼ ବଡ଼ ବନ୍ଧ ବା ପୁଷ୍କରିଣୀର ଉଦ୍ଧାର ନାହିଁ । ଚାଷୀ ପୂଜା କରୁଥିବା ଇନ୍ଦ୍ର ଉପରେ ବିଶ୍ୱାସ ରଖି ଫସଲ ଉତାରିବ କି ନ ଉତାରିବ ଏଇ ଚିନ୍ତାରେ ସେ ଚିନ୍ତିତ ।

ଭୟାନକ ରୋଗବୈରାଗ ବୋଇଲେ ହଇଜା, ବସନ୍ତ, ମେଲେରିଆ, କୁଷ୍ଠ, ବାତଜ୍ୱର । ଶହ ଶହ ନୁହଁ । ହଜାର ହଜାର ମରି ଶୋଉଥିଲେ ।

ଶିକ୍ଷା । ଗାଁ' ଚାଟଶାଳୀରେ ଭାଗବତ ପଢ଼ି ପାରିଲେ ଏମ୍.ଏ. ପଢ଼ିଲାପରି ଲାଗିବା କଥା । ପ୍ରାଥମିକ ବିଦ୍ୟାଳୟ ୧୦/୧୫ ଖଣ୍ଡ ଗାଁ'ରେ କେଉଁଠି କେମିତି । ଗଡ଼ଜାତ କଥା ଛାଡ଼ନ୍ତୁ । କଟକରେ କେବଳ ଗାର୍ଲସ୍ ହାଇସ୍କୁଲ, କଲେଜିଏଟ ମିଶେଇ ୬ଟି ହାଇସ୍କୁଲ ଦୂରବର୍ତ୍ତୀ କୁଜଙ୍ଗରେ ଗୋଟିଏ ହାଇସ୍କୁଲ । ବାକି ହେଲା ଜିଲ୍ଲା ସ୍ତରରେ ଗୋଟିଏ ଅଧେ ହାଇସ୍କୁଲ । ମାଇନର ସ୍କୁଲ ଲୋକେ ନିଜ ଉଦ୍ୟମରେ କେଉଁଠି କେଉଁଠି ଖୋଲିଥା'ନ୍ତି । ସାରା ୬ଟି ଜିଲ୍ଲାର ସେତେବେଳେ ମାଇନର୍ ସ୍କୁଲ ସଂଖ୍ୟା ଏକ ଶହରୁ ଅଧିକ ହେବନାହିଁ ।

ଉଚ୍ଚ ପାଠ କଲେଜ ବୋଇଲେ ରେଭେନ୍‌ସା କଲେଜରେ ବି.ଏ. ଯାଏ ଉଚ୍ଚ ଶିକ୍ଷା ।

ଆଉ ଆଇ.ଏ. ଯାଏ ପାରଲାଖେମଣ୍ଡି ଓ ବ୍ରହ୍ମପୁରରେ ଖଲ୍ଲିକୋଟ କଲେଜ । ଗୋଟିଏ ମେଡ଼ିକାଲ ସ୍କୁଲ ଓ ଗୋଟିଏ ଇଞ୍ଜିନିୟରିଂ ସ୍କୁଲ କଟକରେ । ୧୯୩୮ ବେଳକୁ ରେଭେନ୍‌ସା କଲେଜ ପରି ସର୍ବବୃହତ ଶିକ୍ଷାନୁଷ୍ଠାନରେ ଛାତ୍ର ସଂଖ୍ୟା ୧୩୦୦ ଯାଏ । ମାତ୍ର ୩ ଜଣ ଛାତ୍ରୀ ୧୯୩୮ ରେ ପ୍ରଥମ ବାର୍ଷିକରେ ନାମ ଲେଖାଇଥା'ନ୍ତି । ତେଣୁ ନାରୀ ଶିକ୍ଷା ଅବସ୍ଥା କ'ଣ ଏଥିରୁ ଅନୁମେୟ ।

ସାଂସ୍କୃତିକ ଜୀବନରେ 'ସମାଜ' ଦୈନିକ ରୂପେ ବାହାରିଥାଏ । ଉତ୍କଳ ଦୀପିକା ଦୈନିକର ପୁନରୁଦ୍ଧାର ହୋଇଥାଏ । ବ୍ରହ୍ମପୁରରୁ ଆଶା ପ୍ରକାଶ ପାଉଥାଏ । ପ୍ରଜାତନ୍ତ୍ର ବାଲେଶ୍ୱରରୁ ବାହାରି ବନ୍ଦ ହୋଇଯାଇଥାଏ । ଏସବୁର କାଟତି ସୀମିତ । ହାତଚଳା ମେସିନରେ ଛାପା, ହାତଗୁନ୍ଥା ଅକ୍ଷର ।

ସାହିତ୍ୟ କ୍ଷେତ୍ରରେ ଫକୀରମୋହନ, ରାଧାନାଥ, ମଧୁସୂଦନଙ୍କ ରୀତି ସାହିତ୍ୟ ଯୁଗ ପରେ ସାକ୍ଷୀଗୋପାଳର ଗୋପବନ୍ଧୁ ଦେଶପ୍ରେମୀ ସାହିତ୍ୟର ପ୍ରଭାବ, ସଂକୀର୍ଣ୍ଣତା, କ୍ଷୁଦ୍ର ପ୍ରାଦେଶିକତା ଓ ବ୍ରିଟିଶ ଓ ଦରବାରୀ ସାହିତ୍ୟ ପ୍ରତି ମମତାକୁ କାଟିବାରେ ସାହାଯ୍ୟ କରିଥାଏ । ଦେଶପ୍ରେମୀ ସଙ୍ଗୀତର ଆବାହନୀ ଜାତୀୟ କବି ବୀରକିଶୋର, ବାଞ୍ଛାନିଧିଙ୍କ ଲେଖନୀରେ ଜାତି ଜୀବନରେ ଏକ ନବ ଆଲୋଡ଼ନ ସୃଷ୍ଟି କରିଥିଲା । ଜାତୀୟବୋଧ ଆଣିଦେଇଥିଲା । ମାତ୍ର ଚଷୀ, ଖଟିଖିଆଙ୍କ ଦୁଃଖ ଦୁର୍ଦ୍ଦଶା- ଜମିଦାର ମହାଜନ ସାମନ୍ତଙ୍କ ଅତ୍ୟାଚରର ଆର୍ଥିକ, ସାମାଜିକ ଓ ରାଜନୈତିକ ଚରିତ୍ର ଖୋଲିଦେବା ଏବଂ ସେହି ପ୍ରଥା ବିରୁଦ୍ଧରେ ସଂଗଠିତ ବିଦ୍ରୋହ କରିବା ଲାଗି ଆହ୍ୱାନ ଦେବାର ସାହିତ୍ୟ-ଗୀତ-କବିତା ବା ପ୍ରବନ୍ଧର ଅଭାବ ଥିଲା । ସବୁଜ ଗୋଷ୍ଠୀଙ୍କ ସାହିତ୍ୟ ଦୁର୍ଦ୍ଦଶା ଓ ହତାଶାଗ୍ରସ୍ତ ସମାଜର ବାସ୍ତବତାର ଚିତ୍ର ଓ ଉଦ୍ଧାରର ଉତ୍ତର ଦେବାକୁ ସମର୍ଥ ନ ହୋଇ ସାମାଜିକ ବାସ୍ତବତାରୁ ପଳାୟନପନ୍ଥୀ ହୋଇପଡ଼ିଥିଲା ।

**ଜାଗରଣ, ସଙ୍ଗଠନ, ସଂଗ୍ରାମର ନୂତନ ଉନ୍ମେଷ**

ଏହି ପ୍ରକାର ଭୌଗୋଳିକ, ରାଜନୈତିକ, ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ପରିସ୍ଥିତିରେ ମୁଷ୍ଟିମେୟ କମ୍ୟୁନିଷ୍ଟ କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ରହି କିପରି କାର୍ଯ୍ୟ କଲେ ଏବଂ କି କି ପରିବର୍ତ୍ତନ ଆଣିପାରିଲେ ତାହାର ସଫଳତା ଓ ବିଫଳତାକୁ ବିଚାର କରିବାକୁ ହେଲେ ପାଠକଙ୍କୁ, ଆଜିର କମ୍ୟୁନିଷ୍ଟଙ୍କୁ, ଆଜିର ଦେଶପ୍ରେମୀଙ୍କୁ ଅନ୍ତତଃ ମନ ରାଜ୍ୟରେ ସେହି ପରିସ୍ଥିତିକୁ ଯିବାକୁ ପଡ଼ିବ ।

ଏହି କମ୍ୟୁନିଷ୍ଟମାନେ ପ୍ରଥମେ ଶ୍ରେଣୀ ସଂଗଠନ, ଗଣସଂଗଠନର ମୂଳଦୁଆ ପକେଇଲେ । ଏହିମାନେ ହିଁ ସାଂସ୍କୃତିକ କ୍ଷେତ୍ରରେ ନୂଆ ସୃଷ୍ଟି ଦ୍ୱାରା ଯୁଗାନ୍ତରର ସୂଚନା ଦେଲେ । ଏମାନେ ହିଁ ପୋଥି ବାଇଗଣ ନ କରି ମାର୍କସବାଦୀ ଲେନିନବାଦୀ ତତ୍ତ୍ୱଗୁଡ଼ିକୁ ଛାତ୍ର, ଯୁବକ, ଚଷୀ ଗଡ଼ଜାତ ପ୍ରଜା, ବୁଦ୍ଧିଜୀବୀଙ୍କ ସଂଗ୍ରାମରେ ଶକ୍ତି ସାମର୍ଥ୍ୟ ଅନୁସାରେ ପ୍ରୟୋଗ କଲେ ।

ସେକାଳର ବୁଦ୍ଧିଜୀବୀମାନଙ୍କ ମଧ୍ୟରେ, ସାଂସ୍କୃତିକ କ୍ଷେତ୍ରରେ ପ୍ରଥମ ଆଲୋଡ଼ନ ଆଣିଲା ଆଧୁନିକ ପତ୍ରିକା । ଯାହାର ଆୟୁ ମାତ୍ର ଛ'ଟି ସଂଖ୍ୟାରେ ସୀମିତ ହେଲା । ଅର୍ଥାଭାବ ପ୍ରକାଶନରେ ଅନ୍ତରାୟ ହେଲା । ସାତଦିନବ୍ୟାପୀ କଟକ ଶ୍ରୀରାମଚନ୍ଦ୍ର ଭବନରେ ନବଯୁଗ ସାହିତ୍ୟ ସଂସଦ ନାମକ ଅନୁଷ୍ଠାନର ଉତ୍ସବ, ତାହାରି ଆନୁକୂଲ୍ୟରେ ମନୋଜ୍ଞ ଆଲୋଚନାଚକ୍ର, ରାଜନୀତି, ଅର୍ଥନୀତି, ଦର୍ଶନ ସମ୍ବନ୍ଧରେ ପ୍ରବନ୍ଧ ପାଠ, ତର୍କବିତର୍କ ଆଗାମୀ ଯୁଗର ପ୍ରଗତିଶୀଳ, ସାମ୍ରାଜ୍ୟବାଦ ବିରୋଧୀ ଓ ଗଣାଭିମୁଖୀ ସାହିତ୍ୟ ସୃଷ୍ଟିର ପଥ ପ୍ରଦର୍ଶନ ହେଲା । ସାହିତ୍ୟର ବିଭିନ୍ନ ବିଭାଗ କାବ୍ୟ, କବିତା, କ୍ଷୁଦ୍ରଗଳ୍ପ, ସୃଷ୍ଟିକୁ କାଳ୍ପନିକ ରାଜ୍ୟରୁ ବାସ୍ତବତା ସହିତ ତାଳଦେଇ, ଜନଜୀବନର ସୁଖ ଦୁଃଖ ତା'ର ଜଞ୍ଜାଳ ଓ ସଂଗ୍ରାମ, ସଂଘର୍ଷ, ତା'ର ଜୟ ପରାଜୟ, ତା'ର ଉଜ୍ଜ୍ୱଳ ଭବିଷ୍ୟତର ଛବି, ଅନ୍ଧ କୁସଂସ୍କାର, ନ୍ୟୁନତା, ସଂକୀର୍ଣ୍ଣତା, ପ୍ରାଦେଶିକତାର ବିଷ ପ୍ରତି ଘୃଣା, ସମାଜପ୍ରତି, ଶାସନକର୍ତ୍ତାମାନଙ୍କ ପ୍ରତି ଦାସ୍ୟ ଭାବର ବିରୋଧ ଯେପରି ସାହିତ୍ୟ ସୃଷ୍ଟିରେ ଫୁଟି ଉଠିବ, ତାହା ଗଣଧର୍ମୀ ହେବ ଆଉ ଦରବାରୀ ବା ସୌଖୀନ ସାନ୍ଧ୍ୟ ଆସରର ମନୋବିନୋଦନକାରୀ ସାମଗ୍ରୀ ନ ହେବ, ତାହା ହିଁ ଡାକରା ଦେଲା ନବଯୁଗ ସାହିତ୍ୟ ସଂସଦ ଓ ଆଧୁନିକ ପତ୍ରିକା ।

ଏହା ଶିକ୍ଷିତ ବୁଦ୍ଧି ଜୀବୀମାନଙ୍କ ଚିନ୍ତାକୁ ହଲଚଲ କରିଦେଲା । ଆଲୋଡ଼ନ ସୃଷ୍ଟି କଲା । ସେମିତି ପୁରୁଣା ସମାଜର ପଣ୍ଡାମାନେ ଏହା ବିରୁଦ୍ଧରେ ଖଡ଼୍ଗ ଉତ୍ତୋଳନ କଲେ । ପ୍ରଥମଥର ପାଇଁ ଓଡ଼ିଶାରେ ସାହିତ୍ୟ ଓ ସଂସ୍କୃତି ରାଜ୍ୟରେ ବିଭିନ୍ନ ଦୃଷ୍ଟିଭଙ୍ଗୀର ସଂଘାତ ଘଟିଲା ।

ଏହି କାଳରେ ଗଢ଼ିଉଠିବା କୃଷକ ଆନ୍ଦୋଳନ, ଛାତ୍ର ଆନ୍ଦୋଳନ ଓ ଗଡ଼ଜାତ ପ୍ରଜା ଆନ୍ଦୋଳନକୁ ରାଜନୈତିକ ଓ ସାଙ୍ଗଠନିକ ନେତୃତ୍ୱ ଦେବା କ୍ଷେତ୍ରରେ ସାପ୍ତାହିକ 'କୃଷକ'ର ପ୍ରକାଶନ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଖୋର୍ଦ୍ଧାରେ କଂଗ୍ରେସ ସମାଜବାଦୀ ଦଳର "କୃଷକ" ସାପ୍ତାହିକ ପତ୍ରିକା ପ୍ରକାଶନ ପାଇଁ ୧୯୩୬ ଶେଷ ଭାଗରେ ବୈଠକ ବସିଲା । ସମ୍ପାଦକ ମଣ୍ଡଳୀଟିଏ ଗଢ଼ାଗଲା । ଶ୍ରୀମତୀ ମାଳତୀ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ସାରଙ୍ଗଧର ଦାସ, ସୁରେନ୍ଦ୍ରନାଥ ଦ୍ୱିବେଦୀ ସମ୍ପାଦକ ମଣ୍ଡଳୀରେ ରହିଲେ । ଭଗବତୀ ମୁଖ୍ୟ ସମ୍ପାଦକ ଓ ଗରୁରୁଚରଣ ପରିଚାଳନା ସମ୍ପାଦକ ନିର୍ବାଚିତ ହେଲେ । ମୁଖ୍ୟ ସମ୍ପାଦକ ପଦ ପାଇଁ ଦ୍ୱିବେଦୀଙ୍କ ନାମ ବହୁ ସମର୍ଥନ ପାଇଲାନାହିଁ ।

ଏହି କାଳରେ ଗଢ଼ିଉଠିବା କୃଷକ ଆନ୍ଦୋଳନ, ଛାତ୍ର ଆନ୍ଦୋଳନ ଓ ଗଡ଼ଜାତ ପ୍ରଜା ଆନ୍ଦୋଳନକୁ ରାଜନୈତିକ ଓ ସାଙ୍ଗଠନିକ ନେତୃତ୍ୱ ଦେବା କ୍ଷେତ୍ରରେ ସାପ୍ତାହିକ କୃଷକର ପ୍ରକାଶନ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଖୋର୍ଦ୍ଧାରେ କଂଗ୍ରେସ ସମାଜବାଦୀ ଦଳର "କୃଷକ" ସାପ୍ତାହିକ ପତ୍ରିକା ପ୍ରକାଶନ ପାଇଁ ୧୯୩୬ ଶେଷ ଭାଗରେ ବୈଠକ ବସିଲା । ସମ୍ପାଦକ

ମଣ୍ଡଳୀଟିଏ ଗଢ଼ାଗଲା । ଶ୍ରୀମତୀ ମାଳତୀ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରହୀ, ଗୁରୁଚରଣ ପଟ୍ଟନାୟକ, ସାରଙ୍ଗଧର ଦାସ, ସୁରେନ୍ଦ୍ରନାଥ ଦ୍ୱିବେଦୀ ସମ୍ପାଦକ ମଣ୍ଡଳୀରେ ରହିଲେ ଭଗବତୀ ମୁଖ୍ୟ ସମ୍ପାଦକ ଓ ଗୁରୁଚଣ ପରିଚାଳନା ସମ୍ପାଦକ ନିର୍ବାଚିତ ହେଲ । ମୁଖ୍ୟ ସମ୍ପାଦକ ପଦ ପାଇଁ ଦ୍ୱିବେଦୀଙ୍କ ନାମ ବହୁ ସମର୍ଥନ ପାଇଲାନାହିଁ ।

୧୯୩୮ ସେପ୍ଟେମ୍ବର ୧ରେ ଜେନାପୁରଠାରେ କୃଷକ ସଂଘ ଉଦ୍ୟୋଗରେ ଅନୁଷ୍ଠିତ ଚାଷୀ ଦିବସରେ ୫୦ ହଜାର ଚାଷୀ ନିକଟସ୍ଥ ଅଞ୍ଚଳ ଓ ଢେଙ୍କାନାଳରୁ ଆସିଥିବା ପ୍ରଜା ଏକଯୁଟ ହୋଇଥିଲେ ଏବଂ ସେଦିନ ୩ ହଜାର ଖଣ୍ଡ କୃଷକ ବିକ୍ରି ଢେଙ୍କାନାଳର ବୀରତ୍ୱପୂର୍ଣ୍ଣ ପ୍ରଜା ଆନ୍ଦୋଳନକୁ ଉଦ୍‌ବୁଦ୍ଧ କଲା । କୃଷକ ହିଁ ୧୯୩୮-୩୯ରେ ଓଡ଼ିଶାର ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଶ୍ରେଣୀ ଚେତନା ସୃଷ୍ଟିର ଏକ ଆୟୁଧ ରୂପେ ପରିଗଣିତ ହୋଇଥିଲା । ସେତେବେଳେ କୃଷକ ଆନ୍ଦୋଳନର ଏହା ମଧ୍ୟ ମୁଖପତ୍ର ହୋଇ ବ୍ରିଟିଶ ସରକାର, ଜମିଦାର, ମହନ୍ତ, ମହାଜନମାନଙ୍କ ଚକ୍ଷୁଶୂଳ ହୋଇଗଲା । ଢେଙ୍କାନାଳରେ ସତ୍ୟାଗ୍ରହ କରିବାକୁ ମୁଖ୍ୟ ସମ୍ପାଦକ କମ୍ରେଡ୍ ଭଗବତୀ ସ୍ଥିର ହେବାରୁ ତାଙ୍କ ସ୍ଥାନରେ ମାଳତୀ ଦେବୀ ମୁଖ୍ୟ ସମ୍ପାଦିକା ହେଲେ, ମାତ୍ର ବାସ୍ତବ କ୍ଷେତ୍ରରେ ମୁଖ୍ୟ ଦାୟିତ୍ୱ ଭଗବତୀ, ଗୁରୁଚରଣ ଓ ତାଙ୍କ ସହକର୍ମୀମାନେ ତୁଲାଉଥିଲେ । ୧୯୪୦ ପ୍ରଥମ ଭାଗ ଯାଏ 'କୃଷକ' ପ୍ରକାଶନ ଚାଲିଥିଲା । 'କୃଷକ'ର ପ୍ରଥମ ପ୍ରସ୍ଥର ଅବସାନ ଘଟିଲା । ପରେ ୧୯୪୯ ରେ ସୋସାଲିଷ୍ଟମାନେ ସେମାନଙ୍କ ମୁଖପତ୍ରରୂପେ ତାହାର ପ୍ରକାଶନ ଆରମ୍ଭ କରିଥିଲେ ।

**ଛାତ୍ରସଂଘ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନରେ ଅବଦାନ**

ଏହି ଯୁବ କମ୍ୟୁନିଷ୍ଟମାନେ ଅନନ୍ତ, ବିଶ୍ୱନାଥ, ବୈଦ୍ୟନାଥଙ୍କ ସାଙ୍ଗକୁ ଠିକ୍ ସେମାନଙ୍କ ସହିତ ସମ୍ପୂର୍ଣ୍ଣ ରାଜନୈତିକ କ୍ଷେତ୍ରରେ ଏକମତ ନ ହେଲେ ହେଁ ବହୁ ପ୍ରଗତିଶୀଳ, ସାମ୍ରାଜ୍ୟବାଦ ବିରୋଧୀ ଶିକ୍ଷିତ ଯୁବକ ୧୯୩୬ରୁ ସଙ୍ଗଠିତ ଛାତ୍ର ଆନ୍ଦୋଳନର ସ୍ୱପ୍ନକୁ ବାସ୍ତବ ରୂପ ଦେଲେ । ସର୍ବଭାରତୀୟ କ୍ଷେତ୍ରରେ ଯୁବ କମ୍ୟୁନିଷ୍ଟମାନଙ୍କ ନେତୃତ୍ୱରେ ସ୍ୱାଧୀନତା, ପ୍ରଗତି ଓ ସମାଜବାଦପ୍ରୟାସୀ ଛାତ୍ରମାନଙ୍କ ଉଦ୍ୟୋଗରେ ୧୯୩୬ରେ ମାନ୍ଦ୍ରାଜଠାରେ ଭାରତରେ ସର୍ବପ୍ରଥମ ଛାତ୍ରସଂଘର ଉଦଘାଟନୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ତାହା ପୂର୍ବରୁ ୧୩୫ ଶେଷଭାଗରେ ଓଡ଼ିଶାରେ ଛାତ୍ର ସମ୍ମିଳନୀର ଆୟୋଜନ କରାଗଲା । ଏମାନଙ୍କ ସାଙ୍ଗକୁ ରବି ଘୋଷ, ନୀଳମଣି ରାଉତରାୟ ମୋତିଲାଲ ତ୍ରିପାଠୀ, ହରିଚରଣ ଗିରି, ଜୟଦାସ ଏବଂ ପିଏମ ଏକାଡ଼େମୀ, କଲେଜିଏଟ, ଭିକ୍ଟୋରିଆ ସ୍କୁଲ, ଖୋର୍ଦ୍ଧା ହାଇସ୍କୁଲ, ବାଲେଶ୍ୱର ଜିଲ୍ଲା ସ୍କୁଲରୁ ବିଶେଷତଃ ହାଇସ୍କୁଲର ଛାତ୍ରମାନଙ୍କ ମଧ୍ୟରୁ ଅନେକ ଉଦୀୟମାନ ଛାତ୍ର ପ୍ରତିନିଧିମାନଙ୍କୁ ଘେନି କଟକ ଟାଉନହଲ ପଡ଼ିଆରେ ଛାତ୍ରସଂଘ ସମ୍ମିଳନୀ ଅନୁଷ୍ଠିତ ହେଲା । କଟକ ମ୍ୟୁନିସିପାଲଟି ସାମନା ଚୌଧରୀ ବଜାର ରାସ୍ତାରେ ଗ୍ରାଣ୍ଡ

ହୋଟେଲରେ ଅଭ୍ୟର୍ଥନା ସମିତି ପକ୍ଷରୁ ବିରାଟ ଆୟୋଜନ । ଅଭ୍ୟର୍ଥନା ସମିତିର ଚେୟାରମେନ ଅନନ୍ତ ପଟ୍ଟନାୟକ । ବିଶିଷ୍ଟ ଆଇନଜୀବୀ ଶ୍ରୀ ହରିହର ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ସମ୍ମିଳନୀର ନିଷ୍ପତ୍ତି ଅନୁସାରେ ବିଭିନ୍ନ ଶିକ୍ଷାନୁଷ୍ଠାନରେ ଶାଖା ଗଠନ, ସଭ୍ୟ ସଂଗ୍ରହର ସାଙ୍ଗଠନିକ ବ୍ୟବସ୍ଥା ନିଆଗଲା । ବିଶ୍ୱନାଥ ପଶଏତ୍ ସମ୍ପାଦକ ଏବଂ ନୀଳମଣି ରାଉତରାୟ ଓ ଗୋବିନ୍ଦଚନ୍ଦ୍ର ମହାନ୍ତି ସହକାରୀ ସମ୍ପାଦକ ଥାଇ ଏକ ଦୃଢ଼ କାର୍ଯ୍ୟନିର୍ବାହୀ କମିଟି ଗଠିତ ହେଲା ।

ଅନନ୍ତ ପଟ୍ଟନାୟକଙ୍କ ନେତୃତ୍ୱରେ ମାନ୍ଦ୍ରାଜ ସମ୍ମିଳନୀକୁ ଓଡ଼ିଶାର ପ୍ରତିନିଧି ଦଳ ଗଲେ । ଏହି ମାନ୍ଦ୍ରାଜ ସମ୍ମିଳନୀରୁ ସେ କାଳର ବିଶିଷ୍ଟ ଛାତ୍ରନେତା ବିଶ୍ୱନାଥ ମୁଖାର୍ଜୀ, ବିଶ୍ୱନାଥ ଦୁବେ, ପ୍ରମୋଦ ସେନ ଆସି କଟକ ଟାଉନ ହଲରେ ସଭା କରି ଛାତ୍ରସଂଘ କିପରି ସାମ୍ରାଜ୍ୟବାଦ ବିରୋଧୀ ସ୍ୱାଧୀନତା ସଂଗ୍ରାମରେ ସମଗ୍ର ଛାତ୍ର ସମାଜକୁ ଏକତ୍ର କରିବ ତାହା ବ୍ୟାଖ୍ୟା କରିଥିଲେ । ପ୍ରସଙ୍ଗକ୍ରମେ କୁହାଯିବ ଯେ କେବଳ ବିଶ୍ୱନାଥ ମୁଖାର୍ଜୀ ଏଯାଏ କମ୍ୟୁନିଷ୍ଟ ପାର୍ଟିର ତୁଙ୍ଗନେତା ରହିଛନ୍ତି । ବିଶ୍ୱନାଥ ଦୁବେ ବଲ ସେଭିକ ପାର୍ଟି ଗଢ଼ିଥିଲେ । ପ୍ରମୋଦ ସେନ ପି.ଏସ.ପି.ରେ ରହିଲେ । ଛାତ୍ରସଂଘ କମ୍ୟୁନିଷ୍ଟମାନଙ୍କର ବୋଲି ବ୍ରିଟିଶ ସରକାରର ପ୍ରଚାରକୁ ରକ୍ଷଣଶୀଳ ଓ କମ୍ୟୁନିଷ୍ଟ ବିରୋଧୀ ରାଜନୈତିକ ଦଳର କେତେକ ଗ୍ରହଣ କରିନେଲେ ହେଁ ଏହା ସମସ୍ତ ସାମ୍ରାଜ୍ୟବାଦ ବିରୋଧୀ ପ୍ରଗତିଶୀଳ ଛାତ୍ରମାନଙ୍କର ମିଳିତ ମଞ୍ଚ ହେଲା ଏବଂ ଓଡ଼ିଶାରେ କେବଳ ନୁହଁ ସାରା ଭାରତରେ ସେ କାଳରେ ଛାତ୍ରସଂଘ ହିଁ କେବଳ କମ୍ୟୁନିଷ୍ଟ ପାର୍ଟିକୁ ନୁହେଁ, ସି.ଏସ୍.ପି.କୁ, କଂଗ୍ରେସକୁ ଓ ଅନ୍ୟ ବାମପନ୍ଥୀ ଗୋଷ୍ଠୀକୁ ଟାଣୁଆ ଟାଣୁଆ ନେତା ଯୋଗାଇଦେଲେ । ଭାରତ କଥା ଛାଡ଼ନ୍ତୁ ଓଡ଼ିଶାରେ ଛାତ୍ରସଂଘର ତୁଙ୍ଗନେତାମାନେ ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ତଥା କମ୍ୟୁନିଷ୍ଟପାର୍ଟି ବ୍ୟତିରେକ କଂଗ୍ରେସ ପି.ଏସ୍.ପି. ପ୍ରଭୃତିର ତୁଙ୍ଗନେତା ହୋଇଛନ୍ତି ।

ଗୁରୁ, ଗାର୍ଜନ, ଗଭର୍ଣ୍ଣମେଣ୍ଟ ବିରୁଦ୍ଧରେ ଛାତ୍ର ସଂଘର ସେ କାଳର ସ୍ଲୋଗାନକୁ ରକ୍ଷଣଶୀଳ ବୁଦ୍ଧିଜୀବୀ ଏବଂ କେତେକ କଂଗ୍ରେସ ନେତା ନାକ ଟେକୁଥିଲେ । ମାତ୍ର ଏ ସ୍ଲୋଗାନର ସେତେବେଳେ ରାଜନୈତିକ ତାତ୍ପର୍ଯ୍ୟ ଥିଲା । ବ୍ରିଟିଶ ଶିକ୍ଷା ପାଇ ପୁଅ ଖଣ୍ଡେ ଅଧେ ଚାକିରି ପାଇବ ଏହା ଗାର୍ଜନଙ୍କ ଇଚ୍ଛା । ସରକାର ବିରୋଧୀ ରାଜନୀତି କଲେ ଚାକିରି ମିଳିବ ନାହିଁ । ସେତେବେଳ ଖୁବ୍ ଅଳ୍ପ ଗରିବ ଛାତ୍ର ଉଚ୍ଚଶିକ୍ଷା ପାଇଁ ସମର୍ଥ ହେଉଥିଲେ । ବଡ଼ ହାକିମ ଓ ଓକିଲ ଡାକ୍ତରଙ୍କ ପୁଅମାନେ ରାଜନୀତି କଲେ ଭବିଷ୍ୟତ ନଷ୍ଟ ହେବ, କାରଣ ବ୍ରିଟିଶ ସରକାରର ଦମନ । ଶିକ୍ଷକ ଅଧ୍ୟାପକମାନେ ଅଧିକାଂଶ ଭୟରେ ସରକାରଙ୍କ ପକ୍ଷପାତୀ । ପିଲାଙ୍କୁ ବହିଷ୍କାର, ଜୋରିମାନା, ପ୍ରମୋଶନ, ବନ୍ଦ, ବେତ୍ରାଘାତ ଏମିତି ଦଣ୍ଡ । ତେଣୁ ଏସବୁ ବିରୁଦ୍ଧରେ ତଥା ଶିକ୍ଷାକୁ ଦେଶ ଉପଯୋଗୀ କରିବାକୁ ଏବଂ ଛାତ୍ର ସମାଜକୁ

ବ୍ରିଟିଶ ସରକାର ବିରୋଧୀ କରିବାକୁ ଛାତ୍ରସଂଘ ସେ କାଳରେ ଏକ ଚହଲ ପକାଇ ଦେଲା । ଛାତ୍ରସଂଘ ଆହ୍ୱାନ ମଧ ଦେଇଥିଲା ଯେ ଛାତ୍ର ସଂଘର ନେତାମାନେ ମେଧାମୀ ଛାତ୍ରହେବା, ଦେଶପ୍ରେମୀ ହେବା ଆବଶ୍ୟକ ।

୧୯୩୮ରେ ଛାତ୍ର ସଂଘ ନେତୃତ୍ୱରେ ଛାତ୍ରମାନେ ଏ ଦାବୀ ଘେନି ରେଭେନସା କଲେଜର ଐତିହାସିକ ଧର୍ମଘଟ ଏବଂ ମେଡ଼ିକାଲ ସ୍କୁଲ ଧର୍ମଘଟ ବେଳେ ଶହ ଶହ ଛାତ୍ରଙ୍କ ସତ୍ୟାଗ୍ରହ କରି ଗିରଫ, କେତେକଙ୍କ ସେ ବେଳର କଂଗ୍ରେସ ସରକାରର ଶିକ୍ଷା ଓ ଦଣ୍ଡ ନୀତି ବିରୁଦ୍ଧରେ ଆନ୍ଦୋଳନ । ଏହି ଧର୍ମଘଟ ଶତଶତ ଛାତ୍ରଙ୍କୁ ଛାତ୍ରସଂଘ ପ୍ରତି ଆକୃଷ୍ଟ କଲା । ହାଇସ୍କୁଲମାନଙ୍କରୁ ଛାତ୍ରସଂଘ ଶାଖା ଗଠନ ଲାଗି ଆମନ୍ତ୍ରଣ ଆସିଲା ।

ଏକଦା ସନ୍ତ୍ରାସବାଦୀ ପ୍ରତି ଆକୃଷ୍ଟ, ଜଣେ ଉଦୀୟମାନ ଯୁବକ ବିଜୟଚନ୍ଦ୍ର ଦାସ ବାଣପୁର ହାଇସ୍କୁଲର ଶିକ୍ଷକତା ଛାଡ଼ି ରେଭେନସାରେ ଆଇନ ଅଧ୍ୟୟନ କରିବାକୁ ଆସିଲେ । ଛାତ୍ରସଂଘର ସେ ଜଣେ ତୁଙ୍ଗନେତା ରୂପେ ଗଣ୍ୟ ହେଲେ ।

ବିଜୟ ଚନ୍ଦ୍ର ଦାସ, ସଚ୍ଚି ରାଉତରାୟ ପ୍ରମୁଖଙ୍କ ସାଙ୍ଗକୁ ଛାତ୍ର ସଂଘରେ ଏହି ସମୟରେ ଆଉ ଏକ ଗୋଷ୍ଠୀ ଯୋଗଦେଲେ । ଅଶୋକ ଦାସ, ଗଙ୍ଗାଧର ମହାପାତ୍ର, ବିବୁଧେନ୍ଦ୍ର ମିଶ୍ର, ମନମୋହନ ମିଶ୍ର, ସୁରଜମଲ ସାହା, ଉଦୟନାଥ ମିଶ୍ର ପ୍ରମୁଖ । ସେତେବେଳେ ରାଜ୍ୟ କଂଗ୍ରେସରେ ଦୁଇଟି ଗୋଷ୍ଠୀ । ଶାସନାରୂଢ଼ ମହତାବ, ବିଶ୍ୱନାଥ ଦାସ, କାନୁନଗୋ ଗୋଷ୍ଠୀଙ୍କ ବିରୁଦ୍ଧରେ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ଚିନ୍ତାମଣି ମିଶ୍ର, ଦିବାକର ପଟ୍ଟନାୟକଙ୍କ ଗୋଷ୍ଠୀ । ଛାତ୍ର ସଂଘକୁ ତାର ମୂଳଭୂମିକାରୁ ଓହରେଇ ଆସି ୧୯୩୫ର ଶାସନ ଖସଡ଼ା ଅନୁସାରେ ମନ୍ତ୍ରୀତ୍ୱ ନେଇଥିବା କେବଳ କଂଗ୍ରେସ ବିରୁଦ୍ଧରେ ଛାତ୍ରସଂଘକୁ ନିୟୋଗ କରିବାର ପ୍ରଚ୍ଛନ୍ନ ଉଦ୍ୟମ ହେଲା ଏବଂ ଅଶୋକ ଦାସଙ୍କ ନେତୃତ୍ୱରେ ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ଯଦିଚ ପ୍ରଗତିଶୀଳ ଛାତ୍ର ନେତୃତ୍ୱ ଅର୍ଥାତ୍ ବିଜୟ ଚନ୍ଦ୍ର ଦାସ, ପଶାଏତ, ଅନନ୍ତ, ନୀଳମଣି, ବୈଦ୍ୟନାଥ, ରବି ଘୋଷ, ମୋତିଲାଲ ତ୍ରିପାଠୀ, ଗିରିଜା ବହିଦାର ପ୍ରମୁଖ ସଂଖ୍ୟା ଗରିଷ୍ଠ ଥିଲେ ତଥାପି ସାମ୍ରାଜ୍ୟବାଦ ବିରୋଧୀ ମଞ୍ଚ ଛାତ୍ରସଂଘର ଐକ୍ୟ ରକ୍ଷା କରିବା ଲାଗି ଦ୍ୱିତୀୟ ଗୋଷ୍ଠୀର ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କୁ ସାଧାରଣ ସମ୍ପାଦକ କରାଯାଇ ସେତେବେଳେ ଐକ୍ୟ ରକ୍ଷା କରାଗଲା ।

ଛାତ୍ରସଂଘରେ ଯେଉଁମାନେ କମ୍ୟୁନିଷ୍ଟ ମନୋଭାବାପନ୍ନ ଥିଲେ ଓ ହେଲେ ସେତେବେଳେ ସେମାନେ ହିଁ ୧୯୩୬-୩୯ ମଧ୍ୟରେ ଚାଲିଥିବା ଗଡ଼ଜାତ ପ୍ରଜା ଆନ୍ଦୋଳନ, କୃଷକ ଆନ୍ଦୋଳନ ଓ ଯୁବ ଆନ୍ଦୋଳନକୁ ସାହାଯ୍ୟ ସମର୍ଥନ କରୁଥିଲେ । ଶିକ୍ଷା ସଂସ୍କାର କରିବା, ଏଡୁକେସନ କୋଡ଼ ବଦଳାଇବା, କଲେଜ ଗୁଡ଼ିକରେ ଛାତ୍ର ସଂସଦ ଗଠନ ଓ ଗଣତାନ୍ତ୍ରିକ ନିର୍ବାଚନ ଇତ୍ୟାଦି କାର୍ଯ୍ୟସୂଚୀ ଘେନି ଛାତ୍ରସଂଘ ସେ କାଳରେ ସ୍ୱାଧୀନତା ସଂଗ୍ରାମ ପ୍ରତି ଛାତ୍ରମାନଙ୍କ ମଧ୍ୟରେ ବ୍ୟାପକ ସମର୍ଥନ ଲାଭ କଲା ଓ ବହୁ ଛାତ୍ର ସଂଘ କର୍ମୀ ପରବର୍ତ୍ତୀ

କାଳରେ ଆନ୍ଦୋଳନମାନଙ୍କରେ ଯୋଗଦେଇ କାରାବରଣ କଲେ ଏବଂ ଛାତ୍ରସଂଘ ୟୁନିଅନଜ୍ୟାକ ପୋଡ଼ିବାଠାରୁ ଆରମ୍ଭ କରି ବିଭିନ୍ନ ସଂଗ୍ରାମରେ ଅବତୀର୍ଣ୍ଣ ହେଲା । ଓଡ଼ିଶା ଛାତ୍ରସଂଘର ପ୍ରଭାବ ଦେଶରେ ତଥା ବିଦେଶରେ ମଧ୍ୟ ଅନୁଭୂତ ହୋଇଥିଲା । ବିଶ୍ୱ ଛାତ୍ର ଆନ୍ଦୋଳନର ଜଣେ ବିଶିଷ୍ଟ ନେତା ଜେମସ କ୍ଲୁଗମାନ ଆସି କଟକରେ ଛାତ୍ର ସେଭାରେ ଉଦ୍‌ବୋଧନ ଦେଇଥିଲେ । ଶ୍ରୀମତୀ ସରୋଜନୀ ନାଇଡୁ, ହୁମାୟୁନ କବୀର, କବି ହରେନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟ ପ୍ରମୁଖ ଛାତ୍ରସଭା ଓ ସମ୍ମିଳନୀଗୁଡ଼ିକରେ ଉଦ୍‌ବୋଧନ ଦେଇଥିଲେ । ମେଡ଼ିକାଲ ଛାତ୍ର ଧର୍ମଘଟ ବେଳେ ଛାତ୍ରନେତା ବିଶ୍ୱନାଥ ମୁଖାର୍ଜୀ ମେଡ଼ିକାଲ ଛାତ୍ରାବାସରେ ରହି ଏବଂ ଛାତ୍ର ବନ୍ଦୀମାନଙ୍କ ଉଦ୍ଦେଶ୍ୟରେ ଜେଲ ସମ୍ମୁଖ ଏକ ବଡ଼କୋଠାରୁ ଜେଲ ଭିତରକୁ ଶୁଣିବା ଭଳି ଭାଷଣ ଦେଇ ଛାତ୍ରସଂଘକୁ ଐକ୍ୟବଦ୍ଧ କରି ରଖିବାକୁ ଉଦବୋଧନ ଦେଇଥିଲେ ।

**ଯୁବକମାନଙ୍କ ରାଜ୍ୟସ୍ତରୀୟ ସଂଗଠନ**

ଏହି ସମୟରେ ସହର ଓ ଗାଁ' ଗହଳର ଶିକ୍ଷିତ ଯୁବକ, ଚାଷୀ ଯୁବକମାନଙ୍କୁ ସଂଗଠିତ କରି ସ୍ୱାଧୀନତା ଆନ୍ଦୋଳନରେ ସେମାନଙ୍କୁ ଅଧିକ ସଂଖ୍ୟାରେ ସାମିଲି କରିବା ପାଇଁ ଉଦ୍ୟମ ହେଲା । କଟକରେ ୧୯୩୯ରେ ଏକ ଯୁବ ସମ୍ମିଳନୀ କରିବା ଲାଗି ରାମକୃଷ୍ଣ ପତି ଚେୟାରମେନ ଏବଂ ଏସ୍.ଏ. ହକ୍ ଏବଂ ଗୁରୁଚରଣ ପଟ୍ଟନାୟକ ଯୁଗ୍ମ ସମ୍ପାଦକ ଥାଇ ଏ ଅଭ୍ୟର୍ଥନା କମିଟି ଗଢ଼ାଗଲା । କଂଗ୍ରେସର ବହୁ ପ୍ରଗତିଶୀଳ ବ୍ୟକ୍ତି ମଧ୍ୟ ଏହାକୁ ସ୍ୱାଗତ କଲେ । ଯେହେତୁ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ପ୍ରମୁଖ ଏଥିରେ ସଂପୃକ୍ତ, ସେଥିଲାଗି କଂଗ୍ରେସ ଭିତରେ ଥିବା ଉପଗୋଷ୍ଠୀ ଏହାକୁ ଭାଙ୍ଗିବାକୁ ଭିତିରି ଉଦ୍ୟମ କଲେ । ଅଭ୍ୟର୍ଥନା ସମିତି ସୁଭାସଚନ୍ଦ୍ର ବୋଷଙ୍କୁ ସମ୍ମିଳନୀର ଉପସଭାପତି ହେବାକୁ ନିମନ୍ତ୍ରଣ କରିଥିଲା ଏବଂ ତାହାକୁ ଗ୍ରହଣ କରିଥିଲେ । ମାତ୍ର ଉପର କଂଗ୍ରେସର ଦ୍ୱନ୍ଦ୍ୱ ଏବଂ ନୀଳକଣ୍ଠ ଦାଶଙ୍କ ଗୋଷ୍ଠୀ ସହିତ ତାଙ୍କର ସମ୍ପର୍କ ହେତୁ ସେ ଆସିବାକୁ ମନା କରିଦେଲେ ଏବଂ ଛାତ୍ରମାନଙ୍କ ଭିତରେ ଥିବା ତାଙ୍କ ପୁଅ ଅଶୋକ ଦାଶଙ୍କ ଗୋଷ୍ଠୀକୁ ଧରି ଏକ ସାମନ୍ତରାଳ ଯୁବ ସମ୍ମିଳନୀ ଆହ୍ୱାନ କଲେ ଏବଂ ସୁଭାସଚନ୍ଦ୍ର ବୋଷ ତାହାର ସଭାପତିତ୍ୱ କଲେ । ଏହା ବସ୍ତୁତଃ ଏକ ଯୁବ ସମ୍ମିଳନୀ ନଥିଲା । ସୁଭାସ ବୋଷ ଓଡ଼ିଶାରେ ଜନ୍ମ, ଓଡ଼ିଶାରେ ମାଟ୍ରିକ ପଢ଼ିଛନ୍ତି, ଓଡ଼ିଆ ବଜାରର ବିଶିଷ୍ଟ ଆଇନଜୀବୀ ଜାନକୀ ବୋଷଙ୍କ ପୁଅ ରୂପେ ଏବଂ ବିଲାତରେ ପଢ଼ିଛନ୍ତି, କଂଗ୍ରେସର ତୁଙ୍ଗ ନେତା ହୋଇ ସଭାପତି ମଧ୍ୟ ହୋଇଛନ୍ତି, ଏହା ହିଁ କଟକ ସହରବାସୀଙ୍କୁ ଆକୃଷ୍ଟ କରିଥିଲା ଏବଂ ହାତୀରେ ଚଢ଼ି ପଟୁଆର ଦେଖିବାକୁ ଲୋକ ଗହଳି ହୋଇଥିଲା । ଉକ୍ତ ସମ୍ମିଳନୀରେ ଭାରତର ଯୁବ ସମସ୍ୟା ଉପରେ ଆଲୋଚନା ନହୋଇ କେବଳ କଂଗ୍ରେସର ନେତୃତ୍ୱ, ଗାନ୍ଧିଜୀ ଓ ଓଡ଼ିଶାର କଂଗ୍ରେସ ମନ୍ତ୍ରିମଣ୍ଡଳ ଉପରେ ସମାଲୋଚନା ହୋଇଥିଲା ।

ମାତ୍ର ପ୍ରକୃତ ଯୁବସଂଘ ସମ୍ମିଳନୀ, ଟାଉନହଲ ପଡ଼ିଆରେ ଶ୍ରୀ ଜୟପ୍ରକାଶ ନାରାୟଣଙ୍କ

ଅଧ୍ୟକ୍ଷତାରେ ଅନୁଷ୍ଠିତ ହେଲା । କଟକ, ପୁରୀ, ବାଲେଶ୍ୱର, ଢେଙ୍କାନାଳ ପ୍ରଭୃତିରୁ ସହସ୍ର ସହସ୍ର ଋଷୀ ଯୁବକ ଏଥିରେ ଯୋଗ ଦେଇଥିଲେ । ଋଷୀ ଯୁବକମାନେ ବହୁସଂଖ୍ୟାରେ ପଟୁଆର କରି ଆସିଥିଲେ । ସେ କାଳରେ କଟକକୁ ମଫସଲରୁ ସଙ୍ଗଠିତ ଋଷୀ ଯୁବକ ଆସି ସହରର ଶିକ୍ଷିତ ଯୁବକମାନଙ୍କ ସହିତ ଏକତ୍ର ସମାବେଶ କରାଇବାର ଗୌରବ ଅର୍ଜିତ ହେଲା । ପ୍ରାୟ ୫ ହଜାର ଯୁବକ ଏଥିରେ ଯୋଗ ଦେଇଥିଲେ । କଂଗ୍ରେସ ନେତା ଶ୍ରୀ ଲୋକନାଥ ମିଶ୍ର (ଯିଏ ପରେ ଉପବାଚସ୍ପତି ହୋଇଥିଲେ) ସଭାପତି ଓ ଗୁରୁଚରଣ ପଟ୍ଟନାୟକ ସମ୍ପାଦକ ଓ ରାମକୃଷ୍ଣ ପତି ପ୍ରମୁଖଙ୍କୁ ଘେନି ଏକ କମିଟି ସହି ସମ୍ମିଳନୀରେ ନିର୍ବାଚିତ ହୋଇଥିଲା ।

ଆଜିର ଯୁବସଂଘର ଲକ୍ଷ୍ୟ ଶାନ୍ତି, ପ୍ରଗତି, ସମାଜବାଦ । ସେତେବେଳେ ସ୍ୱାଧୀନତା, ପ୍ରଗତି ଓ ସମାଜବାଦର ଧ୍ୱନି ଦେଇ ଯୁବକମାନଙ୍କୁ ସାମ୍ରାଜ୍ୟବାଦ ବିରୋଧୀ କରିବାର ଉଦ୍ୟୋଗ ଏହି ନବୀନ କମ୍ୟୁନିଷ୍ଟ ଯୁବକମାନଙ୍କ ପକ୍ଷରୁ ହିଁ କରାଯାଇଥିଲା ।

**କୃଷକ ସଂଘ ଓ ଏକ ଉତ୍ତାଳ ଋଷୀ ଉଦ୍‌ବେଳନ**

କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଥିବା ନିରୁତା କମ୍ୟୁନିଷ୍ଟ ମତାବଲମ୍ବୀମାନେ ରାଜ୍ୟରେ କୃଷକ ସଂଘର ଗଠନ ପ୍ରକ୍ରିୟା ଆରମ୍ଭ କରିଥିଲେ କହିବା ଅତିରଞ୍ଜନ ହେବ । କଂଗ୍ରେସ ଆନ୍ଦୋଳନ ଭିତରେ ଯେଉଁମାନେ ବାମପନ୍ଥୀ, ସେମାନେ କୃଷକ ଆନ୍ଦୋଳନର ପ୍ରଥମ ସୂତ୍ରପାତ କରିଥିଲେ । ସେମାନଙ୍କ ମଧ୍ୟରୁ ଅନେକ କମ୍ୟୁନିଷ୍ଟ ହୋଇଗଲେ ଏବଂ ନିରୁତା କମ୍ୟୁନିଷ୍ଟ ମତାବଲମ୍ବୀ ଯୁବକମାନେ ମିଳିତ ହୋଇ ସେ କାଳରେ କୃଷକ ଆନ୍ଦୋଳନକୁ ଏକ ବିରାଟ ଜନ ଆନ୍ଦୋଳନରେ ପରିଣତ କଲେ । ତାହା କଂଗ୍ରେସର ଚିରାଚରିତ ଆନ୍ଦୋଳନଠାରୁ ସମ୍ପୂର୍ଣ୍ଣ ପୃଥକ । କୃଷକମାନେ ସ୍ୱାଧୀନତା ହାସଲ ସାଙ୍ଗକୁ କିପରି ଜମିଦାରୀ ମହାଜନୀ ଅତ୍ୟାଚାର ଯିବ, ଏପରି ଶ୍ରେଣୀଗତ ଦାବୀରେ ଉଦ୍‌ବୁଦ୍ଧ ହେଲେ । ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଗୌରାଙ୍ଗ ଚରଣ ଦାସ, ପ୍ରାଣକୃଷ୍ଣ ପଢ଼ିଆରୀ, ଫନୀପାଲ, ପ୍ରାଣନାଥ ପଟ୍ଟନାୟକ, ଗୋକୁଳମୋହନ ରାୟଚୂଡ଼ାମଣି, ଗତିକୃଷ୍ଣ ସ୍ୱାଇଁ, ଗୌରଚନ୍ଦ୍ର ଦାସ ପ୍ରମୁଖ ଆଦ୍ୟ କୃଷକ ଆନ୍ଦୋଳନ ଆରମ୍ଭ କରିଥିଲେ ।

କଟକରେ ଗୋବିନ୍ଦପୁର, ତିର୍ତ୍ତୋଲ, ଟାଙ୍ଗି, ସାଲେପୁର, ସୁକିନ୍ଦା, ଧର୍ମଶାଳା ପ୍ରଭୃତିରେ, ପୁରୀ ନିମାପଡ଼ା-ଗୋପ-କାକଟପୁର, ଖୋର୍ଦ୍ଧା ଅଞ୍ଚଳରେ କୃଷକ ଆନ୍ଦୋଳନ ତେଜିଉଠିଲା । ଗୌରାଙ୍ଗ ଚରଣ ଦାସଙ୍କ ଉଦ୍ୟମରେ ବାଗଲପୁରରେ, ତା'ପରେ ଅଣଖିଆରେ ଏବଂ ପ୍ରାଣନାଥ, ଗୋକୁଳ, ସାଧୁଚରଣ ମହାନ୍ତି ପ୍ରମୁଖଙ୍କ ଉଦ୍ୟମରେ ଖୋର୍ଦ୍ଧାରେ ବିଶାଳ ସମ୍ମିଳନୀମାନ ଅନୁଷ୍ଠିତ ହେଲା । ୧୯୩୮ ସେପ୍ଟେମ୍ବରରେ ଜେନାପୁରର ବିରାଟ ଚାଷୀ ଦିବସ ସମାବେଶ ପୂର୍ବରୁ ମଧୁପୁର, ପଛିକୋଟ ପ୍ରଭୃତି ଅଞ୍ଚଳରେ ଋଷୀ ସଭାମାନ ସେ କାଳରେ ଜମିଦାର ମହାଜନଙ୍କ ମଧ୍ୟରେ ଯେମିତି ଆତଙ୍କ ଖେଳେଇ ଦେଇଥିଲା ସେମିତି ସେମାନଙ୍କୁ ହିଂସ୍ର କରିଥିଲା ।

ବ୍ରିଟିଶ ସରକାର କେବଳ ସେମାନଙ୍କର ଆଶା ଭରସା ବୋଲି ଜମିଦାରମାନେ ଭାବୁଥିଲେ ।

କୃଷକ ଆନ୍ଦୋଳନ ପ୍ରଥମେ ପ୍ରଜାର ଡିହ ବାଡ଼ିରେ ଗଛ ମାଛର ଅଧିକାର, ଦାଖଲ ଖାରଜ ରୋଷମ ଛାଡ଼, ବେଠି ବେଗାରୀ ଆଉ ସୁନିଆ, ଦଶହରା ଭେଟି ଏପରି ଆଇନ ବାହାରେ ବେଆଇନ ଅତ୍ୟାଚାର ବିରୁଦ୍ଧରେ ଆରମ୍ଭ ହେଲା । ଚଷୀମାନେ ମଧ ବେଠି, ଭେଟି କେତେକ ଜାଗାରେ ବନ୍ଦ କଲେ । ଜମିଦାରଙ୍କ ପିଆଦା, ବରକନ୍ଦାଜ, ଗୁମାସ୍ତାଙ୍କୁ ବାଡ଼ିରୁ ପନିପରିବା, ପୋଖରୀରୁ ମାଛ ଦେବା ବନ୍ଦ କଲେ । ଅତି ସୀମିତ ହେଲେ ହେଁ ଗାଁ'କୁ ଗାଁ' ଏକଥା ବ୍ୟାପିଲା । ଚଷୀ ମନରେ ପ୍ରତ୍ୟୟ ହେଲା ।

ଏହା ପରେ ଯାଇଁ ସର୍ବରାକାର ବିରୋଧୀ ଟଙ୍କି ମାହାଲ ପ୍ରଜା ଆନ୍ଦୋଳନ, ଏଖାରଜାତ ମାହାଲ ପ୍ରଜା ଆନ୍ଦୋଳନ, ସାଙ୍ଗକୁ ଭାଗଚାଷ ଆନ୍ଦୋଳନ ଏବଂ ମହାଜନୀ ସୁଧହାର, ଚକ୍ରବୃଦ୍ଧି ବିରୁଦ୍ଧରେ ଆନ୍ଦୋଳନ ଏବଂ ତା'ପରେ ଜମିଦାରୀ ପ୍ରଥା ବିନା କ୍ଷତି ପୂରଣରେ ଉଚ୍ଛେଦ ଆନ୍ଦୋଳନ ଏବଂ ପରବର୍ତ୍ତୀ କାଳରେ ଏବଂ ବର୍ତ୍ତମାନ ମଧ ଭୂମିହୀନଙ୍କୁ ଅନାବାଦୀ, ଆବାଦଯୋଗ୍ୟ ପତିତ ଜମି, ଜମିଦାର ରଜାମାନଙ୍କ ଜମି ବଣ୍ଟନ ଆନ୍ଦୋଳନ ଗୋଟିଏ ପରେ ଗୋଟିଏ ପର୍ଯ୍ୟାୟରେ ଆରମ୍ଭ ହେଲା । ପରବର୍ତ୍ତୀକାଳରେ କମ୍ୟୁନିଷ୍ଟ ପାର୍ଟି ହିଁ ସାରା ରାଜ୍ୟରେ ଏସବୁ ଆନ୍ଦୋଳନର ଅଗ୍ରଭାଗରେ ରହିଲା । ରାମକୃଷ୍ଣ ପତିଙ୍କ 'ଜମିଦାରୀ ଉଚ୍ଛେଦରେ ଉତ୍କଳର ନୂଆ କଳେବର' ପୁସ୍ତକ ବୈପ୍ଳବିକ ଚଷୀ ଆନ୍ଦୋଳନର ହ୍ୟାଣ୍ଡବୁକ ହେଲା ।

କୃଷକ ସଂଘର ସଭ୍ୟ ସଂଗ୍ରହ ଅଭିଯାନ ଏବଂ ଜିଲ୍ଲା ଓ ଥାନା କୃଷକ ସଂଘ ଶାଖା ଗଠନ ଆରମ୍ଭ ହୋଇଗଲା । କୃଷକ ସଂଘକୁ ଏକ ଗଣସଙ୍ଗଠନ ଓ ସଂଗ୍ରାମୀ ସଙ୍ଗଠନ ରୂପେ ଗଢ଼ିବାକୁ କମ୍ୟୁନିଷ୍ଟ ଭାବାପନ୍ନ ଯୁବକ ଓ ସ୍ୱାଧୀନତା ସଂଗ୍ରାମୀମାନେ ବିଶେଷ ଅବଦାନ ଦେଲେ । କୃଷକ ସଂଘ ନେତ୍ରୀ ମାଳତୀ ଚୌଧୁରୀଙ୍କୁ ଏହି କାର୍ଯ୍ୟରେ ପ୍ରଥମେ ବୈଦ୍ୟନାଥ ରଥ ପରେ ଗୋବିନ୍ଦ ଚନ୍ଦ୍ର ମହାନ୍ତି ଅଫିସ ସମ୍ପାଦକ ରୂପେ ସହାୟତା କରୁଥିଲେ ।

୧୯୩୮ ଶେଷଭାଗରେ କୃଷକମାନଙ୍କ ଦାବୀ ଆଦାୟ କରିବା ଲାଗି କଂଗ୍ରେସ ମନ୍ତ୍ରିମଣ୍ଡଳକୁ ସ୍ମାରକ ଲିପି ଦେବାପାଇଁ କୃଷକ ସଂଘ ପକ୍ଷରୁ ଯେଉଁ ବ୍ୟବସ୍ଥା କରାଗଲା, ସେହି ବାର୍ତ୍ତାକୁ ପୁରୀର ଯେମିତି ବାଲିଅନ୍ତା, ବାଲିପାଟଣା, ନିମାପଡ଼ା କାକଟପୁର ଥାନାମାନଙ୍କରେ କମ୍ୟୁନିଷ୍ଟ ମନୋଭାବାପନ୍ନ ଯୁବକମାନେ ପହଞ୍ଚାଇ ଥିଲେ । କଟକରେ ଗୌରୀଶଙ୍କର ପାର୍କ ପୁରୁଣା ଅଦାଲତ (ଆଇ.ଜି.ସି.ଟି. ଡାକ୍ତରଖାନା)ରେ ମନ୍ତ୍ରୀମାନଙ୍କ ଦପ୍ତର ଓ ସେକ୍ରେଟେରିଏଟ୍ ଏବଂ ସେଥିପାଇଁ ପ୍ରାୟ ଚରି ହଜାର ଚଷୀ ଚାଲି ଚାଲି କଟକ, ପୁରୀର ଦୂରଦୂରାନ୍ତ ଗାଁ'ରୁ ଆସି ଦାବୀପତ୍ର ପେଶ୍ କରିଥିଲେ । ଏବେ ଏପରି ଦାବୀପତ୍ର ଓ କୃଷକ ସମାବେଶ ମାମୁଲି ଜଣା ପଡ଼ିପାରେ । ମାତ୍ର ସ୍ୱାଧୀନତା ପୂର୍ବରୁ ଏବଂ କଂଗ୍ରେସ ଭଳି ବିରାଟ ଅନୁଷ୍ଠାନର ଆନୁଷ୍ଠାନିକ ସହଯୋଗ ନଥାଇ କଂଗ୍ରେସ ସମାଜବାଦୀ ଦଳ ନେତୃତ୍ୱରେ କୃଷକ ସଂଘର ଏହି ବିକ୍ଷୋଭ

ଭବିଷ୍ୟତ୍ ଆନ୍ଦୋଳନ ଓ ସଂଗଠନର ମୂଳ ଭିତ୍ତି ପକାଇଥିଲା ଏବଂ ସ୍ୱାଧୀନତା ସଂଗ୍ରାମରେ ଋଷୀର ସମର୍ଥନ, ଅଂଶ ଗ୍ରହଣକୁ ଦୃଢ଼ତର କରିଥିଲା । ସେତେବେଳେ ଏବଂ ଆଜି ମଧ କଂଗ୍ରେସ ସଂଗଠନର ଦକ୍ଷିଣ ପନ୍ଥୀମାନେ ଏହାକୁ ସ୍ୱୀକାର କରୁ ନଥିଲେ କି ସ୍ୱୀକାର କରୁନାହାନ୍ତି । ପଛିକୋଟ ଜମିଦାରୀରେ ସାଥୀ ଫନୀପାଲଙ୍କ ନେତୃତ୍ୱରେ ରାଜା ଅତ୍ୟାଚାର ବିରୁଦ୍ଧରେ ହଜାର ହଜାର ଜଙ୍ଗଲ ଗଛ କଟା ଅଭିଯାନ ଓ କଂଗ୍ରେସ ମନ୍ତ୍ରିମଣ୍ଡଳ ପକ୍ଷରୁ ୧୪୪ ଜାରି ଓ ତାଙ୍କୁ ଗିରଫ ଓ ହାତକଡ଼ି ସେ ସମୟରେ କଂଗ୍ରେସ ସମାଜବାଦୀ ଦଳପକ୍ଷରୁ ଏକ ତୁମୂଳ ଝଡ଼ ସୃଷ୍ଟି କରାଯାଇଥିଲା । ପାର୍ଟିର ଏକାଂଶ ଫନୀପାଲଙ୍କୁ ପାର୍ଟିରୁ ବହିଷ୍କାର କରିବା ଦାବୀକୁ ଏହି କମ୍ୟୁନିଷ୍ଟମାନେ ପଣ୍ଡ କରିଥିଲେ ।

**ଐତିହାସିକ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଭୂମିକା**

ସର୍ବ ଭାରତୀୟ କ୍ଷେତ୍ରରେ ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା କନ୍‌ଫରେନ୍‌ସ । ଅଲ-ଇଣ୍ଡିଆ ଷ୍ଟେଟସ ପିପୁ୍ୟଲସ କନ୍‌ଫରେନ୍‌ସ ପଣ୍ଡିତ ଜବାହାରଲାଲ ନେହେରୁ ସଭାପତି ଓ ଶେଖ ଅବଦୁଲ୍ଲା ସାଧାରଣ ସମ୍ପାଦକ ଥାଇ ଗଢ଼ା ହେବା ପରେ ଜାମ୍ମୁ ଓ କାଶ୍ମୀରଠାରୁ ମଧ୍ୟପ୍ରଦେଶ, ପଞ୍ଜାବ, ରାଜସ୍ଥାନ ମାଲବାରର, ତ୍ରିବାଙ୍କୁଡ଼, କୋଚିନ, ଆନ୍ଧ୍ରର ହାଇଦ୍ରାବାଦ ପ୍ରଭୃତି ପ୍ରାୟ ୬୦୦ଟି ଛୋଟବଡ଼ ଗଡ଼ଜାତରେ ପ୍ରଜାମଣ୍ଡଳ ବା ପ୍ରଜା କଂଗ୍ରେସମାନ ଗଠିତ ହେଲା । ଓଡ଼ିଶାରେ ଏଥିପୂର୍ବରୁ କଟକରେ ଗଠିତ ଗଡ଼ଜାତ ପ୍ରଜା ସମ୍ମିଳନୀର କଳେବର ଓ ଲକ୍ଷ୍ୟ ଆଦର୍ଶ ବଦଳିଗଲା । ସାରଙ୍ଗଧର ଦାସ ସାଧାରଣ ସମ୍ପାଦକ ଥାଇ ବିଭିନ୍ନ ଗଡ଼ଜାତର ପ୍ରଜାମାନଙ୍କର ଆଗୁଆ କର୍ମୀ ଓ ନେତାଙ୍କୁ ଘେନି ଓଡ଼ିଶା ରାଜ୍ୟ ଗଡ଼ଜାତ ପ୍ରଜା ସମ୍ମିଳନୀ ଗଠିତ ହେଲା । ଓଡ଼ିଶାର ୨୧ଟି ଗଡ଼ଜାତରେ ଆନ୍ଦୋଳନର ସ୍ତର, ଚେତନା, ସଙ୍ଗଠନର ଶକ୍ତି ଓ ନେତୃତ୍ୱର, ଆଭିମୁଖ୍ୟ ସମାନ ନଥିଲା । ତାହାର ସ୍ୱତନ୍ତ୍ର ବିଋର ପ୍ରୟୋଜନ ।

୧୯୩୮-୩୯ ଏବଂ ପୁନଶ୍ଚ ୧୯୪୭-୪୮ର ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଆଦ୍ୟରେ ସି.ଏସ୍.ପି. ପରିସରଭୁକ୍ତ ହୋଇ ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ସିଧାସଳଖ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ମଞ୍ଚରୁ କମ୍ୟୁନିଷ୍ଟମାନେ ଯେଉଁ ସଂଗ୍ରାମ କରିଛନ୍ତି ଓ ଯେଉଁ ଅବଦାନ ଦେଇଛନ୍ତି, ତାହାର ଗୁରୁତ୍ୱକୁ ଇଚ୍ଛାକୃତ ଭାବରେ ସ୍ୱୀକାର କରାଯାଇନାହିଁ । ଗଡ଼ଜାତ ରାଜାଙ୍କ ଶାସନ ଯିବା ସଙ୍ଗେସଙ୍ଗେ ସାମନ୍ତବାଦର ମୂଳୋତ୍ପାଟନ ଅର୍ଥାତ୍ ରଜାଙ୍କ ସମସ୍ତ ଜମି, ରାଜପ୍ରାସାଦ, ଧନରତ୍ନ ବ୍ୟାଜ୍ୟାପ୍ତ ଓ ଭୂମିହୀନଙ୍କୁ ଜମି, ଜଙ୍ଗଲରେ, ଜଳରେ ଅଧିକାର ସାବ୍ୟସ୍ତ କରାଯିବ । ତାହାହିଁ ବ୍ରିଟିଶ ସାମ୍ରାଜ୍ୟବାଦକୁ ଦୋହଲେଇ ଦେବ । ପ୍ରଜାଏ ମେଳିବାନ୍ଧି ପାଲେସ ଓ ରଜାଙ୍କ ଜମି, ଖମାର ଅମାର ଦଖଲ କରିଯିବେ । ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଏହି ଲକ୍ଷ୍ୟକୁ କଂଗ୍ରେସ ସୋସଲିଷ୍ଟ ପାର୍ଟିର କମ୍ୟୁନିଷ୍ଟ ଅଂଶ ଦୃଢ଼ ଭାବରେ ଗ୍ରହଣ କରିଥିଲେ ।

ଓଡ଼ିଶାରେ ଗଡ଼ଜାତଗୁଡ଼ିକର ମିଶ୍ରଣ ଘଟିବ ଏ ସମ୍ପର୍କରେ କଂଗ୍ରେସ ସୋସଲିଷ୍ଟ

ପାର୍ଟିର ଏହି ମତ ସହିତ ଗଡ଼ଜାତ ଆନ୍ଦୋଳନର ନେତୃତ୍ୱ ଭିତରୁ ମୋଟାମୋଟି ନୀଳଗିରି, ଢେଙ୍କାନାଳ, ରଣପୁର ପ୍ରଭୃତି କେତୋଟି ରାଜ୍ୟର ନେତୃତ୍ୱର ଗରିଷ୍ଠ ଅଂଶ ଏକମତ ଥିଲେ । ମାତ୍ର ଏମାନଙ୍କ ଭିତରେ ଥିବା ଅନ୍ୟମାନେ ଏବଂ ଅନ୍ୟ ଗଡ଼ଜାତ ପ୍ରଜା ଆନ୍ଦୋଳନର ନେତାମାନେ ରଜା ଶାସନ ପରିବର୍ତ୍ତେ ଲୋକ ପ୍ରତିନିଧି, ଦାୟିତ୍ୱମୂଳକ ଶାସନ କଥା ଉଠାଇଲେ ବି ଅତି ସାମାନ୍ୟ କ୍ଷମତା ଲୋଭରେ ଓଡ଼ିଶା ସହିତ ମିଶ୍ରଣର ପକ୍ଷପାତୀ ନଥିଲେ ।

ଗଡ଼ଜାତ ଆନ୍ଦୋଳନ ଉପରେ ଶ୍ରୀ ହରେକୃଷ୍ଣ ମହାତାବଙ୍କର ମଧ୍ୟ ବେଶ ପ୍ରଭାବ ଥିଲା । ମହତାବ ଅବଶ୍ୟ ରାଜଶାସନର ଅବସାନ ଓ ଗଡ଼ଜାତଗୁଡ଼ିକର ଓଡ଼ିଶାରେ ମିଶ୍ରଣ ଚାହୁଁଥିଲେ । ମାତ୍ର ସି.ଏସ୍.ପି.ର ସାମନ୍ତବାଦ ଲୋପର ଆନ୍ଦୋଳନର ପକ୍ଷରେ ନ ଥିଲେ ବା ଖୋଲାଖୋଲି ତା'ର ବିରୋଧ କରୁ ନଥିଲେ । ରାଜାମାନଙ୍କୁ ଜମି, ଭତ୍ତା, ପାଲେସ, ଅନ୍ୟାନ୍ୟ ସମ୍ମାନ ଦେବା ପ୍ରଶ୍ନଗୁଡ଼ିକ ଉପରେ ସେ ନୀରବ ଥିଲେ ।

୧୯୩୮ ଜୁନ୍‌ରେ ପ୍ରଥମେ ନୀଳଗିରିର ଅଯୋଧ୍ୟାଠାରେ ପ୍ରଜାମେଳିରେ ସଭାପତି କୈଳାସ ମହାନ୍ତିଙ୍କ ସହିତ ଥିଲେ ବି କମ୍ୟୁନିଷ୍ଟ ଯୁବକ ବନମାଳୀ ଦାସଙ୍କ ନେତୃତ୍ୱ ଆଗାମୀ ଦିନରେ ନୀଳଗିରିର ଐତିହାସିକ ସଶସ୍ତ୍ର ସଂଗ୍ରାମର ପୂର୍ବ ସୂଚନା ଦେଇଥିଲା ।

ବସ୍ତୁତଃ ଢେଙ୍କାନାଳ ଅନ୍ଦୋଳନକୁ ବାହାରୁ ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ସାରଙ୍ଗଧର ଦାସ, ମାଳତୀ ଦେବୀ ଏବଂ ତରୁଣ କମ୍ୟୁନିଷ୍ଟମାନେ ବିଶେଷତଃ ଢେଙ୍କାନାଳ ଭିତରେ କମ୍ୟୁନିଷ୍ଟ ଭାବାପନ୍ନ ଯୁବକ ବୈଷ୍ଣବ ଚରଣ ପଟ୍ଟନାୟକଙ୍କ ସହଯୋଗରେ ପରିଚାଳନା କରୁଥିଲେ ଓ ନେତୃତ୍ୱ ଦେଉଥିଲେ । ୧୯୩୮-୩୯ର ଢେଙ୍କାନାଳ ଆନ୍ଦୋଳନରେ ଅତ୍ୟାଚାର, ୭ ବାର ଗୁଳି, ହାତୀମଡ଼ା, ଘରପୋଡ଼ି ଏବଂ ହଜାର ହଜାର ଲୋକ ଢେଙ୍କାନାଳ ଛାଡ଼ି ମୋଗଲବନ୍ଦୀ ଓଡ଼ିଶାରେ ମାସମାସ ଧରି ରହିବା ଏକ ଦୀର୍ଘ ଇତିହାସ ।

ଢେଙ୍କାନାଳ, ନୀଳଗିରି, ରଣପୁର ତଥା ଅନ୍ୟ ଗଡ଼ଜାତ ପ୍ରଜା ଆନ୍ଦୋଳନକୁ ସାଙ୍ଗଠନିକ ଓ ମୌଳିକ ନେତୃତ୍ୱ ଦେବାକୁ କଟକରୁ ପ୍ରକାଶ ପାଉଥିବା "ରଣଭେରୀ" ନାମକ ନିୟମିତ ବୁଲେଟିନ ଏବଂ କୃଷକରେ ଗଡ଼ଜାତ ଆନ୍ଦୋଳନର ବିବରଣୀ ଓ ଆନ୍ଦାଳନ ପ୍ରତି ଦିଗ ନିର୍ଦ୍ଦେଶ ଦେବାର କାମ ମୁଖ୍ୟତଃ ଗୁରୁଚରଣ ପଟ୍ଟନାୟକ, ଭଗବତୀଙ୍କ ଉପରେ ନିର୍ଭର କରିଥିଲା । ବାଜି, ଲକ୍ଷ୍ମଣ, ରଘୁ, ହୁରୁଷି, ଗୁରି ପ୍ରଭୃତି ଢେଙ୍କାନାଳର ୬ଟି ଶହୀଦଙ୍କୁ ସୁଦୂର ନୀଳକଣ୍ଠପୁର ପାର୍ଟିରୁ କେନାପୁର ଆଣି ରେଳ ଯୋଗେ ତିନି ଦିନ ପରେ କଟକରେ ପହଞ୍ଚାଇବା ଓ କଟକରେ ଐତିହାସିକ ଶବ ପଟୁଆର ବାହାର କରିବା ସେ ସମୟକୁ ବିଚାର କଲେ ଏକ ଅଦ୍ଭୁତ କର୍ମ ବୋଲି ବିଚାରିବାକୁ ପଡ଼େ । ବୈଷ୍ଣବ ପଟ୍ଟନାୟକ, ଫନୀପାଲ କୃଷକ କର୍ମୀ ବଳଦେବ ଲାଲା ପ୍ରଭୃତି କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନିର୍ଦ୍ଦେଶରେ ଶବ କଟକରେ ପହଞ୍ଚାଇ ଦେଲେ । ଛଅଟି ଶଗଡ଼ରେ ଛଅଟି ଶବ । ପଟୁଆର ସମୀପରେ ନବକୃଷ୍ଣ ଚୌଧୁରୀ, ମାଳତୀ

ଦେବୀ, ଭଗବତୀ ଚରଣ ପାଣିଗ୍ରାହୀ, ସୁରେନ୍ଦ୍ର ଦ୍ୱିବେଦୀ, ଗୁରୁଚରଣ ପଟ୍ଟନାୟକ, ପ୍ରମୁଖ– ଶବଗାଡ଼ି ବାହକ–ଅନନ୍ତ, ବୈଦ୍ୟନାଥ, ରବି ଘୋଷ, ବିଶ୍ୱନାଥ, ସଚ୍ଚି ରାଉତରା, ଗୋବିନ୍ଦ । ବିଶାଳ ପଟୁଆର । ଛଅଟି ଶବ ହୁ ହୁ ଜଳି ଉଠିଲା ସତୀ ଚଉରାରେ–ଏହି ଘଟଣା ନିଆଁ ଖେଳେଇ ଦେଲା ସମଗ୍ର ଗଡ଼ଜାତ ଓଡ଼ିଶାରେ ।

ଢେଙ୍କାନାଳର ବାଜି ରାଉତ ପ୍ରଭୃତି ଛଅ ଜଣ ସହିଦଙ୍କୁ କଟକ ଆଣିବା ଓ ବିରାଟ ପଟୁଆର କରେଇବାରେ ନେତୃତ୍ୱ ନେବାରେ କମ୍ୟୁନିଷ୍ଟ ଯୁବକମାନେ ଆଗରେ ଥିଲେ । ଢେଙ୍କାନାଳରୁ ପଳାଇ ବୁଢ଼ାପଙ୍କ, ଘୋଳପୁର, କଲାଣ୍ଡ ଶିବିରଗୁଡ଼ିକରେ ପ୍ରଜାମାନେ ଆଶ୍ରୟ ନେଇଥିଲେ । ମାଳତୀ ଦେବୀ ମୁଖ୍ୟତଃ ବୁଢ଼ାପଙ୍କ କ୍ୟାମ୍ପ୍ ଦାୟିତ୍ୱରେ ଥିଲେ । କଲାଣ୍ଡ କ୍ୟାମ୍ପ୍ ଦାୟିତ୍ୱରେ ଅନନ୍ତ ପଟ୍ଟନାୟକ, ରବି ଘୋଷ ଓ ବୈଦ୍ୟନାଥ ରଥ ଥିଲେ ଏବଂ ଅନନ୍ତ ଓ ରବି ଘୋଷଙ୍କୁ ମୋଗଲବନ୍ଦୀ ଭିତରେ ଢେଙ୍କାନାଳ ରାଜାର ଥିବା କବାଟବନ୍ଧ ବାଟେ ଆସୁ ଆସୁ ଧରିନେଇ ନାନା ଅତ୍ୟାଚାର କରି ଢେଙ୍କାନାଳରେ ଦଶ ମାସ କାଳ ବନ୍ଦୀ ରଖାଗଲା ।

ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ଗୌରାଙ୍ଗ ଚରଣ ଦାସ ମୋଗଲବନ୍ଦୀରୁ ଯାଇ ଢେଙ୍କାନାଳରେ ସତ୍ୟାଗ୍ରହ କରିଥିଲେ । ଢେଙ୍କାନାଳର ନିର୍ମ୍ମମ ଅତ୍ୟାଚାର ଓ ଓଡ଼ିଶାର ତରୁଣମାନଙ୍କ ନେତୃତ୍ୱ କଥା ଶୁଣି ବେଆଇନ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସମ୍ପାଦକ ଏବଂ ନାସନାଲ ଫଣ୍ଟ ସାପ୍ତାହିକର ସମ୍ପାଦକ ପି.ସି. ଯୋଷୀ ଚତୁରତାର ସହିତ ଢେଙ୍କାନାଳ ରଜାଙ୍କ ସହିତ ସାମ୍ବାଦିକରୂପେ ସାକ୍ଷାତ କରିଥିଲେ । ଢେଙ୍କାନାଳ ଆନ୍ଦୋଳନ ସମ୍ପର୍କରେ ଯୋଷୀ ନ୍ୟାସନାଲ୍ ଫ୍ରଣ୍ଟରେ ୨୭-୦୧-୩୯ ଏବଂ ୨୯-୧-୩୯ ରେ ଦୁଇଟି ପ୍ରବନ୍ଧ ଏବଂ କମ୍ରେଡ଼ ଭଗବତୀ ଚରଣ ପାଣିଗ୍ରହୀ ହିନ୍ଦୁସ୍ତାନ ଷ୍ଟାଣ୍ଡାର୍ଡ଼ ଦୈନିକରେ ୧୦ ମାର୍ଚ୍ଚ ୧୯୩୯ ଦୀର୍ଘ ପ୍ରବନ୍ଧ ପ୍ରକାଶ କରି ଢେଙ୍କାନାଳର ବୀରତ୍ୱପୂର୍ଣ୍ଣ ଆନ୍ଦୋଳନକୁ ସର୍ବଭାରତୀୟ ସ୍ତରକୁ ଘେନି ଯାଇଥିଲେ ।

ନୀଳଗିରି ୧୯୩୮ ଆନ୍ଦୋଳନରେ କମ୍ୟୁନିଷ୍ଟଙ୍କ ପ୍ରଭାବ ବେଶ୍ ବଢ଼ିଥିଲା । ପରେ କଂଗ୍ରେସ ଶାସନ ଓ ଓଡ଼ିଶାରେ ଥିବାବେଳେ ୧୯୪୬-୪୭ରେ ରଜାଙ୍କ ଘରୋଇ ସୈନ୍ୟବାହିନୀ ବିରୁଦ୍ଧରେ ବନମାଳୀ ଓ ତାଙ୍କ ଅନ୍ୟ ସାଥୀମାନଙ୍କ ସହଯୋଗରେ ବାହାରୁ ପ୍ରବୀଣ ନେତା ହରିହର ଦାସ, ନନ୍ଦକିଶୋର ପଟ୍ଟନାୟକ, ସୟଦ ଅବଦୁଲ କାଦର, ଗୋପୀନାଥ ବ୍ରହ୍ମଚାରୀ ପ୍ରମୁଖ ଅସ୍ତ୍ରଶସ୍ତ୍ର ଧରି ପ୍ରାଣମୂର୍ଚ୍ଛା ଲଢ଼ିବା ଇତିହାସର କଥା । ତା' ଫଳରେ ଓଡ଼ିଶା ସରକାରର ସଶସ୍ତ୍ର ପୁଲିସ ନୀଳଗିରିରେ ପ୍ରବେଶ କଲେ । ୧୯୪୭ରେ ଏହି କମ୍ୟୁନିଷ୍ଟମାନଙ୍କ ପ୍ରେରଣା ଥାଇ ଢେଙ୍କାନାଳ ଆନ୍ଦୋଳନ ଉଚ୍ଚ ପର୍ଯ୍ୟାୟକୁ ଉଠିଥିଲା ଏବଂ ସର୍ଦ୍ଦାର ପଟେଲ ଆସି ଢେଙ୍କାନାଳ ସମେତ ଓଡ଼ିଶାର ସବୁ ଗଡ଼ଜାତକୁ ଭାରତ ତଥା ଓଡ଼ିଶାରେ ମିଶ୍ରଣ କରାଇଲେ ଏବଂ ରାଜନ୍ୟବର୍ଗଙ୍କୁ ରାଜନୈତିକ କ୍ଷମତା ବିନା ସମସ୍ତ ସୁଯୋଗ ଖଞ୍ଜିଦେଲେ ।

ରଣପୁର ଆନ୍ଦୋଳନରେ ମଧ୍ୟ ସେତେବେଳେ କମ୍ୟୁନିଷ୍ଟମାନଙ୍କର ପ୍ରଭାବ ଥିଲା । ବେଜେଲଗେଟ ହତ୍ୟା ପରେ ଟାଙ୍ଗୀ ଏବଂ ବେଗୁନିଆ ବୋଲଗଡ଼କୁ ପଳାଇ ଆସିଥିବା ରଣପୁର ପ୍ରଜାଙ୍କ ଖାଦ୍ୟ, ଆଶ୍ରୟ ଲାଗି ପ୍ରାଣନାଥ ପଟ୍ଟନାୟକ, ଗୋକୁଳ ମୋହନ ରାୟ ଚୂଡ଼ାମଣି, ଲକ୍ଷ୍ମଣ ପଟ୍ଟନାୟକ, ଗଙ୍ଗାଧର ମିଶ୍ର, ଗଙ୍ଗାଧର ପାଇକରାୟ, ପର୍ଶୁରାମ ପଦାତିକ ରାୟ, ରଘୁନାଥ ପଟ୍ଟନାୟକ ପ୍ରମୁଖ ଲାଗିପଡ଼ିଥିଲେ । ନୟାଗଡ଼, ଦଶପଲ୍ଲା, ଖଣ୍ଡପଡ଼ା ପ୍ରଜା ଆନ୍ଦୋଳନବେଳେ ରଜା ଅତ୍ୟାଚରରୁ ରକ୍ଷା ପାଇବା ପାଇଁ ରାଜ୍ୟ ଛାଡ଼ି ଆସୁଥିବା ଲୋକଙ୍କୁ ଖୋର୍ଦ୍ଧାର ଏହି ତରୁଣମାନେ ସାହାଯ୍ୟ କରୁଥିଲେ । ମାଣିକଯୋଡ଼ା ପ୍ରଭୃତି ଅଞ୍ଚଳରେ ପ୍ରଜା ଆନ୍ଦୋଳନଗୁଡ଼ିକର ଗୁପ୍ତ ଶିବିରର ଏମାନେ ବ୍ୟବସ୍ଥା କରିଥିଲେ ।

ଢେଙ୍କାନାଳର ବୀରତ୍ୱପୂର୍ଣ୍ଣ ଆନ୍ଦୋଳନ ପଡ଼ୋଶୀ ତାଳଚେର ରାଜ୍ୟର ପ୍ରଜାମାନଙ୍କ ଉପରେ ବିଶେଷ ପ୍ରଭାବ ପକାଇଥିଲା ଏବଂ ୫୦ ହଜାର ତାଳଚେର ପ୍ରଜା ୯/୧୦ ମାସ କାଳ ଅନୁଗୋଳରେ ଆସି ରହିଥିଲେ । ଅବଶ୍ୟ କଂଗ୍ରେସ ଢାଞ୍ଚାରେ ପ୍ରତ୍ୟେକଟି ଗଡ଼ଜାତ ଆନ୍ଦୋଳନରେ ବିଭିନ୍ନ ଧରଣର ନେତା ଆବିର୍ଭୂତ ହୋଇଥିଲେ । ଯେମିତି ପବିତ୍ର ପ୍ରଧାନ, କୃତିବାସ ପ୍ରଧାନ, ମଦନ ପ୍ରଧାନ, (ତାଳଚେର) କପିଳ ପ୍ରସାଦ ନନ୍ଦ, ଯୁଧିଷ୍ଠିର ମିଶ୍ର, (ବଲାଙ୍ଗୀର) ଶରତ ଚନ୍ଦ୍ର ଦାଶ, ହରିଶଚନ୍ଦ୍ର ଦାଶ (ମୟୁରଭଞ୍ଜ) କୈଳାସ ଚନ୍ଦ୍ର ମହାନ୍ତି, ବନମାଳୀ ଦାସ, ଗୋକୁଳ ନାୟକ (ନୀଳଗିରି) ମହେଶ ଚନ୍ଦ୍ର ସୁବାହୁ ସିଂ, ବୈଷ୍ଣବ ପଟ୍ଟନାୟକ, ହରମୋହନ ପଟ୍ଟନାୟକ, ଲକ୍ଷ୍ମୀଧର ସାହୁ, ବ୍ରଜକିଶୋର ଧଳ (ଢେଙ୍କାନାଳ), ବନମାଳୀ ରାମ, ଗଙ୍ଗାଧର ମିଶ୍ର, ବାସୁଦେବ ଦୋରା (ନୟାଗଡ଼), ରଘୁନାଥ ସିଂ ସାମନ୍ତ (ଖଣ୍ଡପଡ଼ା), କୀର୍ତ୍ତନ ବିହାରୀ ପଟ୍ଟନାୟକ (କେଉଁଝର), ରାଧାନାଥ ରଥ, ବ୍ରଜ ପଟ୍ଟନାୟକ (ଆଠଗଡ଼), ମଧୁସୂଦନ ପଟ୍ଟନାୟକ, ବଂଶୀଧର ପଟ୍ଟନାୟକ (ତିଗିରିଆ), ଦୟାନନ୍ଦ ଶତପଥୀ, ଲକ୍ଷ୍ମଣ ପୂଝାରୀ (ବାମଡ଼ା), ଭଗବାନ ବେହେରା (ଆଠମଲ୍ଲିକ) ଏମିତି ଅନେକ ।

ସ୍ମରଣ ରଖିବାର କଥା ଯେ କମ୍ୟୁନିଷ୍ଟମାନଙ୍କର ଆନ୍ଦୋଳନ ବେଳେ ଯାହାକିଛି ପ୍ରଭାବ ନୀଳଗିରି, ଢେଙ୍କାନାଳ, ଆଠଗଡ଼, ରଣପୁର ସ୍ଥାନରେ ସୀମିତ ଥିଲେ ହେଁ ସାଧାରଣ ଭାବରେ ସେମାନଙ୍କ ପ୍ରଭାବ ସବୁ ଗଡ଼ଜାତରେ ପଡ଼ିଥିଲା । ଫଳରେ ପରବର୍ତ୍ତୀ କାଳରେ ଦୟାନନ୍ଦ ଶତପଥୀ, ଲକ୍ଷ୍ମଣ ପୂଝାରୀ, ବ୍ରଜକିଶୋର ପଟ୍ଟନାୟକ, ନନ୍ଦକିଶୋର ପଟ୍ଟନାୟକ, ବାସୁଦେବ ଦୋରା ଆଉ ଅନେକ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଲେ । ବଲାଙ୍ଗୀରର କୃଷକ ଦଳର ତୁଙ୍ଗନେତା ଯୁଧିଷ୍ଠିର ମିଶ୍ର, ସାଲେଭଟାର କୃଷ୍ଣପ୍ରସାଦ ମିଶ୍ର, ତାଳଚେରର ଶ୍ରୀନିବାସ ମିଶ୍ର, ଦିବାକର ମିଶ୍ର ପ୍ରମୁଖ ସୋନପୁରର ଭୀମସେନ ଭୋଇ ଏମିତି ଅନେକ ସିପିଆଇରେ ଯୋଗଦେଲେ । ଏମଏଲଏ ଥାଇ ଶ୍ରୀ ଗିରିଶ ଚନ୍ଦ୍ର ରାୟ ମୟୁରଭଞ୍ଜ ସିପିଆଇରେ ପରେ ଯୋଗଦେଲେ ।

କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ଥିଲେ ବି ଗଡ଼ଜାତ ଆନ୍ଦୋଳନର ଉପରେ କମ୍ୟୁନିଷ୍ଟମାନଙ୍କ ସେଦିନର ସାଧାରଣ ପ୍ରଭାବ ହେତୁ ୧୯୫୧ ବିଧାନସଭା ନିର୍ବାଚନରେ ଢେଙ୍କାନାଳରୁ ଯୁଗ୍ମ ନିର୍ବାଚନ ମଣ୍ଡଳୀରୁ କମ୍ୟୁନିଷ୍ଟ ପ୍ରାର୍ଥୀରୂପେ ବୈଷ୍ଣବ ପଟ୍ଟନାୟକ ଓ ମଦନ ଦେହୁରୀ ଜିତିଗଲେ । ପରେ ରଣପୁରରୁ ସିପିଆଇ ରାମଚନ୍ଦ୍ର ରାମ ଓ ସିପିଆଇ ଏମର ରମେଶ ଚନ୍ଦ୍ର ପଣ୍ଡା ତଥା ନୀଳଗିରିରୁ ବନମାଳୀ ଦାସ ବିଜୟ ଲାଭ କରିଥିଲେ ।

ଏହା ହିଁ ଅକାଟ୍ୟଭାବରେ ପ୍ରମାଣ କରେ ଯେ ୧୯୩୮-୩୯ ଏବଂ ପରବର୍ତ୍ତୀ କାଳ ୧୯୪୭-୪୮ ରେ ଓଡ଼ିଶା ଗଡ଼ଜାତ ପ୍ରଜାଙ୍କ ଆନ୍ଦୋଳନରେ କମ୍ୟୁନିଷ୍ଟମାନେ ଏକ ଉଲ୍ଲେଖନୀୟ ଭୂମିକା ନେଇଥିଲେ ।

ବାଜି ରାଉତର ଆତ୍ମ ବଳୀଦାନ, ଗଡ଼ଜାତ ପ୍ରଜାଙ୍କ ସେ କାଳର ଉଦ୍‌ବେଳନ ଓଡ଼ିଶାର ସାଂସ୍କୃତିକ ଜୀବନରେ ମଧ୍ୟ ଗଭୀର ରେଖାପାତ କରିଥିଲା । ଅନନ୍ତ ପଟ୍ଟନାୟକ, କାଳିନ୍ଦୀଚରଣ ପାଣିଗ୍ରହୀ, ବୈକୁଣ୍ଠ ପଟ୍ଟନାୟକ ଏବଂ ସଚ୍ଚି ରାଉତରାଙ୍କ ଲେଖନୀରୁ ଯେଉଁ କାବ୍ୟ କବିତା ଓ ବିପ୍ଳବୀ ଗାନର ସୃଷ୍ଟି ହୋଇଥିଲା ତାହାର ସାରସ୍ୱତ ବୈପ୍ଳବିକ ପ୍ରଭାବ ମଧ୍ୟ ପରବର୍ତ୍ତୀ ଯୁବକବିଙ୍କ ଉପରେ ପଡ଼ିଥିଲା । ସଚ୍ଚିରାଉତରାଙ୍କ ବାଜିରାଉତ କବିତାକୁ କମ୍ୟୁନିଷ୍ଟମାନଙ୍କ ସହଯୋଗୀ ଭାରତର ବିପ୍ଳବୀ ବରେଣ୍ୟ କବି ହରେନ୍ଦ୍ର ନାଥ ଚଟୋପାଧ୍ୟାୟ (ଶ୍ରୀମତୀ ସରୋଜିନୀ ନାଇଡୁଙ୍କ ଭାଇ) ଓଡ଼ିଶା ଆସି ତାହାର ଇଂରେଜୀ ଭାଷାନ୍ତର କରି ତାହାକୁ ଭାରତୀୟ ସାହିତ୍ୟ ଭଣ୍ଡାରର ଏକ ଅଂଶ କରିଦେଲେ ।

ଓଡ଼ିଶାରେ ଶିଳ୍ପ ସେ କାଳରେ କିଛି ନଥିଲା କି ଶ୍ରମିକମାନଙ୍କୁ ସିଏସପି ସଙ୍ଗଠିତ କରିବାର ପ୍ରଶ୍ନ ଉଠୁ ନଥିଲା । ଶିଳ୍ପ ବୋଇଲେ ବାଲେଶ୍ୱର କଟକ ପ୍ରଭୃତିରେ କେତୋଟି ଧାନକଳ ଆଉ ପ୍ରେସ କେତୋଟି । ତାଳଚେର କୋଇଲା ଖଣି ଗଡ଼ଜାତ ଭିତରେ, ଆଉ ଟାଟା ଲିଜ୍ ନେଇଥିବା ଗୋରୁମହିଷାଣୀ ଖଣି ମୟୁରଭଞ୍ଜ ଶାସକଙ୍କର ।

କଟକରେ ପ୍ରେସ ଶ୍ରମିକମାନଙ୍କର ସଙ୍ଗଠନ ହିଁ ଓଡ଼ିଶାରେ ପ୍ରଥମ ଶ୍ରମିକ ସଙ୍ଗଠନ । ୧୯୩୭-୩୮ ପ୍ରଥମେ ପ୍ୟାରୀଶଙ୍କର ରାୟ ଓ ଗୁରୁଚରଣ ପଟ୍ଟନାୟକ ସମ୍ପାଦକ ଥାଇ ପ୍ରେସ କର୍ମଚାରୀ ସଙ୍ଘର ଥାପନା ହୁଏ । ପରବର୍ତ୍ତୀ କାଳରେ ଏହି ପ୍ରେସ ଶ୍ରମିକ ସଙ୍ଘ ଓଡ଼ିଶାରେ ସଂଗ୍ରାମୀ ଶ୍ରମିକ ଆନ୍ଦୋଳନର ଦିଗନିର୍ଦ୍ଦେଶ କରେ । ରାମକୃଷ୍ଣ ପତି, ଦୁର୍ଗାଚରଣ ମହାନ୍ତି ଗିରିଧାରୀ ପଣ୍ଡା ପ୍ରମୁଖ ୧୯୪୪-୪୬ପରେ ଏହାକୁ ପୁନଃ ସଂଗଠିତ କରିବା ପରେ ଆଜିଯାଏ ଏହା ଓଡ଼ିଶାର ସଂଗଠିତ ଶ୍ରମିକ ଶ୍ରେଣୀ ଆନ୍ଦୋଳନର ଏକ ବଡ଼ ସ୍ତମ୍ଭ ହୋଇ ରହିଛି ।

୧୯୩୫ ଶାସନ ଖସଡ଼ା ଅନୁସାରେ ୧୯୩୭ରେ ଓଡ଼ିଶା ବିଧାନସଭାରେ ୬୦ଟି ଆସନ ଥିଲା । ୩୭ରେ କଂଗ୍ରେସର ବିଜୟ ହୋଇଥିଲା । ସେ କାଳରେ କଟକ ଜିଲ୍ଲାରେ ମାଳତୀଦେବୀ, ନବକୃଷ୍ଣ ଚୌଧୁରୀ, ଗୌରାଙ୍ଗଚନ୍ଦ୍ର ଦାସ ପଢ଼ିଆରୀଙ୍କ ନେତୃତ୍ୱରେ ପରିଚାଳିତ

ବିଶାଳ କୃଷକ ଆନ୍ଦୋଳନ ଏବଂ ପୁରୀରେ ମୋହନ ଦାସ, ପ୍ରାଣନାଥ, ଗୋକୁଳ, ଗତିକୃଷ୍ଣ, ପୂର୍ଣ୍ଣାନନ୍ଦ ପ୍ରମୁଖଙ୍କ ନେତୃତ୍ୱରେ କୃଷକ ଆନ୍ଦୋଳନ କଂଗ୍ରେସ ପ୍ରାର୍ଥୀଙ୍କୁ ଜିତାଇବାରେ ଏବଂ ପ୍ରବଳ ପରାକ୍ରମୀ ଅତ୍ୟାଚାରୀ ଜମିଦାର ଓ ଏମାର ମଠ ମହନ୍ତଙ୍କ ଭଳି ବ୍ୟକ୍ତିଙ୍କୁ ପରାସ୍ତ କରିବାରେ ପ୍ରଭୂତ ସାହାଯ୍ୟ ଦେଇଥିଲା ।

ଏହାରି ପ୍ରଭାବରେ ସେତେବେଳେ ବିଧାନସଭାର ମାତ୍ର ୩୭ଜଣ କଂଗ୍ରେସ ଏମ୍.ଏଲ୍.ଏ. ଙ୍କ ମଧ୍ୟରେ ନବକୃଷ୍ଣ ଚୌଧୁରୀଙ୍କ ସମେତ ୫ଜଣ ବାମପନ୍ଥୀ ଏମ୍.ଏଲ୍.ଏ. ବିଧାନସଭାରେ ଜମିଦାର, ମହାଜନ, ପୁଲିସ ଜୁଲୁମ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ, ଗଞ୍ଜାମର ଗୋବିନ୍ଦ ପ୍ରଧାନ ଓ ସମ୍ବଲପୁର ବରଗଡ଼ର ଫକୀର ବେହେରା ବସ୍ତୁତଃ କମ୍ୟୁନିଷ୍ଟମାନଙ୍କ ଆସ୍ଥାନ ଗ୍ରହଣ କରୁଥିଲେ । ପରବର୍ତ୍ତୀ କାଳରେ ଗଞ୍ଜାମରେ ଗୋବିନ୍ଦ ପ୍ରଧାନଙ୍କୁ ଧରି ବିଶ୍ୱନାଥ ଦାସଙ୍କ ନେତୃତ୍ୱାଧୀନ ବଡ଼ ଜମିମାଲିକଙ୍କ ଜମିଦାରୀ ରଇତ ସଭା ବଦଳରେ କୃଷକ ସଭାର ଲଢୁଆ ଶାଖାରୂପେ ଗଞ୍ଜାମ ରୟତସଭା ପୁନର୍ଗଠିତ ହେଲା ଏବଂ କମ୍ୟୁନିଷ୍ଟ ପାର୍ଟି ଗଞ୍ଜାମରେ ଏକ ଶକ୍ତିଶାଳୀ ସଙ୍ଗଠନ ରୂପେ ଗଢ଼ିଉଠି ରୟତସଭା ନେତୃତ୍ୱରେ ଐତିହାସିକ ମୁସ୍ତାଦାରୀ, ଇନାମଦାରୀ ପ୍ରଥାର ସଫଳ ଉଚ୍ଛେଦ ଆନ୍ଦୋଳନ, ତେଭାଗା ଓ ଜମିଦଖଲ ଆନ୍ଦୋଳନମାନ ଚଳାଇଲା । ସମ୍ବଲପୁରରେ ଫକୀର ବେହେରା ଓ ତାଙ୍କ ସାଥୀ ମଙ୍ଗଲୁ ପ୍ରଧାନଙ୍କ ସହଯୋଗରେ କୃଷକ ଆନ୍ଦୋଳନର ମୂଳଦୁଆ ପଡ଼ିଲା ଓ ପରେ କମ୍ୟୁନିଷ୍ଟ ପାର୍ଟି ସଙ୍ଗଠିତ ହେଲା ।

୧୯୩୭-୩୯ ମଧ୍ୟରେ ଓଡ଼ିଶାରେ କଂଗ୍ରେସ ଭିତରେ ଗୋଷ୍ଠୀ ବିବାଦରେ ନୀଳକଣ୍ଠ, ଗୋଦାବରୀଶ ଗୋଷ୍ଠୀ ମହତାବ ଓ ମନ୍ତ୍ରିମଣ୍ଡଳ ଗୋଷ୍ଠୀ ପାଖରେ ପରାଭୂତ ହେବା ପରେ ଉକ୍ତ ଗୋଷ୍ଠୀ କାର୍ଯ୍ୟତଃ ସ୍ୱାଧୀନତା ସଂଗ୍ରାମରେ ଯେତିକି ଐକ୍ୟ ଦରକାର ତାକୁ ଏଡ଼ି ଦେଇ କଂଗ୍ରେସ ଓ ତା'ର ମନ୍ତ୍ରିମଣ୍ଡଳ ଉପରେ ପ୍ରତିକ୍ରିୟାଶୀଳ ଆସ୍ଥାନରୁ ଆକ୍ରମଣ କଲେ । କଂଗ୍ରେସର ନେତୃତ୍ୱ ଓ ସେତେବେଳର ମନ୍ତ୍ରିମଣ୍ଡଳର ସ୍ଥାଣୁ ଆଭିମୁଖ୍ୟ ବିରୁଦ୍ଧରେ ପ୍ରଗତିଶୀଳ ଆକ୍ରମଣ କରିଥିଲେ ଉକ୍ତ ଗୋଷ୍ଠୀଙ୍କୁ ସି.ଏସ୍.ପି. ଓ କୃଷକ ଆନ୍ଦୋଳନ ସହିତ ସହଯୋଗ କରିବାକୁ ପଡ଼ିଥାନ୍ତା । ମାତ୍ର ଛାତ୍ରସଂଘ, ଯୁବ ସଂଘରେ ଏହି ଗୋଷ୍ଠୀ ପ୍ରଗତି ବିରୋଧୀ ଆସ୍ଥାନ ନେବା କଥା ଆଗରୁ କୁହାଯାଇଛି । ଫଳରେ ବିଶେଷତଃ ପୁରୀ ଜିଲ୍ଲାରେ କଂଗ୍ରେସର ଅନ୍ୟ ଗୋଷ୍ଠୀଙ୍କ ବିରୁଦ୍ଧରେ ଯାଇ ଉକ୍ତ ଗୋଷ୍ଠୀର ସାଙ୍ଗଠନିକ କର୍ତ୍ତୃତ୍ୱ କମିଗଲା । ପୁରୀ ଜିଲ୍ଲାରେ ସେତେବେଳେ ସି.ଏସ୍.ପି. ର ଏହି କମ୍ୟୁନିଷ୍ଟମାନେ ହିଁ କଂଗ୍ରେସ ସଂଗଠନର ସ୍ତମ୍ଭ ହୋଇଗଲେ ।

୧୯୩୯ରେ ଗାନ୍ଧିଜୀଙ୍କ ଦ୍ୱାରା ମନୋନୀତ କଂଗ୍ରେସ ସଭାପତି ପଦ ପାଇଁ ପ୍ରାର୍ଥୀ ପଟ୍ଟାଭି ସୀତାରାମାୟାଙ୍କ ପରିବର୍ତ୍ତେ ସୁଭାଷ ଚନ୍ଦ୍ର ବୋଷଙ୍କୁ ରାଜ୍ୟ କଂଗ୍ରେସର ଆନୁଷ୍ଠାନିକ ମହତାବଙ୍କ ନେତୃତ୍ୱ ବିରୁଦ୍ଧରେ ସି.ଏସ୍.ପି. ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ସୁରେନ୍ଦ୍ର

ଦ୍ୱିବେଦୀ, ପ୍ରାଣନାଥ ପଟ୍ଟନାୟକ, ଗୌରାଙ୍ଗ ଦାସ, ମୋହନ ଦାସ, ଗଙ୍ଗାଧର ପାଇକରାୟ, ଗଙ୍ଗାଧର ମିଶ୍ର, ଗୋକୁଳ ମୋହନ ରାୟଚୂଡ଼ାମଣି, ଗତିକୃଷ୍ଣ ସ୍ୱାଇଁ ପ୍ରମୁଖ ପିସିସି ସଦସ୍ୟ ସମର୍ଥନ ଦେଇଥିଲେ । ଅବଶ୍ୟ ଗୋଷ୍ଠୀଗତ କାରଣରୁ ନୀଳକଣ୍ଠ ଦାଶଙ୍କ ଗୋଷ୍ଠୀ ସୁଭାଷ ଚନ୍ଦ୍ରବୋଷଙ୍କୁ ସମର୍ଥନ କରିବା ଫଳରେ ଦୁଇ ବିପରୀତ ରାଜନୈତିକ ଆସ୍ଥାନରୁ ଭୋଟ ପାଇ ଓଡ଼ିଶାରେ ସୁଭାଷ ବୋଷ ସଂଖ୍ୟାଗରିଷ୍ଠ ଭୋଟ ପାଇଥିଲେ । ପୁରୀରେ ଏପରି ବିଶେଷ ପରିସ୍ଥିତି ହେତୁ ସାଙ୍ଗଠନିକ ଭାବରେ ଗୋକୁଳ ମୋହନ ରାୟଚୂଡ଼ାମଣି ସଂପାଦକ ଥାଇ ଜିଲ୍ଲା କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠିତ ହେଲା ଏବଂ ପରେ ପୁରୀ ଜିଲ୍ଲାରେ ହିଁ ପ୍ରଥମେ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟି ଗଠିତ ହୋଇଥିଲା ।

ଏସବୁ ଉଲ୍ଲେଖ କରିବାର କାରଣ ଯେ ସେତେବେଳେ କଂଗ୍ରେସ ସମାଜବାଦୀ ଦଳ ଓ ସେଥିରେ ପ୍ରମୁଖ ଭୂମିକା ନେଇଥିବା ଯୁବ ଦେଶପ୍ରେମୀ କମ୍ୟୁନିଷ୍ଟମାନେ ନିଜ ମାର୍କସବାଦୀ-ଲେନିନବାଦୀ ଆଦର୍ଶ ପ୍ରତି ଅନୁରକ୍ତ ରହି ସ୍ୱାଧୀନତା ସଂଗ୍ରାମର ମିଳିତ ମଞ୍ଚ ସେକାଳର କଂଗ୍ରେସ ଅନୁଷ୍ଠାନରେ ମଧ୍ୟ ଉଲ୍ଲେଖନୀୟ ସ୍ଥାନାଭିଷିକ୍ତ ଥିଲେ ଓ ଭୂମିକା ନେଇଥିଲେ ।

**ସି.ଏସ୍.ପି.ରେ ମତଭେଦ ଓ ପାର୍ଟିର ବିଲୟ**

କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠନ ପ୍ରକ୍ରିୟାରେ ବିଭିନ୍ନ ସମସ୍ୟା, ସେ ସଂକ୍ରାନ୍ତ ଆନ୍ଦୋଳନ ଏବଂ ଆଭିମୁଖ୍ୟ ଘେନି ପ୍ରଥମେ ପ୍ରଥମେ ମତର ସଂଘାତ ସେତେ ତୀବ୍ରତର ନଥିଲା । ମାତ୍ର କାଳକ୍ରମେ ମତ ପାର୍ଥକ୍ୟମାନ ମନାନ୍ତର ଅବସ୍ଥାକୁ ଚାଲିଗଲା । ଶ୍ରୀ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ଗୌରାଙ୍ଗ ଦାସ ମୁଖ୍ୟତଃ କଂଗ୍ରେସର ତୁଙ୍ଗ ନେତା ନେତ୍ରୀ । ସେମାନଙ୍କୁ ଉକ୍ତ ସଂଗଠନର ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ତୁଲାଇବାକୁ ପଡୁଥିଲା । ଏଣେ ସେମାନେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ମଧ୍ୟ ନେତା । ସେମାନଙ୍କ ବଳିଷ୍ଠ ସହକର୍ମୀଙ୍କ ମଧ୍ୟରେ ସୁରେନ୍ଦ୍ରନାଥ ଦ୍ୱିବେଦୀ । ସେ ୟୂ.ପି.ଆଇ. ସମ୍ବାଦ ପ୍ରତିଷ୍ଠାନର ସଦାବେଳିଆ ସବେତନ ସମ୍ପାଦକ । ଯେଉଁ ଆସନରେ ସେ ମଝିରେ ବର୍ଷଟିଏ ବାଦ ୧୯୪୨ ଅଗଷ୍ଟ ପ୍ରଥମ ସପ୍ତାହ ଯାଏ ନିୟୋଜିତ । ସବୁ ସମୟରେ ସେ ସି.ଏସ୍.ପି.ର କ୍ଷେତ୍ର କାମରେ ବା ସାଙ୍ଗଠନିକ କାମରେ ସମୟ ଦେବା ଅସମ୍ଭବ ଥିଲା । ମନମୋହନ ଚୌଧୁରୀ ଯିଏକି ଜଣେ ସି.ଏସ୍.ପି.ର ପ୍ରଥମ ଧାଡ଼ିର ନେତା । ତାଙ୍କର ଝୁଙ୍କି ତାଙ୍କ ପିତା ଗୋପବନ୍ଧୁ ଚୌଧୁରୀଙ୍କ ରଚନାତ୍ମକ କାମରେ । ସେଥିରେ ସେ ଲିପ୍ତ ଥାଇ କୃଷକ ଆନ୍ଦୋଳନରେ ମଧ୍ୟ ସକ୍ରିୟ ଅଂଶ ନେଇପାରୁ ନଥିଲେ । ଗୌରଚନ୍ଦ୍ର ଦାସ ବାଲେଶ୍ୱରରେ କୃଷକ ସଭା କାମ ଓ କଂଗ୍ରେସ କାମରେ ଲିପ୍ତ ଥିଲେ । ରବି ଘୋଷ ମେଡ଼ିକାଲ ଛାତ୍ର, ଖୁବ୍ ଗତିଶୀଳ ଓ ଏକନିଷ୍ଠ ଝୁଙ୍କିଥିଲା ସନ୍ତ୍ରାସବାଦ ଆଡ଼େ । ମୋଟାମୋଟି ଏମାନେ ସମସ୍ତେ ସୋଭିଏତ୍ ବିପ୍ଳବକୁ ସ୍ୱାଗତ କରୁଥିଲେ ହେଁ ସମସ୍ତେ ସମଭାବାପନ୍ନ ନଥିଲେ ।

୧୯୩୫ରୁ ୧୯୪୦ ଆରମ୍ଭ । ଏହି କୋଡ଼ୋଟି ବର୍ଷରେ କଂଗ୍ରେସ-ସୋସଲିଷ୍ଟ

ପାର୍ଟି ଥିଲା ମାର୍କସବାଦ ପ୍ରତି, ସମାଜବାଦ ପ୍ରତି, ଝୁଙ୍କିଥିବା ବାମପନ୍ଥୀ ଯୁବକ, ଛାତ୍ର ସ୍ୱାଧୀନତା ସଂଗ୍ରାମର ସୈନିକମାନଙ୍କ ଏକ ବାମପନ୍ଥୀ ସଂଗଠନ । ସେଇଥିରେ କମ୍ୟୁନିଷ୍ଟ ମନୋଭାବାପନ୍ନ, ପ୍ରତିଭାବାନ, କର୍ମଠ ଯୁବକମାନେ ହିଁ ବାହାରକୁ ମୁଖ୍ୟତଃ ନ ଦିଶୁଥିଲେ ହେଁ କାର୍ଯ୍ୟତଃ ନେତୃତ୍ୱରେ ଥିଲେ ।

ତାହାର କାରଣ ସି.ଏସ୍.ପି.ର ରାଜନୈତିକ, ଆଦର୍ଶଗତ ଓ ସାଙ୍ଗଠନିକ କାମଦାମର ଦାୟିତ୍ୱ ଏହି କମ୍ୟୁନିଷ୍ଟ ଯୁବକମାନଙ୍କ ଉପରେ ହିଁ ପଡ଼ିଥିଲା । ଆଗରୁ କୁହାଯାଇଛି ସି.ଏସ୍.ପି.ରେ ବାମପନ୍ଥୀ ରାଜନୀତି ଦୁଇଟି ଆଦର୍ଶର ବ୍ୟକ୍ତି ଥିଲେ । ସୋସାଲ ଡିମୋକ୍ରାସି ଆଉ ମାର୍କସବାଦୀ-ଲେନିନବାଦୀ ଆଦର୍ଶ ପ୍ରତି ଅନୁରକ୍ତି ଥିବା ଦୁଇଟି ମତବାଦୀ ବ୍ୟକ୍ତିଙ୍କର ଐକ୍ୟ ଓଡ଼ିଶାରେ ସେତେବେଳେ କୃଷକ, ଯୁବକ, ଛାତ୍ର, ବୁଦ୍ଧିଜୀବୀ, ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଚମକ ସୃଷ୍ଟି କରିଥିଲା; କିନ୍ତୁ ଉକ୍ତ ଐକ୍ୟ ଅଧିକକାଳ ରହିପାରିଲା ନାହିଁ ।

ଏହାର କାରଣ ଆଦର୍ଶଗତ ଓ କିଛିଟା ବ୍ୟକ୍ତିଗତ ମଧ୍ୟ । ସେତେବେଳେ ଅର୍ଥାତ ୧୯୩୫ ରୁ ୧୯୩୯ ଶେଷ ଯାଏ କଂଗ୍ରେସ ସୋସଲିଷ୍ଟ ପାର୍ଟିର ସଭ୍ୟ ଓ ଟାଣୁଆ ସମର୍ଥକଙ୍କ ସଂଖ୍ୟା ଶହେରୁ କିଛି ଉର୍ଦ୍ଧ୍ୱ ହେବ । କିନ୍ତୁ ୧୯୩୫-୩୬ରୁ ୩୮-୩୯ ଯାଏ ଏହାର ପ୍ରକୃତ ସଭ୍ୟ ସଂଖ୍ୟ ୪୦ ଜଣ ଯାଏ । ଅଥଚ ଏପରି ଏକ ପାର୍ଟି ସେତେବେଳେ ଉପର ବର୍ଣ୍ଣିତ ନୂତନ ଶ୍ରେଣୀ ସଂଗଠନ, ସାଂସ୍କୃତିକ ସଂଗଠନ, ଗଣ ସଂଗଠନ ଗଢ଼ି ପାରିଥିଲା ଏବଂ ଛାତ୍ର, ଚାଷୀ, ଗଡ଼ଜାତ ପ୍ରଜା ଆନ୍ଦୋଳନକୁ, ଅସାଂସ୍କୃତିକ ଆନ୍ଦୋଳନକୁ ଅମୂଲ୍ୟ ଅବଦାନ ଦେଇପାରିଥିଲା । ଏହି ସମୟ ଭିତରେ ଏହି ଦଳର ନେତୃତ୍ୱରେ ଯେଉଁମାନେ ଥିଲେ ସେମାନେ ପାର୍ଟିର କାମଦାମ ଓ ଆଦର୍ଶ ଦିଗରୁ ଦ୍ୱିଭାଗ ହୋଇଥିଲେ । ଜାଣିଶୁଣି ନୁହଁ, ଅବସ୍ଥାଚକ୍ରରେ । ନବକୃଷ୍ଣ ଚୌଧୁରୀଙ୍କୁ ବିଶେଷତଃ କଂଗ୍ରେସ ସଂଗଠନ କାମରେ ଓ ତାହାର ରାଜନୀତିରେ ଅଧିକ ସମୟ ଦେବାକୁ ପଡୁଥିଲା । ମାଳତୀ ଦେବୀ ମୁଖ୍ୟତଃ କୃଷକ ଆନ୍ଦୋଳନ, ସଭା ସମିତିରେ ଭାଷଣ ଓ ସଂଗଠନରେ ଲାଗିଥିଲେ । ସୁରେନ୍ଦ୍ରନାଥ ଦ୍ୱିବେଦୀ ଉକ୍ତ ଦଳର ଜଣେ ବିଶିଷ୍ଟ ସଭ୍ୟ ହେଲେ ହେଁ, ତାଙ୍କର ଦୈନନ୍ଦିନ ଅଧିକାଂଶ ସମୟ ୧୯୩୫ଠାରୁ ୧୯୪୧ ପୁଣି, ୧୯୪୧ଠାରୁ ୧୯୪୨ ମଧ୍ୟଭାଗ ଯାଏ ତାଙ୍କ ସଦାଦିନିଆ ଧନ୍ଦା, ୟୁନାଇଟେଡ଼ ପ୍ରେସ ସମ୍ବାଦ ପ୍ରତିଷ୍ଠାନରେ ଯାଉଥିଲା । ଗୌରଚନ୍ଦ୍ର ଦାସ ବାଲେଶ୍ୱରରେ ତାଙ୍କ ବ୍ୟବସାୟ ସାଙ୍ଗକୁ ପାର୍ଟି କାମ କରୁଥିଲେ । ମନମୋହନ ଚୌଧୁରୀ ମୁଖ୍ୟତଃ ଖଦୀ, ଗ୍ରାମୋଦ୍ୟୋଗ, ରଚନାତ୍ମକ କାର୍ଯ୍ୟରେ ମଜ୍ଜିଗଲେ । ଗୌରାଙ୍ଗ ଦାସ ଜିଲ୍ଲା କଂଗ୍ରେସ ସଙ୍ଗଠନ ଓ ଚାଷୀ ଆନ୍ଦୋଳନରେ ଲିପ୍ତ ରହୁଥିଲେ ।

ଏମାନଙ୍କୁ ସୋସାଲ ଡିମୋକ୍ରାସିର ଆଦର୍ଶ, ଫେବିୟାନ ସୋସଲିଜିମର ଆଦର୍ଶ ପ୍ରଭାବିତ କରୁଥିଲା । ଗାନ୍ଧୀବାଦ ବା ଗାନ୍ଧିଜୀଙ୍କ ପ୍ରଦର୍ଶିତ ଅର୍ଥନୈତିକ ବ୍ୟବସ୍ଥା, ସାମାଜିକ ସଂସ୍କାର ଓ

ସମାଜବାଦର କିଛିଟା ଧାରଣାକୁ ଫେଣ୍ଟିଫାଣ୍ଟି ଦେଲେ ଏ ଦେଶରେ ସମାଜବାଦ ଆସିଯିବ ବୋଲି ଏହି ଗୋଷ୍ଠୀଟିର ଥିଲା ମତାଦର୍ଶଗତ ଆସ୍ଥାନ ।

ଅନ୍ୟ ପକ୍ଷରେ ମାର୍କସବାଦ-ଲେନିନବାଦ ପ୍ରତି ଅକୁଣ୍ଠ ଆନୁଗତ୍ୟ ଥିବା ସି.ଏସ୍.ପି. ନେତୃତ୍ୱର ଅନ୍ୟ ଅଂଶ ଉପରେ ପାର୍ଟି କାମର ଦୈନନ୍ଦିନ ସାଙ୍ଗଠନିକ ଦାୟିତ୍ୱ ପଡ଼ିଲା । ଏପରି ମତାବଲମ୍ବୀ ଗୋଷ୍ଠୀର ପୁରାତନ କଂଗ୍ରେସ ନେତାମାନେ ସ୍ୱସ୍ୱ କ୍ଷେତ୍ରରେ କଂଗ୍ରେସର କାମଦାମ କରୁଥିଲେ । କିନ୍ତୁ ଅସଲ ମଞ୍ଜି ନେତୃତ୍ୱଟିକୁ ପାର୍ଟି ଅଫସ୍, ପାର୍ଟି ମୁଖପତ୍ର – 'ଆଧୁନିକ', 'କୃଷକ' ପ୍ରକାଶନ, ପାର୍ଟିର ପ୍ରଚାର ଅଭିଯାନ, ସଭ୍ୟ ସଂଗ୍ରହ, ଶିକ୍ଷାଦାନ ଇତ୍ୟାଦିକୁ ତୁଲାଇବାକୁ ପଡୁଥିଲା ।

ବିଶେଷତଃ ଏହି ଗୋଷ୍ଠୀ, ସେକାଳର ଛାତ୍ର, ଯୁବକମାନଙ୍କ ମନକୁ ଅଧିକ ଆକର୍ଷଣ କରିପାରିଥିଲା । ବୁଦ୍ଧିଜୀବୀ ମହଲରେ ଏହି ଗୋଷ୍ଠୀ ପ୍ରତି ସମ୍ମାନ ଯେମିତି ବଢୁଥିଲା, ଅନ୍ୟ ପକ୍ଷରେ ଘୋର ପ୍ରତିକ୍ରିୟାବାଦୀଙ୍କ ପକ୍ଷରୁ ଏହି ଗୋଷ୍ଠୀ ପ୍ରତି ଅସୂୟା ପ୍ରକାଶ ପାଉଥିଲା ଓ ଧର୍ମ ଦ୍ରୋହୀ, ହିଂସାବାଦୀ, ଏମିତି ନାନା ଉଦ୍ଭଟ କଥା ପ୍ରଚାର କରାଯାଉଥିଲା ।

ସେତେବେଳେ ଭାରତୀୟ ସ୍ତରରେ ଦୁଇଟି ବାମପନ୍ଥୀ ଦଳ ପୂର୍ବର କମ୍ୟୁନିଷ୍ଟ ପାର୍ଟି ଓ ନବ ଗଠିତ କଂଗ୍ରେସ ସୋସଲିଷ୍ଟ ପାର୍ଟି । ସି.ପି.ଆଇ.ର ପ୍ରବଳ ଉଦ୍ୟମ ସ୍ୱାଧୀନତା ପାଇଁ, କଂଗ୍ରେସର ବୁର୍ଜୁୟା ନେତୃତ୍ୱର ପ୍ରଭାବକୁ କ୍ଷୁର୍ଣ୍ଣ କରିବା ପାଇଁ ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ସାମ୍ରାଜ୍ୟବାଦର ଭୟାବହ ସଂସ୍କରଣ ଫାସିଷ୍ଟବାଦକୁ ପରାସ୍ତ କରିବା ପାଇଁ ଜାତୀୟ ସାମ୍ମୁଖ୍ୟ ବା ନାସନାଲ ଫ୍ରଣ୍ଟ ଗଠନ । ଦୁଇ ପାର୍ଟିର ମିଳନ ହୋଇ ଗୋଟିଏ ମଞ୍ଚ ଗଠନ ହୋଇ ନଥିଲେ ହେଁ ବ୍ୟକ୍ତିଗତ ଭାବରେ କମ୍ୟୁନିଷ୍ଟ ସି.ଏସ୍.ପି.ର ସଦସ୍ୟ ହୋଇପାରିବେ ବୋଲି ନିଷ୍ପତ୍ତି ନିଆ ଯାଇଥିଲା । ତଦନୁସାରେ ଭାରତରେ ବହୁ ପ୍ରଖ୍ୟାତ କମ୍ୟୁନିଷ୍ଟ ସି.ଏସ୍.ପି.ରେ ସଦସ୍ୟ ଥିଲେ । ମାତ୍ର ଓଡ଼ିଶା କ୍ଷେତ୍ରରେ ଏ ପ୍ରଶ୍ନ ଉଠି ନଥିଲା; କାରଣ ମୂଳରୁ ହିଁ କମ୍ୟୁନିଷ୍ଟ ମନୋଭାବାପନ୍ନ ଓ ସି.ପି.ଆଇ.ର ସେତେବେଳେ ସଦସ୍ୟ ହୋଇଥିବା ୫ ଜଣ ମୂଳ ବ୍ୟକ୍ତି ହିଁ ମିଳିତ ଭାବରେ ସି.ଏସ୍.ପି.ର ପ୍ରତିଷ୍ଠାତା ଥିଲେ ଏବଂ ଏହିମାନେ ପାର୍ଟିର ସମ୍ପାଦକତ୍ୱ, ସମ୍ବାଦପତ୍ରର ସମ୍ପାଦକତ୍ୱ ଓ ପାର୍ଟି ଅଫିସର ପରିଚାଳନା ଭାର ବହନ କରିଥିଲେ ।

ସେତେବେଳେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ତୁଙ୍ଗ ନେତା, ଯେମିତି ଆଚାର୍ଯ୍ୟ ନରେନ୍ଦ୍ର ଦେବ, ୟୁସୁଫ ମେହେରଅଲ୍ଲି, ଜୟପ୍ରକାଶ ନାରାୟଣ ଓଡ଼ିଶା ଆସି ପାର୍ଟି ବୈଠକରେ ଯୋଗଦେଇ ଏସବୁ ଅବଗତ ହୋଇ ଅସ୍ୱସ୍ତି ବୋଧ କରୁଥିଲେ; କାରଣ ଅତି ସ୍ପଷ୍ଟ । ପାର୍ଟି ପକ୍ଷରୁ ସି.ଏସ୍.ପି.ର, ମୁଖପତ୍ର ବମ୍ବେରୁ ପ୍ରକାଶିତ କଂଗ୍ରେସ ସୋସଲିଷ୍ଟ ଓ ସି.ପି.ଆଇ.ର ସାପ୍ତାହିକ ନାସନାଲ ଫ୍ରଣ୍ଟ'ର ଏଜେନ୍‌ସି ଆସୁଥିଲା । ଦେଖାଗଲା 'ନାସନାଲ ଫ୍ରଣ୍ଟ' ପ୍ରତି ପାର୍ଟି ଓ ପାଠକ ମହଲରେ ଅଧିକ ଆଦର ଓ ଆକର୍ଷଣ । ଅନ୍ୟ ଗୋଷ୍ଠୀଟି ଏହାର କାରଣ ବୁଝିବାକୁ

ଚେଷ୍ଟା ନକରି ଏହି ସାଥୀମାନଙ୍କ ଉପରେ ଦୋଷାରୋପ କରୁଥିଲେ । ସେହି ସମୟରେ ଆଗ୍ରାରୁ ଜଣେ ବିପ୍ଳବୀ ପ୍ରକାଶକ, ରୋଗରେ ଖଞ୍ଜ, ମନରେ ଓ ବିଶ୍ୱାସରେ ବିପ୍ଳବୀ କୃଷ୍ଣସ୍ୱାମୀ ନାମକ ବ୍ୟକ୍ତି ବର୍ଷକୁ ୨/୩ ଥର କଟକ ଆସୁଥିଲେ । ମାର୍କସ, ଏଙ୍ଗେଲସି, ଲେନିନଙ୍କ ରଚନାବଳୀରୁ ଛୋଟ ଛୋଟ ପୁସ୍ତିକା ଯେମିତି ପୁଞ୍ଜି, ମଜୁରୀ, ଶ୍ରମ ଓ ସୋଭିଏତ ଯୁନିଅନର ଯୋଜନା, କୋମିନଟାର୍ଣ୍ଣ ଦ୍ୱାରା ପ୍ରକାଶିତ ପୁସ୍ତିକାମାନ (ଯାହା ଆମ ଦେଶରେ ତାଙ୍କ ଉଦ୍ୟମରେ ଛାପା) ସେପରି ବହିମାନ ବିକ୍ରି କରିବାକୁ ଆଣି ପହଞ୍ଚୁଥିଲେ । ଗୌରୀଶଙ୍କର ପାର୍କରେ ଥିବା କଟକ ହୋଟେଲରେ ରହି ସେ ବିଭିନ୍ନ ସ୍କୁଲକୁ ତଥା କଲେଜକୁ ଯାଇ ମାର୍କସବାଦୀ ପୁସ୍ତକର ପ୍ରସାର କରାଉଥିଲେ । ବିଦେଶରେ ପ୍ରକାଶିତ ମାର୍କସ-ଏଙ୍ଗେଲସ-ଲେନିନ, ଷ୍ଟାଲିନଙ୍କ ଲେଖାଥିବା ବହି ବ୍ରିଟିଶ ଶାସନ ବେଳେ ଭାରତରେ ପ୍ରବେଶ କରିବା ନିଷିଦ୍ଧ ଥିଲା । ସୋଭିଏତ ଯୁନିୟନରୁ ଆସିବା ତ ଦୂରର କଥା । ଏପରି ମାର୍କସବାଦୀ ସାହିତ୍ୟ ଏହି ନବୀନ ଗୋଷ୍ଠୀ ପ୍ରସାର କରେଇବା ମଧ୍ୟ ଅନ୍ତରାଳରେ ଅନ୍ୟ ଗୋଷ୍ଠୀ ଦ୍ୱାରା ସମାଲୋଚନା କରାଗଲା । ମାର୍କସବାଦୀ-ତତ୍ତ୍ୱରେ କାଡ଼ରମାନଙ୍କୁ ତାଲିମ ଦେବା ଲାଗି ଏକ ଗ୍ରୀଷ୍ମ କାଳୀନ ଶିକ୍ଷା ଶିବିର ବ୍ୟବସ୍ଥା କରାଗଲା । କଲିକତାର ଜଣେ ପ୍ରସିଦ୍ଧ ତତ୍ତ୍ୱବିଦ୍ ତୁଳସୀ ଗୋସ୍ୱାମୀ କଟକ ଆସିଲେ । ଏହା ମଧ୍ୟ ଉକ୍ତ ଗୋଷ୍ଠୀ ପକ୍ଷରେ ଅସହ୍ୟ ହେଲା ଏବଂ ଏସବୁ କାମ କମ୍ୟୁନିଷ୍ଟ ପାର୍ଟିର କାମ । ସି.ଏସ୍.ପି.ର କାମ ନୁହଁ ବୋଲି ବେଳେବେଳେ ପାର୍ଟି ବୈଠକରେ ଉଠିଲା । ଏହାର ମୁଖ୍ୟ ସମାଲୋଚକ ସୁରେନ୍ଦ୍ରନାଥ ଦ୍ୱିବେଦୀ ସେତେବେଳେ ଗଡ଼ଜାତ ଆନ୍ଦୋଳନକୁ କିପରି ଅଧିକ ଲଢୁଆ କରାଯିବ, ଦରକାର ପଡ଼ିଲେ ଲୋକେ ଅସ୍ତ୍ରଶସ୍ତ୍ର ଧରି ରାଜପାଲେସ ଓ ପୁଲିସ ଉପରେ ଆକ୍ରମଣ କରିବେ କି ନାହିଁ ଏ ସମ୍ପର୍କରେ ମଧ୍ୟ କିଛିଟା ମତପାର୍ଥକ୍ୟ ଦେଖାଯାଉଥିଲା ।

୧୯୩୮-୩୯ ମେଡ଼ିକାଲ ଛାତ୍ର ଧର୍ମଘଟ ଓ କଲେଜ ଛାତ୍ର ଧର୍ମଘଟ ବେଳେ ରାଜ୍ୟରେ କଂଗ୍ରେସ ମନ୍ତ୍ରୀମଣ୍ଡଳ । ସେତେବେଳେ ଏ ଆନ୍ଦୋଳନ କେତେ ଦୂର ଯିବ ନଯିବ ଏବଂ ହେବା ଉଚିତ କି ନୁହଁ ଏଥିପାଇଁ ମଧ୍ୟ ମତ ପାର୍ଥକ୍ୟ ଦେଖାଯାଉଥିଲା ।

କମ୍ରେଡ୍ ଫନୀପାଲଙ୍କୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ବେଳେ ଋଷୀ ଆନ୍ଦୋଳନ ଲାଗି ଗିରଫ କରି ଅଣ୍ଟାରେ ଦଉଡ଼ି ବାନ୍ଧିବା, ହାତରେ ହାତକଡ଼ି ଦେବା ଏବଂ ୧୪୪ ଜାରି କରିବା ଘେନି ପାର୍ଟି ବୈଠକରେ ତୁମୂଳ ଆଲୋଚନା ଓ ମତ ପାର୍ଥକ୍ୟ ସୂଚିତ ହୋଇଥିଲା । ପାର୍ଟି ପକ୍ଷରୁ ମୋଟ ଉପରେ ଗିରଫଦାରୀ ଓ ୧୪୪ ଜାରିର ବିରୋଧ କରାଗଲେ ସୁଦ୍ଧା ଫନୀପାଳଙ୍କ ନେତୃତ୍ୱରେ ଲାଠି ଧନୁଶର ଧରି ପଛିକୋଟରେ ହଜାର ହଜାର ଆଦିବାସୀ ଗରିବ ଲୋକଙ୍କ ଗଛକଟାରେ ହିଂସା ଅହିଂସାର ପ୍ରଶ୍ନ ଉଠି ମତଭେଦ ସ୍ପଷ୍ଟ ହୋଇଥିଲା ।

ସେତେବେଳେ ଆନ୍ତର୍ଜାତିକ କ୍ଷେତ୍ରରେ ଫାସିଷ୍ଟବାଦର ଅଭ୍ୟୁଦୟ । ଜର୍ମାନୀରେ ନାଜୀ ହିଟଲରର ନାରକୀୟ ଶାସନ । ଇଟାଲୀରେ ଫାସିଷ୍ଟ ମୁସୋଲିନୀର ଶାସନ । ସ୍ପେନରେ ଗୃହଯୁଦ୍ଧ

ଓ ଫାସିଷ୍ଟ ଫ୍ରାଙ୍କୋ ଓ ପର୍ତ୍ତୁଗାଲରେ ଫାସିଷ୍ଟ ସାଲଜାର ଶାସନ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପାଇଁ ଏବଂ ସୋଭିଏତ ୟୁନିୟନକୁ ଧ୍ୱଂସ କରିବା ଲାଗି ହିଟଲରୀ ମେଣ୍ଟର ପ୍ରସ୍ତୁତି । ଏହି ବିଶ୍ୱଯୁଦ୍ଧର ଆହୁତିରେ ସୋଭିଏତ ୟୁନିୟନକୁ ବଳି ଦେଇ ନିଜେ ବର୍ତ୍ତିଯିବା ପାଇଁ ବ୍ରିଟିଶ-ଫରାସୀ ସାମ୍ରାଜ୍ୟବାଦର ଚକ୍ରାନ୍ତ । ଏହା ହିଁ ପୃଥିବୀରେ ସୋସାଲ-ଡ଼ିମୋକ୍ରାଟିକ ଓ କମ୍ୟୁନିଷ୍ଟ ଆନ୍ଦୋଳନର ପରୀକ୍ଷା କରେଇ ଦେଲା । ୟୁରୋପର ସବୁ ଦେଶର ସୋସଲିଷ୍ଟମାନେ ନିଜ ନିଜ ସାମ୍ରାଜ୍ୟବାଦୀ ସରକାର ପକ୍ଷରେ ରହିଲେ । ଜର୍ମାନୀରେ ହିଟଲରର କ୍ଷମତା ଦଖଲକୁ ପରାଭୂତ କରିବା ପାଇଁ ସୋସାଲ-ଡ଼ିମୋକ୍ରାଟମାନେ କମ୍ୟୁନିଷ୍ଟଙ୍କ ଐକ୍ୟ ଡାକରାକୁ ପ୍ରତ୍ୟାଖ୍ୟାନ କଲେ । ହିଟଲର କ୍ଷମତାକୁ ଆସିଲା । ବିଲାତ-ଫ୍ରନ୍‌ସ ମିଶି ମ୍ୟୁନିକ୍‌ଠାରେ ଚେକୋସ୍ଲୋଭିଆକୁ ଟେକିଦେଲେ ହିଟଲର ହାତରେ । ହିଟଲର ସୋଭିଏତ ୟୁନିୟନ ଆକ୍ରମଣ କରିବା ପୂର୍ବରୁ ଫିନଲ୍ୟାଣ୍ଡ ସହିତ ସନ୍ଧି କରି ସୋଭିଏତ ସୀମାନ୍ତରେ ମାନେହିରମ ଲାଇନ ଗଢ଼ିଲା । ସୋଭିଏତ ୟୁନିଅନ ତା'ର ଉତ୍ତର ପଶ୍ଚିମ ସୀମାନ୍ତକୁ ନିରାପଦ ରଖିବ ବୋଲି ଫିନ୍‌ଲ୍ୟାଣ୍ଡକୁ ଅନୁରୋଧ କଲେ ସୁଦ୍ଧା ତାହା ରକ୍ଷା ନ କରି ବରଂ ସୋଭିଏତ ଉପରେ ହିଟଲର ସହିତ ମିଶି ଆକ୍ରମଣର ପ୍ରସ୍ତୁତି ଚଳାଇଲା ।

ରୁଷ ବିପ୍ଳବ ବେଳେ ଲେନିନ ଓ ବଲ୍‌ଶେଭିକ୍ ପାର୍ଟି ରୁଷ୍ ସାମ୍ରାଜ୍ୟର ସବୁ ଉପନିବେଶକୁ ମୁକ୍ତ କରିଦେଇଥିଲା । ପୋଲାଣ୍ଡ, ବୋଲଭିଆ, ଫିନ୍‌ଲ୍ୟାଣ୍ଡ ଓ ଇସ୍ତୋନିଆ, ଲାଟିଭିଆ, ଲିଥୁଆନିଆ, ୟୁକ୍ରାଇନ ପ୍ରଭୃତି ମୁକ୍ତ ହୋଇଥିଲେ । ଫିନ୍‌ଲ୍ୟାଣ୍ଡ, ପୋଲାଣ୍ଡ ପ୍ରଭୃତି ପୁଞ୍ଜିବାଦୀ ହୋଇ ରହିଲେ । ସେଠାରେ ଲେନିନ୍‌ଙ୍କ ବିପ୍ଳବ ସଫଳ ହେଲା ନାହିଁ । ମାତ୍ର ୟୁକ୍ରାଇନ, ମୋଲଦାଭିଆ ପ୍ରଭୃତି ଏବଂ ସେପଟେ ତାଜିକ୍, ଉଜବେକିସ୍ତାନ, ଆର୍ମେନିଆ, ତୁର୍କମେନିସ୍ତାନର କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ବିପ୍ଳବ ହୋଇ ସୋଭିଏତ ରାଷ୍ଟ୍ର ସଂଘ ଗଠିତ ହେଲା । ଏସବୁ ବୈପ୍ଳବିକ ପ୍ରକ୍ରିୟାକୁ ସୋସାଲ-ଡମୋକ୍ରାଟମାନେ ନିଜ ଦେଶର ସାମ୍ରାଜ୍ୟବାଦୀଙ୍କ ଭଳି ସୋଭିଏତ ରୁଷିଆର ଜବରଦସ୍ତ ଦେଶ ଜୟ ଓ ଜବରଦସ୍ତ ସମାଜବାଦ ପ୍ରତିଷ୍ଠା ବୋଲି ଚିତ୍ରଣ କଲେ । ଏଠାରେ ସି.ଏସ୍.ପି.ର ଏହି ଗୋଷ୍ଠୀ ମଧ୍ୟ ଗଣତନ୍ତ୍ରର ଦ୍ୱାହି ଧରି ଏହା ବଲଶେଭିକ ଦଳର ଅପକୀର୍ତ୍ତି ବୋଲି ସମାଲୋଚନା କରୁଥିଲେ । ଫିନ୍‌ଲ୍ୟାଣ୍ଡକୁ ସ୍ୱାଧୀନତା ଦେବା ବେଳେ ସେଠାର ପୁଞ୍ଜିବାଦୀ ସରକାର ରୁଷ୍ ଅଞ୍ଚଳ କାରେଲୋଫିନିସ ଭୂମିକୁ ଦଖଲରେ ରଖିଥିଲା । ହିଟଲର ସେଠାରେ ସୈନ୍ୟ ସମାବେଶ କରିବାର ପ୍ରସ୍ତୁତି ଦେଖି ସୋଭିଏତ ଲାଲ୍‌ସେନା ନିଜ ଅଞ୍ଚଳକୁ ମୁକ୍ତ କରିଦେଲେ । ଏହାର ସମାଲୋଚନା ସାମ୍ରାଜ୍ୟବାଦୀ ଓ ସୋସାଲ ଡ଼ିମୋକ୍ରାଟମାନେ ମଧ୍ୟ କଲେ । ଓଡ଼ିଶାରେ ସି.ଏସ୍.ପି.ର ମନମୋହନ ଚୌଧୁରୀ ଏହାର ନିନ୍ଦା କରି ବିବୃତି ଦେଲେ । ତାହାର କଟୁ ସମାଲୋଚନା ପାର୍ଟି ଭିତରେ ଗୁଞ୍ଜରି ଉଠିଲା । ସେମିତି ହିଟଲର ବିରୋଧୀ ଓ ଫାସିଷ୍ଟବାଦ ବିରୋଧୀ ମେଣ୍ଟ ଲାଗି ଆହ୍ୱାନକୁ ଉକ୍ତ ଗୋଷ୍ଠୀ ସେତେ ଗୁରୁତ୍ୱ ଦେଲେ ନାହିଁ ।

ହିଟଲରର ଆକ୍ରମଣକୁ କିଛିକାଳ ଘୁଞ୍ଚେଇ ଦେଇ ଶକ୍ତି ସଞ୍ଚୟ କରିବାକୁ ଏବଂ ବ୍ରିଟିଶ-ଫରାସୀ ସାମ୍ରାଜ୍ୟବାଦର ଚକ୍ରାନ୍ତକୁ ବ୍ୟର୍ଥ କରିବା ଲାଗି ଷ୍ଟାଲିନ ଯେ ହିଟଲର ସହିତ ଅନାକ୍ରମଣ ଚୁକ୍ତିକଲେ ତା'ର ତାତ୍ପର୍ଯ୍ୟକୁ ମଧ୍ୟ ଏହି ଗୋଷ୍ଠୀ ଗ୍ରହଣ କଲେ ନାହିଁ । ଅଥଚ ସୋଭିଏତ ୟୁନିଅନର ସେହି ରଣକୌଶଳ ଶେଷରେ ହିଟଲର ଫାସିଷ୍ଟବାଦକୁ ପରାସ୍ତ କଲା । ଏହି ଚୁକ୍ତି ଥିବା ବେଳେ ଲାଟଭିଆ, ଇସ୍ତୋନିଆ ଓ ଲିଥୁଆନିଆରେ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ବିପ୍ଳବ ଫଳରେ ସେଠାକାର ହିଟଲରପନ୍ଥୀ ସରକାରଗୁଡ଼ିକର ପତନ ଏବଂ ସୋଭିଏତ ରାଷ୍ଟ୍ର ସଂଘରେ ଉକ୍ତ ତିନୋଟି ସୀମାନ୍ତ ରାଷ୍ଟ୍ରର ଯୋଗଦାନ ଭଳି ଐତିହାସିକ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣାକୁ ଏହି ଗୋଷ୍ଠୀ ସୋଭିଏତ୍ ରୁଷିଆର ସଂପ୍ରସାରଣ ନୀତି ବୋଲି ମତପୋଷଣ କଲେ ।

ଏହିପରି ଭାବରେ ଜାତୀୟ ଓ ଆନ୍ତର୍ଜାତୀୟ ନୀତି ଓ କର୍ମପନ୍ଥା ଘେନି ମତଭେଦ ହେତୁ ସଂଖ୍ୟାନ୍ୟୂନଗୋଷ୍ଠୀ ପାର୍ଟି ଉପରେ ଏକ ବଡ଼ ଆଘାତ ଦେବାକୁ ବସିଲେ । କମ୍ୟୁନିଷ୍ଟ ବିରୋଧିତା କରି ସୁରେନ୍ଦ୍ର ନାଥ ଦ୍ୱିବେଦୀ, ମନମୋହନ ଚୌଧୁରୀ, ଗୌରଚନ୍ଦ୍ର ଦାସ, ରବି ଘୋଷ, ଗୌରାଙ୍ଗଚନ୍ଦ୍ର ଦାସ ଓ ମାଳତୀ ଦେବୀ ପାର୍ଟିରୁ ଇସ୍ତଫା ଦେଲେ । ନବବାବୁ ଇସ୍ତଫା ଦେଇ ନଥିଲେ । ରବି ଘୋଷ ଓ ଗୌରାଙ୍ଗ ଦାସ ଇସ୍ତଫା ଦେବାକୁ ସେତେ ଆଗ୍ରହୀ ନ ଥିଲେ ହେଁ ବ୍ୟକ୍ତିଗତ ସଂପର୍କ ଓ ପ୍ରଭାବ ହେତୁ ଦ୍ୱିବେଦୀ ସେମାନଙ୍କଠାରୁ ଦସ୍ତଖତ କରାଇ ନେଇଥିଲେ । ଗୌରାଙ୍ଗ ଦାସ କମ୍ୟୁନିଷ୍ଟ ହେବେ ବୋଲି ମତପ୍ରକାଶ କଲାରୁ ତାଙ୍କ ଉପରେ ଦ୍ୱିବେଦୀ ପ୍ରଭାବ ପକାଇ ସେଥିରୁ ଓହରାଇ ନେଲେ ବୋଲି ସେ ମଧ୍ୟ ପ୍ରକାଶ କରିଦେଲେ । 'କୃଷକ'ର ମୁଖ୍ୟ ସମ୍ପାଦକ ନ ହେବା ଦିନୁ ଏବଂ କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ କମ୍ୟୁନିଷ୍ଟ ଭାବାପନ୍ନ ବ୍ୟକ୍ତିଙ୍କ ପ୍ରଭାବ ବୃଦ୍ଧି ହେତୁ ଦ୍ୱିବେଦୀଙ୍କ ମନରେ ରୋଷ ।

ପାର୍ଟି ବୈଠକ ବସିଲା ଓଡ଼ିଆ ବଜାରର ସୁଭାସ ବୋଷଙ୍କ ଭାଇ ଓକିଲ ସତୀଶଚନ୍ଦ୍ର ବୋଷଙ୍କ ଭଡ଼ା ଘରେ । ୧୯୩୮ରେ ହରିପୁର କଂଗ୍ରେସରେ ସଭାପତି ହେବା ପରେ ଓଡ଼ିଆ ବଜାରର ଜାନକୀବାବୁଙ୍କ ଦ୍ୱିତଳପ୍ରାସାଦ ଯାହା ଶରତଚନ୍ଦ୍ର ବୋଷଙ୍କର ଥିଲା, ତାହାକୁ ମୌଖିକ ଭାବରେ ଓଡ଼ିଶା କଂଗ୍ରେସକୁ ଦିଆଯାଇଥିଲା । ସେଠାରେ ଖୋଲାଯାଇଥିଲା ପ୍ରାଦେଶିକ କଂଗ୍ରେସ କାର୍ଯ୍ୟାଳୟ ଓ ପାଖରେ ସେହି ରାସ୍ତାରେ ସି.ଏସ୍.ପି.ର କାର୍ଯ୍ୟାଳୟ । ଏହି କାର୍ଯ୍ୟାଳୟକୁ ତାଚ୍ଛଲ୍ୟ ଓ ପରିହାସରେ ମହତାବ ବାବୁ 'ବେକାର ସଂଘ' ଆଖ୍ୟା ଦେଇଥିଲେ । ବସ୍ତୁତଃ ଏହି ଯୁବକମାନେ ହିଁ ପାର୍ଟି କାମକୁ ନିଜର ଧନ୍ଦା ଧରିନେଇଥିଲେ ।

ସେଦିନ ବହୁ ଆଲୋଚନା ପରେ ଏକ ସାଲିସ ହେଲ । ଉଭୟଗୋଷ୍ଠୀ ମିଳିମିଶି କାର୍ଯ୍ୟ କରିବେ ବୋଲି ସ୍ଥିର ହେଲା । କମ୍ୟୁନିଷ୍ଟ ମନୋଭାବାପନ୍ନ ସାଥୀମାନେ ଐକ୍ୟରକ୍ଷା କରିବାକୁ ଆପ୍ରାଣ ଉଦ୍ୟମ କରିଥିଲେ । ନବବାବୁ, ମାଳତୀଦେବୀ ମଧ୍ୟ ପାର୍ଟିଟିକୁ ଭାଙ୍ଗିଦେବା ଅବସ୍ଥାକୁ ନେବା ଲାଗି ଦ୍ୱିବେଦୀ ପ୍ରମୁଖଙ୍କ ଚେଷ୍ଟାରୁ କିଛି ସମୟ ଲାଗି କ୍ଷାନ୍ତ ରହିଲେ ।

ନବବାବୁ ସେତେବେଳେ ଫାସିଷ୍ଟବାଦ ବିରୁଦ୍ଧରେ ସୋଭିଏତ ପଦକ୍ଷେପକୁ ପସନ୍ଦ କରୁଥିଲେ । ୧୯୪୦-୪୧ରେ ବ୍ୟକ୍ତିଗତ ସତ୍ୟାଗ୍ରହରେ ଜେଲଖାନାରେ ଥିବା ବେଳେ ୧୯୪୧ ଜୁନ୍ ୨୨ରେ ହିଟଲର ସୋଭିଏତ ୟୁନିଅନ ଉପରେ ଆକ୍ରମଣ କଲା । ନବବାବୁ ମତ ଦେଲେ ବର୍ତ୍ତମାନ ଜେଲ୍‌ରେ ନୁହେଁ, ଆମକୁ ମନ୍ତ୍ରୀମଣ୍ଡଳ ଗଢ଼ି ଫାସିଷ୍ଟ ବିରୁଦ୍ଧରେ ଯିବାକୁ ହେବ । ସେଥିଲାଗି ସେ, ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଲୋକନାଥ ମିଶ୍ର (କଟକ) ଉମାଚରଣ ପଟ୍ଟନାୟକ ମିଶି ଏକ ବାମପନ୍ଥୀ ମନ୍ତ୍ରିମଣ୍ଡଳ ଗଢ଼ିବେ ବୋଲି କଥା ହେଉଥାଏ । ଅବଶ୍ୟ ପରେ ସେ ତାଙ୍କ ମତ ପରିବର୍ତ୍ତନ କଲେ । ଲାଟିଭିଆ ପ୍ରଭୃତି ବଲ୍‌ଟିକ ରାଷ୍ଟ୍ର ସମ୍ପର୍କରେ ତାଙ୍କ ମତ ମଧ୍ୟ ଭିନ୍ନ ଥିଲା । ସେ ଦ୍ୱିବେଦୀ ପ୍ରଭୃତିଙ୍କ ସହିତ ଏକମତ ନଥିଲେ । ସେହିଦିନ ଆଲୋଚନା ପରେ ତାଙ୍କ ନଦୀକୂଳ ଘରେ ଇସ୍ତୋନିଆ, ଲାଟିଭିଆ, ଲିଥୁଆନିଆକୁ କିପରି ବିପ୍ଲବ ମୁକ୍ତ କଲା, ତା'ର ଛାୟାଚିତ୍ର ପ୍ରଦର୍ଶିତ ହୋଇଥିଲା ।

ମାତ୍ର ଏହି ତାଳିପକା ଐକ୍ୟ ଅଧିକ ଦିନ ରହିପାରିଲା ନାହିଁ । ହିଟଲର ଯୁଦ୍ଧ ଆରମ୍ଭ କରିଦେଲା । କମ୍ୟୁନିଷ୍ଟମାନେ ଯୁଦ୍ଧର ପ୍ରଥମ ପର୍ଯ୍ୟାୟକୁ ସାମ୍ରାଜ୍ୟବାଦୀ ଯୁଦ୍ଧ ଅଭିହିତ କଲେ । ଉଭୟ ପକ୍ଷ ସାମ୍ରାଜ୍ୟବାଦୀ ବିଲାତ ଫ୍ରାନ୍‌ସ ସେମାନଙ୍କ ବନ୍ଧୁ ଆମେରିକା ନିଜର ଉପନିବେଶକୁ ରକ୍ଷା କରିବାକୁ ଚାହାନ୍ତି । ହିଟଲର ମୁସୋଲିନୀ ଜାପାନ ବ୍ରିଟିଶ ଫରାସୀ ଉପନିବେଶଗୁଡ଼ିକୁ ଛଡ଼େଇ ଆଣିବାକୁ ଚହେଁ ।

ଏହି ଯୁଦ୍ଧ ଆରମ୍ଭ ହେଲା ୧୯୩୯ ସେପ୍ଟେମ୍ବରରେ । ସେହି ସମୟରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ତୁଙ୍ଗ ନେତା ମାଶାନୀ ଏକ ପୁସ୍ତିକା ପ୍ରକାଶ କଲେ । ମିନୁ ମାଶାନୀ ଆଜି କାହାର ଲୋକ ତାହା ସମସ୍ତଙ୍କୁ ଜଣା । ଟାଟାର, ଏକଚାଟିଆ ପୁଞ୍ଜିର, ବିଦେଶୀ ବହୁଜାତିକ ପୁଞ୍ଜିର ସ୍ତାବକ । ବର୍ଣ୍ଣବୈଷମ୍ୟବାଦ ଦକ୍ଷିଣ ଆଫ୍ରିକାରେ ସଂଖ୍ୟାଗରିଷ୍ଠ କୃଷ୍ଣକାୟଙ୍କ ଭୋଟରେ ସରକାର ଗଠନର ସେ ବିରୋଧୀ । ଏହିପରି ଏକ ବ୍ୟକ୍ତିଥିଲେ ଏହି ପାର୍ଟିର ତୁଙ୍ଗ ନେତା, ପୁଣି ସାଧାରଣ ସମ୍ପାଦକ ।

ସେ ପ୍ରକାଶ କଲେ ଏକ ପୁସ୍ତକ । ଶିରୋନାମା ଥିଲା Communist Conspiracy against CSP (କଂଗ୍ରେସ ସୋସଲିଷ୍ଟ ପାର୍ଟି ବିରୁଦ୍ଧରେ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର) ଅନ୍ୟାନ୍ୟ ରାଜ୍ୟ କଥା ଛାଡ଼ । ସେଥିରେ ଲେଖାଥିଲା ଓଡ଼ିଶାରେ ୪୦ ଜଣ ସି.ଏସ୍.ପି. ସଦସ୍ୟଙ୍କ ମଧ୍ୟରୁ ମାତ୍ର ଛଅ ଜଣ ପ୍ରକୃତ ସି.ଏସ୍.ପି. ଓ ଅନ୍ୟମାନେ ସମସ୍ତେ କମ୍ୟୁନିଷ୍ଟ ।

ଏହା ପରେ ସି.ଏସ୍.ପି.ର ବସ୍ତୁତଃ ବିଲୋପର ପ୍ରକ୍ରିୟା ଆରମ୍ଭ ହୋଇଗଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ସାମ୍ରାଜ୍ୟବାଦୀ ପର୍ବ ଆରମ୍ଭ ହୋଇଯିବା ପରେ ଜାତୀୟ ସରକାର ହେଲେ ଏ ଯୁଦ୍ଧକୁ କଂଗ୍ରେସ ସାହାଯ୍ୟ କରିବ ବୋଲି ଘୋଷଣା କଲା । ବ୍ରିଟିଶ ସାମ୍ରାଜ୍ୟବାଦ ଜାତୀୟ ସରକାର ଗଠନର ପ୍ରସ୍ତାବକୁ ଅଗ୍ରାହ୍ୟ କରିଦେଲା । କମ୍ୟୁନିଷ୍ଟମାନେ ଏହି ସାମ୍ରାଜ୍ୟବାଦୀ ଯୁଦ୍ଧକୁ 'ନ ଏକ ଭାଇ, ନ ଏକ ପାଇ'ର ଆହ୍ୱାନ ଦେଲେ ।

କଂଗ୍ରେସ ବ୍ୟକ୍ତିଗତ ସତ୍ୟାଗ୍ରହର ଡାକରା ଦେଲା ଏବଂ ବିନୋବା ବାଭେ ପ୍ରଥମ ଓ ଜବାହାରଲାଲ ନେହେରୁ ଦ୍ୱିତୀୟ ଡିକ୍ଟେର ବା ସତ୍ୟାଗ୍ରହୀ ବଛାଗଲେ ।

ସେହି ସମୟରେ ଅସ୍ୱାଭାବିକ ଅବସ୍ଥା ପହଞ୍ଚିଛି, ଆଉ ପାର୍ଟି ଗଣତାନ୍ତ୍ରିକ ପଦ୍ଧତି ଅନୁସାରେ ଚଳିପାରିବ ନାହିଁ ବୋଲି ସିଏସପିରୁ ଉପର ନେତୃତ୍ୱ ଆଳ ଦେଖାଇଲେ । ତଦନୁସାରେ ଜୟପ୍ରକାଶ ନାରାୟଣ ୧୯୪୦ ଆଦ୍ୟରେ କଟକ ଆସିଲେ । ତାଙ୍କ ପୁରାତନ ବନ୍ଧୁ ଡକ୍ଟର ବଳଭଦ୍ର ପ୍ରସାଦ, ଯେ କି ରେଭେନ୍‌ସା କଲେଜର ବିଜ୍ଞାନ ଅଧ୍ୟାପକ ଓ ପଶ୍ଚିମ ହଷ୍ଟେଲର ଓ୍ୱାର୍ଡ଼େର ଥିଲେ, ତାଙ୍କର ଅତିଥି ହେଲେ । ପଶ୍ଚିମ ଛାତ୍ରବାସର କମନ ରୁମ୍‌ରେ ସି.ଏସ୍.ପି.ର ବୈଠକ ବସିଲା । ଶତାଧିକ ସାଥୀ ଯୋଗ ଦେଇଥିଲେ । ଜୟପ୍ରକାଶ ନାରାୟଣ ପରିସ୍ଥିତିର ବିଶ୍ଳେଷଣ କରି ଓ କମ୍ୟୁନିଷ୍ଟ ସମାଲୋଚନା କରି ଭାଷଣ ଦେଇ ପାର୍ଟିର ଗଣତାନ୍ତ୍ରିକ ବ୍ୟବସ୍ଥା ରହିବା ଉଚିତ ନୁହେଁ କହିବାରୁ ପାଟିତୁଣ୍ଡ ହେଲା । ବୈଷ୍ଣବ ପଟ୍ଟନାୟକ ଏହାର ଜୋରଦାର ବିରୋଧ କଲେ । ଭୋଟ ନିଆଯାଇଥିଲେ ଜୟପ୍ରକାଶଜୀ ପରାସ୍ତ ହୋଇଥାନ୍ତେ । ମାତ୍ର ପଦାଧିକାର ବଳରେ ସେ ପାର୍ଟିର ଗଠନତନ୍ତ୍ରକୁ ଭାଙ୍ଗିଦେଇ ନବକୃଷ୍ଣ ଚୌଧୁରୀଙ୍କୁ ଡିକ୍ଟେଟର କରିଦେଲେ । ବସ୍ତୁତଃ ସେହିଦିନୁ ସି.ଏସ୍.ପି. ର ବିଲୋପ ହୋଇଗଲା । କୃଷକ ବନ୍ଦ ହୋଇଗଲା । କେବଳ ଛଅ ସାତ ଜଣଙ୍କୁ ଛାଡ଼ିଦେଲେ ଅନ୍ୟସମସ୍ତେ କମ୍ୟୁନିଷ୍ଟ ଚିହ୍ନିତ ହେଲେ ।

ଶରତ ପଟ୍ଟନାୟକ ୧୯୩୦ର ଜଣେ, ଯେ କି ଜଣେ କଂଗ୍ରେସ କର୍ମୀ ଥିଲେ ଏବଂ ଓଡ଼ିଶାରୁ ଉତ୍ତର ପ୍ରଦେଶରେ, ବିହାରରେ ଓ କଲିକତାରେ କଂଗ୍ରେସ କାମ, ଶ୍ରମିକ ଆନ୍ଦୋଳନ କରି ଖ୍ୟାତି ଅର୍ଜନ କରିଥିଲେ; ସେ ଓଡ଼ିଶାକୁ ଆସି ରାଜ୍ୟ ପାର୍ଟିରେ ସାମିଲ ହୋଇଗଲେ ।

ବ୍ରିଟିଶ ସରକାର ପରସ୍ଥିତିର ସୁଯୋଗ ନେଲା । ଭାରତରେ ଇଂରେଜରାଜ, ନାମକ ଗୁରୁଚରଣ ପଟ୍ଟନାୟକ ଏକ ପୁସ୍ତିକା ଲେଖିଥିବାରୁ ତାଙ୍କ ବିରୁଦ୍ଧରେ ୧୨୪ (କ) ଧାରା ବା ରାଜଦ୍ରୋହ ଅପରାଧରେ ଦଣ୍ଡ ଦିଆଗଲା ।

୧୯୪୦ ଜୁନ୍ ୧୧ ତାରିଖରେ ବ୍ରିଟିଶ ସରକାର କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା ଆରମ୍ଭ କରିଦେଲା । ସି.ଏସ୍.ପି. ଭାଙ୍ଗିଯିବାରୁ କମ୍ୟୁନିଷ୍ଟମାନେ ଗୋପନ ଚିଠିପତ୍ର କାରବାର, ଅଜ୍ଞାତବାସ ଲାଗି ପ୍ରସ୍ତୁତି ଚଳେଇଲେ । "ଆଗେଇଚାଲ" ବେଆଇନ ସାଇକ୍ଲୋକରା ପ୍ରଚାରପତ୍ର ବାହାର କଲେ । ସି.ପି.ଆଇ. ରାଜ୍ୟ ଶାଖାକୁ ବିଧିବଦ୍ଧ ଲେନିନବାଦୀ ପାର୍ଟି ପଦ୍ଧତି ଓ ଗଣତାନ୍ତ୍ରିକ କେନ୍ଦ୍ରବାଦ ଭିତ୍ତିରେ ଗଢ଼ିବାର ପ୍ରଚେଷ୍ଟା ଚାଲିଲା । ଷଡ଼ଯନ୍ତ୍ର ମକଦ୍ଦମାରେ ପାର୍ଟି ସଂପାଦକ ଭଗବତୀ ଚରଣ ପାଣିଗ୍ରାହୀ, ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ, ଦୁର୍ଗାଚରଣ ମହାନ୍ତି, ଶରତ ପଟ୍ଟନାୟକ, ବିଜୟଚନ୍ଦ୍ର ଦାସ, ପୂର୍ଣ୍ଣ ମହାନ୍ତି (ଯେ କି ସରକାରର ଗୁପ୍ତଚର ହୋଇ ଏମାନଙ୍କୁ ଧରେଇଲେ) ତଥା ସାଗର ସାବୁନ କାରଖାନାର କର୍ମଚାରୀ ସିଦ୍ଧେଶ୍ୱର

ମହାନ୍ତି ଓ ଗଣେଶ୍ୱର ମହାନ୍ତିଙ୍କୁ ଗିରଫ କରାଗଲା ଏବଂ ଆଗରୁ ୧୨୪ (କ) ରେ ଦଣ୍ଡିତ ଗୁରୁଚରଣ ପଟ୍ଟନାୟକଙ୍କୁ ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ କରାଗଲା ।

ଏମାନଙ୍କର ବିଚାର ଛଅ ମାସ କାଳ କଟକ ଜେଲ ଭିତରେ ଚାଲିଲା । ସେମାନଙ୍କ ଡିଫେନ୍‌ସ ପାଇଁ ବାହାରେ ରହିଯାଇଥିବା କମ୍ରେଡ୍ ରାମକୃଷ୍ଣ ପତି, ରାମଚନ୍ଦ୍ର ମିଶ୍ର ଓ ପ୍ରମାଣ ଅଭାବରୁ ଖଲାସ ହୋଇଥିବା ଦୁର୍ଗାଚରଣ ମହାନ୍ତି କଟରେ ଲାଗି ପଡ଼ିଲେ । ରାଜକିଶୋର ଦାସ, ଯେ କି ପରେ ହାଇକୋର୍ଟର ପ୍ରଧାନ ବିଚାରପତି ହେଲେ ସିଏ, ରବି ଘୋଷଙ୍କ ଭାଇ ଚନ୍ଦ୍ରକାନ୍ତ ଘୋଷ ପ୍ରମୁଖ ଏହି ମକଦ୍ଦମା ଲଢ଼ିଲେ କଲିକତାରୁ ଜଣେ ବାରିଷ୍ଟରଙ୍କୁ ମଧ୍ୟ ଅଣାଗଲା, ଯେ କି ପ୍ରଥମେ ଜଷ୍ଟିସ ହରିହର ମହାପାତ୍ରଙ୍କ ଘରେ ଅତିଥି ହୋଇଥିଲେ ।

ବିଭିନ୍ନ ଦେଶପ୍ରେମୀ ଓକିଲ, ଯେମିତି ଦୀନବନ୍ଧୁ ସାହୁ, ବୁଦ୍ଧିଜୀବୀ, କଂଗ୍ରେସ ନେତାଙ୍କୁ ଘେନି ଏକ ଡିଫେନ୍‌ସ କମିଟି ହରେକୃଷ୍ଣ ମହତାବଙ୍କ ଅଧକ୍ଷତାରେ ଗଠିତ ହେଲା । ଜେଲ୍‌ଖାନାରେ ବିଚାର ଚାଲିଲେ ସୁଦ୍ଧା ବିଚାରର ବିବରଣୀମାନ ସମ୍ବାଦପତ୍ରରେ ପ୍ରକାଶିତ ହେବା ଫଳରେ ଯେଉଁ କମ୍ୟୁନିଷ୍ଟ ପାର୍ଟି ସି ଏ ପି.ରେ ଥିଲା ଓ ଅଳ୍ପ କେତେକ ଲୋକ ଜାଣିଥିଲେ, ତାହାକୁ ଓଡ଼ିଶାର ବହୁ ପାଠକ, ବହୁ ଦେଶପ୍ରେମୀ, ବହୁ ଯୁବକ ଛାତ୍ର ଜାଣିଲେ ।

ସେ ହେତୁ ଉକ୍ତ ଷଡ଼ଯନ୍ତ୍ର ମକଦ୍ଦମା ପାର୍ଟି ଜୀବନର ଏକ ମାଇଲ ଖୁଣ୍ଟ । ତାହାର ସବିଶେଷ ଆଲୋଚନା ଏଥିରେ ଦେଉନାହିଁ ।

ଏହି କମ୍ୟୁନିଷ୍ଟମାନଙ୍କୁ ଷଡ଼ଯନ୍ତ୍ର ମକଦ୍ଦମାରେ ଦୀର୍ଘ କାରାବାସ ଦଣ୍ଡରେ ଦଣ୍ଡିତ କଲା ପରେ ୧୯୪୨ ଅଗଷ୍ଟ ଆନ୍ଦୋଳନ ବେଳେ ଅନ୍ୟମାନଙ୍କ ସାଙ୍ଗକୁ ରାମକୃଷ୍ଣ ପତି, ଦୁର୍ଗାଚରଣ ମହାନ୍ତି, ରାମଚନ୍ଦ୍ର ରାମ, ମନମୋହନ ମିଶ୍ର, ନରସିଂହ ତ୍ରିପାଠୀ, ସତ୍ୟବାଦୀ ମିଶ୍ର, ନିତ୍ୟାନନ୍ଦ ମିଶ୍ର ପ୍ରମୁଖଙ୍କୁ ଧରି ନିଆଗଲା । କଂଗ୍ରେସର ପ୍ରତିଷ୍ଠିତ ନେତା ଅଥଚ କମ୍ୟୁନିଷ୍ଟ ସେପରି ବ୍ୟକ୍ତି, ଯେମିତି ପ୍ରାଣନାଥ, ଗୋକୁଳମୋହନ, ମୋହନ ଦାସ ପ୍ରମୁଖଙ୍କୁ ଗିରଫ କରାଗଲା ।

ଅଥଚ ୧୯୪୨ ରେ ଜେଲଖାନା ଭିତରୁ ମୁଷ୍ଟିମେୟ ପୁରୁଣା କମ୍ୟୁନିଷ୍ଟଙ୍କ ସାଙ୍ଗକୁ ବହୁ କଂଗ୍ରେସ କର୍ମୀ ହୋଇ ବାହାରିଲେ ଏବଂ ୧୯୪୫ ଶେଷଭାଗରେ ଅଗଷ୍ଟ ଆନ୍ଦୋଳନର ଦ୍ୱାହିଦେଇ କଂଗ୍ରେସରୁ କମ୍ୟୁନିଷ୍ଟମାନଙ୍କୁ ବିତାଡ଼ନ କରାଗଲା । ସି.ଏସ୍.ପି.ର ଅନ୍ୟମାନେ କଂଗ୍ରେସରେ ମିଶିଗଲେ । ସ୍ୱରାଜ୍ୟାଶ୍ରମରେ କମ୍ୟୁନିଷ୍ଟମାନଙ୍କୁ ବିତାଡ଼ନ କରିବା ଲାଗି ଅନୁଷ୍ଠିତ କଂଗ୍ରେସ କମିଟି ବୈଠକରେ କଂଗ୍ରେସ ଏଣିକି ପୁରାପୂରି ବୁର୍ଜୁୟା ପୁଞ୍ଜିପତିମାନଙ୍କ ଅନୁଷ୍ଠାନ ହେଲା ଏବଂ କମ୍ୟୁନିଷ୍ଟମାନେ ଦେଶର ପ୍ରକୃତ ସ୍ୱାଧୀନତା ଓ ଶୋଷଣବିହୀନ, ଶ୍ରେଣୀବିହୀନ ସମାଜବାଦୀ ଆନ୍ଦୋଳନ ଅବ୍ୟାହତ ରଖିବେ ବୋଲି ଦୃଢ଼ ସ୍ୱରରେ ଘୋଷଣା କରି ପୂର୍ବ ସହକର୍ମୀ, ନେତାମାନଙ୍କଠାରୁ ସଗର୍ବେ ବିଦାୟ ନେଲେ ।

ସି.ଏସ୍.ପି.ର ସତ୍ତା ରହିଲା ନାହିଁ । ତାହା କଂଗ୍ରେସ ସହିତ ମିଶିଗଲା । ତା'ପରେ

ପ୍ରଜାସୋସାଲିଷ୍ଟ ପାର୍ଟି, କିସାନ ମଜଦୁର ପ୍ରଜା ପାର୍ଟି, ସଂଯୁକ୍ତ ସୋସାଲିଷ୍ଟ ପାର୍ଟି ଏମିତି ଖଣ୍ଡ ଖଣ୍ଡ ଖେଚେଡ଼ି ହୋଇ ଜନସଂଘ ସାଙ୍ଗକୁ ଜନତା ଦଳ ଆଉ ଏକ ଅଂଶ ଲୋକଦଳ ସହିତ ମିଶିଲେ ।

ସ୍ୱାଧୀନତା ଆନ୍ଦୋଳନ, ଛାତ୍ର ଆନ୍ଦୋଳନ, ବୁଦ୍ଧିଜୀବୀଙ୍କ ସାଂସ୍କୃତିକ ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନ, ଚାଷୀ ଆନ୍ଦୋଳନ ଶ୍ରମିକ ଆନ୍ଦୋଳନ ଭିତରୁ ଓ କଂଗ୍ରେସ କର୍ମୀମାନଙ୍କ ମଧ୍ୟରୁ କଂଗ୍ରେସ ସୋସାଲିଷ୍ଟ ପାର୍ଟିର କାର୍ଯ୍ୟକଳାପ ଭିତରୁ ମାର୍କସବାଦ-ଲେନିନବାଦର, ବୈଜ୍ଞାନିକ ସମାଜବାଦର ମତାଦର୍ଶକୁ ଭିତ୍ତି କରି ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଜନ୍ମଲାଭ କରିଛି ।

୧୯୪୦ ଜୁନ ୧୧ ତାରିଖରେ କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା ପର୍ଯ୍ୟନ୍ତ ଏହି ବିବରଣୀ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଗଠନ ଓ ତା'ର କାର୍ଯ୍ୟ ସଂପର୍କରେ ଧାରଣା ଦେବ ।

□□□

# ଓଡ଼ିଶାରେ ସାମନ୍ତବାଦୀ ପ୍ରଥା ବିରୋଧରେ ସଂଗ୍ରାମ ଓ କମ୍ୟୁନିଷ୍ଟ ପାର୍ଟିର ଭୂମିକା

ଓଡ଼ିଶାରେ ସାମନ୍ତବାଦୀ ପ୍ରଥା ବିରୋଧରେ ସଂଗଠିତ ସଂଗ୍ରାମ ୧୯୩୬-୩୭ରୁ ଚାଲିଆସିଛି । ଠିକ୍ ଏହି ସମୟ ଭିତରେ ହିଁ କମ୍ୟୁନିଷ୍ଟ ପାର୍ଟିର ଜନ୍ମ । ଏହି ପ୍ରବନ୍ଧଟିରେ ସାମନ୍ତବାଦ ବିରୋଧରେ ବିଭିନ୍ନ ପର୍ଯ୍ୟାୟରେ ଯେଉଁ ସବୁ ଆନ୍ଦୋଳନ ହୋଇଛି; ସେଥିରେ କମ୍ୟୁନିଷ୍ଟମାନଙ୍କର ଭୂମିକା କ'ଣ ଥିଲା, ତାହାର ଏକ ସଂକ୍ଷିପ୍ତ ରୂପରେଖା ଦିଆଯାଇଛି ।

ଓଡ଼ିଶାରେ ୨୬ଟି ଗଡ଼ଜାତ (ଅବଶ୍ୟ ଷଢ଼େଇକଳା ଖରସୁଆଁ ସମେତ) ବହୁ ଡଜନ ପକ୍‌କିମାହାଲ, ଲକ୍ଷାଧିକ ଛୋଟବଡ଼ କଚ୍‌ଚିମାହଲ ଜମିଦାର, ମକଦମ୍ ଆଉ ସେମାନଙ୍କ ସାଙ୍ଗକୁ ଗୌନ୍ତିଆ, ସରବରାକାର, ମୁସ୍ତାଦାର, ପ୍ରଧାନମାନଙ୍କ ଶୋଷଣ ବିରୋଧରେ ସଂଗ୍ରାମ ୧୯୩୬-୩୭ ପୂର୍ବରୁ ଯେ ହେଉ ନଥିଲା, ତାହା ନୁହେଁ । ଦଶପଲ୍ଲା ବିଦ୍ରୋହ, କନିକା ପ୍ରଜାମେଳି ପ୍ରଭୃତି ଅଜସ୍ର ଚାଷୀ ସଂଗ୍ରାମ ହୋଇ ଆସିଛି । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ବନ୍ଦୀର ଆତ୍ମକଥାରେ କନିକା ଅତ୍ୟାଚାରର ଅତି ନିଖୁଣ ଚିତ୍ର ରହିଛି । ସାମନ୍ୟ ଏକ ପକ୍‌କି ମାହାଲ ଜମିଦାର କିପରି କର ବସାଇ ପ୍ରଜାପୀଡନର ଚରମ ସୀମାରେ ପହଞ୍ଚିପାରେ ସେଥିରୁ ହିଁ କୃଷିପ୍ରଧାନ ଓଡ଼ିଶାର ଚାଷୀ, ମୂଲିଆ, ବିଶେଷତଃ ହରିଜନ ଆଦିବାସୀମାନେ ଭୋଗିଆସୁଥିବା ଦୁର୍ଦ୍ଦଶା ଓ ଦୁର୍ଗତିର ପରିଚୟ ମିଳେ ।

ସ୍ୱାଧୀନତା ସଂଗ୍ରାମର ଚିରାଚରିତ ଉପର ମହଲ ନେତୃତ୍ୱର ଆହ୍ୱାନ ଯଥେଷ୍ଟ ନୁହେଁ, ତାହା ଚାଷୀର ସ୍ୱତ୍ୱ ଜମି, ଅଧିକାର ପ୍ରଶ୍ନକୁ ସ୍ପର୍ଶ କରୁନାହିଁ ବିଚାରି ଯେତେବେଳେ କଂଗ୍ରେସ ଭିତରେ ବାମପନ୍ଥୀ ଚିନ୍ତାଧାରାର ଉନ୍ମେଷ ଘଟିଲା, ଯେତେବେଳେ ସୋଭିଏତ୍ ରୁଷରେ ଚାଷୀମୂଲିଆ ସରକାର ଚାଷୀ ସମସ୍ୟାର ଅଭୂତପୂର୍ବ ସମାଧାନ କରିବାର ସମ୍ବାଦମାନ ପହଞ୍ଚିଲା, ସେତେବେଳେ ସାରା ଭାରତ ପରି ଓଡ଼ିଶାରେ ମଧ ସଂଗଠିତ ଚାଷୀ ଆନ୍ଦୋଳନର ସୂତ୍ରପାତ ହେଲା । ଆଉ ସେତେବେଳେ ବାମପନ୍ଥୀ ବିଚାର ଗ୍ରହଣ କରିଥିବା କଂଗ୍ରେସର ଏକ ଅଂଶ, ଯେଉଁମାନେ କି କଂଗ୍ରେସ ସୋସିଲିଷ୍ଟ ପାର୍ଟି ଗଠନ କରିଥିଲେ ଓ କମ୍ୟୁନିଷ୍ଟ

ମତବାଦୀ, ଅତି ମୁଷ୍ଟିମେୟ ଯୁବକ ଯେଉଁମାନେ କି କଂଗ୍ରେସ ଓ କଂଗ୍ରେସ ସୋସିଲିଷ୍ଟ ପାର୍ଟିର ଏକ ପ୍ରଗତିଶାଳୀ ଅଂଶ ଥିଲେ, ସେମାନେ ହିଁ କୃଷକ ଆନ୍ଦୋଳନକୁ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀ ଦୃଷ୍ଟିଭଙ୍ଗୀ ନେଇ ଏକ ଶ୍ରେଣୀ ସଂଗଠନ ରୂପେ ଗଢ଼ିବା, ଚାଷୀ ଓ ମୂଲିଆମାନଙ୍କ ଲାଗି ସଂଗ୍ରାମକୁ ଗଣତାନ୍ତ୍ରିକ ଅଧିକାରଗୁଡ଼ିକ ଜମିଦାରୀ ପ୍ରଥା, ରାଜାରାଜୁଡ଼ା ପ୍ରଥାକୁ ସମୂଳେ ଲୋପ କରି ଚାଷୀକୁ ଜମି ଦେବା, ଜମି ଦଖଲ କରିବା, ମହାଜନୀ ଲୁଣ୍ଠନ ଲୋପ କରିବା ଏବଂ ଭୂ-ସଂସ୍କାର ଓ ସାମନ୍ତବାଦୀ ପ୍ରଥାର ବିଲୋପ କରିବା ସ୍ତରକୁ ଉଠାଇବାରେ ଏବଂ ଗଣତାନ୍ତ୍ରିକ ଆନ୍ଦୋଳନକୁ ଓ ସ୍ୱାଧୀନତାର ସଂଗ୍ରାମକୁ ଅଧିକ ଲଢୁଆ କରିବାର କର୍ତ୍ତବ୍ୟ ତୁଲାଇବାରେ କମ୍ୟୁନିଷ୍ଟମାନଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

କମ୍ୟୁନିଷ୍ଟମାନେ ହିଁ ସର୍ବପ୍ରଥମ ଦର୍ଶାଇଲେ ଯେ ଚାଷୀ ଆନ୍ଦୋଳନ ଏକ ଧର୍ମ କାର୍ଯ୍ୟ ନୁହେଁ । ଚାଷୀ ମୂଲିଆମାନଙ୍କ ଉପରେ ହେଉଥିବା ଅତ୍ୟାଚାର ଓ ଶୋଷଣ ଦେଖି ଦୟା ପରବେଶ ହୋଇ ମାନବିକ ଧର୍ମ ଦୃଷ୍ଟିରୁ ସେମାନଙ୍କ ଦାରିଦ୍ର୍ୟକୁ ଲାଘବ କରିବାର ପ୍ରଶ୍ନ ନୁହେଁ । ଏହା ଏକ ଅର୍ଥନୈତିକ ସାମାଜିକ ପ୍ରଥାର ବିଲୋପର ପ୍ରଶ୍ନ । କୃଷି କ୍ଷେତ୍ରରେ ଯେଉଁ ଉତ୍ପାଦନର ସମ୍ପର୍କ ରହିଛି, ଅର୍ଥାତ୍ ଅଳ୍ପ ସଂଖ୍ୟକ ଲୋକ ଉତ୍ପାଦନର ହାତ ହତିଆର ଜମି, ଟଙ୍କା ଇତ୍ୟାଦିର ମାଲିକ ଓ ଅନ୍ୟ ପକ୍ଷରେ ଏହି ହାତହତିଆରରୁ ବଞ୍ଚିତ ଲକ୍ଷଲକ୍ଷ ଜନତା ଯିଏ ଉତ୍ପାଦନ କରନ୍ତି, ସେମାନଙ୍କ ଉପରେ ଶୋଷଣର ଲୋପ ହେବା ପାଇଁ ଏହି ଉତ୍ପାଦନର ସମ୍ପର୍କକୁ ସମୂଳେ ବଦଳାଇଦେଲେ । ତାର ଅର୍ଥ ଯିଏ ଜମି ଚଷେ, ଫସଲ ଫଳାଏ, ସିଏ ହେବ ଜମିର ମାଲିକ । ତାହାହେଲେ ଉତ୍ପାଦନ ବଢ଼ିବ, ଶୋଷଣ ଯିବ, ଦେଶର ଶିଳ୍ପାୟନ ହେବ, ଚାଷ ବିଜ୍ଞାନସମ୍ମତ ହେବ ଏବଂ ପରିଶେଷରେ ସମଗ୍ର ସମାଜରୁ ଶୋଷଣ ଲୋପ ହୋଇ ସମାଜବାଦୀ ସମାଜର ଅଭ୍ୟୁଦୟ ଘଟିବ ।

ଅତୀତର ଏହି ସଂଗ୍ରାମଗୁଡ଼ିକୁ ଆଜି ନିରେଖିଲେ ପ୍ରମାଣିତ ହୁଏ ଯେ ଯେଉଁମାନେ ଏହି ଯଥାର୍ଥ ବିଜ୍ଞାନସମ୍ମତ ଶ୍ରେଣୀ ଦୃଷ୍ଟିଭଙ୍ଗୀ ନ ନେଲେ ସେମାନେ ଆଦ୍ୟଭାଗରେ କୃଷକ ଆନ୍ଦୋଳନରେ ଅଗ୍ରଣୀ ଭୂମିକା ନେଇଥିଲେ ହେଁ ସେଥିରୁ ଓହରି ଯାଇଛନ୍ତି । ଏମିତିକି କ୍ଷମତାକୁ ଆସି ମଧ ଯାହା ସବୁ ପ୍ରତିଶ୍ରୁତି ଦେଇଥିଲେ, ତାହାକୁ ପାଳନ ନକରି ଚାଷୀମାନଙ୍କ ଉପରେ ଦମନ ଚଳାଇଛନ୍ତି ଏବଂ ଚାଷୀ ଆନ୍ଦୋଳନର ଅଗ୍ରଗତିକୁ ରୋଧ କରିବା ପାଇଁ ସମସ୍ତ ସରକାରୀ ଓ ବେସରକାରୀ କ୍ଷମତା ପ୍ରୟୋଗ କରିଛନ୍ତି, ମାତ୍ର ସଫଳ ହୋଇ ନାହାନ୍ତି । ଗୋଟିକ ପରେ ଗୋଟିଏ ସଂଗ୍ରାମର ନେତୃତ୍ୱ ନେଇଛି କମ୍ୟୁନିଷ୍ଟ ପାର୍ଟି ଏବଂ ଚାଷୀ ତାର ଅଧିକାରକୁ ସଂଗ୍ରାମ କରିଆରେ ଗୋଟିକ ପରେ ଗୋଟିଏ ହାସଲ କରିଛି । ଆଉ ସେହି ସଂଗ୍ରାମ ଆଜି ଜମି ଦଖଲ, ପଡିଆ ଜମି, ସର୍ବୋଚ୍ଚ ସୀମା ଉଦ୍‌ବୃତ୍ତ ଜମି ଦଖଲ, ଭୂମିହୀନଙ୍କୁ ଜମି ବଣ୍ଟନ ପର୍ଯ୍ୟାୟରେ ପହଞ୍ଚିଛି ।

**ଚାଷୀ ସଂଗ୍ରାମର ଆଦ୍ୟପର୍ବ**

ଏସବୁ ଉପରେ ବ୍ରିଟିଶ ସାମ୍ରାଜ୍ୟବାଦୀ ଶୋଷଣ ଓ ରାଜନୈତିକ ଆଧିପତ୍ୟ ଏବଂ ତା'ପରେ ଜମିଦାର, ସାହୁକାର, ମୁସ୍ତାଦାର, ଗୌନ୍ତିଆ, ସର୍ବରାକରଙ୍କ ଶୋଷଣ ଏବଂ ମହାଜନୀ ଅତ୍ୟାଚାର ଓ ଏସବୁ ଶୋଷକଙ୍କୁ ସହାୟତା କରୁଥିବା ପୁଲିସର ନାହିଁ ନଥିବା ଜୁଲୁମ, ଏହାହିଁ ଥିଲା ସ୍ୱାଧୀନତା ପୂର୍ବବର୍ତ୍ତୀ ଯୁଗର ଅବସ୍ଥା ।

ଏହି ଅବସ୍ଥାରେ ଅତି ସାମାନ୍ୟ ଦାବୀ ଘେନି ଆରମ୍ଭ ହେଲା କୃଷକ ଆନ୍ଦୋଳନ । ଦାବୀ ଥିଲା ବେଠି, ଭେଟି ଉଠିଯାଉ, ଗଛମାଛରେ ପ୍ରକାର ଅଧିକାର ସାବ୍ୟସ୍ତ ହେଉ ଏବଂ ଦାଖଲ ଖାରଜ ରୋଷମ ଉଠୁ, ବେଆଇନ ପାଉଣା ଉଠିଯାଉ ।

ଖଜଣା, ଘାସକର, ଲଙ୍ଗଳ କର, ଚୁଲୀ କର ଇତ୍ୟାଦି ଶହଶହ ପ୍ରକାର କର ଟିକସ ସାଙ୍ଗକୁ ବେଠି ଓ ଭେଟି ଖଞ୍ଜା ଥିଲା ସାମନ୍ତବାଦୀ ପ୍ରଥାର ଅତି ନଗ୍ନ ଶୋଷଣ ଓ ଅତ୍ୟାଚରର ରୂପ । ଖାଲି ରାଜା ରାଜୁଡ଼ା ନୁହେଁ, ଛୋଟ ବଡ ଜମିଦାର ଏବଂ ସେମାନଙ୍କ ତଳର ମୁସ୍ତାଦାର, ସର୍ବରାକାର, ଗୌନ୍ତିଆ ପ୍ରଧାନଙ୍କ ଘରେ ବିନା ମଜୁରୀରେ ବାଧବାଧକତା ରୂପେ ବେଠିରେ ଜମି ଚଷିବା, ଶିକାର ଓ ପାରିଧି ବେଳେ, ଉଆସ ଅବା କଚେରୀ ଘର ଛପର, ଧଉଳା ତିଆରିରେ ବେଠି ଖଟିବା, ଝିଅପୁଅ ବାହାଘର ଶୁଦ୍ଧିରେ ବେଠି ଖଟିବା, ଛୋଟବଡ଼ ସବୁ ପ୍ରଜାଙ୍କର ଥିଲା ଜବରଦସ୍ତ କର୍ତ୍ତବ୍ୟ । ଯିଏ ଟିକିଏ ସମାଜରେ ଉଚ୍ଚବର୍ଣ୍ଣର ସେ ନିଜେ ବେଠି ଖଟିବାରୁ ବେଳେବେଳେ ରିହାତି ପାଉଥିଲେ ବି ପଇସା ଦେଇ ସେ ଜମିଦାର ଘରକୁ ବେଠିଆ ପଠାଉଥିଲେ, ନ କଲେ ଧୋବା ଭଣ୍ଡାରୀ ବାସନ୍ଦ ।

ଆଉ ଭେଟି ତାଠାରୁ ଉତ୍କଟ ଆର୍ଥିକ ଶୋଷଣ । ରଜା ଜମିଦାରଙ୍କୁ ସୁନିଆ, ଦଶହରାରେ ଚାଷୀଠାରୁ ତନ୍ତୀ, କୁମ୍ଭାର, କମ୍ମାର ସବୁ କାରିଗର ଭେଟି ଦେବା ଛଡ଼ା ରାଜକନ୍ୟା, ଜମିଦାର ପୁତ୍ର ଦୁହିତାଙ୍କ ବିବାହବ୍ରତ, ଶୁଦ୍ଧି ବେଳେ କଦଳୀ, ଘିଅ, ସରୁ ଚାଉଳ, ଇତ୍ୟାଦି ଭାର ବୋହିବା ଥିଲା ପ୍ରଜାଙ୍କର କାମ । କୁମ୍ଭାର ହାଣ୍ଡି, ବଢ଼େଇ କାଠ ଖଟୁଲି ପଲଙ୍କର କାମ, କମ୍ମାର ଛୁରୀ ଗୁଆକାତି, ଗୁଡ଼ିଆ ମିଠେଇ ନେଇ ଜମିଦାର ଦୁଆରେ ହାଜର ହେଉଥିଲା । ଆଉ ଘର ଡିହରେ ତ ମୁଲିଆ ମହାକାଳିଆଙ୍କ ଅଧିକାର ନଥିଲା । ବାଡ଼ି ବଗିଚାରେ ଥିବା ଆମ୍ବ, ପଣସ, ନଡ଼ିଆ, ସପୁରୀଠାରୁ, ପୋଖରୀ ଗଡ଼ିଆର ମାଛ ଉପରେ ରଜା ଜମିଦାର ଓ ସେମାନଙ୍କ ଲୋକଙ୍କର ପାଉଣା ଓ ଜବରଦସ୍ତି ଥିଲା ଶୋଷଣର ଅତି ନଗ୍ନ ରୂପ ।

ଚାଷୀମାନଙ୍କ ମଧ୍ୟରେ ଜମି ବିକ୍ରି ଖର୍ଦ୍ଦି ହେଉଥିଲେ ଜମିଦାର ଜରସମନର ଶତକଡ଼ା ୨୫ ଭାଗ ନେଉଥିଲେ । ଖାତାଫଡ଼ା ରୋଷମ ଓ ଦାଖଲଖାରଜ ରୋଷମ, ତାହାଛଡ଼ା ପାଉତି କଟା, ପିଆଦା ବରକନ୍ଦାଜ ଖର୍ଚ୍ଚ ଇତ୍ୟାଦି କେତେ କ'ଣ ?

ଏହା ଅତି ସାମାନ୍ୟ କେତୋଟି ଦାବୀ ଯେତେବେଳେ ସେତେବେଳର କୃଷକ ସଭା

ମଞ୍ଚରୁ ଉଠିଲା ଓ ତତ୍‌କାଳୀନ ଅଳ୍ପ କେତେକ ଲଢୁଆ କମ୍ୟୁନିଷ୍ଟ ଓ ଅନ୍ୟମାନେ ଗାଁ'ଗହଳରେ ଏହି ବାର୍ତ୍ତା ସଭା ସମିତି ବୈଠକରେ ପ୍ରଚାର କଲେ, ସେତେବେଳେ ଓଡ଼ିଶାର ଗାଁ'ଗହଳରେ ବିଶେଷତଃ କଟକ, ପୁରୀ, ଗଞ୍ଜାମ, ବାଲେଶ୍ୱର ଜିଲ୍ଲାରେ ବିଜୁଳି ଖେଳିଗଲା । ଜମିଦାର ମହାଜନମାନଙ୍କ ମେଣ୍ଟ, ପୁଲିସର ଅତ୍ୟାଚାର, ଜେଲ ଜୋରିମାନାର ଇୟତ୍ତା ରହିଲା ନାହିଁ । ମନେ ରଖିବାକୁ ହେବ, କଂଗ୍ରେସର ଉଚ୍ଚ ମହଲ ନେତୃତ୍ୱ ଏହି ଜମିଦାର ଶ୍ରେଣୀଭିତରୁ ଆସିଥିବାରୁ ସଂଗ୍ରାମର ଏହି ପ୍ରଚଣ୍ଡ ରୂପକୁ ଖୋଲାଖୋଲି ବିରୋଧ କରିପାରୁ ନଥିଲେ ହେଁ ସହ୍ୟ କରିପାରୁ ନଥିଲେ । ଚାଷୀମାନେ ସେମାନଙ୍କ ହାତଛଡ଼ା ହୋଇ ଯାଉଛି ଇତ୍ୟାଦି ବିବୃତିମାନ ସମ୍ବାଦପତ୍ରରେ ପ୍ରକାଶ କରୁଥିଲେ ।

୧୯୩୫ ଶାସନ ଖସଡ଼ା ଅନୁସାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଆସିଲା ୧୯୩୮-୩୯ରେ । ଆଉ ଚାଷୀର ଏହି ସର୍ବନିମ୍ନ ଦାବୀଗୁଡ଼ିକ ହାସଲ ହେଲା । ବେଠି, ଭେଟି, ଦାଖଲ ଖାରଜ ରୋଷମ ଉଠିଗଲା । ମାତ୍ର ତା' ପୂର୍ବରୁ ଚାଷୀ ନେତାଙ୍କୁ ମାଛଚୋରି (ଏମାର ମଠ ମହନ୍ତ ଚାଷୀ ନେତା ମୋହନ ଦାସଙ୍କ ନାମରେ ଏହି ମକଦ୍ଦମା କରିଥିଲେ) ପ୍ରଭୃତି ଶହଶହ ମକଦ୍ଦମାରେ ପକାଯାଇଥିଲା ।

ଏହି ଆନ୍ଦୋଳନଟିର ପ୍ରଭାବରେ ଓଡ଼ିଶା ଗାଁ'ଗହଳରେ ଲୋକେ ବେଠି, ଭେଟି ବେଗାରିରୁ କେବଳ ମୁକ୍ତି ପାଇଲେ ନାହିଁ, ମଣିଷ ଭଳି ଗାଁ ଦାଣ୍ଡରେ ଚାଲିଲେ । ଆଜିର ବଂଶଧର ସେ କଥା କଳ୍ପନାକୁ ଆଣି ପାରିବେ ନାହିଁ । ରାଜା-ଜମିଦାର ମହାଜନ, ଗୌନ୍ତିଆଙ୍କ ପ୍ରସାଦ ବା ଘର ଆଗରେ, କଚେରୀ ଦାଣ୍ଡରେ ଏମିତିକି ଉଚ୍ଚ ବର୍ଣ୍ଣଙ୍କ ଗାଁ ଦାଣ୍ଡରେ ଛତା ଧରି, ଯୋତା ପିନ୍ଧି ଚାଲିବାର ସାହସ କାହାରି ନଥିଲା । ସାହସ କଲେ ମାଡ଼, ସମ୍ପତ୍ତି ବାଜ୍ୟାପ୍ତି ଏମିତିକି ମୃତ୍ୟୁବରଣ କରିବାକୁ ପଡୁଥିଲା ।

ସାରା ଓଡ଼ିଶାରେ ଥିବା ପକ୍କି ମାହାଲ ଯେମିତି ଜୟପୁର, ପାରଳାଖେମୁଣ୍ଡି, ଖଲିକୋଟ, ବଡ଼ଖେମୁଣ୍ଡି, ସାନଖେମୁଣ୍ଡି, ଧରାକୋଟ, ଚିକିଟି, ଶେରଗଡ଼, ଆଳି, କନିକା, ବର୍ଦ୍ଧମାନ, ପଦ୍ମପୁର ଆଉ ବଡ଼ବଡ଼ ଇଷ୍ଟେଟ ଓ ଜମିଦାର ଯେମିତି ଠାକୁର ଇଷ୍ଟେଟ, ମଣ୍ଡଳ, ହରିଶପୁର, ମଧୁପୁର, ଅଗରପଡ଼ା, ମରିଚପୁର, ଉତିକଣ, ମନ୍ମଥ ବୋଷ, ଦର୍ପଣୀ, ପଣ୍ଡିତ ଇଷ୍ଟେଟ, ଏମାର ମଠ, ଦକ୍ଷିଣ ପାର୍ଶ୍ୱ, ଉତ୍ତର ପାର୍ଶ୍ୱ ମଠ, ଆଉ ଛୋଟବଡ଼ ଲକ୍ଷାଧିକ ଜମିଦାରୀରେ ଏହି ପ୍ରଥାର ଉଚ୍ଛେଦ ଚାଷୀ ଆନ୍ଦୋଳନକୁ ନୂତନ ସ୍ତରକୁ ଘେନିଯିବାରେ ସାହାଯ୍ୟ କଲା । ଚାଷୀ ମନରେ ପ୍ରତ୍ୟୟ ହେଲା ଯେ ଜମିଦାର, ରଜା, ଗୌନ୍ତିଆ ସର୍ବରାକାର, ମୁସ୍ତାଦାର, ପ୍ରଧାନ ପ୍ରଭୃତିଙ୍କୁ ହରାଇ ହେବ ।

**ଗଡ଼ଜାତକୁ ସାମନ୍ତବାଦ ବିରୋଧ ଆନ୍ଦୋଳନର ପ୍ରସାର**

ମୋଗଲବନ୍ଦୀ ଓଡ଼ିଶାରେ ସମ୍ମିତ ହେଉପଛେ ଗଣତାନ୍ତ୍ରିକ ଅଧିକାର ହାସଲ, ଲୋକପ୍ରିୟ

ମନ୍ତ୍ରିମଣ୍ଡଳ ପ୍ରତିଷ୍ଠା, ସେତେବେଳେ ୨୬ ଗଡ଼ଜାତରେ ପଶୁଭଳି ଜୀବନ କାଟୁଥିବା ଗଡ଼ଜାତ ପ୍ରଜାଙ୍କ ମଧ୍ୟରେ ଏକ ନୂଆ ଚେତନା ଆଣିଦେଲା ।

୧୯୩୮ରେ କଟକ ଜିଲ୍ଲା ଜେନାପୁରଠାରେ ୫୦ ହଜାର କୃଷକ ଓ ଗଡ଼ଜାତ ପ୍ରଜାଙ୍କ ସମ୍ମିଳନୀରୁ ଡାକରା ଗଲା ଗଡ଼ଜାତ ପ୍ରଜାଙ୍କୁ । ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ କମ୍ୟୁନିଷ୍ଟମାନେ ମଧ ସେଥିରେ ବିଶିଷ୍ଟ ଭୂମିକା ନେଲେ । ଭଗବତୀଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକଙ୍କ ଦ୍ୱାରା ସଂପାଦିତ 'କୃଷକ' ପତ୍ରିକା ହେଲା, ଏହି ନୂତନ ଉଦ୍‌ବେଳନ ଓ ଚେତନାର ବାହକ ।

କଳାହାଣ୍ଡି, ବୌଦ୍ଧ, ବଲାଙ୍ଗିର, ବଣେଇ, ଗାଙ୍ଗପୁର, ସୋନପୁର, ମୟୁରଭଞ୍ଜ, ବାମଡ଼ା, ରେଢ଼ାଖୋଲ, ଆଠମଲ୍ଲିକ, ପାଲଲହଡ଼ା, କେଉଁଝର, ନୀଳଗିରି, ଢେଙ୍କାନାଳ, ଆଠଗଡ଼, ତିଗିରିଆ, ନରସିଂହପୁର, ବଡ଼ମ୍ବା, ଦଶପଲ୍ଲା, ରଣପୁର, ଖଣ୍ଡପଡ଼ା, ନୟାଗଡ଼, ହିନ୍ଦୋଳ, ତାଳଚେର ପ୍ରଭୃତି ୨୪ ଗଡ଼ଜାତରେ କେଉଁଠି ଅଧିକ କେଉଁଠି ଊଣା ଜାଗରଣ ଦେଖାଦେଲା । 'ହୁଙ୍କାପିଟା ଶାସନ ଲୋପ ହେଉ', ଗଡଜାତ ମୋଗଲବନ୍ଦୀ ଏକ ହେଉ, ଜଙ୍ଗଲରେ ପ୍ରଜାର ଅଧିକାର ସାବ୍ୟସ୍ତ ହେଉ, ବେଠି, ଭେଟି ଉଠୁ, ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠିତ ହେଉ ପ୍ରଭୃତି କେତୋଟି ସ୍ଲୋଗାନ ଦେଇ ଏହି ନୂତନ ସାମନ୍ତବାଦ ବିରୋଧୀ ଆନ୍ଦୋଳନ ଓଡ଼ିଶାର ଚାଷୀ ଆନ୍ଦୋଳନରେ ଏକ ନୂତନ ଅଧ୍ୟାୟ । ଭାରତରେ ଇଂରେଜ ରାଜ ନାମକ କମ୍ୟୁନିଷ୍ଟ ପୁସ୍ତିକା ସାଙ୍ଗକୁ, ବିଶେଷତଃ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ଲୁଚାଛପା ସାଇକ୍ଲୋଷ୍ଟାଇଲ ବେଆଇନ ପତ୍ରିକା 'ରଣଭେରୀ' ଆଉ 'କୃଷକ' ହେଲା ଏହି ଆନ୍ଦୋଳନର ଲଢୁଆ ଅସ୍ତ୍ର । ପ୍ରଜାମଣ୍ଡଳମାନ ଗଠିତ ହେଲା । ଗଡଜାତରେ କଂଗ୍ରେସର ସ୍ୱାଧୀନତା ବାର୍ତ୍ତା ସାଙ୍ଗକୁ କମ୍ୟୁନିଷ୍ଟମାନଙ୍କ ସାମନ୍ତବାଦ ପୁଞ୍ଜିବାଦକୁ ଧ୍ୱଂସ କରି ସମାଜବାଦ ପ୍ରତିଷ୍ଠା କରିବା ଲାଗି ସଂଗ୍ରାମର ବାର୍ତ୍ତା ପହଞ୍ଚିଗଲା ।

କମ୍ୟୁନିଷ୍ଟମାନେ ଢେଙ୍କାନାଳ, ନୀଳଗିରି, ରଣପୁର, ଦଶପଲ୍ଲା, ନୟାଗଡ଼, ଖଣ୍ଡପଡ଼ା ପ୍ରଭୃତି ଗଡ଼ଜାତର ପ୍ରଜା ଆନ୍ଦୋଳନକୁ ଅତ୍ୟନ୍ତ ଲଢୁଆ କରିବାରେ ବିଶେଷ ଅଂଶ ଗ୍ରହଣ କରିଥିଲେ । କମ୍ୟୁନିଷ୍ଟ ମତବାଦ ଗ୍ରହଣ ନ କଲେ ସୁଦ୍ଧା ବହୁ ଗଡ଼ଜାତର ପ୍ରଜାମଣ୍ଡଳ ନେତା କଂଗ୍ରେସର ତୁଙ୍ଗନେତା ପାଖକୁ ନ ଯାଇ କମ୍ୟୁନିଷ୍ଟ ନେତାମାନଙ୍କ ସହିତ ଆନ୍ଦୋଳନର ଧାରା, ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସମ୍ପର୍କରେ ଆଲୋଚନା କରି ନିଷ୍ପତ୍ତି ନିର୍ଦ୍ଧାରଣ ନେଉଥିଲେ । ଢେଙ୍କାନାଳରେ ଗୁଳି ଖାଇ ବାଜି ରାଉତ ପ୍ରଭୃତିଙ୍କ ହତ୍ୟା, ରଣପୁରରେ ବେଜେଲଗେଟ ହତ୍ୟା ଯୋଗୁଁ ରଘୁ, ଦିବାକର ଫାଶି, ସବୁ ଗଡ଼ଜାତରେ ଶହଶହ ପ୍ରଜାମଣ୍ଡଳ କର୍ମୀ ଗିରଫ, କାରାବରଣ ଲୁଟପାଟରେ ସମ୍ମୁଖୀନ ହୋଇ ବି ପ୍ରଜାଙ୍କ ଆନ୍ଦୋଳନ ବଢ଼ିଚାଲିଲା ।

ଦ୍ୱିତୀୟ ମହାଯୁଦ୍ଧ ଆସିଯିବାରୁ ଏହି ଆନ୍ଦୋଳନ ସ୍ଥଗିତ ରହି ଯେତେବେଳେ ସ୍ୱାଧୀନତା

ପରବର୍ତ୍ତୀ ଯୁଗରେ ଦ୍ୱିତୀୟବାର ମୁଣ୍ଡ ଟେକି ଉଠିଲା, ସେତେବେଳେ ନୀଳଗିରି ଢେଙ୍କାନାଳ ପ୍ରଭୃତିରେ କମ୍ୟୁନିଷ୍ଟମାନେ ଆନ୍ଦୋଳନକୁ ରାଜାରାଜୁଡ଼ାଙ୍କୁ ଗାଦିଚ୍ୟୁତ କରି ଉଆସ ଦାଖଲ କରିବା ପର୍ଯ୍ୟାୟକୁ ଘେନିଗଲେ । ନୀଳଗିରିରେ ହାତହତିଆର ଧରି ମୁକାବିଲା କଲେ, ରଜାର ଗୁଣ୍ଡା ବାହିନୀର ଆକ୍ରମଣକୁ କମ୍ୟୁନିଷ୍ଟମାନେ ସଶସ୍ତ୍ର ସଂଗ୍ରାମ କରି ଓଡିଶା ସରକାରଙ୍କ ନୀଳଗିରି ଦଖଲକୁ ସୁଗମ କରିଦେଲେ । ସେହି କାରଣରୁ ୧୯୪୭ ଡିସେମ୍ବର ୧୪ ତାରିଖରେ ଗଡ଼ଜାତଗୁଡିକ ମିଶ୍ରଣ ବେଳେ ସର୍ଦ୍ଦାର ପଟେଲ କଟକ ସଭାରେ କମ୍ୟୁନିଷ୍ଟମାନଙ୍କ ପ୍ରଭାବ ବିରୋଧରେ କହିଥିଲେ, "କ'ଣ ଚୋରଙ୍କ ହାତରୁ ନେଇ ଆମେ ଡାକୁଙ୍କ ହାତରେ ଗଡ଼ଜାତକୁ ଦେଇଦେବୁ ।" ସେ ରାଜାମାନଙ୍କ ପାଇଁ ମୋଟା ଭତ୍ତା ଓ ଅନେକ ସୁବିଧା ସୁଯୋଗ ଖଞ୍ଜିଦେଲେ ।

ତେବେ ଓଡିଶାର ସାମନ୍ତବାଦୀ ଦୁର୍ଗ ଗଡ଼ଜାତଗୁଡ଼ିକର ମିଶ୍ରଣ ଏବଂ ରାଜାମାନଙ୍କର ଶାସନର ବିଲୋପରେ ଓଡ଼ିଶାର କମ୍ୟୁନିଷ୍ଟମାନଙ୍କ ଭୂମିକା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । କାରଣ ସେହି ଦିନୁଁ ଆଜି ଯାଏ ଗଡ଼ଜାତର ରାଜାମାନଙ୍କ ବିରୋଧରେ ଯଦି କେହି ଧାରାବାହିକ ସଂଗ୍ରାମ ଉଭୟ ରାଜନୈତିକ, ଆର୍ଥିକ ଓ ସାମାଜିକ କ୍ଷେତ୍ରରେ ଆପୋଷହୀନ ଭାବରେ ଚଳାଇ ଆସିଛି, ସେମାନେ ହେଉଛନ୍ତି କମ୍ୟୁନିଷ୍ଟ । ରାଜାମାନେ ମହାକୋଶଳ ପ୍ରଦେଶ ଗଠନ ନାମରେ, ଗଣତନ୍ତ୍ର ପରିଷଦ ନାମରେ, ସ୍ୱତନ୍ତ୍ର ଦଳ ନାମରେ, କେତେବେଳେ ମହତାବ, କେତେବେଳେ ବିଜୁଙ୍କ ସହିତ ମିଶି ଓଡ଼ିଶାର ରାଜନିତୀକୁ ଓ ଅର୍ଥନୀତିକୁ ସାମନ୍ତବାଦୀ ଢଙ୍ଗରେ ଚଳାଇବାକୁ ଯେତେ ଉଦ୍ୟମ କରି ଆସିଛନ୍ତି, କମ୍ୟୁନିଷ୍ଟମାନେ ନିରବଚ୍ଛିନ୍ନ ଭାବରେ ତାହାର ଦୃଢ଼ ପ୍ରତିରୋଧ କରି ଆସିଛନ୍ତି । ଅଥଚ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଜଡ଼ିତ ଅନ୍ୟ ଅନେକ ନେତା ଗଡ଼ଜାତର ପୂର୍ବତନ ରାଜାମାନଙ୍କ ସହିତ ସାଲିସ କରିଛନ୍ତି, ସେମାନଙ୍କୁ ଓଡ଼ିଶା ଶାସନଗାଦିକୁ ଅଣେଇଛନ୍ତି ଓ ସେମାନଙ୍କ ସହିତ ଭାଗୁଆଳ ହୋଇ ଓଡ଼ିଶାରେ ସାମନ୍ତବାଦ ବିଲୋପ ପ୍ରକ୍ରିୟାକୁ ମନ୍ଥର କରି ସାମନ୍ତବାଦୀ ଶୋଷଣକୁ ଜିଆଇ ରଖିବାରେ ସାହାଯ୍ୟ କରିଛନ୍ତି ।

**ଫସଲର ଲଢ଼େଇ**

ବେଠି, ଭେଟି, ଦାଖଲ ଖାରଜ ରୋଷମ ବିରୋଧରେ ଆଉ ଗଡ଼ଜାତ ରାଜାମାନଙ୍କ ରାଜତ୍ୱ ବିରୋଧରେ ଆନ୍ଦୋଳନରେ; ଯେଉଁଥିରେ ସେତେବେଳେ ମୁଷ୍ଟିମେୟ ହେଲେ ବି କମ୍ୟୁନିଷ୍ଟମାନେ ବିଶିଷ୍ଟ ଭୂମିକା ନେଇଛନ୍ତି; ସେହି ଆନ୍ଦୋଳନର ସଫଳତା ପରେ ଓଡ଼ିଶାରେ ଆରମ୍ଭ ହୋଇଛି ଫସଲର ଆନ୍ଦୋଳନ । ଫସଲର ଲଢ଼େଇ ଓ ଜମିଦାରୀ ପ୍ରଥା ଉଚ୍ଛେଦ ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କର ନେତୃତ୍ୱ ଅପ୍ରତିଦ୍ୱନ୍ଦୀ । 'ଲଙ୍ଗଳ ଯା'ର ଜମି ତା'ର', 'ମଠ ଧନ କୋଠ ହେଉ' 'ଜମିଦାରୀ ପ୍ରଥା ବିନା କ୍ଷତି ପୂରଣରେ ଉଚ୍ଛେଦ କର' ଧ୍ୱନି ଓ ସେଥିଲାଗି ସଂଗଠିତ ସଂଗ୍ରାମର ଅସଲ ବିନ୍ଧାଣୀ କମ୍ୟୁନିଷ୍ଟମାନେ । ଆଗରୁ ଯେଉଁସବୁ ଗଣତାନ୍ତ୍ରିକ ଶକ୍ତି ଓ ବ୍ୟକ୍ତି, ସାମନ୍ତବାଦ ବିରୋଧୀ ପ୍ରଥମ ପର୍ଯ୍ୟାୟ ଆନ୍ଦୋଳନରେ ଅଂଶୀଦାର

ଥିଲେ, ଏହି ଫସଲର ଲଢ଼େଇ ବେଳକୁ ସେମାନଙ୍କର ରାଜନୈତିକ ବିରୋଧତା ପ୍ରବଳ ହୋଇ ଉଠିଲା । କଂଗ୍ରେସ ଶାସନ ପ୍ରକାରାନ୍ତରେ ଏହାର ମଧ୍ୟ ବିରୋଧ କଲା ।

ଗଞ୍ଜାମରେ ଫସଲର ଲଢ଼େଇ ଚାଲିଲା ଖୋଦ କମ୍ୟୁନିଷ୍ଟମାନଙ୍କ ନେତୃତ୍ୱରେ । ତାହା ମୁସ୍ତାଦାରୀ ଓ ଇନାମଦାରୀ ପ୍ରଥା ବିରୋଧରେ ସଂଗ୍ରାମ ବୋଲି ଖ୍ୟାତ । ଗଞ୍ଜାମର ପକ୍କି ମାହାଲ ଜମିଦାରୀମାନଙ୍କରେ ଜମିଦାରମାନେ ବସ୍ତୁତଃ ସବୁ ଗାଁ, ସବୁ ଜମିର ମାଲିକ । ସେମାନେ ଜମିର ଅଧେ ଭାଗ ସିଶା ହିସାବରେ ନିଅନ୍ତି । ଗାଁ'କୁ ଗୁତା ବା ଇଜାରା ଦିଆଯାଏ । ସେହତ ଗୁତାକୁ ଧରନ୍ତି ମୁସ୍ତାଦାରମାନେ । ମୁସ୍ତାଦାର ଗୁତା ଧନ ରାଜଘରେ ବାନ୍ଧି ଦେଇ ଚାଷୀ ଉତାରିଥିବା ଫସଲରୁ ଆଇନଗତ ଭାବରେ ଅଧେକ ନେଇଯାଏ । ମୁସ୍ତାଦାରଙ୍କ ଖଳାକୁ ଯାଏ ଗାଁର ସବୁ ଚାଷୀଙ୍କ କଳେଇ ବା ହଳା । ମୁସ୍ତାଦାର ସାକ୍ଷାତ ଯମ । ଫସଲର ଅଧେ ଭାଗ ଛଡ଼ା ଆଉ ଅନେକ ପାଉଣା ନିଏ ମୁସ୍ତାଦାର । ରୟତକୁ କୁହାଯାଏ ଜିରେଇତି ରୟତ । ଶାଗ, ମୁଗ ଯାହା ଚାଷୀ ଫଳାଏ ସେଥିରେ ଅଧେ ମୁସ୍ତାଦାରର । ବାଇଗଣ କଶିଟାଏ ଚାଷୀ ଛୁଆ ତୋଳିଲେ ତାକୁ ମାଡ଼, ଦାବୀ ଦରବର (ମକଦ୍ଦମା) ଆଉ ପୁଲିସ ସାହାଯ୍ୟରେ ଜେଲ୍ ଜରିମାନା ।

ଇନାମଦାରମାନେ ଯେମିତି ହଜାର ହଜାର ଏକର ଜମିଥିବା କଂଗ୍ରେସ ନେତା ବିଶ୍ୱନାଥ ଦାସ ନିଷ୍କର ଜମି ଭୋଗ କରନ୍ତି ଆଉ ଫସଲର ୩ ଭାଗ ସେମାନେ ନେଇଯାନ୍ତି । ଇନାମ ଚାଷୀ ପ୍ରକୃତରେ ଇନାମଦାର ଘରେ ବନ୍ଧା ପଡିଥିବା ଚାଷୀ । ପଳାଇବାର ଯୁ ନାହିଁ । ଗଲେ ଇନାମଦାରର କଚେରୀରେ ମାଡ - ଏମିତିକି ହତ୍ୟା ।

ଏହି ପ୍ରଥା ବିରୋଧରେ ୧୯୪୫ ଜୁନ ମାସରେ ଆସ୍କାରେ ୧୫ ହଜାର ରୟତଙ୍କ ସମ୍ମିଳନୀ, ୧୯୪୭ ନଭେମ୍ବରରେ ତାକରଡାରେ ୨୫ ହଜାର ରୟତଙ୍କ ସମ୍ମିଳନୀ, ୧୯୪୭ ଶେଷଭାଗରେ ବହ୍ମପୁରଠାରେ ୧୫ ହଜାର ରୟତଙ୍କ ସମ୍ମିଳନୀ । ତାକରଡ଼ାରେ ମହତାବଙ୍କ ଗୁଳିକାଣ୍ଡରେ ୧୯୪୮ ମଇ ୨୪ ତାରିଖରେ ୬ଟି ବାର ବର୍ଷର ଝିଅ ହେମା, କୋଇଲି, ସୁବେଇନି, କନ୍ଧୁଣୀ, ଡାକୁଆଣୀ ଆଉ ଅର୍ଜୁନ ଓ ତା' ବାପାର ନିର୍ମମ ହତ୍ୟା, ୪୦ ଜଣ ଆହତ ଓ ୧୮୦ ଜଣକୁ ଜେଲ୍ । ଏହା ଏହି ବିରାଟ ଆନ୍ଦୋଳନର ଗୋଟିଏ ଗୋଟିଏ ସ୍ମରଣୀୟ ଦିବସ ।

ବ୍ୟାପକ ଏହି ଆନ୍ଦୋଳନ । କଂଗ୍ରେସ, ରଜା ଓ ବିଶ୍ୱନାଥ ଦାସଙ୍କ ପରି ଧନୀ ଚାଷୀଙ୍କୁ ଘେନି ଗଠିତ ଜମିଦାରୀ ରୟତ ସଭାର ବିରୋଧ, ଦମନ, ହତ୍ୟାର ମୁକାବିଲା କରି କମ୍ୟୁନିଷ୍ଟ ପାର୍ଟି ଗଞ୍ଜାମରୁ ଚିରଦିନ ଲାଗି ମୁସ୍ତାଦାରୀ ଇନାମଦାରୀ ପ୍ରଥା ଲୋପ କରାଇଲା ।

୧୯୪୩ ରେ ପାରଳା ମନ୍ତ୍ରିମଣ୍ଡଳ ସର୍ବପ୍ରଥମ ଜନତାର ଦାବୀ ପାଖରେ ମୁଣ୍ଡ ନୁଆଁଇ ମୁସ୍ତଦାରୀ ପ୍ରଥା ଲୋପ କରି କୋଠ ରୟତାନି ଗୁତା ପ୍ରବର୍ତ୍ତନ କଲା । ମାତ୍ର ଏଥିରେ ଶୋଷଣ ନିହିତ ରହିଲା । ସ୍ୱାଧୀନତା ପୂର୍ବରୁ ଓ ପରବର୍ତ୍ତୀ ଯୁଗରେ ସିଶ କଟା ଓ ନଗଦ ସିଶ ପାଇଁ

ଆନ୍ଦୋଳନ କମ୍ରେଡ଼ ଗୋବିନ୍ଦ ପ୍ରଧାନ ଓ ହରିହର ଦାସ, ସାଧୁଚରଣ ମହାନ୍ତି, ଗୁରୁଚରଣ ପଟ୍ଟନାୟକ ପ୍ରମୁଖଙ୍କ ନେତୃତ୍ୱରେ ବ୍ୟାପକ ଓ ପ୍ରବଳତର ହେଲା । ୧୯୪୬ରେ ଦ୍ୱିତୀୟବାର କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ମହତାବ, ରାଜସ୍ୱମନ୍ତ୍ରୀ ନବବାବୁ ଆଉ ସେତେବେଳର ସୋସାଲିଷ୍ଟ ପାର୍ଟିର ସୁରେନ୍ଦ୍ର ଦ୍ୱିବେଦୀଙ୍କ 'କୃଷକ' ସ୍ୱରୂପ ଉଦ୍‌ଘାଟିତ ହୋଇଥିଲା ।

୧୯୪୬ ସେପ୍ଟେମ୍ବରରେ ରାଜସ୍ୱମନ୍ତ୍ରୀ ଶ୍ରୀ ଚୌଧୁରୀଙ୍କୁ ଗଞ୍ଜାମର ୨୦୦ ରୟତ ଭେଟି ସିଶକାଟ ଦାବୀ କଲେ । ରାଜସ୍ୱମନ୍ତ୍ରୀ ମୁହଁରେ ପ୍ରତିଶ୍ରୁତି ଦେଲେ ମଧ ଗଞ୍ଜାମର ତତ୍‌କାଳୀନ କଂଗ୍ରେସ ଏମ୍. ଏଲ୍. ଏ ଶ୍ରୀ ଜଗନ୍ନାଥ ମିଶ୍ରଙ୍କୁ ଲେଖିଲେ ସିଶକାଟ ଆଇନ ହେବା ସମ୍ଭବ ନୁହେଁ । ଦିନେ ଥିଲେ କୃଷକ ଆନ୍ଦୋଳନର ତୁଙ୍ଗ ନେତା ଶ୍ରୀ ଚୌଧୁରୀ - ସାମାନ୍ୟ ସିଶକାଟ ଦାବୀଟିକୁ ସେ ଅଗ୍ରାହ୍ୟ କଲେ ।

ଶ୍ରୀ ମହତାବଙ୍କର କ୍ରୋଧ ପ୍ରଜ୍ୱଳିତ ହେଲା । ରୟତ ଆନ୍ଦୋଳନକୁ ମୂଳରୁ ଶେଷ କରି ଦେବାକୁ ସେ ଗିରଫଦାରୀ, ଟାକରଡ଼ା ଗାଁରେ ପୁଲିସ ଛାଉଣି, ଶେରଗଡ଼ ରାଜାଙ୍କ ଘରେ ଭୋଜିଭାତ, ("ଜମିଦାର ତାଙ୍କୁ ଉଦ୍ୟାନ ଭୋଜିରେ ଆପ୍ୟାୟିତ କଲେ" - ପ୍ରଜାତନ୍ତ୍ର) । ଚୌଧୁରୀ ଯେଉଁ ସିଶକାଟ ହେବ ନାହିଁ କହିଥିଲେ; ସେରଗଡ ରୟତ ସମ୍ମିଳନୀର ୭ ଦିନ ପରେ ସିଶକାଟ ଘୋଷଣା କଲେ । ମାତ୍ର ଆଇନରେ ଏପରି ପେଞ୍ଚ ରହିଲା ଯେ ଚାଷୀ ଖଳାକୁ ଧାନ ନେଇ ପାରିଲା ନାହିଁ । ମାସମାସ ଧରି ପୁଲିସ ହୁକୁମରେ ଖନ୍ଦ ବିଲରେ ସଢ଼ି ପଚିଗଲା । ମୁକ୍ତିଯୁଦ୍ଧ ଉପରେ ନିଷେଧାଦେଶ, ଗଞ୍ଜାମ ରୟତ ଆନ୍ଦୋଳନ ଓ ଟାକରଡା ଗୁଳିକାଣ୍ଡ ସମ୍ପର୍କରେ ସମ୍ବାଦ ପ୍ରକାଶ କରିବାକୁ ମହତାବଙ୍କ ନିଷେଧାଜ୍ଞା ଜାରି ହେଲା ।

ଏହାକୁ ସମର୍ଥନ କରି ସୋସାଲିଷ୍ଟ ପାର୍ଟିର ମୁଖପତ୍ର ଲେଖିଲା, "ଜଣାଯାଉଛି ହୁଏତ ସରକାର ବାଧ ହୋଇ ଗୁଳି କଲେ" । "ଗଞ୍ଜାମରେ ରକ୍ତ ପ୍ରଭାତ" ନାମକ ପୁସ୍ତିକା ଏହି ଆନ୍ଦୋଳନର ଇତିହାସ ଦିଏ ।

କିନ୍ତୁ ଏସବୁ ସତରେ କମ୍ୟୁନିଷ୍ଟମାନଙ୍କ ବଳିଷ୍ଠ ନେତୃତ୍ୱ, ରୟତମାନଙ୍କର ବଜ୍ରଦୃଢ଼ ଏକତା ଯୋଗୁଁ ମୁସ୍ତାଦାରୀ - ଇନାମଦାରୀ ଲୋପ ହେଲା; କାର୍ଜିକରଣ ପ୍ରଥା ବିରୋଧରେ ରୟତସଭାର ଆନ୍ଦୋଳନ ସଫଳ ହେଲା ଏବଂ ଏହି ସଂଗ୍ରାମର ସମୁଦାୟ ଫଳ ହେଲା ଓଡ଼ିଶାର ଗୌନ୍ତିଆ, ସର୍ବରାକାର; ପ୍ରଧାନ ପ୍ରଭୃତି ସାମନ୍ତବାଦୀ ଶୋଷଣର ସ୍ତମ୍ଭଗୁଡ଼ିକ ଭୁଷୁଡ଼ି ପଡ଼ିଲା ।

ମୁସ୍ତାଦାରୀ ଓ ଇନାମଦାରୀ ପ୍ରଥା ବିରୋଧରେ ଆନ୍ଦୋଳନ ଏକ ପକ୍ଷରେ ଭାଗଚାଷୀଙ୍କର ଆନ୍ଦୋଳନ, ଅନ୍ୟ ପକ୍ଷରେ ଚାଷୀ ଚାଷ କରୁଥିବା ଜମିରେ ସ୍ୱତ୍ୱ ହାସଲର ମଧ୍ୟସ୍ୱତ୍ୱାଧିକାରୀ ପ୍ରଥା ବିଲୋପର ଆନ୍ଦୋଳନ ମଧ ।

**ଲଙ୍ଗଳ ଯା'ର ଜମି ତା'ର**

ଗଞ୍ଜାମର ଯୁଗାନ୍ତକାରୀ ମୁସ୍ତାଦାରୀ ପ୍ରଥା ବିରୋଧୀ ଆନ୍ଦୋଳନର ଆଉ ଏକ ପର୍ଯ୍ୟାୟ

ହେଲା ୧୯୪୮ରୁ ଗଞ୍ଜାମର ଛତ୍ରପୁର, ସମଗ୍ର ପୁରୀ ଜିଲ୍ଲା, କଟକ ଜିଲ୍ଲାର ବହୁ ଅଞ୍ଚଳ, ବାଲେଶ୍ୱର ପ୍ରଭୃତିରେ ଚାଲିଥିବା ଭାଗଚାଷୀ ଆନ୍ଦୋଳନ । ଆନ୍ଦୋଳନର ରୂପ ବଦଳିଗଲା । ଏହି ଆନ୍ଦୋଳନ ଭିତରେ ସମାଜର ନୂଆନୂଆ ଅଂଶ; ଅର୍ଥାତ୍ ଖୁବ୍ ଗରିବ ଚାଷୀ, କ୍ଷେତ ମୂଲିଆ, ହରିଜନ, ଭୂମିହୀନମାନେ ଆସିଗଲେ । ଏହି ସଂଗ୍ରାମ ସରି ନାହିଁ, ଆନ୍ଦୋଳନ ଆଜି ବି ଚାଲିଛି । ଆଉ ଏହି ଭାଗଚାଷୀ ଆନ୍ଦୋଳନର ସୂତ୍ରପାତ କଲେ କମ୍ୟୁନିଷ୍ଟମାନେ । ଖୋର୍ଦ୍ଧା, ଓଳସିଂ, ବୋଲଗଡ଼, ବେଗୁନିଆ, ନିମାପଡା, କାକଟପୁର, ଚନ୍ଦକା, ଜଟଣୀ, ଗୋପ, ବାଲିପାଟଣା, ବାଲିଅନ୍ତା ପ୍ରଭୃତିରେ ଭାଗଚାଷ ଆନ୍ଦୋଳନ ଯେପରି ବନାଗ୍ନି ପରି ବ୍ୟାପିଗଲା । ଆଉ ଜମି ମାଲିକ, ମଠ ମହନ୍ତ, ସର୍ବରାକାର, ମହାଜନମାନେ ପୁଲିସ ଓ ଗୁଣ୍ଡା ସାହାଯ୍ୟରେ ଏହି ଭାଗଚାଷୀମାନଙ୍କର ସଂଗ୍ରାମକୁ ନିଃଶେଷ କରିଦେବାକୁ ଉଦ୍ୟମ କଲେ । ମାତ୍ର ଏହି ଢେଉ ବ୍ୟାପିଲା କଟକ ଜିଲ୍ଲାର ଅରଦାଉଳିଆ, ମଙ୍ଗଳପୁର, ସୁକିନ୍ଦା, ଧର୍ମଶାଳା, ପାଟକୁରା, ସାଲେପୁର ପ୍ରଭୃତି ଅଞ୍ଚଳକୁ ତେଣେ ବାଲେଶ୍ୱରର ସୋରୋ, ଚାନ୍ଦବାଲି ଭଦ୍ରକ ଆଡ଼କୁ ।

କମ୍ୟୁନିଷ୍ଟମାନଙ୍କ ଦ୍ୱାରା ପରିଚାଳିତ ଏହି ଆନ୍ଦୋଳନ ଦେଖି ଆତଙ୍କ ମଣି ସୋସାଲିଷ୍ଟମାନେ ମଧ୍ୟ ସଂସ୍କାରବାଦୀ ଢଙ୍ଗରେ ଆନ୍ଦୋଳନରେ ଅବତୀର୍ଣ୍ଣ ହେଲେ । ମାତ୍ର ଏହି ଭାଗଚାଷ ଆନ୍ଦୋଳନ ଯେ ଜମିର ଲଢ଼େଇ, ପୂରାପୂରି ଉତ୍ପାଦନ କ୍ଷେତ୍ରରୁ ସାମନ୍ତବାଦକୁ ଲୋପ କରିବାର ସଂଗ୍ରାମ । ସଂଗଠିତ ହୋଇ ଭାଗଚାଷୀମାନେ ବିଲରୁ ହଲ ପ୍ରଥମେ ଅଧାଭାଗ କରିଦେଲେ । ଜମିମାଲିକ ବିଲରୁ ନେଉ ତା'ର ଅଧା ଭାଗ । ଜମି ମାଲିକମାନେ ଭାଗଚାଷୀକୁ ଉଚ୍ଛେଦ କରିବାକୁ ଆସିଲେ, ସମସ୍ତେ ମିଳିତ ହୋଇ ତାର ପ୍ରତିରୋଧ କଲେ । ଭାଗଚାଷୀମାନଙ୍କୁ, ଚାଷୀ ଆନ୍ଦୋଳନରେ ନେତାମାନଙ୍କୁ ଶହଶହ ପୁଲିସ କେଶ୍‌ରେ ପକାଗଲା । ମାଠିଆ ଚୋରି, ନଡ଼ିଆ ଚୋରି, ଲଙ୍ଗଳ ଚୋରି (କମ୍ରେଡ଼ି ପ୍ରାଣନାଥ ପଟ୍ଟନାୟକଙ୍କୁ ଲଙ୍ଗଳ ଚୋରି ମକଦ୍ଦମାରେ ପକା ଯାଇଥିଲା) ମାତ୍ର ଏ ଆନ୍ଦୋଳନ ଦବିଲା ନାହିଁ । କଂଗ୍ରେସ ସରକାରକୁ ୧୯୪୮ରେ ଓଡ଼ିଶା ଭାଗଚାଷୀ ସପକ୍ଷରେ ଆଇନଟି ଅଧିକ ଢଳିଥିଲେ ହେଁ ପ୍ରଥମ ଥର ପାଇଁ ଆଇନଗତ ଭାବେ ସ୍ଥିର ହେଲା ଯେ ୩୩ ଏକର ବା ତା'ଠାରୁ ଅଧିକ ଜମିଥିବା ଜମି ମାଲିକମାନେ ଭାଗଚାଷୀଙ୍କୁ ଉଚ୍ଛେଦ କରି ପାରିବେ ନାହିଁ । ଆଉ ସବୁ ଜମିରେ ଭାଗଚାଷୀ ଫସଲର ଦଶଅଣା ଓ ଜମି ମାଲିକ ଛ'ଅଣା ପାଇବ । ଆଇନ ହେଲେ ଜମି ମିଳେ ନାହିଁ କି ଜମିରୁ ବନ୍ଦ ହୁଏ ନାହିଁ କି ୧୦ ଅଣା ଛ'ଅଣା ଭାଗ ମିଳେ ନାହିଁ । ଜମି ମାଲିକ ପକ୍ଷରେ ପୁଲିସ, ସରକାର ଓ ଅର୍ଥ ।

ଏହାକୁ କାର୍ଯ୍ୟକାରୀ କରେଇବ କିଏ ? ଭାଗଚାଷୀ ନିଜେ – ଆଉ ନେତୃତ୍ୱ ଦେବ କମ୍ୟୁନିଷ୍ଟ ପାର୍ଟି । ଆଇନରେ ଆନ୍ଦୋଳନ ଥମିଗଲା ନାହିଁ, ଆହୁରି ବଢ଼ିଲା । ଦାବୀ ମଧ୍ୟ ଆହୁରି ଶାଣିତ ହେଲା । ଜେଲ, ଜରିମାନା, ଗୁଣ୍ଡା ଆକ୍ରମଣ, ପୁଲିସ ଜୁଲୁମ ଓ କଂଗ୍ରେସ ମନ୍ତ୍ରୀମଣ୍ଡଳର ଦମନ ଯନ୍ତ୍ର ସତ୍ତ୍ୱେ ଅନ୍ଦୋଳନର ବ୍ୟାପକତା ହେତୁ ପୁଣି ୧୯୫୫ରେ ଓଡ଼ିଶା ଟେନାଣ୍ଟସ୍

ରିଲିଫ୍ ଆଇନ ପ୍ରଣୀତ ହୋଇ ୧୯୫୪ ଜୁଲାଇରୁ ପିଛିଲା ତାରିଖରୁ କାର୍ଯ୍ୟକାରୀ ହେବ ବୋଲି ସ୍ଥିର ହେଲା । ଏଇ ଆଇନରେ ୩୩ ଏକର ନୁହେଁ, କୌଣସି ଜମି ମାଲିକ ଭାଗଚାଷୀକୁ ଉଚ୍ଛେଦ କରି ପାରିବ ନାହିଁ ଆଉ ଫସଲରେ ଭାଗଚାଷୀର ବାରଅଣା ଆଉ ଜମି ମାଲିକର ଚାରିଅଣା ଭାଗ ସ୍ଥିର ହେଲା । ମାତ୍ର ଭାଗଚାଷୀ କଚେରୀରେ ସେ ଦଖଲକାର ଅଛି ପ୍ରମାଣଦେଲେ ଯାଇଁ ଚାଷୀ ହୋଇ ପାରିବ । ଏହି ସବୁ ସୂତ୍ର ଖଞ୍ଜା ଯାଇଥିବାରୁ ବ୍ୟାପକ ଭାବରେ ଜମି ମାଲିକମାନେ ଭାଗଚାଷୀକୁ ଉଚ୍ଛେଦ କଲେ, ମାତ୍ର ଯେଉଁଠି ସଙ୍ଗଠିତ ଚାଷୀ ମୂଲିଆ ବା ଭାଗଚାଷୀକୁ କମ୍ୟୁନିଷ୍ଟମାନେ ଐକ୍ୟବଦ୍ଧ କରିପାରିଲେ, ସେ ସବୁ ସ୍ଥାନରେ ହଜାରହଜାର ଏକର, ଜମି ଭାଗଚାଷୀଙ୍କ ଦଖଲରେ ରହିଲା । ଛତ୍ରପୁର, ପୁରୀ, କଟକ, ବାଲେଶ୍ୱରର ବହୁ ସ୍ଥାନରେ ଜମି ମାଲିକମାନେ ଆଇନ ବଳରେ ଡିଗ୍ରୀ ପାଇ ସୁଦ୍ଧା ଜମିରୁ ଉଚ୍ଛେଦ ନ କରି ପାରି ଭାଗଚାଷୀମାନଙ୍କୁ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ଅଧେ ଜମି ଛାଡ଼ିଦେଇ ବାକି ଅଧକ ଜମି ପାଇଁ ସାମାନ୍ୟ ଜରସମନ ନେଇ ବିକ୍ରି କରିଦେଲେ ।

କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱ ଛୋଟକୋଟ ଜମି ମାଲିକମାନଙ୍କ ଉପରେ ଆକ୍ରମଣ ନ କରି ବଡ଼ବଡ଼ ଧନୀଚାଷୀଙ୍କ ଉପରେ ଆଘାତ ହାଣି ଛୋଟଛୋଟ ଭାଗଚାଷୀ ଓ ଭୂମିହୀନଙ୍କ ମଧ୍ୟରେ ଏକତା ରକ୍ଷା କରିବାକୁ ଚେଷ୍ଟା କଲା । ଘର ଡିହ ଲାଗି, ମହାଜନୀ ଋଣ ରଦ୍ଦ ଲାଗି ଆନ୍ଦୋଳନ ମଧ କମ୍ୟୁନିଷ୍ଟମାନଙ୍କ ସାମନ୍ତବାଦ ବିରୋଧୀ ସଂଗ୍ରାମର ଗୋଟିଏ ଗୋଟିଏ ପର୍ଯ୍ୟାୟ ।

**ଜମିଦାରୀ ଉଚ୍ଛେଦ ଆନ୍ଦୋଳନ**

ଓଡ଼ିଶାରୁ ଜମିଦାରୀ ପ୍ରଥା ଉଚ୍ଛେଦ କରି, ବିନା କ୍ଷତିପୂରଣରେ ସମସ୍ତ ମଧ୍ୟସ୍ୱତ୍ୱାଧିକାରୀ ପ୍ରଥା ଲୋପ କରି, ଏହି ସଂଗ୍ରାମରେ କମ୍ୟୁନିଷ୍ଟମାନଙ୍କ ଭୂମିକା ମଧ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଜମିଦାରୀ ଉଚ୍ଛେଦରେ ଉତ୍କଳର ନୂଆ କଳେବର ନାମକ କମ୍ୟୁନିଷ୍ଟ ପାର୍ଟିର ପୁସ୍ତିକା ସେତେବେଳେ ଚିନ୍ତାଶୀଳ ମହଲରେ ଆଲୋଡ଼ନ ସୃଷ୍ଟି କରିଥିଲା । ୧୯୪୮ରେ ଜଗତସିଂହପୁର ଥାନା ରଘୁନାଥପୁରଠାରେ ରାଜସ୍ୱମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ଜମିଦାରୀ ପ୍ରଥା ଉଠିବ ବୋଲି ଘୋଷଣାକରି ସବୁ ଜମିଦାରଙ୍କୁ ସତର୍କ କରିଦେଲେ । ଜମିଦାରମାନେ ଯେତେ ନିଜଚାଷ, ନିଜଜୋତ ଥିଲା, ତାକୁ ନିଜ ପରିବାର ଆତ୍ମୀୟଙ୍କ ନାମରେ ପଟ୍ଟା କରିଦେଲେ, ଜମୀଦାରୀରେ ଥିବା ଅନାବାଦୀ, ପତିତ ଜମି ବେଆଇନ ହସ୍ତାନ୍ତର ଚାଲିଲା । ଜମିଦାରୀରେ ଥିବା ଜଙ୍ଗଲମାନ କାଟି ଜମିଦାରମାନେ ସଫାକରି ଦେବାରେ ଲାଗିଲେ । ସେତେବେଳେ କମ୍ୟୁନିଷ୍ଟ ପାର୍ଟି ଯେଉଁଠି କାମ କରୁଥିଲା, ସେଠାରେ ଜମିଦାରମାନଙ୍କ ଏପରି ଜମି ଚୋରିର ତୀବ୍ର ବିରୋଧ କଲେ ଏବଂ କଂଗେସ ସରକାର ୧୯୫୨ରେ ଯାଇଁ ଇଷ୍ଟେଟ ଆବୋଲିସନ ବା ଜମିଦାରୀ ପ୍ରଥା ଉଚ୍ଛେଦ ଆଇନ ପାଶ୍‌କରି ଜମିଦାରମାନଙ୍କ ଲାଗି କ୍ଷତିପୂରଣ ଖଞ୍ଜି ଦେଲେ । ବଡ଼ବଡ଼ ଜମିଦାରଙ୍କ ହଜାରହଜାର ଏକର ଜମି, କୋଠାବାଡ଼ି, ଉଆସସବୁ

ସେମାନଙ୍କର ହୋଇ ରହିଲା ସତ, ମାତ୍ର ସାମନ୍ତବାଦର ଆଉ ଏକ ପ୍ରଧାନ ଦୁର୍ଗ ଜମିଦାରୀ ପ୍ରଥା ବିଲୁପ୍ତ ହେବା ପ୍ରକ୍ରିୟା ଆରମ୍ଭ ହୋଇଗଲା । ସବୁ ଜମିଦାରୀ ବା ମଧ୍ୟସ୍ୱତ୍ୱାଧିକାର ଏକାବେଳକେ ଉଠିଗଲା ନାହିଁ । କମ୍ୟୁନିଷ୍ଟମାନଙ୍କ ଆନ୍ଦୋଳନ ଲାଗିରହିଲା । ଏବେ ୧୯୭୫ରେ ଯାଇ ମଠ ମନ୍ଦିର ସଂପତ୍ତି ସରକାରଙ୍କଠାରେ ଭେଷ୍ଟ ହେବାର ଆଇନ ଆସିଲା । ଏଖାରାଜାତ ମାହାଲ ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କ ନେତୃତ୍ୱ ବିଶେଷତଃ ପ୍ରାଣନାଥ, ଗୋକୁଳ, ଗଂଗାଧର ପାଇକରାୟଙ୍କ ନେତୃତ୍ୱ ଅବିସ୍ମରଣୀୟ ।

ସାମନ୍ତବାଦ ଓଡ଼ିଶାରେ ଏପରି ଚେରମାଡ଼ି ବସିଛି ଯେ ତାକୁ ସମୂଳେ ଉତ୍ପାଟନ କରିବା ଯେ କେଡ଼େ କଷ୍ଟସାଧ ଏବଂ କମ୍ୟୁନିଷ୍ଟମାନଙ୍କୁ ଯେ କେତେ ଆୟାସ କରିବାକୁ ପଡ଼ିଛି ଓ ପଡୁଛି, ତାହା ଏହିସବୁ ଆନ୍ଦୋଳନର ଇତିହାସରୁ ପରିଚୟ ମିଳେ ।

**ଭୂସଂସ୍କାର ଓ ଜମି ବଣ୍ଟନ ସଂଗ୍ରାମ**

ଜମିଦାରୀ ପ୍ରଥା ଉଚ୍ଛେଦ, ଗଡ଼ଜାତ ଉଚ୍ଛେଦ, ମଧ୍ୟସ୍ୱତ୍ୱାଧିକାରୀ ପ୍ରଥା ଉଚ୍ଛେଦ ହୋଇଗଲେ ସାମନ୍ତବାଦ ପ୍ରଥା ଶେଷ ହୁଏ ନାହିଁ । ଅବଶ୍ୟ ନିଶ୍ଚିତ ସାମନ୍ତବାଦ ଦୁର୍ବଳ ହୁଏ; ମାତ୍ର ସାମନ୍ତବାଦ ରଜା ଜମିଦାର, ଧନୀ, ଚାଷୀ, ମହାଜନ ଓ ସେମାନଙ୍କ ସ୍ୱାର୍ଥରକ୍ଷା କରୁଥିବା ରାଜନୈତିକ ଦଳ ଓ ବ୍ୟକ୍ତିମାନେ ଆହୁରି ହିଂସ୍ର ହୋଇ ଉଠନ୍ତି । ମରିବା ପୂର୍ବରୁ କାମୁଡ଼ାଏ ଦେବେ, ସୂଚ୍ୟଗ୍ର ପରିମାଣ ଜମି ଛାଡ଼ିବେ ନାହିଁ, ଏହା ହେଲା ସେମାନଙ୍କ ଆଦର୍ଶ । ମାତ୍ର ଭୂମିହୀନ, ଗରିବ ଚାଷୀ ସମସ୍ତଙ୍କ ଆଦର୍ଶ ଜମିରୁ ସାମନ୍ତବାଦୀ ଉତ୍ପାଦନ ସଂପର୍କକୁ ଲୋପ କରିବା । ଜମି ଠୁଳୀକରଣକୁ ଭାଙ୍ଗି ଭୂମିହୀନ ଗରିବଙ୍କୁ ଜମି ଦେବା ଆଉ ଏହି ଜମି ପାଇଲେ ଦରିଦ୍ର ପ୍ରପୀଡ଼ିତ ଚାଷୀକୁଳ ସମବାୟ ଚାଷ କରିବେ, କୋଠରେ ଜମି ଚଷିବେ, ଜମିକୁ ବ୍ୟକ୍ତିଗତ ସମ୍ପଦ ଅଧିକାରରୁ କାଢ଼ିଆଣି ରାଷ୍ଟ୍ରାଧୀନ କରିବେ । ଅର୍ଥ ସମାଜବାଦ ପ୍ରତିଷ୍ଠାର ସଂଗ୍ରାମ କରିବେ ।

କମ୍ୟୁନିଷ୍ଟମାନେ ଏହି ଦର୍ଶନ ଦେଲେ ଚାଷୀଙ୍କୁ । କାହାର ଦୟା ମର୍ଜି ଦାନ ଧ୍ୟାନ ବା କରୁଣାରେ ଜମିର ଅଧିକାର ଆସେନା । ଜମି ଦଖଲ କରିବାକୁ ହେବ ସଂଗଠିତ ହୋଇ, ଆଇନ ଆସିବ ଜମି ଦଖଲ କଲେ ଯାଇଁ, ଆଇନ ହେଲେ ବି ଦଖଲ ସହଜରେ ଆସିବ ନାହିଁ । ମାଟି କାମୁଡ଼ି ଐକ୍ୟବଦ୍ଧ ଲଢ଼େଇ କଲେ ଜମି ଉଦ୍ଧାର ହେବ ଓ ଜମି ବଣ୍ଟନ ହେବ । କମ୍ୟୁନିଷ୍ଟମାନେ ମଧ୍ୟ କେବଳ ସରକାରୀ ଅନାବାଦୀ, ଜଙ୍ଗଲ ଜମି ନୁହଁ, ବଡ଼ବଡ଼ ଜମି ମାଲିକ, ପୂର୍ବତନ ରଜା, ମହାରଜାଙ୍କ ଜମି ଦଖଲ ଆନ୍ଦୋଳନ ଆରମ୍ଭ କଲେ । ଗଞ୍ଜାମ, କଟକ, ବାଲେଶ୍ୱର, ଢେଙ୍କାନାଳ, ସମ୍ବଲପୁର ପ୍ରଭୃତି ଯେଉଁଠି କମ୍ୟୁନିଷ୍ଟିମାନେ କାମ କରୁଥିଲେ, ସେଠାରେ ଭୂମିହୀନ ଆଦିବାସୀ ଓ ହରିଜନମାନଙ୍କୁ ସଂଗଠିତ କରି ଜମି ଜଙ୍ଗଲ କାଟି ଆବାଦ କରି ଜମି ଦଖଲରେ ରହିଲେ । ସରକାର ପକ୍ଷରୁ ବଡ଼ବଡ଼ ଲୋକେ ଶହଶହ ଏକର ସରକାରୀ

ଜମିରେ ଜବର ଦଖଲରେ ଥିଲେ ସୁଦ୍ଧା ସେମାନଙ୍କୁ ସରକାରୀ ଦପ୍ତର ପଟ୍ଟା ଦେଲେ ।

କଂଗ୍ରେସ ବିଭାଜନ ପରେ ଭୂ ସଂସ୍କାର ଓ ଜମି ଦଖଲ ଲାଗି ଆନ୍ଦୋଳନ ନୂଆ ପର୍ଯ୍ୟାୟରେ ପହଞ୍ଚିଲା । କେରଳରେ ଅନ୍ୟୁତମେନନ ସରକାରଙ୍କ ଦ୍ୱାରା ଆମୂଳ ଭୂ ସଂସ୍କାର କମ୍ୟୁନିଷ୍ଟ ତଥା କଂଗ୍ରେସର ପ୍ରଗତିଶୀଳ ଅଂଶ ଆଉ ଅନ୍ୟ ଗଣତାନ୍ତ୍ରବାଦୀଙ୍କୁ ଉତ୍ସାହ ଦେଲା, ବାଟ ବତେଇଦେଲା ।

ସର୍ବତ୍ର ଜମି ପାଇଁ ସଂଗ୍ରାମ ଫଳରେ ୧୯୬୦ରେ ଓଡିଶା ଭୂସଂସ୍କାର ଆଇନ ଆସିଲା । ମାତ୍ର ଜମିମାଲିକମାନେ କଂଗ୍ରେସ ଭିତରେ ଓ କଂଗ୍ରେସ ବାହାରେ ମେଣ୍ଟ ବାନ୍ଧି ସର୍ବୋଚ୍ଚ ସୀମାକୁ ଜମିର କିସମ ଅନୁସାରେ ୨୦ ଏକର, ୩୦ ଏକର, ୬୦ ଏକର ଓ ୮୦ ଏକର ଯାଏ ରଖିଲେ । ଆଉ ଭାଗଚାଷୀମାନଙ୍କୁ ଚାଷ କରୁଥିବା ଅର୍ଦ୍ଧେକ ଜମିରେ ସ୍ୱତ୍ୱ ଦେବାର ଅଧିକାର ଦିଆଗଲା । ସର୍ବୋଚ୍ଚ ସୀମା କରେଇବାକୁ ଆନ୍ଦୋଳନ ମଧ୍ୟ କମ୍ୟୁନିଷ୍ଟମାନେ ପରିଚାଳନା କଲେ । ଉଭୟ ବିଧାନସଭା ଭିତରେ ଓ ବାହାରେ ଏହି ଆନ୍ଦୋଳନ ଚାଲିଲା । ପ୍ରଥମେ ନନ୍ଦିନୀ ମନ୍ତ୍ରିମଣ୍ଡଳ ୧୯୭୧ରେ ଭୂସଂସ୍କାର ସଂଶୋଧନ ଆଇନ ଫଳରେ ସର୍ବୋଚ୍ଚ ସୀମା ୧୦, ୧୫, ୨.୩୦ ଏକରକୁ କମାଇ ଦିଆଗଲା ଏବଂ ୧୯୭୩ ରେ ପୁନଶ୍ଚ ଏହି ଆଇନଟିର ସଂଶୋଧନ ହୋଇ ଭାଗଚାଷୀଙ୍କୁ ସମସ୍ତ ଭାଗଜମିରେ ସ୍ୱତ୍ୱ ଦେବାକୁ ନିୟମ ଧାର୍ଯ୍ୟ ହେଲା ।

୧୯୬୯ରେ କମ୍ୟୁନିଷ୍ଟମାନେ ରାଜ୍ୟର ବିଭିନ୍ନ ବଡ଼ବଡ଼ ଜମିଦାର ପୂର୍ବତନ ରଜାଙ୍କ ଉଦ୍‌ବୃତ୍ତ ଜମି ଦଖଲର ଆନ୍ଦୋଳନ କରିଥିଲେ ।

ଏ ସବୁ ଆଇନ ହେବା ସତ୍ତ୍ୱେ ଜମିର ଲଢେଇ ସରି ନାହିଁ । ଭାଗଚାଷ ପ୍ରଥା ଉଠିଯାଇଥିଲେ ବି ଏବଂ ଭାଗଚାଷୀ ସ୍ୱତ୍ୱର ମାଲିକ ହେବ ବୋଲି ଆଇନ ହୋଇଥିଲେ ହେଁ ତାହା କାର୍ଯ୍ୟକାରୀ ହୋଇପାରୁ ନାହିଁ । କମ୍ୟୁନିଷ୍ଟମାନେ ସାରା ରାଜ୍ୟରେ ଭାଗଚାଷୀମାନଙ୍କୁ ଦରଖାସ୍ତ ଦିଆଇବା ଲାଗି ସଂଗଠିତ କରୁଥିବାବେଳେ, ଜମି ମାଲିକ ଓ ପୋଲିସ ହାତରେ ନିର୍ଯ୍ୟାତିତ ହେଉଛନ୍ତି । ଆଜି ବି କମ୍ୟୁନିଷ୍ଟ ମୁରଲୀ ପରିଡ଼ାଙ୍କୁ ବାଲିସୁଆଁରେ ପୋଲିସ ଗୁଳିରେ ପ୍ରାଣଦେବାକୁ ପଡ଼ିଛି । ଏ ଲଢ଼େଇ ଶ୍ରେଣୀ ସଂଗ୍ରାମ ଅତି କଠୋର ସଂଗ୍ରାମ । ଏହି ଉପଲବ୍ଧିହିଁ କମ୍ୟୁନିଷ୍ଟମାନଙ୍କୁ ଅଧିକ ସଂଗଠିତ ଚାଷୀ ସଂଗ୍ରାମ ଚଳେଇବାକୁ ପ୍ରେରଣା ଦେଉଛି । ଆଇନକୁ କାର୍ଯ୍ୟକାରୀ କରିବା ହେଉଛି ସବୁଠାରୁ ବଡ଼ ଦୁରୂହ ଲଢ଼େଇ ସେ ଲଢ଼େଇରେ ମଧ୍ୟ କମ୍ୟୁନିଷ୍ଟିମାନେ ଅଗ୍ରଣୀ । ସାମନ୍ତବାଦ ବିରୋଧୀଶକ୍ତିଙ୍କୁ ଐକବଦ୍ଧ କରିବାକୁ ହେବ ।

**୨୦ ଦଫା କର୍ମସୂଚୀ ସାମନ୍ତବାଦୀ ପ୍ରଥା ଲୋପର ହତିଆର**

ସାରା ଭାରତରେ ଜମିର ଲଢେଇ ଗଣତନ୍ତ୍ରର ସୁରକ୍ଷା ଓ ପ୍ରସାରର ଲଢେଇ । ଗତ ୧୯୩୬-୩୭ରୁ ଆଜି ଯାଏ ଯେଉଁମାନେ ଚାଷୀର ଭାଗ, ବେଠିବେଗାରୀ, ଗଡ଼ଜାତ ଉଠିବା

ବିରୋଧରେ ଯାଉଥିଲେ, ସେମାନେ ଭୂସଂସ୍କାରକୁ, ଜମି ବଣ୍ଟନକୁ ଆହୁରି ପ୍ରବଳଭାବରେ ବିରୋଧ କଲେ । ସେମାନେ ଦେଶରେ ଫାସିଷ୍ଟ ଶାସନ ପ୍ରବର୍ତ୍ତନ ଲାଗି ଉଦ୍ୟମ କଲେ ।

ଜରୁରୀ ଅବସ୍ଥା ପରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଯେଉଁ କାର୍ଯ୍ୟକ୍ରମ ବାଢ଼ିଲେ, ତାହା ଏକ ନିର୍ଦ୍ଦିଷ୍ଟ ସମୟ ଭିତରେ ଭୂସଂସ୍କାରକୁ କାର୍ଯ୍ୟକାରୀ କରି ଭୂମିହୀନଙ୍କୁ ଜମି ବାଣ୍ଟିବା, ଘର ନ ଥିବା ଲୋକଙ୍କୁ ଘରଡ଼ିହ ଦେବା ଗୋତିପ୍ରଥା ବିଲୋପ କରିବା, ଚାଷୀ ଓ ମୂଲିଆଙ୍କୁ ମହାଜନୀ ଋଣଭାରରୁ ମୁକ୍ତ କରିବା, ଚାଷୀଙ୍କୁ ଜଳ ଯୋଗାଇଦେବା, ବିଦ୍ୟୁତ, ସାର, ଯୋଗାଇଦେବା ପାଇଁ ଅଭିପ୍ରେତ । ଏହା ଗୋଟିଏ ସମୟ ନିର୍ଦ୍ଧାରିତ ପାକେଜ କାର୍ଯ୍ୟକ୍ରମ; ଅର୍ଥାତ୍ ଏକ ସମୟରେ କାର୍ଯ୍ୟକାରୀ ହେବାର କାର୍ଯ୍ୟସୂଚୀ । ଦେଶର ବୃହତ୍ତମ ରାଜନୈତିକ ଦଳ ଯିଏ ଶାସକ ଦଳ, ତାହା ଏହି କାର୍ଯ୍ୟକ୍ରମ ବାଢ଼ିଛି । ତେଣୁ ଗତ ୪୦ ବର୍ଷର କମ୍ୟୁନିଷ୍ଟମାନଙ୍କର ସାମନ୍ତବାଦ ବିରୋଧୀ ସଂଗ୍ରାମ ଏହି କାର୍ଯ୍ୟକ୍ରମକୁ କେବଳ ସ୍ୱାଗତ କରିବ ନୁହଁ, ଏହାକୁ ବାସ୍ତବରେ ରୂପାୟିତ କରିବାକୁ ସମସ୍ତ ଶକ୍ତି ପ୍ରୟୋଗ କରିବ । ଅତି ବାମପନ୍ଥୀ ଦୃଷ୍ଟିକୋଣରୁ ଯେଉଁମାନେ ଏହାକୁ ଉପହାସ କରନ୍ତି, ସେମାନେ କାର୍ଯ୍ୟତଃ ଦକ୍ଷିଣପନ୍ଥୀମାନଙ୍କର ସ୍ୱାର୍ଥରକ୍ଷା କରନ୍ତି । ଆଜି ଜମିଦାର ହେଉ, ମହାଜନ, ମୁନାଫାଖୋର ବଡ଼ ବ୍ୟବସାୟୀ ହେଉ, ସମସ୍ତେ ଏହାର ବିରୋଧୀ । ତେଣୁ ଗୋଟିଏ ଡଙ୍କାରେ । ଆଜିର କମ୍ୟୁନିଷ୍ଟମାନେ, ଆଜିର ଗଣତନ୍ତ୍ରବାଦୀମାନେ ସାମନ୍ତବାଦ ବିରୋଧରେ ଅତୀତର ଏହି ଦୁର୍ବାର ସଂଗ୍ରାମର ଅଭିଜ୍ଞତାକୁ ଘେନି ଓଡ଼ିଶାରେ ଥିବା ସାମନ୍ତବାଦୀ ଦୁର୍ଗର ମୂଳଦୁଆକୁ ନିଶ୍ଚିହ୍ନ କରିବା ଲାଗି ଐକ୍ୟବଦ୍ଧ ସଂଗ୍ରାମ ଚଳାଇବା ଏକ ଜରୁରୀ ବୈପ୍ଲବିକ କର୍ତ୍ତବ୍ୟ ।



ରଚନା କାଳ – ୧୯୭୫

# ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଇତିହାସର କିୟଦଂଶ

## (ଦ୍ୱିତୀୟ ଭାଗ)

ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ଜନ୍ମ, ଅଭ୍ୟୁଦୟ ଓ ବିକାଶର ଇତିହାସ ରୋମାଞ୍ଚକର ବହୁ ଘଟଣାବହୁଳ । କଟକ ସହରରେ ୧୯୩୫/୩୬ରେ ଆଙ୍ଗୁଠିଗଣତା କେତେଜଣ କମ୍ୟୁନିଷ୍ଟ ମତବାଦ ଗ୍ରହଣ କରି କମ୍ୟୁନିଷ୍ଟ ସେଲଟିଏ ଗଠନ କରିଥିଲେ । ସ୍ୱାଧୀନତା ପୂର୍ବବର୍ତ୍ତୀ କାଳର ଆଇନସମ୍ମତ ବାମପନ୍ଥୀ କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଥାଇ ବିକାଶ ସଂପର୍କିତ ବିବରଣୀ ପାର୍ଟିର ଏକ ପୁସ୍ତକ, ଓଡ଼ିଶାରେ କମ୍ୟୁନିଷ୍ଟ ଜନ୍ମ ବୃତ୍ତାନ୍ତରେ ଆଭାସ ଦିଆଯାଇଛି । ସାଥୀ ପ୍ରାଣନାଥ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ଗୋକୁଳ ମୋହନ ରାୟଚୂଡ଼ାମଣି ଓ ଗୋବିନ୍ଦ ଚନ୍ଦ୍ର ମହାନ୍ତି ନିଜ ନିଜ ଅଭିଜ୍ଞତାକୁ ଭିତ୍ତି କରି ସ୍ୱତନ୍ତ୍ର ପ୍ରବନ୍ଧରେ ଏହାର ସଙ୍କଳନ କରିଛନ୍ତି । ବସ୍ତୁତଃ ୧୯୪୦ରେ କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା ଯାଏ ସେଥିରେ ସ୍ମୃତିପଟର ବିବରଣୀଗୁଡ଼ିକ ସନ୍ନିବେଶିତ ହୋଇଛି ।

୧୯୪୦ ରୁ ୧୯୮୬ ୪୬ଟି ବର୍ଷ ବିତିଗଲାଣି । ପାର୍ଟିର ଇତିହାସ ବହୁ ସଂଗ୍ରାମ, ବହୁ ଆତ୍ମତ୍ୟାଗର ରୋମାଞ୍ଚକର କାହାଣୀରେ ଭରପୂର । ବ୍ରିଟିଶ ସରକାରର ଆକ୍ରମଣ, ରଜା ଜମିଦାର, ସାହୁକାର, ମୁସ୍ତାଦାର, ମଠମହନ୍ତ, ଗୌନ୍ତିଆ, ଇନାମଦାର ସର୍ବରାକାରମାନଙ୍କ ଆକ୍ରମଣ, ପୁଞ୍ଜିପତିମାନଙ୍କ ଆକ୍ରମଣ, ସର୍ବୋପରି ସ୍ୱାଧୀନତା ପରବର୍ତ୍ତୀ କାଳରେ ପୁଲିସ ଦମନ, ଗୁଳି, ହତ୍ୟା, ଲାଠି, ଦୀର୍ଘକାଳ ଆତ୍ମଗୋପନ, ଦୀର୍ଘ ଦିନ ବ୍ୟାପୀ ଜେଲବାସର ସମ୍ମୁଖୀନ ହୋଇଥିବା ପାର୍ଟିର ଇତିହାସ ଲେଖିବା ଆୟାସସାଧ୍ୟ । ଯେଉଁମାନେ ବଞ୍ଚିଛନ୍ତି ସେମାନଙ୍କର ଓ ବହୁ ନୂତନ ପାରିଲା ସାଥୀଙ୍କ ମିଳିତ ଉଦ୍ୟମରେ ଏହା ସ୍ଥବପର ହେବ । ପାର୍ଟିର ବହୁ କାଗଜପତ୍ର, ଦଲିଲ ଅଫିସ ଚଢ଼ଉ କରି ପୁଲିସ ଘେନିଯାଇଛି । କେବଳ ସେତିକି ନୁହେଁ, ପାର୍ଟି କର୍ମପ୍ରବାହର ଚିତ୍ର ବହନ କରୁଥିବା ପାର୍ଟିର ମୁଖପତ୍ରଗୁଡ଼ିକର ସବୁ ସଂଖ୍ୟା ଯଦି ଥାଆନ୍ତା ବା ମିଳନ୍ତା ତେବେ ଏ ଦିଗରେ ବହୁ ସାହାଯ୍ୟ ମିଳନ୍ତା । ଯେତେ ସାଇତିବାକୁ ଚେଷ୍ଟା ହୋଇଥିଲେ ବି ଭିତରେ ଭିତରେ ପ୍ରତିବର୍ଷ ଅନେକ ସଂଖ୍ୟା ନାହିଁ ।

ଆଜିର ପାର୍ଟିରେ ତିନିଟି ବଂଶଧରର ସଦସ୍ୟ ଅଛନ୍ତି । ଅଳ୍ପ ସମୟ ମଧ୍ୟରେ ପ୍ରଥମ ବଂଶଧର ନିଶ୍ଚିହ୍ନ ହୋଇଯିବ । ମଝି ବଂଶଧରଙ୍କ ବୟସ ମଧ୍ୟ ପୋଖତ । ପାର୍ଟି ଏହି ତିନୋଟି ବଂଶଧର ମଧ୍ୟରେ ବଞ୍ଚିଛି, ବଢ଼ିଛି ଏବଂ ନୂତନ ନୂତନ ବଂଶଧର ପାର୍ଟିର ପତାକା ବହନ କରିବେ । ସେମାନଙ୍କ ପାଇଁ ଆଜି ବା କାଲିର ଇତିହାସ ହିଁ ପାଥେୟ ହେବ ।

ତେଣୁ ଏହି କ୍ଷୁଦ୍ର ଉଦ୍ୟମ । ଠିକେ ଠିକେ କେବଳ ପାର୍ଟି ଗଠନ ଓ ବିକାଶ ଓ ତାହା ସହିତ ସଂପୃକ୍ତ ଯେତିକି ସଂଗୃହୀତ ହୋଇଛି ସେତିକି ସଂଗ୍ରାମ, ଆନ୍ଦୋଳନର ବର୍ଣ୍ଣନା ମାତ୍ର ଦେବାକୁ ଏହି ଲେଖାରେ ପ୍ରୟାସ କରାଯାଇଛି । ମଝି ମଝିରେ ଖାପଛଡ଼ା ଲାଗିବ । କାରଣ ଅନେକ ତଥ୍ୟ କାଗଜପତ୍ରର ଅଭାବରୁ ଓ ମୁକ୍ତିଯୁଦ୍ଧ ଓ ନୂଆ ଦୁନିଆର ସଂଖ୍ୟା ନ ଥିବାରୁ ଦେଇ ହେଲା ନାହିଁ । ତେଣୁ ଏହାକୁ ଧାରାବାହିକ ଇତିହାସ ରୂପରେ ନଜଣ୍ୟ ନ କରାଗଲେ ବି ଇତିହାସ ସୃଷ୍ଟି ପାଇଁ ଏହା ମୃତ୍ତିକା ପ୍ରସ୍ତୁତ କରହିବ ।

୧୯୪୦ ଠାରୁ ୧୯୪୮ ଆଠ ବର୍ଷ । ୧୯୪୨ରେ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାରେ ଗିରଫ ସାଥୀମାନେ ଖଲାସ ହେବା ପରେ ପରେ ପାର୍ଟିକୁ ଏକ ସଙ୍ଗଠିତ ରୂପ ଦେବାକୁ ଚେଷ୍ଟା କରାଗଲା । ପାର୍ଟି ୧୯୪୨ରେ ଆଇନସଙ୍ଗତ ହେବା ପରେ ପରେ ଭାରତ ଛାଡ଼ ଆନ୍ଦୋଳନରେ ପାର୍ଟିର ଅନେକ ଅଗ୍ରଣୀ ସାଥୀ ଗିରଫ ହୋଇ ବର୍ଷେ ଦୁଇବର୍ଷ ତିନିବର୍ଷ ଏମିତି କାରାଦଣ୍ଡ ଭୋଗିଲେ ।

ଜାତୀୟ ନେତାମାନଙ୍କ ମୁକ୍ତି, ବ୍ରିଟିଶ ସରକାରର ଜବରଦସ୍ତ ଯୁଦ୍ଧ ଚାନ୍ଦା ଆଦାୟ କରୁଥିବାର ବିରୋଧ, ଗଣତାନ୍ତ୍ରିକ ଅଧିକାରର ପୁନଃ ପ୍ରତିଷ୍ଠା ଲାଗି ସଭା ସମିତି ବହୁ ସାବଧାନତା ସହିତ କରିବାକୁ ପଡୁଥିଲା ।

ଏତିକିବେଳେ ୧୯୪୩ରେ ପାର୍ଟିର ସାପ୍ତାହିକ ମୁଖପତ୍ର, ମୁକ୍ତି ଯୁଦ୍ଧର ଡଃ ଶରତ ପଟ୍ଟନାୟକ ସମ୍ପାଦକ ଥାଇ ପ୍ରକାଶିତ ହେଲା । ପୂର୍ବରୁ ଆଗେଚାଲ ନାମକ ଲିଥୋକରା ପତ୍ରିକା ୪ ଖଣ୍ଡ ପ୍ରକାଶ ପାଇଥିଲା । ମାତ୍ର ବ୍ରିଟିଶ ସରକାର ତା' ଉପରେ ଜରିମାନା କରିଦେବାକୁ ତାହା ବନ୍ଦ ହୋଇ ଯାଇଥିଲା ।

ସାଥୀମାନେ ଅନୁଗୋଳ ଜେଲରେ ବନ୍ଦୀ ଥିବାବେଳେ ଯେଉଁ କେତେଜଣ ସାଥୀ ବାହାରେ ରହିଯାଇଥିଲେ, ସେମାନେ ଉଭୟ ଗୋପନ ଓ ପ୍ରକାଶ୍ୟରେ କିଛି କିଛି ପାର୍ଟି ସଙ୍ଗଠନ କରୁଥିଲେ । ପାର୍ଟିର ସମ୍ପାଦକ ଥିଲେ ସାଥୀ ଭଗବତୀ ଚରଣ ପାଣିଗ୍ରାହୀ ।

ଏହି ଯୁଦ୍ଧ ସମୟରେ ବ୍ରିଟିଶ ସରକାରର ନୀତି ହେତୁ ଘୋର ଖାଦ୍ୟାଭାବ ଦେଖାଗଲା । କଟକ ହୁମା-ଗଞ୍ଜାମରେ ଦୁର୍ଭିକ୍ଷ । ୩୫ ହଜାର ଲୋକ ସେହି ଦୁର୍ଭିକ୍ଷରେ ଓଡ଼ିଶାରୁ ମୃତ୍ୟୁମୁଖରେ ପଡ଼ିଥିଲେ । ସାଧାରଣ ଦେଶପ୍ରେମୀ, ଦେଶ-ସେବୀ ଅଧିକାଂଶ ଜେଲରେ । ଏହି ଦୁର୍ଭିକ୍ଷ ବିରୁଦ୍ଧରେ ଲଢ଼େଇ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ମୁଖ୍ୟ କାମ ହେଲା, ବ୍ରିଟିଶ ସରକାରର

ଦମନ, ଅତ୍ୟାଚାର ବିରୁଦ୍ଧରେ ଜନସାଧାରଣଙ୍କୁ ଅଭୟ ଦେବା, ସେମାନଙ୍କ ଉପରେ ହେଉଥିବା ଅତ୍ୟାଚାର ବିରୁଦ୍ଧରେ ଜନ ସାଧାରଣଙ୍କୁ ଅଭୟ ଦେବା, ସେମାନଙ୍କ ଉପରେ ହେଉଥିବା ଅତ୍ୟାଚାର ଶୋଷଣର ପ୍ରତିରୋଧ କରିବା, ଅଳ୍ପ ସଂଖ୍ୟକ ହେଲେ ବି ଏତିକିବେଳେ ଦୁର୍ଭିକ୍ଷ ବିରୁଦ୍ଧରେ ଲଢ଼ିବା କମ୍ୟୁନିଷ୍ଟମାନଙ୍କର ପ୍ରଧାନ ଦେଶପ୍ରେମୀ କର୍ତ୍ତବ୍ୟ ହୋଇଥିଲା । ବାହାରେ ଯେଉଁ କେତେକ କଂଗ୍ରେସ ଦେଶପ୍ରେମୀ ଥିଲେ ଯେମିତିକି ସ୍ୱାମୀ ବିଚିତ୍ରାନନ୍ଦ ଏବଂ ଓଡ଼ିଶାର ପ୍ରଖ୍ୟାତଯଶା ସମାଜସେବୀ ଲକ୍ଷ୍ମୀନାରାୟଣ ସାହୁ ଓ ଶ୍ୟାମସୁନ୍ଦର ମିଶ୍ର ପ୍ରମୁଖଙ୍କୁ ଏକତ୍ର କରି ବାଲେଶ୍ୱର ଠାରୁ ଗଞ୍ଜାମ ପର୍ଯ୍ୟନ୍ତ ରିଲିଫ ସଂଗଠନ କରିବା ଏବଂ ତାହାରି ମାଧ୍ୟମରେ ଜନସଭା ମାନଙ୍କରେ ରାଜନୈତିକ ବନ୍ଦୀମାନଙ୍କ ମୁକ୍ତି ଦାବୀ କରିବା, ଧାନ ଚୋରା ଚାଲାଣ କରୁଥିବା ଲୋକଙ୍କୁ ଜନତାକୁ ଏକଜୁଟ କରି ଅଟକ କରିବା ଓ ଧାନ ସରକାରୀ ରେଟରେ ବିକ୍ରୟ କରିବାକୁ ବାଧ କରିବା- ଏ ସଂକ୍ରାନ୍ତରେ ଅମଲାତନ୍ତ୍ର ଓ ପୁଲିସର କିଳାପୋତିଆଙ୍କ ସହିତ ମେଣ୍ଟକୁ ଧରାଇ ଦେବା । ଏଥିଲାଗି ଅନେକ ସାଥୀଙ୍କୁ ଗିରଫ କରି ଦଣ୍ଡ ମଧ୍ୟ ଦିଆଯାଉଥିଲା । ଏହି ଦୁର୍ଭିକ୍ଷ, ଅନାହାର ବିରୁଦ୍ଧରେ ଲଢ଼ିବା ବେଳେ ଏବଂ ବହୁ ସାଥୀ ଜେଲରେ ଥିବାବେଳେ ୧୯୪୩ ଅକ୍ଟୋବର ୨୩ରେ ପ୍ରଥମ ଓ ପ୍ରତିଷ୍ଠାତା ସମ୍ପାଦକ ସାଥୀ ଭଗବତୀଙ୍କର ମୃତ୍ୟୁ ହେଲା । ସାଥୀ ଶରତ ପଟ୍ଟନାୟକ ସମ୍ପାଦକ ହେଲେ ଏବଂ ସାଥୀ ଗୁରୁଚରଣ ପଟ୍ଟନାୟକ ମୁକ୍ତି ଯୁଦ୍ଧ ପ୍ରକାଶନ ଦାୟିତ୍ୱରେ ରହି ସମ୍ପାଦନା କଲେ ।

୧୯୪୪-୪୫ରେ ରାଜନୈତିକ ବନ୍ଦୀ ମୁକ୍ତି ପରେ ପାର୍ଟି ଏକ ବିରାଟ ଆକ୍ରମଣର ସମ୍ମୁଖୀନ ହେଲା । ବ୍ରହ୍ମପୁର, କଂ  ପ୍ରଭୃତିରେ ଜେଲକୁ ଯାଇଥିବା କମ୍ୟୁନିଷ୍ଟ ନେତାମାନେ ଜେଲରୁ ବାହୁଡ଼ିବା ସାଙ୍ଗରେ ଧରି ଆସିଲେ ଓଡ଼ିଶାର ପ୍ରତି ଜିଲ୍ଲାରୁ ଅନେକ ପ୍ରତିଷ୍ଠିତ କଂଗ୍ରେସ ନେତା ଓ ଯୁବକର୍ମୀଙ୍କୁ ଯେଉଁମାନେ ଜେଲଖାନାରେ କଂଗ୍ରେସର ବର୍ଜୁୟା ଚରିତ୍ରରେ ମୋହମୁକ୍ତ ହୋଇ ମାର୍କସବାଦ ଓ ଲେନିନବାଦକୁ ଗ୍ରହଣ କରିନେଲେ ଏବଂ ବାହାରକୁ ଆସି ବିଭିନ୍ନ ଜିଲ୍ଲାରେ ନିଜ ନିଜ ଅଞ୍ଚଳରେ ପାର୍ଟି ଗଠନ କଲେ, ଚାଷୀ ଆନ୍ଦୋଳନ ଆରମ୍ଭ କରିଦେଲେ । ଖଜଣା, ଜଳକର ଆଦାୟ, ଜମିଦାରୀ ଜୁଲୁମ, ଭାଗଚାଷୀଙ୍କୁ ଭାଗ ଏମିତି ଜନ ସମସ୍ୟା ଘେନି ବିଶେଷତଃ କଟକ, ପୁରୀ, ଗଞ୍ଜାମ ଓ ସମ୍ବଲପୁରରେ ଆନ୍ଦୋଳନ ଗଢ଼ି ଉଠିଲା ଓ ପାର୍ଟିର ପ୍ରସାର ସାଙ୍ଗକୁ ମର୍ଯ୍ୟାଦା ବଢ଼ିଗଲା । କମ୍ୟୁନିଷ୍ଟ ଓ ଛାତ୍ର ସଂଘ ବିରୁଦ୍ଧରେ ଯାବତୀୟ କୁତ୍ସା ପ୍ରଚାର ସତ୍ତେବ ଜେଲଖାନା ମୁକ୍ତି ପରେ ତାହା ଅତ୍ୟନ୍ତ ସକ୍ରିୟ ହୋଇ ଉଠିଲା । ଗଞ୍ଜାମଠାରୁ ଆରମ୍ଭ କରି କଟକ-ବାଲେଶ୍ୱର, ପୁରୀ ପ୍ରଭୃତି ବିଭିନ୍ନ ଜିଲ୍ଲାରେ ବହୁ ପ୍ରତିଭାବାନ ଛାତ୍ରଛାତ୍ରୀ, ଛାତ୍ର ସଂଘରେ ସାମିଲ ହେଲେ ଏବଂ ପରବର୍ତ୍ତୀ କାଳରେ ସେମାନଙ୍କ ମଧ୍ୟରୁ ଅନେକ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଲେ, ନେତୃସ୍ଥାନୀୟ କମ୍ୟୁନିଷ୍ଟ ରୂପେ ଆଜି ବି ରହିଛନ୍ତି । ୧୯୪୬ରେ ରେଭେନ୍ସା କଲେଜରେ ୟୁନିଅନ ପତାକା ପୋଡ଼ି ଓ ଛାତ୍ର ଦମନର ଇତିହାସ ଛାତ୍ରସଂଘର ଏକ ବିରାଟ ସାମ୍ରାଜ୍ୟବାଦ ବିରୋଧୀ ପରମ୍ପରା ।

ଅନ୍ୟପକ୍ଷରେ କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ ସର୍ବଭାରତୀୟ ସ୍ତରରେ ତଥା ଓଡ଼ିଶାରେ କଂଗ୍ରେସ ପକ୍ଷରୁ ନାହିଁ ନ ଥିବା ଅଭିଯାନ ଆରମ୍ଭ ହୋଇଥିଲା । କମ୍ୟୁନିଷ୍ଟମାନେ ବ୍ରିଟିଶ ଦଲାଲ, ବିଶ୍ୱାସଘାତକ, ଇତ୍ୟାଦି ଯାବତୀୟ ଉଦ୍ଭଟ ପ୍ରଚାର କରି ଲୋକଙ୍କଠାରୁ ବିଚ୍ଛିନ୍ନ କରିଦେବାକୁ କଂଗ୍ରେସ ବିଶେଷତଃ କଂଗ୍ରେସ ସୋସଲିଷ୍ଟ ପାର୍ଟିକୁ ଭାଙ୍ଗି ଦେଇ ଯେଉଁମାନେ ସେତେବେଳେ କଂଗ୍ରେସ ସହିତ ମିଶି କଂଗ୍ରେସକୁ ଦଖଲ କରି ଯିବାର ସ୍ୱପ୍ନ ଦେଖୁଥିଲେ, ଯେପରି ବ୍ୟକ୍ତିମାନେ କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ କୁତ୍ସାର ସୁଅ ଛୁଟାଇଲେ । ୧୯୪୫ ଶେଷ ବେଳକୁ କଂଗ୍ରେସରୁ କମ୍ୟୁନିଷ୍ଟମାନଙ୍କୁ ବହିଷ୍କାର କରି ଆଗାମୀ ରାଷ୍ଟ୍ର କ୍ଷମତା ନିରୋଳା ଭାବରେ ବୁର୍ଜୁୟା ଶ୍ରେଣୀ ହାତକୁ ଆସିବାର ଅଭିଳାଷ ପୋଷଣ କରାଗଲା ।

କଟକ ସ୍ୱରାଜ୍ୟାଶ୍ରମରେ ୧୯୪୫ ଡିସେମ୍ବର ମାସରେ କଂଗ୍ରେସ ନେତାମାନଙ୍କ ବୈଠକ ଆଚାର୍ଯ୍ୟ ହରିହର ଦାସଙ୍କ ଅଧ୍ୟକ୍ଷତାରେ ବସିଲା । କଂଗ୍ରେସ କର୍ମୀ ଭାବରେ ୧୯୩୦-୩୨ରେ ତଥା ୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହ ଓ ୧୯୪୨ ଅଗଷ୍ଟ ଆନ୍ଦୋଳନରେ ପ୍ରମୁଖ ଅଂଶ ନେଇ ୪ ରୁ ୫ ବର୍ଷ ଯାଏ ଜେଲ ଭୋଗିଥିବା କଂଗ୍ରେସ କମିଟିଗୁଡ଼ିକର ସଦସ୍ୟ, କମ୍ୟୁନିଷ୍ଟମାନେ ଏହି ବୈଠକରେ ମଧ୍ୟ ଯୋଗ ଦେଇଥିଲେ ।

ଓଡ଼ିଶାରେ ଏହି ବହିଷ୍କାର ଫଳରେ ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ ଦୟାନନ୍ଦ ଶତପଥୀ, ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟି ସମ୍ପାଦକ ହରିହର ଦାସ, ପୁରୀ ଜିଲ୍ଲା କଂଗ୍ରେସ କମିଟି ସମ୍ପାଦକ ଗଙ୍ଗାଧର ମିଶ୍ର ପ୍ରାକ୍ତନ କଂଗ୍ରେସ ଏମଏଲ୍ଏ ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଗୋବିନ୍ଦ ପ୍ରଧାନ ଏବଂ ଗୋକୁଳମୋହନ ରାୟଚୂଡ଼ାମଣି, ଗୋବିନ୍ଦ ଚନ୍ଦ୍ର ମହାନ୍ତି, ଗତିକୃଷ୍ଣ ସ୍ୱାଇଁ, ଗଙ୍ଗାଧର ପାଇକରାୟ, ପର୍ଶୁରାମ ପଦାତିକରାୟ, ଅଧିକାରୀ ମହାନ୍ତି, ମାୟାଧର ପୁରୋହିତ, ଲକ୍ଷ୍ମଣ ପୁଝାରୀ, ଏମିତି ଶତାଧିକ ସ୍ୱାଧୀନତା ସଂଗ୍ରାମର ସୈନିକମାନଙ୍କୁ କଂଗ୍ରେସରୁ ବହିଷ୍କାର କରାଗଲା । ଯେଉଁ ଯୁବକମାନେ ଅଗଷ୍ଟ ଆନ୍ଦୋଳନରେ ପ୍ରଥମ ଥର ଜେଲଯାଇ କମ୍ୟୁନିଷ୍ଟ ମତବାଦ ଗ୍ରହଣ କଲେ ସେମାନଙ୍କ ଲାଗି କଂଗ୍ରେସ ଦ୍ୱାର ରୁଦ୍ଧ ହୋଇଗଲା ।

ଏହା ଅନ୍ୟପକ୍ଷରେ ଓଡ଼ିଶାରେ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରସାର ଦିଗରେ ସାହାଯ୍ୟ କଲା । ୧୯୪୬-୪୭ ବେଳକୁ ଏକ ଶକ୍ତିଶାଳୀ କମ୍ୟୁନିଷ୍ଟ ଆନ୍ଦୋଳନ ଆରମ୍ଭ ହୋଇଥିଲା । କମ୍ୟୁନିଷ୍ଟ ବିରୋଧୀ ପ୍ରଚାର ଦୋହଲମୋହଲ ପେଟି ବୁର୍ଜୁୟା ଶ୍ରେଣୀ- ଯେମିତିକି ମଧ୍ୟବିତ୍ତ ଓ ଛାତ୍ରମାନଙ୍କ ମଧ୍ୟରେ ଯେ ବିଭ୍ରାନ୍ତି ସୃଷ୍ଟି କରିଥିଲା, ଏହା ସ୍ୱୀକାର୍ଯ୍ୟ । କିନ୍ତୁ କମ୍ୟୁନିଷ୍ଟମାନେ ଯେଉଁଠି କାମ କରୁଥିଲେ, ତାହା ଶ୍ରମିକ କ୍ଷେତ୍ର ହେଉ, ଅବା ଚାଷୀ ମୂଲିଆ ଅଞ୍ଚଳ ହେଉ ବା ଗଡ଼ଜାତ ହେଉ, ସର୍ବତ୍ର ସେମାନଙ୍କ ପାଖକୁ ଲୋକେ ଆକୃଷ୍ଟ ହେଲେ ।

ଏହି କାଳରୁ ହିଁ ସ୍ୱାଧୀନତା ପ୍ରାପ୍ତି ପୂର୍ବ କଂଗ୍ରେସ ସହିତ କମ୍ୟୁନିଷ୍ଟମାନଙ୍କର ଆନୁଷ୍ଠାନିକ ସମ୍ପର୍କ ଛିନ୍ନ ହୋଇଗଲା ।

କଂଗ୍ରେସ ସେତେବେଳେ କ୍ଷମତା ପାଗଳ । ୧୯୪୭ରେ ମାଉଣ୍ଟବେଟନ ଆୱାର୍ଡ ଯୋଗେ ଭାରତ ବିଭାଜନ, ଗଡ଼ଜାତ ରଜାମାନଙ୍କ ସ୍ୱତନ୍ତ୍ର ସ୍ଥିତି, ବ୍ରିଟିଶ ସେନାଙ୍କର ଓ ଅନ୍ୟ ବ୍ୟବସ୍ଥା ନ ହେବା ଯାଏ ବ୍ରିଟିଶ ଭାଇସରାୟ ଓ ହାକିମମାନଙ୍କ ଉପସ୍ଥିତି ଥାଇ ଅଗଷ୍ଟ ୧୫ର ସ୍ୱାଧୀନତା ଅର୍ଜନ ହେଲା । ବ୍ରିଟିଶ ସାମ୍ରାଜ୍ୟବାଦ ଏଥି ପୂର୍ବରୁ ହିନ୍ଦୁ ମୁସଲମାନ ଦଙ୍ଗା ସୃଷ୍ଟି କରି ଲକ୍ଷ ଲକ୍ଷ ଉଭୟ ସଂପ୍ରଦାୟର ନରନାରୀ ଶିଶୁ ବୃଦ୍ଧଙ୍କ ନିର୍ମମ ହତ୍ୟା ସାଙ୍ଗକୁ କୋଟି ସଂଖ୍ୟାର ଶରଣାର୍ଥୀ ସମସ୍ୟା ସୃଷ୍ଟି କରିଥିଲା । ସେତେବେଳେ ଏହି ଦଙ୍ଗା ଓ ସମ୍ପ୍ରଦାୟିକତାର ବିଷ ବିରୁଦ୍ଧରେ ଯଦି କେହି ଏକାନ୍ତ ଭାବରେ ଛିଡ଼ା ହୋଇଥିଲା ତାହା ହେଲା କମ୍ୟୁନିଷ୍ଟ ପାର୍ଟି । ଓଡ଼ିଶାରେ ୧୯୪୫-୪୬ ବେଳକୁ କମ୍ୟୁନିଷ୍ଟମାନେ ହିଁ ପ୍ରଥମ ଶ୍ରମିକ ସଂଗଠନର ସୃଷ୍ଟି କରିଥିଲେ । କଟକ ପ୍ରେସ୍ କର୍ମଚାରୀ ସଂଘ, ବାରଙ୍ଗ କାଚକାରଖାନା ଶ୍ରମିକ ସଂଘ, ବ୍ରଜରାଜନଗର କାଗଜକଳ ଶ୍ରମିକ ସଂଘ, ପୁରୀର ପ୍ରସିଦ୍ଧ ମାହାର ସଂଘ, କଟକ ଦର୍ଜି କାରିଗର ୟୁନିଅନ ପ୍ରଭୃତି ଶ୍ରମିକ ସଂଗଠନ ଓ ସେ କାଳର ଧର୍ମଘଟ ସଂଗ୍ରାମ ଶ୍ରମିକ ଶ୍ରେଣୀ ପାର୍ଟିର ଚରିତ୍ରକୁ ବଳିଷ୍ଠ କଲା ।

ବାରଙ୍ଗ ଶ୍ରମିକଙ୍କ ଧର୍ମଘଟ, ପ୍ରେସ୍ ଶ୍ରମିକମାନଙ୍କ ଧର୍ମଘଟର ସାଫଲ୍ୟ-କୃପାସିନ୍ଧୁ ଖୁଣ୍ଟିଆଙ୍କ ନେତୃତ୍ୱରେ ଓରିଏଣ୍ଟ କାଗଜକଳ ଶ୍ରମିକ ସଂଘର ସଂଗ୍ରାମ, ପୁରୀରେ ମେହେନ୍ତରମାନଙ୍କର ଐତିହାସିକ ଧର୍ମଘଟ ନୂତନ କଂଗ୍ରେସ ଶାସକ ଓ ନ୍ୟସ୍ତସ୍ୱାର୍ଥ ମାନଙ୍କର ଘୋର ବିରୋଧ ଓ ଦମନର ସମ୍ମୁଖୀନ ହେଲା ।

୧୯୪୬ରେ ୧୯୩୫ ଶାସନ ଖସଡ଼ା ଭିତ୍ତିରେ ଓଡ଼ିଶାରେ ୬୦ ଜଣିଆ ବିଧାନସଭା ନିର୍ବାଚନରେ ସଂରକ୍ଷିତ ଶ୍ରମିକ ଆସନରୁ କମ୍ୟୁନିଷ୍ଟ ପ୍ରାର୍ଥୀ ବୈଦ୍ୟନାଥ ରଥ କଂଗ୍ରେସ ପ୍ରାର୍ଥୀ ମହମ୍ମଦ ହନିଫଙ୍କୁ ପରାସ୍ତ କରି ଜୟଯୁକ୍ତ ହେବା ଅତ୍ୟନ୍ତ ଉଲ୍ଲେଖନୀୟ ଘଟଣା । ସେତେବେଳେ ବିଭିନ୍ନ ରାଜ୍ୟରେ ଖୁବ୍ ଅଳ୍ପ ସଂଖ୍ୟକ କମ୍ୟୁନିଷ୍ଟ ବିଜୟ ଲାଭ କରିଥିବା ବେଳେ ଓ ବହୁ ବଡ ବଡ ରାଜ୍ୟରେ ବିଧାନସଭାରେ କମ୍ୟୁନିଷ୍ଟ ପ୍ରତିନିଧି ନ ଥିବା ବେଳେ ଓଡ଼ିଶାରେ ପାର୍ଟିର ବିଜୟକୁ ଭାରତବର୍ଷର ପାର୍ଟି ଅତ୍ୟନ୍ତ ମର୍ଯ୍ୟାଦା ଦେଇଥିଲା ।

ଏହି ବିଜୟ ମଧ୍ୟ ଅନ୍ୟ ଦିଗରେ ପାର୍ଟିର ଗଣ କାର୍ଯ୍ୟକଳାପକୁ ଉଦ୍‌ବୁଦ୍ଧ କଲା । ସେତେବେଳେ ଏକମାତ୍ର ବାମପନ୍ଥୀ ଦଳ ସିପିଆ । ସିପିଆଇ ତିନୋଟି ଫ୍ରଣ୍ଟରେ କାମ ଆରମ୍ଭ କରିଦେଲା । ନୂତନ ଶକ୍ତିସମ୍ପନ୍ନ ପାର୍ଟି ପୁରୀର ନିମାପଡା, ଗୋପ-କାକଟପୁର, ଖୋର୍ଦ୍ଧା, ଓଳସିଂହ ଚନ୍ଦକା ପ୍ରଭୃତି ଅଞ୍ଚଳରେ ଭାଗ ଚାଷୀଙ୍କ ଭାଗ ପାଇଁ, ଜମିଦାର ମଠ ମହନ୍ତ ଓ ସର୍ବରାକାରଙ୍କ ଅତ୍ୟାଚାର ବିରୁଦ୍ଧରେ ପ୍ରଚଣ୍ଡ ସଂଗ୍ରାମ ଆରମ୍ଭ କରିଦେଲା ।

କଟକରେ ପାର୍ଟିର ନୂତନ ଗଣଭିତ୍ତି କଟକର ଶଙ୍କରପୁର, ବିଡ଼ାନାସୀକୁ ବିସ୍ତାରି

ପଟିଆ କିଲାକୁ ବ୍ୟାପିଗଲା । ଏତିକିବେଳେ କୁଜଙ୍ଗର ତିର୍ତ୍ତିରି ଅଞ୍ଚଳ, ମଙ୍ଗଳପୁରରେ ଅର୍ଦ୍ଧାଉଳିଆ, ସାଲେପୁର- କଟକ ଟାଙ୍ଗି, ସୁକିନ୍ଦା- ଧର୍ମଶାଳା ବଡ଼ଚଣା ପ୍ରଭୃତି ଅଞ୍ଚଳକୁ ପ୍ରସାରିତ ହେଲା । ଗଞ୍ଜାମର ରୟତସଭା ପୂର୍ବର ଜମିଦାରୀ ରଇତ ସଭାର ସଂସ୍କାରବାଦୀ ଗଣ୍ଡି ଭିତରୁ ମୁକ୍ତି ପାଇଁ ଉତ୍କଳ କୃଷକ ସଭାର ଅଂଗ ରୂପେ ଗୋବିନ୍ଦ ପ୍ରଧାନ, ହରିହର ଦାସ ପ୍ରମୁଖଙ୍କ ନେତୃତ୍ୱରେ ମୁସ୍ତାଦାରୀ ପ୍ରଥା ଓ ଇନାମଦାରୀ ପ୍ରଥା ବିରୁଦ୍ଧରେ ଏବଂ ନଗଦ ... ବା ଖଜଣା ଧାର୍ଯ୍ୟ ପାଇଁ ମୁଖ୍ୟତଃ ଆନ୍ଦୋଳନ ଆରମ୍ଭ ହୋଇ ଗଞ୍ଜାମର ୧୩ଟି ଯାକ ଜମିଦାରୀ ଅଞ୍ଚଳରେ ଚାଷୀମାନଙ୍କୁ ଉଦ୍‌ବେଳିତ କଲା । ସାଧୁଚରଣ ମହାନ୍ତି, ଗୁରୁଚରଣ ପଟ୍ଟନାୟକ, ମୋହନ ଦାସ ଓ ଗଞ୍ଜାମ ଜିଲ୍ଲାର ନେତାମାନେ ଗଞ୍ଜାମର ଜମିଦାରୀ ଅଞ୍ଚଳ ଗୁଡ଼ିକରେ ସଭା ସଂଗଠନ କରି ଏକ ବିରାଟ ଚାଷୀ ଆନ୍ଦୋଳନ ଠିଆ କରେଇଲେ ।

୧୯୪୫ରେ କାଳକଣ୍ଠପୁର ଠାରେ ୨୫ ହଜାରରୁ ଊର୍ଦ୍ଧ୍ୱ ନାହିଁ ନ ଥିବା ସମାବେଶ ଗଞ୍ଜାମର ରାଜନୈତିକ ଇତିହାସରେ ବାମ ମୋଡ଼ ଆଣିଦେଲା । ୧୯୪୬ରେ ମଧ୍ୟ ତାକରଡ଼ା ତୋଟାରେ ଏକ ବିଶାଳ ଚାଷୀ ସମାବେଶରେ ରାଜ୍ୟ ନେତୃମଣ୍ଡଳୀ ସହ ଡଃ ବିଶ୍ୱନାଥ ମୁଖାର୍ଜୀ ଯୋଗ ଦେଇଥିଲେ ।

ବାଲେଶ୍ୱରରେ ମଧ୍ୟ ସୋରୋ, ସିମୁଳିଆ-ଭଦ୍ରଖ ପ୍ରଭୃତି ଅଞ୍ଚଳର ଚାଷୀ ଆନ୍ଦୋଳନ ପ୍ରଖର ହେଲା ।

ପଟିଆର ବନ୍ଧ । ମହତାବ ସରକାରଙ୍କ ବିରୋଧ ଏବଂ ଜମିଦାର କନିକା ରାଜାଙ୍କ ବିରୋଧ । ଜମିଦାରଙ୍କ ଗୁଣ୍ଡାଗିରି ଓ ସରକାରୀ ଦମନ । ଏହି ବନ୍ଧ ଆନ୍ଦୋଳନ କଟକ ସହରକୁ ସରଗରମ କରିଦେଲା । ହଜାର ହଜାର ପଟିଆ ଚାଷୀ ୧୦/୧୨ ମାଇଲ ଚାଲି ଚାଲି ବାରମ୍ବାର କଟକ ସହରରେ ବିକ୍ଷୋଭ କଲେ ।

ରାମକୃଷ୍ଣ ପତି ଥିଲେ ଏହାର କର୍ଣ୍ଣଧାର । ପଟିଆ ବନ୍ଧ ୯ ମାଇଲ- ଭାରତ ଘାଇ ଠାରୁ ବରିମୁଣ୍ଡ ସେପଟ ଦୋମୁହିଁ ଘାଇ । ଲୋକେ ବନ୍ଧ ପକେଇବେ । ରାମଚନ୍ଦ୍ର ମିଶ୍ରଙ୍କ ନେତୃତ୍ୱରେ ଶରତ ମହାନ୍ତି, ପ୍ରହ୍ଲାଦ ଜେନା ମାଧବାନନ୍ଦ ସିଂହ, ସୟଦ ଅବଦୁଲ କାଦର ଏବଂ ସ୍ଥାନୀୟ ଭ୍ରମର ପାଳ, ପଠାଣି ପ୍ରଧାନ, ବଟ ମିଶ୍ର, ଭ୍ରମର ପ୍ରଧାନ, ନାଥ ସ୍ୱାଇଁ, ଜୟି ମିଶ୍ର ସର୍ବୋପରି ପଟିଆରେ ନିଶାମଣି ତ୍ରିପାଠୀ ପ୍ରମୁଖଙ୍କ ରାତି ଦିନ ପରିଶ୍ରମ । ଚାନ୍ଦା ସଂଗ୍ରହ ଓ ହଜାର ହଜାର ଲୋକଙ୍କ ୧୯୪୬ ଦୋଳ ଦଶମୀ ଦିନ ବନ୍ଧର ଶୁଭାରମ୍ଭ ଓ ବନ୍ଧର ସମାପନ ସାରା ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଯେ ଗରିବ ଚାଷୀଙ୍କ ପାର୍ଟି, ଏହି ମର୍ଯ୍ୟାଦା ଆଣିଦେଲା ।

୧୯୪୭ ଅଗଷ୍ଟ ୧୫ ତାରିଖ ପରେ ଦ୍ୱିତୀୟ ପର୍ଯ୍ୟାୟ ଗଡ଼ଜାତ ପ୍ରଜା ଆନ୍ଦୋଳନ । ୧୯୩୮-୩୯ ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କ ଭୂମିକାର ପରମ୍ପରା ନେଇ ଢେଙ୍କାନାଳ, ନୀଳଗିରି, ରଣପୁର, ବାମଣ୍ଡା-ରେଢ଼ାଖୋଲ, ଦଶପଲା, ନୟାଗଡ଼, ଖଣ୍ଡପଡ଼ା, ବଲାଙ୍ଗୀର

ପ୍ରଭୃତିରେ କମ୍ୟୁନିଷ୍ଟମାନଙ୍କ ପ୍ରଭାବରେ ଆନ୍ଦୋଳନ ମଧ୍ୟ ପ୍ରଖର ହୋଇ ଉଠିଲା । ନୀଳଗିରିରେ ବନମାଳୀ ଦାସ ଓ ତାଙ୍କର ସାଥୀମାନେ ଏବଂ ୪ ବର୍ଷ ଅଜ୍ଞାତ ବାସରେ ରହିବା ପରେ ଢେଙ୍କାନାଳରେ ବୈଷ୍ଣବ ପଟ୍ଟନାୟକ ଓ ଅନ୍ୟ ସାଥୀମାନେ, ରଣପୁରରେ ଗଙ୍ଗାଧର ମିଶ୍ର, ରାମଚନ୍ଦ୍ର ରାମ ଓ ନୟାଗଡ଼, ଦଶପଲ୍ଲା, ଖଣ୍ଡପଡ଼ା ଆନ୍ଦୋଳନରେ ବାସୁଦେବ ଦୋରା, ଗଙ୍ଗାଧର ପାଇକରାୟ, ପର୍ଶୁରାମ ପଦାତିକରାୟ ପ୍ରମୁଖ ସାଥୀ ଓ ବାମଡାରେ ଦୟାନନ୍ଦ, ଲକ୍ଷ୍ମଣ ପୂଝାରୀ ପ୍ରମୁଖଙ୍କ ପ୍ରଭାବରେ ଏବଂ ବଲାଙ୍ଗୀରରେ ଯୁଧିଷ୍ଠିର ମିଶ୍ର, କୃଷ୍ଣ ପ୍ରସାଦ ମିଶ୍ର ଏବଂ ଆଠଗଡ଼ରେ ବ୍ରଜ ପଟ୍ଟନାୟକ ବିବେକ ରଥ, ଦୀନବନ୍ଧୁ ମିଶ୍ର ନନ୍ଦ ପଟ୍ଟନାୟକ ପ୍ରମୁଖଙ୍କ ପ୍ରଭାବରେ ଗଡ଼ଜାତ ପ୍ରଜା ଆନ୍ଦୋଳନ ବାମମୁଖୀ ସଂଗ୍ରାମର ରୂପ ନେଲା । ୧୯୪୬ ଡିସେମ୍ବର ମାସରେ ଗଡଜାତଗୁଡ଼ିକର ମିଶ୍ରଣ ପୂର୍ବରୁ ନୀଳଗିରିରେ ରଜାର କଳାପିଠିଆ ଆତତାୟୀ ବାହିନୀ ସହିତ ସଶସ୍ତ୍ର କମ୍ୟୁନିଷ୍ଟ ସେନାଙ୍କର ଲଢ଼େଇ ଏହି ଗଡଜାତ ପ୍ରଜା ଆନ୍ଦୋଳନର ଏକ ରୋମାଞ୍ଚକର ଅଧ୍ୟାୟ । ଯେଉଁମାନେ ଏହି ସଶସ୍ତ୍ର ଯୁଦ୍ଧରେ ଭାଗ ନେଇ ଥିଲେ, ପୂର୍ବରୁ ଏକ ଲେଖାରେ ସେମାନଙ୍କ ନାମ ପ୍ରକାଶିତ ହୋଇଛି ।

**ପ୍ରଥମ ପାର୍ଟି ସମ୍ମିଳନୀ- ମଞ୍ଜେଶ୍ୱର**

ଜନସଂଗ୍ରାମ, ଜନସେବା, ଶ୍ରେଣୀ ସଂଗ୍ରାମର ପେକ୍ଷାପଟରେ ୧୯୪୮ ଫେବୃଆରୀ ୫, ୬, ୭, ୮ରେ ପଟିଆ ଗାଡ଼କଣ ଅଞ୍ଚଳ ମଞ୍ଜେଶ୍ୱରଠାରେ ରାଜ୍ୟ ପାର୍ଟିର ପ୍ରଥମ ସମ୍ମିଳନୀ ଅନୁଷ୍ଠିତ ହେଲା । ୧୨୨୦ ଜଣ ପାର୍ଟି ସଭ୍ୟଙ୍କର ୧୩୫ ଜଣ ପ୍ରତିନିଧିଙ୍କ ମଧ୍ୟରୁ ୧୨୦ ଉପସ୍ଥିତ ଥିଲେ । ସାଥୀ ପ୍ରାଣନାଥ ପଟ୍ଟନାୟକ ଲାଲଝଣ୍ଡା ଉତ୍ତୋଳନ କଲେ । ସାଥୀ ଶରତ ପଟ୍ଟନାୟକ ରାଜନୈତିକ ପ୍ରସ୍ତାବ ଓ ସାଥୀ ରାମକୃଷ୍ଣ ପତି ସାଙ୍ଗଠନିକ ପ୍ରସ୍ତାବ ଆଗତ କରିଥିଲେ । ସଭାପତି ମଣ୍ଡଳୀରେ ଥିଲେ ସାଥୀ ଗୋକୁଳମୋହନ ରାୟଚୂଡ଼ାମଣି, ଗୋବିନ୍ଦ ପ୍ରଧାନ, ସାଧୁଚରଣ ମହାନ୍ତି, ଯଦୁନନ୍ଦନ ବିଶ୍ୱାଳ ଓ ବିଶ୍ୱନାଥ ମୁଖାର୍ଜୀ । ସାଥୀ ବିଶ୍ୱନାଥ ମୁଖାର୍ଜୀ କଲିକତାରେ ବସୁଥିବା ଦ୍ୱିତୀୟ ପାର୍ଟି କଂଗ୍ରେସର ଚିଠା ରାଜନୈତିକ ପ୍ରସ୍ତାବ ଓ ତେଲେଙ୍ଗାନାର ବୀରତ୍ୱପୂର୍ଣ୍ଣ ଆନ୍ଦୋଳନର ପରିପ୍ରେକ୍ଷୀରେ ଭାରତର ରାଜନୈତିକ ପରିସ୍ଥିତି ସମ୍ପର୍କରେ ଉଦ୍‌ବୋଧନ ଦେଇଥିଲେ । ମୁକ୍ତି ଯୁଦ୍ଧର ସମ୍ପାଦକ ଡଃ ଗୁରୁଚରଣ ପଟ୍ଟନାୟକ ମୁକ୍ତିଯୁଦ୍ଧ ସଂକ୍ରାନ୍ତ ରିପୋର୍ଟ ପେଶ କରିଥିଲେ ।

ଆଗାମୀ ଦିନର ପ୍ରଚଣ୍ଡ ଆନ୍ଦୋଳନ ବିଶେଷତଃ ସାମନ୍ତବାଦୀ ଜମିଦାରୀ ପ୍ରଥା, ଗଡ଼ଜାତରେ ସାମନ୍ତବାଦୀ ପ୍ରଥା ଆନ୍ଦୋଳନର ଓ ବ୍ରିଟିଶ ସାମ୍ରାଜ୍ୟବାଦର ଭାରତ ଉପରେ ରହିଥିବା ଅର୍ଥନୈତିକ, ରାଜନୈତିକ ଓ ସାମରିକ ଅକ୍ତିଆର ବିରୁଦ୍ଧରେ ଏବଂ କଂଗ୍ରେସର ବୁର୍ଜୁୟା ଶାସନ ବିରୁଦ୍ଧରେ ସଂଗ୍ରାମ କରିବାକୁ ଏହି ସମ୍ମିଳନୀରେ ଆହ୍ୱାନ ଦିଆଯାଇଥିଲା । ମୁକ୍ତି ଯୁଦ୍ଧକୁ ଦୈନିକ କରିବା ଲାଗି ୫୦ ହଜାର ଟଙ୍କାର ଏକ ଆବେଦନ ଦିଆଯାଇ ସଂଗେ

ସଂଗେ ୭୦୦ ଟଙ୍କା ସଂଗୃହୀତ ହୋଇଥିଲା ଏବଂ ଗଞ୍ଜାମ ଜିଲ୍ଲା ୧୦ ହଜାର, କଟକ ଜିଲ୍ଲା ୩ ହଜାର ପୁରୀ ଜିଲ୍ଲା ୨ ହଜାର, ସମ୍ବଲପୁର ଜିଲ୍ଲା ୧ ହଜାର ଟଙ୍କା ଦେବାର ପ୍ରତିଶ୍ରୁତି ମଧ୍ଯ ମିଳିଥିଲା ।

କଲିକତାରେ ୨ୟ ପାର୍ଟି କଂଗ୍ରେସକୁ ୧୨ ଜଣ ପ୍ରତିନିଧି ନିର୍ବାଚିତ ହୋଇଥିଲେ । ଶରତ ପଟ୍ଟନାୟକ ସମ୍ପାଦକ ଓ ଗୁରୁଚରଣ ପଟ୍ଟନାୟକ ମୁକ୍ତି ଯୁଦ୍ଧର ସମ୍ପାଦକ ଥାଇ ଏକ କାର୍ଯ୍ୟକାରୀ କମିଟି ନିର୍ବାଚିତ ହୋଇଥିଲା ।

କଲିକତା ପାର୍ଟି କଂଗ୍ରେସ ମାର୍ଚ୍ଚ ମାସରେ ଅନୁଷ୍ଠିତ ହେବା ପରେ ପାର୍ଟି ଆଗାମୀ ଗଣ ସଂଗ୍ରାମର ପ୍ରଧାନ ହତିଆର ରୂପେ ୧୯୪୮ ଏପ୍ରିଲରୁ ଦୈନିକ ପ୍ରକାଶନର ପ୍ରଥମ ସୋପାନ ସ୍ୱରୂପ ମୁକ୍ତି ଯୁଦ୍ଧକୁ ଦ୍ୱିସାପ୍ତାହିକରେ ପରିଣତ କରିଥିଲା । ବର୍ଷକୁ ମାତ୍ର ୮ ଟଙ୍କା ଓ ଖଣ୍ଡକୁ ଅଣାଏ ପଇସା ଧାର୍ଯ୍ୟ କରାଯାଇଥିଲା । ଜମିଦାରୀ ଉଚ୍ଛେଦ ଆନ୍ଦୋଳନକୁ ପାର୍ଟି କାର୍ଯ୍ୟକ୍ରମର ପ୍ରଧାନ ବିଷୟବସ୍ତୁ ବୋଲି ଏହି ସମ୍ମିଳନୀରେ ଡାକରା ଦେଲା । କଲିକତା ପାର୍ଟି ସଂଗ୍ରେସ (ଦ୍ୱିତୀୟ)ର ନିର୍ଦ୍ଧାରଣ ଅନୁସାରେ ପାର୍ଟି ନେତୃତ୍ୱର ପରିବର୍ତ୍ତନ ଘଟିଲା । ପି.ସି. ଯୋଶୀଙ୍କ ସ୍ଥାନରେ ବି.ଟି. ରଣଦିଭେ ସମ୍ପାଦକ ହେଲେ । ପାର୍ଟିର କର୍ମଧାରାର ପରିବର୍ତ୍ତନ ହେଲା । ଯାହାକୁ ପରବର୍ତ୍ତୀ କାଳରେ ଦୁଃସାହସିକ ଆଖ୍ୟା ଦିଆଯାଇ ସଠିକ୍ କର୍ମନୀତିର ପ୍ରୟୋଗ କରାଗଲା ।

**ପାର୍ଟି ଉପରେ କଂଗ୍ରେସ ସରକାରର ଆକ୍ରମଣ**

କଲିକତା କଂଗ୍ରେସ ପରେ ପରେ ତେଲେଙ୍ଗାନାରେ ପାର୍ଟି ଉପରେ ପ୍ରଥମେ ପ୍ରଚଣ୍ଡ ଦମନ ଲୀଳା କରାଗଲା । ସେଠାରେ କେନ୍ଦ୍ର ସରକାରଙ୍କ ସୈନ୍ୟ ପ୍ରବେଶ କରିବା ପୂର୍ବରୁ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ସଶସ୍ତ୍ର ସଂଗ୍ରାମ ହାଇଦ୍ରାବାଦ ନବାବଙ୍କ ଦୁର୍ଦ୍ଧର୍ଷ ରାଜକର ବାହିନୀକୁ ଅସ୍ତବ୍ୟସ୍ତ କରାଇ ଦେଇଥିଲା । ଭାରତବର୍ଷଠାରୁ ହାଇଦ୍ରାବାଦ ସ୍ୱତନ୍ତ୍ର ରହିବ ମାଉଣ୍ଟବେଟନ ଆୱାର୍ଡ଼ର ସୁଯୋଗରେ ନିଜାମଙ୍କ ସମସ୍ତ ଷଡ଼ଯନ୍ତ୍ରକୁ ଚାରି ହଜାର କମ୍ୟୁନିଷ୍ଟ ପ୍ରାଣ ଦେଇ କାର୍ଯ୍ୟତଃ ବ୍ୟର୍ଥ କରି ଦେଇଥିଲେ ଏବଂ ଦେଶମୁଖ ବା ବଡ଼ ବଡ଼ ଜମିଦାରଙ୍କ ଜମି ଗରିବ ଓ ଭୂମିହୀନଙ୍କୁ ବାଣ୍ଟି ଦେଇଥିଲେ । କେନ୍ଦ୍ର ସରକାରଙ୍କ ପୁଲିସର କାର୍ଯ୍ୟାନୁଷ୍ଠାନ ତାହା ଫଳରେ ସହଜସାଧ୍ୟ ହୋଇଗଲା । ମାତ୍ର କେନ୍ଦ୍ର ସରକାର ଓଲଟି କମ୍ୟୁନିଷ୍ଟମାନଙ୍କ ଉପରେ ଆକ୍ରମଣ କଲା । ପରିବର୍ତ୍ତିତ ପରିସ୍ଥିତିରେ ପାର୍ଟି ତାହାର କର୍ମକୌଶଳ ନ ବଦଳାଇବାରୁ ପୂର୍ବର ସଶସ୍ତ୍ର ପ୍ରତିରୋଧ ଭାରତୀୟ ସୈନ୍ୟଙ୍କ ବିରୁଦ୍ଧରେ ଚଳାଗଲା ।

ଗଞ୍ଜାମର ରଇତ ଆନ୍ଦୋଳନ ପ୍ରଥମେ ଏକ ନୂଆ ସଂଗ୍ରାମୀ ରୂପ ଧାରଣ କଲା । ଗଞ୍ଜାମର ଜମିଦାରୀ ଇଲାକା ଶେରଗଡ, ଧରାକୋଟ, ଢେଙ୍କମଣ୍ଡି, ବଡ଼ଗଡ଼ ଅଞ୍ଚଳରେ ବିଶେଷତଃ ମୁସ୍ତାଦାରୀ ପ୍ରଥା ବିରୁଦ୍ଧରେ ଆନ୍ଦୋଳନ ପ୍ରଖରତା ଦେଖି କଂଗ୍ରେସର ମହତାବଙ୍କ

ସରକାର ଦମନର ସୁଅ ଛୁଟାଇଲେ । ୧୯୪୮ ମଇ ୨୪ ତାରିଖରେ ଡାକରଡ଼ାଠାରେ ବିଶାଳ ନିରସ୍ତ୍ର ନରନାରୀଙ୍କ ଜମାଏତ୍ ଉପରେ ଗୁଳି କରି ହେମ ସମେତ ୬ ଜଣଙ୍କୁ ହତ୍ୟା କରାଗଲା ।

ଏହି ୧୯୪୮ ପ୍ରଥମାର୍ଦ୍ଧରେ ପାର୍ଟି ନେତୃତ୍ୱରେ ସଂଗ୍ରାମ ସଂଗଠିତ ହେଲା । ଭାଗଚାଷୀମାନଙ୍କର ଆନ୍ଦୋଳନ ପୁରୀ, କଟକ, ବାଲେଶ୍ୱରକୁ ପ୍ରସାରିତ ହେଲା । ଏତିକିବେଳେ ସୋରୋ, ବାଲେଶ୍ୱର, ଡିହିଡ଼ି, ବାହନଗା, ରାହଞ୍ଜା, ବାଜିପୁର, କହରାଗୋହରି ପ୍ରଭୃତି ବାଲେଶ୍ୱର ଜିଲ୍ଲାରେ, ପୁରୀର କାକଟପୁର, ବ୍ରହ୍ମଗିରି, ଗୋପ, କେରେଣ୍ଡିଆମାଳ ଓ ଗଞ୍ଜାମର ମାଳ ଅଞ୍ଚଳର ଆଦିବାସୀ ଅଞ୍ଚଳରେ, ପାଇକପଡ଼ା ଇଷ୍ଟେଟରେ ସମ୍ବଲପୁରର ରେଶମ ଅଞ୍ଚଳରେ ଗୌନ୍ତିଆ ପ୍ରଥା ବିରୁଦ୍ଧରେ, କଟକର ପଣ୍ଡିତ ଇଷ୍ଟେଟରେ, ଅର୍ଦ୍ଧାଉଳିଆରେ ଏହାର ପ୍ରସାର ହୋଇଥିଲା । ୧୫.୨.୪୮ରେ ନୀଳଗିରିର ସାଥୀ ବନମାଳୀ ଦାସ ଓ ଅନ୍ୟମାନଙ୍କୁ ରଜା ବିରୁଦ୍ଧରେ ଲଢ଼ିଥିବାରୁ ନରହତ୍ୟାର ୩୦୨ ପ୍ରଭୃତି ଦଫାରେ ଗିରଫ କରାଗଲା । ଏହା ହିଁ ଗଡ଼ଜାତ ପ୍ରଜାଙ୍କ ମୁକ୍ତି ପାଇଁ ଲଢ଼ିଥିବା କମ୍ୟୁନିଷ୍ଟମାନଙ୍କ ପାଇଁ ମହତାବ ସରକାରଙ୍କର ଥିଲା ଭେଟି । ମହତାବଙ୍କ ଖାଦ୍ୟ ନୀତି ବିରୁଦ୍ଧରେ ଅର୍ଥାତ୍ ଶହକେ ୫ ଜଣ କିଣିଖିଆ ବୋଲି ବିଧାନସଭାରେ କହି ଚାଉଳ ଦର ବଢ଼ାଇ ଦେବାରୁ ରାଜ୍ୟସାରା କମ୍ୟୁନିଷ୍ଟ ପାର୍ଟି ଓ କୃଷକ ସଭା ନେତୃତ୍ୱରେ ଖାଦ୍ୟ ଆନ୍ଦୋଳନ ତେଜି ଉଠିଲା ।

ସମ୍ବଲପୁର ଜିଲ୍ଲା ଦେବଗଡ଼ରେ ଗୁଳିରେ ନିରୀହ ଆଦିବାସୀଙ୍କୁ ହତ୍ୟା କରି ମହତାବ ବିଧାନସଭାରେ କହିଲେ ବର୍ତ୍ତମାନ ମୋତେ କୁହନ୍ତୁ କି ଉପାୟ ଥିଲା ? କମ୍ୟୁନିଷ୍ଟମାନେ ୫୦୦ କନ୍ଧଙ୍କୁ ବନ୍ଧୁକ ଦେଇ ପର୍ବତରେ ତାଲିମ ଦେଇ ରଖିଛନ୍ତି । ସେ ଦିନ ଗୁଳି କରି ୪ ଜଣ ସ୍ତ୍ରୀ ଓ ୨ ଜଣ ପୁରୁଷଙ୍କୁ ମାରିନଥିଲେ ଏବଂ ୪୦ ଜଣଙ୍କୁ ଆହତ କରିନଥିଲେ କନ୍ଧ ହାତହତିଆର ଧରି ସରକାରଙ୍କୁ ଆକ୍ରମଣ କରିଥାନ୍ତେ ।

କମ୍ୟୁନିଷ୍ଟମାନଙ୍କୁ ଦମନ କରିବା ଲାଗି କେବଳ ୧୯୪୮ ମାର୍ଚ୍ଚରେ କଳା ଆର୍ଡ଼ିନାନ୍ସ ଜାରି କରାଗଲା ଏବଂ ବିଧାନସଭାରେ ବୈଦ୍ୟନାଥ ରଥ ଏହାର ପ୍ରତିବାଦ କରନ୍ତେ ମହତାବ କହିଲେ "କମ୍ୟୁନିଷ୍ଟମାନେ ଜମିଦାର ଓ ପୁଞ୍ଜିପତି ମାନଙ୍କର ଦଲାଲ" ।

ପାର୍ଟିକୁ ପଶ୍ଚିମବଙ୍ଗ ପରି ବେଆଇନ ଘୋଷଣା ନ କରାଗଲେ ବି କଂଗ୍ରେସ ସରକାର ଓଡ଼ିଶାକୁ ବସ୍ତୁତଃ ୧୯୪୮ ଠାରୁ ବେଆଇନ ପାର୍ଟିରେ ପରିଣତ କରିଦେଲେ । ଏତିକି ବେଳେ ଶରତ ପଟ୍ଟନାୟକଙ୍କ ସ୍ଥାନରେ କାର୍ଯ୍ୟକାରୀ କମିଟିଙ୍କ ନିଷ୍ପତ୍ତି ଅନୁସାରେ ରାମକୃଷ୍ଣ ପତି ରାଜ୍ୟ ପାର୍ଟି ସମ୍ପାଦକ ହେଲେ ।

ଡାକରଡ଼ା ଗୁଳିକାଣ୍ଡର ପ୍ରତିବାଦରେ ମୁକ୍ତି ଯୁଦ୍ଧ ଶହୀଦ ଲହୁର ସନ୍ତକ ଭୁଲିନାହୁଁ ସମ୍ପାଦକୀୟ ଲେଖିଥିବାରୁ ଗଣତାନ୍ତ୍ରିକ ଅଧିକାର ଓ ସମ୍ବାଦପତ୍ରର ସ୍ୱାଧୀନତା ରକ୍ଷା କରିବାକୁ

ବଚନ ଦେଇଥିବା କଂଗ୍ରେସ ସରକାର ମୁକ୍ତି ଯୁଦ୍ଧ ଉପରେ ୩ ହଜାର ଓ ତାହାର ମୁଦ୍ରଣ ହେଉଥିବା ନବଯୁଗ ପ୍ରେସ ଉପରେ ଆଉ ୩ ହଜାର ଟଙ୍କା ୧୬ ସେପ୍ଟେମ୍ବର ୧୯୪୮ ଅତିରିକ୍ତ ସେକ୍ରେଟେରୀଙ୍କ ୩୪୧୬ ହୁକୁମ ନାମାରେ ଜରିମାନା ଧାର୍ଯ୍ୟ କଲା ।

୧୯୪୩ରେ ମୁକ୍ତି ଯୁଦ୍ଧ ବାହାରିବାର ପ୍ରଥମ ସଂଖ୍ୟାରେ ଦୋଷ କାହାର ଦାୟୀ କିଏ ନାମକ ସମ୍ପାଦକୀୟରେ କଂଗ୍ରେସ ଉପରେ ବ୍ରିଟିଶ ସରକାରର ଦମନ ବିରୁଦ୍ଧରେ ସମାଲୋଚନା କରାଯାଇଥିବାରୁ ୫୦୦ ଟଙ୍କା ଜରିମାନା ଦେବାକୁ ପଡିଥିଲା । ସ୍ୱାଧୀନତା ପରେ କଂଗ୍ରେସ ସରକାର ଆସୁ ଆସୁ ମୁକ୍ତି ଯୁଦ୍ଧ ଓ ପ୍ରେସ ଉପରେ ମୋଟ ୬ ହଜାର ଟଙ୍କା ଜରିମାନା । ଆଜିର ତାହା ପ୍ରାୟ ୧ ଲକ୍ଷ ଟଙ୍କା ସଙ୍ଗେ ସମାନ ।

ପାର୍ଟି ଉପରେ ପୁଲିସ ଆକ୍ରମଣରୁ ବଞ୍ଚାଇବା ଲାଗି ଖୋଲା ଖୋଲି ଓ ଗୋପନରେ କାର୍ଯ୍ୟ ଚଳାଇବାର କର୍ମ କୌଶଳ ନିଆଗଲା । କାର୍ଯ୍ୟକାରୀ କମିଟିର ଅଧିକାଂଶ ସଦସ୍ୟଙ୍କୁ ଗୋପନରେ ଓ କେତେ ଜଣଙ୍କୁ ବାହାରେ ରହିବାକୁ ପଡ଼ିଲା । ପ୍ରତି ମୁହୂର୍ତ୍ତରେ ପାର୍ଟି ଅଫଇସ ଉପରେ, ସାଥୀମାନଙ୍କ ରହିବା ଜାଗା ଉପରେ ଏବଂ ଗଞ୍ଜାମର ବିଭଗିନ୍ନ ପେଣ୍ଠ ଗାଁ ଓ ଅନ୍ୟତ୍ର ଜିଲ୍ଲା ପାର୍ଟି କେନ୍ଦ୍ରଗୁଡ଼ିକ ଉପରେ ଗୁଇନ୍ଦା ପୁଲିସର ନଜର, ଗିରଫ ଆରମ୍ଭ ହୋଇଗଲା । କଟକର ଶଙ୍କରପୁର, ଗଞ୍ଜାମର ବ୍ରହ୍ମପୁର, ଶେରଗଡ଼, ଆସିକା, ଖେମଣ୍ଡି ଅଞ୍ଚଳର ଗାଁ' ଉପରେ, ପଟିଆର ଅନ୍ୟ ଗାଁ' ଗୁଡ଼ିକ ଉପରେ ଅଧିକରୁ ଅଧିକ ପୁଲିସ ଫୌଜର ଆକ୍ରମଣ, ଘେରାଉ ଚାଲିଥିଲା । ପୁରୀ ଜିଲ୍ଲା, ବାଲେଶ୍ୱର ଜିଲ୍ଲାର ବିଭିନ୍ନ ବିଭିନ୍ନ ଗାଁରେ ମଧ୍ୟ ପୁଲିସ ଚଢ଼ଉ କରୁଥିଲା ।

ମୁକ୍ତିଯୁଦ୍ଧ ପ୍ରକାଶନକୁ ଜରିମାନା ନ ଦେଇ ବନ୍ଦ କରିଦେଇ ପାର୍ଟି ନୂତନ କର୍ମକୌଶଳ ନେଲା । ସମ୍ପାଦକତ୍ୱ ବଦଳାଇ ବିଜୟ ଦାସଙ୍କ ସମ୍ପାଦନାରେ ପ୍ରଥମେ ସମ୍ବାଦ ଓ ତା' ଉପରେ ଜରିମାନା ହେବାରୁ ସପ୍ତାହ ଓ ତା' ଉପରେ ଜରିମାନା ଓ କଟକଣା ହେବାରୁ ସମାଚାର ଦ୍ୱିସାପ୍ତାହିକ କିଛି ମାସ ପ୍ରକାଶ କରାଗଲା । କିନ୍ତୁ ସରକାରୀ ଆକ୍ରମଣ ଏପରି ହେଲା ଯେ ଗ୍ରାହକ ଓ ଏଜେଣ୍ଟମାନଙ୍କ ଉପରେ ଆକ୍ରମଣ ବଢ଼ିଲା । ଜିଲ୍ଲା ପାର୍ଟିଗୁଡ଼ିକ ଯେମିତି ଗଞ୍ଜାମ, କଟକ, ବାଲେଶ୍ୱର, ପୁରୀ, ସମ୍ବଲପୁର ପ୍ରଭୃତିରେ ପାର୍ଟିର ମୁଖ୍ୟ ଭାଗ ଅଜ୍ଞାତବାସକୁ ଗଲେ, ଯୁବସଂଘ ସମ୍ମିଳନୀ କରି ପାର୍ଟିକୁ ବଞ୍ଚାଇ ରଖିବାକୁ କେତେକ ଜାଗାରେ ଉଦ୍ୟମ ହେଲା । ତା' ଉପରେ ମଧ୍ୟ ପୁଲିସର ଆକ୍ରମଣ ।

ବ୍ରହ୍ମପୁର ଜେଲ, କଟକ ଜେଲରେ କମ୍ୟୁନିଷ୍ଟ ପାର୍ଟିର ପୁରାତନ ଓ ଯୁବନେତାମାନେ ଖୁନ୍ଦି ହୋଇଗଲେ । ଗଞ୍ଜାମର ଗାଁ'ରେ ଗାଁ'ରେ ପୁଲିସ ଚଢ଼ଉ କରି ଯୁବ ଓ ଛାତ୍ରନେତା ଓ ପ୍ରବୀଣନେତାମାନଙ୍କୁ ଧରି ନେଲା । କଟକ ଓ ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ଅନ୍ୟ ଜିଲ୍ଲାରୁ ନେତା ଓ କର୍ମୀମାନଙ୍କୁ ଗିରଫ କରି ନିଆଗଲା । ସେପରି ନେତାମାନଙ୍କ ମଧ୍ୟରୁ ଆଜି କେତେକ

ଆଉ ନାହାନ୍ତି ଏବଂ କେତେକ ଏବେବି ବଞ୍ଚିଛନ୍ତି । ୩ ବର୍ଷାଧିକ ଅଜ୍ଞାତବାସରେ ନାନା ଦୁଃଖ, ଯନ୍ତ୍ରଣା, ଉପବାସ, ବାଘ ସାପ ହାତୀର ଆକ୍ରମଣରୁ ବର୍ତ୍ତି ସେମାନେ ପାର୍ଟି କାର୍ଯ୍ୟ ଚଳାଉଥିଲେ । ପୁଲିସ ଥାନା ପାଖରେ ବି ଗୁପ୍ତ କାମ କରିବା ଠାରୁ ଅଗ୍ନାନି ବନସ୍ତ, ପାହାଡ଼ ପର୍ବତ ଚୂଡ଼ାରେ ରହି ପାର୍ଟିର ଗୋପନ ଛାପାଛାପି ଯନ୍ତ୍ର ରଖି, ଗୁପ୍ତ ବାହକ ଓ ପୋଷ୍ଟଅଫିସ ରଖି ପାର୍ଟିର ଧ୍ୱଜାକୁ ବଞ୍ଚେଇ ରଖାଯାଉଥିଲା ।

ଗୋପନରେ ମଧ୍ୟ ବିଭିନ୍ନ ସ୍ଥାନରେ ଲୁଚିଥିବା ଓ ଯିଏବା ବାହାରେ ପୁଲିସରୁ ନିଜକୁ ରକ୍ଷା କରି ରହିଥିଲେ କାର୍ଯ୍ୟକାରୀ କମିଟିର ସେହି ସଦସ୍ୟମାନଙ୍କର ବୈଠକ ବସି ନିଷ୍ପତ୍ତିମାନ ନିଆଯାଉଥିଲା । ବ୍ରହ୍ମପୁର ଓ କଟକ ଜେଲରେ ବନ୍ଦୀଥିବା ଅମୂଲ୍ୟ ସାଥୀମାନେ ପାର୍ଟିର ନିର୍ଦ୍ଦେଶରେ ମରଣାପନ୍ନ ଅନଶନ ଧର୍ମଘଟ ୪୫/୫୦ ଦିନ କାଳ କରିଥିଲେ । କିଏ କିଏ ରକ୍ତବାନ୍ତି କରି ପକାଉଥିଲେ । କିନ୍ତୁ ଅନଶନ ପରିତ୍ୟାଗ କରିବାକୁ ବାହାରୁ ଗୋପନ ନିର୍ଦ୍ଦେଶ ନ ଯିବା ପର୍ଯ୍ୟନ୍ତ ଅନଶନ ଭାଙ୍ଗି ନ ଥିଲେ ।

ଏହି ସମୟରେ ମହିଳା ସାଥୀଙ୍କ ସହ ସାଥୀମାନଙ୍କର କଟକ ଜେଲ ଫାଟକ ଭାଙ୍ଗି ବନ୍ଦୀ ମୁକ୍ତି ଦାବୀ ଏକ ରୋମାଞ୍ଚକର ଅଧ୍ୟାୟ ।

ବସ୍ତୁତଃ ୧୯୪୯ ମଧ୍ୟଭାଗରୁ ୧୯୫୦ ଶେଷ ଯାଏ ଏହି ଆକ୍ରମଣ ଏତେ ପ୍ରବଳ ହେଲା ଯେ ପାର୍ଟିର ଜନସାଧାରଣଙ୍କ ମଧ୍ୟରେ କାମଦାମ ସୀମିତ ହୋଇଗଲା । ଏତିକିବେଳେ ସାମ୍ରାଜ୍ୟବାଦର ସୋଭିଏତ୍ ୟୁନିଅନ ବିରୁଦ୍ଧରେ ଯୁଦ୍ଧ ହୁଙ୍କାର, ତୃତୀୟ ବିଶ୍ୱଯୁଦ୍ଧର ଧମକ ଓ ନବମୁକ୍ତ ଦେଶମାନଙ୍କ ଉପରେ ଅକ୍ତିଆର ପୁନଃ ପ୍ରତିଷ୍ଠାର ଉଦ୍ୟମ ବିରୁଦ୍ଧରେ ଶାନ୍ତି ଆନ୍ଦୋଳନ ଉଠିଲା । ବିଶ୍ୱଶାନ୍ତି ଓ ଯୁଦ୍ଧବିହୀନ ପୃଥିବୀ ଆନ୍ଦୋଳନରେ ସର୍ବାଗ୍ରେ ସର୍ବତ୍ର ଥିଲେ କମ୍ୟୁନିଷ୍ଟମାନେ । ଭାରତରେ ଓ ଓଡ଼ିଶାରେ ଯେଉଁ କେତେକ କମ୍ୟୁନିଷ୍ଟ ବାହାରେ ଥିଲେ ଓ ନୂତନ କମ୍ୟୁନିଷ୍ଟ ହେଲେ ସେମାନେ ଶାନ୍ତି ଆନ୍ଦୋଳନର ବାର୍ତ୍ତା ଘେନି ବିଭିନ୍ନ ଅଞ୍ଚଳରେ ଖୋଲା ଖୋଲି ସଭାସମିତି କରି ଜନସମ୍ପର୍କ ପ୍ରତିଷ୍ଠା କରିଥିଲେ ।

ପାର୍ଟିର ବକ୍ତବ୍ୟ ରଖିବାକୁ, ତା'ର ମୁଖପତ୍ର ବନ୍ଦ । ସମ୍ବାଦପତ୍ରଗୁଡ଼ିକରେ, କଂଗ୍ରେସ ସରକାରର ବିଜ୍ଞପ୍ତିରେ ଓ କଂଗ୍ରେସ ଓ ସେତେବେଳେ ଗଢ଼ାଯାଇଥିବା ପ୍ରଜାସୋସାଲିଷ୍ଟ ପାର୍ଟିର ନେତାମାନଙ୍କ କମ୍ୟୁନିଷ୍ଟ ବିରୋଧୀ ପ୍ରଚାର ଖଣ୍ଡନ କରିବାର ଉପଲବ୍ଧ ପାର୍ଟି ଦରଦୀମାନଙ୍କୁ ଘାରିଲା ।

ସେମାନଙ୍କର ଉଦ୍ୟମ, ଚାନ୍ଦା ଦାନ ଓ ସଂଗ୍ରହ ଫଳରେ ନୂଆ ଦୁନିଆର ସ୍ୱାଧୀନ ପ୍ରଗତିଶୀଳ ମୁଖପତ୍ରରୂପେ ପ୍ରକାଶ ଆରମ୍ଭ ହେଲା । ୧୯୫୧ ଜୁଲାଇ ୫ରେ ଏହାର ସମ୍ପାଦନା ମଣ୍ଡଳୀ ରହିଲେ ମୋହନ ଦାସ, ବିଶ୍ୱନାଥ ପଶାୟତ, ଗଙ୍ଗାଧର ରଥ, ଦିଗମ୍ବର ଭୂୟାଁ ଓ ଶଶିଶେଖର ମହାପାତ୍ର, ଶରତ ପଟ୍ଟନାୟକଙ୍କୁ ସମ୍ପାଦକତ୍ୱ ଓ ଗୋବିନ୍ଦଚନ୍ଦ୍ର ମହାନ୍ତିଙ୍କୁ ତାହାର

ପରିଚାଳନା ଦାୟିତ୍ୱ ଦିଆଗଲା । କଟକ ବଡ଼େଇ ସାହିରେ କମ୍ପୋଜ ହୋଇ ତାହା ଗଙ୍ଗାଧର ରଥଙ୍କ ପ୍ରେସ୍, ପେନସନ ଲେନରେ ମୁଦ୍ରିତ ହେଲା । ଏହାର ୪ର୍ଥ ସଂଖ୍ୟା ପ୍ରକାଶନ ପରେ ମୋହନ ଦାସ ସମ୍ପାଦକ ହେଲେ ।

ପାର୍ଟିର ଗୋପନବାସ ସମୟରେ ରୋମାଞ୍ଚକର ବୀରତ୍ୱପୂର୍ଣ୍ଣ ଓ ସାହସିକ କାହାଣୀମାନ ଦୁର୍ଗା ଚରଣ ମହାନ୍ତିଙ୍କ ଦ୍ୱାରା ରଚିତ ଅଗ୍ନିପଥ ପୁସ୍ତକରେ ପ୍ରକାଶିତ ହୋଇଛି ।

**ପାର୍ଟିର ପୁନର୍ଗଠନ**

୧୯୫୧ରେ କେନ୍ଦ୍ରରେ ପାର୍ଟିର କର୍ମପନ୍ଥା ନୀତିରେ ପରିବର୍ତ୍ତନର ସୂଚନା ମିଳିଲା । ଅଜ୍ଞାତବାସରେ କମ୍ୟୁନିଷ୍ଟ ପାର୍ଟି ଆଉ ରହିବାର ଆବଶ୍ୟକତା ନାହିଁ ଓ ପାର୍ଟି ବାହାରେ କାର୍ଯ୍ୟ କରିବ ବୋଲି ନିଷ୍ପତ୍ତି ନେଲା । ୧୯୫୧ ମଧ୍ୟଭାଗରେ କଟକ ନାରୀସଂଘ ସଦନରେ କମ୍ୟୁନିଷ୍ଟ ପାର୍ଟିର ପ୍ଲେନମ ଅନୁଷ୍ଠିତ ହେଲା । ଏତେବେଳକୁ ସବୁ କମ୍ୟୁନିଷ୍ଟ ଜେଲରୁ ଖଲାସ ହୋଇ ନ ଥାନ୍ତି । ଏମିତିକି ୧୯୫୨ ସାଧାରଣ ନିର୍ବାଚନବେଳେ ମଧ୍ୟ ପ୍ରାର୍ଥୀ ହୋଇ କେତେକ କମ୍ରେଡ଼ଙ୍କୁ ଜେଲଖାନାରୁ ପ୍ରାର୍ଥୀପତ୍ର ଦାଖଲ କରିବାକୁ ହୋଇଥିଲା ।

ନାରୀସଂଘ ସଦନ ପ୍ଲେନମ କାର୍ଯ୍ୟକାରୀ କମିଟି ଓ ସମ୍ପାଦକମଣ୍ଡଳୀର ପୁନର୍ଗଠନ କଲା ଏବଂ ନୂଆ ଦୁନିଆର ପ୍ରକାଶନ ଦାୟିତ୍ୱ ପୂର୍ବତନ ଉଦ୍ୟୋକ୍ତାମାନେ ପାର୍ଟିକୁ ହସ୍ତାନ୍ତର କରିବା ନିଷ୍ପତ୍ତିକୁ ସ୍ୱାଗତକରି ନୂଆ ଦୁନିଆକୁ ପାଟର ସାପ୍ତାହିକ ମୁଖପତ୍ର କରାଗଲା ଏବଂ କମ୍ରେଡ଼ ପ୍ରାଣନାଥ ପଟ୍ଟନାୟକ ଏହାର ସମ୍ପାଦକ ହେଲେ । ପ୍ରସଙ୍ଗକ୍ରମେ ଉଲ୍ଲେଖ ଥାଉ ଯେ ମୁକ୍ତିଯୁଦ୍ଧ ୬ ବର୍ଷ କାଳ ପ୍ରକାଶ ପାଇଥିଲା ଏବଂ ନୂଆ ଦୁନିଆ ଅଦ୍ୟାବଧି ପାର୍ଟିର ମୁଖପତ୍ର ହୋଇଆସିଛି । ଦ୍ୱିତୀୟବର୍ଷ ୨୩ଶ ସଂଖ୍ୟାଠାରୁ ପ୍ରାଣନାଥ ପଟ୍ଟନାୟକଙ୍କ ପରେ ରାମକୃଷ୍ଣ ପତି ଏବଂ କିଛି ବର୍ଷ ଶରତ ପଟ୍ଟନାୟକ ଏହାର ସମ୍ପାଦନା ଦାୟିତ୍ୱ ଗ୍ରହଣ କରିଥିଲେ । ବର୍ତ୍ତମାନ ଗୁରୁଚରଣ ପଟ୍ଟନାୟକ ତାହାର ସମ୍ପାଦକ ରହିଆସିଛନ୍ତି । ଏହି ପ୍ଲେନମରେ ନୂଆ ଦୁନିଆ ପାଣ୍ଠି ୫ ହଜାର ଟଙ୍କା ସଂଗ୍ରହର ଅଭିଯାନ ପାଇଁ ଡାକରା ଦିଆଗଲା ଏବଂ ସାଥୀ ଓ ସମର୍ଥକମାନେ ସେତେବେଳେ ଏହି ଆହ୍ୱାନକୁ ପ୍ରାୟତଃ ପୂରଣ କରିଥିଲେ । ଗରୁଚରଣ ପଟ୍ଟନାୟକ ପାର୍ଟିର ସମ୍ପାଦକ ନିର୍ବାଚିତ ହେଲେ ।

ଅଜ୍ଞାତବାସ ଓ କାରାବାସରୁ ବାହାରି ୧୯୫୨ ସାଧାରଣ ନିର୍ବାଚନରେ ପାର୍ଟି ଅବତୀର୍ଣ୍ଣ ହେଲା । ପାର୍ଟି ସମ୍ପାଦକ ଖଃ ଅଜୟ ଘୋଷ ଆସି ମ୍ୟୁନିସିପାଲିଟି ପଡ଼ିଆରେ ପାର୍ଟିର ନୀତି ଓ ନିର୍ବାଚନ ସଂକ୍ରାନ୍ତରେ ଭାଷଣ ଦେଇଥିଲେ । ଗଞ୍ଜାମରୁ ୪ଟି ବିଧାନସଭା ଆସନ, ଗୋଟିଏ ଲୋକସଭା ଆସନ ଏବଂ ଢେଙ୍କାନାଳରୁ ମିଳିତ ନିର୍ବାଚନମଣ୍ଡଳୀରୁ ୨ଟି ଆସନ ଓ ପୁରୀରୁ ଗୋଟିଏ ଆସନ ଏମିତି ୭ଟି ବିଧାନସଭା ଆସନ ହାସଲ କରି କଂଗ୍ରେସୀ ଦମନ ଏବଂ କମ୍ୟୁନିଷ୍ଟ ପାର୍ଟିର ରାଜନୈତିକ ଶତ୍ରୁମାନଙ୍କ ଅପପ୍ରଚାରକୁ ଖଣ୍ଡ କରିଦେଲା । ବିଜୟଚନ୍ଦ୍ର

ଦାସ ଲୋକସଭାକୁ ନିର୍ବାଚିତ ହେଲେ । ନିର୍ବାଚିତ ଏମଏଲଏମାନେ ହେଲେ ହରିହରଦାସ, ଗୋବିନ୍ଦ ପ୍ରଧାନ, ଜଗନ୍ନାଥ ମିଶ୍ର, ବୈଷ୍ଣବ ପଟ୍ଟନାୟକ, ମଦନ ଦେହୁରି ଓ ଗଙ୍ଗାଧର ପାଇକରାୟ, ମୋହନ ନାୟକ ଏହି କାଳ ଭିତରେ ରାଜ୍ୟ ସଭାକୁ ମଧ୍ୟ ପାର୍ଟି ୨ ବର୍ଷ ପାଇଁ ନିଜର ଏମ୍‌ପି ବୈଦ୍ୟନାଥ ରଥଙ୍କୁ ପଠାଇଥିଲା ।

ପାର୍ଟିର ସବୁଠାରୁ ଐତିହାସିକ ସାଫଲ୍ୟ ହେଲା ଗଞ୍ଜାମର ଇତିହାସ ସୃଷ୍ଟିକାରୀ ରଇଥ ଆନ୍ଦୋଳନର ସାଫଲ୍ୟ ମୁସ୍ତାଦାରୀ ପ୍ରଥା ଓ ଇନାମଦାରୀ ପ୍ରଥା ଉଚ୍ଛେଦ କରିବାକୁ ବହୁ ସଂଗ୍ରାମ ବଳରେ ସମର୍ଥ ହୋଇ ପାର୍ଟି ଗଞ୍ଜାମର ଲକ୍ଷାଧିକ ଚାଷୀଙ୍କୁ ଜମିର ମାଲିକ କରି ସାମନ୍ତବାଦ ଉପରେ ପ୍ରଚଣ୍ଡ ଆଘାତ ଦେଇପାରିଥିଲା ।

ପାର୍ଟିର କର୍ମ ପରିସର ବଢ଼ିଗଲା । ପାର୍ଟିର ବିକାଶ ହେତୁ ବହୁ ସାଙ୍ଗଠନିକ ସମସ୍ୟା ଦେଖାଦେଲା । ଟ୍ରେଡ୍ ୟୁନିଅନ ଆନ୍ଦୋଳନ ଚୌଦ୍ୱାର, ବଡ଼ବିଲ, ତାଳଚେର କୋଇଲା ଖଣି ଅଞ୍ଚଳକୁ ପ୍ରସାରିତ ହେଲା । ତାଳଚେର ମ୍ୟୁନିସିପାଲିଟିରେ ପାର୍ଟି ସଂଖ୍ୟାଗରିଷ୍ଠତା ହାସଲ କରି ପରିଚାଳନାର ଦାୟିତ୍ୱ ବହନ କଲା । ପାର୍ଟି ଯେଉଁସବୁ ସ୍ଥାନରେ ପ୍ରାର୍ଥୀ ଦେଇ ପରାଜିତ ହୋଇଥିଲା, ସେସବୁ ସ୍ଥାନରେ ମଧ୍ୟ ପାର୍ଟିର ପ୍ରସାର ଘଟିଲା । ନୂତନ ପରିସ୍ଥିତିରେ ପାର୍ଟିର କର୍ମକୌଶଳ ନିର୍ଦ୍ଧାରଣ ପାଇଁ କୁଜଙ୍ଗଠାରେ ପ୍ଲେନମ ଅନୁଷ୍ଠିତ ହେଲା । ଏହି ପ୍ଲେନମ ୧୯୫୨ ନଭେମ୍ବର ମାସରେ ଅନୁଷ୍ଠିତ ହୋଇଥିଲା ।

ଏହି ସମୟରେ ପ୍ରଥମ କରି ଓଡ଼ିଶାର କମ୍ରେଡ୍ ରାମକୃଷ୍ଣ ପତି, ଶଶିଭୂଷଣ ପଟ୍ଟନାୟକ ଓ ଚିନ୍ତାମଣି ପାଣିଗ୍ରାହୀ ଚୀନ ପରିଦର୍ଶନରେ ଯାଇଥିଲେ ।

ପାର୍ଟିର ତୃତୀୟ ମଦୁରାଇ କଂଗ୍ରେସ ପୂର୍ବରୁ ୧୯୫୩ ଡିସେମ୍ବର ୧୮ରୁ ୨୩ ଯାଏ କଟକର ଶଙ୍କରପୁରଠାରେ ପାର୍ଟିର ୨ୟ ସମ୍ମିଳନୀ ଅନୁଷ୍ଠିତ ହେଲା । ଏଣିକି ପ୍ରତ୍ୟେକ ଜିଲ୍ଲାରେ ପାର୍ଟି ସମ୍ମିଳନୀ ବିଧିବଦ୍ଧ ଭାବରେ ଅନୁଷ୍ଠିତ ହେଲା । ୩.୧୦.୫୧ ରୁ ୬.୧୦.୫୩ ଯାଏ ଗାଡ଼କଣ ଠାରେ କଟକ ଜିଲ୍ଲା ସମ୍ମିଳନୀ ହୋଇ ଦୁଃଶାସନ ଜେନା ସମ୍ପାଦକ ଓ ୯ ଜଣିଆ କମିଟି ନିର୍ବାଚିତ ହେଲା । ଖୋଲା ଅଧିବେଶନରେ ଏଥିପୂର୍ବରୁ କଃ ରାମଚନ୍ଦ୍ର ମିଶ୍ର, ଗୋବିନ୍ଦ ଚନ୍ଦ୍ର ମହାନ୍ତି ଏବଂ ଲୋକନାଥ ଚୌଧୁରୀ, ବୈଦ୍ୟନାଥ ରଥ, ବୈଷ୍ଣବ ପଟ୍ଟନାୟକ ପ୍ରମୁଖ ଉଦ୍‌ବୋଧନ ଦେଇଥିଲେ ।

୧୯୫୩ ଅକ୍ଟୋବର ୪ ରୁ ୮ ଯାଏ ମେଣ୍ଢାଶାଳ ଠାରେ ପୁରୀ ଜିଲ୍ଲା ପାର୍ଟି ସମ୍ମିଳନୀରେ ୩୫ ଜଣ ପ୍ରତିନିଧି ଓ ୧୨ ଜଣ ଦର୍ଶକ ଯୋଗ ଦେଇଥିଲେ । ପୁରୀ ଜିଲ୍ଲା ପାର୍ଟିର ପ୍ରତିଷ୍ଠାତା ସମ୍ପାଦକ ଡଃ ଗୋକୁଳମୋହନ ରାୟଚୂଡ଼ାମଣି, ରାଜ୍ୟ ସମ୍ପାଦକ ଗୁରୁଚରଣ ପଟ୍ଟନାୟକ, ପ୍ରାଣନାଥ ପଟ୍ଟନାୟକ, ସାଧୁଚରଣ ମହାନ୍ତି ପ୍ରମୁଖ ଏଥିରେ ଭାଗ ନେଇଥିଲେ । ଜିଲ୍ଲା ପାଟି ସମ୍ପାଦକ ଗତିକୃଷ୍ଣ ସ୍ୱାଇଁ ପତାକା ଉତ୍ତୋଳନ କରିଥିଲେ ଏବଂ ରାଜ୍ୟ ସମ୍ମିଳନୀକୁ ୧୨ ଜଣ

ପ୍ରତିନିଧି ପ୍ରେରଣ କରାଯାଇଥିଲା । ସମ୍ମିଳନୀ ମଣ୍ଡପର ନାମ ବ୍ରଜବନ୍ଧୁ ନଗର ରଖାଯାଇଥିଲା । ପୁରୀର ନିମାପଡ଼ା ଠାରେ ୧୯୫୩ରେ ଏକ ବିରାଟ ଚାଷୀ ସମ୍ମିଳନୀରେ ଭବାନୀ ସେନ ମୁଖ୍ୟବକ୍ତା ରୂପେ ଯୋଗ ଦେଇଥିଲେ ଏବଂ କଂଗ୍ରେସବାଲାମାନେ ପଦ୍ମଚରଣ ସାମନ୍ତ ସିଂହାରଙ୍କ ନେତୃତ୍ୱକୁ ଏହାକୁ ଭାଙ୍ଗିବାକୁ ଉଦ୍ୟମ କରି ବିଫଳ ହୋଇଥିଲେ ।

ନବଯୁଗ ପ୍ରେସର ବଡ଼ ଛାପାଯନ୍ତ୍ର ଓ ସଂପ୍ରସାରଣ କରାଯାଇ ୧୯୫୪ ମଇ ପହିଲାରେ ପାଲିତପଡ଼ା ଠାରେ ବିପୁଳ ଉତ୍ସାହ ଉନ୍ମାଦନାରେ ଉଦ୍‌ଘାଟନ ଉତ୍ସବରେ ପ୍ରଖ୍ୟାତ ସାହିତ୍ୟିକ, ମାତୃଭୂମି ସମ୍ପାଦକ ବାଳକୃଷ୍ଣ କର ପୌରହିତ୍ୟ କରିଥିଲେ । ଏହି ବର୍ଷ ମଧ କଟକ ପ୍ରେସ୍ ଶ୍ରମିକ ସଂଘର ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା ।

୩୧.୧୨.୫୪ରେ କଟକ ଠାରେ ଅନୁଷ୍ଠିତ ଏଆଇଟି ୟୁସିର ଦ୍ୱିତୀୟ ସମ୍ମିଳନୀରେ ପ୍ରଖ୍ୟାତ ନେତା ରେଣନ ସେନ, ମହମ୍ମଦ ଇସମାଇଲ, ମହମ୍ମଦ ଫରୁକି ସମ୍ମିଳନୀରେ ଓ ସାଧାରଣ ସଭାରେ ଭାଷଣ ଦେଇଥିଲେ । ଦୁର୍ଗାଚରଣ ମହାନ୍ତି ଓଡ଼ିଶା ଶାଖାର ସାଧାରଣ ସମ୍ପାଦକ ନିର୍ବାଚିତ ହେଲେ । ଏଆଇଟିୟୁସିର ପ୍ରସାର ପାଇଁ ସମ୍ମିଳନୀ ଡାକରା ଦେଲା ।

୧୯୫୪ରେ ଛତ୍ରପୁର ଠାରେ ରାଜ୍ୟ ପାର୍ଟିର ଏକ ସମ୍ମିଳନୀ ବସିଥିଲା । ଏହି ସମ୍ମିଳନୀରେ ରାଜ୍ୟର ପ୍ରତ୍ୟେକ ଜିଲ୍ଲାର ପ୍ରତିନିଧି ଆସିଥିଲେ । ତିନିଦିନ ବ୍ୟାପୀ ଏହି ସମ୍ମିଳନୀରେ ରାଜ୍ୟର ନୂତନ ରାଜନୈତିକ ପରିସ୍ଥିତି ଓ ପାର୍ଟିର ସଂଗଠନ ବ୍ୟବସ୍ଥା ସଂପର୍କରେ ନିଷ୍ପତ୍ତିମାନ ନିଆଯାଇଥିଲା ।

୧୯୫୫ରେ ଓଡ଼ିଶାରେ ପ୍ରବଳ ବନ୍ୟା-ଗଞ୍ଜାମ ଠାରୁ କଟକର ଦଳେଇ ଘାଇ ଓ ଯାଜପୁର ବୈତରଣୀ ଖରସୁଆଁ ବନ୍ୟା, ସମ୍ବଲପୁର ଜିଲ୍ଲାର ହୀରାକୁଦ ବନ୍ଧ ଆନ୍ଦୋଳନ, ମହତାବ ସରକାର ପକ୍ଷରୁ ଗୁଳି ଓ ଲାଠି ଦମନ । ହୀରାକୁଦ ବନ୍ଧ ପାଇଁ ଯେପରି ତିନି ଶତାଧିକ ଗାଁକୁ ନିର୍ବିଚାରରେ ଥଇଥାନ ନ କରାଯାଇ ଉଠାଗଲା ଓ ଉଚିତ କ୍ଷତିପୂରଣ ଦିଆଗଲା ନାହିଁ । ସମ୍ବଲପୁରରେ ପାର୍ଟି ଜନସାଧାରଣଙ୍କ ପାଖେ ପାଖେ ରହି ସେମାନଙ୍କ ଆନ୍ଦୋଳନର ସଫଳ ନେତୃତ୍ୱ ନେଲା । ବୁଡ଼ି ଅଞ୍ଚଳର ଚାଷୀମାନଙ୍କ ସ୍ୱାର୍ଥର ସର୍ବଶ୍ରେଷ୍ଠ ରକ୍ଷକ କମ୍ୟୁନିଷ୍ଟ ପାର୍ଟି ବୋଲି ବୁଡ଼ି ଅଞ୍ଚଳର ଲୋକେ ଧରିନେଲେ ଏବଂ ପ୍ରସନ୍ନ କୁମାର ପଣ୍ଡାଙ୍କ ନେତୃତ୍ୱରେ ପାର୍ଟି ଏକ ଶକ୍ତିଶାଳୀ ସ୍ୱତନ୍ତ୍ର ମଞ୍ଚ ଗଢ଼ିଲା ଏବଂ ବନ୍ଧ ବିରୋଧୀ ଅନ୍ୟାନ୍ୟ ବୁର୍ଜୁୟା ଦଳ ଓ ବ୍ୟକ୍ତି ବିଶେଷଙ୍କ ଠାରୁ ନିଜର ପାର୍ଥକ୍ୟ ପତିପାଦନ କଲା । ଏତିକିବେଳେ ସୀମା ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କୁ ଗିରଫ କରି ଜେଲରେ ଭର୍ତ୍ତି କରାଗଲା ।

ଏହିସବୁ ସଂଗ୍ରାମର ପ୍ରେକ୍ଷାପଟରେ ଦ୍ୱିତୀୟ ସାଧାରଣ ନିର୍ବାଚନ ହେଲା ୧୯୫୭ରେ । ବିଧାନସଭାକୁ ମୋହନ ଦାସ, ଭରତ ଦାସ, ପ୍ରାଣନାଥ ପଟ୍ଟନାୟକ, ଲୋକନାଥ ଚୌଧୁରୀ, ହରିହର ଦାସ, ଗୋବିନ୍ଦ ପ୍ରଧାନ, ସୁମା ନାୟକ, ନଟବର ବନଛୋର, ନରେନ୍ଦ୍ର ନାୟକ ନିର୍ବାଚିତ ହୋଇଥିଲେ ।

ଓଡ଼ିଶାର ବିଧାନସଭାକୁ ଏଥର ପାର୍ଟିର ୯ ଜଣ ପ୍ରତିନିଧି ନିର୍ବାଚିତ ହୋଇଥିଲେ । କମ୍ୟୁନିଷ୍ଟ ପାର୍ଟି ପ୍ରତୀତରେ ଲଢ଼ି ପୁରୀ ଆସନରୁ ଲୋକସଭା ପାଇଁ ଚିନ୍ତାମଣି ପାଣିଗ୍ରାହୀ ଜିତିଥିଲେ ।

ଏହି ବିଧାନସଭାର ପିଏସ୍‌ପି ସଦସ୍ୟ ବାରିପଦାର ଗିରୀଶ ଚନ୍ଦ୍ର ରାୟ ଏମଏଲଏ ଏବଂ କଂଗ୍ରେସ ସଦସ୍ୟ କୋରାପୁଟର ଭଗବାନ ଖେମଣ୍ଡୁ ନାୟକ ପାର୍ଟିରେ ଓ ବିଧାନସଭା ଦଳରେ ଯୋଗ ଦେବା ଏବଂ ମୟୂରଭଞ୍ଜ ଜିଲ୍ଲାର ନେତୃସ୍ଥାନୀୟ ପିଏସ୍‌ପି ନେତା ଶରତ ଚନ୍ଦ୍ର ମିଶ୍ରଙ୍କ ସମେତ ଅନେକ ପାର୍ଟିରେ ଯୋଗ ଦେବା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହିକାଳ ଭିତରେ ମଧ୍ୟ କୋରାପୁଟର ବିଶିଷ୍ଟ ପିଏସପି ନେତା ବିପ୍ରଚରଣ ଷଡ଼ଙ୍ଗୀ ଓ ତାଙ୍କ ସାଥୀମାନେ ପିଏସପି ରାଜନୀତିରୁ ମୋହମୁକ୍ତ ହୋଇ ସିପି ଆଇରେ ଯୋଗ ଦେଲେ । ଉତ୍ତରପ୍ରଦେଶ, ବିହାର ପ୍ରଭୃତିରେ ମଧ୍ୟ କିଶୋରୀ ପ୍ରସାଦ ସିହ୍ନା, ଝାଡଖଣ୍ଡ ରାୟ ପ୍ରମୁଖ ପ୍ରଖ୍ୟାତ ସମାଜବାଦୀ ନେତା ଓ ଶହ ଶହ ସେମାନଙ୍କ ସାଥୀ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଲେ ।

ଛତ୍ରପୁର ପ୍ଲେନମ (ପରେ ଯାହାକୁ ତୃତୀୟ ରାଜ୍ୟ ସମ୍ମିଳନୀ ରୂପେ ବିବେଚନା କରାଗଲା) । ତାହାହିଁ ପ୍ରତି ଜିଲ୍ଲାରେ ପାର୍ଟି ସଂଗଠନକୁ ମଜବୁତ କରିବା ଲାଗି ଆହ୍ୱାନ ଦେଇଥିଲା ଏବଂ ଶ୍ରମିକ ସଂଗଠନ, ଛାତ୍ର, କୃଷକ ସଭା ସଂଗଠନ ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା । ନୂତନ ନୂତନ ସ୍ଥାନ ଓ ଜିଲ୍ଲାରେ ପାର୍ଟି ଓ ଟ୍ରେଡ୍ ୟୁନିଅନ ଗଠନ କରିବାକୁ ରାଜ୍ୟ କେନ୍ଦ୍ରରୁ ସାଥୀମାନଙ୍କୁ ପଠାଯାଉଥିଲା । ବଜ୍ରରାଜନଗରକୁ କୃପାସିନ୍ଧୁ ଖୁଣ୍ଟିଆ, ମୟୂରଭଞ୍ଜକୁ ପୂର୍ଣ୍ଣ ଭଞ୍ଜ, ବଡ଼ବିଲକୁ ହରିବନ୍ଧୁ ବେହେରା, ଦୀନବନ୍ଧୁ ଶତପଥୀ, ଦିବାକର ରାୟ, ପର୍ଶୁରାମ ବେଉରିଆ, କୋରାପୁଟକୁ ନିତ୍ୟାନନ୍ଦ ପଣ୍ଡା ଏମିତି ଅନେକ ସାଥୀ ନିଜ ଜିଲ୍ଲା, ଅଞ୍ଚଳ ଛାଡ଼ି ଅନ୍ୟତ୍ର ପାର୍ଟି ଓ ଶ୍ରମିକ କୃଷକ ସଂଗଠନ କରୁଥିଲେ । ଗଞ୍ଜାମ ଜିଲ୍ଲାରେ ଆଦ୍ୟରେ ଗୁରୁଚରଣ ପଟ୍ଟନାୟକ, ସାଧୁଚରଣ ମହାନ୍ତି ଗଞ୍ଜାମର ପାର୍ଟି ଗଠନରେ ଲାଗିଥିଲେ ।

୧୯୫୭ରେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ପୁନଶ୍ଚ ମରୁଡ଼ି ହୋଇ ଅଶେଷ ଫସଲହାନି ହେତୁ ରାଜ୍ୟ ପାର୍ଟି ମରୁଡ଼ି ଦିବସ ପାଳନର ଡାକରା ଦେଇଥିଲା । ସେଥିଲାଗି ବିଭିନ୍ନ ବିପନ୍ନ ଜିଲ୍ଲାରେ ବ୍ୟାପକ ଧରଣର ବିକ୍ଷୋଭ, ସଭାସମିତି ଅନୁଷ୍ଠିତ ହୋଇଥିଲା । କଟକ ଠାରେ ବିରାଟ ଶ୍ରମିକ ସମାବେଶରେ ଡ. ଜେଡ୍ ଏ ଅହମ୍ମଦ ଉଦ୍‌ବୋଧନ ଦେଇଥିଲେ । ସେହିବର୍ଷ ବ୍ରଜରାଜନଗରରେ ନଭେମ୍ବର ୭ ତାରିଖରେ ବିପ୍ଳବ ଦିବସ ଉପଲକ୍ଷେ ତତ୍କାଳୀନ ପାର୍ଟି ଏମଏଲଏ ନଟବର ବନଛୋରଙ୍କ ଅଧକ୍ଷତାରେ ଶ୍ରମିକ ଓ ଚାଷୀମାନଙ୍କ ଏକ ବିରାଟ ସମାବେଶରେ ଡଃ ବିଶ୍ୱନାଥ ମୁଖାର୍ଜୀ ଭାଷଣ ଦେଇଥିଲେ । ଆସିକାର ଚାଷୀମାନଙ୍କର ଏକ ସମ୍ମିଳନୀ ୧୯୫୮ ଜାନୁୟାରୀ ୧୦ ତାରିଖରେ ଏବଂ ୧୨ ତାରିଖରେ ବ୍ରହ୍ମପୁରଠାରେ ହୋଇଥିଲା ଏବଂ ଡ. ଜେଡ୍ ଏ ଅହମ୍ମଦ ଭାଷଣ ଦେଇଥିଲେ ।

୧୯୫୭ରେ ଭୁବନେଶ୍ୱରରେ ଏକ ବିରାଟ ଚାଷଈ ସମାବେଶ ବିଧାନସଭା ସମ୍ମୁଖରେ ଅନୁଷ୍ଠିତ ହୋଇ ୨ ଏକର ଜମିରୁ ଖଜଣା ଛାଡ଼ ଓ ମରୁଡ଼ି ପ୍ରତିକାର ମୁଖ୍ୟ ଦାବୀ ଥିଲା । ମହତାବ ସଭାରେ ଆସି ୨ ଏକର ଜମିରୁ ଖଜଣା ଛାଡ଼ ହେଲା ବୋଲି ଘୋଷଣା କଲେ । ମାତ୍ର ତାହା କାର୍ଯ୍ୟକାରୀ ହେଲା ନାହିଁ । ଏତିକିବେଳେ କେନ୍ଦ୍ର ପକ୍ଷରୁ ପି.ରାମମୂର୍ତ୍ତୀ ଆସିଥିଲେ ।

୧୭.୫.୫୮ରେ କଟକ ଟାଉନହଲରେ ଗୁରୁଚରଣ ପଟ୍ଟନାୟକଙ୍କ ଅଧକ୍ଷତାରେ ପାର୍ଟିର ଏକ ସଭାରେ ଦଳତ୍ୟାଗୀ ଓ କଟକ ମ୍ୟୁନିସିପାଲିଟି କଂଗ୍ରେସୀ ଚେୟାରମ୍ୟାନ ମନମୋହନ ମିଶ୍ରଙ୍କ ଗୁଣ୍ଡାମି ଓ ଜବରଦସ୍ତ ସଭାପତି ଆସନ ଦଖଲ ସେ ସମୟରେ କଂଗ୍ରେସର ପାର୍ଟି ଉପରେ ତୋଫାନୀ ଆକ୍ରମଣର ଏକ ପରିଚୟ ଦିଏ । କାରଣ ବିଧାନସଭାରେ ପାର୍ଟିର ସଂଖ୍ୟା ବୃଦ୍ଧି, ବ୍ୟାପକ ଗଣ କାମଦାମ ଓ ବିଶାଳ ବିଶାଳ ସଭା ସମାବେଶ ହେଉଥିଲା ଓ ପାଟର ଅବିରାମ ପ୍ରସାର ଘଟୁଥିଲା । ସମ୍ବଲପୁର ବୁଡ଼ି ଅଞ୍ଚଳରେ ବସନ୍ତପୁର ଅଞ୍ଚଳରେ ବିରାଟ ପ୍ରତିବାଦ ଓ ଶହ ଶହ ନାରୀ ପୁରୁଷଙ୍କୁ ଗିରଫ କରାଯାଇଥିଲା ।

୩୦.୫.୫୮ରେ ଗୁଆ ଯାମଡ଼ା ଆଇରନ ଓ ମାଙ୍ଗାନିଜ ମାଇନସ୍ ଶ୍ରମିକ ୟୁନିଅନ (ଏଆଇଟିୟୁସି)ର ନେତା ପୂର୍ଣ୍ଣେନ୍ଦୁ ମଜୁମଦାର ଓ ଅନ୍ୟ ୬ ଜଣ ସାଥୀଙ୍କୁ ଏକ ମିଥ୍ୟା ହତ୍ୟା ମକଦ୍ଦମାରେ ଜଡ଼ିତ କରାଯାଇ ଆଜୀବନ କାରାଦଣ୍ଡ ଓ ୧୬ ଜଣ ଶ୍ରମିକ ସାଥୀଙ୍କୁ ୫ ବର୍ଷ କାରାଦଣ୍ଡାଦେଶ ତଳ ଅଦାଲତରେ ହୋଇଥିଲା । ମାତ୍ର ଉଚ୍ଚତର ଅଦାଲତ ସେମାନଙ୍କୁ ପରେ ଖଲାସ କରିଦେଇଥିଲା ।

୧୯୫୮ ଜୁନ ୮/୯ରେ ଗଞ୍ଜାମର ନରେନ୍ଦ୍ରପୁରଠାରେ ଗଞ୍ଜାମ ରଇତସଭାର ୫ମ ସମ୍ମିଳନୀ ଗଞ୍ଜାମ ଚାଷୀ ଆନ୍ଦୋଳନର ଆଉ ଏକ ମାଇଲ ଖମ୍ବ । ଜିଲ୍ଲା ସିପିଆଇ ସମ୍ପାଦକ ସଦାନନ୍ଦ ମହାନ୍ତି ପ୍ରାଦେଶିକ କୃଷକ ସଭା ସମ୍ପାଦକ ରାମଚନ୍ଦ୍ର ମିଶ୍ର ପ୍ରମୁଖ ଉଦ୍‌ବୋଧନ ଦେଇଥିଲେ । ବିଶ୍ୱନାଥ ସାହୁ, ସମ୍ପାଦକ ହରିହର ଦାସ, ସଭାପତି ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ, ଉପସଭାପତି, ଲକ୍ଷ୍ମଣ ମହାପାତ୍ର କୋଷାଧକ୍ଷ ଏବଂ ୩୫ ଜଣିଆ କମିଟିରେ ଗୋବିନ୍ଦ ପ୍ରଧାନ, ଦୂତୀକୃଷ୍ଣ ପଣ୍ଡା, ଗୋଦାବରୀଶ ଦାସ ପ୍ରମୁଖ ନିର୍ବାଚିତ ହୋଇଥିଲେ । ୧୯୫୮ ନଭେମ୍ବର ୧୩, ୧୪ରେ ଉତ୍କଳ କୃଷକ ସଭାର ପ୍ରତିନିଧି ସମ୍ମିଳନୀ କଟକଠାରେ ଅନୁଷ୍ଠିତ ହୋଇ ରାଜ୍ୟ ସଂଗଠନକୁ ସୁଦୃଢ଼ କରାଯାଇଥିଲା । କେନ୍ଦ୍ରୀୟ କୃଷକ ସଭା ନେତା ଏନ ପ୍ରସାଦ ରାଓ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ସାଧୁଚରଣ ମହାନ୍ତି ସଭାପତି ଓ ରାମଚନ୍ଦ୍ର ମିଶ୍ର ସମ୍ପାଦକ ନିର୍ବାଚିତ ହେଲେ ।

ଏହି ୧୯୫୮ ମସିହାରେ ବିଭିନ୍ନ ଜିଲ୍ଲାରେ ପାର୍ଟି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । କଟକ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟି ୧୯୫୮ ନଭେମ୍ବର ୨୮ ରୁ ଡିସେମ୍ବର ୧ ଯାଏ ଧାନମଣ୍ଡଳଠାରେ ଅନୁଷ୍ଠିତ ହୋଇଥିଲା । ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଉ ଯେ ପାର୍ଟି ଗଠନ ଦିନୁ ଏ ପର୍ଯ୍ୟନ୍ତ

ଜିଲ୍ଲା ପାର୍ଟି ସମ୍ପାଦକ ପଦରେ ରାମଚନ୍ଦ୍ର ମିଶ୍ର, ବ୍ରଜକିଶୋର ପଟ୍ଟନାୟକ, ଦୁଃଶାସନ ଜେନା, ଲୋକନାଥ ଚୌଧୁରୀ, ଦୀନବନ୍ଧୁ ତରାଇ, ପ୍ରହ୍ଲାଦ ସେଠୀ, ନରେନ୍ଦ୍ର କୁମାର ସ୍ୱାଇଁ ଓ ଲୋକନାଥ ସାମଲ ହୋଇ ଆସିଛନ୍ତି ।

୧ ନଭେମ୍ବର ୧୪ ରୁ ୧୬ ଯାଏ ଗଞ୍ଜାମ ଜିଲ୍ଲା ସମ୍ମିଳନୀକୁ ଡଃ ବିଶ୍ୱନାଥ ସାହୁ, ଜଗନ୍ନାଥ ସ୍ୱାମୀ, ନରସିଂହ ପାତ୍ରଙ୍କୁ ଘେନି ଗଠିତ ସଭାପତି ମଣ୍ଡଳୀ ପରିଚାଳନା କରିଥିଲା । ଜିଲ୍ଲା ପାର୍ଟି ସମ୍ପାଦକ ସଦାନନ୍ଦ ମହାନ୍ତି, ହରିହର ଦାସଙ୍କୁ ଘେନି ଷ୍ଟିଅରିଂ କମିଟି ଗଠିତ ହୋଇଥିଲା । ରାଜ୍ୟପାର୍ଟି ସମ୍ପାଦକ ଗୁରୁଚରଣ ପଟ୍ଟନାୟକ ଭାଷଣ ଦେଇଥିଲେ । ସମ୍ମିଳନୀରେ ୫୧ ଜଣ ପ୍ରତିନିଧି ଓ ୧୬ ଜଣ ଦର୍ଶକ ଉପସ୍ଥିତ ଥିଲେ । ଏ ପର୍ଯ୍ୟନ୍ତ ଗଞ୍ଜାମ ଜିଲ୍ଲା ପାର୍ଟିରେ ହରିହର ଦାସ, ସଦାନନ୍ଦ ମହାନ୍ତି, ଅସ୍ଥାୟୀ ଭାବରେ ଅନ୍ତର୍ଯ୍ୟାମୀ ମହାନ୍ତି ବିଶ୍ୱନାଥ ସାହୁ ଓ ବିଶ୍ୱନାଥ ସାହୁ କାରାବାସ ବେଳେ ଲକ୍ଷ୍ମଣ ମହାପାତ୍ର, ପରଶୁରାମ ପଣ୍ଡା ସମ୍ପାଦକ ହୋଇଆସିଛନ୍ତି ।

ନବରଙ୍ଗପୁରଠାରେ କୋରାପୁଟ ଜିଲ୍ଲାର ତୃତୀୟ ସମ୍ମିଳନୀ ନଭେମ୍ବର ୨୦, ୨୧ରେ ୩୫ ଜଣ ପ୍ରତିନିଧି ଓ ୧୦ ଜଣ ଦର୍ଶକଙ୍କୁ ଘେନି ଅନୁଷ୍ଠିତ ହୋଇଥିଲା । ସଭାପତି ମଣ୍ଡଳୀରେ ଥିଲେ ଭଗବାନ ଖେମଣ୍ଡ ନାୟକ, ଭେଙ୍କଟେଶ୍ୱର ରାଓ, ହରିହର ପାତ୍ର । ଡଃ ବିପ୍ରଚରଣ ଷଡ଼ଙ୍ଗୀ ପୁନର୍ବାର ସମ୍ପାଦକ ନିର୍ବାଚିତ ହେଲେ । ସାଧାରଣ ସଭାରେ ବିପ୍ରଚରଣ ଷଡ଼ଙ୍ଗୀ, ନିତ୍ୟାନନ୍ଦ ପଣ୍ଡା, ହରିଶ୍ଚନ୍ଦ୍ର ବକ୍ସିପାତ୍ର, ରାମଚନ୍ଦ୍ର ଷଡ଼ଙ୍ଗୀ ଭାଷଣ ଦେଇଥିଲେ ।

ବାଲେଶ୍ୱର ଜିଲ୍ଲା ପାର୍ଟି ସମ୍ମିଳନୀ ୧୯୫୯ ଜାନୁଆରୀ ୧୮ ରୁ ୨୦ ଯାଏ ଅନୁଷ୍ଠିତ ହୋଇଥିଲା । ୫୧ ଜଣ ଜିଲ୍ଲା ପରିଷଦକୁ ଏବଂ ୯ ଜଣ କାର୍ଯ୍ୟକାରୀ କମିଟି, ୩ ଜଣ ସାଥୀ ସେକ୍ରେଟାରିଏଟକୁ ନିର୍ବାଚିତ ହୋଇଥିଲେ । ସାଧାରଣ ସଭାରେ ଅବଦୁଲ ମୋମିନ, ପ୍ରାଣନାଥ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ ଉଦ୍‌ବୋଧନ ଦେଇଥିଲେ । ବାଲେଶ୍ୱର ଜିଲ୍ଲାରେ ପାର୍ଟି ସମ୍ପାଦକ ପଦରେ ଶୈଳେନ ମହାପାତ୍ର, ରାମଚନ୍ଦ୍ର ବେହେରା, ଅକ୍ଷୟ କୁମାର ପାଣି, ଗୋବିନ୍ଦ ଚନ୍ଦ୍ର ପଣ୍ଡା, ସୟଦ ଅବଦୁଲ କାଦର, ରଙ୍ଗାଧର ବିଶ୍ୱାଳ, ପୀତାମ୍ବର ପଣ୍ଡା ଓ ପ୍ରାଣକୃଷ୍ଣ ପାଢ଼ୀ ନିର୍ବାଚିନ ହୋଇ ଆସିଛନ୍ତି ।

ଅନୁଗୋଳଠାରେ ୧୯୫୮ ନଭେମ୍ବର ୫, ୬, ୭ରେ ଢେଙ୍କାନାଳ ଜିଲ୍ଲା ପାର୍ଟି ସମ୍ମିଳନୀ ହୃଷୀକେଶ ପ୍ରଧାନ, ବ୍ରଜ ମହାପାତ୍ର, ଦ୍ୱାରକାମୋହନ ମିଶ୍ରଙ୍କୁ ଘେନି ଗଠିତ ସଭାପତି ମଣ୍ଡଳୀ ଦ୍ୱାରା ପରିଚାଳିତ ହୋଇଥିଲା । ରାଜ୍ୟପାର୍ଟି ପକ୍ଷରୁ ପ୍ରାଣନାଥ ପଟ୍ଟନାୟକ ଓ ନନ୍ଦକିଶୋର ପଟ୍ଟନାୟକ ଯୋଗ ଦେଇଥିଲେ । ଶ୍ରୀନିବାସ ମିଶ୍ର ଜିଲ୍ଲା ସମ୍ପାଦକ ନିର୍ବାଚିତ ହୋଇଥିଲେ ।

ଢେଙ୍କାନାଳ ଜିଲ୍ଲା ପରିଷଦରେ ବିଭିନ୍ନ ସମୟରେ ଶ୍ରୀନିବାସ ମିଶ୍ର, ପରମାନନ୍ଦ ମହାପାତ୍ର, ପଦ୍ମଚରଣ ଧଳ ସମ୍ପାଦକ ରୂପେ କାର୍ଯ୍ୟ କରିଛନ୍ତି ।

ସମ୍ବଲପୁର ଜିଲ୍ଲା ପାର୍ଟି ସମ୍ମିଳନୀ ୧୯୫୯ ଜାନୁଆରୀ ୧୮ ରୁ ୨୦ ଯାଏ ଭଟଲିଠାରେ ଅନୁଷ୍ଠିତ ହୋଇଥିଲା । ଗଙ୍ଗାଦତ୍ତ ଦାଶ, ଅଗ୍ନି ମଳିକ, ଛାଲ ଚୌଧୁରୀଙ୍କୁ ଘେନି ଗଠିତ ସଭାପତି ମଣ୍ଡଳୀ ସମ୍ମିଳନୀ ପରିଚାଳନା କରିଥିଲେ । ଲକ୍ଷ୍ମଣ ପୁଝାରୀ ପୁନଶ୍ଚ ଜିଲ୍ଲା ସମ୍ପାଦକ ନିର୍ବାଚିତ ହେଲେ । ରାମଚନ୍ଦ୍ର ଆଚାର୍ଯ୍ୟ ଅଭ୍ୟର୍ଥନା ସମିତିର ସଭାପତି ଓ ରାମଚନ୍ଦ୍ର ମିଶ୍ର ଉଦ୍‌ଘାଟକ ଥିଲେ । ନଟବର ବନଛୋର ଶ୍ରୀନିବାସ ମିଶ୍ର ରାମଚନ୍ଦ୍ର ମିଶ୍ର ପ୍ରମୁଖ ସଭାରେ ଉଦ୍‌ବୋଧନ ଦେଇଥିଲେ । ଏ ପର୍ଯ୍ୟନ୍ତ ଦୟାନନ୍ଦ ଶତପଥୀ, ମୟାଧର ପୁରୋହିତ, ଲକ୍ଷ୍ମଣ ପୁଝାରୀ, ଅଗ୍ନି ମଳିକ, ଲେଙ୍ଗୁ ମିଶ୍ର, ବଜ୍ରବାହୁ ଶତପଥୀ ସମ୍ପାଦକ ହୋଇ ଆସିଥାନ୍ତି ।

ମୟୂରଭଞ୍ଜ ଜିଲ୍ଲାରେ ପାର୍ଟି ସମ୍ପାଦକ ରୂପରେ ଅବଦୁଲ ମୋମିନ, ଶରତ୍ ମିଶ୍ର ହରିହର ଦାସ, ରାମଚନ୍ଦ୍ର ଦାଶ ପ୍ରମୁଖ ସମ୍ପାଦକ ହୋଇ ଆସିଛନ୍ତି । ବଲାଙ୍ଗୀରରେ ପ୍ରଥମ ପାର୍ଟି ସମ୍ପାଦକ କୃଷ୍ଣ ପ୍ରସାଦ ମିଶ୍ର ଏବଂ ମଦନ ଦେହୁରୀ ଏବଂ କୋରାପୁଟରେ ଦୀର୍ଘକାଳ ବିପ୍ରଚରଣ ଷଡ଼ଙ୍ଗୀଙ୍କ ପରେ ଭେଙ୍କଟେଶ୍ୱର ରାଓ ପାର୍ଟି ସମ୍ପାଦକ ହୋଇଛନ୍ତି । ପୁରୀ ଜିଲ୍ଲାରେ ଗୋକୁଳ ମୋହନ ରାୟଚୂଡ଼ାମଣି ଗତିକୃଷ୍ଣ ସ୍ୱାଇଁ, ଉପେନ୍ଦ୍ର ନାଥ ଦାସ, ସୋମନାଥ ପାତ୍ର, ବ୍ରହ୍ମାନନ୍ଦ ମଳିକ ଏବଂ ଅକ୍ଷୟ କୁମାର ପ୍ରଧାନ ସମ୍ପାଦକ ହୋଇଛନ୍ତି ।

ରାଜ୍ୟ ପାର୍ଟି ୩୦ ହଜାର ପାଣ୍ଠି ପାଇଁ ଏହି ସମୟରେ ଆହ୍ୱାନ ଦେଇଥିଲେ । ବିଭିନ୍ନ ଜିଲ୍ଲାରେ ଗାଁ'କୁ ଗାଁ' ଗଣ ଚାନ୍ଦା ଆଦାୟ କରାଯାଇଥିଲା । ଚାନ୍ଦା ଆଦାୟର ଏକ ଉଲ୍ଲେଖନୀୟ ଘଟଣା ଆସିକାରେ ଘଟିଥିଲା । ସାଥୀ ହରିହର ଦାସ ଏମଏଲଏଙ୍କ ଉପରେ ସମବାୟ ବ୍ୟାଙ୍କରେ କଂଗ୍ରେସ ଗୁଣ୍ଡାଙ୍କ ଆକ୍ରମଣର ପ୍ରତିବାଦ ୨୦.୨.୫୯ରେ ହେବାବେଳେ ୫ ହଜାର ଲୋକ ଉପସ୍ଥିତ ହୋଇଥିଲେ । ପାର୍ଟି ପାଣ୍ଠି ପାଇଁ ପ୍ରତିବାଦକାରୀମାନେ ଗାଁ ଗାଁରେ ସଂଗୃହିତ ଧାନ ହଳା ଶଗଡ଼ଗୁଡ଼ିକରେ ବୋଝେଇ କରି ସଭାରେ ହାଜର ହୋଇ କଂଗ୍ରେସ ଗୁଣ୍ଡାମିର ଜବାବ ଦେଇଥିଲେ ।

ଏହି ବିଶାଳ ପ୍ରତିବାଦ ସଭାକୁ ସଦାନନ୍ଦ ମହାନ୍ତି, ଗୋବିନ୍ଦ ପ୍ରଧାନ ଦୂତିକୃଷ୍ଣ ପଣ୍ଡା, ହରିହର ଦାସ ପ୍ରମୁଖ ଉଦ୍‌ବୋଧ ଦେଇଥିଲେ ।

ଓଡ଼ିଶାରେ କଂଗ୍ରେସ ଦଳ ଦ୍ୱିତୀୟ ନିର୍ବାଚନରେ ସଂଖ୍ୟା ଗରିଷ୍ଠତା ହରାଇଥିଲା । ବିରୋଧୀ ଦଳ ହିସାବରେ ରାଜାରାଜୁଡ଼ାଙ୍କ ଗଣତନ୍ତ୍ର ଦଳ ଦ୍ୱିତୀୟ ବୃହତ୍ତମ ବିରୋଧୀଦଳ ରୂପେ ଆବିର୍ଭୂତ ହୋଇଥିଲା । ରାଜାମାନଙ୍କର ଭତ୍ତା ବୃଦ୍ଧି, ଜମିଦାରୀ ସାମନ୍ତବାଦୀ ସ୍ୱାର୍ଥର ସୁରକ୍ଷା ଏବଂ ଅନ୍ୟ ଦିଗରେ କ୍ଷମତା ପାଇଁ ଓଡ଼ିଶାରେ ପଶ୍ଚିମାଞ୍ଚଳ, ଦକ୍ଷିଣାଞ୍ଚଳ ଦୁଆକୁ ଅଧିକ ପ୍ରଚାର କରି ସମର୍ଥନ ଲାଭ କରିବା ଏହାର କାର୍ଯ୍ୟକ୍ରମ ହୋଇଥିଲା । ସ୍ମରଣ କରାଯାଉ ଯେ ବଲାଙ୍ଗୀର ପ୍ରାକ୍ତନ ଶାସକ ରାଜେନ୍ଦ୍ରନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର, କଳାହାଣ୍ଡି ପ୍ରଭୃତି ଜିଲ୍ଲା ଓ ଅନ୍ୟ ଅଞ୍ଚଳକୁ ଘେନି ଓଡ଼ିଶାକୁ ଖଣ୍ଡ ଖଣ୍ଡ କରି

ମହାକୋଶଳ ଗଠନର ଆନ୍ଦୋଳନ ଚାଲିଥିଲା । କମ୍ୟୁନିଷ୍ଟ ପାର୍ଟିର ୯ ଜଣ ସଦସ୍ୟ । ସେମାନଙ୍କର ଉପରେ ନିର୍ଭର କରେ ଦକ୍ଷିଣ ପନ୍ଥୀ ପ୍ରତିକ୍ରିୟାଶୀଳ ଗଣତନ୍ତ୍ର ପରିଷଦ ସରକାର ଗଢ଼ିବା ନା କଂଗ୍ରେସ ସରକାର ଗଢ଼ାଯିବ ।

ଦୁଇ ଏକର ଜମିରୁ ଖଜଣା ଛାଡ଼ ହେବ, ସାମନ୍ତବାଦୀ ସ୍ୱାର୍ଥ ଉପରେ ଅଧିକ ଆଘାତ ଦିଆଯିବ, ଶ୍ରମିକମାନଙ୍କୁ ପୁଞ୍ଜିପତି ମାଲିକମାନଙ୍କ ଅତ୍ୟାଚାର ନିପୀଡ଼ନରୁ ରକ୍ଷା କରାଯିବ ଏହି ସର୍ତ୍ତରେ ମହତାବଙ୍କୁ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିବାକୁ କମ୍ୟୁନିଷ୍ଟ ପାର୍ଟି ନିଜର ସ୍ୱତନ୍ତ୍ର ସତ୍ତା ରଖି, ବିରୋଧୀ ଦଳରେ ରହି ସମର୍ଥନ କରିବାର ସିଦ୍ଧାନ୍ତ ଗ୍ରହଣ କରିଥିଲା ଓ ମହତାବ ସେପରି ଏକ ରାଜିନାମାରେ ସ୍ୱାକ୍ଷର କରିଥିଲେ । ମାତ୍ର ପରବର୍ତ୍ତୀ କାଳରେ କଂଗ୍ରେସ ଓ ଗଣତନ୍ତ୍ର ଦଳର ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେଲା ଏବଂ ତାହାର ଫଳ ସ୍ୱରୂପ ରାଜାମାନଙ୍କର ଭତ୍ତା, ତାଙ୍କ ଝିଅ ବାହାଘରକୁ ସରକାରୀ ଅର୍ଥ ସବୁ ଖଞ୍ଜା ହେଲା । କେନ୍ଦୁପତ୍ର ଠିକାଦାରମାନଙ୍କୁ ୧୫ ଲକ୍ଷ ଟଙ୍କା ଛାଡ଼ ହେଲା । ସ୍ମରଣ କରାଯାଇପାରେ ଯେ ଅନ୍ୟାନ୍ୟ ବିଷୟ ମଧ୍ୟରେ କେନ୍ଦୁପତ୍ର ଠିକାଦାରମାନଙ୍କ ଠାରୁ ପ୍ରଚୁର ଟଙ୍କା ନେବା ଅଭିଯୋଗରେ ମହତାବଙ୍କ ବିରୁଦ୍ଧରେ ସରଯୁ ପ୍ରସାଦ କମିଶନ ଓ ଖାନ୍ନା କମିଶନ ବସି ଅଭିଯୋଗକୁ ସାବ୍ୟସ୍ତ କରିଥିଲା ।

ପାର୍ଟି ନୀତିଗତ ଭାବରେ କଂଗ୍ରେସ ଓ ଗଣତନ୍ତ୍ର ସରକାରର ପ୍ରଚଣ୍ଡ ବିରୋଧୀ ଆନ୍ଦୋଳନ ଆରମ୍ଭ କରି ଏପରି ଅସାଧୁ ଓ ପ୍ରତିକ୍ରିୟାଶୀଳ ମେଣ୍ଟର ସ୍ୱରୂପ ଉଦ୍‌ଘାଟନ କରିଦେଲା । କମ୍ୟୁନିଷ୍ଟ ପାର୍ଟି ହିଁ ସେଦିନର ଗଣତନ୍ତ୍ରର ପରିଷଦ, ତତ୍‌ପରବର୍ତ୍ତୀ କାଳରେ ସ୍ୱତନ୍ତ୍ର ଦଳର ବିରୋଧ କରି ଆସିଛି । ଏବେ ସେହି ଦଳର ସ୍ଥିତି ନ ଥିଲେ ହେଁ ସେଥିଭିତରୁ କେତେକ ଜନତାଦଳ ଗଠନ ବେଳେ ଉକ୍ତ ଦଳ ସହିତ ମିଶି ଯାଇଛନ୍ତି ଏବଂ କେତେକ ପୂର୍ବତନ ଶାସକଙ୍କ ସମେତ ଅନେକେ କଂଗ୍ରେସ (ଇ) ବା କଂଗ୍ରେସ(ଆଇ) ସହିତ ମିଳିତ ହୋଇଛନ୍ତି ।

ରାଜ୍ୟର ଏପରି ରାଜନୈତିକ ପରିସ୍ଥିତି ବେଳେ କଟକର ଜନତା ରଙ୍ଗମଞ୍ଚରେ ପାର୍ଟିର ଚତୁର୍ଥ ରାଜ୍ୟ ସମ୍ମିଳନୀ ଅନୁଷ୍ଠିତ ହୋଇଛି । ୧୯୫୯ ଏପ୍ରିଲ ୧୪ ରୁ ୪ ଦିନ କାଳ ଏହି ସମ୍ମିଳନୀରେ ଦୁଇ ଶତାଧିକ ପ୍ରତିନିଧି ବିଭିନ୍ନ ଜିଲ୍ଲା ସମ୍ମିଳନୀରେ ନିର୍ବାଚିତ ହୋଇ ଅଂଶଗ୍ରହଣ କରିଥିଲେ । ପତାକା ଉତ୍ତୋଳନ କରିଥିଲେ ସାଧୁଚରଣ ମହାନ୍ତି । ଉଦ୍‌ଘାଟନ କରିଥିଲେ ଗୁରୁଚରଣ ପଟ୍ଟନାୟକ ।

ଚତୁର୍ଥ ସମ୍ମିଳନୀ ନୂଆ ଦୁନିଆକୁ ଦୈନିକ କରିବା ପାଇଁ ଦ୍ୱିତୀୟ ଥର ଅଭିଳାଷ ପୋଷଣ କରି ୧୦ ହଜାର ଟଙ୍କାର ପାଣ୍ଠି ଡାକରା ଦେଇଥିଲା ଏବଂ ପାର୍ଟି କମିଟି ଓ ବ୍ୟକ୍ତି ବିଶେଷ ସାଥୀମାନେ ପାଣ୍ଠିକୁ ଦାନ କରିଥିଲେ । ମାତ୍ର ପର୍ଯ୍ୟାପ୍ତ ଅର୍ଥ ନ ହେବାରୁ ଦୈନିକ ପ୍ରକାଶ ପାଇପାରିଲା ନାହିଁ ।

**କେରଳ ସଂହତି ଆନ୍ଦୋଳନରେ ପାର୍ଟି**

ସେତେବେଳେ କେରଳରେ ନମ୍ବୁଦ୍ରିପଦଙ୍କ ନେତୃତ୍ୱରେ କମ୍ୟୁନିଷ୍ଟ ପାର୍ଟି ମନ୍ତ୍ରିମଣ୍ଡଳ ହେତୁ ଭାରତର ବୁର୍ଜୁୟା ଶ୍ରେଣୀ ପ୍ରମାଦ ଗଣିଲା । ବିଦେଶୀ ସାମ୍ରାଜ୍ୟବାଦୀମାନେ ମଧ୍ୟ ଆତଙ୍କ

ମଣିଷ । ସମ୍ବିଧାନ ଅନୁସାରେ ସୀମିତ କ୍ଷମତା ସତ୍ତ୍ୱେ ଭାରତରେ ସର୍ବ ପ୍ରଥମ ହିଁ କମ୍ୟୁନିଷ୍ଟ ଶାସିତ କେରଳ ରାଜ୍ୟ ସରକାର ଅମୂଳ ଭୂସଂସ୍କାର ବିଧାନ କଲା, ଦେଶପ୍ରେମୀ ଗଣତାନ୍ତ୍ରିକ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତନ କଲା । ଶ୍ରମିକ ଓ କୃଷକମାନଙ୍କ ଆନ୍ଦୋଳନ ହେଲେ କଂଗ୍ରେସ ଓ ଅନ୍ୟାନ୍ୟ ସରକାରଙ୍କ ପୁଲିସ ସାଧାରଣତଃ ଜମିମାଲିକ, ପୁଞ୍ଜିପତିଙ୍କ ପକ୍ଷ ନେଇ ଶ୍ରମିକ ଓ କୃଷକଙ୍କ ଉପରେ ଆଇନ ଶୃଙ୍ଖଳା ରକ୍ଷା ନାମରେ ଦମନ କରୁଥିଲେ । କେରଳରେ ତାହା ଉପରେ ନିଷେଧ କରାଗଲା ।

ଏହି ସବୁ କାରଣରୁ କେରଳରେ କଂଗ୍ରେସ, ନାୟାର ସଂଗଠନ ଓ କାଥେଲିକ ପାଦ୍ରୀମାନେ ବିମୋଚନ ସମର ନାମକ ଆନ୍ଦୋଳନ କରି ହିଂସା ଓ ଗଣ୍ଡଗୋଳର ଆଶ୍ରୟ ନେଲେ । ଶ୍ରୀମତୀ ଇନ୍ଦିରାଗାନ୍ଧୀ ସେତେବେଳେ କଂଗ୍ରେସର ସଭାନେତ୍ରୀ ଓ ପିତା ନେହେରୁ ପ୍ରଧାନମନ୍ତ୍ରୀ । ଇନ୍ଦିରାଙ୍କ ନେତୃତ୍ୱରେ କଂଗ୍ରେସ ବିମୋଚନ ସମରକୁ ସମର୍ଥନ କରି ନମ୍ବୁଦ୍ରିପଦ ସରକାରକୁ ଗାଦିଚ୍ୟୁତ କରିବାକୁ ଦାବୀ ଉଠାଇଲେ । ପରେ ଅବଶ୍ୟ ନମ୍ବୁଦ୍ରିପଦ ସରକାରକୁ ବରଖାସ୍ତ କରାଗଲା ।

ତଥାକଥିତ ବିମୋଚନ ସମର କାଳରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଦେଶ ସାରା କେରଳ ସଂହତି ସପ୍ତାହ ପାଳନ କରି ଭାରତରେ ସଂସଦୀୟ ଗଣତନ୍ତ୍ରର ଓ ଗଣତାନ୍ତ୍ରିକ ଅଧିକାରର ସୁରକ୍ଷା ଲାଗି ବିଶାଳ ସଭା ସମାବେଶମାନ ଅନୁଷ୍ଠିତ କରାଇଥିଲା ।

ଓଡ଼ିଶାରେ ପର୍ଟିର ନିଷ୍ପତ୍ତି ଅନୁସାରେ କେରଳ ସପ୍ତାହ ଉପଲକ୍ଷେ ରାଜ୍ୟସାରା ପାର୍ଟି ସଭା ସମାବେଶ ଓ ବିକ୍ଷୋଭ ଅନୁଷ୍ଠିତ କରାଇଥିଲା । କଟକ, ବାରିପଦା, ଅନୁଗୋଳ, ପୁରୀ, ତାଳଚେର, ଡଅଁରା, ଲେଣ୍ଡା, ଡେରା, ସାଆଳା, ଯାଜପୁର, ବ୍ରହ୍ମପୁର, ଆସିକା ରାୟଗଡ଼ା, ଚନ୍ଦକା, ନିମାପଡ଼ା- କାକଟପୁର, ପଟିଆ, କୁଜଙ୍ଗ, ଆଠଗଡ ଗଞ୍ଜାମର ଏବଂ ବାଲେଶ୍ୱର, ସମ୍ବଲପୁର ଓ ବହୁ ସ୍ଥାନରେ ସଭା ସମାବେଶ ଅନୁଷ୍ଠିତ ହେଲା ।

୧୯୫୮ ଅକ୍ଟୋବର ମାସରେ ନମ୍ବୁଦ୍ରିପଦ ଓଡ଼ିଶା ଗସ୍ତରେ ଆସିଥିଲା ବ୍ରହ୍ମପୁର ସହରରେ ଗୁରୁଚରଣ ପଟ୍ଟନାୟକଙ୍କ ସଭାପତିତ୍ୱରେ ଅନୁଷ୍ଠିତ ବିରାଟ ସଭାରେ କଂଗ୍ରେସର ଆକ୍ରମଣ ବିରୁଦ୍ଧରେ ଲଢ଼ିବା ଲାଗି ୧୫୦୦ ଟଙ୍କା ଥଳି ଦିଆଯାଇଥିଲା । ତାଙ୍କ ଗସ୍ତକାଳରେ ନିମାପଡାରେ ୧୦୦୧ ଟଙ୍କା, କଟକରେ ୨୮୭୭ ଟଙ୍କା, ଛତ୍ର ବଜାରରେ ୧୦୧ ଟଙ୍କା, ପିପିଲିରେ ୧୦୧, ଫୁଲନଖରାରେ ୩୦ ଟଙ୍କା, ଖୋର୍ଦ୍ଧା ୪୫୧୦୦ ଟଙ୍କା, ମୋତିପଡ଼ାରେ ୧୬ ଟଙ୍କା, ବଡ଼ ପୋଖରିଆରେ ୮୧ ଟଙ୍କା ତାଙ୍କୁ ଓଡ଼ିଶା ପାର୍ଟି ପକ୍ଷରୁ ଅର୍ପଣ କରାଯାଇଥିଲା । ଏଇଥିରୁ ପ୍ରତୀତ ହୁଏ ଯେ ପାର୍ଟି ସେତେବେଳେ କଂଗ୍ରେସ ଆକ୍ରମଣର ମୁକାବିଲା ପାଇଁ ଓ କେରଳରେ ପ୍ରଥମ କମ୍ୟୁନିଷ୍ଟ ଶାସନ ସହିତ ସଂହତି ପ୍ରକାଶ କରି କି ପ୍ରକାର ଅଭିଯାନ ଚଳେଇଥିଲା ।

୧୯୫୯ରେ ଭାରତର ସ୍ୱରାଷ୍ଟ୍ରମନ୍ତ୍ରୀ ଗୋବିନ୍ଦବଲ୍ଲଭ ପନ୍ଥ ଓଡ଼ିଶା ଆସିବା ବେଳେ କଟକରେ ଛାତ୍ରସଂଘ ନେତୃତ୍ୱରେ ବିଶାଳ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା । ପୁଲିସର ଲାଠି ଚାଳନା ଓ ଦମନ ଫଳରେ ବହୁ ଛାତ୍ର ଆହତ ହୋଇଥିଲେ ଏବଂ ଛାତ୍ର କଂଗ୍ରେସର ବିରୋଧ ସତ୍ତ୍ୱେ ବିରାଟ ଛାତ୍ର ପ୍ରତିବାଦ ଆନ୍ଦୋଳନ ଅନୁଷ୍ଠିତ ହୋଇଥିଲା ।

୧୯୬୦ ଅକ୍ଟୋବର ୧୫ ଓ ୧୬ ତାରିଖରେ କଟକଠାରେ ରାଜ୍ୟ ପାର୍ଟି ସମ୍ମିଳନୀର ପ୍ରଥମଭାଗ ଅନୁଷ୍ଠିତ ହୋଇଥିଲା । ବେଜୱାଡ଼ାଠାରେ ଅନୁଷ୍ଠିତ ହେଉଥିବା ପାର୍ଟିର ପଞ୍ଚମ କଂଗ୍ରେସକୁ ଏହି ପ୍ରଥମ ଭାଗ ସମ୍ମିଳନୀରେ ପ୍ରତିନିଧି ନିର୍ବାଚନ କରାଯାଇଥିଲା ।

ପ୍ରସଙ୍ଗ କ୍ରମେ ଉଲ୍ଲେଖ ଥାଉ ଯେ ପାର୍ଟିର କଂଗ୍ରେସ ଗୁଡ଼ିକ ପ୍ରଥମେ ବମ୍ବେ, ତାପରେ କଲିକତା, ମୁଦୁରାଇ, ପାଲଘାଟ, ଅମୃତସର, ବେଜୱାଡ଼ାରେ ୧୯୬୧ରେ ଅନୁଷ୍ଠିତ ହେଇଗଲା ପରେ ୧୯୬୨ରେ ଚୀନ ଭାରତ ସଂଘର୍ଷକୁ ଘେନି ମୁଖ୍ୟତଃ ପାର୍ଟି ଭିତରେ ଥିବା ରାଜନୈତିକ ମତଭେଦ ହେତୁ ପାର୍ଟିର ସଂଖ୍ୟାଲଘୁ ଗୋଷ୍ଠୀ ପାର୍ଟିର ବିଭାଜନ କରାଇଥିଲେ । ୧୯୬୧ ବେଜୱାଡ଼ା କଂଗ୍ରେସରେ ଡଃ ଅଜୟ ଘୋଷଙ୍କ ବିଶେଷଣାତ୍ମକ ଓ ମାର୍କସବାଦ ଲେନିନବାଦସମ୍ମତ ଭାଷଣକୁ ଭିତ୍ତି କରି ଯେଉଁ ଐକ୍ୟ ପ୍ରତିଷ୍ଠିତ ହୋଇଥିଲା, ତାହାକୁ ଭଙ୍ଗ କରାଗଲା, ପାର୍ଟି ବିଭାଜନ ପରେ ସିପିଆଇ କଂଗ୍ରେସର ଯଥାକ୍ରମେ ବମ୍ବେ, ପାଟନା, କୋଚିନ, ପୁନଶ୍ଚ ବିଜୟୱାଡ଼ା, ଭାତିଣ୍ଡା, ବନାରସ ଏବଂ ୧୯୮୬ରେ ପାଟନାଠାରେ ଅନୁଷ୍ଠିତ ହୋଇଛି ।

୧୯୬୦ରେ ଅନୁଷ୍ଠିତ ପ୍ରଥମଭାଗ ରାଜ୍ୟ ସମ୍ମିଳନୀ ବେଳକୁ (ପଞ୍ଚମ) କଂଗ୍ରେସ-ଗଣତନ୍ତ୍ର ଅସାଧୁ ମେଣ୍ଟ ସରକାରର ପତନ ହୋଇଥାଏ । ଗଣତନ୍ତ୍ର ପରିଷଦ ଭଳି ଘୋର ପ୍ରତିକ୍ରିୟାଶୀଳ ଦକ୍ଷିଣପନ୍ଥୀମାନଙ୍କୁ ଓଡ଼ିଶାର ଶାସନ କ୍ଷମତାରୁ ଦୂରେଇ ରଖିବାକୁ ପାର୍ଟି କି ପ୍ରକାର କର୍ମକୌଶଳ ନେବ ସେଥିଲାଗି ଏକ ରାଜନୈତିକ ମେଣ୍ଟର ପ୍ରସ୍ତାବ ଏହି ସମ୍ମିଳନୀରେ ବନମାଳୀ ଦାସ ଆଗତ କରିଥିଲେ । ଡଃ ଗୁରୁଚରଣ ପଟ୍ଟନାୟକ ତୃତୀୟ ପଞ୍ଚବାର୍ଷିକ ଯୋଜନାର ପୁଞ୍ଜିବାଦୀ ଆଭିମୁଖ୍ୟ ଓ ଓଡ଼ିଶାର ଅର୍ଥନୈତିକ ଉନ୍ନୟନ ସଂକ୍ରାନ୍ତ ପ୍ରସ୍ତାବ ଆଗତ କରିଥିଲେ ।

କଂଗ୍ରେସ ଗଣତନ୍ତ୍ରର ମିଳିତ ମନ୍ତ୍ରିମଣ୍ଡଳର ପତନ ପରେ ୧୯୬୨ରେ ଓଡ଼ିଶାରେ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ସେହି ସମୟରେ ଚୀନ ପକ୍ଷରୁ ଭାରତ ବିରୁଦ୍ଧରେ ଛୋଟ ଛୋଟ ସଂଘର୍ଷ ଓ ଭାରତ ବିରୋଧୀ ପ୍ରଚାର ଆରମ୍ଭ ହୋଇଯାଇଥାଏ । ଏହାର ସୁଯୋଗ ନେଲେ ଉଭୟ କଂଗ୍ରେସ ଓ ଦକ୍ଷିଣପନ୍ଥୀ ସ୍ୱତନ୍ତ୍ର ଦଳ ତଥା ପିଏସପିର ନେତୃବର୍ଗ । ବିରାଟ କମ୍ୟୁନିଷ୍ଟ ବିରୋଧୀ ଅଭିଯାନ ଆରମ୍ଭ କରି ଦିଆଯାଇ କମ୍ୟୁନିଷ୍ଟ ପାର୍ଟି ପ୍ରତି ଚୀନ-ଭାରତ ସଂଘର୍ଷ ବେଳେ ଗୃହୀତ ସୁସ୍ପଷ୍ଟ ନୀତିକୁ କଦର୍ଥ କରାଗଲା । ତେଣୁ ନିର୍ବାଚନରେ ପୂର୍ବାପେକ୍ଷା ପାର୍ଟିର ଆସନ ସଂଖ୍ୟା କମିଗଲା । ଏହା ଛଡ଼ା ପାର୍ଟି ଭିତରେ ଥିବା ଆଦର୍ଶଗତ ବିତର୍କକୁ ପାର୍ଟି ବିଭାଜନକାରୀମାନେ ଆନୁଷ୍ଠାନିକ ଭାବରେ ପାର୍ଟି ବିଭାଜନ ପୂର୍ବରୁ ସମ୍ବାଦପତ୍ର ଓ ସ୍ୱତନ୍ତ୍ର

ସଭା ସମିତିରେ ପ୍ରକାଶ କରୁଥିବାରୁ ମଧ୍ୟ ପାର୍ଟି ଜନତା ମଧ୍ୟରେ ଭ୍ରାନ୍ତି ସୃଷ୍ଟି ହେଲା । ଓଡ଼ିଶା ପାର୍ଟିର ପ୍ରତିନିଧି ସଂଖ୍ୟା ୪କୁ ଖସିଆସିଲା । ପ୍ରସନ୍ନ କୁମାର ପଣ୍ଡା, ଲକ୍ଷ୍ମଣ ମହାପାତ୍ର, ଗଙ୍ଗାଧର ପାଇକରାୟ ଓ ରାମଚନ୍ଦ୍ର ରାମ ଏଥର ନିର୍ବାଚିତ ହୋଇଥିଲେ ।

୧୯୬୨ରେ ଚୀନ ସୈନ୍ୟ ବାହିନୀର ଭାରତ ମଧ୍ୟରେ ପ୍ରବେଶ ଏବଂ ତତ୍କାଳୀନ ଆସାମ ରାଜ୍ୟ ଅନ୍ତର୍ଭୁକ୍ତ ବମଡ଼ିଲା ଯାଏ ଅଗ୍ରସରକୁ ସିପିଆଇର ସଂଖ୍ୟାଗରିଷ୍ଠ ଅଂଶ ଆକ୍ରମଣ ବୋଲି ଅଭିହିତ କରିଥିଲେ । ଭାରତରେ ପୁଞ୍ଜିବାଦୀ ରାଷ୍ଟ୍ର ପ୍ରତିଷ୍ଠିତ ହୋଇଛି, ଏଠାରେ ବୁର୍ଜୁଆ ଶାସନ ପ୍ରତିଷ୍ଠିତ ହୋଇଛି ସତ, ମାତ୍ର ଏହା ଏକ ସ୍ୱାଧୀନ, ସାର୍ବଭୌମ ରାଷ୍ଟ୍ର । ଚୀନ ଏକ କମ୍ୟୁନିଷ୍ଟ ରାଷ୍ଟ୍ର । ଏକ କମ୍ୟୁନିଷ୍ଟ ରାଷ୍ଟ୍ର ଅନ୍ୟ ଏକ ସ୍ୱାଧୀନ ରାଷ୍ଟ୍ର ଆମ ଦେଶ ଉପରେ ଏପରି ଆକ୍ରମଣ କେବଳ ସାମ୍ରାଜ୍ୟବାଦ ଓ ଦେଶର ପ୍ରତିକ୍ରିୟାକୁ ସାହାଯ୍ୟ କଲା ବୋଲି ପାର୍ଟି ଅଭିହିତ କଲା । ସୀମା ସଂକ୍ରାନ୍ତ ବିବାଦ ଆପୋଷ ଆଲୋଚନା ମାଧ୍ୟମରେ ଶାନ୍ତିପୂର୍ଣ୍ଣ ଉପାୟରେ, ସମାଧାନ କରିବାକୁ ପାର୍ଟି ଚୀନ କମ୍ୟୁନିଷ୍ଟ ପାର୍ଟିକୁ ଆବେଦନ କଲା ।

ମାତ୍ର ସଂଖ୍ୟାନ୍ୟୂନ ଗୋଷ୍ଠୀ କମ୍ୟୁନିଷ୍ଟ ଦେଶ ଅନ୍ୟ ଉପରେ ଆକ୍ରମଣ କରିପାରେନା, ତେଣୁ ଚୀନ ଭାରତ ଉପରେ ଆକ୍ରମଣ କରିନାହିଁ ବରଂ ଭାରତ ଆକ୍ରମଣ କରିଛି ଓ ଚୀନ ତା'ର ପ୍ରତ୍ୟୁତ୍ତର ଦେଇଛି ମୂଳତଃ ଏହି ଆସନ ନେଇ ସୋଭିଏତ୍ ୟୁନିଅନ ଚୀନର ପୁରାପୂରି ପକ୍ଷ ସମର୍ଥନ ନ କରିବାରୁ ତାହାର କଟୁ ସମାଲୋଚନା କଲେ । ଏହି ମତଭେଦ ଶେଷରେ ପାର୍ଟିକୁ ଦ୍ୱିଖଣ୍ଡ କରିଦେଲା । ୧୦୧ ଜଣ କେନ୍ଦ୍ର ପରିଷଦ ସଦସ୍ୟଙ୍କ ମଧ୍ୟରୁ ୩୨ ଜଣ ସଦସ୍ୟ କକ୍ଷତ୍ୟାଗ କରି ବାହାରି ଆସି ସ୍ୱତନ୍ତ୍ର ବିବୃତି ଦେଲେ । ଏହିଦିନ ଠାରୁ ପାର୍ଟିର ଅନୁଷ୍ଠାନିକ ବିଭାଜନ ଆରମ୍ଭ ହୋଇଗଲା । ଓଡ଼ିଶାରେ ମଧ୍ୟ ତାହାର ପ୍ରତିଫଳନ ହେଲା । ସଂଖ୍ୟାନ୍ୟୂନ ସାଥୀମାନେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିରୁ ନାନା କାରଣ ଦର୍ଶାଇ ଅଲଗା ହୋଇଗଲେ । ତାହାର ସବିଶେଷ ଆଲୋଚନା ଏଠାରେ କରାଯାଉନାହିଁ ।

ତେବେ ସାରା ଭାରତ କି ଓଡ଼ିଶା କେବଳ ନୁହଁ ଚୀନର ଭାରତ ଆକ୍ରମଣ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନ ପକ୍ଷରେ ମଧ୍ୟ କ୍ଷତିକର ହେଲା । ୧୯୬୦ରେ ମସ୍କୋ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଏବଂ ଓ୍ୱାର୍କରସ ପାର୍ଟିମାନଙ୍କ ବୈଠକରେ ସର୍ବସମ୍ମତ ଭାବେ ଗୃହୀତ ରାଜନୈତିକ ଓ ମତାଦର୍ଶଗତ ସାମ୍ରାଜ୍ୟ ବାଦ ବିରୁଦ୍ଧରେ, ବିଶ୍ୱ ଶାନ୍ତି ପାଇଁ, ପରାଧୀନ ଦେଶମାନଙ୍କର ମୁକ୍ତି ଓ ସ୍ୱାଧୀନତା ଲାଗି ତଥା ନବ ମୁକ୍ତ ଦେଶମାନଙ୍କର ସାର୍ବଭୌମତ୍ୱ ସୁରକ୍ଷା ଲାଗି ଯେଉଁ ଆହ୍ୱାନ ଦିଆଯାଇ ତିନୋଟି ମୁଖ୍ୟ ସ୍ରୋତ ସମାଜବାଦୀ ଦେଶ ଓ କମ୍ୟୁନିଷ୍ଟ ଆନ୍ଦୋଳନ, ବହୁଜାତିକ ପୁଞ୍ଜି ବିରୁଦ୍ଧରେ ପୁଞ୍ଜିବାଦୀ ଜଗତର ଶ୍ରମିକଶ୍ରେଣୀ ଆନ୍ଦୋଳନ ଓ ଜାତୀୟ ମୁକ୍ତି ସଂଗ୍ରାମର ମେଣ୍ଟର ଆହ୍ୱୋନ ଦିଆଯାଇଥିଲା ଚୀନ ନୀତି ଫଳରେ ତାହା ଘୋର ଦୁର୍ଦ୍ଦଶାଗ୍ରସ୍ତ ହେଲା ।

ଭାରତରେ ମଧ୍ୟ କମ୍ୟୁନିଷ୍ଟ ଆନ୍ଦୋଳନର ବିଭାଜନ ହେତୁ ପୁଞ୍ଜିପତି ଶ୍ରେଣୀ ଓ ବୁର୍ଜୁଆଙ୍କ

ପ୍ରଭାବ ବଢ଼ିଲା ଏବଂ ବାମପନ୍ଥୀ ଆନ୍ଦୋଳନ କ୍ଷତିଗ୍ରସ୍ତ ହେଲା । ସିପିଆଇ (ଏମ୍) ଗଠନ କରାଯାଇ ଏଆଇଟିୟୁସି, କୃଷକସଭା, ଛାତ୍ରସଂଘ, ମହିଳା ସମିତି, ଯୁବସଂଘକୁ ଭାଗ ଭାଗ କରାଗଲା । ଏହା ପୁଞ୍ଜିପତି ଶ୍ରେଣୀ ଓ ବୁର୍ଜୁୟା ଶାସକ ଦଳକୁ ପ୍ରଭୂତ ସହାୟତା ଦେଲା । ସିପିଆଇ (ଏମ୍) ମଧ୍ୟ ବିଭକ୍ତ ହୋଇ କଟ୍ଟର ମାଓପନ୍ଥୀ, ନକ୍ସଲପନ୍ଥୀ ନାମରେ ଗଣ୍ଡା ଗଣ୍ଡା ଗୋଷ୍ଠୀରେ ବିଭକ୍ତ ହେଲେ । ଏହା ମଧ୍ୟ ଘୋର ଦକ୍ଷିଣପନ୍ଥୀ, ସାଂପ୍ରଦାୟିକତାବାଦୀ, ବିଚ୍ଛିନ୍ନତାବାଦୀମାନଙ୍କୁ ନିଜର ପ୍ରଭାବ ବିସ୍ତାର କରିବାକୁ ସୁଯୋଗ ଦେଲା । ପାର୍ଟି ବିଭାଜନ ନ ହୋଇଥିଲେ ଭାରତରେ କଂଗ୍ରେସ ପରେ ଲୋକେ କମ୍ୟୁନିଷ୍ଟ ଆନ୍ଦୋଳନକୁ ହିଁ ଏକମାତ୍ର ବିକଳ୍ପ ବୋଲି ଧରି ନେଇଥାନ୍ତେ । ପୃଥିବୀ କ୍ଷେତ୍ରରେ ମଧ୍ୟ ସୋଭିଏତ୍ ୟୁନିଅନ ୟୁରୋପ ଏସିଆ, ଆମେରିକାର ଅନ୍ୟାନ୍ୟ ସମାଜବାଦୀ ଦେଶଗୋଷ୍ଠୀ ସହିତ ବିରାଟ ଚୀନ ଓ ତା'ର କମ୍ୟୁନିଷ୍ଟ ପାର୍ଟିର ଐକ୍ୟ ସାମ୍ରାଜ୍ୟବାଦକୁ ରିଗାନ ପ୍ରଶାସନକୁ ନକ୍ଷତ୍ର ଯୁଦ୍ଧ ସୃଷ୍ଟି କରିବାର, ବିଭିନ୍ନ ଦେଶ ଉପରେ ଆକ୍ରମଣ କରିବାର ଔଦ୍ଧତ୍ୟ ଦେଖାଇବାରୁ କ୍ଷାନ୍ତ କରିପାରିଥାନ୍ତା ।

ଓଡ଼ିଶାରେ ମଧ୍ୟ ପାର୍ଟିର ଏହି ବିଭାଜନ ଉଭୟ ପାର୍ଟି କାର୍ଯ୍ୟ କରୁଥିଲେ ହେଁ ସାମଗ୍ରିକ ଭାବରେ କମ୍ୟୁନିଷ୍ଟ ଆନ୍ଦୋଳନ ଯେ ବୁର୍ଜୁୟା ଶ୍ରେଣୀର ଏକମାତ୍ର ବିକଳ୍ପ ବୋଲି ଜନସାଧାରଣ ବିଚାର କରି ପାରୁନାହାନ୍ତି, ବରଂ ଏକ ଆରେକର ପ୍ରଭାବିତ ଜନସାଧାରଣ ସଂଗଠନକୁ ଭାଙ୍ଗି ନିଜକୁ ବଡ଼ ବୋଲି ପ୍ରତିପାଦନ କରିବାର ଚେଷ୍ଟା କରି ଶ୍ରେଣୀ ଶତ୍ରୁମାନଙ୍କୁ ହିଁ ବଳ ଯୋଗାଉଛନ୍ତି । ଯେଉଁଠି କମ୍ୟୁନିଷ୍ଟ ଆନ୍ଦୋଳନ ବା ସଂଗଠନ ନାହିଁ ସେଠାରୁ ବୁର୍ଜୁୟା ଓ ପ୍ରତିକ୍ରିୟାକୁ ଭାଙ୍ଗିବା ପାଇଁ ଯିବା ପରିବର୍ତ୍ତେ ଯେଉଁଠି ପାର୍ଟିର ଜନ୍ମ କାଳରୁ ଆନ୍ଦେଳନ ବା ସଂଗଠନ ରହିଛି ସେଗୁଡ଼ିକ ଉପରେ ଆଘାତ ବସୁଛି । ଏହି ଅବାଂଛିତ ପ୍ରକ୍ରିୟାର ଅବସାନ ପାଇଁ ସର୍ବଭାରତୀୟ କ୍ଷେତ୍ରରେ ଏବଂ ଓଡ଼ିଶା କ୍ଷେତ୍ରରେ ସିପିଆଇ ନୀତିସମ୍ମତ ଆସ୍ଥାନ ନେଇ ଐକ୍ୟ ପ୍ରକ୍ରିୟାର ବିଜୟ ଉପରେ ହିଁ ଭାରତର କମ୍ୟୁନିଷ୍ଟ ଆଦର୍ଶ ବିଜୟର ନିର୍ଭରତା ନିହିତ ।

**ସୀମା ଆନ୍ଦୋଳନ ଓ ସୀମା ସମସ୍ୟାରେ ପାର୍ଟିର ଭୂମିକା**

୧୯୩୬ରେ ଓଡ଼ିଶା ପ୍ରଦେଶ ଗଠନ ପରେ ରାଜ୍ୟର ରାଜନୈତିକ ମହଲରେ ଓ ବୁଦ୍ଧିଜୀବୀ ଜନମାନସରେ ଉତ୍କଳ ସମ୍ମିଳନୀର ପୂର୍ବ ଦାବୀଗୁଡ଼ିକ ପୂରଣ ନ ହେବାରୁ ଅସନ୍ତୋଷ ଥିଲା । ଗଡ଼ଜାତ ମିଶ୍ରଣ ପରେ ୧୯୪୮ରେ ଷଢ଼େଇକଳା-ଖରସୁଆଁକୁ ଘେନି ଗଠିତ ଷଢ଼େଇକଳା ଜିଲ୍ଲାର ଓଡ଼ିଶାରେ ମିଶ୍ରଣ ହେଲା । ମାତ୍ର ୧୯୫୦ରେ ମହତାବ ମନ୍ତ୍ରିମଣ୍ଡଳ ବେଳେ ଷଢ଼େଇକଳାରେ ନିର୍ମମ ଗୁଳିକାଣ୍ଡ ହେଲା । ଡଃ ରାଜେନ୍ଦ୍ର ପ୍ରସାଦ ଓ ବିହାର କଂଗ୍ରେସର ଚାପ ଓ ମହତାବବାବୁଙ୍କ ସେଥିରେ ସମ୍ମତି ହେତୁ ପୁନଶ୍ଚ ଷଢ଼େଇକଳା ଜିଲ୍ଲା ବିହାରକୁ ଗଲା । ଏଥିଲାଗି ସେତେବେଳେ ତାର ପ୍ରତିବାଦ କରି କଂଗ୍ରେସ ଏମଏଲଏମାନେ ନିଜ ଦଳ ପାଖରେ ଇସ୍ତଫା ଦେଇଥିଲେ । ତାହା ଏକ ଦୀର୍ଘ ଇତିହାସ ।

ଓଡ଼ିଶାରେ ଗଡ଼ଜାତଗୁଡ଼ିକର ମିଶ୍ରଣ ପରେ- ଷଢ଼େଇକଳା ରଜା, ଯିଏକି ଓଡ଼ିଶାର ଅନ୍ୟାନ୍ୟ ରଜାଙ୍କ ସହିତ ମହାକୋଶଳ ପ୍ରଦେଶ ଗଠନର ଚକ୍ରାନ୍ତ କରୁଥିଲେ ସେ ମଧ୍ୟ ଓଡ଼ିଶାରୁ ଷଢ଼େଇକଳା ଯିବାକୁ ଚାହିଁଲେ ।

ଓଡ଼ିଶାରେ ଏହି ଅସନ୍ତୋଷ ୧୯୫୩ ବେଳକୁ ଏକ ବିରାଟ ସୀମା ଆନ୍ଦୋଳନରେ ପରିଣତ ହେଲା । କମ୍ୟୁନିଷ୍ଟ ପାର୍ଟି ସେତେବେଳେ ଏହି ସମ୍ପର୍କରେ ବିଶେଷ ଆଲୋଚନା କରି କେତେକ ସିଦ୍ଧାନ୍ତରେ ପହଞ୍ଚିଥିଲା । ବହୁ ତଥ୍ୟ ଓ ରିପୋର୍ଟ ବିଶେଷତଃ ଓଡ଼ିଶାକୁ ଲାଗିଥିବା ଏକ ପକ୍ଷରେ ଆନ୍ଧ୍ର, ମଧ୍ୟପ୍ରଦେଶର ସୀମାନ୍ତ ଅନ୍ୟପକ୍ଷରେ ଓଡ଼ିଶାର ସୀମାନ୍ତ ଗାଁ ଗୁଡ଼ିକର ସର୍ଭେ କରାଯାଇଥିଲା । ସୀମା ଆନ୍ଦୋଳନରେ ଓଡ଼ିଶାର ନ୍ୟାୟପର ଦାବୀ ସାଙ୍ଗକୁ କେତେକ ଅବାଂଛିତ ଦାବୀକୁ ରାଜ୍ୟ ପାର୍ଟି ଗ୍ରହଣ କରିନଥିଲା । ପାରଳାଖେମୁଣ୍ଡି ଜମିଦାରୀ ଯେପରି ପ୍ରଦେଶ ଗଠନ ପୂର୍ବରୁ ଦୁଇଭାଗ ହୋଇ ପାଥପାଟଣା ଆନ୍ଧ୍ରରେ ଓ ପାରଳାଖେମୁଣ୍ଡି ଥାନା ଓଡ଼ିଶାରେ ମିଶିଛି, ଉଭୟ ପାର୍ଶ୍ୱରେ ମିଶ୍ରିତ ତେଲୁଗୁ ଓଡ଼ିଆ ଗାଁ ଥିଲେ ମଧ୍ୟ ତାହା ମୋଟାମୋଟି ଯଥାର୍ଥ ବୋଲି ପାର୍ଟି ସ୍ଥିର କରିଥିଲା ।

ପାରଳାଖେମୁଣ୍ଡି ଆନ୍ଧ୍ର ପାର୍ଟି କାର୍ଯ୍ୟ କରୁଥିବାରୁ ସାଙ୍ଗଠନିକ ଭାବରେ ତାହା ଆନ୍ଧ୍ର ପାର୍ଟି କର୍ତ୍ତୃତ୍ୱାଧୀନ ଥିଲା । ଓଡ଼ିଶା ପାର୍ଟି କେନ୍ଦ୍ର ପାର୍ଟିରେ ଏହି ପ୍ରସଙ୍ଗ ଉଠାଇଲା ଏବଂ ଓଡ଼ିଶା ପାର୍ଟିର ପ୍ରତିନିଧି ଦଳ ରାମକୃଷ୍ଣ ପତି, ଗୋବିନ୍ଦଚନ୍ଦ୍ର ମହାନ୍ତିଙ୍କ ଉପସ୍ଥିତିରେ ପାରଳାଖେମଉଣ୍ଡି ପାର୍ଟି ଶାଖାର ବୈଠକରେ ନିଷ୍ପତ୍ତି ହୋଇ ତାହା ଓଡ଼ିଶା ପାର୍ଟି କର୍ତ୍ତୃତ୍ୱାଧୀନକୁ ଆସିଲା । ସେତେବେଳେ ହରିଶ୍ଚନ୍ଦ୍ର ବକ୍‌ସିପାତ୍ର ଏ ସମ୍ପର୍କରେ ବିଶେଷ ଭୂମିକା ନେଇଥିଲେ । ଏହି ସମୟରେ ଆନ୍ଧ୍ର ପାର୍ଟିର ମୁଖପତ୍ର ବିଶାଳ ଆନ୍ଧ୍ରରେ ନୂତନ ଆନ୍ଧ୍ର ରାଜ୍ୟର ସୀମା ସମୁଦ୍ର ତଟବର୍ତ୍ତୀ ବାଲୁଗାଁ ଓ ଭିତର ସୋରଡ଼ା ଯାଏ ଦର୍ଶାହେବାରୁ ରାଜ୍ୟ ପାର୍ଟି ତାହାର ସମୀକ୍ଷା କରି ଆନ୍ଧ୍ର ପାର୍ଟି ସହିତ ଯୋଗାଯୋଗ କଲା । ବିଶାଳ ଆନ୍ଧ୍ରରେ ଏପରି ମାନଚିତ୍ର ପ୍ରମାଦାତ୍ମକ ବୋଲି ମତପୋଷଣ କରିଥିଲା । ସୀମା ସେପଟେ ରହିଥିବା ଜଳନ୍ତର, ମଞ୍ଜୁସା, ଟିକାଲି, ତରଳା, ଉଦ୍ୟାନଖଣ୍ଡରେ ତେଲୁଗୁଭାଷୀ ଗାଁ ଗୁଡ଼ିକ ମଧ୍ୟରେ ଅନେକ ଓଡ଼ିଆ ଭାଷୀ ଗାଁ ଓ ଗୋଲନ୍ତରଠାରୁ ରମ୍ଭାଯାଏ ଓଡ଼ିଆ ଭାଷୀ ଗାଁଗୁଡ଼ିକ ମଧ୍ୟରେ ତେଲୁଗୁଭାଷୀ ଗାଁ ମାନ ରହିଛି । ସର୍ବତ୍ର ମିଶ୍ରଣ ଜନସଂଖ୍ୟା । ସେହେତୁ ମୋଟାମୋଟି ଏହି ସୀମା ଗ୍ରହଣୀୟ ବୋଲି ରାଜ୍ୟ ପାର୍ଟି ସ୍ଥିର କଲା ।

ଅନ୍ୟପଟେ ମେଦିନୀପୁର ଓ ବାଲେଶ୍ୱର ସୀମାନ୍ତ ଅନୁରୂପ । ତେଣୁ ତାହାକୁ ଅଦଳବଦଳ କରିବା ଲାଗି ଆନ୍ଦୋଳନ ଯଥାର୍ଥ ନୁହଁ ବୋଲି ଧରାଗଲା । ମଧ୍ୟପ୍ରଦେଶ ସମ୍ବଲପୁର ସୀମାନ୍ତର ଅବସ୍ଥା ମଧ୍ୟ ତଦ୍ରୂପ । ସମଗ୍ର ବସ୍ତର, ବିନ୍ଦ୍ରା ନୟାଗଡ଼ ଚନ୍ଦ୍ରପୁର ପ୍ରଭୃତି ଅଞ୍ଚଳରୁ କେତେକ ଗ୍ରାମ ଓଡ଼ିଶାକୁ ଆସିପାରେ ମାତ୍ର ସମଗ୍ର ଅଞ୍ଚଳ ନୁହଁ ବୋଲି ପାର୍ଟି ନିଷ୍ପତ୍ତିରେ ପହଞ୍ଚିଲା ।

ଓଡ଼ିଶା ପାର୍ଟିର ପ୍ରତିନିଧି ଓ ବିହାର ପାର୍ଟିର ପ୍ରତିନିଧି ଜାମସେଦ୍‌ପୁରଠାରେ ବସି

ଷଢ଼େଇକଳା-ଖରସୁଆଁ ଓଡ଼ିଶାରେ ରହିବା ଉଚିତ ବୋଲି ବିବୃତ୍ତି ଦେଲେ । ଆମ ପାର୍ଟି ପକ୍ଷରୁ ରାମକୃଷ୍ଣ ପତି, ଗୋବିନ୍ଦ ଚନ୍ଦ୍ର ମହାନ୍ତି, ବିହାର ପାର୍ଟି ପକ୍ଷରୁ ଯୋଗୀନ୍ଦ୍ର ଶର୍ମା ଏହି ରାଜିନାମାରେ ପହଞ୍ଚିଥିଲେ ।

୧୯୫୦ରେ ସୀମା ଅନ୍ଦୋଳନ କାଳରେ ଛାତ୍ର ସଂଘ ଏକ ଶକ୍ତିଶାଳୀ ଅନୁଷ୍ଠାନ ଥିଲା । ଯେଉଁ ରାଜ୍ୟ ସଂଗଠନ ସୀମା ସଂଗ୍ରାମ ଚଳାଇବାକୁ ଗଠନ କରାଗଲା ତାହାର ସଭାପତି ପୂର୍ବତନ କଂଗ୍ରେସ ନେତା ଶ୍ରୀ ଯଦୁମଣି ମଙ୍ଗରାଜ ଓ ସମ୍ପାଦକ ହେଲେ ଆମ ରାଜ୍ୟ ପାର୍ଟି ସମ୍ପାଦକ ଗୁରୁଚରଣ ପଟ୍ଟନାୟକ । ସାରା ଓଡ଼ଇଶାରେ ଏହି ଆନ୍ଦୋଳନ ପ୍ରଚଣ୍ଡ ରୂପ ଗ୍ରହଣ କରିଥିଲା ।

ପୁଲିସ ଆକ୍ରମଣରେ ସୁନୀଲ ଦେ କଟକରେ ଓ ବେଙ୍ଗ ପାଣିଆ ପୁରୀରେ ନିହତ ହୋଇଥିଲେ ।

ଏହି ଆନ୍ଦୋଳନରେ ଅନ୍ୟାନ୍ୟ ବିରୋଧୀ ଦଳର ନେତାଙ୍କ ସମେତ ବହୁ କମ୍ୟୁନିଷ୍ଟ ଗିରଫ ହୋଇଥିଲେ । ପାର୍ଟିର ରାମକୃଷ୍ଣ ପତି, ରାମଚନ୍ଦ୍ର ରାମ, ଗୁରୁଚରଣ ପଟ୍ଟନାୟକ, ମନମୋହନ ମିଶ୍ର ପ୍ରମୁଖ ବହୁନେତା ଗିରଫ ହୋଇ ଅନ୍ୟମାନଙ୍କ ସହିତ ଜେଲରେ ଥିଲେ ।

ନିଜକୁ ସଂକୀର୍ଣ୍ଣ ଜାତୀୟତାବାଦରୁ ଦୂରେଇ ରଖି ପାର୍ଟି ଏହି ଆନ୍ଦୋଳନରେ ଭାଗ ନେଇଥିଲା । ୧୯୫୪ରେ ସୀମା ତଦନ୍ତ କମିଶନ ଏଚଏନ କୁଞ୍ଜରୁ ଓଡ଼ିଶାକୁ ଆସିବାବେଳେ ଷଢ଼େଇକଳା, ଖରସୁଆଁ ଓଡ଼ିଶାରେ ମିଶିବା ଓ ସୀମାନ୍ତ ସେପଟର ଓଡ଼ିଆ ଭାଷାଭାଷୀ ଶିକ୍ଷା, ସଂସ୍କୃତି, ନିଯୁକ୍ତି, ଗଣତାନ୍ତ୍ରିକ ଅଧିକାରର ସୁରକ୍ଷା ଲାଗି ଦାବୀ କରାଯାଇଥିଲା ଏବଂ ଓଡ଼ିଶା ଭିତରେ ତେଲୁଗୁ ଭାଷୀମାନଙ୍କର ଶିକ୍ଷା, ସଂସ୍କୃତି, ଅନ୍ୟାନ୍ୟ ଅଧିକାର ପ୍ରତି ସମାନ ଆଚରଣ କରାଯିବା ଉଚିତ ବୋଲି ମତ ଦେଲା । ସୀମାନ୍ତରେ ଲଗାଲଗି ଗାଁ ଗୁଡ଼ିକର ଲୋକମତ ଅନୁସାରେ ଅଦଳବଦଳ ହୋଇପାରେ ବୋଲି ପାର୍ଟିର ସ୍ଥିର ସିଦ୍ଧାନ୍ତ କମିଶନ ପାଖରେ ପେଶ କରାଯାଇଥିଲା । ଏଥିପୂର୍ବ ପ୍ରବନ୍ଧରେ ଛାଡ଼ି ହୋଇଯାଇଥିବା ତିନୋଟି ବିଶେଷ ଘଟଣାର ଉଲ୍ଲେଖ କରାଯାଇଛି । ପାର୍ଟିର ଆନ୍ଦୋଳନ ଓ ମତାଦର୍ଶଗତ ପ୍ରଚାରର ମାଧମ ସମ୍ବାଦପତ୍ର କେବଳ ନୁହଁ । ସେଥିପାଇଁ ନିଜସ୍ୱ ପ୍ରେସ ଥିବା ଦରକାର । ଯେତେବେଳେ କମ୍ୟୁନିଷ୍ଟ ପତ୍ରପତ୍ରିକା ଓ ସାହିତ୍ୟ ମୁଦ୍ରଣ କରିବା ଲାଗି ସରକାରୀ ଭୟରେ ଅନ୍ୟାନ୍ୟ ପ୍ରେସ ଅନିଚ୍ଛୁକ ।

୧୯୪୨ ଶେଷ ଭାଗରେ ଗୋଟିଏ ହ୍ୟାଣ୍ଡପ୍ରେସ କିଣାଯାଇ ଯୁଦ୍ଧ କାଳରେ କାଗଜର ଅଭାବ ହେତୁ ମଣ୍ଡ ତିଆରି କରି ତହିଁରେ ନ୍ୟୁଜପ୍ରିଣ୍ଟ ପ୍ରସ୍ତୁତ କରି ମୁକ୍ତିଯୁଦ୍ଧ ପ୍ରକାଶ ପାଇଲା । କଟକ ଆଲିଶା ବଜାରରେ ଏହି ପ୍ରେସ ଥିବାବେଳେ ଗୋଟିଏ ଟ୍ରେଡଲ ଯୋଗ କରାଗଲା । କଂଗ୍ରେସ ସରକାରର ଅକ୍ରମଣ ବେଳେ ପ୍ରେସ କାର୍ଯ୍ୟରେ ପ୍ରବଳ ପ୍ରତିବନ୍ଧକ ସୃଷ୍ଟି ହେଲା । ୧୯୪୯-୫୦ରେ ଜେଲମୁକ୍ତି ଓ ଗୋପନ ବାସରୁ ପାର୍ଟିର ନେତୃବର୍ଗ ଫେରିବା ପରେ

ଡଗରପଡ଼ା ବ୍ରାହ୍ମଣ ସାହିକୁ ଉକ୍ତ ପ୍ରେସ ଉଠିଗଲା । ତା'ପୂର୍ବରୁ ପାର୍ଟିର ଅଜ୍ଞାତବାସ ବେଳେ ମାଛୁଆ ବଜାର ଓ ବଢ଼େଇ ସାହିରେ ପାର୍ଟି ଦରଦୀମାନଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରେସର କିଛି ଆସବାବ ଏଥିସହିତ ସଂଯୁକ୍ତ ହେଲା । ପଶ୍ଚିମବଙ୍ଗ ରାଜ୍ୟପାର୍ଟିର ସ୍ୱାଧୀନତା ପ୍ରେସ୍‌ରେ ଆଧୁନିକ ମେସିନ ଆସିବାରୁ ଉକ୍ତ ରାଜ୍ୟ ପାର୍ଟି ସମ୍ପାଦକ ଡଃ ମୁଜଫର ଅହମ୍ମଦ ଓ ଆମ ରାଜ୍ୟ ପାର୍ଟିର ତତ୍କାଳୀନ ସମ୍ପାଦକ ଗୁରୁଚରଣ ପଟ୍ଟନାୟକଙ୍କ ମଧ୍ୟରେ ସଂଯୋଗ ହୋଇ ଦୁଇଟି ଫ୍ଲାଟ ବେଡ ମେସିନ ଅଣାଗଲା । ଏହାକୁ ୪ ହଜାର ଟଙ୍କାରେ କିଣିବାକୁ ରାଜିନାମା ହେଲା ସତ ମାତ୍ର ୩ ହଜାର ଟଙ୍କା ଦିଆଯାଇଥିଲା । ଅର୍ଥାଭାବରୁ ୨ ବର୍ଷ କାଳ ମେସିନ ବସି ପାରିଲା ନାହିଁ । ରାଜ୍ୟ ପାର୍ଟିର ନିଷ୍ପତ୍ତି ଅନୁସାରେ ଡଃ ରାମକୃଷ୍ଣ ପତିଙ୍କ ଉଦ୍ୟୋଗରେ ଗୋଟିଏ ମେସିନକୁ ୭ ହଜାର ଟଙ୍କାରେ ବିକ୍ରି କରାଯାଇ ପାଲିତପଡ଼ାର ଏକ କୋଠାଘରେ ଅନ୍ୟ ମେସିନଟି ବସିଲା । ଉକ୍ତ କୋଠା ସମ୍ମୁଖରେ ଜମି ମାଲିକଙ୍କ ସହିତ ଚୁକ୍ତି ହୋଇ ପାର୍ଟି ଦ୍ୱାରା ସଂଗୃହୀତ ଅର୍ଥରେ ଏକ ଟାଇଲଘର ନିର୍ମିତ ହେଲା । ସେହିଦିନଠାରୁ ନବଯୁଗ ପ୍ରେସ ସେଠାରେ କାର୍ଯ୍ୟ କରିଆସୁଛି । ପୁରୁଣା ଫ୍ଲାଟ ବେଡ଼ ବିକ୍ରି ହୋଇ ତା'ପରେ ଏକ ଆଧୁନିକ ଫ୍ଲାଟ ବେଡ଼ ଓ ପୁରୁଣା ଟ୍ରେଡ଼ଲ ବିକାଯାଇ ଆଉ ଏକ ଟ୍ରେଡ଼ଲ ଓ ଅନ୍ୟାନ୍ୟ ମେସିନ ବସାଗଲା । କଟିଂ ମେସିନ, ହଟ୍‌ପ୍ରେସ, ଷ୍ଟୋନ ଓ ବିଭିନ୍ନ ଆକାରର ଚେସ କିଣାଗଲା ।

ଆଉ ଏକ ବହୁ ମୂଲ୍ୟବାନ ବିରାଟକାୟ ପ୍ରେସ ଅଣାଯାଇ ଥିଲା ଓ ଏକ ସ୍ୱତନ୍ତ୍ର ଘର କରି ତାହାକୁ ବସାଯାଇଥିଲା । ମାତ୍ର ତାହାକୁ କାର୍ଯ୍ୟକାରୀ କରାଯାଇପାରିଲା ନାହିଁ । ପ୍ରେସଟି ବିକ୍ରି ହୋଇ ତାହାର ଅର୍ଥ ଭଗବତୀ ଭବନ ନିର୍ମାଣରେ ବ୍ୟୟିତ ହେଲା ।

୧୯୪୬ରେ ଅଧୁନା ହାଇକୋର୍ଟ ସାମନା ଭଡ଼ାଘରେ ମାତ୍ର ଦୁଇଶହ ଟଙ୍କାରେ ଆଲମିରା, ଟେବୁଲ, ଚେୟାର ଓ ପ୍ରଗତିଶୀଳ ପୁସ୍ତକ କିଣି ନବଯୁଗ ଗ୍ରନ୍ଥାଳୟର ଅୟମାରମ୍ଭ ହେଲା । ପରବର୍ତ୍ତୀ କାଳରେ କଳେଜର ବୃଦ୍ଧି ହେବାକୁ ତାହା ବାଲୁବଜାରକୁ ସ୍ଥାନାନ୍ତରିତ ହେଲା । ପରେ ହରିପୁର ଓ ବର୍ତ୍ତମାନ ବଜ୍ରକବାଟି ରୋଡ଼ରେ ତାହା କାର୍ଯ୍ୟ କରୁଛି ଓ ନବଯୁଗ ଗ୍ରନ୍ଥାଳୟର ନିଜସ୍ୱ ଚିହ୍ନ ଗୋଦାମଘର ନିଜସ୍ୱ ଜମିରେ ରହିଛି ।

ଏହା ବ୍ୟତୀତ ସେହି ସମୟରେ ପ୍ରଗତିଶୀଳ ଭାବଧାରାର ପ୍ରଚାର ଲାଗି ଗଣସଙ୍ଗୀତ, ନୃତ୍ୟ, ନାଟକ ପରିବେଷଣ ସଂଗଠନ ଗଣନାଟ୍ୟ ସଂଘ ଗଠିତ ହୋଇଥିଲା । ଏଥିଲାଗି ଜନତା ରଙ୍ଗମଞ୍ଚରେ ସମ୍ମିଳନୀ ହୋଇଥିଲା ଏବଂ ବହୁ କଳାକାର, କଣ୍ଠଶିଳ୍ପୀଙ୍କୁ ସଂଗଠିତ କରାଯାଇଥିଲା । ତାହାର ସାଂସ୍କୃତିକ କାର୍ଯ୍ୟକଳାପ ଏକ ନୂତନ ଆଲୋଡ଼ନ ସୃଷ୍ଟି କରିଥିଲା । ବହୁ ପେଶାଦାର କଳାକାର ଏହି ସଂଗଠନ ପ୍ରତି ଆକୃଷ୍ଟ ହୋଇଥିଲେ ।

**ଜଟିଳ ରାଜନୈତିକ ସାଙ୍ଗଠନିକ ପରିସ୍ଥିତିରେ ପାର୍ଟିର ଭୂମିକା**

ରାଜ୍ୟ କମ୍ୟୁନିଷ୍ଟ ପାର୍ଟିକୁ ରାଜ୍ୟର ବିଭିନ୍ନ ସମୟରେ ଗଠିତ ଶାସକ ଦଳଗୁଡ଼ିକଙ୍କ

ଚାଷୀ, ଶ୍ରମିକ, ମଧ୍ୟବିତ୍ତ, ଛାତ୍ର, ଯୁବକ, କ୍ଷେତମଜଦୁର ବିରୋଧୀ ନୀତିଗୁଡ଼ିକ ବିରୁଦ୍ଧରେ ସଂଗ୍ରାମ କରିବାକୁ ପଡ଼ିଛି । ଭିନ୍ନ ଭିନ୍ନ ଅବସ୍ଥାରେ ଭିନ୍ନ ଭିନ୍ନ କର୍ମ କୌଶଳ ନିଆଯାଇଛି ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ରାଜ୍ୟରେ କଂଗ୍ରେସ ସରକାର, କଂଗ୍ରେସ- ଗଣତନ୍ତ୍ରର ମିଳିତ ସରକାର, ଜନକଂଗ୍ରେସ ସ୍ୱତନ୍ତ୍ର ସରକାର, ସ୍ୱତନ୍ତ୍ର ଉତ୍କଳ କଂଗ୍ରେସ ସରକାର, ଜନତା ପାର୍ଟି ସରକାର ଓ କଂଗ୍ରେସ (ଇ) ସରକାରର ସମ୍ମୁଖୀନ ହେବାକୁ ପଡ଼ିଛି ।

୧୯୬୨ରେ ଚୀନ-ଭାରତ ସଂଘର୍ଷ, ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନରେ ବିଭେଦ ଏବଂ ୧୯୬୪ରେ ଆନୁଷ୍ଠାନିକ ଭାବରେ ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନ ବିଭାଜନ ଓ ରାଜ୍ୟରେ ସିପିଆଇ (ଏମ) ଗଠନର ଏଠାରେ ତର୍ଜମା କରାଯାଉନାହିଁ । ମାତ୍ର ଏଥିରୁ ଉପୁଜିଥିବା ସାଙ୍ଗଠନିକ, ରାଜନୈତିକ ଓ ମତାଦର୍ଶଗତ ସମସ୍ୟାକୁ ରାଜ୍ୟ ପାର୍ଟିକୁ ମୁକାବିଲା କରିବାକୁ ପଡ଼ିଥିଲା । ପାର୍ଟିର ସର୍ବାଧିକ ସଂଖ୍ୟାଗରିଷ୍ଠ ସିପିଆଇରେ ରହିଥିଲେ ସତ, ମାତ୍ର ୧୯୬୪ ପରେ ସିପିଆଇ (ଏମ) ପକ୍ଷରୁ ସିପିଆଇ ଉପରେ ଆଦର୍ଶଗତ ଓ ସାଂଗଠନିକ ଆକ୍ରମଣ ହେଲା । କଂଗ୍ରେସ ଓ ଅନ୍ୟାନ୍ୟ ବୁର୍ଜୁଆଦଳଙ୍କ ପ୍ରଭାବଧୀନ ଗଣଭିତ୍ତିକୁ କମ୍ୟୁନିଷ୍ଟ ଆନ୍ଦୋଳନର ଗଣଭିତ୍ତିରେ ପରିଣତ କରିବାର ଲକ୍ଷ୍ୟ ମ୍ଳାନ ହୋଇଗଲା । ସମାନ୍ତରାଳ ସହୋଦର ପାର୍ଟି ପକ୍ଷରୁ ଐକ୍ୟବଦ୍ଧ ପାର୍ଟି ବେଳର ଗଣସଂଗଠନ ଯଥା- ଶ୍ରମିକ, କୃଷକ, ଛାତ୍ର ଫ୍ରଣ୍ଟଗୁଡ଼ିକୁ ଦଖଲ କରିବାର ଉଦ୍ୟମ ଓ ତାହାର ପ୍ରତିରୋଧ ହେଲା- ଫଳରେ କମ୍ୟୁନିଷ୍ଟ ଆନ୍ଦୋଳନର ଏକ ଆଘାତକାରୀ ଶକ୍ତି ହ୍ରାସ ପାଇଲା । ସିପିଆଇ ଏହି ଗଣଭିତ୍ତିଗୁଡିକୁ ରକ୍ଷା କରିବାର ସଂଗ୍ରାମ ସହିତ କମ୍ୟୁନିଷ୍ଟ ଆନ୍ଦୋଳନର ଅର୍ଥାତ୍ ସିପିଆଇ, ସିପିଆଇ (ଏମ)ର କାର୍ଯ୍ୟକ୍ଷେତ୍ରରେ ଐକ୍ୟସ୍ଥାପନର କର୍ମ କୌଶଳ ଗ୍ରହଣ କଲା ।

ଯେହେତୁ ସିପିଆଇ (ଏମ)ରୁ ନକ୍ସଲପନ୍ଥୀ ବାହାରି ସିପିଆଇ (ଏମ)(ଏଲ) ଗଠନ କରି ବ୍ୟକ୍ତି ସନ୍ତ୍ରାସର ପଥ ନେବା ବେଳେ ରାଜ୍ୟରେ ସିପିଆଇ ସେମାନଙ୍କ ସମ୍ପର୍କରେ ଆଦର୍ଶଗତ ସଂଗ୍ରାମ ଚଳେଇଲା । ସେମାନେ କମ୍ୟୁନିଷ୍ଟ ମାତ୍ର ଭ୍ରାନ୍ତ ପଥ ନେଇଛନ୍ତି ଓ ସେମାନଙ୍କୁ କମ୍ୟୁନିଷ୍ଟ ଆନ୍ଦୋଳନର ମୁଖ୍ୟ ସ୍ରୋତକୁ ଆଣିବା ଉଚିତ ବୋଲି ରାଜ୍ୟ ପାର୍ଟି ନିର୍ଣ୍ଣୟରେ ପହଞ୍ଚି ସେମାନଙ୍କ ସମ୍ପର୍କରେ ସହୋଦର ସୁଲଭ ଦୃଷ୍ଟିଭଙ୍ଗୀ ନେଲା ।

ପାର୍ଟିର ବିଭାଜନରେ ଶାସକ କଂଗ୍ରେସ ଦଳ ଓ ଅନ୍ୟାନ୍ୟ ବୁର୍ଜୁଆ ଦଳର ଉଲ୍ଲାସ । ସେହି କେତୋଟି ବର୍ଷରେ ରାଜ୍ୟ ପାର୍ଟି କାଡରମାନଙ୍କ ମଧ୍ୟରେ ଆଦର୍ଶ ଗତ ଶିକ୍ଷା ଦାନର କାର୍ଯ୍ୟକ୍ରମ ନେଇ ପାର୍ଟି ସଂଗଠନକୁ ରକ୍ଷା କଲା ।

୧୯୬୪ରେ ଓଡ଼ିଶାରେ ଐତିହାସିକ ଛାତ୍ର ଆନ୍ଦୋଳନରେ ଅନ୍ୟାନ୍ୟ କଂଗ୍ରେସ ବିରୋଧୀ ଯୁବଛାତ୍ର ସଂଗଠନ ଭିତରେ ଛାତ୍ରସଂଘର ଭୂମିକା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ।

କାମରାଜ ଯୋଜନା ଫଳରେ କଂଗ୍ରେସର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁପଟ୍ଟନାୟକଙ୍କ ସ୍ଥାନରେ

ଶ୍ରୀ ବୀରେନ ମିତ୍ର ମୁଖ୍ୟମନ୍ତ୍ରୀ ଥିବାବେଳେ କଟକରେ ରେଡ଼ିଓ ଦୋକାନରେ ସାମାନ୍ୟ ଗୋଳମାଳ ଆଳରେ ଲୁହାବୁହା ଗ୍ୟାସ, ଗିରଫ, ୧୪୪ ଧାରା ଜାରି ଫଳରେ ସାରା ରାଜ୍ୟରେ ନାହିଁ ନ ଥିବା ଛାତ୍ର ବିକ୍ଷୋଭ ସୃଷ୍ଟି ହେଲା । ବିଞ୍ଝାରପୁର, ଜଗତସିଂହପୁର ପ୍ରଭୃତିରେ ଗୁଳି, ଅତ୍ୟାଚାର ଓ ହତ୍ୟା ।

ପାର୍ଟି ଛାତ୍ରସଂଘ ଜରିଆରେ ଏବଂ ନିଜ ଯଗଣ ସଂଗଠନ ଜରିଆରେ ଏହି ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲା । ପାର୍ଟିର ଆର୍ଥିକ ଦୂରବସ୍ଥା ହେତୁ ପାର୍ଟିର ମୁଖପତ୍ର ଆଠ ଦଶ ମାସ ବନ୍ଦ ହୋଇଗଲା ପରେ ପୁନଶ୍ଚ ପ୍ରାଣନାଥ ପଟ୍ଟନାୟକଙ୍କ ସମ୍ପାଦକତ୍ୱରେ ୧୪.୮.୬୪ରୁ ପ୍ରକାଶ ପାଇଲା ।

**୧୯୬୪ରେ ଆଇନ ଅମାନ୍ୟ**

ପାର୍ଟିକୁ ଓ ଗଣ ସଙ୍ଗଠନଗୁଡ଼ିକୁ ସଂଗ୍ରାମମୁଖୀ ସକ୍ରିୟ କରାଯିବା ଉଦ୍ୟମ ହେଲା । ଜନ ସମସ୍ୟାଗୁଡ଼ିକୁ ଧରି କେନ୍ଦ୍ର ପାର୍ଟିର ଆହ୍ୱାନରେ ୧୯୬୪ ଅଗଷ୍ଟ ୨୪ ରୁ ୨୮ ଯାଏ ଭାରତବ୍ୟାପୀ ଦରଦାମ ବୃଦ୍ଧି ବିରୋଧୀ ଆନ୍ଦୋଳନ ହେଲା । ଏଥିରେ ଓଡ଼ିଶା ପାର୍ଟିର ବ୍ୟାପକ ଅଂଶଗ୍ରହଣ, ବିଭାଜନ ପରେ ପାର୍ଟିର ସଂଗ୍ରାମୀ ଭାବମୂର୍ତ୍ତିକୁ ଅକ୍ଷୁର୍ଣ୍ଣ ରଖିଲା । ବ୍ୟାଙ୍କ ଜାତୀୟକରଣ, ବିଦେଶୀ, ବାଣିଜ୍ୟ ଓ ଖାଦ୍ୟ ଶସ୍ୟ କାରବାର ରାଷ୍ଟ୍ରାୟତ୍ତକରଣ, ରାଜାଙ୍କ ଭତ୍ତା କାଟ ପ୍ରଭୃତି ଦାବୀ ଘେନି କୁଜଙ୍ଗ, ଆଠଗଡ଼, ମାର୍ଶାଘାଥ, ଧାନମଣ୍ଡଳ, ଯାଜପୁର ରୋଡ଼, କଟକ, ବଡ଼ବିଲ, ସୋନପୁର, ବରଗଡ଼, ବାରିପଦା, ଖୋର୍ଦ୍ଧା, ଆସ୍କା, ବ୍ରହ୍ମପୁର, ଢେଙ୍କାନାଳ, ବଲାଙ୍ଗୀର, କେଉଁଝର ପ୍ରଭୃତି ସ୍ଥାନରେ ହଜାର ହଜାର ଜନତାଙ୍କ ସହଯୋଗରେ ୯ ଶହ ପ୍ରତୀକ ସତ୍ୟାଗ୍ରହୀ ଆଇନ ଅମାନ୍ୟ କରିଥିଲେ । ଓଡ଼ିଶାରେ ୨୬୩ ଜଣ କମ୍ୟୁନିଷ୍ଟ ଗରିଫ କରାଯାଇ ଜେଲକୁ ନିଆଯାଇଥିଲା । ବାରିପଦାରେ ଅନଶନ କରାଯାଇଥିଲା । ଏହି ସତ୍ୟାଗ୍ରହ ୫ ଦିନ କାଳ ଚାଲିଥିଲା ।

ଏହି ସତ୍ୟାଗ୍ରହରେ ବିଭିନ୍ନ ସ୍ଥାନରେ ସତ୍ୟାଗ୍ରହୀମାନଙ୍କୁ ଜେଲଦଣ୍ଡ ମିଳିଥିଲା । କଟକରେ ଦୁର୍ଗା ଚରଣ ମହାନ୍ତି, ରାମକୃଷ୍ଣ ପତି, ଲୋକନାଥ ଚୌଧୁରୀ, ଦୁଃଶାସନ ଜେନା, ବ୍ରଜ ପଟ୍ଟନାୟକ ପ୍ରମୁଖଙ୍କୁ ୩ ମାସ ଜେଲ, ୩୦୦ ଟଙ୍କା ଜୋରିମାନା, ଅନାଦାୟେ ୩ ମାସ ଅଧିକ କାରାବାସ ଦଣ୍ଡ ମିଳିଥିଲା । କଟକ ଜେଲରେ ଅନ୍ୟାନ୍ୟ ସତ୍ୟାଗ୍ରହୀମାନଙ୍କ ବିଚାର ହୋଇଥିଲା । ଖଲାସ ପରେ କଟକରେ ଗୁରୁଚରଣ ପଟ୍ଟନାୟକଙ୍କ ସଭାପତିତ୍ୱରେ ଏକ ବିରାଟ ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହୋଇଥିଲା ।

ପୁରୀରେ ୬୪ ଜଣ ଗିରଫ ଓ ଦଣ୍ଡିତ ସତ୍ୟାଗ୍ରହୀଙ୍କ ମଧ୍ୟରେ ଥିଲେ ପ୍ରାଣନାଥ ପଟ୍ଟନାୟକ, ଗତିକୃଷ୍ଣ ସ୍ୱାଇଁ, ସୋମନାଥ ପାତ୍ର, ବାସୁଦେବ ଦାସ ପ୍ରମୁଖ । ପ୍ରଥମ ଦଳକୁ ୨ ମାସ ଓ ଦ୍ୱିତୀୟ ଦଳକୁ ୫ ସପ୍ତାହ ଜେଲ ହୋଇଥିଲା ।

ବାଲେଶ୍ୱରରେ ରଙ୍ଗାଧର ବିଶ୍ୱାଳ, ପ୍ରାଣକୃଷ୍ଣ ପାଢ଼ୀ, ପଞ୍ଚାନନ ମହାରଣା ପ୍ରମୁଖଙ୍କୁ ଏକ ମାସ ଜେଲ ହୋଇଥିଲା ।

ବ୍ରହ୍ମପୁରରେ ୩ ଦିନ ବ୍ୟାପୀ ସତ୍ୟାଗ୍ରହ ପୂର୍ବରୁ ୮ ହଜାର ଜନତାର ଏକ ବିଶାଳ ସମାବେଶ ହୋଇଥିଲା । ପ୍ରଥମ ଦିନ ସଦାନନ୍ଦ ମହାନ୍ତିଙ୍କ ନେତୃତ୍ୱରେ ସତ୍ୟାଗ୍ରହ ଅନୁଷ୍ଠିତ ହେଲା । ୫ ଶତାଧିକ ଲୋକ ପଟୁଆରରେ ଯାଇଥିଲେ । ପରବର୍ତ୍ତୀ ଦିନଗୁଡିକରେ ବ୍ରହ୍ମପୁର ଓ ଛତ୍ରପୁରରେ ଆଇନ ଅମାନ୍ୟ ଆନ୍ଦୋଳନର ନେତୃତ୍ୱ ବିଶ୍ୱନାଥ ସାହୁ, ଲକ୍ଷ୍ମଣ ମହାପାତ୍ର ପ୍ରମୁଖ ନେଇଥିଲେ । ଆସ୍କାରେ ହରିହର ଦାସ, ଦୂତୀକୃଷ୍ଣ ପଣ୍ଡା, ଜଗନ୍ନାଥ ସ୍ୱାମୀ, ପ୍ରଫୁଲ୍ଲ ପାଢ଼ୀ ପ୍ରମୁଖ ସତ୍ୟାଗ୍ରହ କରିଥିଲେ । ପ୍ରତ୍ୟେକ ଦିନ ସେଠାରେ ଅନଶନ ଚାଲିଥିଲା ।

ବାରିପଦାରେ ତିନିଦିନ ସତ୍ୟାଗ୍ରହ ଚାଲିଥିଲା । ୧୧ ଜଣଙ୍କୁ ଜାନୁଆରୀ ୨୬ ତାରିଖରେ ଗିରଫ କରାଗଲା । ସମ୍ବଲପୁରର ବରଗଡ଼ରେ ଲେଙ୍ଗୁ ମିଶ୍ର, ରାଧାବଲ୍ଲଭ ମିଶ୍ର, ଶିତିକଣ୍ଠ ପାଟଯୋଶୀଙ୍କ ନେତୃତ୍ୱରେ ସତ୍ୟାଗ୍ରହ ଚାଲିଥିଲା ।

୧୯୬୪ ସେପ୍ଟେମ୍ବର ୨୫ରେ ରାଜ୍ୟ ପାର୍ଟି ଓଡ଼ିଶାରେ ବୋନସ ଓ ଅନ୍ୟାନ୍ୟ ଦାବୀ ଲାଗି ହରତାଳ କରିବାକୁ ନିର୍ଦ୍ଦେଶ ଦେଇଥିଲା । ଭଦ୍ରଖ ସମେତ ବିଭିନ୍ନ ସ୍ଥାନରେ ତାହା ସମ୍ପୂର୍ଣ୍ଣ ସଫଳ ହୋଇଥିଲା ।

ପାର୍ଟି ବିଭାଜନ ପରେ କଂଗ୍ରେସ ବିରୁଦ୍ଧରେ ଏକ ଗଣ କାର୍ଯ୍ୟକଳାପ ପାର୍ଟିର ସଂଗ୍ରାମୀ ପରମ୍ପରାକୁ ବଳିଷ୍ଠ କଲା ।

ଏହି ସଂଗଠିତ ଆନ୍ଦୋଳନ ପୂର୍ବରୁ ଜନଦାବୀଗୁଡ଼ିକର ହାସଲ ପାଇଁ ବିଭିନ୍ନ ଜିଲ୍ଲା ପାର୍ଟି ସଭା ସମାବେଶ ବିକ୍ଷୋଭ କରୁଥିଲେ । କୁଜଙ୍ଗରେ ଅନଶନ ଏକ ବ୍ୟାପକ ଜନଉଦ୍‌ବେଳନ ସୃଷ୍ଟି କରିଥିଲା । ଧାନମଣ୍ଡଳ, ଯାଜପୁର ରୋଡ୍, ମାର୍ଶାଘାଇରେ ଅନଶନ ଆନ୍ଦୋଳନ ଚାଲିଥିଲା ।

୧୯୬୪ ଅକ୍ଟୋବର ୨ରେ ଭାରତ ବ୍ୟାପୀ ଖାଦ୍ୟ ଶସ୍ୟ ଜାତୀୟକରଣ ଦାବୀ ଦିବସ ଓଡ଼ିଶାରେ ପାର୍ଟି ପ୍ରଭାବିତ ବିଭିନ୍ନ ସ୍ଥାନରେ ପାଳିତ ହୋଇଥିଲା ।

୧୯୬୪ ଡିସେମ୍ବର ୧୩ ରୁ ୨୩ ବମ୍ବେ ଠାରେ ପାର୍ଟିର ୭ମ କଂଗ୍ରେସ ଅନୁଷ୍ଠିତ ହୋଇ ଜାତୀୟ ଗଣତାନ୍ତ୍ରିକ ବିପ୍ଲବ ଲାଗି ଜାତୀୟ ଗଣତାନ୍ତ୍ରିକ ସାମ୍ମୁଖ୍ୟ ଗଠନ ସଂକ୍ରାନ୍ତ କାର୍ଯ୍ୟସୂଚୀ ଗୃହୀତ ହୋଇଥିଲା । ବମ୍ବେ କଂଗ୍ରେସ ପରେ ଆସ୍କାଠାରେ ରାଜ୍ୟ ପାର୍ଟିର ଷଷ୍ଠ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଡଃ ସଦାନନ୍ଦ ମହାନ୍ତି ସଂପାଦକ ନିର୍ବାଚିତ ହୋଇଥିଲେ ।

ରାଜ୍ୟ ପାର୍ଟି ସମ୍ମିଳନୀ ପରେ ସାଂଗଠନିକ କାରଣରୁ ୧୯୬୫ ଫେବୃଆରୀ ୨୬/୨୭ରେ ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାର ମିଳିତ ସମ୍ମିଳନୀ ଭେଡେନ ଥାନାର ରେଶମଠାରେ ଅନୁଷ୍ଠିତ ହୋଇଥିଲା । ପୂର୍ବତନ ଜିଲ୍ଲା ସମ୍ପାଦକ ଦୟାନନ୍ଦ ଶତପଥୀ, ପ୍ରସନ୍ନ କୁମାର ପଣ୍ଡା,

ରାଜ୍ୟ ପାର୍ଟି ସମ୍ପାଦକ ଗୁରୁଚରଣ ପଟ୍ଟନାୟକ ପ୍ରମୁଖ ଉଦ୍‌ବୋଧନ ଦେଇଥିଲେ । ପୁନଶ୍ଚ ନଟବର ବନଛୋର ଓ ମଦନ ବୈଁଅଠାରୁ ଯଥା କ୍ରମେ ସମ୍ବଲପୁର ଓ ବଲାଘଙ୍ଗୀର ଜିଲ୍ଲା ପାର୍ଟିର ସମ୍ପାଦକ ନିର୍ବାଚିତ ହେଲେ ।

୧୯୬୫ ମଇ ୨୧ ରୁ ୨୮ ଯାଏ ଗଣତାନ୍ତ୍ରିକ ଅଧିକାରର ସୁରକ୍ଷା ଓ ଖାଦ୍ୟ, ଦରଦାମ ସଂକ୍ରାନ୍ତ ସପ୍ତାହ ବ୍ୟାପୀ ସର୍ବଭାରତୀୟ ଆନ୍ଦୋଳନ ପାର୍ଟି ଡାକରାରେ ଅନୁଷ୍ଠିତ ହୋଇଥିଲା । ଭାରତ ରକ୍ଷା ଆଇନ ରଦ୍ଦ କର, କେରଳରୁ ରାଷ୍ଟ୍ରପତି ଆଇନ ଉଠାଇ ନିଅ ଥିଲା ମୁଖ୍ୟ ରାଜନୈତିକ ଦାବୀ । ଓଡ଼ିଶାରେ ପାର୍ଟି ପକ୍ଷରୁ ଏକ ପ୍ରସ୍ତାବ ପାଳନ କରାଯାଇ ବିଭିନ୍ନ ଜିଲ୍ଲାରେ ସଭା ସମିତି କରାଯାଇଥିଲା ।

ଡଃ ରାଜେଶ୍ୱର ରାଓ ଓ ଭବାନୀ ସେନ ଓଡ଼ିଶା ପାର୍ଟି ବୈଠକରେ ଯୋଗ ଦେଇ ୭ମ ପାର୍ଟି କଂଗ୍ରେସର ନିର୍ଦ୍ଧାରଣକୁ ଭିତ୍ତି କରି ସମଗ୍ର ପାର୍ଟିକୁ ରାଜନୈତିକ ଭାବରେ ଐକ୍ୟବଦ୍ଧ କରିବାକୁ ପରାମର୍ଶ ଦେଇଥିଲେ ।

୧୯୬୫ ର ଅଦ୍ୟ ଭାଗରେ ଏ.ଆଇ.ଟି.ୟୁ.ସି. କମ୍ୟୁନିଷ୍ଟ ଟ୍ରେଡ୍ ୟୁନିଅନ କର୍ମୀଙ୍କ ନେତୃତ୍ୱରେ ଚୌଦ୍ୱାର ଓ.ଟି.ଏମ୍. ଶ୍ରମିକମାନଙ୍କ ଅନଶନ, ଧର୍ମଘଟ ଓ ଆକବର ଖାଁ ଗୁଡ଼ାଖୁ ଶ୍ରମିକଙ୍କ ଅନଶନ, ଧର୍ମଘଟ ସଫଳ ହୋଇ ଦାବୀମାନ ଆଦାୟ ହୋଇଥିଲା ।

ଦରଦାମ ବୃଦ୍ଧି ନିରୋଧ, ଖାଦ୍ୟ ଯୋଗାଣ ଲାଗି ଗୋଲା ପ୍ରତିଷ୍ଠା, ଚାଷୀଙ୍କୁ ଉପଯୁକ୍ତ ଦର, ପଡ଼ିଆ ଜମି ବଣ୍ଟନ, ଚିନି, କିରୋସିନୀ ଯୋଗାଣର ଦାବୀ ଘେନି କଂଗ୍ରେସ ସରକାରକୁ ରାଜ୍ୟ ପାର୍ଟି ସ୍ମାରକଲିପି ଦେଇ ସଭା, ବିକ୍ଷୋଭ ଓ ପଦ ଯାତ୍ରା ସଂଗଠିତ କରିଥିଲା ।

ରାଜ୍ୟ ପାର୍ଟି ଜାତୀୟ, ରାଜ୍ୟର ସମସ୍ୟା ଘେନି ସଂଗ୍ରାମ କରିବା ବେଳେ, ଏହି ଘଡିସନ୍ଧି ସମୟରେ ତା'ର ଅନ୍ତର୍ଜାତିକ କର୍ତ୍ତବ୍ୟକୁ ମଧ୍ୟ ତୁଲାଇଥିଲା । ୧୯୬୩ ସେପ୍ଟେମ୍ବର ୧ ରେ ଯୁଦ୍ଧ ବିରତି ଲଙ୍ଘନ କରି ପାକିସ୍ତାନ କାଶ୍ମୀର ଆକ୍ରମଣ କଲା । ଆମେରିକା ହିଁ ପାକିସ୍ତାନକୁ ସାହାଯ୍ୟ ଦେଇ ଭାରତ ବିରୁଦ୍ଧରେ ଯୁଦ୍ଧ କରାଇଥିଲା । ନଭେମ୍ବର ୨୭ରେ ରାଜ୍ୟ ପାର୍ଟି ପକ୍ଷରୁ ଆମେରିକା ସାମ୍ରାଜ୍ୟବାଦ ବିରୋଧୀ ଦିବସ ପାଳନ କରାଯାଇ ସଭା ସମିତି ଅନୁଷ୍ଠିତ ହୋଇଥିଲା । ଭିଏତ୍‌ନାମା ବିରୁଦ୍ଧରେ ଆମେରିକାର ବର୍ବର ଆକ୍ରମଣର ନିନ୍ଦା କରି ଓ ଭିଏତ୍‌ନାମାବାସୀଙ୍କ ମହାନ ମୁକ୍ତି ସଂଗ୍ରାମକୁ ସମର୍ଥନ କରି ପାର୍ଟି ରାଜ୍ୟରେ ପାର୍ଟି ପକ୍ଷରୁ ଅଭିଯାନ ଚଳାଯାଇଥିଲା । ଏହି ବର୍ଷ ନଭେମ୍ବର ୨୧ରେ କଟକ ଠାରେ ରାଜ୍ୟ ଭାରତ-ସୋଭିଏତ୍ ସାଂସ୍କୃତିକ ସମିତିର ପ୍ରଥମ ସମ୍ମିଳନୀରେ ପାର୍ଟି ସାଥୀମାନେ ସକ୍ରିୟ ଅଂଶଗ୍ରହଣ କରି ତାକୁ ଯଶସ୍ୱୀ କରିଥିଲେ । ଯାହା ପରବର୍ତ୍ତୀ କାଳରେ ଏକ ବିରାଟ ମୈତ୍ରୀ ସଂଗଠନରେ ପରିଣତ ହେଲା ।

ପାର୍ଟି ବିଭାଜନ ପରେ ସି.ପି.ଆଇ.ର ରାଜ୍ୟ ଶାଖା ଏହିପରି ସଂଗ୍ରାମ ଓ ସାଂଗଠନିକ

ପୁନର୍ଗଠନ କାର୍ଯ୍ୟ ଚଳେଇ ପାର୍ଟିକୁ ଆଦର୍ଶଗତ ଭାବରେ ଐକ୍ୟବଦ୍ଧ କରାଇଲା ।

ନୂଆଦୁନିଆର ସମ୍ପାଦକ ପଦରେ ୧୯୬୮ର ଅଗଷ୍ଟ ସଂଖ୍ୟା ଯାଏ ପ୍ରାଣନାଥ ପଟ୍ଟନାୟକ ସମ୍ପାଦକ ଥିଲେ । ତାହା ପରେ ୧୯୮୯ର ମଧ୍ୟଭାଗ ଯାଏ ଗୁରୁଚରଣ ପଟ୍ଟନାୟକ ଏହାର ସମ୍ପାଦକ ଏବଂ ୧୯୬୫ ଜାନୁଆରୀରୁ ଅନନ୍ତ ପ୍ରଧାନଙ୍କ ପରିବର୍ତ୍ତେ ନନ୍ଦକିଶୋର ପଟ୍ଟନାୟକ ଏହାର ପ୍ରକାଶକ ରାଜ୍ୟ ପାର୍ଟି ନିର୍ଦ୍ଧାରଣ ଅନୁସାରେ ରହିଛନ୍ତି ।

୧୯୬୬ରେ କଳାହାଣ୍ଡିରେ ଭୟାବହ ଦୁର୍ଭିକ୍ଷ ଓ ଶତ ଶତ ଲୋକଙ୍କ ଅନାହାର ମୃତ୍ୟୁର କରାଳ ଚିତ୍ର ନୂଆ ଦୁନିଆରେ ପ୍ରକାଶ ପାଇଲା । ସମ୍ପାଦକ ପ୍ରାଣନାଥ ପଟ୍ଟନାୟକ କଳାହାଣ୍ଡି ଗସ୍ତ କରି ତାଙ୍କ ଚାକ୍ଷୁଷ ବିବରଣୀ ସମ୍ବାଦପତ୍ରମାନଙ୍କରେ ପ୍ରକାଶ କଲେ । ସମ୍ବଲପୁରରୁ ଡଃ ପ୍ରସନ୍ନ କୁମାର ପଣ୍ଡାଙ୍କ ନେତୃତ୍ୱରେ ପ୍ରତିନିଧି ଦଳ କଳାହାଣ୍ଡି ଗସ୍ତ କଲେ । କଂଗ୍ରେସ ସରକାରର ମୁଖା ଖୋଲିବାରେ ଏବଂ ସର୍ବୋଦୟ ଠାରୁ ଅନ୍ୟାନ୍ୟ ସେବାନୁଷ୍ଠାନ କଳାହାଣ୍ଡିରେ ରିଲିଫ କାର୍ଯ୍ୟ ପାଇଁ ଆଗଭର ହେବାରେ କମ୍ୟୁନିଷ୍ଟମାନଙ୍କ କାର୍ଯ୍ୟ ସାହାଯ୍ୟକାରୀ ହେଲା ଏବଂ ପାର୍ଟିର ମର୍ଯ୍ୟାଦା ବୃଦ୍ଧି କଲା ।

୧୯୬୬ରେ ଦେଶରେ କଂଗ୍ରେସ ଶାସନ ବିରୁଦ୍ଧରେ ଜନ ଅସନ୍ତୋଷ ପ୍ରଜ୍ୱଳିତ ହେଲା । କଂଗ୍ରେସ ତ୍ୟାଗ କରି ବିଭିନ୍ନ ରାଜ୍ୟରେ କ୍ରାନ୍ତି ଦଳ ବଙ୍ଗଳା କଂଗ୍ରେସ, ଜନ କଂଗ୍ରେସ ପରି ଦଳମାନ ଗଠିତ ହୋଇଥିଲା । ଓଡ଼ିଶାରେ ମହତାବଙ୍କ ନେତୃତ୍ୱରେ ଜନକଂଗ୍ରେସ ଗଢ଼ା ଯାଇଥିଲା । ନିର୍ବାଚନ ପରେ କଂଗ୍ରେସ ପରାସ୍ତ ହେବାରୁ ଜନ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ କ୍ଷମତାକୁ ଆସିଥିଲେ । ସି.ପିଆଇ. ଏହି ନିର୍ବାଚନରେ ବିଧାନସଭା ଲାଗି ୨୮ଟୀ ସ୍ଥାନରେ ଓ ଲୋକସଭା ଲାଗି ୨ଟି ସ୍ଥାନରେ ପ୍ରାର୍ଥୀ ଦେଇ ୭ଟି ବିଧାନସଭା ଆସନ ଲାଭ କରିଥିଲା । ହରିହର ଦାସ, ଲୋକନାଥ ଚୌଧୁରୀ, ଗତିକୃଷ୍ଣ ସ୍ୱାଇଁ, ଗଙ୍ଗାଧର ପାଇକରାୟ, ପ୍ରସନ୍ନ କୁମାର ପଣ୍ଡା, ଲକ୍ଷ୍ମଣ ମହାପାତ୍ର ଓ ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ ବିଜୟୀ ହୋଇଥିଲେ ।

ଦଶପଲ୍ଲା, ରଣପୁର, ବିନିକା, ଭଞ୍ଜନଗର, ବଡ଼ଚଣା, ଅନୁଗୋଳ, ନିମାପଡ଼ା, ବଡ଼ମ୍ବା, ଛେଣ୍ଡିପଦା, ଆଠଗଡ଼, ରାଉରକେଲା, କଟକ ସଦର, ଚାନ୍ଦବାଲି, ବରଗଡ଼, ଭଟଲି, ପଦ୍ମପୁର, ବାରିପଦା, ଭୁବନେଶ୍ୱର, ବ୍ରହ୍ମପୁର, ବାଣପୁର ନିର୍ବାଚନ ମଣ୍ଡଳୀରେ ମଧ ବିଧାନସଭା ପାଇଁ ଏବଂ ଭଞ୍ଜନଗର ସମ୍ବଲପୁର ଲୋକସଭା ଆସନ ଲାଗି ପ୍ରାର୍ଥୀ ଦିଆଯାଇଥିଲା ।

୯ଟି ରାଜ୍ୟରେ କଂଗ୍ରେସ ପରାସ୍ତ ହେଲା । କଂଗ୍ରେସ ବିରୁଦ୍ଧରେ ଅଣ-କଂଗ୍ରେସ ସରକାରଙ୍କୁ ପାର୍ଟି ସର୍ବଭାରତୀୟ କ୍ଷେତ୍ରରେ ସମର୍ଥନ କରିବ ବୋଲି ନିର୍ଣ୍ଣୟ କରିଥିଲା । ମାତ୍ର ସରକାରଙ୍କ ଜନ ସ୍ୱାର୍ଥ ବିରୋଧୀ ନୀତି ଓ କାର୍ଯ୍ୟକଳାପ ବିରୁଦ୍ଧରେ ସଂଗ୍ରାମ ଅବ୍ୟାହତ ରହିବ ବୋଲି ପାର୍ଟି କର୍ମକୌଶଳ ନେଇଥିଲା । କଂଗ୍ରେସକୁ କ୍ଷମତାରୁ ଦୂରେଇ ରଖିବା ଦୃଷ୍ଟିରୁ ପଞ୍ଜାବ, ଉତ୍ତର ପ୍ରଦେଶ ଓ ବିହାର ପାର୍ଟି କଂଗ୍ରେସ ବିରୋଧୀ ମିଳିତ ସରକାରରେ ଯୋଗ ଦେଇଥିଲା ।

ଓଡ଼ିଶାର ପରିସ୍ଥିତି ସ୍ୱତନ୍ତ୍ର । ଘୋର ପ୍ରତିକ୍ରିୟାଶୀ, ଦକ୍ଷିଣପନ୍ଥୀ, ସମାନ୍ତବାଦ ଓ ସାମ୍ରାଜ୍ୟବାଦ ପକ୍ଷପାତୀ ସ୍ୱତନ୍ତ୍ର ସହିତ ଜନ କଂଗ୍ରେସର ମିଳିତ ସରକାର ଯାବତୀୟ ଜନବିରୋଧୀ କାର୍ଯ୍ୟ କରିବ ବୋଲି ରାଜ୍ୟ ପାର୍ଟି ମୋଟାମୋଟି ସମର୍ଥନ ଦେଲେ ମଧ୍ୟ ଖୁବ୍ ସତର୍କ ରହିଥିଲା ।

**ସ୍ୱତନ୍ତ୍ର-ଜନ କଂଗ୍ରେସ ଶାସନ କାଳରେ ଦମନ ଅତ୍ୟାଚାର ଓ ପାର୍ଟିର ଭୂମିକା**

ସ୍ୱତନ୍ତ୍ର ଜନକଂଗ୍ରେସ ସରକାରର ପ୍ରଥମ ପରୀକ୍ଷା ହେଲା ଭୂସଂସ୍କାର । ୧୯୬୦ ଜାନୁଆରୀ ୩୦ରେ ଚାଷୀ ଆନ୍ଦୋଳନ ଫଳରେ କଂଗ୍ରେସ ସରକାର ଦ୍ୱାରା ଗୃହୀତ ଭୂସଂସ୍କାର ଆଇନରେ ସର୍ବୋଚ୍ଚ ସୀମା ୭୫ ଏକର ଥିଲା । ୧୯୬୫ରେ ପୁନଶ୍ଚ ଚାଷୀ ଆନ୍ଦୋଳନ ଯେଉଁଥିରେ ଆମ ପାର୍ଟି ସର୍ବଦା ମୁଖ୍ୟତଃ ଅଗ୍ରଣୀ ଭୂମିକା ନେଇ ଆସିଛି, ତାହା ଫଳରେ ସର୍ବୋଚ୍ଚ ସୀମା କମେଇ ୨୦ ଏକର କରାଗଲା । ବଲାଙ୍ଗୀରର ଜଣେ ରାଜଭକ୍ତ ଜମି ମାଲିକ ଏହା ବିରୁଦ୍ଧରେ ମକଦ୍ଦମା କରିବାରୁ ଓଡ଼ିଶା ହାଇକୋର୍ଟ ସମଗ୍ର ଆଇନକୁ ରଦ୍ଦ କରିଦେଲେ । ସ୍ୱତନ୍ତ୍ର ଜନସକଂଗ୍ରେସ ସରକାର ସର୍ବୋଚ୍ଚ ନ୍ୟାୟାଳୟରେ ଅପିଲ ନ କରବାରୁ ସିପିଆଇ ତାହା ବିରୁଦ୍ଧରେ ରାଜ୍ୟରେ ପ୍ରତିବାଦ ଆନ୍ଦୋଳନ, ସଭା ସମାବେଶ ବିକ୍ଷୋଭ ମାନ ସଂଗଠିତ କଲା । ପୂର୍ବତନ ରାଜା ଜମିଦାର ଓ ବଡ଼ ଜମି ମାଲିକ, କ୍ଷୁଦ୍ର ମଧ୍ୟମ ଚାଷୀ ନିର୍ବିଶେଷରେ ଖଜଣା ଛାଡ଼ କରି ବସ୍ତୁତଃ ଏହି ସରକାର ଗରିବ ଚାଷୀ ରକ୍ଷା ନାମରେ ଜମିରେ ନ୍ୟସ୍ତସ୍ୱାର୍ଥ ଥିବା ସଂପ୍ରଦାୟକୁ ସାହାଯ୍ୟ କଲା ଓ ବଡ଼ ଜମି ମାଲିକଙ୍କୁ ଖଜଣା ଛାଡ଼ ଦ୍ୱାରା ରାଜସ୍ୱ ହାନି କରି ଓଡ଼ିଶାବାସୀଙ୍କ ଉପରେ ୨ କୋଟିରୁ ଊର୍ଦ୍ଧ୍ୱ ଟିକସ ବସାଗଲା । ବସ ଭଡ଼ା ବୃଦ୍ଧି କରାଗଲା ।

କଂଗ୍ରେସ ଶାସନ ଅମଳରେ ପ୍ରଚଳିତ ଜଳକର ଆଇନକୁ ସିପିଆଇ ଓ ବାମପନ୍ଥୀମାନେ ବିରୋଧ କରୁଥିଲେ । ଶାସନକୁ ଆସିବା ପୂର୍ବରୁ ସ୍ୱତନ୍ତ୍ର ଜନକଂଗ୍ରେସ ମଧ୍ୟ ଏହାର ବିରୋଧ କରୁଥିଲେ । ମାତ୍ର କ୍ଷମତାସୀନ ହେବା ପରେ ତାହାକୁ ଉଚ୍ଛେଦ କରାଗଲା ନାହିଁ । ତାହା ବିରୁଦ୍ଧରେ ପାର୍ଟି ବିଶେଷତଃ ସମ୍ବଲପୁରରେ ବିଶାଳ ଆନ୍ଦୋଳନ ଗଢ଼ି ତୋଳିଲା । ପାର୍ଟି ନେତୃତ୍ୱରେ ବଲାଙ୍ଗୀର-ସମ୍ବଲପୁର ଚାଷୀମାନେ ଭେଡ଼େନ ଠାରେ ଏକ ବିରାଟ ଜଳକର ସମ୍ମିଳନୀ ଅନୁଷ୍ଠିତ କରାଇଲେ ।

ଏହି ସରକାର ମଧ୍ୟ ପାଠ୍ୟପୁସ୍ତକ ଜାତୀୟକରଣ ନୀତିକୁ ନାକଚ କରିବା ଉଦ୍ୟମ କରିବାରୁ ପାର୍ଟି ତାହାର ତୀବ୍ର ବିରୋଧ କରିଥିଲା ।

ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର କଂଗ୍ରେସର ଅନ୍ୟ ଏକ ବୁର୍ଜୁଆ ବିକଳ୍ପ ଏବଂ ଜନକଂଗ୍ରେସ ଦଳ ପ୍ରତିକ୍ରିୟାଶୀଳ ସ୍ୱତନ୍ତ୍ର ଦଳର ଯେ ତଳିଆ ଅଂଶୀଦାର, ଏହା ଶ୍ରମିକ, ଚାଷୀ ଛାତ୍ରମାନଙ୍କ ଦାବୀ ଓ ସଂଗ୍ରାମ କାଳରେ ସ୍ପଷ୍ଟ ହୋଇଗଲା । ଏହି ମିଳିତ ସରକାର ଦମନ,

ପୀଡ଼ନ, ଗୁଳି, ଜେଲ, ମିଥ୍ୟା ମକଦ୍ଦମା, ଗୁଣ୍ଡା ଆକ୍ରମଣର ଆଶ୍ରୟ ନେଲା । ଶ୍ରମିକ କୃଷକମାନଙ୍କ ସ୍ୱାର୍ଥ ଉପରେ ଆଘାତ ପରେ ଆଘାତ ଦେଲା ।

ରାଜଗାଙ୍ଗପୁର ଶ୍ରମିକମାନଙ୍କ ଉପରେ ଗୁଳି-ଝାରସୁଗୁଡ଼ା ଓରିଏଣ୍ଟ କାଗଜକଳର ବିରଳା ବିରୋଧୀ ଶ୍ରମିକ ସଂଗ୍ରାମ ଉପରେ ଗୁଳି ଓ ୪ ଜଣଙ୍କୁ ହତ୍ୟା, ଦରଦାମ ବୃଦ୍ଧି ବିରୁଦ୍ଧରେ ସମ୍ବଲପୁରରେ କମ୍ୟୁନିଷ୍ଟ ଓ ଛାତ୍ରମାନଙ୍କ ଆନ୍ଦୋଳନ ଉପରେ ବର୍ବର ପୁଲିସ ଆକ୍ରମଣ ଓ ଗୁଣ୍ଡା ଲଗେଇ ମାଡ଼, ଗିରଫଦାରୀ, ଓଡ଼ିଶାରେ ଶ୍ରମିକଙ୍କ ଘେରାଉ କରିବା ଅଧିକାର ଉପରେ ନିଷେଧାଦେଶ, ଖଲିକୋଟରେ ଛାତ୍ରମାନଙ୍କ ଉପରେ ଅତ୍ୟାଚାର ଦମନ ଲାଠି, ବାଲେଶ୍ୱରରେ ଛାତ୍ରମାନେ ମହତାବ ବାବୁଙ୍କ ପାଖରେ ବନ୍ୟା ଦୁର୍ଗତଙ୍କ ଲାଗି ରିଲିଫ ଦାବୀ କରିବାକୁ ଭୟାବହ ପୁଲିସ ଆକ୍ରମଣ, ଲାଠି ଲୁହବୁହା ଗ୍ୟାସ ପ୍ରୟୋଗ ଜଳେଶ୍ୱରଠାରେ ଭୋକିଲାଙ୍କ ଉପରେ ଦମନ ଚାଲିଲା ।

୧୯୬୮ ଅଗଷ୍ଟ ୯ରୁ ଗଞ୍ଜାମର ଜୟଶ୍ରୀ କେମିକାଲ ଶ୍ରମିକଙ୍କ ୨୭ ଦିନ କାଳ ଧର୍ମଘଟ ଉପରେ ପୁଲିସର ଆକ୍ରମଣ ଓ ଲାଠି ଚାଲିଥିଲା- ସଦାନନ୍ଦ ମହାନ୍ତି ପ୍ରମୁଖ ୯୦ ଜଣ ସାଥୀଙ୍କୁ ଗିରଫ କରାଯାଇଥିଲା ।

ଏହି ସରକାରର ଶାସନ କାଳରେ ସିପିଆଇ ଚାଷୀ, ଶ୍ରମିକ ମଧ୍ୟବିତ୍ତଙ୍କ ସ୍ୱାର୍ଥ ରକ୍ଷା କରିବା ଲାଗି ରାଜ୍ୟ ବ୍ୟାପୀ ବହୁ ଆନ୍ଦୋଳନ ସଂଗଠିତ କରିଥିଲା ଏବଂ ଅନ୍ୟ ବାମ ଓ ଗଣତାନ୍ତ୍ରିକ ଦଳଙ୍କୁ ଏକାଠି କରିବାରେ ମୁଖ୍ୟ ଭୂମିକା ନେଇଥିଲା । ୧୯୭୦ ଯାଏ ପାର୍ଟି ଚଳାଇଥିବା ଜନ ସଂଗ୍ରାମଗୁଡ଼ିକର ସଂକ୍ଷିପ୍ତ ବିବରଣୀ ଦିଆଗଲା ।

୧୯୬୭ ସେପ୍ଟେମ୍ବର ୧୧ ତାରିଖରେ ଭାରତ ବ୍ୟାପୀ ଧର୍ମଘଟ ଡାକରାକୁ ରାଜ୍ୟ ପାର୍ଟି ସଫଳ କରିବାକୁ ଉଦ୍ୟମ କରିଥିଲା । ଖଲିକୋଟ ଛାତ୍ରମାନଙ୍କ ଉପରେ ଦମନ ବିରୁଦ୍ଧରେ ଖଲିକୋଟ ବନ୍ଦ ଲାଗି ଛାତ୍ରସଂଘର ଡାକରାରେ ସିପିଆଇ ପ୍ରମୁଖ ଅଂଶ ନେଇଥିଲା ଓ ବ୍ରହ୍ମପୁରରେ ଛାତ୍ର ଆନ୍ଦୋଳନ ତୀବ୍ର ରୂପ ଧରିଥିଲା ।

୧୯୬୭ ଅକ୍ଟୋବର ୨୨ରେ ପାର୍ଟି ଦରଦାମ ବିରୋଧୀ ସମ୍ମିଳନୀ କରାଇ ୨୩ ରୁ ଏକ ସପ୍ତାହ ବ୍ୟାପୀ ରାଜ୍ୟ ସାରା ବିକ୍ଷୋଭ ଅନୁଷ୍ଠିତ କରାଇଥିଲା । କଟକ ସହର, ମାହାଙ୍ଗା, ଜଗତସିଂହପୁର, ଖୋର୍ଦ୍ଧା, ଢେଙ୍କାନାଳ, ବରଗଡ଼, ଚାନ୍ଦବାଲି, ରଣପୁର ଓ ଆଉ ଅନେକ ସ୍ଥାନରେ ଦୃପ୍ତ ବିକ୍ଷୋଭ ହୋଇଥିଲା । ମୟୂରଭଞ୍ଜ, ଆନନ୍ଦପୁର, କଟକର କେତେକାଂଶରେ ପ୍ରବଳ ବନ୍ୟାଜନିତ କ୍ଷୟକ୍ଷତିର ଭରଣା ଲାଗି ଜନ ବିକ୍ଷୋଭମାନ ସଂଗଠିତ କରାଯାଇଥିଲା । ୧୯୬୭ର ପ୍ରବଳ ବାତ୍ୟାରେ କ୍ଷୟକ୍ଷତି ଓ ଥଇଥାନ ଦାବୀ କରି ବିଶେଷତଃ କଟକ, ପୁରୀ ସମୁଦ୍ରତଟବର୍ତ୍ତୀ ଅଞ୍ଚଳରେ ପାର୍ଟି ପକ୍ଷରୁ ବ୍ୟାପକ ଜନ ବିକ୍ଷୋଭ ଅନୁଷ୍ଠିତ ହୋଇଥିଲା ।

୧୯୬୭ ଡିସେମ୍ବର ୨୨ରେ ବଡ଼ବିଲର ୧୫ଟି ଖଣିର ୧୫ ହଜାର ଶ୍ରମିକ ୨୫

ଦିନ ବ୍ୟାପୀ ଧର୍ମଘଟ, ମହିଳାଙ୍କ ସମେତ ୫୧ ଜଣ ଗିରଫର ପ୍ରତିବାଦ କରି କଟକ, ହୀରାକୁଦ, ଟେନସାଠାରେ ପ୍ରତିବାଦ ସଭାମାନ ହୋଇଥିଲା ।

୨୭.୭.୬୭ରେ ପାର୍ଟିର ରାଜ୍ୟ ପରିଷଦ ଡଃ ଲୋକନାଥ ଚୌଧୁରୀ ଦାନ କରିଥିବା ଜାଗାରେ ଭୁବନେଶ୍ୱରଠାରେ ଭଗବତୀ ଭବନ ନିର୍ମାଣର ଡାକରା ଦେଇଥିଲା । କେତେକ ସାଥୀ ସେଦିନ ୪ ହଜାର ଟଙ୍କା ଯାଏ ଦାନ ଘୋଷଣା କରିଥିଲେ ।

କେନ୍ଦ୍ର କଂଗ୍ରେସ ସରାକର ପଶ୍ଚିମବଙ୍ଗର ଅଜୟ ମୁଖାର୍ଜୀ ସରକାରଙ୍କୁ ଦରଖାସ୍ତ କରିବାରୁ ରାଜ୍ୟ ପାର୍ଟି କଟକ, ବ୍ରହ୍ମପୁର, ବରଗଡ଼ ପ୍ରଭୃତି ସ୍ଥାନରେ ମଶାଲ ପଟୁଆର ସହ ପ୍ରତିବାଦ ସଭା ଅନୁଷ୍ଠିତ କରାଇଥିଲା ।

୧୯୬୭ ଅକ୍ଟୋବର ୨୧ରେ ପାର୍ଟି ଉଦ୍ୟୋଗରେ ଭିଏତନାମା ଦିବସ ପାଳିତ ହୋଇଥିଲା । ଭୁବନେଶ୍ୱର ଓ ଆଠଗଡ଼ରେ ଉପନିର୍ବାଚନରେ ଯଥାକ୍ରମେ ସାଥୀ ପ୍ରାଣନାଥ ପଟ୍ଟନାୟକ ଓ ବ୍ରଜ ପଟ୍ଟନାୟକଙ୍କୁ ପ୍ରାର୍ଥୀ ଦିଆଯାଇଥିଲା ।

ବିଦାନସଭାର କମ୍ୟୁନିଷ୍ଟ ଏମଏଲଏମାନେ ପାର୍ଟି ନିର୍ଦ୍ଦେଶରେ ୧୯୪୭ଠାରୁ ରାଜ୍ୟରେ ମନ୍ତ୍ରୀସ୍ତରୀୟ ଦୁର୍ନୀତିର ତଦନ୍ତ କରିବାକୁ ଦାବୀକୁ ସିଂହଦେଓ ସରକାର ପ୍ରତ୍ୟାଖ୍ୟାନ କରି କେବଳ ୧୯୬୧ରୁ ତଦନ୍ତ ହେବ ବୋଲି ଘୋଷଣା କରିବାରୁ ପାର୍ଟି ତାହାର ପ୍ରତିବାଦ କରିଥିଲା ।

୧୯୬୮ରେ ଜାନୁଆରୀ ୨୪ ରୁ ୨୮ ଯାଏ ବରଗଡ଼ଠାରେ ରାଜ୍ୟ ପାର୍ଟିର ୭ମ ସମ୍ମିଳନୀ ୫ ଦିନ ବ୍ୟାପୀ ଅନୁଷ୍ଠିତ ହୋଇଥିଲା । ଡଃ ସଦାନନ୍ଦ ମହାନ୍ତିଙ୍କ ସ୍ଥାନରେ ଦୁର୍ଗାଚରଣ ମହାନ୍ତି ସମ୍ପାଦକ ହୋଇଥିଲେ । ୨୩ ଜଣିଆ କାର୍ଯ୍ୟକାରୀ କମିଟି ଗଠିତ ହୋଇଥିଲା । ସମ୍ପାଦକମଣ୍ଡଳୀରେ ସଦାନନ୍ଦ ମହାନ୍ତି, ଦୁର୍ଗାଚରଣ ମହାନ୍ତି, ଲୋକନାଥ ଚୌଧୁରୀ, ରାମଚନ୍ଦ୍ର ମିଶ୍ର, ପ୍ରାଣନାଥ ପଟ୍ଟନାୟକ, ପ୍ରସନ୍ନ କୁମାର ପଣ୍ଡା, ହରିହର ଦାସ, ଗଙ୍ଗାଧର ପାଇକରାୟ ରହିଥିଲେ । ସମ୍ମିଳନୀରେ ୧୭୦ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ଏଥିପୂର୍ବରୁ ଚୌଦ୍ୱାରଠାରେ କଟକ, ରମ୍ଭାଠାରେ ଗଞ୍ଜାମର, ଢେଙ୍କାନାଳଠାରେ ଢେଙ୍କାନାଳର ଜିଲ୍ଲା ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଅନ୍ୟାନ୍ୟ ଜିଲ୍ଲାର ମଧ୍ୟ ସମ୍ମିଳନୀମାନ ଅନୁଷ୍ଠିତ ହୋଇଥିଲା ।

ପାର୍ଟି ସମ୍ମିଳନୀର ଆହ୍ୱାନ ଏବଂ ପାଟନାରେ ଅଷ୍ଟମ ପାର୍ଟି କଂଗ୍ରେସର ଆହ୍ୱାନ ଥିଲା ସଂଗ୍ରାମ, ସଂଗଠନ ଓ ବାମପନ୍ଥୀ ଐକ୍ୟ ଉପରେ ଗୁରୁତ୍ୱ ।

ତାହା ପରେ ରାଜ୍ୟରେ ବଞ୍ଜର ଓ ପତିତ ଜମିର ପଟା ପାଇଁ ଆନ୍ଦୋଳନ ବ୍ୟାପକ ରୂପ ଧରିଥିଲା । ୧୯୬୮ ମାର୍ଚ୍ଚ ପହିଲାରେ ଏହି ପ୍ରକାର ଜମି ଦଖଲ ଆନ୍ଦୋଳନ ଲାଗି ପାର୍ଟିର ଡାକରାରେ ସତ୍ୟାଗ୍ରହ ହୋଇଥିଲା । ଖୋର୍ଦ୍ଧାର କେବଳ ୭ ଶହ ଗିରଫ ହୋଇଥିଲେ ।

ରାଜ୍ୟ ପାର୍ଟି ଆହ୍ୱାନରେ ଗଣତନ୍ତ୍ର ସୁରକ୍ଷା ଦିବସ ପାଳନ ଉପଲକ୍ଷେ କଟକ, ବ୍ରହ୍ମପୁର,

କୁହୁଡ଼ି, ଆସିକା, ଚୌଦ୍ୱାର, ଏରସମା ଓ ଅନ୍ୟାନ୍ୟ ସ୍ଥାନରେ ସଭା ସମାବେଶ ହୋଇଥିଲା ।

୧୯୬୮ ମାର୍ଚ୍ଚ ୩୦-୩୧ରେ ବ୍ରହ୍ମପୁରରେ ଅନୁଷ୍ଠିତ ଇସକସ ଦ୍ୱିତୀୟ ରାଜ୍ୟ ସମ୍ମିଳନୀକୁ ସଫଳ କରିବା ଲାଗି ଗଞ୍ଜାମର ସାଥୀମାନେ ବିଶେଷ ଭୂମିକା ନେଇ ତାକୁ ଅଶେଷ ସାଫଲ୍ୟମଣ୍ଡିତ କରିଥିଲେ । ମୟୂରଭଞ୍ଜର ସାମଖୁଣ୍ଟା ପଞ୍ଚାୟତର ଚାଷୀମାନେ ପାର୍ଟି ନେତୃତ୍ୱରେ ଏକ ଲକ୍ଷୁଆ ଜଳକର ବିରୋଧୀ ଆନ୍ଦୋଳନ କରିଥିଲେ ।

ଏହି ଅବସରରେ କୃଷକ ଆନ୍ଦୋଳନକୁ ଅଧିକ ସଂଗଠିତ ରୂପ ଦିଆଯାଇଥିଲା । ୧୯୬୮ ଏପ୍ରିଲ ୧୭/୧୮ରେ ଜେଡ ଏ. ଅହମ୍ମଦଙ୍କ ଯୋଗଦାନରେ ଖୋର୍ଦ୍ଧାଠାରେ ଅଷ୍ଟମ ରାଜ୍ୟ କୃଷକସଭା ସମ୍ମିଳନୀର ସିଦ୍ଧାନ୍ତଗୁଡିକ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏହି ସମ୍ମିଳନୀ ପରେ ପାର୍ଟି ଓ କୃଷକସଭା ନେତୃତ୍ୱରେ ଚାଷୀ ସଂଗ୍ରାମ, ସତ୍ୟାଗ୍ରହ, ଆଇନ ଅମାନ୍ୟ ଜେଲଭରୋ ଆନ୍ଦୋଳନମାନ ସଂଗଠିତ ହେଲା ।

**ପୁନଶ୍ଚ ଓଡ଼ିଶା ବ୍ୟାପୀ ସତ୍ୟାଗ୍ରହ**

ଓଡ଼ିଶାରେ ସେତେବେଳେ ଦୁର୍ଭିକ୍ଷ ଅନାହାରର ତାଣ୍ଡବ । ପ୍ରାୟ କୋଟିଏ ରାଜ୍ୟବାସୀ ମରୁଡ଼ି, ବାତ୍ୟା, ବନ୍ୟା ଏହି ତିନୋଟି ବିପର୍ଯ୍ୟୟର ଶିକାର ହୋଇଥାନ୍ତି । ଜଳେଶ୍ୱରର ଭୋଗରାଇ, ବସ୍ତା, ବାଲିଆପାଳ ଅଞ୍ଚଳ, ଢେଙ୍କାନାଳ, କୋରାପୁଟ, ସୁନ୍ଦରଗଡ଼, ସମ୍ବଲପୁରର ପଦ୍ମପୁର, ଝାରସୁଗୁଡ଼ା ଅଞ୍ଚଳ, ବୌଦ୍ଧ କନ୍ଧମାଳ, ବଲାଙ୍ଗୀର, ଗଞ୍ଜାମର ବ୍ୟାପକ ଅଞ୍ଚଳ, ପୁରୀର ଖୋର୍ଦ୍ଧା, ନୟାଗଡ଼ ସବଡ଼ିଭିଜନ, କଟକର ତିର୍ତ୍ତୋଲ, ଏରସମା, କୁଜଙ୍ଗ, ସାଲ୍ପୁର ଏବଂ ମୟୂରଭଞ୍ଜ ଓ କେଉଁଝରରେ ବ୍ୟାପକ ଅଞ୍ଚଳରେ ଦୁର୍ଭିକ୍ଷର ପଦଧ୍ୱନି ।

ରାଜ୍ୟ ପାର୍ଟି ହସ୍ତକ୍ଷେପ କରି ମଇ ୭ ରୁ ୧୫ ଯାଏ ଓଡ଼ଇଶାବ୍ୟାପୀ ସତ୍ୟାଗ୍ରହ ଆଇନ ଅମାନ୍ୟର କାର୍ଯ୍ୟକ୍ରମ ନେଲା । ଆଠଗଡ଼, କୁଜଙ୍ଗ, ଧାନମଣ୍ଡଳରେ ବିକ୍ଷୋଭ । କେଉଁଠି ୫ଦିନ କେଉଁଠି ୩ ଦିନ ବ୍ୟାପୀ ସତ୍ୟାଗ୍ରହ ହେଲା । କଟକ କିଲଟରୀରେ ସତ୍ୟାଗ୍ରହ ବେଳେ ୫ ହଜାର ଲୋକଙ୍କ ପଟୁଆର । ପୁଲିସର ଲାଠି ଓ ଗିରଫ । କମ୍ରେଡ ସି.ରାଜେଶ୍ୱର ରାଓ ଗୌରୀଶଙ୍କର ପାର୍କରେ ଏକ ବିରାଟ ଜନସଭାରେ ସରକାରର ଚାଷୀ ଶ୍ରମିକ ମାରଣ ନୀତି, ଗଣତାନ୍ତିକ ପରମ୍ପରାର ଲଙ୍ଘନ, ଗୁଳି ଓ ହତ୍ୟାର ତୀବ୍ର ପ୍ରତିବାଦ କରି ବାମ ଓ ଗଣତାନ୍ତିକ ଐକ୍ୟ ଗଢ଼ିବାକୁ ଆହ୍ୱାନ ଦେଲେ ଓ କେନ୍ଦ୍ରରେ କଂଗ୍ରେସ ସରକାର ଓ ରାଜ୍ୟରେ ମିଳିତ ସରକାରର ଜନ ବିରୋଧୀ କାର୍ଯ୍ୟକଳାପର ପାର୍ଟି ତୀବ୍ର ବିରୋଧ କରି ଆନ୍ଦୋଳନ କରିବ ବୋଲି ଘୋଷଣା କଲେ ।

ଢେଙ୍କାନାଳରେ ୫ ଦିନ ବ୍ୟାପୀ ସତ୍ୟାଗ୍ରହ ହୋଇଥିଲା । ଗଞ୍ଜାମ, ବାଲେଶ୍ୱର, ସମ୍ବଲପୁର ଓ ପୁରୀ ଜିଲ୍ଲାର ବିଭିନ୍ନ ସ୍ଥାନରେ ସତ୍ୟାଗ୍ରହ ଗିରଫ ଚାଲିଥିଲା ।

ଏହି ସତ୍ୟାଗ୍ରହ ପରେ ୧୯୬୮ ଜୁନ୍ ୨୪ରେ ପାର୍ଟିର ଆହ୍ୱାନରେ ୧୦ ହଜାର

ଲୋକଙ୍କ ବିଧାନସଭା ଅଭିଯାନ ସଂଗଠିତ ହୋଇ ଭୂସଂସ୍କାର ସମେତ ୧ ୨ଟି ଦାବୀ ଉପସ୍ଥାପିତ ହୋଇଥିଲା ।

ସମ୍ବଲପୁର ବଲାଙ୍ଗୀର ଚାଷୀଙ୍କ ମଧ୍ୟରୁ ଶତକଡ଼ା ୧ ୫ ଦରଖାସ୍ତ ନ ଦେଲେ କେନାଲ ଜଳ ନ ମିଳିବା ବିରୁଦ୍ଧରେ ପାର୍ଟି ବିକ୍ଷୋଭ କରିଥିଲା । ୧ ୯ ୬୮ ଜୁଲାଇ ୨୩, ୨୪, ୨୫ରେ ଏହି ଦୁଇ ଜିଲ୍ଲାର ରାମପୁର, ବରପାଲିରେ ସତ୍ୟାଗ୍ରହରେ ୧ ୨ ଶତ ଚାଷୀଙ୍କୁ ଗିରଫ କରାଯାଇଥିଲା ।

ଏହି ବର୍ଷ ସେପ୍ଟେମ୍ବର ୨୭ ରୁ ୨୯ରେ ମୋଗାଠାରେ ଅନୁଷ୍ଠିତ ଭାରତୀୟ କ୍ଷେତ ମଜଦୁର ସମ୍ମିଳନୀ ପରେ ପ୍ରଥମ ରାଜ୍ୟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ବରଗଡ଼ରେ ମୂଲ୍ୟ ବୃଦ୍ଧି ବିରୋଧୀ ଆନ୍ଦୋଳନ, ଛାତ୍ରସଂଘ ପକ୍ଷରୁ ୧୩ ଟି ଛାତ୍ର ଦାବୀ ଘେନି ସପ୍ତାହ ପାଳନ, କଃ ପ୍ରବୀର ପାଲିତ, ଦୁଃଶାସନ ଜେନା ପ୍ରମୁଖଙ୍କ ନେତୃତ୍ୱରେ ସରକାରୀ ପ୍ରେସ୍‌ରେ ଧର୍ମଘଟ, ଆସିକାରେ ଆଖୁ ଚାଷୀଙ୍କ ୧ ୪ ଦଫା ଦାବୀ ଘେନି ସଂଗ୍ରାମ, ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ରାଜ୍ୟବ୍ୟାପୀ ଆନ୍ଦୋଳନରେ ପାର୍ଟି ଭୂମିକା; ୧ ୯ ୬୮ ନଭେମ୍ବର ୧ ୭ରେ ଭୁବନେଶ୍ୱରରେ କୃଷକସଭା କନଭେନସନ, ଅକ୍ଟୋବର ୩୦ରେ ଏଆଇଟିୟୁସିର ପ୍ରତିଷ୍ଠା ଦିବସ, ରାଜ୍ୟର ବିଭିନ୍ନ ଜିଲ୍ଲାରେ ୬ ଦିନିଆ ପାର୍ଟି ଶିକ୍ଷା ଶିବିର, ମରୁଡ଼ି, ବନ୍ୟା, ବାତ୍ୟା ପ୍ରପୀଡିତ ଲୋକଙ୍କ ରିଲିଫ ପାଇଁ ପାର୍ଟି ଉଦ୍ୟୋଗରେ ଲୋକସେବା (ରିଲିଫ) ସମିତି ଗଠନ ପାର୍ଟିର ବିଭିନ୍ନ ଗଣ ଓ ପାର୍ଟି ସଂଗଠନ କାର୍ଯ୍ୟକଳାପର ସୂଚନା ଦିଏ ।

୧ ୯ ୬ ୯ରେ ରେଭେନ୍‌ସା କଲେଜରେ ଛାତ୍ର ଆନ୍ଦୋଳନ ଉପରେ ଗୁଳି, ପ୍ରଦୀପ୍ତ ମିଶ୍ରର ମୃତ୍ୟୁ । ଏହା ବିରୁଦ୍ଧରେ ରାଜ୍ୟବ୍ୟାପୀ ଦୁର୍ବାର ଛାତ୍ର ଆନ୍ଦୋଳନ ସ୍ୱତନ୍ତ୍ର ଜନ କଂଗ୍ରେସ ସରକାରକୁ ଦୋହଲାଇ ଦେଇଥିଲା ।

**ଜମି ଦଖଲ ଓ ବଜେଟ ପୋଡ଼ି ଆନ୍ଦୋଳନ**

୧ ୯ ୭ ୦ରେ ଭାରତବ୍ୟାପୀ ଉଦବୃତ୍ତ ଜମି ଦଖଲ ଆନ୍ଦୋଳନର ପ୍ରସ୍ତୁତି ପର୍ବ ଓଡ଼ିଶାରେ ଚାଷୀମାନଙ୍କ ଖଣ୍ଡ ସଂଗ୍ରାମ, ବିକ୍ଷୋଭ ସାହାଯ୍ୟ କରିଥିଲା । ୧ ୯ ୬ ୯ ଏପ୍ରିଲ ୭ ରୁ ୧ ୫ ଯାଏ କେନ୍ଦ୍ରର କଂଗ୍ରେସ ଅର୍ଥମନ୍ତ୍ରୀ ଦେଶାଇ ଓ ରାଜ୍ୟର ସିଂହଦେଓ ପ୍ରତିକ୍ରିୟାଶୀଳ, ଜନସ୍ୱାର୍ଥ ବିରୋଧୀ ବଜେଟ ବିରୁଦ୍ଧରେ ରାଜ୍ୟ ପାର୍ଟି ବ୍ୟାପକ ଆନ୍ଦୋଳନ ଗଢ଼ି ତୋଳିଥିଲା ଶତ ଶତ ସ୍ଥାନରେ ସଭା ସମାବେଶରେ ବଜେଟପୋଡ଼ି କରାଯାଇଥିଲା । ଗଞ୍ଜାମର ଛତ୍ରପୁର, ଆସିକା, ଭଞ୍ଜନଗର, ଗଞ୍ଜାମ, ଆଡପଡ଼ା, ରମ୍ଭା, ପୋଡ଼ାମାରି, ଗୌତମୀ, ବ୍ରହ୍ମପୁର ପ୍ରଭୃତିରେ, କଟକର କୁଜଙ୍ଗ, ଏରସମା, ବାରଙ୍ଗ, ଧାନମଣ୍ଡଳ, କଇଜଙ୍ଗା, ଯାଜପୁର, ସାଲେପୁର, ନିଶ୍ଚିନ୍ତକୋଇଲି, ମାର୍ଶାଘାଇ, ବିରିଡ଼ି, ଜଗତସିଂହପୁର, ଦଶରଥପୁର, ଟାଙ୍ଗି, ବନ୍ତ, ଧାନମଣ୍ଡଳ, ଆଳି ପ୍ରଭୃତି ସ୍ଥାନରେ; ପୁରୀର ଭୁବନେଶ୍ୱର, ଧଳାପଥର, ଖୋର୍ଦ୍ଧା, ବେଗୁନିଆ, ଗୋପ, ଅସ୍ତରଙ୍ଗ, ନିମାପଡ଼ା,

ରଣପୁର, ପିଚୁକୁଳି, ବୋଲଗଡ଼ଠାରେ, ସମ୍ବଲପୁରର ବରଗଡ଼ ଓ ଅନ୍ୟାନ୍ୟ ସ୍ଥାନରେ; ବାଲେଶ୍ୱରର ବନ୍ତ, ପୀରହାଟ, ଚାନ୍ଦବାଲି; ମୟୂରଭଞ୍ଜର ବାରିପଦା ଓ କେଉଁଝରର ବଡ଼ବିଲଠାରେ, ଦୁଇ ସରକାରଙ୍କ ବଜେଟ ପୋଡ଼ି ଅଭିଯାନ ପାର୍ଟିର ସଂଗ୍ରାମୀ ପରମ୍ପରାକୁ ବଳିଯାନ କରିଥିଲା ।

୧୯୭୦ ଜୁଲାଇ ପହିଲାରୁ ସାରା ଭାରତରେ କମ୍ୟୁନିଷ୍ଟ ଡାକରାରେ କୃଷକସଭା, ଟ୍ରେଡ଼ୟୁନିଅନ, କ୍ଷେତମଜଦୁର ସଂଗଠନ ପ୍ରଭୃତିଙ୍କ ସମର୍ଥନରେ ବ୍ୟାପକ ଜମି ଦଖଲ ଆନ୍ଦୋଳନ ହୋଇଥିଲା ଏହାର ୨ ଟି ପର୍ଯ୍ୟାୟ । ପ୍ରଥମ ପର୍ଯ୍ୟାୟରେ ସରକାରୀ ପଡ଼ିଆ, ଜବର ଜମି ଦଖଲ ଆନ୍ଦୋଳନ । ସେହି ପର୍ଯ୍ୟାୟରେ ଆଠଗଡ଼ର ଗୁରୁଡ଼ିଝାଟିଆ ସୋରୋର ମଙ୍ଗଳପୁର ଓ ପାଟଣାରେ, ପୁରୀ ଜିଲ୍ଲା ବେଗୁନିଆର ଚକାପଦାରେ, ଗଞ୍ଜାମ ଜିଲ୍ଲାର ଭଞ୍ଜନଗର, ଦୋମୁହାଣି ଚଣ୍ଡିଆପାଲି ପ୍ରଭୃତିରେ, କଟକର ବ୍ୟାସ ସରୋବର ଓ ଅନ୍ୟ ସ୍ଥାନମାନଙ୍କରେ ଏ ପ୍ରକାର ଜମି ଦଖଲ ହୋଇଥିଲା । ଏଥିରେ ହଜାର ହଜାର ଚାଷୀଭାଗ ନେଇଥିଲେ । ଦ୍ୱିତୀୟ ପର୍ଯ୍ୟାୟରେ ଟାଟା, ବିରଳା ପୂର୍ବର ବଡ଼ ବଡ଼ ରଜା ଜମିଦାରଙ୍କ ଜମି ଦଖଲବେଳେ ଓଡ଼ିଶାରେ ଢେଙ୍କାନାଳ ରାଜାଙ୍କ ମହିଷାପାଟ ଜମି ଓ ବଲାଙ୍ଗୀର ରଜାଙ୍କ ସାଲେଭଟା ଜମି ଦଖଲ ଆନ୍ଦୋଳନ ସାରା ରାଜ୍ୟର ଦୃଷ୍ଟି ଆକର୍ଷଣ କରିଥିଲା । ସେଥିରେ ବହୁ କର୍ମୀଙ୍କ ସମେତ କୃଷକ ଓ କମ୍ୟୁନିଷ୍ଟ ନେତା ରାମକୃଷ୍ଣ ପତି, ପ୍ରସନ୍ନ କୁମାର ପଣ୍ଡା, ରାମଚନ୍ଦ୍ର ମିଶ୍ର, ବ୍ରଜ ମହାପାତ୍ର ପ୍ରମୁଖଙ୍କ ଗିରଫଦାରୀ ଓ ଜେଲ ଓଡ଼ିଶାରେ ଭୂମି ଆନ୍ଦୋଳନର ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ସେତିକିବେଳେ ସମ୍ବଲପୁରର କିରଡିମାଳ ଓ ପସଦା ଓ ବଲାଙ୍ଗୀର ଜିଲ୍ଲା ରାମପୁରସ୍ଥ ସିମାଳିନାଳ ଜଙ୍ଗଲର ୪୦ ଏକର ଜମିକୁ ଭୂମିହୀନ ଆଦିବାସୀମାନେ ଦଖଲ କରିଥିଲେ ।

୧୯୬୮ ଅକ୍ଟୋବର ୨୩ରେ ଭଗବତୀ ଭବନର ଶିଳାନ୍ୟାସ କରାହୋଇଥିଲା ।

୧୯୬୯-୭୦ରେ ପାରାଦ୍ୱୀପ ବନ୍ଦର ଉନ୍ନୟନ ଲାଗି ପାର୍ଟିର ଅଭିଯାନ ଓ କେନ୍ଦ୍ର ଜାହାଜ ଚଳାଚଳ ମନ୍ତ୍ରୀଙ୍କୁ ସ୍ମାରକଲିପି ପ୍ରଦାନ, ୧୯୬୯ରେ ରାଜ୍ୟ ମନ୍ତ୍ରୀସ୍ତରରେ ଦୁର୍ନୀତି ଘେନି ଖାନ୍ନା କମିଶନ ରିପୋର୍ଟ ପରେ ପାର୍ଟିର ୧୨ଟି ଦଫା ଦାବୀ କରି ଅଭିଯାନ, ଆସ୍କା ଚିନି କାରଖାନା ଶ୍ରମିକଙ୍କ ସ୍ୱାର୍ଥ ଲାଗି ହରିହର ଦାସଙ୍କ ଅନଶନ ଓ ବିଶାଳ ବିକ୍ଷୋଭ ଓ ତାହାର ବିଜୟ, ବେଲପାହାଡ଼ ଶ୍ରମିକଙ୍କ ସଂଗ୍ରାମ, କୁଜଙ୍ଗ ଏରସମା, ମାର୍ଶାଘାଇ ଅଞ୍ଚଳରେ କନ୍ଧାଚାଷୀଙ୍କ ପଟମ ଆନ୍ଦୋଳନ, ବରଗଡ଼ରେ ଦମକଳ ଦାବୀ କରି ଲେଙ୍ଗୁ ମିଶ୍ରଙ୍କ ବିଧାନସଭା ସମ୍ମୁଖରେ ଅନଶନ, ବ୍ରଜରାଜନଗରର ପେରି ଫେରି ଅଞ୍ଚଳର ୧୫ ହଜାର ଚାଷୀଙ୍କ ପଟ୍ଟା ଆନ୍ଦୋଳନ, ତିନିମାସ ଧର୍ମଘଟ ପରେ ହୀରାକୁଦ ଇଣ୍ଡିୟାନ ଆଲୁମିନିୟମ ଶ୍ରମିକଙ୍କ ବିଜୟ, ୧୯୭୦ ଅକ୍ଟୋବରରେ ବାଲେଶ୍ୱରଠାରେ ବିଶାଳ ଭୋକିଲା ପଟୁଆର ବହୁ ଗଣ କାର୍ଯ୍ୟକଳାପ ମଧ୍ୟରୁ କେତୋଟି ମାତ୍ର । ୧୯୬୯ ଏପ୍ରିଲରେ ବଡ଼ବିଲ ଓ ବରସୁଆଁ ଖଣି ଶ୍ରମିକ ୟୁନିଅନଗୁଡ଼ିକର ୫ମ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ଏହି ସମୟରେ ପଶ୍ଚିମବଙ୍ଗରେ ଯୁକ୍ତଫ୍ରଣ୍ଟ ବିଜୟ ଉପଲକ୍ଷେ ରାଜ୍ୟ ସିପିଆଇ ଓ ସିପିଆଇ (ଏମ୍) ପକ୍ଷରୁ ମିଳିତ ସଭାସମିତି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ।

**ସିପିଆଇ ଡାକରାରେ କଟକ ବନ୍ଦ**

ସ୍ୱତନ୍ତ୍ର- ଜନକଂଗ୍ରେସ ସରକାର ଲୋକଙ୍କଠାରୁ ଏପରି ବିଚ୍ଛିନ୍ନ ହୋଇ ପଡ଼ିଗଲା ଯେ ପୌରସଭା ନ ଥାଇ ଉକ୍ତ ସରକାର ଆସେସମେଣ୍ଟ କରି ନୂତନ କର ଧାର୍ଯ୍ୟ କରିବାରୁ ସିପିଆଇ କଟକ ବନ୍ଦ ଡାକରା ଦେଇଥିଲା । ପାର୍ଟି ତା'ର ସମସ୍ତ ଶକ୍ତି ଦେଇ ପ୍ରଚାର ଅଭିଯାନ ଚଳେଇଥିଲା ତାହା କଟକ ବନ୍ଦକୁ ସଂପୂର୍ଣ୍ଣ ସଫଳ କରିଥିଲା । ପିଏସପି ଆମ ପାର୍ଟି ଆହ୍ୱାନକୁ ଭଣ୍ଡୁର କରିବା ଲାଗି ଆଗତୁରା ହରତାଳ ଡାକରା ଦେଇଥିଲେ ସୁଦ୍ଧା ବନ୍ଦ ପାଇଁ ଜନ ସମର୍ଥନ ଏତେ ପ୍ରବଳ ହେଲା ଯେ ପିଏସପି ଏହାକୁ ସମର୍ଥନ କରି ବିବୃତି ଦେଇଥିଲା ।

ଜନକଂଗ୍ରେସ ସ୍ୱତନ୍ତ୍ର ସରକାର ବସ୍ ଭଡ଼ା ବୃଦ୍ଧି କରିବାରୁ ପାର୍ଟି ତାହା ବିରୁଦ୍ଧରେ ସ୍ୱତନ୍ତ୍ର ମଞ୍ଚରୁ ବ୍ୟାପକ ବିକ୍ଷୋଭ ଆନ୍ଦୋଳନ ୧୯୭୦ ଜୁଲାଇ ୧୧ ତାରିଖରେ କରାଇଥିଲା । କଟକ, ପୁରୀ, ଗଞ୍ଜାମ, ଛତ୍ରପୁର, ବୁଗୁଡ଼ା, ଆସିକା, ପାରାଦ୍ୱୀପ, ପୋଡ଼ାମାରି, ମାହାଙ୍ଗା, ବାଲେଶ୍ୱର ଓ ଅନ୍ୟାନ୍ୟ ସବୁ ଜିଲ୍ଲାରେ ବସ୍‌ଭଡ଼ା ବୃଦ୍ଧି ବିରୋଧୀ ଆନ୍ଦୋଳନ ବ୍ୟାପକ ରୂପ ନେଇଥିଲା ।

ପାର୍ଟିର ଏହି ଗଣକାର୍ଯ୍ୟକଳାପର ପରିଣତସ୍ୱରୂପ ବାମପନ୍ଥୀ ଦଳମାନଙ୍କ ଐକ୍ୟବଦ୍ଧ ସଂଗ୍ରାମ ସହଜତର ହୋଇଥିଲା । ପ୍ରବଳ ବର୍ଷା ସତ୍ତ୍ୱେ ସିପିଆଇ, ସିପିଆଇ(ଏମ୍) ଏବଂ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ମିଳିତ ଆହ୍ୱାନରେ ୧୯୭୦ ଅକ୍ଟୋବର ୭ରେ ରାଜଧାନୀରେ ୫ ହଜାର ଜନତାର ବିକ୍ଷୋଭ ଅନୁଷ୍ଠିତ ହୋଇଥିଲା । ରାମକୃଷ୍ଣ ପତିଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ସଭାରେ ସିପିଏମ୍‌ର ବନମାଳୀ ଦାସ, ଏସଏସପିର ରବି ରାୟ ଓ ସିପିଆଇର ପ୍ରସନ୍ନ କୁମାର ପଣ୍ଡା ଉଦ୍‌ବୋଧନ ଦେଇ ଅକ୍ଟୋବର ୮/୯ରେ ତିନିଦଳର ଆଇନ ଅମାନ୍ୟକୁ ସଫଳ କରିବାକୁ ନିବେଦନ କରିଥିଲେ । ବାମପନ୍ଥୀ ଦଳ ପକ୍ଷରୁ ୧୯୭୦ ଅକ୍ଟୋବର ୮/୯ରେ ଭୁବନେଶ୍ୱରଠାରେ ଆଇନ ଅମାନ୍ୟବେଳେ ପୁଲିସ ପକ୍ଷରୁ ଆକ୍ରମଣ ହୋଇଥିଲା ।

ଏହି ୧୯୭୦ ଜୁଲାଇ ୨୬ରେ ଦ୍ୱିତୀୟ ଇସ୍ପାତ କାରଖାନା ଦାବୀ ବିରୋଧୀ ଦଳମାନଙ୍କ ପକ୍ଷରୁ କରାଯାଇ ଓଡ଼ିଶା ବନ୍ଦ କରାଯାଇଥିଲା । ଏପରି ବନ୍ଦ ଲାଗି ପ୍ରଥମେ ରାଜ୍ୟ ସିପିଆଇ ଦ୍ୱାରା ପ୍ରସ୍ତାବିତ ହୋଇଥିଲା । ଗଞ୍ଜାମ ଜିଲ୍ଲା ଆଡ଼ପଡ଼ା ଗାଁ'ରେ ସ୍ୱତନ୍ତ୍ର ଦଳର ଗୁଣ୍ଡାମାନଙ୍କ ଆକ୍ରମଣରେ ଦୁଇ ଜଣ ସିପିଆଇ କର୍ମୀଙ୍କର ହତ୍ୟାର ତୀବ୍ର ପ୍ରତିବାଦ ଜିଲ୍ଲାବ୍ୟାପୀ ହୋଇଥିଲା ।

ଏହି ବର୍ଷ ଭିତରେ ଅକ୍ଟୋବର ୨୦ରେ ଓଡ଼ିଶାର ସର୍ବପ୍ରଥମ ରେଜିଷ୍ଟ୍ରିଭୁକ୍ତ ଓ ଏଆଇଟିୟୁସି ପରିଚାଳିତ ପ୍ରେସ ଶ୍ରମିକ ସଂଘର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ରାଜ୍ୟ ପାର୍ଟି ପକ୍ଷରୁ ଅଜୟ ଘୋଷ ସ୍ମୃତି ପାଣ୍ଠି ଅଭିଯାନକୁ ଡଃ ଏସ.ଭି. ଘାଟେ ଉଦ୍‌ଘାଟନ କରିଥିଲେ । କଟକ, କୁଜଙ୍ଗ, ନିମାପଡ଼ା, ବ୍ରହ୍ମପୁର, ସମାଖଣ୍ଡି, ଗୌତମୀ, ତାକରଡ଼ା, ଆସ୍କା-ଜଗତସିଂହପୁର, ବିରିଡ଼ି ଗସ୍ତ ବେଳେ ପାର୍ଟି ପକ୍ଷରୁ ଏହି ପାଣ୍ଠିକୁ ସାଥୀମାନଙ୍କ ଦ୍ୱାରା ସଂଗୃହୀତ ଅର୍ଥ ଅର୍ପିତ ହୋଇଥିଲା । ଅକ୍ଟୋବର ୫ରେ ପ୍ରାଣନାଥ ପଟ୍ଟନାୟକଙ୍କ ପ୍ରଥମ ବାର୍ଷିକୀ ସ୍ମୃତି ଦିବସ ଉପଲକ୍ଷେ ନୂଆ ଦୁନିଆର ବିଶେଷ ସଂଖ୍ୟା ପ୍ରକାଶିତ ହୋଇଥିଲା । ଧର୍ମୀୟ ଶାସ୍ତ୍ରମତେ ହରିଜନଙ୍କ ପ୍ରତି ବାଛବିଚାର ନ୍ୟାୟସଗତ ବୋଲି ପୁରୀର ଶଙ୍କରାଚାର୍ଯ୍ୟ ବିବୃତି ଦେବାରୁ ସିପିଆଇ ହିଁ ସର୍ବପ୍ରଥମେ ତାହାର ତୀବ୍ର ବିରୋଧ କରି ଅଭିଯାନ ଚଳେଇଥିଲା ।

**୧୯୭୧**

୧୯୭୧ ଫେବୃୟାରୀ ବିଧାନସଭା ନିର୍ବାଚନରେ ପୁରୀ ଜିଲ୍ଲାର ବେଗୁନିଆ, କାକଟପୁର, ନିମାପଡ଼ା, ଭୁବନେଶ୍ୱର, ନୟାଗଡ଼, ଖୋର୍ଦ୍ଧାରେ ଯଥାକ୍ରମେ ଗଙ୍ଗାଧର ପାଇକରାୟ, ଗତିକୃଷ୍ଣ ସ୍ୱାଇଁ, ବ୍ରହ୍ମାନନ୍ଦ ମଳିକ, ରାମକୃଷ୍ଣ ପତି, ବାସୁଦେବ ଦୋରା, ରାମଚନ୍ଦ୍ର ମିଶ୍ର ପାର୍ଟି ପ୍ରାର୍ଥୀ ଥିବେ । ମୋହନ ଦାସ ପୁରୀ ଲୋକସଭା ଆସନରୁ ପ୍ରାର୍ଥୀ ଥିଲେ ।

କଟକରେ ଏରସମା ଓ ବଡ଼ଚଣାରେ ଯଥାକ୍ରମେ ଲୋକନାଥ ଚୌଧୁରୀ ଓ ଦୁଃଶାସନ ଜେନା ବାଲେଶ୍ୱର ସୋରୋରେ ଗଜେନ୍ଦ୍ର ପ୍ରସାଦ ଦାସ, ସିମୁଳିଆରେ ଚିନ୍ତାମଣି ଜେନା, ବାସୁଦେବପୁରରେ ବୈିଲୋଚନ ଜେନା, ମୟୂରଭଞ୍ଜର ବାଙ୍ଗିରିପୋଷିରେ ସୁରେନ୍ଦ୍ର ମୋହନ ମୁର୍ମୁ, ବାରିପଦାରେ ହରିହର ଦାସ, ସମ୍ବଲପୁରର ବ୍ରଜରାଜନଗରରରେ ପ୍ରସନ୍ନ କୁମାର ପଣ୍ଡା, ଭଟଲିରେ ନଟବର ବନଛୋର, ବରଗଡ଼ରେ ଲେଙ୍ଗୁ ମିଶ୍ର, ସମ୍ବଲପୁରରେ ହପ୍ରସାଦ ନାୟକ, କେଉଁଝରର ଚମ୍ପୁଆରେ ମଧୁସୂଦନ ଦେହୁରୀ, ସୁନ୍ଦରଗଡ଼ର ରାଉରକେଲାରେ ନିତ୍ୟାନନ୍ଦ ପଣ୍ଡା, କୋରାପୁଟରେ ମାଲକାନ ଗିରିରେ ପ୍ରସାଦ ଭୂମିଆ, ଢେଙ୍କାନାଳର କାମାକ୍ଷାନଗରରେ ପରମାନନ୍ଦ ମହାପାତ୍ର, ଗଁଦିଆରେ ବ୍ରଜ ମହାପାତ୍ର, ଗଞ୍ଜାମର ଛତ୍ରପୁରରେ ଲକ୍ଷ୍ମଣ ମହାପାତ୍ର, କବିସୂର୍ଯ୍ୟନଗରରେ ସଦାନନ୍ଦ ମହାନ୍ତି, ଆସିକାରେ ହରିହର ଦାସ ପ୍ରାର୍ଥୀ ଥିଲେ । ଛତ୍ରପୁର ଲୋକସଭା ନିର୍ବାଚନ ମଣ୍ଡଳୀରୁ ଦ୍ୟୁତିକୃଷ୍ଣ ପଣ୍ଡା ପ୍ରାର୍ଥୀ ଥିଲେ ।

ପାର୍ଟି ଏକ ପକ୍ଷରେ କଂଗ୍ରେସ ଓ ଅନ୍ୟ ପକ୍ଷରେ ପ୍ରଗତି ଦଳ ବିରୁଦ୍ଧରେ ନିର୍ବାଚନ ସଂଗ୍ରାମ କରୁଥିଲା ।

ଏଥର କବିସୂର୍ଯ୍ୟନଗର, ଛତ୍ରପୁର, ବୋଲଗଡ଼ ଓ ସିମୁଳିଆର ପ୍ରାର୍ଥୀ ମୋଟ ୪ ଜଣ ଓ ବିଜୁପଟ୍ଟନାୟକଙ୍କୁ ପରାସ୍ତ କରି ଦୂତିକୃଷ୍ଣ ପଣ୍ଡା ଲୋକସଭାକୁ ବିଜୟୀ ହୋଇଥିଲେ ।

ଏହି ବର୍ଷ ବାତ୍ୟା-ବନ୍ୟାର ପ୍ରବଳ ବିପ୍ରାତ ସାଙ୍ଗକୁ ବାଲେଶ୍ୱରରେ ଖାଦ୍ୟାଭାବ ଓ ବରୁଡି ବିରୁଦ୍ଧରେ ପାର୍ଟିର ସଂଗ୍ରାମ ଓ ରିଲିଫ କାର୍ଯ୍ୟ ବ୍ୟାପକ ରୂପ ନେଇଥିଲା । କଟକ, ପୁରୀ, ବାଲେଶ୍ୱର ଏହି ତିନୋଟି ଜିଲ୍ଲାରେ ବ୍ୟାପକ କ୍ଷତି ହୋଇଥିଲା । ରାଜଗନଗର,

ମହାକାଳପଡା, କୁଜଙ୍ଗ, ଅସ୍ତରଙ୍ଗ, ଜଗତସିଂହପୁର, ବାଲିକୁଦା ଏମିତିକି କଟକ ସହର ଅକ୍ଟୋବର ବାତ୍ୟାରେ ଭୟାବହ କ୍ଷତିଗ୍ରସ୍ତ ହୋଇଥିଲା । ବାସୁଦେବପୁର, ତିହିଡି, ବାଁସଡା, ଚାନ୍ଦବାଲିରେ ବ୍ୟାପକ ମାଗଣା ଖାଦ୍ୟ କେନ୍ଦ୍ର, କୁଜଙ୍ଗର ଅମ୍ବିକା ଅଞ୍ଚଳରେ ଆଳି, ପଟ୍ଟାମୁଣ୍ଡାଇ ଓ ରାଜନଗରରେ ମାଗଣା ଖାଦ୍ୟ କେନ୍ଦ୍ରମାନଙ୍କ ସଂଗଠନରେ ପାର୍ଟି ଅଗ୍ରଭାଗରେ ଥିଲା । ଉଭୟ ରାଜେଶ୍ୱର ରାଓ ଏବଂ ଭୁପେଶ ଗୁପ୍ତ ଡଙ୍ଗାରେ ବିଭିନ୍ନ ଅଞ୍ଚଳ ଗସ୍ତରେ ଯାଇ ରିଲିଫ କାର୍ଯ୍ୟରେ ପାର୍ଟିକୁ ନିୟୋଜିତ କରିଥିଲେ ।

ଏହିବର୍ଷ ବଙ୍ଗଳାଦେଶର ମୁକ୍ତି ଆନ୍ଦୋଳନରେ ପାକିସ୍ଥାନ ଓ ଆମେରିକାର ଷଡ଼ଯନ୍ତ୍ରକୁ ପଦାରେ ପକେଇ ଏବଂ ମୁକ୍ତି ସଂଗ୍ରାମୀମାନଙ୍କ ସହିତ ସଂହତି ପ୍ରକାଶ କରି ରାଜ୍ୟ ପାର୍ଟି ଜୁନ ୧ରେ ବାରିପଦା, ବାଲେଶ୍ୱର, କଟକ, ପୁରୀ, ବ୍ରହ୍ମପୁର, ଢେଙ୍କାନାଳ, କେଉଁଝର ଓ ସମ୍ବଲପୁର ଜିଲ୍ଲା କେନ୍ଦ୍ରଗୁଡ଼ିକରେ ସମାବେଶ କରାଇଥିଲା ।

ପ୍ରତ୍ୟେକ ସାଥୀ ବଙ୍ଗଳାଦେଶର ମୁକ୍ତି ସଂଗ୍ରାମୀଙ୍କ ଗୋଟିଏ ଚାଳିର ମୂଲ୍ୟ ୩ ଟଙ୍କା ଦେବା ଲାଗି ପାର୍ଟିର ଆହ୍ୱାନ ଥିଲା । ସେପ୍ଟେମ୍ବର ୨୩ ରୁ ୨୬ ଯାଏ ଭୁବନେଶ୍ୱର କଳାମଣ୍ଡପଠାରେ ରାଜ୍ୟ ପାର୍ଟିର ୮ମ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ୧୯୬୧ ଅକ୍ଟୋବରରେ କୋଚିନଠାରେ ପାର୍ଟିର ୯ମ କଂଗ୍ରେସ ଅନୁଷ୍ଠିତ ହୋଇଥିଲା ।

ବଙ୍ଗଳାଦେଶ ମୁକ୍ତିବେଳେ ଆମେରିକା ଭାରତ ମହାସାଗରରେ ୭ମ ନୌବାହିନୀ ମୁତଏନ କରିବାରୁ ଦେଶରେ ଯେଉଁ ପ୍ରତିବାଦ ହୋଇଥିଲା ରାଜ୍ୟରେ ତା' ବିରୁଦ୍ଧରେ ପାର୍ଟି ବିଭିନ୍ନ ସଭାସମିତି ଅନୁଷ୍ଠିତ କରାଇଥିଲା ଏବଂ ସୋଭିଏତ ଭାରତ ଶାନ୍ତି, ମୈତ୍ରୀ ଓ ସହଯୋଗିତା ଚୁକ୍ତିର ସମର୍ଥନରେ ସମାବେଶମାନ କରାଇଥିଲା ।

୧୯୭୨ରେ ରାଜ୍ୟରେ ସ୍ୱତନ୍ତ- ଉତ୍କଳ କଂଗ୍ରେସର ଶାସନ । କେନ୍ଦ୍ରରେ ଇନ୍ଦିରା କଂଗ୍ରେସର ଶାସନ ।

ରାଜ୍ୟରେ ବାତ୍ୟା, ବନ୍ୟାରେ ଅଶେଷ କ୍ଷୟକ୍ଷତି । ଏହି ଶାସନରେ ଶ୍ରମିକ, ମଧ୍ୟବିତ୍ତ କର୍ମଚାରୀ, ଛାତ୍ରମାନଙ୍କ ଉପରେ ଦମନ । ଜନସାଧାରଣଙ୍କର ଘୋଷ ଦୁର୍ଗତି । ଏହି ଅପଶାସନ ବିରୁଦ୍ଧରେ ୧୯୭୨ ଜାନୁଆରୀ ୬ ତାରିଖରେ ଭୁବନେଶ୍ୱରରେ ୩୦ ହଜାର ଜନତାର ବିରାଟ ବିକ୍ଷୋଭ । ଏହି ବିକ୍ଷୋଭର ସଂଗଠକ ଥିଲେ କଂଗ୍ରେସ, ସିପିଆଇ ଏବଂ ପିଏସପି । ସିପିଆଇ ପକ୍ଷରୁ ବାଲେଶ୍ୱରରୁ ୭ ହଜାର, କଟକରୁ ୩ ହଜାର, ପୁରୀରୁ ୨ ହଜାର, ଗଞ୍ଜାମ, ସମ୍ବଲପୁର, ମୟୂରଭଞ୍ଜ ଓ ଢେଙ୍କାନାଳରୁ ୩ ହଜାର ଜନତା ଯୋଗ ଦେଇଥିଲେ ।

ସ୍ୱତନ୍ତ ଉତ୍କଳ କଂଗ୍ରେସ- ଝାଡ଼ଖଣ୍ଡ ସରକାରଙ୍କ ପକ୍ଷରୁ ପ୍ରଚଣ୍ଡ ଲାଠିମାଡ଼ ଫଳରେ ଦୁଇଶହ ବ୍ୟକ୍ତି ଆହତ ହୋଇଥିଲେ ଏବଂ ସିପିଆଇର ତୁଙ୍ଗ ନେତୃବୃନ୍ଦ ଓ କଂଗ୍ରେସର ତୁଙ୍ଗ ନେତାମନେ ମରଣାନ୍ତକ ଆକ୍ରମଣ ଫଳରେ ଦୀର୍ଘଦିନ କାଳ ରାଜଧାନୀ ହାସପାତାଳରେ

ପଡିଥିଲେ । କମ୍ୟୁନିଷ୍ଟ ପାର୍ଟିର ଦୁର୍ଗାଚରଣ ମହାନ୍ତି, ବିଶ୍ୱନାଥ ସାହୁ, କେଶବାନନ୍ଦ ଦାସ, ବ୍ରଜ ମହାପାତ୍ର, ରଙ୍କନିଧି ସାହୁ, ରସାନନ୍ଦ ମହନ, ଗୁରୁପ୍ରସାଦ ନାୟକ, ଅରୁଣ ରଥ, କହ୍ନେଇ ଚରଣ ବିହାରୀ, ପର୍ଶୁରାମ ପଦାତିକରାୟ ଏବଂ କଂଗ୍ରେସର ବିନାୟକ ଆଚାର୍ଯ୍ୟ, ବ୍ରଜମୋହନ ମହାନ୍ତି, ବାସୁଦେବ ମହାପାତ୍ର, ବନମାଳୀ ପଟ୍ଟନାୟକ ଓ କାହ୍ନୁଚରଣ ଲେଙ୍କା ପ୍ରମୁଖ ଗୁରୁତର ଆଘାତ ପାଇ ଅନେକ ସଂଜ୍ଞାହୀନ ହୋଇଥିଲେ ।

ଏହି ବର୍ବର ଆକ୍ରମଣର ପ୍ରତିବାଦରେ ୧୦ ଜାନୁଆରୀ ୧୯୭୨ରେ ଓଡ଼ିଶା ବନ୍ଦ ଡାକରା ଏହି ତିନି ପାର୍ଟି ଦେଇଥିଲେ । ଏହାର ବିରୋଧ ଉତ୍କଳ କଂଗ୍ରେସ, ସ୍ୱତନ୍ତ୍ର ଜନସଂଘ, ଏସଏସପି ଓ ସିପିଏମ କରିଥିଲେ । ତଥାପି ଏହା ସଫଳ ହୋଇଥିଲା । ସିପିଆଇର ତୁଙ୍ଗ ନେତାମାନଙ୍କୁ ଗିରଫ କରି ନିଆଗଲା । ପିଏସପି ଓ କଂଗ୍ରେସର ନେତାମାନଙ୍କୁ ମଧ୍ୟ ଗିରଫ କରାଗଲା । କଟକ, ସମ୍ବଲପୁର, କେଉଁଝର, ବାଲେଶ୍ୱର, ଭଦ୍ରଖ, ବରଗଡ଼, ଯାଜପୁର ରୋଡ଼, ଚୌଦ୍ୱାର, ଢେଙ୍କାନାଳ, ଆଠଗଡ଼, ବ୍ରହ୍ମପୁର, ଆସିକା ଓ ଅନ୍ୟ ଅନେକ ସ୍ଥାନରୁ ସି.ପି.ଆଇର ଶହ ଶହ ନେତା, କର୍ମୀଙ୍କୁ ଗିରଫ କରାଯାଇଥିଲା ।

ବଙ୍ଗଳାଦେଶର ମୁକ୍ତି ଏବଂ ଭାରତ ଉପରେ ପାକିସ୍ତାନର ତୃତୀୟ ଥର ଆକ୍ରମଣର ନିନ୍ଦାବାଦ କରି ଏବଂ ଏଥିରେ ଆମେରିକା ସାମ୍ରାଜ୍ୟବାଦୀଙ୍କ କାରସାଦିର ସ୍ୱରୂପ ପ୍ରକାଶ କରି ପାର୍ଟି ଶାଖାମାନଙ୍କ ପକ୍ଷରୁ ସଭାସମିତିବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇଥିଲା । ଦେଶର ଧର୍ମନିରପେକ୍ଷତା ନୀତିର ବିରୁଦ୍ଧାଚରଣ କରି ବିଶ୍ୱନାଥ ଦାସଙ୍କ ନେତୃତ୍ୱାଧୀନ ଉତ୍କଳ କଂଗ୍ରେସ ସ୍ୱତନ୍ତ୍ର ସରକାର ଦିବ୍ୟ ଜୀବନ ସଂଘକୁ ରାଜସ୍ୱରୁ ୧ ଲକ୍ଷ ଟଙ୍କା ଦାନର ପାର୍ଟି ନାପସନ୍ଦ କରିଥିଲା ।

ପାର୍ଟି ଓ ଛାତ୍ର ସଂଘ ପକ୍ଷରୁ ବର୍ଣ୍ଣବିଦ୍ୱେଷ ବିରୋଧୀ ଆନ୍ତର୍ଜାତିକ ସଂଗ୍ରାମର ମହିୟସୀ ବିପ୍ଳବୀ ନେତ୍ରୀ ଆଙ୍ଗଲା ଡେଭିସଙ୍କ ମୁକ୍ତି ଦାବି ଲାଗି ରାଜ୍ୟରେ ବହୁ ସଭାସମିତି ୧୯୭୨ ପ୍ରଥମକେଇ ମାସରେ ଅନୁଷ୍ଠିତ ହୋଇଥିଲା ।

୧୯୭୨ ଫେବୃଆରୀ ୧୭ ରୁ ୨୦ ଯାଏ ବ୍ରହ୍ମପୁର ଠାରେ ଛାତ୍ରସଂଘର ୨୬ ତମ ସମ୍ମିଳନୀ ପରେ ବାରାକ୍‌ସ ମୈଦାନରେ ବିରାଟ ଜନସମାବେଶରେ ତତ୍କାଳୀନ ପାର୍ଟି ଚେୟାରମେନ ଏସ୍.ଏ.ଡାଙ୍ଗେ ଓ ରାଜ୍ୟ ପାର୍ଟି ନେତାମାନେ ଭାଷଣ ଦେଇଥିଲେ । ଦୁର୍ଭିକ୍ଷାବସ୍ଥା, ଭୂସଂସ୍କାର, ଉଦ୍‌ବୃତ୍ତ ଜମି ଉଦ୍ଧାର ଓ ବଣ୍ଟନ, ଘରଡ଼ିହ, ଋଣ, ରିଲିଫ, ଇତ୍ୟାଦି ମୌଳିକ ଚାଷୀ ଦାବି ଘେନି ପୁରୀ ଜିଲ୍ଲାର ଇଟାମାଟିଠାରେ ରାଜ୍ୟ କୃଷକସଭାର ୧୦ମ ଅଧିବେଶନ ମାର୍ଚ୍ଚ ୨୫.୨୬ ଦୁଇ ଦିନ କାଳ ଅନୁଷ୍ଠିତ ହୋଇଥିଲା ।

ଶିକ୍ଷକମାନଙ୍କ ପକ୍ଷରୁ ମାର୍ଚ୍ଚ ୧୫ରୁ ୩୧ ଯାଏ ବିଧାନସଭା ଆଗରେ ଧାରଣାକୁ ପାର୍ଟି ସର୍ବତ୍ର ସଭା ସମିତି ପ୍ରସ୍ତାବ ଜରିଆରେ ସମର୍ଥନ କରିଥିଲା । ୭୫ ହଜାର ଶିକ୍ଷକ ଧାରଣାରେ ଯୋଗ ଦେଇଥିଲେ ।

**ଦୁର୍ଭିକ୍ଷ ବିରୋଧୀ ଅଭିଯାନ**

ଓଡ଼ିଶାରେ ବିଶେଷତଃ କଟକ, ପୁରୀ, ବାଲେଶ୍ୱରରେ ଭୟାବହ ମଗୁଡ଼ି ହେତୁ ଅନାହାର ଦୁର୍ଭିକ୍ଷ ପରିସ୍ଥିତି । ରାଜ୍ୟ ପାର୍ଟିର ଆହ୍ୱାନରେ ଏହି ଦୁର୍ଭିକ୍ଷର ପ୍ରତିକାର ଦାବି କରି ଅନଶନ ପ୍ରତିବାଦ ପ୍ରତିଧ୍ୱନିତ ହୋଇଥିଲା । ସାଧାରଣ ସମ୍ପାଦକ ରାଜେଶ୍ୱର ରାଓ, ଭୁପେଶ ଗୁପ୍ତ ପ୍ରମୁଖ ତୁଙ୍ଗ ନେତାମାନେ ଦୁର୍ଭିକ୍ଷ ଅଞ୍ଚଳ ଗସ୍ତ କରିଥିଲେ । ରାଜେଶ୍ୱର ରାଓ, ୨୧ ଏପ୍ରିଲରୁ ୨୫ ଏପ୍ରିଲ ଯାଏ ବ୍ୟାପକ ଗସ୍ତ କରିଥିଲେ ।

କୁଜଙ୍ଗରେ ଏପ୍ରିଲ ୭ ତାରିଖରୁ ୧୦ ତାରିଖ ଯାଏ ପାର୍ଟି କର୍ମୀମାନେ ଅନଶନ କଲାବେଳେ ପ୍ରତ୍ୟେକ ଦିନ ହଜାର ହଜାର ଭୋକିଲା ନାରୀ ପୁରୁଷ ସମବେତ ହେଉଥିଲେ । କଟକ ଜିଲ୍ଲାର ବରୀ, ବଡ଼ଚଣା, ଏରସମା, ଦର୍ପଣ, ବିଂଝାରପୁର ମହାକାଳପଡ଼ା, ପାଟକୁରାରେ ବିରାଟ ବିକ୍ଷୋଭ, ଘେରାଉ ଅନୁଷ୍ଠିତ ହୋଇଥିଲା । ଚାନ୍ଦବାଲି ଓ ଏରସମାରେ ଅନଶନ, ଅନୁଗୋଳରେ ଭୋକିଲା ପଟୁଆର ଏବଂ ବାଲେଶ୍ୱର, ବାସୁଦେବପୁର, ବାଁସଡ଼ାରେ ବିକ୍ଷୋଭମାନେ ଅନୁଷ୍ଠିତ ହୋଇଥିଲା । ପୁରୀର କାକଟପୁର, ଗୋପ, ନିମାପଡ଼ାରେ ମଧ୍ୟ ବିକ୍ଷୋଭ ହୋଇଥିଲା ।

ଏପ୍ରିଲ ୯ ତାରିଖରେ କଟକଠାରେ ଏଆଇଟିୟୁସି ପରିଚାଳିତ ପ୍ରେସ ଶ୍ରମିକ ସମ୍ମିଳନୀ ଏବଂ ୧୫.୪.୭୨ରେ ଉତ୍କଳ ମହିଳା ସମିତିର ପ୍ରଥମ ସମ୍ମିଳନୀରେ କମ୍ୟୁନିଷ୍ଟ ସାଥୀମାନେ ବିଶେଷ ଭାଗ ନେଇ ସେଗୁଡ଼ିକୁ ସଫଳ କରାଇଥିଲେ ।

ସମ୍ବଲପୁରରେ ବିଶେଷତଃ ବରଗଡ଼, ରେଶମ ପ୍ରଭୃତି ବ୍ୟାପକ ଅଞ୍ଚଳକୁ ଉତ୍କଳ କଂଗ୍ରେସ ସ୍ୱତନ୍ତ୍ର ସରକାର ଅମଳରେ କେନାଲ ଜଳ ଯୋଗାଣ ବନ୍ଦ ହେବାରୁ ନାହିଁ ନ ଥିବା ଡାଲୁଅ ଫସଲ କ୍ଷତି ଓ ଜଳକର ବୃଦ୍ଧି ବିରୁଦ୍ଧରେ ସମ୍ବଲପୁର ପାର୍ଟି ପକ୍ଷରୁ ବହୁ ବିକ୍ଷୋଭ ଓ ଆନ୍ଦୋଳନ ସଂଗଠିତ ହୋଇଥିଲା ।

୧୯୭୨ ଜୁଲାଇ ୭ ରେ ଭୁବନେଶ୍ୱର ରେଡ଼କ୍ରସ୍ ହଲରେ ପାର୍ଟିର ମୁଖ୍ୟ ଭୂମିକାରେ ଭୂସଂସ୍କାର, ସଂପର୍କରେ ଆୟୋଜିତ କନଭେନସନରେ କୃଷକ ସଭା- କମ୍ୟୁନିଷ୍ଟ ପାର୍ଟିର, କ୍ଷେତମୂଲିଆ ସଂଗଠନର ନେତା ଏବଂ ହରେକୃଷ୍ଣ ମହତାବ, ବାଙ୍କ ବିହାରୀ ଦାସ ପ୍ରମୁଖ ନେତାଙ୍କର ଅଂଶଗ୍ରହଣ । ସିପିଆଇ ପକ୍ଷରୁ ୩ ଟି ଛାପା ଦଲିଲ ଏସବୁ ସମସ୍ୟା ଘେନି ପେସ କରାଯାଇଥିଲା

ଉତ୍କଳ କଂଗ୍ରେସରେ ଦ୍ୱନ୍ଦ୍ୱ ବିବାଦ ଘଟି ଦୁଇ ଫାଙ୍କ ହୋଇଗଲା । ନୀଳମଣି ରାଉତରାୟ ପ୍ରମୁଖ ଓ ପିଏସପିର ସୁରେନ୍ଦ୍ର ଦ୍ୱିବେଦୀ ପ୍ରମୁଖ କଂଗ୍ରେସରେ ଯୋଗ ଦେଲେ । ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ସରକାରର ପତନ ଘଟିଲା । ଏତିକିବେଳେ ସିପିଆର ବିଧାନସଭାରେ ୭ ଜଣ ସଦସ୍ୟ । ସିପିଆଇ ଭୂସଂସ୍କାର, କେନ୍ଦୁପତ୍ର ଜାତୀୟକରଣ, ପଡ଼ିଆ ଜମି ବଣ୍ଟନ,

ବେକାରଙ୍କୁ ଓ ବୃଦ୍ଧଙ୍କୁ ଭତ୍ତା, ଛଟେଇ ବନ୍ଦ, ଇତ୍ୟାଦି ୧୫ ଦଫା ଦାବିକୁ କଂଗ୍ରେସ ଗ୍ରହଣ କରିବ ବୋଲି ପ୍ରତିଶ୍ରୁତି ଦେଲା । ରାଜ୍ୟରେ ରାଜନୈତିକ ଅସ୍ଥିରତା ଦୂର କରିବା ଓ ପ୍ରତିକ୍ରିୟାଶୀଳ ସ୍ୱତନ୍ତ୍ର ଦଳକୁ ବିଚ୍ଛିନ୍ନ କରିବା ଲକ୍ଷ୍ୟରେ ଏ ନିଜର ସ୍ୱତନ୍ତ୍ର ଭୂମିକା ସହିତ ୧୫ ଦଫା କାର୍ଯ୍ୟକ୍ରମ ଭିତ୍ତିରେ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱ କଂଗ୍ରେସକୁ ସମର୍ଥନ ଦେବ ବୋଲି ସ୍ଥିର କଲା । ଡଃ ଭୁପେଶ ଗୁପ୍ତ ଏହି ନିଷ୍ପତ୍ତିକୁ ସାମ୍ବାଦିକ ସମ୍ମିଳନୀରେ ଘୋଷଣା କରିଥିଲେ ।

୩୦.୬.୭୨ରେ ରାଜ୍ୟ ପାର୍ଟି ଭୂସଂସ୍କାର ଦିବସ ପାଳନର ଡାକରା ଦେଇଥିଲା । ସବୁ ଜିଲ୍ଲାରେ ଏହା ପାଳିତ ହୋଇଥିଲା । କ୍ଷେତ ମଜୁରିଆମାନଙ୍କ ଆନ୍ଦୋଳନ ଉପରେ ସମ୍ବଲପୁରର ଲଇଡ଼ାରେ ପୁଲିସର ଜୁଲମର ତୁମୁଳ ପ୍ରତିବାଦ ଓ ବିକ୍ଷୋଭ ଅନୁଷ୍ଠିତ ହୋଇଥିଲା ।

ଜୁନ୍ ୬ରେ ବାଲେଶ୍ୱର ଜିଲ୍ଲା ଷଣ୍ଢତିରାରେ ପୁଲିସ ଜୁଲମ ବିରୁଦ୍ଧରେ ବିକ୍ଷୋଭ ହୋଇଥିଲା ।

ସେଇବର୍ଷ ଜୁଲାଇ ମାସରେ ଛାତ୍ରମାନଙ୍କ ପକ୍ଷରୁ ପରୀକ୍ଷା ଫଳ ବାହାର କରିବାର ଦାବି ଘେନି ଛାତ୍ରସଂଘର ନେତୃତ୍ୱରେ ବାଣୀବିହାର କଲେଜ ପ୍ରଭୃତିରେ ଛାତ୍ର ବିକ୍ଷୋଭ ଓ ଛାତ୍ର ଅନଶନ ।

ରାଜ୍ୟରେ କଂଗ୍ରେସ ମନ୍ତ୍ରିମଣ୍ଡଳର ଭୂସଂସ୍କାର କ୍ଷେତ୍ରରେ ଟାଳଟୁଳ ନୀତି ବିରୁଦ୍ଧରେ ପାର୍ଟି ଜମି ଦଖଲ ଆନ୍ଦୋଳନ ବିଭିନ୍ନ ସ୍ଥାନରେ ସଂଗଠିତ କରିଥିଲା ଓ କାହାର ଖାଦ୍ୟ ନୀତିର ବିରୋଧ କରିଥିଲା । ଗଞ୍ଜାମର ଆସିକା, ଭେଟନଇରେ ଓ ବସ୍ତାରେ ଜମି ଦଖଲ ବେଳେ ପୁଲିସ ଦମନ ଓ ଅତ୍ୟାଚାର ହୋଇଥିଲା ।

ସମ୍ବଲପୁରର ଚିପିଲିମା ଫାର୍ମରେ ଓ ବସନ୍ତପୁରରେ କଂଗ୍ରେସୀ ପୁଲିସ ଦମନ, ଲୁହବୁହା ବାଷ୍ପ, ଗିରଫ ୨୪ ଜଣ ପୁରୁଷ ଓ ୪ ଜଣ ମହିଳାଙ୍କୁ ଗିରଫ କରି ନିର୍ଯ୍ୟାତିତ କରାଯାଇଥିଲା ।

ଏରସମା ଓ ବାଲେଶ୍ୱରରେ ଖାଦ୍ୟ ନୀତି ବିରୁଦ୍ଧରେ ଆନ୍ଦୋଳନ, ଷଣ୍ଢତିରାରେ ପୁଲିସ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କାକଟପୁରରେ ଅନଶନ ଅନାହାର ମୃତ୍ୟୁ ବିରୁଦ୍ଧରେ ବିକ୍ଷୋଭ ଏବଂ ଅନାହାର ବିରୁଦ୍ଧରେ, ଦର୍ପଣ, କୁଜଙ୍ଗ ଆଠଗଡର ଗୁରୁଡ଼ିଝାଟିଆରେ ଆନ୍ଦୋଳନ ସଂଗଠିତ ହୋଇଥିଲା । ଭୂସଂସ୍କାର ଦାବିରେ ପାରାଦୀପଠାରେ ବିଶାଳ ଜନସମାବେଶ ହୋଇଥିଲା । କଃ ଭବାନୀ ସେନ ଏହି ସମୟରେ ଓଡ଼ିଶା ଗସ୍ତରେ ଆସିଥିଲେ ।

୧୯୭୨ରେ ସାରା ଭାରତରେ ପାର୍ଟି ପକ୍ଷରୁ ଅମୂଳ ଭୂସଂସ୍କାର ପାଇଁ ଗରିବୀ ହଟାଓ ଧ୍ୱନିରେ ପ୍ରତାରଣା ବିରୁଦ୍ଧରେ ୨ ଲକ୍ଷ କମ୍ୟୁନିଷ୍ଟ ସତ୍ୟାଗ୍ରହ କରିଥିଲେ । ତୁଙ୍ଗ ନେତାମାନଙ୍କ ସହ ୮୯ ହଜାର କଂଗ୍ରେସ ଶାସନରେ ଗିରଫ ହୋଇଥିଲେ । ଓଡ଼ିଶାରେ ଏହି ସମୟରେ କଟକ, ପୁରୀ, ଗଞ୍ଜାମ, ମୟୂରଭଞ୍ଜ, ସମ୍ବଲପୁରରେ ଦେଢ଼ ହଜାର କମ୍ୟୁନିଟ ସତ୍ୟାଗ୍ରହୀଙ୍କୁ ଗିରଫ କରାଯାଇଥିଲା । କେଉଁଝର, କୋରାପୁଟ ଓ ବଲାଙ୍ଗିରରେ ଗିରଫ ଓ ଲାଠିମାଡ଼ ହୋଇଥିଲା ।

ସର୍ବଭାରତୀୟ ଏହି ସଂଗ୍ରାମରେ ନଭେମ୍ବର ମାସରେ କଂଗ୍ରେସ ସରକାର ଅର୍ଥନୀତିକ, ଭୂମିନୀତି, ଶ୍ରମନୀତି ବିରୁଦ୍ଧରେ ବ୍ୟାପକ ବେକାରୀ ବିରୁଦ୍ଧରେ ମହା ଅଭିଯାନ ହୋଇଥିଲା । ଓଡ଼ିଶାରୁ ୫ ଶହ ଲୋକ ଏହି ମହା ଅଭିଯାନରେ ଯୋଗ ଦେଇଥିଲେ ।

ସମ୍ବଲପୁରରେ ଡିସେମ୍ବର ୧୬/୧୭ ଦୁଇଦିନ ଧରି ଛାତ୍ର ସଂଘର ବିଶେଷ ଅଧିବେଶନ ବସି ଶିକ୍ଷା ସଂକୋଚନ ଓ ବେକାରୀ ବିରୁଦ୍ଧରେ ସଂଗ୍ରାମର କାର୍ଯ୍ୟକ୍ରମ ନେଇଥିଲା ।

କଟକ ଉପନିର୍ବାଚନରେ ସ୍ୱତନ୍ତ୍ର ଉତ୍କଳ କଂଗ୍ରେସ ମେଣ୍ଟ ବିରୁଦ୍ଧରେ ପାର୍ଟି ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀଙ୍କୁ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କୁ ସମର୍ଥନ କରିଥିଲା ।

୧୯୭୩ ଫେବୃଆରୀ ୧୨ ତାରିଖରେ ରାଜ୍ୟ କଂଗ୍ରେସ ସରକାର ଅମଳରେ ଦରଦାମ ବୃଦ୍ଧି, ଭୂସଂସ୍କାର, ପଡ଼ିଆ ଜମି ବଣ୍ଟନ, ଋଣ ଛାଡ଼, ଜଳସେଚନ, ଛଟେଇ ବେକାରୀ ସମସ୍ୟାକୁ ଧରି ପାର୍ଟି ପକ୍ଷରୁ ବିଶାଳ ସମାବେଶ ରାଜଧାନୀ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିଲା । ଡଃ ଭୁପେଶ ଗୁପ୍ତ ଏହି ସମାବେଶରେ ଯୋଗ ଦେଇଥିଲେ ।

ଜାନୁଆରୀ ୩୦ରୁ ଫେବୃଆରୀ ୪ ଯାଏଁ କଲିକତାରେ ଅନୁଷ୍ଠିତ ଏଆଇଟିୟୁସିର ୨୭ ତମ ସମ୍ମିଳନୀ ପୂର୍ବରୁ ରାଜ୍ୟରେ ପାର୍ଟି କାମ କରୁଥିବା ଶ୍ରମିକ ଅଞ୍ଚଳରେ ବ୍ୟାପକ ପ୍ରସ୍ତୁତି ହୋଇଥିଲା ।

୧୯୭୩ ଜାନୁଆରୀ ୨୫ ତାରିଖରେ ପାର୍ଟିର ଆହ୍ୱାନରେ ବେକାରୀ ବିରୁଦ୍ଧରେ କଟକରେ ଏକ ବିଶାଳ ଯୁବଛାତ୍ର ସମାବେଶ ଅନୁଷ୍ଠିତ ହୋଇଥିଲା ।

କଂଗ୍ରେସର କେନ୍ଦ୍ର ସରକାରଙ୍କୁ ଜନ ଦାବିଗୁଡ଼ିକୁ ସଂବଳିତ କରି ସ୍ମାରକ ଲିପିରେ ୭୨ ଲକ୍ଷ ଲୋକଙ୍କୁ ସ୍ୱାକ୍ଷର ସଂଗ୍ରହରେ ଓଡ଼ିଶା ପାର୍ଟି ବହୁ ସହସ୍ର ସ୍ୱାକ୍ଷର ସଂଗ୍ରହ କରିଥିଲା । ୧୯୭୩ ମାର୍ଚ୍ଚ ୨୭ରେ ଦିଲ୍ଲୀଠାରେ ୬ ଲକ୍ଷ ଲୋକଙ୍କ ମହାସମାବେଶରେ ଓଡ଼ିଶାର ଗୋଟିଏ ରିଜର୍ଭ ଟ୍ରେନ ଡବାଗୁଡ଼ିକରେ ସାତଶହ ଲୋକ ଯାଇଥିଲେ ।

ଭିଏତନାମ ଉପରେ ଆମେରିକା ଆକ୍ରମଣର ପ୍ରତିବାଦ କରି ପାର୍ଟି ରାଜ୍ୟର ବିଭିନ୍ନ ସ୍ଥାନରେ ପ୍ରତିବାଦ ସଭାମାନ ଅନୁଷ୍ଠିତ କରାଇଥିଲା ।

କାକଟପୁରରେ ଜମି ଆନ୍ଦୋଳନରେ ପୁଲିସ ନିର୍ଯାତନା ଚରମସୀମାକୁ ଉଠିଥିଲା । କମ୍ରେଡ଼ କୃପାସିନ୍ଧୁ ବେହେରା ଅଚେତ ହୋଇ ଚିକିତ୍ସାଧୀନ ହେଲାବେଳେ ବିକ୍ଷୋଭମାନ ସଂଗଠିତ ହୋଇଥିଲା ।

୧୯୭୩ ଜୁନ ପୌରସଭା ନିର୍ବାଚନରେ ପାର୍ଟି ବରଗଡ଼, ବାରିପଦା, ବାଲେଶ୍ୱର, ଆସିକା, ବଡ଼ବିଲରେ ପ୍ରତିଦ୍ୱନ୍ଦ୍ୱିତା କରିଥିଲା । ଏତେବେଳକୁ ମହତାବ, ବିଜୁ ପଟ୍ଟନାୟକ ଓ ସିଂହଦେଓଙ୍କ ନେତୃତ୍ୱରେ ଓଡ଼ିଶାରେ ପ୍ରଗତି ଦଳ ଗଠିତ ହୋଇଥିଲା । ଉଭୟ କଂଗ୍ରେସ ଓ ପ୍ରଗତିଦଳ ପୌର ନିର୍ବାଚନରେ ସିପିଆଇର ବିରୋଧ କରିଥିଲେ । ବରଗଡ଼ରେ ଓ ବଡ଼ବିଲରେ

ପାର୍ଟିର ବିଜୟ ଚମକପ୍ରଦ ହୋଇଥିଲା । ବରଗଡ଼ରେ ପାର୍ଟି ଭାଇସଚେୟାରମେନ ଓ ବଡ଼ବିଲରେ ଚେୟାରମ୍ୟାନ ପଦ ଦଖଲ କରିଥିଲା ।

ଏ ଜୁଲାଇ ମାସରେ କାଂସବାହାଲର ପାର୍ଟି ନେତୃତ୍ୱାଧୀନ ଶ୍ରମିକମାନଙ୍କର ସଂଗ୍ରାମ ଓ ବିଜୟ ଉଲ୍ଲେଖନୀୟ ।

୧୯୭୩ ଜୁଲାଇ ୨୧ ତାରିଖରେ କଟକ ବନ୍ଦରେ ପାର୍ଟିର ଭୂମିକା ଉଲ୍ଲେଖନୀୟ ।

ଦରଦାମ ବୃଦ୍ଧି ସପ୍ତାହ ପାଳନ ପରେ ପାର୍ଟି କମିଟି ଗୁଡ଼ିକର ନେତୃତ୍ୱରେ ଅଗଷ୍ଟ, ସେପ୍ଟେମ୍ବର ପୂର୍ବରୁ ସରକାରୀ ପଡ଼ିଆ ଜମି ଦଖଲ ଆନ୍ଦୋଳନରେ ସମ୍ବଲପୁରର ବରଗଡ଼, ଢେଙ୍କାନାଳର କାମାକ୍ଷାନଗର, କଟକର ଆଠଗଡ଼ ଏବଂ ଓରନ୍ଦା ତଥା ଗଞ୍ଜାମର ଗଣିଆନାଳ, ଗୌତମୀ ଓ ପୁରୀର ଦେବୋତ୍ତର ଜମି ଆନ୍ଦୋଳନରେ ବହୁ ଭୂମିହୀନ ଅଂଶଗ୍ରହଣ କରିଥିଲେ ।

ଏତେବେଳକୁ ରାଜ୍ୟରେ ରାଜ୍ୟପାଳ ଶାସନ । ଦରଦାମ ଆହୁରି ବଢ଼ିଚାଲିଲା । ସାରା ଭାରତରେ ମହଜୁଦ୍ ମାଲ ଉଦ୍ଧାର ଅଭିଯାନ ଲାଗି ପାର୍ଟିର ଆହ୍ୱାନ । ଓଡ଼ିଶାରେ ପାର୍ଟି ନେତୃତ୍ୱରେ ବ୍ୟାପକ ମହଜୁଦ ମାଲ ଉଦ୍ଧାର ଅଭିଯାନ ବ୍ରହ୍ମପୁର, ସମ୍ବଲପୁର, କଟକ ମାଲଗୋଦାମ, ଆସିକା ହୀରାକୁଦ-ଭୁବନ, ଚାନ୍ଦବାଲି-ବଡ଼ବିଲ, ଢେଙ୍କିତିରା, ବାଲେଶ୍ୱର ପୀରହାଟ, ଫୁଲବାଣୀ ଓ ଅନ୍ୟାନ୍ୟ ସ୍ଥାନରେ ଚାଲିଥଲା । ହୀରାକୁଦରେ କମ୍ୟୁନିଷ୍ଟମାନଙ୍କ ଉପରେ ଲୁହବୁହା ବୋମା ନିକ୍ଷେପ କରାଯାଇଥିଲା । କଟକ ଜିଲ୍ଲାପାଳ ଅଫିସକୁ ଘେରାଉ କରାଯାଇଥିଲା । ଗଞ୍ଜାମ ବନ୍ଦ, ହୀରାକୁଦ ଓ ସମ୍ବଲପୁର ବନ୍ଦ କରି ପୁଲିସ ନିର୍ଯ୍ୟାତନାର ପ୍ରତିବାଦ କରାଯାଇଥିଲା । ପାର୍ଟି ହିଁ ଏହାର ନେତୃତ୍ୱ ନେଇଥିଲା । ଆସିକାରେ ପୁଲିସ ମାଡ଼ରେ ୧୩ ଜଣ ଏଡ଼ଭୋକେଟ ଆହତ ହୋଇଥିଲେ । ରାଜ୍ୟପାଳ ଶାସନକାଳରେ କଂଗ୍ରେସ ଏହି ବନ୍ଦର ବିରୋଧ କରି ବିଫଳ ହୋଇଥିଲା ।

୧୯୭୩ ସେପ୍ଟେମ୍ବର ୧୯ ରୁ ୨୩ ଯାଏ ପୁରୀ ଜିଲ୍ଲାର ମାଣିକଯୋଡ଼ାଠାରେ କୃଷକସଭାର ଏକାଦଶ ସମ୍ମିଳନୀ ପରେ ୨୫ ତାରିଖରେ ପାର୍ଟି ଡାକରାରେ ରାଷ୍ଟ୍ରାୟତ୍ତ କ୍ଷେତ୍ର ଶିଳ୍ପ ଗୁଡ଼ିକର ସୁରକ୍ଷା ଲାଗି ଶ୍ରମିକ ଦିବସ ପାଳନ କରାଯାଇଥିଲା ଏବଂ ଏହିଦିନ ସିପିଆଇ, ସିପିଆଇ(ଏମ୍) ସୋସାଲିଷ୍ଟ ପାର୍ଟିର ମିଳିତ ଆହ୍ୱାନରେ ଦରଦାମ ବୃଦ୍ଧି ବିରୁଦ୍ଧରେ ଭୁବନେଶ୍ୱରରେ ହରତାଳ ପାଳିତ ହୋଇଥିଲା ।

ପ୍ରଥମ ଦଫା ମହଜୁଦ ମାଲ ଉଦ୍ଧାର ପରେ ପାର୍ଟି ନେତୃତ୍ୱରେ ବ୍ରହ୍ମପୁରରେ ଯୁବଛାତ୍ରମାନେ ବ୍ୟାପକ ମହଜୁଦ ମାଲ ଉଦ୍ଧାର କରିଥିଲେ । ପୁରୀର ନିମାପଡ଼ା, ପୂର୍ବ ଯାଜପୁର, ଚାନ୍ଦବାଲିରେ ମଧ୍ୟ ମହଜୁଦ ମାଲ ଉଦ୍ଧାର କାର୍ଯ୍ୟ ଚାଲିଥିଲା ।

୧.୭.୭୩ରେ ବ୍ରଜରାଜନଗରରେ ଅନଶନକାରୀ ଶ୍ରମିକମାନଙ୍କ ଉପରେ ଗୁଳିଚାଳନା ଫଳରେ ବିକ୍ଷୋଭ ପ୍ରଚଣ୍ଡ ରୂପ ନେଇଥିଲା । ମୟୂରଭଞ୍ଜ ଓ ବାଲେଶ୍ୱରରେ ବନ୍ୟାଦୁର୍ଗତଙ୍କ

ଥଇଥାନ ଲାଗି ପାର୍ଟି ପକ୍ଷରୁ ଜନ ଆନ୍ଦୋଳନ ହୋଇଥିଲା । ସମ୍ବଲପୁର, ରେଙ୍ଗାଲି ଥାନା ଅନ୍ତର୍ଗତ କୁସୁମେଲରେ ପାର୍ଟିର ଆନ୍ଦୋଳନ ଉପରେ ପୁଲିସର ତାଣ୍ଡବ ଓ ପାଶବିକ ଅତ୍ୟାଚାର ଓ ବ୍ୟାପକ ଗିରଫଦାରୀ ଚାଲିଥିଲା । ଏହା ବିରୁଦ୍ଧରେ ବିକ୍ଷୋଭ ସଂଗଠିତ ହୋଇଥିଲା ।

୧୯୭୪ ବିଧାନସଭା ନିର୍ବାଚନ । ଏକ ଦିଗରେ ସ୍ୱତନ୍ତ୍ର ଉତ୍କଳ କଂଗ୍ରେସକୁ ଧରି ପ୍ରଗତିଦଳର ମେଣ୍ଟ । ସ୍ୱତନ୍ତ୍ର ଦଳର ରାଜେନ୍ଦ୍ର ନାରାୟଣ ସିଂହଦେଓ, ଉତ୍କଳ କଂଗ୍ରେସର ବିଜୁ ପଟ୍ଟନାୟକଙ୍କ ସହିତ ଡକ୍ଟର ମହତାବଙ୍କର ମିଳାମିଶା ଓ କଂଗ୍ରେସ ଛାଡ଼ି ବୀରେନ ମିତ୍ରଙ୍କର ଉକ୍ତ ମେଣ୍ଟ ସହିତ ଯୋଗାଯୋଗ ହୁଏ । ଜନସଂଘ ମଧ୍ୟ ଏମାନଙ୍କ ସହିତ ସାମିଲ ହୁଏ ।

ରାଜ୍ୟରେ ବିଧାନସଭା ନିର୍ବାଚନରେ ପ୍ରତିକ୍ରିୟାଶୀଳ ପ୍ରଗତି ମେଣ୍ଟ ବିରୁଦ୍ଧରେ ପାର୍ଟି ତା'ର ନିର୍ବାଚନ କୌଶଳ ସ୍ଥିର କଲା । କଂଗ୍ରେସ ସହିତ କେତେକ ଆସନରେ ବୁଝାମଣା ଓ ଅନ୍ୟ କେତେକ ଆସନରେ ବନ୍ଧୁତ୍ୱପୂର୍ଣ୍ଣ ଲଢ଼େଇ କର୍ମ କୌଶଳରେ ପାର୍ଟି ୧୪ଟି ସ୍ଥାନରେ ପ୍ରାର୍ଥୀ ହେବା ସ୍ଥିର କଲା । ନିମାପଡ଼ାରେ ରାଜିନାମା ଭଙ୍ଗ କରି କଂଗ୍ରେସ ପାର୍ଟି ପ୍ରାର୍ଥୀଙ୍କ ବିରୁଦ୍ଧରେ ନିଜସ୍ୱ ପ୍ରାର୍ଥୀ ଦେଲା ।

କବି ସୂର୍ଯ୍ୟନଗରରେ ଡଃ ସଦାନନ୍ଦ ମହାନ୍ତି, ଛତ୍ରପୁରରେ ଲକ୍ଷ୍ମଣ ମହାପାତ୍ର, ଆସିକାରେ ହରିହର ଦାସ, ନିମାପଡ଼ାରେ ବ୍ରହ୍ମାନନ୍ଦ ମଲିକ, ବେଗୁନିଆରେ ଗଙ୍ଗାଧର ପାଇକରାୟ, ବ୍ରଜରାଜନଗରରେ ପ୍ରସନ୍ନ କୁମାର ପଣ୍ଡା, ଝାରସୁଗୁଡ଼ାରେ ଈଶ୍ୱର ନାୟକ, ଏରସମାରେ ଲୋକନାଥ ଚୌଧୁରୀ, ବଡ଼ଚଣାରେ ଦୁଃଶାସନ ଜେନା, ବାଲେଶ୍ୱରରେ ଅରୁଣ ଦେ ଭଣ୍ଡାରୀ ପୋଖରୀରେ ଚିନ୍ତାମଣି ଜେନା, ବାଙ୍ଗିରିପୋଷିରେ ରୁଦ୍ରମୋହନ ଦାସ, ଭୁବନେଶ୍ୱରରେ ରାମକୃଷ୍ଣ ପତି, ଅନୁଗୋଳରେ ହୃଷୀକେଶ ପ୍ରଧାନ ଆମର ପ୍ରାର୍ଥୀ ଥିଲେ ।

ପାର୍ଟି କବିସୂର୍ଯ୍ୟନଗର, ଛତ୍ରପୁର, ବ୍ରଜରାଜନଗର, ବାଙ୍ଗିରୀପୋଷି, ଏରସମା, ବଡ଼ଡଚଣା ଓ ବାଲେଶ୍ୱର ଆସନରେ ବିଜୟୀ ହେଲା ।

କଂଗ୍ରେସ ୬୯ଟି ଆସନ ଲାଭ କରିଥିଲା । ସିପିଆଇ ସହିତ ଓଡ଼ିଶାର ଚାଷୀ, ଶ୍ରମିକ, ବୁଦ୍ଧିଜୀବୀ, ମୂଲିଆ ଏବଂ ନିର୍ଦ୍ଦିଷ୍ଟ ସମସ୍ୟା ଓ ରାଜ୍ୟର ବିକାଶ ସମ୍ପର୍କିତ ୧୫ ଦଫା କର୍ମସୂଚୀର ରୂପାୟନ ଲାଗି କଂଗ୍ରେସର ପ୍ରତିଶ୍ରୁତି ଅନୁସାରେ ଏ ସରକାର ପାର୍ଟି ପକ୍ଷରୁ ସମାଲୋଚନାର ଅଧିକାର ସହିତ ସମର୍ଥନ ପାଇବ ଯେପରି ରାଜ୍ୟରେ ପ୍ରତିକ୍ରିୟାଶୀଳ ପ୍ରଗତି ମେଣ୍ଟ ଶାସନକୁ ଫେରିବ ନାହିଁ, ଅବା ରାଷ୍ଟ୍ରପତି ଶାସନ ଜାରି ହୋଇ ରୋଜ୍ୟରେ ରାଜନୈତିକ ଅସ୍ଥିରତା ସୃଷ୍ଟି ହେବ ନାହିଁ ଏବଂ ଲୋକଙ୍କର ମୌଳିକ କେତେକ ଦାବି ଆଦାୟ ହୋଇପାରିବ, ସେ ଦୃଷ୍ଟିରୁ ଏ ସରକାରକୁ ପାର୍ଟି ସମର୍ଥନ କରିବ ବୋଲି ସ୍ଥିର କରିଥିଲା । ଏହି ନିର୍ବାଚନରେ ସିପିଆଇ (ଏମ୍) ଏବଂ ଏସସିପିର ଶକ୍ତି ବୃଦ୍ଧି ବାମପନ୍ଥୀ ଲାଗି ସହାୟକ ବୋଲି ପାର୍ଟି ମୂଲ୍ୟାଙ୍କନ କରିଥିଲା ଯଦିଚ ସିପିଏମ୍‌ର ସିପିଆଇ ବିରୋଧିତା ଉତ୍କଟ ଥିଲା ।

ନନ୍ଦିନୀ ସରକାରଙ୍କ ଶାସନରେ ମଧ ଦରଦାମ ବୃଦ୍ଧି, ଶାସନ କଳରେ ବ୍ୟାପକ ଦୁର୍ନୀତି, ଶ୍ରମିକ ବିରୋଧୀ ନୀତି ଓ ଚାଷୀ ସ୍ୱାର୍ଥବିରୋଧୀ କାମଦାମ ବିରୁଦ୍ଧରେ ପାର୍ଟି ବିଧାନସଭାରେ ସମର୍ଥନ ଦେଉଥିଲେ ମଧ ସରକାରର ତୀବ୍ର ବିରୋଧ କରି ସଂଗ୍ରାମମାନ ଚଳାଇଥିଲା ।

ଏହି ସମୟରେ ଜନସଂଘ, ଆରଏସଏସ ସହିତ ଜୟପ୍ରକାଶଙ୍କ ଆନ୍ଦୋଳନର ଘନିଷ୍ଠ ସଂଶ୍ରବର ପାର୍ଟି ନୀତିଗତ ଓ ଆଦର୍ଶଗତ ଭାବରେ ବିରୋଧ କରିଥିଲା । କାରଣ ଏହି ଆନ୍ଦୋଳନର ସୁଯୋଗ ଘେନି ଯାବତୀୟ ଦକ୍ଷିଣପନ୍ଥୀ, ପ୍ରତିକ୍ରିୟାଶୀଳ ବ୍ୟକ୍ତି ଓ ଦଳ ଏଥିରେ ମିଶି ନିଜ ନିଜ ରାଜନୈତିକ, ଅର୍ଥନୈତିକ ସାଂପ୍ରଦାୟିକ ଓ ସାମାଜିକ ସ୍ୱାର୍ଥ ହାସଲ କରିବା ଉଦ୍ଦେଶ୍ୟସାଧନ କରୁଛନ୍ତି ବୋଲି ପାର୍ଟିର ମୂଲ୍ୟାୟନ ଥିଲା ।

ଅନାଟନ, ଅଭାବ ସୃଷ୍ଟି ଓ ସରକାରୀ କଳର ଅପାରଗତା ବିରୁଦ୍ଧରେ ପାର୍ଟି ମହଜୁଦ୍ ମାଲ ଉଦ୍ଧାର ଅଭିଯାନକୁ ତ୍ୱରାନ୍ୱିତ କଲା ।

୧୯୭୪ ଜୁନ୍ ୩ ରୁ ୧୦ ଏକ ସପ୍ତାହ ବ୍ୟାପୀ ରାଜ୍ୟର ପାର୍ଟି ପ୍ରଭାବାଧୀନ ବିଭିନ୍ନ ବ୍ଲକ୍ ଓ ତହସିଲରେ ବିକ୍ଷୋଭ, ଅନଶନର କାର୍ଯ୍ୟକ୍ରମକୁ ପାର୍ଟି ରୂପାୟତ କରିଥିଲା ।

ନନ୍ଦିନୀ ସରକାରଙ୍କ ଦ୍ୱାରାର ପଟାମୁଣ୍ଡେଇର ଗୁଳିକାଣ୍ଡ ଓ ହତ୍ୟାର ପାର୍ଟି ତୀବ୍ର ନିନ୍ଦାବାଦ କରିଥିଲା ।

ତା ୭.୮.୭୪ ରେ ପାର୍ଟି ଏକ କେନ୍ଦ୍ରୀୟ ଗଣ ସମାବେଶ ଭୁବନେଶ୍ୱରରେ କରାଇ ସେପ୍ଟେମ୍ବର ୩/୪ ଦୁଇ ଦିନ ଧରି ଜନ ସାଧାରଣ ଦାବିଗୁଡ଼ିକ ଧରି ଘେରାଉ କରିବାକୁ ଡାକରା ଦେଇଥିଲା ଏବଂ ସମ୍ବଲପୁର, କେଉଁଝର, ମୟୂରଭଞ୍ଜ, ବାଲେଶ୍ୱର, ଢେଙ୍କାନାଳ, କଟକ, ପୁରୀ ଗଞ୍ଜାମ ଓ କୋରାପୁଟ ତଥା ରାଉରକେଲାରେ ଘେରାଉ ମଧ ଅନୁଷ୍ଠିତ ହୋଇଥିଲା ।

ଏହି ବର୍ଷ ସେପ୍ଟେମ୍ବର ୯ ତାରିଖରେ କଟକଠାରେ ବିରାଟ ଅଖିଳ ଭାରତ ଶାନ୍ତି ସମ୍ମିଳନୀ ଅନୁଷ୍ଠିତ ହୋଇ ପରମାଣୁ ଯୁଦ୍ଧାସ୍ତ୍ରର ବିଲୋପ, ନିରସ୍ତ୍ରୀକରଣ, ଭିଏତ୍‌ନାମରୁ ଆମେରିକାର ଅପସାରଣ, ଭାରତ ମହାସାଗରରୁ ଡିଆଗୋଗାର୍ସିଆରୁ ଆମେରିକାର ପରମାଣୁ ଘାଟି ଅପସାରଣର ଦାବି କରାଯାଇଥିଲା ।

ରାଜ୍ୟ ପାର୍ଟିର ସାଂଗଠନିକ କ୍ଷେତ୍ରରେ ୧୯୭୫ ଜାନୁଆରୀ ୨୭ ଠାରୁ ଅନୁଷ୍ଠିତ ହୋଇଥିବା ବିଜୟୱାଡ଼ା ୧୦ମ ପାର୍ଟି କଂଗ୍ରେସ ପରିପ୍ରେକ୍ଷୀରେ ନଭେମ୍ବର ୫ ତାରିଖ ସୁଦ୍ଧା ସବୁ ଜିଲ୍ଲା ସମ୍ମିଳନୀ ଅନୁଷ୍ଠିତ କରାଯାଇଥିଲା ଓ ରାଉରକେଲାଠାରେ ଡିସେମ୍ବର ୨୬ ଓ ୨୯ ଯାଏ ଅନୁଷ୍ଠିତ ହୋଇଥିଲା ।

ଆସିକାରେ ଡିସେମ୍ବର ୧୪ ତାରିଖରେ ସର୍ବଭାରତୀୟ ଆଖୁ ଚାଷୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

କମ୍ରେଡ୍ ଲକ୍ଷ୍ମଣ ମହାପାତ୍ର ପାର୍ଟିର ପ୍ରାର୍ଥୀ ରୂପେ ରାଜ୍ୟ ସଭାକୁ ୬ ବର୍ଷ ପାଇଁ ନିର୍ବାଚିତ ହୋଇଥିଲେ ।

୧୯୭୫ ମାର୍ଚ୍ଚ ୨୦ ରେ ଜମି, ଘରଡ଼ିହ, ଜଳସେଚନ, ପାନୀୟ ଜଳ, ଶ୍ରମିକ ଛଟେଇ ବନ୍ଦ, ମୂଲିଆମାନଙ୍କ ମଜୁରି, ଋଣ ଛାଡ଼ ଇତ୍ୟାଦି ଦାବି ଘେନି, ଆମୂଳ ଭୂସଂସ୍କାର ଦାବି ଘେନି ନନ୍ଦିନୀ ସରକାର ବିରୁଦ୍ଧରେ ଗଣସମାବେଶ ଅନୁଷ୍ଠିତ ।

ମାର୍ଚ୍ଚରେ ଭାସ୍କର ସୂତାକଳରେ ତାଲା ବନ୍ଦ ବିରୁଦ୍ଧରେ, ସଂଗ୍ରାମ । ଏପ୍ରିଲ ମାସରେ ପାର୍ଟି ପକ୍ଷରୁ ଶାନ୍ତି ସହଯୋଗ ଲାଗି ଓ ସାମ୍ରାଜ୍ୟବାଦୀ ଷଡ଼ଯନ୍ତ୍ର ବିରୁଦ୍ଧରେ ଏସିଆ ସପ୍ତାହ ପାଳନ । ଗଞ୍ଜାମର ଗୁରାଣ୍ଡିରେ କଂଗ୍ରେସ ଏମ୍.ଏଲଏ ବୃହତ ଜମିମାଲିକଙ୍କ ପକ୍ଷରୁ ପାର୍ଟି ଆନ୍ଦୋଳନକାରୀମାନଙ୍କ ଉପରେ ଗୁଳି ଏବଂ ଜିଲ୍ଲାରେ ଅନାହାର ଦରବୃଦ୍ଧି ବିରୁଦ୍ଧରେ ଗଞ୍ଜାମ ଜିଲ୍ଲା ସଦର ଦପ୍ତର ଛତ୍ରପୁରଠାରେ ୧୫ ହଜାର ଜନତାର ବିକ୍ଷୋଭ ମାର୍ଚ୍ଚ ୮ ତାରିଖରେ ଅନୁଷ୍ଠିତ ।

ବଡ଼ବିଲ ଯୋଡ଼ାରେ ଏପ୍ରିଲ ୧୯ ତାରିଖରେ ଏକ ବିରାଟ ଶ୍ରମିକ ସମାବେଶ ଆହୂତ ହୋଇଥିଲା । ୧୯୭୫ ଏପ୍ରିଲରେ ରାଜ୍ୟର ୩୭୦୦ ପଞ୍ଚାଏତର ନିର୍ବାଚନରେ ପାର୍ଟି ତାର ପ୍ରଭାବଧୀନ ଅଞ୍ଚଳରେ ଅନେକ ସ୍ଥାନରେ କଂଗ୍ରେସ ଏବଂ ଲୋକଦଳ ମେଣ୍ଟର ସମ୍ମୁଖୀନ ହେଲେ ହେଁ ପ୍ରାୟ ୬୦ଟି ପଞ୍ଚାୟତ ସ୍ଥାନରେ ବିଜୟୀ ହୋଇଥିଲା ।

ଏହି ବର୍ଷ ଓଡ଼ିଶାର ୭ ଟି ଜିଲ୍ଲା କଳାହାଣ୍ଡି, ସମ୍ବଲପୁର, ଗଞ୍ଜାମ, କେଉଁଝର, କଟକ, ପୁରୀ, ବାଲେଶ୍ୱରର ବିସ୍ତୃତ ଇଲାକାରେ ବ୍ୟାପକ ମରୁଡ଼ି ପଡିଥିଲା । ଏହାଛଡ଼ା ଢେଙ୍କାନାଳ, ଫୁଲବାଣୀ, କୋରାପୁଟରେ ବିଭିନ୍ନ ଅଞ୍ଚଳରେ ମରୁଡ଼ି । ପାନୀୟ ଜଳ, ତୁରନ୍ତ ରିଲିଫ, ଋଣଛାଡ଼, ମାଗଣା ଖାଦ୍ୟ ଦାବି ଘେନି ଗଞ୍ଜାମ, ପୁରୀ, ଫୁଲବାଣୀ, ଢେଙ୍କାନାଳ, ସମ୍ବଲପୁର, କଟକରେ ବିକ୍ଷୋଭ ସଂଘଟିତ ହୋଇଥିଲା । ବିଭିନ୍ନ ମରୁଡ଼ିଗ୍ରସ୍ତ ଇଲାକାକୁ ଡଃ ଭୁପେଶ ଗୁପ୍ତ ସେପ୍ଟେମ୍ବର ୬/୭ରେ ପରିଦର୍ଶନ କରିଥିଲେ ।

୧୯୭୫ ଜୁନ୍ ୨୫ରୁ ୨୭ ତିନିଦିନ ବ୍ୟାପୀ ରାଜଧାନୀ କଳାମଣ୍ଡପରେ ଭାଗଚାଷୀଙ୍କ ସ୍ୱାର୍ଥରକ୍ଷା ଓ ଭୂସଂସ୍କାର ଘେନି ଏକ କନଭେନସନ । ତା' ପୂର୍ବରୁ ପୁରୀ ଜିଲ୍ଲାର ଏକ କନଭେନସନ । ଚିପିଲିମାଠାରେ ରାଜ୍ୟ ଏଆଇଟିୟୁସିର ୪ର୍ଥ ସମ୍ମିଳନୀ ଏବଂ ବଙ୍ଗବନ୍ଧୁ ଶେଖ ମୁଜିବୁରଙ୍କ ନିର୍ମମ ହତ୍ୟାର ପ୍ରତିବାଦରେ ବିଭିନ୍ନ ସ୍ଥାନରେ ପାର୍ଟି ଆୟୋଜନ ସଭାସମିତି ଅନୁଷ୍ଠିତ ।

ଅକ୍ଟୋବର ୨ ଗାନ୍ଧୀ ଜୟନ୍ତୀ ଦିବସରେ ରାଜ୍ୟରେ ବନ୍ୟାର୍ତ୍ତ ଜନତାର ଥଇଥାନ ପାଇଁ ପାର୍ଟି ପକ୍ଷରୁ ବନ୍ୟାର୍ତ୍ତ ଦିବସ ପାଳିତ । ସେପ୍ଟେମ୍ବର ୭ ରୁ ୨୯ ଯାଏ ଗୋପାଳପୁରଠାରେ ପାର୍ଟି ପକ୍ଷରୁ ଏକ ରାଜ୍ୟସ୍ତରୀୟ ଶିକ୍ଷା ଶିବିର ଅନୁଷ୍ଠିତ ।

ଏହି ବର୍ଷ ପାର୍ଟିର ୫୦ତମ ଜୟନ୍ତୀ ପାଳିତ ହୋଇଥିଲା । ସଂଗଠନ କଂଗ୍ରେସ, ଜନସଂଘ, ଆରଏସଏସର ବିପଦ ଓ ଏମାନଙ୍କୁ ଘେନି ଜୟପ୍ରକାଶ ନାରାୟଣଙ୍କ ସଂପୂର୍ଣ୍ଣ କ୍ରାନ୍ତି ଦେଶର ଐକ୍ୟ, ସଂହତି ପ୍ରତି ବିପଦ ଆଣିବ ଏବଂ ସାଂପ୍ରଦାୟିକତାବାଦୀ ଆର୍‌ଏସ୍‌ଏସ୍ ଜନସଂଘ ଏଥିରେ ଲାଭବାନ ହେବ, ପାର୍ଟିର ଏହି ଅବଧାରଣା ନେଇଥିଲା । କାରଣ ମା ଏହିସବୁ ଶକ୍ତି ଓ ଦଳ ରାଜାଙ୍କ ଭତ୍ତାକାଟ, ବ୍ୟାଙ୍କ ଜାତୀୟକରଣ, ବୃହତ ପୁଞ୍ଜି ଓ ବିଦେଶୀ ଏକଚାଟିଆ ବିଶେଷତଃ ଭାରତ ସାଗରରେ ମାର୍କିନ ଯୁଦ୍ଧଘାଟୀର ପ୍ରତିବାଦ କରୁ ନ ଥିଲେ କି ଆମେରିକାନ ପୁଞ୍ଜି ବିରୋଧୀ ସଂସ୍କାରର ଓ ଭୂସଂସ୍କାରର ବିରୋଧୀ ଥିଲେ । ସେମାନଙ୍କ ଏହି ଆନ୍ଦୋଳନର ପ୍ରତିକ୍ରିୟାଶୀଳ ଦିଗଗୁଡିକର ବିରୋଧ କରି ଫାସିଷ୍ଟ ବିରୋଧୀ ସମାବେଶ, ସେମିନାରମାନ ଅନୁଷ୍ଠିତ କରାଇଥିଲା । କଟକରେ ୧୯୭୫ ନଭେମ୍ବର ୨୧ ରେ ବିରାଟ ଫାସିଷ୍ଟ ବିରୋଧୀ ସମ୍ମିଳନୀରେ ଇନ୍ଦ୍ରଜିତ ଗୁପ୍ତ ଭାଷଣ ଦେଇଥିଲେ ।

୧୯୭୫ ଜୁନରେ ଜରୁରୀ ପରିସ୍ଥିତି ଘୋଷିତ ହେଲା ଏବଂ ଜୁଲାଇରେ କଂଗ୍ରେସ (ଇ) ପକ୍ଷରୁ ୨୦ ଦଫା କାର୍ଯ୍ୟକ୍ରମ ଘୋଷିତ ହେଲା ।

ଏହି ବିଶେଷ ରାଜନୈତିକ ପରିସ୍ଥିତିରେ ପାର୍ଟି କଂଗ୍ରେସ ସରକାର ପ୍ରତି ସମାଲୋଚନାମୂଳକ ବିରୋଧ ଓ ଜନସ୍ୱାର୍ଥ ପକ୍ଷପାତୀ କାର୍ଯ୍ୟଗୁଡ଼ିକ ପ୍ରତି ସମର୍ଥନ କର୍ମକୌଶଳ ଗ୍ରହଣ କଲା । ମାତ୍ର ସଞ୍ଜୟ କୁଚକ୍ରର ଜବରଦସ୍ତ ଘରଭଙ୍ଗା, ଜବରଦସ୍ତ ବନ୍ଧ୍ୟାକରଣ ଓ ଗଣତାନ୍ତ୍ରିକ ଅଧିକାରଗୁଡ଼ିକର ଉଲଙ୍ଘନର ପ୍ରତିବାଦ ଚଳାଇଲା ।

୧୯୭୬ ଜାନୁଆରୀରେ ରାଜ୍ୟ ପାର୍ଟି ଏକ ଲକ୍ଷ ଟଙ୍କା ପାର୍ଟି ପାଣ୍ଠିର ଆହ୍ୱାନ ଦେଲା ।

ଜରୁରୀ ପରିସ୍ଥିତିର ସରକାର ବୋନସ୍ ଅଡ଼ନାନ୍‌ସ ଜାରି କରିବାରୁ ତା'ର ବିରୁଦ୍ଧରେ ରାଜ୍ୟରେ ଶ୍ରମିକମାନଙ୍କ ଅନଶନ ପ୍ରତିବାଦରେ ପାର୍ଟି ସକ୍ରିୟ ଭୂମିକା ନେଇଥିଲା ।

ଏହି ସମୟରେ ୨୦ ଦଫା କାର୍ଯ୍ୟକ୍ରମରେ ପ୍ରତିଶ୍ରୁତିଗୁଡ଼ିକ ପୂରଣ କରିବା ଦାବି ଘେନି ପାର୍ଟି ପକ୍ଷରୁ ବହୁ ସ୍ଥାନରେ ଭୂମି ଆନ୍ଦୋଳନ ସଂଗଠିତ । ଚନ୍ଦକା, କୁଶସ୍ଥଳୀ, ବାଲେଶ୍ୱରର ଓ କଟକର ଅନେକ ସ୍ଥାନରେ ଜମି ମାଲିକମାନଙ୍କ ପକ୍ଷରୁ ପ୍ରଚଣ୍ଡ ଆକ୍ରମଣ ଓ ତାହା ବିରୁଦ୍ଧରେ ସ୍ଥାନୀୟ ଆନ୍ଦୋଳନ ।

୧୯୭୨ରେ ଦରଦାମ ବୃଦ୍ଧି ଆନ୍ଦୋଳନବେଳେ ସମ୍ବଲପୁରରେ କୁସୁମେଲରେ ଗିରଫ କରାଯାଇଥିବା କମ୍ୟୁନିଷ୍ଟ ସଭ୍ୟ ସମର୍ଥକ ୧୨୬ ଜଣଙ୍କୁ ୧୯୭୫ ପ୍ରଥମ ଭାଗରେ ଅଦାଲତର ୧୫ ଦିନ କାରାଦଣ୍ଡ ।

ଏହି ଜରୁରୀ ପରିସ୍ଥିତି ଓ ନନ୍ଦିନୀ ସରକାରଙ୍କ ଅମଳରେ ୧୯୬୪ ନଭେମ୍ବର ୨୨ ତାରିଖରେ ପୁଲିସ୍ ଦ୍ୱାରା ବାଲିସୁଆଁରେ ମୁରଲୀ ପରିଡ଼ା ହତ୍ୟାକାଣ୍ଡରେ କମ୍ୟୁନିଷ୍ଟମାନଙ୍କୁ ଜଡ଼ିତ କରାଯାଇଥିଲା । ଏହି ମକଦ୍ଦମାରେ ଦୀନବନ୍ଧୁ ତରାଇ, ଅର୍ଜୁନ ବେହେରା ପ୍ରମୁଖ ୪୦ ଜଣଙ୍କ ନାମରେ ହତ୍ୟାମକଦ୍ଦମା ଦାଏର କରାଯାଇଥିଲା ।

୧୯୭୫ ଫେବୃଆରୀରେ ଜରୁରୀ ଅବସ୍ଥା ବେଳେ କୋରାପୁଟର ମାଲକାନଗିରି ଅଞ୍ଚଳ ଆଦିବାସୀମାନଙ୍କ ଉପରେ ଜୁଲୁମ ବିରୁଦ୍ଧରେ ପାର୍ଟିର ଆନ୍ଦୋଳନ ।

ଫେବୃଆରୀ ୧୫ରେ ଖୋର୍ଦ୍ଧା ଠାରେ ପୁରୀ ଜିଲ୍ଲା ଛାତ୍ର ସମ୍ମିଳନୀ । ମାର୍ଚ୍ଚ ୨୧ରେ କଟକ ରାଷ୍ଟ୍ରଭାଷା ପ୍ରଚାର ଭବନରେ ପ୍ରେସ ଶ୍ରମିକମାନଙ୍କ ସମ୍ମିଳନୀ ଓ ପ୍ରେସ ଶ୍ରମିକମାନଙ୍କ ମଜୁରି ବୃଦ୍ଧି ଦାବି ଆଦାୟ, ଚୌଦ୍ୱାର ଟିପିଏମ ଶ୍ରମିକମାନଙ୍କ ଦୀର୍ଘଦିନ ସଂଗ୍ରାମର ବିଜୟ ଏ ସମୟରେ ପାର୍ଟି କାର୍ଯ୍ୟକଳାପର ଆଉ ଏକ ପରିଚୟ ।

ଗଞ୍ଜାମରେ କମ୍ୟୁନିଷ୍ଟନେତାମାନଙ୍କୁ ଏକ ହତ୍ୟା ଘଟଣାରେ ପୁଲିସ ଓ ପ୍ରଶାସନ କମ୍ରେଡ଼ ବିଶ୍ୱନାଥ ସାହୁ, ରମେଶ ପାଢ଼ୀ, ଭଗବାନ ସାହୁଙ୍କୁ ଜଡ଼ିତ କଲା । ୧୮ ଜଣଙ୍କୁ ଗିରଫ କରାଗଲା । ଏହି ହତ୍ୟା ମକଦ୍ଦମା କାଳରେ ଗିରଫ ହୋଇଥିବା ବ୍ୟକ୍ତି ଅମର ପାତ୍ରଙ୍କ ଆତ୍ମସମର୍ପଣମୂଳକ ବିବୃତି ଯୋଗୁଁ ପାର୍ଟିରୁ ବହିଷ୍କାର କରାଯାଇଥିଲା । ଏହି ମକଦ୍ଦମାରେ କମ୍ରେଡ଼ ସାହୁ, ପାଢ଼ୀ ପ୍ରମୁଖ ୧୧ ଜଣଙ୍କୁ ନିର୍ଦ୍ଦୋଷରେ ଅଦାଲତ ଖଲାସ କରିଦେଲେ ଏବଂ ଆଉ ୭ ଜଣଙ୍କୁ ୨ ବର୍ଷ ସଜା ଦିଆଯାଇଥିଲା ।

**ଭୂସଂସ୍କାର ଦାବିରେ ପଦଯାତ୍ରା**

ବାଲେଶ୍ୱରରେ ଜମି ମାଲିକ ଓ ମହାଜନମାନେ ଋଣୀ ଗରିବ ମଧ୍ୟବିତ୍ତ ଚାଷୀଙ୍କୁ ଋଣ ଦେବାବେଳେ ବିଶ୍ୱାସୀ କବଲା ବ୍ୟାପକ ଭାବରେ କରାଇଥାନ୍ତି । ସୁଧ ବଢ଼ି ବଢ଼ି ଯାଏ ଋଣ ଆଦାୟ ହେଲେବି ଶେଷରେ ବିଶ୍ୱାସ ଭଙ୍ଗ କରି ମହାଜନ ଜମିଦାରମାନେ ଚାଷୀର ସମସ୍ତ ଜମିକୁ କବଲା ବଳରେ ସ୍ୱତ୍ୱରେ ପରିଣତ କରନ୍ତି । ୨୦ ଦଫା କର୍ମସୂଚୀ ବେଳେ ବାଲେଶ୍ୱର ପାର୍ଟି ବିଶ୍ୱାସୀ କବଲା ବିରୁଦ୍ଧରେ ସଂଗଠିତ ଆନ୍ଦୋଳନ କରି କବଲା ଗୁଡ଼ିକୁ ଉଦ୍ଧାର କରି ପୋଡ଼ି ଦେଇଥିଲା ଓ ଚାଷୀମାନଙ୍କୁ ଜମିରେ ଦଖଲ ଦିଆଗଲା । ଏହା ଏକ ଚମକ ସୃଷ୍ଟି କରିଥିଲା ।

ଉଦବୃତ୍ତ ଜମି ଉଦ୍ଧାର ଓ ଦଖଲ, ପଡ଼ିଆ ଜମି ଦଖଲ, ଘରଡ଼ିହ, ଆମୂଳ ଭୂସଂସ୍କାର ଲାଗି ରାଜ୍ୟ ପାର୍ଟି କେନ୍ଦ୍ରୀୟ ନିଷ୍ପତ୍ତି ଅନୁସାରେ ଅନ୍ତତଃ ୧ ହଜାର ଗାଁ'ରେ ସର୍ଭେ କରିବ, ୪ ହଜାର ଗାଁ'ରେ ପଦଯାତ୍ରା କରିବ ସ୍ଥିର କଲା । ଏପରି ଜମି ଚିହ୍ନଟ କରିବ ଓ ଦଖଲ କରିବା ଲାଗି ସଂପୃକ୍ତ ଗରିବ ଭୂମିହୀନଙ୍କୁ ସଂଗଠିତ କରିବାର ଯୋଜନା ନେଲା । ତଦନୁସାରେ ନିମାପଡ଼ା, ଖୋର୍ଦ୍ଧା ସବଡ଼ିଭିଜନର ବେଗୁନିଆ, ବୋଲଗଡ଼, ଭଦ୍ରକ, ଚାନ୍ଦବାଲି, ବେଲଗୁଣ୍ଠା, ଆଠଗଡ଼, ରାଏରଙ୍ଗପୁର, ଯାଜପୁର, ବଡ଼ବିଲ, ଆସିକା, କେନ୍ଦ୍ରାପଡ଼ା, ଜଗତ୍‌ସିଂହପୁର, ଦିଗପହଣ୍ଡି, ଅନୁଗୁଳ, ପୋଡ଼ପଡ଼ା, ଶେରଗଡ଼, ଫୁଟିଆପଦର, ଆଲପୁର, ବାଲେଶ୍ୱରରେ ନଦୀଗାଁ, ଆନନ୍ଦପୁର ପ୍ରଭୃତି ଗାଁ'ରେ ସଭାସମିତି ଓ ତଥ୍ୟ ସଂଗ୍ରହ କରାଯାଇଥିଲା । ପଦଯାତ୍ରାମାନ ଅନୁଷ୍ଠିତ ହୋଇଥିଲା । ସମ୍ବଲପୁରରେ ୨ ଶହ ଗାଁ'ରେ ପଦଯାତ୍ରା କରାଯାଇଥିଲା ।

ଡଃ ଭୁପେଶ ଗୁପ୍ତ ବେଗୁନିଆ, ନିମାପଡ଼ା, ସୋର, ନିଦିଗାଁ'ରେ ମାଇଲ ମାଇଲ ପରି ପଦଯାତ୍ରାରେ ନେତୃତବ ନେଇଥିଲେ ।

ବାଲିସୁଆଁରେ ମୂରଲୀ ପରିଡ଼ା ହତ୍ୟା ପରେ ବିରାଟ ବିରାଟ ପ୍ରତିବାଦ ସଭା ପରେ ନନ୍ଦିନୀ ସରକାରର ରାଜସ୍ୱ ମନ୍ତ୍ରୀ ବାଙ୍କ ବିହାରୀ ଦାସ ଚାଷୀ ସପକ୍ଷରେ ଭାଗଚାଷ ଆଇନର ସଂଶୋଧନ ଆଣିଥିଲେ । ଆଗତ ଏହି ବର୍ଷ ଅଗଷ୍ଟ ୧୬ ତାରିଖରେ ବାଲିସୁଆଁ ହତ୍ୟା ମକଦ୍ଦମାରେ ମିଛରେ ୪୦ ଜଣ ସାଥୀଙ୍କ ନାମରେ ଯେଉଁ ମକଦ୍ଦମା କରାଯାଇଥିଲା ତାରି ବଳରେ ଜାମିନରେ ଆସିଥିବା ଦୀନବନ୍ଧୁ ତରାଇ, ଅର୍ଜୁନ ବେହେରା ପ୍ରମୁଖ ୯ ଜଣଙ୍କୁ ଗିରଫ କରାଯାଇ ବିଚାରାଧୀନ ବନ୍ଦୀ କରାଗଲା । କଟକ ଜିଲ୍ଲା ପାଟ ଦ୍ୱାରା ବାଲିସୁଆଁ ପ୍ରତିରକ୍ଷା କମିଟି ଗଢ଼ାଯାଇ ଜିଲ୍ଲାବ୍ୟାପୀ ପାର୍ଟି ସଦସ୍ୟ ସମର୍ଥକଙ୍କ ଦିନିକିଆ ଅନଶନ ଦ୍ୱାରା ସଂଚିତ ଅର୍ଥ ପ୍ରତିରକ୍ଷା ପାଣ୍ଠିକୁ ଆସିଥିଲା । ଏହି ବ୍ୟାପକ ବ୍ୟବସ୍ଥା ୧୯୬୭ ଅକ୍ଟୋବର ୯ ତାରିଖରେ ସଂଘଟିତ ହୋଇଥିଲା ।

ସେପ୍ଟେମ୍ବର ୨୫/୨୬ରେ ଝାରସୁଗୁଡାରେ ରାଜ୍ୟ କ୍ଷେତ ମଜଦୁର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଭୂମି ଆନ୍ଦୋଳନ ବେଳେ ଗଞ୍ଜାମର ୮ ଜଣ ଭାଗଚାଷୀଙ୍କ ଉପରେ ଜମି ମାଲିକଙ୍କ ଆକ୍ରମଣରେ ଡଃ ଦୁତିଆ ନାୟକ ହତ୍ୟା ପରେ ଗଞ୍ଜାମରେ ସର୍ବତ୍ର ପ୍ରତିବାଦ ଜନସଭା ଅନୁଷ୍ଠିତ ହୋଇଥିଲା ।

ପାର୍ଟିର ସାଥୀମାନଙ୍କ ନେତୃତ୍ୱରେ ଦୈତାରୀ ଖଣି ଶ୍ରମିକମାନଙ୍କ ଉପରେ ଠିକାଦାରମାନଙ୍କ ଜୁଲୁମର ତୀବ୍ର ପ୍ରତିବାଦ ସଫଳ ହୋଇଥିଲା ।

ଜରୁରୀ ପରିସ୍ଥିତିର ବିଭିନ୍ନ କଟକଣା ଓ ସମାବେଶ କରାଇ ନ ଦେବାକୁ ହୁକୁମ ସତ୍ତ୍ୱେ ୧୯୭୭ ଅକ୍ଟୋବରରେ ଜାମସେଦପୁରଠାରେ ଏ.ଆଇ.ଟି.ୟୁ.ସି.ର ୩୦ତମ ଅଧିବେଶନରେ ଓଡ଼ିଶାର ଶତାଧିକ ଟ୍ରେଡ୍ ୟୁନିଅନ ପ୍ରତିନିଧି ଯୋଗ ଦେଇଥିଲେ ।

ସେପ୍ଟେମ୍ବର ୧୯୬୬ରେ ଜରୁରୀକାଳୀନ ପରିସ୍ଥିତି ସଭା ସମିତି ଲାଗି ବିଭିନ୍ନ କଟକଣା କରିଥିବାରୁ ପାର୍ଟି ରାଜ୍ୟର ସାମାଜିକ ଆର୍ଥିକ ବିକାଶନାମରେ ବହୁ ସ୍ଥାନରେ ବିକଳ୍ପ ସମ୍ମିଳନୀ ଅନୁଷ୍ଠିତ କରାଇଥିଲା । ବୃହତ୍ ଧରଣର ଏପରି ସମ୍ମିଳନୀ କଟକ ଶହୀଦ ଭବନ, ବଡ଼ବିଲ ବିକାଶ ମହଲ, ଭଦ୍ରକ, ନିମାପଡ଼ା, ବରପାଲିରେ ଅନୁଷ୍ଠିତ ହୋଇଥିଲା ।

ଗଞ୍ଜାମରେ ଛାତ୍ର ଓ ଯୁବକମାନଙ୍କର ଏକ ବଡ ଧରଣର ସମାବେଶ ବର୍ଷ ଶେଷ ଭାଗରେ ଅନୁଷ୍ଠିତ । ନଭେମ୍ବର ୧୦ ରୁ ୧୪ ଯାଏ ପଶ୍ଚିମବଙ୍ଗର ଚବିଶପ୍ରଗଣାରେ ଜାତୀୟ କ୍ଷେତ୍ର ମଜଦୁର ସଂଘ ସମ୍ମିଳନୀ ପୂର୍ବରୁ ଓଡ଼ିଶାର କେତେକ ଜିଲ୍ଲାରେ ପ୍ରସ୍ତୁତି ସମ୍ମିଳନୀ ହୋଇଥିଲା ।

ଏହି ବର୍ଷ ଶେଷ ଭାଗରେ ବେଗୁନିଆରେ ଘରଡ଼ିହ ଦାବି କରି ଆଦିବାସୀ

ହରିଜନମାନଙ୍କ ପ୍ରତିବାଦ ବିକ୍ଷୋଭ ଉପରେ କଂଗ୍ରେସ ନେତୃତ୍ୱାଧୀନ ସରକାର ପୁଲିସ ନିର୍ମମ ଆକ୍ରମଣ କରିଥିଲେ । ୭୮ ଜଣ ମହିଳାଙ୍କୁ ଗିରଫ କରିନେଇଥିଲେ ।

ଜୟଶ୍ରୀ କେମିକାଲର ମାଲିକ ଓ ପୁଲିସ ଶ୍ରମିକ ନେତାମାନଙ୍କୁ ମହଜୁଦ୍ ମାଲ ଉଦ୍ଧାର ଆନ୍ଦୋଳନରେ ଭାଗ ନେଇଥିବାରୁ ଡକାୟତୀ ମକଦ୍ଦମାରେ ଜଡିତ କରିଥିଲା । ବହୁ ଦିନ ମକଦ୍ଦମା ବିଚାର ପରେ ଅଦାଲତ ସେମାନଙ୍କୁ ନିର୍ଦ୍ଦୋଷରେ ଖଲାସ କରିଦେଲା ।

୧୯୭୭ ନଭେମ୍ବର ୧୩/୧୪ରେ କଟକଠାରେ ପାର୍ଟିର ସାଙ୍ଗଠନିକ ସମ୍ମିଳନୀ ଅନୁଷ୍ଠିତ ।

ଓଡ଼ିଶାରେ କୃତ୍ରିମ ଖାଦ୍ୟାଭାବ ସୃଷ୍ଟି କରାଯାଇ ଯେଉଁ ଅନାହାର, ଅର୍ଦ୍ଧାହାର ପରିସ୍ଥିତି ଦେଖାଦେଇଥିଲା, ଜରୁରୀକାଳୀନ ଅବସ୍ଥାର କଟକଣା ସତ୍ତ୍ୱେ ରାଜ୍ୟରେ ପାର୍ଟି ପକ୍ଷରୁ ଡିସେମ୍ବର ୨୬ରେ ଦୁର୍ଭିକ୍ଷ ବିରୋଧୀ ଦିବସ ବହୁ ସ୍ଥାନରେ ପାଳିତ ହୋଇଥିଲା । ଏହି ବର୍ଷ ଶାସକ କଂଗ୍ରେସରେ ଗୋଷ୍ଠୀ କନ୍ଦଳ ଓ ସଂଜୟ-ନନ୍ଦିନୀ ବିବାଦର ପରିଣତି ସ୍ୱରୂପ ନନ୍ଦିନୀ ମନ୍ତ୍ରୀମଣ୍ଡଳ ପରିବର୍ତ୍ତେ ବିନାୟକ ଆଚାର୍ଯ୍ୟଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ଅଳ୍ପକାଳ ପାଇଁ ମନ୍ତ୍ରିମଣ୍ଡଳ ଗାଦିସୀନ ହୋଇଥିଲା ।

କେନ୍ଦ୍ର ପାର୍ଟିର ଆହ୍ୱାନରେ ୧୯୭୭ ଜାନୁଆରୀ ପହିଲାରେ ଜନସାଧାରଣଙ୍କ ୫ଟି ମୁଖ୍ୟ ଦାବି ଘେନି ଜାତୀୟ ଅଭିଯାନ ଦିବସ ପାଳିତ ହୋଇଥିଲା । ୧୪୪ ଧାରା ଜାରି ସତ୍ତ୍ୱେ ଏହି ଦିବସଟି ବ୍ରହ୍ମପୁର, ଏରସମା, ପୁରୁଷୋତ୍ତମପୁର, ନିମାପଡ଼ା, ରାଏରଙ୍ଗପୁର, ଜଗତ୍‌ସିଂହପୁର, ଚନ୍ଦକା, ବଡ଼ବିଲ, ଝାରସୁଗୁଡ଼ା, ବଡ଼ଚଣା, ଢେଙ୍କାନାଳ, ଡିମିରିଗଡ଼, କାକଟପୁର, ମଙ୍ଗଳପୁରରେ ମଧୁପୁର, ଖୋର୍ଦ୍ଧାର ଏକଡ଼ାଲିଆ, ଦୁଦରାଅଷ୍ଟା, ସାଲତରା, ପିତ୍ତଳ ବଜାରରେ ଅନୁଷ୍ଠିତ ହୋଇଥିଲା । ଦେଶରେ ଓ ରାଜ୍ୟର ବିଭିନ୍ନ ସ୍ଥାନରେ କମ୍ୟୁନିଷ୍ଟମାନଙ୍କ ଗିରଫ କରାଯାଇଥିଲା ।

ରାଜ୍ୟ ପାର୍ଟି ୫୦ ହଜାର ଟଙ୍କା ପାର୍ଟି ପାଣ୍ଠି ଆଦାୟର ଡାକରା ଦେଇଥିଲା । ଗୌହାଟୀରେ ଆଭାଛାତ୍ର ସଂଘର ୪୦ ତମ ଜୟନ୍ତୀ ସମାରୋହରେ ଓଡ଼ିଶାର ବିଶେଷ ଦଳ ଛାତ୍ର ପ୍ରତିନିଧି ଯୋଗ ଦେଇଥିଲେ ।

ସଂଜୟ ଗାନ୍ଧୀଙ୍କ ମାତ୍ରାଧିକ୍ୟ ଓ ଏମରଜେନ୍‌ସିର ମାତ୍ରାଧିକ୍ୟର ଦୃଢ଼ ସମାଲୋଚନା କରି କେନ୍ଦ୍ରରେ ସମ୍ବିଧାନ ବହିର୍ଭୂତ କର୍ତ୍ତୃତ୍ୱର କୁଚକ୍ରୀ କର୍ତ୍ତୃତ୍ୱର ଅବସାନ ହେଉ ବୋଲି ଦାବି କରିଥିଲା । ଶାସକ କଂଗ୍ରେସ ଦଳର ଅଗଣତାନ୍ତ୍ରିକ ବ୍ୟବସ୍ଥା ଓ କାର୍ଯ୍ୟ ପଦ୍ଧତିର ସମାଲୋଚନା କରି ଅଗଣତାନ୍ତ୍ରିକ ଧାରା ପ୍ରବର୍ତ୍ତନ ଦେଶରେ ଅସ୍ଥିରତା ସୃଷ୍ଟି ଉଦ୍ୟମର ମୁକାବିଲା କରିପାରିବ ବୋଲି ପାର୍ଟିମତ ପ୍ରକାଶ କରିଥିଲା । କଂଗ୍ରେସରେ ପୁନଶ୍ଚ ବିଭାଜନ ହୋଇ ଜଗଜ୍ଜୀବନ ରାମଙ୍କ ନେତୃତ୍ୱରେ କଂଗ୍ରେସ ପରେ ଡିମୋକ୍ରାସି ଗଠିତ ହେଲା । ଏମରଜେନ୍‌ସିରେ ଅଟକ

ରଖାଯାଇଥିବା ବନ୍ଦୀମାନଙ୍କୁ ମୁକ୍ତି ସାଙ୍ଗକୁ କଂଗ୍ରେସ ଦେଶରେ ସଂସଦୀୟ ନିର୍ବାଚନ ନିଷ୍ପତ୍ତି ନେଲା ।

ରାଜ୍ୟ ପାର୍ଟି ପାର୍ଲାମେଣ୍ଟ ଲାଗି ଆସିକା, ଜଗତ୍‌ସିଂହପୁର, ଭୁବନେଶ୍ୱର, ଦେବଗଡ଼ ଓ ବାଲେଶ୍ୱରରେ ଯଥାକ୍ରମେ ଦୂତୀକୃଷ୍ଣ ପଣ୍ଡା, ଲୋକନାଥ ଚୌଧୁରୀ, ଗଙ୍ଗାଧର ପାଇକରାୟ, ପ୍ରସନ୍ନ କୁମାର ପଣ୍ଡା ଓ ପୀତାମ୍ବର ପଣ୍ଡାଙ୍କୁ ପ୍ରାର୍ଥୀ କରିଥିଲା । ଉଭୟ କଂଗ୍ରେସ ଓ ଜନତା ପାର୍ଟି ବିରୁଦ୍ଧରେ ପାର୍ଟିର ପ୍ରାର୍ଥୀମାନେ ଛିଡ଼ା ହୋଇଥିଲେ ଓ ସମସ୍ତେ ପରାଜିତ ହୋଇଥିଲେ ।

କେନ୍ଦ୍ରରେ ଜନସଂଘ, ବିଏଲ୍‌ଡ଼ି, ପିଏସପି ଏସ୍‌ଏସ୍‌ପି, ପ୍ରଭୃତି ୫ଟି ଦଳକୁ ଘେନି ଜନତା ପାର୍ଟି ସରକାର କେନ୍ଦ୍ରରେ ଆସିବା ପରେ ୯ଟି ରାଜ୍ୟରେ କଂଗ୍ରେସ ସରକାରଙ୍କୁ ବରଖାସ୍ତ କରାଗଲା । ୧୯୬୬ ଜୁନରେ ଓଡ଼ିଶା ସମେତ ଏସବୁ ରାଜ୍ୟରେ ବିଧାନସଭା ନିର୍ବାଚନ ହେବାରୁ ପାର୍ଟି ଓଡ଼ିଶାରେ ୨୭ ଜଣ ପ୍ରାର୍ଥୀ ଦେଇଥିଲା । ନିର୍ବାଚନମଣ୍ଡଳୀ ହେଲା- ଗଞ୍ଜାମରେ ଛତ୍ରପୁର, ଆସିକା, କବିସୂର୍ଯ୍ୟନଗର, ବ୍ରହ୍ମପୁର, ଚିକିଟି; ପୁରୀରେ କାକଟପୁର, ବେଗୁନିଆ, ନିମାପଡ଼ା ବାଲେଶ୍ୱରରେ ବାଲେଶ୍ୱର, ସୋରୋ, ଭଦ୍ରକ, ଭଣ୍ଡାରୀପୋଖରୀ, କଟକରେ ଏରସମା, ବଡ଼ଚଣା, ଯାଜପୁର, କଟକ ସଦର, ସମ୍ବଲପୁରରେ ବ୍ରଜରାଜନଗର, ଭଟଲି, ବରଗଡ଼; ମୟୂରଭଞ୍ଜରେ ବାଙ୍ଗିରୀପୋଷି ଓ ରାଇରଙ୍ଗପୁର; ଢେଙ୍କାନାଳରେ ଅନୁଗୋଳ ଓ କାମାକ୍ଷାନଗର, ବଲାଙ୍ଗିରରେ ବିନିକା, କୋରାପୁଟରେ ନବରଙ୍ଗପୁର ଓ ସୁନ୍ଦରଗଡ଼ରେ ରାଉରକେଲା । ଏକମାତ୍ର ଛତ୍ରପୁରରୁ ବିଶ୍ୱନାଥ ସାହୁ ନିର୍ବାଚିତ ହୋଇଥିଲେ ।

ନୂତନ ଜନତା ପାର୍ଟି ସରକାରର ପ୍ରତିଶ୍ରୁତିଗୁଡ଼ିକ ପୂରଣ ଦାବି କରି ପ୍ରଥମେ ୧୯୭୭ ମଇ ୧୭ ତାରିଖରେ ଦରଦାମ ବୃଦ୍ଧି ବିରୁଦ୍ଧରେ ଯୁବ-ଛାତ୍ରମାନଙ୍କର ସଭା ସମାବେଶ ।

ବାଲିସୁଆଁ ମୁରଲୀ ପରିଡ଼ାଙ୍କୁ ହତ୍ୟା ପୁଲିସ କରିଛି ବୋଲି ଅଦାଲତ ରାୟ ଦେଲା । ୪୦ ଜଣ ସାଥୀ ମକଦ୍ଦମାରୁ ଖଲାସ ଓ ସେମାନଙ୍କୁ ସମ୍ବର୍ଦ୍ଧନା ସଭା ।

ନିର୍ବାଚନକାଳରେ ଅର୍ଦ୍ଧାଉଳିଆରେ ପୁଲିସ ଆକ୍ରମଣ ତୀବ୍ରତର ହୋଇଥିଲା ।

ଆମ୍ବାଭୋନାରେ ପାର୍ଟି ଉପରେ ପୁଲିସର ଅତ୍ୟାଚାର ଚାଲିଲା । କାମାକ୍ଷାନଗରର ଓ ଭୁବନରେ ଜନତା ପାର୍ଟି ଅମଳରେ ମୁକ୍ତି ପାଇଥିବା ଗୋତିମାନଙ୍କ ଉପରେ ନିର୍ଯ୍ୟାତନାର ଘୋର ପ୍ରତିବାଦ ସଂଗଠିତ ହେଲା । ଜନତା ପାର୍ଟିର ଶିଳ୍ପନୀତି ବୃହତ ପୁଞ୍ଜି ଓ ମାଲିକ ସ୍ୱାର୍ଥରକ୍ଷା କାରୀ ହୋଇ ଚାଲିଲାରୁ ତା ବିରୁଦ୍ଧରେ ରାଜ୍ୟ ପାର୍ଟି ପକ୍ଷରୁ ବ୍ୟାପକ ସଭାସମିତି, ଏହି ବୋନସ୍ ଦାବି ଘେନି ଆନ୍ଦୋଳନ ।

ଜନତା ପାର୍ଟି ସରକାର କ୍ଷମତାକୁ ଆସିବା ପରେ ପ୍ରଚଳିତ ଭୂସଂସ୍କାର ଆଇନକୁ ସଂଶୋଧନ କରି ସେଥିରେ ଜମିମାଲିକ ପକ୍ଷପାତୀ ଧାରା ଗୁଡ଼ିକ ରଖିବା ପ୍ରସ୍ତାବ ବିରୁଦ୍ଧରେ ପାର୍ଟି ବ୍ୟାପକ ଆନ୍ଦୋଳନ ଓ କନଭେନସନ ଅନୁଷ୍ଠିତ କରାଗଲା ।

କୁଜଙ୍ଗର ୯୯ ମୌଜାର ୩୦ ହଜାର କୈବର୍ତ୍ତଙ୍କ ୫୭ କିତା ଲିଜ ସୁଯୋଗକୁ ଅପହରଣ କରିବା ବିରୁଦ୍ଧରେ ପାର୍ଟି ପକ୍ଷରୁ ପ୍ରବଳ ଆନ୍ଦୋଳନ ।

୧୯୭୭ ସେପ୍ଟେମ୍ବର ୧ରେ ଚାଷୀ ଦିବସ, ସେପ୍ଟେମ୍ବର ୧୮ରେ ଦରଦାମ ବୃଦ୍ଧି ବିରୋଧ ଦିବସ; ସେପ୍ଟେମ୍ବର ୧୧ରେ ବୋନସ ଦିବସ ଏବଂ ସେପ୍ଟେମ୍ବର ୨୮ରେ ଯୁବଛାତ୍ର କର୍ମୀ ସମାବେଶ ଡାକରା ଅନୁସାରେ ରାଜ୍ୟବ୍ୟାପୀ ବିଭିନ୍ନ ଆନ୍ଦୋଳନ ସଭାସମିତି ହୋଇଥିଲା ।

ବାଲେଶ୍ୱର, ଗଞ୍ଜାମ, କଟକ ଜିଲ୍ଲା ପାର୍ଟି ସ୍ୱତନ୍ତ୍ରଭାବରେ ନିଜସ୍ୱ ଆନ୍ଦୋଳନ କରିଥିଲେ । ଦଶପଲ୍ଲା, ନିମାପଡ଼ା, ବାରିପଦା, ଟିକାବାଲି, ପଟିଆ ପ୍ରଭୃତିରେ ଜଗତସିଂହପୁର, ମାଣ୍ଡୁକା, କୁଜଙ୍ଗ, କଟକ, ଏରସମା, ତିର୍ତ୍ତୋଲ, ଦର୍ପଣ, କେନ୍ଦ୍ରାପଡ଼ା, ଦଶରଥପୁର, ମାହାଙ୍ଗା, ମହାକାଳପଡ଼ା, ମାର୍ଶାଘାଇ, ବଡ଼ଚଣାରେ ବିକ୍ଷୋଭମାନ ଅନୁଷ୍ଠିତ ।

ନଭେମ୍ବର ୧୭ରେ କଟକ କିଲଟରୀଠାରେ ଜିଲ୍ଲା ପାର୍ଟି ପକ୍ଷରୁ ବିରାଟ ବିକ୍ଷୋଭ ।

ଜମାଲପୁର ଏବଂ ସମ୍ବଲପୁରର ଲକ୍ଷ୍ମଣପୁରରେ ପୁଲିସ ନିର୍ଯ୍ୟାତନା ବିରୁଦ୍ଧରେ ସଭା ।

ଏରସମା ତ୍ରିଲୋଚନପୁରରେ ଏକ ଗ୍ରାମ୍ୟ ବିବାଦଜନିତ ହତ୍ୟାର ନନ୍ଦିନୀ ସରକାରବେଳେ କମ୍ୟୁନିଷ୍ଟ ନେତା ବୃନ୍ଦାବନ ଚନ୍ଦ୍ର ମୁଦୁଲି ଓ ରମାକାନ୍ତ ନାୟକ ପ୍ରମୁଖ ୨୮ ଜଣଙ୍କୁ ସଂଯୁକ୍ତ କରାଯାଇଥିଲା । ଜନତା ପାର୍ଟିର ଏମଏଲଏ ଦାମୋଦର ରାଉତ ଓ ମନ୍ତ୍ରୀ ପ୍ରତାପ ମହାନ୍ତିଙ୍କ ଇଙ୍ଗିତରେ ପୁଲିସ ଜୁଲୁମ ବଢ଼ି ଚାଲିଲା । ଶହ ଶହ ଲୋକଙ୍କ ଗହଣରେ ଏ ଦୁଇ ଜଣ ସାଥୀ ଆସି ଅକ୍ଟୋବର ୩୧ରେ ଜଗତସିଂହପୁର ଏସଡିଓଙ୍କ ଅଦାଲତରେ ଆତ୍ମସମର୍ପଣ କରିଥିଲେ ।

୧୯୭୭ ନଭେମ୍ବରରେ ସାହାଡାଠାରେ ବାଲେଶ୍ୱର ଜିଲ୍ଲାର କୃଷକ ସଭା ସମ୍ମିଳନୀ ଓ ନଭେମ୍ବର ୭ରେ ଟାଙ୍ଗିବନ୍ତରେ ପୁରୀ ଜିଲ୍ଲା କ୍ଷେତ ମଜଦୁର ସମ୍ମିଳନୀ ଅନୁଷ୍ଠିତ ।

ଡିସେମ୍ବର ୨୪ରେ ୨୦ ହଜାର ଲୁହା ମାଙ୍ଗାନିଜ ଶ୍ରମିକଙ୍କ ଧର୍ମଘଟ ।

ଡଃ ସାଧୁଚରଣ ମହାନ୍ତି ଏହି ବର୍ଷ ସେପ୍ଟେମ୍ବର ୨୮ରେ ବ୍ରହ୍ମପୁର ହାସପାତାଳରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ରାଜ୍ୟର ବିଭିନ୍ନ ସ୍ଥାନରେ ଶୋକସଭା ଅନୁଷ୍ଠିତ ।

୧୯୭୭ ଡିସେମ୍ବର ୧୧ ରୁ ୧୩ ଯାଏ ରାଜ୍ୟ ପରିଷଦ ବୈଠକରେ ଜନତା ପାର୍ଟିର ଜନବିରୋଧୀ କାର୍ଯ୍ୟକଳାପ ବିରୁଦ୍ଧରେ ମିଳିତ ଆନ୍ଦୋଳନର କାର୍ଯ୍ୟକ୍ରମ ନିର୍ଣ୍ଣୟ, ଏକଲକ୍ଷ ଟଙ୍କା ପାର୍ଟି ପାଣ୍ଠି ଡାକରା ।

ସମ୍ବଲପୁରରେ ଜନତା ପାର୍ଟି ସରକାରଙ୍କର ପୁଲିସ ଦ୍ୱାରା ବହୁ ଓକିଲ ଓ ଛାତ୍ର ଗିରଫ ଓ ବ୍ୟାପକ ଦମନ ବିରୁଦ୍ଧରେ ପାର୍ଟିର ଅଭିଯାନ । ସମ୍ବଲପୁରର କୁସୁମେଳରେ ପୁଲିସ ନିର୍ଯ୍ୟାତନାରେ ଶିକାର ୪୫ ଜଣ ପାର୍ଟି ସାଥୀ ସମର୍ଥକ ଜାନୁଆରୀ ମାସରେ ନିର୍ଦ୍ଦୋଷରେ ଖଲାସ ।

ଜନତା ପାର୍ଟି ସରକାରଙ୍କ ଭୂସଂସ୍କାର ସଂଶୋଧନ ଆଇନରେ ପର୍ଯ୍ୟାଲୋଚନା ଲାଗି ୧୯୭୮ ଜାନୁଆରୀ ୪ ରେ କସ୍ତୁରବା ନାରୀ ମହଲରେ ସିପିଆଇ ଜନତା ପାର୍ଟି, ସିପିଏମ୍ କଂଗ୍ରେସ ନେତାମାନଙ୍କ ଯୋଗଦାନରେ ଆଲୋଚନାଚକ୍ର ।

ନୂତନ ସରକାର ଅମଳରେ ଜମିମାଲିକ ଓ ନ୍ୟସ୍ତସ୍ୱାର୍ଥମାନେ ରାଜ୍ୟର ବହୁ ସ୍ଥାନରେ ଚାଷୀ, ଭାଗଚାଷୀଙ୍କୁ ଉଚ୍ଛେଦ କରିବା ଆରମ୍ଭ କରି ଦେଇଥିଲା । ତା ବିରୁଦ୍ଧରେ ବିଭିନ୍ନ ସ୍ଥାନରେ ପାର୍ଟିର ପ୍ରତିରୋଧ । ଛଟେଇ, ଉଚ୍ଛେଦ ବିରୁଦ୍ଧରେ ଆନ୍ଦୋଳନ ।

କଟକ ଜିଲ୍ଲା ପାର୍ଟି ସ୍ୱତନ୍ତ୍ର ଭାବରେ ମାର୍ଚ୍ଚ ୧୦ ତାରିଖରେ ଜନବିରୋଧୀ ଦିବସ ପାଳନ କରି କଟକ ସହର କୁଜଙ୍ଗ, ଏରସମା, ବଡ଼ଚଣା, ଆଳି, ମାର୍ଶାଘାଇ ବ୍ଲକ୍ ସମ୍ମୁଖରେ ବିକ୍ଷୋଭ କରିଥିଲା ।

ଆସିକାର ଚିନିକଳ ଶ୍ରମିକମାନଙ୍କ ୧୫ ଦଫା ଦାବି ସମ୍ୱଳିତ ଅନଶନ ସମର୍ଥନରେ ଅଭିଯାନ । ୧୯୭୮ ମାର୍ଚ୍ଚ ୧୪ ରୁ ୧୭ ଯାଏ ବଡ଼ବିଲଠାରେ ରାଜ୍ୟ ପାର୍ଟିର ୧୦ମ ସମ୍ମିଳନୀ ଓ ୭ ହଜାର ଜନତାଙ୍କ ସମାବେଶ ।

ଏହା ପୂର୍ବରୁ ପୀରହାଟଠାରେ ବାଲେଶ୍ୱର ଜିଲ୍ଲାର ୯ମ ସମ୍ମିଳନୀ କଟକର ପାରାଦୀପଠାରେ, ଗଞ୍ଜାମର ଚିକିଟିପେଣ୍ଠଠାରେ, ପୁରୀର ଭୁବନେଶ୍ୱରଠାରେ, ସମ୍ୱଲପୁରର ରେଙ୍ଗାଲିଠାରେ, ସୁନ୍ଦରଗଡ଼ର ରାଉରକେଲାରେ, ମୟୂରଭଞ୍ଜର ବାରିପଦାରେ, କୋରାପୁଟର କୋଟପାଡ଼ଠାରେ, ମୟୂରଭଞ୍ଜର ବାରିପଦାଠାରେ ଜିଲ୍ଲା ସମ୍ମିଳନୀଗୁଡ଼ିକ ଅନୁଷ୍ଠିତ ହୋଇଥିଲା ।

ବଡବିଲ ୧୦ମ ପାର୍ଟି ସମ୍ମିଳନୀ ରାଜ୍ୟରେ ବାମ ଓ ଗଣତାନ୍ତ୍ରିକ ପ୍ରଗତିଶୀଳ ଶକ୍ତିଙ୍କ ଐକ୍ୟ ଗଠନ କରି କଂଗ୍ରେସ ଓ ଜନତା ପାର୍ଟିର ବିକଳ୍ପ ଗଢ଼ିବାକୁ ଆହ୍ୱାନ ଦେଲା । ଭାତିଣ୍ଡା ପାର୍ଟି କଂଗ୍ରେସ ଜରୁରୀକାଳୀନ ଅବସ୍ଥାରେ ପାର୍ଟି କର୍ମନୀତିର ପୁନଃ ମୂଲ୍ୟାୟନ କରି ଜନତା ନୁହଁ କି କଂଗ୍ରେସ ନୁହଁ; ବାମ ଓ ଗଣତାନ୍ତ୍ରିକ ଐକ୍ୟ ଓ ବିକଳ୍ପର ଆହ୍ୱାନ ଦେଲା ।

ସେହି ସମୟରେ ସିପିଏମ୍‌ର ଜଳନ୍ଧରରେ କଂଗ୍ରେସ ବସିଥିଲା । ସିପିଆଇ ଭାଗ ଭାଗ ହୋଇଯିବ ଓ ଅନେକେ ସିପିଏମ୍‌ରେ ଯୋଗ ଦେବେ ବୋଲି ଚାଲିଥିବା ଅଭିଯାନ ସାରଶୂନ୍ୟ ହେଲା । ଦୁଇ ପାର୍ଟିର ଐକ୍ୟ ଲାଗି ସିପିଆଇ ଆହ୍ୱାନ ଦେଲା । ପାର୍ଟିର କର୍ମକୌଶଳ ହେଲା କଂଗ୍ରେସ ନୁହଁ କି ଜନତା ନୁହଁ ବାମ ଓ ଗଣତାନ୍ତ୍ରିକ ବିକଳ୍ପ ଗଢ଼ିବାକୁ ହେବ ।

୧୯୭୮ ଏପ୍ରିଲରେ ପାର୍ଟି ସାଥୀ ନେତୃତ୍ୱାଧୀନ କାସବାହାଲ ଶ୍ରମିକ ବିଦ୍ୟୁତ୍ କର୍ମଚାରୀ, ପାରାଦବୀପ ଶ୍ରମିକ ଉତ୍କଳ ଅଟୋମୋବାଇଲ ଶ୍ରମିକଙ୍କ ବିଜୟ ।

ରେଙ୍ଗାଳି ବୁଡ଼ି ସମସ୍ୟା ପ୍ରତି ସରକାରୀ ଅବହେଳା, କାମାକ୍ଷାନଗରରେ ଚାଷୀ ଚାଷୀମାନଙ୍କ ଘର କୋରଖ, ଗଞ୍ଜାମର ଚାଉଁଡ଼ାପଲିରେ ଆଦିବାସୀମାନଙ୍କୁ ଏବଂ ସେହି ଜିଲ୍ଲାର ସାହାପୁର ନିମିଶୂଳା, ତିଳେଶ୍ୱରର ଭାଗଚାଷୀମାନଙ୍କୁ ଉଚ୍ଛେଦର ପ୍ରତିରୋଧ କରାଯାଇଥିଲା ।

ଭାସ୍କର ସୂତାକଳରେ ୪ ମାସ ବ୍ୟାପୀ ଧର୍ମଘଟ ବେଳେ ସରକାର ହସ୍ତକ୍ଷେପ ନ କରିବାରୁ ତାର ଦୃଢ଼ ପ୍ରତିବାଦ ।

ବାସୁଦେବପୁରରେ ହରିଜନମାନଙ୍କ ଉପରେ ଜୁଲୁମ, ବୋଲଗଡ଼ର କଅଁରପୁର ଆଦିବାସୀମାନଙ୍କ ଉପରେ ଜମି ମାଲିକ ପୁଲିସଙ୍କ ଅତ୍ୟାଚାର । ଯାଜପୁର ଦଳାଗାଁରେ ପୁଲିସ ଜୁଲୁମ ଏବଂ ଜଲାର ୧୦ରେ ଯାଜପୁର ବନ୍ଦବେଳେ ପୁଲିସର ଲାଠି ଲୁହାବୁହା ବୋମା ନିକ୍ଷେପ ଏପରି ରାଜ୍ୟବ୍ୟାପୀ ଦମନ ।

ଏହିସବୁ ଅତ୍ୟାଚାର ନିର୍ଯ୍ୟାତନା ବିରୁଦ୍ଧରେ ଅଗଷ୍ଟ ୨୭ରେ ରାଜ୍ୟର ବିଭିନ୍ନ ସ୍ଥାନରେ ଗଣବିକ୍ଷୋଭ ସଂଘଟିତ । ଅଗଷ୍ଟ ୧୬ରେ ଛାତ୍ରମାନଙ୍କ ୧୫ ଦଫା ଓ ଶିକ୍ଷକମାନଙ୍କ ୨୭ ଦଫା ଦାବି ଘେନି ରାଜଧାନୀ ଭୁବନେଶ୍ୱରରେ ବିପୁଳ ବିକ୍ଷୋଭରେ ଗିରଫଦାରୀ ଦମନ ।

କେନ୍ଦ୍ରରେ ଜନତା ଜନତା ପାର୍ଟି ଓ ରାଜ୍ୟରେ ଜନତା ପାର୍ଟି ଶାସନରେ ଦରଦାମ ବୃଦ୍ଧି, ବେକାରୀ, ହରିଜନ ଆଦିବାସୀ ହତ୍ୟା ଓ ପାଶବିକ ଅତ୍ୟାଚାର, ଜମି ମାଲିକ ଓ ବଡ଼ ପୁଞ୍ଜିପତିଙ୍କ ଆକ୍ରମଣ ବଢ଼ିଲା ।

ତାରି ବିରୁଦ୍ଧରେ ପାର୍ଟି ପକ୍ଷରୁ ସତ୍ୟାଗ୍ରହ କରାଯିବ ଓ ୫ ଲକ୍ଷ ସତ୍ୟାଗ୍ରହୀ ଭାଗ ନେବେ ନିଷ୍ପତ୍ତି ହେଲା ।

ଓଡ଼ିଶାରେ ୫ ଦିନ ବ୍ୟାପୀ ସତ୍ୟାଗ୍ରହ ସେପ୍ଟେମ୍ବର ୭ ରୁ ୧୪ ଯାଏ ଅନୁଷ୍ଠିତ ହୋଇଥିଲା । ରାଜଧାନୀ ଭୁବନେଶ୍ୱରରେ ୨ ଦିନ, କଟକ ସହରରେ ୪ ଦିନ, ବ୍ରହ୍ମପୁରରେ ୨ ଦିନ, ବାଲେଶ୍ୱରରେ ୨ ଦିନ, ବାରିପଦାରେ ୨ ଦିନ, ଭଦ୍ରକରେ ୩ ଦିନ, ଭଞ୍ଜନଗରରେ ୨ ଦିନ, ଆସ୍କାରେ ୨ ଦିନ, ଛତ୍ରପୁରରେ ୨ ଦିନ, ଦିଗପହଣ୍ଡିରେ ୨ ଦିନ, ଜଗତ୍‌ସିଂହପୁରରେ ୩ ଦିନ, ବଡ଼ବିଲରେ ୩ ଦିନ, ବରଗଡ଼ରେ ୩ ଦିନ, ଜି.ଉଦୟଗିରିରେ ୧ ଦିନ, କାମାକ୍ଷାନଗରରେ ୧ ଦିନ, ଢେଙ୍କାନାଳରେ ୧ ଦିନ, ଅନୁଗୁଳରେ ୧ ଦିନ, କୋଟପଡ଼ାରେ ୧ ଦିନ, ସୋନପୁରରେ ୧ ଦିନ, କେନ୍ଦ୍ରାପଡ଼ାରେ ୧ ଦିନ ଅନୁଷ୍ଠିତ ହୋଇଥିଲା ।

ଅସଂପୂର୍ଣ୍ଣ ତଥ୍ୟାନୁସାରେ ରାଜଧାନୀରେ ୫୦ ଜଣ, ବାରିପଦାରେ ୫୯ ଜଣ, ଭଦ୍ରକରେ ୨୫ ଜଣ, କେନ୍ଦ୍ରାପଡ଼ାରେ ୧୭ ଜଣ, ବାଲେଶ୍ୱରରେ ୭୮ ଜଣ, ବରଗଡ଼ରେ ୮୯ ଜଣ, କାମାକ୍ଷାନଗରରେ ୧୮ ଜଣ, ସୋନପୁରରେ ୭ ଜଣଙ୍କୁ ୭ ରୁ ୧୫/୨୦ ଦିନ କାଳ ଜେଲଖାନାରେ ଅଟକ ରଖାଯାଇଥିଲା । ବିଭିନ୍ନ ସ୍ଥାନରେ ଲାଠିଚାଳନା ହୋଇଥିଲା । କେନ୍ଦ୍ରାପଡ଼ାରେ ୩୯ ଜଣ ଆହତ ହୋଇଥିଲେ । କାମାକ୍ଷା ନଗର ଜେଲରେ ୧୮ ଜଣ କମ୍ୟୁନିଷ୍ଟ ବନ୍ଦୀ ଅନଶନ କରିଥିଲେ ।

ରାଜ୍ୟରେ ୫୬୨୦ ଜଣ ସତ୍ୟାଗ୍ରହୀ ସତ୍ୟାଗ୍ରହ କରିଥିଲେ ଓ ୪୧୬୭ ଜଣଙ୍କୁ ଗିରଫ କରାଯାଇଥିଲା ।

ରାଜ୍ୟସାରା ପ୍ରତିବାଦ ସତ୍ତ୍ୱେ ଜନତା ପାର୍ଟି ସରକାର ବହୁ ଚାଷୀ ସ୍ୱାର୍ଥ ବିରୋଧୀ ଦଫା ଖଣ୍ଡି ଆଇନ ପାଶ୍ କରେଇ ନେଇଥିଲେ । ଯୁଗ ଯୁଗ ଧରି ପ୍ରଜାମାନେ ବାଟ, ଘାଟ, ପାହାଡ଼, ଜଙ୍ଗଲ, ତୋଟାବାଡି, ବନ୍ଧବାଡ଼ ଓ ବଗିଚା ଆଦିରୁ ଯେପରି ଉଚ୍ଛେଦ ହେବେ ତାର ବ୍ୟବସ୍ଥାମାନ ଜାରି ହେଲା ।

ବଡ଼ବିଲ ପୌରସଭା କମ୍ୟୁନିଷ୍ଟ ପରିଚାଳିତ ଥିଲା । ତାକୁ ଜନତା ପାର୍ଟି ସରକାର ଭାଙ୍ଗି ହାତକୁ ନେଲେ ।

ରାଜ୍ୟରେ ୧୯୮୯ରେ ଜନତା ପାର୍ଟି ସରକାର ଭାଙ୍ଗି ଦେଇଥିବା କେତେକ ପୌରସଭାର ନିର୍ବାଚନରେ ବରଗଡ଼, ବଡ଼ବିଲ, ଜୋଡ଼ା, କେଉଁଝରଗଡ଼ରେ ପାର୍ଟି ପ୍ରାର୍ଥୀମାନେ ପ୍ରତିଦ୍ୱନ୍ଦିତା କରିଥିଲେ ।

ଅନୁଗୁଳରେ ଚକବନ୍ଦୀ ବେଳେ ଗରିବ ଚାଷୀମାନଙ୍କୁ ଆଉଲ ଜମିରୁ ଜବରଦଖଲ କରାଯାଉଥିବାରୁ ଡଃ ହୃଷୀକେଶ ପ୍ରଧାନଙ୍କ ନେତୃତ୍ୱରେ ବ୍ୟାପକ ଆନ୍ଦୋଳନ ଚାଲିଲା ।

୧୯୭୯ ଫେବୃଆରୀ ୪/୫ ଦୁଇଦିନ ଧରି ବାଲେଶ୍ୱର ଠାରେ ଏଆଇଏସଏଫରେ ୨୮ତମ ରାଜ୍ୟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ବେକାରୀ ପ୍ରଥା ବିରୁଦ୍ଧରେ ଓ ବେକାରଙ୍କୁ କାମ ନଚେତ୍ ଉପଯୁକ୍ତ ଭତ୍ତା, ୧୮ ବର୍ଷରେ ଭୋଟାଧିକାର ଦାବିରେ ଯୁବ ପଦଯାତ୍ରା ଯାଜପୁରର ଶହେଟି ଗାଁ'ରେ, ବିରିଡ଼ି, ବାଲେଶ୍ୱର ଟିହିଡ଼ି, ବନ୍ତ, ଚାନ୍ଦବାଲି, ବଡ଼ଚଣା, କୁଜଙ୍ଗ, ଗରଦପୁର, ମାର୍ଶାଘାଇରେ ଚାଲିଥିଲା ।

ଏବର୍ଷ ଫେବୃୟାରୀ ୧୫ରେ ଯାଜପୁରରେ ବଉଳାଙ୍ଗ ଠାରେ କଟକ ଜିଲ୍ଲାର ପ୍ରଥମ କ୍ଷେତମୂଲିଆ ସମ୍ମିଳନୀ । ଫେବୃଆରୀରେ ତାଳଚେର ଓ ଇବ୍ କୋଇଲା ଖଣି ଶ୍ରମିକଙ୍କ ଧର୍ମଘଟ, ବଡ଼ବିଲ ବାର୍ଡ କମ୍ପାନୀ ବିରୁଦ୍ଧରେ ସଂଗ୍ରାମ ।

ଓଡ଼ିଶାର ସର୍ବବୃହତ୍ତମ ଗାଁ ଯାହାକି ଗୋଟିଏ ଏନ୍.ଏ.ସିରେ ପରିଣତ ହେଲା, ସେହି ଭୁବନ ଗାଁର ୧୧ ଟି ୱାର୍ଡରୁ ୯ଟି ୱାର୍ଡ ସଂପୂର୍ଣ୍ଣ ଭସ୍ମୀଭୂତ ହେଲା । ପାର୍ଟି ଏମାନଙ୍କ ଥଇଥାନ ଲାଗି ବ୍ୟାପକ ରିଲିଫ୍ କାର୍ଯ୍ୟ ସଂଗଠିତ କରିଥିଲା । ଢେଙ୍କାନାଳ ଜିଲ୍ଲା ପାର୍ଟି ଏଥିଲାଗି ପ୍ରବଳ ଉଦ୍ୟମ କରିଥିଲା ।

୨୮ ମାର୍ଚ୍ଚ ୧୯୭୯ରେ ପାର୍ଟିର ଡାକରାରେ ୨୫ ହଜାର ଜନତା ବିଭିନ୍ନ ଜିଲ୍ଲାରୁ ଆସି ରାଜଧାନୀ ଭୁବନେଶ୍ୱରରେ ବିକ୍ଷୋଭ କରିଥିଲେ । ପ୍ରତିକ୍ରିୟାଶୀଳ କେନ୍ଦ୍ର ଶିଳ୍ପ ସଂପର୍କ ବିଲ୍ ପ୍ରତ୍ୟାହାର, ଭତଲିଙ୍ଗମ କମିଟି ସୁପାରିଶର ବିରୋଧ, ବୃଦ୍ଧି ସୁଧ ହାରରେ ଋଣ ଆଦାୟ ବନ୍ଦ କର, ପଥ କର ବୃଦ୍ଧି ବିରୋଧରେ ଭୂସଂସ୍କାର, ଜମି ବଣ୍ଟନ, କ୍ଷେତ ମୂଲିଆଙ୍କ ଲାଗି କେନ୍ଦ୍ରୀୟ ଆଇନ ଦାବି ଘେନି ଏହି ସମାବେଶ ।

କେନ୍ଦୁଆପଦାଠାରେ ବାଲେଶ୍ୱର ୯ମ ଜିଲ୍ଲା କୃଷକ ସମ୍ମିଳନୀ, ଗୋପାଳପୁରରେ

ଗଞ୍ଜାମ ଜିଲ୍ଲା କୃଷକ ସମ୍ମିଳନୀ ଏବଂ ପୁରୀ ସହର ନାରୀସଂଘ ସଦନରେ ରାଜ୍ୟ କୃଷକସଭାର ଦ୍ୱାଦଶ ସମ୍ମିଳନୀ (ମଇ ୧୨/୧୩)ରେ ଅନୁଷ୍ଠିତ ।

ମାର୍ଚ୍ଚ ୨୦ ତାରିଖରେ ଦିଲ୍ଲୀରେ ୩ ଲକ୍ଷାଧିକ କ୍ଷେତମୂଲିଆଙ୍କ ସମାବେଶରେ ୫ ଲକ୍ଷ ସ୍ୱାକ୍ଷରଥିବା ଦାବିପତ୍ର ପେଶ ଓ ଏଥିରେ ଓଡ଼ିଶାରୁ ପାର୍ଟି ଆହ୍ୱାନରେ କ୍ଷେତମୂଲିଆଙ୍କ ସ୍ୱାକ୍ଷର ସଂଗ୍ରହ ।

ପାର୍ଟି ଏକ ଲକ୍ଷ ଟଙ୍କା ପାର୍ଟି ପାଣ୍ଠି ସଂଗ୍ରହ ଅଭିଯାନ । ଗଞ୍ଜାମ ଜିଲ୍ଲାରେ ସରକାର ଦଳ ଓ ଜନତା ପାର୍ଟି ମନ୍ତ୍ରୀ ଓ ଏମଏଲ୍‌ଏଙ୍କ ପ୍ରୋତ୍ସାହନରେ କମ୍ୟୁନିଷ୍ଟ ପାର୍ଟିର କର୍ମୀ ଓ ନେତାମାନଙ୍କ ଉପରେ, କମ୍ୟୁନିଷ୍ଟ ପ୍ରଭାବିତ ଗାଁ'ଗୁଡ଼ିକରେ ହତ୍ୟା, ଲୁଟତରାଜ- ଆତଙ୍କରାଜ ଏବଂ କାନ୍ଥବାଡ଼ରେ ସ୍ଲୋଗାନ ଲେଖି ଓ ଡାକବାଜି ଯନ୍ତ୍ରରେ ପ୍ରଚାର କରି କମ୍ୟୁଅନିଷ୍ଟ ନେତା ଲକ୍ଷ୍ମଣ ମହାପାତ୍ର, ବିଶ୍ୱନାଥ ସାହୁ, ସଦାନନ୍ଦ ମହାନ୍ତିଙ୍କୁ ହତ୍ୟା କରାଯିବ ଘୋଷଣା । ଚିକଲଖଣ୍ଡିରେ ସାଥୀ ରାମ ଦାସଙ୍କୁ ହତ୍ୟାର ତୀବ୍ର ପ୍ରତିବାଦ । ଜନତା ପାର୍ଟି ଅମଳରେ ସମ୍ବଲପୁର ଓ ଗଞ୍ଜାମର ଯୁବ ସଂଘ ନେତାମାନଙ୍କୁ ଗିରଫ । ନରସିଂହପୁରରେ ଭାଗ ଚାଷୀ ଆନ୍ଦୋଳନର ନେତାମାନଙ୍କୁ ଗିରଫ । ଏହି ଶାସନ କାଳରେ ୨୬ ଜଣ କମ୍ୟୁନିଷ୍ଟଙ୍କୁ ଯାବଜ୍ଜୀବନ କାରାଦଣ୍ଡ । ରାଇକଣିଆ ଆଦିବାସୀମାନଙ୍କୁ ଜମିରୁ ଉଚ୍ଛେଦ ବିରୁଦ୍ଧରେ ଆନ୍ଦୋଳନ ।

ଏହା ବିରୁଦ୍ଧରେ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କୁ ସ୍ମାରକଲିପି ରୂପେ ସି. ରାଜେଶ୍ୱର ରାଓ, ଭୂପେଶ ଗୁପ୍ତ ମଧ୍ୟ ମୁଖ୍ୟମନ୍ତ୍ରୀ ଓ ପ୍ରଧାନମନ୍ତ୍ରୀଙ୍କୁ ଏ ସଂପର୍କରେ ସ୍ମାରକଲିପି ଦିଆଯାଇଛି ।

ଚିକଲଖଣ୍ଡି ହତ୍ୟା ମକଦ୍ଦମାରେ ଯେଉଁ ପାର୍ଟି ସାଥୀମାନଙ୍କୁ ଜଡ଼ିତ କରାଯାଇଥିଲା, ସେମାନଙ୍କ ମଧ୍ୟରୁ ୮ ଜଣଙ୍କୁ ଖଲାସ କରି ୧୧ ଜଣଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଆଦେଶ ବିରୁଦ୍ଧରେ ଅପିଲ ।

ଏହି ସମୟରେ କାସବାହଲ ଶ୍ରମିକ, ଝାରସୁଗୁଡ଼ା ପଟାରୀ ଶ୍ରମିକଙ୍କ ସଂଗ୍ରାମର ବିଜୟ ଓ ବଡ଼ବିଲରେ ଲୁହାପଥର ଉତ୍ତୋଳନରେ ଏମଏମଟିସି ଉପରେ କଟକଣା ବିରୁଦ୍ଧରେ ୧୫ ଦିନ ବ୍ୟାପୀ ରିଲେ ଅନଶନ ।

ଗଞ୍ଜାମର ଜଣେ ପୁରୁଖା ସାଥୀ ଦିବାକର ନାୟକ ଓ କଟକ ଶଙ୍କରପୁରର ପାର୍ଟି ନେତା ଭଜନାନନ୍ଦ ବାରିକଙ୍କ ମୃତ୍ୟୁ ।

୧୯୭୯ରେ କେନ୍ଦ୍ରରେ ଶାସକ ଜନତାଦଳ ମଧ୍ୟରେ ବିଭାଗ ଓ ରାଜ୍ୟରେ ବିଭାଗ । ରାଜ୍ୟରେ ବିଜୁ-ନୀଳମଣି ପ୍ରମୁଖ ଚରଣସିଂହଙ୍କ ଆଦି ଜନତାରେ ଅନ୍ୟମାନେ ଚନ୍ଦ୍ରଶେଖର ଦେଶାଇ ଜନସଂଘ ମେଣ୍ଟ ପକ୍ଷରେ ।

ବାମପନ୍ଥୀରେ ଦିଗମୋଡ଼ର ସୂଚନା । ଜୁଲାଇ ୧୮ରେ ଭୁପେଶ ଗୁପ୍ତାଙ୍କ

ବାସଭବନରେ ୫ ଟି ବାମପନ୍ଥୀଦଳଙ୍କ ବୈଠକ ଓ ମିଳିତ ବିବୃତି ।

ଏହା ପରେ ପରେ ଓଡ଼ିଶା ରାଜ୍ୟରେ ଦୁଇ ପାର୍ଟିର ମିଳିତ ବୈଠକ ଓ ସେପ୍ଟେମ୍ବର ୧୯ରେ ଦୁଇ ପାର୍ଟି ପ୍ରଭାବାଧୀନ କୃଷକ ସଭା ପକ୍ଷରୁ ବିଶାଳ ଜନସମାବେଶ । ଏହି ସମାବେଶରେ ସାରା ଓଡ଼ିଶାକୁ ମରୁଡ଼ି ଅଞ୍ଚଳ ଘୋଷଣା କର ଦାବି ।

ସେପ୍ଟେମ୍ବର ୧୮ରେ ରାଜଧାନୀରେ ଶିକ୍ଷକ ଓ ସରକାରୀ କର୍ମଚାରୀଙ୍କ ବିଶାଳ ସମାବେଶ ହୋଇ ଓ ୨୦ ତାରିଖରେ ବାମପନ୍ଥୀ ଦୁଇ ଛାତ୍ର ଓ ଦୁଇ ଯୁବସଂଘର ମିଳିତ ସମାବେଶ ମୁଖ୍ୟତଃ ସାଂପ୍ରଦାୟିକତା ଓ ଏକଛତ୍ରବାଦ ବିରୁଦ୍ଧରେ ହୋଇଗଲା । ଏହି ମିଳିତ ସମାବେଶରେ ସିପିଆଇ, ସିପିଏମ୍ ନେତା ଜ୍ୟୋତି ବସୁ, ବିଜୁ ପଟ୍ଟନାୟକ, ରବି ରାୟ, ମୁଖ୍ୟମନ୍ତ୍ରୀ ରାଉତରାୟ, ବାଙ୍କବିହାରୀ ଦାସ, ଚିନ୍ତାମଣି ପାଣିଗ୍ରାହୀ ମଧ ଭାଷଣ ଦେଇ ସାଂପ୍ରଦାୟିକତାବାଦୀ ଶକ୍ତିମାନଙ୍କୁ ପରାସ୍ତ କରିବାକୁ ଆହ୍ୱାନ ଦେଇଥିଲେ । ଅ.ଭା. ଛାତ୍ର ଓ ଯୁବସଂଘର ଅଶୋକ ଦାସ ଓ ଗୋକୁଳ ଚନ୍ଦ୍ର ପଣ୍ଡା ଉଦ୍‌ବୋଧନ ଦେଇଥିଲେ ।

ମଙ୍ଗଳପୁରରେ ସେପ୍ଟେମ୍ବର ୧୮ ରେ ୨୫ ଜଣ ନେତୃତ୍ୱସ୍ଥାନୀୟ କମ୍ୟୁନିଷ୍ଟଙ୍କୁ ଗିରଫ କରି ମିଳିତ ସମାବେଶରେ ଯୋଗଦେବା ପ୍ରସ୍ତୁତ ଜନତାଙ୍କୁ ଭୟଭୀତ କରାଇବା ପାଇଁ ମଙ୍ଗଳପୁର ଏଏସଆଇ ଆରଏସଏସର ହାତବାରିସୀ ହୋଇ କାମ କରିଥିଲେ ଓ ତାର ପ୍ରତିରୋଧ ହୋଇଥିଲା ।

ଅକ୍ଟୋବର ୮ ରେ ମରୁଡ଼ି ବିରୁଦ୍ଧରେ ପାର୍ଟି ପ୍ରଭାବିତ ଅଞ୍ଚଳର ବିଭିନ୍ନ ବ୍ଲକ୍ ଓ ତହସିଲ ଅଫିସ ସମ୍ମୁଖରେ ବିକ୍ଷୋଭ ।

୧୯୬୯ ଅକ୍ଟୋବର ୨୩ ଭଗବତୀ ଦିବସ ଦିନ ରାଜଧାନୀରେ ଭଗବତୀ ଭବନ ଉଦ୍‌ଘାଟନ ଉତ୍ସବରେ ସାଥୀ ରାଜେଶ୍ୱର ରାଓଙ୍କ ସମେତ ଓଡ଼ିଶା ଜନଜୀବନର ବିଭିନ୍ନ ମତାଶ୍ରୟୀ ନେତା, ବୁଦ୍ଧିଜୀବୀ, ସମାଜସେବୀ ଯୋଗ ଦେଇଥିଲେ ।

୧୯୮୦ ପାର୍ଲାମେଣ୍ଟ ନିର୍ବାଚନ ଲାଗି ପାର୍ଟି ଆସିକାରେ ଦୂତୀକୃଷ୍ଣ ପଣ୍ଡାଙ୍କୁ ପ୍ରାର୍ଥୀ କଲା ଓ ରବି ରାୟଙ୍କ ସପକ୍ଷରେ ଲୋକନାଥ ଚୌଧୁରୀଙ୍କୁ ଜଗତସିଂହପୁରରେ ପ୍ରାର୍ଥୀ ଦେବ ନାହିଁ ଏବଂ ଭୁବନେଶ୍ୱରରେ ସିପିଏ ପ୍ରାର୍ଥୀ ଶିବାଜୀ ପଟ୍ଟନାୟକଙ୍କୁ ସମର୍ଥନ କରିବାକୁ ନିଷ୍ପତ୍ତି ନେଲା ।

**୧୯୮୦, ଜାନୁଆରୀ**

୧୯୮୭ ରୁ ୧୯୮୯ର ଜନତା ପାର୍ଟିର ମୋରାରଜୀ ଦେଶାଇଙ୍କ ପ୍ରଧାନମନ୍ତ୍ରୀତ୍ୱ ଉକ୍ତ ପାର୍ଟି ଭିତରେ ଅନ୍ତର୍ଦ୍ୱନ୍ଦ ହେତୁ ପତନ ହେଲା । ଇନ୍ଦିରା କଂଗ୍ରେସ ଓ ବାମପନ୍ଥୀମାନଙ୍କ ସମର୍ଥନରେ ଗଢ଼ା ଚୌଧୁରୀ ଚରଣ ସିଂହ ସରକାରଙ୍କ ପତନର କାରଣ ଇନ୍ଦିରା କଂଗ୍ରେସର ସମର୍ଥନ ପତ୍ୟାହାର, ନୂତନ ସପ୍ତମ ଲୋକସଭା ନିର୍ବାନ ଲାଗି ପ୍ରସ୍ତୁତି ।

ଇନ୍ଦିରା କଂଗ୍ରେସର ସପ୍ତମ ଲୋକସଭାରେ ଚିନିଚତୁର୍ଥାଂଶ ଆସନ ଲାଭ । ଓଡ଼ିଶାରେ ସିପିଆଇ ପକ୍ଷରୁ ଜଗତସିଂହପୁର, ଆସ୍କା, ଦେଓଗଡ଼, ବାଲେଶ୍ୱର, ଭୁବନେଶ୍ୱରରେ ପ୍ରାର୍ଥୀ ଯଥାକ୍ରମେ ଲୋକନାଥ ଚୌଧୁରୀ, ଦ୍ୟୁତିକୃଷ୍ଣ ପଣ୍ଡା, ପ୍ରସନ୍ନ କୁମାର ପଣ୍ଡା, ଅରୁଣ ଦେ ଓ ଗଙ୍ଗାଧର ପାଇକରାୟ । ସମସ୍ତ ପ୍ରାର୍ଥୀଙ୍କ ପରାଜୟ ।

୧୦-୧ରେ ବ୍ରହ୍ମପୁରରେ ନୀଲୁ ପାଟଯୋଶୀଙ୍କ ଉପରେ ତତ୍କାଳୀନ ଜନତାପାର୍ଟି ସରକାରର ମନ୍ତ୍ରୀଙ୍କ ପରୋଚନାରେ ଆକ୍ରମଣର ପ୍ରତିବାଦ ଓ ସଭାସମାବେଶ-

ଜନତାପାର୍ଟି- ଲୋକଦଳର ରାଜ୍ୟରେ ନୀଳମଣି ରାଉତରାୟଙ୍କ ମୁଖ୍ୟମନ୍ତ୍ରିତ୍ୱରେ ଗଢ଼ା ସରକାରଙ୍କ ଜନସ୍ୱାର୍ଥ ବିରୋଧୀ ନୀତି ବିରୁଦ୍ଧରେ ସଂଗ୍ରାମ ଲାଗି ପାର୍ଟିର ଆହ୍ୱାନ ।

୨୮.୧.ରେ ଗଞ୍ଜାମର ମୋହନା ବ୍ଲକରେ ଭୟାବହ ବରୁଡ଼ି ବିରୁଦ୍ଧରେ ୫୧ଟି ଆଦିବାସୀ ଗାଁରଲୋକଙ୍କ ବିକ୍ଷୁବ୍ଧ ବିକ୍ଷୋଭ ।

ଏ.ଆଇ.ଟି.ୟୁ.ସି. ପରିଚାଳିତ କାଳିଆପାଣି ଓ.ଏମ୍.ସି. ଶ୍ରମିକମାନଙ୍କ ଉପରେ ଆଇ.ଏନ୍.ଟି.ୟୁ.ସି. ଓ କଣ୍ଟ୍ରାକ୍ଟର ବୁଦ୍ଧରାଜଙ୍କର ମିଳିତ ଆକ୍ରମଣର ପ୍ରତିରୋଧ ।

କଟକ ଜିଲ୍ଲା ପାର୍ଟି ପକ୍ଷରୁ ଚାଷୀ ଓ ମୂଲିଆଙ୍କ ୭ଟି ନିମ୍ନତମ ଦାବୀରେ ମଙ୍ଗଳପୁର, ଯାଜପୁର, କୋରେଇ, ବଡଚଣା, ଆଳି, କେନ୍ଦ୍ରାପଡା, ପାଟକୁରା, ମହାକାଳପଡା, ଟାଙ୍ଗି, ଚୌଦ୍ୱାର, କଟକ ସହର, କଟକ ସଦର, ଏରସମା, ଜଗତ୍‌ସିଂହପୁର, ବିରିଡି, ବାଲିକୁଦାରେ ବିକ୍ଷୋଭ ପଟୁଆର ।

ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ପ୍ରତିଷ୍ଠାତା ଏସ.ଏସ. ମିରାଜକରଙ୍କ ମୃତ୍ୟୁ ଏବଂ ସିପିଆଇ ଚେୟାରମେନ ଓ ସମ୍ପାଦକମଣ୍ଡଳୀରୁ ଡାଙ୍ଗେଙ୍କ ଇସ୍ତଫା ଗୃହୀତ । କଂଗ୍ରେସ-ଇ କେନ୍ଦ୍ରରେ କ୍ଷମତାକୁ ପୁନଶ୍ଚ ଆସିବା ପରେ ୯ଟି ରାଜ୍ୟର ମନ୍ତ୍ରିମଣ୍ଡଳକୁ ବରଖାସ୍ତ ।

ମାର୍ଚ୍ଚ ୩/୪ରେ ରାଜ୍ୟ ପରିଷଦ ବୈଠକରେ ରାଜ୍ୟରେ ରାଷ୍ଟ୍ରପତି ଶାସନଜାରିର ପ୍ରତିବାଦ ଓ ବିଧାନସଭା ନିର୍ବାଚନ ଲାଗି କର୍ମକୌଶଳ ନିର୍ଦ୍ଧାରଣ । କଂଗ୍ରେସ-ଇ ବିରୁଦ୍ଧରେ ଜନତାପାର୍ଟି ବିକଳ୍ପ ନୁହଁ- ବାମ ଗଣତାନ୍ତ୍ରିକ ବିକଳ୍ପ ଓ ବାମପନ୍ଥୀ ଐକ୍ୟର ଓ ଆପଣା ଶକ୍ତି ବୃଦ୍ଧିର କର୍ମକୌଶଳ ଗୃହୀତ ।

ମାର୍ଚ୍ଚ ୧୨ରେ କଟକର ୩ ଶହ ପାର୍ଟି ସଦସ୍ୟଙ୍କ ସମାବେଶ ଓ ସଂଗ୍ରାମର କର୍ମକୌଶଳ ନିର୍ଣ୍ଣୟ । କୁଜଙ୍ଗ କାଳିଆପାଟରେ ଯୁବସଂଘ ପକ୍ଷରୁ ୬୫ ଜଣ ଶିକ୍ଷାର୍ଥୀଙ୍କୁ ଘେନି ୪ ଦିନିଆ ଶିକ୍ଷା ଶିବିର- ଏହି ମାସରେ ପଟିନ୍ଦ୍ନ ଆନ୍ଦୋଳନର ଅନ୍ୟତମ ନେତା ଭଗବାନ ସାହୁଙ୍କର ଦେହାନ୍ତ ।

ଏପ୍ରିଲ ୨୫ରେ ବ୍ରହ୍ମପୁରରେ ରାଜନୈତିକ ଦୁର୍ବୃତ୍ତଙ୍କ ଦ୍ୱାରା କେ. ରାମକ୍ରିଷ୍ଣନଙ୍କ ଉପରେ ଆକ୍ରମଣର ପ୍ରତିବାଦ ବିକ୍ଷୋଭ ।

୧୯୭୮ ପାର୍ଟି ପକ୍ଷରୁ ସତ୍ୟାଗ୍ରହରେ ଗିରଫ ଓ ଜେଲଭୋଗୀ କୋରାପୁଟର ୧୬ ଜଣ ପ୍ରାର୍ଥୀଙ୍କର ଅଦାଲତ ରାୟ ପରେ ବିନା ଦୋଷରେ ମୁକ୍ତି ।

ଏପ୍ରିଲରେ କଟକ ଜିଲ୍ଲାର ଜଗତ୍‌ସିଂହପୁର, ବଡ଼ଚଣା, ଧର୍ମଶାଳା, ଦଶରଥପୁର, ବିଞ୍ଝାରପୁର, ତିର୍ତ୍ତୋଲ, ରାଜକନିକା, ମାହାଙ୍ଗା, ଗଞ୍ଜାମ ମୋହନା, କୋରାପୁଟର ବାଲିମେଳା ଓର୍କେଲରେ ବିକ୍ଷୋଭ ଧାରଣା ଏବଂ ଜମିମାଲିକମାନଙ୍କ ଆକ୍ରମଣର ପ୍ରତିରୋଧ କରି ଗଞ୍ଜାମର ଗଜେନ୍ଦ୍ର, ଭଞ୍ଜନଗର, ଢାଡ଼ଧର, ପୁରୁଷୋତ୍ତମପୁର, ସାହାପୁର, ବାଲିରେ ଆନ୍ଦୋଳନ ।

ମଇ ମାସରେ ଛତ୍ରପୁର, ଚମ୍ପୁଆ, ବଡବିଲ, ରାଜକନିକା ଓ ସମ୍ବଲପୁରର ଲିଖନପୁରରେ ଦରଦାମ, ପାନୀୟ ଜଳ, ମରୁଡ଼ି ପ୍ରତିକାର ଲାଗି ବିକ୍ଷୋଭ ।

ଓରିଏଣ୍ଟ କାଗଜକଳ ଶ୍ରମିକମାନେ କଂଗ୍ରେସ-ଇର ଆଇ.ଏନ୍.ଟି.ୟୁସି ନାଗଫାସରୁ ମୁକ୍ତି ହୋଇ କଃ. ପ୍ରସନ୍ନ କୁମାର ପଣ୍ଡାଙ୍କ ସଭାପତିତ୍ୱରେ ଡଃ. କୃପାସିନ୍ଧୁ ଖୁଣ୍ଟିଆଙ୍କ ନେତୃତ୍ୱାଧୀନ ଲଢୁଆ ୟୁନିଅନର ପୁନଃ ପ୍ରତିଷ୍ଠା ।

୧୯୮୦ ମଇରେ ଓଡ଼ିଶାରେ ବିଧାନସଭା ନିର୍ବାଚନ । ୨୬ ଜଣ ପାର୍ଟି ପ୍ରାର୍ଥୀ ପ୍ରଚାର ଅଭିଯାନରେ କେନ୍ଦ୍ର ଓ ପଶ୍ଚିମବଙ୍ଗର ନେତୃବୃନ୍ଦ ଭୂପେଶ ଗୁପ୍ତ, ଇନ୍ଦ୍ରଜିତ ଗୁପ୍ତ, ଏନ୍.ରାଜଶେଖର ରେଡି, ବିଶ୍ୱନାଥ ମୁଖାର୍ଜୀ, କଲ୍ୟାଣ ରାୟ, ଗୀତା ମୁଖାର୍ଜୀ, ଭୁପାଳ ପଣ୍ଡା, ନାରାୟଣ ଚୌବେ, ଚିତ୍ତ ବିଶ୍ୱାସଙ୍କ ଅଂଶଗ୍ରହଣ ।

ପୁରୀ ଜିଲ୍ଲାର ଭୁବନେଶ୍ୱରରେ ରାମକୃଷ୍ଣ ପତି, ବୋଲଗଡ଼ରେ ଗଙ୍ଗାଧର ପାଇକରାୟ, କାକଟପୁରରେ ସୋମନାଥ ପାତ୍ର, ନିମାପଡ଼ାରେ ବ୍ରହ୍ମାନନ୍ଦ ମଲିକ, ଜଟଣୀରେ ଉଲ୍ଲାସ ପ୍ରଧାନ, ଗଞ୍ଜାମରେ ସୋମନାଥ ନାୟକ, ଆସ୍କାରେ ହରିହର ଦାସ, କବିସୂର୍ଯ୍ୟନଗରରେ ନିତ୍ୟାନନ୍ଦ ପ୍ରଧାନ, ବ୍ରଜରାଜନଗରରେ ପ୍ରସନ୍ନ କୁମାର ପଣ୍ଡା, ବିଞ୍ଝେପୁରରେ ଶଙ୍କର ଗଡ଼ତିଆ, ଭଟ୍ଲିରେ ସନ୍ତୋଷ କିଶୋର ଠେଠ, ବାଲେଶ୍ୱରରେ ଅରୁଣ ଦେ, ସୋରରେ ପୀତାମ୍ବର ଅଣ୍ଡା, ଭଣ୍ଡାରୀପୋଖରୀରେ ରଥକିଶୋର ଦାସ, ସିମୁଳିଆରେ ପୂର୍ଣ୍ଣଚନ୍ଦ୍ର ପଣ୍ଡା, ବାସୁଦେବପୁରରେ ବୈଲୋଚନ ଜେନା, କଟକ ଜିଲ୍ଲାର ଏରସମାରେ ଲୋକନାଥ ଚୌଧୁରୀ, ଜଗତ୍‌ସିଂହପୁରରେ ପ୍ରହ୍ଲାଦ ସେଠୀ, ବଡ଼ଚଣାରେ ଦୁଃଶାସନ ଜେନା, ଚୌଦ୍ୱାରରେ ପ୍ରବୀର ପାଳିତ, ଆଳିରେ ଅମର ଦେଓ, ମୟୂରଭଞ୍ଜର ବାଙ୍ଗିରିପୋଷିରେ ଭୀମଚରଣ ନାୟକ, ଫୁଲବାଣୀରେ ଗୌରଚନ୍ଦ୍ର ମଲିକ, ବଲାଙ୍ଗିରର ଟିଟିଲାଗଡ଼ରେ ଲାଲୁ ମେହେର, ସୁନ୍ଦରଗଡ଼ର ରାଉରକେଲାରେ ପ୍ରଭାତ ମିଶ୍ର, କୋରାପୁଟର ଚିତ୍ରକୋଣ୍ଡାରେ ସନ୍ନ୍ୟାସୀ କିସାନୀ, କେଉଁଝରର ଚମ୍ପୁଆରେ ଦୁର୍ଲଭ ଦେହୁରୀ ପାର୍ଟିର ପ୍ରାର୍ଥୀ ।

ରାମକୃଷ୍ଣ ପତି, ବିଶ୍ୱନାଥ ସାହୁ, ପୀତାମ୍ବର ପଣ୍ଡା, ଅରୁଣ ଦେ ବିଜୟୀ । ଜୁନ୍ ୧୯/୨୦ରେ ରାଜ୍ୟ ପରିଷଦ ବୈଠକରେ ନିର୍ବାଚନ ସମୀକ୍ଷା ।

ନିର୍ବାଚନ ପରେ ପରେ କଂଗ୍ରେସ-ଇ ଓ ଅନ୍ୟାନ୍ୟ ବୁର୍ଜୁଆ ବିରୋଧୀଦଳର ଦୁର୍ବୃତ୍ତମାନଙ୍କ ଦ୍ୱାରା ସୋରରେ ପାର୍ଟି ସାଥୀମାନଙ୍କ ଉପରେ ଆକ୍ରମଣ, ଲୁଟି, ମାଡ଼, ମହିଳା ଧର୍ଷଣ ।

ଗଞ୍ଜାମରେ ଡଃ. ସଦାନନ୍ଦ ମହାନ୍ତି, ବିଶ୍ୱନାଥ ସାହୁ, ଲକ୍ଷ୍ମଣ ମହାପାତ୍ରଙ୍କୁ ହତ୍ୟାଧମକ । ଏମାନଙ୍କୁ କଂଗ୍ରେସ-ଇ ପକ୍ଷରୁ ହତ୍ୟା ମକଦ୍ଦମାରେ ଜଡ଼ିତ କରିବାର ହୀନ ଉଦ୍ୟମ । ବ୍ରହ୍ମପୁର ଜେଲରେ ବନ୍ଦୀ କରି ରଖାଯୋଇଥିବା କମ୍ୟୁନିଷ୍ଟମାନଙ୍କ ଉପରେ ଗୁଣ୍ଡା ସର୍ଦ୍ଦାର ପ୍ରତାପ ସ୍ୱାଇଁ ଓ ତା'ର ଦଳର ଗୁଣ୍ଡାଙ୍କ ବର୍ଚ୍ଛା, କାତି, ମଦବୋତଲ, ଭୁଜାଲି ଧରି ଆକ୍ରମଣ । ଗଞ୍ଜାମରେ କମ୍ୟୁନିଷ୍ଟମାନଙ୍କର ବ୍ୟାପକ ଗିରଫଦାରୀ, ଆତଙ୍କବାଦ କମ୍ୟୁନିଷ୍ଟମାନଙ୍କର ବ୍ୟାପକ ଗିରଫଦାରୀ, ଆତଙ୍କବାଦ ଓ ତା'ର ବିପୁଳ ପ୍ରତିବାଦ ସଭା ସମାବେଶ ।

ଏହି ସମୟ ଭିତରେ ବାଲେଶ୍ୱରର ପ୍ରବୀଣ ଶ୍ରମିକ ନେତା ପଞ୍ଚାନନ ମହାରଣା, ବରେଣ୍ୟ ସ୍ୱାଧୀନତା ସଂଗ୍ରାମୀ ବୟୋଜ୍ୟେଷ୍ଠ ନେତା ସମ୍ବଲପୁର ବରପାଲିର ଭାଗୀରଥୀ ପଟ୍ଟନାୟକଙ୍କ ମୃତ୍ୟୁ ଓ ଇସକସର ରାଜ୍ୟ ନେତା କ୍ରୀଡାବିତ୍ ଭୈରବ ଚରଣ ମହାନ୍ତିଙ୍କ ମୃତ୍ୟୁରେ ବିଭିନ୍ନ ସ୍ଥାନରେ ଶୋକସଭା ଜୁଲାଇ ମାସରେ ପାର୍ଟିର ତୁଙ୍ଗ ନେତା ଏମ୍. ଗୋବିନ୍ଦ ନାୟାରଙ୍କ ଓଡ଼ିଶାଗସ୍ତ ।

ପାର୍ଟିର ଜନସଂଗ୍ରାମ କାର୍ଯ୍ୟସୂଚୀ ଯୁବସଂଘର ପ୍ରମୁଖ ଭୂମିକା ।

ଜାନକୀ ସରକାର ଓ କେନ୍ଦ୍ର ସରକାର ବିରୁଦ୍ଧରେ ଅଗଷ୍ଟ ୨୩ ରୁ ୩୦ ଯାଏ ବିପୁଳ କାର୍ଯ୍ୟକ୍ରମ ।

୧୯୮୦ ଅଗଷ୍ଟ ସେପ୍ଟେମ୍ବରରେ ବେକାରୀ, ଦରଦାମ, ବୃଦ୍ଧି, ଭୂମିହୀନ- ଗୃହହୀନଙ୍କୁ ଭୂମି, ଗଣଛାଡ଼, ବସ୍ ଭଡ଼ା ବୃଦ୍ଧି ପ୍ରଭୃତି ଦାବୀ ଘେନି କଟକର କେନ୍ଦ୍ରାପଡ଼ା, ରଘୁନାଥପୁର, ନାଉଗାଁ, ବିରିଡ଼ି, ଜଗତ୍‌ସିଂହପୁର, ଧାନମଣ୍ଡଳ, କଟକ ସଦର, ଏରସମା-କୁଜଙ୍ଗ, ଦଶରଥପୁର, ଅର୍ଦ୍ଧାଭଳିଆ, କଟକ କଚେରୀ, ପୁରୀର ବୋଲଗଡ଼, କାକଟପୁର, ନିମାପଡ଼ା, ସମ୍ବଲପୁରର ଭଟଲି, ବାଲେଶ୍ୱରର ଚାନ୍ଦବାଲି, ବାସୁଦେବପୁରରେ ଓ ରାଉରକେଲା, ପୋଲସରା, ଭୁବନ ପ୍ରଭୃତିରେ ବିକ୍ଷୋଭ ଓ ଧାରଣା ।

ସେପ୍ଟେମ୍ବର ୨୧ରେ ରାଜଧାନୀରେ ୨୦ ହଜାର ଯୁବଛାତ୍ରଙ୍କ ସମାବେଶ, ଲାଠିମାଡ଼ । ୧୦୩ ଜଣ ଗିରଫ, ୪୯ ଜଣ ଆହତ । ଆହତଙ୍କ ମଧ୍ୟରେ ବିଧାନସଭାର କମ୍ୟୁନିଷ୍ଟ ଦଳର ନେତା ରାମକୃଷ୍ଣ ପତି, ବ୍ରଜକିଶୋର ପଟ୍ଟନାୟକ, ଦୁର୍ଗା ଚରଣ ମହାନ୍ତି, କୁଳମଣି ସ୍ୱାଇଁ, ଉଦୟ ଚନ୍ଦ୍ର ପାତ୍ର, ନବକିଶୋର ବେହେରା, ଧନେଶ୍ୱର ମହାନ୍ତି ପ୍ରମୁଖ । ପ୍ରବଳ ବର୍ଷା ସତ୍ତ୍ୱେ ବିରାଟ ବିକ୍ଷୋଭ ।

ରାଜ୍ୟରେ ସେପ୍ଟେମ୍ବର ୨୧ରେ ଅଚାନକ ବନ୍ୟା । କଟକ ଜିଲ୍ଲାର ମହାନଦୀ ବନ୍ୟାରେ

ବାଙ୍କି ସବ୍‌ଡିଭିଜନ, ଗଞ୍ଜାମରେ ବଂଶଧାରା ନଦୀ ବନ୍ୟାରେ କ୍ଷୟକ୍ଷତି । କଟକର କଣ୍ଟାରୋହିଆ ଘାଇ ଫଳରେ ଜଗତ୍‌ସିଂହପୁର, ନାଉଗାଁ ବାଲିକୁଦାରେ ତଥା ପୁରୀ ଜିଲ୍ଲାର ବିଭିନ୍ନ ସ୍ଥାନରେ ବନ୍ୟା ବିପ୍ଳାତ ଓ ପାର୍ଟିର ରିଲିଫ କାର୍ଯ୍ୟ । ସମ୍ବଲପୁର ସହରରେ ବ୍ୟାପକ କ୍ଷତି ।

ସେପ୍ଟେମ୍ବର ୩୦ରେ ସମ୍ବଲପୁର ଓ ବଲାଙ୍ଗିରରେ କଂଗ୍ରେସ-ଇ ପୁଲିସ ଦ୍ୱାରା ଛାତ୍ରଙ୍କ ଉପରେ ଭୟାବହ ଆକ୍ରମଣ ଓ ତା'ର ପ୍ରତିବାଦ ବିକ୍ଷୋଭ ।

ବନ୍ୟାର ପ୍ରତିକାର ଦାବୀକରି ରାଜ୍ୟ ପାର୍ଟି ପକ୍ଷରୁ ଅକ୍ଟୋବର ୧୫ରେ ସମ୍ବଲପୁର, ପୁରୀ, ଗଞ୍ଜାମ, କଟକର ବିଭିନ୍ନ ସ୍ଥାନରେ ବିକ୍ଷୋଭ ।

ଏହି ସମୟରେ ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡିଠାରେ ଜିଲ୍ଲା କ୍ଷେତ ମୂଲିଆ ସମ୍ମିଳନୀ ଓ ଭଦ୍ରକରେ ସି.ପିଆଇ, ସିପିଏମ୍‌ର ମିଳିତ ବିକ୍ଷୋଭ ।

ଭଗବତୀ ଭବନର ଦ୍ୱିତୀୟ ମହଲା ପାଇଁ ପାଣ୍ଠି ଲାଗି ଆହ୍ୱାନ ।

ଅ.ଭା.ଯୁବସଂଘର ଗଞ୍ଜାମ ଜିଲ୍ଲା ସମ୍ମିଳନୀ ଅନୁଷ୍ଠିତ । ଡିସେମ୍ବର ୨୮ରେ ଅ.ଭା ଛାତ୍ର ସଂଘର ପୂର୍ବାଞ୍ଚଳ ସମ୍ମିଳନୀରେ ୪୭୨ ଜଣ ପ୍ରତିନିଧି ଯୋଗଦାନ ।

ଶହୀଦ ଉଦ୍ଧବ ଓ ଲକ୍ଷ୍ମଣ (ଭୁବନ)ଙ୍କ ଉଦ୍ଦେଶ୍ୟରେ ଶହୀଦ ଦିବସ ପାଳନ । କାମାକ୍ଷାନଗର, ଭୁବନ, ବାଲିଚନ୍ଦ୍ରପୁର, କୁଆଖିଆ, ଜାରକା, ଛତିଆ, ନିମାପଡ଼ା କଟକରେ ସଭା । ଡଃ ସି.ରାଜେଶ୍ୱର ରାଓଙ୍କ ଓଡ଼ିଶା ଗସ୍ତ ।

୧୯୮୦ ବିଧାନସଭା ନିର୍ବାଚନରେ ପାର୍ଟି ପ୍ରାର୍ଥୀମାନେ ପାଇଥିବା ଭୋଟ ସଂଖ୍ୟା- ନିମ୍ନରୂପେ - ରାମକୃଷ୍ଣ ପତି- ୨୮୧୦୩, ବିଶ୍ୱନାଥ ସାହୁ- ୨୪୧୨୫, ଅରୁଣ ଦେ- ୨୧୧୮୨, ପୀତାମ୍ବର ପଣ୍ଡା- ୨୧୮୧୯, ଲୋକନାଥ ଚୌଧୁରୀ - ୨୫୬୫୧, ହରିହର ଦାସ - ୧୮୫୭୩, ଗଙ୍ଗାଧର ପାଇକରାୟ- ୧୬୧୧୨, ରଥ କୁମାର ଦାସ- ୧୬୯୨୬, ନିତ୍ୟାନନ୍ଦ ପ୍ରଧାନ - ୧୬୯୯୨, ଦୁଃଶାସନ ଜେନା- ୧୧୧୦୮, ପ୍ରହ୍ଲାଦ ସେଠୀ- ୧୩୦୦୭, ପୂର୍ଣ୍ଣଚନ୍ଦ୍ର ପଣ୍ଡା- ୮୧୩୩, ପ୍ରସନ୍ନ କୁମାର ପଣ୍ଡା- ୧୬୨୭୭, ଦୁର୍ଲ୍ଲଭ ଦେହୁରୀ- ୮୮୦୦, ସୋମନାଥ ପାତ୍ର- ୭୮୯୯, ପ୍ରବୀର ପାଲିତ୍- ୬୨୯୧, ତ୍ରୈଲୋଚନ ଜେନା- ୫୨୩୩, ଶଙ୍କର ଗଡତିଆ- ୯୨୨୦, ଭୀମ ଚରଣ ନାୟକ- ୩୩୧୦, ରାମଗୋପାଳ ରାଓ- ୭୦୮୬, ସନ୍ୟାସୀ କିର୍ସାନୀ- ୨୦୦୪, ଲାଲୁ ମେହେର- ୩୨୩୮, ଉଲ୍ଲାସ ପ୍ରଧାନ- ୪୫୮୪, ଗୌରଚନ୍ଦ୍ର ମଲ୍ଲିକ- ୧୮୩୨, ପ୍ରଭାତ ମିଶ୍ର- ୧୭୧୮ ।

**୧୯୮୧**

ଜାନୁଆରୀ ୧୯୮୧ରେ ଛାତ୍ର ଆନ୍ଦୋଳନ ଉପରେ ଜାନକୀ ସରକାରଙ୍କ ନିର୍ମମ ଆକ୍ରମଣ, ହତ୍ୟା ଓ ଦମନ ସମ୍ପର୍କରେ ସରକାରଙ୍କ ପକ୍ଷରୁ ନିଯୋଜିତ ମହତାବଙ୍କ ନେତୃତ୍ୱରେ ଗଠିତ ୯ ଜଣିଆ କମିଟିର ସୁପାରିଶ ବିରୁଦ୍ଧରେ ପ୍ରତିବାଦ ଲାଗି ପାର୍ଟିର ଆହ୍ୱାନ । ଛାତ୍ରଙ୍କ

ଗଣସଂଗଠନ ଓ ପାର୍ଟି ପକ୍ଷରୁ ବିଭିନ୍ନ ସ୍ଥାନରେ ପ୍ରତିବାଦ ସଭା ସମାବେଶ ଅନୁଷ୍ଠିତ ।

ଜାନୁଆରୀ ୧୭ରେ କୃଷକ ସଭା ଓ ପାର୍ଟିର ମିଳିତ ଆହ୍ୱାନରେ ରଣଛାଡ଼, ଧାନ ଦର ବୃଦ୍ଧି ଇତ୍ୟାଦି ୧୬ଟି ଦାବୀପତ୍ର ଘେନି ଶୋଭାଯାତ୍ରା ଓ ପ୍ରତିବାଦ ଦିବସ ପାଳନ । ଢେଙ୍କାନାଳ, କାମାକ୍ଷାନଗର, ପୋଡାପଡ଼ା, ଅନୁଗୁଳ, ବୋଲଗଡ଼, କାକଟପୁର, ସମ୍ବଲପୁର, ବଲାଙ୍ଗୀର, ଏରସମା, ବିରିଡ଼ି, ବଡ଼ଚଣା, ମଙ୍ଗଳପୁର, ଭଟଲି ଓ ଭଞ୍ଜନଗରରେ କ୍ଷେତମୂଲିଆ ବିକ୍ଷୋଭ ।

ରାଜ୍ୟରେ ପାର୍ଟି ଶାଖା ସମ୍ମିଳନୀଗୁଡ଼ିକ ଅନୁଷ୍ଠାନର ପ୍ରକ୍ରିୟା । ଗଞ୍ଜାମର ବ୍ରହ୍ମପୁରଠାରେ ଅ.ଭା.ଯୁବସଂଘ ୨ୟ ସମ୍ମିଳନୀ ଦୁଇଦିନ ଧରି ଅନୁଷ୍ଠିତ ।

ଜାନୁଆରୀ ୧୯ ରୁ ୨୨ ଯାଏ ଭଗବତୀଭବନରେ ପାର୍ଟି କେନ୍ଦ୍ର କଣ୍ଟ୍ରୋଲ କମିଶନ ସମ୍ମିଳନୀରେ ଗଙ୍ଗାଧର ଅଧିକାରୀ, ସୋହାନ ସିଂ ଘୋଷ, ଧରଣୀଗୋସ୍ୱାମୀ, ରାମ ଅବତାର ଶାସ୍ତ୍ରୀ, ଏସ୍. ଖରଖାନିସ, ରୁସ୍ତମ ସତିନ, ବାରିନ ଚୌଧୁରୀ ଭି. ସୁବେୟା, ପ୍ରଫୁଲ୍ଲ ମିଶ୍ର, ଗୁରୁଚରଣ ପଟ୍ଟନାୟକଙ୍କ ଯୋଗଦାନ ।

ଭଗବତୀଭବନର ଦ୍ୱିତୀୟ ମହଲା ନିର୍ମାଣ ଲାଗି ପାଣ୍ଠି ଅଭିଯାନରେ ଚାନ୍ଦାଦାତାମାନଙ୍କର ପର୍ଯ୍ୟାୟକ୍ରମେ ନାମ ପ୍ରକାଶନ ।

ହୀରାକୁଦଠାରେ ସର୍ବଭାରତୀୟ ଆଲୁମିନିୟମ ଶ୍ରମିକ ସମ୍ମିଳନୀ ଜାନୁଆରୀ ୩୧ରେ ଅନୁଷ୍ଠିତ ।

କେଉଁଝରର ଖଣି ଶ୍ରମିକମାନଙ୍କ ଆନ୍ଦୋଳନର ବ୍ୟାପକ ପ୍ରସ୍ତୁତି । ଫେବୃୟାରୀ ୧୨ ରେ ଭଗବତୀଭବନଠାରେ ଧାନ, ଅଟା, ଚାଉଳ, କୀଟନାଶକ, ଜଳକର, ଜଳସେଚନ, କାମ ପାଇଁ ଖାଦ୍ୟ, କ୍ଷେତମୂଲିଆ, ମଜୁରୀ ଭୂମି ଓ ରଣଛାଡ଼ ଏମିତି ୧୮ ଦଫା କାର୍ଯ୍ୟସୂଚୀ ଘେନି ସଂଗ୍ରାମ ଲାଗି କୃଷକ ସଭା କନଭେନସନ ଓ ଏହି ମାସରେ କେନ୍ଦ୍ରର ରେଳଭଡ଼ା ବୃଦ୍ଧି ବିରୁଦ୍ଧରେ ପ୍ରତିବାଦ ଲାଗି ପାର୍ଟିର ଆହ୍ୱାନ ।

ମାର୍ଚ୍ଚ ୩ ତାରିଖରେ ରାଜଧାନୀର କଳାମଣ୍ଡପଠାରେ ଅ.ଭା.ଛାତ୍ର ସଂଘର ୨୯ଶ ରାଜ୍ୟ ସମ୍ମିଳନୀରେ କଂ. ଏନ୍.କେ. କ୍ରିଷନ, ରାମକୃଷ୍ଣ ପତି ପ୍ରମୁଖଙ୍କ ଉଦ୍‌ବୋଧନ । ନୂତନ କର୍ମପନ୍ଥା ଓ କର୍ମକର୍ତ୍ତା ନିର୍ବାଚନ ।

ରାଜଧାନୀରେ କୃଷକ ସମାବେଶ ଅନୁଷ୍ଠାନ ଉପଲକ୍ଷେ କଟକର ଆଳି, ବିରିଡ଼ି, ଦଶରଥପୁର, ଜଗତ୍‌ସିଂହପୁର, ପଟ୍ଟାମୁଣ୍ଡାଇ, କେନ୍ଦ୍ରାପଡ଼ା, ମାହାଙ୍ଗା, ସାଲେପୁର, ଏରସମା, ଅର୍ଦ୍ଧାଉଳିଆ, ମଙ୍ଗଳପୁର, ବାଲେଶ୍ୱରର ବାଲେଶ୍ୱର, ଭଣ୍ଡାରିପୋଖରୀ, ବାହାରଣା ପ୍ରଭୃତିରେ, ପୁରୀର ନିମାପଡ଼ା, କାକଟପୁର ସିକୋ; ଗଞ୍ଜାମର ବ୍ରହ୍ମପୁର, ଛତ୍ରପୁର, ମୋହନା, ଦିଗପହଣ୍ଡି, ଟିକାବାଲି ପ୍ରଭୃତିରେ; ସମ୍ବଲପୁରର ଭଟଲି, କେଉଁଝରର ହାଟଡ଼ିହ ଏମିତି ଅନେକ ସ୍ଥାନରେ ବିକ୍ଷୋଭ ସମାବେଶ ।

ଟାଟା କମ୍ପାନୀର ଲାଠି ମାଡ଼ରେ ବିହାରର ପ୍ରଖ୍ୟାତ ଶ୍ରମିକ ଓ କମ୍ୟୁନିଷ୍ଟ ନେତା କେଦାର ଦାସଙ୍କ ମୃତ୍ୟୁର ପ୍ରତିବାଦ କରି ରାଜ୍ୟରେ ବିଭିନ୍ନ ଶ୍ରମିକ ଅଞ୍ଚଳରେ ସଭା ।

ମାର୍ଚ୍ଚ ୨୭ରେ ରାଜଧାନୀରେ ବିଶାଳ ମିଳିତ, କୃଷକ ପଟୁଆର । ପୂର୍ବରୁ ସି.ପି.ଆଇ., ସି.ପି.ଆଇ. (ଏମ୍) ପ୍ରଭାବାଧୀନ କୃଷକ ସଭାର ମିଳିତ କର୍ମୀ ସମାବେଶ । ପ୍ରବଳ ବର୍ଷା ସତ୍ୱେ ଏଥିରେ ୫୦ ହଜାର ଲୋକଙ୍କ ଯୋଗଦାନ ।

ରାଜ୍ୟରେ ଏହି ସମାବେଶରେ ମାର୍ଚ୍ଚ ୨୬ରେ ସି.ପି.ଆଇ., ସି.ପି.ଏମ୍. ଫରୱାର୍ଡ଼ବ୍ଲକ, ଆର.ଏସ୍.ପି, ଶିରୋମଣି ଅକାଳୀଦଳ କଂଗ୍ରେସ (ଏସ୍) ପକ୍ଷରୁ ଦିଲ୍ଲୀ ସମାବେଶରେ ଓଡ଼ିଶାର ଯୋଗଦାନ ।

ଏହି ମାସରେ ସମ୍ବଲପୁରରୁ ୭ ଦିନ ରାସ୍ତା ପରିକ୍ରମା କରି ସିପିଆଇ ନେତୃତ୍ୱରେ ଶ୍ରମିକ-ଚାଷୀ-ଯୁବକଙ୍କ ସାଇକେଲ ପଟୁଆର । ଓଡ଼ିଶାର ମାଧ୍ୟମିକ ଶିକ୍ଷକମାନଙ୍କର ମାର୍ଚ୍ଚ ୨ ରୁ ଆନ୍ଦୋଳନ ହୋଇ ବିଜୟ ସହିତ ୬ ତାରିଖରେ ପ୍ରତ୍ୟାହାର । ବରଗଡ଼ଠାରେ ମାର୍ଚ୍ଚ ୧୪/୧୫ରେ ସମ୍ବଲପୁର ଜିଲ୍ଲା ଯୁବସଂଘ ସମ୍ମିଳନୀ ଏବଂ ଏହି ମାସରେ କମ୍ରେଡ଼ ଶ୍ରୀପଦ୍ ଅମୃତ ଡାଙ୍ଗେଙ୍କୁ ପାର୍ଟିରୁ ବହିଷ୍କାର ।

ଏପ୍ରିଲରେ କେନ୍ଦ୍ର ବଜେଟ ବିରୁଦ୍ଧରେ ଜାତୀୟ ପ୍ରତିବାଦ ଦିବସରେ ବିଭିନ୍ନ ପାର୍ଟି ଅଞ୍ଚଳରେ ସଭା ।

କଟକ ଶହୀଦଭବନରେ ଉତ୍କଳ ମହିଳା ସମ୍ମିଳନୀ ପୂର୍ବରୁ ପାର୍ଟି ପ୍ରଭାବିତ ଗୋପ, ବ୍ରହ୍ମଗିରି, ଜଗତ୍‌ସିଂହପୁର, ଆଠଗଡ଼, ତିଗିରିଆ, ଚାନ୍ଦୋଳ, ସାଲେପୁର, ଚନ୍ଦକା, ବୋଡ଼ଗଡ଼, ବାସୁଦେବପୁର, ବନ୍ତ, ଆନନ୍ଦପୁର, ଅନ୍ଧୋଟି, ଫୁଲନଖରା, ଜଗତ୍‌ସିଂହପୁରରୁ ସମ୍ମିଳନୀକୁ ପ୍ରତିଧି । ବିମଳା ଫାରୁକି, ରେଣୁ ଚକ୍ରବର୍ତ୍ତୀ ପ୍ରମୁଖଙ୍କ ଯୋଗଦାନ ।

ମଇ ପହିଲାରେ ମହାଉତ୍ସାହ ଉଦ୍ଦୀପନାରେ କଟକ, ପୁରୀ, ବାଲେଶ୍ୱର, ବ୍ରହ୍ମପୁର, ଜଟଣୀ, ନିମାପଡ଼ା, ଭୁବନେଶ୍ୱର, ମଙ୍ଗଳପୁର, ବ୍ରଜରାଜନଗର, ଝାରସୁଗୁଡ଼ା ପ୍ରଭୃତିରେ ମଇ ଦିବସ ପାଳିତ ।

ମଇ ୮ ରୁ ୧୦ ଯାଏ ରାଜ୍ୟ ପରିଷଦକୁ ରାଜେଶ୍ୱର ରାଓଙ୍କ ଉପସ୍ଥିତିରେ ଅନୁଷ୍ଠିତ ।

କଟକ ଲୋକସଭା ନିର୍ବାଚନରେ ଜନତାପାର୍ଟିର ରବି ରାୟଙ୍କୁ ସମର୍ଥନ କରି ପାର୍ଟି ପକ୍ଷରୁ ଭୁପେନ ଗୁପ୍ତଙ୍କ ସଭା । ବ୍ରଜରାଜନଗର କାଗଜକଳ ଓ ଭାସ୍କର ସୂତାକଳ ଶ୍ରମିକ ୟୁନିଅନ ସମ୍ମିଳନୀ ।

ପ୍ରଖ୍ୟାତ ଚାଷୀ ନେତା ସ୍ୱାଧୀନତା ସଂଗ୍ରାମୀ ଫମ ପାଲଙ୍କ ଜୁନ ୬ରେ ମୃତ୍ୟୁ ।

ଜୁନ ୮/୯ରେ ଜଗତ୍‌ସିଂହପୁରଠାରେ ଅ.ଭା.ଯୁବସଂଘ ୨ୟ ରାଜ୍ୟ ସମ୍ମିଳନୀ ପୂର୍ବରୁ କୁଜଙ୍ଗରେ ବିଶାଳ ଯୁବସଂଘ ସମ୍ମିଳନୀ ଓ ଅନ୍ୟାନ୍ୟ ଜିଲ୍ଲାରେ ସମ୍ମିଳନୀ ।

୧୯୮୧ ଜୁଲାଇ ୧ ରୁ ୫ ଯାଏ ବସଭଡ଼ା ବୃଦ୍ଧି ବିରୋଧୀ ଅଭିଯାନରେ ପାର୍ଟିର ଭୂମିକା- ବସଭଡ଼ା ୩୩ ରୁ ୫୫ ଭାଗ ଭଡ଼ା ବିରୁଦ୍ଧରେ ସିପିଆଇ, ସିପିଏମ୍, ଲୋକଦଳ-ଜନତା ପକ୍ଷରୁ ବସ୍ ଅଟକ ଅଭିଯାନ, ଭୁବନେଶ୍ୱର, କଟକ, ରାଉରକେଲା, ଆଠଗଡ଼, ଭଞ୍ଜନଗର, ବଡ଼ବିଲ, ବାଲେଶ୍ୱର ଓ ଅନ୍ୟ ବହୁ ସ୍ଥାନରେ ପାର୍ଟିର ତୁଙ୍ଗନେତା ଗିରଫ । ୨୪ ଜୁଲାଇରେ ବନ୍ଦ ପାଳନ ଏହି ବସ ବନ୍ଦ ଆନ୍ଦୋଳନରେ ସମ୍ବଲପୁରରେ କଃ ଅଶୋକ ବିଶିଙ୍କ ଉପରେ ପୋଲିସର ବର୍ବର ଆକ୍ରମଣ ଓ ସାଥୀମାନଙ୍କ ଗିରଫଦାରୀ ।

ନୂଆଦୁନିଆ ପକ୍ଷରୁ ଗ୍ରାହକ ସଂଗ୍ରହ ଅଭିଯାନ ଆରମ୍ଭ ଅଗଷ୍ଟରେ କଃ ଭୁମେଶ ଗୁପ୍ତଙ୍କ ମସ୍କୋଠାରେ ମୃତ୍ୟୁ ଏବଂ କଟକ, ଭୁବନେଶ୍ୱର, ରାଜ୍ୟର ବିଭନ୍ନ ସ୍ଥାନରେ ଶୋକସଭା ।

ଅ.ଭା.ଯୁବସଂଘ ଆହ୍ୱାନରେ ସେପ୍ଟେମ୍ବର ୨୫ରେ କାମ ନଚେତ୍ ଜେଲଭରୋ ଅଭିଯାନରେ ସହସ୍ରାଧିକ ଯୁବକ ଗିରଃ ୮/୯ ଅଗଷ୍ଟରେ ରାଜ୍ୟ ପରିଷଦର ବୈଠକରେ ଦରଦାମ୍ ବୃଦ୍ଧି ବିରୋଧୀ ଆନ୍ଦୋଳନ ଲାଗି ଡାକରା । କୋରାପୁଟର ମାଲକାନଗିରିରେ କମ୍ୟୁନିଷ୍ଟମାନଙ୍କ ଉପରେ କଂଗ୍ରେସ-ଇ ପୁଲିସର ମାଡ ଆକ୍ରମଣ ।

୨୧ ସେପ୍ଟେମ୍ବରରେ କଟକ କଳାବିକାଶ କେନ୍ଦ୍ରରେ ଏଆଇଟିୟୁସି, ଟିସୁ, ଏଚ୍, ଏମ୍.ଏସ, ସହ ମିଳିତ କନଭେନସନ । ଦୁଇ ହଜାର ପ୍ରତିନିଧିଙ୍କ ଯୋଗଦାନ । କଟକ ଜିଲ୍ଲା ପାର୍ଟିର ଆହ୍ୱାନରେ କଟକ, କୁଞ୍ଜଙ୍ଗ କେନ୍ଦ୍ରାପଡା ପ୍ରଭୃତିରେ ଦରଦାମ୍ ବୃଦ୍ଧି ବିରୁଦ୍ଧରେ ଉତ୍ତାଳ ବିକ୍ଷୋଭ ।

ଅକ୍ଟୋବର ସମ୍ବଲପୁରରେ ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ଲକ୍ଷ୍ମଣ ପୂଜାରୀ ଏବଂ ବଲାଙ୍ଗିରରେ ପାର୍ଟିର ପ୍ରତିଷ୍ଠାତା ପ୍ରଜାମଣ୍ଡଳ କମ୍ରେଡ ଯୁଧିଷ୍ଠିର ମିଶ୍ରଙ୍କ ବିୟୋଗ ।

ବାଲେଶ୍ୱର ନାଉଗୋରଡ଼ାରେ କଂଗ୍ରେସ (ଇ) ଏମ୍.ଏମ୍.ଏଲ୍.ଏ ଜଗନ୍ନାଥ ରାଉତ, ନେତ୍ରାନନ୍ଦ ମଲ୍ଲିକଙ୍କ ପ୍ରରୋଚନାରେ କମ୍ୟୁନିଷ୍ଟ ଘରମାନଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ ପୁଲିସ ଫୌଜର- ଅତ୍ୟାଚାର, ବହୁ କମ୍ୟୁନିଷ୍ଟ ଘର ଲୁଟପାଟ ।

ଗଞ୍ଜାମର ମୋହନାରେ ଆଦିବାସୀମାନଙ୍କ ଉପରେ ଜୁଲୁମ ବିରୋଧୀ ସଂଗ୍ରାମ । ନଭେମ୍ବର ମାସରେ ପ୍ରଖ୍ୟାତ ପାର୍ଟି ନେତା ଗଙ୍ଗାଧର ଅଧିକାରୀଙ୍କ ବିୟୋଗ । ମୟୂରଭଞ୍ଜ, ବାରିପଦାରେ ଚାଷୀମୂଲିଆଙ୍କ ବିକ୍ଷୋଭ । ନିମାପଡ଼ାରେ ଯୁବସଂଘ ସତ୍ୟାଗ୍ରହରେ ୭୨ ଜଣ ଗିରଫ । ଜଗତସିଂହପୁରରେ ବିକ୍ଷୋଭ । ଛତ୍ରପୁରରେ ବିରଳା ମୃତ୍ତିକା ଶ୍ରମିକ ସମ୍ମିଳନୀ ।

ଏହି ବର୍ଷ ବ୍ୟାପକ ମରୁଡ଼ି ପରେ ଭୟାବହ ବାତ୍ୟା । ବାତ୍ୟାବିପନ୍ନ ଲୋକଙ୍କ ଥଇଥାନ ଦାବୀରେ କୁଜଙ୍ଗ, ଏରସମା, କାକଟପୁର, ଅସ୍ତରଙ୍ଗ, ଭୋଗରାଇ ବାଲିଆପା, ବାସଡ଼ା, ବାସୁଦେବପୁର, କେନ୍ଦ୍ରାପଡ଼ା, ମାର୍ଶାଘାଟ, ଜଳେଶ୍ୱର, ରାଇବଣିଆ, ପାଟକୁରା, ମହାକାଳପଡ଼ା, ଚାନ୍ଦବାଲି, ରାଜନଗରରେ ବିକ୍ଷୋଭ- ଧାରଣା ।

ଦ୍ୱାଦଶ ପାର୍ଟି କଂଗ୍ରେସ ଲାଗି ପ୍ରସ୍ତୁତି । ସଭ୍ୟ ପଦ ନବୀକରଣ-ଆରମ୍ଭ । ଏହି ବର୍ଷ ନୂଆଦୁନିଆରେ ଗଞ୍ଜାମ ଓ ପୁରୀ ଜିଲ୍ଲାରେ ପାର୍ଟି, କୃକେ ସଭା କର୍ମୀଙ୍କ ଉପରେ ଆକ୍ରମଣର ପର୍ଯ୍ୟାୟକ୍ରମିକ ମୁଦ୍ରିତ ବିବରଣୀ ପ୍ରକାଶିତ ।

ଡିସେମ୍ବର ୨୦-୧୩ ପାର୍ଟି ରାଜ୍ୟ ପରିଷଦ ବୈଠକରେ ବାଲେଶ୍ୱର ଏକାଦଶ ରାଜ୍ୟ ସମ୍ମିଳନୀ ଲାଗି ପ୍ରସ୍ତୁତି ଓ ଭୁପେଶ ଗୁପ୍ତ ସ୍ମୃତି ପାଣ୍ଠି ଲାଗି ଆହ୍ୱାନ ।

**୧୯୮୨**

ବାମପନ୍ଥୀ ସି.ପି.ଆଇ., ସି.ପି.ଏମ୍. ଏବଂ ଅନ୍ୟାନ୍ୟ ବିରୋଧୀ ଦଳ ପକ୍ଷରୁ କେନ୍ଦ୍ର କଂଗ୍ରେସ-ଇ ସରକାରର ଅର୍ଥନୈତିକ ନୀତି ବିରୁଦ୍ଧରେ ସର୍ବଭାରତୀୟ ଶିଳ୍ପ ଶ୍ରମିକ ଧର୍ମଘଟ ଓ ବନ୍ଦ ଆନ୍ଦୋଳନର ଡାକରରେରେ ଭୁବନେଶ୍ୱର, କଟକ, ବାଲେଶ୍ୱର, ଜଟଣୀ, ଆସିକା ପ୍ରଭୃତିରେ ୧୪୪ ଧାରା ଜାରି । କଂଗ୍ରେସ-ଇ ଦୁର୍ବୃତ୍ତଙ୍କ ଦ୍ୱାରା କଟକ, ସମ୍ବଲପୁର, ପୁରୀ, ସୁନ୍ଦରଗଡ଼, ଗଞ୍ଜାମରେ ଆକ୍ରମଣ ରାଜ୍ୟବ୍ୟାପୀ ସି.ପି.ଆଇ ଓ ଅନ୍ୟାନ୍ୟ ଦଳର କର୍ମୀ ଗିରଫ । କାଂସବାହାଲର ଧନମଣ୍ଡଳ, ଢେଙ୍କାନାଳ, ବରପାଲି, ବଡ଼ଚଣା, ଶେରଗଡ଼, ଦଶରଥପୁର, ମଙ୍ଗଳପୁର ଖଲିକୋଟ ପାର୍ଟି ସାଥୀମାନଙ୍କର ଗିରଫ ଦାରୀ ।

ଫେବୃୟାରୀରେ ଓରିଏଣ୍ଟ କାଗଜକଳ ଶ୍ରମିକମାନଙ୍କ ବିଜୟ ଉତ୍ସବ । କୁଜଙ୍ଗ ତ୍ରିଲୋଚନପୁରରେ ମିଥ୍ୟା ହତ୍ୟା ମକଦ୍ଦମାରେ ଜଡ଼ିତ ହୋଇ ଆଜୀବନ କାରାଦଣ୍ଡ ପାଇଥିବା ବୃନ୍ଦାବନ ଚନ୍ଦ୍ର ମୁଦୁଲି ଓ ଅନ୍ୟ ୧୩ ଜଣ ହାଇକୋର୍ଟରେ ଖଲାସ ।

ଫେବୃୟାରୀ ୨୫ରୁ ୨୮ ଯାଏ ବାଲେଶ୍ୱରରେ ଏକାଦଶ ପାର୍ଟି ସମ୍ମିଳନୀ ଫନୀପାଲ ସ୍ୱାସ୍ଥ୍ୟ ପାଣ୍ଠି ଓ ଗୋବିନ୍ଦ ପ୍ରଧାନ ସ୍ମୃତି ପାଣ୍ଠି ଲାଗି ଆହ୍ୱାନ । ଏନ୍.କେ.କ୍ରିଷ୍ଣନଙ୍କ ସମ୍ମିଳନୀରେ ଉଦ୍‌ବୋଧନ ।

ଏପ୍ରିଲରେ ମରୁଡ଼ି ପ୍ରତିକାର ଦାବୀରେ ପାର୍ଟିର ବ୍ୟାପକ ଆନ୍ଦୋଳନ । ଏରସମାରେ ଅନଶନ । ବାଲେଶ୍ୱର, ଗଞ୍ଜାମ, କଟକ ଜିଲ୍ଲାରେ ବ୍ୟାପକ ବିକ୍ଷୋଭ ।

ଗଞ୍ଜାମରେ କୁଖ୍ୟାତ ଗୁଣ୍ଡା ଓ ହତ୍ୟାକାରୀ ପ୍ରତାପ ସ୍ୱାଇଁର ହତ୍ୟା ପରେ କଂଗ୍ରେସ-ଇ ସରକାର ପକ୍ଷରୁ ଓଲଟି କମ୍ୟୁନିଷ୍ଟ ପାର୍ଟି ଉପରେ ଆକ୍ରମଣ । କମ୍ରେଡ଼ ଲକ୍ଷ୍ମଣ ମହାପାତ୍ର ପ୍ରଶାନ୍ତ ପାଟଯୋଶୀ ରମେଶ ପଣ୍ଡା ପ୍ରଭୃତି ବହୁପାର୍ଟି ନେତାଙ୍କୁ ଗିରଫ । ଗୁଣ୍ଡାମାନେ କମ୍ୟୁନିଷ୍ଟମାନଙ୍କୁ ହତ୍ୟାକର ବୋଲି ଗଞ୍ଜାମର କାନ୍ଥବାଡ଼ରେ ପ୍ରଶାସନ ଓ ପୁଲିସର ପ୍ରତ୍ୟକ୍ଷ ଜ୍ଞାନରେ ଲେଖା ଓ ଧମକ । କଃ ରାଜେଶ୍ୱର ରାଓଙ୍କ ଗଞ୍ଜାମ ଗସ୍ତ ।

ରାଜ୍ୟ ପାର୍ଟି ପକ୍ଷରୁ ଗଞ୍ଜାମ ଦିବସ ପାଳନ ଲାଗି ଆହ୍ୱାନରେ ରାଜ୍ୟର ବିଭିନ୍ନ ସ୍ଥାନରେ ପ୍ରତିବାଦ ସଭା ସମାବେଶ । ରାଜ୍ୟ ସଚିବାଳୟ ସମ୍ମୁଖରେ ବିକ୍ଷୋଭ । କୁଜଙ୍ଗ, ନିମାପଡ଼ା, କାକଟପୁର, ଢେଙ୍କାନାଳ, ବଡ଼ମ୍ବା, ପୁରୀ ସହର, ନରସିଂହପୁର, ନାଉଗାଁ, ବଡ଼ବିଲ,

ଜଗତସିଂହପୁର, ବ୍ରହ୍ମଗିରି ଟାଙ୍ଗି, ଚୌଦ୍ୱାର, ଜଟଣୀ, ବେଗୁନିଆ, ବିରିଡ଼ି, ଧାନମଣ୍ଡଳ, ରାଜକନିକା ପ୍ରଭୃତିରେ ଏହି ମାସରେ ମରୁଡ଼ି ଓ କୁଆ ପଥରରେ ଫସଲହାନିର ପ୍ରତିକାର ଲୋଡ଼ି ସଭା ସମାବେଶ । ଏରସମାରେ ପୁଲିସ ପକ୍ଷରୁ ଲାଠି ମାଡ଼ ।

ଜୁନ ମାସରେ ବାତ୍ୟାରେ କ୍ଷୟକ୍ଷତି ବ୍ୟାପକ- ଜୁଲାଇ ୯ ରେ ଜାନକୀ ସରକାର ବିରୁଦ୍ଧରେ ଏଥିଲାଗି ବିକ୍ଷୋଭ ଅନଶନ ପ୍ରତିବାଦ ଲାଗି ପାର୍ଟିର ଆହ୍ୱାନ । ରସୁଲପୁର, ରାଜକନିକା, ସୁକିନ୍ଦା, ଦର୍ପଣୀ, ମାର୍ଶାଘାଇ, ମହାକାଳପଡ଼ା, ବଡ଼ଚଣା, କୁଜଙ୍ଗ, ଯାଜପୁର, ଦଶରଥପୁର, ପଟାମୁଣ୍ଡାଇ, କଟକ, ରାଜନଗର, ଆରଡ଼ି, ଆଠଗଡ଼, ଆଳି, ଚାନ୍ଦବାଲି, ବନ୍ତ, କୁଜଙ୍ଗ, କେନ୍ଦ୍ରାପଡ଼ା, ସାଲେପୁର, ନିଆଳି, ବରୀ, ବିଞ୍ଝାରପୁର, ମଣିଜଙ୍ଗା, ନରସିଂହପୁର, ରାହାମା, ଭୁବନେଶ୍ୱର, ସୋରୋ, ବାହାନଗା, ବାଲେଶ୍ୱର, ଅସ୍ତରଙ୍ଗ, ଧାନମଣ୍ଡଳ, ଖଲିକୋଟ, ଖଣ୍ଡପଡ଼ା, ଜଗତସିଂହପୁର, ଟାଙ୍ଗିରେ ବିକ୍ଷୋଭ ।

ବ୍ରହ୍ମପୁରରେ ୫ ହଜାର ଯୁବକଙ୍କ ପଟୁଆର ପ୍ରଖ୍ୟାତ କମେଡ଼ ସୋହାନ ସିଂ ଯୋଶୀଙ୍କ ମୃତ୍ୟୁ ଓ ଅଗଷ୍ଟ ୨୭ରେ ଓଡ଼ିଶା ପାର୍ଟିର ବିଖ୍ୟାତ ନେତା ରାମ ଚନ୍ଦ୍ର ମିଶ୍ରଙ୍କ ବିୟୋଗ । ଅଗଷ୍ଟ ୧୫ରେ ପାର୍ଟି ରାଜ୍ୟ ପରିଷଦରେ ସେପ୍ଟେମ୍ବର ୧ ରେ ମରୁଡ଼ି, ବାତ୍ୟା ଦିବସ ପାଳନର ଡାକରା ।

୧୯୮୨ ଅଗଷ୍ଟ ୩୦ରେ ଓଡ଼ିଶାର ପ୍ରଳୟଙ୍କରୀ ବନ୍ୟା । ୧ କୋଟି ୫ ଲକ୍ଷ ଲୋକ ୮ଟି ଜିଲ୍ଲାରେ କ୍ଷତିଗ୍ରସ୍ତ । କଃ ରାଜେଶ୍ୱର ରାଓଙ୍କ ବନ୍ୟାଞ୍ଚଳ ଗସ୍ତ । ମହାନଦୀ, ଦେବୀ, ଅଙ୍ଗ, ତେଲ, ଜିରାରେ ପ୍ରବଳ ବନ୍ୟା । ସମ୍ବଲପୁର, ବଲାଙ୍ଗୀର, ବୌଦ୍ଧ-ଫୁଲବାଣୀ, ଗଞ୍ଜାମ, କଟକ ଓ ପୁରୀର ବ୍ୟାପକ ଅଞ୍ଚଳର ବନ୍ୟା ଦୁର୍ଗତଙ୍କ ଦୁର୍ଦ୍ଦଶା ଘେନି ବିକ୍ଷୋଭ । ପାର୍ଟି ପକ୍ଷରୁ ବିଭିନ୍ନ ସ୍ଥାନରେ ଭୋକିଲା ପଟୁଆର । ପଟୁଆରକାରୀଙ୍କ ଉପରେ ଜଗତ୍‌ସିଂହପୁରରେ ପୋଲିସର ଲାଠି ଓ ଅନେକ ଆହତ । ସେପ୍ଟେମ୍ବର ମାସ ସାରା ବିକ୍ଷୋଭ ।

ଅକ୍ଟୋବର ୧୦ରେ ଛତ୍ରପୁରଠାରେ ମରୁଡ଼ି ପ୍ରତିକାର ଦାବୀ କରି ୩୦ ହଜାର ଲୋକଙ୍କ ସମାବେଶରେ କଃ ରାଜେଶ୍ୱର ରାଓଙ୍କ ଉଦ୍‌ବୋଧ । ଭଦ୍ରକ, ବାଲେଶ୍ୱର, ଚାନ୍ଦବାଲି, ଦିଗପହଣ୍ଡି, ଜଟଣୀ, ବେଗୁନିଆ, ବାଲିକୁଦା, ମାହାଙ୍ଗା, ଖୋର୍ଦ୍ଧା, ନୟାଗଡ଼ ପ୍ରଭୃତିରେ ଆଇନ ଅମାନ୍ୟରେ ଚାରି ହଜାର ଗିରଫ ।

ଗଞ୍ଜାମ କୁଶସ୍ଥଳୀର ସାଥୀ ନରସିଂହ ପାତ୍ରଙ୍କ ବିୟୋଗ । ବ୍ରଜରାଜନଗର କାଗଜକଳ ଶ୍ରମିକଙ୍କ ଧର୍ମଘଟ ।

ଡିସେମ୍ବର ୨୬/୨୭ରେ ରାଜ୍ୟ ପରିଷଦର ବୈଠକରେ ଫେବୃଆରୀ ୧୯୮୩ ପ୍ରଥମ ସପ୍ତାହରେ ରାଜଧାନୀ ଭୁବନେଶ୍ୱରରେ ସମାବେଶ । ଆଇନ ଅମାନ୍ୟର ନିର୍ଦ୍ଧାରଣ ।

**୧୯୮୩**

ମରୁଡ଼ିର ପ୍ରକୋପ ବୃଦ୍ଧି । ମୃତ୍ୟୁ ତାଣ୍ଡବ ବିରୋଧରେ ଚାନ୍ଦବାଲି, ବାଁସଡ଼ା,

ରାଇବଣିଆରେ ପାର୍ଟି ପକ୍ଷରୁ ଜାନୁଆରୀରେ ବିକ୍ଷୋଭ । ବାରିପଦାରେ ପାର୍ଟି ପକ୍ଷରୁ ଆଇନ ଅମାନ୍ୟ । ଜାନୁଆରୀ ୩୦ରେ ରାଜ୍ୟର ପଶ୍ଚିମାଞ୍ଚଳରେ ବନ୍ଦ ପାଳନରେ ପାର୍ଟିର ଉଲ୍ଲେଖନୀୟ ଭୂମିକା- ସମ୍ବଲପୁର, ଫୁଲବାଣୀ, କଳାହାଣ୍ଡି, ସୁନ୍ଦରଗଡ଼, ବଲାଙ୍ଗୀରରେ ବନ୍ଦ ।

ଦୁର୍ଭିକ୍ଷ ଅନାହାର ବିରୋଧୀ ସପ୍ତାହ ବ୍ୟାପୀ ପାର୍ଟି ପକ୍ଷରୁ ଆଇନ ଅମାନ୍ୟ । ଫେବୃୟାରୀ ୫/୬ ମଧ୍ୟରେ କଟକ, ଭୁବନେଶ୍ୱର, ଛତ୍ରପୁର, ନରସିଂହପୁର, ବାଲିକୁଦା, ନାଉଗାଁ, ଭଞ୍ଜନଗର, କୁଜଙ୍ଗ, ବନ୍ତ, ପାରାଦୀପ, ଦର୍ପଣୀ, ପୋଲସରା ଓ ଆଉ ୭ ଟି ସ୍ଥାନରେ ବିକ୍ଷୋଭ ।

ଫେବୃୟାରୀ ୧୫ରେ ଦୁର୍ଭିକ୍ଷ ବିରୁଦ୍ଧରେ ରାଜଧାନୀଠାରେ ୫ ହଜାର ମହିଳାଙ୍କ ସମେତ ବିଭୁକ୍ଷୁ ଲୋକଙ୍କ ପଟୁଆରରେ କେନ୍ଦ୍ରୀୟ ପାର୍ଟି ନେତା ଇନ୍ଦ୍ରଦୀପ ସିହ୍ନା ଓ ରାଜ୍ୟ ନେତାଙ୍କର ଉଦ୍‌ବୋଧନ ।

ଅନାହାର- ଦୁର୍ଭିକ୍ଷ ବିରୁଦ୍ଧରେ ସି.ପି.ଆଇ., ସି.ପିଆଇ.(ଏମ୍) ପକ୍ଷରୁ ମିଳିତ ଭାବରେ ରାଜ୍ୟ ବିଧାନସଭା ଆଗରେ ଧାରଣା । ଏହି ମାସରେ ଭୁବନରେ ଆଞ୍ଚଳିକ କୃଷକ ସମ୍ମିଳନୀ ଏବଂ ମରୁଡ଼ି ବିରୁଦ୍ଧରେ କୁଜଙ୍ଗ, ଏରସମାରେ ଗଣଅନଶନ ।

ରାଜ୍ୟ ସରକାରର ନକଲି ପାରିଜାତ ବିହନ ଯୋଗାଣ ବିରୁଦ୍ଧରେ ଏବଂ କଂଗ୍ରେସ-ଇ ସରକାରଙ୍କ ପୋଦାର କମ୍ପାନୀରୁ ୭ କୋଟି ଟଙ୍କାର ସୋରିଷ ତେଲ କିଣା ହେରଫେର ବିରୁଦ୍ଧରେ ପାର୍ଟି ପକ୍ଷରୁ ନାନା ସ୍ଥାନରେ ବିକ୍ଷୋଭ ପ୍ରତିବାଦ । ରାଜେଶ୍ୱର ରାଓଙ୍କ ଏସବୁ ଅଞ୍ଚଳ ଗସ୍ତ । ପାରିଜାତ ବିହନ ଯୋଗାଣ ବିରୁଦ୍ଧରେ ବାଲେଶ୍ୱର ଜିଲ୍ଲାପାଳଙ୍କ ଅଫିସ ଆଗରେ ଅନଶନ । ଏରସମା ବିକ୍ଷୋଭରେ ୬ ଶହ ଗିରଫ । ମଇ ଦିବସ ସମାରୋହ ଗୁଡ଼ିକ ପରେ ମଇ ୧୨ରେ ଯୋଡ଼ା - ବଡ଼ବିଲରେ ଖଣି ଶ୍ରମିକଙ୍କ ଡାକରାରେ ବନ୍ଦ ପାଳନ । ମଇ ୨୮/ ୨୯ରେ କୋଣାର୍କଠାରେ ରାଜ୍ୟସ୍ତରୀୟ ବିଶାଳ ଯୁବ ସମାବେଶରେ ୧ ହଜାର ପ୍ରତିନିଧି । ନକଲି ବିହନ ଯୋଗାଣ ବିରୁଦ୍ଧରେ ରାଜକନିକା, ଅସ୍ତରଙ୍ଗ, ବିରିଡ଼ି, ଧର୍ମଶାଳା, ବଡ଼ଚଣା, ବାଲେଶ୍ୱର, ନରସିଂହପୁର, ଦଶରଥପୁରରେ ବିକ୍ଷୋଭ । କଟକ ଜିଲ୍ଲାପାଳଙ୍କ ଦପ୍ତର ସମ୍ମୁଖରେ ମଇ ୩୦ରେ ବଡ଼ଧରଣର ବିକ୍ଷୋଭ । ମଇ ୨୬ରେ ବଡ଼ବିଲ ଖଣି ଶ୍ରମିକମାନଙ୍କ ଧାରଣାବେଳେ ୩୫୭ଜଣ ଶ୍ରମିକ ଗିରଫ ।

ଜୁନ ୩ ରୁ ୬ ଯାଏ ସମ୍ବଲପୁରରେ ରାଜ୍ୟ ଇସକସ ସମ୍ମିଳନୀ । ଏହି ମାସରେ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ କମ୍ୟୁନିଷ୍ଟ ନେତା କଃ ଦୟାନନ୍ଦ ଶତପଥୀଙ୍କ ସଂଗ୍ରାମୀ କମ୍ୟୁନିଷ୍ଟ ନେତା କଃ ଦୟାନନ୍ଦ ଶତପଥୀଙ୍କ ଦେହାନ୍ତ । ଜୁନ ୧୯ରେ ରାଜ୍ୟ ପରିଷଦ ବୈଠକରେ ବିରୋଧୀ ଦଳମାନଙ୍କ ପକ୍ଷରୁ ଅଗଷ୍ଟ ୯ରେ ବନ୍ଦ ଡାକରାକୁ ସଫଳ କରିବା ଲାଗି ପାର୍ଟିର ପ୍ରସ୍ତୁତି ।

୧୨ ଜୁନ୍‌ରେ କୁଜଙ୍ଗ ଯୁବସଂଘର ୪ର୍ଥ ସମ୍ମିଳନୀ । ୧୯/୨୦ ଜୁନ୍‌ରେ ବିରିଡିଠାରେ ଓଡ଼ିଶା ରାଜ୍ୟ କ୍ଷେତମଜଦୁର ସଂଘର ୪ର୍ଥ ବାର୍ଷିକ ସମ୍ମିଳନୀ । ୨୭, ୨୮, ୨୯ ତିନିଦିନ କାଳ ନିମାପଡ଼ା କ୍ଲବ ଘେରାଉ ।

୧୯୮୩ ଜୁଲାଇରେ କଂଗ୍ରେସ-ଇ ଗୁଣ୍ଡାଙ୍କ ଦ୍ୱାରା ଗୋପ କମ୍ୟୁନିଷ୍ଟ ପାର୍ଟି ଅଫିସ ଉପରେ ଚଢ଼ାଉ ଓ ସାଥୀ ବ୍ରହ୍ମାନନ୍ଦ ମଲିକ ଓ ଅନ୍ୟ ସାଥୀଙ୍କୁ ହତ୍ୟା କରିବାର ଉଦ୍ୟମ । ସମ୍ବଲପୁର ଆମ୍ବାଭୋନାରେ ଏବଂ ବଡ଼ବିଲ ଓ ଜଗତ୍‌ସିଂହପୁର ଏମ୍ପ୍ଲୟମେଣ୍ଟ ଏକ୍‌ସଚେଞ୍ଜରେ ପାର୍ଟି ପକ୍ଷରୁ ବିକ୍ଷୋଭ ।

ଅଗଷ୍ଟ ୯ ଓଡ଼ିଶା ବନ୍ଦ- ୧୦ ହଜାରରୁ ଅଧିକ ବ୍ୟକ୍ତି ଗିରଫ ମଧ୍ୟରେ ସି.ପି.ଆଇ ୩ ହଜାରରୁ ଅଧିକ । ଆସିକାରେ ଗୁଳିକାଣ୍ଡ, ନିମାପଡ଼ାରେ ଛାତ୍ରଙ୍କ ଉପରେ ଲାଠି ଚାଳନା, ବାଲିଆପାଳରେ ଜନତାପାର୍ଟି ବରେନ୍ଦ୍ର ଜେନା ନିହତ । କାଳକ୍ଷଣ୍ଟପୁରରେ ପାର୍ଟି ସାଥୀ ସଞ୍ଜୟ ପାତ୍ର ଗୁରୁତର ଆହତ । କୁହୁଡି, ଆଠଗଡ଼, ବ୍ରଜରାଜନଗରରେ ପାର୍ଟିର ଅନ୍ୟମାନଙ୍କ ଉପରେ ଆକ୍ରମଣ ।

ଅଗଷ୍ଟ ୯ର ସଫଳ ବନ୍ଦ ଓ ଅମାନୁଷିତ ହତ୍ୟା ଦମନ ବେଳେ କଃ ରାଜେଶ୍ୱର ରାଓଙ୍କ ଏସବୁ ସ୍ଥାନ ଯଥା- ନିମାପଡ଼ା, ବାଲେଶ୍ୱରର ଦେଓଭୋଗ, କାଳକ୍ଷଣ୍ଟପୁର ପରିଦର୍ଶନ । ସେ କାଳକ୍ଷଣ୍ଟପୁରରେ ଥିବାବେଳେ ଅଗଷ୍ଟ ୨୦ରେ ଓଡ଼ିଶାର ବ୍ରହ୍ମପୁରର ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା କଃ ଲକ୍ଷ୍ମଣ ମହାପାତ୍ରଙ୍କୁ ରାଜରାସ୍ତାରେ ହତ୍ୟା, କଂଗ୍ରେସ (ଇ) ଶାସନ ଦ୍ୱାରା ଅଗଷ୍ଟ ୯ ଦମନ ହତ୍ୟା ପରେ ଏହି ହତ୍ୟାରେ ରାଜ୍ୟ ଚଳିତ ଗଞ୍ଜାମ ବିକ୍ଷୁବ୍ଧ । ତହିଁପରଦିନ ବ୍ରହ୍ମପୁରରେ ଶବିପଟୁଆର ବେଳେ ୫୦ ହଜାର ଓ ଛତ୍ରପୁରରେ ୩୦ ହଜାର ଶୋକାକୂଳ ନରନାରୀଙ୍କ ପଟୁଆର । ଦ୍ୱାଦଶାହରେ ୧୨ ହଜାର ଜନତାର ସ୍ମୃତିସଭା । ରାଜ୍ୟବ୍ୟାପୀ ମୌନ ପଟୁଆର ।

ସେପ୍ଟେମ୍ବର ୭ରେ ରାଜଧାନୀ ଭୁବନେଶ୍ୱରରେ ୫ ହଜାର ଓରିଏଣ୍ଟ କାଗଜ କଳ ଶ୍ରମିକଙ୍କ ବିକ୍ଷୋଭ ଏବଂ ୧୫ ସେପ୍ଟେମ୍ବରରେ ତିନି ହଜାର ଯୁବ ଛାତ୍ରଙ୍କ ସମ୍ବିଧାନରେ କାମର ଅଧିକାର ଓ ଅନ୍ୟାନ୍ୟ ଦାବୀ ଘେନି ବିକ୍ଷୋଭ ।

ସେପ୍ଟେମ୍ବର ୫/୬ରେ ପାର୍ଟି ରାଜ୍ୟ ପରିଷଦରେ ଅକ୍ଟୋବରରେ ଗଣସତ୍ୟାଗ୍ରହର କାର୍ଯ୍ୟକ୍ରମ ନିର୍ଦ୍ଧାରିତ । ଏହି ମାସରେ ବଡ଼ବିଲ, ଯୋଡ଼ା, ସୁନ୍ଦରଗଡ଼ ଲୌହପିଣ୍ଡ ଶ୍ରମିକମାନଙ୍କ ଆନ୍ଦୋଳନ । ସମ୍ବଲପୁର ଜିଲ୍ଲାପାଳ ଅଫିସ ସମ୍ମୁଖରେ କାଗଜକଳ ଶ୍ରମିକଙ୍କ ଅନଶନ ।

ଅକ୍ଟୋବର ୨୬ ରୁ ୨୯ ଯାଏ ପାର୍ଟି ନେତୃତ୍ୱରେ ଗଣ ସତ୍ୟାଗ୍ରହ । ପ୍ରଥମ ଦୁଇ ଦିନରେ ୧୦ ହଜାର ଗିରଫ, ଭୁବନେଶ୍ୱର, ନିମାପଡ଼ା, ଜଟଣୀ, ଛତ୍ରପୁର, କଟକ, ଟାଙ୍ଗୀ, ଏରସମା, କୁଜଙ୍ଗ, ତିଗିରିଆ, ଜଗତ୍‌ସିଂହପୁର, ବିରିଡ଼ି, ସାଲେପୁର, ଭଦ୍ରକ, ବନ୍ତ, ଦଶପଲ୍ଲା, ଦିଗପହଣ୍ଡି, ଭଞ୍ଜନଗର, ଗଞ୍ଜାମ, କବିସୂର୍ଯ୍ୟନଗର, ନାଉଗାଁ, ନରସିଂହପୁର, ବେଗୁନିଆ, ବୋଲଗଡ଼, ସୋନପୁର, ସିନ୍ଧେକଲା, ଚାନ୍ଦବାଲି, ବରଗଡ଼, ସାରସକଣା, ରାଉରକେଲା, ଢେଙ୍କାନାଳ, କାମାକ୍ଷାନଗର, ଦଶପଲ୍ଲା, ଗୋପ, ଆସିକା, ସୋର, ବାଲେଶ୍ୱର, ପାରଳାଖେମୁଣ୍ଡି, ଚିକିଟି, ଭଞ୍ଜନଗର, ପୁରୁଷୋତ୍ତମପୁର, ଆର.ଉଦୟଗିରି, ପୋଲସରା, ଜଗନ୍ନାଥପ୍ରସାଦ,

ଛତ୍ରପୁର, ମୋହନା, ଶେରଗଡ଼, ବ୍ରହ୍ମଗିରି, କାକଟପୁର, ବରଗଡ଼, ଭେଡ଼େନ, ଲଖନପୁର, କୁଆଁପାଳ, ଓଡ଼ପଡ଼ା, ପୋଡ଼ପଡ଼ା, ରାଜକନିକା, ମଣିଜଙ୍ଗା, ବିଞ୍ଝାରପୁର ପ୍ରଭୃତି ୮୩ଟି ସ୍ଥାନରେ ଗଣ ସତ୍ୟାଗ୍ରହ ୧୫ ହଜାର ଗିରଫ ।

ଓରିଏଣ୍ଟ କାଗଜକଳ ଶ୍ରମିକ ୟୁନିଅନ ସହିତ ପ୍ରତିଶ୍ରୁତି ଭଙ୍ଗ ହେତୁ କମ୍ରେଡ଼ ପ୍ରସନ୍ନ କୁମାର ପଣ୍ଡାଙ୍କ ଅନଶନ ଓ ତା' ପୂର୍ବରୁ ଗଣଧାରଣା ପ୍ରତିଶ୍ରୁତି ପରେ ସମ୍ବଲପୁର ବନ୍ଦ ଡାକରା ପ୍ରତ୍ୟାହୃତ ।

**ଏଗାର ମାସ ବ୍ୟାପୀ ଓରିଏଣ୍ଟ କାଗଜକଳ ଶ୍ରମିକମାନଙ୍କ ଐତିହାସିକ ଧର୍ମଘଟରେ ବିଜୟ ।**

ନଭେମ୍ବରରେ ବାରବାଟୀ ଷ୍ଟେଡ଼ିୟମଠାରେ ପାଞ୍ଚ ଶତାଧିକ ପ୍ରତିନିଧିଙ୍କ ସମାବେଶରେ ନିରସ୍ତ୍ରୀକରଣ କନଭେନସନରେ ପାର୍ଟିର ଭୂମିକା ।

ବନ୍ତରେ ବିଜେପି ଗୁଣ୍ଡାବାହିନୀର କମ୍ୟୁନିଷ୍ଟ ନେତାଙ୍କ ଉପରେ ଆକ୍ରମଣ ଓ ତାର ପ୍ରତିବାଦ । ଡିସେମ୍ବର ୨୬ ରୁ ୩୧ ଯାଏ ରାଜ୍ୟ ପାର୍ଟି ପରିଷଦର ବୈଠକ । ଡିସେମ୍ବର ୧୦ ରେ ଯୁଦ୍ଧ ବିରୋଧୀ ମାନବିକ ଅଧିକାର ସୁରକ୍ଷା ଲାଗି ପାର୍ଟିର ସଭା ସମିତି ।

କମ୍ୟୁନିଷ୍ଟ ପାର୍ଟିର ଦରଦୀ, ବିଶିଷ୍ଟ ଆଇନଜୀବୀ, କଃ ସୀନ୍ନ୍ୟାସୀ ରାଓଙ୍କ ଦେହାନ୍ତ । ବାଲେଶ୍ୱରରେ ଏ.ଆଇ.ଟି.ୟୁ.ସି.ର ୩୨ ତମ ସମ୍ମିଳନୀରେ ଏ.ଆଇ.ଟି.ୟୁ.ସି.ର ବହୁ ପ୍ରତିନିଧିଙ୍କ ଯୋଗଦାନ ।

ଡିସେମ୍ବରରେ କଟକ ଓ ଭୁବନେଶ୍ୱରରେ ବିଶ୍ୱଶାନ୍ତି ପରିଷଦର ନେତୃବୃନ୍ଦଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନାରେ ପାର୍ଟିର ଭୂମିକା ।

**୧୯୮୪**

ରାଜ୍ୟ ପରିଷଦର ବୈଠକ ଜାନୁୟାରୀ ୨୭/୨୮ରେ କଃ ରାଜେଶ୍ୱର ରାଓଙ୍କ ଉପସ୍ଥିତିରେ ନିଷ୍ପତ୍ତି । ରାଜ୍ୟ ଗ୍ରାମପଞ୍ଚାୟତର ନିର୍ବାଚନରେ ପାର୍ଟିର ଅଂଶଗ୍ରହଣ ଲାଗି ପ୍ରସ୍ତୁତ । ୧୯୭୫ ପଞ୍ଚାୟତ ନିର୍ବାଚନରେ ପାର୍ଟି ସାଥୀ ରାଜ୍ୟର ମାତ୍ର ୬୭ଟି ସ୍ଥାନରେ ସରପଞ୍ଚ ପଦରେ ବିଜୟୀ ହୋଇଥିଲା । ଗଞ୍ଜାମରେ ଚଳିତ ନିର୍ବାଚନରେ ୧୦୫ଟି ସ୍ଥାନରେ ଲଢ଼ି ୪୪ଟି ଓ ଗୋଟିଏ ବ୍ଲକ ଚେୟାରମ୍ୟାନ୍, ମୟୂରଭଞ୍ଜରେ ୧୩ଟି, କୋରାପୁଟରେ ୧୨ ଟି, ସମ୍ବଲପୁରରେ ୬ଟି, ପୁରୀରେ ୮ଟି, କେଉଁଝରରେ ୩ଟି, କଟକରେ ୧୨ଟି, ବଲାଙ୍ଗୀରରେ ୧ଟି ଓ ଢେଙ୍କାନାଳରେ ୧ଟି ମୋଟ ୧୩୫ଟି ସ୍ଥାନରେ ପାର୍ଟି ପ୍ରାର୍ଥୀ ସରପଞ୍ଚ ପଦବୀରେ ଜିତିଥିଲେ ।

ଫେବୃୟାରୀ ମାସରେ ଗଞ୍ଜାମ ଜିଲ୍ଲା ପାର୍ଟି ଅଫିସ ଉପରେ କଂଗ୍ରେସ-ଇ ପୁଲିସର ଚଢ଼ାଉ, ଖାନତଲାସ ଓ ଗିରଫଦାରୀର ଗଞ୍ଜାମ ଜିଲ୍ଲାରେ ପାଟି ପକ୍ଷରୁ ଘୋର ପ୍ରତିବାଦ ସଭା ।

ରାଜ୍ୟ ପରିଷଦ ବୈଠକରେ ପାର୍ଟି ପାଣ୍ଠି ଲାଗି ଆହ୍ୱାନ ଏବଂ ମ୍ୟୁନିସିପାଲଟି, ଏନ.ଏ.ସି. ନିର୍ବାଚନରେ ଅଂଶ ନେବା ଲାଗି ନିଷ୍ପତ୍ତି । ମାତ୍ର ନିର୍ବାଚନ ସ୍ଥଗିତ ।

ସଂସଦୀୟ ନିର୍ବାଚନରେ ଜନତା ପାର୍ଟି ସହିତ ବୁଝାମଣାରେ ଦେଓଗଡ଼ ନିର୍ବାଚନ ମଣ୍ଡଳୀରେ ସାଥୀ ପ୍ରସନ୍ନ ପଣ୍ଡା ପ୍ରାର୍ଥୀ ୧ ଲକ୍ଷ ୨୧ ହଜାରରୁ ଅଧିକ ଭୋଟ । ନିର୍ବାଚନ ଲାଗି ଦିନକର ଆୟ ଦେବାକୁ ପାର୍ଟି ସାଥୀମାନଙ୍କୁ ନିବେଦନ। ଜଗତ୍‌ସିଂହପୁର ଓ ଅନ୍ୟତ୍ର କଂଗ୍ରେସ-ଇ ବିରୁଦ୍ଧରେ ଜନତା ଦଳକୁ ପାର୍ଟିର ସମର୍ଥନ ।

ଦଖଲି ଭୂମି ପଟା ପାଇଁ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡି ଓ ବୁଗୁଡ଼ା ଓ ଭଞ୍ଜନଗରର କୁଶାପାଲିରେ, କାକଟପୁର, କୋଣାର୍କ, ସମ୍ବଲପୁରରେ, ପାରାଦ୍ୱୀପ, ବେଗୁନିଆ ଓ ଢେଙ୍କାନାଳରେ ରାଜାଙ୍କ ଜମି ଲାଗି ଆନ୍ଦୋଳନ, କଂଗ୍ରେସ-ଇରେ ଯୋଗଦେଇଥିବା ଢେଙ୍କାନାଳର ରାଜା ବୋଲାଉଥିବା କାମାକ୍ଷାପ୍ରସାଦ ସିଂହ ଓ ରାଜମାତା, ପଟାୟତ, ଟିକାୟତ ତିନି, ଟିକି, ସାନସାହେବଙ୍କ ନାମରେ ବେଆଇନ ଭାବରେ ୯ ଲକ୍ଷ ଏକର ଜମି ବିରୁଦ୍ଧରେ ଜନଜାଗରଣ, କଦଳିପାଳ ଜମିକୁ କାଜୁ ବାଦାମ ବଗିଚାରେ ପରିଣତ କରିବା ଲାଗି ଉଚ୍ଛେଦ ହେଉଥିବା ଚାଷୀଙ୍କ ଆନ୍ଦୋଳନ ।

ଏପ୍ରିଲ ୧୬ରେ ବିଶିଷ୍ଟ ବୁଦ୍ଧିଜୀବୀ ସାଥୀ ନୂଆ ଦୁନିଆ ସମ୍ପାଦନାମଣ୍ଡଳୀର ଡଃ କୃଷ୍ଣପ୍ରସାଦ ପଟ୍ଟନାୟକଙ୍କ ଦେହାନ୍ତ ।

୫/୫/୮୪ରେ ରାଜ୍ୟ ପରିଷଦର ବୈଠକ ଓ ଜୁଲାଇରେ ରାଜ୍ୟ ସାଂଗଠନିକ ସମ୍ମିଳନୀ ହେବ ବୋଲି ରାଜେଶ୍ୱର ରାଓଙ୍କ ଉପସ୍ଥିତିରେ ନିଷ୍ପତ୍ତି ।

ଭଗବତୀ ଭବନରେ ରାଜ୍ୟ ସାଂଗଠନିକ ସମ୍ମିଳନୀ ଜୁଲାଇ ୧୭, ୧୮ରେ ଡଃ ଜଗନ୍ନାଥ ସରକାରଙ୍କ ଯୋଗଦାନ ।

୨୯ ଜୁଲାଇରେ ସି.ପି.ଆଇ., ସିପିଏମ୍ କାଡ଼ର କନଭେନସନ ।

ଜୁଲାଇ ୧୪ରେ ବୁର୍ଲାରେ ବ୍ୟବସାୟୀମାନଙ୍କ ଦ୍ୱାରା ୧୧ ତାରିଖ ଇଞ୍ଜିନିୟରିଂ ଛାତ୍ରଙ୍କ ହତ୍ୟା, କଂଗ୍ରେସ-ଇ ସରକାରର ଘୋର ଅପାରଗତା ବିରୁଦ୍ଧରେ ରାଜ୍ୟସାରା ପ୍ରତିବାଦ-ଛାତ୍ର ଧର୍ମଘଟ । ବିରୋଧୀ ଦଳମାନଙ୍କ ଦ୍ୱାରା ଅଗଷ୍ଟ ୧୪ରେ ଓଡ଼ିଶା ବନ୍ଦ ଲାଗି ଡାକରା ।

ଅଗଷ୍ଟ ୧୪ରେ ବୁର୍ଲା ଛାତ୍ର ହତ୍ୟା ପ୍ରତିବାଦରେ ଓଡ଼ିଶା ବନ୍ଦ । ରାଜ୍ୟ ପାର୍ଟିର ସମସ୍ତ ଶାଖା ଏଥିରେ ବ୍ୟାପୃତ । ବନ୍ଦ ସଫଳ, ମାତ୍ର ଜାନକୀ ସରକାରର ପୁଲିସ ରକ୍ତମୁହାଁ । କାକଟପୁର ପାଟପୁରର ଦୁଇଜଣ ଯୁବକମ୍ୟୁନିଷ୍ଟ ବେଲୁ ଓ ସମ୍ପାଦକଙ୍କ ପୁଲିସ ଗୁଳିରେ ହତ୍ୟା । ଅସ୍ତରଙ୍ଗରେ ଗୁଳି, ସାକ୍ଷୀଗୋପାଳରେ ଛାତ୍ର ସଂଘର କର୍ମୀ ମହାପାତ୍ରଙ୍କର ପୁଲିସ ଗୁଳିରେ ମୃତ୍ୟୁ ଓ ରାଜ୍ୟ ସାରା ପୁଲିସ ସନ୍ତ୍ରାସ । କେଲୁସମ୍ପାଦଙ୍କ ଶବ ପଟୁଆରରେ ହଜାର ହଜାର ଶୋକାକୂଳ ନରନାରୀ ଏକାଦଶାହ ଦିନ ପାଟପୁରରେ ବିଶାଳ ଶୋକାତୁର ଜନସମାଗମ ଓ ବିଭିନ୍ନ ରାଜନୈତିକ ଦଳର ନେତାଙ୍କ ଶ୍ରଦ୍ଧାଞ୍ଜଳି ।

ଅଗଷ୍ଟ ୨୫ରେ ପ୍ରଖ୍ୟାତ ଶ୍ରମିକ ନେତା ଡଃ ହରିବନ୍ଧୁ ବେହେରା ଏବଂ ଭାରତୀୟ ଶ୍ରମିକ ନେତା ଓଡିଶାର ଅବଦୁଲ ମୋମିନ ଏବଂ ଆଠଗଡର କମ୍ୟୁନିଷ୍ଟ ନେତା ବିବେକ ରଥଙ୍କ ଦେହାନ୍ତ ।

ସେପ୍ଟେମ୍ବର ଏ.ଆଇ.ଏସ.ଏଫ.ର ୫୦ତମ ପ୍ରତିଷ୍ଠା ଦିବସ ଉପଲକ୍ଷେ ସଭାସମିତି । ସେପ୍ଟେମ୍ବର ୨ରେ ଭଦ୍ରକରେ ଝୋଟ, ଧାନ ଦର, ଜଳସେଚନ, ମଜୁରି ଇତ୍ୟାଦି ୧୫ ଦଫା ଦାବୀ ଘେନି ବଡ଼ ଧରଣର ବିକ୍ଷୋଭ । ଗଞ୍ଜାମରେ ଆଖୁ ଚାଷୀଙ୍କର ସଂଗ୍ରାମ- ଅକ୍ଟୋବର ୧୬ରେ ମୟୂରଭଞ୍ଜ ପାନ୍ଧଡ଼ା ଚାଷୀଙ୍କ ଓ ମୂଲିଆଙ୍କର ବିଶାଳ ବିକ୍ଷୋଭ ।

ନଭେମ୍ବର ୨୦ରେ ପାର୍ଟି ରାଜ୍ୟ ପରିଷଦ ବୈଠକରେ ଆଗାମୀ ବିଧାନସଭା ନିର୍ବାଚନ ଲାଗି କର୍ମକୌଶଳ ସ୍ଥିର କମେଡ଼ ରାଜେଶ୍ୱର ରାଓଙ୍କ ଉପସ୍ଥିତି ।

ନଭେମ୍ବର ୬/୭ରେ ଉତ୍କଳ ମହିଳା ସମିତିର ୫ମ ସମ୍ମିଳନୀ ଉପଲକ୍ଷେ ପାର୍ଟିର ମହିଳା ସଂଗଠନ ଗୁଡିକରେ ସମ୍ମିଳନୀ ।

ଭଞ୍ଜନଗରଠାରେ ଗଞ୍ଜାମ ଜିଲ୍ଲାର କୃଷକ ସମ୍ମିଳନୀ ମହାସମାରୋହରେ ଅନୁଷ୍ଠିତ ।

ଏହିବର୍ଷ ଖାଲିସ୍ତାନୀ ସନ୍ତ୍ରାସବାଦୀମାନଙ୍କ ହତ୍ୟା, ଲୁଟ ଉପଦ୍ରବର ବୃଦ୍ଧି, ଅମୃତସର ସ୍ୱର୍ଣ୍ଣମନ୍ଦିରରେ ସୈନ୍ୟ ପ୍ରବେଶ କରି ଖାଲିସ୍ତାନୀ ସନ୍ତ୍ରାସବାଦୀମାନଙ୍କୁ ବହିଷ୍କାର । ପରେ ପରେ ପ୍ରଧନମନ୍ତ୍ରୀ ଇନ୍ଦିରାଗାନ୍ଧୀ ନିର୍ମମହତ୍ୟା-ଦିଲ୍ଲୀରେ ଶିଖ ବିରୋଧୀ ଦଙ୍ଗା । ଜାମ୍ମୁ-କାଶ୍ମୀରରେ ବିଚ୍ଛିନ୍ନତାବାଦୀମାନଙ୍କ କାର୍ଯ୍ୟକଳାପ ବୃଦ୍ଧି ।

**୧୯୮୫**

ଜାନୁୟାରୀ ୧୦/୧୧- କାର୍ଯ୍ୟକାରୀ କମିଟି ଏବଂ ୨୭/୨୮ ରାଜ୍ୟ ପରିଷଦ ବୈଠକରେ ବିଧାନସଭା ନିର୍ବାଚନ ଲାଗି ସାଧାରଣ ସମ୍ପାଦକ ରାଜେଶ୍ୱରରାଓ ଉପସ୍ଥିତିରେ କର୍ମକୌଶଳ ଓ ପାର୍ଟି ପ୍ରାର୍ଥୀ ମନୋଯାନର ଗାଇଡ଼ ଲାଇନ ସ୍ଥିର ବେଗୁନିଆରେ କଂଗ୍ରେସ (କ) ଏମ୍.ଏଲ୍.ଏ. କୈଳାସ ମହାପାତ୍ରଙ୍କ ପ୍ରରୋଚନାରେ ଯବସାଥୀ ପୂର୍ଣ୍ଣଚନ୍ଦ୍ର ପଲେଇଙ୍କ ହତ୍ୟା- ଏରସମାର କନାଚାଳିତ ୮୫ ଜଣ ସାଥୀଙ୍କ ମିଥ୍ୟା ମକଦ୍ଦମାରେ ଜଡ଼ିତ କରାଯାଇ ଗିରଫ- ୧୪ ଜଣଙ୍କ ହାଜତରେ ଦାଖଲ ।

ଜାନୁୟାରୀ- ଫେବୃୟାରୀ ମାର୍ଚ୍ଚରେ ବିଭିନ୍ନ ସ୍ଥାନରେ ନିର୍ବାଚନ ସଭା- ପାର୍ଟି ଓ କର୍ମୀ ସମାବେଶ ଭୁବନେଶ୍ୱର, ବେଗୁନିଆ, ନିମାପଡ଼ା, କାକଟପୁର, ଜଗତ୍‌ସିଂପୁର, କଟକ, ବଡ଼ଚଣା, ଆଠଗଡ଼, ଛତ୍ରପୁର, ଆସିକା, ପାରଳାଖେମୁଣ୍ଡି, ବାଲେଶ୍ୱର, ସୋରୋ, ସିମୁଳିଆ, ବସ୍ତା, ଭଣ୍ଡାରିପୋଖରୀ, ବ୍ରଜରାଜନଗର, ଝାରସୁଗୁଡ଼ା, ଭଟଲି, ସୁନ୍ଦରଗଡ଼, ଚମ୍ପୁଆ, ଟିଟିଲାଗଡ଼, ବାଙ୍ଗିରିପୋଷି, ଅନୁଗୋଳ ନିର୍ବାଚନମଣ୍ଡଳୀର ସ୍ଥିର । ଏଥିପାଇଁ ଯଥାକ୍ରମେ ଆଶିଷ ମହାପାତ୍ର, ଗଙ୍ଗାଧର ପାଇକରାୟ, ବ୍ରହ୍ମାନନ୍ଦ ମଳିକଳ, ଗତିକୃଷ୍ଣ ସ୍ୱାଇଁ, ପ୍ରହ୍ଲାଦ ସେଠୀ,

ପ୍ରବୀର ପାଳିତ, ଦିବାକର ବିଶ୍ୱାଳ, ସୁବାସ ପଟ୍ଟନାୟକ, ବିଶ୍ୱନାଥ ସାହୁ, ହରିହର ଦାସ, ନିତ୍ୟାନନ୍ଦ ପ୍ରଧାନ, ପୂର୍ଣ୍ଣଚନ୍ଦ୍ର ପଣ୍ଡା, ଶମ୍ଭୁନାଥ ମହାନ୍ତି, ରଥକୁମାର ଦାସ, ପ୍ରସନ୍ନ କୁମାର ପଣ୍ଡା, ପ୍ରସାଦ ଭୂମିଆ, ଦୁର୍ଲ୍ଲଭ ଦେହୁରୀ, ଟଙ୍କଧର କାଣ୍ଡି, ହୀମଚରଣ ନାୟକ, ହୃଷିକେଶ ପ୍ରାନେ ପ୍ରାର୍ଥୀ ହୋଇଥିଲେ ।

ପଶ୍ଚିମବଙ୍ଗର କମ୍ୟୁନିଷ୍ଟ ନେତା ନେତ୍ରୀ ବିଶ୍ୱନାଥ ମୁଖାର୍ଜୀ, ଗୀତା ମୁଖାର୍ଜୀ, କାନାଇ ଭୌମିକ, ନାରାୟଣ ଚୌବେ ପ୍ରଚାର ଅଭିଯାନରେ ସାହାଯ୍ୟ କରିଥିଲେ । କେବଳ କଃ ପ୍ରସନ୍ନ କୁମାର ପଣ୍ଡା ବିଜୟୀ ହୋଇଥିଲେ । କଂଗ୍ରେସ (ଇ)ର ସମଗ୍ର ଅର୍ଥ ଶାସନକାଳ, ଗୁଣ୍ଡାବାହିନୀ, ପୁଲିସ, ନିର୍ବାଚନ ଅଫିସରଙ୍କ ପ୍ରୟୋଗ ।

ରାଜୀବଗାନ୍ଧୀ କେନ୍ଦ୍ର ଲୋକବିରୋଧୀ, ବଜେଟ ବିରୁଦ୍ଧରେ ରାଜ୍ୟରେ ପାର୍ଟି ପକ୍ଷରୁ ଅଭିଯାନ ଏପ୍ରିଲ – ୩ ରେ ରାଜେଶ୍ୱର ରାଓଙ୍କ ଓଡ଼ିଶା ଗସ୍ତ । ବ୍ରହ୍ମପୁରର ପ୍ରବୀଣ ବୁଦ୍ଧିଜୀବୀ ସାଥୀ ଲକ୍ଷ୍ମଣ ରାଓଙ୍କ ପରଲୋକ । ଏପ୍ରିଲରେ ବ୍ରଜରାଜନଗର ଶ୍ରମିକ ୟୁନିଅନ ସହିତ ଚୁକ୍ତିର ଲଙ୍ଘନ ବିରୋଧୀ ବିକ୍ଷୋଭ । ତାଳଚେରରେ ଖଣିଖାଦାନ ହେତୁ ଗୃହହୀନ ଲୋକଙ୍କ ଥଇଥାନ ନେଇ ଯୁବ ସଂଘ ନେତୃତବରେ ଲଢୁଆ ବିକ୍ଷୋଭ ।

ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ୫୦ତମ ପ୍ରତିଷ୍ଠା ଉପଲକ୍ଷେ ପାର୍ଟିପକ୍ଷରୁ ବିଭିନ୍ନ ଜିଲ୍ଲା ଜୋନ୍, ଶାଖାରେ ଉଦ୍ଦୀପନାମୟ ଉତ୍ସବ । ଫାସିଷ୍ଟବାଦ ଉପରେ ମାନବଜାତିର ବିଜୟର ୪୦ତମ ବାର୍ଷିକୀ ଉପଲକ୍ଷେ ସଭାସମିତି ।

ମଇ ୨୪ରେ ଡାକରଡ଼ାଠାରେ ଶହୀଦ୍ ଦିବସ ପାଳିତ, କୋରାପୁଟର ପ୍ରିୟ ସାଥୀ ଇଞ୍ଜିନିୟର ଡଃ ବିପ୍ରଚରଣ ଷଡ଼ଙ୍ଗୀଙ୍କ ଦେହାନ୍ତ ।

ଗଞ୍ଜାମର ନିତ୍ୟାନନ୍ଦ ମହାନ୍ତି, ଭଦ୍ରକର ଭାସ୍କର ମିଶ୍ର ଓ କଟକର ସାଥୀ ଘନଶ୍ୟାମ ଖଣ୍ଡୁଆଳଙ୍କ ଦେହାନ୍ତ ।

ମଇ ୨୯ରେ ରାଜ୍ୟର ବିଭିନ୍ନ ସ୍ଥାନରେ ପଞ୍ଜାବ ସଂହତି ଦିବସ ପାଳିତ, ବଡ଼ବିଲରେ ସିପିଆଇ ପରିଚାଳିତ ଏନ.ଏ.ସିକୁ କଂଗ୍ରେସ ସରକାର ଦ୍ୱାରା ବରଖାସ୍ତର ପ୍ରତିବାଦ ।

ଜୁନ ମାସରେ ବଡ଼ବିଲରେ ୧୦ ହଜାର ଖଣି ଶ୍ରମିକଙ୍କ ଧର୍ମଘଟ, ୧୪ ଜୁନ୍‌ରେ ଗଞ୍ଜାମ ଜିଲ୍ଲା ପାର୍ଟିର କନଭେନ୍‌ସନ୍‌ରେ ରାଜେଶ୍ୱର ରାଓଙ୍କ ଯୋଗଦାନ । ବନ୍ତରେ କଂଗ୍ରେସ ଗୁଣ୍ଡାଙ୍କ ଦ୍ୱାରା ମାରିଦେବା ଅଭିପ୍ରାୟରେ ସାଥୀ ରାମଚନ୍ଦ୍ର ନାୟକଙ୍କ ଉପରେ ଆକ୍ରମଣର ତୀବ୍ର ପ୍ରତିବାଦ ସଭା ।

ଜୁନରେ ବଡ଼ବିଲ ଖଣି ଶ୍ରମିକମାନଙ୍କ ସମ୍ମିଳନୀରେ ଇନ୍ଦ୍ରଜିତ ଗୁପ୍ତାଙ୍କ ଉଦ୍‌ବୋଧନ । ସୋରୋରେ କଂଗ୍ରେସ (ଇ) ଦୁର୍ବୃତ୍ତଙ୍କ ଦ୍ୱାରା ସିପିଆଇ କର୍ମୀମାନେ ଉପରେ ଆକ୍ରମଣର ପ୍ରତିବାଦ ସଭା ।

ରାଜଧାନୀରେ କସ୍ତୁରବା ନାରୀ ମହଲରେ ୪ ଶହ ପାର୍ଟି ସାଥୀମାନଙ୍କ ରାଜ୍ୟସ୍ତରୀୟ ସମାବେଶ ଏବଂ ଜୁଲାଇ ୮ରେ ରାଲି ଲାଗି ନିଷ୍ପତ୍ତି । ୧୯୮୫ ଡିସେମ୍ବର ୨୭ରେ କଟକ ପ୍ରେସ୍ ଶ୍ରମିକଙ୍କ ଆନ୍ଦୋଳନ ବିଜୟ ।

ରାଜୀବଗାନ୍ଧୀଙ୍କ ସର୍ବନାଶୀ ଅର୍ଥନୀତି ଓ ରାଜ୍ୟରେ ଜାନକୀ ସରକାରର ଜନବିରୋଧୀ ନୀତି ବିରୁଦ୍ଧରେ ପ୍ରବଳ ବର୍ଷା ସତ୍ତ୍ୱେ ରାଜଡ଼ାଦୀରେ ୮ ଜୁଲାଇରେ ୧୦ ହଜାର ଜନତାର ବିକ୍ଷୋଭ ସଭା ଓ ଡଃ ରାଜେଶ୍ୱର ରାଓଙ୍କ ଉଦ୍‌ବୋଧନ ।

ଅଗଷ୍ଟ ୧୯୮୫ରେ ବସଭଡା ବୃଦ୍ଧ ବିରୁଦ୍ଧରେ ସିପିଆଇ, ସିପିଏମ୍, ଲୋକଦଳ, ଜାଗ୍ରତ ଓଡ଼ିଶା ଚାରିଦଳର ବନ୍ଦ ଡାକରା ।

୧୯୮୫ ବନ୍ୟାରେ କଟକ, ପୁରୀ, ବଲାଙ୍ଗିର, ସମ୍ବଲପୁର, ବାଲେଶ୍ୱରରେ ପାର୍ଟି ଆହ୍ୱାନରେ ରିଲିଫ ଥଇଥାନ ଲାଗି ସଭାସମିତି ।

ଅଗଷ୍ଟ ୧୯ ରୁ ପାରାଦ୍ୱୀପଠାରେ ପାରାଦୀପ ବନ୍ଦରର ସୁରକ୍ଷା, ସର୍ବାଙ୍ଗୀନ ବିକାଶ, ଶ୍ରମିକ- କର୍ମଚାରୀଙ୍କ ଦାବୀପୂରଣ ଲାଗି କଃ ଲୋକନାଥ ଚୌଧୁରୀଙ୍କ ୧୦ ଦିନ ବ୍ୟାପୀ ଅନଶନ । ପ୍ରତ୍ୟେକ ଦିନ ବିରାଟ ଜନସଭା ଓ ମେନେଜ୍‌ମେଣ୍ଟ ସହ ଆଲୋଚନା ସ୍ଥିର ହେବା ପରେ ଗୀତା ମୁଖାର୍ଜୀ ଏମ୍.ପି.ଙ୍କ ଉଦ୍‌ବୋଧନ ପରେ ଅନଶନ ଭଙ୍ଗ ।

ସେପ୍ଟେମ୍ବର ୧ରେ କଟକ, ବ୍ରହ୍ମପୁର ଓ ବିଭିନ୍ନ ଶ୍ରମିକ ଇଲାକାରେ ବିଶ୍ୱଶାନ୍ତି ଦିବସ ପାଳିତ ।

ସେପେଟମ୍ବର ୨୦ରେ ରାଜଧାନୀରେ ରାଜ୍ୟ ଛାତ୍ର ସଂଘର ଦାବୀ ଦିବସ ଓ ସମାବେଶ ।

ବ୍ରହ୍ମପୁରଠାରେ ଅ.ଭା.ଯୁବସଂଘର ୪ର୍ଥ ରାଜ୍ୟ ସମ୍ମିଳନୀରେ ୧୦ ହଜାର ଯୁବ ଛାତ୍ରଙ୍କ ପଟୁଆର । ସାଧାରଣ ସଭାରେ ୩୦ ହଜାର ଲୋକଙ୍କ ସମାବେଶ ।

ଏ ବର୍ଷ ଅକ୍ଟୋବର ମାସ ୧୬/୧୭ରେ ଅଦିନ ବନ୍ୟାରେ କଟକ, କେଉଁଝର, ବାଲେଶ୍ୱର, ମୟୂରଭଞ୍ଜର ବହୁ ଅଞ୍ଚଳ ପ୍ଲାବିତ ଓ ସେସବୁ ସ୍ଥାନରେ ପାର୍ଟି ପକ୍ଷରୁ ରିଲିଫ ଓ ଥଇଥାନ ଲାଗି ସଭାସମିତି ।

ନଭେମ୍ବର ୯ ତାରିଖରେ କଟକରେ ନକ୍ଷତ୍ର ଯୁଦ୍ଧ ବିରୁଦ୍ଧରେ ମହିଳାମାନଙ୍କ ଅଭୂତପୂର୍ବ ପଟୁଆର ସଂଗଠନରେ ପାର୍ଟିର ମହିଳାମାନଙ୍କ ଭୂମିକା ।

ନଭେମ୍ବର ୨୮ରେ ବସ୍‌ଭଡ଼ା ବୃଦ୍ଧି ବିରୁଦ୍ଧରେ ରାଜ୍ୟର ସିପିଆଇ ସମେତ ୫ଟି ଦଳର ଚକାବନ୍ଦ ଆନ୍ଦୋଳନ- ଧାରଣା- ଭୁବନେଶ୍ୱର, କଟକ, ବ୍ରହ୍ମପୁର, ସମ୍ବଲପୁର, ବଲାଙ୍ଗିର, ରାଉରକେଲା, ବାଲେଶ୍ୱର, କେଉଁଝର, ଢେଙ୍କାନାଳ, ବାରିପଦାରେ ସହଯୋଗୀ ପାର୍ଟିର ନେତାମାନଙ୍କର ପ୍ରତ୍ୟକ୍ଷ ଅଂଶଗ୍ରହଣ ଏବଂ ନଭେମ୍ବରରେ ଏସବୁ ଦଳର ନେତାମାନଙ୍କ ପକ୍ଷରୁ ସେକ୍ରେଟାରିଏଟ୍ ଫାଟକ ସମ୍ମୁଖରେ ଧାରଣା- ବିକ୍ଷୋଭ ସହସ୍ରାଧିକ ଗିରଫ ।

ଭାସ୍କର ସୂତାକଳ ଶ୍ରମିକଙ୍କ ଅନଶନ ଓ ଧାରଣା । କଟକ ଜିଲ୍ଲା ଛାତ୍ରସଂଘ ସମ୍ମିଳନୀ ।

ପାର୍ଟିର ଆଗାମୀ ପାଟନା କଂଗ୍ରେସ ଲାଗି ରାଜ୍ୟପାର୍ଟି ଓ ଜିଲ୍ଲା ପାର୍ଟି ସମ୍ମିଳନୀ ଗୁଡିକ ଲାଗି ପ୍ରସ୍ତୁତି ।

୧୯୮୬- ଜାନୁୟାରୀ ୬ ତାରିଖରେ ରାଜ୍ୟ ପରିଷଦ ବୈଠକରେ ଡଃ ରାଜେଶ୍ୱର ରାଓ ଯୋଗ ଦେଇଥିଲେ । ରାଜ୍ୟ ସମ୍ମିଳନୀ ଝାରସୁଗୁଡ଼ାରେ ଅନୁଷ୍ଠିତ ହେବାର ନିଷ୍ପତ୍ତି ।

ଗଞ୍ଜାମର କମ୍ରେଡ଼ ଯୁବନେତା ରବି ପଲେଇ ଓ ଶଙ୍କରପୁରର ଯୁବସାଥୀ ସୁବାସ ବାରିକଙ୍କର ଦେହାବସାନ ।

ଏହି ମାସରେ ପୁରୀ, କଟକ, ଢେଙ୍କାନାଳ, ଗଞ୍ଜାମ, ସମ୍ବଲପୁର, ମୟୂରଭଞ୍ଜ, ବାଲେଶ୍ୱର, ବଲାଙ୍ଗୀର, ସୁନ୍ଦରଗଡ଼, କୋରାପୁଟ ଜିଲ୍ଲା ପାର୍ଟି ସମ୍ମିଳନୀ ଅନୁଷ୍ଠିତ ।

ରାଜ୍ୟ ପାର୍ଟି ସମ୍ମିଳନୀ ସମ୍ବଲପୁର ଜିଲ୍ଲାରେ ଯେପରି ସୁସଂଗଠିତ ଭାବରେ ହେବ, ସେଥିଲାଗି ଜାନୁୟାରୀ ୧୧/୧୨ରେ ସମ୍ବଲପୁର ଜିଲ୍ଲା ପାର୍ଟି ସମ୍ମିଳନୀ ଅନୁଷ୍ଠିତ ।

ଫେବୃୟାରୀ ୧୨ ରୁ ୧୬ ଯାଏ ବ୍ରଜରାଜନଗର ଓରିଏଣ୍ଟ କୋଇଲା ଖଣି ଅଞ୍ଚଳ ଦୟାନନ୍ଦ ନଗରରେ ରାଜ୍ୟ ପାର୍ଟିର ଦ୍ୱାଦଶ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । କେନ୍ଦ୍ରରୁ କମ୍ରେଡ଼ ରାଜବାହାଦୂର ଗୌଡ଼ ଯୋଗ ଦେଇଥିଲେ । ଏଥିଲାଗି ବ୍ରଜରାଜନଗର କାଗଜକଳ ଶ୍ରମିକ ଓ ଓରିଏଣ୍ଟ କୋଲିଆରୀ ଓ ଅନ୍ୟାନ୍ୟ କୋଲିଆରୀ ଶ୍ରମିକ ଓ ଜିଲ୍ଲା ପାର୍ଟିର ପ୍ରଶଂସନୀୟ କାର୍ଯ୍ୟ । ବିରାଟ ସାଧାରଣ ସଭା ।

ଫେବୃୟାରୀରେ ବିଧାନସଭା ଅଧିବେଶନବେଳେ ଜୟଶ୍ରୀ କେମିକାଲ ଶ୍ରମିକ, ହୀରାକୁଦ, ଆଲୁମିନିୟମ ଓ ବିଦ୍ୟୁତ୍ ଶ୍ରମିକମାନଙ୍କ ବିକ୍ଷୋଭରେ ପାର୍ଟି ସାଥୀମାନଙ୍କର ଭୂମିକା । ଫେବୃଆରୀ ୫ରେ ଭାସ୍କର ସୂତାକଳର ୩ ହଜାର ଶ୍ରମିକଙ୍କ ବିଧାନସଭା ସମ୍ମୁଖରେ ବିକ୍ଷୋଭ । ବଡ଼ବିଲ ଠାକୁରାଣୀ ଖଣି ଶ୍ରମିକଙ୍କ ଉପରେ କଂଗ୍ରେସ-ଇ ଦୁର୍ବୃତ୍ତଙ୍କ ବ୍ୟାପକ ଆକ୍ରମଣର ପ୍ରତିରୋଧ ।

ଫେବୃୟାରୀ ୨୦ରେ ଭାରତବାସୀ ପ୍ରତିବାଦ ଦିବସ ଲାଗି ୧୪ଟି ବିରୋଧୀଦଳଙ୍କ ଆହ୍ୱାନରେ ଓଡ଼ିଶାରେ ବିଭିନ୍ନ ସ୍ଥାନରେ ପ୍ରତିବାଦ ବିକ୍ଷୋଭ ଓ ୨୬ ତାରିଖରେ ଭାରତ ବନ୍ଦ ।

ସଇଁତଳ (ବଲାଙ୍ଗିର)ରେ ଗୋଳାବାରୁଦ କାରଖାନା ନିର୍ମାଣ ହେତୁ ବାସଚ୍ୟୁତ ଲୋକଙ୍କ କ୍ଷତିପୂରଣ, ଥଇଥାନ, ନିଯୁକ୍ତି ଘେନି ବଲାଙ୍ଗିର ପାର୍ଟି ପକ୍ଷରୁ ସଂଗ୍ରାମ ।

କଟକ ଜିଲ୍ଲା ପାର୍ଟି ପକ୍ଷରୁ ଜିଲ୍ଲାପାଳଙ୍କ ଅଫିସ ସମ୍ମୁଖରେ ଜନଦାବୀମାନ ଘେନି ବଡଧରଣର ବିକ୍ଷୋଭ ।

ଯୁବସଂଘ ଅଖିଳ ଭାରତ ଛାତ୍ରସଂଘର ଆହ୍ୱାନରେ ମାର୍ଚ୍ଚ ପାଞ୍ଚରେ ୫ ହଜାର ଯୁବକ

ଯୁବତୀଙ୍କର ରାଜଧାନୀରେ ବିକ୍ଷୋଭ, ଲାଠି, ଗିରଫ, ଦମନ, ଖାନତଲାସ । ବାଟରେ ଯୁବଛାତ୍ରମାନଙ୍କୁ କଂଗ୍ରେସ (ଇ) ସରକାର ଦ୍ୱାରା ଅଟକ ।

ମାର୍ଚ୍ଚ ୧୨ ରୁ ୧୭ଯାଏ ପାଟନାଠାରେ ପାର୍ଟିର ତ୍ରୟୋଦଶ କଂଗ୍ରେସ- ସୋହାନସିଂ ନଗରରେ ରାଜ୍ୟ ପାର୍ଟିର ୩୦ ଜଣ ଯାଏ ପ୍ରତିନିଧିଙ୍କ ଯୋଗଦାନ । ପାଟନା ଗାନ୍ଧୀ ବୈଦାନରେ ବିଶାଳ ସଭା ।

ମାର୍ଚ୍ଚ ୧୮ରେ ବୋଲଗଡ଼ ଗଣମାଣିତ୍ରୀଠାରେ କଂଗ୍ରେସ (ଇ) ଦୁର୍ବୃତ୍ତଙ୍କ ଦ୍ୱାରା ଡଃ ଗଙ୍ଗାଧର ପାଇକରାୟ ଓ ସମାଜ ସମ୍ପାଦକ ଡଃ ରାଧାନାଥ ରଥଙ୍କ ଉପରେ ବୋମା ନିକ୍ଷେପ କରି ଆକ୍ରମଣ ଓ କଃ ପାଇକରାୟ ଆହତ ଓ ମାସାଧିକାଳ ହାସପାତାଳରେ ଚିକିତ୍ସିତ ।

ଏପ୍ରିଲ ମାସରେ କୃଷକ ସଭାର ସୁବର୍ଣ୍ଣ ଜୟନ୍ତୀ ବିଭିନ୍ନ ସ୍ଥାନରେ ପାଳିତ । ଝାରସୁଗୁଡ଼ାରେ ମ୍ୟୁନିସିପାଲିଟି ପକ୍ଷରୁ ଘରଭଙ୍ଗା ଅଭିଯାନ ବିରୁଦ୍ଧରେ ପାର୍ଟିର ପ୍ରତିରୋଧ ।

ବ୍ରଜରାଜନଗର ଦ୍ୱାଦଶ ଓ ପାଟନା ପାର୍ଟି କଂଗ୍ରେସ ପରେ ବଲାଙ୍ଗୀରଠାରେ ରାଜ୍ୟ ପରିଷଦର ପ୍ରଥମ ବୈଠକ ବସି ନୂତନ କର୍ମକର୍ତ୍ତା ନିର୍ବାଚନ । କମ୍ରେଡ଼ ରାଜବାହାଦୂର ଗୌଡ଼ କେନ୍ଦ୍ର ପକ୍ଷରୁ ଯୋଗଦେଇଥିଲେ । ଉନ୍ନୟନ, ସମନ୍ୱୟ ଓ ବିଶ୍ୱଶାନ୍ତି ଏହି ତିନୋଟି ସମସ୍ୟାକୁ ଆଧାର କରି ବାରବାଟୀ ଷ୍ଟାଡିୟମରେ ସର୍ବଭାରତୀୟ ଆଇନଜୀବୀ ସମ୍ମିଳନୀରେ ପାର୍ଟି ଆଇନଜୀବୀଙ୍କ ଭୂମିକା । ବିପୁଳ ସାଫଲ୍ୟ ।

ବରଗଡ଼ ମୁଖ୍ୟ କେନାଲ ଭଙ୍ଗାଜନିତ ବ୍ୟାପକ କ୍ଷୟକ୍ଷତିର ବିହିତ ପ୍ରତିକାର ଘେନି ପାର୍ଟି ନେତୃତ୍ୱରେ ଚାଷୀ ସଂଗ୍ରାମ ।

ଖଣ୍ଡପଡ଼ାର ଫତେଗଡ଼ଗାଁର ସାଥୀ ଅର୍ଜୁନ ପଲେଇଙ୍କୁ କଂଗ୍ରେସ (ଇ) ଦୁର୍ବୃତ୍ତଙ୍କ ଦ୍ୱାରା ହତ୍ୟା । ତାଳଚେର ଫର୍ଟିଲାଇଜର ଶ୍ରମିକମାନଙ୍କ ଉପରେ କଂଗ୍ରେସ (ଇ) ଦୁର୍ବୃତ୍ତଙ୍କ ଆକ୍ରମଣର ପ୍ରତିବାଦ । କଟକ ପାର୍ଟି ପକ୍ଷରୁ ଜନବାଦୀ ଘେନି ସତ୍ୟାଗ୍ରହର ପ୍ରସ୍ତୁତି ।

ମଇ ମାସରେ ଅନୁଗୋଳର ଜନପ୍ରିୟ ସ୍ୱାଧୀନତା ସଂଗ୍ରାମୀ ଓ ବିଶିଷ୍ଟ କମ୍ୟୁନିଷ୍ଟ ନେତା କଃ ହୃଷିକେଶ ପ୍ରଧାନଙ୍କ ମୃତ୍ୟୁ । ବିରାଟ ଶବ ପଟୁଆର ।

ଜୁନ ୧୫ରେ ଓଡ଼ିଶା ରାଜନୀତିରେ ତଥା କମ୍ୟୁନିଷ୍ଟ ଆନ୍ଦୋଳନରେ ଏକ ଗାରିମାମୟ ନେତା କଃ ରାମକୃଷ୍ଣ ପତିଙ୍କ ଦେହାନ୍ତ । ପଟିଆ ଓ ଭୁବନେଶ୍ୱରରେ ବିଶାଳ ପଟୁଆର, କଟକ ଓ ଭୁବନେଶ୍ୱରରେ ବିରାଟ ସ୍ମୃତିସଭା ।

ଜୁନ୍ ୨୦,୧୨,୨୨ରେ କଟକରେ ଅ.ଭା ଯୁବସଂଘର ଜାତୀୟ ପରିଷଦ ଅଧିବେଶନ । ଏଥିରେ ଏ.ବି. ବର୍ଦ୍ଧନ, ସଦାଶିବ ମିଶ୍ର, ସମାଜ ସମ୍ପାଦକ ରାଧାନାଥ ରଥଙ୍କ ଉଦ୍‌ବୋଧନ ।

ପାର୍ଟି ଜାତୀୟ ପରିଷଦର ନିଷ୍ପତ୍ତି ଅନୁସାରେ ରାଜୀବ ସରକାର ଶିଳ୍ପ ଘରୋଇକରଣ,

ବୃହତ ପୁଞ୍ଜିପତିଙ୍କୁ ଅଧିକରୁ ଅଧିକ ସୁବିଧାଦାନ, ଦରଦାମ ବେକାର ବୃଦ୍ଧି, ଭାରତର ଐକ୍ୟ-ଅଖଣ୍ଡତା ସୁରକ୍ଷାରେ ବିଫଳତା ଆଦି ବିରୁଦ୍ଧରେ ଆନେଦାଳନର ଡାକରା ।

ରାଜ୍ୟ ପାର୍ଟି ପକ୍ଷରୁ ଜୁନ୍ ୨୫ରେ ବ୍ଲକ ଗୁଡ଼ିକ ଘେରାଉ ଓ ଜୁନ୍ ୩୦ରେ ଜେଲଭରୋ । ଏହିଦିନ ବାଲେଶ୍ୱର, ଛତ୍ରପୁର, କେଉଁଝର, ମୟୂରଭଞ୍ଜ, ପୁରୀ, ଭୁବନେଶ୍ୱର, କଟକ ସମ୍ବଲପୁରରେ ବିଭିନ୍ନ ବ୍‌ଲକ ବିକ୍ଷୋଭରେ ୫ ହଜାର ୬ଶହ ସାଥୀ ଗିରଫ ।

ଜୁଲାଇରେ ଗନ୍ଧମାର୍ଦ୍ଧନ ବଂଚାଓ ଅଭିଯାନରେ ବଲାଙ୍ଗିରିରୁ ଯୁବଛାତ୍ରମାନଙ୍କର ଦୀର୍ଘ ଶତାଧିକ କିଲୋମିଟର ସାଇକେଲ ପଟୁଆର ।

ଗଞ୍ଜାମର ମୋହନା ଆଦିବାସୀମାନଙ୍କୁ ଜମିରୁ ଉଚ୍ଛେଦ ବିରୁଦ୍ଧରେ ଆନ୍ଦୋଳନ । ଜୁଲାଇ ୨୦ରେ ବନ୍ୟା ଦୁର୍ଗତଙ୍କ ଥଇଥାନ ଦାବୀ କରି କଟକ ଜିଲ୍ଲା ପାର୍ଟି ପକ୍ଷରୁ କଟକ କିଲଟରୀରେ ବିକ୍ଷୋଭ ।

ଅଗଷ୍ଟ ମାସରେ ମୟୂରଭଞ୍ଜର ସାରସକଣାରେ ପୁଲିସଦମନ ସତ୍ତ୍ୱେ ମଜୁରୀ, ଦଖଲ ଜମିରେ ପଟା, ଉଦବୃତ୍ତ ଜମି ବଣ୍ଟନ ଦାବୀରେ ବିକ୍ଷୋଭ- ସ୍ମାରକଲିପି । ଗଞ୍ଜାମ ଜିଲ୍ଲାରେ ଚିହ୍ନଟ କରାଯାଇଥିବା ୫ ହଜାର ଏକର ଉଦ୍‌ବୃତ୍ତ ଜମି ବଣ୍ଟନ ଲାଗି ବିକ୍ଷୋଭ । ଏହି ଜିଲ୍ଲାର କୁଶାପାଲିଗାଁର କଂଗ୍ରେସ-ଇ ଜମିମାଲିକଙ୍କ ୭୪ ଏକର ଜମିର ପଟା ହାସଲ । ଜୁନୁଗୁଡାରେ ୨୭ଟି ହରିଜନ ପରିବାରଙ୍କ ୮୦ ଏକର ଜମି ଦଖଲ । ଏରସମାରେ ସଉତଗାଁରେ ମହାଜନ ଛଡ଼େଇ ନେଇଥିବା ଜମିକୁ ୧୪ଟି ଆଦିବାସୀ ପରିବାରଙ୍କ ପୁନଃ ଦଖଲ ।

ସେପ୍ଟେମ୍ବର ୧୩ରେ ଯୁବଛାତ୍ରଙ୍କ ୧୩ଟି ଚାବୀ ଘେନି ୩ ହଜାର ଯୁବକଙ୍କ ରାଜଧାନୀରେ ବିକ୍ଷୋଭ ।

ସେପ୍ଟେମ୍ବର ୧୮/୧୯ ରେ ବଡ଼ବିଲରେ ୧୦ ହଜାର ଖଣି ଶ୍ରମିକଙ୍କ ବିକ୍ଷୋଭ । ବଲାଙ୍ଗିର ସୋନପୁର-ରାମପୁର-ଠାରେ ଅନ୍ୟାୟ ବସଭଡ଼ା ଓ ସରକାରୀ ଦରରେ ଧାନ କ୍ରୟ ଦାବିରେ ତିନିଦିନ ବ୍ୟାପୀ ଧାରଣା ।

ଖୋର୍ଦ୍ଧା ଏସ୍.ଡି.ଓ ଅଫଇସ ସମ୍ମୁଖରେ ସେପ୍ଟେମ୍ବର ୧୭ରେ ୫୨ ଜଣ ନାରୀ ପୁରୁଷଙ୍କ କାଜୁବାଦାମ ଜଙ୍‌ଗଲ ପଟାରେ କାରସାଦି ବିରୁଦ୍ଧରେ ଅନଶନ । ସେପ୍ଟେମ୍ବର ୧ ରୁ ୩ ଯାଏ ବେଗୁନିଆରେ ୩ ଟି ଗ୍ରାମରେ ସରକାରୀ ପଡ଼ିଆ ଜମିରେ ଚାଷ କରିବା ପାଇଁ ଚାଷୀର ଅଭିଯାନ ।

ନଭେମ୍ବର ୧୪ ରୁ ୧୬ ଯାଏ ଭୁବନେଶ୍ୱରଠାରେ କିଶୋର ପାଓନିୟର ସଂଘର ସର୍ବଭାରତୀୟ ପ୍ରତିଷ୍ଠା ସମ୍ମିଳନୀରେ ବିଭିନ୍ନ ରାଜ୍ୟର ଯୁବଛାତ୍ର ନେତା-ନେତ୍ରୀ ଏବଂ ରାଜ୍ୟରୁ ବିଭିନ୍ନ ିଲ୍ଲାର ୩ ହଜାର ଶିଶୁମାନଙ୍କ ଉଦ୍ଦୀପନାମୟ ସମ୍ମିଳନୀ- ପଟୁଆର ।

ଆସିକାରେ ଚକବନ୍ଦୀ ବିରୋଧୀ ସମାବେଶ । ସୁନ୍ଦରଗଡରେ ପାର୍ଟିର ବିକ୍ଷୋଭ ।

ସନ୍ତ୍ରାସବାଦ ବିରୁଦ୍ଧରେ ଏହି ମାସରେ ସିପିଆଇ-ସିପିଆଇ (ଏମ୍) ପକ୍ଷରୁ ମିଳିତ ଅଭିଯାନ ।

ଉତ୍କଳ ମହିଳା ସମିତିର ୫ତମ ରାଜ୍ୟ ସମ୍ମିଳନୀରେ ପାର୍ଟି ମହିଳାମାନଙ୍କ କ୍ରିୟାଶୀଳତା ।

ଡିସେମ୍ବର ୧୮, ୧୯ରେ ଭଞ୍ଜନଗରଠାରେ ରାଜ୍ୟ କୃଷକ ସଭାର ୧୬ଶ ସମ୍ମିଳନୀ ଓ ଅ.ଭା କୃଷକସଭାର ସୁବର୍ଣ୍ଣ ଜୟନ୍ତୀ ମହାସମାରୋହରେ ଉଦ୍‌ଯାପିତ ଓ ବିରାଟ ପଟୁଆର ।

**୧୯୮୭**

ଜାନୁୟାରୀ ପ୍ରଥମ ସପ୍ତାହରେ ସଇଁତଳା ଗୋଳାବାରୁଦ କାରଖାନା ହେତୁ ବାସଚ୍ୟୁତ ଅନଶନକାରୀମାନଙ୍କ ଉପରେ ଏସ୍.ଡି.ଓଙ୍କ ଆଦେଶରେ ପୋଲିସର ଭୟାବହ ଆକ୍ରମଣ । କମ୍ୟୁନିଷ୍ଟ ନାର୍ଟିର ପ୍ରତିବାଦ ବିକ୍ଷୋଭ ।

ବରଗଡ଼ ଏସ୍.ଡି.ଓଙ୍କ କାର୍ଯ୍ୟକଳାପ ବିରୋଧୀ ଆନ୍ଦୋଳନରେ ସି.ପି.ଆଇ ଓ ଅନ୍ୟ ଦଳର କର୍ମୀ ଗିରଫ ।

କଟକଠାରେ ଜାନୁଆରୀ ୧୧ ର ଜାତୀୟ ଅଭିଯାନ କମିଟିର କନଭେନସନ ଜାନୁଆରୀ ୨୧ ସର୍ବଭାରତୀୟ ଧର୍ମଘଟ ପ୍ରସ୍ତାବକୁ ସମର୍ଥନ ଓ ରାଜ୍ୟକୁ ପାର୍ଟିର ବହୁ ସଭ୍ୟଙ୍କ ଯୋଗଦାନ । ଜାନୁଆରୀ ୧୦ ରେ ମାଲକାନଗିରିରେ ଜଙ୍ଗଲ ସୁରକ୍ଷା, ଏନକ୍ରୋଚମେଣ୍ଟ ସମ୍ପର୍କରେ ପାର୍ଟି ପକ୍ଷରୁ ଶୋକ ବିକ୍ଷୋଭ ।

ଜାନୁଆରୀ ୨୭ରେ ମୟୂରଭଞ୍ଜର ଯୁବସଂଘ ସାଇକେଲ ଅଭିଯାତ୍ରୀ ଦଳ ଉପରେ ଝାଡ଼ଖଣ୍ଡ ଆଖ୍ୟା ଦେଇ ପୁଲିସ ଆକ୍ରମଣ ଓ ଗିରଫ- ତାହାର ପ୍ରତିବାଦ ସଭା ।

ଫେବୃୟାରୀରେ ଏରସମା, ବିରଡ଼ି, ଦର୍ପଣ ବ୍ଲକରେ ବିକ୍ଷୋଭ ଏବଂ ଯୁବସଂଘ ଜିଲ୍ଲା ସମ୍ମିଳନୀମାନେ ଅନୁଷ୍ଠିତ । ମୟୂରଭଞ୍ଜ- ବାଲେଶ୍ୱର ଉଠାଜଳସେଚନ କର୍ମଚାରୀଙ୍କ ସମ୍ମିଳନୀ ଓ ଆନ୍ଦୋଳନରେ ପାର୍ଟିର ନେତୃତ୍ୱ ।

ଫେବୃୟାରୀ ୧୪,୧୫ରେ ରାଜ୍ୟ ପରିଷଦର ୨ ଲକ୍ଷ ଟଙ୍କା ପାର୍ଟି ପାଣ୍ଠି ଡାକରା । ସାମ୍ପ୍ରଦାୟିକତା ବିରୁଦ୍ଧରେ ସଭା ସମାବେଶ ନିଷ୍ପତ୍ତି । ମାର୍ଚ୍ଚରେ ଭାରତ ବଞ୍ଚାଅ ଭାରତ ବନ୍ଦ ଅଭିଯାନ ଲାଗି ପ୍ରସ୍ତୁତି ।

ଫେବୃୟାରୀ ୨୧-୨୨ରେ ବାଲେଶ୍ୱରଠାରେ ଛାତ୍ର ସଂଘର ୩୨ ତମ ରାଜ୍ୟ ସମ୍ମିଳନୀ । ସବୁ ଜିଲ୍ଲାରୁ ପ୍ରତିନିଧି ଓ ସାଧାରଣ ଅଧିବେଶନ ଏହି ମାସରେ ଖୋର୍ଦ୍ଧା, ବାଲେଶ୍ୱର, ଏରସମା, କାମାକ୍ଷାନଗର, କୋଦଳା, ଖଲିକୋଟ ଓ ଅନ୍ୟତ୍ର ଚାଷୀମୂଲିଆଙ୍କ ବିକ୍ଷୋଭ ।

ମାର୍ଚ୍ଚ ୯ ତାରିଖରେ ରାଜଧାନୀରେ ୫୦ ହଜାର ଶିକ୍ଷକ ଶିକ୍ଷୟିତ୍ରୀଙ୍କ ବିଶାଳ ସମାବେଶରେ ପାର୍ଟି ସାଥୀମାନଙ୍କର ଭୂମିକା ସାହାଯ୍ୟ ସହଯୋଗ । ବଡ଼ଚଣାର ଲୋକପ୍ରିୟ ସାଥୀ ସୁନାକର ଜେନାଙ୍କ ଦେହାନ୍ତ । ରାଜଧାନୀରେ ଝୁମ୍ପୁଡ଼ିବାସୀଦାଙ୍କ ଦୃପ୍ତ ବିକ୍ଷୋଭ ।

ମାର୍ଚ୍ଚ ୨୩ରେ ରାଜଧାନୀରେ ଯୁବସଂଘ ଓ ଛାତ୍ର ସଂଘର ବିଶାଳ ପଟୁଆର - ସ୍ଲୋଗାନ

ଭାରତ ବଞ୍ଚାଅ, ଭାରତ ବନ୍ଦ । ଦିଲ୍ଲୀରେ ସାରା ଭାରତରୁ ୨୦ ହଜାର ଯୁବ ସାଇକେଲ ଯାତ୍ରୀଙ୍କ ଅଭିଯାନ । ୮୪ ଦିନ କାଳ ସାରା ଭାରତ ପରିକ୍ରମା । ଓଡ଼ିଶାରେ ୩ ଦଳ ସାଇକେଲ ଯାତ୍ରୀ ରାଜ୍ୟର ବିଭିନ୍ନ ଜିଲ୍ଲାରୁ ବାହାରି ସମ୍ବଲପୁର, ଅନୁଗୁଳ, ବଡ଼ବିଲ, ଢେଙ୍କାନାଳ, ବଲାଙ୍ଗୀର, ଖୋର୍ଦ୍ଧା, ବ୍ରହ୍ମପୁର, ତାଳଚେର, କଟକ, ବାଲେଶ୍ୱରର ୧୬ ଶହ ଗ୍ରାମ, ୨୦ ଟି ମ୍ୟୁନିସିପାଲ୍‌ଟି, ୨୭ଟି ଏନ୍.ଏ.ସି ୪ଟି ନଗର ପରିକ୍ରମା ।

ଏପ୍ରିଲ ମାସରେ ଓଡ଼ିଶା-ବଞ୍ଚାଅ- ଓଡ଼ିଶା ବଦଳାଇ ଅଭିଯାନ- ସୋରୋ, ଗୋପ, ରାଉରକେଲା, ଢେଙ୍କାନାଳ, ଭଦ୍ରଖ, ବାସୁଦେବପୁର, ବାରିପଦାରେ ବିପୁଳ ସମାରୋହରେ ପାଳିତ ।

ଭୁବନରେ ନାହିଁ ନ ଥିବା ଘରପୋଡ଼ିରେ ପାର୍ଟିର ରିଲିଫ ସଂଗଠନ । ଚଳିତ ବର୍ଷ ମଇ ଦିବସକୁ ସାଂପ୍ରଦାୟିକତା ବିରୋଧୀ ଦିବସ ରୂପେ ଶ୍ରମିକ କେନ୍ଦ୍ରଗୁଡ଼ିକରେ ପାର୍ଟି ପକ୍ଷରୁ ପାଳନ ।

ଚକବନ୍ଦୀ ବିରୁଦ୍ଧରେ ବନ୍ତରେ ପାର୍ଟିର ବିରାଟ ବିକ୍ଷୋଭ ।

ମଇ ୧୦ ରେ ମୁଖ୍ୟମନ୍ତ୍ରୀ ଜାନକୀ ପଟ୍ଟନାୟକଙ୍କ ବାଲେଶ୍ୱର ଗସ୍ତ ବେଳେ ବିକ୍ଷୋଭକାରୀଙ୍କ ଉପରେ ନିର୍ମମ ଲାଗି- ବହୁ କମ୍ୟୁନିଷ୍ଟ ଗିରଫ ।

ମଇ ୯/୧୦ରେ ରାଜଧାନୀ ଭୁବନେଶ୍ୱର ଇନ୍‌ଷ୍ଟିଚ୍ୟୁଟ ଅଫ ଇଞ୍ଜିନିଅର୍ସ କକ୍ଷରେ ରାଜ୍ୟ କୃଷକ ସଭା କର୍ମୀ ସମାବେଶରେ ଜେଡ୍.ଏ. ଅହମ୍ମଦ ଏବଂ ଭି.କ୍ରିଷ୍ଣାରାଓ ଏବଂ ସେଠାରେ ମଇ ୨୮ରୁ ଜୁନ୍ ୩ ଯାଏ କୃଷକ ମୂଲିଆଙ୍କ ସରକାରୀ ଆବାଦ ଯୋଗ୍ୟ ଜମି, ସିଲିଂ ବହିର୍ଭୁତ ଓ ବଞ୍ଜର ଜମିପଟା ଲାଗି ଆନ୍ଦୋଳନର ନିଷ୍ପତ୍ତି । ସମ୍ବଲପୁରରେ କୃଷକ ସଭାକର୍ମୀ ସମାବେଶ । ରାଜଧାନୀରେ ଦ୍ୱିତୀୟବାର ଝୁମ୍ପୁଡ଼ି ବାସିନ୍ଦାଙ୍କ ଉଚ୍ଛେଦ ବିରୁଦ୍ଧରେ ବିକ୍ଷୋଭ ।

ମାର୍ଶାଘାଇରେ ଚାଷୀ ସମାବେଶରେ ପଶ୍ଚିମବଙ୍ଗର ମନ୍ତ୍ରୀ କାନାଇ ଭୌମିକ ଓ ପ୍ରଖ୍ୟାତ କୃଷକ ନେତା ଭୁପାଳ ପଣ୍ଡା, ସାଥୀ ଲୋକନାଥ ଚୌଧୁରୀ ପ୍ରମୁଖଙ୍କ ଜମି ଦଖଲ ଲାଗି ଡାକରା ।

ମଇ ୨୮ରୁ ଜୁନ୍ ୩ ଭିତରେ ଭୂମି ସମସ୍ୟା ଘେନି ଜେଲଭରୋ ଆନ୍ଦୋଳନରେ ୧୦ ହଜାରରୁ ଅଧିକ ସାଥୀ ସମର୍ଥକ ଗିରଫ । କୁଜଙ୍ଗରେ ଲାଠିମାଡ଼ରେ ୨୪ ଜଣ ସାଥୀ ଆହତ । ବଡ଼ବିଲ, ଖଲିକୋଟ, ବାରିପଦାରେ ପୁଲିସ ସହିତ ଧସ୍ତାଧସ୍ତି । ଭୁବନେଶ୍ୱର, ଗଞ୍ଜାମ, ପାରଳାଖେମୁଣ୍ଡି ଆସିକା, ପୁରୁଷୋତ୍ତମପୁର, ଦିଗପହଣ୍ଡି, ଖଲିକୋଟ, ଭଞ୍ଜନଗର, ଛତ୍ରପୁର, ମାର୍ଶାଘାଇ, ଦର୍ପଣୀ, ପୁରୀ- କାକଟପୁର, ନିମାପଡ଼ା, କେଉଁଝର, ଢ଼େଙ୍କାନାଳରେ ବିକ୍ଷୋଭ । ସମ୍ବଲପୁର ଓ ବାଲେଶ୍ୱରର ନୀଳଗିରିରେ ଦ୍ୱିତୀୟ ପର୍ଯ୍ୟାୟରେ ଜେଲଭରୋ ବିକ୍ଷୋଭ ।

୬ଦିନ କାଳ ନିମାପଡ଼ାର ୨୧୨ଟି ଗ୍ରାମ ପରିକ୍ରମାରେ ସାଇକେଲ ପଟୁଆର । ଝାରସୁଗୁଡ଼ା, ବରଗଡ଼ରେ ଭୂମିହୀନ ଗୃହହୀନଙ୍କ ବିକ୍ଷୋଭ । ଓଡ଼ିଶା ନ ଯୁବ ସାହିତ୍ୟର ପ୍ରଖ୍ୟାତ ଉଦ୍‌ଗାତା ଅନନ୍ତ ପଟ୍ଟନାୟକଙ୍କର ଜୁନ୍ ୨୫ରେ ଦେହାନ୍ତ ଓ ଚାରିଆଡ଼େ ଅଶ୍ରୁଳ, ସଭାସମିତି ଖୋର୍ଦ୍ଧାରେ ମରୁଡ଼ି ପ୍ରତିକାର ଦାବି କରି ସି.ପି.ଆଇ.ର ଅନଶନ । ଚଷାଖଣ୍ଡିରେ ସାଥୀ ଚନ୍ଦ୍ରା ରାଓ, ସାଲେପୁରରେ ଆଜୀବନ ସଂଗ୍ରାମ ସାଥୀ ରାମଚନ୍ଦ୍ର ପଟ୍ଟନାୟକ ଓ ବାଲେଶ୍ବରର ସାଥୀ ଘନଶ୍ୟାମ ପଣ୍ଡାଙ୍କ ଦେହାନ୍ତ ।

ଜୁଲାଇରେ ଗଞ୍ଜାମର ଜିଲ୍ଲାପାଳଙ୍କୁ ୧୬ ଦଫା ଦାବୀ ଘେନି ପାର୍ଟିର ରିଲେ ଅନଶନ । ଜୁଲାଇରେ ମଧ୍ୟ ଦିଗପହଣ୍ଡି ସିନ୍ଦୁରପୁର, ପାଟପୁର, ପାଟକୁରା, ନୟାଗଡ଼, ବାଲେଶ୍ବରର ବାଲିମେଦା, ଢେଙ୍କାନାଳ, ସହରରେ ଚାଷୀ ବିକ୍ଷୋଭ ।

କଳାହାଣ୍ଡି ମରୁଡ଼ି ଅନାହାର ଦୁର୍ଭିକ୍ଷ ପ୍ରପୀଡିତଙ୍କ ଲାଗି ପାର୍ଟିର ରିଲିଫ ବ୍ୟବସ୍ଥା । ପଶ୍ଚିମବଙ୍ଗ ପାର୍ଟିର ଏକଲକ୍ଷ ଟଙ୍କାର ଔଷଧ ଓ ନଗଦ ୨୭ ହଜାର ଟଙ୍କା କଃ ଗୀତା ମୁଖାର୍ଜୀଙ୍କ ଦ୍ୱାରା ଅର୍ପଣ- ପାର୍ଟିର ୩ ଟି ରିଲିଫ ଦଳଙ୍କ ରିଲିଫ କାର୍ଯ୍ୟ ।

**ମରୁଡି ବିରେଧୀ ବିକ୍ଷୋଭ**

ଅଗଷ୍ଟ ୫ରେ ନିମାପଡ଼ାରେ ମରୁଡ଼ି ବିରୋଧୀ ବିକ୍ଷୋଭ । ମରୁଡ଼ି, ପ୍ରତିକାର ଦାବି କରି ମାଲକାନଗିରିର ଖଲିକୋଟ, ବନ୍ତ, ବାସୁଦେବପୁରରେ, କଳାହାଣ୍ଡିରେ ବିକ୍ଷୋଭ ।

ଅଗଷ୍ଟ ୧୦ରେ ଗଞ୍ଜାମର ପ୍ରଖ୍ୟାତ ଚାଷୀ ନେତା ପୂର୍ବତନ ସି.ପି.ଆଇ.-ଏମ.ଏଲ୍.ଏ କଃ ଦଣ୍ଡପାଣି ସ୍ୱାଇଁଙ୍କ ପରଲୋକ ଓ ବିରାଟ ପଟୁଆର ଓ ଦ୍ୱାଦଶାହରେ ବିଶାଳ ସଭା । ଅଗଷ୍ଟ ୨୬ରେ କୁଜଙ୍ଗରେ ମରୁଡ଼ି ବିରୋଧୀ ବିଶାଳ ବିକ୍ଷୋଭ ।

ସେପ୍ଟେମ୍ବର ୧ କୃଷକ ସଭା ଦିବସରେ ଜମିହୀନଙ୍କୁ ଜମି, ମରୁଡ଼ିର ପ୍ରତିକାର, କ୍ଷେତ ମୂଲିଆର ମୂଲ, ଘରଡ଼ିହ ଇତ୍ୟାଦି ଦାବୀରେ ରାଜ୍ୟସାରା ଦୃପ୍ତ ବିକ୍ଷୋଭ ଓ ପଟୁଆର । ଛତ୍ରପୁରରେ ୧୦ ହଜାର, କଟକରେ ୫ ହଜାର, ନିମାପଡ଼ାରେ ୩ ହଜାର ଓ ବାରିପଦାରେ ୩ ହଜାର, ସମ୍ବଲପୁରରେ ୨ ହଜାର ଲୋକଙ୍କ ବିକ୍ଷୋଭ । ଖୋର୍ଦ୍ଧାରେ ୨ ଶହ ଗିରଫ । ଢେଙ୍କାନାଳ, ନୀଳଗିରି, ସୁନ୍ଦରଗଡ଼ ଓ ଓର୍କେଲ, ଆମ୍ବାରୋନା, ଦିଗପହଣ୍ଡି, ପୋଲସରା, ସୁନାଖଳା, ଏରସମା, ଚାନ୍ଦବାଲି, ବସ୍ତା, ଚନ୍ଦକା, ତିହିଡ଼ି, ନିଶ୍ଚିନ୍ତକୋଇଲିରେ ଆଇନ ଅମାନ୍ୟ ଓ ଗିରଫଦାରୀ ।

ସେପ୍ଟେମ୍ବରରେ ରାଜ୍ୟ ପରିଷଦର ବୈଠକରେ ଏହି ଆନ୍ଦୋଳନକୁ ଆହୁରି ବ୍ୟାପକ କରିବାକୁ ନିଷ୍ପତ୍ତି ।

ଅକ୍ଟୋବରରେ ଗଞ୍ଜାମର ୧୫ ଟି ବ୍ଲକରେ ୧୧ ଅକ୍ଟୋବରରୁ ୫ ଦିନ ବ୍ୟାପୀ ଆନ୍ଦୋଳନ ବେଳେ ଲାଠି ଓ ଗିରଫ । ଖଲିକୋଟ, ବେଲଗୁଣ୍ଠା, ଦିଗପହଣ୍ଡି, ଗଞ୍ଜାମ, କୁକୁଡ଼ାଖଣ୍ଡି, ଛତ୍ରପୁର, ଚିକିଟି ସାନଖେମୁଣ୍ଡି, ଭଞ୍ଜନଗର, ରଙ୍ଗେଇଲୁଣ୍ଡା, ଜଗନ୍ନାଥ ପ୍ରସାଦ,

ବୁଗୁଡ଼ା, ପୋଲସରା, ପୁରୁଷୋତ୍ତମପୁର ବ୍ଲକରେ ବିକ୍ଷୋଭ । ପୁରୀର ବୋଲଗଡ଼, କୋଣାର୍କ, ଅସ୍ତରଙ୍ଗ, ବ୍ରହ୍ମଗିରି, ନିମାପଡ଼ା, ବାଲେଶ୍ୱରର ଭଦ୍ରକ, ବାସୁଦେବପୁର, ବନ୍ତ, ତିହିଡ଼ି, ଭଣ୍ଡାରିପୋଖରୀ, ମାର୍କୋଣା, ସୋରା, ଚାନ୍ଦବାଲି, ନୀଳଗିରି, ବସ୍ତା ଓ ବାଲେଶ୍ୱରରେ ବିକ୍ଷୋଭ ।

ଅକ୍ଟୋବରରେ କାନସର ରୋଗରେ ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର ତୁଙ୍ଗ ନେତା, ଭଟଳିର ପୂର୍ବତନ ସି.ପି.ଆଇ.ଏମ୍. ଏଲ୍ ଏ କଃ ନଟବର ବନଛୋରଙ୍କ ପରଲୋକ ।

ଅକ୍ଟୋବର ୧୪ରେ ରାଜ୍ୟ ବିଧାନସଭା ସମୀପରେ ୬ ଦଫା ଦାବୀ ଘେନି ଭାସ୍କର ସୂତା କଳର ୩ ହଜାରରୁ ଅଧିକ ଶ୍ରମିକଙ୍କ ବିକ୍ଷୋଭ ପଟୁଆର ।

ନଭେମ୍ବର ୧୪/୧୫ରେ ଢେଙ୍କାନାଳରେ ଭାରତ ସୋଭିଏତ ମୈତ୍ରୀ ସମିତିର ଅଧିବେଶନ ମହାସମାରୋହରେ ପାଳିତ । ବିଖ୍ୟାତ ନ୍ୟାୟପତି ଭି. କେ କ୍ରିଷ୍ଣ ଆୟାରଙ୍କ ଯୋଗଦାନ ।

ନଭେମ୍ବରରେ ପୁନର୍ବାର ମରୁଡ଼ି ପ୍ରତିକାର ଘେନି ବିଭିନ୍ନ ବ୍ଲକ ଅଫିସ ସମ୍ମୁଖରେ ବିକ୍ଷୋଭ । ଚାନ୍ଦବାଲି, ବାସୁଦେବପୁର, କୁଜଙ୍ଗଳ, ଯାଜପୁରରେ ବିକ୍ଷୋଭ । ପାର୍ଟି ପକ୍ଷରୁ ରାଜ୍ୟରେ ରାଜୀବ ହଟାଓ- ଜାନକୀ ହଟାଓ ଅଭିଯାନ ବେଳେ ଲିଖନପୁରରେ ରେଙ୍ଗାଲି, ପାରଳାଖେମୁଣ୍ଡି, ଟାଙ୍ଗଣାପଲ୍ଲୀ, ବଲାଙ୍ଗୀର, ଏରସମା, ଖଲିକୋଟ, କୋଦଳା, ନୀଳଗିରି, ବାସୁଦେବପୁର, ବୈପାରିଗୁଡ଼ା, ବେଗୁନିଆ, ପାରାଦୀପ, ବନ୍ତ, କୁଜଙ୍ଗ, ସୋରା ଗୋସାଣିରେ ସଭା ବିକ୍ଷୋଭ ।

୧୯୮୭ ଡିସେମ୍ବର ୯ ତାରିଖରେ ସମାବେଶ ପାଇଁ ସିପିଆଇ ସିପିଆଇ ଏମ୍ ସମେତ ୬ ଟି ଦଳ ରାଜ୍ୟ ସାରା ପରିକ୍ରମା- ୩ ହଜାର କିଲୋମିଟର ଅତିକ୍ରମ । ୨ରିହ ପଥପ୍ରାନ୍ତ ସଭା- କଟକ, ପୁରୀ, ସମ୍ବଲପୁର, ସୁନ୍ଦରଗଡ଼, ଢେଙ୍କାନାଳ, ବାଲେଶ୍ୱର, ମୟୂରଭଞ୍ଜ, ଗଞ୍ଜାମ ବଲାଙ୍ଗିର, କେଉଁଝର ପରିକ୍ରମା । ସିପିଆଇ, ସିପିଏମ୍ ଫରୱାର୍ଡ ବ୍ଲକ ଓ ଆର.ଏସ.ପିର ମିଳିତ ଆହ୍ୱାନରେ ତେର ଦଫା ଦାବି ଘେନି ୧୨ ଲକ୍ଷ ଜନତାଙ୍କ ଦିଲ୍ଲୀ ସମାବେଶ ଓଡ଼ିଶାରୁ କେବଳ ସିପିଆଇ ପ୍ରଭାବିତ ଜିଲ୍ଲା, ଗାଁ ସହରରୁ ୨୦ ହଜାର ଜନତାଙ୍କ ଯୋଗଦାନ ।

୧୯୮୭ ମଧ୍ୟଭାଗରେ ରାଜ୍ୟର ପ୍ରଖ୍ୟାତ ଓ ପୁରାତନ ସଂଗ୍ରାମୀ କଟକ ପ୍ରେସ କର୍ମଚାରୀ ସଂଘର ସୁବର୍ଣ୍ଣ ଜୟନ୍ତୀ ।

**୧୯୮୮**

ଜାନୁଆରୀ ୨/୩ ତାରିଖରେ ରାଜ୍ୟ ପାର୍ଟି କାର୍ଯ୍ୟକାରୀ କମିଟି ବସି ଜାନୁୟାରୀ ୩୦ରେ ରାଜ୍ୟସାରା ସଂକଳ୍ପ ଦିବସ ପାଳନ, ୨ ଲକ୍ଷ ଟଙ୍କା ପାଣ୍ଠି ସଂଗ୍ରହର ନିଷ୍ପତ୍ତି । ଜାନୁଆରୀ ୨୪ରେ ସିପିଆଇ ସିପିଆଇ (ଏମ୍) ଦୁଇ ପାର୍ଟିର ଗଣ ସଂଗଠନ ଗୁଡିକର ମିଳିତ କନଭେନସନ । ଏହି ମାସରେ କୁଜଙ୍ଗ ଯୁବସଂଘ ପକ୍ଷରୁ କୁଜଙ୍ଗର ୨୯ଟି ଗାଁ'ରେ ପଦଯାତ୍ରା

ବାଲିତୁଠରେ ଶିକ୍ଷା ଶିବିର । ବଲାଙ୍ଗିରରେ ଛାତ୍ରସଂଘର କର୍ମୀ ରାମକୃଷ୍ଣ ଶତପଥୀଙ୍କ ହତ୍ୟାର ପ୍ରତିବାଦରେ ପାର୍ଟି ଓ ଛାତ୍ର ସଂଘ ପକ୍ଷରୁ ବଲାଙ୍ଗୀର ସଫଳ ବନ୍ଦ । ଏଥିରେ କଂଗ୍ରେସ (ଇ) ମନ୍ତ୍ରୀଙ୍କ ପ୍ରତ୍ୟକ୍ଷ ହାତ- ତାଙ୍କ ଶେଷ ଚିଠିରୁ ପ୍ରକାଶ ।

କଟକ ଗୌରୀଶଙ୍କର ପାର୍କରେ ଦୁଇ ପାର୍ଟିର କର୍ମୀରମାନଙ୍କର ଜାନୁଆରୀ ୨୪ ରେ କନଭେନସନରେ ସିପିଆଇ ନେତା ନମ୍ବୁଦ୍ରିପଦ, ସିପିଆଇ ନେତା ନାରାୟଣ ଚୌବେ ଓ ରାଜ୍ୟର ଦୁଇପାର୍ଟିର ନେତାଙ୍କ ଅଭିଭାଷଣ ।

ଜାନୁୟାରୀ ୩୦ ସଂକଳ୍ପ ଦିବସରେ ବ୍ରହ୍ମପୁର, ଗଞ୍ଜାମ, ଜଗନ୍ନାଥପ୍ରସାଦ, ପାଟପୁର, କଟକ ସହର, ଏରସମା, ରୁପ୍‌ସା, ଭୁବନେଶ୍ୱର, ବାଲିଚନ୍ଦ୍ରପୁର, ଝାରସୁଗୁଡ଼ା, କାମାକ୍ଷାନଗର, ଖଲିକୋଟ, କୋଦଳା, ବସ୍ତା, ବଡ଼ମ୍ବା ପ୍ରଭୃତି ଶତାଧିକ ସ୍ଥାନରେ ରାଜୀବ ହଟାଓ, ଜାନକୀ ହଟାଓ ଲାଗି ସମାବେଶ ।

କଳାହାଣ୍ଡି ଜିଲ୍ଲାରେ ପାର୍ଟିଶାଖା ଖୋଲି ପାଟ ଗଠନର ଭିତ୍ତିପତ୍ତନ । ତ୍ରିପୁରାରେ ବାମପନ୍ଥୀ ସାମ୍ମୁଖ୍ୟ ସରକାର ବିରୁଦ୍ଧରେ କଂଗ୍ରେସ (ଇ)ର ଷଡ଼ଯନ୍ତ୍ର ବିରୁଦ୍ଧରେ କଟକରେ ସିପିଆଇ ସିପିଏମ୍‌ର ମିଳିତ ସଭା ବିକ୍ଷୋଭ ।

ବେଗୁନିଆର ସଁପୁର ଗାଁ'ର ୨୩ ଜଣ ଦାଦନ ଶ୍ରମିକଙ୍କୁ ପଞ୍ଜାବର ପାର୍ଟି ସହାଯ୍ୟରେ ମୃତ୍ୟୁ ମୁଖରୁ ରକ୍ଷା । ଏଥିରେ କଃ ବ୍ରଜକିଶୋର ଭୋଇ ଓ ବାଇଧରଙ୍କ ସଫଳତା ।

ଫେବୃୟାରୀରେ ବଲାଙ୍ଗୀର, ରାଉରକେଲା, ବାଲେଶ୍ୱରରେ ଛାତ୍ର ସଂଘ ସମ୍ମିଳନୀ ।

ଫେବୃଆରୀ ୨୩ ରେ ଭାରତ ବଞ୍ଚାଓ ଦିବସ ଉପଲକ୍ଷେ କଟକ, ପୁରୀ, ଗଞ୍ଜାମ, ବାଲେଶ୍ୱର, ମୟୂରଭଞ୍ଜ, କେଉଁଝର, ସମ୍ବଲପୁର, ସୁନ୍ଦରଗଡ଼, ଢେଙ୍କାନାଳ ଜିଲ୍ଲାମାନଙ୍କରେ ସଭା ସମାବେଶ ପାର୍ଟି ଦ୍ୱାରା ଆୟୋଜିତ । ୧୭ ୧ ୨ରେ ଯାଜପୁରଠାରେ ମୁଖ୍ୟମନ୍ତ୍ରୀ ଜାନକୀ ପଟ୍ଟନାୟକଙ୍କୁ ପାର୍ଟି ପକ୍ଷରୁ କଳାପତାକା ପ୍ରଦର୍ଶନ ।

ମାର୍ଚ୍ଚ ୧୫ରେ ଓଡ଼ିଶାର ୯ ଟି ଦଳ ଯଥା ସିପିଆଇ, ସିପିଏମ୍, ଜନତାପାର୍ଟି, ଲୋକଦଳ, ଜାଗ୍ରତ ଓଡ଼ିଶା, ଫରୱାର୍ଡ଼ ବ୍ଲକ ପକ୍ଷରୁ ଓଡ଼ିଶା ବନ୍ଦ ଡାକରା । ରାଜ୍ୟସାରା କଂଗ୍ରେସର ଗୁଣ୍ଡାମି ସତ୍ତ୍ୱେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, କେଉଁଝର, ଗଞ୍ଜାମ, ସୁନ୍ଦରଗଡ଼, ମୟୂରଭଞ୍ଜରେ ସଫଳ ବନ୍ଦ ।

ମାର୍ଚ୍ଚ ୧୯/୨୦ରେ ରାଜ୍ୟ ପରିଷଦ ବୈଠକରେ ଭାରତ ବଞ୍ଚାଓ ଓ ଓଡ଼ିଶା ବନ୍ଦ ଓ ଦୁଇ କମ୍ୟୁନିଷ୍ଟ ପାର୍ଟିର ମିଳିତ ସମାବେଶରେ ପର୍ଯ୍ୟାଲୋଚନା ଓ ନୂତନ କର୍ମପନ୍ଥା ନିର୍ଣ୍ଣୟ ।

ସମ୍ବଲପୁରରେ ବନ୍ୟାବିପ୍ଳାତ ହେତୁ ୧୯ ହଜାର ପରିବାରଙ୍କ ବାସଚ୍ୟୁତ ଘଟିଥିଲା । ତା'ର ପ୍ରତିକାର ଦାବୀ କରି ପାର୍ଟିର ବିକ୍ଷୋଭ ।

ମାର୍ଚ୍ଚ ୩୦ରେ ଛାତ୍ର ସଂଘର ନେତୃତ୍ୱରେ ୩ ହଜାର ଆଇ.ଟି.ଆଇ ଶିକ୍ଷାର୍ଥୀଙ୍କ ୭

ଦଫା ଦାବି ଘେନି ରାଜଧାନୀରେ ବିକ୍ଷୋଭ । ମାର୍ଚ୍ଚ ୨୫ରେ ଛତ୍ରପୁର ବିରଳ ମୃତ୍ତିକାରେ ନିଯୁକ୍ତି ଦାବୀ କରି ବିକ୍ଷୋଭରେ ୫୦ ଜଣ ଯୁବସଂଘ କର୍ମୀଙ୍କ ଉପରେ ଲାଠି ।

ଅଗମ୍ୟ ହୋଇ ପଡ଼ିଥିବା ଭଦ୍ରକ-ଚାନ୍ଦବାଲି ରାସ୍ତାର ମରାମତି ଦାବୀ କରି ସିପିଆଇ-ସିପିଏମ୍ ପକ୍ଷରୁ ଏପ୍ରିଲ ୨ରେ ରାସ୍ତା ରୋକୋ । ଏପ୍ରିଲ ୨୩ରେ ସମ୍ବଲପୁରରେ ଆଇ.ଏସ୍.ଏସ ପକ୍ଷରୁ ସାଂପ୍ରଦାୟିକ ଦଙ୍ଗା ସୃଷ୍ଟି ବିରୁଦ୍ଧରେ ପାର୍ଟିର ଅଭିଯାନ । ଏପ୍ରିଲ ୫ରେ ବଡ଼ବିଲ ଖଣି ଶ୍ରମିକଙ୍କ ଉପରେ ଲାଠି - ୫ ଜଣ ସିପିଆଇ କର୍ମୀ ଆହତ ।

ମଇ ୧୧ ରାଜଧାନୀ ଭୁବନେଶ୍ୱରଠାରେ ଭୂସଂସ୍କାର, ଋଣ ଛାଡ଼, ଶସ୍ତା ଜିନିଷ ଯୋଗାଣ, ମରୁଡ଼ି ପ୍ରତିକାର ପ୍ରଭୃତି ୧୪ ଦଫା ଦାବି ଘେନି ସିପିଆଇ ଓ ସିପିଆଇଏମ୍‌ର ବିଶାଳ ଜନସମାବେଶ । ସିପିଆଇର ସବୁ ଜିଲ୍ଲାରୁ ୫୦ ହଜାର ଜନତାର ଯୋଗଦାନ । ସୁଦୂର ସମ୍ବଲପୁରର ହୀରାକୁଦ, ଇବ କୋଲିଆରୀ, ଝାରସୁଗୁଡ଼ା, କାଂସବାହଲ, ରାଉରକେଲା, ବଡ଼ବିଲ, ମୟୂରଭଞ୍ଜ, ଗଞ୍ଜାମର ପାରଳାଖେମୁଣ୍ଡି ସମେତ ସେରଗଡ଼, ଚମାଖଣ୍ଡି, ଭଞ୍ଜନଗର, ଆସିକା, ନରେନ୍ଦ୍ରପୁର ପ୍ରଭୃତି ୪୦ଟି ସ୍ଥାନରୁ ୭ ହଜାର, ବାଲେଶ୍ୱରର ସବୁ ଅଞ୍ଚଳରୁ ୧୦ ହଜାର, କଟକର ସବୁ ଅଞ୍ଚଳରୁ ୮ ହଜାର, ପୁରୀରୁ ୮ ହଜାର, ଜନତା ନିଜ ନିଜ ପାର୍ଟି ଶାଖା ନେତୃତ୍ୱରେ ଯୋଗଦାନ । ଡ୍ରମ ବାଜା, ନୃତ୍ୟ, ଝାଞ୍ଜ, ମୃଦଙ୍ଗ, ଆଦିବାସୀ ନୃତ୍ୟରେ ରାଜଧାନୀ ମୁଖର । ରାଜ୍ୟର ଦୁଇ ପାର୍ଟିର ନେତାଗଣ ଓ ସିପିଆଇର କଃ ହୋମିଦାଜି ଓ ସି.ପିଆଇଏମ୍‌ର ହରିକିଷନ ସିଂ ସୁରଜିତଙ୍କ ଉଦ୍‌ବୋଧ ।

ଜୁନମାସରେ ପାର୍ଟି ଓ ଏମ.ଆଇ.ଟି.ୟୁ.ସି ନେତୃତ୍ୱରେ ବ୍ରଜରାଜ ନଗର କୋଇଲା ଖଣି ଶ୍ରମିକଙ୍କ ଧର୍ମଘଟ । ବାଙ୍କୀରେ କୃଷକ ମୂଲିଆଙ୍କ ବିକ୍ଷୋଭ । ଜଗତ୍‌ସିଂହପୁରରେ ଜୁନ୍ ୪ ଠାରୁ ପାର୍ଟି ଶିକ୍ଷା ଶିବିର ।

ଜୁଲାଇ ୧୯ରେ ରାଜ୍ୟ ପରିଷଦର ବୈଠକରେ ସେପ୍ଟେମ୍ବର ଆଇନ ଅମାନ୍ୟ ଲାଗି ନିର୍ଦ୍ଧାରଣ ଓ ପାର୍ଟି ସମ୍ମିଳନୀ ଲାଗି ପ୍ରସ୍ତୁତ । ଜୁଲାଇ ୯ରେ କଟକ କଳାବିକାଶ କେନ୍ଦ୍ରରେ ସିପିଆଇ, ସିପିଆଇ (ଏମ୍)ର ଗଣ ସଂଗଠନ, କୃଷକ ସଭା କ୍ଷେତ ମଜଦୁର ସଂଗଠନ ଗୁଡ଼ିକର ପ୍ରତିନିଧିଙ୍କୁ ଘେନି କନଭେନସନ । ଜୁଲାଇ ୨୨ରେ କଟକ ନଗରବାସୀଙ୍କ ବିଭିନ୍ନ ପରାସ୍ୟ ଘେନି ଜିଲ୍ଲାପାଳଙ୍କ ଅଫିସ ସମ୍ମୁଖରେ ଧାରଣା ।

ଅଗଷ୍ଟ ମାସରେ ଆସିକା ସୂତାକଳ ଶ୍ରମିକମାନଙ୍କ ପକ୍ଷରୁ କାରଖାନା ଖୋଲ ଦାବୀରେ ଅନଶନ ବିକ୍ଷୋଭ । ଅଗଷ୍ଟ ୧୬ରୁ ରାଜ୍ୟର ଶିକ୍ଷକମାନଙ୍କ କାର୍ଯ୍ୟବନ୍ଦ ଓ ଆଇନ ଅମାନ୍ୟ ଆନ୍ଦୋଳନକୁ ସମର୍ଥନ କରି ବିଭିନ୍ନ ସ୍ଥାନରେ ପାର୍ଟିର ସଭା ସମିତି ।

ଜୁଲାଇରେ ବଲାଙ୍ଗିର ଜିଲ୍ଲାପାଳଙ୍କ ଅଫିସ ଆଗରେ ଓ ମୟୂରଭଞ୍ଜ, ଗଞ୍ଜାମର ବିଭିନ୍ନ ଜାଗାରେ ବିକ୍ଷୋଭ । ପଞ୍ଜାବ ବଞ୍ଚାଓ ଦିବସ ଉପଲକ୍ଷେ ବଲାଙ୍ଗିର, ବ୍ରହ୍ମପୁର, ଦିଗପହଣ୍ଡି,

ବାଲେଶ୍ୱର ପ୍ରଭୃତି ସ୍ଥାନରେ ସଭା । ବାଲେଶ୍ୱରରେ ଗିରଫ ଶ୍ରମିକନେତାଙ୍କୁ ଖଲାସ ଦାବୀରେ ସବୁ କାରଖାନା ବନ୍ଦ ଓ ରେଲରୋକୋ ଆନ୍ଦୋଳନରେ ପାର୍ଟିର ଭୂମିକା ।

ସେପ୍ଟେମ୍ବର ୫ ରୁ ୯ ଯାଏ ଦୁଇ ପାର୍ଟି ଓ ତାର ଗଣ ସଂଗଠନଗୁଡ଼ିକ ଦ୍ୱାରା ଆଇନ ଅମାନ୍ୟ ଆନ୍ଦୋଳନର ପ୍ରସ୍ତୁତି ଓ ସେଥିରେ ଯୋଗଦାନ । ଗଞ୍ଜାମର ଛତ୍ରପୁର, ସାନଖେମୁଣ୍ଡି, ହରିପୁର, ବ୍ରହ୍ମପୁର, ଭଞ୍ଜନଗର, ପାରଲା, ଆସିକା, ଖଲିକୋଟ, ପୁରୁଷୋତ୍ତମପୁର, ପୋଲସରା, ଗଞ୍ଜାମ, ଗୋସାଣି, କବିସୂର୍ଯ୍ୟ ନଗର ଓ ଶେରଗଡ଼ ପ୍ରଭୃତି ବ୍ଲକରେ, ପୁରୀର ଭୁବନେଶ୍ୱରର ବାଙ୍କୀ, କୋଣାର୍କ, ନିମାପଡ଼ା, ଗୋପ, କାକଟପୁର ବେଗୁନିଆ, ବୋଲଗଡ଼, ଭାପୁର ଦଶପଲ୍ଲା, ନୟାଗଡ଼, ଟାଙ୍ଗି, ବ୍ରହ୍ମଗିରି ଏମିତି ୧୪ଟି ସ୍ଥାନରେ ସମ୍ବଲପୁରର- ଲିଖନପୁର, ସମ୍ବଲପୁର, ରେଙ୍ଗାଲି, ଭଟଲି, ଝାରସୁଗୁଡ଼ା ଲପଙ୍ଗା- ଶାସନରେ, କଟକର ପଟାମୁଣ୍ଡାଇ, କୁଜଙ୍ଗ, ତିର୍ତ୍ତୋଲ, ଏରସମା, ମାର୍ଶାଘାଟ, ଜଗତ୍‌ସିଂହପୁର, ଟାଙ୍ଗି, ବିରିଡ଼ି, କୋରେଇ, ସୁକିନ୍ଦା ପ୍ରଭୃତିରେ ବାଲେଶ୍ୱରର ବସ୍ତା, ବନ୍ତ, ତିହିଡ଼ି, ବାସୁଦେବପୁର, ଭଦ୍ରକ, ବାଲେଶ୍ୱର, ନୀଳଗିରି, ଜଳେଶ୍ୱର, ରେମୁଣା, ଧାମନଗର, ଚାନ୍ଦବାଲି ପ୍ରଭୃତି ସ୍ଥାନରେ; ଢେଙ୍କାନାଳର ତାଳଚେର, ଢେଙ୍କାନାଳ, କାମାକ୍ଷାନଗର, ଅନୁଗୋଳ, ଭୁବନରେ କୋରାପୁଟରେ ବୈପାରିଗୁଡ଼ା, ମାତିଲିରେ- କେଉଁଝରର ବଡ଼ବିଲ, ଯୋଡ଼ା, ସ୍ୱାମୀପାଟଣା, ତେଲ୍ତରାରେ ମୟୂରଭଞ୍ଜର ବାରିପଦା, ବହଳଦା, ଖୁଣ୍ଟାରେ ଆଇନ ଅମାନ୍ୟ ହୋଇଥିଲା । ୧୧ଟି ଜିଲ୍ଲାରେ ୮୯ଟି ସ୍ଥାନରେ ଏହି ଆଇନ ଅମାନ୍ୟରେ ସିପିଆଇ ପକ୍ଷରୁ କଟକରେ ୧୬୯୭୮ ଜଣ, ପୁରୀରେ ୪୯୧୦ ଜଣ, ବାଲେଶ୍ୱରରେ ୫୫୨୦ ଜଣ, ଗଞ୍ଜାମରେ ୨୬୭୭୬ ଜଣ, ସମ୍ବଲପୁରରେ ୮୨୧୨ ଜଣ, ମୟୂରଭଞ୍ଜରେ ୨୩୦୦, ଢେଙ୍କାନାଳରେ ୪୫୦୫ ଜଣ, କୋରାପୁଟରେ ୨୭୩୫ ଜଣ, କେଉଁଝରରେ ୬୨୩୩ ଜଣ, ସମ୍ବଲପୁରରେ ୧୨ ହଜାର ୫ ଶହ, ବଲାଙ୍ଗିରରେ ୯୦୭ ଜଣ ଓ ସୁନ୍ଦରଗଡ଼ରେ ୧୪୦୦ ଜଣ ଯାଏ କାରାବରଣ କରିଥିଲେ । କେତେଗୁଡ଼ିଏ ସ୍ଥାନରେ ଦୁଇ ସଂଗଠନର ମିଳିତ ଆଇନ ଅମାନ୍ୟ ହୋଇଥିଲା ।

ଅକ୍ଟୋବର ନଭେମ୍ବର ମାସରେ ଉତ୍କଳ ରାଜ୍ୟ କୃଷକ ସଭା ଏବଂ ଓଡ଼ିଶା କୃଷକ ସଭା ପକ୍ଷରୁ ମିଳିତ ଭାବରେ ବିକ୍ଷୋଭ, ପିକେଟିଂ, ରାସ୍ତାରୋକୋ ହୋଇଲା ।

ଛାତ୍ରସଂଘ ଓ ଯୁବସଂଘ ପକ୍ଷରୁ ମିଳିତ ଭାବରେ ଅକ୍ଟୋବରରେ ବିକ୍ଷୋଭ, ବଲାଙ୍ଗିରରେ ଜିଲ୍ଲାପାଳଙ୍କ ଅଫିସ ସମ୍ମୁଖରେ ବିକ୍ଷୋଭ, ଗଞ୍ଜାମର ପାଟପୁର, ବୁଗୁଡ଼ା, କବିସୂର୍ଯ୍ୟନଗର, ଖଲିକୋଟ, ରାୟଗଡ଼ା, ବେଗୁନିଆପଡ଼ା, ପୁରୁଷୋତ୍ତମପୁର, କନିସି, ବେଲଗୁଣ୍ଠା, ଗଞ୍ଜାମ, କାଶିନଗର, ଶେରଗଡ଼, ଜଗନ୍ନାଥ ପ୍ରସାଦ, ତଥା ନିମାପଡ଼ା, ଅସ୍ତରଙ୍ଗ, ଢେଙ୍କାନାଳ, ପ୍ରଭୃତିରେ ଯୁବଛାତ୍ରଙ୍କ ବିକ୍ଷୋଭ ।

ଓଡ଼ିଶାର ଜାନକୀ ସରକାର ଓଡ଼ିଶାରେ ଶ୍ରମିକ ଓ କର୍ମଚାରୀମାନଙ୍କ ବିରୁଦ୍ଧରେ ଓଡ଼ିଶା

ଅତ୍ୟାବଶ୍ୟକ ସେବା ସଂରକ୍ଷଣ ବିଲ ଆଣିବାରୁ ପାର୍ଟି ଓ ଶ୍ରମିକ ସଂଗଠନ ଗୁଡ଼ିକ ପକ୍ଷରୁ ବିଧାନସଭାରେ ଓ ବାହାରେ ପ୍ରତିବାଦ-ବିକ୍ଷୋଭ ।

ଭୁବନେଶ୍ୱରରେ ମ୍ୟୁନିସିପାଲଟି ଗେଷ୍ଟ ହାଉସରେ ନଭେମ୍ବରରେ ୨୧ /୨୨ରେ ରାଜ୍ୟ ସାଂଗଠନିକ ସମ୍ମିଳନୀ ଅନୁଷ୍ଠିତ । ଏହା ଉପୂର୍ବରୁ ଗଞ୍ଜାମ, ଜିଲ୍ଲା ପୁରୀ ଜିଲ୍ଲା ପ୍ରଭୃତିରେ ସାଙ୍ଗଠନିକ ସମ୍ମିଳନୀ ସମାପ୍ତ । ପାର୍ଟି ପାଣ୍ଠି ଅଭିଯାନରେ ପ୍ରଥମ ଦଫା କଟକ ଜିଲ୍ଲାରୁ ୨୫ ହଜାର ପ୍ରାୟ ଓ ପୁରୀ ଜିଲ୍ଲାରୁ ୧୨ ହଜାର ଟଙ୍କା ଆଦାୟ- ପାର୍ଟି ପାଣ୍ଠି ଅଭିଯାନ ବିଭିନ୍ନ ଜିଲ୍ଲାରେ ଅବ୍ୟାହତ ।

ଡିସେମ୍ବର ୧୯ରେ ରାଜଧାନୀ ସତ୍ୟନଗରରେ ୧୦ ହଜାର ବସ୍ତି ବାସିନ୍ଦାଙ୍କୁ ପୁଲିସ ଲଗେଇ ଉଚ୍ଛେଦ, ଘରଭଙ୍ଗା, ଲାଠି ମାଡ଼- ଶତାଧିକ ଆହତ ।

ଏହି ବିରୁଦ୍ଧରେ ପାର୍ଟି ଓ ଅନ୍ୟାନ୍ୟ ସଙ୍ଗଠନ ପକ୍ଷରୁ ଭୁବନେଶ୍ୱର ବନ୍ଦ ଡାକରା ସଫଳ ।

ଏହି ବର୍ଷରେ ସିପିଆଇର ବହୁ ପ୍ରତିଷ୍ଠିତ ନେତାଙ୍କ ଦେହାନ୍ତ । ମୁସ୍ତାଦାରୀ ପ୍ରଥା ବିରୋଧୀ ବିଖ୍ୟାତ ଆନ୍ଦୋଳନର ଅନ୍ୟତମ ନେତା ଦିଗପହଣ୍ଡିର ଉଜଳ ରାଉତ, ସ୍ୱାଧୀନତା ସଂଗ୍ରାମୀ ଶିକ୍ଷକ- କମ୍ୟୁନିଷ୍ଟ ନେତା ଫୁଲବାଣୀର ପ୍ରହ୍ଲାଦ ବିଶି, ମୁସ୍ତାଦାରୀ ପ୍ରଥା ବିରୋଧୀ ଆନ୍ଦୋଳନର ଶେରଗଡ଼ ନେତା ଯୋଗୀନ୍ଦ୍ର ପାତ୍ର, କଟକ ପ୍ରେସ୍ ଶ୍ରମିକ ସଂଘର ଯୁବନେତା ଦେବେନ୍ଦ୍ର ଦାସ, ବାଲେଶ୍ୱର ଜିଲ୍ଲା ପାର୍ଟିର ଏକଦା ସମ୍ପାଦକ ଓ ବୟୋଜ୍ୟେଷ୍ଠ ନେତା ଗୋବିନ୍ଦ ଚନ୍ଦ୍ର ପଣ୍ଡା- ଚନ୍ଦକାର କମ୍ୟୁନିଷ୍ଟଙ୍କ ଅଜ୍ଞାତବାସ କାଳର ପ୍ରଧାନ ସାହାଯ୍ୟକାରୀ ନେତା ନିରଞ୍ଜନ ଜଗଦେବଙ୍କର ଦେହାନ୍ତ ।

**୧୯୮୯**

ଜାନୁଆରୀ- ଗତବର୍ଷ ଡିସେମ୍ବର ୩୧ରେ ବାଲେଶ୍ୱର ମତୋ ଅଞ୍ଚଳ ଅନ୍ତର୍ଗତ ତଷାଖଣ୍ଡ ଗାଁ'ରେ କଂଗ୍ରେସ-ଇ ଦୁର୍ବୃତ୍ତମାନଙ୍କ ଦ୍ୱାରା କମ୍ୟୁନିଷ୍ଟ ଘରଗୁଡିକ ଉପରେ ଆକ୍ରମଣ- ବହୁ ମହିଳା ନିର୍ଯ୍ୟାତିତା ତା'ର ପ୍ରତିବାଦ ସଭା ।

ଝାରସୁଗୁଡ଼ା ପଟାରି ଶ୍ରମିକମାନଙ୍କ ସମ୍ମିଳନୀ ଏବଂ ଜାନୁଆରୀ ୬ରୁ ୮ ଯାଏ ଭାରତୀୟ ମହିଳା ଫେଡ଼େରେସନ ଜାତୀୟ ପରିଷଦ ବୈଠକ ଓ ସମାବେଶରେ ବିଭିନ୍ନ ଜିଲ୍ଲାରୁ ନାରୀସଂଘ ସଦନ କଟକରେ ବହୁ କମ୍ୟୁନିଷ୍ଟ ମହିଳାଙ୍କ ଯୋଗଦାନ ।

କଟକରେ ଅନୁଷ୍ଠିତ ହେବାକୁ ଥିବା ରାଜ୍ୟ ତ୍ରୟୋଦଶ ପାର୍ଟି ସମ୍ମିଳନୀ ପୂର୍ବରୁ କଟକର ବଡ଼ଚଣାଠାରେ, ଗଞ୍ଜାମର ଦିଗପହଣ୍ଡିରେ, ମୟୂରଭଞ୍ଜର ବାରିପଦାରେ, ବାଲେଶ୍ୱରର ପୀରହାଟଠାରେ, କେଉଁଝରର ବଡ଼ବିଲଠାରେ, ଢେଙ୍କାନାଳର ଢେଙ୍କାନାଳ ସହରରେ, ବଲାଙ୍ଗିରରେ ରୋଥଡ଼ଠାରେ, ସୁନ୍ଦରଗଡ଼ର ରାଉରକେଲାଠାରେ, ସମ୍ବଲପୁରର ସମ୍ବଲପୁର

ସହରରେ ଓ କୋରାପୁଟ ଜିଲ୍ଲାର ଜିଲ୍ଲା ପାର୍ଟି, ସମ୍ମିଳନୀ ଅନୁଷ୍ଠିତ । ଜାନୁଆରୀ ୨୮ରେ ଅସ୍କାରେ କଂଗ୍ରେସ (ଇ) ଗୁଣ୍ଡାଙ୍କ ଦ୍ୱାରା କମ୍ୟୁନିଷ୍ଟ ନେତା ଲଳିତ ମୋହନ ଦାସଙ୍କ ଉପରେ ମରଣାନ୍ତକ ଆକ୍ରମଣ- ପ୍ରତିବାଦରେ ଆସ୍କା ବନ୍ଦ ।

କଟକ ବାରବାଟୀ ଷ୍ଟାଡ଼ିୟମରେ ଫେବୃଆରୀ ୨୦ ରୁ ୨୩ ଯାଏ ରାଜ୍ୟ ପାର୍ଟି ତ୍ରୟୋଦଶ ସମ୍ମିଳନୀ ।

ସମ୍ମିଳନୀ ଆରମ୍ଭ ଦିନ ବାଲେଶ୍ୱର ଚଷାଖଣ୍ଡରୁ ବାଘାଯତୀନ ଅମର ଜ୍ୟୋତି, ସମ୍ବଲପୁରର ଖିଣ୍ଡାଠାରୁ ବୀର ସୁରେନ୍ଦ୍ରସାଏ ଅମର ଜ୍ୟୋତି, କାକଟପୁରରୁ କେଳ ସମ୍ପଦ ଅମର ଜ୍ୟୋତି, କଟକର ବାଲିସୁଆଁ ଠାରୁ ମୁରଲୀ ପରିଡ଼ା ଅମର ଜ୍ୟୋତି, ଗଞ୍ଜାମର ଡାକରଡ଼ାଠାରୁ ହେମ ଅର୍ଜୁନୀ ଅମର ଜ୍ୟୋତି, ଢେଙ୍କାନାଳରୁ ବାଜିରାଉତଙ୍କ ଜନ୍ମସ୍ଥଳୀ ନୀଳକଣ୍ଠପୁର ଦେଇ ଉଦ୍ଧବ ଲକ୍ଷ୍ମଣ ଅମର ଜ୍ୟୋତି ଘେନି କଟକ ଯାତ୍ରା । ୧୦ଟି ଭ୍ୟାନ, ୧୦୦ଟି ମଟର ସାଇକେଲ ସ୍କୁଟର ଯୋଗେ ୩୦ ହଜାର ଜନତାର କଟକ ଷ୍ଟେସନ ଓ ଲିଙ୍କରୋଡ଼ଠାରେ ବର୍ଣ୍ଣାଢ଼୍ୟ ପହଞ୍ଚିଆର, ତେରଟି ତୋପ ଧ୍ୱନିରେ ସମ୍ମିଳନୀ ଆରମ୍ଭ । ଅଭ୍ୟର୍ଥନା ସମିତିର ଚେୟାରମେନ ପ୍ରବୀର ପାଲିତ । ୫ ଶତାଧିକ ପ୍ରତିନିଧିଙ୍କ ଅଂଶଗ୍ରହଣ- ନୂତନ କର୍ମକର୍ତ୍ତା ନିର୍ବାଚନ, ପାର୍ଟି କଂଗ୍ରେସକୁ ପ୍ରତିନିଧି ନିର୍ବାଚନ- ସଂଗ୍ରାମର କାର୍ଯ୍ୟସୂଚୀ ଗ୍ରହଣ ଲୋକନାଥ ଚୌଧୁରୀ ସମ୍ପାଦକ, ୩୧ ଜଣିଆ କାର୍ଯ୍ୟକାରୀ କମିଟି ୧୧୦ ଜଣିଆ ରାଜ୍ୟ ପରିଷଦ ଓ ୯ ଜଣିଆ ସେକ୍ରେଟେରିଏଟ ଗଠନ । ୨୩ରେ ବାଲିଯାତ୍ରା ପଡ଼ିଆରେ ବିରାଟ ଜନସମାବେଶ । ରାଜ୍ୟ ନେତାମାନଙ୍କ ସମେତ ହୋମିଦାଜୀ ଓ ନାରାୟଣ ଚୌବେଙ୍କ ଉଦ୍‌ବୋଧ ।

ମାର୍ଚ୍ଚରେ ବାଙ୍କିରେ କମ୍ୟୁନିଷ୍ଟନେତା ଅଭିମନ୍ୟୁ ମହାପାତ୍ରଙ୍କ ଉପରେ ପୁଲିସ ମାଡ଼ର ଘୋର ପ୍ରତିବାଦ ୧୦୫ ଜଣ ପାର୍ଟି ସମର୍ଥକଙ୍କ ପ୍ରତିବାଦ ଅନଶନ ।

ମାର୍ଚ୍ଚ ୨୭ରେ ଏ ଆଇଏସ୍‌ଏଫ ସମେତ ବିଭିନ୍ନ ସଂଗଠନର ରାଜଧାନୀରେ ବିକ୍ଷୋଭ, ବହୁ ଛାତ୍ର ଗିରଫ । ଏପ୍ରିଲ ୪ରେ ରାଜ୍ୟର ୬ ଲକ୍ଷ ଶିକ୍ଷକଙ୍କ ପକ୍ଷରୁ ରାଜ୍ୟସାରା ଆନ୍ଦୋଳନ ଓ ମାର୍ଚ୍ଚ ୨୯ରେ ୩୦ ହଜାର ଶିକ୍ଷକଙ୍କ ରାଜଧାନୀରେ ବିକ୍ଷୋଭ ପାର୍ଟିର ସମର୍ଥନ ।

ବଲାଙ୍ଗିର ଓ କୁଜଙ୍ଗରେ ଯୁବଶିକ୍ଷା ଶିବିର- ରାଉରକେଲାରେ ଏପ୍ରିଲ ୨୨ ରୁ ୨୪ ଯାଏ ଆଭା ଛାତ୍ର ସଂଘର ପୂର୍ବାଞ୍ଚଳ ୫ମ ସମ୍ମିଳନୀ ।

ମାର୍ଚ୍ଚ ୬ ରୁ ୧୨ ଯାଏ କଲିକତା ମହାନଗରୀର ସୋମନାଥ ଲହିଡ଼ୀନଗରରେ ଚତୁର୍ଦ୍ଦଶ ପାର୍ଟି କଂଗ୍ରେସରେ ଓଡ଼ିଶାର ୩୨ ଜଣ ପ୍ରତିନିଧି ଅଂଶଗ୍ରହଣ । ୩ ଲକ୍ଷ ଜନତାର ବିଶାଳ ସମାବେଶ । ରାଜେଶ୍ୱର ରାଓ, ଇନ୍ଦ୍ରଜିତ ଗୁପ୍ତା, ଚତୁରାନନ୍ଦ ମିଶ୍ର ପ୍ରମୁଖଙ୍କ ଉଦ୍‌ବୋଧନ ।

ଅପ୍ରେଲ ୮/୯ରେ ରାଜ୍ୟ ପରିଷଦ । କଟକରେ ମଇ ୨ ରୁ ଏକ ସପ୍ତାହ ପାର୍ଟି ପାଣ୍ଠି

ସଂଗ୍ରହ । ୨୪ ପ୍ରଥମାର୍ଦ୍ଧରେ ଭୂମି ଅନ୍ଦୋଳନ । ମଇ ପହିଲାରେ ବ୍ୟାପକ ଜନସମାଗମ । ତାଲାବନ୍ଦ, କ୍ଲୋଜର, ବିଜୁଳି ସଙ୍କଟ, ପାନୀୟଜଳ ସଙ୍କଟ; ଦୁର୍ଭିକ୍ଷ ଅନାହାର ବିରୁଦ୍ଧରେ ସଂଗ୍ରାମର ଡାକରା ।

ଏପ୍ରିଲ ୨୩-୨୪ରେ ରାଉରକେଲାର ୫ମ ରାଜ୍ୟ ଯୁବ ସଂଘ ସମ୍ମିଳନୀ । ସିପିଆଇ, ସିପିଏମ୍‌ର ମିଳିତ ଆନ୍ଦୋଳନର ନିଷ୍ପତ୍ତି ।

ଗଞ୍ଜାମ ଜିଲ୍ଲା କୁଶାପାଲିରେ ଚାଷୀଙ୍କ ଉପରେ ପୁଲିସ ଦମନଲୀଳା । ଆଦିବାସୀ ପିଲଙ୍କୁ ବିକ୍ରି କରିଥିବା ଅସାମାଜିକ ଲୋକଙ୍କ ବିରୁଦ୍ଧରେ ପାର୍ଟି ସାଥୀ ଲୋକନାଥ ଆଚାରୀ ପୁଲିସକୁ ଜଣାଇ ମୁକ୍ତ କରିବାକୁ ଦାବୀ କଲାବେଳେ ତାଙ୍କ ଉପରେ ମରଣାନ୍ତକ ଆକ୍ରମଣ ।

ମଇ ୨୫ରେ ଦୁଇ ପାର୍ଟିର ଏଗାରଦଫା ଜନଦାବୀ ଘେଡ଼ି ଛତ୍ରପୁର, ପୁରୀ, ଢେଙ୍କାନାଳ, ବାଲେଶ୍ୱର, କଟକ ପ୍ରଭୃତି ଜିଲ୍ଲାରେ ଜିଲ୍ଲାପାଳଙ୍କୁ ସ୍ମାରକଲିପି ପ୍ରଦାନ ।

ବାଲେଶ୍ୱରର ଘୂର୍ଣ୍ଣିବାତ୍ୟାରେ ବିପନ୍ନ ଲୋକଙ୍କ ଥଇଥାନ ଲାଗି ଶାଖା ପାର୍ଟି ଗୁଡ଼ିକର ବିକ୍ଷୋଭ ସଭା । ପାରାଦୀପରେ ଉଚ୍ଛେଦ ଚାଷୀମାନଙ୍କ ବିରାଟ ବିକ୍ଷୋଭ- ପୁରୀ, କଟକ, ବାଲେଶ୍ୱରରେ ବାତ୍ୟା ଯୋଗୁ ବ୍ୟାପକ କ୍ଷୟକ୍ଷତିର ପ୍ରତିକାର ଲାଗି ପ୍ରପୀଡିତ ଅଞ୍ଚଳରେ ପାର୍ଟି ପକ୍ଷରୁ ବିକ୍ଷୋଭ ଧାରଣା । ଜୁନ ୨୧ରେ ଖୋର୍ଦ୍ଧାରେ ବିକ୍ଷୋଭ ।

ଜୁନ ୬ ତାରିଖରେ ବଲାଙ୍ଗିରରେ ଏ.ଆଇ.ଏସ.ଏଫ. ଏବଂ ଅ.ଭା. ଯୁବସଂଘ ପକ୍ଷରୁ ଜିଲ୍ଲାପାଳଙ୍କ ଅଫିସ ସମ୍ମୁଖରେ ବିକ୍ଷୋଭ । ବ୍ରହ୍ମଗିରି ବ୍ଲକକୁ ସିପିଆଇ ପକ୍ଷରୁ ବିଭିନ୍ନ ଦାବୀ ଘେନି ଘେରାଉ ।

ଜୁନ୍ ୧୧ ତାରିଖରେ କଟକ ଜବାହରଲାଲ ନେହେରୁ ଷ୍ଟାଡ଼ିୟମରେ ଜନତାଦଳ, ସିପିଆଓ ଏବଂ ସିପିଆଇ (ଏମ୍)ର ୪ ହଜାର ଯାଏ ନେତା କର୍ମୀ, ମହିଳା ଯୁବକଙ୍କ ମିଳିତ ସମାବେଶ । କେନ୍ଦ୍ର ଓ ରାଜ୍ୟରୁ କଂଗ୍ରେସ ଶାସନକୁ ହଟାଇବା ଓ ଦେଶରେ ଏକ ପ୍ରଗତିଶୀଳ ବିକଳ୍ପ ପ୍ରିଷ୍ଠା କରିବାର ରାଜନୈତିକ ସ୍ଲୋଗାନ ଦେଇ ଏହି ସମାବେଶ ବିଶେଷ ସଫଳତା ଅର୍ଜନ କରିଥିଲା । ସିପିଆଇ ପକ୍ଷରୁ କଟକ ଜିଲ୍ଲାରୁ ୪୫୦, ବାଲେଶ୍ୱରରୁ ୧୫୦, ପୁରୀରୁ ୨୨୦୦, ଗଞ୍ଜାମରୁ ୨୫୦, ଢେଙ୍କାନାଳରୁ ୧୦୦, ସମ୍ବଲପୁରରୁ ୬୦, ମୟୂରଭଞ୍ଜରୁ ୩୦, କେଉଁଝରରୁ ୩୦, କୋରାପୁଟରୁ ୧୦ ଜଣ ସାଥୀ ଯୋଗ ଦେଇଥିଲେ ।

ଜୁନ ୨୬ ତାରିଖରେ ଏହି ତିନି ପାର୍ଟିର ନେତା ଓ କର୍ମୀମାନେ କଂଗ୍ରେସ (ଇ) ପକ୍ଷରୁ ଗଣମାଧ୍ୟମର ଦୁରୋପଯୋଗ ବିରୁଦ୍ଧରେ ବ୍ୟାପକ ବିକ୍ଷୋଭ - ଏହି ବିକ୍ଷୋଭ କଟକର ଦୂରଦର୍ଶନ, ସମ୍ବଲପୁରର ଦୂରଦର୍ଶନ ତଥା ବେତାର କେନ୍ଦ୍ର ବ୍ୟତୀତ ବ୍ରହ୍ମପୁର, ବାଲେଶ୍ୱର ପ୍ରଭୃତିରେ ଅନୁଷ୍ଠିତ ।

ସମ୍ବଲପୁରର ରେଙ୍ଗାଲି ଓ ବେଣାରେ ଠିକାଦାରମାନଙ୍କ ପକ୍ଷରୁ ଠିକା ଶ୍ରମିକମାନଙ୍କ

ଉପରେ ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ପାର୍ଟିର ବିକ୍ଷୋଭ । ରେଙ୍ଗାଲି ବ୍ଲକ ଘେରାଉ ।

ସମ୍ବଲପୁରର ଇବ ତାପଜ ବିଦ୍ୟୁତ୍‌କେନ୍ଦ୍ର ସ୍ଥାପନ ଫଳରେ ହୀରାକୁଦରୁ ଗତ ୩୦ ବର୍ଷରୁ ଊର୍ଦ୍ଧ୍ୱକାଳ ହେଲା ବାସଚ୍ୟୁତ ଲୋକ ଏ ପର୍ଯ୍ୟନ୍ତ କ୍ଷତିପୂରଣ ନ ପାଇ ଯେଉଁ ନୂତନ ଗ୍ରାମ ବସତିରେ ରହୁଛନ୍ତି- ସେମାନଙ୍କୁ ଉଚ୍ଛେଦ କରାଯାଉଥିବାରୁ ତା'ର ତୀବ୍ର ପ୍ରତିବାଦ ଓ ପ୍ରତିରୋଧରେ ପାର୍ଟିର ଗୁରୁତ୍ୱପୂର୍ଣ୍ଣ ଭୂମିକା । ହଜାର ହଜାର ଲୋକଙ୍କ ଧାରଣା । ସତ୍ୟାଗ୍ରହ ସଶସ୍ତ୍ର ବାହିନୀ ମୁତୟନ- ଶହ ଶହ ସଂଖ୍ୟାରେ ମହିଳାଙ୍କ ସହିତ ସହସ୍ରାଧିକ ଗିରଫ ।

ଜୁନ୍ ୨୧ ରେ ପାର୍ଟି ପକ୍ଷରୁ ଖୋର୍ଦ୍ଧାରେ ଏସଡ଼ିଓ ଅଫିସ ଘେରାଉ । ମୟୂରଭଞ୍ଜର ବାରିପଦାର କିଶୋର ସଂଘର ପ୍ରଥମ ସମ୍ମିଳନୀ ।

ଜୁଲାଇ ୭/୮ ରେ ବ୍ରହ୍ମପୁରରେ ଏଆଇଟିୟୁସିର ୬ଷ୍ଠ ସମ୍ମିଳନୀ ଅନୁଷ୍ଠିତ । ବିରାଟ ସଭା ଓ ଶୋଭାଯାତ୍ରା ଗଞ୍ଜାମରେ ୩ ଟି ପାର୍ଟିର କନ୍‌ଭେନ୍‌ସନ୍ ।

ଏହି ମାସରେ ପାରଳାଖେମୁଣ୍ଡି ଅଫିସ ଘେରାଉ । କୁଶାପାଲିରେ ସିଲିଂ ବର୍ହିଭୂତ ଜମି ଦଖଲ । ୪୭ଟି ଗ୍ରାମର ଦେଢ଼ ହଜାର ଚାଷୀ ପଟୁଆର କରି ହଳହଡ଼ା ସହ ଲାଲ ପତାକା ହାତରେ ଧରି ଦଖଲ ଅଭିଯାନ ।

ଜୁଲାଇ ୧ରୁ ୧୫ ଯାଏ ଯୁବ ଛାତ୍ର ଅଧିକାର ଦିବସଟି ଗୋପାଳପୁର, ଏରସମା, ଭଦ୍ରକ, ମାଲକାନଗିରି, ବଲାଙ୍ଗିର, ଚାନ୍ଦବାଲି, ବଡ଼ମ୍ବା ପ୍ରଭୃତି ବହୁ ସ୍ଥାନରେ ପାଳିତ ।

ଏହି ମାସରେ ରାଉରକେଲାରେ ୨୨/୨୩ରେ ଇଣ୍ଡୋଜିଡ଼ିଆର ୪ର୍ଥ ରାଜ୍ୟ ସମ୍ମିଳନୀ ବିପୁଳ ସମାରୋହରେ ଅନୁଷ୍ଠିତ ।

ଜୁଲାଇରେ ମଧ୍ୟ ୨୮/୨୯ରେ ବୋଲଗଡ଼, ବେଗୁନିଆରେ କ୍ଷେତ ମୂଲିଆ ବିକ୍ଷୋଭ ।

ରାଜଧାନୀ ଭୁବନେଶ୍ୱରରେ ୨୯ ଜୁଲାଇରେ ଇପିକଲ ଶ୍ରମିକଙ୍କ ବିକ୍ଷୋଭ ।

ଅଗଷ୍ଟ ୯ରେ, ଭାରତର ୪ଟି ବାମପନ୍ଥୀ ଦଳ ସି.ପି.ଆଇ, ସିପିଏମ୍, ଫରୱାର୍ଡ଼ ବ୍ଲକ୍, ଆରଏସପି ଏକତ୍ର ଅଗଷ୍ଟ ୯ରେ ଭାରତ ବଞ୍ଚାଅ ଏବଂ ସେପ୍ଟେମ୍ବର ୧୧ ରେ ଆଇନ ଅମାନ୍ୟର କର୍ମସୂଚୀ ନେଇଥିଲେ । ଜନତା ଦଳ ମଧ୍ୟ ଏଥିରେ ସଂପୃକ୍ତ ହୋଇଥିଲା ।

ଅଗଷ୍ଟ ୯ ତାରିଖରେ ଭାରତ ବଞ୍ଚାଅ ଦିବସରେ ରାଜଧାନୀରେ ସିପିଆଇ, ସିପିଏମ୍, ଦଳ ଜନତା ଦଳର ଏକ ସଭାରେ ବିଜୁ ପଟ୍ଟନାୟକ, ଲୋକନାଥ ଚୌଧୁରୀ, ଶିବାଜୀ ପଟ୍ଟନାୟକ ପ୍ରମୁଖ କଂଗ୍ରେସ-ଇ କୁଶାସନକୁ ହଟାଇବାକୁ ଆହ୍ୱାନ କରିଥିଲେ ।

ଅଗଷ୍ଟ ୮ରେ କାକଟପୁରରେ ଓ ତା'ପରେ କୋରାପୁଟର ବୈଦାରିଗୁଡାରେ ପାର୍ଟି ପକ୍ଷରୁ ଗଣ ବିକ୍ଷୋଭ ଅନୁଷ୍ଠିତ ।

ଅଗଷ୍ଟ ୩୦ ଭାରତ ବନ୍ଦର ଡାକରା ଜାତୀୟ ସାମ୍ମୁଖ୍ୟ ଓ ବାମନ୍ଥୀ ୪ ଟିଦଳ ପକ୍ଷରୁ ଦିଆଯାଇଥିଲା । ଏଥିରେ ସାରା ଭାରତରେ ୧ ଲକ୍ଷ କର୍ମୀ ଗିରଫ । ଓଡ଼ିଶାର ପ୍ରତ୍ୟେକ

ଜିଲ୍ଲାରେ ବନ୍ଦ ସଫଳ ହୋଇଥିଲା । ସିପିଆଇ ରାଜ୍ୟର କାମ କରୁଥିବା ପ୍ରତ୍ୟେକ ସ୍ଥାନରେ ଏହାକୁ ସଫଳ କରିବାକୁ ପ୍ରାଣପଣେ ଉଦ୍ୟମ କରିଥିଲେ । କଟକ, ପୁରୀ, ଢେଙ୍କାନାଳ, ବ୍ରହ୍ମପୁର, ସମ୍ବଲପୁର, ସୁନ୍ଦରଗଡ଼, ମୟୂରଭଞ୍ଜ, କେଉଁଝର, ଢେଙ୍କାନାଳ, ବଲାଙ୍ଗିର, ଜିଲ୍ଲାର ମୁଖ୍ୟ ସହର ଛଡ଼ା ପାର୍ଟି ଶାଖା ନିମାପଡ଼ା, ଗୋପ, କାକଟପୁର, ବୋଲଗଡ଼, ବ୍ରହ୍ମଗିରି, ବେଗୁନିଆ, ଦଶପଲ୍ଲା, ଜୁନାଗଡ଼, ପାରାଦୀପ, ଏରସମା, କୁଜଙ୍ଗ, ଜଗତ୍‌ସିଂହପୁର, ଭଞ୍ଜନଗର, ବାରିପଦା, ଭଦ୍ରକ, ନିଶ୍ଚିନ୍ତକୋଇଲି, ବଡ଼ମ୍ବା, ଟିଟିଲାଗଡ଼, ବାଙ୍ଗିରପୋଷି, ବ୍ରଜରାଜନଗର, ମଙ୍ଗଳପୁର ପ୍ରଭୃତି ଶତାଧିକ ସ୍ଥାନରେ ଏହି ବନ୍ଦକୁ ସଫଳ କରିଥିଲେ ।

ଅଗଷ୍ଟ ମାସରେ ଗୋବିନ୍ଦପୁରର ଖଣ୍ଡାପଡ଼ା ଓ ବେଗୁନିଆରେ ଗଣ ବିକ୍ଷୋଭ ।

ସେପ୍ଟେମ୍ବର ୬ରେ ଏ ଆଇଏସଏଫ ପକ୍ଷରୁ ବେକାରୀ, ଶିକ୍ଷା ସଙ୍କୋଚନ, ପରୀକ୍ଷା ମୂଲ୍ୟାୟନ ଇତ୍ୟାଦି ଦାବି ଘେନି ଅଭିଯାନ ।

ପୁରୀଠାରେ ୨୭.୮.୮୦ରେ ରାଜ୍ୟ ସ୍ତରୀୟ କୃଷକ ସମାବେଶରେ ୱାଇ.କ୍ରିସ୍ତାରାଓଙ୍କ ଯୋଗଦାନ ।

କଟକ ଓ ବାଲେଶ୍ୱର ଜିଲ୍ଲା ବେଳାଭୂମିରେ ଜଙ୍ଗଲ ଭାଙ୍ଗି ଚାଷ କରୁଥିବା ୪୫ ହଜାର ଏକର ଜମିକୁ କଂଗ୍ରେସ (ଇ) ସରକାର ଚାଷୀମାନଙ୍କୁ ପୁଲିସ ଓ ରାଜସ୍ୱ ବିଭାଗ ଜରିଆରେ ଉଚ୍ଛେଦ କରୁଥିବାରୁ କଟକ ଜିଲ୍ଲା ପାର୍ଟିର ପ୍ରତିରୋଧ, ପ୍ରତିବାଦ ଓ ବିକ୍ଷୋଭ ।

ଅଗଷ୍ଟ ୩୦ରେ ଗୋବିନ୍ଦପୁର ଓ ନିମାପଡ଼ାର ମିଳନସ୍ଥଳୀ ଚନ୍ଦ୍ରମୌଳିଠାରେ ବିରାଟ ପଟୁଆର ସହ ୪୦ ହଜାର ଜନତାର ଅବିସ୍ମରଣୀୟ ସମାବେଶରେ ତିନି ଦଳର ନେତୃବୃନ୍ଦଙ୍କ ଆଗାମୀ ସଂସଦ ନିର୍ବାଚନରେ କଂଗ୍ରେସକୁ ପରାସ୍ତ କରିବାକୁ ଆହ୍ୱାନ । ଲୋକନାଥ ଚୌଧୁରୀଙ୍କୁ ବିଜୟମଣ୍ଡିତ କରିବାକୁ ବିଜୁ ପଟ୍ଟନାୟକ ଶିବାଜୀ ପଟ୍ଟନାୟକ (ସିପିଏମ୍) ନେତା ଓ ସିପିଆଇ ନେତାମାନଙ୍କ ନିବେଦନ ।

ଭୁବନରେ ୨୧୪ ଜଣ ସାଥୀଙ୍କ ଗିରଫ ।

ସେପ୍ଟେମ୍ବର ୧୨ରେ କଟକରେ ଏଆଇଏସଏଫର କନଭେନସନ । ୩୧ଟି ଘେନି ସେପ୍ଟେମ୍ବର ୧୩ରେ ବଲାଙ୍ଗିରରେ ବିକ୍ଷୋଭ । ଏହି ମାସରେ ଦିଗପହଣ୍ଡି, ଢେଙ୍କାନାଳ, କୁଜଙ୍ଗରେ ପାର୍ଟି ପକ୍ଷରୁ ବିକ୍ଷୋଭ ।

ସେପ୍ଟେମ୍ବର ୨୬ରେ ରାଜ୍ୟବ୍ୟାପୀ ବିରାଟ ଆଇନ ଅମାନ୍ୟ । କଟକରେ ଜୁନ ୧୧ରେ ୩ ପାର୍ଟିର କନ୍‌ଭେନ୍‌ସନରେ ଗୃହୀତ ୧୮ ଦଫା କର୍ମଚାରୀ ରୂପାୟନ ଦାବୀ କରି ଏହି ସତ୍ୟାଗ୍ରହରେ ୩ ପାର୍ଟିର ୫ ଲକ୍ଷରୁ ଅଧିକ ଲୋକ ପଟୁଆର । ସତ୍ୟାଗ୍ରହ ବିକ୍ଷୋଭରେ ଯୋଗ ଦେଇଥିଲେ । ୨ ଲକ୍ଷ ଯାଏ ସତ୍ୟାଗ୍ରହୀଙ୍କୁ ଗିରଫ କରାଯାଇଥିଲା । ବିଭିନ୍ନ ସ୍ଥାନରେ ଲାଠି ଚାଳନା କରାଯାଇଥିଲା । କେବଳ ନରସିଂହପୁରରେ ସିପିଆଇ ୬୦ ଜଣ ଆହତ ହୋଇଥିଲେ ।

ପାର୍ଟି ପକ୍ଷରୁ ସେପ୍ଟେମ୍ବର ୨୭ ଆଇନ ଅମାନ୍ୟରେ ପାର୍ଟିର ସାଥୀ ସମର୍ଥକମାନେ ବିଶେଷ ସକ୍ରିୟ । ଏରସମା, କୁଜଙ୍ଗ, ଗଣିଆ, ଦଶପଲ୍ଲା, ନିଆଳି, ଧାନମଣ୍ଡଳ, ଜାରକା, ଭୁବନେଶ୍ୱର ଓ କଟକରେ ବହୁ ସାଥୀ ଗିରଫ । ତିର୍ତ୍ତୋଲ-ଜଗତ୍‌ସିଂହପୁର, କାକଟପୁର, ଶେରଗଡ଼, ଆସିକା, ତିଗିରିଆ, ଆଠଗଡ଼, ବଡ଼ମ୍ବା, ନରସିଂହପୁର, ଗୋପ, ଅସ୍ତରଙ୍ଗ, ବୋଲଗଡ଼, ବ୍ରହ୍ମଗିରି, କୁଜଙ୍ଗ, ତିର୍ତ୍ତୋଲ, ଏରସମା, ଛତ୍ରପୁର, କବିସୂର୍ଯ୍ୟନଗର, ଖଲିକୋଟ, ବାରିପଦା, ବହଳଦା, ବାଙ୍ଗିରିପୋଷି, ଭଦ୍ରକ ତିହିଡ଼ି, କେଉଁଝର, ଯୋଡା, ଶୁଆ କାଠି, ବଡ଼ବିଲ, ଓଡ଼ପଡ଼ାଓ ଅନ୍ୟ ସ୍ଥାନଗୁଡ଼ିକରେ ପାର୍ଟିର ବହୁ କର୍ମୀ ଭାଗ ନେଇଥିଲେ ।

ଅକ୍ଟୋବରରେ ପୁରୀ ଜିଲ୍ଲା ଯୁବକ ସଂଘ ପକ୍ଷରୁ ବିକ୍ଷୋଭ । ବଲାଙ୍ଗିରର ସଇଁତଲାରେ ଯୁବକ ସଂଘର ୨୬ଟି ଶାଖାର ଚାରି ଶତାଧିକ ଯୁବକସଂଘ ସକ୍ରିୟ କର୍ମୀଙ୍କ ସମାବେଶ ।

ଅକ୍ଟୋବର ଓ ନଭେମ୍ବର ମାସ ଦୁଇଟିରେ ବିଭିନ୍ନ ଜିଲ୍ଲାରେ ଜନତାଦଳ ଓ ଭୁବନେଶ୍ୱରରେ ସିପିଏମ ପ୍ରାର୍ଥୀଙ୍କ ସପକ୍ଷରେ ପ୍ରତି ନିର୍ବାଚନ ମଣ୍ଡଳୀରେ ପାର୍ଟି ସଭା ସମାବେଶ ଏବଂ ଅଭିଯାନ ।

ଜଗତ୍‌ସିଂହପୁର ନିର୍ବାଚନରେ ପ୍ରସ୍ତୁତ ପର୍ବରେ ତାଳଦଣ୍ଡା, ମଣିଜଙ୍ଗ, ଶଙ୍ଖେଶ୍ୱର, ବିରିଡ଼ି, ବାଲିକୁଦା, ଜଗତ୍‌ସିଂହପୁର, ନାଗପୁର, କାଜଙ୍ଗ, ନିଆଳି, ତିର୍ତ୍ତୋଲ, ରାହାମା, ନିମାପଡ଼ା, କାକଟପୁର, ଗୋପ, ପାରାଦ୍ୱୀପରେ ପ୍ରଥମେ ପାର୍ଟି କାଡ଼ର ଓ ଏସବୁ ସ୍ଥାନରେ ସିପିଆଇ ଜନତା ଦଳ ଏବଂ ଯେଉଁଠି ସିପିଏମ୍ ରହିଛି ସେଠାରେ ତ୍ରିଦଳୀୟ କର୍ମୀ ସମାବେଶ ।

ପାର୍ଟି ପକ୍ଷରୁ ନିର୍ବାଚନ ପାଣ୍ଠି ଲାଗି ଆହ୍ୱାନ । ପ୍ରତ୍ୟୋକ ରାଜ୍ୟ ପରିଷଦ ସଭ୍ୟଙ୍କୁ ଏକ ହଜାର ଟଙ୍କା ଦେବା ଓ ବାହାରୁ ପାଣ୍ଠି ସଂଗ୍ରହ କରିବାକୁ ଡାକରା ।

ଚନ୍ଦ୍ରମୌଳିର ବିରାଟ ସମାବେଶରେ ନଭେମ୍ବର ୮ରେ ଜଗତ୍‌ସିଂହପୁର ଠାରେ (ଯୋଗଦାନ ୧୫ ହଜାର), ନାଉଗାଁ (ଯୋଗଦାନ ୫ ହଜାର) ଓ ରାହାମ (ଯୋଗଦାନ ୬୦ ହଜାର) ଜନତାର ଉଲ୍ଲାସ, ସଂକଳ୍ପ ଓ ତ୍ରିଦଳୀୟ ନେତାମାନଙ୍କ ଉଦ୍‌ବୋଧନ-

ପାର୍ଟିର ନିର୍ବାଚନରେ ପରାଜୟ ସୁନିଶ୍ଚିତ ଜାଣି କଂଗ୍ରେସ (ଇ)ର ନିର୍ବାଚନ ପୂର୍ବରୁ ଓ ତା' ପରେ ପାର୍ଟି ସାକ୍ଷୀଙ୍କ ଉପରେ ମାରିଦେବା ପାଇଁ ଆକ୍ରମଣ-

ନିମାପଡ଼ା, କାକଟପୁର, ତିର୍ତ୍ତୋଲ, ବଲାଙ୍ଗିରରେ ପ୍ରଚଣ୍ଡ ଆକ୍ରମଣ ।

ବାଲିକୁଦାର ନହରଣାରେ କଂଗ୍ରେସ (ଇ) ଗୁଣ୍ଡାଙ୍କ ଦ୍ୱାରା ଯୁବସାଥୀ କୃଷ୍ଣ ଚନ୍ଦ୍ର ପରିଡ଼ାଙ୍କ ମୃତ୍ୟୁ -ଆଉ ଜଣେ ସାଥୀ ମରଣ ମୁହଁରୁ ରକ୍ଷା । ତାଙ୍କର ଏକାଦଶାହରେ ବିରାଟ ଜନସଭା । ବଲାଙ୍ଗିରରେ କଂଗ୍ରେସ ମନ୍ତ୍ରୀଙ୍କ ପ୍ରରୋଚନାରେ ଗୁଳିକାଣ୍ଡରେ ୨ ଜଣ ନିହତ ଓ ପାର୍ଟି ପକ୍ଷରୁ ତା'ର ପ୍ରତିବାଦ ।

ନଭେମ୍ବର ୨୨ରେ ଭୋଟ ଗଣତି । ଏହି ନିର୍ବାଚନରେ ସିପିଆଇ ପ୍ରାର୍ଥୀ ରାଜ୍ୟରେ

ସବୁଠାରୁ ଅଧିକ ଭୋଟ ପାଇଥିଲେ । ପାର୍ଟି ୪୦୮୦୫୭ଟି ଭୋଟ ପାଇଥିବା ବେଳେ କଂଗ୍ରେସ (ଇ) ୨୫୯୯୨୦ ଟି ଭୋଟ ପାଇଥିଲା ।

ବିଧାନସଭା ଓ୍ୟାରି ପାର୍ଟିର କଂଗ୍ରେସ (ଇ) ପ୍ରାର୍ଥୀଙ୍କ ଠାରୁ ଅଧିକ ଭୋଟ ସଂଖ୍ୟା ହେଲା - ଏରସମା ୪୨୫୨୭, ନିମାପଡ଼ା ୨୮୯୨୨, ଜଗତ୍‌ସିଂହପୁର। ୨୩୩୫୭, ବାଲିକୁଦା ୨୨୪୨୭, ତିର୍ତ୍ତୋଲ ୭୨୬୨ । ସିପିପିଏମ ପ୍ରାର୍ଥୀ ଶିବାଜୀ ପଟ୍ଟନାୟକ ଭୁବନେଶ୍ୱରରୁ ଏବଂ ୧୬ ଜଣ ଜନତା ଦଳ ଏମ୍‌ପି ନିର୍ବାଚିତ ।

ଏହି ବର୍ଷରେ ଆମ ରାଜ୍ୟ ପାର୍ଟିର ପ୍ରଖ୍ୟାତ ନେତା ଗଞ୍ଜାମର ବୟୋଜ୍ୟେଷ୍ଠ ସର୍ବଜନ ସମ୍ମାନିତ ସାଥୀ ହରି ପତ୍ରୀ ଆଠଗଡ଼ର ପ୍ରଜାମଣ୍ଡଳ ଓ ପାର୍ଟି ନେତା ଲମ୍ବୋଦର ପରିଡ଼ା, ଗଞ୍ଜାମର ଚିନାକ୍ଲୁର ହାଡୁପାତ୍ର ଓ ଚାନ୍ଦବାଲିର ସାଥୀ ନରହରି ସାହୁଙ୍କ ମୃତ୍ୟୁ । କେନ୍ଦ୍ରୀୟ ନେତା ୯୭ ବର୍ଷ ବୟସ୍କ ଓ ୩୪ ବର୍ଷ ହେଲା ଓ ଅଜ୍ଞାତବାସ କରିଥିବା କଃ. ପୃଥ୍ୱି ସିଂହ ଆଜାଦ ଏବଂ ୧୯୪୨ରେ ଉତ୍ତର ପ୍ରଦେଶର କାଲିଆରେ ସାମନ୍ତରାଳ ସରକାର ଗଢ଼ିଥିବା କମ୍ୟୁନିଷ୍ଟ ନେତା ସରସ୍ୱ ପାଣ୍ଡେ ମୃତ୍ୟୁ ।

**୧୯୯୦**

ଜାନୁଆରୀ ୨୯ରୁ ଚାରିଦିନ କାଳ ସିପିଆଇ ଜାତୀୟ ପରିଷଦର ଅଧିବେଶନ ୯ମ ଲୋକସଭା ନିର୍ବାଚନର ସମୀକ୍ଷା କରି ଜାତୀୟ ସାମ୍ମୁଖ୍ୟ ସରକାର ପ୍ରତି ପାର୍ଟିର ସହଯୋଗମୂଳକ ଦୃଷ୍ଟିଭଙ୍ଗୀ କ'ଣ ହେବ ଓ ବାମ ଓ ଗଣତାନ୍ତ୍ରିକ ଐକ୍ୟକୁ କିପରି ଦୃଢ଼ତର କରାଯାଇ ଦେଶର ଐକ୍ୟ ଅଖଣ୍ଡତା, ସୁରକ୍ଷା, ନୂତନ ଅର୍ଥନୈତିକ ନୀତି ଗ୍ରହଣ କରାଯିବ ତାହାର କର୍ମକୌଶଳ ନିର୍ଣ୍ଣୟ ।

ଏହି ମାସରେ ରାଜ୍ୟରେ ପାର୍ଟି ସଭ୍ୟ ନବୀକରଣ ଓ ଶାଖା ସମ୍ମିଳନୀ ଗୁଡ଼ିକର ଅନୁଷ୍ଠିତ ହେଲା ।

କଟକ ଜିଲ୍ଲା ବାଲିଚନ୍ଦ୍ରପୁରଠାରେ ଆଞ୍ଚଳିକ ଯୁବସଂଘ ସମ୍ମିଳନୀ ଅନୁଷ୍ଠିତ । ବାଲେଶ୍ୱରର ବାସୁଦେବପୁର ଓ ଝରଣରେ ସମବାୟ ଋଣ ଆଦାୟ ଜୁଲମ୍ ବିରୁଦ୍ଧରେ ଆନ୍ଦୋଳନ । କୋରାପୁଟର ମେଣ୍ଡିକାର, ସମ୍ବଲପୁରର ଫିରିଙ୍ଗିମାଳ, ବେଗୁନିଆରେ ଗଣବିକ୍ଷୋଭ । ପୁରୀ ଜିଲ୍ଲା ପାର୍ଟି ପକ୍ଷରୁ ଧନେଶ୍ୱର ମହାନ୍ତିଙ୍କୁ ପାର୍ଟିରୁ ବହିଷ୍କାର ।

ଜାନୁଆରୀ ୨୧ରେ ପାର୍ଟି ରାଜ୍ୟ ପରିଷଦ ବୈଠକରେ ନିର୍ବାଚନ ସମୀକ୍ଷା ସାଙ୍ଗକୁ ଆଗାମୀ ରାଜ୍ୟ ବିଧାନସଭା ନିର୍ବାଚନରେ ସିପିଆଇ, ସିପିଆଇଏମ୍ ଏବଂ ଜନତା ଦଳର ନିର୍ବାଚନ ବୁଝାମଣା ଭିତ୍ତିରେ ଚୂଡ଼ାନ୍ତ ଭାବରେ ୯ଟି ବିଧାନସଭା ଆସନରେ ପାର୍ଟିର ପ୍ରାର୍ଥୀ ନିଷ୍ପତ୍ତି । ବୁଝାମଣା ଏବଂ ଅନ୍ୟତ୍ର ସିପିଏମ୍ ଲାଗି ନିର୍ଦ୍ଧାରିତ ସ୍ଥାନରେ ଉକ୍ତ ଦଳକୁ ଓ ବାକି ସବୁ ଆସନରେ ଜନତା ଦଳକୁ ସମର୍ଥନ କରି କଂଗ୍ରେସ-ଇ କୁ ପରାସ୍ତ କରିବାର କର୍ମକୌଶଳ ।

ବୋଲଗଡ଼ ବେଗୁନିଆରେ ପାର୍ଟିର ପ୍ରାର୍ଥୀ ନ ଦିଆଯିବାରୁ କେତେକ ସାଥୀଙ୍କ ଅସନ୍ତୋଷ ଓ ପାର୍ଟିରୁ ଇସ୍ତଫା ଦାନ ମାତ୍ର ପରେ ଇସ୍ତଫା ପ୍ରତ୍ୟାହାର । ପାର୍ଟି ଶୃଙ୍ଖଳା ରକ୍ଷା କରାଯିବ ବୋଲି ଜିଲ୍ଲା ସମ୍ପାଦକଙ୍କ ପକ୍ଷରୁ ସାଧାରଣ ବିଜ୍ଞପ୍ତି ।

ଆସନ ଓ ପ୍ରାର୍ଥୀଙ୍କ ତାଲିକା ହେଲା - ବ୍ରଜରାଜନଗରର ପ୍ରସନଜନ କୁମାର ପଣ୍ଡା, ଝାରସୁଗୁଡ଼ା- ଈଶ୍ୱର ଚନ୍ଦ୍ର ନାୟକ, ବାଲେଶ୍ୱର- ଅରୁଣ ଦେ, ସୋରୋ- ପୀତାମ୍ବର ପଣ୍ଡା, ବସ୍ତା- ଶମ୍ଭୁନାଥ ମହାନ୍ତି, ଛତ୍ରପୁର- ପରଶୁରାମ ପଣ୍ଡା, କବିସୂର୍ଯ୍ୟ ନଗର ନିତ୍ୟାନନ୍ଦ ପ୍ରଧାନ ଓ ବାଙ୍ଗିରିପୋଷି- ରୁଦ୍ରମୋହନ ଦାସ ।

ଏକତରଫା ଭାବରେ ଜନତା ଦଳର ପ୍ରତିଶ୍ରୁତି ଭଙ୍ଗ । ଆମ ପାର୍ଟି ପାଇଁ ନିର୍ଦ୍ଧାରିତ ସୋରୋ, ବସ୍ତା, ବାଙ୍ଗିରିପୋଷି ଓ ଝାରସୁଗୁଡ଼ାରେ ପ୍ରାର୍ଥୀ ଦେବା ଓ ସିପିଏମ୍ ଠାରୁ ଗୋଟିଏ ଆସନ ନେଇଯିବା ଓ ସିପିଏମ୍ ୩ ଟି ଆସନରେ ରାଜି ହୋଇଯିବା ଆଲୋଚିତ । ପାର୍ଟି ବୁଝାମଣାକୁ ଏକ ତରଫା ଭଙ୍ଗକୁ ନାପସନ୍ଦ କରି ୯ଟି ଯାକ ସ୍ଥାନରେ ପ୍ରାର୍ଥୀ ଦେବ ଏବଂ ଜନତା ଦଳ ଲଢୁଥିବା ଓ ଆମ ପାର୍ଟିର ଯଥେଷ୍ଟ ପ୍ରଭାବ ଥିବା ସ୍ଥାନରେ ନିର୍ବାଚନୀ ମୁଝାମଣା ଦୃଷ୍ଟିରୁ ଏବଂ କଂଗ୍ରେସ-ଇକୁ ପରାସ୍ତ କରିବା ଲକ୍ଷ୍ୟରୁ ପ୍ରାର୍ଥୀ ଦେବ ନାହିଁ ଏବଂ ଅନ୍ୟାନ୍ୟ ସବୁ ସ୍ଥାନରେ ସିପିଏମ୍ ଓ ଜନତା ଦଳକୁ ପୂର୍ଣ୍ଣ ପ୍ରାଣ ସମର୍ଥନ ଦେବ ସ୍ଥିର କଲା ।

ଏହି ନିର୍ବାଚନ ଅଭିଯାନରେ କେନ୍ଦ୍ର ଓ ପଶ୍ଚିମବଙ୍ଗ ପାର୍ଟିର ନେତୃବୃନ୍ଦ ଇନ୍ଦ୍ରଜିତ ଗୁପ୍ତ, ଗୁରୁଦାସ ଦାସଗୁପ୍ତ, ଗୀତା ମୁଖାର୍ଜୀ, ପଶ୍ଚିମବଙ୍ଗର ମନ୍ତ୍ରୀ ମହମ୍ମଦ ରେଜା ଭାଗ ନେଇଥିଲେ ।

ପାର୍ଟି ପ୍ରାର୍ଥୀ ପ୍ରସନ୍ନ କୁମାର ପଣ୍ଡା, ଅରୁଣ ଦେ, ନିତ୍ୟାନନ୍ଦ ପ୍ରଧାନ, ଦ୍ୟୁତିକୃଷ୍ଣ ପଣ୍ଡା, ପର୍ଶୁରାମ ପଣ୍ଡା ବିଜୟୀ ହେଲେ । ସୋରରେ ଜନତା ଦଳ ପ୍ରାର୍ଥୀଙ୍କ ଠାରୁ ସିପିଆଇ ଅଧିକ ଭୋଟ ପାଇ ଅଳ୍ପ ସଂଖ୍ୟା ବ୍ୟବଧାନରେ କଂଗ୍ରେସ ବିଜୟୀ ହେଲା ।

ଫେବୃଆରୀ ୧୨ରେ ଖୋର୍ଦ୍ଧା ଏସ୍‌ଡିଓ ଅଫିସ୍ ସମ୍ମୁଖରେ ପାର୍ଟି ପକ୍ଷରୁ ବିକ୍ଷୋଭ । ପାର୍ଟି ବିରୋଧୀ କାର୍ଯ୍ୟ ହେତୁ ବାଲେଶ୍ୱରର ଯୋଗେନ ଦାସଙ୍କୁ ବହିଷ୍କାର । ନିର୍ବାଚନ ପରେ ଛତ୍ରପୁରରେ କଂଗେସ୍ର (ଇ) ଦୁର୍ବୃତ୍ତଙ୍କ ଦ୍ୱାରା ସାଥୀ ଯୁବ ନେତା ନାରାୟଣ ରେଡ୍ଡିଙ୍କ ଉପରେ ଆକ୍ରମଣ ଓ ତା'ର ପ୍ରତିବାଦ ବିକ୍ଷୋଭ । ବିଭିନ୍ନ ସ୍ତରର ଆଲୋଚନା ପରେ ସମସ୍ତ ସ୍ତରରେ ତିନି ପାର୍ଟିର ସମନ୍ୱୟ ରକ୍ଷା କରାଯିବ ମାତ୍ର ସରକାରରେ ପାର୍ଟି ଅଂଶୀଦାର ହେବ ନାହିଁ ବୋଲି ନିର୍ଦ୍ଧାରଣ ଏବଂ ୧୮ ଦଫା କର୍ମସୂଚୀର ରୂପାୟନରେ ପାର୍ଟି ବିଧାନସଭାରେ ସ୍ୱତନ୍ତ୍ର ଆସନରେ ରହି ସରକାରକୁ ଗଠନମୂଳକ ସହଯୋଗ ଦେବାର ନିଷ୍ପତ୍ତି । ବିଧାନସଭାରେ ଦଳର ନେତା ଓ ଉପନେତା ପଦରେ କଃ ପ୍ରସନ୍ନ କୁମାର ପଣ୍ଡା ଓ ଦୂତୀକୃଷ୍ଣ ପଣ୍ଡା ନିର୍ବାଚିତ । ମାର୍ଚ୍ଚ ୬ ରାଜ୍ୟ ପରିଷଦ ବୈଠକର ଏହା ନିର୍ଦ୍ଧାରଣ ।

ମାର୍ଚ୍ଚ ୧୪ରେ ଗୋବିନ୍ଦପୁର ସୁଦୁସାଇଲୋରେ ଯୁବସଂଘ ସମ୍ମିଳନୀ । ଜନତା ଦଳ

ସରକାର ଦ୍ୱାରା ନିମ୍ନତମ ମଜୁରୀ ୨୫ ଟଙ୍କାରୁ ସବୁ କେନ୍ଦ୍ରୀୟ ଟ୍ରେଡ୍ ୟୁନିଅନ୍, କ୍ଷେତମଜଦୁର ୟୁନିଅନ୍ ଓ ପାର୍ଟିର ସମର୍ଥନ ।

ମାର୍ଚ୍ଚ ୨୮ରେ ଝାରସୁଗୁଡ଼ାରେ ସମ୍ବଲପୁର ଜିଲ୍ଲା ପାର୍ଟି ସମ୍ପାଦକ ବ୍ରଜବାହୁ ଶତପଥୀ ଓ ଯୁବ କମ୍ୟୁନିଷ୍ଟ ନେତା ଦେବେନ୍ଦ୍ର ଶତପଥୀଙ୍କ ଉପରେ ସ୍ଥାନୀୟ ଜନତା ଦଳ ଦ୍ୱାରା ପ୍ରଚଣ୍ଡ ଆକ୍ରମଣ ।

୨୭ ଜୁନ୍‌ରେ ରାଜ୍ୟରେ ପୌର ନିର୍ବାଚନ ହେବ ବୋଲି ସରକାରୀ ଘୋଷଣା – ମାତ୍ର ତାହା ପରବର୍ତ୍ତୀ କାଳରେ ଅନିର୍ଦ୍ଦିଷ୍ଟ କାଳ ଲାଗି ସ୍ଥଗିତ ।

୧୯୩ରେ ଭୁବନେଶ୍ୱରଠାରେ ପୁରୀ ଜିଲ୍ଲା କ୍ଷେତମଜଦୁର ସମ୍ମିଳନୀ । ଏପ୍ରିଲରେ ଭୁବନେଶ୍ୱରରେ ଇପିକେସ୍ ଶ୍ରମିକ ୟୁନିଅନ୍‌ର ପ୍ରଥମ ସମ୍ମିଳନୀ ଏବଂ ବ୍ରହ୍ମଗିରିରେ ପାର୍ଟି ଶିକ୍ଷା ଶିବିର । ଧାନ ଦର ବୃଦ୍ଧି ଲାଗି ଓ ଇବ୍ ଥର୍ମାଲ ସ୍ଥାନାନ୍ତର ଲାଗି ପାର୍ଟିର ଦାବୀ । ଗଞ୍ଜାମର ଆଡ଼ପଡ଼ା ଗାଁ'ରେ ଗ୍ରାମ୍ୟ ଗୋଷ୍ଠୀ ବିବାଦରେ ପୁଲିସ୍ ଉପସ୍ଥିତ ଥାଇ ଦୁଇ ଜଣଙ୍କ ନିଧନରେ କମ୍ୟୁନିଷ୍ଟଙ୍କୁ ଗଡ଼ିତ କରାଇବାର ହୀନ ଚକ୍ରାନ୍ତ ବିରୁଦ୍ଧରେ ପ୍ରତିବାଦ । ଏପ୍ରିଲ ୨୧/୨୨ରେ ପୁରୀ ବଗଲା ଧର୍ମଶାଳାରେ କୋଚିନରେ ଅ.ଭା.ଯୁବସଂଘ ଅଧିବେଶନ ପୂର୍ବରୁ ରାଜ୍ୟ କନ୍‌ଭେନ୍‌ସନ । ଏପ୍ରିଲ ୯ରେ କୋରାପୁଟରେ ପାର୍ଟି କାଡ଼ର ସମ୍ମିଳନୀ । ଧାରଣା ସଭା- ଜଗତ୍‌ସିଂହପୁରରେ ଆଞ୍ଚଳିକ ଯୁବ ସମ୍ମିଳନୀ । ମଇ ଦିବସର ଶତବାର୍ଷିକୀ ଉପଲକ୍ଷେ ପାର୍ଟି ଉଦ୍ୟମରେ ଭୁବନେଶ୍ୱର, କଟକ, ବ୍ରହ୍ମପୁର, ବାଲେଶ୍ୱର, ବଡ଼ବିଲ, ଖଲ୍ଲିକୋଟ, ପାଟହାଟ, ମଙ୍ଗଳପୁରରେ, ପାରିପଦା, ଯାଜପୁର ରୋଡ଼, ବଡ଼ମ୍ବା, ମଦନପୁର, ତାଳଚେର, ବ୍ରଜରାଜନଗର, ଓରିଏଣ୍ଟ କୋଲିଆରୀ ପ୍ରଭୃତିରେ ବିଶେଷ ଜନସମାଗମ ।

ମଇ ୧୧/୧୨ରେ ରାଜ୍ୟ ପରିଷଦର ବୈଠକରେ ମଇ ୧୬ରେ ଦୁଇ ପାଟି ପକ୍ଷରୁ ଦରଦାମ୍ ବିରୋଧୀ ଧାରଣା, ବିକ୍ଷୋଭର ଚୂଡ଼ାନ୍ତ ନିଷ୍ପତ୍ତି – ୫ ଲକ୍ଷ ଟଙ୍କା ପାଣ୍ଠି ସଂଗ୍ରହର ଆହ୍ୱାନ । ମଇ ୨ ରୁ ୬ ଯାଏ ଏର୍ଣ୍ଣାକୁଲମରେ ଅ.ଭା ଯୁବସଂଘ ସମ୍ମିଳନୀରେ ଓଡ଼ିଶାର ବହୁ ପ୍ରତିନିଧିଙ୍କ ଯୋଗଦାନ ।

ସିପିଆଇ-ସିପିଏମ୍ ପକ୍ଷରୁ ୧୮ ଦଫା କର୍ମସୂଚୀର ରୂପାୟନ ଓ ମୁଖ୍ୟତଃ ଦରଦାମ୍ ବୃଦ୍ଧି ନିରୋଧ ଦିବସ ପାଳନ । ଏହି ଦିନ ଧାରଣା, ସଭା ସମାବେଶ ଭୁବନେଶ୍ୱର, ବ୍ରହ୍ମପୁର, କଟକ, ରାଉରକେଲା, ଢେଙ୍କାନାଳ, ବାରିପଦା, ସମ୍ବଲପୁର, ପୁରୀ, କୁଜଙ୍ଗ, ପାରାଦ୍ୱୀପ ପ୍ରଭୃତି ବହୁ ସ୍ଥାନରେ ଧାରଣା ।

୨୫/୫ରେ କାକଟପୁରରେ ସିପିଆଇର ଆଞ୍ଚଳିକ ସମ୍ମିଳନୀ, ୨ ମଇ ୭ରେ ବନ୍ତ ବ୍ଲକ୍ ଅଫିସ ଆଗରେ ବିକ୍ଷୋଭ ଓ ମଇ ୮ରେ ଯାଜପୁର ରୋଡ଼ରେ ବିକ୍ଷୋଭ ଓ ପୁରୀ ବଡ଼ଦାଣ୍ଡରେ ଦୁଇ ପାର୍ଟିର ସଭା । ମଇ ୧୨/୧୩ରେ ସୁନ୍ଦରଗଡ଼ଠାରେ ରାଜ୍ୟ ଏଲିମେଣ୍ଟାରୀ

ଶିକ୍ଷକ ସମ୍ମିଳନୀ ଲାଗି ପାର୍ଟି ସମର୍ଥକମାନଙ୍କ ଉଦ୍ୟମ । ବାଲେଶ୍ୱରର ବାସୁଦେବପୁରରେ ପାର୍ଟି କର୍ମୀଙ୍କ ଲାଗି ସମାବେଶ । ଢେଙ୍କାନାଳର ଭୁବନ ଓ କାମାକ୍ଷାନଗରରେ ଜମିପଟା ଦାବୀରେ ବିକ୍ଷୋଭ । ମଇ ୧୬ରେ ରୂପ୍‌ସା ଝୋଟକଳ ଶ୍ରମିକମାନଙ୍କ ୪ର୍ଥ ସମ୍ମିଳନୀ ଖୁବ୍ ଉଦ୍ଦୀପନାମୟ ପରିବେଶରେ ସମାପ୍ତ ।

ଜୁନ୍ ୧୩ରେ ଚୌଦ୍ୱାର ଠାରେ ୧୮ ଦଫା କର୍ମସୂଚୀ ରୂପାୟନ ଲାଗି ସମନ୍ୱୟ କମିଟି ଗଠନର ସମାବେଶ । କାକଟପୁରରେ ଏପରି ସମନ୍ୱୟର ଉଦ୍ୟମ ।

ଜୁଲାଇ ୩ ରୁ ୫ ଯାଏ ବିଧାନସଭଗା ସମୀପରେ ରାଜ୍ୟ କୃଷକ ସଭା ପକ୍ଷରୁ ଭୁବନ, କାମାକ୍ଷାନଗରରେ ବିକ୍ଷୋଭ- ଚନ୍ଦକା, ଜଟଣୀ ପ୍ରଭୃତିର ୪୦ଟି ଗ୍ରାମର ୧ ୨ ୯ ଚାଷୀ ଜମିପଟା ଦାବୀ କରି ଅନଶନ । ରାଜସ୍ୱମନ୍ତ୍ରୀ ପ୍ରତିଶ୍ରୁତି ପେର ଅନଶନ ପ୍ରତ୍ୟାହାର ।

ଭଦ୍ରକରେ ଚକବନ୍ଦୀ ବିରୁଦ୍ଧରେ ପାର୍ଟି ପକ୍ଷରୁ ବିକ୍ଷୋଭ । ଜୁଲାଇ ୧ରେ ପଟିଆର କଲ୍ୟାଣପୁର ଠାରେ ପଟିଆ ବନ୍ଧ ନିର୍ମାଣର ପ୍ରାଣ ପ୍ରତିଷ୍ଠାତା ରାମକୃଷ୍ଣ ପତିଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ ।

ଜୁଲଶଇ ୧୮ରେ କସ୍ତୁରବା ନାରୀମହଲରେ ମିଳିତ କ୍ଷେତମଜଦୁର ସମ୍ମିଳନୀ । ରାଜଧାନୀରେ ୫ ଶହ ମହିଳାଙ୍କ ବିକ୍ଷୋଭ । ସମ୍ବଲପୁର, କଟକ, ବାଲେଶ୍ୱରର ବହୁ ମହିଳାଙ୍କ ଯୋଗଦାନ । ପାର୍ଟି ମହିଳାମାନଙ୍କର ଭୂମିକା, ଜୁଲାଇ ୨୪ରେ ରାଉରକେଲାରେ ଏସ୍‌ଡିଓ ଅଫିସ ସମ୍ମୁଖରେ ବିକ୍ଷୋଭ । ଭୁବନେଶ୍ୱର ବିଦ୍ୟାଭବନରେ ଏଆଇଏସଏଫର ରାଜ୍ୟ କନ୍‌ଭେନ୍‌ସନ୍‌ରେ ଅଗଷ୍ଟ ୧ ୨ ରୁ ୧ ୫ ଯାଏ ସାମ୍ପ୍ରଦାୟିକତା ବିରୋଧୀ ଅଭିଯାନ ରାଜ୍ୟରେ ଚଳାଯିବ ଓ ସେପ୍ଟେମ୍ବରରେ ଦିଲ୍ଲୀରେ ୧ ଲକ୍ଷ ଯୁବଛାତ୍ରଙ୍କ କାମରେ ମୌଳିକ ଅଧିକାର ଦାବୀ ବିକ୍ଷୋଭରେ ଯୋଗଦେବା ନିଷ୍ପତ୍ତି ।

ଅଗଷ୍ଟ ୨ ୦ରେ ତିର୍ତ୍ତୋଲରେ ପାର୍ଟି ପକ୍ଷରୁ ବିକ୍ଷୋଭ- କଟକ ଟାଉନ୍‌ହଲରେ ଅଗଷ୍ଟ ୨୪ରେ ସାଂପ୍ରଦାୟିକତା ବିରୋଧୀ ସମାବେଶ । ପାରାଦୀପରେ ଏସ୍.ଡି.ଏମ୍. ଅଫିସ୍ ସମ୍ମୁଖରେ ଦରଦାମ୍ ବୃଦ୍ଧି ବିରୁଦ୍ଧରେ ଗଣଧାରଣା- ସୁକିନ୍ଦା ଓ ଯାଜପୁର ରୋଡ଼ରେ ପାର୍ଟିର ବିକ୍ଷୋଭ । ନିଆଳି ବ୍ଲକର କଣ୍ଡାପଡ଼ା ଓ କୋଣାର୍କଠାରେ ପାର୍ଟି ପକ୍ଷରୁ ବିକ୍ଷୋଭ ।

ଅଗଷ୍ଟ ୫ରୁ ସମ୍ବଲପୁର ବନହରପାଲିରେ ଇବ୍ ଥର୍ମାଲ ନିର୍ମାଣ ନାମରେ ୮ ପ୍ଲାଟୁନ ପୁଲିସ୍ ମୁତୟନ କରି ୧୯ ହଜାର ପରିବାରଙ୍କୁ ବାସଚ୍ୟୁତ କରିବା ତାଣ୍ଡବ । ଏହାର ପ୍ରତିରୋଧରେ ହଜାର ହଜାର ଲୋକଙ୍କ ସମାବେଶ । ସେମାନଙ୍କୁ ଗିରଫ । କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ପୁଲିସ୍ ପ୍ଲାଟୁନ୍ ପ୍ରତ୍ୟାହାର ଦାବୀ ଦମନର ନିନ୍ଦା ଏବଂ ଥର୍ମାଲ ସ୍ଥାନ ପରିବର୍ତ୍ତନ ଲାଗଢି ଦାବୀ କରି ବିବୃତି ।

ଅଗଷ୍ଟ ୬ ତାରିଖରେ ଅ.ଭା. ଛାତ୍ରସଂଘ ପକ୍ଷରୁ ଛାତ୍ର ଦାବୀମାନ ଘେନି ବିଶାଳ

ବିକ୍ଷୋଭ ପଟୁଆର । ଛାତ୍ର ସଂଘର ପ୍ରତିଷ୍ଠା ଦିବସ ଉପଲକ୍ଷେ କଟକ, ବାଲେଶ୍ୱର, ଭଦ୍ରକ, ନୀଳଗିରି, ରୁପ୍‌ସା, ସୋରୋ ପ୍ରଭୃତି କଲେଜରେ ସଭା ।

ଅଗଷ୍ଟ ୩୦ରେ ରାଜ୍ୟ କ୍ଷେତମୂଲିଆ ୟୁନିଅନ ପକ୍ଷରୁ ଏକ ବିରାଟ ପଟୁଆର ରାଜଧାନୀ ମୁଖ୍ୟରାସ୍ତା ପରିକ୍ରମା କରି ରାଜ୍ୟପାଳଙ୍କୁ ସ୍ମାରକଲିପି ପ୍ରଦାନ ।

ମଣ୍ଡଳ କମିଶନ ସୁପାରିଶଗୁଡ଼ିକ ପାର୍ଟି ସମର୍ଥନ କରିବା ସଂଗେ ସଂଗେ ଜାତୀୟ ସହମତ ଆଣିବା ଲାଗି ରାଜ୍ୟ ପାର୍ଟିର ଆବେଦନ ଏବଂ ଛାତ୍ରମାନଙ୍କୁ ଉଦ୍‌ଭ୍ରାନ୍ତ ନ ହେବା ଲାଗି ନିବେଦନ ।

ରାଜ୍ୟ ପାର୍ଟିର ଆହ୍ୱାନରେ ତିନି ଦଳର ଅଠର ଦଫା କର୍ମସୂଚୀର ରୂପାୟନ ଦାବୀରେ ଦାବୀ ଦିବସ ସେପ୍ଟେମ୍ବର ମାସରେ ପ୍ରତିପାଳିତ । ଏହି ଦିବସଟି ପାର୍ଟି ପକ୍ଷରୁ ପ୍ରତିପାଳିତ ହୋଇଥିବା ବହୁ ସ୍ଥାନ ଭିତରେ ରହିଛି ଭୁବନେଶ୍ୱର, ସମ୍ବଲପୁର, ଝରସୁଗୁଡ଼ା, କୋରେଇ, ପାରଳାଖେମୁଣ୍ଡି, ପାରାଦୀପ, ବରଗଡ଼, ଭଟଲି, ମାଲକାନଗିରି, ଭୁବନ, ସାନଖେମୁଣ୍ଡି, ତକରଡ଼ା, ଗୋପ, ନରସିଂହପୁର, ବଡ଼ମ୍ବା, ରାଉରକେଲା ।

ସେପ୍ଟେମ୍ବର ୧୫/୧୬ରେ ରାଜ୍ୟ କାର୍ଯ୍ୟକାରୀ କମିଟି ବୈଠକ । ଅକ୍ଟୋବର ୧୯/ ୨୦ରେ ପାର୍ଟି ସାଂଗଠନିକ ସମ୍ମିଳନୀ ଓ ଅକ୍ଟୋବର ୨୯ରେ ଭୁବନେଶ୍ୱର ଠାରେ ସାମ୍ପ୍ରଦାୟିକତାର ବିରୋଧ ଓ ଅଠର ଦଫାର ରୂପାୟନ ଦାବୀ କରି ଲକ୍ଷେ ଲୋକଙ୍କ ସମାବେଶର ନିଷ୍ପତ୍ତି ।

ସେପ୍ଟେମ୍ବର ୨୪ରେ ତିହିଡ଼ିରେ ଦୁଇ କମ୍ୟୁନିଷ୍ଟ ପାର୍ଟିର ମିଳିତ ବିକ୍ଷୋଭ, ଅକ୍ଟୋମର ୨୦/୨୧ରେ ବାରବାଟୀ ଷ୍ଟାଡ଼ିଅମ୍ କ୍ଲବ ହାଉସ୍‌ରେ ୪୦୦ ପ୍ରତିନିଧିଙ୍କ ଅଂଶ ଗ୍ରହଣରେ ସାଙ୍ଗଠନିକ ସମ୍ମିଳନୀ ଏବଂ ବହୁ ଗୁରୁତ୍ୱ ପୂର୍ଣ୍ଣ ସାଙ୍ଗଠନିକ ପଦକ୍ଷେପ ନେବାର ନିଷ୍ପତ୍ତି, କମ୍ରେଡ଼ ଇନ୍ଦ୍ରଜିତ୍ ଗୁପ୍ତଙ୍କ ଯୋଗଦାନ ।

ଅକ୍ଟୋବର ୨୯ରେ ପାର୍ଟି ପକ୍ଷରୁ ରାଜଧାନୀରେ ୮୦ ହଜାର ଜନତାର ଅଭୂତପୂର୍ବ ସମାବେଶ । ଦୁଇଟି ପଟୁଆର ରାମମନ୍ଦିରଠାରୁ ଆରମ୍ଭ ଦୀର୍ଘ ୪ କିଲୋମିଟର ରାସ୍ତାରେ ପଟୁଆରର ଶେଷ ବିଧାନସଭା ସମ୍ମୁଖଯାଏ ବ୍ୟାପ୍ତ ପଟୁଆର । ଆଉ ଏକ ପଟୁଆର ବିଜେପି କଲେଜରୁ ବାହାରି ମୁଖ୍ୟ ପଟୁଆର ସହିତ ମିଳିତ । ସଭାମଣ୍ଡପଠାରେ ଏକ କିଲୋମିଟର ଦୂର ମାଷ୍ଟରକାଣ୍ଟିନ ଯାଏ ଜନତାର ଭୀଡ଼ । ପ୍ରସନ୍ନ କୁମାର ପଣ୍ଡାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଏହି ସୁବିଶାଳ ଜନସମାବେଶକୁ ପାର୍ଟିର ସାଧାରଣ ସମ୍ପାଦକ ଇନ୍ଦ୍ରଜିତ ଗୁପ୍ତ, ରାଜ୍ୟ ସମ୍ପାଦକ ଲୋକନାଥ ଚୌଧୁରୀ ପ୍ରମୁଖଙ୍କ ଉଦ୍‌ବୋଧନ ।

ଗଞ୍ଜାମରେ ନଭେମ୍ବର ୩ ରାତିରେ ୨୪ ଇଞ୍ଚ ଯାଏ ବର୍ଷା ଫଳରେ ଋଷିକୂଲ୍ୟା, ଘୋଡ଼ାହାଡ଼, ନନ୍ଦିନୀ ବଡ଼ନଈ ଏମିତି ୭ଟି ନଦୀରେ ପ୍ରବଳ ବନ୍ୟା– ଶହ ଶହ ଗାଁରେ ହଜାର

ହଜାର ଘର, କୋଠାବାଡ଼ି, ସ୍କୁଲ, ହାସପାତାଳ, କଲେଜ ଧ୍ୱଂସ । ଘୋଡାହାଡ- ଆସିକାର ବହୁ ସୁଦୃଢ଼ ପୋଲ ଧୋଇ- ସ୍ଥାନେ ସ୍ଥାନେ ୧୫.୨୦.୩୦ ଫୁଟ୍ ଉଚ୍ଚତାର ଜଳ ।

ବନ୍ୟା ଫଳରେ ଆସିକା, କବିସୂର୍ଯ୍ୟନଗର, ଦିଗପହଣ୍ଡି, ଚିକିଟି, ସାନଖେମଣ୍ଡି, ଶେରଗଡ଼, ଭୀଷ୍ମଗିରି, ଖଲ୍ଲିକୋଟ, ଛତ୍ରପୁର, ହିଞ୍ଜିଳି, ପୁରୁଷୋତ୍ତମପୁର ପ୍ରଭୃତି ଅଞ୍ଚଳରେ ଭୟାବହନ କ୍ଷୟକ୍ଷତି ।

ପାର୍ଟି ପକ୍ଷରୁ ବ୍ୟାପକ ଭାବରେ ରିଲିଫ୍ କାର୍ଯ୍ୟ, ଦିଗପହଣ୍ଡି, ଆସ୍କା, ଶେରଗଡ଼, ଛତ୍ରପୁର ଓ ଅନ୍ୟତ୍ର ରିଲିଫ ଦାବୀରେ ବିକ୍ଷୋଭ । ସମଗ୍ର ପାର୍ଟି; ରିଲିଫ କାର୍ଯ୍ୟରେ ନିୟୋଜିତ । ରାଜ୍ୟ ପାଟି ପକ୍ଷରୁ ବାରମ୍ବାର ପ୍ରତିନିଧିଦଳ ଓ ପଶ୍ଚିମବଙ୍ଗର ସିପିଆଇ ମନ୍ତ୍ରୀ କାମାକ୍ଷା ପ୍ରସାଦ ଦାସ୍ ମହାପାତ୍ରଙ୍କ ଗସ୍ତ ।

ଡିସେମ୍ବରରେ ମଞ୍ଚେଶ୍ୱର ଶିଳ୍ପାଞ୍ଚଳରେ ଏଲ୍‌କୋ ଅଫିସରେ ଶ୍ରମିକ ବିକ୍ଷୋଭ । ଏରସମା, ଜଗତ୍‌ସିଂହପୁରରେ ବିକ୍ଷୋଭ ।

ଡିସେମ୍ବର ୪/୫ରେ ଉତ୍କଳ ମହିଳା ସମ୍ମିଳନୀରେ ୬ଷ୍ଠ ରାଜ୍ୟ ସମ୍ମିଳନୀରେ ବହୁ ପାର୍ଟି ମହିଳାଙ୍କ ଅଂଶ ଗ୍ରହଣ ବିମଳା, ଫାରୁକିଙ୍କ ଯୋଗଦାନ ।

ଏହି ବର୍ଷ ବିଭିନ୍ନ ସମୟରେ ନିମାପଡ଼ାର ସାଥୀ ଜଗନ୍ନାଥ ମହାନ୍ତି, କିରିଡିମାଳର ସାଥୀ ନକୁଳ ପ୍ରଧାନ, କୁଜଙ୍ଗର ସାଥୀ ସୁଦର୍ଶନ ମହାପାତ୍ରଙ୍କ ମୃତ୍ୟୁ । ଏହି ବର୍ଷରେ ମଧ କାଶ୍ମୀରର ବିଖ୍ୟାତ କମ୍ୟୁନିଷ୍ଟ ନେତା ରାଞ୍ଜୋର ବିଚ୍ଛିନ୍ନତାବାଦୀଙ୍କ ଦ୍ୱାରା ନିହତ । ସିପିଆଇ (ଏମ୍)ର ପ୍ରବୀଣ ନେତା ବି.ଟି. ରଣଦିଭେ ଏବଂ ମହମ୍ମଦ ଇସ୍‌ମାଇଲଙ୍କ ଦେହାନ୍ତ । ଜ୍ଞାନମଣ୍ଡଳ ପ୍ରଣେତା ବିନୋଦ କାନୁନ୍‌ଗୋଙ୍କ ମୃତ୍ୟୁ ।

□□□

# ଓଡ଼ିଶା କମ୍ୟୁନିଷ୍ଟ ପାର୍ଟି ଇତିହାସର କିୟଦଂଶ

## (ଦ୍ୱିତୀୟ ଭାଗ)

୧୯୮୬ ମସିହା ଭଗବତୀ ବିଶେଷାଙ୍କରେ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଇତିହାସର କିୟଦଂଶ ଶିରୋନାମରେ ଏକ ପ୍ରବନ୍ଧ ପ୍ରକାଶିତ ହୋଇଚି । ଆମ ପାର୍ଟି ମୁଖପତ୍ରଗୁଡ଼ିକରେ ପ୍ରକାଶିତ ବିବରଣୀ ସହିତ କେତେକ ସ୍ମୃତିକୁ ପ୍ରବନ୍ଧ ଲେଖାର ଆଧାର କରାଯାଇଥିଲା । ସ୍ୱାଧୀନତା ପୂର୍ବ କାଳରେ ପୁଲିସ ରାଜ୍ୟ ପାର୍ଟି ଦପ୍ତରରୁ ଚଢ଼ଉ କରି ବହୁ କାଗଜପତ୍ର ନେଇ ଯାଇଥିଲେ । ସ୍ୱାଧୀନତା ପରବର୍ତ୍ତୀ କାଳରେ କଂଗ୍ରେସ ଶାସନ ବେଳେ ୧୯୪୯-୫୧ରେ ଆକ୍ରମଣ ହେବାରୁ ପାର୍ଟି ଦପ୍ତରର କାଗଜପତ୍ର ବିଭିନ୍ନ ସ୍ଥାନକୁ ସ୍ଥାନାନ୍ତରିତ ହୋଇ କେତେକ ହଜି ଯାଇଥିବା ଜଣାଗଲା । ଏବେ ବି ବହୁ ଦଲିଲ, ସମ୍ମିଳନୀ ଗୁଡ଼ିକର ରିପୋର୍ଟ, ପର୍ଯ୍ୟାଲୋଚନା ଓ ସମୀକ୍ଷା ରିପୋର୍ଟ, ପ୍ରୋସିଡ଼ିଂ ରହିଛି । ସେଗୁଡ଼ିକର ବର୍ଗୀକରଣ ଓ ଅନୁଶୀଳନ କରାଗଲେ ପୂର୍ଣ୍ଣାଙ୍ଗ ଇତିହାସ ରଚନା ସମ୍ଭବପର ହେବ । ଏହା ସବିଶେଷ ଆୟାସ ସାପେକ୍ଷ । ରାଜ୍ୟ ପାର୍ଟି ଏହାର ଅନୁଶୀଳନ ଲାଗି ନିର୍ଦ୍ଧାରଣ ନେଇଛି । ପୁରୁଣା ଅଭିଜ୍ଞ ସାଥୀ, ବିଭିନ୍ନ ଜିଲ୍ଲା ପାର୍ଟିର ସମ୍ପାଦକ ଓ ଗଣ ସଂଗଠନର କର୍ମକର୍ତ୍ତାଙ୍କ ତଥ୍ୟଭିତ୍ତିକ ଓ ସ୍ମୃତି ଆଧାରିତ ସଠିକ୍ ବିବରଣୀ ମଧ୍ୟ ଏ ଦିଗରେ ସାହାଯ୍ୟକାରୀ ହେବ ।

କମ୍ୟୁନିଷ୍ଟ ପାର୍ଟିର ଜନ୍ମ, ବୃତ୍ତାନ୍ତ ନାମକ ଏକ ପୁସ୍ତିକା ସ୍ୱତନ୍ତ୍ର ଭାବରେ ଚାରିଜଣ ସାଥୀଙ୍କ ଲିଖିତ ପ୍ରବନ୍ଧର ସଙ୍କଳନ ରୂପେ ପ୍ରକାଶ ପାଇଛି । ଏହି ଚାରୋଟି ସ୍ୱତନ୍ତ୍ର ପ୍ରବନ୍ଧର ବିଷୟବସ୍ତୁ ପରସ୍ପରର ପରିପୂରକ ହୋଇଛି । କୌଣସି ପ୍ରବନ୍ଧର ଲେଖକ ଅନ୍ୟ ଲେଖକଙ୍କ ପ୍ରବନ୍ଧର ବିଷୟବସ୍ତୁକୁ ଖଣ୍ଡନ କରି ନାହାଁନ୍ତି । ସେହେତୁ ଏହାକୁ ପାର୍ଟି ଗଠନ ବୃତ୍ତାନ୍ତର ସଂକ୍ଷିପ୍ତ ସଠିକ୍ ଇତିହାସ ବୋଲି ଧରାଯାଇପାରେ ।

ଏଥର ଏହି ପ୍ରବନ୍ଧଟିର ମୂଳ ଆଧାର ଆମର ମୁଖପତ୍ର ନୂଆଦୁନିଆ । ମାତ୍ର ଏହାର ସବୁ ବର୍ଷର ବନ୍ଧେଇ ସଂଖ୍ୟାରୁ କେତୋଟି ସଂଖ୍ୟା ନାହିଁ ଏବଂ କେତେକ ବନ୍ଧେଇରେ ସବୁ ସଂଖ୍ୟା ନାହିଁ । ସେହେତୁ ୧୯୮୮ ଯାଏ ଏହାକୁ ଆଧାର କରି ଇତିହାସ ଲେଖିବାର ପ୍ରୟାସ ବାଧାପ୍ରାପ୍ତ ହେଲା । ୧୯୬୨ ଯାଏ ମୋଟାମୋଟି ବିଗତ ପ୍ରବନ୍ଧରେ ପାର୍ଟି ଇତିହାସ ସ୍ଥାନ

ପାଇଛି । ତତ୍‌ପରବର୍ତ୍ତୀ ୧୯୭୦ ଯାଏ ଏଥର ପ୍ରବନ୍ଧର ସୀମା ଆଗକୁ ଯିବାର ପ୍ରୟାସ ଅବ୍ୟାହତ ରହିବ ।

୧୯୮୬ ଲେଖାଟିରେ ଦୁଇ ତିନୋଟି ଗୁରୁତ୍ୱପୂର୍ଣ୍ଣ ସଂଗ୍ରାମ ଓ ପାର୍ଟିର ସେଥିରେ ଅଂଶ ଗ୍ରହଣ ଓ କେତେକ ପାର୍ଟି ଗଠନ ସଂକ୍ରାନ୍ତ ବିବରଣୀ ଛାଡ଼ ହୋଇ ଯାଇଥିବାରୁ ସେଗୁଡ଼ିକର ସଂକ୍ଷିପ୍ତ ଉଲ୍ଲେଖ କରାଗଲା ।

**ସୀମା ଆନ୍ଦୋଳନ ଓ ସୀମା ସମସ୍ୟାରେ ପାର୍ଟିର ଭୂମିକା**

୧୯୩୬ରେ ଓଡ଼ିଶା ପ୍ରଦେଶ ଗଠନ ପରେ ରାଜ୍ୟର ରାଜନୈତିକ ମହଲରେ ଓ ବୁଦ୍ଧିଜୀବୀ ଜନମାନସରେ ଉତ୍କଳ ସମ୍ମିଳନୀର ପୂର୍ବ ଦାବୀଗୁଡ଼ିକ ପୂରଣ ନହେବାରୁ ଅସନ୍ତୋଷ ଥିଲା । ଗଡ଼ଜାତ ମିଶ୍ରଣ ପରେ ୧୯୪୮ରେ ଷଢ଼େଇକଳା ଖରସୁଆଁକୁ ଘେନି ଗଠିତ ଷଢ଼େଇକଳା ଜିଲ୍ଲାର ଓଡ଼ିଶାରେ ମିଶ୍ରଣ ହେଲା । ମାତ୍ର ୧୯୫୦ରେ ମହତାବ ମନ୍ତ୍ରିମଣ୍ଡଳବେଳେ ଷଢ଼େଇକଳାରେ ନିର୍ମ୍ମମ ଗୁଳିକାଣ୍ଡ ହେଲା । ଡଃ ରାଜେନ୍ଦ୍ର ପ୍ରସାଦ ଓ ବିହାର କଂଗ୍ରେସର ଚାପ ଓ ମହତାବବାବୁଙ୍କ ସେଥିରେ ସମ୍ମତ ହେତୁ ପୁନଶ୍ଚ ଷଢ଼େଇକଳା ଜିଲ୍ଲା ବିହାରକୁ ଗଲା । ଏଥିଲାଗି ସେତେବେଳେ ତା'ର ପ୍ରତିବାଦ କରି କଂଗ୍ରେସ ଏମ୍.ଏଲ୍.ଏ ମାନେ ନିଜ ଦଳ ପାଖରେ ଇସ୍ତଫା ଦେଇଥିଲେ । ତାହା ଏକ ଦୀର୍ଘ ଇତିହାସ ।

ଓଡ଼ିଶାରେ ଗଡ଼ଜାତଗୁଡ଼ିକର ମିଶ୍ରଣ ପରେ ଷଢ଼େଇକଳା ରଜା, ଯିଏ କି ଓଡ଼ିଶାର ଅନ୍ୟାନ୍ୟ ରଜାଙ୍କ ସହିତ ମହାକୋଶଳ ପ୍ରଦେଶ ଗଠନର ଚକ୍ରାନ୍ତ କରୁଥିଲେ ସେ ମଧ ଓଡ଼ିଶାରୁ ଷଢ଼େଇକଳା ଯିବାକୁ ଚାହିଁଲେ ।

ଓଡ଼ିଶାରେ ଏହି ଅସନ୍ତୋଷ ୧୯୫୩ ବେଳକୁ ଏକ ବିରାଟ ସୀମା ଆନ୍ଦୋଳନରେ ପରିଣତ ହେଲା । କମ୍ୟୁନିଷ୍ଟ ପାର୍ଟି ସେତେବେଳେ ଏହି ସମ୍ପର୍କରେ ବିଶେଷ ଆଲୋଚନା କରି କେତେକ ସିଦ୍ଧାନ୍ତରେ ପହଞ୍ଚିଥିଲା । ବହୁ ତଥ୍ୟ ଓ ରିପୋର୍ଟ ବିଶେଷତଃ ଓଡ଼ିଶାକୁ ଲାଗିଥିବା ଏକ ପକ୍ଷରେ ଆନ୍ଧ୍ର, ମଧ୍ୟପ୍ରଦେଶର ସୀମାନ୍ତ ଅନ୍ୟପକ୍ଷରେ ଓଡ଼ିଶାର ସୀମାନ୍ତ ଗାଁ'ଗୁଡ଼ିକର ସର୍ଭେ କରାଯାଇଥିଲା । ସୀମା ଆନ୍ଦୋଳନରେ ଓଡ଼ିଶାର ନ୍ୟାୟପର ଦାବୀ ସାଙ୍ଗକୁ କେତେକ ଅବାଞ୍ଛିତ ଦାବୀକୁ ରାଜ୍ୟ ପାର୍ଟି ଗ୍ରହଣ କରିନଥିଲା । ପାରଳାଖେମୁଣ୍ଡି ଜମିଦାରୀ ଯେପରି ପ୍ରଦେଶ ଗଠନ ପୂର୍ବରୁ ଦୁଇଭାଗ ହୋଇ ପାଥପାଟଣା ଆନ୍ଧ୍ରରେ ଓ ପାରଳାଖେମୁଣ୍ଡି ଥାନା ଓଡ଼ିଶାରେ ମିଶିଛି, ଉଭୟ ପାର୍ଶ୍ୱରେ ମିଶ୍ରିତ ତେଲୁଗୁ ଓଡ଼ିଆ ଗାଁ' ଥିଲେ ମଧ ତାହା ମୋଟାମୋଟି ଯଥାର୍ଥ ବୋଲି ପାର୍ଟି ସ୍ଥିର କରିଥିଲା ।

ପାରଳାଖେମୁଣ୍ଡିରେ ଆନ୍ଧ୍ର ପାର୍ଟି କାର୍ଯ୍ୟ କରୁଥିବାରୁ ସାଂଗଠନିକ ଭାବରେ ତାହା ଆନ୍ଧ୍ର ପାର୍ଟି କର୍ତ୍ତୃତ୍ୱାଧୀନ ଥିଲା । ଓଡ଼ିଶା ପାର୍ଟି କେନ୍ଦ୍ର ପାର୍ଟିରେ ଏହି ପ୍ରସଙ୍ଗ ଉଠାଇଲା ଏବଂ ଓଡ଼ିଶା ପାର୍ଟିର ପ୍ରତିନିଧି ଦଳ ରାମକୃଷ୍ଣ ପତି, ଗୋବିନ୍ଦ ଚନ୍ଦ୍ର ମହାନ୍ତିଙ୍କ ଉପସ୍ଥିତିରେ ପାରଳାଖେମୁଣ୍ଡି

ପାର୍ଟି ଶାଖାର ବୈଠକରେ ନିଷ୍ପତ୍ତି ହୋଇ ତାହା ଓଡ଼ିଶା ପାର୍ଟି କର୍ତ୍ତୃତ୍ୱାଧୀନକୁ ଆସିଲା । ସେତେବେଳେ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଏ ସମ୍ପର୍କରେ ବିଶେଷ ଭୂମିକା ନେଇଥିଲେ । ଏହି ସମୟରେ ଆନ୍ଧ୍ର ପାର୍ଟିର ମୁଖପାତ୍ର ବିଶାଳ ଆନ୍ଧ୍ରରେ ନୂତନ ଆନ୍ଧ୍ର ରାଜ୍ୟର ସୀମା ସମୁଦ୍ର ତଟବର୍ତ୍ତୀ ବାଲୁଗାଁ ଓ ଭିତର ସୋରଡ଼ା ଯାଏ ଦର୍ଶା ହେବାରୁ ରାଜ୍ୟ ପାର୍ଟି ତାହାର ସମୀକ୍ଷା କରି ଆନ୍ଧ୍ର ପାର୍ଟି ସହିତ ଯୋଗାଯୋଗ କଲା । ବିଶାଳ ଆନ୍ଧ୍ରରେ ଏପରି ମାନଚିତ୍ର ପ୍ରମାଦାତ୍ମକ ବୋଲି ମତପୋଷଣ କରିଥିଲା । ସୀମା ସେପଟେ ରହିଥିବା ଜଳନ୍ତର, ମଞ୍ଜୁସା, ଟିକାଲି, ତରଳା, ଉଦ୍ୟାନଖଣ୍ଡରେ ତେଲୁଗୁ ଭାଷୀ ଗାଁ'ଗୁଡ଼ିକ ମଧ୍ୟରେ ଅନେକ ଓଡ଼ିଆଭାଷୀ ଗାଁ' ଓ ଗୋଲନ୍ଥରାଠାରୁ ରମ୍ଭାଯାଏ ଓଡ଼ିଆଭାଷୀ ଗାଁ'ଗୁଡ଼ିକ ମଧ୍ୟରେ ତେଲୁଗୁଭାଷୀ ଗାଁ'ମାନ ରହିଛି । ସର୍ବତ୍ର ମିଶ୍ରିତ ଜନସଂଖ୍ୟା । ସେହେତୁ ମୋଟାମୋଟି ଏହି ସୀମା ଗ୍ରହଣୀୟ ବୋଲି ରାଜ୍ୟ ପାର୍ଟି ସ୍ଥିର କଲା ।

ଅନ୍ୟପଟେ ମେଦିନୀପୁର ଓ ବାଲେଶ୍ୱର ସୀମାନ୍ତ ଅନୁରୂପ । ତେଣୁ ତାହାକୁ ଅଦଳବଦଳ କରିବା ଲାଗି ଆନ୍ଦୋଳନ ଯଥାର୍ଥ ନୁହଁ ବୋଲି ଧରାଗଲା । ମଧ୍ୟପ୍ରଦେଶ ସମ୍ବଲପୁର ସୀମାନ୍ତର ଅବସ୍ଥା ମଧ୍ୟ ତଦ୍ରୂପ । ସମଗ୍ର ବସ୍ତର, ବିନ୍ଦ୍ରା ନୟାଗଡ଼ ଚକ୍ରଧରପୁର ପ୍ରଭୃତି ଅଞ୍ଚଳରୁ କେତେକ ଗ୍ରାମ ଓଡ଼ିଶାକୁ ଆସିପାରେ ମାତ୍ର ସମଗ୍ର ଅଞ୍ଚଳ ନୁହଁ ବୋଲି ପାର୍ଟି ନିଷ୍ପତ୍ତିରେ ପହଞ୍ଚିଲା ।

ଓଡ଼ିଶା ପାର୍ଟିର ପ୍ରତିନିଧି ଓ ବିହାର ପାର୍ଟିର ପ୍ରତିନିଧି ଜାମସେଦ୍‌ପୁରଠାରେ ବସି ଷଢ଼େଇକଳା-ଖରସୁଆଁ ଓଡ଼ିଶାରେ ରହିବା ଉଚିତ ବୋଲି ବିବୃତି ଦେଲେ । ଆମ ପାର୍ଟି ପକ୍ଷରୁ ରାମକୃଷ୍ଣ ପତି, ଗୋବିନ୍ଦ ଚନ୍ଦ୍ର ମହାନ୍ତି, ବିହାର ପାର୍ଟି ପକ୍ଷରୁ ଯୋଗୀନ୍ଦ୍ର ଶର୍ମା ଏହି ରାଜିନାମାରେ ପହଞ୍ଚିଥିଲେ ।

୧୯୫୦ରେ ସୀମା ଆନ୍ଦୋଳନ କାଳରେ ଛାତ୍ର ସଂଘ ଏକ ଶକ୍ତିଶାଳୀ ଅନୁଷ୍ଠାନ ଥିଲା । ଯେଉଁ ରାଜ୍ୟ ସଂଗଠନ ସୀମା ସଂଗ୍ରାମ ଚଳାଇବାକୁ ଗଠନ କରାଗଲା ତାହାର ସଭାପତି ପୂର୍ବତନ କଂଗ୍ରେସ ନେତା ଶ୍ରୀ ଯଦୁମଣି ମଙ୍ଗରାଜ ଓ ସମ୍ପାଦକ ହେଲେ ଆମ ରାଜ୍ୟ ପାର୍ଟି ସମ୍ପାଦକ ଗୁରୁଚରଣ ପଟ୍ଟନାୟକ । ସାରା ଓଡ଼ିଶାରେ ଏହି ଆନ୍ଦୋଳନ ପ୍ରଚଣ୍ଡ ରୂପ ଗ୍ରହଣ କରିଥିଲା ।

ପୁଲିସ୍ ଆକ୍ରମଣରେ ସୁନୀଲ ଦେ କଟକରେ ଓ ବେଙ୍ଗ ପାଣିଆ ପୁରୀରେ ନିହତ ହୋଇଥିଲେ ।

ଏହି ଆନ୍ଦୋଳନରେ ଅନ୍ୟାନ୍ୟ ବିରୋଧୀ ଦଳର ନେତାଙ୍କ ସମେତ ବହୁ କମ୍ୟୁନିଷ୍ଟ ଗିରଫ ହୋଇଥିଲେ । ପାର୍ଟିର ରାମକୃଷ୍ଣ ପତି, ରାମଚନ୍ଦ୍ର ରାମ, ଗୁରୁଚରଣ ପଟ୍ଟନାୟକ, ମନମୋହନ ମିଶ୍ର ପ୍ରମୁଖ ବହୁନେତା ଗିରଫ ହୋଇ ଅନ୍ୟମାନଙ୍କ ସହ ଜେଲରେ ଥିଲେ ।

ନିଜକୁ ସଂକୀର୍ଣ୍ଣ ଜାତୀୟତାବାଦରୁ ଦୂରରେ ରଖି ପାର୍ଟି ଏହି ଆନ୍ଦୋଳନରେ ଭାଗ ନେଇଥିଲେ । ୧୯୫୪ରେ ସୀମା ତଦନ୍ତ କମିଶନ ଏଚ୍.ଏନ୍. କୁଞ୍ଜୁରୁ ଓଡ଼ିଶାକୁ ଆସିବାବେଳେ ଷଢ଼େଇଗଳା, ଖରସୁଆଁ ଓଡ଼ିଶାରେ ମିଶିବା ଓ ସୀମାନ୍ତ ସେପଟର ଓଡ଼ିଆ ଭାଷାଭାଷୀଙ୍କ ଶିକ୍ଷା, ସଂସ୍କୃତି, ନିଯୁକ୍ତି, ଗଣତାନ୍ତ୍ରିକ ଅଧିକାରର ସୁରକ୍ଷା ଲାଗି ଦାବୀ କରାଯାଇଥିଲା ଏବଂ ଓଡ଼ିଶା ଭିତରେ ତେଲୁଗୁ ଭାଷୀମାନଙ୍କର ଶିକ୍ଷା, ସଂସ୍କୃତି, ଅନ୍ୟାନ୍ୟ ଅଧିକାର ପ୍ରତି ସମାନ ଆଚରଣ କରାଯିବା ଉଚିତ ବୋଲି ମତ ଦେଲା । ସୀମାନ୍ତରେ ଲଗାଲଗି ଗାଁ'ଗୁଡ଼ିକର ଲୋକମତ ଅନୁସାରେ ଅଦଳବଦଳ ହୋଇପାରେ ବୋଲି ପାର୍ଟିର ସ୍ଥିର ସିଦ୍ଧାନ୍ତ କମିଶନ ପାଖରେ ପେଶ କରାଯାଇଥିଲା । ଏଥିପୂର୍ବ ପ୍ରବନ୍ଧରେ ଛାଡ଼ି ହୋଇଯାଇଥିବା ତିନୋଟି ବିଶେଷ ଘଟଣାର ଉଲ୍ଲେଖ କରାଯାଉଛି । ପାର୍ଟିର ଆନ୍ଦୋଳନ ଓ ମତାଦର୍ଶଗତ ପ୍ରଚାର ମାଧମ ସମ୍ବାଦପତ୍ର କେବଳ ନୁହଁ । ସେଥିପାଇଁ ନିଜସ୍ୱ ପ୍ରେସ୍ ଥିବା ଦରକାର । ସେତେବେଳେ କମ୍ୟୁନିଷ୍ଟ ପତ୍ରପତ୍ରିକା ଓ ସାହିତ୍ୟ ମୁଦ୍ରଣ କରିବା ଲାଗି ସରକାରୀ ଭୟରେ ଅନ୍ୟାନ୍ୟ ପ୍ରେସ ଅନିଚ୍ଛୁକ ।

୧୯୪୨ ଶେଷ ଭାଗରେ ଗୋଟିଏ ହ୍ୟାଣ୍ଡପ୍ରେସ୍ କିଣାଯାଇ ଯୁଦ୍ଧ କାଳରେ କାଗଜର ଅଭାବ ହେତୁ ମଣ୍ଡ ତିଆରି କରି ତହିଁରେ ନ୍ୟୁଜପେପର ପ୍ରସ୍ତୁତ କରି ମୁକ୍ତିଯୁଦ୍ଧ ପ୍ରକାଶ ପାଇଲା । କଟକ ଅଲିଶା ବଜାରରେ ଏହି ପ୍ରେସ୍ ଥିବାବେଳେ ଗୋଟିଏ ଟ୍ରେଡ଼ଲ ଯୋଗ କରାଗଲା । କଂଗ୍ରେସ ସରକାରର ଆକ୍ରମଣ ବେଳେ ପ୍ରେସ୍ କାର୍ଯ୍ୟରେ ପ୍ରବଳ ପ୍ରତିବନ୍ଧକ ସୃଷ୍ଟି ହେଲା । ୧୯୪୯-୫୦ରେ ଜେଲମୁକ୍ତି ଓ ଗୋପନ ବାସରୁ ପାର୍ଟିର ନେତୃବର୍ଗ ଫେରିବା ପରେ ଡଗରପଡ଼ା ବ୍ରାହ୍ମଣସାହିକୁ ଉକ୍ତ ପ୍ରେସ୍ ଉଠିଗଲା । ତା'ପୂର୍ବରୁ ପାର୍ଟିର ଅଜ୍ଞାତବାସ ବେଳେ ମାଛୁଆ ବଜାର ଓ ବଢ଼େଇ ସାହିରେ ପାର୍ଟି ଦରଦୀମାନଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରେସ୍‌ର କିଛି ଆସବାବ ଏଥିସହିତ ସମ୍ପୃକ୍ତ ହେଲା । ପଶ୍ଚିମବଙ୍ଗ ରାଜ୍ୟପାର୍ଟିର ସ୍ୱାଧୀନତା ପ୍ରେସ୍‌ରେ ଆଧୁନିକ ମେସିନ ଆସିବାରୁ ଉକ୍ତ ରାଜ୍ୟ ପାର୍ଟି ସମ୍ପାଦକ ମୁଜଫର ଅହମ୍ମଦ ଓ ଆମ ରାଜ୍ୟ ପାର୍ଟିର ତତ୍କାଳୀନ ସମ୍ପାଦକ ଗୁରୁଚରଣ ପଟ୍ଟନାୟକଙ୍କ ମଧ୍ୟରେ ସଂଯୋଗ ହୋଇ ଦୁଇଟି ଫ୍ଲାଟ୍ ବେଡ଼ ମେସିନ୍ ଅଣାଗଲା । ଏହାକୁ ୪ ହଜାର ଟଙ୍କାରେ କିଣିବାକୁ ରାଜିନାମା ହେଲା ସତ ମାତ୍ର ୩ ହଜାର ଟଙ୍କା ଦିଆଯାଇଥିଲା । ଅର୍ଥାଭାବରୁ ୨ ବର୍ଷ କାଳ ମେସିନ୍ ବସିପାରିଲା ନାହିଁ । ରାଜ୍ୟର ପାର୍ଟିର ନିଷ୍ପତ୍ତି ଅନୁସାରେ କଃ ରାମକୃଷ୍ଣ ପତିଙ୍କ ଉଦ୍ୟୋଗରେ ଗୋଟିଏ ମେସିନ୍‌କୁ ୬ ହଜାର ଟଙ୍କାରେ ବିକ୍ରି କରାଯାଇ ପାଲିତପଡ଼ାର ଏକ କୋଠାଘରେ ଅନ୍ୟ ମେସିନ୍‌ଟି ବସିଲା । ଉକ୍ତ କୋଠା ସମ୍ମୁଖରେ ଜମି ମାଲିକଙ୍କ ସହିତ ଚୁକ୍ତି ହୋଇ ପାର୍ଟି ଦ୍ୱାରା ସଂଗୃହୀତ ଅର୍ଥରେ ଏକ ଟାଇଲ ଘର ନିର୍ମିତ ହେଲା । ସେହିଦିନଠାରୁ ନବଯୁଗ ପ୍ରେସ୍ ସେଠାରେ କାର୍ଯ୍ୟ କରିଆସୁଛି । ପୁରୁଣା ଫ୍ଲାଟ୍ ବେଡ଼ ବିକ୍ରି ହୋଇ ତା'ପରେ ଏକ ଆଧୁନିକ ଫ୍ଲାଟ୍ ବେଡ଼ ଓ ପୁରୁଣା ଟ୍ରେଡ଼ଲ ବିକାଯାଇ ଆଉ ଏକ ଟ୍ରେଡ଼ଲ ଓ ଅନ୍ୟାନ୍ୟ ମେସିନ ବସାଗଲା । କଟିଂ

ମେସିନ, ହଟ୍‌ପ୍ରେସ, ଷ୍ଟୋନ ଓ ବିଭିନ୍ନ ଆକାରର ଟେସ୍ କିଣାଗଲା ।

ଆଉ ଏକ ବହୁ ମୂଲ୍ୟବାନ ବିରାଟକାୟ ପ୍ରେସ୍ ଅଣାଯାଇଥିଲା ଓ ଏକ ସ୍ୱତନ୍ତ୍ର ଘର କରି ତାହାକୁ ବସାଯାଇଥିଲା । ମାତ୍ର ତାହାକୁ କାର୍ଯ୍ୟକାରୀ କରାଯାଇପାରିଲା ନାହିଁ । ପ୍ରେସ୍‌ଟି ବିକ୍ରି ହୋଇ ତାହାର ଅର୍ଥ ଭଗବତୀ ଭବନ ନର୍ମାଣରେ ବ୍ୟୟିତ ହେଲା ।

୧୯୪୬ରେ ଅଧୁନା ହାଇକୋର୍ଟ ସାମନା ଭଡ଼ାଘର ମାତ୍ର ଦୁଇଶହ ଟଙ୍କାରେ ଆଲମିରା, ଟେବୁଲ, ଚେୟାର ଓ ପ୍ରଗତିଶୀଳ ପୁସ୍ତକ କିଣି ନବଯୁଗ ଗନ୍ଥାଳୟର ଅୟମାରମ୍ଭ ହେଲା । ପରବର୍ତ୍ତୀ କାଳରେ କଳେବର ବୃଦ୍ଧି ହେବାରୁ ତାହା ବାଲୁବଜାରକୁ ସ୍ଥାନାନ୍ତରିତ ହେଲା । ପରେ ହରିପୁର ଓ ବର୍ତ୍ତମାନ ବଜ୍ରକବାଟି ରୋଡ଼ରେ ତାହା କାର୍ଯ୍ୟ କରୁଛି ଓ ନବଯୁଗ ଗ୍ରନ୍ଥାଳୟର ନିଜସ୍ୱ ବହି ଗୋଦାମଘର ନିଜସ୍ୱ ଜମିରେ ରହିଛି ।

ଏହା ବ୍ୟତୀତ ସେହି ସମୟରେ ପ୍ରଗତିଶୀଳ ଭାବଧାରାର ପ୍ରଚାର ଲାଗି ଗଣସଙ୍ଗୀତ, ନୃତ୍ୟ, ନାଟକ ପରିବେଷଣର ସଙ୍ଗଠନ ଗଣନାଟ୍ୟ ସଂଘ ଗଠିତ ହୋଇଥିଲା । ଏଥିଲାଗି ଜନତା ରଙ୍ଗମଞ୍ଚରେ ସମ୍ମିଳନୀ ହୋଇଥିଲା ଏବଂ ବହୁ କଳାକାର, କଣ୍ଠଶିଳ୍ପୀଙ୍କୁ ସଙ୍ଗଠିତ କରାଯାଇଥିଲା । ତାହାର ସାଂସ୍କୃତିକ କାର୍ଯ୍ୟକଳାପ ଏକ ନୂତନ ଆଲୋଡ଼ନ ସୃଷ୍ଟି କରିଥିଲା । ବହୁ ପେଶାଦାର କଳାକାର ଏହି ସଂଗଠନ ପ୍ରତି ଆକୃଷ୍ଟ ହୋଇଥିଲେ ।

**ଜଟିଳ ରାଜନୈତିକ ସାଂଗଠନିକ ପରିସ୍ଥିତିରେ ପାର୍ଟିର ଭୂମିକା**

ରାଜ୍ୟ କମ୍ୟୁନିଷ୍ଟ ପାର୍ଟିକୁ ରାଜ୍ୟର ବିଭିନ୍ନ ସମୟରେ ଗଠିତ ଶାସକ ଦଳଗୁଡ଼ିକଙ୍କ ଚାଷୀ, ଶ୍ରମିକ, ମଧ୍ୟବିତ୍ତ, ଛାତ୍ର, ଯୁବକ, କ୍ଷେତମଜଦୂର ବିରୋଧୀ ନୀତିଗୁଡ଼ିକ ବିରୁଦ୍ଧରେ ସଂଗ୍ରାମ କରିବାକୁ ପଡ଼ିଛି । ଭିନ୍ନ ଭିନ୍ନ ଅବସ୍ଥାରେ ଭିନ୍ନ ଭିନ୍ନ କର୍ମ କୌଶଳ ନିଆଯାଇଛି ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ରାଜ୍ୟରେ କଂଗ୍ରେସ ସରକାର, କଂଗ୍ରେସ-ଗଣତନ୍ତ୍ରର ମିଳିତ ସରକାର, ଜନକଂଗ୍ରେସ ସ୍ୱତନ୍ତ୍ର ସରକାର, ସ୍ୱତନ୍ତ୍ର ଉତ୍କଳ କଂଗ୍ରେସ ସରକାର, ଜନତା ପାର୍ଟି ସରକାର ଓ କଂଗ୍ରେସ (ଇ) ସରକାରର ସମ୍ମୁଖୀନ ହେବାକୁ ପଡ଼ିଛି ।

୧୯୬୨ରେ ଚୀନ-ଭାରତ ସଂଘର୍ଷ, ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନରେ ବିଭେଦ ଏବଂ ୧୯୬୪ରେ ଆନୁଷ୍ଠାନିକ ଭାବରେ ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନ ବିଭାଜନ ଓ ରାଜ୍ୟରେ ସିପିଆଇ (ଏମ) ଗଠନର ଏଠାରେ ତର୍ଜମା କରାଯାଉନାହିଁ । ମାତ୍ର ଏଥିରୁ ଉପୁଜିଥିବା ସାଂଗଠନିକ, ରାଜନୈତିକ ଓ ମତାଦର୍ଶଗତ ସମସ୍ୟାକୁ ରାଜ୍ୟ ପାର୍ଟିକୁ ମୁକାବିଲା କରିବାକୁ ପଡ଼ିଥିଲା । ପାର୍ଟିର ସର୍ବାଧିକ ସଂଖ୍ୟାଗରିଷ୍ଠ ସିପିଆଇରେ ରହିଥିଲେ ସତ, ମାତ୍ର ୧୯୬୪ ପରେ ସିପିଆଇ (ଏମ) ପକ୍ଷରୁ ସିପିଆଇ ଉପରେ ଆଦର୍ଶଗତ ଓ ସାଂଗଠନିକ ଆକ୍ରମଣ ହେଲା । କଂଗ୍ରେସ ଓ ଅନ୍ୟାନ୍ୟ ବୁର୍ଜୁଆଳଦଙ୍କ ପ୍ରଭାବହୀନ ଗଣଭିତ୍ତିକୁ କମ୍ୟୁନିଷ୍ଟ ଆନ୍ଦୋଳନର ଗଣଭିତ୍ତିରେ ପରିଣତ କରିବାର ଲକ୍ଷ୍ୟ ମ୍ଳାନ ହୋଇଗଲା । ସମାନ୍ତରାଳ ସହୋଦର ପାର୍ଟି

ପକ୍ଷରୁ ଐକ୍ୟବଦ୍ଧ ପାର୍ଟିବେଳର ଗଣସଂଗଠନ ଯଥା - ଶ୍ରମିକ, କୃଷକ, ଛାତ୍ର ଫ୍ରଣ୍ଟଗୁଡିକୁ ଦଖଲ କରିବାର ଉଦ୍ୟମ ଓ ତାହାର ପ୍ରତିରୋଧ ହେଲା । ଫଳରେ କମ୍ୟୁନିଷ୍ଟ ଆନ୍ଦୋଳନର ଏକକ ଆଘାତକାରୀ ଶକ୍ତି ହ୍ରାସ ପାଇଲା । ସିପିଆଇ ଏହି ଗଣଭିତ୍ତିଗୁଡ଼ିକୁ ରକ୍ଷା କରିବାର ସଂଗ୍ରାମ ସହିତ କମ୍ୟୁନିଷ୍ଟ ଆନ୍ଦୋଳନର ଅର୍ଥାତ୍ ସିପିଆଇ, ସିପିଆଇ (ଏମ)ର କାର୍ଯ୍ୟକ୍ଷେତ୍ରରେ ଐକ୍ୟ ସ୍ଥାପନର କର୍ମ କୌଶଳ ଗ୍ରହଣ କଲା ।

ସେହେତୁ ସିପିଆଇ (ଏମ)ରୁ ନକ୍ସଲପନ୍ଥୀ ବାହାରି ସିପିଆଇ (ଏମ) (ଏଲ) ଗଠନ କରି ବ୍ୟକ୍ତି ସନ୍ତ୍ରାସର ପଥ ନେବାବେଳେ ରାଜ୍ୟରେ ସିପିଆଇ ସେମାନଙ୍କ ସମ୍ପର୍କରେ ଆଦର୍ଶଗତ ସଂଗ୍ରାମ ଚଳେଇଲା । ସେମାନେ କମ୍ୟୁନିଷ୍ଟ ମାତ୍ର ଭ୍ରାନ୍ତ ପଥ ନେଇଛନ୍ତି ଓ ସେମାନଙ୍କୁ କମ୍ୟୁନିଷ୍ଟ ଆନ୍ଦୋଳନର ମୁଖ୍ୟ ସ୍ରୋତକୁ ଆଣିବା ଉଚିତ ବୋଲି ରାଜ୍ୟ ପାର୍ଟି ନିର୍ଣ୍ଣୟରେ ପହଞ୍ଚି ସେମାନଙ୍କ ସମ୍ପର୍କରେ ସହୋଦର ସୁଲଭ ଦୃଷ୍ଟିଭଙ୍ଗୀ ନେଲା ।

ପାର୍ଟିର ବିଭାଜନରେ କଂଗ୍ରେସ ଦଳ ଓ ଅନ୍ୟାନ୍ୟ ବୁର୍ଜୁଆ ଦଳର ଉଲ୍ଲାସ । ସେହି କେତୋଟି ବର୍ଷରେ ରାଜ୍ୟ ପାର୍ଟି କାଡ଼ରମାନଙ୍କ ମଧ୍ୟରେ ଆଦର୍ଶାଗତ ଶିକ୍ଷା ଦାନର କାର୍ଯ୍ୟକ୍ରମ ନେଇ ପାର୍ଟି ସଂଗଠନକୁ ରକ୍ଷା କଲା ।

୧୯୬୪ରେ ଓଡ଼ିଶାରେ ଐତିହାସିକ ଛାତ୍ର ଆନ୍ଦୋଳନରେ ଅନ୍ୟାନ୍ୟ କଂଗ୍ରେସ ବିରୋଧୀ ଯୁବଛାତ୍ର ସଂଗଠନ ଭିତରେ ଛାତ୍ରସଂଘର ଭୂମିକା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ।

କାମରାଜ ଯୋଜନା ଫଳରେ କଂଗ୍ରେସର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ସ୍ଥାନରେ ଶ୍ରୀ ବିରେନ ମିତ୍ର ମୁଖ୍ୟମନ୍ତ୍ରୀ ଥିବାବେଳେ କଟକରେ ରେଡ଼ିଓ ଦୋକାନରେ ସାମାନ୍ୟ ଗୋଳାମାଳ ଆଳରେ ଲୁହାବୁହା ଗ୍ୟାସ୍, ଗିରଫ, ୧୪୪ ଜାରି ଫଳରେ ସାରା ରାଜ୍ୟରେ ନାହିଁ ନଥିବା ଛାତ୍ର ବିକ୍ଷୋଭ ସୃଷ୍ଟି ହେଲା । ବିଞ୍ଝାରପୁର, ଜଗତସିଂହପୁର ପ୍ରଭୃତିରେ ଗୁଳି, ଅତ୍ୟାଚାର ଓ ହତ୍ୟା ।

ପାର୍ଟି ଛାତ୍ରସଂଘ ଜରିଆରେ ଏବଂ ନିଜ ଗଣ ସଙ୍ଗଠନ ଜରିଆରେ ଏହି ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲା ।

ପାର୍ଟିର ଆର୍ଥିକ ଦୁରବସ୍ଥା ହେତୁ ପାର୍ଟିର ମୁଖ୍ୟପତ୍ର ଆଠ ଦଶ ମାସ ବନ୍ଦ ହୋଇଗଲା ପରେ ପୁନଶ୍ଚ ପ୍ରାଣନାଥ ପଟ୍ଟନାୟକଙ୍କ ସମ୍ପାଦକତ୍ୱରେ ୧୪/୮/୬୪ରୁ ପ୍ରକାଶ ପାଇଲା ।

**୧୯୬୪ରେ ଆଇନ ଅମାନ୍ୟ**

ପାର୍ଟିକୁ ଓ ଗଣ ସଙ୍ଗଠନଗୁଡିକୁ ସଂଗ୍ରାମମୁଖୀ ସକ୍ରିୟ କରାଯିବା ଉଦ୍ୟମ ହେଲା ଜନ ସମସ୍ୟାଗୁଡିକୁ ଧରି କେନ୍ଦ୍ର ପାର୍ଟିର ଆହ୍ୱାନରେ ୧୯୬୪ ଅଗଷ୍ଟ ୨୪ରୁ ୨୮ ଯାଏ ଭାରତବ୍ୟାପୀ ଦରଦାମ ବୃଦ୍ଧି ବିରୋଧୀ ଆନ୍ଦୋଳନ ହେଲା । ଏଥିରେ ଓଡ଼ିଶୀ ପାର୍ଟିର ବ୍ୟାପକ ଅଂଶ ଗ୍ରହଣ, ବିଭାଜନ ପରେ ପାର୍ଟିର ସଂଗ୍ରାମୀ ଭାବମୂର୍ତ୍ତୀକୁ ଅକ୍ଷୁଣ୍ଣ ରଖିଲା । ବ୍ୟାଙ୍କ୍ ଜାତୀୟକରଣ, ବିଦେଶୀ ବାଣିଜ୍ୟ ଓ ଖାଦ୍ୟ ଶସ୍ୟ କାରବାର, ରାଷ୍ଟ୍ରୟତ୍ତକରଣ, ମାର୍ଶାଘାଇ, ଧାନମଣ୍ଡଳ,

ଯାଜପୁର ରୋଡ଼, କଟକ, ବଡ଼ବିଲ୍, ସୋନପୁର, ବରଗଡ଼, ବାରିପଦା, ଖୋର୍ଦ୍ଧା, ଆସ୍କା, ବ୍ରହ୍ମପୁର, ଢେଙ୍କାନାଳ, ବଲାଙ୍ଗୀର, କେଉଁଝର ପ୍ରଭୃତି ସ୍ଥାନରେ ହଜାର ହଜାର ଜନତାଙ୍କ ସହଯୋଗରେ ୯ ଶହ ପ୍ରତୀକ ସତ୍ୟାଗ୍ରହୀ ଆଇନ ଅମାନ୍ୟ କରିଥିଲେ । ଓଡ଼ିଶାରେ ୨୬୩ ଜଣ କମ୍ୟୁନିଷ୍ଟଙ୍କୁ ଗିରଫ କରାଯାଇ ଜେଲ୍‌କୁ ନିଆଯାଇଥିଲା । ବାରିପଦାରେ ଅନଶନ କରାଯାଇଥିଲା । ଏହି ସତ୍ୟାଗ୍ରହ ୫ ଦିନ କାଳ ଚାଲିଥିଲା ।

ଏହି ସତ୍ୟାଗ୍ରହରେ ବିଭିନ୍ନ ସ୍ଥାନରେ ସତ୍ୟାଗ୍ରହୀମାନଙ୍କୁ ଜେଲ୍ ଦଣ୍ଡ ମିଳିଥିଲା । କଟକରେ ଦୁର୍ଗା ଚରଣ ମହାନ୍ତି, ରାମକୃଷ୍ଣ ପତି, ଲୋକନାଥ ଚୌଧୁରୀ, ଦୁଃଶାସନ ଜେନା, ବ୍ରଜ ପଟ୍ଟନାୟକ ପ୍ରମୁଖଙ୍କୁ ୩ ମାସ ଜେଲ୍, ୩୦୦ ଟଙ୍କା ଜୋରିମାନା, ଅନାଦାୟେ ୩ ମାସ ଅଧିକ କାରାବାସ ଦଣ୍ଡ ମିଳିଥିଲା । କଟକ ଜେଲ୍‌ରେ ଅନାନ୍ୟ ସତ୍ୟାଗ୍ରହୀମାନଙ୍କ ବିଚାର ହୋଇଥିଲା । ଖଲାସ ପରେ କଟକରେ ଗୁରୁଚରଣ ପଟ୍ଟନାୟକଙ୍କ ସଭାପତିତ୍ୱରେ ଏକ ବିରାଟ ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହୋଇଥିଲା ।

ପୁରୀରେ ୬୪ ଜଣ ଗିରଫ ଓ ଦଣ୍ଡିତ ସତ୍ୟାଗ୍ରହୀଙ୍କ ମଧ୍ୟରେ ଥିଲେ ପ୍ରାଣନାଥ ପଟ୍ଟନାୟକ, ଗତିକୃଷ୍ଣ ସ୍ୱାଇଁ, ସୋମନାଥ ପାତ୍ର, ବାସୁଦେବ ଦାସ ପ୍ରମୁଖ । ପ୍ରଥମ ଦଳକୁ ୨ ମାସ ଓ ଦ୍ୱିତୀୟ ଦଳକୁ ୫ ସପ୍ତାହ ଜେଲ୍ ହୋଇଥିଲା ।

ବାଲେଶ୍ୱରରେ ଗଙ୍ଗାଧର ବିଶ୍ୱାଳ, ପ୍ରାଣକୃଷ୍ଣ ପାଢ଼ୀ, ପଞ୍ଚାନନ ମହାରଣା ପ୍ରମୁଖଙ୍କୁ ଏକ ମାସ ଜେଲ୍ ହୋଇଥିଲା । ବ୍ରହ୍ମପୁରରେ ୩ ଦିନ ବ୍ୟାପୀ ସତ୍ୟାଗ୍ରହ ପୂର୍ବରୁ ୮ ହଜାର ଜନତାର ଏକ ବିଶାଳ ସମାବେଶ ହୋଇଥିଲା । ପ୍ରଥମ ଦିନ ସଦାନନ୍ଦ ମହାନ୍ତିଙ୍କ ନେତୃତ୍ୱରେ ସତ୍ୟାଗ୍ରହ ଅନୁଷ୍ଠିତ ହେଲା । ୫ ଶତାଧିକ ଲୋକ ପଟୁଆରରେ ଯାଇଥିଲେ । ପରବର୍ତ୍ତୀ ଦିନଗୁଡ଼ିକରେ ବ୍ରହ୍ମପୁର ଓ ଛତ୍ରପୁରରେ ଆଇନ ଅମାନ୍ୟ ଆନ୍ଦୋଳନରେ ନେତୃତ୍ୱ ବିଶ୍ୱନାଥ ସାହୁ, ଲକ୍ଷ୍ମଣ ମହାପାତ୍ର ପ୍ରମୁଖ ନେଇଥିଲେ । ଆସ୍କାରେ ହରିହର ଦାଶ, ଦୂତିକୃଷ୍ଣ ପଣ୍ଡା, ଜଗନ୍ନାଥ ସ୍ୱାମୀ, ପ୍ରଫୁଲ୍ଲ ପାଢ଼ୀ ପ୍ରମୁଖ ସତ୍ୟାଗ୍ରହ କରିଥିଲେ । ପ୍ରତ୍ୟେକ ଦିନ ସେଠାରେ ଅନଶନ ଚାଲିଥିଲା ।

ବାରିପଦାରେ ତିନିଦିନ ସତ୍ୟାଗ୍ରହ ଚାଲିଥିଲା । ୧୧ ଜଣଙ୍କୁ ଜାନୁଆରୀ ୨ ତାରିଖରେ ଗିରଫ କରାଗଲା ।

ସମ୍ବଲପୁରର ବରଗଡ଼ରେ ଲେଙ୍ଗୁ ମିଶ୍ର, ରାଧାବଲ୍ଲଭ ମିଶ୍ର, ଶିତିକଣ୍ଠ ପାଟଯୋଷୀଙ୍କ ନେତୃତ୍ୱରେ ସତ୍ୟାଗ୍ରହ ଚାଲିଥିଲା ।

୧୯୬୪ ସେପ୍ଟେମ୍ବର ୨୫ ରେ ରାଜ୍ୟ ପାର୍ଟି ଓଡ଼ିଶାରେ ବୋନସ୍ ଓ ଅନ୍ୟାନ୍ୟ ଦାବୀ ଲାଗି ହରତାଳ କରିବାକୁ ନିର୍ଦ୍ଦେଶ ହୋଇଥିଲା । ଭଦ୍ରଖ ସମେତ ବିଭିନ୍ନ ସ୍ଥାନରେ ତାହା ପୂର୍ଣ୍ଣ ସଫଳ ହୋଇଥିଲା ।

ପାର୍ଟି ବିଭାଜନ ପରେ କଂଗ୍ରେସ ବିରୁଦ୍ଧରେ ଏହି ଗଣ କାର୍ଯ୍ୟକଳାପ ପାର୍ଟିର ସଂଗ୍ରାମୀ ପରମ୍ପରାକୁ ବଳିଷ୍ଠ କଲା ।

ଏହି ସଂଗଠିତ ଆନ୍ଦୋଳନ ପୂର୍ବରୁ ଜନଦାବୀଗୁଡ଼ିକର ହାସଲ ପାଇଁ ବିଭିନ୍ନ ଜିଲ୍ଲା ପାର୍ଟି ସଭା ସମାବେଶ ବିକ୍ଷୋଭ କରୁଥିଲେ । କୁଜଙ୍ଗରେ ଅନଶନ ଏକ ବ୍ୟାପକ ଜନଉଦବେଳନ ସୃଷ୍ଟି କରିଥିଲା । ଧାନମଣ୍ଡଳ, ଯାଜପୁର ରୋଡ଼, ମାର୍ଶାଘାଇରେ ଅନଶନ ଆନ୍ଦୋଳନ ଚାଲିଥିଲା ।

୧୯୬୪ ଅକ୍ଟୋବର ୨ରେ ଭାରତବ୍ୟାପୀ ଖାଦ୍ୟଶସ୍ୟ ଜାତୀୟକରଣ ଦାବୀ ଦିବସ ଓଡ଼ିଶାରେ ପାର୍ଟି ପ୍ରଭାବିତ ବିଭିନ୍ନ ସ୍ଥାନରେ ପାଳିତ ହୋଇଥିଲା ।

୧୯୬୪ ଡିସେମ୍ବର ୧୩ରୁ ୨୩ ବମ୍ବେଠାରେ ପାର୍ଟିର ୭ମ କଂଗ୍ରେସ ଅନୁଷ୍ଠିତ ହୋଇ ଜାତୀୟ ଗଣତାନ୍ତ୍ରିକ ବିପ୍ଳବ ଲାଗି ଜାତୀୟ ଗଣତାନ୍ତ୍ରିକ ସାମ୍ମୁଖ୍ୟ ଗଠନ ସଂକ୍ରାନ୍ତ କାର୍ଯ୍ୟସୂଚୀ ଗୃହୀତ ହୋଇଥିଲା । ବମ୍ବେ କଂଗ୍ରେସ ପରେ ଆସ୍କାଠାରେ ରାଜ୍ୟ ପାର୍ଟିର ଷଷ୍ଠ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସଦାନନ୍ଦ ମହାନ୍ତି ସମ୍ପାଦକ ନିର୍ବାଚିତ ହୋଇଥିଲେ ।

ରାଜ୍ୟ ପାର୍ଟି ସମ୍ମିଳନୀ ପରେ ସାଂଗଠନିକ କାରଣରୁ ୧୯୬୫ ଫେବୃଆରୀ ୨୬/ ୨୭ରେ ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାର ମିଳିତ ସମ୍ମିଳନୀ ଭେଡ଼େନ ଥାନାର ରେଶମଠାରେ ଅନୁଷ୍ଠିତ ହୋଇଥିଲା । ପୂର୍ବତନ ଜିଲ୍ଲା ସମ୍ପାଦକ ଦୟାନନ୍ଦ ଶତପଥୀ, ପ୍ରସନ୍ନ କୁମାର ପଣ୍ଡା, ରାଜ୍ୟ ପାର୍ଟି ସମ୍ପାଦକ ଗୁରୁଚରଣ ପଟ୍ଟନାୟକ ପ୍ରମୁଖ ଉଦବୋଧନ ଦେଇଥିଲେ । ପୁନଶ୍ଚ ନଟବର ବନଛୋର ଓ ମଦନ ବୈଠାରୁ ଯଥାକ୍ରମେ ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲା ପାର୍ଟିର ସମ୍ପାଦକ ନିର୍ବାଚିତ ହେଲେ ।

୧୯୬୫ ମଇ ୨୧ରୁ ୨୮ ଯାଏ ଗଣତାନ୍ତ୍ରିକ ଅଧିକାରର ସୁରକ୍ଷା ଓ ଖାଦ୍ୟ, ଦରଦାମ ସଂକ୍ରାନ୍ତ ସପ୍ତାହ ବ୍ୟାପୀ ସର୍ବଭାରତୀୟ ଆନ୍ଦୋଳନ ପାର୍ଟି ଡାକରାରେ ଅନୁଷ୍ଠିତ ହୋଇଥିଲା । ଭାରତ ରକ୍ଷା ଆଇନ ରଦ୍ଦ କର, କେରଳରୁ ରାଷ୍ଟ୍ରପତି ଆଇନ ଉଠାଇ ନିଅ ଥିଲା ମୁଖ୍ୟ ରାଜନୈତିକ ଦାବୀ । ଓଡ଼ିଶାରେ ପାର୍ଟି ପକ୍ଷରୁ ଏହି ସପ୍ତାହ ପାଳନ କରାଯାଇ ବିଭିନ୍ନ ଜିଲ୍ଲାରେ ସଭା ସମିତି କରାଯାଇଥିଲା ।

ରାଜେଶ୍ୱର ରାଓ ଓ ଭବାନୀ ସେନା ଓଡ଼ିଶା ପାର୍ଟି ବୈଠକରେ ଯୋଗ ଦେଇ ୭ମ ପାର୍ଟି କଂଗ୍ରେସର ନିର୍ଦ୍ଧାରଣକୁ ଭିତ୍ତି କରି ସମଗ୍ର ପାର୍ଟିକୁ ରାଜନୈତିକ ଭାବରେ ଐକ୍ୟବଦ୍ଧ କରିବାକୁ ପରାମର୍ଶ ଦେଇଥିଲେ ।

୧୯୬୫ର ଆଦ୍ୟ ଭାଗରେ ଏ.ଆଇ.ଟି.ୟୁ.ସି. କମ୍ୟୁନିଷ୍ଟ ଟ୍ରେଡ ୟୁନିୟନ କର୍ମୀଙ୍କ ନେତୃତ୍ୱରେ ଚୌଦ୍ୱାରା ଓ.ଟି.ଏମ୍. ଶ୍ରମିକମାନଙ୍କ ଅନଶନ, ଧର୍ମଘଟ ସଫଳ ହୋଇ ଦାବୀମାନ ଆଦାୟ ହୋଇଥିଲା ।

ଦରଦାମ ବୃଦ୍ଧି ନିରୋଧ, ଖାଦ୍ୟ ଯୋଗାଣ ଲାଗି ଗୋଲା ପ୍ରତିଷ୍ଠା, ଚାଷୀଙ୍କୁ ଉପଯୁକ୍ତ ଦର, ପଡ଼ିଆ ଜମି ବଣ୍ଟନ, ଚିନି, କିରୋସିନି, ଯୋଗାଣର ଦାବୀ ଘେନି କଂଗ୍ରେସ ସରକାରକୁ ରାଜ୍ୟ ପାର୍ଟି ସ୍ମାରକଲିପି ଦେଇ ସଭା, ବିକ୍ଷୋଭ ଓ ପଦ ଯାତ୍ରା ସଂଗଠିତ କରିଥିଲା ।

ରାଜ୍ୟ ପାର୍ଟି ଜାତୀୟ, ରାଜ୍ୟର ସମସ୍ୟା ଘେନି ସଂଗ୍ରାମ କରିବା ବେଳେ, ଏହି ଘଡ଼ିସନ୍ଧି ସମୟରେ ତା'ର ଅନ୍ତର୍ଜାତିକ କର୍ତ୍ତବ୍ୟକୁ ମଧ୍ୟ ତୁଲାଇଥିଲା । ୧୯୬୩ ସେପ୍ଟେମ୍ବର ୧ରେ ଯୁଦ୍ଧ ବିରତି ଲଙ୍ଘନ କରି ପାକିସ୍ତାନ କାଶ୍ମୀର ଆକ୍ରମଣ କଲା । ଆମେରିକା ହିଁ ପାକିସ୍ତାନକୁ ସାହାଯ୍ୟ ଦେଇ ଭାରତ ବିରୋଧରେ ଯୁଦ୍ଧ କରାଇଥିଲା । ନଭେମ୍ବର ୨୭ରେ ରାଜ୍ୟ ପାର୍ଟି ପକ୍ଷରୁ ଆମେରିକା ସାମ୍ରାଜ୍ୟବାଦ ବିରୋଧୀ ଦିବସ ପାଳନ କରାଯାଇ ସଭାସମିତି ଅନୁଷ୍ଠିତ ହୋଇଥିଲା । ଭିଏତ୍‌ନାମ ବିରୋଧରେ ଆମେରିକାର ବର୍ବର ଆକ୍ରମଣର ନିନ୍ଦା କରି ଓ ଭିଏତ୍‌ନାମବାସୀଙ୍କ ମହାନ ମୁକ୍ତି ସଂଗ୍ରାମକୁ ସମର୍ଥନ କରି ପାର୍ଟି ରାଜ୍ୟରେ ପାର୍ଟି ପକ୍ଷରୁ ଅଭିଯାନ ଚଳାଯାଇଥିଲା । ଏହି ବର୍ଷ ନଭେମ୍ବର ୨୧ରେ କଟକଠାରେ ରାଜ୍ୟ ଭାରତ-ସୋଭିଏତ୍ ସାଂସ୍କୃତିକ ସମିତିର ପ୍ରଥମ ସମ୍ମିଳନୀରେ ପାର୍ଟି ସାଥୀମାନେ ସକ୍ରିୟ ଅଂଶ ଗ୍ରହଣ କରି ତାକୁ ଯଶସ୍ୱୀ କରିଥିଲେ । ଯାହା ପରବର୍ତ୍ତୀ କାଳରେ ଏକ ବିରାଟ ମୈତ୍ରୀ ସଂଗଠନରେ ପରିଣତ ହେଲା ।

ପାର୍ଟି ବିଭାଜନ ପରେ ସି.ପି.ଆଇ.ର ରାଜ୍ୟ ଶାଖା ଏହିପରି ସଂଗ୍ରାମ ଓ ସାଂଗଠନିକ ପୂନର୍ଗଠନ କାର୍ଯ୍ୟ ଚଳେଇ ପାର୍ଟିକୁ ଆଦର୍ଶଗତ ଭାବରେ ଐକ୍ୟବଦ୍ଧ କରାଇଲା ।

ନୂଆ ଦୁନିଆର ସମ୍ପାଦକ ପଦରେ ୧୯୬୮ର ଅଷ୍ଟମ ସଂଖ୍ୟା ଯାଏ ପ୍ରାଣନାଥ ପଟ୍ଟନାୟକ ସମ୍ପାଦକ ଥିଲେ । ତାହା ପରେ ୧୯୮୯ର ମଧ୍ୟଭାଗ ଯାଏ ଗୁରୁଚରଣ ପଟ୍ଟନାୟକ ଏହାର ସମ୍ପାଦକ ଏବଂ ୧୯୬୫ ଜାନୁୟାରୀରୁ ଅନନ୍ତ ପ୍ରଧାନଙ୍କ ପରିବର୍ତ୍ତେ ନନ୍ଦକିଶୋର ପଟ୍ଟନାୟକ ଏହାର ପ୍ରକାଶକ ରାଜ୍ୟ ପାର୍ଟି ନିର୍ଦ୍ଧାରଣ ଅନୁସାରେ ରହିଛନ୍ତି ।

୧୯୬୬ ରେ କଳାହାଣ୍ଡିରେ ଭୟାବହ ଦୁର୍ଭିକ୍ଷ ଓ ଶତ ଶତ ଲୋକଙ୍କ ଅନାହାର ମୃତ୍ୟୁର କରାଳ ଚିତ୍ର ନୂଆ ଦୁନିଆରେ ପ୍ରକାଶ ପାଇଲା । ସମ୍ପାଦକ ପ୍ରାଣନାଥ ପଟ୍ଟନାୟକ କଳାହାଣ୍ଡି ଗସ୍ତ କରି ତାଙ୍କ ଚାକ୍ଷୁଷ ବିବରଣୀ ସମ୍ବାଦପତ୍ରମାନଙ୍କରେ ପ୍ରକାଶ କଲେ । ସମ୍ବଲପୁରରୁ ଡଃ ପ୍ରସନ୍ନ କୁମାର ପଣ୍ଡାଙ୍କ ନେତୃତ୍ୱରେ ପ୍ରତିନିଧି ଦଳ କଳାହାଣ୍ଡି ଗସ୍ତ କଲେ । କଂଗ୍ରେସ ସରକାର ମୁଖା ଖୋଲିବାରେ ଏବଂ ସର୍ବୋଦୟଠାରୁ ଅନ୍ୟାନ୍ୟ ସେବାନୁଷ୍ଠାନ କଳାହାଣ୍ଡିରେ ରିଲିଫ କାର୍ଯ୍ୟ ପାଇଁ ଆଗଭର ହେବାରେ କମ୍ୟୁନିଷ୍ଟମାନଙ୍କ କାର୍ଯ୍ୟ ସାହାଯ୍ୟକାରୀ ହେଲା ଏବଂ ପାର୍ଟିର ମର୍ଯ୍ୟାଦା ବୃଦ୍ଧି କଲା ।

୧୯୬୭ରେ ଦେଶରେ କଂଗ୍ରେସ ଶାସନ ବିରୋଧରେ ଜନ ଅସନ୍ତୋଷ ପ୍ରଜ୍ଜ୍ୱଳିତ ହେଲା । କଂଗ୍ରେସ ତ୍ୟାଗ କରି ବିଭିନ୍ନ ରାଜ୍ୟରେ କ୍ରାନ୍ତି ଦଳ ବଂଗଳା କଂଗ୍ରେସ, ଜନ

କଂଗ୍ରେସ ପରି ଦଳମାନ ଗଠିତ ହୋଇଥିଲା । ଓଡ଼ିଶାରେ ମହତାବଙ୍କ ନେତୃତ୍ୱରେ ଜନକଂଗ୍ରେସ ଗଢ଼ା ଯାଇଥିଲା । ନିର୍ବାଚନ ପରେ କଂଗ୍ରେସ ପରାସ୍ତ ହେବାରୁ ଜନ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ କ୍ଷମତାକୁ ଆସିଥିଲେ । ସି.ପି.ଆଇ. ଏହି ନିର୍ବାଚନରେ ବିଧାନସଭା ଲାଗି ୨୮ଟି ସ୍ଥାନରେ ଓ ଲୋକସଭା ଲାଗି ୨ଟି ସ୍ଥାନରେ ପ୍ରାର୍ଥୀ ଦେଇ ୭ଟି ବିଧାନସଭା ଆସନ ଲାଭ କରିଥିଲେ । ହରିହର ଦାସ, ଲୋକନାଥ ଚୌଧୁରୀ, ଗତିକୃଷ୍ଣ ସ୍ୱାଇଁ, ଗଙ୍ଗାଧର ପାଇକରାୟ, ପ୍ରସନ୍ନ କୁମାର ପଣ୍ଡା, ଲକ୍ଷ୍ମଣ ମହାପାତ୍ର ଓ ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ ବିଜୟୀ ହୋଇଥିଲେ ।

ଦଶପଲ୍ଲା, ରଣପୁର, ବିନିକା, ଭଞ୍ଜନଗର, ବଡ଼ଚଣା, ଅନୁଗୋଳ, ନିମାପଡ଼ା, ବଡ଼ମ୍ବା, ଛେଣ୍ଡିପଦା, ଆଠଗଡ଼, ରାଉରକେଲା, କଟକ ସଦର, ଚାନ୍ଦବାଲି, ବରଗଡ଼, ଭଟଲି, ପଦ୍ମପୁର, ବାରିପଦା, ଭୁବନେଶ୍ୱର, ବ୍ରହ୍ମପୁର, ବାଣପୁର ନିର୍ବାଚନ ମଣ୍ଡଳୀରେ ମଧ ବିଧାନସଭା ପାଇଁ ଏବଂ ଭଞ୍ଜନଗର ସମ୍ବଲପୁର ଲୋକସଭା ଆସନ ଲାଗି ପ୍ରାର୍ଥୀ ଦିଆଯାଇଥିଲା ।

୯ଟି ରାଜ୍ୟରେ କଂଗ୍ରେସ ପରାସ୍ତ ହେଲା । କଂଗ୍ରେସ ବିରୋଧରେ ଅଣ-କଂଗ୍ରେସ ସରକାରଙ୍କୁ ପାର୍ଟି ସର୍ବଭାରତୀୟ କ୍ଷେତ୍ରରେ ସମର୍ଥନ କରିବ ବୋଲି ନିର୍ଣ୍ଣୟ କରିଥିଲା । ମାତ୍ର ସରକାରଙ୍କ ଜନ ସ୍ୱାର୍ଥ ବିରୋଧୀ ନୀତି ଓ କାର୍ଯ୍ୟକଳାପ ବିରୋଧରେ ସଂଗ୍ରାମ ଅବ୍ୟାହତ ରହିବ ବୋଲି ପାର୍ଟି କର୍ମ-କୌଶଳ ନେଇଥିଲା । କଂଗ୍ରେସକୁ କ୍ଷମତାରୁ ଦୂରରେ ରଖିବା ଦୃଷ୍ଟିରୁ ପଞ୍ଜାବ, ଉତ୍ତର ପ୍ରଦେଶ ଓ ବିହାର ପାର୍ଟି କଂଗ୍ରେସ ବିରୋଧୀ ମିଳିତ ସରକାରରେ ଯୋଗ ଦେଇଥିଲା ।

ଓଡ଼ିଶାରେ ପରିସ୍ଥିତି ସ୍ୱତନ୍ତ୍ର । ଘୋର ପ୍ରତିକ୍ରିୟାଶୀଳ, ଦକ୍ଷିଣପନ୍ଥୀ, ସାମନ୍ତବାଦ ଓ ସାମ୍ରାଜ୍ୟବାଦ ପକ୍ଷପାତୀ ସ୍ୱତନ୍ତ୍ର ସହିତ ଜନ କଂଗ୍ରେସର ମିଳିତ ସରକାର ଯାବତୀୟ ଜନବିରୋଧୀ କାର୍ଯ୍ୟ କରିବ ବୋଲି ରାଜ୍ୟ ପାର୍ଟି ମୋଟାମୋଟି ସମର୍ଥନ ଦେଲେ ମଧ ଖୁବ୍ ସତର୍କ ରହିଥିଲା ।

**ସ୍ୱତନ୍ତ୍ର ଜନ କଂଗ୍ରେସ ଶାସନ କାଳରେ ଦମନ ଅତ୍ୟାଚାର ଓ ପାର୍ଟିର ଭୂମିକା**

ସ୍ୱତନ୍ତ୍ର ଜନକଂଗ୍ରେସ ସରକାରର ପ୍ରଥମ ପରୀକ୍ଷା ହେଲା ଭୂସଂସ୍କାର । ୧୯୬୦ ଜାନୁଆରୀ ୩୦ରେ ଚାଷୀ ଆନ୍ଦୋଳନ ଫଳରେ କଂଗ୍ରେସ ସରକାରଦ୍ୱାରା ଗୃହୀତ ଭୂସଂସ୍କାର ଆଇନରେ ସର୍ବୋଚ୍ଚ ସୀମା ୭୫ ଏକର ଥିଲା । ୧୯୬୫ରେ ପୁନଶ୍ଚ ଚାଷୀ ଆନ୍ଦୋଳନ ଯେଉଁଥିରେ ଆମ ପାର୍ଟି ସର୍ବଦା ମୁଖ୍ୟତଃ ଅଗ୍ରଣୀ ଭୂମିକା ନେଇ ଆସିଛି, ତାହା ଫଳରେ ସର୍ବୋଚ୍ଚ ସୀମା କମେଇ ୨୦ ଏକର କରାଗଲା । ବଲାଙ୍ଗୀରର ଜଣେ ରାଜଭକ୍ତ ଜମି ମାଲିକ ଏହା ବିରୋଧରେ ମକଦ୍ଦମା କରିବାରୁ ଓଡ଼ିଶା ହାଇକୋର୍ଟ ସମଗ୍ର ଆଇନକୁ ରଦ୍ଦ କରିଦେଲେ । ସ୍ୱତନ୍ତ୍ର ଜନକଂଗ୍ରେସ ସରକାର ସର୍ବୋଚ୍ଚ ନ୍ୟାୟାଳୟରେ ଅପିଲ୍ ନ କରିବାରୁ ସିପିଆଇ ତାହା ବିରୋଧରେ ରାଜ୍ୟରେ ପ୍ରତିବାଦ ଆନ୍ଦୋଳନ, ସଭା ସମାବେଶ ବିକ୍ଷୋଭମାନ ସଂଗଠିତ କଲା ।

ପୂର୍ବତନ ରଜା-ଜମିଦାର ଓ ବଡ଼ ଜମି ମାଲିକ, କ୍ଷୁଦ୍ର ମଧ୍ୟମ ଚାଷୀ ନିର୍ବିଶେଷରେ ଖଜଣା ଛାଡ଼ କରି ବସ୍ତୁତଃ ଏହି ସରକାର ଗରିବ ଚାଷୀ ରକ୍ଷା ନାମରେ ଜମିରେ ନ୍ୟସ୍ତ ସ୍ୱାର୍ଥ ଥିବା ସଂପ୍ରଦାୟକୁ ସାହାଯ୍ୟ କଲା ଓ ବଡ ଜମି ମାଲିକଙ୍କୁ ଖଜଣା ଛାଡ ଦ୍ୱାରା ରାଜସ୍ୱ ହାନି କରି ଓଡ଼ିଶାବାସୀଙ୍କ ଉପରେ ୨ କୋଟିରୁ ଉର୍ଦ୍ଧ୍ୱ ଟିକସ ବସାଇଲା । ବସ୍ ଭଡ଼ା ବୃଦ୍ଧି କରାଗଲା ।

କଂଗ୍ରେସ ଶାସନ ଅମଳରେ ପ୍ରଚଳିତ ଜଳକର ଆଇନକୁ ସିପିଆଇ ଓ ବାମପନ୍ଥୀମାନେ ବିରୋଧ କରୁଥିଲେ । ଶାସନକୁ ଆସିବା ପୂର୍ବରୁ ସ୍ୱତନ୍ତ୍ର-ଜନକଂଗ୍ରେସ ମଧ୍ୟ ଏହାର ବିରୋଧ କରୁଥିଲେ । ମାତ୍ର କ୍ଷମତାସୀନ ହେବା ପରେ ତାହାକୁ ଉଚ୍ଛେଦ କରାଗଲା ନାହିଁ । ତାହା ବିରୋଧରେ ପାର୍ଟି ବିଶେଷତଃ ସମ୍ବଲପୁରରେ ବିଶାଳ ଆନ୍ଦୋଳନ ଗଢି ତୋଳିଲା । ପାର୍ଟି ନେତୃତ୍ୱରେ ବଲାଙ୍ଗୀର ସମ୍ବଲପୁର ଚାଷୀମାନେ ଭେଡ଼େନଠାରେ ଏକ ବିରାଟ ଜଳକର ସମ୍ମିଳନୀ ଅନୁଷ୍ଠିତ କରାଇଲେ ।

ଏହି ସରକାର ମଧ୍ୟ ପାଠ୍ୟ ପୁସ୍ତକ ଜାତୀୟକରଣ ନୀତିକୁ ନାକଚ କରିବା ଉଦ୍ୟମ କରିବାରୁ ପାର୍ଟି ତାହାର ତୀବ୍ର ବିରୋଧ କରିଥିଲା ।

ସ୍ୱତନ୍ତ୍ର ଜନକଂଗ୍ରେସ ସରକାର କଂଗ୍ରେସର ଅନ୍ୟ ଏକ ବୁର୍ଜୁଆ ବିକଳ୍ପ ଏବଂ ଜନକଂଗ୍ରେସ ଦଳ ପ୍ରତିକ୍ରିୟାଶୀଳ ସ୍ୱତନ୍ତ୍ର ଦଳର ଯେ ତଳିଆ ଅଂଶୀଦାର, ଏହା ଶ୍ରମିକ, ଚାଷୀ, ଛାତ୍ରମାନଙ୍କ ଦାବୀ ଓ ସଂଗ୍ରାମ କାଳରେ ସ୍ପଷ୍ଟ ହୋଇଗଲା । ଏହି ମିଳିତ ସରକାର ଦମନ, ପୀଡ଼ନ, ଗୁଳି, ଜେଲ୍, ମିଥ୍ୟା ମକଦ୍ଦମା, ଗୁଣ୍ଡା ଆକ୍ରମଣର ଆଶ୍ରୟ ନେଲା । ଶ୍ରମିକ-କୃଷକମାନଙ୍କ ସ୍ୱାର୍ଥ ଉପରେ ଆଘାତ ପରେ ଆଘାତ ଦେଲା ।

ରାଜଗାଙ୍ଗପୁର ଶ୍ରମିକମାନଙ୍କ ଉପରେ ଗୁଳି ଝାରସୁଗୁଡ଼ା ଓରିଏଣ୍ଟ କାଗଜକଳର ବିକ୍ରୀ ବିରୋଧୀ ଶ୍ରମିକ ସଂଗ୍ରାମ ଉପରେ ଗୁଳି ଓ ୪ ଜଣଙ୍କୁ ହତ୍ୟା, ଦରଦାମ ବୃଦ୍ଧି ବିରୋଧରେ ସମ୍ବଲପୁରରେ କମ୍ୟୁନିଷ୍ଟ ଓ ଛାତ୍ରମାନଙ୍କ ଆନ୍ଦୋଳନ ଉପରେ ବର୍ବର ପୁଲିସ ଆକ୍ରମଣ ଓ ଗୁଣ୍ଡା ଲଗେଇ ମାଡ଼, ଗିରଫଦାରୀ, ଓଡ଼ିଶାରେ ଶ୍ରମିକଙ୍କ ଘେରାଉ କରିବା ଅଧିକାର ଉପରେ ନିଷେଧାଦେଶ, ଖଲିକୋଟରେ ଛାତ୍ରମାନଙ୍କ ଉପରେ ଅତ୍ୟାଚାର ଦମନ ଲାଠି, ବାଲେଶ୍ୱରରେ ଛାତ୍ରମାନେ ମହତାବ ବାବୁଙ୍କ ପାଖରେ ବନ୍ୟାଦୁର୍ଗତଙ୍କ ଲାଗି ରିଲିଫ ଦାବୀ କରିବାରୁ ଭୟାବହ ପୁଲିସ ଆକ୍ରମଣ, ଲାଠି, ଲୁହବୁହା ଗ୍ୟାସ୍ ପ୍ରୟୋଗ, ଜଳେଶ୍ୱରଠାରେ ଭୋକିଲାଙ୍କ ଉପରେ ଗୁଳିରେ ୨ ଜଣଙ୍କୁ ହତ୍ୟା ଏ ସରକାରର ଦମନଲୀଳା କେତୋଟି ଚିତ୍ର । ଜଳେଶ୍ୱରରେ ରାଜ୍ୟ କୃଷକସଭାର ସମ୍ପାଦକ କଃ ରାମଚନ୍ଦ୍ର ମିଶ୍ରଙ୍କୁ ଗିରଫ କରି ନେଇ ଲୋକଙ୍କ ଉପରେ ଦମନ ଚାଲିଲା ।

୧୯୬୮ ଅଗଷ୍ଟ ୯ରୁ ଗଞ୍ଜାମର ଜୟଶ୍ରୀ କେମିକାଲ ଶ୍ରମିକଙ୍କ ୨୬ ଦିନ କାଳ ଧର୍ମଘଟ ଉପରେ ପୁଲିସର ଆକ୍ରମଣ ଓ ଲାଠି ଚାଳିଥିଲା – ସଦାନନ୍ଦ ମହାନ୍ତି ପ୍ରମୁଖ ୯୦ ଜଣ ସାଥୀଙ୍କୁ ଗିରଫ କରାଯାଇଥିଲା ।

ଏହି ସରକାରର ଶାସନ କାଳରେ ସିପିଆଇ ଚାଷୀ, ଶ୍ରମିକ ମଧ୍ୟବିତ୍ତ ସ୍ୱାର୍ଥକୁ ରକ୍ଷା କରିବା ଲାଗି ରାଜ୍ୟ ବ୍ୟାପୀ ବହୁ ଆନ୍ଦୋଳନ ସଂଗଠିତ କରିଥିଲା ଏବଂ ଅନ୍ୟ ବାମ ଓ ଗଣତାନ୍ତ୍ରିକ ଦଳଙ୍କୁ ଏକାଠି କରିବାରେ ମୁଖ୍ୟ ଭୂମିକା ନେଇଥିଲା । ୧୯୭୦ ଯାଏ ପାର୍ଟି ଚଳାଇଥିବା ଜନ ସଂଗ୍ରାମଗୁଡ଼ିକର ସଂକ୍ଷିପ୍ତ ବିବରଣୀ ଦିଆଗଲା ।

୧୯୬୭ ସେପ୍ଟେମ୍ବର ୧୧ ତାରିଖରେ ଭାରତ ବ୍ୟାପୀ ଧର୍ମଘଟ ଡାକରାକୁ ରାଜ୍ୟ ପାର୍ଟି ସଫଳ କରିବାକୁ ଉଦ୍ୟମ କରିଥିଲା । ଖଲିକୋଟ ଛାତ୍ରମାନଙ୍କ ଉପରେ ଦମନ ବିରୋଧରେ ଖଲିକୋଟ ବନ୍ଦ ଲାଗି ଛାତ୍ରସଂଘର ଡାକରାରେ ସିପିଆଇ ପ୍ରମୁଖ ଅଂଶ ନେଇଥିଲା ଓ ବ୍ରହ୍ମପୁରରେ ଛାତ୍ର ଆନ୍ଦୋଳନ ତୀବ୍ର ରୂପ ଧରିଥିଲା ।

୧୯୬୭ ଅକ୍ଟୋବର ୨୨ ରେ ପାର୍ଟି ଦରଦାମ ବିରୋଧୀ ସମ୍ମିଳନୀ କରାଇ ୨୩ରୁ ଏକ ସପ୍ତାହ ବ୍ୟାପୀ ରାଜ୍ୟ ସାରା ବିକ୍ଷୋଭ ଅନୁଷ୍ଠିତ କରାଇଥିଲା । କଟକ ସହର, ମାହାଙ୍ଗା, ଜଗତସିଂହପୁର, ଖୋର୍ଦ୍ଧା, ଢେଙ୍କାନାଳ, ବରଗଡ଼, ଚନ୍ଦବାଲି, ରଣପୁର ଓ ଆଉ ଅନେକ ସ୍ଥାନରେ ଦୃପ୍ତ ବିକ୍ଷୋଭ ହୋଇଥିଲା । ମୟୂରଭଞ୍ଜ, ଆନନ୍ଦପୁର, କଟକର କେତେକାଂଶରେ ପ୍ରବଳ ବନ୍ୟାଜନିତ କ୍ଷୟକ୍ଷତିର ଭରଣା ଲାଗି ଜନ ବିକ୍ଷୋଭମାନ ସଂଗଠିତ କରାଯାଇଥିଲା । ୧୯୬୭ ପ୍ରବଳ ବାତ୍ୟାରେ କ୍ଷୟକ୍ଷତି ଓ ଥଇଥାନ ଦାବୀ କରି ବିଶେଷତଃ କଟକ, ପୁରୀ ସମୁଦ୍ରତଟବର୍ତ୍ତୀ ଅଞ୍ଚଳରେ ପାର୍ଟି ପକ୍ଷରୁ ବ୍ୟାପକ ଜନ ବିକ୍ଷୋଭ ଅନୁଷ୍ଠିତ ହୋଇଥିଲା ।

୧୯୬୭ ଡିସେମ୍ବର ୨୨ରେ ବଡ଼ବିଲର ୧୫ଟି ଖଣିର ୧୫ ହଜାର ଶ୍ରମିକ ୨୫ ଦିନ ବ୍ୟାପୀ ଧର୍ମଘଟ, ମହିଳାଙ୍କ ସମେତ ୫୧ ଜଣ ଗିରଫର ପ୍ରତିବାଦ କରି କଟକ, ହୀରାକୁଦ, ଟେନସାଠାରେ ପ୍ରତିବାଦ ସଭାମାନ ହୋଇଥିଲା ।

୨୭/୭/୬୭ରେ ପାର୍ଟିର ରାଜ୍ୟ ପରିଷଦ ଲୋକନାଥ ଚୌଧୁରୀ ଦାନ କରିଥିବା ଜାଗାରେ ଭୁବନେଶ୍ୱରଠାରେ ଭାଗବତୀ ଭବନ ନିର୍ମାଣର ଡାକରା ଦେଇଥିଲା । କେତେକ ସାଥୀ ସେଦିନ ୪ ହଜାର ଟଙ୍କା ଯାଏ ଦାନ ଘୋଷଣା କରିଥିଲେ ।

କେନ୍ଦ୍ର କଂଗ୍ରେସ ସରକାର ପଶ୍ଚିମବଙ୍ଗର ଅଜୟ ମୁଖାର୍ଜୀ ସରକାରଙ୍କୁ ବରଖାସ୍ତ କରିବାରୁ ରାଜ୍ୟ ପାର୍ଟି କଟକ, ବ୍ରହ୍ମପୁର, ବରଗଡ଼ ପ୍ରଭୃତି ସ୍ଥାନରେ ମଶାଲ ପଟୁଆର ସହ ପ୍ରତିବାଦ ସଭା ଅନୁଷ୍ଠିତ କରାଇଥିଲା ।

୧୯୨୬ ଅକ୍ଟୋବର ୨୧ରେ ପାର୍ଟି ଉଦ୍ୟୋଗରେ ଭିଏତନାମ ଦିବସ ପାଳିତ ହୋଇଥିଲା ।

ଭୁବନେଶ୍ୱର ଓ ଆଠଗଡ଼ରେ ଉପନିର୍ବାଚନରେ ଯଥାକ୍ରମେ ସାଥୀ ପ୍ରାଣନାଥ ପଟ୍ଟନାୟକ ଓ ବ୍ରଜ ପଟ୍ଟନାୟକଙ୍କୁ ପ୍ରାର୍ଥୀ ଦିଆଯାଇଥିଲା ।

ବିଧାନସଭାର କମ୍ୟୁନିଷ୍ଟ ଏମ୍.ଏଲ.ଏ.ମାନେ ପାର୍ଟି ନିର୍ଦ୍ଦେଶରେ ୧୯୪୭ଠାରୁ

ରାଜ୍ୟରେ ମନ୍ତ୍ରୀସ୍ତରୀୟ ଦୁର୍ନୀତିର ତଦନ୍ତ କରିବାକୁ ଦାବୀକୁ ସିଂହଦେଓ ସରକାର ପ୍ରତ୍ୟାଖ୍ୟାନ କରି କେବଳ ୧୯୬୧ରୁ ତଦନ୍ତ ହେବ ବୋଲି ଘୋଷଣା କରିବାରୁ ପାର୍ଟି ତାହାର ପ୍ରତିବାଦ କରିଥିଲା ।

୧୯୬୮ରେ ଜାନୁଆରୀ ୨୪ରୁ ୨୮ ଯାଏ ବରଗଡ଼ଠାରେ ରାଜ୍ୟ ପାର୍ଟିର ୭ମ ସମ୍ମିଳନୀ ୫ ଦିନ ବ୍ୟାପୀ ଅନୁଷ୍ଠିତ ହୋଇଥିଲା । ସଦାନନ୍ଦ ମହାନ୍ତିଙ୍କ ସ୍ଥାନରେ ଦୁର୍ଗାଚରଣ ମହାନ୍ତି ସମ୍ପାଦକ ହୋଇଥିଲେ । ୨୩ ଜଣିଆ କାର୍ଯ୍ୟକାରୀ କମିଟି ଗଠିତ ହୋଇଥିଲା । ସମ୍ପାଦକମଣ୍ଡଳୀରେ ସଦାନନ୍ଦ ମହାନ୍ତି, ଦୁର୍ଗାଚରଣ ମହାନ୍ତି, ଲୋକନାଥ ଚୌଧୁରୀ, ରାମଚନ୍ଦ୍ର ମିଶ୍ର, ପ୍ରାଣନାଥ ପଟ୍ଟନାୟକ, ପ୍ରସନ୍ନ କୁମାର ପଣ୍ଡା, ହରିହର ଦାସ, ଗଙ୍ଗାଧର ପାଇକରାୟ ରହିଥିଲେ । ସମ୍ମିଳନୀରୁ ୧୭୦ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ଏଥିପୂର୍ବରୁ ଚୌଦ୍ୱାରାଠାରେ କଟକର, ରମ୍ଭାଠାରେ ଗଞ୍ଜାମର, ଢେଙ୍କାନାଳଠାରେ ଢେଙ୍କାନାଳର ଜିଲ୍ଲା ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଅନ୍ୟାନ୍ୟ ଜିଲ୍ଲାର ମଧ୍ୟ ସମ୍ମିଳନୀମାନ ଅନୁଷ୍ଠିତ ହୋଇଥିଲା ।

ପାର୍ଟି ସମ୍ମିଳନୀର ଆହ୍ୱାନ ଏବଂ ପାଟନାରେ ଅଷ୍ଟମ ପାର୍ଟି କଂଗ୍ରେସର ଆହ୍ୱାନ ଥିଲା ସଂଗ୍ରାମ, ସଂଗଠନ ଓ ବାମପନ୍ଥୀ ଐକ୍ୟ ଉପରେ ଗୁରୁତ୍ୱ ।

ତାହାପରେ ରାଜ୍ୟରେ ବଞ୍ଜର ଓ ପତିତ ଜମିର ପଟ୍ଟା ପାଇଁ ଆନ୍ଦୋଳନ ବ୍ୟାପକ ରୂପ ଧରିଥିଲା । ୧୯୬୮ ମାର୍ଚ୍ଚ ପହିଲାରେ ଏହି ପ୍ରକାର ଜମି ଦଖଲ ଆନ୍ଦୋଳନ ଲାଗି ପାର୍ଟିର ଡାକରାରେ ସତ୍ୟାଗ୍ରହ ହୋଇଥିଲା । ଖୋର୍ଦ୍ଧାରେ କେବଳ ୭ ଶହ ଗିରଫ ହୋଇଥିଲେ ।

ରାଜ୍ୟ ପାର୍ଟି ଆହ୍ୱାନରେ ଗଣତନ୍ତ୍ର ସୁରକ୍ଷା ଦିବସ ପାଳନ ଉପଲକ୍ଷେ କଟକ, ବ୍ରହ୍ମପୁର, କୁହୁଡ଼ି, ଆସିକା, ଚୌଦ୍ୱାର, ଏରସମା ଓ ଅନ୍ୟାନ୍ୟ ସ୍ଥାନରେ ସଭା ସମାବେଶ ହୋଇଥିଲା ।

୧୯୬୮ ମାର୍ଚ୍ଚ ୩୦-୩୧ରେ ବ୍ରହ୍ମପୁରରେ ଅନୁଷ୍ଠିତ ଇସକସ ଦ୍ୱିତୀୟ ରାଜ୍ୟ ସମ୍ମିଳନୀକୁ ସଫଳ କରିବା ଲାଗି ଗଞ୍ଜାମର ସାଥୀମାନେ ବିଶେଷ ଭୂମିକା ନେଇ ତାକୁ ଅଶେଷ ସାଫଲ୍ୟମଣ୍ଡିତ କରିଥିଲେ । ମୟୁରଭଞ୍ଜର ସାମଖୁଣ୍ଟା ପଞ୍ଚାୟତର ଚାଷୀମାନେ ପାର୍ଟି ନେତୃତ୍ୱରେ ଏକ ଲଢୁଆ ଜଳକର ବିରୋଧୀ ଆନ୍ଦୋଳନ କରିଥିଲେ ।

ଏହି ଅବସରରେ କୃଷକ ଆନ୍ଦୋଳନକୁ ଅଧିକ ସଂଗଠିତ ରୂପ ଦିଆଯାଇଥିଲା ।

୧୯୬୮ ଏପ୍ରିଲ ୧୭/୧୮ରେ ଜେଡ.ଏ. ଅହମ୍ମଦଙ୍କ ଯୋଗଦାନରେ ଖୋର୍ଦ୍ଧାଠାରେ ଅଷ୍ଟମ ରାଜ୍ୟ କୃଷକସଭା ସମ୍ମିଳନୀର ସିଦ୍ଧାନ୍ତଗୁଡ଼ିକ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏହି ସମ୍ମିଳନୀ ପରେ ପାର୍ଟି ଓ କୃଷକସଭା ନେତୃତ୍ୱରେ ଚାଷୀ ସଂଗ୍ରାମ, ସତ୍ୟାଗ୍ରହ, ଆଇନ ଅମାନ୍ୟ ଜେଲଭରୋ ଆନ୍ଦୋଳନମାନ ସଂଗଠିତ ହେଲା ।

**ପୁନଶ୍ଚ ଓଡିଶାବ୍ୟାପୀ ସତ୍ୟାଗ୍ରହ**

ଓଡ଼ିଶାରେ ସେତେବେଳେ ଦୁର୍ଭିକ୍ଷ ଅନାହରର ତାଣ୍ଡବ । ପ୍ରାୟ କୋଟିଏ ରାଜ୍ୟବାସୀ

ମରୁଡ଼ି, ବାତ୍ୟା, ବନ୍ୟା ଏହି ତିନୋଟି ବିପର୍ଯ୍ୟୟର ଶିକାର ହୋଇଥାନ୍ତି । ଜଳେଶ୍ୱରର ଭୋଗରାଇ, ବସ୍ତା, ବାଲିଆପାଳ ଅଞ୍ଚଳ, ଢେଙ୍କାନାଳ, କୋରାପୁଟ, ସୁନ୍ଦରଗଡ଼, ସମ୍ବଲପୁରର ପଦ୍ମପୁର, ଝାରସୁଗୁଡ଼ା ଅଞ୍ଚଳ, ବୌଦ୍ଧ କନ୍ଧମାଳ, ବଲାଙ୍ଗୀର, ଗଞ୍ଜାମର ବ୍ୟାପକ ଅଞ୍ଚଳ, ପୁରୀର ଖୋର୍ଦ୍ଧା, ନୟାଗଡ଼ ସବ୍‌ଡିଭିଜନ, କଟକର ତିର୍ତ୍ତୋଲ, ଏରସମା, କୁଜଙ୍ଗ, ସାଲେପୁର ଏବଂ ମୟୁରଭଞ୍ଜ ଓ କେଉଁଝରର ବ୍ୟାପକ ଅଞ୍ଚଳରେ ଦୁର୍ଭିକ୍ଷର ପଦଧ୍ୱନି ।

ରାଜ୍ୟ ପାର୍ଟି ହସ୍ତକ୍ଷେପ କରି ମଇ ୭ ରୁ ୧୫ ଯାଏ ଓଡ଼ିଶାବ୍ୟାପୀ ସତ୍ୟାଗ୍ରହ ଆଇନ ଅମାନ୍ୟର କାର୍ଯ୍ୟକ୍ରମ ନେଲା । ଆଠଗଡ଼, କୁଜଙ୍ଗ, ଧାନମଣ୍ଡଳରେ ବିକ୍ଷୋଭ । କେଉଁଠି ୫ ଦିନ କେଉଁଠି ୩ ଦିନ ବ୍ୟାପୀ ସତ୍ୟାଗ୍ରହ ହେଲା । କଟକ କିଲଟରୀରେ ସତ୍ୟାଗ୍ରହ ବେଳେ ୫ ହଜାର ଲୋକଙ୍କ ପଟୁଆର । ପୁଲିସର ଲାଠି ଓ ଗିରଫ । କମ୍ରେଡ଼ ସି. ରାଜେଶ୍ୱର ରାଓ ଗୌରୀଶଙ୍କର ପାର୍କରେ ଏକ ବିରାଟ ଜନସଭାରେ ସରକାରର ଚାଷୀ ଶ୍ରମିକ ମାରଣ ନୀତି, ଗଣତାନ୍ତ୍ରିକ ପରମ୍ପରାର ଲଙ୍ଘନ, ଗୁଳି ଓ ହତ୍ୟାର ତୀବ୍ର ପ୍ରତିବାଦ କରି ବାମ ଓ ଗଣତାନ୍ତ୍ରିକ ଐକ୍ୟ ଗଢ଼ିବାକୁ ଆହ୍ୱାନ ଦେଲେ ଓ କେନ୍ଦ୍ରରେ କଂଗ୍ରେସ ସରକାର ଓ ରାଜ୍ୟରେ ମିଳିତ ସରକାରର ଜନବିରୋଧୀ କାର୍ଯ୍ୟକଳାପର ପାର୍ଟି ତୀବ୍ର ବିରୋଧ କରି ଆନ୍ଦୋଳନ କରିବ ବୋଲି ଘୋଷଣା କଲେ ।

ଢେଙ୍କାନାଳରେ ୫ ଦିନ ବ୍ୟାପୀ ସତ୍ୟାଗ୍ରହ ହୋଇଥିଲା । ଗଞ୍ଜାମ, ବାଲେଶ୍ୱର, ସମ୍ବଲପୁର ଓ ପୁରୀ ଜିଲ୍ଲାର ବିଭିନ୍ନ ସ୍ଥାନରେ ସତ୍ୟାଗ୍ରହ ଗିରଫ ଚାଲିଥିଲା ।

ଏହି ସତ୍ୟାଗ୍ରହ ପରେ ୧୯୬୮ ଜୁନ ୨୪ରେ ପାର୍ଟିରେ ପାର୍ଟିର ଆହ୍ୱାନରେ ୧୦ ହଜାର ଲୋକଙ୍କ ବିଧାନସଭା ଅଭିଯାନ ସଂଗଠିତ ହୋଇ ଭୂସଂସ୍କାର ସମେତ ୧୨ଟି ଦାବୀ ଉପସ୍ଥାପିତ ହୋଇଥିଲା ।

ସମ୍ବଲପୁର, ବଲାଙ୍ଗୀର ଚାଷୀଙ୍କ ମଧ୍ୟରୁ ଶତକଡା ୧୫ ଦରଖାସ୍ତ ନଦେଲେ କେନାଲ ଜଳ ନ ମିଳିବା ବିରୋଧରେ ପାର୍ଟି ବିକ୍ଷୋଭ କରିଥିଲା । ୧୯୬୮ ଜୁଲାଇ ୨୩/୨୪/୨୫ ରେ ଏହି ଦୁଇ ଜିଲ୍ଲାର ରାମପୁର, ବରପାଲ୍ଲିରେ ସତ୍ୟାଗ୍ରହରେ ୧୨ ଶହ ଚାଷୀଙ୍କୁ ଗିରଫ କରାଯାଇଥିଲା ।

ଏହି ବର୍ଷ ସେପ୍‌ଟେମ୍ବର ୨୭ ରୁ ୨୯ ରେ ମୋଗାଠାରେ ଅନୁଷ୍ଠିତ ଭାରତୀୟ କ୍ଷେତ ମଜଦୁର ସମ୍ମିଳନୀ ପରେ ପ୍ରଥମ ରାଜ୍ୟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ବରଗଡରେ ମୂଲ୍ୟ ବୃଦ୍ଧି ବିରୋଧୀ ଆନ୍ଦୋଳନ, ଛାତ୍ରସଂଘ ପକ୍ଷରୁ ୧୩ଟି ଛାତ୍ର ଦାବୀ ଘେନି ସପ୍ତାହ ପାଳନ, ପ୍ରବୀର ପାଲିତ, ଦୁଃଶାସନ ଜେନା ପ୍ରମୁଖଙ୍କ ନେତୃତ୍ୱରେ ସରକାରୀ ପ୍ରେସରେ ଧର୍ମଘଟ, ଆସିକାରେ ଆଖୁ ଚାଷୀଙ୍କ ୧୪ ଦଫା ଦାବୀ ଘେନି ସଂଗ୍ରାମ, ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ରାଜ୍ୟବ୍ୟାପୀ ଆନ୍ଦୋଳନରେ ପାର୍ଟିର ଭୂମିକା; ୧୯୬୮ ନଭେମ୍ବର

୧୭ରେ ଭୁବନେଶ୍ୱରରେ କୃଷକସଭା କନଭେନସନ, ଅକ୍ଟୋବର ୩୦ରେ ଏଆଇଟିୟୁସିର ପ୍ରତିଷ୍ଠା ଦିବସ, ରାଜ୍ୟର ବିଭିନ୍ନ ଜିଲ୍ଲାରେ ୬ ଦିନିଆ ପାର୍ଟି ଶିକ୍ଷା ଶିବିର, ମରୁଡ଼ି, ବନ୍ୟା, ବାତ୍ୟା ପ୍ରପୀଡ଼ିତ ଲୋକଙ୍କ ରିଲିଫ ପାଇଁ ପାର୍ଟି ଉଦ୍ୟୋଗରେ ଲୋକସେବା (ରିଲିଫ) ସମିତି ଗଠନ ପାର୍ଟିର ବିଭିନ୍ନ ଗଣ ଓ ପାର୍ଟି ସଂଗଠନ କାର୍ଯ୍ୟକଳାପର ସୂଚନା ଦିଏ ।

୧୯୬୯ରେ ରେଭେନ୍ସା କଲେଜରେ ଛାତ୍ର ଆନ୍ଦୋଳନ ଉପରେ ଗୁଳି, ପ୍ରଦୀପ୍ତ ମିଶ୍ରର ମୃତ୍ୟୁ । ଏହା ବିରୋଧରେ ରାଜ୍ୟବ୍ୟାପୀ ଦୁର୍ବାର ଛାତ୍ର ଆନ୍ଦୋଳନ ସ୍ୱତନ୍ତ୍ର ଜନକଂଗ୍ରେସ ସରକାରକୁ ଦୋହଲାଇ ଦେଇଥିଲା ।

**ଜମି ଦଖଲ ଓ ବଜେଟପୋଡ଼ି ଆନ୍ଦୋଳନ**

୧୯୭୦ରେ ଭାରତବ୍ୟାପୀ ଉଦବୃତ୍ତ ଜମି ଦଖଲ ଆନ୍ଦୋଳନର ପ୍ରସ୍ତୁତି ପର୍ବକୁ ଓଡ଼ିଶାରେ ଚାଷୀମାନଙ୍କ ଖଣ୍ଡ ସଂଗ୍ରାମ, ବିକ୍ଷୋଭ ସାହାଯ୍ୟ କରିଥିଲା । ୧୯୬୯ ଏପ୍ରିଲ ୭ରୁ ୧୫ ଯାଏ କେନ୍ଦ୍ରର କଂଗ୍ରେସ ଅର୍ଥମନ୍ତ୍ରୀ ଦେଶର ଓ ରାଜ୍ୟର ସିଂହଦେଓଙ୍କ ପ୍ରତିକ୍ରିୟାଶୀଳ, ଜନସ୍ୱାର୍ଥ ବିରୋଧୀ ବଜେଟ ବିରୋଧରେ ରାଜ୍ୟ ପାର୍ଟି ବ୍ୟାପକ ଆନ୍ଦୋଳନ ଗଢ଼ି ତୋଳିଥିଲା ଶତ ଶତ ସ୍ଥାନରେ ସଭା ସମାବେଶରେ ବଜେଟପୋଡ଼ି କରାଯାଇଥିଲା । ଗଞ୍ଜାମର ଛତ୍ରପୁର, ଆସିକା, ଭଞ୍ଜନଗର, ଗଞ୍ଜାମ, ଆଡ଼ପଡ଼ା, ରମ୍ଭା, ପୋଡ଼ାମାରି, ବ୍ରହ୍ମପୁର ପ୍ରଭୃତିରେ କଟକର କୁଜଙ୍ଗ, ଏରସମା, ବାଲଙ୍ଗ, ଧାନମଣ୍ଡଳ, କଇଜଙ୍ଗା, ଯାଯପୁର, ସାଲେପୁର, ନିଶ୍ଚିନ୍ତକୋଇଲି, ମାର୍ଶାଘାଇ, ବିରିଡ଼ି, ଜଗତସିଂହପୁର, ଦଶରଥପୁର, ଟାଙ୍ଗିବନ୍ତ, ଧାନମଣ୍ଡଳ, ଆଳି ପ୍ରଭୃତି ସ୍ଥାନରେ; ପୁରୀର ଭୁବନେଶ୍ୱର, ଧଳାପଥର, ଖୋର୍ଦ୍ଧା, ବେଗୁନିଆ, ଗୋପ, ଅସ୍ତରଙ୍ଗ, ନିମାପଡ଼ା, ରଣପୁର, ପିଚୁକୁଳି, ବୋଲଗଡ଼ଠାରେ, ସମ୍ବଲପୁରର ବରଗଡ଼ ଓ ଅନ୍ୟାନ୍ୟ ସ୍ଥାନରେ; ବାଲେଶ୍ୱରର ବନ୍ତ, ପୀରହାଟ, ଚାନ୍ଦବାଲି, ମୟୁରଭଞ୍ଜର ବାରିପଦା ଓ କେଉଁଝରର ବଡ଼ବିଲଠାରେ, ଦୁଇ ସରକାରଙ୍କ ବଜେଟପୋଡ଼ି ଅଭିଯାନ ପାର୍ଟିର ସଂଗ୍ରାମୀ ପରମ୍ପରାକୁ ବଳିୟାନ କରିଥିଲା ।

୧୯୭୦ ଜୁଲାଇ ପହିଲାରୁ ସାରା ଭାରତରେ କମ୍ୟୁନିଷ୍ଟ ଡାକରାରେ କୃଷକସଭା, ଟ୍ରେଡୟୁନିୟନ, କ୍ଷେତମଜଦୂର ସଂଗଠନ ପ୍ରଭୃତିଙ୍କ ସମର୍ଥନରେ ବ୍ୟାପକ ଜମି ଦଖଲ ଆନ୍ଦୋଳନ ହୋଇଥିଲା ଏହାର ୨ଟି ପର୍ଯ୍ୟାୟ । ପ୍ରଥମ ପର୍ଯ୍ୟାୟରେ ସରକାରୀ ପଡିଆ, ବଞ୍ଜର ଜମି ଦଖଲ ଆନ୍ଦୋଳନ । ସେହି ପର୍ଯ୍ୟାୟରେ ଆଠଗଡ଼ର ଗୁରୁଡ଼ିଝାଟିଆ ସୋରୋର ମଙ୍ଗଳପୁର ଓ ପାଟଣାରେ, ପୁରୀ ଜିଲ୍ଲା ବେଗୁନିଆର ଚକାପଦାରେ, ଗଞ୍ଜାମ ଜିଲ୍ଲାର ଭଞ୍ଜନଗର, ଦୋମୁହାଣି ଚଣ୍ଡିଆପାଲି ପ୍ରଭୃତିରେ; କଟକର ବ୍ୟାସ ସରୋବର ଓ ଅନ୍ୟ ସ୍ଥାନମାନଙ୍କରେ ଏ ପ୍ରକାର ଜମି ଦଖଲ ହୋଇଥିଲା । ଏଥିରେ ହଜାର ହଜାର ଚାଷୀ ଭାଗ ନେଇଥିଲେ । ଦ୍ୱିତୀୟ ପର୍ଯ୍ୟାୟରେ ଟାଟା, ବିରଳା ପୂର୍ବର ବଡ଼ ବଡ଼ ରଜା ଜମିଦାରଙ୍କ ଜମି ଦଖଲବେଳେ ଓଡ଼ିଶାରେ

ଢେଙ୍କାନାଳ ରଜାଙ୍କ ମହିଷାପାଟ ଜମି ଓ ବଲାଙ୍ଗୀର ରଜାଙ୍କ ସାଲେଭଟା ଜମି ଦଖଲ ଆନ୍ଦୋଳନ ସାରା ରାଜ୍ୟର ଦୃଷ୍ଟି ଆକର୍ଷଣ କରିଥିଲା । ସେଥିରେ ବହୁ କର୍ମୀଙ୍କ ସମେତ କୃଷକ ଓ କମ୍ୟୁନିଷ୍ଟ ନେତା ରାମକୃଷ୍ଣ ପତି, ପ୍ରସନ୍ନ କୁମାର ପଣ୍ଡା, ରାମଚନ୍ଦ୍ର ମିଶ୍ର, ବ୍ରଜ ମହାପାତ୍ର ପ୍ରମୁଖଙ୍କ ଗିରଫଦାରୀ ଓ ଜେଲ ଓଡ଼ିଶାରେ ଭୂମି ଆନ୍ଦୋଳନର ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ସେତିକିବେଳେ ସମ୍ବଲପୁରର କିରତିମାଳ ଓ ପସଦା ଓ ବଲାଙ୍ଗୀର ଜିଲ୍ଲା ରାମପୁରସ୍ଥ ସିମାଳିନାଳ ଜଙ୍ଗଲର ୪୦ ଏକର ଜମିକୁ ଭୂମିହୀନ ଆଦିବାସୀମାନେ ଦଖଲ କରିଥିଲେ ।

୧୯୬୮ ଅକ୍ଟୋବର ୨୩ରେ ଭଗବତୀ ଭବନର ଶିଳାନ୍ୟାସ କରାହୋଇଥିଲା ।

୧୯୬୯-୭୦ରେ ପାରାଦୀପ ବନ୍ଦର ଉନ୍ନୟନ ଲାଗି ପାର୍ଟିର ଅଭିଯାନ ଓ କେନ୍ଦ୍ର ଜାହାଜ ଚଳାଚଳ ମନ୍ତ୍ରୀଙ୍କୁ ସ୍ମାରକଲିପି ପ୍ରଦାନ, ୧୯୬୯ରେ ରାଜ୍ୟ ମନ୍ତ୍ରୀସ୍ତରରେ ଦୁର୍ନୀତି ଘେନି ଖାନ୍ନା କମିଶନ ରିପୋର୍ଟ ପରେ ପାର୍ଟିର ୧୨ଟି ଦଫା ଦାବୀକରି ଅଭିଯାନ, ଆସ୍କା ଚିନି କାରଖାନା ଶ୍ରମିକଙ୍କ ସ୍ୱାର୍ଥ ଲାଗି ହରିହର ଦାସଙ୍କ ଅନଶନ ଓ ବିଶାଳ ବିକ୍ଷୋଭ ଓ ତାହାର ବିଜୟ, ବେଲପାହାଡ଼ ଶ୍ରମିକଙ୍କ ସଂଗ୍ରାମ, କୁଜଙ୍ଗ, ଏରସମା, ମାର୍ଶାଘାଇ ଅଞ୍ଚଳରେ କନ୍ଧାଚାଷୀଙ୍କ ଆନ୍ଦୋଳନ, ବରଗଡ଼ରେ ଦମକଳ ଦାବୀ କରି ଲେଙ୍ଗୁ ମିଶ୍ରଙ୍କ ବିଧାନସଭା ସମ୍ମୁଖରେ ଅନଶନ, ବ୍ରଜରାଜନଗରର ପେରି ଫେରି ଅଞ୍ଚଳର ୧୫ ହଜାର ଚାଷୀଙ୍କ ପଟ୍ଟା ଆନ୍ଦୋଳନ, ତିନିମାସ ଧର୍ମଘଟ ପରେ ହୀରାକୁଦ ଇଣ୍ଡିଯାନ ଆଲୁମିନିୟମ ଶ୍ରମିକଙ୍କ ବିଜୟ, ୧୯୭୦ ଅକ୍ଟୋବରରେ ବାଲେଶ୍ୱରଠାରେ ବିଶାଳ ଭୋକିଲା ପଟୁଆ ବହୁ ଗଣ କାର୍ଯ୍ୟକଳାପ ମଧ୍ୟରୁ କେତୋଟି ମାତ୍ର । ୧୯୬୯ ଏପ୍ରିଲରେ ବଡ଼ବିଲ ଓ ବରସୁଆଁ ଖଣି ଶ୍ରମିକ ୟୁନିଅନଗୁଡ଼ିକର ୫ମ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ଏହି ସମୟରେ ପଶ୍ଚିମବଙ୍ଗରେ ଯୁକ୍ତଫ୍ରଣ୍ଟ ବିଜୟ ଉପଲକ୍ଷେ ରାଜ୍ୟ ସିପିଆଇ ଓ ସି.ପି.ଆଇ. (ଏମ) ପକ୍ଷରୁ ମିଳିତ ସଭାସମିତି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ।

**ସି.ପି.ଆଇ. ଡାକରାରେ କଟକ ବନ୍ଦ**

ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ଲୋକଙ୍କଠାରୁ ଏପରି ବିଚ୍ଛିନ୍ନ ହୋଇ ପଡ଼ିଗଲା ଯେ ପୌରସଭା ନ ଥାଇ ଉକ୍ତ ସରକାର ଆସେସମେ[ କରି ନୂତନ କର ଧାର୍ଯ୍ୟ କରିବାରୁ ସି.ପି.ଆଇ. କଟକ ବନ୍ଦ ଡାକରା ଦେଇଥିଲା । ପାର୍ଟି ତା'ର ସମସ୍ତ ଶକ୍ତି ଦେଇ ପ୍ରଚାର ଅଭିଯାନ ଚଳେଇଥିଲା ତାହା କଟକ ବନ୍ଦକୁ ସଂପୂର୍ଣ୍ଣ ସଫଳ କରିଥିଲା । ପି.ଏସ.ପି. ଆମ ପାର୍ଟି ଆହ୍ୱାନକୁ ଭଣ୍ଡୁର କରିବା ଲାଗି ଆଗତୁରା ହରତାଳ ଡାକରା ଦେଇଥିଲେ ସୁଦ୍ଧା ବନ୍ଦ ପାଇଁ ଜନ ସମର୍ଥନ ଏତେ ପ୍ରବଳ ହେଲା ଯେ ପି.ଏସ.ପି. ଏହାକୁ ସମର୍ଥନ କରି ବିବୃତି ଦେଇଥିଲା ।

ଜନକଂଗ୍ରେସ ସ୍ୱତନ୍ତ୍ର ସରକାର ବସ ଭଡ଼ା ବୃଦ୍ଧି କରିବାରୁ ପାର୍ଟି ତାହା ବିରୋଧରେ ସ୍ୱତନ୍ତ୍ର ମଞ୍ଚରୁ ବ୍ୟାପକ ବିକ୍ଷୋଭ ଆନ୍ଦୋଳନ ୧୯୭୦ ଜୁଲାଇ ୧୧ ତାରିଖରେ କରାଇଥିଲା ।

କଟକ, ପୁରୀ, ଗଞ୍ଜାମ, ଛତ୍ରପୁର, ବୁଗୁଡ଼ା, ଆସିକା, ପାରାଦ୍ୱୀପ, ପୋଡ଼ାମାରି, ମାହାଙ୍ଗା, ବାଲେଶ୍ୱର ଓ ଅନ୍ୟାନ୍ୟ ସବୁ ଜିଲ୍ଲାରେ ବସଭଡ଼ା ବୃଦ୍ଧି ବିରୋଧୀ ଆନ୍ଦୋଳନ ବ୍ୟାପକ ରୂପ ନେଇଥିଲା ।

ପାର୍ଟିର ଏହି ଗଣକାର୍ଯ୍ୟକଳାପର ପରିଣତିସ୍ୱରୂପ ବାମପନ୍ଥୀ ଦଳମାନଙ୍କ ଐକ୍ୟବଦ୍ଧ ସଂଗ୍ରାମ ସହଜତର ହୋଇଥିଲା । ପ୍ରବଳ ବର୍ଷା ସତ୍ତ୍ୱେ ସି.ପି.ଆଇ, ସି.ପି.ଆଇ (ଏମ) ଏବଂ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ମିଳିତ ଆହ୍ୱାନରେ ୧୯୭୦ ଅକ୍ଟୋବର ୭ରେ ରାଜଧାନୀରେ ୫ ହଜାର ଜନତାର ବିକ୍ଷୋଭ ଅନୁଷ୍ଠିତ ହୋଇଥିଲା । ରାମକୃଷ୍ଣ ପତିଙ୍କ ଅଧକ୍ଷତାରେ ଅନୁଷ୍ଠିତ ଏହି ସଭାରେ ସି.ପି.ଏମର ବନମାଳୀ ଦାସ, ଏସ.ଏସ.ପିର ରବି ରାୟ ଓ ସି.ପି.ଆଇର ପ୍ରସନ୍ନ କୁମାର ପଣ୍ଡା ଉଦବୋଧନ ଦେଇ ଅକ୍ଟୋବର ୮/୯ ରେ ତିନିଦଳର ଆଇନ ଅମାନ୍ୟକୁ ସଫଳ କରିବାକୁ ନିବେଦନ କରିଥିଲେ । ବାମପନ୍ଥୀ ଦଳ ପକ୍ଷରୁ ୧୯୭୦ ଅକ୍ଟୋବର ୮/୯ରେ ଭୁବନେଶ୍ୱରଠାରେ ଆଇନ ଅମାନ୍ୟବେଳେ ପୁଲିସ ପକ୍ଷରୁ ଆକ୍ରମଣ ହୋଇଥିଲା ।

ଏହି ୧୯୭୦ ଜୁଲାଇ ୨୭ରେ ଦ୍ୱିତୀୟ ଇସ୍ପାତ କାରଖାନା ଦାବୀ ବିରୋଧୀ ଦଳମାନଙ୍କ ପକ୍ଷରୁ କରାଯାଇ ଓଡ଼ିଶା ବନ୍ଦ କରାଯାଇଥିଲା । ଏପରି ବନ୍ଦ ଲାଗି ପ୍ରଥମେ ରାଜ୍ୟ ସି.ପି.ଆଇ. ଦ୍ୱାରା ପ୍ରସ୍ତାବିତ ହୋଇଥିଲା । ଗଞ୍ଜାମ ଜିଲ୍ଲା ଆଡ଼ପଡ଼ା ଗାଁ'ରେ ସ୍ୱତନ୍ତ୍ର ଦଳର କର୍ମୀଙ୍କର ହତ୍ୟାର ତୀବ୍ର ପ୍ରତିବାଦ ଜିଲ୍ଲାବ୍ୟାପୀ ହୋଇଥିଲା ।

ଏହି ବର୍ଷ ଭିତରେ ଆକ୍ଟୋବର ୨୦ରେ ଓଡ଼ିଶାର ସର୍ବପ୍ରଥମ ରେଜିଷ୍ଟ୍ରିଭୁକ୍ତ ଓ ଏ ଆଇ ଟି ୟୁ ସି ପରିଚାଳିତ ପ୍ରେସ ଶ୍ରମିକ ସଂଘର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ରାଜ୍ୟ ପାର୍ଟି ପକ୍ଷରୁ ଅଜୟ ଘୋଷ ସ୍ମୃତି ପାଣ୍ଠି ଅଭିଯାନକୁ କଃ ଏସ.ଭି. ଘାଟେ ଉଦ୍‌ଘାଟନ କରିଥିଲେ । କଟକ, କୁଜଙ୍ଗ, ନିମାପଡ଼ା, ବ୍ରହ୍ମପୁର, ସମାଖଣ୍ଡି, ଗୌତମୀ, ତାକରଡ଼ା, ଆସ୍କା-ଜଗତସିଂହପୁର, ବିରିଡ଼ି ଗସ୍ତବେଳେ ପାର୍ଟି ପକ୍ଷରୁ ଏହି ପାଣ୍ଠିକୁ ସାଥୀମାନଙ୍କ ଦ୍ୱାରା ସଂଗୃହୀତ ଅର୍ଥ ଅର୍ପିତ ହୋଇଥିଲା । ଅକ୍ଟୋବର ୫ ରେ ପ୍ରାଣନାଥ ପଟ୍ଟନାୟକଙ୍କ ପ୍ରଥମ ବାର୍ଷିକୀ ସ୍ମୃତି ଦିବସ ଉପଲକ୍ଷେ ନୂଆ ଦୁନିଆର ବିଶେଷ ସଂଖ୍ୟା ପ୍ରକାଶିତ ହୋଇଥିଲା । ଧର୍ମୀୟ ଶାସ୍ତ୍ରମତେ ହରିଜନଙ୍କପ୍ରତି ବାଛବିଚାର ନ୍ୟାୟସଂଗତ ବୋଲି ପୁରୀର ଶଙ୍କରାଚାର୍ଯ୍ୟ ବିବୃତି ଦେବାରୁ ସି ପି ଆଇ ହିଁ ସର୍ବପ୍ରଥମେ ତାହାର ତୀବ୍ର ବିରୋଧ କରି ଅଭିଯାନ ଚଳେଇଥିଲା ।

(୧୯୭୦ ପରବର୍ତ୍ତୀ କାଳରେ ସଂଗ୍ରାମ ଓ ସଂଗଠନର ଇତିହାସ ରଚନା କରିବାର ସଂକଳ୍ପ ରହିଲା-ଲେଖକ)



# ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ୭୦ବର୍ଷର

# ସଂଗ୍ରାମ ଓ ସାଫଲ୍ୟ

୧୯୨୫ ଡିସେମ୍ବର ୨୬ ତାରିଖ । ସତୁରି ବର୍ଷ ପୂର୍ବେ ଉତ୍ତର ପ୍ରଦେଶର କାନ୍‌ପୁରଠାରେ ଏହି ଦିନ ଭାରତରେ ବିଧିବଦ୍ଧ କମ୍ୟୁନିଷ୍ଟ ପାର୍ଟିର ଉଦ୍‌ବୋଧନୀ ସମ୍ମିଳନୀ । ସ୍ୱାଧୀନତା ସଂଗ୍ରାମରେ ଭାରତର ମୁକ୍ତି ଲାଗି ଉଦ୍‌ବୁଦ୍ଧ, ଭାରତର କେତୋଟି କେନ୍ଦ୍ରରୁ ଯୁବକମାନଙ୍କର ପ୍ରଥମ ମିଳନ । ଋଷ୍‌ରେ ମହାନ୍ ଅକ୍ଟୋବର ସମାଜବାଦୀ ବିପ୍ଳବର ସାଫଲ୍ୟ, ବଲ୍‌ଶେଭିକ ପାର୍ଟି ଓ ଲେନିନ୍‌ଙ୍କ ନେତୃତ୍ୱରେ ସମାଜବାଦ ପ୍ରତିଷ୍ଠାର ଉଦ୍ୟମରେ ଅନୁପ୍ରାଣିତ ଏହି ଯୁବ ସ୍ୱାଧୀନତା ସଂଗ୍ରାମୀମାନେ ମାର୍କ୍ସବାଦ-ଲେନିନ୍‌ବାଦକୁ ଭାରତ ଭୂଇଁରେ କିପରି ପ୍ରୟୋଗ କରିବେ, ତା'ରି ସନ୍ଧାନ କରିବାକୁ ଏହି ପାର୍ଟି ଗଠନ କରିବା ପାଇଁ ହେଲେ ସଂକଳ୍ପବଦ୍ଧ । ଏମାନେ ସମସ୍ତେ ମାର୍କସ୍‌ଙ୍କ କମ୍ୟୁନିଷ୍ଟ ଇସ୍ତାହାର, ତାଙ୍କ ବିଖ୍ୟାତ ଗ୍ରନ୍ଥ "ଦାସ୍ କାପିଟାଲ୍", ଏଙ୍ଗେଲସ୍‌ଙ୍କ "ମାନବ ପରିବାରର ଉଦ୍ଭବ ଓ ବିକାଶ" ବା ଲେନିନ୍‌ଙ୍କ "ରାଷ୍ଟ୍ର ଓ ବିପ୍ଳବ" ଏବଂ "କ'ଣ କରାଯିବ" ଇତ୍ୟାଦି ଗ୍ରନ୍ଥମାନ ଅନୁଶୀଳନ କରି ଯେ ଭାରତରେ କମ୍ୟୁନିଷ୍ଟ ପାର୍ଟି ଗଠନରେ ବ୍ରତୀ ହେଲେ, ତାହା କହି ହେବ ନାହିଁ ।

ବ୍ରିଟିଶ୍ ସାମ୍ରାଜ୍ୟବାଦର ଅଶେଷ କଟକଣା । କୌଣସି ବିପ୍ଳବୀ ସାହିତ୍ୟ, ବିଶେଷକରି ମାର୍କ୍ସ ଏଙ୍ଗେଲ୍‌ସଙ୍କ ଗ୍ରନ୍ଥ ଅବା ଲେନିନ୍ ଓ ଅକ୍ଟୋବର ବିପ୍ଳବର କାହାଣୀ ଦେଶରେ ପ୍ରବେଶ କରିପାରୁ ନଥାଏ । ନା ଅଛି ସେ କାଳରେ ରେଡ଼ିଓ ବା ଦୂରଦର୍ଶନ, ନା ଅଛି ଉଡ଼ାଜାହାଜ । ସାତସମୁଦ୍ର ତେର ନଦୀ ପାର ହୋଇ ଗୋପନରେ ବାହାରୁ ଆସୁଥିବା ରାଜନୈତିକ ସାହିତ୍ୟ ଆଉ କମ୍ୟୁନିଷ୍ଟ ସାହିତ୍ୟ କେବେ କେଉଁଠି ପହଞ୍ଚେ ଜାହାଜ ଯୋଗେ ଧରା ପଡ଼ିଲେ ବାଜ୍ୟାପ୍ତ ହୁଏ ।

ମାର୍କ୍ସବାଦ – ଲେନିନବାଦର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ତତ୍ତ୍ୱରେ ସମ୍ପୂର୍ଣ୍ଣ ଅବଗାହୀ ହୋଇ ଏହି ଯୁବକମାନେ ଭାରତରେ କମ୍ୟୁନିଷ୍ଟ ପାର୍ଟି ଗଠନ କଲେ ବୋଲି କହି ହେବ ନାହିଁ ।

ତେବେ ଭାରତରେ କମ୍ୟୁନିଷ୍ଟ ପାର୍ଟି ଗଠନର ପ୍ରଚ୍ଛଦପଟରେ ଅନେକ ଘଟଣା, ଦେଶ ଭିତର ଓ ଦେଶ ବାହାରର ଅନେକ ସ୍ଥାନ ଓ ବୈପ୍ଳବିକ ଚିନ୍ତା ଚେତନାରେ ଉଦ୍ଦୀପିତ ଅନେକ ବ୍ୟକ୍ତି ରହିଛନ୍ତି ।

୧ ୯ ୫ ୨ରେ କାନପୁରକୁ ଯିବା ପୂର୍ବରୁ ପାର୍ଟିର ମୂଳ ମଞ୍ଜି ଖୋଜିବାକୁ ଗଲାବେଳେ ଭାରତରେ ତତ୍କାଳୀନ ଶ୍ରମିକ ଅଧ୍ୟୁଷିତ ନଗର ନଗରୀକୁ ଯିବାକୁ ପଡ଼େ । ଯିବାକୁ ହୁଏ ବମ୍ବେ, ମାଦ୍ରାଜ୍, କଲିକତା, ଲାହୋର୍, କାନପୁର ଏମିତି ଅନେକ ସ୍ଥାନକୁ । ଏହିସବୁ ସ୍ଥାନକୁ ଭାରତର ସ୍ୱାଧୀନତା ସଂଗ୍ରାମରେ ଅବତୀର୍ଣ୍ଣ ବିପ୍ଳବୀ ଯୁବକ, ଯେଉଁମାନେ ଗୋପନରେ ଭାରତରୁ ଚାଲିଯାଇ ସେସବୁ ସ୍ଥାନରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ଭାରତର ସ୍ୱାଧୀନତା ପାଇଁ ସଂଗଠନ ଗଢୁଥିଲେ, ମାର୍କ୍ସବାଦ ପ୍ରତି ଓ ଅକ୍ଟୋବର ସମାଜବାଦୀ ବିପ୍ଳବ ପ୍ରତି ଆକୃଷ୍ଟ ହୋଇଥିଲେ, ସେମାନଙ୍କ କଥା ହେଜ କରିବାକୁ ହୁଏ ।

କମ୍ୟୁନିଷ୍ଟ ପାର୍ଟି ପ୍ରତିଷ୍ଠାର ପୃଷ୍ଠଭୂମିରେ ରହିଛି ଭାରତୀୟ ବିପ୍ଳବୀ ସ୍ୱାଧୀନତା ସଂଗ୍ରାମୀଙ୍କ ବିରୁଦ୍ଧରେ ଚଳାଯାଇଥିବା ବିଭିନ୍ନ ଷଡ଼ଯନ୍ତ୍ର ମକଦ୍ଦମା । ଯିବାକୁ ପଡ଼େ ପେଶୱାର୍ ଷଡ଼ଯନ୍ତ୍ର ମକଦ୍ଦମା, କାକୋରୀ ଷଡ଼ଯନ୍ତ୍ର ମକଦ୍ଦମା, କାନପୁର ବଲ୍‌ଶେଭିକ ଷଡ଼ଯନ୍ତ୍ର ମକଦ୍ଦମା ଏବଂ କାନପୁର ସମ୍ମିଳନୀର ଅବ୍ୟବହିତ ପରେପରେ ଲାହୋର୍ ଷଡ଼ଯନ୍ତ୍ର ମକଦ୍ଦମା, ମିରଟ୍ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା, ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନ ସଂକ୍ରାନ୍ତ ଷଡ଼ଯନ୍ତ୍ର ମକଦ୍ଦମା ଓ ପରେ କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାକୁ । ସେ କାଳରେ ଏହି ତରୁଣ ବିପ୍ଳବୀମାନଙ୍କ ଦ୍ୱାରା ସଂଗଠିତ ଓ ପରିଚାଳିତ ଶ୍ରମିକ, ଚାଷୀ, ଛାତ୍ର, ଯୁବକ ଆନ୍ଦୋଳନକୁ ମନେ ପକାଇବାକୁ ପଡ଼େ । ପୁଣି ଯିବାକୁ ପଡ଼େ ବ୍ରିଟିଶ ବନ୍ଦୀଶାଳାରେ ବନ୍ଦୀମାନଙ୍କ ପାଖକୁ । ସୁଦୂର କଳାପାଣି (ଆଣ୍ଡାମାନ)ର ନାରକୀୟ ସେଲୁଲାର ଜେଲ, ଆଉ ଅନେକ ଜେଲ୍‌ଖାନାକୁ ।

ସ୍ମରଣ କରିବାକୁ ହୁଏ ୪ଟି ରାଜ୍ୟରେ ଗଠିତ ୱାର୍କର୍ସ୍ ଏବଂ ପେଜାଣ୍ଟ ପାର୍ଟିକୁ । ବମ୍ବେ, ଉତ୍ତର ପ୍ରଦେଶ, ପଞ୍ଜାବ, ପଞ୍ଜାବ ଓ ବଙ୍ଗଳାରେ ଗଠିତ ଏହି ପାର୍ଟିର ବୈପ୍ଳବିକ କାର୍ଯ୍ୟ କାନପୁରରେ ପାର୍ଟି ଗଠନର ପୂର୍ବାଭାସ । ଆଉ ମଧ୍ୟ ଯିବାକୁ ପଡ଼େ ଭଗତସିଂହଙ୍କ ନବଜୀବନ ସଭା ଓ ହିନ୍ଦୁସ୍ଥାନ ସୋସାଲିଷ୍ଟ ରିପ୍ଳବିକାନ୍ ପାର୍ଟି, ପଞ୍ଜାବ ଗଦ୍ଦର ପାର୍ଟି ଓ କୀର୍ତ୍ତି କିସାନ ପାର୍ଟିକୁ ।

ନୂତନ ଏହି ପାର୍ଟିର ଜନ୍ମ ଲାଗି ସେ କାଳରେ ଘୋର କଟକଣା ସତ୍ତ୍ୱେ ବମ୍ବେରୁ ପ୍ରକାଶିତ "ସୋସାଲିଷ୍ଟ୍", ବଙ୍ଗଳାଭାଷାରେ ପ୍ରକାଶିତ "ଲାଙ୍ଗଳ", ପଞ୍ଜାବରୁ ପ୍ରକାଶିତ "କୀର୍ତ୍ତି", ବମ୍ବେରୁ ପ୍ରକାଶିତ "କ୍ରାନ୍ତି" ଓ ଆଉ କେତେକ ବୈପ୍ଳବିକ ଜାତୀୟତାବାଦୀ ପତ୍ରପତ୍ରିକାକୁ ମଧ୍ୟ ସ୍ମରଣ କରିବାକୁ ହୁଏ ।

୧ ୯ ୧ ୯ ଜଘନ୍ୟ ରାଓଲାଟ୍ ଆଇନ୍, ଜାଲିଆନାୱାଲାବାଗ୍‌ରେ ନାରକୀୟ ଗଣହତ୍ୟା,

୧୯୨୦-୨୧ରେ ଅସହଯୋଗ ଆନ୍ଦୋଳନ । ଠିକ୍ ଏହି ସମୟରେ ସାମ୍ରାଜ୍ୟବାଦ ବିରୋଧୀ ସ୍ୱାଧୀନତା ସଂଗ୍ରାମୀ ବିପ୍ଲବୀ ଯୁବକ, ଛାତ୍ର ବୁଦ୍ଧିଜୀବୀଙ୍କର କମ୍ୟୁନିଷ୍ଟ ଗୋଷ୍ଠୀ ଗଠିତ ହୁଏ । କେହି କାହାକୁ ଚିହ୍ନି ନଥାଇ; କେହି କାହା ସଙ୍ଗେ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ ନ କରି ଏପରି କମ୍ୟୁନିଷ୍ଟ ଗୋଷ୍ଠୀ ଗଠିତ ହୁଏ ପ୍ରଥମେ ବମ୍ବେ, କଲିକତା, ମାନ୍ଦ୍ରାଜ୍‌ରେ ଓ ପରେ ପରେ ଲାହୋର୍, କାନ୍‌ପୁର ଇତ୍ୟାଦି ସ୍ଥାନରେ । କାନପୁର ପାର୍ଟି ପ୍ରତିଷ୍ଠାର ମୂଳ ଆଧାର ହେଲେ ଏହିସବୁ ଗୋଷ୍ଠୀ ।

ଏହି ପାର୍ଟି ଗଠନର ପ୍ରଚ୍ଛଦପଟରେ ରହିଛି ଆଉ ଏକ ବୈପ୍ଳବିକ ଘଟଣା । ସୋଭିଏତ୍ ବିପ୍ଳବ ପରେ ବ୍ରିଟିଶ୍ ଶାସନକୁ ଏ ଦେଶରୁ ମୂଳପୋଛ କରିବାକୁ ସଂକଳ୍ପ ଘେନି ଆଫଗାନିସ୍ଥାନ ବାଟ ଦେଇ ଗୋପନରେ ତାସ୍‌କନ୍ଦରେ ପହଞ୍ଚିଥିବା ଅସଂଖ୍ୟ ହିଜାରତୀମାନଙ୍କ କଥା । ତୁର୍କୀରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ଖଲିଫାଙ୍କୁ ଶାସନଚ୍ୟୁତ କରିଥିବା କାରଣରୁ ଆମ ଦେଶରେ ବ୍ରିଟିଶ୍ ବିରୁଦ୍ଧରେ ଖିଲାଫତ୍ ଆନ୍ଦୋଳନ ଗଢ଼ି ଉଠିଥାଏ । ଭାରତରେ ଖିଲାଫତୀମାନେ ଆଫଗାନିସ୍ଥାନ ସରକାର ଦ୍ୱାରା ନିର୍ଯ୍ୟାତିତ ହୋଇ, ଖାଇବାକୁ ନପାଇ ତାସ୍‌କନ୍ଦରେ ପହଞ୍ଚନ୍ତି । ଏମାନେ ଲାଲ୍‌ସେନା ସହିତ ମିଶି ଅକ୍ଟୋବର ବିପ୍ଳବକୁ ବ୍ୟର୍ଥ କରିଦେବା ଲାଗି ବିଲାତ, ଜର୍ମାନୀ, ଜାପାନ, ଫ୍ରାନ୍ସ ପ୍ରଭୃତି ୧୪ଟି ଦେଶର ସଶସ୍ତ୍ର ହସ୍ତକ୍ଷେପର ବିରୋଧ କରିଥିଲେ । ଅନେକେ ତହିଁରୁ କମ୍ୟୁନିଷ୍ଟ ହେଲେ ।

ଏମାନେ ପୁଣି ଗୋପନରେ ଭାରତ ଫେରି ପରେ ଏକ ଷଡ଼ଯନ୍ତ୍ର ମକଦ୍ଦମାରେ ପଡ଼ି ଦୀର୍ଘ ଜେଲଦଣ୍ଡ ଭୋଗିଲେ । ସେମାନେ ଋଷରେ ସମାଜବାଦୀ ବିପ୍ଳବର ସାଫଲ୍ୟଗୁଡ଼ିକୁ ଭାରତରେ ପ୍ରଚାର କଲେ ।

ଭାରତରୁ ଗୋପନରେ ଯାଇ ମସ୍କୋରେ ପହଞ୍ଚି ଆନ୍ତର୍ଜାତୀୟ କ୍ଷେତ୍ରରେ ସେକାଳରେ ବିଖ୍ୟାତ କମ୍ୟୁନିଷ୍ଟ ବୋଲି ପରିଚିତ ଏମ୍.ଏନ୍.ରାୟ, ନଳିନୀ ଗୁପ୍ତ, ବର୍ଲିନ୍‌ରେ ଭୂପେନ୍ଦ୍ର ନାଥ ଦତ୍ତ (ସ୍ୱାମୀ ବିବେକାନନ୍ଦଙ୍କ ଭାଇ), ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ, ଲଣ୍ଡନରେ ଭାରତୀୟ ବିପ୍ଳବୀ ମହିଳା ମାଡ଼ାମ୍ କାମା, ଜୟସୂରିୟା, ଭାରତୀୟ ବିପ୍ଳବୀମାନଙ୍କ ସହିତ ଗୋପନ ସମ୍ପର୍କ ଯୋଗାଯୋଗ ପ୍ରତିଷ୍ଠା କଲେ । ଭାରତରେ କମ୍ୟୁନିଷ୍ଟ ପାର୍ଟିର ଗଠନରେ ସାହାଯ୍ୟ କରିବା ପାଇଁ ନଳିନୀ ଗୁପ୍ତଙ୍କୁ ଏମ୍.ଏନ୍.ରାୟ ଗୋପନରେ ପଠାଇଲେ ।

ବ୍ରିଟିଶ୍ କମ୍ୟୁନିଷ୍ଟ ପାର୍ଟି, ସ୍ୱଦେଶରେ ନିଜ ସାମ୍ରାଜ୍ୟବାଦୀ ସରକାର ବିରୁଦ୍ଧରେ ଭାରତର ତଥା ଅନ୍ୟାନ୍ୟ ବ୍ରିଟିଶ୍ ଉପନିବେଶର ସ୍ୱାଧୀନତା ପାଇଁ ସଂଗ୍ରାମ ଚଳାଉଥିଲା । ଲଣ୍ଡନରେ ପ୍ରତିଷ୍ଠିତ ଇଣ୍ଡିଆ ଲିଗ୍ ସହିତ ସେମାନେ ମଧ୍ୟ ସମ୍ପର୍କ ରଖୁଥିଲେ । ସେହି ବ୍ରିଟିଶ୍ କମ୍ୟୁନିଷ୍ଟ ପାର୍ଟି ତାହାର ତିନିଜଣ ବିଶିଷ୍ଟ କମ୍ୟୁନିଷ୍ଟ ନେତା ବ୍ରେନ୍ ବ୍ରାଡ୍‌ଲେ, ଫିଲିପ୍ ସ୍ପାର୍ଟ, ଲେଷ୍ଟର ହଟିଙ୍ଗଚନଙ୍କୁ ପାସ୍‌ପୋର୍ଟ ଯୋଗାଡ଼ କରି ଭାରତକୁ ପଠାଇଲେ । ତହିଁ ପୂର୍ବରୁ ଗୋପନରେ

ଆସିଥିବା ବ୍ରିଟିଶ୍ କମ୍ୟୁନିଷ୍ଟ ଆସଲେଙ୍କୁ ବ୍ରିଟିଶ୍ ସରକାର ଗିରଫ୍ କରି ସ୍ୱଦେଶକୁ ପଠାଇ ଦେଇଥିଲେ । ଏହି ତିନିଜଣ କମ୍ୟୁନିଷ୍ଟ ଭାରତର ବିଭିନ୍ନ ଶ୍ରମିକ କେନ୍ଦ୍ରକୁ ଯାଇ କମ୍ୟୁନିଷ୍ଟ ଗୋଷ୍ଠୀମାନଙ୍କ ସହିତ ସମ୍ପର୍କ ସ୍ଥାପନ କଲେ । ଏମାନେ ଶ୍ରମିକ ବସ୍ତିରେ ରହି ଅତି ଦୁଃଖ କଷ୍ଟ ମଧ୍ୟରେ ଶ୍ରମିକ ଆନ୍ଦୋଳନରେ ସାହାଯ୍ୟ କଲେ ।

ବିଲାତରେ ଶ୍ରମିକ ଆନ୍ଦୋଳନ କରି, କମ୍ୟୁନିଷ୍ଟ ହୋଇ ବିଶେଷ ଖ୍ୟାତି ଲାଭ କରିଥିଲେ ଭାରତୀୟ ବିପ୍ଳବୀ ସାପୁଜୀ ସକଲତୱାଲା । ସେ ଏତେ ଖ୍ୟାତିସମ୍ପନ୍ନ ଯେ ଶ୍ରମିକମାନେ ତାଙ୍କୁ ବ୍ରିଟିଶ୍ ପାର୍ଲିଆମେଣ୍ଟକୁ କମ୍ୟୁନିଷ୍ଟ ସାଂସଦ କରି ପଠାଇଥିଲେ । ଭାରତୀୟ ବଂଶୋଦ୍ଭବ ବିଖ୍ୟାତ ମାର୍କ୍ସବାଦୀ ତତ୍ତ୍ୱବିତ୍ ରଜନୀ ପାମି ଦତ୍ତ ଭାରତବର୍ଷରେ ବ୍ରିଟିଶ୍ ସାମ୍ରାଜ୍ୟବାଦୀ ଶାସନର ଉତ୍କଟ, ବୀଭତ୍ସ ଶୋଷଣ, ଅତ୍ୟାଚାର ଓ ଲୁଣ୍ଠନର ଚିତ୍ର ଦେଇ ବହୁ ପୁସ୍ତିକା ପ୍ରକାଶ କରିଥିଲେ । ତାହା ଭାରତରେ ଯୁବ ବିପ୍ଳବୀମାନଙ୍କୁ ଉଦ୍‌ବୁଦ୍ଧ, ଅନୁପ୍ରାଣିତ କରୁଥିଲା । ତାଙ୍କର ରଚନାଗୁଡ଼ିକ ସେ କାଳର କଂଗ୍ରେସ୍‌ର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ମଧ୍ୟ ପ୍ରଭାବିତ କରିଥିଲା ।

ସାପୁଜୀ ସକଲତୱାଲା ଭାରତକୁ ଆସି ବମ୍ବେ, କଲିକତା, ମାନ୍ଦ୍ରାଜ୍ ପ୍ରଭୃତି ଅନେକ ସ୍ଥାନକୁ ଯାଇ ଭାରତର ସ୍ୱାଧୀନତା, ଋଷ୍‌ରେ ସମାଜବାଦୀ ବିପ୍ଳବ, ମାର୍କ୍ସବାଦୀ ତତ୍ତ୍ୱ ସମ୍ପର୍କରେ ନାନା ସଭା ଓ ଆଲୋଚନାଚକ୍ରରେ ଭାଷଣ ଦେଇ ଏକ ମନ୍ଥନ ସୃଷ୍ଟି କରିଥିଲେ ।

**ପେଶବାର – କାନପୁର ବଲଶେଭିକ ଷଡ଼ଯନ୍ତ୍ର ମକଦ୍ଦମା**

ବମ୍ବେରୁ ଡାଙ୍ଗେଙ୍କ ଦ୍ୱାରା ପ୍ରକଶିତ "ସୋସାଲିଷ୍ଟ୍", ବଙ୍ଗଳାରୁ ମୁଜଫର୍ ଅହମ୍ମଦଙ୍କ ଦ୍ୱାରା ପ୍ରକଶିତ "ଲଙ୍ଗଳ" ଏବଂ ପଞ୍ଜାବରୁ ସନ୍ତୋଷ ସିଂଙ୍କ ଦ୍ୱାରା ପ୍ରକାଶିତ "କୀର୍ତ୍ତି" ତଥା ବମ୍ବେରୁ ମରାଠୀ ଭାଷାରେ ପ୍ରକାଶିତ "କ୍ରାନ୍ତି" ପତ୍ରିକା ଶ୍ରମିକ ଆନ୍ଦୋଳନ, ଚାଷୀ ସଂଗ୍ରାମ ଓ କମ୍ୟୁନିଷ୍ଟ ମତବାଦ ପ୍ରଚାରରେ ପ୍ରାଥମିକ ମାଧ୍ୟମ ହେଲା । ସ୍ୱାଧୀନତା ସଂଗ୍ରାମରେ କମ୍ୟୁନିଷ୍ଟ ଆଦର୍ଶର ପ୍ରବେଶ ଦେଖି ବ୍ରିଟିଶ୍ ସରକାର ଅଧିକ ହିଂସାମୁଖୀ ହୋଇପଡ଼ିଲା । ପ୍ରଥମ ବଲଶେଭିକ ଷଡ଼ଯନ୍ତ୍ର ମକଦ୍ଦମା ଆରମ୍ଭ ହୋଇଗଲା । ୧୯୨୨ରୁ ୧୯୨୪ ସୋଭିଏତ୍ ୟୁନିଅନ୍‌ରୁ ଫେରନ୍ତା ହିଜରତିମାନଙ୍କ ବିରୁଦ୍ଧରେ ପେଶାବାର ଷଡ଼ଯନ୍ତ୍ର ମକଦ୍ଦମାର ତିନି ଦଫାରେ ଅନେକଙ୍କୁ ଗିରଫ କରାଗଲା । ସେପରି ହିଜରତି ବିପ୍ଳବୀମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ ଫିରୋଜଉଦ୍ଦିନ, ମନସୁର, ସୌକତ୍ ଉସ୍‌ମାନି, ଅବଦୁଲ୍ ମଜିଦ୍, ହବିବ ଅହମ୍ମଦ, ମହମ୍ମଦ୍ ରଫିକ୍ ପ୍ରମୁଖ । ଏମାନଙ୍କୁ ୫ରୁ ୭ ବର୍ଷ ଯାଏ ଜେଲ୍‌ଦଣ୍ଡ ଦିଆଗଲା । ବ୍ରିଟିଶ୍ ସରକାର ଭାବିଲା ନୂଆନୂଆ କମ୍ୟୁନିଷ୍ଟମାନେ ଭୟ ପାଇଯିବେ । ମାତ୍ର ବିଭିନ୍ନ ସ୍ଥାନରେ କମ୍ୟୁନିଷ୍ଟମାନଙ୍କ ସଂଖ୍ୟା ଓ କାର୍ଯ୍ୟକଳାପ ବଢ଼ିଗଲା । ପେଶାବାର ଷଡ଼ଯନ୍ତ୍ର ମକଦ୍ଦମାର ବନ୍ଦୀମାନଙ୍କ ଭିତରୁ ବରଂ ଅନେକେ କମ୍ୟୁନିଷ୍ଟ ହେଲେ ।

୧୯୨୪ରେ ଭାରତର ବିଭିନ୍ନ ଅଞ୍ଚଳରୁ ବଛାବଛା କମ୍ୟୁନିଷ୍ଟ ଯୁବକମାନଙ୍କୁ ଗିରଫ୍

କରାଗଲା । ଆରମ୍ଭ ହୋଇଗଲା କାନପୁର ବଲଶେଭିକ ଷଡ଼ଯନ୍ତ ମକଦ୍ଦମା । ବମ୍ବେରୁ ଏସ୍.ଏ.ଡାଙ୍ଗେ, କଲିକତାରୁ ମୁଜଫର ଅହମ୍ମଦ, ମାନ୍ଦ୍ରାଜରୁ ସିଙ୍ଗାରଭେଲୁ ଚେଟ୍ଟିୟାର୍ ଓ ଅନ୍ୟାନ୍ୟ ସ୍ଥାନରୁ ସୌକତ ଉସ୍‌ମାନୀ, ନଳିନୀଗୁପ୍ତ ପ୍ରମୁଖଙ୍କୁ ଗିରଫ୍ କରି ନିଆଗଲା ଓ ସେମାନଙ୍କ ବିରୁଦ୍ଧରେ ମିଥ୍ୟା ମନଗଢ଼ା ଦଲିଲମାନ ପେଶ୍ କରାଯାଇ ଦୀର୍ଘ କାରାଦଣ୍ଡ ଦିଆଗଲା । କାନପୁର ଷଡ଼ଯନ୍ତ ମକଦ୍ଦମାର ତତ୍ତ୍ୱାବଧାନ କରୁଥିଲେ ବିପ୍ଳବୀ ଗଣେଶଚନ୍ଦ୍ର ବିଦ୍ୟାର୍ଥୀ । ୧୯୨୫ରେ କାକୋରୀ ଷଡ଼ଯନ୍ତ ମକଦ୍ଦମାରେ ରାମପ୍ରସାଦ ବିସ୍‌ମିଲ୍, ରୋଷନ୍‌ଲାଲ୍, ଆସଫକୁଲାଙ୍କୁ ଫାଶି ଦିଆଗଲା । ହିନ୍ଦୁସ୍ଥାନ ସୋସାଲିଷ୍ଟ ରିପ୍ଲବିକାନ୍ ପାର୍ଟିର ପ୍ରତିଷ୍ଠାତା ଚନ୍ଦ୍ରଶେଖର୍ ଆଜାଦ୍ ବହୁବର୍ଷ ଲୁଚିଯାଇ ପରେ ଧରାପଡ଼ି କାକୋରୀ ଷଡ଼ଯନ୍ତ ମକଦ୍ଦମାରେ ଫାଶି ପାଇଲେ । ଏମାନେ ମଧ୍ୟ ସମାଜବାଦ ଓ ଗଣସଂଗ୍ରାମରେ ବିଶ୍ୱାସ କରୁଥିଲେ ।

ଏହା ହିଁ ସଂକ୍ଷେପରେ କାନପୁର ଷଡ଼ଯନ୍ତ ମକଦ୍ଦମାର ଭିତ୍ତିଭୂମି । ସେହି କାନପୁରଠାରେ କମ୍ୟୁନିଷ୍ଟମାନେ ମିଳିତ ହୋଇ କମ୍ୟୁନିଷ୍ଟ ପାର୍ଟି ପ୍ରତିଷ୍ଠାର ଉଦ୍‌ବୋଧନୀ ସମ୍ମିଳନୀ କରି ବ୍ରିଟିଶ ସରକାରକୁ ଠିକଣା ଜବାବ ଦେଲେ । ଭାରତର ସ୍ୱାଧୀନତା ଓ ଦେଶରେ ଶୋଷଣବିହୀନ, ଶ୍ରେଣୀବିହୀନ ସମାଜବାଦ ପ୍ରତିଷ୍ଠା ଆଦର୍ଶକୁ ସାଙ୍ଗଠନିକ ରୂପ ସେଠାରେ ଦିଆଗଲା ।

ଏଥି ପୂର୍ବରୁ ସୋଭିଏତ୍ ଋଷରେ ଗୋପନବାସରେ ଥିବା ତତ୍କାଳୀନ କମ୍ୟୁନିଷ୍ଟମାନେ ତାସ୍‌କନ୍ଦରେ ୧୯୨୧ରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ନାମରେ ସଙ୍ଗଠନ ଗଢ଼ିଥିଲେ । ମାତ୍ର ଖୋଦ୍ ଭାରତ ଭୂଇଁରେ, ଭାରତୀୟ ସ୍ୱାଧୀନତା ସଂଗ୍ରାମ, ବିଭିନ୍ନ ସ୍ଥାନରେ ଶ୍ରମିକ ସଙ୍ଗଠନ, ଯୁବ ଛାତ୍ର ସଙ୍ଗଠନ, ଚାଷୀ ଆନ୍ଦୋଳନରେ ନେତୃତ୍ୱ ନେଇଥିବା ବିପ୍ଳବୀମାନଙ୍କର କାନପୁରରେ ଅନୁଷ୍ଠିତ ସମ୍ମିଳନୀ ହିଁ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଜନ୍ମ ଦିବସ ସୂଚିତ କଲା ଓ ତାହାହିଁ ଗୃହୀତ ହେଲା ।

କାନପୁରଠାରେ ୧୯୨୫ ଡିସେମ୍ବର ୨୬ରେ ମୁଖ୍ୟତଃ ବମ୍ବେ, ମାନ୍ଦ୍ରାଜ୍, କଲିକତା, ଲାହୋର, ଉତ୍ତର ପ୍ରଦେଶର କାନପୁର, ମିରଟ ପ୍ରଭୃତିର କମ୍ୟୁନିଷ୍ଟ ଗୋଷ୍ଠୀଗୁଡ଼ିକର ୩୦୦ ଯାଏ ପ୍ରତିନିଧି ଯୋଗ ଦେଇଥିଲେ । ଏଠାରେ ଉତ୍ତର ପ୍ରଦେଶର ସତ୍ୟଭକ୍ତ ଗଢ଼ିଥିବା ଇଣ୍ଡିଆନ୍ କମ୍ୟୁନିଷ୍ଟ ପାର୍ଟିକୁ ଏବଂ ମାନ୍ଦ୍ରାଜରେ ସିଙ୍ଗାରଭେଲୁ ଚେଟ୍ଟିୟାର ଗଢ଼ିଥିବା ଲେବର କିସାନ ପାର୍ଟିକୁ ନିଷ୍ପତ୍ତି ନିଆଯାଇ ଭଙ୍ଗା ହେଲା । ଏକ ସମ୍ବିଧାନ ଓ ଏକ କାର୍ଯ୍ୟକାରୀ କମିଟି ଗଠିତ ହେଲା । ଲାଲ୍ ପତାକାକୁ ପାର୍ଟିର ପତାକା ରୂପେ ଗ୍ରହଣ କରାଗଲା । କମ୍ରେଡ୍ ଏସ୍.ଭି.ଘାଟେ ଅନ୍ୟତମ ସମ୍ପାଦକ ହେଲେ । ସତ୍ୟଭକ୍ତ ନିଜ ପାର୍ଟିର ନାମ ନ ରହିବାରୁ ଅବଶ୍ୟ ପରେ ଓହରିଯାଇ ତାଙ୍କ ପାର୍ଟିର ପୂର୍ବ ନାମ ବଜାୟ ରଖିଲେ । ମାତ୍ର ଅଳ୍ପ କେଇମାସ ମଧ୍ୟରେ ଉକ୍ତ ପାର୍ଟିର ଅସ୍ତିତ୍ୱ ରହିଲା ନାହିଁ । ବସ୍ତୁତଃ କମ୍ୟୁନିଷ୍ଟ ପାର୍ଟି ବେଆଇନ୍ ପରିସ୍ଥିତିରେ ରହି ତା'ର ସାଙ୍ଗଠନିକ ଓ ରାଜନୈତିକ ନେତୃତ୍ୱକାରୀ ଭୂମିକା ଗ୍ରହଣ କଲା ।

୧୯୨୭ରେ ନବଗଠିତ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ସମ୍ମିଳନୀ ବମ୍ବେଠାରେ ଅନୁଷ୍ଠିତ ହୋଇ ପାର୍ଟିର କାର୍ଯ୍ୟକ୍ରମ ସଂପ୍ରସାରିତ ହେଲା । କେନ୍ଦ୍ର କମିଟି ଗଠନ କରାଗଲା । ସମ୍ବିଧାନର ସଂଶୋଧନ କରାଗଲା । କମ୍ରେଡ୍ ଏସ୍.ଭି.ଘାଟେ ସାଧାରଣ ସମ୍ପାଦକ ରୂପେ ନିର୍ବାଚିତ ହେଲେ । ୧୯୩୪ ଯାଏ ସେ ଏହି ପଦବୀରେ ରହିଲେ ।

**କାନପୁରରୁ ମିରଟ –**

ବିଧିବଦ୍ଧଭାବରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଗଠିତ ହେଲେ ବି କାନପୁର ସମ୍ମିଳନୀ ପୂର୍ବରୁ ଓ ତା'ପରେ କେତେକ ପ୍ରଦେଶରେ କମ୍ୟୁନିଷ୍ଟ ଓ ବାମପନ୍ଥୀ ଆଦର୍ଶରେ ୱାର୍କର୍ସ ଏବଂ ପେଜାଣ୍ଟ ପାର୍ଟି (ଶ୍ରମିକ ଚାଷୀ ପାର୍ଟି) ଗଠିତ ହୋଇଥିଲା । ବମ୍ବେ, ପଞ୍ଜାବ, ବଙ୍ଗଳା ଏବଂ ଉତ୍ତରପ୍ରଦେଶରେ ୱାର୍କର୍ସ ଏଣ୍ଡ୍ ପେଜାଣ୍ଟ ପାର୍ଟି ଗଠିତ ହୋଇ ଶ୍ରମିକ ଓ ଚାଷୀ ଆନ୍ଦୋଳନ କରୁଥିଲା । ୧୯୨୬ ଫେବୃଆରୀରେ ବଙ୍ଗଳାର ନଦିୟାଠାରେ ଲେବର ସ୍ୱରାଜ ପାର୍ଟିର ନାମ ବଦଳା ଯାଇ ୱାର୍କର୍ସ ଏଣ୍ଡ୍ ପେଜାଣ୍ଟ ପାର୍ଟିର ନାମକରଣ କରାଗଲା । ୧୯୨୬ ଅକ୍ଟୋବରରେ "ଗଣବାଣୀ" ନାମକ ଏହାର ମୁଖପତ୍ର ବାହାର କରାଗଲା । ଏହାର ସମ୍ପାଦକ ହେଲେ ମୁଜଫର ଅହମ୍ମଦ । ୧୯୨୭ ମାର୍ଚ୍ଚରେ ବମ୍ବେ ପ୍ରଦେଶର କଂଗ୍ରେସ୍ ଲେବର ଗ୍ରୁପ୍ ଗଢ଼ିଥିବା ଯୁବକ ବିପ୍ଳବୀମାନେ ୱାର୍କର୍ସ ଏଣ୍ଡ୍ ପେଜାଣ୍ଟ ପାର୍ଟି ଗଠନ କଲେ । ଏହି ବର୍ଷ ବମ୍ବେଠାରେ ଅନୁଷ୍ଠିତ ନିଖିଳଭାରତ କଂଗ୍ରେସ୍ କମିଟିର ଅଧିବେଶନରେ ସ୍ୱାଧୀନତା ସଂଗ୍ରାମର ଆଦର୍ଶ ଓ କର୍ତ୍ତବ୍ୟ କ'ଣ ହେବା ଉଚିତ୍, ସେଥିପାଇଁ ଏକ କାର୍ଯ୍ୟକ୍ରମ ସେମାନେ ପେଶ୍ କରିଥିଲେ ।

୧୯୨୮ରେ ଅମୃତସରର "କୀର୍ତ୍ତି" ପତ୍ରିକା ସହିତ ସଂପୃକ୍ତ ଯୁବ ସ୍ୱାଧୀନତା ସଂଗ୍ରାମୀମାନେ ୱାର୍କର୍ସ ଏଣ୍ଡ୍ ପେଜାଣ୍ଟ ପାର୍ଟି ଗଠନ କଲେ । ହୋସିଆରପୁର ସୋହାନ ସିଂ ଜୋଷଙ୍କ ଅଧକ୍ଷତାରେ ଏକ ଶ୍ରମିକ ସମ୍ମିଳନୀ ଏହି ପାର୍ଟି ପକ୍ଷରୁ କରାଯାଇଥିଲା । ୧୯୨୮ ସେପ୍ଟେମ୍ବରରେ ଲିଆଲପୁରଠାରେ ଏବଂ ୧୯୨୯ ମାର୍ଚ୍ଚରେ ରୋହତକଠାରେ ଏହି ପାର୍ଟିର ସମ୍ମିଳନୀ କରାଯାଇ ସ୍ୱାଧୀନତା ସଂଗ୍ରାମରେ ଶ୍ରମିକ ଓ ଚାଷୀ ଆନ୍ଦୋଳନର ଭୂମିକା ଓ ତା'ର ଗୁରୁତ୍ୱର ବିଶ୍ଳେଷଣ କରାଯାଇଥିଲା ।

ଉତ୍ତର ପ୍ରଦେଶରେ ଶ୍ରମିକ ଓ କୃଷକ ଆନ୍ଦୋଳନ ଚଳାଉଥିବା ଯୁବକମାନେ ୧୯୨୮ ଅକ୍ଟୋବରରେ ମିରଟଠାରେ ମିଳିତ ହୋଇ ୱାର୍କର୍ସ ଏଣ୍ଡ୍ ପେଜାଣ୍ଟ ପାର୍ଟି ଗଠନ କରିଥିଲେ । ଏହାର ସାଧାରଣ ସମ୍ପାଦକ ହେଲେ ଛାତ୍ର ଆନ୍ଦୋଳନର ନେତା ପି.ସି. ଯୋଷୀ । ବମ୍ବେ, ପଞ୍ଜାବ, ବଙ୍ଗଳା ଏବଂ ଉତ୍ତର ପ୍ରଦେଶର ୱାର୍କର୍ସ ଏଣ୍ଡ୍ ପେଜାଣ୍ଟ ପାର୍ଟିର ପ୍ରତିନିଧିମାନେ ୧୯୨୮ରେ କଲିକତାଠାରେ ଏକ ଗୁରୁତ୍ୱପୂର୍ଣ୍ଣ ସମ୍ମିଳନୀରେ ମିଳିତ ହେଲେ । ସୋହାନ୍ ସିଂ ଜୋଷ୍ ଓ ବ୍ରିଟିଶ୍ କମ୍ୟୁନିଷ୍ଟ ବେନ୍ ବ୍ରାଡ୍ଲେ ସବୁ କମ୍ୟୁନିଷ୍ଟ ମତବାଦୀ ପାର୍ଟିର ଏକୀକରଣର

ଆହ୍ୱାନ ଦେଇଥିଲେ । ସି.ପି.ଆଇ.ର ସାଧାରଣ ସମ୍ପାଦକ ଏସ୍.ଭି.ଘାଟେ ମଧ୍ୟ ଏହି ସମ୍ମିଳନୀରେ ଭାଗ ନେଇଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ପଞ୍ଜାବ, ଉତ୍ତରପ୍ରଦେଶ, ବଙ୍ଗଳା ଓ ବମ୍ବେର ଏହି ପାର୍ଟିଗୁଡ଼ିକର ସାଥୀମାନେ ସି.ପି.ଆଇ. ସହିତ ସାମିଲ୍ ହେଲେ । କେବଳ କେତେକ ଭିନ୍ନ ମତାବଲମ୍ବୀ ବମ୍ବେ ଓ୍ୱାର୍କର୍ସ୍ ପାର୍ଟିର ଅସ୍ତିତ୍ୱ ରଖିଲେ । ମାତ୍ର ଉକ୍ତ ପାର୍ଟିର ଅଧିକାଂଶ ସି.ପି.ଆଇ. ସହିତ ସାମିଲ ହେଲେ । ଅଧୁନା କେବଳ ମହାରାଷ୍ଟ୍ର ବ୍ୟତୀତ ଆଉ ୩ଟି ରାଜ୍ୟରେ ଓ୍ୱାର୍କର୍ସ୍ ଏଣ୍ଡ୍ ପେଜାଣ୍ଟ ପାର୍ଟିର ଅସ୍ତିତ୍ୱ ରହି ନାହିଁ । ସମସ୍ତେ ସି.ପି.ଆଇ.ରେ ସାମିଲ ହୋଇଯାଇଥିଲେ ।

କାନପୁରରେ ସି.ପି.ଆଇ.ର ଉଦ୍‌ବୋଧନୀ ସମ୍ମିଳନୀ ପରେ ଭାରତରେ ବମ୍ବେ, କଲିକତା, ପଞ୍ଜାବ, କାନପୁର, ମିରଟ ଏମିତି ବିଭିନ୍ନ ସ୍ଥାନରେ ବିରାଟ ବିରାଟ ଶ୍ରମିକ ଧର୍ମଘଟରେ ଜୁଆର ଛୁଟିଲା । ୧୯୨୮ରେ ବମ୍ବେ ଗିରନି କାମଗାର ୟୁନିୟନ ନେତୃତ୍ୱରେ ୮୦ ହଜାର ଲୁଗାକଳ ଶ୍ରମିକ ଦୀର୍ଘ ଛ' ମାସବ୍ୟାପୀ ଅଭୂତପୂର୍ବ ଧର୍ମଘଟ କଲେ ।

ବି.ଏନ୍.ଆର୍. ଶ୍ରମିକମାନଙ୍କର ବିରାଟ ଧର୍ମଘଟ ଆନ୍ଦୋଳନ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନକୁ ଥରହର କରିଦେଲା । ବଙ୍ଗଳା, ପଞ୍ଜାବ, ଉତ୍ତର ପ୍ରଦେଶ ଏବଂ ଅନ୍ୟାନ୍ୟ ବହୁ ସ୍ଥାନରେ ଜମିଦାର, ମହାଜନଙ୍କ ଶୋଷଣ ନିର୍ଯ୍ୟାତନା ବିରୁଦ୍ଧରେ କମ୍ୟୁନିଷ୍ଟମାନଙ୍କ ନେତୃତ୍ୱରେ ଆନ୍ଦୋଳନମାନ ମୁଣ୍ଡ ଟେକିଲା ।

ବ୍ରିଟିଶ ସରକାର ଭାରତର ସ୍ୱାଧୀନତା ଆନ୍ଦୋଳନ, ଶ୍ରମିକ, କୃଷକ ଆନ୍ଦୋଳନକୁ ଭଣ୍ଡୁର କରିବା ଲାଗି ପ୍ରେରଣ କରିଥିବା ସାଇମନ କମିଶନ ବିରୁଦ୍ଧରେ ଦେଶସାରା ଆବାଜ ପ୍ରତିଧ୍ୱନିତ ହେଲା । କଂଗ୍ରେସର ଆହ୍ୱାନ ଥିଲା, "ସାଇମନ କମିଶନ୍ ଫେରିଯାଅ" । କମ୍ୟୁନିଷ୍ଟମାନେ ସାଇମନ କମିଶନ ବିରୋଧୀ ଆନ୍ଦୋଳନକୁ ବମ୍ବେ, କଲିକତା, ମାନ୍ଦ୍ରାଜ, ଲାହୋର, କାନପୁର ପ୍ରଭୃତି ଅଞ୍ଚଳରେ ଶ୍ରମିକମାନଙ୍କ ଭିତରକୁ ନେଇଗଲେ । ବିରାଟ ବିରାଟ ଶ୍ରମିକ ବିକ୍ଷୋଭ ଦେଖାଦେଲା । ବ୍ରିଟିଶ ଦମନ ଗୁଳିର ଇୟତ୍ତା ରହିଲା ନାହିଁ । ଏ.ଆଇ.ଟି.ୟୁ.ସିର ନେତା ବିଖ୍ୟାତ ଦେଶପ୍ରେମୀ ଲାଲା ଲାଜପତ୍ ରାୟଙ୍କ ଉପରେ ଲାଠିମାଡ଼ ଓ ତାଙ୍କର ମୃତ୍ୟୁ ରାଜନୈତିକ ବାତାବରଣକୁ ଅଧିକ ଉଷ୍ମ କରିଦେଲା । ଦମନ ସତ୍ତ୍ୱେ ନବୀନ ବିପ୍ଳବୀ ଯୁବକମାନେ ବିଭିନ୍ନ ରାଜ୍ୟରେ ତରୁଣ କମ୍ୟୁନିଷ୍ଟ ଲିଗ୍‌ମାନ ଏହି ସମୟରେ ଗଠନ କରି କମ୍ୟୁନିଷ୍ଟ ମତବାଦକୁ ଯୁବକୁଳ ଓ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଖରେ ପହଞ୍ଚାଇଲେ । ବଙ୍ଗଳାର କଲିକତା, ଢାକା, କିଶୋରଗଞ୍ଜ, ମାଲଦା ପ୍ରଭୃତି ସ୍ଥାନରେ ଯୁବ କମ୍ୟୁନିଷ୍ଟ ଲିଗ୍‌ର ଶାଖା ପ୍ରତିଷ୍ଠିତ ହେଲା । ଧରଣୀ ଗୋସ୍ୱାମୀ, ଗୋପେନ ଚକ୍ରବର୍ତ୍ତୀ, ଜଲାଲଉଦ୍ଦିନ ବୁଖାରୀ ପ୍ରମୁଖ ଏହାର ନେତୃତ୍ୱ ନେଲେ । ବମ୍ବେ, କରାଚି, ଲକ୍ଷ୍ନୌ ପ୍ରଭୃତି ସ୍ଥାନରେ ଯବୁ କମ୍ୟୁନିଷ୍ଟ ଲିଗ୍ ଗଠିତ ହେଲା । ଲାହୋର ଷଡ଼ଯନ୍ତ୍ର ମକଦ୍ଦମାର ମହାନାୟକ ଭଗତ ସିଂହ ଲକ୍ଷ୍ନୌ କମ୍ୟୁନିଷ୍ଟ ଯୁବଲିଗ୍‌ର ସଙ୍ଗଠକ ଥିଲେ ।

ଭଗତ ସିଂହଙ୍କ ଦ୍ୱାରା ପ୍ରତିଷ୍ଠିତ ଲାହୋର ନବ ଜୀବନ ଭାରତ ସଭାର କାର୍ଯ୍ୟ ୧ ୯ ୨ ୬ ମାର୍ଚ୍ଚରୁ ଏପ୍ରିଲ୍ ୧ ୯ ୨ ୭ ଯାଏ ଛାତ୍ରମାନଙ୍କ ମଧ୍ୟରେ ବିପୁଳ ଆଲୋଡ଼ନ ସୃଷ୍ଟି କରିଥିଲା । ନବ ଜୀବନ ଭାରତ ସଭାର ଶାଖାମାନ ଅମୃତସର, ଲାହୋର, ଲୁଧିଆନା, ଜଳନ୍ଧର, ଗୁଜୁରାନୱାଲା, ସରଗୋଧା, ଟେଲିଗଞ୍ଜ, ଜାରନୱାଲା ସହର ଏମିତିକି ଗାଁ'ମାନଙ୍କରେ ଗଢ଼ିଉଠିଲା । ଏହି ଲିଗ୍‌ଗୁଡ଼ିକ ସ୍ୱାଧୀନତା ସଂଗ୍ରାମରେ ସମାଜବାଦର ପ୍ରଚାରକ ହେଲେ ।

ମିରଟ୍ ଷଡ଼ଯନ୍ତ୍ର ମକଦ୍ଦମା ପୂର୍ବରୁ ସାରା ଭାରତରେ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ଅଗ୍ନିଗର୍ଭ ହୋଇ ପଡ଼ିଥିଲା ।

୧ ୯ ୨ ୮ ଡିସେମ୍ବର ୧ ୭ରେ ପୁଲିସ୍ ଡି.ଏସ୍.ପି. ବିଲାତୀ ଅଫିସର ସାଣ୍ଡର୍ସଙ୍କୁ ହତ୍ୟା କରିଥିବା ଅଭିଯୋଗରେ ଭଗତସିଂହଙ୍କ ହିନ୍ଦୁସ୍ଥାନ ସୋସାଲିଷ୍ଟ ରିପବ୍ଲିକାନ୍ ଆର୍ମିର ତୁଙ୍ଗନେତା ଭଗତସିଂହ, ରାଜଗୁରୁ, ଶୁକଦେବଙ୍କୁ ଗିରଫ କରାଗଲା । ଲାହୋର ଷଡ଼ଯନ୍ତ୍ର ମକଦ୍ଦମାରେ ଏହି ତିନିଜଣଙ୍କୁ ଫାଶି ଦିଆଯାଇଥିଲା । ବନ୍ଦୀମାନଙ୍କ ଭିତରୁ ଯତୀନ ଦାସ ଅନଶନ କରି ପ୍ରାଣ ତ୍ୟାଗ କଲେ । କମ୍ରେଡ୍ ଅଜୟ ଘୋଷ ଯିଏ ପରେ ସି.ପି.ଆଇ.ର ସାଧାରଣ ସମ୍ପାଦକ ହେଲେ ସେ ଆଉ ଭଗତ ସିଂହଙ୍କ ସାଥୀମାନେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ ।

ମିରଟ ଷଡ଼ଯନ୍ତ୍ର ମକଦ୍ଦମା ପୂର୍ବରୁ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ଘଟଣା ଘଟିଥିଲା । ପୃଥିବୀର ୟୁରୋପ, ଆମେରିକା, ଆଫ୍ରିକା ଓ ଭାରତବର୍ଷ ସମେତ ଏସିଆର ସାମ୍ରାଜ୍ୟବାଦ ବିରୋଧୀମାନେ ୧ ୯ ୨ ୭ରେ ବ୍ରୁସେଲସ୍‌ଠାରେଏକ ସମ୍ମିଳନୀରେ ସମବେତ ହୋଇଥିଲେ । ବିଶ୍ୱବିଖ୍ୟାତ ପଦାର୍ଥବିଜ୍ଞାନିବିତ୍ ଆଇନଷ୍ଟାଇନ୍, ବିଶ୍ୱବିଦିତ ଲେଖକ ରୋମା ରୋଲାଁ, ଶ୍ରୀମତୀ ସୁନ୍‌ୟାତ୍ ସେନ୍, ଇଣ୍ଡୋନେସିଆର ମହମ୍ମଦ ହାଟୀ ଏଥିରେ ଯୋଗ ଦେଇଥିଲେ । ଭାରତରୁ ଜାତୀୟ କଂଗ୍ରେସର ପ୍ରତିନିଧି ରୂପେ ଜବାହାରଲାଲ୍ ନେହେରୁ ଏଥିରେ ଭାଗ ନେଇଥିଲେ । ଏହି ସମ୍ମିଳନୀରେ ଭାରତ ବିପ୍ଳବୀ କମ୍ୟୁନିଷ୍ଟ, ଯେଉଁମାନେ ବିଦେଶରେ ଥିଲେ, ସେମାନଙ୍କ ମଧ୍ୟରୁ ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ, ମାଡ଼ାମ କାମା, ଏସ୍. ସକଲତୱାଲା, ବଖରଅଲି ମିର୍ଜା ପ୍ରମୁଖ ଭାଗ ନେଇଥିଲେ ।

ବ୍ରିଟିଶ ସାମ୍ରାଜ୍ୟବାଦ, ଯାହାର ଉପନିବେଶକଗୁଡ଼ିକ ପଞ୍ଚ ମହାଦେଶରେ ଛାଇ ହୋଇଥିଲା, ତାହା ବିରୁଦ୍ଧରେ ଭାରତୀୟ ପ୍ରତିନିଧିମାନେ ଦୃଢ଼ ଆବାଜ ସେଠାରେ ପ୍ରତିଧ୍ୱନିତ କରିଥିଲେ ।

କଂଗ୍ରେସର ସ୍ୱାଧୀନତା ଆନ୍ଦୋଳନରେ କମ୍ୟୁନିଷ୍ଟ ଓ ବାମପନ୍ଥୀମାନଙ୍କର ପ୍ରଭାବ ବୃଦ୍ଧି, ସନ୍ତ୍ରାସବାଦୀ ସଙ୍ଗଠନଗୁଡ଼ିକର ବର୍ଦ୍ଧିଷ୍ଣୁ ବୈପ୍ଳବିକ କାର୍ଯ୍ୟ ବ୍ରିଟିଶ ଶାସନଙ୍କୁ ଅସ୍ତବ୍ୟସ୍ତ କରିଦେଲା । କମ୍ୟୁନିଷ୍ଟମାନଙ୍କୁ ଲୋପ କରିବା ଏବଂ କମ୍ୟୁନିଷ୍ଟମାନଙ୍କୁ ବିଦେଶୀଚର, ଦେଶଦ୍ରୋହୀ ଆଖ୍ୟା ଦେଇ କଂଗ୍ରେସ ଓ ସ୍ୱାଧୀନତା ଆନ୍ଦୋଳନଠାରୁ ବିଚ୍ଛିନ୍ନ କରିବାର ଚକ୍ରାନ୍ତ

ପୁନଶ୍ଚ ବ୍ରିଟିଶ ଶାସନ ଆରମ୍ଭ କରିଦେଲା । ୧୯୨୮ ମାର୍ଚ୍ଚ ୨୦ ତାରିଖରେ ଏକ ସମୟରେ ବମ୍ବେ, ଉତ୍ତର ପ୍ରଦେଶ, ବଙ୍ଗଳା ଓ ପଞ୍ଜାବରେ ବ୍ରିଟିଶ୍ ପୁଲିସ୍ ଚଢ଼ଉ କରି ବିଖ୍ୟାତ ମିରଟ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାରେ ୩୩ ଜଣଙ୍କୁ ଗିରଫ କଲା । ବ୍ରିଟିଶ କମ୍ୟୁନିଷ୍ଟ ବେନ ବ୍ରାଡ୍‌ଲେ, ଫିଲିପ୍ ସ୍ପାର୍ଟ, ଲେଷ୍ଟର ହଟଙ୍ଗ୍‌ଟନ୍‌ଙ୍କ ସାଙ୍ଗକୁ ବଙ୍ଗଳାର ମୁଜଫର ଅହମ୍ମଦ, ଧରଣୀ ଗୋସ୍ୱାମୀ, ଗୋପେନ ଚକ୍ରବର୍ତ୍ତୀ, ଗୋପାଳ ବସାକ, ରାଧାରଞ୍ଜନ ମିତ୍ର, ଶିବନାଥ ବାନାର୍ଜି, ସାମସୁଲ ହୋଦା, କିଶୋର ଲାଲ୍ ଘୋଷଙ୍କୁ ଧରି ନିଆଗଲା ।

ମହରାଷ୍ଟ୍ରରୁ ଏସ୍.ଏ. ଡାଙ୍ଗେ, ଏସ୍.ଭି. ଘାଟେ, ଏସ୍.ଏସ୍. ମିରାଜକର, ଗଙ୍ଗାଧର ଅଧିକାରୀ, କେ.ଏନ୍.ଯୋଗ୍‌ଲେକର, ଆର.ଏସ୍.ନିମକର, ଏ.ଆଲ୍ୱେ, ଜି. କାସଲେ, ଡି. ଠେଙ୍ଗଡ଼ି, ଏମ୍.ଜି. ଦେଶାଇ ଏବଂ ଏସ୍.ଏଚ୍. ଜାଭେଦଙ୍କୁ ଗିରଫ କରାଗଲା । ଉତ୍ତର ପ୍ରଦେଶରୁ ପି.ସି. ଯୋଷୀ, ବିଶ୍ୱନାଥ ମୁଖାର୍ଜି, ଧର୍ମବୀର ସିଂହ, ଏଲ୍. କଦମ ଓ ସୌକତ୍ ଉସମାନୀଙ୍କୁ ଏବଂ ପଞ୍ଜାବର ସୋହାନସିଂ କୋଷ, ଅବଦୁଲ ମଜିଦ୍ ଏବଂ କେଦାରନାଥ ଶେଗାଲଙ୍କୁ ଗିରଫ୍ କରାଗଲା । ସମସ୍ତଙ୍କୁ ମିରଟ ଜେଲ୍‌ରେ ବନ୍ଦୀ କରାଯାଇଥିଲା । ଏମାନଙ୍କ ମଧ୍ୟରେ ୧୮ ଜଣ ଜଣାଶୁଣା କମ୍ୟୁନିଷ୍ଟ ।

କେବଳ ସେତିକି ନୁହଁ, ବ୍ରିଟିଶ ସରକାର ଏହି ମକଦ୍ଦମାରେ ବ୍ରିଟିଶ୍ କମ୍ୟୁନିଷ୍ଟ ପାର୍ଟିର ନେତା ହାରି ପଲିଟ୍, ରଜନୀ ପାମିଦତ୍ତ, ଗ୍ରାହାମ ପୋଲାର୍ଡ଼, ଜର୍ଜ ଆଲିସନ, ଡି. କାମ୍ବେଲଙ୍କୁ ସେମାନେ ଭାରତୀୟ ନହେଲେ ବି ଭାରତୀୟ ଆଇନ୍‌ର ଅଧୀନ କହି ଜଡ଼ିତ କରାଯିବା ଉଦ୍ୟମ କରିଥିଲା । ଏଥିରେ ମଧ୍ୟ ଏମ୍.ଏନ୍.ରାୟ, ଅମିର ହାଇଦର ଖାଁ, ଅବଦୁଲ୍ ହଲିମ, ହେମନ୍ତ କୁମାର ସରକାର, ପେନ୍ଦସେ ଏବଂ କୁଲ୍‌କର୍ଣ୍ଣିଙ୍କୁ ଜଡ଼ିତ କରିବାର ଚକ୍ରାନ୍ତ ଥିଲା ।

ମିରଟ ଷଡ଼ଯନ୍ତ୍ର ମକଦ୍ଦମାରେ ଗିରଫ୍ ବ୍ୟକ୍ତିମାନଙ୍କ ସମର୍ଥନରେ ଭଗତସିଂହ ଓ ତାଙ୍କ ସାଥୀମାନେ ବିଧାନସଭାରେ ବୋମା ନିକ୍ଷେପ କରିଥିଲେ । ସାରା ଭାରତରେ ଏହାର ତୀବ୍ର ପ୍ରତିବାଦ ଉଠିଲା । ପୃଥିବୀର ବିଭିନ୍ନ ଦେଶରେ ମଧ୍ୟ ପ୍ରତିବାଦ ପ୍ରତିଧ୍ୱନିତ ହେଲା, ଏଚ୍.ଜି. ୱେଲସ୍, ଆଇନ୍‌ଷ୍ଟାଇନ୍, ରୋମାଁ ରୋଲାଁଙ୍କ ପରି ବିଶ୍ୱବିଖ୍ୟାତ ବ୍ୟକ୍ତିମାନେ ଏହାର ନିନ୍ଦା କଲେ ।

ଜାତୀୟ କଂଗ୍ରେସ୍ ପକ୍ଷରୁ ମିରଟ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାର ବନ୍ଦୀମାନଙ୍କୁ ଆଇନଗତ ସାହାଯ୍ୟ ଦେବାକୁ ଏକ ଡିଫେନ୍‌ସ୍ କମିଟି ଗଠିତ ହେଲା । ଜାବାହାରଲାଲ ନେହେରୁ ହେଲେ ଏହାର ସମ୍ପାଦକ । ବିଖ୍ୟାତ କଂଗ୍ରେସ୍ ନେତା ଏମ୍.ଏନ୍. ଆନସାରି, ଡକ୍ଟର କୈଳାସ ନାଥ କାଟ୍‌ଜୁ (ଏକଦା ଓଡ଼ିଶାର ରାଜ୍ୟପାଳ) ପ୍ରମୁଖ ଏହି କମିଟିରେ ରହିଲେ । କଂଗ୍ରେସ ପକ୍ଷରୁ ୧୫ ହଜାର ଟଙ୍କା ଡିଫେନ୍‌ସ୍ ପାଣ୍ଠିକୁ ଦିଆଗଲା । ଏପରିକି ମହାତ୍ମା ଗାନ୍ଧୀ ମିରଟ ଜେଲ୍‌କୁ ଯାଇ ବନ୍ଦୀମାନଙ୍କ ସହିତ ମଧ୍ୟ ଆଲୋଚନା କରିଥିଲେ । ବିଖ୍ୟାତ

ଆଇନ୍‌ଜୀବୀମାନେ ବନ୍ଦୀମାନଙ୍କ ସମ୍ପର୍କରେ ବ୍ରିଟିଶ ସରକାରକୁ ଜେରା କଲେ । ଭାରତର ବିଭିନ୍ନ ଅଞ୍ଚଳରୁ, ଶ୍ରମିକ ୟୁନିୟନଗୁଡ଼ିକଠାରୁ ଓ ବିଦେଶରୁ ଏହି ମକଦ୍ଦମା ଲଢ଼ିବା ଲାଗି ଅର୍ଥ ଆସିଲା । ମିରଟର ଏହି ବନ୍ଦୀମାନେ ଲାହୋର ଷଡ଼ଯନ୍ତ୍ର ମକଦ୍ଦମାର ଶହୀଦ ଭଗତ ସିଂହ, ରାଜଗୁରୁ, ଶୁକଦେବଙ୍କ ଫାଶିର ପ୍ରତିବାଦ କରି ଜେଲଖାନାରେ ବିକ୍ଷୋଭ କଲେ ।

ପ୍ରତିଦିନ ଏହି ମକଦ୍ଦମାର ବିବରଣୀମାନ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଲା । ଜବାବସୁଆଲ ବେଳେ ବନ୍ଦୀମାନଙ୍କ ଦୃଢ଼ତା ଓ ଅଦାଲତରେ ସେମାନେ ଦେଇଥିବା ମିଳିତ ବିବୃତି ଓ ଏକକ ବିବୃତି ବିଚାରକମାନଙ୍କୁ ଓଲଟି କାଠଗଡ଼ାରେ ପକେଇଲା । ସ୍ୱାଧୀନତା ସଂଗ୍ରାମର ଲକ୍ଷ୍ୟ ଓ ଆଦର୍ଶ ସମ୍ପର୍କରେ ସେମାନଙ୍କ ବିବୃତି ଦେଶରେ ରାଜନୈତିକ ମହଲରେ ନୂତନ ଚିନ୍ତାଚେତନା ଜାଗ୍ରତ କରେଇଲା । ଅବଶ୍ୟ ବ୍ରିଟିଶ ଅଦାଲତ ଏମାନଙ୍କୁ ଦୀର୍ଘକାଳ କାରାଦଣ୍ଡ ଦେଲା । ୧୯୩୪ରେ ଏମାନେ ଖଲାସ୍ ହେଲେ ।

**ମିରଟ ପରେ –**

ବ୍ରିଟିଶ ସରକାର ୧୯୩୦ରେ ଅସ୍ତ୍ରଶସ୍ତ୍ର ଲୁଣ୍ଠନ ଅଭିଯୋଗ କରି ଚିଟାଗଙ୍ଗ ଷଡ଼ଯନ୍ତ୍ର ମକଦ୍ଦମା ଚଳାଇଲା । ଅନେକଙ୍କୁ ଦୀର୍ଘକାଳ କାରାଦଣ୍ଡରେ ଦଣ୍ଡିତ କଲା । ସ୍ୱାଧୀନତା ସଂଗ୍ରାମୀ ବିପ୍ଳବୀ ଓ ସନ୍ତ୍ରାସବାଦୀମାନଙ୍କୁ ଆଣ୍ଡାମାନ୍ (କଳାପାଣି) ସେଲୁଲାର ଜେଲରେ ଦୀର୍ଘକାଳ ଏମିତିକି ଆଜୀବନ ବନ୍ଦୀ କରି ରଖାଯାଇଥିଲା । ଅତୀତରେ ବ୍ରିଟିଶ ସରକାର ଯେତେ ଷଡ଼ଯନ୍ତ୍ର ମକଦ୍ଦମା କରିଥିଲେ, ସେ ସବୁରେ ଯେଉଁମାନଙ୍କୁ ଜଡ଼ିତ କରାଯାଇଥିଲା, ସେମାନଙ୍କ ମଧ୍ୟରୁ ଅନେକ ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ଆଣ୍ଡାମାନ୍ ଜେଲର ଅମ୍ବିକା ଚକ୍ରବର୍ତ୍ତୀ ପ୍ରମୁଖ ବିଶିଷ୍ଟ ବିପ୍ଳବୀ, ଭଗତ ସିଂହଙ୍କ ହିନ୍ଦୁସ୍ଥାନ ସୋସାଲିଷ୍ଟ ରିପବ୍ଲିକାନ୍ ପାର୍ଟିର ସହବନ୍ଦୀ ଅଜୟ ଘୋଷ, ବିଜୟ କୁମାର ସିହ୍ନା, ସ୍ୱାମୀ ହଂସରାଜ, କିଶୋରୀ ଲାଲ ପ୍ରମୁଖ ସି.ପି.ଆଇ.ରେ ଯୋଗଦେଲେ । ୧୯୧୪ରେ ପ୍ରତିଷ୍ଠିତ ଗଦ୍ଦର ପାର୍ଟିର ବାବା ସୋହାନ ସିଂ ବାଖାନା, ବାବା ଗୁରୁମୁଖ ସିଂହ, ସ୍ୱନାମଧନ୍ୟ ବିପ୍ଳବୀ ବାବା ପୃଥ୍ୱୀ ସିଂହ ଆଜାଦ ଆଉ ସହସ୍ରାଧିକ ଗଦ୍ଦର ପାର୍ଟିର ବିପ୍ଳବୀ ସି.ପି.ଆଇ.ର ସଭ୍ୟ ଶ୍ରେଣୀଭୁକ୍ତ ହେଲେ । ଚିଟାଗଙ୍ଗ ଷଡ଼ଯନ୍ତ୍ର ମକଦ୍ଦମାରେ ଦଣ୍ଡିତ କଳ୍ପନା ଦତ୍ତ (ପରେ କଳ୍ପନା ଦତ୍ତ ଯୋଷୀ) ଅନନ୍ତ ସିଂହ, ଗଣେଶ ଘୋଷ, ପେଶାୱାର ଆନ୍ଦୋଳନର ନେତା ବୀର ଚନ୍ଦନ ସିଂ ଘରୱାଲି ଓ ତାଙ୍କ ସାଥୀମାନେ, ସୋଲାପୁର ଆନ୍ଦୋଳନ ଓ ପେଶାୱାର ଗୁର୍ଖା ସୈନ୍ୟ ବିଦ୍ରୋହର ତୁଙ୍ଗ ନେତାମାନେ ମାର୍କ୍ସବାଦୀ ଆଦର୍ଶ ଗ୍ରହଣ କରି ସି.ପି.ଆଇ.ରେ ସାମିଲ ହେଲେ ।

୧୯୩୪ରେ ଲକ୍ଷ୍ନୌଠାରେ ସି.ପି.ଆଇ.ର ଏକ ଗୁରୁତ୍ୱପୂର୍ଣ୍ଣ ସମ୍ମିଳନୀ ହେଲା । ଏତେବେଳକୁ ମିରଟ ଷଡ଼ଯନ୍ତ୍ର ମାମଲାର ବନ୍ଦୀମାନେ ଖଲାସ୍ ହୋଇ ଏଥିରେ ଅଂଶ ଗ୍ରହଣ କରିଥିଲେ । ପାର୍ଟିର ପୁନର୍ଗଠନ ହେଲା । କମ୍ରେଡ୍ ପି.ସି. ଯୋଷୀ ଏହାର ସାଧାରଣ ସମ୍ପାଦକ

ନିର୍ବାଚିତ ହେଲେ । ବ୍ରିଟିଶ ସରକାର ପାର୍ଟିକୁ ୧୯୩୪ରେ ବେଆଇନ୍ କଲେ ସୁଦ୍ଧା ସି.ପି.ଆଇ. ବିଭିନ୍ନ ରଣକୌଶଳ ଗ୍ରହଣ କରି ପାର୍ଟିର ପ୍ରସାର ଓ ବିକାଶ ଘଟେଇ ଚାଲିଲା ।

ପୂର୍ଣ୍ଣ ସ୍ୱାଧୀନତାର ଦାବୀକୁ କଂଗ୍ରେସ ଭିତରେ ଉତ୍‌ଥାପନ କରିବାର ଗୌରବ କମ୍ୟୁନିଷ୍ଟମାନଙ୍କର । କଂଗ୍ରେସର ସ୍ୱାଧୀନତା ଆନ୍ଦୋଳନର ପ୍ରଥମ ପର୍ଯ୍ୟାୟରେ, ଆନିବେସାନ୍ତଙ୍କ ନେତୃତ୍ୱାଧୀନ "ହୋମ୍‌ରୁଲ୍" ଆନ୍ଦୋଳନ ବେଳେ, ଏମିତିକି ମହାତ୍ମା ଗାନ୍ଧୀଙ୍କ ୧୯୨୦-୨୧ ଅସହଯୋଗ ଆନ୍ଦୋଳନ ବେଳେ ବ୍ରିଟିଶ ସାମ୍ରାଜ୍ୟବାଦର ଔପନିବେଶିକ ଦାସତ୍ୱରୁ ଭାରତର ସଂପୂର୍ଣ୍ଣ ସ୍ୱାଧୀନତା ଦାବୀ କରାଯାଇ ନଥିଲା । "ହୋମ୍ ରୁଲ୍" ଏବଂ ତା'ପରେ "ଡୋମିନିୟନ୍ ଷ୍ଟାଟସ୍" ଅର୍ଥାତ୍ ବ୍ରିଟିଶ୍ ସାମ୍ରାଜ୍ୟ ଭିତରେ ଭାରତ ଉପନିବେଶ ଥାଇ ସ୍ୱାୟତ୍ତ ଶାସନ ହାସଲ କରିବାର ଲକ୍ଷ୍ୟ ନିଆଯାଇଥିଲା । ମୁଷ୍ଟିମେୟ ହେଲେ ବି ୧୯୨୧ ଅହମ୍ମଦାବାଦ, ୧୯୨୨ ଗୟା, ୧୯୨୪ରେ ବେଲଗାଁ କଂଗ୍ରେସ୍ ଅଧିବେଶନରେ କମ୍ୟୁନିଷ୍ଟମାନେ ଦେଶର ଲକ୍ଷ୍ୟ "ପୂର୍ଣ୍ଣ ସ୍ୱାଧୀନତା" ବୋଲି ଗ୍ରହଣ କରିବାକୁ କଂଗ୍ରେସଠାରେ ଦାବୀ କଲେ ଓ ପ୍ରଚାରପତ୍ରମାନ ପ୍ରକାଶକଲେ । ୧୯୨୭ରେ ଜାତୀୟ କଂଗ୍ରେସର ମାନ୍ଦ୍ରାଜ ଅଧିବେଶନରେ ମଧ୍ୟ କମ୍ୟୁନିଷ୍ଟ ପ୍ରତିନିଧିମାନେ ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ଘୋଷଣା କରାଯିବାର ଦାବୀ ଉଠାଇଥିଲେ । ଏଇ ଦାବୀ ପ୍ରତି ନେହେରୁ ଓ ସୁଭାଷବୋଷଙ୍କ ସମର୍ଥନ ମିଳିଥିଲା, ମାତ୍ର କଂଗ୍ରେସର ଡୋମିନିୟନ୍ ଷ୍ଟାଟସ ଅପରିବର୍ତ୍ତିତ ରହିଲା ।

୧୯୨୮ରେ କଂଗ୍ରେସର କଲିକତା ଅଧିବେଶନରେ ପୂର୍ଣ୍ଣ ସ୍ୱାଧୀନତା ଦାବୀ ଦୁର୍ବାର ହୋଇଉଠିଲା । ପଣ୍ଡିତ ମୋତିଲାଲ ନେହେରୁ କଲିକତା କଂଗ୍ରେସ ଅଧିବେଶନର ସଭାପତି ଥିଲେ । ଓ୍ୟାର୍କର୍ସ ଏଣ୍ଡ୍ ପେଜାଣ୍ଟ ପାର୍ଟି ପକ୍ଷରୁ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ସଙ୍ଗଠିତ ୩୦ ହଜାର ଶ୍ରମିକ, ଛାତ୍ର, ବୁଦ୍ଧିଜୀବୀ କଂଗ୍ରେସ ଅଧିବେଶନ ମଣ୍ଡପକୁ ପଶିଯାଇ କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ଘୋଷଣା କରୁ, ସମ୍ବିଧାନର ସଭା ବସି ପ୍ରଜାତନ୍ତ୍ର ପ୍ରତିଷ୍ଠା ହେଉ ଓ ସାବାଳକ ଭୋଟ ପ୍ରଥାରେ ନିର୍ବାଚନ ହେଉ ଦାବୀମାନ ଉଠାଇଲେ ।

ବିଧିବଦ୍ଧଭାବରେ ଜବାହାରଲାଲ ପୂର୍ଣ୍ଣ ସ୍ୱାଧୀନତାର ପ୍ରସ୍ତାବ ଆଗତ କଲେ । ସୁଭାଷ ବୋଷ୍ ପ୍ରସ୍ତାବକୁ ସମର୍ଥନ କଲେ । ମାତ୍ର ସଭାପତି ମୋତିଲାଲ ପୁଅଙ୍କ ପ୍ରସ୍ତାବକୁ ଅଗ୍ରାହ୍ୟ କଲେ । ଡୋମିନିୟନ୍ ଷ୍ଟାଟସ୍ ହିଁ କଂଗ୍ରେସ୍‌ର ଲକ୍ଷ୍ୟ ରହିଲା । ୧୯୨୯ ଲାହୋର କଂଗ୍ରେସ୍‌ରେ ଯାଇଁ ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ଗୃହୀତ ହେଲା । ଜାନୁୟାରୀ ୨୬କୁ ସ୍ୱାଧୀନତା ଦିବସ ରୂପେ ଏଣିକି ପାଳନ କରାଯିବ ବୋଲି ନିଷ୍ପତ୍ତି ନେଇ ଏହି ପ୍ରସ୍ତାବ ୧୯୩୦ ଜାନୁଆରୀ ୨୬ ସୁଦ୍ଧା ବ୍ରିଟିଶ ସରକାର ପୂରଣ କରିବା ଲାଗି ମିଆଦ ଦିଆଗଲା ।

ବ୍ରିଟିଶ, ଫରାସୀ, ପର୍ତ୍ତୁଗାଲ, ଓଲନ୍ଦାଜ୍, ଜାପାନ ପ୍ରଭୃତିର ଉପନିବେଶଗୁଡ଼ିକରେ ସ୍ୱାଧୀନତା ସଂଗ୍ରାମ ପ୍ରତି କମ୍ୟୁନିଷ୍ଟମାନଙ୍କର ଦୃଷ୍ଟିଭଙ୍ଗୀ କ'ଣ ହେବ ସେ ସମ୍ପର୍କରେ କମ୍ୟୁନିଷ୍ଟ

ଆନ୍ତର୍ଜାତିକର ଚତୁର୍ଥ ଅଧିବେଶନରେ ଦୁଇଟି ମତ ଘେନି ତୁମୂଳ ବିତର୍କ ହେଲା । ଲେନିନ୍‌ଙ୍କ କଲୋନିୟାଲ୍ ଥିସିସ୍ ଏବଂ ଏମ.ଏନ୍.ରାୟଙ୍କ ଭିନ୍ନମତ ଘେନି ଆଲୋଚନା ହେଲା । ଲେନିନ୍‌ଙ୍କ ସିଦ୍ଧାନ୍ତ ଗୃହୀତ ହେଲା । ପ୍ରତ୍ୟେକ ଉପନିବେଶର ସ୍ୱାଧୀନତା ସଂଗ୍ରାମ ଏକ ବହୁ ଶ୍ରେଣୀର ଆନ୍ଦୋଳନ । ବୁର୍ଜୁୟା, ଶ୍ରମିକ, କୃଷକଙ୍କର ଆନ୍ଦୋଳନ । ଏଥିପ୍ରତି କମ୍ୟୁନିଷ୍ଟମାନେ ସକାରାତ୍ମକ, ସହଯୋଗମୂଳକ କର୍ମକୌଶଳ ନେବେ ବୋଲି ଲେନିନ୍‌ଙ୍କ ସିଦ୍ଧାନ୍ତ । ତା'ର ବିପରୀତ ହେଲା ଏମ୍.ଏନ୍. ରାୟଙ୍କ ଅଭିମତ ।

ଭାରତର କମ୍ୟୁନିଷ୍ଟମାନେ ଲେନିନ୍‌ଙ୍କ ସିଦ୍ଧାନ୍ତକୁ ଗ୍ରହଣ କଲେ । କେତେକ ଏମ୍.ଏନ୍.ରାୟଙ୍କ ଦୃଷ୍ଟିଭଙ୍ଗୀ ପ୍ରତି ଝୁଙ୍କ ରଖିଲେ । ୧୯୧୮ରେ ଗଠିତ ଏ.ଆଇ.ଟି.ୟୁ.ସି.ରୁ କେତେକ ଓହରି ଯାଇ ରେଡ୍ ଟ୍ରେଡ୍‌ୟୁନିଅନ୍ ଗଢ଼ି ଶ୍ରମିକ ଶ୍ରେଣୀର ଐକ୍ୟରେ ବ୍ୟାଘାତ ପହଞ୍ଚାଇଲେ । ମାତ୍ର ବହୁ ମତରେ କମ୍ୟୁନିଷ୍ଟମାନେ ଏହି ବିଭେଦକାରୀ ରେଡ୍. ଟ୍ରେଡ୍‌ୟୁନିଅନ୍‌କୁ ଭାଙ୍ଗି ଦେଲେ । ଏହି ସମୟରେ ବି.ଟି. ରଣଦିଭେ କମ୍ୟୁନିଷ୍ଟ ଆନ୍ଦୋଳନରେ ଭିନ୍ନମତ ପୋଷଣ କରିବାରୁ ପାର୍ଟି ବିଖଣ୍ଡିତ ହେବାର ଆଶଙ୍କା ଦେଖାଦେଲା । ବହୁ ଉଦ୍ୟମରେ ପାର୍ଟି ବିଭାଜନରୁ ରକ୍ଷାପାଇଲା । ଏମ୍.ଏନ୍.ରାୟ କମ୍ୟୁନିଷ୍ଟ ଆନ୍ଦୋଳନରୁ ଓହରିଯାଇ ରାଡ଼ିକାଲ୍ ପାର୍ଟି ଗଠନ କଲେ ।

୧୯୩୪ରେ ପାର୍ଟିର ପୁନର୍ଗଠନ ପରେ ସି.ପି.ଆଇ. କ୍ରମେ ସର୍ବଭାରତୀୟ ପାର୍ଟିରେ ପରିଣତ ହେବାକୁ ଲାଗିଲା । ବିଭିନ୍ନ ପ୍ରଦେଶରେ କମ୍ୟୁନିଷ୍ଟ ପାର୍ଟିର ଶାଖା ପ୍ରତିଷ୍ଠିତ ହେଲା । ଶ୍ରମିକ, କୃଷକ, ଛାତ୍ର ଓ ଯୁବକମାନଙ୍କର ସାମ୍ରାଜ୍ୟବାଦ, ସାମନ୍ତବାଦ, ପୁଞ୍ଜିବାଦ ବିରୋଧୀ ଆନ୍ଦୋଳନ ପ୍ରଖର ହୋଇଉଠିଲା । ୧୯୩୪ରେ ହିଁ ସି.ପି.ଆଇ.କୁ ବେଆଇନ କରାଗଲା ।

ଏହି ସମୟରେ ୧୯୩୪/୩୫ରେ କଂଗ୍ରେସ୍‌ରେ ଥିବା ବାମପନ୍ଥୀମାନେ କଂଗ୍ରେସ୍ ସୋସାଲିଷ୍ଟ ପାର୍ଟି ଗଠନ କଲେ । ସମାଜବାଦ ତାହାର ଲକ୍ଷ୍ୟ ବୋଲି ଘୋଷିତ ହେଲା । ବିଭିନ୍ନ ରାଜ୍ୟରେ ଏହି ପାର୍ଟି ଭିତରେ କମ୍ୟୁନିଷ୍ଟ ମତାବଲମ୍ବୀ ଯୁବକମାନେ ରହିଥିଲେ ।

କେରଳରେ ଯେଉଁମାନେ କଂଗ୍ରେସର ମୁଖ୍ୟ ନେତା ଥିଲେ, ସେମାନେ ହିଁ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଢ଼ିଥିଲେ । ସେମାନେ ହେଲେ କୃଷ୍ଣ ପିଲେଇ, ଇ.ଏମ୍.ଏସ୍. ନମ୍ବୁଦ୍ରିପଦ, ଏ.କେ. ଗୋପାଳନ ପ୍ରମୁଖ । ଉକ୍ତ ସମଗ୍ର ପାର୍ଟି ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ ସାମିଲ୍ ହୋଇଗଲା । ଆନ୍ଧ୍ର ପ୍ରଭୃତି ଆଉ ଅନେକ ଜାଗାରେ କଂଗ୍ରେସ୍ ସୋସାଲିଷ୍ଟ୍ ପାର୍ଟିର ସଦସ୍ୟ କମ୍ୟୁନିଷ୍ଟ ପାର୍ଟିକୁ ବରଣ କଲେ । ଓଡ଼ିଶାରେ ମଧ୍ୟ କଂଗ୍ରେସ୍ ସୋସାଲିଷ୍ଟ ପାର୍ଟିର ସମ୍ପାଦକ ତଥା କଂଗ୍ରେସ୍ ସୋସାଲିଷ୍ଟ ପାର୍ଟିରେ ଥିବା ଅନେକ କମ୍ୟୁନିଷ୍ଟ ପାର୍ଟିରେ ଅନ୍ତର୍ଭୁକ୍ତ ହେଲେ ।

**ପୃଥିବୀରେ ଫାସିଷ୍ଟବାଦର ବିପଦ**

ପୃଥିବୀରେ ଫାସିଷ୍ଟ୍‌ବାଦ ନାଜିବାଦର ବିପଦ ବିରୁଦ୍ଧରେ ସବୁ ସାମ୍ରାଜ୍ୟବାଦ ବିରୋଧୀ,

ସ୍ୱାଧୀନତା, ଗଣତନ୍ତ୍ର, ସମାଜବାଦ ପାଇଁ ସଂଗ୍ରାମ କରୁଥିବା ଶକ୍ତିମାନଙ୍କର ଐକ୍ୟବଦ୍ଧ ସଂଗ୍ରାମ ଲକ୍ଷ୍ୟରେ ଜାତୀୟ ଏବଂ ଆନ୍ତର୍ଜାତୀୟ ସ୍ତରରେ ପପୁଲାର୍ ଫ୍ରଣ୍ଟ୍ ଗଠନ ଲାଗି ମସ୍କୋରେ କମ୍ୟୁନିଷ୍ଟ ଆନ୍ତର୍ଜାତିକର ସପ୍ତମ ଅଧିବେଶନରେ ପ୍ରସ୍ତାବ ଆସିଲା । ହିଟଲର୍ ଜର୍ମାନୀର ପାର୍ଲିଆମେଣ୍ଟ୍ ଗୃହରେ ଅଗ୍ନି ଲଗେଇ ଜାଳିଦବା ଲାଗି ମିଥ୍ୟା ଅଭିଯୋଗରେ ବୁଲ୍‌ଗେରିଆର ବିଶ୍ୱବିଖ୍ୟାତ କମ୍ୟୁନିଷ୍ଟ ତତ୍ତ୍ୱବିତ୍ ଡିମିଟ୍ରୋଭ୍‌ଙ୍କ ବିରୁଦ୍ଧରେ ମକଦ୍ଦମା କରିଥିଲା । ସାରା ପୃଥିବୀରେ ହିଟ୍‌ଲରର ନିନ୍ଦା ପ୍ରତିଧ୍ୱନିତ ହୋଇଥିଲା । ଡିମିଟ୍ରୋଭ୍ ହିଁ ସେଠାରେ ଫାସିଷ୍ଟ୍‌ବାଦ ବିରୁଦ୍ଧରେ ପପୁଲାର୍ ଫ୍ରଣ୍ଟର ଆହ୍ୱାନ ଦେଇଥିଲେ ।

ଜର୍ମାନୀ ଓ ଇଟାଲୀରେ ଫାସିଷ୍ଟ୍‌ବାଦ ସାରା ପୃଥିବୀର ସକଳ ଗଣ ସଂଗ୍ରାମ, ପ୍ରଗତିଶୀଳ ଆନ୍ଦୋଳନ, ଗଣତାନ୍ତ୍ରିକ ବ୍ୟବସ୍ଥା, ସ୍ୱାଧୀନତା ଓ ମୁକ୍ତି ସଂଗ୍ରାମ, ଶ୍ରମିକ-କୃଷକ ଯୁବକୁଳର ଆନ୍ଦୋଳନ ଓ ସର୍ବୋପରି କମ୍ୟୁନିଷ୍ଟ ଆନ୍ଦୋଳନ ଏବଂ ସମାଜବାଦୀ ସୋଭିଏତ୍ ୟୁନିଅନ୍‌କୁ ଧ୍ୱଂସ କରିବାକୁ ଯୁଦ୍ଧର ପ୍ରସ୍ତୁତି ଚଳାଇଥାଏ ।

ହିଟ୍‌ଲର ଜର୍ମାନୀ, ଅଷ୍ଟ୍ରିଆ ଦଖଲ୍ କରି ଯାଇଥାଏ । ଫାସିଷ୍ଟ୍ ଫ୍ରାଙ୍କୋ ସ୍ପେନ୍‌ରେ କମ୍ୟୁନିଷ୍ଟ ସୋସାଲିଷ୍ଟ୍‌ମାନଙ୍କ ଉପରେ ଆକ୍ରମଣ କରି ଭୟାବହ ଗୃହଯୁଦ୍ଧ ସୃଷ୍ଟି କରିଥାଏ । ଇଟାଲୀର ଫାସିଷ୍ଟ୍ ମୁସୋଲିନୀ ଆବିସିନିଆ ଉପରେ ଆକ୍ରମଣ କରିଥାଏ । ସମରବାଦୀ ଜାପାନ ମାଞ୍ଚୁରିଆ-କୋରିଆ ଦଖଲ କରିଯାଇଥାଏ ।

ଆମ ଦେଶର ସ୍ୱାଧୀନତା ସଂଗ୍ରାମ ଓ ସ୍ୱାଧୀନତା ହାସଲର ଲକ୍ଷ୍ୟ ପ୍ରତି ଏହି ବିପଦକୁ ପ୍ରତିହତ କରିବା ଲାଗି କଂଗ୍ରେସ୍, ସୋସାଲିଷ୍ଟ୍, ସବୁ ଗଣତନ୍ତ୍ରବାଦୀ ଓ କମ୍ୟୁନିଷ୍ଟମାନଙ୍କର ନାସନାଲ୍ ଫ୍ରଣ୍ଟ୍ (ଜାତୀୟ ସାମୁଖ୍ୟ) ଗଠନର ଆନ୍ଦୋଳନ ଚଳାଇଲା । ନାସନାଲ୍ ଫ୍ରଣ୍ଟ୍ ନାମକ ଆଦର୍ଶଗତ ପତ୍ରିକା ଓ ପୁସ୍ତିକାମାନ ପ୍ରକାଶ କରି ଶ୍ରମିକମାନଙ୍କ ମଧ୍ୟରେ ଅଭିଯାନ ଚଳେଇଲେ ।

ଏହି ସମୟରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି, ସ୍ୱାଧୀନତା ପାଇଁ ଫାସିଷ୍ଟ୍‌ବାଦ ବିରୁଦ୍ଧରେ ବିଭିନ୍ନ ଗଣ ସଙ୍ଗଠନ, ସାଂସ୍କୃତିକ ସଙ୍ଗଠନ ଗଢ଼ିବାରେ ଅଗ୍ରଣୀ ଭୂମିକା ନେଲା । ୧୯୩୫ରେ ପ୍ରଗତିଶୀଳ, ଦେଶପ୍ରେମୀ ଲେଖକ-ସାହିତ୍ୟିକମାନଙ୍କର ପ୍ରଗତିଶୀଳ ଲେଖକ ସଂଘ ବିଖ୍ୟାତ ସାହିତ୍ୟିକ ପ୍ରେମଚାନ୍ଦଙ୍କ ନେତୃତ୍ୱରେ ଗଠିତ ହେଲା ।

ଅଖିଳ ଭାରତ କୃଷକ ସଭାର ପୁନର୍ଗଠନ ଓ ଦୃଢ଼ୀକରଣ କରାଗଲା । ୧୯୩୫ ବେଳକୁ ସୋସାଲିଷ୍ଟ ଓ କମ୍ୟୁନିଷ୍ଟମାନଙ୍କର ନେତୃତ୍ୱରେ ବିହାର, ବଙ୍ଗଳା, ଓଡ଼ିଶା, ଉତ୍ତର ପ୍ରଦେଶ, କେରଳ, ଆନ୍ଧ୍ର ପ୍ରଭୃତିରେ ବିଶାଳ କୃଷକ ଆନ୍ଦୋଳନ ଗଢ଼ିଉଠିଲା । ୧୯୩୬ ଅଗଷ୍ଟ ୧୨ ତାରିଖରେ ଅଖିଳ ଭାରତ ଛାତ୍ରସଂଘ ପ୍ରତିଷ୍ଠାରେ କମ୍ୟୁନିଷ୍ଟମାନେ ହିଁ ପ୍ରମୁଖ ଭୂମିକା ନେଇଥିଲେ । ସ୍ୱାଧୀନତା ପାଇଁ ବ୍ରିଟିଶ୍ ବିରୁଦ୍ଧରେ ଓ ପୃଥିବୀରେ ମୁଣ୍ଡ ଟେକୁଥିବା

ଫାସିଷ୍ଟ୍‌ବାଦ ବିରୁଦ୍ଧରେ ଛାତ୍ରସଂଘ ଦେଶବ୍ୟାପୀ ଜନଜାଗରଣ ସୃଷ୍ଟି କଲା ।

୧୯୩୯ ସେପ୍ଟେମ୍ବର ୧ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ବ୍ରିଟିଶ୍ ସରକାର ପ୍ରଥମେ କମ୍ୟୁନିଷ୍ଟ ଓ ବାମପନ୍ଥୀମାନଙ୍କୁ ଗିରଫ କଲା । ସାତଶହ ଯାଏ ଗିରଫ ଦେଶପ୍ରେମୀଙ୍କ ମଧ୍ୟରୁ ପାଞ୍ଚଶହରୁ ଅଧିକ କମ୍ୟୁନିଷ୍ଟ । ଦେଓଲି, ନୈନିତାଲ୍, କଲିକତା ଏମିତି ବିଭିନ୍ନ ଜେଲ୍‌ରେ ଏମାନଙ୍କୁ ବନ୍ଦୀ କରାଗଲା ।

ଏହି ଯୁଦ୍ଧ ଆରମ୍ଭ ହେଲା ପ୍ରଥମ ପର୍ଯ୍ୟାୟରେ ଦୁଇମେଣ୍ଟ ମଧ୍ୟରେ । ଏକ ପକ୍ଷରେ ବିଲାତ, ଫ୍ରାନ୍ସ ଓ ଆମେରିକା । ଅନ୍ୟ ପଟରେ ଫାସିଷ୍ଟ୍‌ବାଦୀ ହିଟ୍‌ଲର ଜର୍ମାନୀ ଓ ମୁସୋଲିନୀଙ୍କ ଇଟାଲୀ ଏବଂ ସମରବାଦୀ ଜାପାନ । ପୃଥିବୀକୁ ପୁନର୍ବାର ବିଭାଜନ କରି ସାମ୍ରାଜ୍ୟବାଦୀ ଓ ଫାସିଷ୍ଟ୍‌ବାଦୀମାନେ ବାଣ୍ଟିନେବା ଏହାର ଏକ ଲକ୍ଷ୍ୟ । ସମଗ୍ର ଦକ୍ଷିଣପୂର୍ବ ଏସିଆ ଜାପାନ ନେବ ଏବଂ ୟୁରୋପ୍ ସମେତ ଜର୍ମାନୀ ଦଖଲ୍ କରିବ ଓ ଭାରତବର୍ଷକୁ ହିଟ୍‌ଲର ଓ ଜାପାନ ବାଣ୍ଟିନେବେ ବୋଲି ବାରାବୋସା ଚୁକ୍ତି ହୋଇଥିଲା ।

କଂଗ୍ରେସ୍ ଡାକରା ଦେଲା, "ଏହି ଯୁଦ୍ଧକୁ କାୟମନୋବାକ୍ୟରେ ଆମେ ବିରୋଧ କରୁ ।" ବ୍ୟକ୍ତିଗତ ସତ୍ୟାଗ୍ରହର ଡାକରା ଦିଆଗଲା । କମ୍ୟୁନିଷ୍ଟ ପାର୍ଟି ଡାକରା ଦେଲା ଏ ଯୁଦ୍ଧକୁ "ନ ଏକ ପାଇ, ନ ଏକ ଭାଇ ।"

୧୯୪୧ ଜୁନ୍ ୨୨ରେ ହିଟ୍‌ଲର ସମଗ୍ର ୟୁରୋପ ଜୟ କରି ସବୁ ଗଣତାନ୍ତ୍ରିକ ସରକାରକୁ ଭାଙ୍ଗିଦେବା ପରେ ସୋଭିଏତ୍ ୟୁନିଅନ୍ ଉପରେ ଆକ୍ରମଣ କଲା । ସ୍ୱାଧୀନତା, ମୁକ୍ତି ଓ ସମାଜବାଦକୁ ସମୂଳେ ବିଲୋପ କରିବା ଲାଗି ଫାସିଷ୍ଟ୍‌ବାଦ ଘୋଷଣା କଲା । ଦକ୍ଷିଣପୂର୍ବ ଏସିଆର ଦେଶଗୁଡ଼ିକ ଜାପାନ ଦଖଲ କରି ଭାରତ ଗାର୍ଡ଼ନ୍‌ରିଚ ଓ ଚିଟାଗଙ୍ଗ ଉପରେ ବୋମା ପକେଇଲା ।

ଯୁଦ୍ଧର ଗତି ବଦଳିଗଲା ପରେ କମ୍ୟୁନିଷ୍ଟ ପାର୍ଟି ଓ କଂଗ୍ରେସ୍ ଉଭୟ ଫାସିଷ୍ଟ୍‌ବାଦର ବିପଦ ଓ ସୋଭିଏତ୍ ୟୁନିଅନ୍ ଉପରେ ଆକ୍ରମଣର ସମୀକ୍ଷା କଲେ ।

ଏହି ପ୍ରଚ୍ଛଦପଟରେ କଂଗ୍ରେସରେ ୧୯୪୨ ଅଗଷ୍ଟ ୮ ତାରିଖରେ ବମ୍ବେରେ ଏ.ଆଇ.ସି.ସି. ଅଧିବେଶନ ବସିଲା ।

କମ୍ୟୁନିଷ୍ଟ ପାର୍ଟି ମଧ୍ୟ ତା'ର କର୍ମକୌଶଳରେ ପରିବର୍ତ୍ତନ କଲା । ଫାସିଷ୍ଟ୍‌ବାଦର ପରାଜୟ ସାମ୍ରାଜ୍ୟବାଦକୁ ପ୍ରଚଣ୍ଡ ଆଘାତ ଦେବ, ଫାସିଷ୍ଟ୍‌ବାଦର ପରାଜୟରେ ସାମ୍ରାଜ୍ୟବାଦ ଦୁର୍ବଳ ହୋଇପଡ଼ିବ ଓ ଔପନିବେଶିକ ଦେଶଗୁଡ଼ିକର ସ୍ୱାଧୀନତା ଆନ୍ଦୋଳନ ଯଶସ୍ୱୀ ହେବ ବୋଲି କମ୍ୟୁନିଷ୍ଟ ବିଚାରି ତା'ର କର୍ମକୌଶଳର ପରିବର୍ତ୍ତନ କଲା ।

କଂଗ୍ରେସ୍ ମଧ୍ୟ ସୋଭିଏତ୍ ୟୁନିଅନ୍ ଉପରେ ଫାସିଷ୍ଟ୍ ଆକ୍ରମଣ ହେତୁ ଘୋର ଉଦ୍‌ବେଗ ଓ ଉତ୍କଣ୍ଠା ପ୍ରକାଶ କରିଥିଲା ।

ଜାତୀୟ ସରକାର ପ୍ରତିଷ୍ଠା ଦାବିକୁ ବ୍ରିଟିଶ୍ ସରକାର ଗ୍ରହଣ କଲେ ଭାରତ ଫାସିଷ୍ଟବାଦ ବିରୁଦ୍ଧରେ ମିତ୍ରପକ୍ଷର ଯୁଦ୍ଧରେ ଯଥାଯଥ ଭାଗନେଇ ପାରିବ ବୋଲି କଂଗ୍ରେସ୍ ଘୋଷଣା କଲା । ଏହା ଗୃହୀତ ନ ହେଲେ କଂଗ୍ରେସ୍ ଏଥିପାଇଁ ଗାନ୍ଧିଜୀଙ୍କ ନେତୃତ୍ୱରେ ଅହିଂସା ଆନ୍ଦୋଳନ କରିବ ବୋଲି ବମ୍ବେ ଅଧିବେଶନରେ ପ୍ରସ୍ତାବ ଆସିଲା ।

ଜାତୀୟ ସରକାର ହିଁ ପ୍ରକୃତ ପକ୍ଷେ ଫାସିଷ୍ଟ୍ ବିରୋଧୀ ଯୁଦ୍ଧରେ ଯଥାର୍ଥ ଭାଗନେଇ ପାରିବ ବୋଲି କମ୍ୟୁନିଷ୍ଟମାନେ ମଧ୍ୟ ଏକମତ ହେଲେ । କିନ୍ତୁ ଆନ୍ଦୋଳନ ଏଥିପାଇଁ ଏପରି ହେବ, ଯେପରି ତାହା ଫାସିଷ୍ଟମାନଙ୍କୁ ସହାୟକ ହେବ ନାହିଁ ବୋଲି ୧୩ ଜଣ ଏ.ଆଇ.ସି.ସି.ର କମ୍ୟୁନିଷ୍ଟ ସଦସ୍ୟ ପ୍ରସ୍ତାବ ଦେଲେ । ମାତ୍ର ତାହା କାଟ ଖାଇଗଲା ।

ଗାନ୍ଧିଜୀ, ନେହେରୁ, ଆଜାଦ ପ୍ରଭୃତି ତୁଙ୍ଗ ନେତାମାନଙ୍କୁ କେବଳ ଗିରଫ କରାଗଲା ନୁହଁ, ସାରା ଦେଶର ହଜାର ହଜାର ଦେଶପ୍ରେମୀଙ୍କୁ ବ୍ରିଟିଶ ସରକାର ଗିରଫ କରି ଗୁଳି ଚଳାଇ ଭୟାବହ ଦମନଲୀଳା ଚଳେଇଲା । କମ୍ୟୁନିଷ୍ଟ ପାର୍ଟି କଂଗ୍ରେସ୍ ନେତାମାନଙ୍କ ଗିରଫର ପ୍ରତିବାଦ କରି ସେମାନଙ୍କର ତୁରନ୍ତ ଖଲାସ ଦାବୀ କଲା । ଜାତୀୟ ସରକାର ପ୍ରତିଷ୍ଠାର ଦାବୀ ହାସଲ କରି କଂଗ୍ରେସ୍ ଲିଗ୍‌ର ଐକ୍ୟ ପ୍ରତିଷ୍ଠାର ଆନ୍ଦୋଳନ ଚଳାଇଲା । ଯୁଦ୍ଧ ଉଦ୍ୟମ ନାମରେ ବ୍ରିଟିଶ ସରକାର ଯେପରି ଜୋର୍ ଜବରଦସ୍ତ ଯୁଦ୍ଧ ଚାନ୍ଦା ଆଦାୟ କଲା, ତା'ର ପ୍ରତିବାଦ କଲା । ବ୍ରିଟିଶ୍ ଖାଦ୍ୟ ନୀତି ହେତୁ ବଙ୍ଗଳାରେ, ଓଡ଼ିଶାରେ ଦୁର୍ଭିକ୍ଷ । ବଙ୍ଗଳାରେ ୩୫ ଲକ୍ଷ ଓ ଓଡ଼ିଶାରେ ୩୦ ହଜାର ଲୋକ ଦୁର୍ଭିକ୍ଷରେ ମଲେ । କମ୍ୟୁନିଷ୍ଟ ପାର୍ଟି ବିରାଟ ଦୁର୍ଭିକ୍ଷ ବିରୋଧୀ ଆନ୍ଦୋଳନ ଚଳାଇଲା । ସେଥିଲାଗି ମଧ୍ୟ କମ୍ୟୁନିଷ୍ଟମାନଙ୍କୁ ବିଭିନ୍ନ ସ୍ଥାନରେ ଗିରଫ୍ କରାଗଲା ।

କମ୍ୟୁନିଷ୍ଟମାନଙ୍କୁ ମୁଖ୍ୟ ସ୍ରୋତରୁ ବିଚ୍ଛିନ୍ନ କରିବା ଲାଗି କମ୍ୟୁନିଷ୍ଟ ବିରୋଧୀମାନେ ସେମାନଙ୍କ ବିରୁଦ୍ଧରେ ଯାବତୀୟ କୁତ୍ସାଭିଯାନ ଚଳେଇଲେ । ଏହି କୁତ୍ସାଭିଯାନ ଫଳରେ ଅବଶ୍ୟ କିଛି କାଳ ଲାଗି କମ୍ୟୁନିଷ୍ଟମାନଙ୍କୁ କେତେକ ଦେଶପ୍ରେମୀ ମହଲରୁ ବିଚ୍ଛିନ୍ନ କରାଯାଇଥିଲା ।

**ଯୁଦ୍ଧୋତ୍ତର ସାମ୍ରାଜ୍ୟବାଦ ବିରୋଧୀ ଅଭ୍ୟୁତ୍‌ଥାନ ଓ ସି.ପି.ଆଇ**

ଷ୍ଟାଲିନ୍‌ଗ୍ରାଡଠାରେ ହିଟ୍‌ଲର ବାହିନୀର ପରାଜୟ ଓ ପରେପରେ ପଛଘୁଞ୍ଚା ହେଲା । ଦକ୍ଷିଣପୂର୍ବ ଏସିଆରେ ଜାପାନ ଅଧିକାର କରି ନେଇଥିବା ଦେଶ ଇଣ୍ଡୋଚୀନ (ଭିଏତ୍‌ନାମ-ଲାଓସ୍-କାମ୍ବୋଡ଼ିଆ) ଶ୍ୟାମ, ମ୍ୟାଲେସିଆ ଓ ବର୍ମାରେ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜାପାନ ବିରୁଦ୍ଧରେ ବିରାଟ ଆନ୍ଦୋଳନ ଗଢ଼ିଉଠିଲା ।

ହିଟ୍‌ଲରଙ୍କର ଭାରତ ଦଖଲ କରିବାର ସ୍ୱପ୍ନ ଧୂଳିସାତ୍ ହୋଇଗଲା । ଫାସିଷ୍ଟବାଦର ପରାଜୟ ପରେ ସାରା ପୃଥିବୀରେ ଭାରତ ସମେତ ଉପନିବେଶଗୁଡ଼ିକର ମୁକ୍ତି ପ୍ରକ୍ରିୟା ଆରମ୍ଭ ହୋଇଗଲା ।

ଯୁଦ୍ଧୋତ୍ତର କାଳରେ ସି.ପି.ଆଇ. ବିରାଟ ବିରାଟ ଜନ ବିକ୍ଷୋଭର ଆଗରେ ରହିଲା । ଏହି ସମୟରେ ୧୯୪୬ରେ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ଗଠିତ ହେଲା ଭାରତୀୟ ଗଣନାଟ୍ୟ ସଂଘ । ତାହାରି ନେତୃତ୍ୱରେ ମହା ଉଦ୍‌ବେଳନ ସୃଷ୍ଟିକାରୀ ସାଂସ୍କୃତିକ ଅଭ୍ୟୁତ୍ଥାନ ଦେଖାଦେଲା । ଦେଶପ୍ରେମୀ ନାଟକ, ଗୀତ, ଲକ୍ଷ ଲକ୍ଷ ଜନମାନସକୁ ପ୍ରଗତିଶୀଳ ଭାବଧାରାରେ ଅନୁପ୍ରାଣିତ କଲା ।

ଜାତୀୟ ମୁକ୍ତିବାହିନୀର ଯୋଦ୍ଧାମାନଙ୍କ ବିରୁଦ୍ଧରେ ୧୯୪୫ରେ ମକଦ୍ଦମା କରାଗଲା । ବ୍ରିଟିଶ ସରକାର ଆଇ.ଏନ୍.ଏ.ର ତୁଙ୍ଗ ନେତା ଶାହା ନୱାଜ୍, ଶେଗାଲ, ଧିଲନ ପ୍ରଭୃତିଙ୍କୁ ଲାଲ୍‌କିଲାରେ ବନ୍ଦୀକରି ଅଦାଲତରେ ବିଚାର ଚଳେଇଲା । ସେମାନଙ୍କ ମୁକ୍ତିଦାବି କରି ଦେଶବ୍ୟାପୀ ଜନ ଆନ୍ଦୋଳନ ସୃଷ୍ଟି ହେଲା । ତାହାର ମୁଖ୍ୟ ନେତୃତ୍ୱରେ ରହିଲେ କମ୍ୟୁନିଷ୍ଟମାନେ । ହଜାର ହଜାର ଶ୍ରମିକ, ବୁଦ୍ଧିଜୀବୀ, ଛାତ୍ର, ଯୁବକଙ୍କୁ କମ୍ୟୁନିଷ୍ଟମାନେ ଏହି ଆନ୍ଦୋଳନରେ ସାମିଲ କଲେ । ପୁଲିସ୍ ଗୁଳିରେ କଲକତାରେ ୪ ଜଣ କମ୍ୟୁନିଷ୍ଟ ନିହତ ହେଲେ ।

୧୯୪୬ ଫେବୃଆରୀ ୧୯ ତାରିଖରେ ବିଖ୍ୟାତ ନୌ ବିଦ୍ରୋହ ଆରମ୍ଭ ହେଲା । ବମ୍ବେ ସହରରେ କମ୍ୟୁନିଷ୍ଟମାନେ ହିଁ ଲକ୍ଷ ଲକ୍ଷ ଶ୍ରମିକ, ଛାତ୍ର, ଯୁବକଙ୍କୁ ରାଜଦାଣ୍ଡକୁ ଘେନିଆସିଲେ । ବ୍ରିଟିଶ ଯଲ୍ଲାଦମାନଙ୍କ ଗୁଳିରେ ଦୁଇଶହ ବିକ୍ଷୋଭକାରୀ ପ୍ରାଣବଳି ଦେଲେ ।

ନୌ ବିଦ୍ରୋହ ସହିତ ଶ୍ରମିକ-ଛାତ୍ର ବୁଦ୍ଧିଜୀବୀଙ୍କ ଏହି ବିକ୍ଷୋଭରେ କଂଗ୍ରେସ୍, କମ୍ୟୁନିଷ୍ଟ ଓ ଲିଗ୍ ପତାକା ଧରି ଲକ୍ଷାଧିକ ଲୋକ ଯୋଗଦେଲେ ।

ଇନ୍ଦୋନେସିଆର ମୁକ୍ତି ଆନ୍ଦୋଳନ ସପକ୍ଷରେ, ଚୀନ ବିପ୍ଳବ ସମର୍ଥନରେ ଇଣ୍ଡୋଚୀନ୍ ଓ ବର୍ମାର ସ୍ୱାଧୀନତା ସଂଗ୍ରାମ ସପକ୍ଷରେ ଏହି ସମୟରେ କମ୍ୟୁନିଷ୍ଟମାନେ ବିରାଟ ବିରାଟ ଜନ ସମାବେଶ କରାଇଥିଲେ । ବ୍ରିଟିଶ୍ ସରକାର ୧୯୪୫-୪୬ରେ ଯେଉଁ ବୀଭତ୍ସ ସାଂପ୍ରଦାୟିକ ଦଙ୍ଗା ଭିଆଇଲା, ତାହା ବିରୁଦ୍ଧରେ କମ୍ୟୁନିଷ୍ଟମାନେ ତୀବ୍ର ପ୍ରତିବାଦ ଓ ବିକ୍ଷୋଭ ପ୍ରଦର୍ଶନ କଲେ ।

କମ୍ୟୁନିଷ୍ଟମାନଙ୍କ ବଳିଷ୍ଠ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ଅଗଷ୍ଟ ଆନ୍ଦୋଳନର ଅରୁଣା ଆସଫ୍ ଅଲ୍ଲିଙ୍କ ପରି ବିପ୍ଳବିଣୀ ନେତ୍ରୀ ଓ ଅନେକ ନେତା ସି.ପି.ଆଇ.ରେ ଯୋଗଦେଲେ । ଉତ୍ତର ପ୍ରଦେଶର ଗୋଟିଏ ଜିଲ୍ଲାରେ ପତ୍ରି (ସମାନ୍ତରାଳ) ସରକାର ଗଢ଼ିଥିବା ବିପ୍ଳବୀ ସରଜୁ ପାଣ୍ଡେ ଏବଂ ମହାରାଷ୍ଟ୍ରର ସତାରାରେ ସମାନ୍ତରାଳ ସରକାର ଗଢ଼ିଥିବା ଅଗଷ୍ଟ ବିପ୍ଳବୀ ନାନା ପଟିଲ୍ କମ୍ୟୁନିଷ୍ଟ ହୋଇଗଲେ । ଏମିତି ପ୍ରତ୍ୟେକଟି ପ୍ରଦେଶରେ ବହୁ ଅଗଷ୍ଟ ବିପ୍ଳବୀ ସି.ପିଅ.ଆଇରେ ମିଶିଲେ । ଓଡ଼ିଶାରେ ବିଭିନ୍ନ ଜେଲ୍‌ରେ ଥିବା ୫୦ରୁ ଉର୍ଦ୍ଧ୍ୱ ଅଗଷ୍ଟ ଆନ୍ଦୋଳନକାରୀ ସି.ପି.ଆଇ.ରେ ଯୋଗଦେଲେ । ତନ୍ମଧ୍ୟରେ ଥିଲେ କଂଗ୍ରେସ୍

ଏମ୍.ଏଲ୍.ଏ.ମାନେ । ସେଥିରେ ଥିଲେ ୩ଟି ଜିଲ୍ଲା କଂଗ୍ରେସ୍ କମିଟିର ସମ୍ପାଦକ ଓ ଆଉ ଅନେକ ମୁଖିଆ କଂଗ୍ରେସ୍ ନେତା ଓ କର୍ମୀ ।

**ସହସ୍ର ସହସ୍ର ସହିଦଙ୍କ କମ୍ୟୁନିଷ୍ଟ ପାର୍ଟି**

ଗଡ଼ଜାତ ପ୍ରଜାଆନ୍ଦୋଳନରେ କାଶ୍ମୀରଠାରୁ ତ୍ରିବାଙ୍କୁଡ଼-କୋଚିନ୍ ଏବଂ ହାଇଦ୍ରାବାଦଠାରୁ ପଞ୍ଜାବ ପାତିଆଲା ତଥା ଓଡ଼ିଶାର ଢେଙ୍କାନାଳ, ନୀଳଗିରି, ରଣପୁର, ତାଳଚେର, ଏମିତି ୨୪ ଗଡ଼ଜାତ ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କର ଭୂମିକା ଉଲ୍ଲେଖନୀୟ । କମ୍ୟୁନିଷ୍ଟମାନଙ୍କ ପ୍ରଭାବରୁ ଭାରତରେ ପ୍ରଥମେ କାଶ୍ମୀର୍‌ରେ ହିଁ ଆମୂଳ ଭୂସଂସ୍କାର ହୋଇପାରିଥିଲା । ପ୍ରଜା ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କ ଅଂଶ ଗ୍ରହଣ, ନେତୃତ୍ୱ ଗ୍ରହଣ ଓ ଅବଦାନ ଇତିହାସର କଥା । ଆମ ଓଡ଼ିଶାର ନୀଳଗିରି ହିଁ ଭାରତବର୍ଷର ଛଅଶହ ଗଡ଼ଜାତ ମଧ୍ୟରୁ ପ୍ରଥମେ ମୂଳ ଭାରତରେ ସାମିଲ ହେଲା । ବିଖ୍ୟାତ ଢେଙ୍କାନାଳ, ରଣପୁର, ତାଳଚେର ଓ ଅନ୍ୟ ଓଡ଼ିଶା ଗଡ଼ଜାତ ରାଜ୍ୟରେ ଯେଉଁଠି କମ୍ୟୁନିଷ୍ଟ ଥିଲେ, ସେମାନଙ୍କ ସାହସ, ଦୃଢ଼ତା ଓ ଆତ୍ମତ୍ୟାଗ ଅବିସ୍ମରଣୀୟ । ନୀଳଗିରିରେ କମ୍ୟୁନିଷ୍ଟମାନେ ସଶସ୍ତ୍ର ସଂଗ୍ରାମ ଚଳେଇଥିଲେ । ରଣପୁରର ରଘୁ ଦିବାକର ଫାଶି ପାଇଲେ । ଢେଙ୍କାନାଳରେ ବାଜିରାଉତ ଓ ଆଉ ୫ ଜଣଙ୍କର ହତ୍ୟା ଇତିହାସ ସୃଷ୍ଟି କଲା ।

ତ୍ରିବାଙ୍କୁଡ଼-କୋଚିନ୍‌ରେ କମ୍ୟୁନିଷ୍ଟମାନଙ୍କ ନେତୃତ୍ୱରେ ହିଁ ରାଜତନ୍ତ୍ର ବିରୋଧୀ ଆନ୍ଦୋଳନ ପ୍ରଚଣ୍ଡ ରୂପ ନେଇଥିଲା । ବ୍ରିଟିଶ ସରକାରର ପୁଲିସ୍ ରାଜତନ୍ତ୍ର ପକ୍ଷରେ ଥାଇ ପୁନାପ୍ରା-ଭାୟାଲରରେ ଚାରିଶହ କମ୍ୟୁନିଷ୍ଟଙ୍କୁ ହତ୍ୟା କରିଥିଲା ।

ହାଇଦ୍ରାବାଦର ନିଜାମ ବିରୁଦ୍ଧରେ ସୁବିଖ୍ୟାତ ତେଲେଙ୍ଗାନା ଆନ୍ଦୋଳନର ନେତା କମ୍ୟୁନିଷ୍ଟ ପାର୍ଟି । ନିଜାମର ଦୁର୍ଦ୍ଧର୍ଷ ରଜ୍ଜକର ସେନାବାହିନୀ ବିରୁଦ୍ଧରେ କମ୍ୟୁନିଷ୍ଟମାନଙ୍କର ସଶସ୍ତ୍ର ସଂଗ୍ରାମ ଚାଲିଲା ବର୍ଷ ବର୍ଷ ଧରି । ଚାରିହଜାର କମ୍ୟୁନିଷ୍ଟ ନିଜାମର ଗୁଳିରେ ନିହତ ହେଲେ । କମ୍ୟୁନିଷ୍ଟମାନେ ହାଇଦ୍ରାବାଦ ନିଜାମ ଅଧୀନ ଦେଶମୁଖ (ବୃହତ୍ ବୃହତ୍ ଜମି ମାଲିକ)ଙ୍କ ବିରୁଦ୍ଧରେ ସଂଗ୍ରାମ କଲେ । ସେମାନଙ୍କଠାରୁ ୧୦ ଲକ୍ଷ ଏକର ଜମି ଛଡ଼େଇ ନେଇ ଭୂମିହୀନ ଆଦିବାସୀ, ଗରିବ ଚାଷୀମାନଙ୍କ ଭିତରେ ବାଣ୍ଟିଦେଲେ ।

ବିଖ୍ୟାତ "ତେଭାଗା" ଭାଗଚାଷୀ ଆନ୍ଦୋଳନ ବଙ୍ଗଳାରେ ପ୍ରଥମେ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ଆରମ୍ଭ ହେଲା । ମହିମନସିଂହଠାରୁ କାକଦ୍ୱୀପ ଯାଏ ତେଭାଗା ଆନ୍ଦୋଳନକୁ ଦମନ କରିବା ପାଇଁ ବ୍ରିଟିଶ ସରକାର ଦମନ ଓ ଗୁଳିର ସୁଅ ଛୁଟାଇଲା ।

ଓଡ଼ିଶାରେ ମଧ୍ୟ ବିରାଟ ଭାଗଚାଷୀ ଆନ୍ଦୋଳନ ବିଭିନ୍ନ ଜିଲ୍ଲାରେ ବ୍ୟାପିଗଲା । ଭାରତର ବିଭିନ୍ନ ପ୍ରଦେଶରେ କମ୍ୟୁନିଷ୍ଟମାନେ ଲକ୍ଷ ଲକ୍ଷ ଭାଗଚାଷୀଙ୍କୁ ସଂଗଠିତ କଲେ । ଜମିଦାର ଓ ଜମି ମାଲିକଙ୍କର ଆତଙ୍କର ସୀମା ରହିଲା ନାହିଁ । ସେମାନଙ୍କ ଗୁଣ୍ଡା ଆକ୍ରମଣ ଓ

ସରକାରୀ ଦମନ ଏହି ଆନ୍ଦୋଳନର ପଥରୋଧ କରି ପାରିନଥିଲା । ଏହା ହିଁ ଅଗଷ୍ଟ ୧୯୪୭ର ସ୍ୱାଧୀନତାପୂର୍ବ ଘଟଣାବଳୀ ।

ସ୍ୱାଧୀନତା ପୂର୍ବରୁ ଓ ପରେପରେ ବିଭିନ୍ନ ରାଜ୍ୟରେ ଜମିଦାରୀ ପ୍ରଥା, ଜାଗିରିଦାରୀ ପ୍ରଥାର ଉଚ୍ଛେଦ, ଭୂସଂସ୍କାର ଆଇନର ପ୍ରବର୍ତ୍ତନ ଏବଂ ହାଇଦ୍ରାବାଦ ସମେତ ଛ'ଶହ ଗଡ଼ଜାତର ଭାରତଭୂଇଁରେ ମିଶ୍ରଣ କରିବାକୁ କମ୍ୟୁନିଷ୍ଟ ଓ ପ୍ରଗତିଶୀଳ ମତବାଦ କଂଗ୍ରେସ ସରକାରକୁ ବାଧ କରିଥିଲା । ଅଥଚ ଜମିଦାରମାନଙ୍କୁ ପ୍ରଚୁର କ୍ଷତିପୂରଣ ଦିଆଗଲା । ରାଜା ନବାବ୍‌ମାନଙ୍କୁ ଅମାପ ଭୂମି, ମୋତିମାଣିକ୍ୟ, ଦିଗନ୍ତପ୍ରସାରୀ ରାଜପ୍ରାସାଦ ରଖିବାକୁ ଦିଆଗଲା । ସେମାନଙ୍କୁ ଓ ସେମାନଙ୍କ ପରିବାରବର୍ଗଙ୍କୁ ପ୍ରଚୁର ପରିମାଣରେ ଭତ୍ତା ଖଞ୍ଜାଗଲା ।

କମ୍ୟୁନିଷ୍ଟ ପାର୍ଟି ଏହା ବିରୁଦ୍ଧରେ ଦେଶବ୍ୟାପୀ ଯେଉଁ ପ୍ରବଳ ଆନ୍ଦୋଳନ ଚଳାଇଲା ତାହା ସର୍ବଜନବିଦିତ ।

ଶାସନକୁ ଆସି କମ୍ୟୁନିଷ୍ଟମାନଙ୍କ ପ୍ରଭାବ ଓ ବିସ୍ତାରକୁ ରୋଧ କରିବା ପାଇଁ କଂଗ୍ରେସ୍ ଏ.ଆଇ.ଟି.ୟୁ.ସି.କୁ ଭାଙ୍ଗିବା ଲାଗି ଆଇ.ଏନ୍.ଟି.ୟୁ.ସି. ଗଢ଼ି ଶ୍ରମିକମାନଙ୍କ ସମ୍ମିଳିତ ସଂଗ୍ରାମ ଓ ସଙ୍ଗଠନକୁ ବିଭାଜିତ କଲା । ଛାତ୍ରମାନଙ୍କୁ ଦୁଇଭାଗ କରିବାକୁ ଛାତ୍ରସଂଘ ବିରୁଦ୍ଧରେ ଛାତ୍ର କଂଗ୍ରେସ୍ ଗଢ଼ିଲା । ଅନ୍ୟ ଦିଗରେ କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ ଅପପ୍ରଚାରକୁ ବଢ଼େଇ ଚାଲିଲା ।

ଏହାର ମୁକାବିଲା କଲା କମ୍ୟୁନିଷ୍ଟ ପାର୍ଟି । ଜମିଦାରୀ ପ୍ରଥା ଉଚ୍ଛେଦ, ଜମିବଣ୍ଟନ, ଆମୂଳ ଭୂ-ସଂସ୍କାର ଲାଗି ଚାଷୀମାନଙ୍କୁ ସବୁ ରାଜ୍ୟରେ ଅଧିକ ସଂଗଠିତ କଲା । ଶ୍ରମିକ ଆନ୍ଦୋଳନକୁ ଅଧିକତର ଐକ୍ୟବଦ୍ଧ କରିବାରେ କମ୍ୟୁନିଷ୍ଟମାନେ ପ୍ରାଣପାତ ଉଦ୍ୟମ କଲେ ।

**ସି.ପି.ଆଇ.ରେ ତିନୋଟି ଅଭିମତ ଓ ତା'ର ସମାଧାନ**

୧୯୪୭ ଅଗଷ୍ଟରେ ଯେପରି ଭାବରେ ଭାରତକୁ ଭାଗ ଭାଗ କରି କ୍ଷମତା ହସ୍ତାନ୍ତର କରାଗଲା, ସି.ପି.ଆଇ. ତାହାର ଘୋର ସମାଲୋଚନା କଲା । ମହାତ୍ମା ଗାନ୍ଧୀଙ୍କ ହତ୍ୟା ପରେ ଦେଶରେ ହିନ୍ଦୁ ସାମ୍ପ୍ରଦାୟିକତାବାଦୀମାନଙ୍କ ପକ୍ଷରୁ ଦେଶ ପାଇଁ ଭବିଷ୍ୟତରେ ଯେଉଁ ବିପଦ ରହିଛି, ସେଥିପ୍ରତି ଦେଶପ୍ରେମୀମାନଙ୍କୁ ପାର୍ଟି ସତର୍କ କଲା । ହିନ୍ଦୁ ଅବା ମୁସଲମାନ୍ ହେଉ ଯାବତୀୟ ସାମ୍ପ୍ରଦାୟିକ ଶକ୍ତିମାନଙ୍କ ବିରୁଦ୍ଧରେ ସବୁ ଧର୍ମନିରପେକ୍ଷ, ଗଣତନ୍ତ୍ର ପ୍ରେମୀ, ସ୍ୱାଧୀନତା ସଂଗ୍ରାମୀଙ୍କ ଐକ୍ୟ ପାଇଁ ଆହ୍ୱାନ ଜଣେଇଲା । ୧୯୪୭ରେ ଅର୍ଜିତ ସ୍ୱାଧୀନତା ପ୍ରତି ଉଭୟ ନେତିବାଚକ ଓ ଅସ୍ତିବାଚକ ପ୍ରବୃତ୍ତି ସି.ପି.ଆଇ.ରେ ନୀତିଗତ ଓ କର୍ମକୌଶଳଗତ ମତଭେଦ ସୃଷ୍ଟି କରିଥିଲା ।

ଏହି ପୃଷ୍ଠପଟରେ ୧୯୪୮ରେ କଲିକତାରେ ଦ୍ୱିତୀୟ ପାର୍ଟି କଂଗ୍ରେସ୍ ଅନୁଷ୍ଠିତ ହେଲା । ନେତୃତ୍ୱର ପରିବର୍ତ୍ତନ ହେଲା । କର୍ମକୌଶଳର ମଧ୍ୟ ପରିବର୍ତ୍ତନ ହେଲା । କମ୍ୟୁନିଷ୍ଟ ପାର୍ଟି ସାଧାରଣ ଧର୍ମଘଟ ଓ ଅନ୍ୟାନ୍ୟ ପନ୍ଥାରେ ସରକାରକୁ ଅଚଳ କରିବାର କର୍ମକୌଶଳ

ନେଲା । ଏହାରି ସୁଯୋଗରେ କଂଗ୍ରେସ୍ ସରକାର କମ୍ୟୁନିଷ୍ଟ ପାର୍ଟି ଉପରେ ପ୍ରଚଣ୍ଡ ଆକ୍ରମଣ କଲା । ଶହ ଶହ କମ୍ୟୁନିଷ୍ଟଙ୍କୁ ବନ୍ଦୀ କରି ନିଆଗଲା । ସେମାନଙ୍କ ଉପରେ ଓ ସେମାନେ ଚଳାଇଥିବା ଶ୍ରମିକ ଚାଷୀ ଆନ୍ଦୋଳନକୁ ନିର୍ମମ ଭାବରେ ଦମନ କରାଗଲା । କମ୍ୟୁନିଷ୍ଟ ପାର୍ଟିକୁ ବିଭିନ୍ନ ପ୍ରଦେଶରେ ବେଆଇନ୍ ଘୋଷଣା କରାଗଲା । କମ୍ୟୁନିଷ୍ଟମାନେ ଅଜ୍ଞାତବାସରେ ରହିଲେ । ବହୁ କମ୍ୟୁନିଷ୍ଟଙ୍କୁ ଜୀବନ ଦେବାକୁ ପଡ଼ିଲା । ପ୍ରଚଣ୍ଡ ଆକ୍ରମଣ କରି କଂଗ୍ରେସ୍ ସରକାର କମ୍ୟୁନିଷ୍ଟ ପାର୍ଟିକୁ ପଙ୍ଗୁକରି ଦେବାର ଉଦ୍ୟମ କଲା ।

ପି.ସି. ଜୋଷୀଙ୍କ ପରେ ବି.ଟି. ରଣଦିଭେଙ୍କ ନେତୃତ୍ୱରେ ପାର୍ଟିର ଗୋଷ୍ଠୀବାଦୀ ନୀତି ଓ କର୍ମକୌଶଳ ସମ୍ପର୍କରେ ପାର୍ଟି ଭିତରେ ତୀବ୍ର ମତଭେଦ ଦେଖାଦେଲା । ତେଲେଙ୍ଗାନା ଆନ୍ଦୋଳନର ଅନ୍ୟତମ ବିଶିଷ୍ଟ ନେତା ରାଜେଶ୍ୱର ରାଓ ବି.ଟି. ରଣଦିଭେଙ୍କ ସ୍ଥାନରେ ସାଧାରଣ ସମ୍ପାଦକ ହେଲେ ।

ପାର୍ଟିର ଆନ୍ଧ୍ରଲାଇନ୍ (ଅର୍ଥାତ୍ ତେଲେଙ୍ଗାନା ଆନ୍ଦୋଳନର ଲାଇନ୍)କୁ ଗ୍ରହଣ କରି କର୍ମନୀତି ନିଆଗଲା । ଗୋଟିଏ ବର୍ଷ ପରେ ଏହି ଲାଇନ୍ ମଧ୍ୟ ଅଚଳ ହୋଇଗଲା ।

ବସ୍ତୁତଃ ପାର୍ଟିରେ ତିନୋଟି କର୍ମନୀତି ସମ୍ପର୍କରେ ବିତର୍କ ଚାଲିଲା । ବି.ଟି. ରଣଦିଭେଙ୍କ ଗୋଷ୍ଠୀବାଦୀ ଲାଇନ୍ ସମ୍ପର୍କରେ ଏକ ତଦନ୍ତ କମିଶନ କମ୍ୟୁନିଷ୍ଟ ପାର୍ଟି ବସେଇଲା । ସେଥିରେ ନମ୍ବୁଦ୍ରିପଦ ମଧ୍ୟ ସଦସ୍ୟ ଥିଲେ ।

ଅନ୍ୟ ଗୋଟିଏ କର୍ମନୀତିର ପୃଷ୍ଠପୋଷକ ଥିଲେ ଡାଙ୍ଗେ, ଅଜୟ ଘୋଷ । ବି.ଟି. ରଣଦିଭେଙ୍କ ଲାଇନ୍ ଗ୍ରହଣ କରିଥିବା ନେତାଙ୍କୁ ବାଦ୍‌ଦେଇ ଆନ୍ଧ୍ର ଲାଇନ୍‌ର ରାଜେଶ୍ୱର ରାଓ, ବାସବ ପୁନିଆ ଏବଂ ଦ୍ୱିତୀୟ ଲାଇନ୍‌ର ପ୍ରତିନିଧି ଡାଙ୍ଗେ ଏବଂ ଅଜୟ ଘୋଷ ମସ୍କୋ ଯାଇ ସୋଭିଏତ୍ ୟୁନିଅନ୍ କମ୍ୟୁନିଷ୍ଟ ପାର୍ଟି ଓ ଷ୍ଟାଲିନ୍‌ଙ୍କ ସହିତ ଆଲୋଚନା କଲେ । ଏକ ଚିଠା ପାର୍ଟି କାର୍ଯ୍ୟକ୍ରମ ଓ ନୀତି ସଂକ୍ରାନ୍ତ ବିବୃତି ରଚନା କରାଗଲା । ଭାରତରେ ପାର୍ଟିର ବିଶେଷ ସମ୍ମିଳନୀରେ ଏହା ଗୃହୀତ ହେଲା । ଆପାତତଃ ରାଜନୈତିକ, ମତାଦର୍ଶଗତ ଓ ସାଙ୍ଗଠନିକ ମତଭେଦଗୁଡ଼ିକୁ ଦୂର କରାଗଲା । ବି.ଟି. ରଣଦିଭେଙ୍କ ବିରୁଦ୍ଧରେ ଗଢ଼ାଯାଇଥିବା କମିଶନ୍‌କୁ ଭଙ୍ଗାଗଲା । ପାର୍ଟିର ତିନୋଟି ମତବାଦୀ ଗୋଷ୍ଠୀଙ୍କୁ ଘେନି ଐକ୍ୟ ପ୍ରତିଷ୍ଠା କରାଗଲା । କମ୍ରେଡ୍ ଅଜୟ ଘୋଷ ୧୯୬୧ରେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ପାର୍ଟିର ସାଧାରଣ ସମ୍ପାଦକ ପଦରେ ରହିଲେ ।

କମ୍ୟୁନିଷ୍ଟଙ୍କ ବିରୁଦ୍ଧରେ ସକଳପ୍ରକାର ଅପପ୍ରଚାର ସତ୍ତ୍ୱେ ପାର୍ଟି ପ୍ରତି ବ୍ୟାପକ ଶ୍ରମଜୀବୀ, ମେହନତୀ ଜନତାର ଆସ୍ଥା ବଢ଼ିଲା । ନୂତନ ସମ୍ବିଧାନ ଅନୁସାରେ ସାବାଳକ ଭୋଟ୍ ପ୍ରଥାରେ ୧୯୫୨ରେ ପ୍ରଥମ ସାଧାରଣ ନିର୍ବାଚନ ହେଲା । ଜେଲ୍‌ଖାନାରେ ଥାଇ ଓ ଜେଲ୍‌ଖାନା ବାହାରେ ଥିବା କମ୍ୟୁନିଷ୍ଟ ପାର୍ଟିର ପ୍ରାର୍ଥୀମାନେ ଲୋକସଭାରେ କଂଗ୍ରେସ୍ ପଛକୁ ଦ୍ୱିତୀୟ ବୃହତ୍ତମ ପାର୍ଟିର ମର୍ଯ୍ୟାଦା ପାଇଲେ । ଦକ୍ଷିଣାଞ୍ଚଳ ପ୍ରଦେଶ, ବଙ୍ଗଳା, ଉତ୍ତର ପ୍ରଦେଶ, ବିହାର,

ଓଡ଼ିଶା ପ୍ରଭୃତିରେ କମ୍ୟୁନିଷ୍ଟମାନେ ନିର୍ବାଚନ ରଣରେ ଆଖିଦୃଶିଆ ସାଫଲ୍ୟ ଅର୍ଜନ କଲେ । ୧୯୫୭ ସାଧାରଣ ନିର୍ବାଚନରେ ଆଉ ଏକ ବିଶିଷ୍ଟ ଘଟଣା ଘଟିଗଲା । ଲୋକସଭାରେ ପୁନଷ୍ଟ ପାର୍ଟି ଦ୍ୱିତୀୟ ବୃହତ୍ତମ ପାର୍ଟିର ଆସନ ଲାଭକଲା । ତା'ଠାରୁ ସବିଶେଷ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଲା, କେରଳ । ସେହି ରାଜ୍ୟରେ କମ୍ୟୁନିଷ୍ଟ ପାର୍ଟି ସଂଖ୍ୟାଗରିଷ୍ଠତା ଲାଭ କରି ସରକାର ଗଠନ କଲା । ଦେଢ଼ବର୍ଷ ପରେ କଂଗ୍ରେସ୍ ନମ୍ବୁଦ୍ରିପଦଙ୍କ ସରକାରକୁ ବରଖାସ୍ତ କରି ଗଣତାନ୍ତ୍ରିକ ବ୍ୟବସ୍ଥା ଉପରେ ଘୃଣ୍ୟ ଆକ୍ରମଣ କଲା ।

ସି.ପି.ଆଇ. କୃଷକ, ଶ୍ରମିକଙ୍କ ସ୍ୱାର୍ଥରକ୍ଷା ଲାଗି, ଟ୍ରେଡ୍ ୟୁନିଅନ୍ ଅଧିକାରର ସମ୍ପ୍ରସାରଣ ଓ ସାମ୍ରାଜ୍ୟବାଦର ମୂଳୋତ୍ପାଟନ ଲାଗି କେବଳ ସଂଗ୍ରାମ ଚଳାଇ ରଖିଲା ନାହିଁ ।

ଭାଷା ଭିତ୍ତିରେ ପ୍ରଦେଶ ଗଠନର ଆନ୍ଦୋଳନମାନଙ୍କରେ ସି.ପି.ଆଇ. ସକ୍ରିୟ ଭୂମିକା ନେଲା । ବିଶେଷତଃ ବିଶାଳ ଆନ୍ଧ୍ର, ସଂଯୁକ୍ତ ମହାରାଷ୍ଟ୍ର, ଗୁଜୁରାଟ, ଐକ୍ୟବଦ୍ଧ କେରଳ, ପଞ୍ଜାବ, ହରିଆନା ରାଜ୍ୟଗଠନ ଓ କେନ୍ଦ୍ରଶାସିତ କେତେକ ରାଜ୍ୟ ପୁନର୍ଗଠନ ଆନ୍ଦୋଳନରେ ସି.ପି.ଆଇ. ସକ୍ରିୟ ଭୂମିକା ନେଲା ।

ସ୍ୱାଧୀନତା ପରେ ଦେଶର ଅର୍ଥନୈତିକ ନୀତି ସମ୍ପର୍କରେ କମ୍ୟୁନିଷ୍ଟ ପାର୍ଟି ନିଜସ୍ୱ ଅଭିଯାନ ଚଳେଇଲା । ବିଦେଶୀ ସାମ୍ରାଜ୍ୟବାଦୀ ପୁଞ୍ଜି ଓ ଦେଶର ଏକଚାଟିଆ ପୁଞ୍ଜିର ନାଗଫାଶରୁ ଭାରତକୁ ମୁକ୍ତ କରିବା ଲାଗି ରାଷ୍ଟ୍ରାୟତ୍ତ କ୍ଷେତ୍ରର ପ୍ରାଧାନ୍ୟ, ଏକଚାଟିଆ ସାମ୍ରାଜ୍ୟବାଦୀ ପୁଞ୍ଜିର ବାଜ୍ୟାପ୍ତି, ନୂତନ ଶ୍ରମ ଆଇନ୍, ନୂତନ କୃଷିନୀତି ଲାଗି ସଂଗ୍ରାମ ଚଳେଇଲା । ସୋଭିଏତ୍ ୟୁନିଅନ୍ ଓ ସମାଜବାଦୀ ରାଷ୍ଟ୍ରଙ୍କ ସାହାଯ୍ୟରେ ବିରାଟ ରାଷ୍ଟ୍ରାୟତ୍ତ ଶିଳ୍ପକ୍ଷେତ୍ର ଗଢ଼ିଉଠିଲା ।

ଆନ୍ତର୍ଜାତିକ କ୍ଷେତ୍ରରେ କମ୍ୟୁନିଷ୍ଟ ଆନ୍ଦୋଳନରେ ଐକ୍ୟର ପ୍ରଶ୍ନ ଲାଗି ୧୯୫୭ ଏବଂ ୧୯୬୦ରେ ବିଶ୍ୱ କମ୍ୟୁନିଷ୍ଟ ସମ୍ମିଳନୀ ଅନୁଷ୍ଠିତ ହେଲା । ସୋଭିଏତ୍ ୟୁନିଅନ୍ ଓ ଚୀନ୍ କମ୍ୟୁନିଷ୍ଟ ପାର୍ଟି ମଧ୍ୟରେ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନର କର୍ମକୌଶଳ ଘେନି ମତଭେଦ ଦୂର କରିବା ଲାଗି ୮୦ଟି ଦେଶର କମ୍ୟୁନିଷ୍ଟ ସମବେତ ହୋଇ ମିଳିତ ବିବୃତି ପ୍ରକାଶ କଲେ । ମାତ୍ର ଆଦର୍ଶଗତ ଓ କର୍ମ କୌଶଳଗତ ମତଭେଦ ଦୂର ହୋଇପାରିଲା ନାହିଁ । ଭାରତରେ ମଧ୍ୟ ସି.ପି.ଆଇ. ଭିତରେ ତାହାର ପ୍ରତିଫଳନ ଘଟିଲା । ଚୀନ୍ ନେତୃତ୍ୱ ୧୯୬୦ ବିବୃତିରୁ ଓହରିଗଲା ।

**ଦୁର୍ଭାଗ୍ୟଜନକ ବିଭାଜନ**

ସି.ପି.ଆଇ.ରେ ମଧ୍ୟ ଆଦର୍ଶଗତ ଓ କର୍ମକୌଶଳଗତ ମତପାର୍ଥକ୍ୟ ଏହାର ପ୍ରତିଫଳନ ସ୍ୱରୂପ ମୁଣ୍ଡ ଟେକିଲା । ୧୯୬୧ରେ ବିଜୟୱାଡ଼ାଠାରେ ଅନୁଷ୍ଠିତ ପାର୍ଟିର ଷଷ୍ଠ କଂଗ୍ରେସ୍‌ରେ ସଂଖ୍ୟାଗରିଷ୍ଠ ପ୍ରତିନିଧିମାନଙ୍କ ଅଭିମତକୁ ସଂଖ୍ୟାଲଘୁମାନେ ତୀବ୍ର ବିରୋଧ କଲେ । ଚିଠା

ରାଜନୈତିକ ପ୍ରସ୍ତାବ ସର୍ବସମ୍ମତି କ୍ରମେ ଗୃହୀତ ହୋଇପାରିଲା ନାହିଁ । ସାଧାରଣ ସମ୍ପାଦକ କମ୍ରେଡ୍ ଅଜୟ ଘୋଷ ପାର୍ଟିର ଐକ୍ୟ ରକ୍ଷା କରିବା ପାଇଁ ଯେଉଁ ବିବୃତିଗତ ପ୍ରସ୍ତାବ ଆଗତ କଲେ, ତାହା ହିଁ ଗୃହୀତ ହେଲା । ସାମୟିକ ଭାବରେ ପାର୍ଟିର ଐକ୍ୟ ରକ୍ଷା ହେଲା ।

ଭାରତ ଓ ଚୀନ୍ ମଧ୍ୟରେ ସୀମା ଘେନି ବିବାଦ ଘନୀଭୂତ ହେଲା । ଚୀନ୍ ସହିତ ଏ ସମ୍ପର୍କରେ ଆଲୋଚନା କରିବା ଲାଗି କମ୍ରେଡ୍ ଅଜୟ ଘୋଷ ଚୀନ୍ ଗଲେ । ଦୁଇ ପାର୍ଟିର ନେତୃତ୍ୱ ମଧ୍ୟରେ ଆଲୋଚନା ହେଲା । ଚୀନ୍‌ରେ କମ୍ୟୁନିଷ୍ଟମାନଙ୍କ ବୈପ୍ଳବିକ ସଶସ୍ତ୍ର ସଂଗ୍ରାମ ଆରମ୍ଭ କାଳରୁ ଭାରତବାସୀ ଚୀନ୍‌କୁ ସମର୍ଥନ କରୁଥିଲେ । ୧୯୪୯ରେ ଚୀନ୍‌ରେ କମ୍ୟୁନିଷ୍ଟ ଶାସନ ପ୍ରତିଷ୍ଠା ପରେ ଭାରତରେ ହିନ୍ଦୀ-ଚୀନ୍ ସୀମାନ୍ତ ସମସ୍ୟାକୁ ଶାନ୍ତିପୂର୍ଣ୍ଣ ଉପାୟରେ ସମାଧାନ କରାଯିବା ଲାଗି ସୀମାରେ ସଂଘର୍ଷ ଦୂର କରାଯାଉ ବୋଲି ସି.ପି.ଆଇ. ପ୍ରସ୍ତାବ ଦେଇଥିଲା ।

ମାତ୍ର ସୀମା ସଂଘର୍ଷ ସଶସ୍ତ୍ର ଆକ୍ରମଣର ରୂପ ନେଲା । ୧୯୬୨ରେ ଚୀନ୍ ବାହିନୀ ଉତ୍ତରପୂର୍ବ ସୀମାନ୍ତ ଅଞ୍ଚଳ (ନାଗାଲାଣ୍ଡ) ଯାଏ ପଶିଆସିଲେ । ଉତ୍ତର ପଶ୍ଚିମରେ ଲାଦାଖ ଯାଏ ଚୀନ୍‌ସେନା ମାଡ଼ିଆସିଲେ । ଅବଶ୍ୟ ପରେ ଚୀନ୍ ଏକତରଫା ସୈନ୍ୟ ପ୍ରତ୍ୟାହାର କରିନେଲା ।

ସି.ପି.ଆଇ. ସଂଖ୍ୟାଗରିଷ୍ଠ ମତରେ ଏହାକୁ ଆକ୍ରମଣ ବୋଲି ଅଭିହିତ କଲା । ତିବ୍ବତ ଚୀନ୍‌ର ଅଂଶ । ତେଣୁ ଭାରତ ତାହାର ବିରୋଧ କରିବା ଏବଂ ଦଲାଇଲାମାଙ୍କୁ ଭାରତର ଚୀନ୍ ବିରୋଧୀ ରାଜନୈତିକ କାର୍ଯ୍ୟର ଅନୁମତି ଦେବାକୁ ମଧ୍ୟ ପାର୍ଟି ନିନ୍ଦା କଲା ।

କଂଗ୍ରେସ୍ ସରକାର ଚୀନ୍-ଭାରତ ସଂଘର୍ଷବେଳେ ସି.ପି.ଆଇ.ର ନେତାମାନଙ୍କୁ ଗିରଫ କରି ଜେଲ୍‌ଖାନାରେ ଭର୍ତ୍ତି କରିଦେଲେ । କଂଗ୍ରେସ୍‌ଦ୍ୱାରା ସି.ପି.ଆଇ.ର ଏପରି ମୂଲ୍ୟାୟନକୁ ପାର୍ଟିର କେତେକ ନେତା ଗ୍ରହଣ କଲେ ନାହିଁ ।

ଭାରତ-ଚୀନ୍ ସଂଘର୍ଷ ବେଳେ ଗିରଫ କମ୍ୟୁନିଷ୍ଟମାନଙ୍କ ଖଲାସ ଦାବୀ କରି ସି.ପି.ଆଇ. ୧୯୬୩ ସେପ୍ଟେମ୍ବର ୧୩ରେ ସବୁ ରାଜ୍ୟର ୨ ଲକ୍ଷ କମ୍ୟୁନିଷ୍ଟଙ୍କର ବିକ୍ଷୋଭ ପାର୍ଲିଆମେଣ୍ଟ ଆଗରେ ଅନୁଷ୍ଠିତ କରାଇଲା । ୧ କୋଟି ୨୦ ଲକ୍ଷ ଲୋକଙ୍କ ସ୍ୱାକ୍ଷର ସମ୍ବଳିତ ଜନ ଦାବୀପତ୍ର ପାର୍ଲିଆମେଣ୍ଟରେ ପେଶ୍ କରାଯାଇଥିଲା ।

କିନ୍ତୁ ପାର୍ଟି ଅଭ୍ୟନ୍ତରରେ ମତଭେଦ ତୀବ୍ର ରୂପ ଧାରଣ କଲା । ଆନ୍ତର୍ଜାତିକ କ୍ଷେତ୍ରରେ କମ୍ୟୁନିଷ୍ଟ ଆନ୍ଦୋଳନରେ ସୋଭିଏତ୍ ରୁଷ୍ ଓ ଚୀନ୍‌ର ଭିନ୍ନ ଭିନ୍ନ ଆସ୍ଥାନ ସମୟ କ୍ରମେ ଆଲୋଚନା ବିତର୍କ ମାଧ୍ୟମରେ ଦୂର ହେବ; ଏହାକୁ ଘେନି ସି.ପି.ଆଇ.ରେ ମତଭେଦକୁ ଚୂଡ଼ାନ୍ତ ପର୍ଯ୍ୟାୟକୁ ନ ନେବା ପାଇଁ ପାର୍ଟିର ସଂଖ୍ୟାଗରିଷ୍ଠଙ୍କ ଆବେଦନ ଅଗ୍ରାହ୍ୟ ହୋଇଗଲା ।

୧୯୬୪ରେ ପାର୍ଟି କେନ୍ଦ୍ର କମିଟିର ଏକ ବୈଠକରେ ୧୧୧ ଜଣ କେନ୍ଦ୍ର କମିଟି ସଦସ୍ୟଙ୍କ ମଧ୍ୟରୁ ୩୪ ଜଣ ସାଥୀ କକ୍ଷ ପରିତ୍ୟାଗ କଲେ । ପରେ ଗଢ଼ାଗଲା ଆଉ ଏକ

ପାର୍ଟି । ଭାରତରେ ପ୍ରଭାବଶାଳୀ କମ୍ୟୁନିଷ୍ଟ ପାର୍ଟି ଦୁଇ ଭାଗ ହୋଇଗଲା । ଶାସକଶ୍ରେଣୀ, ପ୍ରତିକ୍ରିୟାଶୀଳ ଶକ୍ତି, ପୁଞ୍ଜିପତି, କମ୍ୟୁନିଷ୍ଟ ବିରୋଧୀମାନଙ୍କର ଉଲ୍ଲାସର ସୀମା ରହିଲା ନାହିଁ । ସି.ପି.ଆଇ.ର ସଂଖ୍ୟାଗରିଷ୍ଠଙ୍କ ଐକ୍ୟ ଲାଗି ଆବେଦନ ଗ୍ରହଣୀୟ ହେଲା ନାହିଁ । ଏହା ହିଁ ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନରେ ଅପୂରଣୀୟ କ୍ଷତି ଘଟାଇଥିଲା ବୋଲି ସି.ପି.ଆଇ. ଉପଲବ୍ଧି କଲା ।

ପାର୍ଟିର ଦୁଃଖଦାୟକ ବିଭାଜନ ପରେ ୧୯୬୪ରେ ୭ମ କଂଗ୍ରେସ୍‌ରେ ପାର୍ଟିର ପୁନର୍ବିନ୍ୟାସ କରାଗଲା । ୧୯୬୧ରେ ଅଜୟ ଘୋଷଙ୍କ ମୃତ୍ୟୁ ପରେ ସି. ରାଜେଶ୍ୱର ରାଓ ସାଧାରଣ ସମ୍ପାଦକ ନିର୍ବାଚିତ ହେଲେ । ୨୫ ବର୍ଷକାଳ ସେ ପାର୍ଟିର ସାଧାରଣ ସମ୍ପାଦକ ରହିଲେ ।

ଇନ୍ଦିରା ଗାନ୍ଧୀଙ୍କ ସରକାର ଟଙ୍କାର ଅବମୂଲ୍ୟାୟନ କରିବା ବିରୁଦ୍ଧରେ ଏବଂ ଜନସମସ୍ୟାକୁ ଧରି ୧୯୬୬ରେ ସି.ପି.ଆଇ. ପାର୍ଲିଆମେଣ୍ଟ ସମୀପରେ ଏକ ସୁବିଶାଳ ବିକ୍ଷୋଭ ସଙ୍ଗଠିତ କଲା । ଏହି ସମୟରେ ପାର୍ଟି ଭାରତୀୟ କ୍ଷେତ ମଜଦୂର ୟୁନିୟନ୍ ଗଠନ କଲା । ଏହା ପକ୍ଷରୁ କ୍ଷେତ ମୂଲିଆମାନଙ୍କ ମୂଲ ମଜୁରୀ, ଘରଡ଼ିହ, ଜମି ପାଇଁ ଏବଂ ସେମାନଙ୍କ ଉପରେ ଚାଲିଥିବା ଦମନ, ବୃହତ୍ ଜମିମାଲିକଙ୍କ ଆକ୍ରମଣ ବିରୁଦ୍ଧରେ ଦେଶବ୍ୟାପୀ ଆନ୍ଦୋଳନ କଲା । କ୍ଷେତ ମୂଲିଆଙ୍କ ସ୍ୱାର୍ଥରକ୍ଷା ଲାଗି କେନ୍ଦ୍ରୀୟ ଆଇନ୍ ଦାବୀ କରାହେଲା ।

୧୯୬୭ ନିର୍ବାଚନରେ ସି.ପି.ଆଇ.(ଏମ୍) ସହିତ ଏକତା ବାନ୍ଧି ଅନ୍ୟମାନଙ୍କୁ ସଙ୍ଗରେ ନେଇ କେରଳ ଓ ପଶ୍ଚିମ ବଙ୍ଗଳାରେ ସଂଖ୍ୟାଗରିଷ୍ଠତା ହାସଲ କରାଗଲା । ବିହାର, ପଞ୍ଜାବ, ଉତ୍ତର ପ୍ରଦେଶରେ ସି.ପି.ଆଇ. ୧୯୬୭ ନିର୍ବାଚନରେ ବେଶ୍ ସଫଳତା ହାସଲ କରିଥିଲା ।

୧୯୬୯ରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଉଭୟ ଦଳର କମ୍ୟୁନିଷ୍ଟମାନେ ବିଶେଷ ନିର୍ବାଚନୀ ସାଫଲ୍ୟ ଅର୍ଜନ କରିଥିଲେ । ସି.ପି.ଆଇ. ନେତା କେରଳରେ ଅଚ୍ୟୁତ ମେନନ୍‌ଙ୍କ ନେତୃତ୍ୱରେ ମିଳିତ ସରକାର ଯେଉଁ ଭୂସଂସ୍କାର ବିଧାନ କଲା, ତାହା ମଡ଼େଲ ରୂପେ ଭାରତବର୍ଷରେ ସ୍ୱୀକୃତ ହେଲା । କଂଗ୍ରେସ୍‌ର ସିଣ୍ଡିକେଟ୍ ଗୋଷ୍ଠୀ, ଜନସଂଘ, ସ୍ୱତନ୍ତ୍ର ଦଳ ମିଶି ଯେଉଁ ଏକଛତ୍ରବାଦୀ, ବୃହତ୍ ପୁଞ୍ଜିବାଦ ଓ ସାମନ୍ତବାଦ ପକ୍ଷପାତୀ ନୀତି ଗ୍ରହଣ କଲେ, ତାହା ବିରୁଦ୍ଧରେ ଏହି କାଳରେ ସି.ପି.ଆଇ. ପ୍ରବଳ ସଂଗ୍ରାମ ଚଳେଇଥିଲା । ବ୍ୟାଙ୍କ୍ ଜାତୀୟକରଣ ଓ ରାଜାଙ୍କ ହାତପାଣ୍ଠି ଉଚ୍ଛେଦ ଦାବୀ ଧରି ସି.ପି.ଆଇ. ଦେଶସାରା ଆନ୍ଦୋଳନରେ ମୁଖ୍ୟ ଭୂମିକା ନେଲା । ବ୍ୟାଙ୍କ୍ ଜାତୀୟକରଣ ହେଲା ଓ ରାଜାଙ୍କ ଭତ୍ତା କାଟ ହେଲା ।

**ଐତିହାସିକ ଭୂମିସଂଗ୍ରାମ**

୧୯୭୦ରେ ଭାରତବ୍ୟାପୀ ବୃହତ୍ ଶିଳ୍ପପତି, ପୂର୍ବତନ ନବାବ, ରାଜା, ମହାରାଜା ଓ ବୃହତ୍ ଜମିମାଲିକଙ୍କ ବିରୁଦ୍ଧରେ ସି.ପି.ଆଇ.ର ଐତିହାସିକ ସଂଗ୍ରାମ ଆରମ୍ଭ ହୋଇଗଲା ।

ଷାଠିଏ ହଜାରରୁ ଅଧିକ କମ୍ୟୁନିଷ୍ଟ ଜମି ଦଖଲ ଆନ୍ଦୋଳନରେ ଭାଗନେଇ ଗିରଫ ହେଲେ ଓ ଜେଲ୍‌କୁ ଗଲେ । ଏହି ଭୂମି ସଂଗ୍ରାମରେ କଂଗ୍ରେସ୍ ଗୁଳିରେ ୩୫ ଜଣ ସାଥୀଙ୍କ ପ୍ରାଣ ଗଲା ।

୧୯୭୪ରେ ୨୦ ଦିନ କାଳ ୨୦ ଲକ୍ଷ ରେଳବାଇ ଶ୍ରମିକଙ୍କ ଧର୍ମଘଟରେ ୪୦ ହଜାର ଶ୍ରମିକ ଗିରଫ ହେଲେ । ୧୧ ହଜାର ରେଳଶ୍ରମିକଙ୍କ ଚାକିରି ଗଲା । ସି.ପି.ଆଇ. ନେତୃତ୍ୱରେ ଏଥିରେ ଭାଗ ନେଇଥିବା ଶ୍ରମିକଙ୍କ ସଂଖ୍ୟା ଅଧିକ ।

୧୯୭୩ରେ ପାର୍ଟି ପକ୍ଷରୁ ମହଜୁଦ୍ ଖାଦ୍ୟ ଉଦ୍ଧାର ଅଭିଯାନ ସଂଗଠିତ ହେଲା । ପାର୍ଟିର ସାଥୀମାନେ ଏହି ଅଭିଯାନରେ ୩ ଲକ୍ଷ ଟନ୍ ଖାଦ୍ୟଶସ୍ୟ, ୫୦ ହଜାର ଟିଣ ବନସ୍ପତି, ୧୦ ହଜାର ବସ୍ତା ସିମେଣ୍ଟ, ହଜାର ହଜାର ବସ୍ତା ଡାଲି ଚୋରା ବେପାରୀଙ୍କ ଗୋଦାମରୁ ଉଦ୍ଧାର କଲେ ।

୧୯୭୫ରେ ଇନ୍ଦିରା ଗାନ୍ଧୀଙ୍କ ଜରୁରୀ ଅବସ୍ଥା ଜାରି ହେଲା ପରେ କଂଗ୍ରେସ୍ ସରକାର ଯେଉଁ ଜନବିରୋଧୀ କାର୍ଯ୍ୟ ଚଳେଇଲା ସି.ପି.ଆଇ. ତା'ର ବିରୋଧ କଲା । ଜବରଦସ୍ତ ବନ୍ଧ୍ୟାକରଣ, ସହର ସୁନ୍ଦର କରିବା ଲାଗି ଗରିବଙ୍କ ବସ୍ତି ଭଙ୍ଗା, ଜନ ଆନ୍ଦୋଳନ ଉପରେ ନିର୍ମମ ଆକ୍ରମଣ ବିରୁଦ୍ଧରେ ଅଭିଯାନ ଚଳେଇଲା । ସଞ୍ଜୟ ଗାନ୍ଧୀଙ୍କ ସମ୍ବିଧାନ ଅତିରିକ୍ତ କର୍ତ୍ତୃତ୍ୱର ପାର୍ଟି ତୀବ୍ର ବିରୋଧ କଲା । ସଂକୀର୍ଣ୍ଣ ଦଳୀୟ ସ୍ୱାର୍ଥଲାଗି କେନ୍ଦ୍ରରେ କଂଗ୍ରେସ ସରକାର ଅନେକ ରାଜ୍ୟରେ ବିରୋଧୀ ଦଳର ନିର୍ବାଚିତ ସରକାରକୁ ଭାଙ୍ଗି ସମ୍ବିଧାନ ଓ ଗଣତନ୍ତ୍ରର ବିଧିବିଧାନକୁ ବାରମ୍ବାର ଉଲ୍ଲଂଘନ କରିଛି । ସି.ପି.ଆଇ. ତା'ର ତୀବ୍ର ବିରୋଧ କରିଛି । କେରଳରେ ନେହେରୁଙ୍କ ବେଳେ, ଇନ୍ଦିରା ଗାନ୍ଧୀ ବା ରାଜୀବ ଗାନ୍ଧୀଙ୍କ ଅମଳରେ ଅଗଣତାନ୍ତ୍ରିକ ଭାବରେ ବିରୋଧୀ ନିର୍ବାଚିତ ସରକାରଙ୍କୁ ବରଖାସ୍ତ କରାଗଲା ବେଳେ ପାର୍ଟି ସମ୍ବିଧାନର ସୁରକ୍ଷା ଲାଗି ଆବାଜ୍ ଉଠାଇଛି । ସେମିତି ୧୯୬୭ରେ ଜନସଂଘ, ଜନତାପାର୍ଟି, ଲୋକଦଳର ସରକାର ବିରୋଧୀ ରାଜ୍ୟର ନିର୍ବାଚିତ ସରକାରକୁ ବରଖାସ୍ତ କଲାବେଳେ ପାର୍ଟି ନୀତିନିଷ୍ଠ ଭାବରେ ସମ୍ବିଧାନର ସୁରକ୍ଷା ପାଇଁ ସଂଗ୍ରାମ କରିଛି । ଏପରି ଆଚରଣର ପ୍ରତିବାଦ କରିଛି ।

**ସାଂପ୍ରଦାୟିକତାବାଦୀମାନଙ୍କ ବିରୁଦ୍ଧରେ ସଂଗ୍ରାମ**

ସି.ପି.ଆଇ. ଯାବତୀୟ କିସମର ସାଂପ୍ରଦାୟିକତା ବିରୁଦ୍ଧରେ ଅବିଚଳ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଆସିଛି । ବି.ଜେ.ପି., ଆର୍.ଏସ୍.ଏସ୍., ଶିବସେନା, ବଜରଙ୍ଗ ଦଳ ପରି ସାଂପ୍ରଦାୟିକତାବାଦୀମାନଙ୍କ ଦ୍ୱାରା ଯେଉଁଠି ଯେଉଁଠି ଦଙ୍ଗା, ଜଳାପୋଡ଼ା ଓ ହତ୍ୟାର ତାଣ୍ଡବ ସୃଷ୍ଟି କରାଯାଇଛି ପାର୍ଟି ତାହାର ବିରୋଧ କରି ଆସିଛି ।

ପଞ୍ଜାବରେ ଖଲିସ୍ତାନୀ ସନ୍ତ୍ରାସବାଦୀମାନଙ୍କ ହତ୍ୟାତାଣ୍ଡବର ଅଗ୍ନି ଜଳିଲା ବେଳେ ସି.ପି.ଆଇ.ର ନେତା ଓ କର୍ମୀ ତାହାର ବିରୋଧ କରିଛନ୍ତି । ସେଥିଲାଗି ଖଲିସ୍ତାନୀମାନେ

ଦୁଇଶହରୁ ଅଧିକ ସି.ପି.ଆଇ. ନେତା ଓ ସାଥୀଙ୍କୁ ହତ୍ୟା କରିଛନ୍ତି । ସି.ପି.ଆଇ.ର ନେତୃତ୍ୱରେ ଖଲିସ୍ତାନୀମାନଙ୍କ ଦ୍ୱାରା ନିହତ ପରିବାର ଥଇଥାନ ପାଇଁ ଯେଉଁ ଉଦ୍ୟମ କରାଯାଇଛି, ତାହା ବିଭିନ୍ନ ଦେଶପ୍ରେମୀ ମହଲରେ ପ୍ରଶଂସିତ ହୋଇଛି । ଭାରତର ସଂବେଦନଶୀଳ, ବଦାନ୍ୟ ବ୍ୟକ୍ତିମାନଙ୍କଠାରୁ ବିପୁଳ ଚାନ୍ଦା ସଂଗ୍ରହ କରି ସ୍ୱାମୀବିଧୁରା ମହିଳାଙ୍କୁ ଭତ୍ତା ଏବଂ ଶହଶହ ପିତୃହରା ପିଲାଙ୍କୁ ଶିକ୍ଷା ଲାଗି ମାସିକ ଅର୍ଥ ବ୍ୟବସ୍ଥା କରାଯାଇଛି ।

କାଶ୍ମୀରଠାରୁ ଉତ୍ତରପୂର୍ବ ସୀମାନ୍ତ ରାଜ୍ୟରେ ବିଚ୍ଛିନ୍ନତାବାଦୀମାନଙ୍କ ବିରୁଦ୍ଧରେ ପାର୍ଟି ସାଥୀମାନେ ସଂଗ୍ରାମ କରି ଆସୁଛନ୍ତି । ଅନେକ କ୍ଷେତ୍ରରେ ଉଗ୍ର ସନ୍ତାସବାଦୀଙ୍କ ଦ୍ୱାରା କମ୍ୟୁନିଷ୍ଟମାନେ ନିହତ ହୋଇଛନ୍ତି ।

ଦେଶର ଧର୍ମନିରପେକ୍ଷତାର ସୁରକ୍ଷା, ସଂପ୍ରଦାୟମାନଙ୍କ ମଧ୍ୟରେ ସହୋଦର ସୁଲଭ ସଦ୍‌ଭାବ ପ୍ରତିଷ୍ଠାକୁ ସି.ପି.ଆଇ. ତା'ର ପରମ ଦେଶପ୍ରେମୀ କର୍ତ୍ତବ୍ୟ ବିଚାରିଛି ଏବଂ ବି.ଜେ.ପି., ଶିବସେନା ପ୍ରଭୃତିଙ୍କ ପ୍ରତି କଂଗ୍ରେସ୍‌ର ତୋଷଣ ନୀତିର ବିରୋଧ ବାହାରେ ଓ ସଂସଦରେ କରିଆସିଛି ।

**ଆନ୍ତର୍ଜାତୀୟତା ଓ ସି.ପି.ଆଇ.**

ସତୁରି ବର୍ଷର ପାର୍ଟି ତା'ର ଜୀବନ କାଳରେ କମ୍ୟୁନିଷ୍ଟ ସୁଲଭ ଆନ୍ତର୍ଜାତୀୟତାକୁ ଅକ୍ଷରେ ଅକ୍ଷରେ ଅବଲମ୍ବନ କରିଛି । ଫାଶିଜିମ୍‌ର ବିରୋଧ, ସମାଜବାଦୀ ଦେଶମାନଙ୍କ ପ୍ରତି ସଂହତିରେ ତାହା ସୀମିତ ନୁହେଁ । କୋରିଆ ଉପରେ ଆମେରିକାର ଆକ୍ରମଣ ଓ ତାକୁ ଭାଗଭାଗ କରିବା ବିରୁଦ୍ଧରେ, ବିପ୍ଳବୀ କ୍ୟୁବା ଉପରେ ସଶସ୍ତ୍ର ହସ୍ତକ୍ଷେପ ବିରୁଦ୍ଧରେ କ୍ୟୁବା ସମର୍ଥନରେ ସି.ପି.ଆଇ. ଭାରତରେ ସଂହତି ଆନ୍ଦୋଳନ ଚଳାଇଛି । ଭିଏତ୍‌ନାମ୍ ଉପରେ ଆମେରିକାର ନାରକୀୟ ଆକ୍ରମଣ ବିରୁଦ୍ଧରେ, ପାଲେଷ୍ଟାଇନ୍‌ର ମୁକ୍ତି ଆନ୍ଦୋଳନ ସପକ୍ଷରେ, ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବୈଷମ୍ୟବାଦ ବିରୁଦ୍ଧରେ ତଥା ଚିଲି, ଗୁଆଟେମେଲା ପ୍ରଭୃତି ଦେଶଗୁଡ଼ିରେ ଆମେରିକା, ଫ୍ରାନ୍‌ସ, ବିଲାତର ସାମ୍ରାଜ୍ୟବାଦୀଙ୍କ ଷଡ଼ଯନ୍ତ୍ର ବା ଆକ୍ରମଣ ବିରୁଦ୍ଧରେ ସି.ପି.ଆଇ. ଆମ ଦେଶରେ ପ୍ରବଳ ସଂହତିରେ ଆନ୍ଦୋଳନରେ ଅଗ୍ରଣୀ ଭୂମିକା ନେଇଛି ।

**କମ୍ୟୁନିଷ୍ଟ-ବାମପନ୍ଥୀ ଐକ୍ୟ ସଂଗ୍ରାମରେ ସି.ପି.ଆଇ.**

ପାର୍ଟି ବିଭାଜନ ପରେପରେ ଆମ ଦେଶରେ କମ୍ୟୁନିଷ୍ଟ ଆନ୍ଦୋଳନ ଅଧିକ ବିଭକ୍ତ ହୋଇଗଲା । ନକ୍ସଲ୍ ଆନ୍ଦୋଳନରେ ବହୁ କମ୍ୟୁନିଷ୍ଟ ଗୋଷ୍ଠୀ ଗଠିତ ହେଲେ । ପାର୍ଟି ବିରୁଦ୍ଧରେ ଅନ୍ୟମାନଙ୍କ ଆଦର୍ଶଗତ ବିରୋଧ ଓ ନାନାଦି ଅପପ୍ରଚାର ସତ୍ତ୍ୱେ କମ୍ୟୁନିଷ୍ଟ ଐକ୍ୟ ଲାଗି ଏବଂ ଅନ୍ୟାନ୍ୟ ବାମପନ୍ଥୀ ଦଳ କମ୍ୟୁନିଷ୍ଟମାନଙ୍କର ଐକ୍ୟ ଲାଗି ସି.ପି.ଆଇ. ଅବିଚଳ ଉଦ୍ୟମ ଅବ୍ୟାହତ ରଖିଛି ।

ନାନା ବାଧାବିଘ୍ନ, ଅବିଶ୍ୱାସ, ଅଭିଯୋଗ, ପ୍ରତି ଅଭିଯୋଗକୁ ଏଥିଲାଗି ଧୈର୍ଯ୍ୟ ଓ

ଆତ୍ମବିଶ୍ୱାସ ସହ ଦୂର କରିବା ଲାଗି ପାର୍ଟି ସତତ ଉଦ୍ୟମ କରିଆସିଛି । ଏ ପ୍ରଚେଷ୍ଟା ଦଶନ୍ଧି ଦଶନ୍ଧି ଧରି । ଏହି ଉଦ୍ୟମ ସଫଳ ହୋଇଚାଲିଛି । ଦୁଇ କମ୍ୟୁନିଷ୍ଟ ପାର୍ଟି ମଧ୍ୟରେ ସମ୍ପର୍କ ଦୃଢ଼ କରିବା ଲାଗି ସମନ୍ୱୟ କମିଟି ଗଠନ ଏ ଦିଗରେ ପ୍ରଥମ ଗୁରୁତ୍ୱପୂର୍ଣ୍ଣ ସାଫଲ୍ୟ । ଟ୍ରେଡ୍ ୟୁନିୟନ୍‌ଗୁଡ଼ିକର ଐକ୍ୟବଦ୍ଧ ସଂଗ୍ରାମ ଲାଗି ପାର୍ଟିର ଆବେଦନ ଓ ଉଦ୍ୟମ ସଫଳ ହେଉଛି । ସବୁ ଟ୍ରେଡ୍ ୟୁନିଅନ୍‌ଙ୍କର ସମନ୍ୱୟ କମିଟି ଗଠିତ ହୋଇଛି । ଶ୍ରମିକ ଶ୍ରେଣୀର ସ୍ୱାର୍ଥ ଲାଗି, ପ୍ରତିକ୍ରିୟାଶୀଳ ଶ୍ରମଆଇନ୍‌ଗୁଡ଼ିକ ବିରୁଦ୍ଧରେ, ଐକ୍ୟବଦ୍ଧ ଶ୍ରମିକ-କର୍ମଚାରୀ ଆନ୍ଦୋଳନରେ ନୂତନ ଦିଗନ୍ତ ସୃଷ୍ଟି ହୋଇଛି । କଂଗ୍ରେସ୍ ସରକାରର ଉଦାରୀକରଣ ନୀତି ଫଳରେ ଶ୍ରମିକ-କର୍ମଚାରୀ ଓ ଦରିଦ୍ର ଜନସାଧାରଣଙ୍କର ସର୍ବନାଶ କରାଯାଉଛି । ଶ୍ରମିକ-କର୍ମଚାରୀମାନେ ଯେଉଁ ସଂଗ୍ରାମ କରୁଛନ୍ତି, ସି.ପି.ଆଇ.ର ସେଥିରେ ଅବଦାନ ଗୁରୁତ୍ୱପୂର୍ଣ୍ଣ ।

ଭାରତରେ ଶିଳ୍ପ ଓ କୃଷିର ବିକାଶରେ ନିତ୍ୟନୂତନ ବୈଜ୍ଞାନିକ ଓ ପ୍ରଯୁକ୍ତି ବିଦ୍ୟାର ପ୍ରୟୋଜନ । କିନ୍ତୁ ନରସିଂହ ରାଓ ସରକାରର ଉଦାରୀକରଣ ଓ ଗୋଲକୀକରଣ ନୀତି ଭାରତର ଅର୍ଥନୈତିକ ସ୍ୱାଧୀନତା, ସାର୍ବଭୌମତ୍ୱକୁ ଜଳାଞ୍ଜଳି ଦେଇଚାଲିଛି । ଦେଶର ଶିଳ୍ପ, କୃଷି, ବାଣିଜ୍ୟ, ଯୋଗାଯୋଗ, ଏମିତିକି ପ୍ରତିରକ୍ଷା କ୍ଷେତ୍ର ବିପନ୍ନ । ବିଶ୍ୱ ବ୍ୟାଙ୍କ୍, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ବିଶ୍ୱ ବାଣିଜ୍ୟ ସଙ୍ଗଠନ, ଗାଟ୍ ଚୁକ୍ତିର ସମସ୍ତ ଦେଶ ଓ ଜନସ୍ୱାର୍ଥ ବିରୋଧୀ ସର୍ତ୍ତାବଳୀକୁ କଂଗ୍ରେସ୍ ସରକାର ମୁଣ୍ଡପୋତି ମାନି ନେଉଛି । ସେସବୁ ସାମ୍ରାଜ୍ୟବାଦୀ ସଂସ୍ଥାକୁ ଓ ଦେଶର ବୃହତ୍ ପୁଞ୍ଜି ସଦନଗୁଡ଼ିକ ଶୁଳ୍କ ଛାଡ଼ ପ୍ରଭୃତି ନାନାବିଧ ସୁଯୋଗ ଦେଇଚାଲିଛି । ସ୍ୱାଧୀନତା ପରେ ସୋଭିଏତ୍ ୟୁନିଅନ୍ ଓ ଅନ୍ୟାନ୍ୟ ସାମ୍ରାଜ୍ୟବାଦୀ ରାଷ୍ଟ୍ରଙ୍କ ଅକୁଣ୍ଠ ସର୍ତ୍ତହୀନ ସାହାଯ୍ୟ ସହଯୋଗ ମିଳିଥିଲା । ଫଳରେ ଦେଶରେ ଆତ୍ମନିର୍ଭରଶୀଳ ବିଶାଳ ରାଷ୍ଟ୍ରାୟତ୍ତ କ୍ଷେତ୍ରର ପ୍ରତିଷ୍ଠା ହୋଇଥିଲା । ବିଦେଶୀ ଅର୍ଥ ସଂସ୍ଥାଗୁଡ଼ିକର ଚାପରେ ସେଗୁଡ଼ିକୁ ବିକ୍ରି କରାଚାଲିଛି । ଲକ୍ଷ ଲକ୍ଷ ଶ୍ରମିକ-କର୍ମଚାରୀ ଛଟେଇ ହୋଇଗଲେଣି । ଦଶକୋଟି ବେକାର ଯୁବକଙ୍କ ସଙ୍ଗରେ ଆହୁରି କୋଟି ସଂଖ୍ୟାର ଶ୍ରମିକ-କର୍ମଚାରୀ କର୍ମହୀନ ହେବେ, ହୋଇଚାଲିଛନ୍ତି । ଏହି ଅର୍ଥନୀତି ଫଳରେ ଦରଦାମ ବୃଦ୍ଧି ଚାଲିଛି । ଗଣମାଧ୍ୟମ, ରେଳ, ଦୂରସଂଚାରଠାରୁ ଆରମ୍ଭ କରି ସମ୍ବାଦପତ୍ର, ସମ୍ବାଦ ସଂସ୍ଥା, ଟେଲି ଯୋଗାଯୋଗ, ବିଦ୍ୟୁତ୍, ପରିବହନ ଭଳି ରାଷ୍ଟ୍ରାୟତ୍ତ ଉଦ୍ୟୋଗଗୁଡ଼ିକର ଘରୋଇକରଣ ଚାଲିଛି । ଏହି ନୀତି ଦେଶର ସମସ୍ତ ଗୌରବମୟ ମୂଲ୍ୟବୋଧକୁ ବିନଷ୍ଟ କରିଚାଲିଛି । ବଦଳରେ ଅପସଂସ୍କୃତି, ଖାଉଟି ସର୍ବସ୍ୱ ପ୍ରବୃତ୍ତି ବଢ଼ାଇଚାଲିଛି । ଏହି ନୀତି ଫଳରେ ବୈଦେଶିକ ଋଣ ତିନିଲକ୍ଷ କୋଟି ଟଙ୍କାରେ ପହଞ୍ଚିଲାଣି । ଶିଳ୍ପ ନାମରେ ଅଧିକ ଋଣ ଆଣି ଏହି ଋଣର ସୁଧ ଦିଆହେଉଛି । ଏହି ଆତ୍ମଘାତୀ ନୀତି ବିରୁଦ୍ଧରେ ସି.ପି.ଆଇ. ଅନ୍ୟ ସକଳ ବାମପନ୍ଥୀ, ଗଣତାନ୍ତ୍ରିକ ଶକ୍ତିଙ୍କ ସହିତ ଐକ୍ୟବଦ୍ଧ ହୋଇ ସଂଗ୍ରାମ ଅଭିଯାନ ଚଳେଇ ଚାଲିଛି । ପାଞ୍ଚ ବର୍ଷ ଭିତରେ ଏହାର ବିରୋଧରେ

ଯେତେ ଭାରତ ବନ୍ଦ, ଶିଳ୍ପ ଧର୍ମଘଟ, ଦିଲ୍ଲୀରେ ବିକ୍ଷୋଭ ସମାବେଶ ହୋଇଛି ସି.ପି.ଆଇ. ସେଥିରେ ପ୍ରମୁଖ ଭୂମିକା ନେଇଆସୁଛି ।

ଦେଶର ସାର୍ବଭୌମତ୍ୱ ଓ ଅଖଣ୍ଡତା ରକ୍ଷା କରିବାକୁ କଂଗ୍ରେସ୍‌କୁ ଗାଦିଚ୍ୟୁତ କରିବା ଓ ବି.ଜେ.ପି.କୁ ପରାସ୍ତ କରି ଏକ ବାମ ଗଣତାନ୍ତ୍ରିକ ବିକଳ୍ପ ଗଠନ ସଂଗ୍ରାମରେ ସି.ପି.ଆଇ. ଗୁରୁଦାୟିତ୍ୱ ପାଳନ କରିଆସୁଛି ।

କମ୍ୟୁନିଷ୍ଟ ପାର୍ଟିଗୁଡ଼ିକଙ୍କ ନିବିଡ଼ ଐକ୍ୟ ହିଁ ବାମପନ୍ଥୀ ଐକ୍ୟର ଚାବିକାଠି ବୋଲି ସି.ପି.ଆଇ.ର ସିଦ୍ଧାନ୍ତ । ତାହାହିଁ ଧର୍ମନିରପେକ୍ଷ, ଗଣତାନ୍ତ୍ରିକ ଦଳମାନଙ୍କୁ ଐକ୍ୟବଦ୍ଧ କରିବାରେ ସହାୟକ ହେବ ଓ ତାହା ହିଁ କଂଗ୍ରେସ ଓ ବି.ଜେ.ପି.କୁ ପରାସ୍ତ କରିପାରିବ ବୋଲି ସି.ପି.ଆଇ.ର ଦୃଢ଼ ବିଶ୍ୱାସ ।

ପାର୍ଟିର ପଞ୍ଚଦଶ ହାଇଦ୍ରାବାଦ କଂଗ୍ରେସ୍‌ରେ ଏହି ଐକ୍ୟ ଆଣିବା ଲାଗି ସି.ପି.ଆଇ.(ଏମ୍), ଫରଓ୍ୱାର୍ଡ୍ ବ୍ଲକ୍, ଆର.ଏସ୍.ପି.ର ତୁଙ୍ଗ ନେତାଙ୍କୁ ଆମନ୍ତ୍ରଣ କରି ପାର୍ଟି ସମ୍ବର୍ଦ୍ଧିତ କରିଥିଲା ।

୧୯୯୫ ଦିଲ୍ଲୀରେ ଅନୁଷ୍ଠିତ ଷୋଡ଼ଶ ପାର୍ଟି କଂଗ୍ରେସ୍‌ରେ ସି.ପି.ଆଇ. (ଏମ୍), ଫରଓ୍ୱାର୍ଡ୍ ବ୍ଲକ୍, ଆର୍.ଏସ୍.ପି., ଏସ୍.ୟୁ.ପି. ଆଉ ଇଣ୍ଡିଆନ୍ ପପୁଲାର ଫ୍ରଣ୍ଟ, ଓ୍ୱାର୍କର୍ସ ଏଣ୍ଡ୍ ପେଜାଣ୍ଟ ପାର୍ଟିର ପ୍ରତିନିଧିମାନଙ୍କୁ ନିମନ୍ତ୍ରଣ କରି ସକଳ ବାମପନ୍ଥୀ ଦଳର ଐକ୍ୟ ପ୍ରତିଷ୍ଠା ଲାଗି ଆବେଦନ କରିଥିଲା ।

ପାର୍ଟି ତା'ର ସତୁରି ବର୍ଷ କାର୍ଯ୍ୟକାଳରେ ସ୍ୱାଧୀନତା ପାଇଁ, ଶ୍ରମିକ-ଚାଷୀ, କ୍ଷେତମୂଲିଆ, କର୍ମଚାରୀ ଓ ସକଳ ଦରିଦ୍ର ଜନତାର ସ୍ୱାର୍ଥ ରକ୍ଷା ଲାଗି ଅଜସ୍ର ସଂଗ୍ରାମ କରିଛି । ଅନେକ ସାଫଲ୍ୟ ଅର୍ଜନ କରିଛି । ତାହାର ବିସ୍ତୃତ ଇତିହାସରୁ ଏହା ଅତି ସଂକ୍ଷିପ୍ତ ଆଭାସ ମାତ୍ର ।

ମାର୍କ୍ସବାଦ-ଲେନିନ୍‌ବାଦର ମାନବ ମୁକ୍ତିକାରୀ ମହାନ୍ ଆଦର୍ଶରେ ଅନୁପ୍ରାଣିତ ସି.ପି.ଆଇ.ର ଏହି ବୈପ୍ଲବିକ ଐତିହ୍ୟକୁ ଚରମ ପରମ ଲକ୍ଷ୍ୟ ହାସଲ ଲାଗି ଅଧିକତର ସମୃଦ୍ଧ, ତ୍ରୁଟି-ବିଚ୍ୟୁତି ବିହୀନ କରିବାକୁ ସି.ପି.ଆଇ. ସଙ୍କଳ୍ପବଦ୍ଧ ।

**ସଂକ୍ଷେପରେ ଓଡ଼ିଶାରେ ପାର୍ଟି**

କାନପୁର ପ୍ରତିଷ୍ଠା ସମ୍ମିଳନୀର ଦଶବର୍ଷ ପରେ ୧୯୩୫ରେ କେତେଜଣ କମ୍ୟୁନିଷ୍ଟଭାବାପନ୍ନ ଯୁବକ, ଜେଲ୍ ଫେରନ୍ତା ଓ ପାଠପଢୁଆ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଉଦ୍ୟମରେ ଓଡ଼ିଶାରେ ସି.ପି.ଆଇ.ର ଅଙ୍କୁର ସୃଷ୍ଟି । ଭଗବତୀ ଚରଣ ପାଣିଗ୍ରାହୀ, ପ୍ରାଣନାଥ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ ହିଁ ପାର୍ଟିର ପ୍ରତିଷ୍ଠାତା । ପାର୍ଟି ସେତେବେଳେ ବେଆଇନ ।

ପ୍ରଥମେ ଗୁରୁଚରଣ, ପରେ ପ୍ରାଣନାଥ, ଶେଷରେ ଭଗବତୀ କଲିକତା ଯାଇ ଚାରିମାସ ବ୍ୟବଧାନରେ ଗୋପନରେ ସି.ପି.ଆଇ. ସଭ୍ୟ ହୋଇଥିଲେ । ଏମାନେ କଂଗ୍ରେସ ସୋସାଲିଷ୍ଟ

ପାର୍ଟି ଗଠନରେ ସକ୍ରିୟ ଭୂମିକା ନେଲେ । ଭଗବତୀ ତାହାର ସମ୍ପାଦକ ହେଲେ ।

୧୯୪୦ରେ ବ୍ରିଟିଶ୍ ସରକାର କଟକ କମ୍ୟୁନିଷ୍ଟ୍ ଷଡ଼ଯନ୍ତ୍ର ମକଦ୍ଦମା କଲା । ଦୀର୍ଘ କାରାଦଣ୍ଡରେ ଅଭିଯୁକ୍ତଙ୍କୁ ଦଣ୍ଡିତ କରାଗଲା । ଏହାପରେ ପାର୍ଟିର ଶାଖାପ୍ରଶାଖା ସଙ୍ଗଠନମାନ ବଢ଼ିଚାଲିଲା । ଅନେକ ଯୁବକ, ଅଗଷ୍ଟ ଆନ୍ଦୋଳନରେ ବନ୍ଦୀ କଂଗ୍ରେସର ଅନେକ ନେତୃସ୍ଥାନୀୟ ବ୍ୟକ୍ତି ସି.ପି.ଆଇ.ରେ ଯୋଗଦେଲେ ।

ମାର୍କ୍ସବାଦୀ ଆଦର୍ଶ ପ୍ରଚାର ଓ ଗଣ ଆନ୍ଦୋଳନଗୁଡ଼ିକର ସଙ୍ଗଠନ ଓ ପରିଚାଳନାରେ ସି.ପି.ଆଇ. ବିଭିନ୍ନ ସମୟରେ "ଆଧୁନିକ", "ଆଗେଚାଲ", "କମ୍ୟୁନିଷ୍ଟ", "କୋଟିକଣ୍ଠ", "ମୁକ୍ତିଯୁଦ୍ଧ", "ସପ୍ତାହ", "ସଙ୍କେତ", "ସମାଚାର", "ନୂଆଦୁନିଆ", ଆଦି ମୁଦ୍ରିତ ଓ ସାଇକ୍ଲୋଷ୍ଟାଇଲ୍ ପତ୍ରିକା ପ୍ରକାଶ କଲା ।

ସି.ପି.ଆଇ. ସାଥୀମାନଙ୍କ ଉଦ୍ୟମରେ ଛାତ୍ର ସଂଘ, ଏ.ଆଇ.ଟି.ୟୁ.ସି. ଯୁବସଂଘ, ପ୍ରଗତିଶୀଳ ଲେଖକ ସଂଘ, ଗଣନାଟ୍ୟ ସଂଘ, କ୍ଷେତ ମଜଦୁର୍ ୟୁନିଅନ୍, ମହିଳା ସମିତି, ଇସ୍‌କସ୍, ଆଫ୍ରୋ-ଏସୀୟ ସଂହତି ପରିଷଦ, ଗଣତାନ୍ତ୍ରିକ ଆଇନଜୀବୀ ସଂଘ ପ୍ରତିଷ୍ଠିତ ହୋଇଛି । 'କୃଷକ ସଭା'ର ପୁନର୍ଗଠନ କରାଯାଇଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ କଟକ ସହର, ଗଞ୍ଜାମରେ ଦୁର୍ଭିକ୍ଷ ଅନାହାର ବିରୋଧୀ ଆନ୍ଦୋଳନ, ପଟିଆବନ୍ଧ ନିର୍ମାଣ ଓ ବନ୍ୟା ମରୁଡ଼ିରୁ ରକ୍ଷା ଲାଗି ଆଉ ଆଉ ବନ୍ଧ ନିର୍ମାଣ, ହୀରାକୁଦ ବାସଚ୍ୟୁତ ଥଇଥାନ ଆନ୍ଦୋଳନ ପ୍ରଥମେ ପାର୍ଟିର ମର୍ଯ୍ୟାଦା ବଢ଼ାଇଲା ।

ପ୍ରଥମାବସ୍ଥାରେ କଟକ ପ୍ରେସ୍ କର୍ମଚାରୀ ସଂଘ, ବାରଙ୍ଗ, ବ୍ରଜରାଜ ନଗର, ଚୌଦ୍ୱାର ପ୍ରଭୃତିରେ ଶ୍ରମିକ-ଆନ୍ଦୋଳନ, ପରବର୍ତ୍ତୀ ବିଶାଳ ଶ୍ରମିକ ଆନ୍ଦୋଳନ ଓ ବିଭିନ୍ନ ଟ୍ରେଡ୍ ୟୁନିଆନ୍ ଗଠନରେ ସାହାଯ୍ୟ କଲା ।

ଗଡ଼ଜାତ ପ୍ରଜାମୁକ୍ତି ଆନ୍ଦୋଳନ ବେଳେ ଢେଙ୍କାନାଳ, ନୀଳଗିରି, ରଣପୁର, ତାଳଚେର ପ୍ରଭୃତିରେ କମ୍ୟୁନିଷ୍ଟମାନଙ୍କ ଭୂମିକା, ନୀଳଗିରିରେ କମ୍ୟୁନିଷ୍ଟଙ୍କ ସଶସ୍ତ୍ର ସଂଗ୍ରାମ ପାର୍ଟି ବିସ୍ତାରରେ ବିଶେଷ ସହାୟକ ହେଲା ।

ଭାଗଚାଷୀ ଆନ୍ଦୋଳନ, ଜମିଦାରୀ ପ୍ରଥା ଉଚ୍ଛେଦ ଆନ୍ଦୋଳନ, ଗଞ୍ଜାମରେ ଐତିହାସିକ ମୁସ୍ତାଦାରୀ ପ୍ରଥା ଉଚ୍ଛେଦ ଆନ୍ଦୋଳନରେ କଂଗ୍ରେସ୍ ସରକାରର ହତ୍ୟା ଓ ଗିରଫଦାରୀ କମ୍ୟୁନିଷ୍ଟ୍ ଆଦର୍ଶ ପ୍ରଚାରରେ ସାହାଯ୍ୟ କଲା ।

୧୯୪୯-୫୧ରେ ଶହ ଶହ କମ୍ୟୁନିଷ୍ଟଙ୍କୁ କଟକ, ବ୍ରହ୍ମପୁର, ସମ୍ବଲପୁର ଜେଲ୍‌ରେ ବର୍ଷ ବର୍ଷ କାଳ ବନ୍ଦୀ କରାଗଲା, କମ୍ୟୁନିଷ୍ଟ୍ ବନ୍ଦୀମାନଙ୍କ ୪୪ ଦିନରୁ ଉର୍ଦ୍ଧ୍ୱ କାଳର ଅନଶନ ପାର୍ଟିକୁ ଲଢ଼ୁଆ ରୂପ ଦେଲା । ତା'ର ଖ୍ୟାତି ବଢ଼ିଲା ।

ରାଜ୍ୟରେ ବିଭିନ୍ନ ସମୟରେ ପ୍ରତିଷ୍ଠିତ କଂଗ୍ରେସ, ଜନ କଂଗ୍ରେସ୍-ସ୍ୱତନ୍ତ୍ର ଉତ୍କଳ

କଂଗ୍ରେସ-ଗଣତନ୍ତ୍ର, ଜନତା ପାର୍ଟି ଏମିତିକି ସି.ପି.ଆଇ. ସମର୍ଥନ କରୁଥିବା ଜନତା ଦଳ ସରକାରଙ୍କ ଶ୍ରମିକ, ଚାଷୀ, ଛାତ୍ର, ଯୁବକ, କର୍ମଚାରୀଙ୍କ ସ୍ୱାର୍ଥ ଉପରେ ଆକ୍ରମଣର ପ୍ରତିବାଦ କରି ପାର୍ଟି ସତ୍ୟାଗ୍ରହ, ଆଇନ୍ ଅମାନ୍ୟ ଆନ୍ଦୋଳନ କଲା । ହଜାର ହଜାର ସଂଖ୍ୟାରେ କମ୍ୟୁନିଷ୍ଟମାନେ ଜେଲ୍ ଗଲେ । ଶହ ଶହ ମାଡ଼ ଖାଇ ଆହତ ହେଲେ ।

ପ୍ରତି ଜିଲ୍ଲାରେ କମ୍ୟୁନିଷ୍ଟଙ୍କ ବିରୁଦ୍ଧରେ ଶହ ଶହ ମିଥ୍ୟା ମକଦ୍ଦମା କରାଗଲା । ବ୍ରହ୍ମପୁର, ତ୍ରିଲୋଚନପୁର, ବାଲିସୁଆଁ, ବଡ଼ବିଲରେ କମ୍ୟୁନିଷ୍ଟମାନଙ୍କୁ ମିଥ୍ୟା ହତ୍ୟା ମକଦ୍ଦମାରେ ଜଡ଼ିତ କରାଯାଇ ବର୍ଷ ବର୍ଷ କାଳ ବିଚାରାଧୀନ ବନ୍ଦୀ କରାଯାଇଛି । ଉଚ୍ଚ ଅଦାଲତରେ ଏମିତିକି ଫାଶି ଆଦେଶରୁ କମ୍ୟୁନିଷ୍ଟମାନେ ନିର୍ଦ୍ଦୋଷରେ ଖଲାସ ହୋଇଛନ୍ତି ।

ନ୍ୟସ୍ତସ୍ୱାର୍ଥମାନେ ଓ କମ୍ୟୁନିଷ୍ଟ ବିରୋଧୀମାନେ ପାର୍ଟିର ଅନେକଙ୍କୁ ହତ୍ୟା କରିଛନ୍ତି । ପୁଲିସ୍ ଗୁଳିରେ କମ୍ୟୁନିଷ୍ଟଙ୍କୁ ପ୍ରାଣ ଦେବାକୁ ପଡ଼ିଛି । ତିନିଥର ଏମ୍.ଏଲ୍.ଏ. ଓ ଥରେ ରାଜ୍ୟସଭା ସାଂସଦ ଲକ୍ଷ୍ମଣ ମହାପାତ୍ର, ଚାଷୀନେତା ଉଦୟଚନ୍ଦ୍ର ମହାକୁଡ଼ଙ୍କୁ ଗଞ୍ଜାମରେ ନିର୍ମମ ଭାବରେ ହତ୍ୟା କରାଯାଇଛି । ପାଟକୁରା ବାଲିସୁଆଁର ମୁରଲୀ ପରିଡ଼ା, ଭୁବନର ଲକ୍ଷ୍ମୀଧର ମହାରଣା ଓ କାମାକ୍ଷାନଗରର ଉଦ୍ଧବ ବେହେରାଙ୍କୁ ପୁଲିସ୍ ଗୁଳି କରି ହତ୍ୟା କରିଛି । ରାଜ୍ୟର କଂଗ୍ରେସ ସମେତ ବିଭିନ୍ନ ସରକାରଙ୍କ ପୁଲିସ୍ ଆକ୍ରମଣରେ ଆହତ ହୋଇ ବହୁ କମ୍ୟୁନିଷ୍ଟ ପଙ୍ଗୁ ହୋଇଛନ୍ତି । ୧୯୪୮ ଫେବୃଆରୀରେ ଟୀରକଡ଼ାରେ କେବଳ ହେମ, ଅର୍ଜୁନଙ୍କ ଭଳି ୬ ଜଣ କଂଗ୍ରେସ ସରକାର ଗୁଳିରେ ନିହତ ହୋଇଛନ୍ତି ।

ସି.ପି.ଆଇ. ନିଜସ୍ୱ ପ୍ରକାଶନ ଗୃହ ନବଯୁଗ ଗ୍ରନ୍ଥାଳୟ, ନିଜସ୍ୱ ନବଯୁଗ ପ୍ରେସ୍ ଜରିଆରେ ଶହ ଶହ ମାର୍କ୍ସବାଦୀ ସାହିତ୍ୟ, ପୁସ୍ତକପୁସ୍ତିକା ପ୍ରକାଶ କରିଛି ।

ଚାଷୀ, ଶ୍ରମିକ, କର୍ମଚାରୀ, କ୍ଷେତମୂଲିଆଙ୍କ ଦାନରେ ପାର୍ଟିର ରାଜ୍ୟ କାର୍ଯ୍ୟାଳୟ ଭଗବତୀ ଭବନ ଓ କେତେକ ଜିଲ୍ଲାରେ ଓ ଅଞ୍ଚଳରେ ନିଜସ୍ୱ ପାର୍ଟି ଗୃହ ନିର୍ମିତ ହୋଇଛି । କେନ୍ଦ୍ର ପାର୍ଟିର, ସମସ୍ତ କର୍ମସୂଚୀ ପାଳନ କରି ରାଜ୍ୟବାସୀଙ୍କ ବିବିଧ ସମସ୍ୟାରେ ପାର୍ଟି ସ୍ୱତନ୍ତ୍ର ଆନ୍ଦୋଳନ କରିଛି । ଅନେକ ପାର୍ଟି ସାଥୀ ସୀମା ଆନ୍ଦୋଳନ, ଛାତ୍ର ଆନ୍ଦୋଳନ ଗଡ଼ଜାତ ପ୍ରଜା ମୁକ୍ତି ଆନ୍ଦୋଳନ, ଚୀନ ଭାରତ ସଂଘର୍ଷ ବେଳେ ଜେଲ୍‌ଖାନାରେ ନିକ୍ଷିପ୍ତ ହୋଇଛନ୍ତି ।

୧୯୩୫ରେ ସାତ ଆଠ ଜଣ ଯୁବକ କମ୍ୟୁନିଷ୍ଟଙ୍କ ପରିବାରର ଏବେ ୯୦୦ରୁ ଅଧିକ ଯାଏ ପାର୍ଟି ଶାଖା, ୭୦ରୁ ଅଧିକ ଆଞ୍ଚଳିକ ପାର୍ଟି ଶାଖା ବିଭିନ୍ନ ଜିଲ୍ଲାରେ ବିସ୍ତାରିତ ।



# ଏକ ପ୍ରଭାବଶାଳୀ ବାମପନ୍ଥୀ ଦଳର ବିଲୟ କାହିଁକି ?

ଆମ ଦେଶର ସ୍ୱାଧୀନତା ସଂଗ୍ରାମର ଏକ ନିର୍ଦ୍ଦିଷ୍ଟ ଦୋଛକିରେ କଂଗ୍ରେସ ଭିତରେ ଏକ ବାମପନ୍ଥୀ ଦଳ ୧୯୩୫ରେ ବମ୍ୱେଠାରେ ଅନୁଷ୍ଠିତ ଏକ ସମ୍ମିଳନୀରେ ପ୍ରତିଷ୍ଠିତ ହୋଇଥିଲା । ଏହି ଦଳଟି ନିଜକୁ କଂଗ୍ରେସ ସୋସଲିଷ୍ଟ ପାର୍ଟି ବା ସିଏସ୍‌ପି ନାମରେ ନାମିତ କରିଥିଲା । ଏହି ଦଳଟି ଛାଏଁ ଛାଏଁ ଗଜୁରି ଉଠିନଥିଲା, ସ୍ୱୟମ୍ଭୁ ନଥିଲା । ଏକ ଦିଗରେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ, ବିଦେଶୀ ଶାସନ ବିରୁଦ୍ଧରେ ଶତାବ୍ଦୀ ଶତାବ୍ଦୀ ଧରି ଚାଲିଥିବା ସ୍ୱାଧୀନତା ସଂଗ୍ରାମ ଯେ ଏହାର ଉନ୍ମେଷ ଯେପରି ଏକ ଗତିଶୀଳ, ସେମିତି ପୃଥିବୀରେ ସମାଜବାଦୀ ଚିନ୍ତାଧାରାର ପ୍ରସାର ତାହାର ପୃଷ୍ଠଭୂମି । ୧୯୧୭ ଅକ୍ଟୋବର ସମାଜବାଦୀ ବିପ୍ଳବ ରୁଷରେ ସଫଳ ହେବା ଭଳି ଆନ୍ତର୍ଜାତିକ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣାର ପ୍ରଭାବ ୟୁରୋପ ଏସିଆ ଓ ଅନ୍ୟାନ୍ୟ ମହାଦେଶ ଭଳି ଭାରତ ମାଟିରେ ମଧ୍ୟ ବିସ୍ତାର ଲାଭ କଲା ।

ଏହି ଯୁଗାନ୍ତକାରୀ ବିପ୍ଳବ ଭାରତରେ ଯେପରି କମ୍ୟୁନିଷ୍ଟମାନଙ୍କୁ କଂଗ୍ରେସ ନେତୃତ୍ୱରେ ପରିଚାଳିତ ସ୍ୱାଧୀନତା ସଂଗ୍ରାମରେ ଜନ୍ମ ଦେଲା, ସେମିତି ମଧ୍ୟସେହି ସଂଗ୍ରାମ କଂଗ୍ରେସ ସଂଗଠନ ଭିତରେ ସିଏସପିକୁ ଜନ୍ମ ଦେଲା ।

କଂଗ୍ରେସ ଓ ତାହାର ସର୍ବଶ୍ରେଷ୍ଠ ନେତା ଗାନ୍ଧୀଜୀଙ୍କ ନେତୃତ୍ୱରେ ପରିଚାଳିତ ସ୍ୱାଧୀନତା ସଂଗ୍ରାମ ଯଦି ସମାଜବାଦି ବା ଶୋଷଣବିହୀନ, ଶ୍ରେଣୀବିହୀନ ସମାଜ ଆଣିଦେବ ବୋଲି ବିଶ୍ୱାସ ଆସିଥାନ୍ତା, ତେବେ ସେହି ସଂଗ୍ରାମ ଓ ସଂଗଠନ ଭିତରେ କମ୍ୟୁନିଷ୍ଟମାନଙ୍କର ଅବା କଂଗ୍ରେସ ସୋସଲିଷ୍ଟ ମାନଙ୍କର ସ୍ୱତନ୍ତ୍ର ମଞ୍ଚ, ସ୍ୱତନ୍ତ୍ର ଆଦର୍ଶ ପ୍ରଚାର ଓ ସ୍ୱତନ୍ତ୍ର ଧରଣର ଗଣ ସଂଗଠନ ଓ ଗଣ ସମସ୍ୟାର ସମାଧାନ ଲାଗି ଆନ୍ଦୋଳନ ଗଢ଼ି ଉଠିନଥାନ୍ତା ।

ସେହେତୁ ଉଭୟ ଦଳ ଗଠନ ଯେଉଁମାନେ କଲେ, ସେମାନେ କଂଗ୍ରେସକୁ କେବଳ ଦେଶର ମୁକ୍ତି ପାଇଁ ସାମ୍ରାଜ୍ୟବାଦ ବିରୁଦ୍ଧରେ ମଞ୍ଚ ବୋଲି ଗ୍ରହଣ କରି ନେଲେ । ସେହି ମଞ୍ଚରେ ବିଦେଶୀ ଶାସନକୁ ହଟାଇବାକୁ ଓ ଦେଶକୁ ସ୍ୱତନ୍ତ୍ର କରିବାକୁ ଦେଶର ବିଭିନ୍ନ ଅର୍ଥନୈତିକ ଗୋଷ୍ଠୀ, ବିଭିନ୍ନ ପରସ୍ପର ବିରୋଧୀ ସ୍ୱାର୍ଥର ଶ୍ରେଣୀ, ସାମାଜିକ ଜନଗୋଷ୍ଠୀ ରହିଥିଲେ । କେବଳ ପରାଧୀନଠାରୁ ମୁକ୍ତି ହିଁ ସେମାନଙ୍କ ସମୂହ ଲକ୍ଷ୍ୟ । ସ୍ୱାଧୀନତା ପରେ କି ପ୍ରକାରସମାଜ ବ୍ୟବସ୍ଥା, କି ପ୍ରକାର ଅର୍ଥନୈତିକ ବ୍ୟବସ୍ଥା, କି ପ୍ରକାରର ରାଷ୍ଟ୍ର ବ୍ୟବସ୍ଥା ପ୍ରବର୍ତ୍ତିତ ହେବ, ସେ

ସମ୍ପର୍କରେ ଏକ ମଞ୍ଚରେ ସଂଗ୍ରାମ କରୁଥିବା ଭିନ୍ନ ଭିନ୍ନ ଗୋଷ୍ଠୀଙ୍କର ବିଚାର ଭିନ୍ନ ଭିନ୍ନ ଥିଲା ହେବା ସ୍ୱାଭାବିକ ।

ଏହି ବସ୍ତୁନିଷ୍ଠ କାରଣଗୁଡିକ ହେତୁ ଏବଂ ଅନ୍ତର୍ଜାତିକ କ୍ଷେତ୍ରରେ ସମାଜବାଦୀ ବିପ୍ଳବର ସାଫଲ୍ୟ ହେତୁ ଏହି ଦୁଇଟି ଦଳର ଆବିର୍ଭାବ, ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇତିହାସର ଏକ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ଏବଂ ମାଇଲଖୁଣ୍ଟ ମଧ୍ୟ ।

ତେବେ ଆଉ ଏକ ପ୍ରଶ୍ନ ସ୍ୱାଭାବିକ ଉଠେ । ଯଦି ଏହି ସବୁ ଆଭ୍ୟନ୍ତରୀଣ ଓ ବାହ୍ୟ କାରଣରୁ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଓ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠିତ ହେଲା, ତେବେ ତାହା ତ ଗୋଟିଏ ପାର୍ଟି ରୂପେ ଦେଖାଦେଇଥାନ୍ତା । ୧୯୨୫ରେ କମ୍ୟୁନିଷ୍ଟ ପାର୍ଟି ଗଠିତ ହେଲା । ୧୯୩୫ରେ ସିଏସ୍‌ପି ପ୍ରତିଷ୍ଠିତ ହେଲା । ସମୟର ଏ ବ୍ୟବଧାନ କାହିଁକି ଏବଂ ପ୍ରଥମେ ଯେଉଁ ପାର୍ଟି ଏହି ଆଦର୍ଶ ଓ ଆଭିମୁଖ୍ୟ ଘେନି ଗଠିତ ହେଲା, ସେଥିରେ ୧୯୩୪ରେ ଗଠନ କରିଥିବା ପାର୍ଟିର ନେତୃବୃନ୍ଦ ଏକତ୍ର ହୋଇଗଲେ ନାହିଁ କାହିଁକି ?

ତାହାହେଲେ ତ ସ୍ୱାଧୀନତା ସଂଗ୍ରାମକୁ ସେମାନେ ଅଧିକ ବାମମୁଖୀ, ଅଧିକ ପ୍ରଗତିଶୀଳ, ଅଧିକ ସଂଗ୍ରାମୀ କରିପାରିଥାନ୍ତେ ଏବଂ ସେମାନଙ୍କର ଇପ୍‌ସିତ ଆଦର୍ଶ ଓ ଲକ୍ଷ୍ୟ ହାସଲ ଅପେକ୍ଷାକୃତ ସହଜ ହୋଇଥାନ୍ତା ।

ଏହି ପ୍ରଶ୍ନଟିର ଉତ୍ତର ଏହି ପ୍ରଶ୍ନରେ ହିଁ ନିହିତ ଏବଂ ପରବର୍ତ୍ତୀ କାଳରେ କାର୍ଯ୍ୟ ଯାହାକୁ ପ୍ରାକଟିସ କୁହାଯାଏ, ତାହା ପ୍ରମାଣ କରିଦେଲା ଯେ ସମାଜବାଦର ବୈଜ୍ଞାନିକ ତତ୍ତ୍ୱ, ତାହାର ରୁଷିଆରେ ସଫଳ ରୂପାୟନ ଓ ପ୍ରୟୋଗ ଏବଂ ସେହି ବିଜ୍ଞାନ ସିଦ୍ଧ ତତ୍ତ୍ୱଗୁଡ଼ିକ ଭାରତର ସ୍ୱତନ୍ତ୍ର ପରିସ୍ଥିତିରେ ପ୍ରୟୋଗ, କର୍ମକୌଶଳ ଓ କର୍ମନୀତି ଘେନି ଦୁଇ ବାମପନ୍ଥୀ ଦଳଙ୍କ ମଧ୍ୟରେ ମୂଳରୁ ହିଁ ମୌଳିକ ପାର୍ଥକ୍ୟ ରହିଥିଲା ।

୧୯୩୫ରେ ଜନ୍ମ କଂଗ୍ରେସ ସୋସଲିଷ୍ଟ ପାର୍ଟିକୁ ଗଠନ କଲେ, ସେ ସମୟରେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଥିବା, ପ୍ରଗତିକାମୀ, ଗଣତନ୍ତ୍ରକାମୀ, ସାମାଜିକ ପରିବର୍ତ୍ତନ କାମୀ ବଛା ବଛା, ନାମଜାଦା ଯୁବକ ରଥୀ, ମୁକ୍ତି ସଂଗ୍ରାମର ଯୋଦ୍ଧାମାନେ ।

ଜୟପ୍ରକାଶ ନାରାୟଣ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ସଂପୂର୍ଣ୍ଣାନନ୍ଦ, ଏସ.ଏମ.ଯୋଶୀ, ଶିବନାଥ ବାନାର୍ଜୀ, ନବକୃଷ୍ଣ ଚୌଧୁରୀ ୟୁସୁଫ ମେହେର ଅଲି, ପି.ସଏସ୍ ସୁନ୍ଦରାୟ, ଇ.ଏମ.ଏସ ନମ୍ବୁଦ୍ରିପଦ, ଜେଡ୍.ଏ.ଅହମ୍ମଦ ପରି ଆଉ ଆଉ ପ୍ରଖ୍ୟାତ ନେତାମାନେ ।

କମ୍ୟୁନିଷ୍ଟ ପାର୍ଟି ବେଆଇନ । ବ୍ରିଟିଶ ସରକାର ସେମାନଙ୍କ ବିରୁଦ୍ଧରେ ପେଶାଦାର ଷଡ଼ଯନ୍ତ୍ର ମକଦ୍ଦମା, କାନପୁର ଷଡ଼ଯନ୍ତ୍ର ମକଦ୍ଦମା, ମିରଟ ଷଡ଼ଯନ୍ତ୍ର ମକଦ୍ଦମା କରି ଦୀର୍ଘ କାରାବାସ ଦଣ୍ଡରେ ଦଣ୍ଡିତ କରୁଥାଏ ।

ଅନ୍ୟ ଦିଗରେ ମହାତ୍ମାଗାନ୍ଧୀ ନିଜେ ନେତୃତ୍ୱ ଦେଇଥିବା ୧୯୨୦-୨୧ ଅସହଯୋଗ

ଆନ୍ଦୋଳନକୁ ୧୯୨୨ର ଚୌରି ଚୌରା ଘଟଣା ପରେ ପ୍ରତ୍ୟାହାର କରିନେବା ପରେ କଂଗ୍ରେସ ଭିତରେ ନେହେରୁ ସୁବାଙ୍କ ସମେତ ଆଉ ଆଉ ବାମପନ୍ଥୀ ମନୋଭାବାପନ୍ନ ବ୍ୟକ୍ତିଙ୍କର ଅସନ୍ତୋଷ ଜନ୍ମିଥାଏ । କଂଗ୍ରେସ ଭିତରେ ବିଭାଜନ ଘଟି ସ୍ୱରାଜ ପାର୍ଟି ଗଠିତ ହୋଇଥାଏ । ଗାନ୍ଧିଜୀ ନେତୃତ୍ୱରେ ଥାଇ ମଧ୍ୟ କଂଗ୍ରେସ ଆପଣାର ଲକ୍ଷ୍ୟ ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କରିବାର ସର୍ବପ୍ରଥମ କମ୍ୟୁନିଷ୍ଟମାନଙ୍କର ଓ ନେହେରୁ, ସୁବାଷ ବୋଷ ପ୍ରମୁଖଙ୍କ ପ୍ରସ୍ତାବକୁ ବାରମ୍ବାର ପ୍ରତ୍ୟାଖ୍ୟାନ କରୁଥାଏ । ଏହି ଘଟଣାଗୁଡ଼ିକ ମଧ୍ୟ ଏହି ନୂତନ ଯୁବକମାନଙ୍କ ମଧ୍ୟରେ ନୈରାଶ୍ୟ ଆଣୁଥାଏ ଓ କଂଗ୍ରେସର ଲକ୍ଷ୍ୟ ସମ୍ପର୍କରେ ସନ୍ଦେହ ଜାତ କରାଉଥାଏ । ୧୯୨୯ରେ ଲାହୋର ଠାରେ ପ୍ରବଳ ଚାପ ଫଳରେ ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ବୋଲି ଘୋଷଣା ଓ ୧୯୩୦ ଜାନୁଆରୀ ୨୬ରେ ସ୍ୱାଧୀନତା ଅର୍ପଣ ନକରାଗଲେ ଆଇନ ଅମାନ୍ୟ କରାଯିବାର ନିର୍ଦ୍ଧାରଣ ହୁଏ । ୧୯୩୦-୩୨ରଆଇନ ଅମାନ୍ୟ ଆନ୍ଦୋଳନ ବ୍ୟାପ୍ତି ଓ ଗୋଲ ଟେବୁଲ ବୈଠକରେ ସାଲିସ ପାଇଁ ଗାନ୍ଧିଜୀଙ୍କ ଯୋଗଦାନ ଓ ବ୍ୟର୍ଥତା ଓ ତାଙ୍କ ଗିରଫ ଓ ପରବର୍ତ୍ତୀ କାଳରେ ୧୯୩୪ରେ ଆନ୍ଦୋଳନର ପ୍ରତ୍ୟାହାର ସମାଜବାଦ ପ୍ରତି ଝୁଙ୍କ ଥିବା ଏହି ଯୁବକମାନଙ୍କ ମଧ୍ୟରେ ତୁମୁଳ ଆଲୋଡ଼ନ ସୃଷ୍ଟି କଲେ । ଗାନ୍ଧିଜୀଙ୍କ ଗ୍ରାମ ସବରାଜ, ୧୪ ଦଫା ଗଠନମୂଳକ କାମ ଯଥେଷ୍ଟ ନୁହଁ ଏବଂ ଏହା କେବଳ କଂଗ୍ରେସ କର୍ମୀମାନଙ୍କ ମଧ୍ୟରେସୀମିତ ବୋଲି ସେମାନେ ବିଚାରିଲେ । ବ୍ରିଟିଶ ଶାସନର ଖୁମ୍ବ ଜମିଦାରମାନଙ୍କ ଅତ୍ୟାଚାରରେ ଶୋଷଣରେ ପୀଡ଼ିତ ଚାଷୀଙ୍କ ଶ୍ରମିକମାନଙ୍କ ଉପରେ ପୁଞ୍ଜିପତିଙ୍କ ଶୋଷଣକୁ ଲୋପ କରିବା ଲାଗି ସେମାନେ ନିଜେ ସଙ୍ଗଠନ କରି ଲଢ଼ିବାର ବାଟ ଏଥିରେ ନାହିଁ ବୋଲି ସେମାନଙ୍କର ଉପଲବ୍ଧି ହେଲା ।

ସେହେତୁ ସେମାନେ ମିଳିତ ହୋଇ ଗଠନ କଲେ ସି.ଏସ.ପି । ପୃଥିବୀର ଅନ୍ୟତ୍ର, ବିଶେଷତଃ ୟୁରୋପର ବିଭିନ୍ନ ଦେଶରେ ଯେପରି ବିଲାତରେ ଲେବର ପାର୍ଟି, ଫ୍ରାନ୍ସରେ ସୋସଲିଷ୍ଟ ପାର୍ଟି, ଜର୍ମାନୀରେ ସୋସାଲଡ଼ିମୋକ୍ରାଟିକ ପାର୍ଟି ରହିଥିଲା, ସେହି ଢାଞ୍ଚାରେ ପାର୍ଟିର ଗଠନ ଆଦର୍ଶ ରହିବ ଏବଂ ବଲଶେଭିକ୍ ପାର୍ଟି ଓ ଲେନିନଙ୍କ ଦ୍ୱାରା ପ୍ରଦର୍ଶିତ ମାର୍ଗରେ ମଧ୍ୟବର୍ତ୍ତୀ ମାର୍ଗ ନିଆଯିବ, ମାର୍କସଙ୍କ ତତ୍ତ୍ୱ ପ୍ରତି ଆନୁଗତ୍ୟ ରହିଛି ବୋଲି କୁହାଯିବ, ମାତ୍ର ବୈଧାନିକ ଉପାୟରେ, ପୁରୁଣା ରାଷ୍ଟ୍ରାଯନ୍ତ୍ର ଥାଇ ତାକୁ ସଂଶୋଧନ କରି ସମାବାଦ ଅଣାଯିବ ଏହିପରି ଚିନ୍ତା ଓ ଆଦର୍ଶ ଘେନି ଗଠିତ ସିଏସପି ତେଣୁ ମାର୍କସବାଦ ଓ ଲେନିନବାଦର ବୈପ୍ଲବିକ ତତ୍ତ୍ୱ ଉପରେ ପ୍ରତିଷ୍ଠିତ କମ୍ୟୁନିଷ୍ଟ ପାର୍ଟି ଠାରୁ ଦୂରରେ ରହିଲା ।

ପୁଞ୍ଜିବାଦୀ ଏକଛତ୍ରବାଦ ବିରୁଦ୍ଧରେ ଶ୍ରମିକ-କୃଷକ ଖଟିଖିଆ ସଂଖ୍ୟା ଗରିଷ୍ଟ ଜନତାର ସର୍ବହରା ଏକଛତ୍ରବାଦର ତାତ୍ତ୍ୱିକ ବୈପ୍ଲବିକ ଦିଗକୁ ସେମାନେ ପୁଞ୍ଜିପତି ସମାଜରେ ଅର୍ଜିତ ଗଣତନ୍ତ୍ରର ବିରୋଧ କରେ ବୋଲି ବିଚାରିଲେ । ଏହା ଯେ ବୁର୍ଜୁୟା ପୁଞ୍ଜିପତି ଗଣତନ୍ତ୍ରର ବ୍ୟାପକ ପ୍ରସାର ଆଣି ଦେବ ଓ ରୁଷିଆରେ ଦେଇଛି, ତାହାକୁ ସେମାନେ ଗ୍ରହଣ କଲେ ନାହିଁ ।

ପ୍ରାସଙ୍ଗିକତ ହେବ ଏହି ପାର୍ଟିର ସାଧାରଣ ସମ୍ପାଦକ ଜୟପ୍ରକାଶ ନାରାୟଣ କଂଗ୍ରେସ ଓ ଗାନ୍ଧିଜୀଙ୍କ ନେତୃତ୍ୱରେ କି ପ୍ରକାର ବିଶ୍ଲେଷଣ କରିବାକୁ ଏହି ପାର୍ଟି ଗଠିତ ହୋଇପାରିଥିଲା ଏବଂ ସେହି ବ୍ୟାଖ୍ୟା ବିଶ୍ଳେଷଣକୁ ସେ ନିଜେ ଓ ସିଏସପିର ଗରିଷ୍ଠ ଅଂଶ ନେତୃତ୍ୱ ପରିହାର କରିବାକୁ ପରବର୍ତ୍ତୀ କାଳରେ ଏହି ପ୍ରଭାବଶାଳୀ ବାମପନ୍ଥୀ ଦଳର କି ଶୋଚନୀୟ ଦୁର୍ଦ୍ଦଶା ଘଟିଲା ତାହା ଉଲ୍ଲେଖ କରିବା ଆବଶ୍ୟକ ।

ସେ ଲେଖିଥିଲେ ଗାନ୍ଧିଜୀ ସାମାଜିକ ବିପ୍ଳବ ବିରୁଦ୍ଧରେ । ସଙ୍କଟ ମୁହୂର୍ତ୍ତରେ ସେ ଶୋଷଣ ଓ ଅସମତାର ବ୍ୟବସ୍ଥାକୁ ରକ୍ଷା କରିବେ । ଗାନ୍ଧିବାଦ ଦର୍ଶନ ବିରୁଦ୍ଧରେ ସେ ଲେଖିଥିଲେ ଗାନ୍ଧିବାଦ ଏକ ବିପଜ୍ଜନକ ସିଦ୍ଧାନ୍ତ । ଏହା ବିପଜ୍ଜନକ, କାରଣ ଏହା ପ୍ରକୃତ ସମସ୍ୟାଗୁଡ଼ିକୁ ଘୋଡ଼େଇ ପକାଏ ଜନତାକୁ ପ୍ରତାରିତ କରେ ଏବଂ ଉପରପାହ୍ୟା ଶ୍ରେଣୀଗୁଡ଼ିକୁ ସେମାନଙ୍କର ଆଧିପତ୍ୟ ଅବ୍ୟାହତ ରଖିବା ପାଇଁ ଉତ୍ସାହିତ କରେ । ଏହି ଅଭିମତକୁ ଭିତ୍ତି କରି ଏବଂ ସମାଜବାଦୀ ରୁଷ ବିପ୍ଳବକୁ ସ୍ୱାଗତ କରି ଭାରତବର୍ଷରେ ସମାଜବାଦ ପାଇଁ ସେ ଲେଖି ହ୍ୱାଏ ସୋସିଆଲିଜିମ୍ ବା ସମାଜବାଦ କାହିଁକି ? ନାମକ ପୁସ୍ତକ ।

ମାକସ ଏବଂ ଏଙ୍ଗେଲସ ବିଖ୍ୟାତ କମ୍ୟୁନିଷ୍ଟ ଇସ୍ତାହାରମାର୍କସଙ୍କ ଦର୍ଶନିକ, ଅର୍ଥନୈତିକ ତତ୍ତ୍ୱ, ଲେନିନଙ୍କ ଦ୍ୱାରା ତାହାର ସମୃଦ୍ଧିକରଣ ଓ ବିକାଶ ଓ ପ୍ରୟୋଗ ଦ୍ୱାରା ସଫଳ ସମାଜବାଦୀ ବିପ୍ଳବର ତତ୍ତ୍ୱ ଓ ଅଭିଜ୍ଞତା ଯେତେ ନୁହଁ, ଏହି ପୁସ୍ତକ ସେତେବେଳେ ସିପିଏସସପିର ହ୍ୟାଣ୍ଡବୁକ ହୋଇଗଲା ଏବଂ ଏହି ଅଭିମତର ପ୍ରବକ୍ତା ଯେତେବେଳେ ତାହାସବୁ କହିଥିଲେ, ତାକୁ ତାଙ୍କ ପରବର୍ତ୍ତୀ ତତ୍ତ୍ୱ ଓ କାର୍ଯ୍ୟରେ ଖଣ୍ଡନ କଲେ ମୂଳରୁହିଁ ତାହାର ସାମାନ୍ୟ ପ୍ରତିଫଳନ ସିଏସପି ନେତୃତ୍ୱରେ ଗରିଷ୍ଠ ଅଂଶ ଉପରେ ହୋଇଥିଲା ।

ଇତିହାସ ଦୃଷ୍ଟିରୁ ସତ୍ୟ ଯେ କଂଗ୍ରେସରେ ଥିବା ଦକ୍ଷିଣ ପନ୍ଥୀମାନେ କମ୍ୟୁନିଷ୍ଟମାନଙ୍କୁ ଏକ ଅଭିଶାପ ଓ ଅସ୍ପୃଶ୍ୟ ବୋଲି ବିଚାରୁଥିଲେ ଓ ସେମାନେ ବିଦେଶୀ ଆଦର୍ଶର ବାହକ, ହିଂସାରେ ବିଶ୍ୱାସ କରନ୍ତି, ପ୍ରତିଷ୍ଠିତ ସମାଜକୁ ଚୁରମାର କରିଦେବେ ପ୍ରଭୃତି ନାନା ଅଜବ କଥା ପ୍ରଚାର କରୁଥିଲେ । ମାତ୍ର ସିଏସପିର ଅଭ୍ୟୁଦୟକୁ ଅବାଞ୍ଛିତ ଓ ବିସ୍ମୟ ବୋଲି ଧରି ନେଇଥିଲେ ହେଁ ତାହା ସହିତ ସହାବସ୍ଥାନ ସମ୍ଭବପର ଧରି ନେଇଥିଲେ । ପଣ୍ଡିତ ଜବାହାରଲାଲ ନେହେରୁଙ୍କ ପରି ତୁଙ୍ଗ ଓ ପ୍ରଭାବଶାଳୀ ନେତା କମ୍ୟୁନିଷ୍ଟ ଅବା ସିଏସପିରେ ଯୋଗ ନ ଦେଲେ ହେଁ ତାଙ୍କର ଏହି ଆନ୍ଦୋଳନ ପକ୍ଷରେ ସେତେବେଳେ ସମର୍ଥନ ସିଏସପିକୁ କଂଗ୍ରେସ ଭିତରେ ମର୍ଯ୍ୟାଦା ଦେଇଥିଲା ।

ସିଏସପିର ନେତାମାନେ ଅନେକ ରାଜ୍ୟରେ କଂଗ୍ରେସ ସଂଗଠନରେ ବେଶ ଖ୍ୟାତି ସମ୍ପନ୍ନ, ସମ୍ମାନିତ ବ୍ୟକ୍ତି ଥିଲେ ଓ ସଙ୍ଗଠନଗୁଡ଼ିକରେ ପଦାଧିକାରୀ ଥିଲେ । କମ୍ୟୁନିଷ୍ଟଙ୍କ ପରି ସେମାନେ ନିଜସ୍ୱ ଚାଷୀ ସଂଗଠନ ଗଢ଼ି ଜମିଦାରୀ ଅତ୍ୟାଚାର ଶୋଷଣ ବିରୁଦ୍ଧରେ

ଆନ୍ଦୋଳନରେ ଅଗ୍ରଣୀ ହେଲେ । ଶ୍ରମିକମାନଙ୍କୁ ମଧ୍ୟ ସଙ୍ଗଠିତ କଲେ ଓ ସେମାନଙ୍କ ଧର୍ମଘଟ ସଂଗ୍ରାମର ନେତୃତ୍ୱ ନେଲେ । ଗାନ୍ଧିଜୀଙ୍କ ଟ୍ରଷ୍ଟିସିପ, ବା ନ୍ୟାସ ପ୍ରଥା ଶ୍ରମିକ ପୁଞ୍ଜିପତିଙ୍କ ସହାବସ୍ଥାନ ଓ ପୁଞ୍ଜିପତିଙ୍କ ହୃଦୟ ପରିବର୍ତ୍ତନର ବିଶ୍ୱାସ ଏହି ଆନ୍ଦୋଳନ ଫଳରେ ତୁଟିବାକୁ ଲାଗିଲା । ଗଡ଼ଜାତ ପ୍ରଜା ମୁକ୍ତି ସଂଗ୍ରାମରେ ମଧ୍ୟ ଯେଉଁଠି ଏମାନେ ଥିଲେ କମ୍ୟୁନିଷ୍ଟଙ୍କ ସହିତ ଅବା ସମାନ୍ତରାଳ ଭାବରେ ପୁରୋଭାଗରେ ରହିଲେ । କମ୍ୟୁନିଷ୍ଟମାନଙ୍କର ପି.ସି. ଯୋଶୀଙ୍କ ସମ୍ପାଦନାରେ ନାସନାଲ ଫ୍ରଣ୍ଟ ସାପ୍ତାହିକ ଓ ୟୁସୁଫ ମେହେର ଅଲିଙ୍କ ସମ୍ପାଦନାରେ ପ୍ରକାଶିତ କଂଗ୍ରେସ ସୋସଲିଷ୍ଟ ସାପ୍ତାହିକ ମୁଖ୍ୟତଃ ସମାଜବାଦୀ ଚିନ୍ତାଧାର, ଶ୍ରେଣୀ ସଂଗ୍ରାମଗୁଡ଼ିକର ବର୍ଣ୍ଣନା ପ୍ରକାଶ କରୁଥିଲେ । କିନ୍ତୁ ସିପିଏସପି ମଧ୍ୟରେ ମଧ୍ୟ ଯୋଗ ଦେଇଥିବା ଏକ ଅଂଶ ଯୁବ ବିପ୍ଳବୀ ଗୋଷ୍ଠୀ ଭାରତରେ ସମାଜବାଦୀ ଆଣିବାକୁ ହେଲେ ମାର୍କସ ଏଙ୍ଗେଲସ ଲେନିନଙ୍କ ଦ୍ୱାରା ପ୍ରତିପାଦିତ ଓ ପରୀକ୍ଷିତ ତତ୍ତ୍ୱ ଓ ସାମାଜିକ ଓ ରାଜନୈତିକ ତଥା ଅର୍ଥନୈତିକ ଆଦର୍ଶକୁ ଧରି ଭାରତର ସ୍ୱାଧୀନତା ସଂଗ୍ରାମ ଓ ସମାଜବାଦୀ ଆନ୍ଦୋଳନକୁ ଚଳାଇବାକୁ ହେବ ବୋଲି ବିଶ୍ୱାସ କଲେ । ସିଏସପିର ନେତୃତ୍ୱ ପରି ବ୍ରିଟିଶ ଲେବର ପାର୍ଟି ବା ୟୁରୋପୀୟ ସୋସାଲ ଡିମୋକ୍ରାଟିକ ପାର୍ଟିଗୁଡ଼ିକ ବାଟରେ ସମାଜବାଦ ଅଣାଯାଇ ପାରିବ ନାହିଁ ସେମାନେ ଧରିନେଲେ । ତାହା ପେଟି ବୁର୍ଜୁୟା ସମାଜବାଦ, ବୈଜ୍ଞାନିକ ସମାଜବାଦ ନୁହେଁ ଏହି ପ୍ରକାର ତୁମୂଳ ଯୁକ୍ତିତର୍କ ମଧ୍ୟ ସିଏସପି ଅଭ୍ୟନ୍ତରରେ ଚାଲିଥିଲା । ସେ କାଳରେ କମ୍ୟୁନିଷ୍ଟ ପାର୍ଟି ଏହି ନବ ଗଠିତ ସିଏସପିର ଜନ୍ମକୁ ସ୍ୱାଗତ କରି ତାହା ସହିତ ଏକତ୍ର କାମ କରିବାକୁ ପ୍ରସ୍ତାବମାନ ବାଢ଼ିଥିଲେ ମଧ୍ୟ ପାର୍ଟିର ନେତା ବିଂଶେଷତଃ ଜୟପ୍ରକାଶ ନାରାୟଣଙ୍କ ସହିତ ସମାଜବାଦୀ ଐକ୍ୟ ସମ୍ପର୍କରେ ଏକାଧିକାର ଆଲୋଚନା ହୋଇଥିଲେ ହେଁ ଆଦର୍ଶଗତ ମତଭେଦ ଆଦର୍ଶ ସିଏସପି ତାହାକୁ ପ୍ରତ୍ୟାଖ୍ୟାନ କଲା । ଦୁଇ ପାର୍ଟିର ମୁଖପତ୍ରରେ ଅର୍ଥାତ୍ ୧୯୩୭-୩୮-୩୯ରେ ନାସନାଲ ଫ୍ରଣ୍ଟ ଓ କଂଗ୍ରେସ ସୋସାଲିଷ୍ଟ ପାର୍ଟି ମଧ୍ୟରେ ବିତର୍କ ତାହାର ପ୍ରମାଣ ଦିଏ ।

ଏହା ମଧ୍ୟ ଇତିହାସ ଦିଗରୁ ଅବଧାରିତ ସତ୍ୟ ଯେ କଂଗ୍ରେସ ଭିତରେ ଏପରି ଏକ ପ୍ରଭାବଶାଳୀ ବାମପନ୍ଥୀ ଦଳର ଜନ୍ମ, କଂଗ୍ରେସ ଓ ଗାନ୍ଧିଜୀଙ୍କ ଦ୍ୱାରା ଅନୁସୃତ କର୍ମକୌଶଳର ସମାଲୋଚନା ଏବଂ ତାହାର ଚାଷୀ, ଶ୍ରମିକଙ୍କ ଭିତରେ କାମ ଓ ସେମାନଙ୍କର ଆନ୍ଦୋଳନ ସମାଜବାଦୀ ଚିନ୍ତାକୁ ଲୋକପ୍ରିୟ କରାଇଥିଲା । ବହୁ ନୂତନ ସ୍ୱାଧୀନତା ସଂଗ୍ରାମୀଙ୍କୁ ଆକୃଷ୍ଟ କରିଥିଲା । ଏମିକି କଂଗ୍ରେସ ସଂଗଠନକୁ କେଉଁଠି କେଉଁଠି ଦଖଲ ମଧ୍ୟ କରିଯିବାର କଳ୍ପନା ନେତାମାନେ କରିଥିଲେ ଏବଂ ପ୍ରକାଶ୍ୟ ଘୋଷଣା ମଧ୍ୟ କରୁଥିଲେ ।

୧୯୩୫ ରୁ ୧୯୩୯-୪୦ ଭିତରେ ସିଏସପିର ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ପ୍ରଗତିଶୀଳ ଭୂମିକା ଏକ ଅସ୍ତିବାଚକ ଦିଗ, ସତ, ମାତ୍ର ବୈଜ୍ଞାନିକ ବିଶ୍ଳେଷଣ ଦୃଷ୍ଟିରୁ ଏହାର

ମଧ୍ୟ ନେତିବାଚକ ଦିଗ ରହିଛି । ସମାଜବାଦୀ ଚିନ୍ତାଧାରରର ପ୍ରସାର ଓ କଂଗ୍ରେସକୁ ରାଡ଼ିକାଲ କରିବାରେ ଏହାର ଅବଦାନ ସାଙ୍ଗକୁ ଏହାର ମାର୍କସୀୟ ତତ୍ତ୍ୱ ଓ ସୋଭିଏତ ଦେଶରେ ସମାଜବାଦର ପ୍ରତିଷ୍ଠା ପ୍ରତି ଲୁଣ୍ଠିତ ସମର୍ଥନ ସମାଜବାଦର ବୈଜ୍ଞାନିକ ସିଦ୍ଧାନ୍ତ ଗୁଡ଼ିକ ଠାରୁ ଦୂରେଇ ରଖିଲା । ପରବର୍ତ୍ତୀ କାଳରେ ପ୍ରମାଣିତ ହେଲା ଯେ ଏହି ଦୃଷ୍ଟିଭଙ୍ଗୀ ପରିଶେଷରେ ଉଗ୍ରଟ କମ୍ୟୁନିଷ୍ଟ ବିରୋଧିତା ଓ ସୋଭିଏତ ବିରୋଧିତାର ରୂପ ନେଲା ।

ବିଶ୍ୱ ପୁଞ୍ଜିବାଦୀ ଅର୍ଥନୈତିକ ସଙ୍କଟ ଓ ଦ୍ୱିତୀୟ ମହାସମରର ଦୁଇଟି ପର୍ଯ୍ୟାୟରେ ଭୂମିକା

ସମାଜବାଦ ଦୁନିଅର ସୃଷ୍ଟି, ପୁଞ୍ଜିବାଦୀ, ସାମାଜ୍ୟବାଦୀ ଶିବିରରେ ଆତଙ୍କ ସୃଷ୍ଟି କଲା । ସାମ୍ରାଜ୍ୟବାଦୀମାନଙ୍କର ବଜାରରେ ସଙ୍କଟ ସୃଷ୍ଟି ହେଲା, ପାଞ୍ଚ ମହାଦେଶର ଔପନିବେଶିକ ଦେଶ ପରେ ଦେଶରେ ସ୍ୱାଧୀନତା ସଂଗ୍ରାମ ସ୍ଫୁଲିଙ୍ଗ ଦେଖାଦେଲା । ଅକ୍ଟୋବର ବିପ୍ଳବର ପ୍ରେରଣାରେ ପୁଞ୍ଜିବାଦୀ ଦେଶଗୁଡ଼ିକରେ ବିଶାଳ ଶ୍ରମିକ ଆନ୍ଦୋଳନ ଚାଲିଲା ସମାଜବାଦ ପ୍ରତିଷ୍ଠା ପାଇଁ ଉଦ୍ୟମ ହେଲା । ଜର୍ମାନ, ହଙ୍ଗେରୀରେ ବ୍ୟର୍ଥ ହୋଇଥିଲା । ପ୍ରଥମ ମହାସମରରେ ପରାଜିତ ଜର୍ମାନ ସାମ୍ରାଜ୍ୟବାଦ ଓ ଉପନିବେଶଗୁଡ଼ିକୁ ଶତାବ୍ଦୀ ଶତାବ୍ଦୀ ଧରି ଦଖଲ କରି ରହିଥିବା ବିଲାତ, ଫ୍ରାନ୍ସ ସାମ୍ରାଜ୍ୟବାଦ ଓ ନବୋଉତ୍‌ଥିତ ଆମେରିକା ସାମ୍ରାଜ୍ୟବାଦ ତେଣେ ଜାପାନରେ ସାମରିକବାଦ ମଧ୍ୟରେ ପୃଥିବୀକୁ ଅକ୍ତିଆରରେ ରଖିବା ଓ ପୁନର୍ବାର ଭାଗ ବଣ୍ଟୁଆରା ଲାଗି ଯୁଦ୍ଧାୟୋଜନ ଚାଲିଲା । ଉଭୟଙ୍କ ନୂତନ ଶତ୍ରୁ, ଶ୍ରେଣୀଶତ୍ରୁ, ଆଦର୍ଶର ଶତ୍ରୁ, ଅର୍ଥନୈତିକ ଓ ସାମାଜିକ ବ୍ୟବସ୍ଥାର ଶତ୍ରୁ ସମାଜବାଦ ଓ ସୋଭିଏତ ୟୁନିଅନ । ତାକୁ ଉଭୟ ପକ୍ଷ ମିଶି ମୂଳରୁ ୧୯୨୦-୨୨ରେ ସାମରିକ ହସ୍ତକ୍ଷେପ କରି ଶେଷ କରିବା ଚେଷ୍ଟାରେ ବ୍ୟର୍ଥ ହୋଇଥିଲେ ।

ଏହି ପରିପ୍ରେକ୍ଷୀରେ ଜର୍ମାନ ଓ ଇଟାଲୀ ସାମ୍ରାଜ୍ୟବାଦ ଫାସିଜିମର ବୀଭତ୍ସ ରୂପ ନିଏ । ହିଟଲର ଜାତୀୟ ସମାଜବାଦ ଧ୍ୱନି ଦେଇ ଉଗ୍ରଟ ସଂକୀର୍ଣ୍ଣ ଜାତୀୟତାର ଭାବଧାରାରେ ଜର୍ମାନ ଯୁବକୂଳକୁ ବିଭ୍ରାନ୍ତ କରିଦେଲା । ସମାଜବାଦକୁ ଧ୍ୱଂସ କରିବ, ଶ୍ରମିକ ଆନ୍ଦୋଳନକୁ ଧ୍ୱଂସ କରିବ, ସ୍ୱାଧୀନତା ସଂଗ୍ରାମଗୁଡ଼ିକୁ ନିର୍ମୂଳ କରିବ, ଗଣତାନ୍ତ୍ରିକ ବ୍ୟବସ୍ଥା ଓ ଗଣତାନ୍ତ୍ରିକ ସ୍ୱାଧୀନତା ଗୁଡ଼ିକୁ ଅପହରଣ କରିବ ଏବଂ ଅପରପକ୍ଷରେ ନିଜର ପ୍ରତିଦ୍ୱନ୍ଦୀ ପୁରୁଣା ସାମ୍ରାଜ୍ୟବାଦୀ ଦେଶଙ୍କଠାରୁ ଉପନିବେଶ ଗୁଡ଼ିକୁ ଯୁଦ୍ଧ କରି ଛଡ଼େଇନେବ, ଫାସିଷ୍ଟବାଦ ସମଗ୍ର ପୃଥିବୀ ପ୍ରତି ଏପରି ବିପଦ ସୃଷ୍ଟି କରୁଥାଏ ।

ପୃଥିବୀର କମ୍ୟୁନିଷ୍ଟ ଆନ୍ଦୋଳନ ସାମ୍ରାଜ୍ୟବାଦର କୁତ୍ସିତ ଅମାନୁଷିକ, ବର୍ବର ରୂପ ଫାସିଷ୍ଟବାଦ ବିରୁଦ୍ଧରେ କମ୍ୟୁନିଷ୍ଟ, ସୋସଲିଷ୍ଟ ଏବଂ ଏମିତିକି ବୁର୍ଜୁୟା ଗଣତନ୍ତ୍ରବାଦ, ରାଜନୈତିକ ସମସ୍ତଙ୍କ ଫାସିଷ୍ଟ ବିରୋଧୀ, ସାମ୍ରାଜ୍ୟବାଦୀ ଯୁଦ୍ଧ ବିରୋଧୀ ଜାତୀୟ ସ୍ୱାଧୀନତା

ସଂଗ୍ରାମର ଶକ୍ତିଙ୍କ ମେଣ୍ଟ ଲାଗି ଆବେଦନ କଲା ।

ଭାରତରେ ବ୍ରିଟିଶ ସାମ୍ରାଜ୍ୟ କବଳରୁ ଦେଶର ସ୍ୱାଧୀନତା ପାଇଁ ଏବଂ ଫାସିଷ୍ଟବାଦର ଆନ୍ତର୍ଜାତିକ କ୍ଷେତ୍ରରେ ବିରୋଧ ପାଇ ଜାତୀୟ ସାମ୍ମୁଖ୍ୟ ବା ନାସନାଲ ଫ୍ରଣ୍ଟ ଗଠନର ଆବଶ୍ୟକ ହେଲା ।

ଜର୍ମାନରେ ପ୍ରଭାବଶାଳୀ ସୋସାଲ ଡିମୋକ୍ରାଟିକ ପାର୍ଟି ଏବଂ ଶକ୍ତିଶାଳୀ କମ୍ୟୁନିଷ୍ଟ ପାର୍ଟି ଏକତ୍ର ହୋଇଥିଲେ ହିଟଲର କ୍ଷମତାକୁ ଆସିପାରିନଥାନ୍ତା । ମାତ୍ର ସୋଭିଏତ ବିରୋଧିତା ଓ କମ୍ୟୁନିଷ୍ଟ ବିରୋଧିତା ହେତୁ ଜର୍ମାନ କମ୍ୟୁନିଷ୍ଟ ପାର୍ଟି ସହିତ ଜର୍ମାନ ସୋସଲଡ଼ିମୋକ୍ରାଟିକ ପାର୍ଟିର ମେଣ୍ଟ ହେଲା ନାହିଁ ଏବଂ ତା'ର ପରିଣତ ସ୍ୱରୂପ ବିଭୀଷିକାମୟ ହିଟଲର ନାଜିବାଦର ବିଜୟ ହେଲା ।

ଭାରତରେ ମଧ୍ୟ ଠିକ୍ ଏହିପରି ଏକ ମର୍ମନ୍ତୁଦ ଘଟଣାର ପୁନରାବୃତ୍ତି ହେଲା । ଦ୍ୱିତୀୟ ମହାସମର ଆରମ୍ଭ ପୂର୍ବରୁ ନାଜୀବାଦ ଚାହୁଁଥିଲା ସୋଭିଏତ ୟୁନିଅନକୁ ଧ୍ୱଂସ କରିବ । ବିଲାତ ଫ୍ରାନ୍ସ ସାମ୍ରାଜ୍ୟବାଦ ଚାହୁଁଥିଲେ ସୋଭିଏତ ୟୁନିଅନ ଧ୍ୱଂସ ହେଉ । ଆଗ ହିଟଲର ତାକୁ ଧ୍ୱଂସ କରୁ ।

ରୁଷ ବିପ୍ଳବ ପରେ ଜାରଶାହୀ ସାମ୍ରାଜ୍ୟର ପରାଧୀନ ଦେଶମାନଙ୍କୁ ମୁକ୍ତ କରାଯାଇଥିଲା । ଫିନଲ୍ୟାଣ୍ଡ, ପୋଲାଣ୍ଡ, ରୁମାନିଆର ବେସରଭିଆ ପ୍ରଭୃତି ଦେଶ ଓ ଅଞ୍ଚଳ ସମାଜବାଦୀ ବିପ୍ଳବ ଦ୍ୱାରା ଜାର ସାମ୍ରାଜ୍ୟରୁ ମୁକ୍ତ ହୋଇ ପୁଞ୍ଜିବାଦୀ ସାମନ୍ତବାଦୀ ଶାସନ ପ୍ରତିଷ୍ଠା କଲେ । ଜାରଶାହୀ ରୁଷ ସାମ୍ରାଜ୍ୟର ମୁସଲିମ ଅଧ୍ୟୁଷିତ ଦେଶଗୁଡ଼ିକ ତଥା ୟୁକ୍ରାଇନ, ବଲଟିକ ରାଷ୍ଟ୍ରଗୁଡ଼ିକ ମଧ୍ୟ ପ୍ରଥମେ ସ୍ୱତନ୍ତ୍ର ହୋଇଗଲେ ଓ ପୁଞ୍ଜିବାଦୀ- ସାମନ୍ତବାଦୀ ଶାସନ ଜାହିର ହେଲା । ମାତ୍ର ସେସବୁଦେଶ ଶ୍ରମିକ ଚାଷୀ ବିପ୍ଳବ ପରି ୧୯୨୨ ରୁ ୨୪ ଭିତରେ ସୋଭିଏତ ସମାଜବାଦୀ ରାଷ୍ଟ୍ରରେ ଅନ୍ତର୍ଭୁକ୍ତ ହେଲେ । ଫିନଲ୍ୟାଣ୍ଡ ସ୍ୱାଧୀନ ହେଲା ବେଳେ ରୁଷିଆଦେଶର କାରେଲୋଫିନିସ ଅଞ୍ଚଳରୁ ଦଖଲକରି ନେଇଥିଲେ । ହିଟଲର ଫିନଲ୍ୟାଣ୍ଡ ସରକାର ସହିତ ସନ୍ଧି କରି ଏହାରି ସୀମାରେ ସୋଭିଏତ ଆକ୍ରମଣ ଲାଗି କୁଖ୍ୟାତମାନେ ହରିମ ଯୁଦ୍ଧ ଘାଟୀ ଗଠନ କଲା । କାରୋଲୋଫିନିସ ଅଞ୍ଚଳର ଜନତା ସୋଭିଏତ ସୈନ୍ୟବାହିନୀ ସହଯୋଗରେ ଉକ୍ତ ଇଲାକାକୁ ମୁକ୍ତ କରି ଫାସିଷ୍ଟବାଦ ଚକ୍ରାନ୍ତକୁ ପଣ୍ଡ କଲେ । ଏହାକୁ ପୃଥିବୀର ସାମ୍ରାଜ୍ୟବାଦୀ ମାନେ ସୋଭିଏତ ରୁଷିଆର ପରଦେଶ ଗ୍ରାସ ଓ ଆକ୍ରମଣ ବୋଲି ଅଭିହିତ କେଲେ ।

ଅଥଚ ସିଏସପିର ତୁଙ୍ଗ ନେତୃତ୍ୱ ମଧ୍ୟ ସୋଭିଏତ ବିରୋଧୀ ଅନୁରୂପ ଅଭିଯୋଗ କରି ବିବୃତିମାନ ଦେଲେ ।

କମ୍ୟୁନିଷ୍ଟ ପାର୍ଟିକୁ ବାଦ ଦିଆଯାଉ । ସିଏସପିରେ ମାର୍କସବାଦୀ ଆସ୍ଥାନ ନେଇଥିବା

ଅଂଶ ଏହାର ବିରୋଧ କଲେ । ଏଇଠୁ ପାର୍ଟି ଭିତରେ ଜାତୀୟ ଓ ଆନ୍ତର୍ଜାତୀୟ ପ୍ରଶ୍ନଗୁଡ଼ିକ ସଂକ୍ରାନ୍ତରେ ମତ ଭେଦ ଅଧିକ ତୀବ୍ର ହେଲା ।

୧୯୩୯ ସେପ୍ଟେମ୍ବର ୩୦ରେ ପ୍ରଥମ ମହାସମର ଆରମ୍ଭ ହୋଇଗଲା । ଦୁଇ ପକ୍ଷ ସାମ୍ରାଜ୍ୟବାଦୀ, ଲକ୍ଷ୍ୟ ପୂରଣ ସାମ୍ରାଜ୍ୟବାଦୀମାନେ ନିଜ ଉପନିବେଶକୁ ରଖିବେ, ବଜାରଗୁଡ଼ିକୁ ଶୋଷଣର ଇଲାକଗୁଡ଼ିକୁ ରଖିବେ । ହିଟଲର ସମରବାଦ ଜାପାନ ଓ ଇଟାଲୀର ମୁସୋଲିନୀ ସେହି ଉପନିବେଶଗୁଡ଼ିକ ଛଡ଼େଇ ନେବେ ।

ଯୁଦ୍ଧର ଏହି ପ୍ରଥମ ପର୍ଯ୍ୟାୟରେ କମ୍ୟୁନିଷ୍ଟମାନେ ସ୍ୱପ୍ନ ଦେଶରେ ଡାକ ଦେଲେ ସାମ୍ରାଜ୍ୟବାଦୀ ଯୁଦ୍ଧକୁ ଗୃହଯୁଦ୍ଧରେ ପରିଣତ କରି କ୍ଷମତା ଦଖଲ କର ସମାଜବାଦ ସ୍ୱାର୍ଥରେ, ସୋଭିଏତ ସମାଜବାଦୀ ରାଷ୍ଟ୍ରକୁ ରକ୍ଷା କର । ଭାରତରେ କମ୍ୟୁନିଷ୍ଟମାନେ ଯୁଦ୍ଧର ସାମ୍ରାଜ୍ୟବାଦୀ ସ୍ତରରେ ଅନୁରୂପ ଡାକରା ଦେଲେ ଏବଂ ସିଏସ୍‌ପି ସିପିଆଇ ଐକ୍ୟ ଓମେଣ୍ଟର ଆହ୍ୱାନ କଲେ । ଗଣଆନ୍ଦୋଳନ ଚଳାଇ ବ୍ରିଟିଶ ଠାରୁ ଜବରଦସ୍ତ କ୍ଷମତା ଦଖଲ କର ଆହ୍ୱାନ ଦେଲେ ।

ମାତ୍ର ଏହି ପ୍ରକାର ଆଦର୍ଶଗତ ମତଭେଦ ହେତୁ ସିଏସପି ନେତୃତ୍ୱ ଦେଖିଲା କମ୍ୟୁନିଷ୍ଟ ମନୋଭାବାପନ୍ନ ନେତା ଓ ସାଥୀମାନଙ୍କୁ ପାର୍ଟିରୁ ବହିଷ୍କାର କରିବାକୁ ହେବ । ପ୍ରକାଶ ପାଇଲା ମିନୁ ମାସାଜୀଙ୍କ ବହି । ବ୍ରିଟିଶ ଗୁଇନ୍ଦା ସଂସ୍ଥାର ଦଲିଲ ଉପରେ ପ୍ରତିଷ୍ଠିତ ଏହି ପୁସ୍ତକର ମର୍ମ ହେଲା, ପ୍ରଦେଶ ଗୁଡ଼ିକରେ କମ୍ୟୁନିଷ୍ଟମାନେ ସିଏସପିକୁ ଦଖଲ କରିଯାଇଛନ୍ତି । ଅଥଚ ଯୁଦ୍ଧ ଆରମ୍ଭ ହେବା ମାତ୍ରେ ବ୍ରିଟିଶ ସରକାର ପ୍ରଥମେ କମ୍ୟୁନିଷ୍ଟମାନଙ୍କୁ ଗିରଫ କରିନେଲା ଓ ପାର୍ଟିକୁ ଲୁଚିଛପି କାର୍ଯ୍ୟ କରିବାକୁ ପଡ଼ିଥିଲା ।

୧୯୩୯ରେ କ୍ଷମତା ଦେଲେ ବ୍ରିଟିଶକୁ ଏହି ଯୁଦ୍ଧ ସାହାଯ୍ୟ ଦଆିଯିବ ମହାତ୍ମାଗାନ୍ଧୀ ଓ କଂଗ୍ରେସର ଏହି ନିର୍ଦ୍ଧାରଣକୁ ସିପିଆଇ ବିରୋଧ କଲା । ମାତ୍ର ସିଏସପି ବିରୋଧ କଲା ନାହିଁ । କ୍ଷମତା ପାଇଁ ଚାପ ହେବା ଲାଗି କଂଗ୍ରେସ ମନ୍ତ୍ରୀମଣ୍ଡଳ ଛାଡ଼ିଲା । ଗଣଆନ୍ଦୋଳନ ପରିପୂର୍ଣ୍ଣ ବ୍ୟକ୍ତିଗତ ସତ୍ୟାଗ୍ରହର ଡାକରା ଦେଲା । କାୟ ମନୋବାକ୍ୟରେ ମୁଁ ଯୁଦ୍ଧର ବିରୋଧ କରୁଛି ଏହି ନିରୀହ ଧ୍ୱନି ଦେଇ ଗାନ୍ଧିଜୀଙ୍କ ଦ୍ୱାରା ମନୋନୀତ ଡିକ୍ଟେଟର କାରାବରଣ ଆମନ୍ତ୍ରଣ କଲେ । କଂଗ୍ରେସ କମିଟିଗୁଡ଼ିକର ଅସ୍ତିତ୍ୱ ରହିଲା ନାହିଁ । ଅନୁରୂପ ଢଙ୍ଗରେ ଖୋଦ୍ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ସିଏସପିକୁ ଭାଙ୍ଗି ଦିଆଗଲା, ପ୍ରତି ପ୍ରଦେଶରେ ଡିକ୍ଟେଟର ନିଯୁକ୍ତ କରାଗଲା । ଆମ ଦେଶରେ ରେଭେନ୍‌ସା କଲେଜ ପୂର୍ବ ହଷ୍ଟେଲରେ ଅନୁଷ୍ଠିତ ସିଏସପିର ଏକ ବୈଠକରେ ଜୟପ୍ରକାଶ ରାଜ୍ୟ ସିଏସପିକୁ ଭାଙ୍ଗି ନବକୃଷ୍ଣ ଚୌଧୁରୀଙ୍କୁ ଡିକ୍ଟେଟର କରିଗଲେ । ସିଏସପିରୁ କମ୍ୟୁନିଷ୍ଟ ଭାବାପନ୍ନ ବ୍ୟକ୍ତିମାନଙ୍କୁ ବହିଷ୍କାରଣର ଏହା ହେଲା ଅତି ସୂକ୍ଷ୍ମ ଉପାୟ । କିନ୍ତୁ ଆନୁଷ୍ଠାନିକ ଭାବରେ ଯେଉଁ ପାର୍ଟି ବିଜ୍ଞାନ ସମ୍ମତ ନ ହେଲେ ବି ସମାଜବାଦୀ ଭାବଧାରାର ସ୍ୱତନ୍ତ୍ର ବାହକ ଥିଲା ତାହା ୧୯୪୬-୪୭ ପର୍ଯ୍ୟନ୍ତ ବସ୍ତୁତଃ କଂଗ୍ରେସ

ସହିତ ନିମଜ୍ଜିତ ହୋଇଗଲା । ନିଜର ସ୍ୱତନ୍ତ୍ର ସତ୍ତା ହରେଇଲା, ପୁନଶ୍ଚ କେତେକ କାରଣରୁ ନୂତନ ଜୀବନ୍ୟାସ ନେବା ପର୍ଯ୍ୟନ୍ତ ।

ଅନ୍ୟ ଦିଗରେ ସିଏସପିରୁ କାର୍ଯ୍ୟତଃ ଅନ୍ତରିତ ପ୍ରଖ୍ୟାତ ସିଏସପି ନେତାମାନେ କେରଳ, ଓଡ଼ିଶା, ଆନ୍ଧ୍ର ପରି ରାଜ୍ୟଗୁଡ଼ିକରେ ଓ ଅନ୍ୟତ୍ର କମ୍ୟୁନିଷ୍ଟ ପାର୍ଟିରେ ଆନୁଷ୍ଠାନିକ ଭାବରେ ସାମିଲ ହୋଇଗଲେ ।

ସିଏସପିର ଗରିଷ୍ଠ ନେତୃତ୍ୱକାରୀ ଅଂଶ କଂଗ୍ରେସ ମୁଖାପେକ୍ଷୀ ଓ ଅନ୍ୟ ଅଂଶ କମ୍ୟୁନିଷ୍ଟ ମୁଖାପେକ୍ଷୀ ହେଲେ ଓ ଉକ୍ତ ପାର୍ଟିର ନୀତି ଓ କର୍ମପନ୍ଥା କର୍ମକୌଶଳକୁ ଗ୍ରହଣ କରିନେଲେ ।

ଆଦର୍ଶଗତ ଆସ୍ଥାନ ହେତୁ, ସିଏସପି ପ୍ରତିଷ୍ଠିତ ହେଲା ବେଳେ ବୁର୍ଜୁୟା ବିରୋଧୀ ଶ୍ରମିକ ଚାଷୀଙ୍କ ଯେଉଁ ଶ୍ରେଣୀ ଆସ୍ଥାନ ନେଇଥିଲା ତାହା ମ୍ଳାନ ହୋଇଗଲା । ନିଜସ୍ୱ ବଳୟର ପନ୍ଥା ସିଏସପି ଅନୁସରଣ କଲା ।

ସୋଭିଏତ ଆକ୍ରମଣ କରିବା ଲାଗି ହିଟଲରକୁ ବିଲାତର ଲେବର ପାର୍ଟି ପ୍ରଧାନମନ୍ତ୍ରୀ ମାକ୍‌ଡୋନାଲ ଓ ଫ୍ରାନ୍‌ସର ପ୍ରଧାନମନ୍ତ୍ରୀ ଦାଲାଦିଏର ହିଟଲର ହାତରେ ଚେକୋସ୍ଲୋଭାକିଆକୁ ମ୍ୟୁନିକ ଚୁକ୍ତିରେ ଅର୍ପଣ କରିଦେଇଥିଲେ । ସୋସଲିଷ୍ଟ ପ୍ରଧାନମନ୍ତ୍ରୀ ମାକଡ଼ୋନାଲଙ୍କ ଏହି ସମାଜବାଦ ବିରୋଧୀ, ସୋଭିଏତ ବିରୋଧୀ କାର୍ଯ୍ୟକୁ କମ୍ୟୁନିଷ୍ଟଙ୍କ ପରି ସିଏସପି ନିନ୍ଦା କରି ପାରିଲା ନାହିଁ । ମାତ୍ର ସୋଭିଏତ ୟୁନିଅନ ତା' ଉପରେ ହିଟଲରୀ ଆକ୍ରମଣ ଅବଶ୍ୟମ୍ଭାବୀ ଜାଣି କିଛିଟା ସମୟ ନେଇ ପ୍ରସ୍ତୁତ ହେବାକୁ ଜର୍ମାନୀ ସହିତ ଯେଉଁ ଅନାକ୍ରମଣ ଚୁକ୍ତି କଲା, ତାହାକୁ ସିଏସପିର ମୂଲ୍ୟାୟନ ଶ୍ରେଣୀ ଭିତ୍ତିକ ନ ହୋଇ ବିରୂପ ହେଲା । ବଲଶେଭିକ୍ ବିପ୍ଳବ ଦ୍ୱାରା ରୁଷ ସାମ୍ରାଜ୍ୟରୁ ମୁକ୍ତ ବଲଟିକ ରାଷ୍ଟ୍ର ଇସ୍ତୋନିଆ, ଲାଟଭିଆ, ଲିଥୁଆନିଆର ପୁଞ୍ଜିବାଦୀ ଓ ହିଟଲର ପକ୍ଷପାତୀ ସରକାରଗୁଡ଼ିକୁ ସେଠାରୁ ଶ୍ରମିକ ଶ୍ରେଣୀ ବିପ୍ଳବ କରି ସୋଭିଏତ ସହାୟତାରେ ସମାଜବାଦୀ ପ୍ରଜାତନ୍ତ୍ର ପ୍ରତିଷ୍ଠା କଲେ । ଏହି କାର୍ଯ୍ୟକୁ ସାମ୍ରାଜ୍ୟବାଦୀମାନେ ଓ ୟୁରୋପର ଲେବର ପାର୍ଟି ଓ ସୋସାଲଡ଼ିମୋକ୍ରାଟିକ୍ ପାର୍ଟିମାନେ ସୋଭିଏତ ସାମ୍ରାଜ୍ୟତର ପ୍ରତିଷ୍ଠା ବୋଲି ଚିତ୍ରଣ କଲେ । ଭାରତରେ ସିଏସପି ମଧ୍ୟ ସେମାନଙ୍କର ଏହି ଆସ୍ଥାନକୁ ନିନ୍ଦା ନ କରି ବରଂ ସୋଭିଏତ ବିରୋଧୀ ଆସ୍ଥାନ ନେଲା ।

ହିଟଲର ପୋଲାଣ୍ଡ ଓ ତା'ପରେ ଗୋଟିକ ପରେ ଗୋଟିଏ ପଶ୍ଚିମ ୟୁରୋପୀୟ ପୁଞ୍ଜିବାଦୀ ଦେଶକୁ ଦଖଲ କରିଦେବା ପରେ ଏବଂ ପୂର୍ବପଟେ ଜାପାନ, ବର୍ମା ସମେତ ଦକ୍ଷିଣ ପୂର୍ବ ଏସିଆ ଦଲ କରି ଭାରତର ଚିତାଗଙ୍ଗ, କଲିକତାର ଗାର୍ଡ଼େନରିଚ ଓ ପାରାଦୀପରେ ବୋମା ବର୍ଷଣ କଲେ ।

୧୯୪୧ ଜୁନ୍ ୨୨ ରେ ପଶ୍ଚିମ ୟୁରୋପର ସମସ୍ତ ଯୁଦ୍ଧ ସରଞ୍ଜାମ; ଖାଦ୍ୟ ଓ ଅନ୍ୟାନ୍ୟ ସମ୍ଭାର ଧରି ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦର ଶ୍ରେଣୀ ଶତ୍ରୁ ସୋଭିଏତ ୟୁନିଅନ ଉପରେ ଆକ୍ରମଣ କଲା ।

ବିଶ୍ୱ ଶ୍ରମିକ ଶ୍ରେଣୀ ଓ କମ୍ୟୁନିଷ୍ଟ ଆନ୍ଦୋଳନ ବିଶ୍ୱ ଯୁଦ୍ଧର ଏହି ଦ୍ୱିତୀୟ ପର୍ଯ୍ୟାୟକୁ ଫାସିଷ୍ଟବାଦ ବିରୋଧୀ ଜନ ଯୁଦ୍ଧ ବୋଲି ଶ୍ରେଣୀ ଆସ୍ଥାନରୁ ଘୋଷଣଶ କଲେ । ହିଟଲର ଓ ଜାପାନର ଚୁକ୍ତି ଅନୁସାରେ (ବାରବୋସ ଚୁକ୍ତି ଏବଂ ଓରିଏଣ୍ଟ ଯୋଜନା) ଅନୁସାରେ କକେସସ ଦଖଲ କରି ପାରସ୍ୟ ଆଫଗାନିସ୍ଥାନ ଦେଇ ହିଟଲର ବାହିନୀ ଭାରତ ଆସିବ ଓ ଜାପାନ ପୂର୍ବପଟେ ବର୍ମା ଦଖଲ ପରେ ପୂର୍ବ ଭାରତରେ ପହଞ୍ଚି ଦୁହେଁ ଭାରତକୁ ବାଣ୍ଟି ନେବା ଯୋଜନା କରିଥିଲେ । ଭାରତୀୟ କମ୍ୟୁନିଷ୍ଟମାନେ ଯୁଦ୍ଧରେ କ୍ଷତବିକ୍ଷତ ବ୍ରିଟିଶ ସାମ୍ରାଜ୍ୟବାଦ ଠାରୁ ସ୍ୱାଧୀନତା ଓ ଅନ୍ୟ ଦିଗରେ ହିଟଲର ଫାସିଷ୍ଟବାଦ ଓ ଜାପାନୀ ସମରବାଦର ଭାରତ ଦଖଲର ଷଡ଼ଯନ୍ତ୍ରକୁ ପଣ୍ଡ କରିବା ଲାଗି ଏହି ଜନ ଯୁଦ୍ଧର ଯେଉଁ କର୍ମକୌଶଳ ବାଢ଼ିଲେ ତାକୁ କଂଗ୍ରେସ ନେତୃତ୍ୱ ଗ୍ରହଣ କଲା ନାହିଁ ଏବଂ ଗାନ୍ଧିଜୀ ୧ ୯ ୪ ୨ ଅଗଷ୍ଟ ଆନ୍ଦୋଳନର ଡାକରା ଦେଲେ । କମ୍ୟୁନିଷ୍ଟମାନେ ବମ୍ବେ କଂଗ୍ରେସରେ ବାଢ଼ିଥିବା ଫାସିଷ୍ଟବାଦ ପ୍ରତିରୋଧର କର୍ମକୌଶଳ ପରାସ୍ତ ହେଲା ।

ଏହି ଆନ୍ଦୋଳନ ପ୍ରତି କମ୍ୟୁନିଷ୍ଟମାନଙ୍କର ମତକୁ ସିଏସପିର ଦକ୍ଷିଣପନ୍ଥୀ କଂଗ୍ରେସ ନେତାମାନେ ବିଶ୍ୱାସ ଘାତକତା ବୋଲି ରଟନା କଲେ । ଗାନ୍ଧିଜୀ ଆନ୍ଦୋଳନ ଆରମ୍ଭ କରିବା ପୂର୍ବରୁ ନେତାମାନଙ୍କର ଗିରଫ ଭାରତର ଜନତାକୁ କ୍ରୋଧାନ୍ୱିତ କଲେ । ଦମନ, ଗିରଫ, ଗୁଳି କରି ବ୍ରିଟିଶ ସରକାର ଏହି ଆନ୍ଦୋଳନକୁ ଦମନ କଲା । କମ୍ୟୁନିଷ୍ଟମାନେ ଅଗଷ୍ଟ ପ୍ରସ୍ତାବକୁ ସମର୍ଥନ ନ କରିଥିଲେ ହେଁ, ସେମାନଙ୍କୁ ମଧ୍ୟ ଅନେକ ପ୍ରଦେଶରେ ଗିରଫ କରି ନିଆଗଲା । କାରାଗାର ମଧ୍ୟରେ ଅଗଷ୍ଟ ଆନ୍ଦୋଳନରେ ଯୋଗ ଦେଇ ନେତୃତ୍ୱ ନେଇଥିବା ଓ ପତ୍ର ବା ସ୍ୱଦେଶୀ ସରକାରମାନ ଗଢ଼ିଥିବା ବ୍ୟକ୍ତି ସବୁ ଯେମିତି ସତାଭାର ନାନା ପଟିଲ, ବାଲିଆର ସରଜୁ ପାଣ୍ଡେ ଏମିତି ଶତ ଶତ ନେତା ଓ କର୍ମୀ ଜେଲଖାନାରେ କମ୍ୟୁନିଷ୍ଟ ହୋଇଗଲେ । କଂଗ୍ରସର ଦକ୍ଷିଣପନ୍ଥୀ ଓ କଂଗ୍ରେସ ସୋସଲିଷ୍ଟ ନେତାମାନଙ୍କର କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ ଦେଶଦ୍ରୋହିତାର ଅଭିଯୋଗ କାଟୁ କଲା ନାହିଁ । କିନ୍ତୁ ଏକଥା ନିଶ୍ଚିତ କଂଗ୍ରେସ ଠାରୁ କମ୍ୟୁନିଷ୍ଟମାନଙ୍କ ବିଛିନ୍ନ କରିଦେବା ଲାଗି ଏହା ଏକ ଆୟାଧ ହେଲା ୧ ୯ ୪ ୫ରେ ଜେଲ ମୁକ୍ତି ପରେ ଅଗଷ୍ଟ ଆନ୍ଦୋଳନରେ ଆଗୁଆ ଭାଗ ନେଇଥିବା କଂଗ୍ରେସ ସୋସଲିଷ୍ଟମାନେ କମ୍ୟୁନିଷ୍ଟମାନଙ୍କୁ କଂଗ୍ରେସରୁ ବହିଷ୍କାର କରିବାରେ ଅଗ୍ରଦୂତ ହେଲେ । ଏହା ହିଁ ବାମପନ୍ଥୀ ଆନ୍ଦୋଳନର ଭବିଷ୍ୟତକୁ ପ୍ରଥମ ସଂଗଠିତ ଆଘାତ ।

**କଂଗ୍ରେସ ଦଖଲ ପ୍ରୟାସ ବ୍ୟର୍ଥ ଓ ପିଏସପି ଗଠନ**

୧ ୯ ୪ ୨ ଅଗଷ୍ଟ ଆନ୍ଦୋଳନରେ ଆପଣାର ଭୂମିକା ସେମାନଙ୍କୁ ଯଥେଷ୍ଟ ଦେଇଛି ବୋଲି ବିଶ୍ଳେଷଣ କରି ଏବଂ କମ୍ୟୁନିଷ୍ଟମାନଙ୍କୁ କଂଗ୍ରେସରୁ ବହିଷ୍କାର କରିବାରେ ଅଗ୍ରଣୀ ଭୂମିକା ନେଇ କଂଗ୍ରେସକୁ କମ୍ୟୁନିଷ୍ଟ ମୁକ୍ତ କରି ଦେଇଛନ୍ତି, କଂଗ୍ରେସ ସଂଗଠନକୁ ସେମାନେ

ଦଖଲ କରିଯିବେ ବୋଲି ଧରିନେଲେ । ଯେତିକି ବା ସିଏସପିର ଶ୍ରେଣୀ ଆସ୍ଥାନ ଥିଲା, ତାହାକୁ ଏହି ଅଭିଳାଷ ଓ ସେଥିଲାଗି ଉଦ୍ୟମ ଅଧିକ ମ୍ଳାନ କରିଦେଲା । ୧୯୪୫-୪୬ ଠାରୁ ୧୯୪୮-୪୯ ପର୍ଯ୍ୟନ୍ତ ସିପିଏସପିର ଏହି ନେତାମାନଙ୍କ ଭିତରେ ସମାଜବାଦୀ ଚିନ୍ତା ଭାବନାରେ ଗାନ୍ଧିଜୀଙ୍କ ଗ୍ରାମ ସ୍ୱରାଜ, ଫାସିଷ୍ଟବାଦ, ଗ୍ରାମୀଣ ଅର୍ଥନୀତି ଏବଂ ଭୂଦାନ ପ୍ରତି ଝୁଙ୍କି ବଢ଼ିଲା । ଏସବୁ ଉଦ୍ୟମ ସତ୍ତ୍ୱେ କଂଗ୍ରେସକୁ ଦଖଲ କରାଯିବାର ସମସ୍ତ ଉଦ୍ୟମ, ନାନାପ୍ରକାର ପେଞ୍ଚପାଞ୍ଚକୁ କଂଗ୍ରେସର ପ୍ରତିଷ୍ଠିତ ନେତୃତ୍ୱର ଦକ୍ଷିଣ ପନ୍ଥୀମାନେ ସଫଳ କରେଇ ଦେଲେ ନାହିଁ । ବରଂ ନେହେରୁଙ୍କ ପ୍ରତି ସର୍ଦ୍ଦାର ବଲ୍ଲଭାଇଙ୍କ ନେତୃତ୍ୱରେ କଂଗ୍ରେସର ଦକ୍ଷିଣପନ୍ଥୀଙ୍କ ବୈରିତାଘେନି ସିଏସପିର ନେତାମାନେ ମଧ୍ୟ ସୁସ୍ପଷ୍ଟ ଆସ୍ଥାନ ନେଇପାରିଲେ ନାହିଁ ।

ପୂର୍ବପରି ଅର୍ଥାତ୍ ସ୍ୱାଧୀନତା ସଂଗ୍ରାମ କାଳରେ କଂଗ୍ରେସ ସଂଗଠନ ଭିତରେ ରହି ସିଏସପି ଗଢ଼ିବାର ଆଉ ଅବକାଶ ନଥିଲା । ପ୍ରଥମତଃ ସିଏସପି ମୂଳରୁ ଯେଉଁ ଶ୍ରେଣୀ ଆଦର୍ଶରେ ଗଠିତ ହୋଇଥିଲା, ସେହି ଶ୍ରେଣୀ ଆଦର୍ଶ, ସମ୍ପୂର୍ଣ୍ଣ ମାକସବାଦୀ ଲେନିନବାଦୀ ସମ୍ମତ ନ ହେଲେ ବି ତାକୁ କମ୍ୟୁନିଷ୍ଟ ବିରୋଧିତା ଓ ସୋଭିଏତ ବିରୋଧିତା କରି କାର୍ଯ୍ୟତଃ ପରିହାର କରାଯାଇଥିଲା । ମାତ୍ର କଂଗ୍ରେସ ଭିତରେ ଆଉ ନରହି ପୁନଶ୍ଚ ସମାଜବାଦୀ ଦଳ ଗଠନର ଉଦ୍ୟମ ହେଲା । କଂଗ୍ରେସ ସଂଗଠନ ଠାରୁ ଓ ତା'ର ନୀତି ଆଦର୍ଶ ଠାରୁ ଏହି ଦଳର ସ୍ୱତନ୍ତ୍ରତା ରହିବ, ତାହା ଏକ ବାମପନ୍ଥୀ ଆଭିମୁଖ୍ୟ ନେବ ଏବଂ ବାମପନ୍ଥୀ ଦଳ ଗଢ଼ି ତାହାରି ମାଧ୍ୟମରେ କ୍ଷମତା ଦଖଲ କରିବ ଏବଂ ପ୍ରୟାସ ଓ ଅଭିଳାଷ ଘେନି ଗଢ଼ାଗଲା ପିଏସପି ବା ପ୍ରଜା ସୋସଲିଷ୍ଟ ପାର୍ଟି । ଏଥିରେ ସମାଜବାଦ ନାଁ ନେଉଥିବା ଏବଂ କମ୍ୟୁନିଷ୍ଟଙ୍କୁ ବିରୋଧ କରୁଥିବା ଏହିପରି ଯେତେ ବ୍ୟକ୍ତି ଦେଶର ସାମାଜିକ-ରାଜନୈତିକ ଜୀବନରୁ ଆସିଲେ, ସେମାନଙ୍କୁ ଗ୍ରହଣ କରାଗଲା ।

ସିଏସପି ଏକ ବାମପନ୍ଥୀ ଦଳ ରୂପେ ଆବିର୍ଭୂତ ହୋଇ କମ୍ୟୁନିଷ୍ଟମାନଙ୍କ ସହଯୋଗୀ ହିସାବରେ ନୁହେଁ, କିନ୍ତୁ ସମାନ୍ତରାଳ ଭାବରେ ଚାଷୀ ବା ଶ୍ରମିକଙ୍କୁ ଶ୍ରେଣୀଗତ ଚେତନାରେ ଉଦ୍‌ବୁଦ୍ଧ ନ କରି କେବଳ ନକାରାତ୍ମକ (ନେଗେଟିଭ) କଂଗ୍ରେସ ବିରୋଧିତା କରି ଚାଷୀ ଆନ୍ଦୋଳନ, ଭାଗଚାଷୀ ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନରେ ସାମିଲ ହେଲା । ସେମାନେ ପ୍ରକୃତ ବାମପନ୍ଥୀ ଚାଷୀ ମୂଲିଆର ପାର୍ଟି ତାହା ସାବ୍ୟସ୍ତ କରିବାକୁ ଉଦ୍ୟମ କଲେ । କମ୍ୟୁନିଷ୍ଟମାନଙ୍କ ଅପେକ୍ଷା, କଂଗ୍ରେସ ଭିତରେ ଥିବାରୁ ଓ ମୁଖ୍ୟତଃ କଂଗ୍ରେସ କର୍ମୀମାନେ ସିଏସପିରେ ଯୋଗଦେବାରୁ ସେମାନଙ୍କ କାମର ପରିସର ବେଶ ସହଜ ସାଧ୍ୟ ହୋଇଥିଲା । କମ୍ୟୁନିଷ୍ଟମାନଙ୍କ ପ୍ରତି ବୈରିତା ସତ୍ତ୍ୱେ ଏବଂ ପିଏସପିର ଶ୍ରେଣୀଗତ ଆଦର୍ଶର ଅସ୍ପଷ୍ଟତା ସତ୍ତ୍ୱେ ଏହି ବାମପନ୍ଥୀ ଆନ୍ଦୋଳନ ଯେ କ୍ଷମତାସୀନ ବୁର୍ଜୁୟା କଂଗ୍ରେସର ନୀତିକୁ ଆଘାତ କରିବ ସେହେତୁ କମ୍ୟୁନିଷ୍ଟ ପାର୍ଟି ଏପରି ଆନ୍ଦୋଳନକୁ ସ୍ୱାଗତ କଲା । ଉଭୟ ପାର୍ଟି ନିଜର ସ୍ୱତନ୍ତ୍ରତା

ବଜାୟ ରଖି ମିଳିତଭାବରେ କୃଷକ, ଶ୍ରମିକଙ୍କ ସଂଗଠନ ଓ ଆନ୍ଦୋଳନକୁ ଚଳାଇବା ଲାଗି କମ୍ୟୁନିଷ୍ଟ ପାର୍ଟି ନିବେଦନ କଲା ।

ମାତ୍ର ପିଏସପି ତାକୁ ଅଗ୍ରାହ୍ୟ କରି ନିଜସ୍ୱ କୃଷକ ସଂଗଠନ ଗଢ଼ାଇଲା । ଏଆଇଟିୟୁସିକୁ ନୂତନ କ୍ଷମତାରେ ଆସୀନ କଂଗ୍ରେସ କମ୍ୟୁନିଷ୍ଟ ବିରୋଧୀତା କରି ଭାଗ ଭାଗ କରିଥିଲା ଏବଂ ଆଇଏନଟିୟୁସି ଗଢ଼ିଥିଲା । ପୁନଶ୍ଚ ପିଏସପି ଏହି ଆଇଏନଟିୟୁସିର ଏକ ଅଂଶକୁ ଧରି ଏଆଇଟିୟୁସି ବିରୁଦ୍ଧରେ ଏଚଏମଏସ ଅବା ହିନ୍ଦ୍ ମଜଦୁର ସଭା ଗଠନ କଲା ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଦେଶ ଭିତରେ ଏବଂ ପରରାଷ୍ଟ୍ର କ୍ଷେତ୍ରରେ ଯେଉଁସବୁ ପରିବର୍ତ୍ତନମାନ ଘଟିଲା ସିଏସପିର ନୂତନ ସଂସ୍କରଣ ପିଏସପିର ବିଚାର ଓ ମୂଲ୍ୟାଙ୍କନ ଓ ସେଗୁଡ଼ିକ ପ୍ରତି ଦୃଷ୍ଟିଭଙ୍ଗୀ ଓ କାର୍ଯ୍ୟର ପର୍ଯ୍ୟାଲୋଚନା କଲେ କାହିଁକି ଯେ ଏପରି ଏକ ପ୍ରଭାବଶାଳୀ ରାଜନୈତିକ ଦଳର ମଧ୍ୟ ପତନ ହେଲା, ତାହା ଧରି ହେବ ।

ଦେଶ ଭିତରେ ବୁର୍ଜୁୟାଙ୍କ ଜାତୀୟ ଦଳ (କାରଣ ଏଥିରେ ଆଉ କମ୍ୟୁନିଷ୍ଟ ଓ ସିଏସପି କେହି ରହିଲେ ନାହିଁ) କଂଗ୍ରେସ କ୍ଷମତାରେ ଆସିବା ପରେ ବୁର୍ଜୟାଙ୍କ ମଧ୍ୟରେ କ୍ଷମତା କନ୍ଦଳ ଓ କ୍ଷମତା ବଣ୍ଟା ଘେନି ଓ ପୁଞ୍ଜିବାଦୀ ସମାଜରେ ଥିବା ବିଭିନ୍ନ ଆର୍ଥିକ-ସାମାଜିକ ଗୋଷ୍ଠୀ ଓ ବିଭିନ୍ନ ସ୍ୱାର୍ଥ ଘେନି ଭିନ୍ନ ଭିନ୍ନ ରାଜନୈତିକ ଗୋଷ୍ଠୀ ଗଢ଼ି ଉଠିଲା । ଦେଶର ସ୍ୱାଧୀନତା ସଂଗ୍ରାମର ପରମ୍ପରା ଅନୁସାରେ ଏବଂ ବିଶେଷତଃ କଂଗ୍ରେସ ଭିତରେ ପଣ୍ଡିତ ନେହେରୁଙ୍କ ଉଦ୍ୟୋଗରେ ପରରାଷ୍ଟ୍ର ନୀତି ଏକ ସ୍ୱତନ୍ତ୍ର ସ୍ଥାନ ନେଇଥିଲା । ଏସବୁ ପ୍ରତି ପ୍ରତ୍ୟେକ ରାଜନୈତିକ ଦଳର ଦୃଷ୍ଟିକୋଣ କ'ଣ ତାହା ନିର୍ଣ୍ଣୟ ହୋଇଥାଏ । କଂଗ୍ରେସ ଭିତରେ ଥିବା ଅସନ୍ତୁଷ୍ଟ ଗୋଷ୍ଠୀଗୁଡ଼ିକ ରାଜ୍ୟ କ୍ଷେତ୍ରରେ ଅଲଗା ଅଲଗା ଦଳ ଗଢ଼ାଇଲେ । କିଏ କିଏ ସର୍ବଭାରତୀୟ ଦଳ ଗଢ଼ିଲେ । ସେମାନେ ଯେ ସମାଜର କେଉଁ ନ୍ୟସ୍ତ ସ୍ୱାର୍ଥ ଆର୍ଥିକ ଗୋଷ୍ଠୀଙ୍କ ଲାଗି ଜନ୍ମ ଓ ସେହି ଗୋଷ୍ଠୀଙ୍କର ସ୍ୱାର୍ଥ ରକ୍ଷା କରିବେ, ଏପରି ମୂଲ୍ୟାଙ୍କନ ପିଏସପି ନ କରି କେବଳ କମ୍ୟୁନିଷ୍ଟଙ୍କ ବିରୋଧ କରୁଥିବା ଓ କ୍ଷମତା ପାଇଁ କଂଗ୍ରେସର ବିରୋଧ କରୁଥିବା ଦଳ, ବ୍ୟକ୍ତି ଓ ଗୋଷ୍ଠୀଙ୍କର ବିଚାର କଲେ । ସେ ହେତୁ ଘୋର ସାଂପ୍ରଦାୟିକତାବାଦୀ ଦଳ ସମେତ, ଘୋର ଦକ୍ଷିଣପନ୍ଥୀ, ପ୍ରତିକ୍ରିୟାବାଦୀ ଏବଂ ଆଞ୍ଚଳିକବାଦୀ ନବଜନ୍ମା ଦଳଗୁଡ଼ିକ ସେମାନଙ୍କର ମିତ୍ର ବୋଲି ପିଏସପି ନେତୃତ୍ୱ ବିଚାର କରି ଶ୍ରେଣୀଗତ ଆସ୍ଥାନରୁ ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗୀ ନେଇ ନିଜର ରାଜନୈତିକ ଆସ୍ଥାନ ନେଲା ।

୧୯୪୬-୫୦ରେ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ପରିଚାଳିତ ବିଶାଳ ତେଲେଙ୍ଗାନା ଆନ୍ଦୋଳନ ଅର୍ଥାତ୍ ହାଇଦ୍ରାବାଦରେ ନିଜାମ ଶାସନ ଓ ଜମିଦାର ଦେଶମୁଖମାନଙ୍କ ଜମି ବଣ୍ଟନ ଆନ୍ଦୋଳନକୁ ପିଏସପି ସମର୍ଥନ କରି ପାରିଲା ନାହିଁ । କି କେରଳର କୋଚିନ ତ୍ରିବାଙ୍କୁଡ଼ରେ କମ୍ୟୁନିଷ୍ଟ ପରିଚାଳିତ ଗଡ଼ଜାତ ମୁକ୍ତି ଆନ୍ଦୋଳନକୁ ସ୍ୱାଗତ କରିପାରିଲା ନାହିଁ ।

ନିଜେ ଭାଗଚାଷୀମାନଙ୍କର ଆନ୍ଦୋଳନ ଚଳାଇଥିଲେ ମଧ୍ୟ ପଶ୍ଚିମବଙ୍ଗରେ ତେଭାଗା ବା ମଇମନସିଂହରେ ହଜାଙ୍ଗ ଚାଷୀଙ୍କ ବୈପ୍ଳବିକ ଆନ୍ଦୋଳନକୁ ସମର୍ଥ କରିପାରିଲା ନାହିଁ । ଅଥଚ ଯେଉଁ କଂଗ୍ରେସ ନେତୃତ୍ୱ ବିରୁଦ୍ଧରେ ସେମାନେ ପିଏସପି ଗଠନ କଲେ, ଉକ୍ତ କଂଗ୍ରେସ ଓ ତା'ର ସରକାର ଏହି ଆନ୍ଦୋଳନଗୁଡ଼ିକୁ ହିଂସାତ୍ମକ ଶ୍ରେଣୀ ସଂଘର୍ଷ ବଢ଼ାଉଛି ବୋଲି ଅଭିଯୋଗ କରୁଥିଲେ ।

୧୯୫୨ ରେ ସାଧାରଣ ନିର୍ବାଚନରେ ପିଏସପି ବିଚାର ଥିଲା ଯେ ତାହା ହିଁ କଂଗ୍ରେସର ବିକଳ୍ପ ରୂପେ ଦ୍ୱିତୀୟ ବୃହତ୍ତମ ଦଳ ରୂପେ କେନ୍ଦ୍ରରେ ଆର୍ବିଭୂତ ହେବ ଏବଂ ବିଭିନ୍ନ ରାଜ୍ୟରେ ତା'ର ସ୍ଥିତି ଖୁବ୍ ଶକ୍ତିଶାଳୀ ହେଲା । ସେତେବେଳକୁ ଜୟପ୍ରକାଶ ନାରାୟଣଙ୍କୁ ଛାଡ଼ିଦେଲେ ପିଏସପିର ନାମଜାଦା ନେତା ଅଶୋକ ମେହେଟା, ରାମ ମନୋହର ଲୋହିଆ, ତ୍ରିଲୋକୀ ସିଂହ, ସୁରେନ୍ଦ୍ର ଦ୍ୱିବେଦୀ, ମଧୁଲିମାୟେ, ସାରଙ୍ଗ ଧର ଦାସ, ରାଜନାରାୟଣ, ପାଟ୍ଟମ ଥାନୁପିଲାଇ, ରାମନନ୍ଦନ ମିଶ୍ର ପ୍ରମୁଖ ।

ସେମାନଙ୍କ ଦ୍ୱାରା ବହୁ ନିନ୍ଦିତ କମ୍ୟୁନିଷ୍ଟମାନେ ହିଁ କେନ୍ଦ୍ରରେ ପାର୍ଲାମେଣ୍ଟରେ ବଡ ଶକ୍ତ ହେଲେ ଏବଂ ମାଡ୍ରାଜ, ଓଡ଼ିଶା, ବିହାର, ପଶ୍ଚିମବଙ୍ଗ ପ୍ରଭୃତିରେ କମ୍ୟୁନିଷ୍ଟ ପାର୍ଟି ବେଶ ସଂଖ୍ୟକ ଆସନ ପାଇଥିଲେ । ସମାଜବାଦୀ ବିଜ୍ଞାନସମ୍ମତ ଆଦର୍ଶ ନ ଥିବା ହେତୁ ଉକ୍ତ ପିଏସପି ଭିତରେ ବିଭିନ୍ନ ରାଜନୈତିକ ଆସ୍ଥାନର ବ୍ୟକ୍ତି ଥିଲେ ଓ ପରସ୍ପର ବିରୋଧୀ ବକ୍ତବ୍ୟ ବାଢୁଥିଲେ । କେତେକ ସାମନ୍ତବାଦୀ ପ୍ରଥାର ଉଚ୍ଛେଦ, ଜମିଦାରୀ ପ୍ରଥାର ବିଲୋପ ଓ ଜମି ଦଖଲ ଓ ଭୂମିହୀନ ଗରିବଙ୍କୁ ବଣ୍ଟନର ବିକଳ୍ପ, ବିନୋବାଜୀଙ୍କ ଭୂଦାନ, ଗ୍ରାମଦାନ, ଜିଲ୍ଲାଦାନ, ରାଜ୍ୟଦାନ ଓ ଜୀବନ ଦାନ ପ୍ରଭୃତି ଶ୍ରୁତିମଧୁର, ବାହାରକୁ ପ୍ରଗତିଶୀଳ ଓ କାର୍ଯ୍ୟରେ ସଂସ୍କାରବାଦୀ ଓ ମୋହ ସୃଷ୍ଟିକାରୀ ଦର୍ଶନକୁ ସମାଜବାଦୀ ଦର୍ଶନରୂପେ ଧରିନେଲେ ।

ଜୟପ୍ରକାଶ ନାରାୟଣ ଏହାର ହେଲେ ପ୍ରଥମ ଧାଡ଼ିରେ ପ୍ରବକ୍ତା, ଅଥଚ ପିଏସପି ପ୍ରତି ତାଙ୍କର ଆନୁଗତ୍ୟ ଓ ସହାନୁଭୂତି ରହିଥାଏ । ପୁନଶ୍ଚ ୧୯୫୬ ସାଧାରଣ ନିର୍ବାଚନରେ ପିଏସପି ବିହାର, ଉତ୍ତର ପ୍ରଦେଶ ରାଜ୍ୟରେ କ୍ଷମତାକୁ ଆସିଯିବ ବୋଲି କଳ୍ପନା କରିଥିଲା । ମାତ୍ର ତାହା କଳ୍ପନାରେ ରହିଗଲା ।

ପିଏସପି ଏହି ବିପର୍ଯ୍ୟୟକୁ ସୁଧାରିବାକୁ ଯାଇ ଆହୁରି ନିଜ ସ୍ୱତନ୍ତ୍ର ସ୍ଥିତିକୁ ଦୁର୍ବଳ କଲା । କଂଗ୍ରେସ ଭିତରୁ ଅସନ୍ତୁଷ୍ଟ ହୋଇ ଆସିଥିବା କଂଗ୍ରେସର ତୁଙ୍ଗ ନେତା ଜେ ବି କୃପାଳିନୀ, କୃଷ୍ଣ ଦତ୍ତା ପାଲିୱାଲ ଓ ଏମିତି ଆଉ ଅନେକଙ୍କ ସହିତ ମିଶି ପିଏସପିକୁ ଭାଙ୍ଗି କେଏମପିପି ବା କିସାନ ମଜଦୁର ପ୍ରଜା ପାର୍ଟି ଗଠନ କରାଗଲା । କୃପାଳିନୀ ୧୯୩୮ରେ ଥିଲେ କଂଗ୍ରେସ ସାଧାରଣ ସମ୍ପାଦକ । ହରିପୁର କଂଗ୍ରେସ ଅଧିବେଶନରେ କମ୍ୟୁନିଷ୍ଟ, ସିଏସପି ଏବଂ କୃଷକ ସଂଗ, ଟ୍ରେଡ ୟୁନିଅନ କଂଗ୍ରେସକୁ କଂଗ୍ରେସ ଅନ୍ତର୍ଭୁକ୍ତ ସଂଗଠନ ବୋଲି ଗ୍ରହଣ

କରାଯାଉ ପ୍ରସ୍ତାବକୁ ସେ ହାସ୍ୟ କରିଥିଲେ । କହିଥିଲେ ... କାଲି ବେଶ୍ୟାମାନେ ସଂଗଠନ ଗଢ଼ି କହିବେ କଂଗ୍ରେସରେ ଆମକୁ ଅନ୍ତର୍ଭୁକ୍ତ କରାଯାଉ... ।

ପିଏସି ଏହିପରି ବ୍ୟକ୍ତିମାନଙ୍କ ସହିତ ଦଳ ଗଢ଼ି ସମାଜବାଦ ଆଣିବ ବୋଲି କଏମପିପି ଗଠନ କଲା । ପୁଣି ସେହି ପାର୍ଟିରେ ମାର୍କସବାଦୀ ବିଜ୍ଞାନସମ୍ମତ ତତ୍ତ୍ୱକୁ ମୁହଁ ଫେରାଇବା ପାଇଁ ନୁହଁ, କର୍ମକୌଶଳଗତ ମତଭେଦ ହେତୁ ରାମମନୋହର ଲୋହିଆ ଏଥିରୁ ବାହାରିଯାଇ ସୋସଲିଷ୍ଟ ପାର୍ଟି ଗଢ଼ିଲେ । ଦକ୍ଷିଣପନ୍ଥୀ ଦଳମାନଙ୍କ ସମ୍ପର୍କରେ, କମ୍ୟୁନିଷ୍ଟଙ୍କ ସଂପର୍କରେ କିମ୍ବା ସମାଜବାଦୀ ଦେଶଗୁଡ଼ିକ ସଂପର୍କରେ ଏମାନଙ୍କ ମଧ୍ୟରେ କୌଣସି ଆଦର୍ଶଗତ ପ୍ରଭେଦ ନ ଥିଲା ।

ପୁନଶ୍ଚ ଉଦ୍ୟମ ହେଲା, କେଏମ୍‌ପିପିରୁ ଚାଲିଆସି ପିଏସପିର ସ୍ୱତନ୍ତ୍ର ସତ୍ତା ପୁନଃ ପ୍ରତିଷ୍ଠା କରିବା ଓ ଲୋହିଆ ସୋସଲିଷ୍ଟ ପାର୍ଟି ପିଏସପିକୁ ଏକାଠି କରିବା । ମଞ୍ଚ ଏକ ହେବ ମାତ୍ର ପିଏସପିକୁ ଏକାଠି କରିବା । ମଞ୍ଚ ଏକ ହେବ ମାତ୍ର ଆଦର୍ଶଗତ ଆସ୍ଥାନ ପୂର୍ବପରି ରହିବ । ଏ ଦୁଇ ଦଳ ମିଶି ପୁଣି ସଂଯୁକ୍ତ ସୋସଲିଷ୍ଟ ପାର୍ଟି ଗଢ଼ାଗଲା । ମାତ୍ର ତାହା ମଧ୍ୟ ରହିପାରିଲା ନାହିଁ ।

ପରରାଷ୍ଟ୍ର ନୀତି କ୍ଷେତ୍ରରେ ଭାରତରେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଦଳ ନାମରେ ନାମିତ ଏହି ବାମପନ୍ଥୀ ଦଳଗୁଡ଼ିକ ହିଟଲରର ପରାଜୟ ଓ ବ୍ରିଟିଶ ଫରାସୀ ସାମ୍ରାଜ୍ୟବାଦର ଶକ୍ତି ହ୍ରାସ ଏବଂ ସୋଭିଏତ ୟୁନିଅନର ବିଜୟ ଯେ ୟୁରୋପର ପୂର୍ବଖଣ୍ଡରେ ସମାଜବାଦୀ ଦେଶଗୁଡ଼ିକର ପ୍ରତିଷ୍ଠାର ବାଟ ଫିଟେଇ ଦେଲା, ତାକୁ ସେମାନେ ସ୍ୱାଗତ କରିପାରିଲେ ନାହିଁ । ସୋଭିଏତ ୟୁନିଅନ ପ୍ରଭାବିତ ଓ ସଂପ୍ରସାରିତ ଅଞ୍ଚଳ ଓ ଆମେରିକା-ବିଲାତ-ଫ୍ରାନ୍‌ସ ଇତ୍ୟାଦିଙ୍କ ପ୍ରାଭାବଧୀନ ଅଞ୍ଚଳ, ଏହି ସରଳ, ଶ୍ରେଣୀଗତ ବିଚାର ବିହୀନ ତତ୍ତ୍ୱକୁ ଧରି ନେଇ ଉଭୟ ସମାନ ବୋଲି ପ୍ରଚାର କଲେ । ଆମେରିକା ସାମ୍ରାଜ୍ୟବାଦର ନୀତିଗତ, ସମାଲୋଚନା ଓ ତା' ବିରୁଦ୍ଧରେ ଅଭିଯାନ ପିଏସପି ବା ଏସପି ବା ଏସଏପି କେହି କରିଲେ ନାହିଁ । ବରଂ ସୋଭିଏତ ୟୁନିଅର କଟୁ ସମାଲୋଚକ ହେଲେ । ସେମିତି ଭାରତ ସମେତ ପୃଥିବୀର ସବୁ ପରାଧୀନ ଦେଶ ଯେ ଫାସିଷ୍ଟବାଦର ପରାଜୟ ଓ ପୁରୁଣା ସାମ୍ରାଜ୍ୟବାଦୀ ଦେଶଙ୍କ କ୍ଷମତା ଓ ଶକ୍ତି ହେତୁ ସ୍ୱାଧୀନତା ସଂଗ୍ରାକୁ ନିଜ ଦେଶରେ ସଫଳ କଲେ ତାହା ମଧ୍ୟ ସେମାନେ ବିଚାର କଲେ ନାହିଁ । ବିଲାତ, ଫ୍ରାନ୍‌ସ, ପର୍ତ୍ତୁଗାଲ, ଓଲନ୍ଦାଜ ପରି ସାମ୍ରାଜ୍ୟବାଦୀ ଉପନିବେଶବାଦୀ ଦେଶରେ କମ୍ୟୁନିଷ୍ଟମାନେ ନିଜ ଦେଶର ପୁଞ୍ଜିବାଦୀ ସରକାର ବିରୁଦ୍ଧରେ ଉପନିବେଶ ଗୁଡ଼ିକର ମୁକ୍ତି ଦାବୀ କରୁଛନ୍ତି ଅଥଚ ସେସବୁ ଦେଶର ସୋସଲିଷ୍ଟମାନେ ଉପନିବେଶଗୁଡ଼ିକ ସାମ୍ରାଜ୍ୟରେ ରହୁ ବୋଲି ଚାହୁଁଛନ୍ତି, ବରଂ ନିଜ ଦେଶର ପୁଞ୍ଜିପତି ସରକାରକୁ ସମର୍ଥନ କରୁଛନ୍ତି, ଏହି ସତ୍ୟକୁ ଦେଖି ସେମାନେ ଦୃଷ୍ଟିଭଙ୍ଗୀ ବଦଳେଇଲେ ନାହିଁ ।

ତେଣୁ ଦେଶ ଭିତରେ ଓ ଦେଶ ବାହାରର ନୂତନ ଘଟଣାବଳୀର ବିକାଶ ପ୍ରତି ଦେଶରେ ଜନ୍ମ ନେଉଥିବା ବୁର୍ଜୁୟା ଦଳଗୁଡ଼ିକ ଓ ଦକ୍ଷିଣପନ୍ଥୀ ଦଳଗୁଡ଼ିକ ତଥା ସାଂପ୍ରଦାୟିକତାବାଦୀ ଦଳଗୁଡ଼ିକ ଓ ପ୍ରାଦେଶିକତାବାଦୀ ଦଳଗୁଡ଼ିକ ଯେଉଁ ଦୃଷ୍ଟିକୋଣ ନେଉଥିଲେ ତାହାଠାରୁ ଗୁଣାତ୍ମକ ଭାବରେ ଭିନ୍ନ ଦୃଷ୍ଟିଭଙ୍ଗୀ ଏହି ବାମପନ୍ଥୀ ଦଳ ନେଇପାରିଲା ନାହିଁ । ଏହାର କାରଣ ସମାଜବାଦର ବିଜ୍ଞାନ ସମ୍ମତ ଦୃଷ୍ଟିକୋଣ ନ ଥିଲା ।

ଏହିପରି ଭାବରେ ଭାରତରେ ଏହି ପ୍ରଭାବଶାଳୀ, ବାମପନ୍ଥୀ ଆନ୍ଦୋଳନଟି ଆଦର୍ଶଛଡ଼ା ହୋଇ, ନୀତିଛଡ଼ା ହୋଇ, ସୁବିଧାବାଦୀ ମେଣ୍ଟମାନ ଗଢ଼ି ଓ ଯାହା ତତ୍କାଳିକ ଜନ ପ୍ରିୟତା ହାସଲ କରିବ, ସେପରି ଆନ୍ଦୋଳନରେ ସାମିଲ ହେଲା ଏବଂ ନିଜର ଅବକ୍ଷୟ ଓ ବିଲୁପ୍ତି ଆଣିଦେଲା ।

ଏହି ଦଳର ବ୍ୟକ୍ତିମାନେ ବିଭିନ୍ନ ରାଜ୍ୟରେ କେଉଁଠି କ୍ରାନ୍ତି ଦଳ, ଜନକଂଗ୍ରେସ ଦଳ, ଗଣତନ୍ତ୍ର ପରିଷଦ, ସ୍ୱତନ୍ତ୍ର ଦଳ ସହିତ ରାଜନୈତିକ ମେଣ୍ଟ ଗଠନ କଲେ । ଏସବୁ ଦଳଙ୍କ ସହିତ ନିର୍ଦ୍ଦିଷ୍ଟ ନିର୍ଦ୍ଦିଷ୍ଟ ଜନସମସ୍ୟା ଘେନି ବେଳେ ବେଳେ ଏକାଠି ଆନ୍ଦୋଳନ ହୋଇପାରେ, ମାତ୍ର ସେମାନଙ୍କ ସହିତ ରାଜନୈତିକ ମେଣ୍ଟ ପାଇଁ ବିଭିନ୍ନ କିସମର ଏହି ସୋସଲିଷ୍ଟ ନେତୃତ୍ୱର ଆତୁରତା ଓ କାର୍ଯ୍ୟ ଏହି ବାମପନ୍ଥୀ ଦଳର ସ୍ଥିତି ଲାଗି ଆଉ ବସ୍ତୁନିଷ୍ଠ କାରଣ ରହିଲା ନାହିଁ । ଘୋର ଦକ୍ଷିଣପନ୍ଥୀ, ପ୍ରତିକ୍ରିୟାବାଦୀ ଓ ସାମ୍ପ୍ରଦାୟିକତାବାଦୀମାନେ ଚାହାନ୍ତି ପ୍ରତିଷ୍ଠିତ କଂଗ୍ରେସ ସରକାର ଯାଉ । ଅନ୍ୟ ପକ୍ଷରେ କମ୍ୟୁନିଷ୍ଟ, ସୋସଲିଷ୍ଟ, ପ୍ରଗତିପନ୍ଥୀ, ଗଣତନ୍ତ୍ର ବାଦୀ, ସାଂପ୍ରଦାୟିକତାବଦ୍ଦ ବିରୋଧୀମାନେ ଚାହାନ୍ତି ଏ ସରକାର ଯାଉ । ଏହି ଦୁଇଟି ପକ୍ଷର ଆଦର୍ଶ, ଲକ୍ଷ୍ୟ ଅର୍ଥନୀତିକ ଦୃଷ୍ଟିକୋଣ, ସାମାଜିକ ଦୃଷ୍ଟିଭଙ୍ଗୀ କ'ଣ ସମାନ ହେବ ? କଦାପି ନୁହେଁ ବରଂ ପରସ୍ପର ବିରୋଧୀ । ମାତ୍ର ସିଏସପି, ପିଏସପି, କେ.ଏମ୍.ପି.ପି, ସୋସଲିଷ୍ଟ ପାର୍ଟି ଏବଂ ଏସଏସପି ସଂଯୁକ୍ତ ସୋସଲିଷ୍ଟ ପାର୍ଟିର ଯେତେ ରୂପ ଭେଦରେ ଭାରତରେ ସୋସଲଡ଼ିମୋକ୍ରାସି ଗଣତାନ୍ତ୍ରିକ ସମାଜବାଦ ଆଣିବ ବୋଲି ଆସ୍ଫାଳନ କଲେ ସୁଦ୍ଧା ତାହା ଉଭେଇ ଗଲା ।

ଶେଷରେ ଜୟପ୍ରକାଶ ନାରାୟଣଙ୍କ ଦ୍ୱାରା ସଂଗଠିତ ସଂପୂର୍ଣ୍ଣ ବିପ୍ଳବ ଏକମାତ୍ର ପଥ ବୋଲି ଘୋର ଦକ୍ଷିଣପନ୍ଥୀ ଦଳଗୁଡ଼ିକ, ଗାନ୍ଧୀ ହତ୍ୟାକାରୀ ଆରଏସଏସ, ଜନସଂଘ ସହିତ ସୋସଲିଷ୍ଟ ବନ୍ଧୁମାନେ ଧରିନେଲେ । ଶ୍ରେଣୀ ସଂଗଠନ ନୁହଁ, ଆରଏସଏସ, ଜନସଂଘ, ମୋରାରଜୀଙ୍କଠାରୁ ସୁବ୍ରମନ୍ୟମ ସ୍ୱାମୀଜୀ ଏଯାବତୀୟ କିସମର ବ୍ୟକ୍ତି ସ୍ୱାଗତ କରିଥିବା ସଂଘର୍ଷ ସମିତି କଂଗ୍ରେସଠାରୁ କ୍ଷମତା ଦଖଲର ପଥ ବୋଲି ସେମାନେ ବିଚାରିଲେ । ଜୟପ୍ରକାଶ ନାରାୟଣ ଦଳବିହୀନ ଗଣତନ୍ତ୍ରର ଆଦର୍ଶ ତାଙ୍କ ପରବର୍ତ୍ତୀ ଜୀବନରେ ଗ୍ରହଣ କରିଥିଲେ । ପୁଣି ଉକ୍ତ ଆଦର୍ଶ ବଦଳରେ ତାଙ୍କରି ନେତୃତ୍ୱରେ ଗଢ଼ାଗଲା ଜନତାଦଳ । ଦକ୍ଷିଣ,

ବାମ,ସାମ୍ପ୍ରଦାୟିକତାବାଦୀ, ଦଳ ବ୍ୟକ୍ତି ଓ ଶକ୍ତିଙ୍କୁ ଘେନି ଏହା ଗଠିତ ହେଲା । ସୋସଲିଷ୍ଟମାନେ, ବିଶେଷତଃ ଜୟପ୍ରକାଶ ନାରାୟଣ ଯିଏ ଗାନ୍ଧିଜୀଙ୍କ ହତ୍ୟାରେ ଜନସଂଘ ଓ ଆରଏସଏସ ଭୂମିକାର ତୀବ୍ର ସମାଲୋଚକ ଥିଲେ, ସେହି ଆରଏସଏସ ଓ ଜନସଂଘ ତାଙ୍କ ସମ୍ପୂର୍ଣ୍ଣ କ୍ରାନ୍ତି ବଡ଼ ଆଗୁଆ ଝଟିକା ବାହିନୀ ହେଲା ।

ଇନ୍ଦିରା କଂଗ୍ରେସର ଦମନ, ଅନୀତି-ଦୁର୍ନୀତି, ଓ ତାଙ୍କ ଅର୍ଥନୀତିରେ ଅତିଷ୍ଠ ଜନସାଧାରଣ ଜନତାଦଳଙ୍କୁ କ୍ଷମତା ଦେଲେ । ପୂର୍ବର ସମାଜବାଦୀ ଦଳଗୁଡ଼ିକର ନେତାମାନେ ସେହି ସରକାରରେ ରହିଲେ । ଅଢ଼େଇ ବର୍ଷ ବି ତାହା ତିଷ୍ଠି ପାରିଲା ନାହିଁ । ପୁଣି ଏହି ନୀତିହୀନ ଖେଚେଡ଼ିମେଣ୍ଟ କାଯ୍ୟତଃ କଂଗ୍ରେସ ହାତକୁ କ୍ଷମତା ଅର୍ପଣ କରିଦେଲା ।

ଆଜି ପୁଣି ସେହି ଜନତା ଦଳ ହିଁ ଖଣ୍ଡ ଖଣ୍ଡ । ଲୋକଦଳ ଓ ଜନତାଦଳ ଗୁଡ଼ିକରେ ମୁଖ୍ୟତଃ ଅନ୍ୟାନ୍ୟ ଦକ୍ଷିଣ ପନ୍ଥୀ ଦଳର ବ୍ୟକ୍ତିମାନଙ୍କ ସହିତ ସମାଜବାଦୀ ଆନ୍ଦୋଳନର ସେକାଳର ପ୍ରଖ୍ୟାତ ନେତାମାନେ ସାମିଲ । କିଏ କାହାକୁ ଟାଣିବ ? ଭାରତରେ ଇତିହାସ ପ୍ରମାଣ କରିଦେଲା, ଯେ ଦକ୍ଷିଣପନ୍ଥୀ ଓ ପ୍ରତିକ୍ରିୟାବାଦୀମାନଙ୍କ ସହିତ ରାଜନୈତିକ ମେଣ୍ଟ କଲେ, କମ୍ୟୁନିଷ୍ଟମାନଙ୍କର ବିରୋଧିତା କଲେ ଏବଂ ସୋଭିଏତ୍ ୟୁନିଅନ୍ ଓ ସମାଜବାଦୀ ରାଷ୍ଟ୍ରଗୁଡ଼ିକରେ ସାମାଜିକ ଓ ଅର୍ଥନୈତିକ ସଫଳତାଗୁଡ଼ିକୁ ସ୍ୱାଗତ ନ କଲେ ଯେତେ ମୁହଁରେ କହିହେଲେ ସୁଦ୍ଧା କେହି ବାମପନ୍ଥୀ ହୋଇପାରିବେ ନାହିଁ, ସମାଜବାଦୀ ହେବା ତ ଦୂରର କଥା ।

ଦକ୍ଷିଣ ପନ୍ଥୀ ବୁର୍ଜୁୟା ଦଳମାନେ ହିଁ ବାମପନ୍ଥୀ ବ୍ୟକ୍ତିମାନେ ଏପରି କର୍ମକୌଶଳ ନେଲେ, ସେମାନଙ୍କୁ ଟାଣିବେ, ତଳିଆକରି ରଖିବେ, ଏହି ସତ୍ୟ ଆଜି ଭାରତର ରାଜନୈତିକ ଜୀବନରେ ପ୍ରମାଣିତ ହେଲା । ଆଜି ବି ବହୁ ସୋସାଲିଷ୍ଟ ବନ୍ଧୁ ଏସବୁ ଦଳରେ ରହି ନିଜକୁ ଅଣନିଶ୍ୱାସୀ ମନେ କରୁଛନ୍ତି । ମାତ୍ର ସେମାନଙ୍କୁ ବାଟ ମିଳୁନାହିଁ । ଯେଉଁ ବାଟ ଅଛି, ତାହା ହେଲା କମ୍ୟୁନିଷ୍ଟ ସବୁ ବାପନ୍ଥୀ ଓ ଗଣତାନ୍ତ୍ରିକ, ଧର୍ମ ନିରପେକ୍ଷ, ସାମ୍ରାଜ୍ୟବାଦ ବିରୋଧୀ ବିଶ୍ୱଶାନ୍ତି କାମୀ, ସମାଜବାଦୀ ବିରୋଧୀ ବିଶ୍ୱଶାନ୍ତିକାମୀ, ସମାଜବାଦୀଦେଶ ଓ ଗୋଷ୍ଠୀ ନିରପେକ୍ଷ ପ୍ରଗତିଶୀଳ ଦଳ ବ୍ୟକ୍ତିଙ୍କର ଐକ୍ୟ । ସେମାନେ ହିଁ ଭାରତର ପୁଞ୍ଜିବାଦୀ ଅର୍ଥନୀତି, ରାଜୀବ ଗାନ୍ଧୀଙ୍କ ଘୋର ବିପର୍ଯ୍ୟୟ ଆଣୁଥିବା ଆର୍ଥିକ ନୀତିକୁ ପରାସ୍ତ କରି ନୂତନ ବ୍ୟବସ୍ଥା ଆଣିବା ଲାଗି ନୂତନ ବିକଳ୍ପ ଗଢ଼ିବେ ।

□□□

# ଓଡ଼ିଶାରେ ଚାଷୀ ଆନ୍ଦୋଳନର ଅତୀତ, ବର୍ତ୍ତମାନ, ଭବିଷ୍ୟତ ଏବଂ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଭୂମିକା

## କୃଷକ ଆନ୍ଦୋଳନର ପୃଷ୍ଠଭୂମି

୧୯୩୫/୩୬ରେ ଓଡ଼ିଶାରେ କୃଷକ ଆନ୍ଦୋଳନ ସାମାଜିକ-ଅର୍ଥନୈତିକ ତଥା ରାଜନୈତିକ ଶ୍ରେଣୀସଂଗ୍ରାମର ରୂପ ନେବା ଆରମ୍ଭ କଲା । ଅବଶ୍ୟ ସଂଗଠିତ କୃଷକ ଆନ୍ଦୋଳନ ଭୂଇଁରୁ ଆପଣା ଛାଁଏ ଗଜୁରି ଉଠିନଥିଲା । ସାରା ଭାରତବର୍ଷର ଅନ୍ୟାନ୍ୟ ଅଞ୍ଚଳ ଭଳି ଆମ ରାଜ୍ୟରେ ଯେଉଁସବୁ ପ୍ରଜାମେଳି ଓ କୃଷକ ବିଦ୍ରୋହ ହୋଇଥିଲା, ସେଥିରୁ ହିଁ ଏହାର ଉତ୍ପତ୍ତି । ସ୍ୱାଧୀନତା ସଂଗ୍ରାମ କାଳରେ ଏହା ଅଧିକ ପ୍ରଖର ହେବାକୁ ଲାଗିଲା । ରୁଷିଆରେ ଅକ୍ଟୋବର ବିପ୍ଳବର ବିଜୟ ଓ ସେଠାରେ ଋଷୀମୂଲିଆ ରାଜ ପ୍ରତିଷ୍ଠା, ଜମିଦାରୀ ପ୍ରଥାର ସଂପୂର୍ଣ୍ଣ ବିଲୋପ ଏବଂ ପୁଞ୍ଜିବାଦୀ ଓ ସାମ୍ରାଜ୍ୟବାଦର ବିଲୋପ ଭାରତରେ ତଥା ଓଡ଼ିଶାରେ ଏହି ଆନ୍ଦୋଳନକୁ ଅନୁପ୍ରେରଣା ଦେଲା ।

୧୯୩୬ରେ ବିହାର ଓ ମାଦ୍ରାଜ ପ୍ରେସିଡେନ୍‌ସିରୁ ଅଞ୍ଚଳମାନ ଆସି ଓଡ଼ିଶା ପ୍ରଦେଶ ଗଠିତ ହେଲା । ୧୯୨୫ରେ କେନ୍ଦ୍ର ପ୍ରଦେଶ (ଆଜିର ମଧ୍ୟପ୍ରଦେଶ)ରୁ ସମ୍ବଲପୁର ଜିଲ୍ଲା ବିହାର ଓଡ଼ିଶାରେ ମିଶିଲା ପରେ ଓଡ଼ିଶାରେ ଥିଲା ୪ଟି ଜିଲ୍ଲା । ସମ୍ବଲପୁର, ବାଲେଶ୍ୱର, କଟକ (ଏଥିରେ ଅନୁଗୋଳ ସାମିଲ ଥିଲା) ଓ ପୁରୀ । ୧୯୩୬ରେ ମାଦ୍ରାଜ ପ୍ରେସିଡ଼େନ୍‌ସିରୁ ଆସି କୋରାପୁଟ ଓ ଗଞ୍ଜାମ ମିଶି ୬ଟି ଜିଲ୍ଲା ଘେନି ଭିନ୍ନ ପ୍ରଦେଶରେ ଥିବା ପ୍ରଜାସ୍ୱତ୍ୱ ଆଇନ ସହ ଓଡ଼ିଶା ପ୍ରଦେଶ ଗଠିତ ହେଲା । ୧୯୪୭ ଡ଼ିସେମ୍ବର ୧୭ ତାରିଖରେ ଗଡ଼ଜାତ ପ୍ରଜା ମୁକ୍ତି ଆନ୍ଦୋଳନର ଫଳ ସ୍ୱରୂପ ପ୍ରଥମେ ୨୬ଟି ଗଡ଼ଜାତ ଓ ପରେ ୨୪ଟି ଗଡ଼ଜାତ (ଷଢ଼େଇକଳା, ଖରସୁଆଁ ପ୍ରଥମେ ଓଡ଼ିଶରେ ମିଶି ପରେ କେନ୍ଦ୍ର କଂଗ୍ରେସ ସରକାର ତାକୁ ବିହାରରେ ସାମିଲ କରିଥିଲା ।) ଏହି ଗଡ଼ଜାତମାନଙ୍କରେ ମଧ୍ୟ ଭିନ୍ନ ଭିନ୍ନ ପ୍ରଜାସ୍ୱତ୍ୱ ଆଇନି ପ୍ରଚଳିତ ଥିଲା ।

ଏହାକୁ ଉଲ୍ଲେଖ କରିବା ପ୍ରୟୋଜନ; କାରଣ ସଂଗଠିତ କୃଷକ ଆନ୍ଦୋଳନ ଆରମ୍ଭ

ହେବାବେଳେ ଓଡ଼ିଶାର ଭୌଗୋଳିକ, ସାମାଜିକ ଓ ରାଜନୈତିକ ପରିସ୍ଥିତି କ'ଣ ଥିଲା ସେ ସମ୍ପର୍କରେ ସ୍ପଷ୍ଟ ଚିତ୍ର ଆଖି ଆଗରେ ଥିଲେ କୃଷକ ଆନ୍ଦୋଳନ ସେତେବେଳେ କି ପ୍ରକାର ସମସ୍ୟାର ସାମନା କରିଥିଲା ତାହା ଜାଣିବାକୁ ସାହାଯ୍ୟ କରିବ । ଗଠିତ ଓଡ଼ିଶା ପ୍ରଦେଶ ଥିଲା ବ୍ରିଟିଶ ସାମ୍ରାଜ୍ୟବାଦୀ ବ୍ୟବସ୍ଥାରେ ମୋଗଲବନ୍ଦୀ ନାମରେ ନାମିତ । ବାକି ୨୬ଟି ଯାକ ଗଡ଼ଜାତ, ବ୍ରିଟିଶ ସାମ୍ରାଜ୍ୟବାଦ ଆଶ୍ରିତ ରାଜା ମହାରାଜମାନଙ୍କ କରଦ ରାଜ୍ୟ । ତେଣୁ ଭୌଗୋଳିକ, ରାଜନୈତିକ, ସାମାଜିକ ଓ ଆର୍ଥିକ ଭାବରେ ଓଡ଼ିଶାକୁ ପ୍ରକୃତ ପକ୍ଷେ ଦୁଇଭାଗ କରି ବିଦେଶୀ ଶାସନ ରଖିଥିଲା ।

ଲର୍ଡ଼ କର୍ଣ୍ଣୱାଲିସଙ୍କ ପ୍ରବର୍ତ୍ତିତ ଭୂମି ଆଇନ ଅନୁସାରେ ବ୍ରିଟିଶ ସରକାରର ଖୁଣ୍ଟି ଜମିଦାରମାନେ ଦୁଇ ଭାଗରେ ବିଭକ୍ତ । ପରମାନେଣ୍ଟ ସେଟ୍‌ଲଡ଼ ବା ସ୍ଥାୟୀ ବ୍ୟବସ୍ଥିତ ଜମିଦାର ଏବଂ ଟେମ୍ପରାରି ସେଟ୍‌ଲଡ଼ ବା ଅସ୍ଥାୟୀ ବ୍ୟବସ୍ଥିତ ଜମିଦାର । ଆତ୍ମୀୟ ଅର୍ଥ ନୁହଁ ଯେ ସେମାନଙ୍କୁ ବ୍ରିଟିଶ ସରକାର ଉଠାଇ ଦେବ । ସେମାନେ ନିଜ ଜମିଦାରୀ କିଣାବିକା କରିପାରିବେ ଓ ବ୍ରଟିଶ ସରକାରକୁ ଖଜଣା ଦେଇ ପ୍ରଜାମାନଙ୍କୁ ଶୋଷଣ କରିବେ ।

ସେତେବେଳେ ଓଡ଼ିଶାରେ ବଣେଇ, ବାମଡ଼ା, ଆଠମଲ୍ଲିକ, ରେଢ଼ାଖୋଲ, ପାଲଲହଡ଼ା, ତାଳଚେର, ହିନ୍ଦୋଳ, ପାଟଣାଗଡ଼, ମୟୂରଭଞ୍ଜ, ନୀଳଗିରି, କେଉଁଝର, ଆଠଗଡ଼, ତିଗିରିଆ, ବଡ଼ମ୍ବା, ନରସିଂହପୁର, କଳାହାଣ୍ଡି, ବଲାଙ୍ଗିର, ବୌଦ୍ଧ, ରଣପୁର, ଦଶପଲ୍ଲା, ନୟାଗଡ଼, ଖଣ୍ଡପଡ଼ା, ଗଡ଼ଜାତ ରାଜ୍ୟ ଓଡ଼ିଶା ଅନ୍ତର୍ଭୁକ୍ତ ଏବଂ ସରେଇକଳା, ଖରସୁଆଁ ବିହାର ଅନ୍ତର୍ଭୁକ୍ତ । ରାୟପୁରଠାରେ ଅବସ୍ଥାପିତ ବ୍ରିଟିଶ ସଂଘ ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍‌ସିଜ୍ ଏହି ରାଜ୍ୟମାନଙ୍କର ସର୍ବମୟ କର୍ତ୍ତା ।

ଗଡ଼ଜାତଗୁଡ଼ିକ ବ୍ୟତୀତ ସ୍ଥାୟୀ ଅବସ୍ଥିତ ବିରାଟ ବିରାଟ ଜମିଦାରୀ (ଯେଉଁଗୁଡ଼ିକ ଗଡ଼ଜାତ ଥିଲା ଓ ତାହାର ବ୍ରିଟିଶ ସରକାର ଖାସ୍ କରେଇଥିଲା) ଯଥା ଆଳି, କନିକା, ମଧୁପୁର, ସୁକିନ୍ଦା, ପଚ୍ଛିକୋଟ, ପାରିକୁଦ, ଜୟପୁର (ଯାହାକୁ ଘେନି ଭୌଗୋଳିକ ଭାବରେ ସୁବୃହତ୍ କୋରାପୁଟ ଜିଲ୍ଲା ଗଠିତ), ପାରଳାଖେମୁଣ୍ଡି, ମୁରଗୀ, ଚିକିଟି, ବଡ଼ଗଡ଼, ବଡ଼ଖେମୁଣ୍ଡି, ସାନଖେମୁଣ୍ଡି, ଶେରଗଡ଼, ଖଲିକୋଟ ପ୍ରଭୃତି ଜମିଦାରୀ ।

ଏହା ପଛକୁ ବଡ଼ ବଡ଼ ଇଷ୍ଟେଟ ଓ ମଠାଧୀଶ; ଯେମିତି ଦର୍ପଣି ଇଷ୍ଟେଟ, ପଣ୍ଡିତ ଇଷ୍ଟେଟ, ଜେ.ଏନ୍. ବୋଷ, ମଣ୍ଡଳ, ଠାକୁର ଇଷ୍ଟେଟ, କୋଠଦେଶ, ଭୂଗତ, ଭିଙ୍ଗାରପୁର ଇଷ୍ଟେଟ, ପଟିଆ, ବୈକୁଣ୍ଠନାଥ ଦେ, ପଦ୍ମପୁର, ବିଷମ କଟକ ଇତ୍ୟାଦି । ଦକ୍ଷିଣପାର୍ଶ୍ୱ, ଉତ୍ତରପାର୍ଶ୍ୱ, ଏମାର ମଠ, ଏମିତି ଛୋଟବଡ଼ ଶହ ଶହ ମଠଙ୍କ ବଡ଼ ବଡ଼ ଜମିଦାରୀ ।

ଏମାନଙ୍କ ପଛକୁ ଏକ ଲକ୍ଷାଧିକ ଛୋଟ ଛୋଟ ଜମିଦାର । କାହାର ଖଣ୍ଡେ ଗାଁ'ତ ଆଉ କାହାର ୫/୭/୧୦/୧୧ ଗାଁ ଜମିଦାରୀ ।

ସାମନ୍ତବାଦୀ ବ୍ୟବସ୍ଥାର ଆଉ ଏକ ମଧ୍ୟ ସ୍ୱତ୍ୱାଧିକାରୀ ଶୋଷକ ହେଲେ ଜମିଦାରୀମାନଙ୍କ ଅଧୀନରେ ଲାଖରାଜଦାର, ବାହେଲଦାର, ନିଷ୍କଟ, ଇମାନଦାର, ମକଦ୍ଦମ, ମୁସ୍ତାଦାର ପ୍ରଭୃତି ଏବଂ ଯେଉଁ ଅଞ୍ଚଳ ରୟତୱାରି ଅର୍ଥାତ୍ ଜମିଦାରଙ୍କ ଅଧୀନରେ ନୁହଁ, ଖୋଦ୍ ବ୍ରିଟିଶ ଶାସନର ଅଧୀନ ସେଠାରେ ସର୍ବରାକାର ପୁଣି ଏଖରାଜମାହାଲ, ଟଙ୍କି ମାହାଲ, ଗୌନ୍ତିଆ ପ୍ରଧାନ ପ୍ରଥା ଏମିତି ଅନେକ ।

**ସରଳ ଅର୍ଥନୀତି ଓ ଅତ୍ୟାଚାର, ନିର୍ଯ୍ୟାତନା**

କୃଷକ ଆନ୍ଦୋଳନ ପ୍ରଜ୍ୱଳିତ ହୋଇଉଠିବା କାଳରେ ସେତେବେଳେ ଗାଁ'ଗଣ୍ଡାର ଚାଷୀମାନଙ୍କର ଅବସ୍ଥା କିପରି ସାଙ୍ଘାତିକ ଥିଲା ତାହା ମଧ୍ୟ ବିଚାରରେ ନେବାକୁ ହେବ ।

କଳକାରଖାନା ତ ନ ଥିଲା, କି ଶ୍ରମିକ ନ ଥିଲେ । କେବଳ ମୟୂରଭଞ୍ଜରେ ଟାଟା ରଜାଙ୍କଠାରୁ ବାଦାମପାହାଡ଼, ଗୋରୁ ମହିଷାଣୀ ପାହାଡ଼ ଉପର ନେଇ ଲୁହାପଥର ଓ ବ୍ରିଟିଶ ଖଣିମାଲିକ ତାଳଚେର ରାଜାଙ୍କଠାରୁ ପଟ୍ଟା ନେଇ କୋଇଲା ଖୋଦନ କରିଥିଲେ ।

ନାଁ ଥିଲା ରାସ୍ତାଘାଟ, ନାଁ ଥିଲା ଖବରକାଗଜ, ବେତାର, ଦୂରଦର୍ଶନ, ମଟରଗାଡ଼ି । କେଉଁଠି କେମିତି ଶୂନ୍‌ଗାଡ଼ି ବା ସାଇକେଲ, ଶଗଡ଼ ହେଉଛି ଭରସା । ରାଜା, ମହାରାଜା, ଜମିଦାର, ଖାନଦାନମାନଙ୍କର ସବାରୀ ପାଲିଙ୍କି, ତାମଜାନ, ସେମାନଙ୍କୁ ବୋହିବେ ପ୍ରଜା ।

ଅର୍ଥକାରୀ ଫସଲ କିଛି ନଥିଲା କହିଲେ ଚଳେ । ଆଳୁ, କୋବି ସାତ ସପନ । ଧାନ, ମାଣ୍ଡିଆ, ବିରି, କୋଳଥ, ଚିନା ଧାନ, ଚଣା, ଭୂଇଁଚଣା ବା ଚିନାବାଦାମ୍ ଖୁବ୍ କମ୍ ଚାଷ । ଆଖୁ (ଗୁଡ଼ ପାଇଁ), କିଛି ଝୋଟ ।

ଚାଷୀ ଧାନ ବା ଘରୁ ଚାଉଳ କରି ହାଟକୁ ନେବ, ସେଇଠି ବଦଳ କରି କିରାସିନି, ଲୁଣ, ମାଟି ହାଣ୍ଡି, ଖଦୀ, ଦାଆ, ବିଦ, କଟୁରୀ କିଣି ଗୁଜରାଣ ମେଣ୍ଟାନ୍ତି । ଗାଁ' ବଢ଼େଇ, କୁମ୍ଭାର, କୁମ୍ଭାର, ଧୋବାଙ୍କୁ ବର୍ଷକ ଲାଗି କିଛି ଧାନ ପଡ଼ି ଦିଏ, ସେମାନଙ୍କଠାରୁ ସେବା ନିଏ । ଜମିରେ ଯଦି ମୂଲିଆ କରାଏ, ତେବେ ଧାନ, ବିରିରେ ମୂଲ ଦିଏ ।

ଜମି ମାପ ପୁଣି ବିଭିନ୍ନ ଅଞ୍ଚଳରେ ଅଲଗା, ଓଜନ ମାପ ବଟକରା ମଧ୍ୟ ଭିନ୍ନ । ଏକରକେ ୨୫ ଗୁଣ୍ଠ, ଶହେ ଡିସିମିଲି, ମାତ୍ର ମାଣ ବାଟିରେ ଜମି ମାପ । ପୁଣି କେଉଁଠି ମାଣକ ୨୪ ଦସ୍ତି (ଏକ ଏକର) ଅନ୍ୟ କେଉଁଠି ୧୨ ଦସ୍ତି, ଚଉଦ ଦସ୍ତିରେ ଏକ ମାଣ ଜମି । କେଉଁଠି ଧାନ, ଚାଉଳ ଓ ଜମି ମାପ ହୁଏ ଗୌଣ, ଭରଣ ତ କେଉଁଠି ନଉତି, ପଉଟି, ଶଗଡ଼ । ପୁଣି ଗୌଣୀ କେଉଁଠି ବାଲେଶ୍ୱରୀ ବା କଟକୀ ୫ ସେର, କେଉଁଠି ୪ ସେର, କେଉଁଠି ୩ ସେର, କେଉଁଠି ତାମ୍ବି, ଖଣ୍ଡି ନାମରେ ମାପ । କଟିକୀ ସେର ୧୦୫ ତୋଳା ଓ ବାଲେଶ୍ୱରୀ ୮୦ ତୋଳା, ଛଟାଙ୍କି, ଅଧସେର, ସେର, ମହଣ ମାପର ପ୍ରଚଳନ ମଧ୍ୟ ଥାଏ । ଏହି ଭିନ୍ନ ଭିନ୍ନ ମାପ ଓଜନରେ ପ୍ରଜାଙ୍କୁ ଅକଥନୀୟ ଭାବରେ ଠକି ଦିଆଯାଏ, ସର୍ବସ୍ୱାନ୍ତ କରାଯାଏ ।

ମହାଜନମାନେ (ଅନେକ ସ୍ଥଳରେ ଜମିଦାର ଓ ବଡ଼ ଚାଷୀ) ଟଙ୍କା ଓ ଧାନ କରଜ ଦିଅନ୍ତି । ବ୍ରିଟିଶ ସରକାର ମହାଜନମାନଙ୍କୁ ମଥାନନୀ କରିବାରୁ କରସେତୁସ ଦିଏ । ମରୁଡ଼ି, ଧୋଇ, ତିରୋଟ ବେଳେ ଚାଷୀ ମହାଜନଠାରୁ ଧାନ କରଜ ଦେଢ଼ିରେ ନିଏ । ଭରଣେ ଧାନ ନେଲେ ବର୍ଷ ଶେଷକୁ ଦେଢ଼ ଭରଣ । ଏମିତି ଦେଢ଼ ଭରଣ ନ ଶୁଝିଲେ ଆଗାମୀ ବର୍ଷ ତାହା ମୂଳ ହୁଏ । ଏମିତି ଭରଣେ ଧାନ କରଜ ନେଲେ ଧୋଇ ମରୁଡ଼ିରେ ଶୁଝି ନ ପାରିଲେ ୫/ ୭ ବର୍ଷରେ ୧୦ ଭରଣ ହୋଇଯାଏ । ଚାଷୀର ସମସ୍ତ ଜମି ମହାଜନ ନିଏ । ସୁଧ ମୂଳ ଆଦାୟ ଦେଲେ ବି ଚାଷୀ ଲେଖାପଢ଼ା ନ ଜାଣି, ଟିପ ଦେଇଥିବାରୁ ଅସୁଲ ପଡ଼ିଲା ବୋଲି ଜାଣିପାରେନି । ସେମିତି ଗହଣାଗାଣ୍ଠି, କଂସାବାସନ ମଧ୍ୟ ନିଅଣ୍ଟ ହେତୁ ଚାଷୀ ମହାଜନକୁ ବନ୍ଧା ଦିଏ । ସୁଧ ମୂଳ ଦେଲେ ବି ଅନେକବେଳେ ଆଉ ବନ୍ଧକ ଜିନିଷ ପାଏ ନାହିଁ । ମହାଜନ ଓ ଜମିଦାର ଏକ । ଭିନ୍ନ ହେଲେ ବି ମହାଜନ ପକ୍ଷ ଧରେ ଜମିଦାର । ଜମିଦାର ଧରେ ମହାଜନ ପକ୍ଷ । ପୁଲିସ ଆଉ ବ୍ରିଟିଶ ହାକିମି ଓ ଆଇନ ଜମିଦାର ମହାଜନମାନଙ୍କ ପକ୍ଷରେ ।

ଜମିଦାରମାନଙ୍କୁ ରାଜସ୍ୱ ପ୍ରଜା ଦେବା ଠିକ୍ କଥା । ସେଥିରେ କ'ଣ ତ୍ରାହି ? ରଜା ଜମିଦାର, ଉଆସ, କଚେରୀ ଘର, ଦେବାଳୟ ପ୍ରଜାମାନେ ମାଗଣା (ବେଠି, ବେଗାରୀ)ରେ ଭରଣା କରିବେ, ଗଢ଼ିବେ, ମରାମତି କରିବେ । ରାଜା ଜମିଦାର, ମଠମହନ୍ତ ଚାହିଁଲେ ନିଜ ଝିଅ, ବୋହୂ, ପତ୍ନୀଙ୍କୁ ଯୋଗାଇବେ । ନଚେତ ରଜା ବଡ଼ ଜମିଦାରଙ୍କ ଗୁଣ୍ଡା ଘରେ ପଶି ସେମାନଙ୍କୁ ବୋହି ନେବେ । ରଜା ଜମିଦାର ଶିକାର ବା ପାରିଧି ବିଜେ କଲେ ଘଣ୍ଟ ମାଦଳ ଧରି ଜଙ୍ଗଲକୁ ଯାଇ ବାଘ ଭାଲୁ ହୁରୁଡ଼େଇବେ । ପୁନିଅ, ଦଶହରା ପର୍ବରେ ରଜା ଜମିଦାରଙ୍କ ଅଭିଷେକ, ବ୍ରତଘର, ରାଜକୁମାର, ରାଜଜେମା ବାହାଘର ବେଳେ, ଭେଟି, କର ବୋହିବେ । ସରୁ ଚାଉଳ, କଦଳୀ, ନଡ଼ିଆ, ଦେଶିଆଳୁ, ଗୁଡ଼, ଛେଳି, ମେଣ୍ଢା, ଟଙ୍କା ଭେଟି ଯିବ । ନ ଦେଲେ ନିଶ ଉପୁଡ଼ା, ବେତମାଡ଼, ନଡ଼ିଆ ବା ବରଗଛରେ ବନ୍ଧା, ନିଆଁଖୁଣ୍ଟା ଖେଞ୍ଚା । ବାଡ଼ିରେ କଦଳୀ, ବାଇଗଣ ହେଲେ ଆଗ କଚେରୀକୁ । ଗୋରୁ ଗାଈବାଲା ଦୁଇ, ଦହି, ଘିଅ, ଛେନା ଜମିଦାରଙ୍କୁ ଦେବେ । ପୋଖରୀରୁ ମାଛ ଦେବେ । ସବୁ ମାଗଣା ।

ରଜା, ଜମିଦାର, ହାକିମଙ୍କ ଆଗରେ ହାତଯୋଡ଼ି ନଇଁ ନଇଁ ଯିବେ । ଦଣ୍ଡବତ କରିବେ ।

ରାଜସ୍ୱ ବାଦ ବେଆଇନ ପାଉଣା ଦାଖଲ ଖଜଣା ରୋଷମ, ପଣିଆ କଟା ଏମିତି ଅନେକ ।

ଓଡ଼ିଶାରେ ସଂଗଠିତ କୃଷକ ଆନ୍ଦୋଳନ ହେବା ପୂର୍ବରୁ ବିଭିନ୍ନ ଗଡ଼ଜାତରେ ଓ ଜମିଦାରୀମାନଙ୍କର ପ୍ରଜା ମେଳି ହୋଇପାରିଛି । ଯେମିତିକି ଦଶପଲ୍ଲା ମେଳି, ଚକ୍ରଧର

ବେହେରାଙ୍କ ନେତୃତ୍ୱରେ କନିକା ମେଳି । ନିର୍ମମ ଅତ୍ୟାଚାର ବଳରେ ଏପରି ଅନେକ ପ୍ରଜାମେଳିକୁ ଦମନ କରାଯାଇଛି ।

**ସଂଗଠିତ କୃଷକ ଆନ୍ଦୋଳନର ବିଭିନ୍ନ ବିପର୍ଯ୍ୟୟ**

ଏହିପରି ପରିସ୍ଥିତି ଥିଲାବେଳେ ଓଡ଼ିଶାରେ ସଂଗଠିତ କୃଷକ ଆନ୍ଦୋଳନ ଜନ୍ମ ନେଲା । ସେହି ସଂଗଠିତ କୃଷକ ଆନ୍ଦୋଳନ ବିଭିନ୍ନ ପର୍ଯ୍ୟାୟ ଦେଇ ଗତି କରିଆସିଛି । ଆଜି ଯାହା ଆଇମା କାହାଣୀ ପରି ମନେହେବ, ସେହିପରି ଦାବୀଗୁଡ଼ିକୁ ଧରି ଆରମ୍ଭ ହୋଇଥିବା ଚାଷୀ ଆନ୍ଦୋଳନ ଆଜି ଚରମ ପର୍ଯ୍ୟାୟରେ ପହଞ୍ଚିଛି; ଯାହାର ସମାଧାନ ନ ହେଲେ ଆମ ରାଜ୍ୟର ଆର୍ଥିକ, ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ବାତାବରଣ ପରିବର୍ତ୍ତନ ହୋଇପାରିବ ନାହିଁ ଓ ସମାଜବାଦ ଲାଗି ସଂଗ୍ରାମ ଆଗେଇ ପାରିବ ନାହିଁ । ସମାଜବାଦୀ ବିପ୍ଳବର ଅନ୍ୟତମ ପ୍ରଧାନ ସାମାଜିକ, ଅର୍ଥ ନୈତିକ ଶକ୍ତି ଓ ଅନ୍ୟାନ୍ୟ ମେହନତକାରୀ ଶ୍ରେଣୀ ଓ ଜନଗୋଷ୍ଠୀଙ୍କର ସବୁଠାରୁ ସୁବିଶାଳ ଜନ ଅଂଶ ଚାଷୀ ସହିତ ମିତ୍ରତା ସୁଦୃଢ଼ ଓ ଲକ୍ଷ୍ୟ ପ୍ରସାରୀ ନହେଲେ ସମାଜବାଦୀ ବିପ୍ଳବ ସାଧିତ ହୋଇପାରିବ ନାହିଁ ।

ସ୍ୱାଧୀନତା ସଂଗ୍ରାମ ବେଳେ ସମ୍ରାଜ୍ୟବାଦ ସାମନ୍ତବାଦୀ ଦ୍ୱାରା ନିର୍ଯ୍ୟାତିତ, ଶୋଷିତ, ବଂଚିତ, ପ୍ରବଞ୍ଚିତ ଚାଷୀ ଶ୍ରେଣୀର କେତେକ ଦାବୀ ସେ କାଳର ସ୍ୱାଧୀନତା ସଂଗ୍ରାମର ମିଳିତ ମଞ୍ଚ କଂଗ୍ରେସ ୧୯୩୧ ଜରୁରୀ କଂଗ୍ରେସରେ ଗ୍ରହଣ କରିଥିଲେ । ସେହି ମହାସମର ପରବର୍ତ୍ତୀ କାଳ ୧୯୩୦-୩୧ ସାରା ଦେଶରେ ଘୋର ଅର୍ଥ ସଂକଟ । ସାମନ୍ତବାଦୀ ରାଜା ମହାରାଜା, ଜମିଦାରମାନେ ପ୍ରଥମ ସାମ୍ରାଜ୍ୟବାଦୀ ଯୁଦ୍ଧଜନିତ ଅର୍ଥନୈତିକ ସଂକଟର ସମସ୍ତ ବୋଝ ଚାଷୀମାନଙ୍କ ଉପରେ ଲଦିଦେଲେ । ଚାଷୀମାନେ ସର୍ବସ୍ୱାନ୍ତ ହେଲେ । ଜମିଦାର ଜମିବାଡ଼ି ନିଲାମ କରି ନେଲେ । ଜମିଦାରୀ ରାଜାଙ୍କ ଅତ୍ୟାଚାର ନିର୍ଯ୍ୟାତନା ଚରମ ରୂପ ନେଲା । ଚାଷୀ ଅତିଷ୍ଠ ହୋଇଉଠିଥିଲେ । ମାତ୍ର ପାଟି ଫିଟେଇବାକୁ ତର ନଥିଲା ।

ଏହି ପ୍ରକାର ପୃଷ୍ଠଭୂମିରେ ଯେଉଁ ଚାଷୀ ଆନ୍ଦୋଳନ ହେଲା, ତାହାର ମୁଖ୍ୟ ଦାବୀ ଥିଲା ସାମନ୍ତବାଦୀ ଅତ୍ୟାଚାର ନିର୍ଯ୍ୟାତନା, ବିଲୋପ, ବ୍ରିଟିଶ ଶାସନ କାଳରେ ବି ଆଇନ ଦ୍ୱାରା ଯାହା ଅନୁମୋଦିତ ନଥିଲା, ସେପରି ବେଆଇନ କର, ରାଜସ୍ୱ, ସୁଧ, ଦାଖଲ ଖାରଜ, ରସିଦ୍, କଳନ୍ତର, ବେଠି, ବରଷକ ବେଠି, ମାଗଣ ବିରୁଦ୍ଧରେ ଆନ୍ଦୋଳନ ।

ଏହି ଆନ୍ଦୋଳନ ଯେଉଁ ଯେଉଁ ସ୍ଥାନରେ ଆରମ୍ଭ ହେଲା ତାହା ଚାଷୀମାନଙ୍କ ଭିତରେ ନିଆଁ ଜାଳିଦେଲା । ରୁଦ୍ଧ କ୍ରୋଧ ଫାଟିପଡ଼ିଲା । ସୁନିଆ ଭେଟି, ଦଶହରା ଭେଟି ବନ୍ଦ କରିବା ପାଇଁ କୃଷକ କର୍ମୀମାନଙ୍କ ନେତୃତ୍ୱରେ ପ୍ରବଳ ଆନ୍ଦୋଳନ ହେଲା ।

ଏହା ଚାଷୀଙ୍କ ଭିତରେ ନିଜ ଅଧିକାର ସଂପର୍କରେ ନିଜର ଅନ୍ତର୍ନିହିତ ଶକ୍ତି ସଂପର୍କରେ ଚେତନା ଆଣିଦେଲା । ଚାଷୀର ଯେ ସ୍ୱତନ୍ତ୍ର ସଂଗଠନ ଦରକାର, ଏହି ଧାରଣା ଦାନା ବାନ୍ଧିଲା ।

ଏହି ଆନ୍ଦୋଳନର ବେଗ, ତୀବ୍ରତା ଏବଂ ଏହି ଆନ୍ଦୋଳନ ବେଳେ ଜମିଦାର; ପୁଲିସଙ୍କୁ ନିର୍ମମ ଦମନ ସାମନା କରି ଚାଷୀ ଭାଙ୍ଗିପଡ଼ିଲା ନାହିଁ – ଏଣିକି ଟାଣ ହେବାକୁ ଲାଗିଲା । ଚାଷୀ ଆନ୍ଦୋଳନ ଆଗରେ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନର ଖୁଣ୍ଟ ଜମିଦାରୀ ପ୍ରଥା – ସମସ୍ତ ପ୍ରକାର ମଧ୍ୟ ସ୍ୱତ୍ୱାଧୀକାରୀ ପ୍ରଥା ଉଚ୍ଛେଦର କାର୍ଯ୍ୟକ୍ରମ ନିଆଗଲା । ବେଠି, ଭେଟି, ରସଦ, ମାଗଣ ନିଜ ଆନ୍ଦୋଳନ ଫଳରେ ବନ୍ଦ କରିବାର ଅଭିଜ୍ଞତା କୃଷକ ଆନ୍ଦୋଳନକୁ ପରବର୍ତ୍ତୀ ଉଚ୍ଚତର ପର୍ଯ୍ୟାୟକୁ ଘେନିଗଲା । ଦ୍ୱିତୀୟ ପର୍ଯ୍ୟାୟ ହେଲା ଜମିଦାରୀ ପ୍ରଥାର ବିଲୋପ ଏବଂ ଜମିଦାରୀ ପ୍ରଥା ହେତୁ ତାହାର ଅଙ୍ଗାଙ୍ଗୀ ଅଂଶ ଯେମିତି ମୁସ୍ତାଦାରୀ ପ୍ରଥା, ଇନାମଦାରୀ, ଗୌନ୍ତିଆ, ସର୍ବରାକାର, ମାହାଲ ଉଠିବା ପ୍ରଥା ବିରୁଦ୍ଧରେ ଚାଷୀ ଆନ୍ଦୋଳନ ସଙ୍ଗଠନର ସେତେବେଳେ ନାମ ଥିଲା ପ୍ରାଦେଶିକ କୃଷକ ସଭା । ପରବର୍ତ୍ତୀ କାଳରେ କମ୍ୟୁନିଷ୍ଟ ଓ ସେମାନଙ୍କ ସହଯୋଗୀମାନଙ୍କ ନେତୃତ୍ୱରେ ସେହି ଅନୁଷ୍ଠାନର ନାମ ହେଲା ପ୍ରାଦେଶିକ ତା'ପରେ ଉତ୍କଳ ରାଜ୍ୟ କୃଷକ ସଭା, ଜମିଦାରୀ ଓ ଜଳ ମଧସ୍ୱତ୍ତ୍ୱାଧିକାରୀ ପ୍ରଥା ଉତ୍ପାଟନ ଦାବୀଗୁଡ଼ିକ ଚାଷୀମାନଙ୍କ ମତରେ ଯେଉଁ ଜାଗରଣ ସୃଷ୍ଟି କଲା ତାହାର ଆବେଦନରେ ଜମି ନଥିବା ଅଥଚ ଜମି ଚାଷ କରୁଥିବା ଚାଷୀ, ଯେଉଁମାନେ ଭାଗଚାଷୀ, ସଞ୍ଜାଚାଷୀ ସେମାନଙ୍କୁ ଘେନି ଆନ୍ଦୋଳନ ଆରମ୍ଭ ହୋଇଗଲା । ଚାଷୀ ସଂପ୍ରଦାୟରେ ବିଭିନ୍ନ ସ୍ତର ଥିଲା । ଭାଗଚାଷୀ ଆନ୍ଦୋଳନ, ଫଳରେ ଜମି ଚଷି ଜମିମାଲିକଙ୍କ ଦ୍ୱାରା ଶୋଷିତ ହେଉଥିବା ଗରିବ ଭୂମିହୀନ ଚାଷୀଙ୍କ ତେଭାଗା ଆନ୍ଦୋଳନ, ଅର୍ଥାତ୍ ଭାଗଚାଷୀ ଫସଲରୁ ୧୦ ଅଣା ଓ ଜମିମାଲିକ ୬ ଅଣା (ସେତେବେଳେ ଟଙ୍କାଟି ୧୬ ଅଣା ଅବା ୬୪ ପଇସା ଓ ପଇସାକ ଦୁଇ ଅଧଲା ଓ ତିନି ପାହୁଲା, ଅଣାକ ୪ ପଇସା ଥିଲା) । ଏହି ଦାବୀ ଘେନି ସଂଗ୍ରାମ ଓ ସେଥି ସଂକ୍ରାନ୍ତ ଅଧ୍ୟାଦେଶ (ତତ୍କାଳୀନ କଂଗ୍ରେସ ସରକାର)ଠାରୁ କରାଯିବା ପରେ ଜମିରୁ ଭାଗଚାଷ ଉଚ୍ଛେଦ ପାଇଁ କୃଷକ ସଂଗ୍ରାମ ହେଲା ତୃତୀୟ ପର୍ଯ୍ୟାୟ । 'ଲଙ୍ଗଳ ଯା'ର ଜମି ତା'ର', 'ମଠ ଧନ କୋଠ ହେଉ' ଧ୍ୱନି ଉଠିଲା ।

ଏହି ପର୍ଯ୍ୟାୟ ଦୁଇଟିର ମଧ୍ୟଭାଗରେ ୧୯୩୮-୩୯ ପ୍ରଥମ ଦଫା ଗଡ଼ଜାତ ପ୍ରଜା ଆନ୍ଦୋଳନରେ ସାମିଲ ପ୍ରଜାମମାନଙ୍କର ଆନ୍ଦୋଳନ ମୁଖ୍ୟତଃ ସାମନ୍ତବାଦୀ ରାଜାରାଜୁଡ଼ା ପ୍ରଥା ଉପରେ କୁଠାରଘାତ କଲା । ପ୍ରଜାମଣ୍ଡଳଗୁଡ଼ିକର ରାଜନୈତିକ ଦାବୀ ବ୍ରିଟିଶ ଶାସନ ବେଳେ ରାଜା ଥାଇ ତାଙ୍କ ଅଧୀନରେ ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା, ହୁଙ୍କାପିଟା, ମନମୁଖୀ ସ୍ୱେଚ୍ଛାଚାରୀ ଶଶସନର ବିଲୋପ ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ ୧୯୪୬-୪୭ ବେଳକୁ ରାଜତନ୍ତ୍ରର ବିଲୋପ ଓ ଗଡ଼ଜାତଗୁଡ଼ିକ ମୋଗଲବନ୍ଦୀ ଓଡ଼ିଶା ସହିତ ମିଶ୍ରଣ ଓ ଓଡ଼ିଶାର ରାଜନୈତିକ, ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ସମନ୍ୱୟର ଦାବୀ ଉତ୍ଥାପିତ ହେଲା । ସ୍ୱାଧୀନତା ପରେ ଆଇନଗତ ଭାବରେ ଜମିଦାରୀ ପ୍ରଥା ଓ ରାଜରାଜୁଡ଼ା ପ୍ରଥାର ଅବସାନ

ହେଲା । ପଞ୍ଚାୟତରାଜ, ଅଞ୍ଚଳ ଶାସନ ପ୍ରତିଷ୍ଠା ପରେ ପରେ ଚାଷୀ ଆନ୍ଦୋଳନରେ ମୁଖ୍ୟଦିଗ ହେଲା ଭୂ-ସଂସ୍କାର, ସର୍ବୋଚ୍ଚ ସୀମା କାମ କରୁଛି, ରାଜା ଜମିଦାରଙ୍କ ସର୍ବୋଚ୍ଚ ସୀମା ବାହାରେ ଜମି ଭୂମିହୀନ, ଚାଷୀ ଗରିବ ଚାଷୀଙ୍କୁ ଦିଅ ।

ଏହି ପର୍ଯ୍ୟାୟ ଆନ୍ଦୋଳନରେ ସମୁଦାୟ ଚାଷୀ ସଂପ୍ରଦାୟର ଦାବୀଗୁଡ଼ିକ ସାଙ୍ଗକୁ ଭୂମିହୀନ ଚାଷୀ, ଗରିବ ଚାଷୀ, ଭାଗଚାଷୀ ବିଶେଷତଃ ଚାଷରେ ଖଟି ମଜୁରୀ ପାଇଁ ପଶୁ ତୁଲ୍ୟ ବଞ୍ଚୁଥିବା ଭୂମିହୀନ ଆଦିବାସୀ ହରିଜନଙ୍କ ଜମିର ସମସ୍ୟା ଘେନି ସଂଗ୍ରାମ । ତା' ସାଙ୍ଗକୁ ଉପଯୁକ୍ତ ମଜୁରୀ, ସାମାଜିକ ଅତ୍ୟାଚାର ନିପୀଡ଼ନରୁ ରକ୍ଷା ଏବଂ ଘରଡ଼ିହ ଓ ଜମିର ଆନ୍ଦୋଳନରେ ପର୍ଯ୍ୟାୟ । ୧୯୭୪ ବେଳକୁ କ୍ଷେତ ମୂଲିଆ ସଂଗଠନ ଗଢ଼ିଉଠିଲା । ଏହି ପର୍ଯ୍ୟାୟରେ କୃଷକ ଓ କ୍ଷେତମୂଲିଆ ସଂଗଠନ ପରସ୍ପର ସହଯୋଗୀ । ମାତ୍ର ନିଜ ନିଜ ମଞ୍ଚରୁ ଏହି ଆନ୍ଦୋଳନକୁ ସେମାନେ ଚଳାଇଲେ ଓ ଚଳାଇଛନ୍ତି ସମ୍ପୂର୍ଣ୍ଣ ଭୂ-ସଂସ୍କାର ନ ହେବାଯାଏ । ଚାଷୀମାନଙ୍କ ପାଇଁ ଜଳସେଚନ, ଉପଯୁକ୍ତ ମୂଲ୍ୟ, ଋଣ ଛାଡ଼, ସୁଲଭ ମୂଲ୍ୟରେ କୃଷି ଉପଯୋଗୀ ସାର ବିହନ, କୀଟନାଶକ ପଦାର୍ଥ ଯୋଗାଣ, ଉଚିତ, ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥର ସୁଲଭ ଦର ସାଙ୍ଗକୁ ଦିନମଜୁରିଆ, ଭୂମିହୀନ ଓ ଗରିବ ଚାଷୀଙ୍କ ମୂଲ୍ୟ ମଜୁରୀ, ଜମି, ଘରଡ଼ିହ, ବାସଗୃହ, ସାମାଜିକ ଅଧିକାର ଦାବୀ ଘେନି କୃଷକ ଶ୍ରେଣୀର ଆନ୍ଦୋଳନ ଚାଲିଛି । ଉଦ୍‌ବୃତ୍ତ ଜମି, ବଣ୍ଡର ଅନାବାଦୀ ଜମି, ଗଛପଟା ପାଇଁ ଜମି ଦଖଲ ଆନ୍ଦୋଳନର ପର୍ଯ୍ୟାୟ ବର୍ତ୍ତମାନ ଚାଲିଛି ।

ମୋଟ୍ ରୀତିରେ ଦେଖିଲେ ସ୍ୱାଧୀନତା ପୂର୍ବର ସାମ୍ରାଜ୍ୟବାଦବିରୋଧୀ ମୁକ୍ତି ଆନ୍ଦୋଳନ ବେଳେ ସ୍ୱତନ୍ତ୍ର ଚାଷୀ ଆନ୍ଦୋଳନ ବିଭିନ୍ନ ପର୍ଯ୍ୟାୟ ଦେଇ ଏଯାଏ ଗତିକରିଛି । ଏହି ସଂଗ୍ରାମର ସାଫଲ୍ୟ ଓ ବିଫଳତା ମଧ୍ୟ ରହିଛି । ଦେଶରେ ସ୍ୱାଧୀନତା ପରବର୍ତ୍ତୀ ରାଷ୍ଟ୍ର ଏକ ପୁଞ୍ଜିବାଦୀ ରାଷ୍ଟ୍ର ଓ ପୁଞ୍ଜିବାଦୀ ଆସନରେ ଚାଷୀ ତା'ର ଆନ୍ଦୋଳନ ସ୍ୱାଧୀନତା ପୂର୍ବରୁ ଚଳେଇ ରଜାରାଜୁଡ଼ା, ଜମିଦାର, ମୁସ୍ତାଦାର, ମଠାଧୀଶ, ଲାଇସେନସ୍ ପ୍ରାପ୍ତ ମହାଜନଙ୍କ ଆଇନ ସୁପର୍ଦ୍ଦ ସାମନ୍ତବାଦୀ ପ୍ରଥାକୁ ଲୋପ କରିବାରେ ସମର୍ଥ ହୋଇଛି ଏବଂ ପୁଞ୍ଜିବାଦୀ ବୁର୍ଜୁୟା ଶାସକ ଶ୍ରେଣୀଠାରୁ ଏହି ଦାବୀଗୁଡ଼ିକ ଆଦାୟ କରିଛି । ମାତ୍ର ତାହା ଅଧାପନ୍ତରିଆ ରହିଛି । ଆଇନ ସମ୍ମତ ସାମାନ୍ତବାଦୀ ପ୍ରଥା ବିଲୁପ୍ତ ହେଲେ ବି ଆମ ଓଡ଼ିଶାର ତଥା ଭାରତରେ ପୁଞ୍ଜିବାଦୀ ବିକାଶ ସାଙ୍ଗକୁ ଅର୍ଦ୍ଧ ସାମନ୍ତବାଦୀ ବ୍ୟବସ୍ଥା ବିରାଜିତ ।

**ଅନେକ ଆସିଲେ, ଗଲେ, ରହିଲେ କେବଳ କମ୍ୟୁନିଷ୍ଟ**

ଏହି ଦୀର୍ଘ ୫୩ ବର୍ଷର ଚାଷୀ ଆନ୍ଦୋଳନରେ ବହୁ ରାଜନୈତିକ ଗୋଷ୍ଠୀ, ବ୍ୟକ୍ତିବିଶେଷ, ବିଭିନ୍ନ ଆଦର୍ଶବାଦୀ ଆସିଛନ୍ତି । ପ୍ରଥମ ପର୍ଯ୍ୟାୟରେ ଯେଉଁମାନେ ଆସିଥିଲେ ତନ୍ମଧ୍ୟରୁ ଦ୍ୱିତୀୟ ପର୍ଯ୍ୟାୟ ବେଳକୁ ସେଥିରୁ କେତେକ ଗୋଷ୍ଠୀ ଓ ବ୍ୟକ୍ତି ଓହରି ଯାଇଛନ୍ତି । ପରବର୍ତ୍ତୀ ପର୍ଯ୍ୟାୟଗୁଡ଼ିକରେ ମଧ୍ୟ ସେଇଆ ଘଟିଛି; କାରଣ ଯେଉଁମାନେ ଚାଷୀମାନଙ୍କର

ଗଣତାନ୍ତ୍ରିକ ଅଧିକାର, ମଣିଷ ଭଳି ବଞ୍ଚିବା ଓ ବ୍ୟବହାର ପାଇବାର ଅଧିକାର ଯେମିତି ବେଠି, ଭେଟି, ମାଡ଼, ଅତ୍ୟାଚାର, ବେଆଇନ ପାଉଣାର ବିରୋଧୀ ହୋଇ ଚାଷୀ ଆନ୍ଦୋଳନକୁ ଆସି ନେତୃତ୍ୱ ଦେଇଥିଲେ । ସେମାନେ ପରବର୍ତ୍ତୀ ପର୍ଯ୍ୟାୟରେ ଏଥିରୁ ଓହରିଗଲେ ବିନା କ୍ଷତିପୂରଣରେ । ଜମିଦାରୀ ରାଜାରାଜୁଡ଼ା ପ୍ରଥା ଉଠୁ, ସେମାନଙ୍କ ବିଶାଳ ସମ୍ପତ୍ତି ବାଜ୍ୟାପ୍ତ ହେଉ, ମଠ ଧନ କୋଠ ହେଉ, ଲଙ୍ଗଳ ଯା'ର ଜମି ତା'ର, ସର୍ବୋଚ୍ଚ ସୀମା ବାନ୍ଧ, ଅତିରିକ୍ତ ଜମି ଦଖଲ କର, ଜମିହୀନକୁ ଜମି, ଘରଡ଼ିହ; ମୂଲିଆଙ୍କୁ ଉପଯୁକ୍ତ ମଜୁରୀ ଏପରି ଆମୂଳ ପରିବର୍ତ୍ତନକାରୀ, ସାମନ୍ତବାଦୀ ଓ ଅର୍ଦ୍ଧସାମନ୍ତବାଦୀ ବ୍ୟବସ୍ଥା ଲୋପକାରୀ ଦାବୀମାନ ଉଠି ସଂଗ୍ରାମ ହେଲାବେଳେ, କିଏ କିଏ ସେଥିରୁ ଦୂରେଇ ଗଲେ ଅବା ନୀରବ ରହିଲେ । ଅନ୍ୟମାନେ ଶାସନରେ ଥାଇ ଓ ଶାସନ ବାହାରେ ତାହାର ବିରୋଧ କଲେ । ଚାଷୀ, ମୂଲିଆ, ଆଦିବାସୀ, ଗଡ଼ଜାତ ପ୍ରଜା, ହରିଜନଙ୍କ ଆନ୍ଦୋଳନ ଉପରେ ସ୍ୱାଧୀନତା ପରେ ପ୍ରଚଣ୍ଡ ଦମନ ହୋଇଛି । ପୁଲିସ ଗୁଳିକରି ଗୁଣ୍ଡା ଆକ୍ରମଣ କରି ହତ୍ୟା କରିଛନ୍ତି । ୧୪୪ ଧାରା, ୩୦ ପୁଲିସ ଧାରାମାନ ଜାରି ହୋଇଛି ।

କିନ୍ତୁ ଆଦ୍ୟ ୧୯୩୫ରୁ ଆଜି ପର୍ଯ୍ୟନ୍ତ କମ୍ୟୁନିଷ୍ଟମାନେ ହିଁ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଗଠନବେଳେ ଅଳ୍ପସଂଖ୍ୟକ ସଦସ୍ୟଙ୍କଠାରୁ ଆରମ୍ଭ କରି କମ୍ୟୁନିଷ୍ଟ ପାର୍ଟି ପ୍ରସାର ସଂଗେ ସଂଗେ କୃଷକମାନଙ୍କର ଭୂମିହୀନମାନଭ୍କର ଦିନମଜୁରିଆମାନଙ୍କର ଯେତେବେଳେ ପର୍ଯ୍ୟାୟରେ ସଂଗ୍ରାମ ହୋଇଛି, ସେମାନେ ହିଁ ତା'ର ମୁଖ୍ୟ କର୍ଣ୍ଣଧାର ଓ ସଂଗଠନକ ହୋଇଛନ୍ତି ।

୧୯୩୬ରେ ମିରଟଠାରେ ଅଖିଳ ଭାରତ କୃଷକ ସଭା ଗଠିତ ହୁଏ । ସେହି କାଳରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠିତ ହୁଏ । କଂଗ୍ରେସ ଭିତରେ ଯେଉଁମାନେ ସ୍ୱାଧୀନତା ସଂଗ୍ରାମର ଭିତ୍ତିକୁ ପ୍ରସାର କରି ଚାଷୀମାନଙ୍କୁ ସେଥିରେ ସାମିଲ କରିବାକୁ ଚାହୁଁଥିଲେ । ମାତ୍ର କଂଗ୍ରେସର ଉପର ନେତୃତ୍ୱ ସେଥିପ୍ରତି ଧ୍ୟାନ ଦେଲା ନାହିଁ ଏବଂ କେବଳ ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟକ୍ରମ ଲାଗି ତାଙ୍କୁ କହିଲେ ସତ୍ୟାଗ୍ରହ କର, କାରାବରଣ କର, ଏତିକିରେ ସନ୍ତୁଷ୍ଟ ହେଲେ ନାହିଁ ଏବଂ ରୁଷିଆରେ ବଲ୍‌ଶେଭିକ ବିପ୍ଳବରେ ଚାଷୀର ମୁକ୍ତି ଏକା ଦିନକେ ଆଇନ ଅନୁସାରେ ସାମନ୍ତବାଦର ଉଚ୍ଛେଦ, ବିଶାଳ ଭୂସଂପତ୍ତି ବାଜ୍ୟାପ୍ତ ଓ ଚାଷୀଙ୍କ ଭିତରେ ବଣ୍ଟନର ସଂବାଦରେ ଅନୁପ୍ରାଣିତ ହେଲେ । ସେମାନଙ୍କ ଦ୍ୱାରା ଗଠିତ କୃଷକ ସଂଘ ଓ ତା'ର ଆଇନ ସୁପର୍ଦ୍ଦ ରାଜନୈତିକ ମଞ୍ଚ ଥିଲା କଂଗ୍ରେସ ସୋସାଲିଷ୍ଟ ପାର୍ଟି । କମ୍ୟୁନିଷ୍ଟ ପାର୍ଟି ବ୍ରିଟିଶ ଦ୍ୱାରା ବେଆଇନ । ସେମାନଙ୍କ ବିରୁଦ୍ଧରେ ନାନା ଷଡ଼ଯନ୍ତ୍ର ମକଦ୍ଦମା, ଦୀର୍ଘକାଳ ଜେଲ୍ । ଏହି ସମାଜବାଦୀ ଭାବଧାରାରେ ଗଢ଼ି ଉଠିଥିବା କୃଷକ ସଂଘ ଓ କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ କଂଗ୍ରେସର କର୍ମୀ ଓ ନେତାରୂପେ ସୁପ୍ରତିଷ୍ଠିତ କମ୍ୟୁନିଷ୍ଟ ଓ କମ୍ୟୁନିଷ୍ଟ ମନୋଭାବାପନ୍ନ ବ୍ୟକ୍ତି ଓ ୧୯୩୬ରେ ଛାତ୍ରସଂଘ ଓ ଯୁବ ଆନ୍ଦୋଳନ ଭିତରୁ ଆସିଥିବା ନୂତନ କମ୍ୟୁନିଷ୍ଟ ଯୁବକମାନେ ଓଡ଼ିଶାରେ

୧୯୩୬/୩୭ କୃଷକ ଆନ୍ଦୋଳନ, କୃଷକ ସଂଘ ଗଠନରେ ସକ୍ରିୟ ଅଂଶ ନେଲେ ।

ଓଡ଼ିଶାରେ କଂଗ୍ରେସର ପ୍ରତିଷ୍ଠିତ ନେତା ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଚୌଧୁରୀ ଆଦ୍ୟ କୃଷକ ଆନ୍ଦୋଳନର ମୁଖ୍ୟଭାଗରେ ଥିବା ବେଳେ ତାଙ୍କ ସହିତ ଗୌରାଙ୍ଗ ଚରଣ ଦାସ, ପ୍ରାଣକୃଷ୍ଣ ପଡ଼ିଆରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରମୁଖ ତାଙ୍କର ସହଯୋଗୀ ଥିଲେ ଏବଂ ଅନ୍ୟପକ୍ଷରେ ସେହି ସ୍ୱାଧୀନତା ଆନ୍ଦୋଳନରେ ପ୍ରତିଷ୍ଠିତ ବ୍ୟକ୍ତି କମ୍ୟୁନିଷ୍ଟ ଆଦର୍ଶରେ ଦୀକ୍ଷିତ ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଗତିକୃଷ୍ଣ ସ୍ୱାଇଁ, ଗୋକୁଳ ମୋହନ ରାୟଚୂଡ଼ାମଣି, ଗଙ୍ଗାଧର ମିଶ୍ର, ସାଧୁଚରଣ ମହାନ୍ତି, ଦାମୋଦର ମିଶ୍ର, ଫନୀ ପାଲ ଏବଂ ସେମାନଙ୍କର ରାଜନୈତିକ ନେତାରୂପେ ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ ପ୍ରମୁଖ ପ୍ରଥମ ପର୍ଯ୍ୟାୟ ଆନ୍ଦୋଳନରେ ବିଶିଷ୍ଟ ଭୂମିକା ନେଇଥିଲେ । ଛାତ୍ରସଂଘ ଆନ୍ଦୋଳନରୁ ଓ କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ଯାଇ କମ୍ୟୁନିଷ୍ଟ ବିଶ୍ୱନାଥ ପଶାଏତ, ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ, ନୀଳଗିରିର ବନମାଳୀ ଦାସ, ଢେଙ୍କାନାଳର ବୈଷ୍ଣବ ପଟ୍ଟନାୟକ (ଯେଉଁମାନେ ଗଡ଼ଜାତ ପ୍ରଜା ଆନ୍ଦୋଳନର ନେତା ହେଲେ) ପ୍ରମୁଖ ଏହି ସଂଗଠିତ ଚାଷୀ ଆନ୍ଦୋଳନର ମୁଖ୍ୟସ୍ରୋତରେ ଥିଲେ ।

ପ୍ରାଦେଶିକ କୃଷକ ସଂଘ ଅଧୀନରେ ଜିଲ୍ଲା କୃଷକ ସଂଘମାନେ ଗଠିତ ହେଲା, ଗାଁ'ଗୁଡ଼ିକରେ ପ୍ରାଥମିକ କୃଷକ ସଂଘ ଗଠିତ ହେଲା । ୪ ପଇସା ବା ଅଣାଏ ଚାନ୍ଦା ଚାଷୀମାନେ ଦେଇ କୃଷକ ସଂଘର ସଭ୍ୟ ହେଲେ ।

ବେଠି, ଭେଟି, ଅତ୍ୟାଚାର ନିର୍ଯ୍ୟାତନା ବିରୋଧୀ ଆନ୍ଦୋଳନ ବିଶେଷ ଭାବରେ କଟକ ଜିଲ୍ଲା, ପୁରୀ ଜିଲ୍ଲା ଓ ବାଲେଶ୍ୱର ଦକ୍ଷିଣାଞ୍ଚଳରେ ପ୍ରବଳ ରୂପ ନେଲା ।

ବିଶେଷତଃ କଟକ ମଣ୍ଡଳ ଇଷ୍ଟେଟ, ଭିଙ୍ଗାରପୁର ଇଷ୍ଟେଟ, ଦର୍ପଣି ଇଷ୍ଟେଟ, ପଣ୍ଡିତ ଇଷ୍ଟେଟ, ସୁକିନ୍ଦା, ପଛିକୋଟ, ଜେନାପୁର, ଜଗତସିଂହପୁର, ବାଲିକୁଦା, ତିର୍ତ୍ତୋଲ, ଗୋବିନ୍ଦପୁର, ସାଲେପୁର, ଧର୍ମଶାଳା ପ୍ରଭୃତିରେ ଖୁବ୍ ଜୋରରେ ପ୍ରସାର ଲାଭ କଲା । ପୁରୀ ଜିଲ୍ଲାର ନିମାପଡ଼ା, ଗୋପ, କାକଟପୁର, ବାଲିପାଟଣା, ବାଲିଅନ୍ତା ଅଞ୍ଚଳରେ ମଧ୍ୟ ପ୍ରଚଣ୍ଡ ଚାଷୀ ଆନ୍ଦୋଳନ ଦେଖାଦେଲା । କେଉଁଠି ସର୍ବରାକାରୀ, କେଉଁଠି ଏଖାରଜାତ ମହାଜନ ଚାଷୀ ଆନ୍ଦୋଳନ ଗଢ଼ିଉଠିଲା । ଖୋର୍ଦ୍ଧା, ବେଗୁନିଆ, ବୋଲଗଡ଼, ଚନ୍ଦକା, ଜଟଣୀ, ଜଙ୍କିଆ ପ୍ରଭୃତିରେ । ଗଙ୍ଗାଧର ପାଇକରାୟ, ପରଶୁରାମ ପଦାତିକ ରାୟ, ଦାମୋଦର ମିଶ୍ର, ଉପେନ୍ଦ୍ର ଦାଶ, କୁନ୍ଦନରାମ, ଲକ୍ଷ୍ମଣ ପଟ୍ଟନାୟକ ପ୍ରମୁଖ କମ୍ୟୁନିଷ୍ଟ ସେସବୁ ଆନ୍ଦୋଳନର ଅଗ୍ରଭାଗରେ ରହିଲେ ।

ଗଞ୍ଜାମ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସି ଥିବାବେଳେ ଟିକସ୍, ବିରୁଦ୍ଧରେ ଧନୀଚାଷୀ, ଇନାମଦାରମାନଙ୍କ ନେତୃତ୍ୱରେ ଗଞ୍ଜାମ ଜମିଦାରୀ ରଇତ ସଭା ଆନ୍ଦୋଳନ ଚଳାଉଥିଲା ।

ତାହାର ନେତୃତ୍ୱରେ ଥିଲେ ବିଶ୍ୱନାଥ ଦାଶ ପ୍ରମୁଖଙ୍କ ଧନ ବିତ୍ତଶାଳୀ ଚାଷୀ । ଜମିଦାରୀ ରଇତ ସଂଘ ଇନାମଚାଷୀ, ମୁସ୍ତାଦାରଙ୍କ କର୍ତ୍ତୃତ୍ୱରେ ଥିବା ଚାଷୀଙ୍କ ସ୍ୱାର୍ଥ ଲାଗି ଲଢ଼ିପାରିଲା ନାହିଁ । ସେହେତୁ ଜିଲ୍ଲାରେ କଂଗ୍ରେସରେ ପ୍ରତିଷ୍ଠିତ ବ୍ୟକ୍ତିମାନେ କମ୍ୟୁନିଷ୍ଟ ମତବାଦକୁ ଗ୍ରହଣ କରିନେଲେ । ଗୋବିନ୍ଦ ପ୍ରଧାନ, ହରିହର ଦାଶ, ବିଜୟ ଚନ୍ଦ୍ର ଦାସ, ଗୁରୁଚରଣ ପଟ୍ଟନାୟକ, ସାଧୁଚରଣ ମହାନ୍ତି ପ୍ରମୁଖ ଗଞ୍ଜାମ ରଇତ ସଭା ଗଠନ କଲେ, ଯାହାକି ୧୯୪୩ରେ ଜିଲ୍ଲା କୃଷକ ସଭାରେ ପରିଣତ ହେଲା । ଗଞ୍ଜାମରେ ବହୁ କଂଗ୍ରେସ କର୍ମୀ ଓ ଛାତ୍ରସଂଘ ଭିତରୁ ଆସିଥିବା ନୂତନ ଯୁବକମାନେ କମ୍ୟୁନିଷ୍ଟ ହୋଇ ଗଞ୍ଜାମରେ ବିଶାଳ ରଇତ ଆନ୍ଦୋଳନ ଗଢ଼ିଉଠିଲା । ଆପଣାର ଶ୍ରେଣୀ ଚରିତ୍ର ହେତୁ ବିଶ୍ୱନାଥ ଦାଶଙ୍କ ଜମିଦାରୀ ରଇତ ସଭା, ଚାଷୀମାନଙ୍କଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇପଡ଼ିଲା, ଘୃଣିତ ହେଲା ।

ଆନୁଷ୍ଠାନିକ ଭାବରେ ପଣ୍ଡିତ ନୀଳକଣ୍ଠ ଦାଶ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥାଇ ଯିଏ କଂଗ୍ରେସର ଚାରିଜଣିଆ ସଭ୍ୟ ହେବ, ସିଏ କୃଷକ ସଂଘର ସଭ୍ୟ ହେବ, ସିଏ କୃଷକ ସଂଘର ସଭ୍ୟ ହେବ । କୃଷକ ସଂଘ ସ୍ୱତନ୍ତ୍ର ଶ୍ରେଣୀ ସଙ୍ଗଠନ ହେବ ନାହିଁ ବୋଲି ଜିଦ୍ ଧରିଥିଲେ । ମାତ୍ର କଂଗ୍ରେସ ଭିତରେ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ପଢ଼ିଆରୀ ଓ କଂଗ୍ରେସ ଭିତରେ ଥିବା ଉପରଲିଖିତ କମ୍ୟୁନିଷ୍ଟମାନଙ୍କ ବିରୋଧ ହେତୁ ତାଙ୍କ ଜିଦ୍ ରହିଲା ନାହିଁ ।

୧୯୩୬ ବେଳକୁ କୃଷକ ଆନ୍ଦୋଳନର ପ୍ରଖରତା ଓ ଲୋକପ୍ରିୟତା ଏପରି ବ୍ୟାପିଥିଲା ଯେ ତତ୍କାଳୀନ ପ୍ରାଦେଶିକ କଂଗ୍ରେସ କମିଟି କୃଷକସଭାର ଦାବିଗୁଡ଼ିକୁ ତା'ର ନିର୍ବାଚନ ଇସ୍ତାହାରରେ ଅଂଶୀଭୂତ କଲା । ବିଶେଷତଃ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ତଥା ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ପଢ଼ିଆରୀ, ରାୟ ଚୂଡ଼ାମଣୀଙ୍କ କଂଗ୍ରେସ ସଙ୍ଗଠନ ଭିତରେ ପ୍ରଭାବ ହେତୁ କଂଗ୍ରେସ ନିର୍ବାଚନୀ ଇସ୍ତାହାର ଏହାକୁ ଗ୍ରହଣ କରିନେଲା । ତାହା ଫଳରେ ବ୍ରିଟିଶ ସରକାର, ଜମିଦାର ଓ ବଡ଼ ଭୂମ୍ୟଧାକାରୀ ମଠମହନ୍ତଙ୍କ ଅର୍ଥ ପ୍ରଭାବ ଓ ଜୋରଦବରଦସ୍ତିକୁ ଓଡ଼ିଶାର ଚାଷୀ ପ୍ରତ୍ୟାଖ୍ୟାନ କରି ୧୯୩୫ ଶାସନ ଖସଡ଼ା ଅନୁସାରେ ଓଡ଼ିଶାରେ ଗଠିତ ବିଧାନସଭାର ୬୦ ଜଣ ପ୍ରାର୍ଥୀଙ୍କ ମଧ୍ୟରୁ ୩୬ ଜଣ ପ୍ରାର୍ଥୀ ଜିତିବା ସହଜସାଧ ହୋଇଥିଲା ।

୧୯୩୯ ଦ୍ୱିତୀୟ ମହାସମର ପୂର୍ବରୁ ଏବଂ ୧୯୪୦ରେ କଂଗ୍ରେସ ଶାସନଭାର ନେବା ପୂର୍ବରୁ କଟକ ଜିଲ୍ଲା, ପୁରୀ ଜିଲ୍ଲା, ବାଲେଶ୍ୱର ଜିଲ୍ଲାରେ ଯେମିତି କି ଜଗତସିଂହପୁରର ବାଗଲପୁର, ଅଣଖିଆ, ସାଲେପୁର, ମଧୁପୁର ପ୍ରଭୃତିରେ ଏବଂ ପୁରୀ ଜିଲ୍ଲାର ଜଟଣୀ, ନିମାପଡ଼ା, କାକଟପୁରରେ ବିଶାଳ ବିଶାଳ ଚାଷୀ ସମାବେଶ ହୋଇଥିଲା । ୧୯୩୮ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗାଦିନସୀନ ହେବା ପରେ କଟକରେ ପ୍ରାୟ ୧୦ ହଜାର ଚାଷୀ ପୁରୀ, କଟକର ବିଭିନ୍ନ

ଅଞ୍ଚଳରୁ ଆସି ମନ୍ତ୍ରିମଣ୍ଡଳକୁ ଦାବୀପତ୍ର ଦେଇଥିଲେ ।

ଏହି ପର୍ଯ୍ୟାୟରେ ସ୍ୱାଧୀନତା ସଂଗ୍ରାମର ସାଧାରଣ କର୍ମୀଙ୍କ ମଧ୍ୟରୁ ଅନେକ ଗାନ୍ଧୀବାଦୀ ନେତୃତ୍ୱର ରଚନାତ୍ମକ କାମ କରି, କୃଷକ ଆନ୍ଦୋଳନ ହିଂସା ପ୍ରଚାର କରୁଛି ଚେତାବନୀ ସତ୍ତ୍ୱେ ଏହି ଆନ୍ଦୋଳନରେ ସାମିଲ ହୋଇଥିଲେ । ହରେକୃଷ୍ଣ ମହତାବ ଖୋଲାଖାଲି ଏହି ଆନ୍ଦୋଳନର ବିରୋଧ କରିନଥିଲେ । ପ୍ରଥମ ଅବସ୍ଥାରେ ଜମିଦାରୀ ଅତ୍ୟାଚାର ବିରୋଧୀ ଭୂମିକା ନେଇଥିଲେ ହେଁ ପରେ ପରେ ଚାଷୀଙ୍କର ଓ ଗଡ଼ଜାତ ପ୍ରଜାଙ୍କର ଶ୍ରେଣୀଗତ ଦାବୀ ଉଠିବାରୁ ସେଥିରୁ ରାଜନୈତିକ କୌଶଳ ଧରି ଅଲଗା କରୁଥିଲେ । କଂଗ୍ରେସ ଭିତରେ ତାହାର ଆଦର୍ଶଗତ ବିରୋଧ ସଂଗଠିତ କରୁଥିଲେ । ଡକ୍ଟର ମହତାବ ଏହି ପ୍ରକାର କର୍ମକୌଶଳ ନେଲେ ।

୧୯୩୮-୩୯ରେ ସ୍ୱାଧୀନତା ପୂର୍ବ ୧୯୩୫ ଶାସନ ଖସଡ଼ା ଅନୁସାରେ ପ୍ରତିଷ୍ଠିତ କଂଗ୍ରେସ ସରକାର ଚାଷୀ ଆନ୍ଦୋଳନର କେତେକ ଗଣତାନ୍ତ୍ରିକ ଦାବୀକୁ ମାନିନେଲା । ବେଠି, ବେଗାରୀ, ମାଗଣ ଆଇନ କରି ବନ୍ଦ କରାଗଲା । ମହାଜନୀ ସୁଧ କଳନ୍ତର ଊଣା କରାଗଲା । ଗଞ୍ଜାମରେ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ସଂଗଠିତ ପ୍ରଚଣ୍ଡ ମୁସ୍ତାଦାରୀ ପ୍ରଥା ଆନ୍ଦୋଳନ ଯୋଗୁଁ କଂଗ୍ରେସ ଜେଲରେ ଥିବା ବେଳେ ପାରଳାଖେମୁଣ୍ଡି ମନ୍ତ୍ରିମଣ୍ଡଳର ରାଜସ୍ୱମନ୍ତ୍ରୀ ଗୋଦାବରୀଶ ମିଶ୍ରଙ୍କ ଦ୍ୱାରା ମୁସ୍ତାଦାରୀ ପ୍ରଥା ବିଲୋପ ହୋଇ ନଗଦ ସିସ୍ତ (ଖଜଣା) ଧାର୍ଯ୍ୟ କରାଗଲା ।

ଗଞ୍ଜାମରେ ସେହି କମ୍ୟୁନିଷ୍ଟମାନଙ୍କ ନେତୃତ୍ୱରେ ଚାଷୀ ଆନ୍ଦୋଳନ ଫଳରେ ମାନ୍ଦ୍ରାଜ ଲ୍ୟାଣ୍ଡ ଇଷ୍ଟେଟ ଆଇନରେ ସଂଶୋଧନ ଖଞ୍ଜି ଇନାମଦାରୀ ପ୍ରଥା ଲୋପ ହୋଇ ଜମିରେ ଚାଷୀ ହକ ପାଇଲା ।

**ଗଡ଼ଜାତ ପ୍ରଜା ଆନ୍ଦୋଳନ ମୁଖ୍ୟତଃ ଚାଷୀ ଆନ୍ଦୋଳନ**

ମୋଗଲବନ୍ଦୀରେ କଂଗ୍ରେସର ଶାସନ ଓ ଚାଷୀମାନଙ୍କର ଜମିଦାରର ବେଠି, ଭେଟି, ମାଗଣ ବିରୁଦ୍ଧରେ ଆନ୍ଦୋଳନ ଓ ତା' ସାଥିରେ ଆଂଶିକ ବିଜୟ ଗଡ଼ଜାତ ପ୍ରଜାଙ୍କ ଭିତରେ ନୂଆ ଜାଗରଣ ସୃଷ୍ଟି କଲା । ଭାରତର ୧୦୦୦ରୁ ଅଧିକ ଗଡ଼ଜାତରେ କଂଗ୍ରେସ କମିଟି ଗଢ଼ାଯିବ ନାହିଁ । ଦୋଳନ କଂଗ୍ରେସ ସଙ୍ଗଠନ ସ୍ଥିର କରିବା ଫଳରେ ଏହାର ସିଧାସଳଖ ବିରୋଧ ନ କରି ଜବାହାରଲାଲ ନେହେରୁ ସଭାପତି ଓ ଶେଖ ଅବଦୁଲ୍ଲା ସାଧାରଣ ସଂପାଦକ ଆଇ.ଅ.ଭା, ଷ୍ଟେଟ୍‌ସ ପିପୁଲ କନ୍‌ଫରେନ୍‌ସ ନାମରେ ଗଡ଼ଜାତ ପ୍ରଜାମାନଙ୍କ ସଂଗଠନ ଗଢ଼ାଗଲା । ଓଡ଼ିଶା ପ୍ରଦେଶ ସଂଗଠନର ସାରଙ୍ଗଧର ଦାସ ଥିଲେ ସାଧାରଣ ସଂପାଦକ । ତାହାର ନାମ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀ । ବିଭିନ୍ନ ଦେଶୀୟ ରାଜ୍ୟରେ ପ୍ରଜାମାନଙ୍କ ସ୍ୱାର୍ଥ ରକ୍ଷା ଲାଗି ଅନେକ କଂଗ୍ରେସ କର୍ମୀ ଯେପରି ପ୍ରଜାମଣ୍ଡଳର ନେତା ହେଲେ, ସେମିତି ବିଭିନ୍ନ ରାଜ୍ୟରେ ନୂତନ ଯୁବକ କମ୍ୟୁନିଷ୍ଟ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ନେତୃତ୍ୱ ଦଳରେ

ରହିଲେ । ସେତିକିବେଳେ ସେମିତି କମ୍ୟୁନିଷ୍ଟମାନଙ୍କ ନେତୃତ୍ୱ ଲୋକଙ୍କ ରାଜ୍ୟ ତେଲେଙ୍ଗାନା, ପଞ୍ଜାବ, କେରଳର ତ୍ରିବାଙ୍କୁଡ଼ କେରଳରେ ନେତୃତ୍ୱକାରୀ ଭୂମିକାରେ ରହିଥିଲେ ଓଡ଼ିଶାରେ ମଧ୍ୟ ଢେଙ୍କାନାଳ, ନୀଳଗିରି, ବଲାଙ୍ଗୀର, ନୟାଗଡ଼, ରଣପୁର, ପ୍ରଭୃତିରେ କମ୍ୟୁନିଷ୍ଟ ଯୁବକମାନେ ଆନ୍ଦୋଳନର ଅଗ୍ରଭାଗରେ ଥିଲେ । ନିଜାମର ରାଜକରି ବାହିନୀ ବିରୁଦ୍ଧରେ ଲଢ଼ି ୫ ହଜାର କମ୍ୟୁନିଷ୍ଟ ଓ ତ୍ରିବାଙ୍କୁଡ଼ କୋଚିନରେ ୪ ଶହ କମ୍ୟୁନିଷ୍ଟ ପ୍ରାଣ ଦେଇଥିଲେ । ସେମିତି ନୀଳଗିରିରେ କମ୍ୟୁନିଷ୍ଟମାନଙ୍କର ରଜାର କଳାପିଠିଆ ବାହିନୀ ସହିତ ସଶସ୍ତ୍ର ସଂଗ୍ରାମ ହୋଇଗଲା । ନୀଳଗିରିରେ ବନମାଳୀ ଦାସ, ଢେଙ୍କାନାଳରେ ବୈଷ୍ଣବ ପଟ୍ଟନାୟକ, ଆଠଗଡ଼ରେ ବ୍ରଜ ପଟ୍ଟନାୟକ, ନନ୍ଦ କିଶୋର ପଟ୍ଟନାୟକ, ବିବେକା ନନ୍ଦ ଦାସ, ଦୀନବନ୍ଧୁ ମିଶ୍ର, ରଣପୁରରେ ଗଙ୍ଗାଧର ମିଶ୍ର, ନୟାଗଡ଼ରେ ବାସୁଦେବ ଦୋରା, ବଲାଙ୍ଗୀରରେ ଯୁଧିଷ୍ଠିର ମିଶ୍ର, କୃଷ୍ଣପ୍ରସାଦ ମିଶ୍ର ପ୍ରମୁଖ କମ୍ୟୁନିଷ୍ଟ ଓ ସେମାନଙ୍କର ନିକଟ ସହଯୋଗୀ ଗଡ଼ଜାତଗୁଡ଼ିକର ଅନ୍ୟ ନେତାମାନଙ୍କ ସହିତ ରାଜାରାଜୁଡ଼ା ଶାସନ ବିରୁଦ୍ଧରେ ସଂଗ୍ରାମ କରିଥିଲେ, କାରାବରଣ କରିଥିଲେ । ବେଜେଲଗେଟ ହତ୍ୟା ପରେ ରଣପୁରବାସୀ ମୋଗଲବନ୍ଦୀ ଟାଙ୍ଗୀ, ବେଗୁନିଆ ଆସିଲା ପରେ କମ୍ୟୁନିଷ୍ଟମାନେ ହିଁ ସେମାନଙ୍କ ଥଇଥାନ କରାଉଥିଲେ ।

ମୋଗଲବନ୍ଦୀରେ କୃଷକ ଆନ୍ଦୋଳନ ଓ ଗଡ଼ଜାତରେ ପ୍ରଜା ମୁକ୍ତି ଆନ୍ଦୋଳନର ଏକ ଐତିହାସିକ ଯୋଗସୂତ୍ର ହେଲା ୧୯୩୮ ସେପ୍ଟେମ୍ବର ୧ କୃଷକ ଦିବସ । କଟକ ଜିଲ୍ଲା ଜେନାପୁରଠାରେ ୩୦ ହଜାର ଚାଷୀଙ୍କର ବିରାଟ ସମାବେଶ । ସେଠାରେ ଢେଙ୍କାନାଳର ୧୫ ହଜାରରୁ ଊର୍ଦ୍ଧ୍ୱ ପ୍ରଜା । ତା'ପରେ ପରେ ଠିକ୍ ଢେଙ୍କାନାଳରେ ଐତିହାସିକ ମେଳି, ଉଆସ ଘେରାଉ ଲୋକଙ୍କ ଉପରେ ଲାଠି, ହାତୀମଡ଼ା, ଜେଲ୍, ନିଆଁ ଜାଳି ଉଠିଲା । ଅକ୍ଟୋବର ୧୧ରେ ନୀଳକଣ୍ଠପୁରରେ ବାଜି, ନଟ, ରଘୁ, ଗୁରି, ଲକ୍ଷ୍ମଣଙ୍କୁ ବ୍ରିଟିଶ ବାହିନୀର ହତ୍ୟା । କଟକରେ ୬ଟି ଶହୀଦଙ୍କ ଶବ ପହୁଁଆର ସାରା ଓଡ଼ିଶା ଗଡ଼ଜାତ ମୁଲକ ଓ ମୋଗଲବନ୍ଦୀରେ ଅପୂର୍ବ ଉନ୍ମାଦନା, ରାଜତନ୍ତ୍ର ବିରୁଦ୍ଧରେ ବିଶାଳ ଜନମତ । ଏଥିରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ଓ କମ୍ୟୁନିଷ୍ଟ ଭଗବତୀ ଚରଣ, ଅନନ୍ତ, ବୈଦ୍ୟନାଥ ଓ ଆଉ ଅନେକ ମୋଗଲବନ୍ଦୀ କମ୍ୟୁନିଷ୍ଟ ଯୁବକଙ୍କ ଏହି ଆନ୍ଦୋଳନକୁ ଅବଦାନ ଚାଷୀ ଆନ୍ଦୋଳନର ଏକ ରୋମାଞ୍ଚକାରୀ ଅଧ୍ୟାୟ । ସେତେବେଳେ ଚାଷୀ ଓ ଗଡ଼ଜାତ ପ୍ରଜା ଆନ୍ଦୋଳନର ବାମପନ୍ଥୀ ମୁଖପତ୍ର 'କୃଷକ'ର ପ୍ରଥମ ପ୍ରସ୍ତ ସମସ୍ତ ଗଡ଼ଜାତରେ ପ୍ରଚାରିତ ହୋଇ ଆନ୍ଦୋଳନକୁ ମୁଖର କରେଇଥିଲା । ତାହାର ମୁଖ୍ୟ ସଂପାଦନା ଦାୟିତ୍ୱ ଭଗବତୀ ଚରଣ ପାଣିଗ୍ରାହୀ ଓ ଗୁରୁ ଚରଣ ପଟ୍ଟନାୟକଙ୍କ ଉପରେ, ଯଦିଚ ଶ୍ରୀମତୀ ମାଳତୀ ଦେବୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ସାରଙ୍ଗଧର ଦାସ ସମ୍ପାଦକମଣ୍ଡଳୀରେ ଥିଲେ ।

ସେମିତି ନୀଳଗିରିରେ କମ୍ୟୁନିଷ୍ଟ ବନମାଳି ଦାସଙ୍କ ନେତୃତ୍ୱରେ ଅଯୋଧ୍ୟାଠାରେ

ସମାବେଶ ଏବଂ ଦ୍ୱିତୀୟ ପର୍ଯ୍ୟାୟ ୧୯୪୭ରେ କମ୍ୟୁନିଷ୍ଟମାନଙ୍କ ସହିତ ରାଜାର କଳାପିଠିଆ ଗୁଣ୍ଡାଙ୍କ ସଶସ୍ତ୍ର ସଂଗ୍ରାମ ହିଁ ମୋଗଲବନ୍ଦୀରୁ ଓଡ଼ିଶା ସରକାର (କଂଗ୍ରେସ ସରକାର ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ)ର ପୁଲିସ ନୀଳଗିରିରେ ପ୍ରବେଶ କରିବାର ପଥ ପରିଷ୍କାର କରି ଦେଇଥିଲା ।

୧୯୪୭ରେ ଓଡ଼ିଶାରେ ଗଡ଼ଜାତ ମିଶିଲା । ସାମନ୍ତବାଦୀ ରାଜାମାନଙ୍କ ଗାଦୀ ଗଲା – ବେଠି, ବେଗାରି, ମାଗଣ, ଅତ୍ୟାଚାର ଗଲା । ମାତ୍ର ରାଜାମାନଙ୍କ ଉଆସ, ଭତ୍ତା, ହଜାର ହଜାର ଏକର ଜମି, ଜଙ୍ଗଲ, ବଗିଚା ଛାଡ଼ି ଦିଆଗଲା ।

୧୯୩୯-୪୫ରେ ଦ୍ୱିତୀୟ ମହାସମର ଏବଂ ୧୯୪୦ ଜୁନ୍‌ରେ କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦମାରେ କମ୍ୟୁନିଷ୍ଟ ନେତାମାନଙ୍କର ଗିରଫ, କଂଗ୍ରେସ ପରିଚାଳିତ ବ୍ୟକ୍ତିଗତ ସତ୍ୟାଗ୍ରହ କାଳରେ କଂଗ୍ରେସରେ ଥାଇ କମ୍ୟୁନିଷ୍ଟମାନଙ୍କର ଜେଲ ବରଣ ଏବଂ ୧୯୪୨ରେ ଭାରତଛାଡ଼ ଆନ୍ଦୋଳନ ବେଳେ ଅଧିକାଂଶ କମ୍ୟୁନିଷ୍ଟ ନେତାଙ୍କୁ ଜେଲ, କିଛିକାଳ ଲାଗି କୃଷକ ଆନ୍ଦୋଳନକୁ ନେତୃହରା କରିଥିଲା । ମାତ୍ର ଯେଉଁ ନୂତନ କମ୍ୟୁନିଷ୍ଟ ଯୁବକ କୃଷକ ଆନ୍ଦୋଳନ ଭିତରକୁ ଆସିଲେ ସେମାନେ ଓ ଆସ୍ତେ ଆସ୍ତେ ଜେଲରୁ ଖଲାସ ହେଉଥିବା କମ୍ୟୁନିଷ୍ଟ କୃଷକ ନେତାମାନେ ବ୍ରିଟିଶ ସରକାରର ଯୁଦ୍ଧଚାନ୍ଦା ଆଦାୟ ବିରୁଦ୍ଧରେ, ଜବରଦସ୍ତ ଆଦି ରକିକ୍ଜନ କରିବା ବିରୁଦ୍ଧରେ, ଗିରଫଦାର ଓ ପୁରୁଷ ଅତ୍ୟାଚାର ବିରୁଦ୍ଧରେ ଜାତୀୟ ନେତାମାନଙ୍କ ମୃତ୍ୟୁ ପାଇଁ କୃଷକମାନଙ୍କ ଭିତରେ ରହି କେତେଦୂର ସମ୍ଭବ ଚାଷୀ ଆନ୍ଦୋଳନକୁ ଜୀଆଇ ରଖିଲେ । ବିଶେଷତଃ ୧୯୪୩ରେ ବଙ୍ଗଳା ଦୁର୍ଭିକ୍ଷ ଓ ଓଡ଼ିଶାରେ କଟକ-ଗଞ୍ଜାମରେ ଦୁର୍ଭିକ୍ଷ, ଯେଉଁଥିରେ ବଙ୍ଗଳାରେ ୩୦ ଲକ୍ଷ ଲୋକ ଏବଂ ଓଡ଼ିଶାରେ ୩୫ ହଜାର ଲୋକ ମୃତ୍ୟୁ ମୁଖରେ ପଡ଼ିଲେ, ସେତେବେଳେ ମୁଷ୍ଟିମେୟ ହେଲେ ବି ଚାଷୀମାନଙ୍କୁ ଓ ଲୋକଙ୍କୁ ରକ୍ଷା କରିବା ପାଇଁ କମ୍ୟୁନିଷ୍ଟମାନେ ବ୍ରିଟିଶ ବିରୋଧୀ ଖାଦ୍ୟ ଆନ୍ଦୋଳନ କରି ନାନା ପୁଲିସ ନିର୍ଯ୍ୟାତନା, ଗିରଫଦାରୀ ବରଣ କଲେ ।

**ପରବର୍ତ୍ତୀ ପର୍ଯ୍ୟାୟ**

୧୯୪୫-୪୬ରେ ଓଡ଼ିଶାରେ ନୂତନ ପର୍ଯ୍ୟାୟ କୃଷକ ଆନ୍ଦୋଳନର ନେତୃତ୍ୱରେ ମୁଖ୍ୟତଃ କମ୍ୟୁନିଷ୍ଟମାନେ ହିଁ ରହିଲେ; କାରଣ କଂଗ୍ରେସ ସୋସାଲିଷ୍ଟ ପାର୍ଟିକୁ ଭାଙ୍ଗି ଦିଆଯାଇଥିଲା ଓ କମ୍ୟୁନିଷ୍ଟ ନ ହୋଇଥିବା କଂଗ୍ରେସ ସୋସାଲିଷ୍ଟମାନେ କଂଗ୍ରେସକୁ ଫେରିଗଲେ ଓ କମ୍ୟୁନିଷ୍ଟମାନଙ୍କୁ କଂଗ୍ରେସରୁ ବହିଷ୍କାର କରାଗଲା । ବସ୍ତୁତଃ ସଙ୍ଗଠିତ କୃଷକ ଆନ୍ଦୋଳନର ଦାୟିତ୍ୱ ବହନ କଲେ କମ୍ୟୁନିଷ୍ଟମାନେ ।

ତେଭାଗା ଆନ୍ଦୋଳନ, ଅର୍ଥାତ୍ ଭାଗଚାଷ ଆନ୍ଦୋଳନର ପ୍ରଥମ ପର୍ଯ୍ୟାୟ, ଜମିଦାରୀ ପ୍ରଥା ଉଚ୍ଛେଦ ଆନ୍ଦୋଳନ ମୁଣ୍ଡ ଟେକି ଉଠିଲା ଏବଂ ଏହାର ମୃତ୍ୟୁ ସଙ୍ଗଠକ ହେଲେ

କମ୍ୟୁନିଷ୍ଟମାନେ । କୃଷକସଭା ପୁନଃ ସଙ୍ଗଠିତ ହେଲା । ବିରାଟ ବିରାଟ ଚାଷୀ ସଭା ଅନୁଷ୍ଠିତ ହେଲା ।

ଗଞ୍ଜାମରେ ବିଶ୍ୱନାଥ ଦାଶଙ୍କ ଜମିଦାରୀ ରଇତ ସଭା ଚାରି ଶ୍ରେଣୀ ହେଉ ହେଉ ଚାଷୀଙ୍କଠାରୁ ବମିମ ହେଲା । ଗଞ୍ଜାମ, ବିରୁଦ୍ଧ ନିଉତ କୃଷକସଭାର ରୂପେ ଏକ ବଳିଷ୍ଠ ଅନୁଷ୍ଠାନର ରୂପେ ଉଭା ହେଲା । ପ୍ରଥମେ ଆସିକାରେ ଏବଂ ପରେ ବ୍ରହ୍ମପୁରରେ ଦୁଇ ହଜାରଯାଏ ସଭ୍ୟ, ବିଶେଷତଃ ମୁସ୍ତାଦାର ପ୍ରଥା ଗଞ୍ଜାମ ପ୍ରଥା ବିରୁଦ୍ଧରେ ସମାବେଶ କରି ସ୍ୱାଧୀନତା ପୂର୍ବ କଂଗ୍ରେସୀ ମଲତାବ ପଣିମଣର ପାଖରେ ନଗଦ ସିସ୍ତ ଧାର୍ଯ୍ୟ ପାଇଁ ଓ ମୁସ୍ତାଦାରୀ ପ୍ରଥା ଉଚ୍ଛେଦର ଦାବୀ ଆଗତ କଲେ । ତା'ର ଜବାବରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗୁଳି କରି ତାକରଡ଼ାରେ ହେମ ସମେତ ଛଅ ଜଣଙ୍କୁ ହତ୍ୟାକଲା । ମାତ୍ର ଶେଷରେ ମୁସ୍ତାଦାରୀ ପଦ ଲୋପ ହେଲା । ଇନାମଦାରୀ ପ୍ରଥା ମଧ୍ୟ ଲୋପ ହେଲା । ଏହି ଆନ୍ଦୋଳନର ସଫଳତା ହେତୁ ସାବାଳକ ଭୋଟରେ ଗଞ୍ଜାମରୁ ରେପଣ ଏମ୍.ପି. ଓ ଚାରିଜଣ ଏମ୍.ଏଲ୍.ଏ. ମର ଚତୁପାର୍ଶ୍ୱ ମଧ୍ୟରୁ କୋଳିମ ହୋଇଥିଲେ । ଗୁରୁ ଚରଣ ପଟ୍ଟନାୟକଙ୍କ ଦ୍ୱାରା ଲିଖିତ ଗଞ୍ଜାମରେ କରେ ପ୍ରଭାତ ଏବଂ ଗତିକୃଷ୍ଣ ପତିଙ୍କ ନିମ୍ନଲିଖିତ 'ରମିଚାରୀ ଉଦ୍ଦେଶ୍ୟରେ ଉଜରନୂଆ କଳେବର ଏବଂ ଶରତ ପଟ୍ଟନାୟକଙ୍କ, ସମାଜବାଦର କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର ମୁକ୍ତିଯୁଦ୍ଧର ପୃଷ୍ଠାମାନ ଏହି ଯୁଗାନ୍ତକାରୀ ଚାଷୀ ସଂଗ୍ରାମ ଓ କମ୍ୟୁନିଷ୍ଟମାନଙ୍କ ଐତିହାସିକ ଭୂମିକାରେ ସ୍ୱାକ୍ଷର ବହନ କରେ ।

ଗଞ୍ଜାମରେ ଲକ୍ଷାଧିକ ରଇତ, ଚାଷୀ ପରିବାର ନିଜ ଜମିର ଫସଲ ମୁସ୍ତାଦାରୀ ପ୍ରଥା ଉଚ୍ଛେଦ ଫଳରେ ମୁସ୍ତାଦାରୀ ଖଳାକୁ ନେଇ ରିକ୍ତ ହସ୍ତରେ ଫେରିବା ପରିବର୍ତ୍ତେ ନିଜ ଜମିର ଫସଲ ନିଜ ଘରକୁ ନେଲେ । ଏହା କେବଳ ମାତ୍ର କମ୍ୟୁନିଷ୍ଟଙ୍କ ନେତୃତ୍ୱାଧୀନ ରଇତ ସଭାର ଆନ୍ଦୋଳନରୁ ଅସଂଖ୍ୟ ସାଥୀଙ୍କ ପରିଚାଳନା ଦ୍ୱାରା ସମ୍ଭବ ଓ ସଫଳ ହେଲା ।

ଏହି ସମୟ ୧୯୪୬-୪୭ ଭିତରେ ରାମକୃଷ୍ଣ ପତି, ରାମଚନ୍ଦ୍ର ମିଶ୍ର ପ୍ରମୁଖଙ୍କ ନେତୃତ୍ୱରେ କଂଗ୍ରେସ ସରକାର ଓ ଜମିଦାର କନିକା ରଜାଙ୍କ ପ୍ରତିରୋଧ ସତ୍ତ୍ୱେ ୯ ମାଇଲ ଦୀର୍ଘ ପଟିଆ ବନ୍ଧ ନିର୍ମାଣ ଏବଂ ପଟିଆ ଓ ଗାଡ଼କଣରେ ପ୍ରାୟ ୨୫ଟି ଗ୍ରାମକୁ ଚିରାଚରିତ ପ୍ରଳୟଙ୍କରୀ ବନ୍ୟା ଓ ବାଲିଚରରୁ ରକ୍ଷା ସାରା ଓଡ଼ିଶାରେ ସେତେବେଳେ କୃଷକ ସଭା ଆନ୍ଦୋଳନର ମହାନ କୀର୍ତ୍ତି । କଟକରେ ମନ୍ତ୍ରୀ ଦପ୍ତର ଓ ବିଧାନସଭା ଥାଏ । ପ୍ରାୟ ପ୍ରତି ମାସରେ ପଟିଆରୁ ୫ରୁ ୧୦ ହଜାର ଚାଷୀ କଟକ ସହରରେ ପଟୁଆର କରି ଦାବୀ ପ୍ରତିଧ୍ୱନିତ କରୁଥା'ନ୍ତି । ସେହିପରି ପିପିଲି-ଜଟଣୀର କାକୁଡ଼ିଆଠାରେ କୃଷକ ସଭା ଓ ପ୍ରାଣନାଥ ଗୋକୁଳଙ୍କ ନେତୃତ୍ୱରେ ନଈ ବନ୍ଧ ନିର୍ମାଣ, ଆସିକାରେ ରୟତ ସଭା ନେତୃତ୍ୱରେ ବଡ଼ ବନ୍ଧ ନିର୍ମାଣ, ଯାଜପୁର ମଙ୍ଗଳପୁରର ଏର୍ଦ୍ଧା ମଲିଆରେ ବୈତରଣୀ ବନ୍ଧ ନିର୍ମାଣ କମ୍ୟୁନିଷ୍ଟମାନେ କିପରି

କୃଷକ କୂଳର ଦରଦୀ ସାଥୀ ତାହା ପ୍ରମାଣିତ କଲା ଓ ସେମାନଙ୍କୁ ନିଜ ଶକ୍ତିର ଆତ୍ମପ୍ରତ୍ୟୟ ଆଣିଦେଲା ।

୧୯୫୦-୫୧ଠାରୁ କଂଗ୍ରେସ ସରକାର କମ୍ୟୁନିଷ୍ଟମାନଙ୍କ ଉପରେ ଦମନର ସୁଅ ଛୁଟାଇବା ବେଳେ ଚାଷୀ, ଆଦିବାସୀ ବା ହରିଜନ ପିରବାରମାନେ ଗଞ୍ଜାମରେ, କଟକ ଓ ଆଠଗଡ଼, ପୁରୀ ଚନ୍ଦକା, ପଟିଆ ଟାଙ୍ଗୀ ଚଉଦ୍ୱାରରେ କମ୍ୟୁନିଷ୍ଟ ନେତାମାନଙ୍କୁ ପୁଲିସ ତାଡ଼ନାରୁ ରକ୍ଷାକରି ବର୍ଷ ବର୍ଷ କାଳ ଆଶ୍ରୟ ଦେଇଥିଲେ ।

ସ୍ୱାଧୀନତା ପରବର୍ତ୍ତୀ କାଳ କଂଗ୍ରେସ ଶାସନ ଏହିସବୁ ଆନ୍ଦୋଳନ ଫଳରେ ଜମିଦାରୀ ଉଚ୍ଛେଦ ଆଇନକୁ ଆଣିଲା । ଭାଗଚାଷୀ ପ୍ରଥା ଉଠାଇ ଭାଗ ଚାଷୀଙ୍କୁ ସ୍ୱତ୍ତ୍ୱ ଦିଆଯିବ ବୋଲି ଆଇନ କଲା । ମାତ୍ର Right fo resumption ପ୍ରଭୃତି (ନିଜ ଚାଷ କରିବା ଲାଗି ଭାଗଚାଷୀଙ୍କୁ ଉଚ୍ଛେଦ) ପ୍ରଭୃତି ଦଫା ଖଞ୍ଜି ଏହା ଚାଷୀମାନଙ୍କୁ କୋର୍ଟ କଚେରୀକୁ ଟାଣିଲା, ପୁଲିସ ଓ ଜମି ମାଲିକଙ୍କ ଅତ୍ୟାଚାର ଚାଲିଲା ।

ନବକୃଷ୍ଣ ଚୌଧୁରୀ ରାଜସ୍ୱମନ୍ତ୍ରୀ ଥିବାବେଳେ ଜମିଦାରୀ ପ୍ରଥା (ଉଚ୍ଛେଦ ଆଇନ ପ୍ରଣୀତ ହେଲା; ଏହା ଚାଷୀ ଆନ୍ଦୋଳନର ଆଉ ଏକ ବିଜୟ । ମାତ୍ର କ୍ଷତି ପୂରଣ ଖଞ୍ଜାଗଲା । ବିସ୍ତର ବାଗବଗିଚା, ଜମି ସେମାନଙ୍କୁ ଛାଡ଼ି ଦିଆଗଲା ।

କମ୍ୟୁନିଷ୍ଟମାନେ ହିଁ ରାଜ୍ୟସାରା ପ୍ରତିବାଦ ଆନ୍ଦୋଳନର ଜୁଆର ଛୁଟେଇଲେ । ମନମୋହନ ମିଶ୍ରଙ୍କ ଲିଖିତ "ଭଲା ରାମ ରାଇଜରେ, ଗୁଳି ପଛେ ଖାଉ ପ୍ରଜା – କ୍ଷତିପୂରଣ ପାଆନ୍ତୁ ଜମିଦାର ରଜା" ଗାଁଏ ଗାଁଏ ଧ୍ୱନିତ ହେଲା । ଏମିତିକି ଯାତ୍ରା ଦଳ ମଧ୍ୟ ଏହି ଗୀତଗାନ କଲେ ।

ଏହି ସମୟରେ ପୂର୍ବତନ କଂଗ୍ରେସ ସୋସାଲିଷ୍ଟ ପାର୍ଟି କଂଗ୍ରେସରୁ ବାହାରି ଆସି ପ୍ରଜା ସୋସାଲିଷ୍ଟ ଦଳ ଗଢ଼ି ନିଜସ୍ୱ କୃଷକ ସଭା ଗଠନ କଲେ ଓ ପୂର୍ବତନ 'କୃଷକ'ର ନବ ସଂସ୍କରଣରେ କୃଷକଙ୍କ କେତେକ ଦାବୀ ଘେନି ଆନ୍ଦୋଳନ ଚଳେଇଲେ । କମ୍ୟୁନିଷ୍ଟମାନଙ୍କର ବିରୋଧ ଉକ୍ତ ଆନ୍ଦୋଳନରେ ମୁଖ୍ୟ ଆଧାର ହେଲା । ତଥାପି ସେମାନେ ମଧ ଭାଗଚାଷୀମାନଙ୍କ 'ଦଶଣା, ଛ'ଣା ଆନ୍ଦୋଳନ', ଜମିଦାର ଓ ରଜାଙ୍କୁ କ୍ଷତିପୂରଣର ବିରୋଧ କରୁଥିଲେ । ମାତ୍ର ଏହି ଦଳ ଦୁଇଭାଗ ହୋଇଗଲା । ଲୋହିଆ ଗୋଷ୍ଠୀ ଓ ଜୟ ପ୍ରକାଶଙ୍କ ପ୍ରଜା ସୋସାଲିଷ୍ଟ ଏମାନେ ପୁଣି କିସାନ ମଜଦୁର ପ୍ରଜା ପାର୍ଟି ଗଢ଼ିଲେ; ପୁଣି ଦୁଇ ପାର୍ଟି ମିଶି ସଂଯୁକ୍ତ ସୋସାଲିଷ୍ଟ ପାର୍ଟି ଗଢ଼ିଲେ । ଅବଶେଷରେ ୧୯୭୬-୭୭ ବେଳକୁ ଏମାନଙ୍କର ବିଲୀନ ହେଲା ଜନତା ଦଳରେ । ଏହାର ଉଲ୍ଲେଖ କରିବାର କାରଣ, ଏମାନେ ସୋସାଲିଷ୍ଟ ନାମରେ ଯେତିକି ବା ଚାଷୀ ଆନ୍ଦୋଳନ କରୁଥିଲେ ଏବଂ ବିଶେଷତଃ କଟକର କେତେକାଞ୍ଚଳ, ବାଲେଶ୍ୱର ଓ ସମ୍ବଲପୁରରେ କିଛିଟା ପ୍ରଭାବ ସୃଷ୍ଟି କରିଥିଲେ; ତାହା ସଂପୂର୍ଣ୍ଣ ବିଲୋପ ହୋଇଗଲା । ସେମାନେ

ଚାଷୀ ଆନ୍ଦୋଳନର ଭୂ-ସଂସ୍କାର ଭୂମି ଦଖଲ, ଘରଡ଼ିହ ଦଖଲ, ଆନ୍ଦୋଳନ ବେଳକୁ ଦୃଶ୍ୟପଟରୁ ବସ୍ତୁତଃ ଚାଲିଯାଇଥିଲେ; ବା ପ୍ରଜା ସୁରକ୍ଷା ଆଇନ, ଜମିଦାରୀ ପ୍ରଥା ଉଚ୍ଛେଦ ଆଇନ, ଭୂ-ସଂସ୍କାର ଆଇନଗୁଡ଼ିକ ରାଜ୍ୟ ସରକାର ଆଣିବାକୁ ବାଧ ହେଲେ । ମାତ୍ର ସଂପୂର୍ଣ୍ଣ ସାମନ୍ତବାଦୀ ବ୍ୟବସ୍ଥାକୁ ଲୋପ କରାଗଲା ନାହିଁ । ପ୍ରଥମେ ସର୍ବୋଚ୍ଚ ସୀମା ଜମିର ପରିମାଣ 'ଷ୍ଟାଣ୍ଡାର୍ଡ଼' ଏକରକୁ ଧରି ଏମିତି ୬୦, ୯୯ ଏକର, ୧୩୨ ଏକର, ୧୬୦ ଏକର ଯାଏ ଜମି ମାଲିକଙ୍କ ପାଖରେ ରହିବାର ବ୍ୟବସ୍ଥା ଖଞ୍ଜାଗଲା । ଭୂ-ସଂସ୍କାର ହେବ ପ୍ରଚାର କରାଯାଇ ରାଜା ଜମିଦାର ମଠ ବ୍ୟକ୍ତିମାନଙ୍କୁ ଜମି ବେନାମି କରିବା, ଟ୍ରଷ୍ଟ ଗଢ଼ିବା, ବିକିଦେବା ଲାଗି ପ୍ରଶୟ ଦିଆଗଲା ।

କମ୍ୟୁନିଷ୍ଟମାନେ ଭାଗଚାଷୀଙ୍କ ସ୍ୱତ୍ୱ ଲାଭ ପାଇଁ ତୁମୂଳ ଆନ୍ଦୋଳନ ଚଳାଇଲେ । ଛତ୍ରପୁର, କଟକ ଓ ପୁରୀ, ବାଲେଶ୍ୱର ବିଭିନ୍ନ ଅଞ୍ଚଳରେ ଲକ୍ଷ ଲକ୍ଷ ଚାଷୀଙ୍କୁ ସ୍ୱତ୍ୱ ହାସଲ କରିବାରେ କମ୍ୟୁନିଷ୍ଟମାନେ ହିଁ ମୁଖ୍ୟ ଭୂମିକା ପାଳନ କରିଥିଲେ ।

୧୯୭୦ରେ ରଜା-ଜମିଦାରଙ୍କ ଉଦ୍‌ବୃତ୍ତ ଜମି ଦଖଲ ଆନ୍ଦୋଳନ ରାଜ୍ୟରେ ତୁମୂଳ ଆଲୋଡ଼ନ ସୃଷ୍ଟି କରିଥିଲା । ବଲାଙ୍ଗିର ମହାରଜାଙ୍କ ସାଲେଭଟା ଜମି ଦଖଲରେ ରାମକୃଷ୍ଣ ପତି, ପ୍ରସନ୍ନ କୁମାର ପଣ୍ଡା ଏବଂ ଢେଙ୍କାନାଳ ରଜାଙ୍କ ମହିଁଷାପାଟ ଜମି ଦଖଲରେ ରାମଚନ୍ଦ୍ର ମିଶ୍ର ପ୍ରମୁଖଙ୍କ କାରାବରଣ ଜମି ଦଖଲ ଆନ୍ଦୋଳନକୁ ନୂଆ ପର୍ଯ୍ୟାୟକୁ ଘେନି ଯାଇଥିଲା ।

୧୯୫୨ର ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ ହୀରାକୁଦ ବନ୍ଧ ବୁଡ଼ିରେ ଜଳମଗ୍ନ ହୋଇଥିବା ତିନିଶହରୁ ଅଧିକ ଗାଁ'ର ଲକ୍ଷ ଲକ୍ଷ ଲୋକଙ୍କର ଥଇଥାନ, କ୍ଷତିପୂରଣ ଯେଉଁ ବିରାଟ ଆନ୍ଦୋଳନ ହେଲା, ତା'ର ପୁରୋଭାଗରେ ଥିଲେ କମ୍ୟୁନିଷ୍ଟ ନେତା ପ୍ରସନ୍ନ କୁମାର ପଣ୍ଡାଙ୍କ ନେତୃତ୍ୱରେ କମ୍ୟୁନିଷ୍ଟମାନେ । ଅନେକ ଲୋକଙ୍କୁ ଥଇଥାନ କରିବାରେ ଓ ଉପଯୁକ୍ତ କ୍ଷତିପୂରଣ ଦେବାରେ କଂଗ୍ରେସ ସରକାରକୁ ବାଧ କରାଯାଇଥିଲା । ବସନ୍ତପୁରରେ କଂଗ୍ରେସ ସରକାର ଗୁଳିରେ ୩ ଜଣ ନିହତ ହେଲେ ଶତାଧିକ ପୁରୁଷ ମହିଳା ଗିରଫ ହେଲେ । ଉକ୍ତ ଆନ୍ଦୋଳନ ଆଜି ବି ଅବ୍ୟାହତ ରହିଛି ।

**ଅର୍ଦ୍ଧ ସାମନ୍ତବାଦୀ କୃଷି ବ୍ୟବସ୍ଥାର ବିଲୋପରେ ଚାଷୀ ମୂଲିଆର ମୁକ୍ତି**

ଅଚଳ ଶାସନ ପ୍ରବର୍ତ୍ତନ ହେବା ପରେ ଅମଲାତନ୍ତ୍ରର ଚାଷୀ ବିରୋଧୀ କାର୍ଯ୍ୟକଳାପ ବିରୁଦ୍ଧରେ କମ୍ୟୁନିଷ୍ଟମାନେ ଯେଉଁଠି ଥିଲେ ସେଠାରେ ସଂଗ୍ରାମ ଚଳେଇଲେ । ସେହିକାଳଠାରୁ ଚାଷୀ ଓ ମୂଲିଆଙ୍କ ସ୍ୱାର୍ଥରକ୍ଷା ପାଇଁ ଭାଗଚାଷୀ ସ୍ୱତ୍ୱ ପାଇଁ ଜମି ପାଇଁ ମରୁଡ଼ି-ବନ୍ୟାରେ ରିଲିଫ ପାଇଁ, ଲୁଣଘେରି ପାଇଁ, ବାଲିଚର ଉଦ୍ଧାର ପାଇଁ କଂଗ୍ରେସ, କଂଗ୍ରେସ ଗଣତନ୍ତ୍ର, ଜନକଂଗ୍ରେସ ସ୍ୱତନ୍ତ୍ର, ଜନତା ଓ କଂଗ୍ରେସ (ଇ) ସରକାରଗୁଡ଼ିକଙ୍କ ରାଜୁତିରେ ଅସଂଖ୍ୟ ଚାଷୀ ଆନ୍ଦୋଳନର ମୁଖ୍ୟ କର୍ତ୍ତା ଥିଲେ କମ୍ୟୁନିଷ୍ଟ । ୧୯୭୦ରେ ବଲାଙ୍ଗିର ମହାରାଜା, ଢେଙ୍କାନାଳ ରଜା ଓ

ବଡ଼ବଡ଼ ଜମିମାଲିକଙ୍କ ଜମି ଦଖଲ ଆନ୍ଦୋଳନରେ କମ୍ୟୁନିଷ୍ଟମାନେ ହିଁ ପ୍ରମୁଖ ଭୂମିକାରେ ରହି ଆସିଲେ । କଟକ ଜିଲ୍ଲା ବାଲିସୁଆଁରେ ଭାଗଚାଷୀ ଆନ୍ଦୋଳନର ନେତା କମ୍ୟୁନିଷ୍ଟ ଯୁବକ ମୂରଲୀଙ୍କ ପରିଡ଼ା ପୁଲିସ ହାତରେ ପ୍ରାଣଗଲା । କେତେ କମ୍ୟୁନିଷ୍ଟଙ୍କୁ ହତ୍ୟା ମାମଲାରେ ଜଡ଼ିତ କରାଗଲା । ଗିରଫଦାରି, ଲାଠିମାଡ଼ର ସୁଅ ଛୁଟିଥିଲା । ପ୍ରାୟ ପ୍ରତିବର୍ଷ ବିଧାନସଭା ସମ୍ମୁଖରେ ହଜାର ହଜାର ଚାଷୀମୂଲିଆଙ୍କ ବିକ୍ଷୋଭ ପଟୁଆର, ଆଇନ ଅମାନ୍ୟ ଆନ୍ଦୋଳନ, ମହାଯୁଦ୍ଧ ଉଦ୍ଧାର ଆନ୍ଦୋଳନ ବାଲେଶ୍ୱରରେ ବିଶ୍ୱାସୀ କବଲା ବିରୋଧୀ (ଜମିଦାର ମହାଜନମାନେ କରଜ ଦେଇ ଜମିସବୁ କବଲା କରି ନେଇଥିଲେ, ମାତ୍ର କରଜ ଶୁଝିଲେ ବି ଭସ୍ମ କବଲା ହେତୁ ଜମି ଫେରାଇ ନ ଥିଲେ – ଏହାକୁ ବିଶ୍ୱାସୀ କବଳା କୁହାଯାଉଥିଲା) ଚାଷୀ ଆନ୍ଦୋଳନରେ କମ୍ୟୁନିଷ୍ଟମାନେ ହିଁ ନେତୃତ୍ୱ ଦେଇ ଆସିଛନ୍ତି ।

୧୯୭୦ରୁ ଏ ଯାଏ ଏମିତି କୌଣସି ବର୍ଷ ନାହିଁ ଯେଉଁଥିରେ କି ହୁଏତ ବିଧାନସଭା ଓ ସେକ୍ରେଟେରିଏଟ୍ ଆଗରେ ବିଶେଷତଃ କଲେକ୍ଟରେଟ ତହସିଲ, ବି.ଡ଼ି.ଓ. ଓ ଏସ୍.ଡ଼ି.ଓ ଅଫିସ୍ ଆଗରେ ରାଜ୍ୟବ୍ୟାପୀ ଚାଷୀମୂଲିଆ ବିକ୍ଷୋଭ କମ୍ୟୁନିଷ୍ଟମାନେ ସଂଗଠିତ କରିନାହାନ୍ତି । ଏବେ ପଡ଼ିଆ ଓ ଉଦ୍‌ବୃତ୍ତ ଜମି ଦଖଲ, ଘରଡ଼ିହ ଦଖଲ, ଦଖଲି ଜମିରେ ପଟ୍ଟା ହାସଲ, ଗଛପଟା ପ୍ରଭୃତି ଆନ୍ଦୋଳନ ସେମାନଙ୍କ ଦ୍ୱାରା ଚାଳିତ । ଖାଦ୍ୟ, ଦରଦାମ ବୃଦ୍ଧି, ଋଣ, ପ୍ରଭୃତି ଚାଷଜାତ ପଦାର୍ଥର ଉପଯୁକ୍ତ ମୂଲ୍ୟ ଲାଗି ଆନ୍ଦୋଳନର ୧୯୬୨ରେ କମ୍ୟୁନିଷ୍ଟ ପାର୍ଟି ବିଭକ୍ତୀକରଣ ଅଗ୍ରଭାଗରେ ସେମାନେ ପରେ ବି କମ୍ୟୁନିଷ୍ଟ ପାର୍ଟି (ମାର୍କସବାଦୀ)ର ଓଡ଼ିଶା କୃଷକସଭା ଅନୁରୂପ ଆନ୍ଦୋଳନ ମଧ କରୁଛି । ଐକ୍ୟବଦ୍ଧ ଚାଷୀ ମୂଲିଆ ବୁର୍ଜୁଆ ଶାସକ ଗୋଷ୍ଠୀ ବିରୁଦ୍ଧରେ ଲଢ଼େଇ କରି ଯେପରି ଶକ୍ତିଶାଳୀ ହୁଅନ୍ତି, ତାହା ହେଉ ନାହିଁ । ଆମୂଳ ଭୂ-ସଂସ୍କାର, ଜମି ବଣ୍ଟନ, ଘରଡ଼ିହ, ଜଳସେଚନ, ସୁଲଭ ଦରରେ ଚାଷୋପଯୋଗୀ ଉପକରଣ, ଉପଯୁକ୍ତ ଦର ଓ ଋଣ ମୁକ୍ତି ଦ୍ୱାରା ଓଡ଼ିଶାରୁ ଅର୍ଦ୍ଧ ସାମନ୍ତବାଦୀ କୃଷି ବ୍ୟବସ୍ଥାକୁ ମୂଳୋତ୍ପାଟନ ନ କଲେ ଶିଳ୍ପର ବିକାଶ ହେବ ନାହିଁ କି ବେକାରୀ, ଦାରିଦ୍ର୍ୟ, ଅନାହାର ଯିବ ନାହିଁ; କି ଅଧିକ ଉତ୍ପାଦନ ହେବ ନାହିଁ ।

ଭବିଷ୍ୟତର ଚାଷୀ ମୂଲିଆ ଆନ୍ଦୋଳନ ଏହି ଦିଗରେ ଆଜି ପ୍ରଧାବିତ । କମ୍ୟୁନିଷ୍ଟମାନଙ୍କର ଲକ୍ଷ୍ୟ ସମାଜବାଦର ପ୍ରତିଷ୍ଠା ଲାଗି ଏହା ଅପରିହାର୍ଯ୍ୟ ପୂର୍ବ ସର୍ତ୍ତ ।

୧୯୩୫-୩୬ଠାରୁ ୧୯୮୮-୮୯ଯାଏ ଓଡ଼ିଶାରେ କମ୍ୟୁନିଷ୍ଟମାନେ ଅଳ୍ପ ସଂଖ୍ୟାରୁ ଆଜି ଏକ ବିରାଟ ଆନ୍ଦୋଳନରେ ପରିଣତ ହେବାଯାଏ ଚାଷୀ ଓ ମୂଲିଆମାନଙ୍କ ସାମନ୍ତବାଦୀ ପ୍ରଥା ବିରୋଧୀ ଆନ୍ଦୋଳନରେ କାୟାର ଛାୟା, ନଖର ମାଉଁସ ଭଳି ସଂଶ୍ଳିଷ୍ଟ ହୋଇ ଆସିଛନ୍ତି । ଜୟହୋଇଛି, ବେଳେ ବେଳେ ଅଶେଷ ଦମନ ଅତ୍ୟାଚାର ସହି ପଛଘୁଞ୍ଚା ଦେଇଛି । ମାତ୍ର ଓଡ଼ିଶାରେ ସାମନ୍ତବାଦୀ ପ୍ରଥାକୁ ବିଲୋପ କରିବାରେ ଅନ୍ୟାନ୍ୟ ପ୍ରଗତିଶୀଳ ଗଣତାନ୍ତ୍ରିକ ଶକ୍ତିଙ୍କ

ସହିତ କମ୍ୟୁନିଷ୍ଟମାନେ କେବଳ ମିଳିତ ହୋଇନାହାନ୍ତି, ଅଗ୍ରଭାଗରେ ରହି ଆସିଛନ୍ତି । ସାମନ୍ତବାଦର ଅବଶେଷ ଅର୍ଦ୍ଧ ସାମନ୍ତବାଦୀ ବ୍ୟବସ୍ଥାକୁ ସମୂଳେ ଲୋପ କରିବା ସଂଗ୍ରାମରେ ଆଜି ସେମାନେ ହିଁ ମୁଖ୍ୟ ଭୂମିକା ନେଉଛନ୍ତି ।

୧୯୬୪ରେ କମ୍ୟୁନିଷ୍ଟ ପାର୍ଟି ବିଭାଜନ ପରେ ସମାନ୍ତରାଳ ଓଡ଼ିଶା ରାଜ୍ୟ କୃଷକ ସଭା ଓ ସମାନ୍ତରାଳ କ୍ଷେତ ମୂଲିଆ ସଂଘ ଗଢ଼ାଯାଇ ସମାନ ସମାନ ଦାବୀ ପାଇଁ ଏହି ସଙ୍ଗଠନ ସଂଗ୍ରାମ କରୁଥିଲେ ହେଁ, ତାହା ପୁଞ୍ଜିବାଦୀ ସରକାର ଯେଉଁ ଅର୍ଦ୍ଧ ସାମନ୍ତବାଦୀ ପ୍ରଥା ବଜାୟ ରଖିଛି, ତାହା ବିରୁଦ୍ଧରେ ଚାଷୀ ମୂଲିଆ ଆନ୍ଦୋଳନ ଭାଗ ଭାଗ ହୋଇଯାଉଛି – ଚାଷୀ ମୂଲିଆଙ୍କ ଶ୍ରେଣୀ ଶତ୍ରୁମାନେ ହିଁ ତା'ର ପ୍ରୟୋଗ ନେଉଛନ୍ତି । ସଂଘବଦ୍ଧ ଚାଷୀ ଓ କ୍ଷେତ ମୂଲିଆ ଆନ୍ଦୋଳନ ହିଁ ଏହି ଅର୍ଦ୍ଧ ସାମନ୍ତବାଦୀ ବ୍ୟବସ୍ଥାକୁ ଲୋପ କରିବାର ପ୍ରଧାନ ଆୟୁଧ ହେବ ।

□□□

# ରାଜ୍ୟ ସି.ପି.ଆଇ-ସି.ପି.ଆଇ(ଏମ୍)ର ମିଳିତ ଜନସମାବେଶର ତାତ୍ପର୍ଯ୍ୟ

ରାଜ୍ୟ ରାଜଧାନୀ ଭୁବନେଶ୍ୱରରେ ଜନସମାବେଶ ନୂଆ କଥା ନୁହେଁ । ସ୍ୱାଧୀନତା ପରବର୍ତ୍ତୀ କାଳରେ ଭୁବନେଶ୍ୱର, ରାଜଧାନୀ ହେବା ପରଠାରୁ ଅବଧି ସି.ପି.ଆଇ. ହିଁ ବଜେଟ ଅଧିବେଶନ କାଳରେ ବାରମ୍ବାର ସମାବେଶ କରାଇଛି । ପରବର୍ତ୍ତୀ କାଳରେ ସି.ପି.ଆଇ.(ଏମ୍) ଅନ୍ୟାନ୍ୟ ରାଜନୈତିକ ଦଳଙ୍କ ପକ୍ଷରୁ ମଧ୍ୟ ଏପରି ସମାବେଶ ଅନୁଷ୍ଠିତ ହୋଇଛି । ବାମପନ୍ଥୀ ଦଳମାନଙ୍କ ଏପରି ସମାବେଶ ସାଙ୍ଗକୁ ପରବର୍ତ୍ତୀ କାଳରେ ଶାସନ ଗାଦିରେ ବସିଥିବା କଂଗ୍ରେସ ଦଳ ମଧ୍ୟ ସରକାରୀ ଦଳ, ପ୍ରଭାବ, ବିପୁଳ ଅର୍ଥ ବ୍ୟୟକରି ଏପରି ସମାବେଶ କରାଇଥାଏ । ରାଜ୍ୟ ଶାସନରେ ଅତୀତରେ ଆସୀନ ହୋଇଥିବା ଓ ପୁଣି ଶାସନ କ୍ଷମତା ପ୍ରୟାସୀ ରାଜନୈତିକ ଦଳ ଏପରି ସମାବେଶ କରାଇବା ଦେଖାଯାଉଛି ।

ଏହା ବ୍ୟତୀତ ଶିକ୍ଷକ, ଶ୍ରମିକ, ସରକାରୀ କର୍ମଚାରୀ, ଛାତ୍ର, ଯୁବକ ସଙ୍ଗଠନଗୁଡ଼ିକ ଦ୍ୱାରା ଛୋଟ ବଡ଼ ଧରଣର ଜନସମାବେଶ ଆପଣାର ଅର୍ଥନୈତିକ ଗଣତାନ୍ତ୍ରିକ ଜନଗୋଷ୍ଠୀଗତ, ପେଶା ଓ ବେଉସାଗତ ଦାବୀ ଘେନି ଅନୁଷ୍ଠିତ ହୋଇଥାଏ ।

ତେବେ ୧୯୮୮ ମଇ ଏଗାର ତାରିଖରେ ସି.ପି.ଆଇ. ଏବଂ ସି.ପି.ଆଇ.(ଏମ୍)ର ମିଳିତ ଆହ୍ୱାନରେ ହେବାକୁ ଥିବା ଜନସମାବେଶ କ'ଣ ଏପରି ଏକ ପର୍ଯ୍ୟାୟଭୁକ୍ତ ସମାବେଶ ନା ଏହାର କୌଣସି ବିଶେଷ ବୈଶିଷ୍ଟ୍ୟ, ନିର୍ଦ୍ଦିଷ୍ଟ ତାତ୍ପର୍ଯ୍ୟ ଓ ସୁଦୂରପ୍ରସାରୀ ରାଜନୈତିକ, ଅର୍ଥନୈତିକ, ସାମାଜିକ ତାତ୍ପର୍ଯ୍ୟ ରହିଛି ?

ଏହି ସମାବେଶର ପ୍ରସ୍ତୁତି ସମ୍ପର୍କରେ ପ୍ରତିକ୍ରିୟା ପ୍ରକାଶ କରି କିଏ କିଏ ମତ ଦେବାର ଶୁଣାଯାଏ ଯେ ଫେବୃଆରୀ ୨୩ରେ ଜନତା ଦଳ ଓଡ଼ିଶା ବଞ୍ଚାଓ ଦିବସ ପାଳନ କରି ଏକ ବଡ଼ ଧରଣର ସମାବେଶ କରାଇଥିଲା ଏବଂ ଶାସକ ଦଳ ସରକାରୀ ଦଳକୁ ହଜାର ହଜାର ଗାଡ଼ି ଟ୍ରକ ଲଗେଇ ମାର୍ଚ୍ଚ ୨୧ରେ ମଧ୍ୟ ସମାବେଶ କରାଇ ନିଜ ସରକାରର ପ୍ରଶସ୍ତି ଗାନ କରିଥିଲା । ତେଣୁ ତାହାର ଦେଖାଦେଖି ସି.ପି.ଆଇ.-ସି.ପି.ଆଇ.(ଏମ୍) ଏପରି ଏକ ସମାବେଶ କରାଉଛନ୍ତି ।

କିନ୍ତୁ ଏହି ସମାବେଶ ଏପରି ଏକ ସରଳ, ସଂକୀର୍ଣ୍ଣ ସୀମିତ ରାଜନୈତିକ ପ୍ରତିଯୋଗିତା ନୁହେଁ । ଏହି ସମାବେଶ ଭାରତରେ ସାଂପ୍ରତିକ ରାଜନୈତିକ ଶକ୍ତି ଭାରସାମ୍ୟ ପରିବର୍ତ୍ତନ ପ୍ରକ୍ରିୟାର ଦ୍ୱାରା ରାଜ୍ୟସ୍ତରର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ।

ଏଠିକି କେଉଁମାନେ ଆସିବେ ?

ଏହି ସମାବେଶ ଆୟୋଜନ କରିଥିବା ଦୁଇଟି କମ୍ୟୁନିଷ୍ଟ ପାର୍ଟିର ଗଣଭିତ୍ତି ହେଲେ ଆଜିର ବିକାଶଶୀଳ ଭାରତବର୍ଷରେ ପ୍ରଚଳିତ ପୁଞ୍ଜିବାଦୀ ବ୍ୟବସ୍ଥାରେ ଶୋଷଣ, ଅତ୍ୟାଚାର, ସାମାଜିକ ବାଛବିଚାରରେ ଜର୍ଜରିତ ଓ ଗଣତାନ୍ତ୍ରିକ ଅଧିକାରରୁ ବଞ୍ଚିତ, ମେହନତକାରୀ ଜନତା । ସେମାନେ ଗାଁ' ଗହଳର ସରକାରୀ ନୀତି ହେତୁ ପ୍ରବଞ୍ଚିତ, ପ୍ରତାରିତ । ଶହେକେ ସତୁରୀ ଭାଗରୁ ଅଧିକ ଛୋଟ, ମଧ୍ୟମ, ନାମକୁ ମାତ୍ର ଚାଷୀ । ଗାଁ'ଗହଳର କ୍ଷେତମୂଲିଆ । ଯେଉଁମାନେ ବାରମାସ କାମଧନ୍ଦା ନ ପାଇ ସହରରେ ଆସି ବାରଦୁଆର ଶୁଣ୍ଢିପିଣ୍ଡା ହୁଅନ୍ତି, ଅବା ଦାଦନ କୁଲି ହୋଇ ରାଜ୍ୟ ରାଜ୍ୟାନ୍ତରରେ ଅବର୍ଣ୍ଣନୀୟ ଶୋଷଣ, ମୃତ୍ୟୁ ମଡ଼କର ଶିକାର ହୁଅନ୍ତି । ଆଉ ଆସିବେ ଆଦିବାସୀ ହରିଜନ ଭୂମିହୀନ ଲୋକେ । ଆସିବେ ଛଟେଇ, ଗିରିଫ, ମାଲିକର ଗୁଣ୍ଡାମି ଓ ପୁଲିସ ଦ୍ୱାରା ମିଛ ମାଲିମକଦ୍ଦମାରେ ପଡୁଥିବା ଓ ମାଲିକ ପକ୍ଷର ହୋଇ ପୁଲିସ ପିଟୁଥିବା ଶ୍ରମିକ । ଆସିବେ ନାରୀ, ପୁରଷ, ବୃଦ୍ଧ, ଯୁବକ । ଆଉ ଆସିବେ ବେକାରଗ୍ରସ୍ତ, ଶିକ୍ଷିତ ଅର୍ଦ୍ଧଶିକ୍ଷିତ ଯୁବକ ଓ ଏ ସମାଜରେ ଶିକ୍ଷାପାଇ ସୁଦ୍ଧା ଆଗାମୀ ଭବିଷ୍ୟତରେ ଓ ବର୍ତ୍ତମାନ ରାଜରାସ୍ତାରେ ବୁଲୁଥିବା ଯୁବକ ଓ ଛାତ୍ର । ଆସିବେ ସହର ସହରତଳିର ବାସିନ୍ଦା, ଛୋଟ ଦୋକାନୀ, ପାନବରଜି, ଆଖୁଚାଷୀ, ଝୋଟଚାଷୀ । ଖଣିଖାଦାନର ଆଉ ଶିଳ୍ପ ପ୍ରକଳ୍ପର ଶ୍ରମିକ । ବର୍ଷ ବର୍ଷ ଧରି କାମ କରି ବି ସ୍ଥାୟୀ ନ ହେଉଥିବା ଏନ୍.ଏମ୍.ଆର୍. କର୍ମଚାରୀ । ବଧୂହତ୍ୟା, ଯୌତୁକ ପୀଡ଼ିତା, ମଧ୍ୟବିତ୍ତ ଘରର ଝିଅବୋହୂ ଆଉ ଦିନରାତି ସ୍ୱାମୀ ପୁଅ ସଙ୍ଗରେ ଖଟି ଦାନାକନା ନ ପାଉଥିବା ଆଦିବାସୀ ହରିଜନ ମହିଳା ।

ଅର୍ଥାତ୍ ଏହି ସମାବେଶକୁ ଆସିବେ ଯେଉଁମାନେ ମାଟି ତାଡ଼ି ଖରାକାକର ଭୋକ ଉପାସ ସହି ଦେଶ ଅର୍ଥନୀତିର ଅନ୍ୟତମ ମୂଳାଧାର ଫସଲ ଫଳାଉଥିବା ଅଥଚ ଜମିରୁ କିଞ୍ଚିତ ଓ ଫସଲର ଉଚିତ ମୂଲ୍ୟରେ ପ୍ରବଞ୍ଚିତ ଚାଷୀ ମୂଲିଆ । ଅନ୍ୟ ପକ୍ଷରେ ଖଣିଖାଦାନ, ଜଙ୍ଗଲ ଜଳରେ ଉତ୍ପାଦନ କରୁଥିବା ଶ୍ରମିକ ଏବଂ ସମଗ୍ର ଅଥନୀତିକ ଭିତ୍ତି ଗଠନ କରୁଥିବା ଏହି ଦୁଇ ମୌଳିକଶ୍ରେଣୀ ଜନସଂପ୍ରଦାୟର ସହାୟକ ସେବାକାରୀ ସଂସ୍ଥାରେ ନାମ କରୁଥିବା ମେହନତୀ ଜନତା ।

ଅର୍ଥାତ୍ ଆମର ଏହି ସମାବେଶକୁ ଆସିବେ ସେହିମାନେ ଯେଉଁମାନେ ଆଜିର ଅର୍ଥନୈତିକ ପୁଞ୍ଜିବାଦୀ ବ୍ୟବସ୍ଥା ବଡ଼ ବଡ଼ ଜମିମାଲିକଙ୍କ ଦ୍ୱାରା, ଫଟକାବଜାରୀ, ମହଜୁତଖୋର, କଳାଟଙ୍କା, ସିନ୍ଦୁକ ବାଲାଙ୍କ ଦ୍ୱାରା ଏବଂ ବିଦେଶୀ ବହୁଜାତିକ ପୁଞ୍ଜି ଦ୍ୱାରା

ସେବିତ ଓ ପରିପୁଷ୍ଟ ସରକାରର ଅର୍ଥନୈତିକ ଓ ସାମାଜିକ ନୀତିର ପରିବର୍ତ୍ତନ ଚାହାନ୍ତି ଏବଂ ଏହି ବ୍ୟବସ୍ଥା ଯେଉଁମାନେ ବଦଳେଇ ଦେଶକୁ ଆଗେଇ ନେବେ ସେମାନେ ଏହି ଶ୍ରେଣୀମାନଙ୍କ ସ୍ୱାର୍ଥକୁ ଆଗ ଧ୍ୟାନ ଦେଇ ପ୍ରତିକାର ବିଧାନ କରିବେ, ସେପରି ଏକ ବିକଳ୍ପ ସରକାର ଓ ସେପରି ଏକ ବିକଳ୍ପ କାର୍ଯ୍ୟକ୍ରମ, ସେପରି ଏକ ବିକଳ୍ପ ଅର୍ଥନୀତିର ପ୍ରବର୍ତ୍ତନ ପାଇଁ ସେମାନଙ୍କର ଅନ୍ତରର ଅକୁହା ଭାଷା ଏହି ସାମବେଶରେ ପ୍ରକଟିତ ହେବ ।

ତାହା ହିଁ ଏହି ସମାବେଶର ଗଠନ ପ୍ରଣାଳୀ । ଏହା ହିଁ ଏକ ସମାବେଶର ରାଜନୈତିକ ଓ ସାମାଜିକ ଆଭିମୁଖ୍ୟ । ସମାଜ ବ୍ୟବସ୍ଥାର, ସମାଜରେ ପ୍ରଚଳିତ ଅର୍ଥନୈତିକ ଗଠନ ରୀତିର ପରିବର୍ତ୍ତନର କାର୍ଯ୍ୟକ୍ରମକୁ ଘେନି ଓଡ଼ିଶାର ଉନ୍ନୟନ, ଓଡ଼ିଶାରେ ରାଜନୈତିକ ଶକ୍ତି ଭାରସାମ୍ୟରେ ପରିବର୍ତ୍ତନ, ଓଡ଼ିଶାରେ ସମ୍ପଦ ଉତ୍ପାଦନକାରୀ ଶ୍ରେଣୀ ଓ ଜନଗୋଷ୍ଠୀମାନଙ୍କର ସ୍ୱାର୍ଥରକ୍ଷା କରି ଜାନକୀ ସରକାରକୁ ହଟାଇବା ଓ କେନ୍ଦ୍ରରେ ରାଜୀବ ସରକାରକୁ ହଟାଇବା ଏହି ସମାବେଶର ମର୍ମବାଣୀ ।

**ବାମପନ୍ଥୀ ଐକ୍ୟ, ବାମ ଗଣତାନ୍ତ୍ରିକ ଐକ୍ୟ ଓ ବିକଳ୍ପ କାର୍ଯ୍ୟସୂଚୀ ମୂଳ ଆଧାର**

ସ୍ୱାଧୀନତା ପରବର୍ତ୍ତୀ ଦଳ ପ୍ରଥମ ପାଦରେ ଭାରତର ରାଜନୈତିକ କ୍ଷେତ୍ରରେ କମ୍ୟୁନିଷ୍ଟ ପାର୍ଟି ହିଁ ମୁଖ୍ୟ ପ୍ରଗତିଶୀଳ, ବାମପନ୍ଥୀ ଶକ୍ତି ହିସାବରେ ପ୍ରତିଷ୍ଠିତ ବୁର୍ଜୁଆ କଂଗ୍ରେସ ଶାସନର ପ୍ରଧାନ ବିରୋଧୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା । ପାର୍ଲାମେଣ୍ଟରେ ମୁଖ୍ୟ ବିରୋଧୀ ଦଳର ମାନ୍ୟତା ପାଇଥିଲା ।

ଅନ୍ୟାନ୍ୟ ଦକ୍ଷିଣପନ୍ଥୀ ବୁର୍ଜୁଆ ଦଳଙ୍କଠାରୁ ଭିନ୍ନ ଏହି କମ୍ୟୁନିଷ୍ଟ ବିରୋଧ ପ୍ରଚଳିତ ସମାଜ ବ୍ୟବସ୍ଥାର ଏବଂ ଅର୍ଥନୈତିକ ବ୍ୟବସ୍ଥାର ଆମୂଳ ପରିବର୍ତ୍ତନ ପାଇଁ ଭାରତର ଏହି ମୌଳିକ ତଥା ସମସ୍ତ ବୈଷୟିକ ସକଳର ସ୍ରଷ୍ଟା ଶ୍ରେଣୀମାନଙ୍କୁ ଏବଂ ଜନସାଧାରଣଙ୍କୁ ସଙ୍ଗଠିତ କରି ଆସୁଥିଲା । ଐତିହାସିକ କାରଣ ହେତୁ ଏବଂ କଂଗ୍ରେସର କୁଶାସନ, ଦୁର୍ନୀତି, ଭ୍ରଷ୍ଟାଚାର ହେତୁ ସେହି ଦଳ ଭିତରେ ଓ ବାହାରେ ଥିବା କମ୍ୟୁନିଷ୍ଟ ବ୍ୟତିରେକ ଅନ୍ୟାନ୍ୟ ରାଜନୈତିକ ଗୋଷ୍ଠୀ ଓ ବ୍ୟକ୍ତିବିଶେଷ ଏହି ସାମାଜିକ ଅର୍ଥନୈତିକ ବ୍ୟବସ୍ଥାର ମୌଳିକ ପରିବର୍ତ୍ତନ ବିନା ଏହାର ପରିସରରେ ବିକଳ୍ପ ହେବା ଲାଗି ବାରମ୍ବାର ଚେଷ୍ଟା କରି ଆସିଛନ୍ତି । ୧୯୬୮-୬୯ର ମହାମେଣ୍ଟ ଏବଂ ୧୯୭୭ରେ ଜନତା ମେଣ୍ଟ ଓ ତା' ପୂର୍ବରୁ ଓ ତା'ପରେ ମଧ୍ୟ ଏପରି ଯେତେକ ମେଣ୍ଟ ହୋଇଛି; ତାହାସବୁ ଏହି ମୌଳିକ କାରଣରୁ ଅର୍ଥାତ୍ ବିକଳ୍ପ ରାଜନୈତିକ ଓ ଅର୍ଥନୈତିକ ଓ ସାମାଜିକ କାର୍ଯ୍ୟକ୍ରମ ବିନା ଭାଙ୍ଗି ପଡ଼ିଛି । ବରଂ ଏହାର ସୁଯୋଗରେ ସଂପ୍ରାଦାୟିକତାବାଦୀ, ବିଚ୍ଛିନ୍ନତାବାଦୀ, ଜାତିଆଣାବାଦୀ, ଆଞ୍ଚଳିକବାଦୀ ଶକ୍ତିମାନେ କଂଗ୍ରେସ ଶାସନର ନୀତି ଦ୍ୱାରା ଅସ୍ତବ୍ୟସ୍ତ ଜନତାର ଅସନ୍ତୋଷକୁ ପୁଞ୍ଜି କରି ମୁଣ୍ଡ ଟେକିଛନ୍ତି । ସ୍ଥାନେ ସ୍ଥାନେ ରାଜ୍ୟରେ ରାଜନୈତିକ କ୍ଷମତା ମଧ୍ୟ ହାସଲ କରିଛନ୍ତି ।

ଐତିହାସିକ କେତେକ ଜାତୀୟ ଓ ଆନ୍ତର୍ଜତୀୟ କାରଣରୁ ୧୯୬୪ରେ କମ୍ୟୁନିଷ୍ଟ ଆନ୍ଦୋଳନର ବିଭାଜନ ଏକ ପକ୍ଷରେ ପୁଞ୍ଜିବାଦୀ କଂଗ୍ରେସ ଶାସନକୁ ଯେପରି କିଛି ମାତ୍ରାରେ ବାମପନ୍ଥୀ ଐକ୍ୟର ପ୍ରଚଣ୍ଡ ରାଜନୈତିକ ଆଘାତରୁ ରକ୍ଷା କଲା, ଅନ୍ୟ ପକ୍ଷରେ ବାମପନ୍ଥୀ କମ୍ୟୁନିଷ୍ଟ ପକ୍ଷପାତୀ ଜନସାଧରଣ ଏହି ବିଭାଜନ ଫଳରେ ମଧ ଶ୍ରେଣୀ ଆସ୍ଥାନରୁ ସଂପୂର୍ଣ୍ଣ ବିଚ୍ୟୁତ ନ ହେଲେ ହେଁ ସାଙ୍ଗଠନିକ ଭାବରେ ବିଭକ୍ତ ହେବାରୁ ଅନ୍ୟାନ୍ୟ ଦକ୍ଷିଣପନ୍ଥୀ ଓ ସଂପ୍ରଦାୟିକତାବାଦୀ ଶକ୍ତିମାନେ ତା'ର ସୁଯୋଗ ନେଲେ ଏବଂ ତନ୍ନ ତନ୍ନ କରି ବିଶ୍ଳେଷଣ କଲେ ଦେଖାଯାଏ ସେ କଂଗ୍ରେସ ବିରୋଧରେ ଥିବା ଅନ୍ୟାନ୍ୟ ଧର୍ମ ନିରପେକ୍ଷ, ଗଣତାନ୍ତ୍ରିକ ଦଳ ଗୋଷ୍ଠୀ ଓ ବ୍ୟକ୍ତିବିଶେଷ ବିମୂଢ଼ ହୋଇଗଲେ । କୂଳ କିନାରା ପାଇଲେ ନାହିଁ । ନାନା ମେଣ୍ଟର ଉଦ୍ୟମ କଲେ ବାମପନ୍ଥୀମାନଙ୍କୁ ଛାଡ଼ି, ମାତ୍ର ବ୍ୟର୍ଥ ହେଲେ ।

ଆଜି କିନ୍ତୁ ଏହି ରାଜନୈତିକ ପଟ୍ଟଭୂମିର ପରିବର୍ତ୍ତନ ହୋଇ ଚାଲିଛି । କମ୍ୟୁନିଷ୍ଟ ଆନ୍ଦୋଳନର ଐକ୍ୟ ଓ ବାମପନ୍ଥୀ ଶକ୍ତିମାନଙ୍କର ଐକ୍ୟ ପ୍ରତିଷ୍ଠା ନ କରାଗଲେ ଏକ ପକ୍ଷରେ କଂଗ୍ରେସ ଶାସନକୁ ହଟେଇ ହେବ ନାହିଁ କି ଅନ୍ୟପକ୍ଷରେ ଘୋର ପ୍ରତିକ୍ରିୟାବାଦୀ, ଦକ୍ଷିଣପନ୍ଥୀ ସାପ୍ରଦାୟିକତାବାଦୀ, ଆଞ୍ଚଳିକତାବାଦୀ ଏବଂ ବିଚ୍ଛିନ୍ନତାବାଦୀ ଓ ସର୍ବୋପରି ସନ୍ତ୍ରାସବାଦୀମାନଙ୍କୁ ପରାସ୍ତ କରିହେବ ନାହିଁ । ଏପରି ଉପଲବ୍ଧି କମ୍ୟୁନିଷ୍ଟ ଆନ୍ଦୋଳନ ଭିତରେ ଦେଖାଦେଲା । କମ୍ୟୁନିଷ୍ଟ ଐକ୍ୟ ଓ ବାମପନ୍ଥୀ ଐକ୍ୟ ବିନା ବାମ ଓ ଗଣତାନ୍ତ୍ରିକ ଶକ୍ତିମାନଙ୍କର ଐକ୍ୟ ପ୍ରତିଷ୍ଠା ହୋଇପାରିବ ନାହିଁ କି ପୂର୍ବରୁ ବର୍ଣ୍ଣିତ ଏହି ଖଳଶକ୍ତିଙ୍କୁ ଭାରତର ରାଜନୈତିକ ଦୃଶ୍ୟପଟରୁ ଅନ୍ତର କରିଦେବାର ପ୍ରକ୍ରିୟା ଆରମ୍ଭ ହୋଇପାରିବ ନାହିଁ ବୋଲି ଅନୁଭବ ବାମପନ୍ଥୀ ପାର୍ଟି ବିଶେଷତଃ ବିଭାଜିତ କମ୍ୟୁନିଷ୍ଟ ଆନ୍ଦୋଳନ ଭିତରେ ଅନୁଭୂତ ହେଲା ।

ଏପରି ବସ୍ତୁନିଷ୍ଠ ଉପଲବ୍ଧି ପାଇ ମଧ ଜାଗ୍ରତ ରାଜନୈତିକ ଉଦ୍ୟମ କରାଗଲା । ପାର୍ଟି ବିଭାଜନ ପରଠାରୁ ସି.ପି.ଆଇ. ଏ ଦିଗିରେ ତା'ର ପ୍ରଚେଷ୍ଟାରୁ ତିଳେ ହେଲେ ବିରତ ହୋଇନାହିଁ ।

**ଆନ୍ତର୍ଜାତୀୟ ଓ ଜାତୀୟ ପରିସ୍ଥିତିର ପ୍ରଭାବରେ ବାମପନ୍ଥୀ ଐକ୍ୟ**

ଦେଶ ଭିତରେ ଏହି ଅବସ୍ଥାର ଉପଲବ୍ଧି, ତେଣୁ ବହୁ ଆୟ ଉପରେ କମ୍ୟୁନିଷ୍ଟ ଆନ୍ଦୋଳନକୁ ଏକ ଦିଗ୍‌ଦର୍ଶନରେ ପହଞ୍ଚାଇଲା ସେ କମ୍ୟୁନିଷ୍ଟ ଆନ୍ଦୋଳନର ଐକ୍ୟ ହିଁ ବାମପନ୍ଥୀ ଦଳମାନଙ୍କ ମଧରେ ଐକ୍ୟର ପଥପ୍ରଦର୍ଶକ ହେବ ଏବଂ ଏହି ବାମପନ୍ଥୀ ଐକ୍ୟର ଶକ୍ତି, ସଂହତି ଆବେଦନ ଓ କର୍ମସୂଚୀ କଂଗ୍ରେସ (ଇ) ବିରୋଧୀ ଧର୍ମ ନିରପେକ୍ଷ, ଗଣତାନ୍ତ୍ରିକ, ସମାଜବାଦ ବିରୋଧୀ ଶକ୍ତି, ବ୍ୟକ୍ତି ଓ ଗୋଷ୍ଠୀଙ୍କୁ ଏକ ମିଳିତ ମଞ୍ଚ ଉପରକୁ ଆଣି କଂଗ୍ରେସ (ଇ)ର ବିକଳ୍ପ ରୂପେ ଛିଡ଼ା କରାଇପାରିବ ଏବଂ ଅନ୍ୟ ପକ୍ଷରେ ଦେଶରେ ମୁଣ୍ଡ ଟେକିଥିବା ଘୋର ପ୍ରତିକ୍ରିୟାଶୀଳ ଦକ୍ଷିଣପନ୍ଥୀ ସଂପ୍ରଦାୟକତାବାଦୀ ଓ ବିଚ୍ଛିନ୍ନତାବାଦୀମାନଙ୍କ ଚକ୍ରାନ୍ତକୁ ବ୍ୟର୍ଥ କରିଦେବ ।

ସେହି ଉପଲବ୍ଧି କମ୍ୟୁନିଷ୍ଟ ଆନ୍ଦୋଳନରେ ଆସିବା ହେତୁ କଂଗ୍ରେସ (ଇ) ବିରୁଦ୍ଧରେ ସବୁ ବିରୋଧୀ ଦଳଙ୍କ ଅସାଧୁ ନୀତିହୀନ, ମେଣ୍ଟ ଗଠନ ଲାଗିଥିବା ଏକ ଘୋର କ୍ଷତିକର । ରାଜନୈତିକ ଚିନ୍ତା ବାମପନ୍ଥୀ ଓ ବିଶେଷତଃ କମ୍ୟୁନିଷ୍ଟ ଆନ୍ଦୋଳନରେ ପରିତ୍ୟକ୍ତ ହେଲା । କମ୍ୟୁନିଷ୍ଟ ପାର୍ଟି ଦୁହିଁଙ୍କର ଏହି ବଳିଷ୍ଠ ଆହ୍ବାନ ହେତୁ ଅନ୍ୟାନ୍ୟ ଧର୍ମ ନିରପେକ୍ଷ, ଅଥଚ ଦୋଦୁଲ୍ୟମାନ ଗଣତାନ୍ତ୍ରିକ ଦଳ ବାରମ୍ବାର ବିଜେପି, ଶିବସେନା ଏବଂ ବିଶେଷରେ ଅନ୍ୟ ଧର୍ମର ମୌଳିକତାବାଦୀମାନଙ୍କ ସହିତ ମେଣ୍ଟ ଗଢ଼ିବାର ପ୍ରବଣତା କ୍ରମେ ଆଘାତ ପାଇଲା । ନବଗଠିତ ଜନମୋର୍ଚ୍ଚା, ଜନତା, ଲୋକଦଳ ପ୍ରଭୃତି ଦଳରେ ପୁନଃ ଚିନ୍ତା, ପୁନଃ ବିବେଚନା ଆରମ୍ଭ ହୋଇ ଗଲା । ଏହି ବିପଦ ଯେ ସଂପୂର୍ଣ୍ଣ ଦୂର ହୋଇଯାଇଛି ତାହା ନୁହଁ । ତଥାପି ଆର୍.ଏସ୍.ଏସ୍., ବିଜେପି ପ୍ରଭୃତିଙ୍କ ସହିତ ମେଣ୍ଟର ଅତୀତର ଅଭିଜ୍ଞତା ଓ ବର୍ତ୍ତମାନର ବାମପନ୍ଥୀ ଆନ୍ଦୋଳନର ଏ ସଂକ୍ରାନ୍ତ ଆଭିମୁଖ୍ୟ ଏକ ବିଶେଷ ପରିବର୍ତ୍ତନ ଆଣି ପାରିଛି । ଏହାକୁ ପ୍ରସାର, ସ୍ଥିତିଶୀଳ ଓ ସୁଦୃଢ଼ କରିବାର ଦାୟିତ୍ୱ ଯେ କମ୍ୟୁନିଷ୍ଟ ଆନ୍ଦୋଳନର, ଏକଥା ଅନସ୍ୱୀକାର୍ଯ୍ୟ ।

ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନରେ ଏପରି ଐକ୍ୟର ପ୍ରବଣତା ଦେଶ ଭିତରର ଅର୍ଥନୈତିକ ସାମାଜିକ ଓ ରାଜନୈତିକ ପରିସ୍ଥିତି ଆଣି ଦେଇଛି । ଅପର ପକ୍ଷରେ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନରେ ଐକ୍ୟର ଶୁଭ ସଂକେତ ସୁସ୍ପଷ୍ଟ । ଐକ୍ୟର ବିଶ୍ୱଶାନ୍ତି, ନିରସ୍ତ୍ରୀକରଣ ଓ ସାମ୍ରାଜ୍ୟବାଦର ପରମାଣୁ ବିପର୍ଯ୍ୟୟ ସୃଷ୍ଟି ବିପଦ ବିରୁଦ୍ଧରେ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନରେ ନୀତିଗତ, କାର୍ଯ୍ୟଗତ ଐକ୍ୟ ଏବଂ ଅନ୍ୟ ପକ୍ଷରେ କମ୍ୟୁନିଷ୍ଟ ଚୀନ୍‌ରେ ଘଟିଯିବା ଘଟଣାବଳୀ ଏବଂ ଚୀନ ନେତୃତ୍ୱ ଦ୍ୱାରା ବିରାଟ ଲମ୍ଫ, ସାଂସ୍କୃତିକ ବିପ୍ଳବର ପ୍ରତ୍ୟାଖ୍ୟାନ ଏବଂ ବିଶ୍ୱଶାନ୍ତି ସାମ୍ରାଜ୍ୟବାଦ ବିରୋଧିତା, ନିରସ୍ତ୍ରୀକରଣ ଗୋଷ୍ଠୀନିରପେକ୍ଷ ଆନ୍ଦୋଳନ ପ୍ରତି ପରିବର୍ତ୍ତିତ ଦୃଷ୍ଟିଭଙ୍ଗୀ ମଧ୍ୟ ଭାରତର କମ୍ୟୁନିଷ୍ଟ ଆନ୍ଦୋଳନରେ ଐକ୍ୟ ଓ ସଂହତି ପ୍ରତିଷ୍ଠା କରିବାରେ ସାହାଯକ ହେଲା ।

ଏପରି ଐକ୍ୟ ଓ ସଂହତି ଏକ ଐତିହାସିକ ପ୍ରକ୍ରିୟା । ଏଥିପାଇଁ ଅଧିକ ଉପଲବ୍ଧି, ଅଧିକ ଆତ୍ମନିରୀକ୍ଷା, ଅଧିକ ଆତ୍ମସମାଲୋଚନା ତଥା ମାର୍କସ୍‌ବାଦ ଲେନିନବାଦର ନୀତିର ଭିତ୍ତିରେ ଅଧିକ ବ୍ୟାଖ୍ୟା ବିଶ୍ଳେଷଣ ଏବଂ ଅଧିକ ନିର୍ଭୁଲ ଶିକ୍ଷା ଗ୍ରହଣ ଲାଗି ସମୟ ଲାଗିବ । ବାସ୍ତବତା ଏହି କଥାକୁ ବିଭିନ୍ନ ଦେଶରେ ସାବ୍ୟସ୍ତ କରିଛି । ବିଭାଜିତ କମ୍ୟୁନିଷ୍ଟ ପାର୍ଟି କେବଳ ଐକ୍ୟବଦ୍ଧ ହୋଇ ନାହାନ୍ତି, ମିଳିତ ହୋଇଛନ୍ତି, ଶାସନକୁ ଆସିଛନ୍ତି, ସମାଜବାଦ ମଧ୍ୟ ଗଢ଼ିଛନ୍ତି । ୧୯୬୪ ଏବଂ ୧୯୮୮ ସମାନ ନୁହଁ । ଏହି ପରିବର୍ତ୍ତନର ପ୍ରକ୍ରିୟାକୁ ଆଖିର ପିତୁଳା ଭଳି ଯତ୍ନରେ ବଢ଼େଇବାକୁ ହେବ । ବାଟରେ କେତେ ଅବରୋଧ, ମନ କଷାକଷି ଅନୌପଚାରିକ ପ୍ରତିଯୋଗିତା ଦେଖା ଦେଇପାରେ । ତାହା ସ୍ୱାଭାବିକ । ମାତ୍ର ବିଶ୍ୱ

ଶ୍ରମିକ ସଂଘ ବିଶ୍ୱ ଛାତ୍ର ୟୁନିଅନ, ବିଶ୍ୱଶାନ୍ତି ଆନ୍ଦୋଳନରେ ସି.ପି.ଆଇ. ସାଙ୍ଗକୁ ସି.ପି.ଆଇ.(ଏମ୍)ର ଅଧିକରୁ ଅଧିକ ସମ୍ବନ୍ଧ ଯେମିତି ସମ୍ଭବପର ହେଉଛି, ଭାରତରେ ଗଣ ସଂଗଠନଗୁଡ଼ିକ କ୍ଷେତ୍ରରେ ଗଣସଂଗଠନଗୁଡ଼ିକ ପକ୍ଷରୁ ଆନ୍ଦୋଳନ କ୍ଷେତ୍ରରେ ସେପରି ଐକ୍ୟ ହିଁ ପାର୍ଟି ସ୍ତରରେ ସହାୟକ ହେବ । କ୍ଷେତମୂଲିଆ, ଚାଷୀ ଶ୍ରମିକ, ମଧ୍ୟବିତ୍ତ କର୍ମଚାରୀ, ଯୁବକ ଛାତ୍ର, ମହିଳା ଭୂମିହୀନ ଆଦିବାସୀ ହରିଜନମାନଙ୍କ ସମସ୍ୟା ଘେନି ଏହି ଦୁଇ ପାର୍ଟିର ଗଣସଂଗଠନଙ୍କ କାର୍ଯ୍ୟକ୍ରମର ଭିତ୍ତି ଓ ରୂପ ସ୍ୱରୂପ ସମାନ । ସେହି ସଂଗଠନଗୁଡ଼ିକ ଏକକ, ନିଜସ୍ୱ ମଞ୍ଚରେ ବର୍ତ୍ତମାନ କାମ କରୁଛନ୍ତି ସଂପୂର୍ଣ୍ଣ ଗଣ ସଙ୍ଗଠନରେ ଐକ୍ୟ ନ ଆସିବା ଯାଏ ଏପରି ଆନ୍ଦୋଳନ ଚଳେଇବେ ଓ ଚଳାଉଛନ୍ତି । ମାତ୍ର ନିର୍ଦ୍ଦିଷ୍ଟ ଗଣ କାର୍ଯ୍ୟସୂଚୀର ଭିତ୍ତିରେ ମିଳିତ ଆନ୍ଦୋଳନ ହିଁ ଶ୍ରେଣୀ ଶତ୍ରୁମାନଙ୍କ ଉପରେ, ଶ୍ରେଣୀ ଶତ୍ରୁଙ୍କ ରାଜନୈତିକ ଆସ୍ଥାନ ଉପରେ ଚଳାଇବା ଆଘାତ ଟାଣ ହେବ । ସେପରି ପ୍ରକ୍ରିୟା ମଧ୍ୟ ଅଳ୍ପ ବହୁତେ ବିଭିନ୍ନ ରାଜ୍ୟରେ ଆରମ୍ଭ ହୋଇଛି । ପଞ୍ଜାବରେ ଦୁଇ କିସାନ ସଭାର ମଳିତ ଅଭିଯାନ, ଓଡ଼ିଶାରେ ଦୁଇ ପାର୍ଟି ପକ୍ଷରୁ ଅତୀତରେ ମିଳିତ ରାଜଧାନୀ ସମାବେଶ ମଇ ଦିବସରେ ବିଭିନ୍ନ ସ୍ଥାନରେ ମିଳିତ ସମାବେଶ ଏବଂ ଦୁଇ ପାର୍ଟିର କର୍ମୀଙ୍କ ମିଳିତ କନଭେନସନ ଏହି ଐକ୍ୟ ପ୍ରତିଷ୍ଠା ପ୍ରକ୍ରିୟାକୁ ଶକ୍ତିଶାଳୀ କରୁଛି ।

**୧୯୮୭ ଡ଼ିସେମ୍ବର ନଅ**

ଏହି ପ୍ରକ୍ରିୟାର ଏକ ମାଇଲ ଖୁଣ୍ଟ ହେଲା ୧୯୮୭ ଡ଼ିସେମ୍ବର ମାସର ନଅ ତାରିଖ । ଦେଶର ରାଜଧାନୀ ଦିଲ୍ଲୀରେ ଐତିହାସିକ ୧୦ ଲକ୍ଷାଧିକ ନିରନ୍ନ ନିଃସ୍ୱ, ଜନତାର ବିଶାଳ ସମାବେଶ । ୪ଟି ବାମପନ୍ଥୀ ଦଳଙ୍କ ଦ୍ୱାରା ପରିଚାଳିତ ୨୪ଟି ଗଣସଂଗଠନର ତେରଦଫା ଦାବୀ ଭିତ୍ତିରେ ହୋଇଥିଲା ଏହି ସମାବେଶ । ପଶ୍ଚିମବଙ୍ଗ, କେରଳ, ତ୍ରିପୁରାରେ ବାମ ସାମ୍ମୁଖ୍ୟ ଓ ବାମ ଗଣତାନ୍ତ୍ରିକ ସାମ୍ମୁଖ୍ୟର ସରକାର ଥିଲେ ବି ଯେଉଁ ଧନବାଦୀ ସମ୍ବାଦ ଜଗତର ପତ୍ରକାର, ବ୍ୟାଖ୍ୟାକାର, ଟିପଣୀକାର ଓ କେଉଁ କେଉଁ ବିରୋଧୀ ରାଜନୈତିକ ଦଳର କେତେକାଂଶ ନେତୃତ୍ୱ ଭାରତର ରାଜନୀତିରେ ବିଭାଜିତ କମ୍ୟୁନିଷ୍ଟ ଆନ୍ଦୋଳନ ଓ ସାମଗ୍ରିକଭାବରେ ବାମପନ୍ଥୀ ଆନ୍ଦୋଳନ ଅପ୍ରାସଙ୍ଗିକ ବା ଫାଲତୁ ହୋଇଯାଇଛି ଓ ସେଥି ଲାଗି ବିଜେପି ସମେତ ସବୁ ବିରୋଧୀ ଦଳଙ୍କ ମେଣ୍ଟ ହିଁ ଏକମାତ୍ର କଂଗ୍ରେସ (ଇ)ର ବିକଳ୍ପ ବୋଲି ବ୍ୟାପକ ପ୍ରଚାର ଚଳେଇଥିଲେ, ସେମାନେ ହତବାକ୍ ହୋଇପଡ଼ିଲେ । ତାହା ହିଁ ଅନ୍ୟାନ୍ୟ ବିରୋଧୀ ଧର୍ମନିରପେକ୍ଷ ଦଳଙ୍କୁ ବିଜେପି ସଙ୍ଗରେ ଯିବା ଲାଗିଥିବା ଯୁକ୍ତିକୁ ଦୁର୍ବଳ କରିଦେଲା ।

ଅବଶ୍ୟ ବାମପନ୍ଥୀମାନଙ୍କ ଏହି ସମାବେଶ ପରେ ଓ ପୂର୍ବରୁ କୌଣସି କାର୍ଯ୍ୟକ୍ରମ ନ ଥାଇ ଲୋକଦଳ (ବି) ହରିଆନାର ମୁଖ୍ୟ ମନ୍ତ୍ରୀ ଦେବୀଲାଲଙ୍କ ନେତୃତ୍ୱରେ ସୂର୍ଯ୍ୟକୁଣ୍ଡ ମନ୍ତ୍ରଣା ଓ ଯୋଜନା ହୋଇଥିଲା । ତାହା ଫସରଫାଟିଗଲା । ପୁଣି ଜନତା ଦଳ ଓ ଚରଣ ସିଂହଙ୍କ

ପୁଅ ଅଜିତ ସିଂହଙ୍କର ଲୋକଦଳ ସହିତ ଚନ୍ଦ୍ରଶେଖରଙ୍କ ନେତୃତ୍ୱରେ ମିଶ୍ରଣ ହେଲା, ପୁଣି ସେହି ଜନତା ନେତୃତ୍ୱର ଏକାଂଶ ହେଗଡ଼େ, ଫର୍ଣ୍ଣଡ଼ିସ, ବିଜୁ ପଟ୍ଟନାୟକ ଜନତା ଦଳ ପରିବର୍ତ୍ତେ ଜନତା ଦୁଇଟିଯାକ ଲୋକଦଳ, କଂଗ୍ରେସ ଏସ୍ ପ୍ରଭୃତିଙ୍କୁ ଧରି ନାସନାଲ୍ ପ୍ୟୁପୁଲସ୍ ପାର୍ଟି ଗଢ଼ିବାର ଯୋଜନା ପ୍ରକାଶ ପାଇଲା । ଜନସାଧାରଣଙ୍କ ମୌଳିକ ସ୍ୱାର୍ଥକୁ ବାଦ ଦେଇ, କୌଣସି କାର୍ଯ୍ୟକ୍ରମ ନ ଥାଇ ଏପରି ସୁବିଧାବାଦୀ ମେଣ୍ଟ ଓ ମିଶ୍ରଣ ଜନତା ଦଳ ଭିତରେ ଘୋର ଅନ୍ତର୍ଦ୍ୱନ୍ଦ୍ୱ ଆଣିଛି । ସେ ସବୁର ବିଚାର ଏହି ପ୍ରବନ୍ଧର ପରିସୀମା ବାହାରେ । ମାତ୍ର ଡ଼ିସେମ୍ବର ୯ ରାଲି ଏବଂ ତତ୍ପରବର୍ତ୍ତୀ କାଳରେ ମାର୍ଚ୍ଚରେ ସଫଳ ଭାରତ ବନ୍ଦ ଏବଂ ସେଥିଲାଗି ୪ଟି ବାମପନ୍ଥୀ ଦଳଙ୍କ ସହିତ ଆଉ ୫ଟି ବିରୋଧୀ ଦଳ (ବିଜେପିକୁ ବାଦ ଦେଇ)ଙ୍କ ମିଳିତ ଆହ୍ୱାନ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଅବଶ୍ୟ ବନ୍ଦର ଅବ୍ୟବହିତ ପୂର୍ବରୁ ଏହିସବୁ ଦଳ ଓ ଅନ୍ୟାନ୍ୟ କେତେକ ବିରୋଧୀ ଦଳ ଅଭୂତପୂର୍ବ ବନ୍ଦ ହେବ ବୋଲି ଦୁଇ କମ୍ୟୁନିଷ୍ଟ ପାର୍ଟି ଓ ବାମପନ୍ଥୀ ପାର୍ଟି ଓ ଗଣ ସଂଗଠନର ପ୍ରଚାର ଅଭିଯାନ, ତତ୍ପରତାରେ ପ୍ରଭାବିତ ହୋଇ ଏହି ବନ୍ଦକୁ ସମର୍ଥନ କଲେ । ଧନବାଦୀ ସମ୍ବାଦପତ୍ର, ବିଶେଷତଃ ସରକାରୀ ସଞ୍ଚାର ଯନ୍ତ୍ର ଦୂରଦର୍ଶନ ଓ ବେତାର ବନ୍ଦ କେବଳ ପଶ୍ଚିମବଙ୍ଗ ଓ କେରଳ ଛଡ଼ା ଅନ୍ୟଠାରେ ସଫଳ ହେଲା ନାହିଁ ବୋଲି ନିଛକ ଅସତ୍ୟ ପ୍ରଚାରକୁ ଓଡ଼ିଶାବାସୀଙ୍କ ପରି ବିହାର, ଉତ୍ତରପ୍ରଦେଶ ପ୍ରଭୃତି ହିନ୍ଦୀ ଭାଷା ଓ ଦକ୍ଷିଣାଞ୍ଚଳର ରାଜ୍ୟ ଆନ୍ଧ୍ର, ତାମିଲନାଡୁ, କର୍ଣ୍ଣାଟକ ଓ ଅନ୍ୟାନ୍ୟ ରାଜ୍ୟର ଅଧିବାସୀ ହୃଦୟଙ୍ଗମ କରିଛନ୍ତି । ଏହା ହିଁ ଦେଶର ରାଜନୈତିକ ଦୃଶ୍ୟପଟରେ ବାମଶକ୍ତିର ସଙ୍ଗଠନକାରୀ ପ୍ରଭାବ, ତାହାରି ରାଜନୈତିକ ଆବେଦନ ପ୍ରତି ସମର୍ଥନ ବୃଦ୍ଧି କରିଛି । ଭୁବନେଶ୍ୱରରେ ଅନୁଷ୍ଠିତ ହେଉଥିବା ଦୁଇ କମ୍ୟୁନିଷ୍ଟ ପାର୍ଟିର ଆଗାମୀ ସମାବେଶ ରାଜ୍ୟ କ୍ଷେତ୍ରରେ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରଭାବକୁ ବୃଦ୍ଧି କରିବ ।

**ଓଡ଼ିଶାରେ କମ୍ୟୁନିଷ୍ଟ ଆନ୍ଦୋଳନ ଭୂମିକାର ଗୁରୁତ୍ୱ**

ବିଗତ କେତେବର୍ଷ ଧରି ଅସୀମ ଧୈର୍ଯ୍ୟ, ଉଠାପଡ଼ା, ଆଶା ଓ ବେଳେବେଳେ ହତାଶାର ବାତାବରଣ । ଡ଼ିସେମ୍ବର ୯ ଦିଲ୍ଲୀ ସମାବେଶ ଲାଗି ୪ଟି ବାମପନ୍ଥୀ ଦଳ, ବିଶେଷତଃ ଏହି ଦୁଇ ପାର୍ଟିର ରାଜ୍ୟବ୍ୟାପୀ ୭ଟି ଦଳରେ ବିଭକ୍ତ ହୋଇ ମିଳିତ ଅଭିଯାନ, ଏକ ମଞ୍ଚରେ ଦୁଇ ପାର୍ଟିର ଜନତାଙ୍କୁ ଉଦ୍‌ବୋଧନ ଏବଂ ଦିଲ୍ଲୀ ସମାବେଶରେ ଓଡ଼ିଶାରୁ ୧୦ ହଜାରରୁ ଅଧିକ ଲୋକଙ୍କ ଅଂଶଗ୍ରହଣର ରୁକୁଣା ରଥକୁ ଅଣବାହୁଡ଼ା କରିବାର ସଂକଳ୍ପ ଦୃଢ଼ ହୋଇଛି । ପାର୍ଟିଭୁକ୍ତ ବୁଦ୍ଧିଜୀବୀ ଜନସାଧାରଣ ଏପରି ଐକ୍ୟକୁ ଖାଲି ମନେ ମନେ କାମନା କରୁଛନ୍ତି ନୁହଁ, ଖୋଲଖୋଲି ସମର୍ଥନ କରୁଛନ୍ତି । ତାହାରି ପ୍ରତିଫଳନ ଘଟିଥିଲା । ଜାନୁଆରୀ ୨୪ ତାରିଖରେ କଟକରେ ଅନୁଷ୍ଠିତ ଭାରତ ବନ୍ଦ୍‌ର ପ୍ରସ୍ତୁତି ପାଇଁ ମିଳିତ କନଭେନସନରେ ଦିଲ୍ଲୀ ୯ ରାଲି ଏବଂ ଭାରତ ବନ୍ଦ ଲାଗି ଦୁଇ ପାର୍ଟିଙ୍କର ମିଳିତ ଅସଂଖ୍ୟ ପ୍ରଚାରପତ୍ରରେ ଓ ପରବର୍ତ୍ତୀ

ବନ୍ଦ ଅବ୍ୟବହିତ ପୂର୍ବରୁ ବିଜେପି ବ୍ୟତୀତ ଅନ୍ୟାନ୍ୟ ରାଜନୈତିକ ଦଳ, ବିଶେଷତଃ ଜନତା ଦଳର ମିଳିତ ନିବେଦନ ଓ ପ୍ରଚାରପତ୍ର ପୋଷ୍ଟରଗୁଡ଼ିକରେ ତାହାର ପ୍ରତିଫଳନ ଘଟିଥିଲା ।

ଏହି ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ପ୍ରକ୍ରିୟାକୁ ଓଡ଼ିଶାରେ ଆଗେଇ ନେବାର ପରମ କର୍ତ୍ତବ୍ୟ ପଡ଼ିଛି ଦୁଇ କମ୍ୟୁନିଷ୍ଟ ପାର୍ଟି ଉପରେ । ଓଡ଼ିଶାର ରାଜନୀତିରେ କମ୍ୟୁନିଷ୍ଟ ଆନ୍ଦୋଳନ ଏକ ପ୍ରଧାନ ଶକ୍ତି; କିନ୍ତୁ ଏହା ନିୟାମକ ଶକ୍ତି ହେବାକୁ ପଡ଼ିବ । କେବଳ ମିଳିତ କାର୍ଯ୍ୟକ୍ରମ, ଗଣଦାବୀଗୁଡ଼ିକ ଘେନି ଗଣ ସଂଗଠନଗୁଡ଼ିକର ଏକକ ସ୍ୱତନ୍ତ୍ର ଆନ୍ଦୋଳନର ସମାନ୍ତରାଳରେ ମିଳିତ ଆନ୍ଦୋଳନ ଲାଗି ଐକାନ୍ତିକ ଉଦ୍ୟମ ଓ କାର୍ଯ୍ୟ ହିଁ ଓଡ଼ିଶାରେ କମ୍ୟୁନିଷ୍ଟ ଆନ୍ଦୋଳନର ଭୂମିକାକୁ ପ୍ରତିପାଦିତ କରିବ, ପ୍ରତିଷ୍ଠିତ କରିବ ଏବଂ ସମଗ୍ର ଓଡ଼ିଶାର ରାଜନୀତିକୁ ବାମପନ୍ଥୀ-ଗଣତାନ୍ତ୍ରିକ ମୋଡ଼ ଦେବ । ପ୍ରସ୍ତାବ ଗ୍ରହଣ କଲେ, ସ୍ଲୋଗାନ ରଚେଇଲେ ରାଜୀବ ଓ ଜାନକୀ ସରକାରକୁ ଗାଦିଚ୍ୟୁତ କରିହେବ ନାହିଁ । ଅନ୍ୟପକ୍ଷରେ ଦୁଇ କମ୍ୟୁନିଷ୍ଟ ପାର୍ଟିର ଐକ୍ୟବଦ୍ଧ ସଂଗ୍ରାମ ବ୍ୟତିରେକେ ଓଡ଼ିଶାର କଳୁଷିତ ରାଜନୈତିକ ବାତାବରଣକୁ ନିର୍ମଳ କରିହେବ ନାହିଁ । ଲକ୍ଷ୍ୟ ଓ ଆଦର୍ଶର ସ୍ୱଚ୍ଛତା ଆସିବ ନାହିଁ । ଜନସାଧାରଣ ଅତୀତ ଭଳି ଅସନ୍ତୋଷ ଓ ଅଭାବ ଅନଟନ, ଦମନ ଓ ଶୋଷଣରେ ଜର୍ଜରିତ ହୋଇ ଖାଲି ଶାସକ ଦଳ ବଦଳେଇ ପାରନ୍ତି ସିନା; ମାତ୍ର ଶାସନର ନୀତି, ବଦଳିବ ନାହିଁ, ଅର୍ଥନୈତିକ ବ୍ୟବସ୍ଥାର ପରିବର୍ତ୍ତନ ହେବନାହିଁ । ତେଣୁ ସେମାନେ ଅତୀତର ଯେଉଁ ତିମିରରେ ଥିଲେ, ସେହି ତିମିରରେ ରହିବେ ।

ସେହେତୁ ମଇ ୧୧ ତାରିଖ ସି.ପି.ଆଇ. ଓ ସି.ପି.ଆଇ.(ଏମ୍)ର ରାଜନୈତିକ ପ୍ରତିଯୋଗିତା ନୁହଁ । ଏହି ସମାବେଶ ଏକ ବିକଳ୍ପ ରାଜନୈତିକ, ଅର୍ଥନୈତିକ, ସାମାଜିକ ବ୍ୟବସ୍ଥା ପାଇଁ ବିକଳ୍ପ କାର୍ଯ୍ୟକ୍ରମ ଭିତ୍ତିରେ ଏକ ବିକଳ୍ପ ରାଜନୈତିକ ସାମ୍ମୁଖ୍ୟ ଗଠନ ଓ ବିକଳ୍ପ ରାଜନୈତିକ ଶାସନ ପ୍ରତିଷ୍ଠାର ପଥ ନିର୍ଦ୍ଦେଶ କରିବାରେ ସହାୟକ ହେବ । ସାରା ଭାରତବର୍ଷରେ ଚାଲିଥିବା ନୂତନ ପ୍ରକ୍ରିୟାକୁ ଆଗେଇନେବା, ତ୍ୱରାନ୍ୱିତ କରିବା ଓ ସୁଦୃଢ଼ ସ୍ଥାୟୀ କରିବାର ବୈପ୍ଳବିକ ଦାୟିତ୍ୱ କମ୍ୟୁନିଷ୍ଟମାନଙ୍କ ଉପରେ ନ୍ୟସ୍ତ ।

ଏହି ସମାବେଶ ପାଇଁ ବିଶଦ ଆଲୋଚନା ପରେ ଦୁଇ ପାର୍ଟି ମିଳିତ କର୍ମପନ୍ଥା ନେଇଛନ୍ତି, ମିଳିତ ଦାବୀପତ୍ର ସଂକଳିତ ହୋଇଛି । ରାଜିନାମା ଅନୁସାରେ ଏକକ, ସ୍ୱତନ୍ତ୍ର ଓ ତହିଁ ସଙ୍ଗେ ସଙ୍ଗେ ମିଳିତ ଅଭିଯାନ, ମିଳିତ ପ୍ରଚାରପତ୍ର, ମିଳିତ ପୋଷ୍ଟର ଇତ୍ୟାଦିର ବ୍ୟବସ୍ଥା ହୋଇଛି ।

ମଇମାସ ନିଦାଘ ଖରା । ଆମ ଲୋକେ ଚୁଡ଼ା ମୁଢ଼ି ବାନ୍ଧି ଖାଲି ପାଦରେ ଧାଇଁବେ ରାଜଧାନୀକୁ । ନିଜ ନିଜ ପେଟ କାଟି, ଗାଁ' ଚାନ୍ଦା ଉଠାଇ କିଛି ସମ୍ବଳ ଧରି ଟ୍ରେନ, ପାଦ, ଗାଡ଼ିରେ ଓ ସାଇକେଲରେ ଛୁଟିବେ । ସେମାନେ ଜାଣନ୍ତି କମ୍ୟୁନିଷ୍ଟ ପାର୍ଟିର ଆର୍ଥିକ ସମ୍ବଳ ନାହିଁ । ସେମାନଙ୍କ ଦାନରେ ପାର୍ଟି ସଦସ୍ୟମାନଙ୍କ ଚାନ୍ଦ ଓ ଲେଭିରେ, ପାର୍ଟି ଦରଦୀ ଲୋକଙ୍କର କର୍ମଚାରୀଙ୍କର ଶ୍ରମିକଙ୍କ ସ୍ୱଳ୍ପ ଦାନରେ ପାର୍ଟି କାର୍ଯ୍ୟ ପରିଚାଳିତ ହୁଏ । ଦିନେ ଦୁଇଦିନର

ନିଜର ମଜୁରୀ, କାମଦାମ ଛାଡ଼ି ନିଜ ବ୍ୟୟରେ ସେମାନେ ଆସିବେ । ଆସିବା ପାଇଁ ଶାସକ ଦଳଙ୍କ ପରି ଗାଡ଼ି ଟ୍ରକର ବ୍ୟବସ୍ଥା ବା ଭୋଜିଭାତର ବ୍ୟବସ୍ଥା ହୋଇପାରିବ ନାହିଁ କି ଅତୀତରେ କେବେ ହୋଇନାହିଁ ।

ସେହେତୁ ଭୁବନେଶ୍ୱର ମଇ ୧୧ ସମାବେଶକୁ ସଫଳ କରିବା ଏବଂ ଦୁଇ ପାର୍ଟିର ଆୟୋଜନରେ ଅନ୍ତତଃ ଲକ୍ଷେ ଲୋକଙ୍କର ସମାବେଶ କରାଇବା ଭଳି ଗୁରୁ କର୍ତ୍ତବ୍ୟ ପାଳନ କରିବା ଲାଗି ସି.ପି.ଆଇ.ର ଜିଲ୍ଲା ପରିଷଦ, ଆଞ୍ଚଳିକ ପରିଷଦ, ପାର୍ଟି ଶାଖା ଏବଂ ପ୍ରତ୍ୟେକ ପାର୍ଟି ସଭ୍ୟଙ୍କର ଆତ୍ମୋତ୍ସର୍ଗମୂଳକ ଅକ୍ଳାନ୍ତ ପରିଶ୍ରମ, ପ୍ରଚାର, ସାଇକେଲ ପଟୁଆର, ପଥପ୍ରାନ୍ତ ସଭା, ପଦଯାତ୍ରା ସଙ୍ଗଠନ କରିବା ଓ ଏହି ସମାବେଶର ରାଜନୈତିକ ତାତ୍ପର୍ଯ୍ୟକୁ ବ୍ୟାପକ ଜନତାକୁ ବୁଝାଇବା, ତାଙ୍କୁ ଅନୁପ୍ରେରିତ, ଉତ୍ସାହିତ, ଉଜ୍ଜୀବିତ କରିବା ଉପରେ ଏହି ଆହ୍ୱାନକୁ ସଫଳ କରିହେବ ।

ସି.ପି.ଆଇ. ରାଜ୍ୟ ପରିଷଦ ଏଥି ସକାଶେ ଯେଉଁ କର୍ମନୀତି ବାଢ଼ିଛି, ପ୍ରତ୍ୟେକ ପାର୍ଟି ସଭ୍ୟ ଆଜିର ରାଜନୈତିକ ପରିସ୍ଥିତିର ତାତ୍ପର୍ଯ୍ୟ ଉପଲବ୍ଧି କରି ଏହା ଏକ ଯୁଗାନ୍ତକାରୀ ବୈପ୍ଳବିକ ଆହ୍ୱାନ ବୋଲି ବିଚାର କରିବେ, ଏହି ଭରସା ଓ ପ୍ରତ୍ୟୟ କମ୍ୟୁନିଷ୍ଟ ପାର୍ଟିର ରହିଛି । ଚାଲନ୍ତୁ ଏହି ଆହ୍ୱାନ ସଫଳ କରିବା ସମସ୍ତେ । ଆଜି ଏହା ହିଁ ଏକ ମହାନ ଦେଶପ୍ରେମୀ ଓ ବୈପ୍ଳବିକ କର୍ତ୍ତବ୍ୟ ।



# ଏହି ଆମ ଦେଶ - ଭାରତବର୍ଷ

**ଅ**ତୀତରୁ ବ ର୍ତ୍ତମାନ –

ଉ ତ୍ତରରେ ନଭଶ୍ଚୁମ୍ବୀ ଗିରିରାଜ ହିମାଳୟ, ଦକ୍ଷିଣରେ ଦିଗନ୍ତ ବିସ୍ତାରୀ ଭାରତ ମହାସାଗର, ପଶ୍ଚିମରେ ଆରବସାଗର ଏବଂ ପୂର୍ବରେ ମହୋଦଧି ବଂଗୋପସାଗର । ଏହାକୁ ଆବୋରିଥିବା ଭୂଖଣ୍ଡ ଭାରତବର୍ଷ । ଏହା ହିଁ ଭାରତଭୂମିର ପରିଚିତି । ଭୂତା ତ୍ତ୍ୱିକ ଗବେଷଣାଳବ୍ଧ ଜ୍ଞାନ ସୂଚାଏ ଏକଦା ଭାରତବର୍ଷ ଆଫ୍ରିକା, ପଶ୍ଚିମ ଏସିଆ ଓ ଭାରତ ଭୂଖଣ୍ଡ ସୁବିଶାଳ ଗଣ୍ଡୱାନା ଭୂମିର ଅଂଶ ବିଶେଷ ଥିଲା । ସାଗର, ମହାସାଗର ସ୍ଥଳଭାଗ, ଜଳଭାଗ, ପାହାଡ଼ ପର୍ବତ, ସମତଳଭୂମି ସୃଷ୍ଟିର ପ୍ରକ୍ରିୟାରେ କେଉଁ ଦୂର ଅତୀତରେ ଭାରତ ଭୂଖଣ୍ଡ ପୂର୍ବର ନାହିନାଡ଼ ଛିଣ୍ଡାଇଦେଲା, ଜମ୍ବୁଦୀପ ନାମରେ ନାମିତ ହେଲା ।

ଭାରତ ଭୂଖଣ୍ଡର ମୂଳ, ଆଦିମ ଅଧିବାସୀ ଦ୍ରାବିଡ଼, ନିଷାଦ, କିରୀଟଙ୍କ ବାସଭୂମି । କାସ୍ପିଆନ ସାଗର ତଟରୁ ଆର୍ଯ୍ୟମାନଙ୍କର ପଶ୍ଚିମରେ ୟୁରୋପ ଓ ପ୍ରାଚ୍ୟରେ ଭାରତ ଭୂଖଣ୍ଡରେ ପ୍ରବେଶ ଘଟେ । ପୂର୍ବ ପଟକୁ ଆସିଥିବା ଭାରତୀୟମାନେ ଇଣ୍ଡୋଏରିଆନ ଭାବରେ ଚିହ୍ନିତ ହୁଅନ୍ତି ।

ଭାରତବର୍ଷର ଅଧିବାସୀଙ୍କ ମଧ୍ୟରେ ଅଛନ୍ତି ବହୁ ନୃଜାତି, ଉପଜାତି, ବହୁବିଧ ସ୍ୱତନ୍ତ୍ରତା ସମ୍ପନ୍ନ ଜନଗୋଷ୍ଠି ତ୍ରାଇବ । ପ୍ରତ୍ୟେକଟିର ଶାରୀରିକ ଗଠନରେ ରହିଛି ତାରତମ୍ୟ, ଭିନ୍ନତା ଓ ବୈଶିଷ୍ଟ୍ୟ । ଦୀର୍ଘକାୟ, ଖର୍ବକାୟ, ଚକ୍ଷୁ ନାସିକା ଗଠନରେ ଭିନ୍ନତା, ଦେହରରଙ୍ଗ, କୃଷ୍ଣକାୟ, ଗୌରବର୍ଣ୍ଣ, ହରିତବର୍ଣ୍ଣର ଭିନ୍ନତା ।

ଏମାନେ ଗଢ଼ିଲେ, ବାସକଲେ ନଦୀ, ସାଗର ତଟରେ ପଲ୍ଲୀ । ସମତଳ ଭୂମିର ପଲ୍ଲିବାସୀଙ୍କ ସାଙ୍ଗକୁ ପର୍ବତ କନ୍ଦର, ଗିରିଗୁହା, ଅରଣ୍ୟାନି ମଧ୍ୟରେ ବାସକରିବା ଅଧିବାସୀ ।

ଏହି ପ୍ରକ୍ରିୟାରେ ପରବର୍ତ୍ତୀ କାଳରେ ଭାରତ ଭୂଖଣ୍ଡ ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟ । ଏହିପରି ଦୁଇଟି ବିଶିଷ୍ଟ ଅଂଗ ରୂପେ ବିଭାଜିତ ହୁଏ । ଗଙ୍ଗା ଯମୁନା ସିନ୍ଧୁ ଅବବାହିକାରୁ ବିନ୍ଧ୍ୟାଚଳ ଯାଏ ଆର୍ଯ୍ୟାବର୍ତ୍ତ ଓ ମଧ୍ୟ ଦେଶ ଏବଂ ତା'ପରେ ଭାରତ ମହାସାଗର ତଟ ଛୁଇଁଥିବା ଭୂଖଣ୍ଡ ଦାକ୍ଷିଣାତ୍ୟ ନାମରେ ପରିଚିତ ହୁଏ । ପୁନଶ୍ଚ ଏହି ଭାରତକୁ ପୂର୍ବସୂରୀମାନେ ମଧ୍ୟ, ପୂର୍ବ-ପଶ୍ଚିମ, ଉତ୍ତର-ଦକ୍ଷିଣ ରୂପେ ଚିହ୍ନିତ କରିଥିଲେ ।

କାଳକ୍ରମେ ଏହିପରି ଭାବରେ ଚିହ୍ନିତ ଭାରତର ବିଭିନ୍ନ ଅଞ୍ଚଳକୁ ବିଭିନ୍ନ ଭାଷାଭାଷୀ ନିଜର ବାସଭୂମି କରିଛନ୍ତି । ସଂସ୍କୃତ ଓ ଦ୍ରାବିଡ଼ ଭାଷା ଦ୍ୱୟର ଉତ୍ତରରେ ହିନ୍ଦୀ, ଅସମୀୟା, ବଙ୍ଗଳା, ଗୁଜୁରାଟୀ, ମରାଠୀ, ଗୁରୁମୁଖୀ, ତାହା ସାଙ୍ଗକୁ କାଶ୍ମିରୀ, ଉର୍ଦ୍ଦୁ, ନେପାଳୀ ଭାଷା । ଦକ୍ଷିଣରେ ଦ୍ରାବିଡ଼ ଭାଷାରୁ ତାମିଲ, ତେଲୁଗୁ, ମାଲୟାଲାମ, କନ୍ନଡ଼ ଭାଷା ଏମିତି ଷୋହଳଟି ପ୍ରମୁଖ ଭାଷା । ସେହିସବୁ ଭାଷା ମଧ୍ୟ ଦେଇ ମୂଳଭାଷାକୁ ଧରି ଗଢ଼ିଉଠନ୍ତି । ବିଦେଶରୁ ପ୍ରବେଶ କରି ଦେଶର ଭାଷାକୁ ଗିଳିଚାଲିଛି ଇଂରେଜୀ ଭାଷା । ମାଗଧୀ ମୈଥିଳୀ, ବ୍ରଜଭାଷା, ଭୋଜପୁରୀ, କୋଙ୍କଣି, ହରିୟାଣୀ, ମାରଓ୍ୱାରୀ, ତ୍ରିପୁରୀ, ମଣିପୁରୀ, ଛତିଶଗଡ଼ୀ, ଗୁର୍ଖା, ନେପାଳୀ, ଏମିତି ଅନେକ କଥିତ ଓ ଲିପିଛନ୍ଦା ଭାଷା ।

ଏହା ବ୍ୟତୀତ ଭାରତ ଭୂଖଣ୍ଡରେ ଲିପିନଥାଇ ଶତାବ୍ଦୀ ଶତାବ୍ଦୀ ଧରି ଚଳିଆସିଛନ୍ତି ସହସ୍ରାଧିକ ଭାଷା । ଉପଜାତିମାନଙ୍କର ଭାଷା- କନ୍ଧ, ସାନ୍ତାଳ, କୋୟା, ପରଜା, କୋହ୍ଲ, ମୁଣ୍ଡା, ହୋ, ଜୁଆଙ୍ଗ, ନାଗ, ଶଉରା ପ୍ରଭୃତିଙ୍କର ଶତଶହ କଥିତ ଭାଷା । ଏମିତି ଭାରତରେ ୧୬୫୨ଟି ଭାଷା, ଉପଭାଷା, କଥିତଭାଷା, ବୋଲିର ପ୍ରସାର ଥିବାର ଜଣାଯାଇଛି ।

ଏହି ଭୂଖଣ୍ଡରେ କାଳର ପ୍ରବାହରେ ବିଭିନ୍ନ ଦର୍ଶନ ଦାର୍ଶନିକ ଚିନ୍ତା, ଶାସ୍ତ୍ର, ମହାକାବ୍ୟର ଆବିର୍ଭାବ ଘଟିଛି । ସାହିତ୍ୟ, ସଂସ୍କୃତି, କଳା ଭାସ୍କର୍ଯ୍ୟ, ଚିକିତ୍ସା ବିଦ୍ୟାର ଗନ୍ତାଘର ହୋଇଆସିଛି ଆମର ଏହି ଦେଶ ।

ଆମ ଏଇ ଭୂଖଣ୍ଡରେ ବହୁ ଧର୍ମର ଆବିର୍ଭାବ ଘଟିଛି । ଆମ ଭୂଖଣ୍ଡରୁ ଅଢ଼େଇ ହଜାର ବର୍ଷ ପୂର୍ବେ ଜନ୍ମଲାଭ କରିଥିବା ବୌଦ୍ଧଧର୍ମ ପ୍ରାଚ୍ୟଭୂଖଣ୍ଡର ଶତାଧିକ କୋଟି ଲୋକଙ୍କର ଧର୍ମରେ ପରିଣତ ହୋଇଛି । ପ୍ରାଚୀନତମ ହିନ୍ଦୁ ଧର୍ମାଚରଣ ସାଙ୍ଗକୁ ବୌଦ୍ଧ, ଜୈନ, ଶିଖ୍ ଧର୍ମର ଅଭ୍ୟୁଦୟ ଘଟିଛି । ଅପରପକ୍ଷରେ ଇସଲାମ, ଜୋରାଷ୍ଟ୍ରିୟ, ଖ୍ରୀଷ୍ଟିୟାନ ଧର୍ମର ମଧ୍ୟ ପ୍ରବର୍ତ୍ତନ ହୋଇଛି ।

ପୁନଶ୍ଚ ପ୍ରତ୍ୟେକଟି ମୂଳ ଧର୍ମରେ କେତେ କେତେ ସୁନିର୍ଦ୍ଦିଷ୍ଟ ଧର୍ମଗୋଷ୍ଠି, ଧର୍ମ ସଂପ୍ରଦାୟର ଉଦ୍‌ଭବ ଘଟିଛି ।

ଏହି ବିଶାଳ ଦେଶର ବିଭିନ୍ନ ପ୍ରାନ୍ତରେ ଆଦିମ କାଳରୁ ଶତଶତ ଆଦିମ ଅଧିବାସୀ କୌଣସି ସଂଗଠିତ ଧର୍ମର ଅନୁସରଣ ନକରି ଯୁଗ ଯୁଗ ଧରି ପ୍ରକୃତିର ଉପାସକ (ଏନିମିଷ୍ଟ) ହୋଇ ସରଳ ପ୍ରାଣ ନେଇ ବୃକ୍ଷ, ପଥର, ଜୀବଜନ୍ତୁର ଉପାସନା କରି ଆସିଛନ୍ତି ।

ଅଞ୍ଚଳ ଭେଦରେ ଗଢ଼ିଉଠିଛି ନିଜନିଜର ବୈଶିଷ୍ଟ୍ୟ ସଂପନ୍ନ ସଂସ୍କୃତି, ଆଚାର, ଧର୍ମାଚରଣ, ଭାଷା, କଳା, ସଂଗୀତ, ସ୍ଥାପତ୍ୟ, ଭାସ୍କର୍ଯ୍ୟକୁ ଆବୋରି ଏକ ସର୍ବଭାରତୀୟ ସମନ୍ୱିତ ସଂସ୍କୃତି-ମହାନ ଭାରତୀୟ ସଂସ୍କୃତି ।

ଅଧୁନା କାଳର ଭାରତବର୍ଷ ସହସ୍ର ସହସ୍ର ବର୍ଷ ଧରି ପ୍ରକ୍ରିୟା, ମିଥକ୍ରିୟା, ବହୁ ଘାତ

ପ୍ରତିଘାତ, ଉଥାନପତନ ପୁନଃ ଅଭ୍ୟୁଦୟ ମଧ୍ୟରେ ମହାଭାରତୀୟ ଜାତିର ରାଷ୍ଟ୍ରରେ ପରିଣତ ହୋଇଛି । ଏହି ପ୍ରକାରର ପ୍ରକ୍ରିୟା ମାଧ୍ୟମରେ ସ୍ଥାନୀୟ ବୈଶିଷ୍ଟ୍ୟରେ ସମୃଦ୍ଧ ହୋଇ ସାରା ପୃଥିବୀରେ ନେସନ ଷ୍ଟେଟ ବା ଜାତୀୟ ରାଷ୍ଟ୍ରର ଆବିର୍ଭାବ ଘଟିଛି ।

**ସାମନ୍ତବାଦୀ ଯୁଗରେ ଭାରତବର୍ଷ**

ଆଦିମ ଗଣସମାଜ, ଜନପଦରୁ ପ୍ରଭୁଦାସ ସମାଜର ଉଦ୍‌ଭବ ପରେ ସାମନ୍ତବାଦୀ ସମାଜ ବ୍ୟବସ୍ଥା କେବଳ ଭାରତବର୍ଷରେ ଦେଖାଦେଇ ନାହିଁ ଏହା ଏକ ବିଶ୍ୱ ପ୍ରକ୍ରିୟା । ସମଗ୍ର ପୃଥିବୀ ବକ୍ଷରେ ଏହାର ଉଦ୍‌ଭବ ଓ ବିକାଶ ଓ ବିଳୟ । ୟୁରୋପ ଭୂଖଣ୍ଡରେ ଓ ମଧ୍ୟ ପ୍ରାଚ୍ୟରେ ଉଦ୍‌ଭବ ଘଟେ ଗ୍ରୀକ୍, ରୋମ, ଅଟୋମାନ, ଏସୀରିୟ, ଅଷ୍ଟ୍ରୋଜର୍ମାନ, ରୁଷ ସାମ୍ରାଜ୍ୟ ଓ ପୂର୍ବରେ ଚୀନ ସାମ୍ରାଜ୍ୟ ।

ସେହିପରି ସାମ୍ରାଜ୍ୟ ବିସ୍ତାର କରିବାକୁ ଅତୀତରେ ଭାରତକୁ ଆସିଥିଲେ ଆଲେକ୍‌ଜାଣ୍ଡାରଙ୍କର ଗ୍ରୀକ୍ ସୈନ୍ୟମାନେ । ସେମାନେ ପରେ ଚାଲିଗଲେ ମାତ୍ର ଭାରତ ଭୂଖଣ୍ଡକୁ ମଂଗୋଲ, ଶକ, ହୁନ, କୁଷାଣମାନେ ଆସି ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ପରେ ଆସିଲେ ପଠାଣ, ମୋଗଲ ଖୋରସାନ, ଆଫଗାନିସ୍ଥାନ, ଫଂଘେନା ପ୍ରଭୃତି ଅଞ୍ଚଳରୁ । ମାଙ୍ଗୋଲ ଚେଙ୍ଗିସଖାଁ ଭାରତ ଓ ମଧ୍ୟପ୍ରାଚ୍ୟ ୟୁରୋପ ଅଞ୍ଚଳ ଅଭିଯାନ କରି ଲୁଣ୍ଠନ, ପୋଡ଼ାଜଳା, ହତ୍ୟାର ତାଣ୍ଡବ ସୃଷ୍ଟି କରିଚାଲିଯାଇଥିଲେ । ପାରସ୍ୟର ନାଦିରଶାହା ମଧ୍ୟ ଏହି ଯୁଗରେ ଭାରତ ଆକ୍ରମଣ କରି ଲୁଟପାଟ, ଧ୍ୱଂସ ଲୀଳା ଚଳେଇ ସ୍ୱଦେଶକୁ ଚାଲି ଯାଇଥିଲେ । ଶକ, ହୁନ, କୁଶାଣ, ପଠାଣ, ମୋଗଲମାନେ ସ୍ୱଦେଶକୁ ନ ଫେରି ଏହି ଭୂଖଣ୍ଡରେ ରହିଲେ ।

ଭାରତ ଭୂଖଣ୍ଡରେ କେବଳ ଏହିମାନଙ୍କ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା ନୁହଁ । ମଗଧ, ମୌର୍ଯ୍ୟ, ଗୁପ୍ତ, ଅଶୋକ ସାମ୍ରାଜ୍ୟ, ଆମ ଓଡ଼ିଶାର ଐର ଖାରବେଳ, କଳିଙ୍ଗ ସାମ୍ରାଜ୍ୟ ପୂର୍ବପଟେ ବଙ୍ଗଳାରେ ଗୌଡ଼ ସାମ୍ରାଜ୍ୟ ଏହି ସାମନ୍ତବାଦୀ ସାମ୍ରାଜ୍ୟର ବିସ୍ତାର ଚାଲିଥିଲା ଭାରତର ଅନ୍ୟ ଭାଷାଭାଷୀ, ଜାତି, ଉପଜାତି ଅଞ୍ଚଳକୁ । ଦୃଷ୍ଟାନ୍ତ ସ୍ୱରୂପ ଅଶୋକ ସାମ୍ରାଜ୍ୟ କଳିଙ୍ଗ ଯାଏ ମାଡ଼ିଆସି ସେପଟେ ଆଫଗାନ୍‌ସ୍ଥାନ ଯାଏ ବିସ୍ତାରିତ ହୁଏ । ଐର ଖାରବେଳ, କଳିଙ୍ଗ ସାମ୍ରାଜ୍ୟ ଦାକ୍ଷିଣାତ୍ୟ ଓ ପୂର୍ବପଟେ ବଂଗଳାର କେତେକ ଅଂଶଯାଏ ବିସ୍ତାରିତ । ବଂଗଳାର ଗୌଡ଼ ସାମ୍ରାଜ୍ୟ ଓଡ଼ିଶାର ପୂର୍ବ ଉପକୂଳବର୍ତ୍ତୀ ଅଂଚଳ ଯାଏ ପ୍ରସାରିତ ଥିଲା । ଦକ୍ଷିଣାଂଚଳରେ ସେମିତି କାକତୀୟ, ଚୋଳ, ପାଣ୍ଡ୍ୟ, ହୟାସନ, ଯାଦବ ରାଜ୍ୟ ପରେ ବାହାମନୀ ସାମ୍ରାଜ୍ୟ । ପଶ୍ଚିମରେ ଚାଲୁକ୍ୟ, ଚିତ୍ରକୂଟ ରାଜ୍ୟ । ଏକ ଭାଷାଭାଷୀ ଏକ ଅଂଚଳର ସାମନ୍ତବାଦୀ ରାଜାମହାରାଜା ଅନ୍ୟ ଅଂଚଳକୁ ଦଖଲ କରି ସାମ୍ରାଜ୍ୟ ବିସ୍ତାର କରୁଥିଲେ । ସେହିପରି ମରହଟ୍ଟା ସାମ୍ରାଜ୍ୟ ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । ଯାହାକି ପରେ ଭୋଁସଲା, ପେଶବା, ହୋଲକାର, ଗାଏକୋୱାଡ଼ ରାଜ୍ୟରେ ପରିଣତ ହେଲା ।

ଏହି ମାନବ ସମାଜର ବିକାଶ ପ୍ରକ୍ରିୟାରେ ଏହା ସାମନ୍ତବାଦୀ ସାମ୍ରାଜ୍ୟ ଓ ରାଜ୍ୟ ପ୍ରତିଷ୍ଠାର ଯୁଗ ବୋଲି ଚିହ୍ନିତ ରାଜା, ମହାରାଜା, ସମ୍ରାଟ, ଜାର, ଏଙ୍କାଙ୍ଗ ଚକ୍ରବ ୀ, ବାଦଶାହା, ହେବାର ଯୁଗ ରୂପେ ଏହା ସମାଜ ବିଜ୍ଞାନ ଇତିହାସରେ ଚିହ୍ନିତ ।

**ଉପନିବେଶ ଓ ପରାଧୀନତାର ଯୁଗ**

ଦିଗବିଜୟ ଓ ସାମନ୍ତବାଦୀ ସାମ୍ରାଜ୍ୟ ପ୍ରତିଷ୍ଠାର ଦୀର୍ଘ ପ୍ରସାରୀ ଯୁଗ ପରେ ସାମାଜିକ, ଅର୍ଥନୈତିକ ବିକାଶ ଫଳରେ ଏକ ନୂତନ ଯୁଗର ଆବିର୍ଭାବ ଘଟେ । ଇତିହାସ ଦୃଷ୍ଟିରୁ ସତରଶହ ଖ୍ରୀଷ୍ଟାବ୍ଦରୁ ହିଁ ଏହି ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ଯୁଗର ଆରମ୍ଭ ହୁଏ । ପ୍ରଭୁଦେଶ (ମେଟ୍ରୋପଲି) ଓ ଉପନିବେଶଗୁଡ଼ିକର ଆବିର୍ଭାବ ଘଟେ । ପ୍ରଭୁଦେଶ ଦ୍ୱାରା ଅଧିକୃତ ଭୂଖଣ୍ଡ ଅଂଳ, ଦେଶଗୁଡ଼ିକ ସଂପୂର୍ଣ୍ଣ ଭାବରେ ପରାଧୀନ ହୋଇଯାନ୍ତି । ପ୍ରଭୁ ଦେଶର ଉପନିବେଶରେ ପରିଣତ ହୁଅନ୍ତି । ସାମନ୍ତବାଦୀ ଅର୍ଥନୀତି ପୁଂଜିବାଦୀ ଅର୍ଥନୀତିରେ ପରିଣତ ହେବା ପ୍ରକ୍ରିୟାରେ ପ୍ରଭୁଦେଶଗୁଡ଼ିକ ପୁଂଜିବାଦ ସାମ୍ରାଜ୍ୟବାଦୀ ରାଷ୍ଟ୍ରରେ ପରିଣତ ହୁଅନ୍ତି । ସ୍ୱଦେଶରେ ପୁଂଜିର ବିକାଶ ଲାଗି ଶିଳ୍ପର ବିକାଶ ଲାଗି ଅନ୍ୟ ଭୂଖଣ୍ଡକୁ ଉପନିବେଶ କରାଯାଏ । ସେହି ଅଧିକୃତ ଦେଶର ସମସ୍ତ ସଂପଦ ଭୂପୃଷ୍ଠ, ଭୂଗର୍ଭ, ସ୍ଥଳ, ଜଳ ସଂପଦକୁ ପ୍ରଭୁଦେଶର ନୂତନ ପୁଂଜିପତି ବଣିକ ଗୋଷ୍ଠି ସ୍ୱାର୍ଥ ଲାଗି ଆୟତାଧୀନ କରାଯାଏ । ଉପନିବେଶର ଲୋକେ ନିଜର ଏସବୁ ସମ୍ବଳ ସଂପଦରୁ ବଂଚିତ ହୁଅନ୍ତି । ୟୁରୋପ ଭୂଖଣ୍ଡରେ ଏହି ପ୍ରକ୍ରିୟାରେ ହିଁ ଶିଳ୍ପବିପ୍ଳବର ସୂତ୍ରପାତ ହୁଏ । ପ୍ରଥମେ ବଣିକ ପୁଂଜିର ସୃଷ୍ଟି । ବଜାର ଦଖଲ ପାଇଁ ବଣିକ ପୁଂଜି ପରାଧୀନ ଦେଶଗୁଡ଼ିକରେ ଏକଚାଟିଆ ବାଣିଜ୍ୟ ଜରିଆରେ ପ୍ରଭୁତ ପୁଂଜି ସଂଚୟ କରି ଶିଳ୍ପ ପୁଂଜିରେ ପରିଣତ ହୁଏ । ଶିଳ୍ପ ପୁଂଜିରୁ ଅର୍ଥପୁଂଜିର ଉଦ୍‌ଭବ ଘଟେ । ଅଧିକୃତ ଉପନିବେଶକୁ ପ୍ରଭୁଦେଶର ବଣିକପୁଂଜି ଶିଳ୍ପପୁଂଜି ଓ ଅର୍ଥପୁଂଜିର ବିକାଶ ଲାଗି ଶୋଷଣ କରାଯାଏ । ଏହି ପ୍ରକ୍ରିୟାରେ ଅଧିକୃତ ଦେଶରେ ପରଦେଶୀ ଶିଳ୍ପପୁଂଜି ଅର୍ଥପୁଂଜିର ଶାସନ ପ୍ରତିଷ୍ଠା କରାଯାଏ । ଅଧିକୃତ ଦେଶରେ ଶିଳ୍ପପୁଂଜିର ସ୍ୱାର୍ଥରେ ଆଇନ କାନୁନ, ପୁଲିସ, ଅଦାଲତ, ବିଚାରାଳୟ, ସୈନ୍ୟସାମନ୍ତ ମୁତୟନ କରାଯାଏ । ଏହି ପୁଂଜିବାଦୀ-ସାମ୍ରାଜ୍ୟବାଦୀ ଅର୍ଥନୈତିକ ବ୍ୟବସ୍ଥା ପ୍ରବ ନ ଫଳରେ ପ୍ରଥମେ ଶିଳ୍ପବିପ୍ଳବର ଯୁଗ ଆରମ୍ଭ ହୋଇଥିବା ୟୁରୋପୀୟ ଦେଶମାନେ ଉପନିବେଶ ଦଖଲ କରିବାକୁ ସାରା ପୃଥିବୀକୁ ଖେଦିଯାଆନ୍ତି । ପ୍ରଥମେ ସେପରି ଦେଶ ହେଲେ ବ୍ରିଟେନ୍, ଫ୍ରାନସ, ପ ୁଗାଲ, ହଲାଣ୍ଡ, ଦିନାମାର ଦେଶ । ଫ୍ରାନ୍ସ, ପ ୁଗାଲ, ଦିନାମାର, ବ୍ରିଟେନର ବଣିକମାନେ ଭାରତରେ ବଣିଜ ପାଇଁ ପ୍ରବେଶ କରନ୍ତି । ୧୬୦୦ ଖ୍ରୀଷ୍ଟାବ୍ଦରୁ ହିଁ ଏପରି ଗୋଟିକ ପରେ ଗୋଟିଏ ପ୍ରବେଶ କରି ଶେଷରେ ବ୍ରିଟିଶ ହାତରେ ସମଗ୍ର ଭାରତବର୍ଷ ପଡ଼େ । ❑❑❑

# ୧୯୭୫ ଜୁଲାଇରୁ ୧୯୭୬ ଅଗଷ୍ଟ

ଏହି ଏଗାର ମାସ ମଧ୍ୟରେ ୨୦ ଦଫା କର୍ମସୂଚୀକୁ ରୂପାୟନ କରିବାକୁ ସରକାର ନିଶ୍ଚିତ ପଦକ୍ଷେପ ନେଇଛନ୍ତି - ବହୁ ପ୍ରଚାର ପୁସ୍ତିକାରେ ବିବୃତିରେ, ବେତାର ମାଧ୍ୟମରେ କ'ଣ କ'ଣ କରାଯାଇଛି ତାହାର ହିସାବ କିତାବ ଦିଆଯାଉଛି ।

ସରକାରୀ ହିସାବ ପ୍ରକାଶ ପାଇଛି ଯେ, ୨୦ ଦଫା କର୍ମସୂଚୀ ପୂର୍ବର ଓ ପରେ ଅର୍ଥାତ୍ ୧୯୭୪ରୁ ୧୯୭୬ ମାର୍ଚ୍ଚ ଭିତରେ ଓଡ଼ିଶାରେ ୩୨୫୬୦ ଜଣ ଘରଡ଼ିହ ନଥିବା ଲୋକଙ୍କୁ ଘରଡ଼ିହ ଦିଆଯାଇଛି । ଆଉ ୧୯୭୫-୭୬ରେ କେବଳ ୧୭୬୪୨ ଜଣ ଘରଡ଼ିହ ପାଇଛନ୍ତି । ମୋଟ ୧୫୧୯୫ ଜଣ ଆଦିବାସୀ, ୮୬୪୪ ଜଣ ହରିଜନ, ଅନ୍ୟାନ୍ୟ ୮୭୨୧ ଜଣଙ୍କୁ ଘରଡିହ ପଟ୍ଟା ଦିଆଯାଇଛି ।

ଘରଡ଼ିହ ନଥିବା ଅଣଆଦିବାସୀ ଓ ହରିଜନଙ୍କୁ ଛାଡ଼ିଦେଲେ ଓଡ଼ିଶାର ଅଧିକାଂଶ ଆଦିବାସୀ ଓ ହରିଜନଙ୍କ ଘରଡ଼ିହ ନାହିଁ । ପୁନଶ୍ଚ ପଟ୍ଟା ଦିଆଗଲେ ବି ନିଶ୍ଚିତ ଭାବରେ ଅର୍ଦ୍ଧାଧିକ ପଟ୍ଟା ମିଳିବା ଘରଡ଼ିହରେ ଦଖଲ ଦିଆଯାଇନାହିଁ ।

ହିସାବ କିତାବ ଦେବାରେ କିପରି ମଧ୍ୟ ଫାଙ୍କତଳ ରହିଛି । ରାଜସ୍ୱ ମନ୍ତ୍ରୀ ଶ୍ରୀ ଶ୍ରୀବଲ୍ଲଭ କରିଛନ୍ତି ଯେ ଏଥି ଭିତରେ ୮ ଲକ୍ଷ ୫୦ ହଜାର ଏକରରୁ ଅଧିକ ପଡ଼ିଆ ସରକାରୀ ଜମି ୪ଲକ୍ଷରୁ ଉର୍ଦ୍ଧ୍ୱ ଭୂମିହୀନଙ୍କୁ ଦିଆଯାଇଛି ।

ଅଥଚ ୨୫.୫.୭୬ରେ ରାଜ୍ୟ ଲୋକ ସମ୍ପର୍କ ବିଭାଗର ବୁଲେଟିନ ଅନୁସାରେ ୧୯୭୪.୭୫ ଏବଂ ୧୯୭୫-୭୬ରେ ୨୩୨୨୨୦ ଜଣ ଭୂମିହୀନଙ୍କୁ ୪୧୭୯୧୭.୯ ଏକର ୪୯.୫ ଡିସିମିଲ ଜମି ଦିଆଯାଇଛି ।

ତେବେ କ'ଣ ବୁଝିବାକୁ ହେବ ଯେ ୨ ବର୍ଷ ଭିତରେ ଯଦି ୪ ଲକ୍ଷରୁ କିଛି ଅଧିକ ଜମି ଭୂମିହୀନଙ୍କୁ ଦିଆଗଲା ଏବର୍ଷ ମଇରୁ ଅଗଷ୍ଟ ଶେଷ ସୁଦ୍ଧା ୪ ଲକ୍ଷରୁ ଅଧିକ ଏକର ଜମି ଏବଂ ୨ ଲକ୍ଷରୁ ଅଧିକ ଲୋକଙ୍କୁ ବଣ୍ଟାଗଲା ।

ଏହା ନୁହଁ ଯେ ଲକ୍ଷାଧିକ ଏକର ଜମି ବଣ୍ଟାଯାଇନାହିଁ ଅବା ଲକ୍ଷାଧିକ ଭୂବିହୀନ ଉପକୃତ ହୋଇନାହାଁନ୍ତି । କିନ୍ତୁ ଏ କଥା ଅଭିଜ୍ଞତାରୁ ପ୍ରମାଣିତ ଯେ ବହୁ ଜାଗାରେ ଦିଆଯାଇଥିବା ଜମି ଘରଡ଼ିହ ନଈ ଭିତର ଚଡ଼ାରେ, ପାଣିପାଟନ୍ତେ, ପାହାଡ଼ ମୁଣ୍ଡିଆ ଉପରେ ଅଗନାଅଗନି

ବନସ୍ତ ଭିତରେ ଆଉ ଗାଁ'ମୁଣ୍ଡମାନଙ୍କରେ ଭୁଲେଇ ମେଣ୍ଟ ବାନ୍ଧି ଦଖଲ ହେଉ ନାହାଁନ୍ତି । ସରକାର ମଧ୍ୟ ବଣ୍ଟା ହୋଇଥିବା ଜମିକୁ ସବୁ ଚିହ୍ନଟକରି ଦଖଲ ଦେଇନାହାଁନ୍ତି ।

ଚିଫ୍ ସେକ୍ରେଟାରୀ ଡାଭେଙ୍କର ୧୭-୭-୭୬ରେ ପ୍ରକାଶିତ ପ୍ରବନ୍ଧରେ (ସମାଜ) ୧୯୭୫ ଜୁନ୍‌ରୁ ୧୯୭୬ ଜୁନ୍ ଯାଏ ଅଛି ଯେ ଏହି ସମୟ ଭିତରେ ୧ ଲକ୍ଷ ୮୩ ହଜାର ଏକର ପଡ଼ିଆ ଜମି ୯୭୭୦୦ ଜଣ ବ୍ୟକ୍ତିଙ୍କ ମଧ୍ୟରେ ବଣ୍ଟାଯାଇଛି । ତନ୍ମଧ୍ୟରୁ ୫୨୩୦୦ ହେଲେ ଆଦିବାସୀ ଏବଂ ୨୦୪୦୦ ହେଲେ ହରିଜନ । ତେଣୁ କେଉଁ ସଂଖ୍ୟା ଠିକ୍ କିପରି ଏହା ଗଣନା କରାଯାଉଛି ଏବଂ ଏପରି ଭିନ୍ନ ଭିନ୍ନ ସଂଖ୍ୟାର ଉଲ୍ଲେଖ ରୂପାୟନ ସଂକ୍ରାନ୍ତରେ ସ୍ୱାଭାବିକ ସନ୍ଦେହ ଜାତ କରୁଛି । ତାହା ହିଁ ଅନ୍ୟ ଦିଗରୁ ପ୍ରମାଣ କରିଦେଉଛି ଯେ ଅମଲାତନ୍ତ୍ରର କାମ କେତେ ହୁଗୁଳା, କେତେ ଲୋକ ଦେଖାଣିଆ ।

ତାଙ୍କ ହିସାବରେ ଅଛି ୧୯ହଜାର ବ୍ୟକ୍ତି : ତନ୍ମଧ୍ୟରୁ ୯ ହଜାର ଆଦିବାସୀ ଓ ୫୫୦୦ ହରିଜନ ଏହି ସମୟ ଭିତରେ ଘରଡ଼ିହ ପାଇଛନ୍ତି ଓ ସେଥିଲାଗି ୧୫୬୦ ଏକର ଜମି ଦିଆଯାଇଛି । ବିଭାଗୀ ମନ୍ତ୍ରୀ ହୁଅନ୍ତୁ ଅବା ଚିଫ୍ ସେକ୍ରେଟାରୀ ହୁଅନ୍ତୁ ଏମିତିକି ପ୍ରତ୍ୟେକ ଜିଲ୍ଲାର ଜିଲ୍ଲାପାଳ ହୁଅନ୍ତୁ, କେହି ନିର୍ଦ୍ଦିଷ୍ଟ ଭାବରେ କହିପାରିବେ ନାହିଁ ଯେ ଯେତିକି ପଡ଼ିଆ ଜମି ବଣ୍ଟାଯାଇଛି, ଯେତିକି ଘରଡ଼ିହ ବଣ୍ଟାଯାଇଛି ସେସବୁରେ ଦଖଲ ଦିଆ ସରିଛି ।

ସରକାର ଜାଣନ୍ତି ଯେ ଭୂମିହୀନମାନଙ୍କୁ ଜମି ଦେବାକୁ ହେଲେ ତାହା ଚାରୋଟି ସୂତ୍ରରୁ ଆସିବ ଏବଂ ଓଡ଼ିଶାରେ ସର୍ବାଧିକ ସଂଖ୍ୟକ ଭୂମିହୀନମାନଙ୍କୁ ଭୂମି ସେଥିରୁ ଦିଆଯିବ । ସରକାରୀ ପଡ଼ିଆ ଜମି, ଭାଗଚାଷୀ ଜମି, ସର୍ବୋଚ୍ଚ ସୀମା ଉଦ୍‌ବୃତ୍ତ ଜମି ଆଉ ଅଣ ଆଦିବାସୀମାନେ ନେଇ ଯାଇଥିବା ଆଦିବାସୀମାନଙ୍କ ଫେରସ୍ତ ଜମି ।

କିନ୍ତୁ କେଉଁ ସୂତ୍ରରୁ କେତେ ଜମି ଆସିପାରିବ, କେଉଁ ସୂତ୍ରରୁ କେତେ ଜମି ଆସିଲାଣି ଏବଂ କେତେ ଭୂମିହୀନ ଓ ଘରଡିହ ନ ଥିବା ଲୋକ ଅଛନ୍ତି, କେତେ ସଂଖ୍ୟାର ଏପରି ଲୋକଙ୍କୁ ଉପକାର ଦିଆଯାଇ ପାରିବ ତାହା ସରକାର ଏ ପର୍ଯ୍ୟନ୍ତ କହି ନାହାଁନ୍ତି କି ଅମଲାତନ୍ତ୍ର ଅଳିଆଗଦାରୁ ଏପରି ସୁସ୍ପଷ୍ଟ ମିଳିବ ନାହିଁ ।

ସର୍ବୋଚ୍ଚ ସୀମା ଆଇନ ଲାଗୁ କରି ଜୁନ ୧୯୭୭ ସୁଦ୍ଧା ଉଦ୍‌ବୃତ୍ତ ଜମି ବାଣ୍ଟି ଦେବେ ବୋଲି ସରକାର ପ୍ରଥମେ ଘୋଷଣା କରିଥିଲେ । କଂଗ୍ରେସ ସଭାପତି ବଡ଼ୁଆଙ୍କର ମଧ୍ୟ ତାହା ହିଁ ନିର୍ଦ୍ଦେଶ ଥିଲା । ପ୍ରଧାନମନ୍ତ୍ରୀ ବାରମ୍ବାର ଭୂସଂସ୍କାରକୁ ତ୍ୱରାନ୍ୱିତ କରିବାକୁ ଆହ୍ୱାନ ଜଣାଇ ଦେଇ ଚାଲିଛନ୍ତି ।

୩-୮ ସମାଜରେ ପ୍ରକାଶିତ ବିବରଣୀରେ ରାଜସ୍ୱମନ୍ତ୍ରୀ ୬୪ ହଜାରରୁ ଅଧିକ ଏକର ଜମି ମିଳିଛି ଏବଂ ସେଥିରୁ ଜୁନ ଶେଷ ସୁଦ୍ଧା ୪୬୬୬୬ ଏକର ଜମି ୩୪୩୪୬ ଜଣ ଭୂମିହୀନଙ୍କୁ ଦିଆଯାଇଛି ବୋଲି କହିଥିଲେ । ସେପ୍ଟେମ୍ବର ମାସରେ ବନ୍ଦୋବସ୍ତ କର୍ମଚାରୀଙ୍କ

ସମ୍ମିଳନୀରେ ରାଜସ୍ୱ ମନ୍ତ୍ରୀ ଶ୍ରୀଯୁକ୍ତ ପାଣିଗ୍ରାହୀ ଅପ୍ରେଲ ସୁଦ୍ଧା ୬୭ ହଜାର ୫୬୮ ଏକର ଉଦବୃତ୍ତ ଜମି ମିଳିଛି ଏବଂ ସେଥିରୁ ୪୬୭୯୮ ଏକର ୩୪୩୧୩ ଜଣଙ୍କ ମଧ୍ୟରେ ବଣ୍ଟା ସରିଛି ଓ ଓଡିଶା ଭୂସଂସ୍କାର ଆଇନ ଅନୁସାରେ ୩୯ ହଜାର ମକଦ୍ଦମା ବିଚାରଧୀନ ଅଛି କହିଛନ୍ତି ଓ ୧୯୭୭ ମାର୍ଚ୍ଚ ସୁଦ୍ଧା ଆଉ ୫୦ ହଜାର ଏକର ଜମି ବଣ୍ଟାଯିବ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ତେଣୁ ୧୯୭୬ ଜୁନ୍ ଶେଷ ସୁଦ୍ଧା ଭୂସଂସ୍କାର ଆଇନ ଅନୁସାରେ ଉଦବୃତ୍ତ ଜମି ବଣ୍ଟନର ନିଷ୍ପତ୍ତି କାର୍ଯ୍ୟକାରୀ ହୋଇନାହିଁ । ଏହା କ'ଣ ମନ୍ଥରତାର ପ୍ରମାଣ ନୁହେଁ ।

ସେମିତି କେତେ ଭାଗଚାଷୀ ଦରଖାସ୍ତ କରିବାକୁ ଭୟ କରୁଛନ୍ତି- ଯେଉଁସବୁ ଭାଗଚାଷୀ ଦରଖାସ୍ତ କରିଛନ୍ତି, ସେମାନଙ୍କୁ କିପରି ହଇରାଣ ଭୋଗିବାକୁ ହେଉଛି । ତାହା ବର୍ଣ୍ଣନାତୀତ । ପୁଲିସ ମକଦ୍ଦମା ୧୪୪, ଜମି ମାଲିକ ରିସିଭର ହେବା, ଦରଖାସ୍ତ କଚେରୀରୁ ହଜିବା, ମିଥ୍ୟା ଭାଗଚାଷୀ ଛିଡ଼ା କରେଇବା, ତୁହାକୁ ତୁହା ତାରିଖ କରି ଭାଗଚାଷୀକୁ ଦୌଡ଼େଇ ନ ପହଞ୍ଚିଲେ ମକଦ୍ଦମା ଖାରଜ କରିବା, ମାତ୍ର ଜମି ମାଲିକ ନ ଆସିଲେ ତାରିଖ କରିବା, ଏଗୁଡ଼ିକର ଅଭିଜ୍ଞତା ଭୂରି ଭୂରି ଅଧିକେ ସବୁ ତହସିଲରେ ମିଳିବ ।

ଯେଉଁଠି ଭାଗଚାଷୀ ପକ୍ଷରେ ରାୟ ଯାଉଛି, ସେଠାରେ ମଧ୍ୟ ଜମିମାଲିକ ଦଖଲ ଦିଆଇ ଦେଉନାହିଁ ।

ଏଣେ ୧୯୭୦ ଅକ୍ଟୋବର ମାସରୁ ସର୍ବୋଚ୍ଚ ସୀମାରୁ ଅଧିକ ଥିବା ଜମିମାଲିକ ଜମି ହସ୍ତାନ୍ତର କରିବା ବେଆଇନ ବୋଲି ପ୍ରଥମେ ଅର୍ଡ଼ିନାନ୍ସ ଓ ପରେ ଆଇନ ହେଲେ ବି ବହୁ ଜମି ମାଲିକ ଜମି ବିକି ଦେଲେ । ସେସବୁ ଉଦ୍ଧାର କରିବାର ଦୃଷ୍ଟାନ୍ତ ମିଳୁନି । ଓଡ଼ିଶାର ବେଶ୍ ପ୍ରଗତିଶୀଳ ଭୂସଂସ୍କାର ଆଇନର ଫଳାଫଳ ଯେ ଆଶାନୁରୂପ ନୁହଁ, ପ୍ରକୃତରେ ଅଧିକ ଉଦବୃତ୍ତ ଜମି ଯେ ମିଳିବ ନାହିଁ ବା ଉଦ୍ଧାର କରାଯାଇପାରିବ ନାହିଁ ତାହା ଦିବାଲୋକ ପରି ସ୍ପଷ୍ଟ ହୋଇଯାଉଛି ।

୧ ଲକ୍ଷ ଏକର ଯାଏ ସିଲିଂ ଉଦବୃତ୍ତ ଜମି ରହିଚି ବୋଲି ରାଜସ୍ୱମନ୍ତ୍ରୀ ଶ୍ରୀ ପାଣିଗ୍ରାହୀ ଏକ ସାମ୍ବାଦିକ ସମ୍ମିଳନୀରେ ୧୯୭୬ ଜାନୁଆରୀରେ କହିଥିଲେ (ଏ.ବି.ପତ୍ରିକା ୨୧,୧,୭୬) ।

ଜମି ମାଲିକମାନେ ଯେ ସର୍ବୋଚ୍ଚ ସୀମା ଆଇନକୁ ଭଣ୍ଡୁର କରି ଦେଉଛନ୍ତି ତାର ଗୋଟିଏ ନଜିର ନିଆଯାଉ । ୧୯-୫-୭୬ ସୁଦ୍ଧା କଟକ ଜିଲ୍ଲାର ମାତ୍ର ୧୦୫ ଜଣ ଜମିମାଲିକ ସ୍ୱେଚ୍ଛାକୃତ ଭାବରେ ରିଟର୍ଣ୍ଣ ଦେଇଥିଲେ ଆଉ ଉଦବୃତ୍ତ ଜମି ଥିବା ଦର୍ଶାଇ ଜିଲ୍ଲାରେ ମାତ୍ର ୧୩୧୬ ଜଣଙ୍କ ବିରୁଦ୍ଧରେ ମକଦ୍ଦମା ଦାଏର କରାଯାଇଥିଲା । ଏହି ମକଦ୍ଦମାଗୁଡ଼ିକରେ ମଧ୍ୟ ଜମି ମାଲିକମାନେ ନାନା ମିଛ ରେକର୍ଡ଼ ଦେଖାଇ ଖସି ଯାଇଛନ୍ତି ଓ ଯାଉଛନ୍ତି ।

ସେମିତି କୋରାପୁଟ କଳାହାଣ୍ଡି, ଫୁଲବାଣୀ, ବଲାଙ୍ଗିର, କେଉଁଝର, ମୟୂରଭଞ୍ଜ ଓ ଢେଙ୍କାନାଳ ପ୍ରଭୃତିରେ ଯେଉଁ ଅଣଆଦିବାସୀମାନେ ଆଦିବାସୀମାନଙ୍କ ଜମି ନେଇଯାଇଥିଲେ ତାହା ଆଇନତଃ ବେଆଇନ ଘୋଷିତ ହେଲେ ହେଁ, ଅତି ନଗଣ୍ୟ ସଂଖ୍ୟାର ଆଦିବାସୀ ଜମି ଫେରସ୍ତ ପାଇଛନ୍ତି । ସେସବୁ ଜମି ଚିହ୍ନଟର କୌଣସି ବିଶେଷ ଓ କାର୍ଯ୍ୟ ନାହିଁ ।

ସେହେତୁ ୨୦ ଦଫା କର୍ମସୂଚୀ ଯାହାକି କୃଷି ସମ୍ପର୍କକୁ ବଦଳେଇ ଓଡ଼ିଶାର ଶିଳ୍ପ-ଆର୍ଥିକ ସମ୍ବଳ ବଢ଼ାନ୍ତା, ଗ୍ରାମୀଣ ବେକାରୀ ଦୂର କରନ୍ତା, ଅଧିକ ଉତ୍ପାଦନ ହୁଅନ୍ତା, ସମବାୟ ବା କୋଠଚାଷରେ ଓ ଯାନ୍ତ୍ରିକ ଚାଷ ପାଇଁ ଉତ୍ସାହ ସୃଷ୍ଟି କରନ୍ତା, ଯେପରି ରୀତିରେ ତାହା ରୂପାୟିତ ହେଉଚି ତାହା ଲକ୍ଷ୍ୟ ହାସଲରେ ରାଜ୍ୟକୁ ପହଂଚାଇ ଦେବନାହିଁ । ବରଂ ତାହା ରାଜନୈତିକ ହତାଶା ଆଦରିଦେବ । ସାମନ୍ତବାଦୀ ନ୍ୟସ୍ତସ୍ୱାର୍ଥ କିଛି କିଛି ହରେଇଲେ ବି ନିର୍ମୂଳ ହେବେ ନାହିଁ । ସେମାନଙ୍କ ସାମାଜିକ, ଆର୍ଥିକ ପ୍ରତିପତ୍ତି ଓ ରାଜନୈତିକ ଭିତ୍ତି ନିଶ୍ଚିହ୍ନ ହେବ ନାହିଁ ।

ଏହି ପ୍ରକାର ଉପଲବ୍ଧି ଶାସନରେ ଥିବା ଦଳର ଉଚ୍ଚ ନେତୃତ୍ୱ କରିବାର କଥା ଏବଂ ତଦାନୁସାରେ ଏ ପ୍ରକାର ରୂପାୟନର ଢଙ୍ଗକୁ ସମ୍ପୂର୍ଣ୍ଣ ବଦଳାଇବାର ଦୃଢ଼ ପଦକ୍ଷେପ ନେବା ଉଚିତ୍ । ଯେଉଁମାନେ ଆସନରେ ନାହାଁନ୍ତି, ଅଥଚ ଏପରି ପରିବର୍ତ୍ତନଟିକୁ ଚାହାଁନ୍ତି ଓ ୨୦ ଦଫାର ସମର୍ଥକ ସେମାନେ ବିଶେଷତଃ କମ୍ୟୁନିଷ୍ଟ ପାର୍ଟି ଯିଏ ଏହି କର୍ମସୂଚୀ ରୂପାୟନ କରିବାର ସଂଗ୍ରାମରେ ଝାସ ଦେଇଛି ସେ ସମସ୍ତଙ୍କୁ ଏସବୁ ଜଟିଳତା ଦୂର କରିବାର ପନ୍ଥାମାନ ବାହାର କରିବାକୁ ଐକ୍ୟବଦ୍ଧ ହେବାକୁ ହେବ ।

**ମହାଜନୀ ଋଣ କୃଷି ଅର୍ଥନୀତିକୁ ସ୍ଥବିର କରି ଦେଇଛି**

ପଡ଼ିଆ ଉଦବୃତ୍ତ ଜମି ବଣ୍ଟନ, ଘରଡ଼ିହ ବଣ୍ଟନ, ଆଦିବାସୀ ଜମି ଫେରସ୍ତ, ଭାଗଚାଷୀମାନଙ୍କ ସ୍ୱତ୍ୱ ହାସଲ, ସର୍ବୋଚ୍ଚ ସୀମା ବାହିଲି ଜମି ଏକୁଆର, ଯାହାକି ୨୦ ଦଫା କର୍ମସୂଚୀର ଅସଲ ସ୍ତମ୍ଭ, ରାଜ୍ୟରେ ତାହାର କାର୍ଯ୍ୟକାରିତା ଯେ ସନ୍ତୋଷଜନକ ନୁହଁ, ଏଥିରେ ସରକାରଙ୍କ ପ୍ରଚାର ଅଭିଯାନ ସଙ୍ଗତିଶୀଳ ନୁହଁ ।

ସେମିତି ଗ୍ରାମାଞ୍ଚଳରୁ ସାମନ୍ତବାଦୀ ଶୋଷଣର ବିଲୋପ ଲାଗି ରାଜ୍ୟ ସରକାର ଯେଉଁ ପ୍ରଗତିଶୀଳ ବ୍ୟବସ୍ଥା ନେଇଛନ୍ତି, ସେପରି ବ୍ୟବସ୍ଥା ମଧ୍ୟରେ ଗୋତିମୁକ୍ତି, ମହାଜନୀ ଋଣ ଆଦାୟ ରହିତକରଣ, ଗୃହହୀନଙ୍କୁ ତିଆରି ଗୃହ ଦାନ, ସର୍ବନିମ୍ନ ମଜୁରୀ, ଚୋରା ସମ୍ପଦ ଉଦ୍ଧାର, ଜଳସେଚନ ବ୍ୟବସ୍ଥାର ପ୍ରସାର, ଚୋରା କାରବାର ନିରୋଧ ରହିଚି ।

ଗୋତି କ'ଣ ତା'ର ସଜ୍ଞା ସଠିକ ଭାବରେ ଜାଣିବାକୁ କୌଣସି ନିର୍ଦ୍ଦେଶନାମା ଥିବାର ଜଣାନାହିଁ । କୋରାପୁଟ, କଳାହାଣ୍ଡି, ବଲାଙ୍ଗିର, ଫୁଲବାଣୀ ପ୍ରଭୃତିରେ ଗୋତି ପ୍ରଥା ଯେପରି ପ୍ରଚଳିତ ଆଉରି ସୂକ୍ଷ୍ମ ଭାବରେ ଅନ୍ୟ ସ୍ଥାନମାନଙ୍କରେ ସେହି ଘୃଣ୍ୟ ପ୍ରଥା ପ୍ରଚଳିତ ।

ସହସ୍ର ସହସ୍ର ଗୋତି ବନ୍ଧା ପଡ଼ିଛନ୍ତି । କିନ୍ତୁ ସରକାରଙ୍କ ଦ୍ୱାରା ୨୮୫ ଜଣ ଗୋତି ଏ ପର୍ଯ୍ୟନ୍ତ ଚିହ୍ନଟ ହୋଇ ମାତ୍ର ୧୪୩ ଜଣଙ୍କୁ ମୁକ୍ତ କରାଯାଇଛି, ଅଥଚ ସମଗ୍ର ଦେଶରେ ଏଯାଏ ୫୬ ହଜାର ଗୋତି ମୁକ୍ତ । ଗୋତି ରଖିଛନ୍ତି ଧନୀ ଜମି ମାଲିକ, ମହାଜନ, ସାହୁକାରମାନେ । ପୋଲିସ ସ୍ଥାନୀୟ ଅମଲାତନ୍ତ୍ର ସହିତ ସେମାନଙ୍କର କ୍ଷୀରନୀର ସମ୍ପର୍କ । ତେଣୁ ଗୋତିମୁକ୍ତି ଲୋକଦେଖାଣିଆ ହୋଇଛି ମାତ୍ର । ଗୋତିଙ୍କ ଥଇଥାନ ପାଇଁ ମୁଖ୍ୟମନ୍ତ୍ରୀ ଯେଉଁ ବାସ୍ତବାବାଦୀ ବ୍ୟବସ୍ଥା କରିଛନ୍ତି, ତାହା ପ୍ରଶଂସନୀୟ ହେଲେ ହେଁ ଗୋତିମୁକ୍ତି ଅଭିଯାନ ବସ୍ତୁତଃ ଏକ ପ୍ରହସନରେ ପରିଣତ ହୋଇଛି ।

ଆମ ରାଜ୍ୟରେ ମହାଜନମାନଙ୍କ କବଳରୁ ଗରିବ ଚାଷୀ, ଭୂମିହୀନ କ୍ଷେତ ମୂଲିଆଙ୍କୁ ମୁକୁଳିବା ପାଇଁ ଅନ୍ୟ ରାଜ୍ୟ ପରି ବ୍ୟବସ୍ଥା ହୋଇନାହିଁ । ୨ ଏକର ଜମିଥିବା ଚାଷୀମାନଙ୍କଠାରୁ ଋଣ ଆଦାୟ ବର୍ଷକ ଲାଗି ମକୁବ ରଖାଯାଇଛି ମାତ୍ର । ଆଉ ଲାଇସେନ୍ସ ନ ଥିଲେ ବା ଲାଇସେନ୍ସ ପରିମାଣଠାରୁ ଅଧିକ ଟଙ୍କା ଋଣ ଲଗାଣ କରୁଥିଲେ ମହାଜନଙ୍କୁ ଦଣ୍ଡବିଧାନ କରାଯିବା ବ୍ୟବସ୍ଥା ରହିଛି । ଲକ୍ଷାଧିକ ସଂଖ୍ୟାରେ ମହାଜନଙ୍କର ଲାଇସେନ୍ସ ନଥାଇ କାରବାର ଚାଲିଛି । ରାଜ୍ୟରେ ୧୦୮୧୫ ଜଣ ଲାଇସେନ୍ସଧାରୀ ମହାଜନଙ୍କ ଭିତରୁ ଜରୁରୀ ପରିସ୍ଥିତି ସତ୍ତ୍ୱେ ମାତ୍ର ୩୨୩୬ ଜଣ ମହାଜନ ରେକର୍ଡ଼ ଦାଖଲ କରିଛନ୍ତି ।

ଏ କଥା ନୁହଁ ଯେ ଚୋରା ସୁନା ଟଙ୍କା ଇତ୍ୟାଦି ଉଦ୍ଧାର ପାଇଁ କିଛି କିଛି ଚଢ଼ଉ ହୋଇନାହିଁ । ଜରୁରୀ ପରିସ୍ଥିତି ପରେ ଏ ସଂକ୍ରାନ୍ତରେ ୩୭୦୦ ଜଣଙ୍କୁ ଗିରଫ କରାଯାଇ ୧୨୦ କିଲୋ ସୁନା ଓ ୧୦୧୭ କେଜି ରୂପା ଉଦ୍ଧାର କରାଯାଇଛି ବୋଲି ସରକାରୀ ହିସାବ ମାତ୍ର ଏହାର ଶହେ ଗୁଣରୁ ଅଧିକ ସୁନାରୂପା କଳାଟଙ୍କା ପ୍ରତ୍ୟେକ ଜିଲ୍ଲାରେ ରହିଛି । ପୂର୍ବତନ ରଜା ମହାରଜା ଯେଉଁଠି ଜାଲ ପକେଇଲେ ଜାଲ ଉଠିବ ନାହିଁ, ସେମାନଙ୍କୁ ସ୍ପର୍ଶ କରାଯାଉନାହିଁ । ସେମାନେ ନିଜ ରାଜନୈତିକ ରଙ୍ଗ, ଭେକ, ପତାକା ବଦଳାଉଛନ୍ତି । ସେଥିଲାଗି ଉତ୍ସାହ ପାଉଛନ୍ତି ।

ତେଣେ ସରକାରୀ ଋଣ ଆଦାୟ କ୍ଷେତ୍ରରେ ବାଲିପାଟଣା ପ୍ରଭୃତି ବହୁ ସ୍ଥାନରେ ବର୍ଗୀସମ ଅତ୍ୟାଚାର ହୋଇଛି ବୋଲି ବିଧାନସଭାରେ କଂଗ୍ରେସ କମ୍ୟୁନିଷ୍ଟ ସଦସ୍ୟ ଏକସ୍ୱରରେ ଅଭିଯୋଗ କରିଛନ୍ତି ।

ଲକ୍ଷାଧିକ ବିଶ୍ୱାସୀ କବଳାରେ ସର୍ବସ୍ୱାନ୍ତ ବିଶେଷତଃ ବାଲେଶ୍ୱରର ଗରିବ ଚାଷୀଙ୍କୁ ଏପରି ଏକ ଜଘନ୍ୟ ଶୋଷଣରୁ ରକ୍ଷାର ଉପାୟ ନିଆଯାଉନାହିଁ ।

ମହାଜନ ଓ ମହାଜନୀ କାରବାର ପ୍ରତି ଆମ ରାଜ୍ୟରେ ଅମଲାତନ୍ତ୍ରୀ ଦରଦ ନିମ୍ନ କେତେକ ଉଦାହରଣରୁ ଜଣାଯାଏ ।

୧୭୭୬ ଏପ୍ରିଲ ସୁଦ୍ଧା ଗରିବ ଲୋକଙ୍କୁ ମହାଜନୀ ଋଣରୁ ମୁକ୍ତ କରିବା ବ୍ୟବସ୍ଥା

ଅନୁସାରେ କର୍ଣ୍ଣାଟକ ରାଜ୍ୟରେ ୧ କୋଟି ଲୋକ ୧୧୬ କୋଟି ଟଙ୍କା ଋଣ ଛାଡ, ପଶ୍ଚିମବଙ୍ଗରେ ୫୫ ଲକ୍ଷ ଲୋକ ୬୭ କୋଟି ଟଙ୍କା, ଗୁଜୁରାଟରେ ୪୬ ଲକ୍ଷ ଲୋକ ୧୦ କୋଟି ୭୫ ହଜାର, ମଧ୍ୟପ୍ରଦେଶ ୧୦ ହଜାର ଲୋକ ୧ କୋଟି ୫୬ ହଜାର ଟଙ୍କା ଋଣ ଛାଡ଼ ପାଇଛନ୍ତି । ହରିଆନାରେ ୧ ଲକ୍ଷ, ପଞ୍ଜାବରେ ୧୧ ଲକ୍ଷ, ଉତ୍ତରପ୍ରଦେଶରେ ୩ କୋଟି ଲୋକ ମହାଜନୀ ଋଣ ସଂକ୍ରାନ୍ତରେ ରିଲିଫ ପାଇଛନ୍ତି । ଓଡ଼ିଶାକୁ ଏମାନଙ୍କ ସହିତ ତୁଳନା କରାଯାଉ । ରାଜ୍ୟ ସରକାର ଚାରିବର୍ଷରେ ୫ ଲକ୍ଷ ଶସ୍ତା ଗୃହ ତିଆରି କରିବେ । ପ୍ରଥମ ବର୍ଷ ୨ ଲକ୍ଷ ଘର ତିଆରି ହୋଇ ବଣ୍ଟାଯିବ ବୋଲି ବିଧାନସଭାରେ ମଧ୍ୟ ଘୋଷଣା କଲେ । ମାତ୍ର ଜୁନ୍ ଶେଷ ସୁଦ୍ଧା ୨୫୮୬ଟି ଘର ତିଆରି ହୋଇଛି ଓ ଆଉ ୩୪୦୦ଟି ନିର୍ମୀୟମାଣ ଅବସ୍ଥାରେ ଅଛି ବୋଲି ତାଙ୍କର ରିପୋର୍ଟରୁ ପ୍ରକାଶ । ଅଭିଜ୍ଞତା ଯେ ଅନେକ ସ୍ଥାନରେ ଏହି ତିଆରି ଘର ଟିକିଏ ବଡ଼ ଧରଣର ଝଡ଼ ବା ଲଗାତାର ବର୍ଷା ହେଲେ ମାଟିରେ ଶୋଇଯିବ ।

ରାଜ୍ୟ ସରକାର କ୍ଷେତମୂଲିଆଙ୍କ ଲାଗି ସର୍ବନିମ୍ନ ମଜୁରୀ ୪ ଟଙ୍କା ଧାର୍ଯ୍ୟ କରିଥିଲେ ହେଁ ସରକାରୀ କାମରେ ବି ୪ଟଙ୍କା ମଜୁରୀ ଅନେକ ସ୍ଥାନରେ ଦିଆଯାଉନାହିଁ । ଚାରି ଟଙ୍କା ମଜୁରୀ ନଦେବା ହେତୁ କିଛି କିଛି ଗିରଫ-ଜରିମାନା ହେଉଚି ସତ, ମାତ୍ର ତାହା କାର୍ଯ୍ୟକାରୀ ହୋଇପାରୁନାହିଁ । କ୍ଷେତ ମୂଲିଆଙ୍କ ସର୍ବନିମ୍ନ ମଜୁରୀ, କାମର ସ୍ଥାୟିତ୍ୱ, ପ୍ରୋଭିଡେଣ୍ଟ ଫଣ୍ଡ, କାମର ସମୟ ଏସବୁ ଥାଇ କେରଳରେ ଯେପରି ଆଇନ ହୋଇ କାର୍ଯ୍ୟକାରୀ ହେଉଚି, ରାଜ୍ୟ ସରକାର ତାହା କରି ନାହାଁନ୍ତି । ତେଣୁ ଅତୀତରେ ୧ ଟଙ୍କା, ୨ଟଙ୍କା ଓ ୩ଟଙ୍କା ସର୍ବନିମ୍ନ ମଜୁରୀ ଧାର୍ଯ୍ୟ ହୋଇଥିଲେ ହେଁ । ଯେପରି କାଁ ଭାଁ କାର୍ଯ୍ୟକାରୀ ହେଉଥିଲା । ସର୍ବନିମ୍ନ ୪ଟଙ୍କା ଧାର୍ଯ୍ୟ ହେଲେ ହେଁ ତାହା ସେହିପରି କାର୍ଯ୍ୟକାରୀ ହେଉଛି ।

ଗରିବ ଓ ମଧ୍ୟବିତ୍ତ ଚାଷୀମାନଙ୍କୁ ଉଚିତ ଦରରେ ସାର ଯୋଗାଣ, ଜଳସେଚନର ବ୍ୟବସ୍ଥା, ସେମାନଙ୍କର ଉତ୍ପନ୍ନ ପଦାର୍ଥର ଉଚିତ୍ ମୂଲ୍ୟ ସଂକ୍ରାନ୍ତରେ ଗୃହୀତ ବ୍ୟବସ୍ଥାଗୁଡିକ ସଫଳ ଭାବରେ କାର୍ଯ୍ୟକାରୀ ହୋଇପାରୁନାହିଁ ।

ରାଜ୍ୟରେ ଚାଷ ଜମି ୮୧ ଲକ୍ଷ ୭୦ ହଜାର ହେକ୍ଟର (ଏକ ହେକ୍ଟର ପ୍ରାୟ ୨ ଏକର) ଜମି ମଧ୍ୟରୁ ବୃହତ ମଧ୍ୟମ ଓ କ୍ଷୁଦ୍ର ଜଳସେଚନର ଜରିଆରେ ମାତ୍ର ୧୨ ଲକ୍ଷ ୧୧ ହଜାର ହେକ୍ଟର ଜମି ଜଳସେଚିତ । ୨୦ ଦଫା କର୍ମସୂଚୀ ରୂପାୟନ କାଳ ଭିତରେ ଆଉ ୧ଲକ୍ଷ ୧୩ ହଜାର ହେକ୍ଟର କରାଯିବ ଓ ଆଗାମୀ ୩ ବର୍ଷରେ ୨ ଲକ୍ଷ ୩୦ ହଜାର ହେକ୍ଟର ଭୂମିରେ ଜଳସେଚନ ବ୍ୟବସ୍ଥା ହେବ ବୋଲି ରାଜ୍ୟ ଜଳସେଚନମନ୍ତ୍ରୀଙ୍କ ଘୋଷଣା । ଏହା କ'ଣ ଆମର ଅନୁନ୍ନତ କୃଷି ଅର୍ଥନୀତିରେ ରୂପାନ୍ତର ଆଣିବାକୁ ଯଥେଷ୍ଟ ଅଗ୍ରାଧିକାର ଦେଇ ଯଦି ଚାଷୋପଯୋଗୀ ଜମିର ଶତକଡ଼ା ୫୦ଭାଗ (ଯାହାକି କମ୍ୟୁନିଷ୍ଟ ପାର୍ଟିର ଦାବୀ ଓ ପ୍ରସ୍ତାବ) ଜଳସେଚିତ ହୁଏ, ତେବେ ଯାଇ ଓଡ଼ିଶାର କୃଷି ଉତ୍ପାଦନରେ ଏକ ବ୍ରେକ ଥ୍ରୁ ବା ରୂପାନ୍ତର ଆଭାସ ମିଳିବ ।

ରାଜ୍ୟରେ ଅଗଷ୍ଟ ୩୧ ସୁଦ୍ଧା ରେଜିଷ୍ଟ୍ରିକୃତ ଶିକ୍ଷିତ ବେକାରଙ୍କ ସଂଖ୍ୟା ୧୭୨୬୨୪ ଜଣ ଓ ଅଶିକ୍ଷିତ ବେକାର ୧ ଲକ୍ଷ ୮୯ ହଜାର ୬୩ଜଣ । ପ୍ରକୃତ ବେକାରୀର ଏହା ଚିତ୍ର ନୁହଁ କାରଣ ମାତ୍ର ଶତକଡ଼ା ୨୦ରୁ ୨୫ ଭାଗ ବେକାର କର୍ମଯୋଗାଣ ସଂସ୍ଥାରେ ନାମ ରେଜେଷ୍ଟ୍ରି କରାଇଛନ୍ତି ଆଉ ଏହି ରେଜିଷ୍ଟ୍ରିକୃତ ବେକାରଙ୍କ ମଧ୍ୟରୁ ମାସକ ମଧ୍ୟରେ ୨୭ ହଜାର ୭୨୯ ଜଣଙ୍କୁ କର୍ମ ଯୋଗାଇ ଦିଆଯାଇଛି । ଏହା ସ୍ୱାଗତଯୋଗ୍ୟ ଉଦ୍ୟମ ସତ, ମାତ୍ର ଉତ୍କଟ ବେକାରୀ ସମସ୍ୟାକୁ ଏହା ସ୍ପର୍ଶ କରୁନାହିଁ ।

ରାଜ୍ୟରେ ୧୭୫୫୦ ଜଣ ବୃଦ୍ଧଙ୍କୁ ବାର୍ଦ୍ଧକ୍ୟ ଭତ୍ତା ଦିଆଗଲାଣି । ମାତ୍ର ଅସହାୟ ବୃଦ୍ଧଙ୍କ ସଂଖ୍ୟା ବହୁତ । ବୃଦ୍ଧଙ୍କୁ ପେନସନ୍ ପାଇଁ ଦରଖାସ୍ତ ଫର୍ମ ନ ମିଳିବା, ଆର.ଆଇ. ସାର୍ଟିଫିକେଟ ଦେବାରେ ଲାଞ୍ଚ ନେବା, ଆଦେଶ ହୋଇଗଲେ ବି ମାସ ମାସ ଧରି ଭତ୍ତା ନ ମିଳିବା, ପ୍ରିୟାପ୍ରୀତିରେ ଭତ୍ତା ଦେବାର ଦୃଷ୍ଟାନ୍ତ ଅନେକ ।

ଛାତ୍ରମାନଙ୍କ ଲାଗି ପୁସ୍ତକ ବ୍ୟାଙ୍କ ଖୋଲିବା, ଛାତ୍ରାବାସଗୁଡ଼ିକରେ ଖାଦ୍ୟପଦାର୍ଥ ଆଉ ଶସ୍ତାରେ ଖାତାପତ୍ର ଯୋଗାଇବା, କ୍ଷୁଦ୍ର ଓ ମଧ୍ୟମ ଧରଣର ଚାଷୀଙ୍କ ଲାଗି କିଛି ବ୍ୟବସ୍ଥା କରିବା, ଆଦିବାସୀ ଉନ୍ନୟନ ଲାଗି ପଦକ୍ଷେପ କେତେକ ନେବା ସଙ୍ଗେ ସଙ୍ଗେ ଏସବୁ ଗୁଡ଼ିକୁ କାର୍ଯ୍ୟକାରୀ କରିବା ଲାଗି ଆନୁଷଙ୍ଗିକ ପ୍ରଶାସନିକ ବ୍ୟବସ୍ଥା ଯେ ଲକ୍ଷ୍ୟ ପୂରଣଠାରୁ ବହୁ ଦୂରରେ ଏହା କହିବା ବାହୁଲ୍ୟ ହେବ ।

୨୦ ଦଫା କର୍ମସୂଚୀର ମୌଳିକ ଦଫାଗୁଡ଼ିକୁ କାର୍ଯ୍ୟକାରୀ କରି ତାକୁ ସଫଳ କରିବା ପାଇଁ ତତ୍ପରତାଠାରୁ ବୃକ୍ଷରୋପଣ, ସହରରେ ବାଟ ଦୋକାନ ଭଙ୍ଗା ଅଭିଯାନକୁ ଅଧିକ ଗୁରୁତ୍ୱ ଓ ସେଥିଲାଗି ଅଧିକ ତମ୍ବି ତୋଫାନ ଓ ପ୍ରଚାର ନେତିବାଚକ ପ୍ରକ୍ରିୟାର ସୂଚନା । ରାଜ୍ୟର ରାଜନୈତିକ ନେତୃତ୍ୱ ବର୍ତ୍ତମାନ ଏଥିରେ ପ୍ରତିଯୋଗିତା କରିବାକୁ ତତ୍ପର । ଏହା କାହାରି କାହାରି ସାମୟିକ ରାଜନୈତିକ ଅଭିସନ୍ଧି ସାଧନ କରିପାରେ ଆଉ କାର୍ଯ୍ୟତଃ ଦକ୍ଷିଣପନ୍ଥୀ ପ୍ରତିକ୍ରିୟାକୁ ସୁହାଇପାରେ, ମାତ୍ର ଦେଶର ଗୃହୀତ ଅର୍ଥନୈତିକ କର୍ମସୂଚୀକୁ ଏହା ନିଶ୍ଚିତ ଭଣ୍ଡୁର କରି ଦେଉଛି ଓ ଦେବ । ଯେଉଁମାନେ ଶାସକ ଦଳ ବାହାରେ ଏବଂ ଭିତରେ ଏହି କର୍ମସୂଚୀର ବିରୋଧୀ ସେମାନଙ୍କ ପାଇଁ ଜମିମାଲିକ, ମହାଜନ, ଚୋରାକାରବାରୀଙ୍କ ସ୍ୱାର୍ଥରକ୍ଷା ପାଇଁ ଏହା ବାଟ ପ୍ରଶସ୍ତ କରିଦେବ ।

**ଗଣତାନ୍ତ୍ରିକ ଐକ୍ୟ, ଜନତାର ଅଂଶଗ୍ରହଣ ହିଁ ଏକମାତ୍ର ପନ୍ଥା**

ଯେଉଁ ଶକ୍ତିମାନେ ୧୯୬୯ କଂଗ୍ରେସ ବିଭାଜନ, ବ୍ୟାଙ୍କ ଜାତୀୟକରଣ, ରଜାଙ୍କ ଭତ୍ତାକାଟ ରାଷ୍ଟ୍ରପତି ନିର୍ବାଚନ, ଫାସିଷ୍ଟମାନଙ୍କ "ସମ୍ପୂର୍ଣ୍ଣ ବିପ୍ଲବ", ପାର୍ଲିଆମେଣ୍ଟର ସାର୍ବଭୌମ ଅଧିକାରର ପୁନଃପ୍ରତିଷ୍ଠା, ସମ୍ବିଧାନର ପ୍ରଗତିଶୀଳ ସଂଶୋଧନ, ଜରୁରୀକାଳୀନ ପରିସ୍ଥିତି ଜାରି ଏବଂ ସର୍ବୋପରି ୨୦ ଦଫା କର୍ମସୂଚୀ ଘୋଷଣା, ଏସବୁ ସମସ୍ୟାରେ ଐକ୍ୟବଦ୍ଧ ହୋଇ ନିଜ ନିଜ ମଞ୍ଚରୁ ଏବଂ ଅଧିକନ୍ତୁ ଐକ୍ୟବଦ୍ଧ ହୋଇ ଆମେରିକା ସାମ୍ରାଜ୍ୟବାଦର ଅସ୍ଥିରତା ସୃଷ୍ଟି

ବିରୋଧରେ, ଦକ୍ଷିଣପନ୍ଥୀଙ୍କ କ୍ଷମତା ଦଖଲ ପ୍ରୟାସ ବିରୋଧରେ ସଂଗ୍ରାମ କର ।

ସଂପ୍ରତି ବିଭିନ୍ନ ସମ୍ବାଦପତ୍ର ଓ ଅନ୍ୟାନ୍ୟ ସଭା ସମିତିରେ "ମତାଦର୍ଶ ଅନାବଶ୍ୟକ" (ନୋ ଆଇଡିଓଲୋଜି) ଭଳି ଏକ ନୂତନ ତତ୍ତ୍ୱର ପ୍ରଚାର ଆରମ୍ଭ ହୋଇଛି । ବିଶେଷ କରି ଦଳେ ଭାରତୀୟ ଯୁବକଙ୍କ ମଧ୍ୟରେ ଏହି ନୂତନ ଚିନ୍ତାଧାରା ବଳିଷ୍ଠ ରୂପ ଧାରଣ କରିଛି । ଏହା ଭିନ୍ନ ଭିନ୍ନ ଆକାର ପ୍ରକାର ଓ ରୂପ ନେଇ ଜନସାଧାରଣଙ୍କ ନିକଟରେ ଉଭା ହୋଇଛି । "ନା ଦକ୍ଷିଣପନ୍ଥୀ–ନା ବାମପନ୍ଥୀ" "କୌଣସି ମତ ନ ଥାଇ କାର୍ଯ୍ୟ କର", "ସମସ୍ତ ମତାଦର୍ଶକୁ ବର୍ଜନ କର" ଏବଂ "ରାଜନୀତି ଭାରି ବିରକ୍ତି କର" ଆଦି ସ୍ଲୋଗାନ ଏହି ନୂତନ ଚିନ୍ତାଧାରାର ବିଭିନ୍ନ ରୂପ । କେବଳ ସେତିକି ନୁହଁ, ଏହି ସ୍ଲୋଗାନ୍‌କୁ ବ୍ୟବହାର କରୁଥିବା ବ୍ୟକ୍ତି ବିଶେଷମାନେ କେତେଗୁଡ଼ିଏ ତଥାକଥିତ ଜନହିତକର କାର୍ଯ୍ୟକୁ ବହୁଳ ଭାବେ ପ୍ରଚାର କରି ନୂତନ ଅର୍ଥନୈତିକ କାର୍ଯ୍ୟକ୍ରମ ଓ ଅନ୍ୟାନ୍ୟ ପ୍ରଗତିଶୀଳ କାର୍ଯ୍ୟକ୍ରମରେ ଅନ୍ତରାୟ ସୃଷ୍ଟି କରୁଛନ୍ତି । ଏହି ସମସ୍ତ ବିଷୟକୁ ଯଦି ଗଭୀର ଭାବେ ବିଚାର କରାଯାଏ ତାହାହେଲେ ଜଣାଯିବ – ଏକ ମାରାତ୍ମକ ଦୃଷ୍ଟି ଭଙ୍ଗୀ ରଖି ଦେଶର ରାଜନୈତିକ ଘଟଣାବଳୀରେ ସକ୍ରିୟ କେତେକ ବ୍ୟକ୍ତି ଏଭଳି ସ୍ଲୋଗାନ୍‌ମାନ ବ୍ୟବହାର କରୁଛନ୍ତି ।

"ମତାଦର୍ଶ ଅନାବଶ୍ୟକ" ଭଳି ନୂତନ ତତ୍ତ୍ୱ ଆମ ଦେଶରେ ନୂଆ ଭଳି ଜଣାପଡୁଥିଲେ ହେଁ ପ୍ରକୃତରେ ଏହା ବହୁ ପୁରାତନ । ବିଭିନ୍ନ ସମୟରେ ବିଭିନ୍ନ ଦେଶରେ ଜନମତକୁ ବିଭ୍ରାନ୍ତ କରିବା ପାଇଁ ଭିନ୍ନ ଭିନ୍ନ ବ୍ୟକ୍ତି ଏହି ସ୍ଲୋଗାନ୍‌କୁ ବ୍ୟବହାର କରି ଆସିଛନ୍ତି । ବିଶେଷ କରି ଆମେରିକାର ବହୁ ବୁଦ୍ଧିଜୀବୀ ରାଜନୈତିକ ନେତୃବୃନ୍ଦ ଓ ରାଷ୍ଟ୍ରପତିମାନେ ମଧ୍ୟ ଏହା କହିଥିବା ପ୍ରମାଣ ମିଳେ ।

ବିଗତ ଦିନର ସମ୍ବାଦପତ୍ରଗୁଡ଼ିକୁ ଯଦି ପୁଣି ଥରେ ଓଲଟାଯାଏ ତାହାହେଲେ ଦେଖାଯିବ ଯେ, ଆମେରିକାର ସ୍ୱର୍ଗତଃ ରାଷ୍ଟ୍ରପତି କେନେଡ଼ି ମଧ୍ୟ ନିଜର ନିର୍ବାଚନ ଇସ୍ତାହାରରେ ସମସ୍ତ ଆଦର୍ଶ ବର୍ଜନ କରିବା ପାଇଁ ପ୍ରଚାର କରିଥିଲେ । ମତାଦର୍ଶ ଦୃଷ୍ଟିରୁ କୌଣସି ଅର୍ଥନୈତିକ ସମସ୍ୟାର ସମାଧାନ ହୋଇପାରେନା ଏବଂ ସେଥିପାଇଁ ଏକ ଆଧୁନିକ ଅର୍ଥନୀତି ଓ ସଠିକ୍ ପରିଚାଳନା ଆବଶ୍ୟକ ବୋଲି ସେ ମତବ୍ୟକ୍ତ କରିଥିଲେ । ପରବର୍ତ୍ତୀ କାଳରେ ଜନସନ୍ କେତେଗୁଡ଼ିଏ "ସଠିକ୍ ପରିଚାଳନା କାର୍ଯ୍ୟକ୍ରମ" ଘୋଷଣା କରିଥିଲେ । "ଦାରିଦ୍ର୍ୟ" ବିରୋଧରେ ସଂଗ୍ରାମ ସେହି କାର୍ଯ୍ୟକ୍ରମମାନଙ୍କ ମଧ୍ୟରୁ ଅନ୍ୟତମ । କିନ୍ତୁ ତାଙ୍କ ରାଷ୍ଟ୍ରପତିତ୍ୱ କାଳରେ ଏହା ସ୍ପଷ୍ଟ ହୋଇଥିଲା ଯେ, ଦାରିଦ୍ର୍ୟ ବିରୋଧରେ ଏହି ସଂଗ୍ରାମ ଜନସନ୍‌ଙ୍କର ଏକ ନିର୍ବାଚନ ପ୍ରଚାର ଥିଲା କିନ୍ତୁ କାର୍ଯ୍ୟକାରୀ କରାଯାଇନଥିଲା ।

❑❑❑

ରଚନା କାଳ – ୧୯୭୬

# ପଚାଶବର୍ଷ ସ୍ୱାଧୀନତା ପରେ ତମେ ଥିଲେ କ'ଣ କରିଥାନ୍ତ ?

ଦେଶକୁ ଯେଉଁମାନେ ସ୍ୱାଧୀନ କରିବା ପ୍ରାଣବଳି ଦେଇଛନ୍ତି, ସେମାନେ ଚାହିଁଥିଲେ ପରାଧୀନତାରୁ ମୁକ୍ତ ହେବା ପରେ ଭାରତଭୂମିରେ ଏକ ନୂତନ ସୌଧ ନିର୍ମିତ ହେବ । ସେ ସୌଧ ମାଟି, ଗୋଡ଼ି, ବାଲି, ସିମେଣ୍ଟର ନୁହଁ । ସେପରି ଏକ ସୌଧର ନିର୍ମାତା ହେବେ ଆକୁମାରୀ ହିମାଳୟ ଭାରତର କୋଟିକୋଟି ପ୍ରବଂିତ, ଲୁଣ୍ଠିତ ଶୋଷିତ, ନିର୍ଯାତିତ, ପ୍ରତାରିତ, ନଗ୍ନ, ଅର୍ଦ୍ଧନଗ୍ନ, ଅଭୁକ୍ତ, ଅର୍ଦ୍ଧଭୁକ୍ତ, ଶିକ୍ଷା, ସ୍ୱାସ୍ଥ୍ୟ ସେବାରୁ ବଞ୍ଚିତ ଜନତା ।

ସ୍ୱାଧୀନତା ସାଙ୍ଗକୁ ସେପରି ଏକ ସୌଧର ଯେଉଁମାନେ ନିର୍ମାତା ହେବେ, ତାହାରି କଳ୍ପନା କରି ଅନ୍ୟ ସାଥୀମାନଙ୍କ ପରାମର୍ଶ ସାହାଯ୍ୟ ସମର୍ଥନ ସହଯୋଗରେ ସେ କାଳରେ ୧୯୩୪ରେ ଏହି ବାଗଲପୁର ମାଟି ଠାକୁରତୋଟାରେ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ଗୌରାଙ୍ଗଚରଣ ଦାସ ଆୟୋଜନ କରିଥିଲେ ଏକ ସୁବିଶାଳ ଜନସମାବେଶ । ବ୍ରିଟିଶ ସାମ୍ରାଜ୍ୟବାଦ ସୃଷ୍ଟ ଓ ପୁଷ୍ଟ ଭୟାବହ ଅତ୍ୟାଚାର ନିପୀଡ଼ନ ଲୁଣ୍ଠନ ଜମିଦାରୀ ପ୍ରଥା ଉଚ୍ଛେଦର ଆବାଜ ଉଠାଇଥିଲା ସେହି କୃଷକ ସମ୍ମିଳନୀ । ଦାବାଗ୍ନି ପରି ଏହି ଚାଷୀ ଆନ୍ଦୋଳନ ସାରା ଓଡ଼ିଶାରେ ଅଳ୍ପ ବହୁତ ପ୍ରଜ୍ୱଳିତ ହୋଇଥିଲା । ସାମନ୍ତବାଦ ବିରୋଧୀ ସଂଗ୍ରମା ଆଉ ଏକ ପ୍ରଚଣ୍ଡ ରୂପ ନେଇଥିଲେ ଓଡ଼ିଶାରେ ଗଡଜାତ ରାଜାରାଜୁଡ଼ାଙ୍କ ଅକଥନୀୟ, ଶୋଷଣ, ଅବର୍ଣ୍ଣନୀୟ ଅତ୍ୟାଚାର, ଲୁଣ୍ଠନ ବିରୁଦ୍ଧରେ ।

ସ୍ୱାଧୀନତା ପ୍ରାପ୍ତିର ପଚାଶ ବର୍ଷ ଅନ୍ତେ ଲକ୍ଷଲକ୍ଷ ସ୍ୱାଧୀନତା ସଂଗ୍ରାମୀ ଯେଉଁମାନେ ବ୍ରିଟିଶ ତୋପ କମାଣ, ଗୁଳି ବନ୍ଧୁକ, ଫାଶିଖୁଣ୍ଟରେ ପ୍ରାଣବଳି ଦେଇଥିଲେ, ସେମାନଙ୍କ ସେହି ଆକାଂକ୍ଷିତ ସୌଧ ନିର୍ମିତ ହୋଇଛି ବୋଲି ଥୋକେ ଡିଣ୍ଡିମ ପିଟୁଛନ୍ତି ।

ଏଇ ପଚାଶ ବର୍ଷ କାଳ ଭିତରେ ଯେଉଁ ଅର୍ଥନୈତିକ ବ୍ୟବସ୍ଥା ସ୍ୱାଧୀନତା ସଂଗ୍ରାମରୁ ଜନ୍ମ ଶାସକ ଶ୍ରେଣୀ ଗଢ଼ିଲେ । ସେଥିରେ ମୁଷ୍ଟିମେୟ ପୁଞ୍ଜିପତି, ଧନାଢ଼୍ୟ ଗୋଷ୍ଠୀଙ୍କ ହାତରେ କ'ଣ ପ୍ରଭୂତ ଧନ ଠୁଳ ହୋଇନି ? ସେହି ବ୍ୟବସ୍ଥା ବଳରେ କ'ଣ ପୁରୁଣା ଇଷ୍ଟଇଣ୍ଡିଆ

କମ୍ପାନୀଠାରୁ ଶତଗୁଣ ବଡ଼ ବିଦେଶୀ କମ୍ପାନୀ ଶିଳ୍ପ କୁବେରମାନେ ଭାରତରେ ଶିଳ୍ପବିଜ୍ଞାନ ବିକାଶ, ଉନ୍ନୟନ, ନାମରେ ଭାରତବାସୀଙ୍କୁ ସୁଚତୁର ସୂକ୍ଷ୍ମରୀତିରେ ଲୁଟ କରୁନାହାଁନ୍ତି ?

ସ୍ୱାଧୀନତା ଆଣିଦେଇଛି ଗଣତନ୍ତ୍ର, ସାଂସଦ, ବିଧାନସଭା, ସାବାଳକ ଭୋଟାଧିକାର ଆଉ ଅନେକ ଅଧିକାର । କିନ୍ତୁ ଏସବୁ ଅଧିକାର କ'ଣ ମାମୁଲି, ଲୋକ ଦେଖାଣିଆ ଅଧିକାରରେ ପରିଣତ କରାଯାଉନାହିଁ ?

ନିଶ୍ଚିତ ଯେ ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷ ବ୍ରିଟିଶ ଶାସିତ ଭାରତର କଳ୍ପନା ବାହାରେ ଭାରତ । କିନ୍ତୁ କାହିଁକି ତେବେ ଏକ ଦିଗରେ ହିମାଳୟ ସଦୃଶ ଧନରାଶି ମୁଷ୍ଟିମେୟଙ୍କ ହାତକୁ ପ୍ରତିନିୟତ ଯାଉଛି ? କାହିଁକି କଳାଟଙ୍କାର ସମାନ୍ତରାଳ ବଜାର ସମଗ୍ର ଅର୍ଥନୀତିକୁ କାବୁ କରିଦେଉଛି ? କାହିଁକି ବୋଫର୍ସ, ସେଣ୍ଟକିଟ୍ସ, ଜାଲିଆତି ପ୍ରତିଭୂତି ଦୁର୍ନୀତି, ବ୍ୟାଙ୍କ ଦୁର୍ନୀତି, ହାୱାଲା ଦୁର୍ନୀତି, ୟୁରିଆ ଦୁର୍ନୀତି, ଗୋଖାଦ୍ୟ, ଏମ.ପି.ଙ୍କୁ ଲାଞ୍ଚ ଦୁର୍ନୀତି ଏମିତି ଶହ ଶହ ଦୁର୍ନୀତି ଭ୍ରଷ୍ଟାଚାରର ସୁଅ ଛୁଟିଛି ।

ସ୍ୱାଧୀନତା ପରବର୍ତ୍ତୀ କାଳଠାରୁ ଯେତେବେଳେ କେନ୍ଦ୍ରରେ ଓ ରାଜ୍ୟମାନଙ୍କରେ ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ ଓ ଆଉ ଆଉ ମନ୍ତ୍ରୀଙ୍କ ବିରୋଧରେ ଦୁର୍ନୀତିର ଅଭିଯୋଗ, କମିଶନଗୁଡ଼ିକର ରିପୋର୍ଟ ସତ୍ତ୍ୱେ ଅଭିଯୁକ୍ତମାନେ ଛାଡ଼ ପାଇନାହାଁନ୍ତି ।

କେନ୍ଦ୍ର ଓ ରାଜ୍ୟ ଶାସନରେ ଆସିଥିବା ରାଜନୈତିକ ଦଳ, ତାହା କଂଗ୍ରେସ ହେଉ, ଜନତା ଦଳ ହେଉ, ବିଜେପି ହେଉ, ଶିବସେନା ଅବା ଅକାଳୀ ଦଳ ହେଉ, ଏ.ଆଇ.ଡି.ଏମ.କେ ଅବା ତେଲୁଗୁ ଦେଶମ୍ ହେଉ, କେଉଁ ଶାସନର ସର୍ବୋଚ୍ଚ କର୍ତ୍ତା ଏଥିରୁ ବାଦ୍ ପଡ଼ିଛନ୍ତି । ଯେଉଁଠି ଯେଉଁଠି କମ୍ୟୁନିଷ୍ଟ ଓ ବାମପନ୍ଥୀମାନେ ଶାସନ କରିଛନ୍ତି ।

X X X

ଏହି ପ୍ରକାରର ଅର୍ଥନୈତିକ ବ୍ୟବସ୍ଥା ହେତୁ ଦେଶରେ କୋଟି କୋଟି ଶିକ୍ଷିତ, ଅର୍ଦ୍ଧ ଶିକ୍ଷିତ ବେକାର । ଏଥିଯୋଗୁଁ ହିଁ ଆଜି ଲକ୍ଷଲକ୍ଷ କ୍ଷୁଦ୍ର ମଧ୍ୟମ ଧରଣର ଶିଳ୍ପସଂସ୍ଥା ରୁଗ୍ଣ- ଲକ୍ଷଲକ୍ଷ ଶ୍ରମିକଙ୍କ ଛଟେଇ । ଏଇଥିଯୋଗୁଁ ହିଁ ସ୍ୱାଧୀନତା ପରେ ସହସ୍ର ସହସ୍ର ଶିକ୍ଷାନୁଷ୍ଠାନ ଗଢ଼ା ହେଲେ ବି ଭାରତରେ ନିରକ୍ଷରଙ୍କ ସଂଖ୍ୟା ପୃଥିବୀରେ ନିରକ୍ଷରଙ୍କ ସଂଖ୍ୟାର ପ୍ରାୟ ଅର୍ଦ୍ଧେକ । ଏ ସ୍ୱାଧୀନତାର ସମସ୍ତ ମୂଲ୍ୟବୋଧକୁ ନିଶ୍ଚିହ୍ନ କରିବା ପ୍ରକ୍ରିୟାରେ ଆଜି ଅପସଂସ୍କୃତିର ରାଜୁତି । ରାସ୍ତାଘାଟ, ଗାଁ'ଗଣ୍ଡା ନିରାପଦ ନୁହେଁ । କାହାରି ନିରାପତ୍ତା ନାହିଁ । ସାମାଜିକ ନିରାପତ୍ତା ତ ଦୂରର କଥା । ଜୀବନର ମାନ-ଇଜ୍ଜତର, ମହିଳା, ଶିଶୁଙ୍କର ନିରାପତ୍ତା ନାହିଁ । ଗୋଲକୀକରଣ, ମୁକ୍ତ, ଅବାଧ ବଜାର ଆଣି ଚାଲିଛି ଅସମ୍ଭବ ଦରଦାମ ବୃଦ୍ଧି, ମହଙ୍ଗୁଟଖୋରୀ, ମୁଦ୍ରାସ୍ଫୀତି । ଦୂରଦର୍ଶନରେ ଉଲଗ୍ନ ନାଚ, ଧର୍ଷଣ, ରାହାଜାନି, ହତ୍ୟା, ଗୁଣ୍ଡାମି, ନିଶାସକ୍ତଙ୍କର ଉନ୍ମତ୍ତତାର ଚିତ୍ର, ସୌଖୀନ ପଦାର୍ଥର ବିଜ୍ଞାପନ ଆଣିଚାଲିଛି ଖାଉଟି ସର୍ବସ୍ୱ ମାନସିକତା ।

ଅପର ଦିଗରେ ସମାଜଜୀବନକୁ, ଭାରତକୁ ଖଣ୍ଡବିଖଣ୍ଡିତ କରିବା ଲାଗି ଧର୍ମର ଦ୍ୱାହି ଦେଇ ସାମ୍ପ୍ରଦାୟିକତାବାଦ ତାଣ୍ଡବ, ଧର୍ମ ନାମରେ ଧର୍ମାନୁଷ୍ଠାନ ଭଙ୍ଗ, ଭାଇଭାଇର ରକ୍ତରେ ହୋରି । ଏହି ପ୍ରକାର ଅପସଂସ୍କୃତି, ଭୋଗ ସର୍ବସ୍ୱତା ଭାରତର ଆତ୍ମାକୁ, ଦେଶର ସ୍ୱାଧୀନତାକୁ, ତାହାର ଐକ୍ୟ ଓ ଅଖଣ୍ଡତାକୁ ତା'ର ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଛିନ୍ନଭିନ୍ନ କରିଚାଲିଛି ।

ସ୍ୱାଧୀନତା ପରବର୍ତ୍ତୀ ୫୦ ବର୍ଷ ଭିତରେ ଯେଉଁମାନେ ପୂର୍ବପରି ପ୍ରବଞ୍ଚିତ, ପ୍ରତାରିତ, ଶୋଷିତ, ନିର୍ଯ୍ୟାତିତ ହୋଇଚାଲିଛନ୍ତି, ଗାଁ'ଗଣ୍ଡାରୁ ସହର ଶିଳ୍ପାଞ୍ଚଳ ଯାଏ ଯେଉଁମାନେ ବେକାର, ଅଶିକ୍ଷିତ, ଅର୍ଦ୍ଧଶିକ୍ଷିତଙ୍କ ଧାଡ଼ି ବାନ୍ଧିଛନ୍ତି, ସେମାନେ ହିଁ ସଂଗଠିତ ହୋଇ ଏହାକୁ ବଦଳାଇଦେଇ ପାରିବେ, ନିଶ୍ଚୟ ପାରିବେ ।

□□□

ରଚନା କାଳ – ୧୯୯୭

# ସେଦିନ ତମ ଘିଅ ବୋତଲ ଭଙ୍ଗା ଆଜିର ସ୍କାମ

ଫେବୃୟାରୀ ୧୯ । ଏଥର ତମର ୨୪ତମ ପୁଣ୍ୟତିଥି । ତମେ ଗୌରାଙ୍ଗବାବୁ ଓରଫ ଗୌରାଙ୍ଗ ଚରଣ ଦାସ, ସ୍ୱାଧୀନତା ସଂଗ୍ରାମୀ, କୃଷକ ଆନ୍ଦୋଳନର ନେତା, ତମ ପବିତ୍ର ସ୍ମୃତି ଚାରଣ କରି ଏତକ ଲେଖୁଛି । ତମକୁ ଆଉ ଆମ ମନର କଥା ଶୁଭିବ ନାହିଁ କି ଲେଖି ଜଣେଇଲେ ଆଉ ପଢ଼ିପାରିବ ନାହିଁ । ତେମେ ବି ତମ ସ୍ମୃତି କେବସ୍ମୃହଁ, ଯେଉଁ ଲକ୍ଷ ଲକ୍ଷ, ସହସ୍ର ସହସ୍ର ସ୍ୱାଧୀନତା ସଂଗ୍ରାମୀଙ୍କ ସ୍ମୃତି ମାନସପଟରେ ଏବେ ବି ଭାସି ଉଠେ, ସେମାନଙ୍କ ଆଦର୍ଶ, ଲକ୍ଷ୍ୟ, ସଂଗ୍ରାମ ଓ ମୂଲ୍ୟବୋଧର କଥା ମନେପଡ଼େ । ସେପରି ମୂଲ୍ୟବୋଧ ଗୁଡ଼ିକର ଉତ୍ତରାଧିକାର କଥା ଆଜି କିପରି ରୂପ ନେଇ ପ୍ରକାଶ ପାଉଛି ତାହା ଆମେ ଦେଖୁଛୁ । ତମେ ସବୁ ରହିଲ ନାହିଁ ସେପରି ସୌଭାଗ୍ୟ ତମମାନଙ୍କର ଯେଉଁମାନେ ଗଲଣି ଚାଲି, ନାହିଁ ।

ଦେଶ ସ୍ୱାଧୀନ ହେବ । ପରାଧୀନତାର ସମସ୍ତ କଳଙ୍କ ଦୂର ହେବ । ଏକ ନୂଆ ଭାରତବର୍ଷର ଚେହେରା ପ୍ରତିଭାତ ହେବ । ସମାଜ ଜୀବନକୁ ଯେଉଁମାନେ ଶାସନକୁ ଆସବେ, ସେମାନେ ନିର୍ମଳ କରିବେ । ସ୍ୱାଧୀନତା ସଂଗ୍ରାମର ମୂଲ୍ୟବୋଧ ଗୁଡ଼ିକୁ ଜାତି ଜୀବନରେ ସଞ୍ଚରିତ କରିବେ । ନୁହଁକି ?

ତମେ ସେହି ମୂଲ୍ୟବୋଧଗୁଡ଼ିକ ଭିତରୁ ଗୋଟିକର ନିଦର୍ଶନ ରଖିଯାଇଛ । ଏମିତି ତମ ଭଳି ଶହ ଶହ ଦୃଷ୍ଟାନ୍ତ ସେ କାଳରେ ରଖୁଥିଲେ । ମନେପଡ଼େ ତମେ ଗୋଟାଏ ଘିଅ ବୋତଲ ଭାଙ୍ଗିଥିଲ । ଅଗ୍ନିଶର୍ମା ହୋଇଉଠିଥିଲ । ସ୍ୱାଧୀନତା ନଗଦ ଆସିଥାଏ । ତମେ ଥିଲ ଜିଲ୍ଲା ପରିଷଦର ଚେୟାରମ୍ୟାନ । କେଉଁ ଅପନ୍ତରା ଗାଁ'ରୁ ଗୋଟିଏ ଭଲ ଗାଁ'ର ସ୍କୁଲକୁ ଶିକ୍ଷକ ଜଣକ ବଦଳି ଚାହିଁ ତମର କୃପାଭିକ୍ଷା କରୁଥିଲେ । ଲାଞ୍ଚ ଦେଲେ ଘିଅ ବୋତଲ । ବିଚରା ଶିକ୍ଷକଟିକୁ ନିଲମ୍ବିତ କରିବାର ଧମକ ଦେଇଥିଲ ।

ଆଉ ଏକ ଏପରି ଦୃଷ୍ଟାନ୍ତ ମନେପଡ଼େ । ତମ ଗାଁ' ବାଗଲପୁରରେ ବାଞ୍ଛାନିଧି ରଥ ନାମକ ଜଣେ ଦକ୍ଷ ମାଇନର ସ୍କୁଲ ହେଡ଼ମାଷ୍ଟର । ବୋର୍ଡ଼ ଅଧୀନ ମାଇନର ସ୍କୁଲକୁ ପସନ୍ଦ କରି ସେ ଜଗତସିଂହପୁର ମାଇନର ସ୍କୁଲର ହେଡ଼ମାଷ୍ଟର ହୋଇଥାନ୍ତି । ଅତି ସଚ୍ଚୋଟ, ନିଷ୍ଠାପର, ଦକ୍ଷ ବ୍ୟକ୍ତିଟିଏ । ତାଙ୍କୁ ବଦଳି ହେଲା ମହାନଦୀ ସେପଟ ବାଙ୍କୀ ନିକଟ ସୁବର୍ଣ୍ଣପୁର ମାଇନର ସ୍କୁଲକୁ । ହେଡ଼ମାଷ୍ଟରଙ୍କ ଦରମା ସେତେବେଳେ ଚାଳିଶ ଟଙ୍କା । ମନରେ ତାଙ୍କର

ଦୁର୍ବଳତା ଆସିଲା । ଜିଲ୍ଲା ବୋର୍ଡ଼ ଚେୟାରମ୍ୟାନ ଥାଆନ୍ତି ନୀଳମଣି ପ୍ରଧାନ । ୧୯୩୮ ମସିହା । ଚେୟାରମ୍ୟାନଙ୍କୁ ବଦଳି ବନ୍ଦ କରିବାକୁ ରଥ ମହାଶୟ ଯାଚିଲେ ୫ଟି ଟଙ୍କା । ତାଙ୍କୁ ସସପେଣ୍ଡ୍ କରାଗଲା । ସେ କ୍ଷମା ମାଗିଲେ । ତମେ ଏପରି ଦକ୍ଷ ଛାତ୍ର, ଶିକ୍ଷକଙ୍କୁ କ୍ଷମା ଦେବାକୁ କହିଲ ନୀଳମଣିବାବୁଙ୍କୁ । ତାଗିଦ୍ କରିଥିଲ ତମର ପ୍ରିୟ ବାଞ୍ଛାନିଧିବାବୁଙ୍କୁ । ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଲାଞ୍ଚ ଯାଚିଲେ ବୋଲି ଧିକକ୍କାର କରିଥିଲ ।

ଆଜି କାହିଁଗଲା ସ୍ୱାଧୀନତା ସଂଗ୍ରାମର ସେ ମୂଲ୍ୟବୋଧଗୁଡ଼ିକ । ଦେଶରେ ଯେଉଁମାନେ ସ୍ୱାଧୀନତା ସଂଗ୍ରାମ କରି ବଞ୍ଚିଥିଲେ, ସେମାନେ ହିଁ ତ ଦେଶର ରାଜଧାନୀ, ବିଭିନ୍ନ ପ୍ରଦେଶର ରାଜଧାନୀରେ ଶାସନ ଗାଦୀ ହାତକୁ ନେଲେ । ଜାତୀୟ କଂଗ୍ରେସର, ସ୍ୱାଧୀନତା ସଂଗ୍ରାମର ସେହିମାନେ ହିଁ ଉତ୍ତରାଧିକାର ପାଇଛନ୍ତି ବୋଲି ସେମାନଙ୍କର ଗର୍ବ, ଅହଂକାର ପ୍ରଚାର । ସେମାନଙ୍କ ନାମରେ ହିଁ ବୋଫର୍ସ ସ୍କାମ, ହର୍ଷଦ ମେହେଟା ପ୍ରତିଭୂତି ଚିନି ସ୍କାମ, ଟେଲିକମ ସ୍କାମ । ଯେଉଁ ଶବ୍ଦ ଆମ ଦେଶର ଭାଷାଗୁଡ଼ିକରେ ଅଜଣା, ତାହା ଆସି ଲକ୍ଷକୋଟି ପଢୁଆ, ଅପଢୁଆ, ନାରୀ ପୁରୁଷଙ୍କ ତୁଣ୍ଡରେ ଶୁଭୁଛି । ଏବେ ପୁଣି ବାହାରିଲାଣି ହାୱାଲାସ୍କାମ୍ । ଏହା ବଡ଼ ଧରଣର । ଅତି ଜଟିଳ, କୁଟିଳ, ସୂକ୍ଷ୍ମତାସୂକ୍ଷ୍ମ ଲାଞ୍ଚର ଉପର ପାହାଚ । ଘିଅ ବୋତଲ ନୁହେଁ, ପାଞ୍ଚ ଟଙ୍କା ନୁହେଁ ହଜାରେ ବା ଲକ୍ଷେ ଅବା କୋଟିଏ ଟଙ୍କାରେ ବଳି ଶହଶହ କୋଟି, ହଜାରହଜାର କୋଟି ଟଙ୍କାର ସ୍କାମ୍ । ଏଗୁଡ଼ିକ ଦୃଶ୍ୟ, ବହୁ ଚର୍ଚ୍ଚିତ ସ୍କାମ୍ । ଆଉ କେତେ ଯେ ସ୍କାମ ସ୍ୱାଧୀନତା ପରବର୍ତ୍ତୀ ୪୮ ବର୍ଷ ଭିତରେ ଘଟିଛି ତାହା ଇୟତ୍ତା ନାହିଁ । କେତେକ ପଦାରେ ପଡ଼ିଛି । କେତେ ଏବେ ବି ଲୁଚି ରହିଛି । ସ୍ୱାଧୀନତା ସଂଗ୍ରାମର ଉତ୍ତରାଧିକାର ଦାବି କରି ଲୋକ ପ୍ରତିନିଧି ହୋଇ ଯେଉଁମାନେ ଶାସନକୁ ଆସିଲେ, ସେହି କାଳରୁ ଚାଲିଲା ଦୁର୍ନୀତି । ସେଥିରେ ତମର ସହଯୋଗୀ ନବକୃଷ୍ଣ ଚୌଧୁରୀଙ୍କ ପରି ସାମାନ୍ୟ କେତେଜଣଙ୍କୁ ବାଦ ଦେଲେ କେଉଁ କଂଗ୍ରେସ ମୁଖ୍ୟମନ୍ତ୍ରୀ ଓ ଆଉ ଆଉ ମନ୍ତ୍ରୀ ଦଳର ନେତାମାନେ ବାଦ ଗଲେ ନାହିଁ । ଗୌରାଙ୍ଗବାବୁ, ତମେ ଥାଉଁ ଥାଉଁ ଏସବୁ ଘଟୁଛି ଜାଣିଥିଲ ମାତ୍ର ତାହା ସର୍ବଗ୍ରାସୀ ହୋଇଯିବ – ଆଉ ତା'ର ନାମ "ସ୍କାମ୍" ହେବ ଜାଣିନଥିଲ । ତମେ କିନ୍ତୁ ଦେଖିଥିଲ, ସ୍ୱାଧୀନତା ସଂଗ୍ରାମର ଦାୟାଦ ଦାବି କରୁଥିବା ତମର ସାଥୀ ନେତାମାନେ ଭୋଟ ଆସିଲେ ଜନମଙ୍ଗଳ ରାଷ୍ଟ୍ର ସମାଜବାଦୀ ଢାଞ୍ଚା, ସମାଜବାଦୀ ଆଣିବେ ବୋଲି ପ୍ରତିଶ୍ରୁତି ଦେଇ ଭୋଟଦାତାଙ୍କ ମନ ଷୋଳଣା ଟାଣି ନେବା ପାଇଁ "ମହାପ୍ରସାଦ" ଛୁଆଁଉଥିଲେ । ରାତିରେ ଟଙ୍କା ବାଣ୍ଟୁଥିଲେ । ମଦଟିପା ଖୋଲି ଦେଇଥିଲେ । ତଥାପି ଶାସନ ହାତଛଡ଼ା ହେବା ଦେଖିଲେ, ଏମ୍.ଏଲ୍.ଏ. ମାନଙ୍କୁ ପ୍ରଲୋଭିତ କରି, ଅର୍ଥ ଦେଇ ନିଜ ଦଳରୁ ଗରିଷ୍ଠ କରୁଥିଲେ । ସହର, ଗାଁ'ରେ କେତେ ଯୁବକଙ୍କୁ ସବୁରକମ କାରସାଦି କରିବାକୁ ପଇସାପତ୍ର ଦେଇ ତାଲିମ କରୁଥିଲେ । ସେସବୁ ଏବେ ବଢ଼ିଗଲାଣି । ଏବେ ସେମାନଙ୍କୁ କୁହାଯାଉଛି "ମାଫିଆ" । ହାତରେ ବନ୍ଧୁକ, ତୋଟିରେ ବିଦେଶୀ ମଦ । ତାଙ୍କୁ ସମସ୍ତଙ୍କ ଡର । ସେତକ ନିଆରା ହେଲାରୁ ଧର ପୁଲିସର ଲୋକଙ୍କୁ ବଡ଼ ଛୋଟ ହାକିମଙ୍କୁ ।

ଭୋରା କମିଟି ବସି ରିପୋର୍ଟ ଏବେ ଦେଇଛି । ସେହି ରିପୋର୍ଟରେ ଅଛି, ବର୍ତ୍ତମାନ ରାଜନୀତିର ଅପରାଧୀକରଣ ହୋଇଯାଇଛି । ରାଜନୈତିକ ଦଳ, ଅମଲାତନ୍ତ୍ର ଓ ମାଫିଆଙ୍କ ସମାନ୍ତରାଳ ଶାସନ ଚାଲିଛି । ଉପରକୁ ଭୋଟ, ନିର୍ବାଚନ, ଲୋକପ୍ରତିନିଧି ଶାସନ । ଏହି ମାଫିଆ ଗୋଷ୍ଠୀର, ବଡ଼ ଅଂଶ ବାହୁବଳ, ଅର୍ଥବଳ ଓ ଶାସନକଳର ସାହାଯ୍ୟରେ ଏମ୍.ପି., ଏମ୍.ଏଲ୍.ଏ. ହେଉଛନ୍ତି । ଗଣ୍ଡାଗଣ୍ଡା ହତ୍ୟା, ଧର୍ଷଣ, ଡକାୟତି କରିବା ବ୍ୟକ୍ତିମାନେ ଟିକଟ ପାଉଛନ୍ତି ।

ଏପରି ବ୍ୟାଧି କେନ୍ଦ୍ର-ରାଜ୍ୟ ସବୁଆଡ଼େ । ତମେ ତ ଜାଣି ପାରିବ ନାହିଁ । ଏବେ ଯେଉଁ ହାୱାଲା ସ୍କାମ୍ ବାହାରିଛି ଶୁଣିଲେ ଆଖି କାନ ଖୋସି ହୋଇଯାଉଛି । ସେଥିରେ କଂଗ୍ରେସ, ଜନତା, ବିଜେପିର ତୁଙ୍ଗନେତା, ପୂର୍ବତନ ମନ୍ତ୍ରୀ, ଚଳନ୍ତି ମନ୍ତ୍ରୀ, ବଡ଼ବଡ଼ ଅଫିସର, ସମସ୍ତେ ଜଡ଼ିତ । ବୋଫର୍ସରେ ରାଜୀବ ଗାନ୍ଧୀଙ୍କ ନାମ ଉଠିଲା ଭଳି ହାୱାଲାରେ ଚଳନ୍ତି ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ ସମ୍ପର୍କ କଥା ଉଠିଛି । ସେତିକି କ'ଣ ?

ଗୌରାଙ୍ଗବାବୁ, ସ୍ୱାଧୀନତା ସଂଗ୍ରାମର ଉତ୍ତରାଧିକାର ଦାବୀ କରୁଥିବା "ମହାମାନବ" ଆଣିଛନ୍ତି ଏବେ ମୁକ୍ତବଜାର, ଅବାଧ-ବାଣିଜ୍ୟ ଉଦାରୀକରଣ, ଗୋଲକୀୟକରଣ । ଦେଶ ବନ୍ଧା ପଡ଼ି ଚାଲିଛି । ସେକାଳର ଛୋଟକୋଟ ଦୁର୍ନୀତି ଆଜି ଆସୁରିକ ସ୍କାମ୍ । ଏହା ବଢ଼ିଚାଲିଛି । କ'ଣ ନିସ୍ତାର ଅଛି ଏଥିରୁ ?

ତଥାପି ସମସ୍ତ ବିଗିଡ଼ି ଯାଇନାହିଁ । ଯେତେ ହାୱାଲା, ସ୍କାମ, ହେଲାଣି ସେଥିରୁ ଏ ଯାଏ କେତେକ ମୁକ୍ତ ବୋଲି ଏ ଯାଏ ଜଣାପଡ଼ିଛି । ଦେଶର ବାମପନ୍ଥୀଦଳ ମାନଙ୍କୁ କମ୍ୟୁନିଷ୍ଟମାନଙ୍କୁ ଏହା ସ୍ପର୍ଶ କରିନାହିଁ । ସେମାନେ କେରଳରେ ୪ ଜଣ ମୁଖ୍ୟମନ୍ତ୍ରୀଙ୍କ ସାମ୍ମୁଖ୍ୟର ଶାସନ । ଅନ୍ୟ ଯେ କୌଣସି ରାଜ୍ୟର ଯେ କୌଣସି ଦଳ ଶାସନ କରୁ ପଛେ, ସେସବୁର ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଅନ୍ୟ କେତେକ ମନ୍ତ୍ରୀ ଧରାପଡ଼ିଛନ୍ତି, ପଡୁଛନ୍ତି । ମାତ୍ର ଅନ୍ୟମାନେ ଯେତେ ବିରୋଧୀ ପ୍ରଚାର କଲେ ବି ବାମପନ୍ଥୀ ସରକାର ଗୁଡ଼ିକ ଦ୍ୱାରା ସ୍କାମ୍ ଓ ର୍ଦୁନୀତିର କଳଙ୍କ ଏ ଯାଏ ଆଗେଇ ପାରିନାହାଁନ୍ତି । ଏହା ହିଁ ଆଶ୍ୱାସନା ଦୟା ବୋଲି ସେସବୁ ରାଜ୍ୟରେ ଦୁର୍ନୀତି ବା ସ୍କାମ୍ ନାହିଁ ବୋଲି କୁହାଯିବ ନାହିଁ ।

ଗୌରାଙ୍ଗବାବୁ ଲୋକେ ଅତିଷ୍ଠ ହୋଇପଡ଼ିଲେଣି । ଦେଶର ମୁଷ୍ଟିମେୟଙ୍କ ହାତରେ ଧନରାଶିର ପାହାଡ଼ । ବିଦେଶୀ ପୁଞ୍ଜି ରାକ୍ଷସମାନଙ୍କର ଭାରତ ଚରାଭୂଇଁ ପାଲଟି ଚାଲିଛି । କୋଟିକୋଟି ବେକାର । କଳାଟଙ୍କାର ପାହାଡ଼ ସୃଷ୍ଟି ହୋଇଚାଲିଛି ।

ଯେତେ ମାୟାଜାଲ ସୃଷ୍ଟି କଲେ ବି ଆମ ଦେଶବାସୀ ନିଶ୍ଚିତ ଦିନେ ଏହାକୁ ବଦଳେଇବେ । ଏହି ଜବାବ ଦେଇ ତମର ଓ ତମଭଳି ଅଗଣିତ ଯୋଦ୍ଧା, ସ୍ୱାଧୀନତା ସଂଗ୍ରାମୀଙ୍କୁ ପ୍ରଣତି ଜଣାଉଛି ।

ଶିକ୍ଷା- ଏହି ସବୁକିଛିକୁ ନିଜ ନିଜ ଗାତଗୁଡ଼ିକୁ ଲୋଡୁଥିବା ଅଯୋଗ୍ୟମାନେ ହିଁ କବଳିତ କରି ରଖିଛନ୍ତି ।

ଏପରି ଗୋଟିଏ ନୂଆ ଆଖି ଏବଂ ନୂଆ ଶକ୍ତି ଦରକାର, ଯାହାକି, ଏହି ଲମ୍ପଟମାନଙ୍କର ହାଟ ଭିତରେ ମଧ୍ୟ ତଥାପି ସାହାସ କରି ସିଧା ସିଧା ସବୁ କଥା କହିଦେଇ ପାରିବ । ଯିଏ ମିଛ ଦରବାରର ଫିସାଦିଆ ପ୍ରହସନଗୁଡ଼ିକର ସାମନାରେ ଛିଡ଼ା ହୋଇ ଆଗର ସତ୍ୟାଗ୍ରହୀମାନେ ସିନା ବୁଢ଼ା ହୋଇଗଲେଣି, ମାତ୍ର ସତ୍ୟାଗ୍ରହ ବୁଢ଼ା ହୋଇଯାଇନାହିଁ । ପୃଥିବୀରେ ଅଧିକରୁ ଅଧିକ ମଣିଷ ତାହାକୁ ହିଁ ଅସ୍ତ୍ରରୂପେ ବ୍ୟବହାର କରୁଛନ୍ତି । ଏସବୁର ପ୍ରଭାବ ଭାରତ ଉପରେ ଅବଶ୍ୟ ପଡ଼ିବ ।

□□□

ରଚନା କାଳ – ୧୯୯୬

# ଦେଶର ସ୍ୱାଧୀନତା, ସାର୍ବଭୌମତ୍ୱ, ଗଣତାନ୍ତ୍ରିକ ବ୍ୟବସ୍ଥା ବିପଦାପନ୍ନ

ଲକ୍ଷଲକ୍ଷ ଭାରତବାସୀଙ୍କ ଆତ୍ମବଳିଦାନ ଏବଂ ଅଗଣିତ ସଂଗ୍ରାମ ଯୋଗୁ ଦେଶବାସୀ ସ୍ୱାଧୀନତା ଲାଭ କଲେ । ୧୯୫୦ ଜାନୁୟାରୀ ୨୬ରେ ଆମେ ଆମର ସମ୍ବିଧାନକୁ ଗ୍ରହଣ କଲେ । ଆମ ରାଷ୍ଟ୍ର "ସାର୍ବଭୌମ, ଧର୍ମନିରପେକ୍ଷ, ସମାଜବାଦୀ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର" ହେବ ବୋଲି ସମ୍ବିଧାନର ମୁଖବନ୍ଧ ଘୋଷଣା କଲା । ୪୫ ବର୍ଷ ପୂର୍ବେ ଆମେ ଯେଉଁ ସଂକଳ୍ପ ନେଇ ସମ୍ବିଧାନର ଏହି ନୀତିଗୁଡ଼ିକୁ ଗ୍ରହଣ କରିଥିଲେ, ତାହାର ସମୀକ୍ଷା କଲାବେଳେ ସ୍ୱାଧୀନତା ପରବର୍ତ୍ତୀ କାଳରେ ଏହି ନୀତିଗୁଡିକୁ ଅଧାପନ୍ତିରିଆ ହେଲେ ହେଁ, ଯେତିକି କାର୍ଯ୍ୟକାରୀ କରାହୋଇଥିଲା ସେସବୁକୁ ପରିହାର କରାଯାଇ ଚାଲିଛି ।

ଦେଶ ପାଇଁ ସ୍ୱାଧୀନତା ପରବର୍ତ୍ତୀକାଳରେ ଦେଶ ଭିତରୁ ଓ ଦେଶ ବାହାରୁ ସାମ୍ରାଜ୍ୟବାଦୀମାନଙ୍କ ପକ୍ଷରୁ ଯେତେସବୁ ବିପଦ ସେ ସେବୁକୁ ଟପି ଯାଇଛି ।

ଆମ ଦେଶର ସାର୍ବଭୌମତ୍ୱ, ଧର୍ମନିରପେକ୍ଷ ସମାଜବାଦ, ଗଣତନ୍ତ୍ରର ବିଲୋପ ପ୍ରକ୍ରିୟାଟି ହେଲା ସେହି ବିପଦ । ସାର୍ବଭୌମ ଅଧିକାର ହେଲା ଆମ ଦେଶର ଅର୍ଥନୀତି; ଅର୍ଥାତ୍ ତା'ର ଶିଳ୍ପ, କୃଷି, ବିଜ୍ଞାନ, କାରିଗରି ବିଦ୍ୟାର କିପରି ବିକାଶ ଘଟିବ, ତାହା ଆମେ ନିର୍ଣ୍ଣୟ କରିବୁ । ଆମ ଦେଶର ସ୍ୱାସ୍ଥ୍ୟ, ଶିକ୍ଷା, ସଂସ୍କୃତିର ବିକାଶ ଆମେ ସ୍ଥିର କରିବୁ । ଆମ ଦେଶର ବହିର୍ବାଣିଜ୍ୟ, ପ୍ରତିରକ୍ଷା ଓ ଦେଶ ଅଭ୍ୟନ୍ତର ଜମିଜମା, ଟିକସ, ବ୍ୟାଙ୍କ, ଜୀବନବୀମା ପରି ଅର୍ଥ ସଂସ୍ଥାର ନିୟାମକ ଆମେ ହେବୁ । ଏଗୁଡ଼ିକୁ ଆମ ଦେଶବାସୀ କାହାରି ହସ୍ତକ୍ଷେପ ବିନା କାର୍ଯ୍ୟକାରୀ କଲେ ଆମର ସ୍ୱାଧୀନତା ଅକ୍ଷୁଣ୍ଣ ରହିବ, ଅଧିକ ଶକ୍ତିଶାଳୀ ହେବ । ଠିକ୍ ଏହି କ୍ଷେତ୍ରରେ ହିଁ ଆମର ସାର୍ବଭୌମତ୍ୱ ଲୋପ ହୋଇଚାଲିଛି ।

ଗତ ୪ ବର୍ଷ ଧରି ଦେଶର ଅର୍ଥନୀତି ଓ ଦେଶର ଉନ୍ନୟନର ଢାଞ୍ଚାକୁ ବଦଳାଇ ଦିଆଯାଇଛି । ଅତୀତରେ ଯେ ଦୋଷତ୍ରୁଟି ନଥିଲା ତାହାନୁହେଁ, ଆମେ ଯେ ସମାଜବାଦ ଗଢ଼ିଥିଲୁ, ନୁହେଁ । ମାତ୍ର ଆମେ ସ୍ୱାଧୀନ ଆତ୍ମନିର୍ଭରଶୀଳ, ସ୍ୱଦେଶୀ, ଅର୍ଥନୀତି ଗଢ଼ିବାର

ଉଦ୍ୟମ କରିଥିଲୁ । ସେହି ଲକ୍ଷ୍ୟ ସାଧନ ପାଇଁ ଆମେ ବନ୍ଧୁଦେଶମାନଙ୍କଠାରୁ ସହଯୋଗ ନେଇଥିଲୁ ଓ ସେମାନଙ୍କୁ ମଧ୍ୟ ସହଯୋଗ ଦେଇଥିଲୁ । ଏ ସହଯୋଗ ଏକତରଫା ନଥିଲା । ମାତ୍ର ଆଜି ଏହି ଆତ୍ମନିର୍ଭରଶୀଳା ଅର୍ଥନୀତି ଗଠନକାଳରେ ଦେଖାଦେଇଥିବା ତ୍ରୁଟିବିଚ୍ୟୁତିକୁ ଦୂର କରିବା ପରିବର୍ତ୍ତେ ସମ୍ପୂର୍ଣ୍ଣ ଭାବରେ ଆମର ଅର୍ଥନୈତିକ ଢାଞ୍ଚାକୁ ବଦଳାଇ ଦିଆଯାଇଛି । କେନ୍ଦ୍ରରେ ମାତ୍ର ଅଳ୍ପ କେତେବର୍ଷ ମଝିରେ ବାଦ ଦେଲେ କଂଗ୍ରେସ ବା କଂଗ୍ରେସ (ଇ) ହିଁ କ୍ଷମତାରେ ରହିଆସିଛି । ସୋଭିଏତ୍ ୟୁନିୟନରେ ପଟ୍ଟପରିବର୍ତ୍ତନ ପରେ ବର୍ତ୍ତମାନ ଆମେରିକା ସାମ୍ରାଜ୍ୟବାଦ ହିଁ ପୃଥିବୀର ପ୍ରଭୁସାଜିଛି । ତାହାରି ଇଙ୍ଗିତରେ ନରସିଂହ ରାଓ ସରକାର ଚାରିବର୍ଷ ହେଲା ଆତ୍ମନିର୍ଭରଶୀଳ ଅର୍ଥନୀତିକୁ ପରିହାର କରିଛନ୍ତି । ଏ ଅର୍ଥନୀତି ପରିବର୍ତ୍ତନର ସ୍ୱରୂପ ହେଲା, ଉଦାରୀକରଣ, ଗୋଲକୀକରଣ, ଉନ୍ମୁକ୍ତ ଓ ଗାଠନିକ ପୁନଃବିନ୍ୟାସ । ସେହି ନୀତି ଅନୁସାରେ ଦେଶବାସୀଙ୍କ ରାଜସ୍ୱରେ ଗଠିତ ଶହଶହ ରାଷ୍ଟ୍ରାୟତ ଶିଳ୍ପକୁ ଘରୋଇକରଣ କରାଯାଇଛି । ତାହାର ଅଂଶଧନକୁଡିକୁ ବିଦେଶୀ ବହୁଜାତିକ ପୁଞ୍ଜି କମ୍ପାନୀ, କର୍ପୋରେସନ ଏବଂ ଦେଶର ବୃହତ ଏକଚାଟିଆ ପୁଞ୍ଜିକୁ ଶସ୍ତାରେ ବିକ୍ରି କରି ତାହାର ମୁନାଫା ବିଦେଶକୁ ଚାଲାଣ କରିବା ଲାଗି ବହୁ ରିହାତି ସହିତ ଅନୁମତି ଦିଆଯାଇଛି ।

ଇସ୍ପାତ, ତୈଳ, ରେଳ, ବିମାନ ପରିବହନ, ବିଦ୍ୟୁତ୍, ଗ୍ୟାସ୍, ଜାହାଜ ଓ ବିମାନତିଆରି, ଏମିତିକି ଦେଶର ପ୍ରତିରକ୍ଷା ସାମଗ୍ରୀ ଯାହା ଘରୋଇ କ୍ଷେତ୍ରକୁ ଯିବନାହିଁ ବୋଲି ଶିଳ୍ପନୀତିରେ ଧାର୍ଯ୍ୟ ହୋଇଥିଲା ସେଗୁଡ଼ିକୁ ମଧ୍ୟ ବିଦେଶୀ ବହୁଜାତିକ ପୁଞ୍ଜିକୁ ନିଆଯାଇଛି । କେତେ ଲଢ଼େଇ ଫଳରେ ଜାତୀୟକରଣ ହୋଇଥିବା ବ୍ୟାଙ୍କ ଜୀବନବୀମାରେ ମଧ୍ୟ ବିଦେଶୀ ଅନୁପ୍ରବେଶ ହୋଇଚାଲିଛି । ଦିଲ୍ଲୀରେ ଶାସନ କରୁଛନ୍ତି ଆମ ଲୋକ । କିନ୍ତୁ ଆମ ଦେଶର ଶିଳ୍ପ, କୃଷି, ସ୍ୱାସ୍ଥ୍ୟ, ଶ୍ରମବ୍ୟବସ୍ଥା, ଟିକସ ଓ ବଜେଟ୍ ନୀତି କ'ଣ ହେବ ତାହାକୁ ଆମେରିକା ସାମ୍ରାଜ୍ୟବାଦ କର୍ତ୍ତୃତ୍ୱାଧୀନ ବିଶ୍ୱବ୍ୟାଙ୍କ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ପରି ଆର୍ଥିକ ସଂସ୍ଥା ନିର୍ଣ୍ଣୟ କରୁଛନ୍ତି । ତାଙ୍କ କଥା ନମାନିଲେ ଋଣ ମିଳିବ ନାହିଁ କି କାରିଗରି କୌଶଳ ମିଳିବ ନାହିଁ ବୋଲି ଧମକ ଦିଆଯାଉଛି । ଆମ ଦେଶର କୃଷି କ'ଣ ହେବ । ଜଳସେଚନ ବ୍ୟବସ୍ଥା, କ'ଣ, ଚାଷୀଙ୍କୁ ସାରବିହନ କୀଟନାଶକ ଶସ୍ତାରେ ଦିଆଯିବ କି ନାହିଁ ତାହା ସେମାନେ ସ୍ଥିର କରୁଛନ୍ତି । ଏହା ହେଲା, ଉଦାରୀକରଣ, ଉନ୍ମୁକ୍ତତାର ନୀତି ।

ଅର୍ଥନୈତିକ ସାର୍ବଭୌମତ୍ୱ ହରାଇଲେ, ରାଜନୈତିକ ସାର୍ବଭୌମତ୍ୱ ସ୍ୱତଃ କ୍ଷୁଣ୍ଣ ହୁଏ । ତାହା ହିଁ ଚାଲିଛି । ଦୁଇଟିଯାକ କ୍ଷୁଣ୍ଣ ହେବା ପ୍ରକ୍ରିୟାରେ ଦେଶର ସାଂସ୍କୃତିକ ସ୍ୱାଭିମାନ, ସ୍ୱାଧୀନତା ବିପଦଗ୍ରସ୍ତ ହୁଏ । ତାହା ହିଁ ହେଉଛି । ଆମ ଦେଶର ସଂସ୍କୃତି ନୃତ୍ୟଗୀତ, ଚାଲିଚଳଣ, ମାନବିକ ମୂଲ୍ୟବୋଧ ବଦଳରେ ଆମେରିକା ଓ ବିଦେଶୀ ପୁଞ୍ଜିବାଦ ସାମ୍ରାଜ୍ୟବାଦୀ ସାମାଜିକ ଓ ସାଂସ୍କୃତିକ ମୂଲ୍ୟବୋଧମାନ ଆମ ସମାଜ ଜୀବନର ମାନସିକତାକୁ କଳୁଷିତ କରି ଚାଲିଛି । ଶିକ୍ଷା ସଂସ୍କୃତି

କ୍ଷେତ୍ରରେ ଆମ ଦେଶର ଅତୀତ ନିକଟରେ ମହାନ ମାନବବାଦୀ ସାହିତ୍ୟ ପ୍ରତି ଆଦର ରହୁନାହିଁ । ନଗ୍ନଚିତ୍ର, ଯୌନ ସ୍ୱେଚ୍ଛାଚାର, ମାଫିଆ, ନଗ୍ନ ଅରୁଚିକର ନୃତ୍ୟଗୀତ, ଧର୍ଷଣ, ହତ୍ୟା, ଡକାୟତି ଘଟଣାବଳୀ ପ୍ରଦର୍ଶିତ ଚଳଚ୍ଚିତ୍ର ଯୁବ ପ୍ରୌଢ଼ ମାନସକୁ ବିପଥରେ ନେଇଚାଲିଛି । ସବୁକ୍ଷେତ୍ରରେ ଆମର ସ୍ୱାଧୀନତା ବିପନ୍ନ । ଆମ ରାଷ୍ଟ୍ରର ଆଉ ଏକ ସ୍ତମ୍ଭ ଧର୍ମନିରପେକ୍ଷ ରାଷ୍ଟ୍ରସତ୍ତା । ଭାରତର ଧର୍ମନିରପେକ୍ଷ ରାଷ୍ଟ୍ରସତ୍ତା ଓ ଆଦର୍ଶ ଲାଗି ଯେଉଁ ସାମ୍ପ୍ରଦାୟିକ ଶକ୍ତି ମହାତ୍ମାଗାନ୍ଧୀଙ୍କୁ ହତ୍ୟା କଲେ ସେହି ସଙ୍ଗଠନ ଓ ତା'ର ଏକାଧିକ ନୂତନ ସଂସ୍କରଣ ଭାରତର ସଂଖ୍ୟା ଗରିଷ୍ଠ ହିନ୍ଦୁ ନରନାରୀଙ୍କ ସରଳ ନିରଳସ ଧର୍ମବିଶ୍ୱାସ, ହିନ୍ଦୁତ୍ୱ, ହିନ୍ଦୁରାଷ୍ଟ୍ର ନାମରେ ବିପଥଗାମୀ କରାଉଛନ୍ତି । ଏମାନଙ୍କ ତୁଣ୍ଡରେ "ଗାନ୍ଧୀ ମୁର୍ଦ୍ଦାବାଦ, ଗଡସେ ଜିନ୍ଦାବାଦ୍'' ଧ୍ୱନୀ ଉଠେ । ଗାନ୍ଧୀ ଜାତିର ପିତା ନୁହନ୍ତି ବୋଲି ବିକୃତ ଭାଷଣ ଦିଆଯାଏ । ମାତ୍ର ସ୍ୱାଧୀନତା ପରବର୍ତ୍ତୀ କାଳରେ ଗାନ୍ଧୀ ନେହୁରଙ୍କ ଉତ୍ତରାଧିକାରୀ ଦାବି କରି କଂଗ୍ରେସ ବା କଂଗ୍ରେସ(ଇ) ହିଁ କେନ୍ଦ୍ର ସରକାରରେ ରହି ଆସିଛି ।

ସମ୍ବିଧାନର ନିର୍ଦ୍ଦେଶ ସତ୍ତ୍ୱେ ଆମ ଦେଶର ସରକାର ସ୍ୱୀକୃତ, ଧର୍ମନିରପେକ୍ଷ ନୀତି ଉପରେ କୁଠାରାଘାତ କରିଛନ୍ତି । ଯେତେବେଳେ ଭୟାବହ ଦଙ୍ଗା ହୋଇଛି, ଧର୍ମକୁ ଆଖିମିଟିକା ମାରିବା ଭଳି କମିଶନ ବସିଛି । ମାତ୍ର କମିଶନଗୁଡ଼ିକ ଯେଉଁ ରିପୋର୍ଟମାନ ଦେଇଛନ୍ତି ତାହାକୁ ଶୀତଳ ଭଣ୍ଡାରରେ ରଖିଦେଇ ସାମ୍ପ୍ରଦାୟିକତାବାଦର ଶକ୍ତିମାନଙ୍କୁ ଉତ୍ସାହିତ କରାଯାଇଛି । ବିବାଦୀୟ ବାବରୀ ମସଜିଦର ଦ୍ୱାର ଖୋଲିବା, ରାତି ଅଧରେ ଲୁକ୍କାୟିତ ଭାବରେ ସେଠାରେ ପ୍ରତିମା ବସାଇବାକୁ ଦେବା, ଉଚ୍ଚ ଅଦାଲତରେ ରାୟ ସତ୍ତ୍ୱେ ସେଠାରେ ଶିଳାନ୍ୟାସ କରିବାକୁ ଦେବା, ସମସ୍ତ ରାଜନୈତିକ ଦଳଙ୍କ ନିଷ୍ପତ୍ତି ସତ୍ତ୍ୱେ ଏବଂ ଉଚ୍ଚ ନ୍ୟାୟଳୟର ନିର୍ଦ୍ଦେଶ ସତ୍ତ୍ୱେ ଓ ସମ୍ବିଧାନର ନିର୍ଦ୍ଦେଶ ସତ୍ତ୍ୱେ ବାବରୀ ମସଜିଦ୍ ଭାଙ୍ଗିବାକୁ ସାମ୍ପ୍ରଦାୟିକ ଶକ୍ତି ଓ ତା'ର ସହଯୋଗୀ ସଙ୍ଗଠନଗୁଡ଼ିକୁ ଛାଡ଼ିଦେବା, ସର୍ବୋଚ୍ଚ ଅଦାଲତରେ ସମ୍ବିଧାନର ୧୩୮ ଧାରା ପରିବର୍ତ୍ତେ ୧୪୨ ଧାରା ଉକ୍ତ ବିବାଦର ଫଏସଲା ପାଇଁ ଆବେଦନ କରିଥିବାରୁ ସୁପ୍ରିମକୋର୍ଟ ଦ୍ୱାରା ତାହା ଗୃହୀତ ନହେବା ପ୍ରଭୃତି କେନ୍ଦ୍ର ସରକାରଙ୍କ କର୍ମପନ୍ଥା ଧର୍ମନିରପେକ୍ଷ ନୀତିର ବିରୋଧୀ ।

କ୍ଷମତାରେ ରହିବା ଲାଗି ଏକ ଦିଗରେ ହିନ୍ଦୁତ୍ୱ, ହିନ୍ଦୁରାଷ୍ଟ୍ର ପ୍ରକ୍ରିୟାର ପ୍ରବକ୍ତାମାନଙ୍କୁ ସୁହାଇଲା ଭଳି କଂଗ୍ରେସ(ଇ) ସରକାରଙ୍କ ନୀତି ସାଙ୍ଗକୁ ମୁସଲମାନ ମୌଳବାଦୀମାନଙ୍କୁ ସନ୍ତୁଷ୍ଟ କରିବା ଲାଗି ସମ୍ବିଧାନ ସଂଶୋଧନ କରିଛନ୍ତି । ସ୍ୱାମୀ ପରିତ୍ୟକ୍ତା ମୁସଲିମ୍ ମହିଳା ପକ୍ଷରେ ସ୍ୱାମୀ ଉପରେ ଭରଣପୋଷଣ ଦେବାକୁ ସର୍ବୋଚ୍ଚ ଅଦାଲତର ରାୟକୁ ବାତିଲ କରିବା ଲାଗି ସମ୍ବିଧାନ ସଂଶୋଧନ କରାହୋଇଛି । ସେମିତି ପଞ୍ଜାବରେ ଶିଖ୍ ସାମ୍ପ୍ରଦାୟିକତାବାଦୀ ସନ୍ଥ ଭିନ୍ଦେରୱାଲାଙ୍କୁ ସମର୍ଥନ କରିବା, ରାଜୀବ-ଲଙ୍ଗୱାଲ ଚୁକ୍ତିକୁ କାର୍ଯ୍ୟକାରୀ ନକରିବା

ଏବଂ ଚଣ୍ଡିଗଡ଼କୁ ପଞ୍ଜାବକୁ ନଦେବା, ପଞ୍ଜାବରେ ଯାହା ଯାହା ଘଟିଲା ଓ ଘଟିଚାଲିଛି ଏସବୁ ସରକାରଙ୍କ ଧର୍ମନିରପେକ୍ଷ ନୀତି ଉଲଂଘନର ଜ୍ୱଳନ୍ତ ଦୃଷ୍ଟାନ୍ତ ।

ତେଣୁ ଆମ ସମ୍ବିଧାନର ନିର୍ଦ୍ଦେଶିତ ରାଷ୍ଟ୍ରର ଧର୍ମନିରପେକ୍ଷ ନୀତି କ୍ଷୁଣ୍ଣ ହୋଇଛି ଏବଂ ଦେଶର ସାମ୍ପ୍ରଦାୟିକତାବାଦୀମାନେ ଦଙ୍ଗାର ତାଣ୍ଡବ ସୃଷ୍ଟି କରି ଚାଲିଛନ୍ତି । ସବୁକ୍ଷେତ୍ରରେ ଗଣତାନ୍ତ୍ରିକ ସଂସଦୀୟ ବିଧିବ୍ୟବସ୍ଥାକୁ କ୍ଷୁଣ୍ଣ କରାଯାଉଛି । ତାହା ଫଳରେ ମନ୍ତ୍ରୀସ୍ତରରେ, ଶାସନକଳ ସ୍ତରରେ ଅନୀତି, ଦଳବଦଳରେ କିଣାବିକା, ଅନାଚାର, ଦୁର୍ନୀତି, ସବାପରେ ପ୍ରତିଭୂତି ସଂକ୍ରାନ୍ତ ସଂସଦୀୟ କମିଟିର ସୁପାରିଶଗୁଡ଼ିକୁ କେନ୍ଦ୍ର କଂଗ୍ରେସ ବେଖାତିର କରିଛନ୍ତି ।

ଏହାର ପ୍ରତିବାଦ, ପ୍ରତିରୋଧ କରି ସମ୍ବିଧାନକୁ ଆମର ସାର୍ବଭୌମତ୍ୱ, ଧର୍ମନିରପେକ୍ଷତା, ରାଜନୈତିକ ସ୍ୱାଧୀନତା, ଗଣତାନ୍ତ୍ରିକ ବ୍ୟବସ୍ଥାକୁ ସର୍ବୋପରି ଆମର ପ୍ରଜାତନ୍ତ୍ରକୁ ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୋଇଯାଇଛି । ଏହି ସଂଗ୍ରାମ ଅତି କଠୋର ।

❑❑❑

ରଚନା କାଳ – ୧୯୯୫

# ଆମ ଦେଶରେ କମ୍ୟୁନିଷ୍ଟ୍ ଗୋଷ୍ଠୀର ପ୍ରଭାବ ସନ୍ଦର୍ଭର ଇଙ୍ଗିତ କ'ଣ ?

ସାହିତ୍ୟିକ, ମୋର ସହବନ୍ଦୀ ସ୍ୱାଧୀନତା ସଂଗ୍ରାମୀ ନିତ୍ୟାନନ୍ଦ ମହାପାତ୍ରଙ୍କ 'ସମୟ'ରେ ପ୍ରକାଶିତ "ଆମ ଦେଶରେ କମ୍ୟୁନିଷ୍ଟ ଗୋଷ୍ଠୀର ପ୍ରଭାବର ସମୀକ୍ଷା" କ'ଣ ଇଙ୍ଗିତ ଦିଏ ?

୧୯୪୨ ବ୍ରହ୍ମପୁର ଜେଲ୍ ଜୀବନର ବର୍ଣ୍ଣନା କଲାବେଳେ ଜେଲ୍ ଜୀବନରେ ବନ୍ଦୀମାନଙ୍କ ଜୀବନଧାରା, ଅନ୍ୱେଷଣ, ସହଯୋଗିତା, ଲକ୍ଷ୍ମଣ ନାଏକଙ୍କ ଫାଶି ସମୟରେ ସମସ୍ତ ରାଜବନ୍ଦୀ ଏକା ମୁହୂର୍ତ୍ତରେ ନିଃଶେଷ ହୋଇଯିବା ବିପଦର ବିବରଣୀ ଦେଖି କମ୍ୟୁନିଷ୍ଟମାନଙ୍କୁ ପରିଣତ ବୟସରେ ଭର୍ତ୍ସନା କରିବାକୁ ଏକ ଅସତ୍ୟ ଘଟଣାର ୫୬ ବର୍ଷ ପରେ ଅବତାରଣ କରିଛନ୍ତି । ଆମ ସହବନ୍ଦୀମାନଙ୍କ ମଧ୍ୟରୁ ଅନେକେ ଆଉ ନାହାନ୍ତି । କାହିଁ କେବେହେଲେ କମ୍ୟୁନିଷ୍ଟମାନଙ୍କ ଆଦର୍ଶଗତ ବିରୋଧ କରିଥିବା ନେତା କି କର୍ମୀ କେଉଁଠି ହେଲେ ତାଙ୍କ ବାଢ଼ିଥିବା ଅଭିଯୋଗ ବାଢ଼ିନାହାନ୍ତି ।

ତାଙ୍କର ମନେପଡୁଥିବ । ସେ କହିଛନ୍ତି ୨/୩ ହଜାର ସ୍ୱାଧୀନତା ସଂଗ୍ରାମୀ ବନ୍ଦୀ ଥିଲେ । ତାଙ୍କ ଲେଖା ଅନୁସାରେ ମାତ୍ର ୯ଟି ୱାର୍ଡ଼ ଥିଲା ସତ ୪ ନମ୍ବର ୱାର୍ଡ଼ଟି ୧୦ଟି ଶଯ୍ୟା ବିଶିଷ୍ଟ ଡାକ୍ତରଖାନା । ବାକି ୱାର୍ଡ଼ଗୁଡ଼ିକ କ, ଖ ଦୁଇ ଭାଗରେ ବିଭକ୍ତ । 'କ' ୱାର୍ଡ଼ଟି ଓସାରିଆ । ସମୁଦାୟ ୱାର୍ଡ଼ରେ ୪୫ରୁ ୫୦ ଜଣ ଯାଏ ବନ୍ଦୀ ରହୁଥିଲୁ । ତେଣୁ ଖୁବ୍ ହେଲେ ପାଞ୍ଚ ଶହ ବନ୍ଦୀ । କେବଳ ଫାଶି ହୁକୁମ୍ ହୋଇଥିବା ଲକ୍ଷ୍ମଣ ନାୟକ ପୁରୁଣା ଜେଲ୍‌ର 'ସେଲ' (ଆବଦ୍ଧ କୋଠରୀ)ରେ ରହୁଥିଲେ । ଅବଶ୍ୟ ୧୯୪୨ରେ ଗିରଫ ବ୍ୟକ୍ତିମାନଙ୍କ ସଂଖ୍ୟା ଦୁଇ ହଜାର ହେବ । ସେମାନେ କଟକ, କୋରାପୁଟ, ପୁରୀ, ସମ୍ବଲପୁର, ବାଲେଶ୍ୱର ଓ ନୀଳଗିରି, ଢେଙ୍କାନାଳ, ତାଳଚେର, ନୟାଗଡ଼, ରଣପୁର ପ୍ରଭୃତି ଗଡ଼ଜାତ ଜେଲ୍‌ରେ ରହୁଥିଲେ ।

୩୦/୪୦ ଜଣ ରହୁଥିବା ନିଜ ୯ ନମ୍ବରରେ କମ୍ୟୁନିଷ୍ଟମାନେ ନିଜ ବାସଗୃହରେ ନିଆଁ ଲଗାଇଦେଇଥିଲେ । ସେମାନଙ୍କ ଖଟ, ମଶାରୀ, ବହିପତ୍ର ନିରାପଦ ରହିଲା । ଅନ୍ୟମାନଙ୍କ ମୁଣ୍ଡରେ ଅଠା ବୋଳିବାକୁ ଏପରି ଷଡ଼ଯନ୍ତ୍ର କରାଯାଇଥିଲା ବୋଲି ବର୍ଣ୍ଣନା ସେ

କରିଛନ୍ତି । ସେମାନେ ତ ୩୦/୪୦ଟ ଖଟ ବିଛଣାପତ୍ର ବହିପତ୍ର ବାହାରକୁ ନେଇ ନିରାପଦରେ ରଖିଥିବେ । ସେଥିଲାଗି ୨/୩ ଘଣ୍ଟା ସମୟ ଲାଗିଥିବ । ସେ ବେଳକୁ ଆମ୍ଭମାନଙ୍କୁ ଯେପରି ସଂଧ୍ୟା ୬ଟାରେ ଘରେ ଠୁଳି ତାଲା ପକାଉଥିବା ପ୍ରଥାକୁ ସମସ୍ତେ ତାଙ୍କ ବର୍ଣ୍ଣନାନୁସାରେ ଗାନ୍ଧିବାଦୀ ବୁର୍ଷୁୟା, କମ୍ୟୁନିଷ୍ଟ, ଫର ୱାର୍ଡ଼ ବ୍ଲକ୍ ବନ୍ଦୀ ଭାଙ୍ଗିଦେଲୁ । ଜେଲ୍ କର୍ତ୍ତୃପକ୍ଷ ଦିନରାତି ପହରା ଦିଅନ୍ତି । ତାହା ଦେଖି ଅଟକାଇ ପାରିଲେ ନାହିଁ । ଯଦି ସେମାନେ ନିଆଁ ଲଗେଇଦେଲେ ବୋଲି ନିଜଭାଇଙ୍କ କଥା ମାନି ନିଆଯାଏ ତେବେ ଜେଲ୍ ମାନୁଆଲ୍ ଅନୁସାରେ ସେମାନଙ୍କୁ ଦଣ୍ଡ ଦେଇ ସେଲରେ ଠୁକି ଦିଆଯାଇଥାନ୍ତା । ଏହା ହୋଇଛି ତାହା ମହାପାତ୍ରଙ୍କୁ କହିବାକୁ ହେବ । ସେହି କି ନୁହେଁ ୯ ନମ୍ବର 'ଖ' ୱାର୍ଡ଼ରେ (ମଝିରେ ଝାଟିମାଟି ପାଚେରୀ) ତାଙ୍କ ଜିଲ୍ଲାର ବରିଷ୍ଠ କଂଗ୍ରେସ ନେତା ପରେ ଉପବାଚସ୍ପତି ମହମ୍ମଦ ହନିଫ୍ ଓ ତାଙ୍କ ପୁଅ ଶ୍ୟାମସୁନ୍ଦର୍ ରାଜକୃଷ୍ଣ ବୋଷ ଫରୱାର୍ଡ଼ ନେତା ବିଭୁଧେନ୍ଦ୍ର ମିଶ୍ର, ସୁରଜମଲ ସାହା ପ୍ରମୁଖ ତ ପୋଡ଼ି ଯାଇଥାନ୍ତେ ଅବା ତାଙ୍କ ଖଟ ବହିପତ୍ର ହଜିଯାଇଥାନ୍ତା । କଥାଟି ହେଲା ୯ ନମ୍ବରକୁ ଲାଗିଥିବା ୮ ନମ୍ବର ୱାର୍ଡ଼ର ପାଇଖାନାପାଖରେ ଥିବା ଡଷ୍ଟବିନ୍‌ରେ କିଏ ବିଡ଼ିଗୁଳା ପକାଇବାରୁ ନିଆଁ ଧରିଥିଲା । ତାହାକୁ ଜେଲ୍ କର୍ମଚାରୀ ନିଭେଇଦେଲେ । କମ୍ୟୁନିଷ୍ଟ ବିରୋଧୀ କେତେକ କମ୍ୟୁନିଷ୍ଟମାନେ ଏହା କରିଛନ୍ତି ବୋଲି ଚିତ୍କାର କଲେ ବି କାନ୍ଟୁ କଲା ନାହିଁ । ତେବେ ଏପରି ଘଟଣା ବର୍ଣ୍ଣନା କଲାବେଳେ ସନ୍ଦର୍ଭ ଲେଖକ କିପରି ତାଙ୍କ ସମେତ କମ୍ୟୁନିଷ୍ଟ ସମେତ ଓଡ଼ିଶାର ରାଜନୈତିକ ନେତୃତ୍ୱ ନିଶ୍ଚିହ୍ନ ହୋଇଥାନ୍ତା ତାହା ବର୍ଣ୍ଣନା କଲେନାହିଁ । ହୁଏତ ୧୯୪୪ ଦୈନିକର ମଧ୍ୟରାତ୍ରରେ ଜାପାନୀ ଉଡ଼ାଜାହାଜରୁ ନିକ୍ଷିପ୍ତ ବୋମା ୯ ନମ୍ବର ୱାର୍ଡ଼ ପାଚେରୀ ସେପାଖେ ଥିବା ଜେଲ୍‌ଖାନାରେ ବିରାଟ ଓ ଗଭୀର ଗୋବରଗଦାରେ ପଡ଼ି ବିସ୍ଫୋରିତ ହେଲା । ଯଦି ଗୋଟିଏ ସେକେଣ୍ଡରେ ଘରେ ଥିବାରୁ ଶହେଭାଗରୁ ଭାଗକରେ ତାହା ଲକ୍ଷ୍ୟଭ୍ରଷ୍ଟ ହୋଇନଥାନ୍ତା, ତେବେ ଆମେ ସମସ୍ତେ ମରିଥାନ୍ତୁ । ଏ କଥା ସେ ବର୍ଣ୍ଣନା କଲେ ନାହିଁ । କିପରି ଖଟତଳେ ସମସ୍ତେ ଆଶ୍ରୟ ନେଇ ୫୦୦ ବନ୍ଦୀ ବାହାରକୁ ବାହାରି କୁଣ୍ଢାକୁଣ୍ଢି ହେଲେ ତାହା ଯଦି ସେ ତାଙ୍କ ଜେଲ୍ କାହାଣୀରେ ଉଲ୍ଲେଖ କରିଥାନ୍ତେ, ତେବେ ଓଡ଼ିଶାର ବର୍ତ୍ତମାନ କାଳର ଲୋକେ ଜାପାନ କିପରି ସମଗ୍ର ପୂର୍ବ ଏସିଆ ଦଖଲ କରି ବର୍ମା ସୀମାନ୍ତରୁ କଲିକତା, ଚିଟାଗଙ୍ଗ ଉପରେ ବୋମାମାଡ଼ କଲା, ଲକ୍ଷଲକ୍ଷ ଲୋକ କଲିକତା ଛାଡ଼ି ଓଡ଼ିଶା ବାହୁଡ଼ି ଆସିଲେ ଜାଣିପାରିଥାନ୍ତେ । ସେ ତ ସହୀଦ୍ ଲକ୍ଷ୍ମଣ ନାୟକଙ୍କ ଫାଶୀ ଅବ୍ୟବହିତ ରାତ୍ରିରେ ସବୁ ଅଟକବନ୍ଦୀଙ୍କ ଉପବାସ ଓ ରଣଧ୍ୱନିର ଅବତାରଣା କରିପାରିଥାନ୍ତେ ? ନା ତାଙ୍କର ଏବର କାହା ଦ୍ୱାରା ପ୍ରଣୋଦିତ ଶରବ୍ୟ ହେଲେ କମ୍ୟୁନିଷ୍ଟ ପାର୍ଟି ।

୩୦/୪୦ ଜଣ କମ୍ୟୁନିଷ୍ଟ ଅଟକବନ୍ଦୀ କାହିଁକି ହେଲେ ? ସେମାନେ ପରା କୁଆଡ଼େ ବ୍ରିଟିଶ ସରକାରର ଯୁଦ୍ଧନୀତିକୁ ସମର୍ଥନ କରୁଥିଲେ । ପୁଣି ଏହି ତଥାକଥିତ କମ୍ୟୁନିଷ୍ଟ

ବନ୍ଦୀମାନଙ୍କ ମଧ୍ୟରେ ଥିଲେ ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ଦୟାନନ୍ଦ ଶତପଥୀ, ପୁରୀ ଜିଲ୍ଲା ସଂପାଦକ ଗଙ୍ଗାଧର ମିଶ୍ର, ଗଂଜାମ ଜିଲ୍ଲା ସଂପାଦକ ହରିହର ଦାସ ଆଉ କଂଗ୍ରେସ ଏମ୍.ଏଲ୍.ଏ. ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ ଆଉ ଅନେକ ପ୍ରାଦେଶିକ କଂଗ୍ରେସ କମିଟି ସଦସ୍ୟ । ଅବଶ୍ୟ ନିତଭାଇ ପ୍ରାଦେଶିକ କମିଟିର ସଦସ୍ୟ ନଥିଲେ ।

ତାଙ୍କ ସନ୍ଦର୍ଭ ପୁଣି ଗାନ୍ଧିଜୀଙ୍କ ୧୨୦ ବର୍ଷ ବଂଚିବା ଓ ପୁଣି ସଅଳ ମୃତ୍ୟୁ ଆକାଙ୍କ୍ଷା ପ୍ରକାଶ କରିବା ଉକ୍ତିକୁ ଉଦ୍ଧାର କରିବା ପଛରେ ଉଦ୍ଦେଶ୍ୟ କ'ଣ ? କ'ଣ ମହାତ୍ମାଗାନ୍ଧୀ ଈଶ୍ୱରଙ୍କୁ ଯେଉଁ ନିବେଦନ କଲେ ତାଙ୍କର ଉକ୍ତ ଉଦ୍ଧୃତି ସତ୍ୟ ତେବେ ଗାନ୍ଧିଭକ୍ତ ସଂନ୍ଦର୍ଭ ଲେଖକ ଏହାଦ୍ୱାରା ଇଙ୍ଗିତ ଦେଲେ ଯେ ଆର୍.ଏସ୍.ଏସ୍. ଏବଂ ମହାରାଷ୍ଟ୍ର ହିନ୍ଦୁ ମହାସଭାର ସଂପାଦକ ନାଥୁରାମ ଗଡ଼ସେ୍ ହିଁ ଗାନ୍ଧିଜୀଙ୍କ ଏହି ଅଭିଳାଷ ପୂରଣ କରିବାଲାଗି ବିଧିପ୍ରେରିତ । ଏପରି ଇଙ୍ଗିତ ତାଙ୍କ ଲେଖାରୁ ବାହାରୁ ନାହିଁକି ?

ତା' ନହୋଇଥିଲେ ସେ ତ ନାଥୁରାମ ଗଡ଼ସେଙ୍କ ଏହି ହତ୍ୟାର ଅଶ୍ରୁଳ ନିନ୍ଦା କରି ଲେଖିଥାନ୍ତେ । ଠିକ୍ ଗାନ୍ଧୀଙ୍କ ଉକ୍ତି ଉଦ୍ଧାର କଲାପରେ ସନ୍ଦର୍ଭ ଲେଖକ କମ୍ୟୁନିଷ୍ଟମାନଙ୍କ ଉପରେ ଆକ୍ରମଣ କରିବା ପାଇଁ ନେହେରୁ ଓ କୃଷ୍ଣମେନନ କମ୍ୟୁନିଷ୍ଟମାନଙ୍କୁ ପ୍ରଶୟ ଦେବା କଥା ଉଠାଇଛନ୍ତି । କୃଷ୍ଣମେନନ କମ୍ୟୁନିଷ୍ଟ ନଥିଲେ କି ହୋଇନାହାନ୍ତି, ସେ ଥିଲେ ବିଲାତରେ ଇଣ୍ଡିଆ ଲିଗର ନେତା । ବିଲାତରେ ଜାଠଦଳ, ଲେବର ପାର୍ଟି, ସମସ୍ତେ ଭାରତର ପୂର୍ଣ୍ଣ ସ୍ୱାଧୀନତାର ବିରୋଧୀ ଥିଲେ ; କେବଳ ସେଠାରେ କମ୍ୟୁନିଷ୍ଟମାନେ ହିଁ ସବୁ ବ୍ରିଟିଶ ଉପନିବେଶ ଓ ଭାରତକୁ ସ୍ୱାଧୀନ କରିବାକୁ ଦାବୀ କରୁଥିଲେ । ଭାରତକୁ ଆସି ଜେଲ୍ ଯାଉଥିଲେ । କୃଷ୍ଣମେନନ ଓ ବିଲାତର ପ୍ରଗତିଶୀଳ ବୁଦ୍ଧିଜୀବୀ କମ୍ୟୁନିଷ୍ଟମାନଙ୍କ ସହିତ ଭାରତର ସ୍ୱାଧୀନତା ଲାଗି ଭିନ୍ନମତ ତିଆରି କରୁଥିଲେ ।

ନେହେରୁ ଓ କୃଷ୍ଣମେନନଙ୍କୁ କମ୍ୟୁନିଷ୍ଟ ପ୍ରଭାବ ବୃଦ୍ଧିରେ ସହାୟକ ବୋଲି ସନ୍ଦର୍ଭ ଲେଖକ ଦୋଷ ଦେବାବେଳେ ଗାନ୍ଧିଜୀଙ୍କୁ ମଧ୍ୟ ଅଧିକ ଦୋଷ ଦେଇପାରନ୍ତେ । କାରଣ ମିରଟ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାରେ ଜଡ଼ିତ ଭାରତୀୟ ଓ ବିଲାତରେ କମ୍ୟୁନିଷ୍ଟ ବନ୍ଦିମାନଙ୍କୁ ଜେଲ୍‌ଖାନାକୁ ଯାଇ ୧୯୩୦ ଆଇନ ଅମାନ୍ୟ ଆନ୍ଦୋଳନ ପୂର୍ବରୁ ଆଲୋଚନା କରିଥିଲେ ଏବଂ ଏହି ମକଦ୍ଦମାରେ ଅଭିଯୁକ୍ତମାନଙ୍କ ପକ୍ଷରୁ ଲଢ଼ିବା ଲାଗି ବିଶିଷ୍ଟ ଆଇନଜ୍ଞ ଓ ବିରାଟ କଂଗ୍ରେସ ନେତା ଉଭୟ ବାପ, ପୁଅ ମୋତିଲାଲ ଓ ଜବାହାରଲାଲ ଅର୍ଥ ସଂଗ୍ରହ କରି ଡିଫେନ୍ସ କମିଟି ଗଠନ କରିଥିଲେ ।

ଏକଥା ଇତିହାସ ବିଦିତ ଯେ କଂଗ୍ରେସ ଭିତରେ ଗାନ୍ଧିବାଦୀ, ନିରୁତା କଂଗ୍ରେସବାଦୀ, ସୋସାଲିଷ୍ଟ, କମ୍ୟୁନିଷ୍ଟ, ଓ ବିପ୍ଳବୀ ଫରଓ୍ୱାଡ଼ ସଂଗଠନଗୁଡ଼ିକର ବିପ୍ଳବୀ ଭଗତସିଂହ,

ସୂର୍ଯ୍ୟସେନ, ବାଘା ଯତୀନ, ଏମିତି ସମସ୍ତେ ଏକ ଏକ ଥିଲେ । ଆଦର୍ଶର ମତଭେଦ ଥିଲା । କର୍ମକୌଶଳର ମଧ୍ୟ କିଛି ବିଚିତ୍ରତା ଥିଲା । ସନ୍ଦର୍ଭ ଲେଖକ ସେ କଥାର ଉଲ୍ଲେଖ ନକଲେ ନାହିଁ ଗୋଟିଏ କଥା ତାଜୁବ୍ ଲାଗେ । ଜେଲ୍‌ଖାନାରେ ସେତେବେଳେ କମ୍ୟୁନିଷ୍ଟମାନଙ୍କର ଏପରି ଆଚରଣ ଦେଖି ସୁଦ୍ଧା ସେମାନଙ୍କ ପାଇଁ ବିଖ୍ୟାତ ପତାକା ଗୀତ "ଏହି ଲାଲ ପତାକାର ତଳେ..." ଲେଖିଥିଲେ । ନାଁ ସେତିକି ନୁହେଁ ଏଇ ୩ ବର୍ଷ ପୂର୍ବ କମ୍ୟୁନିଷ୍ଟମାନଙ୍କର ଏକ ଅନୁଷ୍ଠାନର ଉଦ୍‌ଘାଟନ ଉତ୍ସବରେ "ଶକ୍ତି, ମୈତ୍ରୀ, ମାନବଜାତିର ସଂଘତି ଓ ଅଗ୍ରଗତିର ବାହାକ କରି ଲେଖିଛନ୍ତି –

"ମନୁଶତରୂପା ସନ୍ତାନ ମୁହିଁ - ଆଦ୍ୟମ ଇଉରସୂତ
ତିଳେ ନୋହୁଁ ବିଚ୍ୟୁତ ଆଣିବାରେ ଅମୃତ
କେତେ ଅତିତର ବାର୍ତ୍ତାବହି ମୁଁ ହୋଇଛି ମଣିଷ ଜାତି.....

ତାଙ୍କର ଏହି ସାହିତ୍ୟିକ, ସାଂସ୍କୃତିକ ଅବଦାନକୁ ଯେଉଁମାନେ ସ୍ୱୀକାର କରି ତାକୁ ଜନପ୍ରିୟ କରାଇଛନ୍ତି ସେ କମ୍ୟୁନିଷ୍ଟମାନଙ୍କୁ ଏବେ ଦେଖି ନପାରି ଅଜବ କୁତ୍ସାରଟନା କଲେ ବି ତାଙ୍କର ଏହି ମାନବବାଦୀ କାବ୍ୟିକ ଅବଦାନକୁ ସେମାନେ ଫିଙ୍ଗିଦେବେ ନାହିଁ ।

ନେହେରୁ ଆସନରେ କମ୍ୟୁନିଷ୍ଟଙ୍କୁ ଶାସନର ମୁଖ୍ୟସ୍ଥାନରେ ରଖିଥିଲେ ବୋଲି ତାଙ୍କର ଉଲ୍ଲେଖ କେତେ ଭ୍ରମାତ୍ମକ । ବରଂ ହିନ୍ଦୁ ମହାସଭାର ଶ୍ୟାମାପ୍ରସାଦ ମୁଖାର୍ଜୀ, ରିପବ୍ଲିକାନ୍ ପାର୍ଟିର ଆମ୍ବେଦକର, କୃଷ୍ଣମାଚାରୀ, ସୁଭାଷ ବୋଷଙ୍କ ଭାଇ ଶରତଚନ୍ଦ୍ର ବୋଷ, ଯେଉଁମାନେ କଂଗ୍ରେସର ନୁହନ୍ତି ଅନ୍ୟଦଳର ଓ ଆଦର୍ଶର ସେମାନଙ୍କୁ ମନ୍ତ୍ରିମଣ୍ଡଳରେ ନେଇଥିଲେ । ସେହି ନେହେରୁ ପ୍ରଧାନମନ୍ତ୍ରୀ ଥିଲାବେଳେ କେରଳରେ କମ୍ୟୁନିଷ୍ଟ ମୁଖ୍ୟମନ୍ତ୍ରୀ ନମ୍ବୁଦ୍ରିପଦ ସରକାରକୁ ଘୋର ଅଗଣତାନ୍ତ୍ରିକ ଭାବରେ ବରଖାସ୍ତ କରାଗଲା । ସେପରି ନିର୍ବାଚିତ ସରକାରମାନଙ୍କୁ ବରଖାସ୍ତରୁ ନୀତି କଂଗ୍ରେସ, ବିଜେପି ମେଣ୍ଟରେ ଥିବା ଜନତା ପାର୍ଟି ସରକାର ଏବଂ ଏକର ବିଜେପି ନେତୃତ୍ୱାଧୀନ ଏନ୍.ଡ଼ି.ଏ. ସରକାର ଜାହିର ରଖିଛନ୍ତି ? ନେହେରୁଙ୍କ ଦ୍ୱାରା ମିଶ୍ରିତ ଅର୍ଥନୀତିକୁ କମ୍ୟୁନିଷ୍ଟମାନେ ପୁଂଜିବାଦୀ ଅର୍ଥନୀତି କହି ସମାଲୋଚନା କରୁଥିଲେ ମାତ୍ର ସ୍ୱାଧୀନତ ଭାରତରେ ଶିଳ୍ପବିଜ୍ଞାନ, କୃଷି ଓ ଯୋଜନା ବିକାଶ ଲାଗି ସେତେବେଳେ ଏକମାତ୍ର ସୋଭିଏତ ୟୁନିଅନ ଓ ଅନ୍ୟ ସମାଜବାଦୀ ଦେଶର ସହଯୋଗକୁ ସମର୍ଥନ କରୁଥିଲେ ।

ଅବଶ୍ୟ ସେତେବେଳଠାରୁ ଜନସଂଘ ପରେ ବିଜେପି ଏବଂ ଅନ୍ୟ କେତେକ ଆମେରିକା, ବିଲାତ, ଫ୍ରାନ୍ସ ପ୍ରଭୃତି ସାମ୍ରାଜ୍ୟବାଦୀ ରାଷ୍ଟ୍ରଙ୍କ ପକ୍ଷରେ ଓକିଲାତି କରୁଥିଲେ । ସନ୍ଦର୍ଭ ଲେଖକ ତେଣୁ ନେହେରୁଙ୍କୁ କରିଥିବା ଆକ୍ରମଣ ବିଜେପି ଓ ସଂଘ ପରିବାରର ଆକ୍ରମଣ ସହିତ ତୁଳନୀୟ । ସନ୍ଦର୍ଭର ଅବତାରଣା ପର୍ବରେ ନେହେରୁ କମ୍ୟୁନିଷ୍ଟ ପ୍ରଭୃତିଙ୍କୁ ଆକ୍ଷେପ

କରି ଏବର ପାଠକମାନଙ୍କ ପାଖରେ ଅତିତର ବିକୃତ ବୟାନ କରି ତାଙ୍କର ଏବର ଅଭିମତକୁ ଗ୍ରହଣ କରିଦେବାକୁ ଏକ କୌଶଳ କରିଛନ୍ତି ।

ଅସଲକଥା ହେଲା ବିଜେପି ନେତୃତ୍ୱାଧୀନ ସରକାର ଯେପରି ବିଖ୍ୟାତ ଇତିହାସ କଂଗ୍ରେସକୁ ଦେଉଥିବା ଅନୁଦାନ ସ୍ଥଗିତ କଲା, ଭାରତୀୟ ଇତିହାସ ଗବେଷଣା ପରିଷଦ ଓ ଜାତୀୟ ଶିକ୍ଷା ଓ ବିଜ୍ଞାନ ପରିଷଦକୁ ଅଗଣତାନ୍ତ୍ରିକ ଭାବରେ ବିଶେଷଜ୍ଞମାନଙ୍କୁ ତଡ଼ି ଆର.ଏସ୍.ଏସ୍. ସମର୍ଥକମାନଙ୍କୁ ରଖିଲା । ବିଜେପି ଶାସିତ ଗୁଜୁରାଟ, ଉତ୍ତର ପ୍ରଦେଶରେ ପିଲାଙ୍କ ପଢ଼ାବହିଗୁଡ଼ିକୁ ସାଂପ୍ରଦାୟିକ ବିଦ୍ୱେଷ ସୃଷ୍ଟି କଲାଭଳି ପାଠ୍ୟପୁସ୍ତକର ପରିବର୍ତ୍ତନ କରିଚାଲିଲା । ତାହାର ବିରୋଧ ଭାରତରେ ପ୍ରମୁଖ ଖ୍ୟାତି ସଂପନ୍ନ ବୁଦ୍ଧିଜୀବୀ, ଇତିହାସବିତ୍, ସମାଜ ବିଜ୍ଞାନୀ ବିରୋଧ କରୁଛନ୍ତି । ଜାତୀୟ ମୁକ୍ତି ସଂଗ୍ରାମର ବହୁବର୍ଷରୁ ସ୍ଥିରୀକୃତ ଭାରତୀୟ ସ୍ୱାଧୀନତା ସଂଗ୍ରାମର ସଂକଳିତ ଇତିହାସ ପୁସ୍ତକଗୁଡ଼ିକ ଲଣ୍ଡନରେ ଛପା ହେବାକୁ ଯାଇଥିବା ବେଳେ ତାହାର ପ୍ରକାଶନ ବନ୍ଦ କରିବାର ବିଜେପି ପରିବାରକୁ ଛାଡ଼ିଦେଲେ ସବୁଆଡୁ ବିରୋଧ ପ୍ରକାଶ ପାଉଛି । ତେଣୁ ଏସବୁ ପୁସ୍ତକ ଲେଖୁଥିବା ବିଶିଷ୍ଟ ଐତିହାସିକ ରମିଲା ଥାପରଙ୍କୁ କମ୍ୟୁନିଷ୍ଟ ଆଖ୍ୟା କରି ତାଙ୍କ ଆସନରୁ ତଡ଼ାଗଲା । ସୁମିତ ସରକାର, ସର୍ବପଲ୍ଲି ରାଧାକୃଷ୍ଣନଙ୍କ ନାତି ପ୍ରସିଦ୍ଧ ଐତିହାସିକ ଏସ୍. ଗୋପାଳନ ପ୍ରଭୃତିଙ୍କୁ ମାର୍କ୍ସପନ୍ଥୀ ଲେଖକ ଆଖ୍ୟାଦେଇ ବଦ୍‌ନାମ କରାଗଲା ।

ସ୍ୱାଧୀନତା ସଂଗ୍ରାମରେ ବସ୍ତୁନିଷ୍ଠ, ବିଜ୍ଞାନସମ୍ମତ, ସତ୍ୟ ଆଧାରିତ ସଂକଳନ ଯେ କେହି କହିବ । ସେଥିରେ ହିନ୍ଦୁ ମହାମ୍ୟ ୧୯୦୯ରେ ପ୍ରତିଷ୍ଠିତ ଏବଂ ୧୯୧୫ରେ କାଶିମନଗର ମହାରାଜାଙ୍କ ସଭାପତିତ୍ୱରେ ଏହି ମହାସଭାର ପୁନର୍ଗଠନ, ୧୯୨୫ରେ ଗଠିତ ଆର୍.ଏସ୍.ଏସ୍. ତଥା ମୁସଲିମ୍ ଲିଗ୍ ପ୍ରଭୃତିଙ୍କ ଭୂମିକା ଏବଂ କଂଗ୍ରେସର ପୂର୍ଣ୍ଣ ସ୍ୱାଧୀନତା ସଂଗ୍ରାମକୁ ସମର୍ଥନ ନଥିବା, ବ୍ରିଟିଶ ବିରୋଧରେ କୌଣସି ଆନ୍ଦୋଳନ ନ କରିଥିବା, ଜେଲ୍ ଜରିମାନା, ଗୁଳି, ଲାଠି, ଫାଶି ପାଇ ନଥିବା କଥା ରହିବ ନାହିଁ । ତେଣୁ ମାନବସମ୍ବଳ ମନ୍ତ୍ରୀ ମୁରଲୀ ମନୋହର ଯୋଷୀ, ଆର୍.ଏସ୍.ଏସ୍. ବିଶ୍ୱହିନ୍ଦୁ ପରିଷଦ, ବଜରଂଗ ଦଳ ପ୍ରଭୃତିଙ୍କ ଆଶଙ୍କା ଓ ଅଭିଯୋଗ । ସନ୍ଦର୍ଭ ଲେଖକ ତେଣୁ ସେହି ମତାଦର୍ଶ ଓ ଦୃଷ୍ଟିଭଙ୍ଗୀକୁ ଆଶ୍ରୟ କରି ଏସବୁ ପୁସ୍ତକ ପ୍ରକାଶନ ବନ୍ଦହେବା ମତ ଦେଇଛନ୍ତି ।

ଇତିହାସ ଏକ ଅସରନ୍ତି ବିଜ୍ଞାନ ଭଣ୍ଡାର । ତାହାର ଗବେଷଣା ହେବା ଆବଶ୍ୟକ । ଇତିହାସର ସମସ୍ତ ଉପାଦାନ ହସ୍ତଗତ ନହୋଇପାରିଲେ ଇତିହାସ ଅସଂପୂର୍ଣ୍ଣ ହୋଇପାରେ । ପରବର୍ତ୍ତୀ କାଳରେ ତାହାର ସଂଶୋଧିତ ସଂସ୍କରଣ ବାହାରିବ । ଆଗରୁ ଅସହିଷ୍ଣୁତା କାହିଁକି ? ଆମ ଓଡ଼ିଶାର ଇତିହାସ ପ୍ୟାରିମୋହନ ଆଚାର୍ଯ୍ୟ, କୃପାସିନ୍ଧୁ ମିଶ୍ର, ଜଗବନ୍ଧୁ ସିଂହ, ଡକ୍ଟର

ହରେକୃଷ୍ଣ ମହତାବ, କେଦାର ଚରଣ ମହାପାତ୍ର, ଡକ୍ଟର ନବୀନ କୁମାର ସାହୁ, ପ୍ରମୁଖ ଲେଖିଛନ୍ତି କାହିଁକି ? ନା ଗବେଷଣା ଅବ୍ୟାହତ ରହିଛି । ଅନେକ ଲୁକ୍କାୟିତ ତଥ୍ୟ ମିଳୁଛି - ଇତିହାସ ସମୃଦ୍ଧ ହୋଇଚାଲିଛି ।

ସଂନ୍ଦର୍ଭ ଲେଖକ ନୂତନ ଭାବାଦର୍ଶରେ ପ୍ରଭାବିତ ହୋଇ ଏହି ଆବଶ୍ୟକ ଚିରନ୍ତନ ପ୍ରକ୍ରିୟାକୁ କାହିଁକି ବରୋଧ କରୁଛନ୍ତି ? ଅବଶ୍ୟ ଭାବାଦର୍ଶ ବଦଳିଲେ ନୂଆ ଆସ୍ଥାନ ନେବାକୁ ହୁଏ । ନିତିଭାଇ ଥିଲେ କଂଗ୍ରେସରେ । ସେ କଂଗ୍ରେସରେ ମନ୍ତ୍ରୀ ହୋଇପାରି ନଥିଲେ । ତେଣୁ ଭାବାଦର୍ଶ ବଦଳେଇ ସେ ଯେଉଁ ସ୍ୱତନ୍ତ୍ର ଦଳକୁ ଗଡ଼ଜାତ ପ୍ରଜାବିରୋଧୀ ରାଜାରାଜୁଡ଼ା ଦଳ ବୋଲି ବିରୋଧ କରି ଆସୁଥିଲେ ହେଁ କଂଗ୍ରେସକୁ ଛାଡ଼ି ଜନକଂଗ୍ରେସରେ ରହି ମନ୍ତ୍ରୀ ହୋଇପାରିଥିଲେ ।

❒❒❒

# ସ୍ୱାଧୀନତା ସଂଗ୍ରାମ, ସମାଜବାଦୀ ଆନ୍ଦୋଳନ ଓ କମ୍ୟୁନିଷ୍ଟ ପାର୍ଟିର ବିକୃତୀକରଣର ଜବାବ୍

ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ "ମୋ' ଜୀବନ ସଂଗ୍ରାମ" ସତରେ ଏକ ତୁମୂଳ ସଂଗ୍ରାମର କାହାଣୀ ମୂଳରୁ ଶେଷ ପର୍ଯ୍ୟନ୍ତ ତାଙ୍କ ସଂଗ୍ରାମର ତୀକ୍ଷ୍ଣଧାର ତାଙ୍କର ସହକର୍ମୀ, ସହଯୋଦ୍ଧା, ତାଙ୍କଠାରୁ ଯଥେଷ୍ଟ ଉର୍ଦ୍ଧ୍ୱରେ ଥିବା ରାଜନୈତିକ ବ୍ୟକ୍ତିଙ୍କୁ ନ୍ୟୁନ, ମାମୁଲି ପ୍ରତିପନ୍ନ କରିବାକୁ ଅଭିପ୍ରେତ । ତାଙ୍କ ଲେଖନୀ ପ୍ରସୂତ ଜୀବନବୃତ୍ତାନ୍ତରୁ ମନେହୁଏ ସେହି ବ୍ୟକ୍ତି ଯାହାଙ୍କ ଯୋଗେ ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନ ପ୍ରଖର ହୋଇପାରିଛି । ସେହି ବ୍ୟକ୍ତି ଯାହାଙ୍କ ପ୍ରେରଣାରେ ସୋସାଲିଷ୍ଟ ଆନ୍ଦୋଳନ ଜନ୍ମ ନେଇ ଆଗେଇଛି । ସେ ହିଁ ଏକ ବ୍ୟକ୍ତି ଯେ କି ସ୍ୱାଧୀନତାପ୍ରାପ୍ତି ଯାଏ ଆଜନ୍ମ ବ୍ରହ୍ମଚାରୀ ହେବାର ସଙ୍କଳ୍ପ ନେଇ ସେବା ମୂଳକ କାମରେ ଜୀବନ ଉତ୍ସର୍ଗ କରିଛନ୍ତି । ସେ ହିଁ ସେହି ବ୍ୟକ୍ତି ଯିଏ ଗଡ଼ଜାତ ପ୍ରଜା ଆନ୍ଦୋଳନର ଜଣେ କର୍ଣ୍ଣଧାର ଥିଲେ । ସେ ହିଁ ଦୂରଦର୍ଶୀ, ଯିଏକି ପ୍ରଜା ସୋସାଲିଷ୍ଟ ପାର୍ଟିକୁ ଗଢ଼ିଥିଲେ । ଆଉ ସେ ହିଁ ଏକ ବ୍ୟକ୍ତି ଯିଏକି ପାର୍ଲିଆମେଣ୍ଟରେ ସଦସ୍ୟ ଥାଇ ଏ ଦେଶର ଭାଗ୍ୟ ଭବିଷ୍ୟତ ଗଠନରେ ପ୍ରମୁଖ ଅଂଶ ନେଇଥିଲେ । ୫୦ ବର୍ଷର ସମସ୍ତ ରାଜନୈତିକ ଘଟଣାବଳୀରେ ତାଙ୍କ ହାତର ପରଶ ରହିଛି । ତାଙ୍କ ଚିନ୍ତାର ରୂପାୟନ ଘଟିଛି । ଯଦି ନ ହୋଇଛି, ତେବେ ଅନ୍ୟମାନେ ସେଥିପାଇଁ ଦାୟୀ ।

'ମୁଁ' ଏବଂ 'ଆମେ' ଏହି ଦୁଇଟି ଶବ୍ଦର ବହୁଳ ଉପଯୋଗରେ ୪୩୦ ପୃଷ୍ଠା ବ୍ୟାପୀ ତାଙ୍କ "ଜୀବନ ସଂଗ୍ରାମ" ପୁସ୍ତକରେ ସେ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମରେ, ଆଦ୍ୟ ସମାଜବାଦୀ ଆନ୍ଦୋଳନରେ, ଅଗଷ୍ଟ ଆନ୍ଦୋଳନରେ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଓ ପରବର୍ତ୍ତୀ ତାଙ୍କ ନିଜସ୍ୱ ପ୍ରଜା ସୋସାଲିଷ୍ଟ ଆନ୍ଦୋଳନରେ ଶହଶହ, ସହସ୍ର ସହସ୍ର ନେତା, ସାଥୀ, ସହକର୍ମୀଙ୍କ ଅବଦାନକୁ ତଥା ତାଙ୍କଠାରୁ ଯଥେଷ୍ଟ ମୂଲ୍ୟବାନ ତ୍ୟାଗକୁ ଓ ସଂଗଠନ ଶକ୍ତିକୁ ଓ ଆଦର୍ଶର ମୂଲ୍ୟବୋଧଗୁଡ଼ିକୁ ନ୍ୟୁନ କରି ନିଜକୁ ଶୀର୍ଷ, ନିଷ୍କଟଙ୍କ, ଅଦ୍ୱିତୀୟ ନେତା ରୂପରେ ପ୍ରତିଷ୍ଠା କରିବାକୁ ଉଦ୍ୟମ କରିଛନ୍ତି । ପାର୍ଲିଆମେଣ୍ଟରେ ଜୀବନର ମାମୁଲି ଘଟଣାଗୁଡ଼ିକ ବଡ଼ ବଡ଼ ଶିରୋନାମା ଦେଇ ନିଜ ପ୍ରଶସ୍ତି ଗାନରେ ପୁସ୍ତକଟିର କଳେବର ବଢ଼ାଇଛନ୍ତି । ତାରିଖଓ୍ୱାରି

ସେ କାଳର ଇତିହାସକୁ ସମ୍ୟକ ଓ ସଠିକ୍ ଦର୍ଶାଇବା ଉଦ୍ୟମ କରି ସେ ଏପରି ବିକୃତ କରିଛନ୍ତି ଯେ ତାକୁ ସହଜରେ ଅଧୁନାକାଳର ପାଠକ ଧରିପାରିବେ ନାହିଁ । ଓଡ଼ିଶାର ଗୌରବ ମଣ୍ଡିତ ସ୍ୱାଧୀନତା ସଂଗ୍ରାମ, ଗଡ଼ଜାତ ଆନ୍ଦୋଳନ, ସମାଜବାଦୀ ଆନ୍ଦୋଳନ କମ୍ୟୁନିଷ୍ଟ ଆନ୍ଦୋଳନ, ସମ୍ପର୍କରେ ଅର୍ଦ୍ଧସତ୍ୟ ଉପରେ ପ୍ରତିଷ୍ଠିତ ତାଙ୍କ ବର୍ଣ୍ଣନାକୁ ଠିକ୍ ବୋଲି ବିଚାରି ତାଙ୍କୁ ବଧେଇ ଜଣାଇବେ ।

ଶ୍ରୀ ଦ୍ୱିବେଦୀଙ୍କର ଗଣନା ଭୁଲ୍ ହୋଇଗଲା । ସେ ଜାଣନ୍ତି ଯେ ଓଡ଼ିଶାରେ ଆଜି ବି ଭିନ୍ନ ଭିନ୍ନ ରାଜନୈତିକ ମତ ପୋଷଣ କରୁଥିବା ଶହ ଶହ ସ୍ୱାଧୀନତା ସଂଗ୍ରାମୀ ବଞ୍ଚିଛନ୍ତି । ସେ କାଳରେ ବହୁ ଗଡ଼ଜାତ ଆନ୍ଦୋଳନର ନେତା ଓ କର୍ମୀ ବଞ୍ଚିଛନ୍ତି । ତାଙ୍କ ସହିତ କଂଗ୍ରେସ ସମାଜବାଦୀ ଦଳ ଓ କଂଗ୍ରେସ ସମାଜବାଦୀ ଦଳ ଓ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘରେ ଏକତ୍ର କାମ କରୁଥିବା ବହୁ କମ୍ୟୁନିଷ୍ଟ ଜୀବିତ । ପୁନଶ୍ଚ ସେ ଯେଉଁ ପ୍ରଜା ସୋସାଲିଷ୍ଟ ପାର୍ଟିର ନେତା ଥିଲେ, ସେହି ପାର୍ଟିର ତାଙ୍କ ସମକକ୍ଷ ଓ କେତେକ ଗୁଣରେ ତାଙ୍କଠାରୁ ଅଧିକ ଦକ୍ଷ, ନୀତିନିଷ୍ଠ ବ୍ୟକ୍ତି ଅଛନ୍ତି । ଆଜି ସେହି ପାର୍ଟିର ତାଙ୍କର ଅନେକ ସହକର୍ମୀ ଉକ୍ତ ପାର୍ଟିର ବିଲୟରେ ମ୍ରିୟମାଣ ହୋଇ ତାଙ୍କୁ ଅଭିଶାପ ଦେଉଛନ୍ତି ।

ଏହି ଜୀବିତ କୁଳଟିର ଜୀବନ ଶେଷ ହୋଇସାରିବା ପରେ ଓଡ଼ିଶାର ଭାବୀ ବଂଶଧର ଓ ଇତିହାସବିତ୍‌ଙ୍କୁ ସେ ତାଙ୍କ ଲିଖିତ "ମୋ ଜୀବନ ସଂଗ୍ରାମ" ଉପହାର ଦେଇଥିଲେ ଭଲ ହୋଇଥାନ୍ତା । ତାଙ୍କ ଲେଖାରେ ବିକୃତୀକରଣ, ଅର୍ଦ୍ଧ ସତ୍ୟ ଓ ଅସତ୍ୟକୁ ଏବଂ ରାଜନୈତିକ ଦୃଷ୍ଟିରୁ ପ୍ରମାଦପୂର୍ଣ୍ଣ ବୋଲି ତାଙ୍କ ଅଧୁନା କାଳର ସହଯୋଦ୍ଧାମାନେ ବିଚାର କଲେ ସୁଦ୍ଧା ସେଗୁଡ଼ିକ ଠିକ୍ ବୋଲି ସେ କାଳକୁ ଜାଣିଥିବା ଲୋକେ ପ୍ରତାରିତ ହୋଇଥାନ୍ତେ ।

ସେ ଏପରି ଏକ ସମୟ ବାଛିନେଲେ, ଯେତେବେଳେ କି ତାଙ୍କ ପ୍ରତି ସବୁ ମହଲରେ ଯେତିକି ଶ୍ରଦ୍ଧା ଥିଲା, ତାହା ଆଜି ପ୍ରତିବାଦରେ ପରିଣତ ହୋଇଛି । ଷ୍ଟେଟମ୍ୟାନ୍ କାଗଜରେ ତାଙ୍କର ଏହି ବହିଟିର କଟୁ ସମାଲୋଚନା ହୋଇଛି । ଜଣେ ବିଶିଷ୍ଟ ବ୍ୟାଖ୍ୟାକାର ଏହାକୁ ଏକ ଆତ୍ମପ୍ରଶସ୍ତି ବୋଲି ଆଖ୍ୟାୟିତ କରିଛନ୍ତି ।

ଯେଉଁ ନବକୃଷ୍ଣ ଚୌଧୁରୀଙ୍କ ସ୍ନେହାତିଶଯ୍ୟ ଓ କୃପା ଯୋଗୁଁ ଶ୍ରୀ ଦ୍ୱିବେଦୀ ଲୋକଲୋଚନକୁ ଆସିଲେ ତାଙ୍କୁ ମଧ୍ୟ ସେ କୁତ୍ସା କରିଛନ୍ତି ବୋଲି ଏକ ଦୀର୍ଘ ପ୍ରତିବାଦ ଶ୍ରୀମତୀ ମାଳତୀ ଦେବୀଙ୍କ ମହଲରୁ ପ୍ରକାଶ ପାଇଛି (ପ୍ରଗତିବାଦୀ) । ଦେଖାସାକ୍ଷାତ ଆଲୋଚନା ବୈଠକଗୁଡ଼ିକରେ ଶ୍ରୀ ଦ୍ୱିବେଦୀଙ୍କ ରାଜନୈତିକ ସହଯୋଦ୍ଧାମାନେ ମଧ୍ୟ ଭ୍ରୂକୁଞ୍ଚନ କରୁଛନ୍ତି, କଟୁ ସମାଲୋଚନା କରୁଛନ୍ତି । କାରଣ ନିଜେ ଯେତିକି ତା'ଠାରୁ ନିଜକୁ ବହୁ ଗୁଣ ଅଧିକ ଦର୍ଶାଇବାକୁ ଯାଇ ସେ ୫୦ ବର୍ଷର ତଥାକଥିତ ଇତିହାସକୁ ଏକ ବିକୃତ ରୂପ ଦେଇଛନ୍ତି ।

୧୯୩୦-୩୨ରେ ସ୍କୁଲ ଛାଡ଼ି ଅନ୍ୟାନ୍ୟ ଅନେକ ଯୁବକ ଖୁବ୍ ମେଧାବୀ ଓ ପରବର୍ତ୍ତୀ

ଜୀବନରେ ପ୍ରତିଷ୍ଠିତ ତାଙ୍କର ସହକର୍ମୀମାନଙ୍କୁ ଟିକିଏ ହେଲେ ସେ ମନେପକେଇ ନାହାନ୍ତି । କାରଣ ସେମାନେ ଅନେକ ତାଙ୍କ ପରି ନୁହଁ, ଜେଲରୁ ଫେରି ସ୍ୱାଧୀନତା ପ୍ରପ୍ତି ପର୍ଯ୍ୟନ୍ତ ନିଜ ବିଶ୍ୱାସ ଅନୁସାରେ କିଏ କଂଗ୍ରେସ ସଙ୍ଗଠନରେ, କିଏ ଗାନ୍ଧିଜୀଙ୍କ ପ୍ରଦର୍ଶିତ ରଚନାତ୍ମକ କାର୍ଯ୍ୟରେ କିଏ ନୂତନ ସମାଜବାଦୀ ଚିନ୍ତାରେ ଦୀକ୍ଷିତ ହୋଇ କୃଷକ, ଶ୍ରମିକ, ଛାତ୍ର ଯୁବକ ଆନ୍ଦୋଳନରେ କଂଗ୍ରେସ ସୋସାଲିଷ୍ଟ ଓ କମ୍ୟୁନିଷ୍ଟ ହୋଇ ସଦାବେଳିଆ ଚବିଶ ଘଣ୍ଟିଆ କାର୍ଯ୍ୟ କରୁଥିଲେ । ଶ୍ରୀ ଦ୍ୱିବେଦୀଙ୍କର ସେପରି ସୁଯୋଗ ନଥିଲା ।

**ମୁଖ୍ୟ ନାୟକ – ଅନ୍ୟମାନେ ପାର୍ଶ୍ୱ ନାୟକ**

କାରଣ ଏହି ସମୟଟିରେ ଶ୍ରୀ ଦ୍ୱିବେଦୀଙ୍କ ରାଜନୈତିକ ଜୀବନରେ ଆଉ ଏକ ଧନ୍ଦା ଜୁଟିଥିଲା । ଯାହାର ସେ ଉଲ୍ଲେଖ କରିଛନ୍ତି ସତ ମାତ୍ର ତାହା ଯେ ଏକ ମୁଖ୍ୟ, ଦାୟିତ୍ୱପୂର୍ଣ୍ଣ ପେଶା ଓ ସେଥିଲାଗି ତାଙ୍କୁ ପ୍ରତ୍ୟକ୍ଷ ରାଜନୈତିକ କାମ କରିବାକୁ କମ୍ ସମୟ ମିଳୁଥିଲା ତାହା ସେ ନମ୍ରତା ସହ ଉଲ୍ଲେଖ କରିନାହାନ୍ତି । ସେ ମଧ୍ୟ ଉଲ୍ଲେଖ କରିନାହାନ୍ତି ଯେ କେବଳ ଫ୍ରିପ୍ରେସ୍ ଅଫ୍ ଇଣ୍ଡିଆ ଓ ବିଭିନ୍ନ ସମ୍ବାଦପତ୍ରର ସେ ସମ୍ବାଦଦାତା ଓ ୟୁ ପି ଆଇର କଟକ ସମ୍ପାଦକ ପଦରେ ୧୯୩୪ ରୁ ୧୯୪୦ ଅକ୍ଟୋବର ଯାଏ ଥିଲେ ବୋଲି । ପୁଣି ୧୯୪୨ ଜାନୁୟାରୀରୁ ଅଗଷ୍ଟ ୫ ତାରିଖ ଯାଏ ତାହାର ସଚେତନ ଦାୟିତ୍ୱ ତୁଲାଉଥିଲେ ବୋଲି । ସେତେବେଳେ ଆଜିକା ଭଳି ଟେଲେକ୍‌ସ, ଟେଲିପ୍ରିଣ୍ଟର ନଥିଲା । ସମ୍ବାଦ ସଂଗ୍ରହ କରିବା, ତିଆରି କରିବା, ଇଂରେଜୀରେ ଟାଇପ୍ କରିବା, ତା'ର ଯୋଗେ ପଠାଇବା ଓଡ଼ିଆ ଅନୁବାଦ କରି ସ୍ଥାନୀୟ ସମ୍ବାଦପତ୍ରକୁଦେବା ଥିଲା ତାଙ୍କର ମୁଖ୍ୟ କାମ । ଏହି ସମୟକୁ ବାଦ ଦେଇ ତେଣୁ ଫାଙ୍କା ସମୟରେ ରାଜନୀତି କରିବା କେଉଁ ସଭା ସମିତିକୁ ଯିବା ସାମ୍ବାଦିକ ଭାବରେ ଯେତିକି ସମ୍ଭବ, ତାହା ସେ ନିଶ୍ଚୟ କରୁଥିଲେ ।

ମାତ୍ର ଶ୍ରୀ ଦ୍ୱିବେଦୀ ଏହି କାଳର ରାଜନୈତିକ ଘଟଣାବାଳୀକୁ ଏପରି ବାଢ଼ିଛନ୍ତି ଯେ ସେ ହିଁ ସବୁ ଘଟଣାର ଯେପରି ମୁଖ୍ୟ ନାୟକ, ପ୍ରଧାନ ସୂତ୍ରଧର । ତାଙ୍କୁ ଛାଡ଼ି କୌଣସି ଆନ୍ଦୋଳନ ଯେପରି ସମ୍ଭବପର ହୋଇନି । "ମୁଁ" ଏବଂ "ଆମେ" ଶବ୍ଦର ବହୁଳ ପ୍ରୟୋଗରେ ସେ ସ୍ଫୀତ ହୋଇଉଠିଛନ୍ତି । ବନ୍ୟା ବେଳେ ହଇଜା ବସନ୍ତ ଦୁର୍ବିପାକବେଳେ ଉତ୍କଳମଣି ଗୋପବନ୍ଧୁ, ଗୋପବନ୍ଧୁ ଚୌଧୁରୀଙ୍କଠାରୁ ଆରମ୍ଭ କରି ଶହଶହ କଂଗ୍ରେସ କର୍ମୀ, ପ୍ରାଣପାତ କରି ସେବା କାର୍ଯ୍ୟ କରୁଥିଲେ ହେଁ ଖଣ୍ଡେଇତା ଘାଇବେଳେ ସେ କରିଥିବା ସାମାନ୍ୟ ସେବା କାର୍ଯ୍ୟର ମହତ୍ତ୍ୱ ଫୁଟାଇ ନିଜକୁ ଏକ ବଡ଼ ଜନସେବକ ରୂପେ ଦର୍ଶାଇଛନ୍ତି । ମାତ୍ର ଖଣ୍ଡେଇତା ଘାଇବେଳେ ଯେ ବଡ଼ ବଡ଼ କଂଗ୍ରେସ ନେତା ଓ କର୍ମୀ ଜୀବନ ମୂର୍ଚ୍ଛା ସେବା କାର୍ଯ୍ୟ କରିଥିଲେ ତାହାର ଉଲ୍ଲେଖ ସୁଦ୍ଧା ସେ କରିନାହାନ୍ତି । ଏହା ଏକ ଉଦାହରଣ ମାତ୍ର । ଅତୀତରେ ଶହଶହ ନେତା ଓ କର୍ମୀଙ୍କର ସଭାର ପ୍ରଚାରପତ୍ରରେ ନାମ ବାହାରିଛି । ପ୍ରତ୍ୟେକ ସ୍ୱାଧୀନତା ଆନ୍ଦୋଳନ

ଓ ସବୁ ଜନ ଆନ୍ଦୋଳନର ନେତା ଗଣ୍ଡା ଗଣ୍ଡା ସନ୍ଦର୍ଭ, ଲିଫ୍‌ଲେଟ୍ ଲେଖିଛନ୍ତି । କେଉଁ ସମ୍ପାଦକୀୟଟିଏ ସିଏ ଲେଖିଥିଲେ, କେଉଁ ଲିଫ୍‌ଲେଟ୍‌ରେ ତାଙ୍କ ନାମ ବାହାରିଥିଲା, କାହା ପାଇଁ ସେ ବକ୍ତୃତା ଲେଖିଦେଇଥିଲେ, ଏହାର ନଜୀର ଦେଇ ସେ ଅକାରଣ ବହିର କଳେବର ବଢ଼ାଇଛନ୍ତି ନୁହେଁ, ଏମିତି ଲେଖି ସେ ହିଁ ସବୁ କଥାର କର୍ଣ୍ଣଧାର ଥିଲେ ତାହା ଦର୍ଶାଇବାକୁ ଉଦ୍ୟମ କରିଛନ୍ତି । ସେ କାଳରେ କେଉଁ ଦଳର ନେତା ଓ କର୍ମୀ ଏହା କରିନାହାନ୍ତି ଭଲା ?

ଆଜି ବି ତାଙ୍କର ଘନିଷ୍ଠ ଲୋକେ ଜାଣନ୍ତି ଯେ ଶେଷ ମୁହୂର୍ତ୍ତରେ ତାଙ୍କ ବିବାହ ପ୍ରସଙ୍ଗ ନ ଭାଙ୍ଗି ଯାଇଥିଲେ ସ୍ୱାଧୀନତାର ୫ ବର୍ଷ ପୂର୍ବରୁ ତାଙ୍କର ବିବାହ ସମ୍ପନ୍ନ ହୋଇଥାନ୍ତା । ବ୍ୟକ୍ତିଗତ ବ୍ୟାପାର ଏହାସତ, ମାତ୍ର ନିଜକୁ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ "ସ୍ୱାଧୀନତା ନ ପାଇବା ଯାଏ ବିବାହ କରିବି ନାହିଁ" ସଙ୍କଳ୍ପ କଥା ସେ ଉଲ୍ଲେଖ କରିଥିବାରୁ ବିଷୟଟି ନିହାତି ତୁଚ୍ଛ ଓ ବ୍ୟକ୍ତିଗତ ହେଲେ ମଧ୍ୟ ଯାହା ନିର୍ଭୁଲ ଓ ସତ୍ୟ ତାକୁ ଉଲ୍ଲେଖ କରିବାକୁ ପଡୁଛି ।

୧୯୩୪ଠାରୁ ୧୯୪୦ ଯାଏ ଓଡ଼ିଶାର ରାଜନୈତିକ ଜୀବନରେ ଘଟିଥିବା ଅଗଣିତ ଘଟଣାବଳୀରେ ସହସ୍ର ସହସ୍ର ବ୍ୟକ୍ତି ସଂଶ୍ଳିଷ୍ଟ । ବହୁ ବ୍ୟକ୍ତି ନିଜ ନିଜ କର୍ମକ୍ଷେତ୍ରରେ ଅସାମାନ୍ୟ ପଟୁତା ଦେଖାଇଛନ୍ତି । ଠିକ୍ ଏହି ସମୟ ଭିତରେ ହିଁ ଶ୍ରୀ ଦ୍ୱିବେଦୀଙ୍କର ଭୂମିକା ଥିଲା ଗୌଣ । ତା'ର କାରଣ ତାଙ୍କର ସଚେତନ ସଦାବେଳିଆ ପେଶା । ୧୯୪୨ରେ ୩ ମାସରୁ ଊଣା ସଦାବେଳିଆ ମାସ ଗୋପନବାସରେ ରହିବା ପରଠାରୁ ତାଙ୍କର ସକ୍ରିୟ ରାଜନୈତିକ କାର୍ଯ୍ୟକଳାପ ଆରମ୍ଭ ହେଲା ବୋଲି ସେ ଲେଖିଥିଲେ, କେହି ପ୍ରତିବାଦ କରନ୍ତେ ନାହିଁ ।

ଏହି ସମୟରେ ବର୍ଣ୍ଣନା ଦେବାକୁ ଯାଇ ସେ କିପରି ଘଟଣାଗୁଡ଼ିକୁ ବିକୃତ କରି କେତେକ ଜାଗାରେ ଘୋଡ଼େଇ ପକେଇବାକୁ ଯାଇଛନ୍ତି ତା'ର କେତୋଟି ଦୃଷ୍ଟାନ୍ତ ଧରାଯାଉ । ସେ ୟୁ.ପି.ଆଇ.ରେ ଥିଲେ ସୁଦ୍ଧା ନବବାବୁ ମାଳତୀ ଦେବୀଙ୍କ ଆଶୀର୍ବାଦ ପାଇ ଶ୍ରୀ ସୁରେନ୍ଦ୍ର ପଟ୍ଟନାୟକଙ୍କ ସ୍ଥାନରେ କଟକ ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ ଓ ଶ୍ରୀ ରାଜକୃଷ୍ଣ ବୋଷ ସଭାପତି ହୋଇଥବଲେ । ସେ ଯଦି ସକ୍ରିୟ ଥାଆନ୍ତେ ତେବେ ୧୯୪୦ରେ ଜେଲଦଣ୍ଡ ଭୋଗିଲା ପରେ ସେ ପୁଣି ସମ୍ପାଦକ ରହିପାରିଥାନ୍ତେ । ତାହା ତାଙ୍କର ପଦବୀ ଥିଲା । ମାତ୍ର ଆଉ ରାଜନୀତିରେ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ନହେବା ଲାଗି ସେ ଦୃଢ଼ ଇଚ୍ଛା ପ୍ରକାଶ କରିବାରୁ ୧୯୪୨ରେ ଶ୍ରୀ ମନମୋହନ ଚୌଧୁରୀଙ୍କୁ ସମ୍ପାଦକ କରାଗଲା । ସୁରେନ୍ଦ୍ରନାଥ ପଟ୍ଟନାୟକଙ୍କ ପଦଚ୍ୟୁତି ଏବଂ ମନମୋହନ ଚୌଧୁରୀଙ୍କ ନିର୍ବାଚନ କାହିଁକି ହେଲା ତାହା ସେ ଉହ୍ୟ ରଖିଦେଲେ କାହିଁକି ? ବଡ଼ ଅଡୁଆରେ ପଡ଼ିଯିବେ ଯାହା ସତ୍ୟ ଯଦି ତାହା ସେ ଉଲ୍ଲେଖ କରନ୍ତେ !

ସେମିତି ୧୯୪୦ରେ ନେହେରୁଙ୍କ ଆହ୍ଲାବାଦ ଭାଷଣର ଓଡ଼ିଆ ତର୍ଜମା, ସାଇକ୍ଲୋଷ୍ଟାଇଲ ଓ ତାଙ୍କ ଗିରଫ ଓ ମୁକ୍ତି କଥାରେ ଥିବା ଅର୍ଦ୍ଧ ସତ୍ୟ ଦେଖାଯାଉ ।

କଟକ ଜିଲ୍ଲା କଂଗ୍ରେସ କମିଟିର ସଭାପତି ହିସାବରେ ରାଜକୃଷ୍ଣ ବୋଷ ଓ ସଂପାଦକ

ହିସାବରେ ତାଙ୍କୁ ଗିରଫ କରିବା ପରବାନା ବାହାରିଥିଲା । ତାଙ୍କ ପୁଅ ଅସୁସ୍ଥ ଆଳରେ ପୁଲିସ କର୍ମକର୍ତ୍ତା ଶ୍ରୀକାନ୍ତ ଘୋଷ ଓ ବିମଳ ବୋଷ, ରାଜକୃଷ୍ଣବାବୁ, ଯେ କି ପ୍ରଥମ ଆସାମୀ, ତାଙ୍କୁ ଗିରଫ କଲେନି । ଦ୍ୱିବେଦୀଙ୍କ ସହିତ ଗୋବିନ୍ଦଚନ୍ଦ୍ର ମହାନ୍ତି ଅଫିସ୍ ଦାୟିତ୍ୱରେ ଥିବାରୁ ଗିରଫ ହେଲେ ସତ, ମାତ୍ର ଦ୍ୱିବେଦୀ ନେହେରୁଙ୍କ ବିବୃତିକୁ ଅନୁବାଦ କରିଛନ୍ତି ଏହା ସଂପୂର୍ଣ୍ଣ ଅସତ୍ୟ । ସେ ସ୍ୱରାଜ୍ୟାଶ୍ରମରେ ରହୁନଥିଲେ । ରହୁଥିଲେ ତେଲେଙ୍ଗା ବଜାରରେ । କିଏ ଅନୁବାଦ କଲେ କିପରି ଜିଲ୍ଲା ବୋର୍ଡ଼ରୁ ମେସିନ ଆସି ତାହା ସାଇକ୍ଲୋ ହେଲା ତାହା ଦେଖିଥିବା ଅନେକ ଅନ୍ତେବାସୀ ଆଉ ନାହାନ୍ତି । ଏବେବି କେତେକ ତୁଙ୍ଗ ନେତା ବଞ୍ଚିଛନ୍ତି । ଦ୍ୱିବେଦୀ ନିଜେ ଅନୁବାଦ କରି ଷ୍ଟେନସିଲ କାଟିଛନ୍ତି ବୋଲି ବାହାଦୂରୀ ନେବାକୁ ଭୁଲି ନାହାନ୍ତି ।

ପୁଣି ଲେଖିଛନ୍ତି, ତାଙ୍କୁ ଦିଆଯାଇଥିବା ଦଣ୍ଡ ଭୋଗ ଅନ୍ତେ ସେ ଖଲାସ ହେଲେ । ଏହା ମଧ୍ୟ ଅର୍ଦ୍ଧ-ସତ୍ୟ । ମହିଉଦ୍ଦିନ ଅହମ୍ମଦ ତାଙ୍କୁ ଓ ଗୋବିନ୍ଦଚନ୍ଦ୍ର ମହାନ୍ତିଙ୍କୁ ଦୁଇଟି ଦଫାରେ ଏକ ବର୍ଷ କରି ଦୁଇ ବର୍ଷ (ଏକା ସମୟରେ ଭୋଗ କରିବାକୁ ହେବ) ଓ ୨ ଶହ ଟଙ୍କା ଜରିମାନା ନଚେତ୍ ୪ ମାସ ସଶ୍ରମ କାରାଦଣ୍ଡ ଦେଇଥିଲେ । ବ୍ୟକ୍ତିଗତ ସତ୍ୟାଗ୍ରହୀଙ୍କ ପକ୍ଷରେ ନିୟମ ଥିଲା ଯେ ସେମାନେ ଡିଫେନ୍‌ସ ଦେବେ ନାହିଁକି ଜରିମାନା ଦେବେ ନାହିଁ । ଏ ନୁହେଁ ଡିଫେନ୍‌ସ ଦେଇ ନଥିଲେ ସତ ମାତ୍ର ଶ୍ରୀ ଦ୍ୱିବେଦୀ ଲେଖିଥିବା ଭଳି ୫୦୦ ଟଙ୍କା ନୁହଁ ୨ ଶହ ଟଙ୍କା ଜରିମାନା ଦେଇ ଚାରି ମାସ ଆଗରୁ ଖଲାସ ହୋଇ ୧୯୪୨ ଅଗଷ୍ଟ ୫ ତାରିଖ ଯାଏ ପୁଣି ୟୁପିଆଇରେ ଚାକିରି ଧରିଲେ । ତେଣୁ ମନମୋହନ ଚୌଧୁରୀ ସମ୍ପାଦକ ହେଲେ । ଜରିମାନା ଦେଇ ଖଲାସ ହେବା ଉଦ୍ଦେଶ୍ୟ ରଖିବା କେବଳ ନୁହଁ, ୧୯୪୨ ଅଗଷ୍ଟ ୮ ତାରିଖ ବମ୍ବେ ଏଆଇସିସିକୁ ସେ ଆଉ ପ୍ରତ୍ୟକ୍ଷ ରାଜନୀତି କରିବେ ନାହିଁ ଜିଦ୍ ଧରି ଯାଉନଥିଲେ । ଶ୍ରୀମତୀ ମାଳତୀ ଚୌଧୁରୀ, ଗୌରାଙ୍ଗ ଦାସ, ରବି ଘୋଷ ପ୍ରମୁଖଙ୍କ ପ୍ରବର୍ତ୍ତନାରେ ସେ ଯାଇଥିଲେ । ସୌଜନ୍ୟ ହୋଇଥାନ୍ତା, ସେମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରିବା । କାରଣ ତାହାପରେ ସେ ଅଗଷ୍ଟ ଆନ୍ଦୋଳନରେ ଭାଗ ନେଇପାରିଲେ ଓ ତାଙ୍କର ରାଜନୈତିକ ଜୀବନର ଗତି ବଦଳିଗଲା । ତାକୁ ମଧ୍ୟ ସେ ଉହ୍ୟ ରଖିଲେ ।

**"ମୁଁ ଅଗଷ୍ଟ ବିପ୍ଳବର ସଂଗଠନ କଲି" ?**

ସେମିତି "ମୋ ଜୀବନ ସଂଗ୍ରାମରେ" ଲୁକ୍‌କାୟିତ ଆଉ ଏକ ତଥ୍ୟ ଦେଖାଯାଉ । ସେ ବମ୍ବେରୁ ଆସି ଗୋପନ ବାସରେ ରହିବା ପୂର୍ବରୁ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ଲିଖିତ, "କ'ଣ କ'ଣ କରିବାକୁ ହେବ ଓ କ'ଣ କରାଯିବ ନାହିଁ" ବିଷୟ ବସ୍ତୁକୁ ଘେନି ଦୁଇଟି ପ୍ରଚାରପତ୍ର ପ୍ରକାଶ ପାଇ ଯେଉଁଠି ସମ୍ଭବ ଓଡ଼ିଶାର ବିଭିନ୍ନ ସ୍ଥାନକୁ ପଠାଯାଇଥିଲା । ବିନୋଦ କାନୁନଗୋଙ୍କ ସହାୟତାରେ ପ୍ରଥମ ଅଣ୍ଡରଗ୍ରାଉଣ୍ଡ ଅଫିସ୍ ସ୍ଥାପିତ ହୋଇଥିଲା । କେନ୍ଦୁପାଟଣାର ଡକ୍ଟର ବ୍ରଜନାଥ ମିଶ୍ରଙ୍କ ଉଦ୍ୟମରେ ସାଲେପୁର ହାଇସ୍କୁଲରୁ ସାଇକ୍ଲୋ ଯନ୍ତ୍ର ଅଣାଯାଇ କାମ

ହୋଇଥିଲା । ସେହି ଯନ୍ତ୍ରକୁ ମଧ୍ୟ ତାଙ୍କୁ କଟକରେ ଗୋପନ ବାସରେ ଦିଆଗଲା । ନବ ବାବୁଙ୍କର ଏବଂ ତାଙ୍କ ପୂର୍ବରୁ ଯେଉଁମାନେ ଅଣ୍ଡରଗ୍ରାଉଣ୍ଡ ଆପାରେଟସ ସ୍ଥାପନ କରିଥିଲେ ସେମାନଙ୍କର ଭୂମିକାକୁ ଉଲ୍ଲେଖ କଲେ ଅଗଷ୍ଟ ଆନ୍ଦୋଳନରେ ତାଙ୍କ ଭୂମିକା ନ୍ୟୂନ ହୋଇଯିବ । ସେମିତି କଟକରେ ଏହି ବ୍ୟବସ୍ଥା ପାଇଁ ବିଶ୍ୱନାଥ ପଣ୍ଡିତ ପ୍ରମୁଖ କିପରି ତାଙ୍କୁ କମ୍ୟୁନିଷ୍ଟ ପାର୍ଟିର ସାଇକ୍ଲୋ ଯନ୍ତ୍ର ଦେଇଥିଲେ, ଛୋଟ ପ୍ରେସ୍‌ଟି ଯୋଗାଡ଼ କରିଥିଲେ ଓ ସମସ୍ତ ଅଣ୍ଡରଗ୍ରାଉଣ୍ଡ କାର୍ଯ୍ୟରେ ସହାୟତା କରୁଥିଲେ ସେମାନଙ୍କ ଭୂମିକାକୁ ସେ ଉଲ୍ଲେଖ ନ କରି "ମୁଁ" "ଅଗଷ୍ଟ ବିପ୍ଳବର ସଂଗଠନ କଲି" ଲେଖି ପ୍ରତିଷ୍ଠା ବଢ଼େଇବାକୁ ଉଦ୍ୟମ କରିଛନ୍ତି (ପୃ-୧୦୫) ବ୍ୟକ୍ତିଗତ ସତ୍ୟାଗ୍ରହବେଳେ ନେହେରୁଙ୍କ ବିବୃତି ଅନୁବାଦ ଅଭିଯୋଗରେ ତାଙ୍କ ଜେଲବାସ ଯେପରି ଏକକ ଘଟଣା ।

ଓଡ଼ିଶାରେ ଶତାଧିକ ନେତା ଓ କର୍ମୀ ବ୍ୟକ୍ତିଗତ ସତ୍ୟାଗ୍ରହ କରି ଅବା ଅନ୍ୟ ରାଜନୈତିକ ଅପରାଧରେ ବ୍ରିଟିଶ ସରକାର ଦ୍ୱାରା ଦୀର୍ଘ କାରାବାସ ଭୋଗିଥିଲେ । ତାଙ୍କଠାରୁ ଅଧିକ କାଳ ଜେଲରେ ଥିଲେ । ବ୍ରହ୍ମପୁର ଜେଲ୍‌ରେ ସେ ସମୟରେ ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ, ବୋଧରାମ ଦୁବେ, ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଗୋବିନ୍ଦ ପ୍ରଧାନ, ଗୋକୁଳ ମୋହନ ରାୟ ଚୂଡ଼ାମଣି, ଗତିକୃଷ୍ଣ ସ୍ୱାଇଁ, ରାଧାକୃଷ୍ଣ ବିଶ୍ୱାସ ରାୟ, ପ୍ରହ୍ଲାଦ ରାୟ ଲାଠ, ସଦାଶିବ ତ୍ରିପାଠୀ, ପଣ୍ଡିତ ଲୋକନାଥ ମିଶ୍ର, ଅଧ୍ୟାପକ ରାମଲିଙ୍ଗମ, ପୁରୀର ଜଗନ୍ନାଥ ମିଶ୍ର, ଭଗବାନ ପଢ଼ିହାରୀ, ମନମୋହନ ମିଶ୍ର, କୃପାସିନ୍ଧୁ ଭୁକ୍ତା, ଜଗନ୍ନାଥ ଦାସ, ହରିହର ଦାସ, ଉମାଚରଣ ପଟ୍ଟନାୟକ ପ୍ରମୁଖ ବହୁ ନେତାଙ୍କ ମଧ୍ୟରେ ସେ ମଧ୍ୟ ଥିଲେ ବନ୍ଦୀ । ବିଶ୍ୱନାଥ ଦାସ କଟକରେ ବନ୍ଦୀ । ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁ ଚରଣ ପଟ୍ଟନାୟକ, ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ, ଦୁର୍ଗା ଚରଣ ମହାନ୍ତି, ଶରତ ପଟ୍ଟନାୟକ, ବିଜୟ ଚନ୍ଦ୍ର ଦାସ ପ୍ରମୁଖ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାରେ ବନ୍ଦୀ । ଏହି ବନ୍ଦୀ ଜୀବନରେ ଅନ୍ୟମାନଙ୍କ ସଙ୍ଗରେ ସେ ଜଣେ । ଯେପରି ସେହି କାଳର କଥା ସେ ବର୍ଣ୍ଣନା କରିଛନ୍ତି ସେଥିରୁ ମନେହେବ ଯେପରି ସେହି ଏକମାତ୍ର ମୁଖ୍ୟ ବ୍ୟକ୍ତି ଯେ କି ନେହେରୁଙ୍କ ବିବୃତି ଛାପି କାରାଦଣ୍ଡ ଭୋଗିଥିଲେ । ଅନ୍ୟମାନେ ଯେପରି ନଥିଲେ ।

ସେମିତି ୧୯୪୨ ଅଗଷ୍ଟ ବେଳର ଘଟଣାବଳୀ । କେହି ନିର୍ଦ୍ଦେଶ ଦେବା ପୂର୍ବରୁ ଏବଂ ଓଡ଼ିଶାରେ ସେ ନ ଥିବା ବେଳେ ଏବଂ ନବବାବୁଙ୍କ ନିର୍ଦ୍ଦେଶାବଳୀରୂପେ ପ୍ରଥମ ଦୁଇଟି ଇସ୍ତାହାର ପ୍ରକାଶ ପୂର୍ବରୁ ରେଭେନ୍‌ସା କଲେଜରେ ଅଗଷ୍ଟ ୧୦ରେ ତୁମୁଳ କାଣ୍ଡ ଘଟିଯାଇଥିଲା । ଇରମଠାରୁ ଏରସମା, ମାଲକାନଗିରିଠାରୁ କାମାକ୍ଷାନଗର, ବରୀ କଳାମାଟିଆଠାରୁ ଯାଜପୁର ବାଗଲପୁର ଏମିତି ଶତ ଶତ ଜାଗାରେ ପ୍ରତିବାଦ ଓ ଜନ ଆନ୍ଦୋଳନ ଫାଟି ପଡ଼ିଥିଲା । ଏଥିରେ ସ୍ଥାନୀୟଭାବରେ ସ୍ଥାନୀୟ ନେତା ଓ କର୍ମୀ, ବହୁ ଯୁବକ ଜୀବନକୁ

ପ୍ରାଣପାତ କରି ବାହାରି ପଡ଼ିଥିଲେ । ଏ ସବୁର ମୂଳରେ ସିଏ ଯେମିତି ଏକମାତ୍ର ବ୍ୟକ୍ତି ତାଙ୍କର କଟକରେ ଅନେକ ସହକର୍ମୀ ଯେମିତି ବାଙ୍କବିହାରୀ ଦାସ, ଅନୀଲ ଘୋଷ, ବିଶ୍ୱନାଥ ପଣ୍ଡିତ, ବୈଷ୍ଣବ ମହାନ୍ତି ଓ ରାଜ୍ୟର ନେତା ସେମାନଙ୍କ ଭୂମିକାକୁ ପତ୍ରବାହକ ଡାକଘରରେ ସୀମିତ କରିଛନ୍ତି । ବ୍ରହ୍ମପୁର, କଟକ, ସମ୍ବଲପୁର, କୋରାପୁଟ, ବାଲେଶ୍ୱର, ପୁରୀ ଜେଲରେ ହଜାର ସଂଖ୍ୟାରେ ବନ୍ଦୀ । ଲକ୍ଷ୍ମଣ ନାୟକ ଫାଶି । ଜେଲରେ ଲାଠିମାଡ଼ ଓ ଖଣ୍ଡିଆଖାବରା, ସେଗୁଡ଼ିକ ତାଙ୍କ ବର୍ଣ୍ଣିତ ଇତିହାସରେ ଗୌଣ । ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର ମକଦ୍ଦମା ପାଖରେ ଏମାନଙ୍କର ତ୍ୟାଗ ସତରେ ଯେପରି ତୁଚ୍ଛ ।

ସେ ଯେ ମାତ୍ର ଅଢ଼େଇ ମାସ ପରେ ଗିରଫ ହେଲେ ତା'ର କାରଣ ସେ ନିଜେ ବୋଲି ତାଙ୍କର ଘନିଷ୍ଠ ସହଯୋଗୀ ଜାଣନ୍ତି । ଶ୍ରୀ ମଥୁରୀ ସାହୁଙ୍କ ଘରେ ଯାହାକୁ ଶ୍ରୀ ବିଶ୍ୱନାଥ ପଣ୍ଡିତ ସ୍ଥିର କରିଥିଲେ ସେଇଠି ଗୋପନରେ ରହି ଶ୍ରୀ ମଥୁରୀ ସାହୁଙ୍କ ଦୋକାନ ନାମରେ ଷ୍ଟାଣ୍ଡାର୍ଡ଼ କାଗଜ ଓ ଚିଠିପତ୍ର କାରବାର କରିବାରୁ ପୁଲିସ ସନ୍ଧାନ ପାଇ ତାଙ୍କୁ ଗିରଫ କଲା । ଗୋପନବାସ କାଏଦାର ଅପରିପକ୍ୱତା ଲୁଚାଇବାକୁ ଯାଇ ସେ ତାଙ୍କ ଆଜନ୍ମ କମ୍ୟୁନିଷ୍ଟ ବିରୋଧିତା ହେତୁ ପୁଲିସକୁ କୁଆଡ଼େ କମ୍ୟୁନିଷ୍ଟ ତାଙ୍କୁ ଧରେଇଦେଲେ ବୋଲି ଭିତ୍ତିହୀନ ଅପପ୍ରଚାର କରିଛନ୍ତି । ସେ ତ ନାସନାଲ ଆରକାଇଭସ ବା ଅଭିଲେଖଗାରରୁ ଦଲିଲଗୁଡ଼ିକର ଉଦ୍ଧାର କରିଛନ୍ତି । କାହିଁକି ସେହି ଅଭିଲେଖଗାରରୁ କମ୍ୟୁନିଷ୍ଟ ତାଙ୍କୁ ଧରେଇ ଦେଲେ ବୋଲି ଦଲିଲଟି ପ୍ରକାଶ କରିଦେଇ ତାଙ୍କ ଅଭିଯୋଗକୁ ସତ୍ୟ ବୋଲି ସାବ୍ୟସ୍ତ କରିନାହାନ୍ତି ? ସତ ହୋଇଥିଲେ ସିନା ପାଆନ୍ତେ ।

**ବ୍ୟର୍ଥତାର ଗ୍ଲାନିରେ ଇତିହାସର ବିକୃତୀକରଣ**

ଶ୍ରୀ ଦ୍ୱିବେଦୀ ୧୯୩୩ରେ କଂଗ୍ରେସ ସାମ୍ୟବାଦୀ କର୍ମୀସଂଘ ଗଠନ, କଂଗ୍ରେସ ସାମ୍ୟବାଦୀ ଦଳ ଗଠନ ଓ ସେଥିରେ ତାଙ୍କର ଭୂମିକା, କମ୍ୟୁନିଷ୍ଟମାନଙ୍କ ତରଫରୁ ଗୋଷ୍ଠୀବିବାଦ, କମ୍ୟୁନିଷ୍ଟଙ୍କୁ ସି.ଏସ.ପି.ରୁ ବହିଷ୍କାର ଏବଂ ତାଙ୍କ ଉପରେ ବଡ଼ ବଡ଼ ଦାୟିତ୍ୱ ନ୍ୟସ୍ତର ବିବରଣୀ ମାନ ଦେଇଛନ୍ତି ।

ଏହି କାଳର ସମସ୍ତ ସାଫଲ୍ୟ ଯାହାକି ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନର ଅୟମାରମ୍ଭର ଯୁଗ ହେଲେ ବି ସ୍ୱର୍ଣ୍ଣଯୁଗ ବୋଲି ପରିଗଣିତ ତାହାର ମୂଲ୍ୟାୟନ ନକରି ସେ ଲେଖିଛନ୍ତି, "୧୯୩୭ ରୁ ୧୯୪୭ ପର୍ଯ୍ୟନ୍ତ ସୋସାଲିଷ୍ଟ ଆନ୍ଦୋଳନର ଗତି ପ୍ରଖର ହୋଇପାରିଲା ନାହିଁ ।" (ପୃ–୧୦୬)

ଶ୍ରୀ ଦ୍ୱିବେଦୀ ଏହି ସ୍ୱର୍ଣ୍ଣ ଯୁଗଟିର ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନକୁ ଅବଦାନରେ ମ୍ରିୟମାଣ ହୋଇପଡ଼ିଛନ୍ତି । କାରଣ ଏହି ସମୟ ଭିତରେ ଯଦି ସମାଜବାଦୀ ଆନ୍ଦୋଳନର ଅଗ୍ରଗତି କଥା ଉଲ୍ଲେଖ କରାଯାଏ ତେବେ ସେ ହୋଇଯିବେ ଗୌଣ ଏବଂ ଆଦର୍ଶବାଦ ଦୃଷ୍ଟିରୁ

ସେ ଯେଉଁମାନଙ୍କୁ ଘୃଣା କରନ୍ତି ସେମାନେ ମୁଖ୍ୟ ସ୍ଥାନକୁ ଆସିଯିବେ । ଏହି ସମୟ ଭିତରେ ସମାଜବାଦୀ ଆନ୍ଦୋଳନର ଯେଉଁ ଅଭୂତପୂର୍ବ ଅଗ୍ରଗତି ହେଲା, ତହିଁରେ ସମଗ୍ର ପ୍ରଶଂସାର ଭାଜନ ସେ ହୋଇପାରିବେ ନାହିଁ । କଂଗ୍ରେସ ସାମ୍ୟବାଦୀ ଦଳ ବା ସି.ଏସ.ପି.ର ତାଙ୍କରି ଭାଷାରେ ନେତୃତ୍ୱରେ ଥିବା କମ୍ୟୁନିଷ୍ଟମାନଙ୍କର ତାହା ପ୍ରାପ୍ୟ ହୋଇଯିବ ।

ଓଡ଼ିଶାରେ ବାମପନ୍ଥୀ ଆନ୍ଦୋଳନର ଆଦ୍ୟସୂରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସହଧର୍ମିଣୀ ଶ୍ରୀମତୀ ମାଳତୀ ଚୌଧୁରୀ । ସେମାନେ କଂଗ୍ରେସର ପ୍ରତିଷ୍ଠିତ ନେତା ଓ ନେତ୍ରୀ । ଦ୍ୱିବେଦୀ କେବଳ ନୁହନ୍ତି ବହୁ ପ୍ରଗତିଶୀଳ ତରୁଣଙ୍କର ଚୌଧୁରୀ ଦମ୍ପତି ଥିଲେ ଆକର୍ଷଣ । କଂଗ୍ରେସର ରାଜନୀତିରେ ଅସନ୍ତୁଷ୍ଟ ଏହି ଯୁବକମାନେ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନକୁ ଲୋପକରି ଦେଶରେ ନୂତନ ଅର୍ଥନୈତିକ, ସାମାଜିକ ବ୍ୟବସ୍ଥା ପ୍ରବର୍ତ୍ତନର ସ୍ୱପ୍ନ ଦେଖି ଅକ୍ଟୋବର ବିପ୍ଳବ ପରେ ଓ ଋଷିଆରେ ସମାଜବାଦର ପ୍ରତିଷ୍ଠାରେ ସମାଜବାଦ ପ୍ରତି ଆକୃଷ୍ଟ ହୋଇଥିଲେ । ବୈଜ୍ଞାନିକ ସମାଜବାଦ ସଂପର୍କରେ ଅର୍ଥାତ୍ ମାର୍କସବାଦ-ଲେନିନବାଦ ସଂପର୍କରେ ସେମାନଙ୍କର ସମାନ ଧାରଣା ନ ଥିଲେ ହେଁ, ସମାଜର ରୂପାନ୍ତର ଲାଗି ସମାଜବାଦର ଆଦର୍ଶକୁ ଗ୍ରହଣ କରି ସେମାନେ ପ୍ରଥମେ କଂଗ୍ରେସ ସାମ୍ୟବାଦୀ କର୍ମୀସଂଘ ଓ ୧୯୩୪ରେ ଗଠିତ କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ମିଳିତ ହୋଇଥିଲେ । ଏତିକିବେଳେ ଗୁରୁଚରଣ ପଟ୍ଟନାୟକ, ପ୍ରାଣନାଥ ପଟ୍ଟନାୟକ, ଭଗବତୀଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାଏତ ପ୍ରମୁଖ ୬/୭ ଜଣ ଯୁବକ ମଧ୍ୟ କମ୍ୟୁନିଷ୍ଟ ଗୋଷ୍ଠୀଟିଏ ଗଠନ କରିଥିଲେ । କଂଗ୍ରେସ ସାମ୍ୟବାଦୀ କର୍ମୀସଂଘରୁ ଆରମ୍ଭ କରି କଂଗ୍ରେସ ସାମ୍ୟବାଦୀ ଦଳର ବିଭିନ୍ନ କାର୍ଯ୍ୟରେ ଏହି ନବୀନ ତରୁଣମାନେ ସକ୍ରିୟ ଭାଗ ନେଇଥିଲେ ।

ନବକୃଷ୍ଣ ଚୌଧୂରୀଙ୍କ ସଂପାଦନରେ ପ୍ରକାଶିତ "ସାରଥୀ" କେବଳ ଶ୍ରୀ ଦ୍ୱିବେଦୀଙ୍କ ଭଳି କେତେକଙ୍କ ନିଜସ୍ୱ ହୋଇ ନଥିଲା । ଯେଉଁମାନେ ଶ୍ରୀ ଦ୍ୱିବେଦୀଙ୍କ ସ୍ୱୀକାରୋକ୍ତିରେ କମ୍ୟୁନିଷ୍ଟ ହୋଇଗଲେ ସେପରି ଦୁଇଜଣ ବ୍ୟକ୍ତି ପ୍ରାଣନାଥ ପଟ୍ଟନାୟକ, ଗତିକୃଷ୍ଣ ସ୍ୱାଇଁ କଂଗ୍ରେସ ସାମ୍ୟବାଦୀ କର୍ମୀସଂଘରେ ସଦସ୍ୟ ଥିଲେ । ନବକୃଷ୍ଣ ଚୌଧୁରୀଙ୍କ ସଂପାଦନାରେ ସାରଥୀ ନାମକ ସ୍ୱଳ୍ପାୟୁ ପତ୍ରିକାଟି ଓଡ଼ିଶାରେ ସର୍ବପ୍ରଥମ ବାମପନ୍ଥୀ ସାମ୍ବାଦିକତାର ସମାଜବାଦୀ ଚିନ୍ତାର ଆଲୋଡ଼ନ ସୃଷ୍ଟି କରିଥିଲା । ଭଗବତୀ ଚରଣ ପାଣିଗ୍ରାହୀ ସାରଥୀର ତିନୋଟି ସଂଖ୍ୟାରେ ସମାଜବାଦୀ ଆଦର୍ଶ ସଂପର୍କରେ ନିବନ୍ଧ ପ୍ରକାଶ କରିଥିଲେ । ୧୯୩୪ରେ କଂଗ୍ରେସ ସାମ୍ୟବାଦୀ ଦଳ ଗଠନ ବେଳକୁ ଦେଖାଗଲା ବହୁ ଯୁବକ ଆସି ପହଞ୍ଚି ଯାଇଛନ୍ତି । ୟୁସୁଫ ମେହେର ଅଲ୍ଲି ଆସିବାବେଳେ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀଙ୍କ ସହ ପ୍ରାଣନାଥ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଶାଏତ, ବୈଦ୍ୟନାଥ ରଥ, ପରମାନନ୍ଦ ମହାନ୍ତି, ଅଶୋକ ରାଓ, ସୁରେନ୍ଦ୍ର ଦ୍ୱିବେଦୀ, ରବି ଘୋଷ, ମନମୋହନ ପଟ୍ଟନାୟକ, ଅନସୂୟାପ୍ରସାଦ

ପାଠକ ପ୍ରମୁଖ (ଯାହାଙ୍କର ଏକତ୍ର ଛବି ରହିଛି) ଏପରି ଏକ ଦଳ ଗଠନ ଲାଗି ତତ୍ପର । ଭଗବତୀଚରଣ ପାଣିଗ୍ରାହୀ ସେତେବେଳକୁ ଏକ ପ୍ରଖର, ବୁଦ୍ଧିମାନ ବିପ୍ଳବୀ ଯୁବକ ରୂପରେ ନବବାବୂଙ୍କର ଖୁବ୍ ନିକଟତର, ପ୍ରିୟଭାଜନ ହୋଇଥାନ୍ତି । କାଶୀ ବିଦ୍ୟାପୀଠରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ସଂପୂର୍ଣ୍ଣାନନ୍ଦ ଶ୍ରୀ ପ୍ରକାଶ ପ୍ରଭୃତିଙ୍କ ରାଜନୈତିକ ଅଧ୍ୟାପନାରେ ଶିକ୍ଷିତ ଗୁରୁଚରଣ ପଟ୍ଟନାୟକ, ପ୍ରାଣନାଥ ପଟ୍ଟନାୟକ ଓ ଶରତ ପଟ୍ଟନାୟକ (ଯେ କି ଓଡ଼ିଶାକୁ ପରେ ଆସିଲେ) ସେମାନେ ଏପରି ଏକ ସମାଜବାଦୀ ସଂଗଠନ ଗଢ଼ିବାର ପ୍ରମୁଖ ଭୂମିକା ନେଲେ ।

କେହି ଉଦ୍ଦେଶ୍ୟ କରି କଂଗ୍ରେସ ସୋସାଲିଷ୍ଟ ପାର୍ଟିକୁ ଦ୍ୱିବେଦୀଙ୍କ ଭାଷାରେ ମାଡ଼ି ବସିନଥିଲେ । ଆବଶ୍ୟକତା, ସଂଖ୍ୟା, ପଟୁତା ଓ ଆଦର୍ଶ ପ୍ରତି ନିଷ୍ଠା ହିଁ ଏମାନଙ୍କୁ ଉକ୍ତ ଦଳର ନେତୃତ୍ୱରେ ଅଧିଷ୍ଠିତ କରାଇଲା । ଶ୍ରୀ ଦ୍ୱିବେଦୀ ଯେପରି କଦର୍ଥ କରିଛନ୍ତି ସେପରି ନୁହେଁ । ନବ ବାବୁ, ମାଳତୀ ଦେବୀ ଜାଣିଥିଲେ ଭଗବତୀ, ପ୍ରାଣନାଥ, ଗୁରୁ ଚରଣ ପୂରା ପୂରି ସେମାନଙ୍କ ମତ ସହିତ ଏକମତ ନୁହନ୍ତି । ମାତ୍ର ଆବଶ୍ୟକତା ହେଲା, ସମାଜବାଦୀ ଆନ୍ଦୋଳନ କରିବା ଓ ସେଥିଲାଗି ସି.ଏସ.ପି. ଗଠନ କରିବା । ତେଣୁ ପାର୍ଟିର ପ୍ରତିଷ୍ଠା ଲାଗି ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଗୌରାଙ୍ଗ ଚରଣ ଦାସ, ମନମୋହନ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସାଙ୍ଗକୁ ସେମାନଙ୍କ ସହିତ ମାର୍କସବାଦୀ ତତ୍ତ୍ୱ ଓ କାର୍ଯ୍ୟ ସମ୍ପର୍କରେ ବିଜ୍ଞାନ ସମ୍ମତ ଅଭିମତ ପୋଷଣ କରୁଥିବା ଭଗବତୀ, ଗୁରୁଚରଣ, ପ୍ରାଣନାଥ, ଗୋକୁଳ ମୋହନ, ଅନନ୍ତ, ବିଶ୍ୱନାଥ, ବୈଦ୍ୟନାଥ, ପ୍ରମୁଖ ଅନେକ ନବୀନ ଯୁବକ ଏକତ୍ର ହୋଇଥିଲେ । ଭଗବତୀ ଚରଣ ପାଣିଗ୍ରାହୀ ସର୍ବସମ୍ମତ ଭାବରେ ପାର୍ଟିର ପ୍ରତିଷ୍ଠାତା ସମ୍ପାଦକ ନିର୍ବାଚିତ ହେଲେ ।

ଏହି ପାର୍ଟିର ପ୍ରଥମ କାମ ହେଲା ମାର୍କସ ଏବଂ ଏଙ୍ଗେଲସଙ୍କ କମ୍ୟୁନିଷ୍ଟ ଇସ୍ତାହାର ଓଡ଼ିଆରେ ଅନୁବାଦ କରି ପ୍ରକାଶ କରିବା । ଭଗବତୀ ପାଣିଗ୍ରାହୀ ତାହାର ଅନୁବାଦ କରିଥିଲେ । ଏହା ହିଁ ଥିଲା ପ୍ରଥମ ମାର୍କସୀୟ ସାହିତ୍ୟ ।

ଖୋର୍ଦ୍ଧାଠାରେ ୧୯୩୮ ଜାନୁୟାରୀରେ କୃଷକ ପତ୍ରିକା ପ୍ରକାଶନର ନିଷ୍ପତ୍ତି ହେଲା । ତାହାର ନାମକରଣ ସେ କରିଥିଲେ ବୋଲି ଲେଖି ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ପ୍ରତି ଅନ୍ୟାୟ କରିଛନ୍ତି । କାରଣ ସେ ହିଁ ଏ ପ୍ରସ୍ତାବ ପ୍ରଥମେ ଦେଇଥିଲେ । ସେଠାରେ ହିଁ ସମ୍ପାଦକ ମଣ୍ଡଳୀ ନିର୍ବାଚିତ ହେଲା । ସମ୍ପାଦକ ମଣ୍ଡଳୀର ସମ୍ପାଦକ ଭଗବତୀ ଚରଣ ପାଣିଗ୍ରାହୀ, ପରିଚାଳନା ସମ୍ପାଦକ ଗୁରୁଚରଣ ପଟ୍ଟନାୟକ ଏବଂ ସମ୍ପାଦକ ମଣ୍ଡଳୀରେ ରହିଲେ ଶ୍ରୀମତୀ ମାଳତୀ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ଓ ସାରଙ୍ଗଧର ଦାସ । ମୁଖ୍ୟ ସମ୍ପାଦକ ହେବା ପାଇଁ ଦ୍ୱିବେଦୀଙ୍କ ନାମ ଗରିଷ୍ଠ ସମର୍ଥନ ପାଇଲା ନାହିଁ । ଅଥଚ ଦ୍ୱିବେଦୀ ଲେଖିଛନ୍ତି "ମୁଁ ପରିଚାଳକ ହେଲି ।"

କମ୍ୟୁନିଷ୍ଟ ଇସ୍ତାହାର ଖଣ୍ଡିକ ଓ କୃଷକ ପତ୍ରିକା ହିଁ ସମାଜବାଦୀ ଆଦର୍ଶର ସେତେବେଳେ ଏକମାତ୍ର ବାହକ ହୋଇଥିଲା ।

କଂଗ୍ରେସର ପ୍ରତିଷ୍ଠିତ ନେତା, ପୁଣି ବାମପନ୍ଥୀ ଆନ୍ଦୋଳନରେ, ସମାଜବାଦୀ ଆନ୍ଦୋଳନରେ କର୍ଣ୍ଣଧାର ହୋଇ ବାହାରିପଡ଼ିଥିବା ବିଶେଷତଃ ଚୌଧୁରୀ ଦମ୍ପତି, ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଗୋକୁଳ ମୋହନ ରାୟ ଚୂଡ଼ାମଣି, ଫନୀପାଲ, ଗୌରାଙ୍ଗ ଚରଣ ଦାସ, ପ୍ରମୁଖଙ୍କ ହେତୁ ପାର୍ଟି ପକ୍ଷରୁ କୃଷକ ଆନ୍ଦୋଳନ ପ୍ରଖର ହୋଇଉଠିଲା । ବହୁ କଂଗ୍ରେସ କର୍ମୀ ଏଥିପ୍ରତି ବିଭିନ୍ନ ଜିଲ୍ଲାରେ ଆକୃଷ୍ଟ ହେଲେ । ଲେଖାର କଳେବର ବୃଦ୍ଧି ଦୃଷ୍ଟିରୁ ସେମାନଙ୍କ ନାମ ଉଲ୍ଲେଖ କରି ହେଉନାହିଁ । କଂଗ୍ରେସର ଦକ୍ଷିଣପନ୍ଥୀ ନେତୃତ୍ୱ ଏହି ଆନ୍ଦୋଳନପ୍ରତି ବୈରଭାବ ପୋଷଣ କରୁଥିଲେ । ଗାନ୍ଧିବାଦୀମାନେ ଏହାକୁ ଶ୍ରେଣୀ ସଙ୍ଘର୍ଷର ବାଟ ବୋଲି ଆଖ୍ୟାୟିତ କରୁଥିଲେ । ଏହା ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟର ବିରୋଧ ବୋଲି କଂଗ୍ରେସ ନେତାମାନେ ନାକ ଟେକୁଥିଲେ । ମାତ୍ର ସେତେବେଳେ କେବଳ ବେଠିବେଗାରୀ, ସୁନିଆ ଦଶହରା ଭେଟି ଉଠାଅ, ପ୍ରଜାର ବାଡ଼ିରେ ଗଛ ମାଛର ଅଧିକାର ଦିଅ, ଖଜଣା କମାଅ, ଦାଖଲ ଖାରଜ ରୋଷମ ଛାଡ଼ କର, ଏମିତି ଅତି ସାମାନ୍ୟ ଦାବୀ ଘେନି ଆନ୍ଦୋଳନ ପ୍ରକୃତରେ ଚାଷୀମାନଙ୍କ ମଧ୍ୟରେ ପ୍ରତ୍ୟୟ ଆଣିଦେଇଥିଲା । ସେହି ଆନ୍ଦୋଳନ ଜମିଦାର ଓ ସରକାରର ଦମନ ସତ୍ତ୍ୱେ ସୁଦ୍ଧା ସ୍ଥାନେ ସ୍ଥାନେ ଜୟଲାଭ କଲା । ମଠ ମହନ୍ତ, ଜମିଦାର, ମକଦ୍ଦମ, ସର୍ବରାକାରମାନେ ପ୍ରମାଦ ଗଣିଲେ ।

"୧୯୩୬ରୁ ୧୯୪୭ ପର୍ଯ୍ୟନ୍ତ ସୋସାଲିଷ୍ଟ ଆନ୍ଦୋଳନର ଗତି ପ୍ରଖର ହୋଇପାରିଲା ନାହିଁ ।" ଦ୍ୱିବେଦୀଙ୍କ ଏହି ଅଭିମତକୁ ଏହା ଖଣ୍ଡନ କରେ କାହିଁକି ?

ସେମିତି ଛାତ୍ର ସଂଗଠନ କଥା ଦେଖାଯାଉ । ଏହି ପାର୍ଟିର ଏହି ନବୀନମାନେ, ଯେଉଁମାନେ ଛାତ୍ରମାନଙ୍କ ମଧ୍ୟରେ ପ୍ରିୟ ମେଧାବୀ ଓ ସମ୍ମାନିତ ଥିଲେ ସେମାନେ ଗଢ଼ିଲେ ଏକ ଦୁର୍ବାର ଛାତ୍ର ସଂଗଠନ ଓ ସଂଗ୍ରାମୀ ଛାତ୍ର ଆନ୍ଦୋଳନ ।

୧୯୩୬ ମସିହାରେ ମାନ୍ଦ୍ରାଜଠାରେ ସର୍ବପ୍ରଥମ ସାମ୍ରାଜ୍ୟବାଦ ବିରୋଧୀ, ସ୍ୱାଧୀନତା ପ୍ରୟାସୀ ଏକ ସର୍ବଭାରତୀୟ ଛାତ୍ର ସମ୍ମିଳନୀ ହେଲା । ଓଡ଼ିଶାକୁ ଏହି ପାର୍ଟିର ତତ୍କାଳୀନ କର୍ମକର୍ତ୍ତାମାନଙ୍କ ଉଦ୍ୟମରେ ମାନ୍ଦ୍ରାଜରୁ ଫେରି କଟକରେ ପହଞ୍ଚିଲେ ଛାତ୍ର ନେତା ବିଶ୍ୱନାଥ ମୁଖାର୍ଜୀ, ବିଶ୍ୱନାଥ ଦୁବେ ଓ ପ୍ରମୋଦ ସେନ । ଦ୍ୱିବେଦୀଙ୍କ ଦୃଷ୍ଟିରେ ଏମାନେ କମ୍ୟୁନିଷ୍ଟ । କେବଳ ମୁଖାର୍ଜୀଙ୍କୁ ଛାଡ଼ିଦେଲେ ଅନ୍ୟ ଦୁଇଜଣ ନୁହନ୍ତି ।

ଓଡ଼ିଶାରେ ସର୍ବପ୍ରଥମ ୧୯୩୬ରେ ରାଜ୍ୟ ଛାତ୍ରସଂଘର ସମ୍ମିଳନୀ ହେଲା ଏବଂ ଏକ ବଳିଷ୍ଠ ଛାତ୍ରସଂଘ ଗଢ଼ାଗଲା । ଗୁରୁ ଗାର୍ଜନ, ଗଭର୍ଣ୍ଣମେଣ୍ଟ ବିରୋଧରେ ଏହା ସଂଗ୍ରାମ ଘୋଷଣା କଲା । ସେତେବେଳର ରକ୍ଷଣଶୀଳମାନଙ୍କ ପରି ଆଜି ମଧ୍ୟ କେହି କେହି କହିବେ ଗୁରୁ ଗାର୍ଜନଙ୍କ ବିରୁଦ୍ଧରେ ଛାତ୍ରମାନେ ଲଢ଼ିବେ ? ଏହା କ'ଣ ଆନ୍ଦୋଳନ ? ଛାତ୍ର ସଂଘ ଗୁରୁ ଓ ଗାର୍ଜନମାନଙ୍କୁ ସମ୍ମାନ ଦେଉଥିଲା । ମାତ୍ର ସେତେବେଳେ ଗୁରୁ ଓ ଗାର୍ଜନମାନେ ନିଜ ପିଲାଙ୍କୁ

ବ୍ରିଟିଶ ସରକାର ବିରୁଦ୍ଧରେ ଲଢ଼ିବାକୁ, କଂଗ୍ରେସ ଆନ୍ଦୋଳନ ଓ ସମାଜବାଦୀ ଆନ୍ଦୋଳନରେ ଯୋଗଦେବାକୁ ବାରଣ କରୁଥିଲେ, ପ୍ରତିବନ୍ଧକ ସୃଷ୍ଟି କରୁଥିଲେ । ବିଦ୍ୟାଳୟରୁ ଗୁରୁମାନେ ସ୍ୱାଧୀନତା ପ୍ରୟାସୀ ଛାତ୍ରମାନଙ୍କୁ ବ୍ରିଟିଶ ସରକାରଙ୍କ ଇଙ୍ଗିତରେ ବହିଷ୍କାର କରୁଥିଲେ । ସେତେବେଳେ ଏହି ସ୍ଲୋଗାନ ଥିଲା ବୈପ୍ଳବିକ । ବ୍ରିଟିଶ ସରକାର ପ୍ରତି ଥିଲା କୋକୁଆ ଭୟ ଦୂର କରିବାର ଆୟୁଧ ।

ସେତିକିବେଳେ ଛାତ୍ର ସଂଘ ନେତୃତ୍ୱରେ ସଂଘଟିତ ସରକାର ବିରୋଧୀ ରେଭେନ୍‌ସା କଲେଜ ଧର୍ମଘଟ ଓ ମେଡ଼ିକାଲ ସ୍କୁଲ ଛାତ୍ର ଧର୍ମଘଟ ପରବର୍ତ୍ତୀ କାଳରେ ଓଡ଼ିଶାର ଛାତ୍ର ସମାଜର ବିଶାଳ ଅଂଶକୁ ପ୍ରଗତିପନ୍ଥୀ, ସାମ୍ରାଜ୍ୟବାଦ ବିରୋଧୀ କରିଥିଲା । ଦ୍ୱିବେଦୀ ଏସବୁ କାମକୁ କମ୍ୟୁନିଷ୍ଟଙ୍କ "କାରସାଦି" "ଗୋଷ୍ଠୀଗଠନ" ବୋଲି ଇଙ୍ଗିତ କରିଛନ୍ତି । ଛାତ୍ର ସମାଜକୁ ସ୍ୱାଧୀନତାପ୍ରେମୀ କରିବା, ସାମ୍ରାଜ୍ୟବାଦ ବିରୋଧୀ କରିବା ଓ ସମାଜବାଦୀ ଚିନ୍ତା ପ୍ରତି ଆକୃଷ୍ଟ କରାଇବା ଭଳି ସମାଜବାଦୀ ଆନ୍ଦୋଳନର ଏହି ସାଫଲ୍ୟକୁ ଶ୍ରୀ ଦ୍ୱିବେଦୀ ଟିକିଏ ହେଲେ ତାଙ୍କ ପୁସ୍ତକରେ ସ୍ୱୀକାର କରିନାହାନ୍ତି । କାରଣ ତାହାର ବାହାଦୁରୀ ସେ କାଳର ନେତା ତାଙ୍କ ଦୃଷ୍ଟିରେ କମ୍ୟୁନିଷ୍ଟମାନେ ନେଇଯିବେ । ଅଥଚ ଦେଖାଯାଉଛି ଏହି ଛାତ୍ରସଂଘ କେବଳ କମ୍ୟୁନିଷ୍ଟଙ୍କୁ ଗଢ଼ିନାହିଁ । ଏହାରି ନେତୃତ୍ୱରେ ଆସିଥିବା ଛାତ୍ରନେତା ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ସ୍ୱାଧୀନତା ସଂଗ୍ରାମ କାଳରେ କଂଗ୍ରେସ, ପ୍ରଜା ସୋସାଲିଷ୍ଟ ପାର୍ଟି, ଫରଓ୍ୱାର୍ଡ଼ ବ୍ଲକ୍‌ର ତୁଙ୍ଗ ନେତା ହୋଇଛନ୍ତି । ରାଜ୍ୟ ଶାସନର ଦାୟିତ୍ୱ ନେଇଛନ୍ତି କେତେକ । ଗୋଟିଏ ସାମ୍ରାଜ୍ୟବାଦ ବିରୋଧୀ ଛାତ୍ରଫ୍ରଣ୍ଟ ଗଠିତ ହୋଇଛି ।

ଏହି କାଳରେ ସମାଜବାଦୀ ଆନ୍ଦୋଳନର ଛାତ୍ର ସାମ୍ମୁଖ୍ୟରେ ଏହି ଅସାମାନ୍ୟ ସାଫଲ୍ୟ ସାଙ୍ଗକୁ ଛାତ୍ର ତଥା ସେ କାଳର ସମଗ୍ର ବୁଦ୍ଧିଜୀବୀ ମହଲରେ ଚାଞ୍ଚଲ୍ୟ ସୃଷ୍ଟି କରିଥିବା ଏବଂ ରାଜନୈତିକ, ଦାର୍ଶନିକ ଓ ଅର୍ଥନୈତିକ କ୍ଷେତ୍ରରେ ତଥା ସୃଜନଶୀଳ ପ୍ରଗତିଧର୍ମୀ ସାହିତ୍ୟ ସୃଷ୍ଟିରେ ନୂଆ ଯୁଗ ଆରମ୍ଭ କରିଦେଇଥିବା ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ରହିଛି । ନବଯୁଗ ସାହିତ୍ୟ ସଂସଦର ଗଠନ ଓ ସାତଦିନବ୍ୟାପୀ କଟକ ଟାଉନହଲରେ ସେମିନାର । ଯେଉଁ ଆଲୋଚନାଚକ୍ରରେ ଦର୍ଶନ, ସାହିତ୍ୟ ଓ ଅର୍ଥନୀତି କ୍ଷେତ୍ରରେ ବିଦ୍ୱାନମାନେ ଆଜିର ଯୁଗରେ ସାହିତ୍ୟ ଓ କଳାର ଆଭିମୁଖ୍ୟ କ'ଣ ହେବ, କି ପ୍ରକାର ଦାର୍ଶନିକ ଦୃଷ୍ଟିଭଙ୍ଗୀକୁ ଗ୍ରହଣ କରାଯିବ, କି ପ୍ରକାର ଅର୍ଥନୈତିକ ବ୍ୟବସ୍ଥାର ଦିଗଦର୍ଶନ ଦେଇ ଭାରତର ସ୍ୱାଧୀନତା ସଂଗ୍ରାମକୁ ବଳିଷ୍ଠ କରାଯିବ, ସେ ସମ୍ପର୍କରେ ବିତର୍କ କରିଥିଲେ । ତାହା ଜନ୍ମ ଦେଲା ଏକ ମାସିକ ମୁଖପତ୍ର "ଆଧୁନିକ" । ମାତ୍ର ଛଅଟି ସଂଖ୍ୟା ବାହାରିଥିଲା । ମାତ୍ର ଆଜି ଓଡ଼ିଶାର ପ୍ରଗତିଶୀଳ ସାହିତ୍ୟ ସମାଲୋଚକମାନେ ନବଯୁଗ ସାହିତ୍ୟ ସଂସଦ ଓ ଆଧୁନିକର ଅବଦାନ ଏବଂ ଯାହାର ଛାୟାପାତ ଫଳରେ ଯୁଗଧର୍ମୀ ସାହିତ୍ୟ-କବିତା ସୃଷ୍ଟିର ଦ୍ୱାର ଉନ୍ମୋଚିତ ହେଲା, ସେ ସଂପର୍କରେ ମତ

ଦେଇଛନ୍ତି ଓ ଦେଉଛନ୍ତି । ପ୍ରତିକ୍ରିୟାଶୀଳମାନେ ଏହି ଯୁଗ ଉପରେ ଆକ୍ରମଣ ମଧ୍ୟ କରୁଛନ୍ତି । ଏହି ଅଧ୍ୟାୟକୁ ଦ୍ୱିବେଦୀ 'ଆମେ' ଆଧୁନିକ ବାହାର କଲୁ ବୋଲି ବହୁବଚନରେ ଶେଷ କରିଛନ୍ତି । କିନ୍ତୁ ଆଧୁନିକର ଛଅଟି ସଂଖ୍ୟା ଓ ନବଯୁଗ ସାହିତ୍ୟ ସଂସଦର ବିବରଣୀ କହିବ ଯେଉଁମାନେ ପ୍ରକୃତ ଏହାର ବିନ୍ଧାଣୀ । ଶ୍ରୀ ଦ୍ୱିବେଦୀ ଯାହାଙ୍କୁ ଆଡ଼ ଆଖିରେ ଦେଖିପାରନ୍ତି ନାହିଁ, ସେହି କମ୍ୟୁନିଷ୍ଟମାନେ ।

୧୯୩୮-୩୯ରେ ଓଡ଼ିଶାର ୨୧ଟି ଯାକ ଗଡ଼ଜାତରେ ପ୍ରବଳ ପ୍ରଜା ଆନ୍ଦୋଳନ ହେଲା ଏବଂ ପ୍ରଥମ ଥର ପାଇଁ ଗଡ଼ଜାତର ସୁପ୍ତ, ନିଷ୍ପେଷିତ, ନିର୍ଯ୍ୟାତିତ, ମୂକ ପ୍ରଜା ମୁଖର ହୋଇ ବିଦ୍ରୋହୀ ହେଲେ । "ଆମେ ସୋସାଲିଷ୍ଟମାନେ ଢେଙ୍କାନାଳର ଆନ୍ଦୋଳନକୁ ଚାଳାଇ ରଖିବାକୁ ଚେଷ୍ଟାକଲୁ" ଲେଖିଛନ୍ତି । "ଆମେ" ଶବ୍ଦରେ ସେ ଅସଲ କଥାଗୁଡ଼ିକ ଲୁଚେଇ ଦେଇଛନ୍ତି ଏବଂ ଶେଷରେ "ଗୋଷ୍ଠୀ ବିବାଦ", "କମ୍ୟୁନିଷ୍ଟଙ୍କ କାରସାଦି", "କମ୍ୟୁନିଷ୍ଟଙ୍କ ଷଡ଼ଯନ୍ତ୍ର" (ପୃ ୧୦୧)ର ଅବତାରଣା କରିଛନ୍ତି ।

ଗଡ଼ଜାତ ପ୍ରଜା ଆନ୍ଦୋଳନରେ ୩ଟି ଧାରା ସ୍ପଷ୍ଟ ହୋଇ ଉଠିଥିଲା । ଗୋଟିଏ ହେଉଛି ରଜାମାନେ ରହିବେ । ଦାୟିତ୍ୱମୂଳକ ଶାସନକୁ ରାଜିହେବେ ଓ ମୋଗଲବନ୍ଦୀ ଓଡ଼ିଶା ଭଳି ସେଠାରେ ନେତାମାନେ ରଜାଙ୍କ ପ୍ରଧାନମନ୍ତ୍ରୀ ହୋଇ ଶାସନ ଚଳେଇବେ । ଆଉ ଗୋଟିଏ ହେଲା, ରଜାମାନଙ୍କର କ୍ଷମତାକୁ ଖର୍ବ କରାଯିବ, ଗଡ଼ଜାତଗୁଡ଼ିକୁ ଓଡ଼ିଶା ସହିତ ଚୁକ୍ତିକରି ମିଶ୍ରଣ କରାଯିବ । ରଜାମାନଙ୍କର ସମସ୍ତ ସଂପତ୍ତି, ଭୋଗଭାଗ୍ୟ, ସୁଯୋଗ ବଜାୟ ରହିବ । ତୃତୀୟଟି ହେଲା ରାଜତନ୍ତ୍ରର ସମୂଳେ ଉଚ୍ଛେଦ ହେବ । ରାଜପ୍ରସାଦ, ରଜାଙ୍କ ଖମାର, ଅମାର, ଦେବୋତ୍ତର ଜମି ଦଖଲ ହେବ । ସାମନ୍ତବାଦକୁ ଲୋପ କରାଯିବ । ବୃହତ୍ତର ଓଡ଼ିଶା ଗଠନ କରାଯିବ । ସାମ୍ରାଜ୍ୟବାଦିର ଖୁଣ୍ଟକୁ ଚୁରମାର କରାଯିବ ।

ତୃତୀୟ ଧାରାଟି ଥିଲା ସିଏସପିର । ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀଙ୍କଠାରୁ ଆରମ୍ଭ କରି ସିଏସପିରେ ଥିବା ଆଉ ସମସ୍ତଙ୍କର । ଯାହାଙ୍କୁ ଦ୍ୱିବେଦୀ "କମ୍ୟୁନିଷ୍ଟଙ୍କ ଷଡ଼ଯନ୍ତ୍ର" ବୋଲି କହନ୍ତି । ଦ୍ୱିବେଦୀଙ୍କ ଭାଷାରେ "କାରସାଦି" କରୁଥିବା କମ୍ୟୁନିଷ୍ଟମାନେ ବିଶେଷତଃ ନୀଳଗିରିରେ ବନମାଳୀ ଦାସ, ଢେଙ୍କାନାଳରେ ବୈଷ୍ଣବ ଚରଣ ପଟ୍ଟନାୟକ, ରଣପୁରରେ ଗଙ୍ଗାଧର ମିଶ୍ର ପ୍ରମୁଖଙ୍କ ଜରିଆରେ ଆନ୍ଦୋଳନକୁ ପ୍ରଭାବିତ କରୁଥିଲେ ଏବଂ ନରମପନ୍ଥୀମାନଙ୍କର "ଗଡ଼ଜାତ ସମାଚାର" ନାମକ (ସଂପାଦକ ବାସୁଦେବ ମହାପାତ୍ର) ପାକ୍ଷିକର ଅଭିମତକୁ ଖଣ୍ଡନ କରି "ରଣଭେରୀ" ନାମକ ଗୋପନ ସାଇକ୍ଲୋଷ୍ଟାଇଲ ପତ୍ରିକା ପ୍ରକାଶ କରି ଗଡ଼ଜାତମାନଙ୍କରେ ପ୍ରଚାର କରାଉଥିଲେ । ସାରଙ୍ଗଧର ଦାସ ରାଜ୍ୟ ଗଡ଼ଜାତ ପ୍ରଜା ସମ୍ମିଳନୀର ସାଧାରଣ ସଂପାଦକ । ୧୯୩୧ ସେପ୍ଟେମ୍ବର ଜେନାପୁର କୃଷକ ସମ୍ମିଳନୀରେ କୃଷକ ପତ୍ରିକାର ୧ ହଜାର କପି ବିକ୍ରୟ ଓ ତା'ର ଡାକରା ଢେଙ୍କାନାଳରେ

ଦାବାନଳ ଜଳେଇଦେଲା । ଢେଙ୍କାନାଳର ଅତ୍ୟାଚାରର ମୁକାବିଲା କରି ହଜାର ହଜାର ସଂଖ୍ୟାରେ ଲୋକେ ଚାଲିଆସି ବୁଢ଼ାପଙ୍କ, ଘୋଳପୁର, କଲାଷ୍ଟୋ ଶିବିରରେ ଆଶ୍ରୟ ନେଲେ । ଏସବୁ ଶିବିରକୁ ତୁଲାଇବା ଦାୟିତ୍ୱ ପଡ଼ିଥିଲା ନବବାବୁ, ମାଳତୀ ଦେବୀ, ଭଗବତୀବାବୁ, ଗୌରାଙ୍ଗ ଦାସଙ୍କ ସାଙ୍ଗକୁ ଏହି କମ୍ୟୁନିଷ୍ଟମାନଙ୍କ ଉପରେ । ନବକୃଷ୍ଣ ଚୌଧୁରୀ, ଭଗବତୀ ପାଣିଗ୍ରାହୀ, ଗୌରାଙ୍ଗ ଚରଣ ଦାସଙ୍କ ଢେଙ୍କାନାଳରେ ପ୍ରବେଶ କରି ସତ୍ୟାଗ୍ରହ ଓ ଗୌରାଙ୍ଗ ଦାସଙ୍କ ଉପରେ ନିର୍ଯ୍ୟାତନା ଅନନ୍ତ ପଟ୍ଟନାୟକ ରବିଘୋଷଙ୍କ ଉପରେ ଅତ୍ୟାଚାର ଓ ଜେଲଦଣ୍ଡ ଏବଂ ଗୁରୁଚରଣ, ବୈଦ୍ୟନାଥ, ବିଶ୍ୱନାଥ ଏମିତି ଆଉ ଅନେକଙ୍କର କାମଦାମ ଦ୍ୱିବେଦୀଙ୍କ ଆଖିରେ ପଡ଼ିଲା ନାହିଁ । ବାଜିରାଉତ, ଲକ୍ଷ୍ମଣ, ଗୁରି, ରଘୁ ପ୍ରଭୃତିଙ୍କ ୬ଟି ଶବ କଟକ ଆଣିବାକୁ ପଟୁଆର କରେଇବା ଏସବୁରେ ତାଙ୍କର ଅଂଶ ନଥିଲା । କେବଳ ସେ ସାମ୍ବାଦିକ ହୋଇ "ନବବାବୁଙ୍କ ସତ୍ୟାଗ୍ରହ କାଳରେ ମେରାମଣ୍ଡଳୀ" ଯାଇଥିଲେ । ଏହା ଏକ ଦୀର୍ଘ ଇତିହାସ । ତାକୁ ଘୋଡ଼େଇ ପକେଇବା ଲାଗି ପି.ସି. ଯୋଷୀଙ୍କ ସହିତ କମ୍ୟୁନିଷ୍ଟଙ୍କ ଗୁପ୍ତ ମନ୍ତ୍ରଣା ବୋଲି ମିଥ୍ୟାର ଆଶ୍ରୟ ନେଇ ଶ୍ରୀ ଦ୍ୱିବେଦୀ ସିଏସପିର ସମସ୍ତ ଅବଦାନକୁ ନ୍ୟୁନ ପ୍ରତିପନ୍ନ କରିଛନ୍ତି । କାରଣ ତାହା ଉଲ୍ଲେଖ କଲେ କମ୍ୟୁନିଷ୍ଟମାନେ ବାହାବା ପାଇବେ ।

ପି.ସି. ଯୋଷୀ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଂପାଦକ ଓ ନାସନାଲ ଫ୍ରଣ୍ଟ ସାପ୍ତାହିକର ସଂପାଦକ । ସାମ୍ବାଦିକ ରୂପରେ ଢେଙ୍କାନାଳ ଯାଇ ସେ ଢେଙ୍କାନାଳର ରଜାଙ୍କୁ ସାକ୍ଷାତ କରି ଆସି ନାସନାଲ ଫ୍ରଣ୍ଟରେ ରଜା ବିରୁଦ୍ଧରେ ଓ ପ୍ରଜା ଆନ୍ଦୋଳନ ସପକ୍ଷରେ ଯେଉଁ ଦୁଇଟି ଲେଖା ପ୍ରକାଶ କଲେ ତାହା ଓଡ଼ିଶାର ଗଡ଼ଜାତ ଆନ୍ଦୋଳନକୁ ଭାରତୀୟ ସ୍ତରକୁ ଘେନିଗଲା । ଢେଙ୍କାନାଳ ଯିବାପୂର୍ବରୁ ନବବାବୁଙ୍କ ଘରେ ସେ ସି,ସପିର ସମସ୍ତ ନେତା ଓ କର୍ମୀଙ୍କ ବୈଠକରେ ଆଲୋଚନା କରି ଯାଇଥିଲେ ଏବଂ ସେଠାରୁ ଫେରି କିପରି ସାମ୍ବାଦିକ ହୋଇ ରଜାକୁ ଠକିଲେ ଓ କିପରି ସମସ୍ତ ତଥ୍ୟ ତାଙ୍କଠାରୁ ସଂଗ୍ରହ କଲେ ତାହା ବିସ୍ତାରିତଭାବରେ ବର୍ଣ୍ଣନା କରି ଆନ୍ଦୋଳନକୁ ଅଧିକ ପ୍ରଖର କରିବାକୁ ପରାମର୍ଶ ଦେଇଗଲେ ସମସ୍ତଙ୍କ ସାମନାରେ । ଅଥଚ ଦ୍ୱିବେଦୀ ଲେଖିଲେ ଯୋଷୀ କମ୍ୟୁନିଷ୍ଟଙ୍କ ସହ ଗୁପ୍ତ ମନ୍ତ୍ରଣା କରିଗଲେ । ଭଗବତୀବାବୁ ଢେଙ୍କାନାଳରେ ସତ୍ୟାଗ୍ରହ କରିବାକୁ ଯିବାକୁ କୃଷକର ମୁଖ୍ୟ ସଂପାଦକ ଶ୍ରୀମତୀ ମାଳତୀ ଚୌଧୁରୀ ହେଲେହେଁ ଦ୍ୱିବେଦୀ ସଂପାଦକ ହେଲେ ବୋଲି ଲେଖିଛନ୍ତି ।

ଏହି ସମୟ ଭିତରେ ମଧ ଯୁବ ଆନ୍ଦୋଳନ ପ୍ରଖର ହୋଇଉଠିଲା । ରାମକୃଷ୍ଣ ପତି ଓ ଅନରୁଲ ହକ ଥାଇ ଏକ ଅଭ୍ୟର୍ଥନା କମିଟି ଗଢ଼ାଯାଇ ସୁଭାଷ ବୋଷଙ୍କୁ ଡାକିବା ଲାଗି ପ୍ରଥମେ ସ୍ଥିର ହେଲା । ମାତ୍ର ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପ୍ରବର୍ତ୍ତନାରେ ସେ ଆସିଲେନି । ଦ୍ୱିବେଦୀ କମ୍ୟୁନିଷ୍ଟମାନଙ୍କୁ ଗୋଷ୍ଠୀ ବିବାଦ କଲେ ବୋଲି ଅଭିଯୁକ୍ତ କଲେ ହେଁ ସେହି କମ୍ୟୁନିଷ୍ଟମାନେ ଜୟପ୍ରକାଶ ନାରାୟଣଙ୍କୁ ନିମନ୍ତ୍ରଣ କଲେ । ବିରାଟ ଯୁବ ସମ୍ମିଳନୀ

୧୯୩୯ ଆରମ୍ଭରେ ଟାଉନହଲଠାରେ ହେଲା । ସମ୍ମିଳନୀ ଅନ୍ତେ ଯେଉଁ କମିଟି ହେଲା ସେଥିରେ ପଣ୍ଡିତ ଲୋକନାଥ ମିଶ୍ର, (କଂଗ୍ରେସ ନେତା) ସଭାପତି ଓ ଗୁରୁଚରଣ ପଟ୍ଟନାୟକ ସମ୍ପାଦକ ହେଲେ । ଦ୍ୱିବେଦୀ ନୁହନ୍ତି, ରାମକୃଷ୍ଣ ପତି ହିଁ ଓଡ଼ିଆରେ ଜୟପ୍ରକାଶ ନାରାୟଣଙ୍କ Why Socialism ବା "ସମାଜବାଦ କାହିଁକି" ପୁସ୍ତକର ଅନୁବାଦ କଲେ । ଏହି ସବୁରୁ ପ୍ରମାଣିତ ଯେ ଦ୍ୱିବେଦୀ ଲେଖିଥିବା "ଏହାଛଡ଼ା କମ୍ୟୁନିଷ୍ଟମାନେ କାର୍ଯ୍ୟଭାର ନେଇ ଗୋଷ୍ଠୀ ବିବାଦ କରିବା ଦ୍ୱାରା ଯେଉଁ କଂଗ୍ରେସ କର୍ମୀମାନେ ପାର୍ଟି ଭିତରକୁ ଆସୁଥିଲେ, ସେମାନେ କ୍ରମେ ଅପସାରିତ ହେଲେ" (ପୃ-୧୦୩) ତାହା ଭୁଲ । ବରଂ ମୋଗଲବନ୍ଦୀ ଓ ଗଡ଼ଜାତରେ ଅଧିକରୁ ଅଧିକ କଂଗ୍ରେସ କର୍ମୀ ଏମାନଙ୍କ ପ୍ରତି ଆକୃଷ୍ଟ ହେଲେ ।

**ଶ୍ରୀ ଦ୍ୱିବେଦୀଙ୍କ "ସମାଜବାଦର" ସ୍ୱରୂପ ଘେନି ମତଭେଦ**

ଶ୍ରୀ ଦ୍ୱିବେଦୀ କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ଗୋଷ୍ଠୀ ବିବାଦ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ହେଲା ବୋଲି ଯାହା ଲେଖିଛନ୍ତି ତାହା ନୁହେଁ, ଆଦର୍ଶର ଲଢ଼େଇ ହେଲା । ସେ ସମୟରେ ସମାଜବାଦୀ ଆନ୍ଦୋଳନର ଆରମ୍ଭ ସମୟ । ଭସା ଭସା ସୋସାଲିଷ୍ଟ ଚିନ୍ତା ରହିବା ସ୍ୱାଭାବିକ । ମାତ୍ର ପରିପକ୍ୱ ସମାଜବାଦୀ ନେତା ଶ୍ରୀ ଦ୍ୱିବେଦୀ ୧୯୬୩ରେ ଅନ୍ୟମାନଙ୍କ ସହ ଏକ ପାର୍ଲିଆମେଣ୍ଟାରୀ ପ୍ରତିନିଧି ଦଳରେ ଯାଇ ଆମେରିକାରେ ସମାଜବାଦର ଯେଉଁ ବ୍ୟାଖ୍ୟା ଦେଇଛନ୍ତି, ଯାହାକୁ ଏଠାରେ ଉଦ୍ଧାର କରାଗଲା, ସେପରି କଂଗ୍ରେସ ସୋସାଲିଷ୍ଟଙ୍କ ସହିତ ପ୍ରକୃତ ଖାଣ୍ଟି ସୋସାଲିଷ୍ଟ, ମାର୍କସବାଦୀଙ୍କର ମତଭେଦ ହେବ ନାହିଁ ତ କାହା ସଙ୍ଗରେ ହେବ ?

ଦ୍ୱିବେଦୀ ଲେଖିଛନ୍ତି (ପୃ-୪୩)– "ଆମେରିକାର ଚାମ୍ବର ଅଫ୍ କମର୍ସ (ଅର୍ଥାତ୍ ସାରା ପୃଥିବୀକୁ ଆର୍ଥିକ ଦାସତ୍ୱରେ ବାନ୍ଧି ରଖିଥିବା ଏକଚାଟିଆ ଗୋଷ୍ଠୀ) ତରଫରୁ ଆମମାନଙ୍କୁ ନ୍ୟୁୟର୍କର ୱାଲର୍ଡ଼ଡଫ ଆଷ୍ଟୋରିଆ ହୋଟେଲରେ ରାତି ଭୋଜି ଦିଆଯାଉଥାଏ । ଆମେରିକାର ସବୁ ବଡ଼ ବଡ଼ ଧନୀ ଉପସ୍ଥିତ ଥାଆନ୍ତି । ଆମ ଡେଲିଗେସନର ନେତା ଲୋକସଭା ସ୍ପିକର ସର୍ଦ୍ଦାର ହୁକୁମ ସିଂ ଡେଲିଗେସନରେ ମେମ୍ବରମାନଙ୍କୁ ପରିଚିତ କରାଇଦେଲେ । ସେ ଯେତେବେଳେ "ଦ୍ୱିବେଦୀ ଭାରତର ପାର୍ଲିଆମେଣ୍ଟରେ ସୋସାଲିଷ୍ଟ ବିରୋଧୀ ଦଳର ନେତା" ବୋଲି କହିଲେ ସାରା ଗୃହଟିରେ କିଛି ବଜ୍ରପାତ ହୋଇଗଲା । ମୁଁ ପ୍ରଥମେ ଉଠି ଯେମିତି "କମ୍ରେଡ଼ ଗଣ" ବୋଲି ସମ୍ବୋଧନ କଲି ଏକ ଗୁରୁତ୍ୱପୂର୍ଣ୍ଣ ପରିସ୍ଥିତି ଉପୁଜିଗଲା । ଧନପତି କୁବେରମାନେ ନାସିକା କୁଞ୍ଚନ କଲେ ଏବଂ ହିସ୍ ହିସ୍ କରିବାକୁ ଲାଗିଲେ ।" ଶ୍ରୀ ଦ୍ୱିବେଦୀ ତାଙ୍କୁ ସମାଜବାଦ କ'ଣ ବୁଝାଇଲେ ଓ ସେମାନେ କିପରି ସନ୍ତୁଷ୍ଟ ହେଲେ ତାହାର ବର୍ଣ୍ଣନା ତାଙ୍କ ନିଜ ଭାଷାରେ ହେଲା :-

"ମୋ' ଭାଷାରେ ମୁଁ ବୁଝାଇଲି ଯେ କମ୍ରେଡ଼ ଅର୍ଥ ସାଥୀ । ଆମେ ସମସ୍ତେ ଏକା ଆସନରେ ବସିଛେ, ଏକା ଢଙ୍ଗରେ ଖାଦ୍ୟ ଖାଇବା । ଆମ ଭିତରେ ବଡ଼ସାନ ବିଚାର

ନାହିଁ । ପ୍ରଚୁର ଖାଦ୍ୟ ସାମନାରେ ରହିଛି । ଆମର ଯେତିକି ଆବଶ୍ୟକ ସେତିକି ସ୍ୱାଧୀନ ଭାବରେ ବାଣ୍ଟିକୁଣ୍ଟି ଖାଇବା, କେହି କାହାରିକୁ ବାଧ କରୁନାହିଁ କିମ୍ବା କାହାରିକୁ ଜବରଦସ୍ତି କରିବ ନାହିଁ । ଏହାହିଁ ସମାଜବାଦର ସ୍ୱରୂପ ଏବଂ ଆମେ ଭାରତର ଏମିତିକା ସୁଖୀ ଓ ଶୋଷଣହୀନ ସମାଜ ଗଠନ କରିବାକୁ ଚାହୁଁ– ପାର୍ଲିଆମେଣ୍ଟ ପଦ୍ଧତି ଅନୁସାରେ, ହିଂସାରେ ନୁହେଁ । ମୋ' ଭାଷଣ ଶୁଣିଲାପରେ ସେମାନଙ୍କ ମନରେ ଭରସା ଆସିଲା ଏବଂ ଆମ ଭାରତୀୟ ସୋସାଲିଜିମ୍ ଓ ଋଷିଆର କମ୍ୟୁନିଜିମ ଏକା କଥା ନୁହେଁ ବୋଲି ବୁଝିପାରିଲେ । ଆମ ବନ୍ଧୁମାନଙ୍କର ଆଶଙ୍କା ବି ଦୂରୀଭୂତ ହେଲା ।"

ଏକା ମାଡ଼ରେ ଦୁଇଟି ପକ୍ଷୀ ଶିକାର । ଆମେରିକାର ଧନପତିମାନେ ବୁଝିଲେ ଯେ ଭାରତରେ ସମାଜବାଦ ହେଲେ ଧନପତି କୁବେରମାନେ ରହିବେ ଭୋଜିଭାତ ଦେବେ । ଶ୍ରମିକ ପ୍ରତିନିଧିଙ୍କ ସଙ୍ଗେ ଏକାଠି ବସି ସାଥୀ ସମ୍ବୋଧନ ଶୁଣିବେ । ଉତ୍ପାଦନରେ ଉପାୟ ଉପକରଣର ଅର୍ଥାତ ଜମି, ପୁଞ୍ଜି କଳକାରଖାନା ଋଷିଆ ପରି ସର୍ବହରା ଶ୍ରମିକ ଶ୍ରେଣୀର ସଂପତ୍ତି ହେବ ନାହିଁ । ଦ୍ୱିବେଦୀଙ୍କ ପରିକଳ୍ପିତ ଭାରତର ସୋସାଲିଜିମ୍‌ରେ ଏହିପରି ଭାବରେ "ଶୋଷଣ ବିହୀନ" ସମାଜ ଗଠନ ହେବ । ପୁଣି ପାର୍ଲିଆମେଣ୍ଟ ପଦ୍ଧତି ଅନୁସାରେ । ଶ୍ରମିକମାନେ କଳକାରଖାନା ଦଖଲ କରିବେ ନାହିଁ । କୋଟିପତିଙ୍କ ପୁଞ୍ଜିକୁ ବାଜ୍ୟାପ୍ତ କରିବେନି । ଜମିଦାରମାନଙ୍କ ଜମିକୁ ବାଜ୍ୟାପ୍ତ କରି ବାଣ୍ଟି ନେବେ ନାହିଁ ।

ବୈଜ୍ଞାନିକ ସମାଜବାଦର ବାରଟା ବାଜିଲା ଓ ସୋଭିଏତ୍ ବିରୋଧିତା, ଏମିତି ଦୁଇଟି ପକ୍ଷୀ ଶିକାର ହୋଇଗଲା ଦ୍ୱିବେଦୀଙ୍କ ସମାଜବାଦର ବ୍ୟାଖ୍ୟାରେ । ଆଉ ମନ୍ତବ୍ୟ ନିଷ୍ପ୍ରୟୋଜନ । କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ଦ୍ୱିବେଦୀ ଓ ତାଙ୍କର ଏହି ଅଭିମତର ସମର୍ଥକ ଖୁବ୍ ଅଳ୍ପ ଲୋକ ଥିଲେ । ନବବାବୁ, ମାଳତୀ ଦେବୀ, ଗୌରାଙ୍ଗ ଦାସ ମଧ୍ୟ ସମାଜବାଦ ଏଇଆ ବୋଲି ମତ ପୋଷଣ କରୁ ନଥିଲେ ।

ତେଣୁ ମତର ସଙ୍ଘର୍ଷ ତ ହେବାର କଥା । ପୁଣି ଶ୍ରୀ ଦ୍ୱିବେଦୀ ଲେଖିଛନ୍ତି "କଂଗ୍ରେସକୁ ଦଖଲ କରିବା (ପୃଷ୍ଠା-୪୭) ଆମର ଅଭିପ୍ରାୟ ଏବଂ "କଂଗ୍ରେସ କର୍ମୀମାନଙ୍କୁ ପ୍ରଭାବିତ କରିବା" ଆମର ଲକ୍ଷ୍ୟ ହେଲା । କଂଗ୍ରେସ ଭିତରେ ଥାଇ ସୋସାଲିଷ୍ଟ ପାର୍ଟି ଗଢ଼ି ଓ ପରେ ପ୍ରଜା ସୋସାଲିଷ୍ଟ ପାର୍ଟି ଗଢ଼ି "କଂଗ୍ରେସକୁ ଦଖଲ କରିବା" ଯଦି ଦ୍ୱିବେଦୀଙ୍କର ଅଭିଳାଷ ଓ ଅଭିପ୍ରାୟ ହୋଇପାରିଲା, କେଉଁ ଯୁକ୍ତି ବା ଲଜିକରେ ସେ ନାସ୍ତି କରିବେ ଯେ କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ଯେଉଁମାନେ ତାଙ୍କ ଆମେରିକାର ବ୍ୟାଖ୍ୟା ଅନୁସାରେ ସମାଜବାଦକୁ ପୁଞ୍ଜିବାଦର ମଠାମଠି ରୂପ ବୋଲି କହି ସେମାନଙ୍କ ମତକୁ ଗ୍ରହଣ କରିବାକୁ ଅନ୍ୟମାନଙ୍କୁ ପ୍ରବର୍ତ୍ତାନ୍ତି ସେଥିରେ ଦୋଷ କ'ଣ ?

ପୁନଶ୍ଚ ଦଳ ଭିତରେ ଗୋଷ୍ଠୀ କିଏ ଗଠନ କରନ୍ତି ? ଯିଏ ସଂଖ୍ୟା ନ୍ୟୁନରେ ଥାଆନ୍ତି ।

ସଂଖ୍ୟାଧିକଙ୍କୁ ଆକୃଷ୍ଟ କରିବାକୁ ନିଜ ଆଦର୍ଶର ଗୋଷ୍ଠୀ ଗଢ଼ନ୍ତି । ଓଡ଼ିଶାରେ ଦ୍ୱିବେଦୀ ଓ ତାଙ୍କ ବନ୍ଧୁ ମାଶାନୀ ଯିଏ ଟାଟାର ଚାଟୁକାର, ଏକଚାଟିଆ ପୁଞ୍ଜି ଓ ଅବାଧ ବାଣିଜ୍ୟ ଓ ବୃହତ ଶିଳ୍ପର ପଚ୍ଛାଧାରୀ ପ୍ରବକ୍ତା ହେଲେ, ତାଙ୍କରି ସ୍ୱୀକାରୋକ୍ତି ଅନୁସାରେ ଓଡ଼ିଶାର କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ କମ୍ୟୁନିଷ୍ଟମାନେ ସଂଖ୍ୟା ଗରିଷ୍ଠ ଥିଲେ । ମାଶାନୀ ପ୍ରକାଶ କରିଥିବା "Communist Conspiracy against C.S."ରେ ଥିଲା ଏହି ଦଳରେ ୪୦ ଜଣ (୧୯୩୯ ମସିହା) ସଭ୍ୟଙ୍କ ମଧ୍ୟରୁ ମାତ୍ର ୬ ଜଣ ପ୍ରକୃତ କଂଗ୍ରେସ ସୋସାଲିଷ୍ଟ ଓ ଅନ୍ୟମାନେ କମ୍ୟୁନିଷ୍ଟ ।

ଋଷ ବିପ୍ଳବ ପ୍ରତି ମନୋଭାବ, ସୋଭିଏତ ୟୁନିଅନର ସମାଜବାଦ ପ୍ରତି ଦୃଷ୍ଟିକୋଣ ଓ ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଗଣ ମୁଖୀ କରାଇବା ଓ କେବଳ ସତ୍ୟାଗ୍ରହ ଓ ଆଇନ ଅମାନ୍ୟ ଓ ତା'ପରେ ସେଗୁଡ଼ିକର ପ୍ରତ୍ୟାହାର ଏଇଥିରେ ସୀମିତ ନରଖିବା ଲାଗି ମତଭେଦ ହେଉଥିଲା । ପୃଥିବୀରେ ହିଟଲର ମୁସୋଲିନୀଙ୍କ ଫାସିଷ୍ଟବାଦ ନାଜୀବାଦର ଅଭ୍ୟୁଦୟ ଓ ସାରା ପୃଥିବୀର ସ୍ୱାଧୀନତା ପ୍ରତି ଓ ବିଶେଷରେ ସମାଜବାଦ ପ୍ରତି ଏବଂ ଆମ ଜାତୀୟ ମୁକ୍ତି ସଂଗ୍ରାମ ପ୍ରତି ବିପଦ ସମ୍ପର୍କରେ ମତଭେଦ ଉପୁଜି ଥିଲା । ଏହିସବୁ କାରଣରୁ ଶ୍ରୀ ଦ୍ୱିବେଦୀ, ମନମୋହନ ଚୌଧୁରୀ, ଗୌରଚନ୍ଦ୍ର ଦାସ ଓ ଗୌରାଙ୍ଗ ଦଳରୁ ଇସ୍ତଫା ଦେଇଥିଲେ । ଓଡ଼ିଆ ବଜାର ସୁଭାଷ ବୋଷଙ୍କ ଭାଇ ସତୀଶ ବୋଷଙ୍କ ଘରେ ଥିଲା କଂଗ୍ରେସ ସୋସାଲିଷ୍ଟ ପାର୍ଟି ଅଫିସ୍ । ସେଇଠି ତୁମୁଳ ବିତର୍କ ହେଲା । କମ୍ୟୁନିଷ୍ଟମାନେ ଚାହିଁଥିଲେ ସେମାନଙ୍କ ଇସ୍ତଫା ଗ୍ରହଣ କରି ନେଇଥାନ୍ତେ । କମ୍ୟୁନିଷ୍ଟଙ୍କ ସମାଲୋଚକ ଥିଲେ ହେଁ ନବବାବୁ, ମାଳତୀ ଦେବୀ ମଧ୍ୟ ଏତେଦୂର ଯିବାକୁ ଚାହିଁଲେ ନାହିଁ । ସେମାନେ ଇସ୍ତଫା ପ୍ରତ୍ୟାହାର କଲେ । ମାତ୍ର କିପରି ଏହି ପାର୍ଟିକୁ ମାଶାନୀଙ୍କ ନିର୍ଦ୍ଦେଶ ଅନୁସାରେ ଭାଙ୍ଗି ଦିଆଯିବ ଉପର ସ୍ତରରେ ତା'ର ଯୋଜନା ଚାଲିଲା ।

ଦ୍ୱିବେଦୀଙ୍କ କମ୍ୟୁନିଷ୍ଟ ବିରୁଦ୍ଧରେ ଅଭିଯୋଗ ହେଲା ଯେ "କମ୍ୟୁନିଷ୍ଟମାନେ କଂଗ୍ରେସକୁ ଏକ ବୁର୍ଜୁୟା ସଙ୍ଗଠନ ବୋଲି ବିଚାରୁଥିଲେ ଓ ଜାତୀୟ ସଂଗ୍ରାମର ବିରୋଧ କରୁଥିଲେ ।" (ପୃ-୪୯)

କମ୍ୟୁନିଷ୍ଟମାନେ କଂଗ୍ରେସକୁ ବୁର୍ଜୁଆ ସଂଗଠନ କହିଲେ । ଏହା କମ୍ୟୁନିଷ୍ଟମାନଙ୍କର ନିଶ୍ଚିତ ବଡ଼ ଅପରାଧ । ତାହାକୁ ସେମାନେ ଶ୍ରମିକ ଖଟିଖିଆ ଶ୍ରେଣୀର ସଙ୍ଗଠନ କହିଥିଲେ ସୋସାଲିଷ୍ଟ ଦ୍ୱିବେଦୀଙ୍କ ମନଃପୂର୍ତ୍ତି ହୋଇଥାନ୍ତା । କଂଗ୍ରେସ ସମ୍ପର୍କରେ କମ୍ୟୁନିଷ୍ଟଙ୍କ ମୂଲ୍ୟାୟନ ଠିକ୍ ଓ ବିଜ୍ଞାନସମ୍ମତ କି ଦ୍ୱିବେଦୀଙ୍କ ଅଭିମତ ଠିକ୍ ତାହା ୩୭ ବର୍ଷର ସ୍ୱାଧୀନତା ପ୍ରମାଣ କରିଦେଇଛି । ଅବିଭାଜିତ କଂଗ୍ରେସ, ବିଭାଜିତ କଂଗ୍ରେସ, ଇନ୍ଦିରା କଂଗ୍ରେସ ଏବଂ କଂଗ୍ରେସରୁ ବାହାରି ଯାଇ ଜନତା ଦଳର ଅଢ଼େଇ ବର୍ଷର ଶାସନ ଏ ଦେଶରେ ପୁଞ୍ଜିବାଦ ପ୍ରତିଷ୍ଠା କରିଛି, ଏକଚାଟିଆ ପୁଞ୍ଜିର ହିମାଳୟ ସଦୃଶ

ମୁନାଫା ଗଢ଼ିଛି । ଦାରଦ୍ର୍ୟ, ବେକାରୀ, ମୁଦ୍ରାସ୍ଫୀତି, ଦୁର୍ନୀତି । ନିର୍ମମ ଅତ୍ୟାଚାରର ଶାସନ ଚାଲିଛି । ସମଗ୍ର ସମାଜକୁ ପୁଞ୍ଜି କଳଙ୍କ ଗ୍ରାସ କରିଛି । କଂଗ୍ରେସ ଜାତୀୟ ମୁକ୍ତି ଆନ୍ଦୋଳନର ପ୍ରଧାନ ମୁଖ୍ୟପାତ୍ର ଥିଲେ ହେଁ ଓ ଜନତାର ସମର୍ଥନ ପାଉଥିଲେ ହେଁ ତାହାର ନେତୃତ୍ୱ ବୁର୍ଜୁୟା ଥିଲା । ଏ ଅବଧାରଣା ସହିତ ଦ୍ୱିବେଦୀ ଏକମତ ନୁହନ୍ତି । କମ୍ୟୁନିଷ୍ଟମାନେ ବ୍ରିଟିଶ ବିରୁଦ୍ଧରେ ସାଧାରଣ ଧର୍ମଘଟ, ବ୍ୟାପକ ଖଜଣା ବନ୍ଦ, ଜମିଦାରୀ ଓ ରାଜରାଜୁଡ଼ାଙ୍କ ବୈପ୍ଲବିକ ଉଚ୍ଛେଦ ପାଇଁ ଗଣସଂଗ୍ରାମ ଗଣସଂଗଠନ କରୁଥିଲେ, କଂଗ୍ରେସ ଭିତରେ ଥାଇ ଓ ବାହାରେ ମଧ୍ୟ । ଏହାକୁ ଗ୍ରହଣ ନ କରିପାରି ସେ ମନ୍ତବ୍ୟ ଦେଲେ "କମ୍ୟୁନିଷ୍ଟମାନେ ଜାତୀୟ ସଂଗ୍ରାମର ପ୍ରତ୍ୟକ୍ଷ ବିରୋଧ କରୁଥିଲେ ।" ଇତିହାସ କହିବ, ଏହି କାଳ ଭିତରେ କମ୍ୟୁନିଷ୍ଟଙ୍କ ନାମରେ ବ୍ରିଟିଶ ସରକାର କେତେ ଷଡ଼ଯନ୍ତ ମକଦ୍ଦମା କରିଛି । ୧୯୨୦ରୁ ୧୯୩୦-୩୨, ୧୯୪୦-୧୯୪୨ରେ କେତେ ସହସ୍ର କମ୍ୟୁନିଷ୍ଟଙ୍କୁ ଜେଲଖାନାରେ ଆଣ୍ଡାମାନ କାଳାପାଣିରେ ନିକ୍ଷେପ କରିଛି । ଅବଶ୍ୟ କମ୍ୟୁନିଷ୍ଟମାନେ ସାଂକେତିକ ବ୍ୟକ୍ତିଗତ ସତ୍ୟାଗ୍ରହରେ ବ୍ୟାପକ ଜନତାକୁ ନୀରବ ସମର୍ଥକ କରାଇ ନେତାମାନଙ୍କର ବୀରତୁଲ୍ୟ ଆଇନ ଅମାନ୍ୟ ଓ କାରାବରଣ ଯଥେଷ୍ଟ ନୁହଁ ବୋଲି ବିଚାରୁଥିଲେ । ଆଜି ବି ସେପରି ବିଚାର ଠିକ୍, ବିଜ୍ଞାନସମ୍ମତ । ତା' ନ ହୋଇପାରିଥିବାରୁ ସ୍ୱାଧୀନତା ପ୍ରାପ୍ତି ପରେ ଦେଶରେ ଶାସନ ଶ୍ରମିକ କୃଷକ – ମଧ୍ୟବିତ୍ତଙ୍କ ହାତକୁ ନୁହଁ, ପୁଞ୍ଜିପତି–ଜମିମାଲିକଙ୍କ ପ୍ରତିନିଧି ବୁର୍ଜୁୟା ରାଜନୈତିକ ଦଳଗୁଡ଼ିକ ହାତକୁ ଗଲା ।

ସେହି କାରଣରୁ ସେତେବେଳେ କମ୍ୟୁନିଷ୍ଟମାନେ ସାମ୍ରାଜ୍ୟବାଦ ବିରୁଦ୍ଧରେ, ଫାସିଷ୍ଟବାଦ ବିରୁଦ୍ଧରେ, ପୁଞ୍ଜିବାଦ ଓ ସାମନ୍ତବାଦ ବିରୁଦ୍ଧରେ ସୋସଲିଷ୍ଟ, କମ୍ୟୁନିଷ୍ଟ ଓ କଂଗ୍ରେସରେ ଥିବା ବାମପନ୍ଥୀମାନଙ୍କର ନାସନାଲ ଫ୍ରଣ୍ଟ ବା ଜାତୀୟ ସାମ୍ମୁଖ୍ୟ ଗଠନର ଆନ୍ଦୋଳନ କରୁଥିଲେ । ଦ୍ୱିବେଦୀ ତାହାକୁ କଟୁ ସମାଲୋଚନା କରି (ପୃ-୧୦୧) "କମ୍ୟୁନିଷ୍ଟ ପାର୍ଟି ଜାତୀୟ ଆନ୍ଦୋଳନର ବିରୋଧ କରିଥିଲା ଏବଂ ପରେ ଇଂରେଜ ସରକାର ଏହାକୁ ବେଆଇନ କରିଥିଲା" ଲେଖିଛନ୍ତି । ତାଙ୍କ ପୁସ୍ତକର ୧୦୩ ପୃଷ୍ଠାରେ "କମ୍ୟୁନିଷ୍ଟ ପାର୍ଟିର ବହିଷ୍କାର" ଶିରୋନାମା ଦେଖାଯାଉ । ଏହା କିପରି ଅସତ୍ୟ ଓ ନିଜକୁ ପୁଣି ବଡ଼ କରି ଦେଖାଇବାକୁ ସେ ଯେଉଁ ଚେଷ୍ଟା କରି ୪୦ ବର୍ଷ ପରେ ପାଠକମାନଙ୍କୁ ଭୁଲତଥ୍ୟ ଦେଉଛନ୍ତି, ତାହା ପ୍ରକୃତରେ ଘଟିଥିଲା, ତାହା ପ୍ରମାଣ କରିଦେବ । କେମିତି ପରସ୍ପର ବିରୋଧୀ କଥାମାନ ଉଲ୍ଲେଖ କରିଛନ୍ତି ତାହାର ମଧ୍ୟ ସଂକେତ ମିଳିଯିବ । କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନେତୃତ୍ୱ କମ୍ୟୁନିଷ୍ଟମାନଙ୍କ ହାତରେ ପଡ଼ିଗଲା ଏବଂ ସେମାନେ "କାରସାଦି" ଷଡ଼ଯନ୍ତ କଲେ ବୋଲି ସେ ଅଭିଯୋଗ କରିଛନ୍ତି । ସାଧାରଣ ରାଜନୀତିଜ୍ଞମାନେ ଥିବା ବ୍ୟକ୍ତି କହିବ ଯେ ଯିଏ ସଂଖ୍ୟାଗରିଷ୍ଠ ଥାଏ ସେ କାହିଁକି ଗୋଷ୍ଠୀ ଗଠନ କରିବ ? ସଂଖ୍ୟା ଲଘିଷ୍ଠହିଁ ଗୋଷ୍ଠୀ ଗଢ଼ନ୍ତି ।

ଶ୍ରୀ ଦ୍ୱିବେଦୀ ପ୍ରମୁଖ ୪ ଜଣ ଯେତେବେଳେ ପାର୍ଟିରୁ ଇସ୍ତଫା ଦେଲେ, ସଂଖ୍ୟାଗରିଷ୍ଠ କମ୍ୟୁନିଷ୍ଟମାନେ ସେମାନଙ୍କ ଇସ୍ତଫା ଗ୍ରହଣ କରି ସମଗ୍ର ପାର୍ଟି ଯନ୍ତ୍ରକୁ ଅକ୍ତିଆର କରିପାରିଥାନ୍ତେ, ମାତ୍ର ତାହା ସାମ୍ରାଜ୍ୟବାଦ ବିରୋଧୀ ସ୍ୱାଧୀନତା ସଂଗ୍ରାମରେ ମିଳିତ ଜାତୀୟ ସାମ୍ମୁଖ୍ୟର ବିରୁଦ୍ଧାଚରଣ କରିଥାନ୍ତା । ମାଶାନୀଙ୍କ କମ୍ୟୁନିଷ୍ଟ ବିରୋଧୀ ପୁସ୍ତିକାଟି ତ ସ୍ୱୀକାର କରିଛି ଯେ ୪୦ ଜଣ ଭିତରୁ କମ୍ୟୁନିଷ୍ଟ ଥିଲେ ୩୪ ଜଣ । ସେମାନେ ବରଂ ଐକ୍ୟଲାଗି ଉଦ୍ୟମ କଲେ । ନବବାବୁ ମାଳତୀ ଦେବୀ ମଧ ବିଭେଦକୁ ପାର୍ଟି ଭାଙ୍ଗିନେବା ଅବସ୍ଥା ଯାଏ ନେବାକୁ ପ୍ରସ୍ତୁତ ନଥିଲେ ।

କିନ୍ତୁ କମ୍ୟୁନିଷ୍ଟମାନଙ୍କର ଐକ୍ୟ ରଖିବାକୁ ଏକାନ୍ତ ଉଦ୍ୟମକୁ ଶ୍ରୀ ଦ୍ୱିବେଦୀଙ୍କ ମତପୋଷଣ କରୁଥିବା ସଂଖ୍ୟା ନ୍ୟୁନ ଘେନା କଲେ ନାହିଁ । ୧୯୩୯ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଓ ତା'ପରେ ସି.ଏସ୍.ପି.ରେ ବହୁ ନୂତନ ଯୁବକ ଓ ବାମପନ୍ଥୀ କଂଗ୍ରେସ ଲୋକ ଯୋଗଦେଲେ । ୧୯୪୦ ମାର୍ଚ୍ଚ ମାସ ବେଳକୁ ପାର୍ଟିରେ ଶତାଧିକ ସଭ୍ୟ । ଅବଶ୍ୟ ଦ୍ୱିବେଦୀ ଲେଖିଲାଭଳି ମନମୋହନ ମିଶ୍ର ଉକ୍ତ ପାର୍ଟିକୁ ଆସି ନଥିଲେ । ସେ ଭିନ୍ନ ମତାବଲମ୍ବୀ ଥିଲେ ପରେ କମ୍ୟୁନିଷ୍ଟ ପାର୍ଟିକୁ ଆସିଲେ ।

ଉପରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ନେତାମାନେ ଚାହିଁଲେ ଯେ କେରଳ, ଆନ୍ଧ୍ର, ଓଡ଼ିଶା ଏମିତି ଅନେକ ରାଜ୍ୟର ସି.ଏସ୍.ପି.ରେ କମ୍ୟୁନିଷ୍ଟ ମନୋଭାବାପନ୍ନ ବ୍ୟକ୍ତି ସଂଖ୍ୟା ଗରିଷ୍ଠ ।

ଯୁଦ୍ଧବେଳେ ପାର୍ଟିକୁ ଲଢୁଆ ଅବସ୍ଥାରେ ରଖିବାକୁ ହେବ, ନିର୍ବାଚିତ କମିଟିଗୁଡ଼ିକ ଦମନ ହେତୁ କାର୍ଯ୍ୟ କରିପାରିବେନି ବୋଲି ଯୁକ୍ତି କରାଗଲା । କଂଗ୍ରେସ ଯେମିତି ବିନୋବାଙ୍କୁ ପ୍ରଥମ ଡିକ୍ଟେଟର ଓ ନେହେରୁଙ୍କୁ ଦ୍ୱିତୀୟ ଡିକ୍ଟେଟର କରି ବ୍ୟକ୍ତିଗତ ସତ୍ୟାଗ୍ରହର ଡାକରା ଦେଇଛି ସେମିତି ପାର୍ଟିରେ ଡିକ୍ଟେଟର କରିଦେଲେ କମ୍ୟୁନିଷ୍ଟମାନଙ୍କ ହାତରୁ ରାଜ୍ୟ ସି.ଏସ୍.ପି.ର ନେତୃତ୍ୱ ଖସିଯିବ, ଉପର ନେତୃତ୍ୱର ଏହି ଚିନ୍ତାକୁ କାର୍ଯ୍ୟକାରୀ କରାଗଲା । ପାର୍ଟିର ସାଧାରଣ ସମ୍ପାଦକ ଶ୍ରୀ ଜୟପ୍ରକାଶ ନାରାୟଣ ୧୯୪୦ ମାର୍ଚ୍ଚରେ କଟକ ଆସିଲେ । ତାଙ୍କର ବ୍ୟକ୍ତିଗତ ବନ୍ଧୁ ଡକ୍ଟର ବଳଭଦ୍ର ପ୍ରସାଦଙ୍କ ଘରେ ଅତିଥି ହେଲେ । ରେଭେନ୍‌ସା କଲେଜ୍ ପଶ୍ଚିମ ଛାତ୍ରାବାସରେ ଶତାଧିକ ସାଥୀଙ୍କୁ ଘେନି ସଭା ବସିଲା । ସେଠାରେ ଗରମାଗରମ ଆଲୋଚନା ହେଲା । ଜୟପ୍ରକାଶ ପାର୍ଟିର କମିଟିକୁ ଭାଙ୍ଗି ଅସ୍ୱାଭାବିକ ଅବସ୍ଥାରେ ରାଜ୍ୟରେ ଡିକ୍ଟେଟର ନିଯୁକ୍ତ କରିବା ପ୍ରସ୍ତାବ ଦେବାରୁ ପ୍ରବଳ ହଟ୍ଟଗୋଳ ହେଲା । କମ୍ୟୁନିଷ୍ଟମାନଙ୍କୁ ପାର୍ଟିରୁ ବହିଷ୍କାର କରାଯିବ ଏପରି ରୋକଠୋକ୍ ପ୍ରସ୍ତାବ ଆସିଥିଲେ ଜୟପ୍ରକାଶ ନାରାୟଣ ପରାସ୍ତ ହୋଇଥାନ୍ତେ । ପଦାଧିକାର ବଳରେ ସେ ସି.ଏସ୍.ପି.କୁ ଭାଙ୍ଗିଦେଲେ ଏବଂ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଡିକ୍ଟେଟର ନିଯୁକ୍ତ କଲେ । ଅଥଚ ଶ୍ରୀ ଦ୍ୱିବେଦୀ ଲେଖିଛନ୍ତି "ଓଡ଼ିଶାରେ ମତେ ସୋସାଲିଷ୍ଟ ପାର୍ଟିର କାର୍ଯ୍ୟଭାର ଅର୍ପଣ କରାଗଲା ।" ଏହା ସଂପୂର୍ଣ୍ଣ ଭିତ୍ତିହୀନ ।

ଏହି ଦିନଠାରୁ ବସ୍ତୁତଃ ଓଡ଼ିଶାରେ ସି.ଏସ୍.ପି. ବା କଂଗ୍ରେସ ସୋସାଲିଷ୍ଟ ପାର୍ଟି ଆପେଆପେ ମିଳେଇଗଲା । ସଂଖ୍ୟାଗରିଷ୍ଠ ଅନ୍ୟ ସମସ୍ତେ ବେଆଇନ କମ୍ୟୁନିଷ୍ଟ ପାର୍ଟିରେ ସକ୍ରିୟ ଭାବରେ କାମ କଲେ । କଂଗ୍ରେସ ସୋସାଲିଷ୍ଟ ପାର୍ଟିକୁ ଏହିପରି ଭାବରେ ଭାଙ୍ଗି ଦିଆଯିବା ପରେ ୧୯୪୦ ଜୁନ୍ ୧୧ ତାରିଖରେ ବ୍ରିଟିଶ ସରକାର "କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର" ମକଦ୍ଦମା ଆରମ୍ଭ କରି କମ୍ୟୁନିଷ୍ଟମାନଙ୍କୁ ଗିରଫ କରିନେଲା । ତାହା ଏକ ସ୍ୱତନ୍ତ୍ର ବିଷୟ ।

ଶ୍ରୀ ଦ୍ୱିବେଦୀ ଦର୍ଶାଇ ପାରିବେକି ୧୯୪୦ ମାର୍ଚ୍ଚ ମାସରେ ନବକୃଷ୍ଣ ଚୌଧୁରୀ ଡିକ୍ଟେଟର ହେବା ପରେ ସି.ଏସ୍.ପି.ର ସତ୍ତା ରହିଲା ବୋଲି । ତାହା କଂଗ୍ରେସ ସଙ୍ଗରେ ମିଶିଗଲା ଏବଂ ପୁଣି ୧୯୪୬ରେ 'କଂଗ୍ରେସକୁ ଦଖଲ କରିବା'ର ସ୍ୱପ୍ନ ଭାଜି ଯିବାରୁ ପ୍ରଜା ସୋସାଲିଷ୍ଟ ପାର୍ଟି ଗଠିତ ହେଲା ।

ଦେଶରେ ସମ୍ମିଳିତ ସମାଜବାଦୀ ଆନ୍ଦୋଳନ ଉପରେ କୁଠାରଘାତ କରାଗଲା । ପ୍ରଜା ସୋସାଲିଷ୍ଟ ପାର୍ଟି, କେତେବେଳେ କୃଷକ ମଜଦୁର ପ୍ରଜା ପାର୍ଟି, ସଂଯୁକ୍ତ ସୋସଲିଷ୍ଟ ପାର୍ଟି (ଲୋହିଆଙ୍କ ସୋସଲିଷ୍ଟ ପାର୍ଟି ସହିତ ମିଶ୍ରଣ ପରେ)ର ରୂପନେଲା । ଏବେ ପ୍ରଜା ସୋସଲିଷ୍ଟ ପାର୍ଟି ଓ ସଂଯୁକ୍ତ ସୋସଲିଷ୍ଟ ପାର୍ଟି ବା ସୋସଲିଷ୍ଟ ପାର୍ଟିର ସତ୍ତା ନାହିଁ । ଉତ୍କଟ କମ୍ୟୁନିଷ୍ଟ ବିରୋଧିତା ହେତୁ ଯେଉଁମାନେ ସୋସଲିଷ୍ଟ ଚିନ୍ତାଧାରା ଘେନି ରାଜନୀତିକୁ ଆସିଥିଲେ ଶ୍ରୀ ଦ୍ୱିବେଦୀ ଓ ତାଙ୍କ ଭଳି ନେତାଙ୍କ ହେତୁ ଆଜି ସେମାନେ କିଏ ଜନତା ଦଳ, କିଏ ଲୋକଦଳରେ ସାମିଲ ହୋଇଛନ୍ତି, ଯାହାର ନେତୃମଣ୍ଡଳୀ ଏହି ଭାରତରେ ସ୍ଥିତାବସ୍ଥା ଚାହାନ୍ତି । ସମାଜବାଦ ତ ଦୂରର କଥା କୌଣସି ପ୍ରଗତିଶୀଳ ସଂସ୍କାରର ଏପରି ଦଳଗୁଡ଼ିକ ବିରୋଧୀ ।

ଓଡ଼ିଶାରେ ପ୍ରତିକ୍ରିୟାଶୀଳ ସ୍ୱତନ୍ତ୍ର ପାର୍ଟିର ସରକାରକୁ ସମର୍ଥନ କରିବା ଭଳି କାର୍ଯ୍ୟକୁ ମଧ୍ୟ ଶ୍ରୀ ଦ୍ୱିବେଦୀ ଯଥାର୍ଥ ବୋଲି ଦର୍ଶାଇଛନ୍ତି ।

କମ୍ୟୁନିଷ୍ଟ ପାର୍ଟି ପ୍ରତି ତାଙ୍କର ଅସୂୟା ସତ୍ୱେ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ସର୍ବଦା ବାମପନ୍ଥୀ ଶକ୍ତିଙ୍କ ଐକ୍ୟ କାମନା କରିଆସିଛି । ପ୍ରଜା ସୋସଲିଷ୍ଟ ପାର୍ଟି ପକ୍ଷରୁ ରାଜ୍ୟସଭାକୁ ସର୍ବଶ୍ରୀ ବାଙ୍କ ବିହାରୀ ଦାସ, ରାଧାକୃଷ୍ଣ ବିଶ୍ୱାସରାୟ ପ୍ରାର୍ଥୀ ହେବାବେଳେ କମ୍ୟୁନିଷ୍ଟ ଏମ୍.ଏଲ୍.ଏ.ମାନଙ୍କ ଭୋଟ ନ ପାଇଥିଲେ, ସେମାନେ ଜିଣିଥାଆନ୍ତେ କି ? ସୌଜନ୍ୟ ଓ ସତ୍ୟତା ଦୃଷ୍ଟିରୁ ଶ୍ରୀ ଦ୍ୱିବେଦୀ ତ ଏହି ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣାକୁ ଉଲ୍ଲେଖ କରିନାହାନ୍ତି ।

ସବୁଠୁ ହସ ମାଡ଼େ ତାଙ୍କର ଆଉ ଏକ ଚମତ୍କାର ନିର୍ଦ୍ଧାରଣରେ । ନିଜ ପ୍ରଜା ସୋସାଲିଷ୍ଟ ପାର୍ଟିର ସତ୍ତାକୁ ଲୋପ କରି ଏବଂ ଚମତ୍କାର ଯୁବକ ଓ ପ୍ରୌଢ଼ ସାଥୀମାନଙ୍କୁ ଜନତା ଓ ଲୋକଦଳରେ ସାମିଲ କରାଇ ଶ୍ରୀ ଦ୍ୱିବେଦୀ ଏମରଜେନ୍‌ସି ବେଳେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପରାମର୍ଶରେ ଓଡ଼ିଶା ପ୍ଲାନିଂ କମିଟିର ସବେତନ ଭାଇସ ଚେୟାରମେନ ହେବା ବିଷୟଟିକୁ

ମଧ୍ୟ ଯଥାର୍ଥ ବୋଲି ପ୍ରତିପାଦନ କରିଛନ୍ତି । ଅର୍ଥାତ୍ ଜୀବନରେ ସେ ଯାହା କରିଛନ୍ତି ସବୁ ଠିକ୍, ଅନ୍ୟମାନେ ଯାହା କରିଛନ୍ତି ତାହା ନଗଣ୍ୟ ।

ଏହି ଦୃଷ୍ଟିଭଙ୍ଗୀ ହେତୁ ସେ ଓଡ଼ିଶାର ରାଜନୈତିକ ମହଲ ଓ ଭାବୀ ବଂଶଧରଙ୍କୁ ଆଉ ଏକ "ସତ୍ୟ" ଉପହାର ଦେଇଛନ୍ତି ।

ସେ ଲେଖିଛନ୍ତି, "ଭାରତୀୟ କମ୍ୟୁନିଷ୍ଟ ପାର୍ଟିକୁ କେବେହେଲେ ଜାତୀୟ ଶକ୍ତି ରୂପେ ବା ଜାତୀୟ ସ୍ୱାର୍ଥ ସେମାନଙ୍କର ପରମ ସ୍ୱାର୍ଥ ବୋଲି କୁହାଯାଇପାରିବ ନାହିଁ ।"

(ପୃ-୧୦୪) ୧୯୪୦-୪୧ ବେଳେ ଏପରି ଏକ କଞ୍ଚା, ପିଲାଳିଆ ଗାଳି ଦେଇଥିଲେ ଶ୍ରୀ ଦ୍ୱିବେଦୀଙ୍କୁ ଦୋଷ ଦେଇ ହୁଅନ୍ତା ନାହିଁ ।

ମାତ୍ର ୧୯୮୪ରେ ଏପରି ମନ୍ତବ୍ୟ ? ୧୯୫୧ ନିର୍ବାଚନରେ ପ୍ରଜା ସୋସଲିଷ୍ଟ ପାର୍ଟି ନୁହଁ, ସି.ପି.ଆଇ. ହିଁ ଭାରତର ପାର୍ଲିଆମେଣ୍ଟରେ ଦ୍ୱିତୀୟ ସଂଖ୍ୟା ଗରିଷ୍ଠ ଦଳ ହେଲା । ଏହି ପାର୍ଟି ୧୯୫୭ରେ କେରଳରେ ଏକକ କମ୍ୟୁନିଷ୍ଟ ମନ୍ତ୍ରୀମଣ୍ଡଳ ଗଢ଼ିଲା । ପାର୍ଟି କର୍ମକୌଶଳ ଦୃଷ୍ଟିରୁ ବିଭାଜିତ ହେଲେ ମଧ୍ୟ କେରଳରେ ସେମାନେ ବାମପନ୍ଥୀ ସରକାର ଗଠନ କଲେ । ପଶ୍ଚିମବଙ୍ଗ, ତ୍ରିପୁରାର ଦୃଷ୍ଟାନ୍ତ ନିଅନ୍ତୁ । କେଉଁଠି ପ୍ରଜା ସୋସଲିଷ୍ଟ ପାର୍ଟି ଅବା ସେ ଯେତେପ୍ରକାର ସୋସଲିଷ୍ଟ ପାର୍ଟି ଗଢ଼ିଛନ୍ତି, ତାହା ପାର୍ଲିଆମେଣ୍ଟରେ ବିରୋଧୀ ଦଳର ମର୍ଯ୍ୟାଦା ପାଇଛି, କେଉଁ ରାଜ୍ୟରେ ସରକାର ଗଢ଼ିପାରିଛି ?

ଆଉ ଜାତୀୟ ସ୍ୱାର୍ଥ କଥା ? ଶ୍ରୀ ଦ୍ୱିବେଦୀ ଜାତୀୟ ସ୍ୱାର୍ଥ ବୋଲି ବୁଝନ୍ତି ଆମେରିକା ପକ୍ଷପାତୀ ହେବା ଓ ସୋଭିଏତ ବିରୋଧିତା କରିବା ହିଁ ଜାତୀୟ ସ୍ୱାର୍ଥ । ତାଙ୍କର ଏକ ଉକ୍ତି ଦେଖନ୍ତୁ । ଚୀନ ଭାରତ ସଂଘର୍ଷ ବେଳେ ସେ ପରରାଷ୍ଟ୍ରମନ୍ତ୍ରୀ କୃଷ୍ଣ ମେନନଙ୍କୁ ଦୋଷ ଦେଇ ଲେଖିଛନ୍ତି, "କୃଷ୍ଣ ମେନନଙ୍କର ଆମେରିକା ବିରୋଧୀ ଓ ଋଷ ସପକ୍ଷପାତୀ ମତବାଦ ହେତୁ ଦେଶ ମହାବିପଦର ସମ୍ମୁଖୀନ ହେଲା ?" (ପୃ-୩୧) ଉକ୍ତ ଅଧ୍ୟାୟରେ ସେ ମଧ୍ୟ କମ୍ୟୁନିଷ୍ଟଙ୍କୁ "ପଞ୍ଚମବାହିନୀ" ଆଖ୍ୟା ଦେଇଛନ୍ତି । ଶ୍ରୀ ଦ୍ୱିବେଦୀଙ୍କ ଦେଶପ୍ରେମର ଚମତ୍କାର ନଜିର । କାଶ୍ମୀର, ଗୋଆ, ବଙ୍ଗଳାଦେଶ ଏମିତି ସବୁକ୍ଷେତ୍ରରେ ଯିଏ ଭାରତ ବିରୁଦ୍ଧରେ ଯାଇଛି, ସେ ହେବ ପରମ ବନ୍ଧୁ । ଆଉ ଯେଉଁ ସୋଭିଏତ୍ ୟୁନିଅନ୍ ଭେଟୋ ପ୍ରୟୋଗ କରି ଭାରତର ସ୍ୱାଧୀନତା, ସାର୍ବଭୌମତ୍ୱକୁ ରକ୍ଷା କରିଛି ତାକୁ ଦୂଷ୍ମନ କୁହାଯିବ । ପାକିସ୍ତାନର ଦୁଇ ଦୁଇ ଥର ଭାରତ ଆକ୍ରମଣ ବେଳେ ଆମେରିକା ତାକୁ ସାହାଯ୍ୟ କରିଛି ଓ ଭାରତବର୍ଷ ପକ୍ଷରେ ସୋଭିଏତ୍ ୟୁନିଅନ୍ ଛିଡ଼ା ହୋଇଛି – କିଏ ମିତ୍ର, କିଏ ଶତ୍ରୁ ଆମର ! ବଙ୍ଗଳାଦେଶ ମୁକ୍ତିବେଳେ ଭାରତ ମହାସାଗରକୁ ଆମେରିକା ସପ୍ତମ ନୌଭେଳା ପଠାଇଛି । ସୋଭିଏତ ୟୁନିଅନ ଭାରତ ପକ୍ଷରେ ତା'ର ଭେଳା ନ ପଠାଇଥିଲେ ଭାରତର ସ୍ୱାଧୀନତା ରହିଥାନ୍ତା କି ? ଭାରତ ମହାସାଗରରେ ପରମାଣୁ ଘାଟୀ କରିବା, ପାକିସ୍ତାନକୁ ସମସ୍ତ ମାରଣାସ୍ତ୍ର ଯୋଗାଇବା, ଶ୍ରୀଲଙ୍କାକୁ

ଭାରତ ବିରୋଧରେ ସାହାଯ୍ୟ କରିବା ଆମେରିକା କରୁ ପଛକେ, ଆମ ଦେଶକୁ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ଋଣରେ ଶୋଷଣ କରୁ ପଛେ ସେ ହେବ ଶ୍ରୀ ଦ୍ୱିବେଦୀଙ୍କ ଦୃଷ୍ଟିରେ ଆମର ମିତ୍ର । ମାତ୍ର ଭାରତର ୮୦ ଯାଏ ବୃହତ୍ ଶିଳ୍ପ ପ୍ରତିଷ୍ଠାରେ, ବିଜ୍ଞାନ, କୃଷି, ପ୍ରତିରକ୍ଷା ସମସ୍ତ କ୍ଷେତ୍ରରେ ଆମକୁ ସାହାଯ୍ୟ କରିଥିବା ସୋଭିଏତ ୟୁନିଅନ ଆମର ଶତ୍ରୁ ହେବ ।

ଶ୍ରୀ ଦ୍ୱିବେଦୀ ଯେତେ ଅବାଞ୍ଛିତ ଗାଳିଗୁଲଜ କଲେ ସୁଦ୍ଧା କମ୍ୟୁନିଷ୍ଟମାନେ ଭାରତର ସ୍ୱାଧୀନତା, ସାର୍ବଭୌମତ୍ୱ ରକ୍ଷା ଲାଗି, ତା'ର ଆର୍ଥିକ ଉନ୍ନୟନ ଲାଗି ତା'ର ଶାନ୍ତିକାମୀ ଗୋଷ୍ଠୀ ନିରପେକ୍ଷ ନୀତି ପ୍ରତି ଯିଏ ସମର୍ଥନ ଦେବ ତା' ସପକ୍ଷରେ ରହିବ । ତାହାହିଁ ଦେଶପ୍ରେମ । ତାହା କେବେ ହେଁ ଭାରତର ନୁହଁ, ସାରା ପୃଥିବୀର ଜନସାଧାରଣଙ୍କ ଶତ୍ରୁତା କରୁଥିବା, ଚାରିଆଡ଼େ ଯୁଦ୍ଧ କନ୍ଦଳ ଭିଆଉଥିବା ଓ ପରମାଣୁ ଯୁଦ୍ଧରେ ପୃଥିବୀକୁ ନିର୍ମୂଳ କରିବାକୁ ଚାହୁଁଥିବା ଆମେରିକାକୁ ସମର୍ଥନ କରିବ ନାହିଁ – ଅର୍ଥାତ ୱାସିଂଟନ ଦେଶପ୍ରେମୀ ହୋଇପାରିବ ନାହିଁ ।

ଶ୍ରୀ ଦ୍ୱିବେଦୀଙ୍କ ବହିରେ ଯେତେ ଅର୍ଦ୍ଧସତ୍ୟ ଅଛି, ତାହାର ଉତ୍ତର ଦେବା ଏକ ଗ୍ରନ୍ଥ ହେବ । ତେବେ ତାଙ୍କ ବହିର ପ୍ରଥମ ପୃଷ୍ଠାର ଶେଷ ପାରାଟି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

ସେ ଲେଖିଛନ୍ତି "ମୁଁ ଜାତକରେ ବିଶ୍ୱାସ କରେ ନାହିଁ । କିନ୍ତୁ ମୁଁ ବିଶ୍ୱବିଜୟ କରେ ନକରେ, ସାରା ବିଶ୍ୱ ପର୍ଯ୍ୟଟନ କରିସାରିଛି ।"

ପୃଥିବୀର ବିଭିନ୍ନ ଦେଶ ଭ୍ରମଣର ରେକର୍ଡ଼ ଭାଙ୍ଗିଛନ୍ତି, ଆମ ଦେଶର ନାବିକମାନେ, ଜାହାଜର କର୍ମଚାରୀମାନେ । ତାଙ୍କଠାରୁ ଅଧିକ ରେକର୍ଡ଼ ଭାଙ୍ଗିଛନ୍ତି ଆମ ଦେଶର ପ୍ରଧାନମନ୍ତ୍ରୀ, ରାଷ୍ଟ୍ରପତି ଓ ବଡ଼ ବଡ଼ ହାକିମମାନେ । ତାଙ୍କଠାରୁ ଅଧିକ ଦେଶ ଦେଖିଥିବା ବିଭିନ୍ନ ଦଳର ପ୍ରତିନିଧି ଦଳରେ ଯାଉଥିବା ପାର୍ଲିଆମେଣ୍ଟ ସଦସ୍ୟମାନେ ।

ପ୍ରଥମ ପୃଷ୍ଠାରୁ ହିଁ ତାଙ୍କର ଅହମିକାର ଆରମ୍ଭ । ବିଶ୍ୱ ବିଜୟର ସ୍ୱପ୍ନ ସତରେ ଦେଖିଥିଲେ ଚେଙ୍ଗିଜ୍ ଖାଁ, ତୈମୁରଲଙ୍ଗ, ଗ୍ରୀସ୍‌ର ଆଲେକ୍‌ଜାଣ୍ଡର, ଫ୍ରାନ୍‌ସର ନେପୋଲିୟନ ଓ ଏ ଶତାବ୍ଦୀର ହିଟଲର । ଏହି ପ୍ରକାର ଅହଂଭାବ ହିଁ ଶ୍ରୀ ଦ୍ୱିବେଦୀଙ୍କ "ମୋ ଜୀବନ ସଂଗ୍ରାମ" ପୁସ୍ତକର ଛତ୍ରେ ଛାତ୍ର ପରିସ୍ଫୁଟ । ଇତିହାସର ଏହାଠାରୁ ଅଧିକ ବିକୃତୀକରଣ ଆଉ କ'ଣ ହୋଇପାରେ ?

□□□

ରଚନା କାଳ – ୧୯୮୪

# ମରୁଡ଼ିଗ୍ରସ୍ତ ଅଞ୍ଚଳ ପାଇଁ ସ୍ୱତନ୍ତ୍ର ମାଷ୍ଟରପ୍ଲାନ୍ ପ୍ରସ୍ତୁତ କରାଯାଉ

କମ୍ୟୁନିଷ୍ଟ ପାର୍ଟିର ରାଜ୍ୟ ସମ୍ପାଦକ ତଥା ଲୋକସଭାରେ ସିପିଆଇର ଉପନେତା ଲୋକନାଥ ଚୌଧୁରୀ ଗତ ଜୁଲାଇ ୩୦ ତାରିଖଦିନ ଲୋକସଭାରେ କୃଷି ବିଭାଗର ଆଲୋଚନାରେ ଅଂଶଗ୍ରହଣ କରି ନିମ୍ନଲିଖିତ ବକ୍ତବ୍ୟ ଉପସ୍ଥାପନ କରିଛନ୍ତି ।

ସେ କହିଲେ- ପାର୍ଲାମେଣ୍ଟର ଚଳିତ ଅଧିବେଶନରେ ମରୁଡ଼ି ସମ୍ପର୍କରେ ଅନେକ ପ୍ରଶ୍ନ ପଚରାଯାଇଛି ଏବଂ କୃଷିମନ୍ତ୍ରୀ ତା'ର ଉତ୍ତର ମଧ ଦେଇଛନ୍ତି । ଦାବୀ ହୋଇଛି, ମରୁଡ଼ି ରିଲିଫ ବାବଦକୁ ସରକାର କେତେ ଟଙ୍କା ଦେବେ ? ମୋ' ଜାଣିବାରେ ବିଗତ ୩ ବର୍ଷ ମଧରେ ମରୁଡ଼ି ସମ୍ପର୍କରେ ଲୋକସଭାରେ ଅନେକ ଥର ଆଲୋଚନା ହୋଇଛି । ମନ୍ତ୍ରୀ ଆସିଛନ୍ତି ଓ ଯାଇଛନ୍ତି । ସମସ୍ତେ ଗୋଟିଏ ଉତ୍ତର ଦେଇଛନ୍ତି, ନବମ ଅର୍ଥ କମିଶନର ନିର୍ଦ୍ଦେଶାବଳୀ ଅନୁଯାୟୀ ରିଲିଫ ମଞ୍ଜୁର କରାଯାଇଛି । ଏଣୁ ଆଜିକାର ଆଲୋଚନାରେ କୃଷିମନ୍ତ୍ରୀ କ'ଣ ନୂଆ ଉତ୍ତର ଦେବେ ତାହା ମୁଁ ଜାଣେ ନା ।

ମୋ' ମତରେ ଆମେ ସମୁଚିତ ପଦକ୍ଷେପ ଗ୍ରହଣ କରୁ ନ ଥିବାରୁ ଏବଂ ଆମ ଦେଶର ନଦୀଗୁଡ଼ିକୁ ନିୟନ୍ତ୍ରଣ କରିବା ପାଇଁ ଯଥେଷ୍ଟ ସମ୍ବଳ ବିନିଯୋଗ କରାଯାଇ ପାରୁ ନ ଥିବାରୁ ଜଳସେଚନର ଉପଯୁକ୍ତ ବ୍ୟବସ୍ଥା ଇତ୍ୟାଦି ନ ଥିବାରୁ ଏଭଳି ପ୍ରାକୃତିକ ଦୁର୍ବିପାକମାନ ଘଟୁଛି ।

ମୁଁ ଯେଉଁ ମୁଖ୍ୟ ବିଷୟଟି କହିବାକୁ ଚାହେଁ, ତାହା ହେଉଛି, ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ କ୍ରମଶଃ ବୃଦ୍ଧି ପାଉଥିବାର ଲକ୍ଷ୍ୟ କରାଯାଉଛି । ଏହିସବୁ ମରୁଡ଼ିଗ୍ରସ୍ତ ଅଞ୍ଚଳକୁ ୨ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଦେଶରେ କେତେକ ଅଞ୍ଚଳ ଅଛି ଯେଉଁଠାରେ କି କ୍ରମାଗତ ଭାବରେ ବର୍ଷ ବର୍ଷ ଧରି ମରୁଡ଼ି ଲାଗିରହୁଛି । ଓଡ଼ିଶାର କଳାହାଣ୍ଡି ଓ ବଲାଙ୍ଗିର ଜିଲ୍ଲା ଏହି ପ୍ରଥମ ଶ୍ରେଣୀର ଅନ୍ତର୍ଭୁକ୍ତ । ସେଠାରେ କ୍ରମାଗତ ଭାବରେ ମରୁଡ଼ି ଲାଗି ରହିଛି । ଏଣୁ ଏହାକୁ ମରୁଡ଼ି ନୁହେଁ, ଭୟାବହ ଦୁର୍ଭିକ୍ଷଗ୍ରସ୍ତ ଅଞ୍ଚଳ ବୋଲି କୁହାଯିବା ଉଚିତ । ସେଠାରେ ପେଟବିକଳରେ ମାଆ ତା'ର ସନ୍ତାନକୁ ମାତ୍ର ୪୦ ଟଙ୍କାରେ ବିକ୍ରି କରିଥିବାର ନଜିର ରହିଛି ଏବଂ କ୍ରମାଗତ ମରୁଡ଼ି ଫଳରେ ୧୯୭୫ ମସିହାଠାରୁ ହଜାର ହଜାର ଲୋକ ନିଜର ଭିଟାମାଟି ଛାଡ଼ି ଅନ୍ୟତ୍ର ବାହାରକୁ ଚାଲିଯିବାରେ ଲାଗିଛନ୍ତି । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ଥିଲା

ବେଳେ କଳାହାଣ୍ଡି ଜିଲ୍ଲା ଗସ୍ତରେ ଯାଇଛନ୍ତି । ବଲାଙ୍ଗୀର ଜିଲ୍ଲାକୁ ମଧ୍ୟ ଯାଇଛନ୍ତି । ସେଠାକାର ଦୃଶ୍ୟ ଏପରି ହୃଦୟ ବିଦାରକ ଓ ମର୍ମସ୍ପର୍ଶୀ ଯେ ଇନ୍ଦିରା ଗାନ୍ଧୀ ତାହା ଦେଖି ଭାବବିହ୍ୱଳାହୋଇ ପଡ଼ିଥିଲେ । ସେଇ ଦିନଠାରୁ ଇତିମଧ୍ୟରେ ପ୍ରାୟ ୨ ଦଶନ୍ଧି ବିତିଯିବାକୁ ବସିଥିଲେ ସୁଦ୍ଧା ଲୋକମାନଙ୍କ ଦୁଃଖ, ଦୁର୍ଦ୍ଦଶାମୋଚନ ପାଇଁ କିଛି ହେଲା କରାଯାଇ ନାହିଁ ।

ସେଇ ଭଳି ଆନ୍ଧ୍ରପ୍ରଦେଶର ରୟାଲସୀମା ଅଞ୍ଚଳ ମଧ୍ୟ କ୍ରମାଗତ ଭାବେ ମରୁଡ଼ି ଦ୍ୱାରା ପ୍ରପୀଡ଼ିତ । ମୁଁ ଯେତିକି ଜାଣିଛି, ମହାରାଷ୍ଟ୍ରର ୨୬ଟି ଜିଲ୍ଲାରେ କ୍ରମାଗତ ଭାବେ ମରୁଡ଼ି ଲାଗି ରହୁଛି ।

ମରୁଡ଼ି ହେଲେ, ରିଲିଫ ପ୍ରଶ୍ନ ଆସିବା ସ୍ୱାଭାବିକ ଏବଂ ଆସୁଛି ମଧ୍ୟ । ଆମେ ଅଧିକ ରିଲିଫ ପାଇଁ ଆଲୋଚନା କରୁଛୁ । କିନ୍ତୁ ରିଲିଫଠାରୁ ଅଧିକ ଆବଶ୍ୟକ ହେଉଛି ଦେଶର କେଉଁସବୁ ଅଞ୍ଚଳ କ୍ରମାଗତ ଭାବେ ମରୁଡ଼ି ପ୍ରପୀଡ଼ିତ ହେଉଛି ତାକୁ ଚିହ୍ନଟ କରିବା ଏବଂ ଏହି ମରୁଡ଼ିକୁ କିପରି ରୋକାଯାଇପାରିବ, କିପରି ପ୍ରତିହତ କରିହେବ ସେଥିପାଇଁ ଜାତୀୟସ୍ତରରେ ଏକ ନୀତି, ଯୋଜନାବଦ୍ଧ ପଦକ୍ଷେପ ଗ୍ରହଣ କରିବା ।

ସେହଭଳି ଆମ ଦେଶରେ ଆଉ କେତେକ ଅଞ୍ଚଳ ଅଛି ଯାହାକି କ୍ରମାଗତ ଭାବେ ବନ୍ୟା ଓ ବାତ୍ୟା ଦ୍ୱାରା କବଳିତ । ଆପଣମାନେ ଜାଣନ୍ତି, ଓଡ଼ିଶାରେ ଉକ୍ତ ୬ ମାସ ମଧ୍ୟରେ ଦୁଇ ଦୁଇଥର ବାତ୍ୟା ହୋଇଗଲାଣି । ଆପଣମାନେ କଳ୍ପନା କରି ପାରିବେ ନାହିଁ, ବାତ୍ୟା ଆସିଲେ ତା'ର କରାଳ କବଳରେ କିପରି ସବୁ କିଛି ଧ୍ୱସ୍ତବିଧ୍ୱସ୍ତ ହୋଇଯାଏ । ସେମାନଙ୍କର ସର୍ବସ୍ୱ ଚାଲିଯାଏ । ବନ୍ୟା, ବାତ୍ୟା ଓ ମରୁଡ଼ି ହେଉଛି ଓଡ଼ିଶାର ଚିର ସହଚର । ଓଡ଼ିଶାର କେତେକ ଅଞ୍ଚଳରେ ଲଗାତର ମରୁଡ଼ି ଲାଗି ରହିବା ଓ ଅନ୍ୟାନ୍ୟ କେତେକ ଅଞ୍ଚଳ କ୍ରମାଗତ ଭାବେ ପ୍ରଳୟଙ୍କରୀ ବନ୍ୟା ଓ ବାତ୍ୟାର କବଳିତ ହେବା, ମୋ' ମତରେ ଓଡ଼ିଶା ଗରିବ ପ୍ରଦେଶ ହେବାର ଅନ୍ୟତମ କାରଣ ।

ଏଣୁ ସ୍ୱାଧୀନତାର ୪୫ ବର୍ଷ ପରେ ଆଜି ଆମକୁ ଏହିସବୁ ଅଞ୍ଚଳର ଅର୍ଥନୀତିକୁ ସ୍ୱାଭାବିକ ସ୍ତରକୁ ଫେରାଇ ଆଣିବା ପାଇଁ ଚିନ୍ତା କରିବାକୁ ପଡ଼ିବ । ସମୟ ଗଡ଼ିଯାଇଛି । ସରକାର ବର୍ତ୍ତମାନ କ୍ରମାଗତ ବନ୍ୟା, ବାତ୍ୟା ଓ ମରୁଡ଼ିଗ୍ରସ୍ତ ଅଞ୍ଚଳକୁ ତୁରନ୍ତ ଚିହ୍ନଟ କରନ୍ତୁ ଏବଂ ଏହାର ପ୍ରତିକାର ପାଇଁ ମାଷ୍ଟର ପ୍ଲାନ ପ୍ରସ୍ତୁତ କରାଯାଇ ତାକୁ କାର୍ଯ୍ୟକାରୀ କରାଯାଉ । ଏହା କରିବା ପାଇଁ କେବଳ ମୋ' ରାଜ୍ୟ ନୁହେଁ, କୌଣସି ରାଜ୍ୟ ସମର୍ଥ ହେବେ ନାହିଁ । ଏଣୁ ଏହାର ଦାୟିତ୍ୱ କେନ୍ଦ୍ର ସରକାର ବହନ କରି ଏହି ମହାନ୍ କାର୍ଯ୍ୟରେ ସହଯୋଗ ପାଇଁ ସଂପୃକ୍ତ ରାଜ୍ୟ ସରକାରମାନଙ୍କୁ ଆହ୍ୱାନ କରିବା ଉଚିତ ।

ଆଶାକରେ ମାନ୍ୟବର ସଦସ୍ୟମାନେ ଏବଂ ମାନ୍ୟବର ଭାରତର କୃଷିମନ୍ତ୍ରୀ ମୋର ଏହି ପ୍ରସ୍ତାବକୁ ଗୁରୁତର ସହିତ ବିଚାର କରିବେ । ❑❑❑

# ଦେଶ ଓ ସମାଜ ବିଭାଜନକାରୀ ହିନ୍ଦୁତ୍ୱବାଦୀଙ୍କୁ ପଚାର !

୧୯୯୨ ଡିସେମ୍ବର ୬ ତାରିଖ । ଭାରତବର୍ଷର ପାଞ୍ଚ ସହସ୍ରାଧିକାଳର ସଭ୍ୟତା, ସଂସ୍କୃତି, ମାନବିକ ମୂଲ୍ୟବୋଧ ଲାଗି ଏକ କଳଙ୍କର ଦିନ । ଦେଶର ସମ୍ବିଧାନ, ବିଚାରାଳୟ, ସଂସଦ, ପ୍ରତି ଆନୁଗତ୍ୟର ପ୍ରତିଶ୍ରୁତି ଦେଇ ବିଜେପିର ତୁଙ୍ଗ ନେତାମାନଙ୍କ ଉପସ୍ଥିତିରେ ଉତ୍ତରପ୍ରଦେଶର ବିଜେପି ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶରେ ବାବରୀ ମସ୍‌ଜିଦ୍‌କୁ ଭୂଲୁଣ୍ଠିତ କରାଗଲା ।

ସମ୍ବିଧାନରେ ନିର୍ଦ୍ଦେଶିତ ଧର୍ମ ନିରପେକ୍ଷ ରାଷ୍ଟ୍ରନୀତିକୁ ରକ୍ଷା କରିବାର ପ୍ରତିଶ୍ରୁତି ଦେଶବାସୀଙ୍କୁ ଓ ସଂସଦକୁ ଦେଇ, କଂଗ୍ରେସ ପ୍ରଧାନମନ୍ତ୍ରୀ ନରସିଂହ ରାଓ ବାବ୍‌ରୀ ମସ୍‌ଜିଦ୍ ଧ୍ୱଂସର ତାଣ୍ଡବକୁ ନିଜ କର୍ମ ଦ୍ୱାରା ପ୍ରୋତ୍ସାହିତ କଲେ ।

ଏବେ ପୁଣି ଉତ୍ତର ପ୍ରଦେଶରେ ବି.ଏସ୍.ପି., ବିଜେପି ଭାଗ ବଣ୍ଟୁଆରୀରେ ବାବ୍‌ରୀ ମସ୍‌ଜିଦ୍ ଭାଙ୍ଗିବା ଲାଗି ସମସ୍ତ ବ୍ୟବସ୍ଥା କରିଥିବା ବ୍ୟକ୍ତି ମୁଖ୍ୟମନ୍ତ୍ରୀ । କ୍ଷମତାକୁ ଆସିବା ଦିନ ଅଯୋଧ୍ୟାରେ ରାମ ମନ୍ଦିର ନିର୍ମାଣ କରାଯିବ ବୋଲି ଘୋଷଣା କଲେ । ପରଦିନ ବାବ୍‌ରୀ ମସ୍‌ଜିଦ୍ ପରିସରରେ ଗୋପନରେ ବସାଯାଇଥିବା ରାମଲୀଳା ଆସ୍ଥାନରେ ପୂଜା ଅର୍ଚ୍ଚନା କରି ପୁନର୍ବାର ଦେଶବ୍ୟାପି ସାମ୍ପ୍ରଦାୟିକ ଉତ୍ତେଜନା ସୃଷ୍ଟିର ଅଶୁଭାରମ୍ଭ କରିଛନ୍ତି ମୁଖ୍ୟମନ୍ତ୍ରୀ କଲ୍ୟାଣ ସିଂହ । ଭାରତରେ ତିନି ଶହ ମସ୍‌ଜିଦ୍ ଭଙ୍ଗାଯିବ, ବନାରସ ଓ ମଥୁରାରେ ପ୍ରଥମେ ମସ୍‌ଜିଦ୍ ଭଙ୍ଗାଯିବ ବୋଲି ବିଜେପି ତା'ର ସାମ୍ମୁଖ୍ୟ ସଂଗଠନ, ଆରଏସ୍‌ଏସ୍ ବିଶ୍ୱହିନ୍ଦୁ ପରିଷଦ, ବଜରଙ୍ଗ ଦଳ, ହିନ୍ଦୁ ଜାଗରଣ ସମିତି ହୁଙ୍କାର ଦେଇ ଆସୁଛନ୍ତି ।

ଧର୍ମ ନାମରେ, ବିଶ୍ୱାସ ନାମରେ ସାମ୍ପ୍ରଦାୟିକତା ବିଷ ଚହଟାଇ ଦେଲେ, ସେ ବିଷ ମଣିଷର ମନକୁ ଆକ୍ରାନ୍ତ କରେ । ତାହା ଯେଉଁ ଦେଶ ହେଉନା କାହିଁକି ଥରେ ସାମ୍ପ୍ରଦାୟିକତାର ବିଷରେ ଉଦ୍‌ଭ୍ରାନ୍ତ ସେହି ଦେଶ ଓ ସମାଜର ଗୋଟିଏ ମଣିଷ ଗୋଷ୍ଠୀ, ଆଉ ଏକ ମଣିଷ ଗୋଷ୍ଠୀ ବିରୋଧରେ ଦ୍ୱେଷ, ଘୃଣାରେ ଜର୍ଜରିତ ହୁଏ । ତାହା ମଧ୍ୟ ଆକ୍ରାନ୍ତ ମଣିଷ ଗୋଷ୍ଠୀରେ ଅନୁରୂପ ଦ୍ୱେଷ ଘୃଣା, ପ୍ରତିଶୋଧର ଦାବାଗ୍ନି ପ୍ରଜ୍ଜ୍ୱଳିତ କରେ । ତା'ପରେ ଏହି ସାମ୍ପ୍ରଦାୟିକତା ବିଷରେ ଆକ୍ରାନ୍ତ ମଣିଷ ଗୋଷ୍ଠୀମାନେ ହିତାହିତ ଜ୍ଞାନ, ମାନବିକ ମୂଲ୍ୟବୋଧ, ଆପଣାର

ସଂସ୍କୃତିକୁ ହରାଇ ବସନ୍ତି । ତେଣିକି ଠେଙ୍ଗାବାଡ଼ି, କାତି କଟୁରୀ, ଭୁଜାଲି, ବୋମା, ବନ୍ଧୁକ, ତରବାରୀ ଏମିତିକି ତ୍ରିଶୂଳ ପରି ଧର୍ମୀୟ ସଂକେତଗୁଡ଼ିକୁ ବିଷ ଜର୍ଜରିତ ମଣିଷ ଗୋଷ୍ଠୀ ଧର୍ମ ଧ୍ୱଜା ରୂପେ ହାତରେ ଧରେ । ଚାଲେ ନରସଂହାର, ଲୁଟ୍‌ପୋଟ, ନାରୀ ଧର୍ଷଣ, ଶିଶୁ, ବୃଦ୍ଧବୃଦ୍ଧା ହତ୍ୟାର ନିର୍ବିକାର ତାଣ୍ଡବ । ମଣିଷ ପଶୁ ପାଲଟିଯାଏ । ଆମ ଦେଶରେ ତାହା ହିନ୍ଦୁ, ମୁସଲମାନ ହେଉ । ପାକିସ୍ଥାନରେ ବା ଇରାନ୍‌ରେ ସିହା-ସୁନ୍ନି ହେଉ, ଅବା କେଉଁ ଖ୍ରୀଷ୍ଟିୟାନ୍ ଦେଶରେ କାଥଲିକ୍ ପ୍ରୋଟେଷ୍ଟାଣ୍ଟ ହେଉ, ସେମାନଙ୍କ ଭିତରେ ଥରେ ସାମ୍ପ୍ରଦାୟିକତାର ବିଷ ବ୍ୟାପିଗଲେ, ପରିଣତି ଭୟାବହ ହୁଏ । ଏପରି ଧର୍ମୀୟ ମତାନ୍ଧତାର ବିଷ ମଣିଷ ମନକୁ ଏପରି ଗ୍ରାସ କରେ ଯେ, ଆମେ ଓଡ଼ିଶାରେ ଦୋ ପର୍ବ ବେଳେ ଏ ଗାଁ ପ୍ରେମୀ କୃଷ୍ଣ ଓ ସେ ଗାଁ କୃଷ୍ଣଙ୍କ ବିମାନକୁ ଭାଙ୍ଗନ୍ତି । ଏ ସାହି ଗଣେଶ ଓ ସେ ସାହି ଗଣେଶଙ୍କୁ ହତ୍ୟା ଚାଲେ । ଦେବୀ ମେଢ଼ ଭଙ୍ଗାଟୁଟା ହୋଇ ମଝି ରାସ୍ତାରେ ପଡ଼େ । ସାମ୍ପ୍ରଦାୟିକତାର ବିଷ ଖାଲି ଅପର ମଣିଷ ଗୋଷ୍ଠୀ ଧର୍ମାବଲମ୍ବୀଙ୍କ ବିରୋଧରେ ଯାଏ ନାହିଁ, ଏକ ଧର୍ମାନୁରାଗୀ ବିଭିନ୍ନ ସଂପ୍ରଦାୟକୁ ବିଷ ଜର୍ଜରିତ କରି ପାଗଳ କରିଦିଏ ।

ଏଥିଲାଗି ଅର୍ଥର ଅଭାବ ହୁଏ ନାହିଁ । ଯେଉଁମାନେ ଅର୍ଥମୁଣିର ରଜ୍ଜୁ ଧରି ଧର୍ମ ଓ ବିଶ୍ୱାସକୁ ଆୟୁଧ କରି ଏପରି ବିଷ ଚହଟାଇଥାନ୍ତି, ସେମାନେ ଭବିଷ୍ୟତରେ ଏଥିରୁ ଅଧିକତର ଏବଂ ଅଧିକ ଅର୍ଥ ସଂଗ୍ରହ କରିବାରେ ଯୋଜନା କରନ୍ତି । ଅପରଗୋଷ୍ଠୀର ଧନ ସଂପଦ, ଘର, କୋଠାବାଡ଼ି, ବାଣିଜ୍ୟ ବ୍ୟବସାୟ, ସହଜରେ ଆସିଯିବା, ତାଙ୍କର ଗଣନା । ସେମାନେ ରହନ୍ତି ନିରାପଦ । ଦଙ୍ଗାରେ ମରନ୍ତି ସରଳ, ନିରୀହ, ଭୋକିଲା, ବେକାର ଲୋକେ । ସାମ୍ପ୍ରଦାୟିକତାର ବିଷୟରେ ଜର୍ଜରିତ ହେଲେ ସେମାନେ ସତ୍ କାର୍ଯ୍ୟରେ ହତ୍ୟା କରୁଛନ୍ତି । ଲୁଟତରାଜ କରୁଛନ୍ତି, ମା' ଭଉଣୀଙ୍କୁ ଧର୍ଷିତା କରୁଛନ୍ତି ବୋଲି ଧରି ନିଅନ୍ତି ।

ଆଜି ଯେଉଁମାନେ ସାମ୍ପ୍ରଦାୟିକତା ଓ ଦଙ୍ଗା ଗଣ୍ଡଗୋଳର ଆବଶ୍ୟକତାକୁ ଧର୍ମର ଆହ୍ୱାନ ବୋଲି ନିରୀହ, ନିଷ୍କପଟ ଜନତାକୁ ବିଭ୍ରାନ୍ତ କରନ୍ତି, ସେମାନେ ବେଶ୍ ଚତୁର । ପଶୁତ୍ୱରୁ ମାନବ ସମାଜର ଅତୀତରେ ଅନ୍ତତଃ ଦଶସହସ୍ର ବର୍ଷର ବିକାଶ କିପରି ହେଲା, କେତେବେଳେ ଧର୍ମଧାରଣାର ଉଦ୍‌ଭବ ହେଲା, କେଉଁ ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ, ରାଜନୈତିକ ପରିସ୍ଥିତିରେ ଏହା ସବୁ ଘଟି ମଣିଷ ସମାଜ ଆଜିର ଯୁଗରେ ପହଞ୍ଚିଛି, ସେସବୁକୁ ସେମାନେ ବିକୃତ କରନ୍ତି । କଦର୍ଥ କରନ୍ତି । ଅର୍ଦ୍ଧ ସତ୍ୟର ଆଶ୍ରୟ ନିଅନ୍ତି । ସମ୍ପୂର୍ଣ୍ଣ ମିଥ୍ୟାକୁ ତୁହାକୁ ତୁହା ଦୋହରାଇ ଏହା ହିଁ ସତ୍ୟ ବୋଲି ଲୋକଙ୍କ ମାନସପଟରେ ଆରୋପ କରନ୍ତି ।

ପୁଣି ଅଧୁନା ଯୁଗରେ ସେମାନେ ଏକନିଷ୍ଠ ଜାତୀୟତାବାଦୀ, ଅବିଚଳ ଗଣତନ୍ତ୍ରବାଦୀ, ନିରୁତା, ଦେଶପ୍ରେମୀ ବୋଲି ପ୍ରତିପାଦନ କରିବାକୁ ଉଦ୍ୟମ କରନ୍ତି ।

ଭାରତବର୍ଷରେ ହିନ୍ଦୁତ୍ୱବାଦୀମାନେ ଏପରି ପନ୍ଥାପଦ୍ଧତିକୁ ଅନୁସରଣ କରି ଆମ ଦେଶର

ଅତୀତରେ ଯାହାସବୁ ଘଟିଥିଲା, ଯାହା ସେମାନଙ୍କ ଲକ୍ଷ୍ୟ ଓ କାର୍ଯ୍ୟର ସହାୟକ ନୁହଁ, ସେପରି ଘଟଣାଗୁଡ଼ିକୁ ସାମ୍ପ୍ରଦାୟିକତାର ଅଭିଯାନ ବେଳେ ଲୁଚାଇ ରଖନ୍ତି । ଅସତ୍ୟ, ମିଥ୍ୟାକୁ ରଙ୍ଗଦେଇ ସତ୍ୟ ବୋଲି ସାବ୍ୟସ୍ତ କରିବାକୁ ଉଦ୍ୟମ କରନ୍ତି ।

**ହିନ୍ଦୁତ୍ୱବାଦୀମାନଙ୍କୁ ପ୍ରଶ୍ନ**

ଆମ ଏଇ ଦେଶରେ ଅତୀତରେ ବୌଦ୍ଧଧର୍ମ ଓ ଧର୍ମାନୁଷ୍ଠାନଗୁଡ଼ିକ ଉପରେ କଣ ଅନ୍ୟ କୌଣସି ଧର୍ମର ଲୋକେ ଆକ୍ରମଣ କରିଥିଲେ ? ସେମାନେ କ'ଣ ଏ ଦେଶ ବାହାରର ଲୋକ ଅଣହିନ୍ଦୁ ?

ସେ କାଳର ଧର୍ମୀୟ ମତାନ୍ଧତା କାରଣରୁ କ'ଣ ଆମ ଦେଶରେ ଅସଂଖ୍ୟ ବୌଦ୍ଧ ବିହାର ଧ୍ୱଂସ କରାଯାଇ ନାହିଁ ? ଅଗଣିତ ବୌଦ୍ଧଭିକ୍ଷୁଙ୍କୁ ହତ୍ୟା କରାଯାଇ ନାହିଁ ? ବିଶ୍ୱ ପ୍ରସିଦ୍ଧ ବୌଦ୍ଧ କୀର୍ତ୍ତି ଏଇ ଭାରତ ମାଟିର ବୌଦ୍ଧଗୟା, ବୌଦ୍ଧ ମନ୍ଦିରରେ କ'ଣ ଲୁଚେଇ କରି ପଞ୍ଚପାଣ୍ଡବ ମୂର୍ତ୍ତି ରଖି ତାହାକୁ ହିନ୍ଦୁ ମନ୍ଦିରରେ ପରିଣତ କରିବା ଉଦ୍ୟମ ହୋଇ ନାହିଁ ? ଏ ଯାଏଁ କ'ଣ ଏ ବିବାଦ ସମାଧାନ ହେଲାଣି ? ସେ କାଳର ହିନ୍ଦୁତ୍ୱବାଦୀମାନେ ବୁଦ୍ଧଙ୍କୁ କ'ଣ ଏକ ଅବତାର କରିଦେଇ ନାହାନ୍ତି ? ଆନ୍ଧ୍ର ରାଜ୍ୟର ନାଗାର୍ଜୁନ କୁଣ୍ଡରେ ଶୈବମାନେ ଅନେକ ବୌଦ୍ଧ ମନ୍ଦିରକୁ ଭାଙ୍ଗି ନାହାନ୍ତି ? ଆମ ଓଡ଼ିଶାରେ ରତ୍ନଗିରି ହେଉ, ଉଦୟଗିରି, ଧଉଳିଗିରି ହେଉ, ବୌଦ୍ଧ କୀର୍ତ୍ତି ଗୁଡ଼ିକର ପଥରରେ କ'ଣ ଶୈବ ମନ୍ଦିର ନିର୍ମାଣ କରାଯାଇ ନାହିଁ ?

ସାମ୍ପ୍ରଦାୟିକତାବାଦୀମାନେ ଏହାର ଉତ୍ତର ଦେଇ ନ ପାରି ଇତିହାସ, ପ୍ରତ୍ନତତ୍ତ୍ୱର ସମସ୍ତ ଆବିଷ୍କାରକୁ ଅସ୍ୱୀକାର କରନ୍ତି । ସେମାନେ ଯାହା କହିବେ ତାହା ହିଁ ହେବ ଇତିହାସ, ତାହା ହିଁ ପୁରାତନ ତତ୍ତ୍ୱ, ତାହା ହିଁ ଧର୍ମତତ୍ତ୍ୱ । ବଙ୍ଗଳାର ହିନ୍ଦୁ ରାଜା ଶଶାଙ୍କ ଯେ ପବିତ୍ର ବୋଧିଦ୍ରୁମକୁ ପୋଡ଼ିଥିଲେ ଓ ବହୁ ବୌଦ୍ଧ ମନ୍ଦିର ଭାଙ୍ଗିଥିଲେ, ତାହାର ବିବରଣୀକୁ କ'ଣ ବିଦେଶରୁ କିଏ ଲେଖିଛି ? ଖାଲି ବୌଦ୍ଧ ମନ୍ଦିର କାହିଁକି, ଯେଉଁ ହିନ୍ଦୁତ୍ୱବାଦୀମାନେ ଜୈନ ଧର୍ମ ହିନ୍ଦୁ ଧର୍ମର ଏକ ଅଂଶ ବୋଲି କହନ୍ତି, ସେହି ଜୈନ ଧର୍ମର ଓ ବୌଦ୍ଧ ଧର୍ମର ମୁନୀମାନଙ୍କୁ ହିନ୍ଦୁ ରାଜା ନନ୍ଦୀ ବର୍ମା ଫାଶିଦେବା କଥା ତ ଇତିହାସ ବହନ କରେ ।

୧୨୧୦ରେ ଗୁଜୁରାଟର ପାରମାର ରାଜ୍ୟର ରାଜା ଶୁଭବର୍ଦ୍ଧନ କ'ଣ ଧାବୋଲ ଓ କାମ୍ବେରେ ଅନେକ ଜୈନ ମନ୍ଦିର ଧ୍ୱଂସ କରାଇ ନଥିଲେ ?

ଦକ୍ଷିଣରେ ଚୋଳ ସାମ୍ରାଜ୍ୟର ଶୈବ ରାଜା କୁଲତୁଙ୍ଗଙ୍କ ଅତ୍ୟାଚରରେ ଅତିଷ୍ଠ ହୋଇ ରାମାନୁଜାଚାର୍ଯ୍ୟ ବୈଷ୍ଣବାଚାର୍ଯ୍ୟ ଶ୍ରୀରଂଗ ପରିତ୍ୟାଗ କରି ମହୀଶୂର ପଳାଇ ଯିବାକୁ ବାଧ ହୋଇଥିଲେ ।

ମଧ୍ୟଯୁଗର ଗଜନୀର ମାମୁଦ ସୋମନାଥ ମନ୍ଦିର ଲୁଣ୍ଠନ କରିଥିଲେ ଯେମିତି, ସେମିତି କାଶ୍ମୀରର ରାଜା ହର୍ଷ ସ୍ୱଧର୍ମର ମନ୍ଦିରଗୁଡ଼ିକୁ ଲୁଣ୍ଠନ କରି ଆପଣାର ସଂପଦ ବୃଦ୍ଧି କରିଥିଲେ ।

ମାନବ ସମାଜର ବିକାଶରେ ଏପରି କେତେକ ଅବାଞ୍ଛିତ ଘଟଣା ଘଟିଛି, ଏହା ସନ୍ଦେହାତୀତ । ଏସବୁ ତ ତତ୍କାଳୀନ ମତାନ୍ଧମାନଙ୍କ କର୍ମ । ଆଜି କ'ଣ ସେସବୁର ପୁନରାବୃତ୍ତି କରାଯିବ ?

ହିନ୍ଦୁତ୍ୱ ନାମରେ ମସ୍‌ଜିଦ୍, ତା'ପରେ ଗୀର୍ଜା, ତା'ପରେ... ଭାଙ୍ଗିବା କ'ଣ ଦେଶପ୍ରୀତି, ଜାତୀୟତାର, ମାନବିକତାର ପରିଚୟ ଦିଏ ? ଏହା ଦେଶକୁ ଅନ୍ତର ଭିତରୁ ଖଣ୍ଡବିଖଣ୍ଡିତ କରିଦିଏ ।

**ହିନ୍ଦୁତ୍ୱବାଦୀ ଗୋହତ୍ୟା ନିବାରଣ ଓ ଆମ ଶାସ୍ତ୍ର**

ପୃଥିବୀର ତଥା ଆମ ବିଶାଳ ଭାରତ ଭୂଇଁରେ ଧର୍ମ ବିଶ୍ୱାସ ନିର୍ବିଶେଷରେ ବିଭିନ୍ନ ପ୍ରକାରର ଖାଦ୍ୟରୁଚି । ଦୃଷ୍ଟାନ୍ତ ସ୍ୱରୂପ ଅବ୍ରାହ୍ମଣ ହିନ୍ଦୁଙ୍କୁ ଛାଡ଼ି ଦିଅନ୍ତୁ । ବଙ୍ଗଳା ଓ ଓଡ଼ିଶାର ବ୍ରାହ୍ମଣ ହିନ୍ଦୁଙ୍କ ପାଇ ମାଛ ଏକ ରୁଚିକର ଖାଦ୍ୟ । ଅଥଚ ଦାକ୍ଷିଣାତ୍ୟରେ ଯେଉଁମାନେ ଦ୍ରାବିଡ଼, ନମ୍ବୁଦ୍ରି, କର୍ଣ୍ଣାଟକ ବା ଆନ୍ଧ୍ର ବ୍ରାହ୍ମଣ ସେମାନେ ତ ତାକୁ ସ୍ପର୍ଶ କରନ୍ତି ନାହିଁ । ହିନ୍ଦୁତ୍ୱବାଦୀମାନେ କାହାକୁ ତେବେ ବ୍ରାହ୍ମଣ କହିବେ ? ଆମ ଦେଶରେ ନୈଷ୍ଠିକ ବୈଷ୍ଣବମାନେ ଆମିଷ ସ୍ପର୍ଶ କରନ୍ତିନି, ମାତ୍ର ଶୈବ ଓ ଶାକ୍ତମାନଙ୍କ ପାଇଁ ତାହାର ବାରଣ ନାହିଁ । ଆମ ଏଇ ଦେଶରେ ଅନେକ ଆଦିବାସୀ ସଂପ୍ରଦାୟର ବିବାହ ବେଳେ ଗୋରୁ ଯୌତୁକ ଓ ମାଂସ ଭକ୍ଷଣ ତ ପ୍ରଚଳିତ । ଗୋରୁ ସେମାନଙ୍କର ଖାଦ୍ୟ ରୂପେ ଗୃହୀତ ।

ସେମିତି ପୃଥିବୀର ବିଭିନ୍ନ ଦେଶରେ ଖାଦ୍ୟ ରୁଚି ବିଭିନ୍ନ ପ୍ରକାରର । କେହି ଗୋରୁ ବଳଦ, କେହି ଛେଳିମେଣ୍ଢା, କେହି ହରିଣ କୁଟୁରା, କେହି ଘୋଡ଼ା ଓଟ ଅବା କେହି ସାପ, କୁକୁର ମାଂସକୁ ନିଜର ରୁଚିସମ୍ପନ୍ନ ଆହୃତ ଦ୍ରବ୍ୟ ବୋଲି ବାଛି ନେଇଛନ୍ତି ।

ଏକଥା ଅନସ୍ୱୀକାର୍ଯ୍ୟ ଯେ, ଭାରତରେ ଏବଂ ଅନ୍ୟତ୍ର ଯେଉଁମାନେ ହିନ୍ଦୁଧର୍ମକୁ ମାନନ୍ତି, ସେମାନଙ୍କ ମଧ୍ୟରେ ଗୋମାଂସ ପ୍ରତି ବିରୂପ ମନୋଭାବ ରହିଛି । ଗୋହାଡ଼ି ପ୍ରତି ଶ୍ରଦ୍ଧା, ସମ୍ମାନ ଓ ଭକ୍ତି ମଧ୍ୟ ମାନସିକ ଭାବରେ ରହିଛି । ତେବେ ଯାହା ନିଜ ପାଇଁ ପ୍ରଯୁଜ୍ୟ, ତାହାକୁ ଅନ୍ୟ ଉପରେ ଧର୍ମ ନାମରେ ଲଦି ଦେବାର କି ଯଥାର୍ଥତା ରହିଛି ? ଏହି ନିଷେଧ ବିଶେଷ ଭାବରେ ମୁସଲମାନ ବିରୋଧରେ ପ୍ରୟୋଗ କରିବାକୁ ଉଦ୍ଦିଷ୍ଟ । ଅଥଚ ଯେଉଁ ଆଦିବାସୀ ଏମିତିକି କେତେକ ହିନ୍ଦୁ, ଉତ୍ତର ପୂର୍ବାଞ୍ଚଳର ବିଶାଳ ଅଞ୍ଚଳରେ ଲୋକଙ୍କ ଖାଦ୍ୟ ରୁଚି ଉପରେ ଆକ୍ରମଣର କି ଯଥାର୍ଥତା ଅଛି ?

ଅବଶ୍ୟ ଆମ ଦେଶର ସହସ୍ର ସହସ୍ର ବର୍ଷ ପୂର୍ବର ପବିତ୍ର ଗ୍ରନ୍ଥ, ହିନ୍ଦୁତ୍ୱବାଦୀମାନେ ଯାହାର ନାମ ନେଇ ବିଦ୍ୱେଷ ସୃଷ୍ଟି କରନ୍ତି, ସେହି ଶାସ୍ତ୍ରଗୁଡ଼ିକ ଗୋଧନ, ଗୋବଧ ବିଷୟରେ କ'ଣ ଆଗେ କହିଛନ୍ତି, ତାହାର କେତେକ ଦୃଷ୍ଟାନ୍ତ ନିଆଯାଉ ଏବଂ ହିନ୍ଦୁତ୍ୱର ଧ୍ୱଜାଧାରୀମାନଙ୍କୁ ଜଗଦ୍‌ଗୁରୁମାନଙ୍କୁ ପ୍ରଶ୍ନ କରାଯାଉ । ସେମାନେ କହିପାରିବେ କି ପବିତ୍ର ଗ୍ରନ୍ଥମାନଙ୍କର ଏପରି

ଉଲ୍ଲେଖ ନାହିଁ ? ଯଦି ଅଛି, ତେବେ ସେଗୁଡ଼ିକ ଅପବିତ୍ର, ହିନ୍ଦୁ ଧର୍ମ ବିଦ୍ୱେଷ ଶାସ୍ତ୍ର ବୋଲି କହିବେ କି ? ଆମ ପବିତ୍ର ଗ୍ରନ୍ଥ ତୈତ୍ରୀୟ ବ୍ରାହ୍ମଣରେ କାମେଷ୍ଟି ବଳିଦାନର ବର୍ଣ୍ଣନା ଦେଖାଯାଉ । ଏପରି କାମେଷ୍ଟି ଯଜ୍ଞରେ ଯେଉଁ ଦେବତାଙ୍କୁ କେଉଁ ରକମର ଗୋରୁଙ୍କୁ ବଳି ଦିଆଯିବ ତାହାର ଉଲ୍ଲେଖ ରହିଛି । ବିଷ୍ଣୁଦେବଙ୍କ ପାଇଁ କ୍ଷୁଦ୍ରାବୟବ ବୃଷଭ, ଇନ୍ଦ୍ରଦେବଙ୍କ ଲାଗି ହୃଷ୍ଟପୁଷ୍ଟ ଗୋଡ଼ ଓ ଅଙ୍ଗଥିବା ଗାଭୀ, ଅବା ମସ୍ତକରେ ଏକ ଧଳାବର୍ଣ୍ଣର ଚିହ୍ନ ଥିବା ବୃଷଭ ବଳିଦେବା ବ୍ୟବସ୍ଥା ଲିପିବଦ୍ଧ ହୋଇଛି । ବରୁଣଙ୍କ ପାଇଁ ବନ୍ଧ୍ୟା ଗାଭୀ, ବାୟୁଦେବଙ୍କ ଲାଗି ଗୋଟିଏ ଜନ୍ମ କରିଥିବା ଗାଭୀ, ରୁଦ୍ରଙ୍କ ପାଇଁ ଲାଲ ରଙ୍ଗର ଗାଭୀ ଓ ସୂର୍ଯ୍ୟଦେବଙ୍କ ଲାଗି ବନ୍ଧ୍ୟା ଗାଭୀ ବଳି ଦିଆଯିବାର ଉଲ୍ଲେଖ ରହିଛି ।

ଧର୍ମଶାସ୍ତ୍ର ହିନ୍ଦୁଧର୍ମର ସର୍ବଶ୍ରେଷ୍ଠ ଗ୍ରନ୍ଥ ଉପନିଷଦ । ସେଥିରେ ଗାଭୀର ବିଭିନ୍ନ ଅଂଶକୁ କିପରି ରାନ୍ଧିବାକୁ ହେବ ତାହାର ବର୍ଣ୍ଣନା ରହିଛି । ବୃହତ୍ ଆରଣ୍ୟକ ଉପନିଷଦ କହେ, ଯେଉଁ ବ୍ୟକ୍ତି ଏକ ବିଦ୍ୱାନ, ବାଗ୍ମୀ ଓ ସର୍ବବେଦରେ ପାରଦର୍ଶୀ, ଦୀର୍ଘାୟୁ ପୁତ୍ର ସନ୍ତାନ ଚାହେଁ, ସେ ପୋଖତ ଅବା ତରୁଣ ଅଳ୍ପ ବୟସର ବୃଷଭ ମାଂସକୁ ଲବଣୀ ଦେଇ ଭକ୍ଷଣ କରିବ ? ଏହା ହିଁ ଥିଲା ଦେବଦେବୀଙ୍କ ଉଦ୍ଦେଶ୍ୟରେ ଗୋ ବଳିଦାନର ବର୍ଣ୍ଣନା ।

ଦଶସହସ୍ର ଗୋରୁ ହତ୍ୟା କରି ବ୍ରାହ୍ମଣମାନଙ୍କୁ ଭୋଜି ଦେଇଥିଲେ ହିନ୍ଦୁ ରାଜନ । ସେହି ରକ୍ତରେ ଗୋମତି ନଦୀର ଉତ୍ପତ୍ତି ବୋଲି ଆମ ଶାସ୍ତ୍ର କହେ ।

ହିନ୍ଦୁତ୍ୱବାଦୀମାନେ କ'ଣ ଏ ଶାସ୍ତ୍ରଗୁଡ଼ିକୁ ଅସ୍ୱୀକାର କରିବେ ? ପରବର୍ତ୍ତୀ କାଳରେ ଉତ୍ପାଦନ, ଗୋକ୍ଷୀର, ଚାଷବାସର ପ୍ରୟୋଜନୀୟତା ଦୃଷ୍ଟିରୁ ଆମ ଦେଶରେ ଗୋହତ୍ୟା ନିବାରଣର ମାନସିକତା ସୃଷ୍ଟି କରାଯାଇଛି । ଯେମିତି ଆରବ ଦେଶମାନଙ୍କରେ ଉତ୍ପାଦନ, ବାଣିଜ୍ୟ ପାଇଁ ଘୋଡ଼ା, ଓଟର ଆବଶ୍ୟକତା ଦେଖାଦେଇଛି, ସେମିତି ଆମ ଦେଶ ପାଇଁ ଗୋସମ୍ପଦ ବ୍ୟବହାର କରାଯାଉଛି ।

ଏସବୁକୁ ହିନ୍ଦୁତ୍ୱବାଦୀମାନେ ସରଳ ବିଶ୍ୱାସୀ ଜନସାଧାରଣଙ୍କ ଠାରୁ ଲୁଚେଇ ରଖି ଅତୀତକୁ ବିକୃତ କରି ଗୋହତ୍ୟା ନିବାରଣକୁ ଏକ ରାଜନୈତିକ ଆୟୁଧ ରୂପେ ବ୍ୟବହାର କରୁଛନ୍ତି । ଅଥଚ ହାଣମୁହଁକୁ ହିନ୍ଦୁ, ମୁସଲମାନ୍ ସବୁ ଲୋକ ନିଜର ଅବାଂଛିତ, ଅକର୍ମଣ୍ୟ ଗୋରୁଙ୍କୁ ହାତରେ ବିକ୍ରି କରି ଠେଲି ଦିଅନ୍ତି । ଆର୍ଥିକ ପ୍ରୟୋଜନୀୟତା ସେତେବେଳ ଗୋହତ୍ୟା ନିବାରଣ ବ୍ରାହ୍ମଣ, ଅବ୍ରାହ୍ମଣ କାହାରି ପାଇଁ ପ୍ରଯୁଜ୍ୟ ହୁଏ ନାହିଁ । ଏହା ଅସତ୍ୟ କି ?

ଆମ ସରଳ ଧର୍ମବିଶ୍ୱାସୀ ଲୋକେ ଯଦି ଦୂର ଅତୀତ, ନିକଟ ଅତୀତ ଓ ଆଜିର ଦେଶ ଓ ପୃଥିବୀର ଖାଦ୍ୟ ରୁଚି ଓ ଖାଦ୍ୟ ସମ୍ପର୍କରେ ଶାସ୍ତ୍ରର ବର୍ଣ୍ଣନା ଜାଣନ୍ତେ । ତେବେ ହିନ୍ଦୁତ୍ୱବାଦୀମାନେ ସେମାନଙ୍କୁ ସାମ୍ପ୍ରଦାୟିକତା ବିଷରେ ମତ୍ତ କରାଇପାରନ୍ତେ ନାହିଁ ।

**ସାମ୍ପ୍ରଦାୟିକତା ଓ ଜାତୀୟତା**

ହିନ୍ଦୁତ୍ୱବାଦୀମାନେ ତଥା ବିଜେପି, ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ, ବିଶ୍ୱ ହିନ୍ଦୁ ପରିଷଦ,

ବଜରଙ୍ଗ ଦଳ, ହିନ୍ଦୁ ଜାଗରଣ ସମିତି ପରି ଧର୍ମୀୟ ଓ ଲୁକ୍କାୟିତ ରାଜନୈତିକ ସଂଗଠନଗୁଡ଼ିକ ଭାରତୀୟ ଜାତୀୟତାର ଏକନିଷ୍ଠ, ଏକମାତ୍ର ଓ ଅବିସଂବେଦୀ ବାହକ, ଧାରକ, ପ୍ରବର୍ତ୍ତକ ବୋଲି ପ୍ରଚାର ଅଭିଯାନ ଚଳାନ୍ତି । ସେମାନେ ଭାରତର ଐକ୍ୟ ଓ ସଂହତି ନିଜ ଜାତୀୟତାବୋଧ ଅନୁସାରେ ରକ୍ଷା କରିବେ ବୋଲି ଆସ୍ଫାଳନ କରନ୍ତି ।

ସ୍ୱାଧୀନତା ସଂଗ୍ରାମ କାଳରେ ୧୯୦୯ରେ ହିନ୍ଦୁ ମହାସଭା ଗଠିତ ହୋଇଥିଲା । ସେମିତି ମୁସ୍‌ଲିମ୍ ସାମ୍ପ୍ରଦାୟିକତାବାଦୀ ମାନଙ୍କର ରାଜନୈତିକ ସଂଗଠନ, ମୁସ୍‌ଲିମ୍ ଲିଗ୍ ୧୯୦୬ରେ ପ୍ରତିଷ୍ଠିତ ହୋଇଥିଲା । ସ୍ୱାଧୀନତା ସଂଗ୍ରାମର ଅଗ୍ନି ଗର୍ଭରୁ ଯେଉଁ ମହାଭାରତୀୟ ଜାତୀୟତାର ଆହ୍ୱାନରେ ସ୍ୱାଧୀନତା ସଂଗ୍ରାମ ଚାଲିଲା, ସେଥିରେ ଏମାନେ କାହା ପକ୍ଷରେ ଥିଲେ ? ମୁସ୍‌ଲିମ୍ ଲିଗ୍ କଥା ଛାଡନ୍ତୁ । ୧୯୨୬ରେ ରାଷ୍ଟ୍ରୀୟ ସ୍ୱୟଂ ସେବ ସଂଘ ପ୍ରତିଷ୍ଠିତ ହେଲା । ହିନ୍ଦୁ ମହାସଭା ଓ ଆର.ଏସ୍.ଏସ୍. ଉତ୍ତରାଧିକାରୀ ଆଦର୍ଶ ଗ୍ରହଣ କରି ଜନସଂଘ, ଆଉ ତା'ପରେ ଭାରତୀୟ ଜନସଂଘ ଏମିତି ନାମ ଅଦଳବଦଳ ହୋଇଛି ।

ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ଦେଶବ୍ୟାପୀ ସ୍ୱାଧୀନତା ସଂଗ୍ରାମ କାଳରେ ହିନ୍ଦୁ ମହାସଭା ହେଉ, ଅବା ଆର.ଏସ୍.ଏସ. ହେଉ ସ୍ୱାଧୀନତା ଲାଗି କେଉଁ ଆନ୍ଦୋଳନ କରିଥିଲେ ? ଏମିତିକି ବ୍ରିଟିଶ୍ ସରକାର ଏ ଦେଶରୁ ଯାଉ ଏପରି ପ୍ରସ୍ତାବ ଦେଇଥିଲେ କି ? ଠିକ୍ ତା'ର ବିପରୀତ ଆଚରଣ କରି ଲକ୍ଷ ଲକ୍ଷ ଲୋକ ପ୍ରାଣ ଦେଇ ଯେଉଁ ଭାରତୀୟ ଜାତୀୟତାର ମୂଳଦୁଆ ପକେଇଥିଲେ । ଏମାନେ ତାହର ବିରୋଧ କରିଥିଲେ । ତା' ନ ହେଲେ କଂଗ୍ରେସ ହେଉ, ହୋମରୁଲ୍ ଆନ୍ଦୋଳନ ହେଉ, ସୋସାଲିଷ୍ଟ, କମ୍ୟୁନିଷ୍ଟ, ବୈପ୍ଳବିକ ସଂତ୍ରାସବାଦୀ ସଂଗଠନଗୁଡ଼ିକ ଥାଉ ଥାଉ ମୁସ୍‌ଲିମ୍ ଲିଗ୍, ଅନ୍ୟ ପଟରେ ହିନ୍ଦୁ ମହାସଭା, ଆର.ଏସ୍.ଏସ୍. ଗଠନ କରାଗଲା କାହିଁକି ?

୧୯୧୫ରେ ହିନ୍‌ଦୁ ମହାସଭାର ଅଧିବେଶନ କାଶିମ୍ ବଜାର ହିନ୍ଦୁ ମହାରାଜାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଭାରତବାସୀ ଗୋଟିଏ ଜାତି, ତାହାର ଜାତୀୟତା ଚାହେଁ, ବ୍ରିଟିଶ୍ ଆସନର ଅବସାନ କଂଗ୍ରେସର ତତ୍କାଳୀନ ନୀତିକୁ ଉକ୍ତ ସମ୍ମିଳନୀ ବିରୋଧ କରିଥିଲା । ଅର୍ଥାତ୍ ହିନ୍ଦୁ-ମୁସଲମାନ୍ ଦୁଇ ଧର୍ମ ଗୋଷ୍ଠୀ ନୁହନ୍ତି, ଦୁଇ ଜାତି ଆଉ ସଂଖ୍ୟା ଗରିଷ୍ଠ ଯିଏ ତାହାରି ଜାତିଗତ ଜାତୀୟତାବୋଧ ହିଁ ଭାରତର ଅନ୍ୟ ସବୁ ଧର୍ମାବଲମ୍ବୀଙ୍କ ଜାତୀୟତା ବୋଲି ଧରାଯିବ । ଏହି ତତ୍ତ୍ୱର ପ୍ରବକ୍ତା ହେଲେ ହିନ୍ଦୁ ମହାସଭା । ଅନ୍ୟ ଦିଗରେ ଧର୍ମ ଦୃଷ୍ଟିରୁ ମୁସଲମାନ ଏକ ଜାତି ମସ୍‌ଲିମ୍ ଲିଗ୍ ପ୍ରଚାର କଲା । ଏହା ହିଁ ପରବର୍ତ୍ତୀ କାଳରେ ଭାରତକୁ ଦୁଇଭାଗ କରିବାକୁ ଏବଂ ଦୁଇ ସଂପ୍ରଦାୟ ମଧ୍ୟରେ ତିକ୍ତତା ବଢ଼େଇ, ବିଦ୍ୱେଷ ସୃଷ୍ଟି କରିବାକୁ ବିଦେଶୀ ସାମ୍ରାଜ୍ୟବାଦୀ ସରକାରଙ୍କୁ ଖୋରାକ ଯୋଗାଇଲା ।

୧୯୩୩ରେ ହିନ୍ଦୁ ମହାସଭା ଅଧିବେଶନରେ ସଭାପତିତ୍ୱ କରି ପ୍ରଖ୍ୟାନ ହିନ୍ଦୁ ମହାସଭା

ନେତା ଭାଇ ପରମାନନ୍ଦ ଅଭିମତ ଦେଖାଯାଉ । ଇଂରାଜରେ ସେ କହିଥିଲେ, "I feel an impulse in me that the Hindus would willingly cooperate with Great Britain if then status and responsible position as premire Community in India is recognised in the political institution of New India." ଏହାର ଓଡ଼ିଆ ମର୍ମାନୁବାଦ ହେଲା- ମୋ' ଭିତରେ ଏକ ଆବେଗ ସୃଷ୍ଟି ହୋଇଛି ଯେ ଯଦି ନୂତନ ଭାରତର ରାଜନୈତିକ ସଂସ୍ଥା ଗଠନ କାଳରେ ହିନ୍ଦୁମାନଙ୍କର ପ୍ରତିଷ୍ଠା ଓ ଦାୟିତବସମ୍ପନ୍ନ ଆସ୍ଥାନକୁ ବେକାର କରାଯିବ, ତେବେ ଆମେ ଇଚ୍ଛାକୃତ ଭାବରେ ଗ୍ରେଟ୍ ବ୍ରିଟେନ୍ ସହିତ ସହଯୋଗ କରିବୁ । କାହିଁ ଏ ଉକ୍ତିରେ ବ୍ରିଟିଶ୍ ସାମ୍ରାଜ୍ୟବାଦର ଦାସତ୍ୱ ଶୃଙ୍ଖଳାରୁ ଭାରତର ମୁକ୍ତି ଓ ସ୍ୱାଧୀନତାର ଆହ୍ୱାନ ?

ଦେଶର ମୁକ୍ତି ଓ ସ୍ୱାଧୀନତା ଆନ୍ଦୋଳନ ପ୍ରତି ବିରୋଧ ଓ ବିରୂପ ମନୋଭାବରେ ମୁସଲମ୍ ଲିଗ୍ ଠାରୁ ଏହା ଭିନ୍ନ କି ? ଲିଗ୍ ସାଂପ୍ରଦାୟିକତାବାଦୀମାନେ ଖାଲି ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନରେ ବଡ଼ିମାପୂର୍ଣ୍ଣ ଭାଷଣ ଦେବା ବେଳେ ସ୍ୱାଧୀନତା ସଂଗ୍ରାମ ପ୍ରତି ଓ ବ୍ରିଟିଶ ସରକାର ପ୍ରତି ସେ କାଳର ନୀତିକୁ ନିନ୍ଦା କରିଛନ୍ତି କି ? ସେଥିଲାଗି ଅନୁତାପ କରିଛନ୍ତି କି ?

ଭାରତବର୍ଷ ଧର୍ମ, ରାଷ୍ଟ୍ର, ପ୍ରଦେଶ, ଆଚାର ଆଚରଣରେ ବ୍ରିଟିଶ ହେଲେ ବି ଏକ ଭାରତୀୟ ଜାତି, ଏହି ଆଦର୍ଶକୁ ଯିଏ ଜୀବନବ୍ୟାପୀ ସାଧନା କରି ବ୍ରିଟିଶ କାରାଗାରରେ ସଢ଼ିଲେ, ସେଇ ଜାତିର ଜନକ ମହାତ୍ମାଗାନ୍ଦୀଙ୍କୁ ହିନ୍ଦୁତ୍ୱର ଆଦର୍ଶ ହିଁ ହତ୍ୟା କଲା । ଆଜିର ଆର.ଏସ.ଏସ. ମହାତ୍ମାଗାନ୍ଧୀଙ୍କୁ ଜାତୀର ପିତା ବୋଲି ଗ୍ରହଣ କରେ କି ? ଓଲଟି ବିଜେପିର ତୁଙ୍ଗ ନେତାମାନଙ୍କ ଉପସ୍ଥିତିରେ ଆର.ଏସ.ଏସ. ସଭାସମିତିରେ ଗାନ୍ଧୀ ହତ୍ୟାକାରୀ ଗଡ୍‌ସେ ଜିନ୍ଦାବାଦ, ଗାନ୍ଧୀ ମୁର୍ଦ୍ଦାବାଦ ଧ୍ୱନି ଦିଆଯାଏ ।

ଏକଦା ସ୍ୱାଧୀନତା ସଂଗ୍ରାମ କାଳରେ ଯିଏ ବୀର ସଭରକର ଉପାଧିରେ ଭୂଷିତ ହୋଇଥିଲେ, ସେ ସେତେବେଳେ ହିନ୍ଦୁତ୍ୱକୁ ଗ୍ରହଣ କରିନେଲେ, ସେତେବେଳେ ସେ ହିନ୍ଦୁ ମୁସଲମାନ ଦୁଇ ଜାତି ବୋଲି କହିନଥିଲେ କି ?

ଭି.ଡି. ସଭରକର ହିନ୍ଦୁ ମହାସଭାର ସଭାପତି ହୋଇ କହିଥିଲେ ଭାରତ ହିନ୍ଦୁ ଜାତଦିର ବାସଭୂମି, ହିନ୍ଦୁ ସ୍ଥାନ ହିନ୍ଦୁମାନଙ୍କର ଦେଶ ହୋଇଥିବାରୁ ମୁସଲମାନମାନେ କେବଳ ଭାରତର ଅଧିବାସୀ ହିସାବରେ ଗଣ୍ୟ ହେବେ, ସେମାନଙ୍କର ନାଗରିକତ୍ୱ ରହିବ, ମାତ୍ର ସଂଖ୍ୟାନ୍ୟୂନ ଭାବରେ ରହିବେ ବୋଲି ସମ୍ମାନ ହେବ ଏବଂ ହିନ୍ଦୁଜାତିର ଅଧୀନସ୍ଥଅସ୍ଥାନରେ ରହିବେ । ସଂଖ୍ୟା ଗରିଷ୍ଠ ହିନ୍ଦୁ ଜାତିର ଧର୍ମାବଲମ୍ବୀ ନେତା ଅନ୍ୟପକ୍ଷରେ ମୁସଲିମ ସଂପ୍ରଦାୟିକତାବାଦୀମାନଙ୍କୁ ଦୁଇ ଜାତି ତତ୍ତ୍ୱ ନେବାକୁ ବୌଦ୍ଧିକ ଓ ରାଜନୈତିକ ଖୋରାକ ଯୋଗାଇ ଦେଲେ କାହିଁକି ?

ପଞ୍ଜାବର ବହୁଳାଂଶ ମୁସଲମାନ ଅଞ୍ଚଳ ଓ ସିନ୍ଧୁ ମିଶି ଗୋଟିଏ ପ୍ରଦେଶ ହେଉ ଶିଖ ଓ ହିନ୍ଦୁ ଅଧ୍ୟୁଷିତ ଅଞ୍ଚଳ ପଞ୍ଜାବ ସେଥିରୁ ବାଦରହୁ ଏପରି ପ୍ରସ୍ତାବତ ବ୍ରିଟିଶ ସରକାର ଦେଶ ବିଭାଜନ କରିବା ପୂର୍ବରୁ ଖୋଦ ଲାଲା ଲାଜଗତ୍‌ରାୟ ପ୍ରସ୍ତାବ ରଖିଥିଲେ ।

ଧର୍ମକୁ ଭିତ୍ତି କରି କୌଣସି ଜାତି ହୁଏ ନାହିଁ । ଏହା ଅତୀତ ଛାଡନ୍ତୁ ଅଧୁନା ଇତିହାସ ପ୍ରମାଣ କରିଦେଇଛି । ଭାରତର ଦୁଃଖଦ ବିଭାଜନପରେ ଧର୍ମ ନାମରେ ଜାତି କହି ପାକିସ୍ତାନ ହେଲା । ସେହି ପାକିସ୍ତାନ ବିରୁଦ୍ଧରେ ବଙ୍ଗଳା ଦେଶର ମୁସଲମାନମାନେ ନିଜର ମୁକ୍ତି ଓ ସ୍ୱାଧୀନତା ଲାଗି ସହସ୍ର ସହସ୍ର ସଂଖ୍ୟାରେ ପ୍ରାଣ ଦେଇ ନିଜର ରାଷ୍ଟ୍ର ଗଢ଼ିଲେ । ଧର୍ମକୁ ଭିତ୍ତି କରି ଜାତି ହୋଇଥିଲେ ଏକ ଧର୍ମାଲମ୍ବୀ ଇରାକ ଇରାନ ଯୁଦ୍ଧ ହୋଇନଥାନ୍ତା । ମଧ୍ୟ ପ୍ରାଚ୍ୟରେ ଅନେକ ଦେଶ ମୁସଲମାନ ଅଧ୍ୟୁଷିତ ହେଲେ ହେଁ ସେମାନେ ଗୋଟିଏ ରାଷ୍ଟ୍ର ହୋଇନାହାନ୍ତି କି ହେବେ ନାହିଁ । ବରଂ ପରସ୍ପର ବିରୁଦ୍ଧରେ ଯୁଦ୍ଧ କରୁଛନ୍ତି ।

ମାତ୍ର ହିନ୍ଦୁତବାଦୀ ସାଂପ୍ରଦାୟିକତାବାଦୀମାନେ ଧର୍ମକୁ ଆଧାର କରି ଭାରତ ଏକ ହିନ୍ଦୁ ରାଷ୍ଟ୍ରର ଧ୍ୱନି ଉଠାଇ ଧର୍ମ ଭାଷା, ଅଞ୍ଚଳ, ଜନଗୋଷ୍ଠୀ ନିର୍ବିଶେଷରେ, ବିବିଧ ଆଚାର ଆଚରଣ, ପୋଷାକ, ଖାଦ୍ୟରୁଚି ସତ୍ତ୍ୱେ ଗଠିତ ସମନ୍ୱିତ ଭାରତୀୟ ମହାନ ଜାତୀୟତାକୁ ବିକୃତି କରି ଦେଶରେ ଦ୍ୱେଷ, କନ୍ଦଳ, ଭାତୃହତ୍ୟାର ତାଣ୍ଡବ ସୃଷ୍ଟିରେ ଲାଦ ପଡ଼ିଛନ୍ତି ।

**ଇତିହାସ ବିକୃତୀକରଣର କେତେକ ନଜିର**

ହିନ୍ଦୁ ସାଂପ୍ରଦାୟିକତାବାଦୀମାନେ ନିଜର ସାଂପ୍ରଦାୟିକତାବାଦୀ ଆଦର୍ଶର ଯଥାର୍ଥତା ସାବ୍ୟସ୍ତ କରିବା ଲାଗି ସାର ସୟଦ ଅହମ୍ମଦ ଖାଁଙ୍କୁ ଦାୟୀ କରନ୍ତି, ମୁଲସମାନଙ୍କ ପ୍ରତି ଅତ୍ୟାଚାର ହେଉଛି, ତେଣୁ ସେମାନଙ୍କର ସ୍ୱତନ୍ତ୍ର ଶିକ୍ଷା, ସ୍ୱତନ୍ତ୍ର ବ୍ୟବସ୍ଥା ଆବଶ୍ୟକ, ସାରସୟଦ ଅହମ୍ମଦ ଖାଁ ନିଶ୍ଚିତ ଭାବରେ ବିଭେଦବାଦୀ ଧ୍ୱନି ଉଠାଇଥିଲେ । ସେହି ବ୍ୟକ୍ତି ଏପରି ଆସ୍ଥାନ ନେବା ପୂର୍ବରୁ କିପରି ହିନ୍ଦୁ, ମୁସଲମାନ, ଖୀରସ୍ଥାନ ଏକ ଦେଶବାସୀ ତାହା ଉଲ୍ଲେଖ କରି କହିଥିଲେ, ଆମେ କ'ଣ ଏକା ଭୂଇଁରେ ବାସ କରୁନାହୁଁ ? ଆମେ କ'ଣ ଏଇ ଦେଶର ମାଟିରେ ପୋଡ଼ା ଓ କବର ନେଉନାହୁଁ । ମନେ ରଖ ହିନ୍ଦୁ, ମୁସଲମାନ ଭଳି ଶବ୍ଦ କେବଳ ଧର୍ମୀୟ ବୈଶିଷ୍ଟ୍ୟକୁ ସୂଚିତ କରେ । ହିନ୍ଦୁ ହେଉ କି ମୁସଲମାନ ହେଉ ଏମିତିକି ଖ୍ରୀଷ୍ଟିୟାନ ହେଉ ସେମାନେ ଭାରତରେ, ଏହି ଦେଶରେ ବାସ କରନ୍ତି ସେମାନେ ଏକକ ଜାତିର ଲୋକ ।

ଅବଶ୍ୟ ପରେ ତାଙ୍କର ମତରେ ପରିବର୍ତ୍ତନ ଘଟିଲା, ଯେମିତି ବୀରସଭରକର, ଲାଲା ଲାଜପତରାୟ, ମଦମୋହନ ମାଲ୍ୟବ୍ୟଙ୍କ ଭଳି ନେତାମାନଙ୍କ ମତାଦର୍ଶରେ ପରିବର୍ତ୍ତନ ଘଟିଲା ।

ସାଂପ୍ରଦାୟିକତାର ବୀଜକୁ ଏ ଦେଶରେ ବ୍ରିଟିଶ ଅମଳରେ ହିନ୍ଦୁ ରାଜାମହାରାଜା ଓ ମୁସଲିମ ନବାବ, ଜମିଦାରମାନେ ସୃଷ୍ଟି କରି ବ୍ରିଟିଶ ସରକାରକୁ ଦେଶକୁ ଭାଗ ଭାଗ କରି ଶାସନ କରିବାର ରାଷ୍ଟ୍ରକୌଶଳ ନେବାକୁ ସୁଯୋଗ ଅର୍ପଣ କରିଥିଲେ ।

ଏକ ଦିଗରେ ଆଗାଖାଁ, ଭୋପାଳର ନବାବ ପ୍ରଭୃତି ଏବଂ ଅନ୍ୟ ଦିଗରେ କାଶୀ ନରେଶ ଶିବ ପ୍ରସାଦ ଓ ଅନ୍ୟମାନେ ସ୍ୱାଧୀନତା ସଂଗ୍ରାମ ଚଳାଉଥିବା ସେକାଳର କଂଗ୍ରେସକୁ ତୀବ୍ର ବିରୋଧ କରିଥିଲେ । ଏକଦା ଜିନ୍ନା କଂଗ୍ରେସର ସଭାପତି ଥିଲେ । ମାତ୍ର ପରବର୍ତ୍ତୀ କାଳରେ ସାଂପ୍ରଦାୟିକତା ଆୟୁଧ କଲେ ।

କିନ୍ତୁ ଠିକ୍ ତା'ର ବିପରୀତରେ ଉଭୟ ଧର୍ମବିଶ୍ୱାସୀ ସଂପ୍ରଦାୟର ଅଗଣିତ ନେତା ମୁସଲିମ୍ ସାଂପ୍ରଦାୟିକତା ତଥା ହିନ୍ଦୁ ସାଂପ୍ରଦାୟିକତା ବିରୋଧ କରି ମହାଭାରତୀୟ ଜାତୀୟତା ଲାଗି ସଂଗ୍ରାମ କରିଛନ୍ତି ।

ଏକ ଅନନ୍ୟ ଦୃଷ୍ଟାନ୍ତ ତାହା ମହାଭାରତୀୟ ଜାତୀୟତାର ନିଦର୍ଶନ । ସ୍ୱାଧୀନତା ସଂଗ୍ରାମୀ ମୁସଲମାନ ଡକ୍ଟର ସୈଫଉଦ୍ଦି କଚିଲୁ । ଇତିହାସର ପୁରୁଷ । ମୁସଲିମ୍-ଶିଖ ଐକ୍ୟର ସଂକେତ ରୂପେ ସ୍ୱର୍ଣ୍ଣ ମନ୍ଦିରର ଚାବି ତାଙ୍କର ହାତରେ ଏକ ଆଡମ୍ବରପୂର୍ଣ୍ଣ ଧର୍ମୀୟ ଅନୁଷ୍ଠାନରେ ପ୍ରଦତ୍ତ ହୋଇଥିଲା । ଅନ୍ୟ ପକ୍ଷରେ ଆର୍ଯ୍ୟ ସମାଜର ପ୍ରବାଦ ପୁରୁଷ ସ୍ୱାମୀ ଶ୍ରଦ୍ଧାନନ୍ଦ ଦିଲ୍ଲୀର ପ୍ରସିଦ୍ଧ ଜୁମାମସ୍‌ଜିଦ୍‌ର ତୋରଣରୁ ଭାଷଣ ଦେବା ବେଳେ ମୁସଲମାନମାନେ ଅଜସ୍ର ସଂଖ୍ୟାରେ ଉପସ୍ଥିତ ରହି ହିନ୍ଦୁ ଭାଇମାନଙ୍କ ସହିତ ଦେଶର ଐକ୍ୟ ଓ ସଂହତିର ପ୍ରମାଣ ଦେଇଥିଲେ ।

ଆମ ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ ଲକ୍ଷ ଲକ୍ଷ ସଂଖ୍ୟାରେ ହିନ୍ଦୁ, ମୁସଲମାନ, ଶିଖ, ଅନ୍ୟ ସଂପ୍ରଦାୟ ଭାଗ ନେଇଛନ୍ତି । ହିନ୍ଦୁ ସଂଖ୍ୟାଗରିଷ୍ଠ ସତ, ତଥାପି ଇତିହାସ କହେ- ବ୍ରିଟିଶ ଗୁଳିକମାଣ ମୁହଁରେ ସହସ୍ର ସହସ୍ର ଆଦିବାସୀ, ସହସ୍ର ସହସ୍ର, ହିନ୍ଦୁ, ସହସ୍ର ସହସ୍ର ମୁଲସମାନ ଦେଶ ପାଇଁ ଟଳି ପଡ଼ିଛନ୍ତି । ହିନ୍ଦୁତ୍ୱବାଦୀମାନେ କତିପୟ ଉପରସ୍ତରର ସାଂପ୍ରଦାୟିକତାବାଦୀ ମୁସଲମାନଙ୍କୁ କାହିଁକି ଲକ୍ଷ ଲକ୍ଷ ମୁସଲମାନ, ଯେଉଁମାନେ ହିନ୍ଦୁ ଓ ଅନ୍ୟମାନଙ୍କ ସଙ୍ଗରେ ଦେଶର ସ୍ୱାଧୀନତା ପାଇଁ ପ୍ରାଣ ଦେଲେ ସେମାନଙ୍କୁ ଭାରତୀୟ ନୁହନ୍ତି ବୋଲି ଦର୍ଶାନ୍ତି ?

ମୌଲାନା ମହମ୍ମଦ ଅଲ୍ଲି, ସୌକତ୍ ଅଲି, ହାକିମ ଆଜମଅ ଅଲି ଖାଁ, ହାସନ ଇମାମ, ମୌଲାନା ଜାଫର ଅଲି ଖାଁ, ମୌଲାନା ଆବୁଲ କାଲାମ ଆଜାଦ, ସୀମାନ୍ତଗାନ୍ଧୀ ଗାଁ ଅବଦୁଲ ଗଫୁରଖାଁଙ୍କ ସ୍ୱାଧୀନତା ଲାଗି ଦେଶର ଐକ୍ୟ ଓ ସଂହତି ରକ୍ଷା ଲାଗି ଯେଉଁ ଅବଦାନ ଦେଲେ ତାହାକୁ ଘୋଡ଼େଇ ରଖନ୍ତି ଯାହା ସ୍ୱଷ୍ଟ, ନିର୍ମଳ, ବିଶୁଦ୍ଧ, ଜାତୀୟତା ତାହାକୁ ନ ଘୋଡ଼େଇ ରଖିଲେ ହିନ୍ଦୁତ୍ୱବାଦର ତଥାକଥିତ ଦେଶ ବିଭାଜନକାରୀ ମୁଖା ଖୋଲିଯିବ । ଅତୀତର ଇତିହାସକୁ ବିକୃତି ନ କଲେ ଏବଂ ଏପରି ବିକୃତି ଧାନଧାରଣା ସୃଷ୍ଟି କରି ଆଜିର ଜନସାଧାରଣକୁ ବିଭ୍ରାନ୍ତ, ପାଗଳ ନ କଲେ ସାଂପ୍ରଦାୟିକତାବାଦ ତିଷ୍ଠି ପାରିବ ନାହିଁ । ମୁସଲିମ ବିରୁଦ୍ଧରେ ସେମାନେ ଜାତୀୟତାବାଦୀ ଜମାଏତ-ଇ-ହିନ୍ଦ୍ ଗଠନ କରିନଥବଲେ କି ?

ଏଥିଯୋଗୁଁ ହିଁ ଏକଛତ୍ରବାଦୀତ୍ୱ, ମିଥ୍ୟାଚାର, ବିକୃତି କରଣର ଆଶ୍ରୟ ହିନ୍ଦୁ

ସାଂପ୍ରଦାୟିକତାବାଦୀମାନେ ନେଇଥାନ୍ତି । ସେହେତୁ ସେମାନେ ହିଟଲରଙ୍କୁ ସେମାନଙ୍କ ରାଜନୈତିକ ଗୁରୁ ବୋଲି ଘୋଷଣା କରନ୍ତି । କାରଣ ହିଟଲର ଆର୍ଯ୍ୟଜାତି ନାମରେ ପ୍ରଥମେ ଇହୁଦୀ ସଂହାର ଓ ତା'ପରେ ଯିଏ ହିଟଲର ବାଦର, ବୀଭତ୍ସ ସାମ୍ରାଜ୍ୟବାଦ ପୁଞ୍ଜିବାଦର ବିରୋଧ କଲା ସମସ୍ତଙ୍କୁ ସଂହାର କକହିବାର ମାନବତାଦ୍ରୋହୀ ସଭ୍ୟତା ସଂସ୍କୃତି ଦ୍ରୋହୀ ମତାଦର୍ଶ ନେଲା, କୋଟି କୋଟି ସଂଖ୍ୟାରେ ନର ସଂହାର ଚାଲିଲା ।

ଆର.ଏସ୍.ଏସ୍ ଆଦର୍ଶର ପ୍ରଧାନ ପ୍ରଚାରକ ଗୁରୁ ଗୋଲଓ୍ୱାଲକାର ତେଣୁ ତାଙ୍କ ରଚିତ (ଚିନ୍ତାର ଗୁଚ୍ଛ)ରେ ହିଟଲରର ପ୍ରସଂସା କରିଛନ୍ତି । ଶିବସେନାର ବାଲ ଥାକ୍‌ରେ ମଧ୍ୟ ହିଟଲରଙ୍କୁ ତାଙ୍କ ରାଜନୈତିକ ଆଦର୍ଶର ଗୁରୁ ବୋଲି ଡିଣ୍ଡିମ ପିଟନ୍ତି । ଏହା କେଉଁ ଦେଶର ଜାତୀୟତା ? ହିଟଲରବାଦ କ'ଣ ଭାରତୀୟ ଜାତୀୟତା ? ବିଜେପି ବିଶ୍ୱ ହିନ୍ଦୁପରିଷଦ, ଆର.ଏସ୍. ଶିବସେନା ଯେଉଁମାନେ ହିନ୍ଦୁତ୍ୱ ଓ ହିନ୍ଦୁ ରାଷ୍ଟ୍ରର ଧ୍ୱନି ଦିଅନ୍ତି ସେମାନେ ଜନସାଧାରଣଙ୍କୁ ନିଯୁକ୍ତି ଶିକ୍ଷା, ବେକାରୀ, ସ୍ୱାସ୍ଥ୍ୟ ବିନାଶ ଲାଗି ସେମାନଙ୍କର ଜାତିର ଧର୍ମ ଭାଷା ଅଞ୍ଚଳ ନିର୍ବିଶେଷରେ ଯେଉଁ ସଂଗ୍ରାମ କରନ୍ତି ଓ କରିବେ ତାହାକୁ ଖଣ୍ଡ ବିଖଣ୍ଡିତ କରନ୍ତି ।

ଆଜି ଦେଶର ସ୍ୱାଧୀନତା ଐକ୍ୟ ଓ ସଂହତିର ସୁରକ୍ଷା ପାଇଁ ଏବଂ ଦେଶକୁ ବର୍ତ୍ତମାନର ଦୁଃସ୍ଥିତି ଓ ଭୟାବହୁରୂପୀ ଆନ୍ତର୍ଜାତିକ ମହାଶକ୍ତିଶାଳୀ ପୁଞ୍ଜିର ସର୍ବଗ୍ରାସୀ ଆକ୍ରମଣ ଓ ଅନୁପ୍ରବେଶକୁ ପ୍ରତିହତ କରିବା ଲାଗି ପୂର୍ବସର୍ତ୍ତ ହେଲା ଏ ଦେଶର ଐକ୍ୟ ଓ ସଂହତିର ସୁରକ୍ଷା ଏବଂ ସେଥିଲାଗି ହିନ୍ଦୁତ୍ୱବାଦୀ ତଥା ଯାବତୀୟ ସାଂପ୍ରଦାୟିକତା ବିଛିନ୍ନତାରୁ ଦେଶକୁ ରକ୍ଷା କରିବା । ଏଥିପାଇଁ ଅତି ଦୁରହ ଶ୍ରମସାଧ ଏବଂ ଅବିଚଳ ସଂଗ୍ରାମ ଆବଶ୍ୟକ । ସେ ସଂଗ୍ରାମ ବୌଦ୍ଧିକ କ୍ଷେତ୍ରରେ ଯେତିକି ପ୍ରୟୋଜନ ସେମିତି ସବୋଚ୍ଚ ସବୁ ଧର୍ମ ନିରପେକ୍ଷ ଶକ୍ତି, ଦଳ, ବ୍ୟକ୍ତିଙ୍କର ଐକ୍ୟବଦ୍ଧ ରାଜନୈତିକ ଅଭିଯାନ ସଂଗ୍ରାମ ପ୍ରତିବାଦ ପ୍ରତିରୋଧ ଆବଶ୍ୟକ ।



# ଦେଶର ଐକ୍ୟ ଓ ସଂହତି ଏବଂ କେନ୍ଦ୍ର-ରାଜ୍ୟ ସଂପର୍କ

ସଂପ୍ରତି ଆମ ଦେଶରେ କେନ୍ଦ୍ର-ରାଜ୍ୟ ସମ୍ପର୍କର ପୁନର୍ବିନ୍ୟାସ ଲାଗି ତୁମୁଳ ବିତର୍କ ଚାଲିଛି । କେବଳ ସେତିକି ନୁହଁ, ଦେଶର ଅନ୍ୟାନ୍ୟ ଜରୁରୀ ସମସ୍ୟା ଯେପରି ପଞ୍ଜାବ ଓ ଆସାମ ସମସ୍ୟା, ଦରଦାମ ବୃଦ୍ଧି, ବେକାରୀ ସମସ୍ୟା ଯୁଦ୍ଧ ଓ ବିଶ୍ୱଶାନ୍ତି ସମସ୍ୟା ଘେନି ବିଭିନ୍ନ ଦୃଷ୍ଟିକୋଣ ଘେନି ବିଭିନ୍ନ ଦୃଷ୍ଟିକୋଣ ଘେନି ଆନ୍ଦୋଳନ ଚାଲିଛି, ସେମିତି କେନ୍ଦ୍ର-ରାଜ୍ୟ ସମ୍ପର୍କ ପୁନର୍ବିନ୍ୟାସର ସମସ୍ୟା ଏକ ରାଜନୈତିକ ସମସ୍ୟାରେ ପରିଣତ ହୋଇ ଆନ୍ଦୋଳନ ରୂପେ ଦେଖାଦେଇଛି । ଆମ ସଂଘୀୟ ସମ୍ବିଧାନଟି ୧୯୫୦ରୁ ଗୃହୀତ ହେବା ଦିନଠାରୁ ଏହି ସମ୍ପର୍କ ଘେନି ଯେଉଁ ଅଭିଜ୍ଞତା ଅର୍ଜିତ ହୋଇଛି, ଆଜିର ଏହି ସମ୍ପର୍କର ପୁନର୍ବିନ୍ୟାସ ଆନ୍ଦୋଳନ ଓ ବିତର୍କ ଉକ୍ତ ଅଭିଜ୍ଞତା ଉପରେ ଆଧାରିତ ।

ସମ୍ବିଧାନରେ କେନ୍ଦ୍ର ଓ ରାଜ୍ୟର କ୍ଷମତାର ପରିସର କ'ଣ କ'ଣ ତାହା ଯେପରି ଭାବରେ ନିର୍ଦ୍ଦିଷ୍ଟ କରାଯାଇ ଥିଲା । ତାହା ଯେପରି କାର୍ଯ୍ୟକାରୀ ହୋଇଛି, ତାହାହିଁ ଏହି ସମ୍ପର୍କ ପରିବର୍ତ୍ତନର ଦାବୀକୁ ପ୍ରଖର କରି ଦେଇଛି ଏବଂ ଜରୁରୀ କରି ଦେଇଛୁ ।

ଏହି ସମ୍ପର୍କର ପୁନର୍ବିନ୍ୟାସ ବା ପରିବର୍ତ୍ତନର ଦାବୀ ଭିନ୍ନ ଭିନ୍ନ ଦୃଷ୍ଟି କୋଣରୁ କରାଯାଉଥିବା ଦେଖାଯାଉଛି । କିନ୍ତୁ ଏକଥା ସ୍ପଷ୍ଟ କରିଦେବାକୁ, ହେବ ଯେ ଦେଶର ଐକ୍ୟ ଓ ଜାତୀୟ ସଂହତିକୁ ଦୃଢ଼ୀଭୂତ କରିବା ଲକ୍ଷ୍ୟରେ ଏହି ସମ୍ପର୍କର ପୁନର୍ବିନ୍ୟାସ ପ୍ରୟୋଜନ । ଏଥିରୁ ସ୍ୱୀକୃତ ଯେ ଜାତୀୟ ଐକ୍ୟ ଓ ସଂହତିକୁ ପ୍ରଚଳିତ ସମ୍ପର୍କଗୁଡିକ ଦୃଢ଼ କରୁନାହିଁ ବରଂ ଏହି ଐକ୍ୟ ଓ ସଂହତିକୁ ଅଧିକ ଦୃଢ଼ କରିବାରେ ଅନ୍ତରାୟ ହୋଇ ଛିଡ଼ା ହୋଇଛି । ଏହି ବିଚାର ବିରୁଦ୍ଧରେ ଦେଶର ନ୍ୟସ୍ତ ସ୍ୱାର୍ଥ ଏବଂ କ୍ଷମତାସୀନ ଅବା କ୍ଷମତା ପ୍ରୟାସୀ ବୁର୍ଜୁୟାଦଳ ଏବଂ ବ୍ୟକ୍ତି ବିଶେଷ ମଧ୍ୟ ପ୍ରଚାର ଅଭିଯାନ ଚଳେଇଛନ୍ତି । ସେପରି ଶକ୍ତି ଓ ରାଜନୈତିକ ମତବାଦର ଲୋକଙ୍କ ମତ ଯେ କେନ୍ଦ୍ର-ରାଜ୍ୟ ସମ୍ପର୍କରେ ମୌଳିକ ପରିବର୍ତ୍ତନ କେନ୍ଦ୍ରକୁ ଦୁର୍ବଳ କରିଦେବ । ରାଜ୍ୟ ଗୁଡ଼ିକଙ୍କ ଉପରେ କେନ୍ଦ୍ରର ଯେଉଁସବୁ କର୍ତ୍ତୃତ୍ୱ ରହିଛି, ତାହାକୁ ବଜାୟ ରଖି ବରଂ ଅଧିକ ଦୃଢ଼ୀଭୂତ କରାଯିବା ଉଚିତ । ଏହିପରି ମୁଖ୍ୟତଃ ଦୁଇଟି ଅଭିମତ ମଧ୍ୟରେ ଯେଉଁ ବିତର୍କ ଓ ସଂଘର୍ଷ ଚାଲିଛି ସେଥିରେ କେନ୍ଦ୍ର-ସମ୍ପର୍କ ପୁନର୍ବିନ୍ୟାସର ପ୍ରଗତିଶୀଳ ପକ୍ଷପାତୀମାନେ ଏହି ସମ୍ପର୍କକୁ ଅଧିକ ଗଣତାନ୍ତ୍ରିକ କରିବାକୁ ଚାହାନ୍ତି ଏବଂ ରାଜ୍ୟଗୁଡ଼ିକ

ଅଧିକ ଶକ୍ତିଶାଳୀ ହେଲେ କେନ୍ଦ୍ର ଦୁର୍ବଳ ହେବା ପରିବର୍ତ୍ତେ ଅଧିକ ଐକ୍ୟବଦ୍ଧ ହେବ । ଜାତୀୟ ସଂହତି ଦୃଢ଼ୀଭୂତ ହେବ । ଦେଶରେ ମୁଣ୍ଡ ଟେକୁଥିବା ବିଭାଜନକାରୀ, ବିଚ୍ଛିନ୍ନତାବାଦୀମାନଙ୍କୁ ପରାସ୍ତ କରିହେବ ଏବଂ ସ୍ୱାଧୀନୋତ୍ତର କାଳରେ ଦେଶରେ ପୁଞ୍ଜିବାଦୀ ଉନ୍ନୟନର ମାର୍ଗ ନିଆଯାଇଥିବାରୁ ଯେଉଁ ଅସମ ବିକାଶ ଘଟିଛି ତାହାକୁ କିଛି ପରିମାଣରେ ଲାଘବ କରିହେବ । ଏହା ନ କରାଗଲେ ଦେଶ ଭିତରେ ଥିବା ଐକ୍ୟ ଓ ସଂହତିର ଶତ୍ରୁମାନେ ଏବଂ ଆମ ଦେଶକୁ ବିଭାଜନ କରିବାକୁ ସଦାତତ୍ପର ଓ ଷଡ଼ଯନ୍ତ୍ରକାରୀ ସାମ୍ରାଜ୍ୟବାଦୀ ବିଶେଷତଃ ଆମେରିକା ସାମ୍ରାଜ୍ୟବାଦୀମାନେ ଦେଶର ସାର୍ବଭୌମତ୍ୱ, ସ୍ୱାଧୀନତା, ଐକ୍ୟ ଓ ସଂହତି ବିରୁଦ୍ଧରେ ଯେଉଁ ଚକ୍ରାନ୍ତ କରୁଛନ୍ତି, ତାହା ଅଧିକ ଶକ୍ତିଶାଳୀ ହେବ ।

କେନ୍ଦ୍ର - ରାଜ୍ୟ ସମ୍ପର୍କର ପୁନର୍ବିନ୍ୟାସ ଦାବୀକୁ ଏପରି ପ୍ରତିକ୍ରିୟାଶୀଳ ଶକ୍ତିମାନେ ମଧ୍ୟ ସମର୍ଥନ କରନ୍ତି ଏବଂ କେନ୍ଦ୍ରକୁ ପଙ୍ଗୁ କରିଦେବାର ଅଭିପ୍ରାୟ ପୋଷଣ କରନ୍ତି । ବର୍ତ୍ତମାନ ପ୍ରଚାଳିତ ବର୍ତ୍ତମାନ ପ୍ରଚଳିତ କେନ୍ଦ୍ର- ରାଜ୍ୟ ସଂପର୍କର ଅଗଣତାନ୍ତ୍ରିକ ଦିଗ ଗୁଡ଼ିକୁ ସେମାନେ କ୍ଷମତାର ବିକେନ୍ଦ୍ରୀକରଣ ନାମରେ ଅନ୍ୟ ପକ୍ଷରେ ଘେନିଯାଇ ଦେଶଣ ଅଖଣ୍ଡତା, ସଂହତି ଓ ଐକ୍ୟ ପ୍ରତି ବିପଦ ସୃଷ୍ଟି କରନ୍ତି ।

ତେଣୁ ରାଜ୍ୟଗୁଡ଼ିକୁ ଆର୍ଥିକ, ସାମାଜିକ, ସାଂସ୍କୃତିକ ତଥା ରାଜନୈତିକ ଦିଗରୁ ଶକ୍ତିଶାଳୀ କରିବାବେଳେ ଏହାରି ଭିତ୍ତିରେ ଆମ ସଂଘୀୟ ରାଷ୍ଟ୍ର ବ୍ୟବସ୍ଥାକୁ ଅଧିକ ମଜଭୂତ ଅଧିକ ସଂହତି, ଅଖଣ୍ଡ ଅବିଭାଜ୍ୟ କରିବାକୁ ହେବ ।

ଏହି ଦୃଷ୍ଟିରୁ କେନ୍ଦ୍ର ରାଜ୍ୟ ସମ୍ପର୍କର ପୁନର୍ବିନ୍ୟାସ କେଉଁ କେଉଁ କ୍ଷେତ୍ରରେ ଲୋଡ଼ା ତାହାର ସୂଚନା ଦେବା ପ୍ରୟୋଜନ ।

(କ) ସାବାଳକ ଭୋଟ ପ୍ରଥାରେ ନିର୍ବାଚିତ ରାଜ୍ୟ ବିଧାନସଭାର ସାମ୍ବିଧାନିକ ବା ଆଇନ ପ୍ରଣୟନର ଯେତିକି କ୍ଷମତା ରହିଛି ତାହାର ପରିବର୍ତ୍ତନ ଆବଶ୍ୟକ କି ନୁହେଁ ।

(ଖ) ରାଷ୍ଟ୍ରପତିଙ୍କର କ୍ଷମତା ରାଷ୍ଟ୍ରପତି ଶାସନ ଜାରି ଲାଗି ପ୍ରଚଳିତ କ୍ଷମତା ରହିବ କି ନାହିଁ ? ରାଷ୍ଟ୍ରପତି ଓ ରାଜ୍ୟପାଳ ମୂଳତଃ କାହା ପାଖରେ ଦାୟୀ ରହିବେ ।

(ଗ) ଏବେ ହାଇକୋର୍ଟ ବିଚାରପତିମାନଙ୍କ ନିଯୁକ୍ତି ସମ୍ପର୍କରେ ଦେଶବ୍ୟାପୀ ତୁମୁଳ ଆଲୋଡ଼ନ, ବିତର୍କ ଦେଖା ଦେଇଛି ଏବଂ ଯେପରି ଭାବରେ ବିଚାରପତିମାନେ ନିଯୁକ୍ତ ହୋଇ ଆସୁଥିଲେ ତାହାର ପ୍ରବଳ ବିରୋଧ ଦେଖାଯାଇ ନିଯୁକ୍ତିର ପ୍ରତିବାଦ ପ୍ରତିଧ୍ୱନୀତ ହୋଇଛି । ଓଡ଼ିଶାରେ ଏବେ ମାନ୍ୟବର ଶ୍ରୀ ଦମ୍ବରୁଧର ପାଠକଙ୍କୁ ଓଡ଼ିଶା ହାଇକୋର୍ଟରେ ପ୍ରଧାନ ବିଚାରପତି ନିଯୁକ୍ତ କରାଗଲା । ବ୍ୟକ୍ତିଗତ ଭାବରେ ମାନ୍ୟବର ପ୍ରଧାନ ବିଚାରପତିଙ୍କର ନୁହଁ ମାତ୍ର ଏହି ନିଯୁକ୍ତି ପଦ୍ଧତିର ବିରୋଧ କରି ହାଇକୋର୍ଟ ବାର ଆସୋସିଏସନ ତାଙ୍କ ଶପଥକାଳୀନ ଉତ୍ସବକୁ ବାସନ୍ଦ କରିଥିଲେ । ତେଣୁ ଏ ସମ୍ପର୍କରେ ରାଜ୍ୟର କି କି ଅଧିକାର ରହବ ନା ନାହିଁ ?

(ଘ) ରାଜ୍ୟରେ ରାଜ୍ୟମାନଙ୍କ ଅନୁଗତ ଥିବା ଅଫିସରଙ୍କୁ ଯେପରି କେନ୍ଦ୍ର କର୍ତ୍ତୃତ୍ୱର ଅଧୀନରେ ରଖାଯାଇ ପାରୁଛି । ତାହା ରହିବ ନା ଏପରି କର୍ତ୍ତୃପକ୍ଷ ପୁରାପୂରି ରାଜ୍ୟ କର୍ତ୍ତୃତ୍ୱର ଅଧୀନରେ ରହିବେ ?

(ଙ) ବର୍ତ୍ତମାନ ଯେପରି ଚାହିଁଲେ ରାଜ୍ୟକୁ କେନ୍ଦ୍ର ନେତୃତ୍ୱ କେନ୍ଦ୍ର ରିଜର୍ଭ ପୁଲିସ ଏବଂ ଅନୁରୂପ କେନ୍ଦ୍ର ବାହିନୀକୁ ରାଜ୍ୟ-କର୍ତ୍ତୃତ୍ୱର ଅନୁମତି ନ ଥାଇ ପଠାଇ ଦେଉଛନ୍ତି, ସେପରି କ୍ଷମତା କେନ୍ଦ୍ରର ରହିବ ନା ନାହିଁ ?

(ଚ) ଅଖିଳ ଭାରତ ସର୍ଭିସ ଯେମିତି ଆଇ.ଏ.ଏସ୍., ଆଇ.ପି.ଏସ୍., ଆଇ.ଏଫ.ଏ. ପ୍ରଭୃତି ସର୍ଭିସ କ୍ୟାଡ଼ର ଅଛନ୍ତି, ସେମାନେ ରାଜ୍ୟରେ କାମ କଲେ ସଂପୃକ୍ତ ରାଜ୍ୟ ସରକାରଙ୍କ ସଂପୂର୍ଣ୍ଣ ଶୃଙ୍ଖଳାରେ ରହିବେ ନା ନାହିଁ ?

(ଛ) ବର୍ତ୍ତମାନ ରାଜ୍ୟ ସଭାକୁ ଯେପରି କେତେକ ସଭ୍ୟଙ୍କୁ କେନ୍ଦ୍ର ସରକାର ମନୋନୀତ କରି ନେଉଛନ୍ତି, ତାହା ସେପରି ଚାଲୁ ରହିବ ନା ନାହିଁ ?

(ଜ) ଐତିହାସିକ କାରଣରୁ ଜାମ୍ମୁ ଏବଂ କାଶ୍ମୀର ରାଜ୍ୟର ଯେଉଁ ବିଶେଷ ସାମ୍ବିଧାନିକ ସ୍ଥିତି ରହିଛି ତାହା ରହିବ କି ନାହିଁ । ଏ ପ୍ରଶ୍ନ ଅତ୍ୟନ୍ତ ପ୍ରାସଙ୍ଗିକ । କାରଣ ବିଜେପି ସାଂପ୍ରଦାୟିକତାବାଦୀ ଦଳ ଏବଂ ଆଉ କେତେକ ବୁର୍ଜୁଆଦଳର ମୁଖ୍ୟ ବ୍ୟକ୍ତିବିଶେଷ ଏପରି କ୍ଷମତା ରହିବା ବିରୁଦ୍ଧରେ ଅଭିଯାନ ଚଳେଇଛନ୍ତି ।

(ଝ) ସେହିପରି ସମ୍ବିଧାନ ଗୃହୀତ ହେବା ପରେ ଦିଲ୍ଲୀ, ପଣ୍ଡୀଚେରୀ ଓ ଗୋଆ ଉପ ରାଜ୍ୟ ରୂପେ ଆବିର୍ଭୂତ ହୋଇଛନ୍ତି । ଏହି ତିନୋଟି ରାଜ୍ୟକୁ ପୂର୍ଣ୍ଣ ରାଜ୍ୟ ସଭା ଅଧିକାର ଅର୍ପଣର ପ୍ରଶ୍ନ କଣ ଝୁଲି ରହିବ ?

(ଞ) ରାଜ୍ୟ ରାଜ୍ୟ ମଧ୍ୟରେ ଏବଂ କେନ୍ଦ୍ର ଓ ରାଜ୍ୟଗୁଡ଼ିକ ମଧ୍ୟରେ ଯେତେବେଳେ ବିବାଦମାନ ଦେଖାଯାଇଛି ତାହାର ସମାଧାନ ଲାଗି କୌଣସି ଏକ ସ୍ଥାୟୀ ସଂସ୍ଥାର ପ୍ରୟୋଜନୀୟତା ଅଛି କି ନାହିଁ ?

(ଟ) ଭାରତବର୍ଷରେ ଆଦିବାସୀ ଅଧ୍ୟୁଷିତ ବୃହତ ବୃହତ ଭୌଗୋଳିକ ଅଞ୍ଚଳ ରହିଛି । ସମ୍ବିଧାନ ପ୍ରଣୟନ କାଳରେ ସମ୍ବିଧାନର ରଚୟିତାମାନେ ଆଦିବାସୀ, ହରିଜନ ଓ ଅନ୍ୟାନ୍ୟ ସଂଖ୍ୟାନ୍ୟୁନଙ୍କ କେତେକ ଧର୍ମଗତ, ସାମାଜିକ ଓ ରାଜନୈତିକ ରକ୍ଷାକବଚର କଳ୍ପନା କରିଥିଲେ ସତ, ମାତ୍ର ଅଭିଜ୍ଞତାରୁ ପ୍ରମାଣିତ ଯେ ତାହା ଆଦୌ ଯଥେଷ୍ଟ ନୁହେଁ ଏବଂ ଆଦିବାସୀ ଅଧ୍ୟୁଷିତ ଭୌଗୋଳିକ ଅଞ୍ଚଳବାସୀଙ୍କ ଆଶା ଆକାଂକ୍ଷାର ପୂରଣ ଲାଗି ସେମାନଙ୍କ ମଧ୍ୟରେ ପ୍ରବଳ ଜାଗରଣ ଦେଖାଦେଇଛି ଏବଂ ବିଦେଶୀ ସହିତ ଦେଶୀୟ ପ୍ରତିକ୍ରିୟାଶୀଳ, ଶକ୍ତ ସେମାନଙ୍କୁ ଏକ ପକ୍ଷରେ ବିଛିନ୍ନତାବାଦ ଆଡ଼କୁ ଟାଣି ନେବା ଉଦ୍ୟମ କରୁଛନ୍ତି । ଅନ୍ୟ ଦିଗରେ ଦେଶରେ

ରକ୍ଷଣଶୀଳ ପ୍ରତିକ୍ରିୟା ସଂଘୀୟ ବ୍ୟବସ୍ଥାରେ ସେସବୁ ଇଲାକାର କୌଣସି ସ୍ୱତନ୍ତ୍ର ସତ୍ତା ରହିବା ବିପକ୍ଷରେ । ଭାରତର ଐକ୍ୟ, ସଂହତି ଓ ଅଖଣ୍ଡତା ଏବଂ ଆଦିବାସୀ ଅଧ୍ୟୁଷିତ ଭୌଗୋଳିକ ଅଞ୍ଚଳବାସୀଙ୍କ ଗଣତାନ୍ତ୍ରିକ ଓ ନ୍ୟାୟ ସଂଗତ ଆଶା-ଆକାଂକ୍ଷା ପୂରଣ ଲାଗି ସେମାନଙ୍କର ସ୍ୱାୟତ୍ତଶାସନ ସ୍ୱୀକୃତ ହେବ କି ନାହିଁ ?

(ଠ) ରାଜ୍ୟ ଗୁଡ଼ିକରଙ୍କ ଲାଗି ଅଧିକ ଆର୍ଥିକ କ୍ଷମତା ଓ ଅଧିକ ସମ୍ବଳର ପ୍ରଶ୍ନ, ଏହା ଯେପରି କେନ୍ଦ୍ରର ହାତଟେକା ବ୍ୟାପାର ହୋଇଛି ସେପରି ରହିବ ନା ଏହାର ପରିବର୍ତ୍ତନ ଆବଶ୍ୟକ ?

(ଡ) ଅର୍ଥ କମିଶନ ନିଯୁକ୍ତି ଓ ତା'ର କ୍ଷମତାର ପ୍ରଶ୍ନରେ ରାଜ୍ୟର ଅଭିଗତ ରହିବ ନା ନାହିଁ ?

(ଢ) ଯୋଜନା କମିଶନ ନିଯୁକ୍ତି କିଏ କରିବ ଓ ତା' ସହିତ ରାଜ୍ୟ ଯୋଜନା ସଂସ୍ଥାର ସମ୍ପର୍କ କ'ଣ ହେବ ?

(ଣ) ଜାତୀୟ ଉନ୍ନୟନ ପରିଷଦ ଓ ପାର୍ଲାମେଣ୍ଟର ସମ୍ପର୍କ କ'ଣ ହେବ ?

ଏହି ପ୍ରଶ୍ନ ଗୁଡ଼ିକର ଗଣତାନ୍ତ୍ରିକ ସମାଧାନ ଲାଗି କେନ୍ଦ୍ର ରାଜ୍ୟ ସଂପର୍କର ପୁନର୍ବିନ୍ୟାସ ପ୍ରୟୋଜନ ।

**ପ୍ରଚଳିତ ସମ୍ବିଧାନର ସୀମାବଦ୍ଧତା**

ଆମ ଦେଶ ଶାସନର ସଂଘୀୟ ବ୍ୟବସ୍ଥା ସମ୍ବିଧାନରେ ସୀମିତ କରାଯାଇଛି । କ୍ଷମତା ହସ୍ତାନ୍ତର ହେଲା ଦେଶ ବିଭାଜନପରେ । ବ୍ରିଟିଶ ସରକାର ୧୯୩୫ରେ ଭାରତକୁ ସାମ୍ରାଜ୍ୟ ଭିତରେ ରଖି ଯେଉଁ ସମ୍ବିଧାନ ରଚନା କରିଥିଲେ, ମୂଳତଃ ତାହାକୁ ଭିତ୍ତି କରି ପାକିସ୍ତାନ ସୃଷ୍ଟି ପରେ ଏକ ପୁଞ୍ଜିବାଦୀ ରାଷ୍ଟ୍ର ପ୍ରତିଷ୍ଠା କରିବା ଲକ୍ଷ୍ୟରେ ଏହି ସମ୍ବିଧାନଟି ରଚିତ । ସମ୍ବିଧାନ ସଂଶୋଧନ କରି ନିର୍ଦ୍ଦେଶ ନାମାରେ ସମାଜବାଦ ଆମର ଲକ୍ଷ୍ୟ ବୋଲି ଘୋଷଣା କରିଦେଲେ ସମ୍ବିଧାନ ସମାଜବାଦୀ ହୋଇଯାଏ ନାହିଁ କି ସମାଜବାଦ ପ୍ରତିଷ୍ଠା ହୁଏ ନାହିଁ । ବ୍ୟକ୍ତିଗତ ସମ୍ପତ୍ତିକୁ ସମ୍ବିଧାନରେ ମୌଳିକ ଅଧିକାରର ଆସ୍ଥାନ ଦେଇ ସମାଜବାଦ ଏକ ଧପ୍ପାବାଜି । ଏହା ପୁଞ୍ଜିପତି ଶ୍ରେଣୀ ଶାସନର ଏକ ପ୍ରଚାର କୌଶଳ ।

କେନ୍ଦ୍ର-ରାଜ୍ୟ ସମ୍ପର୍କରେ ପୁନର୍ବିନ୍ୟାସ ଦାବୀ କଥା ଉଠାଇବା ବେଳେ ଏହି ସମ୍ବିଦାନକୁ ସମାଜବାଦୀ ସଂବିଧାନ କରିଦିଅ ବୋଲି କୁହାଯାଉ ନାହିଁ କି ଆଜି ଯେପରି ଶ୍ରେଣୀ ବିନ୍ୟାସ, ଉକ୍ତ ଶ୍ରେଣୀ ବିନ୍ୟାସକୁ ଅର୍ଥନୈତିକ କ୍ଷେତ୍ରରେ ନ ଭାଙ୍ଗି ଅର୍ଥାତ୍ ବ୍ୟକ୍ତିଗତ ସମ୍ପତ୍ତିକୁ ଲୋପ ନ କରି ସମାଜବାଦୀ ସମ୍ବିଧାନ ରଚିତ ହୋଇ ନ ପାରେ । ତାହା ଏକ ସ୍ୱତନ୍ତ୍ର ବିଷୟ ।

ତେବେ ଏ ପ୍ରସଙ୍ଗରେ ଏତିକି କହିଲେ ସଠିକ୍ ହେବ ଯେ ପ୍ରଚଳିତ ସମ୍ବିଧାନରେ ଯାହା ଯାହା ବର୍ତ୍ତମାନର ସଂଘୀୟ ବ୍ୟବସ୍ଥାକୁ ଆଘାତ କରେ, ଯାହା ରାଜ୍ୟଗୁଡ଼ିକୁ କେନ୍ଦ୍ରର ଦୟା

ଓ ମର୍ଜି ଉପରେ ନିର୍ଭର କରାଇ ଗଣତନ୍ତ୍ର ଉପରେ କୁଠାରଘାତ କରେ ସେଗୁଡ଼ିକୁ ଦୂର କରିବାକୁ ହିଁ କେନ୍ଦ୍ର-ରାଜ୍ୟ ସଂପର୍କର ପୁନର୍ବିନ୍ୟାସ ଆବଶ୍ୟକ ।

ରାଜ୍ୟରେ ସଂଖ୍ୟାଗରିଷ୍ଠ ଶାସନ, ବିଧାନସଭାରେ ସଂଖ୍ୟା ଗରିଷ୍ଠ ସମର୍ଥନ ଥାଇ ସୁଦ୍ଧା ଅତୀତରେ କେନ୍ଦ୍ର ରାଜ୍ୟ ସରକାରଗୁଡ଼ିକୁ ବରଖାସ୍ତ କରିଦେବା, ୧୯୫୭ରେ କେରଳ ବାମଫ୍ରଣ୍ଟ ସରକାରକୁ ଗାଦିଚ୍ୟୁତ କଲାଠାରୁ ଆରମ୍ଭ ହେଲା । ଦେଖାଗଲା ଏହି ଘୋର ଗଣତନ୍ତ୍ର ବିରୋଧୀ ପ୍ରକ୍ରିୟାକୁ ପରବର୍ତ୍ତିକାଳରେ ପର୍ଯ୍ୟାପ୍ତ ଭାବରେ କଂଗ୍ରେସ (ଇ) ସରକାର ଏବଂ ଅଢ଼େଇବର୍ଷ ଶାସନରେ ଥିବା ଜନତା ଦଳ ସରକାର ଅଧିକ ଉତ୍ସାହର ସହ ଜାରି ରଖିଲେ ।

ବର୍ତ୍ତମାନ ଦେଶରେ ସିକିମ ସମେତ ୨୧ ଟି ରାଜ୍ୟ । ସେଥି ମଧ୍ୟରୁ ଏପରି ରାଜ୍ୟ ଅଛନ୍ତି ଯାହାର ଲୋକ ସଂଖ୍ୟା ସୋଭିଏତ ୟୁନିଅନ୍‌କୁ ଛାଡ଼ିଦେଲେ ୟୁରୋପର ଯେକୌଣସି ବୃହତ ରାଜ୍ୟର ଲୋକସଂଖ୍ୟାଠାରୁ ଅଧିକ, ସମାନ ବା ପାଖାପାଖି । ଆମ ଦେଶରେ ବିଭିନ୍ନ ଭାଷାର ଲୋକେ ଭାରତୀୟ ସଂସ୍କୃତିର ପରିସର ମଧ୍ୟରେ ନିଜ ନିଜ ସଂସ୍କୃତିର ସବୀକୟତାଦ୍ୱାରା ସର୍ବଭାରତୀୟ ସଂସ୍କୃତିକୁ ଋଦ୍ଧିମନ୍ତ କରିଛନ୍ତି । ବିଭିନ୍ନ ଧର୍ମଗୋଷ୍ଠୀ ରହିଛନ୍ତି, ବିଭିନ୍ନ ଉପଜାତି ରହିଛନ୍ତି । ସେମାନଙ୍କର ସ୍ୱ ସ୍ୱ ଅର୍ଥନୈତିକ; ସାମାଜିକ ଓ ସାଂସ୍କୃତିକ ବିକାଶ ହିଁ ସଂଘୀୟ ବ୍ୟବସ୍ଥାକୁ ଦୃଢ଼ କରିବ ।

ସେହି ପରିପ୍ରେକ୍ଷୀରୁ ବିଚାର କଲେ ଶାସନ ବିଧାୟକ ସଭା ୧୯୫୦ରେ ପ୍ରଚଳିତ ଶାସନ ସମ୍ବିଧାନକୁ ଗ୍ରହଣ କଲାବେଳେ ସଂଘୀୟ ବ୍ୟବସ୍ଥାରେ ଯେତିକି ରାଜ୍ୟ ଥିଲେ, ତାହାଠାରୁ ଅଧିକ ରାଜ୍ୟ ଗଠିତ ହୋଇ ସଂଘୀୟ ବ୍ୟବସ୍ଥାର ସାମିଲ ହୋଇଛନ୍ତି ।

କେନ୍ଦ୍ରରେ ଅଧିଷ୍ଠିତ ବୁର୍ଜୁୟା ଶାସନ ଦଳ ସହଜରେ ସ୍ୱତନ୍ତ୍ର ରାଜ୍ୟ ଗଠନ ଦାବୀକୁ ମାନିଯାଇନାହିଁ । ସ୍ୱାଧୀନତା ସଂଗ୍ରାମ କାଳରେ ଭାଷାଭିତ୍ତିକ ପ୍ରଦେଶକୁ ଜାତୀୟ କଂଗ୍ରେସ ସ୍ୱୀକାର କରିଥିଲେ ହେଁ ଶାସନରେ ଅଧିଷ୍ଠିତ ହେବା ପରେ ଏହି ନ୍ୟାୟ ସଂଗତ ଦାବୀକୁ ଅଗ୍ରାହ୍ୟ କରିଦେଲା । ଏଠାରେ ସ୍ମରଣ କରାଇବା ପ୍ରାସଙ୍ଗିକ ହେବ ଯେ ମାନ୍ଦ୍ରାଜ ରାଜ୍ୟରେ ଅନ୍ତର୍ଭୁକ୍ତ କେରଳ ଓ ଆନ୍ଧ୍ରର ଅଧିବାସୀଙ୍କୁ ସ୍ୱତନ୍ତ୍ର ରାଜ୍ୟ ଗଠନ ପାଇଁ ତୁମୁଳ ସଂଗ୍ରାମ କରିବାକୁ ପଡ଼ିଥିଲା, ଦମନର ଶିକାର ହେବାକୁ ପଡ଼ିଥିଲା । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ରାମପାନ୍ତୁଲୁଙ୍କର ଏହି ଦାବୀ ଘେନି ଅନଶନ ଓ ଆତ୍ମାହୁତି ପରେ ଆନ୍ଧ୍ରରେ ହୋଇଥିବା ଜନ ଜାଗରଣ ଓ କେରଳବାସୀଙ୍କ ସଂଗ୍ରାମ ଏହି ଦୁଇ ରାଜ୍ୟ ସୃଷ୍ଟି କରାଇଥିଲା । ବମ୍ବେ ପ୍ରଦେଶରେ ଅନ୍ତର୍ଭୁକ୍ତ ମହାରାଷ୍ଟ୍ର ଏବଂ ଗୁଜୁରାଟକୁ ସ୍ୱତନ୍ତ୍ର ରାଜ୍ୟରେ ପରିଣତ କରିବା ପାଇଁ ବିରାଟ ଉଦବେଳନ ଏବଂ ତାହା ଉପରେ ଅକଥନୀୟ ଦମନ ଇତିହାସର ବସ୍ତୁ । ବମ୍ବେ ମୁଖ୍ୟମନ୍ତ୍ରୀ ମୋରାରଜୀ ଦେଶାଇ ମହାରାଷ୍ଟ୍ର ଏକୀକରଣ ଆନ୍ଦୋଳନକୁ ରକ୍ତର କୁଆରରେ ବୁଡ଼ାଇ ଦେଇଥିଲେ । ପରବର୍ତ୍ତୀ କାଳରେ ପଞ୍ଜାବ ଓ ପେପସୁ ଭଳି ଅକୃତ୍ରିମ ଏକ ରାଜ୍ୟ ପରିବର୍ତ୍ତେ

ହରିଆନା ଓ ହିମାଚଳ ପ୍ରଦେଶ ସୃଷ୍ଟି ଏବଂ ପୂର୍ବଭାରତରେ ଅରୁଣାଚଳମ, ମେଘାଳୟ, ମଣିପୁର, ମିଜୋରାମ, ତ୍ରିପୁରା ରାଜ୍ୟର ସୃଷ୍ଟି ସ୍ୱାଧୀନତା ପରବର୍ତ୍ତୀ ଯୁଗ ଭାଷାଭିତ୍ତିକ ରାଜ୍ୟ ଗଠନର ଗଣତାନ୍ତ୍ରିକ ଆନ୍ଦୋଳନର ସାଫଲ୍ୟ ।

ଯେଉଁ ଶାସକ ଶ୍ରେଣୀ ନିଜେ ସ୍ୱାଧୀନତା ସଂଗ୍ରାମ କାଳରେ ପ୍ରତିଶ୍ରୁତି ଜାତୀୟ ନୀତିକୁ ଜଳାଞ୍ଜଳୀ ଦେଇ ଭାଷାଭିତ୍ତିକ ରାଜ୍ୟଗଠନକୁ ବିରୋଧ କରୁଥିଲେ । ତାଙ୍କୁ ଗଣତାନ୍ତ୍ରିକ ଜନ ଆନ୍ଦୋଳନ ପାଖରେ ମୁଣ୍ଡ ନୁଆଁଇବାକୁ ବାଧ୍ୟ କରାଯାଇପାରିଲା । ସେଇ ଦୃଷ୍ଟିରୁ ବିଚାର କଲେ, ବୁର୍ଜୁୟା ଶାସନର ଶ୍ରେଣୀ ଚରିତ୍ର ଦୃଷ୍ଟିରୁ କେନ୍ଦ୍ର- ରାଜ୍ୟ ସଂପର୍କର ଗଣତାନ୍ତ୍ରିକ ପୁନର୍ବିନ୍ୟାସର ଦାବୀକୁ ସେମାନେ ସହଜରେ ମାନିନେବେ ନାହିଁ । ସେ କ୍ଷେତ୍ରରେ ଶ୍ରୀମତୀ ଗାନ୍ଧୀ ଓ ମୋରାରଜୀ ଦେଶାଇ ଏକ ହୋଇଛନ୍ତି ଓ ଏକ ହୋଇଯିବେ । ଅନ୍ୟ ପ୍ରତିକ୍ରିୟାଶୀଳ ବୁର୍ଜୁୟାଦଳର କେତେକ ଲୋକେ ବିଶେଷତଃ ସାଂପ୍ରଦାୟିକତାବାଦୀ, ବିଚ୍ଛିନ୍ନତାବାଦୀମାନେ ଏହି ପୁନର୍ବିନ୍ୟାସ ଦାବୀକୁ ଅଗଣତାନ୍ତ୍ରିକ ପୁନର୍ବିନ୍ୟାସ ଦାବୀରେ ପରିଣତ କରି କେନ୍ଦ୍ରକୁ ଦୁର୍ବଳ କରିବାକୁ ଏବଂ ରାଜ୍ୟଗୁଡ଼ିକୁ ତା ଫଳରେ ଅନ୍ତଃସାରଶୂନ୍ୟ କରି ସଂକୀର୍ଣ୍ଣତାବାଦୀ ଦୁଆମାନ ଉଠାଇ ନିଜ କବ୍‌ଜାରେ ରଖିବାକୁ ଉଦ୍ୟମ କରିବେ ଏବଂ କରୁଛନ୍ତି ମଧ୍ୟ ।

କେନ୍ଦ୍ରକୁ ଦୁର୍ବଳ କରିବା ଭଳି କେତେକ ପ୍ରସ୍ତାବ ମଧ୍ୟ ଉଠିଛି । ପୁନର୍ବିନ୍ୟାସ ଦାବୀ କଲାବେଳେ ଗୋଟିଏ ମହଲରେ କୁହାଯାଉଛି ଯେ କେନ୍ଦ୍ର ହାତରେ କେବଳ ପ୍ରତିରକ୍ଷା, ବୈଦେଶିକ ବ୍ୟାପାର, ଯୋଗାଯୋଗ ଓ ମୁଦ୍ରା ବ୍ୟବସ୍ଥା ରହୁ ଆଉ ସବୁ ବିଷୟ ରାଜ୍ୟଗୁଡ଼ିକ ହାତରେ ନ୍ୟସ୍ତ ହେଉ । ମାତ୍ର ଏପରି ଦାବୀ କେନ୍ଦ୍ରକୁ ଫଳପ୍ରଦ କରିବ ନାହିଁ । ଦେଶର ସମନ୍ୱିତ ଅର୍ଥନୈତିକ ଉନ୍ନୟ, ଜାତୀୟ ଐକ୍ୟର ସୁରକ୍ଷା ଓ ସଂପ୍ରସାରଣ ଜାତୀୟ ସମନ୍ୱୟ ପ୍ରତିଷ୍ଠା ଏବଂ ସାମୂହିକ ଅର୍ଥନୀତି ଏବଂ ଅଗ୍ରୋନ୍ନତ ଏବଂ ଅନୁନ୍ନତ ରାଜ୍ୟ ଗୁଡ଼ିକ ଏବଂ ଅଞ୍ଚଳଗୁଡ଼ିକର ଆବଶ୍ୟକତା ପରିପୂରଣରେ ଏହି ପ୍ରସ୍ତାବଗୁଡ଼ିକ କ୍ଷତିକାରକ ହେବ ।

ଭାରତୀୟ ୟୁନିଅନରୁ ଅଲଗା ହୋଇଯିବୁ, ସ୍ୱତନ୍ତ୍ର ରାଷ୍ଟ୍ର ଗଠନ କରିବୁ, ଯେମିତି କି ଖଲିସ୍ତାନ ଦାବୀ ଉଠିଛି ସେପରି ଦାବୀ ଉଠୁଥିବା ଦେଶ ବିଭାଜନକାରୀ ଶକ୍ତିଙ୍କୁ କୌଣସି ପ୍ରଶ୍ରୟ ଦିଆଯାଇ ନ ପାରେ ।

ଅସଲ ପ୍ରଶ୍ନ ହେଉଛି ରାଜ୍ୟଗୁଡ଼ିକୁ ବ୍ୟାପକ ଅଧିକାର ଦେବାକୁ ହେବ, ସେମାନଙ୍କର ସମ୍ୱଳକୁ ବଢ଼ାଇବାକୁ ହେବ, ସେମାନଙ୍କର ଗଣତାନ୍ତ୍ରିକ ଉଦ୍ୟୋଗଗୁଡ଼ିକୁ ସୁଯୋଗ ଦେବାକୁ ହେବ । ମୋଟ ଉପରେ ସଂଘୀୟ ବ୍ୟବସ୍ଥା ପରିସରରେ ରାଜ୍ୟ ଗୁଡ଼ିକୁ ପ୍ରସାରିତ କରିବାକୁ ହେବ ।

**ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପ୍ରସ୍ତାବ**

କେନ୍ଦ୍ର-ରାଜ୍ୟ ସମ୍ପର୍କର ପୁନର୍ବିନ୍ୟାସ ପ୍ରଶ୍ନ ଘେନି ଦେଶରେ ବାଦାନୁବାଦ ଆରମ୍ଭ

ହୋଇଗଲା ପରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ହିଁ ଆଜିକୁ ପାଖାପାଖି ବର୍ଷେ ହେବ ଏକ ସୁଚିନ୍ତନ ପ୍ରସ୍ତାବ ଦେଶବାସୀଙ୍କ ଆଗରେ ବାଢ଼ିଛି ।

ହାଇଦ୍ରାବାଦ, ଦିଲ୍ଲୀଠାରେ ବିରୋଧୀ ଦଳଗୁଡ଼ିକର ଯେଉଁ ବୈଠକ ବସିଥିଲା । ସେଥିରେ ପଞ୍ଜାବ ଓ ଆସାମ ସମସ୍ୟା ସମେତ କେନ୍ଦ୍ର-ରାଜ୍ୟ ସମ୍ପର୍କରେ ପୁନର୍ବିନ୍ୟାସ ସମସ୍ୟା କାର୍ଯ୍ୟସୂଚୀରେ ଅନ୍ତର୍ଭୁକ୍ତ ଥିଲା ଏବଂ ସିପିଆଇର ପ୍ରସ୍ତାବକୁ ଅନ୍ୟାନ୍ୟ ବିରୋଧୀଦଳଙ୍କ ବିଚାର ଲାଗି ସେମାନଙ୍କୁ ଦେଇଛି । ବିରୋଧୀ ଦଳଗୁଡ଼ିକଙ୍କ ଶ୍ରୀନଗର ସମ୍ମିଳନୀରେ ଏହି ସମସ୍ୟାକୁ ବିଚାର କରି ସମ୍ମତ ଦାବୀ ବାଢ଼ିବାକୁ ସିପିଆଇ ମଧ୍ୟ ପସ୍ତାବ କରିଛି ।

କେନ୍ଦ୍ର ରାଜ୍ୟ ରାଜ୍ୟ ମଧ୍ୟରେ ସମ୍ବିଧାନଗତ କ୍ଷମତା ଦର୍ଶାଇ ତିନୋଟି ତାଲିକା ରହିଛି । କ ତାଲିକାଟି କେନ୍ଦ୍ରୀୟ, ଖ ତାଲିକାଟି ରାଜ୍ୟ ଏବଂ ଗ ତାଲିକାଟି ଯୁଗ୍ମ ।

ରାଜ୍ୟଗୁଡ଼ିକର ଦାୟିତ୍ୱରେ କୃଷି ଜଳସେଚନ, ସ୍ୱାସ୍ଥ୍ୟ ପୂର୍ତ୍ତ ଓ ଶିକ୍ଷାର ଏବଂ ଆଂଶିକ ଶିଳ୍ପ ରହିଛି । ତା'ର ଅର୍ଥ ଦେଶର ସାଧାରଣ ଲୋକଙ୍କର ଜୀବନଯାତ୍ରା ଓ ସେବାମୂଳକ କାମଦାମର ପ୍ରଧାନ ଦାୟିତ୍ୱ ରାଜ୍ୟର । ଏପରି ଗୁରୁଦାୟିତ୍ୱକୁ ପାଳନ କରିବାକୁ ହେଲେ ପ୍ରଚୁର ସମ୍ବଳ ଆବଶ୍ୟକ । ମାତ୍ର ସମ୍ବଳ ସଂଗ୍ରହ ଦୃଷ୍ଟିରୁ ରାଜ୍ୟ ଗୁଡ଼ିକର କ୍ଷମତା ସୀମାବଦ୍ଧ । କେନ୍ଦ୍ର ଅର୍ଜନ କରୁଥିବା ରାଜସ୍ୱର ମୂଳ ଉତ୍ସଗୁଡ଼ିକ ନିଶ୍ଚିତ ଅଧିକ ଫଳଦାୟ । କାରଣ କେନ୍ଦ୍ର ହାତରେ ରହିଛି ଅୟକର, ବୈଦେଶିକ ବାଣିଜ୍ୟ ଶୁଳ୍କ, ଆନ୍ତଃ ଦେଶୀୟ ଉତ୍ପାଦନ ଶୁଳ୍କ, କମ୍ପାନୀ କର ପ୍ରଭୃତି ।

ରାଜ୍ୟଗୁଡ଼ିକର ଆୟର ମୂଳ ଉତ୍ସ ମଧ୍ୟରେ ମୁଖ୍ୟ ହେଉଛି ବିକ୍ରି କର, ପ୍ରମୋଦ କର, ଅବକାରୀ ଶୁଳ୍କ, ଯାନବାହନ ଉପରେ କର । ବିକ୍ରୟ କରରେ ରାଜ୍ୟଗୁଡ଼ିକ ଆଗରୁ ଯେଉଁ ଆୟ କରୁଥିଲେ, ଇସ୍ପାତ, କୋଇଲା ପ୍ରଭୃତି ଉତ୍ପାଦନକାରୀ ରାଜ୍ୟକୁ କେନ୍ଦ୍ର ଏବେ ମୁଖ୍ୟତଃ ବଞ୍ଚିତ କରିଛି । ଏପରି ଶିଳ୍ପକୁ ଘୋଷିତ ତାଲିକାରେ ଅନ୍ତର୍ଭୁକ୍ତ କରାଇ ରାଜ୍ୟର ରାଜସ୍ୱକୁ କେନ୍ଦ୍ର ପ୍ରକୃତ ପକ୍ଷରେ ନେଇ ଯାଇଛି । ସେମିତି ଚିନି, ଲୁଗାପଟା, ବସ୍ତ୍ରଜାତ ପଦାର୍ଥ, ଧୂଆଁପତ୍ର ଓ ଧୂଆଁପତ୍ର ଜାତ ପଦାର୍ଥ ଉପରେ ଟିକସ ବସାଇବା ଅଧିକାରକୁ ଆଗରୁ ରାଜ୍ୟ ଠାରୁ କାଢ଼ି ନିଆଯାଇଛି । ପୁଣି ୧୯୮୦ରେ କମଳାପତି ତ୍ରିପାଠୀ ସୁପାରିଶ ଅନୁସାରେ ୧୩ଟି ପଦାର୍ଥ ଉପରେ ରାଜ୍ୟ କ୍ରୟବିକ୍ରୟ ଉପରେ କର ଧାର୍ଯ୍ୟ କରିପାରିବ ନାହିଁ ।

ସେମିତି ଆୟକର ହାର ନ ବଢ଼େଇ ସରଚାର୍ଜ ବଢ଼େଇବା, ଉତ୍ପାଦନ ଶୁଳ୍କ ନ ବଢ଼େଇ ପଣ୍ୟଗୁଡ଼ିକର ଦାମ ବଢ଼େଇବା ପନ୍ଥାକୁ କେନ୍ଦ୍ର ଅଧିକରୁ ଅଧିକ ଗ୍ରହଣ କରୁଛି ।

ଯୁଗ୍ମ ତାଲିକାରେ ଥିବା ବିଷୟ ଘେନି ଯଦି କେନ୍ଦ୍ରୀୟ ଆଇନ ଥାଏ, ତେବେ ରାଜ୍ୟର ଆଇନ ବାତିଲର ବ୍ୟବସ୍ଥା ରହୁଛି । ସେ ହେତୁ ରାଜ୍ୟର ସ୍ୱାୟତ୍ତ ଶାସନ ଅଧିକ ସୀମିତ ହୋଇଛି ।

କେନ୍ଦ୍ର ରାଜ୍ୟ ଗୁଡ଼ିକର ସ୍ୱାର୍ଥକୁ ଓ ସେଗୁଡିକର ବିକାଶର ସ୍ୱାର୍ଥକୁ ନ ଦେଖି ଯେତିକି କ୍ଷମତା ଆଗରୁ ଥିଲା, ତା'ଠାରୁ ଅଧିକ କ୍ଷମତା ପ୍ରୟୋଗ କରି ରାଜ୍ୟ ଗୁଡ଼ିକର ସମ୍ବଳ ସଂଗ୍ରହକୁ ସୀମିତ କରି ଦେଇଛି ।

ଏହିସବୁ ବିଚାରରୁ ସି.ପି.ଆଇ. କେନ୍ଦ୍ର ରାଜ୍ୟ ସମ୍ପର୍କରେ ପୁନର୍ବିନ୍ୟାସ ଲାଗି ଏହି ପ୍ରବନ୍ଧଟିର ଆଗରୁ ଉଲ୍ଲିଖିତ କ ଠାରୁ ଣ ପର୍ଯ୍ୟନ୍ତ ପ୍ରତ୍ୟେକଟି ପ୍ରଶ୍ନର ସମାଧାନର ପନ୍ଥା ପଦ୍ଧତି ନିର୍ଦ୍ଦେଶ କରିଛି ।

ରାଜ୍ୟ ଗୁଡ଼ିକୁ ଅଧିକ ଆଇନ ପ୍ରଣୟନକାରୀ କ୍ଷମତା ଦେବାକୁ ହେବ ଏବଂ ରାଜ୍ୟ ପାଇଁ ତାଲିକା (ଖ)ରେ ସମ୍ବିଧାନର ୭ମ ସିଡୁଲରୁ ଦୂର କରିବାକୁ ହେବ । ରାଜ୍ୟ ତାଲିକାଭୁକ୍ତ ବିଷୟ ଘେନି ପାର୍ଲିଆମେଣ୍ଟ ୨୪୯ ଧାରାରେ ଆଇନ କରିବାର ଯେଉଁ ଅଧିକାର ରହିଛି ତାହାକୁ ଦୂର କରିବାକୁ ହେବ । ଏହାଦ୍ୱାରା ରାଜ୍ୟ ତାଲିକା କହି ତା' ଉପରେ ପାର୍ଲିଆମେଣ୍ଟ ଅଙ୍କୁଶ ଯିବ ଓ ରାଜ୍ୟ ଅଧିକ ସ୍ୱାୟତ୍ତଶାସନ ଅଧିକାର ଉପଭୋଗ କରିବ । ସେମିତି ଦୁଇ ବା ଅଧିକ ରାଜ୍ୟରୁ ଅନୁରୋଧ ଗଲେ ପାର୍ଲିଆମେଣ୍ଟ ଆଇନ କରିବାର ୨୫୨ ଧାରାକୁ ଉଠାଇ ଦେବାକୁ ହେବ ।

ରାଜ୍ୟ ତାଲିକା, କେନ୍ଦ୍ର ତାଲିକା ଓ ଯୁଗ୍ମ ତାଲିକା ବ୍ୟତୀତ ଅବଶିଷ୍ଟ ଯାହା ରହିଗଲା ସେଗୁଡ଼ିକ ସମ୍ପର୍କରେ ଆଇନ ପ୍ରଣୟନ କରିବାର ଅଧିକାର ସମ୍ବିଧାନର ୨୪୮ ଧାରା ଓ ୯୭ ନମ୍ବର ଅନ୍ତର୍ଭୁକ୍ତ ଦ୍ୱାରା କେନ୍ଦ୍ର ହାତରେ ରହିଛି । ସିପିଆଇର ମତ ଯେ ରାଜ୍ୟକୁ ଅଧିକ ଶକ୍ତିଶାଳୀ କରିବାକୁ ଓ ଦେଶକୁ ଅଧିକ ଐକ୍ୟବଦ୍ଧ କରିବାକୁ ହେଲେ ଦେଶର ଐକ୍ୟ ଓ ସଂହତି ସଂକ୍ରାନ୍ତ ବିଷୟ ଘେନି ଆଇନ ପଣୟନ କରିବାର ଅବଶିଷ୍ଟ ଅଧିକାର କେନ୍ଦ୍ରକୁ ରହିବ ଏବଂ ଅନ୍ୟ ସବୁ ଅବଶିଷ୍ଟ ବିଷୟ ଘେନି ରାଜ୍ୟ ସରକାର ହିଁ ଆଇନ କରିବେ ।

**ରାଷ୍ଟ୍ରପତି, ରାଜ୍ୟପାଳ, ହାଇକୋର୍ଟ ବିଚାରପତି ରାଜ୍ୟରେ କେନ୍ଦ୍ରୀୟ ସର୍ଭିସ ଅଫିସରଙ୍କ ପ୍ରଶ୍ନ**

ବିଧାନସଭା ଭାଙ୍ଗି ଦେବା, ରାଜ୍ୟ ସରକାରଙ୍କୁ ବରଖାସ୍ତ କରିବାର ଅଧିକାର ରାଷ୍ଟ୍ରପତିଙ୍କର ରହିବ ନାହିଁ । ରାଜ୍ୟରେ ସରକାର ସଂଖ୍ୟାଗରିଷ୍ଠ ସରକାରର ସମ୍ଭାବନା ନ ଥିଲେ ପ୍ରଚଳିତ ସରକାର ଏକ କେୟାରଟେକର ବା ଅସ୍ଥାୟୀ ସରକାର ରୂପେ ୪ ମାସ ଭିତରେ ସାନି ନିର୍ବାଚନ ଯାଏ କାର୍ଯ୍ୟ କରିବ ବୋଲି ସମ୍ବିଧାନରେ ବ୍ୟବସ୍ଥା କରିବାକୁ ହେବ । ଯଦି ସଂପୃକ୍ତ ରାଜ୍ୟରେ ହିଂସାତ୍ମକ କାର୍ଯ୍ୟକଳାପ ହେତୁ ନିର୍ବାଚନ ଅସମ୍ଭବ ବୋଲି ରାଷ୍ଟ୍ରପତି ନୁହଁ, ପାର୍ଲିଆମେଣ୍ଟ ନିଷ୍ପତ୍ତି କରିବ ତେବେ ନିର୍ଦ୍ଦିଷ୍ଟ ସମୟ ପାଇଁ ସେଠାରେ ରାଷ୍ଟ୍ରପତି ଶସନ ଜାରି ହେବ ।

ରାଜ୍ୟପାଳଙ୍କ କ୍ଷମତା ସମ୍ପର୍କରେ ସିପିଆଇର ମତ ଯେ ବିଧାନସଭା ଯେଉଁ ଆଇନ

ଧାର୍ଯ୍ୟ କରିବ ତାହା ଛାଏଁ ଛାଏଁ ଆଇନରେ ପରିଣତ ରାଜ୍ୟ ବିଧାନସଭା ଗ୍ରହଣ କରିଥିବା ବିଲ୍‌କୁ ରାଷ୍ଟ୍ରପତିଙ୍କ ଅନୁମତି ଲାଗି ଅଟକାଇ ରଖିବାର ଅଧିକାର ରାଜ୍ୟପାଳଙ୍କର ରହିବ ନାହିଁ । କେବଳ ୨୮୮ (୨) ଧାରା ଅନୁସାରେ ଯେଉଁ ବିଷୟ ପଡ଼ିବ ସେ ଘେନି ଗୃହୀତ ବିଲ୍‌କୁ ରାଜ୍ୟପାଳ ରାଷ୍ଟ୍ରପତିଙ୍କ ଅନୁମତି ଲାଗି ପ୍ରେରଣ କରିପାରିବେ । ଦେଖାଯାଇଛି କେରଳରେ କଃ ଅଚ୍ୟୁତ ମେନନଙ୍କ ସରକାରଠାରୁ ନାୟାନାର୍ ସରକାର ଯାଏ ଜମିଜମା ସଂକ୍ରାନ୍ତରେ, ପଶ୍ଚିମବଙ୍ଗରେ ବାମଫ୍ରଣ୍ଟ ସରକାର ଭୂସଂସ୍କାର ସଂପର୍କରେ ଯେଉଁ ବିଲ ଗ୍ରହଣ କରିଥିଲେ ସେଗୁଡ଼ିକୁ ରାଷ୍ଟ୍ରପତିଙ୍କ ଅନୁମତି ସାପେକ୍ଷ କରି ବର୍ଷ ବର୍ଷ ଅଟକାଯାଇଛି ।

ସେମିତି ରାଜ୍ୟପାଳଙ୍କୁ ଏବେ ଯେପରି ଦଳୀୟ ଦୃଷ୍ଟିକୋଣରୁ ନିଯୁକ୍ତି ଦେବାରୁ ବିବାଦ ଉପୁଜୁଛି ତାହା ଦୂର କରିବା ଲାଗି ରାଜ୍ୟ ବିଧାନସଭା ଦ୍ୱାରା ଅନୁମୋଦିତ ପାନେଲର ଭିତ୍ତିରେ ରାଜ୍ୟପାଳଙ୍କୁ ରାଷ୍ଟ୍ରପତି ନିଯୁକ୍ତ କରିବେ ଏବଂ ସେ ବିଧାନସିଭାର ଆସ୍ଥାଭାଜନ ହେବେ ।

ରାଷ୍ଟ୍ରପତି ହାଇକୋର୍ଟର ପ୍ରଧାନ ବିଚାରପତିଙ୍କ ସମେତ ବିଚାରପତିମାନଙ୍କ ନିଯୁକ୍ତି ସଂପୃକ୍ତ ରାଜ୍ୟ ବିଧାନସଭା ଦ୍ୱାରା ଅନୁମୋଦିତ ପାନେଲରୁ କରିବେ ।

ଆଇ.ଏ.ଏସ୍, ଆଇ.ପି.ଏସ., ଆଇଏଫଏସ ପ୍ରଭୃତି ଅଖିଳ ଭାରତ ସର୍ଭିସ ଅନ୍ତର୍ଭୁକ୍ତ କ୍ୟାଡ଼ରମାନେ ରାଜ୍ୟରେ ନିଯୁକ୍ତି ହେଲେ ରାଜ୍ୟ ସରକାରଙ୍କ ସମ୍ପୂର୍ଣ୍ଣ ଶୃଙ୍ଖଳାଧୀନ ରହିବେ । ଅଭିଜ୍ଞତାରୁ ଦେଖାଯାଇଛି ଏପରି କ୍ୟାଡ଼ର ରାଜ୍ୟ ସରକାରଙ୍କ ଅଧୀନରେ କାମ କଲେ ସୁଧା ସେ ଯେମିତି ରାଜ୍ୟ ସରକରଙ୍କ ଶୃଙ୍ଖଳାର ଉର୍ଦ୍ଧ୍ୱରେ ସେପରି ଅଧିକାର ଉପଭୋଗ କରୁଛନ୍ତି ।

ରାଜ୍ୟ ସରକାରଙ୍କ ବିନାନୁମତିରେ କେନ୍ଦ୍ର ଯେପରି ମନଇଚ୍ଛା କେନ୍ଦ୍ର ରିଜର୍ଭ ପୁଲିସ ବା ଅନୁରୂପ କେନ୍ଦ୍ର ବାହିନୀ ରାଜ୍ୟକୁ ପଠାଇ ଦେଇ ପାରୁଛନ୍ତି ତାହା ବନ୍ଦ ହେବ । କେବଳ ଆଦିବାସୀ, ହରିଜନ ଓ ଧର୍ମ ଓ ଭାଷାଗତ ସଂଖ୍ୟାନ୍ୟୁନଙ୍କ ନିରାପତ୍ତା ଓ ସମ୍ପଦ ରକ୍ଷା କ୍ଷେତ୍ରରେ କେନ୍ଦ୍ରରୁ ଏପରି ବାହିନୀ ଆସି ପାରିବେ । ଜାମ୍ମୁ ଓ କାଶ୍ମୀରର ବିଶେଷ ସାମ୍ବିଧାନିକ ଆସ୍ଥାନକୁ ଅକ୍ଷୁର୍ଣ୍ଣ ରଖାଯିବ ଏବଂ ଦିଲ୍ଲୀ, ପଣ୍ଡିଚେରୀ ଓ ଗୋଆକୁ ପୂର୍ଣ୍ଣ ରାଜ୍ୟପାହ୍ୟାକୁ ଉନ୍ନୀତ କରାଯିବ ।

ରାଜ୍ୟସଭାକୁ ମନୋନୟନ, ଆନ୍ତଃ ରାଜ୍ୟ ପରିଷଦ, ଅର୍ଥ କମିଶନ, ଯୋଜନା କମିଶନ, ଜାତୀୟ ଉନ୍ନୟନ ପରିଷଦ ଇତ୍ୟାଦିର ପ୍ରଶ୍ନ

ସି.ପିଆଇ. ପସ୍ତାବ ଦେଇଛି ଯେ ଆନୁପାତିକ ପ୍ରତିନିଧିତ୍ୱ ବ୍ୟବସ୍ଥା ଅନୁସାରେ ବିଜ୍ଞାନ, ସଂସ୍କୃତି, କଳା ସାହିତ୍ୟ କ୍ଷେତ୍ରର ବିଶିଷ୍ଟ ବ୍ୟକ୍ତିଙ୍କୁ ରାଜ୍ୟସଭା ସଦସ୍ୟମାନେ ନିର୍ବାଚନ କରିବେ । ରାଜ୍ୟସଭାକୁ ବର୍ତ୍ତମାନ ଥିବା ଏ ସଂକ୍ରାନ୍ତ ମନୋନୟନ ବ୍ୟବସ୍ଥାକୁ ଉଠାଇ ଦିଆଯିବ ।

ରାଜ୍ୟ ରାଜ୍ୟ ଏବଂ କେନ୍ଦ୍ର ରାଜ୍ୟ ମଧ୍ୟରେ ବିବାଦର ସମାଧାନ ଲାଗି ବ୍ୟାପକ କ୍ଷମତାସମ୍ପନ୍ନ ଏକ ଆନ୍ତଃ ରାଜ୍ୟ ପରିଷଦ ଗଠିତ ହେବ ।

ଆଦିତବାସୀ ବହୁଳ ଅଞ୍ଚଳଗୁଡ଼ିକ ଯେଉଁଠି ରହିଛି । ସେହି ସଂପୃକ୍ତ ରାଜ୍ୟ ପରିସରରେ

ଗଣତାନ୍ତ୍ରିକ ସ୍ୱାୟତ୍ତଶାସନ ଲାଗି ସ୍ୱତନ୍ତ୍ର ଅଞ୍ଚଳ ସୃଷ୍ଟି ଲାଗି ସମ୍ବିଧାନର ଦଶମ ଅଂଶରେ ଥିବା ୨୪୪ (କ) ଧାରାକୁ ସଂଶୋଧନ କରିବାକୁ ହେବ ।

ରାଜ୍ୟଗୁଡ଼ିକ ସହିତ ପରାମର୍ଶ କରି ପାର୍ଲିଆମେଣ୍ଟ ଦ୍ୱାରା ପ୍ରସ୍ତୁତ ପାନେଲରୁ ରାଷ୍ଟ୍ରପତି ଅର୍ଥ କମିଶନ ନିଯୁକ୍ତ କରିବେ ।

ଯୋଜନା କମିଶନକୁ ଏକ ସ୍ଥାୟୀ (ଷାଟ୍ୟୁଟରି) ସଂସ୍ଥାରେ ପରିଣତ କରିବାକୁ ହେବ । ପ୍ରଧାନମନ୍ତ୍ରୀ ଚେୟାରମ୍ୟାନ ରହିବେ ଓ ମନ୍ତ୍ରୀମଣ୍ଡଳରୁ ୩ ଜଣରୁ ଅଧିକ ସଦସ୍ୟ ସେହି କମିଶନରେ ରହିବେ ନାହିଁ ଅନ୍ୟ ସଭ୍ୟ ଗୁଡ଼ିକ ପାର୍ଲିଆମେଣ୍ଟର ପ୍ରସ୍ତାବ ଅନୁସାରେ ବିଶେଷଜ୍ଞ ହୋଇଥିବେ । ଯୋଜନା ପ୍ରଣୟନ ଓ ତାହାର ରୂପାୟନରେ ରାଜ୍ୟମାନଙ୍କର ପ୍ରତିନିଧିମାନଙ୍କ ସହଯୋଗ ନିଆଯିବ ।

ସେମିତି ଜାତୀୟ ଉନ୍ନୟନ ପରିଷଦ ଏକ ସ୍ଥାୟୀ ଷାଟ୍ୟୁଟରୀ ସଂସ୍ଥାହେବ ଓ ତାହାର ବ୍ୟାପକ କାର୍ଯ୍ୟକଳାପ ଓ ପାର୍ଲିଆମେଣ୍ଟ ସହିତ ତାହାର ସମ୍ପର୍କକୁ ସୁସ୍ପଷ୍ଟ କରାଯିବ ।

**ଶୁଳ୍କ, ବର୍ହିବାଣିଜ୍ୟ ଶୁଳ୍କ, ଅବକାରୀ ଶୁଳ୍କ, କରପୋରେସନ ଟିକସ, ଗ୍ରାଣ୍ଟ-ଇନ-ଏଡ୍‌**

ରାଜ୍ୟମାନଙ୍କର ଆର୍ଥିକ ସମ୍ବଳକୁ ଉନ୍ନତ କରିବା ଲାଗି ଏହିସବୁ କ୍ଷେତ୍ରରୁ ହେଉଥିବା କେନ୍ଦ୍ର ରାଜସ୍ୱରୁ ରାଜ୍ୟମାନଙ୍କୁ ଅନ୍ୟୁନ ଶତକଡ଼ା ୫୦ ଭାଗ ଦିଆଯିବ ଏବଂ ଏହର ସାମ୍ବିଧାନିକ ଗ୍ୟାରେଣ୍ଟି ରହିବ । ଅନୁନ୍ନତ ଅଞ୍ଚଳ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଓ ଦୁର୍ବଳ ଜନ ଅଂଶର ବିକାଶ ଲାଗି ଅଧିକ ଆର୍ଥିକ ସାହାଯ୍ୟ ଦେବା କ୍ଷେତ୍ରରେ ସାମ୍ବିଧାନିକ ଗ୍ୟାରେଣ୍ଟି ରଖାଯିବ ।

ରାଜ୍ୟକୁ ପାର୍ଲିଆମେଣ୍ଟ ଗ୍ରାଣ୍ଟ-ଇନ ଏଡ଼ ଦେବା ଲାଗି ଥିବା ୧୭୫ ଧାରାକୁ ସଂଶୋଧନ କରିବାକୁ ହେବ । ଯେପରିକି ରାଜ୍ୟକୁ ଆର୍ଥିକ ସାହାଯ୍ୟ ଦେବାବେଳେ କେନ୍ଦ୍ର ଏକ୍‌ସିକ୍ୟୁଟିଭର ମନ ଇଚ୍ଛା ଆଚରଣ ବନ୍ଦ ହେବ ।

ଏଯାଏ ପ୍ରଚଳିତ କେନ୍ଦ୍ର-ରାଜ୍ୟ ସମ୍ପର୍କ ଏବଂ ରାଜ୍ୟ ଗୁଡ଼ିକ ଉପରେ ଥିବା ଗୁରୁଦାୟିତ୍ୱ ପୂରଣ କ୍ଷେତ୍ରରେ ନିଅଣ୍ଟ ଧରିବାରୁ ରାଜ୍ୟଗୁଡ଼ିକର କେନ୍ଦ୍ର ଠାରୁ ଋଣଭାର ରାଜ୍ୟଗୁଡ଼ିକ ପରିଶୋଧ କରି ନ ପାରିବା ଅବସ୍ଥାରେ ପହଞ୍ଚିଛନ୍ତି । ସେହି ଦୃଷ୍ଟିରୁ ରାଜ୍ୟଗୁଡ଼ିକ କରିଥିବା ଋଣର ବହୁଳାଂଶକୁ ଛାଡ଼ କରିଦେଇ ସେମାନଙ୍କ ଋଣଭାର ଲାଘବ କରିବାକୁ ହେବ । କେନ୍ଦ୍ର ହିଁ ରାଜ୍ୟଗୁଡ଼ିକୁ ପର୍ଯ୍ୟାପ୍ତ ସମ୍ବଳ ଅସ୍ୱୀକାର କରିଥିବାରୁ ସେମାନଙ୍କ ଋଣଭାର ଏପରି ବଢ଼ିଛି ।

ଏହା ସଙ୍ଗେ ସଙ୍ଗେ ଋଣ ଉଠାଇବା ଲାଗି ରାଜ୍ୟଗୁଡ଼ିକର କର୍ତ୍ତୃତ୍ୱକୁ ବୃଦ୍ଧି କରିବାକୁ ହେବ ଏବଂ ରାଜ୍ୟଗୁଡ଼ିକ ବର୍ତ୍ତମାନ କରିଥିବା ଓଭରଡ୍ରାଫ୍‌ଟକୁ ରାଜ୍ୟ ସମ୍ବଳ ଓ ଚାହିଦା ଦୃଷ୍ଟିରୁ ପୁନର୍ବିଚାର କରିବାକୁ ହେବ ।

କେନ୍ଦ୍ର ଓ ରାଜ୍ୟ ଦୁହେଁ ଅଙ୍ଗାଗୀ ଭାବରେ ସଂଯୁକ୍ତ । କେନ୍ଦ୍ରକୁ ସୁଦୃଢ଼ କରିବାକୁ ହେଲେ ରାଜ୍ୟଗୁଡ଼ିକୁ ସୁଦୃଢ଼ କରିବାକୁ ହେବ । ଭାରତ ସମ୍ବିଧାନର ସଂଘୀୟ ବ୍ୟବସ୍ଥାରେ

ଥିବା ଏହି ତ୍ରୁଟି ବିଚ୍ୟୁତିଗୁଡ଼ିକୁ ଦୂର ନ କଲେ ବିଭାଜନକାରୀ, ବିଛିନ୍ନତାବାଦୀ ଶକ୍ତିମାନେ, ପ୍ରତିକ୍ରିୟାଶୀଳ ମହଲ ତା'ର ଯେପରି ସୁଯୋଗ ନେଇ ଆସିଛନ୍ତି, ତାହାର ଅଧିକ ସୁଯୋଗ ନେବେ । ଅନ୍ୟ ଦିଗରେ ଅସମ ବିକାଶ ହେତୁ ଅଞ୍ଚଳ ଓ ରାଜ୍ୟଗୁଡ଼ିକରେ ଦେଖାଯାଇଥିବା ଅସନ୍ତୋଷ ବୃଦ୍ଧି ପାଇବ । ତାହା କେବଳ ରାଜ୍ୟର ସ୍ୱାୟତ୍ତଶାସନକୁ ବିଘ୍ନିତ କରିବ ନୁହେଁ, ଭାରତର ଐକ୍ୟ, ଅଖଣ୍ଡତା ଓ ସଂହତି ପ୍ରତି ଆଞ୍ଚ ଆଣିବ ।

ବର୍ତ୍ତମାନ ଯେଉଁମାନେ କ୍ଷମତାସୀନ ଓ ଏହି କ୍ଷମତାସୀନ ଦଳଙ୍କ ପଛରେ ଯେଉଁ ଆର୍ଥିକ, ସାମାଜିକ ଶ୍ରେଣୀ ରହିଛନ୍ତି, ସେମାନେ କେନ୍ଦ୍ର-ରାଜ୍ୟ ମଧ୍ୟରେ ସମ୍ପର୍କ ପରିବର୍ତ୍ତନ ଦାବୀକୁ ଭଣ୍ଡୁର କରିବାକୁ ନାନା ଯୁକ୍ତି ବାଢୁଛନ୍ତି ଓ ବାଢ଼ିବେ । ସେହେତୁ ସିପିଆଇ ଯେଉଁ ପ୍ରସ୍ତାବ ଦେଇଛି ଓ ସବୁ ବାମ ଓ ଗଣତାନ୍ତ୍ରିକ ମତବାଦ ଏହି ପରିବର୍ତ୍ତନ ସମ୍ପର୍କରେ ଯେଉଁ ମତ ଐକ୍ୟରେ ପହଞ୍ଚିବେ ତାହାକୁ ବ୍ୟାପକ ଜନସାଧାରଣଙ୍କ ଭିତରକୁ ଘେନି ଯିବାକୁ ହେବ । ଏହା କେବଳ ବୁଦ୍ଧିଜୀବୀମାନଙ୍କର ବା ପରିବର୍ତ୍ତନ ଚାହୁଁଥିବା ଦଳମାନଙ୍କର କାଗଜ କଲକ, ଯୁକ୍ତି ତର୍କର କସରତରେ ସୀମାବଦ୍ଧ ହେବ ନାହିଁ ।

ଏଥିଲାଗି ଜନଚେତନା ବୃଦ୍ଧି ଓ ବ୍ୟାପକ ସଂଘବଦ୍ଧ ଜନ ଆନ୍ଦୋଳନ ଆବଶ୍ରକ । ତାହା ହିଁ କେବଳ କେନ୍ଦ୍ର ରାଜ୍ୟ ସମ୍ପର୍କର ପୁନର୍ବିନ୍ୟାସ କରିବା ପାଇଁ ଶାସକ ଶ୍ରେଣୀ ଓ ଶାସନକାରୀ ଦଳକୁ ବାଧ୍ୟ କରିବ ।

□□□

# ପାଲେଷ୍ଟାଇନ୍‌ରେ ଆଂଶିକ ସ୍ୱାୟ ଶାସନର ପୃଷ୍ଠଭୂମି ଓ ଭବିଷ୍ୟତ

୧୯୯୩ ସେପ୍‌ଟେମ୍ବର ୧୩ ତାରିଖରେ ଆମେରିକାର ରାଜଧାନୀ ୱାଶିଂଟନସ୍ଥିତ ହ୍ୱାଇଟ ହାଉସ୍‌ଠାରେ ପାଲେଷ୍ଟାଇନ୍ ମୁକ୍ତି ସଂଗଠନ ଏବଂ ଇସ୍ରାଏଲ ସରକାରଙ୍କ ମଧ୍ୟରେ ଏକ ଚୁକ୍ତି ସ୍ୱାକ୍ଷରିତ ହୋଇଛି । ଇସ୍ରାଏଲ ସରକାରଙ୍କ ପକ୍ଷରୁ ତାହାର ପରରାଷ୍ଟ୍ରମନ୍ତ୍ରୀ ସିମୋନ ପେରେସ ଏବଂ ପାଲେଷ୍ଟାଇନ୍ ମୁକ୍ତି ସଂଗଠନ ପି.ଏଲ୍.ଓ ପକ୍ଷରୁ ତାହାର କାର୍ଯ୍ୟକାରିଣୀ ସଦସ୍ୟ ମହମ୍ମଦ ଆବାସ ସେଥିରେ ସ୍ୱାକ୍ଷର କରିଛନ୍ତି । ଇସ୍ରାଏଲର ପ୍ରଧାନମନ୍ତ୍ରୀ ଯାଇଜାଖ ହକ୍‌ଶର ଏବଂ ପି.ଏଲ୍.ଓ ମୁଖ୍ୟ ଯାସେର ଆରାଫାତ୍ ସ୍ୱାକ୍ଷର ବେଳେ ଉଭୟ ପକ୍ଷର ଶୀର୍ଷ ପ୍ରତିନିଧିତ୍ୱ କରୁଥିଲେ । ଏହି ଚୁକ୍ତିରେ ମଧ୍ୟପ୍ରାଚ୍ୟ ଶାନ୍ତି ଆଲୋଚନାର ମିଳିତ ଉଦ୍ୟୋଗୀ ଯୁକ୍ତରାଷ୍ଟ୍ର ଆମେରିକାର ସ୍ୱାରାଷ୍ଟ୍ର ସଚିବ ୱାରେନ୍ ଖ୍ରୀଷ୍ଟୋଫର ଏବଂ ଋଷିଆର ପରରାଷ୍ଟ୍ର ମନ୍ତ୍ରୀ ଆନ୍ଦ୍ରେୟୀ କୋସିରେଭ ଚୁକ୍ତି ପତ୍ରରେ ସାକ୍ଷୀ ପଡ଼ିଛନ୍ତି । ସ୍ୱାକ୍ଷର ସମାରୋହରେ ଆମେରିକାର ରାଷ୍ଟ୍ରପତି ବିଲ୍ କ୍ଲିଣ୍ଟନ୍, ଜାତିସଂଘର ସେକ୍ରେଟେରୀ ଜେନେରାଲ ବୁଟ୍ରୋସ୍‌ବୁଟ୍ରୋସ୍ ଘାଲି, ଭାରତ ସମେତ ପୃଥିବୀର ବହୁ ଦେଶର ୨ ହଜାରରୁ ଅଧିକ ପ୍ରତିନିଧି ଉପସ୍ଥିତ ଥିଲେ ବୋଲି ପ୍ରକାଶ ପାଇଛି ।

ଚୁକ୍ତି ସ୍ୱାକ୍ଷର ପୂର୍ବଦିନ ସେପ୍‌ଟେମ୍ବର ୧୨ରେ ପି.ଏଲ୍.ଓ.କୁ ପାଲେଷ୍ଟାଇନ୍ ଆରବମାନଙ୍କ ଏକମାତ୍ର ମୁଖପାତ୍ର ବୋଲି ଇସ୍ରାଏଲ ସ୍ୱୀକାର କରିବା ଓ ଇସ୍ରାଏଲକୁ ପି.ଏଲ୍.ଓ. ଯୁହୁଦୀମାନଙ୍କ ଏକ ସ୍ୱାଧୀନ ରାଷ୍ଟ୍ର ବୋଲି ସ୍ୱୀକାର କରିବା ପରେ ଯାଇ ଏହି ଚୁକ୍ତି ସ୍ୱାକ୍ଷର କରାଗଲା ।

ଏହି ଚୁକ୍ତି ଅନୁସାରେ ଯୁହୁଦୀ ରାଷ୍ଟ୍ର ଇସ୍ରାଏଲ ଦଖଲ କରିଥିବା ପାଲେଷ୍ଟାଇନ୍‌ର ସବୁ ଅଞ୍ଚଳକୁ ନୁହଁ, କେବଳ ଗାଜାପଟି ଏବଂ ୱେଷ୍ଟ ବ୍ୟାଙ୍କରର (ଜୋର୍ଡାନ ନଦୀର ପଶ୍ଚିମ) ଜେରିକୋ ସହରକୁ ସୀମିତ ସ୍ୱାୟତ୍ତ ଶାସନ ଅଧିକାର ଅର୍ପିତ ହୋଇଛି ।

ଚୁକ୍ତି ଅନୁସାରେ ନଅମାସ ମଧ୍ୟରେ ଏହି ସୀମିତ ସ୍ୱାୟତ୍ତ ଶାସନ ଅର୍ପିତ ଅଞ୍ଚଳରେ ଦୈନନ୍ଦିନ କାମ ଚଳାଇବା ଲାଗି ପାଲେଷ୍ଟାଇନ୍‌ବାସୀଙ୍କ ଦ୍ୱାରା ନିର୍ବାଚନ କରାଯାଇ ଏକ ପରିଷଦ ଗଠନ କରାଯିବ । ତାହାହିଁ ଦୈନନ୍ଦିନ କାର୍ଯ୍ୟ ସମ୍ପାଦନ କରିବ ।

ଯାହାକୁ ଓ୍ୱେଷ୍ଟବ୍ୟାଙ୍କ କୁହାଯାଏ ଇସ୍ରାଏଲ ସେଠାରୁ କ୍ରମଶଃ ତା'ର ସୈନ୍ୟ ଅପସାରଣ କରିବ ଏବଂ ସେଠାରେ ଏକ ପୁଲିସବାହିନୀ ଶାନ୍ତିଶୃଙ୍ଖଳା ରକ୍ଷା କରିବେ, ଯେଉଁଥିରେ ପି.ଏଲ୍.ଓ.ର ପୂର୍ବତନ ଗରିଲାମାନେ ମଧ୍ୟ ଅନ୍ତର୍ଭୁକ୍ତ ହେବେ ।

ତିନିବର୍ଷ ପରେ ଏହି ଇଲାକାର ସାର୍ବଭୌମତ୍ୱ ସମ୍ପର୍କରେ ଦୁଇପକ୍ଷ ମଧ୍ୟରେ ଆଲୋଚନା ହେବ । ଇସ୍ରାଏଲ ଏଣିକି ପାଲେଷ୍ଟାଇନ୍‌ବାସୀଙ୍କ ବିରୁଦ୍ଧରେ ସାମରିକ କାର୍ଯ୍ୟାନୁଷ୍ଠାନ କରିବ ନାହିଁ ଏବଂ ଅନ୍ୟ ପକ୍ଷରେ ପାଲେଷ୍ଟାଇନ୍‌ର ପି.ଏଲ୍.ଓ. ଗରିଲାମାନେ ଇସ୍ରାଏଲ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ କରିବେ ନାହିଁ ।

ଇସ୍ରାଏଲର ରବିନ ସରକାରର ଏହି ପଦକ୍ଷେପକୁ ଇସ୍ରାଏଲ ଚରମପନ୍ଥୀମାନେ ପାର୍ଲିଆମେଣ୍ଟରେ ଓ ପାର୍ଲିଆମେଣ୍ଟ ବାହାରେ ପ୍ରବଳ ବିରୋଧ କରିଥିଲେ । ମାତ୍ର ଇସ୍ରାଏଲ ପାର୍ଲିଆମେଣ୍ଟ ବହୁ ମତରେ ଏ ଅଞ୍ଚଳରେ ଶାନ୍ତି ପାଇଁ ଏପରି ଚୁକ୍ତି ହେବାକୁ ବହୁ ମତରେ ନିଷ୍ପତ୍ତି ଧାର୍ଯ୍ୟ କରିଥିଲା ।

ଅନ୍ୟ ପକ୍ଷରେ ପାଲେଷ୍ଟାଇନ୍‌ବାସୀଙ୍କ ମଧ୍ୟରେ ଥିବା ଉଗ୍ର-ଚରମପନ୍ଥୀ, ଯେଉଁମାନେ ହାମାସ ନାମକ ସଂଗଠନ ଗଢ଼ି ଇସ୍ରାଏଲ ଅଧିକୃତ ସମସ୍ତ ଅଞ୍ଚଳର ମୁକ୍ତି ସହିତ ଇସ୍ରାଏଲକୁ ଧ୍ୱଂସ କରିବାର ଲକ୍ଷ୍ୟ ରଖି ୟାସେର ଆରାଫତ୍‌ଙ୍କ ବିରୋଧ କରୁଛନ୍ତି, ସେମାନେ ମଧ୍ୟ ଏପରି ଚୁକ୍ତିର ଘୋର ବିରୋଧ କରିଥିଲେ, ପ୍ରଦର୍ଶନମାନ କରିଥିଲେ ଓ ୟାସେର ଆରଫତ୍‌ଙ୍କୁ ହତ୍ୟା କରିବାର ଧମକ ମଧ୍ୟ ଦେଇଛନ୍ତି ।

ଏହି ଚୁକ୍ତି ଅନୁସାରେ ସବୁଠାରୁ ବଡ଼ ବିବାଦୀୟ ସ୍ଥାନ ଜେରୁଜେଲମ ସହର ଇସ୍ରାଏଲ କର୍ତ୍ତୃତ୍ୱରେ ରହିବ ।

ଏହି ଚୁକ୍ତି ସ୍ୱାକ୍ଷର ପରେ ପରେ ଆରାଫତ୍ କହିଛନ୍ତି ଯେ ଆରବ ଓ ୟୁହୁଦୀମାନେ ଦାଦା ବଡ଼ବାପା ପୁଅ ଭାଇ ଭାଇ । ଉଭୟ ଆବ୍ରାହମଙ୍କର ବଂଶଜ । ସେ ଯଦି ୟୁହୁଦୀମାନଙ୍କ ଦେବତା ଡେଭିଡ୍‌ଙ୍କୁ ଅବତାର ନମାନିବେ ତେବେ ସେ ସଚ୍ଚା ମୁସଲମାନ ନୁହନ୍ତି । ସେ ଏଥି ସଙ୍ଗେ ସଙ୍ଗେ ଯୋଗ କରିଥିଲେ ଯେ ଇସ୍ରାଏଲୀୟ ଏବଂ ପାଲେଷ୍ଟେନୀୟମାନଙ୍କୁ ଜେରୁଜେଲମ ଓ ଅଧିକୃତ (ଇସ୍ରାଏଲ ଦ୍ୱାରା) ଅଞ୍ଚଳର ସମସ୍ୟା ସମାଧାନ ଏବଂ ଇସ୍ରାଏଲ-ପାଲେଷ୍ଟାଇନ୍ ବିବାଦ ଘେନି ଜାତିସଂଘର ପ୍ରସ୍ତାବ ଇସ୍ରାଏଲକୁ କାର୍ଯ୍ୟକାରୀ କରିବାକୁ ପଡ଼ିବ । ପି.ଏଲ୍.ଓ.ର ଉପଦେଷ୍ଟା ନବୀର ସାଆଥ ଏ ସମ୍ପର୍କରେ ମତ ଦେଇ କହିଛନ୍ତି ଯେ ଏକ ସ୍ୱାଧୀନ ପାଲେଷ୍ଟାଇନ୍ ରାଷ୍ଟ୍ର ହେବ ଏବଂ ପୂର୍ବ ଜେରୁଜେଲମ ତାହାର ରାଜଧାନୀ ହେବ, ଏ ସମ୍ପର୍କରେ ପି.ଏଲ୍.ଓ.ର ଆସ୍ଥାନ ଅତି ସ୍ପଷ୍ଟ । ଅଥଚ ଇସ୍ରାଏଲ ପ୍ରଧାନମନ୍ତ୍ରୀ ଏହାର ଖଣ୍ଡନ କରି କହିଛନ୍ତି ଯେ ଜେରୁଜେଲମ ଇସ୍ରାଏଲୀ ସାର୍ବଭୌମତ୍ୱର ଅଙ୍ଗ । ଏହା ଇସ୍ରାଏଲ ଓ ୟୁହୁଦୀ ଲୋକଙ୍କର ଚିରକାଳ ରାଜଧାନୀ ହୋଇ ରହିବ ।

ଇସ୍ରାଏଲ ଦ୍ୱାରା ଅଧିକୃତ ପାଲେଷ୍ଟାଇନ୍‌ର ଖଣ୍ଡିତ ଅଞ୍ଚଳରେ ସୀମିତ ସ୍ୱାୟତ୍ତ ଶାସନର ରାଜିନାମା ଯେ ଭବିଷ୍ୟତରେ କିପରି ଗୁରୁତର ସମସ୍ୟାର ସମ୍ମୁଖୀନ ହେବ, ତାହାର ସୂଚନା ଏହି ଦୁଇଟି ପରସ୍ପର ବିରୋଧୀ ଆସ୍ଥାନରୁ ସ୍ପଷ୍ଟ ହୋଇଯାଏ ।

ଏହି ଚୁକ୍ତି ସ୍ୱାକ୍ଷର ପରେ ପରେ ବିବାଦରତ ଇସ୍ରାଏଲ୍ ଏବଂ ଜୋର୍ଡାନ ମଧ୍ୟରେ ମଧ୍ୟ ଏକ ଶାନ୍ତିଚୁକ୍ତି ସ୍ୱାକ୍ଷରିତ ହୋଇଛି ।

**ସାମ୍ରାଜ୍ୟବାଦର ଷଡ଼ଯନ୍ତ୍ର**

ପଶ୍ଚିମ ଏସିଆରେ ଶାନ୍ତି ଆଣିଲୁ, ଇସ୍ରାଏଲ ପି.ଏଲ୍.ଓ ମଧ୍ୟରେ ଚୁକ୍ତି କରାଇଦେଲୁ, ଏହିପରି ଆସ୍ଫାଳନ କରି ସାମ୍ରାଜ୍ୟବାଦ ଏବଂ ବର୍ତ୍ତମାନ ସାମ୍ରାଜ୍ୟବାଦର ଶିରୋମଣି ଯୁକ୍ତରାଷ୍ଟ୍ର ଆମେରିକା ଶାନ୍ତି, ଗଣତନ୍ତ୍ର ମାନବାଧିକାରର ସଂରକ୍ଷକ ଶକ୍ତି ବୋଲି ପ୍ରଚାର ଶତମୁଖ ହୋଇଉଠିଛନ୍ତି ।

ପାଲେଷ୍ଟାଇନ୍ କ'ଣ ଥିଲା, କେଉଁ କେଉଁମାନେ ସେଠାରେ ଅଧିବାସୀ ଥିଲେ, କାହିଁକି ଓ କିଏ ପାଲେଷ୍ଟାଇନକୁ ଭାଗ ଭାଗ କରି ଦୁଇଟି ରାଷ୍ଟ୍ର ଇସ୍ରାଏଲ ଓ ପାଲେଷ୍ଟାଇନ୍ ରାଷ୍ଟ୍ର ଗଠନ କରି ମଧ୍ୟପ୍ରାଚ୍ୟରେ ସଂଘର୍ଷ, ଯୁଦ୍ଧ, ହତ୍ୟାର ବିଭୀଷିକା ଗଲା ଚାରି ଦଶନ୍ଧିକାଳ ଚଳେଇ ରଖିଲେ, ତାହାର ଲକ୍ଷ୍ୟ ଉଦ୍ଦେଶ୍ୟ କ'ଣ ସେ ସମ୍ପର୍କରେ କିଛି ସାଧାରଣ ତଥ୍ୟ ଆଜି ଏକ ଚୁକ୍ତି ସମ୍ପାଦନ ପରେ ବିଶ୍ଳେଷଣ କରିବା ଅଧିକ ପ୍ରୟୋଜନ ହୋଇଛି ।

୧୯୮୯ରେ ସମାଜବାଦୀ ସୋଭିଏତ୍ ୟୁନିୟନର ଅବସାନ ଏବଂ ପୂର୍ବ ୟୁରୋପରେ ସମାଜବାଦୀ ରାଷ୍ଟ୍ରଗୁଡ଼ିକର ପତନ ନହୋଇଥିଲେ, ଆଜି ପାଲେଷ୍ଟାଇନ୍‌ର ମୁକ୍ତି ସଂଗଠନ ତା'ର ଚୂଡ଼ାନ୍ତ ଲକ୍ଷ୍ୟ ଅଧିକୃତ ପାଲେଷ୍ଟାଇନ୍ ଇଲାକାର ସଂପୂର୍ଣ୍ଣ ମୁକ୍ତି ହାସଲ ନକରି ଏପରି ଅସମ୍ମାନଜନକ, ଅଧାପନ୍ତରିଆ ସୀମିତ ସ୍ୱାୟତ୍ତ ଶାସନ ଚୁକ୍ତିରେ ବାଧ୍ୟ ହୋଇ ରାଜି ହୋଇନଥାନ୍ତା । ପାଲେଷ୍ଟାଇନ୍ ମୁକ୍ତି ସଂଗଠନକୁ ସ୍ୱାଧୀନତା, ଗଣତନ୍ତ୍ର ଶାନ୍ତିକାମୀ ଭାରତ ସମେତ ବିକାଶଶୀଳ ଓ ସାମ୍ରାଜ୍ୟବାଦ ବିରୋଧୀ ନବ ଉପନିବେଶବାଦ ବିରୋଧୀ ରାଷ୍ଟ୍ରଗୁଡ଼ିକ ଯେଉଁ ସାହାଯ୍ୟ ସମର୍ଥନ ଦେଉଥିଲେ, ସୋଭିଏତ୍ ୟୁନିୟନର ପତନ ପରେ ସେପରି ସମର୍ଥନ ସେମାନେ ଦେବାକୁ ଆସିଲେ ନାହିଁ ।

ଆମେରିକା ଓ ଅନ୍ୟାନ୍ୟ ସାମାଜ୍ୟବାଦୀ ଦେଶଙ୍କ ଧମକ ସତ୍ତ୍ୱେ ପାଲେଷ୍ଟାଇନ୍ ମୁକ୍ତି ସଂଗଠନ ପି.ଏଲ.ଓ.କୁ ସୋଭିଏତ୍ ୟୁନିୟନ ଓ ପୂର୍ବ ୟୁରୋପୀୟ ଅନ୍ୟାନ୍ୟ ସମାଜବାଦୀ ଦେଶର ନିଷ୍ଠୟ, ସମାଜବାଦୀ ଦେଶ ଚୀନ, ଭିଏତ୍‌ନାମ, କ୍ୟୁବ ଏବଂ ଭାରତ ସମେତ ମଧ୍ୟପ୍ରାଚ୍ୟର ଆରବ ଦେଶଗୁଡ଼ିକଙ୍କ ମଧ୍ୟରୁ ଅନେକ ରାଷ୍ଟ୍ର ମର୍ଯ୍ୟାଦା ଦେଇଥିଲେ । ଜାତିସଂଘରେ ପାଲେଷ୍ଟାଇନ୍‌ର ମୁକ୍ତି ପାଇଁ ଅଧିକୃତ ପାଲେଷ୍ଟାଇନ୍ ଓ ଆରବ ଦେଶଗୁଡ଼ିକର ଇସ୍ରାଏଲୀ ଦଖଲ ଅଞ୍ଚଳକୁ ମୁକ୍ତ କରିବା ଲାଗି ଯେଉଁ ଆହ୍ୱାନ ଉଠୁଥିଲା ତାହା ସ୍ତିମିତ ହୋଇଗଲା ।

ଆମେରିକାର ବିରୋଧ ହେତୁ ଜାତିସଂଘ ପ୍ରସ୍ତାବଗୁଡ଼ିକୁ କାର୍ଯ୍ୟକାରୀ କରାହେଉନଥିଲା ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଆମେରିକାର ଚାପକୁ ବେଖାତିର କରି ଏସବୁ ଦେଶ ଇସ୍ରାଏଲକୁ ସ୍ୱୀକୃତି ଦେଇ ନଥିଲେ କି ତା' ସହିତ କୂଟନୈତିକ ସମ୍ପର୍କ ସ୍ଥାପନ କରି ନଥିଲେ । ମାତ୍ର ସୋଭିଏତ୍ ୟୁନିୟନର ଅବସାନ ପରେ ଭାରତ, ଚୀନ, ଋଷିଆ ସମେତ ବହୁ ଦେଶ ଇସ୍ରାଏଲ ସହିତ କୂଟନୈତିକ ସମ୍ପର୍କ ସ୍ଥାପନ କଲେ ।

ସେହି ହେତୁ ଆମେରିକାର ଓ ପାଶ୍ଚାତ୍ୟ ପୁଞ୍ଜିବାଦୀ ଶକ୍ତିମାନଙ୍କ ଶାନ୍ତି ସର୍ତ୍ତକୁ ପି.ଏଲ୍.ଓ.କୁ ମାନି ନେବାକୁ ପଡ଼ିଲା ବୋଲି କୁହାଯିବ । ଆମେରିକା ଦ୍ୱାରା ସାମରିକ, ଆର୍ଥିକ, କୂଟନୈତିକ ସମର୍ଥନ ପାଉଥିବା ପଶ୍ଚିମ ଏସିଆରେ ୟୁହୁଦୀବାଦୀ ରାଷ୍ଟ୍ର ବିରୋଧରେ ସଶସ୍ତ୍ର ସଂଗ୍ରାମ ଚଳାଇବା ଲାଗି ସାମରିକ ସମ୍ବଳ ସୋଭିଏତ୍ ୟୁନିୟନଠାରୁ ପି.ଏଲ୍.ଓ. ପାଉଥିଲା ତାହା ବନ୍ଦ ହୋଇଗଲା ।

ଅନ୍ୟ ପକ୍ଷରେ ଆରବ ଦେଶଗୁଡ଼ିକ ମଧ୍ୟ ଆମେରିକାର ସଶସ୍ତ୍ର ଆକ୍ରମଣ, ହସ୍ତକ୍ଷେପ, ଧମକ, ବାଣିଜ୍ୟ ବାସନ୍ଦ ହେତୁ ତଥା ବିଭିନ୍ନ କାରଣରୁ ନିଜ ନିଜ ଭିତରେ ସଂଘର୍ଷରତ ହୋଇ ପାଲେଷ୍ଟାଇନ୍‌ବାସୀଙ୍କୁ ସମୁଚିତ ସାହାଯ୍ୟ ସମର୍ଥନ ଦେଇ ପାରିଲା ନାହିଁ ।

ପାଲେଷ୍ଟାଇନ୍‌କୁ ଇସ୍ରାଏଲ ଅଧିକାର କରିଯିବା ପରେ ୩୦ ଲକ୍ଷରୁ ଅଧିକ ସଂଖ୍ୟାରେ ପାଲେଷ୍ଟାଇନ୍ ଆରବ ଲୋକେ ପଡ଼ୋଶୀ ଆରବ ରାଷ୍ଟ୍ର ଜୋର୍ଡ଼ାନ, ଲେବାନନ, କ୍ୱେଟା ଓମାନ୍, ଇରାକ, ଟ୍ୟୁନିସିଆ, ମିଶର, ବାହେରିନ୍ ପ୍ରଭୃତି ୧୨ଟି ରାଜ୍ୟରେ ତିନି ଚାରି ଦଶକ ଧରି ଶରଣାର୍ଥୀ ହୋଇ ଅତି ଦୟନୀୟ ଜୀବନ ବିତାଇ ଆସୁଥିଲେ । ସେମାନଙ୍କୁ ବାରମ୍ବାର ଇସ୍ରାଏଲର ପ୍ରବଳ ଆକ୍ରମଣ ଓ ହତ୍ୟା ବିଭୀଷିକାର ଶିକାର ହେବାକୁ ପଡୁଥିଲା । କିନ୍ତୁ ଅଦମ୍ୟ ମୁକ୍ତିର ପିପାସା । ଏହି ଶରଣାର୍ଥୀମାନେ ବିଭିନ୍ନ ଦେଶରେ ଥାଇ ନିଜର ମୁକ୍ତି ସଂଗଠନ ପି.ଏଲ୍.ଓ.କୁ ଗଠନ କରିଥିଲେ ୟାସେର୍ ଆରାଫତ୍‌ଙ୍କ ନେତୃତ୍ୱରେ ।

**ଅତୀତ ଇତିହାସ**

ପାଲେଷ୍ଟାଇନ୍, ଜେରୁଜେଲମ୍, ଇସ୍ରାଏଲର ପ୍ରାୟ ସାଢ଼େ ତିନିହଜାର ବର୍ଷର ଇତିହାସରେ ନାନା ଘଟଣା ଘଟିଯାଇଛି । ବିଭିନ୍ନ ଉପଜାତି, ଜାତି ଓ ଧର୍ମର ଉତ୍ପତ୍ତିସ୍ଥଳ ହୋଇଛି ଏହି ଅଞ୍ଚଳ ।

ଜେରୁଜେଲମ୍ ସହରକୁ ହିବ୍ରୁ ଭାଷାଭାଷୀ ୟୁହୁଦୀ ଧର୍ମାବଲମ୍ବୀମାନେ ସେମାନଙ୍କର ପବିତ୍ର ସ୍ଥାନ ବୋଲି ଗ୍ରହଣ କରିଥାନ୍ତି । ଖ୍ରୀଷ୍ଟିୟାନମାନେ ମଧ୍ୟ ଯିଶୁଖ୍ରୀଷ୍ଟଙ୍କ ଏହି ଭୂମିକୁ ପବିତ୍ର ବୋଲି ବିଚାରନ୍ତି । ପରବର୍ତ୍ତୀ କାଳରେ ମୁସଲମାନ୍ ଧର୍ମାବଲମ୍ବୀମାନେ ମକ୍କା, ମଦିନା ପରେ ଜେରୁଜେଲମକୁ ଏକ ପବିତ୍ର ଧର୍ମପୀଠ ବିଚାରନ୍ତି । ଭାବାତ୍ମକ ଭାବରେ ଏହି ଅଞ୍ଚଳ ପ୍ରତି ଏହି ତିନୋଟି ଧର୍ମାବଲମ୍ବୀ ମାନବ ସଂପ୍ରଦାୟର ଆକର୍ଷଣ ଆଜିର ନୁହଁ, ସହସ୍ରାଧିକ ବର୍ଷର ।

ଇତିହାସର ବିବର୍ତ୍ତନରେ ଏହି ତିନୋଟି ମାନବ ଗୋଷ୍ଠୀ ମଧ୍ୟରେ ଭାବାତ୍ମକ ଭିନ୍ନତା

ଦୂର ଅତୀତରେ, ଟ୍ରାଇବାଲ ଯୁଗରୁ ରହି ଆସିଛି । ତା'ପରେ ଆସିଥିବା ସାମନ୍ତବାଦୀ ସାମ୍ରାଜ୍ୟ ସାମ୍ରାଜ୍ୟ ମଧ୍ୟରେ ସଂଘର୍ଷ ହେତୁ ଏବଂ ବିଂଶ ଶତାବ୍ଦୀରେ ସାମ୍ରାଜ୍ୟବାଦୀମାନଙ୍କ ଗୋଷ୍ଠୀ ଗୋଷ୍ଠୀ, ଜାତି ଜାତି, ଦେଶ ଦେଶ ମଧ୍ୟରେ କନ୍ଦଳ, ସଂଘର୍ଷ ଲଗେଇ ଆପଣାର ଏକ ବିବାଦୀୟ ସ୍ଥଳ ହୋଇ ରହିଛି । ସାମ୍ରାଜ୍ୟବାଦୀ ଆମେରିକା, ଗ୍ରେଟ୍ ବ୍ରିଟେନ୍, ଜର୍ମାନୀ ପ୍ରଭୃତିଙ୍କ ଅସଲ ସ୍ୱାର୍ଥ ରହିଛି ଆରବ ଦେଶଗୁଡ଼ିକରେ ଥିବା ବିପୁଳ ତୈଳ ସଂପଦରେ । ତୈଳ କୂଟନୀତି, ତୈଳ ରାଜନୀତି ଧରି ତୈଳ ଲାଗି ଆରବ ରାଜ୍ୟ ରାଜ୍ୟମାନଙ୍କ ଭିତରେ ସଂଘର୍ଷ, ଯୁଦ୍ଧ ଲଗେଇ ଗୋଟିକୁ ଅନ୍ୟ ବିରୁଦ୍ଧରେ ଅସ୍ତ୍ରଶସ୍ତ୍ର ସାହାଯ୍ୟ ଦେଇ, ଅଥବା ଖୋଦ୍ ସଶସ୍ତ୍ର ଆକ୍ରମଣ ଚଳେଇ ସେହି ଇଲାକାକୁ କାବୁକରି ରଖା ହୋଇଆସିଛି । ସେହି ସାମ୍ରାଜ୍ୟବାଦୀ ଆଧିପତ୍ୟ ବିରୋଧରେ, ଆପଣାର ମୁକ୍ତି ଓ ସ୍ୱାଧୀନତା ଓ ସାର୍ବଭୌମତ୍ୱ ପ୍ରତିଷ୍ଠା କରିବା ଲାଗି ଅଗଣିତ ମୁକ୍ତ ସଂଗ୍ରାମ ହୋଇ ଆସିଛି ।

ଇତିହାସରୁ ଜଣାଯାଏ ଏହି ଅଞ୍ଚଳକୁ ପ୍ରାୟ ସାଢେ ତିନି ହଜାର ବର୍ଷ ପୂର୍ବେ ଯୁହୁଦୀ ଟ୍ରାଇବାଲ ବା ଉପଜାତିମାନେ ଦଖଲ କରି ବାସ କରୁଥିଲେ । ତାହାକୁ ସେମାନେ ପାଲେଷ୍ଟାଇନ୍ ନାମକରଣ କରିଥିଲେ । ଯୁହୁଦୀମାନଙ୍କର ଏକ ନେତାଙ୍କ ନାମ ଇସ୍ରାଏଲ ଥିଲା । ତାଙ୍କର ନାମ ଅନୁସାରେ ସେମାନେ ତାକୁ ଇସ୍ରାଏଲ ନାମକରଣ କରିଥିଲେ ।

ଏହି ଅଞ୍ଚଳଟି ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀରେ ଏସିରୀୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା ଏବଂ ଏସିରୀୟମାନଙ୍କ ପ୍ରବଳ ଆକ୍ରମଣ ଓ ଅତ୍ୟାଚାର ସମ୍ଭାଳି ନପାରି ଯୁହୁଦୀ ଉପଜାତିମାନେ ସେ ଅଞ୍ଚଳରୁ ପଳାୟନ କରି ଋଷିଆ, ଜର୍ମାନୀ, ପୋଲାଣ୍ଡ, ଅଷ୍ଟ୍ରିଆ ପ୍ରଭୃତି ୟୁରୋପୀୟ ରାଜ୍ୟ, ଏମିତିକି ୟୁରୋପୀୟମାନଙ୍କ ଦ୍ୱାରା ଆମେରିକା ଦଖଲପରେ ଆମେରିକାକୁ ମଧ୍ୟ ପଳାୟନ କଲେ । ଯୁହୁଦୀମାନେ ଯେଉଁ ଦେଶକୁ ଗଲେ, ସେଠାରେ ସେମାନଙ୍କ ସ୍ୱାତନ୍ତ୍ର୍ୟ ବଜାୟ ରଖିଲେ । ଏକ ଅତ୍ୟନ୍ତ ଚତୁର, କର୍ମଶୀଳ ଓ ବ୍ୟବସାୟୀ ସୁଲଭ ଗୁଣ ହେତୁ ସେହି ଯୁହୁଦୀ ଗୋଷ୍ଠୀଗୁଡ଼ିକ ସେସବୁ ଦେଶରେ ଖୁବ୍ ବିତ୍ତଶୀଳ ହୋଇ ଉଠିଥିଲେ । ପ୍ରଭାବଶାଳୀ ହୋଇ ଉଠିଲେ । ସ୍ଥାନୀୟ ପୁଞ୍ଜିପତି, ବ୍ୟବସାୟୀ ବଣିକମାନଙ୍କଠାରୁ ଏମାନେ ଆର୍ଥିକ ଦିଗରୁ ଏକ ଅତ୍ୟନ୍ତ ଶକ୍ତିଶାଳୀ ସଂପ୍ରଦାୟ ରୂପେ ଗଢ଼ିଉଠିଲେ । ଜର୍ମାନୀରେ ହିଟଲର ଫାସିଷ୍ଟବାଦ ୧୯୩୩ରେ କ୍ଷମତାକୁ ଆସିବା ପରେ ଜର୍ମାନ ଜାତି ଆର୍ଯ୍ୟଜାତି, ସଭ୍ୟଜାତି ଦୁଆ ଉଠାଇ ଜର୍ମାନୀର ଭୂସ୍ୱାମୀଙ୍କର ଓ ବୃହତ୍ ପୁଞ୍ଜିପତିଙ୍କ ସ୍ୱାର୍ଥରକ୍ଷା କରିବା ଲାଗି ଡାକରା ଦେଇ ଯେପରି ୟୁରୋପୀୟ ଓ ଏସୀୟ, ଆଫ୍ରିକୀୟ ଜାତିମାନଙ୍କ ବିରୋଧରେ ଜର୍ମାନ ଜାତିକୁ ମତେଇଥିଲା, ସେମିତି ଯୁହୁଦୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଥିଲା । ସେମାନଙ୍କୁ ହଜାର ହଜାର ସଂଖ୍ୟାରେ ବିଦ୍ୟୁତ୍ ଚୁଲାରେ ଅନ୍ୟ ୟୁରୋପୀୟ ତଥା ସୋଭିଏତ୍, ପୋଲାଣ୍ଡ, ଫ୍ରାନ୍ସ, ପ୍ରଭୃତି ଦେଶର ଲୋକଙ୍କୁ ଜାଳି ମାରିଦେଲା ପରି ଜିଅନ୍ତା ପୋଡ଼ି ମାରିଥିଲା । ଆର୍ଯ୍ୟ ଜାତିକୁ

ମିଶ୍ରିତ କରିଦେବ ଦୁଆ ଉଠାଇ ହିଟଲରର ଆଦେଶ ବଳରେ ୟୁହୁଦୀ ପୁରୁଷମାନଙ୍କର ମୁଷ୍କ କାଟି ନପୁଂସକ କରି ଦିଆଯାଉଥିଲା । ଇତିହାସର ଏହା ଏକ କଳଙ୍କିତ ଅଧ୍ୟାୟ । ମୁଖ୍ୟତଃ ସୋଭିଏତ୍ ଜଳବାହିନୀ ମିତ୍ରବାହିନୀ ସହିତ ମିଶି ହିଟଲର ନାଜିବାଦକୁ ପରାସ୍ତ କରିଥିଲା । ପୃଥିବୀ ଫାସିଷ୍ଟବାଦର କବଳରୁ ରକ୍ଷାହେଲା ।

ଏସିରୀୟ ସାମ୍ରାଜ୍ୟର ଅବସାନ ପରେ ଷୋଡ଼ଶ ଶତାବ୍ଦୀ ଆରମ୍ଭରେ ତୁର୍କୀର ଅଟୋମାନ ସାମ୍ରାଜ୍ୟ ପାଲେଷ୍ଟାଇନ୍‌କୁ ଦଖଲ କଲା ପରେ ଏଠାରେ ମୁସଲମାନମାନଙ୍କ ସଂଖ୍ୟା ବୃଦ୍ଧି ପାଇଲା ଏବଂ ତୁର୍କିର ଶାସନ ପାଲେଷ୍ଟାଇନ୍ ଭୂଖଣ୍ଡରେ ପ୍ରବର୍ତ୍ତିତ ହେଲା । ସେହି କାଳରୁ ମଧ୍ୟ ଜେରୁଜେଲମକୁ ୟୁହୁଦୀମାନେ ଧର୍ମାଚରଣ କରିବାକୁ ତୀର୍ଥଯାତ୍ରୀ ହୋଇ ଯାଉଥିଲେ । ଜେରୁଜେଲମ୍ ଓ ପାଲେଷ୍ଟାଇନ୍ ଅଖଣ୍ଡ ଅବିଭାଜିତ ରାଜ୍ୟ ରୂପେ ରହି ଆସିଥିଲା । ଏହା ମୁସଲିମ୍ ପ୍ରଧାନ ହୋଇ ରହିଥିଲା ।

ପ୍ରଥମ ମହାସମର ୧୯୧୪-୧୮ରେ ମିତ୍ରଶକ୍ତିର ବିଜୟ ପରେ ଜର୍ମାନୀ ସହିତ ତୁର୍କୀ ଥାଇ ଯୁଦ୍ଧରେ ପରାସ୍ତ ହୋଇଥିଲା । ସେହି ଯୁଦ୍ଧରେ ଏହି ଅଞ୍ଚଳ ପାଲେଷ୍ଟାଇନ୍‌କୁ ତତ୍କାଳୀନ ଲିଗ୍ ଅଫ୍ ନେସନ୍‌ସ ବ୍ରିଟିଶ ପ୍ରୋଟେକ୍‌ଟୋରିଏଟ୍ କରି ରଖିଦେଲା । ଏହି ଦିନଠାରୁ ହିଁ ଏହି ପାଲେଷ୍ଟାଇନ୍‌କୁ ଅଧୁନା କାଳର ସାମ୍ରାଜ୍ୟବାଦୀ ଶକ୍ତିଙ୍କର ଆରବ ଦେଶଗୁଡ଼ିକ ବିରୋଧରେ ଏକ ଘାଟୀ ରୂପେ ବଛାଗଲା । ୟୁହୂଦୀମାନଙ୍କ ଉପରେ ହିଟଲର ଯେଉଁ ବର୍ବର ଅତ୍ୟାଚାର ଚଳାଇଥିଲା, ବିଶ୍ୱବ୍ୟାପୀ ସ୍ୱାଧୀନତା, ମୁକ୍ତିକାମୀ ଓ ଗଣତନ୍ତ୍ର ଓ ମାନବବାଦୀମାନଙ୍କ ପକ୍ଷରୁ ତାହାର ତୀବ୍ର ନିନ୍ଦାବାଦ ଓ ବିରୋଧ ହୋଇଥିଲା । ପ୍ରଥମ ମହାସମର ବେଳେ ମିତ୍ରଶକ୍ତି ବ୍ରିଟେନ, ଫ୍ରାନ୍‌ସ, ଆମେରିକାକୁ ସମୃଦ୍ଧ ୟୁହୂଦୀମାନେ ପ୍ରଚୁର ଆର୍ଥିକ ସାହାଯ୍ୟ ଯୋଗାଇଥିଲେ ।

ଲିଗ୍ ଅଫ୍ ନେସ୍‌ନସ୍‌ର ମାଣ୍ଡେଟ ଅନୁସାରେ ବ୍ରିଟିଶ ତତ୍ତ୍ୱାବଧାନରେ ପାଲେଷ୍ଟାଇନ୍ ରହିବାବେଳେ ଏହାକୁ ଭାଗ ଭାଗ କରିବାକୁ ୟୁହୂଦୀ ଓ ମୁସଲମାନଙ୍କ ମଧ୍ୟରେ ଚିରତର ସଂଘର୍ଷର ଘାଟୀ କରିବାକୁ ଏକ ବିଧିବଦ୍ଧ ଷଡ଼ଯନ୍ତ୍ର ଚାଲିଥିଲା । ତତ୍କାଳୀନ ବ୍ରିଟିଶ ପରରାଷ୍ଟ୍ର ସଚିବ ବାଲଫୋର ପାଲେଷ୍ଟାଇନ୍‌ରେ ଏକ ୟୁହୂଦୀରାଷ୍ଟ୍ର ଗଠନର ଯେଉଁ ଘୋଷଣା କରିଥିଲେ, ଦ୍ୱିତୀୟ ମହାସମର ୧୯୩୯-୪୫ ଶେଷ ହେଲା ପରେ ଆମେରିକା, ଗ୍ରେଟ୍ ବ୍ରିଟେନ୍ ଓ ଅନ୍ୟାନ୍ୟ ପୁଞ୍ଜିପତି ରାଷ୍ଟ୍ର ତାହାକୁ କାର୍ଯ୍ୟକାରୀ କଲେ । ପାଲେଷ୍ଟାଇନ୍‌ର ତତ୍ତ୍ୱାବଧାରକ ରହି ବ୍ରିଟିଶ ସାମ୍ରାଜ୍ୟବାଦ ସେ ଅଞ୍ଚଳର ଆରବ ରାଜ୍ୟଗୁଡ଼ିକୁ ଗୋଟିକ ବିରୋଧରେ ଅନ୍ୟକୁ ଲଗେଇ ସେମାନଙ୍କର ସ୍ୱାଧୀନତା ସଂଗ୍ରାମକୁ ଆଘାତ ଦେଉଥିଲା । ଅନ୍ୟପକ୍ଷରେ ସେମାନେଙ୍କ ମଧ୍ୟରେ ପରସ୍ପର ପ୍ରତି ଘୃଣା ଓ ବିଦ୍ୱେଷର ବୀଜମଞ୍ଜି ରୋପଣ କରୁଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ୧୯୪୮ ମଇ ମାସରେ ଆପଣାର ଷଡ଼ଯନ୍ତ୍ରକୁ ସଫଳ କରିବା ଲାଗି ବ୍ରିଟିଶ ସରକାର ତା'ର କର୍ତ୍ତୃତ୍ୱର ଅବସାନ ଘଟିଲା ବୋଲି ଘୋଷଣା କରିଦେଲା । ଠିକ୍ ସେହି ୧୯୪୮ ମଇ

୧୪ ତାରିଖରେ ହିଁ ୟୁହୂଦୀମାନଙ୍କ ଲାଗି ଜାତିସଂଘ ପକ୍ଷରୁ ଉଦ୍ଦିଷ୍ଟ ଥିବା ଅଞ୍ଚଳଗୁଡ଼ିକରେ ୟୁହୂଦୀ ପରିଷଦ ଇସ୍ରାଏଲରେ ୟୁହୂଦୀ ରାଷ୍ଟ୍ର ପ୍ରତିଷ୍ଠାର ଏକତରଫା ଘୋଷଣା କରିଦେଲା । ସଙ୍ଗେସଙ୍ଗେ ଯୁକ୍ତରାଷ୍ଟ୍ର ଆମେରିକା ତାହାକୁ ପ୍ରଥମେ ସ୍ୱୀକୃତି ଦେଲା ।

କୌଣସି ଆଲୋଚନା ନହୋଇ ଜାତିସଂଘରେ ଏପରି ରାଷ୍ଟ୍ର ଗଠନର ସ୍ପଷ୍ଟ ନିର୍ଦ୍ଧାରଣ ନ ନିଆଯାଇ ମଧ୍ୟପ୍ରାଚ୍ୟରେ ଆମେରିକା ବିଲାତ ପକ୍ଷରୁ ଶୀତଳ ଯୁଦ୍ଧ ଆରମ୍ଭ କରି ଦିଆଗଲା ।

ଆମେରିକାର ଅସ୍ତ୍ରଶସ୍ତ୍ର ସାହାଯ୍ୟ ଯୋଗେ ଏହି ଶିଶୁ ୟୁହୁଦୀ ଇସ୍ରାଏଲ ରାଷ୍ଟ୍ର ଓ ଅନ୍ୟ ପକ୍ଷରେ ଜୋର୍ଡ଼ାନ ଓ ମିଶରର ସୈନ୍ୟମାନଙ୍କ ମଧ୍ୟରେ ୮ ମାସ କାଳ ପ୍ରବଳ ଯୁଦ୍ଧ ହେଲା ସତ, ମାତ୍ର ଏହି ନୂତନ ରାଷ୍ଟ୍ର ଇସ୍ରାଏଲ ଆମେରିକା, ବ୍ରିଟେନର ସାହାଯ୍ୟରେ ବହୁ ଆରବ ଅଞ୍ଚଳକୁ ଦଖଲ କରିଗଲା । ଅନ୍ୟପକ୍ଷରେ ଜୋର୍ଡ଼ାନ ଇସ୍ରାଏଲର ପୁରାତନ ଜେରୁଜେଲମ ସହର ସମେତ କେତେକ ଇଲାକା ନିଜ ଅକ୍ତିଆରକୁ ଆଣିଲା ।

ଫଳରେ ସେଠାର ଅଧିବାସୀ ପାଲେଷ୍ଟାନୀୟମାନେ ବାସହରା ହୋଇ ୧୯୫୦ ମସିହାରୁ ଆଖପାଖ ପଡ଼ୋଶୀ ଆରବ ରାଜ୍ୟଗୁଡ଼ିକରେ ଶରଣାର୍ଥୀ ଶିବିରରେ ଅତି ଦୟନୀୟ ଅବସ୍ଥାରେ ବାସ କଲେ । ଜେରୁଜେଲମ୍‌ର ନୂତନ ଅଞ୍ଚଳକୁ ଇସ୍ରାଏଲ ଦଖଲ କରିନେଲା । ସିରିଆ, ଜୋର୍ଡ଼ାନ, ଲେବାନନ ପ୍ରଭୃତି ଦେଶରେ ରହିଥିବା ଏହି ଶରଣାର୍ଥୀ ପାଲେଷ୍ଟେନୀୟମାନେ ନିଜର ଅପହୃତ ରାଜ୍ୟ ଓ ସ୍ୱାଧୀନତା ପାଇବା ଲାଗି ପି.ଏଲ୍.ଓ. ଗଠନ କଲେ । ଆମେରିକା ପ୍ରଥମେ ଜୋର୍ଡ଼ାନକୁ ନିଜ ପଟକୁ ନେଇ ଆସି ପାରିଥିଲା । ସେହେତୁ ପାଲେଷ୍ଟାଇନ ଶରଣାର୍ଥୀମାନେ ସେଠାରେ ନିଜର ଘାଟୀକୁ ଉଠାଇ ନେଇ ଲେବାନନ୍‌ରେ ରଖିଲେ । ସେଠାରୁ ଏବେ ସେମାନେ ଯାଇ ଟ୍ୟୁନିସିଆରେ ପି.ଏଲ୍.ଓ.ର ମୁଖ୍ୟ ଦପ୍ତର ଖୋଲିଛନ୍ତି । ସେହି ଦିନଠାରୁ ଇସ୍ରାଏଲ ପାଲେଷ୍ଟାଇନ ଶରଣାର୍ଥୀମାନଙ୍କ ଶିବିରଗୁଡ଼ିକ ଉପରେ କ୍ରମାଗତ ଆକ୍ରମଣ ଚଳାଇ ଚାଲିଲା ଓ ପି.ଏଲ୍.ଓ. ତାହାର ମୁକାବିଲା କଲା – ସୋଭିଏତ୍ ୟୁନିୟନ ଅନ୍ୟାନ୍ୟ ସମାଜବାଦୀ ଦେଶ ଓ ଗୋଷ୍ଠୀ ନିରପେକ୍ଷ ଦେଶମାନଙ୍କ ସମର୍ଥନ ପାଇଲା ୟାସେର ଆରାଫତ୍‌ଙ୍କ ପି.ଏଲ.ଓ. ।

ଆମେରିକା ଦ୍ୱାରା ପୁଷ୍ଟ ଇସ୍ରାଏଲ ୧୯୫୬ରେ ଆରବ ଦେଶ ଓ ପି.ଏଲ୍.ଓ. ଉପରେ ବର୍ବରୋଚିତ ଆକ୍ରମଣ ଚଳେଇ ମାତ୍ର ୬ ଦିନ ମଧ୍ୟରେ ଗୋଲାନ ପର୍ବତ, ଜୋର୍ଡ଼ାନ ନଦୀର ପଶ୍ଚିମାଞ୍ଚଳ ସଂପୂର୍ଣ୍ଣ ଜେରୁଜେଲମ୍ ଓ ମିଶରର ସିନାଇ ପର୍ବତମାଳାକୁ ଦଖଲ କରିଗଲା । ଏହି ଯୁଦ୍ଧ ବିରତି ପରେ ଇସ୍ରାଏଲ ୧୯୫୬ରେ ପୁନର୍ବାର ୧୯୬୭ରେ ମିଶର (ଇଜିପ୍ଟ) ଉପରେ ଆକ୍ରମଣ କଲା । ୧୯୭୩ରେ ଏହାର ପ୍ରତି ବଦଳରେ ମିଶର ଓ ସିରିଆ ୟୁହୂଦୀ ରାଷ୍ଟ୍ର ଇସ୍ରାଏଲ ଉପରେ ଆକ୍ରମଣ କରିଥିଲେ ହେଁ ଏ ଯୁଦ୍ଧରେ ଚୂଡ଼ାନ୍ତ ମୀମାଂସା ହୋଇ ନଥିଲା କି ମିଶର ହରାଇଥିବା ଗୋଲାନ ପର୍ବତ ପାଇନଥିଲା ।

ଆମେରିକାର ପରରାଷ୍ଟ୍ର ସଚିବ ହେନେରୀ କିସିଙ୍ଗେର ପି.ଏଲ୍.ଓ.ର ପ୍ରବଳ ଗରିଲା

ଆକ୍ରମଣକୁ ପ୍ରତିହିତ କରିବା ଲକ୍ଷ୍ୟରେ ମିଶର ଓ ଇସ୍ରାଏଲ ମଧ୍ୟରେ ଏକ ଚୁକ୍ତି କରେଇଲେ । ଏହାକୁ କ୍ୟାମ୍ପ ଡେଭିଡ଼ ଚୁକ୍ତି କୁହାଯାଏ । ସେତେବେଳେ ମିଶରର ରାଷ୍ଟ୍ରପତି ଥିଲେ ଅନଓ୍ୱାର ଦାସତ୍ ଓ ଆମେରିକାର ରାଷ୍ଟ୍ରପତି ଥିଲେ ଜର୍ଜ ବୁଶ୍ । ପି.ଏଲ୍.ଓ.କୁ ମିଶରଠାରୁ ଦୂରେଇ ନେବାକୁ ଏହି ଚୁକ୍ତି ସମ୍ପାଦିତ ହେଲା । ମିଶରକୁ ଇସ୍ରାଏଲ ଗୋଲାନ ପର୍ବତ ଫେରାଇ ଦେଲା ।

କିଛିକାଳ ଲାଗି ଆରବ ଦେଶଗୁଡ଼ିକ ମିଶର ବିରୋଧୀ ହୋଇ ଉଠିଥିଲେ । ଇସ୍ରାଏଲ ଅଧିକୃତ ଆରବ ଅଞ୍ଚଳଗୁଡ଼ିକରେ ଓ ଆରବ ଅଧ୍ୟୁଷିତ ପାଲେଷ୍ଟାଇନରେ ସୋଭିଏତ୍ ୟୁନିୟନ ଓ ଅନ୍ୟାନ୍ୟ ଦେଶରୁ ଆମେରିକା ଦ୍ୱାରା ପ୍ରଭାବିତ ହୋଇ ଇସ୍ରାଏଲରେ ବସବାସ କରିବାକୁ ଆସୁଥିବା ୟୁହୂଦୀମାନଙ୍କୁ ଏହି ଅଞ୍ଚଳରେ ଆରବବାସୀଙ୍କୁ ତଡ଼ି ଜବରଦସ୍ତ ୟୁହୂଦୀ ଗ୍ରାମ ଓ ସହରମାନ ବସାଇଲା । ପାଲେଷ୍ଟାଇନ ଆରବବାସୀଙ୍କ ପକ୍ଷରୁ ଏହି ଅଞ୍ଚଳରେ ପ୍ରତିରୋଧ କରୁଥିବା ସଂଗଠନକୁ ଇନଟିଫାଡ଼ା କୁହାଯାଏ । ୧୯୮୮ରେ ପି.ଏଲ୍.ଓ. ନିଜକୁ ଏକ ସ୍ୱାଧୀନ ରାଷ୍ଟ୍ରର ସରକାର ବୋଲି ଘୋଷଣା କଲା ଏବଂ ଏହାକୁ ଅନେକ ଦେଶ ସ୍ୱୀକୃତି ଦେଲେ – ତାହା ଆଗରୁ କୁହାଯାଇଛି ।

କ୍ୱେଟ୍ ଦଖଲ କରିଯିବା ପରେ ଇରାକ ଉପରେ ଆମେରିକା ତଥାକଥିତ ଜାତିସଂଘ ନିଷ୍ପତ୍ତି ଅନୁସାରେ ଯେଉଁ ବର୍ବର ଆକ୍ରମଣ କଲା, ସେଥିରେ ଇରାକକୁ ପି.ଏଲ୍.ଓ. ସମର୍ଥନ ଦେବାରୁ ତୁର୍କୀ, ମିଶର, ଜୋର୍ଡ଼ାନ ପ୍ରଭୃତି ଆରବ ଦେଶ ପି.ଏଲ.ଓ. ବିରୁଦ୍ଧରେ ଅସନ୍ତୋଷ ପ୍ରକାଶ କଲା ।

ଏହିପରି ପରିସ୍ଥିତିରେ ପି.ଏଲ.ଓ.କୁ ବର୍ତ୍ତମାନର ସୀମିତ ସ୍ୱାୟତ୍ତ ଶାସନ ଚୁକ୍ତିରେ ସ୍ୱାକ୍ଷର କରିବାକୁ ପଡିଛି । ସୋଭିଏତ୍ ୟୁନିୟନର ବିଲୁପ୍ତ, ରୁଷିଆରେ ଆମେରିକା ଓ ପୁଞ୍ଜିବାଦୀ ରାଷ୍ଟ୍ରଗୁଡ଼ିକଙ୍କ ସପକ୍ଷବାଦୀ ୟେଲତସିନ ଶାସନର ପ୍ରବର୍ତ୍ତନ, ଆରବ ଦେଶଗୁଡ଼ିକରେ ପୂର୍ବପରି ପି.ଏଲ.ଓ.କୁ ସମର୍ଥନ ଦେବାରେ ଭାଗ ଭାଗ ଏବଂ ଆମେରିକାର ଏକ ମେରୁ ବିଶିଷ୍ଟ ନୂତନ ପୃଥିବୀରେ ନିରପେକ୍ଷ ଦେଶଗୁଡ଼ିକର ଟାଣପଣର ଅଭାବ ଓ ପି.ଏଲ୍.ଓ. ପ୍ରତି ପୂର୍ବପରି ସର୍ବାନ୍ତଃକରଣ ସମର୍ଥନର ଅଭାବ ହିଁ ୟାସେର ଆରଫତ୍ ଓ ପି.ଏଲ.ଓ.କୁ ସତର୍କତା ସହ ନୀତି ପରିବର୍ତ୍ତନ କରିବାକୁ ବାଧ୍ୟ କଲା ବୋଲି ମନେହୁଏ । ସେଇଥିଲାଗି ମଧ୍ୟପ୍ରାଚ୍ୟ ଶାନ୍ତି ଆଲୋଚନା ଲାଗି ୧୯୯୧ ମାଦ୍ରିଦ ସମ୍ମିଳନୀ ପାଇଁ ସେ ଏକମତ ହେଲେ ଏବଂ ଦୁଇବର୍ଷ କାଳ ଆଲୋଚନା ଚୂଡ଼ାନ୍ତ ରୂପନେଇ କାର୍ଯ୍ୟକାରୀ ହେଲା ।

ପାଲେଷ୍ଟାଇନ୍ ସମସ୍ୟା ଏହାଦ୍ୱାରା ସଂପୂର୍ଣ୍ଣ ସମାଧାନ ହୋଇଗଲା ବୋଲି ବିଚାରିବାର ନୁହେଁ ।

ତିନିବର୍ଷ ପରେ ଅଧିକୃତ ପାଲେଷ୍ଟାଇନ୍‌ର ବାକି ଅଞ୍ଚଳ ସମ୍ପର୍କରେ ଏବଂ ପାଲେଷ୍ଟାଇନ ଏକ ସ୍ୱତନ୍ତ୍ର, ସାର୍ବଭୌମ ରାଷ୍ଟ୍ର ହେବା ପଥରେ ବହୁ ବାଧା ପ୍ରତିବନ୍ଧକ ରହିଛି । ଜେରୁଜେଲମ୍

ଘେନି ବିବାଦ ଓ ମତଭେଦ ଦୂର ହୋଇନାହିଁ । ଆମେରିକା ଓ ପାଶ୍ଚାତ୍ୟ ପୁଞ୍ଜିବାଦୀ ଦେଶ ଜି.ସାତ୍ ଏହି ଚୁକ୍ତିର ସୁଯୋଗରେ ପି.ଏଲ୍.ଓ.କୁ ଆର୍ଥିକ ସାହାଯ୍ୟ ଦେବାର ପ୍ରଲୋଭନ ଦେଖାଇ ନାନା ଫନ୍ଦିଫିକର କରିବେ ଏବଂ ପି.ଏଲ୍.ଓ.କୁ ଭାଗ ଭାଗ କରିବାକୁ ଚେଷ୍ଟା କରିବେ । ଅନ୍ୟାନ୍ୟ ଆରବ ରାଷ୍ଟ୍ର ମଧ୍ୟରେ ଅଧିକ ସଂଘର୍ଷ ଲଗେଇ ସେ ଇଲାକାରେ ତୈଳ ସମ୍ପଦକୁ ହାତଛଡ଼ା କରେଇବାକୁ ଦେବେ ନାହିଁ ।

ଭବିଷ୍ୟତରେ ପାଲେଷ୍ଟାଇନ୍‌ବାସୀଙ୍କୁ ନୂତନ ପରିସ୍ଥିତିରେ ଆନ୍ତର୍ଜାତିକ ସ୍ତରରେ ଅଧିକ ସଂଗ୍ରାମ କରିବାକୁ ହେବ । ସୀମିତ ସ୍ୱାୟତ୍ତ ଶାସନ ଅଧିକାରକୁ କିପରି ପି.ଏଲ.ଓ. ସାବ୍ୟସ୍ତ କରିବ ଓ କିପରି ପାଲେଷ୍ଟାଇନବାସୀଙ୍କ ମଧ୍ୟରେ ଐକ୍ୟକୁ ଦୃଢ଼ୀଭୂତ କରିବ ଓ ତାହା ଉପରେ ପାଲେଷ୍ଟାଇନର ସଂପୂର୍ଣ୍ଣ ମୁକ୍ତି ସଂଗ୍ରାମର ଭାଗ୍ୟ ନିର୍ଭର କରିବ ।

□□□

ରଚନା କାଳ – ୧୯୯୩

# ଫାସିଷ୍ଟବାଦ ବିଲୋପରେ ମାନବ ଜାତିର ଜୟଯାତ୍ରା

୧୯୪୫ ମଇ ମାସ ୮ ତାରିଖ । ମଧ୍ୟ ରାତ୍ରୀ । ପୃଥିବୀର ବିଭତ୍ସତମ, ଲୋକହର୍ଷଣକାରୀ ଦ୍ୱିତୀୟ ମହାସମରର ଅବସାନ ଘଟିଲା । ୧୯୩୯ ସେପ୍ଟେମ୍ବର ୧ରୁ ଆରମ୍ଭ ଛଅ ବର୍ଷ ବ୍ୟାପୀ ଚାଲିଥିବା ନରସଂହାର, ଧ୍ୱଂସତାଣ୍ଡବ, ତୋପବନ୍ଧୁକର ବୋମା-ବିମାନର ଗର୍ଜନର ସମାପ୍ତି ଘଟିଲା । ୟୁରୋପ, ଏସିଆ, ଆଫ୍ରିକାରେ ରକ୍ତର ସ୍ରୋତ ବନ୍ଦ ହୋଇଗଲା । ଲକ୍ଷ ଲକ୍ଷ, ନିୟୁତ ନିୟୁତ ନୁହେଁ, କୋଟି କୋଟି ପୁତ୍ର କନ୍ୟାହରା ଜନନୀ, ସ୍ୱାମୀବିଧୁରା ଜାୟାଙ୍କର କରୁଣ କ୍ରନ୍ଦନ, ଆଉ ଅଭିଶାପ ଗଗନ ପବନ ମୁଖରିତ କଲା । ଆଉ ଯୁଦ୍ଧ ନୁହେଁ, ଶାନ୍ତି ଏହି ସଙ୍କଳ୍ପ ନେଲେ ପୃଥିବୀର ଅଗଣିତ ଜନତା । ଧ୍ୱଂସ ନୁହେଁ ସୃଷ୍ଟି, ମୃତ୍ୟୁ ନୁହେଁ ଜୀବନ । ଅଭିଶପ୍ତ ହୁଅନ୍ତୁ ଯୁଦ୍ଧବାଜମାନେ, ନିଶ୍ଚିହ୍ନ ହୁଅନ୍ତୁ ମଣିଷ ମାଂସର ବେପାରୀମାନେ । ଏହାହିଁ ଥିଲା ପଞ୍ଚ ମହାଦେଶର ଶାନ୍ତିପ୍ରିୟ ଜନସାଧାରଣଙ୍କର କାମନା, ବାସନା, ଆକାଂକ୍ଷା ଓ ପ୍ରତ୍ୟାଶା ।

ହିଟଲର ଦୁନିଆରେ କୋଟିକୋଟି ଜନମାନବର ରାୟ ଶୁଣିବା ପୂର୍ବରୁ ପରାଜୟ ସୁନିଶ୍ଚିତ ଜାଣି, ଦ୍ୱାର ଦେଶରେ ବିଜୟୀ ଲାଲସେନାର ଅବାରିତ ଅଗ୍ରଗତି ଦେଖି ୧୯୪୫ ଏପ୍ରିଲ ୩୦ରେ ବିଷ ଖାଇ ଆତ୍ମହତ୍ୟା କଲା । ପଶ୍ଚିମପଟେ ବହୁ ବିଳମ୍ବିତ ନର୍ମାଣ୍ଡି ଅଭିଯାନ ପରେ ପଶ୍ଚିମ ୟୁରୋପରୁ ନାଜୀ ସୈନ୍ୟ ପରାଜିତ ହେଉଥାନ୍ତି । ବର୍ଲିନ ମହାନଗରୀରେ ପୃଥିବୀ ଧ୍ୱଂସର ପ୍ରତୀକ ତୃତୀୟ ରାଇକ ଜର୍ମାନ ପାର୍ଲିଆମେଣ୍ଟର ଅଟ୍ଟାଳିକାରେ ବୀର ଲାଲସେନା ବିଜୟର ଲାଲ ପତାକା ଉଡ଼ାଇ ଦେଲେ ।

ବର୍ଲିନର ଉପକଣ୍ଠ କାର୍ଲସୋର୍ହଷ୍ଟର ଏକ ଅଟ୍ଟାଳିକାରେ ଜର୍ମାନ ସେନାପତି ମଣ୍ଡଳୀ ପକ୍ଷରୁ କିୟେଟେଲ ବିନା ସର୍ତ୍ତରେ ଆତ୍ମସମର୍ପଣର ଦଲିଲ ସ୍ୱାକ୍ଷର କଲେ । ବିଲାତ, ଆମେରିକା ଓ ସୋଭିଏତ ୟୁନିଅନର ସେନାପତିମାନଙ୍କ ପକ୍ଷରୁ ଜର୍ମାନ ଆତ୍ମସମର୍ପଣ ଉତ୍ସବରେ ବିଖ୍ୟାତ ସୋଭିଏତ ସେନାପତି ମାର୍ଶାଲ ଗିଓରଗି ଜୁକୋଭ ସେହିଦିନ ଅଧ୍ୟକ୍ଷତା କରିଥିଲେ ।

ବହୁ ପ୍ରତ୍ୟାଶିତ ମଇ ୯ ତାରିଖରେ ବିଜୟ ଦିବସ ସାରା ପୃଥିବୀରେ ଓ ବିଶେଷଭାବରେ ମସ୍କୋ ମହାନଗରୀ ସମେତ ସୋଭିଏତ ଦେଶର ନଗର ନଗରୀ ପଲ୍ଲୀ ପ୍ରାନ୍ତରରେ ଆସ୍ୱସ୍ତିର

ଦୀର୍ଘଶ୍ୱାସ, ଅଶ୍ରୁ ଆଉ ଆନନ୍ଦ ଉଲ୍ଲାସର କୋଳାହଳରେ ମୁଖରିତ ହୋଇଥିଲା ।

ବିଗତ ୫୫୦୦ ବର୍ଷ ଭିତରେ ପୃଥିବୀରେ ଛୋଟ ବଡ଼ ୧୪ ହଜାର ଯୁଦ୍ଧ ହୋଇଛି । ସଭ୍ୟତା ପୂର୍ବରୁ ଆଦିମ ମାନବ ସମାଜରେ ଚାରଣଭୂମି ବସବାସ ପାଇଁ ଗୋଷ୍ଠୀଯୁଦ୍ଧଠାରୁ ସାମ୍ରାଜ୍ୟ ବିସ୍ତାରର, ଦିଗ୍‌ବିଜୟ ଯୁଦ୍ଧ । ପୁଣି ବଜାର ଦଖଲ ଦେଶ ଦଖଲର ଯୁଦ୍ଧ । ତୈମୁରଲଙ୍ଗଙ୍କ ଯୁଦ୍ଧଠାରୁ ୟୁରୋପୀୟ ଭୂଖଣ୍ଡରେ ଯୁଦ୍ଧ, ନାଦୀର ଶାହ, ଆଲେକଜାଣ୍ଡରଙ୍କ ଭାରତ ଆକ୍ରମଣଠାରୁ ଅଶୋକଙ୍କ କଳିଙ୍ଗ ବିଜୟର ଯୁଦ୍ଧ, ପାନିପଥ ଯୁଦ୍ଧ, କେତେ ଔପନିବେଶିକ ଯୁଦ୍ଧ, ବୋୟେର ଯୁଦ୍ଧଠାରୁ ଚୀନର ଅଫିମ ଯୁଦ୍ଧ, ମରହଟ୍ଟା ସମର, ପୁଣି ଆମେରିକାର ମୁକ୍ତି ଯୁଦ୍ଧଠାରୁ ୧୯୧୪-୧୯୧୮ ପ୍ରଥମ ମହାସମର । କିନ୍ତୁ ୧୯୩୯ରୁ ୧୯୪୫ ଦ୍ୱିତୀୟ ମହାସମର ଯୁଦ୍ଧ ଇତିହାସରେ ବର୍ବରତମ, ହିଂସ୍ରତମ । ଏହି ଯୁଦ୍ଧ ଅତ୍ୟନ୍ତ ନିଷ୍ଠୁର, ଘୋର ନିଦାରୁଣ । ପାଶବିକତା, ଅନୈତିକତା, ହିଂସା, ହତ୍ୟା, ସଂହାର, ସଂନ୍ତ୍ରାସ, ଘୃଣା ଯେଉଁ ରିପୁ, ଯାହା ମାନବ ସଂସ୍କୃତି ଓ ସଭ୍ୟତାରେ ଘୋର କଳଙ୍କମୟ, ଅତ୍ୟନ୍ତ ନିନ୍ଦନୀୟ, ଲଜ୍ଜାକର, ସେସବୁର ମୂର୍ତ୍ତିମନ୍ତ ରୂପ, ଫାସିଷ୍ଟବାଦ-ନାଜୀବାଦ ଏହି ଲୋମହର୍ଷଣକାରୀ ମହାସମରର ସ୍ରଷ୍ଟା ଓ ଗୁରୁ ।

୧୯୪୫ ମଇ ୯ରେ ଫାସିଷ୍ଟବାଦ ଉପରେ ମାନବ ଜାତିର ବିଜୟ ଦିବସର ପବିତ୍ର ସଙ୍କଳ୍ପ ଥିଲା ଆଉ ଯୁଦ୍ଧ ନୁହେଁ, ବିଶ୍ୱ ଶାନ୍ତି । ଆଜି ତାହା ବିପନ୍ନ । ପୁଣି ମଣିଷ ମାଂସର ସଉଦାଗରମାନେ ତା'ଠାରୁ ସହସ୍ର ସହସ୍ର ଗୁଣ ଅଧିକ ନିର୍ମମ, ଅଧିକ ବର୍ବର ଯୁଦ୍ଧ ଆରମ୍ଭ କରିଦେବାକୁ ବାହୁସ୍ଫୋଟ ମାରୁଛନ୍ତି । ଦ୍ୱିତୀୟ ମହାସମର ଓ ଫାସିଷ୍ଟବାଦ ଉପରେ ବିଜୟର ଯୁଗାନ୍ତକାରୀ, ମହାନ ଶିକ୍ଷାକୁ ପୈଶାଚିକ ଯୁଦ୍ଧଖୋରମାନେ ବହୁଜାତିକ, ଏକଚାଟିଆ ପୁଞ୍ଜିର ସଂକୀର୍ଣ୍ଣ ସ୍ୱାର୍ଥରେ ଭୁଲି ଯାଇଛନ୍ତି । ମାନବ ସମାଜକୁ, ମାନବ ସଭ୍ୟତାକୁ, ଏମିତିକି ପୃଥିବୀ ବକ୍ଷରେ ଜୀବସତ୍ତାକୁ ନିଶ୍ଚିହ୍ନ କରିଦେବାକୁ ଟିକିଏ ହେଲେ ସେମାନଙ୍କ ବିବେକକୁ ବାଧିଲା ନାହିଁ ।

ଧରାବକ୍ଷ, ସାଗର, ନିକଟ ଆକାଶ ସେମାନଙ୍କ ଯୁଦ୍ଧର ପରିକଳ୍ପନା ଲାଗି ନଅଣ୍ଟ । ନକ୍ଷତ୍ର ଯୁଦ୍ଧ, ଅନ୍ତରୀକ୍ଷରୁ ଯୁଦ୍ଧ ପ୍ରସ୍ତୁତି ଲାଗି ଯାନ, ମହାଯାନ, ପରମାଣୁ ଅସ୍ତ୍ର ସଜା ଚାଲିଛି ।

ପ୍ରଶ୍ନ ଉଠେ କାହିଁକି ଯୁଦ୍ଧ ମାତାଲମାନଙ୍କର କାଣ୍ଡଜ୍ଞାନ ନାହିଁ । ତାହାର କାରଣ ମଧ ଦ୍ୱିତୀୟ ମହାସମର କାହିଁକି ଆରମ୍ଭ ହେଲା, କେଉଁ ଉଦ୍ଦେଶ୍ୟରେ ଆରମ୍ଭ ହେଲା, କିଏ କିଏ ପକ୍ଷ ଥିଲେ ଏବଂ ଏହି ପକ୍ଷମାନଙ୍କ ମଧରେ କାହାର କ'ଣ ଲକ୍ଷ୍ୟଥିଲା ତାହାକୁ ସମ୍ୟକ ରୂପେ ଉପଲବ୍ଧି କଲେ ଜାଣିହେବ ।

ସେହି ଶିକ୍ଷାରୁ ମିଳେ ଦ୍ୱିତୀୟ ମହାସମରକୁ ମଧ ରୋକାଯାଇ ପାରିଥାନ୍ତା । ହିଟଲର ନାଜୀବାଦ, ମୁସୋଲିନ ଫାସିଷ୍ଟବାଦ ଓ ଜାପାନ ସମରବାଦକୁ ଜନ୍ମରୁ ମଧ ନିରୋଧ କରି

ହୋଇଥାନ୍ତା । ସେଥିରୁ ଶିକ୍ଷା ମିଳିବ ଆଜି ମଧ ପରମାଣୁ ବିପର୍ଯ୍ୟୟକୁ ନିବର୍ତ୍ତାଇ ହେବ । ପୃଥିବୀ ପୃଷ୍ଠରୁ ଚିରକାଳ ଲାଗି ଯୁଦ୍ଧକୁ ନିର୍ବାସିତ କରିହେବ । ସେପରି ଶକ୍ତିଗୁଡ଼ିକ ଫାସିଷ୍ଟବାଦର ପରାଜୟ ପରେ ଦୁନିଆରେ ଜନ୍ମଲାଭ କରିଛନ୍ତି । ସେହି ନୂତନ ଶାନ୍ତିକାମୀ, ଯୁଦ୍ଧବିରୋଧୀ ଶକ୍ତିମାନଙ୍କର ଅଭ୍ୟୁଦୟ ହେତୁ ଦ୍ୱିତୀୟ ମହାଯୁଦ୍ଧ ପରେ ୪୦ ବର୍ଷ କାଳ ପୃଥିବୀ ମହାସମରର ବିପଦରୁ ରକ୍ଷାପାଇଛି । ଯଦିଚ ଦ୍ୱିତୀୟ ମହାସମର ନ ସରୁଣୁ ଯୁଦ୍ଧ ପିଶାଚମାନେ ତୃତୀୟ ଯୁଦ୍ଧ ଲାଗି ନାହିଁ ନଥିବା ପ୍ରସ୍ତୁତି, ପ୍ରରୋଚନା, ଖଣ୍ଡଯୁଦ୍ଧ, ଗୃହଯୁଦ୍ଧ ସଶସ୍ତ୍ର ହସ୍ତକ୍ଷେପ ଓ ଆକ୍ରମଣ କରିଆସିଛନ୍ତି ।

ପ୍ରଥମ ମହାସମର ପରେ ମାତ୍ର ୨୧ ବର୍ଷ ନ ପୁରୁଣୁ ଦ୍ୱିତୀୟ ମହାସମର ଆରମ୍ଭ ହୋଇଯାଇଥିଲା । ଆଜି ନୂତନ ଶକ୍ତି ପୃଥିବୀକୁ ଯୁଦ୍ଧମୁକ୍ତ କରିବାର ସଂପୂର୍ଣ୍ଣ ଭରସା ଦେଉଛି ।

ସେହି ଦୃଷ୍ଟିରୁ ଦ୍ୱିତୀୟ ମହାସମରର କାରଣ, ତା'ର ଲକ୍ଷ୍ୟ ଉଦ୍ଦେଶ୍ୟ ଓ ଯୁଦ୍ଧର ଗତିରେ ନାଟକୀୟ ପରିବର୍ତ୍ତନ ଓ ଶେଷରେ ଫାସିଷ୍ଟବାଦର ପରାଜୟର ବିଶ୍ଳେଷଣ, ମୂଲ୍ୟାୟନ କରି ଉପଯୋଗୀ ଶିକ୍ଷା ନେବାକୁ ହେବ । ସେହି ଶିକ୍ଷା ହିଁ ମାନବ ଜାତିକୁ ପ୍ରଳୟଙ୍କରୀ ତୃତୀୟ ଯୁଦ୍ଧକୁ ନିରୋଧ କରିବା ପାଇଁ ସମର୍ଥ କରିବ । ଏହି ଯୁଦ୍ଧକୁ ବିବେକବାନ, ମାନବପ୍ରେମୀ ଦେଶ ଦେଶର ବିଖ୍ୟାତ ବିଜ୍ଞାନୀ, ବିଖ୍ୟାତ ଯୁଦ୍ଧ ବିଶାରଦ "ଶେଷଯୁଦ୍ଧ" ବୋଲି ମତ ଦେଇଛନ୍ତି । ଏହି "ଶେଷଯୁଦ୍ଧ" ପରେ ଯୁଦ୍ଧ କରିବାକୁ କେହି ନଥିବେ, କି ମାରଣାସ୍ତ୍ର ନଥିବ । ପୃଥିବୀରେ ମଣିଷ ଜୀବନର ସତ୍ତା ନଥିବ । ସୂର୍ଯ୍ୟର କିରଣ ଆଉ ପୃଥିବୀ ବକ୍ଷରେ ବିଚ୍ଛୁରିତ ହେବ ନାହିଁ । ଘୋର ଅମାନିଶା ଘୋଟି ଆସିବ । ଦିନରାତି, ବର୍ଷ, ମାସ, ଋତୁ, ପାଣିପାଗ, ପରିବେଶ ଆଉ କିଛି ନଥିବ ।

**ବିଭୀଷିକାର ଏକ ସଂକ୍ଷିପ୍ତ ଚିତ୍ର**

ପ୍ରଥମ ମହାସମରରେ ଉଭୟ ମୃତ ଓ ଆହତଙ୍କ ସଂଖ୍ୟା ଥିଲା ୨ କୋଟି ମାତ୍ର । ଦ୍ୱିତୀୟ ମହାସମରରେ କେବଳ ମୃତଙ୍କ ସଂଖ୍ୟା ୫ କୋଟି ୪୮ ଲକ୍ଷ । ୟୁରୋପ, ଏସିଆ, ଆଫ୍ରିକାର ରଣାଙ୍ଗନମାନଙ୍କରେ ଅକଳଣ ମୃତ ଦେହ । କେବଳ ସୋଭିଏତ ୟୁନିଅନର ନିହତଙ୍କ ସଂଖ୍ୟା ୨ କୋଟି ୩ ଲକ୍ଷ । ସେହି ବିଶାଳ ଦେଶର ପ୍ରତ୍ୟେକ ପରିବାର ଏହି ମୃତ୍ୟୁ ତାଲିକାର ଅନ୍ତର୍ଭୁକ୍ତ । ନିହତ ହୋଇଥିଲେ ପୋଲାଣ୍ଡର ୬୦ ଲକ୍ଷ, ଯୁଗୋସ୍ଲୋଭିଆର ୧୭ ଲକ୍ଷ, ଫ୍ରାନ୍ସର ୬ ଲକ୍ଷ, ବିଲାତର ୩ ଲକ୍ଷ ୮୮ ହଜାର, ଆମେରିକାର ୩ ଲକ୍ଷ ୨୯ ହଜାର ଏବଂ ଜର୍ମାନୀର ୬୦ ଲକ୍ଷ । ୩୦ ଲକ୍ଷ ଲୋକଙ୍କର ପତ୍ତା ମିଳିନଥିଲା ।

ଶିଶୁଙ୍କୁ ଓ ମହିଳାମାନଙ୍କୁ ନିର୍ମ୍ମମଭାବରେ ହତ୍ୟା କିପରି କରାଯିବ ସେଥିପାଇଁ ନାଜୀବାହିନୀକୁ ବିଶେଷ ତାଲିମ ଦିଆଯାଇଥିଲା । ଅଧିକୃତ ଅଞ୍ଚଳଗୁଡ଼ିକରେ ଶିଶୁମାନଙ୍କୁ ଧରି ପଥରରେ ଛେଚି ମାରିଦେବା ଓ ଖିଲଖିଲ ହସ ହସିବା ଫାସିଷ୍ଟ ସଂସ୍କୃତିର ଏକ ନାରକୀୟ

ଅଭିବ୍ୟକ୍ତି । ହିଟଲରର ବନ୍ଦୀ ଶିବିରମାନଙ୍କରେ ୧୩ ଲକ୍ଷ ଶିଶୁଙ୍କୁ ହତ୍ୟା କରାଯାଇଥିଲା । ଅବଶ୍ୟ ସେଥିଭିତରୁ କେତେକ ଶିଶୁ ବୋମା ଆକ୍ରମଣରେ ଓ କ୍ଷୁଧା ଜ୍ୱାଳାରେ ମୃତ୍ୟୁ ମୁହଁରେ ପଡ଼ିଥିଲେ ।

ନାଜୀମାନେ ପୋଲାଣ୍ଡଠାରୁ ଆରମ୍ଭ କରି ଅଧିକୃତ ଅଞ୍ଚଳରେ ଏବଂ ଜର୍ମାନୀ ଭୂଇଁରେ ବନ୍ଦୀ ଶିବିରମାନ ଖୋଲିଥିଲେ । ଆମ ଦେଶରେ ପୁରାଣ ବର୍ଣ୍ଣିତ କାଳ୍ପନିକ ଯମଶାଳାର ଅଗ୍ନିକୁଣ୍ଡ ଓ ଅନ୍ୟାନ୍ୟ ଯନ୍ତ୍ରଣାଦାୟକ ବ୍ୟବସ୍ଥା ହିଟ୍‌ଲର ବନ୍ଦୀଶାଳାର ନିର୍ଯ୍ୟାତନା ଓ ଅତ୍ୟାଚାର ପାଖରେ ହାର ମାନିଛି ।

କେବଳ ବନ୍ଦୀ ଓ ଶିବିରଗୁଡ଼ିକରେ ୧ କୋଟି ୨୦ ଲକ୍ଷ ନିରୀହ ବେସାମରିକ ନରନାରୀ, ଶିଶୁଙ୍କୁ ଆଉ କମ୍ୟୁନିଷ୍ଟ, ସୋସାଲ ଡିମୋକ୍ରାଟ ଓ ଗଣତନ୍ତ୍ରବାଦୀ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ହତ୍ୟା କରାଯାଇଥିଲା ।

ଯୁଦ୍ଧରେ ସୈନ୍ୟ ମରନ୍ତି । ବୋମା ତୋପ କମାଣରେ କିଛି କିଛି ନାଗରିକ ମରନ୍ତି । କିନ୍ତୁ ବନ୍ଦୀ ଶିବିରମାନଙ୍କରେ ନରସଂହାର । ଶହ ଶହ, ହଜାର ହଜାର ନୁହନ୍ତି, ଲକ୍ଷ ଲକ୍ଷ । ବନ୍ଦୀ ଶିବିର ପୋଲାଣ୍ଡର ଅସୱିଜ ହେଉ, ଜର୍ମାନୀରେ ବୁକେନୱାଲଡ୍ ହେଉ ଅବା ରାଭେନ୍‌ସବ୍ରୁକ, ସାକସେନ ହୋସେନ ବେଲସନ୍, ଟ୍ରିବ୍ଲିଙ୍କା ପରି ଗଣ୍ଡାଗଣ୍ଡା ବନ୍ଦୀ ଶିବିର ହେଉ ସେଠାରେ ୟୁହୁଦୀ, ରୁଷୀୟ, ଫରାସୀ, ବିଲାତୀ, ପୋଲାଣ୍ଡ, ଯୁଗୋସ୍ଲାଭ, ବୁଲଗେରିଆ, ହଙ୍ଗେରୀ ଏମିତି ୩୫ଟି ଦେଶର ବନ୍ଦୀ । ସେମାନଙ୍କ ଉପରେ ପ୍ରତିଦିନ ଅକଥନୀୟ ଅତ୍ୟାଚାର, ବର୍ଣ୍ଣନା କରିହେବ ନାହିଁ । ମାସ ମାସ ଉପାସ ରଖାଯିବ – ଜୀର୍ଣ୍ଣଶୀର୍ଣ୍ଣ ହୋଇଗଲେ ପାଖରେ ଚିମିନି ଲଗା, ଇଟା ସିମେଣ୍ଟରେ ଗଢ଼ା ନିବୁଜ ମୃତ୍ୟୁ ଫାକ୍ଟରୀକୁ ଧାଡ଼ିବାନ୍ଧି ନିଆଯିବ । ବିଦ୍ୟୁତ୍ ଚୁଲି ଜଳି ଉଠିବ । ସେହି ଫାକ୍ଟରୀ ଭିତରେ ମୁହୂର୍ତ୍ତକେ ହଜାର ହଜାର ନିଶ୍ଚିହ୍ନ । ଗୁଳିରେ ଅଧିକ ଖର୍ଚ୍ଚ । ତେଣୁ ଗ୍ୟାସ ଗାଡ଼ିରେ ଭର୍ତ୍ତି କରି ଦିଆଯାଏ ବନ୍ଦୀମାନଙ୍କୁ । ଗ୍ୟାସ୍ ଛାଡ଼ି ଦିଆଯାଏ । ସବୁ ପାଉଁଶ । ଏହି ପାଉଁଶ ବୁହାଯାଏ ସାରରୂପେ ହିଟ୍‌ଲରର ଜର୍ମାନ ମାଟିକୁ ଉର୍ବର କରିବା ପାଇଁ ।

୧୯୩୯ ଅଗଷ୍ଟ ୨୨ ତାରିଖରେ ଯୁଦ୍ଧ ଆରମ୍ଭର ମାତ୍ର ୯ ଦିନ ପୂର୍ବରୁ ହିଟଲର ଘୋଷଣା କରିଥିଲା, "ପୋଲାଣ୍ଡକୁ ଜନମାନବ ଶୂନ୍ୟ କରାଯିବ । ଜର୍ମାନ ଲୋକେ ସେଠାରେ ରହିବେ... ଭଦ୍ରଲୋକ ବୃନ୍ଦ... ଶୁଣ ରୁଷିଆ ମଧ୍ୟ ସମଦଶା ଭୋଗିବ । ଆମେ ସୋଭିଏତ ୟୁନିଅନକୁ ନିର୍ମୂଳ କରିଦେବୁ । ତାହାହିଁ ହେବ ଧରାପୃଷ୍ଠରେ ଜର୍ମାନ ରାଜୁତିରେ ପ୍ରଭାତ ।"

ହିଟଲର ଏହି ଘୋଷଣାର ରୂପ ପାଇଥିଲା ପୋଲାଣ୍ଡରେ ଖୋଲାଯାଇଥିବା ଓସୱିଜ ବନ୍ଦୀ ଶିବିରରେ । ୧୯୪୦ ଜୁନ୍‌ରୁ ୧୯୪୫ ଜାନୁଆରୀ ୨୭ ଯାଏ ଖୋଲାଥିବା ହିଟ୍‌ଲରର ଏହି ବନ୍ଦୀ ଶିବିରରେ ୯୦ ଲକ୍ଷ ଅଧିକାଂଶ ପୋଲାଣ୍ଡ ଓ ରୁଷ ଲୋକଙ୍କୁ ହତ୍ୟା କରାଯାଇଥିଲା ।

ସୋଭିଏତ ସେନାନୀ ଓସଓ୍ୱିଜ ବନ୍ଦୀ ଶିବିର ବାକିଥିବା ବନ୍ଦୀଙ୍କୁ କାଳେ ଖଲାସ କରିଦେବେ, ସେଥିଲାଗି ପଳାୟନ କରୁଥିବା ନାଜୀମାନେ ବନ୍ଧୁକ ଦେଖାଇ ୫୩ ହଜାର ବନ୍ଦୀଙ୍କୁ ମାରିବାକୁ ସମୟ ନପାଇ ୮୫ ମାଇଲ ଚଲେଇ ଚଲେଇ ଅନ୍ୟତ୍ର ନେଇ ପଳାଇଥିଲେ ।

ଆଉ ଏକ ବନ୍ଦୀ ଶିବିର ବୁକେନଓ୍ୱାଲଡ୍ । ହିଟଲର କ୍ଷମତାକୁ ଆସିବା ପରେ ନିଜ ଦେଶର ଓ ଅନ୍ୟାନ୍ୟ ଦେଶର କମ୍ୟୁନିଷ୍ଟ, ସୋସାଲ ଡ଼ିମୋକ୍ରାଟ ଓ ଅନ୍ୟାନ୍ୟ ରାଜନୈତିକ ବନ୍ଦୀଙ୍କୁ ରଖି ହତ୍ୟା କରୁଥିଲା । ଆଜି ବୁକେନଓ୍ୱାଲଡ୍ ସମାଜବାଦୀ ପୂର୍ବଜର୍ମାନୀରେ ଅବସ୍ଥିତି । ତାହା ଶାନ୍ତିପ୍ରେମୀ ଜନତାର ତୀର୍ଥଭୂମି, ସଂକଳ୍ପର ଭୂମି, ୨ ଲକ୍ଷ ୩୮ ହଜାର ୯ ଶହ ବନ୍ଦୀଙ୍କୁ ଏଠାରେ ରଖାଯାଇଥିଲା । ସୋଭିଏତ୍ ସେନାନୀ ମୁକ୍ତ କଲାବେଳକୁ ୨୧ ହଜାର ବନ୍ଦୀ ଶୁକୁଶୁକୁ ହୋଇ ମୃତ୍ୟୁକୁ ଅପେକ୍ଷା କରିଥିଲେ ।

ବନ୍ଦୀ ଶିବିରଗୁଡ଼ିକରେ ଗୁଳିକରି ହତ୍ୟା କରାଯାଉଥିବା ବନ୍ଦୀଙ୍କ ଦାନ୍ତ, ହାଡ଼, ଚର୍ମକୁ ନାଜୀ ସଂସ୍କୃତି ଅନୁସାରେ ସୌଖିନ ପଦାର୍ଥରେ ପରିଣତ କରାଯାଇଥିଲା । ମଣିଷ ହାଡ଼, ଖପୁରୀ, ଚର୍ମରେ ତିଆରି ମହିଳାଙ୍କ ହ୍ୟାଣ୍ଡବ୍ୟାଗ୍, ଆଶଟ୍ରେ, ମହମବତୀ ଷ୍ଟାଣ୍ଡ ଶହ ଶହ ସଂଖ୍ୟାରେ ଆଜିବି ସେଠାରେ ଦ୍ରଷ୍ଟବ୍ୟ ପଦାର୍ଥ ହୋଇ ରଖାଯାଇଛି । ମାନବର ବିବେକକୁ ଚେତାଇଦେବା ଲାଗି ନାଁ ଆଉ ଯୁଦ୍ଧ ନୁହଁ ।

ପୋଲାଣ୍ଡର ଓ ସଓ୍ୱିଜ ବନ୍ଦୀ ଶିବିରରେ ଏବେ ସୁରକ୍ଷିତ ହୋଇ ବନ୍ଦୀମାନଙ୍କ ୩ ଲକ୍ଷ ୪୮ ହଜାର ପେଣ୍ଟ୍ କୋଟ, ମହିଳାଙ୍କର ୮ ଲକ୍ଷ ୩୬ ହଜାର ପୋଷାକ, ୧୪ ହଜାର ଗାଲିଚା, ଗଦା ଗଦା ଟୁଥ ବ୍ରସ୍, ଖିଅର ବ୍ରସ୍, ଆଉ ଟନ ଟନ ମହିଳା କେଶ । ମହିଳାମାନଙ୍କୁ ମାରିଦେବା ପରେ ସେମାନଙ୍କ କେଶ କାଟି ଆଣି ମୃତ୍ୟୁ ବେପାରୀମାନେ ପରଚୁଲା ବ୍ୟବସାୟ କରୁଥିଲେ । ଜୀଅନ୍ତା ଲୋକଙ୍କ ଦାନ୍ତ ଉପାଡ଼ି ସେଥିରେ ଲଗା ସୁନାପାତ ସଂଗ୍ରହ କରାଯାଇ ତା'ପରେ ସେମାନଙ୍କୁ ପୋଡ଼ି ଦିଆଯାଉଥିଲା । ବନ୍ଦୀ ଶିବିରଗୁଡ଼ିକ ନିକଟରେ ଏବେ ବି ପାହାଡ଼ ସଦୃଶ ମଣିଷମୁଣ୍ଡ ସେହି ବିଭୀଷିକାକୁ ସ୍ମରଣ କରାଇ ଦିଏ ।

ଏହି ମହାସମରରେ ପୂର୍ବପଟେ ଜାପାନର ଆକ୍ରମଣ ଓ ଦକ୍ଷିଣପୂର୍ବ ଏସିଆ, ଚୀନ, କୋରିଆ ସମେତ ସୋଭିଏତ ୟୁନିଅନ ଓ ୟୁରୋପର ଅନ୍ୟ ସବୁ ଦେଶରେ ନିହତଙ୍କ ସଂଖ୍ୟା ମଧ୍ୟରୁ ଶତକଡ଼ା ୫୦ ଭାଗ ବେସାମରିକ ଏବଂ ଏହି ବେସାମରିକ ନିହିତ ବ୍ୟକ୍ତିଙ୍କ ସଂଖ୍ୟା ପ୍ରଥମ ମହାସମରରେ ବେସାମରିକ ନିହତ ବ୍ୟକ୍ତିଙ୍କ ସଂଖ୍ୟାଠାରୁ ଦଶଗୁଣ ଅଧିକ । କାରଣ ପ୍ରଥମ ମହାସମରଠାରୁ ଅତି ଭୟାବହ ମାରଣାସ୍ତ୍ର, ବିମାନରୁ ନଗର ନଗରୀ ପଲ୍ଲୀପ୍ରାନ୍ତ ଉପରେ ବୋମାବର୍ଷଣ ଦ୍ୱିତୀୟ ମହାସମର କାଳରେ ଏତେ ସଂଖ୍ୟକ ବେସାମରିକ ଲୋକ ନିହତ ହେଲେ ।

ୟୁରୋପ ମହାଦେଶରେ ବିଗତ ୩୫୦ ବର୍ଷ ଭିତରେ ଯେତିକି ଲୋକ ଯୁଦ୍ଧ ରୋଗ

ଓ ବାର୍ଦ୍ଧକ୍ୟରେ ମରିଥିଲେ, ଦ୍ୱିତୀୟ ମହାସମରର ୬ ବର୍ଷ ଭିତରେ ତାହାର ଅଢ଼େଇଗୁଣ ଅଧିକ ଲୋକ ନିହତ ହୋଇଥିଲେ ।

ଏହି ଯୁଦ୍ଧରେ ଆମେରିକାର ଓ ବିଲାତର ମୋଟ ମିଶି ଯେତେ ଲୋକ ନିହତ ହୋଇଥିଲେ ତାହାର ୨୦ ଗୁଣରୁ ଅଧିକ ସୋଭିଏତ ଲୋକ ମୃତ୍ୟୁ ମୁଖରେ ପଡ଼ିଥିଲେ ।

ଆମେରିକାକୁ ଛାଡ଼ିଦେଲେ ଯୁଦ୍ଧରତ ସବୁ ଦେଶ ପ୍ରାୟ ଶ୍ମଶାନ ହୋଇଗଲା କିନ୍ତୁ ସୋଭିଏତ ଭୂମିକୁ ନାଜୀବାହିନୀ ମହା ଶ୍ମଶାନରେ ପରିଣତ କରିଥିଲା । ସୋଭିଏତ ୟୁନିଅନର ୧୭୧୦ଟି ନଗରନଗରୀ, ୭୦ ହଜାର ଗାଁ, ୯୪ ହଜାର କୋଠଖମାର, ୩୨ ହଜାର କଳକାରଖାନା, ୪୦ ହଜାର ହାସପାତାଳ, କିଣ୍ଡରଗାର୍ଟେନ ବିଦ୍ୟାଳୟ ଓ ୬୫ ହଜାର କିଲୋମିଟର ରେଳପଥ ଧ୍ୱଂସସ୍ତୂପରେ ପରିଣତ ହୋଇଥିଲା । ସୋଭିଏତ ୟୁନିଅନର ଯାହା ଜାତୀୟ ସଂପଦ ତାହାର ଏକତୃତୀୟାଂଶ ନିଶ୍ଚିହ୍ନ ହୋଇଯାଇଥିଲା ।

ଏହି ସମରକାଳରେ ସୋଭିଏତ ଜର୍ମାନ ଯୁଦ୍ଧ ସାମ୍ମୁଖ୍ୟରେ ଲାଲସେନା ୬୦୭ଟି ଡିଭିଜନ ନାଜୀ ସୈନ୍ୟଙ୍କୁ ପରାସ୍ତ କରିଥିଲେ ଏବଂ ହିଟଲରର ୧୭୬ଟି ଡିଭିଜନ ସୈନ୍ୟଙ୍କୁ ବ୍ରିଟିଶ ଆମେରିକାର ସୈନ୍ୟମାନେ ପରାଭୂତ କରିଥିଲେ ।

**ଏପରି ଭୟାବହ ଯୁଦ୍ଧ କାହିଁକି ?**

୧୯୧୪-୧୮ ପ୍ରଥମ ମହାସମର ଆରମ୍ଭ ହୋଇଥିଲା ଜର୍ମାନ ଭୂଇଁରୁ । ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା ସେହି ଜର୍ମାନ ଭୂଇଁରୁ ଏବଂ ତୃତୀୟ ମହାଯୁଦ୍ଧକୁ ଆରମ୍ଭ କରିବା ପାଇଁ ପୁଣି ସେହି ପଶ୍ଚିମ ଜର୍ମାନୀରାଷ୍ଟ୍ରକୁ ଆଗୁଆ ଘାଟୀ କରାଯାଉଛି ।

ପ୍ରଥମ ମହାସମରବେଳେ ଏକପକ୍ଷରେ ବିଲାତ-ଫ୍ରାନ୍‌ସ-ଆମେରିକାର ଓ ଜାରଶାହୀ ରୁଷର ସାମ୍ରାଜ୍ୟବାଦୀମାନେ । ସେମାନଙ୍କର ଉପନିବେଶ ସାରା ପୃଥିବୀ ବସ୍ତୁତଃ ସେମାନଙ୍କ ଶୋଷଣର ଚରାଭୂଇଁ । ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟାସ୍ତ ହୁଏ ନାହିଁ । ଜର୍ମାନୀର ଘୋର ଦୁର୍ଦ୍ଧଷ ଜଙ୍କର ବା ପ୍ରତିକ୍ରିୟାଶୀଳ ସାମନ୍ତବାଦୀମାନେ ଯେତେବେଳେ ଶିଳ୍ପସମ୍ଭାର ଗଢ଼ି ଜର୍ମାନୀକୁ ଶିଳ୍ପୋନ୍ନତ କଲେ, ଶୋଷଣ କରିବାକୁ ସେମାନଙ୍କ ପାଇଁ କ୍ଷେତ୍ର ନାହିଁ । ବଜାର ଓ ଉପନିବେଶ ଦଖଲ ପାଇଁ ଜର୍ମାନୀ ଯୁଦ୍ଧ କଲା ଏବଂ ବଜାର ଓ ଉପନିବେଶ ରକ୍ଷା କରିବା ଲାଗି ବିଲାତ, ଫ୍ରାନ୍‌ସ-ଆମେରିକା ଜର୍ମାନୀର ମୁକାବିଲା କଲେ । ଉଭୟପକ୍ଷ ଅନ୍ୟାନ୍ୟ ଦେଶକୁ ସେଥିରେ ସାମିଲ କଲେ ।

ଜର୍ମାନୀ ପରାସ୍ତ ହେଲା । ମିତ୍ରପକ୍ଷ ବିଜୟୀ ହେଲେ । ମାତ୍ର ପୃଥିବୀରେ ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦର ଶୃଙ୍ଖଳ ଛିନ୍ନ କରିଦେଲା ଏକ ଦେଶ ରୁଷିଆ । ୧୯୧୭ ଅକ୍ଟୋବର ସମାଜବାଦୀ ବିପ୍ଳବ ଲେନିନ ଓ ବଲଶେଭିକ ପାଟିର ନେତୃତ୍ୱରେ ଜୟଯୁକ୍ତ ହେଲା । ପୃଥିବୀର ସାମ୍ରାଜ୍ୟବାଦ ବ୍ୟବସ୍ଥା ଗୋଟିଏ ବିରାଟ ଦେଶରୁ ଅପସରି ଗଲା । ନୂତନ ସମାଜବାଦୀ ରାଷ୍ଟ୍ର ଜନ୍ମର ଦ୍ୱିତୀୟ

ଦିନ ଏହି ନଭେମ୍ବର ୮ରେ ତା'ର ପ୍ରଥମ ଘୋଷଣାନାମା ପ୍ରକାଶ ପାଇଲା । ଶାନ୍ତିର ଘୋଷଣାନାମା ଜାରି କଲା । ସାମ୍ରାଜ୍ୟବାଦୀ ଯୁଦ୍ଧରୁ ଜର୍ମାନୀ ସହିତ ବ୍ରେଷ୍ଟଲିଟଭସ୍କ ଚୁକ୍ତି ସଂପାଦନ କରି ନୂତନ ସୋଭିଏତ ରାଷ୍ଟ୍ର ଓହରି ଆସିଲା । କାରଣ ସାମାଜ୍ୟବାଦୀ ଯୁଦ୍ଧ ଚଳେଇ ରଖିବାକୁ ବ୍ରିଟିଶ, ଫରାସୀ, ଆମେରିକା ସୋଭିଏତ ଶାନ୍ତି ପ୍ରସ୍ତାବରେ ଏକମତ ହେଲେ ନାହିଁ ।

ଜାର ସାମ୍ରାଜ୍ୟରୁ ବିଜୟୀ ଅକ୍ଟୋବର ବିପ୍ଳବ ରୁଷର ଉପନିବେଶଗୁଡ଼ିକୁ ମୁକ୍ତ କରିଦେଲା । ପୋଲାଣ୍ଡ, ଫିନଲ୍ୟାଣ୍ଡ, ୟୁକ୍ରାଇନ ଓ ଲାଟଭିଆ ଇସ୍ତୋନିଆ, ଲିଥୁଆନିଆ ଏବଂ ପ୍ରାଚ୍ୟ ଉପନିବେଶ ଟ୍ରାନ୍‌ସକକେସିଆ ଦେଶଗୁଡ଼ିକ ଜାର ସାମ୍ରାଜ୍ୟରୁ ମୁକ୍ତ ହେଲେ ।

ଉପନିବେଶଗୁଡ଼ିକରୁ ମୁକ୍ତି, ପ୍ରତ୍ୟେକ ଦେଶ ଓ ଜାତିର ସ୍ୱାଧୀନତା ଓ ସାର୍ବଭୌମ ଅଧିକାର ଇତିହାସରେ ପ୍ରଥମ ଥର ଘୋଷଣା କଲା ସୋଭିଏତ ରୁଷ । ଅବସ୍ୟ ପରେ ୧୯୨୨ରେ ୟୁକ୍ରାଇନ । ୧୯୨୪-୨୫ରେ ଉଜବେକସ୍ତାନ, ତାଜିକସ୍ତାନ ପ୍ରଭୃତି ପୂର୍ବର ଉପନିବେଶ ଏବେ ମୁକ୍ତ ହୋଇ ନିଜ ଅଞ୍ଚଳରେ ସମାଜବାଦୀ ବିପ୍ଳବକୁ ସଫଳ କରି ସୋଭିଏତ୍ ରାଷ୍ଟ୍ରସଂଘ ଗଢ଼ିଲେ – ସେମିତି ତିନୋଟିଯାକ ବଲଟିକ ଦେଶ, ଇଷ୍ଟୋନିଆ, ଲିଥୁଆନିଆ, ଲାଟଭିଆ ୧୯୪୦ରେ ସେଠାରେ ବୁର୍ଜୁଆ ଶାସନକୁ ହଟେଇ ସମାଜବାଦୀ ରାଷ୍ଟ୍ର ଗଢ଼ି ସୋଭିଏତ ରାଷ୍ଟ୍ର ସଙ୍ଘରେ ମିଳିତ ହେଲେ ।

ପୋଲାଣ୍ଡ, ଫିନଲ୍ୟାଣ୍ଡ ପୁଞ୍ଜିବାଦୀ ରାଷ୍ଟ୍ର ହୋଇ ରହିଲେ ।

ସୋଭିଏତ୍ ୟୁନିଅନ ଜନ୍ମ ହେବାମାତ୍ରେ ପ୍ରଥମ ମହାସମରରେ ଯେଉଁମାନେ ପରସ୍ପର ଶତ୍ରୁଥିଲେ, ସେପରି ଶତ୍ରୁତାକୁ ତୁରନ୍ତ ଭୁଲି ଯାଇ ଜାପାନ, ଆମେରିକା ଯୁକ୍ତରାଷ୍ଟ୍ର, ଜର୍ମାନୀ, ବିଲାତ, ଫ୍ରାନ୍‌ସ୍ ଏମିତି ୧୪ଟି ପୁଞ୍ଜିବାଦୀ ଦେଶ ୧୯୨୦ରୁ ୧୯୨୨ ଯାଏ ସୋଭିଏତ ୟୁନିଅନ ଉପରେ ମିଳିତ ଆକ୍ରମଣ କଲେ ଓ ଦେଶ ଭିତରର ରାଜତନ୍ତ୍ରୀ ପ୍ରତିକ୍ରିୟାବାଦୀଙ୍କୁ ଧରି ଗୃହ ଯୁଦ୍ଧ ଭିଆଇଲେ ।

ଶିଶୁ ସୋଭିଏତ ରାଷ୍ଟ୍ରର କୋଟିକୋଟି ଚାଷୀ ଶ୍ରମିକ ବୁଦ୍ଧିଜୀବୀ ବିପ୍ଳବୀ ଏହି ଅଭିଯାନକୁ ପରାସ୍ତ କଲେ ।

ପୃଥିବୀରେ ଏକ ପକ୍ଷରେ ବଜାର ଓ ଉପନିବେଶର ରକ୍ଷା ଓ ପୁନଃଦଖଲ ଲାଗି ବିବଦମାନ ସାମ୍ରାଜ୍ୟବାଦୀ ଶକ୍ତିମାନେ ଏବଂ ଅନ୍ୟ ପକ୍ଷରେ ମାନବ ଇତିହାସରେ ପ୍ରଥମ ଥର ପାଇଁ ଶୋଷଣ ବିହୀନ, ଶ୍ରେଣୀ ବିହୀନ, ଶାନ୍ତିକାମୀ ସମାଜବାଦୀ ରାଷ୍ଟ୍ର ସୋଭିଏତ ୟୁନିଅନ । ତାକୁ ସମସ୍ତେ ଅର୍ଥନୈତିକ ବାସନ୍ଦ କଲେ । ତାକୁ ସେତେବେଳର ଲିଗ୍ ଅଫ୍ ନେସନ୍‌ସରେ ୧୯୩୩ ଯାଏ ଭର୍ତ୍ତି କରିଦେଲେ ନାହିଁ ।

ଏହା ସୂଚିତ କଲା ଓ ପ୍ରମାଣ କଲା ସାମ୍ରାଜ୍ୟବାଦୀ ଶକ୍ତିମାନେ ନିଜ ନିଜ ଦେଶର

ପୁଂଜିପତିଙ୍କ ଶୋଷଣକୁ ବଢ଼େଇବା ପାଇଁ ଯେତେ ଝଗଡ଼ା କରନ୍ତୁ ପଛକେ, ସମାଜବାଦ ଓ ସୋଭିଏତ ରାଷ୍ଟ୍ର ସେମାନଙ୍କର ପରମଶତ୍ରୁ; ଶ୍ରେଣୀଶତ୍ରୁ; କାରଣ ଏହି ସମାଜବାଦୀ ଦେଶ ପୁଞ୍ଜିବାଦକୁ ଲୋପ କରିଛି, ଉପନିବେଶକୁ ମୁକ୍ତ କରିଦେଇଛି । ସର୍ବତ୍ର ଏହି ଆଲୋକ ଛୁଟିବ । ସବୁ ଦେଶର ଶୋଷିତମାନେ, ଶ୍ରମିକଶ୍ରେଣୀ, ଚାଷୀ, ବଞ୍ଚିତ ବୁଦ୍ଧିଜୀବୀ ଜାଗିଉଠିବେ । ନିଜ ଭିତରେ ଶୋଷଣର ବଜାର ସୃଷ୍ଟି ଲାଗି, ଯେତେ ଝଗଡ଼ା ହେଉ ପଛେ, ସୋଭିଏତ ରାଷ୍ଟ୍ରକୁ ମୂଳରୁ ଶେଷ କରିବା ଲାଗି ସାମ୍ରାଜ୍ୟବାଦୀ ଶକ୍ତିମାନେ ଦେଶ, ଜାତି ନିର୍ବିଶେଷରେ ଏକ ।

ସାମ୍ରାଜ୍ୟବାଦ ପୁରୁଣା ଢଙ୍ଗରେ, ପୁରୁଣା ପଦ୍ଧତିରେ, ଲୋକଙ୍କୁ କିଛି ନାଗରିକ ଅଧିକାର ଦେଇ, ଭୋଟ ମାଧ୍ୟମରେ ପୁଞ୍ଜିବାଦୀ ଗଣତନ୍ତ୍ର ଜରିଆରେ ଶାସନ କଲେ ସାମ୍ରାଜ୍ୟବାଦୀ ବିଶ୍ୱ ବ୍ୟବସ୍ଥାକୁ ରଖି ହେବ ନାହିଁ । ସେଥି ସକାଶେ ନିର୍ମମ ଭାବରେ ନିଜ ଦେଶର ଶ୍ରମିକ, ଚାଷୀ ଆନ୍ଦୋଳନ, ସମସ୍ତ ଗଣତାନ୍ତ୍ରିକ ଆନ୍ଦୋଳନ, ବିଧିବିଧାନକୁ ଲୋପ କରିବାକୁ ହେବ, ହତ୍ୟା ସନ୍ତ୍ରାସର ରାଜୁତି କାଏମ କରି ଅନ୍ୟାନ୍ୟ ଦେଶକୁ ଜୟ କରିହେବ । ଉପନିବେଶ ଅନ୍ୟମାନଙ୍କଠାରୁ ଛଡ଼େଇ ଆଣି ହେବ ଏବଂ ସର୍ବୋପରି ସମାଜବାଦକୁ ଧ୍ୱଂସ କରିହେବ । ଏହି ପ୍ରତିଜ୍ଞା ନେଇ ଜନ୍ମ ନେଲା ଫାସିଷ୍ଟବାଦ-ନାଜିବାଦ । ସାମ୍ରାଜ୍ୟବାର ଉତ୍କଟ, ବୀଭତ୍ସ, ହିଂସ୍ର ରୂପ ।

ଜର୍ମାନୀରେ ହିଟଲର ଓ ଇଟାଲୀରେ ମୁସୋଲିନୀ । ୧୯୨୨ରେ ମୁସୋଲିନୀ ଇଟାଲୀରେ ଗଣତନ୍ତ୍ରକୁ ହତ୍ୟା କରି ଫାସିଷ୍ଟ ଶାସନ କାଏମ କଲା । ହିଟଲର ବା ନାଜୀବାଦ ଯାହାକୁ ଫାସିଜିମ୍ କୁହାଯାଏ ତାହା ଜୟ ନେଲା । ଜର୍ମାନୀ ଜାତି ଭିତରେ ପ୍ରତିଶୋଧ ନେବାର ବାସନାକୁ ତେଜେଇ, ନାଜୀବାଦ ଘୋଷଣା କଲା – ଏକ ରାଇକ୍ ବା ଅର୍ଥାତ୍ ଏକ ଜର୍ମାନ ପାର୍ଲିଆମେଣ୍ଟ । ଏକ ଜାତି ବା ନର୍ଡିକ ଜାତି, ଆର୍ଯ୍ୟ ଜାତିର ଲୋକେ ଜର୍ମାନର ଲୋକ ଏବଂ ଏକ ନେତା ହିଟଲର । ଏହି ଆର୍ଯ୍ୟଭୂମିର ଲୋକଙ୍କ ଲାଗି ଲିବେନସରମ" ବା ନିଃଶ୍ୱାସ ନେବାର ଜାଗା ନାହିଁ । "ପ୍ରଭୁଜାତି" ଜର୍ମାନୀ । ସାରା ପୃଥିବୀକୁ ଜୟ କରିବ । ସମାଜବାଦକୁ ଧ୍ୱଂସ କରିବ ।

୧୯୨୦ରୁ କ୍ଷୁଦ୍ର ଏକ ଗୋଷ୍ଠୀ ନାଜୀ ୧୯୩୨-୩୩ ବେଳକୁ ପ୍ରାୟ ସମଗ୍ର ଜର୍ମାନ ଯୁବକୁଳର ମନ ଓ ହୃଦୟକୁ ପ୍ରତିଶୋଧ ପରାୟଣ, ହିଂସ୍ର, ଯୁଦ୍ଧବାଦୀ କରିଥାଏ । ସାହାଯ୍ୟ କରୁଥାନ୍ତି ଆମେରିକା, ବିଲାତ, ଫ୍ରାନସ୍‌ର ପୁଞ୍ଜିବାଦୀ ଶାସକବର୍ଗ ଓ ଅର୍ଥ କୁବେରମାନେ । ଅସ୍ତ୍ରଶସ୍ତ୍ର ଦେଇ, ଋଣ ଦେଇ, କୂଟନୈତିକ ଓ ଭିତିରି ସମର୍ଥନ ଦେଇ । ଅଥଚ ହିଟଲର ଓ ନାଜୀ ପାର୍ଟି ଘୋଷଣା କରିଥିଲା ଯେ ତାହା ଭର୍ସେୟି ଚୁକ୍ତିକୁ ରଦ୍ଦ କରିଦେବ । ୧୯୧୪-୧୮ ଯୁଦ୍ଧ ପରେ ଫ୍ରାନ୍‌ସ ଭର୍ସେୟିଠାରେ ଜର୍ମାନୀର ପରାଜୟ ପରେ ସ୍ୱାକ୍ଷରିତ ଏହି ଚୁକ୍ତି

ଜର୍ମାନୀ ଜାତି ପକ୍ଷରେ ଘୋର ଅପମାନଜନକ ଓ ତା'ର ପ୍ରତିଶୋଧ ନେବାକୁ ଆହ୍ବାନ କରି ହିଟଲର ଜଣେଇ ଦେଇଥିଲା ଯେ ଫାସିଜିମ ପୁଣି ବିଶ୍ୱ ଯୁଦ୍ଧ ଆରମ୍ଭ କରିବ । କେବଳ ସୋଭିଏତ୍ ୟୁନିଅନରୁ ସମାଜବାଦକୁ ଲୋପ କରିବ ନୁହେଁ, ବ୍ରିଟିଶ, ଫରାସୀ, ଆମେରିକା ସାମ୍ରାଜ୍ୟବାଦୀମାନଙ୍କଠାରୁ ଉପନିବେଶଗୁଡ଼ିକ ଛଡ଼େଇ ନେବ ।

ଏହା ସତ୍ତ୍ୱେ ବ୍ରିଟିଶ, ଆମେରିକା, ଫରାସୀ ସାମ୍ରାଜ୍ୟବାଦୀମାନେ ଧରିନେଲେ ସେ ହିଟଲର ମୁସୋଲିନୀ ଆଗ ସୋଭିଏତ ୟୁନିଅନକୁ ଧ୍ୱଂସ କରିବ । ସେହି ଦିଗରେ ମୁହାଁଇବାକୁ ଯାହା ଆବଶ୍ୟକ ସେମାନେ ହିଟଲର ଓ ନାଜୀ ଦଳକୁ ସବୁମତେ ସାହାଯ୍ୟ କଲେ ।

ପ୍ରତାରଣା, ହତ୍ୟା, ମିଥ୍ୟା ଓ ସନ୍ତ୍ରାସ ଜରିଆରେ ହିଟଲର କ୍ଷମତା ଦଖଲ କଲା ୧୯୩୩ରେ । ଏତିକିବେଳେ ସୋଭିଏତ୍ ୟୁନିଅନ ବ୍ରିଟିଶ, ଫ୍ରାନ୍ସ, ଆମେରିକାକୁ ବହୁ ନିବେଦନ କଲା, ହିଟଲର ବା ନାଜୀ ବିରୋଧୀ ମେଣ୍ଟ ଗଢ଼ିବାକୁ । ଆଉ ଏକ ପ୍ରଳୟଙ୍କରୀ ବିଶ୍ୱଯୁଦ୍ଧ ନିରୋଧ କରିବାକୁ ।

ଜର୍ମାନୀ ଓ ପଶ୍ଚିମ ଓ ପୂର୍ବ ୟୁରୋପର ଫାସିଷ୍ଟ ବିରୋଧୀମାନେ ବିଶେଷତଃ ସେସବୁ ଦେଶର କମ୍ୟୁନିଷ୍ଟମାନେ ହିଟଲର ବିରୋଧୀ ପପୁଲାର ଫ୍ରଣ୍ଟ ଗଢ଼ି ହିଟଲରର ବିରୋଧ କରିବାକୁ ଆହ୍ୱାନ କଲେ । ଜର୍ମାନୀରେ କମ୍ୟୁନିଷ୍ଟ ଦଳନ ବିରୁଦ୍ଧରେ ସୋସାଲ-ଡିମୋକ୍ରାଟ, ଗଣତନ୍ତ୍ରବାଦୀ, ପ୍ରଜାତନ୍ତ୍ରବାଦୀ, ସବୁ ପ୍ରଗତିଶୀଳ ଶକ୍ତି ଓ ଦଳକୁ ହିଟଲର ଦମନ କରିଦେଲା, ବନ୍ଦୀ କଲା, ଫାସି କାଠରେ ଝୁଲାଇ ଦେଲା ।

ହିଟଲର ବିରୋଧୀ, ଫାସିଜିମ ବିରୋଧୀ ରାଷ୍ଟ୍ରମାନଙ୍କ ମଧ୍ୟରେ ମେଣ୍ଟ ଗଢ଼ା ହୋଇ ପ୍ରତିରୋଧ କରାଯାଇଥିଲେ ହିଟଲର କ୍ଷମତାକୁ ଆସିପାରି ନଥାନ୍ତା । ଜର୍ମାନୀରେ ଓ ଇଟାଲୀରେ କମ୍ୟୁନିଷ୍ଟ ସୋସାଲ ଡିମୋକ୍ରାଟ ପପୁଲାର ଫ୍ରଣ୍ଟ ଗଠିତ ହୋଇଥିଲେ ଗତି ବଦଳି ଯାଇଥାନ୍ତା । ମଣିଷ ଜାତିର ଯମ ହିଟଲର ଫାସିଜିମ ମୂଳରୁ ମରିଥାନ୍ତା । ଦ୍ୱିତୀୟ ମହାସମର ନିବର୍ତ୍ତା ଯାଇ ପାରିଥାନ୍ତା ।

**ଚରମ ବିଶ୍ୱାସଘାତକତା**

ହିଟଲର, ମୁସୋଲିନୀ କ୍ଷମତା ଦଖଲ କରି ଦ୍ୱିତୀୟ ମହାସମର ପାଇଁ ପୁରୁଣା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ସାହାଯ୍ୟ ସମର୍ଥନରେ ବିପୁଳ ମାରଣାସ୍ତ୍ରରେ ସଜ୍ଜିତ ହୋଇଥିଲେ । ଦ୍ୱିତୀୟ ମହାସମରର ପୂର୍ବାଭିନୟ ବା ଡ୍ରେସ ରିହରସାଲ ଚାଲିଲା । ସ୍ପେନ୍‌ରେ ପ୍ରଜାତନ୍ତ୍ର ସରକାରକୁ ଗାଦିଚ୍ୟୁତ କରି ହିଟଲର ମୁସୋଲିନୀ ଜେନେରାଲ ଫ୍ରାଙ୍କୋଙ୍କ ଫାସିଷ୍ଟ ସରକାର ବସେଇଲେ । ସୋଭିଏତ୍ ୟୁନିଅନ ସମେତ ପୃଥିବୀର ବହୁ ଦେଶର ସ୍ପେନର ପ୍ରଜାତନ୍ତ୍ରକୁ ରକ୍ଷା କରିବା ପାଇଁ ସ୍ୱେଚ୍ଛାସେବକ ବାହାରି ସ୍ପେନ ଭୂଇଁରେ ଫାସିଷ୍ଟବାଦ ବିରୁଦ୍ଧରେ ଲଢ଼ି ପ୍ରାଣ ଦେଲେ । ପର୍ତ୍ତୁଗାଲରେ ସାଲଜାରର ଫାସିଷ୍ଟ ଶାସନ ପ୍ରତିଷ୍ଠିତ ହେଲା । ମୁସୋଲିନ ଆଫ୍ରିକାର

ଅବସିନିଆ ଉପରେ ଆକ୍ରମଣ ଆରମ୍ଭ କରିଦେଲା । ସୋଭିଏତ ୟୁନିଅନ ତେବେ ବି ଆହ୍ୱାନ ଦେଲା ହିଟଲର ବିରୋଧୀ ମେଣ୍ଟ ଗଢ଼ିବାକୁ । ମାତ୍ର ପାଶ୍ଚାତ୍ୟ ଶକ୍ତିମାନେ ସେଥିପ୍ରତି କର୍ଣ୍ଣପାତ କଲେ ନାହିଁ ।

ସ୍ପେନ ଓ ପର୍ତ୍ତୁଗାଲରେ ୧୯୩୬-୩୭ରେ ଫାସିଜିମର ପ୍ରତିଷ୍ଠା ଓ ଆବସିନିଆରେ ମୁସୋଲିନୀର ଆକ୍ରମଣ ଯେପରି ପ୍ରମାଣ କରିଦେଲା ଯେ ଫାସିଜିମ୍‌କୁ ନିରୋଧ କରିବାକୁ ପଶ୍ଚିମ ୟୁରୋପରେ ଆଉ କୌଣସି ଶକ୍ତି ନାହିଁ ।

ଫ୍ରାନସ-ଜର୍ମାନୀ ମଧ୍ୟରେ ଫ୍ରାନ୍‌ସର ରାଇନଲ୍ୟାଣ୍ଡକୁ ହିଟଲର ଦଖଲ କରିଗଲା । ୧୯୩୮ରେ ଅଷ୍ଟ୍ରିଆ ଦେଶକୁ ମଧ୍ୟ ଦଖଲ କରିଗଲା । ଏସବୁ ବିଶ୍ୱଯୁଦ୍ଧ ପ୍ରସ୍ତୁତି ପାଇଁ ହିଟଲର-ମୁସୋଲିନୀକୁ ଆବଶ୍ୟକ ଖୋରାକ ଯୋଗାଇ ଦେଲା । ବିଲାତ, ଫରାସୀ, ଆମେରିକାର ସାମ୍ରାଜ୍ୟବାଦୀମାନେ ହିଟଲର ତୋଷଣ ନୀତି ଧରି ତାହାକୁ ସୋଭିଏତ୍ ୟୁନିଅନ ଉପରେ ଆକ୍ରମଣ କରିବାକୁ ଉସ୍‌କାଇଲେ । ଫାସିଷ୍ଟବାଦ ସୋଭିଏତ୍ ଉପରେ ଆକ୍ରମଣ କଲେ ସମାଜବାଦୀ ରାଷ୍ଟ୍ର ଧ୍ୱଂସ ହେବ । ଯୁଦ୍ଧରେ ହିଟଲର ଜର୍ମାନୀ ଦୁର୍ବଳ ହେବ । ଏମାନେ ଯୁଦ୍ଧରୁ ବର୍ତ୍ତିଯିବେ । ଉପନିବେଶଗୁଡ଼ିକରେ ସେମାନଙ୍କ ସାମ୍ରାଜ୍ୟ ରହିଯିବ ।

ହିଟଲର ତା'ଠାରୁ ଅଧିକ ଦାମ୍ ଦାବୀ କଲା । ସୋଭିଏତ ସୀମାନ୍ତ ଚେକୋସ୍ଲୋଭିଆକୁ ତା' ହାତରେ ଅର୍ପଣ କରି ଦେବାକୁ ହେବ । ଚେକୋସ୍ଲୋଭିଆ ଉପରେ ହିଟଲରର ଆକ୍ରମଣ ଆସନ୍ନ ଜାଣି ତାକୁ ସାହାଯ୍ୟ କରିବାକୁ ସମାଜବାଦୀ ସୋଭିଏତ୍ ରାଷ୍ଟ୍ରର ପ୍ରସ୍ତାବକୁ ଚେକୋସ୍ଲୋଭାକିଆର ପୁଞ୍ଜିବାଦୀ ସରକାର ପ୍ରତ୍ୟାଖ୍ୟାନ କଲା । ସୋଭିଏତ ୟୁନିଅନ ବିରୁଦ୍ଧରେ ହିଟଲର ଯାଉ ବୋଲି ମ୍ୟୁନିକଠାରେ ବିଲାତର ପ୍ରଧାନମନ୍ତ୍ରୀ ଚେମ୍ବରଲେନ ଏବଂ ଫ୍ରାନସର ପ୍ରେସିଡେଣ୍ଟ ଏଡ଼ୱାର୍ଡ଼ ଦାଲାଦିୟେର ଓ ଇଟାଲୀ-ହିଟଲର ସହିତ ଚୁକ୍ତି କରି ୧୯୩୮ ସେପ୍ଟେମ୍ବର ୨୯ରେ ଚେକୋସ୍ଲୋଭିଆକୁ ନାଜୀମାନଙ୍କ ହାତରେ ଅର୍ପଣ କରିଦେଲେ । ଆନୁଷ୍ଠାନିକ ଭାବରେ ଆମେରିକା ଏଥିରେ ଯୋଗ ଦେଇ ନଥିଲେ ହେଁ ମ୍ୟୁନିକର ନିଷ୍ପତ୍ତିଗୁଡ଼ିକୁ ସମର୍ଥନ କରିଥିଲା । ଏତେବେଳେ ମଧ୍ୟ ହିଟଲର ବିରୋଧୀ ମେଣ୍ଟ ଲାଗି ସୋଭିଏତ ପ୍ରସ୍ତାବକୁ ପାଶ୍ଚାତ୍ୟ ଶକ୍ତିମାନେ ପ୍ରତ୍ୟାଖ୍ୟାନ କରିଦେଲେ । ଚରମ ବିଶ୍ୱାସଘାତକତା ମ୍ୟୁନିକ ଚୁକ୍ତିରେ ମୂର୍ତ୍ତିମନ୍ତ ରୂପ ପାଇଲା ।

ଫାସିଷ୍ଟବାଦ ତା'ର ପରମ ଶ୍ରେଣୀ ଶତ୍ରୁ ସୋଭିଏତ ୟୁନିଅନକୁ ଆକ୍ରମଣ କରିବ ଜାଣି ସୋଭିଏତ୍ ୟୁନିଅନର ନେତା ଷ୍ଟାଲିନ ନାଜୀ ଜର୍ମାନୀ ସହିତ ଅନାକ୍ରମଣ ଚୁକ୍ତି ସ୍ୱାକ୍ଷର କଲେ । ହିଟଲର ମଧ୍ୟ ତା'ର କୂଟ କୌଶଳରେ ପ୍ରଥମେ ସାରା ୟୁରୋପକୁ ଦଖଲ କରିସାରିବା ପରେ ସୋଭିଏତ ୟୁନିଅନ ଉପରେ ଆକ୍ରମଣ କରିବ ବୋଲି ଏହି ଚୁକ୍ତି ସ୍ୱାକ୍ଷର କଲା ।

ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ପଙ୍ଗୁତା, ଆତ୍ମସମର୍ପଣ ଓ ତୋଷଣ ନୀତିର

ସୁଯୋଗ ନେଇ ହିଟଲର ପ୍ରଳୟଙ୍କରୀ ଦ୍ୱିତୀୟ ମହାଯୁଦ୍ଧର ଆୟୋଜନ ପର୍ବ ସମାପ୍ତ କରି ୧୯୩୯ ସେପ୍ଟେମ୍ବର ୧ ତାରିଖରେ ପୋଲାଣ୍ଡ ଉପରେ ଆକ୍ରମଣ କଲା । ଛଦ୍ମବେଶୀ ନାଜୀ ସୈନ୍ୟ ପୋଲାଣ୍ଡ ସୈନ୍ୟ ପୋଷାକ ପିନ୍ଧି ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ କରୁ ବୋଲି ଗୁଳି ଫୁଟାଫୁଟି ହେଲେ ଓ ତାହାକୁ ବେତାର ମାଧମରେ ଶୁଣାଇ ଦେଲେ ଅର୍ଥାତ୍ ଜର୍ମାନୀ ଉପରେ ପୋଲାଣ୍ଡ ପ୍ରଥମ ଆକ୍ରମଣ କଲା ବୋଲି କହି ଜର୍ମାନୀ ବିପୁଳ ସୈନ୍ୟବାହିନୀ, ଟ୍ୟାଙ୍କ, କମାଣ ଧରି ପୋଲାଣ୍ଡ ଆକ୍ରମଣ ଆରମ୍ଭ କରିଦେଲା ।

ଦୁଇ ଦିନ ପରେ ବ୍ରିଟେନ ଓ ଫ୍ରାନସ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ବାଧ ହେଲେ । ୨୦ ଦିନ କାଳ ବୀରତ୍ୱପୂର୍ଣ୍ଣ ପ୍ରତିରୋଧ ପରେ ରାଜଧାନୀ ଓ୍ୟାରସ ନାଜୀ ଦଖଲରେ ଆସିଗଲା । ୧୯୩୯ ଅକ୍ଟୋବର ଆଦ୍ୟରେ ସୋଭିଏତ ସୀମାନ୍ତବର୍ତ୍ତୀ ପୋଲାଣ୍ଡ ନାଜୀ କବଳରେ ।

୧୯୪୦ ଏପ୍ରିଲରେ ହିଟଲର ନରୱେ ଏବଂ ଡେନମାର୍କକୁ ଦଖଲ କରି ମଇ ୧୦ ତାରିଖରେ ବେଲଜିୟମ, ହଲାଣ୍ଡ ଓ ଲକେସମବର୍ଗ ଆକ୍ରମଣ କରି ଦଖଲ କରିଗଲା । ଏହି ଦଖଲୀକୃତ ଦେଶଗୁଡ଼ିକ ଫ୍ରାନସ ଉପରେ ଆକ୍ରମଣ କଲା ଏବଂ ଜୁନ୍ ୨୨ ତାରିଖରେ ଫରାସୀ ସୈନ୍ୟ ଅସ୍ତ୍ର ସମ୍ବରଣ କଲେ । ଫ୍ରାନ୍ସର ଅଧିକୃତ ଦକ୍ଷିଣାଞ୍ଚଳରେ ହିଟଲର ସହଯୋଗୀ ଫରାସୀ ପେଁତେ ସରକାର ପ୍ରତିଷ୍ଠିତ ହେଲା । ୧୯୪୦ ଜୁଲାଇ ୧୬ରେ ବ୍ରିଟିଶ ଦ୍ୱୀପପୁଞ୍ଜ ଉପରେ ଅପରେସନ-ସି-ଲାୟନ ନାମକ ନାହିଁ ନଥିବା ବିମାନ ଆକ୍ରମଣ ହେଲା । ୧୯୪୧ରେ ଗ୍ରୀସ, ଯୁଗୋସ୍ଲୋଭିଆ ନାଜୀ ଦଖଲରେ ଗଲା । ଆଲବାନିଆ, ରୁମାନିଆ, ବୁଲଗେରିଆ, ହଙ୍ଗେରୀ ନାଜୀ କବଳରେ ।

ଆଫ୍ରିକା ଓ ମଧ୍ୟ ପ୍ରାଚ୍ୟର ମଧ ଭାଗର ଅଞ୍ଚଳରେ ଜର୍ମାନୀ ଉପନିବେଶ କେମେରୁନ, ଦକ୍ଷିଣ ପଶ୍ଚିମ ଓ ପୂର୍ବ ଆଫ୍ରିକାକୁ ଭିତ୍ତି କରି ଫରାସୀ ଗ୍ରୀଷ୍ମ ମଣ୍ଡଳୀୟ ଆଫ୍ରିକା, ନାଇଜେରିଆ, ଉତ୍ତର ରୋଡ଼େସିଆ, କେନିଆ, ଉତ୍ତର ପଶ୍ଚିମ ଆଫ୍ରିକା, ଇଜିପ୍ଟ ଓ ମାଡ଼ାଗାସ୍କରକୁ ଦଖଲ କରିବା ପାଇଁ ହିଟଲର କରିଥିବା ଯୋଜନାକୁ ସୋଭିଏତ ୟୁନିଅନର ୟୁରୋପୀୟ ଅଞ୍ଚଳ ଦଖଲ କରାଯିବା ପର୍ଯ୍ୟନ୍ତ ସ୍ଥଗିତ ରଖାଗଲା ।

୧୯୪୦ ଜୁନ୍ ୧୦ ତାରିଖରେ ବିଲାତ ଓ ଫ୍ରାନସ ଉପରେ ଇଟାଲୀ ଆନୁଷ୍ଠାନିକ ଭାବରେ ଯୁଦ୍ଧ ଘୋଷଣା କଲା ଏବଂ ଇଟାଲୀ ସୈନ୍ୟ ଲିବ୍ୟା ଓ ମିଶରର ନାଇଲ ନଦୀ ଯାଏ ଆଗେଇ ଗଲେ । ମାତ୍ର ଇଟାଲୀ ସୈନ୍ୟର ପରାଜୟ ଦେଖି ହିଟଲର ୧୯୪୧ ଫେବୃଆରୀରେ ଜେନେରାଲ ରୋମେଲଙ୍କ ନେତୃତ୍ୱରେ ମୁସୋଲିନୀର ସାହାଯ୍ୟରେ ସୈନ ପ୍ରେରଣ କଲା ।

ଦକ୍ଷିଣ ପୂର୍ବ ଏସିଆରେ "ସମ ସମୃଦ୍ଧି ଅଞ୍ଚଳ" ଓ "ବୃହତ୍ତର ପୂର୍ବ ଏସିଆ", ଏସିଆବାସୀଙ୍କ ଲାଗି ଏସିଆ ଗଠନ ନାମରେ ଜାପାନ ଚୀନ ଓ ଭାରତ ତଥା ସମଗ୍ର ଦକ୍ଷିଣ

ପୂର୍ବ ଏସିଆ ଦଖଲ କରିବା ଅଭିପ୍ରାୟରେ ବର୍ଲିନଠାରେ ୧୯୪୦ ସେପ୍ଟେମ୍ବର ୨୭ ତାରିଖରେ ଏକ ଚୁକ୍ତି ସଂପାଦନ କଲା ।

ହିଟଲର ବ୍ରିଟେନ୍‌କୁ ଛାଡ଼ିଦେଲେ ସମଗ୍ର ପଶ୍ଚିମ ୟୁରୋପ ଦଖଲ କରି ସବୁ ଦେଶର ପଞ୍ଚମ ବାହିନୀଙ୍କ ସୈନ୍ୟସାମନ୍ତ ବିପୁଳ ଯୁଦ୍ଧ ସମ୍ଭାରରେ ଅଧିକ ବଳୀୟାନ ହୋଇ ସୋଭିଏତ୍ ୟୁନିଅନ ଦଖଲ ପିପାସା ମେଣ୍ଟାଇବାକୁ ସ୍ଥିର କଲା ।

**୧୯୪୧ ଜୁନ୍ ୨୨, ଗଣନା ଭୁଲ ହୋଇଗଲା**

ହିଟଲର ନିଜର ବାରବୋସା ଯୋଜନା ଅନୁସାରେ ସୋଭିଏତ ୟୁନିଅନ ଉପରେ ୧୯୪୧ ଜୁନ୍ ୨୨ ତାରିଖରେ ଅନାକ୍ରମଣ ଚୁକ୍ତି ଭଙ୍ଗ କରି ସୋଭିଏତ ୟୁନିଅନ ଉପରେ ଆକ୍ରମଣ କଲା । ୧୯୪୧ ମାର୍ଚ୍ଚରେ ହିଟଲରର ଆଦେଶ ଥିଲା, "ଆମର ଉଦ୍ଦେଶ୍ୟ ରୁଷ ସୈନ୍ୟଙ୍କୁ ପରାଭୂତ କରିବା ଓ ରୁଷ ରାଷ୍ଟ୍ରକୁ ଶେଷ କରିଦେବା... ଏହା ହେବ ନିର୍ମୂଳ କରିଦେବାର ଯୁଦ୍ଧ ।"

୧୯୦ ଡିଭିଜନ ଅର୍ଥାତ୍ ୫୫ ଲକ୍ଷ ଦୁର୍ଦ୍ଧର୍ଷ ନାଜୀ ସୈନ୍ୟ, ୩୭୧୭ଟି ଟ୍ୟାଙ୍କ, ୪୯୫୦ଟି ବିମାନ ଏବଂ ୪୬୨୬୦ଟି ତୋପ ବନ୍ଧୁକ, ମୋଟାର ଧରି ଆକ୍ରମଣ ଆରମ୍ଭ କରିଦେଲା । ସୋଭିଏତ ଇତିହାସରେ ମହାନ ଦେଶପ୍ରେମୀ ସମର ନାମରେ ଖ୍ୟାତ । ୧୪୧୮ ଦିନ କାଳ ଅର୍ଥାତ୍ ପ୍ରାୟ ୪ ବର୍ଷ କାଳ ସୋଭିଏତ ସେନାନୀ, ସୋଭିଏତ୍ ପାର୍ଟିଜାନ, ବାଳକ ବାଳିକାଠାରୁ ଆରମ୍ଭ କରି ଯୁବକ ଯୁବତୀ ବୃଦ୍ଧ ବୃଦ୍ଧା ପର୍ଯ୍ୟନ୍ତଙ୍କ ପ୍ରାଣରକ୍ଷାର ଯୁଦ୍ଧ ନୁହଁ, ସମାଜବାଦକୁ ରକ୍ଷା କରିବାର ଯୁଦ୍ଧ । ହିଟଲର ଜାପାନ ଓ ଅନ୍ୟମାନେ ଦଖଲ କରିଥିବା ଦେଶମାନଙ୍କର ନାଜୀ କବଳରୁ ମୁକ୍ତି ଯୁଦ୍ଧରେ ଏହା ରୂପାନ୍ତରିତ ହେଲା । ଦ୍ୱିତୀୟ ମହାସମରରେ ସୋଭିଏତ ଜର୍ମାନୀ ରଣ ସାମ୍ମୁଖ୍ୟ ହିଁ ପ୍ରଧାନ ରଣାଙ୍ଗନରେ ପରିଣତ ହେଲା । ଏ ହିଟଲରର ତୋଫାନୀ (ବ୍ଲିଜିତ୍ରିଗ) ଆକ୍ରମଣର ପରିସର ୩ ହଜାରରୁ ୬ ହଜାର ୨ ଶହ କିଲୋମିଟର ସୋଭିଏତ ଭୂମି । ପ୍ରତ୍ୟେକ ମିନିଟ୍‌ରେ ୯ଟି ସୋଭିଏତ ଜୀବନ ଓ ପ୍ରତି ଘଣ୍ଟାରେ ୫୮୭ଟି ପ୍ରତି ଦିନ ୧୪ ହଜାର ସୋଭିଏତ ସୈନ୍ୟ ଓ ନାଗରିକଙ୍କର ପ୍ରାଣ ଯାଉଥିଲା । ମୋଟ ୨ କୋଟି ୩ଲକ୍ଷ ସୋଭିଏତ ନାଗରିକ ନିହତ ହେଲେ ।

ଅଚାନକ, ପ୍ରବଳତମ ଓ ବିଶ୍ୱାସଘାତକ ଆକ୍ରମଣ ଫଳରେ ନାଜୀ ବାହିନୀ ଯୁଦ୍ଧର ୩ ଦିନ ଭିତରେ ଜୁନ୍ ୨୫ ବେଳକୁ ୨୫୦ କିଲୋମିଟର ଓ ଜୁଲାଇ ୧୦ ବେଳକୁ ୬ ଶହ କିଲୋମିଟର ଅଭ୍ୟନ୍ତରରେ ମାଡ଼ି ଯାଇଥିଲେ ସତ ମାତ୍ର ସୋଭିଏତ୍ ଲାଲସେନାର ବୀରତ୍ୱପୂର୍ଣ୍ଣ ପ୍ରତିରୋଧ ଫଳରେ, ନାଜୀବାହିନୀ ପ୍ରତ୍ୟେକ ଦିନ ସେହିପରି ମାସ ଯାଏ ପ୍ରତିଦିନ ୪ ହଜାରରୁ ୯ ହଜାର ଯାଏ ସୈନ୍ୟ ହରାଉଥିଲେ ।

ପ୍ରଥମ ବିଜୟରେ ମଦମତ୍ତ ହୋଇ ନାଜୀ ସେନାପତି ହାଲଦର ଜୁଲାଇ ୩ରେ

କହିଥିଲେ, "୧୪ ଦିନରେ ରୁଷିଆ ବିରୁଦ୍ଧରେ ଯୁଦ୍ଧ ଜିତିଗଲୁ । ୨ ଦିନ ପରେ ହିଟଲର ବଲଟିକ ରାଜ୍ୟ ଇସ୍ତୋନିଆ, ଲାତଭିଆ, ଲିଥୁଆନିଆ, ୟୁକ୍ରାଇନ ବିୟେଲୋରୁଷ, ଓକ୍ରିମିଆ ଓ ଭଲଗା ଅଞ୍ଚଳକୁ ଜର୍ମାନୀ ସହିତ ମିଶେଇ ସେଠାରେ ରାଜ୍ୟପାଳ ମୁତୟନ କରିବାର ନିଷ୍ପତ୍ତି ନେଲା ।

ଆମେରିକାର ଜଣେ ଐତିହାସିକ ଫ୍ଲେମିଙ୍ଗ ଲେଖିଛନ୍ତି "ଉଭୟ ବିଲାତ ଓ ଆମେରିକାର ସମର ବିଶାରଦମାନେ ଭାବୁଥିଲେ ଜର୍ମାନମାନେ ରୁଷିଆ ଭିତରେ ଲହୁଣୀରେ ଛୁରୀ ଭୂଷିଲା ପରି ପଶିଯିବେ ।" ବ୍ରିଟିଶ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ଲେଖିଛନ୍ତି "ସବୁ ଦାୟିତ୍ୱବାନ୍ ସମରବିଶାରଦଙ୍କ ମତ ଥିଲା ଯେ ରୁଷ ସୈନ୍ୟ ଖୁବ୍ ଶୀଘ୍ର ପରାଜିତ ହେବେ ଓ ବହୁ ପରିମାଣରେ ଧ୍ୱଂସ ପାଇଯିବେ । ଆମେରିକା ପ୍ରେସିଡ଼େଣ୍ଟ ରୁଜଭେଲଟଙ୍କ ପୁଅ ଇଲିୟଟ ରୁଜଭେଲଟ ଲେଖିଛନ୍ତି ଯେ ଜର୍ମାନମାନଙ୍କୁ ରୁଷ ସୈନ୍ୟ ପ୍ରତିରୋଧ କରିପାରିବେ ଏ ବିଶ୍ୱାସ ଚର୍ଚ୍ଚିଲଙ୍କର ନଥିଲା ।

କିଏଭ, ମିନସ୍କ, ସ୍ମୋଲେନସ୍କ ଏମିତି ବହୁ ରଣାଙ୍ଗନରେ ସୋଭିଏତ୍ ସେନାନୀ ଅପୂର୍ବ ପ୍ରତିରୋଧ କରି ଯୁଦ୍ଧର ପ୍ରଥମ ତିନିମାସରେ ଅଢ଼େଇଲକ୍ଷ ଜର୍ମାନୀ ସୈନ୍ୟଙ୍କୁ ନିହତ କରିଥିବା ବେଳେ ହିଟଲର ଦ୍ୱାରା ସମଗ୍ର ପଶ୍ଚିମ ୟୁରୋପ ଦଖଲର ଦୁଇବର୍ଷ ଯୁଦ୍ଧକାଳ ଭିତରେ ନାଜୀ ସୈନ୍ୟ ନିହତଙ୍କ ସଂଖ୍ୟା ମାତ୍ର ଥିଲା ୩ ଲକ୍ଷ ।

ସୋଭିଏତ୍ ଉପରେ ଆକ୍ରମଣର ଆଦ୍ୟରୁ ହିଁ ସ୍ପଷ୍ଟ ହୋଇଗଲା ଯେତେ ଆଗକୁ ଆଉ ଅଧିକ ସୈନ୍ୟ ପଶ୍ଚିମ ଯୁଦ୍ଧ ସୀମାନ୍ତରୁ ଦଖଲୀକୃତ ପଶ୍ଚିମ ୟୁରୋପୀୟ ଦେଶମାନଙ୍କରୁ ଆଣିଲେ ସୁଦ୍ଧା ହିଟଲର ଗଣନା ଭୁଲ କରିଦେଇଛି । ସୋଭିଏତ ଉପରେ ଆକ୍ରମଣ ହିଁ ଫାସିଷ୍ଟବାଦର କବର ଖୋଳିବା ଆରମ୍ଭ କରିଦେଇଛି ।

୯୦୦ ଦିନ କାଳ ଲେନିନଗ୍ରାଦ୍ ଅବରୁଦ୍ଧ । ପ୍ରତ୍ୟେକ ଦିନ ଅଜସ୍ର ବୋମା ବର୍ଷଣ । ମସ୍କୋ ନଗରୀର ଦ୍ୱାରଦେଶ ଟୁଲା ସହର – ମାତ୍ର ୩୦ କିଲୋମିଟର ରହିଛି ରାଜଧାନୀ ମସ୍କୋ, ସେପଟେ ଭଲଗା ରଣାଙ୍ଗନ । ବିଖ୍ୟାତ ଷ୍ଟାଲିନଗ୍ରାଦ ଯୁଦ୍ଧ । ୯ ମାସ କାଳ ଅବରୁଦ୍ଧ ଷ୍ଟାଲିନଗ୍ରାଦର ପ୍ରତ୍ୟେକଟି ରାସ୍ତା ପାଇଁ, ପ୍ରତ୍ୟେକଟି କୋଠା ପାଇଁ ସୋଭିଏତ ବାହିନୀ ରକ୍ତ ନିଗାଡ଼ିଦେଲେ । ଷ୍ଟାଲିନଗ୍ରାଦ ଯୁଦ୍ଧ ହିଟଲରର ଭାଗ୍ୟରେ ଚରମ ପରାଜୟ ଆସନ୍ନର ରେଖା ଆଙ୍କିଦେଲା । ହିଟଲରର ୨୨ଟି ଡିଭିଜନ ସୈନ୍ୟଙ୍କୁ ସେଠାରେ ଲାଲସେନା ନିପାତ କରିଦେଲେ । ଟାଇଫୁନ୍ ନାମକ ମସ୍କୋ ଅଭିଯାନ ଅସଫଳ ହୋଇଗଲା । "ଯେଉଁଠି ଆଜି ମସ୍କୋ ନଗରୀ, ସେଠାରେ ସୃଷ୍ଟି ହେବ ଏକ ବିରାଟ ସାଗର । ସଭ୍ୟ ଦୁନିଆରୁ ଚିରକାଳ ଲାଗି ରୁଷ ରାଜଧାନୀ ନିଶ୍ଚିହ୍ନ ହୋଇଯିବ ବୋଲି ହିଟଲରର ଭବିଷ୍ୟବାଣୀ ବ୍ୟର୍ଥ ହୋଇଗଲା । ୧୯୪୧ ଶେଷ ବେଳକୁ ପୂର୍ବ ରଣାଙ୍ଗନରେ ଜର୍ମାନମାନେ ୫୦ଟି ଡିଭିଜନ ସୈନ୍ୟଙ୍କୁ ହରାଇଲେ ।

ଯୁଦ୍ଧର ଘୋର ଘନଘଟା ମଧ୍ୟରେ, ସୋଭିଏତ୍ ୟୁନିଅନ ରଣାଙ୍ଗନ ଭିତରେ ଥିବା ପ୍ରାୟ ସମସ୍ତ କଳକାରଖାନା, ଯନ୍ତ୍ରପାତିକୁ ୟୁରାଲସ ପର୍ବତମାଳା ସେପଟକୁ ଘେନିଯାଇ ସେଠାର ଯୁଦ୍ଧାସ୍ତ୍ରମାନ ନିର୍ମାଣ କଲା । ଏହିପଟେ ହିଁ ସୋଭିଏତ୍ ୟୁନିଅନର ଅଧିକାଂଶ କଳକାରଖାନା ଥିଲା । ହିଟଲର ବାହିନୀ ଭାବିଥିଲା ସେଗୁଡ଼ିକୁ ଦଖଲ କରିଗଲା ପରେ ଲାଲସେନା ବସ୍ତୁତଃ ଅସ୍ତ୍ର ଶୂନ୍ୟ ହୋଇଯିବ ଓ ସହଜରେ ପରାସ୍ତ ହୋଇଯିବ । ମାତ୍ର ସମାଜବାଦୀ ଦେଶର ଜନସାଧାରଣ ଏହି ଦେଶପ୍ରେମୀ ଯୁଦ୍ଧରେ ଅଦ୍ଭୁତ ସାଧନ କଲେ, ଯାହା ଇତିହାସରେ ପଟାନ୍ତର ନାହିଁ ।

ଯୁଦ୍ଧର ପ୍ରଥମାବସ୍ଥାରେ ଆମେରିକା ଆନୁଷ୍ଠାନିକ ଭାବରେ ଯୁଦ୍ଧରେ ଯୋଗ ନଦେଇ ବିଲାତ, ଫ୍ରାନ୍ସକୁ ସମର୍ଥନ କରି ଆସୁଥିଲା । ଯୁଦ୍ଧାସ୍ତ୍ର ଯୋଗାଇଥିଲା । ତେଣେ ଆମେରିକାର ଯୁଦ୍ଧାସ୍ତ୍ର ଶିଳ୍ପପତିମାନେ ଚୋରାରେ ହିଟଲରକୁ ମଧ୍ୟ ସୋଭିଏତ ୟୁନିଅନ ବିରୁଦ୍ଧରେ ପ୍ରୟୋଗ କରିବା ଲାଗି ଯୁଦ୍ଧ ସରଞ୍ଜାମ ଯୋଗାଉଥିବାର ପ୍ରମାଣ ଯୁଦ୍ଧ ପରେ ସାବ୍ୟସ୍ତ ହୋଇଥିଲା ।

୧୯୪୧ ଡିସେମ୍ବର ୭ ତାରିଖରେ ଆମେରିକାର ପାର୍ଲହାର୍ଭର ଉପରେ ଜାପାନ ଆକ୍ରମଣ କରି ସହଜରେ ଦଖଲ କରିଗଲା । ତା'ପରେ ଯାଇ ୧୯୪୨ ଜାନୁଆରୀ ୧ ତାରିଖରେ ୱାସିଂଟନଠାରେ ସୋଭିଏତ ୟୁନିଅନ, ବ୍ରିଟେନ, ଫ୍ରାନସ୍, ଆମେରିକା ସମେତ ୨୬ଟି ଦେଶର ହିଟଲର ବିରୋଧୀ ମେଣ୍ଟ ଗଠିତ ହେଲା ।

**ଓରିଏଣ୍ଟ ଯୋଜନା ଓ କକେସସ୍ ଯୁଦ୍ଧ**

୧୯୪୨ ଜାନୁଆରୀ ୧୮ ତାରିଖରେ ସମରବାଦୀ ଜାପାନ ଓ ହିଟଲର, ମୁସୋଲିନୀ ମଧ୍ୟରେ ଏସିଆ ମହାଦେଶରେ କ୍ଷମତାର ପରିସର ବଣ୍ଟା ରାଜିନାମା ସ୍ୱାକ୍ଷରିତ ହେଲା । ଏସିଆର ୭୦ ମଧ୍ୟରେଖା (ମେରିଡ଼ିୟାନ) ପୂର୍ବରୁ ଥିବା ସମସ୍ତ ଭୂଭାଗ, ଜଳ ଓ ଦ୍ୱୀପପୁଞ୍ଜ ଜାପାନର ହେବ ଏବଂ ୭୦ ମଧ୍ୟରେଖା ପଶ୍ଚିମରେ ଆଫ୍ରିକା ସମେତ ଜର୍ମାନୀ ଓ ଇଟାଲୀ ଭାଗରେ ପଡ଼ିବ ।

ହିଟଲର ବାହିନୀ ତା'ର ଓରିଏଣ୍ଟ ଯୋଜନାକୁ ସଫଳ କରିବାକୁ ଏବଂ ସୋଭିଏତ ସୀମାନ୍ତରେ ମାଡ଼ଖାଇ ଯୁଦ୍ଧର ଗତିକୁ ତା' ସପକ୍ଷରେ ନେବାକୁ କକେସସ ଉପରେ ପ୍ରଚଣ୍ଡ ଆକ୍ରମଣ ୧୯୪୨ ଗ୍ରୀଷ୍ମକାଳରେ ଆରମ୍ଭ କରିଦେଲା ।

ସମରବାଦୀ ଜାପାନକୁ ବାର୍ତ୍ତା ଦେଇ ନାଜୀ ସେନାପତି ହର୍ବଟ ରାଉଫ ଲେଖିଥିଲେ "କକେସସର ଦ୍ୱାର ଉନ୍ମୁକ୍ତ । ମୁହୂର୍ତ୍ତ ଆଗତପ୍ରାୟ, ଯେତେବେଳେ ଜର୍ମାନ ସୈନ୍ୟ ଓ ଆପଣଙ୍କ ସମ୍ରାଟଙ୍କ ସୈନ୍ୟ ଭାରତ ମାଟିରେ ଭେଟାଭେଟି ହେବେ ।" ହିଟଲରବାହିନୀ କକେସସ ଜୟ କରି ଇରାନର ରାଜଧାନୀ ତେହେରାନ ଓ ପରେ ଆଫଗାନିସ୍ତାନ ଦେଇ କାବୁଲ ଦଖଲ କରିବେ ଓ ତେଣେ ଭାରତର ଦିଲ୍ଲୀ ଓ କରାଚୀ ଦଖଲ କରିବେ । ଜାପାନ ତେଣେ ଦକ୍ଷିଣପୂର୍ବ ଏସିଆଦେଶଗୁଡ଼ିକ ଦଖଲ କରି ଜର୍ମାନୀ ସୈନ୍ୟବାହିନୀ ସହିତ ଭାରତରେ ମିଳିତ ହେବେ ।

ଏଥିଲାଗି ହେଲମୁଥ ଫେଲମିଙ୍କୁ ହିଟଲର ଭାରତ ସମେତ ୭୦ ମଧ୍ୟରେଖାର ପଶ୍ଚିମପଟ ଏସିଆର ବିସ୍ତୃତ ଇଲାକା ଲାଗି ଭାଇସ୍‌-ରିଜେଣ୍ଟ ନିଯୁକ୍ତ କରିଥିଲା । ମାତ୍ର ହିଟଲରର କକେସସ ଅଭିଯାନ ବ୍ୟର୍ଥ ହେଲା ସୋଭିଏତ ଲାଲସେନା ୨ ଲକ୍ଷ ୭୫ ହଜାର ନାଜୀ ସୈନ୍ୟଙ୍କୁ ଏହି ରଣକ୍ଷେତ୍ରରେ ନିପାତ କରିଦେଲେ । ସୋଭିଏତ୍ ଲାଲସେନା ତା'ର ପଥରୁଦ୍ଧ କରିଦେଲେ । ଇରାନ, ଆଫଗାନିସ୍ତାନ ଓ ଭାରତକୁ ନାଜୀ ବାହିନୀ ବିଜୟ କରିବାର ସ୍ୱପ୍ନ ଭାଜିଗଲା । ଅବଶ୍ୟ ଜାପାନୀମାନେ ଫିଲିପାଇନସ, ଇନ୍ଦୋନେସିଆ, ମାଲୟ, ଶ୍ୟାମ, ଇଣ୍ଡୋଚୀନ, ବର୍ମାକୁ ଦଖଲ କରି ଭାରତର ଫେନି, ଚିଟାଗଙ୍ଗ ସହର ଉପରେ, କଲିକତାର ଗାର୍ଡ଼ନରିଚ ଅଞ୍ଚଳରେ ଏବଂ ପାରାଦ୍ୱୀପରେ ଓ ବ୍ରହ୍ମପୁର ଜେଲ ଯେଉଁଠି ଓଡ଼ିଶାର ସହସ୍ରାଧିକ ସ୍ୱାଧୀନତା ସଂଗ୍ରାମୀ ବ୍ରିଟିଶ କାରାରୁଦ୍ଧ ହୋଇଥିଲେ, ତାହାର ପାଚେରୀ ପାଖରେ ବୋମା ନିକ୍ଷେପ କରିଥିଲେ । ଦୈବାତ୍ ତାହା ଜେଲ୍‌ର ବିରାଟ ଗୋବରଖାତ ଭିତରେ ଫୁଟିବାରୁ ଜେଲ୍‌ର ରାଜନୈତିକ ବନ୍ଦୀମାନଙ୍କ ପ୍ରାଣରକ୍ଷା ହୋଇଥିଲା ।

ହିଟଲର ଓରିଏଣ୍ଟ ଯୋଜନା ଫସର ଫାଟିଗଲା ।

**ମୁକ୍ତିର ଜୟଯାତ୍ରା**

ସୋଭିଏତ ଜର୍ମାନ ସାମ୍ମୁଖ୍ୟର ବର୍ଣ୍ଣନା ଦେଇ ଆମେରିକାର ପୂର୍ବତନ ସ୍ୱରାଷ୍ଟ୍ରମନ୍ତ୍ରୀ ଏଡ଼ୱାର୍ଡ଼ ଆର ଷ୍ଟୋନିନୟାସ ଲେଖିଛନ୍ତି " ୧୯୪୨ରେ ସେମାନେ ବିପର୍ଯ୍ୟୟର ଦ୍ୱାରଦେଶରେ ପହଞ୍ଚିଥିଲେ । ଏକଥା ଆମେରିକାବାସୀ ସ୍ମରଣ କରିବା ଉଚିତ । ସୋଭିଏତ ୟୁନିଅନ ରଣସାମ୍ମୁଖ୍ୟରେ ପ୍ରବଳ ପ୍ରତିରୋଧ କରି ନ ଥାନ୍ତା, ତେବେ ଜର୍ମାନମାନେ ଗ୍ରେଟବ୍ରିଟେନକୁ ଜିଣିବା ଅବସ୍ଥାରେ ଥିଲେ । ସେମାନେ ଆଫ୍ରିକାକୁ ମଧ୍ୟ ଦଖଲ କରି ଯାଇଥାନ୍ତେ ଏବଂ ଲାଟିନ ଆମେରିକାରେ ଆସ୍ଥାନ ଜମେଇଥାନ୍ତେ ।"

ପୁଞ୍ଜିବାଦୀ ଇତିହାସକାରମାନେ ଓ ଆମେରିକା ବିଲାତ ପ୍ରଭୃତି ଦେଶର ରାଜନୀତିଜ୍ଞମାନେ ପ୍ରଚାର କରନ୍ତି ଯେ ରୁଷ ଶୀତହିଁ ଜର୍ମାନ ସୈନ୍ୟ ପରାଜୟର ଅନ୍ୟତମ କାରଣ ଏବଂ ଆଫ୍ରିକାକୁ ପାଶ୍ଚାତ୍ୟ ମିତ୍ରପକ୍ଷ ହିଟଲର ବାହିନୀ କବଳରୁ ମୁକ୍ତ ନ କରିଥିଲେ ଓ ଦ୍ୱିତୀୟ ସାମ୍ମୁଖ୍ୟ ନ ଖୋଲିଥିଲେ ହିଟଲର ପରାସ୍ତ ହୋଇ ନ ଥାନ୍ତା । ସୋଭିଏତ ଓ ସତ୍ୟସନ୍ଧାନୀ ଯୁଦ୍ଧ ବିଶାରଦମାନେ ଆଫ୍ରିକାରେ ପାଶ୍ଚାତ୍ୟ ମିତ୍ର ଶକ୍ତିଙ୍କର ବିଜୟକୁ ଓ ପ୍ରତିଶ୍ରୁତି ସତ୍ତ୍ୱେ ବହୁ ବିଳମ୍ବରେ ହେଉ ପଛେ ଦ୍ୱିତୀୟ ରଣ ସାମ୍ମୁଖ୍ୟ ଖୋଲିବାର ଗୁରୁତ୍ୱକୁ ଊଣା କରନ୍ତି ନାହିଁ । ମାତ୍ର ସୋଭିଏତ ବାହିନୀର ଅସାମାନ୍ୟ ରଣକୌଶଳ ଓ ବିଜୟ ପରେ ବିଜୟ ଆଫ୍ରିକାର ଦେଶଗୁଡ଼ିକର ନାଜୀ ଦଖଲରୁ ମୁକ୍ତିକୁ ପ୍ରଭୂତ ସାହାଯ୍ୟ କରିଛି ଏହା ଯୁଦ୍ଧ ଇତିହାସ ସାବ୍ୟସ୍ତ କରିଛି ଓ ଷ୍ଟେଟିନିୟସ ଓ ଅନ୍ୟମାନେ ସ୍ୱୀକାର କରିଛନ୍ତି ।

ପ୍ରସିଦ୍ଧ ମାର୍କିନ ଲେଖକ ଏଡ଼ଗାର ସ୍ନୋ ଲେଖିଛନ୍ତି, "କହିହେବ ଯେ ଲାଲସେନା

ପରାସ୍ତ ହୋଇଥିଲେ ଆମେ ଏହି ଯୁଦ୍ଧର ଅବସାନ ଦେଖିବାକୁ ଜୀବିତ ନ ଥାନ୍ତୁ । ନାଜୀବାଦକୁ ନିର୍ଘାତ ମାଡ଼ଦେବା ପାଇଁ ସେମାନଙ୍କର ନିଷ୍ପତ୍ତିର ଫଳ ସ୍ୱରୂପ ଆଫ୍ରିକା ରକ୍ଷା ପାଇଲା ଏବଂ ଏହା (ସୋଭିଏତ) ନିକଟ, ମଧ୍ୟ ଓ ଦୂର ପ୍ରାଚ୍ୟକୁ ରକ୍ଷା କଲା । ଏହା ଆମ ଶତ୍ରୁ (ଜାପାନ) ଯିଏ ଏସିଆ ଓ ପ୍ରଶାନ୍ତ ମହାସାଗରକୁ ଜୟ କରିବାକୁ ବସିଥିଲା, ତାକୁ ଜର୍ମାନମାନେ ଯେପରି ସାହାଯ୍ୟ ନ କରିପାରିବେ ସେ କଥା ନିଶ୍ଚିତ କରିଦେଲା ।

ସୋଭିଏତ ଜର୍ମାନ ସୀମାନ୍ତରେ ହିଟଲରର ନାଜୀ ଡିଭିଜନଗୁଡ଼ିକ ଅଧିକ ସଂଖ୍ୟାରେ ନିୟୋଜିତ ଥିବାରୁ ଜର୍ମାନ ଇଟାଲୀର ସୈନ୍ୟମାନେ ଆଉ ଅଧିକ ସୈନ୍ୟ ଡିଭିଜନ ଆଫ୍ରିକାକୁ ଅଣାଇବାକୁ ଅସମର୍ଥ ହେଲେ ।

ଫଳରେ ୧୯୪୩ ମଇ ମଧ୍ୟଭାଗ ବେଳକୁ ସମଗ୍ର ଉତ୍ତର ଆଫ୍ରିକା ନାଜୀ ଫାସିଷ୍ଟବାହିନୀ ହାତରୁ ମୁକ୍ତି ହେଲା ।

ଭଲଗା ତଟ ଷ୍ଟାଲିନଗ୍ରାଦ ଯୁଦ୍ଧରେ ଜର୍ମାନମାନେ ୭ ଲକ୍ଷ ସୈନ୍ୟ ହରାଇଲେ । କକେସସରେ ପରାସ୍ତ ହେଲେ ।

ଆମେରିକା ଓ ବିଲାତ ହିଟଲର ବିରୁଦ୍ଧରେ ୟୁରୋପ ଭୂଖଣ୍ଡରେ ୧୯୪୨ରେ ଦ୍ୱିତୀୟ ସାମ୍ମୁଖ୍ୟ ଖୋଲିବେ ବୋଲି ଜବାବ ଦେଇଥିଲେ ସୁଦ୍ଧା ୧୯୪୨ ଓ ୧୯୪୩ରେ ମଧ୍ୟ ଦ୍ୱିତୀୟ ସାମ୍ମୁଖ୍ୟ ଖୋଲିଲେ ନାହିଁ । ଜର୍ମାନମାନେ ସୋଭିଏତ୍ ଲାଲସେନାକୁ ଦୁର୍ବଳ କରୁ, ସୋଭିଏତ ଯୁଦ୍ଧଯନ୍ତ୍ର କ୍ଲାନ୍ତ ଶ୍ରାନ୍ତ ହୋଇପଡୁ ମିତ୍ର ହୋଇ ମଧ୍ୟ ସେମାନେ ଏହି ଦୂରଭିସନ୍ଧି ପୋଷଣ କଲେ । ସେଥିଯୋଗୁଁ ଷ୍ଟାଲିନଗ୍ରାଦ ଯୁଦ୍ଧ ପରେ ସୋଭିଏତ ବାହିନୀ ଯେଉଁ ପ୍ରଚଣ୍ଡ ପ୍ରତିଆକ୍ରମଣ ଆରମ୍ଭ କଲେ ତାହାକୁ ସମ୍ଭାଳି ନ ପାରି ହିଟଲର ପଶ୍ଚିମ ସାମ୍ମୁଖ୍ୟରୁ ଅଧିକ ସୈନ କାଢ଼ିଆଣି ୧୯୪୩ ଗ୍ରୀଷ୍ମକାଳ ବେଳକୁ ୨୩୨ ଡିଭିଜନ ସୈନ୍ୟ ସୋଭିଏତ-ଜର୍ମାନ ସୀମାନ୍ତରେ ଜମା କଲା । ମାତ୍ର କୁର୍ସ୍କ ଓରେଲ ଓ ବେଲଗୋରଡ଼ ରଣସାମ୍ମୁଖ୍ୟରେ ସୋଭିଏତ ବାହିନୀ ଶତ୍ରୁପକ୍ଷର ୩୦ ଡିଭିଜନ ସୈନ୍ୟଙ୍କୁ ନିରସ୍ତ୍ର କରିଦେଇ ସମଗ୍ର ସୋଭିଏତ ଭୂମିକୁ ହିଟଲର କବଳରୁ ମୁକ୍ତ କରିବା ଅଭିଯାନ ସବୁ ସାମ୍ମୁଖ୍ୟରେ ଆରମ୍ଭ କରିଦେଲା । ସୋଭିଏତ ଭୂଇଁର ୟୁକ୍ରାଇନ୍, ମୋଲଦାଭିଆ, ବଲଟିକ ରାଜ୍ୟ ବିଏଲୋରୁଷକୁ ମୁକ୍ତ କରି ଉତ୍ତର ପଶ୍ଚିମରେ ନାଜୀ କବଳରୁ ଫିନଲ୍ୟାଣ୍ଡ, ନରୱେ ଡେନମାର୍କକୁ ମୁକ୍ତ କରିଦେଲା ।

୧୯୪୩ ଡିସେମ୍ବରରେ ତେହେରାନଠାରେ ଅନୁଷ୍ଠିତ ତ୍ରିଶକ୍ତି ସମ୍ମିଳନୀରେ ଦ୍ୱିତୀୟ ରଣସାମ୍ମୁଖ୍ୟ ଖୋଲିବାକୁ ସୋଭିଏତ ୟୁନିଅନ ଦାବୀ କରିବା ସଂଗେ ସଂଗେ ଜର୍ମାନୀର ପରାଜୟ ସୁନିଶ୍ଚିତ କରି ଜାପାନ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ପ୍ରତିଶ୍ରୁତି ଦେଲା ।

ଲାଲସେନା ନିଜ ଅଞ୍ଚଳକୁ ସଂପୂର୍ଣ୍ଣ ମୁକ୍ତ କରି ୟୁରୋପର ଗୋଟିକ ପରେ ଗୋଟିଏ ଦେଶ ମୁକ୍ତ କରିଚାଲିଲେ । ୧୯୪୪ ଶରତକାଳଠାରୁ ସୋଭିଏତ ଲାଲସେନା ମୁକ୍ତ କଲେ

ପୋଲାଣ୍ଡ, ରୁମାନିଆ, ଅଷ୍ଟ୍ରିଆ, ହଙ୍ଗେରୀ, ବୁଲଗେରିଆ, ଯୁଗୋସ୍ଲୋଭାକିଆକୁ । ସବୁ ଦେଶର ରାଜଧାନୀରେ ବିଜୟୀ ଲାଲସେନାକୁ ଉଚ୍ଛ୍ବସିତ ସମ୍ବର୍ଦ୍ଧନା । ସେସବୁ ଦେଶର ଦେଶପ୍ରେମୀ ପାର୍ଟିଜାନମାନେ ସୋଭିଏତ ବାହିନୀ ସଙ୍ଗେ ମିଶି ହିଟଲର ବାହିନୀ ଉପରେ ଆଘାତ ହାଣିଲେ । ଆଉ ରହିଲା ଜର୍ମାନୀ ।

ଏହା ଦେଖି ସମଗ୍ର ଜର୍ମାନୀକୁ ସୋଭିଏତ ବାହିନୀ ମୁକ୍ତ କରିବ ଓ ଫ୍ରାନ୍ସ ହଲାଣ୍ଡ ପ୍ରଭୃତି ଦେଶରେ ସୋଭିଏତ ମୁକ୍ତି ବାହିନୀ ପହଞ୍ଚିଯିବେ ଆଶଙ୍କା କରି ୨ ବର୍ଷ ପରେ ୧୯୪୪ ଜୁନ୍ ବିଲାତ-ଆମେରିକା ମିତ୍ର ପକ୍ଷ ଦ୍ୱିତୀୟ ସାମ୍ମୁଖ୍ୟ ଆରମ୍ଭ କଲେ । ବ୍ରିଟିଶ ଦ୍ୱୀପପୁଞ୍ଜକୁ ବ୍ରିଟିଶ ପ୍ରଣାଳୀ ପାର ହୋଇ ନର୍ମାଣ୍ଡି ଅଭିଯାନ ଆରମ୍ଭ ହେଲା ।

ଛତ୍ରଭଙ୍ଗ ଦେଇ ସୋଭିଏତ ଭୂଇଁରୁ ଏବଂ ପୂର୍ବ ୟୁରୋପୀୟ ଦେଶଗୁଡ଼ିକରୁ ପଳାଇ ଆସିଥିବା, ନାଜୀ ବାହିନୀ ଜର୍ମାନୀକୁ ଓ ରାଜଧାନୀ ବର୍ଲିନକୁ ରକ୍ଷା କରିବା ଲାଗି ପ୍ରାଣମୂର୍ଚ୍ଛା ଲଢ଼େଇ କଲେ । ମାତ୍ର ସୋଭିଏତ ବାହିନୀର ଉଦ୍ୟମ ଅଗ୍ରଗତି ଜର୍ମାନୀର ପୂର୍ବାଞ୍ଚଳ ଦଖଲ କରି ବର୍ଲିନର ଦ୍ୱାର ଦେଶରେ ପହଞ୍ଚିଗଲା । ତେଣେ ବ୍ରିଟିଶ, ଆମେରିକା, ଜେନରାଲ ଦିଗଲଙ୍କ ଫରାସୀ ବାହିନୀ ଫ୍ରାନସ ଓ କ୍ଷୁଦ୍ର କ୍ଷୁଦ୍ର ଦେଶ ହଲାଣ୍ଡ, ବେଲଜିୟମ, ଲକେସମବର୍ଗ ଗ୍ରୀସକୁ ମୁକ୍ତ କରି ଜର୍ମାନୀର ପଶ୍ଚିମ ଅଞ୍ଚଳରେ ପହଞ୍ଚିଗଲେ ।

୧୯୪୫ ଫେବୃଆରୀ ୧୧ ତାରିଖରେ ୟାଲଟାଠାରେ ଜର୍ମାନୀକୁ ପରାସ୍ତ କରିବା ପରେ କିପରି ୟୁରୋପରେ ଓ ପୃଥିବୀରେ ଶାନ୍ତି ପ୍ରତିଷ୍ଠିତ ହେବ ଓ ସେଥିଲାଗି ଜାତିସଂଘ ଗଠନ କରାଯିବ ଓ ଜର୍ମାନୀ ଦଖଲ ପରେ କି ପ୍ରକାର ବ୍ୟବସ୍ଥା ନିଆଯିବ ସେଥି ସଂକ୍ରାନ୍ତରେ ଷ୍ଟାଲିନ, ଚର୍ଚ୍ଚିଲ, ରୁଜଭେଲଟ ଘୋଷଣା କରିଥିଲେ ।

ହିଟଲର ଆତ୍ମହତ୍ୟା କଲା । ଜର୍ମାନୀ ଆତ୍ମ ସମର୍ପଣ କଲା । ୟୁରୋପରେ ଫାସିଷ୍ଟବାଦର ପରାଜୟ ହେଲା । ସୋଭିଏତ ୟୁନିଅନ ନିଜର ବିସ୍ତୃତ ଇଲାକା ସମେତ ୟୁରୋପର ୧୧ଟି ଦେଶ ଓ ଏସିଆର ଚୀନ ଓ କୋରିଆର ଏକାଂଶକୁ ଜାପାନୀ ସମରବାଦୀଙ୍କଠାରୁ ମୁକ୍ତ କରିଦେଲେ ।

୧୯୪୫ ମଇ ୮ରେ ଜର୍ମାନୀର ଆତ୍ମସମର୍ପଣ ପରେ ସେହି ବର୍ଷ ଜୁଲାଇ ୧୭ରୁ ଅଗଷ୍ଟ ୨ ଯାଏ ବର୍ଲିନ ନିକଟ ପୋଷ୍ଟଡାମଠାରେ ଐତିହାସିକ ପୋଷ୍ଟଡାମ ଚୁକ୍ତି ତ୍ରିଶକ୍ତି ମଧ୍ୟରେ ସ୍ୱାକ୍ଷରିତ ହେଲା । ସେଥିରେ ସର୍ତ୍ତ ରହିଲା, ଜର୍ମାନୀରେ ଫାସିଷ୍ଟବାଦକୁ ଓ ପ୍ରତିଶୋଧବାଦକୁ ମୁଣ୍ଡ ଟେକିବାକୁ ଦିଆଯିବ ନାହିଁ । ପୋଲାଣ୍ଡକୁ ଆଗରୁ ଜର୍ମାନୀ ଅଧିକାର କରି ରଖିଥିବା ଅଞ୍ଚଳ ଫେରସ୍ତ ଦିଆଯିବ । ଓଡ଼େର-ନିସି ନଦୀ ପୋଲାଣ୍ଡ ଜର୍ମାନୀ ମଧ୍ୟରେ ସୀମା ହେବ । ଜର୍ମାନୀରେ ଗଣତାନ୍ତ୍ରିକ ଶାସନ ପ୍ରତିଷ୍ଠାଯାଏ ଚାରୋଟି ଅଞ୍ଚଳରେ ସାମୟିକ ଭାବରେ ବ୍ରିଟିଶ, ଆମେରିକା, ଫରାସୀ ଓ ସୋଭିଏତ ବାହିନୀ ନିର୍ଦ୍ଦିଷ୍ଟ ଅଞ୍ଚଳଗୁଡ଼ିକରେ ରହିବେ ଏବଂ ଗଣତାନ୍ତ୍ରିକ

ଜର୍ମାନ ସରକାର ପ୍ରତିଷ୍ଠିତ ହେବା ପରେ ସବୁ ସୈନ୍ୟ ସ୍ୱଦେଶଗୁଡ଼ିକୁ ବାହୁଡ଼ିବେ ଏବଂ ସର୍ବୋପରି ନରପିଶାଚ ଯୁଦ୍ଧବନ୍ଦୀମାନଙ୍କର ବିଚାର କରାଯିବ ଓ ଦୁଇଟି ବିଶ୍ୱଯୁଦ୍ଧ ଭିଆଇଥିବାର ଜର୍ମାନୀ ଅସ୍ତ୍ରଶସ୍ତ୍ର ଉତ୍ପାଦନ କରିପାରିବ ନାହିଁ କି ସୈନ୍ୟବାହିନୀ ଗଢ଼ିପାରିବ ନାହିଁ । ବିଶ୍ୱଶାନ୍ତି, ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଶାନ୍ତିପୂର୍ଣ୍ଣ ସହଯୋଗ ପ୍ରଭୃତି ଲାଗି ଜାତିସଂଘ, ନିରାପତ୍ତା ପରିଷଦ ଓ ତାହାର ସଂସ୍ଥାଗୁଡ଼ିକ ଗଠିତ ହେବ ।

ୟୁରୋପୀୟ ରଣାଙ୍ଗନରେ ଯୁଦ୍ଧର ପରିସମାପ୍ତି ହେଲେହେଁ ହିଟଲର-ମୁସୋଲିନୀ ଟୋକୋମେଣ୍ଟର ଅଂଶୀଦାର ଜାପାନ ସମରବାଦ ବିରୁଦ୍ଧରେ ଆଉ କିଛି କାଳ ଯୁଦ୍ଧ ଜାରି ରହିଲା ।

**ଜାପାନ ସମରବାଦର ପରାଜୟ**

ପାର୍ଲହର୍ବର ଉପରେ ୧୯୪୧ ଡିସେମ୍ବର ୭ରେ ଜାପାନର ଆକ୍ରମଣ ଏବଂ ବର୍ମା ସମେତ ଦକ୍ଷିଣ-ପୂର୍ବ ଏସିଆର ସବୁ ଦେଶ ଜାପାନ କବଳିତ ହୋଇଥିଲା । ଚୀନ ଭୂଇଁରେ ଜାପାନର ପ୍ରତିରୋଧ ଏବଂ ସର୍ବୋପରି ଜାପାନ ବିରୁଦ୍ଧରେ ସୋଭିଏତ ଲାଲ ସେନାର ଯୁଦ୍ଧ ଘୋଷଣା ଓ ତା' ବିରୁଦ୍ଧରେ ଯୁଦ୍ଧ ଦକ୍ଷିଣପୂର୍ବ ଏସିଆ ଚୀନ ଓ କୋରିଆର ମୁକ୍ତି ଓ ସ୍ୱାଧୀନତା ଅର୍ଜନରେ ଅନ୍ୟ ଏକ ନିୟାମକ ଉପାଦାନ ହେଲା ।

ସୋଭିଏତ୍-ଜାପାନ ନିରପେକ୍ଷତା ଚୁକ୍ତି ସତ୍ତ୍ୱେ ସର୍ତ୍ତଗୁଡ଼ିକୁ ଲଙ୍ଘନ କରି ଜାପାନ ହିଟଲର ବାହିନୀକୁ ସମର୍ଥନ କଲା । ଏକ ଗୁପ୍ତ ଯୋଜନା, କାଣ୍ଟୋକୁୟେନ ଅନୁସାରେ ଜାପାନର ଦୁର୍ଦ୍ଧର୍ଷ କ୍ୱାଙ୍ଗଟଙ୍ଗ ସେନାବାହିନୀକୁ ଦ୍ୱିଗୁଣିତ କରାଗଲା । ୧୯୩୧ରୁ ଜାପାନ ଚୀନର ମାଞ୍ଚୁରିଆ, ଅଭ୍ୟନ୍ତର ମଙ୍ଗୋଲିଆ ଏବଂ କୋରିଆକୁ ଦଖଲ କରି ମାଞ୍ଚୁରିଆରେ ପଞ୍ଚମ ବାହିନୀ ମାଞ୍ଚୁକୋ ସରକାର ପ୍ରତିଷ୍ଠା କରି ଚୀନ ବିପ୍ଳବ ବିରୁଦ୍ଧରେ, ଜାତୀୟ ବାହିନୀ ଓ କମ୍ୟୁନିଷ୍ଟ ବାହିନୀ ବିରୁଦ୍ଧରେ ତାକୁ ଜାପାନ ଲଗେଇଥିଲା ।

ସୋଭିଏତ୍ ବିରୁଦ୍ଧରେ ଜାପାନ ନାନା ପ୍ରକାର ପ୍ରରୋଚନା କରୁଥିଲା ଏବଂ "ସାଇବେରିଆ ଓ ବାହାର ମଙ୍ଗୋଲିଆ ଶାସନ" ପ୍ରତିଷ୍ଠା କରିବା ପାଇଁ ଯୋଜନା କରୁଥିଲା । ସେହେତୁ ହିଟଲର ବିରୁଦ୍ଧରେ ଅତ୍ୟାବଶ୍ୟକ ହୋଇଥିଲେ ହେଁ ପ୍ରାଚ୍ୟ ସାମ୍ମୁଖ୍ୟରେ ସୋଭିଏତ୍ ୟୁନିଅନ ୪୦ ଡିଭିଜନ ସୈନ୍ୟ ଓ ପ୍ରଚୁର ଅସ୍ତ୍ରଶସ୍ତ୍ର ମହଜୁଦ ରଖିବାକୁ ବାଧ ହୋଇଥିଲା । ତ୍ରିଶକ୍ତି ୟାଲଟା ସମ୍ମିଳନୀର ସର୍ତ୍ତ ଅନୁସାରେ ହିଟଲରର ପରାଜୟ ୨।୩ ମାସ ପରେ ଜାପାନ ବିରୁଦ୍ଧରେ ସୋଭିଏତ ୟୁନିଅନ ଯୁଦ୍ଧ ଘୋଷଣା କରିବା ପାଇଁ ସ୍ଥିର ହୋଇଥିଲେ ହେଁ ତାହା ୧୯୪୫ ଏପ୍ରିଲ ୮ ତାରିଖରେ ସୋଭିଏତ-ଜାପାନ ଚୁକ୍ତିକୁ ରଦ୍ଦ କରିଦେଲା ଏବଂ ଅଗଷ୍ଟ ୯ ତାରିଖରେ ତା' ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା ।

ମାଞ୍ଚୁରିଆ, ତାୟିୱାନ ଏବଂ କୋରିଆ, ଭିତର ମଙ୍ଗୋଲିଆରେ ଅତି ଭୟାବହ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ୧୮ ଲକ୍ଷ ସୈନ୍ୟ ବିଶିଷ୍ଟ କ୍ୱାଙ୍ଗଟଙ୍ଗ ବାହିନୀ ଉପରେ ପ୍ରଚଣ୍ଡ ଆକ୍ରମଣ

କରି ଛତ୍ରଭଙ୍ଗ କରିଦେଲା ଏବଂ ତାହା ଦକ୍ଷିଣ ପୂର୍ବ ଏସିଆରେ ମିତ୍ରପକ୍ଷମାନଙ୍କୁ ଜାପାନ ବିରୁଦ୍ଧରେ ଲଢ଼େଇ କରି ସେସବୁ ଦେଶକୁ ଜାପାନ ଅଧିକାରରୁ ମୁକ୍ତ କରିବା ଲାଗି ସାହାଯ୍ୟ କଲା ।

ଷ୍ଟାଲିନଙ୍କୁ ମାଓ ସେତୁଙ୍ଗ ଓ ଜଡ଼େ ସ୍ୱାକ୍ଷର କରି ଲେଖିଥିଲେ – "ଜାପାନ ଉପରେ ସୋଭିଏତ ସରକାରର ଯୁଦ୍ଧ ଘୋଷଣାକୁ ଆମେ ସ୍ୱାଗତ କରୁଛୁ । ମୁକ୍ତ ଅଞ୍ଚଳ ଚୀନର କୋଟିକୋଟି ଜନତା ଲାଲସେନା ଓ ମିତ୍ର ରାଷ୍ଟ୍ରମାନଙ୍କ ସେନା ସହିତ ମିଶି ଘୃଣ୍ୟ ଜାପାନୀ ଆକ୍ରମଣକାରୀଙ୍କୁ ପରାସ୍ତ କରିବାକୁ ଲାଗିପଡ଼ିବେ ।"

ଜାପାନ ବିରୁଦ୍ଧରେ ଆମେରିକାର ନ୍ୟୁୟର୍କ ଟାଇମସ ଓ ନ୍ୟୁୟର୍କ ହେରାଲଡ଼୍ ଟ୍ରିବ୍ୟୁନ ଲେଖିଲେ – ସୋଭିଏତ ୟୁନିଅନର ଯୁଦ୍ଧ ଜାପାନ ସାମ୍ରାଜ୍ୟବାଦର ପତନର ଆରମ୍ଭ ଓ ପୃଥିବୀରୁ ଯୁଦ୍ଧାଗ୍ନି ନିର୍ବାପିତ ହେବ ।

ସୋଭିଏତ ଲାଲସେନା କ୍ୱାଙ୍ଗଟଙ୍ଗ ବାହିନୀକୁ ପରାସ୍ତ କରି ଚୀନର ମାଞ୍ଚୁରିଆ ଓ ଭିତର ମଙ୍ଗୋଲିଆକୁ ଏବଂ କୋରିଆକୁ ଜାପାନୀ ଦଖଲରୁ ମୁକ୍ତ କରିଦେଲା । ଏଥିରେ ସମାଜବାଦୀ ମଙ୍ଗୋଲିଆର ମୁକ୍ତି ବାହିନୀ ସୋଭିଏତ ସେନାନୀ ସହିତ ଏକତ୍ର ଲଢ଼ିଥିଲା । ସୋଭିଏତ ୟୁନିଅନ ପ୍ରାଚ୍ୟ ଯୁଦ୍ଧରେ ପ୍ରବେଶ କରିବାକୁ ପରାଜୟ ସୁନିଶ୍ଚିତ ଜାଣି ଜାପାନୀ ସେନାପତି ୟାମଦା ୧୯୪୫ ଅଗଷ୍ଟ ୧୮ରେ ସୋଭିଏତ ସେନାପତିମଣ୍ଡଳୀକୁ ଜଣେଇ ଥିଲେ ଯେ ଆତ୍ମସମର୍ପଣ ପାଇଁ ଜାପାନ ଯେକୌଣସି ସର୍ତ୍ତରେ ରାଜି ।

ଦୂର ପ୍ରାଚ୍ୟରେ ଦ୍ୱିତୀୟ ମହାସମର କାଳରେ ଜାପାନ ପରାଜୟ ପରେ ପରାଜୟ ଲାଭ କରୁଥିବାରୁ ଓ ସାମରିକ ଓ ନୈତିକ ଦୃଷ୍ଟିରୁ ଜାପାନର ନଗର ଗୁଡ଼ିକରେ ଅଣୁ ବୋମା ନିକ୍ଷେପର କୌଣସି ଯଥାର୍ଥତା ନଥିଲା । ହିରୋସୀମାରେ ୧୯୪୫ ଅଗଷ୍ଟ ୬ ଓ ନାଗାସାକିରେ ଅଗଷ୍ଟ ୯ରେ ଆମେରିକା ପକ୍ଷରୁ କେବଳ ଜାପାନୀ ନାଗରିକ, ନାରୀ ପୁରୁଷ, ଶିଶୁ ବୃଦ୍ଧବୃଦ୍ଧାଙ୍କୁ ହତ୍ୟାକରିବା ପାଇଁ ଏହି ବୋମା ପକାଯାଇ ଥିଲା । ଫଳରେ ସଙ୍ଗେସଙ୍ଗେ ୪,୪୭,୦୦୦ ଲୋକ ମୃତ୍ୟୁ ମୁଖରେ ପଡ଼ିଲେ ଓ ପଙ୍ଗୁ ହୋଇଗଲେ । ୪୦ ବର୍ଷ ପରେ ମଧ୍ୟ ବୋମାର ବିଷକ୍ରିୟାରେ ଲୋକ ମରୁଛନ୍ତି ଏବଂ ବିକଳାଙ୍ଗ ଶିଶୁ ଜନ୍ମ ହେଉଛନ୍ତି ।

ଯଥାର୍ଥରେ ବ୍ରିଟିଶ ଐତିହାସିକ ଏମ-ଏସ-ବ୍ଲାକେଟ ୧୯୪୮ରେ ଲେଖିଥିଲେ, "ଅଣୁ ବୋମା ନିକ୍ଷେପ ଦ୍ୱିତୀୟ ମହାସମରରେ ଶେଷ ସାମରିକ କାର୍ଯ୍ୟକଳାପ ନଥିଲା, ସେତେବେଳେ ତାହା ରୁଷିଆ ବିରୁଦ୍ଧରେ ଶୀତଳ କୂଟନୈତିକ ସମର ଥିଲା ।" ଏହି ଅଣୁବୋମା ନିକ୍ଷେପ ମଧ୍ୟ ଏସିଆ ଓ ଆଫ୍ରିକାର ପରାଧୀନ ଦେଶମାନଙ୍କୁ ବିଲାତ-ଫ୍ରାନସ ଆମେରିକା ସାମ୍ରାଜ୍ୟବାଦର ଆଗତୁରା ଧମକ ଥିଲା ଯେ ସେମାନେ ପୂର୍ବପରି ସେମାନଙ୍କ କର୍ତ୍ତୃତ୍ୱରେ ରହିବେ । ସେମାନଙ୍କ ସ୍ୱାଧୀନତା ସଂଗ୍ରାମକୁ ସାହାଯ୍ୟ କରୁଥିବା ସମାଜବାଦୀ ସୋଭିଏତ ୟୁନିଅନ ଆମେରିକାର ଅଣୁ ବୋମା ଶକ୍ତି ପାଖରେ ମୁଣ୍ଡ ନୁଆଁଇବ ।

ପ୍ରଥମତଃ ଚୀନର ଏକାଂଶ ଓ କୋରିଆକୁ ସୋଭିଏତ ବାହିନୀ ମୁକ୍ତ କଲେ । କ୍ୱାଙ୍ଗଟଙ୍ଗ ସୈନ୍ୟବାହିନୀକୁ ମୁକ୍ତ କଲେ । ୧୯୪୫ ଅଗଷ୍ଟ ୧୪ ତାରିଖରେ ଜାପାନ ଆତ୍ମସମର୍ପଣ କଲାପରେ ବି ଚୀନ ଓ କୋରିଆ ଭୂଖଣ୍ଡରେ କ୍ୱାଙ୍ଗଟଙ୍ଗ ବାହିନୀ ବିରୁଦ୍ଧରେ ମାସାଧିକ କାଳ ବହୁ ରକ୍ତ ଦେଇ ଲାଲସେନାକୁ ଲଢ଼ିବାକୁ ପଡ଼ିଥିଲା ।

**ମହାସମରର ପରିସମାପ୍ତି – ସ୍ୱାଧୀନତାର ବୈଜୟନ୍ତୀ**

ଚୀନର ଜାତୀୟତାବାଦୀ ସୈନ୍ୟମାନେ ଜାପାନ ବିରୁଦ୍ଧରେ ଲଢୁଥିବା ବେଳେ ମାଓସେତୁଙ୍ଗଙ୍କ ନେତୃତ୍ୱରେ ଚୀନ ମୁକ୍ତି ବାହିନୀ ସଂଗ୍ରାମ କରୁଥିବା ବେଳେ ସୋଭିଏତ ୟୁନିଅନ ସୀମାନ୍ତରେ ସୈନ୍ୟ ରଖି ଏବଂ ବହୁ ଅସ୍ତ୍ରଶସ୍ତ୍ର ଦେଇ ଏବଂ ଚୀନ କମ୍ୟୁନିଷ୍ଟମାନଙ୍କୁ ତାଲିମଦାତା ଓ ସମର ଉପଦେଷ୍ଟା ପଠାଇ ସାହାଯ୍ୟ କରି ଆସୁଥିଲା । ୧୯୪୫ ଅଗଷ୍ଟଠାରୁ ୮ ମାସ କାଳ ଉତ୍ତର ପୂର୍ବ ଚୀନରେ ଲାଲସେନା ରହିବା କାଳରେ ଜାପାନର କ୍ୱାଙ୍ଗଟଙ୍ଗ ବାହିନୀଠାରୁ ପାଇଥିବା ୩୭୦୦ ତୋପ କମାଣ, ୬୦୦ ଟ୍ୟାଙ୍କ, ୮୬୧ଟି ମେସିନ୍ ଗନ୍ ଓ ୬୮୦ଟି ସାମରିକ ଡିପୋ ଜାହାଜ ଭେଳା ଚୀନର ଗଣମୁକ୍ତି ବାହିନୀକୁ ଦେଇ ୮ ଲକ୍ଷ ଚ୍ୟାଙ୍ଗକେିସେକ ପ୍ରତି ବିପ୍ଳବୀ ଶକ୍ତିକୁ ପରାସ୍ତ କରିବାରେ ସାହାଯ୍ୟ କରିଥିଲେ । ପରବର୍ତ୍ତୀ କାଳରେ ଚୀନା କମ୍ୟୁନିଷ୍ଟ ନେତୃତ୍ୱ ଏ ସମସ୍ତ ପାସୋରି ମାର୍କସବାଦ ଲେନିନବାଦ ଆନ୍ତର୍ଜାତୀୟତା ଆସ୍ଥାନରୁ ବିଚ୍ୟୁତ ହୋଇ ସୋଭିଏତ କୁତ୍ସା ଓ ସୋଭିଏତ ବିରୋଧୀ ଯାବତୀୟ ପ୍ରରୋଚନା କରିଥିଲେ ମଧ ସେତେବେଳେ ମାଓସେତୁଙ୍ଗ କହିଥିଲେ, "ଆକ୍ରମଣକାରୀମାନଙ୍କୁ ନିକାଲି ଦେବା ଲାଗି ଲାଲସେନା ଚୀନ ଲୋକଙ୍କୁ ସାହାଯ୍ୟ କରିବାକୁ ଆସିଛି । ଚୀନର ଇତିହାସରେ ଏପରି ଦୃଷ୍ଟାନ୍ତ ବିରଳ । ଏ ଘଟଣାର ପ୍ରଭାବ ଅକଳନୀୟ ।"

ବାସ୍ତବରେ ୧୯୪୯ ଅକ୍ଟୋବର ୧ରେ ଚୀନର ଗଣମୁକ୍ତି ବାହିନୀ ଗଣଚୀନ ପ୍ରତିଷ୍ଠା କରିବା କ୍ଷେତ୍ରରେ ଏବଂ ଧ୍ୱସ୍ତବିଧ୍ୱସ୍ତ ଚୀନ ଅର୍ଥନୀତିକୁ ତିନିଶତାଧିକ ବୃହତ ଶିଳ୍ପ ଓ ଅନ୍ୟାନ୍ୟ ସାମରିକ, ରାଜନୈତିକ, ଅର୍ଥନୈତିକ, ବୈଜ୍ଞାନିକ ଓ କୂଟନୈତିକ ସାହାଯ୍ୟ ଦେଇ ତା'ର ସ୍ୱାଧୀନତାକୁ ଓ ସମାଜବାଦ ପ୍ରତିଷ୍ଠାରେ ତା'ର ଉଦ୍ୟମକୁ ଅକଳଣ ସାହାଯ୍ୟ କରିଛି ।

ଭିଏତ୍‌ନାମର ମୁକ୍ତି ସଂକ୍ରାନ୍ତରେ ବିଶ୍ୱବନ୍ଦ୍ୟ ନେତା ଡକ୍ଟର ହୋଚିମିନ୍ କହିଥିଲେ, "ଜାପାନୀ ସାମ୍ରାଜ୍ୟବାଦୀମାନଙ୍କ ଉପରେ ସୋଭିଏତ ବାହିନୀର ବିଜୟ ୧୯୪୫ ଅଗଷ୍ଟ ବିପ୍ଳବକୁ ସୁଗମ କରିଦେଲା । ତାହାହିଁ ଭିଏତନାମର ମୁକ୍ତି ଆଣିଦେଲା ।"

ଫରାସୀ ସାମ୍ରାଜ୍ୟଭୁକ୍ତ ଇଣ୍ଡୋଚୀନ ଅର୍ଥାତ୍ ଭିଏତନାମ, ଲାଓସ, କାମ୍ବୋଡ଼ିଆକୁ ଜାପାନ ସାମ୍ରାଜ୍ୟବାଦ ହାତକୁ ମୁକ୍ତ କଲା ଭିଏତନାମ ମୁକ୍ତିବାହିନୀ, ଡକ୍ଟର ହୋଚିମିନ୍ ଓ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ । ପଳାୟନ କରିଥିବା ଫରାସୀ ସାମ୍ରାଜ୍ୟବାଦୀମାନେ ବ୍ରିଟିଶ ଓ ଆମେରିକାର ସମର୍ଥନରେ ୧୯୪୬ ଡିସେମ୍ବର ୧୯ରେ ୧ ଲକ୍ଷ ଫରାସୀ ସୈନ୍ୟ ଆଣି ଭିଏତନାମ

ଗଣତନ୍ତ୍ର ଉପରେ ଆକ୍ରମଣ କଲେ । ମାତ୍ର ଭିଏତନାମ-ବାସୀମାନେ ଡିଏନଫିନବୁଠାରେ ଫରାସୀ ସୈନ୍ୟମାନଙ୍କୁ ପରାସ୍ତ କରିଦେଲେ । ୧୯୫୪ରେ ଜେନେଭାଠାର ଚୁକ୍ତି ସ୍ୱାକ୍ଷରିତ ହୋଇ ୧୭ଶ ସମାନ୍ତରାଳ ରେଖାରେ ଭିଏତନାମକୁ ସାମୟିକଭାବେ ଦ୍ୱିଖଣ୍ଡ କରାଗଲା । ଭୋଟ ହେବ । ଦୁଇଖଣ୍ଡଯାକ ମିଶି ଅଖଣ୍ଡ ଭିଏତନାମ ପୁନଃପ୍ରତିଷ୍ଠିତ ହେବ ବୋଲି ନିଷ୍ପତ୍ତି ହୋଇଥିଲା । ମାତ୍ର ଆମେରିକା ତାହା ନ କରେଇ ଦେଇ ଦକ୍ଷିଣ ଭିଏତନାମରେ ସଖୀକଣ୍ଢେଇ ସରକାର ଗଢ଼ି ଭିଏତନାମ ଉପରେ ୧୯୭୫ ଏପ୍ରିଲ ୩୦ ପର୍ଯ୍ୟନ୍ତ ଜଘନ୍ୟତମ ଆକ୍ରମଣ କଲା । ଦ୍ୱିତୀୟ ମହାସମରରେ ଉଭୟ ପକ୍ଷର ଯେତିକି ବୋମା ପଡ଼ିଥିଲା ଛୋଟିଆ ଭିଏତନାମ ଉପରେ ଆମେରିକା ପକ୍ଷରୁ ସେତିକି ବୋମା ଅଜାଡ଼ାଗଲା । ଜୀବାଣୁ ଯୁଦ୍ଧ ରାସାୟନିକ ଯୁଦ୍ଧରେ ଫସଲ, ଗଛଲତା, ଜଙ୍ଗଲକୁ ଜାଳି ଦିଆଗଲା । ହତ୍ୟାର ସୀମା ରହିଲାନି । କିନ୍ତୁ ବୀର ଭିଏତୟନାମବାସୀ ଜିଣିଲେ । ଦୁଇ ଭିଏତନାମ ଏକତ୍ର ହେଲା । ମାଓବାଦୀ ଚୀନର ଅର୍ନ୍ତଘାତୀ କାର୍ଯ୍ୟ ଅପରୋଧ ଓ ବିଶ୍ୱାସଘାତକତା ସତ୍ତ୍ୱେ ସୋଭିଏତ ୟୁନିଅନ ଓ ଅନ୍ୟାନ୍ୟ ସମାଜବାଦୀ ଦେଶଙ୍କ ସାହାଯ୍ୟ ଭିଏତନାମକୁ ପ୍ରଥମେ ଜାପାନ, ତା'ପରେ ଫରାସୀ ଓ ସବାଶେଷରେ ଆମେରିକା ସାମ୍ରାଜ୍ୟବାଦଠାରୁ ମୁକ୍ତ କଲା । ଡକ୍ଟର ହୋଚିମିନ୍ ଓ ଭିଏତନାମର କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ଶେଷରେ ସମାଜବାଦ ପ୍ରତିଷ୍ଠା ହେଲା ।

ଲାଓସ ଓ କାଂପୁଚିଆର ମୁକ୍ତି ସମ୍ପର୍କରେ ଲାଓସ ରିଭ୍ଲ୍ୟୁସନାରି ପାର୍ଟିର ନେତା ଫୌମିଭୋଙ୍ଗେଭିଚିଟ କହିଛନ୍ତି : "ଦୂରପ୍ରାଚ୍ୟରେ ୧୯୪୫ରେ ସୋଭିଏତ ବାହିନୀ ଜାପାନର ପରାସ୍ତ କଲାବେଳେ ସେହି ବିଜୟର ବାଣୀ ଏକ ନିର୍ମଳକାରୀ ଝଡ଼ର ଗର୍ଜନ ରୂପେ ନିନାଦିତ ହେଲା । ଜାପାନୀ ଆକ୍ରମଣକାରୀମାନେ ପଳାୟନ କଲେ ଓ ଆମେ ବିଦେଶୀ (ଜାପାନୀ ଓ ଫରାସୀ) ଶୃଙ୍ଖଳ ଭାଙ୍ଗିଦେଇ ସ୍ୱାଧୀନ ହେଲୁ ।"

ମାତ୍ର ୧୯୪୬ରେ ପୁଣି ଫ୍ରାନସ ଲାଓସ ଉପରେ ଆକ୍ରମଣ କଲା । ୧୯୫୪ ଜେନେଭା ଚୁକ୍ତି ଓ ଫ୍ରାନସର ପରାଜୟ ପରେ ଆମେରିକାର ସୈନ୍ୟ ଲାଓସ ଓ କାମ୍ବୋଡ଼ିଆରେ ପୁଣି ଆକ୍ରମଣ କଲା । ୧୯୭୧ରେ ଲାଓସ ଆମେରିକା କବଳରୁ ମୁକ୍ତ ହେଲା । ଖ୍ମେର ବା କାମ୍ପୁଚିଆ ମଧ୍ୟ ଆମେରିକାର ଆକ୍ରମଣରୁ ମୁକ୍ତିଲାଭ କଲା । ଏହି ଦୁଇ ଦେଶର ମୁକ୍ତିସଂଗ୍ରାମକୁ ସୋଭିଏତ ୟୁନିଅନର ସାହାଯ୍ୟ ଅକଳନୀୟ ।

୧୯୪୫ ଅଗଷ୍ଟ ୧୭ରେ ଜାପାନ କବଳରୁ ମୁକ୍ତି ପାଇ ଇଣ୍ଡୋନେସିଆର ବିପ୍ଳବୀମାନେ ଜାକର୍ତ୍ତାରେ ପ୍ରଜାତନ୍ତ୍ର ପ୍ରତିଷ୍ଠା କଲେ । ଯଦିଚ ଏହି ଦେଶ ହଲାଣ୍ଡର ଉପନିବେଶ ଥିଲା, ତାହାର ସୈନ୍ୟବାହିନୀ ଆକ୍ରମଣ କରିବା ପୂର୍ବରୁ ବ୍ରିଟିଶ ଓ ବ୍ରିଟିଶ ଦ୍ୱାରା ଚାଳିତ ଭାରତୀୟ ସୈନ୍ୟମାନେ ଜାପାନୀମାନଙ୍କୁ ନିରସ୍ତ୍ର କରିବା ନାମରେ ଇନ୍ଦୋନେସିଆ ବିପ୍ଳବର ତଣ୍ଟିଚିପି ଦେବାକୁ ବସି ପରାସ୍ତ ହେବା ପରେ ଆମେରିକାଠାରୁ ହଲାଣ୍ଡ ୫୫ କୋଟି ଡଲାରର

ସାହାଯ୍ୟ ପାଇ ପୁଣି ଇଣ୍ଡୋନେସିଆକୁ ଉପନିବେଶ କରିବ ବୋଲି ଆକ୍ରମଣ କଲା । ମାତ୍ର ଭାରତରେ ୧୯୪୯ ଜାନୁଆରୀରେ ଦିଲ୍ଲୀଠାରେ ଆଫ୍ରୋ-ଏସୀୟ ଦେଶମାନଙ୍କର ସମ୍ମିଳନୀ ହଲାଣ୍ଡ ଆକ୍ରମଣର ତୀବ୍ର ନିନ୍ଦା କଲା । ହଲାଣ୍ଡ ସୈନ୍ୟବାହିନୀ ପରାସ୍ତ ହେଲେ ।

ସୋଭିଏତ ସହାୟତା ସମ୍ପର୍କରେ ୧୯୭୪ ନଭେମ୍ବରରେ ଇଣ୍ଡୋନେସିଆ ପାର୍ଲିଆମେଣ୍ଟ ପ୍ରତିନିଧି ସଭାର ଚେୟାରମେନ ଇଦହାମ ହମିଦ କହିଥିଲେ, "ସୋଭିଏତ-ଇଣ୍ଡୋନେସିଆ ସମ୍ପର୍କର ଇତିହାସରେ ସୋଭିଏତ ସମାଜବାଦୀ ରାଷ୍ଟ୍ରସଙ୍ଘ ବିରାଟ ଓ ସ୍ୱାର୍ଥବିହୀନ ସହଯୋଗିତା ସମ୍ପର୍କରେ ଦୃଷ୍ଟାନ୍ତ ପରିପୂର୍ଣ୍ଣ । ତାହା ଇଣ୍ଡୋନେସିଆବାସୀଙ୍କ ମନରୁ ଲିଭିବ ନାହିଁ ।

ଫିଲିପାଇନସରେ ଜାପାନୀ ଆତ୍ମସମର୍ପଣ ପରେ ପୁଣି ତାକୁ ଦଖଲ କରିବାକୁ ଆମେରିକା ସୈନ୍ୟବାହିନୀର ଆକ୍ରମଣ ସେ ଦେଶରେ ଲୋକଙ୍କ ପ୍ରତିରୋଧ ପାଖରେ ହାର ମାନିଲା ଓ ୧୯୪୬ ଜୁଲାଇ ୪ରେ ଫିଲିପାଇନସ ସାର୍ବଭୌମତ୍ୱ ଫେରିପାଇଲା ।

ପୂର୍ବର ବ୍ରିଟିଶ ଉପନିବେଶ ବର୍ମାରୁ ଜାପାନୀ ଅଧିକାର ବିଲୋପ ପରେ ସେ ଦେଶର ଅଦ୍ୱିତୀୟ ବୀର ସ୍ୱାଧୀନତାସଂଗ୍ରାମୀ ଅଙ୍ଗସାନ ବର୍ମାର ମୁକ୍ତିରେ ସୋଭିଏତବାହିନୀ ଦ୍ୱାରା ଜାପାନର ପରାଜୟ ସମ୍ପର୍କରେ ଉଚ୍ଚ ପ୍ରଶଂସା କରିଥିଲେ । ବ୍ରିଟିଶ ସୈନ୍ୟମାନେ ବର୍ମାକୁ ପୁନଃଦଖଲ କରିବାକୁ ଯାଇ ପରାସ୍ତ ହେଲେ । ସାମ୍ରାଜ୍ୟବାଦୀମାନେ ଅଙ୍ଗମାନଙ୍କୁ ହତ୍ୟା କଲେ ବି ବ୍ରିଟିଶ ଉପନିବେଶବାଦୀମାନଙ୍କ ହାତରୁ ୧୯୪୭ ଅକ୍ଟୋବର ୧୭ରେ ବର୍ମା ସ୍ୱାଧୀନ ହେଲା ।

୧୯୪୮ରେ ସିଂହଳ (ବର୍ତ୍ତମାନ ଶ୍ରୀଲଙ୍କା) ବ୍ରିଟିଶ ଶାସନରୁ ମୁକ୍ତ ହେଲା ।

ମାଲୟର ଜାପାନ-ବିରୋଧୀ ଜନମୁକ୍ତି ବାହିନୀ ୧୯୪୫ ସେପ୍ଟେମ୍ବର ଦେଶସାରା ଗଣତାନ୍ତ୍ରିକ ଶାସନ ସଂସ୍ଥା ଗଠିନ କରି ଶାସନଭାର ହାତକୁ ନେବା ପରେ ୧୯୪୫ ସେପ୍ଟେମ୍ବର ୫ରେ ୨୫୦୦୦୦ ବ୍ରିଟିଶ ସୈନ୍ୟ ମାଲୟ ଉପରେ ଆକ୍ରମଣ କରି ଅତ୍ୟାଚାର ଓ ହତ୍ୟା ଚଳେଇଲେ । ବାରବର୍ଷ ପରେ ୧୯୫୭ ଅଗଷ୍ଟ ୩୧ରେ ଏହି ଦେଶ ସ୍ୱାଧୀନତା ଅର୍ଜନ କଲା ।

ଲାଲସେନା ଦ୍ୱାରା ଜାପାନର କ୍ୱାଙ୍ଗଟଙ୍ଗ ବାହିନୀ ପରାସ୍ତ ହେବା ପରେ ଜାପାନ ଅଧିକାରରୁ ପରେ ବ୍ରିଟିଶ, ଆମେରିକା, ଫ୍ରାନସ, ହଲାଣ୍ଡ ସାମ୍ରାଜ୍ୟବାଦୀମାନଙ୍କ ପୁନର୍ଦଖଲ କବଳରୁ ଚୀନ ସମେତ ଦକ୍ଷିଣପୂର୍ବ ଏସିଆର ଓ ଆମ ଭାରତ ଭୂମିର ମୁକ୍ତି ଓ ସ୍ୱାଧୀନତା ପ୍ରାପ୍ତିର ଇତିହାସ ଏହିପରି ଭାବରେ ଅଭିନ୍ନ ଭାବରେ ସଂପୃକ୍ତ ।

ଫରାସୀ ସାମ୍ରାଜ୍ୟବାଦର ଇଣ୍ଡୋଚୀନରୁ ପରାଜୟ ପରେ ମଧ୍ୟପ୍ରାଚ୍ୟରେ ଫ୍ରାନ୍ସର ମାଣ୍ଡେଟ (ଅର୍ଥାତ୍ ହୁକୁମ) ରାଜ୍ୟ ସିରିଆ ଓ ଲେବାନନ । ୧୯୪୧ ସେପ୍ଟେମ୍ବରରେ ଫରାସୀ

ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ କରି ସିରିଆ ଓ ସେହିବର୍ଷ ନଭେମ୍ବରରେ ଲେବାନନ ସ୍ୱାଧୀନତା ଅର୍ଜନ କଲେ । ମାତ୍ର ଫରାସୀ ସୈନ୍ୟ ପୁଣି ଆକ୍ରମଣ କଲା ୧୯୪୬ ଫେବୃଆରୀ ୧୩ ତାରିଖରେ ସିରିଆ ଓ ଲେବାନନରୁ ବିଦେଶୀ ସୈନ୍ୟ ହଟିଯିବାକୁ ଦାବୀ କଲା ।

କୋରିଆର ଜାପାନ କବଳରୁ ମୁକ୍ତି ସୋଭିଏତ ସହାୟତା ସମ୍ପର୍କରେ ଉତ୍ତର କୋରିଆର ନେତା କିମର ସୁଙ୍ଗ (ବର୍ତ୍ତମାନ ରାଷ୍ଟ୍ରପତି) କହିଥିଲେ – "ଦ୍ୱିତୀୟ ମହାସମରରେ ସୋଭିଏତ ୟୁନିଅନର ମହାନ ବିଜୟ ଏବଂ ସୋଭିଏତ ସୈନ୍ୟଙ୍କ ଦ୍ୱାରା ସାମ୍ରାଜ୍ୟବାଦୀ ଜାପାନର ପରାଜୟ ଆମ ଦେଶକୁ ବହୁ ବର୍ଷର ଔପନିବେଶିକ ଦାସତ୍ୱରୁ ମୁକ୍ତ କଲା... ।"

ମାତ୍ର ଆମେରିକା ସାମ୍ରାଜ୍ୟବାଦ ଦକ୍ଷିଣ କୋରିଆରେ ସୈନ୍ୟ ଓହ୍ଲାଇ ଜାପାନୀ ପ୍ରଶାସନକୁ ଧରି ସେ ଅଞ୍ଚଳରେ ଶାସନ କଲା । ୧୯୫୦ରେ ଉତ୍ତର କୋରିଆ ଉପରେ ଆମେରିକା ୩୮ ସାମନ୍ତରାଳ ରେଖା ଡେଇଁ ଆକ୍ରମଣ କଲା । ମାତ୍ର କୋରିଆବାସୀଙ୍କ ପ୍ରତିରୋଧ ଓ ସମାଜବାଦୀ ଦେଶମାନଙ୍କ ସାହାଯ୍ୟ ଫଳରେ ୧୯୫୩ ଜୁଲାଇ ୨୭ରେ ଆକ୍ରମଣକାରୀମାନେ ଯୁଦ୍ଧ ବିରତିରେ ସ୍ୱାକ୍ଷର କଲେ ।

**ଆଫ୍ରିକାରେ ଦେଶ ଦେଶର ମୁକ୍ତି**

ଆଫ୍ରିକା ମହାଦେଶର ପଞ୍ଚମ ପାନ୍ ଆଫ୍ରିକା କଂଗ୍ରେସ ୧୯୪୫ ଅକ୍ଟୋବରରେ ମାଞ୍ଚେଷ୍ଟରଠାରେ ଅନୁଷ୍ଠିତ ହୋଇଥିଲା । ବିଖ୍ୟାତ ନେତା ଏନ୍ କୃମା ଏବଂ ଜୋମୋ କେନିୟାଟା ପ୍ରମୁଖ ନେତୃବୃନ୍ଦ ମିଳିତ ହୋଇ ଆଫ୍ରିକା ଦେଶଗୁଡ଼ିକର ଭାଗ୍ୟ ନିଜେ ନିୟନ୍ତ୍ରଣ କରିବେ ବୋଲି ଘୋଷଣା କଲେ ।

ଫାସିଷ୍ଟ ଶକ୍ତିମାନଙ୍କର ଆଫ୍ରିକା ମହାଦେଶରେ ପରାଜୟରେ ସୋଭିଏତ ୟୁନିଅନର ସେନାବାହିନୀ ପ୍ରତ୍ୟକ୍ଷ ଭାଗ ନେଇ ନଥିଲେ ହେଁ ଯେହେତୁ ହିଟଲର ମୋଟ୍ର ୨୬୬ଟି ଡିଭିଜନ ସୈନ୍ୟ ସୋଭିଏତ ରଣ ସାମ୍ମୁଖ୍ୟରେ ରହିଲେ ଓ ଆଫ୍ରିକାରୁ ହିଟଲର ପକ୍ଷ ସୈନ୍ୟ ଡିଭିଜନଗୁଡ଼ିକୁ ପ୍ରତ୍ୟାହାର କରିନେଇ ମାତ୍ର ୧୨ ଡିଭିଜନ ସୈନ୍ୟ ଆଫ୍ରିକାରେ ରଖି ସୋଭିଏତ ସାମ୍ମୁଖ୍ୟକୁ ପଠାଇବାକୁ ବାଧ ହେଲା, ସେ ହେତୁ ମିତ୍ରପକ୍ଷର ବ୍ରିଟିଶ-ଆମେରିକା ସୈନ୍ୟ ସହଜରେ ସେଠାରେ ଶତ୍ରୁପକ୍ଷକୁ ପରାସ୍ତ କରିପାରିଲେ । କିନ୍ତୁ ପୁଣି ଆଫ୍ରିକାରେ ସେମାନଙ୍କର ଉପନିବେଶଗୁଡ଼ିକୁ ପୁନଃପ୍ରତିଷ୍ଠା କରିବେ ଓ ସେଇଠୁ ମଧ୍ୟପ୍ରାଚ୍ୟର ତୈଳଭଣ୍ଡାରକୁ ଅକ୍ତିଆର କରିବେ ବୋଲି ସେମାନଙ୍କ ଚେଷ୍ଟା ବ୍ୟର୍ଥ ହେଲା ।

୧୯୪୫ ମଇ ୮ ତାରିଖରେ ୟୁରୋପରେ ଯୁଦ୍ଧ ନିସ୍ତବ୍ଧ ହେବା ମାତ୍ରେ ଠିକ୍ ସେହିଦିନ ଆଫ୍ରିକାରେ ସେମାନଙ୍କ ପୂର୍ବତନ ଉପନିବେଶ ଆଲଜେରିଆରେ ୪୫ ହଜାର ଆଲଜେରିଆର ଲୋକଙ୍କୁ ଫରାସୀ ସୈନ୍ୟମାନେ ହତ୍ୟା କଲେ । ୧୯୪୭-୪୮ରେ ଫରାସୀ ସାମ୍ରାଜ୍ୟବାଦୀମାନେ ମାଡ଼ାଗାସ୍କର (ମାଲଗାସି) ଉପରେ ପୁନଃଦଖଲ ପ୍ରତିଷ୍ଠା କରିବା ପାଇଁ ୧

ଲକ୍ଷ ମାଲଗାସି ଲୋକଙ୍କୁ ହତ୍ୟା କଲେ ।

ମାତ୍ର ଆଲଜେରିଆ ଓ ମାଲଗାସିର ସ୍ୱାଧୀନତା ସଂଗ୍ରାମ ଅଶେଷ ନିର୍ଯ୍ୟାତନା ଭୋଗି ଜୟଯୁକ୍ତ ହେଲା । ଆଲଜେରିଆ ବିରୁଦ୍ଧରେ ଫରାସୀ ସାମ୍ରାଜ୍ୟବାଦୀମାନେ ୭ ଲକ୍ଷ ସୈନ୍ୟ ପଠାଇ ଆକ୍ରମଣ କଲେ । ସୋଭିଏତ ୟୁନିଅନ ଓ ଅନ୍ୟାନ୍ୟ ସମାଜବାଦୀ ଦେଶ ଆଲଜେରିଆର ଅସ୍ଥାୟୀ ସରକାରକୁ ସ୍ୱୀକାର କଲେ । ୭ ବର୍ଷ କାଳ ଆଲଜେରିଆବାସୀ ଫରାସୀ ସାମ୍ରାଜ୍ୟବାଦ ବିରୁଦ୍ଧରେ ଲଢ଼ି ୧୯୬୧ ଜୁଲାଇ ୧ ତାରିଖରେ ସାର୍ବଭୌମ ରାଷ୍ଟ୍ରଗଠନ କଲେ ।

ଇଟାଲୀର ପୂର୍ବତନ ଉପନିବେଶ ଲିବ୍ୟା ଇଂରେଜ-ଫରାସୀ ସୈନ୍ୟମାନଙ୍କ ଦଖଲରୁ ମୁକ୍ତ ହେଲା । ୧୯୫୧ ଡିସେମ୍ବର ୨୪ରେ ଜାତିସଂଘରେ ନିଷ୍ପତ୍ତି ଅନୁସାରେ ଲିବ୍ୟା ରାଷ୍ଟ୍ରୀୟ ସାର୍ବଭୌମତ୍ୱ ପାଇଲେ ସୁଦ୍ଧା ୧୯୭୦ ଯାଏ ବିଦେଶୀ ସୈନ୍ୟ ସେଠାରେ ରହିଲେ । ମାତ୍ର ଲିବ୍ୟା ଲୋକଙ୍କ ସଂଗ୍ରାମ ଫଳରେ ଇଂରେଜ ଫରାସୀ ସୈନ୍ୟଙ୍କୁ ହଟିବାକୁ ପଡ଼ିଲା ।

ଇଜିପଟ୍ (ମିଶର)ରେ ସାମ୍ରାଜ୍ୟବାଦ-ବିରୋଧୀ ଓ ସାମନ୍ତବାଦ ବିରୋଧୀ ବିପ୍ଳବ ଗାମାଲ ଅବଦୁଲ ନାସେରଙ୍କ ନେତୃତ୍ୱର ୧୯୫୨ ଜୁଲାଇରେ ଆରମ୍ଭ ହୋଇ ଯଶସ୍ୱୀ ହେଲା । ସୋଭିଏତ ୟୁନିଅନ ସହିତ ନାସେରଙ୍କ ବନ୍ଧୁତା ସେଇ ଦେଶର ମୁକ୍ତିରେ ଆପ୍ରାଣ ସହାୟତା ଦେଇଥିଲା ବୋଲି ନାସେର ସେତେବେଳେ ସ୍ୱୀକାର କରିଥିଲେ । ତଥାପି ୧୯୫୬ ଜୁନ୍ ଯାଏ ବ୍ରିଟେନର ସୈନ୍ୟ ସେଠାରେ ରହି ଶେଷରେ ବିଦାୟ ନେବାକୁ ପଡ଼ିଲା ।

ସ୍ୱାଧୀନ ଇଜିପ୍ଟ ସୁଏଜ ୦କନାଲ କମ୍ପାନୀକୁ ଜାତୀୟକରଣ କରିବାରୁ ବିଲାତ-ଫ୍ରାନସ ଓ ଇସ୍ରାଏଲଙ୍କ ମିଳିତ ସାମରିକ ଆକ୍ରମଣ ହେଲା । ଏହାର ବିଷମୟ ଫଳାଫଳ ଭୟାବହ ହେବ ଏବଂ ୩ ଦିନ ମଧ୍ୟରେ ବ୍ରିଟିଶ ଫରାସୀ ଇସ୍ରାଏଲ ସୈନ୍ୟ ନ ହଟିଲେ ସୋଭିଏତ ୟୁନିୟନ ଇଜିପ୍ଟ ସପକ୍ଷରେ ପ୍ରତି ବ୍ୟବସ୍ଥା କରିବାକୁ ବଜ୍ର ଘୋଷଣା କରିବା ପରେ ସାମ୍ରାଜ୍ୟବାଦୀମାନେ ହଟିଗଲେ ।

ଇଜିପ୍ଟ ବିପ୍ଳବର ସଫଳତା ଅନ୍ୟାନ୍ୟ ଆରବ ଦେଶରେ ମୁକ୍ତି ସଂଗ୍ରାମକୁ ପ୍ରୋତ୍ସାହନ ଦେଲା । ସୁଦାନ ୧୯୫୭ ଜାନୁଆରୀ ୧ରେ ବ୍ରିଟିଶ କବଳରୁ ମୁକ୍ତ ହେଲା । ସେହି ବର୍ଷ ମାର୍ଚ୍ଚ ୨ ତାରିଖରେ ମରକୋ ଓ ମାର୍ଚ୍ଚ ୨୦ ତାରିଖରେ ଟ୍ୟୁନିସିଆ ଦେଶର ସ୍ୱାଧୀନତାକୁ ଫରାସୀ ସାମ୍ରାଜ୍ୟବାଦୀମାନେ ସ୍ୱୀକାର କରିବାକୁ ବାଧ ହେଲେ ।

ପଶ୍ଚିମ ଏସିଆରେ ମଧ୍ୟଯୁଗରେ ଥିବା ଘାନା ନାମକ ବିଶାଳ ରାଷ୍ଟ୍ର ବ୍ରିଟିଶ ଅଧୀନରେ ଗୋଲଡ଼କୋଷ୍ଟ ନାମରେ ନାମିତ ହୋଇଥିଲା । ୧୯୫୭ ମାର୍ଚ୍ଚ ୭ ତାରିଖରେ ଏନକ୍ରୁମାଙ୍କ ନେତୃତ୍ୱରେ ଘାନାର ଲୋକେ ସ୍ୱାଧୀନତା ଅର୍ଜନ କଲେ । ୧୯୫୮ରେ ଗିନ୍ ଦେଶ ସ୍ୱାଧୀନ ହେଲା । ୧୯୬୦ରେ ଜାତିସଘରେ ଉପନିବେଶର ସ୍ୱାଧୀନତା ସଂକ୍ରାନ୍ତ ସୋଭିଏତ ଚିଠା

ଘୋଷଣା ଗୃହୀତ ହୋଇଥିଲା । ୧୯୬୦ରେ ହିଁ ଆଫ୍ରିକା ଆଉ ୧୭ଟି ଦେଶ ଆପଣାର ସ୍ୱାଧୀନତା ଅର୍ଜନ କଲେ । କଙ୍ଗୋ ବା ରାନ୍‌ସିରେ, କେନିଆ, ଉଗାଣ୍ଡା ପ୍ରଭୃତି ଦେଶ ସେଥିରେ ଅନ୍ତର୍ଭୁକ୍ତ ।

୧୯୭୫ରେ ସୋଭିଏତ ୟୁନିୟନ ଉଦ୍ୟୋଗରେ ହେଲିସିଙ୍କିଠାରେ ୩୩ଟି ୟୁରୋପୀୟ ରାଷ୍ଟ୍ର ଓ ଆମେରିକା ଓ କାନାଡ଼ା ସମେତ ୩୫ଟି ରାଷ୍ଟ୍ରର ବିଖ୍ୟାତ ହେଲିସିଙ୍କ ଚୂଡ଼ାନ୍ତ ରାଜିନାମା ସ୍ୱାକ୍ଷରିତ ହେବାପରେ ପର୍ତ୍ତୁଗୀଜ ଉପନିବେଶ ଆଙ୍ଗୋଲ, ମୋଜାମ୍ବିକ ଗିନିବିସୌର ଜନସାଧାରଣଙ୍କ ସଶସ୍ତ୍ର ବିପ୍ଳବ ଜୟଯୁକ୍ତ ହେଲା । ଏମାନେ ସ୍ୱାଧୀନ ହେଲେ । ସୋଭିଏତ ଓ କ୍ୟୁବା ଦେଶର ଫାସିଷ୍ଟ ଆମେରିକା ବର୍ଣ୍ଣବିଦ୍ୱେଷୀ ଦକ୍ଷିଣ ଆଫ୍ରିକାର ଆକ୍ରମଣକୁ ଆଙ୍ଗୋଲା ଏବେ ବି ପ୍ରତିହତ କରିଚାଲିଛି ।

ଅଫ୍ରିକାରେ ନାମ୍ବିୟାର ମୁକ୍ତି ସଂଗ୍ରାମ ଅବ୍ୟାହତ ରହିଛି । ଔପନିବେଶିକ ବ୍ୟବସ୍ଥା ଏସିଆ ଓ ଅଫ୍ରିକା ମହାଦେଶରେ ଭୁଷୁଡ଼ି ପଡ଼ିଛି ।

ତଥାପି ଆମେରିକାର ଟ୍ରଷ୍ଟିସିପ ଅଧୀନରେ ଥିବା ଓସେନିଆର ବହୁ ଦ୍ୱୀପ ଏବେ ବି ସ୍ୱାଧୀନତା ପାଇବାକୁ ସଂଗ୍ରାମ କରୁଛନ୍ତି ।

ଫାସିଷ୍ଟବାଦ ଉପରେ ବିଜୟ ଏବଂ ଏହି ବିଜୟରେ ସମାଜବାଦୀ ସୋଭିଏତ ୟୁନିଅନର ବୀର ଲାଲସେନା ୨ କୋଟି ସୋଭିଏତ୍ ବାସୀଙ୍କ ଜୀବନ ଦେଇ ଜର୍ମାନୀ, ଇଟାଲୀ, ଜାପାନକୁ ପରାସ୍ତ କରିବାରେ ଯେଉଁ ଅଭୂତପୂର୍ବ, ଅସାମାନ୍ୟ ଅବଦାନ ଦେଲେ, ତାହାହିଁ ଏସିଆ ଓ ଆଫ୍ରିକା ମହାଦେଶର ଉପନିବେଶମାନଙ୍କରେ ମୁକ୍ତି ଓ ସ୍ୱାଧୀନତା ସଂଗ୍ରାମକୁ ତ୍ୱରାନ୍ୱିତ କଲା ଓ ସଫଳତା ହାସଲ କରିବାରେ ସାହାଯ୍ୟ କଲା ।

ସାମ୍ରାଜ୍ୟବାଦୀ, ଯୁଦ୍ଧଖୋରମାନେ ଆମେରିକା ସାମ୍ରାଜ୍ୟବାଦର ନେତୃତ୍ୱରେ ଇତିହାସର ଏହି ଶିକ୍ଷାକୁ ଓଲଟାଇ ଦେବା ପ୍ରୟାସରେ ପରମାଣୁ ଯୁଦ୍ଧ କରିବାକୁ ପ୍ରସ୍ତୁତି ଚଳାଇଛନ୍ତି । ମାନବଜାତି ପଛକେ ଧ୍ୱଂସ ହେଉ, କିନ୍ତୁ ସେମାନେ ପୃଥିବୀରେ ଏକାଧିପତ୍ୟ ବିସ୍ତାର କରିବେ, ପୁଞ୍ଜିବାଦକୁ ରକ୍ଷା କରିବେ ଓ ସମାଜବାଦ, ଗଣତନ୍ତ୍ର ଓ ଦେଶ ଦେଶର ସ୍ୱାଧୀନତା ସାର୍ବଭୌମତ୍ୱକୁ ଧ୍ୱଂସ କରିବେ ବୋଲି ଲାଗିପଡ଼ିଛନ୍ତି ।

ମାତ୍ର ସର୍ବୋପରି ଶାନ୍ତିକାମୀ ସୋଭିଏତ ୟୁନିୟନ ଓ ସମାଜବାଦୀ ଦେଶବର୍ଗ ଭାରତ ସମେତ ନବସ୍ୱାଧୀନ ଯୁଦ୍ଧବିରୋଧୀ, ଶାନ୍ତିକାମୀ ଓ ଗୋଷ୍ଠୀନିରପେକ୍ଷ ରାଷ୍ଟ୍ରବର୍ଗ ଓ ପୃଥିବୀର ଅଗଣିତ ଶାନ୍ତିକାମୀ ଜନତାଙ୍କ ଯୁଦ୍ଧବିରୋଧୀ ଆନ୍ଦୋଳନ ଯଶସ୍ୱୀ ହେବ, ଏହି ଶିକ୍ଷା ହେଉଛି ଦ୍ୱିତୀୟ ମହାସମରରେ ଫାସିଷ୍ଟବାଦ ଉପରେ ମହାନ ବିଜୟ ଓ ସେଥିରେ ସୋଭିଏତ ୟୁନିୟନର ଅତୁଳନୀୟ ଅବଦାନ ।

**ଇତିହାସ ଅଣଲେଉଟା**

ଦ୍ୱିତୀୟ ମହାସମରରେ ଫାସିଷ୍ଟବାଦର ପରାଜୟରେ ପୃଥିବୀରେ ଫାସିଷ୍ଟ ଆଧିପତ୍ୟ

ପ୍ରତିଷ୍ଠାର ସ୍ୱପ୍ନ ବ୍ୟର୍ଥ ହେଲା । ଅନ୍ୟପକ୍ଷରେ ବିଲାତ, ଆମେରିକା, ଫ୍ରାନସ ଓ ଅନ୍ୟାନ୍ୟ ସାମ୍ରାଜ୍ୟବାଦୀ ଦେଶଙ୍କର ଔପନିବେଶିକ ବ୍ୟବସ୍ଥାକୁ ପୁନଃ କାଏମ କରିବା ପାଇଁ ଅଭିଳାଷ, ଉଦ୍ୟମ ଓ ଷଡ଼ଯନ୍ତ୍ର, ସଶସ୍ତ୍ର ହସ୍ତକ୍ଷେପ ମଉଳିଗଲା ।

୧୯୧୭ ଅକ୍ଟୋବର ବିପ୍ଳବରେ ଜାତ ସୋଭିଏତ ରାଷ୍ଟ୍ର ଜାର ସାମ୍ରାଜ୍ୟବାଦକୁ ଦେଇଥିବା କବର ଓ ଜାରରେ ଉପନିବେଶଗୁଡ଼ିକର ମୁକ୍ତି ପ୍ରକ୍ରିୟା ସୋଭିଏତ ୟୁନିଅନ ଉପରେ ହିଟଲର ଆକ୍ରମଣ କଲା ପରେ ଓ ଏହି ବିଜୟରେ ତ୍ୱରାନ୍ୱିତ ହେଲା ।

ପ୍ରଥମତଃ ସୋଭିଏତ ବାହିନୀ ୟୁରୋପରେ ମୁକ୍ତ କରିଥିବା ଦେଶଗୁଡ଼ିକ ମଧ୍ୟରୁ ପୋଲାଣ୍ଡ, ବୁଲଗେରିଆ, ରୁମାନିଆ, ହଙ୍ଗେରୀ, ୟୁଗୋସ୍ଲୋଭିଆରେ ଏବଂ ସୋଭିଏତ ବାହିନୀ ପ୍ରବେଶ ନ କରିଥିବା ଆଲବନିଆରେ ପୁଞ୍ଜିବାଦୀ ଶାସନ ପରିବର୍ତ୍ତେ ଜନ ଗଣତନ୍ତ୍ର ଓ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠିତ ହେଲା । ଅବଶ୍ୟ ସୋଭିଏତ ବାହିନୀ ମୁକ୍ତ କରିଥିବା ଅଷ୍ଟ୍ରିଆ, ଫିନଲ୍ୟାଣ୍ଡ, ନରୱେ, ଡେନମାର୍କରେ ସେ ଦେଶର ବିପ୍ଳବୀମାନେ ସମର୍ଥ ନ ହୋଇ ପାରିବାରୁ ସେଠାରେ ପୁନଶ୍ଚ ପୁଞ୍ଜିବାଦୀ ଶାସନ ପୁନଃ ପ୍ରତିଷ୍ଠା ହେଲା । ଚୀନ ଓ କୋରିଆରେ ଗଣତନ୍ତ୍ରର ପ୍ରତିଷ୍ଠା ଓ ଏସିଆର ଓ ଆଫ୍ରିକାର ବିଲାତ, ଆମେରିକା, ଫ୍ରାନସ, ପର୍ତ୍ତୁଗାଲ, ହଲାଣ୍ଡ ଓ ଜର୍ମାନୀର ଉପନିବେଶଗୁଡ଼ିକର ମୁକ୍ତି ଓ ପୃଥିବୀରେ ସମାଜବାଦୀ ବିଶ୍ୱ ବ୍ୟବସ୍ଥାର ସୃଷ୍ଟି ସାମ୍ରାଜ୍ୟବାଦର ସମୂଳେ ମୃତ୍ୟୁ ଘଣ୍ଟା ବଜେଇବା ଆରମ୍ଭ କରିଦେଲା ।

ସେହି ପରିବର୍ତ୍ତିତ ଆନ୍ତର୍ଜାତିକ ପରିସ୍ଥିତିକୁ ନିଜ ଅନୁକୂଳରେ ବଦଳାଇବା ଲାଗି ଯୁଦ୍ଧୋତ୍ତର କାଳରେ ଦୁଇ ବିଶ୍ୱ ଯୁଦ୍ଧରେ ସବୁଠାରୁ କମ୍ କ୍ଷୟକ୍ଷତି ସହିଥିବା ଓ ଦୁନିଆର ପୁଞ୍ଜିବାଦୀ ବଜାରରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିବା ଆମେରିକାର ନେତୃତ୍ୱରେ ଉଦ୍ୟମମାନ ଆରମ୍ଭ ହୋଇଗଲା ।

ଜର୍ମାନୀର ଏକତ୍ରୀକରଣ ଓ ଗଣତନ୍ତ୍ରର ପୁନଃ ପ୍ରତିଷ୍ଠାକୁ ଭଣ୍ଡୁର କରି ପଶ୍ଚିମ ପଟେ ଆମେରିକା-ବିଲାତ, ଫ୍ରାନସ ଫେଡ଼େରାଲ ଜର୍ମାନ ଗଢ଼ିବା ଦିନଠାରୁ ସୋଭିଏତ ୟୁନିଅନ ଓ ବିଶ୍ୱ ସମାଜବାଦୀ ବ୍ୟବସ୍ଥା ଓ ନବ ସ୍ୱାଧୀନ ଶତାଧିକ ଦେଶମାନଙ୍କ ବିରୁଦ୍ଧରେ କେଉଁଠି ସଶସ୍ତ୍ର ହସ୍ତକ୍ଷେପ ଚଳାଯାଇଛି; କେଉଁଠି ଗୃହ ଯୁଦ୍ଧ ସୃଷ୍ଟି କରାଯାଇଛି, କେଉଁଠି ଗୁପ୍ତଚର ପ୍ରରୋଚନା ଓ ରାଷ୍ଟ୍ର ନେତାମାନଙ୍କୁ ହତ୍ୟା କରାଯାଇଛି ।

ସାମ୍ରାଜ୍ୟବାଦର ଏହା ଶେଷ ଓ ପ୍ରାଣମୂର୍ଚ୍ଛା ଉଦ୍ୟମ । ପରମାଣୁ ବୋମା, ନ୍ୟୁକ୍ଲିଅର ବୋମା, ନକ୍ଷତ୍ର ଯୁଦ୍ଧ ଧମକ ଓ ପଶ୍ଚିମ ୟୁରୋପରେ ସୋଭିଏତ ୟୁନିଅନ ବିରୁଦ୍ଧରେ ୟୁରୋପରେ କ୍ଷେପଣାସ୍ତ୍ର ଘାଟୀ, ନବ ସ୍ୱାଧୀନ ଦେଶମାନଙ୍କ ବିରୁଦ୍ଧରେ ଭାରତ ମହାସାଗରରେ ପ୍ରଶାନ୍ତ ମହାସାଗର ଓ କାରିବିଏନ ସାଗର, ପାରସ୍ୟ ଉପସାଗର, ଭୂମଧ୍ୟ ସାଗରରେ ପରମାଣୁ ଜାହାଜ ଭେଳା ମୁତୟନ ଏହିସବୁ ଷଡ଼ଯନ୍ତ୍ରର ଅଙ୍ଗ ।

ୟାଲଟା, ପୋଷ୍ଟଡାମ ଚୁକ୍ତି ଓ ଜାପାନ ଆତ୍ମସମର୍ପଣରେ ସର୍ତ୍ତଗୁଡ଼ିକୁ ଲଙ୍ଘନ କରାଯାଇ ସୈନ୍ୟବାହିନୀ ନ ରଖିବା ଓ ଅସ୍ତ୍ରଶସ୍ତ୍ର ତିଆରି ନ କରିବା ଲାଗି ଫେଡ଼େରାଲ ଜର୍ମାନୀ ଓ ଜାପାନ ଉପରେ ଥିବା ନିଷେଧାଜ୍ଞାକୁ ବସ୍ତୁତଃ ଲଙ୍ଘନ କରାଯାଇ ତୃତୀୟ ମହାସମରରେ ପ୍ରସ୍ତୁତିରେ ସେଗୁଡ଼ିକୁ ସୋଭିଏତ ୟୁନିଅନ ସମାଜବାଦୀ ଦେଶ ଓ ନବ ସ୍ୱାଧୀନ ଦେଶମାନଙ୍କ ବିରୁଦ୍ଧରେ ଘାଟୀ ରୂପେ ନିର୍ମାଣ କରାଯାଉଛି ।

ଫେଡ଼େରାଲ ଜର୍ମାନୀ ଗଢ଼ାଯିବା ପରେ ଜର୍ମାନ ଭୂଇଁରେ ଯୁଦ୍ଧରେ ସୋଭିଏତ ଅଧିକୃତ ପୂର୍ବ ଜର୍ମାନୀରେ ଗଣବିପ୍ଳବ ଶାନ୍ତିକାମୀ ସମାଜବାଦୀ ରାଷ୍ଟ୍ର ଜର୍ମାନ ଗଣତନ୍ତ୍ର ଗଠନ କଲା । ଆଜି ତାହାହିଁ ଜର୍ମାନ ଭୂଇଁରେ ଶାନ୍ତିର ଦୁର୍ଗ ଓ ପଶ୍ଚିମ ପଟେ ଫେଡ଼େରାଲ ଗଣତନ୍ତ୍ର ଆମେରିକା ଓ ନାଟୋ ମେଣ୍ଟର ଯୁଦ୍ଧର ଦୁର୍ଗ ରୂପେ ଉଭା । ପଶ୍ଚିମ ଜର୍ମାନୀରେ କେବଳ ନାଟୋ ମେଣ୍ଟର ୯ ଲକ୍ଷ ସୈନ, ୧୦ ହଜାର ଟ୍ୟାଙ୍କ ୭ ହଜାର ପରମାଣୁ ଯୁଦ୍ଧାସ୍ତ୍ର, ୨ ହଜାର ଟନ୍ ବିଷାକ୍ତ ବାଷ୍ପ ଗଚ୍ଛିତ ରହିଛି ।

ବିଭିନ୍ନ ଅନୁଗାମୀ ୟୁରୋପ, ଏସିଆ, ଲାଟିନ ଆମେରିକାର ଦେଶରେ ଆମେରିକାର ୫ ଲକ୍ଷ ସୈନ୍ୟ, ୧୨ ହଜାର ପରମାଣୁ ଯୁଦ୍ଧାସ୍ତ୍ର, ମଧ୍ୟମ ଦୂରଗାମୀ ଓ ୨୫୦୦ ଯୁଦ୍ଧ ଘାଟୀ ରହିଛି । ପଶ୍ଚିମ ୟୁରୋପରେ ଏମ-ଏକ୍ସ କ୍ଷେପଣାସ୍ତ୍ର, ପେର୍ସିଙ୍ଗ ଓ କ୍ରୁଇଜ କ୍ଷେପଣାସ୍ତ୍ର ଖଞ୍ଜାଯାଇଛି । ଯାହାର ସଂଖ୍ୟା ୫୭୨ଟି ହେବ । ବ୍ରିଟେନ, ପଶ୍ଚିମ ଜର୍ମାନ, ଇଟାଲୀ, ବେଲଜିୟମ ଓ ହଲାଣ୍ଡରେ ସୋଭିଏତ ଓ ଅନ୍ୟାନ୍ୟ ପୂର୍ବ ୟୁରୋପୀୟ ସମାଜବାଦୀ ରାଷ୍ଟ୍ରକୁ ଲକ୍ଷ୍ୟ କରି ଖଞ୍ଜାଯାଇଛି ।

ନିରସ୍ତ୍ରୀକରଣ, ଜଳ ସ୍ଥଳ ଆକାଶ ଓ ଅନ୍ତରୀକ୍ଷରେ ପରମାଣୁ ବିସ୍ଫୋରଣ, ଜୀବାଣୁ ଯୁଦ୍ଧାସ୍ତ୍ର, ରାସାୟନିକ ଯୁଦ୍ଧାସ୍ତ୍ର, ପରମାଣୁ ଓ ନ୍ୟୁଟ୍ରନ ଅସ୍ତ୍ର ଓ ଅନ୍ୟାନ୍ୟ କ୍ଷେପଣାସ୍ତ୍ର ଓ ମାରଣାସ୍ତ୍ରର ଉତ୍ପାଦନ, ଭଣ୍ଡାର ଓ ପ୍ରୟୋଗ ବିରୁଦ୍ଧରେ ସୋଭିଏତ ୟୁନିଅନ, ଅନ୍ୟାନ୍ୟ ସମାଜବାଦୀ ଦେଶ ଓ ଭାରତ ସମେତ ଗୋଷ୍ଠୀନିରପେକ୍ଷ ଦେଶମାନଙ୍କର ପ୍ରସ୍ତାବକୁ ଆମେରିକା ତା'ର ମିତ୍ରମାନେ ପ୍ରତ୍ୟାଖ୍ୟାନ କରିଛନ୍ତି । ଜାତିସଂଘରେ ଏଯାଏ ଏ ସଂକ୍ରାନ୍ତରେ କେବଳ ସୋଭିଏତ ୟୁନିଅନ ଶତାଧିକ ପ୍ରସ୍ତାବ ଦେଇଛି । ୧୯୭୫ରେ ହେଲିସିଙ୍କ ଚୂଡ଼ାନ୍ତ ରାଜିନାମା ଯାହାକୁ 'ଦେତାନ୍ତ' କୁହାଯାଏ, ସେଥିରେ ସ୍ୱାକ୍ଷର କରି ଆମେରିକା ଓ ଅନ୍ୟ ନାଟୋମେଣ୍ଟ ରାଜ୍ୟମାନେ ତାହାକୁ ଲଙ୍ଘନ କରି ଚାଲିଛନ୍ତି । ମାରଣାସ୍ତ୍ର ନିଷେଧ ଚୁକ୍ତି ସଲ୍ଟ-୧କୁ ଲଙ୍ଘନ କରି ସଲ୍ଟ-୨ ଚୁକ୍ତିକୁ ଆମେରିକାର ରିଗାନ ପ୍ରଶାସନ ଅନୁମୋଦନ କରୁନାହିଁ ।

ଯୁଦ୍ଧବାଦୀ ନାଟୋମେଣ୍ଟ ଗଠନ ହେବାପରେ ୟୁରୋପରେ ଶାନ୍ତି ଓ ନିରାପତ୍ତା ଏବଂ ବିଶ୍ୱଶାନ୍ତି ସହଯୋଗ ଲାଗି ପ୍ରତିଷ୍ଠିତ ୱାରସ ଚୁକ୍ତିର ଏକ ସମୟରେ ଦୁଇ ମେଣ୍ଟକୁ ଭାଙ୍ଗିଦିଆଯାଉ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରାଯାଇଛି ।

ତୃତୀୟ ବିଶ୍ୱଯୁଦ୍ଧ ଓ ମାନବ ଜାତିର ସମୂଳେ ବିନାଶ ଲାଗି ଆମେରିକା ସାମ୍ରାଜ୍ୟବାଦ ପାଗଳ ହୋଇ ୧୯୪୫-୪୬ରୁ ପୃଥିବୀର ବିଭିନ୍ନ ଦେଶର ସାମରିକ ଅଭିଯାନ ଚଳେଇ ଆସିଛି ।

୧୯୪୫-୪୬ରେ ଫିଲିପାଇନସ, ୧୯୪୬-୧୯୪୯ରେ ଗ୍ରୀସ, ୧୯୪୬-୧୯୪୯ରେ ଚୀନ, ୧୯୪୭ରେ ପାରାଗୁୟେ, ୧୯୪୮ରେ କୋଷ୍ଟାରିକା, ୧୯୪୯ ଏବଂ ଆଉଥରେ ୧୯୬୧ରେ ବର୍ମା, ୧୯୫୦ରେ ପୁଏର୍ଟୋରିକୋ, ୧୯୫୦-୫୩ରେ କୋରିଆ, ୧୯୫୪ରେ ଓ ୧୯୬୭ରେ ଦୁଇଥର ଗୁଆଟେମେଲା, ୧୯୫୪-୭୩ରେ ଭିଏତନାମ, ୧୯୫୮ରେ ଲେବାନନ ୧୯୫୯-୧୯୬୨ରେ ଏବଂ ୧୯୬୪-୭୦ ତଥା ୧୯୭୧-୧୯୭୩ରେ ଲାଓସରେ ୩ ଥର ୧୯୬୧ରେ କ୍ୟୁବା, ୧୯୬୪ରେ ପାନାମା, ୧୯୬୫ରେ ଡୋମିନକାନ, ପ୍ରଜାତନ୍ତ୍ର, ୧୯୬୬ରେ ଶ୍ୟାମଦେଶ, ୧୯୬୯ରେ ହେିଟି, ୧୯୭୦ରେ କାମ୍ବୋଡ଼ିଆ, ୧୯୭୦ରେ ତ୍ରିନାଦାଦ ଓ ଟୋବାଗୋ, ୧୯୭୩ରେ ଚିଲି, ୧୯୭୫ରେ ଆଙ୍ଗୋଲା, ୧୯୭୮ରେ ଜୟରେ, ୧୯୮୦ରେ ଇରାନ, ୧୯୮୨ରେ ଲେବାନନ ଓ ୧୯୮୩ରେ ଗ୍ରେନେଡ଼ା ଉପରେ ଆମେରିକା ସଶସ୍ତ୍ର ଆକ୍ରମଣ ଓ ହସ୍ତକ୍ଷେପ କରିଛି । ଭାରତବର୍ଷ ବିରୁଦ୍ଧରେ ପାକିସ୍ତାନକୁ ଦୁଇଥର ଆକ୍ରମଣରେ ଆମେରିକା ତାକୁ ସାହାଯ୍ୟ କରିଛି । ଭାରତର ପଡ଼ୋଶୀ ରାଷ୍ଟ୍ରଗୁଡ଼ିକୁ ଭାରତ ବିରୁଦ୍ଧରେ ପ୍ରରୋଚିତ କରୁଛି ଓ ପାକିସ୍ତାନକୁ ପ୍ରଚୁର ମାରଣାସ୍ତ୍ର ଓ ବିମାନରେ ସଜ୍ଜିତ କରୁଛି ।

ମାତ୍ର ଆଜି ପୃଥିବୀରେ ଆମେରିକା ଓ ସାମ୍ରାଜ୍ୟବାଦୀ ଯୁଦ୍ଧମେଣ୍ଟ ନାଟୋର ପରମାଣୁ ଓ ନକ୍ଷତ୍ର ଯୁଦ୍ଧ ବିରୁଦ୍ଧରେ ଅସୀମ ବଳୀୟାନ ବିଶ୍ୱଶାନ୍ତିର ସର୍ବଶ୍ରେଷ୍ଠ ଦୁର୍ଗ ଓ ପ୍ରହରୀ ସୋଭିଏତ ୟୁନିଅନ ଓ ପୃଥିବୀର ସମାଜବାଦୀ ବ୍ୟବସ୍ଥା ଏବଂ ବିଶ୍ୱଶାନ୍ତିର ପ୍ରବକ୍ତା ଶାନ୍ତିକାମୀ ଗୋଷ୍ଠୀନିରପେକ୍ଷ ଦେଶସମୂହ ।

ଏହା ବ୍ୟତୀତ ସାରା ପୃଥିବୀରେ ଓ ଆମେରିକା, ବିଲାତ, ପଶ୍ଚିମ ଜର୍ମାନୀ, ଫ୍ରାନସ, ଇଟାଲୀ ଓ ଜାପାନରେ ଲକ୍ଷଲକ୍ଷ ନିୟୁତନିୟୁତ ନରନାରୀ ରାଜନୈତିକ ଆଦର୍ଶ, ଧର୍ମବିଶ୍ୱାସ ଜାତି ବର୍ଣ୍ଣ ଦେଶ ନିର୍ବିଶେଷରେ ଯୁଦ୍ଧ ବିରୁଦ୍ଧରେ ଓ ବିଶ୍ୱଶାନ୍ତି ଲାଗି ସଂଗ୍ରାମ କରୁଛନ୍ତି । ବିଶ୍ୱଶାନ୍ତି ଆନ୍ଦୋଳନ ଏକ ବିଶାଳ ଶକ୍ତି ।

ଏ ସମସ୍ତଙ୍କର ସମ୍ମିଳିତ ଶାନ୍ତି ଉଦ୍ୟମ ପୃଥବୀକୁ ଚିରକାଳ ଲାଗି ଯୁଦ୍ଧକୁ ବିଦାୟ ଦେବାର ଗ୍ୟାରେଣ୍ଟି ଦିଏ ।



# ଅନନ୍ତ ପଟ୍ଟନାୟକଙ୍କ କାବ୍ୟିକ ଅଙ୍ଗୀକାର

ପଚାଶ ବର୍ଷାଧିକକାଳ କବି ଅନନ୍ତ ପଟ୍ଟନାୟକଙ୍କର ସାହିତ୍ୟସାଧନା । ୭୪ ବର୍ଷରେ ତାଙ୍କର ଦେହାନ୍ତ ଓଡ଼ିଶାର ସାହିତ୍ୟିକ, ସାଂସ୍କୃତିକ, ସାମାଜିକ ଜୀବନରେ ଏକ ଶୂନ୍ୟତା ସୃଷ୍ଟି କରିଦେଇଛି । ଅବଶ୍ୟ ସିଏ ବା ଅନ୍ୟ କେହି ସାହିତ୍ୟସ୍ରଷ୍ଟା ଅମରତ୍ୱ ପାଆନ୍ତେ ନାହିଁ । ଅପର ଦିଗରୁ ବିଚାର କଲେ ସେ କବି ସାହିତ୍ୟିକ ରୂପରେ ଆବର୍ଭାବ ହେବା ପୂର୍ବରୁ ଓଡ଼ିଶାର ସାହିତ୍ୟ ରାଜ୍ୟରେ ଉଜ୍ଜ୍ୱଳ ନକ୍ଷତ୍ରମାନେ ଯେ ନଥିଲେ ନୁହଁ, ଅବା ତାଙ୍କ ଅନ୍ତେ ଯେ ସାହିତ୍ୟ ଜଗତରେ ନୂତନ ନକ୍ଷତ୍ରମାନେ ଉଭାସିତ ହେବେ ନାହିଁ, ନୁହଁ । ସେହି ଦୃଷ୍ଟିରୁ କ୍ଷୁଦ୍ର ସୀମା, ସରହଦ ପରିସରରେ ତାଙ୍କ ଜୀବନର ମୂଲ୍ୟାୟନ କଲାବେଳେ ତାଙ୍କର ବୈଶିଷ୍ଟ୍ୟ କ'ଣ ତାହା ଦର୍ଶାଇବା ସମୀଚୀନ ହେବ ।

ତାଙ୍କ ବ୍ୟକ୍ତିଗତ ଜୀବନ ଆଲୋଚନା କଲେ ଦେଖାଯାଏ ତାହା ସମଷ୍ଟିଗତ ଜୀବନ ଭିତର ଦେଇ ପ୍ରସ୍ଫୁଟିତ ଓ ବିକାଶିତ ହୋଇଛି । ଏକ ନିର୍ଦ୍ଦିଷ୍ଟ ସମଷ୍ଟି ଭିତରେ ସେ ତାଙ୍କ ଆଦ୍ୟ ବ୍ୟକ୍ତିତ୍ୱକୁ ଉନ୍ମେଷ କରାଇଛନ୍ତି । ସେହେତୁ ତାଙ୍କ ଜୀବନୀ ଓ ତାଙ୍କ ସୃଷ୍ଟିରେ ଯେଉଁ ପରିବେଶ, ଯେଉଁ ପରିସ୍ଥିତି ସହାୟକ ହୋଇଛି, ଯେଉଁ ବନ୍ଧୁ, ସାଥୀ ଗୋଷ୍ଠୀ ସହାୟକ ହୋଇଛନ୍ତି ଓ ଯେଉଁ ପରିସ୍ଥିତି ସହାୟକ ହୋଇଛି, ଯେଉଁ ମତାଦର୍ଶ ସହାୟକ ହୋଇଛି ଏବଂ ପରିବେଷ୍ଟନୀ ଭିତରେ କିପରି ତାଙ୍କର ସ୍ୱକୀୟ ପ୍ରତିଭା ପ୍ରସ୍ଫୁଟିତ ହୋଇଛି ତାହାର ସାମାନ୍ୟ ଅବତାରଣା ଆବଶ୍ୟକ ହୋଇପଡ଼େ ।

ତାଙ୍କର ଜୀବନର ଆଭିମୁଖ୍ୟ, ଜୀବନର ମତାଦର୍ଶ ହିଁ ତାଙ୍କ ସୃଷ୍ଟିରେ ପ୍ରତିଫଳିତ ହୋଇଛି । କବି ଅନନ୍ତ ଥିଲେ ଜଣେ ଅଙ୍ଗୀକାରବଦ୍ଧ କବି, ଲେଖକ, ଶିଳ୍ପୀ, ଯାହାଙ୍କୁ କୁହାଯାଏ କମିଟେଡ୍ । ତାଙ୍କର ଅଙ୍ଗୀକାର ଥିଲା ସାମ୍ରାଜ୍ୟବାଦର ବିରୋଧତା; ସ୍ୱଦେଶର ଓ ସବୁ ପରାଧୀନ ଦେଶର ମୁକ୍ତି ଓ ସ୍ୱାଧୀନତା ଲାଗି ଚାଲିଥିବା ସଂଗ୍ରାମ ପ୍ରତି ଅକୁଣ୍ଠ ସମର୍ଥନ; ବର୍ଣ୍ଣବୈଷମ୍ୟ, ଜାତିଆଣଭେଦଭାବ, ଧର୍ମୀୟମତାନ୍ଧତାର ବିରୋଧିତା । ସେ ଥିଲେ ଯୁଦ୍ଧ ବିଭୀଷିକାର ବଇରୀ ଓ ଯୁଦ୍ଧଖୋରମାନଙ୍କ ଲେଖନୀ-ଶତ୍ରୁ; ତାଙ୍କର ଅଙ୍ଗୀକାର ଥିଲା ନିଷ୍ପେଷିତ, ଦଳିତ, ଶୋଷିତ ମେହନତ୍‌କାରୀ ଜନସାଧାରଣଙ୍କ ପ୍ରତି ଦରଦ ଏବଂ ସେଥିରୁ ସେମାନେ ମୁକ୍ତି ଲଭିବା ପାଇଁ ଆହ୍ୱାନ । ସେହେତୁ ପରଜୀବୀ, ପରାଙ୍ଗପୁଷ୍ଟଙ୍କ ବିରୋଧରେ କଟାକ୍ଷ । ସେହେତୁ ସେ ଥିଲେ ପକ୍ଷଭୁକ୍ତ, ପାର୍ଟିଜାନ - ନିଷ୍ପକ୍ଷ ବା ନିରପେକ୍ଷ ନଥିଲେ ।

ତାଙ୍କ ସମଗ୍ର ରଚନାରେ ଏହିପ୍ରକାର ଧାରାବାହିକତା, ଅବିଚ୍ଛିନ୍ନତା ମିଳିଥାଏ । ସବୁ ସୃଷ୍ଟିରେ ଏହି ବିଶ୍ୱ ଦୃଷ୍ଟିକୋଣର ଆବେଦନ ଓ ସମ୍ବେଦନର ସ୍ୱାକ୍ଷର ମିଳେ । ସେହି ପଥରୁ ସେ ଅପସରି ଯାଇନାହାନ୍ତି, ଯାହା କିଛି ନୂତନ, ଯାହା କିଛି ପ୍ରଗତିଶୀଳ, ଯାହାକିଛି ମାନବିକ ତାକୁ ତାଙ୍କ ସୃଷ୍ଟିରେ ଆଗେଇ ନେବାକୁ ପ୍ରବଣତା ଓ ସେଥିରେ ତାଙ୍କର ଅପୂର୍ବ ସାଫଲ୍ୟ ।

ପୁରୀ ଜିଲ୍ଲା, ବାଲିପାଟଣା ଥାନା ଚଣାହାଟ ଗାଁର ଏକ ସମ୍ଭ୍ରାନ୍ତ ପରିବାରରେ ତାଙ୍କର ଜନ୍ମ । ଅଥଚ ସେ ସମ୍ଭ୍ରାନ୍ତ ସଭ୍ୟତାର ବିରୋଧରେ ତାଙ୍କର ସଂଗ୍ରାମ ତାଙ୍କ ରଚନା ଓ ସୃଷ୍ଟିରେ । ପିତା ଜୟକୃଷ୍ଣ ପଟ୍ଟନାୟକ ଓ ମା' ମହାଦେଈଙ୍କର ମୃତ୍ୟୁ ହୁଏ ଅନନ୍ତ ମାତ୍ର ୩ ବର୍ଷର ଓ ତାଙ୍କ ସାନଭାଇ, ଓଡ଼ିଶାର ଯିଏ ଜଣେ ବିଶିଷ୍ଟ ଜନନାୟକ ହେଲେ ଗୁରୁଚରଣଙ୍କର ବୟସ ମାତ୍ର ୪ ମାସ । ସ୍ୱାମୀଙ୍କ ମୃତ୍ୟୁରେ ମ୍ରିୟମାଣ । ପତ୍ନୀ ଆତ୍ମହତ୍ୟା କରି ଗୋଟିଏ କୂଅରେ ଡ଼େଇଁଗଲେ ।

ଦୁଇଟି ବାପାମା ଛେଉଣ୍ଡଙ୍କୁ ଆଈ ମା' ଓ ପରେ ପିଇସା ସତ୍ୟବାଦୀ ଦାସ ଓ ଦାଦା କୃଷ୍ଣଚନ୍ଦ୍ର ଲାଳନପାଳନ କଲେ ।

ଅନନ୍ତଙ୍କ ଉପରେ ନିଷ୍ଚିତ ବଂଶଗତ ସାହିତ୍ୟିକ ପ୍ରଭାବ ଆଦ୍ୟ ଛାତ୍ରାବସ୍ଥାରେ ପଡ଼ିଥିଲା । ତାଙ୍କ ପିତାମହ ହରିହର ସେ କାଳର 'ଇନ୍ଦ୍ର ଧନୁ' ଓ 'ବିଜୁଳି' ପତ୍ରିକାରେ ଲେଖାଲେଖି କରୁଥିଲେ । ଓଡ଼ିଶାରେ ଆଉ ଜଣେ ବରେଣ୍ୟ ଦେଶପ୍ରେମୀ କବି କୃଷ୍ଣମୋହନ ପଟ୍ଟନାୟକ ତାଙ୍କର ଖୁଡ଼ୁତା । ବାସ୍ତବିକ ଅନନ୍ତଙ୍କ ପରିବାର ଏକ କବି-ଲେଖକଙ୍କ ପରିବାର । ତାଙ୍କ ଭାଇ ଗୁରୁଚରଣ, ଭଉଣୀ ବ୍ରହ୍ମୋତ୍ରୀ ମହାନ୍ତି, ବୀଣା ମହାନ୍ତି, ନିରୁପମା ରଥ, ଭଗ୍ନୀପତି ପ୍ରାଣନାଥ ପଟ୍ଟନାୟକ ଓ ଗଙ୍ଗାଧର ରଥ, ପତ୍ନୀ ନୀରଦପ୍ରଭା ଓ ପୁତ୍ର ଅମରେଶ ନିଜ ନିଜ କ୍ଷେତ୍ରରେ କବି ଓ ଲେଖକ ।

ଆଦ୍ୟ ପାଠପଢ଼ା ତାଙ୍କର ପୁରୀରେ । ୧୯୩୦-୩୨ର ଆଇନଅମାନ୍ୟ ଆନ୍ଦୋଳନ, ଲୁଣମରା, ବ୍ରିଟିଶ ତିଆରି ପଦାର୍ଥ ବାସନ୍ଦ, ଅଫିମ ଗଞ୍ଜେଇ ଦୋକାନରେ ପିକେଟିଂ । ଛାତ୍ର ଅନନ୍ତ କଂଗ୍ରେସ ଶିବିରରେ ସ୍ୱେଚ୍ଛାସେବକ । ସେ କରାବରଣ କରି ନଥିଲେ । ମାତ୍ର ସ୍ୱାଧୀନତା ହାସଲ ଲାଗି ତାଙ୍କର ଦେଶପ୍ରେମୀମାନଙ୍କ ସଂସ୍ରବ ହେତୁ ଶିକ୍ଷାଦଣ୍ଡ ମିଳିଲା । ସେ ବର୍ଷେକାଳ ପୁରୀରେ ଉଚ୍ଚଶିକ୍ଷାରୁ ବଞ୍ଚିତ ହେଲେ । ପରବର୍ତ୍ତୀ ବର୍ଷ କଟକ ଆସି କୌଣସିମତେ ଉଚ୍ଚଶିକ୍ଷା ଲାଭ କରିବାର ବ୍ୟବସ୍ଥା କରିନେଲେ । ରେଭେନ୍ସା କଲେଜରେ ଏହି ଯୁବକ ଆଉ ଚାରିଜଣ ସହପାଠୀ ମିଶି ଏକ ସାଥୀବନ୍ଧୁ ଗୋଷ୍ଠୀ ଗଠନ କଲେ । ସେଥିରେ ରହିଲେ ତାଙ୍କ ସହିତ ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାଏତ୍, ଅଶୋକ ରାଓ ଏବଂ ପରମାନନ୍ଦ ମହାନ୍ତି (ପରେ ଯିଏ ଓଡ଼ିଶା ସରକାରଙ୍କ ପି.ଆର.ଓ ହୋଇଥିଲେ) ।

ଏହି ରେଭେନ୍ସା କଲେଜରେ ଶିକ୍ଷା ଓ ନୂତନ ବନ୍ଧୁ ଗୋଷ୍ଠୀର ଆଭିମୁଖ୍ୟ ଅନ୍ୟ ଛାତ୍ରମାନଙ୍କୁ ପ୍ରଭାବିତ କଲା ।

୧୯୩୪-୩୫ ମସିହା । ସ୍ୱାଧୀନତା ସଂଗ୍ରାମର ପ୍ରଧାନ ସଂଗଠନ କଂଗ୍ରେସ । ମାତ୍ର ସ୍ୱାଧୀନତା ସଂଗ୍ରାମର ରୂପରେଖ, ସ୍ୱାଧୀନତା ଅର୍ଜନ ପରବର୍ତ୍ତୀ ସମାଜ କିପରି ଗଠିତ ହେବ ସେଥିଲାଗି ମତାଦର୍ଶର ସଂଘର୍ଷ ଏକ ଭାରତୀୟ ଧାରା । ଏତିକିବେଳେ ଖୁବ୍ ଜୋର୍‌ରେ ପ୍ରବେଶ କଲା କଂଗ୍ରେସ ସଂଗଠନ ଭିତରେ ସମାଜବାଦୀ ଭାବାଧାରା । କଂଗ୍ରେସରେ ପ୍ରତିଷ୍ଠିତ ବ୍ୟକ୍ତି ନବକୃଷ୍ଣଚୌଧୁରୀ ଏବଂ ତାଙ୍କ ପତ୍ନୀ ମାଳତୀଚୌଧୁରୀ ସମାଜବାଦ ପ୍ରତି ଆକୃଷ୍ଟ । ଏହି ତରୁଣ ଗୋଷ୍ଠୀଙ୍କ ସେ ଦୁହିଁଙ୍କ ସହିତ ରାଜନୈତିକ ସମ୍ପର୍କ ଘନିଷ୍ଠ ହୋଇଗଲା । ଏମାନଙ୍କ ସହିତ ମିଳିତ ହେଲେ ଭଗବତୀଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ଗୋକୁଳ, ପ୍ରାଣନାଥ ଏମିତି ବହୁ ଯୁବକ ଓ ସ୍ୱାଧୀନତା ସଂଗ୍ରାମୀ ।

ଏମାନଙ୍କ ଦ୍ୱାରା ଗଠିତ ଗଂଗ୍ରେସ ସୋସାଲିଷ୍ଟପାର୍ଟିରେ ଅନନ୍ତ ଜଣେ ପ୍ରମୁଖ ସଦସ୍ୟ । ଏହି ପ୍ରକ୍ରିୟା ଭିତର ଦେଇ ଏହି ତରୁଣମାନେ ମଧ୍ୟ ବେଆଇନ କମ୍ୟୁନିଷ୍ଟପାର୍ଟି ପ୍ରତି ଆକୃଷ୍ଟ ହେଲେ ।

୧୯୩୬ ବେଳକୁ ଭାରତରେ ଭାରତର ସାହିତ୍ୟ-ରାଜ୍ୟରେ ଏକ ଆଲୋଡ଼ନ । ସାହିତ୍ୟିକମାନେ ସ୍ୱାଧୀନତା, ମୁକ୍ତି, ସମାଜବାଦ ଓ ମାନବୀୟ ପ୍ରଗତି ପାଇଁ ଅଙ୍ଗୀକାରବଦ୍ଧ ହେବାଲାଗି ଆହ୍ୱାନ । ପ୍ରେମଚାନ୍ଦ, ମୁଲକରାଜ ଆନନ୍ଦ, ଗୋପାଳ ହାଲଦାର, ମାଣିକ ବନ୍ଦୋପାଧ୍ୟାୟଙ୍କ ଭଳି ଭାରତରେ ସେ କାଳରେ ଶ୍ରେଷ୍ଠ କବି-ସାହିତ୍ୟିକମାନେ ପ୍ରଗତିଶୀଳ ଲେଖକ ସଂଘ ଗଠନ କରିବା ପୂର୍ବରୁ ୧୯୩୫ ନଭେମ୍ବର କଟକ ଶ୍ରୀରାମଚନ୍ଦ୍ର ଭବନରେ ୭ଦିନ ବ୍ୟାପୀ ସାହିତ୍ୟ ସମାରୋହରେ ଗଠିତ ହେଲା 'ନବଯୁଗ ସାହିତ୍ୟ ସଂସଦ' । ସେଥିରେ ଜଣେ ମୁଖ୍ୟ ପ୍ରବକ୍ତା ଥିଲେ ଅନନ୍ତ । ସେହି ସଂସଦର ଉଦ୍‌ବୋଧନୀ ସଙ୍ଗୀତ ଲେଖିଥିଲେ ଅନନ୍ତପଟ୍ଟନାୟକ ଓ କଣ୍ଠଦାନ କରିଥିଲେ ଶ୍ରୀମତୀ ମାଳତୀଚୌଧୁରୀ ।

ଆବେଦନ ଥିଲା ନୂତନ ତରୁଣକୁଳଙ୍କୁ -

"ନବୀନଯୁଗର ତରୁଣ ଜାଗ
ଜାଗ ବନ୍ଧନହରା,
ବକ୍ଷ ଶୋଣିତେ ଲକ୍ଷ ଜୀବନେ
ଖେଳାଅ ଆଲୋକଧାରା ।
ଛିନ୍ନ କରରେ ବନ୍ଧନ ରାଜି
କ୍ରନ୍ଦନ ହେଉ ଶେଷ,
ଲୁପ୍ତ ହେଉରେ ଜାତି-ଉପଜାତି
ଖଣ୍ଡିତ ଶତ ଦେଶ ।"

ଏହିଠାରୁ ହିଁ ତାଙ୍କର ଅଙ୍ଗୀକାର ସବୁ ବନ୍ଧନକୁ ଛିନ୍ନ କରିବାଲାଗି ଅଭିପ୍ରେତ

ହୋଇରହିଲା । ନବଯୁଗ ସାହିତ୍ୟ ସଂସଦ ଓ ତା'ର ମୁଖପତ୍ର ଭଗବତୀଚରଣଙ୍କ ସମ୍ପାଦନାରେ ମାତ୍ର ୬ଟି ସଂଖ୍ୟାରେ ପ୍ରକାଶିତ ପତ୍ରିକା 'ଆଧୁନିକ'ର ସୃଷ୍ଟି କଲା ଓଡିଶା ସାହିତ୍ୟ ରାଜ୍ୟରେ ଏକ ନୂତନଧାରା । ଅନନ୍ତ ପଟ୍ଟନାୟକ ସେଥିରେ ନିଜକୁ ସାମିଲ କରିନେଲେ । ଏହା ସାହିତ୍ୟ କ୍ଷେତ୍ରରେ ଏକ ଜଳଛାୟା ।

ଗୁରୁଗାର୍ଜନ ଗଭର୍ଣ୍ଣମେଣ୍ଟଙ୍କ ବିରୋଧୀ ସଂଗ୍ରାମରେ ଅନନ୍ତ ।

ଏହି ୧୯୩୬ ରେ ଭାରତର ଛାତ୍ର ସମାଜକୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ଲାଗି, ସମାଜବାଦ ଆଣିବା ଲାଗି, ପ୍ରତିକ୍ରିୟାର ଦୁର୍ଗଗିରି ପ୍ରଗତିର ଆଲୋକ ସନ୍ଧାନ କରିବା ପାଇଁ ଗଢ଼ାହେଲା ଅଖିଳଭାରତ ଛାତ୍ରସଂଘ । ଅନନ୍ତ ସାଙ୍ଗସାଥୀମାନଙ୍କ ସହିତ ମାନ୍ଦ୍ରାଜ ସମ୍ମିଳନୀକୁ ଯାଇ ଓଡ଼ିଶାରେ ଛାତ୍ରସଂଘ ପ୍ରତିଷ୍ଠା, ସମ୍ମିଳନୀ ପାଇଁ ଗଠିତ ଅଭ୍ୟର୍ଥନା କମିଟିର ସମ୍ପାଦକ ହେଲେ । ସଫଳ ସମ୍ମିଳନୀ ଟାଉନହଲରେ ଶ୍ରୀଯୁକ୍ତ ହରିହର ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ତାଙ୍କରି ଗାନ "ଜଳିଲା ଯେ ଦୀପ ଆଜି ଜଳାଅ ଜଳାଅ ତାରେ...." ପ୍ରକୃତରେ ପ୍ରଜ୍ୱଳିତ ହୋଇଉଠିଲା । ସେ ଓ ତାଙ୍କ ସାଥୀମାନେ ଗଢ଼ିଥିବା ଛାତ୍ରସଂଘ ସ୍ୱାଧୀନତା ସଂଗ୍ରାମକୁ କେବଳ ବଳିଷ୍ଠ କରିଥିଲା ନୁହେଁ, ତାହାର ନେତୃବର୍ଗ ସେ କାଳରେ ଓ ପରବର୍ତ୍ତୀକାଳରେ ବିଭିନ୍ନ ରାଜନୈତିକ ଦଳର ତୁଙ୍ଗ ନେତା ହେଲେ, କେନ୍ଦ୍ରମନ୍ତ୍ରୀ ହେଲେ, କେତେ ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀ ହେଲେ । ସେହି ଛାତ୍ରଆନ୍ଦୋଳନର ଆହ୍ୱାନ ଥିଲା ଗୁରୁଗର୍ଜନ ଗଭର୍ଣ୍ଣମେଣ୍ଟ ବିରୋଧରେ ସଂଗ୍ରାମ । ଆଜି ଏହାର କଦର୍ଥ କରାଯାଇପାରେ । ମାତ୍ର ସେତେବେଳେ ବ୍ରିଟିଶ ଅନୁଗତ ଗୁରୁମାନେ ପିଲାଙ୍କୁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବାକୁ ବାରଣ କରୁଥିଲେ, ବହିଷ୍କାର କରି ଦେଉଥିଲେ । ଗାର୍ଜନମାନେ କହୁଥିଲେ ମୋ ପୁଅ ପାଠପଢ଼ି ହାକିମ ହେଉ, ଛତରାଙ୍କ ସଙ୍ଗେ ମିଶି ଜେଲ୍ ନ ଯାଉ ଏବଂ ସରକାର ଥିଲା ବିଦେଶୀ ବ୍ରିଟିଶ ସାମ୍ରାଜ୍ୟବାଦୀ ସରକାର । ଛାତ୍ରନେତା ଅନନ୍ତ, ସୁରେନ୍ଦ୍ର କଲେଜ ଛାତ୍ରମାନଙ୍କ ପାଖରେ ପହଞ୍ଚି ଏହା ହିଁ ପ୍ରଚାର କରି ସେମାନଙ୍କୁ ଆକୃଷ୍ଟ କରୁଥିଲେ ।

ଏହି ସମୟରେ ଓଡ଼ିଶାରେ ଜମିଦାର, ଅତ୍ୟାଚାରୀ ମଠମହନ୍ତ, ମକଦ୍ଦମ ଓ ଗଡ଼ଜାତ ରାଜାମାନଙ୍କ ଅତ୍ୟାଚାର ବିରୋଧରେ ସଂଗ୍ରାମ ତେଜି ଉଠିଥାଏ, ବିଶେଷତଃ ଏହି ନବୀନ ଗୋଷ୍ଠୀ ଓ ନୂତନ ପାର୍ଟିଙ୍କ ନେତୃତ୍ୱରେ । ଚାଷୀମାନଙ୍କୁ ଜାଗ୍ରତ କରିବାକୁ, ନିଜ ଅଧିକାର ସମ୍ପର୍କରେ ସଚେତନ କରିବାକୁ ଅନନ୍ତଙ୍କ ଗାନ ଗାଁ ଗାଁରେ ଗୀତ ହେଲା ବଡ଼ବଡ଼ ସଭାରେ, ବୈଠକୀସଭାରେ । ତାଙ୍କର ଏପରି ଆଦ୍ୟ ସୃଷ୍ଟିର ପରିଚୟ ହେଲା -

"ଜୀବନ ଦେବାକୁ ଢାଳିଲୁ ରକ୍ତ
ଗଢ଼ିଲୁ ସଉଧମାଳା,
ଆମରି ଲାଗିରେ ଶାସନ ଶକ୍ତ

ଆମେରେ ସର୍ବହରା ।
ଝାଞ୍ଜି ପବନ ସହିରେ ସଘନ
ଗହିରେ ରୋଇଲୁ ଧାନ,
ବରଷା କାଦୁଅ ଚକଟି କେତେରେ ଶୀର୍ଣ୍ଣ
କରିଲୁ ପ୍ରାଣ ।
ପଉଷ ପ୍ରଭାତେ କାଟିଲୁ ଶସ୍ୟ
ହସିଲେ ନିଖିଳବାସୀ,
ଅତ୍ୟାଚାରୀର କରାଳ କବଳ
ନେଲାଟି ସକଳ ଗ୍ରାସି ।"

ଏହା କର୍ମପ୍ରେରଣାର କବିତା -

ସେମିତି ମୁଲକଯାକର ମାଲିକ ଚାଷୀ
ମଜୁରିଆକୁଲି ହେ ଉପବାସୀ,
ତୋଳିଧର ତୋର ପତାକା ଆସି
ତୋହରି ରକତେ ଲାଲ" ।

ଏହି କାଳଟି ତାଙ୍କର ପ୍ରଥମ ପ୍ରକାଶନ 'ରକ୍ତଶିଖା' ର କାଳ । କବି ଅନନ୍ତ ତାଙ୍କ କାବ୍ୟିକ ସୃଷ୍ଟିର ପ୍ରେରଣା ପାଉଥିଲେ ଏହିସବୁ ଜନସଂଗ୍ରାମରୁ । ସେମାନଙ୍କ ଦୁଃଖଦୁର୍ଦ୍ଦଶାକୁ ଦେଖି ସେ ଖାଲି ବ୍ୟଥିତ ହେଉ ନଥିଲେ । ସେଥିଲାଗି ଗଡଜାତ ପ୍ରଜା-ଆନ୍ଦୋଳନରେ ସେ ସାମିଲ ହୋଇଗଲେ । ବ୍ରିଟିଶ ପୁଲିସ ଢେଙ୍କାନାଳ ରଜାଙ୍କ ଗାଦୀରକ୍ଷା ପାଇଁ ୧୯୩୮ ସେପ୍‌ଟେମ୍ବର ୧୧ରେ ଗୁଳିକରି ହତ୍ୟା କରିଥିଲା ୬ ଜଣ ପ୍ରଜାମଣ୍ଡଳ କର୍ମୀଙ୍କୁ । ସେମାନଙ୍କ ଶବ ଅଣାଗଲା ଟ୍ରେନ ଯୋଗେ କଟକ । କଟକରେ ବିରାଟ ଶବ ପଟୁଆର, ଛ'ଟି ଶଗଡ଼ରେ ୬ଟି ଶବ ଷ୍ଟେସନରୁ ଯିବ ଖାନନଗର । ଶଗଡ଼ିଆ ୬ ଜଣଙ୍କ ମଧ୍ୟରେ ଅନ୍ୟତମ ଥିଲେ ଅନନ୍ତ ସାଙ୍ଗକୁ ବୈଦ୍ୟନାଥ, ସଚ୍ଚି, ବିଶ୍ୱନାଥ, ରବି ଘୋଷ, ଗୋବିନ୍ଦ ।

ଗଡ଼ଜାତ ପ୍ରଜା ଆନ୍ଦୋଳନକୁ ନିର୍ଦ୍ଦେଶ ଓ ଉପଦେଶ ଦେବା ପାଇଁ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନେତାମାନଙ୍କୁ କଟକରୁ "ରଣଭେରୀ" ନାମକ ପ୍ରଥମେ ସାଇକ୍ଲୋଷ୍ଟାଇଲ ଓ ପରେ ଛାପା ପ୍ରଚାରପତ୍ର ସମ୍ପାଦନାରେ ମଧ ସେ ଥିଲେ ଅଂଶୀଦାର ।

ଢେଙ୍କାନାଳ ରାଜାଙ୍କ ଅତ୍ୟାଚାରରେ ରାଜ୍ୟ ଛାଡ଼ି ପଳାଇ ଆସିଥିବା ନାରୀ ପୁରୁଷ ବୃଦ୍ଧ ଶିଶୁଙ୍କ ପାଇଁ ମୋଗଲବନ୍ଦୀ ଅର୍ଥାତ୍ ସେ କାଳର ବ୍ରିଟିଶ ଓଡ଼ିଶାରେ ବୁଡ଼ାପଙ୍କ, ଘୋଳପୁର, କଳାଣ୍ଡୋ କ୍ୟାମ୍ପ ଖୋଲା ଯାଇଥାଏ । କଳାଣ୍ଡୋ କ୍ୟାମ୍ପର ଦାୟିତ୍ୱରେ ଅନନ୍ତ, ବୈଦ୍ୟନାଥ । ବ୍ରାହ୍ମଣୀ ଏପଟ ଏହି ମୋଗଲବନ୍ଦୀ ଗାଁକୁ ଯିବା ବାଟରେ କବାଟବନ୍ଧ ନାମକ ଗାଁ ଢେଙ୍କାନାଳ

ରାଜ୍ୟର । କଟକକୁ ରାତିରେ ସାଇକେଲ ଯୋଗେ ଅନନ୍ତ ଆଗରେ ବୈଦ୍ୟନାଥ ଛୁଟେଇଲେ ସାଇକେଲ - "ରହିଲୁ ଅନ୍ତା - ମୁଁ ଯାଉଛି" ଚିତ୍କାର କରି ।

ଢେଙ୍କାନାଳର ଚାଳଛପର, ଢିଙ୍କି ପଡ଼ିଥିବା ଗୋଟିଏ ଘର ସ୍ପେଶାଲ ଜେଲ୍‌ରେ ଅନନ୍ତ ପଟ୍ଟନାୟକ ଓ ରବି ଘୋଷଙ୍କୁ ନିବଦ୍ଧ କରାଗଲା, ନିଆଗଲା ମଢ଼ି (ବର୍ତ୍ତମାନ କାମାକ୍ଷାନଗର) ଜେଲ୍‌କୁ । ଅନନ୍ତଙ୍କୁ ଧରିବାବେଳେ ନିର୍ମମ ପୁଲିସ ତାଙ୍କ ମଳଦ୍ୱାରରେ ଆଘାତ କରି ଯନ୍ତ୍ରଣା ଦେଇଥିଲେ ।

ବର୍ଷାଧିକ କାଳ ଗଡ଼ଜାତ ଜେଲରେ ରହି ମୁକ୍ତି ପାଇ ଆସି କେତୋଟି ମାସ ମାତ୍ର ବାହାରେ ଅଛନ୍ତି ଏହି ବିପ୍ଳବୀ କବିଙ୍କୁ ନିସ୍ତାର ଦେଲା ନାହିଁ ବ୍ରିଟିଶ ସରକାର । ୧୯୪୦ ଜୁନ୍‌ରେ କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା ସୃଷ୍ଟି କରି ଅନନ୍ତ ତାଙ୍କ ଅନ୍ୟସାଥୀ ଭଗବତୀ, ଗୁରୁଚରଣ, ଗୋକୁଳି, ଶରତ, ବିଜୟ, ବନମାଳୀ, ଦୁର୍ଗା ପ୍ରଭୃତିଙ୍କୁ ଧରି ନିଭୃତ ଜେଲ୍‌ରେ ବିଚାର କରି ଜେଲଦଣ୍ଡରେ ଦଣ୍ଡିତ କରାଗଲା । ଅନୁଗୋଳ ଜେଲ୍‌ରେ କବି ଲେଖି ବସନ୍ତି ପ୍ରକୋଷ୍ଠର ଗୋଟିଏ କୋଣକୁ ଚାଲିଯାଇ କବିତା । ଅନ୍ୟମାନେ ଅର୍ଥନୀତି, ଇତିହାସ, ସମାଜବାଦୀ ଗ୍ରନ୍ଥ ଚର୍ଚ୍ଚା କଲାବେଳେ ତାଙ୍କୁ କବିତା ଲେଖିବା ଦେଖି ବୈଦ୍ୟନାଥ ପରିହାସ କରି ଘରକାଟି ପଦକୁ ପଦ ମିଳେଇ ଲେଖିଥିବା ଅଦ୍ଭୁତ କବିତା ତାଙ୍କ ଆଗରେ ହଲେଇ ପରିହାସ କରନ୍ତି ।

ଏହିପରି ଜେଲଜୀବନ ଓ ସକ୍ରିୟ ରାଜନୀତିରେ ସେ ୧୯୫୦ ଯାଏ ଅଭ୍ୟସ୍ତ ରହିଲେ ।

ପୃଥିବୀର ବିଭିନ୍ନ ଦେଶରେ ପ୍ରଗତିଶୀଳ, ମାନବଧର୍ମୀ, ବିପ୍ଳବୀ ସାହିତ୍ୟ ଓ ଚିରାୟତ ସାହିତ୍ୟର ଅନୁଶୀଳନ, ଭାରତର ତଥା ଓଡ଼ିଶାର ପୂର୍ବସୂରୀମାନଙ୍କ ସୃଷ୍ଟିର ଅନୁଶୀଳନ ତାଙ୍କୁ ଯେମିତି ପ୍ରଭାବିତ କରିଥିଲା - ସେମିତି ଗୋପବନ୍ଧୁ, ଜାତୀୟ କବି ବୀରକିଶୋର, ବାଞ୍ଛାନିଧି ପ୍ରଭୃତିଙ୍କ ଦେଶବତ୍ସଳ ସୃଷ୍ଟି, କାଳନ୍ଦୀଚରଣ ଓ ବୈକୁଣ୍ଠନାଥ (ଦୁହିଁଙ୍କ ସହିତ ତାଙ୍କର ଘନିଷ୍ଠ ଆତ୍ମୀୟତା ଥିଲା) ସହିତ ଯୋଗାଯୋଗ ତାଙ୍କୁ ପ୍ରଭାବିତ କରିଥିଲା ।

ଦ୍ୱିତୀୟ ମହାସମରର ଭୟାବହ ଧ୍ୱଂସଲୀଳା, ଫାସିଜିମର କରାଳରୂପ ତାଙ୍କ କବିପ୍ରାଣକୁ ବ୍ୟଥିତ କରିଥିଲା । ସେହି ଯୁଦ୍ଧରେ ନିହତ କୋଟିକୋଟି ଲୋକଙ୍କ ଆତ୍ମୀୟ ସ୍ୱଜନଙ୍କ ଘରେ କ୍ରନ୍ଦନର ରୋଳ । ଏଣେ ଉପନିବେଶଗୁଡ଼ିକୁ ହରାଇଥିବା, ଯୁଦ୍ଧପ୍ରିୟ ଶକ୍ତିମାନେ ସାମ୍ରାଜ୍ୟ ହରାଇଥିବାରୁ ଦେଶେ ଦେଶେ ସ୍ୱାଧୀନତା ସଂଗ୍ରାମର ଉଦ୍‌ବେଳନ ଦେଖାଦେଇଥିବାରୁ ଏବଂ ସମାଜବାଦର ପ୍ରସାର ଘଟୁଥିବାରୁ ଆଉ ଏକ ପ୍ରଳୟଙ୍କରୀ ଯୁଦ୍ଧର ପ୍ରସ୍ତୁତି ଆରମ୍ଭ କରିଦେଲେ । ହୀରୋସିମା ଓ ନାଗାସାକିର ପୁନରାବୃତ୍ତି କରି ପରମାଣୁ ବୋମା ନିକ୍ଷେପର ଧମକ ଦେଲେ ।

ଅନନ୍ତ ଧରିଲେ ଲେଖନୀ । ସୃଷ୍ଟି ହେଲା ‘ଶାନ୍ତିଶିଖା । ଯୁଦ୍ଧ ବିରୋଧରେ, ସୃଷ୍ଟି ପାଇଁ, ଜୀବନ ପାଇଁ ଶାନ୍ତି ପାଇଁ ସଂଗ୍ରାମର ଆହ୍ୱାନ; ମୃତ୍ୟୁ ବେପାରୀମାନଙ୍କୁ ଧିକ୍‌କାର ।

ଏହି ପ୍ରକାର ଚିରନ୍ତନତା, ଶାଶ୍ୱତତା ତାଙ୍କର ସମସ୍ତ ସୃଷ୍ଟିରେ, ସେ ଅଙ୍ଗୀକାରବଦ୍ଧ ହେଲେ ବି ତାଙ୍କ ସୃଷ୍ଟିଗୁଡ଼ିକ ପ୍ରଚାରଧର୍ମୀୟତାକୁ ସ୍ପର୍ଶ କରି ନାହିଁ । ତେଣୁ ସେଗୁଡ଼ିକର ଆବେଦନ କାଳଜୟୀ ।

କବି ଅନନ୍ତ ଚୌକି ଟେବୁଲରେ ବସି କବିତା ସୃଷ୍ଟି କରନ୍ତି ନାହିଁ । ଖଣ୍ଡେ ସପ ମଶିଣା ପଡିଥିବ, ପେଟତଳେ ତକିଆ ଥିବ, ହାମଡ଼େଇ ସେ ଲେଖୁଥିବେ, ଦୁଇତିନି କଠା ବିଡ଼ି ଆଉ ୭/୮ କପ୍ ଚା’ ତାଙ୍କୁ ସତେଜ କରି ରଖୁଥିବ ।

ତାଙ୍କ ସୃଷ୍ଟି ଗୁଡ଼ିକରେ ସନ, ତାରିଖ ନାହିଁ ସତ, ମାତ୍ର ସେଗୁଡ଼ିକର ବର୍ଗୀକରଣ କରିହେବ । ସମୟ କାଳ ନିର୍ଦ୍ଧାରଣ କରିହେବ ।

ଶତଶତ ଅପ୍ରକାଶିତ କବିତା ବ୍ୟତୀତ ଯାହାସବୁ ପ୍ରକାଶିତ ସେଗୁଡ଼ିକ ରକ୍ତଶିଖା, ଶାନ୍ତିଶିଖାକୁ ବାଦଦେଇ ହେଲେ ଅବାନ୍ତର, ଅଲୋଡ଼ା ଲୋଡ଼ା, ଛାଇଛିଟା, ଆର୍.ଏସ୍.ଏସ୍ ଆତତାୟୀ ଦ୍ୱାରା ମହାତ୍ମାଗାନ୍ଧୀଙ୍କ ମୃତ୍ୟୁରେ ‘ତର୍ପଣ କରେ ଆଜି’, ଅରଗଡ-ବରଗଡ଼, ଅରତୁ ରତୁ, କୌମୁଦୀ ଓ ମଦନ, ‘ସୂତ୍ରଟିଏ ସ୍ୱୀକୃତିର’ ରାଜନୈତିକ ଡୁଏଟ ‘କେଳାକେଲୁଣୀ’ ଏବଂ ଯନ୍ତ୍ରସ୍ଥ ଅଗଡ଼ମ ଓ ବଗଡ଼ମ । ସେ ବି କେତେକ ନାଟକ ରଚନା କରିଛନ୍ତି । ଚଳଚ୍ଚିତ୍ର ପାଇଁ ସେ ଚିତ୍ରନାଟ୍ୟ ରଚନା କରିଛନ୍ତି । ତାଙ୍କର ଗଳ୍ପ ସଂକଳନ ‘ଚଢ଼ା ଉତ୍ତରା’, ଏକ ସଫଳ ସୃଷ୍ଟି ।

ତାଙ୍କର କବିତାଗୁଡ଼ିକ ନୀଳକଣ୍ଠ ଦାସଙ୍କ ‘ନବଭାରତ’, ବାଳକୃଷ୍ଣ କରଙ୍କ ‘ସହକାର’ ‘ଝଙ୍କାର, ଆଧୁନିକ, ମୁକ୍ତିଯୁଦ୍ଧ, ନୂଆ ଦୁନିଆ ଓ ତାଙ୍କ କବିବନ୍ଧୁ ଗଡ଼ନାୟକଙ୍କ ଏକଚକ୍ର, ସର୍ବଶେଷରେ ସେ ସମ୍ପାଦନା କରୁଥିବା ଓଡ଼ିଶା ସରକାରଙ୍କ ଶିଶୁପତ୍ରିକା “ଶିଶୁ ଲେଖାରେ” । ଅନେକ ଆତ୍ମୀୟ ଓ ବନ୍ଧୁ ତାଙ୍କଠାରୁ ଶତଶତ ବିବାହ ଉପଲକ୍ଷେ ଗୀତିକା ଲେଖାଇ ନେଇଥାନ୍ତି ।

ସେ ଅନୁବାଦ ସାହିତ୍ୟରେ ଥିଲେ ସିଦ୍ଧହସ୍ତ - ଅନୁବାଦ ସାହିତ୍ୟ ତାଙ୍କର ନିଜର ସୃଷ୍ଟି । ଗର୍କିଙ୍କ ମା, ଗର୍କିଙ୍କ My apprenticeship ବା ଶିକ୍ଷାନବୀଶ, ସୋଲୋକୋଭଙ୍କ Fate of a Man ଅବା ଭାଗ୍ୟରୁ ଖିଏ, ଅନୁପମ ସୋଭିଏତ୍ ଶିଶୁ ସାହିତ୍ୟ ଲାଲ ଟୁକୁଟୁକୁ ସୂରଯ ଟିଏ କିଏରେ ନିଏ ? ‘ଗପୁଡ଼ା ମାଇଁଲୋ, ଧପୁଡି ମାଇଁ, କଷରା ଘୋଡ଼ା, ‘ସତ ହେଲା ମଣିଷର ସ୍ୱପ୍ନ’ ତାଙ୍କ ଅନୁବାଦ ସାହିତ୍ୟର ଅନ୍ତର୍ଭୁକ୍ତ । ତାଙ୍କ ଇଂରାଜୀ ଭାଷାରେ ଲିଖିତ କବିତାଗୁଚ୍ଛର ନାମ ହେଲା ‘ରିଭିଲେସନ’ । ବୋଧିଦ୍ରୁମ, ଅତନୁ ପ୍ରଭୃତି ଛଦ୍ମ ନାମରେ ତାଙ୍କର ଅନେକ କବିତା ପ୍ରକାଶିତ । ଭାରତର ସ୍ୱାଧୀନତା ଜୟନ୍ତୀ ଉପଲକ୍ଷେ ତାଙ୍କ ରଚିତ

ପୁସ୍ତକ ଓଡ଼ିଶାର ଅତୀତ ଓ ବର୍ତ୍ତମାନର ଏକ ଚମତ୍କାର ଆଲେଖ୍ୟ ବହନ କରେ ।

ଜୀବନରେ ପ୍ରକାଶକଙ୍କ ଅର୍ଥଲୋଭର ଶିକାର କିପରି ହେଲେ ତାହା ସେ ବେଳେବେଳେ ଦୁଃଖରେ ବର୍ଣ୍ଣନା କରିଥାନ୍ତି । ବିଗତ ଆୟୁ ପ୍ରକାଶକ ଉଦୟନାଥ ରଥ ଜଣେ ସ୍ୱାଧୀନତା ସଂଗ୍ରାମୀ । ଅନନ୍ତ ତାଙ୍କ ଅନୁରୋଧରେ ପ୍ରଥମଠାରୁ ୪ର୍ଥ ଶ୍ରେଣୀଯାଏ ପାଠ୍ୟପୁସ୍ତକ ଲେଖିଲେ । ଟେକ୍ସବୁକ୍ କମିଟି କିନ୍ତୁ ସେଥର ସେଗୁଡ଼ିକରୁ କୌଣସିଟିକୁ ମଞ୍ଜୁର କଲେ ନାହିଁ । ଅନ୍ୟବର୍ଷ ଜଣେ ପ୍ରଖ୍ୟାତ ପ୍ରକାଶକଙ୍କ ପୁତ୍ର ଉକ୍ତ ପୁସ୍ତକଗୁଡ଼ିକୁ ତାଙ୍କଠାରୁ ନେଇ ଏପରି କୌଶଳରେ ପ୍ରକାଶ କରି ମଞ୍ଜୁର କରେଇନେଲେ ଯେ ସାମାନ୍ୟ ପାରିଶ୍ରମିକ ବ୍ୟତୀତ କବି ଅନନ୍ତ ରୟାଲଟିରୁ ବଞ୍ଚିତ ହେଲେ ।

ଜାତୀୟକରଣ ପାଠ୍ୟପୁସ୍ତକଗୁଡ଼ିକ ପ୍ରକାଶନର ସରକାରୀ ଦାୟିତ୍ୱ ନିର୍ବାହ କାଳରେ ପ୍ରଥମରୁ ସପ୍ତମଶ୍ରେଣୀ ପର୍ଯ୍ୟନ୍ତ ପୁସ୍ତକଗୁଡ଼ିକର ପ୍ରକାଶନରେ ସମୟାନୁବର୍ତ୍ତିତା ରଖିବା ଲାଗି ସେ ଯେପରି ତତ୍ପର ଥିଲେ, ସେମିତି ସେହି ପୁସ୍ତକଗୁଡ଼ିକରେ ବିଷୟବସ୍ତୁଗୁଡ଼ିକ ଯେପରି ଯୁଗୋପଯୋଗୀ, ସର୍ବାଧୁନିକ ଓ ବିଜ୍ଞାନସମ୍ମତ ହେବ ସେଥିଲାଗି ସେ ଆପ୍ରାଣ ଉଦ୍ୟମ କରୁଥିଲେ । ଶିଶୁଲେଖାର ସମ୍ପାଦନା ତାଙ୍କର କୃତି ଓ କୃତିତ୍ୱର ପରିଚାୟକ ।

ସାମ୍ବାଦିକତା କ୍ଷେତ୍ରରେ ମଧ୍ୟ ସେ ନିଜର ପଟୁତାର ପ୍ରମାଣ ଦେଇଛନ୍ତି । ମଧୁସୂଦନ ମହାନ୍ତିଙ୍କ ଦ୍ୱାରା ସମ୍ପାଦିତ ଇଂରାଜୀ 'ଅବଜରଭର' ପତ୍ରିକା ଏବଂ ଉତ୍କଳମଣି ଗୋପବନ୍ଧୁଙ୍କ ସମାଜରେ ଡକ୍ଟର ରାଧାନାଥ ରଥଙ୍କ ଅନୁରୋଧରେ ସେ କିଛି ବର୍ଷ ସହକାରୀ ସମ୍ପାଦକର ଦାୟିତ୍ୱ ନିର୍ବାହ କରିଥିଲେ । କଲିକତାରେ ପ୍ରକାଶିତ ଓଡିଆ ସୋଭିଏତ୍ ଦେଶ ପତ୍ରିକା ବିଭାଗରେ କାମ କଲାବେଳେ ପଶ୍ଚିମବଙ୍ଗର ସାହିତ୍ୟରଥୀମାନେ ଅନନ୍ତଙ୍କୁ ଅଶେଷ ସମ୍ମାନ ଦେଉଥିଲେ ।

୧୯୮୧ ରେ ତାଙ୍କର 'ଅବାନ୍ତର' ପୁସ୍ତକଟି ଲାଗି ବିଳମ୍ବରେ ହେଉପଛେ ସାହିତ୍ୟ ଏକାଡ଼େମୀ ପୁରସ୍କୃତ କରିଥିଲେ । ଓଡ଼ିଶା ସାହିତ୍ୟ ଏକାଡ଼େମୀ ମଧ୍ୟ ତାଙ୍କୁ ଉପାୟନ ପ୍ରଦାନ କରିଥିଲେ । ଡକ୍ଟର ମହତାବଙ୍କ ପ୍ରଯୋଜିତ ବିଷୁବ ମିଳନରେ କବି ପଟ୍ଟନାୟକ ପୁରସ୍କୃତ ହୋଇଛନ୍ତି । ସେ ଦୁଇ ଦୁଇ ଥର ସୋଭିଏତ୍ ଦେଶ ନେହେରୁ ପୁରସ୍କାରରେ ଭୂଷିତ ହୋଇଚନ୍ତି ଏବଂ ଭାରତର ସବୁ ଭାଷାର ପୁରସ୍କୃତ ଶ୍ରେଷ୍ଠ ସାହିତ୍ୟିକମାନେ ସୋଭିଏତ୍ ରୁଷ ପରିଭ୍ରମଣରେ ଯାଇଛନ୍ତି । ଏସିଆର ପ୍ରଗତିଶୀଳ ସାହିତ୍ୟିକମାନଙ୍କ ଏକ ଆନ୍ତର୍ଜାତିକ ସମାବେଶ ସୋଭିଏତ୍ କାଜାଖାସ୍ତାନ ପ୍ରଜାତନ୍ତ୍ରର ରାଜଧାନୀ ଆଲମାଆଡ଼ାଠାରେ ଅନୁଷ୍ଠିତ ହୋଇଥିଲା; ଏସିଆ ମହାଦେଶର ସହସ୍ର ସାହିତ୍ୟରଥୀଙ୍କ ମଧ୍ୟରେ ଅନନ୍ତବାବୁ ଥିଲେ ଅନ୍ୟତମ ପ୍ରତିନିଧି ।

ତାଙ୍କର ସୃଷ୍ଟି ଓ ତାଙ୍କ ଜୀବନର ମୂଲ୍ୟାୟନ କଲାବେଳେ ନିଶ୍ଚିତ ଭାବରେ ସ୍ୱୀକାର କରିବାକୁ ହେବ ଯେ ତାଙ୍କର ସହକର୍ମୀ ପ୍ରତିଷ୍ଠିତ କବିମାନଙ୍କ ସହିତ ଦୃଷ୍ଟିକୋଣରେ ପାର୍ଥକ୍ୟ ଥିଲେ ମଧ୍ୟ ସେ ସମସ୍ତଙ୍କ ଦ୍ୱାରା ଆଦୃତ ହେଉଥିଲେ ଏବଂ ନୂତନ ବଂଶଧରର କବିମାନେ

ତାଙ୍କୁ ଅଶେଷ ସମ୍ମାନ ଦେଉଥିଲେ । ତାଙ୍କର ଶୈଳୀ, ତାଙ୍କର ଛନ୍ଦ ବିନ୍ୟାସ, ରୂପକଳ୍ପ, ଓଡିଶାର ନିପଟ ଗାଉଁଲି ଭାଷା ସହିତ ଆଧୁନିକ ଭାଷାର ସମନ୍ୱୟ, ଓଡ଼ିଶାର ପୁରାତନ ସାହିତ୍ୟର ପରମ୍ପରା ରକ୍ଷା ପ୍ରତି ତାଙ୍କର ଆଗ୍ରହକୁ ଏହି ନବୀନ ସ୍ରଷ୍ଟାମାନେ ଅନୁକରଣ କରିବାକୁ ପ୍ରୟାସ କରିଥାନ୍ତି ।

ଦୀର୍ଘ ୪୦ ବର୍ଷରୁ ଉର୍ଦ୍ଧ୍ୱକାଳ ସେ ସକ୍ରିୟ ରାଜନୈତିକ କର୍ମକାଣ୍ଡରୁ, କୌଣସି ରାଜନୈତିକ ପାର୍ଟିରୁ ନିଜକୁ ମୁକ୍ତ ରଖି କେବଳ ସାହିତ୍ୟସୃଷ୍ଟିରେ ମନୋନିବେଶ କରିଥିଲେ ସତ ମାତ୍ର ବିଶ୍ୱଶାନ୍ତି ଆନ୍ଦୋଳନ ଭାରତ-ସୋଭିଏତ୍ ମୈତ୍ରୀ ଆନ୍ଦୋଳନ, ଦକ୍ଷିଣ ଆଫ୍ରିକା ବର୍ଣ୍ଣ-ବିଦ୍ୱେଷ ବିରୋଧୀ ଆନ୍ଦୋଳନ, ବଙ୍ଗଳାଦେଶ ମୁକ୍ତି-ଆନ୍ଦୋଳନର ସଭା ସମାବେଶରେ ସେ ନିଜକୁ ସାମିଲ କରିବାକୁ, ତାହାର ଆୟୋଜନ କରିବାକୁ ସମୟ କରିପାରୁଥିଲେ ।

ମୃତ୍ୟୁର ଅଳ୍ପକାଳ ପୂର୍ବରୁ ସେ ବହୁ ବନ୍ଧୁ, ବିଶେଷତଃ ଯୁବ ଲେଖକ ଓ କଳାକାରମାନଙ୍କ ନବଯୁଗ ସାହିତ୍ୟ ସଂସଦର ପୁନଃପ୍ରତିଷ୍ଠା, ଓଡ଼ିଶା ଗଣନାଟ୍ୟ ସଙ୍ଗଠନର ପୁନଃବିନ୍ୟାସ ଲାଗି ଆବେଦନ କରି ସେଥିଲାଗି ନିଜେ ଖୁବ୍ ଉତ୍ସାହରେ ଲାଗି ପଡ଼ିଥିଲେ । ତାଙ୍କ ବ୍ୟକ୍ତିଗତ ଜୀବନର ଆଉ ଏକ କଥା ନ କହିଲେ ତାଙ୍କ ପ୍ରତି ଅନ୍ୟାୟ ହେବ । ଦୀର୍ଘ ଚାରିଦଶକ କାଳ ସେ ଯେଉଁ ପାର୍ଟିର ଆଦ୍ୟ ସଙ୍ଗଠକ ଥିଲେ ତା'ର ସଭ୍ୟପଦ ନେଉ ନଥିଲେ । ଶେଷ ପାଞ୍ଚବର୍ଷରେ ସେ ତାଙ୍କ ପୁରାତନ ଓ ନୂତନ ବନ୍ଧୁମାନଙ୍କୁ କହିଲେ ମୃତ୍ୟୁର ଡାକରା ଆସିଯାଉଛି । ମୁଁ ସକ୍ରିୟଭାବରେ କିଛି କରିବି ନାହିଁ - ପାର୍ଟିର ସାଙ୍ଗଠନିକ ଶୃଙ୍ଖଳାରେ କାମ କରିବାକୁ ଅକ୍ଷମ, ମାତ୍ର ସଭ୍ୟପଦ ନେବି । ପ୍ରକୃତରେ ନିୟମ ଅନୁସାରେ ତାଙ୍କ ଆୟର ଶତକଡ଼ା ଏକାଂଶ ଦେଇ ସେ ସଭ୍ୟପଦ ନେଇଥିଲେ । ଏହାହିଁ ସଂକ୍ଷିପ୍ତରେ କବି ଅନନ୍ତ ପଟ୍ଟନାୟକଙ୍କ ଜୀବନୀ ।

□□□

# କମ୍ୟୁନିଷ୍ଟ ଆନ୍ଦୋଳନ ବିକାଶରେ
# ବିପ୍ଳବୀ ଗୀତ, କବିତା

୧୯୩୪-୩୫ ଓଡ଼ିଶାର ରାଜନୈତିକ, ସାମାଜିକ, ସାଂସ୍କୃତିକ ଜୀବନରେ ଏକ ଘଟାନ୍ତର । ବ୍ରିଟିଶ ସାମ୍ରାଜ୍ୟବାଦର ନାଗଫାଶ ବନ୍ଧନରୁ ମୁକ୍ତି ଆନ୍ଦୋଳନର ୧୯୩୦-୩୨ ଦାବାନଳ ସ୍ତିମିତ ହୋଇଗଲା ପରେ ଦେଶବ୍ୟାପୀ ଯେପରି ଏକ ନୂତନ ଅଭ୍ୟୁତ୍‌ଥାନ ଆରମ୍ଭ ହୋଇଗଲା, ସେତେବେଳର ଓଡ଼ିଶା ମାଟି ମଧ୍ୟ ସେଥିରୁ ବାଦ ପାଇଲା ନାହିଁ । ସ୍ୱାଧୀନତାର ସଂଗ୍ରାମ ଲାଗି ନୂତନ ସଂଗ୍ରାମର ପଥ, ସେଇ ସଂଗ୍ରାମରେ ଭାଗ ନେବାକୁ ଜନସଂଖ୍ୟାର ନୂତନ ଅଂଶ, ନୂତନ ସାମାଜିକ ସ୍ତର, ନିମ୍ନ ସ୍ତରରେ ବହି ଆସିଥିବା ଆର୍ଥିକ ଶ୍ରେଣୀଙ୍କ ମଧ୍ୟରେ ଜାଗରଣ ଆଣିବା ଲାଗି ଅନ୍ୱେଷଣ ଚାଲିଲା । ବିଶ୍ୱଜୟୀ ସମାଜବାଦର ମତାଦର୍ଶ, ସୋଭିଏତ ଋଷରେ ଚାଷୀ ମୂଲିଆ ସରକାରର ଅଭୂତପୂର୍ବ ସଫଳତା, ଶୋଷଣ ଅତ୍ୟାଚାରର ବିଲୋପ, ସବୁ ଉପନିବେଶର ସ୍ୱାଧୀନତାର ସଂଗ୍ରାମକୁ ନବଚେତନା ଦେବାଭଳି ଭାରତର ସ୍ୱାଧୀନତା ସଂଗ୍ରାମର ପ୍ରଗତିଶୀଳ ଅଂଶକୁ ପ୍ରଭାବିତ କଲା ।

ବ୍ରିଟିଶ ଶାସନର ଲୌହ ଶାସନ । ଜମିଦାର, ରାଜ-ରାଜୁଡ଼ା, ସାହୁକାରମାନେ ତାର ଖୁମ୍ବ । ସେମାନଙ୍କ ଅତ୍ୟାଚାର ଜୁଲୁମର ସୀମା ନାହିଁ । ବେଠି, ବେଗାରୀ, ବେଆଇନ ପାଉଣା, ହତ୍ୟା, ନାରୀ ଧର୍ଷଣ, ଜେଲ ଜରିମାନା, ଜମି ଘରଦ୍ୱାର ନିଲାମ, ଘର କ୍ରୋକ, ଜୋର ଜବରଦସ୍ତି ସାମନ୍ତବାଦୀ ଶୋଷଣ ଓ ନିର୍ଯ୍ୟାତନା ବିରୁଦ୍ଧରେ ସଂଗ୍ରାମର ଆହ୍ୱାନ ଦେଇ ସ୍ୱାଧୀନତା ସଂଗ୍ରାମକୁ ନିଛକ ନିରାକାର ରୂପରୁ ସାକାର ରୂପ ଦେବାକୁ ଋଷ ବିପ୍ଳବର, ସମାଜବାଦୀ ମତାଦର୍ଶର ବାଣୀ ଓଡ଼ିଶା ଭୂଇଁରେ ମଧ୍ୟ ନିନାଦିତ ହେଲା ।

ସେହି ନୂତନ ଭାବଧାରାର ନୂତନ ଆବେଗ ଓ ରାଜନୈତିକ-ସାମାଜିକ ମତବାଦର ଆବାହନ କଲା ସେ କାଳର ନବ ଅଭ୍ୟୁଦୟ ସାହିତ୍ୟ, କବିତା, ଗୀତ-ରଚନା, ପ୍ରବନ୍ଧ ।

ସ୍ୱାଧୀନତା ସଂଗ୍ରାମ ବେଳରେ ମାତୃଭୂମିର ମୁକ୍ତି ପାଇଁ, ବିଦେଶୀ ସାମ୍ରାଜ୍ୟବାଦୀ ଶାସନର ବିଲୋପ ପାଇଁ ଚାରଣ କବି ବାଞ୍ଛାନିଧି, ବୀରକିଶୋରଙ୍କ ଜାତୀୟ ସଙ୍ଗୀତ ଆଲୋଡ଼ନ ସୃଷ୍ଟି କରିଥିଲା । ସେ ସବୁ ଗୀତ, କବିତାର ଆଧେୟ ଥିଲା ସାଧାରଣ । ମାତୃଭୂମିର ଶୃଙ୍ଖଳରୁ ମୁକ୍ତି, ସ୍ୱାଧୀନତା ଆଉ ଗଣତନ୍ତ୍ରର ପ୍ରତିଷ୍ଠା ଥିଲା ଆହ୍ୱାନ ।

ମାତ୍ର ଏ ଯୁଗରେ କାବ୍ୟ କବିତା ଗୀତର ଆଧାର ଓ ଆଧେୟ ସେ ସବୁର ଆଂଶିକ ଓ ଶୈଳୀ ସଂପୂର୍ଣ୍ଣ ଭିନ୍ନ ଧରଣର ହୋଇଗଲା । ସାମାଜିକ ଆର୍ଥିକ-ରାଜନୈତିକ ଜୀବନର ବାସ୍ତବତା, ସମାଜରେ ସବୁ ସୃଷ୍ଟି କରି ସୁଦ୍ଧା ସବୁଠାରୁ ଦୀନହୀନ, ବଞ୍ଚିତ, ନିର୍ଯ୍ୟାତିତ, ଶୋଷିତ ଲକ୍ଷ କୋଟି ଜନତାର ପ୍ରାଣର ଭାଷାକୁ, ତା'ର ଆକାଂକ୍ଷିତ, କଳ୍ପିତ ନୂତନ ସମାଜ ବ୍ୟବସ୍ଥାକୁ ଆବାହନ କଲା ଏହି ଗୀତ କବିତା ଓ ସେଥିଲାଗି ଅନମନୀୟ ଆପୋଷହୀନ ସଂଗ୍ରାମ କରିବାକୁ ଆହ୍ୱାନ ଦେଲା ଏ ସବୁ ସଂଗୀତ ।

ଓଡ଼ିଶାରେ ନବଯୁଗ ସାହିତ୍ୟ ସଂସଦର ୧୯୩୬ରେ ପ୍ରତିଷ୍ଠା ହିଁ ଭାବ ରାଜ୍ୟରେ, ଅର୍ଥାତ୍ ଓଡ଼ିଶାର ସାହିତ୍ୟ–ସଂସ୍କୃତି ଓ ରାଜନୀତି କ୍ଷେତ୍ରରେ ଏପରି ଏକ ନୂତନ ଯୁଗର ସୂତ୍ରପାତ କଲା ।

ସାମ୍ୟବାଦୀ ଆନ୍ଦୋଳନ ଓ କମ୍ୟୁନିଷ୍ଟ ପାର୍ଟିର ଜନ୍ମବିକାଶ ଅଭିବୃଦ୍ଧି ଘଟି ଚାଲିଲା । ସେହି କାଳରେ କମ୍ୟୁନିଷ୍ଟ ଆନ୍ଦୋଳନ ଓ କମ୍ୟୁନିଷ୍ଟ ପାର୍ଟି ଗଠନ ଅନେକଙ୍କୁ ଉଦ୍‌ବୁଦ୍ଧ କଲା । ପୁରାତନ ସାହିତ୍ୟିକଙ୍କୁ ମଧ୍ୟ କେତେକାଂଶରେ ସେମାନଙ୍କ ଗଜଦନ୍ତ ମୀନାରର ରୁଦ୍ଧ କୋଠରୀରୁ ଟାଣି ଆଣିଲା ରାଜଦାଣ୍ଡକୁ, କ୍ଷେତ ଖମାରକୁ, ଆଉ କାରଖାନାର କଳା କିଟିମିଟି ଚିମିନୀ ଧୂଆଁରେ ଖଟୁଥିବା ଶ୍ରମିକମାନଙ୍କ ପାଖକୁ । ନୂତନ ଉଦୀୟମାନ ଯୁବକ ସୃଷ୍ଟି କଲେ ଅମର ଗୀତ, କବିତା । ସୌଖୀନ ଗୀତ କବିତା ନୁହେଁ – ସେ ଗୀତ, କବିତାରେ କୋଟି କୋଟି ନିଷ୍ପେଷିତ ହୃଦୟର ତନ୍ତ୍ରୀ ସ୍ପନ୍ଦିତ ହୋଇଉଠିଲା । ସେମାନଙ୍କୁ ଉଦ୍‌ବୁଦ୍ଧ କଲା ନବ ଜୀବନ ସୃଷ୍ଟି ପାଇଁ ସଂଗ୍ରାମ କରିବାକୁ । ୧୯୩୪-୩୫ରେ ହିଁ ଓଡ଼ିଶାରେ ରାଜନୈତିକ କ୍ଷେତ୍ରରେ ଯେଉଁସବୁ ନୂତନ ଜନସଂଗ୍ରାମମାନ ଜାଗ୍ରତ ହେଲା ଏବଂ ଯେଉଁ ଜନସଂଗ୍ରାମଗୁଡ଼ିକ ସମାଜର ବିଭିନ୍ନ ସ୍ତରକୁ, ବିଭିନ୍ନ ଅଂଶକୁ ଓ ଭିନ୍ନ ଆର୍ଥିକ ଓ ସାମାଜିକ ଶ୍ରେଣୀକୁ ସ୍ୱାଧୀନତା ସଂଗ୍ରାମର ମହାନ୍ ପ୍ରବାହରେ ଆଣି ମିଳିତ କରେଇଲା, ସେସବୁ ଆନ୍ଦୋଳନର ସ୍ରଷ୍ଟା ହେଲେ ସେହିମାନେ, ଯେଉଁମାନେ ବୈଜ୍ଞାନିକ ସମାଜବାଦର, ମାର୍କସବାଦ ଲେନିନବାଦର ବୈପ୍ଳବିକ ତତ୍ତ୍ୱରେ ଅନୁପ୍ରାଣିତ ହେଲେ ।

କୃଷକ ଆନ୍ଦୋଳନ, ଛାତ୍ର ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନ ଭଳି ଅଭୂତପୂର୍ବ ଜନ ଉଦ୍‌ବେଳନ ସୃଷ୍ଟି ହେଲା ଏବଂ ସେଗୁଡ଼ିକର ଆବାହନ କଲେ ନୂତନ କବି ଗୀତିକାରଙ୍କ ରଚିତ ନୂତନ ଅଗ୍ନିମୟୀ ଚିରନ୍ତନ ବିପ୍ଳବୀ କବିତା ।

କମ୍ୟୁନିଷ୍ଟ ପାର୍ଟି ଗଠନ କାଳରେ ଅର୍ଥାତ ୧୯୩୪-୩୫ଠାରୁ ୧୯୫୦ ମସିହା ମଧ୍ୟରେ ଯେଉଁସବୁ ଗୀତ କବିତା କମ୍ୟୁନିଷ୍ଟ ପାର୍ଟି ଗଠନରେ ସାହାଯ୍ୟ କରିଛି, ଯେଉଁସବୁ ଗୀତ କବିତା କୃଷକ, ଛାତ୍ର, ଶ୍ରମିକ ଗଡ଼ଜାତ ପ୍ରଜାଙ୍କ ଆନ୍ଦୋଳନକୁ ସାମ୍ରାଜ୍ୟବାଦ ବିରୋଧୀ ମୁକ୍ତିସଂଗ୍ରାମକୁ ସେ କାଳରେ ଫାସିଷ୍ଟବାଦ ବିରୋଧୀ ଜନ ଆନ୍ଦାଳନକୁ ଉଦ୍‌ବୁଦ୍ଧ କରିଛି,

ସେପରି କେତେକ ଗୀତ କବିତା ଓ କବିଙ୍କ ରଚନାର ଉଲ୍ଲେଖ ଏହି ଲେଖାଟିର ଉଦ୍ଦେଶ୍ୟ ।

ଏଥିରେ ସେ କାଳର ପୁରାତନ ଓ ଉଦୀୟମାନ କବିଙ୍କର ସବୁ ଗୀତ କବିତାର କିଛି ପଂକ୍ତି ଯେ ଦିଆଯାଇପାରିଛି ନୁହଁ । ଆହୁରି ଅନେକ ଯୁଗାନ୍ତକାରୀ ଗୀତ, କବିତା ହୁଏତ ଜନମାନସରେ ରହିଛି– ପୁରାତନ ପତ୍ରପତ୍ରିକାଗୁଡ଼ିକରେ ରହିଛି । ସେସବୁର ଉଦ୍ଧାର ଆବଶ୍ୟକ । ଏହି ସମୟ ମଧ୍ୟରେ ବିଭିନ୍ନ ଅଞ୍ଚଳରେ ଯେଉଁ ସବୁ ଜନସଂଗ୍ରାମ ହୋଇଛି, ତାହା ମଧ୍ୟ ସେହି ସେହି ଅଞ୍ଚଳରେ ନୂତନ କବିଙ୍କର ଜନ୍ମ ଦେଇଛି ଓ ସେମାନଙ୍କ ରଚନା ସହସ୍ର ସହସ୍ର ଲୋକଙ୍କୁ ସଂଗ୍ରାମ ଭିତରକୁ ଠେଲି ଦେଇଛି । ଜୟ ପରାଜୟ ଭିତରେ ସେମାନେ ଅଭିଜ୍ଞତା ହାସଲ କରି ସମାଜର ରୂପାନ୍ତର ଆଣିବା ଲାଗି ନୂତନ ସଂଗ୍ରାମରେ ପରବର୍ତ୍ତୀ କାଳରେ ଅବତୀର୍ଣ୍ଣ ହୋଇଛନ୍ତି ଏବଂ ଏବେ ବି ହେଉଛନ୍ତି । ସେପରି ବିପ୍ଲବୀ ଗୀତିକାର ଦ୍ୟୁତିକୃଷ୍ଣ ପଣ୍ଡା, ସମ୍ବଲପୁରୀ ଭାଷାରେ ନଟବର ବନଛୋର, ମନୋଜ ଦାସ, ରଘୁନାଥ ଦାସ, ଯଦୁନାଥ ଷଡ଼ଙ୍ଗୀ, ଗୋବିନ୍ଦଚନ୍ଦ୍ର ପଣ୍ଡା, ବ୍ରଜନାଥ ରଥ, ଶରତ ନାୟକ ଅବା ଆଠଗଡ଼ରେ ବ୍ରଜକିଶୋର ପଟ୍ଟନାୟକଙ୍କ ଦ୍ୱାରା ସଂଗଠିତ ପ୍ରସିଦ୍ଧ ବିପ୍ଲବୀ ପାଲାଗାୟକ ଚକ୍ରଧର ସାହୁ ଶ୍ରମିକ ଶ୍ରେଣୀରୁ ଜାତ କବି ଯଦୁନନ୍ଦନ ବିଶ୍ୱାଳ ପ୍ରମୁଖଙ୍କ ଗୀତ କବିତାର ଅବତାରଣା କରାଯାଇ ନାହିଁ ।

**ନୂତନ ଯୁଗର ନୂତନ ଆବାହନୀ**

୧୯୩୬ରେ କଟକଠାରେ ଅନୁଷ୍ଠିତ ନବଯୁଗ ସାହିତ୍ୟ ସଂସଦର ପ୍ରତିଷ୍ଠା ଉତ୍ସବରେ କବି ଅନନ୍ତ ପଟ୍ଟନାୟକଙ୍କ ପ୍ରଥମ ବିପ୍ଲବୀ ଗୀତ ଝଂକୃତ ହୋଇଉଠିଥିଲା ଶ୍ରୀମତୀ ମାଳତୀ ଚୌଧୁରୀଙ୍କ କଣ୍ଠରେ :

"ନବୀନ ଯୁଗର ତରୁଣ ଜାଗରେ
ଜାଗ ବନ୍ଧନହରା,
ବକ୍ଷ ଶୋଣିତେ ଲକ୍ଷ ଜୀବନେ
ଖେଳାଅ ଆଲୋକ ଧାରା– ।
ଛିନ୍ନ କରରେ ବନ୍ଧନ ରାଜି
କ୍ରନ୍ଦନ ହେଉ ଶେଷ–,
ଲୁପ୍ତ ହେଉରେ ଜାତି ଉପଜାତି–
ଖଣ୍ଡିତ ଶତ ଦେଶ ।"

ଏ ହେଉଚି ନବୀନ ଯୁବକୁଳଙ୍କୁ ଆହ୍ୱାନ । ସଂକୀର୍ଣ୍ଣତା, ଜାତି-ଉପଜାତି ବିଭେଦ, ଆଞ୍ଚଳିକତା, ଉତ୍କଟ ଜାତୀୟ ମତାନ୍ଧତାର ଉର୍ଦ୍ଧ୍ୱକୁ ଉଠି ସମସ୍ତ ବନ୍ଧନ ଶେଷକରି ଆନ୍ତର୍ଜାତୀୟ ମହାନ ଭାବଧାରାରେ ଉଦ୍‌ବୁଦ୍ଧ ହେବାକୁ ଏ ଥିଲା ଡାକରା ।

କିନ୍ତୁ ପରବର୍ତ୍ତୀ କାଳରେ ଓଡ଼ିଶାରେ ଦେଖାଦେଲା ଜନସଂଗ୍ରାମ–କୃଷକର ବେଠି,

ବେଗାରୀ ବିରୁଦ୍ଧରେ, ଘର ଡିହରେ ଅଧିକାର ପାଇଁ ଆନ୍ଦୋଳନ, ଛାତ୍ର ଯୁବକର ଆନ୍ଦୋଳନ ତେଜି ଉଠିଲା ସାମ୍ରାଜ୍ୟବାଦ ବିରୁଦ୍ଧରେ ଓ ଗଣତନ୍ତ୍ର ସମାଜବାଦ ପାଇଁ, ଶ୍ରମିକର ସଂଗ୍ରାମ ସଙ୍ଗଠିତ ହେଲା ମାଲିକର ନିର୍ମମ ଶୋଷଣ, ଲୁଟ ବିରୁଦ୍ଧରେ; ଗଡ଼ଜାତ ପ୍ରଜାଙ୍କ ବୈପ୍ଳବିକ ଆନ୍ଦୋଳନ ତେଜି ଉଠିଲା ରାଜତନ୍ତ୍ରର ବିଲୋପ ପାଇଁ । ଏସବୁ ଆନ୍ଦୋଳନର ମହାନ୍ ଆକର୍ଷଣୀ ଶକ୍ତି ହେଲା ସୋଭିଏତ ରୁଷ, ମହାନ ଅକ୍‌ଟୋବର ବିପ୍ଳବ, ମହାନ ଲେନିନ୍ ଆଉ ଶ୍ରମିକ-ଚାଷୀ ସବୁ ଖଟିଖିଆଙ୍କ ସଂଗ୍ରାମର ସାଫଲ୍ୟ ଓ ବିଜୟର ଝଣ୍ଡା ଲାଲଝଣ୍ଡା ଆଉ କମ୍ୟୁନିଷ୍ଟ ପାର୍ଟି । ସେସବୁ ଆନ୍ଦୋଳନର ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ରଚିତ ହେଲା ନୂତନ ଗୀତ କବିତା; ବାସ୍ତବ ସଂଗ୍ରାମର ଆଲେଖ୍ୟ ବହନ କରି । ଚିନ୍ତାରୁ କାର୍ଯ୍ୟ, କାର୍ଯ୍ୟରୁ ତତ୍ତ୍ୱ, ପ୍ରାକ୍‌ଟିସରୁ ଥିଓରୀ, ଦୁହିଁଙ୍କର ସମନ୍ୱୟ ।

କବି ଅନନ୍ତ ପଟ୍ଟନାୟକଙ୍କ ଗୀତ ଯାହା ଆଜି ବି ଚାଷୀ ଆନ୍ଦୋଳନକାରୀମାନେ ଗାଁ' ଗାଁ'ରେ ଗାନ କରିଥାନ୍ତି ଆଉ ସେତେବେଳେ କୌଣସି ଗାଁ'ରେ କମ୍ୟୁନିଷ୍ଟ କର୍ମୀ ପ୍ରବେଶ କରି କୌଣସି ବ୍ୟକ୍ତିଙ୍କ ପିଣ୍ଡାରେ ବା ଗାଁ' ଚଉତାରେ ବସି ସେ ଗୀତ ଗାଇ ଗାଁ' ଲୋକଙ୍କୁ ଆକୃଷ୍ଟ କରୁଥିଲେ ତାହା ରଚିତ ହେଲା । କଲିକତାର ଆଲବର୍ଟ ହଲରେ ଓଡ଼ିଶାର ଶ୍ରମିକମାନଙ୍କୁ ଘେନି ଯେଉଁ କୃଷକ ସମ୍ମିଳନୀ ୧୯୩୭ରେ ଅନୁଷ୍ଠିତ ହୋଇଥିଲା, ସେଠାରେ ନିମ୍ନୋକ୍ତ ଗୀତର ପ୍ରଥମ ଆବୃତ୍ତି ହୋଇଥିଲା :

"ଜୀବନ ଦେଇରେ ଢାଳିଲୁ ରକ୍ତ ଗଢ଼ିଲୁ ସଉଧମାଳା
ଆମରି ଲାଗିରେ ଶାସନ ଶକ୍ତ ଆମେରେ ସର୍ବହରା ।
ଝାଂଜି ପବନ ସହିରେ ସଘନ ଗହୀରେ ରୋଇଲୁ ଧାନ
ବରଷା କାଦୁଅ ଚକଟି କେତେରେ ଶୀର୍ଣ୍ଣ କରିଲୁ ପ୍ରାଣ ।
ପଉଷ ପ୍ରଭାତେ କାଟିଲୁ ଶସ୍ୟ ହସିଲେ ନିଖିଳବାସୀ
ଅତ୍ୟାଚାରୀର କରାଳ କବଳ ନେଲାଟି ସକଳ ଗ୍ରାସି ।
ଆମେରେ ଗଢ଼ିଲୁ ବନ୍ଧୁକ, ତୋପ, ତଲବାର ଆମ ପାଇଁ
ଆମେରେ ଗଢ଼ିଲୁ କାରାର ପ୍ରାଚୀର ବନ୍ଧନ ଗୀତ ଗାଇ ।
କେତେ ଯେ ଦେଏଣା କେତେ ଯେ ପାଉଣା ମହାଜନ ଜମିଦାର
ନେଲେଟି ଶୋଷିରେ ଚାହିଁଛୁ ନିରତେ ଧରି କଙ୍କାଳମାଳ ।
ଯେ ଯୁଗେ ମାନବ ଉଡ଼ଇ ଆକାଶେ ବୁଡ଼ଇ ସାଗର ଜଳେ
ସେ ଯୁଗରେ ଆମେ ହା ଅନ୍ନ ହା ଅନ୍ନ ମାଗିବୁଲୁ ନତ ଶିରେ ।

X X X

ପ୍ରାପ୍ୟ ଆମର ନେବୁରେ ମୁକର ଆମେ ମୂଲିଆର ଜାତି

ଆମେରେ ଆଣିବୁ ରକ୍ତ ପ୍ରଭାତ ଚିରି ଅନ୍ଧାର ରାତି ।
ନିଃସ୍ୱ ଯେତେକ ବିଶ୍ୱର କୋଳେ ସକଳ ଶ୍ରମିକ ଚାଷୀ
ମିଳିତ ହୁଅରେ ଆମରି ସଙ୍ଗେ ଶଙ୍କା ଜଡ଼ତା ନାଶି ।
ଥରୁରେ ଧରଣୀ ଆକାଶ ପବନ ଥରୁରେ ଶୋଷକକୂଳ
ହସି ଉଠୁ ଆଜି ସମତା ଜଗତେ ଭାଙ୍ଗୁରେ ପାହାଡ଼ ଚୂଳ ।"

ଭୂଇଁ ତାଡ଼ି ଯିଏ ଫସଲ ଫଳାଏ, ସେ ନିଜ କଷଣର କାରଣ ବୁଝିପାରିଛି ତା'ର ପ୍ରାପ୍ୟ ସେ ଆଦାୟ କରିବ ବୋଲି ପଣ ନେଉଛି । ଅନ୍ଧାର ରାତିକୁ ଚିରି ସେ ରକ୍ତ ପ୍ରଭାତ ଆଣିବାର ସଂଗ୍ରାମ ପଥରେ ଅବତୀର୍ଣ୍ଣ ହୋଇଛି । ସେମିତି ତାଙ୍କର ଆଉ ଏକ ଗାନ :

ଆମେ ମୂଲିଆର ଜାତି ଜାଗିବୁ
ମରୁଛୁ ତ ନିତି ଭୋକ ଉପାସରେ
ଥରେ ହେଲେ ଶିର ଟେକିବୁ ।
ଆମ ହାଡ଼ ମାଂସେ ଯେ ଗଢ଼ିଲେ କୋଠା
ଆମ ଲହୁ ଶୋଷି ଯେବା ହେଲେ ମୋଟା
ସେଇ ଜମିଦାର, ସାହୁକାରକୁଳ ଆଣ୍ଡପଣ ସବୁ ସାରିବୁ ।

X X X

ଅନନ୍ତ ପଟ୍ଟନାୟକ ପୁଣି ସାମ୍ରାଜ୍ୟବାଦୀ ବିଭେଦ ପ୍ରତି ସାବଧାନୀ ଶୁଣାଇ ଚାଷୀ ମୂଲିଆଙ୍କୁ ସେତେବେଳେ ଐକ୍ୟବଦ୍ଧ ସଂଗ୍ରାମ କରିବାକୁ ଡାକରା ଦେଇ ଲେଖିଲେ –

"ସର୍ବହରା ମୁକ୍ତି ଆମେ ଆଗେଇ ଆଗ ଚାଲ
(ସାମ୍ୟବାଦର ବାର୍ତ୍ତା ଗାଇ ଆଗେଇ ଆଗ ଚାଲ)
ଲାଲ ପତାକା ଲାଗିରେ ହସି ଲାଲ ଶୋଣିତ ଢାଳ ।

X X X

ଦସ୍ୟୁ ଦଳେ ଦେଶଟା ଆଜି ଗଳାରେ ଗଳା ଛାଇ
ସାତସାଗର ସେ ପାଖେ ବସି ଦସ୍ୟୁ ମାରେ ହାଇ,
ଭାଇର ବୁକୁ ରୁଧିର ପିଏ ଏଇ ଦେଶର ଭାଇ
ଏଇ ଶୋଷକ ଦସ୍ୟୁକୁଳେ କରରେ ଛାରଖାର
ଦେଶୀବିଦେଶୀ ସମାନ ଦୁହେଁ ସମାନ ଅତ୍ୟାଚାର ।

X X X

ମଜୁର ଚାଷୀ ବକ୍ଷରେ ରକ୍ତେରେ ଯେହୁ ନାଚ–
ତାକୁଇ ଆଜି ବିପ୍ଳବୀ ତୁ ମରଣ ବିଷ ଯାଚ

ଧ୍ୱଂସ ପାଉ ଶୋଷକ କୁଳ ସାମ୍ରାଜ୍ୟ ପିଶାଚ
ମଜୁର ଚାଷୀ ରାଜ୍ୟ ହେଉ ଲାଭରେ ଅଧିକାର
ସାମ୍ୟବାଦୀ ଅଗ୍ରଣୀ ତୁ ହୁଅରେ ଆଗୁସାର ।"

୧୯୩୭-୩୮ ବେଳକୁ କୃଷକ ଆନ୍ଦୋଳନର ଜୁଆର ଉଠିଲା । ଭେଟି, ବେଠି ବିରୁଦ୍ଧରେ ସଂଘର୍ଷମାନ ଦେଖାଦେଲା । ଜମିଦାର, ସାହୁକାର ଆଉ ଗଡ଼ଜାତରେ ରଜା, ଗୌନ୍ତିଆ, ସର୍ବରାକାର ତଥା ମୁସ୍ତାଦାରମାନଙ୍କ ସଙ୍ଗଠିତ ପ୍ରତିଆକ୍ରମଣ ଦୁର୍ବାର ଜୟଯାତ୍ରା । ୧୯୩୫ ଶାସନ ଖସଡ଼ା ଅନୁସାରେ ମୋଗଲବନ୍ଦୀ ଅଞ୍ଚଳରେ ଲୋକପ୍ରିୟ ମନ୍ତ୍ରୀମଣ୍ଡଳ ଗଠନ ହେଲା । ଗଡ଼ଜାତଗୁଡ଼ିକର ବିଶେଷତଃ ନୀଳଗିରି, ଢେଙ୍କାନାଳ, ତାଳଚେର, ରଣପୁର ପ୍ରଭୃତିରେ ବ୍ୟାପକ ପ୍ରଜାମେଳି ବ୍ୟାପିଗଲା ଓଡ଼ିଶାର ସବୁ ଗଡ଼ଜାତକୁ । କମ୍ୟୁନିଷ୍ଟମାନଙ୍କ ଦ୍ୱାରା ଗଡ଼ଜାତ ଆନ୍ଦୋଳନର ମୁଖପତ୍ର ଭାବରେ ଗୁପ୍ତରେ 'ରଣଭେରୀ' ସାଇକ୍ଲୋଷ୍ଟାଇଲ ପତ୍ରିକା ପ୍ରକାଶ ପାଉଥାଏ । ସେତିକିବେଳେ ଅର୍ଥାତ୍ ୧୯୩୮-୩୯ରେ ଛାତ୍ରସଂଘର ନେତୃତ୍ୱରେ ଛାତ୍ର ଆନ୍ଦୋଳନ । ରେଭେନସା କଲେଜ ଓ ମେଡ଼ିକାଲ କଲେଜ ଛାତ୍ରଙ୍କ ଧର୍ମଘଟ–ସତ୍ୟାଗ୍ରହ–ଗିରଫଦାରୀ ।

ସେହି କାଳରେ ଅସଂଖ୍ୟ ବିପ୍ଳବୀ ଗାନ ରଚିତ ହୋଇ କମ୍ୟୁନିଷ୍ଟମାନଙ୍କ କଣ୍ଠରେ ଜନସଭା, ସମାବେଶଗୁଡ଼ିକରେ ଝଂକୃତ ହୋଇ ଉଠିଥିଲା ।

ଢେଙ୍କାନାଳରେ ରଜା ଅତ୍ୟାଚାର ବିରୁଦ୍ଧରେ ସଚ୍ଚି ରାଉତରା ଲେଖିଲେ –

ମାର ତୁ ଯେତେ ଗୁଳି
ମରିବୁ ପଛେ ଡରିବୁ ନାହିଁ ଯାଅନା ଏହା ଭୁଲି
ଘୋଡ଼ସବାର ସିପାହୀ ଆଣି ଚଢ଼ଉ ଯେତେ କର ।
ରଖ ତୋ ଲାଠି କାଠର ଲାଠି ହାଡ଼ର ଆମ ଛାତି
ମରଣ ଆମ ମଇତ୍ର ଜାଣ କଷଣ ଆମ ସାଥୀ ।

ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ସେହି କାଳରେ ଲେଖାଗଲା :-

ବଜାରେ ପାଇକ ବାଜା
ତସ୍କର ଆଜି ରଜା –
ଲହୁ ଦେଇ ତାକୁ କର ନିର୍ମୂଳ
ଉଡ଼ାଅ ରକ୍ତ ଧ୍ୱଜା –

X X X

କଂସେଇ ରାଜୁତି ଆଜି
ପଦାଘାତେ ପଡୁ ଭାଜି

ବିଦେଶୀ ଶାସନ ଶବ ପରେ ବସି
କର ଆଜି ଶିବ ପୂଜା –      (ସଚ୍ଚି ରାଉତରା)

X X X

ପୁଣି –
ତମେ ମାର ଯେତେ ଆଜି ମାରିବ
ନିତି ଯେ ମରଇ ବେଠି ବେଗାରିରେ
(ଦିନେ) ମରିବାକୁ ସେ କି ଡରିବ ?

X X X

ମଡ଼ା ତ କରିଛ, ମଢ଼ କର ଏବେ
ଲୁହ ଦେଇଅଛୁ, ଲହୁ ଦେବୁ ଏବେ,
ମରିଥାନ୍ତା ଭୋକେ ଯେହୁ ପୋକ ପରି
(ଆଜି) ବୀର ପରି ସେ ତ ମରିବ ।

X X X

ଶୃଙ୍ଖଳା ତମକୁ ମଣ ନାହିଁ ସାନ–
(ତମ) ଜୀବନ ନାଟିକା ଧରିଛି ସେ ଜାଣ –
କମାରର ଭାତି ତରଳାଏ ତା'ର ହିମତ କି କଳିପାରିବ ?

X X X

ଭୟ ତେଜି ଆଜି ଜାଗ ନିର୍ଜୀବ –
ଯିବ ଯଦି ପାଦୁ ଶାଙ୍କୋଳି ଯିବ
ସବୁ ତ ଯାଇଛି ତାହା ଅଛି ବାକି
ତୁମ ସାଥେ ଖସି ପଡ଼ିବ –
କୋଟି ମନ ଆଜି ଝଡ଼ ପରି ଛୁଟେ
କୋଟି ହାତ ମୁଠା ଉପରକୁ ଉଠେ
ଜାଗିଲାଣି ଚାଷୀ, ଜାଗିଛି ମୂଲିଆ
(ସେ ତ) ମଣିଷର ଯୁଗ ଆଣିବ ।"

(ସଚ୍ଚି ରାଉତରା)

ଜାତୀୟ ଆନ୍ଦୋଳନ ବେଳେ ରଚିତ ଗୀତ କବିତା ଆଉ ଚାଷୀ, ଶ୍ରମିକ-ଛାତ୍ର, ଗଡ଼ଜାତ ପ୍ରଜା ଆନ୍ଦୋଳନ ବେଳର କବିତାର ପାର୍ଥକ୍ୟ ତା'ର ଆବେଦନ, ସଂଗ୍ରାମର ନୀରବ ସମର୍ଥକ ନୁହେଁ, ସଂଗ୍ରାମର ନାୟକ ନିଜେ ହୋଇ ମଣିଷର ଯୁଗ ଆଣିବାକୁ ତାକୁ ଆହ୍ୱାନ,

କମ୍ୟୁନିଷ୍ଟ ଆନ୍ଦୋଳନ ଓ କମ୍ୟୁନିଷ୍ଟ ପାର୍ଟି ଗଠନକାଳୀନ କବିତା, ଗୀତରେ କିପରି ରୂପ ପାଇଥିଲା ତାହା ଏସବୁ ଗୀତରୁ ସ୍ପଷ୍ଟ ପ୍ରମାଣିତ ହୁଏ ।

ଅନନ୍ତ ପଟ୍ଟନାୟକ ସେକାଳରେ ଲେଖିଲେ ମାର୍ଚ୍ଚ ସଂଗୀତ :-

"ଚାଲରେ ଚାଲରେ ଚାଲ
ମୁଲକ ଯାକର ମାଲିକ ଚାଷୀ
ମଜୁରିଆ କୁଲି ହେ ଉପବାସୀ
ଟେକି ଧର ତୋର ପତାକା ଆସି
ତୋହରି ରକତେ ଲାଲ ।
ତୋ' ମୁଖୁ ଓଟାରି ତୋହରି ଗ୍ରାସ–
କରିଲା ଯେ ତୋର ସକଳ ନାଶ
ସେହି ସରକାର ଶାସନଫାଶ
କରିଦିଅ ଛାରଖାର ।
X X X
ଉଡ଼େ ଦିଗେ ଦିଗେ ଲାଲ ନିଶାଣ
ପ୍ରଳୟର ଆଜି ବାଜେ ବିଷାଣ
ସୃଜି ଶୋଷଣର ଶେଷ ଶ୍ମଶାନ –
ତୋଳରେ ତୋ' ହତିଆର ।"

ଏହି ସମୟ ମଧ୍ୟରେ କମ୍ୟୁନିଷ୍ଟ ଆନ୍ତର୍ଜାତିକ ଗାନର ଓଡ଼ିଆ ରୂପ ଦେବାକୁ ଯାଇ ଗଙ୍ଗାଧର ରଥ ଲେଖିଲେ :-

ଅନଶନ ବନ୍ଦୀ ମୂର୍ଚ୍ଛାହତ –
ଜଗତର ବଂଚିତ ବନ୍ଧୁ ଶତ- ଜାଗ–
ଆଉ ସ୍ୱରକୁ ଘେନି ରଚିତ ହେଲା ଓଡ଼ିଶାରେ ଇଣ୍ଟରନାସନାଲ –
'ଉଠ ଜାଗ ଭୋକୀ ଶୋଷୀ ବନ୍ଦୀ
ତୋଳ ତୋର ଲାଲ ତଲବାର –
ମୁକତି ପାଗଳ ମଜଦୁର
ଚୂର ଅନଶନ ଅତ୍ୟାଚାର –
ତୋହରି ରକ୍ତେ ରଂଜିତ ବିଶ୍ୱ
ତୋ'ର ଅଶ୍ରୁଧାରେ ଥରହର
ଶତ ବରଷର ବେଡ଼ିବନ୍ଧନ
ଭାଙ୍ଗ ହୋଇ ଏକାକାର ।

ଅନ୍ତିମ ସଂଗ୍ରାମେ ଆଗେ ଚାଲ
ବିଶ୍ୱ ଜନତା ଅଭିଯାନ
ଗାଅ ଇଣ୍ଟରନାସନାଲ ଭବ ସ୍ୱତନ୍ତ୍ରତାର ଗାନ ।

ଢେଙ୍କାନାଳର ଭୂବନ ନୀଳକଣ୍ଠପୁରଠାରେ ବ୍ରିଟିଶ ଓ ରଜାଫଉଜର ଗୁଳିରେ ବାଜି, ନଟ, ଲକ୍ଷ୍ମଣ, ଗୁରି, ହୁରୁଷି, ରଘୁ ନିହତ ହେଲେ । ସେମାନଙ୍କୁ ଜେନାପୁର ଅଣାଯାଇ ରେଲ ମାଲଡବାରେ କଟକ ଅଣାଗଲା । ଛ'ଟି ଶଗଡ଼ରେ ଛ'ଟି ଶବ । ଯୁବ କମ୍ୟୁନିଷ୍ଟମାନେ ଶଗଡ଼ର ସାରଥୀ । ସହସ୍ର ସହସ୍ର ଜନତାର ପଟୁଆର । ଖାନନଗରରେ ଚିତା ଜଳିଉଠିଲା । ଆଉ ଅମର ଗୀତ କବିତାଗୁଡ଼ିକ ରଚିତ ହେଲା ବାଜି ରାଉତକୁ କେନ୍ଦ୍ରକରି । କାଳିନ୍ଦୀ ଚରଣ ପାଣିଗ୍ରାହୀ, ସଚ୍ଚି ରାଉତରାୟ, ବୈକୁଣ୍ଠନାଥ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକଙ୍କ ଲେଖନୀରୁ ଶହୀଦ ବାଜିକୁ କେନ୍ଦ୍ର କରି କବିତା ସାରା ଓଡ଼ିଶାରେ କମ୍ୟୁନିଷ୍ଟମାନଙ୍କ କଣ୍ଠରେ ଝଂକୃତ ହୋଇ ବ୍ରିଟିଶ ସାମ୍ରାଜ୍ୟବାଦ, ରାଜାରାଜୁଡ଼ା ଶାସନ ଓ ସାମନ୍ତବାଦୀ ଅତ୍ୟାଚାର ବିରୁଦ୍ଧରେ ଜନ-ଉଦ୍‌ବେଳନ ସୃଷ୍ଟିକଲା । ସଚ୍ଚି ରାଉତରା ଲେଖିଲେ –

"ନୁହେଁ ବନ୍ଧୁ ନୁହେଁ ଏହା ଚିତା
ଏ ଦେଶ ତିମିର ତଳେ ଏ ଅଳିଭା ମୁକତି ସଳିତା
ନୁହେଁ ଏହା ଜଳିବାର ପାଇଁ ।
ଜନମ ସିନା ଏହାର ଜଳି ପୋଡ଼ି ଦେବାକୁ ଧସାଇ ।"

ଏହି ଅମର କବିତା ପ୍ରଗତିଶୀଳ କମ୍ୟୁନିଷ୍ଟ ମତାବଲମ୍ବୀ କବି ହାରିନ୍ ଚଟ୍ଟୋପାଧ୍ୟାୟଙ୍କ ଦ୍ୱାରା ଇଂରେଜୀରେ ଅନୂଦିତ ହୋଇ ଭାରତ ବିଖ୍ୟାତ ହୋଇଗଲା ।

କାଳିନ୍ଦୀ ଚରଣ ପାଣିଗ୍ରାହୀ ଲେଖିଲେ –

"ଝାଳ ଦେଇ ଯେତେ ଗଢ଼ିଲୁ ରାଇଜ ରଜା
ଲୁହ ଦେଇ ତୋର ହତିଆର ଆଜି ପଜା
ବେଳ ଏହି ବେଳ ଏହି
ବାର ବରଷର ବାଜି ରାଉତ ସେ ମରିନାହିଁ ମରିନାହିଁ
ଆସ ଲକ୍ଷ୍ମଣ, ଆସ ନଟ, ରଘୁ, ଗୁରି
ହୁରୁଷୀ ପ୍ରଧାନ ବଜାରେ ମରଣ ତୂରୀ – ।

X X X

କୋଣାରକଠାରୁ ଟୋକିଲା ଦେଉଳ ବଡ଼
ନ ମାନିଲା ରଜା ଗୁଳି ବନ୍ଧୁକ ଝଡ଼
ଏଡ଼େ ଅବିନୀତ ଟୋକା,

ଢେଙ୍କାନାଳର କଙ୍କାଳ ଟାଣି ବଜାଇଲା ଜୟଢକା
ବଜାଇଲା ତ ସେ ଦୁନିଆ ଛାତିରେ ବାଜା–
ଛାତିକୁ ଫୁଲାଇ ନାହିଁ ରଜା ନାହିଁ ରଜା –
କାହିଁ ଶିଖିଲୁ ଏ କଥା
କହ କହ ବାଜି କାହା ଲାଗି ଆଜି ବଳିଦେଲୁ ତୋ'ର ମଥା ?

X X X

ସମ୍ଭ୍ରମ ଧୀରେ ଜଣାଅ ବଦନ ପୋତି
ସେ ଯେ ଅଗ୍ରଣୀ ଏ ଦେଶର ଚମୂପତି
ତୁନି ହୁଅ ଆରେ କବି
ବିଶ୍ରାମ ଏଠି ନେଇଛି ଯୋଦ୍ଧା ଏ ଜାତିର କୁଳରବି ।"
ତାଙ୍କରି କଲମରେ ସେ କାଳରେ ଝଂକୃତ ହୋଇ ଉଠିଥିଲା –
"ମଣିଷ କୁଳରେ ଜନମ ଆମର ନାହିଁ ଇଜ୍ଜତ ମାନ
ଆମ ଝିଅ ବୋହୂ ସବୁରି ଶାଳୀ ହେ ଆମେ ଶଳା ସଇତାନ ।
ସହର ବଜାରେ ଚଳିବ ବୋଲି ହେ ଆମେ ଚକଟିବୁ ମାଟି
ତୁମ କଥା ପଛେ ଅକଥା ହୋଇବ ନ ଫିଟିବ ଆମ ପାଟି ।

X X X

ମନେ ହେଜ ଥରେ ଗାଡ଼ି ପରେ ନାଆ ନାଆ ପରେ ହେବ ଗାଡ଼ି
ସିଂହର ନାଡ଼ି ଖାଇପାରେ ଦିନେ ଶୃଗାଳ ମୁଖରେ ତାଡ଼ି ।
ଶାଶୁ ପାଳି ପରେ ବୋହୂ ପାଳି ପଡ଼େ ଶଳା ବି ଭିଣୋଇ ହୁଏ
ଯେତେ ଯାହା ଆଉ ଘଟିଯାଉ ପଛେ ନଆଣିବୁ ଆମ ମୁହେଁ ।

X X X

ଆଉ ସେହି ବାଜି ରାଉତକୁ ଲକ୍ଷ୍ୟ କରି ମନମୋହନ ଲେଖିଲେ –
ବାଜି ରାଉତ ପୁକାରେ
ତାହାର ଲୁହବୋଳା-କ୍ରାନ୍ତିର ଜୟମାଳା –
କପିଳାସ ମେଘାସନ ଉଠାରେ ।

୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୁଏ । ପ୍ରଥମେ ନାଜୀ ହିଟଲରର ସାମ୍ରାଜ୍ୟବାଦୀ ଦେଶ ବିଲାତ, ଫ୍ରାନ୍ସ ମଧ୍ୟରେ ଯୁଦ୍ଧବେଳେ ଏହି ଯୁଦ୍ଧର ଚରିତ୍ର ସାମ୍ରାଜ୍ୟବାଦୀ ଥିଲା । ୧୯୪୧ ଜୁନ୍ ୨୨ରେ ନାଜୀ ହିଟଲର ବାହିନୀ ସୋଭିଏତ ୟୁନିୟନ, ଅର୍ଥାତ୍ ପୃଥିବୀର ପ୍ରଥମ ସମାଜବାଦୀ ରାଷ୍ଟ୍ର ଉପରେ ଆକ୍ରମଣ କରେ । ଯୁଦ୍ଧର ଚରିତ୍ର-ରୀତିଗତି

ବଦଳି ଯାଏ । ଫାସିଷ୍ଟବାଦର ଲକ୍ଷ୍ୟ ହୁଏ ଶୋଷଣ ଓ ଶ୍ରେଣୀବିହୀନ ପ୍ରଥମ ସମାଜବାଦୀ ରାଷ୍ଟ୍ରକୁ ଧ୍ୱଂସ କରିବ ଏବଂ ସବୁ ପରାଧୀନ ଦେଶର ସାମ୍ରାଜ୍ୟବାଦ ବିରୋଧୀ ସ୍ୱାଧୀନତା ସଂଗ୍ରାମକୁ ଲୋପ କରି ବିଶ୍ୱଜୟ କରି ନିର୍ମମ ବର୍ବର ଫାସିଷ୍ଟ ଶାସନ ପ୍ରତିଷ୍ଠା କରିବ ।

ଏହାରି ବିରୁଦ୍ଧରେ ପୃଥିବୀସାରା ଗଢ଼ିଉଠେ ଫାସିଷ୍ଟ ବିରୋଧୀ ମେଣ୍ଟ । ରାଷ୍ଟ୍ର ରାଷ୍ଟ୍ର କ୍ଷେତ୍ରରେ ତଥା ପ୍ରତି ଦେଶର ଦେଶପ୍ରେମୀ ସ୍ୱାଧୀନତା-ଗଣତନ୍ତ୍ର ଶାନ୍ତି ଓ ପ୍ରଗତିକାମୀ ଦଳ ଓ ଶ୍ରେଣୀ ମଧ୍ୟରେ ଗଢ଼ି ଉଠେ ଫାସିଷ୍ଟ ବିରୋଧୀ ଐକ୍ୟ । ଫାସିଷ୍ଟବାଦ ଯାହାକି ସାମ୍ରାଜ୍ୟବାଦର ବର୍ବରତମ ରୂପ ତାକୁଇ ଧ୍ୱଂସ କଲେ ସାମ୍ରାଜ୍ୟବାଦୀ ବ୍ୟବସ୍ଥା ଦୁର୍ବଳ ହେବ, ଦୁନିଆରେ ମୁକ୍ତି ପ୍ରକ୍ରିୟା ତ୍ୱରାନ୍ୱିତ ହେବ ।

ସେହି ସମୟରେ ଦେଶ ଦେଶରେ ଫାସିଷ୍ଟବାଦ ବିରୁଦ୍ଧରେ ଜନଜାଗରଣ ସୃଷ୍ଟି ହେଲା । ଗୀତ, କବିତା, ପ୍ରବନ୍ଧ, ସନ୍ଦର୍ଭ ଜରିଆରେ ଫାସିଷ୍ଟବିରୋଧୀ ଉଦ୍‌ବେଳନ ଦେଖାଦେଲା । ଓଡ଼ିଶାରେ ମଧ୍ୟ ସେହି କାଳରେ ଫାସିଷ୍ଟ ବିରୋଧୀ ରଚିତ ଗୀତ-କବିତା କେତୋଟି ହେଲା :-

ଗରିଲା ବୀର ଗରିଲା ବୀର ଗରିଲା ବୀର ଆମେ
ଲୁଚି ଲୁଚିକା କରିବୁ ରଣ ବୁଲି କାନନ ବନେ ।

(ଅନନ୍ତ ପଟ୍ଟନାୟକ)

ଏବଂ

କହିଚି ଷ୍ଟାଲିନ
ଏପ୍ରିଲ ୨୫ ପୂର୍ବୁ ଲାଲସେନା ଘେରିବେ ବର୍ଲିନ
ଷ୍ଟାଲିନର କଥା କେବେ ହୁଏ ନାହିଁ ମିଛ
ଦୁନିଆର ପଞ୍ଜିକାର ଏହା ତୁମେ ଅଙ୍କେ ନିଭାଇଛ ।
ଏହା ନୁହେଁ ଷ୍ଟାଲିନର କଥା
ଷ୍ଟାଲିନର କଣ୍ଠେ ଏହା କହିଛନ୍ତି ବିଶ୍ୱର ଜନତା

(ସଚ୍ଚି ରାଉତରା)

ଅଗଷ୍ଟ ଆନ୍ଦୋଳନବେଳେ ସହସ୍ର ସହସ୍ର ଦେଶପ୍ରେମୀଙ୍କୁ ବ୍ରିଟିଶ ସାମ୍ରାଜ୍ୟବାଦ କାରାରୁଦ୍ଧ କରିଥାଏ । ବ୍ରହ୍ମପୁର କେନ୍ଦ୍ର ଜେଲରେ ୨ ହଜାରରୁ ଅଧିକ ରାଜବନ୍ଦୀ କଂଗ୍ରେସ, କମ୍ୟୁନିଷ୍ଟ ସୋସାଲିଷ୍ଟ, ଫରୱାର୍ଡ଼ବ୍ଲକ, ଗାନ୍ଧୀବାଦୀ ସମସ୍ତେ ଏକା ଜେଲରେ । ସୋସାଲିଷ୍ଟ, ଫରୱାର୍ଡ଼ବ୍ଲକ ଆଉ କଂଗ୍ରେସର ଘୋର ପ୍ରତିକ୍ରିୟାଶୀଳ ଏକାଂଶ ଜେଲଖାନାରେ କମ୍ୟୁନିଷ୍ଟଙ୍କୁ ଏକଘରିକିଆ କରିବାକୁ ଯାବତୀୟ ଉଦ୍ୟମ କରୁଥାନ୍ତି । ଅଥଚ ବହୁ କଂଗ୍ରେସନେତା, ଯୁବକ କମ୍ୟୁନିଷ୍ଟମାନଙ୍କ ପ୍ରତି ଆକୃଷ୍ଟ ହେଉଥାନ୍ତି । ୧୫/୨୦ ଜଣ କମ୍ୟୁନିଷ୍ଟ ଜେଲଖାନାରେ ଶହେ ଯାଏ ବଢ଼ିଗଲେ । କମ୍ୟୁନିଷ୍ଟମାନେ କୌଣସି ସାଂସ୍କୃତିକ କାର୍ଯ୍ୟକ୍ରମ କଲେ ଥାଳିବାଡ଼େଇ, ଟେକା ପକାଇ ତାକୁ

ଭଣ୍ଡୁର କରିବା ଥିଲା ଏମାନଙ୍କ ଭିତରୁ କେତେକଙ୍କ କାମ । ପରଶ୍ରୀକାତରତା, ସ୍ୱାର୍ଥପରତାର ଝଗଡ଼ା ନିଜ ନିଜ ଭିତରେ କାହିଁରେ କ'ଣ । ଏମିତି କି ଜାତୀୟ କବି ବୀରକିଶୋର ଦାସଙ୍କୁ ସେମାନଙ୍କର ନିର୍ଯ୍ୟାତନା ସହିବାକୁ ପଡ଼ିଲା । ତାଙ୍କୁ ତାଙ୍କ ଓ୍ୱାର୍ଡ଼ରୁ ବାହାର କରି ଦିଆଗଲା ।

ଜାତୀୟକବି କମ୍ୟୁନିଷ୍ଟ ନୁହନ୍ତି, ଗାନ୍ଧିଜୀଙ୍କ ଛଡ଼ା ତାଙ୍କର ଅନ୍ୟ କେହି ଗୁରୁ ନଥିଲେ । ମାତ୍ର କମ୍ୟୁନିଷ୍ଟମାନଙ୍କ ଦେଶପ୍ରୀତି, ନିଷ୍ଠା, ସାହସ ଓ ଆତ୍ମତ୍ୟାଗର ପରିଚୟ ପାଇ ସେ ଲେଖିଲେ ଏକ କବିତା –

"ତୁମେ କେତେ ଜଣ ଜୀବନକୁ ପାଣି ଛଡ଼େଇ
ନ ଦେଲେ ଚଳିବ କି ?
ଧନୀ ଜମିଦାର ରଜା ଜମିଦାର
ଝୁଲାମୁଣି ଧରି ହୋଇବେ ବାହାର–
ଗେରୁଆ ବସନ ମଧୁର ବଚନ–
ତାଙ୍କ କଥା ଶୁଣି ଭୁଲିବ କି,

X X X

ତୁମରି ରକତେ ରକତ ପତାକା
ଉଡ଼ିବ ସେ ଦେଶେ ସହି ଶତ ଧକ୍‌କା–
ଚାଷୀ ମୂଲିଆର ଖପୁରୀ ଚୁରିକି
ଦିଲ୍ଲୀ ଦରବାର ଗଢ଼ିବ କି ?

ସେହି ଜେଲଖାନାରେ ସେତେବେଳେ କଂଗ୍ରେସର କେତେକ ପ୍ରଖ୍ୟାତ ନେତା ଗେରୁଆ ବସ୍ତ୍ର ପିନ୍ଧି ଭାରି ମଧୁର ବଚନ କହୁଥାନ୍ତି । ଅଥଚ ସେମାନେ ଅତୀତରେ କ'ଣ କରିଛନ୍ତି ଓ ଭବିଷ୍ୟତରେ କ'ଣ କରିବେ ତାହା କବିଙ୍କୁ ଜଣାଥିଲା ।

ଜେଲଖାନାର ଆଉ ଏକ ଘଟଣା । ନଭେମ୍ବର ସାତଦିନ ଅକ୍ଟୋବର ମହାବିପ୍ଳବ ପାଳନ କରିବେ କମ୍ୟୁନିଷ୍ଟମାନେ । ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ସହିତ ବ୍ୟକ୍ତିଗତ ବନ୍ଧୁତା ବେଶ୍ ଥାଏ । କମ୍ୟୁନିଷ୍ଟ ବିରୋଧିତା ନ ଥାଏ । ତାଙ୍କୁ ଅନୁରୋଧ କରାଗଲା ଲାଲଝଣ୍ଡା ଉଦ୍ଦେଶ୍ୟରେ ଏକ ଗୀତ ରଚନା କରିବାକୁ ।

ବନ୍ଧୁ- ମହାପାତ୍ର ଲେଖିଲେ –

"ଏଇ ଲାଲ ପତାକାର ତଳେ ହୁଅ ଆଗୁସାର
ଦୁନିଆର ବିଦଳିତ ଦଳେରେ ଦଳେ ଦଳେ ଦଳେରେ,
କେତେ ରକତର ତାତି ଏ ପତାକା ସହିଛି
କେତେ ଲହୁ ଲାଗି ଅଛି କଷାଇ

କେତେ ତମ ଉଆଁସର ଦୁଃଖ ଏ ସହିଚି
ଆଶାର ତାରକା ହୃଦେ ବସାଇ
ଉଠ ଜାଗ ଭୋକୀ ଶୋଷୀ ବନ୍ଦୀ
ତୋ ଜଠର ଅନଳରେ ଜଳି ହେଉ ଛାରଖାର
ଶୋଷଣର ପୁରାତନ ଫନ୍ଦି– ଜଳେ ଜଳେ ଜଳେରେ ।"

X X X

ଆଜି ବି କମ୍ୟୁନିଷ୍ଟମାନେ ଶ୍ରମିକ ଓ ଚାଷୀମାନେ ଲାଲଝଣ୍ଡା ଉତ୍ତୋଳନ ବେଳେ ଇଣ୍ଟରନାସନାଲ ସହିତ ଏହାକୁ ଗାନ କରିଥାନ୍ତି । ଯୁଦ୍ଧୋତ୍ତରକାଳ । ସେତେବେଳେ ସାମ୍ରାଜ୍ୟବାଦ ବିରୋଧୀ ଛାତ୍ର ଆନ୍ଦୋଳନ, ଆର.ଆଇ.ଏନ୍ ବିଦ୍ରୋହ ଆଉ ଜାତୀୟ ମୁକ୍ତିବାହିନୀର ବିଚାର ବିରୁଦ୍ଧରେ ବ୍ୟାପକ ଗଣ ବିକ୍ଷୋଭ । କମ୍ୟୁନିଷ୍ଟମାନଙ୍କ ଏଥିରେ ମୁଖ୍ୟ ଅଂଶ ଗ୍ରହଣ ।

ଏତିକିବେଳେ ୧୯୪୬ରେ କଲିକତାଠାରେ ଅନୁଷ୍ଠିତ ହୁଏ ଛାତ୍ର ସଂଘର ଐତିହାସିକ ଅଧିବେଶନ । ସେଠାରେ କୁମାରୀ ସୁନନ୍ଦା ପଟ୍ଟନାୟକଙ୍କ କଣ୍ଠରେ ଝଂକୃତ ହେଲା :

"ଏଇ ଅନ୍ଧାରେ ଏଇ ଅନ୍ଧାରେ
ଆଗାମୀ କାଲିର ନୂତନ ସକାଳ
ଏଇ ଶିଥିଳ ହାତରେ ବନ୍ଧାରେ–

X X X

ପଥେ ପଥେ ନାଚେ ମୃତ୍ୟୁ ଡମ୍ବରୁ ବାଏ ତାଳ
ସମ୍ମୁଖେ ଡାକେ ଶିଙ୍ଗା- ଉଠା ତୋର କରବାଳ... ।

କମ୍ୟୁନିଷ୍ଟ ପାର୍ଟି ଓଡ଼ିଶାରେ ସ୍ୱାଧୀନତାର ପ୍ରାକ୍‌କାଳ ଓ ଅଗଷ୍ଟ ୧୯୪୭ ପରେ ପରେ ବିଶେଷ ବିଶେଷ ଗଣ ସମସ୍ୟା ଘେନି ଆନ୍ଦୋଳନରେ ଅବତୀର୍ଣ୍ଣ । ପଟିଆ ବନ୍ଧ, ଚାଉଳ ଆନ୍ଦୋଳନ, ଭାଗଚାଷୀ ଆନ୍ଦୋଳନ, ଦ୍ୱିତୀୟ ପର୍ଯ୍ୟାୟ ଗଡ଼ଜାତ ପ୍ରଜା ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ, ଛାତ୍ର ଆନ୍ଦୋଳନ, ଗଞ୍ଜାମରେ ମୁସ୍ତାଦାରୀ ପ୍ରଥା ବିରୋଧୀ ଆନ୍ଦୋଳନ । ଏମିତି କୌଣସି ମାସ ନାହିଁ, ଯେତେବେଳେ କି କଟକରେ ହୁଏତ ସଭା ସମିତି, ବିରାଟ ବିରାଟ ପଟୁଆର, ବିକ୍ଷୋଭ ଅନୁଷ୍ଠିତ ହୋଇନାହିଁ ।

କଟକର ପ୍ରେସ୍ କର୍ମଚାରୀ, ବାରଙ୍ଗ କାଚକଲ ଶ୍ରମିକ, ବ୍ରଜରାଜନଗର କାଗଜକଲ ଶ୍ରମିକ, ରାମପୁର କୋଇଲାଖଣି ଶ୍ରମିକ, ବାଲେଶ୍ୱର ଚାଉଳକଳ ଶ୍ରମିକ– ତାଳଚେର କୋଲିଏରୀ ଶ୍ରମିକ ଏମିତି ବହୁ ସ୍ଥାନରେ କମ୍ୟୁନିଷ୍ଟଙ୍କ ନେତୃତ୍ୱରେ ଶ୍ରମିକ ଆନ୍ଦୋଳନ ।

ଛାତ୍ରମାନଙ୍କ ୟୁନିୟନ-ଜ୍ୟାକ ପୋଡ଼ା ଆନ୍ଦୋଳନ । ଏତିକିବେଳେ ଅସଂଖ୍ୟ ଗୀତ ରଚିତ ହେଲା ଆନ୍ଦୋଳନ ଭିତରୁ ।

କମ୍ରେଡ଼ ଭଗବତୀ ଚରଣ ପାଣିଗ୍ରାହୀଙ୍କ ରଚିତ ମୁକ୍ତିଯୁଦ୍ଧରେ ପ୍ରକାଶିତ :

"ମନ ଚାହାଁରେ ମନ ଚାହାଁରେ
ରଷିଆ ଦେଶରେ ବସିଛି ଲେନିନ୍
ଟେକି ଦେଇଅଛ ବାହାରେ ।"

ଆଣି ଦେଇଥାଏ ଏକ ନୂତନ ଶୈଳୀ, ଆଙ୍ଗିକ । ଲାଲଝଣ୍ଡା, ମଇ ଦିବସ, ବିଶ୍ୱଶାନ୍ତି, ଅକ୍ଟୋବର ବିପ୍ଲବର ସ୍ୱାଗତିକା ଗାନ କରି ମନମୋହନ, ଯଦୁନନ୍ଦନ, ବ୍ରଜନାଥ, ଅନନ୍ତ ପ୍ରମୁଖଙ୍କ ଗୀତ କବିତା ସେ କାଳରେ ଛାଇ ହୋଇଗଲା ।

ତନ୍ମଧ୍ୟରୁ କେତୋଟି ଗୀତର କେତେକ ପଂକ୍ତି ଏଠାରେ ଉଦ୍ଧାର କରାଯାଉଛି ମାତ୍ର ।

ମଇ ପହିଲା ଉଦ୍ଦେଶ୍ୟରେ ମନମୋହନଙ୍କ ରଚିତ ଦୁଇଟି ଗାନ ଶ୍ରମିକ ଶ୍ରେଣୀ ଆନ୍ଦୋଳନକୁ ତେଜୀୟାନ କଲା –

"ଆଜି ମଇ ପହିଲାରେ ଆଜି ମଇ ପହିଲା –
ତୋ' ରକତ ପତାକାର ଜାତକ ଯିଏ ଲିହିଲା ।
ହାତୀଖିଆ କଇଁଥ ସେ ହାତୀଖିଆ କଇଁଥ
ଦୁନିଆର ଭଲମନ୍ଦେ ତା'ର ଅଛି କି ହାତ
ଅବା
ଆଜି ମଇ ପହିଲାରେ ସାଥୀ ଆଜି ମଇ ପହିଲା–
ମିସିସିପି ଦରପଣେ କୋଣାରକ ଚାହିଁଲା ।

ଶ୍ରମିକ ଶ୍ରେଣୀକୁ ଆହ୍ୱାନ ଦେଇ ଲେଖାଗଲା :

"ଆଜି ଆସିଛି ଆହ୍ୱାନ ସମରେ
ଚାଲରେ ଶ୍ରମିକ ଚାଲ –
ତୋ' ଯାତ୍ରାପଥେ, ତୋ ଜୟରଥେ
ପାତେ ଯେ ଘୃଣିତ ଜାଲ
ସଂଚୟୀ ପାଜି ଦଲାଲ
ତା'ର ଲାଗି ତୋଳ ତଲବାର
ଅବିଚଳ ତଲବାର । (ମନମୋହନ)

ଆଉ ଝୁନଝୁନଓ୍ୟାଲା ବିରୁଦ୍ଧରେ ଶ୍ରମିକଙ୍କ ସଂଗ୍ରାମ । ସେହି ଝୁନଝୁନଓ୍ୱାଲା ୧୯୪୬ରେ କମ୍ୟୁନିଷ୍ଟ ପ୍ରାର୍ଥୀ ବୈଦ୍ୟନାଥ ରଥଙ୍କ ବିରୁଦ୍ଧରେ କଂଗ୍ରେସକୁ ସମର୍ଥନ କରୁଥାନ୍ତି । ତାଙ୍କୁ ଆହ୍ୱାନ ଦେଇ ମନମୋହନ ଲେଖିଲେ :

"ଥରେ ପରଖିବା ତୁମ ବଳ ଝୁନଝୁନଓ୍ୱାଲା
ଶ୍ରମିକ ରକତେ ଭରିଅଛ ପିଆଲା ।"

ମହତାବ ପ୍ରଧାନମନ୍ତ୍ରୀ । ସାରା ଓଡ଼ିଶାରେ ଚାଉଳ ମିଳୁ ନଥାଏ । କମ୍ୟୁନିଷ୍ଟପାର୍ଟି ଚାଉଳ ଲାଗି ବିରାଟ ଆନ୍ଦୋଳନ ଆରମ୍ଭ କରିଦେଇଥାଏ । ମହତାବ ତାଚ୍ଛଲ୍ୟ କରି ବିବୃତି ଦେଲେ "ଓଡ଼ିଶାରେ ମାତ୍ର ଶହେକେ ପାଞ୍ଚଜଣ କିଣିଖିଆ । ଓଡ଼ିଶାର ୫୦ ଲକ୍ଷ ଭୂମିହୀନ ଆଦିବାସୀ ହରିଜନ, ଲକ୍ଷ ଲକ୍ଷ ସହରବାସୀ ନିମ୍ନ ମଧ୍ୟବିତ୍ତ, ଖଣିଶ୍ରମିକ ସମସ୍ତେ ଯେପରି ଚାଉଳର ଭଣ୍ଡାର । ତାକୁଇ ଆହ୍ୱାନ ଦେଇ କଟକ ସହରକୁ ପ୍ରତିଦିନ ପ୍ରକଂପିତ କଲା ଏକ ଗାନ :

"ତୁମେ ଆମକୁ ଭାବିଚ ବୋକା ବୋଲି ।
ତୁମେ ଆମକୁ ଭାବିଚ ବୋକା ବୋଲି

X X X

ସତ କରି କୁହ ମହତାବ
ମନେ ଲାଗେ ଆମ ସନ୍ତାପ
ଶହେ ଜଣେ ପାଞ୍ଚ କିଣିଖିଆ ବୋଲି କେଉଁ ପୁରାଣରୁ ଥିଲ ପଢ଼ି ।"

(ମନମୋହନ)

ପ୍ରଧାନମନ୍ତ୍ରୀ ମହତାବ ଆଉ ପଟିଆର ତତ୍‌କାଳୀନ ଜମିଦାର କନିକା ରଜାଙ୍କ ବିରୋଧ ସତ୍ତ୍ୱେ କମ୍ୟୁନିଷ୍ଟମାନଙ୍କ ନେତୃତ୍ୱରେ ପଟିଆବନ୍ଧ ପଡ଼ିବ । ହଜାର ହଜାର ପଟିଆ ଓ ଗାଡ଼କଣ ବାସୀ କାନ୍ଧରେ କୋଦାଳ ମୁଣ୍ଡରେ ଝୁଡ଼ି ହାତରେ ଲାଲଝଣ୍ଡା ଧରି ବାହାରି ପଡ଼ିଲେ । ଯେଉଁ ଗୀତ ସେମାନଙ୍କୁ ଉଦ୍‌ବୁଦ୍ଧ କଲା ଓ ବିରାଟ ପଟିଆ ବନ୍ଧ ପଡ଼ିଲା ତାହା ହେଲା :-

"ଚଳା କୋଦାଳ ଚଳା କୋଦାଳ
ଛନ୍ଦେ ଛନ୍ଦେ ପଟିଆ ବନ୍ଧେ ଭରିଦେ ମାଟି ଲାଲ
ବାର ବରଷର ବାଂଝ ବାଲି
ହସିବ ଫସଲ ସୁନାଥାଳି ।"

ବାସ୍ତବିକ୍ ଆଜି ବି ପଟିଆରେ ସୁନାଥାଳି ଫସଲ ହସୁଛି ।

ଭାରତକୁ ଭାଗ ଭାଗ କରିବା ଲାଗି ବ୍ରିଟିଶ ସରକାରର ମସୁଧା ସଂପର୍କରେ କମ୍ୟୁନିଷ୍ଟ ପାର୍ଟିର ସତର୍କବାଣୀ ଫୁଟି ଉଠିଲା ଏକ ଗାନରେ :–

"ତୁ ବନିଯା ଲାଲ ସିପାହୀ ସାଥୀ
ବନିଯା ଲାଲ ସିପାହୀ–
ଦରିଆ ପାରିରୁରେ ମନ୍ତ୍ରୀଦଳ ଆଣିଛି ତୋ' ପାଇଁ
ହାଣି କୁରାଢ଼ୀ ପଜାଇ ।

ସାଥୀ (ମନମୋହନ)

କୃଷକ ଆନ୍ଦୋଳନ ଓ କମ୍ୟୁନିଷ୍ଟ ପାର୍ଟିର ଦାବୀକୁ ପ୍ରତ୍ୟାଖ୍ୟାନ କରି ଆପଣାର ପ୍ରତିଶ୍ରୁତି ଭୁଲି ସେତେବେଳର କଂଗ୍ରେସ ସରକାର ମହତାବଜୀ ମୁଖ୍ୟମନ୍ତ୍ରୀ ଓ ଶ୍ରୀ ନବକୃଷ୍ଣ ଚୌଧୁରୀ ରାଜସ୍ୱମନ୍ତ୍ରୀ ଥାଇ ଜମିଦାରୀ ପ୍ରଥା ଉଠେଇଲେ ବି ଜମିଦାରମାନଙ୍କ ଲାଗି ମୋଟା କ୍ଷତିପୂରଣ ଝଂଜିଦେଲେ । କମ୍ୟୁନିଷ୍ଟମାନେ ତା' ବିରୁଦ୍ଧରେ ପ୍ରତିବାଦ କରି ଯେଉଁ ସଭା ସମାବେଶ କରାଇଥିଲେ ସେଥିରେ ଝଂକୃତ ହୋଇଉଠିଲା

"ଭଲା ରାମ ରାଇଜରେ ଗୁଳି ପଛେ ଖାଉ ପ୍ରଜା
କ୍ଷତିପୂରଣ ପାଉ ସେ ଜମିଦାର ରଜା ।"

(ମନମୋହନ)

ଏହି ଗୀତ ଅତି ଲୋକପ୍ରିୟ– ସେମିତି ଗଡ଼ଜାତ ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟ ୧୯୪୭-୪୮ । ବାଲୁବଜାରର ଶ୍ରୀ ନିଶାମଣି ତ୍ରିପାଠୀଙ୍କ ବହି ଦୋକାନରେ ଜଣେ ଲେଖକଙ୍କ ସହିତ କମ୍ୟୁନିଷ୍ଟମାନେ ଦିନ ଦିନ ଆଲୋଚନା କରି ସବୁ ଗଡ଼ଜାତ ରଜାଙ୍କ ଅତ୍ୟାଚାରର ନିଖୁଣ ବିବରଣୀମାନ ଦିଅନ୍ତି – ତାଙ୍କ କଲମରୁ ବାହାରୁ ଏକ ଗୀତ ପୁସ୍ତକ । ପ୍ରକାଶ ପାଇଲା ଦଶହରା ଭେଟି - ଲେଖକ ଘନଶ୍ୟାମ ମହାନ୍ତି । ଆଠଗଡ଼ର କମ୍ୟୁନିଷ୍ଟ ପାଲାଦଳ କଣ୍ଠରେ ଆଉ କମ୍ୟୁନିଷ୍ଟ ଓ ପ୍ରଜାମଣ୍ଡଳଗୁଡ଼ିକର କର୍ମୀଙ୍କ କଣ୍ଠରେ ସାରା ଗଡ଼ଜାତରେ ତାହା ଚହଳ ସୃଷ୍ଟି କଲା ।

"ରଖିବ ଯେବେ ଏମୁଣ୍ଡ, ତୁମ ଗୁଣ ବାହୁନିବ ଏ ତୁଣ୍ଡ ହେ
ହେବ ରାମାୟଣ ସାତକାଣ୍ଡ –
ରାତି ରାତି ଯିବ ପାହି ଗୁଣ ବାହୁନା ମୋ' ସରିବ ନାହିଁ ହେ
ଖାଲି ଠିକେ ଠିକେ ଯିବି କହି ହେ –

X X X

କେତେବେଳେ ଚାଷୀଙ୍କର ଘର ଲୁଟି କଲ ସର୍ବସ୍ୱ କ୍ଷୁର ହେ
ଶେଷେ ହେଲେ ସେ ଦେଶୁଁ ବାହାର –
କଟକ ସହର ଆସି ରିକ୍‌ସା ଟାଣେ ତମ ନଟିଆ ଚାଷୀ ହେ
କାଟେ ଅଧେ ଦିନ ଉପବାସୀ –"
ସେହି ଅତ୍ୟାଚାର ପ୍ରତିଶୋଧ ନେବା ଲାଗି ସେ ଲେଖିଲେ :–
ସଜାଇ ତୁମକୁ ଘୋଡ଼ା–ସବାରେ ହୁଅନ୍ତି ମାରି କୋରାଡ଼ା ହେ
ତୁଣ୍ଡେ ଭରନ୍ତି ପିତାତରଡ଼ା –
ରଚନ୍ତା ମାଆ ମଙ୍ଗଳା–ତଡ଼ଲା ବାଲିରେ ରଜା ବେଙ୍ଗଲା ହେ
ଯୋଚି ଦିଅନ୍ତା କରି ଲଙ୍ଗଳା ।"

X X X

ଗଡ଼ଜାତ ମିଶ୍ରଣ ହେବ । ମାତ୍ର ସର୍ଦ୍ଦାର ପଟେଲ ଭାରତର ୬୦୦ ଗଡ଼ଜାତର ମହାରଜା ନବାବଙ୍କୁ ମୋଟା ଭତ୍ତା ଖଞ୍ଜିଦେବେ – ସେମାନଙ୍କ ସହସ୍ର ସହସ୍ର ଏକର ଜମି, ମହଣ ମହଣ ମୋତିମାଣିକ୍ୟ–ଶହ ଶହ ପ୍ରାସାଦ–ନିରାପଦ ରହିବ – ଏହା କମ୍ୟୁନିଷ୍ଟମାନଙ୍କୁ ଜଣାଥିଲା । ୧୯୪୭ ଡିସେମ୍ବର ୧୭ରେ ସର୍ଦ୍ଦାର ପଟେଲ ଓଡ଼ିଶା ଆସି ପ୍ରଥମ ମିଶ୍ରଣ କରେଇବେ । ତାହା ପୂର୍ବରୁ କମ୍ୟୁନିଷ୍ଟପାର୍ଟି ମୁଖପତ୍ର 'ମୁକ୍ତିଯୁଦ୍ଧ' ଏହି ନୀତିର ତୀବ୍ର ବିରୋଧ କରୁଥାଏ । ଶ୍ରମିକ କବି ଯଦୁନନ୍ଦନ ବିଶ୍ୱାଳଙ୍କ କଲମରୁ ନିସୃତ ହେଲା ଗଡ଼ଜାତ–ଭାଗବତ । ତା'ର କେତୋଟି ପଂକ୍ତିରୁ ପ୍ରକାଶନର ୭ ଦିନ ପରେ ପ୍ରମାଣିତ ହେଲା ଯେ ସର୍ଦ୍ଦାର ପଟେଲ ଓ ମହତାବ ରଜାମାନଙ୍କୁ ସମସ୍ତ ସୁଯୋଗ ଦେଇ–ପ୍ରଜା ଆନ୍ଦୋଳନର ସମସ୍ତ ଗଣତାନ୍ତ୍ରିକ ଦାବୀକୁ ପ୍ରତ୍ୟାଖ୍ୟାନ କରିଦେବେ । ସେଥିରେ ଥିଲା :–

ହେ ପ୍ରିୟ ଗଡ଼ଜାତ ଭାଇ ଶୁଣ ସରବେ ମନଦେଇ ।
ଓଡ଼ିଶା ତୁଲେ ଗଡ଼ଜାତ ଏକତ୍ରୀକରଣ ବୃତ୍ତାନ୍ତ ।
ଧ୍ୱଂସ ନକରି ରାଜତନ୍ତ୍ର ମିଳେଇ ଦେବେ ଗଡ଼ଜାତ ।
ଆସିଅଛନ୍ତି ଯେ ପଟେଲ କରିବେ ଏହା ଫଏସଲ ।
ରାଜାମାନଙ୍କୁ ପାଶେ ରାଇ ନିଷ୍ପତ୍ତି ଯିବେ ସେ ତୁଟାଇ ।
ତାଙ୍କ ସର୍ତ୍ତରେ ମିଳନରେ ରାଜା ରହିବେ ନିଶ୍ଚିନ୍ତରେ ।
ବିବୃତ୍ତି ଦେଇ ମହତାବ ରାଜାଙ୍କ ଗାଦି ଭତ୍ତାଯାକ ।
ରଖିବା ପାଇଁ ଛନ୍ତି କହି ରାଜନୀତିରେ ଭାଗଦେଇ ।

(ମୁକ୍ତିଯୁଦ୍ଧ ୧୩।୧୨।୧୯୪୭)

X X X

୧୯୩୬ରୁ ୧୯୫୦ ଭିତରେ, ଯେତେବେଳେ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ବ୍ରିଟିଶ ସରକାରର ଆକ୍ରମଣ, ପରବର୍ତ୍ତୀ କଂଗ୍ରେସ ସରକାରର ଆକ୍ରମଣ, ରାଜରାଜୁଡ଼ା ଜମିଦାର, ମଠମହନ୍ତ, ସାହୁକାର, ପୁଂଜିପତିମାନଙ୍କ ଆକ୍ରମଣ, ନାନା କୁତ୍ସାପ୍ରଚାର, ବାସନ୍ଦ ସତ୍ତ୍ୱେ ଗଠିତ ହେଉଥିଲା, ଏହିପରି ଅନେକ ଗୀତ, କବିତା ପାର୍ଟି ଗଠନରେ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରସାରରେ ସାହାଯ୍ୟ କରିଥିଲା ।

'ରକ୍ତଶିଖା' ପୁସ୍ତକକୁ ବ୍ରିଟିଶ ସରକାର ବେଆଇନ କରିଥିଲା । କୋଟିକେଣ୍ଟ ଗୀତ ପୁସ୍ତିକାକୁ ମହତାବଙ୍କ ସରକାର ବେଆଇନ କରିଥିଲା । ମାତ୍ର ବିପ୍ଳବୀ ପାର୍ଟି କମ୍ୟୁନିଷ୍ଟ ପାର୍ଟିକୁ କେହି ମାରି ପାରେ ନାହିଁ କି ବିପ୍ଳବୀଗାନକୁ ଜନମାନସରୁ କେହି ବେଆଇନ କରିପାରେ ନାହିଁ ।

□□□

ରଚନା କାଳ – ୧୯୭୫

# ଜଣେ ସ୍ୱାଧୀନତା ସଂଗ୍ରାମୀଙ୍କୁ ଚିଠି

ପ୍ରିୟ ଚିତ୍ତ,

ତମର ସଂପାଦନାରେ ଗୋଟିଏ ଦେଶପ୍ରେମୀ ପତ୍ରିକା ପ୍ରକାଶ ପାଉଛି ଜାଣିଲି । ଆଜିର ତଥ୍ୟ ସମ୍ବାଦ ବିସ୍ଫୋରଣ ଯୁଗରେ ଯେଉଁଠି ଦେଶର ଓ ବିଦେଶର ବେତାର, ଦୂରଦର୍ଶନ ଆଉ କୋଟୀଶ୍ୱରମାନଙ୍କ ଦ୍ୱାରା ପ୍ରକାଶିତ, ଲକ୍ଷ ଲକ୍ଷ ସଂଖ୍ୟାରେ ବିତରିତ ପ୍ରଚାରିତ ସମ୍ବାଦପତ୍ର ଜଗତ୍ କୋଟି କୋଟି ପାଠକ, ଦର୍ଶକ, ଶ୍ରୋତାଙ୍କ ରୁଚିବୋଧକୁ ବଦଳାଇ ଚାଲିଛି, ସେତିକିବେଳେ ତମେ କେତେଜଣ ଆମ ରାଜ୍ୟର ଏକ କୋଣରେ କ୍ଷୁଦ୍ର ପତ୍ରିକାଟି ପ୍ରକାଶ କରିବାର ଯଥାର୍ଥତା, ତା'ର ଆୟୁଆୟୁଷ ସମ୍ପର୍କରେ ଯେ କେହି ପ୍ରଶ୍ନ କରିବ । ତେବେ ବିଶ୍ୱକବି ରବୀନ୍ଦ୍ରଙ୍କ ଭାଷାରେ "ଯଦି କେଉ ନା-ଆସେ, ତେବେ ଏକଲା ଚଲୋରେ" ହୁଏତ ପ୍ରଭାବିତ ହୋଇ କେହି ତମକୁ ଗ୍ରହଣ କରୁ ନକରୁ ଆମ ସ୍ୱାଧୀନତା ସଂଗ୍ରାମ ଯେଉଁ ମହନୀୟ ମାନବିକ ମୂଲ୍ୟବୋଧଗୁଡ଼ିକୁ ଧରି ଦେଶର ସ୍ୱାଧୀନତା ଆଣିଥିଲା, ଯେଉଁ ମୂଲ୍ୟବୋଧଗୁଡ଼ିକୁ ଏବେ ଜଳାଞ୍ଜଳି ଦିଆଯାଇଛି ଓ ଯାଉଛି, ସେଗୁଡ଼ିକୁ ପୁନଃପ୍ରତିଷ୍ଠା କରିବାର ଲକ୍ଷ୍ୟ ଘେନି ଏପରି ଉଦ୍ୟମ କେତକେ କରୁଛ, ତେଣୁ ସାଧୁବାଦ ।

ହଁ, ଆମେ ସ୍ୱାଧୀନତା ସଂଗ୍ରାମରେ କିଛି ନା କିଛି ଭାଗ ନେଇଥିଲେ । ଆମ ଭିତରୁ ମହାତ୍ମାଗାନ୍ଧୀ, ଯାହାଙ୍କୁ ଜାତିର ପିତା ବୋଲି କହୁ, ତାଙ୍କୁ ହତ୍ୟା କରାଗଲା । ଯିଏ ହତ୍ୟା କଲା ଆଜି ତାଙ୍କରି ଜୟଗାନ, ଆଉ ମହାତ୍ମାଗାନ୍ଧୀ ମୁର୍ଦ୍ଦାବାଦର ରଣଧ୍ୱନି । ମହାତ୍ମାଗାନ୍ଧୀଙ୍କ ଫଟୋ ଉଠାଇ ଦେଇ ତାଙ୍କ ସ୍ଥାନରେ ତାଙ୍କ ହତ୍ୟାକାରୀ ନାଥୁରାମ୍ ଗଡ଼ସେଙ୍କ ଫଟୋ ପୂଜା ବି କରାଗଲାଣି । ସାମ୍ପ୍ରଦାୟିକ ସଂପ୍ରୀତି, ସାମ୍ପ୍ରଦାୟିକ ଐକ୍ୟ, ହିନ୍ଦୁ ମୁସଲମାନ ଶିଖ ଇସାୟି ଭାଇଚାରା, ସୌହାର୍ଦ୍ଦ୍ୟ ଏଇତ ଥିଲା ଭାରତବାସୀଙ୍କ ସ୍ୱାଧୀନତା ସଂଗ୍ରାମର ଏକ ଶ୍ରେଷ୍ଠ ମୂଲ୍ୟବୋଧ । ଆଜି ସେଇ ମୂଲ୍ୟବୋଧ କେଉଁଠି ? ଗାନ୍ଧୀ ହତ୍ୟା ଦିନୁ ଯେ ସେଇ ମୂଲ୍ୟବୋଧକୁ ନିଶ୍ଚିହ୍ନ କରିବାର ପ୍ରୟାସ ଚାଲିଛି, ଆର୍.ଏସ୍.ଏସ୍., ବିଶ୍ୱ ହିନ୍ଦୁ ପରିଷଦ, ବି.ଜେ.ପି., ବଜରଙ୍ଗ ଦଳ, ଶିବସେନା ପ୍ରଭୃତି ଯେ ସଂଖ୍ୟାଗରିଷ୍ଠଙ୍କ ମଧ୍ୟରେ ସାମ୍ପ୍ରଦାୟିକ ଉତ୍ତେଜନା, ବିଦ୍ୱେଷ ସୃଷ୍ଟି କରିଛନ୍ତି ଓ ତାହା ଯେ ସଂଖ୍ୟାଲଘୁମାନଙ୍କ ପକ୍ଷରୁ ସାମ୍ପ୍ରଦାୟିକତାକୁ ଉତ୍ସାହିତ କରୁଛି ଓ ତାହାହିଁ ପଞ୍ଜାବ, କାଶ୍ମୀର, ଆସାମ ଓ ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ ବିଚ୍ଛିନ୍ନତାବାଦୀମାନଙ୍କୁ ଖୋରାକ, ବଳ ଯୋଗାଉଛି, ଏକଥା କ'ଣ ଆମେ ସ୍ୱାଧୀନତା ସଂଗ୍ରାମୀମାନେ ରୋକଠୋକ୍ ଆମ ଦେଶବାସୀଙ୍କ ଆଗରେ ବାଢ଼ିପାରୁଛୁ ? କାହିଁ ଗଲା ଆମର ଦେଶର ଐକ୍ୟ, ଅଖଣ୍ଡତା, ଧର୍ମ

ନିରପେକ୍ଷତା ପ୍ରତି ଅଙ୍ଗୀକାର ?

ଦ୍ୱିତୀୟ ମୂଲ୍ୟବୋଧ ସାମାଜିକ ନ୍ୟାୟ । ପୃଥିବୀ କୌଣସି ଆଧୁନିକ ବା ପୁରାତନ ଦେଶରେ ଯାହା ଦେଖା ଦେଇ ନଥିଲା, ମହାନ୍ ସାଂସ୍କୃତିକ ମୂଲ୍ୟବୋଧଭରା ଭାରତରେ ଗୋଟିଏ କଳା କଳୁଷ ରହିଥିଲା । ତାହା ହେଲା ମନୁ ସଂହିତାର ଚତୁଃବର୍ଣ୍ଣ–ବର୍ଣ୍ଣାଶ୍ରମ, ଅସ୍ପୃଶ୍ୟତା ତା'ପରେ ଜାତି ଓ ପାଟକ । ଦେଶକୁ ଆର୍ଯ୍ୟମାନେ ଆସିବା ପୂର୍ବରୁ ଯେ ଆଦିମ ଅଧିବାସୀ, ହରିଜନ ଓ ଦକ୍ଷିଣରେ ଦ୍ରାବିଡ଼ମାନେ ଥିଲେ, ପୁଣି ଆସିଲେ ହୁନ୍, କୁଷାଣ, ଗ୍ରୀକ୍, ଗୁର୍ଜର, ଜାଠ, ମଙ୍ଗୋଲୀୟ ଓ ଆର୍ଯ୍ୟ – ସେହି ଆର୍ଯ୍ୟ ସମାଜରେ ଏକ ସମୟରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ପରି ଉଚ୍ଚଜାତି ସୃଷ୍ଟି କରାଗଲା ଓ ଅନ୍ୟ ସମସ୍ତଙ୍କୁ ଶୂଦ୍ର ଓ ଅଚ୍ଛୁଆ ରଖାଗଲା । ଏହି ଅନ୍ୟାୟକୁ ଦୂର କରିବା ତ ସ୍ୱାଧୀନତା ସଂଗ୍ରାମର ମୂଲ୍ୟବୋଧ ଥିଲା । ଆମେ କେତେଦୂର ସେ ଦିଗରେ ସଫଳ ହୋଇଛେ ? ବରଂ ଜାତିଆଣ ଦଙ୍ଗା ଓ ହରିଜନ ହତ୍ୟା ଚାଲିଛି ।

ଆମରି ଆଖି ଆଗରେ ଦେଶଟାରେ ଧର୍ମର ଦୁହାଇ ଦେଇ ଦଙ୍ଗାର ସୁଅ ଛୁଟିଛି । ସହସ୍ର ସହସ୍ରଙ୍କ ହତ୍ୟା ଚାଲିଛି । ତାହାର ଯେଉଁମାନେ କର୍ତ୍ତା ତାହାକୁ କ'ଣ ଆମେ ସ୍ୱାଧୀନତା ସଂଗ୍ରାମୀମାନେ ଚିହ୍ନଟ କରିଛେ, ସେମାନଙ୍କ ନରସଂହାର ଆଦର୍ଶ ବିରୁଦ୍ଧରେ ଏକ ସ୍ୱରରେ ଆମେ କ'ଣ ଧ୍ୱନି ଉଠାଇଛେ ?

ଆମ ସ୍ୱାଧୀନତା ସଂଗ୍ରାମର ଆଉ ଏକ ମହାନ୍ ମୂଲ୍ୟବୋଧ ଥିଲା, ଅର୍ଥନୈତିକ ସମତା । ଏହି ବିଶାଳ ଭୂଖଣ୍ଡର ଭୂପୃଷ୍ଠରୁ ଭୂଗର୍ଭରୁ, ନଦୀ ସମୁଦ୍ରର ଜଳରାଶିରୁ ପ୍ରଚୁର ସଂପଦକୁ ବିଦେଶୀ ଶାସନ କବ୍ଜାରୁ ଉଦ୍ଧାର କରି ଆମ ଦେଶର କୋଟି କୋଟି ହାତର ମାଂସପେଶୀକୁ ଠୁଳ କରି ଏମିତି ସମ୍ପଦ ସୃଷ୍ଟି କରିବା ଯାହା ଫଳରେ ଦାରିଦ୍ର୍ୟ ଯିବ, ବେକାରୀ ଯିବ, ଅଶିକ୍ଷା ଦୂରୀଭୂତ ହେବ । ସମସ୍ତେ ଭଲରେ ଚଳିବେ । ସ୍ୱାଧୀନତା ପୂର୍ବରୁ ଏ ଦେଶର ଗାଁଗଣ୍ଡା, ସହର କ'ଣ ଥିଲା, ଶିକ୍ଷା ବିଜ୍ଞାନ କ'ଣ ଥିଲା, ରାସ୍ତାଘାଟ କ'ଣ ଥିଲା, ଘରଦ୍ୱାର, ପୋଷାକ ପରିଚ୍ଛେଦ କ'ଣ ଥିଲା, ସେକଥା କ'ଣ ୧୯୪୭ ପରବର୍ତ୍ତୀ କାଳରେ ଜନ୍ମିଥିବା ଆମ ଦେଶବାସୀ ସମସ୍ତେ ଜାଣନ୍ତି ? ସ୍ୱାଧୀନତା ପରେ ଏସବୁର ଅଭୂତପୂର୍ବ ବିକାଶ ଘଟିଛି, ତାହା କ'ଣ କିଏ ଅସ୍ୱୀକାର କରିବ ? କିନ୍ତୁ କାହିଁକି ଏପରି ବିପୁଳ ସମ୍ପଦ ସୃଷ୍ଟି ହୋଇଥିଲେ ହେଁ ଦେଶର ସତୁରି ଭାଗ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ, ଦଶ କୋଟି ଯୁବକୁଳ ବେକାର, ଶତକଡ଼ା ୬୦ ନିରକ୍ଷର । କାହିଁ ଗଲା ଆର୍ଥନୈତିକ ସମତାର ମୂଲ୍ୟବୋଧ ?

ଚିତ୍ତବାବୁ, ତମ ଜରିଆରେ ବଞ୍ଚି ରହିଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଖରେ ଏ ଘେନି ମନର ବେଦନା ପ୍ରକାଶ କଲାବେଳେ ସବୁର ଉତ୍ତର ମୁଁ ଦେଇପାରିବି ସେପରି ଦମ୍ଭ ମୋର ନାହିଁ । ତେବେ ସମସ୍ତେ ବ୍ୟଥିତ ଯେ ସ୍ୱାଧୀନତା, ଗଣତନ୍ତ୍ର ବ୍ୟକ୍ତି ସ୍ୱାଧୀନତାର ସୁଯୋଗଗୁଡ଼ିକୁ କାହିଁକି ଦୁର୍ଯୋଗରେ ପରିଣତ କରାଯାଉଛି ? କିଏ କରୁଛନ୍ତି ? କାହିଁକି ଆଜି ରାସ୍ତାଘାଟରେ ଜୀବନର ନିରାପତ୍ତା ନାହିଁ ? କାହିଁକି ମଦନିଶା ନିରାକରଣ ମୂଲ୍ୟବୋଧ ଆଜି

ପ୍ରହସନରେ ପରିଣତ ହୋଇଛି ? କାହିଁକି ନାରୀ ନିର୍ଯ୍ୟାତନା ବଧୂହତ୍ୟା, ଧର୍ଷଣ, ଯୌତୁକ, ଧର୍ମନାମରେ ସତୀଦାହର ତାରିଫ କରାଯାଉଛି ? 'ଶିବସେନା' ନାମଧାରୀମାନେ ଅଣମରାଠୀ ଦକ୍ଷିଣ ଭାରତୀୟମାନଙ୍କୁ ମହାରାଷ୍ଟ୍ରକୁ ଗୃହଶୂନ୍ୟ କରାଇ ନିର୍ଯ୍ୟାତିତ କରାଉଛନ୍ତି ?

ଆମେ ଗାଉଥିଲେ "ପାରସୀ ସିନ୍ଧୁ, ଗୁଜରାଟ ମରାଠା, ଦ୍ରାବିଡ଼ ଉତ୍କଳ ବଙ୍ଗ ବିନ୍ଧ୍ୟ ହିମାଚଳ ଯମୁନା ଗଙ୍ଗା ଉଚ୍ଛଳ ଜଳଧି ତରଙ୍ଗ ।

ସେ ମୂଲ୍ୟବୋଧ ଗଲା । ହିନ୍ଦୁରାଜର ଧ୍ୱନି, ଶିବଙ୍କ ନାମରେ ଶିବସେନାର ଅଣମରାଠୀ, ବିଶେଷରେ ମାଲୟାଲମ ତାମିଲଙ୍କୁ ହତ୍ୟା ।

ପଞ୍ଜାବରେ ଶିଖିସ୍ଥାନ, ଖଲିସ୍ତାନର ଧ୍ୱନିରେ ନିତିଦିନ ନାରକୀୟ ହତ୍ୟା, ହରଣଚାଲ, ଲୁଟ—ସେମିତି କାଶ୍ମୀର, ଯେଉଁଠି ହିନ୍ଦୁରାଜା ହରିସିଂହଙ୍କ ଭାରତ ଦ୍ୱେଷକୁ ପଣ୍ଡକରି କାଶ୍ମୀରର ମୁସଲମାନ ଭାଇମାନେ ବନ୍ଧୁକ ଧରି ସହସ୍ର ସହସ୍ର ସଂଖ୍ୟାରେ ପ୍ରାଣଦେଇ ପାକିସ୍ତାନ ବିରୁଦ୍ଧରେ ଲଢ଼ି ତାକୁ ଭାରତରେ ମିଶେଇ ଥିଲେ, ସେଠାରେ ସେମାନେ ସନ୍ତ୍ରାସବାଦ ବିଚ୍ଛିନ୍ନତାର ଶିକାର ହେଲେ । କାହିଁଗଲା ଆମ ସ୍ୱାଧୀନତାର ଏସବୁ ମହାନ ମୂଲ୍ୟବୋଧ ?

ଆମେ ସ୍ୱାଧୀନତା ସଂଗ୍ରାମୀମାନେ କ'ଣ ନିଜର ସମାଲୋଚନା କରିଛେ ? କ'ଣ ଆମର ତ୍ରୁଟି ବିଚ୍ୟୁତି ଥିଲା ଏବଂ ସ୍ୱାଧୀନତା ପରେ କ'ଣ ସବୁ ତ୍ରୁଟି ବିଚ୍ୟୁତ ଆମଠାରେ ଫୁଟି ଉଠି ଆମ ସମସ୍ତଙ୍କୁ ଆମ ବଂଶଧରମାନଙ୍କ ନିକଟରେ ଲଙ୍ଗଳା କରି ଛାଡ଼ିଦେଲା । ଏଇ ଧରନ୍ତୁ, ଆମେ ନିତି ସମ୍ବାଦପତ୍ର ପଢୁଛେ, ଅମୁକ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀଙ୍କର ଦେହାନ୍ତ ହେଲା । ଅଥଚ ଯେଉଁମାନେ ଆମେ ବଂଛେ, ଆମେ ଦେଖୁ ଯେ, କେତେକ ସ୍ୱାଧୀନତା ସଂଗ୍ରାମକୁ ବିରୋଧ କରି ବ୍ରିଟିଶ୍ ପକ୍ଷରେ ଥିଲେ । କିଏ କେଉଁ ଅସାମାଜିକ କାମ କରି ଜେଲଖାନା ଯାଇଥିଲେ, ସେ ଧରଣର କେତେକ ବ୍ୟକ୍ତିଙ୍କୁ ଆମ ସ୍ୱାଧୀନତା ସଂଗ୍ରାମର କେତେକ ବରିଷ୍ଠନେତା ସାର୍ଟିଫିକେଟ୍ ଦେଇଛନ୍ତି । ତାହା ଯେଉଁମାନେ ଜାଣିଛନ୍ତି ସେମାନେ କାହିଁକି ସମସ୍ତ ସ୍ୱାଧୀନତା ସଂଗ୍ରାମୀଙ୍କୁ ଏକ ତଉଲରେ ତଉଲିବେ ନାହିଁ ? ପୁଣି ସ୍ୱାଧୀନତା ସଂଗ୍ରାମର ବିଜୟ ପରେ ସେହି ସ୍ୱାଧୀନତା ସଂଗ୍ରାମୀମାନେ କେନ୍ଦ୍ରରେ ଓ ରାଜ୍ୟରେ ଶାସନଭାର ନେଲେ । ସେମାନଙ୍କ ଭିତରୁ ସବୁ ରାଜ୍ୟରେ ବେଶ୍ ସଂଖ୍ୟକ ବଡ଼ ବଡ଼ିଆ ଦୁର୍ନୀତିଗ୍ରସ୍ତ ହେଲେ । କିଏ କିଏ ମାଫିଆ ଗୋଷ୍ଠି ତିଆରି କରି କଳେ ବଳେ କୌଶଳେ କ୍ଷମତା ଓ ଅର୍ଥ ଉପାର୍ଜନ କଲେ । ଅତି ଦରିଦ୍ର ଥାଇ ବେଶ୍ ଧନାଢ଼୍ୟ ହେଲେ । ଏହା ଦେଖି ଜାଣି ସ୍ୱାଧୀନତା ସଂଗ୍ରାମର ଅସଲ ମୂଲ୍ୟବୋଧକୁ ନୂତନ ବଂଶଧର ଯେ ହେୟ ଜ୍ଞାନ କରୁଛନ୍ତି ଏଥିପାଇଁ କ'ଣ ଆମେ ସେମାନଙ୍କୁ ଦୋଷୀ କରିବା ?

ସ୍ୱାଧୀନତା ସଂଗ୍ରାମ ଇତିହାସ କଥା ଧରନ୍ତୁ । ଆମେ କ'ଣ ବଙ୍ଗଳାର 'ନୀଳ ବିଦ୍ରୋହ'କୁ ସ୍ୱାଧୀନତା ସଂଗ୍ରାମର ଏକ ଅଖଣ୍ଡ ଅଂଶ ବୋଲି ଆମ ବଂଶଧରକୁ ଜଣେଇଛୁ ? ଆମେ କ'ଣ ପଞ୍ଜାବର କାର୍ତ୍ତି କିଶାନ୍ ପାର୍ଟି, ଗଦ୍‌ଦର ପାର୍ଟିର ବିଦେଶରେ ଓ ଆମ ଦେଶରେ

ବ୍ରିଟିଶ୍ ବିରୋଧୀ ବିରାଟ ଅଭ୍ୟୁଥାନ୍‌କୁ ଆମ ସ୍ୱାଧୀନତା ସଂଗ୍ରାମର ଅବିଚ୍ଛିନ୍ନ ଅଙ୍ଗ ବୋଲି କହିଛେ ? ଆମେ କ'ଣ ବଙ୍ଗଳା, ଉତ୍ତର ପ୍ରଦେଶ, ପଞ୍ଜାବ ଓ ମହାରାଷ୍ଟ୍ର ପ୍ରଭୃତି ସ୍ଥାନରେ ଯେଉଁ ବ୍ରିଟିଶ୍ ବିରୋଧୀ ସନ୍ତ୍ରାସବାଦୀ ଆନ୍ଦୋଳନରେ ଅଗଣିତ ଯୁବକ ଯୁବତୀ ପ୍ରାଣ ଦେଇଥିଲେ ସେମାନଙ୍କୁ ଯଥୋଚିତ ମର୍ଯ୍ୟାଦା ଦେଇଛେ ? ଆମେ କ'ଣ ଦେଶବ୍ୟାପୀ ଜମିଦାର ପ୍ରଥା ବିରୋଧୀ ଆନ୍ଦୋଳନକୁ ବ୍ରିଟିଶ୍ ଶିଳ୍ପପତି ଓ ବାଗାନ୍ ମାଲିକଙ୍କ ବିରୋଧରେ ଶ୍ରମିକମାନଙ୍କ ଆନ୍ଦୋଳନକୁ ଆମ ମହାନ୍ ସ୍ୱାଧୀନତା ଯୁଦ୍ଧର ଅଙ୍ଗ ବୋଲି କହିବାକୁ କୁଣ୍ଠା କରିନାହୁଁ ? ଏମିତି ନେତାଜୀ ସୁବାଷ ବୋଷଙ୍କ ଭାରତୀୟ ଜାତୀୟବାହିନୀର ସଂଗ୍ରାମକୁ ସେତେବେଳେ ଜାତୀୟ ଆନ୍ଦୋଳନର ଅଙ୍ଗ ବୋଲି ବିଚାରିବାକୁ କ'ଣ ଦ୍ୱିଧା ନଥିଲା ? ପୁନଶ୍ଚ ଦେଶବ୍ୟାପୀ ରାଜା ମହାରାଜା ନବାବମାନଙ୍କ ବିରୁଦ୍ଧରେ ଗଡ଼ଜାତ ପ୍ରଜାମାନେ କିଏ ବନ୍ଧୁକ ଧରି କିଏ ସଭା ସମାବେଶ ସତ୍ୟାଗ୍ରହ କରି ଆନ୍ଦୋଳନ କରିଥିଲେ ସେସବୁ ଆନ୍ଦୋଳନକୁ ଆମ ସ୍ୱାଧୀନତା ସଂଗ୍ରାମର ଅଂଶ ବିଶେଷ ରୂପେ ଯଥେଷ୍ଟ ଉଚିତ ମର୍ଯ୍ୟାଦା ଦିଆଯାଇଛି କି ?

ଲେଖାଟି ଦୀର୍ଘ ହେବା ଭୟରେ ଆଉ ଆଗକୁ ଯାଉନାହିଁ । ଖାଲି ଏତିକି ଯେ ଆମ ସ୍ୱାଧୀନତା ଆନ୍ଦୋଳନ ଓ ଜାତିର ପିତା ଗାନ୍ଧିଙ୍କ ଆମକୁ ଆତ୍ମନିର୍ଭରଶୀଳ ହେବା ପାଇଁ ଯେଉଁ ଦୀକ୍ଷା ଓ ପ୍ରେରଣା ଦେଇଥିଲେ, ଯାହାକି ସ୍ୱାଧୀନତାର ଓ ସାର୍ବଭୌମତ୍ୱର ଅସ୍ଥି, ମଜ୍ଜା, ଆଜି ତାକୁ ବନ୍ଧକ ଦିଆଯାଉଛି, ବିକ୍ରି କରାଯାଉଛି । ପଶ୍ଚିମ ଦୁନିଆର ସର୍ବଗ୍ରାସୀ ଧନକୁବେରଙ୍କ ଅର୍ଥସଂସ୍ଥା ଯଥା ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ଅନ୍ୟାନ୍ୟ ପୁଞ୍ଜିସଂସ୍ଥା ହାତରେ ଦେଶକୁ ନିର୍ବିକାର ଚିତ୍ତରେ ଟେକି ଦିଆଯାଉଛି । ଦେଶର ସର୍ବନାଶ ହେବ, କୋଟି କୋଟି ଜନସାଧାରଣଙ୍କ ଦୁଃଖ, ଦୁର୍ଦ୍ଦଶା, ଶୋଷଣ ବଢ଼ି ଚାଲିବ । ଗୋଟାଏ ଅଲଗା ରୀତିରେ ପ୍ରଚ୍ଛନ୍ନ ଭାବରେ ଆମ ଦେଶ ତା'ର ସ୍ୱାଧୀନତା ହରାଇବ । ସବୁ କ୍ଷେତ୍ରରେ ଜନସାଧାରଣ ଏହାର କୁଫଳ ଭୋଗ କରୁଛନ୍ତି । ଏହା ପୁଣି ଆବଶ୍ୟକ କରେ ଆଉ ଏକ ଭିନ୍ନ ଧରଣର ସ୍ୱାଧୀନତା ସଂଗ୍ରାମ ।

ମୋର ବିଶ୍ୱାସ ଆଗାମୀ ପୀଢ଼ିର ଯୁବକ-ଯୁବତୀ ଆମ ସ୍ୱାଧୀନତା ସଂଗ୍ରାମର ମୂଳ ମୂଲ୍ୟବୋଧଗୁଡ଼ିକୁ ଆଜିର ପରିସ୍ଥିତିରେ ଆହୁରି ଶକ୍ତିଶାଳୀ କରିବେ, ସଂଗ୍ରାମ କରିବେ ଓ ବିଜୟୀ ହେବେ ।

ଓଡ଼ିଶାର ତତ୍କାଳୀନ ସ୍ୱାଧୀନତା ସଂଗ୍ରାମ, ଜମିଦାରୀ ଉଚ୍ଛେଦ ଆନ୍ଦୋଳନ, ଗଡ଼ଜାତ ପ୍ରଜାମୁକ୍ତି-ଆନ୍ଦୋଳନର ଅନ୍ୟତମ ବରେଣ୍ୟ ନେତା ଗୌରାଙ୍ଗ ଚରଣ ଦାସଙ୍କ ସ୍ମୃତି ପଖାଳି ଏ ଯେଉଁ ସଂଖ୍ୟାର ପତ୍ରିକାଟି ପ୍ରକାଶ ପାଉଛି ତହିଁରେ କିଏ କହିପାରନ୍ତି ମୋର ଏ ଲେଖା ଉଦ୍‌ଭଟ ଚିନ୍ତା ବୋଲି । ତାକୁ ପ୍ରକାଶ କରିବାର ସୁଯୋଗ ପାଇଲି । ଧନ୍ୟବାଦ ।

॥ ଇତି ॥

ଗୋବିନ୍ଦଚନ୍ଦ୍ର ମହାନ୍ତି

ooo

# ଓଡ଼ିଶାରେ କମ୍ୟୁନିଷ୍ଟ ସମ୍ବାଦପତ୍ରଗୁଡ଼ିକର ଇତିହାସ
## (୧୯୩୬–୧୯୭୫)

**'ମୁକ୍ତି ଯୁଦ୍ଧ'** ହିଁ ଆନୁଷ୍ଠାନିକ ଭାବରେ ଓଡ଼ିଶା ରାଜ୍ୟ ଶାଖା, ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଆଇନସମ୍ମତ ସାପ୍ତାହିକ ମୁଖପତ୍ର । ୧୯୪୨ ଅକ୍ଟୋବର ମାସରେ ଭାରତ ତଥା ପୃଥିବୀ ରାଜନୀତିର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ମାର୍କସବାଦ ଲେନିନ୍‌ବାଦ ଅର୍ଥାତ୍ ବୈଜ୍ଞାନିକ ସମାଜବାଦର ବାର୍ତ୍ତାବହ ଏହି ସାପ୍ତାହିକ ଜନ୍ମର ପୃଷ୍ଠଭୂମି ଦେଖିଲେ ୧୯୩୬-୧୯୩୭ରୁ ହିଁ ଏପରି ଏକ ପତ୍ରିକା ପ୍ରକାଶନର ପ୍ରାରମ୍ଭିକ ପ୍ରସ୍ତୁତି ଆରମ୍ଭ ହୋଇଯାଇଥିଲା ।

**'ଆଧୁନିକ'**– ୧୯୩୬-୩୭ରେ ନବଯୁଗ ସାହିତ୍ୟ ସଂସଦର ପ୍ରତିଷ୍ଠା ଏବଂ 'ଆଧୁନିକ' ମାସିକ ପତ୍ରିକାର ପ୍ରକାଶନ ଓଡ଼ିଶାର ରାଜନୈତିକ ଜୀବନରେ ଏକ ନୂଆ ଯୁଗ ସୃଷ୍ଟି କରିଥିଲା । କମ୍ୟୁନିଷ୍ଟ ସାମ୍ବାଦିକତାର ମାପକାଠିରେ ମାପିଲେ ଏହି ମାସିକଟିର ଛଅଟି ସଂଖ୍ୟା ସଂପୂର୍ଣ୍ଣ ମାର୍କସବାଦୀ ଲେନିନ୍‌ବାଦୀ ଚିନ୍ତାଧାରାର ମୁଖପତ୍ର ବୋଲି କୁହାନଗଲେ ବି ଏହା ହିଁ ପ୍ରଗତିଶୀଳ ଚିନ୍ତାଧାରା, ମାର୍କସବାଦୀ ଅର୍ଥନୀତି, ମାର୍କସବାଦୀ ରାଜନୀତି ଓ ମାର୍କସବାଦୀ ସାହିତ୍ୟିକ ଚିନ୍ତାଧାରାକୁ ସର୍ବପ୍ରଥମ ଓଡ଼ିଶା ସାଂସ୍କୃତିକ-ରାଜନୈତିକ ଜୀବନରେ ଆଣି ଉପସ୍ଥାପନ କରିଥିଲା ।

ଆଧୁନିକ ପ୍ରକାଶନର ଅଳ୍ପକାଳ ପରେ ୧୯୩୭ରେ ପ୍ରକାଶ ପାଏ 'କୃଷକ' ନାମକ ସାପ୍ତାହିକ ତତ୍କାଳୀନ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ମୁଖପତ୍ର ରୂପେ । ଜାତୀୟ ଆନ୍ଦୋଳନକୁ ବାମ ଦିଗରେ ନେବା, କୃଷକ, ଶ୍ରମିକ ଓ ଅନ୍ୟାନ୍ୟ ବୁଦ୍ଧିଜୀବୀମାନଙ୍କ ଆଶା, ଆକାଂକ୍ଷା ଓ ସେ କାଳର ଗଣତାନ୍ତ୍ରିକ ଦାବୀଗୁଡ଼ିକ ଲାଗି ଆନ୍ଦୋଳନ, ସଙ୍ଗଠନ କରିବା, ୧୯୩୮-୩୯ର ଗଡ଼ଜାତ ପ୍ରଜାମାନଙ୍କ ମୋଗଲବନ୍ଦୀର ଚାଷୀମାନଙ୍କ ପରି ବେଠି, ବେଗାରୀ, ରସଦ ଇତ୍ୟାଦି ବିରୁଦ୍ଧରେ ଜାଗ୍ରତ ହେଉଥିବା ଆନ୍ଦୋଳନକୁ ସଙ୍ଗଠିତ ରୂପ ଦେବା, ସେତେବେଳେ 'କୃଷକ' ସାପ୍ତାହିକ ହିଁ ସଂପାଦନ କରୁଥିଲା । ଆଧୁନିକ ମାସିକଟି ମୁଖ୍ୟତଃ ଯେଉଁ ଯୁବକ ବୁଦ୍ଧିଜୀବୀମାନେ ବୈଜ୍ଞାନିକ ସମାଜବାଦର ଚିନ୍ତାଧାରାକୁ ଗ୍ରହଣ କରୁଥିଲେ ସେମାନଙ୍କ ଉଦ୍ୟମରେ ପ୍ରକାଶ ପାଇଥିଲା । ତାହାର ସଂପାଦକ ଥିଲେ କମ୍ରେଡ଼ ଭଗବତୀଚରଣ ପାଣିଗ୍ରାହୀ ।

କୃଷକ ସାପ୍ତାହିକଟିର ଚରିତ୍ର ବାମପନ୍ଥୀ-ଗଣତାନ୍ତ୍ରିକ । ସେତେବେଳର ଚାଷୀ ଆନ୍ଦୋଳନ ଓ ଗଡ଼ଜାତ ପ୍ରଜାମାନଙ୍କ "ହୁଙ୍କାପିଟା" ରାଜଶାସନର ନାରକୀୟ ଦମନ ଅତ୍ୟାଚାର

ବିରୋଧୀ ସଂଗ୍ରାମର ମୁଖପତ୍ର ରୂପେ କୃଷକର ଆବିର୍ଭାବ । କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଚୌଧୁରୀ, ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ଶ୍ରୀ ସାରଙ୍ଗଧର ଦାସ ପ୍ରମୁଖ ତହିଁରେ ସଂପୃକ୍ତ ଥିଲେ ମଧ ବସ୍ତୁତଃ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ସଂପାଦକ ତଥା କମ୍ୟୁନିଷ୍ଟ କମ୍ରେଡ଼ ଭଗବତୀଚରଣ ପାଣିଗ୍ରାହୀ ଥିଲେ ତାହାର ସଂପାଦକ ଏବଂ କମ୍ରେଡ଼ ଗୁରୁଚରଣ ପଟ୍ଟନାୟକ ତାହାର ପରିଚାଳନା ସମ୍ପାଦକ ।

କୃଷକରେ ସିଧାସଳଖ ମାର୍କସବାଦୀ ତତ୍ତ୍ୱର ଆଲୋଚନା ଏବଂ ଶ୍ରେଣୀ ସଙ୍ଗଠନର ବାର୍ତ୍ତା ପ୍ରଚାରିତ ହେଉ ନଥିଲେ ହେଁ ଏହା ସେତେବେଳେ ସମାଜବାଦ ସଂପର୍କରେ ସୋଭିଏତ୍ ସମାଜବାଦୀ ବିପ୍ଳବ ସମ୍ପର୍କରେ ଲେଖାମାନ ବେଳେବେଳେ ଦେଉଥିଲା ।

ଶ୍ରୀ ଜୟପ୍ରକାଶ ନାରାୟଣ, ସେତେବେଳେ ଥିଲେ ଭାରତୀୟ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ସାଧାରଣ ସଂପାଦକ । ୧୯୩୯ ଶେଷ ଭାଗରେ ସେ କଟକ ଆସି ରେଭେନ୍ସା କଲେଜ ଇଷ୍ଟ ହଷ୍ଟେଲ, ଡକ୍ଟର ବଳଭଦ୍ର ପ୍ରସାଦଙ୍କ ଘରେ ପାର୍ଟିର ଏକ ବୈଠକ ଡକାଇଲେ । ସେଠାରେ ହିଁ ସେ ଅଭିଯୋଗ ବାଢ଼ିଲେ ଯେ, କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ କମ୍ୟୁନିଷ୍ଟମାନଙ୍କ ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଛି । ଏହା ପୂର୍ବରୁ ମିନୁ ମାସାନୀ (ଯେ କି ସେତେବେଳେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନେତା ଥିଲେ ଓ ପରେ ସ୍ୱତନ୍ତର ନେତା ହେଲେ) "କଂଗ୍ରେସ ସୋସାଲିଷ୍ଟ ପାର୍ଟି ବିରୁଦ୍ଧରେ କମ୍ୟୁନିଷ୍ଟ ପାର୍ଟିର ଷଡ଼ଯନ୍ତ୍ର" ନାମକ ପୁସ୍ତିକା ପ୍ରକାଶ କରିଥାନ୍ତି ।

ଢେଙ୍କାନାଳ ରଜାର ଅତ୍ୟାଚାର ବିରୁଦ୍ଧରେ ଯେତେବେଳେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନେତୃତ୍ୱରେ ସତ୍ୟାଗ୍ରହ ଆନ୍ଦୋଳନ ହେବାର ସ୍ଥିର ହେଲା, ନବବାବୁ, ଭଗବତୀବାବୁ ଓ ଗୌରାଙ୍ଗ ଦାସଙ୍କ ନେତୃତ୍ୱରେ ସତ୍ୟାଗ୍ରହ ଚାଲିବା ଦିନ ଧାର୍ଯ୍ୟ ହୋଇଗଲା । ଭାଗବତୀବାବୁଙ୍କୁ କୃଷକର ସଂପାଦକତ୍ୱ ଛାଡ଼ିବାକୁ କୁହାଗଲା । ତା'ପରେ "କୃଷକ" କମ୍ୟୁନିଷ୍ଟ ବିରୋଧୀ, ସୋଭିଏତ ବିରୋଧୀ ଭୂମିକାରେ ଅବତୀର୍ଣ୍ଣ ହେଲା ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀଙ୍କ ଗୋଷ୍ଠୀ ଦ୍ୱାରା ।

୧୯୩୮-୩୯ର ଗଡ଼ଜାତ ଆନ୍ଦୋଳନ ବେଳେ ବିଶେଷତଃ ଢେଙ୍କାନାଳରେ ହୁଙ୍କାପିଟା ଶାସନ ବିରୋଧରେ ଅଭ୍ୟୁତଥାନ ବେଳେ **'ରଣଭେରୀ'** ନାମକ ହାତଲେଖା ସାଇକ୍ଲୋଷ୍ଟାଇଲ ବୁଲେଟିନ ସେତେବେଳେ ବାଙ୍କାବଜାରରୁ ତତ୍କାଳୀନ କମ୍ୟୁନିଷ୍ଟ ଯୁବକମାନଙ୍କ ଦ୍ୱାରା ପ୍ରକାଶିତ ହେଲା ।

୧୯୩୪ରୁ କମ୍ୟୁନିଷ୍ଟ ପାର୍ଟି ବେଆଇନ । ତା' ପୂର୍ବରୁ ଭାରତରେ ଗଢ଼ି ଉଠୁଥିବା କମ୍ୟୁନିଷ୍ଟ ଗୋଷ୍ଠୀଙ୍କୁ ନିପାତ କରିବା ଲାଗି ବ୍ରିଟିଶ ସାମ୍ରାଜ୍ୟବାଦ ପେଶାଓ୍ୱାର କାନପୁର, ମିରଟ ଷଡ଼ଯନ୍ତ୍ର ମକଦ୍ଦମାମାନ କରି କମ୍ୟୁନିଷ୍ଟ ନେତାମାନଙ୍କୁ ଦୀର୍ଘକାଳର କାରାଦଣ୍ଡ ଦେଇଥାଏ ।

**"ଆଗେ ଚାଲ"** – ୧୯୩୯ ସେପ୍ଟେମ୍ବର ୧ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଚାରିଆଡ଼େ କମ୍ୟୁନିଷ୍ଟମାନଙ୍କୁ ଗିରଫ କରାଗଲା । ଏକ ପକ୍ଷରେ ବ୍ରିଟିଶ-ଫରାସୀ ସାମ୍ରାଜ୍ୟବାଦ,

ଅନ୍ୟ ପକ୍ଷରେ ହିଟଲରର ନାଜୀବାଦ ଓ ମୁସୋଲିନୀ ଫାସିଷ୍ଟବାଦ-ଜାପାନୀ ସମରବାଦ । ଯୁଦ୍ଧର ଚରିତ୍ର ସାମ୍ରାଜ୍ୟବାଦୀ । ଭାରତର ଜାତୀୟ କଂଗ୍ରେସ ୧୯୩୯ରେ କ୍ଷମତା ଦାବୀ କରି ଚାପ ପ୍ରୟୋଗ କରିବାକୁ ମନ୍ତ୍ରିମଣ୍ଡଳଗୁଡ଼ିକରୁ ଇସ୍ତଫା ଦେଇଥାଏ । ଅଧିକ କ୍ଷମତା ଦିଆଗଲେ ସେହି ଯୁଦ୍ଧରେ ଭାଗ ନେବ ବୋଲି କହି ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କରାଯିବ ବୋଲି ନିଷ୍ପତ୍ତି ନେଉଥାଏ ।

କମ୍ୟୁନିଷ୍ଟ ପାର୍ଟି ସାମ୍ରାଜ୍ୟବାଦୀ ଯୁଦ୍ଧର ସଂପୂର୍ଣ୍ଣ ବିରୋଧ କରି ଜାତୀୟ ଆନ୍ଦୋଳନକୁ ବୈପ୍ଲବିକ କରିବା ଲାଗି ଆହ୍ୱାନ ଦେଇ ଏହି ସାମ୍ରାଜ୍ୟବାଦୀ ଯୁଦ୍ଧକୁ 'ନ ଏକ ପାଇ, ନ ଏକ ଭାଇ'ର ଧ୍ୱନି ଉଠାଇ ଓଡ଼ିଶାରେ ଗୋପନରେ ପ୍ରକାଶ କରେ **'ଆଗେ ଚାଲ'** ନାମକ ବେଆଇନ ସାଇକ୍ଲୋଷ୍ଟାଇଲ୍ ପତ୍ରିକା ।

ଏହା ହିଁ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ମାର୍କସବାଦୀ-ଲେନିନ୍‌ବାଦୀ ପ୍ରଥମ ସମ୍ବାଦପତ୍ର । ଲେନିନ୍‌ଙ୍କ ଭାଷାରେ ପାର୍ଟିର ମୁଖପତ୍ର ହିଁ ପାର୍ଟିର ସଙ୍ଗଠକ । ବାସ୍ତବିକ ସେତେବେଳେ ୧୯୩୯ ଶେଷ ଭାଗ ଓ ୧୯୪୦ରେ ପାର୍ଟିର ସଙ୍ଗଠକ ରୂପେ "ଆଗେ ଚାଲ"ର ସଂଖ୍ୟାଗୁଡ଼ିକ ସାହାଯ୍ୟ କରିଥିଲା । ବ୍ରିଟିଶ ପୁଲିସର ଆଖିକୁ ଏଡ଼େଇ, ଗୋପନରେ ସମ୍ବାଦପତ୍ର ପ୍ରକାଶ କରିବା, ତା'ର ସରବରାହ ବ୍ୟବସ୍ଥା କରିବା, ଗୋପନ ଡାକ ବ୍ୟବସ୍ଥା କରିବାର ବୈପ୍ଲବିକ କର୍ମକୌଶଳ ଏହି ପତ୍ରିକାର ପ୍ରକାଶନ କମ୍ୟୁନିଷ୍ଟମାନଙ୍କୁ ଶିକ୍ଷା ଦେଲା ।

**"କମ୍ୟୁନିଷ୍ଟ"**– ୧୯୪୦ ଜୁଲାଇରେ ବ୍ରିଟିଶ ସାମ୍ରାଜ୍ୟବାଦ ଆରମ୍ଭ କରିଦେଲା ଓଡ଼ିଶାରେ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା । କମ୍ୟୁନିଷ୍ଟ ନେତାମାନଙ୍କର କଟକ ଜେଲରେ ଚାଲିଲା ଗୋପନ ବିଚାର । ସେତେବେଳେ ଏହି ଦେଶପ୍ରେମୀମାନଙ୍କ ମକଦ୍ଦମା ଲଢ଼ିବାରେ ବହୁ ବିଶିଷ୍ଟ ଓକିଲ, ବୁଦ୍ଧିଜୀବୀ, କଂଗ୍ରେସ ନେତା ସାହାଯ୍ୟ କରିଥିଲେ ।

ଷଡ଼ଯନ୍ତ୍ର ମକଦ୍ଦମାର ଫଳ ଓଲଟା ହେଲା । ଓଡ଼ିଶା ସାରା କମ୍ୟୁନିଷ୍ଟମାନଙ୍କ କଥା ପ୍ରଚାରିତ ହେଲା । ସ୍ୱାଧୀନତାକାମୀ ନୂତନ ଯୁବକ ଛାତ୍ର–କଂଗ୍ରେସ କର୍ମୀ ପାର୍ଟି ପ୍ରତି ଆକୃଷ୍ଟ ହେଲେ ।

ସେତିକିବେଳେ କମ୍ରେଡ଼ ରାମକୃଷ୍ଣ ପତିଙ୍କ ନେତୃତ୍ୱରେ ପୁଣି ଏକ ଗୋପନ ସମ୍ବାଦପତ୍ର "କମ୍ୟୁନିଷ୍ଟ" ସାଇକ୍ଲୋଷ୍ଟାଇଲ ହୋଇ ପ୍ରଚାରିତ ହେଲା ।

କମ୍ୟୁନିଷ୍ଟ ନେତାମାନଙ୍କୁ ୧୮ ମାସରୁ ୯ ମାସ ଯାଏ ଏମିତି ବିଭିନ୍ନ କାଳ ପାଇଁ ଅନୁଗୁଳ ଜେଲଖାନାରେ ଠୁଙ୍କି ଦିଆଗଲା ।

୧୯୪୧ ଜୁନ୍ ୨୨ରେ ହିଟଲର ସାରା ୟୁରୋପ ଦଖଲ କରି ପ୍ରଥମ ସମାଜବାଦୀ ରାଷ୍ଟ୍ର ସୋଭିଏତ ୟୁନିଅନ ଉପରେ ଆକ୍ରମଣ କଲା । ସାରା ପୃଥିବୀରେ ଫାସିଷ୍ଟ ରାଜୁତି ପ୍ରତିଷ୍ଠା କରିବ, ଭାରତ ଉପରେ 'ଓରିଏଣ୍ଟ' ନାମକ ଯୁଦ୍ଧ ଯୋଜନା ଦ୍ୱାରା ଆକ୍ରମଣ କରି ଭାରତବାସୀଙ୍କର ସ୍ୱାଧୀନତା ସଂଗ୍ରାମକୁ ଧ୍ୱଂସ କରିବ, ବ୍ରିଟିଶ ଓ ଅନ୍ୟାନ୍ୟ ସାମ୍ରାଜ୍ୟବାଦୀଙ୍କ

ଶାସନ ବଦଳରେ ଏସିଆ–ଆଫ୍ରିକାରେ ବର୍ବର ଫାସିଷ୍ଟ ବ୍ୟବସ୍ଥା ପ୍ରତିଷ୍ଠା କରିବ । ଏହାହିଁ ହେଲା ଫାସିଷ୍ଟବାଦର ଘୋଷଣା ।

ଯୁଦ୍ଧର ଗତି ଓ ଚରିତ୍ର ବଦଳିଗଲା । ଜାତୀୟ କଂଗ୍ରେସ ମଧ୍ୟ ଫାସିଷ୍ଟବାଦ ଭୟାବହତାର ସ୍ୱରୂପ ଉପଲବ୍ଧି କରି ଜାତୀୟ ସରକାର ପ୍ରତିଷ୍ଠିତ ହେଲେ ଫାସିଷ୍ଟବାଦକୁ ପରାସ୍ତ କରିଦେବ ବୋଲି ଅଗଷ୍ଟ ପ୍ରସ୍ତାବ ଧାର୍ଯ୍ୟ କଲା ।

୧୯୪୨ ଜୁଲାଇ ମାସରେ ପୃଥିବୀର ଜନମତ ଓ ଫାସିଷ୍ଟ ବିରୋଧୀ ମେଣ୍ଟର ପ୍ରବଳ ଚାପ ହେତୁ କମ୍ୟୁନିଷ୍ଟ ପାର୍ଟି ଆଇନସମ୍ମତ ଘୋଷିତ ହୋଇଥିଲା ।

ବମ୍ବେଠାରେ ଅଗଷ୍ଟ ୮ ତାରିଖରେ କଂଗ୍ରେସର ଅଗଷ୍ଟ ପ୍ରସ୍ତାବ ଗ୍ରହଣ ପରେ ପରେ ବ୍ରିଟିଶ ସାମ୍ରାଜ୍ୟବାଦ ଜାତୀୟ ନେତାମାନଙ୍କୁ ବନ୍ଦୀ କରି ସାରା ଦେଶରେ ବର୍ବର ହିଂସ୍ର ଦମନଲୀଳାର ସ୍ରୁଅ ଛୁଟେଇଲା, ବହୁ କମ୍ୟୁନିଷ୍ଟଙ୍କୁ, ଅଗଣିତ କଂଗ୍ରେସ କର୍ମୀଙ୍କୁ, ଯୁବକ-ଛାତ୍ରଙ୍କୁ ଜେଲ୍‌ଖାନାରେ ଭର୍ତ୍ତି କରାଗଲା ।

ବ୍ରିଟିଶ ସାମ୍ରାଜ୍ୟବାଦୀ ଦମନର ପ୍ରତିବାଦ, ଜାତୀୟ ନେତାମାନଙ୍କର ମୁକ୍ତି ଦାବୀ ଫାସିଷ୍ଟବାଦ ଓ ଜାପାନୀ ଆକ୍ରମଣର ପ୍ରତିରୋଧ ଓ ସାମ୍ରାଜ୍ୟବାଦ ସୃଷ୍ଟ ଯୁଦ୍ଧକାଳର ଅଭାବ ଅନାଟନ, ଦୁର୍ଭିକ୍ଷ, ଜବରଦସ୍ତ ଯୁଦ୍ଧ ଚାନ୍ଦା ଆଦାୟ ଇତ୍ୟାଦିର ବଳିଷ୍ଠ ପ୍ରତିବାଦର ମୁଖପତ୍ର ଆବଶ୍ୟକ ।

**"ମୁକ୍ତିଯୁଦ୍ଧ"**– ଏହି ଘଡ଼ିସନ୍ଧିବେଳେ ୧୯୪୨ ଅକ୍ଟୋବର ମାସରେ ଆବିର୍ଭୂତ ହୁଏ "ମୁକ୍ତିଯୁଦ୍ଧ" । କମ୍ୟୁନିଷ୍ଟମାନଙ୍କ ସମ୍ବାଦପତ୍ର ବୋଲି କଟକର କୌଣସି ପ୍ରେସ୍ ତାହାକୁ ଛାପିବାକୁ ମନା କରିଦିଅନ୍ତି । "କୃଷକ" କାଗଜ ପ୍ରକାଶନ ବେଳେ ମଧ୍ୟ ଅନେକ ପ୍ରେସ୍ ତାହାକୁ ବାହାର କରିବାକୁ ମନା କରିଦେଇଥିଲେ । ସାରସ୍ୱତ ପ୍ରେସ୍‌ର ଶ୍ରୀ ବାଳକୃଷ୍ଣ କର ହିଁ ଉକ୍ତ ପତ୍ରିକା ନିଜ ପ୍ରେସ୍‌ରୁ ପ୍ରକାଶ କରିବାର ସାହସିକତା ଦେଖାଇଥିଲେ । କମ୍ୟୁନିଷ୍ଟମାନେ ତାଙ୍କୁ ଅନୁରୋଧ କଲେ । ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଲେଖାଗଲା । ଆଇନ ଅନୁସାରେ ସେ ଏକ ଚିଠି ଦେଲେ ଯେ ପତ୍ରିକା ପ୍ରକାଶ କରିବାରେ ବାଧା ନାହିଁ । ସେହି ଚିଠି ଖଣ୍ଡିକ ଦେଖାଇବା ପରେ ବାଳକୃଷ୍ଣ ବାବୁ ସାହସିକତାର ସହିତ ଉକ୍ତ ପତ୍ରିକା ତାଙ୍କ ପ୍ରେସରୁ ପ୍ରକାଶ କରିବାକୁ ସମ୍ମତ ହେଲେ ।

କାଗଜର ଘୋର ସଙ୍କଟ । ବଜାରରେ ମିଳୁ ନଥାଏ । ସରକାରୀ କୋଟା ବା କମ୍ୟୁନିଷ୍ଟ ପତ୍ରିକାକୁ ସହଜରେ ମିଳିବ କାହୁଁ ? ଛିଣ୍ଡା କାଗଜ, ଛିଣ୍ଡା କନା ସଂଗ୍ରହକରି କାଗଜ ତିଆରିର ପଦ୍ଧତି ଶିଖି କମ୍ୟୁନିଷ୍ଟମାନେ ମଣ୍ଡ ତିଆରିକରି ହାତ ତିଆରି କାଗଜ ଉତ୍ପାଦନ କଲେ । ସେଥିରେ ହିଁ "ମୁକ୍ତିଯୁଦ୍ଧ" ସାପ୍ତାହିକ ରୀତିମତ ପ୍ରକାଶ ପାଇଲା କମ୍ରେଡ୍ ଶରତ ପଟ୍ଟନାୟକଙ୍କ ସମ୍ପାଦକତ୍ୱରେ, ଭଗବତୀବାବୁ ଥାଅନ୍ତି ପାର୍ଟି ସଂପାଦକ ।

"ମୁକ୍ତିଯୁଦ୍ଧ" ବ୍ରିଟିଶ ସାମ୍ରାଜ୍ୟବାଦ ସୃଷ୍ଟ ୧୯୪୩ର ଭୟାବହ ଦୁର୍ଭିକ୍ଷ ଓ ଅନାହାର ମୃତ୍ୟୁ ବିରୁଦ୍ଧରେ ସଂଗ୍ରାମ ଚଳେଇଲା । "ଦୋଷ କାହାର ଦାୟୀ କିଏ" ଶିରୋନାମାର ଲେଖା ପାଇଁ ବ୍ରିଟିଶ ସରକାର ତା' ଉପରେ ୫୦୦ ଟଙ୍କା ଜରିମାନା କଲା । ବହୁ ବନ୍ଧୁ ସମର୍ଥକ ଉକ୍ତ ଟଙ୍କା ଜରିମାନା ପୈଠ କରିବାକୁ ସାହାଯ୍ୟ କଲେ ଆଉ ପାର୍ଟିର ଖଣ୍ଡେ ଛୋଟିଆ ପ୍ରେସ୍ କରିବାକୁ ମଧ୍ୟ ସାହାଯ୍ୟ କଲେ । ୧୯୪୩ ଅକ୍ଟୋବର ୨୩ ତାରିଖରେ ଦୁର୍ଭିକ୍ଷ ବିରୁଦ୍ଧରେ ଗଞ୍ଜାମର ଜନତାଙ୍କୁ ସାହାଯ୍ୟ କରିବାକୁ ଯାଇ ପାର୍ଟି ସଂପାଦକ କମ୍ରେଡ୍ ଭଗବତୀଙ୍କ ଅକାଳ ମୃତ୍ୟୁମୁଖରେ ପଡ଼ିଲେ । କମ୍ରେଡ୍ ଶରତ ପଟ୍ଟନାୟକ ପାର୍ଟିର ସଂପାଦକ ଓ କମ୍ରେଡ୍ ଗୁରୁଚରଣ ପଟ୍ଟନାୟକ ମୁକ୍ତିଯୁଦ୍ଧର ସଂପାଦକ ହେଲେ । ଆରମ୍ଭ ହୋଇଗଲା ନବଯୁଗ ପ୍ରେସ୍ । ଆଉ ପାର୍ଟି ସାହିତ୍ୟ ବିକ୍ରୟ କେନ୍ଦ୍ର ନବଯୁଗ ଗ୍ରନ୍ଥାଳୟ । ଅଲିଶା ବଜାରରେ କାଗଜମଣ୍ଡ ତିଆରି କୁଣ୍ଡ ଆଉ ଗୋଟିଏ ହ୍ୟାଣ୍ଡପ୍ରେସ୍, ସାମାନ୍ୟ ଟାଇପ ଯୋଗେ "ମୁକ୍ତିଯୁଦ୍ଧ" ପ୍ରକାଶିତ ହେଲା ପାର୍ଟିର ନିଜସ୍ୱ ଛାପାଖାନାରେ ।

ସେ କାଳର ଜନ ଆନ୍ଦୋଳନଗୁଡ଼ିକର ନେତୃତ୍ୱ ନେଇ ୧୯୪୫ ବେଳକୁ ଓଡ଼ିଶାରେ ଯୁଦ୍ଧୋତ୍ତର କାଳରେ ଗଢ଼ି ଉଠୁଥିବା ଜନ ଅଭ୍ୟୁତ୍‌ଥାନଗୁଡ଼ିକର ବୈଜ୍ଞାନିକ ସମାଜବାଦୀ ଆଦର୍ଶଗତ ନେତାରୂପେ ମୁକ୍ତିଯୁଦ୍ଧ ଉପଗତ ହେଲା ।

ଏକ ପକ୍ଷରେ କମ୍ୟୁନିଷ୍ଟମାନଙ୍କ ଉପରେ କଂଗ୍ରେସ ନେତୃତ୍ୱର ଆକ୍ରମଣ, ଅନ୍ୟାନ୍ୟ ପତ୍ରପତ୍ରିକାର କମ୍ୟୁନିଷ୍ଟ ଓ ସୋଭିଏତ ବିରୋଧୀ ଅପପ୍ରଚାର ଓ କୁତ୍ସା, ପ୍ରରୋଚନାର ସାମନା କରି କମ୍ୟୁନିଷ୍ଟ ସୁଲଭ ଦୃଢ଼ତା ସାହସିକତା ଓ ବୈପ୍ଳବିକତା ସହକାରେ ମୁକ୍ତିଯୁଦ୍ଧ ସେ କାଳର ଶ୍ରମିକ ଚାଷୀ, ଛାତ୍ର, ମଧ୍ୟବିତ୍ତମାନଙ୍କ ସଂଗ୍ରାମର ବଳିଷ୍ଠ ମୁଖପତ୍ର କେବଳ ନୁହଁ, ସଂଗଠକ ମଧ୍ୟ ହେଲା ।

ଯୁଦ୍ଧୋତ୍ତର କାଳରେ ଗଡ଼ଜାତ ପ୍ରଜାମାନଙ୍କର ଦ୍ୱିତୀୟ ପର୍ଯ୍ୟାୟ ଆନ୍ଦୋଳନ । ୧୯୩୮-୩୯ର ବେଠି, ଭେଟି, ରସଦ୍, ମାଗଣ, ଇତ୍ୟାଦି ଆନ୍ଦୋଳନର ପର୍ଯ୍ୟାୟ ଉନ୍ନିତ ହେଲା ଦାୟିତ୍ୱମୂଳକ ଶାସନ ଦାବୀ ଏବଂ ଗଡ଼ଜାତଗୁଡ଼ିକର ମୋଗଲବନ୍ଦୀ ଓଡ଼ିଶା ସହିତ ମିଶ୍ରଣ, ବୃହତ୍ତର ଓଡ଼ିଶା ଗଠନର ଦାବୀ । ପ୍ରତ୍ୟେକଟି ଗଡ଼ଜାତରେ ତାହା ଢେଙ୍କାନାଳ, ନୀଳଗିରି, ରଣପୁର, ନୟାଗଡ଼, ତିଗିରିଆ, ବଡ଼ମ୍ବା, ନରସିଂହପୁର, ଖଣ୍ଡପଡ଼ା, ଦଶପଲ୍ଲା, ମୟୁରଭଞ୍ଜ, ରେଢ଼ାଖୋଲ, ଆଠମଲ୍ଲିକ, ବଲାଙ୍ଗିର, ପାଟନା, କଳାହାଣ୍ଡି, କେଉଁଝର, ବାମଣ୍ଡା, ସୋନପୁର, ଗାଙ୍ଗପୁର, ତାଳଚେର, ପାଲଲହଡ଼ା ପ୍ରଭୃତିରେ ଆନ୍ଦୋଳନ ଓ ରଜାମାନଙ୍କ ଦମନ । ମୁକ୍ତିଯୁଦ୍ଧର ପ୍ରତ୍ୟେକଟି ସଂଖ୍ୟା ରାଜଶାସନଗୁଡ଼ିକର ସମୂଳ ଲୋପ ପାଇଁ ସେମାନଙ୍କ ସମସ୍ତ ସଂପତ୍ତି ବାଜ୍ୟାପ୍ତ ପାଇଁ, ଓଡ଼ିଶା ସହିତ ସେଗୁଡ଼ିକର ମିଶ୍ରଣ ପାଇଁ ଆହ୍ୱାନ ଦେଲା ।

ମୁକ୍ତିଯୁଦ୍ଧ ତା'ର ସମସ୍ତ ଶକ୍ତିଦେଇ ସଂଗଠିତ କଲା ବିଭିନ୍ନ ଜନ ଆନ୍ଦୋଳନ, ଭାଗଚାଷ

ଆନ୍ଦୋଳନ, ପଟିଆ ବନ୍ଧ ଆନ୍ଦୋଳନ, ରାଜରାଜୁଡ଼ା ଓ ଜମିଦାରମାନଙ୍କ ସହିତ କଂଗ୍ରେସ ସରକାରର ସାଲିସ ବିରୁଦ୍ଧରେ ସଂଗ୍ରାମର ମୁଖପତ୍ର ମୁକ୍ତିଯୁଦ୍ଧ ହୋଇଉଠିଲା । ରାଜରାଜୁଡ଼ାଙ୍କୁ ମୋଟା ଭତ୍ତା, ସେମାନଙ୍କ ଉଆସ, ଜମି ଓ ସୁନାରୂପା ସଲାମିର ନିରାପତ୍ତା ପଟ୍ଟେ, ମହତାବ ଖଞ୍ଜି ଦେବା ପରେ ରାଜାମାନେ ଓଡ଼ିଶାକୁ ଦ୍ୱିଖଣ୍ଡ କରିବାକୁ ଯେତେବେଳେ ମହାକୋଶଳ ଗଠନର ଧ୍ୱନି ଉଠାଇ ଓଡ଼ିଶାର ପଶ୍ଚିମାଂଚଳ ଜନସାଧାରଣଙ୍କୁ ବିଭ୍ରାନ୍ତ କରିବାକୁ ବସିଲେ ମୁକ୍ତିଯୁଦ୍ଧ ତାହା ବିରୁଦ୍ଧରେ ଚଳେଇଲା ଅନମନୀୟ ସଂଗ୍ରାମ ।

**"ସଂବାଦ", "ସପ୍ତାହ", "ସମାଚାର", "ସନ୍ଧାନ"**

୧୯୪୮ କଲିକତାର ଦ୍ୱିତୀୟ ପାର୍ଟି କଂଗ୍ରେସ ପରେ ପାର୍ଟି ବାମପନ୍ଥୀ ବିଚ୍ୟୁତିର ଶିକାର ହେଲା ।

ମହତାବ ସରକାରର କୋପଦୃଷ୍ଟି ପଡ଼ିଲା ମୁକ୍ତିଯୁଦ୍ଧ ଉପରେ । ୧୯୪୮ ଶେଷଭାଗରେ "ମୁକ୍ତିଯୁଦ୍ଧ" କଂଗ୍ରେସ ସରକାର ଦ୍ୱାରା ବେଆଇନ ଘୋଷିତ ହେଲା । କମ୍ୟୁନିଷ୍ଟ ପାର୍ଟି ବସ୍ତୁତଃ ବେଆଇନ । ସାରା ରାଜ୍ୟରୁ କମ୍ୟୁନିଷ୍ଟ ପାର୍ଟିର ଅଧିକାଂଶ ନେତା ଓ କର୍ମୀ କଟକ ଛତ୍ରପୁର ପ୍ରଭୃତି ଜେଲଖାନାରେ । ଜେଲଖାନାରେ କମ୍ୟୁନିଷ୍ଟମାନଙ୍କ ୫୦-୫୫ ଦିନ କାଳ ଅନଶନ ପ୍ରତିବାଦ । କାହାର ରକ୍ତବାନ୍ତି ହେଲାଣି ତ କିଏ ମୃତ୍ୟୁର ସମସ୍ତ ଲକ୍ଷଣ ପ୍ରକାଶ କଲେଣି ।

ବାହାରେ ମୁଷ୍ଟିମେୟ ନେତୃମଣ୍ଡଳୀ ଅଜ୍ଞାତବାସରେ । ତଥାପି ପାର୍ଟିର ସଂଗଠକ, ଜନସଂଗ୍ରାମଗୁଡ଼ିକର ନିର୍ଦ୍ଦେଶକ ମୁଖପତ୍ର ଆବଶ୍ୟକ । ବାହାର କରାଗଲା ପ୍ରଥମେ ୧୯୪୮ରେ ସାପ୍ତାହିକ "ସମ୍ବାଦ" । କେତୋଟି ସଂଖ୍ୟାପରେ ତାକୁ ବେଆଇନ କରାଗଲା । ୧୯୪୯ରେ ପ୍ରକାଶ ପାଇଲା "ସପ୍ତାହ" । ତାକୁ ମଧ କେତୋଟି ସଂଖ୍ୟା ପରେ ବେଆଇନ କରାଗଲା । କମ୍ୟୁନିଷ୍ଟ ପାର୍ଟି ଏପରି ଦୁର୍ବିସହ ଦମନର ଶିକାର ହେଲେ ମଧ ମହତାବ ସରକାରଙ୍କୁ ଜବାବ ଦେଇ ପୁଣି ପ୍ରକାଶ କଲା ୧୯୫୦ରେ ସାପ୍ତାହିକ "ସମାଚାର" ଏବଂ ତା'ପରେ "ସନ୍ଧାନ" ପ୍ରକାଶ ପାଇଲା ।

କିନ୍ତୁ ଦମନ ପ୍ରଖର ହେଲା । ନେତୃତ୍ୱ ଗୋପନବାସ । ପ୍ରାୟ ସମସ୍ତ ପାର୍ଟି ସାଥୀ ଜେଲଖାନାରେ । ପ୍ରାୟ ଏକବର୍ଷ ପାର୍ଟିର ଆଉ କୌଣସି ମୁଖପାତ୍ର ନଥିଲା । କେବଳ ଗୋପନରେ ପ୍ରକାଶ ପାଉଥିବା ପାର୍ଟିର ଦଲିଲ ପ୍ରସ୍ତାବାବଳୀ ।

**ନୂଆ ଦୁନିଆ**

ପାର୍ଟି ମୁଖପତ୍ର ଜୀବନରେ ଏହି ଶୂନ୍ୟସ୍ଥାନକୁ ପୂରଣ କରିବାକୁ ବାହାରେ ଥିବା ପାର୍ଟି ସମର୍ଥକ, ଦରଦୀ ଗଣତାନ୍ତ୍ରିକ ପ୍ରଗତିଶୀଳ ବ୍ୟକ୍ତିମାନଙ୍କ ଉଦ୍ୟମ ଚାଲିଲା । ସର୍ବଶ୍ରୀ ମୋହନ ଦାସ, ବିଶ୍ୱନାଥ ପଶାଏତ, ଗଙ୍ଗାଧର ରଥ, ଶଶିଭୂଷଣ ପଟ୍ଟନାୟକ, ଦିଗମ୍ବର ଭୂୟାଁ ଓ ପାର୍ଟିର

ଆଉ ଘନିଷ୍ଠ ବନ୍ଧୁଙ୍କ ମଳିତ ଉଦ୍ୟମରେ ବାମପନ୍ଥୀ-ଗଣତାନ୍ତ୍ରିକ କମ୍ୟୁନିଷ୍ଟ ପାର୍ଟି ସମର୍ଥକ ସାପ୍ତାହିକ କଃ ଶରତ ପଟ୍ଟନାୟକଙ୍କ ଦ୍ୱାରା ବଡ଼େଇସାହିର କଟକ ପ୍ରେସ୍‌ରେ କମ୍ପୋଜ୍ ହୋଇ ଶ୍ରୀ ଗଂଗାଧର ରଥଙ୍କ ଟ୍ରେଡ଼ଲ ମେସିନ୍‌ରେ ପେନ୍‌ସନ୍ ଲେନ୍‌ରେ ଛାପାହୋଇ ପ୍ରଚାରିତ ହେଲା । ଯୁଦ୍ଧ ସରୁ ସରୁ ପୁନଶ୍ଚ ଯୁଦ୍ଧ ଘନଘଟା ସୃଷ୍ଟି କରିବାକୁ ସାମ୍ରାଜ୍ୟବାଦୀମାନଙ୍କ ଖଳ ଉଦ୍ୟମ ବିରୁଦ୍ଧରେ ବିଶ୍ୱଶାନ୍ତି ପାଇଁ ଓଡ଼ିଶାରେ ନୂଆ ଦୁନିଆ ସୃଷ୍ଟିକଲା ପ୍ରଥମ ଅଭିଯାନ । କମ୍ୟୁନିଷ୍ଟ ପାର୍ଟି ଉପରେ ଚାଲିଥିବା ଦମନର ପ୍ରତିବାଦର କରି କଂଗ୍ରେସ ସରକାର ନେଉଥିବା ଜନବିରୋଧୀ ନୀତିଗୁଡ଼ିକ ବିରୁଦ୍ଧରେ ଆବାଜ ଉଠାଇ ଏହା ନବଜୀବନ ଦେଲା ଜନ ଆନ୍ଦୋଳନଗୁଡ଼ିକୁ । ସଂପାଦକ ଥିଲେ ଶ୍ରୀ ମୋହନ ଦାସ ।

୧୯୫୧ରେ କଲିକତାଠାରେ ନିଖିଳ ଭାରତ ପାର୍ଟି ସମ୍ମିଳନୀରେ ବାମପନ୍ଥୀ ଗୋଷ୍ଠୀବାଦୀ ବିଚ୍ୟୁତିରୁ ପାର୍ଟିକୁ ଉଦ୍ଧାର କରିବାର ପ୍ରଥମ ପଦକ୍ଷେପ ନିଆଗଲା । ନାରୀସଂଘ ସଦନରେ ଓଡ଼ିଶା ପାର୍ଟି କର୍ମୀମାନଙ୍କର ସମ୍ମିଳନୀ ଅନୁଷ୍ଠିତ ହେଲା । ଅଣ୍ଡର ଗ୍ରାଉଣ୍ଡ୍‌ରୁ ପାର୍ଟି ନେତାମାନେ ବାହାରକୁ ଆସିଲେ । ନୂଆ ଦୁନିଆର ଡାଇରେକ୍ଟରମାନେ ପାର୍ଟି ହାତରେ ନୂଆ ଦୁନିଆର ଦାୟିତ୍ୱ ଦେବାକୁ ନିର୍ଦ୍ଧାରଣ କଲେ । ପାର୍ଟି ଉକ୍ତ ଦାୟିତ୍ୱ ବହନ କଲା । ନୂଆ ଦୁନିଆ ହେଲା ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର ।

**କୋଟିକଣ୍ଠ**

୧୯୪୭-୪୮ରେ କମ୍ୟୁନିଷ୍ଟ ପାର୍ଟିର ତାତ୍ତ୍ୱିକ ମୁଖପତ୍ର ରୂପେ କଃ ଗୁରୁଚରଣ ପଟ୍ଟନାୟକଙ୍କ ସଂପାଦନାରେ "କୋଟିକଣ୍ଠ" ନାମକ ମାସିକ ପତ୍ରିକା ମଧ୍ୟ ପ୍ରକାଶ କରାଯାଇଥିଲା । ମାତ୍ର ୫ଟି ସଂଖ୍ୟା ପରେ ତାହାର ପ୍ରକାଶନ ବନ୍ଦ ହୋଇଯାଇଥିଲା ।

ନୂଆ ଦୁନିଆ ତେଣୁ ୧୯୫୦ରୁ ଆଜି ୧୯୭୫ ପାର୍ଟିର ୫୦ତମ ଜୟନ୍ତୀ ପର୍ଯ୍ୟନ୍ତ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର ହୋଇ ବିଗତ ୨୫ ବର୍ଷ ବ୍ୟାପୀ ପାର୍ଟିର ଜୀବନର ବିକାଶ, ପାର୍ଟି ସଂଗଠନର ନିର୍ଦ୍ଦେଶନା, ଗଣସଂଗଠନ ଓ ଗଣ ଆନ୍ଦୋଳନଗୁଡ଼ିକର ସଂଗଠକରୂପେ ତା'ର ଦାୟିତ୍ୱ ତୁଲାଇ ଆସିଛି ।

ଦାୟିତ୍ୱ ହସ୍ତାନ୍ତର ପରେ ପ୍ରଥମେ କଃ ପ୍ରାଣନାଥ ପଟ୍ଟନାୟକଙ୍କ ସଂପାଦନାରେ ନୂଆ ଦୁନିଆ ଡଗରପଡ଼ା ବ୍ରାହ୍ମଣସାହିର ନବଯୁଗ ପ୍ରେସ୍‌ରୁ ପ୍ରକାଶ ପାଇଲା । ତା'ପରେ ନବଯୁଗ ପ୍ରେସ୍ ସ୍ଥାନାନ୍ତରିତ ହେଲା ପାଳିତପଡ଼ା । କମ୍ରେଡ଼ ରାମକୃଷ୍ଣ ପତିଙ୍କ ସଂପାଦକତ୍ୱରେ ସେଠାରୁ ପ୍ରକାଶିତ ହେଲା । ବର୍ତ୍ତମାନ କମ୍ରେଡ଼ ଗୁରୁଚରଣ ପଟ୍ଟନାୟକଙ୍କ ସଂପାଦକତ୍ୱରେ ତାହା ପ୍ରକାଶିତ ହେଉଛି ।

ପାର୍ଟିର କେବଳ ନୁହଁ, ଓଡ଼ିଶା ଗଣତାନ୍ତ୍ରିକ ପ୍ରଗତିଶୀଳ, ଜନ ଆନ୍ଦୋଳନର ଗୁରୁତର ଅଭାବ ଏକ 'ଦୈନିକ' ପାର୍ଟି ସର୍ବଦା ଅନୁଭବ କରିଆସିଛି । ୧୯୪୬ରେ ମୁକ୍ତିଯୁଦ୍ଧକୁ

ଦୈନିକ କରିବାକୁ ଏବଂ ୧୯୫୮ରେ ନୂଆ ଦୁନିଆକୁ ଦୈନିକ କରିବାକୁ ପାର୍ଟି ଆହ୍ୱାନ ଦେଇଛି । ବହୁ କମ୍ରେଡ୍ ନିଜର ସଂପତ୍ତି ବିକ୍ରୟକରି, ବହୁ ସମର୍ଥକ ଓ ପାର୍ଟି ଦରଦୀ ଅକାତରରେ ସାହାଯ୍ୟ କରିବାକୁ ଅର୍ଥଦାନ କରିଛନ୍ତି । ମାତ୍ର ପାର୍ଟିର ତଥା ଓଡ଼ିଶାର ସଂଗ୍ରାମୀ ଜନସାଧାରଣଙ୍କ ଉକ୍ତ ଆକାଂକ୍ଷା ଏପର୍ଯ୍ୟନ୍ତ ପୂରଣ ହୋଇପାରିନାହିଁ । ସଂଗୃହୀତ ଅର୍ଥ ତତ୍କାଳୀନ ମୁକ୍ତିଯୁଦ୍ଧ ଓ ପରବର୍ତ୍ତୀ କାଳର 'ନୂଆ ଦୁନିଆ'ର ଘୋର ଅର୍ଥସଂକଟରେ ବ୍ୟୟିତ ହୋଇଯାଇଛି । ପାର୍ଟି ମୁଖପତ୍ରକୁ ନିୟମିତ ଧାରାବାହିକ ଭାବରେ ଅନେକ ସମୟରେ ଅର୍ଥାଭାବରୁ ପ୍ରକାଶ କରାଯାଇପାରିନାହିଁ ।

ସମଗ୍ର ପାର୍ଟି ଯଦି ନୂଆ ଦୁନିଆକୁ ପାର୍ଟିର ଶ୍ରେଷ୍ଠ ସଂଗଠନ–ପାର୍ଟି ଓ ଓଡ଼ିଶା ଜନଗଣଙ୍କ ବୈପ୍ଲବିକ ସଂଗ୍ରାମର ହତିଆର କରିବାକୁ ବଦ୍ଧପରିକର ହୁଏ, ଗ୍ରାହକ ସଂଖ୍ୟା ବଢ଼େ ଏବଂ ଗ୍ରାହକମାନଙ୍କର ରୀତିମତ ନବୀକରଣ ହୁଏ, ତଥା ଏଜେଣ୍ଟମାନେ ଯଦି ଶିଥିଳତା, ହୁଗୁଳାପଣିଆକୁ ଦୂର କରି ନୂଆ ଦୁନିଆର ପ୍ରାପ୍ୟ ରୀତିମତ ପଠାନ୍ତି ଏବଂ ବିଜ୍ଞାପନ ଇତ୍ୟାଦି ମାଧ୍ୟମରେ ଅର୍ଥାଗମର ବ୍ୟବସ୍ଥା କରାଯାଇପାରେ ଏବଂ ଅନ୍ୟପକ୍ଷରେ ନୂଆ ଦୁନିଆର କଳେବର ବୃଦ୍ଧିକରି, ତା'ର ସଂପାଦନା, ଶୈଳୀ, ଗେଟଅପ୍ ପ୍ରଭୃତିକୁ ଅଧିକ ଉନ୍ନତ କରାଯାଇପାରେ ତେବେ, ପାର୍ଟିର 'ଦୈନିକ' ଲାଗି ପଦକ୍ଷେପ ନେବା ସମ୍ଭବପର ହେବ । ଆଜି ପାର୍ଟିର ୫୦ତମ ଜୟନ୍ତୀ ଉପଲକ୍ଷେ ସମଗ୍ର ପାର୍ଟି, ପ୍ରସାରିତ ପାର୍ଟିର ସହସ୍ର ସହସ୍ର ସାଥୀ, ସମର୍ଥକ, ଦରଦୀ ପ୍ରଗତିକାମୀ ବନ୍ଧୁ, ଶ୍ରମିକ, ଚାଷୀ, କ୍ଷେତମଜଦୁର, ଛାତ୍ର, ଯୁବକ ଓ ମହିଳମାନଙ୍କ ନିକଟରେ ଏହି ଆହ୍ୱାନ ଦେଇ ପହଞ୍ଚେ, ତେବେ ନୂଆ ଦୁନିଆ ତା'ର ଐତିହାସିକ, ବୈପ୍ଲବିକ କର୍ତ୍ତବ୍ୟ ସଂପାଦନ କରିବାକୁ ସମର୍ଥ ହେବ ।

❑❑❑

ରଚନା କାଳ – ୧୯୭୬

# ଓଡ଼ିଆ ନାଟ୍ୟକଳାର ଅମ୍ଳାନ ପ୍ରତିଭା
# ରାମଚନ୍ଦ୍ର ସ୍ୱାଇଁ

ଚଳିତ ଶତାବ୍ଦୀର ପ୍ରଥମ ପାଦ । ପରଦେଶୀ ଶାସନ । ମାତୃଭୂମି ଓଡ଼ିଶା ବିକଳାଙ୍ଗ । ଶିକ୍ଷା ସୀମିତ, ସଂକୁଚିତ । ଦେଶ ପରେ ଦେଶ ବିଜ୍ଞାନ, ସାହିତ୍ୟ, କଳାର ଅଭିବୃଦ୍ଧି ସାଧନରେ ବ୍ରତୀ । ଆମ ଦେଶର ହତଭାଗ୍ୟ ପୁଣି ଖଣ୍ଡିତ ଓଡ଼ିଶାର ଦୁର୍ଭାଗ୍ୟ ଯେ ଏକ ପୁରାତନ ଋଦ୍ଧିମନ୍ତ ଓଡ଼ିଆ ଭାଷା ତା'ର ସଂସ୍କୃତି, ଭାଗବତ ଟୁଙ୍ଗୀ, ଓଡ଼ିଶୀ କୀର୍ତ୍ତନ, ନଦିୟା କୀର୍ତ୍ତନ ଦାସକାଠିଆ, ସମ୍ବଲପୁରୀ ପଲ୍ଲୀ ଗାନ, ଚଢ଼େଇୟା ଗୀତ ବା ଖଞ୍ଜଣି ଭଜନର ଉର୍ଦ୍ଧ୍ୱକୁ ଉଠି ପାରୁ ନଥାଏ ।

ଏହି ଅମା ଅନ୍ଧକାର କାଟି ନାଟ୍ୟ ଜଗତରେ ଯେଉଁ କେତେକ ଅଗ୍ରଣୀ, ସଂସ୍କୃତିର ଦୀପ ଶିଖା ଜାଳିବାକୁ ଉଦ୍ୟମ କରି ଓଡ଼ିଶାର ଗଣସଂସ୍କୃତିକୁ ଗାଁ'ଗହଳର, ଝିଅବୋହୂ, ଯୁବକ, ବୃଦ୍ଧ, ମୂଲିଆ ଘରଠାରୁ ରଜା, ଜମିଦାରଙ୍କ ଉଦାସ ଦାଣ୍ଡ, ଆଉ ନାଲିଗୋଡ଼ି ରାସ୍ତାର ମିଞ୍ଜିମିଞ୍ଜି କିରାସିନି ବତୀ ଆଲୁଅରୁ ସହରର ବୁଦ୍ଧିଜୀବୀ, ସାହି ବସ୍ତିରେ ରସ ପରିବେଷଣ, ରସ ଆସ୍ୱାଦନର ବାତାବରଣ ସୃଷ୍ଟି କରିଥିଲେ; ତନ୍ମଧ୍ୟରେ ତତ୍‌କାଳୀନ କଟକ ଜିଲ୍ଲା ଜଗତସିଂହପୁର ଥାନା ତରିକୁଦ ପଞ୍ଚାୟତସ୍ଥ ଗୋଠିଣା ଗ୍ରାମର ରାମଚନ୍ଦ୍ର ସ୍ୱାଇଁ ଅନ୍ୟତମ । ନାଟ୍ୟ ଜଗତର ସୁଖ୍ୟାତିରେ ସେ ଯେତେବେଳେ ଶୀର୍ଷରେ; ତାଙ୍କର ଆଦରଣୀୟ ପରିଚୟ ଥିଲା 'ଗୋଠିଣା ରାମା' ।

ଗୀତିନାଟ୍ୟର ସର୍ବଶ୍ରେଷ୍ଠ ବିବେଚିତ ବୈଷ୍ଣବ ପାଣି, ପଳାଶୋଳର ସ୍ୱନାମଧନ୍ୟ ବାଳକୃଷ୍ଣ ମହାନ୍ତି ଓ ରାମଚନ୍ଦ୍ର ସ୍ୱାଇଁ ସମସାମୟିକ, କିନ୍ତୁ ରାମଚନ୍ଦ୍ରଙ୍କର ପ୍ରକୃତ ଗୁରୁ ଥିଲେ ବୈଷ୍ଣବ ପାଣି; ଠିକ୍ ଏକଲବ୍ୟ ଦ୍ରୋଣାଚାର୍ଯ୍ୟଙ୍କର ଶିଷ୍ୟ ହେଲା ଭଳି । ସାକ୍ଷାତ ନାହିଁ, ଯୋଗାଯୋଗ ନାହିଁ, ଗୁରୁ ଆଶ୍ରମକୁ ଯିବା ନାହିଁ କି ଗୁରୁ ଦକ୍ଷିଣା ନାହିଁ । ମାତ୍ର କିଶୋର ବୟସରେ ରଘୁନାଥପୁର ମାଇନର ସ୍କୁଲ୍‌ରେ ଷଷ୍ଠ ଶ୍ରେଣୀରେ ପଢୁଥିବା ବେଳେ ୧୪/୧୫ ବର୍ଷର କିଶୋର ରାମଚନ୍ଦ୍ରଙ୍କ ହସ୍ତଗତ ହୁଏ କବି ବୈଷ୍ଣବ ପାଣିଙ୍କ ରଚିତ ଖଣ୍ଡିଏ ସୁଆଙ୍ଗ ପୁସ୍ତକ ।

ଜୀବନର ମୋଡ଼ ବଦଳିଗଲା । ଜମିଦାର ମହାଜନ ଘରର ଅମାନିଆ ପୁଅ ରାମଚନ୍ଦ୍ର ପାଠପଢ଼ାରେ ଡୋର ବାନ୍ଧି ହେଲେ ସାଧକ । ସିଦ୍ଧିଲାଭ କରିବେ ନାଟ୍ୟ ଜଗତରେ । ଗୀତିନାଟ୍ୟ ରଚନା କ୍ଷେତ୍ରରେ ନୁହେଁ, ମୁକ୍ତମଞ୍ଚରେ, ନିଜଲିଖିତ ଗୀତିନାଟ୍ୟଗୁଡ଼ିକୁ ନାୟକ-ନାୟିକା, ନଟ-

ନଟୀ, ଦୁଆରୀ, ନିୟତି, ବିଦୂଷକଙ୍କ ମୁଖରେ ପରିବେଷଣ କରି; ସେମାନଙ୍କ ଉଚ୍ଚକୋଟୀର ଅଭିନୟରେ ନୃତ୍ୟର ଛନ୍ଦେ ଛନ୍ଦେ, ନୂତନ ପୁରାତନ ବାଦ୍ୟଯନ୍ତ୍ରର ତାଳେ ତାଳେ ।

ଏଥିପାଇଁ ଅର୍ଥ, ପ୍ରଥମେ ଅର୍ଥ ଦରକାର । କିଏ ଦେବ ? ଚୋରି କରିବେ ? କେଉଁଠୁ ? ପର ଘରୁ ବା ନିଜ ଘରୁ ? ଶତାଧିକ ଏକର ଭୂସଂପତ୍ତି, କେତେକ ଜମିଦାରୀ ଆଉ ବାପ ଖୁଡ଼ତାଙ୍କ ମହାଜନୀ ବାକ୍ସ ଭାଙ୍ଗି ଟଙ୍କା ଆଣିବା, ଆଉ ସେଥିରେ ହାରମୋନିୟମ କିଣା ।

ଏଣିକି ଜୀବନରେ ଘରୁ ଚୋରି କରିବାକୁ ପଡ଼ିନାହିଁ । ଅର୍ଥ ଆସିଛି ଅମାପ, ଯାଇଛି ନଦୀର ବନ୍ୟାପରି । ଅଭାବ ବେଳେ ବାପ ଦାଦା ଯଥାକ୍ରମେ ଗୋବିନ୍ଦବାବୁ, ପାଣ୍ଡୁବାବୁ ଅଲିଅଳ ପୁଅ ପୁତୁରାର ସାଧ ମେଣ୍ଟାଇବାକୁ ଅର୍ଥ ଦେଇଛନ୍ତି । ଅଭାବ ଅନଟନ ପଡ଼ିଲେ ସେମାନଙ୍କ ଅନ୍ତେ ନିଜ ସଂପତ୍ତି ବିକ୍ରୀ କରିଛନ୍ତି । ସ୍ତ୍ରୀଙ୍କ ନାମରେ ଥିବା ସଂପତ୍ତି ବିକ୍ରୀ କରିଛନ୍ତି । ଶେଷରେ ନିଃସ୍ୱ କାଙ୍ଗାଳ ହୋଇଛନ୍ତି । ମୁଣ୍ଡ ନୁଆଇଁ ନାହାନ୍ତି, କାହାକୁ ହାତ ପାତି ନାହାନ୍ତି । ଅର୍ଥାଭାବରେ ନିଜର ସ୍ୱ ସ୍ୱତ୍ୱ ସୁଲଭ ମୂଲ୍ୟରେ ବିକ୍ରୟ କରି ଭଙ୍ଗାରୁଜା ଅପେରା ଦଳକୁ ପୁଣି ଗଢ଼ି ଛିଡ଼ା କରେଇଛନ୍ତି ।

ସବୁଠାରୁ ଦାରୁଣ ଆଘାତ ଦେଇଛି ୧୯୫୫ର ଦଳେଇଘାଇ ଭଙ୍ଗା । ଅପେରା ଗୃହ, ପୋଷାକ ପରିଚ୍ଛଦ, ଅଜସ୍ର ଟଙ୍କାର ବହୁ ମୂଲ୍ୟବାନ୍ ସଂଗୀତ ଯନ୍ତ୍ର, ଅନେକ ଅମୁଦ୍ରିତ ପାଣ୍ଡୁଲିପି କରାଳ ବନ୍ୟାର ଶିକାର ହେଲା । ତଥାପି ରାମଚନ୍ଦ୍ର ପୁଣି ଛିଡ଼ା କରେଇଲେ ଅପେରା ଦଳକୁ । ଏକ ନିରାଡ଼ମ୍ବର, ନିରଳସ, ଅନ୍ତର୍ମୁଖୀ ସାଧକ ସେ । ଶତାଧିକ ଗୀତିନାଟ୍ୟ, ସେଥିରେ ପୌରାଣିକ, ସାମାଜିକ, କାଳ୍ପନିକ ସବୁ ପ୍ରକାରର ସୃଷ୍ଟି ଅନ୍ତର୍ଭୁକ୍ତ, ଅର୍ଦ୍ଧାଧିକ ଅରୁଣୋଦୟ ଆଉ କୋହିନୂର ପ୍ରେସ୍‌ରେ ମୁଦ୍ରିତ । ଗୋଟି ଗୋଟି କରି ସଂସ୍କରଣ ସାତ ଆଠ ଥରକୁ ଟପିଯାଇଛି ।

ଗୋଠିଣା ନାରାୟଣୀ ଅପେରାର ପ୍ରତିଷ୍ଠାତା ସେ । ୧୯୨୭ରୁ ୧୯୬୦ – ଏହି ୩୩ ବର୍ଷ ଭିତରେ ନାନା ଉତ୍‌ଥାନ ପତନ, ନାନା ଘାତ ପ୍ରତିଘାତ, ଉତ୍‌କଟ ଅର୍ଥାଭାବ, ଅର୍ଦ୍ଧାହାର ଅନାହାର ଅବସ୍ଥାରେ ମଧ ନାଟ୍ୟ ସାହିତ୍ୟ କଳାର ସେବା ଓ ସୃଷ୍ଟି କେବଳ ନୁହେଁ, ନିଜ ସୃଷ୍ଟିର ପରିବେଷଣ, ସାହିତ୍ୟ କୃଷ୍ଟିର ପ୍ରସାର, ଲକ୍ଷ ପ୍ରାଣରେ ପୁଲକ, ସହସ୍ର ପ୍ରାଣରେ ଆନନ୍ଦ ଉଲ୍ଲାସର ମହତ୍ତର ବିନ୍ଧାଣୀ ସେ ।

ମାତ୍ର ତାଙ୍କଠାରେ ଆତ୍ମଶ୍ଳାଘା ଦେଖେଇ ହେବାର ପ୍ରବୃତ୍ତି, ଆତ୍ମ ବଡ଼ିମା ଅହଂଭାବର ଲେଶମାତ୍ର ଚିହ୍ନ ନଥିଲା । ସତେ ଯେପରି ଏକ ଲାଜକୁଳି ଲତା । ଅଥଚ ସାଧକ ରାମଚନ୍ଦ୍ର ତାଙ୍କ ଜୀବନରେ ଶହ ଶହ ଶିଳ୍ପୀ ତିଆରି କରିଛନ୍ତି, କୁମ୍ଭାର ମାଟି ଚକଟି ଦିଅଁ ଗଢ଼ିବା ଭଳି । ଗାଆଁ ମାଟିର କେଉଁ ଅନ୍ଧାରିଆ ଚାଳିଆରୁ ସେ ଶିଳ୍ପୀର ସଂଧାନ ପାଇଛନ୍ତି । ସେମାନଙ୍କୁ ଗଢ଼ି ଏକ ଏକ କାଳରେ ସ୍ରଷ୍ଟା ରାମଚନ୍ଦ୍ରଙ୍କ ଖ୍ୟାତି ବଦଳରେ ସେହି ଶିଳ୍ପୀମାନଙ୍କର ଖ୍ୟାତି ଲୋକ

ମୁଖରେ ପ୍ରଚାରିତ ହୋଇଛି । ସେମିତି ଖ୍ୟାତି ସଂପନ୍ନ କଳାକାର ରଘୁ, କୃଷ୍ଣ, ଗୋଲକ ଓ ଗନ୍ଧର୍ବ ପ୍ରଭୃତି ଶିଷ୍ୟମାନେ ବଡ଼ ହୋଇଛନ୍ତି । ସେମାନେ ନିଜେ ପୁଣି ଗୁରୁ ହୋଇଛନ୍ତି । ତେଣୁ ରାମଚନ୍ଦ୍ର ଏକାକୀ ନୁହନ୍ତି । ସେ ଥିଲେ ଏକ ପ୍ରବହମାନ ସ୍ରୋତ । ଓଡ଼ିଶାର ସେହି ନାଟ୍ୟ ଜଗତରେ ଆଦ୍ୟ ସ୍ରଷ୍ଟାମାନଙ୍କୁ ସେମାନଙ୍କ ଜୀବନଦୀପ ମଉଳିବାକୁ ଯିବା ପୂର୍ବ ମୁହୂର୍ତ୍ତରୁ ଅବା ମଉଳିବା ପରେ ଲୋକଲୋଚନକୁ ଆଣିବାକୁ ସ୍ଥାନୀୟ ଉଦ୍ୟମ, ତା'ପରେ ପ୍ରାନ୍ତୀୟ, ଏମିତିକି ସାର୍ବଜନୀନ ଉଦ୍ୟମ ହୋଇଛି ।

ରାମଚନ୍ଦ୍ର ଜୟନ୍ତୀ ପରିଷଦର ଜନ୍ମ ଏକ ପ୍ରେରଣାରୁ । ତାଙ୍କର କୃତି ଓ କୃତିତ୍ୱର ବିଭିନ୍ନ ବିଭାଗର ସଂକ୍ଷିପ୍ତ ଆଲୋଚନା ପୂର୍ବରୁ ତରିକୁଦ ପଞ୍ଚାୟତ ଓ ଆଖପାଖ ପଞ୍ଚାୟତର ଉଦୀୟମାନ ଯୁବକ, ପ୍ରୌଢ଼ ତଥା ପ୍ରବୀଣମାନେ ଏହି ଜୟନ୍ତୀ ପରିଷଦ ଗଠନ କରି ଓଡ଼ିଶାର ପ୍ରତିଭା ପୂଜାରେ ନିୟୋଜିତ । ଅନ୍ୟାନ୍ୟ ସବୁ ଅଞ୍ଚଳର ଜନସାଧାରଣଙ୍କ ନିକଟରେ ରାମଚନ୍ଦ୍ରଙ୍କ ସାଧନା ଓ କୃତିତ୍ୱକୁ ପହଞ୍ଚାଇବା ପାଇଁ ଚେଷ୍ଟା କରିଛନ୍ତି ।

୧୯୭୩ରେ ଜୟନ୍ତୀ ପରିଷଦ ଉଦ୍ୟମରେ ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ପଦ୍ମଭୂଷଣ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ପୌରୋହିତ୍ୟରେ ସମ୍ବର୍ଦ୍ଧନା ଉତ୍ସବରେ ତରିକୁଦ ଅଞ୍ଚଳର ୧୦ ହଜାର ନରନାରୀଙ୍କ ସହ ନାଟ୍ୟକାରଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଲେ ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ବିନାୟକ ଆଚାର୍ଯ୍ୟ, ନାଟ୍ୟକାର ଗୋପାଳ ଛୋଟରାୟ ସାହିତ୍ୟିକ ପରମାନନ୍ଦ ଅଧିକାରୀ ଓ ଅନ୍ୟମାନେ । ପରେ ପରେ ୧୯୭୪ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଓ ଉତ୍କଳ ନାଟ୍ୟସଂଘର ନାଟ୍ୟ ଭୂଷଣ ଉପାଧି ପ୍ରଦାନ ଜୟନ୍ତୀ ପରିଷଦକୁ ଉତ୍ସାହିତ କଲା । ୧୯୭୪ଠାରୁ ଜୟନ୍ତୀ ପରିଷଦ ସହ ଜୟନ୍ତୀ ଉତ୍ସବରେ ନାଟ୍ୟକାରଙ୍କୁ ସମ୍ବର୍ଦ୍ଧନା ଦେଇ ଆସିଛନ୍ତି ଓଡ଼ିଶାର ବରେଣ୍ୟ ସାହିତ୍ୟିକ ଓ ମନ୍ତ୍ରୀ ଶ୍ରୀଯୁକ୍ତ ମତଲୁବ୍ ଅଲ୍ଲୀ, ଲକ୍ଷ୍ମଣ ମଲ୍ଲିକ, ନାଟ୍ୟକାର ମନୋରଞ୍ଜନ ଦାସ, କାର୍ତ୍ତିକ କୁମାର ଘୋଷ, ବିପ୍ଳବୀ କବି ରବି ସିଂ, ଶିଶୁ ସାହିତ୍ୟିକ ଓ ସାମ୍ବାଦିକ ଶ୍ରୀଯୁକ୍ତ ଉଦୟନାଥ ଷଡ଼ଙ୍ଗୀ, ଶ୍ରୀହର୍ଷ ମିଶ୍ର, ବିଶ୍ୱମ୍ଭର ପରିଡ଼ା, ବେତାର ଶିଳ୍ପୀ ନୟନ କିଶୋର ମହାନ୍ତି, ହିମାଂଶୁ ଭୂଷଣ ସାବତ୍, ବୀରେନ୍ ଦାସ ପ୍ରଭୃତି ।

ତା ୧୭।୧୧।୭୮ରେ ତାଙ୍କର ମୃତ୍ୟୁପୂର୍ବରୁ ଜୀବନ୍ତ ସୃଷ୍ଟିଶୀଳ ସାଧକ ରାମଚନ୍ଦ୍ରଙ୍କୁ ଜୟନ୍ତୀ ପରିଷଦ ଓଡ଼ିଶାର ସାହିତ୍ୟିକ, ସାମାଜିକ ଓ ପ୍ରଖ୍ୟାତ ରାଜନୀତିଜ୍ଞ ମାନଙ୍କଦ୍ୱାରା ସମ୍ମାନିତ କରାଇଛନ୍ତି । ଜରା, ରୋଗ, ବାର୍ଦ୍ଧକ୍ୟ ଓ ଅର୍ଦ୍ଧାହାର ଅବସ୍ଥାରେ ମଧ୍ୟ ତାଙ୍କ ଲେଖନୀରୁ ଏକାଧିକ ନାଟକ ସୃଷ୍ଟି କରାଇ ପାରିଛନ୍ତି । ତାଙ୍କୁ ଆଉ କିଛିଦିନ ମୁଠିଏ ଖାଇ ବଂଚିବାକୁ ସାହିତ୍ୟ ଓ ସଂଗୀତ ନାଟକ ଏକାଡ଼େମୀରୁ ଯତ୍‌କିଞ୍ଚିତ ଅର୍ଥ ସାହାଯ୍ୟ ଅଣାଇ ଦେଇଛନ୍ତି ଗୋପାଳ ଛୋଟରାୟ, ହିମାଂଶୁ ଭୂଷଣ ସାବତ, ମନୋରଞ୍ଜନ ଦାସଙ୍କ ପରି ନାଟ୍ୟକାରମାନଙ୍କ ସହାୟତାରେ ଓ ଆକାଶବାଣୀ ମାଧମରେ ତାଙ୍କ ନାଟ୍ୟକଳାର ପ୍ରଚାର କରାଇ ପାରିଛନ୍ତି ।

ତାଙ୍କର ଅଳ୍ପ ପାଠ । କିନ୍ତୁ ମନ ଅଛି । ଉଦ୍ଦାମତା ରହିଛି । ମାତ୍ର କ'ଣ ଖାଲି ସ୍ୱପ୍ନ, ଅଭିଳାଷ, ଆକାଂକ୍ଷାକୁ ଘେନି କରିବେ ସୃଷ୍ଟି ? ସେଥିଲାଗି ପ୍ରାଥମିକ ସାଧନା ଆବଶ୍ୟକ । ମହାଭାରତ, ରାମାୟଣର ଅଗଣିତ ନାୟକ-ନାୟିକାଙ୍କ ସଂପର୍କରେ ଜ୍ଞାନ, ସମାଜ ଜୀବନର ଯେଉଁ ନୂତନ ରଂଗ, ନୂତନ ବିଭବ, ନୂତନ ବିଭାବ, ନୂତନ ଶୈଳୀ, ନୂତନ ଆଙ୍ଗିକ ସୃଷ୍ଟି ହେଉଛି କଳା ପାଇଁ, ସେ ସମ୍ପର୍କରେ ଜ୍ଞାନ ଆବଶ୍ୟକ । ଅମରକୋଷ ଓ ଅନ୍ୟାନ୍ୟ ଗ୍ରନ୍ଥର ଅଧ୍ୟୟନ ଆବଶ୍ୟକ । ତାହା ହିଁ କଲେ ରାମଚନ୍ଦ୍ର ଲେଖନୀ ଧରିବା ପୂର୍ବରୁ ।

ଛଅବର୍ଷ ବୟସରୁ ଅବଧାନଙ୍କ ପାଖରେ ସେ କାଳର ପାଠ ସତର ଫଳା, ଗୋପୀଭାଷା, ଭାଗବତ, ଶୋଧ୍-ପଣିକିଆ, କାଣି ବିଶ୍ୱା ପାଠପଢ଼ାରୁ ଅମର କୋଷ ଅଭିଧାନ, ଭଞ୍ଜ ସାହିତ୍ୟ, ସାମନ୍ତ ସିଂହାର ସାହିତ୍ୟରେ ରସବୋଧତା ଆଣିବା ତାଙ୍କୁ ତାଙ୍କ ସୃଷ୍ଟି କଳାରେ ଅପରିମେୟ ସାହାଯ୍ୟ ଦେଲା ।

'ଇନ୍ଦ୍ର ପରାଜୟ' ତାଙ୍କର ପ୍ରଥମ ମୁଦ୍ରିତ ନାଟ୍ୟ ସୃଷ୍ଟି । ସେତେବେଳେ ଆଜି ଭଳି ଗାଡ଼ିମଟର ନଥିଲା । ଶୂନଗାଡ଼ି କି କାଁ ଭାଁ ଶଗଡ଼ । ଆଉ କଟକ ଛୁଇଁଲେ ପାସେଞ୍ଜର ରେଳଗାଡ଼ି । ଗାଁ' ମାଟି ଛାଡ଼ି ଆଖପାଖ ଗାଁ'ରେ ପ୍ରଚାରିତ ଖ୍ୟାତିକୁ ଦୂର ଦୂରାନ୍ତକୁ ନେଇ ଯିବାକୁ ମନ ଆଉ ଡାକରା ମଧ । ତେଣୁ ଗୀତିନାଟ୍ୟ ସୃଷ୍ଟି ସାଙ୍ଗକୁ ଜୟ ନାରାୟଣୀ ଅପେରାର ଶିଳ୍ପୀମାନଙ୍କୁ ନେଇ ତାଲିମ ଦେଇ ଅଭିନୟ ମଞ୍ଚସ୍ଥ କରାଇବା ସାଙ୍ଗକୁ ମନୋରଞ୍ଜନ ଲାଗି ଏବଂ ନାଟ୍ୟକଳା ପରିବେଷଣର ସୌଷ୍ଠବ ବୃଦ୍ଧି କରିବା ଲାଗି ପୁରାତନ ଆଉ ଆଧୁନିକ ବାଦ୍ୟଯନ୍ତ୍ରମାନ ଆବଶ୍ୟକ ଓ ସେଥିରେ ବ୍ୟୁତ୍ପତ୍ତି ଥିବା ବାଦକ ମଧ ଆବଶ୍ୟକ । ହାରମୋନିୟମ୍, ଢୋଲକ, ବେହେଲା, ସୀତାର, କ୍ଲାରିଓନେଟ୍, ବେଙ୍ଗ ପାଇପ୍ ବେଞ୍ଜୁ, ସାହାନାଇ ଇତ୍ୟାଦି ସମସ୍ତ ବାଦ୍ୟ ଯନ୍ତ୍ରରେ ଗୁରୁ ନଥାଇ ପାରଦର୍ଶିତା ଅର୍ଜନ ତାଙ୍କ ସାଧନାର ଅନ୍ୟ ଏକ ଦିଗ ।

ଯଥାର୍ଥ କାରଣରୁ ସେତେବେଳେ ଲୋକମୁଖରେ ପ୍ରଚାରିତ ହେଉଥିଲା ଯେ, 'ରାମ ବଜାଇବ, ବାଳକୃଷ୍ଣ ସଜାଇବ, ଆଉ ଓଝା ଗାଇବ । ରାମଚନ୍ଦ୍ର, ବାଳକୃଷ୍ଣ, ବୃନ୍ଦାବନ ଓଝା ସେତେବେଳେ ଏ ଅଞ୍ଚଳରେ ପ୍ରଖ୍ୟାତ ନାଟ୍ୟ ଦଳର କର୍ତ୍ତା । ଗୋଟିଏ ପରେ ଗୋଟିଏ ନାଟ୍ୟକୃତି ଅରୁଣୋଦୟ ପରେ, କୋହିନୂର ପ୍ରେସ୍ ପ୍ରକାଶ କରିବା ପରେ ତାଙ୍କର ଖ୍ୟାତି ସୁଦୂରପ୍ରସାରୀ ହେଲା । ଆଧୁନିକ ନାଟ୍ୟ ପୋଷାକ, ଆଧୁନିକ ବାଦ୍ୟ ଯନ୍ତ୍ର ଆଉ ନିଜ ଅପେରାର ଶିଳ୍ପୀମାନଙ୍କୁ ଶଗଡ଼, ରେଳଗାଡ଼ିରେ ଧରି ଦଶନ୍ଧି ଦଶନ୍ଧି ଧରି ରାମଚନ୍ଦ୍ର ସ୍ୱାଇଁ ଖଣ୍ଡିତ ଓଡ଼ିଶାର ବିଭିନ୍ନ ଜିଲ୍ଲା ଗଡ଼ଜାତ ତଥା ଉପାନ୍ତ ଅଞ୍ଚଳ କଲିକତା, ଚାଇଁବସା, ଜାମସେଦ୍‌ପୁର, ରାୟପୁର, ସର୍ଗୀପାଲି ପ୍ରଭୃତି ଅଞ୍ଚଳକୁ ଯାଇ ନାଟ୍ୟକଳା ପରିବେଷଣ କରିଥିଲେ । ସେ କାଳର ଗଡ଼ଜାତ ମୟୁରଭଞ୍ଜ, ଢେଙ୍କାନାଳ, ତାଳଚେର, ବଲାଙ୍ଗୀର, ବାମଣ୍ଡା, ନରସିଂହପୁର ଓ ତିଗିରିଆ ପ୍ରଭୃତିରେ ମଧ ଜନମାନସରେ ରାମଚନ୍ଦ୍ରଙ୍କର କଳାର ପରାକାଷ୍ଠା ଆଦୃତ ହୋଇଥିଲା । ପୁରୀ,

ଗଞ୍ଜାମ, ସମ୍ବଲପୁର, କଟକ, ବାଲେଶ୍ୱରର ବିଭିନ୍ନ କଳାପ୍ରେମୀ ମହଲରେ ଲଢ଼େଇ ନାଟ ଲାଗି ତାଙ୍କୁ ଖୋଜା ପଡୁଥିଲା ।

ସେ ଯେଉଁ ଅଗଣିତ ନାଟକ ସୃଷ୍ଟି କରିଯାଇଛନ୍ତି, ତନ୍ମଧ୍ୟରୁ ଯେତେକ ଉଦ୍ଧାର ହୋଇଛି ଓ ଯେତେକ ତାଙ୍କଠାରୁ ଅବଗତ ହୋଇଛି ତାହାର ବିବରଣୀ ଦେବା ପ୍ରାସଙ୍ଗିକ ।

**ପୌରାଣିକ ନାଟକ** – ଇନ୍ଦ୍ର ପରାଜୟ, ତ୍ରିପୁରାସୁର ବଧ, ମଥୁରା ବିଜୟ, ଧନୁଯାତ୍ରା, ବଭ୍ରୁବାହାନ, ବାମନ ଭିକ୍ଷା, ଶ୍ରୀମନ୍ଦିର, ଶିଶୁଭକ୍ତ ଧ୍ରୁବ, ଶିଶୁଭକ୍ତ ପ୍ରହ୍ଲାଦ, ଶାନ୍ତନୁ ଗଙ୍ଗା, ରାମ ରାଜ୍ୟ, ହରିଶ୍ଚନ୍ଦ୍ର, ନାଗାର୍ଜ୍ଜୁନ, ତ୍ରିଶକ୍ତି, ବିଚାରକ, ଜୟ କେଦାର, ମୋହନ ବୀଣା, ସମ୍ବରାସୁର ବଧ, କାଳକେତୁ ଇନ୍ଦୁମତୀ, ସାଗର ଦଳନ, ନେଉଟା ବର, କୁଶବର୍ଜନ, ଚକ୍ଷୁଦାନ, ହେମହରିଣୀ, ଭକ୍ତଦାନବ, ଚାଲବାଜି ଭଗବାନ, ନାଗପଞ୍ଚମୀ, ନରମେଧ ଯଜ୍ଞ, ନନ୍ଦ ଉତ୍ସବ, କାହାର ଏ ରାଜମୁକୁଟ ।

**କାଳ୍ପନିକ ନାଟକ** – କପାଳି କୁଣ୍ଡଳା, ସୁଶୀଳ କୁମୁଦ, ନଳିନୀ ପ୍ରମୋଦ, ଚନ୍ଦ୍ରକାନ୍ତ ଇନ୍ଦୁ କୁମାର, ବସନ୍ତ କିଶୋର, ବାଂଶରୀବାଳା, ଭାଇଭଗାରି, ଦସ୍ୟୁକୁମାରୀ, ଅନଙ୍ଗ ପ୍ରଭା, ଅମର ମୋହିନୀ; ନିର୍ମଳତାରା, କୁସୁମସୁନ୍ଦରୀ, ଭାଗ୍ୟଧର, ହତ୍ୟାକାରୀ, ପ୍ରଫୁଲ୍ଲ ସରୋଜିନୀ, ବିଜୟ ମାଧୁରୀ, କନକ ମୁରଲୀ, ସାଧବ ପୁଅ, ମାଧବ ସୁଲୋଚନା, ଖୁଲଣାସୁନ୍ଦରୀ, ଖଣ୍ଡଗିରି, ପ୍ରେତଉଦ୍ଧାର, ଅନାଥ ବାଳକ, ମନ୍ଦାକିନୀ, ନୂଆ ସଂସାର, ବିଲାତ ଫେରନ୍ତା, ମୋହନ ମୁରଲୀ, ଆକାଶବାଣୀ ।

**ଐତିହାସିକ ନାଟକ** – ବନବୀର, ରାଜଶ୍ରୀ, ଦାକ୍ଷିଣାତ୍ୟ, ସାଧବ ଝିଅ, ରାଜରାଣୀ ।

ଏତଦ୍‌ବ୍ୟତୀତ ଅନେକ ପ୍ରକାରର ଗୀତିନାଟ୍ୟ ଓ ନାଟକ ସେ ଛାପିଛନ୍ତି, ମାତ୍ର ସେଗୁଡ଼ିକର ବିବରଣୀ ଆମେ ପାଉନୁ ।

ଓଡ଼ିଆ ଜାତିର କଳା ଗନ୍ତାଘରକୁ ସମୃଦ୍ଧ କରିଥିବା ଏହି ସାଧକ ନିସ୍ୱଃ ନିଃସହାୟ ଭାବେ ଚାଲି ଯାଇଛନ୍ତି । କିନ୍ତୁ ଜାତିର ଜୀବନରେ ତାଙ୍କର ସୃଷ୍ଟି ରହିବ ଅମଳିନ । ସେ ରହିବେ ଅପାସୋରା । ସାହିତ୍ୟ କୃଷ୍ଟିର ଉତ୍ତୋରତ୍ତର ବିକାଶ ଘଟିବ । ତାହା ଜୀବନର ଧାରା । ମାତ୍ର ସେହି ସାହିତ୍ୟ ସରୋବରର ପାହାଚମାଳାରେ ତଳ ପହାଚ ଯେଉଁମାନେ ଗଢ଼ିଗଲେ, ତାଙ୍କ ମଧ୍ୟରୁ ଅନ୍ୟତମ ରାମଚନ୍ଦ୍ର ଆମ ପକ୍ଷରେ, ଆମ ଜାତି ପକ୍ଷରେ ବହୁକାଳ ସ୍ମରଣୀୟ ରହିବେ ।

ଶେଷରେ ଯେଉଁମାନେ ସାଧକ ରାମଚନ୍ଦ୍ରଙ୍କୁ ଲୋକ ଲୋଚନକୁ ଅଣାଇ ପାରିଛନ୍ତି ସେହି ତରିକୁଦ ଅଞ୍ଚଳବାସୀଙ୍କ ଏକନିଷ୍ଠ ସହଯୋଗ, ଯୁବକମାନଙ୍କ ଅକ୍ଳାନ୍ତ ଉଦ୍ୟମ, ସର୍ବୋପରି ନାଟ୍ୟକାର ମନୋରଞ୍ଜନ ଦାସଙ୍କ ବ୍ୟକ୍ତିଗତ ପ୍ରେରଣା ପାଇଁ ଜୟନ୍ତୀ ପରିଷଦ କୃତଜ୍ଞ ।

□□□

# ମାୟା ମମତାର ସେହି ବିଦ୍ୟାନିକେତନର
# ଜନ୍ମ ଇତିହାସ

ପଚସ୍ତରୀ ବର୍ଷ ହେତୁ ପାଇଲା । ସାଙ୍ଗ ସାଥୀ ଗହଣରେ ଗାଁ' ଦାଣ୍ଡରେ ଧୂଳି ଖେଳିଲା ବେଳେ ଗୋଟିଏ ସ୍ଥାନର ନାମ ଶୁଣିଥିଲି, ନାମଟି ଛେଳିଖାଇ ବାଗ । ଗାଁ' ଠୁ ଡାକେ ବାଟ । ଦିନେ ସେହି ସ୍ଥାନରେ ଏକ ଉଚ୍ଚ ବିଦ୍ୟାନିକେତନ ଗଢ଼ି ଉଠିବ ଆଖପାଖ ପଚାଶ ଖଣ୍ଡ ଗାଁ'ର ଲୋକେ ସ୍ୱପ୍ନ ବି ଦେଖୁନଥିଲେ । ଦେଶ ଆମର ଥାଏ ପରାଧୀନ । ବ୍ରିଟିଶ ଅମଳ, କାଁ ଭାଁ କେଉଁଠି ଗୋଟିଏ ପାଠଶାଳା । ୧୯୪୬ ବେଳକୁ କଟକ ମାଛ ଗାଁ' ଆବଡ଼ାଖାବଡ଼ା ନାଲି ଗୋଡ଼ି ରାସ୍ତା କଡ଼ରେ ସେହି ଛେଳିଖାଇ ବାଗରେ ଥାଏ ଭଙ୍ଗାତୁଟା ତରିକୁନ୍ଦ ପ୍ରାଥମିକ ବିଦ୍ୟା, ବହୁ ପୁରାତନ । ଲାଗିଛି ମାଛଗାଁ କେନାଲ । ତାହାରି ଯୋଗୁ ଅଳକା ନଦୀ ମୃତ ହୋଇଛି । ଅଳକା ନଦୀ ତଟ ତରୁଲତା କୁଜରେ ଦୁଇଟି ପ୍ରାଣୀ ଏକ ଅଭିନବ ଧରଣର ଆଶ୍ରମ ଖୋଲିଥାନ୍ତି । ସନ୍ନ୍ୟାସୀ ନୁହଁନ୍ତି । ବ୍ରିଟିଶ କାରାଗାର ମୁକ୍ତ ଦୁଇ ପ୍ରାଣୀ । ନବକୃଷ୍ଣ ଚୌଧୁରୀ, ପତ୍ନୀ ମାଳତୀ ଚୌଧୁରୀ । ବାହାରକୁ ଆଶ୍ରମ । ମାତ୍ରସେଠାକୁ ଓଡ଼ିଶା, ବଙ୍ଗଳା ଓ ଅନ୍ୟଆଡୁ ଆସନ୍ତି ଅନେକ ଲୋକ ଗୋପନରେ । କିପରି ଦେଶରୁ ବ୍ରିଟିଶ ଶାସନ ଯିବ ତାହାରି ମନ୍ତ୍ରଣା ଚାଲେ । ଏହି ଚୌଧୁରୀ ପରିବାରର ସେକାଳର ଜମିଦାରୀ ତରିକୁନ୍ଦ ।

କଟକ, ବ୍ରହ୍ମପୁର ବ୍ରିଟିଶ କାରାଗାରରେ ସାଢ଼େ ୪ ବର୍ଷ ବିତାଇ ସେକାଳର ସକଳ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଯୋଦ୍ଧାଙ୍କ ସହ ଏକତ୍ର ରହି ମୁକ୍ତ ହୋଇ ୧୯୪୫ ଶେଷକୁ ଗାଁ'ରେ ପହଞ୍ଚେ ।

ଜେଲ ମୁକ୍ତି ପରେ ସେତେବେଳେ ଓଡ଼ିଶାରେ ଶିକ୍ଷାର ପ୍ରସାର ଲାଗି ଜନତାଙ୍କ ସହଯୋଗ ପ୍ରାୟ ସବୁଆଡ଼େ ଶିକ୍ଷାର ପ୍ରସାର ଲାଗି ମାଇନର, ହାଇସ୍କୁଲ ଉ.ପ୍ରା.ସ୍କୁଲ ପ୍ରତିଷ୍ଠା କରିବାରେ ଲାଗିଥାନ୍ତି । ଆମ ଅଞ୍ଚଳରେ ଏଇପରି ଗୋଟିଏ ବିଦ୍ୟାଳୟ ହେଉ, ସତ କହୁଚି ମୁଁ ମଧ୍ୟ ଚିନ୍ତା କରିନଥିଲି । ପ୍ରସ୍ତାବ କରନ୍ତି ଜୟଶୋଳ ନି.ପ୍ରା ବିଦ୍ୟାଳୟର ଶିକ୍ଷକ ଆଜି ସମଗ୍ର ଅଞ୍ଚଳରେ ବଡ ମାଷ୍ଟର ନାମରେ ଖ୍ୟାତ ପୂର୍ଣ୍ଣାନନ୍ଦ ପାତ୍ର ଆଉ ଆମ ଗାଁ' ସାତପୁରାର କୃଷ୍ଣଚନ୍ଦ୍ର ମହାନ୍ତି ।

ସେତେବେଳକୁ କଂଗ୍ରେସ ହାତରେ ଜିଲ୍ଲା ବୋର୍ଡ୍, ଲୋକାଲ ବୋର୍ଡ୍ । ବ୍ରିଟିଶ ଶାସନରେ ରାଜ୍ୟର ସମ୍ବଳ ସୀମିତ । ଏହି ଅନୁଷ୍ଠାନଗୁଡ଼ିକ ହାତରେ ପ୍ରାଇମେରୀ ମାଇନର ଯାଏ ଶିକ୍ଷା ଦିଆଯାଏ । ଆମ ଅଞ୍ଚଳରେ ସବୁ ଗାଁ'ର ମୁଖିଆ ମୁଖିଆ ବ୍ୟକ୍ତିଙ୍କ ପାଖରେ ପହଞ୍ଚିବା ସ୍ଥିର ହୁଏ । ଆଶ୍ଚର୍ଯ୍ୟର କଥା ପ୍ରତିଟି ଗାଁ'ରୁ ଅଞ୍ଚଳର ମୁଖିଆ ବ୍ୟକ୍ତି ସଭା ବସିଲା । ସେହି ଛେଳିଖାଇ ବାଗ ଚୌଧୁରୀ ପରିବାରର ଏକ ବିସ୍ତୃତ ପ୍ରାନ୍ତରେ ବରଗଛ ଛାଇରେ । ତରିକୁନ୍ଦ, ରଣହଣ୍ଡା, ନବାପାଟଣା, ଜୟଶୋଳା, ତିହିଡ଼ା, ଧନିପୁର, ସାତପୁରା, ଚେକାମାଳ, ନରଣପୁର, ମଣ୍ଡାସାହି, କେନ୍ଦାଳ, ଗୋଠିଣା, ବଣିକୁନ୍ଦ, ରାଉତ ନୂଆଗାଁ, ଦଣ୍ଡିଲୋ, ବସନ୍ତପୁର, ରମ୍ଭାଦେଇପୁର, କୁଳମୁଣ୍ଡିଲୋ, ବିରାଡ଼ି ଟକ ମଧୁସୂଦନପୁର, ଉତରଣ୍ଡା, ଏମିତି ପ୍ରତ୍ୟେକ ଗାଁ'ର ବାସିନ୍ଦାଙ୍କ ପାଖରେ ପହଁଞ୍ଚିବାକୁ ହେବ । ଏସବୁ ଗାଁ'ର ଯେଉଁମାନେ ବିଦେଶରେ ରୁହନ୍ତି ସେମାନଙ୍କ ପାଖକୁ ଚିଠି ଲେଖାହେବ ।

ଉପସ୍ଥିତ ଥାଆନ୍ତି ଯେତେ ଦୂର ମନେପଡ଼େ ମହେଶ ଚନ୍ଦ୍ର ରାଉତରାୟ, କୁଳମଣି ସାହୁ, ନନ୍ଦକିଶୋର ସାହୁ, ପ୍ରସନ୍ନ କୁମାରସାହୁ, ବିଜୟ କୁମାରସାହୁ, ରାଧାକୃଷ୍ଣ ଆଚାର୍ଯ୍ୟ, ପ୍ରାଣକୃଷ୍ଣ ସ୍ୱାଇଁ, ହରେକୃଷ୍ଣ ସ୍ୱାଇଁ, ନଟବର ରାଉତ, ମୃଷି ପ୍ରଧାନ, ଶେକ୍ ଯୋଗୀ ବାବୁ ଖାଁ, ରୋସନ ଅଲ୍ଲି ଖାଁ, ଶ୍ୟାମ ପଟ୍ଟନାୟକ, ଜଗନ୍ନାତ ମିଶ୍ର ଆଉ ନବବାବୁଙ୍କ ତହସିଲଦାର କାଳନ୍ଦି ଆଚାର୍ଯ୍ୟ, କାଳନ୍ଦି ତଇନି ନାମରେ ପରିଚିତ ଏମିତି ଆଉ ଅନେକ । ସ୍ଥିର ହୁଏ ଗାଁ'କୁ ଗାଁ' ବୁଲି ଅଣାଏ ଦିଅଣା ଠାରୁ ଶହ ଶହ ଟଙ୍କା ଆଦାୟ କରାଯିବ । ଦାୟିତ୍ୱ ନିଅନ୍ତି ନିଜ ଗାଁ'ରେ ସାହାଯ୍ୟ କରିବା ଲାଗି ଉପସ୍ଥିତ ଗାଁ'ର ପ୍ରତିନିଧି । ଥାଳି ଧରି ବୁଲିବେ କୃଷ୍ଣଚନ୍ଦ୍ର ମହାନ୍ତି ଆଉ ପୂର୍ଣ୍ଣାନନ୍ଦ ପାତ୍ର ।

ନବ ଚୌଧୁରୀ ଓ ତାଙ୍କ ପରିବାରଠାରୁ ଏହି ଜାଗାଭିକ୍ଷା କରାଯିବ ଏବଂ କିପରି ତରିକୁନ୍ଦ ନି.ପ୍ରାକୁ ଉ.ପ୍ରାରେ ଉନ୍ନୀତ କରି ତାକୁ ପ୍ରଥମେ ମାଇନର ସ୍କୁଲ ପରେ ଅଷ୍ଟମ ଖୋଲି ହାଇସ୍କୁଲ କରାଯିବ । ଉପର ସ୍ତରରେ ବ୍ୟବସ୍ଥା କରାଯିବ, ଜମି ଅଣାଯିବ । ଉପସ୍ଥିତ ଗୁରୁଜନମାନେ ତାର ମୁଖ୍ୟ ଦାୟିତ୍ୱ ମତେ ଅର୍ପଣ କରନ୍ତି ।

ଯେଉଁ ସ୍ୱାଧୀନତା ସଂଗ୍ରାମୀନିଜ ଜମିଦାରୀମାନଙ୍କରେ ଥିବା ଜମିକୁ ଭାଗ ଚାଷୀଙ୍କୁ ଅବା ସର୍ବୋଦୟଙ୍କୁ ଅର୍ପଣ କରିଦିଅନ୍ତି । ତାଙ୍କ ପାଖରେ ପହଞ୍ଚନ୍ତେ ସେ କହିଲେ ଆରେ ଆମର ତ ପାଞ୍ଚଣା ଚାରି ପାହୁଲା ଭାଗ ଦାଦାଭିକାରୀ ଚୌଧୁରୀଙ୍କୁ କହିବ ମୁଁ ଦେଇ ଦେଉଛି । ସେ ଦିଅନ୍ତୁ । ଜମିଦାର ଭିକାରୀ ଚୌଧୁରୀ ସାଙ୍ଗରେ ଥାଆନ୍ତି କାଳନ୍ଦି ବାବୁ, ପୂର୍ଣ୍ଣାନନ୍ଦ ବାବୁ । ପ୍ରବୀଣ ଚୌଧୁରୀ, ଆମ ଯୁକ୍ତି ଅଳି ଗ୍ରହଣ କରି ନେଲେ । କଟକରେ ରେଜେଷ୍ଟ୍ରି ହେବ ରେଜିଷ୍ଟ୍ରାର କହିଲେ ନବବାବୁ ରାଜସ୍ୱ ମନ୍ତ୍ରୀ ତାଙ୍କ ଘରକୁ ଯାଇ ରେଜେଷ୍ଟ୍ରି ଦଲିଲ ସମ୍ପାଦନା କରିବେ । ମାତ୍ର ନବ ଚୌଧୁରୀ ଏଥିରେ ଅସମ୍ମତ ।

ରେଜେଷ୍ଟ୍ରି ଖାନାରେ ପହଞ୍ଚନ୍ତେ ରେଜିଷ୍ଟାର ଆସନ ଛାଡ଼ି ରାଜସ୍ୱ ମନ୍ତ୍ରୀଙ୍କୁ କହିଲେ ପାଛୋଟି ନେବାକୁ ଆସିବାରୁ ନବବାବୁ କହିଲେ ମୁଁ ବ୍ୟା ସେମାନେ ମୁସ୍ତରୀ । ହାକିମଙ୍କ ଇଜ୍‌ଲାସରେ ବାୟା ମସ୍ତୁରୀତଳେ ରହିବେ । ଏହା ହିଁ ସ୍ୱାଧୀନତା ସଂଗ୍ରାମୀ ବିପ୍ଳବୀ ବ୍ୟକ୍ତିଙ୍କର ମୂଲ୍ୟ ବୋଧ କ୍ଷମତାର ଗାରିମା ନିଷ ଫୁଲା ନାହିଁ ।

ପ୍ରଥମେ ଦୁଇ ଜଣ ଗାଁ' ଗାଁ' ବୁଲି ସଂଗ୍ରହ କଲେ ସେ କାଳର ୧୮ ଶହ ଟଙ୍କା । ବାଉଁଶ ମିଳିଲା ତରିକୁନ୍ଦ ସାତପୁରା ଧନିପୁର, ବିରାମ ପୁରର ବାଉଁଶ ବୁଦା ଥିବା ଲୋକଙ୍କଠାରୁ ବୋହି ଆଣନ୍ତି ଉଦ୍ୟକ୍ତାମାନେ ମୂଲ ପଡ଼େ ନାହିଁ । ପ୍ରଥମେ ଚାରି ବଖରା ମାଟି କାନ୍ଥରେ ଲମ୍ବା ଘର ତିଆରି ହୋଇଗଲା । ଏଇଠି ଚାଲିବ ତରିକୁନ୍ଦ ପ୍ରାଇମେରୀ ସ୍କୁଲର ଉନ୍ନତୀ ଉ.ପ୍ରା ଚତୁର୍ଥ ଓ ପଞ୍ଚମ ଶ୍ରେଣୀ ମଙ୍ଗିଗଲେ ଲୋକାଲ ବୋର୍ଡ଼ ଓ ଜିଲ୍ଲା ବୋର୍ଡ଼ର ଚେଆରମ୍ୟାନ ଯଥାକ୍ରମେ ଜାତୀୟ କବି ବୀରକିଶୋର ଦାସ ଓ ସୁଧୀର ଚନ୍ଦ୍ର ବୋଷ ଓ ନୀଳମଣି ପ୍ରଧାନ । ସେତେବେଳେ ୧୫୦୦ ଟଙ୍କାର ଏ ଯୁଦ୍ଧୋତ୍ତର ଗ୍ରାଣ୍ଟ ଥାଏ, ତା' ବଦଳରେ ଆମକୁ ସିମେଣ୍ଟ ଚଦର ଯୋଗାଇ ଦେବାକୁ ସେମାନେ ସମ୍ମତ ହେଲେ । ଆଉ ଏକ ଧାଡ଼ି ଯାହା ରାସ୍ତା ପାଖକୁ ଅଛି ତାହା ଗଢ଼ା ଯିବ । ଜିଲ୍ଲା ବୋର୍ଡ଼ ଚେୟାରମ୍ୟାନ ନୀଳମଣି ପ୍ରଧାନଙ୍କୁ ଡକାଇ ଗୋଟିଏ କୂଅ ମଞ୍ଜୁର କରି ନିଆଗଲା ଏବଂ ଉ.ପ୍ରା. ଗ୍ରାଣ୍ଟ ସହଜରେ ମିଳିଗଲା ।

ଏବେ ଶିକ୍ଷକ ନିଯୁକ୍ତିର ପ୍ରଶ୍ନ । ଇଂରାଜୀ ପାଠ ପଢ଼ାଇବେ । ଅର୍ଥ ନାହିଁ ସାମାନ୍ୟ ପାରିଶ୍ରମିକରେ ଉସମାନ ଅଲ୍ଲୀ, ଗୌରାଙ୍ଗଚନ୍ଦ୍ର ସାହୁ, ନିରଞ୍ଜନ ମହାନ୍ତି ଡକା ହୋଇ ଆସିଲେ । ବାଙ୍କୀ ଡମପଡ଼ାରୁ ନିମାଇଁ ଚନ୍ଦ୍ର ମହାନ୍ତି ଯେ ଏହି ବିଦ୍ୟାଳୟକୁ ବାସସ୍ଥାନ ମଣିଲେ ଏବଂ ଏଇଠି ତାଙ୍କ ପତ୍ନୀଙ୍କୁ ହରାଇଲେ । ମାଇନର ସ୍କୁଲ ପାଇଁ ଜଣେ ପ୍ରଧାନ ଶିକ୍ଷକ ଦରକାର, ପୁଣି ହାଇସ୍କୁଲ ପାଇଁ ଆବଶ୍ୟକ ଜଣେ ସ୍ଥାୟୀ ପ୍ରଧାନ ଶିକ୍ଷକ । ଏପରି ଚୟନ କରାଯିବ ଯେପରି ସେମାନେ ସ୍ଥାନୀୟ ହୋଇଥିବେ ଏବଂ ଅଙ୍ଗୀକାର ବଦ୍ଧ ହେବେ ଏହି ବିଦ୍ୟାଳୟକୁ ନିଜର ମଣିବେ, ସେମାନେ ହିଁ ହେବେ ପ୍ରକୃତରେ ଏହାର ବିନ୍ଧାଣୀ, ସାହାଯ୍ୟ ସହଯୋଗ କରିବେ ଅଞ୍ଚଳର ଉଦ୍ୟକ୍ତାମାନେ ।

ପ୍ରଥମେ ଆଖି ପଡ଼ିଲା କଟକ ମିଶନ ହାଇସ୍କୁଲର ଜଣେ କୃତୀ ଶିକ୍ଷକ ସାତପୁରାର ଯୁଧିଷ୍ଠିର ଦାସ, ସ୍ଥାୟୀ ଚାକିରୀ । ଏତେ ବଡ଼ ହାଇସ୍କୁଲ ଶିକ୍ଷକ, ଅନୁରୋଧ ରକ୍ଷା କଲେ । ତାଙ୍କର ସାଥୀହେଲେ ରଣହତାର ପଞ୍ଚାନନ ରାଉତ, ଯିଏ ତାଙ୍କ ପାଖରେ ଗଣିତ ପଢ଼ିଛି ସେ ତାଙ୍କୁ ମନେରଖିଛି । ସେ ଆଉ ମହାନ୍ତି- ଛାତ୍ରମାନଙ୍କର ପ୍ରିୟ ଶିକ୍ଷକ ପରମାନନ୍ଦ ରାୟ, ମଧୁସୂଦନ ରଥ ଆଉ ନାହାନ୍ତି । ନିମାଇ ମଧ ଗଲେଣି ।

ଉପରୁ ଧରିଲେ ଜିଲ୍ଲା ଶିକ୍ଷକ ବିଭାଗ ଆଉ ସର୍କଉ ଶିକ୍ଷା ବିଭାଗର କର୍ତ୍ତାମାନଙ୍କର ଦୃଷ୍ଟି ରହିବ ଏପରି ବ୍ୟବସ୍ଥା କରିବାକୁ ହେବ, ହାଇସ୍କୁଲ ଚଳେଇବା ପାଇଁ ଜଣେ ଦକ୍ଷ, ଆତ୍ମତ୍ୟାଗୀ

ଶିକ୍ଷକ ଖୋଜା ହେଲା । ନରଣପୁରର ସୋମନାଥ ମିଶ୍ର ସେ ଜଣେ ସମାଜସେବୀ । ଉତ୍କଳ ବାହିନର ଜଣେ ଅଗ୍ରଦୂତ ଥାଆନ୍ତି । ସେ କଟକ ଜିଲ୍ଲାର ଟାଙ୍ଗୀ ଉଚ୍ଚ ବିଦ୍ୟାଳୟର ଶିକ୍ଷକ ଥାଆନ୍ତି, ସେ ନିଜହାତରେ ଟାଙ୍ଗରା ଭୂଇଁରେ ଏପରି ଏକ ବିଦ୍ୟାଳୟ ପ୍ରତିଷ୍ଠାରେ ଲାଗିପଡିଲେ । ଜବାବ ଦେଲେ ବର୍ଷକ ଯାଇ ହାଇସ୍କୁଲର ଶ୍ରେଣୀମାନ ଖୋଲି ପାଠପଢ଼ାର ବ୍ୟବସ୍ଥାର ମୂଳଦୁଆ ପକାଇ ପୁଣି ବର୍ଷକ ପରେ ପହଞ୍ଚିବି । ସତକୁ ସତ ହାଇସ୍କୁଲର ମୂଳଦୁଆ ପକାଇ ବର୍ଷକଟିଏ ଟାଙ୍ଗରେ ବକେୟା ସମ୍ପ୍ରସାରିତ ନିର୍ମାଣ କାର୍ଯ୍ୟସାରି ତରିକୁନ୍ଦରେ ପହଞ୍ଚିଗଲେ ।

କହିଛି ଉପରେ ଶିକ୍ଷା କର୍ତ୍ତୃପକ୍ଷଙ୍କୁ ହାତରେ ରଖିବାକୁ ହେବ । ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥାଆନ୍ତି, ତାଙ୍କ ଦ୍ୱାରା ବିଦ୍ୟାଳୟ ଉଦ୍‌ଘାଟିତ ହେବ । ବିରାଟ ଜନସମାବେଶ, ମହତାବ, ପ୍ରାଣକୃଷ୍ଣ ପଢ଼ିଆରୀଙ୍କ ଗହଣରେ ଶିକ୍ଷାବିଭାଗର ଉଚ୍ଚ କର୍ମକର୍ତ୍ତାଗଣ । ଏଣିକି ବିଦ୍ୟାଳୟର ଶ୍ରେଣୀ ପାଇଁ ମଞ୍ଜୁରି, ଗ୍ରାଣ୍ଟ ଆଉ ଘର, ଆସବାବ ପତ୍ର, ଲାଇବ୍ରେରୀ ପାଇଁ ଅର୍ଥ ମଞ୍ଜୁର କରାଇ ନେବା ସହଜସାଧ ହେଲା, ବିଦ୍ୟାଳୟର ଉତ୍ତରୋତ୍ତର ଉନ୍ନତି ପାଇଁ ମୁଖ୍ୟମନ୍ତ୍ରୀ ବିରେନ୍ ମିତ୍ରଙ୍କୁ ଏଥିରେ ସଂଶ୍ଳିଷ୍ଟ କରାଗଲା । ବିଜୁ ପଟ୍ଟନାୟକଙ୍କ ଠାରୁ ୧୦ ହଜାର ଟଙ୍କାର ଦାନ ସଂଗୃହୀତ ହେଲା । ୧୯୫୫ ବନ୍ୟାବେଳେ ହଷ୍ଟେଲ ପାଇଁ ବନ୍ୟା ପାଣ୍ଠିରୁ ନବକୃଷ୍ଣ ଚୌଧୁରୀ ୧୬୩୦୦ ଟଙ୍କା ମଞ୍ଜୁର କରିଦେଲେ । ପରିଚାଳନା କମିଟି ଏହାର ଅର୍ଦ୍ଧେକ ପୂରଣ କରିବା ଦାୟିତ୍ୱକୁ ଏଡ଼ାଇ ଦିଆଗଲା ।

ପ୍ରଥମେ ପରିଚାଳନା କମିଟିର ସମ୍ପାଦକ ମହେଶଚନ୍ଦ୍ର ରାଉତରାୟ ଓ ସଭାପତି ପ୍ରସନ୍ନ କୁମାର ସାହୁଙ୍କୁ ନିର୍ବାଚନ କରାଗଲା । ମହେଶଚନ୍ଦ୍ର ରାଉତରାୟ ୧୬୦୦ ଟଙ୍କା ଓ ପ୍ରସନ୍ନ କୁମାରସାହୁ ୩୦୦ ଟଙ୍କା ଦେଇଥିଲେ । ସାତପୁରା, ଧନୀପୁର, ଜୟଶୋଳ ପ୍ରଭୃତି ଗାଁ'ର ବିଦେଶରେ ଥିବା ସହୃଦୟ ବ୍ୟକ୍ତିଙ୍କ ପାଖରେ ପହଞ୍ଚି ଚାନ୍ଦା ଆଦାୟ କରାଗଲା ।

ଏସବୁର ମୁଖ୍ୟ ଥାଆନ୍ତି ପୂର୍ଣ୍ଣାନନ୍ଦପାତ୍ର, ବିଜୟ କୁମାର ସାହୁ ପ୍ରମୁଖ । ଗାଁ' ଗାଁ' ପରିକ୍ରମା କରି ଚାଉଳ, ଧାନ, ମୁଗ, ଆଳୁ, କଥା କୁମ୍ଭାରଙ୍କଠାରୁ ହାଣ୍ଡି ସଂଗ୍ରହ ଅଭିଯାନ ଚଳାଇଥିଲା । ସେହି ଗାଁ'ରେ ଜନତାଙ୍କ ଉପସ୍ଥିତିରେ ଆଦାୟକାରୀମାନେ ସେ ସବୁ ବିକ୍ରୟ କରି ସ୍କୁଲ ପାଣ୍ଠିରେ ଜମା ଦେଉଥିଲେ ।

ଇଟା ପୋଡ଼ା ହେବ, ଭାଟିକୁ ଇଟା ବୋହିବେ ପରିଚାଳନା କମିଟିର ସଦସ୍ୟଙ୍କର ଠାରୁ ଆରମ୍ଭ କରି ସ୍ଥାନୀୟ ଉତ୍ସାହୀ ଯୁବକ, ଶିକ୍ଷକ ଓ ଛାତ୍ରମାନେ ଧାନକଟା ବେଳେ ଚାଷୀଙ୍କ ଠାରୁ ହଳା ଓ ପ୍ରଥମ ଧାଉଡି ଘର ପାଇଁ ଛଣ ସଂଗ୍ରହ କରାଯିବ । ଏହି କାମର ଦାୟିତ୍ୱ ନେବେ ପ୍ରଧାନଶିକ୍ଷକ ହୋଇ ଆସିଥିବା ସୋମନାଥ ମିଶ୍ର ।

ସମସ୍ତଙ୍କ ସାହଯ୍ୟ ସତ, ମାତ୍ର ଆଣ୍ଠୁ ଲୁଚୁ ନ ଥିବା, ଧୋତି, ହାଫ୍ ସାର୍ଟ ପିନ୍ଧା ସ୍ୱେଚ୍ଛାସେବକ ପ୍ରଧାନଶିକ୍ଷକ ସୋମନାଥ ମିଶ୍ର ବିଦ୍ୟେଶ ନିକେତନ, ତା'ର ଛାତ୍ରଛାତ୍ରୀ, ଶିକ୍ଷୟିତ୍ରୀ,

ପିଲାଙ୍କ ଅଭିଭାବକ ସମସ୍ତଙ୍କର ଶ୍ରଦ୍ଧେୟ ହୋଇଗଲେ ଦିନ କେତେଜଣ ଅଭିଭାବକ ନିଜ ପିଲାଙ୍କ କଥା ବୁଝିବାକୁ ପ୍ରଧାନଶିକ୍ଷକଙ୍କୁ ଖୋଜିଲେ, ପ୍ରଧାନ ଶିକ୍ଷକଙ୍କୁ ଚିହ୍ନି ନ ଥାନ୍ତି । ପଚାରା ପଚରି କରି ପହଞ୍ଚି ଦେଖିଲେ ସ୍କୁଲ ଘର ନିର୍ମାଣ ବେଳେ ମୁଣ୍ଡରେ ଠେକାବାନ୍ଧି, ଶିଡ଼ି ଚଢ଼ି, ଗୋଟିଏ ବାଙ୍ଗରା ହୃଷ୍ଟପୁଷ୍ଟ ଯୁବକ ଉପରକୁ ଶ୍ରେଣୀ ଉଠାଉଛି, ଅବାକ୍ ହେଲେ ସେମାନେ ।

ଆଜି ଭଳି ନାମ କରିବା ଲାଗି ଅବା ଶିକ୍ଷାକୁ ଏକ ବ୍ୟବସାୟ କରିବା, ଅବା ପୁଅକୁ ସ୍କୁଲ କଲେଜରେ ପ୍ରଧାନଶିକ୍ଷକ ତା' ଅଧ୍ୟକ୍ଷ ଅଧ୍ୟାପକ କରେଇବା ପାଇଁ ସ୍କୁଲ କଲେଜ ଖୋଲିବା ସହଜ ଲାଗୁଛି, ଉପରେ ଲାଞ୍ଚ ଦେଲେ ଧରାଧରି କଲେ ମଞ୍ଜୁର ସହଜରେ । ମାତ୍ର ବ୍ରିଟିଶ ଶାସନ ଓ ସ୍ୱାଧୀନତାର ଆଦ୍ୟ କାଳରେ ଏସବୁ ଜାଲ୍ ଜାଲିଆତି ନ ଥିଲା କହିଲେ ଚଳେ ।

ଏହି ବିଦ୍ୟାଳୟଟି ଓଡ଼ିଶାରେ ଏକ ଉଚ୍ଚକୋଟୀର ସୁଶୃଙ୍ଖଳିତ ଅନୁଷ୍ଠାନର ମର୍ଯ୍ୟାଦା ଲାଭ କରିଛି, ଦୂର ଦୂରାନ୍ତରୁ ଅଭିଭାବକମାନେ ଆସି ନିଜ ପିଲାଙ୍କ ନାମ ଲେଖାଇ ଛାତ୍ରାବାସରେ ଛାଡି ଯାଉଥିଲେ ।

ପ୍ରଥମାବସ୍ଥାରେ ଏହି ବିଦ୍ୟାଳୟରେ ଯେଉଁମାନଙ୍କୁ ଶିକ୍ଷକତା କରିବାକୁ ଡକାଯାଇଥିଲା, ଯେଉଁମାନେ ପରିଚାଳନା କମିଟିର ସଦସ୍ୟ ଥିଲେ ସେମାନେ ଏବେ ବି ସ୍ମରଣରେ ଅଛନ୍ତି । ଏଯାବତ୍ ଯେଉଁମାନେ ଶିକ୍ଷକତା କରୁଛନ୍ତି ସେମାନଙ୍କ ମଧ୍ୟରୁ କେତେକଙ୍କ ନାମ ଆଗରୁ ରହିଯାଇଛି । ଗୋପାଳ ଚରଣ ରଥ, ରସାନନ୍ଦ ଦାସ, କୃଷ୍ଣ ଚନ୍ଦ୍ର ସାହୁ, ନରେନ୍ଦ୍ର ଶତପଥୀ, ସଚ୍ଚିଦାନନ୍ଦ ମିଶ୍ର, ଦାମୋଦର ରଥ, ଗୌରହରି ତ୍ରିପାଠୀ, ରଘୁନାଥ ପତି, କାହ୍ନୁ ଚରଣ ସାହୁ, ଜଗବନ୍ଧୁ ବେହେର, ଅବ୍‌ଦୁଲ ବାରି, ସୁକାନ୍ତ କୁମାର ମହାନ୍ତି, ଚିତ୍ତରଞ୍ଜନ ତ୍ରିପାଠୀ, ପ୍ରଭାତ କୁମାର ମହାନ୍ତି, ପରମାନନ୍ଦ ରାଉତ, ସନ୍ଧ୍ୟାରାଣୀ ଦାସ, ବିଦ୍ୟୁତ୍ ପ୍ରଭା ଶତପଥୀ, ଆଶ୍ରମବାଳା ଦୁବେ, ବୀର କିଶୋର ରାଉତ, ବୀରବର ସାହୁ, ଜଳଧରରାଉତ, ମହମଦ ସଲିମ, ଅବ୍ଦୁର ରଜାକ୍ ଏମିତି ଅନେକ । ଏହି ସ୍କୁଲର ଛାତ୍ର ଏଠାରେ ଶିକ୍ଷକତା କରି ନାଇଲୋର ହାଇସ୍କୁଲ ନିର୍ମାଣ କରି ପ୍ରଧାନ ଶିକ୍ଷକ ହେଲେ କିଶୋର ଚନ୍ଦ୍ର ମହାନ୍ତି, ଲକ୍ଷ୍ମଣ ସାହୁ । ସୁକାନ୍ତ ହେଲେ କଳିଙ୍ଗ ବିଦ୍ୟାପୀଠର ପ୍ରଧାନ ଶିକ୍ଷକ । ସୁକାନ୍ତ ସ୍ୱାଇଁ ସମସ୍ତ ହାଇସ୍କୁଲର ପ୍ରଧାନ ଶିକ୍ଷକ । ନୃସିଂହ ମହାନ୍ତି ହେଲେ ପଳାଶୋଳର ପ୍ରଧାନ ଶିକ୍ଷକ । ପୁଣି ଏହି ସ୍କୁଲର ଛାତ୍ର ଥାଇ ରବୀନ୍ଦ୍ର ନାଥ ଆଚାର୍ଯ୍ୟ, ସୁରେନ୍ଦ୍ର ନାଥ ମିଶ୍ର ଏହି ସ୍କୁଲର ପ୍ରଧାନ ଶିକ୍ଷକ ହେଲେ । ଆଉ ଅନେକ ଏପରି ଶିକ୍ଷାବ୍ରତୀ ଛାତ୍ର ସନ୍ନ୍ୟାସୀ ହୋଇଛନ୍ତି, ଏହାର ଅତୀତର ଛାତ୍ରଛାତ୍ରୀମାନେ ପ୍ରଖ୍ୟାତ ଡାକ୍ତର, ଡାକ୍ତରାଣୀ, ବିଜ୍ଞାନୀ, ଅଧ୍ୟାପକ, ପ୍ରଶାସକ, ଶିକ୍ଷକ, ଶିକ୍ଷୟିତ୍ରୀ ହୋଇଛନ୍ତି, ଦୀର୍ଘ ୫୦ ବର୍ଷ ବିତିଗଲେ ବି ଏପରି ଶିକ୍ଷକେ ଓ ଛାତ୍ରମାନେ ଏବେ ମଧ୍ୟ ସ୍ମୃତିପଟରେ ଅଛନ୍ତି ।

ସେଦିନର ଛେଳିଖାଇ ବାଗ ଆଜି କର୍ମ ମୁଖର, ବ୍ୟବସାୟ କେନ୍ଦ୍ର ସରକାରୀ ଦପ୍ତର,

ସ୍ୱାସ୍ଥ୍ୟସେବା ସଂଗଠନ, ବ୍ୟାଙ୍କ, ପୋଷ୍ଟ ଅଫିସରେ ମୁଖରିତ । ସାଂସ୍କୃତି କ୍ଷେତ୍ରରେ ଏହା ଏକ କେନ୍ଦ୍ରରେ ପରିଣତ ହୋଇଛି । ବିଦ୍ୟାଳୟ ଗଢ଼ା ହେଲା ବେଳେ ଅର୍ଥ ସଂଗ୍ରହ ପାଇଁ ପରିଚାଳନା କମିଟିର ଅନୁପ୍ରେରଣାରେ ସାତପୁରା ରଣହଟା ଓ ନବାପାଟଣାର ଉତ୍ସାହୀ ଯୁବକମାନେ ଥିଏଟର କରି ଚାନ୍ଦା ଆଦାୟ କରୁଥିଲେ । ଏହାକୁ ଅନୁସରଣକରି ମାଟ୍ରିକ ପରୀକ୍ଷାବେଳକୁ ପ୍ରଧାନ ଶିକ୍ଷକ ସୋମନାଥ ମିଶ୍ରଙ୍କ ଉଦ୍ୟମରେ ଓଡ଼ିଶାର ବଛା ବଛା ପାଲା ଗାୟକଙ୍କ ପାଲା ପରିବେଷଣ ହଜାର ହଜାର ଦର୍ଶକଙ୍କୁ ମୁଗ୍ଧ କରୁଥିଲା । ପରେ ଗଢ଼ି ଉଠିଲା ରାମଚନ୍ଦ୍ର ସ୍ମୃତି ସଂସଦ, କଳା ବିକାଶ କେନ୍ଦ୍ର ।

ଏହି ବିଦ୍ୟାଳୟର ପ୍ରାକ୍ତନ ଛାତ୍ରମାନେ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ସମୟରେ ବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତୀ ପାଳନ କରିବା ଜାଣି ଅତୀତରେ ଏହି ସବୁ ଘଟଣା ମନରେ ଉଙ୍କି ମାରିଲା, ଏହି ବିଦ୍ୟାଳୟ ପ୍ରାଙ୍ଗଣରେ ୧୯୪୭ ଅଗଷ୍ଟ ପନ୍ଦରରେ ସହସ୍ର ସହସ୍ର ଜନତାଙ୍କ ଉପସ୍ଥିତିରେ ରାଷ୍ଟ୍ରୀୟ ଧ୍ୱଜା ଉଡ଼ୟନର ସୁଯୋଗ ମିଳିଥିଲା ।

ଏହି ମାୟାମମତା ଲଗେଇଥିବା ଶିକ୍ଷାୟତନର ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଥିବା ପୁରାତନ ଛାତ୍ରଛାତ୍ରୀ ବର୍ତ୍ତମାନର ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଉଦ୍ୟମ ଉତ୍ତରୋତ୍ତର ଉନ୍ନତି କରୁ ଏହି କାମନା କରି ଅତୀତର ସ୍ମୃତିଚାରଣ କଲି ।

□□□

# ଅନମନୀୟ ମୁକ୍ତିଯୋଦ୍ଧା ଗୌରାଙ୍ଗ ଚରଣ ଦାସ

ଓଡ଼ିଶା ଭୂଇଁରେ ବିଶ୍ୱବନ୍ଦିତ ଆମ ସ୍ୱାଧୀନତା ସଂଗ୍ରାମର ଯଜ୍ଞ କୁଣ୍ଡରେ ନିଜକୁ ଆହୂତି ଦେଇଥିବା ଉଜ୍ଜ୍ୱଳ କ୍ରାନ୍ତିକାରୀ ନକ୍ଷତ୍ର ପୁଞ୍ଜରେ ଗୌରାଙ୍ଗ ଚରଣ ଦାସ ଏକ ଅଲିଭା ନକ୍ଷତ୍ର ।

ବ୍ରିଟିଶ ସାମ୍ରାଜ୍ୟବାଦର ପରାଧୀନତାର ନିଗଡ଼ ବନ୍ଧନ ତୁଟାଇବା ଲାଗି ଦୁଇ ଶହ ବର୍ଷବ୍ୟାପୀ ରୋମାଞ୍ଚକର ସଂଗ୍ରାମ । ସେଥିରେ ଲକ୍ଷଲକ୍ଷ ଭାରତବାସୀ ବ୍ରିଟିଶ ଗୁଳିରେ ନିହତ ହୋଇଛନ୍ତି, ସହସ୍ରସହସ୍ର ଫାଶୀ ମଞ୍ଚରେ ଚଢ଼ିଛନ୍ତି । କିନ୍ତୁ ଏହି ମୁକ୍ତି ଯୋଦ୍ଧା ସେପରି ଗୌରବର ଅଧିକାରୀ ନୁହନ୍ତି । କିନ୍ତୁ ଏହି ମହାନ୍ ମୁକ୍ତି ସଂଗ୍ରାମରେ ସେ ବ୍ରିଟିଶ ପୁଲିସ ଦ୍ୱାରା ତିନିତିନି ଥର ମରଣାନ୍ତକ ଆକ୍ରମଣ ହେତୁ ଚେତା ହରାଇଛନ୍ତି । ଆହୁରି ଅଧିକ ଗଭୀର ଆତ୍ମପ୍ରତ୍ୟୟ, ଲକ୍ଷ୍ୟ, ଆଦର୍ଶ ଉପଲବ୍ଧି ଲାଗି ଅଙ୍ଗୀକାରବଦ୍ଧତା ସହ ସଂଗ୍ରାମର ଧ୍ୱଜା ଉଡ଼େଇ ଏକ ଅଗ୍ରଣୀ ଜନନେତା ରୂପେ ଉଭା ହୋଇଛନ୍ତି ।

ଗୋଟିଏ ହାତ ପଙ୍ଗୁ, ନାହିଁ କହିଲେ ଚଳେ । ସେ କାଳରେ ଦରପାଠୁଆ ଗୌରାଙ୍ଗ ବାବୁ ଅମିନ ମୁନସରମି କାମ ଛାଡ଼ି ପରିବାରକୁ ଭୋକ ଉପାସରେ ପକେଇ ଗାନ୍ଧୀଜୀଙ୍କ ଆହ୍ୱାନରେ ସଂଗ୍ରାମ ଭୂଇଁକୁ ଲମ୍ଫଦେବା ପରେ ଆଉ ପଛକୁ ଅନେଇ ନାହାନ୍ତି । ଅବିରାମ ସଂଗ୍ରାମର ଏକ କର୍ଣ୍ଣଧାରର ମାନ୍ୟତା ଅର୍ଜନ କରିଛନ୍ତି ।

୧୯୩୦ରେ ପାଟନା କ୍ୟାମ୍ପ ଜେଲରେ ବ୍ରିଟିଶ ଗୋରା ପଲଟନର ଲାଠି ବନ୍ଧୁକ ଗୋବ ମାଡ଼ରେ ମୃତବତ୍ ହେବା ତାଙ୍କ ଜୀବନର ପ୍ରଥମ ଅଭିଜ୍ଞତା । ୧୯୩୮ରେ ସାରା ଭାରତରେ ଚହଲ ପକାଇଥିବା ଢେଙ୍କାନାଳ ପ୍ରଜା ଆନ୍ଦୋଳନରେ ତୃତୀୟ ସତ୍ୟାଗ୍ରହୀ ଦଳର ନେତା ହୋଇ ବ୍ରିଟିଶ ଓ ରାଜାର ପୁଲିସବାହିନୀର ଆକ୍ରମଣରେ ଜଙ୍ଗଲ ରାସ୍ତାରେ ସଂଜ୍ଞାହୀନ ହେବାର ଗୌରବ ସେ ଲାଭକଲେ । ହାତକେମ୍ପା ବିଦ୍ରୋହୀ ମରିଗଲା ବୋଲି ବର୍ବର, ନୃଶଂସ ଆକ୍ରମଣମାରୀମାନେ ଛାଡ଼ି ଚାଲିଯାଇଥିଲେ । ପୁଣି ତନଖି କରି ବଞ୍ଚିଛି ଜାଣି ମୁର୍ଦାର ଭଳି ପଡ଼ିଥିବା ଏହି ବିପ୍ଲବୀଙ୍କୁ ପିଙ୍ଗୁଆ ଥାନାକୁ ବୋହି ନେଇ ଜେଲ୍‌ରେ ଠୁଙ୍କି ଦେଲେ । ଚେତା ଫେରିଲା ପରେ ପୁଣି ନିର୍ଯ୍ୟାତନା ଚାଲିଲା ।

୧୯୪୨ରେ ଭାରତ ଛାଡ଼ ଆନ୍ଦୋଳନ କାଳରେ ୧୯୪୪ରେ ବ୍ରହ୍ମପୁର କେନ୍ଦ୍ର କାରାବାସରେ ବେଆଇନ ଭାବରେ ରାଜବନ୍ଦୀମାନେ ସ୍ୱାଧୀନତା ଦିବସର ପତାକା ଉତ୍ତୋଳନ କଲେ । ବ୍ରିଟିଶ ପୁଲିସର ପ୍ରଚଣ୍ଡ ଅନ୍ଧାଧୁନ୍ଦିଆ ଆକ୍ରମଣରେ ଅନେକ ଜଖମ ହେଲେ । ମାତ୍ର ଗୌରାଙ୍ଗ ଦାସ ବଞ୍ଚିବେ, ଏ ଭରସା ରହିଲା ନାହିଁ । ମାସମାସ କାଳ ହାସପାତାଳରେ ମୁମୂର୍ଷ ଅବସ୍ଥାରେ ପଡ଼ିରହିବା ଓ ପାଳିକରି ସହବନ୍ଦୀମାନେ ତାଙ୍କ ସେବା କରିବାର ଛବି ଭୁଲି ହୁଏ ନାହିଁ ।

୧୯୩୦ ଐତିହାସିକ ଇଞ୍ଚୁଡ଼ି ଲବଣ ସତ୍ୟାଗ୍ରହ ବେଳକୁ ଏକ ନେତୃତ୍ୱକାରୀ ସ୍ଥାନ ଅଧିକାର କରି ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ପ୍ରମୁଖଙ୍କ ସଙ୍ଗରେ ସୁଦୂର ଇଞ୍ଚୁଡ଼ି ଚରଣଭୂଇଁକୁ କଟକରୁ ଯାତ୍ରା କଲେ । ସେହିଦିନଠାରୁ ସେକାଳରେ ଓଡ଼ିଶାର ରାଜନୈତିକ ସାମାଜିକ ଜୀବନରେ ଗୌରାଙ୍ଗ ଦାସଙ୍କର ପାହାଚକୁ ପାହାଚ ଉତ୍ତରଣ ଆରମ୍ଭ ହୋଇଗଲା । ତୁଙ୍ଗନେତା ରୂପେ କେବଳ ନୁହଁ, ଏକ ଅନମନୀୟ ଯୋଦ୍ଧା ରୂପେ ସେ ରାଜନୈତିକ ଜୀବନରେ ଖ୍ୟାତି ଅର୍ଜନ କଲେ ।

ବ୍ରିଟିଶ ଶାସନ ଯିବ, ଏଥିରେ କଣ ଭାରତର କୋଟି ଚାଷୀ, ଦଳିତ, ନିର୍ଯ୍ୟାତିତ, ସମାଜରେ ନିପୀଡ଼ିତ ବୁଭୁକ୍ଷୁ ଗୃହହୀନ ଜଙ୍ଗଲବାସୀଙ୍କର ମୁକ୍ତି ଆସିଯିବ । ତାଙ୍କର ଏପରି ଅନୁଭବ ହିଁ ତାଙ୍କୁ ଅନୁପ୍ରେରିତ କଲା । ବ୍ରିଟିଶ ଶାସନ ଖୁଣ୍ଟି ସାଜି ଭାରତୀୟ ସମାଜକୁ କବ୍ଜାୟତ ରଖିଥିବା ଜମିଦାର, ମହନ୍ତ, ମହାଜନ ଆଉ ରାଜା ମହାରାଜାଙ୍କ ସାମନ୍ତବାଦୀ ପ୍ରଥା ବିଲୋପର ସଂଗ୍ରାମକୁ ସମାଜବାଦୀ ଆନ୍ଦୋଳନ ପ୍ରତି ଆକୃଷ୍ଟ ହେଲେ ଏବଂ ଏହି ଆନ୍ଦୋଳନରେ ନିଜର ସ୍ୱାକ୍ଷର ରଖିଦେଲେ ।

ଜମିଦାର ବିରୋଧୀ ଖୁଣ୍ଟି ସେକାଳରେ ଓଡିଶାରେ ଚହଳ ସୃଷ୍ଟିକରି ଚାଷୀ ଆନ୍ଦୋଳନର ଅନ୍ୟତମ ନେତା ରୂପେ ତାଙ୍କ ଗାଁ ସାଇବିରି ବାଗଲପୁର ଗାଁରେ ୧୯୩୫ରେ ଦଶହଜାର ଚାଷୀଙ୍କ ସମାବେଶ କରାଇ ଚାଷୀ ଆନ୍ଦୋଳନରେ ଇତିହାସ ସୃଷ୍ଟି କରିଥିଲେ । ଏହିପରି ଆନ୍ଦୋଳନସବୁ ଲକ୍ଷଲକ୍ଷ ଚାଷୀ ଶ୍ରମିକ ଖଟିଖିଆଙ୍କୁ ସ୍ୱାଧୀନତା ଆନ୍ଦୋଳନ ଭିତରକୁ ଟାଣି ଆଣିଲେ ।

ମାନବ ସମାଜରେ କଳଙ୍କ ଅସ୍ପୃଶ୍ୟତା ବିରୋଧରେ ସଂଗ୍ରାମ ମଧ୍ୟ ତାଙ୍କ କର୍ମ ପଦ୍ଧତିରୁ ବାଦ ପଡ଼ି ନଥିଲା । ହରିଜନ ପିଲାମାନଙ୍କୁ ସାଧାରଣ ବିଦ୍ୟାଳୟରେ ସ୍ଥାନ ନଦିଆଯିବା ବା ଶ୍ରେଣୀରେ ଅଲଗା ବସିବା ବିରୋଧରେ ସେ ପୁରାତନପନ୍ଥୀଙ୍କ ବିରୋଧ ସତ୍ତ୍ୱେ ହରିଜନ ବିଦ୍ୟାଳୟ ସ୍ଥାପନ କରି ଶତଶତ ଯୁବକ ଯୁବତୀଙ୍କୁ ଏପରି କଳଙ୍କ ଦୂର କରିବା ସଂଗ୍ରାମରେ ଅବତୀର୍ଣ୍ଣ କରାଇଥିଲେ ।

ଓଡ଼ିଶାରେ ସର୍ବପ୍ରଥମ ସେହି ବ୍ୟକ୍ତି ଯିଏ କି ଗାଁ'ର ସବୁ ଉଚ୍ଚ ବର୍ଣ୍ଣର ସହସ୍ର ନରନାରୀଙ୍କୁ ଅନୁପ୍ରେରିତ କରି ମନ୍ଦିରରେ ହରିଜନ ପ୍ରବେଶ କରାଇ ଓଡ଼ିଶାରେ ଚହଳ ସୃଷ୍ଟି କରାଇଥିଲେ ।

ଲୋକଙ୍କୁ ଅନ୍ଧବିଶ୍ୱାସ କୁସଂସ୍କାରରୁ ମୁକ୍ତ କରିବା ଲାଗି ଯୁବକମାନଙ୍କୁ ଉଦ୍‌ବୁଦ୍ଧ କରି ଗୁଣିଗାରେଡ଼ି, ହୁକୁମଦିଆ ଭଣ୍ଡାମି ବିରୋଧରେ ଅଭିଯାନ ଚଳେଇଥିଲେ । ଏହାହିଁ ତାଙ୍କୁ ଓଡ଼ିଶାର ରାଜନୈତିକ ଦୃଶ୍ୟପଟରେ ପ୍ରତିଷ୍ଠା ଆଣି ଦେଇଥିଲା ।

ସ୍ୱାଧୀନତା ଆସି ନଥାଏ । ବ୍ରିଟିଶ ରାଜୁତିର ଧମକ, ବ୍ରିଟିଶ କିଙ୍କର ସାଜିଥିବା ଧନୀ ଜମିଦାରଙ୍କ ଚକ୍ରାନ୍ତ । ସେହି ପରିସ୍ଥିତିରେ ୧୯୪୬ରେ ଗୋବିନ୍ଦପୁର ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନ ସଭାକୁ ସ୍ୱାଧୀନତାପ୍ରେମୀ ଜନଗଣ ତାଙ୍କୁ ବିଜୟ ମଣ୍ଡିତ କରିଥିଲେ । ବିଧାନସଭା ସଦସ୍ୟ ଅବା ସ୍ୱାଧୀନତା ପରବର୍ତ୍ତୀ କାଳରେ କଟକ ଜିଲ୍ଲା ପରିଷଦର ଚେୟାରମେନ ଥାଇ ଉକ୍ତ ପଦବୀଗୁଡ଼ିକୁ ଆଜିକାଲି ଭଳି ଅହଙ୍କାରୀ ଗର୍ବର ଭୂଷଣ ବୋଲି ସେ ବିଚାରୁ ନଥିଲେ ।

ତାଙ୍କର ଅପୂର୍ବ ସାଙ୍ଗଠନିକ ଶକ୍ତିର ଆଉ ଏକ ଜ୍ୱଳନ୍ତ ଉଦାହରଣ ହେଲା ୬୦ ବର୍ଷ ପୂର୍ବେ ନିଜ ଗାଁ'ରେ କୋଠଚାଷ ପ୍ରବର୍ତ୍ତନ । ସବୁ ବର୍ଣ୍ଣର ବିଭିନ୍ନ ଛୋଟ, ମଧ୍ୟମ, ବଡ଼ ଚାଷୀଙ୍କ ଜମି ଓ ହଳବଳଦ ଏକାଠି କରି ଭୂମିହୀନମାନଙ୍କୁ ଏକତ୍ର କରି କୋଠଚାଷର ପ୍ରୟୋଗ ପରୀକ୍ଷା ଓଡ଼ିଶାରେ ସେତେବେଳେ ଚମକ ସୃଷ୍ଟି କରିଥିଲେ ।

ଗୌରାଙ୍ଗବାବୁଙ୍କ ଦେହାବସାନର ସ୍ମୃତିଚାରଣ କଲାବେଳେ ଅତୀତରେ ଆମ ଦେଶକୁ ସ୍ୱାଧୀନ କରିବାକୁ, ସମାଜକୁ ଶୋଷଣମୁକ୍ତ କରିବାକୁ ଯେଉଁମାନେ ପ୍ରାଣ ଦେଲେ, ତା'ର ଫଳଶ୍ରୁତିର ବିଚାର, ବିଶ୍ଳେଷଣ ଓ ସେଥିରୁ ଶିକ୍ଷା ସଂଗ୍ରହ ସେମାନଙ୍କର ପ୍ରକୃତ ଉତ୍ତରାଧିକାରୀ ହେବ ।

□□□

ରଚନା କାଳ – ୧୯୮୫

# ତାଙ୍କୁ ଯେମିତି ଦେଖିଛି–ଜାଣିଛି

ନବକୃଷ୍ଣ ଚୌଧୁରୀ ଜଗତସିଂହପୁର ଖେରସର ସମ୍ଭ୍ରାନ୍ତ ବଂଶୀୟ । ସେ କାଳର ବିଶିଷ୍ଟ ଆଇନଜୀବୀ ଗୋକୁଳାନନ୍ଦ ଚୌଧୁରୀଙ୍କ ପୁଅ । ବଡ଼ ହାକିମ ପାଇଟି ଛାଡ଼ି ପ୍ରଖ୍ୟାତ ଗାନ୍ଧୀବାଦୀ ନେତା ଗୋପବନ୍ଧୁ ଚୌଧୁରୀଙ୍କ ଭାଇ, ପତ୍ନୀ, ଭାଉଜ, କନ୍ୟା, ଝିଆରୀ, ପୁତୁରା, ଜ୍ୱାଇଁ ଏକ ଉତ୍ସର୍ଗୀକୃତ ପରିବାରର ସେ ଜଣେ, ଏହା ତାଙ୍କର ମାମୁଲି ପରିଚୟ ମାତ୍ର ।

ଯେ କେହି କହିବେ ସେ ଥିଲେ ସ୍ୱାଧୀନତା ସଂଗ୍ରାମର ବିଶିଷ୍ଟ ନେତା । ବହୁବାର କାରାବରଣ କରିଛନ୍ତି । ହାତ ପାହାନ୍ତା ସୁଯୋଗ ସୁବିଧା ଉପଭୋଗ ପ୍ରତି ନିସ୍ପୃହ ହୋଇଛନ୍ତି । ସେ ଥିଲେ ସୋସାଲିଷ୍ଟ । ସେ ଏମ୍.ଏଲ୍.ଏ.ଠାରୁ ରାଜସ୍ୱ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଥିଲେ । ସେ ଜଣେ ଗାନ୍ଧିବାଦୀ ନେତା, ସେ ଥିଲେ ସର୍ବୋଦୟ ନେତା ।

ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସହଧର୍ମିଣୀ, ସହକର୍ମିଣୀ ମାଳତୀ ଦେବୀଙ୍କ ରାଜନୈତିକ ଶିଷ୍ୟ, ରାଜନୈତିକ ସହକର୍ମୀ ଭାବରେ ତାଙ୍କର ସେ କାଳର କର୍ମଜୀବନରେ ତାଙ୍କୁ ଦେଖିଛି । କାରାବାସରେ ଦୁଇ ଦୁଇଥର ନିକଟରୁ ଲକ୍ଷ୍ୟ କରିଛି ଏବଂ ପରବର୍ତ୍ତୀ କାଳରେ ତାଙ୍କ ରାଜନୈତିକ ମତବାଦର ବିରୋଧୀ ରୂପେ ତାଙ୍କ ନିକଟ ସଂସ୍ପର୍ଶରେ ଆସିଛି ।

ନବକୃଷ୍ଣ ଚୌଧୁରୀଙ୍କ ଜୀବନର ମୂଲ୍ୟାୟନ କଲେ ଦେଖାଯିବ ଯେ ପ୍ରତିଷ୍ଠାବାନ୍ ଯେକୌଣସି ରାଜନୈତିକ ବ୍ୟକ୍ତିଙ୍କଠାରୁ ତାଙ୍କର ଥିଲା ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ । ସେ ଥିଲେ ଏକ ଅନନ୍ୟ ସାଧାରଣ ରାଜନୀତିକ, ଚିନ୍ତକ, ସ୍ୱପ୍ନବିଳାସୀ, ଅନୁସନ୍ଧିତ୍ସୁ ଓ ଅନ୍ୱେଷକ । ଜୀବନବ୍ୟାପୀ ଅନ୍ୱେଷଣକୁ ସେ ନିଜ ଜୀବନର ମହତ୍ତ୍ୱ ବୋଲି ବିଚାରୁଥିଲେ । ଅନ୍ୱେଷଣ ଓ ଅନୁସନ୍ଧିତ୍ସାର ଏକମାତ୍ର ଲକ୍ଷ୍ୟ ଥିଲା, ପୁରାତନ ସାମାଜିକ, ଆର୍ଥିକ ବ୍ୟବସ୍ଥାର ଆମୂଳ ପରିବର୍ତ୍ତନ । ତାଙ୍କର ଏହି ପ୍ରାଣପାତ ପ୍ରଚେଷ୍ଟା ସମାଜ ବିକାଶର ବିଜ୍ଞାନସମ୍ମତ ଚିନ୍ତାନୁସାରୀ ଅବା ଅଲଭ୍ୟ, ଐକାନ୍ତିକ ଆଦର୍ଶବାଦୀ ଧରଣର । ତାହାର ବିଚାର ସ୍ୱତନ୍ତ୍ର ।

ସେ ମାର୍କସବାଦୀ ଥିଲେ, ପୁଣି ନ ଥିଲେ । ସେ ମନ୍ତ୍ରୀ ହେବାକୁ ଚାହୁ ନଥିଲେ । ପୁଣି ହେଲେ ଓ ମଝିରେ ମନକୁ ଛାଡ଼ି ଚାଲିଗଲେ । ମୁଖ୍ୟମନ୍ତ୍ରୀ ହେବାକୁ ଚାହୁ ନଥିଲେ ପୁଣି

ମୁଖ୍ୟମନ୍ତ୍ରୀ ହେଲେ । ଯାଉ ଯାଉ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିବି ଛାଡ଼ିବି ହେଲେ; ସେ ଭାରତରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ପ୍ରତିଷ୍ଠାତା ନେତା ହେଲେ । ପୁଣି ସେଥିରେ ରହିଲେ ନାହିଁ । ସେ ସେତେବେଳେ କଂଗ୍ରେସର ସର୍ବୋଚ୍ଚ ନେତୃତ୍ୱ କାର୍ଯ୍ୟକାରୀ କମିଟିକୁ ଯିବାକୁ ପସନ୍ଦ କରୁନଥିଲେ ଏବଂ ରହିଲେ । ସେ ଗାନ୍ଧିବାଦୀ ବୋଲି ସେତେବେଳେ ଯାହା ବିଚାର, ସେପରି ଗାନ୍ଧୀବାଦୀ ନଥିଲେ, ମାତ୍ର ଗାନ୍ଧିବାଦୀ ବୋଲି ତାଙ୍କୁ କୁହାଗଲା । ସେ ସର୍ବୋଦୟପନ୍ଥୀ ନଥିଲେ ଓ ଥିଲେ । ଯେଉଁ କଂଗ୍ରେସ ଲାଗି ସେ ପ୍ରାଣୋତ୍ସର୍ଗର ଶପଥ ନେଲେ ଓ ତା'ର ତୁଙ୍ଗ ନେତା ଏବଂ ରାଜ୍ୟ ପ୍ରଧାନ ଶାସକ ହେଲେ, ପରବର୍ତ୍ତୀ କାଳରେ ସେହି "କଂଗ୍ରେସ ହଟାଓ" ଅଭିଯାନର ଅଗ୍ରଣୀ ହେଲେ । ତାଙ୍କୁ ବ୍ରିଟିଶ ସରକାର ୫ଥର ଜେଲ୍ ନେଲା, ପାରଳା-ଗୋଦାବରୀଶ ସରକାର ଜେଲ୍ ନେଲେ – ପୁଣି ଇନ୍ଦିରା ନନ୍ଦିନୀ ସରକାର ଜେଲ୍ ଦେଲେ ।

କ'ଣ ଏ ବ୍ୟକ୍ତି, କ'ଣ ଏ ବ୍ୟକ୍ତିତ୍ୱ ? ମୁଁ ଯେପରି ଦେଖିଛି, ଯେପରି ତାଙ୍କର ଜୀବନର ପ୍ରତ୍ୟେକ ବିଭାବକୁ ପାଖରେ ଥାଇ ଓ ଦୂରରେ ରହି ଅନୁଶୀଳନ କରିଛି । ସେ ଦୃଷ୍ଟିରୁ କହିବି ସେ ଥିଲେ ଏକ ଅଶାନ୍ତ ଝଡ଼, ଏକ ଅତୃପ୍ତ ବିଦ୍ରୋହୀ, ଏକ ବିପ୍ଳବୀ ଗଣତନ୍ତ୍ରବାଦୀ **(Revolutionary Democrat)** । ଯାହା ପରଂପରାଗତ ସମାଜ ବ୍ୟବସ୍ଥା, ସାମାଜିକ ଚିନ୍ତା, ସାମାଜିକ ସଂପର୍କ ଓ ଆର୍ଥିକ ବ୍ୟବସ୍ଥା ଓ ସେହି ସମାଜ ବ୍ୟବସ୍ଥା ଓ ଅର୍ଥନୈତିକ ବ୍ୟବସ୍ଥାରୁ ଉଦ୍‌ଭବ ସଂସ୍କୃତି – ଯାହାକୁ ସେ ଅପସଂସ୍କୃତି ବିଚାରୁଥିଲେ, ତାହାରି ବିରୁଦ୍ଧରେ ତାଙ୍କର ବିଦ୍ରୋହ । ତାଙ୍କ ଆଲୋଚନାରେ ଭାଷଣରେ, ତାଙ୍କ କାର୍ଯ୍ୟରେ ସେ ତାହା ପ୍ରକାଶ କରୁଥିଲେ । ତାଙ୍କୁ କିଏ ନିହିଲିଷ୍ଟ ବା ନେତିବାଦୀ ବୋଲି କହିପାରେ । ତାଙ୍କର ଜୀବନ ଦର୍ଶନକୁ କିଏ ନୈରାଶ୍ୟବାଦୀ ଆଖ୍ୟାୟିତ କରିପାରେ । ଲକ୍ଷ୍ୟ ଓ ଲକ୍ଷ୍ୟ ହାସଲର ଉପାୟ ସଂପର୍କରେ ତାଙ୍କର ଗଭୀର ଅନୁଶୀଳନରୁ ସେ ଦୁଇଟିକୁ ଏକାଠି କରୁଥିଲେ । ଲକ୍ଷ୍ୟ ସଠିକ ହେଲେ ଉପାୟ ଯାହା ହେଉ ଯେମିତି ସେ ବିଚାରୁଥିଲେ, ସେମିତି ଉପାୟ ଠିକ୍ ହେଲେ ଲକ୍ଷ୍ୟ ହାସଲ ସୁଗମ ହେବ ବୋଲି ଧରୁଥିଲେ । ଗୋଟିଏ ଦୃଷ୍ଟାନ୍ତ ନିଅନ୍ତୁ, ଗାନ୍ଧୀଜୀଙ୍କ ବିଚାରକୁ ସେ ମାନୁଥିଲେ ହେଁ ନିଜେ ସନ୍ତ୍ରାସବାଦ ବିଶେଷତଃ ବ୍ୟକ୍ତିସନ୍ତ୍ରାସର ପରମ ବିରୋଧୀ ହୋଇ ବି ନକ୍‌ସଲପନ୍ଥୀଙ୍କ ପ୍ରତି ଭାବଗତ ଦରଦ ରଖୁଥିଲେ । ଏକମାତ୍ର ଲକ୍ଷ୍ୟ ଗାନ୍ଧୀବାଟରେ ହେଉ, କମ୍ୟୁନିଷ୍ଟ ଓ ସୋସାଲିଷ୍ଟ ବାଟରେ ହେଉ ଅବା ନକ୍‌ସଲପନ୍ଥୀ ଓ ସଂପୂର୍ଣ୍ଣ ବିପ୍ଳବ ବାଟରେ ହେଉ, ଏ ସମାଜ ବଦ୍ଳୁ, ପାରଂପରିକତା ବଦ୍‌ଳୁ । ଏଷ୍ଟାବ୍ଲିଶମେଣ୍ଟ ବଦ୍‌ଳୁ । ଏ ରାଷ୍ଟ୍ରସତ୍ତାର ପରିବର୍ତ୍ତନ ହେଉ ।

ଏପରି ଚିନ୍ତାରେ ଧାରାବାହିକତା ଥିଲା କି ନଥିଲା, ତାହା ଏକ ସ୍ୱତନ୍ତ୍ର ଆଲୋଚ୍ୟ ବିଷୟ । ଏପରି ବିରୋଧାଭାସ ତାଙ୍କ ଜୀବନଦର୍ଶନରେ ଯେ ପ୍ରତିଫଳିତ, ତାହା ତାଙ୍କର ନିଜର ପ୍ରତିଷ୍ଠା ପାଇଁ, ନିଜର ନେତୃତ୍ୱ ପାଇଁ ଓ ନିଜର ସୁନାମ ଅର୍ଜନ ପାଇଁ ଉଦ୍ଦିଷ୍ଟ ଯେ

ନଥିଲା, ତାହା ତାଙ୍କର ଦୀର୍ଘ କର୍ମମୁଖର, ଆଜିକା ସମାଜରେ ଯାହାକୁ ନିଷ୍ପାପ କୁହାଯିବ, ସେପରି ନିଷ୍ପାପ ନିରାଡ଼ମ୍ବର ଜୀବନରେ ପ୍ରତିଫଳିତ ହୋଇଛି । ଅର୍ଥାତ୍ ନିଜର ନେତୃତ୍ୱ, ପ୍ରତିଷ୍ଠା ପାଇଁ ଶାସନରେ ଥିବାବେଳେ ନିଜ ଦଳର ଶକ୍ତି ବୃଦ୍ଧି ଲାଗି ସେ ଯେତେବେଳେ ଯାହା ଆବଶ୍ୟକ, ତାହା କରିବାର ନୀତିଗତ ଭାବରେ ଥିଲେ ବିରୋଧୀ । ଏପରି ସଂକୀର୍ଣ୍ଣ ସ୍ୱାର୍ଥ ପାଇଁ ସେ ରୂପ ବଦଳାଉ ନଥିଲେ କି ମତ ବଦଳାଉ ନଥିଲେ । ସମାଜ ରୂପାନ୍ତର ନିଜ ମନ ଅନୁସାରେ ଓ ଅଭୀପ୍ସା ଅନୁଯାୟୀ ହେଉନାହିଁ; ତେଣୁ ସେ ସର୍ବଦା ଭିନ୍ନ ଭିନ୍ନ ବାଟରେ ଅନ୍ୱେଷଣ କରୁଥିଲେ । ସେହି ବାଟରେ କିଛି ଦିନ ଯାଉଥିଲେ, ମାତ୍ର ସେ ବାଟରେ ଆଶୁ ସଫଳତା ନ ପାଇ ବା ସେ ବାଟରେ ଭବିଷ୍ୟତ ସମ୍ପର୍କରେ ସନ୍ଦିହାନ ହୋଇ ସେଥିରୁ ମୁଖ ଫେରାଉଥିଲେ । ପୁଣି ଅନ୍ୱେଷଣ କରୁଥିଲେ ଦୋସରା ବାଟରେ ।

ଗୋଟିଏ କଥାରେ କୁହାଯିବ, ପୁରୁଣା ଶୋଷଣ, ଅତ୍ୟାଚାର, ନିର୍ଯ୍ୟାତନାପୂର୍ଣ୍ଣ ସମାଜ କବଳରୁ ଦଳିତ, ନିଷ୍ପେଷିତ, ଅବହେଳିତ, ବଞ୍ଚିତ, ଲାଞ୍ଛିତ ଅଞ୍ଚ ଲୋକଙ୍କ ମୁକ୍ତି । ସେ ବାଟ ଯାହା ହେଉ ନା କାହିଁକି ସେହି ଉଦ୍ଦେଶ୍ୟରେ ଯିଏ ଯାହା କରୁଛି, ତାଙ୍କରି ସଙ୍ଗରେ ସିଏ ରହିବେ – ମନରେ ହେଉ ବା କାର୍ଯ୍ୟରେ ହେଉ । ମନ ନ ମାନିଲେ ସେଥିରୁ ଓହରିଯିବେ । ଏହା ହିଁ ଜୀବନ ପ୍ରମାଣିତ କରିଛି । ସେହି ଗୋଟିଏ ଲକ୍ଷ୍ୟରେ ସେ ସୋସାଲିଷ୍ଟ ବୋଲି କୁହାଯାନ୍ତି, ଗାନ୍ଧୀବାଦୀ ବୋଲି କୁହାଯାନ୍ତି, ସର୍ବୋଦୟପନ୍ଥୀ ବୋଲି ବିବେଚିତ ହୁଅନ୍ତି ।

ତାଙ୍କର ଜୀବନାଦର୍ଶ ତେଣୁ ଭୂସ୍ୱାମୀଙ୍କର ସ୍ୱତ୍ୱରକ୍ଷା, ମଠାଧୀଶମାନଙ୍କର ସମ୍ପତ୍ତି ରକ୍ଷା, ପୁଞ୍ଜିପତିମାନଙ୍କ ବଢ଼ତି ଓ ସ୍ୱାର୍ଥରକ୍ଷା ବିରୋଧୀ । କଂଗ୍ରେସରେ ଥାଇ, ଏକ ଶୀର୍ଷସ୍ଥାନୀୟ ନେତା ହୋଇ ଧରାବନ୍ଧା କଂଗ୍ରେସ ନୀତି ଓ ନେତାମାନଙ୍କର ସଙ୍ଗରେ ରହି ପୁଣି ସେହି ମେଳରେ ନିଜକୁ ଅଲଗା କରିଆଣି ସେ ଜମିଦାରୀ ପ୍ରଥାର, ସାମନ୍ତବାଦୀ ପ୍ରଥାର ଉଚ୍ଛେଦ ପାଇଁ ଆନ୍ଦୋଳନରେ ଜଣେ ଅଗ୍ରଣୀ ଥିଲେ ଏବଂ କ୍ଷମତାକୁ ଆସି ତାକୁ କାର୍ଯ୍ୟରେ ପରିଣତ କରିବା ଲାଗି ପଦକ୍ଷେପ ନେଲେ । ମାତ୍ର ଦେଖିଲେ ତାଙ୍କ ଦଳର ନୀତି, ସମ୍ବିଧାନର ନିର୍ଦ୍ଦେଶାବଳୀ ଏହି ବ୍ୟବସ୍ଥାର ଆମୂଳ ଉଚ୍ଛେଦ କରିପାରିବ ନାହିଁ । ତେଣୁ ସେ ଭାବିଲେ ହୁଏତ ବିନୋବାଙ୍କ ଭୂଦାନ ସଫଳ ହେବ । ସେଥିରେ ନିମଜ୍ଜି ଗଲେ – ଆଇନ କଲେ । ମାତ୍ର ଦେଖିଲେ ଗାଁ'ଗହଳରେ ଶୋଷଣ ଅତ୍ୟାଚାର ଅଧିକ ବଢ଼ିଲା । ଏ ସଂପର୍କରେ ତାଙ୍କର ଦୃଷ୍ଟିକୋଣ କ'ଣ ଥିଲା, ତାଙ୍କ ମୁଖ୍ୟମନ୍ତ୍ରିତ୍ୱବେଳେ ସେ ପ୍ରକାଶ କରିଦେଲେ । ଥରେ ଚନ୍ଦକାରୁ ଦଳେ ଭାଗଚାଷୀ ଆସି ବିଧାନସଭା ଆଗରେ ବିକ୍ଷୋଭ କରି ଜମିଦାରଙ୍କଠାରୁ ରକ୍ଷା କରିବାକୁ ତାଙ୍କୁ ଅନୁରୋଧ କଲେ । ସେ ଉତ୍ତରରେ କହିଲେ, ଆଇନରେ ଜମି ମିଳିବ ନାହିଁ । ଭାଗଚାଷୀ ଆଇନତଃ ହୋଇଛି । ତମେ ଠେଙ୍ଗାବାଡ଼ି ଧରି ଜମିବାଡ଼ି ରଖିପାରବ ତ ? ମୁଖିଆ ଭାଗଚାଷୀ ତାଙ୍କୁ ଓଲଟି ପ୍ରଶ୍ନ କଲେ, ଆପଣ ପୁଲିସ ପଠାନ୍ତବେ ନାହିଁ ତ ? ଉତ୍ତର ମିଳିଲା, "ହଁ

ପଠାଇବି । ଆଇନ ସମ୍ବିଧାନ ମୋତେ ବାଧ କରିବ । ସ୍ୱାଧୀନତା ଲାଗି ଲୋକ ଜେଲ୍ ଗଲେ, ଫାଶୀ ଚଢ଼ିଲେ, ତମେ ଜମି ପାଇବ, ସୁରୁଖୁରୁରେ ପାଇଯିବ, ଠେଙ୍ଗାବାଡ଼ି ଧରିବ ନାହିଁ ?"

କୁହନ୍ତୁ ଦେଖି କେଉଁ ମୁଖ୍ୟମନ୍ତ୍ରୀ ଏପରି ପରାମର୍ଶ ଦେବ ଓ ନିଜ ଶାସନର ଅକ୍ଷମତା, ଯାହା କି ସତ୍ୟ, ତାକୁ ପ୍ରକାଶ କରିବ, ନିଜ ଶାସନକୁ ହେୟ ପ୍ରତିପନ୍ନ କରିବ ? ତାହା କେବଳ ଏହି ବ୍ୟକ୍ତିତ୍ୱ ପକ୍ଷରେ ଥିଲା ସମ୍ଭବପର ।

ସେମିତି ଶାସକ ଦଳରେ ନିଜର ଗୋଷ୍ଠୀ ଗଠନ, ଯେତେ ବ୍ୟକ୍ତି ଓଡ଼ିଶାରେ ଶାସନରେ ଆସିଛନ୍ତି, କିଏ ନ କରିଛି ? କିନ୍ତୁ ସେ ରାଜନୀତି କ୍ଷେତ୍ରରେ ଯେମିତି ନିଜର ମତକୁ ସମର୍ଥନ କରୁଥିବା ଏବଂ ଅନ୍ୟ ଗୋଷ୍ଠୀର ବିରୁଦ୍ଧରେ ଯାଉଥିବା ଗୋଷ୍ଠୀ ଗଠନ ତାଙ୍କ ଜୀବନର ଧର୍ମ ନଥିଲା । ନେତୃତ୍ୱ ଓ କ୍ଷମତାକୁ ଜାବୁଡ଼ିଧରି ରଖିବା ତାଙ୍କ ଜୀବନାଦର୍ଶର ପରିପନ୍ଥୀ ଥିଲା; ତେଣୁ ତାଙ୍କର କୌଣସି ଲବି ନଥିଲା । ଗୋଟିଏ ଉଦାହରଣ ଯଥେଷ୍ଟ । ବିଧାନସଭା ଲବିରେ ବିରୋଧୀଦଳ, ସାମ୍ବାଦିକ ଓ ତାଙ୍କ ମନ୍ତ୍ରୀ ଏମ୍.ଏଲ୍.ଏ.ଙ୍କ ସାମନାରେ ସେ ନିଜ ଦଳର ଜଣେ ବିଧାୟକ, ଯେ କି କେତୋଟି ଚାଉଳକଳ ମାଲିକ ତାଙ୍କର ସମାଲୋଚନା କରି କହିଲେ, "ଚାଉଳରେ ଟ୍ରକ୍ ଟ୍ରକ୍ ଗୋଡ଼ି ମିଶେଇବ । ପୁଣି ନିଜକୁ ଗାନ୍ଧୀବାଦୀ କହିବ – କଂଗ୍ରେସ ନେତା କହିବ ?" ସେମିତି ନିଜ ମନ୍ତ୍ରିମଣ୍ଡଳର ସଦସ୍ୟା, ପୂର୍ବତନ ରାଜବଂଶୀୟାଙ୍କୁ ଲକ୍ଷ୍ୟକରି କହିଲେ, "ଜୀବନସାରା ରାଜା-ଜମିଦାର ବିରୁଦ୍ଧରେ ଲଢ଼ିଲୁ । ଏବେ ରାଜରାଣୀଙ୍କୁ ମନ୍ତ୍ରୀ କରି ଆମେ ଲୋକଙ୍କ ଦୁର୍ଦ୍ଦଶା ଦୂର କରିବୁ କହୁଛୁ । ଏହାଠାରୁ ବଳି ପ୍ରତାରଣା କ'ଣ ଅଛି ?" ଆଜି ସମାଲୋଚକମାନେ ବିଚାର କରନ୍ତୁ, ଏପରି ନେତା, ମୁଖ୍ୟମନ୍ତ୍ରୀଙ୍କୁ ନିଜ ଦଳର କେତେକ ନିଷ୍ଠାବାନ୍ ବ୍ୟକ୍ତିଙ୍କୁ ଛାଡ଼ିଦେଲେ କିଏ ଟେକିଧରିବ ? କିଏ ଗାଦିରେ ରଖେଇବ ? ଆଉ ଏକ ଦୃଷ୍ଟାନ୍ତ ନିଅନ୍ତୁ । ଦୁର୍ନୀତି ! ସେହି ବ୍ୟକ୍ତି ଖାନ୍ନା କମିଶନକୁ କେବଳ କହିପାରେ ତାଙ୍କ ଦଳ, ତାଙ୍କର ସହକର୍ମୀ, ସହଯୋଦ୍ଧା ଯାହା ଯାହା କରିଛନ୍ତି, ତା'ର ସେ ରାଜସାକ୍ଷୀ ।

ସେ ଦରିଦ୍ରଙ୍କ ମୁକ୍ତି ଚାହୁଥିଲେ । ଦାରିଦ୍ର୍ୟ ବଣ୍ଟନ ଚାହୁ ନଥିଲେ । ସେ ଥିଲେ ମାନବବାଦୀ, ମାତ୍ର ମାନବବାଦର ଦୁହାଇ ଦେଇ ସେ ଅର୍ଥ ଆଣି ତାଙ୍କ ଦଳର ଦୁଃସ୍ଥ କର୍ମୀଙ୍କୁ ବାଣ୍ଟି ପରୋପକାର ସ୍ୱର୍ଗୀୟଃ ନୀତି ଧରି ନଥିଲେ । ସେ ଚାହିଁଥିଲେ, ଅଜସ୍ର ଅର୍ଥ ଆଣି କର୍ମୀ ଓ ତୋଷାମଦକାରୀମାନଙ୍କୁ ସନ୍ତୁଷ୍ଟ କରିପାରିଥାନ୍ତେ । ମାତ୍ର ସେପରି ଆଦର୍ଶର ସେ ଥିଲେ ଦୂରରେ ।

ସେ ଜାଣିଲେ ତାଙ୍କ ଛୋଟ ଜମିଦାରୀର ଗୁମାସ୍ତା ଲୋକଙ୍କୁ ହଇରାଣ କରି ନିଜେ ସବୁ ଆତ୍ମସାତ୍ କରୁଛି । ଟିକିଏ ହେଲେ କ୍ରୋଧ ପ୍ରକାଶ ନକରି ସେ ତାଙ୍କ କଳନ୍ତିରା ଗାଁ'ର ଜମିଯାକ ଭାଗଚାଷୀଙ୍କୁ ସ୍ୱତ୍ୱ ଦେଇ ପ୍ରଜା କରେଇଦେବାକୁ ନିର୍ଦ୍ଦେଶ ଦେଲେ । ଅସଂଗ୍ରହ-ଏଇ ନୀତିବାକ୍ୟକୁ ସାଧମତେ ସେ ନିଜ ଜୀବନରେ ପ୍ରୟୋଗ କରୁଥିଲେ ।

ତାଙ୍କର ସହଯୋଦ୍ଧା, ସହକର୍ମୀ ଯିଏ ଯେଉଁ ମତବାଦର ହୁଅନ୍ତୁ ନା କାହିଁକି, ସେମାନଙ୍କ ସହିତ ଆଦର୍ଶଗତ, ବିଚାରଗତ ଏବଂ କାର୍ଯ୍ୟଗତ ମତବିରୋଧ ଘଟିଛି । ତାଙ୍କୁ ଏକ ସନ୍ଦେହଯୁକ୍ତ ଚରିତ୍ରର ବ୍ୟକ୍ତି ବୋଲି ଦର୍ଶାଇ ତାଙ୍କ ବିରୁଦ୍ଧରେ ତାଙ୍କ ସମକକ୍ଷ ସହକର୍ମୀମାନେ କେତେ କୁତ୍ସା ରଚନା କରିଛନ୍ତି । ସେ ତା'ର ପ୍ରତିବାଦ କରି ଭଲେଇ ସାଜି ନାହାନ୍ତି ।

୧୯୩୭ ରେ ତାଙ୍କୁ ଜଣେ ଯୁବକ ମହୀଧରପଡ଼ାରେ କଂଗ୍ରେସ ପ୍ରଚାର କରୁଥିବାର ଛୁରୀ ମାରିଲା । ଜୀବନ ସଂକଟାପନ୍ନ; ମାତ୍ର ତିଳେ ହେଲେ ତା' ପ୍ରତି ବିଦ୍ୱେଷଭାବ ତାଙ୍କ ମୁହଁରେ ଉଙ୍କିମାରି ନଥିଲା ।

କଂଗ୍ରେସର ରାଜନୀତି କରିବ । ମନ୍ତ୍ରୀ ହେବ । ନିଜ ଦଳର ଓ ବାହାରର ବିରୋଧୀଙ୍କ ପ୍ରତି ପ୍ରତିହିଂସାପରାୟଣ ହେବ ନାହିଁ । ଏହା କେବଳ ତାଙ୍କ ରାଜନୈତିକ ଜୀବନରେ ବ୍ୟତିକ୍ରମ । ଏହାର ଅର୍ଥ ନୁହେଁ ଯେ ସେ ଅନ୍ୟମାନଙ୍କ ମତକୁ କାଟୁ ନଥିଲେ ବା ତା'ର ତୀବ୍ର ସମାଲୋଚନା କରୁନଥିଲେ । ଛ'ମାସଟିଏ ମନ୍ତ୍ରୀ ବା ଉପମନ୍ତ୍ରୀ ପାଇଟି ଧରିଲେ - ଆଉ ସବୁ କଥା ଛାଡ଼ନ୍ତୁ, ମଟରକାର ଖଣ୍ଡେ ତ ନିଶ୍ଚୟ ପିଛା ଧରିବ । ମାତ୍ର ନବ ବାବୁ, ମୁଖ୍ୟମନ୍ତ୍ରୀତ୍ୱ ଛାଡ଼ିବା ପରେ ପାଦ, ନଚେତ ସାଇକେଲ । ଜେଲ ଅଭ୍ୟାସବଶତଃ ବିଡ଼ିଟଣା, ଥୋରିଆସାହିରେ ହେଉ, ଅବା କୋଉ ହରିଜନ ଆଦିବାସୀ ଗାଁ'ରେ ହେଉ ଛିଣ୍ଡା ମଶିଣାରେ ରାତି କଟାଇବା ଅନେକେ ଦେଖିଥିବେ । ନିଜକୁ ପ୍ରତିଷ୍ଠା କରେଇବେ ନାହିଁ, ଏଇଥିଲାଗି ସେ କୌଣସି ଉଦ୍‌ଘାଟନ ଉତ୍ସବ, ଶିଳାନ୍ୟାସ ଉତ୍ସବ ବା ପୁରସ୍କାର ବିତରଣୀ ଉତ୍ସବକୁ ରାଣ ଖାଇଲା ଭଳି ବିରୋଧ କରୁଥିଲେ । ଥାର୍ଡ଼କ୍ଲାସ୍ ରେଳଡବାରେ ନାଗାଲ୍ୟାଣ୍ଡ ବା ଅନ୍ୟତ୍ର ଯିବେ ଓ ନିଜ ବିଛଣା ଖଣ୍ଡକ ଧରି ଗାଡ଼ିରେ ବସିବେ । ଏହା ହାଓଡ଼ା ଷ୍ଟେସନରେ ପଶ୍ଚିମବଙ୍ଗର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ତାଙ୍କୁ ଚିହ୍ନି ଅବାକ୍ ହୋଇଛନ୍ତି ।

ମୋ' ପରେ ମୋ' ନାମ ନ ରହୁ, ଏପରି ଏକ ଅଦ୍ଭୁତ ଚିନ୍ତା ତାଙ୍କର ଥିଲା । ଅତୀତ ଜୀବନର ଯେତକ ଅଭିଜ୍ଞତା ଡାକନ୍ତୁ ବୋଲି ଲେଖକ ପରି ଅନେକେ ତାଙ୍କୁ ଅନୁରୋଧ କରିବାର ଜାଣିଛି । ନମ୍ର ଭାବରେ କହନ୍ତି, ମୁଁ କ'ଣ ଜାଣିଛି ? ଯା ଯା – ସେଗୁଡ଼ାକ ପଚାରନି । ସ୍ୱାଧୀନତା ଆନ୍ଦୋଳନ, ଓଡ଼ିଶାରେ କୃଷକ ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନ, ମନ୍ତ୍ରିତ୍ୱ ଏବଂ ପରବର୍ତ୍ତୀ ଜୀବନରେ ସମାଜର ପରିବର୍ତ୍ତନ ଲାଗି ନିଜସ୍ୱ ବିଚାରରେ ତାଙ୍କ କର୍ମମୟ ଜୀବନର କେତେ ଯେ ଅଭିଜ୍ଞତା, ତାହା ଆଜିର ଇତିହାସବସ୍ତୁ । କାଳେ ତାଙ୍କର କିଛି ରେକର୍ଡ଼ ରହିଯିବ, ସେଥିଲାଗି ସେ ଗଦା ଗଦା ଚିଠିପତ୍ର ପୋଡ଼ି ନଷ୍ଟ କରିଦେଲେ ।

ଅତ୍ୟାଚାରୀକୁ କିପରି ସେ ଘୃଣା କରୁଥିଲେ ଓ ଯେଉଁମାନେ ଦେଶ ପାଇଁ ନିଜ ବିଚାର ଅନୁସାରେ କାମ କରୁଥିଲେ, ସେଥିଲାଗି ତାଙ୍କ ପ୍ରତିକ୍ରିୟାର ଦୁଇ ତିନିଟି ଘଟଣା ଉଲ୍ଲେଖ ଅପ୍ରାସଙ୍ଗିକ ହେବ ନାହିଁ ।

ବେଙ୍କେଲଗେଟଙ୍କୁ ରଣପୁରରେ ପୂର୍ବଦିନ ସନ୍ଧ୍ୟାରେ ହତ୍ୟା କରାଯାଇଥାଏ । ପରଦିନ ସକାଳେ ତାଙ୍କୁ ଏ ସମ୍ବାଦଟିକୁ ଲେଖକ ଦେବାବେଳେ ସେ କ୍ଷିଅର ହେଉଥାନ୍ତି । ଗଡ଼ଜାତ ପ୍ରଜାଙ୍କ ଉପରେ ଅତ୍ୟାଚାର କଥା ସ୍ମରଣ କରି ସେ କହିଲେ, "ଠିକ୍, ତା' ଲାଗି ମୁଁ କ୍ଷିଅର ହୋଇପଡ଼ିଲି ।"

ବାଜିରାଉତ ପ୍ରଭୃତି ଛ'ଜଣଙ୍କର ଶବ କଟକରେ ଦାହ ହେଲା । ଟାଉନ୍‌ହଲ ସଭାରେ ବାଜି, ନଟ, ଗୁରି, ହୁରୁଷୀ, ରଘୁ ପ୍ରଭୃତିଙ୍କ ମର୍ମନ୍ତୁଦ ମୃତ୍ୟୁର ବର୍ଣ୍ଣନା କରି ସେ କଇଁ କଇଁ କାନ୍ଦୁଥାନ୍ତି । ଶୁଣିଲେ ଢେଙ୍କାନାଳ ରାଜା ଷ୍ଟେସନରେ ଅନ୍ଧାରରେ ରେଳ ସାଲୁନରେ ଲୁଚି ରହିଛି । ନବ ବାବୁ କହିଲେ, "ତାଙ୍କୁ ବାଜିର ପ୍ରେତ ଘେରିବସିଛି ।"

୧୯୪୩ ବ୍ରହ୍ମପୁର ଜେଲ୍‌ଖାନା । ଭିନ୍ନ ମତାବଲମ୍ବୀ ହେଲେ ହେଁ, ଯାହାର ଗୁଣରେ ସେ ମୁଗ୍ଧ, ତାଙ୍କ ମୃତ୍ୟୁରେ ତାଙ୍କ ସମବେଦନାର ସ୍ୱର ତାଙ୍କ ମହତ୍ତ୍ୱ ପ୍ରତିପାଦନ କରେ । ଭଗବତୀଚରଣ ପାଣିଗ୍ରାହୀଙ୍କ ମୃତ୍ୟୁ ଖବର ପହଂଚିଲା । ଜେଲରେ ଏକ ଶୋକସଭା । ପ୍ରାଣକୃଷ୍ଣ ପଡ଼ିଆରୀ ସଭାପତି । ନବ ବାବୁ ଭେଁ ଭେଁ କାନ୍ଦି କହିଲେ – "ମୁଁ ରହିଗଲି । ଭଗବତୀ ମରିଗଲା ।" ଅଥଚ ଭଗବତୀ ଥିଲେ ଅନ୍ୟ ମତାବଲମ୍ବୀ – କମ୍ୟୁନିଷ୍ଟ ।

ସେ ଅଗାଧ ପାଣ୍ଡିତ୍ୟର, ତୀକ୍ଷ୍ଣ ମେଧାର ଅଧିକାରୀ ସତ, ମାତ୍ର ଅହଂ ନଥିଲା । ଆତ୍ମାଭିମାନ ନଥିଲା । ତାଙ୍କର କଲମରୁ କିଛି ଲେଖାଟିଏ ବାହାରିବା କଷ୍ଟକର । ମାତ୍ର ଥରେ ଯଦି ଲେଖି ବସିଲେ, ତାହା ହେଉଥିଲା ଅନବଦ୍ୟ । ଠକକର୍‌ବାପାଙ୍କ କମିଟିକୁ ତାଙ୍କ ରିପୋର୍ଟ ବା ଭୂସଂସ୍କାର ଆଇନ ସଂପର୍କରେ ତାଙ୍କର ବିଶ୍ଳେଷଣ ତାଙ୍କ ଦଳର ଲୋକଙ୍କ ପକ୍ଷରେ ବୋଧଗମ୍ୟ ହେଉ ନଥିଲେ ତାହା ବାସ୍ତବିକ ଗଭୀର ଅନୁଶୀଳନ ଓ ସମାଜର ରୂପାନ୍ତର ଲାଗି ତାଙ୍କର ଆଗ୍ରହର ସ୍ମାରକୀ । ତାଙ୍କ ମୃତ୍ୟୁ ପରେ କେହି କେହି ବିଶିଷ୍ଟ ବୋଲାଉଥିବା ବ୍ୟକ୍ତି ଦାବି କରୁଛନ୍ତି, ନବ ବାବୁ ଯାହା ଭାଷଣ ଦିଅନ୍ତି, ତାକୁ ସେ ଲେଖିଛନ୍ତି ବୋଲି । ଏହା ତାଙ୍କର ତୀକ୍ଷ୍ଣ ମସୀ, ତାଙ୍କର ମେଧା ପ୍ରତି ଅପମାନ ।

ବିଧାନସଭାର ସେ ନେତା । ବିରୋଧୀଦଳ ପକ୍ଷରୁ ତାଙ୍କ ସରକାରର ନୀତି ଓ କାମଦାମ ଉପରେ ଆକ୍ରମଣ । ସେ ଉତ୍ତର ଦେବେ । ତାଙ୍କ ଅନ୍ୟ ପକ୍ଷରେ ଗ୍ରହଣୀୟ ନହେଲେ ବି; କିନ୍ତୁ ସେ ଉତ୍ତରରେ ଶାଳୀନତା, ଗଭୀରତା ଓ ଶିଷ୍ଟତା ଥିଲା । ଗାଳିଗୁଲଜ ନଥିଲା । ସେପରି ପରମ୍ପରା ଆଉ ବିଧାନସଭାରେ ଅଛି କି ?

୧୯୪୨ ଅଗଷ୍ଟ ୯ ତାରିଖ । ସେ ବମ୍ବେ ଏ.ଆଇ.ସି.ସି. ଯାଇ ନଥିଲେ । ସକାଳେ ଗିରଫ ହୁଅନ୍ତି କଟକଠାରେ । ଲୁଗା ପିନ୍ଧିବା ବାହାନାରେ ଖଣ୍ଡେ କାଗଜରେ ଓଡ଼ିଶାବାସୀ କ'ଣ କରିବେ ଓ କ'ଣ ନ କରିବେ ଦଫାୱାରି ପେନ୍‌ସିଲ୍‌ରେ ଲେଖି ଓଡ଼ିଶା ସାରା ବାଣ୍ଟିବାର

ନିର୍ଦ୍ଦେଶ ପଠାଇଲେ ବାହାରକୁ । ତାହାହିଁ ହେଲା, ମାତ୍ର ସେ କେବେ ହେଲେ ଦାବି କରିନାହାନ୍ତି ଯେ ଅଗଷ୍ଟ ଆନ୍ଦୋଳନରେ କ'ଣ କରାଯିବ ଓ କ'ଣ ନ କରାଯିବ, ତାହା ତାଙ୍କର ନିର୍ଦ୍ଦେଶ ଏବଂ ଓଡ଼ିଶାରେ ତାହା ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଖରେ ପହଞ୍ଚିଛି । ସେପରି କୃତିତ୍ୱ ସେ ନେବାକୁ ଚାହିଁନାହାନ୍ତି ।

ଚମ୍ପତିମୁଣ୍ଡା ବିଦ୍ୟାଳୟରେ ସେ ଅବୈତନିକ ଶିକ୍ଷକତା କରିଛନ୍ତି; କିନ୍ତୁ ମଣିଷ ଗଢ଼ିପାରିଲେ ନାହିଁ ବୋଲି ଖେଦ କରିଛନ୍ତି । ବାଜିରାଉତ ଛାତ୍ରାବାସରେ ପତ୍ନୀ ମାଳତୀ ଦେବୀଙ୍କ ସଙ୍ଗରେ ସେ ଆଦିବାସୀ ପୁଅଝିଅଙ୍କୁ ମଣିଷ କରିବା ପାଇଁ ତିଳ ତିନି ପ୍ରାଣ ଉଜାଡ଼ି ଦେଇଛନ୍ତି । ନିଜର ପୁଅ, ଭାଇ, ନାତିକୁ ହରାଇଛନ୍ତି । ଶାଗ, ପଖାଳ, ଚାହାରେ ସେ ସନ୍ତୁଷ୍ଟ । ଅନୁଗୁଳରେ କଲେଜରେ ହେଉ ବା ଅନ୍ୟ ସଭାସମିତିରେ ହେଉ, ସେ ଗୋଟିଏ କୋଣରେ ବସି ସବୁ ଶୁଣିବେ । ଯେମିତି ଧୀରସ୍ଥିର ଶ୍ରୋତା, ଅନୁସନ୍ଧିତ୍ସୁ ଛାତ୍ର ।

ସବୁ ଦିଗରୁ ସେ ଥିଲେ ଏକ ଅଶାନ୍ତ ଝଡ଼ । ଏକ ଅତୃପ୍ତ ବିପ୍ଳବୀ । ତାଙ୍କୁ ତାଙ୍କ ସହକର୍ମୀ, ସହଯୋଦ୍ଧା, ମିତ୍ର-ଶତ୍ରୁ ଯାହା କହନ୍ତୁ, ଯେପରି ସମାଲୋଚନା କରନ୍ତୁ, ସେଥିରେ ସେ ବିଚଳିତ ହେଉ ନଥିଲେ ।

କବିଗୁରୁ ରବୀନ୍ଦ୍ରଙ୍କ ସାନ୍ନିଧ୍ୟ ଓ ଶିକ୍ଷତ୍ୱର ପ୍ରଭାବ ତାଙ୍କ ଉପରେ । ରବୀନ୍ଦ୍ରନାଥଙ୍କର ପରି ଉତରାୟଣ କୁଟୀର ପରି ବାଜିରାଉତ ଛାତ୍ରାବାସ ଆଗରେ ସରଳ, ନିରାଡ଼ମ୍ବର, ପ୍ରଶାନ୍ତ କୁଟୀରରେ ଜୀବନବ୍ୟାପୀ ସେହି ଅନ୍ୱେଷକ ପରିଣତ କାଳରେ ସକାଳୁ ଉଠି ତନ୍ନ ତନ୍ନ କରି ଖବରକାଗଜ ପଢ଼ିବା ଓ ମନେ ମନେ ହସିବା, ରାଗିବା, ଅସନ୍ତୋଷ ପ୍ରକାଶ କରିବା ଆଉ ଦେଖିବାକୁ ମିଳିବ ନାହିଁ । ସେହି ସ୍ମୃତିପ୍ରତି ମୋର ଗଭୀର ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ।

□□□

ରଚନା କାଳ – ୧୯୮୪

# ଏକ ବିରଳ ବ୍ୟକ୍ତିତ୍ୱ ନବକୃଷ୍ଣ ଚୌଧୁରୀ

ଓଡ଼ିଶାର ରାଜନୈତିକ, ସାମାଜିକ, ବୌଦ୍ଧିକ, ପ୍ରଶାସନିକ ଜୀବନରେ ନାମଜାଦା ଅବାଗିଆ ବ୍ୟକ୍ତିତ୍ୱ ଥିବା ବ୍ୟକ୍ତିଟି ନବକୃଷ୍ଣ ଚୌଧୁରୀ ।

ସ୍ୱାଧୀନତା ପାଇଁ ଡାକରା ଗାନ୍ଧୀଜୀଙ୍କ ଆହ୍ୱାନରେ ଉଦ୍‌ବୁଦ୍ଧ ସହସ୍ର ସହସ୍ରଙ୍କ ପରି ସେ ଛାଡ଼ିଲେ କଲେଜ । ବଡ଼ଭାଇ ଗୋପବାବୁ ମାଜିଷ୍ଟ୍ରେଟ ପଦ ଛାଡ଼ି ନିଜ ପତ୍ନୀ ରମାଦେବୀଙ୍କ ସହିତ ଗାନ୍ଧିଜୀ ପ୍ରଦର୍ଶିତ ମାର୍ଗରେ ଗଲେ । ଅଥଚ ଅବାଗିଆ ସାନଭାଇ ନବବାବୁ କଂଗ୍ରେସର ସ୍ୱାଧୀନତା ଆନ୍ଦୋଳନରେ କିଛି ନିଅଣ୍ଟ ଅଛି ଜାଣିଲେ । ଅନ୍ୟ ରଥୀ ମହାରଥୀଙ୍କ ଚଲାବାଟରେ ନଯାଇ ସ୍ୱାଧୀନତା ସାଙ୍ଗକୁ ଶୋଷଣହୀନ ସମାଜ ଆଣିବା ଲାଗି ଆଗୁଆ ୧୯୩୪ରେ ତରିକୁନ୍ଦ ଚାଷଘରେ ଗଢ଼ିଲେ ସାମ୍ୟବାଦୀ କର୍ମୀର ସଂଘ । ପୁଣି ୧୯୩୬ରେ ଆଗୁସାରେ ହେଲେ ଗଢ଼ିଲେ ଅଣକଂଗ୍ରେସ ସୋସାଲିଷ୍ଟ ପାର୍ଟି ଓ ପ୍ରାଦେଶିକ କୃଷକ ସଭା ଗଢ଼ିବାରେ । ଅନ୍ୟମାନେ ସେ ବାଟରେ ନଗଲେ ନାହିଁ । ସେ ଆଉ ତାଙ୍କ ମତକୁ ମାନିନେବା ସାଙ୍ଗସାଥୀଙ୍କୁ ଧରି ଜମିଦାରମାନଙ୍କ ଅତ୍ୟାଚାର ଶୋଷଣ ଲୋପ ପାଇଁ ଆନ୍ଦୋଳନ ଚଳେଇ ଅବାଗିଆ ବୋଲି ସେତେବେଳେ ବିବେଚିତ ହେଲେ । ଆହୁରି ଅବାଗିଆପଣ ହେଲା, ଯଦିଚ ସେହି ମୂଳ ଏସବୁ ସଙ୍ଗଠନ ଗଢ଼ିବାରେ, କିନ୍ତୁ କୋଉଥିରେ ସେ ସଭାପତି, ସମ୍ପାଦକ ପଦ ମାଡି ନବସି ଅନ୍ୟ ତରୁଣ ସହଯୋଗୀଙ୍କୁ ଦାୟିତ୍ୱ ଦେଲେ । ଏ ପ୍ରକାର ଅବାଗିଆ କଥା ସେତେବେଳେ ମଧ ହେଉ ନଥିଲା କି ଏବେ ହେଉନି । ଆସନ ମାଡ଼ିବସିବାକୁ, ସଙ୍ଗଠନକୁ ନିଜ କରମୁଠାରେ ରଖିବାକୁ ଯାହା ଦରକାର ତାହା ଅନ୍ୟମାନେ କରୁଥିଲେ ।

ସ୍ୱାଧୀନତା ଆସିଲା । ମନ୍ତ୍ରୀ ହେବାକୁ ଯେଉଁ ଲୋଭ, ସେଥିପାଇଁ ଯେଉଁ ତତ୍ପରତା, ଯୋଗାଡ଼ଯନ୍ତ୍ର ସେଥିରୁ ସେ ଅଲଗା । ମନ୍ତ୍ରୀ ହେଲେ ରାଜସ୍ୱ ବିଭାଗ ଧରି । ଚାଷୀ ଆନ୍ଦୋଳନ କରି ଦେଇଥିବା ପ୍ରତିଶ୍ରୁତି ଅନୁସାରେ ନିଜ ଦଳର ଅନେକଙ୍କ ନାପସନ୍ଦ ଓ ବିରୋଧ ସତ୍ତ୍ୱେ ପ୍ରଜାସତ୍ତ୍ୱ ଆଇନ, ଜମିଦାରୀ ଉଚ୍ଛେଦ ଆଇନ, ପଞ୍ଚାୟତ ଗଢା ଆଇନ କଲେ । 'ମୁଖ୍ୟମନ୍ତ୍ରୀ ହେବିନାହିଁ' ଜିଦ୍ ଧରିଥିଲେ ମୁଖ୍ୟମନ୍ତ୍ରୀ ହେଲେ । ପରେ ଅବାଗିଆ ଧରି ଥରେ ଇସ୍ତଫା ଦେଇଦେଲେ । କ'ଣ ନା ଗାଦୀରେ ରହି ଗରିବ ଲୋକଙ୍କ ଅସଲ ସମସ୍ୟା ଓ ଦୁର୍ଦ୍ଦଶା ଦୂର

ହେବ ନାହିଁ । ଦେଶ ଗଢିବାର ଶିକ୍ଷା ଦେବା ଲାଗି ଶିକ୍ଷାକର୍ମୀ ହେଲେ । ପୁଣି ତାଙ୍କୁ ବାଧ କରାଗଲା କ୍ଷମତାରେ ଆସିବା ପାଇଁ । ମୁଖ୍ୟମନ୍ତ୍ରୀ ହେଲେ । ସମ୍ବିଧାନ ଆଇନକାନୁନ ଅନୁସାରେ ଲୋକଙ୍କ ଦୁଃଖ ଦୂର ହେଉ ନାହିଁ, ଧନୀ ଅଧିକ ଧନୀ ହେଉଛନ୍ତି, ଠକାମି, ଭଣ୍ଡାମି ବଢିଚାଲିଛି । ନିଜ ଦଳ ଲୋକେ ବି ଏମିତି ବାଟରେ ଯାଉଛନ୍ତି ବୋଲି କହି ବୁଲିଲେ । ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ପୁଣି ଅବାଗିଆ ଧରିଲେ ।

କ୍ଷମତାରେ ରହିଲେ ଦଳ ଭିତରେ ନିଜ ଅନୁଗତ ଗୋଷ୍ଠୀ ଦରକାର । ଏ ହେଲା ଏପରି ରାଜନୀତିକ କ୍ଷମତା ଚାହୁଁଥିବା ନେତାମାନଙ୍କ ଚଳଣି, କାମ୍ୟ ଓ ସେଥିଲାଗି ପ୍ରଲୋଭନ, ପ୍ରତାରଣା, ଧମକଚମକ । ସେ ବାଟ ତାଙ୍କୁ ପସନ୍ଦ ନୁହେଁ । ଅନୁଗତ ଗୋଷ୍ଠୀ ଗଢ଼ିଲେ କ୍ଷମତା ଚିରସ୍ଥାୟୀ ହେବ, ଏପରି ବାଗିଆ ବାଟ ଛାଡ଼ି ସେ ଅବାଗିଆ ହେଲେ ।

ଯେଉଁମାନେ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ହେଲେ, ସେମାନେ ଦଳପାଇଁ ଦଳ ନାଆଁରେ ବଦଳି ନିଯୁକ୍ତି, ଲାଇସେନ୍‌ସ, ଠିକା କାମରେ ଅର୍ଥ ପାଇଁ କିଏ ମାମୁଁ, କିଏ ପୁଅ, କିଏ ପତ୍ନୀ, କିଏ ବିଶ୍ୱସ୍ତ ଅନୁଚରଙ୍କୁ ଲଗାଉଚନ୍ତି । ଅବାଗିଆ ନବକୃଷ୍ଣ ଚୌଧୁରୀ ଏପରି ପୁଣ୍ୟ କାମକୁ ଘୋର ପାପ, ଦୂରାଚାର ବିଚାରିଲେ । କ୍ଷମତାରେ ଥିବାବେଳେ କଥା ଛାଡ଼ । ଚନ୍ଦ୍ରସୂର୍ଯ୍ୟ ନମାନିବାର କଥା । ଥରେ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ହେଲେ ନିଜର ନଅଣ୍ଟ ଭରଣା ପାଇଁ କୋଠାବାଡ଼ି, ବେନାମି ବ୍ୟବସାୟ, ବଢ଼ିଆ ମଟରକାର, ବ୍ୟାଙ୍କବାଲାନ୍‌ସ ସେମାନଙ୍କର ଅଭାବ ରହେ ନାହିଁ । ଯେମିତିକି ତାଙ୍କ ଜୀବନସାରା ଓ ତାଙ୍କ ଉତ୍ତରାଧିକାରୀମାନେ ଅଏସରେ ରହିବେ । ଅବାଗିଆ ନବ ଚୌଧୁରୀ ସେଥିରୁ ଭିନ୍ନ । ସେଥିସକାଶେ ସ୍ୱାଧୀନତା ସଂଗ୍ରାମ କାଳରେ, ଚାଷୀ ଆନ୍ଦୋଳନ ବା ଗଡ଼ଜାତ ପ୍ରଜା ଆନ୍ଦୋଳନ ବେଳେ ଯେମିତି ଚାଲିଚାଲି, ସାଇକେଲରେ ବା ଥାଡ୍‌କ୍ଲାସ ରେଲ ବଗିରେ ଯିବାକୁ ପଡୁଥିଲା, ସେହିପରି ଚାଲିଲେ ନବଚୌଧୁରୀ । ତାଙ୍କର ପଇସା ନାହିଁ କି ଗାଡ଼ି ଆଟାଟୋପ ନାହିଁ । ଛିଣ୍ଡା ଚଟି, କାନ୍ଧରେ ଝୁଲାଧରି କେଉଁ ବଣପାହାଡ଼ ଜଙ୍ଗଲ ଘେରା ଆଦିବାସୀ ପଲ୍ଲୀରେ ବା କଟକ, ଭୁବନେଶ୍ୱର, ଅନୁଗୋଳ, କଲିକତା, ରାଜପଥରେ ଅବାଗିଆ ଲୋକଟିକୁ ବର୍ଷ ବର୍ଷ ଦେଖିବାକୁ ମିଳେ । ନୂଆଲୋକେ ଏଇ ପାଗଳାଟି କିଏ ଜାଣିପାରନ୍ତି ନାହିଁ ।

ମନ୍ତ୍ରୀ ହେଲେ ମୁଖ୍ୟମନ୍ତ୍ରୀ ହେଲେ ପୋଲ, ହାସପାତାଳ, ବିଦ୍ୟାଳୟ ଏମିତିକି ସୁଲଭ ସୌଚାଳୟରେ ମନ୍ତ୍ରୀଙ୍କ ନାମଫଳକ ରହିବା ଲାଗି ବ୍ୟୟବହୁଳ ଉତ୍ସବ ହୁଏ । ଚାରିଆଡ଼େ ଦେଖିବ ଏମିତି ଫଳକ । କିନ୍ତୁ ଏ ଅବାଗିଆ ବ୍ୟକ୍ତିଟି ସେଥିଲାଗି ଆଗ୍ରହ ଦେଖାଇଲେ ନାହିଁ ।

ସେ ତାଙ୍କର ଅବାଗିଆ ଗୁଣଗୁଡିକ ହେତୁ ସବୁଆଡୁ ଆଦର, ଶ୍ରଦ୍ଧା, ସମ୍ମାନ ପାଉଥିବାରୁ ତାଙ୍କର କେତେକ ପ୍ରଭାବଶାଳୀ ସହକର୍ମୀ ତାଙ୍କୁ ଆଡ଼ ଆଖିରେ ଦେଖିପାରୁନଥିଲେ । ତାଙ୍କ ଅବାଗିଆ ବ୍ୟକ୍ତିତ୍ୱକୁ ନ୍ୟୁନ କରିବାକୁ ଖୋଲାଖୋଲି ସାହସ ନକରି ତାଙ୍କୁ ଅପାରଗ, ଅପଦାର୍ଥ,

ହତାଶ ବ୍ୟକ୍ତିଟି, ଆସନକୁ ଢିଲା କରି ଦେଇ ବାବାଜୀଗିରି ଦେଖାଇହେଉଛି ବୋଲି ଭିତିରି ପ୍ରଚାର କରୁଥିଲେ । ସେ ଯେମିତି ଖ୍ୟାତ ନହେବେ, ଲୋକେ ଯେମିତି ତାଙ୍କର ଏ ଗୁଣଗୁଡ଼ାକୁ ପ୍ରଶଂସା କରି ସେମାନଙ୍କୁ ତଉଲ ନକରିବେ, ସେଥିଲାଗି ଅଶେଷ ଚେଷ୍ଟା ଚକ୍ରାନ୍ତ, ଷଡ଼ଯନ୍ତ୍ର ହୋଇଛି ।

ଓଡ଼ିଶାର ସାଧାରଣ ଜୀବନରେ, ରାଜନୈତିକ ଦୃଶ୍ୟପଟରେ ଏଯାଏ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ କିଏ ହେବ ?

□□□

ରଚନା କାଳ – ୧୯୯୪

# ସ୍ୱାଧୀନତା ସଂଗ୍ରାମୀ କଳ୍ପତରୁ ଦାସଙ୍କ ପୁଣ୍ୟତିଥିରେ ଶ୍ରଦ୍ଧାର୍ଘ୍ୟ

ଦୁଇଶହ ବର୍ଷବ୍ୟାପୀ ବ୍ରିଟିଶ ସାମ୍ରାଜ୍ୟବାଦୀ ପରାଧୀନତାର ଶୃଙ୍ଖଳ ଛିନ୍ନ କରିବାର ଭାରତଭୂମିର ମୁକ୍ତି ସଂଗ୍ରାମ । ସଂଗ୍ରାମର ଚୂଡ଼ାନ୍ତ ପର୍ଯ୍ୟାୟ ୧୯୨୦ରୁ ୧୯୪୭ ଭିତରେ ଓଡ଼ିଶାରେ ଯେଉଁ ମୁକ୍ତି ଯୋଦ୍ଧାମାନେ ରଣକ୍ଷେତ୍ରକୁ ଉତୀର୍ଣ୍ଣ ହୋଇଥିଲେ, ସେଥିରୁ କିଏ ଗୁଳି ଖାଇ ଫାଶୀପାଇ ଆଖି ବୁଜିଲେ, ସେମାନଙ୍କୁ ବାଦ ଦେଇ ଯେଉଁମାନେ ବେତ ମାଡ଼, କାରାଗାର, ଲାଠିର ଶିକାର ହୋଇ ବଂଚିଯାଇଥିଲେ, ଗୋଟିଗୋଟି ହୋଇ ଟଳି ପଡୁଛନ୍ତି । ଏହା ଯେପରି ନିତ୍ୟ ନୈମିତିକ ଘଟଣା ହୋଇଗଲାଣି । ସେମାନଙ୍କ ଶରୀର ଲୁଚି ଯାଉଛି, ପ୍ରତିଦିନର ଡାକ ନାମ ଲୁଚି ଯାଉଛି ସତ, ମାତ୍ର ସ୍ୱାଧୀନତା ସଂଗ୍ରାମର ଇତିହାସରୁ ଲୁଚିବ ନାହିଁ । କଳ୍ପତରୁ ଦାସଙ୍କ ପ୍ରଥମ ବାର୍ଷିକୀ ପୁଣ୍ୟତିଥିରେ ତାଙ୍କୁ ଶ୍ରଦ୍ଧାର୍ଘ୍ୟ ଅର୍ପଣ କରି ସ୍ମୃତି ଚାରଣ କଲାବେଳେ ଏହା ହିଁ ସତ୍ୟ ବୋଲି ମୋର ବିଶ୍ୱାସ ।

ଅନେକେ ସ୍ମୃତିଚାରଣ କରିବେ । ତାଙ୍କର ସ୍ୱାଧୀନତା ସଂଗ୍ରାମକୁ ଅବଦାନ, ସମାଜ ସେବା କ୍ଷେତ୍ରକୁ ଅବଦାନ, ତାଙ୍କ ନିଷ୍ଠାପରତା, ଦୃଢ଼ ସଂକଳ୍ପବଦ୍ଧତା, ନିର୍ଭୀକତା, ଅମାୟିକ ବ୍ୟବହାର, ଅନ୍ୟାୟ ଅନୀତି ପ୍ରତି କଟାକ୍ଷ ଓ ବିରୋଧ, ବନ୍ଧୁ ବତ୍ସଳତା ସଂପର୍କରେ ଆଲୋକପାତ କରିବେ । ମୁଁ ମଧ କରନ୍ତି, କରିବା ମୋର ଧର୍ମ । ସେ ଆଦର୍ଶ ସରପଞ୍ଚ ହେଲେ, ବିଦ୍ୟାଳୟର ଜଣେ ସୁବିଚାରବନ୍ତ ସମ୍ପାଦକ ହେଲେ । କଳ୍ପତରୁ ଦାସଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାସୁମନ ଅର୍ପଣ କଲାବେଳେ କେଉଁ ଜନପଦର ଅଧିବାସୀ କଳ୍ପତରୁ ଦାସଙ୍କ ପରି ଅନେକଙ୍କୁ ଆପଣା ଭିତରେ ରଖି ନିଆରା ଧରଣର ମଣିଷ କରିଦେଲେ । ଦେଶର, ଓଡ଼ିଶାର ସେ କାଳର ଯେଉଁ ଝଡ଼, କେଉଁ ଆଦର୍ଶ, କେଉଁ ଉଦ୍ଦୀପନା, ଉନ୍ମାଦନା ଏହି ଜନପଦଟିରେ ଗୁଡ଼ିଏ ନିଆରା ଧରଣର ମଣିଷ ବାହାର କରିଦେଲା, ତାହାରି ସାମାନ୍ୟ ଉଲ୍ଲେଖ କରି ତାଙ୍କୁ ମନେପକାଉଥିବି, ତାଙ୍କ ବାଟରେ ଚାଲିଯାଉଥିବା ଶତସହସ୍ର ନିଆରା ମଣିଷଙ୍କୁ ବାଟରେ ଯିବା ପର୍ଯ୍ୟନ୍ତ ।

କଳ୍ପତରୁଙ୍କ ଜନ୍ମ ଏକ ଜନପଦ, ବାଗଲପୁରେ । ଓଡ଼ିଶାରେ ଏକାଧିକ ବାଗଲପୁର ଅଛି । ସେକାଳରେ ଏହି ଜନପଦଟି ଓଡ଼ିଶାର ପ୍ରାୟ ୫୦ ହଜାର ଜନପଦ ମଧ୍ୟରେ ଏକ

ନିଆରା ଧରଣର ଜନପଦ ବିବେଚିତ ହେଲା । ଜନପଦଟିର ନାମଟି ସ୍ୱାଧୀନତା ସଂଗ୍ରାମର ଇତିହାସରେ ଲିପିବଦ୍ଧ ହୋଇଗଲା ।

ମୁଁ ସେ ଜନପଦଟିରେ ଜନ୍ମ ହୋଇନି । ତେବେ କିଛି ଅଭିଜ୍ଞତା, କିଛିଟା ପ୍ରତ୍ୟକ୍ଷ, ଚାକ୍ଷୁଷ ଉପଲବ୍ଧ ରହିଛି ।

ଗୋଟାଏ ଅପନ୍ତରା ଗାଁ! ଦେବୀନଦୀ, ତା'ର ପ୍ରଶାଖା ବିଲୁଆଖାଇ ଘେରରେ ସେକାଳର ବନ୍ୟାଞ୍ଚଳ ସାଇବରି ବାଇଶିମୌଜାର ସବୁ ଗାଁ ପରି, ଘାଇମୁହଁରେ ଏହି ଜନପଦ । ବିଲୁଆଖାଇ ତଟ ଏହି ଜନପଦଟିକୁ ପ୍ରତିବର୍ଷ ବିପଦ ମାଡ଼ିଆସେ, ନଦୀ ଶଯ୍ୟାରେ ଅଧା ନଈ ବଢ଼ିପାଣି ଆସିଲେ । ଖଜୁରୀ ଘାଇ ଦାଉରେ ଗାଁର ସବୁ ସାହି ଦାଣ୍ଡରେ ଡଙ୍ଗା ଚାଲେ, ଗାଁ'ର ଅସଲ ରାସ୍ତା ମଝିରେ ଦିଖଣ୍ଡ ହୋଇଯାଏ । ବର୍ଷକରେ ୬ ମାସ ଯାଏ ସାଇ ସାଇକୁ ବିଛିନ୍ନ କରୁଥିବା ଗୋହିରୀଗୁଡ଼ିକରେ ଜଙ୍ଘେ ପାଣି କାଦୁଅ ଦେଇ ଯିବାକୁ ପଡ଼େ । ସେ କାଳରେ ନା ଅଛି ମଟର, ନା ରାସ୍ତାଘାଟ । ଦୁଇ ମାଇଲ ବାଟରେ ଖରାବର୍ଷା, ଶୀତ ଦିନରେ ଦୁଇଦୁଇଟା ନଦୀ ଶଯ୍ୟା ପାର ହେଲେ ଆଖପାଖ ଓ ଦୂରଦୂରାନ୍ତ ବାହାର ଦୁନିଆ ସହିତ ଯୋଗଯୋଗ କରିହୁଏ । ନଦୀ ତଟରୁ ଗାଁର ମୁଖ୍ୟ ସାହି ଓ ଚାରିପଟେ ଘେରିଥିବା ବଡ଼ବଡ଼ ବସ୍ତିକୁ ବର୍ଷାଦିନେ ଆଣ୍ଠୁଏ ପାଣି କାଦୁଅ ଓ ଖରା-ଶୀତ ଦିନରେ ଆବଡ଼ାଖାବଡ଼ା ହିଡ଼ ଦେଇ ଯିବାକୁ ପଡ଼େ ।

ଏମିତିକା ଏକ ଜନପଦ ଯେ ଓଡ଼ିଶାର ଆଉ କେତେକ ଜନପଦ ସାଙ୍ଗକୁ ଇତିହାସର ଗୋଟିଏ ପର୍ଯ୍ୟାୟରେ ହୁରି ପକେଇବ - କେଉଁ କେଉଁ ଅଂଚଳରୁ, ସେ କାଳର ଅତି ବିଖ୍ୟାତ ବ୍ୟକ୍ତିମାନଙ୍କୁ ଟାଣି ଆଣିବ ତାହା କଳ୍ପନାର ବାହାରେ ଥିଲା ଏହି ଜନପଦର ଅଧିବାସୀମାନଙ୍କ ପକ୍ଷରେ । ଅତି ଦୀର୍ଘ ନକରି କେଉଁ ପରିସ୍ଥିତି, କେଉଁ ପରିବର୍ତ୍ତନ କେତେକଙ୍କ କେଉଁ ଉଦ୍ୟମ, ପ୍ରଚେଷ୍ଟା, ୧୯୩୦ ପୂର୍ବରୁ ସମଗ୍ର ଜନପଦକୁ ଏକ ନିଆରା ରୂପ ଦେଲା ଓ ଗୁଡ଼ିଏ ନିଆରା ଧରଣର ବ୍ୟକ୍ତି ବିଶେଷଙ୍କୁ ଆଗରେ ଥୋଇଦେଲା, ସେଇଥିରେ ସୀମିତ ରହିବି ।

ଘୋର ତମସାଳନ୍ନ ସେ କାଳ । ଏଇଠି ଆରମ୍ଭ ହୁଏ ଅନ୍ଧକାରକୁ କାଟି କିପରି ଯତ୍ ସାମାନ୍ୟ ଜ୍ଞାନଲୋକ । ୧୯୨୮ ବେଳକୁ ବାହାରିଲେ ମୁଷ୍ଟିମେୟ ନବଯୁବକ । କାହ୍ନୁଚରଣ ଦାସ, ବାମନ ଚରଣ ଦାସ, ଲକ୍ଷ୍ମୀଧର ଶତପଥୀ, ଗୌରାଙ୍ଗ ଚରଣ ଦାସ, ବିମଳ ଚରଣ ଦାସ, ଫକୀର ଚରଣ ଦାସ ଏମିତି ଆଉ କେତେକ ଯୁବକ ।

ଅପନ୍ତରା ଗାଁରେ ସ୍ଥାପିତ ହେଲା ମାଇନର ସ୍କୁଲ । ସାଇବେରୀ, ସାଇଲୋ ଆଖପାଖ ହରିପୁର ପ୍ରଗଣାର ଦୁଇଶହରୁ ଅଧିକ ଗାଁ ଭିତରେ ପ୍ରଥମ ଏ ଧରଣର ଗୋଟିଏ ଶିକ୍ଷାନୁଷ୍ଠାନ । ହିଡ଼ବାଡ଼, ଧାନକିଆରୀ, କାଦୁଅମାଟି ଚକଟି, ନଈନାଳ ପାରି ହୋଇ ପ୍ରତିଦିନ ଆଜିକା ମାପରେ ୬/୭ କିଲୋମିଟର ଚାଲି ଚାଲି ଯିବା ଆସିବା କରିବା ଖଣ୍ଡେ ଧୋତି ଓ କାନ୍ଧରେ ଗାମୁଛା ଓ ଚଦର ପକା, ବସ୍ତାନି ଧରା ଛାତ୍ର । ହଇଜା, ବସନ୍ତ, ରୋଗକୁ ଠାକୁରାଣୀ ନୁହେଁ, ରୋଗ

ବିଚାରି ପ୍ରତିବର୍ଷ ଭଳି ଏଥବରେ ମରୁଥିବା ପଟାଳିପଟାଳିଙ୍କ ଚିକିତ୍ସା ଲାଗି, ସେବା ଲାଗି ଏହି ସ୍ୱେଚ୍ଛା ସେବକ ବାହିନୀର କାମ ।

ଦେଶର ମୁକ୍ତିପାଇଁ, ଯେଉଁ ସଂଗ୍ରାମ ଚାଲିଛି, ତାହାର ବାର୍ତ୍ତା ଭାସିଆସେ । ନା ଅଛି ଦୈନିକ ସମ୍ବାଦପତ୍ର ବା ରେଡ଼ିଓ ବା ଦୂରଦର୍ଶନ । ଏମାନେ ହିଁ ଥିଲେ ଏପରି ବାର୍ତ୍ତାର ବାହକ । ଗାଁ ଓ ଅଂଚଳ ପ୍ରେମରୁ ଜାତ ହୁଏ ଦେଶ ପ୍ରେମ । ୧୯୩୦ରୁ ଗାନ୍ଧିଜୀଙ୍କ ଆହ୍ୱାନ । ସ୍ୱାଧୀନତା ସଂଗ୍ରାମରେ ଝାସ ଦିଅ, ଆଇନ ଅମାନ୍ୟ, ଲବଣ ସତ୍ୟାଗ୍ରହ, ପିକେଟିଂ ବ୍ରିଟିଶ୍ ଗୋଲାମି ଚାକିରି ଛାଡ଼, ଜାତୀୟ ଶିକ୍ଷା ପ୍ରବର୍ତ୍ତକଙ୍କର ଡାକରା । ବାଗଲପୁର ଏଇ ବିଦ୍ୟାଳୟଟି ଅଲକ୍ଷିତରେ ହୋଇଗଲା ପ୍ରାୟ ଏକ ଜାତୀୟ ଶିକ୍ଷାନୁଷ୍ଠାନ ଭଳି । ଏଇ ନବଜୀବନ ସୃଷ୍ଟିକାରୀ ଯୁବକମାନଙ୍କ ଭିତରୁ ବାହାରିଲେ ଗୌରାଙ୍ଗ ଚରଣ ଦାସ । ଚାକିରି ଛାଡ଼ି ବିଖ୍ୟାତ ଇଂଚୁଡ଼ି ଲବଣ ସତ୍ୟାଗ୍ରହ କାଳରେ ଗୋପବଂଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର, ମହାତାବ, ପଢ଼ିଆରୀ ପ୍ରମୁଖଙ୍କ ଅଭିଯାନରେ ଏକ ଯୋଦ୍ଧା । କାରାବରଣ, ମାଡ଼ଖିଆ, କଟକଠାରୁ ପାଟନା କ୍ୟାମ୍ପ ଜେଲ ପର୍ଯ୍ୟନ୍ତ ।

୧୯୩୦ ଟାଟା କଂପାନୀର ଶୋଷଣ ଅତ୍ୟାଚାର ବିରୋଧରେ ସୁଭାଷ ଚନ୍ଦ୍ର ବୋଷଙ୍କ ନେତୃତ୍ୱରେ ଚାଲିଥିବା ଧର୍ମଘଟରେ ଯୋଗଦେଇ ଚାକିରି ହରେଇ ଜୁଟିଗଲେ ଇନ୍ଦ୍ରମଣି ମହାନ୍ତି, ଗୌରାଙ୍ଗ ଦାସଙ୍କ ସାଙ୍ଗକୁ । ସେ କେବଳ ନୁହନ୍ତି ଆସିଗଲେ ପିତାମ୍ବର ଦାସଙ୍କ ଭଳି ଯୁବକ । ଏଥର କେନ୍ଦ୍ର ମୁକ୍ତିପରେ ବାଗଲପୁର ପାଇଲା ନୂତନ ଜୀବନ୍ୟାସ । ଗାଁ'ଟା ଯାକ, ସାହିବସ୍ତି, ଜାତିବର୍ଣ୍ଣ ନାରୀପୁରୁଷ ସମସ୍ତଙ୍କୁ ଦେଶ ବତ୍ସଳତାରେ ଉଦ୍‌ବୁଦ୍ଧ କରିବାର ଅଭିଯାନ ।

ମୁରବୀମାନଙ୍କୁ ମଧ୍ୟ ସେମାନଙ୍କ ପୁରୁଣା ବଦ୍ଧମୂଳ ଧାରଣାରୁ ମୁକ୍ତ କରାଯିବ । ସେମାନଙ୍କୁ ଏଥିରେ ଯେତେଦୂର ସମ୍ଭବ ସାମିଲ କରାଯିବାର ଉଦ୍ୟମ । ମନେପଡ଼େ, ସେହି କାଳରେ ଜୁଟିଗଲେ ଏମାନଙ୍କ ସାଙ୍ଗକୁ ଯୁବକ କଳ୍ପତରୁ ଦାସ, ବିଶ୍ୱମ୍ଭର ଦାସ, ପ୍ରାଣକୃଷ୍ଣ ଦାସ, ବିପ୍ର ଚରଣ ଦାସ, ଭୈରବ ଚରଣ ଦାସ, ନରେନ୍ଦ୍ର ମହାନ୍ତି, ବଳରାମ ଜେନା, ବଳରାମ ଦାସ, ସାରଦା ପ୍ରସନ୍ନ ଦାସ, ବୀରବର ଶତପଥି, ମନୁଭାଇ, ଜଗବନ୍ଧୁ ଦାସ ଅନେକ ଯୁବକ, ଦେଶପ୍ରେମୀ ।

ଯୁବ ସଂଗଠନ, ମହିଳା ସଂଗଠନ, ସବୁ ପାଟକର ଯୁବକ ଯୁବତୀଙ୍କୁ ଘେନି ଗଢ଼ାଗଲା । ଝିଅମାନେ କୁଆଁର ପୁନେଇ ଗୀତଗୁଡ଼ିକରେ ଦେଶପ୍ରେମି ଗୀତ, ବୀରକିଶୋର, ବାଞ୍ଛାନିଧିଙ୍କ ଗୀତ ଗାଇଲେ । ଯୁବକମାନେ ଦଶହରା ଦିନ ଲେଖନୀ ତାଳପତ୍ର ସାଙ୍ଗକୁ ଅନ୍ୟାୟର ପ୍ରତିରୋଧ ପାଇଁ ଲାଠି ଧରି ଦଶହରା ମନେଇଲେ । ସମସ୍ତେ ଅଲେଖା ଭାବରେ ମାନିନେଲେ ଗୌରାଙ୍ଗ ଓ ଇନ୍ଦ୍ରମଣିଙ୍କୁ । ଶିକ୍ଷା, ସଂସ୍କୃତି, ସମାଜସେବାରେ ଅଗ୍ରଣୀ, ପୁରୁଣା । ସାଥୀମାନେ ପ୍ରତ୍ୟକ୍ଷଭାବେ ଏମାନଙ୍କୁ ଦେଲେ ସମର୍ଥନ ।

ଗାଁ ଝିଅମାନେ, ବୋହୂମାନେ ସୂତା କାଟିଲେ । ଦୂର ତରତଙ୍କ ପ୍ରଭୃତି କଂଗ୍ରେସ ସମାବେଶକୁ ଯାଇ ପଂକ୍ତି ଭୋଜନରେ ବସିଲେ । ଛୁଆଁ ଅଛୁଆଁ ବାରଣ ହେଲା । ତରିକୁନ୍ଦର ଫାର୍ମରୁ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ଗାଁ'ର ପ୍ରତିଟି ସାହିରେ ପ୍ରତ୍ୟେକଟି ଘରେ ବସ୍ତୁତଃ କୁଣିଆ ହେଲେ । ସାଧାରଣ ଶିକ୍ଷା ସେ କାଳରେ 'ଅସବର୍ଣ୍ଣ' ପିଲାଙ୍କ ଲାଗି ବିଦ୍ୟାଳୟ ଉନ୍ମୋଚିତ ହେଲା ।

ରୁଷିଆର ମହାନ ଅକ୍ଟୋବର ସମାଜବାଦୀ ବିପ୍ଳବରେ ଉଦ୍‌ବୁଦ୍ଧ ହୋଇ ଗାଁର ବଡ଼ ସାନ ସବୁ ଜମିମାଲିକଙ୍କ ଜମିକୁ ଧରି କୋଠଚାଷ ପ୍ରବର୍ତ୍ତନ କରାଗଲା । କଳ୍ପତରୁ ଦାସ, ରତ୍ନାକର ଦାସ, ଭୈରବ ଚରଣ ଦାସ, ଏମିତି ଏମିତି ଅନେକ ଯୁବକ ବାହାରି ଏ କାମ ଧରିଲେ । ନିଆରାପଣିଆର ଚମକପ୍ରଦ ଦୃଷ୍ଟାନ୍ତ । ସେ କାଳରେ ବ୍ରିଟିଶ ସାମ୍ରାଜ୍ୟବାଦ ଆଶ୍ରିତ ଅତି ବିଭତ୍ସ, ଅତ୍ୟାଚାର ଲୁଣ୍ଠନର ଜମିଦାରି ପ୍ରଥା ବିରୋଧରେ ଯେଉଁ ଆନ୍ଦୋଳନ ଆମ ଓଡ଼ିଶାରେ ଜନ୍ମ ଲାଭ କଲା । ଦିନେ ଏହି ଜନପଦର ହରିଜନ ସମଗ୍ର ଓଡ଼ିଶାରେ ଚହଲ ପକାଇଥିଲା ମନ୍ଦିର ପ୍ରବେଶର କୀର୍ତ୍ତିରେ କୀର୍ତ୍ତିମାନ ହୋଇ । ୧୯୩୬ରେ ଗାଁ'ର ନଅରବାରୀ ଠାକୁର ବଗିଚାର ବିସ୍ତୀର୍ଣ୍ଣ ପ୍ରାନ୍ତରରେ । ଜମିଦାରି ଅତ୍ୟାଚାର, ବେଠି, ଭେଟି, କୋକ୍ ନିଲାମ, ଖାତାଫଡ଼ା, ଅନ୍ୟାୟ ପାଉଣା ଆଦି କେତେ ଧରଣର ଓଲୁକର ବିରୋଧରେ ୧୦ ହଜାରରୁ ଉର୍ଦ୍ଧ୍ୱ ଚାଷୀଙ୍କ ସମାବେଶ । ପୁଣି ଅଭ୍ୟର୍ଥନା ସମିତିରେ ଥାଆନ୍ତି ଗାଁ'ର ମୁରବୀମାନେ, ଶ୍ୟାମ ସୁନ୍ଦର ଦାସ, ଗୌରାଙ୍ଗ ଚରଣ ଦାସ ପ୍ରଭୃତି । ମହତାବଙ୍କଠାରୁ ନବକୃଷ୍ଣ, ପଢ଼ିଆରୀଙ୍କଠାରୁ ମୋହନ ଦାସ ଏମିତି କେତେ ନେତାଙ୍କ ସମାଗମ ।

ଏହି ବୈପ୍ଳବିକ ପରଂପରା ସଂପନ୍ନ ଜନପଦଟି ୧୯୪୨ ଅଗଷ୍ଟ ବିପ୍ଳବ କାଳରେ ହୋଇଥିଲା ବ୍ରିଟିଶ୍ ଉଡ଼ାଜାହାଜ ଆକ୍ରମଣ ଧମକର ଶରବ୍ୟ । ସେ ସମୟରେ କେତେ ଗୋପନ ଆଲୋଚନା, ଇନ୍ଦ୍ରମଣି ମହାନ୍ତିଙ୍କ ତିଆରି ହେଉଥିବା ଘରେ ୧୯୪୨ ବୀରମାନଙ୍କ ସହିତ କେତେ ମନ୍ତ୍ରଣା ।

ଏହି ଜନପଦକୁ ଛୁଟିଲେ କେତେ ସ୍ୱାଧୀନତା ସଂଗ୍ରାମୀ । କଳ୍ପତରୁ ଦାସ ଓ ଆଉ ସହକର୍ମୀମାନେ ବାଇଶମୌଜା, ଆଖପାଖ ଅଡ଼ଙ୍ଗ, ବାଲିଆ, ବସନ୍ତପୁର, ମଣ୍ଡାସାହି, ଅଂଚଳ, ଗୋବିନ୍ଦପୁର ଅଂଚଳର ଗାଁ ଗାଁରେ ଅଗଷ୍ଟ ସଂଗ୍ରାମର ବାର୍ତ୍ତା ପ୍ରଚାରରେ ଲାଗିଥିଲେ । ପୁଲିସ ଆଖିରେ ଧୂଳିଦେଇ ।

ମନେପଡ଼େ ଏଇ ଗାଁରୁ ୧୮ ଜଣ କାରାଗାରରେ ନିକ୍ଷିପ୍ତ ହୋଇଥିଲେ । ବ୍ରହ୍ମପୁର ଜେଲ୍‌ରେ ବାଗଲପୁରର ଏମାନେ ହିଁ ଭଲି ଖେଳରେ ସମସ୍ତଙ୍କୁ ପରାସ୍ତ କରନ୍ତି । ଭୋଇ ସାହିର ନିତ୍ୟାନନ୍ଦ ଓ ସାମଲସାହିର ଗୁଣନିଧିଙ୍କ ସମେତ କଳ୍ପତରୁ ଦାସ, ପୀତାମ୍ବର, କୃତ୍ତିବାସ, ସାରଦା ପ୍ରସନ୍ନ, ଭ୍ରମର ଓ ନୃସିଂହ, ସୁବଳ ଦାସ, ଦାସ ସାହିର ବାପ ପୁଅ ଓ ପୁତୁରା, ଗୌରାଙ୍ଗ

ଦାସ, ଶଶିଭୂଷଣ ଦାସ, ଅମ୍ବିକା ଚରଣ ଦାସ, ମହାନ୍ତି ସାହିର ଇନ୍ଦ୍ରମଣି ମହାନ୍ତି ଓ ତେନ୍ତୁଳିପଦା ଛାଡ଼ି ବାଗଲପୁରକୁ କର୍ମଭୂମି କରିଥିବା କ୍ଷେତ୍ରମଣୀ ଦେଇ, ଠାକୁର ସାହିର ବିମଳା ଚରଣ ଦାସ କରାବରଣ କଲେ ।

ସେହି ଗାଁର ଗୌରାଙ୍ଗ ଚାରଣ ଢେଙ୍କାନାଳ ଆନ୍ଦୋଳନ, ଚାଷୀ ଆନ୍ଦୋଳନରେ ଅଗ୍ରଣୀ ଭୂମିକା ନେଇ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମରେ ନେତୃମଣ୍ଡଳୀର ଆସ୍ଥାନ ଲାଭ କଲେ ।

ସ୍ୱାଧୀନତା ସଂଗ୍ରାମ କାଳରେ ବରଗଡ଼ ଜିଲ୍ଲାର ପାଣିମୋରା ବାଲେଶ୍ୱରର ଲୁଣିଆ, ଚକ୍ଷାଖଣ୍ଡ, ବାସୁଦେବପୁର, ଇରମ, ଇଂଚୁଡ଼ି, କଟକର ବରୀ-ହାଟସାହି, କାଇପଡ଼ା, ଏରସମା କୋରାପୁଟର ପାପଡ଼ାହାଣ୍ଡି ଏମିତି ଓଡ଼ିଶାର ଆଉ ଅନେକ ଗାଁ ପରି ବାଗଲପୁର ଏକ ନିଆରା, ବୈଶିଷ୍ଟ୍ୟପୂର୍ଣ୍ଣ ଜନପଦ ହୋଇ ଇତିହାସରେ ରହିବ । କଳ୍ପତରୁ ଦାସଙ୍କ ସ୍ମୃତି ପ୍ରତି ପୁନର୍ବାର ଶ୍ରଦ୍ଧା ନିବେଦନ ।

(୬୦ ବର୍ଷ ତଳର ଅନୁଭୂତି ହେତୁ ଅନେକଙ୍କ ନାମ ମନେ ପଡ଼ିନାହିଁ- କ୍ଷମଣୀୟ) ।



### ସାଥୀ ଭଗବତୀଙ୍କ ସ୍ମୃତି ଉଦ୍ଦେଶ୍ୟରେ

# ଆହ୍ୱାନ-ଅନୁଭୂତି, ପରମ ଆହ୍ୱାନର ଅବଶ୍ୟମ୍ଭାବିକତା

ସ୍ୱାଧୀନତାର ପଚାଶତମ ଜୟନ୍ତୀ ପାଳନ ବେଳେ ଓଡ଼ିଶାର ଏକ ସ୍ୱାଧୀନତା ସଂଗ୍ରାମୀ, ଯିଏ ସ୍ୱଳ୍ପାୟୁ ହେଲେ ହେଁ ଏକ ବିଶିଷ୍ଟ ଜନନାୟକର ସ୍ୱୀକୃତି ଲାଭ କରିଛନ୍ତି, ଯାହା ସେ ସ୍ୱାଧୀନତାକୁ ଦେଖିପାରି ନାହାନ୍ତି । ସେପରି ଏକ ବିପ୍ଳବୀ, ଯୋଦ୍ଧାଙ୍କର ସ୍ୱାଧୀନତାର ତିନିବର୍ଷ ପୂର୍ବରୁ ଅଲୋଡ଼ା, ଅକାଳ, ଅବାଞ୍ଛିତ ଓ ଅନିଚ୍ଛାକୃତ ଅତ୍ୟନ୍ତ ଦୁଃଖାନ୍ତ ମୃତ୍ୟୁ ଘଟିଥିଲା । ସେହିପରି ଏକ ବ୍ୟକ୍ତି ଥିଲେ ଭଗବତୀଚରଣ ପାଣିଗ୍ରାହୀ । ତାଙ୍କ କାଳରେ ଥିଲା ବ୍ରିଟିଶ ସାମ୍ରାଜ୍ୟବାଦୀ – ଔପନିବେଶିକ ଦାସତ୍ୱ ଶୃଙ୍ଖଳାରୁ ଭାରତକୁ ମୁକ୍ତି କରିବାକୁ ହେବା – ତାଙ୍କ ପୂର୍ବସୂରୀ, ପୁଣି ସେମାନଙ୍କ ପୂର୍ବସୂରୀ ଏପରି ଉଦାତ୍ତ ଆହ୍ୱାନ ଆଧୁନିକ ଭାବରେ ଆସିବା ପୂର୍ବସୂରୀ ସହଜାତ ବୁଦ୍ଧିରେ ସେପରି ସ୍ୱାଧୀନତା ସଂଗ୍ରାମକୁ ଚଳେଇ ରଖିଥିଲେ । ଏହି ଆହ୍ୱାନକୁ ଭଗବତୀ ତାଙ୍କ କାଳରେ ଆଉ ଲକ୍ଷଲକ୍ଷ ସଂଗ୍ରାମୀ ଗ୍ରହଣ କରିନେଇଥିଲେ । ଏହି ଆହ୍ୱାନ ସହିତ ସ୍ୱାଧୀନ, ମୁକ୍ତ ଭାରତରେ ଶୋଷଣ ବିହୀନ, ଶ୍ରେଣୀ ବିହୀନ ସାମ୍ୟବାଦୀ ସଂଗ୍ରାମର ଆହ୍ୱାନ ମଧ୍ୟ ମିଶିଯାଇଥିଲା । ଓଡ଼ିଶାରେ ଏହି ଦୁଇଟି ଆହ୍ୱାନକୁ ଏକତ୍ର କରି, ଏକାକାର କରି ସଂଗଠନ, ସଂଗ୍ରାମ ଗଢ଼ିବାରେ ବରିଷ୍ଠ ଭୂମିକା ଗ୍ରହଣ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଭଗବତୀ ଥିଲେ ଅଗ୍ରଣୀ । ତେଣୁ ଭଗବତୀ ଥିଲେ ସ୍ୱାଧୀନତା ସଂଗ୍ରାମକାଳରୁ କଂଗ୍ରେସରେ ଯୋଦ୍ଧା ଆଉ କମ୍ୟୁନିଷ୍ଟ । ଓଡ଼ିଶାର କଂଗ୍ରେସ ସୋସଲିଷ୍ଟପାର୍ଟିର ପ୍ରତିଷ୍ଠାତା ସମ୍ପାଦକ ଆଉ କମ୍ୟୁନିଷ୍ଟ ପାର୍ଟିର ପ୍ରତିଷ୍ଠାତା ସମ୍ପାଦକ । ତାଙ୍କଠାରୁ ବହୁ ଅଭିଜ୍ଞ, ଗରିମାମାନବ୍ୟକ୍ତି ଓ ବ୍ୟକ୍ତିତ୍ୱ ତାଙ୍କୁ ହିଁ ଏହି ପଦବୀରେ ଅଧିଷ୍ଠିତ କରାଇଥିଲେ । ସ୍ୱଳ୍ପକାଳ ରାଜନୈତିକ ଜୀବନରେ ତାଙ୍କର କୃତି କୃତିତ୍ୱର ସାର୍ଥକତା ପ୍ରମାଣିତ । ବିଗତ ୫୨ ବର୍ଷ ହେଲା ତାଙ୍କ ସ୍ମୃତିଚାରଣ କରି କେତେ ବିଶିଷ୍ଟ ରାଜନୀତିଜ୍ଞ କେତେ ସାହିତ୍ୟିକ, କେତେ ଗବେଷକ, ତଥା ମୋଭଳି ତାଙ୍କର ଅଗଣିତ ସାଥୀ, ସହକର୍ମୀ ପ୍ରବନ୍ଧକମାନେ ଲେଖିଛନ୍ତି ଆଗକୁ ଲେଖିବେ ମଧ୍ୟ ।

ମୋର ମନେହୁଏ, ସେ ଯେଉଁ ଦୁଇଟି ଆହ୍ୱାନକୁ ଜୀବନର ଧ୍ୟେୟ, ବ୍ରତ, ସଂକଳ୍ପ ଓ ଶପଥ ବୋଲି ବିଚାରି କାର୍ଯ୍ୟ କରିଥିଲେ ଏବଂ ସ୍ୱାଧୀନତା ଓ ସମାଜବାଦୀ ଆଦର୍ଶର ପ୍ରତିଷ୍ଠା ପାଇଁ ସଂଗ୍ରାମ କରିଥିଲେ, ତାହାରି କିଛି ମାତ୍ରାରେ ବିଶ୍ଳେଷଣ ଓ ସେ ଘେନି କିଛିଟା ଅନୁଭବ-

ଅନୁଭୂତି ପ୍ରକାଶ କରିବା ତାଙ୍କୁ ସ୍ମରଣ କଲାବେଳେ ମୋ' ପକ୍ଷରେ ସମୀଚୀନ ହେବ । ସେସବୁକୁ ସଠିକ୍ ମୂଲ୍ୟାୟନ କରି ଆଜିର ପରିବର୍ଦ୍ଧିତ ପୃଥିବୀ ଓ ପରିବର୍ତ୍ତିତ ଭାରତୀୟ ପରିବେଷ, ପରିସ୍ଥିତିରେ ସେପରି ଅନୁଭବ ଅନୁଭୂତିରୁ ଉପୁଜିଥିବା ଶିକ୍ଷାକୁ ପ୍ରୟୋଗ କରିପାରିଲେ ଆମ ଚଲାପଥରେ ଦେଖାଦେବା ବାଧାପ୍ରତିବନ୍ଧକ ଦୂର କରିହେବ ।

ଆହ୍ୱାନ ଦୁଇଟିକୁ ବିଚାର କଲେ, ଗୋଟିଏ ଆହ୍ୱାନ ପୂରଣ ହୋଇଛି । ପ୍ରଥମ ଆହ୍ୱାନ ସ୍ୱାଧୀନତା ପ୍ରାପ୍ତି । ମାତ୍ର ପଚାଷବର୍ଷର ସ୍ୱାଧୀନତା ପରେ ଆଧୁନିକ ଆନ୍ତର୍ଜାତୀୟ ପରିସ୍ଥିତିରେ ଭାରତ କ'ଣ ତାହାର ସ୍ୱାଧୀନତା ସଂଗ୍ରାମର ମୌଳିକ ଅଙ୍ଗୀକାରଗୁଡ଼ିକ ପୂରଣ କରିଛି ? ସେଥିଘେନିତ ଅନେକ ପ୍ରଶ୍ନବାଚୀ । ପଚାଶ ବର୍ଷ ପୂର୍ବର ବ୍ରିଟିଶ ଭାରତ ନାହିଁ ସତ । କିନ୍ତୁ ସ୍ୱାଧୀନତା ସଂଗ୍ରାମ ଦେଇଥିବା ପ୍ରତିଶ୍ରୁତି, ଅଙ୍ଗୀକାରଗୁଡ଼ିକ ମଧ୍ୟରୁ ଅନେକକୁ ଓଲଟା ବାଟରେ ନିଆଯାଉଛି ଓ ସେଥିଲାଗି ଭାରତର ଅପାର ଦୁର୍ଦ୍ଦଶା-ଅମାପ ବେକାର, ବର୍ଦ୍ଧିତ ଦାରିଦ୍ର୍ୟ, ଦୁର୍ନୀତି, ଭ୍ରଷ୍ଟାଚାର ଓ ଉପରେ ହିମାଳୟ ଶୃଙ୍ଗ ସଦୃଶ ଧନରାଶି ଠୁଳ ହୋଇଛି, ଏ ପ୍ରଶ୍ନଗୁଡ଼ିକ ଅବାନ୍ତର କି ? ନୁହେଁ ।

ଅଷ୍ଟାଦଶ, ଉନବିଂଶ, ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ଔପନିବେଶିକ ପରାଧୀନତା ଆଜି ଏକ ମାୟା ଗୋଳ ସୃଷ୍ଟିକାରୀ ସାମ୍ରାଜ୍ୟବାଦର ନୂତନ ଅଙ୍ଗୀକାରଦାନ ପୁନଶ୍ଚ ପରାଧୀନତାର ବିପଦ ସୃଷ୍ଟି କରୁ ନାହିଁକି ? କେବଳ ଆମ ପାଇଁ ନୁହେଁ, ଏହି ଗେଲକରୁ ଶତାଧିକ ଅନଗ୍ରସର ଦେଶ, ଯେଉଁମାନେ ଦ୍ୱିତୀୟ ବିଶ୍ୱଯୁଦ୍ଧପରେ, ସୋଭିଏତ ବାହିନୀଦ୍ୱାରା ହିଟ୍‌ଲରବାଦର ପରାଜୟ ଓ ଚିରାଚରିତ ସାମ୍ରାଜ୍ୟବାଦର ତତ୍କାଳୀନ ଦୁର୍ବଳତାର ସୁଯୋଗରେ ଅମାପ ଆତ୍ମବଳିଦାନ ଓ ସଂଗ୍ରାମ କରି ସ୍ୱାଧୀନ ହୋଇଥିଲେ, ସେମାନେ ମଧ୍ୟ ଆଜି ଏହି ବିପଦର ଅଗ୍ନିଗର୍ଭରେ ଆଉଟୁପାଉଟୁ ହେଉଛନ୍ତି ।

ଆଜି ବି ଆମ ଦେଶ ଭିତରେ ଶିକ୍ଷିତ ସରକାରୀ ଅମଲାତନ୍ତ୍ରୀ ଓ ତଥାକଥିତ ରାଜନୀତି କରୁଥିବା ବ୍ୟକ୍ତି ଅଛନ୍ତି, ଯେଉଁମାନେ କି ବସ୍, ରେଳରେ ଆଳାପ ଆଲୋଚନାରେ ବ୍ରିଟିଶ ଶାସନ ଭଲଥିଲା କହନ୍ତି ।

ସେତେବେଳେ ଏମିତିକି ସ୍ୱାଧୀନତା ସଂଗ୍ରାମୀଙ୍କ ଭିତରୁ କେତେକ ଅଗୁଁଆର କହୁଥିଲେ, ଗାନ୍ଧୀ ସିନା ଲଢ଼େଇ କଲେ, ଭାରତକୁ ଦ୍ୱିଭାଗ କଲେ ବି ଗୋରା ମାଉଣ୍ଟବେଟେନ୍ ସାହେବ ଆମକୁ ସ୍ୱାଧୀନତା ଦେଲେ । ଚର୍ଚ୍ଚିଲଙ୍କ ଜାଠଦଳ ଶାସନ ଗଲାରୁ ଲେବର ପାର୍ଟି ସରକାର ଆମକୁ ସ୍ୱାଧୀନତା ଦେଲା । ସ୍ୱାଧୀନତା ସଂଗ୍ରାମ କାଳରେ ଏମିତିକି ବ୍ରିଟିଶ କାରାବାସରେ ବନ୍ଦୀ କେତେକ ବି କହୁଥିଲେ ୧୮୯୫ରେ ହ୍ୟୁମ ସାହେବ କଂଗ୍ରେସ ଗଢ଼ି ନଥିଲେ, ସ୍ୱାଧୀନତା ସଂଗ୍ରାମ ଡାକରା ଆସିଥାନ୍ତା କିପରି ? ଏଗୁଡ଼ିକ ଐତିହାସିକ ଘଟଣା ହେଲେ ହେଁ ଲକ୍ଷ୍ୟ ଆରୋପ ଭ୍ରାନ୍ତମୂଳକ, ଭୁଲ ଓ ଦେଶ ସ୍ୱାର୍ଥ ବିରୋଧୀ ଆମ ସ୍ୱାଧୀନତା ସଂଗ୍ରାମର ଉପଲବ୍ଧି

ଘେନି ମାନସିକ, ରାଜନୈତିକ ଓ ସାଂସ୍କୃତିକ ଦାରିଦ୍ର୍ୟ । ପୁଣି କେବଳ କୁହାଯାଏ ୧୮୮୫ରେ କଂଗ୍ରେସ ପ୍ରତିଷ୍ଠା ପରେ ଏବଂ ୧୯୦୫ ବଙ୍ଗଭଙ୍ଗ ବେଳର ସ୍ୱଦେଶୀ ଆନ୍ଦୋଳନ, ମାହାତ୍ମା ଗାନ୍ଧୀଙ୍କ ଆବିର୍ଭାବ ଏବଂ ଗାନ୍ଧୀଜୀଙ୍କ ନେତୃତ୍ୱରେ ଅସହଯୋଗ, ଆଇନଅମାନ୍ୟ ବ୍ୟକ୍ତିଗତ ସତ୍ୟାଗ୍ରହ ଓ ଭାରତ ଛାଡ଼ ଆନ୍ଦୋଳନ ଯୋଗୁଁ ହିଁ ଆମର ସ୍ୱାଧୀନତା ଆସିଲା ଏବଂ କେବଳ କଂଗ୍ରେସର ସଂଗଠନ ଏହି ସାଫଲ୍ୟର ଷୋଳପଣ ଅଧିକାରୀ ! ଏହା କ'ଣ ସତ୍ୟ ନୁହେଁ ଏହା କ'ଣ ଇତିହାସସିଦ୍ଧ ନୁହେଁ ? ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶିତ ସତ୍ୟ, ଅହିଂସା, ଅସହଯୋଗ ମାର୍ଗରେ ଆହ୍ୱାନ କ'ଣ ଦେଶବାସୀଙ୍କୁ ସାରାଜଗତ ମାନସ ମନ୍ଥନ କରିନେଇ ନାହିଁ ? ଏହା ସବୁ ଐତିହାସିକ ସତ୍ୟ । ୧୯୨୦ରୁ ୧୯୩୦-୩୨, ୧୯୪୦-୪୨ ବେଳେ ଆମ ସ୍ୱାଧୀନତା ସଂଗ୍ରାମର ଚରମ ପର୍ଯ୍ୟାୟ ସବୁ କ'ଣ ସେତିକି ? ଆମ ସ୍ୱାଧୀନତା ସଂଗ୍ରାମର ପୂର୍ଣ୍ଣାଙ୍ଗ ଇତି ବୃତ୍ତି ମଧ୍ୟ କ'ଣ ସେତିକି ? ସ୍ୱାଧୀନତା ପରବର୍ତ୍ତୀ କାଳର ଶାସକ ବର୍ଗ ଏବଂ ସେହି ଶାସକ ଶ୍ରେଣୀର ଶାସନକୁ (ମନ୍ତ୍ରିମଣ୍ଡଳ ଓ ଦଳ ନିର୍ବିଶେଷରେ) ସମର୍ଥନ କରୁଥିବା ସମାଜ ଜୀବନର, ଅର୍ଥନୈତିକ ଜୀବନର ଓ ସାଂସ୍କୃତିକ ଜୀବନର ଏକ ନ୍ୟସ୍ତ ସ୍ୱାର୍ଥ ଉପରସ୍ତର, ଯିଏ ସ୍ୱାଧୀନତାରୁ ଜାତ ସୁଫଳର ସିଂହଭାଗ ଭୋଗ କରୁଛନ୍ତି ଓ କରିବାକୁ ବଦ୍ଧ-ପରିକର ତଥା ବିଦେଶର ଭାଗୁଆଳମାନଙ୍କୁ ମଧ୍ୟ ସଂଗରେ ନେବାକୁ ସଦା ତତ୍ପର ସେମାନେ ଏପରି ପ୍ରଚାର କରିଥାନ୍ତି । ଆମ ଶିକ୍ଷା ପଦ୍ଧତିରେ, ଆମ ରାଜନୈତିକ ସାହିତ୍ୟରେ, ଆମ ରାଜନୈତିକ କର୍ମ ସୂଚୀରେ ସ୍ୱାଧୀନତା ସଂଗ୍ରାମ କାଳର ସାମଗ୍ରିକ, ପୂର୍ଣ୍ଣାଙ୍ଗ, ସତ୍ୟନିଷ୍ଠ ବାସ୍ତବତା ସିଦ୍ଧ ଚିତ୍ର ଦିଆଯାଇ ନାହିଁ, ଯାଉନାହିଁ । ତେଣୁ ଆଜିକାଲି ସମାଜରେ ଯେଉଁ ସାମାଜିକ, ନୈତିକ ଅବକ୍ଷୟ ଘଟୁଛି ତାହାର ଏହା ମଧ୍ୟ ଗୋଟିଏ ବଡ଼ କାରଣ ।

ପୁଣି ଆମ ସ୍ୱାଧୀନତା ସଂଗ୍ରାମର ଦୁଇଶହ ବର୍ଷାଧିକର ବିଭିନ୍ନ ସ୍ତର, ବିଭିନ୍ନ ଐତିହାସିକ ସଂଗ୍ରାମ, ଉତ୍‌ଥାନ ପତନ, ଅଗ୍ରଗତି, ପଶ୍ଚାତ୍‌ଗତି ପୁନଶ୍ଚ ଅଗ୍ରଗତି, କେଉଁ ଧରଣର ସଂଗ୍ରାମ ଅହିଂସା, ହିଂସ୍ର-ଏସବୁର ଚିତ୍ର ଆମ ଉତ୍ତରକୂଳକୁ ଦିଆଯାଇ ନାହିଁ । ପୁଣି ଆମକୁ ଦ୍ୱିତୀୟ ଆହ୍ୱାନ ସମାଜବାଦ ଆଣିବା ଅଙ୍ଗୀକାର ଏବଂ ଅତୀତର ସେହି ସଂଗ୍ରାମଗୁଡ଼ିକର ସଂକ୍ଷିପ୍ତ ଉଲ୍ଲେଖ କରିବା ବ୍ୟତୀତ ଏଇ କ୍ଷୁଦ୍ର ଲେଖାରେ ଅନ୍ୟଚାରା ନାହିଁ ।

ପ୍ରତ୍ୟେକଟି ଦେଶର ନିର୍ଦ୍ଦିଷ୍ଟ କେତେକ ବୈଶିଷ୍ଟ୍ୟକୁ ସଠିକ ଅନୁଶୀଳନ କରି ସମାଜବାଦ ଲାଗି ସଂଗ୍ରାମ ପରିଚାଳନା ଓ ସେହି ସମାଜବାଦୀ ସଂଗ୍ରାମର ସାଫଲ୍ୟ, ସମାଜବାଦର ପ୍ରତିଷ୍ଠା ପାଇଁ ବିଜ୍ଞାନସିଦ୍ଧ ମାର୍କ୍ସବାଦ-ଲେନିନବାଦର ମୌଳିକ ସିଦ୍ଧାନ୍ତଗୁଡ଼ିକୁ ସୃଜନଶୀଳ, ଯୁଗୋପଯୋଗୀ କ୍ରିୟାଶୀଳ ରୀତିରେ ପ୍ରୟୋଗ ଯେ କେତେ ଦୁରୂହ, କେତେ ଆୟାସସାଧ୍ୟ, ତାହା ପୁନର୍ବାର ଆଧୁନିକ ଆନ୍ତର୍ଜାତିକ ଘଟଣାବଳୀ ପ୍ରମାଣ କରିଦେଇଛି । ଏହି ଘଟଣାବଳୀ ଏବଂ ତା'ର ପରବର୍ତ୍ତୀ ବିକାଶ ପ୍ରମାଣସିଦ୍ଧ କରିଚାଲିଛି ଯେ ଭାରତ ସମେତ ସମଗ୍ର ମାନବଜାତି

ପାଇଁ ପୁଞ୍ଜିବାଦ ନୁହଁ, ବୈଜ୍ଞାନିକ, ସମାଜବାଦ ହିଁ ଏକମାତ୍ର ପଥ, ଏକମାତ୍ର ସାମାଜିକ, ଅର୍ଥନୈତିକ, ଦାର୍ଶନିକ ମତାଦର୍ଶ ।

ଆମ ଦେଶର ଅନେକ ସାମାଜିକ ବୈଶିଷ୍ୟ ମଧ୍ୟରେ ମହିମାମଣ୍ଡିତ ରାଜନୈତିକ ବୈଶିଷ୍ୟ ବିଦ୍ୟମାନ । ସେହି ବୈଶିଷ୍ୟ ମଧ୍ୟରେ ଆମ ଦେଶର ସ୍ୱାଧୀନତା ସଂଗ୍ରାମ କେବେଠାରୁ ଆରମ୍ଭ ? କେଉଁକେଉଁ ରୂପରେ ଏହା ପ୍ରକାଶିତ ଆମ ଜନ ସମୁଦାୟର କେଉଁକେଉଁ ଅଂଶ ଏଥିରେ ଯୋଗଦେଲେ ? କେଉଁମାନେ ଏହାର ବିରୋଧ କଲେ ? କିପରି, କେତେ ପର୍ଯ୍ୟାୟ ଦେଇ ଆମର ଏ ସଂଗ୍ରାମ ଗତି କରିଛି ?

ଆଗରୁ କୁହାଯାଇଛି ସ୍ୱାଧୀନତା ସଂଗ୍ରାମର ଉତ୍ତାଳ ତରଙ୍ଗର ବର୍ଷଗୁଡ଼ିକ କଥା । ତାହା ମଧ୍ୟ ସମ୍ପୂର୍ଣ୍ଣ ବିବରଣୀ ନୁହଁ । ସ୍ୱାଧୀନତା ସଂଗ୍ରାମର ପୂର୍ଣ୍ଣାଙ୍ଗ ପରିପୂର୍ଣ୍ଣ, ବାସ୍ତବତାସିଦ୍ଧ ଇତିହାସ ଆରମ୍ଭ ହୁଏ ବ୍ରିଟିଶ ସାମ୍ରାଜ୍ୟବାଦ ଭାରତବ୍ୟାପୀ ତା'ର କାୟା ବିସ୍ତାର ପରେପରେ । ନା ଅଛି ସେତେବେଳେ ରାସ୍ତାଘାଟ, ନା ଅଛି ସମ୍ବାଦପତ୍ର । ଏ ଗାଁ'ର ଲୋକେ ନିକଟ ଗାଁ'କୁ ଯାଇ ପାରୁନଥିଲେ । ପୁଣି ଏ ବିଶାଳ ଭୂଖଣ୍ଡ । ହିମାଳୟଠାରୁ କୁମାରିକା । ଉତ୍ତରରୁ ଦକ୍ଷିଣ । ପୁଣି ପୂର୍ବ ସୀମାନ୍ତ-ମଣିପୁର-ନାଗାଲ୍ୟାଣ୍ଡଠାରୁ ପଶ୍ଚିମରେ ଗୁଜୁରାଟ, ମହାରାଷ୍ଟ୍ର, ଆରବ ସାଗର । ଶତାଧିକ ଭାଷା, ଉପଭାଷା ବୋଲି ଏକ ଆରେକର ଭାଷା ଜାଣନ୍ତି ନାହିଁ ।

ଅଥଚ ପରଦେଶୀ ବ୍ୟବସାୟୀ ଗୋଷ୍ଠୀ ଇଷ୍ଟଇଣ୍ଡିଆ କମ୍ପାନୀର ରାଜୁତିର ତିକ୍ତସ୍ୱାଦ, ଅତ୍ୟାଚାର, ଲୁଣ୍ଠନ, ଶୋଷଣ, ଦମନକୁ ଅଙ୍ଗେ ଲିଭେଇ ଠା'କୁ ଠା' ଲୋକେ ବିଦ୍ରୋହ କରି ଉଠିଲେ । ନିଜ ପାଖରେ ଥିବା କାତି, କଟୁରି, ଖଣ୍ଡା, ଧନୁତୀର, ଫାର୍ଶା, ଲାଠି ହୋଇଥିଲା ଅସ୍ତ୍ର । ମୁକାବିଲା କରୁଥିଲେ ବ୍ରିଟିଶ ତୋପ, କମାଣ, ବନ୍ଧୁକ ଭଳି ପ୍ରଚଣ୍ଡ ମାରଣାସ୍ତ୍ରକୁ । ହିଂସ୍ର ଅହିଂସ୍ର ଉଭୟ ପ୍ରକାରର ପ୍ରତିରୋଧ କାହାଣୀ ଅସୁମାରି ।

ସେତେବେଳକୁ ଆମ ସ୍ୱାଧୀନତା ସଂଗ୍ରାମର ପ୍ରଥମ ସଂଗଠିତ ବିଦ୍ରୋହ ଘଟିନାହିଁ । ୧୮୫୭ର ଘଟଣା ରୋମାଞ୍ଚକାରୀ, ଦେଶପ୍ରେମୀ, ଲକ୍ଷଲକ୍ଷ ସହୀଦଙ୍କ ସଂଗ୍ରାମର ବହୁ ପୂର୍ବରୁ ଏଗୁଡ଼ିକ ଖଣ୍ଡ ସଂଗ୍ରାମ । ବଂଗଳାର ସନ୍ନ୍ୟାସୀ ଆନ୍ଦୋଳନ, ବିହାର ବିଦ୍ରୋହ, ଓଡ଼ିଶାର ପାଇକ ବିଦ୍ରୋହ, ପାରଳାଖେମୁଣ୍ଡି-ଘୁମୁସର ବିଦ୍ରୋହ, ତାମିଲନାଡୁରେ ପୋଳିଗାର ବିଦ୍ରୋହ, ବିଜୟନଗରମ୍‌ର ସଶସ୍ତ୍ର ପ୍ରତିରୋଧ, ତ୍ରିବାଙ୍କୁଡ଼ରେ ସଶସ୍ତ୍ର ପ୍ରତିରୋଧ, ଗୁଜୁରାଟରେ କୋଲି ବିଦ୍ରୋହ, ମହାରାଷ୍ଟ୍ରରେ କିଟ୍ଟୁର ବିଦ୍ରୋହ, କୋହ୍ଲାପୁର-ସତାରାରେଭିଲ ବିଦ୍ରୋହ, ଜବଲପୁରରେ ବୁନ୍ଦେଲ ବିଦ୍ରୋହ, ପଞ୍ଜାବରେ କୁକି ବିଦ୍ରୋହ, ଆଲିଗଡ଼ ବିଦ୍ରୋହ । ଏଗୁଡ଼ିକ କ'ଣ ଆମ ସ୍ୱାଧୀନତା ସଂଗ୍ରାମର ଅଂଶ ନୁହେଁ ?

ଅବଶ୍ୟ ସେତେବେଳେ ଏହି ବିଦ୍ରୋହ ଓ ମେଳିରେ ତତ୍କାଳୀନ ସାମନ୍ତବାଦୀ ସ୍ୱାର୍ଥର କେତେକ ଆଗୁଆ ଥିଲେ । ମାତ୍ର ବ୍ରିଟିଶ ଶାସନରେ ତଳିତଳାନ୍ତ ଗାଁ' କାରିଗର, ଚାଷୀ,

ପାଇକ ଏମାନେ ହିଁ ଥିଲେ ଅସଲ ଯୋଦ୍ଧା । ଏମାନଙ୍କ ଭିତରୁ ସହସ୍ର ସହସ୍ର ସଂଖ୍ୟାରେ ବ୍ରିଟିଶ ଗୁଳିରେ ପ୍ରାଣ ଦେଇଛନ୍ତି । ସେମାନଙ୍କ ସେହିସବୁ ଖଣ୍ଡ ସଂଗ୍ରାମର ବାର୍ତ୍ତା କାନକୁ କାନ ଯାଇ ତୁଣ୍ଡ ବାଇଦ ସହସ୍ର କୋଶକୁ ଯିବା ଭଳି ବ୍ୟାପିଥିବ, ବ୍ୟାପିଥିଲା ।

୧୮୫୭ର ପ୍ରଥମ ସ୍ୱାଧୀନତା ସଂଗ୍ରାମର ପୂର୍ବ ଓ ପରେ ଯେଉଁ ସବୁ ବିଦ୍ରୋହ ହେଲା, ସେଗୁଡ଼ିକ କ'ଣ ସ୍ୱାଧୀନତା ସଂଗ୍ରାମର ଗୌରବମୟ ଅଧ୍ୟାୟ ନୁହଁ ? ଆଦିବାସୀ ସମ୍ପ୍ରଦାୟଗୁଡ଼ିକର ପ୍ରତିରୋଧ ସଂଗ୍ରାମର କାହାଣୀ ଦେଶପ୍ରେମୀ ପୁଲକ ଜାଗ୍ରତ କରେ ।

ସାନ୍ତାଳ ବିଦ୍ରୋହ, କୋହ୍ଲ ବିଦ୍ରୋହ, ମୁଣ୍ଡା ବିଦ୍ରୋହ, ରମ୍ପା ବିଦ୍ରୋହ, ନୀଳଚାଷୀ ବିଦ୍ରୋହ, ଗୋଫଲା ବିଦ୍ରୋହ ଏବଂ ଜେସୋର, ଦରଭଙ୍ଗା, ଚମ୍ପାରଣ ମେଲି, ପିଣ୍ଡାରୀ, ବଂଗ ବିଦ୍ରୋହ, ଡେକାନ ବିଦ୍ରୋହ ଏଗୁଡ଼ିକ କ'ଣ ଆମ ସ୍ୱାଧୀନତା ସଂଗ୍ରମାର ଅଭିନ୍ନ ଅଙ୍ଗ ନୁହେଁ । ଲକ୍ଷଲକ୍ଷ ସଂଖ୍ୟାରେ ଆଦିବାସୀ ଏହି ବିଦ୍ରୋହମାନ କରି ବ୍ରିଟିଶ ଗୁଳିରେ ଟଳିପଡ଼ିଛନ୍ତି । ସାନ୍ତାଳ ବିଦ୍ରୋହରେ ଗୋଟିଏ ଦିନରେ ୫ ହଜାର ସାନ୍ତାଳ ପ୍ରାଣ ଦେଇଥିଲେ । ଅଥଚ ସେମାନଙ୍କର ନାମ ଠିକଣା ନାହିଁ ।

୧୮୫୭ର ସ୍ୱାଧୀନତା ସଂଗ୍ରାମ । ବାରାକପୁରଠାରୁ ବିହାର ଉତ୍ତରପ୍ରଦେଶ ଦେଇ ମିରଟ ଆଉ ଦିଲ୍ଲୀ । ନେତା ଅଗଣିତ । ମଙ୍ଗଳପାଣ୍ଡେ, ଝାନ୍‌ସୀ ରାଣୀ ଲକ୍ଷ୍ମୀବାଈ, ଅଯୋଧାର ବେଗମ୍ ହଜରତ୍‌ମହଲ, ନାନା ସାହିବ, କନେୱାର ସିଂହ, ବହାଦୁର ଖାଁ, ମୌଲବୀ ଅହମେଦୁଲ୍ଲା, ବରଖତ୍ ଖାଁ ଏମିତି କେତେ ଶହୀଦ ବୀର । କେବଳ ଅଯୋଧାରେ ଦେଢ଼ଲକ୍ଷ ଲୋକ ହିନ୍ଦୁ-ମୁସଲମାନ୍‌ଙ୍କ ପ୍ରାଣ ନେଇଛି ବ୍ରିଟିଶ ସାମ୍ରାଜ୍ୟବାଦ । ଦିଲ୍ଲୀ ଖୁନୀ ଦରୱାଜାଠାରେ ବାହାଦୁରଶାହା ଜାଫରଙ୍କ ଉତ୍ତରାଧିକାରୀମାନଙ୍କୁ ହାଣି ହିନ୍ଦୁ ଶିଖମାନଙ୍କ ସମେତ ୨୭ ହଜାର ମୁସଲିମ୍ ବିଦ୍ରୋହୀଙ୍କୁ ଫାଶିଦଣ୍ଡ ଦିଆଯାଇଛି, ହତ୍ୟା କରାଯାଇଛି । ଏହା ତ ଆମ ସଂଗ୍ରାମର ବୈଶିଷ୍ଟ୍ୟ । ଏସବୁ ଆମ ଉତ୍ତର ବଂଶଧରଙ୍କ ପାଖରେ ଆମେ ପହଞ୍ଚାଇଛୁ କି ?

ସମୟ, ପରିସ୍ଥିତି, ଚିନ୍ତା, ଚେତନା ବଦଳିଛି । ନୂଆ ନୂଆ ଜନସଂଖ୍ୟା, ସାମାଜିକ ଗୋଷ୍ଠୀ, ବିଭିନ୍ନ ରାଜନୈତିକ ସଂଗଠନ ଗଢ଼ିଛନ୍ତି । ସାଂସ୍କୃତିକ ସଂଗଠନ ଗଢ଼ିଛନ୍ତି । ନିଜର ଚେତନା, ଉପଲବ୍ଧି ଅଭିଜ୍ଞତାର ସୀମା ଭିତରେ ସେ ସବୁ ସଂଗଠନର ଉଦ୍‌ଭବ । କଲିକତାରେ ଇଣ୍ଡିୟାନ ଆସୋସିଏସନ୍ ଲଣ୍ଡନରେ ଇଷ୍ଟ ଇଣ୍ଡିଆ ଆସୋସିଏସନ୍, ବର୍ଲିନ କମିଟି, ବମ୍ବେ ପ୍ରେସିଡେନ୍ସି ଆସୋସିଏସନ୍, ପୁନେ ସାର୍ବଜନୀନ ସଭା, ମାନ୍ଦ୍ରାଜ ମହାଜନ ସଭା । ସେପରି ଅନୁଷ୍ଠାନଗୁଡ଼ିକ ଦରଖାସ୍ତ, ଆବେଦନ, ସମ୍ବାଦପତ୍ର ମାଧ୍ୟମରେ ସମାଲୋଚନାର ପଥ ନେଇପାରିଥାନ୍ତି, ମାତ୍ର ତାହା ମଧ୍ୟ ବ୍ରିଟିଶ ବିରୋଧୀ ଜନସଚେତନାକୁ ଶିକ୍ଷିତ-ଅର୍ଦ୍ଧ ଶିକ୍ଷିତ ମହଲରେ ଜାଗ୍ରତ କରିଛି, ଏହା ନିଃସନ୍ଦେହ ।

ଆମ ସ୍ୱାଧୀନତା ସଂଗ୍ରାମର ଆଉ ଏକ ବୈଶିଷ୍ଟ୍ୟ ବୈପ୍ଳବିକ ସନ୍ତ୍ରାସବାଦ । ୧୯୧୯

ପରେ ଦେଶ ଛାଡ଼ି ଆଫଗାନିସ୍ତାନ ବାଟେ ସୋଭିଏ ୟୁନିୟନର ତାସକେଣ୍ଟରେ ପହଞ୍ଚିବା ସହସ୍ର ସଂଖ୍ୟାର ହଜରତୀମାନେ ଦେଶ ଫେରିବା ହଜରତୀମାନଙ୍କୁ ଫାଶୀ ଓ ଦୀର୍ଘ ଜେଲ ଦଣ୍ଡ । ସେମିତି ବ୍ରିଟିଶ ସାମ୍ରାଜ୍ୟବାଦ ଦ୍ୱାରା ବିପ୍ଳବୀ ସନ୍ତ୍ରାସବାଦୀ, କମ୍ୟୁନିଷ୍ଟ ଓ ଅନ୍ୟ ବିପ୍ଳବୀ ଚରମପନ୍ଥୀଙ୍କ ବିରୋଧରେ ଷଡ଼ଯନ୍ତ୍ର ମକଦ୍ଦମାମାନ ଓ କେତେକଙ୍କୁ ଫାଶୀ, କେତେକଙ୍କୁ ଦୀର୍ଘ କାରାଦଣ୍ଡ ନଚେତ୍ ଆଣ୍ଡାମାନ ଦ୍ୱୀପରେ ଯାବତ୍‌ଜୀବନ ବନ୍ଦୀ । ପେଶଓ୍ୱାର ଷଡ଼ଯନ୍ତ୍ର ମକଦ୍ଦମା, କାକୋରି ଷଡ଼ଯନ୍ତ୍ର ମକଦ୍ଦମା, କାନପୁର ବଲ୍‌ସେଭିକ୍ ଷଡ଼ଯନ୍ତ ମକଦ୍ଦମା, ଲାହୋର ଷଡ଼ଯନ୍ତ୍ର ମକଦ୍ଦମା ସର୍ବୋପରି ଚିଟ୍ଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନ ଷଡ଼ଯନ୍ତ ମକଦ୍ଦମା, ଚଷାଖଣ୍ଡରେ ବାଘାଯତୀନଙ୍କ ସଂଗ୍ରାମ ଏମିତି ଅନେକ । ସଂଗ୍ରାମ ଅସ୍ତ୍ରଶସ୍ତ୍ରଯୁକ୍ତ ଓ ନିରସ୍ତ୍ର ସଂଗ୍ରାମ ପର୍ଯ୍ୟାୟଭୁକ୍ତ । ଫାଶୀ ପାଇଛନ୍ତି ହିନ୍ଦୁ, ମୁସଲମାନ୍, ଖ୍ରୀଷ୍ଟିୟାନ୍, ଆଦିବାସୀ, କିଏ ନୁହେଁ ?

ଗଦ୍ଦର ପାର୍ଟିଠାରୁ କୀର୍ତ୍ତି କିଷାନ ପାର୍ଟି, ହିନ୍ଦୁସ୍ଥାନ ରପବ୍ଲିକାନ୍ ପାର୍ଟିଠାରୁ ପେଜାଣ୍ଟ ଏବଂ ଓ୍ୱାର୍କସ ପାର୍ଟି, କଂଗ୍ରେସ ସୋସାଲିଷ୍ଟ ପାର୍ଟିଠାରୁ କମ୍ୟୁନିଷ୍ଟ ପାର୍ଟି ଏମିତି କେତେ ଯେ ରାଜନୈତିକ ସଂଗଠନ କଂଗ୍ରେସ ଗଠିତ ହେବା ପରେ ତାହାରି ଏକ ଅଙ୍ଗରୂପେ, ତାହାରି ସଦସ୍ୟ ପଦରେ ଥାଇ ସ୍ୱାଧୀନତା ସାଙ୍ଗକୁ ସମାଜ ରୂପାନ୍ତରର ବିଭିନ୍ନ ଆଦର୍ଶ ଘେନି ସଂଗ୍ରାମ କରିଛନ୍ତି, ତାହାରି ଚିତ୍ର କ'ଣ ଆମ ଉତ୍ତର ବଂଶଧରର କୋଟିକୋଟି ଯୁବକଯୁବତୀଙ୍କ ପାଖରେ ପହଞ୍ଚାଯାଇଛି ? କେତେ ଯେ ଶହୀଦ ହୋଇଛନ୍ତି, ତାହା କ'ଣ ସେମାନେ ଜାଣନ୍ତି ? ବ୍ରିଟିଶ ଶାସନର ଆଉ ଏକ ଖୁଣ୍ଟ ଜମିଦାରମାନଙ୍କ ଅତ୍ୟାଚାର, ଶୋଷଣ ବିରୋଧରେ ପ୍ରାନ୍ତେ ପ୍ରାନ୍ତେ ଅଜସ୍ର ଆନ୍ଦୋଳନରେ କେତେ ଯେ ସହୀଦ୍ ହୋଇଛନ୍ତି ତାହାର ଇୟତ୍ତା ନାହିଁ ।

ଦେଶରେ କିଛିଟା ଶିଳ୍ପାୟନ ପରେ ଶ୍ରମିକ ଶ୍ରେଣୀର ଉଦ୍‌ଭବ ଘଟିବାରୁ ଅଜସ୍ର ଶ୍ରମିକ ଆନ୍ଦୋଳନ ହୋଇଛି ଓ ଶତଶତ ସଂଖ୍ୟାରେ ଶ୍ରମିକ ବ୍ରିଟିଶ ଗୁଳିରେ ନିହତ ହୋଇଛନ୍ତି । ତାହାର ସାମଗ୍ରିକତା କ'ଣ ସ୍ୱାଧୀନତା ସଂଗ୍ରାମର ଅଙ୍ଗ ନୁହେଁ ?

ବ୍ରିଟିଶ ବିରୋଧୀ ଛାତ୍ର, ଯୁବକ, ସଂଗଠନ ଓ ଆନ୍ଦୋଳନ ବିଶାଳ ଜାଗରଣ ସୃଷ୍ଟି କରେ । ଛଅଶହ ଗଡ଼ଜାତର ରାଜା ମହାରାଜାଙ୍କ ବିରୋଧରେ ପ୍ରଜାମାନେ ଯେଉଁ ସଂଗ୍ରାମର କଲେ, ସହସ୍ର ସହସ୍ର ସଂଖ୍ୟାରେ ବ୍ରିଟିଶ ଗୁଳିରେ ମଲେ ଓ ରାଜ୍ୟଗୁଡ଼ିକୁ ଭାରତରେ ସର୍ବଶେଷରେ ମିଶିବାକୁ ବାଧ କଲେ ସେମାନଙ୍କୁ କ'ଣ ଇତିହାସର ପୃଷ୍ଠାରୁ ବାଦ ଦେଇ ହେବ ? ଓଡ଼ିଶାରେ ଢେଙ୍କାନାଳ, ନୀଳଗିରି, ରଣପୁର ପରି ଛବିଶ ଗଡ଼ଜାତ ପ୍ରଜାଙ୍କ ଆନ୍ଦୋଳନ ମନେପଡ଼େ । ମନେପଡ଼େ ନିଜାମ୍ ବିରୋଧରେ ସଂଗ୍ରାମ କରି ନିହତ ୪ ହଜାରରୁ ଉର୍ଦ୍ଧ୍ୱ କମ୍ୟୁନିଷ୍ଟ । ପୁନାପ୍ରାଭାୟାଲରରେ କୋଚିନ୍ - ତ୍ରିବାଙ୍କୁଡ଼ ମହାରାଜାଙ୍କ ବିରୋଧୀ ସଂଗ୍ରାମରେ ଦୁଇଶତାଧିକ କମ୍ୟୁନିଷ୍ଟ ଗୁଳି ମୁହଁରେ ଟଳିପଡ଼ିଥିଲେ । ମନେପଡ଼ନ୍ତି ଓଡ଼ିଶାର ଫାଶୀ ପାଇଥିବା ରଘୁ ଦିବାକର, ଗୁଳିରେ ନିହତ ବାଜି ରଉତ ପରି ଶତାଧିକ ସହୀଦ୍ । ନେତାଜୀଙ୍କ ସୁଭାଷ ବୋଷଙ୍କ ନେତୃତ୍ୱରେ

ଗଠିତ ଜାତୀୟ ମୁକ୍ତି ବାହିନୀ ଆଜାଦ୍‌ହିନ୍ଦ୍ ଫୌଜ, ତା'ର ନେତା ନେତ୍ରୀ ଓ ସହସ୍ର ସହସ୍ର ସହୀଦ୍‌ଙ୍କ କଥା । ସେମାନଙ୍କ ଅଗମ୍ୟ ଦେଶବତ୍ସଳତା ଓ ଦିଲ୍ଲୀ ଚଲୋ - ଜୟ ହିନ୍ଦ୍‌ର ରଣ ଧ୍ୱନି । ଏସବୁ ହିଁ ଆମ ସ୍ୱାଧୀନତା ସଂଗ୍ରାମର ଅଙ୍ଗ ।

୧୯୪୬ ଫେବୃୟାରୀ ୧୯ ରେ (R.I.N. Revolt) ନୌ ବିଦ୍ରୋହ ଓ ଦିଲ୍ଲୀଠାରୁ ଆରମ୍ଭ କରି ବମ୍ବେ ଯାଏଁ ପୁଲିସ ବାହିନୀ ବିଦ୍ରୋହ - ବ୍ରିଟିଶ ସାମ୍ରାଜ୍ୟବାଦର କଫିନ୍‌ରେ ଏହା ଶେଷ କଣ୍ଟା ସଦୃଶ ।

ଏ ସବୁର ସଂକ୍ଷିପ୍ତ ଅବତାରଣା ସ୍ମୃତିଚାରଣ ପ୍ରମାଣ କରେ ଯେ ୧୯୦୫-୧୯୨୦-୧୯୨୨, ୧୯୩୦-୩୨ ଏବଂ ୧୯୪୨ର ସ୍ୱାଧୀନତା ସଂଗ୍ରାମର ଚୂଡ଼ାନ୍ତ ପର୍ଯ୍ୟାୟ ଆଣିବାକୁ ଅତୀତର ଶତଶତ ରକ୍ତକ୍ଷୟୀ, ଲକ୍ଷଲକ୍ଷ ସହୀଦ୍ ରକ୍ତରଂଜିତ ସଂଗ୍ରାମ ଅନୁପ୍ରେରଣା ଦେଇଛି ।

ମହାତ୍ମା ଗାନ୍ଧୀଙ୍କର ଡାକରାରେ ୧୯୨୦-୨୨ରେ ଅସହଯୋଗ ଆନ୍ଦୋଳନ ବେଳେ ୨୨ ହଜାର ରାଜବନ୍ଦୀ ଜେଲ୍ ଦଣ୍ଡ ଭୋଗି ଥିଲେ । ୧୯୩୦-୩୨ରେ ଅସହଯୋଗ ଆନ୍ଦୋଳନ ବେଳେ ୬୦ ହଜାର କଂଗ୍ରେସ କର୍ମୀଙ୍କୁ ଜେଲ୍ ଦଣ୍ଡରେ ଦଣ୍ଡିତ କରାଯାଇଥିଲା । ୨୯ ଜାଗାରେ ଗୁଳି ହୋଇ ୧୦୩ ଜଣ ନିହତ, ୪୭୦ରୁ ଅଧିକ ଆହତ ହୋଇଥିଲେ । ୧୮ ହଜାର ଆନ୍ଦୋଳନକାରୀଙ୍କୁ ଭାରତ ରକ୍ଷା ଆଇନରେ ଅଟକବନ୍ଦି କରାଯାଇଥିଲା । ୬୦ଟି ଜାଗାରେ ସାମରିକ ଆକ୍ରମଣ ଓ ୫୩୮ ଜାଗାରେ ପୋଲିସ ଗୁଳିରେ ୯୪୦ ଜଣ ନିହତ ଓ ୧୬୩୦ ଜଣ ଆହତ ହୋଇଥିଲେ ।

କିନ୍ତୁ ଅତୀତରେ ପୂର୍ବ ବର୍ଣ୍ଣିତ ସଂଗ୍ରାମଗୁଡ଼ିକରେ ଲକ୍ଷଲକ୍ଷ ସହୀଦ୍ ହୋଇଥିଲେ । ସହସ୍ରାଧିକ ଫାଶୀ ଖୁଣ୍ଟରେ ଝୁଲିଥିଲେ । ରାଜବନ୍ଦି ସଂଖ୍ୟାର ହିସାବ ଅସମ୍ଭବ ।

ସ୍ୱାଧୀନତା ସଂଗ୍ରାମର ଏହି ସବୁ ବୈଶିଷ୍ଟ୍ୟକୁ ଓ ସ୍ୱାଧୀନତା ପରବର୍ତ୍ତୀ କାଳର ସମାଜ ବ୍ୟବସ୍ଥା, ଶ୍ରେଣୀ, ଗୋଷ୍ଠୀ, ଅର୍ଥନୀତି, ରାଜନୈତିକ ବିଚିତ୍ରତାକୁ ଅନୁଶୀଳନ ଓ ଅନୁଧ୍ୟାନ କରି ସମାଜବାଦ ଲାଗି ସଂଗ୍ରାମର ରାସ୍ତା ବାହାର କରିବା ଏବଂ ସେଥିପାଇଁ ଯେ କି କଠୋର ସାଧନା, କି ପ୍ରକାର ସଂଗଠନ, କି ରାଜନୈତିକ ତାଲିମ ଆବଶ୍ୟକ ତାହାର ଦାୟିତ୍ୱ ଆଜିର ପୀଢ଼ି ବିପ୍ଳବୀ ତାଲିକାରେ ସ୍ୱେଚ୍ଛାକୃତ ଭାବରେ ନାମ ଲେଖାଇଥିବା ଆମ ସଭିଙ୍କ ଉପରେ ପଡ଼ିଛି । ଏହି ଉପଲବ୍ଧି କ'ଣ ପୂର୍ଣ୍ଣଭାବରେ ଆସିଲାଣି ?

ସତୁରି ବର୍ଷବ୍ୟାପୀ ସାମ୍ରାଜ୍ୟବାଦୀ ଷଡ଼ଯନ୍ତ୍ର ଏବଂ ଗୋର୍ବାଚୋଭ୍ - ୟେଲତସିନ୍ ଗୋଷ୍ଠୀର ବିଶ୍ୱାସଘାତକତା ହେତୁ ସମାଜବାଦର ସାମୟିକ ବିପର୍ଯ୍ୟୟ ଘଟିଛି । ପୃଥିବୀର ଶୋଷଣକାରୀ, ଲୁଣ୍ଠନକାରୀ ମହଲ ଦ୍ୱାରା ୧୯୮୯ ପରେ ମାର୍କ୍ସବାଦ - ଲେନିନ୍‌ବାଦର ବିଲୋପ ଘଟିଲା ଏବଂ ନବ ପୁଂଜିବାଦ ଓ ତା'ରି ଗଣତନ୍ତ୍ର ମାନବଜାତିର ଏକମାତ୍ର ପଥ ବୋଲି ଡିଣ୍ଡିମ ପିଟା ଚାଲିଛି । ଶୀତଳଯୁଦ୍ଧ ସରିଗଲା - ସାମ୍ୟବାଦୀ ଏକଛତ୍ରବାଦର ବିଲୋପ

ହେଲା ବୋଲି ସମଗ୍ର ପ୍ରଚାର ମାଧମକୁ ତଥା ବୁଦ୍ଧିଜୀବୀଙ୍କୁ କ୍ରିତଦାସ ସଦୃଶ ଲଗେଇ ଭାରତର ତଥା ସମଗ୍ର ବିଶ୍ୱ ଜନମାନସକୁ ବିଭ୍ରାନ୍ତ କରାଇ ଚାଲିଛି ।

କିନ୍ତୁ ସମ୍ରାଜ୍ୟବାଦ- ପୁଁଜିବାଦର ପରମ ଶତ୍ରୁ ସୋଭିଏତ୍ ୟୁନିଅନ ଓ ପୂର୍ବ ୟୁରୋପରେ ବିପର୍ଯ୍ୟୟ ଆସିବା ପରେ, ତଥାକଥିତ ଶୀତଳ ଯୁଦ୍ଧ ସମାପ୍ତି ହେଲା ବୋଲି ଘୋଷଣା କରାଗଲା । ଆମେରିକା ଓ ଜି-୭ ପୁଁଜିବାଦୀ ଦେଶଙ୍କ ନୂତନ ସୂକ୍ଷ୍ମାତିସୂକ୍ଷ୍ମ ସାମ୍ରାଜ୍ୟବାଦ ଆଜି ଭାରତ ସମେତ ଏସିଆ, ଆଫ୍ରିକା, ଦକ୍ଷିଣଆମେରିକା ଓ ମଧ୍ୟ ଏସିଆର ସମସ୍ତ ଦେଶର ଅର୍ଥନୀତି, ରାଜନୀତିକୁ ନିୟନ୍ତ୍ରଣ କରିବାକୁ ଉଦ୍ୟତ । ଯେଉଁ ସମାଜବାଦୀ ଦେଶମାନଙ୍କରେ ବେକାରି ନଥିଲା, ମାଫିଆ ଅସାମାଜିକତା, ଧର୍ଷଣ, ହତ୍ୟା, ଲୁଣ୍ଠନ, ଗୃହହୀନତା ନଥିଲା, ସେ ସବୁ ଦେଶରେ ସେ ସବୁର ପ୍ରବଳ ବେଗରେ ପୁନଃ ଅବିର୍ଭାବ ମାଡ଼ିଚାଲିଛି । ଲକ୍ଷଲକ୍ଷ ବେକାର ସୃଷ୍ଟି ହେଲାଣି; କାରଣ ପୁଁଜିବାଦ ଅଣାଯାଉଛି ।

ପୁଁଜିବାଦୀ ଦେଶର ଶିରୋମଣୀ ଆମେରିକା, ବିଲାତ, ଜାପାନ, ଜର୍ମାନୀ, ଫ୍ରାନ୍ସ ପ୍ରଭୃତିରେ ବେକାରି, ଗୃହହୀନତା, ଦୁର୍ନୀତି, ଭ୍ରଷ୍ଟାଚାର, ହତ୍ୟା, ଧର୍ଷଣ ଅଧିକରୁ ଅଧିକ ବଢ଼ିଚାଲିଛି ।

ଅଭିଜ୍ଞତାରୁ ଶିକ୍ଷା ଗ୍ରହଣ କରି କମ୍ୟୁନିଷ୍ଟମାନେ ପ୍ରଗତିଶୀଳ, ବାମପନ୍ଥୀମାନେ ପୁନଶ୍ଚ ଏକତ୍ର ହୋଇଚାଲିଛନ୍ତି । ଚୀନ୍ ଓ ଭିଏତ୍‌ନାମ, କ୍ୟୁବା ଓ ଉତ୍ତରକୋରିଆ ଆଦି କମ୍ୟୁନିଷ୍ଟ ରାଜ୍ୟ ଅର୍ଥନୀତିରେ ଯୁଗ ଚାହିଦା ଅନୁସାରେ ଆବଶ୍ୟକ ପରିବର୍ତ୍ତନ ଆଣି ମାର୍କ୍ସବାଦର ଧ୍ୱଜା ଉଡ଼େଇ ରଖିଛନ୍ତି ।

ଇରାକ୍, ସୋମାଲିଆ, ଆଫଗାନିସ୍ତାନଠାରୁ ଆରମ୍ଭ କରି ପୃଥିବୀର ବିଭିନ୍ନ ଦେଶରେ ସାମ୍ରାଜ୍ୟବାଦର ନେତା ଆମେରିକାର ଷଡ଼ଯନ୍ତ୍ର, ହାକିମ୍‌ଗିରି ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହୋଉଛି ।

ଏସବୁ ପ୍ରମାଣ କରେ ଯେ ମାନବ ଜାତିର ମୁକ୍ତି, ସ୍ୱାଧୀନତା, ଶାନ୍ତି ଓ ପ୍ରଗତିର ଆଦର୍ଶ ଏକ ମାତ୍ର ସାମ୍ୟବାଦ ।

ଭଗବତୀଙ୍କୁ ସ୍ମରଣ କଲାବେଳେ ଆମେ, ଓଡ଼ିଶାରେ ସେହି ସଂଗ୍ରାମକୁ ସମଗ୍ର ବିଶ୍ୱର ତଥା ଆମ ଦେଶର ବୈଶିଷ୍ଟ୍ୟ ଓ ଅଭିଜ୍ଞତାକୁ ଆଶ୍ରା କରି ଆଗକୁ ଅଗ୍ରସର ହେବା ପାଇଁ ସଂକଳ୍ପକୁ ଦୋହରାଇବା ଏବଂ ଅଗ୍ରସର ହେବା; କାରଣ ଆମେ ସମଗ୍ର ମାନବଜାତିର ମୁକ୍ତି, ଶାନ୍ତି ଓ ପ୍ରଗତି ଚାହୁଁ । ଅର୍ଥନୀତି ଅବାନ୍ତର ହୋଇପଡ଼ିଛି ବୋଲି ସେମାନଙ୍କ ବକ୍ତବ୍ୟ । ମାତ୍ର ଏହା ଠିକ୍ କଥା ନୁହେଁ । ବୈଜ୍ଞାନିକ ଓ ପ୍ରଯୁକ୍ତି ବିଦ୍ୟାଗତ ବିକାଶ ଫଳରେ ସମାଜର ଦୁଇ ପରସ୍ପର ବିରୋଧୀ ଓ ସଂଘାତଶୀଳ ଶ୍ରେଣୀ ପୁଞ୍ଜିପତି ଓ ଶ୍ରମିକ ଶ୍ରେଣୀ ମଧ୍ୟରେ ରହିଥିବା ଦ୍ୱନ୍ଦ୍ୱ କମିବା ପରିବର୍ତ୍ତେ ବହୁଗୁଣିତ ହେଉଥିବା ସ୍ଥଳେ ଶ୍ରମିକର ମଜୁରୀ, କ୍ରୟଶକ୍ତି କମିଯାଉଛି, ସ୍ୱୟଂକ୍ରିୟ ଯନ୍ତ୍ର ଅଟୋମେସନ୍ ଫଳରେ ଶ୍ରମିକ କର୍ମଚ୍ୟୁତ କାଙ୍ଗାଳ ହୋଇ ବୁଲୁଛି । ଲେନିନ୍ କହିଥିବା ଅନୁସାରେ ପୁଞ୍ଜିବାଦୀ ଉତ୍ପାଦନ ସମ୍ପର୍କ ଏହିସବୁ ବୈଜ୍ଞାନିକ କୃତିତ୍ୱର ସୁଗମ ପ୍ରୟୋଗ

ଦିଗରେ ପ୍ରତିବନ୍ଧକ ହୋଇଛି । ମହାମତି ଲେନିନ୍ ସ୍ପଷ୍ଟଭାବେ କହିଥିଲେ - "Civilisation, freedom and wealth under capitalism call to mind the rich glutton who is roting alive, but will not let that which is young to live on".

ପୁଞ୍ଜିବାଦୀ ବ୍ୟବସ୍ଥାରେ ନୂତନ ବୈଜ୍ଞାନିକ ଓ ଟେକ୍‌ନୋଲୋଜିକାଲ କୃତିତ୍ୱକୁ ଏହି ସମାଜରେ ବିଦ୍ୟମାନ ଥିବା ଦାରୁଣ ସଂଘାତ ଓ ବୈଷମ୍ୟକୁ ଦୂର କରିବାରେ ବ୍ୟବହାର ନକରି ତାକୁ ଭୟଙ୍କର ଭାବେ ତ୍ୱରାନ୍ୱିତ କରିବାରେ ସାହାଯ୍ୟ କରେ । ଏହିପରି ଘଟୁଛି ଆମେରିକା, ଜର୍ମାନୀ, ଜାପାନ, ବ୍ରିଟେନ୍ ଶିଳ୍ପୋନ୍ନତ ପୁଞ୍ଜିବାଦୀ ଦେଶରେ । ତେଣୁ କାର୍ଲମାର୍କସ କହିଥିଲେ - "Communism is not just an economic fact, but a fact of consciousnes" ଖାଲି ଅର୍ଥନୀତିକୁ ବିଛିନ୍ନ ଭାବେ ଦେଖିଲେ ହେବ ନାହିଁ ସଚେତନ ଭାବେ ଅନ୍ତଃସମ୍ପର୍କଯୁକ୍ତ ବିଚାର ଭାବେ ସବୁ ବୈଚିତ୍ର୍ୟକୁ ଦେଖି ସାମଜିକ ରୂପାନ୍ତର ଘଟାଇବାର ବ୍ୟବସ୍ଥା ହେଉଛି ସମାଜବାଦ ଓ ସାମ୍ୟବାଦ ।

ବସ୍ତୁଗତ ଉନ୍ନତି, ବେଶି ଜିନିଷପତ୍ରର ଉତ୍ପାଦନ, ଜିନିଷପତ୍ରର ବଣ୍ଟନ ବ୍ୟବସ୍ଥାରେ ବିକାଶ ଆଣିପାରେ; ମାତ୍ର ତାହା ସମାଜବାଦ ବା ସମ୍ୟବାଦ ଆଣି ପାରିବ ନାହିଁ, ଏକଥା ବିଶ୍ୱର ସଚେତନ ମାର୍କସବାଦୀମାନେ ହୃଦୟଙ୍ଗମ କରିଛନ୍ତି । କ୍ୟୁବାର ପ୍ରସିଦ୍ଧ ମାର୍କସ୍‌ବାଦୀ ଅର୍ଥନୀତିଜ୍ଞ ଡକ୍ଟର ଟାବ୍‌ଲଦାଙ୍କ ଭାଷାରେ, "Tinkering with material stimuli can improve a system if distribution, but cannot bring about Socialism or Communism".

ତେଣୁ ବିଶ୍ୱର ସମସ୍ତ ସ‌ଂ  ବାଦୀ ଚିନ୍ତନ ଓ ଏହାକୁ ଭଲ ପାଉଥିବା ମଣିଷ ସମାଜ ପୁଞ୍ଜିବାଦର ଅନିଷ୍ଟକର ଚରିତ୍ରକୁ ଭଲଭାବେ ଚିହ୍ନିବା ସଙ୍ଗେସଙ୍ଗେ, ନିଜ ଦେଶର ମୌଳିକ ଅବସ୍ଥା - Concrete codition ରେ ମାର୍କସ୍‌ବାଦୀ ତତ୍ତ୍ୱକୁ ସୃଜନଶୀଳ ପ୍ରୟୋଗ ଧାରାକୁ ଠିକ୍‌ଭାବେ ଚିନ୍ତା କରିବା ଆବଶ୍ୟକ । ଲେନିନ୍ ବାଣୀ ଏଠି ଉଲ୍ଲେଖଯୋଗ୍ୟ । ସେ କହିଲେ, "ମାଙ୍କଡ଼ ଭଳି ମାର୍କସ୍‌ବାଦର ନକଲ କରନାହିଁ । ସୃଜନଶୀଳ ଭାବେ ପ୍ରତ୍ୟେକ ଦେଶର ବାସ୍ତବ ଅବସ୍ଥାରେ ଏହାର ପ୍ରୟୋଗ କର Don't copy Marxism as an ape, apply it creatively in the concrete condition of a particular country." ।

ତେଣୁ ଆଗାମୀ କାଲି ପୁରୁଣା ଧମାଧାନର ପନ୍ଥାରେ ନୁହେଁ, ପ୍ରତ୍ୟେକ ଦେଶର ବାସ୍ତବ ଅବସ୍ଥାରେ ଶୋଷଣ କଷଣରେ ବିଲୁପ୍ତି ପାଇଁ ସମତା, ଶକ୍ତି ଓ ଭ୍ରାତୃତ୍ୱ ଉପରେ ପ୍ରତିଷ୍ଠିତ ସମାଜର ଗଠନ ପାଇଁ ମାର୍କସ୍‌ବାଦ-ଲେନିନ୍‌ବାଦୀ ତତ୍ତ୍ୱର ପ୍ରୟୋଗ ହେବ । ଅତୀତର ଭୁଲଭ୍ରାନ୍ତିରୁ ଶିକ୍ଷା ଗ୍ରହଣ କରି ନିଜ ଦେଶର ପାଣିପାଗର ଚାହିଦା ଅନୁସାରେ ପ୍ରତ୍ୟେକ ମଣିଷ ତା'ର ମୁକ୍ତି-ଆତ୍ମା ଓ ଶ୍ରମର ମୁକ୍ତିର ରାସ୍ତା ବାଛି ନେବ । ଅତୀତର ଅନ୍ଧକାର କଟିଯିବ । ଆଲୋକର ନବୀନ ସକାଳ ଉଜଳି ଆସିବ ।

□□□

# ଅକାଳ ମୃତ୍ୟୁରେ ବି ଚିର ଅମର

**କ୍ଷ**ଣଜନ୍ମା ସତ- ମାତ୍ର ସ୍ୱଳ୍ପ ଜୀବନକାଳ ଭିତରେ ଚିର ପ୍ରଭାବନ୍ତ ଜନନେତାର ସ୍ୱାକ୍ଷର ଛାଡି ଯାଇଥିବା ବ୍ୟକ୍ତି ପୁରୁଷଟି ଭଗବତୀ ଚରଣ ପାଣିଗ୍ରାହୀ । ଓଡ଼ିଶା ଭୂଇଁର ରାଜନୈତିକ, ମାନସିକ, ସାଂସ୍କୃତିକ ଜୀବନରେ ଚାଳିଶ ଦଶକରେ ତାଙ୍କର ଆୟୁଷ ମାତ୍ର ଦଶବର୍ଷ ।

ମାତ୍ର ଚଉତିରିଶ ବର୍ଷ ବୟସରେ ଚିରକାଳ ଲାଗି ଆଖି ବୁଜି ହୋଇଗଲା । ପତିହରା ବିଦୂଷୀ ପତ୍ନୀ ସରସ୍ୱତୀ ତାଙ୍କୁ ଫେରି ପାଇବା ପାଇଁ ଭୂଇଁରେ ଲୋଟି ମୁଣ୍ଡ ପିଟୁଥିଲେ । ମା'ଙ୍କ କରୁଣ କାନ୍ଦଣା ଦେଖି ବାଳୁତ ବୟସର ହାସି, ଖୁସି, ଟୁଟୁ କ'ଣ ଏମିତି ଘଟିଲା, ବୁଝଇବା ଅବସ୍ଥାରେ ନ ଥା'ନ୍ତି । ବୁଝାଅବୁଝା ହୋଇ ସେମାନେ ହିଁ ରଡ଼ି ଛାଡ଼ିଲେ । ସରସ୍ୱତୀ ଅଭିଯୋଗ କରୁଥାନ୍ତି- ତମେ କାହିଁକି ସଂସାର କଲ ? ଏ ତିନୋଟି ଛୁଆ କାହାକୁ ଆଉ ବାପା ଡାକିବେ, କାଖକୋଳ ହେବେ ? କାହିଁକି ଗଞ୍ଜାମକୁ ଗଲ ? ସଙ୍ଗରେ ଧରି ଆଣିଲ ବିସୂଚିକା ମହାମାରୀକୁ । ବଡ଼ ଭାଇ କାଳିନ୍ଦୀଚରଣ, ପୁତୁରା ଝିଆରୀ ନନ୍ଦିନୀ, ନିହାର, ଶିଶିର ଆଉ ଆତ୍ମୀୟସ୍ୱଜନମାନେ ବିକଳ କାନ୍ଦଣାରେ ତଳେ ଲୋଟିଲେ ।

ହତବାକ୍ ହୋଇଗଲେ ଅନ୍ତରଙ୍ଗ ସହପାଠୀ । ଯେଉଁମାନେ ତୁମଠାରେ ଉଜ୍ଜ୍ୱଳ ଭବିଷ୍ୟତର ସନ୍ଧାନ ପାଇଥିଲେ ସେମାନଙ୍କ ମଧ୍ୟରେ ତାଙ୍କୁ ଶୀର୍ଷ ବୋଲି ଧରି ନେଇଥିଲେ । ସେ କାଳରେ ସେମାନେ ଶିକ୍ଷାବିତ୍, ସାହିତ୍ୟିକ, ଆଇନ୍‌ଜୀବୀ, ପ୍ରତିଷ୍ଠିତ ସମାଜସେବୀ; କାନ୍ଦିଥିଲେ ପରମ ବନ୍ଧୁ ସଦାଶିବ ମିଶ୍ର, ଶ୍ୟାମ ସୁନ୍ଦର ମିଶ୍ର, ଦୀନବନ୍ଧୁ ସାହୁ, ହେମ କାନୁନ୍‌ଗୋ, ମାୟାଧର ମାନସିଂହ । ଆଉ ତାଙ୍କୁ ଅଶେଷ ଶ୍ରଦ୍ଧା କରୁଥିବା ଲକ୍ଷ୍ମୀନାରାୟଣ ସାହୁ, ଉଦୟନାଥ ଷଡ଼ଙ୍ଗୀ ପ୍ରଭୃତି ଅନେକେ । ତାଙ୍କୁ ତାଙ୍କ ସାଥୀମାନଙ୍କୁ କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାରେ ଜଡ଼ିତ କରାଯାଇ କଟକ ଜେଲ୍‌ରେ ବିଚାର ବେଳେ ତାଙ୍କର ଓ ତାଙ୍କ କମ୍ୟୁନିଷ୍ଟ ସାଥୀମାନଙ୍କର ପ୍ରତିରକ୍ଷା କରିଥିବା ଆଇନଜୀବୀ ପରବର୍ତ୍ତୀ କାଳରେ ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି ରାଜକିଶୋର ଦାସ ନ୍ୟାୟପତି, ତାଙ୍କର ଅନ୍ୟତମ ପରମ ବନ୍ଧୁ ହରିହର ମହାପାତ୍ର, ଅନ୍ୟତମ ପ୍ରତିରକ୍ଷା ଆଇନଜୀବୀ ଚନ୍ଦ୍ରକାନ୍ତି ଘୋଷ । ଡଗରପଡ଼ାର ଡଗର ଆଉ ଫେରିବେନି ।

ଏକ ତେଜୋମୟ ବିପ୍ଳବୀ ଯୁବକର ପ୍ରାଣରକ୍ଷା କରିବା ଲାଗି ଅକ୍ଳାନ୍ତ ଉଦ୍ୟମ କରିଥିବା ଡାକ୍ତର ବନବିହାରୀ ପଟ୍ଟନାୟକ, ଡାକ୍ତର ସନାତନ ମୁଖାର୍ଜୀ ପ୍ରମୁଖ ତାଙ୍କ ପାଇଁ ଶ୍ରଦ୍ଧାଞ୍ଜଳି ଜଣାଇବା ସଭାରେ ନିଜକୁ ଦୋଷୀ ମନେ କରି ଖେଦ କରୁଥିଲେ ନିଜର କଳ୍ପିତ ବ୍ୟର୍ଥତା ପାଇଁ । କାନ୍ଦୁଥିଲେ ତାଙ୍କର ସାଥୀମାନେ ।

ସତୀଚଉରାରେ ଚିତାଗ୍ନି ପ୍ରଜ୍ୱଳିତ ହେଲାବେଳେ ଅନ୍ତରଙ୍ଗ ସାଥୀ, ସହଯୋଗୀ, ସହକର୍ମୀ ଗଙ୍ଗାଧର ରଥ, ଗଗନ ବିହାରୀ ଜେନା, ରାମଚନ୍ଦ୍ର ରାମ, କୃଷ୍ଣ ପ୍ରସାଦ ଦାସ, କ୍ଷେତ୍ରମୋହନ ଶତପଥୀ ଆଉ ତାଙ୍କର ଅନ୍ୟତମ ପ୍ରିୟ ଅନୁଷ୍ଠାନ ନବଯୁଗ ପ୍ରେସ୍‌ର କର୍ମଚାରୀ ନବନିଧି ଦଳେଇ ଅଶ୍ରୁସିକ୍ତ ନୟନରେ ବିଦାୟ ମାଗୁଣି ମାଗିଲେ ।

୧୯୪୩ ଅକ୍ଟୋବର ୨୩ । ବ୍ରିଟିଶ୍ କାରାଗାର । ବ୍ରହ୍ମପୁର କେନ୍ଦ୍ର କାରାବାସରେ ନୂଆ ଛଣ ଛପରର ଲମ୍ବାଚଉଡ଼ା ଅସ୍ଥାୟୀ ୱାର୍ଡ଼ । ଚାରିଶହରୁ ଅଧିକ ରାଜବନ୍ଦୀ । କେମିତି ଦେଶ ଦୁନିଆର ସମ୍ବାଦ ପାଇବେ ସକାଳୁ ସେଥିପାଇଁ ଉତ୍କଣ୍ଠା । ଖଣ୍ଡେ ଦୁଇଖଣ୍ଡ ସମାଜ, ଆଉ ବ୍ରିଟିଶ୍ ସାମ୍ରାଜ୍ୟବାଦର ପୃଷ୍ଠପୋଷକତା କରୁଥିବା ଷ୍ଟେଟ୍‌ସମ୍ୟାନ୍ ଖଣ୍ଡେ ଦିଖଣ୍ଡ ଆସେ । ତାହା ପୁଣି ସରକାରବିରୋଧୀ ସମ୍ବାଦ ଥିଲେ କତୁରୀରେ କଟାକଟି ହୋଇଥିବ । ସମଗ୍ର ନୂତନ ଜେଲ୍‌ରେ ଯେପରି ବଜ୍ରପାତ । ଭଗବତୀ ପାଣିଗ୍ରାହୀ ଆଉ ନାହାନ୍ତି । ଗଞ୍ଜାମରେ ଦୁର୍ଭିକ୍ଷ ପ୍ରପୀଡ଼ିତ ଆର୍ତ୍ତ ଲୋକଙ୍କୁ ରିଲିଫ୍ ଦେବାକୁ ଆସି ବିସୂଚିକା ବୀଜ ବହନ କରି ତାଙ୍କର ତିରୋଧାନ । ଦୁଃଖଦ ସମ୍ବାଦଟିକୁ ପଢ଼ିବାକୁ ଭିଡ଼, ଠେଲାଠେଲି, ହାଃ ହାଃ ଲୋତକର ଧାରା ସଂଧ୍ୟାରେ ଶୋକସଭା । ଜେଲଖାନାର ରାଜବନ୍ଦୀମାନଙ୍କ ମଧ୍ୟରେ ବହୁମତାଦର୍ଶୀ; ନିରୋଳା ଗାନ୍ଧୀବାଦୀ, ନିରୁତା କଂଗ୍ରେସ, ସୋସାଲିଷ୍ଟ, ଫରୱାର୍ଡ଼ ବ୍ଲକ୍ ଆଉ କମ୍ୟୁନିଷ୍ଟ । ଓଡ଼ିଶାର ପ୍ରସିଦ୍ଧ ନେତାମାନଙ୍କଠାରୁ ସାଧାରଣ କର୍ମୀ ସମବେତ । ପ୍ରାଣକୃଷ୍ଣ ପଢ଼ିଆରୀ ସଭାପତି । ଗୋଟିକ ପରେ ଗୋଟିଏ ଅଶ୍ରୁ ଗଦ୍‌ଗଦ୍ କଣ୍ଠରେ ଶ୍ରଦ୍ଧା ନିବେଦନ କରୁଥାନ୍ତି । ମଝିରେ ନିଜକୁ ସମ୍ଭାଳି ନେଇ ଉଠିପଡ଼ିଲେ ତାଙ୍କର ଅନ୍ତରଙ୍ଗ ସାଥୀ, ସ୍ୱାଧୀନତା ସଂଗ୍ରାମରେ ଅଗ୍ରଜ ନବକୃଷ୍ଣ ଚୌଧୁରୀ । ଛୋଟ ପିଲାଙ୍କ ପରି କଇଁକଇଁ କାନ୍ଦି ଉଠିଲେ "ମୁଁ ବଞ୍ଚିଛି, ଭଗବତୀ ଚାଲିଗଲା ।"- ଅଥଚ ସେତେବେଳକୁ ଭଗବତୀଙ୍କ ରାଜନୈତିକ ମତାଦର୍ଶ ସଙ୍ଗେ ତାଙ୍କର କିଛିଟା ଅପଡ଼ ।

ତେବେ କ'ଣ ଥିଲା ଏହି ବ୍ୟକ୍ତିଟିର ବୈଶିଷ୍ଟ୍ୟ, କାହିଁକି ଓଡ଼ିଶାର ରାଜନୈତିକ ଆକାଶରେ ଏପରି ଏକ ଶୂନ୍ୟତାର ଅନୁଭବ ଆସିଲା ।

କେହି ଅଲୌକିକ ନୁହନ୍ତି, ଗଡ଼ମ୍ୟାନ୍ ଅବା ମେସିହା ନୁହନ୍ତି, ସେ ମଧ୍ୟ ନ ଥିଲେ । ମାନବ ସମାଜ ଜୀବନର କାଳ ଅନୁସାରେ ଏହି ସମାଜରୁ ଜନ୍ମ, ସେହି ସମାଜର ପରିବେଶ, ଚାଲିଚଳଣି, ଚିନ୍ତାଭାବନା, ଦୁଃଖ ସୁଖ ଭିତରେ ଥାଇ ଯିଏ ମାନବ ସମାଜକୁ, ସେହି ସମାଜର

ମଣିଷଙ୍କ ଜୀବନକୁ ଊର୍ଦ୍ଧ୍ୱକୁ ନେବାକୁ ଜୀବନର ବ୍ରତ କରେ; ଯିଏ ମାନବିକତା, ସ୍ୱାଧୀନତା, ମୁକ୍ତି, ଗଣତନ୍ତ୍ର, ସମସମାଜ ପ୍ରତିଷ୍ଠା ଓ ସମସ୍ତ ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ଓ ପ୍ରସାରର ବାଟ ଧରେ ଏବଂ ସେହି ବାଟରେ ଅନ୍ୟମାନଙ୍କୁ ଆକର୍ଷଣ କରିଥାଏ; ସଂଗ୍ରାମ କରେ, ନିର୍ଦ୍ଦିଷ୍ଟକାଳ ଅନୁସାରେ ସେ ସମାଜରେ ଅଗ୍ରଣୀ, ଅଗ୍ରଦୂତର ମାନ୍ୟତା ପାଏ । ନିଶ୍ଚିତ ଭଗବତୀ ଏପରି କେତେକ ଗୁଣର ଅଧିକାରୀ ଥିଲେ । ସାମ୍ରାଜ୍ୟବାଦର କଳା କିଟିକିଟିଆ ଯନ୍ତାରୁ ଭାରତର ମୁକ୍ତି, ସ୍ୱାଧୀନତା ପାଇଁ ସହସ୍ର ସହସ୍ର ନୁହେଁ ଲକ୍ଷାଧିକ ଗୁଳିରେ ପ୍ରାଣ ଦେଇଛନ୍ତି, ଘୋର ନିର୍ଯ୍ୟାତନା ସହିଛନ୍ତି । ସେହି ସଂଗ୍ରାମରେ ଜଣେ ସାଧାରଣ ସୈନିକ ଭଗବତୀ ଆଉ ଏକ ମତାଦର୍ଶର ପ୍ରଧାନ ପ୍ରବକ୍ତା ହେଲେ ଓଡ଼ିଶାରେ । ସ୍ୱାଧୀନତା ସାଙ୍ଗକୁ ସମାଜବାଦ, ଶୋଷଣବିହୀନ, ଶ୍ରେଣୀବିହୀନ ମାନବ ସମାଜ । ବ୍ରିଟିଶ ସାମ୍ରାଜ୍ୟବାଦ ଯିବ, ସମାନ୍ତବାଦୀ ରାଜାରାଜୁଡ଼ା ଜମିଦାର, ଜାଗିରଦାର ଯିବେ । ପୁଞ୍ଜିପତି ଶ୍ରେଣୀ ରହିବେ ନାହିଁ । ସେ କେବଳ ଏପରି ଆଦର୍ଶର ବାହକ ଏକକ ନ ଥିଲେ । ତାଙ୍କଠାରୁ ବର୍ଷୀୟାନ ଓ କନୀୟାନ୍ ବନ୍ଧୁ ସ୍ୱାଧୀନତା ସଂଗ୍ରାମୀ ପ୍ରୌଢ଼, ଯୁବକ ଏପରି ଆଦର୍ଶର ଅନୁଗାମୀ ଥିଲେ । ସେମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ଅଥଚ ସେମାନଙ୍କ ମଧ୍ୟରେ ସେ ଶୀର୍ଷ ବିବେଚିତ ହେଲେ । ଅଭିଜ୍ଞ, ଅଗ୍ରଜ, ବର୍ଷୀୟାନ ମଧ୍ୟ ତାଙ୍କୁ ଶୀର୍ଷ ଆସନ ଦେଲେ । ଅଳ୍ପ ବୟସରେ ଏହି ଉଜ୍ଜ୍ୱଳ ତାରକାଟିକୁ ସେମାନେ ସନ୍ଧାନ କରିପାରିଥିଲେ ।

ତାଙ୍କର ସାହିତ୍ୟିକ ପ୍ରତିଭାର ପରିଚୟ ପାଇ ତତ୍କାଳୀନ ପ୍ରାଦେଶିକ କଂଗ୍ରେସର ଉଚ୍ଚ ପଦାଧିକାରୀ ଡକ୍ଟର ପଟାଭି ସୀତାରାମାୟଙ୍କ ଇଂରେଜୀରେ ପ୍ରକାଶିତ କଂଗ୍ରେସ ଇତିହାସ ଓଡ଼ିଶାରେ ଅନୁବାଦ କରିବାକୁ ଦାୟିତ୍ୱ ନେଇଥିଲେ । ଅନୁବାଦର ଶୈଳୀ ଓ ସମୟାନୁବର୍ତ୍ତିତାର ପ୍ରଶଂସା କରାଗଲେ ବି ତାହାର ପ୍ରକାଶନ ପରବର୍ତ୍ତୀ କାଳରେ ସମ୍ଭବପର ହୋଇ ନ ଥିଲା ।

ଉତ୍କଳମଣି ଗୋପବନ୍ଧୁଙ୍କ ବନବିଦ୍ୟାଳୟରେ ସ୍ୱାଧୀନତା ସଂଗ୍ରାମ ପ୍ରତି ଆକୃଷ୍ଟ ହୋଇ ତାଙ୍କରି ପ୍ରେରଣାରେ ଉଦ୍ଦୀପ୍ତ ଭଗବତୀ ଉଚ୍ଚଶିକ୍ଷା ଲାଗି ପାଟନାରେ ସହପାଠୀମାନଙ୍କ ଭିତରେ ନିଜର ଅନନ୍ୟତା ପ୍ରଦର୍ଶନ କରିଥିଲେ । ଗୋପବନ୍ଧୁ, ଗାନ୍ଧୀ, ନେହେରୁ, ଆଜାଦ, ଭଗତସିଂହ, ଆଉ ସ୍ୱାଧୀନତା ସଂଗ୍ରାମରେ ଯୋଦ୍ଧାମାନଙ୍କ ଜୀବନ, ଜୀବନରେ ଅନୁଶୀଳନ ସାଙ୍ଗକୁ ସେ ସ୍ୱଅଧ୍ୟୟନ କାଳରେ ପଥିକର ମହାନ୍ ଦାର୍ଶନିକ, ଚିନ୍ତାନାୟକ, ବିପ୍ଳବୀଙ୍କ ଜୀବନ ଅନୁଶୀଳନ କରିବା ବେଳେ ମାର୍କ୍ସ, ଏଙ୍ଗେଲ୍‌ସ, ଲେନିନ୍‌ଙ୍କ ଦାର୍ଶନିକ, ସାମାଜିକ ଓ ଅର୍ଥନୈତିକ ଚିନ୍ତା ଓ ଦୃଷ୍ଟିଭଙ୍ଗୀ ପ୍ରତି ମଧ୍ୟ ଆକୃଷ୍ଟ ହେଲେ । ଏହା ହିଁ ତାଙ୍କୁ ନେଇ ବୈଜ୍ଞାନିକ ସାମ୍ୟବାଦର ଆଦର୍ଶରେ ପହଞ୍ଚାଇ ଦେଲା ବୋଲି ସେ କହୁଥିଲେ । ପୃଥିବୀରେ ସାମ୍ରାଜ୍ୟବାଦର କବଳରୁ ଅନ୍ୟ ଦେଶମାନଙ୍କର ମୁକ୍ତି ଓ ସ୍ୱାଧୀନତା ଲାଗି ବିପ୍ଳବର ଇତିହାସ ଅଧ୍ୟୟନ କାଳରେ ଅକ୍ଟୋବର ମହାବିପ୍ଳବରୁ ଜାତ ସୋଭିଏତ୍ ୟୁନିଅନ୍‌ର ଶୋଷଣବିହୀନ, ଶ୍ରେଣୀ ବିହୀନ ସମାଜ ପ୍ରତିଷ୍ଠାର

ଉଦ୍‌ଘୋଷ ପର୍ବରେ ବିମୋହିତ ଭଗବତୀ ନିଜର ଭବିଷ୍ୟତ ପନ୍ଥା ବାଛିନେଲେ । ସାହିତ୍ୟିକ ପ୍ରତିଭାର ଉନ୍ମେଷ ସେହି ଛାତ୍ର ଜୀବନରେ ହୋଇଥିଲା ତାଙ୍କର ପ୍ରଗତିଶୀଳ ସୃଷ୍ଟି "ଗଙ୍ଗା ତୀରରେ" ଗଳ୍ପରେ ।

ଉଚ୍ଚ ପଦପଦବୀ ନୁହଁ, ଅଧ୍ୟାପକ ବା ଆଇନଜୀବୀ ହେବାର ବାସନା ନୁହଁ । ବିପ୍ଳବୀ ରାଜନୈତିକ ଜୀବନ ନେବାର ସଂକଳ୍ପ ଘେନି ସେ ଆସନ୍ତି ଓଡ଼ିଶାକୁ ।

ପ୍ରଥମେ କଟକରେ ବିଶିଷ୍ଟ ସାହିତ୍ୟିକ କାଳିନ୍ଦୀ ଚରଣ ପାଣିଗ୍ରାହୀ, ତାଙ୍କ ଭାଇଙ୍କ କାଠଗଡ଼ା ସାହି, ଶରତ ମୁଖାର୍ଜୀଙ୍କ ଭଡ଼ାଘରେ ରହି ଭଗବତୀ ସାଇକେଲ ଧରି ଚରିତ୍ର ପାତନ୍ତି ସେ କାଳର ତୁଙ୍ଗ ନେତାମାନଙ୍କ ସହିତ, କଲେଜର ସ୍ୱାଧୀନପ୍ରେମୀ, ଉଦ୍ଦାମ ଯୁବକମାନଙ୍କ ସହିତ । ଭଡ଼ାଘର ବଦଳେ । କେତେବେଳେ ଓଡ଼ିଆବଜାର ବା ସୂତାହାଟ । ସେଇଠୁ ସାଇକେଲ ଖଣ୍ଡି ଧରି ରାଜନୈତିକ ଶିକ୍ଷାନବୀଶ ଘୂରି ବୁଲନ୍ତି । କେତେବେଳେ ସନ୍‌ସାଇନ ପଡ଼ିଆ ପଛପଟ ଭଡ଼ାଘର ପ୍ରାଦେଶିକ କଂଗ୍ରେସ କାର୍ଯ୍ୟାଳୟକୁ ଓ ପରେ ଗଙ୍ଗାମନ୍ଦିର ଜାନକୀ ନାଥ ସ୍ୱରାଜ ଭବନକୁ । ସବୁଠୁଁ ଅଧିକ ଦୌଡ଼ ହୁଏ କାଠଯୋଡ଼ି ତଟ ନବକୃଷ୍ଣ ଚୌଧୁରୀ, ମାଳତୀଦେବୀଙ୍କ ଘରକୁ । ଆଗରୁ ଗଢ଼ାହୋଇଥିବା ସାମ୍ୟବାଦୀ କର୍ମୀସଂଘକକୁ ପୁନରୁଦ୍ଧାର କରି କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠନର ପରାମର୍ଶ ଚାଲେ ସେଇଠି ।

ଭଗବତୀ ଏତେବେଳକୁ ତରୁଣ ଯୁବକମାନଙ୍କୁ ଘେନି ଏପରି ଏକ ମାର୍କ୍ସବାଦୀ ଦଳ ଗଠନର ଅଙ୍କୁର ରୋପଣରେ ଅଗ୍ରଣୀ ଥାଆନ୍ତି । ୧୯୨୫ରେ କାନପୁରଠାରେ ଗଠିତ କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ କରାଯାଇଥାଏ । କାନପୁର, ମିରଟ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲାରେ କମ୍ୟୁନିଷ୍ଟମାନେ ବେଶି କାରାବାସ ଭୋଗିଥାନ୍ତି । ଗୋପନରେ ସାରା ଭାରତରେ ସ୍ୱାଧୀନତାଲିପ୍‌ସୁ ସାମ୍ୟବାଦୀ ଚିନ୍ତାଧାରାରେ ଅନୁପ୍ରାଣିତ ଯୁବକମାନେ ଗୋପନ କମ୍ୟୁନିଷ୍ଟ ପାର୍ଟି ରାଜ୍ୟ ରାଜ୍ୟ ଧରି ଗଢୁଥାଆନ୍ତି । ୧୯୩୦-୩୪ ଆଇନ ଅମାନ୍ୟ ଆନ୍ଦୋଳନ ପରେ ସ୍ୱାଧୀନତା ସଂଗ୍ରାମରେ ଭଟ୍ଟା ପଡ଼ିଯାଇଥାଏ । ଗାନ୍ଧିଜୀ ଡାକରା ଦେଇଥାନ୍ତି "କଂଗ୍ରେସ କର୍ମୀମାନେ ଗାଁ'କୁ ଯାଅ, ଆଗାମୀ ସଂଗ୍ରାମ ଲାଗି ପ୍ରସ୍ତୁତି ପାଇଁ ଗ୍ରାମ ସଂଗଠନ, ରଚନାତ୍ମକ କାମ କର । କଂଗ୍ରେସ ଭିତରେ ଯେଉଁମାନେ ସମାଜବାଦୀ ଭାବଧାରା ପ୍ରତି ଆକୃଷ୍ଟ ହୋଇଥିଲେ, ଜମିଦାର ରାଜାଙ୍କ ଉତ୍ପୀଡ଼ନରୁ ଚାଷୀଙ୍କୁ ଓ ପୁଞ୍ଜିପତିଙ୍କ ଶୋଷଣରୁ ଶ୍ରମିକମାନଙ୍କୁ ରକ୍ଷା କରିବାକୁ ଚାହୁଁଥିଲେ, ସେମାନେ ଅନ୍ୟବାଟ ଧରିଲେ । କଂଗ୍ରେସ ଭିତରେ ସର୍ବଭାରତୀୟ କ୍ଷେତ୍ରରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠିତ ହେଲା । ଏହା ବେଆଇନ ନୁହଁ, ପ୍ରକାଶ୍ୟ ପାର୍ଟି । ଓଡ଼ିଶାରେ ତାହାହିଁ କମ୍ୟୁନିଷ୍ଟ, ସୋସାଲିଷ୍ଟ ମନୋଭାବାପନ୍ନ ଯୁବକ ସ୍ୱାଧୀନତା ସଂଗ୍ରାମ ସ୍ୱାଧୀନତା ପ୍ରେମୀମାନଙ୍କର ପ୍ରକାଶ୍ୟ ପାର୍ଟି ହୁଏ ।

ସେହି ଯୁବକମାନଙ୍କର ଏଥିଲାଗି ନବକୃଷ୍ଣ ଚୌଧୁରୀଙ୍କ ଘରେ ମିଳନ । ବିଧିବଦ୍ଧ

ଆଲୋଚନା । ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ପ୍ରାଣନାଥ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ରବିଘୋଷ, ଅନନ୍ତ ପଟ୍ଟନାୟକ, ମନମୋହନ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଗୌରାଙ୍ଗ ଚରଣ ଦାସ, ବିଶ୍ୱନାଥ ପଣ୍ଡାଏତ, ବୈଦ୍ୟନାଥ ରଥ, ଗୌରଚନ୍ଦ୍ର ଦାସ, ଗୋକୁଳମୋହନ ରାୟ ଚୂଡ଼ାମଣି, ଗତିକୃଷ୍ଣ ସ୍ୱାଇଁ ପ୍ରମୁଖ ଉପସ୍ଥିତ । ଏମାନେ କେହି କାହାକୁ ଊଣା ନୁହଁନ୍ତି, ସମସ୍ତେ ତହୁଁ ତହୁଁ ବଡ଼ । ସଭାର ସଭାପତି ଥାଆନ୍ତି ପ୍ରାଣନାଥ ପଟ୍ଟନାୟକ । ମାତ୍ର ନବକୃଷ୍ଣ ଚୌଧୁରୀଙ୍କ ପ୍ରସ୍ତାବ ଯେ ଭଗବତୀ ହିଁ ହେବ ଏ ପାର୍ଟିର ସମ୍ପାଦକ । ସେ ହିଁ ଅନୁବାଦ କରିବ ମାର୍କ୍ସ ଏଙ୍ଗେଲ୍‌ସଙ୍କ ରଚିତ ଯୁଗାନ୍ତକାରୀ ପୁସ୍ତକ କମ୍ୟୁନିଷ୍ଟ ଇସ୍ତାହାର । ଏହାହିଁ ହେଲା ପ୍ରଥମ ଓଡ଼ିଆ ମାର୍କ୍ସବାଦୀଦର୍ଶନ ଓ ସଂଗ୍ରାମର ପୁସ୍ତକ ।

ଭଗବତୀ ହେଲେ କଂଗ୍ରେସ୍ ସୋସାଲିଷ୍ଟ ପାର୍ଟିର ପ୍ରଥମ ଓ ଶେଷ ସମ୍ପାଦକ । ୧୯୩୯ରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ତା'ର ଆନୁଷ୍ଠାନିକ ସତ୍ତା ହରାଇଲା । କେନ୍ଦ୍ର ସମ୍ପାଦକ ଜୟପ୍ରକାଶ ନାରାୟଣ କଟକ ରେଭେନ୍‌ସା କଲେଜ ପଶ୍ଚିମ ଛାତ୍ରାବାସରେ ଶତାଧିକ ସଭ୍ୟଙ୍କ ସଭାରେ ଯୁଦ୍ଧକାଳୀନ ଜରୁରୀ (ଦ୍ୱିତୀୟ ବିଶ୍ୱଯୁଦ୍ଧ) ଅବସ୍ଥାରେ କଂଗ୍ରେସ କଲାପରି ଏହି ପାର୍ଟିର ଡିକ୍ଟେଟରରହିବେ କହି ନବକୃଷ୍ଣ ଚୌଧୁରୀଙ୍କୁ ଡିକ୍ଟେଟର ମନୋନୀତ କଲେ ବୋଲି ଘୋଷଣା କରିଦେଲେ । ମାତ୍ର କାରଣ ଅନ୍ୟପ୍ରକାର । କଂଗ୍ରେସ ସୋସାଲିଷ୍ଟ ପାର୍ଟି କମ୍ୟୁନିଷ୍ଟ ଦଖଲରେ ଆସିଯାଇଛି ବୋଲି ପ୍ରତ୍ୟେକ ରାଜ୍ୟର ସଭ୍ୟତାଲିକା ଦେଇ ମନୁମାଶାନୀ (ଯିଏ ଏହି ପାର୍ଟି ଛାଡ଼ି ବାଟା ସଦନର ମୁଖ୍ୟପାତ୍ର ହେଲେ) ସିଏସ୍‌ପି ବିରୁଦ୍ଧରେ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ନାମକ ପୁସ୍ତକ ପ୍ରକାଶ କଲେ ।

ସବୁପ୍ରକାର ସମାଜବାଦୀ ଚିନ୍ତାଧାରାରେ ଦୀକ୍ଷିତ, ଏହି ପାର୍ଟି ନେତୃତ୍ୱରେ ଯେ, ବିରାଟ ଚାଷୀ ଆନ୍ଦୋଳନ ଗଢ଼ିଉଠିଥିଲା; ଗଡ଼ଜାତ ପ୍ରଜାମୁକ୍ତି ଆନ୍ଦୋଳନ ତେଜି ଉଠିଥିଲା, ସେହି ଗୌରବମୟ ଐତିହ୍ୟରେ ବିଘ୍ନ ଘଟାଇଲା ।

ଅଥଚ କଂଗ୍ରେସ ଭିତରେ ସମାଜବାଦୀ ଚିନ୍ତାଧାରାର ପ୍ରଧାନ ପ୍ରବର୍ତ୍ତକ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ବିଖ୍ୟାତ କାଶୀ ବିଦ୍ୟାପୀଠରେ ତାଙ୍କର ସ୍ନେହ ଓ ତତ୍ତ୍ୱାବଧାନରେ ରାଜନୈତିକ, ଦାର୍ଶନିକ ଶିକ୍ଷାପ୍ରାପ୍ତ ଓଡ଼ିଶାର ତିନି ଜଣ ସ୍ୱାଧୀନତା ସଂଗ୍ରାମୀ ପ୍ରାଣନାଥ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ଶରତ ପଟ୍ଟନାୟକ ହେଲେ କମ୍ୟୁନିଷ୍ଟ । ସେହି ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ସହିତ ଭଗବତୀଙ୍କର ଘନିଷ୍ଠ ସମ୍ପର୍କ ଗଢ଼ିଉଠିଥିଲା । ପୁରୀ ରାମଚଣ୍ଡୀ ସାହିରେ ଭଗବତୀଙ୍କ ଘରେ ଶ୍ୱାସରୋଗୀ ନରେନ୍ଦ୍ରଦେବଙ୍କ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ଦୁଇଥର ପୁରୀ ରହଣି ବେଳେ ହୁଏ ରାଜନୈତିକ ଶିକ୍ଷା ଶିବିର । ବିଶେଷତଃ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଯେଉଁମାନେ କମ୍ୟୁନିଷ୍ଟ ହେଲେ ସେମାନେ ହିଁ ଭଗବତୀଙ୍କ ସମେତ ସେଠାରେ ଉପସ୍ଥିତ ରହି ଆଲୋଚନାରେ ଯୋଗ ଦେଇ ଭାରତବର୍ଷର ଆଗାମୀଯୁଗର ନୂତନ ସ୍ୱପ୍ନ ଦେଖୁଥିଲେ, ମଞ୍ଚ ରଚନା କରୁଥିଲେ ।

ସ୍ୱାଧୀନତା ସଂଗ୍ରାମକୁ ଜାତୀୟତାବାଦୀ ସାହିତ୍ୟ-ଗୀତ, କବିତା, ଉପନ୍ୟାସ, ସାମ୍ବାଦିକତାର ଅବଦାନ ଅସୀମ । ସେହି ପରମ୍ପରାକୁ ଘେନି ସ୍ୱାଧୀନତା ସାଙ୍ଗକୁ ସମାଜବାଦୀ ସଂଗ୍ରାମ ଚାଷୀ ଶ୍ରମିକ ଆନ୍ଦୋଳନ, ମେହନତୀ ମଣିଷର ଜୀବନକୁ ମହତ୍ତର କରିବା ଲାଗି ସାହିତ୍ୟ କ୍ଷେତ୍ରରେ ନବ ଆଲୋଡ଼ନ ଆବଶ୍ୟକ । ପ୍ରଗତିଶୀଳ ଗଣତନ୍ତ୍ରବାଦୀ, ଯୁକ୍ତିବାଦୀ ସାହିତ୍ୟ; ଯାହା କୁସଂସ୍କାର, ଧର୍ମୀୟ ମତାନ୍ଧତା, ଆଞ୍ଚଳିକତା ଦୂର କରି ମାନବପ୍ରୀତି, ମାନବିକ ମୂଲ୍ୟବୋଧ, ଗଣତାନ୍ତ୍ରିକତା ଆଣିଦେବ ସେପରି ସାହିତ୍ୟର ସୃଷ୍ଟି ପାଇଁ ଏମାନଙ୍କ ଆବେଗ । ସେଇଠୁ ଜନ୍ମନିଏ ନବଯୁଗ ସାହିତ୍ୟ ସଂସଦ । ରାମଚନ୍ଦ୍ର ଭବନରେ ଏମାନେ ହିଁ ସମବେତ କରାନ୍ତି ସେକାଳର ପ୍ରଖ୍ୟାତ ଦାର୍ଶନିକ, ରାଜନୀତିଜ୍ଞ, ସାହିତ୍ୟିକ କବିମାନଙ୍କୁ । ସାତଦିନବ୍ୟାପୀ ଆଲୋଚନାଚକ୍ର ଚାଲେ । ତରୁଣ କବି ଅନନ୍ତ ପଟ୍ଟନାୟକଙ୍କ

"ନବୀନ ଯୁଗର ତରୁଣ ଜାଗରେ
ଜାଗବନ୍ଧନ ହରା,
ବକ୍ଷ ଶୋଣିତେ ଲକ୍ଷ ଜୀବନେ
ଖେଳାଅ ଆଲୋକଧାରା ।
ଛିନ୍ନ କରରେ ବନ୍ଧନ ରାଜି
କ୍ରନ୍ଦନ ହେଉ ଶେଷ
ଲୁପ୍ତ ହେଉରେ ଜାତି ଉପଜାତି
ଖଣ୍ଡିତ ଶତ ଦେଶ ।"

ଗାନର ଉଦ୍ଦୀପନାମୟୀ ଝଙ୍କାର ନିନାଦିତ ହୁଏ ମାଳତୀ ଚୌଧୁରୀଙ୍କ ସୁଲଳିତ କଣ୍ଠରେ । ସେହି ସମ୍ମିଳନୀର ଉଦରରୁ ସମ୍ଭୂତ ଓଡ଼ିଆ ସାହିତ୍ୟ ଜଗତରେ ଯୁଗାନ୍ତର ଆଣିଥିବା 'ଆଧୁନିକ' ପତ୍ରିକା । କିଏ ହେବ ତା'ର ସମ୍ପାଦକ ? ଆଉ କିଏ ? ଭଗବତୀ ଚରଣ ପାଣିଗ୍ରାହୀ । ମାତ୍ର ଛଟି ସଂଖ୍ୟାର ଜୀବନ । ତାହା ହିଁ ଦେଇଗଲା ସାହିତ୍ୟ ଜଗତକୁ ନବଦିଗନ୍ତ । ଓଡ଼ିଆ ସାହିତ୍ୟରେ ପ୍ରଗତିଶୀଳ, ସମାଜବାଦୀ, ଗଣତାନ୍ତ୍ରିକ ଚିନ୍ତାଧାରା । ଏହି ଚିନ୍ତାଧାରା ହିଁ ପରବର୍ତ୍ତୀ କାଳରେ ଓଡ଼ିଶାର ସାହିତ୍ୟ ଜଗତରେ ନୂତନ ବଂଶଧରର ଧାଡ଼ି ଧାଡ଼ି ପ୍ରଖ୍ୟାତ କବି, ସାହିତ୍ୟିକ, ଔପନ୍ୟାସିକ, ନାଟ୍ୟକାର, ଚିତ୍ରଶିଳ୍ପୀ ସୃଷ୍ଟି କଲା । ଏହି ସାହିତ୍ୟ ହେଲା ଗଣମୁଖୀ, ସାମ୍ରାଜ୍ୟବାଦ ବରୋଧୀ, ଶୋଷଣ ନିର୍ଯ୍ୟାତନାର ବିରୋଧୀ, ଅପସଂସ୍କୃତି ବିରୋଧୀ । ଭଗବତୀ ଓ ତାଙ୍କ ସାଥୀମାନେ ହିଁ ଓଡ଼ିଶାର ସାହିତ୍ୟ ଜଗତରେ ଯୁଗାନ୍ତକାରୀ ଧାରାର ପ୍ରବର୍ତ୍ତକ ।

ଛାତ୍ରମାନଙ୍କୁ ସଂଗଠିତ କରାଯିବ । ସ୍ୱାଧୀନତା ପାଇଁ ସଂଗ୍ରାମ କରିବେ ସେମାନେ ସଂଗଠିତ ଭାବରେ ସମାଜବାଦର ସଂଗ୍ରାମରେ ସୈନିକ ହେବେ । ଛାତ୍ରସଂଘର ଶାଖା ସମ୍ମିଳନୀ ସେ ଯୁଗର ଏକ ଐତିହାସିକ ଘଟଣା । ଛାତ୍ରସଂଘ ନେତା ଓ ସାଥୀମାନଙ୍କର ସେ ଥିଲେ ପ୍ରେରଣାଦାୟକ ଓ ଉପଦେଷ୍ଟା ପରାମର୍ଶଦାତା ।

ଜମିଦାର, ମହାଜନ ଅତ୍ୟାଚାରୀ ମହନ୍ତମାନଙ୍କ ଜମିଦାରୀରେ ସେକାଳର ଚାଷୀ ଆନ୍ଦୋଳନର, ସାମ୍ରାଜ୍ୟବାଦ ବିରୋଧୀ ଛାତ୍ର ଆନ୍ଦୋଳନର, ଉଙ୍କିମାରି ଆସୁଥିବା ଓଡିଶାର ଛବିଶ ଗଡ଼ଜାତ ପ୍ରଜାଙ୍କର ହୁଙ୍କାପିଟା, ବୀଭତ୍ସ ଆଇନ ବିରୁଦ୍ଧରେ ବିଦ୍ରୋହାଗ୍ନି ।

ଏହାକୁ ଭାଷାରେ ରୂପ ହେବାକୁ ହେବ । ପତ୍ରିକା ଆବଶ୍ୟକ । କଂଗ୍ରେସ ସୋସାଲିଷ୍ଟ ପାର୍ଟିର ମୁଖପତ୍ର ହେଲା 'କୃଷକ' । ସମ୍ପାଦକ ମଣ୍ଡଳୀର କିଏ ହେବ ସମ୍ପାଦକ । ସମ୍ପାଦକମଣ୍ଡଳୀରେ ଅଛନ୍ତି ମାଳତୀ ଚୌଧୁରୀ, ସାରଙ୍ଗଧର ଦାସ, ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ପରିଚାଳନା ସଂପାଦକ ଗୁରୁଚରଣ ପଟ୍ଟନାୟକ । ସମସ୍ତଙ୍କ ଶୀର୍ଷରେ ରହିବେ ଭଗବତୀ । ନୀଳଗିରି, ଢେଙ୍କାନାଳ, ରଣପୁର, ତାଳଚେର, ଆଠଗଡ଼ ଆଉ ରାଜ୍ୟରେ ପ୍ରବଳ ପ୍ରଜା ଆନ୍ଦୋଳନ । 'କୃଷକ' ହିଁ ତାଙ୍କର ସଂଗ୍ରାମରେ ଅମୋଘ ଅସ୍ତ୍ର । ସେ ହେବେ ଢେଙ୍କାନାଳରେ ଆଇନ୍ ଅମାନ୍ୟକାରୀମାନଙ୍କ ମଧ୍ୟରୁ ଜଣେ । ଅନ୍ୟ ଦୁଇଜଣ ନବକୃଷ୍ଣ ଚୌଧୁରୀ, ଗୌରାଙ୍ଗ ଚରଣ ଦାସ ।

ଗଙ୍ଗା ମନ୍ଦିର ଓଡ଼ିଆ ବଜାର ଦୋସନ୍ଧିରେ 'ବେକାର ସଂଘ' । ସୁବାସ ବୋଷଙ୍କ ଭାଇ ସତୀଶ ଚନ୍ଦ୍ର ବୋଷ ଆଇନଜୀବୀଙ୍କ ଘରଭଡ଼ା ନିଆଯାଏ, ଏଇଠି ହୁଏ ଗଡ଼ଜାତ ପ୍ରଜାମୁକ୍ତି ଆନ୍ଦୋଳନରତଙ୍କ ନେତାମାନଙ୍କ ବୈଠକ । ଏଇଠି ହୁଏ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ବୈଠକ, ଛାତ୍ରସଂଘର ନେତାମାନଙ୍କ ବୈଠକ । ନିକଟରେ ଜାନକୀନାଥ ସ୍ୱରାଜ ଭବନ, କଂଗ୍ରେସ କାର୍ଯ୍ୟାଳୟ । ବିପ୍ଳବୀମାନଙ୍କର ଏହି ଆଡ୍‌ଡ଼ାକୁ ରାଜନୈତିକ ପରିହାସ ଛଳରେ ମହତାବ୍ ବାବୁ ବେକାରସଂଘ ନାମ ଦେଇଥାନ୍ତି । ଏ ଆଡ୍‌ଡ଼ାଟି ଘେନି ସମସ୍ତଙ୍କ ଭିତରେ ବେଶ୍ ଥଟ୍ଟାମଜା ହୁଏ । ପ୍ରକୃତରେ ଏଠି ବେକାରମାନଙ୍କ ଆଡ୍‌ଡ଼ା ସେମାନେ ସ୍ୱେଚ୍ଛାକୃତ ବେକାର । ଭଗବତୀଙ୍କ ସମେତ ସବୁ ପେଶାଦାରୀ ବିପ୍ଳବୀ ଯୁବକ ସ୍ୱେଚ୍ଛାକୃତ ବେକାରତ୍ୱ ବରି ନେଇଥାନ୍ତି, ଜନ ସଂଗ୍ରାମଗୁଡ଼ିକର ସଙ୍ଗଠକ ଭାବରେ ।

ଢେଙ୍କାନାଳରେ ନୀଳଗିରି, ରଣପୁର, ଆଠଗଡ଼ର ଯୁବ ଓ ବୟସ୍କ ପ୍ରଜାମଣ୍ଡଳ ନେତା ବୈଷ୍ଣବ ପଟ୍ଟନାୟକ ହୁଅନ୍ତୁ, ବନମାଳୀ ଦାସ ହୁଅନ୍ତୁ ବା ମହେଶ ଚନ୍ଦ୍ର ସୁବାହୁ ସିଂହ ଏଇଠି ମନ୍ତ୍ରଣା ଲାଗି ଆସନ୍ତି । ଭଗବତୀ ଚରଣ ପାଣିଗ୍ରାହୀ ସେହିସବୁ ମଣ୍ଡଳୀର ଅନ୍ୟତମ ପ୍ରଧାନ ଆକର୍ଷଣ ।

କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାର ପ୍ରଧାନ ଆସାମୀ ଭଗବତୀ ଗୋପନରେ କଲେଜ ଛକ ଘରେ ଥିବା ବେଳେ ଧରା ପଡ଼ନ୍ତି । ଏତେବେଳକୁ ସେ ଓ ତାଙ୍କ ସାଥୀମାନେ ପ୍ରକାଶ୍ୟ କମ୍ୟୁନିଷ୍ଟ ବୋଲି ରାଜନୈତିକ, ସାମାଜିକ ମହଲରେ ପରିଚିତ ହେଲେ ଗୋଟିଏ ଘଟଣାରେ । ଷଡ଼ଯନ୍ତ୍ର ମକଦ୍ଦମାରେ କଟକ କମ୍ୟୁନିଷ୍ଟ ଶବ୍ଦ ଯୋଡି ବ୍ରିଟିଶ୍ ସରକାର କମ୍ୟୁନିଷ୍ଟମାନଙ୍କୁ ନିଶ୍ଚିହ୍ନ କରିବାର ଯେଉଁ ଯୋଜନା କରିଥିଲା, ତାହା ଓଲଟା ଫଳ ହେଲା । ବନ୍ଦୀଶାଳାକୁ ଗୁରୁଚରଣ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ବନମାଳୀ ଦାସ, ବିଜୟ ଚନ୍ଦ୍ର ଦାସ, ବୈଦ୍ୟନାଥ

ରଥ, ଶରତ ପଟ୍ଟନାୟକ, ଦୁର୍ଗାଚରଣ ମହାନ୍ତି, ରାମଚନ୍ଦ୍ର ମିଶ୍ର ଓ ଆଉ କେତେକଙ୍କୁ ସନ୍ଦେହରେ ଧରି ନିଆଗଲା । ଜଣେ ଅଧେକୁ ସଙ୍ଗେ ସଙ୍ଗେ ଛାଡ଼ କରାଗଲା । ଆଉ କେତେକଙ୍କୁ ଅଳ୍ପ ମାସ କାରାଦଣ୍ଡରେ ଦଣ୍ଡିତ କରାଗଲା । ଦୀର୍ଘ ଅଢ଼େଇବର୍ଷ ଜେଲ୍‌ଖାନାରେ ଭଗବତୀ ଚରଣ ରଚନା କରିଥିଲେ ବିଶ୍ୱ ଇତିହାସ ଓଡ଼ିଆ ଭାଷାରେ । ତାହା ବାହାରକୁ ଅଣାଯାଇ ଏ ପର୍ଯ୍ୟନ୍ତ ଉଦ୍ଧାର କରାଯାଇ ପାରିଲା ନାହିଁ । ସାତଖଣ୍ଡର ଏହି ବିରାଟ ଗ୍ରନ୍ଥ ଲୋକଲୋଚନକୁ, ପାଠକମାନଙ୍କ ହାତକୁ ଆସି ପାରିଲା ନାହିଁ । ଶିକାର ପରି ଯେଉଁ କେତେକ ଗଳ୍ପ ଏବେ ବି ପ୍ରଚାରିତ ତାହାହିଁ ତାଙ୍କ ସାହିତ୍ୟିକ ପ୍ରତିଭାର ସ୍ୱାକ୍ଷରବହନ କରେ । ତାହାର ପ୍ରଭାବ କାଳପ୍ରସାରୀ, ଚିରନ୍ତନ ।

ଜେଲ୍ ମୁକ୍ତି ପରେ କେତେ ଦାୟିତ୍ୱ । ଅସଲ ଦାୟିତ୍ୱ ସାଥୀମାନେ ନ୍ୟସ୍ତ କଲେ ଭଗବତୀଙ୍କ ଉପରେ । ସେ ହେଲେ ଓଡ଼ିଶାରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ସମ୍ପାଦକ ଏବଂ ଭାରତୀୟ କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ର କମିଟିର ଓଡ଼ିଶାର ପ୍ରଥମ ସଭ୍ୟ ।

ମାତ୍ର ଦଶବର୍ଷର ସାମାଜିକ ରାଜନୈତିକ ଜୀବନରେ ସେ ଯେଉଁ କ୍ଷେତ୍ରକୁ ଯାଇଛନ୍ତି ତାଙ୍କୁ ତାଙ୍କର ସାଥୀ, ସହକର୍ମୀ, ଶ୍ରଦ୍ଧାଳୁମାନେ ପ୍ରାଥମିକତା ଦେଇଛନ୍ତି । ପ୍ରଥମ ବୋଲି ଗଣ୍ୟ କରିଛନ୍ତି । ସେଥି ସକାଶେ ଯେ କେବଳ ଅକାଳ ମୃତ୍ୟୁରେ ବି ସେ ଚିର ଜୀବନ୍ତ ରହିବେ ନୁହଁ । ଏହାହିଁ ତାଙ୍କ ବୈଶିଷ୍ଟ୍ୟର ପରିଚୟ ।

ସେ ଯେଉଁ ମାନବମୁକ୍ତିର ମହାନ ଦର୍ଶନ, ମାର୍କ୍ସବାଦରେ ବିଶ୍ୱାସ କରି ଓଡ଼ିଶା ମାଟିରେ ତାହାର ଆଦର୍ଶରେ ସେ ସେହି ଆଦର୍ଶ ଉପଲବ୍ଧି ସଂଗ୍ରାମ ଗୁଡ଼ିକରେ ଅନ୍ୟମାନଙ୍କୁ ଅନୁପ୍ରେରିତ କରୁଥିଲେ । ସେହିମହାନ ଦର୍ଶନ, ବାକ୍ସବାଦୀ ଚିନ୍ତା, ଚେତନା ଅକ୍ଷୟ, ଅମର । ଘାତ ପ୍ରତିଘାତ ସଂଘାତ ସମାଜ ବିକାଶର ଧାରା । ସଂଗ୍ରାମରେ ଉତ୍‌ଥାନ ପତନ ଘଟେ । ମାତ୍ର ଅନ୍ତିମ ସତ୍ୟ ଅକାଟ୍ୟ ।

ମାନବ ସମାଜକୁ ଶୋଷଣମୁକ୍ତ କରି ସକଳ ପ୍ରକାର ମାନବତାଦ୍ରୋହୀ କଳଙ୍କ ତାହା ରାଜନୈତିକ, ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ କ୍ଷେତ୍ରରେ ହେଉ ତାକୁ କାଳ କାଳ ଲାଗି ଦୂର କରିବାର ବିଜ୍ଞାନସମ୍ମତ ମତାଦର୍ଶ ମାର୍କ୍ସବାଦ ଲେନିନ୍‌ବାଦ ।

ସୋଭିଏତ୍ ୟୁନିଅନ୍‌ରେ ଓ ଅନ୍ୟତ୍ର ନିର୍ମିତ ଯୁଗାନ୍ତକାରୀ ସମାଜବାଦୀ ସମାଜର ପତନ ପରେ ବିଶ୍ୱ ପୁଞ୍ଜିବାଦ ମାନବ ସମାଜର ଏକମାତ୍ର ଧ୍ୟେୟ ପଥ ବୋଲି ପ୍ରଚାରର ଡିଣ୍ଡିମ ପିଟିଥିବା ପୁଙ୍ଗବମାନଙ୍କ ପ୍ରଚାର ପ୍ରତି ମୁହୂର୍ତ୍ତରେ ଧୂଳିସାତ୍ ହୋଇଚାଲିଛି । କେତେକ ଆଭ୍ୟନ୍ତରୀଣ ତ୍ରୁଟି ବିଚ୍ୟୁତି ଓ ପୃଥିବୀର ସାମ୍ରାଜ୍ୟବାଦୀ ଶକ୍ତିଙ୍କ ହୀନ ଚକ୍ରାନ୍ତ ଫଳରେ ୫ ବର୍ଷର ଅଭିଜ୍ଞତାରେ ସକଳ ଦେଶର ସବୁ ମେହନତୀ ମଣିଷ ଚିତ୍କାର କରୁଛି । ବେକାରୀ, ହତ୍ୟା, ଧର୍ଷଣ, ପରମାଣୁ ବିଭୀଷିକା, ଯୁଦ୍ଧ, ସନ୍ତ୍ରାସବାଦ, ଅପରାଧ, ଲୁଣ୍ଠନ, ଗଣିକା ବୃତ୍ତି, ଜାଲିଆତି, ଦୁର୍ନୀତି, ବେକାରୀ, ଦାରିଦ୍ର୍ୟ, ମାଦକଦ୍ରବ୍ୟର ବିଶାଳ ବଜାରରେ

ପୁଞ୍ଜିବାଦ, ସାମ୍ରାଜ୍ୟବାଦ, ଏହାର ସମାଧାନ କରିଦେବ ବୋଲି ତା'ର ସ୍ତାବକମାନେ ଚମକପ୍ରଦ ଯେତେ ପ୍ରଚାର କଲେ ବି ତାହା ପ୍ରତାରଣା, ମିଥ୍ୟା, ପ୍ରବଞ୍ଚନା ବୋଲି ଲୋକେ ସବୁ ଦେଶରେ ଉପଲବ୍ଧି କରିବାରେ ଲାଗିଛନ୍ତି । ପୁଣି ଜନ ଉଦ୍‌ବେଳନ ଫାଟି ପଡୁଛି । ସମାଜବାଦୀମାନେ, କମ୍ୟୁନିଷ୍ଟମାନେ, ଗଣତନ୍ତ୍ର କାମୀମାନେ ଏକ ପ୍ରକାର ଉପଲବ୍ଧିରେ ପହଞ୍ଚିବାକୁ ଲାଗିଲେଣି । ମାନବ ମୁକ୍ତିର ଏକମାତ୍ର ସଠିକ୍ ଦର୍ଶନ ମାର୍କ୍ସବାଦ । ଦେଶ କାଳ ନିର୍ବିଶେଷରେ ସେହି ବାଟରେ ମାନବଜାତି ଯିବ ।

ଓଡ଼ିଶାରେ ଏହି ଚିନ୍ତାଚେତନା ଓ ସଂଗ୍ରାମର ରଥୀ ଭଗବତୀ ଏହି କାରଣରୁ ହିଁ ଚିର ଅମର ରହିବେ । ତାଙ୍କ ସହିତ ଅନ୍ୟମାନଙ୍କ ପରି ସେକାଳର ରାଜନୈତିକ ଜୀବନରେ ଓତପ୍ରୋତଭାବେ ସଂସ୍ପର୍ଶରେ ଆସି, ଆଜି ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ କୃତାଞ୍ଜଳି ପୁଟରେ ମୁଁ ଶ୍ରଦ୍ଧା ନିବେଦନ କରୁଛି ।

□□□

# ମରି ଅମର

ଭଗବତୀ ପାଣିଗ୍ରାହୀ । କ୍ଷୁଦ୍ର ଏକ ଜୀବନକାଳ ମାତ୍ର, କି ମହିମାମୟ, ଗରିମାପୂର୍ଣ୍ଣ ଏହି ଜୀବନଟି–ସାମାନ୍ୟ ଚଉତ୍ରିଶ ବର୍ଷର ଆୟୁ । ସେଥିରୁ ବାଲ୍ୟ, ପୌଗଣ୍ଡ ଆଉ ଯୌବନନୋଚ୍ଛଳ ଉଦ୍ଦାମ, ଆଶା–ସ୍ୱପ୍ନ–ଆକାଂକ୍ଷା–ପାଠ–ପଢ଼ା । ଆଉ କର୍ମଜୀବନର କେତୋଟି ବର୍ଷ ମାତ୍ର । ଭଗବତୀ ମନ୍ତ୍ରୀ ନ ଥିଲେ, ତାଙ୍କର ନ ଥିଲା ମଟରକାର, ତାଙ୍କର ଗୁଣଗାନ କରୁ ନଥିଲେ ସମ୍ବାଦପତ୍ର । ତାଙ୍କୁ କୁହାଯାଉଥିଲା ବିଦେଶୀ ଦଲାଲ, ଧର୍ମକର୍ମ ମାନନ୍ତି ନାହିଁ, ଜାତିପତି ମାନନ୍ତି ନାହିଁ, ପଇତା ପକାନ୍ତି ନାହିଁ, ନାସ୍ତିକ ସେ, ତେଣୁ ମଣିଷ ହୋଇ ସେ ଅମଣିଷ । ହିଂସା ତାଙ୍କର ଧର୍ମକର୍ମ । ସବୁ କୋଠ କରିଦେବେ, ବୁଢ଼ାଙ୍କୁ, ରୋଗିଣାଙ୍କୁ ମାରିଦେବେ । ଭାରତର ମହାନ ପରଂପରାକୁ ସେ ନଷ୍ଟଭ୍ରଷ୍ଟ କରିଦେବେ – ଏମିତି କେତେ ଯେ କୁତ୍ସାର ବୋଝ ତାଙ୍କ ମୁଣ୍ଡରେ ଲଦାଯାଉଥିଲା, ତା'ର ଇୟତ୍ତା ନାହିଁ ।

ସେ ଦିନ ଆଉ ଆଜି ? ଭଗବତୀ ନାହାନ୍ତି, କିନ୍ତୁ ଭଗବତୀ ଆଜି ଲକ୍ଷ ଲକ୍ଷ ହୃଦୟରେ ଆସନ ଅଧିକାର କରିଛନ୍ତି । ଦିନ କଟୁଛି, କଟିବ, ବର୍ଷ ପରେ ବର୍ଷ କୁଆଡ଼େ ଗଡ଼ିଯିବ; କିନ୍ତୁ ଭଗବତୀ ଆହୁରି ଲକ୍ଷ ଲକ୍ଷ ଜୀବନର ଜପାମାଳି ହେବେ ।

କାହିଁକି ? ଭଗବତୀ ଓଡ଼ିଶାରେ ଥିଲେ ଏକ ନବଜୀବନର ଉଦ୍‌ଗାତା । ମାନବ ଜାତିର ଦୁର୍ବାର ମୁକ୍ତି ସଂଗ୍ରାମର ଏକ ଯୋଦ୍ଧା ସେ । ସେ ମୁକ୍ତି ମହାମୁକ୍ତି, ମାନବ ପ୍ରାଣର ମୁକ୍ତି । ଶତାବ୍ଦୀଶତାବ୍ଦୀର କଳଙ୍କ କାଳିମାମୟ ଶୋଷଣ, ଅତ୍ୟାଚାର, ହିଂସା, ଈର୍ଷା, କନ୍ଦଳରୁ ମାନବ ସମାଜର ଶାଶ୍ୱତ, ଚିରନ୍ତନ ମୁକ୍ତି । ସେ ମୁକ୍ତିର ରାହା କଳ୍ପନା ସର୍ବସ୍ୱ ନୁହଁ, ବିଜ୍ଞାନ ସମ୍ମତ । ସମାଜ ବିକାଶର ଅନ୍ତର୍ନିହିତ ନିୟମ ଅନୁସାରେ ଭବିଷ୍ୟତ ସମାଜର ସଚେତନ ସଂଗଠନ । ଯେଉଁ ସମାଜ ସଂଗଠନର ବିନ୍ଧାଣୀ କେବଳ ହେବେ ନାହିଁ ଭଗବତୀ ବା ତାଙ୍କରି ଭଳି କେତେ ଶହ, କେତେ ସହସ୍ର ଯୋଦ୍ଧା – ସେ ରଣାଙ୍ଗନରେ ଅବତୀର୍ଣ୍ଣ ହେବେ କୋଟିକୋଟି ଜନତା, ସେ ଜନତା ନିରାକାର ନୁହଁ ସାକାର । ଯିଏ ମାଟିରେ, ଖଣିରେ, ନଈନାଳରେ, ଜଙ୍ଗଲ ପାହାଡ଼ରେ, କଳକାରଖାନାରେ, ଆକାଶ, ପାତାଳ, ମର୍ତ୍ତ୍ୟରେ ସମ୍ପଦ ସୃଷ୍ଟିକରେ, ମାତ୍ର ଏହି ନୈସର୍ଗିକ ସମ୍ପଦର ସେ କେହି ନୁହଁ, ଆଉ ଏହି ସମ୍ପଦକୁ ସମଗ୍ର ମାନବ ସେବାରେ ଲଗାଇବାକୁ ଯେଉଁ ହାତହାତିଆର, ଆୟୁଧ ବ୍ୟବହାର ସେ କରେ ସେ ତା'ର ପ୍ରଭୁ ନୁହଁ । ଏ

ସମସ୍ତ ସମ୍ପଦର, ଏ ସକଳ ହାତ ହତିଆରେର ପ୍ରଭୁ, ସମାଜର ମୁଷ୍ଟିମେୟ କେତେକ । ସେହିମାନେ ହିଁ ବିବେଚିତ ହୁଅନ୍ତି ଭଦ୍ର, ସଂସ୍କୃତ, ମାନୀ ଆଉ ଦାନୀ । ସେହିମାନଙ୍କ କଥାରେ ସରକାର ଚଳେ, ରାଷ୍ଟ୍ର ଚଳେ । ସେମାନଙ୍କ ସ୍ୱାର୍ଥରକ୍ଷା ଲାଗି ନିୟମ କାନୁନ ଗଢ଼ାଯାଏ, ପୁଲିସ, ସୈନ୍ୟ ବାହିନୀ, ଜେଲ ସେମାନଙ୍କ ସେବା କରେ । ଅଥଚ କୁହାଯାଏ, ଏସବୁ ନିୟମ କାନୁନ ଏସବୁ ପୁଲିସ, ସୈନ୍ୟବାହିନୀ, ଜେଲ ନିରପେକ୍ଷ, ଧନୀ ଦରିଦ୍ର ଆଗରେ ସମାନ ।

ଭଗବତୀ ଡାକରା ଦେଇଥିଲେ ଓଡ଼ିଶା ମାଟିରେ ଏହାରି ବିରୁଦ୍ଧରେ ବିଦ୍ରୋହ କରିବାକୁ । ଏସବୁ ପ୍ରତାରଣା, ଭଣ୍ଡାମି । ଶ୍ରେଣୀ ସମାଜରେ ଶୋଷିତ ଅଥଚ ସଂପଦ ଉତ୍ପାଦନକାରୀ କୋଟି କୋଟି ମେହନତକାରୀ ମଣିଷ ଉପରେ ଚିରକାଳ ଲାଗି ଶୋଷଣ ଜାହିର ରଖିବା ପାଇଁ ଏସବୁ ଉଦ୍ଦିଷ୍ଟ ।

ଭଗବତୀ ତେଣୁ ହେଲେ କମ୍ୟୁନିଷ୍ଟ । ତତ୍ତ୍ୱ ବିନା କାର୍ଯ୍ୟ ଅବାଟରେ ଯିବ । ଆଉ କାର୍ଯ୍ୟ ବିନା ତତ୍ତ୍ୱର ଉଦ୍‌ଭବ ହେବ ନାହିଁ, କି ବିକାଶ ଘଟିବ ନାହିଁ । ବୈଜ୍ଞାନିକ ସମାଜବାଦ ହିଁ ମାନବ ମୁକ୍ତିର ଦିଗଦର୍ଶନ, ଦିଗବାରେଣୀ, ସେହି ବୈଜ୍ଞାନିକ ସମାଜବାଦ; ଅର୍ଥାତ ମାର୍କସବାଦ ଲେନିନବାଦରେ ଅନୁପ୍ରାଣିତ ଭଗବତୀ ସେହି ଦର୍ଶନଭିତ୍ତିକ ପାର୍ଟି, କମ୍ୟୁନିଷ୍ଟ ପାର୍ଟିର ହେଲେ ପ୍ରଥମ ସମ୍ପାଦକ, ଯେଉଁ ଓଡ଼ିଶାରେ ସେ ଯୁଗର ବୈଜ୍ଞାନିକ ସମାଜବାଦର ସୈନିକ ହୋଇ ବାହାରିଥିଲେ, ଭଗବତୀ ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ । ପ୍ରାଣନାଥ ଓ ଗୁରୁଚରଣ କାଶୀବିଦ୍ୟାପୀଠରୁ ଫେରି କଲିକତାରେ ଗୋପନ କମ୍ୟୁନିଷ୍ଟି ପାର୍ଟିର ସଦସ୍ୟ ହୋଇ ଆସିଥା'ନ୍ତି । କାଶୀବିଦ୍ୟାପୀଠରୁ ଶରତ ପଟ୍ଟନାୟକ ଉତ୍ତର ପ୍ରଦେଶ ଆଉ ବିହାରକୁ କର୍ମସ୍ଥଳୀ କରିଥାନ୍ତି । ଭଗବତୀ ପାଟନାରୁ ଏହି ଆଦର୍ଶରେ ଦୀକ୍ଷିତ ହୋଇ କଟକ ଆସିଥାନ୍ତି ।

ସେ ଥିଲା ଭଗବତୀଙ୍କ ରାଜନୈତିକ ଜୀବନର ଆରମ୍ଭର ଯୁଗ । ସେତେବେଳକୁ ସ୍ୱାଧୀନତା ସଂଗ୍ରାମ ଆସିଥାଏ । ଭଟ୍ଟା; ଜାତୀୟ କଂଗ୍ରେସ ତଥା ଗାନ୍ଧୀଜୀଙ୍କ କଂଗ୍ରେସ ତଥା ଗାନ୍ଧୀଜୀଙ୍କ ନେତୃତ୍ୱ ପ୍ରତି ଆସିଥାଏ ପ୍ରଶ୍ନବାଚୀ । ମୁକ୍ତି ସଂଗ୍ରାମକୁ ଆହୁରି ପ୍ରସାରିତ, ବଳିଷ୍ଠ, ସାକାର କରିବାର ଆକାଂକ୍ଷା । ବିଦେଶୀ ସମ୍ରାଜ୍ୟବାଦ ବିରୁଦ୍ଧରେ ବୈପ୍ଳବିକ ଜାତୀୟ ସାମ୍ମୁଖ୍ୟ ଗଢ଼ିବାର ଡାକରା, ମାତ୍ର ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ଜାତୀୟ କଂଗ୍ରେସ ହାତରେ । ସାମ୍ରାଜ୍ୟବାଦ ବିରୁଦ୍ଧରେ, ଔପନିବେଶବାଦ ବିରୁଦ୍ଧରେ, ଜାତୀୟ ମୁକ୍ତି ଆଉ ସ୍ୱାଧୀନତା ପାଇଁ ଭାରତର ସକଳ ଶ୍ରେଣୀ, ସକଳ ସଂପ୍ରଦାୟର ଥିଲା କଂଗ୍ରେସ ମୁଖପତ୍ର । ସେଥିରେ ଉଦାରପନ୍ଥୀ, ରକ୍ଷଣଶୀଳ ରାଜିତିଙ୍କଠାରୁ ବାମପନ୍ଥୀ ଗଣତନ୍ତ୍ରବାଦୀ ଆଉ କମ୍ୟୁନିଷ୍ଟ ସମସ୍ତେ ମିଳିତ । ତେଣୁ ବହୁ ଶ୍ରେଣୀକ ପାର୍ଟିର ରୂପ କଂଗ୍ରେସ ନେଇଥିଲେ ହେଁ, ତା'ର ନେତୃତ୍ୱ ନଥିଲା । ମେହନତୀ ଶ୍ରେଣୀର ପ୍ରତିନିଧିମାନଙ୍କ ହାତରେ, ନେତୃତ୍ୱ ଥିଲା ଅଭିଜାତ ଶ୍ରେଣୀ ହାତରେ ।

ରୁଷରେ ଅକ୍‌ଟୋବର ବିପ୍ଳବର ସାଫଲ୍ୟ ଆଉ ସମାଜବାଦର ଜୟଯାତ୍ରା, ସେ କାଳରେ

ସ୍ୱାଧୀନତା ସଂଗ୍ରାମୀ ଯୁବ ବୁଦ୍ଧିଜୀବୀ ସଂପ୍ରଦାୟ ମଧ୍ୟରେ ଆଣିଦେଲା ନୂତନ ଦ୍ୟୋତନା, ନୂତନ ଅନୁପ୍ରେରଣା ।

ସେହି ଅନୁପ୍ରେରଣାରୁ ଜନ୍ମ ନେଲା କଂଗ୍ରେସ ସଂଗଠନ ଭିତରେ ସମାଜବାଦୀ ଆନ୍ଦୋଳନ । କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଉଦ୍‌ଭବ ହେଲା । କମ୍ୟୁନିଷ୍ଟ ପାର୍ଟି ବେଆଇନ । ଖୋଲାଖୋଲି କାମ କରିବାର ହତିଆର ହେଲା କଂଗ୍ରେସ-ସୋସାଲିଷ୍ଟ ପାର୍ଟି । ଆଉ କମ୍ରେଡ଼ ପ୍ରଣନାଥ ପଟ୍ଟନାୟକଙ୍କ ସଭାପତିତ୍ୱରେ ଓଡ଼ିଶାରେ ଉକ୍ତ ପାର୍ଟିର ପ୍ରତିଷ୍ଠା ସମ୍ମିଳନୀ ଅନୁଷ୍ଠିତ ହେଲା । ଉକ୍ତ ପାର୍ଟିର ସଂପାଦକ ପଦରେ ଅଧିଷ୍ଠିତ ହେଲେ କମ୍ରେଡ଼ ପାଣିଗ୍ରାହୀ । ସେ ଯୁଗରେ ସମସ୍ତ ବାମପନ୍ଥୀ ମନୋଭାବାପନ୍ନ ବ୍ୟକ୍ତିଙ୍କୁ ବୈଜ୍ଞାନିକ ସମାଜବାଦ ଆଡ଼କୁ ଆକୃଷ୍ଟ କରାଇବା ବଡ଼ ଦୁଃସାଧ୍ୟ । ମାର୍କସବାଦୀ ସାହିତ୍ୟ, ପତ୍ର ପତ୍ରିକା ଉପରେ କଟକଣା । କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ରହିଲେ ବି ସୋସାଲିଜିମର ଅସଲ ଦର୍ଶନ ମାର୍କସବାଦ, ଲେନିନବାଦର ଦର୍ଶନକୁ ପୁଞ୍ଜିବାଦୀ ଅର୍ଥନୀତି ବଦଳରେ ମାର୍କସୀୟ ଅର୍ଥନୀତି ଓ ସମାଜବ୍ୟବସ୍ଥାକୁ ଗ୍ରହଣ ନ କରୁଥିବା ଆଉ ଜାତୀୟ କଂଗ୍ରେସରେ ତୁଙ୍ଗ ଆସନରେ ଅଧିଷ୍ଠିତ ଥିବା ବ୍ୟକ୍ତିମାନଙ୍କୁ ଘେନି କଂଗ୍ରେସ ସୋସାଲିଷ୍ଟ ପାର୍ଟିକୁ ତାଙ୍କର ନେତୃତ୍ୱ ଦେବା ।

ସେହି ପାର୍ଟିରେ ମଧ୍ୟ ତୁମୁଳ ମତାଦର୍ଶଗତ ସଂଗ୍ରାମ । ଦୁନିଆର ପ୍ରଥମ ସମାଜବାଦୀ ରାଷ୍ଟ୍ର ସୋଭିଏତ ଯୁନିଅନର ବିରୋଧ କରୁଥିବା, ଜାତୀୟ ମୁକ୍ତି ଆନ୍ଦୋଳନରେ ଉପର ଶ୍ରେଣୀର ନେତୃତ୍ୱ ପ୍ରତି ମୋହଗ୍ରସ୍ତ ହୋଇଥିବା ଓ ମାର୍କସବାଦ-ଲେନିନବାଦକୁ ଗ୍ରହଣ କରୁ ନଥିବା କଂଗ୍ରେସର ବାମପନ୍ଥୀ ନେତା ଓ କର୍ମୀମାନଙ୍କୁ ଘେନି ସେହି କଂଗ୍ରେସ ସୋସଲିଷ୍ଟ ପାର୍ଟିକୁ ନେତୃତ୍ୱ ଦେବାର କୁଶଳତା ଦେଖାଇ କମ୍ରେଡ଼ ଭଗବତୀ ଓଡ଼ିଶାରେ ସମାଜବାଦୀ ଭାବଧାରା ପ୍ରଚାରର ହେଲେ ଅନ୍ୟତମ ଅଗ୍ରଣୀ ।

ଶ୍ରେଣୀ ସଙ୍ଗଠନ, ଶ୍ରେଣୀ ସଂଗ୍ରାମ ଜରିଆରେ, ବ୍ୟାପକ ଖଟିଖିଆ ଜନତାର ସାମ୍ରାଜ୍ୟବାଦ ବିରୋଧିତାକୁ ଶାଣିତ କରିବା ଲାଗି ସେ ବେଆଇନ କମ୍ୟୁନିଷ୍ଟ ପାର୍ଟି ଓ ଆଇନସଙ୍ଗତ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ସମ୍ପାଦକ ଭାବରେ ଶ୍ରେଣୀ ସଙ୍ଗଠନର ନେତୃତ୍ୱ ନେଲେ । କୃଷକ ସଭା, ମେହନ୍ତର ସଂଘ, ଛାତ୍ରସଂଘ, ଯୁବକସଙ୍ଘ ପ୍ରଭୃତି ସେ ଯୁଗର ଅନୁଷ୍ଠାନ ଗଠନର ଐତିହାସିକ ଗୁରୁତ୍ୱ, ବୈପ୍ଳବିକ ତାତ୍ପର୍ଯ୍ୟ ଏବେ ତାଙ୍କର ଉତ୍ତରସୂରୀମାନେ ଅନୁଶୀଳନ କରୁଛନ୍ତି ଓ ଅଧିକ ଅନୁଶୀଳନ କରିବେ ।

ଆଜିର ଯୁବ ସମାଜ କଳ୍ପନା ରାଜ୍ୟରେ ଟିକିଏ ଦେଖନ୍ତୁ । ବେଠି, ବେଗାରୀ, ମାଗଣ, ରସଦ ବିରୁଦ୍ଧରେ ଓଁଟୁଁ କଲେ ନଡ଼ିଆଗଛରେ ଲୋକଙ୍କୁ ବାନ୍ଧି ରଜା ଜମିଦାର, ମଠ ମହନ୍ତ ପିଟି ପିଟି ମାରି ଦେଉଥିଲେ । ତେଣେ ବ୍ରିଟିଶ ସରକାରର ଚଉକିଦାରଙ୍କର କି ଭୟଙ୍କର କରାମତି । ଏଣେ ପୁଣି କଂଗ୍ରେସ ନେତୃତ୍ୱ ଏବୁ ସଂଗ୍ରାମର ବିରୋଧୀ ହିଂସା ନାମରେ ଚୁଷିଆର

ଦଲାଲ କହି ଏସବୁ ଶ୍ରେଣି ସଂଗ୍ରାମକୁ ମାରି ଦେବାର ଅପଚେଷ୍ଟା । ଏହି ସଂଘାତିକ ରାଜନୈତିକ ଆର୍ଥିକ ଓ ସାମାଜିକ ପରିସ୍ଥିତିରେ ଅତି ଭୟଭୀତ, ଘୋର ନିର୍ଯାତିତ, ମୂକ ଖଟିଖିଆ ଜନତାକୁ ଉଦ୍‌ବୁଦ୍ଧ କରିବାରେ ଓ ସମାଜବାଦୀ ଭାବଧାରାର ପ୍ରଚାରରେ ଯେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଏକ ଚମତ୍କାର ଭୂମିକା ଭଗବତୀଙ୍କ ନେତୃତ୍ୱରେ ନେଲେ ଏହା ଅନସ୍ୱୀକାର୍ଯ୍ୟ ।

ସ୍ୱାଧୀନତା, ପ୍ରଗତି ଓ ଗଣତନ୍ତ୍ର ଲାଗି ସାମ୍ରାଜ୍ୟବାଦବିରୋଧୀ ଜାତୀୟ ସାମୁଖ୍ୟକୁ, ବିଶେଷତଃ ବାମପନ୍ଥୀ ଐକ୍ୟକୁ ଭାଙ୍ଗି ଦେବା ଲାଗି ଉଦ୍ୟମ କେବଳ କଂଗ୍ରେସ ନେତୃତ୍ୱ ଆଡୁ, ବ୍ରିଟିଶ ସାମ୍ରାଜ୍ୟବାଦ ଆଡୁ ତ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ହେଲା, ସେତିକି ନୁହେଁ, ଖୋଦ କଂଗ୍ରେସ ସୋସଲିଷ୍ଟ ପାର୍ଟି ଭିତରୁ ମଧ୍ୟ ଏହି ଉଦ୍ୟମ ଚାଲିଲା । ମିନୁ ମାସାନୀ ଥିଲେ ଉକ୍ତ ପାର୍ଟିର ସର୍ବଭାରତୀୟ ସମ୍ପାଦକ । ସୋଭିଏତ ବିରୋଧିତା, କମ୍ୟୁନିଷ୍ଟ ବିରୋଧିତାର ନାୟକ ମିନୁ ମାସାନୀ ଉକ୍ତ ପାର୍ଟି ଭାଙ୍ଗିବାକୁ ଭିତରେ ନିର୍ଦ୍ଦେଶ ଦେଲେ । ଏହି ମିନୁ ମାସାନୀ ହେଲେ ଟାଟାଙ୍କର ବେତନଭୋଗୀ ସେବକ, ପୁଣି ଏଣେ ସାମ୍ରାଜ୍ୟବାଦ ଓ ଏକଚାଟିଆ ପୁଞ୍ଜିବାଦର ଦଳ ସ୍ୱତନ୍ତ୍ର ଦଳର ନେତା । ସର୍ବଭାରତୀୟ କ୍ଷେତ୍ର ପରି ଓଡ଼ିଶା ମଧ୍ୟ ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀ ପ୍ରମୁଖ ୫/୬ ଜଣ ଉକ୍ତ ପାର୍ଟି ତ୍ୟାଗ କରି ପ୍ରକାଶ୍ୟ ବିବୃତି ଦେଲେ । ନବବାବୁ, ମାଳତୀ ଦେବୀଙ୍କର ମଧ୍ୟ ଆଶୀର୍ବାଦ ସେମାନଙ୍କ ପକ୍ଷରେ ରହିଲା ।

ଶେଷରେ ଦ୍ୱିତୀୟ ମହାସମର ଲାଗିଗଲାବେଳେ ଖୋଦ ଜୟପ୍ରକାଶ ନାରାୟଣ ଆସି ଉକ୍ତ ପାର୍ଟିକୁ ଭାଙ୍ଗିଦେଇ ନବବାବୁଙ୍କୁ ଡିକ୍‌ଟେଟର ପଦରେ ବସାଇଲେ ।

ଭଗବତୀ ପାଣିଗ୍ରାହୀ ଓ ତାଙ୍କ ସହକର୍ମୀମାନେ ଏଥିରେ ବ୍ୟଥିତ ହେଲେ ସତ, ଭାଙ୍ଗି ପଡ଼ିଲେ ନାହିଁ । ଭଗବତୀଙ୍କର ଦର୍ଶନ; ମାର୍କସବାଦ ଲେନିନବାଦରୁ ଶିକ୍ଷା ଯେ ଏପରି ବହୁ ବାମପନ୍ଥୀ, ଗଣତନ୍ତ୍ରବାଦୀ ଆସିବେ ଓ ସୋଭିଏତ ବିରୋଧିତା ଓ କମ୍ୟୁନିଷ୍ଟ ବିରୋଧିତା ହେତୁ ପ୍ରତିକ୍ରିୟାର ପଙ୍କରେ ବୁଡ଼ିଯିବେ, ନଚେତ୍ ଦିଗଭ୍ରଷ୍ଟ ହୋଇ ଭିନ୍ନ ଭିନ୍ନ ରୂପ ବଦଳେଇବେ, ଭିନ୍ନ ଭେକ ଧରିବେ । କିନ୍ତୁ ମାର୍କସବାଦର ଅଗ୍ରଗତି ଚାଲିବ ସକଳ ବାଧା ପ୍ରତିବନ୍ଧକ, କୁତ୍ସା, ନିର୍ଯ୍ୟାତନା ସତ୍ତ୍ୱେ । ସେ ଯୁଗର ଛାତ୍ରମାନଙ୍କର ସାମ୍ରାଜ୍ୟବାଦ ବିରୋଧୀ ସଙ୍ଗଠିତ ଆନ୍ଦୋଳନ, କୃଷକମାନଙ୍କର ବେଠି ବେଗାରୀ ମାଗଣ ବିରୁଦ୍ଧରେ ସଂଗ୍ରାମ ସାଙ୍ଗକୁ ଓଡ଼ିଶାର ଗଡ଼ଜାତ ପ୍ରଜା ଆନ୍ଦୋଳନରେ ରାଜତନ୍ତ୍ର ଶାସନର ସଂପୂର୍ଣ୍ଣ ଉଚ୍ଛେଦ, ଓଡ଼ିଶାର ଏକତ୍ରୀକରଣ ଆଉ ପୂର୍ବତନ ଗଡ଼ଜାତରେ ଗଣତନ୍ତ୍ର ପ୍ରଗତିର ପଥ ଉନ୍ମୋଚନ ଲାଗି କିପରି ସଙ୍ଗଠିତ ଉଦ୍ୟମ କରିବାକୁ ହେବ, ତହିଁରେ ଭଗବତୀଙ୍କର ଅବଦାନ, ତାଙ୍କ ପାର୍ଟିର ଅବଦାନ ଯଥେଷ୍ଟ—ସେ ଏକ ଦୀର୍ଘ ଇତିହାସ ।

ଭଗବତୀଙ୍କର ପ୍ରଗତିବାଦୀ, ମାର୍କସବାଦୀ ସାହିତ୍ୟକୁ ଅବଦାନ ସଂକ୍ରାନ୍ତରେ ଏ କ୍ଷୁଦ୍ର ପ୍ରବନ୍ଧଟିରେ ବର୍ଣ୍ଣନା ଅସମ୍ଭବ । ତେବେ 'ଆଧୁନିକ', 'କୃଷକ' ଓ 'ମୁକ୍ତିଯୁଦ୍ଧ'ର ସମ୍ପାଦକ ହିସାବରେ ମାର୍କସବାଦୀ ସଂବାଦିକତା କ୍ଷେତ୍ରରେ ତାଙ୍କର ଅବଦାନ ଅବିସ୍ମରଣୀୟ ।

ଦୀର୍ଘାୟୁ ସଫଳ ବୈପ୍ଳବିକ ଜୀବନର ମାପକାଠି ନୁହଁ । ତାଙ୍କର ଆୟୁ ସାମାନ୍ୟ କେତୋଟି କର୍ମକ୍ଲାନ୍ତ ବର୍ଷ ମାତ୍ର । ଆଗାମୀର ଦୁଃଖ ଦୈନ୍ୟ ଶୋଷଣ କଷଣ ବିହୀନ ସମସମାଜର ସ୍ୱପ୍ନ କଳ୍ପନା ସମ୍ଭୂତ ନ ହୋଇ, ବିଜ୍ଞାନସମତ ବାସ୍ତବତାସିଦ୍ଧ ହେବ, ସେହି ଦର୍ଶନ, ସେହି ରାଜନୈତିକ ଭାବଧାରାକୁ ସେ କେବଳ ପ୍ରଚାର କରି ନ ଥିଲେ, ସେ ଗଢ଼ିଗଲେ ଏକ ପାର୍ଟି, ଯେଉଁ ପାର୍ଟି ହିଁ ହେବ ଓଡ଼ିଶାରେ ଶ୍ରମିକ, ସର୍ବହରା ଶ୍ରେଣୀ, ଭୂମିହୀନ ଗରୀବ କୃଷକ, ମେହନତକାରୀ ଓ ନିମ୍ନ ମଧ୍ୟବିତ ଏବଂ ମଧ୍ୟବିତ୍ତ ବୁଦ୍ଧିଜୀବୀ ସଂପ୍ରଦାୟର ମୁକ୍ତିର ପଥ ପ୍ରଦର୍ଶକ ।

ଭଗବତୀଙ୍କୁ ଜୀବନରେ ନାନା କୁତ୍ସା ଅପବାଦର ବୋଝ ମୁଣ୍ଡାଇବାକୁ ପଡ଼ିଥିଲା । ରୁଷିଆ ଦଲାଲ, ରୁଷିଆର ଟଙ୍କାରେ ତାଙ୍କ ଦଳ ଗଢ଼ା, ସେ ବିଦେଶୀ ରାଷ୍ଟ୍ରର ପଞ୍ଚମ ବାହିନୀ, ସେ ଓ ତାଙ୍କ ଦଳ ସ୍ତ୍ରୀ ପିଲା ସମସ୍ତଙ୍କୁ କୋଠ କରିଦେବେ, ବୁଢ଼ାଙ୍କୁ ମାରିଦେବେ, ଏମିତି କେତେ କେତେ ଅଜବ କୁତ୍ସା । ନିଜର ଯେଉଁମାନେ କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ସହକର୍ମୀ ଥିଲେ, ସେମାନଙ୍କର ଆକ୍ରମଣ ତ ଅତି କୁତ୍ସିତ । ଭଗବତୀ ଆଉ କମ୍ୟୁନିଷ୍ଟ ପାର୍ଟି, ସୋଭିଏତ ୟୁନିଅନ ନା ପଡ଼ିଲେ ସେମାନଙ୍କର ଗାତ୍ରଦାହ, ଗାଳିଗୁଲଜ । ଏସବୁ ସତ୍ତ୍ୱେ ଭଗବତୀ ଥିଲେ ତାଙ୍କ ଆଦର୍ଶରେ ଅଟଳ । ଆଉ ଆଦର୍ଶରେ ମାର୍କସବାଦୀ, ଲେନିନବାଦୀ ଦର୍ଶନରେ ଅଟଳ ରହି ଓଡ଼ିଶାରେ ଶୋଷିତ ଜନତାର ରାଜ୍ୟ ପ୍ରତିଷ୍ଠା କରିବା ଲାଗି ଜଟିଳ ସର୍ପିଳ ସଂଗ୍ରାମରେ କାଣ୍ଡାରୀ ହେବା ଲାଗି ସେ ତାଙ୍କ ପାର୍ଟିକୁ ଦେଇଗଲେ ବୈପ୍ଳବିକ ଶିକ୍ଷା ।

ମୃତ୍ୟୁର ୨୯ ବର୍ଷ ପରେ ଭଗବତୀ ବଂଚିଛନ୍ତି । ତାଙ୍କ ପାର୍ଟିର ତାଙ୍କ ଆଦର୍ଶର ପ୍ରସାର ଘଟିଛି । ସ୍ୱାଧୀନତୋତ୍ତର ୨୫ ବର୍ଷ କାଳରେ ଏ ଦେଶରେ ପୁଞ୍ଜିବାଦୀ ବିକାଶର ମାର୍ଗ ଶାସକ ଶ୍ରେଣୀ ନେଇଛି । ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକଚାଟିଆ ପୁଞ୍ଜି ବିରୁଦ୍ଧରେ, ସାମନ୍ତବାଦୀ ସତ୍ତାର ଅବଶେଷ ବିରୁଦ୍ଧରେ ଭାରତୀୟ ଜନତାର ସଂଗ୍ରାମ ଆଗେଇଛି । ତାଙ୍କ ପାର୍ଟିର ଗର୍ବ ଯେ ଭାରତରେ ତଥା ଓଡ଼ିଶାରେ ଏ ସମାଜର ଶ୍ରେଣୀ ବିନ୍ୟାସକୁ ସଠିକ ମୂଲ୍ୟାୟନ କରି ବିଭିନ୍ନ ରାଜନୈତିକ ଦଳଗୁଡ଼ିକର ଆଭିମୁଖ୍ୟ, ଶ୍ରେଣୀ ଚରିତ୍ରର ସଠିକ ଅନୁଶୀଳନ କରି ତାଙ୍କ ପାର୍ଟି, ପୂର୍ବଠାରୁ ବଳି ଆହୁରି ଦୃଢ଼ତା ସହ ସଂଗ୍ରାମ ଚଳାଇଛି । କୁତ୍ସାର ଅବସାନ ଘଟି ନାହିଁ । ବାମପନ୍ଥୀ ବିଚ୍ୟୁତି ଓ ଦକ୍ଷିଣପନ୍ଥୀ ସ୍ଖଳନ ବିରୁଦ୍ଧରେ ତାଙ୍କର ପାର୍ଟି ସଚେତନ ସଂଗ୍ରାମ କରି ଚାଲିଛି । ତେଣୁ ଭଗବତୀ ମରି ଅମର । ତାଙ୍କର ପାର୍ଟିରେ ଓଡ଼ିଶାର କୋଟି ଜନତାର ସଂଗ୍ରାମରେ ସେ ବଂଚିଛନ୍ତି, ବଂଚିବେ ଆଉ ଜନତାର ବର୍ତ୍ତମାନକାଳୀନ ଶତ୍ରୁ ଏକଚାଟିଆ ପୁଞ୍ଜିବାଦ,ସାମ୍ରାଜ୍ୟବାଦ, ସାମନ୍ତବାଦ ବିରୁଦ୍ଧରେ ଯେତେ ସଂଗ୍ରାମ କରି ଚାଲିବ, ଭଗବତୀଙ୍କ ସ୍ୱପ୍ନ ବୈଜ୍ଞାନିକ ସମାଜବାଦ ପ୍ରତିଷ୍ଠାର ପଥ ସେତେ ସୁଗମ, ତ୍ୱରିତ ହେବ ।

□□□

# ବହୁବିଧ ସଂଗ୍ରାମର ଏକ ଅନନ୍ୟ ଯୋଦ୍ଧା ମୋହନ ଦାସ

ନିମାପଡ଼ା, ବିଷ୍ଣୁପୁରର ମୋହନ ଦାସ । ଛ'ଟି ଦଶାବ୍ଦୀକାଳ ବହୁ ଜନ ସଂଗ୍ରାମର ନେତା ମୋହନ ଦାସ । ଦୁଇବର୍ଷ ପୂର୍ବେ ବର୍ଷ ଆରମ୍ଭ ଦିନ ଯିଏ ସଂଗ୍ରାମର, ଜନଚେତନାର, ଜନ ଜାଗରଣର ଅସଂଖ୍ୟ ଜନ ଆନ୍ଦୋଳନରେ ଆଲୋକ ଦୀପ ଜାଳିଥିଲେ, ସବୁଦିନ ପାଇଁ ତାଙ୍କ ଜୀବନ ମୃତ୍ୟୁର ଅମା ଅନ୍ଧକାରକୁ ଆବୋରି ନେଲା । ସେ ଯେ ଏକ ଅନନ୍ୟ ବ୍ୟକ୍ତିତ୍ୱର ଆସନ ଜନମାନସରେ ବିସ୍ତାର କରିଥିଲେ ତାହାର ପରିଚୟ ମିଳିଥିଲା, ସେଦିନ ତାଙ୍କ ଶବ ପଟୁଆରରେ । ନିମାପଡ଼ା, ଗୋପ, କାକଟପୁରର ସବୁ ଅଞ୍ଚଳର ଗାଁମାନଙ୍କରୁ ଡାକରା ପହଞ୍ଚୁଥିଲା । ଯିଏ ଆମ ପାଇଁ, ଓଡ଼ିଶା ପାଇଁ, ଭାରତ ପାଇଁ ଏତେ ସଂଗ୍ରାମ କଲା, ତାଙ୍କ ଶବକୁ ଆମ ଆଡ଼େ ଆଣ । ସମ୍ଭବପର ହୁଅନ୍ତା ନାହିଁ । ହେଲା ନାହିଁ ମଧ୍ୟ । ମାତ୍ର ୫/୧୦/ ୧୨ ମାଇଲ, ଯେଉଁଆଡ଼େ ଶବ ପଟୁଆର ଗଲା ସେସବୁ ସ୍ଥାନରେ ଅଗଣିତ ଜନତାର ଅଶ୍ରୁଳ ଶ୍ରଦ୍ଧାଞ୍ଜଳି । ତାଙ୍କ ହାଡ଼ମାଂସର ଶରୀର ପାଉଁଶ ହୋଇଗଲା । ସମସ୍ତେ ତ ଯିବେ, ଏଥିଲାଗି ଆତ୍ମୀୟସ୍ୱଜନ କିଛି ଦିନ ଭାବିବେ । କିନ୍ତୁ ତାଙ୍କ ମୃତ୍ୟୁରେ ଏପରି ସହସ୍ର ସହସ୍ର ଲୋକଙ୍କ ଆଖିରେ ଲୋତକ କାହିଁକି ?

କେଉଁଥିପାଇଁ ଏପରି ଅନୁଶୋଚନା ? ଏପରି ଅନୁଶୋଚନା କେବଳ ସେଇଠି ସୀମିତ ରହିଲା ନାହିଁ । ମୋହନ ଦାସଙ୍କ ଭଳି ଏକ ବ୍ୟକ୍ତି ଓଡ଼ିଶାର ଜନଜୀବନରୁ ଅପସୃତ ହୋଇଗଲା; ଓଡ଼ିଶାର ଗାଁ' ଗହଳ, ସହର ଶିଳ୍ପାଞ୍ଚଳରେ ଯେଉଁମାନେ ତାଙ୍କ ଜୀବନର ଗତି ସହିତ ପରିଚିତ ସେ ସମସ୍ତଙ୍କର ଅନୁଶୋଚନା ।

ଭାରତବର୍ଷର ମୁକ୍ତି ପାଇଁ ବ୍ରିଟିଶ ସାମ୍ରାଜ୍ୟର ଉପନିବେଶବାଦର ମରଣଯନ୍ତାରୁ ଦେଶବାସୀଙ୍କୁ ତ୍ରାହି କରିବା ଲାଗି ସଂଗ୍ରାମ କରି ବାରମ୍ବାର ସେ କରାବରଣ କରିଥିଲେ ବୋଲି କ'ଣ ଏ ଅନୁଶୋଚନା ? ହଁ, ୧୯୩୦-୩୨ ଆଇନ ଅମାନ୍ୟ, ୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହ, ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ସେ କାରାଦଣ୍ଡ ଭୋଗିଥିଲେ । ଏଥିରେ ବିଶେଷତ୍ୱ କ'ଣ ଯେ ତାଙ୍କ ମୃତ୍ୟୁରେ ଏପରି ଅନୁଶୋଚନା ? ସ୍ୱାଧୀନତା ପାଇଁ ଅନେକ ଫାଶି ଖୁଣ୍ଟରେ ଝୁଲିଛନ୍ତି, ଗୁଳି ମୁହଁରେ ଟଳିପଡ଼ିଛନ୍ତି, ତାଙ୍କଠାରୁ ଅଧିକ ମଧ୍ୟ ଜେଲଦଣ୍ଡ ଭୋଗିଛନ୍ତି । ଏ କ୍ଷେତ୍ରରେ କ'ଣ ସେ ଅନନ୍ୟ ? ତାଙ୍କୁ ଜମିଦାର, ମଠ ମହନ୍ତ ଓ ବ୍ରିଟିଶ ପୁଲିସ୍ ମାଛଚୋର ମକଦ୍ଦମାରେ ପକେଇଥିଲା । ସେଥିପାଇଁ କ'ଣ ଏପରି ଅନୁଶୋଚନା ? ସେ ସ୍ୱାଧୀନତା ପୂର୍ବ ଓ ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ

ହୋଇଥିଲେ । ଥରେ କଂଗ୍ରେସ ପ୍ରାର୍ଥୀ ରୂପେ ୧୯୩୭ରେ ପ୍ରଚୁର ପ୍ରଭାବଶାଳୀ, ଅର୍ଥ ବାହୁବଳରେ ବଳୀୟାନ ଏମାରମଠ ମହନ୍ତଙ୍କୁ ପରାସ୍ତ କରିଥିଲେ । ଆଉଥରେ ୧୯୫୭ ସ୍ୱାଧୀନତା ପରବର୍ତ୍ତୀ କଂଗ୍ରେସ ବିରୋଧରେ କମ୍ୟୁନିଷ୍ଟ ସମର୍ଥିତ ପ୍ରାର୍ଥୀ ରୂପେ ଦ୍ୱୈତ ନିର୍ବାଚନ ମଣ୍ଡଳୀରୁ ବିଜୟୀ ହୋଇଥିଲେ । ଏକ ଅସାଧାରଣ ବିଧାୟକ ଥିଲେ । ସେଥିପାଇଁ କ'ଣ ସେ ଅନନ୍ୟ ଓ ସେଥିଲାଗି ଅନୁଶୋଚନା ?

ସ୍ୱାଧୀନତା ସଂଗ୍ରାମକାଳରେ ଓ ସ୍ୱାଧୀନତା ପରବର୍ତ୍ତୀ ରାଜନୈତିକ ଜୀବନରେ ସେ ରାଜନୀତି, ଆଦର୍ଶର ନିର୍ମଳତା ରକ୍ଷାକରି କେବଳ ବ୍ରିଟିଶ ଶାସନ କବଳରୁ ମୁକ୍ତିରେ ସୀମିତ ନରହି ସମାଜର, ଅର୍ଥନୀତିର, ସମାଜିକ ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ ଲାଗି ଯେଉଁସବୁ ସଂଗ୍ରାମର ଅନ୍ୟତମ ଅଗ୍ରଦୂତ ଓ ଅଗ୍ରଣୀ ଯୋଦ୍ଧା ହୋଇଥିଲେ । ସେଥିଲାଗି ମଧ ତାଙ୍କ ବିୟୋଗରେ ଅନୁଶୋଚନା ।

ତାଙ୍କ ସକ୍ରିୟ ରାଜନୈତିକ ଜୀବନର ଷାଠିଏ ବର୍ଷରେ ବହୁ ଅଧ୍ୟାୟ, ବହୁ ପର୍ଯ୍ୟାୟ ଜଡ଼ିତ । ପ୍ରତ୍ୟେକଟି ଅଧ୍ୟାୟରେ ପ୍ରତ୍ୟେକଟି ପର୍ଯ୍ୟାୟରେ ତାଙ୍କର କାର୍ଯ୍ୟ, ତାଙ୍କର ବିଚାର, ତାଙ୍କର ନେତୃତ୍ୱ ଦାନର ସ୍ୱକୀୟତା ଥିଲା । ତାହା ହିଁ ତାଙ୍କୁ ଏକ ଅନନ୍ୟ ସ୍ୱାଧୀନତା ସଂଗ୍ରାମୀ, ଏକ ଅସାଧାରଣ ଚାଷୀ ନେତା ଏବଂ ଜନଚେତନା ସୃଷ୍ଟିକାରୀ ଏକ ମନମତାଣିଆ ବାଗ୍ମୀ ରୂପେ ଜନମାନସରେ ପ୍ରତୀୟମାନ କରିଥିଲା ।

କଂଗ୍ରେସରେ ଅନ୍ୟ ଅନେକ ଥିଲେ । ଆଇନ ଅମାନ୍ୟ କରୁଥିଲେ । କାରବରଣ କରୁଥିଲେ । କିନ୍ତୁ ସେ କାଳଚେ ବୁ କଂଗ୍ରେସ ନେତା ବା କର୍ମୀ ତ ଆଉ ଏକ ସଂଗ୍ରାମ ଭିତରକୁ ଗଲେ ନାହିଁ କି ତାହାର ନେତୃତ୍ୱ ଦେଲେ ନାହିଁ । ବରଂ ସେପରି ସଂଗ୍ରାମ କଂଗ୍ରେସ ନୀତି, ଆଦର୍ଶ ଅନ୍ତର୍ଭୁକ୍ତ ନୁହେଁ ବୋଲି ସେମାନେ ବିଚାର କରୁଥିଲେ । ସେପରି ସଂଗ୍ରାମ ସ୍ୱାଧୀନତା ସଂଗ୍ରାମକୁ ଦୁର୍ବଳ କରିବ, ଆମ ଲୋକଙ୍କୁ ଭାଗଭାଗ କରିବ ବୋଲି ବିଶିଷ୍ଟ ନେତାମାନେ ମତପ୍ରକାଶ କରୁଥିଲେ । ମାତ୍ର କଂଗ୍ରେସରେ ଥାଇ ଯେଉଁମାନେ ସେପରି ସଂଗ୍ରାମର ଜୁଆର ଛୁଟେଇଲେ, ସେହି ସଂଗ୍ରାମର ସେ ହେଲେ ଏକ ଅଗ୍ରଗାମୀ ନେତା । ସେପରି ଏକ ସଂଗ୍ରାମ ଗାଁ'ଗହଳର ଶତକଡ଼ା ୯୦ ଭାଗ ଚାଷୀ ପ୍ରଜାଙ୍କର । ରଜା, ଜମିଦାର, ମହାଜନ, ମକଦମି, ଗୌନ୍ତିଆ, ସର୍ବରାକାର, ମୁସ୍ତାଦାରଙ୍କ ସାମନ୍ତବାଦୀ ଗୋଷ୍ଠୀର ନାହିଁ ନଥିବା ନିର୍ଯାତନା, ଅତ୍ୟାଚାର ବେଠିବେଗାରୀ ଓ ଧର୍ଷଣ ବିରୋଧରେ ସେପରି ସଂଗ୍ରାମ କଲେ ସ୍ୱାଧୀନତା ସଂଗ୍ରାମ ଅଧିକ ବଳଶାଳୀ ହେବ, ଏପରି ବିଚାରଧାରା ଯେତେବେଳେ କଂଗ୍ରେସ ଭିତରେ ଥିବା ପ୍ରଗତିବାଦୀ ଶକ୍ତିଙ୍କଠାରେ ପ୍ରକାଶ ପାଇଲା, ସେହି ଧାରାରେ ସଂଗଠନ ଗଢ଼ିବା, ଦୁର୍ବାର ଆନ୍ଦୋଳନ ଚଳାଇ ବ୍ରିଟିଶ ସରକାରୀ ଯନ୍ତ୍ରକୁ ଅଚଳ କରିଦେବା ଆନ୍ଦୋଳନ ଚାଲିଲା, ସେପରି ସଂଗ୍ରାମରେ ଅନ୍ୟ ଅନେକଙ୍କ ମଧ୍ୟରେ ସେ ହେଲେ ଜଣେ ଅତି ନିପୁଣ, ଦୂରଦ୍ରଷ୍ଟା ବିନ୍ଧାଣୀ ।

ବ୍ରିଟିଶ ସରକାର ଅମଳରେ ସାମନ୍ତବାଦ ବିରୋଧରେ ଏହି ସ୍ୱତନ୍ତ୍ର ସଂଗ୍ରାମ ସ୍ୱାଧୀନତା

ପରେ ରଜାରାଜୁଡ଼ା ଉଚ୍ଛେଦ, ଜମିଦାରୀ ପ୍ରଥା ବିଲୋପ ଆନ୍ଦୋଳନର ପରିଣତ ହେଲା । ସେହି ଆନ୍ଦୋଳନରେ ସୀମିତ ଲକ୍ଷ୍ୟ ଆହୁରି ପ୍ରସାରିତ ହେଲା । ନିଜର ଜମିରେ ଘରବାରିରେ ଗଛମାଛର ଅଧିକାର ଲାଗି ଆରମ୍ଭ ଚାଷୀ ସଂଗ୍ରାମ, ଜମିଦାରୀ ପ୍ରଥା ଉଚ୍ଛେଦ, ରାଜରାଜୁଡ଼ା ଶାସନର ବି ବିଲୋପ ଆନ୍ଦୋଳନ, ତହିଁପରେ ଭାଗଚାଷର ଆନ୍ଦୋଳନ ପର୍ଯ୍ୟାୟକୁ ଉଠି ଲକ୍ଷ ଲକ୍ଷ ଏକର ଜମି ବଣ୍ଟନ, ଭୂସଂସ୍କାର ଆନ୍ଦୋଳନରେ ପରିଣତ ହେଲା । ସେତେବେଳେ ମୋହନ ଦାସଙ୍କୁ ନେତୃତ୍ୱ ଦେବାଲାଗି ଖାଲି ନିମାପଡ଼ା, ଗୋପ, କାକଟପୁର ଅବା ପୁରୀ ଜିଲ୍ଲାର କୋଣ ଅନୁକୋଣରୁ ଡାକରା ଆସୁନଥିଲା । ବିରାଟ କୃଷକ ଆନ୍ଦୋଳନର ପ୍ରଖରତା ବ୍ୟାପିଗଲା ଗଞ୍ଜାମ, ସମ୍ବଲପୁର, କଟକ, ବାଲେଶ୍ୱର ଓ ଅନ୍ୟତ୍ର । ସବୁଠାରୁ ଡାକରା ଆସେ, ଆସ ମୋହନବାବୁ । ସହସ୍ର ସହସ୍ର ସମବେତ ଚାଷୀ ମୋହନ ଦାସଙ୍କ ଭାଷଣ ଶୁଣି ସଂଗ୍ରାମରେ ଅବତୀର୍ଣ୍ଣ ହେଉଥିଲେ ।

ଚାଷୀ ମୂଲିଆ, ଖଟିଖିଆ, ଗରିବ, ବଞ୍ଚିତ, ପ୍ରବଞ୍ଚିତ ଚାଷୀ, ଜୀବନର ଯାତନା, ଦୁଃଖ ଓ ତାହାର କାରଣଗୁଡ଼ିକୁ ଉପଲବ୍ଧି କରିବାରେ ଏବଂ କେଉଁଠାରେ କିପରି ଅନ୍ଦୋଳନର ନେତୃତ୍ୱ ଦିଆଯିବ, ତାହା ନିର୍ଣ୍ଣୟ କରିବାରେ ତାଙ୍କର ଅସାଧାରଣ ଦକ୍ଷତା ଥିଲା । ସେଥିଯୋଗୁ ଚାଷୀ ଆନ୍ଦୋଳନର ଅତ୍ୟନ୍ତ ପୋଖତ ନେତା, ବରିଷ୍ଠ ଓ କନିଷ୍ଠ ଚାଷୀ ଆନ୍ଦୋଳନର କର୍ମୀ ତାଙ୍କୁ ପରାମର୍ଶ କରୁଥିଲେ । ଏଇଠି ହିଁ ଅନ୍ୟମାନଙ୍କ ମଧ୍ୟରେ ତାଙ୍କର ସ୍ୱାତନ୍ତ୍ର୍ୟ । ଯେଉଁଠି ତ୍ରୁଟିବିଚ୍ୟୁତି ଘଟୁଥିଲା, ତାହାକୁ ସ୍ୱୀକାର କରିବା ଥିଲା ତାଙ୍କର ଅନ୍ୟତମ ସୁଗୁଣ ।

କଂଗ୍ରେସର ଗଣ୍ଡି ମଧ୍ୟରେ ଆବଦ୍ଧ ରହି ସ୍ୱାଧୀନୋତ୍ତର କ୍ଷମତା ଉପଭୋଗ କରିବାର ପଥ ସେ ଗ୍ରହଣ କଲେ ନାହିଁ । ସ୍ୱାଧୀନତା ସଂଗ୍ରାମର ମର୍ମ୍ମ, ତା'ର ଲକ୍ଷ୍ୟ, ଆଦର୍ଶକୁ କ୍ଷମତାକୁ ଆସିଲେ ବି କଂଗ୍ରେସ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ଅସମର୍ଥ ବୋଲି ତାଙ୍କର ଗଭୀର ଉପଲବ୍ଧି ହେଲା । କାରଣ ସେହି ସଂଗଠନରେ ପରସ୍ପର ବିରୋଧୀ ସ୍ୱାର୍ଥ ସାଧନର ବ୍ୟକ୍ତି ଓ ମନୋଭାବ ରହିଛି ବୋଲି ସେ ନିର୍ଣ୍ଣୟରେ ପହଞ୍ଚିଲେ । ସ୍ୱାଧୀନତା ପୂର୍ବ ଚାଷୀ ଆନ୍ଦୋଳନରେ ତାଙ୍କର ଏପରି ଉପଲବ୍ଧି ହେବାରୁ ସାମ୍ୟବାଦ, ଶୋଷଣ ବିହୀନ ସମାଜ ଗଠନର ଲକ୍ଷ୍ୟ ଆଦର୍ଶକୁ ମାର୍କ୍ସବାଦୀ ଆଦର୍ଶକୁ ସେ ଗ୍ରହଣ କରିନେଲେ । ଅଥଚ ଏହି ଆଦର୍ଶ ଘେନି ଗଠିତ ତାଙ୍କ ପକ୍ଷରେ ଅତି ପ୍ରିୟ କମ୍ୟୁନିଷ୍ଟ ପାର୍ଟିର ସଂଗଠନ ଭିତରେ ରହିଲେ ନାହିଁ । କିନ୍ତୁ ତାଙ୍କୁ ସେକାଳର ସବୁ ରାଜନୈତିକ ମହଲ ଏବଂ ସବୁ କମ୍ୟୁନିଷ୍ଟ ମତାବଲମ୍ବୀ ତାଙ୍କୁ କମ୍ୟୁନିଷ୍ଟ ବୋଲି ଧରିନେଲେ । ଏପରି ଏକ କର୍ତ୍ତୃତ୍ୱସଂପନ୍ନ ସ୍ୱାଧୀନତା ସଂଗ୍ରାମର ଯୋଦ୍ଧା ଓ ସାମ୍ୟବାଦୀ ଚିନ୍ତାଚେତନାର ନାୟକ ଥିଲେ ମୋହନ ଦାସ । ଦୁଇବର୍ଷ ହେଲା ସେ ନାହାନ୍ତି । ସେ କାଳରେ ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ତାଙ୍କର ବରିଷ୍ଠ ସହକର୍ମୀ ଥିଲେ ଓ ପରେ ତାଙ୍କ ସହିତ ରହିପାରି ନଥିଲେ, ସେପରି ସ୍ୱାଧୀନତା ସଂଗ୍ରାମୀମାନେ ତାଙ୍କର ଅବଦାନକୁ ସ୍ମରଣ କରୁଛନ୍ତି । ତାଙ୍କ ସହିତ ଦୀର୍ଘ କାଳର ରାଜନୈତିକ ସମ୍ପର୍କ । ଗତଥର ସ୍ମରଣିକାରେ ତାଙ୍କ ପ୍ରତି ଶ୍ରଦ୍ଧା

ନିବେଦନବେଳେ ତାଙ୍କ ସଂଗ୍ରାମୀ ଜୀବନରେ କେତେକ ଦିଗ ଉପରେ ଆଲୋକପାତ କରିଥିଲି ।

ମୋହନ ଦାସ ଓ ତାଙ୍କ ଭଳି ସହସ୍ର ସହସ୍ର ଯୋଦ୍ଧା ସ୍ୱାଧୀନତା ପରବର୍ତ୍ତୀ କାଳରେ ଯେଉଁ ଯୁଗାନ୍ତକାରୀ ପରିବର୍ତ୍ତନ ହେବ ବୋଲି ସ୍ୱପ୍ନ ଦେଖିଥିଲେ, ସେହି ସ୍ୱପ୍ନ, କଳ୍ପନା ଆଜି ଧୂଳିସାତ୍ ହୋଇଛି । ପଚାଶବର୍ଷର ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ଅର୍ଥନୈତିକ ଆତ୍ମନିର୍ଭରଶୀଳତାର ମାର୍ଗ ରୁଦ୍ଧ କରିଦିଆଯାଉଛି । ବହୁ ଜାତିକ ପୁଞ୍ଜି, ଦେଶୀ ବୃହତ୍ ପୁଞ୍ଜିର ଗ୍ରାସରେ ଭାରତବର୍ଷ ଆଉଟୁପାଉଟୁ ହେଉଛି । ଯେଉଁମାନେ ସ୍ୱାଧୀନତା ସଂଗ୍ରାମର ଏକମାତ୍ର ଉତ୍ତରାଧିକାରୀ ବୋଲାଉଛନ୍ତି ଏବଂ କ୍ଷମତାସୀନ ହୋଇଛନ୍ତି, ସେମାନଙ୍କ ଭିତରେ ରଥୀ ମହାରଥୀମାନେ କାନରେ ଶୁଣି ନଥିବା, ଆଖିରେ ଦେଖିନଥିବା ଦୁର୍ନୀତି, ଭ୍ରଷ୍ଟାଚାର କ୍ଷମତାର ଅପପ୍ରୟୋଗର ପଙ୍କରେ ପୂତିଗନ୍ଧମୟ ହୋଇପଡ଼ିଛନ୍ତି ।

ମୋହନ ଦାସ ଓ ତାଙ୍କ ଭଳି ଯେଉଁମାନେ ଷାଠିଏ ବର୍ଷ ପୂର୍ବେ ଏହା ହେବ ବୋଲି ଭିନ୍ନଭିନ୍ନ ବାଟ ଧରିଥିଲେ ସେମାନେ ଯଥାର୍ଥ ପ୍ରମାଣିତ ହୋଇଛନ୍ତି । ଜଗତୀକରଣ, ଉଦାରୀକରଣ, ଉନ୍ମୁକ୍ତ ବଜାର, ଅବାଧ ବାଣିଜ୍ୟର ବାତାବରଣ ଆଣି ଚାଲିଛି ଭୋଗସର୍ବସ୍ୱ ସଂସ୍କୃତି । ଯିଏ ଯାହା ପାର ଖାଇଯାଅ । ଏହି ଉଦାରୀକରଣ ଆଣିଚାଲିଛି ଅପସଂସ୍କୃତି । ଆପେ ବଞ୍ଚିଲେ ବାପର ନାମର ସଭ୍ୟତା ସମଗ୍ର ମାନବିକ ମୂଲ୍ୟବୋଧକୁ ଲୋପ କରିବାରେ ଲାଗିଛି । ଏକ ଦିଗରେ ଜଗତୀକରଣ, ଉଦାରୀକରଣ ନୀତିରେ ଶିଳ୍ପ, କୃଷି ବିଜ୍ଞାନର ବିକାଶ ହେବାର ଡିଣ୍ଡିମ ସତ୍ତ୍ୱେ ବେକାରୀ, ଦାରିଦ୍ର୍ୟ, ନିରକ୍ଷରତା, ବ୍ୟକ୍ତି ନିରାପତ୍ତା, ସାମାଜିକ ନିରାପତ୍ତା, ବ୍ୟକ୍ତି ନିରାପତ୍ତା, ସାମାଜିକ ନିରାପତ୍ତା ବିପନ୍ନ ହୋଇଚାଲିଛି । ଦେଶର ଐକ୍ୟ, ଭ୍ରାତୃଭାବ, ଧର୍ମନିରପେକ୍ଷ ମୂଲ୍ୟବୋଧକୁ ସାଂପ୍ରଦାୟିକତାର ଲେଲିହାନ ଜିହ୍ୱା ଗ୍ରାସ କରୁଛି । ଏକ କ୍ଷୁଦ୍ର ଜନାଂଶ ହାତରେ ଧନରାଶିର ପାହାଡ଼, ଅନ୍ୟ ଦିଗରେ ଦାରିଦ୍ର୍ୟ, ବେକାରୀ ଅନାଟନ । ବିଦେଶର ପୁଞ୍ଜି ସମ୍ରାଟମାନଙ୍କୁ ବିକାଶ, ଉନ୍ନୟନ ନାମରେ ଆମନ୍ତ୍ରଣ କରିଚାଲିଛନ୍ତି । ବିଦେଶର ପୁଞ୍ଜି ସମ୍ରାଟମାନେ ଛଳଛଦ୍ମ କରି ଭାରତ ହିତୈଷୀ ରୂପରେ ନୂତନ ଧରଣର, ଅତି ଭୟାବହ ପରାଧୀନତାର ଜାଲରେ ଦେଶକୁ ବାନ୍ଧିବାରେ ଲାଗିଲେଣି ।

ମୋହନ ଦାସଙ୍କ ସ୍ମୃତି ପ୍ରତି ଶ୍ରଦ୍ଧା ନିବେଦନ ଔପଚାରିକ ନୁହଁ । ନୂତନ ଭାରତ, ଶୋଷଣ ବିହୀନ, ଗଣତାନ୍ତ୍ରିକ ସମାଜବାଦୀ ଭାରତ ନିର୍ମାଣର ଯେଉଁ ସ୍ୱପ୍ନ, କଳ୍ପନା ଲାଗି ସଂଗ୍ରାମରେ ଅତୀତରେ ଅସଂଖ୍ୟ ଦେଶପ୍ରେମୀ ପ୍ରାଣପାତ ସଂଗ୍ରାମ କରିଥିଲେ, ସେହି ଆଦର୍ଶର ରୂପାୟନ ଲାଗି ଏବେ ବି ଯେଉଁ ସଂଗ୍ରାମ ଚାଲିଛି, ତାହାକୁ ବିଜୟମଣ୍ଡିତ କରିବା ପାଇଁ ଆହୁରି ଅନେକ ସଂଗ୍ରାମ, ଆଉ ଅନେକ ତ୍ୟାଗ, ଆତ୍ମବଳିଦାନ ଆବଶ୍ୟକ ।

□□□

ରଚନା କାଳ – ୧୯୯୭

# ଗଗନ, ତମ ସ୍ମୃତି ପଖାଳି ଏ ଦି'ପଦ

ଅନ୍ୟ କିଏ କେମିତି ଭାବନ୍ତୁ, କିନ୍ତୁ ଆମେ ସବୁ ଏମିତି ଗୋଟାଏ ପରିବାରର ବୋଲି ବିଚାକରୁ ଯେ ସେ ଆତ୍ମୀୟ-ସ୍ୱଜନ-କୁଟୁମ୍ବ ବୋଲି ଯାହା ବୁଝାଏ ତା' ନ ହୋଇଥିଲେ ହେଁ, ଆମ ଭିତରୁ ଜଣେ ଚାଲିଗଲେ ମନରେ କୋହ, ଆଖିରେ ଲୁହ, ହୃଦୟରେ ବେଦନା ଭରିଯାଏ ।

ସାଥୀ ଗଗନ ବର୍ଷେ ତଳେ ଚାଲିଗଲେ । ଆମେ ଯେଉଁମାନେ ଗୋଟାଏ ସଂପର୍କରେ ବନ୍ଧା ହୋଇଥିଲୁ, ଆମ କେତେକଙ୍କଠାରୁ ଯିଏ କନିଷ୍ଠ, ସେ ଚାଲିଗଲେ ଅନ୍ତର୍ବେଦନା ହୁଏ । ସେ ଆମ ପାଇଁ ଶୋକ କରିଥାନ୍ତେ, ତାଙ୍କ ପାଇଁ ଅଶ୍ରୁ ଆମକୁ ନିଗାଡ଼ିବାକୁ ପଡ଼ିଲା ।

ଆମ ପିଢ଼ିର ସଭିଙ୍କ ଭଳି ସେ ଏ ପରିବାରକୁ ଦେଶଭାବନା, ଦେଶପ୍ରେମ, ସ୍ୱାଧୀନତା ସଂଗ୍ରାମର ଆବାହନୀରେ ଉଦ୍‌ବୁଦ୍ଧ ହୋଇ ଆସିଥିଲେ କିଶୋର ବୟସରୁ ।

ଓଡ଼ିଶା ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ଯଜ୍ଞଦେବୀ ଗୋପବନ୍ଧୁ ଚୌଧୁରୀ, ରମାଦେବୀଙ୍କ ସେ କାଳର ସାଧାନପୀଠ ବରୀ ଆଶ୍ରମର ପ୍ରଭାବରେ ବରୀ- ବିଂଝାରପୁରର ଆଉ ଏକ ଗାଁ' ହଳଦୀବସନ୍ତ ଏକ ଦେଶବତ୍ସଳ ଗାଁ'ରେ ପରିଣିତ ହୋଇଥିଲା । ଗଗନ ବିହାରୀ ଜେନା ଏବଂ ବରୀ ଆଶ୍ରମର ସାଥୀ ଘନଶ୍ୟାମ ଖଣ୍ଡୁଆଳ ଆସି କଟକରେ ପହଞ୍ଚିଲେ । ଘନଶ୍ୟାମ ସିଧାସଳଖ ଆସିଗଲେ ଆମ ପରିବାର ଭିତରକୁ, ଆଉ ଗଗନ ବିହାରୀ କଲେଜ ଛାତ୍ର ଜୀବନରେ ସାମିଲ ହୋଇଗଲେ ଅଖିଳ ଭାରତ ଛାତ୍ରସଂଘରେ । ସେ କାଳରେ ସ୍ୱାଧୀନତା ସଂଗ୍ରାମକୁ ସ୍ୱାଧୀନତା ସଂଗ୍ରାମର ଯଜ୍ଞପୁରୁଷମାନେ ଆଶ୍ରମ କରି କର୍ମୀ ତାଲିମ୍ କରୁଥିଲେ । ସ୍ୱାଧୀନତା ସଂଗ୍ରାମର ପରମ ଲକ୍ଷ୍ୟ ଦେଶର ମୁକ୍ତି ଓ ତା ସାଙ୍ଗକୁ ଦେଶରୁ ଶୋଷଣ ନିର୍ଯ୍ୟାତନା ଲୋପ କରି ଗଣତନ୍ତ୍ର, ସମାଜବାଦର ପ୍ରତିଷ୍ଠା । ଏହି ଆଦର୍ଶ ଘେନି ଛାତ୍ରସଂଘର ଆନ୍ଦୋଳନ ଯେଉଁ କର୍ମୀ ମହଲ ତିଆରି କରୁଥିଲା, ଗଗନ ବିହାରୀ ସେହି ଛାତ୍ର ସଂଘର ଜଣେ ନେତୃସ୍ଥାନୀୟ ଯୁବକ ଭାବରେ ପ୍ରତିଷ୍ଠା ଲାଭ କରିଆସି ବେଆଇନ୍ ଥିବା କମ୍ୟୁନିଷ୍ଟ ପାର୍ଟିର ନେତାମାନଙ୍କ ସହିତ ଯୋଗାଯୋଗ କଲେ ଏବଂ ପାର୍ଟିର ଚିହ୍ନା ନ ପଡ଼ିବା କୋରିଅର୍ ହେଲେ । ବ୍ରିଟିଶ୍ ପୁଲିସ୍ ଆକ୍ରମଣରୁ ପାର୍ଟିର ଏକ ପ୍ରକାରର ରକ୍ଷାକବଚ ହେଲେ ଏହି କୋରିଅର୍‌ମାନେ । ସେତେବେଳେ ୧୯୪୦ରେ କଟକରେ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା । ଏଣେ ବ୍ୟକ୍ତିଗତ ସତ୍ୟାଗ୍ରହ ।

ଛାତ୍ରସଂଘର ଦୁର୍ବାର ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୋଧୀ ରଣହୁଙ୍କାର ଓ ଆନ୍ଦୋଳନ । ଗଗନ ଏ ସମସ୍ତର ଅଭିଜ୍ଞତା ଘେନି ମନକୁ ସଜାଡ଼ିଲେ ଯେ ସେ ଛାତ୍ରଜୀବନରେ ଯାହା କରୁଛନ୍ତି ଛାତ୍ରଜୀବନର ଶୀଘ୍ର ପରିସମାପ୍ତି ଟାଣି ହେବେ ପାର୍ଟିର ସଦାବେଳିଆ କର୍ମୀ । ଏଇଠି ଗାଁ' ହଳଦୀବସନ୍ତ । ପଂଝାଏ ଯୁବକ । ଦେଶପ୍ରେମରେ ଉଦ୍‌ବୁଦ୍ଧ, ଏହି ଯୁବକମାନେ ଗଗନଙ୍କଠାରୁ ଛାତ୍ରସଂଘ, କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକଳାପ ସମ୍ପର୍କରେ ଅବହିତ ହୋଇଥାନ୍ତି । ୧୯୪୨ ଅଗଷ୍ଟ ଆନ୍ଦୋଳନ ବେଳେ ଏହି ଗାଁ'ର ଗଗନଙ୍କ ଭାଇ, ପୁତୁରା, ସାଙ୍ଗସାଥିଙ୍କୁ ୧୯୪୨ର ପୁଲିସ୍ ଦମନ, କଳାମାଟିଆ - ହାଟସାହିରେ ଗଳି ଓ ସାଉଁଟି ମଳିକ, ମାୟାଧର ଜେନା ପ୍ରଭୃତିଙ୍କ ହତ୍ୟା ବରୀ ଆଶ୍ରମ ଓ ରାମଚନ୍ଦ୍ରପୁର ଉପରେ ମାଜିଷ୍ଟ୍ରେଟ୍ ସାଏବ ଖାଁଙ୍କ ନେତୃତ୍ୱରେ ଆକ୍ରମଣ ଓ ଧ୍ୱଂସନାଶନ ଦେଶପ୍ରେମରେ ଅଧିକ ଅନୁପ୍ରାଣୀତ ହେଲା । ଦୁଃଶାସନ ଜେନା, ହୃଷିକେଶ ସାମଲ, କପିଳ ଜେନା, ନବଘନ ଜେନା, କାଶୀନାଥ ଜେନା ପ୍ରଭୃତି ଯୁବକ ସଂଗ୍ରାମର ବହ୍ନିରେ ଶାଣିତ ହେଲେ । କମ୍ୟୁନିଷ୍ଟ ଆନ୍ଦୋଳନରେ ସେମାନଙ୍କର ଅଗ୍ରଜ ଗଗନଙ୍କ ପ୍ରଥମ ଅନୁପ୍ରେରଣା ଏବଂ କଟକ ବ୍ରହ୍ମପୁର ଜେଲ୍‌ରେ ପହଲି, ଦୁଃଶାସନ, କାଶି ପ୍ରଭୃତିଙ୍କ କମ୍ୟୁନିଷ୍ଟ ପାଲିଟିଯିବାରେ ଗଗନଙ୍କ ସ୍ୱପ୍ନ ସଫଳ ହୋଇଗଲା । ବରୀରୁ ଜନ୍ମ ପ୍ରଖ୍ୟାତ ଶ୍ରମିକ ନେତା କୃପାସିନ୍ଧୁ ଖୁଣ୍ଟିଆ ମଧ୍ୟ ଏମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା ।

ଗଗନ କଟକରେ ଗୋପନରେ ରହି ସାମିଲ୍ ହେଲେ ସେତେବେଳେ ଗଢ଼ିଉଠିଥିବା କମ୍ୟୁନିଷ୍ଟ ଆନ୍ଦୋଳନରେ ପୂର୍ଣ୍ଣପ୍ରାଣରେ । ଦୀର୍ଘ କାରାଦଣ୍ଡ ଭୋଗି ଷଡ଼ଯନ୍ତ୍ର ମାମଲାରୁ ଖଲାସ ହେବା ପରେ ଗଗନ ବିହାରୀ ଜେନା ପାର୍ଟିର ତୁଙ୍ଗନେତା ଭାଗବତୀ ଚରଣ ପ୍ରାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ଶରତ ପଟ୍ଟନାୟକ ପ୍ରମୁଖଙ୍କ ବିଭିନ୍ନ କାର୍ଯ୍ୟରେ ସହଯୋଗ କଲେ । ସେତେବେଳେ ରାମକୃଷ୍ଣ ପତି, ବୈଦନାଥ ରଥ, ବିରଞ୍ଚି ଦାଶ, ଗଙ୍ଗାଧର ରଥ, ଜଗତ୍‌କୃଷ୍ଣ ଦାସ, ଗିରିଜା ଭୂଷଣ ପଟ୍ଟନାୟକ ଓ ଆଉ ଅନେକଙ୍କ ସଙ୍ଗରେ ସାଥୀ ଗଗନ ପାର୍ଟି କାର୍ଯ୍ୟରେ ଆତ୍ମନିଯୋଗ କରି ସେହି କାଳରୁ ତାଙ୍କର ଶେଷ ନିଶ୍ୱାସ ତ୍ୟାଗ କରିବାଯାଏ ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ ତାଙ୍କ ସ୍ଥାନ ରଖିଗଲେ । ସେ ହୋଇଗଲେ ସଦାବେଳିଆ କର୍ମୀ । ପ୍ରେସ୍ ଶ୍ରମିକ ଆନ୍ଦୋଳନରେ ସେ ତୁଙ୍ଗ ପ୍ରେସ୍ ଶ୍ରମିକ ନେତାମାନଙ୍କ ମଧ୍ୟରେ ଅନ୍ୟଜଣେ ହୋଇଗଲେ ।

ପାର୍ଟିର ଗଠନ ପରେ କ୍ଷୁଦ୍ର ପାର୍ଟିର ପ୍ରଚାରର ବେଳ । ବ୍ରିଟିଶ୍ ସରକାର ଅମଳରେ ଦମନ । ସାଥୀ ଗଗନ ଜେନା ୫୦ ବର୍ଷରୁ ଉର୍ଦ୍ଧକାଳ କମ୍ୟୁନିଷ୍ଟ ପାର୍ଟିର ସଦାବେଳିଆ କର୍ମୀ ଓ ନେତାର ସ୍ୱୀକୃତି ପାଇ ପରବର୍ତ୍ତୀ କାଳରେ ସେତେ କ୍ରିୟାଶୀଳ ହୋଇ ନ ପାରିଲେ ହେଁ ସେ ଏ ପରିବାରର ସ୍ମରଣୀୟ ହୋଇ ରହିବେ । ସେ ହିଁ ଥିଲେ କଟକ ସହର ପାର୍ଟି କମିଟିରେ ପ୍ରଥମ ସମ୍ପାଦକ । ୧୯୫୨ ସାଧାରଣ ନିର୍ବାଚନ ପ୍ରଚାରରେ ଯିବାର ସୁଯୋଗ ମିଳିଥିଲା ।

କଟକ କାଠଯୋଡ଼ି ବନ୍ଧକୁ ଲାଗିଥିବା ଘରେ ପାର୍ଟି ଅଫିସରେ ସେ ଥିଲେ ଅନ୍ୟତମ କର୍ଣ୍ଣଧାର । ଶଙ୍କରପୁରର, ବିଡ଼ାନାସୀର, ଦେଉଳସାହିର ପାର୍ଟି ଶାଖାଗୁଡ଼ିକ ସକ୍ରିୟ କରିବାରେ ସେ ଲାଗିପଡ଼ିଥିଲେ । ସେତେବେଳେ ପଟିଆ, ଶଙ୍କରପୁର, ବିଡ଼ାନାସୀର ଜନତା, ପ୍ରେସ୍ ଶ୍ରମିକ, ଦରଜୀ ଶ୍ରମିକ ସଂଘର କାରିଗରମାନେ କଟକ ସହରକୁ ସଂଗ୍ରାମମୁଖର କରି ରଖିଥିଲେ । ସାଥୀ ଗଗନଙ୍କୁ ଏହାର ସଂଗଠନରେ ଅନ୍ୟମାନଙ୍କ ସହ ଅଗ୍ରଣୀ ଭୂମିକା ନେବାକୁ ପଡୁଥିଲା । ତାଙ୍କର ଦେଶପ୍ରୀତି, ପାର୍ଟିପ୍ରୀତି, ଶୋଷିତ, ନିର୍ଯ୍ୟାତିତ ଜନତା ପ୍ରତି ପ୍ରୀତ ହେତୁ ସେ ପରିବାରର ଦାୟରେ ସଦାବେଳିଆ ନ ରହିପାରିଲେ ବି ପାର୍ଟିର ଜଣେ ଏକାନ୍ତ ଅନୁଗାମୀ ହୋଇ, ଯଥାସମ୍ଭବ ପାର୍ଟି କାର୍ଯ୍ୟରେ ସହଯୋଗ କରିଆସୁଥିଲେ । ତାଙ୍କଠାରେ କମ୍ୟୁନିଷ୍ଟସୁଲଭ ଦୃଢ଼ ମନୋବଳ ସାଙ୍ଗକୁ ଆଉ ଏକ ବିଭାବ ଥିଲା, ଯାହା ସମସ୍ତଙ୍କୁ ଆକୃଷ୍ଟ କରିଥିଲା । ତାଙ୍କର ଅନ୍ତରଙ୍ଗତା, ସରଳତା ଓ ସାଥୀ ସୁଲଭତା ଓ ମିଷ୍ଟ ବ୍ୟବହାର । ସେପରି ଗୁଣର ଅଧିକାରୀ ହେବାଯୋଗୁଁ ସାଥୀ ଗଗନ ଜେନାଙ୍କର ରାଜନୈତିକ, ଆଦର୍ଶଗତ ବିରୋଧୀ ଅନେକ ଥାଇପାରନ୍ତି, ମାତ୍ର ତାଙ୍କର କେହି ଶତ୍ରୁ ନଥିଲେ କହିଲେ ଅତ୍ୟୁକ୍ତି ହେବନି । ତେଣୁ ସେ - ସମସ୍ତଙ୍କର ପ୍ରିୟ "ଗଗନ ଦା" ହୋଇଗଲେ ।

ପାର୍ଟିର ଆଦ୍ୟ ଗଠନକାଳୀନ ସମୟରେ ବ୍ରିଟିଶ୍ ଓ ସ୍ୱଦେଶୀ ସରକାର ଦମନପୀଡ଼ନ ସାଙ୍ଗକୁ ସାଥୀମାନଙ୍କର ବିଶେଷତଃ ସଦାବେଳିଆ ସାଥୀମାନଙ୍କର ଦୁର୍ଦ୍ଦଶା ବର୍ତ୍ତମାନ ସ୍ୱପ୍ନରେ ଚିନ୍ତା କରିହେବନି । ଖାଇବାକୁ ମିଳେନା, ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ମିଳେନା, ପିନ୍ଧିବାକୁ ଲୁଗା କମିଜ ଛିଣ୍ଡା ଫଟା, ଶଙ୍କରପୁରରୁ ସିଧା (ଚାଉଳ, ପନିପରିବା ଇତ୍ୟାଦି) ଆସିଲେ କମ୍ୟୁନିଷ୍ଟ ପାର୍ଟି ଚୁଲି ଜଳେ, ନଚେତ୍ ବରା, ଗୁଲୁଗୁଲା, ମୁଢ଼ି ଅବା ନିରୋଳା କୂଅପାଣି ଦୁଃସ୍ୱପ୍ନ । ସେହି ଯୁଗର କମ୍ୟୁନିଷ୍ଟମାନଙ୍କ ଭିତରେ "ଗଗନ ଦା" ବଡ଼ି କାମ କରି ନେତା ହୋଇଥିଲେ । ଶେଷଯାଏ ନେତା ରୂପେ ସମ୍ମାନ ପାଉଥିଲେ । ପତ୍ନୀ ଚଞ୍ଚଳା ଓ ପିଲାମାନେ ତାଙ୍କୁ ହରାଇ ଆଜି ନିଃସଙ୍ଗ, ନିଃସହାୟ । ଆମ ସମସ୍ତ ପରିବାର ବିଷଣ୍ଣ । ତାଙ୍କର ନିଷ୍ଠା ଆମ ଜୀବନର ପାଥେୟ ହେଉ । ଶେଷ ହୋଇଆସୁଥିବା ଜାଣି ସେ ପାର୍ଟିର ଅନ୍ୟତମ ପ୍ରତିଷ୍ଠାତା ଗୁରୁଚରଣ ଓ ଅନ୍ୟମାନଙ୍କୁ ଅନୁନୟ କରି କହୁଥିଲେ "ସଦାବେଳିଆ ହୋଇ ମୁଁ ଜୀବନ ଶେଷ ପର୍ଯ୍ୟନ୍ତ କାମ କରିଥାନ୍ତି । ସେଥିରୁ ଓହରିଯାଇ ମୁଁ ପ୍ରେସ୍ କରିଛି (ପିଲାଙ୍କ ପାଇଁ) । କିଛି ସମ୍ପତ୍ତି ହୋଇଛି । ପାର୍ଟିରେ ସେଥିରେ ଭାଗ ଅଛି । ମୁଁ ସଦାବେଳିଆ ନ ହୋଇପାରିବା ଯୋଗୁଁ ପାର୍ଟିର ଏ ଭାଗ କିପରି ପାର୍ଟିକୁ ସମର୍ପିତ ପରାମର୍ଶ ଦିଅ" । ଏହାହିଁ ତାଙ୍କ ବିପ୍ଳବୀ ବ୍ୟକ୍ତିତ୍ୱ ଓ ଉଦାର ହୃଦୟର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

□□□

ରଚନା କାଳ – ୧୯୯୧

# ମୁଁ ତାଙ୍କୁ ଯେପରି ଦେଖି ଆସିଛି

ବର୍ଷଟିଏ ବିତିଗଲା । ସେ ଲେଖନୀଟି ଆଉ ହାତରେ ନାହିଁ କି ସେ ହୃଦୟର ଗଭୀରତାରୁ ଅବା ସେ ମାନସପଟରୁ ନୂତନ କବିତାର ସୃଷ୍ଟି ହୋଇନାହିଁ । ଅନନ୍ତ ପଟ୍ଟନାୟକ ନିଜେ ଜାଣିଥିଲେ ଯିବା ନିକଟତର । ନିଜକୁ ସଜାଡ଼ି ନେଉଥିଲେ । ଅପୂର୍ଣ୍ଣ କାମତକ, ଅଧାପନ୍ତୁରିଆ ରହି ଯାଇଥିବା ପାଇଟିଗୁଡ଼ିକୁ ଶେଷ କରିବାକୁ ଉତ୍କଣ୍ଠା ପ୍ରକାଶ କରୁଥିଲେ ।

ମାତ୍ର ଯବନିକା ପଡ଼ିଗଲା । ଜନ୍ମ ବିକାଶ-ବିଲୟର ପ୍ରାକୃତିକ ଧାରାରେ ସବୁ ଜୀବସତ୍ତା ବିଲୟର ପ୍ରାକୃତିକ ନିୟମକୁ ସେ ମାନି ନେଲେ । ଆମେ ସମସ୍ତେ ମାନିବା । ତେବେ ଏହି ବ୍ୟକ୍ତିଟିର ଉତ୍ପତ୍ତି ବା ଜନ୍ମ କେଉଁଠି, କେଉଁ ପରିବାରରେ, କେଉଁ ସାମାଜିକ ପରିସ୍ଥିତିରେ ଓ ଏହାଙ୍କର ବିଲୟର ପ୍ରକ୍ରିୟା କିପରି ଗତିକଲା ଏବଂ ଚିରଦିନ ଲାଗି ଆଖି ବୁଜି ହୋଇଗଲା, ସେସବୁ କଥାକୁ ତାଙ୍କର ଅତି ପ୍ରିୟଜନ କିଛିଦିନ ମନେରଖିବେ, କାନ୍ଦିବେ, ବିହ୍ୱଳିତ ହେବେ ସନ୍ଦେହ ନାହିଁ । ସେମାନଙ୍କ ପ୍ରତି ଆମର ଦରଦ ଓ ସହାନୁଭୂତି ରହିଛି, ରହିବ ।

କିନ୍ତୁ ଏହି ବ୍ୟକ୍ତିମାନବଟି କବି ବୋଲି ପରିଚିତ ହୋଇ ଆମକୁ, ଆମ ଦେଶକୁ, ଆମ ଜାତିକୁ, ଆମ ଭବିଷ୍ୟତ ବଂଶଧରକୁ "ତାଙ୍କ ଜୀବନର ବିକାଶ କାଳିରେ" ଅମୂଲ୍ୟ ସାରସ୍ୱତ ଭଣ୍ଡାର ଦେଇ ଯାଇଛନ୍ତି ।

ଅଥଚ ଆମକୁ ନୋଟିସ୍ ନ ଦେଇ ଚାଲିଗଲେ ବୋଲି ଆମେ ଖେଦ କରିଛୁ ଓ କରୁଛୁ ।

ତାଙ୍କ କିଶୋର ଜୀବନର ରୋମାଣ୍ଟିକ କବିତା ଏବଂ ୧୯୩୪/୩୫ଠାରୁ ୧୯୮୭ ପର୍ଯ୍ୟନ୍ତ ଦୀର୍ଘ ୫୨ ବର୍ଷ କାଳ ତାଙ୍କର ଅସରନ୍ତି, ବାହାଘର ଉପହାରଠାରୁ, ଶିଶୁଙ୍କ ଲାଗି କବିତା ସୃଷ୍ଟିର ତାଙ୍କର ସୁଦୀର୍ଘ କବି ସାହିତ୍ୟ ଜୀବନରେ ସେ ଖାଲି କାବ୍ୟ କବିତା ସୃଷ୍ଟିରେ ସୀମାବଦ୍ଧ ନଥିଲେ । ପ୍ରବନ୍ଧ, କ୍ଷୁଦ୍ରଗଳ୍ପ ନାଟକ ଶିଶୁ ସାହିତ୍ୟ, ଅନୁବାଦ ସାହିତ୍ୟ ଏମିତି ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କର ଲେଖନୀ ଚାଳିତ ହୋଇଥିଲା ।

ମତାଦର୍ଶ ଓ ମୁକ୍ତି ସଂଗ୍ରାମର ସୈନିକ ଅନନ୍ତ କରାବାସ ଭିତରେ, ସ୍ୱାଧୀନତା ସଂଗ୍ରାମର ଅଗ୍ନି ଯୁଗରେ, ପ୍ରଜା ଆନ୍ଦୋଳନରେ, ଚାଷୀମାନଙ୍କ ସାମନ୍ତବାଦୀ, ଶୋଷଣ ଅତ୍ୟାଚାର ବିରୋଧୀ

ସଂଗ୍ରାମ ଭିତରେ ଜୀବନ ବିକାଶର ଝଡ଼ଝଞ୍ଜା ସମୟରେ ଦୈନନ୍ଦିନ ରାଜନୈତିକ ଜଞ୍ଜାଳରେ ଲିପ୍ତ ହୋଇ ସୁଦ୍ଧା ସେ କିନ୍ତୁ ଲେଖନୀ ଚାଳନାରୁ ବିରତ ନଥିଲେ ।

କବି, ସାହିତ୍ୟିକ, ସାହିତ୍ୟ ସମୀକ୍ଷକ, ତାଙ୍କର ଅଗଣିତ ସାହିତ୍ୟିକ ବନ୍ଧୁ ତାଙ୍କଠାରୁ ପ୍ରତ୍ୟକ୍ଷ ଗୁରୁମନ୍ତ୍ର ନପାଇ ମଧ ତାଙ୍କର ଅଗଣିତ ଶିଷ୍ୟ ଏମିତିକି ତାଙ୍କର ସୃଷ୍ଟିରେ ଯେଉଁ ଜୀବନଦର୍ଶ ପ୍ରତିଫଳିତ, ସେଥିରେ ସହମତି ନହେଉଥିବା ବ୍ୟକ୍ତି ବିଶେଷ ତାଙ୍କ କାବ୍ୟିକ, ସାହିତ୍ୟିକ ଅବଦାନର ମୂଲ୍ୟାଙ୍କନ କରିଛନ୍ତି, କରିବେ, ତାଙ୍କ ସୃଷ୍ଟିକୁ ଆଧାର କରି ବିଦ୍ୱାନମାନେ ସନ୍ଦର୍ଭ ଲେଖୁଛନ୍ତି, ଡକ୍ଟରେଟ କରିବେ । ତାଙ୍କର ଜଣେ ବହୁ ଦିନର ସହକର୍ମୀ, ଅକବି, ଅସାହିତ୍ୟିକ ମୁଁ ତାଙ୍କର ସୃଷ୍ଟିକୁ କିପରି ଦେଖିଆସିଛି ଏବଂ କେଉଁ ସାମଜିକ, ଐତିହାସିକ ପୃଷ୍ଠଭୂମିରେ ତାଙ୍କର କବି ଜୀବନର ଉନ୍ମେଷ ଘଟିଥିଲା ବୋଲି ମୁଁ ବିଚାରେ ତାହାହିଁ ଏ ଲେଖାଟିର ସୀମା ସରହଦ ହେବ, ପରିସର ହେବ ।

କବି ଅନନ୍ତ ଦ୍ୱିବିଂଶତିର ଦେଶପ୍ରେମୀ କବି ତାଙ୍କୁ ଖୁଡୁତା କୃଷ୍ଣମୋହନ ପଟ୍ଟନାୟକଙ୍କ ଦ୍ୱାରା ବିଶେଷ ଭାବରେ କୈଶୋର ଅବସ୍ଥାରେ ପ୍ରଭାବିତ ହୋଇଥିଲେ । ଅସହଯୋଗ, ଆଇନଅମାନ୍ୟ, ଭଗତ ସିଂହ ଫାଶି, ବାଘା ଯତୀନଙ୍କ ବୀରତ୍ୱ ଯେମିତି ତାଙ୍କ କବିତା ରଚନାକୁ ଉଦ୍‌ବୁଦ୍ଧ କରୁଥିଲା ଓଡ଼ିଶାର ଜାତୀୟ କବି ବୀରକିଶୋର, ବାଞ୍ଛାନିଧି ଗୋପବନ୍ଧୁ, ଗୋଦାବରୀଶ ଓ ତାଙ୍କର ସମସାମୟିକ ଓ ବର୍ଷୀୟାନ କବି ସାହିତ୍ୟିକ ତାଙ୍କ ଭାଷାରେ ବଡ଼ ଭାଇ କାଳନ୍ଦୀ ଚରଣ, ବୈକୁଣ୍ଠନାଥ ପଟ୍ଟନାୟକ ତାଙ୍କୁ କିଛିଟା ଯେ ପ୍ରଭାବିତ କରିଥିଲେ ତାହା ସେ କହିଥାନ୍ତି ।

ସେତିକି କ'ଣ ଏପରି ଏକ ସ୍ମରଣୀୟ କବି ହେବା ଲାଗି ତାଙ୍କର ପୁଞ୍ଜି ? ନା, ନୁହଁ, ମହାକବି କାଳି ଦାସ, କ'ଣ ତାଙ୍କୁ ପ୍ରଭାବିତ କରିନାହାନ୍ତି ? ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ବନମାଳୀ ପ୍ରମୁଖଙ୍କ ଯୁଗର ସାହିତ୍ୟ କ'ଣ ତାଙ୍କୁ ତନ୍ମୟ କରି ନାହିଁ ? ସେ ତ ଏଗୁଡ଼ିକୁ ପଢ଼ିଲାବେଳେ ବିଭୋର ହୁଅନ୍ତି ସେମାନଙ୍କ ଭାଷା, ବ୍ୟଞ୍ଜନା, ଉପମା, ଯମକ, ଛାନ୍ଦ, ଚମ୍ପୁରେ ! ରବୀନ୍ଦ୍ର ନାଥଙ୍କଠାରୁ ପ୍ରେମଚାନ୍ଦ, ବଙ୍କିମଙ୍କଠାରୁ ଶରତ ଚନ୍ଦ୍ର, ପୁନଶ୍ଚ ଫକୀରମୋହନ, ରାଧାନାଥ, ଭକ୍ତ କବି ମଧୁସୂଦନ, ମେହେର ଯେଉଁମାନେ ଓଡ଼ିଆ ସାହିତ୍ୟିକୁ ଋଦ୍ଧିମନ୍ତ କରିଥିଲେ, ସେପରି ଅନେକ କବି, ସାହିତ୍ୟିକ ପ୍ରବନ୍ଧକାରଙ୍କ ଅନୁଶୀଳନ କ'ଣ ତାଙ୍କ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିନାହିଁ ?

ଛାତ୍ର ଜୀବନରେ ସେକ୍‌ସପିଅରଙ୍କଠାରୁ କିଟ୍‌ସ, ମିଲ୍‌ଟନ୍, ଗୋଲଡ଼ସ୍ମିଥ ଏମିତି ଅନେକଙ୍କ ସୃଷ୍ଟି ଅଧ୍ୟୟନ କଲାବେଳେ ସେ କ'ଣ ନିଜ ଭବିଷ୍ୟତ କବି ଜୀବନ ଲାଗି ଖୋରାକ ପାଇନାହାନ୍ତି ? ପୁଣି ବିଶ୍ୱ ପ୍ରଗତିଶୀଳ, ବିପ୍ଳବୀ କବି ଚିଲିର ପ୍ରଖ୍ୟାତ କବି ପାବଲୋ ନେରୁଦା ଏବଂ ତୁର୍କୀର ନାଜିମହିକମତ୍‌ଙ୍କ ଜ୍ୱାଳମୟୀ କବିତା, କାଜି ନଜରୁଲଙ୍କଠାରୁ ସଜାଦ ଜହିର, ଅମର ଶେଖଙ୍କ ଦେଶ ବତ୍ସଳ, ବିପ୍ଳବୀ କୃତି କ'ଣ ତାଙ୍କୁ ଅଜଣା ଥିଲା ?

ସେମିତି ତାଙ୍କ ସମସାୟିକ କବି ବନ୍ଧୁ ସଚି ରାଉତରା, ଗଡ଼ନାୟକ, ମାନସିଂ, ପ୍ରାଣବନ୍ଧୁ ଆଉ ତାଙ୍କର ଗୁଣ ମୁଗ୍ଧ କବି ରମାକାନ୍ତ, ମନମୋହନ, ମନୋଜ, ବ୍ରଜରଥ, ରବି ସିଂ, ଏମିତି ନବୀନ, ଅନେକ ସ୍ରଷ୍ଟାଙ୍କ ସୃଷ୍ଟିର ସେ କ'ଣ ରୀତିମତ ପାଠକ ନଥିଲେ ?

ତାଙ୍କୁ କ'ଣ ଗର୍କି, ଟଲଷ୍ଟୟ, ପୁଷ୍କିନ, ତୁର୍ଗେନେଭ, ଚେକୋଭ, ଦୋସ୍ତୟେଭସ୍କି, ରୋମାରୋଲା ଏମିତି ବିଶ୍ୱ ବିଖ୍ୟାତ ଅନେକ ସାହିତ୍ୟ-କାବ୍ୟ-କବିତା ସ୍ରଷ୍ଟା ତାଙ୍କ କବି ଜୀବନରେ ରେଖାପାତ କରିନାହାନ୍ତି ?

ଛାତ୍ର ଜୀବନରେ, ରାଜନୈତିକ ଜୀବନରେ, କାରାବାସ ଭିତରେ ଓ କାରାବାସ ବାହାରେ ତାଙ୍କୁ ଦେଖିବାକୁ ମିଳେ ସେ ଗ୍ରନ୍ଥକୀଟ ହୋଇ ଯାଇଥିଲେ । ଏଗୁଡ଼ିକ ଅଧ୍ୟୟନ କରି ସେ ନିଜ କବି ଜୀବନକୁ ଗଢୁଥିଲେ । ଆକାଶର ଛିଣ୍ଡି ପଡ଼ିବା କବି ନୁହେଁ । ଏଇ ମାଟି, ପାଣି ପବନର ସ୍ୱାର୍ଥରେ ମଣିଷର ଅନ୍ତରର ଭାଷା, ଆକାଂକ୍ଷା, ଅଭିଳାଷକୁ ରୂପ ଦେଇ ପୃଥିବୀକୁ ଅଧିକ ସୁଶ୍ରୀ, ସତ୍ୟ ଶିବ ସୁନ୍ଦର କରିବା ପାଇଁ ତାଙ୍କର ଲେଖନୀ ଅହରହ ବ୍ୟସ୍ତ ରହିଲା ।

**ସନ୍ଧିକ୍ଷଣର କବି ଅନନ୍ତ**

କବି ଅନନ୍ତ ଜାତୀୟତାରୁ ଆନ୍ତର୍ଜାତୀୟତା ମତାଦର୍ଶର କବି ହେଲେ । ସ୍ୱାଧୀନତା ସଂଗ୍ରାମର ମହା ଉଦ୍‌ବେଳନ । ସେ କାଳର ୩୫ କୋଟି (ଆଜି ୭୦ କୋଟିରୁ ଉର୍ଦ୍ଧ୍ୱ) ଭାରତବାସୀ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନ କବଳରୁ ମୁକ୍ତ ହେବେ । ଭାରତର ହିମାଦ୍ରୀ ଶିଖରରୁ କୁମାରିକା ଯାଏ, ଉପନିବେଶର ଯନ୍ତାରୁ ଉଧୁରିବ । ତେଣୁ ସେ ଆସରର କବି ନ ହୋଇ ହେଲେ ଜାତିକୁ ଜଣେଇବାର, ଉଦ୍‌ବୁଦ୍ଧ କରିବାର, ସଂଗ୍ରାମରେ ଅବତୀର୍ଣ୍ଣ ହେବା ଲାଗି ଆହ୍ୱାନ ଦେବାର କବି । ଏହାହିଁ ତାଙ୍କ ରାଜନୈତିକ ଓ ସାହିତ୍ୟିକ ଜୀବନର ପ୍ରଥମ ଅନୁପ୍ରେରଣା ।

ଏହି ଆବେଦନ ଓ ଅନୁପ୍ରେରଣା ତାଙ୍କୁ ଜାତୀୟତାବାଦୀ କବି କରାଇଲା । କିନ୍ତୁ ଆଉ ଏକ ସର୍ବଜୟୀ ଆବେଦନ, ଅନୁପ୍ରେରଣା ତାଙ୍କୁ ସୁସ୍ଥ-ମହନୀୟ ଜାତୀୟତା ସାଙ୍ଗକୁ ଅନ୍ତର୍ଜାତୀୟ ପରିସରକୁ ଘେନିଗଲା । ସ୍ୱାଧୀନତା ନିରର୍ଥକ, ଯଦି ଶୋଷଣ ରହିବ, ନିର୍ଯ୍ୟାତନା ରହିବ । ପୃଥିବୀରେ ମାର୍କସ ଏଙ୍ଗେଲସଙ୍କ ମହାନ୍ ଦର୍ଶନ ଓ ମହାନ୍ ଅର୍ଥନୀତିର ବିଜ୍ଞାନସମ୍ମତ ବସ୍ତୁନିଷ୍ଠ ତତ୍ତ୍ୱ କଳ୍ପନା ସର୍ବସ୍ୱ ନୁହଁ । ଲେନିନ ସେହି ମହାନ ତତ୍ତ୍ୱକୁ ନିଜ ଦେଶର ପରିସ୍ଥିତିରେ ପ୍ରୟୋଗ କରି କାଳ କାଳ ଲାଗି ପୃଥିବୀର ଏକଷଷ୍ଠାଂଶ ଭୂମିରୁ ଶୋଷଣ ବିଲୋପ କରି ଦେଲେ ଅକ୍ଟୋବର କ୍ରାନ୍ତି ବଲେଶେଭିକ ବିପ୍ଳବ ଦ୍ୱାରା । ପରଦେଶ ଅଧିକାରରୁ ସ୍ୱଦେଶର ସ୍ୱାଧୀନତା ସାଙ୍ଗକୁ ମାନବ ମୁକ୍ତିର ଦର୍ଶନ । କବି ଅନନ୍ତ ସେହି ମହାନ ମୁକ୍ତିକାରୀ ଦର୍ଶକ ପ୍ରତି ଆକୃଷ୍ଟ ହେଲେ ।

ପୁରାତନ ଯୁଗ ଯିବ ନୂତନ ଯୁଗ ଆସିବ । ପୁରାତନ ମାନବିକ ମୂଲ୍ୟବୋଧ ସ୍ଥାନରେ ମାନବିକତାର ନୂତନ ମୂଲ୍ୟବୋଧ ସୃଷ୍ଟି କରିବାକୁ ହେବ, ଯୁଗର ସନ୍ଧିକ୍ଷଣରେ ଅନନ୍ତ ତାଙ୍କ ସହସ୍ର ସୃଷ୍ଟିର ଛତ୍ରେ ଛତ୍ରେ ଏହି ନୂତନର ଆବାହନ କରିଗଲେ । ତେଣୁ ଯୁଗର ସନ୍ଧିକ୍ଷଣର କବି ବୋଲି ତାଙ୍କୁ ଅଭିହିତ କରିବା ଯଥାର୍ଥ ।

ଏହିଠାରୁ ଚିରାଚରିତ ପଥରୁ ତାଙ୍କର ଅନୁସରଣ । ଦେଶ ମାତୃକାର ସ୍ୱାଧୀନତା ସଂଗ୍ରାମର ସେ ପକ୍ଷଭୁକ୍ତ ହେଲେ । ପକ୍ଷଭୁକ୍ତ ହେଲେ ସମାଜବାଦର, ସାମ୍ୟ, ମୈତ୍ରୀ, ବିଶ୍ୱ ଭ୍ରାତୃତ୍ୱର । ସେ ପକ୍ଷ ନେଲେ ସମାଜର ନିଷ୍ପେଷିତ, ଲକ୍ଷ କୋଟି ମାନବର । ଯାହା ମାନବ ସମାଜର ଉତରୋତ୍ତର ସୁସ୍ଥ ବିକାଶରେ ଅନ୍ତରାୟ, ଯାହା ମାନବ ସଭ୍ୟତା ଓ ସଂସ୍କୃତିର ଉତ୍କର୍ଷ ସାଧନରେ ପ୍ରତିବନ୍ଧକ, ଯାହା ଗଣମୁଖୀ ନୁହଁ, ତାହାର ବିରୋଧ ପକ୍ଷରେ ତାଙ୍କ ସକଳ ସୃଷ୍ଟିରେ ସେ ଉଭା ହେଲେ । ଏହିପରି ପକ୍ଷପାତିତାକୁ ସାହିତ୍ୟ କ୍ଷେତ୍ରରେ ସେ ସତ୍ୟ, ଶିବ, ସୁନ୍ଦର ମଣିଲେ । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଭାଷାରେ "ସବାର ଉପରେ ମାନୁଷ ସତ୍ୟ ତାର ଉପରେ ନାଇଁ" । ଏହି ସତ୍ୟକୁ ଧରି ତାଙ୍କ ଲେଖନୀର ମୂନରେ ଆଘାତ କଲେ ଯାହା ମାନବ ପକ୍ଷରେ କଳଙ୍କ, ଆବର୍ଜନାପୂର୍ଣ୍ଣ, ଅଶାଳୀନ ।

ଓଡ଼ିଶାରେ ଅନନ୍ତ ଏକମାତ୍ର ପ୍ରଗତିଶୀଳ, ପକ୍ଷଭୁକ୍ତ କବି, ଏପରି ଅହଂକାର ସେ କରି ନାହାନ୍ତି କି କେହି କରିବେ ନାହିଁ । ସେପରି କେତେକ କବି ଆଜିବି ଅଛନ୍ତି । ଦିନେନା ଦିନେ ସେମାନଙ୍କର ଏପରି ପକ୍ଷଭୁକ୍ତ, ଅଙ୍ଗୀକାରବଦ୍ଧ ସୃଷ୍ଟି ସୁଧୀଜନ ମାନସରେ ଗଭୀର ରେଖାପାତ କରିଥିଲା । ବେଶ୍ ପ୍ରଶଂସାଭାଜନ ହୋଇଥିଲେ, ସମ୍ମାନିତ ହୋଇଥିଲେ ବା ହେଉଛନ୍ତି । ମାତ୍ର ପୂର୍ବର ଅଙ୍ଗୀକାରରୁ ସେମାନେ ନାନା ଆଳ ଦେଖାଇ ଅପସରି ଯାଇଛନ୍ତି । ବାଟବଣା କହିଲେ ଠିକ୍ ହେବ ନାହିଁ । ସୂକ୍ଷ୍ମରେ, ପ୍ରଚ୍ଛନ୍ନ ଭାବରେ ସେମାନେ ଅନ୍ୟ ପକ୍ଷ ଭୁକ୍ତ ହୋଇ କବି ସାହିତ୍ୟିକ ନିଷ୍ପକ୍ଷ ହେବା ଉଚିତ ବୋଲି ଯୁକ୍ତି କରନ୍ତି । ଅବଶ୍ୟ ସେସବୁର ଆଲୋଚନା ଏହି ଲେଖାର ପରିସରଭୁକ୍ତ ନୁହଁ ।

କିନ୍ତୁ ଅନନ୍ତ ଜୀବନର ଶେଷ ନିଃଶ୍ୱାସ ଥିବାଯାଏ ତାଙ୍କ ସାହିତ୍ୟିକ, ଅଙ୍ଗୀକାରରେ ଅଟଳ ରହିଲେ । ସେ ପକ୍ଷଭୁକ୍ତ ହୋଇ ରହିଲେ । ଅଥଚ ତାଙ୍କର ଅସୁମାରି ରଚନାରେ ପ୍ରଚାର ଧର୍ମୀୟତା ନଥିଲା ।

ଯୁଦ୍ଧ ବିଭୀଷିକା; କ୍ଷମତା ଓ ସମ୍ପଦ ଓ ଦେଶ ଅଧିକାର ଲାଗି ହତ୍ୟା, ହିଂସା, ସଂକୀର୍ଣ୍ଣତା, କ୍ଷୁଦ୍ରତା, ଭାଷା-ଅଞ୍ଚଳଗତ ବିଦ୍ୱେଷ, ଜାତି ବିଦ୍ୱେଷ, ବର୍ଣ୍ଣବିଦ୍ୱେଷ, ବଡ଼ ଜାତି ବଡ଼ିମା, ସାମ୍ପ୍ରଦାୟିକତା, ଧର୍ମୀୟ ମତାନ୍ଧତାର ବିରୋଧ ପକ୍ଷଭୁକ୍ତ ସ୍ରଷ୍ଟା ମଧ୍ୟ କ୍ଷୁଦ୍ର ଏକ ମାନବ ଗୋଷ୍ଠୀର ବିଶାଳ ଏକ ମାନବ ଗୋଷ୍ଠୀ ଯିଏ କ୍ଷେତବାଡ଼ି, ଖଣିଖାଦନ, କଳକାରଖାନା, ବିଜ୍ଞାନଗାରରେ ପ୍ରକୃତି ବିରୋଧରେ ସଂଗ୍ରାମ କରି ସମ୍ପଦ ସୃଷ୍ଟି କରେ, ଯିଏ ବାସୁକୀ ତା'ରି ଉପରେ ଯେଉଁ

ସାମାଜିକ, ଆର୍ଥିକ ବ୍ୟବସ୍ଥା ଶୋଷଣ, ନିପୀଡ଼ନ, ଜାହିର କରେ, ବଞ୍ଚିତ କରେ, ପ୍ରବଞ୍ଚିତ କରେ, ପ୍ରତାରିତ କରେ ତାହା ବିରୋଧରେ ସେ ଲେଖନୀ ଚାଳନା କଲେ, ଅମର ସୃଷ୍ଟି କରିଗଲେ ।

ଏ ଲେଖାଟିରେ ତାଙ୍କର ଚାରୋଟି କବିତାର ଆବେଦନକୁ ସଂକ୍ଷେପରେ ପ୍ରକାଶ କରି ସେ ଓଡ଼ିଶାରେ ସାମ୍ରାଜ୍ୟବାଦ ବିରୋଧରେ ସ୍ୱାଧୀନତା ସଂଗ୍ରାମରେ ଛାତ୍ରମାନଙ୍କୁ ନବଜୀବନ, ନବସାହିତ୍ୟ ରଚନା କରିବା ଲାଗି ବୁଦ୍ଧିଜୀବୀମାନଙ୍କୁ ଏବଂ ସାମନ୍ତବାଦୀ ପୁଞ୍ଜିବାଦୀ-ସମାଜ ବ୍ୟବସ୍ଥା ବିରୋଧରେ ଚାଷୀ ଶ୍ରମିକମାନଙ୍କୁ କିପରି ସଂଗ୍ରାମରେ ଅବତୀର୍ଣ୍ଣ ହେବା ଲାଗି ସାହିତ୍ୟ କବିତା ମାଧ୍ୟମରେ ସାହାଯ୍ୟ କରିଥିଲେ ତାହାହିଁ ଉଲ୍ଲେଖ କରିବି । ଶେଷରେ ମାନବ ସଭ୍ୟତାକୁ ପରମାଣୁ ଯୁଦ୍ଧ ବିଭୀଷିକାରୁ ମୁକ୍ତ କରିବା ଲାଗି ସଂଗ୍ରାମରେ ଅବତୀର୍ଣ୍ଣ ହେବା ପାଇଁ ତାଙ୍କର 'ଶାନ୍ତି କପୋତରେ' ଆହ୍ୱାନ ତାଙ୍କୁ ଯୁଗଧର୍ମୀ, ମାନବତାବାଦୀ, ପ୍ରଗତିଶୀଳ ସ୍ରଷ୍ଟାର ଆସନ ଦେଇଗଲା ।

୧୯୩୫-୩୬ – ଆଇନ ଅମାନ୍ୟ ଆନ୍ଦୋଳନରେ ଭଟ୍ଟା ପଡ଼ିଥାଏ । ଦେଶପ୍ରେମୀ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ନାନା ଚିନ୍ତା । କେଉଁ ବାଟରେ ସାହିତ୍ୟ ଯିବ, ସଂସ୍କୃତି ଯିବ । ଦେଶରେ ପରାଧୀନତା ଯିବ, ନୂତନ ସମାଜ ସୃଷ୍ଟି ହେବ ।

ଗଢ଼ାଯାଏ ନବଯୁଗ ସାହିତ୍ୟ ସଂସଦ । ତା'ରି ଆନୁଷ୍ଠାନିକ ଉଦ୍‌ବୋଧନ ଉତ୍ସବ । କବି ଅନନ୍ତଙ୍କ ରଚିତ ଆବାହନୀ –

ନବୀନ ଯୁଗର ତରୁଣ ଜାଗରେ ଜାଗ ବନ୍ଧନ ହରା -
ବକ୍ଷ ଶୋଣିତେ ଲକ୍ଷ ଜୀବନେ -
ଖେଳାଅ ଆଲୋକ ଧାରା -
ଛିନ୍ନ କରରେ ବନ୍ଧନ ରାଜି କ୍ରନ୍ଦନ ହେଉ ଶେଷ
ଲୁପ୍ତ ହେଉରେ ଜାତି ଉପଜାତି ଖଣ୍ଡିତ ଶତ ଦେଶ'

ଶ୍ରୀମତୀ ମାଳତୀ ଦେବୀଙ୍କ ପରି ପ୍ରଖ୍ୟାତ ବିପ୍ଳବିଣୀଙ୍କ କଣ୍ଠରେ ଏହାର ମୂର୍ଚ୍ଛନା କେବଳ ନବଦିଗନ୍ତର ସୂଚନା ଦେଇ ଥିଲା ନୁହେଁ, ସେ କାଳରେ ଯୁବଛାତ୍ର, ବୁଦ୍ଧିଜୀବୀମାନଙ୍କୁ ଉଦ୍‌ବୁଦ୍ଧ କରିବା ଲାଗି ଏହି ଗୀତଟି ରାଜ୍ୟର ବିଭିନ୍ନ ସ୍ଥାନରେ ପରିବେଷିତ ହୋଇ ନବ ଶିହରଣ ସୃଷ୍ଟି କରିଥିଲା । ବହୁ ନୂତନ ଯୁବକ, ସାହିତ୍ୟିକ ଏହି ସାମ୍ରାଜ୍ୟବାଦ ବିରୋଧୀ, ପ୍ରଗତିଶୀଳ ଆନ୍ଦୋଳନରେ ଯୋଗ ଦେଲେ ।

ସେମିତି ୧୯୩୬ ମସିହା । ସ୍ୱାଧୀନତା ସଂଗ୍ରାମରେ ସମଗ୍ର ଛାତ୍ର ସମାଜକୁ ଉଦ୍‌ବୁଦ୍ଧ କରିବା ଲକ୍ଷ୍ୟ ନେଇ, ନୂତନ ସମାଜ ଲାଗି ସଂଗ୍ରାମର ଆହ୍ୱାନ ଦେଇ ଗଠିତ ହୁଏ ଛାତ୍ର ସଂଘ । ଏହି ଛାତ୍ର ସଂଘର ଉଦ୍‌ବୋଧନୀ ସମ୍ମିଳନୀରେ କବି ଅନନ୍ତଙ୍କ ଆହ୍ୱାନ ।

"ଯେ ଦୀପ ଜଳିଲା ଆଜି ଜଳାଅ ତାରେ
ଘନ ଅନ୍ଧକାର କୋଳେ ହୃଦୟ ଶୋଣିତ ଧାରେ ।"

ସେତେବେଳେ ସ୍କୁଲ କଲେଜ୍ ଏତେ ସଂଖ୍ୟାରେ ନଥାଏ । ମାତ୍ର ଛାତ୍ର ସଂଘର ଆହ୍ୱାନ ବିଭିନ୍ନ ସ୍କୁଲ କଲେଜ୍ ଛାତ୍ରଙ୍କ ନିକଟରେ ପହଞ୍ଚେ । ସଭା ହୁଏ, ସମ୍ମିଳନୀ ହୁଏ । ଅନନ୍ତଙ୍କ ଏହି ଗାନ ଗୁଞ୍ଜରି ଉଠେ ଛାତ୍ରସଂଘ କର୍ମୀଙ୍କ କଣ୍ଠରେ । ସମଗ୍ର ଛାତ୍ର ଜନତା ଉଦ୍‌ବେଳିତ ହୁଏ । ଶତଶତ ଛାତ୍ର ସ୍ୱାଧୀନତା ସଂଗ୍ରାମରେ ସାମିଲ ହୁଅନ୍ତି ।

ଆଜିର ନବୀନ ବଂଶଧରଙ୍କ ପାଖରେ ବୁଢ଼ିମା କାହାଣୀ ପରି ଲାଗି ପାରେ । ମାତ୍ର ୧୯୩୫/୩୬ ସାରା ଭାରତ ପରି ଓଡ଼ିଶାର ସ୍ୱାଧୀନତା ସଂଗ୍ରାମରେ ଆଉ ଏକ ବଳିଷ୍ଠ ସଂଗ୍ରାମର ସ୍ରୋତ ସାମିଲ ହେଲା । ଜମିଦାର ମଠ ମହନ୍ତ-ଗୌନ୍ତିଆ ସର୍ବକାର ମକଦମଙ୍କ ଜମିଦାରୀରେ ବ୍ରିଟିଶ ବାହୁଛାୟା ତଳେ ମଧ୍ୟଯୁଗୀୟ ଗର୍ବର ଅତ୍ୟାଚାର, ଲୁଣ୍ଠନ ଶୋଷଣ, ଧର୍ଷଣ, ହତ୍ୟା ଦଣ୍ଡ, କର ଟିକସ, ମାଗୁଣି, ବେଠି ବେଗାରୀ ! ମନେଅଛି କବି ଅନନ୍ତଙ୍କ ଗାନ :

"ଜୀବନ ଦେଇଛୁ ଢାଳିଲୁ ରକ୍ତ ଗଢ଼ିଲୁ ସଉଧ ମାଳା
ଅମରି ଲାଗିରେ ଶାସନ ଶକ୍ତ ଆମେରେ ସର୍ବହରା
ଝାଞ୍ଜି ପବନ ସହିରେ ସଘନ ଗହୀରେ ରୋଇବୁ ଧାନ
ବରଷା କାଦୁଅ ଚକଟି କେତେରେ ଶୀର୍ଣ୍ଣ କରିଲୁ ପ୍ରାଣ
ପଉଷ ପ୍ରଭାତେ କାଟିଲୁ ଶସ୍ୟ ହସିଲେ ନିଖିଳବାସୀ
ଅତ୍ୟାଚାରୀର କରାଳ କବଳେ ନେଲାଟି ସକଳ ଗ୍ରାସୀ
ଆମେରେ ଗଢ଼ିଲୁ ବନ୍ଧୁକ ତୋପ ତଲବାର ଆମ ପାଇଁ
ଆମେର ଗଢ଼ିଲୁ କାରାର ପ୍ରାଚୀର ବନ୍ଧନ ଗୀତିକାଇ
ଯେ ଯୁଗେ ମାନବ ଉଡ଼ଇ ଆକାଶେ ବୁଡ଼ଇ
ସାଗର ଜଳେ
ସେ ଯୁଗରେ ଆମେ ହା ଅନ୍ନ ହା ଅନ୍ନ
ମାଗିବୁଲୁ ନତ ଶିରେ
ପ୍ରାପ୍ୟ ଆମର ନେବୁରେ ମୁକର ଆମେ ମୂଲିଆର ଜାତି
ଆମେରେ ଆଣିବୁ ରକ୍ତ ପ୍ରଭାତ ଚିରି ଅନ୍ଧାର ରାତି" ।

ଏହି ଗାନଟିର ଉଲ୍ଲେଖ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ଗାନଟି ସେ କାଳରେ ଏବଂ ଆଜି ମଧ୍ୟ ଶୋଷଣରୁ ମୁକ୍ତି ପାଇଁ ଚାଷୀ ଓ କ୍ଷେତମୂଲିଆ ଶ୍ରମିକଙ୍କ ସଭା ସମିତିରେ ଗୀତ ହେଲାବେଳେ ଚାଷୀ ଶ୍ରମିକ ପଣ ନିଏ -

'ଅନ୍ଧାର ରାତି ଚିରିବାକୁ ।'

ଆଜି ଯାହା ସେ କାଳରେ ସମ୍ଭବପର ନଥିଲା । ବ୍ରିଟିଶ ପୁଲିସ୍‌କୁ ଡର, ଜମିଦାର

ଗଡ଼ଜାତ ରଜାଙ୍କ ପିଆଦାକୁ ଡର ଲୋକେ ଭୀତତ୍ରସ୍ତ ଗାଁ', ଚଉକିଆଟିକୁ ଡର । ନାଲି ପଗଡ଼ିଆ (ସେତେବେଳେ ପୁଲିସ କନେଷ୍ଟବଲ ନାଲି ପଗଡ଼ି ପିନ୍ଧୁଥିଲେ) ଦେଖିଲେ ଲୋକେ ଭୟରେ ପଳାଇ ଯାଉଥିଲେ ।

ଅଥଚ ଅନନ୍ତଙ୍କ ଏହି କବିତାଟିକୁ ଚୁଙ୍ଗାଧରି ବୋଲି କୃଷକ ଆନ୍ଦୋଳନର କର୍ମୀମାନେ ଗାଁ'ରେ ବୁଲି ଆସିଲେ ଲୋକଙ୍କ ଭୟ ଭାଙ୍ଗୁଥିଲା, ସଭାସମିତିକୁ ଆସୁଥିଲେ । କିପରି ଗଡ଼ଜାତ ରାଜାମାନଙ୍କ ଉଚ୍ଛେଦ ଓ ଜମିଦାରୀ ପ୍ରଥା ବିଲୋପ ଲାଗି ଆନ୍ଦୋଳନର ବହ୍ନି ଜଳି ଉଠିଲା ଓ କିପରି ତାହା ଯଶସ୍ୱୀ ହେଲା - ଅଥଚ ଅଧାପନ୍ତରିଆ ରହିଲା, ପୂର୍ଣ୍ଣାଙ୍ଗ ହେଲା ନାହିଁ ଓ ଉକ୍ତ ସଂଗ୍ରାମ ଚାଲିଛି ତାହା ସ୍ୱତନ୍ତ୍ର ବିଷୟ । ଅସଲ କଥା ଅନନ୍ତ ଏକ ସଂଗ୍ରାମର କବିଥିଲେ । ତାଙ୍କ ସୃଷ୍ଟି ସହସ୍ର ସହସ୍ର ସେ କାଳରେ ଭୟଭୀତ ଜନତା ମଧ୍ୟରେ ପ୍ରାଣ ସଂଚାର କରାଉଥିଲା । ସାମନ୍ତବାଦ ବିରୋଧୀ ସଂଗ୍ରାମରେ ଝାସ ଦେବାକୁ ବାହାରି ପଡୁଥିଲେ । ତାହାହିଁ ତାଙ୍କୁ ପ୍ରଗତିଶୀଳ ଗଣ କବିରେ ଆସନ ଦେଇଥିଲା ।

ତାଙ୍କର ଅସରନ୍ତି କବିତା ଭଣ୍ଡାରରୁ ଆଉ ଏକ ଦିଗର ସାମାନ୍ୟ ସୂଚନା ଦେଇ ଲେଖାଟି ସମାପ୍ତ କରିବି ।

ଦ୍ୱିତୀୟ ମହାସମର ଶେଷ ହୋଇଥାଏ । ହିଟଲର ମୁସୋଲିନ୍ ଓ ଜାପାନର ଟୋଜୋ ନାଜୀ-ଫାସିଷ୍ଟମାନେ ସାରା ପୃଥିବୀରୁ କେବଳ ସମାଜବାଦ ନୁହଁ; ଗଣତନ୍ତ୍ର, ମୁକ୍ତି ଓ ସ୍ୱାଧୀନତା ସଂଗ୍ରାମକୁ, ଶ୍ରମିକ-ଖଟିଖିଆମାନଙ୍କ ବଞ୍ଚିବାର ସଂଗ୍ରାମକୁ କାଳ କାଳ ଲାଗି ନିଶ୍ଚିହ୍ନ କରି ଦେବା ପାଇଁ ସେମାନେ ଏ ଯୁଦ୍ଧ ଭିଆଇଥିଲେ । ସେ କାଳର ଆହ୍ୱାନ ଓ ନିଜ ନିଜର ଆବଶ୍ୟକତା ଲାଗି ସମାଜବାଦୀ ସୋଭିଏତ୍ ୟୁନିୟନ ସହିତ ସାମ୍ରାଜ୍ୟବାଦୀ ବ୍ରିଟେନ୍, ଫ୍ରାନ୍ସ ଓ ଆମେରିକାର ଫାସିଷ୍ଟ ବିରୋଧୀ ଯୁଦ୍ଧ ମେଣ୍ଟ ହୋଇଥିଲା । ଏହି ପ୍ରଳୟଙ୍କରୀ ଯୁଦ୍ଧର ୫ କୋଟି ଲୋକ, କେବଳ ସୋଭିଏତ ୟୁନିୟନର ୨ କୋଟି ଲୋକ ପ୍ରାଣ ଦେଇଥିଲେ । ବିଶେଷତଃ ସୋଭିଏତ୍ ଲାଲବାହିନୀର ପ୍ରଚଣ୍ଡ ଆଘାତରେ ହିଟଲର୍ ବାହିନୀ ପରାସ୍ତ ହେଲା । ସାରା ୟୁରୋପ ମୁକ୍ତ ହେଲା । ଆମ ଦ୍ୱାର ଦେଶରେ ବର୍ମା ଯାଏ ଦଖଲ କରି କଲିକତା ଚିଟାଗଙ୍ଗ ଏମିତିକି ଓଡ଼ିଶାର ବ୍ରହ୍ମପୁରଠାରେ ବୋମା ପକେଇ ଥିବା ଜାପାନର ଦସ୍ୟୁ ବାହିନୀ ପରାସ୍ତ ହେଲା ।

ବିଶେଷତଃ ୟୁରୋପରେ ୯ଟି ଦେଶରେ ସମାଜବାଦୀ ବିପ୍ଳବ ଜୟଯୁକ୍ତ ହେଲା । ଭାରତ ସମେତ ଏସିଆ ଆଫ୍ରିକା, ଲାଟିନ ଆମେରିକାରେ ପୁରାତନ ବ୍ରିଟିଶ, ଫରାସୀ ଓଲନ୍ଦାଜ ପର୍ତ୍ତୁଗୀଜ ଏବଂ ଆମେରିକା ସାମ୍ରାଜ୍ୟବାଦ କବଳରୁ ମୁକ୍ତ ଲାଗି ପୁନର୍ବାର ସଂଗ୍ରାମ ଚାଲିଲା ।

ରଣ କ୍ଷେତ୍ରରେ ଯୁଦ୍ଧର ପ୍ରକୃତ ଜୟ ହୋଇ ସାରିଥିଲେ ସୁଦ୍ଧା ଆମେରିକା ନାରକୀୟ ପରମାଣୁ ବୋମା ନିକ୍ଷେପ କରି ଜାପାନର ହୀରୋସୀମା-ନାଗାସାକୀର ଲକ୍ଷ ଲକ୍ଷ ଲୋକଙ୍କୁ ମୁହୂର୍ତ୍ତକେ ମାରି ଦେଲା, ଲକ୍ଷଲକ୍ଷ ଲୋକଙ୍କୁ ଆଜିଯାଏ ପଙ୍ଗୁ କରିଦେଲା ।

କବି ଅନନ୍ତଙ୍କ କବି ପ୍ରାଣ ଦୋହଲି ଗଲା । ବିଲାତର ଚର୍ଚ୍ଚିଲ ଓ ଆମେରିକା ପୁନର୍ବାର ଆଉ ଏକ ଯୁଦ୍ଧ ଓ ପରମାଣୁ ଯୁଦ୍ଧ ଅର୍ଥାତ୍ ସାରା ମାନବ ସତ୍ତା ଓ ଜୀବସତ୍ତାର ବିଲୋପର ପ୍ରସ୍ତୁତ ଚଳାଇଲେ । ଉପନିବେଶ ଫେରି ପାଇବେ । ହିଟଲର୍ ମୁସୋଲିନୀ ପରେ ସାରା ପୃଥିବୀକୁ ଦଖଲ କରିବେ । ସମାଜବାଦକୁ ଧ୍ୱଂସ କରିବେ ।

ଅନନ୍ତ ପଟ୍ଟନାୟକ ଆଉ ଥୟ ଧରି ରହି ପାରିଲେ ନାହିଁ । ୧୯୫୦/୫୧ ଆଜି ୧୯୮୮ । ତାଙ୍କରି ଶାନ୍ତି କବିତାକୁ ସେ କାଳରେ ଶତ ଶତ ଶାନ୍ତିକର୍ମୀ ଗାଇ ଗାଇ ଓଡ଼ିଶାର ସହର ସହରାଞ୍ଚଳରେ, ପଲ୍ଲୀ ଗ୍ରାମରେ ବିଶ୍ୱ ଯୁଦ୍ଧ ବିରୋଧରେ, ପରମାଣୁ ଅସ୍ତ୍ରଶସ୍ତ୍ରର ବିଲୋପରେ ଦାବୀ ଘେନି ନିରସ୍ତ୍ରୀକରଣ ଆହ୍ୱାନ ଦେଇ ଜନଚେତନାକୁ ଜାଗ୍ରତ କରାଇଲେ । ତାଙ୍କର –

ଶାନ୍ତି କପୋତ ଆମ –
ଯାଆରେ ଉଡ଼ି ଉଡ଼ି ଯାଆରେ
ମରଣର ସୁଅ ଠେଲି ଜୀବନର ରାହାରେ, ଯାଆରେ
"ହଟାଅ ହଟାଅ ! ମୃତ୍ୟୁବାହିନୀ ଦୁଆରୁ
ଆଉ ବେଳ ନାହିଁ ବେଳ, ଆଉ ନାହିଁ ବେଳ ଭାଇରେ ।
ମହାମାରୀ ଆଜି ଆସୁଛି ମୃତ୍ୟୁ ସଇନି
ବୁଣି ଯାଏ ଖାଲି ପରମାଣୁ ବୋମା ବୀଜାଣୁ
ଶୁଣି ନାହିଁ ଲବେ ଦୁର୍ବଳ ମଇ-ଦଇନି
ଚୁରିଯାଏ ସବୁ ଅମର ସ୍ୱପ୍ନ ପରାଣୁ –
ଏସିଆର ମର୍ମ ପାଖେ –
ଶାନ୍ତିର କପୋତ ଡାକେ
ଜୀବନର ଯାତ୍ରା ପଥେ ଯିବ କିଏ ?
ଆସ ଯାତ୍ରୀ ଦଳ
"ଶାନ୍ତିର କପୋତ ଡାକେ ତୁମର ଏ ମର୍ମ ପାଖେ
ଆଜି ନୋହେ ଗୃହ କୋଣେ
ଜୀବନର ପୂରିବ ଆୟୁଷ
ରୁଗ୍ଣ ପ୍ରଣୟିନୀ ପାଶେ
ପ୍ରଣୟର ବିକୃତ ପ୍ରୟାସ
ଲଙ୍ଗଳର ପଥରୋଧ କର କିଏ ? ପ୍ରସ୍ତର !
ଶସ୍ୟର ସ୍ମିତରୋଧ କର କିଏ ? ପଙ୍ଗପାଳ
ଆତ୍ମାର କଣ୍ଠରୋଧ କର କିଏ ? ଅତତାୟୀ !

ତାଙ୍କର ବିଶ୍ୱଶାନ୍ତି ଅର୍ଥାତ୍ ମାନବ ଜାତି, ମାନବ ସତ୍ତାର, ମାନବ ସଂସ୍କୃତି, ସର୍ବୋପରି ଧରା ବକ୍ଷରେ ଜୀବ ସତ୍ତାର ସୁରକ୍ଷା ଲାଗି ତାଙ୍କର ଆହ୍ୱାନ ଏ ରାଜ୍ୟରେ ବିଶ୍ୱଶାନ୍ତି ଆନ୍ଦୋଳନ, ଯୁଦ୍ଧବିହୀନ ପୃଥିବୀ ଗଠନ ଆନ୍ଦୋଳନକୁ ଯେଉଁ ଅବଦାନ ଦେଇଛି ଓ ଦେଉଛି ତାହାହିଁ ତାଙ୍କର ସମସ୍ତ ଅପୂର୍ବ କୃତିର ଶୀର୍ଷରେ ରହିବ । ଆଜି ଅନନ୍ତ ଭାଇଙ୍କ ପ୍ରଥମ ସ୍ମୃତି ବାର୍ଷିକୀରେ ଏଇ ଲେଖାଟି ମୋର ଅଶ୍ରୁ ତର୍ପଣ ।

□□□

ରଚନା କାଳ – ୧୯୮୭

# ଚଞ୍ଚଳ ଚାଲିଗଲୁରେ ରାମ ରାମ

ଛବିଶ ଅକ୍ଟୋବର ଉଣେଇଶ ତେୟାନବେ ମଧ୍ୟାହ୍ନ । କଟକ ବୁଢ଼ୀଠାକୁରାଣୀ "ସଂଗ୍ରାମ ଭବନ"ରେ ସଂଗ୍ରାମୀଙ୍କର ନିଶ୍ଚଳ, ନିସ୍ପନ୍ଦ ଶରୀର ଶାୟିତ । ସାଥୀ ରାମଚନ୍ଦ୍ର ରାମ ଆଉ ନାହାନ୍ତି । ଦୀର୍ଘ ଚାରିବର୍ଷର ପୀଡ଼ା ତାଙ୍କୁ ଶେଷ ପୀଡ଼ା ଦେଇ ନେଇଯାଇଛି । ସେ ସାଥୀ ଥିଲେ କେବଳ ଏକ ଆଦର୍ଶଧାରୀ ଗୋଷ୍ଠୀର ନୁହଁ; ତାଙ୍କୁ ସାଥୀରୂପେ ହରାଇଲେ ଗଲା ପାଞ୍ଚ ଦଶନ୍ଧିକାଳ ଓଡ଼ିଶାର ଯେଉଁ ଶ୍ରମିକମାନଙ୍କ ଲାଗି ସେ ସଂଗ୍ରାମ କରି କେତେ ଜିତାପଟ ହାସଲ କରିଥିଲେ, ସେପରି ଶ୍ରମିକମାନେ । ସେ ଥିଲେ ବହୁକାଳ ଧରି ବିଭିନ୍ନ ଶ୍ରମିକ ସଙ୍ଗଠନର, ଶ୍ରମିକ ଆନ୍ଦୋଳନର ଦୀପ୍ତିମାନ ନେତା । ତାଙ୍କୁ ହରାଇଲେ, ଯେଉଁମାନେ ତାଙ୍କରି ପରି ମାନବ ମୁକ୍ତିର ମହାନ୍ କ୍ରାନ୍ତିକାରୀ ଆଦର୍ଶ ବୈଜ୍ଞାନିକ ସାମ୍ୟବାଦରେ ବିଶ୍ୱାସ କରି ସେହି ପଥରେ ଅଗଣିତ ଝଡ଼ଝଞ୍ଜା ଭିତରେ ସଂଗ୍ରାମ କରି ଆସିଛନ୍ତି ସେମାନେ । ଏପରି ଏକ ସହଯୋଦ୍ଧା, ସହକର୍ମୀ, ନେତୃସ୍ଥାନୀୟ ସାଥୀଙ୍କୁ ହରାଇବାର ବେଦନାରେ ସେମାନେ କେବଳ ସୀମିତ ନୁହଁନ୍ତି । ସ୍ୱାଧୀନତା ସଂଗ୍ରାମର ଯେଉଁ ଅଗଣିତ ଯୋଦ୍ଧା ମୁକ୍ତି ସଂଗ୍ରାମର ରଣାଙ୍ଗନରେ ଥାଇ ଏବେ ଯାଏ ସହସ୍ର ସହସ୍ର ସହଯୋଦ୍ଧାଙ୍କୁ ହରାଇ ବଂ ରହିଛନ୍ତି, ସେମାନେ ହରେଇଲେ ସେ କାଳର ଜଣେ ଯୁବଯୋଦ୍ଧା, ଯିଏ ସେମାନଙ୍କ ସହିତ ସହବନ୍ଦୀ ଥିଲେ । ଅନେକ ପ୍ରବୀଣ, ନବୀନ ଆଇନଜୀବୀ ବୁଦ୍ଧିଜୀବୀ, ନ୍ୟାୟାଧୀଶ, ଯେଉଁମାନେ ସଂଗ୍ରାମୀ ବ୍ୟକ୍ତିଟି ଜୀବିକା ନିର୍ବାହର ପନ୍ଥାରୂପେ ଆଇନ ବୃତ୍ତିରେ ଥାଇ ମଧ୍ୟ ନିଜର ଆଦର୍ଶରୁ ବିଚ୍ୟୁତ ହୋଇନଥିଲା ଏବଂ ଆଇନର ପରିସର ମଧ୍ୟରେ ଜମିରୁ ବଂ୍‌ତ ଚାଷୀ ଶ୍ରମମୂଲ୍ୟରୁ ବଂ୍‌ତ ଶ୍ରମିକଙ୍କ ପକ୍ଷରୁ ଓକିଲାତି କଲାବେଳେ ଆଇନ୍ କାନୁନ୍‌ର ପରିସୀମା ଭିତରେ ସେମାନଙ୍କୁ ନ୍ୟାୟ ଦେବା ଲାଗି ଆକଟ୍ୟ ଓ ବଳିଷ୍ଠ ଯୁକ୍ତି ବାଢୁଥିଲା ସେମାନେ ହରାଇଲେ ଏକ ବିଶିଷ୍ଟ ପ୍ରଗତିଶୀଳ ଆଇନଜୀବୀଙ୍କୁ ।

ସାଥୀ ରାମଚନ୍ଦ୍ରଙ୍କୁ ସଂଗ୍ରାମୀ ଜୀବନ ନେବା ପାଇଁ ପ୍ରେରଣା ମିଳିଥିଲା ୧୯୩୬/୩୭ ମସିହାରେ ଓଡ଼ିଶାରେ ଚମକ ଆଣି ଦେଇଥିବା ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୋଧୀ ଛାତ୍ର ଆନ୍ଦୋଳନ, ନିଖିଳ ଭାରତ ଛାତ୍ରସଂଘଠାରୁ ।

ସେ କାଳର ଖୋର୍ଦ୍ଧା ହାଇସ୍କୁଲ । ସେଇଠି ତାଙ୍କର ଦୀକ୍ଷା ଗ୍ରହଣ । ସାଥୀ ଥିଲେ ଦୁର୍ଗା ଚରଣ ମହାନ୍ତି, ବସନ୍ତ ମହାନ୍ତି ଏମିତି ଆଉ କେତେଜଣ ହାଇସ୍କୁଲ ଛାତ୍ର । ଏଇଠି ଉତ୍କଳମଣି ଗୋପବନ୍ଧୁଙ୍କୁ ବିଚାର କରାଯାଇ ଦଣ୍ଡବିଧାନ କରାଯାଇଥିଲା । ଏଇଠି ସେତେବେଳେ ଡେରା ପକାଇଥିଲେ ସ୍ୱାଧୀନତା ସଂଗ୍ରାମୀ ଓ ଚାଷୀ ଆନ୍ଦୋଳନର ନେତା ପ୍ରାଣନାଥ ପଟ୍ଟନାୟକ ଓ ଗୋକୁଳ ମୋହନ ରାୟଚୂଡ଼ାମଣୀ । ଏଇଠିକି ଯାଆନ୍ତି ୰ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାୟତ୍ ପ୍ରମୁଖ । ସେମାନଙ୍କ ପ୍ରେରଣା ତାଙ୍କୁ ଜୀବନର ଭବିଷ୍ୟତ ପଥ ବାଛି ନେବାକୁ ଉତ୍ସାହ ଦେଇଥିଲା । ସାମ୍ରାଜ୍ୟବାଦ ବିରୁଦ୍ଧରେ ପୂର୍ଣ୍ଣ ସ୍ୱାଧୀନତା ଓ ପୁଞ୍ଜିବାଦ ସାମନ୍ତବାଦ କବଳରୁ ଶୋଷଣ ନିର୍ଯ୍ୟାତନାର ମୁକ୍ତି ଏହି ଲକ୍ଷ୍ୟ ଆଦର୍ଶରେ ଅନୁପ୍ରାଣିତ ରାମଚନ୍ଦ୍ର ରାମ ଓ ପଢ଼ା ସାଙ୍ଗ ଯୋଦ୍ଧାମାନେ କଟକ ଆସିଲେ ସେତେବେଳେ ଓଡ଼ିଶାର ଏକମାତ୍ର ପୂର୍ଣ୍ଣାଙ୍ଗ କଲେଜ୍ ରେଭେନ୍ସାକୁ । ଏତିକିବେଳେ ତାଙ୍କ ଜନ୍ମମାଟି ଓଡ଼ିଶାର ୨୬ ଗଡ଼ଜାତ ମଧ୍ୟରେ କ୍ଷୁଦ୍ର ରଣପୁର ରାଜ୍ୟରେ ପ୍ରଜାମଣ୍ଡଳର ଆନ୍ଦୋଳନ । ତାଙ୍କ ବାପା ବନମାଳୀ ରାମ ପ୍ରଜା ମଣ୍ଡଳ ସଭାପତି ଓ ଗଙ୍ଗାଧର ମିଶ୍ର, ଅଗାଧୁ ବରାଳ ପ୍ରମୁଖ ନେତା । ସ୍ୱାଧୀନତା ଓ ସାମ୍ୟବାଦର ଆଦର୍ଶ ଏବଂ ଗଡ଼ଜାତ ପ୍ରଜାଙ୍କ ମୁକ୍ତି ଓ ସାମନ୍ତବାଦର ପ୍ରଧାନ ଖମ୍ବ ଗଡ଼ଜାତ ଗୁଡ଼ିକର ବିଲୋପର ସଂଗ୍ରାମ ପ୍ରତି ତାଙ୍କର ଆକର୍ଷଣ । ରଣପୁରର ବୀର ରଘୁ-ଦିବାକର ଫାଶି ତାଙ୍କୁ ଅଥୟ କରିଦେଲା । ଅଗ୍ନୀକାର ବଢ଼ିଲା, ଶାଣିତ ହେଲା ।

ଆଗେ ୧୯୪୨ ଅଗଷ୍ଟ ୯ । ରେଭେନ୍ସା କଲେଜର ଛାତ୍ରମାନଙ୍କ ମଧ୍ୟରେ ମହା-ଉଦ୍‌ବେଳନ । ସମସ୍ତ ଜାତୀୟ ୯ନେତା ଗିରଫ, ବ୍ରିଟିଶର ଭୟଙ୍କର ଦମନଲୀଳା, ସବୁ ମତବାଦର ଛାତ୍ର ନେତାଙ୍କ ସହ ଦୁର୍ଗା ଚରଣ ମହାନ୍ତି, ନରସିଂହ ତ୍ରିପାଠୀ, ବିଭୁଧେନ୍ଦୁ ମିଶ୍ର, ବନମାଳୀ ପଟ୍ଟନାୟକ, ସୁରଜମଲ ସାହା, ମୋତିଲାଲ ତ୍ରିପାଠୀ ପ୍ରମୁଖ ଛାତ୍ରନେତାମାନଙ୍କ ଗିରଫ । ବ୍ରହ୍ମପୁର କେନ୍ଦ୍ର କାରାବାସରେ ସବୁମତର ପାଂଶତାଧିକ ଯୋଦ୍ଧାଙ୍କ ମେଳରେ ସେ । ଜେଲରେ କ୍ରୀଡ଼ା (ଭଲିବଲ୍ ଆଉ ସ୍ୱତନ୍ତ୍ର ସାଂସ୍କୃତିକ ନାଟକ ଆଦିରେ ତାଙ୍କର ଅଭିନୟ ଓ କ୍ରୀଡ଼ା ନୈପୁଣ୍ୟର ପରିଚୟ ମିଳିଲା ।

ରାମଚନ୍ଦ୍ର ରାମଙ୍କ ମଝିରୁ ଚନ୍ଦ୍ର ଶବ୍ଦଟି ବ୍ରହ୍ମପୁର ଜେଲଖାନାରୁ ଉଭାନ ହୋଇଗଲା । ତାଙ୍କୁ ଡକାଗଲା ରାମ ରାମ । ଶେଷଯାଏ ସେ ରାମ ରାମ ରୂପେ ରହିଗଲେ । ଛାତ୍ରମାନଙ୍କ ମଧ୍ୟରୁ ଅଗ୍ରୀମ ଖଲାସ ପରେ ୧୯୪୩ରେ ସେ ମୁକ୍ତି ପାଇ ସେଇଦିନୁ ପାଠପଢ଼ା ସାଙ୍ଗକୁ କମ୍ୟୁନିଷ୍ଟ ପାର୍ଟିର ଜଣେ ଯୁବ କର୍ମୀ ରୂପେ ଛାତ୍ର ସଂଘ ସଙ୍ଗଠନରେ ସକ୍ରିୟ ଭୂମିକା ନେଲେ । ସମ୍ପାଦକ ହେଲେ ।

ଭଗବତୀ ବାବୁଙ୍କର ଦାରୁଣ ଦେହାନ୍ତ ଶବାଧାର ବୋହିବାରେ ଥିଲେ ସିଏ, ଗଗନ ଜେନା, ଗଙ୍ଗାଧର ରଥ, ଆଉ ହରିହର ମହାପାତ୍ର, ଶ୍ୟାମସୁନ୍ଦର ମିଶ୍ର ପ୍ରମୁଖ । ରାମ ରାମ

ଅନେକ ବେଳେ ଦୁଃଖ ସୁଖ ଆଲୋଚନା ବେଳେ ସେଇ କରୁଣ ଦୃଶ୍ୟଟି ତାଙ୍କୁ କିପରି ଅଭିହିତ କରିଥିଲା ସେ କଥା ବର୍ଣ୍ଣନା କରି ଆତ୍ମହରା ହୋଇପଡ଼ନ୍ତି ।

ଆସେ ଦ୍ୱିତୀୟବାର ୧୯୪୬-୪୮ ଗଡ଼ଜାତ ପ୍ରଜା ଆନ୍ଦୋଳନ ରାମରାମଙ୍କୁ ରଣପୁର ପ୍ରଜାମଣ୍ଡଳର ବରିଷ୍ଠ ପ୍ରବୀଣ ନେତାମାନେ ତାହାର ସଭାପତି ପଦରେ ଅଧିଷ୍ଠିତ କରାଇ ପ୍ରଜା ଆନ୍ଦୋଳନର ନେତୃତ୍ୱ ନିଅନ୍ତି ।

ସାଥୀ ରାମ ରାମ ସ୍ୱାଧୀନତା ପୂର୍ବରୁ ଓ ପରେ ଅସଙ୍ଗଠିତ ଶ୍ରମିକ ଶ୍ରେଣୀକୁ ସଙ୍ଗଠିତ କରି ସେମାନଙ୍କ ଦାବୀଗୁଡ଼ିକ ଲାଗି ବହୁ ସଂଗ୍ରାମରେ ଅବତୀର୍ଣ୍ଣ ହୁଅନ୍ତି । ଓଡ଼ିଶାରେ ସର୍ବ ପ୍ରଥମ ସଙ୍ଗଠିତ ଶ୍ରମିକ ସଙ୍ଗଠନର ଦାୟିତ୍ୱ ତାଙ୍କୁ ବରିଷ୍ଠ ପାର୍ଟି ନେତା ରାମକୃଷ୍ଣ ପତି ପ୍ରମୁଖ ଅର୍ପଣ କରନ୍ତି । ସେହି କାଳରୁ ଦୀର୍ଘ ୪୦ ବର୍ଷରୁ ଅଧିକ କାଳ ସେ ଏହି ସଙ୍ଗଠନର ସଭାପତି ପଦରେ ରହି ପ୍ରେସ୍ ଶ୍ରମିକମାନଙ୍କୁ ସେକାଳର ଗୋତି ଶ୍ରମିକତ୍ୱରୁ ମୁକ୍ତ କରିବାରେ ଅଗ୍ରଣୀ ଭୂମିକା ନେଇଥିଲେ । ସାରା ଓଡ଼ିଶାର ବିଦ୍ୟୁତ୍ କର୍ମଚାରୀମାନଙ୍କର ଏକ ଅଗ୍ନିବାଣ ନେତା ରୂପେ ସେ ଉଭା ହେଲେ । ତାଙ୍କୁ ତାଙ୍କର ଅଗଣିତ ସମର୍ଥକ ଶ୍ରମିକ ଓ ତାଙ୍କ ୟୁନିଅନକୁ ବିରୋଧ କରୁଥିବା ଅନ୍ୟ ନେତାମାନେ ତାଙ୍କୁ ସ୍ୱୀକୃତି ଦେଇଥିଲେ ।

ସେ ପାର୍ଟିର ଓ ଗଣ ଆନ୍ଦୋଳନର ଜଣେ ଉଚ୍ଚକୋଟୀର ବାଗ୍ମୀ ରୂପେ ବିବେଚିତ ହେଉଥିଲେ । ଦୃଢ଼ ରାଜନୀତି ଓ ଅର୍ଥନୀତିର ସମସ୍ୟା ବଳୀକୁ ଢଗ ଢମାଳି, ଓଡ଼ିଆ ପଦ୍ଧତି ଦେଇ ପ୍ରକାଶ କରି ଶ୍ରୋତାମାନଙ୍କୁ ମୁଗ୍ଧ କରିବାର ଦକ୍ଷତା ତାଙ୍କୁ ଜନପ୍ରିୟ ବକ୍ତାର ସମ୍ମାନ ଆଣି ଦେଇଥିଲା ।

ପ୍ରଜାସ୍ୱତ୍ୱ ଆଇନଗୁଡ଼ିକର ଚାଷୀ ସ୍ୱାର୍ଥ ପକ୍ଷପାତି ତର୍ଜମା ଓ ସେ ସଂକ୍ରାନ୍ତରେ ତାଙ୍କର ଗଭୀର ଅନୁଶୀଳନ ହେତୁ ତାଙ୍କୁ କୃଷକ ଆନ୍ଦୋଳନର ନେତାମାନେ ପରାମର୍ଶ କରୁଥିଲେ ଓ ସେ ମଧ୍ୟ ତା'ର ତର୍ଜମା କରି ପ୍ରବନ୍ଧମାନ ପ୍ରକାଶ କରି ଚାଷୀ ଆନ୍ଦୋଳନକୁ ନୂତନ ପରିସ୍ଥିତିରେ ଠିକଣା ବାଟ ଦର୍ଶାଉଥିଲେ ।

୧୯୬୫ରେ ରଣପୁର ପ୍ରଜାମାନେ ତାଙ୍କୁ ସି.ପି.ଆଇ.ର ବୈଧାନିକ ଭାବରେ ନିର୍ବାଚିତ କରିଥିଲେ । ବିରୋଧୀ ଦଳର ଜଣେ ବିଧାୟକ ଭାବରେ ବିଧାନସଭାରେ ବିଭିନ୍ନ ଶୋଷିତ ଶ୍ରେଣୀର ସମସ୍ୟାକୁ ନିପୁଣ ଭାବରେ ବାଢ଼ିବାର ପାରଦର୍ଶିତା ସେ ଦର୍ଶାଇ ପ୍ରଶଂସା ଭାଜନ ହୋଇଥିଲେ ।

ସେ ପାର୍ଟିର କାର୍ଯ୍ୟକାରୀ କମିଟିର ବହୁଦିନ ସଦସ୍ୟ ଥିଲେ । ବିଶ୍ୱଶାନ୍ତି ଆନ୍ଦୋଳନ, ମୈତ୍ରୀ ଆନ୍ଦୋଳନରେ ଓଡ଼ିଶାର ଜଣେ ବରିଷ୍ଠ ନେତାର ସମ୍ମାନ ପାଉଥିଲେ । ହେଲିସିଙ୍କି ବିଶ୍ୱଶାନ୍ତି ସମ୍ମିଳନୀରେ ସେ ଭାରତର ପ୍ରତିନିଧି ଦଳରେ ଅନ୍ତର୍ଭୁକ୍ତ ଥିଲେ ।

ଏକଦା ସେ ପାର୍ଟିର କର୍ମକୌଶଳରେ ଅସମ୍ମତ ହୋଇ ପାର୍ଟିରୁ ଅତି ସାମାନ୍ୟ ସମୟ

ପାଇଁ ଦୂରେଇ ଯାଇଥିଲେ । ମାତ୍ର ଆତ୍ମ ସମୀକ୍ଷା କରି ନିଜ ତ୍ରୁଟିକୁ ହୃଦବୋଧ କରି ସେ ପାର୍ଟିରେ ପୁନଃପ୍ରବେଶ ପାଇଁ ଆକୁଳ ନିବେଦନ କରି ଲେଖିଥିଲେ, କମ୍ୟୁନିଷ୍ଟ ପାର୍ଟିରେ ମତପାର୍ଥକ୍ୟ ହେତୁ ପାର୍ଟି ଛାଡ଼ିଯିବା ଅର୍ଥ ମାନବ ମୁକ୍ତିର ମହାନ ଆଦର୍ଶ ସାମ୍ୟବାଦକୁ ପରିହାର କରିବା । ଏହାକୁ କୁହାଯାଏ କମ୍ୟୁନିଷ୍ଟଙ୍କର ଆତ୍ମସମୀକ୍ଷା । ତାହାର ପ୍ରମାଣ ସେ ଦେଇଥିଲେ ।

କର୍ମବହୁଳ ଜୀବନରେ ମଧ୍ୟ ସେ ମାନବିକ ନୂତନ ସଂସ୍କୃତିର ଉନ୍ମେଷ ପାଇଁ ଚେଷ୍ଟା କରି ଏକଦା ସପ୍ତଶଯ୍ୟା ଚଳଚ୍ଚିତ୍ରରେ ଏକ ଭୂମିକା ନେଇ ଅବତୀର୍ଣ୍ଣ ହୋଇଥିଲେ । ଶହୀଦ ରଘୁ-ଦିବାକରଙ୍କୁ ଉତ୍ସର୍ଗ କରି ସେ ଏକ ନାଟକ ରଚି ତାକୁ ବିଶିଷ୍ଟ କଳାକାର ପତି-ପତ୍ନୀ ପୁତ୍ର, ପୁରଞ୍ଜନ ରାୟ ପରିବାର ଦ୍ୱାରା ବାରମ୍ବାର ଅଭିନୀତ କରାଇଥିଲେ । "ସଂଗ୍ରାମୀ" ପୁସ୍ତକଟି ରଚନା କରି ସେଥିରେ ସେ ତାଙ୍କ ଜୀବନର ଓ ସେକାଳ ସଂଗ୍ରାମର କେତେକ ପ୍ରତିଛବି ରଖି ଯାଇଛନ୍ତି । ସତୁରୀ ବର୍ଷ ପୂର୍ତ୍ତିରେ ସେ ଆଉ ରହିଲେ ନାହିଁ । କମ୍ୟୁନିଷ୍ଟ ପରିବାରର ଓ ଶ୍ରମିକ ଶ୍ରେଣୀର ଏବଂ ଭାରତବର୍ଷର ଓ ଓଡ଼ିଶାର ଆଜିର ଦୁଃସହ ପରିସ୍ଥିତି ବେଳେ ଉତ୍‌ଥିତ ଜନଆନ୍ଦୋଳନର ଏକ ନିଶ୍ଚିତ କ୍ଷତି ହେଲା ।

ତାଙ୍କର ଜଣେ ସହକର୍ମୀ, ବନ୍ଧୁ ଭାବରେ ତାଙ୍କର ପ୍ରଥମ ଶ୍ରାଦ୍ଧବାର୍ଷିକୀରେ ପୁଷ୍ପାର୍ଘ୍ୟ ଅର୍ପଣ କରି ଶ୍ରଦ୍ଧାଞ୍ଜଳି ଜଣାଉଛି ।

□□□

# ଏପ୍ରିଲ ୧୦ର ଏହି ବ୍ୟକ୍ତିପୁରୁଷ

ବଂଶର ସେ ଜାତକରେ ସ୍ୱନକ୍ଷତ୍ର ୧୯୧୨ ଜୁନ୍ ୬ । ଜାତିର ଜାତକରେ ସ୍ୱନକ୍ଷତ୍ର ୧୯୩୦, ଏପ୍ରିଲ ୧୦ । ସେ ଜାତକକୁ ଜ୍ୟୋତିଷ ମହାଶୟ ଖଡ଼ି ଗୋଟାଳିରେ ପ୍ରଥମେ କୋଷ୍ଠିକାଟି ତାଳପତ୍ର ଲେଖନରେ ଲେଖିଲାବେଳେ ଆବାହନ କରିଥିଲେ ବୀରାଧିବୀରବର, ନବକୋଟୀକର୍ଣ୍ଣାଟୋତ୍କଳବର୍ଗେଶ୍ୱର ଗଜପତି ମହାରାଜ ଅମୁକ ଦେବଙ୍କ ଅମୁକ ସନଙ୍କୁ । କଲ୍ୟାଣ କରିଥିଲେ ପରମାୟୁ ୧୦୮ ବର୍ଷ । ଲେଖିଥିବେ କେଶବ କାନୁନ୍‌ଗୋ ସ୍ୱପତ୍ନୀ ଗର୍ଭରୁ ସୁପୁତ୍ରର ଜନ୍ମ ।

ମାତ୍ର ନୂଆ ଜାତକଟିର ଜ୍ୟୋତିଷ ହେଲେ ସ୍ୱାଧୀନତା ସଂଗ୍ରାମ ଆଉ ମହାତ୍ମାଗାନ୍ଧୀ ।

ଏକ ଅଖ୍ୟାତ ପଲ୍ଲୀ ଓଡ଼ିଶାର ପଚାଶହଜାର ପଲ୍ଲୀଗ୍ରାମରୁ ଆରେକ ୧୯୩୦ ଏପ୍ରିଲ ୧୦ରେ ଯେଉଁ ବ୍ୟକ୍ତିପୁରୁଷଟିର ନବଜନ୍ମ ହେଲା, ତାକୁ ପ୍ରଖ୍ୟାତ କରିଦେଲା । ସେ ଖ୍ୟାତି ବ୍ୟାପିଲା ସାରା ଓଡ଼ିଶାରେ, ସେହି ଖ୍ୟାତିର ପ୍ରସାର ସୀମାବଦ୍ଧ ରହିଲାନି । ଭାରତଭୂଇଁର ସୁଧୀଜନ ମହଲରେ ସେଦିନର ଅମାନିଆ, ପାଠଛଡ଼ା କିଶୋର ନିଜର କୃତି କୃତିତ୍ୱରେ ଅବିସାଂଦିତ ହୋଇଗଲା ।

ଗାଁର ଜ୍ୟୋତିଷଙ୍କ ଗଣନା ଦୁଇଟି ଦଫାରେ ତ୍ରୁଟିଯୁକ୍ତ ହୋଇଥିଲା । ୧୦୮ ପରମାୟୁ ବଦଳରେ ସଶରୀର ପରମାୟୁ ୬୮ ହୋଇ ୧୯୯୦ ଜୁନ ୨୨ରେ କଟକ ସତୀଚଉରା ଶ୍ମଶାନମାଟିରେ ପାଉଁଶ ହୋଇଗଲା । ଆଉ ମଲ୍ଲିପୁରର କାନୁନଗୋଙ୍କ ସୁପୁତ୍ର ଓଡ଼ିଶାର ଅନ୍ୟତମ ବରପୁତ୍ର ହୋଇଗଲା ।

ଏହା ନବଜନ୍ମର ପରିଣାମ । ନୂଆ ଜାତକର ଗଣନା । ୧୦୮ ବର୍ଷ ପରମାୟୁ ପରିବର୍ତ୍ତେ ଓଡ଼ିଶା ଜାତିର ଜୀବନରେ ଚିରଞ୍ଜିବୀ ପଦବାଚ୍ୟ ହୋଇଗଲେ ସେହି ବ୍ୟକ୍ତି ପୁରୁଷଟି ।

୧୯୩୦ ଏପ୍ରିଲ ୧୦ ତାରିଖ ହିଁ ଏହି ଗୁରୁ କର୍ତ୍ତବ୍ୟ ସମ୍ପାଦନ କଲା । ସେ ଦିନଟି ନ ଆସିଥିଲେ ଏହି ବ୍ୟକ୍ତି ଜୀବନର ଗତିପ୍ରବୃତି ସମ୍ଭବତଃ ଭିନ୍ନ ହୋଇଥାନ୍ତା । ସ୍ୱାଧୀନତା ସଂଗ୍ରାମର ଯଜ୍ଞବେଦୀରେ ଯେଉଁମାନେ ଅବତୀର୍ଣ୍ଣ ହୋଇଥିଲେ, ସେମାନଙ୍କର ପ୍ରତ୍ୟେକଙ୍କ ଜୀବନରେ ଏମିତି ଗୋଟିଏଗୋଟିଏ ନବଜନ୍ମର ସ୍ୱନକ୍ଷତ୍ର ଆସିଛି, ଆସିଥିବ । ଅନେକଙ୍କ

ନବଜନ୍ମ ହୋଇଛି ଏ ଦେଶବାସୀଙ୍କ ପାଇଁ ପରାଧୀନ, ଲୁଣ୍ଠିତ, ନିଷ୍ପେଷିତ, ନିର୍ଯ୍ୟାତିତ, ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସକମାନଙ୍କ ଦ୍ୱାରା ଅର୍ଦ୍ଧମାନବ ଅର୍ଦ୍ଧବର୍ବର ପଙ୍ଗୁ ରୂପେ ବିବେଚିତ ଭାରତ ମାଟିର କୋଟି ଜନତା ପାଇଁ ଏକ ଆଶୀର୍ବାଦ, ଇତିହାସର ଅକାଟ୍ୟ ସ୍ୱାକ୍ଷର ତାହା ବହନ କରେ ।

ଦୁଇଶହ ଶତାବ୍ଦୀର ସ୍ୱାଧୀନତା ସଂଗ୍ରାମର ଅନ୍ତିମ ଶଙ୍ଖନାଦ ନିନାଦିତ ହେଲା । ମହାତ୍ମାଗାନ୍ଧୀଙ୍କ ଆହ୍ୱାନ – 'ବ୍ରିଟିଶ ସରକାର ସହିତ ଅସହଯୋଗ କର, ଉପାଧି ଛାଡ଼, ଗୋଲାମିର ପାଠଛାଡ଼, ବ୍ରିଟିଶ ନୌକରଗିରି ଛାଡ଼ । ପୁଣି ଆଇନ ଅମାନ୍ୟ କର, ବ୍ୟକ୍ତିଗତ ସତ୍ୟାଗ୍ରହ କର' । ଅନ୍ତିମ ଡ଼ାକରା 'କର ଅବା ମର'ର ସଂଗ୍ରାମ କର ।

ଏମାନେ ଦ୍ୱିତୀୟ ପାଢ଼ିର ଗୋଲାମି ପାଠଛଡ଼ା ଯୁବକ । ୧୯୩୦ର ଆଇନ ଅମାନ୍ୟ ଡ଼ାକରା, ବିଦେଶୀ ପଦାର୍ଥ ବର୍ଜନ କର, ସ୍ୱଦେଶୀ ପଦାର୍ଥ ବ୍ୟବହାର କର - ଆତ୍ମନିର୍ଭରଶୀଳ ହୁଅ - ଅର୍ଥନୈତିକ ବାସନ୍ଦ, ରାଜନୈତିକ ବାସନ୍ଦ ପ୍ରୟୋଗ କର । ଏହି ଶଙ୍ଖନାଦ ନିନାଦିତ ହୋଇଥିଲା ୧୫ ବର୍ଷୀୟ କିଶୋର ବିନୋଦ କର୍ଣ୍ଣରେ । ସେ ଆଉ ଅନେକ ପାଠ ଛାଡ଼ିଲେ । ମନହୃଦୟରେ ଏକ ଅଦମ୍ୟ ପିପାସା - ସ୍ୱାଧୀନତା ପିପାସା - ଆତ୍ମବଳିଦାନର ସଂକଳ୍ପ । ସେ ବାଟ ଅଣନେଉଟା ।

ଯାଙ୍କର ଯଦି ୧୯୩୦ ଏପ୍ରିଲ ୧୦ ରେ ନୂଆ ଜାତକ ରଚିତ ହୋଇନଥାନ୍ତା, ତେବେ କ'ଣ ସ୍ୱାଧୀନତା ଯୁଦ୍ଧ ଆଖଡ଼ାର ଏହି ଯୋଦ୍ଧାଟି କେବଳ ଓଡ଼ିଶାରେ ନୁହେଁ ପରିଣତ ବୟସ ବେଳକୁ ସର୍ବଭାରତୀୟ ସ୍ତରରେ ସାହିତ୍ୟ, ସଂସ୍କୃତି, ସୃଜନଶୀଳତା କ୍ଷେତ୍ରରେ ଏକ ଅନନ୍ୟ ବ୍ୟକ୍ତି ହେବ - ଏହା କ'ଣ ସମ୍ଭବ ହୋଇଥାନ୍ତା ? କୃତୀ ଛାତ୍ର ନିଶ୍ଚୟ । ଅଧ୍ୟୟନରେ ପାରଦର୍ଶିତା ଦେଖାଇଥିଲେ ହୁଏତ ଜଣେ ଉଚ୍ଚ ସରକାରୀ ହାକିମ, ଅବା ଶିକ୍ଷକ, ଅଧ୍ୟାପକ ଅବା ସୁଯୋଗ ନପାଇଥିଲେ କଲମଚଷା କିରାଣୀ ହୋଇଥାନ୍ତେ । କିନ୍ତୁ ଗୋଟାଏ ନୂଆ, ଅଦ୍ଭୁତ ଧରଣର କଲମ ଧରିବାର ଅନୁପ୍ରେରଣା ପାଇଥାନ୍ତେକି ? ଅବା ସେପରି କଲମ ଚଷିବା ପାଇଁ ୧୯୩୦-୧୯୩୨-୧୯୪୨ରେ ତିନି ଦଫାର ବ୍ରିଟିଶ କାରାବାସ ଜୀବନ ଯେଉଁ ଅବସର ଦେଲା, ତାହା ମିଳିଥାନ୍ତାକି ?

ପୁନଶ୍ଚ ସାଙ୍ଗସାଥି, ତୀର୍ଥ ହେଲେ ସ୍ୱାଧୀନତା ସଂଗଠନର ବଡ଼ବଡ଼ କର୍ମକର୍ତ୍ତା, - ସ୍ୱାଧୀନତୋତ୍ତର କାଳରେ କିଏ ମନ୍ତ୍ରୀ, ରାଜ୍ୟପାଳ ? ସେପରି ପଦପଦବୀରେ ଆସୀନ ହେବାର ଦକ୍ଷତା ତାଙ୍କଠାରେ ଅନ୍ୟମାନଙ୍କଠାରୁ ଊଣା ନଥିଲା - ବରଂ ଅଧିକ ଥିଲା । କିନ୍ତୁ ସେଥିପ୍ରତି ଉତ୍କଣ୍ଠା, ଆଗ୍ରହ, ଆସକ୍ତି ରହିଲାନି । ଏକ ତପସ୍ୟା, - ଏକ ମହାନ ସଂକଳ୍ପ ।

ବ୍ୟକ୍ତଟି ରହିଗଲେ ସେବାଧର୍ମୀ ହୋଇ । ସ୍ୱାଧୀନତା ସଂଗ୍ରାମର ମୌଳିକ ମୂଲ୍ୟବୋଧ; ଆତ୍ମନିର୍ଭରଶୀଳତା, ଦରିଦ୍ର, ନିଷ୍ପେଷିତ, ଶୋଷିତ ଜନତା ପ୍ରତି ଦରଦ, ଆର୍ତ୍ତଜନ ରୋଗୀ ସେବା, ଅସ୍ପୃଶ୍ୟତା, ବାଛବିଚାର ଆଚାର ଆଚରଣ ବିରୋଧରେ ବିଦ୍ରୋହ, ନିଜେ ନିଷ୍ଠାବାନ ଆଧ୍ୟାତ୍ମିକବାଦୀ, କିନ୍ତୁ ଦେଖେଇହେବାର ଆଟୋପର ଦୂରରେ । ଦେଶର ଐକ୍ୟ, ଅଖଣ୍ଡତା

ପାଇଁ ଧର୍ମ, ଭଗବାନଙ୍କ ନାମରେ ସାମ୍ପ୍ରଦାୟିକ ବିଦ୍ୱେଷ ସୃଷ୍ଟିର ଆପୋଷହୀନ ବିରୋଧୀ । ନିରାଡ଼ମ୍ବର, ପାଦଚଲା, ସାଇକଲ ପେଲା, ଫତେଇଚଦରର ପିନ୍ଧା ବେଶରେ ପ୍ରତିଟି ବିଜ୍ଞାନୀ, ସାହିତ୍ୟିକ ସଂସ୍କୃତିର ପୂଜାରୀ ଦ୍ୱାରରେ, ଜ୍ଞାନାର୍ଜନର ଭିକ୍ଷୁକ ।

ତେଣୁ ରାଜନୈତିକ ସାମ୍ବାଦିକତାରୁ, ରାଜନୈତିକ ବୈଜ୍ଞାନିକ, ଜୀବନଜୀବନୀ ରଚନାର ଲେଖକରୁ ଶିଶୁସାହିତ୍ୟରୁ ଜ୍ଞାନମଣ୍ଡଳର ରଚୟିତା; ଏକ ଅନୁଷ୍ଠାନ ପାଲଟିଗଲେ ସେ । ଅକ୍ଷୟ, ଅମର କୃତି ତାଙ୍କ ଚତ୍ୱର ଗରିମାର ଅଧିକାରୀ ହୋଇଗଲେ । ଆଜିର ବାସରେ ତାଙ୍କ ହାତର ସୃଷ୍ଟି ମନୋରମ ଉଦ୍ୟାନରେ ଏପ୍ରିଲ ୧୦ ପାଳନ ଉତ୍ସବର ଯଥାର୍ଥତା ଅନସ୍ୱୀକାର୍ଯ୍ୟ ।

ସେଇ ଅଖ୍ୟାତ ପଲ୍ଲୀକୁ ପ୍ରଖ୍ୟାତ କରିଥିବା ପ୍ରଥିତଯଶ । ଏହି ବିଖ୍ୟାତ ପୁରୁଷଟିଙ୍କୁ ଆଜି ସ୍ମରଣ କଲାବେଳେ ଓଡ଼ିଶାରେ ୧୯୪୨ "କଲମର" ସଂଗ୍ରାମର ପ୍ରଥମ ପ୍ରଧାନ ଗୋପନ କେନ୍ଦ୍ର ପ୍ରତିଷ୍ଠାରେ ତାଙ୍କର ସହାୟତା, ସହଯୋଗୀତା, ନିର୍ଦ୍ଦେଶନା ଓ ସେ ଗ୍ରାମର ଯେଉଁମାନେ ଗୋପନରେ ଆମକୁ ମୋର ବନ୍ଧୁ ନରସିଂହ ମହାନ୍ତି, ଗଣେଶ ମହାନ୍ତିଙ୍କୁ ସାହାଯ୍ୟ କରିଥିଲେ, ତାଙ୍କ ପତ୍ନୀ ଶଶିବାଳାଙ୍କ ସମେତ ସେମାନଙ୍କ ପ୍ରତି କୃତଜ୍ଞତା ଜଣାଇବାର ସୌଭାଗ୍ୟ 'ସଂଗ୍ରାମୀ' ପତ୍ରିକାଟି ଅର୍ପଣ କରିଥିବାରୁ ମୁଁ କୃତଜ୍ଞ ।



ରଚନା କାଳ – ୧୯୯୨

# ବିନୋଦ କାନୁନ୍‌ଗୋ

ହଁ, ତାଙ୍କର ସ୍ୱନକ୍ଷତ୍ର । ୧୯୯୦ ଜୁନ୍ ୬ ତାରିଖ । ଏ ଦିନଟି ଆଦୌ ବିଜ୍ଞାପିତ ହୁଏନି । ସବୁ ବର୍ଷ ପରି ଆମ ପରିବାର ଯିବୁ । ଫୁଲତୋଡ଼ା ଦେବୁ । କେଉଁଠି ? କ'ଣ ତାଙ୍କ ଭଡ଼ାଘରେ ନା ତାଙ୍କ ଗାଁ'ରେ ? ନା – ଏବର୍ଷ ଯିବୁ କଟକ ବଡ଼ ଡାକ୍ତରଖାନା ସ୍ନାୟୁବିଭାଗ ଖଟିଆକୁ । ଭାରାକ୍ରାନ୍ତ ମନ । ଶୁଭକାମନା ସାଙ୍ଗକୁ ଅଶୁଭ ଚିନ୍ତା ମନରେ ଉଙ୍କି ମାରୁଥାଏ । ସେମିତି ଅର୍ଦ୍ଧଚେତନ ଅବସ୍ଥା । ଆମ ଦେଇ ବସିଛି ଦେଖି ଭେଁ ଭେଁ କାନ୍ଦିଉଠିଲା । ଭାଙ୍ଗିପଡ଼ିଲି । ମୋ' ଦେଇ ମୁଣ୍ଡରୁ ସିନ୍ଦୂର ଟୋପା ଲିଭିଯିବ । ଦୀପ୍ତି, ପାବକ, ଦୀପକ, ଆଲୋକ, ଜ୍ୱାଇଁ ଅରବିନ୍ଦ, ବୋହୂ ଦୁର୍ଗା ବାପାଙ୍କୁ ହରେଇବେ । ଆମେ ହରାଇବୁ ଆମ ପ୍ରିୟ ପିଇସାଙ୍କୁ ।

ଏଥିରେ ବିଚିତ୍ରତା କ'ଣ ? ପ୍ରତିଟି ପରିବାରରେ ଏମିତି ଘଟିଛି, ଘଟୁଛି, ଘଟି ଚାଲିବ । କିନ୍ତୁ ଏ ବ୍ୟକ୍ତିଟି କ୍ଷେତ୍ରରେ ବିଚିତ୍ରତା ରହିଛି । ଏହାଙ୍କୁ ହରେଇବେ ଅନେକ; ଆତ୍ମୀୟ ନହେଲେ ବି ଯିଏ ଚାହାନ୍ତି ଲୋକଟି ଆହୁରି ବଞ୍ଚିରହୁ । ତାଙ୍କ କାମ ଅଧା ରହିଯିବ – ତାଙ୍କ କାମ ଆମ ସମସ୍ତଙ୍କ ପାଇଁ, ଆମ ପର ପୀଢ଼ିଙ୍କ ପାଇଁ ।

ଶୋକ କରିବେ ଏବେ ବି ବଞ୍ଚିରହିଥିବା ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀମାନେ । ଭାବନ୍ତି ଏ ଲୋକଟି ସେମାନଙ୍କର ସେକାଳର କେବଳ ନୁହେଁ, ଏ ଯାଏ ବି ବନ୍ଧୁ, ଦରଦୀ । ସେମାନଙ୍କୁ ସେ ଖୋଜେ; ଚିଠି ଲେଖେ, ଯେଉଁଠି ସ୍ୱାଧୀନତା ସଂଗ୍ରାମୀମାନେ ଏକାଠି ହୁଅନ୍ତି ସେଠାରେ ପହଞ୍ଚେ । ସେମାନଙ୍କର ଜୀବନର ଅଭିଜ୍ଞତା ଲିପିବଦ୍ଧ କରିନିଏ । ଫଟୋ ସଂଗ୍ରହ କରି ଫାଇଲ କରେ । ଓଡ଼ିଶା ମାଟିର ଯିଏ ଯେଉଁ ମତବାଦ, ରାଜନୈତିକ ଆଦର୍ଶର ବ୍ୟକ୍ତି ହୁଅନ୍ତୁ, ସେମାନେ ଦଳମତ ନିର୍ବିଶେଷରେ କାମନା କରୁଥିଲେ ଏ ବ୍ୟକ୍ତିଟି ଆଉ କେତେ ବର୍ଷ ବଞ୍ଚିରହୁ, ଛୋଟ ମୁଣ୍ଡଟିରେ ସେ ଯେଉଁ ଜ୍ଞାନର ଭରପୂର ପେଡ଼ିସାଇତି ଦେଲାଣି, ସେଇ ପେଡ଼ି ଫିଟାଇ ସେ ଓଡ଼ିଶା ଜାତିକୁ ତା'ର ଅବଦାନ ହେଉ । ସେମାନେ ବି ନିରାଶ ହୋଇଯିବେ । ବ୍ୟକ୍ତିଟିର ବୌଦ୍ଧିକ ଜ୍ଞାନ ଗାରିମାରେ ବିସ୍ମିତ, ଚକିତ ଓଡ଼ିଶାର ଅଗଣିତ ବନ୍ଧୁ, ଶୁଭାଧ୍ୟାୟୀ, ପ୍ରଶଂସକ, ସମାଲୋଚକ ହରାଇ ବସିବେ ଏ ବ୍ୟକ୍ତି ପୁରୁଷଟିକୁ । ଏହି ଅଦ୍ଭୁତକର୍ମା ବ୍ୟକ୍ତିଟି ପାଖକୁ ପ୍ରତିଦିନ ଯେଉଁ ଧାଡ଼ି ଲାଗେ, ସେ ଧାଡ଼ିଆଉ ଲାଗିବ ନାହିଁ ।

କୋଉଦିନ ଏ ବ୍ୟକ୍ତିଟିର କାର୍ଯ୍ୟକ୍ରମ ରହିଛି, ସେଦିନ ଦୂରଦର୍ଶନ ଦର୍ଶକ ବା ବେତାର ଶ୍ରୋତା ଛାତ୍ର, ଶିକ୍ଷକ, ବୁଦ୍ଧିଜୀବୀ ଯେପରି ଉତ୍ସୁକ ହୋଇ ବସିରହିଛନ୍ତି ତାହା ଆଉ ସମ୍ଭବପର ହେବନାହିଁ । ଆଉ ଫିଲ୍ମ ଡିଭିଜନର ଲୋକେ ସେହି ଲୋକଟିର କର୍ମଶାଳା, ତା'ର ସାଧନା ମନ୍ଦିରରେ ପହଞ୍ଚି ସାକ୍ଷାତକାର ଚାହିଁବେନି କି ଆଲୋକଚିତ୍ର ଉଠାଇବେ ନାହିଁ । ଛୁଟି ଆସିବେନି ଭାରତର ଆଉ ବିଦେଶର ବିଶିଷ୍ଟ ବିଦ୍ୱାନ୍ ଗଣ । ତାଙ୍କ ଜ୍ଞାନ ଦିଅଁର ଖଟୁଲିରେ ସନ୍ନିବେଶିତ ପଚାଶ ବର୍ଷର ସାଧନାପୁଷ୍ଟ ହଜାର ହଜାର ଫାଇଲ, ପାଣ୍ଡୁଲିପିର ପରିଚୟ ପାଇ ବିମୋହିତ ହେବେ ନାହିଁ କି ନିଜ ଅନ୍ତରର ସମ୍ମାନ, ସଦିଚ୍ଛା ଲିପିବଦ୍ଧ କରିଯିବେ ନାହିଁ । ଛୁଟିବେନି ଭାରତର ପ୍ରତିଭାବାନ ଦିଗ୍‌ରାଜମାନେ ତାଙ୍କୁ ବଧେଇ ଜଣେଇବାକୁ ।

ମାଦ୍ରାଜ ହେଉ, ଦିଲ୍ଲୀ ବା ବାଙ୍ଗାଲୋର ହେଉ, ଅହମଦାବାଦ ବା କଲିକତା ହେଉ ଏ ବ୍ୟକ୍ତିଟିକୁ ଆଲୋଚନାଚକ୍ର, କର୍ମଶାଳାରେ ଭାଗନେବାକୁ ଆଉ ନିମନ୍ତ୍ରଣ ଆସିବ ନାହିଁ ।

ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ, ସାଂସ୍କୃତିକ ଆସର, ସ୍ୱାଧୀନତା ସଂଗ୍ରାମୀଙ୍କ ସ୍ମୃତିଚାରଣ ଉତ୍ସବକୁ ବ୍ୟକ୍ତିଟିକୁ ନେବାଲାଗି ଆମନ୍ତ୍ରଣ ଆଉ ଆସିବନି ।

ବ୍ୟକ୍ତିଟିକୁ ତା'ର ସାଧନା ଲାଗି ଯେଉଁସବୁ ସମ୍ମାନ, ପଦବୀ, ପୁରସ୍କାରର ସ୍ରୋତ ଛୁଟୁଥିଲା, ତାହାର ଅନ୍ତ ହୋଇଯିବ ।

ଏପରି ବ୍ୟକ୍ତିଟି କିଏ ? ବାଙ୍ଗରା, ଆଣ୍ଠୁଲୁଚା ଖଦଡ଼ ଧୋତି, ଫତେଇ ଆଉ କାନ୍ଧରେ ଚାଦର ପିନ୍ଧା ବ୍ୟକ୍ତିଟି ବିନୋଦ କାନୁନ୍‌ଗୋ ।

ସେ କାଳର ଦନ୍ତା ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭଣଜା । ମାମୁଁ ଘରେ ରହି ରେଭେନ୍‌ସା କଲିଜିଏଟ୍ ସ୍କୁଲରେ କୃତୀଛାତ୍ର ରୂପେ ଦଶମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇଥାଏ । ଦେଶରେ ହେଲା ଆଇନ ଅମାନ୍ୟ ଆନ୍ଦୋଳନ । ଦେଶକୁ ସାମ୍ରାଜ୍ୟବାଦ କବଳରୁ ମୁକ୍ତିର ଆହ୍ୱାନ । ଗାନ୍ଧିଜୀଙ୍କ ଡାକରା । ଆଉ ଅନେକଙ୍କ ସାଙ୍ଗକୁ 'ବିନ' ଯେଉଁଦିନ ପୋଥିରେ ଡୋର ବାନ୍ଧି ସ୍ୱରାଜ୍ୟାଶ୍ରମରେ ବାନରସେନାରେ ନାମ ଦର୍ଜ କଲା, ଅନ୍ତରରେ ସମସ୍ତ ମମତା ସତ୍ତ୍ୱେ ମାମୁଁ ଦୁର୍ବାସା କ୍ରୋଧ ପ୍ରକାଶ କଲେ । ବାପା ଯାଇଛନ୍ତି, ଭଉଣୀ ଦୁହେଁ ବିଭା ହୋଇଛନ୍ତି । ଗୋଟିଏ ମାତ୍ର ପୁଅ । ଗଜ ମୂର୍ଖ ହୋଇଯିବ । ପାଠ ଶେଷ କରି ଦେଶ କାମ କଲେ କ'ଣ ବିଗୁଡ଼ିଥିଲା ?

ବାନରସେନା ଅଫିସ୍ ଗଞ୍ଜେଇ ଦୋକାନ ଆଗରେ ପିକେଟିଂରେ ଯୋଗଦାନ ଓ ତାହାର ନେତୃତ୍ୱରୁ ଅଗଣିତ ସଂଗ୍ରାମୀମାନଙ୍କ ସଙ୍ଗରେ କଟକ ଜେଲ୍‌ରୁ ପାଟନା କ୍ୟାମ୍ପଜେଲ୍ । ୧୯୩୦-୩୨ ଚାରି ହଜାର ଯାଏ ବନ୍ଦୀଙ୍କ କ୍ୟାମ୍ପଜେଲ୍ । ଗୋରା ଘୋଡ଼ାସବାର ପଲଟନ । କେତେ କ'ଣ ଲାଠି, କଟକଣା । ସଭିଙ୍କ ଆଖିରେ ଧୂଳିଦେଇ ନେତାମାନେ ବାଂଲାରୁ ଅଣାଉଥିବା ସଂବାଦପତ୍ର, ରାଜନୈତିକ ସାହିତ୍ୟ ଇତିହାସ ହୁଏ ସମସ୍ତଙ୍କର ପସନ୍ଦ । ବିନୋଦ ସେଇଠି ପ୍ରକୃତ ଭବିଷ୍ୟତ ଜୀବନଲାଗି ପ୍ରକୃତ ଖଡ଼ିଛୁଆଁ ଆରମ୍ଭ କରନ୍ତି ।

ଜେଲ ମୁକ୍ତି ପରେ କାମର ଅନ୍ତନାହିଁ । ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟକ୍ରମ ଲାଗି ସେ ନିଜକୁ ଉତ୍ସର୍ଗ କଲେ । ଅନ୍ୟସାଥୀମାନେ କଂଗ୍ରେସ ସଂଗଠନରେ ପଦ ପଦବୀରେ ରହିଲେ ସୁଦ୍ଧା ସେଥିପ୍ରତି ତାଙ୍କର ଆଗ୍ରହ ବା ଆତିଶଯ୍ୟ ନଥିଲା । ଗାନ୍ଧିଜୀଙ୍କ ୧୯୩୪ ପଦଯାତ୍ରା, ତାଙ୍କୁ ଓଡ଼ିଶାବାସୀଙ୍କ ସମ୍ବର୍ଦ୍ଧନାର ବିବରଣୀମାନ ସମ୍ବାଦପତ୍ରରେ ପ୍ରକାଶନ କରିବାର ଦାୟିତ୍ୱ ତାଙ୍କରି ଉପରେ ପଡ଼ିଲା । ଗୋପବନ୍ଧୁ ଚୌଧୁରୀ, ରମାଦେବୀଙ୍କ ବରୀ ସେବାଶ୍ରମରେ ରଚନାତ୍ମକ କାର୍ଯ୍ୟରେ, କର୍ମଶାଳାରେ ନେତୃତ୍ୱ ଦେବା; ହରିଜନ ଆନ୍ଦୋଳନ, ଗ୍ରାମ ସଫେଇ, ରୋଗୀସେବା, ସ୍ୱାବଲମ୍ବନଶୀଳ ହେବା ପାଇଁ ଆଶ୍ରମର ବିଲଚାଷ, ପନିପରିବା ଚାଷ ଏମିତି କେତେ ! ତା' ସାଙ୍ଗକୁ ଅଧ୍ୟୟନ, ଅନୁଶୀଳନ । ଅନୁଗୋଳ ହେଉ, ଡେଲାଙ୍ଗ ହେଉ, ଇନ୍ଦୋର ହେଉ, ୱାର୍ଦ୍ଧା ହେଉ ଯେଉଁଠି ସର୍ବସେବା ସଂଘ ସମ୍ମିଳନୀ ସେ ସବୁରେ ଅଂଶ ଗ୍ରହଣ ଏମିତି ଅସୁମାରି ସାଧାରଣ କାର୍ଯ୍ୟ ଭିତରେ ମଜ୍ଜି ରହିଲେ ସେ ।

୧୯୪୦ର ବ୍ୟକ୍ତିଗତ ସତ୍ୟାଗ୍ରହ ଆନ୍ଦୋଳନ ପୂର୍ବରୁ ମାମୁଁ ଜିଦ୍ ଧରିଲେ, ବିନ ଭଣଜା, ସତ – କିନ୍ତୁ ତାଙ୍କ ଘରେ ବଡ଼ । ତା'ର ବାହାଘର କରିବେ । ଗୋଟିଏ ଗାଉଁଲୀ ଝିଅ । ବାହାଘର ହେବ – ସାଧାସିଧା – ମାତ୍ର ବରଯାତ୍ରୀ ମାନ୍ୟଗଣ୍ୟମାନେ । ହରେକୃଷ୍ଣ ମହତାବ, ଆଚାର୍ଯ୍ୟ ହରିହରଙ୍କ ସାଙ୍ଗକୁ ଆଉ ଆଉ ନେତା ଓ ସମବୟସୀ ସଂଗ୍ରାମୀ । ପୁଣି ସେକାଳର ନାମକରା ପ୍ରଫେସର, ବିଦ୍ୱାନ, ବୁଦ୍ଧିଜୀବୀଙ୍କ ଗହଣରେ ସାତପୁରା ଗାଁ'ରେ ବିନ ବର ।

ତାଙ୍କର ଘର ବୋଲି କ'ଣ ଅଛି । ସେଠି ରହିବେ – ପତ୍ନୀକୁ କେବଳ ସହଧର୍ମିଣୀ ନୁହଁ ସହକର୍ମିଣୀ କରିବେ । ଦେଶପ୍ରେମୀ କରାଇବେ । ଜମିବାଡ଼ି ସବୁ ଉଜୁଡ଼ି ଯାଇଛି । ବାପା, ସାଆନ୍ତ ବାପାଙ୍କ ଚୌରସୀ ବୋଇଲେ ଅନ୍ଧାରୁଆ ଝାଡ଼ ଜଙ୍ଗଲରେ ତିନି ଚାରି ଏକର କଙ୍କର ପଡ଼ିଆ । ହେଟା, ବିଲୁଆ, ସାପଙ୍କ ଆଡ୍ଡା । ବେଳେବେଳେ ବାରଦା ଜଙ୍ଗଲରୁ ମହାନଦୀ କୂଳେ କୂଳେ ବାଘମାମୁଁ ଆସି ଚାଲିଯାଏ ଘନ ଜଙ୍ଗଲ ନ ଦେଖି । ସେଇଠି ନୂଆ ଜୀବନ ଗଢ଼ିବେ । ଗାଁ ମଲ୍ଲୀପୁରରେ ।

ସେଇଠି ହେବ ଖଦୀଘର ଚାଳିଆ । ବରୀ ଆଶ୍ରମର ଅଭ୍ୟାସ । ଧରିଲେ କଟୁରୀ, କୋଡ଼ି, କୋଦାଳ – ଜମି ବାହାରିବ । ଧାନ ଗଣ୍ଡିଏ ହେବ । ପନିପରିବା ହେବ । ଖଦୀ ଘରେ ନୂଆ ନୂଆ ସଂଗ୍ରାମୀଙ୍କୁ ତାଲିମ ଦିଆଯିବ । ଶିକ୍ଷା ସାଙ୍ଗକୁ ସୂତାକଟା, ଗ୍ରାମ ସଫାଇ । ଦେଶ ପାଇଁ କର୍ମୀ ତିଆରି ।

ଜେଲରୁ ମୁକ୍ତିପରେ ସମାଜର ସମ୍ପାଦନା ବିଭାଗରେ ଥାଇ ସେ ପ୍ରଥମେ ରଚନା କରିଥିଲେ 'ସପ୍ତାସ୍ତ୍ର' ନାମକ ପୁସ୍ତକ । ଏଯୁଗର ସମର ସାହିତ୍ୟରେ ଓଡ଼ିଆରେ ପ୍ରଥମ । ବେଶ୍ ଖ୍ୟାତି ଲଭିଥିଲା । ଆଚାର୍ଯ୍ୟ ହରିହରଙ୍କ ୬୦ ତମ ଜୟନ୍ତୀ ଉପଲକ୍ଷେ ତାଙ୍କ ଦ୍ୱାରା ଲିଖିତ ଜୀବନୀ ରାଜନୈତିକ ମହଲରେ ବେଶ୍ ଆଦୃତ ହୋଇଥିଲା । କୋଉ ବାଟରେ ଯିବେ ? ସାହିତ୍ୟ ସୃଷ୍ଟି ନା ଦେଶସେବା, ମନ ଗହ୍ୱରରେ ଦ୍ୱନ୍ଦ୍ୱ ।

ଆସିଗଲା ୧୯୪୨ । ବ୍ୟକ୍ତିଗତ ସତ୍ୟାଗ୍ରହବେଳେ ଜେଲ୍‌ଖାନାରୁ ଫେରି ଦେଖେ ବିନୋଦ ବାବୁ କଟକ ଛାଡ଼ିଲେଣି । ଗାଁ ଖଦୀଘର ଧରିଲେଣି । ହଁ ଅଗଷ୍ଟ ନ – ଦେଶର ନେତୃବୃନ୍ଦ ଗିରଫ । ଅଗଷ୍ଟ ଦଶରେ ପହଞ୍ଚୁ ଆମେ ଦୁଇଜଣ ତାଙ୍କ ଝାଡ଼ ଜଙ୍ଗଲଘେରା ଖଦୀଘରେ, ନବକୃଷ୍ଣ ଚୌଧୁରୀ ଗିରଫ ପୂର୍ବରୁ ଦେଇଯାଇଥିବା ନିର୍ଦ୍ଦେଶାବଳୀକୁ ଧରି । ସେଇଠି ହୁଏ ଓଡ଼ିଶାର ପ୍ରଥମ ଅଜ୍ଞାତବାସ ଦପ୍ତର । ସେଇଠୁ ରାଜ୍ୟର ବିଭିନ୍ନ ଅଞ୍ଚଳକୁ ଯାଏ 'ତଥାକଥିତ' ବେଆଇନ୍ ଲିଫଲେଟ୍ ।

ଆଗ ଧରାପଡ଼ି ସେ ଗଲେ କଟକରୁ ବ୍ରହ୍ମପୁର । ସେଦିନ ଆମ ଦେଈ କୌଣସିମତେ ଲୁଚି ଯାଇଥିଲା । ସେ ବି ସ୍ୱାମୀଙ୍କ ସହକର୍ମିଣୀ । ତାକୁ ପୁଅାଣି ବୋହୂ ସଜେଇ ଆଗରେ ଶଗଡ଼ରେ ବସେଇ ମୋତେ ଚାଲିବାକୁ ହୁଏ କେତେ ଗୋପନ ସଂଗ୍ରାମୀ କେନ୍ଦ୍ରକୁ । ଶେଷରେ ଧରାପଡୁ । ସେ କଟକ ଜେଲ୍‌ରେ ଅନ୍ୟ ନେତ୍ରୀମାନଙ୍କ ସଙ୍ଗରେ ରହିଲେ । ଆମ ଦେଈ ମା, ମୋ' ଆଈ କାନ୍ଦିଥିଲା । ପରିବାର କାନ୍ଦିଲେ । ବ୍ରହ୍ମପୁରରେ ମୋ'ଠାରୁ ତାଙ୍କ ପତ୍ନୀଙ୍କ ଗିରଫ ବିବରଣୀ ଶୁଣି ତାଙ୍କର ପରମ ସନ୍ତୋଷ ।

**ତାଙ୍କର ବିଶ୍ୱବିଦ୍ୟାଳୟ**

ବ୍ରହ୍ମପୁର କେନ୍ଦ୍ର ଜେଲ୍ । ଫାଶୀ ପାଇବାକୁ ଅପେକ୍ଷାରେ ଥିବା ବୀର ଲକ୍ଷ୍ମଣ ନାୟକଙ୍କ ସମେତ ଓଡ଼ିଶାର ଚାରି ଶତାଧିକ ଅଟକବନ୍ଦୀ । ସବୁ ମତବାଦର, ବୟସର । ପ୍ରଖ୍ୟାତ ନେତାମାନଙ୍କ ସଙ୍ଗରେ ଛାତ୍ର, ଯୁବକ, ଚାଷୀ, ଡାକ୍ତର, ବୁଦ୍ଧିଜୀବୀ । ଜେଲ୍‌ଖାନା ଭିତରେ କର୍ତ୍ତୃପକ୍ଷଙ୍କ କଟକଣା ବିରୋଧରେ କେତେ ସଂଗ୍ରାମ । ସ୍ୱାଧୀନତା ଦିବସ ଜାନୁଆରୀ ୨୬, ୧୯୪୩ରେ ଜାତୀୟ ପତାକା ଉତ୍ତୋଳନ । ବ୍ରିଟିଶ ଶ୍ୱେନ ଦୃଷ୍ଟିରେ 'ମହା ଅପରାଧ' । ବର୍ବର ଲାଠିଚାଳନା– କେତେକଙ୍କ ମରମର ଅବସ୍ଥା । ଫାଶୀମଞ୍ଚରେ ଲକ୍ଷ୍ମଣଙ୍କ ଆତ୍ମବଳୀଦାନ– ପ୍ରତିବାଦ ଅନଶନ । ଏ ସବୁଥିରେ ଅନ୍ୟମାନଙ୍କ ପରି ବିନୋଦ ସଂଶ୍ଳିଷ୍ଟ । ଜେଲ୍ ଜୀବନ । ମଣିଷ ଭଳି ମଣିଷ ହେବାଲାଗି ସମସ୍ତଙ୍କ ଉଦ୍ୟମ । ଏଇଠି ହୁଏ ତାଙ୍କର ନିଜସ୍ୱ ବିଶ୍ୱବିଦ୍ୟାଳୟରେ ସ୍ନାତକ ହେବାର ସଂକଳ୍ପ । ଦିନରାତି ଜେଲ୍ ଖଟିଆରେ ବସି ଅଧ୍ୟୟନ, ଅନୁଶୀଳନ । ଖବରକାଗଜର ହାସିଆରେ, ବିଧାନସଭା ବିବରଣୀ ଛପାଖାତାର ଫାଙ୍କା ଜାଗାରେ ଟିକା । କାଗଜ କିଏ ଦେବ ? କେହି ଜାଣିଲେନି ବିନୋଦଙ୍କ ଭବିଷ୍ୟତ ଯୋଜନା କ'ଣ ? ଏକାନ୍ତରେ ସେ ମନକଥା ମନରେ ରଖିଲେ । ଏବେ ସିନା ସମସ୍ତେ ଜାଣୁଛନ୍ତି ।

ଜେଲ୍ ମୁକ୍ତିପରେ କରିବେ କ'ଣ ? ମନରେ ଦ୍ୱିଧା । ଚାଷୀଙ୍କ ଆନ୍ଦୋଳନ, ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟ, ସଭାସମିତି, କୃଷକ ଦ୍ୱିତୀୟ ପ୍ରସ୍ଥର ସମ୍ପାଦନର ଦାୟିତ୍ୱ । ବଞ୍ଚିବା ପାଇଁ ଖଦୀଘର ଜମିରେ ପୁଣି ଚାଷ । କିଶୋରନଗର ହାଟରେ ବିନୋଦ କାନୁନ୍‌ଗୋଙ୍କ ହାତଉତୁରା ବଡ଼ବଡ଼ କଖାରୁ, ଆଳୁ, ବନ୍ତଳ କଦଳୀ ଚାଷୀ ପୁଅଙ୍କ ଭିତରେ ବି ବିସ୍ମୟ ସୃଷ୍ଟିକରେ । କଲମଠାରୁ କୋଦାଳ । କଲମ ସାଙ୍ଗକୁ ସେହି କୋଦାଳ ତାଙ୍କ ସେ ଦିନର ଖଦୀଘରକୁ ଅପୂର୍ବ

ଖସାବାଗିରେ ପରିଣତ କରିଦେଇଛି । ବିଶ୍ୱକବି ରବୀନ୍ଦ୍ରଙ୍କ 'ଉତ୍ତରାୟଣ' ପରି ଏହି ଖସାଘରର ମନୋରମ ଉଦ୍ୟାନରେ ସେ ସହର ଜୀବନ, ଲୋକ ଗହଳିରୁ ନିଶ୍ରାନ୍ତି ପାଇ ତାଙ୍କର ଅନେକ ଅଭିନବ ଚିନ୍ତାକୁ ମସୀରେ ରୂପାୟିତ କରୁଛନ୍ତି । ସେ ଉଦ୍ୟାନ ଏକ ଅପୂର୍ବ କଳ୍ପନା । ମହାତ୍ମା ଗାନ୍ଧୀଙ୍କ ମୀନାର ସାଙ୍ଗକୁ କ୍ଷୁଦ୍ର କୁଟୀର ଆଉ ସେପାଖରେ କମକୋଟି କାମ ପରି ପୁଷ୍ପବାଟିକା । ନ ଦେଖିଲେ ପରତେ ଯାଇହେବନାହିଁ ।

ସ୍ୱାଧୀନତା ଆସିଗଲା । ଯେଉଁଦିନ ଗାନ୍ଧିଜୀଙ୍କୁ ଆର୍.ଏସ୍.ଏସ୍.ର ନାଥୁରାମ ଗଡ଼ସେ ହତ୍ୟାକଲେ; କାରଣ ସେ ହିନ୍ଦୁ ମୁସଲମାନ ଐକ୍ୟ, ଭାରତର ସଂହତିର ଥିଲେ ପ୍ରଧାନ ପୁରୋଧା; ବିନୋଦ ବାବୁ ଭାଙ୍ଗିପଡ଼ିଲେ । ଭାବାନ୍ତର । ସକ୍ରିୟ ରାଜନୀତିରେ ରହିବେ, ସ୍ୱାଧୀନୋତ୍ତର କ୍ଷମତା ରାଜନୀତିରେ ଅନ୍ୟମାନଙ୍କ ପରି ସାମିଲ ହେବେ ନା ଯେଉଁ ବିଶ୍ୱବିଦ୍ୟାଳୟରେ ସେ ଅସ୍ୱୀକୃତ ସ୍ନାତକ ସେହି ସ୍ନାତକର କରାମତି ଦେଖାଇବେ ।

ଏବେ ଖଣ୍ଡେ ସାଇକେଲ ହୋଇଛି । ପାଦଚଲା କମିଯାଇଛି । ଘରୁ ଗୋଟିଏ ଟଙ୍କା ଧରି ସେ ଏଥର କଟକ ଚାଲିଲେ । ନିମଚୌଡ଼ି ରାଧାରମଣ ପୁସ୍ତକାଳୟ ସମ୍ମୁଖ ଉପରତାଲାରୁ ପାଖ ବଲାଇ ପାଲିତଙ୍କ ଘର । ସେଇଠି ସେ ରଚନା କରିବେ ଜ୍ଞାନକୋଷ । ଓଡ଼ିଶା ସରକାର ଖ୍ୟାତନାମା ବିଦ୍ୱାନମାନଙ୍କୁ ଧରି ଲକ୍ଷ ଲକ୍ଷ ଟଙ୍କା ବ୍ୟୟରେ ଓଡ଼ିଆ ଜ୍ଞାନକୋଷ ରଚନା କରୁଛନ୍ତି । ଓଡ଼ିଆ ଭାଷାକୋଷ ଭଳି ସାତଖଣ୍ଡ ପ୍ରଣେତା ସେ କାଳର ସୁବିଖ୍ୟାତ ସାହିତ୍ୟିକ, ଆଇନଜୀବୀ ଗୋପାଳ ଚନ୍ଦ୍ର ପ୍ରହରାଜ । ବହୁ ବିଶିଷ୍ଟ ପଣ୍ଡିତ ତାଙ୍କୁ ସାହାଯ୍ୟ କରିଛନ୍ତି । ସାହିତ୍ୟାନୁରାଗୀ କେତେକ ଧନାଢ଼୍ୟ ବ୍ୟକ୍ତି, ସାମନ୍ତବାଦୀ ରାଜା ଅର୍ଥ ଦେଇଛନ୍ତି । ମାତ୍ର ବିନୋଦ – ମାଟ୍ରିକ୍ ବି ପଢ଼ିନାହିଁ । କପର୍ଦ୍ଦକଶୂନ୍ୟ, କେତେକ ଅସମ୍ଭବ ମଣିଲେ । ଆଉ କେତେକ ପରିହାସରେ କହିଲେ ବାମନ ଚନ୍ଦ୍ରକୁ ହାତ ବଢ଼ାଉଛି । ମଝି ବାଟରେ ଚିତ୍‌ପଟାଙ୍ଗ ମାରିବ ।

ଷାଠିଏ ଖଣ୍ଡ ହେବ । ତା'ର ନାମ ଜ୍ଞାନମଣ୍ଡଳ ହେବ । ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକାଠାରୁ ଆରମ୍ଭ କରି ଭାରତର ହିନ୍ଦୀ, ବଙ୍ଗଳା ସମେତ ଅନ୍ୟାନ୍ୟ ଭାଷାକୋଷ ରହିଛି । ଜ୍ଞାନମଣ୍ଡଳ କ'ଣ ଗତାନୁଗତିକ ଜ୍ଞାନକୋଷ ହେବ ? ନୁହଁ । ତାହା ମାନବ ସମାଜର ଜ୍ଞାନଭଣ୍ଡାରର ମଣିମୁକ୍ତା ରତ୍ନଗୁଡ଼ିକୁ, ନୂତନ ଉଦ୍ଭାବନ, ଆବିଷ୍କାର ଗୁଡ଼ିକୁ ଏପରି ସରଳ, ସହଜ, ବୋଧଗମ୍ୟ ଭାଷା ଓ ନୂତନ ଧରଣର ଶୈଳୀରେ ଦେବ, ଯାହାକି ଜ୍ଞାନ ରାଜ୍ୟର ଦିଗଦନ୍ତାଙ୍କଠାରୁ ଗାଁ ଗହଳର ଅଳ୍ପ ଶିକ୍ଷିତ, ଉଚ୍ଚ ଶିକ୍ଷିତ ଲୋକ ଓ ଛାତ୍ର ସମାଜ ଲାଗି ଜ୍ଞାନ ଆହରଣର ପିପାସା ବଢ଼େଇବ । ତାହା ଚିରାଚରିତ ଧାରାର ଜ୍ଞାନକୋଷ ହେବନି । ତନ୍ମୟ ସେ । ଶରୀର ବିଦ୍ୟାଠାରୁ ସମାଜ ବିଜ୍ଞାନ, ଅର୍ଥନୀତି ଶାସ୍ତ୍ରଠାରୁ ଉଦ୍ଭିଦ ବିଦ୍ୟା, ମୃତ୍ତିକା ବିଦ୍ୟା, ପଦାର୍ଥ ବିଦ୍ୟା, ସାଗର ମହାସାଗର ବିଦ୍ୟା, ଏମିତି ଯେତେକ ବିଦ୍ୟା ରହିଛି ଓ ଯାହାସବୁ ଏଯାଏ ସେଗୁଡ଼ିକ ଦ୍ୱାରା ଆବିଷ୍କୃତ ତାହାକୁ ନୂତନ ରୀତିରେ ପ୍ରକାଶ କରିବାକୁ ହେବ । କି

ଅସାଧ୍ୟ ସାଧନା ସେଥିପାଇଁ ଲୋଡ଼ା ? କି ରକମର ଏକାଗ୍ରତା, ଅଧ୍ୟବସାୟ ଓ ଜ୍ଞାନ ଆହରଣର ପିପାସା ଏଥିପାଇଁ ଆବଶ୍ୟକ ? ସ୍ଥିର କରିଦେଲେ– ପାରିବି, କରିବି । ପୃଥିବୀ ଓ ଭାରତର ସମସ୍ତଙ୍କଠାରୁ ଶିଖିବି । ଯେତେପାରେ ପଢ଼ିବି । ହଜମ କରିବି । ନିଜସ୍ୱ କରିଦେବି । ତାହାହିଁ ତାଙ୍କ ସାଧନାକୁ ସଫଳତା ଆଣିଦେଲା ।

କାବୁଲିବାଲାଠାରୁ ଶହେକେ ଅଠର ଟଙ୍କା ସୁଧରେ ତମସୁକ କରିବା ଅର୍ଥରେ ଜ୍ଞାନମଣ୍ଡଳ ଲେଖିବାର ପ୍ରୟାସ । ପ୍ରଥମ ଖଣ୍ଡ ପ୍ରକାଶ ପାଇଗଲା । ବିଜ୍ଞାପନ ନଥାଇ ଓ ନିଜ ଗ୍ରାମର ଶଶୀଭୂଷଣ ଓ କାର୍ତ୍ତିକଙ୍କ ଭଳି କେତେକ ଉତ୍ସାହୀ ଯୁବକଙ୍କ ସାହାଯ୍ୟ ନେଇ, ଯେତେ ସ୍କୁଲ ଲାଇବ୍ରେରୀ କଲେଜ ଅଛି ତାହାର ତାଲିକା ସଂଗ୍ରହ କରି ପ୍ରଥମ କେତେ ଖଣ୍ଡ ଜ୍ଞାନମଣ୍ଡଳ ବିକ୍ରିକରି ପରବର୍ତ୍ତୀ ଖଣ୍ଡ ଲାଗି ଅର୍ଥ ସଂଗ୍ରହ ତାଙ୍କ ପ୍ରତି ସୁଧୀ ମହଲରେ ବିସ୍ମୟ ସୃଷ୍ଟି କଲା ।

ଦିନକୁ ପର୍ଯ୍ୟାପ୍ତ ସଂଖ୍ୟାରେ ପତ୍ରପତ୍ରିକା ଆସିବ । ସଂପୃକ୍ତ ପୁସ୍ତକ ଆସିବ, ସବୁ ପଢ଼ିବେ, ନିଜର ସୃଷ୍ଟି ପାଇଁ ଆବଶ୍ୟକ ପୃଷ୍ଠାରେ ଟିପ୍‌ପଣୀ ଲେଖିବେ । କାଗଜସବୁ କାଟି ଅଠାମାରି ବହି ବାନ୍ଧିବେ । ଜ୍ଞାନମଣ୍ଡଳ ଲାଗି ଶହ ଶହ ଚିତ୍ର ଅଙ୍କା ହେବ, ବ୍ଲକ୍ ହେବ । ସେ ନିଜେ ନମୁନା ଦେବେ, ତାହାର ତଦ୍‌ବିର କରିବେ । ଫାଇଲ୍ ବାନ୍ଧିବେ । ଅଭିନବ ଧରଣର ଇନ୍‌ଡେକସିଂ (ସୂଚୀ) ତିଆରି କରିବେ । ୨୦ ହଜାର ଫାଇଲ୍ ହେବ । କାହାର ନାମ କ'ଣ ରହିବ, ଗୋଟିଏ ସେକେଣ୍ଡରେ ଫାଇଲ ବାହାରି ଆସିବ । ଏତେବେଳକୁ ତିନୋଟି ପିଲା ତାଙ୍କର ପାରି ନ ଥାନ୍ତି, ବାପାଙ୍କୁ ସାହାଯ୍ୟ କରିବାକୁ ପାରଙ୍ଗମ ହୋଇ ନଥାନ୍ତି । ଏଥିପାଇଁ ଜ୍ଞାନମଣ୍ଡଳ ଅଫିସ୍‌କୁ ଭୈରବ ମହାନ୍ତି (ତାଙ୍କ ଡାକରେ ଭୈରବ ଭାଇ)ଙ୍କ ପ୍ରବର୍ତ୍ତନରେ ବାରବାଟୀ ଷ୍ଟେଡ଼ିୟମ୍‌କୁ ସ୍ଥାନାନ୍ତର । ସେଇଠି ଅଫିସ । ଗୋଟିଏ ଲମ୍ବ ବଖରାରେ ପରଦାଟାଣି ଅଫିସ୍ । ସେଇଠି ଦେଇର ରୋଷେଇ, ନୂଆ ନୂଆ ବନ୍ଧୁ ଚର୍ଚ୍ଚା । ପରିବାର ଚଳିବା – ପିଲା ସ୍କୁଲକୁ ଯିବା ।

କାମ ବଢ଼ିଲା–ଫାଇଲ୍ ବଢ଼ିଲା–ସଂଗ୍ରହ ବଢ଼ିଲା । ପିଲାଏ ସ୍ଥାନାନ୍ତରିତ ହେଲେ । ମାତ୍ର କର୍ମମନ୍ଦିର ଜ୍ଞାନମଣ୍ଡଳ ଅଫିସ୍ ।

ଜ୍ଞାନମଣ୍ଡଳ ସାଙ୍ଗକୁ ଅଭିନବ କଳ୍ପନା । ୩୬୫ ଦିନ ଲାଗି ଜ୍ଞାନବିଜ୍ଞାନର ଯାହାହେବ ଗଣଶିକ୍ଷା, ପ୍ରୌଢ଼ଶିକ୍ଷା, ଯାହା ମଣିଷର ମନକୁ ବୈଜ୍ଞାନିକ, ବାସ୍ତବବାଦୀ କରିବ, ତା'ର ଦୈନନ୍ଦିନ ଜୀବନର କାମଧନ୍ଦାରେ ଉପଯୋଗ ହୋଇପାରିବ ସେହିପରି ପୁସ୍ତକମାଳାର ପ୍ରକାଶନ । ସଂପୂର୍ଣ୍ଣ ହୋଇପାରିଲାନି କଳ୍ପନା । ମାତ୍ର ଯେଉଁ କେତେଖଣ୍ଡ ଏଯାଏ ବାହାରିଛି ତାହାର ନାମକରଣ ଯେପରି କରାଯାଇଛି; ସେଥିରେ ନିଜ କଳ୍ପନା ପ୍ରସୂତ 'ଶିଶୁ ସଂପଦ' ପତ୍ରିକାର ଧାରାବାହିକତାକୁ ରକ୍ଷା କରିବାର ସଂକଳ୍ପ ଘେନି ପୁସ୍ତକମାଳା । ଡାକ୍ତର ହୁଅନ୍ତୁ, ପଦାର୍ଥରାସାୟନବିତ୍ ହୁଅନ୍ତୁ, ବିଜ୍ଞାନୀ ହୁଅନ୍ତୁ, ସାହିତ୍ୟିକ ହୁଅନ୍ତୁ, ଯିଏ ପଢ଼େ ସିଏ ଆଚମ୍ବିତ

ହୁଏ । ନିଜ ବିଦ୍ୟାରେ ଧୂରୀଣ ସିଏ ହେଲେବି ଏପରି ଅପାଠୁଆ ବ୍ୟକ୍ତିଟି କିପରି ଶରୀର ବିଦ୍ୟାଠାରୁ ଆରମ୍ଭ କରି ବ୍ୟାକରଣର ବିଶେଷ୍ୟ ପଦର ସୃଷ୍ଟି କିପରି ହେଲା ତାହା ସହିତ ମସ୍ତିଷ୍କ, ପାକଯନ୍ତ୍ର, ହୃତ୍‌ପିଣ୍ଡ, ପରମାଣୁ ନ୍ୟୁଟ୍ରନ୍ ବିଦ୍ୟାର ଗୂଢ଼ ତଥ୍ୟ ତତ୍ତ୍ୱକୁ ଏପରି ମନଲାଖି ହୃଦୟଗ୍ରାହୀ ଭାବେ ଲେଖିଛି ଦେଖି ଆଶ୍ଚର୍ଯ୍ୟ ହୁଏ । ମାନସପଟରେ ସ୍ଥାୟୀ ରେଖାପାତ କରିବା ଭଳି ରଚନାବଳୀ ।

ସେ ରାଜନୀତିକ ଜୀବ । ଏ ସମସ୍ତ ତଥାପି ନୂତନ ନୂତନ ଚିନ୍ତାକୁ ରୂପାୟିତ କରିବା ବେଳେ ସେ ରାଜନୀତିକ ସାହିତ୍ୟ, ରାଜୀନତିଜ୍ଞମାନଙ୍କ ଜୀବନକୁ ରୂପଦେବାରୁ କ୍ଷାନ୍ତ ନଥିଲେ । ମୁଠାଏ ଲୁଣ ଗୋଟିଏ ସାମ୍ରାଜ୍ୟଠାରୁ ଋଣ ପରିଶୋଧ ପର୍ଯ୍ୟନ୍ତ—ଯାହାକି ନୂତନ ଦୃଷ୍ଟିର ଆତ୍ମଜୀବନୀ । କେତେ ସଂଗ୍ରାମୀଙ୍କ ଜୀବନୀ ସଂକଳନ ।

ସାମରିକ ଆଦର୍ଶରେ ତାଙ୍କ ସହିତ ମେଳ ଓ ବେଶ ଅମେଳ । ସ୍ୱାଧୀନତା ଲାଗି ସଂଗ୍ରାମ ଓ ସାମ୍ରାଜ୍ୟବାଦ କବଳରୁ ଦେଶର ମୁକ୍ତି ସାମୂହିକ ଲକ୍ଷ୍ୟର । ମାତ୍ର ସ୍ୱାଧୀନତା ଆସିବାର ପଥ ଓ ସ୍ୱାଧୀନତା ପରେ ଦେଶ ନିର୍ମାଣର ଅର୍ଥନୈତିକ ପୁର୍ନବିନ୍ୟାସର, ଶୋଷଣମୁକ୍ତ ସମାଜ ନିର୍ମାଣର ପଥଭ୍ରଷ୍ଟ ସଂଗ୍ରାମ ସଂଗଠନ ସଂପର୍କରେ ମନର ଅମେଳ । କିନ୍ତୁ ସେ ଏପରି ଏକ ବ୍ୟକ୍ତି ଥିଲେ, ରାଜନୈତିକ ଆଦର୍ଶର ଭିନ୍ନତା ହେତୁ ଆମମାନଙ୍କଠାରେ ଅପରପକ୍ଷ ପ୍ରତି ଯେଉଁ ବିଦ୍ୱେଷ, ଘୃଣା, ଅସୂୟା ଓ କୁତ୍ସାରଟନାର ଆଶ୍ରୟ ନିଆଯାଇଥାଏ ତାହାଠାରୁ ସେ ଦୂରରେ ରହୁଥିଲେ ।

ଏହି କର୍ମବ୍ୟସ୍ତ ବ୍ୟକ୍ତିଟିର ଆଉ ଏକ ପରିଚୟ ଥିଲା । ସେ ଆମ ରାଜନୈତିକ ସାମାଜିକ ମହଲରେ 'ମରାସାଙ୍ଗିଆ' ଭାଇ ରୂପେ ପରିଗଣିତ । ସ୍ୱାଧୀନତା ସଂଗ୍ରାମୀ ହୁଅନ୍ତୁ, ବିଶିଷ୍ଟ ବ୍ୟକ୍ତି ହୁଅନ୍ତୁ ଯଦି ତାଙ୍କର ପରକାଳ ଆସିଯାଏ ବିନୋଦ ଯୁବାକାଳରେ ତ ନିଶ୍ଚୟ, ଦୁରାରୋଗରେ ଭୋଗିବା ବେଳେ, ଡାକ୍ତରୀ ବାରଣ ସତ୍ତ୍ୱେ ସେଠାରେ ହାଜର । ସେ ଜାତୀୟ କବି ବୀରକିଶୋର ହୁଅନ୍ତୁ, ଗୋପବନ୍ଧୁ ଚୌଧୁରୀ, ସାରଙ୍ଗଧର, ଭୈରବ ମହାନ୍ତି, ଅନନ୍ତ ପଟ୍ଟନାୟକ ହୁଅନ୍ତୁ, ରମାଦେବୀ, ଲିଙ୍ଗରାଜ ମିଶ୍ର ହୁଅନ୍ତୁ ବା ପୁରୀର ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ, ବିଶ୍ୱନାଥ ଦାସଙ୍କ ଶବାଧାରରେ ହେଉ, ନବବାବୁଙ୍କ ଶବପଟୁଆରରେ ଅନୁଗୁଳ ବା ମହତାବଙ୍କ ଶବପଟୁଆରରେ ଅଗରପଡ଼ାରେ ହୁଅନ୍ତୁ ବା ଗୌରାଙ୍ଗ ଦାସ ହୁଅନ୍ତୁ, ବିଶିଷ୍ଟ ବିଷ୍ଣୁ ମହାପାତ୍ର ହୁଅନ୍ତୁ, ଓକିଲ ହେମ କାନୁନ୍‌ଗୋ ବା ମଧୁ ମହାନ୍ତିଙ୍କ ଶବ ଶୋଭାଯାତ୍ରାରେ ହୁଅନ୍ତୁ; ଏମିତି ଶତାଧିକ ଶବ ପଟୁଆରରେ ବିନୋଦ ନିଶ୍ଚୟ ଥିବେ । ପ୍ରତି ବ୍ୟକ୍ତିର ଗୁଣପ୍ରତି ଆଦର—ସହଯୋଦ୍ଧାଙ୍କ ପ୍ରତି ସମାଜର ବିଶିଷ୍ଟ ବ୍ୟକ୍ତିମାନଙ୍କ ପ୍ରତି ଶେଷ ଶ୍ରଦ୍ଧାଞ୍ଜଳି ଜଣାଇବା ଥିଲା ତାଙ୍କର ଏକ ମହତ ମାନବୀୟ ଗୁଣ ।

ଏହି ବ୍ୟକ୍ତିଟିର ଶେଷ ମୁହୂର୍ତ୍ତ ଆସୁଛି ବୋଲି ତେଣୁ ଯିଏ ଶୁଣିଛି, ସେ କଟକର

ଅଦିକନ୍ଦିରୁ, ରାଜ୍ୟର କୋଣୁ ଅନୁକୋଣୁ ଧାଇଁ ଆସିଛନ୍ତି– ଆଉ ମୃତ୍ୟୁ ସମ୍ବାଦ ପାଇବା ମାତ୍ରେ ଓ ତା'ପରେ ଏଗାର ଦିନ ପର୍ଯ୍ୟନ୍ତ ପ୍ରତିଦିନ ଧାଡ଼ି ଲାଗିଛି । ମୁଖ୍ୟମନ୍ତ୍ରୀ ବିଜୁଙ୍କଠାରୁ ୯୬ ବର୍ଷ ବୟସ୍କ ରାଧାନାଥ ରଥ, ବର୍ଷିୟାନ ନେତା ନେତ୍ରୀ, ବିଦ୍ୱାନ ଅଧ୍ୟାପକ, ଡାକ୍ତର, ସହକର୍ମୀ, ରାଜନୀତିଜ୍ଞ, ଜଜ୍, ସମାଜସେବୀ, ପ୍ରଶାସକ, ସମ୍ବାଦପତ୍ର ଗୁଡ଼ିକର ବର୍ଷିୟାନ ସମ୍ପାଦକ ଧାଇଁ ଯାଇଛନ୍ତି । ଶେଷ ଦର୍ଶନ କରିଛନ୍ତି– ଚିତାଗ୍ନି ବେଳେ ଉପସ୍ଥିତ ରହିଛନ୍ତି । ରାଷ୍ଟ୍ରୀୟ ସମ୍ମାନ ସହ ସେ ଭସ୍ମୀଭୂତ ହୋଇଛନ୍ତି ।

ମାତ୍ର ସେ ଜୀଇ ରହିଛନ୍ତି ଯେହେତୁ ଜୀବିତ ରହିଛି ତାଙ୍କର କୃତି ଓ କୃତିତ୍ୱ । ସେ ରଖିଯାଇଛନ୍ତି ଏପରି ସଂପଦ ଯାହାକି ଏକ ଅଭିଲେଖାଗାର ହେବ । ଆଗାମୀ ପୁରୁଷର ବହୁ ଗବେଷକ ଚାହିଁବେ ନିଜର ସୃଷ୍ଟି ପାଇଁ ସାଇତା ମୌଳିକ ଜ୍ଞାନ ବିଜ୍ଞାନର ନଥିପତ୍ର–୫୦ ବର୍ଷର ସଂଗ୍ରହ । ତାଙ୍କର ସେହି କେତେକ କୃତି କୃତିତ୍ୱର ଭାଷାନ୍ତର ବଙ୍ଗଳା, ହିନ୍ଦୀ, ପଞ୍ଜାବୀ ଭାଷାରେ କେଉଁଠି ସରକାର ବା ଅନ୍ୟ କେଉଁଠି ଆଗ୍ରହୀ ବ୍ୟକ୍ତି ପ୍ରକାଶ କରି ତାଙ୍କ ଲେଖନୀ ପ୍ରସୁତ ଜ୍ଞାନବିଜ୍ଞାନର ବିଷୟବସ୍ତୁ ଓଡ଼ିଶା ବାହାରେ ଅଗଣିତ ପାଠକଙ୍କ ଲାଗି ଗଣଶିକ୍ଷା ପର୍ଯ୍ୟାୟଭୁକ୍ତ କରିସାରିଲେଣି ।

ଗଢ଼ିଯାଇଛନ୍ତି ଜ୍ଞାନମଣ୍ଡଳ ଫାଉଣ୍ଡେସନ ଯାହାହେବ ଭାରତର ଭାଷାକୋଷ କେନ୍ଦ୍ର । ରାଷ୍ଟ୍ରପତିଙ୍କଠାରୁ କେତେ ରାଜ୍ୟର ଗତାୟୁ ଓ ଜୀବିତ ମୁଖ୍ୟମନ୍ତ୍ରୀ, ବହୁ ଗବେଷକ, ବିଜ୍ଞାନୀଙ୍କ ସମର୍ଥନ ପାଇ ସେ ଶେଷଜୀବନ ବେଳକୁ ତାଙ୍କ ସାଧନା ଲାଗି ତୃପ୍ତି ଲାଭ କରିଛନ୍ତି ।

ବୈଜ୍ଞାନିକ ଦୃଷ୍ଟିକୋଣସହ ବାସ୍ତବତା ଭିତ୍ତିରେ ତାଙ୍କର ରଚନା ଗୁଡ଼ିକ ସମୃଦ୍ଧ । ସେ ନିଶ୍ଚିତ ଥିଲେ ଈଶ୍ୱର ବିଶ୍ୱାସୀ । ମାତ୍ର ତାଙ୍କର ବୈଜ୍ଞାନିକ ଅନୁଶୀଳନରେ ସେ କେବଳ ବିଜ୍ଞାନ ଓ ପ୍ରକୃତିକୁ ହିଁ ସମସ୍ତ ସୃଷ୍ଟିର ମୂଳ ଆଧାର ବୋଲି ଦର୍ଶାଇଛନ୍ତି । ପ୍ରକୃତି କିପରି ସବୁ ସୃଷ୍ଟି କରିଛି, କୌଣସି ଅଲୌକିକ ଶକ୍ତି ବା ନିୟନ୍ତାକୁ ତାଙ୍କ ସୃଷ୍ଟି ଭିତରକୁ ଆଣିନାହାନ୍ତି । ନିଜର ଧର୍ମବିଶ୍ୱାସରୁ ପାଠକଙ୍କୁ ପ୍ରଭାବିତ ନକରି ପ୍ରକୃତି ନିତ୍ୟ ନୂତନ, ସର୍ବ ପୁରାତନ ସୃଷ୍ଟିର ମୂଳ ଉତ୍ସ ବୋଲି ତାଙ୍କ ଲେଖାଗୁଡ଼ିକ ପଢ଼ିଲେ ଜଣାପଡ଼େ ।

ଆଉ ଏକ ମହ ୍ ହେଲା ସେ କହନ୍ତି ଓ ଲେଖନ୍ତି ଜ୍ଞାନର ସମାପ୍ତି ନାହିଁ । କାଲି ଯାହା ସତ୍ୟ ବୋଲି ସଂଗୃହୀତ ଜ୍ଞାନ ଓ ଅଭିଜ୍ଞତାରୁ ଦର୍ଶାଇଥିଲେ, ସମାଜର, ଜ୍ଞାନବିଜ୍ଞାନରୁ, ପ୍ରଯୁକ୍ତି ବିଦ୍ୟାର ସାମାଜିକ ବିବର୍ତ୍ତନରେ ନୂତନ ଉପାଦାନ ଗୁଡ଼ିକର ଜନ୍ମହେଲେ ତାହା ଅସଂପୂର୍ଣ୍ଣ । ଦ୍ୱିତୀୟଥର ପୁରୁଣାକୁ ପୁନଃଲେଖ କରାଗଲେ ପ୍ରତ୍ୟେକଟି ବିଷୟରେ ଅଧିକ ତଥ୍ୟ ଦେବାକୁ ହେବ । ନଚେତ୍ ତାହା ସର୍ବାଧୁନିକ ହେବନାହିଁ । ଏହା ଏକ ଅସରନ୍ତି ପ୍ରକ୍ରିୟା । ତେଣୁ ତାଙ୍କ ଉଦ୍ୟମର ଆରମ୍ଭ ମାତ୍ର ।

ତାଙ୍କର ସଂସାର ଥିଲା– ସାଂସାରିକ ଜଞ୍ଜାଳ ଥିଲା । ବ୍ୟକ୍ତିଗତ ତ୍ରୁଟିବିଚ୍ୟୁତି ଥିଲା

ବୋଲି ସେ କହନ୍ତି । ସେଥିଲାଗି ତାଙ୍କର ଗୋଟିଏ ପରମ ସଂକଳ୍ପ ଯେ ସେ ଜ୍ଞାନରେ ଜ୍ଞାନ ବିଜ୍ଞାନ ଗବେଷଣାର, ସ୍କୁଲ କଲେଜର ଅଧ୍ୟୟନ ଅଧ୍ୟାପନା ଆଳୟରେ ସୀମାବଦ୍ଧ ନ ହୋଇ ତାହା ଗଣଶିକ୍ଷା ଓ ପ୍ରୌଢ଼ଶିକ୍ଷାରେ ପରିଣତ ହେଉ ବୋଲି ସେ ଭାବିଥିଲେ । ଦେଶପ୍ରେମ ଏହି କାର୍ଯ୍ୟ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ବୋଲି ତାଙ୍କର ଅଟଳ ବିଶ୍ୱାସ ଥିଲା । ସ୍ୱାଧୀନତା ସଂଗ୍ରାମ ସାଙ୍ଗକୁ ଦାସତ୍ୱ ହେତୁ ଶିକ୍ଷାରୁ ବଂଚିତ ଜନସାଧାରଣଙ୍କୁ ଅଣଆନୁଷ୍ଠାନିକ ଶିକ୍ଷା ମାର୍ଗରେ ଶିକ୍ଷିତ କରି ସେମାନଙ୍କୁ ଅନ୍ଧ କୁସଂସ୍କାରରୁ ମୁକ୍ତ କରିହେବ – ଏହା କରିବା ଥିଲା ତାଙ୍କର ବ୍ରତ ।

ଜୀବନରେ ଜନ୍ମଦିନୁ ସେ ଯାହାଯାହାଙ୍କ ପାଖରେ ଜୀବନରେ ଯେତେବେଳେ ଋଣୀ, ସେ ଋଣକୁ ସେ ତାଙ୍କ ଅନବଦ୍ୟ ଆତ୍ମଜୀବନୀ 'ଋଣ ପରିଶୋଧରେ' ପରିଶୋଧ କରିଯାଇଛନ୍ତି । ତାଙ୍କ ଋଣ ପରିଶୋଧ କରିବା ଅର୍ଥ ସେ ଅଧାଗଢ଼ି ଅକ୍ଟୋବର ୧୯୯୦, ୨ ତାରିଖ ଦିନ ଉନ୍ମୋଚନ କରିବାକୁ ମନସ୍ଥ କରିଥିବା ରାଜଧାନୀ ଭୁବନେଶ୍ୱରରେ ଜ୍ଞାନମଣ୍ଡଳ ଫାଉଣ୍ଡେସନର କାର୍ଯ୍ୟକୁ ଅବ୍ୟାହତ ରଖିବା, ସେ ଛାଡ଼ିଯାଇଥିବା ପାଣ୍ଡୁଲିପି ଓ ଟିପାଗୁଡ଼ିକୁ ଧରି ସେଗୁଡ଼ିକର ପ୍ରକାଶନ କରିବା, ଜ୍ଞାନମଣ୍ଡଳର ବାକି ରହିଥିବା ଅଥଚ ତାଙ୍କ ଦ୍ୱାରା ମାଲ ମସଲା ସାଇତା ଥିବା ଖଣ୍ଡ ଗୁଡ଼ିକୁ ପ୍ରକାଶ କରିବା, ପୁରାତନ ଖଣ୍ଡଗୁଡ଼ିକର ଅଭାବ ହେତୁ ତା'ର ନିର୍ଦ୍ଦିଷ୍ଟ ଚାହିଦା ପୂରଣ କରିବା, ୩୬୫ ଦିନର ତାଲିକାନୁସାରେ ପ୍ରକାଶିତ ପୁସ୍ତକ ଗୁଡ଼ିକର ପୁନଃମୁଦ୍ରଣ କରିବା ଓ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଜାତିର ସମ୍ପଦ ଅଭିଲେଖାଗାରକୁ ନବରୂପ ଦେଇ ସାଇତି ରଖିବାକୁ ଅଧିକ ସମୃଦ୍ଧ କରିବା ।

ତାଙ୍କ ସ୍ମୃତି ପ୍ରତି ଶ୍ରଦ୍ଧା ନିବେଦନ କଲାବେଳେ ସ୍ୱତଃ ଗୋଟିଏ କଥା ମନକୁ ଆନ୍ଦୋଳିତ କରେ । ଓଡ଼ିଶାର ଭୂଇଁରୁ, ଭାରତରୁ ମଧ୍ୟ ଗୋଟିଏ ପ୍ରଜାତି ନିଶ୍ଚିହ୍ନ ହୋଇଚାଲିଛି । ସେ ଏକ ବିଶେଷ ଧରଣର ପ୍ରଜାତି । ଆଉ ଦଶ ବାରଟି ବର୍ଷ ପରେ ସେପରି ପ୍ରଜାତିରୁ କିଏ ଆଉ ଥିବେ ସନ୍ଦେହ । ସେପରି ପ୍ରଜାତି ଭାରତରେ ଆନୁଷ୍ଠାନିକ ଭାବରେ ସ୍ୱୀକୃତି ଲଭିଥିଲା । ୧୮୫୭ରୁ ହିଁ ସେ ପ୍ରଜାତିର କେତେ ପୁରୁଷ ଇତିହାସର ବସ୍ତୁ । କେତେକ ନାମଧେୟ, ଆଉ ଅସଂଖ୍ୟ ଅଗଣିତଙ୍କ ନାମ ଇତିହାସ ଲିପିବଦ୍ଧ କରିନାହିଁ ।

ସେପରି ଏକ ପ୍ରଜାତିର ବୀରତ୍ୱପୂର୍ଣ୍ଣ ଆତ୍ମବଳିଦାନ ୧୯୦୫, ୧୯୨୧, ୧୯୩୦, ୧୯୩୨, ୧୯୪୨ ଆଉ ୧୯୪୭ ଅଗଷ୍ଟ ୧୫ ଯାଏ ଅଗଣିତ କେତେ ସଂଗ୍ରାମରେ ଲୁକ୍କାୟିତ । କେତେ ମଞ୍ଚ, କେତେ ମତାଦର୍ଶର ସେମାନେ ସତ, ମାତ୍ର ଏକକ ଓ ସାମୂହିକ ଲକ୍ଷ୍ୟ ଥିଲା ଦେଶର ମୁକ୍ତି । ସେଥିଲାଗି ସହସ୍ର ସହସ୍ର ସଂଖ୍ୟାରେ ବ୍ରିଟିଶ ତୋପ ଗୁଳିରେ ଟଳିପଡ଼ିଛନ୍ତି । ହସି ହସି ଫାସି ମଞ୍ଚରେ ଗଳା ଦେଖାଇ ଦେଇଛନ୍ତି । ଦଶାବ୍ଦୀ ଦଶାବ୍ଦୀ କାଳ ନିର୍ଜନ ବନ୍ଦୀଖାନାରେ କଳାପାଣିରେ ନିକ୍ଷିପ୍ତ ହୋଇଛନ୍ତି । ସେପରି ଏକ ପ୍ରଜାତିର ଉତ୍ତରାଧିକାର ପାଇଥିଲେ ବିନୋଦ କାନୁନ୍‌ଗୋ । ସାର୍ଥକ ଜୀବନର ଏକ ଦୃଷ୍ଟାନ୍ତ ସେ । ▢▢▢

**ରଚନାକାଳ - ୧୯୯୧**

# ସ୍ୱାଧୀନତା ସଂଗ୍ରାମୀ ଜଣେ 'ପିଇସା'ଙ୍କ ସ୍ମୃତିତର୍ପଣ
## (ବିପିନ ବିହାରୀ ମହାନ୍ତି)

ସ୍ୱାଧୀନତା ସଂଗ୍ରାମର ମହାକାଶରେ ଦେଦୀପ୍ୟମାନ ଓଡ଼ିଶାର ଆଉ ଏକ ନକ୍ଷତ୍ର ଚିରକାଳ ଲାଗି ଲୁଚିଗଲା । ସହସ୍ର ସହସ୍ର ଏକଦା ସମ୍ମୁଜ୍ୱଳ, ଅଧୁନା ଉଭାନ ନକ୍ଷତ୍ରଙ୍କ ମଧ୍ୟରୁ ଓଡ଼ିଶାରେ ସେ ଜଣେ । ବିପିନ ବିହାରୀ ମହାନ୍ତି । ଓଡ଼ିଶାରେ ବିପିନ ବିହାରୀ ମହାନ୍ତି ନାମଧାରୀ ଅନେକ ଥିଲେ । ଏବେବି ଅଛନ୍ତି । ସମସ୍ତଙ୍କ ଜନ୍ମଜାତକ ନିଜ ବାପ ମା' ସଧେଇ ଥିଲେ । ୟା'ଙ୍କ ବାପା ମଧ୍ୟ । ସେ ସବୁ ଜ୍ୟୋତିଷ ଅବଧାନଙ୍କ ଦ୍ୱାରା ରଚିତ । ସେପରି ଜାତକ ସଧେଇ ବାପ ମା'ମାନେ ପୁଅ ପାଇଁ କେତେ କଳ୍ପନା କରିଥିଲେ, କେତେ ସ୍ୱପ୍ନ ଦେଖିଥିଲେ । ଏ ବିପିନଙ୍କ ବାପ ମା' ମଧ୍ୟ ସେଥିରୁ ବାଦ୍ ନୁହନ୍ତି । ମାତ୍ର ଏହି ବିପିନ ଏବଂ ତାଙ୍କ ନାମ ସଙ୍ଗେ ସଂଗତି ନଥିଲେ ବି ଅନେକ ଏହି ଧରଣର ବିପିନଙ୍କ ଜନ୍ମ ଜାତକ ୧୯୩୦ରେ ତିଆରି ହେଲା । ଗୋଟାଏ ଝଡ଼ ଦେଶସାରା ବୋହିଲା । ଦେଶର ମୁକ୍ତି, ସ୍ୱାଧୀନତା ଲାଗି ସଂଗ୍ରାମ ଯଜ୍ଞରେ ଆହୂତି ଦିଅ ବ୍ରିଟିଶ ଗୋଲାମ ହେବାର ମୋହକୁ । ଗୋଲାମ କରିବାକୁ ଅଭିପ୍ରେତ କୋର୍ଟ, କଚେରୀ ବିଦ୍ୟାଳୟ ବର୍ଜନ କର । ମହାତ୍ମା ଗାନ୍ଧୀଙ୍କ ୧୯୨୦ର ଅସହଯୋଗ ଆନ୍ଦୋଳନର ଡାକରାଠାରୁ ଆହୁରି ଶତଗୁଣ ଉଦାତ୍ତ ଆହ୍ୱାନ ।

କଟକ କଲେଜିଏଟ୍ ସ୍କୁଲର ମେଧାବୀ, ଆଗଚଲା, ଉପର ଶ୍ରେଣୀ ଛାତ୍ର କେବଳ ନୁହଁ, ଭିକ୍ଟୋରିଆ ସ୍କୁଲ, ପୁରୀ, ବାଲେଶ୍ୱର ଏମିତି ଅନେକ ସ୍କୁଲର ଛାତ୍ରମାନେ ବର୍ଜନ କରନ୍ତି ବିଦ୍ୟାଳୟ । ହେଡ଼ମାଷ୍ଟର ଓ ଶିକ୍ଷକମାନଙ୍କ ତାଗିଦା, ସ୍କୁଲ ସାମନାକୁ ଘେରି ରହିଛନ୍ତି ଲାଠିଆଳ ବନ୍ଧୁକଧାରୀ ବ୍ରିଟିଶ ପୁଲିସ ଫଉଜ, ସ୍କୁଲ ପାଚେରୀ କାନ୍ଥ ଡେଇଁଲେ ଥୋକେ ଛାତ୍ର । ତନ୍ମଧ୍ୟରେ ଥିଲେ ଏହି ବିପିନ । ସଙ୍ଗରେ ବିନୋଦ କାନୁନ୍‌ଗୋ, ସୁରେନ୍ଦ୍ର ଦ୍ୱିବେଦୀ, ସୁରେନ୍ଦ୍ର ପଟ୍ଟନାୟକ– ଏମିତି ଅନେକ ।

ବିପିନଙ୍କ ନୂଆ ଜାତକ ଏଇଠୁ ଆରମ୍ଭ । ୧୯୯୮ ଅଗଷ୍ଟ ମାସରେ ଜାତକ ଚିରା ୮୬ ବର୍ଷ ପରେ । ସେହି ଜାତକର ଗଣନା ଅନୁସାରେ ଦେଶର ସ୍ୱାଧୀନତା ଓ ସ୍ୱାଧୀନତା ପର ଉନ୍ନତ, ଭୋକ ଅନାହାର, ଅତ୍ୟାଚାର ନିର୍ଯ୍ୟାତନା ବିରହିତ ସମାଜର ପରିବର୍ତ୍ତନ ଲାଗି ତାଙ୍କର

ଜୀବନଧାରା । ୧୯୩୦-୩୨ରେ କାରାବାସ ଭୋଗିଲେ, ୧୯୪୨ ଅଗଷ୍ଟ ଆନ୍ଦୋଳନରେ ଦୀର୍ଘ କାରାଦଣ୍ଡ ଭୋଗିଲେ ଶତଶତ ସହସ୍ରସହସ୍ର ସହବନ୍ଦୀଙ୍କ ମେଳରେ । ଏଥିରେ କେବଳ ସେ ସୀମିତ ନଥିଲେ । ଯାଜପୁର ଅଞ୍ଚଳରେ ତାଙ୍କର ମୁଖ୍ୟ କର୍ମକେନ୍ଦ୍ର । ସେହି ଅଞ୍ଚଳରେ ତଥା ପ୍ରଦେଶର ଅନେକ ଅଞ୍ଚଳରେ ଗାଁ ଗାଁ ବୁଲି ସ୍ୱାଧୀନତା ସଂଗ୍ରାମ ଲାଗି ସଂଗଠନ କରିବା, ନୂଆନୂଆ କର୍ମୀ ସୃଷ୍ଟି କରିବା ଓ ସେ ଗଭୀର ବିଶ୍ୱାସ କରୁଥିବା ଗାନ୍ଧିଜୀଙ୍କ ଗ୍ରାମ ସ୍ୱରାଜ ଆଦର୍ଶର ରୂପାୟନ ଲାଗି ଜୀବନ ଯୌବନର ଅନ୍ୟାନ୍ୟ ଆକର୍ଷଣକୁ ପାସୋରି ଏକାଗ୍ର ଚିତ୍ତରେ କାମ କରିବାର ସଂକଳ୍ପ ନେଲେ ।

କଟକ ସ୍ୱରାଜ୍ୟ ଆଶ୍ରମରେ ତାଙ୍କୁ, ଅନେକ ସମୟରେ ସହପାଠୀ, ସହକର୍ମୀ ଅନ୍ତରଙ୍ଗ ବନ୍ଧୁ ବିନୋଦ କାନୁନ୍‌ଗୋଙ୍କୁ, ନେତାମାନଙ୍କ ସହିତ ଆଲୋଚନା କରିବାର ସୌଭାଗ୍ୟ ଜୁଟେ । ସ୍ୱରାଜ୍ୟ ଆଶ୍ରମରେ ନେତା କର୍ମୀଙ୍କ ଏକାଠି ଭାତ, ଡାଲମା ଖିଆ, ମୁଢ଼ି ଉଖୁଡ଼ା ଜଳଖିଆ ଖିଆ, ଅବା ବେଳେବେଳେ ଉପାସ ରହିବାର ସୌଭାଗ୍ୟବେଳେ ତାଙ୍କ ସହିତ ଘନିଷ୍ଠ ସଂପର୍କର ସୁଯୋଗ ମିଳେ ।

୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହ, ୧୯୪୨ ଅଗଷ୍ଟ ଆନ୍ଦୋଳନର ବାକି ଅଛି, ସେହି କାଳରେ 'ପିଇସା' ରୂପେ ଗ୍ରହଣ କରିନେବାର ଏକ ଘଟଣା ସ୍ମରଣ କରି ତାଙ୍କ ବିୟୋଗରେ ମୋର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବି । ସେ ମୋର ପ୍ରକୃତ ପିଇସା ନ ହୋଇ ହୋଇଗଲେ ମୋ' ପାଇଁ ମାନ୍ୟର ପିଇସା । କନିଷ୍ଠ ସହକର୍ମୀର ସଂପର୍କ ଉର୍ଦ୍ଧ୍ୱରେ ସେ ସଂପର୍କ । ତାଙ୍କ ଅନ୍ତରଙ୍ଗ, ଏକ ମାଆ ପେଟରୁ ନ ୦୍‌ଲେ ହେଁ ଅଭିନ୍ନ ସାଙ୍ଗ ବିନୋଦ କାନୁନ୍‌ଗୋ ଆମ ଘରକୁ ବର ହୋଇ ଯାଇଥା'ନ୍ତି । ଯୌତୁକବିହୀନ, ନିରାଡ଼ମ୍ବର ବାହାଘର । ମାମୁଁ ଆର୍ତ୍ତବଲ୍ଲଭ ମହାନ୍ତି, ବିଜ୍ଞାନ ଗୁରୁ ଗୁରୁଚରଣ ମହାନ୍ତିଙ୍କ ପରି ବିଦ୍ୱାନଙ୍କ ସାଙ୍ଗକୁ ହରେକୃଷ୍ଣ ମହତାବ, ଆଚାର୍ଯ୍ୟ ହରିହର, ନୀଳମଣି ପ୍ରଧାନ, ମଦନ ପଟ୍ଟନାୟକଙ୍କ ଭଳି ତୁଙ୍ଗ କଂଗ୍ରେସ ନେତା– ଆଉ ବିପିନ ବିହାରୀ, ମନମୋହନ ଚୌଧୁରୀ ପ୍ରମୁଖ ।

ବରଯାତ୍ରୀ ବିପିନ ବିହାରୀ ଆମ ଗାଁ'ରେ ହୋଇଗଲେ ସର୍ବାଦୃତ କୁଣିଆ । କି ଚମତ୍କାର ହାସ୍ୟରସିକତା, ନିର୍ମଳ ଶାଳୀନତାପୂର୍ଣ୍ଣ, ଆଉ ସାଙ୍ଗ ବିନୋଦ ଓ ଦିଅର ବୋଲାଉଥିବା ବିପିନଙ୍କ ପ୍ରେରଣାରେ ପିଉସୀ ଶଶିବାଳା ଗଲେ ବରୀର ଗୋପବନ୍ଧୁ ଚୌଧୁରୀ ରମାଦେବୀଙ୍କ ଆଶ୍ରମକୁ ଦେଶ ସେବାର ତାଲିମ ଲାଗି ବର୍ଷାଧିକ କାଳ । ବହୁ ନାରୀନେତ୍ରୀ ଓ ନାରୀକର୍ମୀଙ୍କ ସହ ସେ ଗଲେ ବନ୍ଦୀଶାଳକୁ । ଏହାକୁ ଉଦ୍ଧାର କରିବାର ଉଦ୍ଦେଶ୍ୟ, ବିପିନବାବୁ ତାଙ୍କ ଜୀବନ କାଳରେ ଏମିତି ଅନେକଙ୍କୁ ଆଣି ସ୍ୱାଧୀନତା ସଂଗ୍ରାମରେ ସାମିଲ କରେଇଛନ୍ତି ।

ପୁଣି ଗୋଟିଏ କଥା ମନେପଡ଼େ । ସେ ଯାଜପୁର ଲୋକାଲବୋର୍ଡ଼ର ଚେୟାରମ୍ୟାନ୍ ହୋଇଥିଲେ । ବଡ଼ଚଣାର ଶଶିଭୂଷଣ ଦାସ ଭାଇସ୍ ଚେୟାରମ୍ୟାନ୍ । ସୀମିତ କ୍ଷମତା ଓ

ସୀମିତ ସମ୍ବଳ ସତ୍ତ୍ୱେ ସେ ତାଙ୍କ କାର୍ଯ୍ୟକୁ ଦକ୍ଷତାର ସହିତ ନିର୍ବାହ କରି ସାଧୁତାର, ସଚ୍ଚୋଟପଣିଆର ନିଦର୍ଶନ ରଖିଯାଇଥିଲେ ।

ମାତ୍ର ଏକଦା ତାଙ୍କ ସମସ୍ତ ବିଶ୍ୱାସ ପ୍ରତି ଆଘାତ ଆସିଲା ତାଙ୍କ ଦଳର କଂଗ୍ରେସ ନେତୃତ୍ୱ ପକ୍ଷରୁ । ପଚାଶ ଦଶକରେ ଏକ ଉପନିର୍ବାଚନ ହେଲା ତାଙ୍କ ନିର୍ବାଚନ ମଣ୍ଡଳୀରେ । ଯାଜପୁରର ଅଧିକାଂଶ କର୍ମୀ ତାଙ୍କୁ ପ୍ରାର୍ଥୀ କରାଯାଉ ବୋଲି ଦାବୀ କରିଥା'ନ୍ତି । ସେ ମଧ୍ୟ ମନୋନୀତ ହୋଇଗଲେ । ମାତ୍ର ଭିତିରି ଏକ ମନ୍ତ୍ରଣାରେ ତାଙ୍କୁ ବାଦ୍ ଦେଇ ଅନ୍ୟ ବ୍ୟକ୍ତିଙ୍କୁ ପ୍ରାର୍ଥୀ କରାଗଲା । ସେ ଅମଙ୍ଗ ହେଉଥା'ନ୍ତି । କିନ୍ତୁ ସେହି କଂଗ୍ରେସ ନେତୃତ୍ୱର ଏକ ଅଂଶ ତାଙ୍କୁ ସ୍ୱାଧୀନ ପ୍ରାର୍ଥୀ ରୂପେ ଠିଆ କରେଇଲେ । ଭିନ୍ନ ମତାବଲମ୍ବୀ ଆମେ କେତକ ହୋଇଯାଇଥାଉ, ଏସବୁ ବିଭିନ୍ନ ରାଜନୈତିକ, ଆଦର୍ଶଗତ ସାଂଗଠନିକ କାରଣରୁ । ତଥାପି 'ପିଇସା' ବିପିନ ବାବୁଙ୍କ ସମର୍ଥନରେ ସୁକିନ୍ଦାର ଘନ ଜଙ୍ଗଲଘେରା ପଲ୍ଲୀ ଅଞ୍ଚଳରେ ତାଙ୍କ ସମର୍ଥନରେ ଯାଇ ବ୍ୟକ୍ତିଗତ ଭାବରେ 'ପିଇସା'ଙ୍କ ସ୍ନେହଋଣ ପରିଶୋଧ କରିଛି ।

ସେ ଜିତନ୍ତେ ନାହିଁ । କପର୍ଦ୍ଦକ ଶୂନ୍ୟ, ଚକ୍ରାନ୍ତର ଶରବ୍ୟ ବିପିନ ବିହାରୀ ମହାନ୍ତି । ପରାଜୟରେ ତାଙ୍କର ତିଳେମାତ୍ର ଅନୁଶୋଚନା ନ ଥିଲା । ସାଥୀ ବିନୋଦଙ୍କ ମୃତ୍ୟୁରେ ସେ ପିଲାଙ୍କ ଭଳି କାନ୍ଦି ଲୋଟିଯିବାର ଦୃଶ୍ୟ ଆଜି ବି ମନେପଡୁଛି ।

ସ୍ୱାଧୀନତା ସଂଗ୍ରାମର ସୁବର୍ଣ୍ଣ ଜୟନ୍ତୀ ସମାପନ ଉତ୍ସବ ନସରୁଣୁ ସେ ଚାଲିଯାଇଛନ୍ତି । ବରଂ ଶ୍ରେୟ ହୋଇଛି । କାହିଁକି ସେ ଦେଖନ୍ତେ ଆଜି ସ୍ୱାଧୀନତା, ଦେଶର ସାର୍ବଭୌମତ୍ୱ, ଦେଶର ଅଖଣ୍ଡତା, ଆନ୍ତର୍ଜାତିକ କ୍ଷେତ୍ରରେ ଦେଶର ମର୍ଯ୍ୟାଦା ପ୍ରତି ଯାହାର ଧର୍ମ ନିରପେକ୍ଷ ନୀତି ପ୍ରତି ଯେଉଁ ବିପଦ ସୃଷ୍ଟି କରାଯାଉଛି ତାକୁ । ଦେଶର ସ୍ୱାଭିମାନ, ତାହାର ଅର୍ଥନୈତିକ ଆତ୍ମନିର୍ଭରଶୀଳ ନୀତିକୁ ବର୍ଜନ କରି (କେତେକ ଦେଶର) ବହୁଜାତିକ ପୁଞ୍ଜି ପାଖରେ । ଦେଶର ବୃହତ ପୁଞ୍ଜି ହାତରେ ଦେଶକୁ ଅର୍ପଣ କରିଦେବାର ବିପଦକୁ ଦେଖି ସେ କାହିଁକି ପରିଣତ ବୟସରେ ଗ୍ଲାନି ବୋଧ କରନ୍ତେ ? ତାଙ୍କ ସ୍ମୃତି ପ୍ରତି ମୋ' ଭଳି ପୁତୁରାର ମାର୍ମିକ ବେଦନାସିକ୍ତ ଶ୍ରଦ୍ଧାଞ୍ଜଳି ।

□□□

ରଚନା କାଳ – ୧୯୯୮

# ମୁକ୍ତିସୈନିକ ବିଶ୍ୱମ୍ଭର ପରିଡ଼ା, ତମ ସ୍ମୃତିକୁ ଶ୍ରଦ୍ଧାଞ୍ଜଳି

ବର୍ଷଟିଏ ବିତିଗଲା ଚାହୁଁଚାହୁଁ । ତାଙ୍କୁ ଭେଟାଭେଟି ଆଉ ହେବାର ପ୍ରଶ୍ନ ନାହିଁ । ଏପରି ହେବାଟା ଆମ ସଭିଙ୍କର ଅବଧାରିତ ଅନ୍ତିମ ଦଶା ହେବ । ବର୍ଷକ ତଳେ ଅନ୍ତିମ ଦଶା ଭୋଗିଥିବା ବିଶ୍ୱମ୍ଭର ପରିଡ଼ା ଅବିଭକ୍ତ କଟକ ଜିଲ୍ଲା ଜଗତସିଂହପୁର ଥାନା ନିକଟବର୍ତ୍ତୀ ଗାଁ ବନମାଳୀପୁର । ସେହି ଗାଁ'ଟିର ପରିସର ତାଙ୍କ ପରିବାରର ପରିସରରେ ସୀମିତ ରହିଥିଲେ, କ'ଣ ମୁଁ ବା ଅନ୍ୟଅନେକ ଦୂରଦୂରାନ୍ତ ଗାଁ, ଅଂଚଳର ବ୍ୟକ୍ତି ହେଜ୍ କରନ୍ତୁ ? ଯେକୌଣସି ବ୍ୟକ୍ତି ଆଖି ବୁଜିଦେଲେ, ତାଙ୍କ ପରିବାର, ଆତ୍ମୀୟସ୍ୱଜନ ତାଙ୍କୁ ସ୍ମରଣେ କରିବେ, ବାହୁନିବେ । ସେମିତି ଛାଡ଼ି ଚାଲିଗଲା କୌଣସି ବ୍ୟକ୍ତିଙ୍କୁ ବିଶେଷରେ ବିଶ୍ୱମ୍ଭରଙ୍କୁ ଅନ୍ୟ ଅସୁମାରୀ ଲୋକ କାହିଁକି ସ୍ମରଣ କରିବେ ? ଏହି ପ୍ରଶ୍ନଟିରେ ହିଁ ତାଙ୍କୁ ସ୍ମରଣ କରିବାର ବିଶେଷତ୍ୱକୁ ଅଣ୍ଡାଳିବାକୁ ପଡ଼େ ।

ଆମ ଦେଶରେ ଗଲା ଶତାବ୍ଦୀ ଦୁଇଦଶକରେ ଆଫ୍ରିକା ଛାଡ଼ି ଗୋଟିଏ ଲୋକ, ଯାହାକୁ ୧୯୪୮ ଜାନୁଆରୀ ୩୦ ତାରିଖରେ ହିନ୍ଦୁତ୍ୱବାଦୀ ଆଦର୍ଶର ନାଥୁରାମ ଗୁଳି କରି ମାରିଦେଲେ, ସେ ହିଁ ଗୋଟିଏ ଡାକରା ଦେଇଥିଲେ । ଡାକରାଟି ହେଲା ହେ ଭାରତର ଯୁବା, ଭେଣ୍ଡିଆ, ପରଦେଶୀ ସରକାରର ଚାକିରିଆ, ଓକିଲ, ସମସ୍ତେ ଅମାନିଆ, ଅବାଗିଆ, ବାୟାବାତୁଳ ହୋଇଯାଅ । ଦେଶକୁ, ଏ ଜାତିକୁ, ହିମାଳୟଠାରୁ କୁମାରିକା ବ୍ୟାପୀ ଜାତିବର୍ଣ୍ଣ, ଧର୍ମ ନିର୍ବିଶେଷ ବିଦେଶୀଙ୍କ ହାତରେ ପଚିସଢ଼ି ବଂଚୁଥିବା ଲୋକଙ୍କୁ ସ୍ୱାଧୀନ କର । ୧୯୪୦-୪୧ରେ ଏହି ଡାକରାରେ ବିଶ୍ୱମ୍ଭର ଅବାଗିଆ, ଅମାନିଆ ଆଉ ଗାଁ ଓ ଘରର ମୁରବୀଙ୍କ ଆକଟରେ ବାଲୁଙ୍ଗା ହେବାକୁ ଆରମ୍ଭ କରିଦେଲେ । ଜଗତ୍‌ସିଂହପୁରରେ ସ୍ଥାପିତ ଓ ଭଗ୍ନସ୍ତୂପରେ ପରିଣତ ଅଳକାଶ୍ରମର ଇତିବୃତ୍ତ ତାଙ୍କୁ ପ୍ରଥମେ ଅନୁପ୍ରାଣୀତ କରିଥିଲା ବୋଲି ପରବର୍ତ୍ତୀ କାଳରେ କହିଥାନ୍ତି । ତେବେ ପୂରା ଲଗାମଛଡ଼ା ହେବା ବାକିଥାଏ । ସେତିକିବେଳେ ତାଙ୍କ ସହିତ ମୋର ପ୍ରତ୍ୟକ୍ଷ ଯୋଗାଯୋଗ ।

ବ୍ୟକ୍ତିଗତ ସତ୍ୟାଗ୍ରହ କାଳରେ ବନ୍ଦୀଶାଳାରୁ ଫେରିବାରେ ସ୍ୱରାଜଆଶ୍ରମ ଅଫିସ୍ ଦାୟିତ୍ୱରୁ ଅବ୍ୟାହିତ ଦେଇ ଆଗାମୀ ଚରମ ସଂଗ୍ରାମ ପାଇଁ ମୋତେ ତିର୍ତ୍ତୋଲ, ଜଗତସିଂହପୁର ଅଞ୍ଚଳକୁ ପଠାଯାଇଥାଏ । ସଭା, ସମାବେଶ ଚାଲିଥାଏ । ନବକୃଷ୍ଣ ଚୌଧୁରୀ ଆସିବେ । ତିର୍ତ୍ତୋଲ ଜଗତସିଂହପୁରର ବିଭିନ୍ନ ସ୍ଥାନରେ ଏପରି ସଭାହେବ । ଗାଁ ପାଖ ସାଁପୁରଠାରେ ଭେଟ ହୁଏ ଏହି ନବୀନ ଯୁବକଙ୍କୁ । ତାଙ୍କ ଦାୟିତ୍ୱ ଦେଲେ ସ୍ଥାନୀୟ ଜମିଦାରଙ୍କ ଅତ୍ୟାଚାର, ପୁଲିସ ଦମନ ଲୀଳା ବିରୁଦ୍ଧରେ ବଡ଼ ସଭା ସେ ତାଙ୍କ ସାଙ୍ଗମାନଙ୍କୁ ଧରି କରାଇବେ । ସତରେ ଜମିଦାରଙ୍କ ଦ୍ୱାର ଆଗରେ ଗୋଟିଏ ବଡ଼ଧରଣର ସଭା ବିଶ୍ୱମ୍ଭର ପରିଡ଼ା, ଜୟରାମ ପଣ୍ଡା, ଦୈତାରୀ ପଣ୍ଡା ଏମିତି ଭେଣ୍ଡାମାନେ ଲାଗିଥାନ୍ତି । ଏହା ହିଁ ପରିଚୟ ଓ ପରେ ସହକର୍ମୀ, ସମଧର୍ମୀ ଭିନ୍ନ ଧର୍ମୀ, ସହବନ୍ଦୀର ଅଭିଜ୍ଞତା ବଢ଼େ, ଅମାନିଆ ବିଶ୍ୱମ୍ଭର, ଜୟରାମ ଏମିତି କେତେକଙ୍କୁ ଧରି ବନ୍ଦୀ - ୧୯୪୨ ଅଗଷ୍ଟ ଆନ୍ଦୋଳନ କାଳରେ ।

ବ୍ରହ୍ମପୁର କେନ୍ଦ୍ର ଜେଲରେ ପାଂଶହରୁ ଅଧିକ ଅଟକବନ୍ଦୀ । କେତେ କେତେ ନାମଜାଦା ନେତାଠାରୁ ସାଧାରଣ କର୍ମୀଙ୍କ ମିଳନପୀଠ ବର୍ଷ ବର୍ଷ ଧରି ତିନିବର୍ଷରୁ ଅଧିକ । ମଝିରେ ମଝିରେ ଖଲାସ ବି ଚାଲିଥାଏ । ଓଡ଼ିଶାର ଓ ଗଡ଼ଜାତ ଗୁଡ଼ିକର ଜେଲ ଆହୁରି ଦୁଇହଜାର ବନ୍ଦୀ ।

ପାଠଛଡ଼ା ବିଶ୍ୱମ୍ଭର ଲାଗିପଡ଼ିଲେ ରାଜନୈତିକ ସାହିତ୍ୟିକ ଜ୍ଞାନ ବିଭିନ୍ନ ଦାର୍ଶନିକ ତତ୍ତ୍ୱ, ଧର୍ମତତ୍ତ୍ୱ କିପରି ଆୟତ୍ତ କରିବେ । ଭାରତର ଇତିହାସ, ଆମ ସ୍ୱାଧୀନତା ସଂଗ୍ରାମର ଘଟଣାବଳୀ ସମ୍ପର୍କରେ ଜ୍ଞାନ ଆହରଣ କରିବାର ଅଦମ୍ୟ ପିପାସା ତାଙ୍କୁ ଅଥୟ କରିଦେଲା ଯେମିତି ସବୁ ପାଠଛଡ଼ା ଅମାନିଆମାନଙ୍କୁ ଅଥୟ କରୁଥିଲା ।

ବ୍ରହ୍ମପୁର ଜେଲରେ ଅଟକବନ୍ଦୀମାନଙ୍କର ପରମ ଲକ୍ଷ୍ୟ ସ୍ୱାଧୀନତା ହେଲେ ହେଁ, ସେମାନେ ଭିନ୍ନ ଭିନ୍ନ ରାଜନୈତିକ, ଦାର୍ଶନିକ ମତପୋଷଣ କରିଥାନ୍ତି । ନିରୋଳା କଂଗ୍ରେସ, ଗାନ୍ଧିବାଦୀ, ସୋସିଆଲିଷ୍ଟିକ୍, ଫରୱାର୍ଡ଼ବ୍ଲକ୍, କମ୍ୟୁନିଷ୍ଟ ଏମିତି ଆଦର୍ଶ ଓ ରାଜନୈତିକ ଦୃଷ୍ଟିଭଙ୍ଗୀ ଘେନି ଶିକ୍ଷାଶିବିର ସଂଗଠିତ କରନ୍ତି ସେମାନେ ।

ଏଇ କ୍ଷେତ୍ରରେ ତାଙ୍କ ସହିତ ମୋର ଅଧିକ ଘନିଷ୍ଠତା । ଜ୍ଞାନାର୍ଜନ ଲାଗି ସେସବୁ ଶିକ୍ଷାଶିବିରକୁ ଯାଆନ୍ତି । ଏତେବେଳକୁ ଏହି ସ୍ୱିତିଚାରଣକାରୀ କମ୍ୟୁନିଷ୍ଟ ମତବାଦକୁ ଶ୍ରେୟ ମଣିଥାଏ । ମହାପଣ୍ଡିତ ରାହୁଲ ସଂକୃତାୟନଙ୍କ ଲିଖିତ 'ମାନବ ସମାଜ' ଓ ଦର୍ଶନଦିଗଦର୍ଶନର ଏକ ଶିକ୍ଷା ଶିବିରରେ ତର୍ଜମା କରୁଥାଏ । ଉକ୍ତ ଶିକ୍ଷାଶିବିରରେ ତାଙ୍କୁ ଯୋଗ ନ ଦେବାକୁ କେତେକ ସହବନ୍ଦୀ ତାଙ୍କୁ ବାରଣ କଲେ ସୁଦ୍ଧା ସେ ନିଜ ନିଷ୍ପତିରେ ଅଟଳ ରହିଲେ ।

ପରବର୍ତ୍ତୀ କାଳରେ, ଅନେକ ସମୟରେ ଉଭୟଙ୍କ ପରିଚିତ ବ୍ୟକ୍ତିମାନଙ୍କ ସହିତ କୌଣସି ସମସ୍ୟା ଘେନି ଆଲୋଚନା ଚାଲିଲାବେଳେ ଅନ୍ୟମାନଙ୍କୁ ଏ ଘଟଣାଟି ଜଣେଇ

ଆମେ ଦୁହେଁ ଭିନ୍ନ ଭିନ୍ନ ପଥ ଓ ପନ୍ଥାରେ ଗଲେ ମଧ୍ୟ ସଂପର୍କ କିପରି ନିବିଡ଼, ଅନ୍ତରଂଗ ତାହା ଦର୍ଶାଇଥାନ୍ତି ।

ବିଶ୍ୱମ୍ଭରଙ୍କ ଏହି ସାଧନା ତାଙ୍କୁ ପରବର୍ତ୍ତୀ ୪୫/୪୬ ବର୍ଷ ଏକ ନୂତନ ଜୀବନଧାରାରେ ଖ୍ୟାତି ଆଣିଦେଲା । ମନେପଡ଼େ ଜେଲ୍ ମୁକ୍ତିପରେ ସେ ଆଉ ଆମ ସହବନ୍ଦୀ ରାମପ୍ରସାଦ ମହାନ୍ତି ଯିଏ ଜହ୍ନୁରୀଭାଇ ରୂପେ ପରିଚିତ ହେଲେ, ସେ ଦୁହେଁ ଜାତୀୟ କବି ବୀର କିଶୋରଙ୍କଠାରୁ ସାହିତ୍ୟିକ ସାମ୍ବାଦିକ ଜୀବନରେ ଗତି କରିବାକୁ ଅନୁପ୍ରେରଣା ପାଇଲେ । ଓଡ଼ିଶାର ପ୍ରଖ୍ୟାତ ଜନନେତା ଡଃ ହରେକୃଷ୍ଣ ମହାତାବଙ୍କ ପ୍ରଜାତନ୍ତ୍ର ପତ୍ରିକା ସହିତ ସଂପୃକ୍ତ ହେଲେ ଏବଂ ସେହି ଅନୁଷ୍ଠାନରେ କେବଳ ମହତାବଙ୍କର ବିଶ୍ୱସ୍ତ ହୋଇନଥିଲେ, ପ୍ରଜାତନ୍ତ୍ରର ସଂପାଦକ ପଦରେ ଅଧିଷ୍ଠିତ ହୋଇଥିବା ବିଶିଷ୍ଟ ବିଶିଷ୍ଟ ସାମ୍ବାଦିକ, ସାହିତ୍ୟିକ ରାଜନୀତିଜ୍ଞ ସର୍ବଶ୍ରୀ ଭୈରବଚନ୍ଦ୍ର ମହାନ୍ତି, ଜାନକୀ ବଲ୍ଲଭ ପଟ୍ଟନାୟକ, ଚିନ୍ତାମଣି ପାଣିଗ୍ରାହୀ, ଚନ୍ଦ୍ରଶେଖର ମହାପାତ୍ର, ଗୋରାଚାନ୍ଦ ମିଶ୍ର, ଭର୍ତ୍ତୃହରି ମହତାବ ପ୍ରଭୃତିଙ୍କ ସମେତ ସବୁ ସହକର୍ମୀ ଓ କର୍ମଚାରୀଙ୍କ ଆପଣାର ବ୍ୟବହାର ଓ କର୍ମକୁଶଳତା ଦର୍ଶାଇ ସେ ପ୍ରିୟପାତ୍ର ହୋଇଥିଲେ ।

ନିର୍ଦ୍ଦିଷ୍ଟ ରାଜନୈତିକ ମତପୋଷଣ କରୁଥିଲେ ହେଁ ପ୍ରତ୍ୟକ୍ଷ ରାଜନୀତି ଓ ରାଜନୈତିକ ସଂଗଠନରେ ସେ ସଂପୃକ୍ତ ନଥିଲେ ସତ, ମାତ୍ର ଶିକ୍ଷାନୁଷ୍ଠାନମାନ ଗଠନ କରିବା ବା ସେଥିରେ ମୁଖ୍ୟ ସହାୟକ ହେବା ଅନ୍ୟସବୁ ସାଂସ୍କୃତିକ-ସାମାଜିକ ଅନୁଷ୍ଠାନରେ ସଂପୃକ୍ତ ହୋଇ ନେତୃତ୍ୱକାରୀ ଭୂମିକା ସେ ନେଇଥିବା ତାଙ୍କ ତିରୋଧାନ ପରେ ମନେପଡ଼େ ।

ଓଡ଼ିଶାର ସହସ୍ର ସହସ୍ର ସ୍ୱାଧୀନତା ସଂଗ୍ରାମୀଙ୍କ ସଂଗଠନ ଓ ଓଡ଼ିଶା ଶାଖା ସ୍ୱାଧୀନତା ସଂଗ୍ରାମୀ ସଂଘର ଦୀର୍ଘକାଳର ନେତୃତ୍ୱ ତାଙ୍କୁ ନେବାକୁ ପଡ଼ିଥିଲା । ସେ ସଂପର୍କରେ ଅନେକ ସମୟରେ ତାଙ୍କ ସହିତ ଆଲୋଚନା ବେଳେ ଏହି ସଂଗଠନର ସର୍ବଭାରତୀୟ ସଭାପତିଙ୍କ ସ୍ୱାଧୀନତା ସଂଗ୍ରାମ କାଳରେ ଜେଲବରଣ ସେ ବିଶ୍ୱାସ କରିପାରୁନଥିଲେ ବୋଲି ଏକାଧିକବାର କହୁଥିଲେ ହେଁ, ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମୀମାନେ ତାଙ୍କ ଉପରେ ଅଗାଧ ବିଶ୍ୱାସ ପ୍ରକଟ କରୁଥିଲେ ଓ ତାଙ୍କ ବ୍ୟବହାର ଓ କାର୍ଯ୍ୟରେ ସନ୍ତୋଷ ପ୍ରକାଶ କରୁଥିଲେ ।

ନିଜ ଗାଁ ହାଇସ୍କୁଲ, ପଳାଶୋଳ ହାଇସ୍କୁଲ ପ୍ରଭୃତି ଶିକ୍ଷାନୁଷ୍ଠାନ ଗଠନ ଓ ପରିଚାଳନାରେ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ବିଶିଷ୍ଟ ନାଟ୍ୟକାର ବାଳକୃଷ୍ଣ ମହାନ୍ତି ସ୍ମୃତି ସଂସଦର ସେ ଥିଲେ ଉଦ୍‌ଗାତା ।

ଅଳକାଶ୍ରମର ମହାନ୍ ସ୍ମୃତିକୁ ଭବିଷ୍ୟତବଂଶଧର ମନରେ ଜାଗ୍ରତ ରଖିବା ଲକ୍ଷ୍ୟରେ ଅଳକାଶ୍ରମ ସ୍ମୃତିଭବନ ପରିଷଦ ଗଠନରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ବହୁ ଆୟାସ, ନାନା ବାଧାବିଘ୍ନ ସତ୍ତ୍ୱେ ଏକ ସ୍ମୃତିସଦନ ଅଟ୍ଟାଳିକା ନିର୍ମିତ ହେଲା । ଏଥିରେ ମୁଖ୍ୟ ଭାବରେ ଅଂଶଗ୍ରହଣ କରିଥିବା ସ୍ୱାଧୀନତା ସଂଗ୍ରାମର ଲୋକନାଥ ରାୟ, ନରସିଂହ ମହାନ୍ତି ତଥା

ଯୁବନେତା ସଂଗ୍ରାମ କେଶରୀ ମହାପାତ୍ର ଶେଷରେ ବିଶ୍ୱମ୍ଭର ପରିଡ଼ା ଉଦ୍‌ଘାଟନ ପୂର୍ବରୁ ଚାଲିଗଲେ ଆମମାନଙ୍କୁ ଛାଡ଼ି ।

ଏହି ପରିଷଦ ଗଠନ ଓ ସ୍ମୃତିସଦନ ନିର୍ମାଣରେ ସଂଶ୍ଳିଷ୍ଟ ଥିବା ଏହି ସଂଗ୍ରାମୀମାନେ ଥିଲେ ଉଦ୍‌ଘାଟନ ଉତ୍ସବରେ ଯାହା ଘଟିଲା ତାହା ହୁଏତ ଘଟି ନଥା'ନ୍ତା । ଆମେ ଏକତ୍ର ନିଷ୍ପତ୍ତି କରିପାରିଥିଲେ ଅଘଟଣ ଘଟି ନଥାନ୍ତା ।

ସ୍ୱାଧୀନତା ସଂଗ୍ରାମର ମୂଲ୍ୟବୋଧ ଓ ଅଲକାଶ୍ରମର ମହତ୍ତ୍ୱ ଉଦ୍‌ଘାଟନ ଉତ୍ସବରେ ପୂର୍ଣ୍ଣ ହେଲା ବୋଲି ଅନୁଭବରେ ଆସିଲା ନାହିଁ । ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ପ୍ରାଣକୃଷ୍ଣ ପଡ଼ିଆରୀ, ଭାଗିରଥି ମହାପାତ୍ର ପ୍ରମୁଖ ପ୍ରତିଷ୍ଠାତାଙ୍କ ଫଟୋ ଚିତ୍ରଗୁଡ଼ିକ ଉଦ୍‌ଘାଟିତ ହୋଇପାରିଲା ନାହିଁ ।

ମୁଖ୍ୟ ଉଦ୍‌ଘାଟକଙ୍କ ସହ ଅନ୍ୟମାନଙ୍କ ନାମ ନାମଫଳକରେ ରହିବାର ପ୍ରତିଯୋଗିତା ଚାଲିଲା । ସ୍ୱାଧୀନତା ସଂଗ୍ରାମର ଆଦର୍ଶର ବିରୋଧୀ ମତାଦର୍ଶ ପୋଷଣ କରୁଥିବା କେତେକଙ୍କ ନାମ ମଧ୍ୟ ଫଳକରେ ସ୍ଥାନ ପାଇଲା । ତମେମାନେ ଆମକୁ ଛାଡ଼ି ଚାଲିଗଲ, ତମେ ସବୁଥିଲେ ମୋର କାର୍ଯ୍ୟକୁ ପସନ୍ଦ କରିଥାନ୍ତ ନିଶ୍ଚୟ । ଏହାର ଜଣେ କର୍ମକର୍ତ୍ତା ହୋଇ ଉପସ୍ଥିତ ଥିଲେ ମଧ୍ୟ ଉଦ୍‌ଘାଟନ ବେଳେ ଦୂରେଇ ଯାଇ ଏକ ନିଭୃତ କୋଠରୀରେ ଆବଦ୍ଧ ରହି, ତୁମକୁ ଆଉ ଯେଉଁ ସ୍ୱାଧୀନତା ସଂଗ୍ରାମୀମାନେ ଚାଲିଗଲେଣି ସେମାନଙ୍କୁ ସ୍ମରଣ କରି ଫେରିଲି ।

ତମର ସ୍ମୃତି ପଖାଳି ଏତିକିରେ ରହୁଛି ।

❒❒❒

# ଅକ୍ଷୟକୁ କ୍ଷୟ କରିବୁନି ସଂକଳ୍ପ ନିଅ

ନିମାପଡ଼ା ଚଉଁରପଦାର ଅକ୍ଷୟ ।

ସ୍ୱଳ୍ପ ଜୀବନ କାଳରେ ସେ ଓଡ଼ିଶାର ଅକ୍ଷୟ ପ୍ରଧାନ ରୂପେ ସ୍ୱୀକୃତି ଲାଭ କରିଥିଲା । ଅଧା ବୟସରୁ ବାହୁଡ଼ିଗଲା । ପ୍ରବାଦପୁରୁଷ ସ୍ୱାଧୀନତା ସଂଗ୍ରାମର, ଚାଷୀ, ମୂଲିଆ ଆନ୍ଦୋଳନର ନେତା, ନିମାପଡ଼ା-କାକଟପୁରର ମୋହନ ଦାସ ଓ ଗତିକୃଷ୍ଣ ସ୍ୱାଇଁଙ୍କ ସଂଗ୍ରାମର ଅଭିଜ୍ଞତା ବଳରେ ଯେଉଁମାନେ ମାନବ ସମାଜର ମୁକ୍ତି ପାଇଁ ମାର୍କ୍ସବାଦୀ ଆଦର୍ଶରେ ଦୀକ୍ଷିତହେଲେ ସେମାନଙ୍କ ପ୍ରେରଣାରେ ଅନୁପ୍ରାଣୀତ ହେଲା ଅକ୍ଷୟ ନିମାପଡ଼ା କଲେଜରେ ଛାତ୍ର ସଂଘ ଆନ୍ଦୋଳନ କାଳରେ ।

ମାନବ ମୁକ୍ତି ପାଇଁ ସେହି ମହାନ୍ ଅକ୍ଷୟ ମହାଦର୍ଶକୁ ଅନୁସରଣ କରି ଚାଲିଥିବା ସେକାଳର ସ୍ୱାଧୀନତା ସଂଗ୍ରାମୀ ଆମେ ବଞ୍ଚିଯାଇଥିବା ବୃଦ୍ଧ କେତେଜଣଙ୍କର ଅକ୍ଷୟର ତିରୋଧାନରେ ବିକଳ କ୍ରନ୍ଦନ କାହିଁକି ?

ଏହି ମାନବ ମୁକ୍ତି ସଂଗ୍ରାମର ଅସୁମାରୀ ଯୋଦ୍ଧାଙ୍କୁ ହରାଇସାରିଛୁ । ହରାଇଛୁ ଯେଉଁମାନେ ସହସ୍ର ସହସ୍ର ନୁହେଁ ଲକ୍ଷ ଜନତାର ମଣିଷ ଭଳି ବଂଚିରହିବାର ସଂଗ୍ରାମର ସଂଗଠକ ଥିଲେ । ହରାଇଛୁ ଗଞ୍ଜାମର ଗୋବିନ୍ଦ ପ୍ରଧାନ, ହରିହର ଦାସ, ଅପର୍ଣ୍ଣା ପାତ୍ର, ହରିବନ୍ଧୁ ବେହେରା, ସଦାନନ୍ଦ ମହାନ୍ତି ଏମିତି ଆଉ ଅନେକଙ୍କୁ । ହରାଇଛୁ ଏହି ମହାନ୍ ଆଦର୍ଶର ପରିପନ୍ଥୀଙ୍କ ଗୁଳିରେ ଲକ୍ଷ୍ମଣ ମହାପାତ୍ର, ଉଦୟନାଥ ମହାକୁଡ଼, ମୂରଲୀ ପରିଡ଼ା, କାକଟପୁରର କେଲୁ ଓ ସମ୍ପଦଙ୍କୁ । ହରାଇଛୁ ଭଗବତୀ, ପ୍ରାଣନାଥ, ରାମକୃଷ୍ଣ ପତି, ମୋହନ ଦାସ, ଗତିକୃଷ୍ଣ ସ୍ୱାଇଁ, ଅନନ୍ତ ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର, ଦୁର୍ଗା ଚରଣ ମହାନ୍ତି, ଗଙ୍ଗାଧର ପାଇକରାୟ, ଗଙ୍ଗାଧର ମିଶ୍ର, ଦାମ ମିଶ୍ର, ଉପେନ୍ଦ୍ର ଦାସ ଓ ପୁରୀ ଜିଲ୍ଲାର ଆଉ ଅନେକଙ୍କୁ ।

ହରାଇଛୁ ପ୍ରସନ୍ନ ପଣ୍ଡା, ଦୟାନନ୍ଦ ଶତପଥୀ, ଲକ୍ଷ୍ମଣ ପୂଜାରୀ, ଲେଙ୍ଗୁ ମିଶ୍ର, ରାଧାବଲ୍ଲଭ ମିଶ୍ର, ନଟବର ବନଛୋର ଓ ସମ୍ବଲପୁରର ଏମିତି ଅନେକଙ୍କୁ ।

ହରାଇଛୁ ବିଶ୍ୱନାଥ ପଶାୟତ, କୃପାସିନ୍ଧୁ ଖୁଣ୍ଟିଆ, ଦୁଃଶାସନ ଜେନା, ପ୍ରହ୍ଲାଦ ଜେନା, ବ୍ରଜ ପଟ୍ଟନାୟକ, ହୃଷି ପ୍ରଧାନ, ଗଗନ ଜେନା, ପରଶୁ ବେଉରିଆ, ଦୀନବନ୍ଧୁ ଶତପଥୀ, ନାଥ ସ୍ୱାଇଁ, ଦୀନବନ୍ଧୁ ତରାଇ, ରମାକାନ୍ତ ନାୟକଙ୍କ ପରି ଅବିଭକ୍ତ କଟକ ଜିଲ୍ଲାର ଅନେକ ସାଥୀଙ୍କୁ ।

ହରାଇଛୁ ବାଲେଶ୍ୱର-ମୟୁରଭଞ୍ଜର ଅବ୍‌ଦୁଲ ମୋମିନ୍, ଗଜେନ୍ଦ୍ର ଦାଶ, ଗୋବିନ୍ଦ ପଣ୍ଡା, ରଙ୍ଗାଧର ବିଶ୍ୱାଳ, ଶୈଳେଶ ମହାରଣା, ରମାକାନ୍ତ ପାଣି, ଏମିତି ଆଉ ଅନେକ ଅଗ୍ରଣୀ ସାଥୀଙ୍କୁ ।

କୋରାପୁଟର ବିପ୍ର ଷଡ଼ଙ୍ଗୀ, ରଘୁନାଥ ମିଶ୍ର, ଭଗବାନ ଖେମୁଣ୍ଡୁନାୟକ ପ୍ରମୁଖଙ୍କୁ । ଏମିତି ଶତ ଶତ ସାଥୀ ମାର୍କ୍ସବାଦରେ ଦୀକ୍ଷିତହୋଇ ବହୁ ସଂଗ୍ରାମକରି ଚାଲିଯାଇଛନ୍ତି । ପାର୍ଟି ଜୀବନରେ ଏପରି ଧକ୍କା ବାରମ୍ବାର ଆସିଛି । ସେସବୁକୁ ସହି ନେଇଛି ପାର୍ଟି ।

ମାତ୍ର ବର୍ତ୍ତମାନ ପାର୍ଟି ପାଇଁ ସାଥୀ ଅକ୍ଷୟର ଅନ୍ତର୍ଦ୍ଧାନ ଭଳି ଧକ୍କା ସମ୍ଭାଳି ହେଉନାହିଁ । ପାର୍ଟିପାଇଁ ଏକ ପ୍ରଚଣ୍ଡ ଧକ୍କା, ସେମିତି ମଧ ଏକ ଦୃପ୍ତ ଆହ୍ୱାନ । ସାଥୀ ଅକ୍ଷୟ ପାର୍ଟିର ବହୁବିଧ ସଂଗ୍ରାମରେ ଯେଉଁ ଭୂମିକା ନେଇଥିଲା, ତାହାର ସ୍ୱୀକୃତି ମିଳିଯାଇଛି ତା'ର ଶବ ପଟୁଆରରେ । ଭଗବତୀ ଭବନରେ ଖାଲି ପାର୍ଟି ନେତା ଓ ସାଥୀ ସମର୍ଥକ ଶତ ଶତ ସଂଖ୍ୟାରେ କ୍ରନ୍ଦନରତ ନଥିଲେ, ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦ, ସ୍ୱାଧୀନତା ସଂଗ୍ରାମୀ, ଟ୍ରେଡ଼ ୟୁନିୟନ ନେତା ଅଶ୍ରୁଳ ଚକ୍ଷୁରେ ତାକୁ ବିଦାୟ ଦେଇଥିଲେ । ପିପିଲି, ହରିପୁରଠାରୁ ନିମାପଡ଼ା-ଗୋପ-କୋଣାର୍କ ଓ ପୁରୀର ରାଜରାସ୍ତା ଶୋକବିହ୍ୱଳ ଜନତାର ଶ୍ରଦ୍ଧାସୁମନ ତା' ଶବାଧାରରେ ଅଜାଡ଼ି ହୋଇପଡ଼ିଥିଲା ହଜାର ହଜାର ଅଗଣିତ ଜନତାର ହାତରୁ ।

ପାର୍ଟି ଜୀବନ ତଥା ଦେଶର, ଆମ ଓଡ଼ିଶାର ରାଜନୈତିକ, ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ଜୀବନଯାତ୍ରାରେ ଯେତେବେଳେ କଳାମେଘ ଘୋଟିଚାଲିଛି, ଯାହାର ଦୂରୀକରଣ ଲାଗି ପାର୍ଟି ଚଳାଇଥିବା ସଂଗ୍ରାମରେ ସେ ଜଣେ ଉଜ୍ଜ୍ୱଳ ତାରକା, ଯୋଦ୍ଧାହୋଇ ପାର୍ଟି ମହଲରେ ଓ ସହଯୋଗୀ ବନ୍ଧୁ ପାର୍ଟି ମହଲରେ ସ୍ୱୀକୃତି ଲାଭ କରିଚାଲିଥିଲା, ସେତିକିବେଳେ ଏ ପ୍ରକାର ଧକ୍କା ।

ଅତୀତର ଏ ପ୍ରକାର ଆଘାତର କ୍ଷତ ବିକ୍ଷତକୁ ସହିଯାଇଛୁ । ପାର୍ଟିରେ ସାଥୀ ଅକ୍ଷୟର ଅବଦାନ, ତା'ର ଅଦମ୍ୟ ସାଂଗଠନିକ ଶକ୍ତି, ପାର୍ଟି ପ୍ରତି ଆନୁଗତ୍ୟ, ସାମ୍ୟବାଦୀ ମତାଦର୍ଶର ଶତ୍ରୁଙ୍କୁ ସାମ୍ନା କରିବାର ବିଚକ୍ଷଣତା, ଶ୍ରମିକ, ଚାଷୀଠାରୁ ଆରମ୍ଭ କରି ପ୍ରଗତିଶୀଳ, ଶୋଷଣ, ନିର୍ଯ୍ୟାତନାବିହୀନ ସମାଜ ଗଠନ ପାଇଁ ଅନ୍ୟସବୁ ଶ୍ରେଣୀର ଜନତାକୁ ଐକ୍ୟବଦ୍ଧ କରିବାର ତା'ର ଅକ୍ଲାନ୍ତ କର୍ମୋଦ୍ୟୋଗ ସମ୍ପର୍କରେ ଆଉ ଅନେକ ସାଥୀ ସ୍ମୃତିଚାରଣରେ ବର୍ଣ୍ଣନା କରିବେ । ସେ ମୋତେ କିପରି ବ୍ୟବହାର କରି ପାର୍ଟି ଶିକ୍ଷା, ସଭା ସମାବେଶରେ କଟାଇଛି, କିପରି ଏଇ ଚାରିମାସ ଧରି ଓଡ଼ିଶା ପାର୍ଟି ପକ୍ଷରୁ ଅଜସ୍ର ଜନସମାବେଶ, ବିକ୍ଷୋଭ, ଧାରଣାର ନେତୃତ୍ୱଦାୟୀ ଭୂମିକା ନିର୍ବାହ କରିଛି, ବଡ଼ବିଲ୍, ପୁରୀ, ନିମାପଡ଼ା ପ୍ରଭୃତି ଅନେକ ସ୍ଥାନରେ ଶ୍ରମିକ, କର୍ମଚାରୀଙ୍କର ନେତା ହୋଇଛି ତାହା ବର୍ଣ୍ଣନା କରିପାରନ୍ତି । ମାତ୍ର ସେଥିରୁ ମୁଁ କ୍ଷାନ୍ତ ରହିବି । ଏବର ପ୍ରିୟ ମୋର ସାଥୀମାନଙ୍କୁ ତା'ର ଅନ୍ତର୍ଦ୍ଧାନରେ ମୋ' ମନର କଥା ଜଣାଉଛି ।

ପ୍ରଚଳିତ ଓ ଆଗାମୀ ସଂଗ୍ରାମ ଅତି ଜଟିଳ, ଅତି କଠୋର । ତାହା ସାଥୀମାନେ

ଅଳ୍ପବହୁତେ ଜାଣନ୍ତି । ସେତିକିବେଳେ ପୁରୁଣା ବୋଇଲେ ଯାହା ବୁଝାଏ, ପାର୍ଟିରେ ସେମାନେ ଆଉ ନାହାନ୍ତି । ଯିଏ ଅଛନ୍ତି, ସେମାନେ ବାକ୍‌ସର୍ବସ୍ୱ । ବାର୍ଦ୍ଧକ୍ୟର ଭାରାରେ ପଙ୍ଗୁ, ଅଥର୍ବ ।

ପାର୍ଟିରେ ନୂଆ ପୀଢ଼ିର ନେତୃତ୍ୱ, ତା'ରି ଭିତରେ ସେ ଥିଲା ଅଗ୍ରଣୀ । ଯେଉଁମାନେ ଆର୍ତ୍ତ ଜନତାଙ୍କ ପାର୍ଟିର ସେହି ପତାକାକୁ ଏବେ ଧରି ରଖିଛନ୍ତି, ସେମାନଙ୍କ ଉପରେ ହିଁ ଅକ୍ଷୟ ଓ ତା'ର ସ୍ମୃତିକୁ ପାର୍ଟି କାର୍ଯ୍ୟକ୍ରମରେ ଅକ୍ଷୟ କରିବାର ଦାୟିତ୍ୱ ନ୍ୟସ୍ତ । କେବଳ ତା'ର ନୁହେଁ ଅତୀତରେ ଯେଉଁମାନେ ଏହି ଯୁବ ନେତୃତ୍ୱ ହାତରେ ପାର୍ଟିକୁ ସମର୍ପି ଦେଇଛନ୍ତି, ଯାହାର ସେ ଅଗ୍ରଣୀହୋଇ ଚାଲିଥିଲା, ସେହିପରି ଅଗ୍ରଣୀ ଭୂମିକା ନିର୍ବାହ କରିବାର ଦାୟିତ୍ୱ ଏହି ନେତୃତ୍ୱ ଉପରେ । ଏଇ ପୀଢ଼ିର ନେତୃତ୍ୱ ଏବଂ ଆଉ ଯେତେକ ଉଦୀୟମାନ ଯୁବକ-ଯୁବତୀ ସାମ୍ୟବାଦର ଧ୍ୱଜା ବହନ କରିବାକୁ ଆସିଛନ୍ତି ଓ ଆସିବେ । ସେମାନଙ୍କୁ ଶିକ୍ଷାଗତ, ସଂଗଠନଗତ, ବୈପ୍ଳବିକ ଶୃଙ୍ଖଳାଯୁକ୍ତ ତାଲିମ ଦେଇ ଆଗାମୀ ଭବିଷ୍ୟତ ଲାଗି ପ୍ରସ୍ତୁତ କରିବାର ଦାୟିତ୍ୱ ଏହି ନେତୃତ୍ୱ ଉପରେ ନ୍ୟସ୍ତ । ଅନୁଭବ କରିଛି, ସେମାନେ ଯେମିତି ଭାଙ୍ଗିପଡ଼ିଛନ୍ତି । ଅସହାୟ ମନେକରିଛନ୍ତି । ବାଉଳି ହୋଇଛନ୍ତି । ମଣିଷ ଜୀବନରେ ତଥା ଆମ ପାର୍ଟି ଜୀବନରେ ବ୍ୟକ୍ତିର ସକାରାତ୍ମକ ଭୂମିକାକୁ ହିଁ ସ୍ୱୀକୃତି ମିଳେ । ତାକୁଇ ଅନୁସରଣ କରି ପାର୍ଟିକୁ ଆଗେଇନେବାକୁ ହୁଏ । ଅକ୍ଷୟ ଚାଲିଯାଇ ପାର୍ଟିର ଅଶେଷ କ୍ଷତିକରିଛି । କିନ୍ତୁ ବଞ୍ଚିବାର ତା'ର ଚାରା ନଥିଲା କି ଆମର କାହାରି ନାହିଁ । ଯେଉଁମାନେ ଆଜି ପାର୍ଟି ନେତୃତ୍ୱରେ ଅଛନ୍ତି ଅବା ଯେଉଁମାନେ ଆସିବେ ସେ ସମସ୍ତେ ବର୍ତ୍ତମାନ ଯେଉଁ ଶୂନ୍ୟତା ସେ ସୃଷ୍ଟି କରିଗଲା, ତାକୁ ସଚ୍ଚା, ଏକନିଷ୍ଠ, ଉତ୍ସର୍ଗୀକୃତ ସାଥୀହୋଇ ପୂରଣ କରିବାକୁ ହିଁ ପଡ଼ିବ ।

ମାର୍କ୍ସବାଦ-ଲେନିନବାଦ ଅକ୍ଷୟ ବୋଲି ଯେଉଁମାନେ ପ୍ରତ୍ୟୟସିଦ୍ଧ, ଯେଉଁମାନେ ମାନବ ମୁକ୍ତିର ଏକମାତ୍ର ଆୟୁଧ, ସମାଜବିଜ୍ଞାନସିଦ୍ଧ ଆୟୁଧ ବୋଲି ବିଶ୍ୱାସୀ, ସାଥୀ ଅକ୍ଷୟର ସ୍ମୃତିକୁ ସେଇମାନେ ହିଁ ଅକ୍ଷୟ କରି ରଖିବେ । ଅକ୍ଷୟ କ୍ଷୟ ହେବ ନାହିଁ କି ଯେଉଁମାନେ ଆଗରୁ ଏହି ମତାଦର୍ଶ ଧରି କ୍ଷୟ ହୋଇଛନ୍ତି, ସାଥୀ ଅକ୍ଷୟ ପ୍ରଧାନ ପରି ସେମାନେ ଅକ୍ଷୟ ହୋଇ ରହିବେ, ଆମରି ଏହି ସଂଗ୍ରାମୀ ବୈପ୍ଳବିକ ପରିବାରରେ ।

ଆମ ବୟସର ଅର୍ଦ୍ଧରେ ସାଥୀ ଅକ୍ଷୟର ଅକାଳ ବିୟୋଗରେ ବିଚଳିତ ହୃଦୟର ଅନ୍ତରରୁ ଶ୍ରଦ୍ଧା ନିବେଦନ ଓ ବଦ୍ଧମୁଷ୍ଟି ସହ ଲାଲ୍ ସଲାମ୍ ଜଣାଇ ମୋର ସାଥୀମାନଙ୍କୁ ଏହି ନିବେଦନକରି ରହିଲି । ତା'ର ଅଭିଳାଷ ଓ ଆମ ସହସ୍ର ସହସ୍ର ପାର୍ଟି ସଭ୍ୟଙ୍କ ଆକାଙ୍‌କ୍ଷାକୁ ଏଇ ନେତୃତ୍ୱ ପୂରଣ କରୁ, ଏଇ କାମନା । ଅକ୍ଷୟ ପରି ଆଉ ଅନେକ ଅକ୍ଷୟ ସୃଷ୍ଟି କରିବାରେ ସଂକଳ୍ପ, ଅକ୍ଷୟର କ୍ଷୟ ହେବନାହିଁ ।

□□□

ରଚନା କାଳ – ୨୦୦୦

# ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ଆଉ ନାହାନ୍ତି

ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ଅଗ୍ରଣୀ ଯୋଦ୍ଧା, କୃଷକ ଆନ୍ଦୋଳନର ମହାରଥୀ, ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ର, ପୂର୍ବତନ ବିଧାୟକ ତଥା ଓଡ଼ିଶା କମ୍ୟୁନିଷ୍ଟ ଆନ୍ଦୋଳନର ଅନ୍ୟତମ କିମ୍ବଦନ୍ତୀ ପୁରୁଷ ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ଆଉ ନାହାଁନ୍ତି । ମୃତ୍ୟୁବେଳକୁ ତାଙ୍କୁ ୮୭ ବର୍ଷ ହୋଇଥିଲା ।

ଏହି ଜନପ୍ରିୟ ନେତାଙ୍କର ମୃତ୍ୟୁ ସମ୍ବାଦ ପ୍ରଚାରିତ ହେବା ମାତ୍ରେ ସମସ୍ତ କାକଟପୁର ଅଞ୍ଚଳରେ ଗଭୀର ଶୋକର ଛାୟା ଖେଳି ଯାଇଥିଲା । ବିଭିନ୍ନ ଗାଁ'ରୁ ଶହ ଶହ ନରନାରୀ ଅନ୍ଧାରକୁ ଭ୍ରୂକ୍ଷେପ ନ କରି ପାଟପୁରକୁ ଚାଲିଲେ । ଯିଏ ଶୁଣିଲା ସିଏ କହିଲା ସର୍ଦ୍ଦାର ଚାଲିଗଲେ ? ସିଏ ଆଦିବାସୀ ସର୍ଦ୍ଦାର କିମ୍ବା ବର୍ତ୍ତମାନ ସହରମାନଙ୍କରେ ସର୍ଦ୍ଦାର କହିଲେ ଯାହା ବୁଝାଏ ତାହା ନ ଥିଲେ । ସେ ଥିଲେ ୧୯୩୦ ଦଶକର ଆଦ୍ୟ ଭାଗରେ ମହାତ୍ମା ଗାନ୍ଧୀଙ୍କ ଡାକରାରେ ବ୍ରିଟିଶ ଫଉଜର ଗୁଳି ବନ୍ଧୁକକୁ ବେଖାତିର କରି କାକଟପୁରର ଅସ୍ତରଙ୍ଗ ଅଞ୍ଚଳରେ ଯେଉଁ ଐତିହାସିକ ଲୁଣମରା ଆନ୍ଦୋଳନ ଲବଣ ସତ୍ୟାଗ୍ରହ ହୋଇଥିଲା, ତାରି ସର୍ଦ୍ଦାର । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ତାଙ୍କର ସାହସ, ନିର୍ଭୀକତା ଓ ସାଂଗଠନିକ ଦକ୍ଷତାରେ ମୁଗ୍ଧ ହୋଇ ତାଙ୍କୁ ସର୍ଦ୍ଦାର ଉପାଧି ଦେଇଥିଲେ ଏବଂ ସେଇ ଦିନଠାରୁ ଲୋକମୁଖରେ ସେ ହେଉଛନ୍ତି ସର୍ଦ୍ଦାର ଗତିକୃଷ୍ଣ । ସେଇ ସର୍ଦ୍ଦାର ଆଜି ନାହିଁ । ଲାଲ ଦୁର୍ଗ ପାଟପୁର ସତେଅବା ପିତୃହରା ।

ହଁ, ଗତିବାବୁ କମ୍ୟୁନିଷ୍ଟ ହେବା ପରେ ସୋଭିଏତ୍ ଢାଞ୍ଚାରେ ଗଢ଼ିଥିଲେ ପାଟପୁରର ଗ୍ରାମ ପରିଚାଳନା ବ୍ୟବସ୍ଥାକୁ । ପାଟପୁର ଏକ ଛୋଟ ଗାଁ, ୮ଟି ସାହିକୁ ନେଇ ଏହା ଗଠିତ । ପ୍ରତ୍ୟେକ ସାହିରେ ଗ୍ରାମ କମିଟି ଓ ନିଜସ୍ୱ ଅଫିସ୍, ପ୍ରତ୍ୟେକ ସାହିରେ ଯୁବସଂଘ ଏବଂ ତା'ର ଅଫିସ୍ । ସବୁ ଗ୍ରାମ୍ୟ କମିଟିର ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ଗଠିତ କେନ୍ଦ୍ର କମିଟି । ୮ ଖଣ୍ଡ ଗାଁ'ର ଭଲମନ୍ଦ, ହାନିଲାଭ କଳିତକରାଳ, ବିବାହ, ଉତ୍ସବ ଓ ଅନୁଷ୍ଠାନ ସବୁକିଛି ଏହି କେନ୍ଦ୍ର କମିଟି ଓ ଗ୍ରାମ କମିଟିମାନେ ବୁଝନ୍ତି । ପାଟପୁରରୁ କୌଣସି ମକଦ୍ଦମା କଚେରୀକୁ ଯାଏ ନାହିଁ । ମହାତ୍ମା ଗାନ୍ଧୀଙ୍କ ଗ୍ରାମ ସ୍ୱରାଜ ଏବଂ ସୋଭିଏତ୍ ୟୁନିଅନର ସୋଭିଏତ ପଦ୍ଧତିର ସତେଅବା ଏକ ଅପୂର୍ବ ସମନ୍ୱୟ । ଏହାର ଜନକ ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ।

୨୫ ତାରିଖ ସନ୍ଧ୍ୟା ବେଳକୁ ସର୍ଦ୍ଦାରଙ୍କ ଘରଚତୁର୍ଦ୍ଦିଗ ଲୋକାରଣ୍ୟ । ପାଟପୁରର ସମସ୍ତ ଲୋକ ସେଇଠି । ବାହାଘର ତିଥି । ୮ଟି ପଡ଼ାରେ ଅନେକ ବାହାଘର । ମାତ୍ର ସର୍ଦ୍ଦାରଙ୍କ ମୃତ୍ୟୁରେ ଶୋକର ଛାୟା । ଲାଲ ଦୁର୍ଗର ମହାପିତାଙ୍କୁ ସମ୍ମାନ ଜଣାଇବା ପାଇଁ ସେଦିନ ବାହାଘର ହେଲା, ମାତ୍ର ବାଜାବାଜିଲା ନାହିଁ କି ରୋଷଣି ଜଳିଲା ନାହିଁ । ଏଇଥିରୁ ଜଣାଯାଏ ପାଟପୁର ନରନାରୀ ହୃଦୟରେ ଗତିବାବୁଙ୍କର ସ୍ଥାନ କ'ଣ ଥିଲା । ଶବ ସତ୍କାର ପାଇଁ ଆଲୋଚନା ହୋଇ ସ୍ଥିର ହେଲା- ଆଜି ରାତିରେ ହେବ ନାହିଁ । କମ୍ୟୁନିଷ୍ଟ ପାର୍ଟିର ରାଜ୍ୟ ନେତୃତ୍ୱ ପାଟପୁରରେ ପହଞ୍ଚିବା ପରେ କାଲି (୨୬ ତାରିଖ) ସକାଳ ୮ଟାରେ ଶେଷକୃତ୍ୟ ସମ୍ପନ୍ନ ହେଲା । ଏହି ବାର୍ତ୍ତା ଧରି ଅଞ୍ଚଳ କମିଟିର ସଂପାଦକ ଯୁବନେତା ଆଶୀଷ କାନୁନ୍‌ଗୋ ରାତି ୧୦ଟା ବେଳେ ଭୁବନେଶ୍ୱର ଭଗବତୀ ଭବନରେ ପହଞ୍ଚିଲେ । ତା' ପୂର୍ବରୁ ୮.୩୦ରେ ଟେଲିଫୋନ୍ ଯୋଗେ ଗତିବାବୁଙ୍କର ମୃତ୍ୟୁ ସମ୍ବାଦ ଆସିଥାଏ । ସେଦିନ ନେତାଙ୍କ ପ୍ରତି ସମ୍ମାନ ଜଣାଇ ରାଜ୍ୟ ଦପ୍ତରର ପତାକାକୁ ଅର୍ଦ୍ଧନମିତ କରି ଦିଆଗଲା ।

**ଅନ୍ତିମ ଯାତ୍ରା** - ୨୬ ତାରିଖ ସକାଳ୬.୩୦ ମିନିଟରେ ରାଜ୍ୟ ସମ୍ପାଦକ ତଥା ପାର୍ଲାମେଣ୍ଟ ସଭ୍ୟ ଡଃ ଲୋକନାଥ ଚୌଧୁରୀ, ସମ୍ପାଦକମଣ୍ଡଳୀ ସଭ୍ୟ ନନ୍ଦକିଶୋର ପଟ୍ଟନାୟକ ଓ ସଞ୍ଜୟ କୁମାର ପ୍ରଧାନ, କୃଷକସଭା ରାଜ୍ୟ ସଭାପତି ସୋମନାଥ ପାତ୍ର, ସମ୍ପାଦକ ବିଶ୍ୱନାଥ ସାହୁ, ନୂଆଦୁନିଆର ପରିଚାଳନା ସମ୍ପାଦକ ଦିବାକର ନାୟକ ଓ ରାଜ୍ୟ ପରିଷଦ ସଭ୍ୟ ପ୍ରଫୁଲ୍ଲ କୁମାର ତ୍ରିପାଠୀ, ଆଶୀଷ କାନୁନ୍‌ଗୋ ପ୍ରମୁଖ ପାଟପୁରରେ ପହଞ୍ଚିଲେ । ସେତେବେଳକୁ ସେଠାରେ ଗତିବାବୁଙ୍କ ଡାହାଣ ହାତ କେଶବଚନ୍ଦ୍ର ରାଉତ, କେନ୍ଦ୍ର କମିଟି ସଭାପତି ଦିବ୍ୟସିଂହ ମହାନ୍ତି, ସମ୍ପାଦକ ଧ୍ରୁବ ମୁଦୁଲି, କରୁଣାକର ନାୟକ, ଯୁବସଂଘର ତୁଷାରକାନ୍ତ ସ୍ୱାଇଁ, କୈଳାସ ରାଉତ ଏବଂ ନବଘନ ମଲ, ବିଷ୍ଣୁଚରଣ ନାୟକ, ଗୋବର୍ଦ୍ଧନ ବିଶ୍ୱାଳ, ସୁବଳ ମଲ୍ଲ, ଭ୍ରମର ମହାନ୍ତି ଓ ସୁଦର୍ଶନ ମହାନ୍ତି ପ୍ରମୁଖ ପାଟପୁରରେ ନେତୃବର୍ଗ ଅପେକ୍ଷା କରି ଥାଆନ୍ତି । ଲୋକନାଥ ଚୌଧୁରୀଙ୍କୁ ଦେଖି ଧଡ଼ି ମହାରଣା ୮୦ବର୍ଷର ବୃଦ୍ଧ ଭୋ ଭୋ କାନ୍ଦି ଉଠିଲେ ।

ଶୋଭାଯାତ୍ରାରେ ସାମିଲ ହେବା ସଂଗେ ସଂଗେ ସ୍ୱର୍ଗତ ନେତାଙ୍କ ପ୍ରତି ଅନ୍ତିମ ସମ୍ମାନ ଜଣାଇବା ପାଇଁ କାକଟପୁରର ଅନ୍ୟତମ ପାର୍ଟି ଦୁର୍ଗ ବାଜପୁର, କୁଣ୍ଡେଇ, ଛୋଟ ରାୟପୁର, ବାଲିସାହି, ହରିଦାସପୁର, ଚଣ୍ଡୀକୁଦ, ଚନ୍ଦନପୁର, ଗୁରୁଡ଼ିତୋଟା, ଇଳେଶ୍ୱରପଡ଼ା, ନରଣପୁର, ଓଅକା, ଗୁଙ୍କେଇ, ଅନନ୍ତପୁର, ଆଖୁରିଆ, ରାଇଣ ଏବଂ ଗୋପ ଅଞ୍ଚଳର ମହନିପୁର, ଅରେଇ ଓ ନିତ୍ୟାନନ୍ଦପୁର ପ୍ରଭୃତିରୁ ପାର୍ଟିର ବହୁ ନେତୃସ୍ଥାନୀୟ ସାଥୀ ଓ ସମର୍ଥକ ଛୁଟି ଆସିଥାଆନ୍ତି । ସେମାନଙ୍କ ମଧରେ ଥାଆନ୍ତି ପୂର୍ଣ୍ଣଚନ୍ଦ୍ର ସାହୁ, କୁଳମଣି ସାହୁ, ଚନ୍ଦ୍ରମଣି ନାୟକ ଓ ପୀତବାସ ପରିଡ଼ା ପ୍ରମୁଖ । ଖବର ପାଇ ନିମାପଡ଼ା ଅଞ୍ଚଳ କମିଟି ସମ୍ପାଦକ ସମୀର ରଞ୍ଜନ ଦାସଙ୍କ ନେତୃତ୍ୱରେ ପହଞ୍ଚିଲେ ନିମାପଡ଼ାର ନେତୃସ୍ଥାନୀୟ ସାଥୀମାନେ ।

ସର୍ଦ୍ଦାର ତାଙ୍କ ଜୀବଦ୍ଦଶା କାଳରେ କିଏ ଫୁଲହାରଟିଏ ଦେଲେ ତାଙ୍କ ଉପରେ ଭୀଷଣ ବିରକ୍ତ ହେଉଥିଲେ । ବ୍ୟକ୍ତି ପୂଜା କର ନାହିଁ କହୁଥିଲେ । କିନ୍ତୁ ମୃତ୍ୟୁ ପରେ ତାଙ୍କ ଶବାଧାରରେ କେବଳ ଫୁଲ ଓ ଫୁଲ । ୨୫ ତାରିଖ ଅପରାହ୍ଣଠାରୁ ୨୬ ତାରିଖ ସକାଳ ପର୍ଯ୍ୟନ୍ତ ଅସଂଖ୍ୟ ଫୁଲର ସ୍ତବକ ଜମା ହୋଇ ବିରାଟ ବିରାଟ ଫୁଲର ପାହାଡ଼ ହୋଇ ଯାଇଥାଏ ।

ଠିକ୍ ୮.୩୦ ମିନିଟ୍‌ରେ ଆରମ୍ଭ ହେଲା ଶବ ଶୋଭାଯାତ୍ରା- ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁଙ୍କ ଅନ୍ତିମ ଯାତ୍ରା । ପାଟପୁର, ସାଢ଼େଙ୍ଗା, ବାରିସାହି, ରଙ୍ଗତସାହୀ, ନାକରା ସାହି, ମୁଦୁଲି ସାହି ଓ ଡିହସାହୀ ପରିକ୍ରମା କଲାବେଳେ ଲାଲଦୁର୍ଗ ପାଟପୁରର ଲାଲ ନେତା ସର୍ଦ୍ଦାର ଗତିକୃଷ୍ଣ, ଅମର ରହେ, ଓଡ଼ିଶା କୃଷକ ଆନ୍ଦୋଳନର ମହାନ୍ ନେତା- ତୁମକୁ ଜଣାଉ ଲାଲ ସଲାମ, ପ୍ରଭୃତି ସ୍ଲୋଗାନରେ ଆକାଶ ମୁଖରିତ ହେଉଥାଏ । ପରିବେଶ ଶୋକାକୁଳ । ପ୍ରତ୍ୟେକ ଦାଣ୍ଡରେ ସ୍ତ୍ରୀ ଲୋକମାନେ ଛିଡ଼ା ହୋଇ ପୁଷ୍ପ ବୃଷ୍ଟି କରୁଥାଆନ୍ତି, ୮ଟିଯାକ ସାହିରେ ପୁଷ୍ପ ବୃଷ୍ଟି ଶ୍ମଶାନ ପର୍ଯ୍ୟନ୍ତ, ଦୁଃଖରେ ଅଶ୍ରୁ ପୋଛୁ ଥାଆନ୍ତି, ପୁଣି ବିଦାୟୀ ନେତାଙ୍କ ପ୍ରତି ସମ୍ମାନ ଜଣାଇ ଶଙ୍ଖ ଧ୍ୱନି କରୁ ଥାଆନ୍ତି, ହୁଳହୁଳି ମଧ ଦେଉ ଥାଆନ୍ତି । ମନେ ହେଉଥାଏ ଏକାଧାରରେ ଏହା ଶବ ଶୋଭାଯାତ୍ରା ଓ ସର୍ଦ୍ଦାରଙ୍କ ବିଜୟ ଯାତ୍ରା ହିଁ, ବିଜୟୀ ବୀର, ଅଗଣିତ ନରନାରୀଙ୍କର ହୃଦୟ ଜୟ କରୁଥିବା ମହାନ ଯୋଦ୍ଧା ଆଜି ବିଦାୟ ନେଉଛି । ସମସ୍ତ ଗ୍ରାମ କମିଟି, ଯୁବସଂଘ, ହାଇସ୍କୁଲ, ଉ.ପ୍ରା. ସ୍କୁଲ, ନି.ପ୍ରା. ସ୍କୁଲ ଓ ବିଭିନ୍ନ ଅନୁଷ୍ଠନମାନେ ସେମାନଙ୍କ ବିଜୟୀ ସର୍ଦ୍ଦାରଙ୍କ ପ୍ରତି ଶେଷ ଶ୍ରଦ୍ଧା ନିବେଦନ କଲେ । ପାଟପୁରରେ ଶ୍ମଶାନରେ ହଜାର ହଜାର ସାଥୀ ସମର୍ଥକ ଓ ଶୋକାକୁଳ ନରନାରୀଙ୍କ ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ଅମର ରହେ ଓ ହୁଳହୁଳି ଧ୍ୱନି ମଧରେ ଚିତାରେ ନିଆଁ ଜଳି ଉଠିଲା ।

**ସଂଗ୍ରାମମୟ ଜୀବନ** - ୧୯୦୮ ମସିହା ଫେବୃଆରୀ ୨୪ ତାରିଖରେ ପାଟପୁରରେ ଜନ୍ମ । ୧୯୨୦/୨୧ ମସିହାରେ କାକଟପୁର ଭର୍ଣ୍ଣାକୁଲାର ସ୍କୁଲରେ ପଢୁଥିବା ସମୟରେ ମହାତ୍ମାଗାନ୍ଧୀଙ୍କ ଖଲାସ ଦାବିକରି ସ୍କୁଲ କଲେଜର ଛାତ୍ରଛାତ୍ରୀମାନେ ଶ୍ରେଣୀ ବର୍ଜନ କରୁଥାଆନ୍ତି । ବାଳକ ଗତିକୃଷ୍ଣ ଶ୍ରେଣୀ ବର୍ଜନ କରି ଚାଲି ଆସିଲେ ଏବଂ ଏହା ହିଁ ଥିଲା ସ୍ୱାଧୀନତା ଆନ୍ଦୋଳନରେ ତାଙ୍କର ଆଦ୍ୟ ପଦାର୍ପଣ ।

ଏହି ସମୟରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ପାଟପୁରରେ ସଭା କରୁଥାଆନ୍ତି । ଗତିକୃଷ୍ଣ ତାଙ୍କ ଭାଷଣରେ ଅନୁପ୍ରାଣୀତ ହୋଇ ଭର୍ଣ୍ଣାକୁଲର (ଏମ୍.ଇ.) ପାଶ୍ କଲା ପରେ ସତ୍ୟବାଦୀ ଜାତୀୟ ବନବିଦ୍ୟାଳୟରେ ନାମ ଲେଖାଇଲେ । ସେଠାରେ ପଣ୍ଡିତ ଗୋପବନ୍ଧୁ, ଆଚାର୍ଯ୍ୟ ହରିହର ଓ ପଣ୍ଡିତ ନୀଳକଣ୍ଠଙ୍କ ପ୍ରଭାବ ତାଙ୍କ ଉପରେ ପଡ଼ିଲା । ବନବିଦ୍ୟାଳୟ ନାନା କାରଣରୁ ଭାଙ୍ଗିଯିବା ପରେ ୧୯୨୭ ମସିହାରେ କଟକ ପ୍ୟାରୀମୋହନ ଏକାଡ଼େମୀର ଅଧ୍ୟୟନ କଲେ । ସେତେବେଳେ କଂଗ୍ରେସର ସଭା ସମିତିରେ ସେ ଯୋଗ ଦେଉ ଥାଆନ୍ତି ।

୧୯୨୮ ମସିହାରେ ରେଭେନ୍‌ସା କଲେଜରେ ପଢୁଥିବା ସମୟରେ ପ୍ରବଳ ବନ୍ୟା ହେଲା । ଗୋପବନ୍ଧୁ ଦାସଙ୍କ ଆହ୍ୱାନ କ୍ରମେ ସେ ରିଲିଫ କାର୍ଯ୍ୟରେ ଯୋଗ ଦେଲେ ।

୧୯୩୦ ଐତିହାସିକ ଲବଣ ସତ୍ୟାଗ୍ରହ ଶପଥ ପତ୍ରରେ ସ୍ୱାକ୍ଷର କରି ବାଲେଶ୍ୱର ଇଞ୍ଚୁଡ଼ିରେ ଲୁଣ ମାରିବା ପାଇଁ ଚାଲିଲେ । ଦ୍ୱିତୀୟ ଦଫାରେ ଇଞ୍ଚୁଡ଼ି ଓ ଇରମଠାରେ ଲୁଣମାରିବା ଆନ୍ଦୋଳନରେ ସାମିଲ ପରେ ତାଙ୍କୁ ନିଜ ଅଞ୍ଚଳ କାକଟପୁରକୁ ପଠାଗଲା । ଅସ୍ତରଙ୍ଗ ନିକଟବର୍ତ୍ତୀ କୁହୁଡ଼ିଠାରେ ଲୁଣ ମରା ହେଉଥାଏ । ଗତିକୃଷ୍ଣଙ୍କ ଉପରେ ଏହି କ୍ୟାମ୍ପର ନେତୃତ୍ୱ ଅର୍ପଣ କରାଗଲା । କୁହୁଡ଼ି ଓ ନଟରାଠାରେ ଅନେକଥର ତାଙ୍କ ନେତୃତ୍ୱରେ ଲୁଣ ମରାଯାଇଥିଲା ଏବଂ ତାଙ୍କ ସାହସ ଓ ସାଙ୍ଗଠନିକ ଦକ୍ଷତାରେ ମୁଗ୍ଧ ହୋଇ ଗୋପବନ୍ଧୁ ତାଙ୍କୁ ସର୍ଦ୍ଦାର ଉପାଧି ଦେଇଥିଲେ । ୧୯୩୦ରେ ଓଲଙ୍ଗ କ୍ୟାମ୍ପରୁ ତାଙ୍କୁ ଗିରଫ କରାଗଲା ।

ଚୌକିଦାରୀ ଟିକସ ବନ୍ଦ କରିବା, ବିଦେଶୀ ଲୁଗା ଓ ଗଞ୍ଜେଇ ମଦ ଦୋକାନ ଆଗରେ ପିକେଟିଂ କରି ପୁଣି ଗିରଫ, ୩ ମାସ ଜେଲ । ଖଲାସ ହେଲା ପରେ ୧୯୩୧ରେ ପୁଣି ଲୁଣମରା ଓ ପିକେଟିଂରେ ଯୋଗଦାନ ଏବଂ ପୁନର୍ବାର ଗିରଫ । ପୁରୀଠାରେ ସର୍ବଭାରତୀୟ କଂଗ୍ରେସ ଅଧିବେଶନରେ ପ୍ରସ୍ତୁତି ଏବଂ ଗତିକୃଷ୍ଣ ସ୍ୱେଚ୍ଛାସେବକ ଅଫିସର ମୁଖ୍ୟ ।

ଦ୍ୱିତୀୟ ଗୋଲ୍‌ଟେବୁଲ ବୈଠକ ବିଫଳ ହେବା ପରେ ପୁରୀଜିଲ୍ଲାର ଅଧିକାଂଶ କଂଗ୍ରେସ ନେତା ଗିରଫ; ଗତିକୃଷ୍ଣ ଡିକ୍‌ଟେଟର ନିଯୁକ୍ତ ଏବଂ ଅଜ୍ଞାତବାସରେ ସମଗ୍ର ଜିଲ୍ଲାର ଆନ୍ଦୋଳନ ପରିଚାଳନା । ପୁରୀ ତାଙ୍କର କେନ୍ଦ୍ର । ବଡ଼ ଦେଉଳବେଢ଼ା ଭିତରେ ଗୁରୁଚରଣ ପଟ୍ଟନାୟକ ଗୁପ୍ତରେ ଲିଥୋ ମେସିନ ରଖି ସର୍କୁଲାର ଆଦି ପ୍ରସ୍ତୁତ କରନ୍ତି । ପ୍ରାଣନାଥ ପଟ୍ଟନାୟକ, ଗୋକୁଳ ମୋହନ ରାୟ ଚୂଡ଼ାମଣିଙ୍କ ସହିତ ମିଶି କାର୍ଯ୍ୟକ୍ରମ ପ୍ରସ୍ତୁତି ।

୧୯୩୩ରେ ପୁଣି ବନ୍ୟା ଓ ରିଲିଫ କାର୍ଯ୍ୟ । ମହାତ୍ମାଗାନ୍ଧୀଙ୍କ ଓଡ଼ିଶାରେ ପଦଯାତ୍ରା । ପୁରୀରୁ ପିପିଲି ପର୍ଯ୍ୟନ୍ତ ଗତିକୃଷ୍ଣ ମହାତ୍ମା ଗାନ୍ଧୀଙ୍କ ସହ ଯୋଗ ଦେଇଥିଲେ ।

ଜମିଦାରମାନଙ୍କ ଶୋଷଣ ଓ ଜୁଲମ ବିରୁଦ୍ଧରେ ଆନ୍ଦୋଳନ । କଂଗ୍ରେସ ସୋସିଆଲିଷ୍ଟ ପାର୍ଟିର ଜନ୍ମ । ନବକୃଷ୍ଣ ଚୌଧୁରୀ, ମାଳତି ଚୌଧୁରୀ, ଭଗବତୀ ପାଣିଗ୍ରାହୀ, ପ୍ରାଣନାଥ ଓ ଗୁରୁଚରଣଙ୍କ ସମେତ ଗତିକୃଷ୍ଣ ମଧ୍ୟ ଏହାର ସଭ୍ୟ । ୧୯୪୧ ପର୍ଯ୍ୟନ୍ତ ଜମିଦାର ଓ ବ୍ରିଟିଶବିରୋଧୀ ଆନ୍ଦୋଳନର ନେତୃତ୍ୱ ଗ୍ରହଣ । ୧୯୪୦ରେ ଗିରଫ, ୩ ଶହ ଟଙ୍କା ଜୋରିମାନା ଦେଇ ନ ପାରିବାରୁ ଗତିକୃଷ୍ଣଙ୍କ ଘର କ୍ରୋକ କରାଗଲା ।

୧୯୪୨ ଭାରତଛାଡ଼ ଆନ୍ଦୋଳନ । ଗତିକୃଷ୍ଣ ସ୍ୱାଇଁ ପୁରୀ ଜିଲ୍ଲା ବୋର୍ଡ଼ ବୈଠକକୁ ଆସି ଗିରଫ, ବ୍ରହ୍ମପୁର ଜେଲ । ୧୯୩୦ଠାରୁ ୪୫ ପର୍ଯ୍ୟନ୍ତ କେତେବେଳେ ଜେଲରେ, କେତେବେଳେ ଆନ୍ଦୋଳନରେ । ପୁରୀ, କଟକ, ବ୍ରହ୍ମପୁରଠାରୁ ପାଟନା କ୍ୟାମ୍ପ ଜେଲ୍ ପର୍ଯ୍ୟନ୍ତ । ଏହି ସମୟ ମଧ୍ୟରେ ତାଙ୍କ ସ୍ତ୍ରୀ, ବାପା ଓ ସାନଭାଇଙ୍କର ମୃତ୍ୟୁ ଘଟିଥିଲା ।

୧ ୯ ୪ ୭ରେ ସ୍ୱାଧୀନତା ସଂଗ୍ରାମ ଶେଷ ହେଲା । କିନ୍ତୁ ଗତିକୃଷ୍ଣଙ୍କ ସଂଗ୍ରାମର ଶେଷ ନାହିଁ । ସ୍ୱାଧୀନତା ପୂର୍ବରୁ ବ୍ରିଟିଶ ସହିତ ପୂର୍ବ ବାଦକୁ ହଟାଇବା ପାଇଁ ସେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇ ସାରିଥାଆନ୍ତି । ସ୍ୱାଧୀନତା ପରେ ଜମିଦାରୀ ବିଲୋପ ଆନ୍ଦୋଳନ, ଚାଷୀକୁ ସତ୍ତ୍ୱ ଦେବାର ଆନ୍ଦୋଳନ, ଭାଗଚାଷୀ ଆନ୍ଦୋଳନ ପ୍ରଭୃତିରେ ସେ ଅଗ୍ରଣୀ । କେବଳ କାକଟପୁର ନୁହେଁ, ସମଗ୍ର ପୁରୀ ଜିଲ୍ଲାର କୃଷକମାନଙ୍କର ପ୍ରିୟ ନେତା । ୧ ୯ ୬ ୭ ମସିହାରେ କମ୍ୟୁନିଷ୍ଟ ପ୍ରାର୍ଥୀ ରୂପେ କାକଟପୁରରୁ ରାଜ୍ୟ ବିଧାନସଭାକୁ ନିର୍ବାଚିତ । ମୃତ୍ୟୁ ପର୍ଯ୍ୟନ୍ତ ସେ କମ୍ୟୁନିଷ୍ଟ ପାର୍ଟି ଓ କୃଷକମାନଙ୍କ ପ୍ରତ୍ୟେକ ସଂଗ୍ରାମରେ ଅଗ୍ରଣୀ ଭୂମିକା ଗ୍ରହଣ କରି ଆସିଥିଲେ ।

ଛୟାଅଶି ବର୍ଷର ଜୀବନକାଳ ଭିତରୁ ସତୁରି ବର୍ଷ ଧରି ମହୋଦଧିତଟ, ରାସ୍ତାଘାଟବିହୀନ, ଅପନ୍ତରା ବିବେଚିତ, କାକଟପୁରର ପାଟପୁର ଗାଁ'ର ଭୂମିଷ୍ଟ ଚାଷୀଘରର ବାଙ୍ଗରା ବ୍ୟକ୍ତିଟି ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ, ଜମିଦାରବିରୋଧୀ ଚାଷୀ ଆନ୍ଦୋଳନ, ସମାଜବାଦୀ ଆନ୍ଦୋଳନର ଇତିହାସରେ ଅଲକ୍ଷ୍ୟରେ ଏକ ଅଲିଭା ସ୍ୱାକ୍ଷର ରଖିଗଲା । ସେ ହେଲେ ସବୁ ସମ୍ବାଦପତ୍ରରେ, ଅବା ଅଧୁନା କାଳର ବେତାର, ଦୂରଦର୍ଶନରେ ତଥାକଥିତ ବିଶିଷ୍ଟ ବ୍ୟକ୍ତିର ମାନ୍ୟତା ପାଇନାହାଁନ୍ତି । ଚାହିଁଥିଲେ, ଯୋଗାଡ଼ଯନ୍ତ୍ର କରିଥିଲେ ସେପରି ହୁଏତ ସମ୍ଭବପର ହୋଇଥାନ୍ତା । ମାତ୍ର ଏହି ସରଳ, ସିଧାସିଧା, ଦରିଦ୍ରବତ୍ସଳ ଜନସେବକ, ସ୍ୱାଧୀନତା ସଂଗ୍ରାମର ଏକ ଅଗ୍ରଣୀ ସୈନିକର ଧାତୁରେ ତାହା ଯାଇନାହିଁ କି ଯାଆନ୍ତା ନାହିଁ । ସେ ହେଲେ ଗତିକୃଷ୍ଣ ସ୍ୱାଇଁ । ତୁଣ୍ଡବାଇଦ ସହସ୍ର କୋଶ ରୀତିରେ ସେ ହୋଇଗଲେ ଏକ ପ୍ରବାଦ ପୁରୁଷ ।

କାକଟପୁରର ଶହ ଶହ ପଲ୍ଲୀରେ, ପ୍ରତ୍ୟେକଟି କୁଟୀରର ନାରୀ-ପୁରୁଷ, ବାଳକ-ବାଳିକାର ହୃଦ ମନ୍ଦିରରେ ଆସନ ଲାଭ କରି ଯେଉଁ ସ୍ନେହ, ଶ୍ରଦ୍ଧା, ସମ୍ମାନ ପାଇଲେ, ପାଉଥିଲେ ଓ ସେ ଶେଷ ନିଶ୍ୱାସ ଯିବାଯାଏ ପାଉଥିଲେ, ତାହା ସେ ଅଞ୍ଚଳରେ ଏକ କିମ୍ବଦନ୍ତୀରେ ପରିଣତ ହୋଇଗଲା ।

କାରଣ ସେକାଳର ଅଗତିରେ ସେ ଗତି ଆଣିଥିଲେ ହିଁ କର୍ମମୟ ଜୀବନରେ ସବୁବେଳେ ଥିଲେ ଗତିଶୀଳ । ବ୍ରିଟିଶ୍ ବିଦେଶୀ ଶାସକ, ନାଲିପଗଡ଼ିଆ ପୁଲିସ ଓ ହାକିମକୁ ଯେତେ ଡର ନୁହଁ, ଡର ଜମିଦାରମାନଙ୍କୁ । ଗାଁ ଗାଁ'ରେ କୋକୁଆ ଭୟ । ଅତ୍ୟାଚାର, ଲୁଣ୍ଠନର ସୀମା ନାହିଁ । ପାଟି ଫିଟାଇବା କାହାର ସାହସ ନାହିଁ । ମଣିଷ ହୋଇ ମଣିଷ ପଦବାଚ୍ୟ ନୁହଁ । ସବୁ ଭାଗ୍ୟକୁ ଆଦରି ସହି ନେଉଛି ଚାଷୀକୁଳ । ଗତିକୃଷ୍ଣ ଆଣିଦେଲେ ଅଗତିର ଗତି । ସ୍ୱାଧୀନତା ସଂଗ୍ରାମ ସାଙ୍ଗକୁ ଜମିଦାରୀ ନିପୀଡ଼ନ ବିରୁଦ୍ଧରେ ଅଦ୍‌ଭୂତ ଜାଗରଣ ସୃଷ୍ଟି କଲେ । ମାତି ଉଠିଲେ ଚାଷୀକୁଳ ତାଙ୍କର ନେତୃତ୍ୱରେ ତାଙ୍କ ସହକର୍ମୀମାନଙ୍କ ସହଯୋଗରେ ବ୍ରିଟିଶ ଶାସକ ବିରୁଦ୍ଧରେ, ଜମିଦାର-ମକଦମଙ୍କ ବିରୁଦ୍ଧରେ ବାରମ୍ବାର ବ୍ରିଟିଶ କାରାଗାର, ଜମିଦାରଙ୍କ ଦ୍ୱାରା ଧୋବାବାରିକ ବାସନ୍ଦ ଏମିତି କେତେ ନିର୍ଯାତନା ତାଙ୍କୁ କଲା ବଜ୍ରଦୃଢ଼ ।

ସ୍ୱାଧୀନତା ଆସିଲା । ସେ ନିଜ ଜୀବନର ଅଭିଜ୍ଞତାରୁ ଶିକ୍ଷା କଲେ ଲୋକଙ୍କର ଅଗତି ଆସିଯିବ । ନାହିଁରେ ତେଲ ପକେଇ ବସିବେ, ସ୍ୱାଧୀନତା ଯାହା ସେମାନେ ଚାହିଁଥିଲେ ଆଣିଦେବ ବିଚାରିବେ ।

ସ୍ୱାଧୀନତା ସମସ୍ତ ଶୋଷଣ ଲୋପ କରିବନି । ବିଦେଶୀ ସାମ୍ରାଜ୍ୟବାଦୀ ଅତ୍ୟାଚାର ଯିବ । ମାତ୍ର ଶୋଷଣକୁ ଦୂର କରିବା ଲାଗି, ନୂଆ ସମାଜ ଗଢ଼ିବା ଲାଗି ସଂଗ୍ରାମର ଉପଲବ୍ଧି ତାଙ୍କୁ ଆଣିଦେଲା କମ୍ୟୁନିଷ୍ଟ ଆନ୍ଦୋଳନ ଭିତରକୁ । ସେହି ଆନ୍ଦୋଳନରେ କେତେ ଝଡଝଞ୍ଜା । କେତେ ଅଗ୍ରଗତି ବେଳେବେଳେ ନିଷ୍କ୍ରିୟତା, ଜୁଆର ପରେ ଭଟ୍ଟା । ସେ ଅଗ୍ରଗତି ବିଧାନରେ ଯେମିତି ଥିଲେ ଗତିଶୀଳ ସେମିତି ନିଷ୍କ୍ରିୟତା ଭାଙ୍ଗିବାରେ । ସାଥୀ ଯୋଦ୍ଧାମାନଙ୍କର ଅବସାଦ ଭାଙ୍ଗିବାରେ ସେମିତି ଥିଲେ ଗତିବାନ୍ । ଆଦେଶ ଦେଇ ନୁହଁ, ନିଜ କର୍ମ ଶୈଳୀରେ, ନିଜର ଅନନ୍ୟ ସାଙ୍ଗଠନିକ ଦକ୍ଷତା ସହ ନିଷ୍ଠାବାନ ଜୀବନରେ । ସେ ସବୁରି ହେଲେ ଗତିବାବୁ । ତାଙ୍କର ରାଜନୈତିକ ମତକୁ ଗ୍ରହଣ କରୁନଥିବା, ତାଙ୍କ ଦଳକୁ ବିରୋଧ କରୁଥିବା ବ୍ୟକ୍ତି ହୁଅନ୍ତୁ , ଶକ୍ତି ହୁଅନ୍ତୁ, ଗତିବାବୁଙ୍କୁ କେହି ଅସମ୍ମାନ କରିପାରୁ ନ ଥିଲେ । ମତ, ଦଳ ନିର୍ବିଶେଷରେ ସମସ୍ତଙ୍କଠାରୁ ସେ ପାଉଥିଲେ ସ୍ୱତଃସ୍ଫୂର୍ତ୍ତ ସମ୍ମାନ । ସେ ସାଥୀ ସହକର୍ମୀମାନଙ୍କ ପ୍ରାଣକୁ ଉଜ୍ଜୀବିତ କରୁଥିଲେ ସେମାନଙ୍କର ଅତି ଆପଣାର ହୋଇ । ଗାଁଗାଁ ଘରେଘରେ ତାଙ୍କୁ ଡାକରା ଆସୁଥିଲା, କେଉଁଠି କିଛି ଗୃହ ବିବାଦଠାରୁ, ଗ୍ରାମ୍ୟ ବିବାଦ ହେଲେ ସମାଧାନ ପାଇଁ । ସେ ହୋଇଯାଇଥିଲେ କାକଟପୁରର ନିରହଂକାର, ନିଷ୍କପଟ, ଉଦାରମନା ମୁରବୀ ଓ ଏଣେ ରାଜନୈତିକ ନେତା । ସତେ ସେ ତାଙ୍କ ଦୀର୍ଘ କର୍ମମୁଖର, ରାଜନୈତିକ ଜୀବନରେ ସେ ଅଗତିରେ ଗତି ଆଣି ସମସ୍ତଙ୍କ ନମସ୍ୟ ହୋଇ ଯାଇଛନ୍ତି । ଏପରି ବ୍ୟକ୍ତି ବିରଳ । ଏପରି ରାଜନୈତିକ କର୍ମୀ ସର୍ବଥା ଅନୁକରଣୀୟ । ତାଙ୍କ ମୃତ୍ୟୁରେ ସତେ ଅବା ଏକ ଯୁଗର ଅବସାନ ଘଟିଲା ।

□□□

# ସାଥୀ ହରିହର ଦାଶ

ସ୍ୱାଧୀନତା ସଂଗ୍ରାମ କାଳରେ ଏକାଧିକବାର କାରାଦଣ୍ଡିତ, କଂଗ୍ରେସରୁ କମ୍ୟୁନିଷ୍ଟ ଆଦର୍ଶରେ ଦକ୍ଷତା, ପୁନଶ୍ଚ କାରାଦଣ୍ଡିତ, ୮୨ ବର୍ଷ ଜୀବନକାଳ ମଧ୍ୟରୁ ୬୦ ବର୍ଷ କାଳ ବହୁ ସଂଗ୍ରାମରେ ପ୍ରଥମ ଧାଡ଼ିର ଅନ୍ୟ ଏକ ଶୀର୍ଷ ନେତା ରୂପେ ଜନମାନସରେ ଅମ୍ଳାନ ଆସନ ପାତି ଥିଲେ ସାଥୀ ହରିହର ଦାଶ । ଯେଉଁ ଆତ୍ମା କାଳକ୍ଷଣ୍ଡପୁର ଗାଁ'ରେ କୁଆଁକୁଆଁ ହୋଇଥିଲେ ସେଇଠି ୧୯୯୪ ମଇ ୨ ତାରିଖରେ ଆଖି ବୁଜିଲେ, ୮୨ ବର୍ଷ ବୟସରେ ।

ଦିନେ ସେ ଦେଶପ୍ରେମୀ ହେବେ, ସ୍ୱାଧୀନତା ସଂଗ୍ରାମକାଳର କଂଗ୍ରେସ କର୍ମୀ ହେବେ, ପୁଣି କମ୍ୟୁନିଷ୍ଟ ହେବେ ତାହା ତାଙ୍କୁ ଆଚମ୍ବିତ କରେ । କହନ୍ତି, ମୋର ଜଣେ ସମ୍ପର୍କୀୟ ଦୁର୍ଦ୍ଧର୍ଷ, ସାହସୀପଣିଆ ଯୁବକବେଳେ ମୋତେ ଘେନି ଯାଇଥିଲେ ରେଙ୍ଗୁନ । ବ୍ରିଟିଶ ଶାସିତ ବର୍ମାରେ ଗଞ୍ଜାମ ଓ ଆଖପାଖ ପୁରୀ ଜିଲ୍ଲାର ହଜାର ହଜାର ଭୂମିହୀନ, ବିଭିନ୍ନ ଜମିଦାର ମହାଜନ ଶୋଷିତ ଚାଷୀ ରେଙ୍ଗୁନ ମାଣ୍ଡାଲେରେ ମୂଲିଆଗିରି କରୁଥିଲେ । ସେମାନଙ୍କ ଉପରେ ସେଠାରେ ଅତ୍ୟାଚାରର ପ୍ରତ୍ୟକ୍ଷଦର୍ଶୀ ହୋଇ ତାଙ୍କର ପ୍ରଥମ ଭାବାନ୍ତର ହୋଇଥିଲା । ଜେଲ୍ ଝାସ ସମୟରେ ଯୌବନକାଳରେ ଏକମାତ୍ର ସନ୍ତାନ ଛାଡ଼ି ପତ୍ନୀ ବିୟୋଗ । ସେ ହେଲେ କଂଗ୍ରେସ ନେତା ଉମାଚରଣ ପଟ୍ଟନାୟକଙ୍କ ପଟ୍ଟଶିଷ୍ୟ । କଂଗ୍ରେସ ସଂଗଠନ ଓ ସ୍ୱାଧୀନତା ସଂଗ୍ରାମର କର୍ମୀ ହୋଇ ସେ ଜିଲ୍ଲା କଂଗ୍ରେସର ସମ୍ପାଦକ ହେଲେ ।

୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହରେ ତୃତୀୟ ଶ୍ରେଣୀ ରାଜବନ୍ଦୀ ଥିଲେ । ଆଉ ଆଉ ବଡ଼ବଡ଼ ନେତା, ପୂର୍ବତନ ମନ୍ତ୍ରୀ, ଏମ୍.ଏଲ୍.ଏ. ଏମିତିକି ତାଙ୍କ ଜୀବନର ପରବର୍ତ୍ତୀ କାଳରେ ତାଙ୍କ ନେତା ଗୋବିନ୍ଦ ପ୍ରଧାନ କିଏ ୨ୟ ବା କିଏ ପ୍ରଥମ ଶ୍ରେଣୀର ବନ୍ଦୀ ।

୧୯୪୨ ଅଗଷ୍ଟଆନ୍ଦୋଳନରେ ବ୍ରହ୍ମପୁରରେ ତିନିଶତାଧିକ ଅନ୍ତରୀଣ ବନ୍ଦୀଙ୍କ ମଧ୍ୟରେ ସେ ସବୁ ମତବାଦର ରାଜବନ୍ଦୀଙ୍କ ସହିତ ମିଶିଲେ । ନିରୋଳା କଂଗ୍ରେସପନ୍ଥୀ, ଗାନ୍ଧିବାଦୀ ସୋସାଲିଷ୍ଟ, ଫରୱାର୍ଡ଼ ବ୍ଲକ୍, ଆଉ କମ୍ୟୁନିଷ୍ଟ । ମନ ମାନିଗଲା କମ୍ୟୁନିଷ୍ଟଙ୍କ ପାଇଁ । ସେଇଠି ମାର୍କସବାଦର ଶିକ୍ଷା, ଆଲୋଚନା, ବେଶି ସଂଖ୍ୟାର ବନ୍ଦୀ ଯୁବକ କମ୍ୟୁନିଷ୍ଟ ମତ ଗ୍ରହଣ କରି ନେଲେ ।

ତାଙ୍କ ମୁକ୍ତି ଦିନର ସମ୍ବାଦ ପାଇଁ ତାଙ୍କୁ ସଂଖୋଳି ନେବାକୁ ଜେଲ୍ ଫାଟକରେ କଟକରୁ ଗୁରୁଚରଣ ପଟ୍ଟନାୟକଙ୍କ ସମ୍ବର୍ଦ୍ଧନା ତାଙ୍କୁ ବିମୋହିତ କଲା ।

ଡେଇଁ ପଡ଼ିଲେ ନୂତନ ଧରଣର ରାଜନୈତିକ ଜୀବନ ପାଇଁ, ଆଉ କଂଗ୍ରେସ ଦୁଆର ମାଡ଼ିଲେନି । କଂଗ୍ରେସ ସମ୍ପାଦକ ପଦର ମୋହ ତୁଟିଲା । ଗୋବିନ୍ଦ ପ୍ରଧାନ, ସାଧୁ ଚରଣ ମହାନ୍ତି, ଗୁରୁଚରଣ ପଟ୍ଟନାୟକ, ଅଭିନ୍ନା ପାତ୍ର ଏବଂ ଆଉ ଆଉ କର୍ମୀଙ୍କ ସହିତ ଝାସ ଦେଲେ ଗୋବିନ୍ଦ ପ୍ରଧାନଙ୍କ ନେତୃତତ୍ୱାଧୀନ ଗଞ୍ଜାମ ରଇତସଭା ଆନ୍ଦୋଳନରେ । ପରିଚୟ ହେଲା ତାଙ୍କର ବିଜୟଚନ୍ଦ୍ର ଦାସଙ୍କ ସହିତ । ଛାତ୍ର ଆନ୍ଦୋଳନ ଭିତରୁ ଆସୁଥାନ୍ତି ସଦାନନ୍ଦ, ବିଶ୍ୱନାଥ, ଦ୍ୟୁତୀକୃଷ୍ଣ, ହରିବନ୍ଧୁ ଏମିତି କେତେକ । ଆସିକାର ତାଙ୍କ ସହ ସ୍ୱାଧୀନତା ସଂଗ୍ରାମର ରାଜବନ୍ଦୀ ଜନାର୍ଦ୍ଦନ ସିଂହ, ଶ୍ୟାମସୁନ୍ଦର ପାତ୍ର । ତେଣେ ଶେରଗଡ଼ର ସୂର୍ଯ୍ୟନାରାୟଣ ଆଚାରୀ, ରାଧାକୃଷ୍ଣ ପ୍ରଧାନ, ଏମ୍.ଜଗନ୍ନାଥ ସ୍ୱାମୀ ଏମିତି ଅନେକ ।

୧୯୪୫ରୁ ୧୯୫୨ ଗଞ୍ଜାମରେ ରଇତ ଆନ୍ଦୋଳନ ଓ କମ୍ୟୁନିଷ୍ଟ ସଂଗଠନ ଓ ତା'ର ପ୍ରସାର-ପ୍ରଭାବ । ଆଉ ଅନେକଙ୍କ ଅବଦାନ ରହିଛି । ହେତାଖେଟା ଜମି, ଯାହାର ଶହଶହ ବର୍ଷର ସ୍ୱତ୍ୱ ଭୋଗ କରୁଥିଲେ ରଇତମାନେ । ସେମାନଙ୍କୁ ଉକ୍ତ ଜମିରୁ ବେଦଖଲ କରୁଛନ୍ତି ଜମିଦାରମାନେ । ଜମିଦାରଙ୍କ ଅଧୀନରେ ଥିବା ସେମାନଙ୍କ ଶୋଷଣରେ ହତିଆର ମୁସ୍ତାଦାରମାନେ ରଇତଙ୍କୁ କାଙ୍ଗାଳ କରୁଛନ୍ତି । ରଇତସଭା ଗାଁ'ଗାଁ'ରେ ଗଠନ, କର୍ମୀ ଓ ଯୋଦ୍ଧା ତିଆରି, ରଇତସଭା ସଂ- ସଂଗ୍ରହ, ବୁଣାଳି ସଭା ଗଠନ, ଇନାମଦାରୀ ପ୍ରଥାର ଇନାମ ଚାଷୀମାନଙ୍କର ସଂଗଠନ ଓ ଆନ୍ଦୋଳନର ନେତା ହୋଇଗଲେ ଗୋବିନ୍ଦ ପ୍ରଧାନଙ୍କ ପରେ ସାଥୀ ହରିହର ଦାଶ । ପୁଣି କମ୍ୟୁନିଷ୍ଟ ପାର୍ଟିର ଶାଖା ଗଠନ, ସଭ୍ୟ ସଂଗ୍ରହ କାମ । ତାଙ୍କୁ ଫୁରସତ୍ ମିଳେନା ।

ସେତେବେଳେ ଗଞ୍ଜାମରେ କଳ୍ପନାତୀତ ବିଶାଳ ବିଶାଳ ରଇତ ସମାବେଶ ହୁଏ । ୧୯୪୫ରେ ତାଙ୍କ ଗାଁ' ଆସ୍କାରେ ୨୦ ହଜାର ରଇତଙ୍କ ସମାବେଶ, ୧୯୪୭ରେ ତାକରଡ଼ାରେ ୧୫ ହଜାରରୁ ଊର୍ଦ୍ଧ୍ୱ ରଇତଙ୍କ ସମାବେଶ, ବ୍ରହ୍ମପୁରରେ ୧୯୪୮ରେ ୧୦ ହଜାର ଚାଷୀଙ୍କ ସମାବେଶ ପୂର୍ବରୁ ୧୯୪୭ରେ ଗଞ୍ଜାମରୁ ଶହ ଶହ ଚାଷୀଙ୍କ ପାଦରେ କଟକରେ ଥିବା ବିଧାନସଭାକୁ ଅଭିଯାନର ନେତୃତ୍ୱଦାନରେ ତାଙ୍କର ଭୂମିକା ତାଙ୍କୁ ସେ କାଳରେ ବିଶେଷ ଜନପ୍ରିୟତା ଆଣିଦେଲା ।

୧୯୪୮ ମଇ ୨୪ ତାକରଡ଼ା ଗୁଳିକାଣ୍ଡ, ମୁସ୍ତାଦାରୀ, ଜମିଦାରଙ୍କ ସପକ୍ଷରେ ସ୍ୱାଧୀନତା ପର ପ୍ରଧାନମନ୍ତ୍ରୀ ଶ୍ରୀ ମହତାବଙ୍କ ନିର୍ଦ୍ଦେଶରେ ୬ ଜଣ ନିହତ ଆଉ ୬ ଜଣ ଗୁରୁତର ଆହତ ।

ପରେ ଏହି ମୁସ୍ତାଦାରୀ ପ୍ରଥା ବିଲୋପ, ଇନାମଦାରୀ ପ୍ରଥା ବିଲୋପ ପରେ ସାଧିତ ହେଲା । ଐତିହାସିକ ଆନ୍ଦୋଳନ, ଆତ୍ମବଳିଦାନ ଓ ସଂକଳ୍ପ ବିଜୟ ହେଲା ।

୧୯୫୨ରେ କମ୍ୟୁନିଷ୍ଟମାନଙ୍କ ଉପରେ ସ୍ୱାଧୀନତାେର କଂଗ୍ରେସ ସରକାରର ଆକ୍ରମଣ । ବ୍ରହ୍ମପୁର ଜେଲ୍, କଟକ ଜେଲ୍, ପୁରୀ ଜେଲ୍‌ରେ ବର୍ଷବର୍ଷ କାଳ ଶହଶହ କମ୍ୟୁନିଷ୍ଟ ରାଜବନ୍ଦୀ । ଗଞ୍ଜାମର ତୁଙ୍ଗ ନେତାମାନେ ବନ୍ଦୀ । ଗୋବିନ୍ଦ ପ୍ରଧାନ, ହରିହର ଦାଶ ଗଞ୍ଜାମର ଆଉ ସବୁ କମ୍ୟୁନିଷ୍ଟ ନେତା । ରଇତ ନେତା, ଯୁବଛାତ୍ର ଆତ୍ମଗୋପନରେ ।

ଆସିକା ସହରରେ ସେ ଧରା ପଡିଲେ, ପୁଲିସ ଘେରରେ । ଅଦ୍‌ଭୂତ ଉଲଗ୍ନ ହୋଇ ସେ ଛାଟିପିଟି ପୁଲିସ ହାତରୁ ଖସିଗଲେ ଶହ ଶହ ଦେଖଣାହାରିଙ୍କ ମଧ୍ୟରେ । ଅବଶ୍ୟ ପରେ ପୁଣି ବନ୍ଦୀ ଅନ୍ୟମାନଙ୍କ ସଙ୍ଗରେ ।

ଗଞ୍ଜାମ ଲାଲ ହୋଇଗଲା ବୋଲି କଂଗ୍ରେସର ଭାଳେଣି, ୧୯୫୨ ନିର୍ବାଚନ । ୧୧ଟି ଆସନରୁ ହରିହର, ଗୋବିନ୍ଦ, ଜଗନ୍ନାଥ, ମୋହନଙ୍କ ସମେତ ୪ ଜଣ ବିଧାନସଭା ଓ ବିଜୟଚନ୍ଦ୍ର ଦାସ ଲୋକସଭାକୁ ଓ ଜନସଂଯୋଗ ଓ ଜନସେବାର ସ୍ୱୀକୃତି ସ୍ୱରୂପ ସେ ଚାରିଥର ବିଧାନସଭାକୁ ନିର୍ବାଚିତ । ପଞ୍ଚାୟତ ଶାସନ ଆରମ୍ଭ କାଳରେ ଦୁଇଥର ସେ କାଳୀଷଣ୍ଡପୁର ସରପଞ୍ଚ ହୋଇ ଏପରି ସଫଳତା ପ୍ରଦର୍ଶନ କଲେ ଯେ ତାଙ୍କ ପଞ୍ଚାୟତରେ ପ୍ରଥମର ମର୍ଯ୍ୟାଦା ଲାଭ କରିଥିଲା ।

ବିଧାନସଭା ଅଧିବେଶନରେ ହରିହର ଦାଶ ଉପସ୍ଥିତ ନ ଥିଲେ ଜମେ ନାହିଁ । ତାଙ୍କର ଆଲୋଚନା, କୌତୁକ, ଲଘୁ ଅଥଚ ତୀକ୍ଷ୍ଣ ରାଜନୈତିକ ପରିହାସ, ହାସ୍ୟରସ ଶୁଣିବାକୁ ସରକାରୀ ଓ ବିରୋଧୀ ସଦସ୍ୟ, ସାମ୍ବାଦିକ ଓ ଦର୍ଶକ ଉତ୍କଣ୍ଠିତ । ଅସୀମ ସାହସ ତାଙ୍କର । ୧୯୫୫ ଦଳେଇଘାଇ ବନ୍ୟାବେଳେ ବନ୍ୟା ଆବର୍ତ୍ତରେ ପଡିଥିବା ଜନତାକୁ ଉଦ୍ଧାର କରିବା ଲାଗି ସରକାରୀ ଲୋକେ ଜଳପ୍ରବାହ ଦେଖି ଡରି ରହିବା ବେଳେ ସେ ପାଣିକୁ ଡେଇଁପଡ଼ି ନୌକାବାହୀ ଆଉ ଜନତାଙ୍କ ପାଖରେ ପହଞ୍ଚିବା ସମସ୍ତଙ୍କୁ ଆଚମ୍ବିତ କରିଥିଲା ।

ନୀଳଗିରିର ରାଜା ସାନ୍ଧିଆ ସିଂହ କଳାପକ୍ଷୟା ବାହିନୀକୁ ଧରି ଘର ପୋଡୁଥାଏ, ଲୋକଙ୍କୁ ମାରୁଥାଏ । ନୀଳଗିରି ପ୍ରଜା ଆନ୍ଦୋଳନର ନେତା ବନମାଳି ଦାସ ଆଉ କୈଳାସ ମହାନ୍ତି । ନୀଳଗିରିରେ କଂଗ୍ରେସ ସରକାର ପଶିପାରୁ ନାହିଁ, ମାଉଣ୍ଟବେଟେନ ଚୁକ୍ତିକୁ ମାନି । କମ୍ୟୁନିଷ୍ଟମାନେ ପଶିବେ ଅସ୍ତ୍ରଧରି- ନଚେତ୍ ବାଟ ନାହିଁ । ମେଣ୍ଢାଶାଳରେ ଅସ୍ତ୍ରଶସ୍ତ୍ର ବ୍ୟବହାରରେ ତାଲିମ । ହରିହର ଦାଶ, ଅନ୍ୟମାନଙ୍କ ସାଙ୍ଗରେ ତାଲିମ ନିଅନ୍ତି । ସୟଦ ଅବ୍‌ଦୁଲ କାଦର, ନନ୍ଦ କିଶୋର ପଟ୍ଟନାୟକ, ଗୋପୀନାଥ ବ୍ରହ୍ମଚାରୀ, ବୈଷ୍ଣବ ପଟ୍ଟନାୟକ ପ୍ରମୁଖଙ୍କ ସଙ୍ଗରେ ହରିହର ।

ସଶସ୍ତ୍ର ଲଢ଼େଇ ସାନ୍ଧିଆ ସିଂହ ଉତ୍ପାତକାରୀବାହିନୀ ସହିତ । କଂଗ୍ରେସ ସରକାର ପାଇଁ ଶାନ୍ତିଶୃଙ୍ଖଳା ରକ୍ଷା ଆଳରେ ନବକୃଷ୍ଣ ଚୌଧୁରୀଙ୍କ ନିର୍ଦ୍ଦେଶରେ । ତେଣୁ ନୀଳଗିରିରେ ପ୍ରବେଶ କରିବାକୁ ବାଟ କବାଟ ଫିଟିଗଲା । ପରବର୍ତ୍ତୀ କାଳରେ ୬ ଶହ ଗଡ଼ଜାତ ଭାରତୀୟ ୟୁନିଅନ ସହିତ ମିଶିବା ପୂର୍ବରୁ ସର୍ବପ୍ରଥମ ନୀଳଗିରି ହିଁ ମିଶିଥିଲା ।

ସାଥୀ ହରିହର ଦାଶଙ୍କ ୬୦ ବର୍ଷ କାଳର ରାଜନୈତିକ ଜୀବନରେ ସେ ନାନା ଘାତପ୍ରତିଘାତ ସତ୍ତ୍ୱେ କମ୍ୟୁନିଷ୍ଟ ପାର୍ଟିର ଅବିଚଳ ଯୋଦ୍ଧା ରହି, ଗଞ୍ଜାମ ପାର୍ଟିର ପ୍ରଥମ ସମ୍ପାଦକ ହୋଇ, ରାଜ୍ୟ ପାର୍ଟିର ନେତୃତ୍ୱରେ ଅଂଶୀଦାର ହୋଇ ତାଙ୍କର ଅବଦାନ ଦେଇ ଯାଇଛନ୍ତି । ଗଞ୍ଜାମର ଅନେକ ସାଥୀଙ୍କୁ ସେ ପାର୍ଟି ଭିତରକୁ ଆଣିବାରେ ସାହାଯ୍ୟ କରିଛନ୍ତି । ବନ୍ଧୁ ଜନ ସଂଗ୍ରାମର ଆଗରେ ରହିଛନ୍ତି ।

ମୃତ୍ୟୁ ହେବାର ଥିଲା, ହୋଇଛି । ମାତ୍ର ଓଡ଼ିଶାର ବିଶେଷତଃ ଗଞ୍ଜାମର ସ୍ୱାଧୀନତା ପୂର୍ବ ଓ ସ୍ୱାଧୀନତା ପର ଜନଆନ୍ଦୋଳନରେ ସେ ତାଙ୍କର ସ୍ୱାକ୍ଷର ରଖି ଯାଇଛନ୍ତି ।

□□□

# ଏକ ମହାନ ବିପ୍ଳବୀ ଜୀବନର ଅବସାନ

୧୯୮୦ ଜୁଲାଇ ୨୬ରେ ସେହି ଦୀପ୍ତିମନ୍ତ ଦରଦୀ ଓ ଅତୃପ୍ତ ଆଖି ଦୁଇଟି ଚିରକାଳ ଲାଗି ମୁଦ୍ରିତ ହୋଇଗଲା । ମୃତ୍ୟୁ ସହିତ ତାଙ୍କର ବିପ୍ଳବୀ ପ୍ରାଣ ପାଞ୍ଚ ବର୍ଷ ଧରି ସଂଗ୍ରାମ କରି ଆସୁଥିଲା । ନିଜେ ବଂଚିବେ, ନିଜ ପରିବାରର ସ୍ୱାର୍ଥରେ ଲାଗିବେ, ଯାହାକି ମୃତ୍ୟୁକାଳ ପୂର୍ବରୁ ଜୈବିକ ଧର୍ମର ତାଡ଼ନା, ସେ ଲାଡ଼ନା ତାଙ୍କ ଜୀବନକୁ ପ୍ରଭାବିତ କରୁ ନ ଥିଲା ।

ପ୍ରକୃତ ପକ୍ଷରେ ସେ ପଙ୍ଗୁ, ଚଳନ ଅକ୍ଷମ । କିନ୍ତୁ ଶରଗଡ଼ ହେଉ ଅବା ବ୍ରହ୍ମପୁର, ଆସ୍କା ହେଉ ଯେଉଁଠି କୃଷକମାନଙ୍କର ସଭା ହେଉଛି, ଯେଉଁଟି ପାର୍ଟି କର୍ମୀଙ୍କର ଶିକ୍ଷା ଶିବିର ହେଉଛି ସେଠାରେ ଦେଖିବ ଅନ୍ୟାୟ ସହିତ ସଂଗ୍ରାମ କରୁଥିବା ସେଇ ବୀର ରଥୀଙ୍କୁ । କଟକରେ ଅବା ଭୁବନେଶ୍ୱରରେ ଓଡ଼ିଶାର କମ୍ୟୁନିଷ୍ଟ ନେତୃବର୍ଗ ଏକତ୍ର ହୋଇଛନ୍ତି ଅବା ନୂଆଦିଲ୍ଲୀରେ ପାର୍ଟିର ବିଶାଳ ପ୍ରତିବାଦ ବିକ୍ଷୋଭ ହେଉଛି ସେଠି ସଶରୀରେ ହାଜର ସାଥୀ ଗୋବିନ୍ଦ ପ୍ରଧାନ । କେମିତି ? ଶଗଡ଼ ଗାଡ଼ିରେ ବୁହାହୋଇ, ଚୌକିରେ ବୁହାହୋଇ, ମଟରକାରରେ ବୁହାହୋଇ ୩/୪ ଜଣ ସାଥୀଙ୍କ ଆଶ୍ରାଧରି । ପାଟି ଖନି ବାଜୁଛି, ତଥାପି ପ୍ରତ୍ୟେକ ସାଥୀ ସହକର୍ମୀଙ୍କ ସହିତ ଦି'ପଦ କଥା କହିବାକୁ ଉଦ୍ୟମ । ପାର୍ଟି କିପରି ଜନସଂଗ୍ରାମଗୁଡ଼ିକର ନେତୃତ୍ୱ ଦେଉଛି, ସେସବୁ ଜାଣିବା ଲାଗି ପ୍ରବଳ ଆଗ୍ରହ– ସେଇଥିରେ ହିଁ ଆତ୍ମସନ୍ତୋଷ ।

ବାସନା ଅତୃପ୍ତ ରହିଗଲା ସେହି ବିପ୍ଳବୀ ମହାପ୍ରାଣର । ବହୁ ସଂଗ୍ରାମର ବୀର ସେ । ଜନ୍ମ ହୋଇ ମୁଖରେ ସୁନାଶାମୁକା ଦେଇ ଯିଏ ଜୀବନକୁ ଉତ୍ସର୍ଗ କରିଥିଲେ । ଶୋଷିତ ନିର୍ଯ୍ୟାତିତ ଅତ୍ୟାଚାରିତ ମାନବତାର ମୁକ୍ତି ପାଇଁ । ଭାରତ ଭୂଇଁରେ, ଓଡ଼ିଶା ମାଟିରେ ଶୋଷଣ ନିର୍ଯ୍ୟାତନା ଦୁଃଖ ଦାରିଦ୍ର୍ୟ ଅଭାବ, ଅନଟନ, ଦୁର୍ନୀତି, ଦୁରାଚାରମୁକ୍ତ ସାମ୍ୟବାଦର ପ୍ରତିଷ୍ଠା ପାଇଁ ସଂଗ୍ରାମ ତାଙ୍କ ଜୀବଦଶାରେ ସଫଳ ହେଲା ନାହିଁ । ଏଥିଲାଗି ସିନା ଅତୃପ୍ତି, ମାତ୍ର ସେ କହିଛନ୍ତି, ଆମେ ପକାଉଛେ ନୂଆ ସମାଜର ପୁନାଦି । ଆମ ଭବିଷ୍ୟତ ବଂଶଧର, ନୂଆ ନୂଆ ବିପ୍ଳବୀ ଆମ ସ୍ଥାନ ନେବେ । ଦେଶକୁ ସ୍ୱାଧୀନ କରିବାରେ ସାମ୍ରାଜ୍ୟବାଦୀ ଶୃଙ୍ଖଳାରୁ ମୁକ୍ତ କରିବାରେ ଲକ୍ଷ ଲକ୍ଷ ଯୁବକ ପ୍ରାଣ ଦେଇଛନ୍ତି । ଆଉ ପୁଣି ପୁଞ୍ଜିବାଦ । ସେ ପୁଣି ସ୍ୱଦେଶର ଆଉ ବିଦେଶୀ ପୁଞ୍ଜିବାଦର ସଂଘାତ । ସେପରି ପୁଞ୍ଜିବାଦୀ ଦୈତ୍ୟକୁ ନିକାଶ କରି ସମାଜବାଦ

ଆଣିବାକୁ ଲକ୍ଷ ଲକ୍ଷ ନୂତନ ଯୁବକ ଯୁବତୀ ପ୍ରାଣ ଦେବେ । ମାନବ ମୁକ୍ତିର ଏକମାତ୍ର ସଠିକ୍ ସର୍ବୁଳ ଦର୍ଶନ ଅବଗତି, ସମାଜନୀତି ଓ ରାଜନୀତି ମାର୍କବାଦଦ- ଲେନିନବାଦର ସତ୍ୟନିଷ୍ଠ ଅନୁସନ୍ଧିତ୍ସୁ ଓ ଅନୁଗାମୀ ହୋଇ ଲେନିନଙ୍କ ବିପ୍ଳବୀ ପାର୍ଟିର ସୈନିକ ହେବେ । ଏହି ଭରସା, ଏହି ବିଶ୍ୱାସ ଘେନି ସେ ତାଙ୍କ ବିଶାଳ ସୁଦୀର୍ଘ କର୍ମମୟ ବିପ୍ଳବୀ ଜୀବନର ସାୟାହ୍ନରେ ଅନିଚ୍ଛାକୃତ ଅସାମର୍ଥ୍ୟକୁ ବିନା ଗ୍ଲାନିରେ ବରଣ କରି ନେଇଥିଲେ ।

ସେ ସ୍ୱାଧୀନତା ସଂଗ୍ରାମର ଯୋଦ୍ଧା ଥିଲେ, ବ୍ରିଟିଶ ସାମ୍ରାଜ୍ୟବାଦ ହାତରୁ ଦେଶର ମୁକ୍ତି ପାଇଁ ମହାତ୍ମାଗାନ୍ଧୀ ଆଉ ସେ କାଳର ଜାତୀୟ କଂଗ୍ରେସର ଆହ୍ୱାନ ତାଙ୍କୁ ବଳରାମ ପ୍ରଧାନ ପରିବାରର ତୂଳୀତଳ୍ପରୁ ଟାଣି ଆଣିଥିଲା ସ୍ୱେଚ୍ଛାକୃତ ତ୍ୟାଗ, ଯନ୍ତ୍ରଣା ଓ କାରାଦଣ୍ଡର ଜାତୀୟ ମୁକ୍ତି ସଂଗ୍ରାମର ମଞ୍ଚକୁ । ଜେଲ୍‌ବରଣ କଲେ ଏକାଧିକବାର । ତାଙ୍କ ସହିତ ମୋର ଘନିଷ୍ଠ ସଂପର୍କ ସ୍ଥାପିତ ହୁଏ ୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହ ସଂଗ୍ରାମର ବନ୍ଦୀ ରୂପରେ ବ୍ରହ୍ମପୁର ଜେଲ୍ ୭ ନମ୍ବର ୱାର୍ଡ଼ରେ ।

କଂଗ୍ରେସର ବହୁ ନେତା ଜେଲଖାନାରେ ଆବଦ୍ଧ । ୧୯୩୫ ଶାସନ ଖସଡ଼ା ଅନୁସାରେ ୧୯୩୭ ମସିହାରେ ଯେଉଁ ନିର୍ବାଚନ ହୋଇଥିଲା, ସେଥିରେ କଂଗ୍ରେସ ବିଜୟୀ ହୋଇ ପ୍ରଥମ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । କଂଗ୍ରେସ ଡାକରାରେ ଇସ୍ତଫା ଦେଇଥିବା ମନ୍ତ୍ରୀମାନଙ୍କ ସମେତ ଏମ୍.ଏଲ୍.ଏ ବା ମନ୍ତ୍ରୀ ନ ହୋଇଥିବା ବହୁ ନେତା ଓ କର୍ମୀ କାରାଦଣ୍ଡ ଭୋଗୁଥାନ୍ତି ।

ସେହି ଜେଲ୍‌ରେ ଏବଂ ତା' ପୂର୍ବରୁ ମଧ୍ୟ ଗୋବିନ୍ଦ ବାବୁ ଚିନ୍ତିତ ହୋଇ ପଡ଼ିଥାନ୍ତି । ଦେଶକୁ ସ୍ୱାଧୀନ କଲାପରେ ଏ ଦେଶରୁ ଦୁଃଖ ଦାରିଦ୍ର୍ୟ ଶୋଷଣ ଅତ୍ୟାଚାର ଦୂର ହେବ କିପରି । ସ୍ୱାଧୀନତା ସଂଗ୍ରାମର ଯୋଦ୍ଧା ଥାଇ ନିଜର ଅଭିଜ୍ଞତାରୁ ତାଙ୍କର ଉପଲବ୍ଧି ଆସୁଥାଏ ଯେ ଦେଶର ସ୍ୱାଧୀନତା ଅର୍ଜନ କରିବାକୁ କଂଗ୍ରେସ ହିଁ ସବୁ ମତବାଦୀ ସ୍ୱାଧୀନତା ସଂଗ୍ରାମୀଙ୍କ ମିଳନ ପୀଠ । ମାତ୍ର ଦେଶରୁ ଜମିଦାର, ସାହୁକାର, ମୁସ୍ତାଦାର ଆଉ ପୁଞ୍ଜିପତିମାନଙ୍କ ଶୋଷଣକୁ ଲୋପ କରିବା ପାଇଁ ଆଦର୍ଶ ଦୃଷ୍ଟିରୁ, ସଂଗଠିତ ଦୃଷ୍ଟିରୁ କଂଗ୍ରେସ ଅସମର୍ଥ । ଏଥିରେ ଗାଁ ଚାଷୀ ମୂଲିଆ, ସହରର ମଧ୍ୟବିତ୍ତ, କଳ କାରଖାନାର ଶ୍ରମିକଙ୍କଠାରୁ ଆରମ୍ଭ କରି ଜମିଦାର, ମହାଜନ, ସେଠ୍ ପୁଞ୍ଜିପତି ସମସ୍ତେ ଠୁଳ ହୋଇଛନ୍ତି । ଅସଲ ପ୍ରଭାବ ସମାଜର ଉପର ପାହ୍ୟାରେ ଥିବା ଲୋକଙ୍କର ।

ଗୋବିନ୍ଦବାବୁ ବଡ଼ ଅଡୁଆରେ ପଡିଥାନ୍ତି । ୧୯୩୬-୩୯ ସ୍ୱାଧୀନତା ପରବର୍ତ୍ତୀ ବିଧାନସଭାରେ ସାଥୀ ଗୋବିନ୍ଦ ପ୍ରଧାନ କଂଗ୍ରେସ ଏମ୍.ଏଲ୍.ଏ. । ସେତେବେଳର ମୋଟ ୬୦ ଜଣ ଏମଏଲଏଙ୍କ ମଧ୍ୟରୁ ୩୭ ଜଣ କଂଗ୍ରେସ ଲୋକ । ତେଣୁ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିଥାଏ- ପ୍ରଥମ ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳ । ବିଧାନସଭାର ମନ୍ତ୍ରିମଣ୍ଡଳର କ୍ଷମତା ସୀମିତ ।

କିନ୍ତୁ ମନ୍ତ୍ରିମଣ୍ଡଳ ଓ କଂଗ୍ରେସ ବିଧାୟକମାନଙ୍କ ମଧ୍ୟରୁ ଅଧିକାଂଶ କ'ଣ ଏ ଦେଶରୁ ଶୋଷଣ ଲୋପ କରିବାର କାର୍ଯ୍ୟକ୍ରମ ନେବେ ? ଏହି ପ୍ରଶ୍ନ କେତେକ ଏମଏଲଏଙ୍କ ମନରେ ଉଠିଥିଲା । ତନ୍ମଧ୍ୟରେ ଥିଲେ ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ, ଗୋବିନ୍ଦ ପ୍ରଧାନ ଆଉ ସମ୍ବଲପୁରର ଫକୀର ବେହେରା । ନବବାବୁ ଜଣାଶୁଣା ବାମପନ୍ଥୀ ଥିଲେ । ମାତ୍ର ତାଙ୍କର ଝୁଙ୍କ ଅନ୍ୟ ପ୍ରକାର ଥିଲା । ଏମାନେ ବିଧାନ ସଭାରେ ବସ୍ତୁତଃ ଏକ ପ୍ରଗତିଶୀଳ ବ୍ଲକ ଗଠନ କରିଥିଲେ ।

୧୯୪୦ରେ କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ଚାଲିଲା । କଂଗ୍ରେସ ଦୂର୍ଗରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ଆଗୁଆ କର୍ମୀମାନେ ଅଧିକରୁ ଅଧିକ ମାର୍କସ୍‌ବାଦ, ଲେନିନିବାଦ ପ୍ରତି ଆକୃଷ୍ଟ ହେଉଥାନ୍ତି । ବ୍ରିଟିଶ ବେଳର ପାର୍ଟି ପରି ଏବଂ ଅନ୍ୟାନ୍ୟ ପାଶ୍ଚାତ୍ୟ ଦେଶର ସୋସାଲ ଡେମୋକ୍ରାଟିକ୍ ପାର୍ଟି ଢ଼ାଞ୍ଚାରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିକୁ ଗଢ଼ିବାର ଏମାନେ ବିରୋଧୀ । ସୋଭିଏତ ୟୁନିୟନର ଲେନିନଙ୍କର ବିରୋଧିତା କଂଗ୍ରେସ ସୋସିଲିଷ୍ଟ ପାର୍ଟିର ଡାହାଣପଟିଆ ନେତାମାନଙ୍କ ଧର୍ମ ହୋଇଥାଏ । ମାତ୍ର ଅନ୍ୟମାନେ ମାର୍କସ-ଏଙ୍ଗେଲ୍‌ସେ ଲେନିନଙ୍କ ମତାଦର୍ଶକୁ ଗ୍ରହଣ କରୁଥାନ୍ତି ।

ଏହି ମତାଦର୍ଶଗତ ସଂଗ୍ରାମ ମଧ୍ୟ ଗୋବିନ୍ଦବାବୁ ଆଉ ତାଙ୍କର ଘନିଷ୍ଠ ସହକର୍ମୀ ମୋହନ ଦାସ, ଫକୀର ବେହେରାଙ୍କୁ ପ୍ରଭାବିତ କରିଥାଏ । କଂଗ୍ରେସ ହେବ ସବୁ ସ୍ୱାଧୀନତା ସଂଗ୍ରାମୀଙ୍କ ସମ୍ମିଳିତ ମଞ୍ଚ । ମାତ୍ର ଗୋବିନ୍ଦ ବାବୁଙ୍କର ଚିନ୍ତାର କଂଗ୍ରେସ ଲୋକ କ'ଣ ଏତିକିରେ ସନ୍ତୁଷ୍ଟ ରହିବେ ? ଜେଲ୍‌ଖାନାରେ ଥିବାବେଳେ ପ୍ରଥମ ସମାଜବାଦୀ ଦେଶ ସୋଭିଏତ ୟୁନିଅନ ଉପରେ ନାଜୀ ଆକ୍ରମଣ ହେଲା । ଗୋବିନ୍ଦ ବାବୁ ଭବିଷ୍ୟତରେ କି ଆଦର୍ଶ ଗ୍ରହଣ କରିବେ, ତାହା ମନେମନେ ସ୍ଥିର କରୁଥିଲେ । ସ୍ୱାଧୀନତା ପୂର୍ବବର୍ତ୍ତୀ କଂଗ୍ରେସ ନେତା ଏବଂ କଂଗ୍ରେସ ଏମ୍.ଏଲ୍.ଏ ସହିତ ମୋର ସଂପର୍କ ୧୯୪୦ ବ୍ରହ୍ମପୁର ଜେଲ୍‌ରେ ଅଧିକ ଘନିଷ୍ଠ ହେଲା । ଯେଉଁ କଂଗ୍ରେସର ଯୋଧାମାନେ କୃଷକ ଶ୍ରମିକ ଓ ମେହେନତକାରୀ କୋଟି ଜନତାର ସ୍ୱାଧୀନତା ସାଙ୍ଗକୁ ଚିରକାଳ ଲାଗି ସେମାନଙ୍କର ଅର୍ଥନୈତିକ ଓ ସାମାଜିକ ମୁକ୍ତି ଚାହୁଁଥିଲେ ଗଞ୍ଜାମରେ ଗୋବିନ୍ଦ ପ୍ରଧାନ ସେପରି ଏକ ସଂଗଠନ ଓ ଆନ୍ଦୋଳନ ଗଢ଼ିବାର ସଂକଳ୍ପ ନେଇ ଜେଲଖାନାରୁ ବାହାରିଗଲେ ।

କାରାବାସରୁ ମୁକ୍ତି ବେଳକୁ ଗୋବିନ୍ଦ ବାବୁ ଦେଖନ୍ତି ଗଞ୍ଜାମର ବହୁ କଂଗ୍ରେସ ନେତା ତାଙ୍କରି ଭଳି ଚିନ୍ତାରେ ଆକୁଳିତ । ବଡ଼ଚାଷୀ ପକ୍ଷପାତୀ ଜମିଦାରୀ ରଇତସଭା, ଯେଉଁଥିରେ ଦିନେ ଗୋବିନ୍ଦ ପ୍ରଧାନ ଅନ୍ୟତମ ନେତା ଥିଲେ । ତାଙ୍କର ପରିବର୍ତ୍ତିତ ପ୍ରକୃତ ରଇତମାନେ ବୁଝି ସାରିଲେଣି । ସେତେବେଳର କଂଗ୍ରେସ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କ ଭଳି ୫ ହଜାରରୁ ଅଧିକ ଭରଣ ଜମିବାଲାଙ୍କ ସ୍ୱାର୍ଥର ସଂରକ୍ଷକ ଉକ୍ତ ଅନୁଷ୍ଠାନ ।

ଗଞ୍ଜାମର ଅନ୍ୟତମ କଂଗ୍ରେସ ନେତା ଜିଲ୍ଲା କଂଗ୍ରେସ ସମ୍ପାଦକ ହରିହର ଦାଶ ମଧ୍ୟ

ତାଙ୍କ ପରି ନିଷ୍ପତ୍ତି ନେବେ, କମ୍ୟୁନିଷ୍ଟ ହେବେ ଜଣା ପଡ଼ିଗଲାଣି । ବିଜୟ ଦାସ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଖୁବ୍ ଖ୍ୟାତି ଅର୍ଜନ କରିଥାନ୍ତି । ବହୁ ଯୁବକ ଆଜି ଯେଉଁମାନେ କମ୍ୟୁନିଷ୍ଟ ପାର୍ଟିର ନେତା ଯେମିତି ସଦାନନ୍ଦ, ବିଶ୍ୱନାଥ, ଦ୍ୟୁତିକୃଷ୍ଣ, ହରିବନ୍ଧୁ ପ୍ରମୁଖ ଅନେକ ଗୋବିନ୍ଦ ବାବୁଙ୍କର ସାଥୀ ହେବେ, ତାଙ୍କୁ ନେତା ମାନିବେ, ଏହା ଗୋବିନ୍ଦ ବାବୁଙ୍କୁ ବିଶେଷ ଉତ୍ସାହ ଦେଉଥାଏ ।

ଆଉ ଗଞ୍ଜାମରେ ସାଧୁଚରଣ ମହାନ୍ତି, ଗୁରୁଚରଣ ପଟ୍ଟନାୟକ ଗାଁ'କୁ ଗାଁ' ଖେଦିଯାଇ ରଇତମାନଙ୍କୁ ଶ୍ରେଣୀ ସଂଗ୍ରାମର ତତ୍ତ୍ୱ ବୁଝାଇଥାନ୍ତି, ସେମାନଙ୍କ ବଞ୍ଚିବାର ନଗଦ ସମସ୍ୟାଗୁଡ଼ିକୁ ବୁଝି ସେଗୁଡ଼ିକ ଲାଗି କିପରି ସଂଗଠନ ଗଢ଼ାଯିବ, କିପରି ସଂଗ୍ରାମ କରାଯିବ ତାହାର ପୁନାଦି ପକାଉଥାନ୍ତି । ଗଞ୍ଜାମ ଜିଲ୍ଲାର ଦୁର୍ଭିକ୍ଷ ପ୍ରପୀଡ଼ିତ ଆର୍ତ୍ତ ଜନସାଧାରଣଙ୍କୁ ରକ୍ଷା କରିବାକୁ ଯାଇ ଭଗବତୀ ପାଣିଗ୍ରାହୀଙ୍କ ଅକାଳ ମୃତ୍ୟୁବରଣ, ଗୋବିନ୍ଦବାବୁ ଏବଂ ଗଞ୍ଜାମର ଅନ୍ୟ ସବୁ ସାଥୀଙ୍କୁ ନୂତନ କର୍ତ୍ତବ୍ୟ ପାଳନ ଲାଗି ଅନୁପ୍ରେରଣା ଦେଇଥାଏ । ଗୋବିନ୍ଦବାବୁ ବିଚାରି ଥିଲେ ସେ କଂଗ୍ରେସର ନେତା ପୁଣି ରଇତ ଆନ୍ଦୋଳନର ନେତା । ବିନା ବାଧା ବିଘ୍ନରେ ସେ ଗଞ୍ଜାମର ରଇତମାନଙ୍କ ଆନ୍ଦୋଳନକୁ ଚଳାଇ ସିସ୍ତାବାଟ କରେଇ ପାରିବେ, ନଗଦ ସିସ୍ତା ଧାର୍ଯ୍ୟ କରେଇ ପାରିବେ । ହେଟା ଖେଟା ବଅର ଜମିରେ ଚାଷୀଙ୍କୁ ଦଖଲ ଦିଆଇ ପାରିବେ । ବର୍ବର ମୁସ୍ତାଦରୀ ପ୍ରଥା ଲୋପ କରାଇ ପାରିବେ । ଇନାମଦାରୀ ପ୍ରଥା ମଧ୍ୟ ଲୋପ କରେଇଦେବେ ।

ମାତ୍ର ତା' ନ ହେବାର କଥା ନୋହିଲା ମଧ୍ୟ । ଗୋବିନ୍ଦ ବାବୁଙ୍କୁ ଜଣା ନ ଥିଲା ଯେ ଯେଉଁ କଂଗ୍ରେସ ପାଇଁ ସେ ରାଜକୀୟ ପରିବେଶର କାକରଡ଼ା ମୁସ୍ତାଦାରୀ ଉଆସର ଭୋଗ ବିଳାସକୁ ବିସର୍ଜନ ଦେଇଛନ୍ତି, ସେହି ମୁସ୍ତାଦାରୀ- ଜମିଦାରୀ ଶୋଷଣ ବିରୁଦ୍ଧରେ ସେ ସଂଗ୍ରାମ କଲେ ସେହି କଂଗ୍ରେସ ସରକାର ତାଙ୍କୁ ଓ ତାଙ୍କର ଶହଶହ ସାଥୀଙ୍କୁ ଜେଲ ନେବେ । ଗାଁ'କୁ ଗାଁ ବ୍ରିଟିଶ ସନ୍ତ୍ରାସ ନୁହେଁ, କଂଗ୍ରେସ ଅଞ୍ଚଳର, ଗାନ୍ଧିଜୀଙ୍କ ଅହିଂସା ଜପୁଥିବା ଶାସନ ଗୋଷ୍ଠୀଙ୍କର ସନ୍ତ୍ରାସ ବ୍ୟାପିବ । କଂଗ୍ରେସ ଗୁଳିରେ କାକରଡ଼ାର ମାଟି ରକ୍ତ ରଞ୍ଜିତ ହେବ । ଆଉ ଗୋବିନ୍ଦ ପ୍ରଧାନ ଗଞ୍ଜାମର ୧୩ଟି ଜମିଦାରୀ ପ୍ରଜାଙ୍କର ରଇତୱାରି ଅଞ୍ଚଳ ପ୍ରଜାମାନଙ୍କର ଆଖିର ପିତୁଳା ହେବେ । ତାଙ୍କ ଗୋପନ ଜୀବନର ଗାଥା ଗାଁଏ ଗାଏଁ ବ୍ୟାପିବ । ଶେରଗଡ଼, ଧରାକୋଟ, ବଡ଼ଗଡ଼, ଚିକିଟି, ବଡ଼ଖେମଣ୍ଡି ଆଉ ସାନଖେମଣ୍ଡି ପ୍ରଭୃତି ଅଞ୍ଚଳର ପ୍ରତ୍ୟେକ ଗାଁ'ରେ ଗୋବିନ୍ଦବାବୁଙ୍କୁ ଗୋପନ ଆଶ୍ରୟ ଦେବାକୁ ସାରା ଗାଁ'ଟି ଦୁର୍ଗରେ ପରିଣତ ହୋଇଯିବ । କଂଗ୍ରେସ ପୁଲିସ ଗୋଟି ଗୋଟି ଗାଁ'କୁ ଘେରାଉ କରି ଶହ ଶହ ଲୋକଙ୍କୁ ଗିରଫ କଲେ ବି ଗୋବିନ୍ଦବାବୁଙ୍କୁ ଛୁଇଁପାରିବ ନାହିଁ । ଆଉ ଗାଁ'ବାଲା ଦୁର୍ଗ କରି ତାଙ୍କୁ ପୁଲିସ ହାତରୁ ରକ୍ଷା କରି ପୁଣି ନିକଟ ଗାଁ'କୁ ପଠାଇଦେବେ ।

ଏମିତି ଏକ ନେତା । ପୁଲିସ ଗୋଡ଼ାଉଛି- ସେ ଗୋପନରେ ରହି ପ୍ରତିଶ୍ରୁତିଭଙ୍ଗ କଂଗ୍ରେସର ଜମିଦାର- ମହାଜନ ପୋଷା ଶାସନର ବିରୋଧ କରୁଛନ୍ତି ।

ଅଥଚ ଗୋବିନ୍ଦ ପ୍ରଧାନ ଆଜି ନରେନ୍ଦ୍ରପୁରର ହେଉ ଅବା ରାମଚନ୍ଦ୍ରପୁର ହେଉ, ବ୍ରାହ୍ମଣ ହେଉ ଅବା ଦ୍ୱିତୀୟ ଧର୍ମାଚାର ହେଉ ଏମିତି ଶହଶହ ଗାଁ'ରେ ପହଞ୍ଚିବା ମାତ୍ରେ ଘରୁ ଘରୁ ଭୁଆସୁଣୀମାନେ ହୁଳହୁଳି ଦେଇ ଚନ୍ଦନ ଲେପି ପ୍ରାଣର ନେତାଙ୍କୁ ସମ୍ବର୍ଦ୍ଧନା ଜଣେଇବେ । ଘର ଦାଣ୍ଡ ଯାକ ପୂର୍ଣ୍ଣକୁମ୍ଭ । ଏଣେ ରଇତମାନଙ୍କର, ପୁରୁଷ ଯୁବା ବୃଦ୍ଧ ସମସ୍ତଙ୍କର ରଇତ ସଭା ଜିନ୍ଦାବାଦ- ଗୋବିନ୍ଦ ପ୍ରଧାନ ଜିନ୍ଦାବାଦ- କମ୍ୟୁନିଷ୍ଟ ପାର୍ଟି ଜିନ୍ଦାବାଦର ବଜ୍ର- ଗମ୍ଭୀର ଆହ୍ୱାନ ।

ସାରା ଗଞ୍ଜାମରେ ଯେପରି ବିଦ୍ୟୁତ୍ ଚମକ । ଗୋବିନ୍ଦ ପ୍ରଧାନ ଆଉ ତାଙ୍କର ସାଥୀ ହରିହର ଦାଶ, ସାଧୁ ଚରଣ, ନାରାୟଣ ମହାପାତ୍ର, ସର୍ଦ୍ଦାର ଦଣ୍ଡପାଣି, କୁର ପାତ୍ର, ଭାଇ ରାଧାକୃଷ୍ଣ- ଏମିତି ଶହଶହ କର୍ମୀ । ତେଣେ ଛାତ୍ର ଜୀବନରୁ ମାର୍କସବାଦ-ଲେନିନବାଦ ପ୍ରତି ଆକୃଷ୍ଟ ନୂତନ ଯୁବ ବିପ୍ଳବୀଗଣ ।

୧୯୪୭ ଅଗଷ୍ଟ ୧୫ ରାତିରେ ୟୁନିଅନ ଜ୍ୟାକ ଯାଇ ଲାଲକିଲାରେ ଜାତୀୟ ପତାକା ଉଡ଼ିଛି । କେନ୍ଦ୍ରରେ ପ୍ରଧାନମନ୍ତ୍ରୀ ପ୍ରଣ୍ଡିତ ନେହେରୁ, ଆଉ ରାଜ୍ୟରେ ମହତାବଙ୍କ ମନ୍ତ୍ରିମଣ୍ଡଳ । ୧୯୪୮ ମଇ ୨୪ ତାରିଖ । ତା' ପୂର୍ବରୁ ମହତାବ ସରକାରଙ୍କ ପୁଲିସ ଶଗେଡ଼, ଧରାକୋଟ, ବଡ଼ଗଡ଼, ପ୍ରଭୃତି ବ୍ୟାପକ ଅଞ୍ଚଳରେ ୧୪୪ ଧାରା ଜାରି କରେଇଥାନ୍ତି । ଗାଁ'କୁ ଗାଁ' ପୁଲିସ ପଲଟନ । ଘରେ ଘରେ ପଶି ଖାନତଲାସି । ଝିଅ ବୋହୂଙ୍କୁ ଛାଡ଼ ନାହିଁ । ମୁସ୍ତାଦାରୀ ପ୍ରଥା ବିରୋଧୀ ସଂଗ୍ରାମର ଇତିହାସ ଏଠି ବର୍ଣ୍ଣନା କରିବା ଅସମ୍ଭବ । ଆଉ ଗୋବିନ୍ଦ ପ୍ରଧାନର ସେ ସମୟର ବୈପ୍ଳବିକ କାର୍ଯ୍ୟର ଗୋପନ ଜୀବନର ଦିନ ଦିନକର ଜୀବନ ରୋମାଞ୍ଚକର । ଆଜିର ପ୍ରତ୍ୟେକ ନୂଆ କମ୍ୟୁନିଷ୍ଟ ସେ ଆନ୍ଦୋଳନର ଇତିହାସ ପଢ଼ି ବୈପ୍ଳବିକ ଉଦ୍ଦୀପନାରେ ଉଦ୍ଦୀପିତ ହେବେ । ଗଞ୍ଜାମରେ ରକ୍ତ ପ୍ରଭାତ ପୁସ୍ତକ ଯାହାକୁ କଂଗ୍ରେସ ସରକାର ବେଆଇନ କରିଥିଲେ । ସେଥିରେ ଉକ୍ତ ସମୟର ଉଦ୍ଦୀପନାମୟ ଆନ୍ଦୋଳନର କିଛି ଆଭାସ ମିଳିବ ।

କଂଗ୍ରେସ ଶାସନର, ମହତାବଜୀଙ୍କ ମନ୍ତ୍ରିମଣ୍ଡଳର ସଂକଳ୍ପ ଗୋବିନ୍ଦ ପ୍ରଧାନ ଆଉ ରଇତସଭା ତଥା ଗଞ୍ଜାମରେ କମ୍ୟୁନିଷ୍ଟ ପାର୍ଟିକୁ ନିପାତ କରିଦେବେ । ଜମିଦାରମାନଙ୍କ ସ୍ୱାର୍ଥରକ୍ଷା ହେବ । ମବୁସ୍ତାଦାର ଇନାମଦାରମାନଙ୍କୁ ସୁଯୋଗରୁ ବଞ୍ଚିତ କରାଯିବ ନାହିଁ ।

ସେହି ସକାଶେ ଖୋଦ ଗୋବିନ୍ଦ ପ୍ରଧାନଙ୍କ ଗାଁ' କାକରଡ଼ାକୁ ମଇ ୨୪ରେ ଘେରାଉ । ଗୁଡୁମ ଗୁଡୁମ ଗୁଳିର ଆବାଜ । ୧୨ ବର୍ଷର ବାଳୁତ ଝିଅ ହେମ, ରାହାସ, ବାଉରାଣୀ, ବାସୁ ଡାକୁଆର ବୁଢ଼ୀମା, ଗୁରା କେଉଟର ପତ୍ନୀ, ୩ ଜଣ ମହିଳା ଓ ବାପପୁଅ ଅର୍ଜୁନ ବରାଡ଼ ଓ

ବାଉରି ବରାଡଙ୍କୁ ହତ୍ୟା- ବହୁ ଆହତ । ଶହ ଶହଙ୍କୁ ବାନ୍ଧି ନିଆଗଲା । ଗୋବିନ୍ଦ ପ୍ରଧାନଙ୍କ ବୁଢ଼ୀମାଙ୍କୁ ମଧ୍ୟ ମାଡ଼ । ତାଙ୍କ ଘର ଭିତରେ ପୁଲିସଙ୍କ ତାଣ୍ଡବ ।

ପୁଣି କଂଗ୍ରେସ ଜେଲରେ ଦୁଇ ବର୍ଷ କାଳ କାରାବାସ ଅନ୍ୟସବୁ ପ୍ରଦୀପ ଓ ନବୀନ ସାଥୀଙ୍କ ସହଯୋଗରେ ।

ଯେଉଁମାନେ ସ୍ୱାଧୀନତା ସଂଗ୍ରାମରେ ଦେଶ ମାତୃକାର ସାମ୍ରାଜ୍ୟବାଦ କବଳରୁ ମୁକ୍ତି ପାଇଁ ଅଶେଷ ନିର୍ଯ୍ୟାତନା, ତୁହାକୁ ତୁହା କାରାଦଣ୍ଡ ଭୋଗିଥିଲେ, ସେମାନଙ୍କ ମଧ୍ୟରୁ ପୁଞ୍ଜିବାଦ ଓ ସମାନ୍ତବାଦ ବିରୁଦ୍ଧରେ ଗଲେ, ବୈଜ୍ଞାନିକ ସମାଜବାଦକୁ ଆଶ୍ରା କଲେ ଅବଶ୍ୟ ଦାଲଦା ସମାଜବାଦ ନୁହେଁ ସେମାନଙ୍କୁ କଂଗ୍ରେସ ଜେଲ୍‌ରେ, କଂଗ୍ରେସ ନଳୀରେ, କଂଗ୍ରେସ ଫାସିଖୁଣ୍ଟରେ ଝୁଲିବାକୁ ପଡ଼ିଲା । ଏହି ମତାଦର୍ଶକୁ ଗ୍ରହଣ କଲେ ସେମାନଙ୍କୁ ଛାଡ଼ନ୍ତା କ'ଣ ପୁଞ୍ଜିବାଦ ଓ ତା'ର ସ୍ୱାର୍ଥରକ୍ଷାକାରୀ ଶାସକ ଦଳ, ଶାସକଦଳ ଯେତେ ଭେକ ବଦଳାଉ ପଛକେ ।

କଂଗ୍ରେସ ନେତା, ଜମିଦାରୀ ରଇତ ସଭାର ନେତା କମ୍ରେଡ଼ ଗୋବିନ୍ଦ ପ୍ରଧାନ ହେଲେ କମ୍ୟୁନିଷ୍ଟ ପାର୍ଟିର ନେତା । ବିପ୍ଳବୀ ଗଞ୍ଜାମ ରଇତ ସଭାର ଅଦ୍ୱିତୀୟ ନେତା । ଚାଷୀର ଜପାମାଳି । ସେହି ସଂଗ୍ରାମୀ ଗଞ୍ଜାମ ଚାଷୀ ଗୋବିନ୍ଦ ବାବୁଙ୍କୁ ଦୁଇ ଦୁଇ ଥର ତାଙ୍କର ମୁଖପାତ୍ର ରୂପେ ବିଧାନସଭାକୁ ପଠାଇଲେ । ସେ ହୋଇଥିଲେ ଏକଦା ୭ ଜଣିଆ କମ୍ୟୁନିଷ୍ଟ ବିଧାୟକ ଦଳର ନେତା । ଗୋବିନ୍ଦବାବୁ ଓ ତାଙ୍କର ସେ ବେଳର ସହଯୋଦ୍ଧା ଓ ସହଯୋଗୀ ଗଢ଼ିଥିବା ଆନ୍ଦୋଳନ ଜନ୍ମ ଦେଲା ସଂଗ୍ରାମର ବଳିଷ୍ଠ କମ୍ୟୁନିଷ୍ଟ ପାର୍ଟିକୁ ।



# ଭୁଲି ନାହୁଁ – ଭୁଲିବୁ ନାହିଁ

ସେମାନେ ଆମେର ଏଇ ବିରାଟ ପରିବାରର । ଏ ପରିବାର ଅକ୍ଷୟ, ଅମର, ଏ ପରିବାରର ଲକ୍ଷ୍ୟ, ଆଦର୍ଶ ଆଉ ସେହି ଲକ୍ଷ୍ୟ ଓ ଆଦର୍ଶ ଲାଗି ଏ ପରିବାରଟିର ସଂଗ୍ରାମ ଅବିଚଳ, ଅବିଛିନ୍ନ, ଅବ୍ୟାହତ ଆଉ ଲକ୍ଷ୍ୟ ଓ ଆଦର୍ଶର ରୂପାୟନ ଶତ ବାଧାବିଘ୍ନ, ଭୁଲଭ୍ରାନ୍ତି ବିରୋଧ– ପ୍ରତିରୋଧର ହିମାଳୟ ଚୂଡ଼ା ଲଙ୍ଘି ଅନିବାର୍ଯ୍ୟ, ଅବଧାରିତ; ସୂର୍ଯ୍ୟୋଦୟ ପୂର୍ବରେ ଆଉ ସୂର୍ଯ୍ୟାସ୍ତ ପଶ୍ଚିମରେ ଯେପରି ପ୍ରାକୃତିକ ସତ୍ୟ ।

ସମାଜ ବିକାଶର ଏଇ ବିଜ୍ଞାନସିଦ୍ଧ ବିଶ୍ୱ ଦୃଷ୍ଟିକୋଣ ଗ୍ରହଣ କରି ସେମାନେ ଆମରି ପରିବାରଭୁକ୍ତ ହୋଇଥିଲେ । ପୁରି ଏଇ ପରିବାରର ସତ୍ତା ଯେପରି ଜାତୀୟ, ସେହିପରି ମଧ୍ୟ ଅନ୍ତର୍ଜାତୀୟ । ଏଇ ପରିବାରର ଲୋକେ ପଞ୍ଚ ମହାଦେଶର କୋଣେ ଅନୁକୋଣେ ବିଛୁରିତ । ଏମାନେ କେହି କେହି ସ୍ୱଦେଶରେ ଆମରି ଲକ୍ଷ୍ୟ ଓ ଆଦର୍ଶକୁ ରୂପାୟନ କରି ବୈଜ୍ଞାନିକ ତତ୍ତ୍ୱକୁ କାର୍ଯ୍ୟରେ ପରିଣତ କରି ତତ୍ତ୍ୱକୁ ଆହୁରି ସମୃଦ୍ଧ, ଶକ୍ତିଶାଳୀ, ଅପରାଜେୟ ପ୍ରମାଣ କରି ସାରିଛନ୍ତି । ସହସ୍ର ସହସ୍ର ସଂଖ୍ୟାରେ ଆତ୍ମବଳି ଦେଇ, ଗୁଳି ଫାସି ଦମନ ଅତ୍ୟାଚାରକୁ ଭ୍ରୂକ୍ଷେପ ନ କରି ।

ହଁ, ଆମ ଓଡ଼ିଶା ଭୂଇଁରେ ଆମ ପରିବାର, ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସେମାନେ । ସେମାନଙ୍କ ସକାଶେ ଆମେ । ଆମ ସକାଶେ ସେମାନେ । ଆମେ ସମସ୍ତେ ପୁଣି ଆମ ବିରାଟ ପରିବାରରେ ଏକ, ଏକାକାର । ସେ ପିରବାର କୋଟି ଖଟିଖିଆଙ୍କର । ଆମ ଅନ୍ଧାର ଘେରା ଖଣି ଖାଦାନର । କଳାକିଟିମିଟି ଧୂଆଁ, ନିଆଁ, ନିଆଁଝୁଲ ପରିବେଷ୍ଟିତ କଳକାରଖାନାର, ଆଉ ପାଣିପଙ୍କ କାଦୁଅ ଚକଟା ବିଲ-ପଦରର, ରାସ୍ତା-କୋଡ଼ାବାଡ଼ି-ପ୍ରକଳ୍ପ ନିର୍ମାଣ ସ୍ଥଳୀର ଖରାଶୀତ କାକରରେ ଆଉଟୁପାଉଟୁ ଶ୍ରମିକ-କାରିଗର-ମୂଲିଆ-ମହାକାଳିଆ ଆଉ କିରାନୀ କର୍ମଚାରୀଙ୍କର ।

ଏହି ବିଶାଳ ପରିବାରର ମୁକ୍ତି, ଶୋଷଣ ଅତ୍ୟାଚାରର ଦମନ, ଅଭାବ ଅନାଟନରୁ ମୁକ୍ତି । ଏହି ଲକ୍ଷ୍ୟ ଆଦର୍ଶରେ ଅନୁପ୍ରାଣିତ ହୋଇ ସେମାନେ ଆଗେଇ ଆସିଥିଲେ । ଆମ ସାଙ୍ଗରେ ସେମାନେ ନାହାନ୍ତି ସଶରୀରେ ସତ; ମାତ୍ର ଆମ ପାଇଁ, ଆମ ଭବିଷ୍ୟତ ପାଇଁ ସେମାନଙ୍କ ସେକାଳର ତ୍ୟାଗ, ଆଦର୍ଶ, କର୍ମନିଷ୍ଠା ଭୁଲିବାର ନୁହଁ । ଭୁଲିନାହୁଁ ଭୁଲିବୁ ନାହିଁ ।

ଏହି ପରିବାରଟିକୁ ଓଡ଼ିଶାରେ ପ୍ରଥମେ ଜୀବନ୍ୟାସ ଦେଇଥିବା ଭଗବତୀ ଚରଣ ପାଣିଗ୍ରାହୀ, ପ୍ରାଣନାଥ ପଟ୍ଟନାୟକ ତିନିଜଣଙ୍କ ଭିତରୁ ଏ ଦୁଇ ଜଣ ଆମକୁ ଛାଡ଼ି ଯାଇଛନ୍ତି । ଜଣେ ୧୯୪୩ ଆଉ ଜଣେ ୧୯୬୫ରେ । ଆଉ ପୁଣି ଛାଡ଼ି ଗଲେ ସାଧୁଚରଣ ମହାନ୍ତି, ଆଉ ୧୯୮୦ରେ ଗୋବିନ୍ଦ ପ୍ରଧାନ ପୁଣି କୃପାସିନ୍ଧୁ ଖୁଣ୍ଟିଆ ।

୧୯୩୬-୩୭ ପାଞ୍ଚ ସାତ ଜଣ । ଆଜି ଆମେ ହଜାର ହଜାର । ସେଦିନର କେଉଁ ଅନ୍ଧାରିଆ ଗୋପନ ଘରର ବୈଠକ । ଆଜି ଆମେ ଓଡ଼ିଶାର ସବୁ ଜିଲ୍ଲାରେ, ଗଣ୍ଡା ଗଣ୍ଡା ସହରରେ, କେତେ ଶିଳ୍ପାଞ୍ଚଳ, ଖଣିଖାଦାନରେ । ହଜାର ହଜାର ଗାଁରେ, ଅଫିସ ଆଉ ଦୋକାନ ବଜାରରେ ପରିଚିତ । ସେମାନଙ୍କୁ ବଞ୍ଚିବାର, ଗଣତାନ୍ତ୍ରିକ ଅଧିକାର ଅର୍ଜନ ଓ ସୁରକ୍ଷାର ସଂଗ୍ରାମର ପୁରୋଭାଗରେ ।

ବାହାରୁ, ଆମ ଲୋକଙ୍କ ଶତ୍ରୁ ଦେଶୀ-ବିଦେଶୀଙ୍କ ଠାରୁ, କେତେ ଧିକ୍କାର, କୁତ୍ସା, ମାଡ଼ଗାଳି ଆଉ ବ୍ରିଟିଶ ଶାସନର ଆଉ ସ୍ୱାଧୀନତା ପରବର୍ତ୍ତି କାଳରେ ଦେଶରେ ପ୍ରତିଷ୍ଠିତ ପୁଞ୍ଜିବାଦୀ କଂଗ୍ରେସର ରାଜୁତିର ନିର୍ଯ୍ୟାତନା, ଗୁଳି, ଲାଠି ସହ୍ୟ କରି ଯେଉଁମାନେ ଆମ ଏଇ ପାର୍ଟିକୁ ଗଢ଼ିବା ପାଇଁ ଅବଦାନ ଦେଇଛନ୍ତି, ଯେଉଁମାନେ ଆମ ଆଦର୍ଶ ବୈଜ୍ଞାନିକ ସମାଜବାଦର ବାର୍ତ୍ତା ସେ କାଳରେ ଲୋକଙ୍କ ପାଖରେ ପହଞ୍ଚାଇଛନ୍ତି, ଯେଉଁମାନେ ସେହି ଆଦ୍ୟ କାଳରେ ଶ୍ରମିକ ସଂଗଠନ, କୃଷକ ସଂଗଠନ, ଛାତ୍ର ସଂଗଠନ ଗଢ଼ିଛନ୍ତି ପାର୍ଟି ଗଠନରେ ବ୍ରତୀ ହୋଇଛନ୍ତି, ଆମେ ସମସ୍ତେ ସେମାନଙ୍କ ଦାୟାଦ । ସେମାନଙ୍କ ପାଖରେ ଋଣୀ ।

ଭଗବତୀ ସ୍ମୃତିବାର୍ଷିକୀରେ ତାଙ୍କ ପରେ ଯେଉଁମାନେ ଏହି ଆଦର୍ଶ ବହନ କରି, ସଂଗ୍ରାମ କରି, କେତେ ଦୁଃଖ କଷଣ ନିର୍ଯ୍ୟାତନା ଭୋଗି ଛାଡ଼ିଯାଇଛନ୍ତି ସେମାନେ ସ୍ମରଣ କରିବା ଓ ଆମର ଏବେ ବି ସଂଗ୍ରାମରତ ସାଥୀ ଓ ମେହନତୀ ଜନସାଧାରଣଙ୍କ ପାଖରେ ସେମାନଙ୍କୁ ପୁନର୍ବାର ପରିଚିତ କରାଇବା ଉଚିତ ବିଚାରକୁ । ଏହି କ୍ଷୁଦ୍ର ଲେଖାଟି ସେଥିଲାଗି ଉଦ୍ଦିଷ୍ଟ ।

ସ୍ୱାକ୍ଷୀନତା ସଂଗ୍ରାମ ଚାଲିଥାଏ । ସେହି ଆନ୍ଦୋଳନ ଭିତରେ ଜନ୍ମ ନିଏ କମ୍ୟୁନିଷ୍ଟ ଆନ୍ଦୋଳନ । ପରାଧୀନତାରୁ ଦେଶର ମୁକ୍ତି, ତା' ସାଙ୍ଗକୁ କାଳକାଳ ଶୋଷଣରୁ ମାନବର ମୁକ୍ତି । କାଳକାଳ ଲାଗି ସମ୍ପଦର ମାଲିକ ଶ୍ରେଣୀ ଆଉ ସମ୍ପଦ ସୃଷ୍ଟି କରୁଥିବା ଶ୍ରେଣୀ ମଧ୍ୟରେ ଚାଲିଆସିଥିବା ଶତାବ୍ଦୀ ଶତାବ୍ଦୀ କାଳ ଶ୍ରେଣୀ ସଂଗ୍ରାମର ଅବସାନ । ଶ୍ରେଣୀ ବିହୀନ, ଶୋଷଣ ରହିତ ସମାଜବାଦୀ ସାମ୍ୟବାଦୀ- ସମାଜର ଲକ୍ଷ୍ୟ ଓ ସେଥିପାଇଁ ସଂଗ୍ରାମ ।

ଆଜିର ବଂଶଧର ସେକାଳର କଥା ଅଙ୍ଗେ ନିଭେଇ ନ ଥିବାରୁ କଳ୍ପନାରେ ଯାହା ଅନୁଭବ କରିବେ ସିନା ।

ତେଣୁ ସେକାଳରେ ଅନେକ ଆମ ସାଙ୍ଗକୁ ଆସି ଆମ ପାଇଁ ଏଇ ପାର୍ଟି ଗଢ଼ିବାରେ, ଆମ ପରିବାରଟିକୁ ଗଢ଼ିବାରେ ଯେଉଁ ଅବଦାନ ଦେଇଛନ୍ତି, ସେତକ ସେମାନଙ୍କର ମହାମୂଲ୍ୟ ଅବଦାନ ।

ଯେତିକି ସ୍ମରଣରେ ଅଛି । ସେମାନଙ୍କର ଅବଦାନ ଟିକିଏ ସ୍ମରଣ କରାଇ ଦେବା ଅଭିପ୍ରାୟ ଘେନି ଲେଖାଟି ଉତ୍ସର୍ଗୀକୃତ ।

କମ୍ରେଡ଼ ଭଗବତୀ ଆଉ ପ୍ରାଣନାଥଙ୍କ ସମ୍ପର୍କରେ ସାଥୀମାନେ ଅବିହିତ । କମ୍ରେଡ଼ ଗୋବିନ୍ଦ ପ୍ରଧାନ ଯେମିତି ଏବେ ବି ଆମ ସଙ୍ଗରେ ଅଛନ୍ତି – କାରଣ ବର୍ଷକ ତଳେ ସେ ଆମକୁ ଛାଡ଼ି ଚାଲିଗଲେ । ତାଙ୍କର ଅମର କୀର୍ତ୍ତି ଗଞ୍ଜାମର ରଇତ ଆନ୍ଦୋଳନ । ମୁସ୍ତାଦାରୀ ପ୍ରଥାର ବିଲୋପ, ସଂଗ୍ରାମର ମହାରଥୀ ।

କମ୍ରେଡ଼ କୃପାସିନ୍ଧୁ ଖୁଣ୍ଟିଆ ଆଉ କଃ ସାଧୁ ଚରଣ ମହାନ୍ତି ଯେମିତି ବିସ୍ମୃତି ନ ହୁଅନ୍ତି ।

ଓଡ଼ିଶାରେ ବୈଜ୍ଞାନିକ ସମାଜବାଦର ବାର୍ତ୍ତାବହ ଯେପରି ଭାରତୀୟ କମ୍ୟୁନିଷ୍ଟ ପାର୍ଟି ସେମିତି ଓଡ଼ିଶାରେ ଶ୍ରମିକ ଶ୍ରେଣୀର ସଚେତନ ସଂଗଠନର ବାର୍ତ୍ତାବହ ଏ ଆଇ ଟି ୟୁ ସି । ସେହି ନିଖିଳ ଭାରତ ଟ୍ରେଡ଼ ୟୁନିଅନ କଂଗ୍ରେସର ଓଡ଼ିଶାରେ ଯେଉଁମାନେ ମୂଳଦୁଆ ପକେଇ ଗଲେ, ତନ୍ମଧ୍ୟରେ କମ୍ରେଡ଼ କୃପାସିନ୍ଧୁ ଖୁଣ୍ଟିଆ ଅଗ୍ରଣୀ । ସମ୍ବଲପୁରର ଓରିଏଣ୍ଟ କାଗଜ କଳ, ରାମପୁର, କୋଲିଆରୀ, ବାରଙ୍ଗ କାଚ କାରଖାନା ଶ୍ରମିକ, ଚୌଦ୍ୱାର ଲୁଗାକଳ ଏମିତି କେତେ ଶ୍ରମିକ ସଂଗଠନରେ ଆଉ ଶ୍ରମିକମାନଙ୍କର ସେକାଳର ଅର୍ଥାତ୍ ୧୯୪୩-୪୪ରୁ ଆରମ୍ଭ କରି ୬ଷ୍ଠ ଦଶକ ଯାଏ ସେ ଥିଲେ ଶ୍ରମିକ ଶ୍ରେଣୀର ଜଣେ ଅନମନୀୟ ଯୋଦ୍ଧା । ସାଥୀ ଖୁଣ୍ଟିଆ ଓଡ଼ିଶାରେ କେବଳ ନୁହେଁ, ସେକାଳର ବଙ୍ଗଳା ଅଧୁନା ପଶ୍ଚିମବଙ୍ଗର ଜଣେ ଅଗ୍ରଣୀ ଟ୍ରେଡ୍ ୟୁନିଅନ ନେତା ରୂପେ ଖ୍ୟାତି ସମ୍ପନ୍ନ । କଟକ ବରୀ ଅଞ୍ଚଳର ଏହି ସ୍ୱାଧୀନତା ସଂଗ୍ରାମୀ ଆଉ ଶ୍ରମିକ ନେତାଙ୍କର ମଟର ସାଇକେଲ ଦୁର୍ଘଟଣାରେ ଆଉ ଶ୍ରମିକ ନେତାଙ୍କର ମଟର ସାଇକେଲ ଦୁର୍ଘଟଣାରେ ସମ୍ବଲପୁରରେ ଦେହାନ୍ତ ଆମ ପକ୍ଷରେ ହୋଇଥିଲା ଏକ ମର୍ମନ୍ତୁଦ ବେଦନାଦାୟକ ଦୁର୍ଘଟଣା ।

କମ୍ରେଡ଼ ସାଧୁଚରଣ ମହାନ୍ତି । ପୁରୀ ଜିଲ୍ଲା ପିପିଲିର ସ୍ୱାଧୀନତା ସଂଗ୍ରାମୀ ସାଧୁବାବୁ । ଓଡ଼ିଶାରେ ଆମର ଅନ୍ୟତମ ଶ୍ରେଣୀ ସଂଗଠନ ଉତ୍କଳ ପ୍ରାଦେଶିକ କୃଷକ ସଭା, ଯାହା ଆଜି ଉତ୍କଳ ରାଜ୍ୟ କୃଷକ ସଭା ନାମରେ ବିଦିତ ତାହାର ଥିଲେ ବହୁକାଳ ଧରି ସମ୍ପାଦକ । ସ୍ୱାଧୀନତା ସଂଗ୍ରାମ ବେଳର କଂଗ୍ରେସ ଭିତରେ ଥାଇ ଓ ସ୍ୱାଧୀନତା ସଂଗ୍ରାମ ବେଳର କଂଗ୍ରେସ ଭିତରେ ଥାଇ ଓ ସ୍ୱାଧୀନୋତ୍ତର କାଳରେ କଂଗ୍ରେସରୁ ଅଲଗା ହୋଇ ସେ ପ୍ରକୃତରେ ଥିଲେ ଏକ ଅନୁଷ୍ଠାନ । ଗଞ୍ଜାମର ବିଭିନ୍ନ ଅଞ୍ଚଳଗୁଡ଼ିକରେ ସେ ଥିଲେ ଗାଁ' ଗାଁ'ରେ ପରିଚିତ କୃଷକ ନେତା । ଗୋଟାଏ ବସ୍ତାନିରେ କୃଷକ ସଭାର କାଗଜ ବିଡ଼ା । ସାଥୀ ସାଧୁଚରଣଙ୍କ ପାଖରେ ପଇସା ନ ଥାଏ କି ରହେନି । ବିଡ଼ି ଖଣ୍ଡିଏ ଦରପୋଡ଼ା ହୋଇ ସତର ଥର ନିଆଁ ଧରିବ । ଆଜି ଗଞ୍ଜାମ, କାଲି ସମ୍ବଲପୁର- ଅମୁକ ଦିନ ମିରଠ, ସମୁକ ଦିନ ବିଜୟଓ୍ୱାଡ଼ାରେ କୃଷକ ସଭାର କେନ୍ଦ୍ର ବୈଠକ । ଚାରଣା ପଇସା ଧରି ବାହାରିବେ ସାଧୁବାବୁ- ଷ୍ଟେସନ ପରେ ଷ୍ଟେସନରେ ଓହ୍ଲାଇ ପରିଚିତ ସମର୍ଥକଙ୍କ ଠାରୁ ଚାନ୍ଦା କରି ସେ ବୈଠକରେ ଯୋଗଦେବେ

ଆଉ ଫେରି ଆସିବେ । ବ୍ରହ୍ମପୁର ଜେଲଖାନାରେ ସାଥୀମାନଙ୍କର ସହ ବନ୍ଦୀ । କଂଗ୍ରେସ ମହତାବ ବାବୁଙ୍କ ରାଜୁତି । ଏମିତି କେତେ ଅଭାବ ଅନାଟନ ଦୁଃଖ ନିର୍ଯ୍ୟାତନା ଭୋଗି, କୃଷକ ଆନ୍ଦୋଳନର ସେ ଥିଲେ କର୍ଣ୍ଣଧାର । ମସ୍ତିଷ୍କ ବିକୃତି ଯୋଗୁଁ କିଛିକାଳ ସେ ରାଜନୀତିରୁ ବାଧ୍ୟତାମୂଳକ ଅବସର ନେଇ ଶେଷରେ ଚାଲିଗଲେ ସତ, ମାତ୍ର ରାଜ୍ୟରେ ଯେଉଁମାନେ କୃଷକ ଆନ୍ଦୋଳନ କରୁଛନ୍ତି, ସେମାନେ ତାଙ୍କର ଅବଦାନକୁ ଭୁଲିପାରିବେ ନାହିଁ ।

ଆଉ ଏକ ଅଭୁଲା ସ୍ମୃତି ସାଥୀ ବିଶ୍ୱନାଥ ପଶାଏତଃ କଟକ ଜିଲ୍ଲା ଜଗତ୍‌ସିଂହପୁର-ରାଣୀପଡାର କଃ ବିଶ୍ୱନାଥ । ଓଡ଼ିଶାରେ ଅ.ଭା.ଛାତ୍ର ସଂଘ ଶାଖାର ଅନ୍ୟତମ ପ୍ରତିଷ୍ଠାତା ସଦସ୍ୟ ଏବଂ ପ୍ରଥମ ରାଜ୍ୟ ସାଧାରଣ ସମ୍ପାଦକ । ଆଇନଜୀବୀ ସେ ଥିଲେ ଗରିବ ସଂଗ୍ରାମୀ ଚାଷୀ ମୂଲିଆଙ୍କ ଓକିଲ । ସରକାର ଦ୍ୱାରା ନିଗୃହୀତ କମ୍ୟୁନିଷ୍ଟମାନଙ୍କର ଓକିଲ । ହାତରୁ ପଇସା ଖର୍ଚ୍ଚ କରି କୋର୍ଟ ଫି ଲଗେଇ । ବେଳେବେଳେ ଏପରି ସାଥୀଙ୍କ ରାସ୍ତା ଖର୍ଚ୍ଚ ଦେଇ ସେମାନଙ୍କ ପାଇଁ ଆଇନ ଅଦାଲତରେ ଲଢ଼ିବାର ଓକିଲ । ଆଇନଜୀବୀ ମହଲରେ, ବିଚାରକମାନଙ୍କ ଦ୍ୱାରା ସମ୍ମାନିତ ସାଥୀ ପଶାଏତ୍ ଅକାଳରେ ଦୁରାରୋଗରେ ଯକ୍ଷ୍ମା, ସେଥିରୁ ଆରୋଗ୍ୟ ଲାଗ କରିଲେ ହେଁ ଡାଏବିଟିସ୍ ତତ୍‌ଜନିତ ଦୃଷ୍ଟିଶକ୍ତି ଲୋପ ବେଳେ ଶେଷ ନିଶ୍ୱାସ ଛାଡ଼ିଲେ । ପାର୍ଟି ଓ ଆମ ପରିବାରର ଆଇନ ଜୀବୀଙ୍କ ଆଗରେ ଏକ ପରମ୍ପରା ରଖିଗଲା ।

ଅତୀତର ଏହି ମର୍ମନ୍ତୁଦ ସ୍ମୃତିଚାରଣ କଲାବେଳେ ଗଞ୍ଜାମରୁ ସମ୍ବଲପୁର, ପୁରୀ, କଟକ, ବାଲେଶ୍ୱର, ମୟୂରଭଞ୍ଜ, ଢେଙ୍କାନାଳର ଅନେକ ସାଥୀଙ୍କ କଥା ମନେପଡେ । ସେମାନେ ଜୀବନର ବହୁ ପ୍ରଲୋଭନ, ଶାସକ ଶ୍ରେଣୀର ବହୁ ନିର୍ଯ୍ୟାତନା, ଦୁଃଖକଷ୍ଟ ସହି ଏହି ପାର୍ଟିକୁ ଆଗେଇ ନେଇଛନ୍ତି ।

ଗଞ୍ଜାମର ପାରଳାଖେମଣ୍ଡି । ଆନ୍ଧ୍ର ପାର୍ଟିର ପ୍ରଭାବରେ ସେଠାରେ ପ୍ରଥମ କମ୍ୟୁନିଷ୍ଟ ଆନ୍ଦୋଳନ । ସତ– ମାତ୍ର ଓଡ଼ିଶା ପାର୍ଟିର ପ୍ରଭାବରେ ମଧ୍ୟ କମ ନୁହଁ । ଉପାନ୍ତ ଅଞ୍ଚଳ । ସେଠାରେ ସେ କାଳରେ ଯେଉଁମାନେ କମ୍ୟୁନିଷ୍ଟ ଆଦର୍ଶକୁ ଓଡ଼ିଆ, ତେଲଗୁ ଓ ଆଦିବାସୀ ସଉରା- ହରିଜନମାନଙ୍କ ମଧ୍ୟରେ ପ୍ରବେଶ କରାଇଥିଲେ ଓ ଆଜି ଆଉ ନାହାନ୍ତି ସେମାନେ ହେଲେ ସାଥୀ ନାରାୟଣ ପାଣି, ଅପନ୍ନା ପାତ୍ର, ଜଗନ୍ନାଥ ମିଶ୍ର । ସାଥୀ ପାଣି ଆନ୍ଧ୍ର ଶିକ୍ଷା ବିଭାଗର ଜଣେ ପଦସ୍ଥ କର୍ମଚାରୀ । ଜିଲ୍ଲା ଇନ୍‌ସପେକ୍ଟର । କଃ ଜଗନ୍ନାଥ ମିଶ୍ର ଜଣେ ନିରଳସ, ଅଟୋପବିହୀନ ଚାଷୀ ନେତା । ପାଦରେ ନ ଥାଏ ଚଟି । ଛିଣ୍ଡା ଧୋତି କାମିଜ । ମାତ୍ର ୩ ଶହ ଟଙ୍କାରେ କଂଗ୍ରେସୀ ଜେଲଖାନାରୁ ସଦ୍ୟମୁକ୍ତ ହୋଇ ସେ ବିଧାନସଭାକୁ ସିପିଆଇ ପ୍ରାର୍ଥୀ ରୂପେ ନିର୍ବାଚିତ ହୋଇଥିଲେ । ଗାଡ଼ି ନାହିଁ ସାଇକେଲଟିଏ ବି ନାହିଁ । ଚାଲି ଚାଲି ସେ ଗାଁ' ଗାଁ'ରେ ପହଞ୍ଚୁଥିଲେ ।

ସାଥୀ ପାଣିଙ୍କର ସମଗ୍ର ପରିବାର କମ୍ୟୁନିଷ୍ଟ ପାର୍ଟିର ଥିଲେ ସାଥୀ ସମର୍ଥନ । ତାଙ୍କ

ଘରଟି ଥିଲା ପାର୍ଟି ଦପ୍ତର । ନ୍ୟସ୍ତସ୍ୱାର୍ଥ, ସରକାର ଓ ଜମିଦାର- ଜମିମାଲିକମାନଙ୍କ କୁସାଭିଯାନ ଏସବୁ ସତ୍ତ୍ୱେ ସେ କାଳରେ ପାର୍ଟି ଓ ତା'ର ଆଦର୍ଶ ପ୍ରତି ଅନୁରକ୍ତ ରହିଥିଲେ ସେ ।

ସାଥୀ ଅପନ୍ନା ପାତ୍ର । ସ୍ୱାଧୀନତା ସଂଗ୍ରାମୀ । ଏକାଧିକବାର ବ୍ରିଟିଶ ଜେଲରେ କାରାବାସ । ପାରଳାଖେମୁଣ୍ଡି ଗୁରାଣ୍ଡି ଗାଁ'ର ସାଥୀ ଅପନ୍ନା ଗଞ୍ଜାମ ରଇତ ସଭାର ସମ୍ପାଦକ ହୋଇ ଛତ୍ରପୁର-ଖଲ୍ଲିକୋଟ ଅଞ୍ଚଳରେ ରଇତମାନଙ୍କୁ ଭାଗଚାଷୀମାନଙ୍କୁ ସଂଗଠିତ କରୁଥିଲେ ।

ମନେପଡ଼ନ୍ତି ଆସିକାର ଯୁବସାଥୀ ଜନାର୍ଦ୍ଦନ ସିଂହ ସ୍ୱାଧୀନତା ସଂଗ୍ରାମୀ ଆଉ କମ୍ୟୁନିଷ୍ଟ । ତାଙ୍କ ସାଙ୍ଗକୁ ଆସିକାର ସାଥୀ ନାରାୟଣ ମହାପାତ୍ର, ଦାମୋଦର ପଲ୍ଲିର ଭରତ ଜେନା; ଚାଙ୍ଗଡ଼ା ପଲ୍ଲି (ଦିଗପହଣ୍ଡିର) ଦେବରାଜ ବିଶୋଇ, ଜରଡ଼ାର କବିରାଜ ଦୀନବନ୍ଧୁ ଆଚାର୍ଯ୍ୟ, ବଡ଼ପାଗିରି ମୋହନ ଭୂୟାଁ, ଲାଲ ସିଂହର ଆନନ୍ଦ ରାଉତ ଆଉ ହରେକୃଷ୍ଣ ମହାନ୍ତି । ଗଞ୍ଜାମ ଜିଲ୍ଲାରେ ରଇତସଭା ନେତୃତ୍ୱରେ ଯେଉଁ ଐତିହାସିକ ମୁସ୍ତାଦାରୀ ପ୍ରଥା ବିରୋଧୀ, ଇନାମଦାରୀ ପ୍ରଥା ବିରୋଧୀ, ନଗଦ ସିସ୍ତଧାର୍ଯ୍ୟ ଆନ୍ଦୋଳନର ଝଡ଼ ବୋହିଥିଲା, ଏମାନେ ସେହିସବୁ ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ । ସେ କାଳରେ ଆସିକା ଶେରଗଡ଼, ବ୍ରହ୍ମପୁର ପ୍ରଭୃତି ସ୍ଥାନରେ ସିପିଆଇ ପକ୍ଷରୁ ଯେଉଁ ବିଶାଳ ସଭା ସମାବେଶ ହେଉଥିଲା, ସେ ସବୁର ସଂଗଠନରେ, ଦମନ କାଳରେ ପାର୍ଟିର ଗୋପନବାସ କାଳରେ, ପୁଲିସ ଚଢ଼ାଉ ବେଳେ ଏମାନଙ୍କର ଅବଦାନ କଦାପି ଭୁଲିବାର ନୁହଁ ।

ନିକଟରେ ଆମକୁ ଛାଡ଼ିଯାଇଥିବା ଦୁଇ ଜଣ ମୁଖ୍ୟ ସାଥୀ ଶାବୁଳିଆ (ରମ୍ଭା)ର କାଳୀଚରଣ ପଣ୍ଡା- ଆଉ ଭଞ୍ଜନଗର (ଘୁମୁସର) ଲାଲଗାଁ, ଲାଲସିଂହର ସାଥୀ ଦିବାକର ରାଉତ ।

କଃ କାଳୀଚରଣ ଗଞ୍ଜାମ ପାର୍ଟିର ଏକ ମେରୁ, ଏକ ଟାଣୁଆ କବାଟ । ପାର୍ଟିର ସହକାରୀ ସମ୍ପାଦକ । ରମ୍ଭାର ପ୍ରିୟତମ ଜନନେତା । ଅନ୍ତରୋଗରେ ତାଙ୍କର ଅକାଳ ମୃତ୍ୟୁ ପାର୍ଟିକୁ ଏକ ବିରାଟ ଆଘାତ । ଆଉ ସାଥୀ ଦିବାକର ରାଉତ, ପାର୍ଟି ରାଜ୍ୟ ପରିଷଦର ସଦସ୍ୟ । କ୍ୟାନସର ତାଙ୍କର କାଳ ହେଲା ।

ଆସିକାର ମୋହନ ନାହାକ ସେ ଯୁଗରେ ଆସିକା ଅଞ୍ଚଳ ଜନ ଆନ୍ଦୋଳନରେ ବିଶେଷ ଭାଗ ନେଇ, ଏକଦା ପାର୍ଟିର ଏମଏଲଏ ହୋଇଥିଲେ ।

କଟକ ଜିଲ୍ଲାର ଯେଉଁ ସାଥୀମାନେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଗଠନରେ ଚାଷୀ, ଶ୍ରମିକ ଖଟିଖିଆଙ୍କ ସଂଗ୍ରାମରେ ଅଗ୍ରଣୀ ଭୂମିକା ନେଇ ଆମ୍ଭମାନଙ୍କ ପରିବାରକୁ ବଳିଷ୍ଠ କରିଥିଲେ ଏବଂ ଆଜି ଆଉ ନାହାନ୍ତି ସେମାନଙ୍କୁ ସ୍ମରଣ କଲେ ପ୍ରଥମେ ଦୃଷ୍ଟି ପଡ଼େ ଲାଲଗାଁ ଶଙ୍କରପୁର ଆଉ ପଟିଆ ଜିଲ୍ଲା ଉପରେ । କଟକ ନଗରର ଶଙ୍କରପୁର । ୧୯୪୬ ମସିହାର ଅନାହାର ଦୁର୍ଭିକ୍ଷ । ତା'ରି ବିରୁଦ୍ଧରେ ସଂଗ୍ରାମର ଡାକରା ଦିଏ କ୍ଷୁଦ୍ର କମ୍ୟୁନିଷ୍ଟ ପାର୍ଟି । କଟକରେ କଂଗ୍ରେସର ଅଖଣ୍ଡ

ପ୍ରତିପତ୍ତି । କମ୍ୟୁନିଷ୍ଟମାନଙ୍କ ଘରଭଡ଼ା ଦିଅ ନାହିଁ, ଯେଉଁଠି ଦେଖୁଛ ପିଟ । ଆସିଲା କଂଗ୍ରେସ ଶାସନ । ଶଙ୍କରପୁର, ବଳଭଦ୍ରପୁର, ଗାଁ' ହେଲା ପାର୍ଟିର ଦୁର୍ଗ । ସେହି ଗ୍ରାମର ସକଳ ନରନାରୀ ପାର୍ଟିକୁ ନିଜର ପାର୍ଟି କରିନେଇଥାନ୍ତି । ସେହି ଗାଁ'ର ସଂଗଠନ ହିଁ ଓଡ଼ିଶାର ପାର୍ଟିକୁ ବଞ୍ଚେଇବାରେ ଏକ ବିଶିଷ୍ଟ ଭୂମିକା ନେଇଥାଏ । ୧୯୪୬ର ନିର୍ବାଚନ- ବୈଦ୍ୟନାଥ ରଥ ପାର୍ଟିର ଏକମାତ୍ର ଶ୍ରମିକ ଆସ୍ଥାନରୁ ପ୍ରାର୍ଥୀ । କଂଗ୍ରେସର ଗୁଣ୍ଡାବାହିନୀ କନିକାରଜା- ଆଉ ବାରଙ୍ଗ ଝୁନ୍‌ଝୁନ୍‌ୱାଲାର ଦଳ । ଶହ ଶହ ଲାଠି ଧରି ଏଇ ଶଙ୍କରପୁରର ଯୁବକମାନେ ଜଗି ରହିଲେ ଆକ୍ରମଣ କାରୀମାନଙ୍କୁ । କଂଗ୍ରେସର ଦର୍ପଚୁନା । ବାରଙ୍ଗ ଶ୍ରମିକ, ପ୍ରେସ୍ ଶ୍ରମିକ ନିର୍ବିଘ୍ନରେ ଭୋଟ ଦେଲେ ନାଲି ବାକ୍‌ସକୁ ।

ସେହି ଗାଁ'ରେ ପାର୍ଟିର ଅଜ୍ଞାତବାସ । ନେତାମାନଙ୍କୁ ସାରା ଗାଁ' ଜଗେ । ସେଇଠି ଖସିଗଲେ ଅଣ୍ଟାରେ ଦଉଡ଼ି, ହାତରେ କଡ଼ି ପିନ୍ଧି ପୁରୀ ଜେଲରୁ ଆସୁଥିବା ଦୁଇସାଥୀ ବ୍ରଜ ପଟ୍ଟନାୟକ- ଦୁର୍ଗା ମହାନ୍ତି । ମହତାବ ବାବୁଙ୍କ ଶାସନ ୧୧ ଶହ ପୁଲିସ ଦୁଇ ଶହ ସେ ଗାଁ'ର ଘରେ ଘରେ ପଶି ଆତଙ୍କ ସୃଷ୍ଟି କରିଥିଲା ।

ଏହି ଦୁର୍ଗର ବୀର ସାଥୀ, ଯିଏ ଆଉ ନାହାନ୍ତି, ସେମାନେ ହେଲେ ସାଥୀ ଭିକାରୀ ବରାଳ, ବିଶି ଭାଇ, ବିହାରୀ ବିଶ୍ୱାଳ, ଯୁବସାଥୀ ଅରୁଣ ବିଶ୍ୱାଳ ଅଧିକାରୀ ଭଜନାନନ୍ଦ ବାରିକ, ଆଉ ସାଥୀ ଉପେନ୍ଦ୍ର ବେହେରା । ଅରୁଣ ନବୀନ ଯୁବକ । କି ଅଦମ୍ୟ ମନୋବଳ - କି ସଂଗଠନୀ ଶକ୍ତି । ଆଉ ଅଧିକାର କେଶବ ବାରିକଙ୍କ ତିନି ପୁରୁଷ କମ୍ୟୁନିଷ୍ଟ । ଅଜା ଅଧିକାରୀ କେଶବ ବାରିକ, ପୁଅ ଅଧିକାରୀ ଭଜନାନନ୍ଦ ବାରିକ ଆଉ ଏବେ ତାଙ୍କ ପୁଅମାନେ ।

ମନେପଡ଼େ ଅଜ୍ଞାତବାସ ବେଳେ ସେ ସାଥୀମାନେ ଆଉ ଏବେ ବି ଯେଉଁମାନେ ରହି ପାର୍ଟିର ଧ୍ୱଜା ଉର୍ଦ୍ଧ୍ୱରେ ରଖିଛନ୍ତି ସେମାନେ କିପରି ପାର୍ଟିକୁ ରକ୍ଷା କରିଥିଲେ । ବିଶିଭାଇ ବିହାରୀ ଭାଇଙ୍କ ପରିବା ଟୋକେଇ, ଉକେନ୍ଦ୍ର ବାରିକଙ୍କ ଗୁଣ୍ଡି ବାକ୍‌ସ ସାରା ସହର । ସହର, ଉପକଣ୍ଠ ବୁଲେ । ସେସବୁ ଟୋକେଇରେ ପାର୍ଟିର ବେଆଇନ ଇସ୍ତାହାର ଗୋଟିଏ ଅଜ୍ଞାତବାସରୁ ଅନ୍ୟ ଏକ ଅଜ୍ଞାତବାସକୁ ଡାକ । ଏମାନେ ଖାଲି କମ୍ୟୁନିଷ୍ଟ ନ ଥିଲେ । ଶଙ୍କରପୁର, ବଳଭଦ୍ରପୁରର ଗାଁ'ର ମୁରବୀ ନେତା । ଖ୍ୟାତିସମ୍ପନ୍ନ ବ୍ୟକ୍ତି ଅଥରିଟି ।

ସର୍ବହରା ମଥୁରାନନ୍ଦ ମହାନ୍ତି, ଆଉ ପଟିଆ ଗାଡ଼କଣର ସାଥୀ ପଠାଣୀ ପ୍ରଧାନ, ଆମେ ତାଙ୍କୁ ଡାକୁ ପଠାଣି ସାନ୍ତ ।

ସାଥୀ ମଥୁରୀ ସଦର ଥାନା ଭାଣପୁର ଅଞ୍ଚଳର ସେ କାଳର ଚାଷୀ ନେତା । ଜମିଦାରଙ୍କ ଅତ୍ୟାଚାର । ନଡ଼ିଆ ଗଛରେ ବନ୍ଧା ହୋଇ ବରକନ୍ଦାଜ ବାଡ଼େଇ ବାଡ଼େଇ ଅମାନିଆ ପ୍ରଜାଙ୍କ ପ୍ରାଣ ନିଅନ୍ତି । ସେ ଜମିଦାର ପୁଣି କଂଗ୍ରେସୀ ହୁଅନ୍ତି । କଟକ ନଗରର କଂଗ୍ରେସୀ ପୌରପାଳ ହୁଅନ୍ତି ଆଉ ପବ୍ଲିକ୍ ସର୍ଭିସ କମିଶନର ଚେୟାରମେନ ହୁଅନ୍ତି ।

ସେଇଠୁ ସର୍ବସ୍ୱ ହରେଇ ଆମ ଭିତରେ ପରିଚିତ ସର୍ବହରା ମଥୁରାନନ୍ଦ । ପଟିଆ ଓ ସଦର ଥାନାରେ ସେ କାଳର ଚାଷୀ ନେତା ।

ପଟିଆ ବନ୍ଧ । ଐତିହାସିକ ବନ୍ଧ ଦଶମୀ । କଂଗ୍ରେସ ସରକାରଙ୍କ ମହତାବଙ୍କୀ କହନ୍ତି ହେବନି- ବନ୍ୟା ବିଶାରଦ ପଟିଆ ଜମିଦାର କନିକା ରାଜା କହନ୍ତି- ବନ୍ଧ ହେବନି । କମ୍ୟୁନିଷ୍ଟ ପାର୍ଟି କହେ ବନ୍ଧ ହେବ । ୧୯୪୬, ସେହି ପଟିଆ ବନ୍ଧ ଆନ୍ଦୋଳନର ଅନମନୀୟ ବୀର ପଠାଣି ପ୍ରଧାନ । କାନସର ଭୋଗୁଛନ୍ତି । ମୁଖଗହ୍ୱର କାନସର । ତଥାପି ପଟିଆରେ ଆଉ କଟକର ରାଜପଥରେ ସେ କାଳରେ ପ୍ରାୟ ପ୍ରତି ମାସରେ ପଟିଆ ବାସୀଙ୍କ ବନ୍ଧ, ଖାଦ୍ୟ, ବିକ୍ଷୋଭରେ ଯେତେବେଳେ ହଜାର ହଜାର ଚାଷୀ ଛୁଟି ଆସନ୍ତି, ସେଥିରେ କଃ ପଠାଣିଙ୍କ କରଣୀ କମ ନୁହେଁ ।

ଆଉ ଏମିତି ଏ ଜିଲ୍ଲାର ଦୁଇ ଜଣ ସାଥୀ, ସାଥୀ ଧନେଶ୍ୱର ଦଳେଇ, ଧର୍ମଶାଳା ଥାନାର ଆଉ ସାଥୀ ସଚ୍ଚିଦାନନ୍ଦ ପଟ୍ଟନାୟକ, କିଶୋର ନଗର, ହାଲସାଖିନ କଟକ ପୋତା ପୋଖରୀ ଗାଁର ଓ ତାଙ୍କ ସହିତ ସାଥୀ ବଂଶୀଧର ମହାନ୍ତି କଟକ ନୂଆ ବଜାରର ।

ଧନେଶ୍ୱର ଅଳ୍ପ ବେତନ ଭୋଗୀ ହେଲେ ଶ୍ରମିକ । କଟକ ଶିଖରପୁରରେ ନିଜର ଓ ପରିବାରର ସମସ୍ତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ କଂଗ୍ରେସୀ ଶାସନର ଆକ୍ରମଣରରୁ ଅଜ୍ଞାତବାସୀ କମ୍ୟୁନିଷ୍ଟମାନଙ୍କୁ ରକ୍ଷା କରୁଥିଲେ । ସେଥିଲାଗି ସେ କେବଳ ନୁହନ୍ତି । ତାଙ୍କ ପତ୍ନୀ, ଝିଅ ପୁଲିସମାହରେ ଆହତ ହୋଇଥିଲେ । ଚାକିରୀରୁ ବରଖାସ୍ତ ହେଲେ । ଖାଇବାକୁ ପାଇଲେ ନାହିଁ । ତଥାପି ଧର୍ମଶାଳାର ଗାଁ'ଗଣ୍ଡାରେ ଲାଲପତାକା ଉଡ଼େଇ ରଖିଲେ ମୃତ୍ୟୁ ଯାଏ । ସଚ୍ଚି ପଟ୍ଟନାୟକ । ପାର୍ଟିରେ ଅଣ୍ଡରଗ୍ରାଉଣ୍ଡ ଡେନରକ୍ଷକ । ନିଜେ ଚତୁର୍ଥ ଶ୍ରେଣୀ କର୍ମଚାରୀ ସଂଘର ରାଜ୍ୟ ସମ୍ପାଦକ, ସେମାନଙ୍କର ସମ୍ମାନିତ ନେତା । ଆଉ ଜଣେ ସାଥୀ ଗିରିଧାରୀ ପଣ୍ଡା । ସେ ନୀଳଗିରି ପ୍ରଜା ଆନ୍ଦୋଳନ ଭିତରୁ ପାର୍ଟିକୁ ଆସି ନବଯୁଗ ଗ୍ରନ୍ଥାଳୟ, ପ୍ରେସ୍ ଶ୍ରମିକଙ୍କ ଭିତରେ କାମ କରି ପରେ ସ୍ୱ ଅଧ୍ୟୟନ ବଳରେ ଗୋଟିଏ ହାଇସ୍କୁଲ ହେଡ୍‌ମାଷ୍ଟର ହୋଇଥିଲେ । ଆଠଗଡ଼ର ସାଥୀ ଅନନ୍ତ ପ୍ରଧାନ । କଟକ ଜିଲ୍ଲା ପାର୍ଟିର ଥିଲେ ଜଣେ ବିଶିଷ୍ଟ ସାଥୀ ଓ ନୂଆ ଦୁନିଆ ସହିତ ସଂଶ୍ଳିଷ୍ଟ ଥିଲେ । ଟ୍ରକ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ହୋଇଥିଲା ମୃତ୍ୟୁର କିଛିକାଳ ପୂର୍ବରୁ ସେ ଗୋଟିଏ ଡାକ୍ତରୀ ଔଷଧ ଦୋକାନ କରି ଜୀବିକା ନିର୍ବାହ କରୁଥିଲେ ଏବଂ ସିପିଏମ୍‌ର ଯୋଗ ଦେଇଥିଲେ ।

ବାଲେଶ୍ୱରରେ ଯେଉଁମାନେ ଆଉ ଆମ ସଙ୍ଗରେ ନାହାନ୍ତି । ସେପରି ସାଥୀଙ୍କ ମଧ୍ୟରେ ଅଛନ୍ତି ଗୋଲକ ଚନ୍ଦ୍ର ସେଠୀ । ଯଦୁନାଥ ବରାଳ, ଗିରିଧାରୀ ସାହୁ, ପଞ୍ଚାନନ ମହାରଣା ନିତ୍ୟାନନ୍ଦ ଗୋସ୍ୱାମୀ । ତିହିଡ଼ି ଉତ୍ତର ବାହାର ହରିଜନ ସାଥୀ ଗୋଲକ ସେଠୀ କଲିକତାରୁ କମ୍ୟୁନିଷ୍ଟ ହୋଇ ତିହିଡ଼ି ପୀରହାଟକୁ ପାର୍ଟି ଆଣିଥିଲେ ବୋଲି ତାଙ୍କ ସାଥୀ ସହକର୍ମୀମାନେ

ତାଙ୍କୁ ସ୍ମରଣରେ ରଖିଛନ୍ତି ଆଉ ପୀରହାଟ ପାର୍ଟି ଅଫିସକୁ ତାଙ୍କରି ନାମରେ ନାମିତ କରିଛନ୍ତି ।

ଚାନ୍ଦବାଲିର ପଞ୍ଚାନନ ମହାରଣା । ବହୁ ଧାନ କଳ ସେଠାରେ । ସେଇ ଶ୍ରମିକମାନଙ୍କର ସେ ନେତା- ଆଉ ଚାନ୍ଦବାଲିର ଯେତେ ଚାଷୀ ମୂଲିଆ, ଶ୍ରମିକଙ୍କ ସଂଗ୍ରାମ ହୋଇଛି ତାହାର ପୁରୋଭାଗରେ ସେ ଥିଲେ । ତାଙ୍କର ମୃତ୍ୟୁରେ ଦଶ ହଜାର ଲୋକଙ୍କ ପଟୁଆର ତାଙ୍କ ଲୋକପ୍ରିୟତାର ପ୍ରମାଣ ଦିଏ । ଚାନ୍ଦବାଲିରେ ଆଦ୍ୟ ପାଟି ଗଠନରେ ତାଙ୍କର ଭୂମିକା ସର୍ବସାଥୀ ପ୍ରଶଂସିତ ।

ମତୋର କମ୍ରେଡ୍ ଯଦୁନାଥ ବରାଳଙ୍କୁ ସେ ଅଞ୍ଚଳରେ କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ଭାଗୀରଥ ବୋଲି ସାଥୀମାନେ ବିଚାରନ୍ତି । ଅଳ୍ପ ବୟସରେ ସାଥୀ ଗିରିଧାରୀ ସାହୁଙ୍କ ମୃତ୍ୟୁ ବାଲେଶ୍ୱରର ଚାଷୀ ଆନ୍ଦୋଳନରେ ଏକ ଦାରୁଣ ଧକ୍କା ଦେଇଥିଲା । ଯେତେବେଳେ ପାର୍ଟିର ଦୁର୍ଦ୍ଦିନ, କେନ୍ଦ୍ରରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ କମ୍ୟୁନିଷ୍ଟ ନିଧନ ଯଜ୍ଞକୁ ଓଡ଼ିଶାରେ କଂଗ୍ରେସ ଶାସନରେ କମ୍ୟୁନିଷ୍ଟ ଦମନରାଜ ସେହି ସମୟରେ ସାଥୀ ଗିରିଧାରୀ ସାହୁ, ସୋରୋ ବଡ଼ଗାଁର ସାଥୀ ନିତ୍ୟାନନ୍ଦ ଗୋସ୍ୱାମୀ ପାର୍ଟିର ପତାକାକୁ ଊର୍ଦ୍ଧ୍ୱରେ ଟେକି ରଖିଥିଲେ ।

ପୁରୀ ଜିଲ୍ଲାର ଶତାୟୁ ସାଥୀମାନଙ୍କୁ ସ୍ମରଣ କଲେ ସେ ଦିନର ଉଦୀୟମାନ ବିପ୍ଳବୀ ଯୁବକ ସାଥୀ ଅଧିକାରୀ ମହାନ୍ତିଙ୍କ କଥା ମନେପଡ଼େ । ସ୍ୱାଧୀନତା ସଂଗ୍ରାମର ସ୍ୱେଚ୍ଛାସେବୀ ଓ ଦୈନିକ କଂଗ୍ରେସ ପରିଚାଳିତ ମଧୁସୂଦନ ଖଦୀ ଗ୍ରାମୋଦ୍ୟୋଗର କର୍ମୀ ଜେଲରୁ ଦୀକ୍ଷା ନେଇ ବୋଲଗଡ଼ର ଶତଯୁବପ୍ରାଣର ପ୍ରେରଣାର ଉତ୍ସ ହେଲେ । କମ୍ୟୁନିଷ୍ଟ ପାର୍ଟିକୁ କୃଷକ ଆନ୍ଦୋଳନକୁ ତାଙ୍କ ଅଞ୍ଚଳରେ ଦୃଢ଼ କରିବାରେ ବିଶେଷ ଅବଦାନ ଦେଇଥିଲେ । ଗୁଣ ଅଜା- ସେ ଆମ ତିନି ପୁରୁଷଙ୍କର ଅଜା । ପ୍ରସିଦ୍ଧ ବରୁଣେଇ ପାହାଡ଼ ତଳ କମ୍ୟୁନିଷ୍ଟ ବିପ୍ଳବୀ ସାଧକ ଗୁଣନିଧି ସାମନ୍ତରାୟ । କେତେ ଝଡ଼ଝଞ୍ଜା, ଅଭାବ-ଅନାଟନ । ଅଫିସ୍ ଭଡ଼ା ଦିଆଯାଇ ପାରେନା । ଖାଇବାକୁ ନାହିଁ । ପିଇବାକୁ ପିନ୍ଧିବାକୁ ନାହିଁ । ମାତ୍ର ଗୁଣ ଅଜା ପାର୍ଟି ଅଫିସକୁ ଧରି ପଡ଼ିରହିଛି । ସେ କାଳର ମୁକ୍ତି ଯୁଦ୍ଧ ପରେ ନୂଆ ଦୁନିଆ, ନ୍ୟୁଏଜ ପତ୍ରପତ୍ରିକା ଓ ପାର୍ଟିର ସାହିତ୍ୟ ବିକ୍ରି କରି ସେଥିରୁ ମିଳୁଥିବା ସାମାନ୍ୟ କମିଶନରେ ଅଜା ନିଜ ପାଇଁ ଏବଂ ପାର୍ଟି କାମ କରି ଯିଏ ଆସି ପହଞ୍ଚିଲା, ସେ ପ୍ରତିଷ୍ଠିତ ନେତା ପ୍ରାଣନାଥ, ଗୋକୁଳି, ଗଙ୍ଗାଧର ହୁଅନ୍ତୁ ତାଙ୍କୁ ଗାଲିଗୁଡ଼ାଏ ଦେବ ଆଉ ନିଜ ପାଇଁ ନ ରଖି ଅନ୍ୟ ସାଥୀଙ୍କୁ ଗଣ୍ଡାଏ ଖୁଆଇ ପୁରି ପାର୍ଟି କାମ ପାଇଁ ତାଗିଦା କରେଇବ ।

ସେ ଗୁଣ ଅଜା, ତ୍ୟାଗ, କର୍ମନିଷ୍ଠା ଓ କମ୍ୟୁନିଷ୍ଟ ସୁଲଗ ଶୃଙ୍ଖଳାର ପ୍ରତୀକ । ସେ ସଭା ଆୟୋଜନ କରାଇବେ, ଟେବୁଲ ଚୌକି ବୋହିବେ- ଲାଇଟ୍ ବୋହିବେ । ସଭା ସରିଲେ ସବୁ ଗୋଟେଇ ପାର୍ଟି ଅଫିସକୁ ନେବେ ।

ସାଥୀ ଦାମୋଦର ମିଶ୍ର । ଖୋର୍ଦ୍ଧା ଛଣଗିରିର ସେକାଳର କଂଗ୍ରେସ କର୍ମୀ ୧୯୩୮-

୩୯ ଠାରୁ ଖୋର୍ଦ୍ଧା ଚନ୍ଦକା ଅଞ୍ଚଳରେ ଆଉ ଗଡ଼ଜାତରେ ଚାଲିଥିବା ଆନ୍ଦୋଳନରେ ସେ ଜଣେ ଥିଲେ ଅତି ସାହସୀ ସାଥୀ । ସାଥୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜ । ଖୋର୍ଦ୍ଧାର ଏହି ସାଥୀ ହେଉଛନ୍ତି ମୟୂରଭଞ୍ଜ ଜିଲ୍ଲାରେ ପାର୍ଟିର ପ୍ରାଣ ପ୍ରତିଷ୍ଠାତା । ସେତେବେଳେ ଗୋଟିଏ ଗୋଟିଏ ସାଥୀଙ୍କୁ ପାର୍ଟି ସଂଗଠନ ଗଢ଼ିବାକୁ ଦୂରଦୂରାନ୍ତ ଜିଲ୍ଲାକୁ ପଠାଯାଉଥିଲା । ସେମାନଙ୍କୁ କପର୍ଦ୍ଦକ ମାସିକ ସାହଯ୍ୟ ମଧ ଦିଆଯାଇ ପାରୁନଥିଲା । କିନ୍ତୁ ସେମାନେ ଅପରିଚିତ ଜାଗାକୁ ଯାଇ, ସେଠାରେ ଜନସେବା କରି ଲୋକଙ୍କ ବିଶ୍ୱାସଭାଜନ ହୋଇ ପାର୍ଟି ଗଢୁଥିଲେ । ତନ୍ମଧ୍ୟରୁ ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଅନ୍ୟତମ ।

ଚନ୍ଦକାର ସାଥୀ ଉପେନ୍ଦ୍ର ନାଥ ଦାଶ । ଏବେ ସେ ଚାଲିଗଲେ । ମାତ୍ର ସେ କାଳର ସେ । ଚନ୍ଦକାରେ ପାର୍ଟିର ପ୍ରତିଷ୍ଠାତା । କେତେ ଦୁଃଖ ଯାତନା ନିର୍ଯାତନା ଭୋଗି ଅଜ୍ଞାତବାସ କାଳରେ ପାର୍ଟିକୁ ବଞ୍ଚାଇ ରଖି ସାଥୀ ଉପେନ୍ଦ୍ର ଚନ୍ଦକାର ଆଦିବାସୀ-ଅଣଆଦିବାସୀଙ୍କ ମଧ୍ୟରେ ପାର୍ଟିକୁ ପ୍ରତିଷ୍ଠିତ କରାଇଥିଲେ । ହୋମିଓପାଥି କରି ଜୀବିକା ନିର୍ବାହ କରି ପାର୍ଟି କାର୍ଯ୍ୟ କରୁଥିବା ବେଳେ ସାଇକେଲ ଦୁର୍ଘଟଣାରେ ପଡ଼ି ମୃତ୍ୟୁବରଣ କଲେ । ନିମାପଡ଼ାର କଃ ବାଞ୍ଛାନିଧି ସିଂ ଆଉ ହଂସପଡ଼ାର ଉତ୍ତମ ବାରିକ । ଗୋପର ନଟବର ସେନାପତି । ମଠ ମହନ୍ତ ଜମିଦାର ବିରୋଧୀ ଆନ୍ଦୋଳନର ସମ୍ମୁଖରେ ଥିଲେ । ସେମାନେ ପାର୍ଟିରେ ଯୋଗ ନ ଦେଇ ଥିଲେ ବି ଆମ ସଙ୍ଗର ନିଷ୍ଠାପର କଂଗ୍ରେସ କର୍ମୀ ଈଶ୍ୱର ଚନ୍ଦ୍ର ଦାଶ ଏବଂ ତରଡ଼ାପଡ଼ାର ଭୋଳାନାଥ ମିଶ୍ର କମ୍ୟୁନିଷ୍ଟ ଆନ୍ଦୋଳନରେ ବିକ୍ଷୋଭ ସହାୟତା କରିଥିଲେ ।

ଅସ୍ତରଙ୍ଗର ସାଥୀ ଶ୍ୟାମସୁନ୍ଦର ସ୍ୱାଇଁ ଏବଂ କୃଷକ ନେତା ସ୍ୱାମୀ ପୂର୍ଣ୍ଣାନନ୍ଦ ସ୍ୱାଇଁ ସ୍ୱାଧୀନତା ପୂର୍ବ କାଳରୁ ଓ ୧୯୪୨ କାରାବାସ ପରେ କାକଟପୁର ଅଞ୍ଚଳରେ ପାର୍ଟି ଓ କୃଷକସଭାର ପ୍ରତିଷ୍ଠାରେ ଅବଦାନ ଦେଇଥିଲେ ।

ସମ୍ବଲପୁରରେ ପାର୍ଟି ଓ କୃଷକ ଆନ୍ଦୋଳନର ପ୍ରତିଷ୍ଠାତା ଯେଉଁମାନେ ଚାଲି ଯାଇଛନ୍ତି ସେମାନଙ୍କ ମଧ୍ୟରେ ସ୍ୱାଧୀନତା ସଂଗ୍ରାମୀ, ସେ କାଳର କଂଗ୍ରେସ କର୍ମୀ ସାଥୀ ଫକୀର ବେହେରା ଓ ସାଥୀ ମଙ୍ଗୁଳି ପ୍ରଧାନ ସ୍ମରଣୀୟ । ସମ୍ବଲପୁର ଜିଲ୍ଲାରେ ୧୯୩୭-୩୮ରୁ ସେମାନେ ବିଶେଷତଃ ସାଥୀ ଫକୀର ବେହେରା ଏମଏଲଏ ଥିବାବେଳେ କୃଷକ ଆନ୍ଦୋଳନର ମୂଳଦୁଆ ପକାଇଥିଲେ ଏବଂ ତାହା ହିଁ ପରବର୍ତ୍ତୀ କାଳରେ ଜିଲ୍ଲା କଂଗ୍ରେସର ତୁଙ୍ଗନେତା ଓ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଦୟାନନ୍ଦ ଶତପଥୀ, ମୟାଧର ପୁରୋହିତ, ଲକ୍ଷ୍ମଣ ପୁଜାରୀ ପ୍ରମୁଖଙ୍କୁ ପାର୍ଟି ଗଠନରେ ଅନୁପ୍ରେରଣା ଯୋଗାଇଥିଲା ଏବଂ କଃ ଖୁଣ୍ଟିଆଙ୍କ ପ୍ରତ୍ୟକ୍ଷ ସହଯୋଗରେ ସମ୍ବଲପୁର ପାର୍ଟି ଶାଖାର ପ୍ରାଣ ପ୍ରତିଷ୍ଠା ହୋଇ ପାରିଥିଲା ।

ମୟୂରଭଞ୍ଜର ସାଥୀ ଗିରୀଶ ଚନ୍ଦ୍ର ରାୟ । ସେ ଥିଲେ ପ୍ରଜା ଆନ୍ଦୋଳନର ନେତା ଏବଂ ପ୍ରଜା ସୋସଲିଷ୍ଟ ପାର୍ଟିର ଏମଏଲଏ । ବୁର୍ଜୁଆ ରାଜନୀତି, ସୁବିଧାବାଦୀ ମତାଦର୍ଶକୁ ବର୍ଜନ କରି ପିଏସ୍‌ପି ଏମଏଲଏ ଥିବାବେଳେ ସେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର କର୍ଣ୍ଣଧାର

ହେଲେ ଜିଲ୍ଲାରେ । ଗାଡ଼ି ଦୁର୍ଘଟଣାରେ ତାଙ୍କ ଅକାଳ ମୃତ୍ୟୁ ଜିଲ୍ଲା ପାର୍ଟି ତଥା ରାଜ୍ୟ କମ୍ୟୁନିଷ୍ଟ ଆନ୍ଦୋଳନରେ ଏକ ଶୂନ୍ୟତା ସୃଷ୍ଟି କରିଥିଲା ।

ଢେଙ୍କାନାଳର ଆଦିବାସୀ କମ୍ରେଡ଼ ମଦନ ଦେହୁରୀ ପଦ୍ମନାଭ ପୁର ଅଞ୍ଚଳରେ ଆଦିବାସୀମାନଙ୍କ ମଧ୍ୟରେ ପାର୍ଟି ପତାକା ପୋତିଥିଲେ ଏବଂ ପାର୍ଟିର ଏମଏଲଏ ମଧ୍ୟ ହୋଇଥିଲେ । ମନେପଡ଼ନ୍ତି ଫନୀପାଲ ଅମର ପ୍ରିୟ ଫନୀଦା । ଠିକଣା ନ ଥିବା ଏ ସାଥୀ ବଙ୍ଗଳାର ନଦିୟା ଜିଲ୍ଲାର । ୧୯୩୭-୩୮ କାଳରୁ ୧୯୯୮୧ । ସେହି ଫନୀଦା ଆମ ଏଇ ପରିବାରର । ପାର୍ଟି ଓ ସାମ୍ୟବାଦୀ ଆଦର୍ଶ ପ୍ରତି ଅନୁରକ୍ତ, ଜୀବନବ୍ୟାପୀ, କଷ୍ଟ, ଅର୍ଦ୍ଧାହାର ଜେଲଯାତନା । ମାତ୍ର ଅବିଚଳିତ ସେ । ଘର ନାହିଁ ସଂସାର ନାହିଁ । କେତେ କୃଷକ ସଂଗ୍ରାମର ସେ ବରେଣ୍ୟ ନେତା ।

ଅବଶ୍ୟ ଯେଉଁମାନଙ୍କୁ ଆମେ ସ୍ମରଣ କଲୁ, ତନ୍ମଧ୍ୟରୁ ଜଣେ ଅଧେ ବନ୍ଧୁବାଟ ଆସି ଆମ ବିପରୀତ ଧର୍ମୀ ଆଦର୍ଶକୁ ପୁନଶ୍ଚ ଫେରିଗଲେ । ତଥାପି ସେମାନଙ୍କ ଅତୀତ ଅବଦାନ ଲାଗି ନାମୋଲ୍ଲେଖ କରୁଛୁ । ଯେମିତି ସେଦିନର ସାଥୀ ବିଜୟ ଚନ୍ଦ୍ର ଦାସ, ଶୈଳେନ ମହାପାତ୍ର, ଭରତ ଜେନା, ମହାଦେବ ସିଂହ, ନିତ୍ୟାନନ୍ଦ ପଣ୍ଡା ।

କଃ ଭଗବତୀ- ପ୍ରାଣନାଥ, ଗୋବିନ୍ଦ ପ୍ରଧାନ, ସାଧୁ ଚରଣଙ୍କ ଠାରୁ ସଦ୍ୟମୃତ ଫନୀଦା । ଏମାନେ ହିଁ ଓଡ଼ିଶାରେ ଆମ ଏହି ବିପ୍ଳବୀ ପରିବାର ଗଢ଼ିବାରେ ସେମାନଙ୍କର ଅବଦାନ ଦେଇ ଯାଇଛନ୍ତି । ଆମେ ଆଜି ହଜାର ହଜାର । ଆଗାମୀ ଦିନରେ ଲକ୍ଷ ଲକ୍ଷ ହେବୁ । ନିଶ୍ଚିତ ଶୋଷଣବିହୀନ ଶ୍ରେଣୀ ବିରହିତ, ସୁଖମୟ ଓଡ଼ିଶା ସୁଖମୟ ଭାରତବର୍ଷ ଏହି ପରିବାରର ଲୋକେ ଗଢ଼ିବାକୁ ଆହୁରି ଅଧିକ ଆତ୍ମୋତ୍ସର୍ଗ କରିବେ- ବିଜୟୀ ହେବେ । ଆଜି ଭଗବତୀ ସ୍ମୃତିବାସରରେ ସେ ସମସ୍ତଙ୍କୁ ଆମେ ବୈପ୍ଳବିକ ପ୍ରଣାମ ଜଣାଉଛୁ ।



# ବିଦାୟ ସାଥୀ ବିଦାୟ

ସାଥୀ ଦୁଃଶାସନ । ସମ ସହିତ ବହୁ ବର୍ଷ ପୂର୍ବେ ପ୍ରଥମ ଦେଖା- ପରିଚୟ ଓ ସମ ଆଦର୍ଶରେ ଦୀର୍ଘକାଳ ଯାତ୍ରା ପଥର ଅନେକ ସ୍ମୃତି ।

୧୯୪୨ ସେପ୍ଟେମ୍ବର ୧୧ ତରିଖ । ତମମାନଙ୍କ ଗାଁ ହଳଦିବସନ୍ତ । ନଇଁ ଆସିଲା ସବୁଆଡ଼ ପରି । ଗୋପନ ବୈଠକ । କଟକରୁ ଗୋପନରେ ମୋତେ ଯିବାକୁ ପଡ଼ିଥାଏ । ସେଇ ବୈଠକରେ ତମେ ଓ ତମ ଗାଁ'ର କିଶୋର ବୟସର ଅନେକ । ବ୍ରିଟିଶ ପୁଲିସ୍‌ର ମାଡ଼, ଗିରଫଦାରୀକୁ ଏହି ମତେ ସବୁ ମାତିଯାଇଥାଅ ଦେଶର ସ୍ୱାଧୀନତା ପାଇଁ । ସେପ୍ଟେମ୍ବର ୬ ତାରିଖରେ ତମ ଗାଁ ନିକଟ କଳାମାଟିଆରେ ବିକ୍ଷୋଭକାରୀ ଜନତା ଉପରେ ବ୍ରିଟିଶ ଗୁଳି । ଶହୀଦ ହୋଇଥାନ୍ତି ସାଉଁଟି ମଳିକ, ହାଡ଼ିବନ୍ଧୁ ଶୁକ୍ଳ ଓ ହାଟସାହିର ମାୟାଧର ନାୟକ । ଅଞ୍ଚଳବାସୀଙ୍କର କେବଳ ନୁହେଁ, ସାରା ଓଡ଼ିଶାରେ ଚହଳ । ତମେ ଓ ତାଙ୍କ ସାଙ୍ଗମାନେ ପାଠ ଛାଡ଼ି ଦେଇ ମାତିଯାଇଥାଅ । ମାଇନର ପାସ୍ ପରେ ପଢ଼ା ଛାଡ଼ି ଦେଲେ ଅର୍ଥାଭାବରୁ । ତମେ ଓ ଅନ୍ୟମାନେ ପାଠ ଛାଡ଼ି ବରୀ ଅଞ୍ଚଳରେ ଗାଁ'କୁ ଗାଁ ବୁଲି ଲୋକଙ୍କୁ ତତାଉଥାଅ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ବ୍ରିଟିଶ ଶାସନକୁ କବର ଦେବ ଅଙ୍ଗୀକାର ଘେନି । ଗୋପବନ୍ଧୁ ଚୌଧୁରୀ ରମାଦେବୀଙ୍କ ବରୀ ଆଶ୍ରମକୁ ବ୍ରିଟିଶ ବୋଲକରା ଦେଶୀ ହାକିମ ମୁସାଏବ ଖାଁଙ୍କ ନେତୃତ୍ୱ ଓ ଆଦେଶରେ ମାଟିରେ ମିଳେଇ ଦିଆଯାଇଥାଏ । ଅନ୍ତେବାସୀ ଓ ପ୍ରଖ୍ୟାତ ନେତାନେତ୍ରୀ ଗିରଫ । କଳାମାଟିଆରେ ଗୁଳିକାଣ୍ଡ ପରେ ହାଟସାହିର ନଦୀ ସେପଟେ ରାମଚନ୍ଦ୍ରପୁର ଖଦୀ କାର୍ଯ୍ୟାଳୟରେ ପୁଲିସ ତାଣ୍ଡବ- ଗିରଫଦାରୀ ଆତଙ୍କ ସୃଷ୍ଟି ।

କିପରି ଆନ୍ଦୋଳନକୁ ଚଳାଯିବ, ଶହୀଦମାନଙ୍କ ସ୍ମୃତିସଭା କିପରି କରାଯିବ ତାହା ହିଁ ଉକ୍ତ ସନ୍ଧ୍ୟାର ମନ୍ତ୍ରଣା । ମନେପଡ଼େ ଅନ୍ୟମାନଙ୍କ ମଧ୍ୟରେ ଆଗୁଆ ହୋଇ ତମେ, ଆଉ ପ୍ରହ୍ଲାଦ ଜେନା, ଗଗନ ବିହାରୀ ଜେନା, ହୃଷୀକେଶ ସାମଲ, ନବଘନ ଜେନା, କାଶୀନାଥ ଜେନା ପ୍ରମୁଖ ।

ଗାଁ'କୁ ଗାଁ ଛୁଟିଲା । ଗରୀବ ଶହୀଦ ପରିବାରଗୁଡ଼ିକୁ ସାହାଯ୍ୟ ଦିଆଯିବ । ହାଟସାହି ଆମ୍ବତୋଟାରେ ଏକାଦଶାହ ଦିନ ପୁଲିସକୁ ପରବାୟ ନ କରି ଶୋକସଭା ହେବ । ବରୀ ଅଞ୍ଚଳରେ ଯେପରି ସମାନ୍ତରାଳ ସରକାର । ନାନା ମାରଣାସ୍ତ୍ରରେ ସଜ୍ଜିତ ପୁଲିସ ବାହିନୀ

ହଠାତ୍ ଚଢ଼ଉ କରି ଉତ୍ତ୍ୟକ୍ତ ଜନତାଙ୍କ ଭୟରେ ଯାଜପୁର ପଳାଏ । ତମେ ଓ ତମ ସାଙ୍ଗ ଟୋକାମାନଙ୍କର କି ସାହସ ଓ ଉଦ୍ଦାମତୀ ଦେଶର ମୁକ୍ତି ପାଇଁ ।

ତା'ପରେ ଅଳ୍ପଦିନ ପରେ କଟକ ଜେଲ ଓ ବ୍ରହ୍ମପୁର ଜେଲ୍‌ରେ । ଏଇଠି ତମର ଓ ତମ ସାଙ୍ଗମାନଙ୍କର ଘଟେ ରାଜନୈତିକ ରୂପାନ୍ତର । ସ୍ୱାଧୀନତା ସାଙ୍ଗକୁ ସମାଜବାଦ ଲାଗି ସଂଗ୍ରାମର ମତାଦର୍ଶରେ ହୁଅ ଦୀକ୍ଷିତ । କେତେ ରାଜନୈତିକ ପ୍ଲାନ, ଆଲୋଚନା, ବିତର୍କ । ଗୋପନରେ ଜେଲ ଭିତରକୁ ଅଣାଯାଏ ରାଜନୈତିକ ସାହିତ୍ୟ । ଚାଲେ ଅଧ୍ୟୟନ, ଅଧ୍ୟାପନା । ମହାପଣ୍ଡି ରାହୁଲ ସାଂସ୍କୃତାୟନଙ୍କ ରଚିତ ମାନବ ସମାଜ, ଦର୍ଶନ ଓ ଦିଗ୍‌ଦର୍ଶନ ହିନ୍ଦୀ ପୁସ୍ତକର ତମର ଅନୁଶୀଳନ । ସମାଜ ବିକାଶ ଓ ସମାଜକୁ ରୂପାନ୍ତର କରିବା ସଂଗ୍ରାମର ତତ୍ତ୍ୱରେ ତମେ ମନବଳାଇଲ, ଭବିଷ୍ୟତ ରାଜନୈତିକ ଜୀବନ ପାଇଁ ପ୍ରସ୍ତୁତି ପର୍ବରେ ତମେ ଆଗୁସାର ହେଲ । କମ୍ୟୁନିଷ୍ଟ ହୋଇଗଲ । ସେହିଦିନୁ ତମେ ଚାଲିଲ ଆଗକୁ ଆଗକୁ । ବିଚକ୍ଷଣ ସଂଗଠକ, ପ୍ରଚାରକ, ସଂଗ୍ରାମଗୁଡ଼ିକର ନାୟକ ହେବାର ପରାକାଷ୍ଠା ପ୍ରତିପାଦନ କଲ ।

ସ୍ୱାଧୀନତା ଆସିବାକୁ ଆହୁରି ବାକି । ନେତାମାନେ ଭାଇସରୟ ଓ୍ୟାଭେଲ, ଲର୍ଡ଼ ମାଉଣ୍ଟବେଟନଙ୍କ ସଙ୍ଗେ ସଲ୍ଲା ପରାମର୍ଶରେ ବ୍ୟସ୍ତ । ଯୁଦ୍ଧୋତ୍ତର କାଳରେ ଅନାହାର, ଦୁର୍ଭିକ୍ଷର ପରିସ୍ଥିତି । ଚାଷୀମାନଙ୍କ ଘରେ ହାହାକାର । ଜମିଦାର ମହାଜନମାନଙ୍କ ଦାଉ । ଲାଗିଗଲ ଅନ୍ୟ ସାଥୀମାନଙ୍କୁ ସଙ୍ଗରେ ଧରି ଚାଷୀ ଆନ୍ଦୋଳନରେ । ମଙ୍ଗଳପୁର ଅହିୟାସ, ଅର୍ଦ୍ଧାଉଳିଆ, ଉତ୍ତରବାହା ଅଞ୍ଚଳରେ ଚାଷୀ ସଂଗଠନ । ବରୀ ବିଞ୍ଝାରପୁରରେ ଚାଷୀସଭା- କମ୍ୟୁନିଷ୍ଟ ପାର୍ଟିର ଶାଖା ଗଠନ । କଂଗ୍ରେସ ନେତାମାନଙ୍କ କୁତ୍ସା- ବିରୋଧ । ବୈଷ୍ଣବ ଜେନା ଅର୍ଦ୍ଧାଉଳିଆ ଅଞ୍ଚଳରେ ଜମିଦାରୀ ଅତ୍ୟାଚାର ବିରୋଧୀ ସଂଗ୍ରାମରେ ବୈଷ୍ଣବ ଚରଣ ଜେନା, କପିଳ ଜେନା, ଶରତ ମହାନ୍ତି, ପହଲି ପ୍ରମୁଖଙ୍କ ସହିତ ପୁଣି ସେମାନଙ୍କ ଆଗରେ ନେତୃତ୍ୱ ଦେବା କ୍ଷେତ୍ରରେ । କାଶୀ ନଦୀରେ ବନ୍ଧ ପଡ଼ିବ, ଚାଷୀକୂଳ ରକ୍ଷା ପାଇବେ । ମାହାରା ଖୋଳାଯିବ - ତ୍ରିପାଠୀ ଜମିଦାରଙ୍କ ଅତ୍ୟାଚାରର ମୁକାବିଲା କରାଯିବ । ଏହିସବୁ ଆଦ୍ୟ ସଂଗ୍ରାମରେ ତମର ପାରିଲାପଣ । ନେତୃତ୍ୱଦାନ ତମର ସାଂଗଠନିକ ଶକ୍ତିର ପରିଚୟ ଦେଲା । ତମ ଅଞ୍ଚଳର ବହୁ ଯୁବକ ନବ ରାୟ, ନବ ବେହେରା, କାହ୍ନୁ ଜେନା, ସୁନାକର ଜେନା, ଶରତ, ଭାସ୍କର, ଦିବାକର ପୂର୍ଣ୍ଣ, କିଆରି ରଙ୍ଗାଧର ଏମିତି ଶତାଧିକ ସାଥୀ ତମ ପରେ ନେତୃତ୍ୱର ଗୁଣ ଚିହ୍ନଟ କରିଥିଲେ ସେତେବେଳେ । ପଟିଆ ବନ୍ଧ ପଡିବ । ବଡ଼ ବଡ଼ ନେତା, ପଟିଆର ବିଶବସ୍ତ ବ୍ୟକ୍ତିମାନଙ୍କର ଉଦ୍ୟମ । କନିକା ରାଜାଙ୍କ ବିରୋଧ । କଂଗ୍ରେସ ସରକାରଙ୍କ ବିରୋଧ । ଯେଉଁ ସାଥୀମାନେ ମାଟିକାମୁଡ଼ି ବାହାରୁ ଆସି ପଡ଼ିରହିଲେ- ତହିଁ ଭିତରେ ଥିଲ ପହଲି, ତମେ ତମ ଅଞ୍ଚଳର ଧନେଶ୍ୱର ।

ଆସିଗଲା ୧୯୫୦- କମ୍ୟୁନିଷ୍ଟମାନଙ୍କ ଉପରେ ସରକାରର ଆକ୍ରମଣ । କଟକ,

ବ୍ରହ୍ମପୁର, ସମ୍ବଲପୁର ପ୍ରଭୃତି କାରାବାସରେ କମ୍ୟୁନିଷ୍ଟ ନେତା ଓ କର୍ମୀମାନଙ୍କୁ ଦୀର୍ଘ କାରାବାସ । ଅନେକ ତୁଙ୍ଗନେତା ଆତ୍ମଗୋପନ କରି ସଂଗ୍ରାମର ପରିଚାଳନା କରୁଥାନ୍ତି । ତମେ ମଧ୍ୟ ଆତ୍ମଗୋପନ କଲ । ଖେଦିଗଲ ସୁକିନ୍ଦା, ଧର୍ମଶାଳା, ବିଞ୍ଝାରପୁର ଟାଙ୍ଗିର କଳକଳା ଆଦିବାସୀ ଅଞ୍ଚଳ, ସାଲେପୁର, ପାଟକୁରା, ପଟ୍ଟାମୁଣ୍ଡାଇ, ରାଜକନିକା ଆଦି ଅଞ୍ଚଳକୁ ସାଙ୍ଗସାଥୀମାନଙ୍କ ସହିତ । ଦର୍ପଣୀ ରଜା, କଂଗ୍ରେସ ନେତା ଓ ପୂର୍ବତନ ମନ୍ତ୍ରୀ କାନୁନଗୋଙ୍କ ପାଟକୁରା ଚାଷୀ କଟକଭଳି ଭାଣପୁରରେ ମୋତିଲାଲ ପଣ୍ଡିତ ଜମିଦାରୀରେ ଅତ୍ୟାଚାର ବିରୁଦ୍ଧରେ ଯେଉଁ ସାଥୀମାନେ ସଂଗ୍ରାମରେ ଅବତୀର୍ଣ୍ଣ ହେଲେ ସେମାନଙ୍କୁ ତମର ନେତୃତ୍ୱ ଦାନ । କଂଗ୍ରେସ, ଜନ କଂଗ୍ରେସ, ସ୍ୱତନ୍ତ୍ର ଜନତାଦଳ ଯେତେବେଳେ ଶାସନ ଆସିଛି, ଜନଦାବି ଘେନି ଅସଂଖ୍ୟ ସତ୍ୟାଗ୍ରହ, ଆଇନ ଅମାନ୍ୟର ନେତୃତ୍ୱରେ ଅନ୍ୟମାନଙ୍କ ମଧ୍ୟରେ ତୁମେ ତ କେତେ କାରାବାସ ।

ଏହାର ସବୀକୃତି ସ୍ୱରୂପ ସାଥୀ ରାମଚନ୍ଦ୍ର ମିଶ୍ରଙ୍କ ପରେ ତମକୁ ସାଥୀମାନେ ବାଛନ୍ତି କଟକ ଜିଲ୍ଲା ପାର୍ଟିର ସମ୍ପାଦକ ଭାବରେ । ସାଥୀ ଲୋକନାଥ ଚୌଧୁରୀ ତମଠାରୁ ଉକ୍ତ ଦାୟିତ୍ୱ ନେବାଯାଏ ତମେ କଟକ ଜିଲ୍ଲାର ବିଭିନ୍ନ ଥାନାରେ ପାର୍ଟି ସଂଗଠନ ସାଙ୍ଗକୁ ଜମିଦାରୀ ପ୍ରଥା ଉଚ୍ଛେଦ ଆନ୍ଦୋଳନ, ଭାଗଚାଷୀ ଆନ୍ଦୋଳନରେ ନିଜକୁ ଅଙ୍ଗାଙ୍ଗୀ ଭାବରେ ଅନ୍ୟ ସହକର୍ମୀମାନଙ୍କ ସହିତ ଜଡ଼ିତ ହେଲ ।

ତମର ରାଜନୈତିକ ଓ ସାଙ୍ଗଠନିକ ବିଚାରବୁଦ୍ଧିର ସ୍ୱୀକୃତି ଦେଲେ ପାର୍ଟିର ସାଥୀମାନେ । ରାଜ୍ୟ ପାର୍ଟିର କାର୍ଯ୍ୟକାରୀ କମିଟିର ସଦସ୍ୟ ହୋଇ ତମେ ଅନ୍ୟତମ କର୍ମକୌଶଳ ନିର୍ଦ୍ଧାରକ, ଅନ୍ୟ ବରିଷ୍ଠ, ତୁଙ୍ଗ, ଖ୍ୟାତନାମା, ନେତାଙ୍କ ସହିତ ସମ୍ପାଦନାମଣ୍ଡଳୀର ସଦସ୍ୟ ହେଲେ ।

ତମର ରାଜନୈତିକ ଓ ସାଙ୍ଗଠନିକ ବିଚାର ବୁଦ୍ଧିର ସ୍ୱୀକୃତି ଦେଲେ ପାର୍ଟିର ସାଥୀମାନେ । ରାଜ୍ୟ ପାର୍ଟିର କାର୍ଯ୍ୟକାରୀ କମିଟିର ସଦସ୍ୟ ହୋଇ ତମେ ଅନ୍ୟତମ କର୍ମକୌଶଳ ନିର୍ଦ୍ଧାରକ, ଅନ୍ୟ ବରିଷ୍ଠ, ତୁଙ୍ଗ, ଖ୍ୟାତନାମା ନେତାଙ୍କ ସହିତ ସମ୍ପାଦନାମଣ୍ଡଳୀର ସଦସ୍ୟ ହେଲେ ।

ଏହି ପଦବୀରେ ଥାଇ କୃଷକ ଆନ୍ଦୋଳନ ସାଙ୍ଗକୁ ରାଜ୍ୟରେ ଏ.ଆଇ.ଟି.ୟୁ.ସି. ନେତୃତ୍ୱରେ ଚାଲିଥିବା ଶ୍ରମିକ କର୍ମଚାରୀ ଆନ୍ଦୋଳନରେ ମଧ୍ୟ ନିଜର ସ୍ୱାକ୍ଷର ରଖିଗଲ । ବ୍ୟାଙ୍କ କର୍ମଚାରୀ ସଂଘ, ପରିବହନ କର୍ମଚାରୀ ସଂଘ, ପ୍ରେସ ଶ୍ରମିକ ସଂଘ ପରି ଗୁଡ଼ିଏ ଶ୍ରମିକ, କର୍ମଚାରୀ ସଂଗଠନର ଅଜସ୍ର ସଂଗ୍ରାମରେ ତମର ଭୂମିକା ଏକ ଶପଥ ସମ୍ପନ୍ନ ଅବିଭକ୍ତ କଟକ ଜିଲ୍ଲାର ସେ କାଳର ନେତା ଓ ରାଜ୍ୟ ସ୍ତରରେ ନେତାର ମାନ୍ୟତା ପାଇଲ । ଏ.ଆଇ.ଟି.ୟୁ.ସି.ର ରାଜ୍ୟ ଉପସଭାପତି ହେଲେ ।

ମାତ୍ର ଅଢ଼େଇ ବର୍ଷ ତମେ ବିଧାୟକ ଥିଲ କମ୍ୟୁନିଷ୍ଟ ପାର୍ଟି ବଡ଼ଚଣା ନିର୍ବାଚନ

ମଣ୍ଡଳୀର ଘରେ ଘରେ ଦୁଃଶାସନ ତମେ ଥିଲ ପ୍ରିୟପାତ୍ର । ତମକୁ ଭୟ କରୁଥିଲେ ମହାଜନ, ବଡ଼ ଜମି ମାଲିକ, ଦୃଷ୍ଟକାରୀ ସରକରୀ କର୍ମଚାରୀ । ତମ ନିର୍ବାଚନ ମଣ୍ଡଳୀର ଜଳସେଚନ, ବନ୍ୟା, ମରୁଡ଼ି, ରାସ୍ତାଘାଟ, ଶିକ୍ଷାୟତ, ସ୍ୱାସ୍ଥ୍ୟସେବା ପ୍ରଭୃତି କ୍ଷେତ୍ରରେ ନିତ୍ୟନୈମିତିକ ଦାୟିତ୍ୱ ସମ୍ପାଦନ ସାଙ୍ଗକୁ, ସେହି ନିର୍ବାଚନମଣ୍ଡଳୀର ଭୂମିହୀନ, ଆଦିବାସୀ ଓ ଅନୁସୂଚିତ ଜାତିମାନେ ହଜାର ହଜାର ସଂଖ୍ୟାରେ ଘରଡ଼ିହ ଦେବାରେ ସରକାରଙ୍କୁ ବାଧ କରିଥିଲା । ବିଧାନସଭାରେ ଜଣେ ସୁଦକ୍ଷ ବିଧାୟକର ମଧ ସ୍ୱୀକୃତି ଲାଭ କରିଥିଲା ।

ଦୁଃଶାସନ, ତମେ ଅନ୍ତିମ ଶଯ୍ୟା ଲାଗି ଅପେକ୍ଷା କରିଛ । ସ୍ନାୟୁରୋଗ ତମର କିଛିକାଳ ଲାଗି ମସ୍ତିଷ୍କକୁ ମଧ ଆଘାତ କରିଥାଏ । ରୋଗ ଶଯ୍ୟାରେ ମଧ ତମେ ତମ ବରୀ- ବଡ଼ଚଣାର ଲୋକଙ୍କୁ ଦେଖିଲେ । କମ୍ୟୁନିଷ୍ଟ ସାଥୀମାନଙ୍କୁ ଦେଖିଲେ, ସହକର୍ମୀ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଦେଖିଲେ ଆଖିରୁ ଲୁହ ଗଡ଼ାଉଥିଲ । ମାତ୍ର ୨୪ ଘଣ୍ଟା ହୋଇନି- ରୋଗ ଗୁରୁତର ହୋଇ ତମକୁ ସଂଜ୍ଞାହୀନ କରିଦେଲା । ଏପ୍ରିଲ ୨୨ ରାତିରେ କଟକ ବଡ ଡାକ୍ତରଖାନା । ଏପ୍ରିଲ ୨୨ ସଂଧ୍ୟାରେ ତମକୁ ଅଚେତ ଅବସ୍ଥାରେ ଦେଖିବାର ଦୁର୍ଭାଗ୍ୟ । ପାଖରେ ତମର ପତ୍ନୀ- ତମ ବାହାଘରରେ ଆମେ ସବୁ କୁଣିଆ । କନ୍ତାର ବୃନ୍ଦାବନ ସାମନ୍ତରାୟଙ୍କ ଝିଅ ତମର ପତ୍ନୀ ବାସନ୍ତୀ । ତାକୁ ପିଲାଦିନୁ ଜାଣେ । ଜୀବନର ଦୁଃଖ, ଅଭାବ କଥା କହିଚାଲିଥାନ୍ତି । ଗାଁ'ରେ ବାସ ନାହିଁ, କି, ଏଠି ଭଡ଼ାଘରେ ମୁଣ୍ଡ ଗୁଞ୍ଜା । ତଥାପି ସେ ଭାବୁଥାଏ ମୋର ସ୍ୱାମୀ ଚେତା ଫେରିପାଇବେ । ଜାଣିପାରିଲେ । ବୃଥା ତା'ର ଏ ଆଶା । ଆଶଙ୍କା ସତ୍ୟ ହେଲା ଦେଖିସାରି ଅନ୍ୟ ସାଙ୍ଗମାନଙ୍କୁ କହିଲି । ରାତି ହୋଇଯାଇଥାଏ ଅଧିକ । ଲେନିନ ଦିବସ ସଭାରେ । ଗୁରୁଚରଣ ପଟ୍ଟନାୟକ ହୃଦରୋଗୀ । ଉପରକୁ ଉଠିପାରିବେନି । ତଥାପି ସେ ଆଉ ସାଥୀମାନେ ଗଭୀର ରାତ୍ରିରେ ଯିବାକୁ ଉତ୍କଣ୍ଠିତ । ଡାକ୍ତରଖାନା ନିୟମ ଓ ରୋଗୀର ଅସୁବିଧା ହେବ ଭାବି ତହିଁ ପରଦିନ ସକାଳୁ ଯିବାର ସମସ୍ତଙ୍କର ସଙ୍କଳ୍ପ । ମାତ୍ର ରାତି ପାହିଲାନି । ସକାଳୁ ତାଙ୍କ ଗୁଣମୁଗ୍‌ଧ ବିଭିନ୍ନ ରାଜନୈତିକ ଦଳର ନେତା, କର୍ମୀ, ଶ୍ରମିକ ସମସ୍ତଙ୍କର ଭେଟ ମୃତ୍ୟୁ ଶଯ୍ୟା ନିକଟରେ, ଆଉ ଖାନନଗର ଶ୍ମଶାନୀରେ । ଏକନିଷ୍ଠ କମ୍ୟୁନିଷ୍ଟ, ଦେଶପ୍ରେମିକ, ସ୍ୱାଧୀନତା ସଂଗ୍ରାମର ସୈନିକ ଦୁଃଶାସନଙ୍କର ମାଂସହାଡ଼ ପାଉଁଶ ହୋଇଗଲା ।

ମାତ୍ର ଏ ଦେଶର ଓ ଆମ ଓଡ଼ିଶାର ମେହନତା, ଷାଷିତ ମଣିଷର ମୁକ୍ତି ପାଇଁ ଯେଉଁ ସଂଗ୍ରାମ କରିଛନ୍ତି, ସେ ସଂଗ୍ରାମ ଲକ୍ଷ୍ୟ ସିଦ୍ଧି ପର୍ଯ୍ୟନ୍ତ ଅବ୍ୟାହତ ରହିଚି, ରହିବ । ସେହି ସଂଗ୍ରାମକୁ ଯେଉଁମାନେ ରହିଗଲେ ତାକୁ ଆଗେଇ ନେବା ହିଁ ହେବ ତମ ପ୍ରତି ପ୍ରକୃଷ୍ଟ ଶ୍ରଦ୍ଧାଞ୍ଜଳି ।

ବାସନ୍ତୀ । ତମ ସ୍ୱାମୀ, ସୁନୀଲ, ଅନୀ, ନିରଞ୍ଜନ, ହିମାଂଶୁ, ବୁଚି, ଉନିଙ୍କୁ ତମ ବାପା ଏକ ମହା ଆଦର୍ଶର ବାହକ ହୋଇ ଚାଲିଯାଇଛନ୍ତି ଅନେକଙ୍କୁ ମୁଗ୍‌ଧ କରି, ତାହା ହିଁ ତମମାନଙ୍କ ଲାଗି ସାନ୍ତ୍ୱନା । ❐❐❐

# ସେ କାହିଁକି ସ୍ମରଣୀୟ

**ବ୍ୟକ୍ତି** ବିଶେଷର ଜୀବନାବସାନ ହେଲେ ସେ ତା'ର ଆତ୍ମୀୟ ସ୍ୱଜନଙ୍କ ପାଇଁ ସ୍ମରଣୀୟ ହୁଏ । ତାକୁ ଆଣିଥିବା, ତା'ର କାମକୁ ପ୍ରସନ୍ଦ କରୁଥିବା ଗାଁ, ଆଖପାଖ ଗାଁ' ବା ସହରର ସାଇପଡ଼ିଶା କିଛିକାଳ ତାକୁ ସ୍ମରଣ କରନ୍ତି । ଏହା ଦୁନିଆ ସାରା ଦେଖାଯାଏ ।

କିନ୍ତୁ ଏମିତି କେତେକ ବ୍ୟକ୍ତି ଥାନ୍ତି ଯାହାଙ୍କର ତିରୋଧାନ ପରେ ତାଙ୍କୁ ସ୍ମରଣ କରିବାର ପରିସର ଆତ୍ମୀୟ ସ୍ୱଜନଙ୍କ କ୍ଷୁଦ୍ର ବନ୍ଧନୀ ଟପିଯାଏ । ସାଇ ପଡ଼ିଶା, ଆଖପାଖ ଗାଁ' ସହରର ପରିଧି ଅତିକ୍ରମ କରିଯାଏ । ଜିଲ୍ଲା, ଦେଶ ଏମିତିକି ସମଗ୍ର ପୃଥିବୀର ଲୋକେ ବଂଶ ପରାକ୍ରମେ ସେପରି ବ୍ୟକ୍ତିକୁ ସ୍ମରଣ କରନ୍ତି ।

ସେହିଭଳି ଜଣେ ସ୍ମରଣୀୟ ବ୍ୟକ୍ତିତ୍ୱ ସ୍ୱାଧୀନତା ସଂଗ୍ରାମୀ ଲୋକନାଥ ରାୟ । ଛେଳିଆଗଡ଼ ବୋଲି ଜଗତ୍‌ସିଂହପୁର କ୍ଷୁଦ୍ର ପଲ୍ଲୀର ଏହି ବ୍ୟକ୍ତିଙ୍କର ମହାପ୍ରୟାଣ ପରେ କ'ଣ ତାଙ୍କୁ ତାଙ୍କ ଆତ୍ମୀୟ ସ୍ୱଜନ କେବଳ ସ୍ମରଣ କରିବେ ନା ନୁହେଁ । କାହିଁକି ଏ ବ୍ୟତିକ୍ରମ ।

ତାହାହିଁ ତାଙ୍କ ଜୀବନର ବିଶେଷତ୍ୱ । କେବଳ ତାଙ୍କର ବିଶେଷତ୍ୱ କହିଲେ ଅତିରଞ୍ଜିତ ହୋଇଯିବ । ଗୋଟିଏ ବିଶେଷ ଯୁଗରେ ସହସ୍ର ସହସ୍ର ନୁହେଁ ଲକ୍ଷ ଲକ୍ଷ ବ୍ୟକ୍ତିଙ୍କ ପାଇଁ ଏହି ବିଶେଷତ୍ୱ ପ୍ରଯୁଜ୍ୟ । ଆମ ଭାରତ ଭୂଇଁ, ଆମ ଓଡ଼ିଶା ମାଟିର ଏକ ବିଶେଷ ଯୁଗରେ ସେହିକାଟର ବ୍ୟକ୍ତିମାନଙ୍କ ମଧ୍ୟରେ ଲୋକନାଥ ରାୟ । ସମସ୍ତଙ୍କର ସାଧାରଣତ୍ୱ ସାଙ୍ଗକୁ କିଛିଟା ନିଶ୍ଚୟ ବିଶେଷତ୍ୱ ଥାଏ । ସେପରି ଏକ ବିଶେଷତ୍ୱ ଛେଳିଆଗଡ଼ର ଏହି ଦରପାଠୁଆ, ବାଙ୍ଗରା ବ୍ୟକ୍ତିଟିର ଥିଲା ବୋଲି କେବଳ ଆତ୍ମୀୟ ସ୍ୱଜନ ନୁହଁନ୍ତି, ତାଙ୍କୁ ଜାଣିଥିବା ଏବଂ ତାଙ୍କୁ ଜାଣିବାକୁ ଏବେ ବି ଉଦ୍ୟମ କରୁଥିବା ବ୍ୟକ୍ତି ତାଙ୍କୁ ସ୍ମରଣ କରିବେ । ସେମାନଙ୍କ ସଂଖ୍ୟା ସହସ୍ର ସହସ୍ର ।

ସେ ଯୁଗଟି ଭାରତବର୍ଷର ଜୀବନରେ ସ୍ୱର୍ଣ୍ଣ ଯୁଗ, ସଂଗ୍ରାମର ଯୁଗ । ସ୍ୱାଧୀନତା ସମରର ଯୁଗ । ସର୍ବସ୍ୱ ତ୍ୟାଗ କରିବାର ସଙ୍କଳ୍ପ ନେଇ ଦେଶମାତୃକାକୁ ବ୍ରିଟିଶ ସାମ୍ରାଜ୍ୟବାଦୀ ଶୃଙ୍ଖଳରୁ ମୁକ୍ତ କରିବାର ଯୁଗ ।

ଲୋକନାଥ ରାୟ ସେହି ସଂଗ୍ରାମର ଲକ୍ଷ ଲକ୍ଷ ମୁକ୍ତି ସିପାହୀଙ୍କ ମଧ୍ୟରେ ଅନ୍ୟତମ, ତଥାପି ନିଆରା । ସେହି ଯୁଗର ସଂଗ୍ରାମ କାଳରେ ବହୁବିଧ ଘଟଣାରେ ତାଙ୍କ ସହିତ ମୁଁ ସଂପୃକ୍ତ । ଅବଶ୍ୟ ଏ ନିଆଁକୁ ସିଧାସଳଖ ଡେଇଁପଡ଼ିବାରେ ପ୍ରାୟ ସମବୟସୀ ହେଲେ ବି ସେ ଆଗ, ମୁଁ ଟିକିଏ ପଛ । ତେଣୁ ଜ୍ୟେଷ୍ଠତ୍ୱ ତାଙ୍କର ପ୍ରାପ୍ୟ । କିନ୍ତୁ ସେହି ସଂଗ୍ରାମ କାଳରେ ବିବିଧ ଘଟଣାରେ ଏକତ୍ର ରହି ମୁଁ କେମିତି ତାଙ୍କୁ ଜ୍ୟେଷ୍ଠତ୍ୱ ଅର୍ପିଛି, ଅନ୍ୟ ଦିଗରେ କନିଷ୍ଠ ହେଲେ ବି ସେ ମୋ' ଠାରେ ତାଙ୍କର ଜ୍ୟେଷ୍ଠତ୍ୱର ଗାରିମା ନ ଦେଖାଇ, ମୋତେ ମଧ୍ୟ ଜ୍ୟେଷ୍ଠତ୍ୱ ଅର୍ପଣ କରିଛନ୍ତି । ଏହା ହିଁ ସେ ବ୍ୟକ୍ତିଟିର ଆଉ ଏକ ବୈଶିଷ୍ଟ୍ୟ । ମୋ' କ୍ଷେତ୍ରରେ କେବଳ ନୁହେଁ, ଅନେକ କ୍ଷେତ୍ରରେ କେବଳ ନୁହେଁ, ଅନେକ କ୍ଷେତ୍ରରେ ତାଙ୍କର ଏହି ପ୍ରକାର ନମ୍ରତା ସେ ପ୍ରକାଶ କରିଛନ୍ତି । କିନ୍ତୁ କର୍ମରେ ଅଟଳ, ବିଶ୍ୱାସରେ ,କନିଷ୍ଠ ।

ସେ କାଳର ଜୀବନର ଅସଂଖ୍ୟ ଘଟଣା ମଧ୍ୟରୁ କେତୋଟି ବର୍ଣ୍ଣନା କରି ତାଙ୍କ ଭଳି ସହଯୋଦ୍ଧା ଓ ମୋ' ସମ୍ପର୍କରେ ଅବତାରଣା କରିବି । ୧୯୩୦-୩୨ ସଂଗ୍ରାମରେ ଝାସ ଦେଇ ବନ୍ଦୀଶାଳରୁ ମୁକ୍ତି ପରେ ରାଜନୈତିକ ଜୀବନରେ ତାଙ୍କ ଉତ୍ତରଣର କିଛିଟା ଝଲକ ମଧ୍ୟ ଉଲ୍ଲେଖ କରିବି ।

୧୯୪୨ ଅଗଷ୍ଟ ଆନ୍ଦୋଳନ । ସେ ଥାଆନ୍ତି ଜଗତ୍‌ସିଂହପୁରରେ । ମୋତେ ପଠାଯାଇଥାଏ କୁଜଙ୍ଗ, ତିର୍ତ୍ତୋଲ, ଏରସମାକୁ । ସଂଗ୍ରାମ ପାଇଁ ପ୍ରସ୍ତୁତି ଚାଲିଥାଏ । ନା ଅଛି ବେତାର, ନା ଅଛି ଦୂରଦର୍ଶନ ।୧ ଅଗଷ୍ଟ ୮ରେ ବମ୍ବେରେ ତଥା ଭାରତର ପ୍ରମୁଖ ନେତାମାନେ ଗିରଫ । ସକାଳୁ ଓଡ଼ିଶାରେ ନବ ଚୌଧୁରୀ ପ୍ରମୁଖ ଗିରଫ ଜାଣିପାରି ନ ଥାଉ । ଆଗ ବ୍ୟବସ୍ଥା ଅନୁସାରେ ୯ ସକାଳେ ବଡ଼ବଜାର ପ୍ରାଣକୃଷ୍ଣ ସାହୁଙ୍କ ଘରେ କର୍ମୀ ବୈଠକକୁ ମୋତେ ଆସିବାକୁ ପଡ଼ିଲା ତାଙ୍କ ପାଖକୁ । ତିର୍ତ୍ତୋଳରୁ ବାହାରି ସାଇକେଲରେ ପହଞ୍ଚି ତାଙ୍କ ଦ୍ୱାରା ଆହୂତ ସଭାରେ ହାଇସ୍କୁଲ ଛାତ୍ରମାନଙ୍କୁ ଧରି ବସିଛୁ । ଆଲୋଚନା ଚାଲିଛି ଦିନ ଗୋଟାଏ ଯାଏ । ହଠାତ୍ କଟକରୁ ନବବାବୁଙ୍କର ମୋ' ପାଖରୁ ସନ୍ଦେଶ ଘେନି ୩୦ ମାଇଲ ସାଇକେଲରେ ଆସି ପହଞ୍ଚିଲେ ସାଥୀ ନରସିଂହ ମହାନ୍ତି । ଆମ ଗାଁ' ବାଟେ ଆସି କହିଲେ ଯେ ତମକୁ ଗିରଫ କରିବାକୁ ପୁଲିସ ଯାଇ ଫେରିଆସିଛି । ସବୁନେତା ଗିରଫ । ନବବାବୁ ଗିରଫ ବେଳେ ଏହି ସନ୍ଦେଶ ପଠାଇଛନ୍ତି । ସଙ୍ଗେ ସଙ୍ଗେ ଯିଏ ଯୁଆଡ଼େ ଗୋପନରେ ରହି କାର୍ଯ୍ୟ କରିବାର ସଙ୍କଳ୍ପ ନେଇ ଚାଲିଗଲୁ ।

ଲୋକନାଥବାବୁଙ୍କ ଗାଁ'କୁ ଘେରି ଥିବା ସବୁ ଗାଁ'ରେ ସଂଗ୍ରାମର ଜୁଆର । ସେ ଅଞ୍ଚଳ ତାଙ୍କ ପାଇଁ ଦୁର୍ଗ । ସଂଗ୍ରାମ କାଳରେ ଦ୍ୱିତୀୟ ଥର ତାଙ୍କ ଗୋପନ ପତ୍ର ପାଇ ଆସିବାକୁ ପଡ଼ିଲା । ଆମ କଠିନ ଗୋପନ କେନ୍ଦ୍ର ନିର୍ଦ୍ଦେଶ ମତେ ଗୁଳିକାଣ୍ଡ ଘଟିଥିବା କାଳାମାଟିଆରୁ ବରୀ, ଯାଜପୁର, ପଟାମୁଣ୍ଡାଇ, କେନ୍ଦ୍ରାପଡ଼ା, ଗୋବିନ୍ଦପୁର, କିଶନନଗର, ପାଟକୁରା ପ୍ରଭୃତି

ଅଞ୍ଚଳରେ ସହଯୋଦ୍ଧାଙ୍କ ସହିତ ଯୋଗାଯୋଗ କରି ଢେଙ୍କିଆଗଡ଼ ଆସିବାକୁ ପଡ଼ିଲା ଅକ୍ଟୋବର ଆଦ୍ୟ ଭାଗରେ । ଥାନାବାଲାଙ୍କ ଆଖିରେ ଧୂଳି ଦେବାକୁ ହେବ । ସ୍ୱାଧୀନତା ସଂଗ୍ରାମୀ ବିନୋଦ କାନୁନ୍‌ଗୋଙ୍କ ପତ୍ନୀ ଶଶିବାଳା ବୋହୂ ହେବେ, ଶଗଡ଼ରେ ପୁଆଣି ସଜ ଧରିବେ ରଖୁଡ଼ାହାଣ୍ଡି ଭିତରେ ମୁଁ । ରାତି ଅଧରେ ଲୋକନାଥ ବାବୁଙ୍କ ନିର୍ଦ୍ଦେଶ ମତେ ତାଙ୍କ ଢେଙ୍କିଆଗଡ଼ ଗାଁ'ରେ । ତାଙ୍କର ଯୋଜନା ଜଗତ୍‌ସିଂହପୁର ଥାନା ଉପରେ ଚଢ଼ାଉ କରାଯିବ । ଓଡ଼ିଶା ଆଡୁ ଅନ୍ୟ ଦିଗରେ ରେଢୁଆ ଆଡୁ ଏବଂ ସିଦ୍ଧଳ କନ୍ତାର ଆଡୁ ଶହ ଶହ ଲୋକେ ଯାଇ ରାତିରେ ଚଢ଼ଉ କରିବେ । ଶହ ଶହ ବିଡ଼ା କଣ୍ଟା ମୁଣ୍ଡେଇ ନେଇ ଥାନାକୁ ଯିବା ଆସିବା ବାଟ ବନ୍ଦ କରାଯିବ ।

ତାଙ୍କର ଉଦ୍ୟମରେ ଚାଲିଲା ଆଖପାଖ ଗାଁ'ରେ ପ୍ରସ୍ତୁତି ସଭା । ସିଦ୍ଧଳ କନ୍ତରାର ଲୋକପ୍ରିୟ କର୍ମୀ ବୈକୁଣ୍ଠ ଆଚାର୍ଯ୍ୟଙ୍କ ସାଙ୍ଗ ମାୟାଧର ଦାସ, ପ୍ରହ୍ଲାଦ ପଣ୍ଡା, କନ୍ତାର ସାମନ୍ତରା (ହାତୀ) ପରିବାରର ବହୁ ଯୁବକ, ସାଁପୁରର ବିଶ୍ୱମ୍ଭର ପରିଡ଼ା, ଜୟରାମ ପଣ୍ଡା, ଦୈତାରୀ ପଣ୍ଡା, ଓନିଶ ଗଡ଼ର ଦୁର୍ଗାଚରଣ ରାୟ, ଅଗଣି ସେଠୀ, ପୁନଙ୍ଗର ପ୍ରିୟନାଥ ଦେ କାଦୁଅପଡାର ମାୟାଧର ମିଶ୍ର ଏମିତି ବହୁ ଯୁବକ ସଂଗ୍ରାମରେ ସାମିଲ ହୋଇଗଲେ ।

ଅଞ୍ଚଳର ସାରା ମହାଉଦ୍‌ବେଳନ । ଏ ପ୍ରକାର ପ୍ରସ୍ତୁତିର ଟେର ପାଇଗଲା ଜଗତ୍‌ସିଂହପୁର ପୁଲିସ ପହଞ୍ଚିଲେ ଫଉଜି । ଯୋଜନାଟିକୁ ବାତିଲ କରିବା ରାତିରେ ଲୋକନାଥ ରାୟଙ୍କ ମର୍ମବେଦନା ଆଜି ମାନସପଟରେ ଜାଗି ଉଠୁଛି ।

ତାଙ୍କ ବୋଉ, ସେ ଗାଁ'ର ବିଶିଷ୍ଟ ଆଇନଜୀବୀ ରାହାସ ବିହାରୀ ରାୟଙ୍କ ଝିଅ, ବୋହୂମାନେ ଶଶିବାଳାଙ୍କ ସହ ମିଶି ସ୍ତ୍ରୀ ଲୋକଙ୍କ ଭିତରେ ପ୍ରଚାର କରୁଥାନ୍ତି ତାଙ୍କ ନିର୍ଦ୍ଦେଶକରେ ।

ଆଉ ମନେ ପଡେ ତାଙ୍କର ସଂଗ୍ରାମରେ ଦୃଢ଼ତା, ବ୍ୟବହାରରେ ନମ୍ରତା । ୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହ ବେଳେ କଟକ ଜିଲ୍ଲା କଂଗ୍ରେସ ଅଫିସର କାମ ଅଚଳ ହୋଇଗଲା । ସମ୍ପାଦକ ସୁରେନ୍ଦ୍ର ଦ୍ୱିବେଦୀ ଓ ଅଫିସ୍ ଦାୟିତ୍ୱରେ ଥିବା ମୁଁ ଗିରଫ ହୋଇ ବର୍ଷ ବର୍ଷ ବ୍ୟାପି ଜେଲ୍ ଭୋଗିଲୁ ।

ଲୋକନାଥ ରାୟ ହିଁ ଅଫିସ୍ ପରିଚାଳନା ଦାୟିତ୍ୱ ନେଲେ । ବର୍ଷକ ପରେ ଖଲାସ ହୋଇ ସ୍ୱରାଜ ଆଶ୍ରମରେ ପହଞ୍ଚିବା ମାତ୍ରେ ସେ ଅଡ଼ି ବସିଲେ ଅଫିସ ଦାୟିତ୍ୱ ତାଙ୍କର ସରିଗଲା । ମୋର ଉକ୍ତ ଦାୟିତ୍ୱ, କେତେ ଯୁକ୍ତି ତାଙ୍କର । ମୋ' ଆସ୍ଥାନ କୁଆଡ଼େ ଯିଏ ମାଡ଼ି ବସିଛନ୍ତି । ଯୁକ୍ତି ଛିଣ୍ଡିଲା । କେହି ହେଲେ ଆମେ ସ୍ୱରାଜାଶ୍ରମରେ ରହିବ ନାହିଁ- ଠିକ୍ କଲୁ । ନେତାମାନଙ୍କ ଅନୁମତି ନେଇ ଗାଁ' ଗହଳର କର୍ମକ୍ଷେତ୍ରକୁ ଫେରିଗଲୁ ଆଗାମୀ ସଂଗ୍ରାମ ପ୍ରସ୍ତୁତି ପାଇଁ ।

୧୯୪୨ ଅକ୍ଟୋବରରୁ ୧୯୪୫ ମଧ୍ୟ ଭାଗ ଓ ଶେଷ, ବ୍ରହ୍ମପୁର କେନ୍ଦ୍ର କାରାଗାରରେ

ପାଞ୍ଚ ଶତାଧିକ ଅଟକ ବନ୍ଦୀ । ସମ୍ବଲପୁର, ବାଲେଶ୍ୱର, ଗଞ୍ଜାମ, ପୁରୀରୁ ଆଉ ଅବିଭକ୍ତ କଟକ ଜିଲ୍ଲାର ବନ୍ଦୀମାନଙ୍କ ଗହଣରେ ଲୋକନାଥ ରାୟ । କଟକ ଜିଲ୍ଲାର ଏରସମା, ବାଲିକୁଦା, ତିର୍ତ୍ତୋଲ, କୁଜଙ୍ଗ, ଗୋବିନ୍ଦପୁର, ଜଗତସିଂହପୁର, ବରୀ, ବିଂଝାରପୁର, କୋରେଇ, ଯାଜପୁର, ମାହାଙ୍ଗା, ଧର୍ମଶାଳା, ସାଲେପୁର, କେନ୍ଦ୍ରାପଡ଼ା, ଆଳି, ପଟ୍ଟାମୁଣ୍ଡାଇ, ପାଟକୁରା, ରାଜନଗର, ମହାକାଳପଡ଼ା, ଟାଙ୍ଗୀ, ଚୌଦ୍ୱାର, କଟକ ସଦରର ଶତ ଶତ ବନ୍ଦୀ ।

ଏଇଠି ଘଟେ ତାଙ୍କ ଜୀବନରେ ଏକ ରୂପାନ୍ତର । ରାଜବନ୍ଦୀ ସୁଧୀର ଲୋକ, ମୋତିଲାଲ ତ୍ରିପାଠୀ, ଘନଶ୍ୟାମ ମହାନ୍ତି, ରବି ଘୋଷ ପ୍ରଭୃତି କିଛି ଡାକ୍ତରୀ ବିଦ୍ୟା ଜାଣିଥିଲେ ।

ରାଜନୈତିକ ଅଧ୍ୟୟନ, ଅନୁଶୀଳନ ସାଙ୍ଗକୁ ସେ ଚିକିତ୍ସା ବିଦ୍ୟାଳର ଅ-ଆ-କ-ଖ ଜାଣିଲେ । ସେମାନଙ୍କଠାରୁ ନିଜେ ଅଭାବୀ । ସେ ବଞ୍ଚିବେ ଏବଂ ଚିକିତ୍ସା ଆୟରୁ ସ୍ୱାଧୀନତା ସଂଗ୍ରାମ ଚଳାଇବେ ଏବଂ ଅନ୍ୟ ସହ ଯୋଦ୍ଧାମାନଙ୍କୁ ସାହାଯ୍ୟ କରିବେ ।

ସେତେବେଳେ ଡାକ୍ତରଙ୍କ ସଂଖ୍ୟା ଖୁବ୍ କମ୍ । ଡାକ୍ତରୀ ବିଦ୍ୟା ନ ଜାଣି, ଇଂରେଜୀ ଭାଷାରେ ଦୋରସ୍ତ ନ ହୋଇ, ଜୀବବିଦ୍ୟା, ଶରୀର ବିଦ୍ୟା, ଅସ୍ତ୍ରବିଦ୍ୟାରେ ପ୍ରବେଶ ନ ଥାଏ । ବହୁକାଳ ଧରି ସେ ଜଣେ କୃତୀ ଚିକିତ୍ସକ ମାନ୍ୟତା ପାଇଲେ । ମୋର ଅଭିଜ୍ଞତା - ତାଙ୍କ ଠାରୁ ମାଇଲ ଦୂର ଆମ ଗାଁ'ର ରୋଗୀବି ଡାକ୍ତର କଳ୍ପତରୁ ବାବୁ, ରାମବାବୁ ଛାଡ଼ି ତାଙ୍କ ପାଖକୁ ଯାଆନ୍ତି ।

ଏହା ତାଙ୍କ ଜୀବନର ସାଧନାକୁ ପ୍ରମାଣିତ କରେ । ୧୯୪୦ରେ କାନୁଅପଡ଼ାଠାରେ ଶ୍ରୀହରିଚନ୍ଦନଙ୍କ ଉଦ୍ୟମରେ ଲୋକନାଥ ରାୟଙ୍କ ଉଦ୍ୟମ ଏକତ୍ର ନ ହୋଇଥିଲେ ଶତାଧିକ କଂଗ୍ରେସ ନେତା ଓ କର୍ମୀଙ୍କ ୧୦ ଦିନିଆ ଶିକ୍ଷା ଶିବିର ଅନୁଷ୍ଠିତ ହୋଇପାରି ନ ଥାନ୍ତା । ମନେପଡ଼େ ସେଥିଲାଗି ପ୍ରାଣକୃଷ୍ଣ, ନବକୃଷ୍ଣ, ନୀଳମଣି ପ୍ରଧାନ, ଗୋପବନ୍ଧୁ, ଭାଗିରଥୀ ପ୍ରମୁଖଙ୍କ ଠାରୁ ସେ ପ୍ରଶଂସା ଲାଭ କରିଥିଲେ ।

ଏମିତି ସଂଗ୍ରାମ କାଳର ଅନେକ ଘଟଣା ସହିତ ସେ ବେଳ ସ୍ଥାନୀୟ କ୍ଷେତ୍ରରେ ସଂପୃକ୍ତ ନ ଥିଲେ । ସେ ସବୁରେ ମୁଖ୍ୟ ସଂଗଠକ ଥିଲେ । ତେଣୁ ସାଥୀ ସହଯୋଗୀ ଓ ସହଯୋଦ୍ଧା ତାଙ୍କୁ ନେତାର ରୂପେ ଗ୍ରହଣ କରିଥିଲେ । ସେ ସବୁରେ ମୁଖ୍ୟ ସଂଗଠକ ଥିଲେ । ତେଣୁ ସାଥୀ ସହଯୋଗ ଓ ସହଯୋଦ୍ଧା ତାଙ୍କୁ ନେତା ରୂପେ ଗ୍ରହଣ କରିଥିଲେ ।

ତାଙ୍କର ପରବର୍ତ୍ତୀ ଜୀବନ କାଳ ପ୍ରଜା ସୋସାଲିଷ୍ଟ ପାର୍ଟି ଭାଗଚାଷୀ ଆନ୍ଦୋଳନ, ସୋମନାଥ ହାଟ ଆନ୍ଦୋଳନ, ବେଠି ପ୍ରଥା ଉଚ୍ଛେଦ ଆନ୍ଦୋଳନ ପୁଣି ବିଧାନସଭାରେ ସଦସ୍ୟଭାବରେ ଜନସଂଗ୍ରାମକୁ ତାଙ୍କର ସାହାଯ୍ୟ ସମ୍ପର୍କରେ ଅନ୍ୟ ଅନେକ ସ୍ମୃତିଚାରଣକାରୀ ଲେଖିବେ ।

ଏତିକି କହି ରଖେ ସେ ହୋଇଗଲେ ପ୍ରଜା ସୋସାଲିଷ୍ଟ ମୁଁ ହୋଇଗଲି କମ୍ୟୁନିଷ୍ଟ ।

ତେବେ ତାଙ୍କର ଅନ୍ତର୍ଦ୍ଧାନଯାଏ ଆମେ ଥିଲୁ ପରସ୍ପରର ପରମବନ୍ଧୁ । କିପରି ସେ ସଂଗ୍ରେସ ସମାଜବାଦୀ ହେଲେ । ତାହାର ସଂକ୍ଷିପ୍ତ ବିବରଣୀ ଦେଇ ମୋର ଲେଖା ଶେଷ କରିବି ।

୧୯୩୨ ଜେଲଖାନାରୁ ଖଲାସ ହୋଇ ବନ୍ଧୁ ଲୋକନାଥ ପୁରୀ ଆଉ ପୁରୀ ଜିଲ୍ଲାର କାକଟପୁରକୁ ତାଙ୍କର କର୍ମଭୂଇଁ କରିଥିଲେ ଗତିବାବୁଙ୍କ ପ୍ରେରଣାରେ । ସେତେବେଳେ କାକଟପୁରରେ ସ୍ୱାଧୀନତା ସଂଗ୍ରାମୀ, ଜନପ୍ରିୟ ଚାଷୀନେତା ଗତିକୃଷ୍ଣ ସ୍ୱାଇଁ, ପୂର୍ଣ୍ଣଚନ୍ଦ୍ର ସ୍ୱାଇଁଙ୍କ କନିଷ୍ଠ ସହଯୋଗୀ ହୋଇ ସେ ମୂଳାଗଡ଼ ଆଶ୍ରମର ଜଣେ ଅତି ନିଷ୍ଠାପର କଂଗ୍ରେସ କର୍ମୀ ହେଲେ ଏବଂ କାକଟପୁର, ନୂଆହାଟ, ନିମାପଡ଼ା, ଗୋପର ମୋହନ ଦାସ, ଗତିକୃଷ୍ଣ ସ୍ୱାଇଁଙ୍କ ଦ୍ୱାରା ପରିଚାଳିତ ଚାଷୀ ଆନ୍ଦୋଳନରେ ସାମିଲ ହେଲେ । ଏମାର ମଠ, ଉତ୍ତର ପାର୍ଶ୍ୱ ମଠ, କୋଠଦେଶ, କଟକର ଭଗତ, ପ୍ରହରାଜପୁରର ମିଆଁ ଜମିଦାରମାନଙ୍କ ବିରୁଦ୍ଧରେ ଚାଲିଥିବା ସଂଗ୍ରାମରେ ଲୋକନାଥ ରାୟ ଅଂଶ ଗ୍ରହଣ କରି ସମାଜବାସୀ ଭାବଧାରାରେ ପ୍ରଥମେ ଦୀକ୍ଷା ନେଲେ । ପରେ ପୁରୀରେ ଗୋକୁଳ ମୋହନ ରାୟ ଚୂଡ଼ାମଣି, ଭଗବତୀ ଚରଣ ପାଣିଗ୍ରାହୀ, ଜଗନ୍ନାଥ ମହାନ୍ତି, ବଳରାମ ପାଇକରାୟ, ଗୁରୁଚରଣ ପଟ୍ଟନାୟକ ପ୍ରମୁଖ ସମାଜବାଦୀ ଚିନ୍ତାଧାରାର ସଂଗ୍ରାମୀମାନେ ସ୍ୱାଧୀନତା ସଂଗ୍ରାମ ଚଳାଇବାକୁ ଓ ସ୍ୱାବଲମ୍ବୀ ହେବାକୁ ଅର୍ଥ ଉପାର୍ଜନ ଲାଗି ଏକ ହୋଟେଲ ବସେଇଲେ । ଲୋକନାଥ ରାୟ ପରିଚାଳନାର ମୁଖ୍ୟ ଦାୟିତ୍ୱ ନେଇଥିଲେ । ଏଥି ସଙ୍ଗେ ସଙ୍ଗେ ନବ କୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଭଗବତୀ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ଗୌରାଙ୍ଗ ଚରଣ ଦାସ ପ୍ରମୁଖ କଂଗ୍ରେସ ସୋସାଲିଷ୍ଟ ପାର୍ଟି ୧୯୩୬ରେ ଗଢ଼ିବାବେଳେ ଲୋକନାଥ ରାୟ ତାହାର ଜଣେ ଉଦୀୟମାନ ସକ୍ରିୟ କଂଗ୍ରେସ ସୋସାଲିଷ୍ଟ ନେତା ରୂପେ ପ୍ରକଟିତ ହେଲେ । ତାଙ୍କ ରାଜନୈତିକ ଜୀବନରେ ଉତ୍ତରଣର ସ୍ୱାକ୍ଷର ଏହିସବୁ ଘଟଣା ବହନ କରେ ।

ତାଙ୍କୁ ସ୍ମରଣ କରି ଶ୍ରଦ୍ଧାଞ୍ଜଳି ଜଣାଇବାବେଳେ ମନରେ ଏକ ଖେଦ ପାଠକମାନଙ୍କୁ ଜଣାଇବାକୁ ପଡୁଛି ।

ଆମ ସମ୍ବାଦପତ୍ର ଗୁଡିକ କୁଆଡ଼େ ଜାତୀୟତାବାଦୀ, କିଏ ଉତ୍କଳମଣି ଗୋପବନ୍ଧୁ ସୃଷ୍ଟିତ ଆଉ କିଏ ମହତାବ ବାବୁଙ୍କ ସୃଷ୍ଟି, ଏମିତି ଗର୍ବ କରାଯାଏ । ଲୋକନାଥ ରାୟ ଚାଲିଗଲେ– ଜାଣିହେଲାନି ବହୁଦିନ ଯାଏ ଖବରକାଗଜରୁ । ସେମିତି ଦେଖିଛି ପ୍ରଜା ଆନ୍ଦୋଳନର ପ୍ରଖ୍ୟାତ ନେତା ହରମୋହନ ପଟ୍ଟନାୟକ ଚାଲିଗଲେ, କେଉଁଠି ବିପଦ ସମ୍ବାଦ ବାହାରିଲା । କେହି ଜାଣି ପାରିଲେନି । ସେମିତି ସୁଧୀରଘୋଷ ଚାଲିଗଲେ । ସମ୍ବାଦ କେଉଁଠି ବାହାରିଲା ଜାଣିହେଲା ନାହିଁ । ଏତକ ନମୁନା ମାତ୍ର । ଅଥଚ କେତେ ଅନାମଧେଙ୍କ ଦେହାନ୍ତ ସ୍ତମ୍ଭ ପରେ ସ୍ତମ୍ଭ ଫଟୋ ପରେ ଫଟୋରେ ବାହାରେ । ଏମାନେ ସେ ପର୍ଯ୍ୟାୟର ନୁହଁନ୍ତି ବୋଲି ଏମାନଙ୍କ ମୃତ୍ୟୁ ସମ୍ବାଦ, ସେମାନଙ୍କ ଜୀବନୀ ପ୍ରକାଶ ପାଏ ନାହିଁ ।

ଏହା ହିଁ ମୂଲ୍ୟବୋଧ ଅବକ୍ଷୟର ସୂଚନା ଦିଏ । ଜଗତ୍‌ସିଂହପୁରରେ ଅଳକାଶ୍ରମ ସ୍ମୃତି ପରିଷଦ ସ୍ଥାପନାରେ ଅନ୍ୟ ସବୁ ସଂଗ୍ରାମୀଙ୍କୁ ଏକତ୍ର କରିବାରେ ତାଙ୍କର ଉଦ୍ୟମ ବାସ୍ତବିକ ଅଭିନନ୍ଦନୀୟ । ତାହାର ଉନ୍ମୋଚନ ବିଳମ୍ବିତ ହେବାରୁ ସେ ଦେଖି ପାରିଲେନି ।

ତାଙ୍କର ଅଶୀତମ ଜନ୍ମ ଜୟନ୍ତୀରେ ଜଗତ୍‌ସିଂହପୁରରେ ଲୋକନାଥ ପ୍ରେମୀ ରାଜ୍ୟରୁ ବହୁ ମାନ୍ୟଗଣ୍ୟ ବ୍ୟକ୍ତି, ଜଗତ୍‌ସିଂହପୁରର ଯମ ଅଇଁଠାରୁ ବଞ୍ଚିଥିବା କସ୍ତୁରି ଚରଣ ମଲିକ, ବୈକୁଣ୍ଠ ନାଥ ମହାନ୍ତି, ଶଶିଭୂଷଣ ଦାସ ପ୍ରମୁଖଙ୍କ ସହିତ ମୁଁ ଯେପରି ତାଙ୍କୁ ମଞ୍ଚ ଉପରେ ଆଲିଙ୍ଗନ କରି ଅତୀତର ସଂଗ୍ରାମକୁ ସ୍ମରଣ କରିଥିଲୁ ତାହା ମନେ ପକାଇ ଆଜି ତାଙ୍କ ସ୍ମୃତି ଚାରଣ କରି ଶ୍ରଦ୍ଧା ସମ୍ମାନ ନିବେଦନ କରୁଛି ।

**ପେଷା ଡାକ୍ତରୀ କିନ୍ତୁ ନିଶା ଅନେକ**

ଛୋଟିଆ ମଣିଷ କିନ୍ତୁ ଭିତରେ ଏକ ବିଶାଳ ମନ । କାମ କରିବା ଓ କରେଇବାର ଯାଦୁକରୀ ଶକ୍ତି । କାହାପାଖରେ ଡାକ୍ତର ବାବୁତ, କାହା ପାଖରେ ନଥିବା, କାହା ପାଖରେ ବାପା ଓ ଅଜା ତ କାହାପାଖରେ ଲୋକନାଥ ବାବୁ ।

ସ୍ୱାଧୀନଚେତା ଲୋକନାଥ ରାୟ ସ୍ୱାଧୀନତା ସଂଗ୍ରାମ ବେଳେ ଜେଲରେ ଥିବା ସମୟରେ ସେବା ଶୁଶ୍ରୁଷା କରିବା ଏକ ପ୍ରବୃତ୍ତି ଥିଲା । ଗାନ୍ଧିଜୀଙ୍କ ନିର୍ଦ୍ଦେଶ- "ଦେଶ ନିଶ୍ଚୟ ସ୍ୱାଧୀନ ହେବ କିନ୍ତୁ ସ୍ୱାଧୀନତା ସଂଗ୍ରାମୀମାନେ ଦେଶ ଉପରେ ବୋଝ ନ ହୋଇ ସ୍ୱାଧୀନ ଭାବେ ଗୋଟିଏ ଗୋଟିଏ ନିଜ ଭରଣ ପୋଷଣ ପାଇଁ, ପେଷା ଗ୍ରହଣ କରି ଜନସେବା କରିବେ । ଗାନ୍ଧିଜୀଙ୍କ ନିର୍ଦ୍ଦେଶକୁ ଡାକ୍ତର ଲୋକନାଥ ରାୟ ଅକ୍ଷରେ ଅକ୍ଷରେ ମାନି ନେଇଥିଲେ । ଶେଷ ଜୀବନ ପର୍ଯ୍ୟନ୍ତ ଡାକ୍ତରୀ ଚିକିତ୍ସାକୁ ପେଷା ତଥା ଜନସେବା ଭାବରେ । କିନ୍ତୁ ନିଶା ଥିଲା ଉନ୍ନତ କୃଷି, ଗୋପାଳନ, ଫଳଚାଷ, ପନିପରିବା ଚାଷ ଓ ମାଛଚାଷ ଇତ୍ୟାଦି ସତେ ଯେଉଁ ବୃତ୍ତିର ଲୋକ ତାଙ୍କର ଯେତେ ନିକଟତର ହୋଇଛି ସେ ସେତେ ଅଧିକ ଶିଖିଛି ଓ ତାଙ୍କୁ ଶିଖେଇଛି । ଘଟଣାକ୍ରମେ ମୁଁ କୃଷି ମହାବିଦ୍ୟାଳୟରେ ପଢ଼ିଲି । ସମ୍ପ୍ରତି ଭୁବନେଶ୍ୱରସ୍ଥ କୃଷି ଓ ବୈଷୟିକ ବିଦ୍ୟାଳୟରେ ଅଧ୍ୟାପନା କରୁଛି । ମୋର ବିଭାଗ କ୍ଷେତ୍ର ବିଜ୍ଞାନ । ଯେବେ ମାମୁଁଙ୍କ ସହିତ ଦେଖା ହେବ କୃଷି ବିଷୟରେ ନିଶ୍ଚୟକଥା ହେବେ । ତାଙ୍କୁ ବିଜ୍ଞାନ ସମ୍ମତ କୃଷି ବିଦ୍ୟା କିଛି ଶିକ୍ଷାଦେବା ଅପେକ୍ଷା ଅଧିକ ଶିଖିଲା ଭଳି ଲାଗେ । କାରଣ, କୌଣସି ବୈଷିୟକ ଜ୍ଞାନକୁ ପ୍ରୟୋଗ କଲେ କ'ଣ ସମସ୍ୟା ହୋଇଛି ବା କଣ ହେବାର ସମନ୍‌ଭାବନା ଅଛି ସେଥିପ୍ରତି ସେ ସଚେତନ ଥିଲେ । ଏଭଳି ଅନେକ କଥା ତ ଅଛି । ଗୋଟିଏ ଛୋଟିଆ ଉଦାହରଣ ଦେବି; ଯାହାକି ମୁଁ ସର୍ବଭାରତୀୟ ପ୍ରୟୋଗଶାଳାରେ ପୁନରାବୃତ୍ତି କରିଥିଲି ଏବଂ ତାହା ମଧ୍ୟ ଗ୍ରହଣ କରାଯାଇଥିଲା । ଚାଷଜମିରେ ଘାସମରା ଔଷଧର ପ୍ରୟୋଗ ଏକ ଉନ୍ନତ ତଥା ଫଳବତୀ କାର୍ଯ୍ୟକ୍ରମ । କିନ୍ତୁ ଠିକା ପ୍ରଣାଳୀ ଅବଲମ୍ବନ ନ କଲେ ମୁଥା ଘାସ ମରିବନି ।

ମାଟି ତଥା ବାୟୁମଣ୍ଡଳ ସାମାନ୍ୟ ପ୍ରଦୂଷଣ ହେବାର ସମ୍ଭାବନା ଅଛି । ଆମ୍ବଗଛ ତଳେ ମୁଥା ଘାସ ଉଠୁନଥିବା ଲକ୍ଷ୍ୟ କରି ସେ ମୁଥଘାସ ମାରିବା ପାଇଁ ଆମ୍ବପତ୍ର ପକାଇ ଚାଷ କରି ଦେଖିଲେ ଏହା ମରିଯାଉଛି । ଏ କଥାଟି ସେ ମୋତେ କହିଥିଲେ । ଯାହାକୁ କି ମୁଁ ବୈଜ୍ଞାନିକ ସମ୍ମିଳନୀରେ ଅବତାରଣା କରିବା ଫଳରେ ସେମାନେ ଗ୍ରହଣ କରି ଏହାକୁ ଏକ ପୁରାତନ ବୈଷୟିକ ଜ୍ଞାନ ହିସାବରେ ନେଲେ । ଗଛ, ଫଳ, ଫୁଲ ବିଷାକ୍ତ ନ ହୋଇ ବାୟୁ ମଣ୍ଡଳ ଦୂଷିତ ନ ହେଉ ସେଥିପାଇଁ ସେ କେଉଁକାଳୁ ସଚେତନ ଥିଲେ । ଫସଲର ରୋଗ, ପୋକ ଦମନ ପାଇଁ ନିମ୍ବ ପତ୍ର ଓ ଧୂଆଁପତ୍ର ସିଝାପାଣି ବ୍ୟବହାର କରୁଥିଲେ । ତାଙ୍କ ଧାନଚାଷ, ପନିପରିବା ଚାଷ, ନଡ଼ିଆ କଦଳୀ ଚାଷ, ଗାଈବଳଦ ପାଳନ ଓ ମାଛଚାଷ ଇତ୍ୟାଦି ଯେ ଦେଖିଛି ପସନ୍ଦ ନ କରି ରହିପାରିବ ନାହିଁ । ତଥାପି ଆହୁରି ଥିକ ଶିଖିବାକୁ ଇଚ୍ଛା । ଯେଉଁ କାମଟି କରିବେ ସେଥିରେ ପୁରା ମଜ୍ଜିଯିବେ । ବିଭିନ୍ନ ଖାଦ୍ୟଦ୍ରବ୍ୟ ଉତ୍ପାଦନ କରିବେ ବେଶୀ; ଖାଇବେ କମ୍, ଖୋଇବେ ବେଶୀ ଏହା ହିଁ ଥିଲା ସ୍ୱର୍ଗୀୟ ଲୋକନାଥ ରାୟଙ୍କ ନିଶା ।

□□□

# ଅମାୟିକ ସମାଜସେବୀଙ୍କ ଅକସ୍ମାତ ଅନ୍ତର୍ଦ୍ଧାନ

ହିମାଳୟ ଚୂଡ଼ା ସିକିମ୍‌ର ସର୍ବୋଚ୍ଚ ନ୍ୟାୟାଳୟରୁ ମହୋଦଧି ତଟ ସମତଳ ଭୂଇଁ ଜନ୍ମମାଟି ଓଡ଼ିଶାରେ ଏକ ମୁକ୍ତ ବିହଙ୍ଗମ ନିଃଶଙ୍କ ଭାବରେ ଉଡ଼ିବାର ବାସନା ଘେନି ଆସିଲେ ଜଷ୍ଟିସ୍ ଯୁଗଳ କିଶୋର, ଏହି ପରିଚ୍ଚା ପ୍ରତ୍ୟୟ ଜନ୍ମେ ତାଙ୍କ ଅବସରକାଳୀନ ଜୀବନଯାତ୍ରାର ପଥ ନିର୍ବାଚନରେ ।

ସାଧାରଣତଃ ପରିଲକ୍ଷିତ ଏକ ବାସ୍ତବତା । ଆଇନ ବ୍ୟବସାୟରେ ଅବା ନ୍ୟାୟାଳୟରେ ଆଇନକାନୁନ୍‌ର ତର୍ଜମା କରି କରି ପରବର୍ତ୍ତୀ ଅବସରକାଳୀନ ଜୀବନରେ ସେହି ଧାରାରୁ ଅପସରିଯିବାକୁ କୁଣ୍ଠା ଲାଗେ ଅନେକ ବ୍ୟକ୍ତିଙ୍କୁ । ହୁଏତ ନିଜସ୍ୱ ଆଇନ ଉପଦେଷ୍ଟା ଦପ୍ତର ଖୋଲା ଯାଏ- ଅବା ସରକାରୀ କମିଶନ ପ୍ରଭୃତିରେ ସ୍ଥାନ ଅର୍ଜନ କରି ଚିରାଚରିତ ଅଭ୍ୟାସକୁ ଅତୁଟ ରଖିବାର ଉଦ୍ୟମ ଚାଲେ ।

ଏଇଠାରେ ହିଁ ଅବସର ପରେ ଜଷ୍ଟିସ୍ ମହାନ୍ତିଙ୍କ ପକ୍ଷରେ ଏକ ବ୍ୟତିକ୍ରମ ଘଟେ । ସେ ସମାଜର ଏକ ବୃହତ୍ତମର ପରିସରକୁ ଆବୋରି ନେବାର ସଂକଳ୍ପ ନିଅନ୍ତି । ନିଜକୁ ମୁକ୍ତ ବିହଙ୍ଗମ କରିବେ, ଜୀବନର ଅବଶିଷ୍ଟ ଅଂଶକୁ ସମାଜ, ସାହିତ୍ୟ, ସଂସ୍କୃତି, ସମାଜସେବା କ୍ଷେତ୍ରରେ ନିଜର ଶକ୍ତି, ସାମର୍ଥ୍ୟ, ଯୋଗ୍ୟତାକୁ ବିନିଯୋଗ କରିବେ । ଏପରି ସଂକଳ୍ପରୁ ଶେଷ ନିଃଶ୍ୱାସ ଯାଏ ସେ ବିଚ୍ୟୁତ ହୋଇ ନାହାନ୍ତି । ମନେହୁଏ ଏପରି ପ୍ରେରଣା ସେ ପାଇଥିଲେ ତାଙ୍କ ଶ୍ୱଶୁର ଓଡ଼ିଶା ହାଇକୋର୍ଟର ଏକଦା (ପ୍ରଧାନ) ବିଚାରପତି ନ୍ୟାୟମୂର୍ତ୍ତୀ ରାଜ କିଶୋର ଦାସଙ୍କ ଠାରୁ ।

ସ୍ୱାଧୀନତା ସଂଗ୍ରାମ କାଳରେ ବ୍ରିଟିଶର ନାହିଁ ନ ଥିବା ଦମନ, ହତ୍ୟା ଠାରୁ ଚୋରି ପ୍ରଭୃତି ବିଭିନ୍ନ ମିଥ୍ୟା ମାମଲାରେ ଜଡ଼ିତ କରାଯାଏ, ସେ କାଳର ବିଦ୍ରୋହୀ, ବିପ୍ଳବୀମାନଙ୍କୁ । ଅନେକ ଆଇନଜୀବି ଏପରି ଅପରାଧୀମାନଙ୍କ ପକ୍ଷ ନେଇ ବ୍ରିଟିଶ ନ୍ୟାୟାଳୟର ନ୍ୟାୟପତିଙ୍କ ବିରାଗ ଭାଜନ ହେବାକୁ କୁଣ୍ଠା କରନ୍ତି । ତଥାପି କେତେକ ସ୍ୱାଧୀନଚେତା ନାମଜାଦା ଆଇନଜୀବୀ ଏଥିଲାଗି ଆଗଭର ହୁଅନ୍ତି, ପରେ (ସର୍ବୋଚ୍ଚ) ନ୍ୟାୟପତି ହୋଇଥିବା ତନ୍ମଧ୍ୟରେ ଜଷ୍ଟିସ ଦାସ ଅନ୍ୟତମ । ରଣପୁର ରଘୁ ଦିବାକର ଫାଶିଦଣ୍ଡ ମାମଲା ଠାରୁ ୧୯୪୦ କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାରେ ନିଃଶଙ୍କ ହୋଇ ସେ ନେଇଥିଲେ କଥାକଥିତ ରାଜଦ୍ରୋହୀ

ପକ୍ଷ । ଏପରି ଅନେକ ଦୃଷ୍ଟାନ୍ତ ରହିଛି । ଯୁଗଳ କିଶୋର ସେହି ଶ୍ୱଶୁରଙ୍କ ସେହି ଆଦର୍ଶକୁ ସମ୍ମାନ ଦେଇ ଅବଶିଷ୍ଟ ଜୀବନକୁ ସମାଜସେବାରେ ଲଗେଇବାକୁ ଯେଉଁ ସଂକଳ୍ପ ନେଲେ, ମୃତ୍ୟୁ ତାଙ୍କୁ ଡାକି ନେଉଥିବା ବେଳେ ସେହିପରି ଏକ ଦାୟିତ୍ୱ ମୁଣ୍ଡେଇ ଯାତ୍ରା କରୁଥିଲେ ରୂପ୍‌ସାକୁ ଏକ ଆଲୋଚନାଚକ୍ରରେ ପୌରୋହିତ୍ୟ କରିବା ପାଇଁ । ନିଃଶବ୍ଦରେ ପ୍ରାଣ ବାୟୁ ଉଡ଼ିଗଲା- ଚଳନ୍ତା ବାଷ୍ପୀୟ ଗାଡ଼ିରେ ।

ଅବସର ନେବା ପରବର୍ତ୍ତୀ ଦୀର୍ଘ ଦଶବର୍ଷ ତାଙ୍କୁ କର୍ମବ୍ୟସ୍ତତାରୁ ମୁକ୍ତି ମିଳି ନଥିଲା । କଟକ-ଭୁବନେଶ୍ୱର ବା ବାଲେଶ୍ୱର, ବ୍ରହ୍ମପୁର ପରି ନଗରନଗରୀ ନୁହଁ, ପଲ୍ଲୀ ପ୍ରାନ୍ତରରେ ସାହିତ୍ୟ ସଭା, ସାଂସ୍କୃତିକ ସମାରୋହ, ସ୍ମୃତିଚାରଣ ସମାବେଶ, କର୍ମୀ-କର୍ମଚାରୀଙ୍କ ସଙ୍ଗଠନର ବାର୍ଷିକୋତ୍ସବର ମୁଖ୍ୟ ଅତିଥି, ମୁଖ୍ୟ ପୁରୋଧା ରୂପେ ତାଙ୍କୁ ଦେଖିବାକୁ ମିଳୁଥିଲା । ସେଠାରେ ପାରି ତୋଷିକର ଲାଳସା ନାହିଁ- ପୂର୍ବ ସୂରୀମାନେ ଯେଉଁ କ୍ଷେତ୍ରରେ ନିଜ ଜୀବନକୁ ପ୍ରଭାବିତ କରିଛନ୍ତି, ସେମାନଙ୍କ ଶୂନ୍ୟତାକୁ ଜଷ୍ଟିସ୍ ମହାନ୍ତି ପୂରଣ କରିବାରେ ଅନ୍ୟମାନଙ୍କ ପାଇଁ ଏକ ଦୃଷ୍ଟାନ୍ତ ରଖିଯାଇଛନ୍ତି । ସରଳ, ମିଷ୍ଟବଚନ, ବନ୍ଧୁବତ୍ସଳ, ସ୍ୱଳ୍ପଭାଷୀ ଯୁଗଳଙ୍କ ନିକଟରେ ତେଣୁ ପ୍ରବେଶ ଥିଲା ସମାଜର ବିଭିନ୍ନ ବର୍ଗର ବ୍ୟକ୍ତିଙ୍କର, ଆଇନ୍‌ଜୀବିଙ୍କ ଠାରୁ ସାହିତ୍ୟିକ, ସମାଜସେବାଙ୍କ ଠାରୁ ବିଭିନ୍ନ ସଂସ୍ଥା ସଂଗଠନର କର୍ମକର୍ତ୍ତାଙ୍କର ।

ଅନ୍ୟ ବହୁ ବ୍ୟକ୍ତିଙ୍କ ଅଭିଜ୍ଞତା ମଧ୍ୟରେ ତାଙ୍କ ସହିତ ଜଡ଼ିତ ହେବାର ଅନେକ ଅଭିଜ୍ଞତା ମଧ୍ୟରୁ ଗୋଟିକର ଅବତାରଣା କରି ତାଙ୍କୁ ମୋର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ଜଣାଉଚି ।

ଜ୍ଞାନମଣ୍ଡଳ ପ୍ରଣେତା ବିନୋଦ କାନୁନ୍‌ଗୋଙ୍କର ଚିତାଗ୍ନି ବେଳେ ଉପସ୍ଥିତ ଓଡ଼ିଶାର ଶତ ଶତ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ମଧ୍ୟରେ ଥିଲେ ଜଷ୍ଟିସ୍ ମହାନ୍ତି । ଜ୍ଞାନମଣ୍ଡଳର ଭବିଷ୍ୟତ ଓ ବିନୋଦ କାନୁନ୍‌ଗୋଙ୍କ ସ୍ମୃତି ରକ୍ଷା ଲାଗି ଚିତା ଜଳିଲା ବେଳେ ବି ଚର୍ଚ୍ଚା ଚାଲିଥାଏ । ସେଥିରେ ସେ ଭାଗ ନେଇଥାନ୍ତି । ଭବିଷ୍ୟତର ସ୍ମୃତି ସଂସଦ ପରି ଏକ ଅନୁଷ୍ଠାନର ଦାୟିତ୍ୱ ନେବା ଲାଗି କେତେକ ନାମଜାଦା ନ୍ୟାୟପତି, ସାହିତ୍ୟିକଙ୍କୁ ଅନୁରୋଧ କରାଯାଇଛି । ସହଯୋଗ କରିବେ, କିନ୍ତୁ ସମୟ ଦେଇ ଦାୟିତ୍ୱ ବହନ କରିବାକୁ ଅନିଚ୍ଛା ପ୍ରକାଶ କରିଛନ୍ତି । ଉଦୀୟମାନ ଯୁବନେତା ପ୍ରଶାନ୍ତ ଦାସ, ଅଧ୍ୟାପକ ଓ ରାଜନୈତିକ ସ୍ତମ୍ଭକାର ପାବକ କାନୁନ୍‌ଗୋ, ଏମିତି କେତେଜଣ ଯୁଗଳ କିଶୋରଙ୍କୁ ଅନୁରୋଧ କରନ୍ତେ, ସେ ପ୍ରଥମେ ନମ୍ରତା ପ୍ରକାଶ କଲେ । ଜ୍ଞାନମଣ୍ଡଳର ପ୍ରଣେତା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବିନୋଦ ବାବୁଙ୍କ ସ୍ମୃତି ରକ୍ଷାର ଦାୟିତ୍ୱ ବହନ କରିବାର ସେ ଉପଯୁକ୍ତ ଭାଜନ ବ୍ୟକ୍ତି ନୁହଁନ୍ତି ବୋଲି ସ୍ୱଭାବ ସୁଲଭ ନିଷ୍କପଟ ମନୋଭାବ ପ୍ରକାଶ କଲେ । ମାତ୍ର ଅନୁରୋଧ ରକ୍ଷା କରିବାକୁ ହିଁ ପଡିଲା ।

ପ୍ରତି ସପ୍ତାହରେ ହୁଏତ ତାଙ୍କ ପାଇଁ ଦୂର ନିକଟ ସବୁଠାରେ କାର୍ଯ୍ୟକ୍ରମ ସ୍ଥିରୀକୃତ । ସେଥିପାଇଁ ମାନସିକ, ବୌଦ୍ଧିକ ଓ ଶାରୀରିକ ପ୍ରସ୍ତୁତ ।

କିନ୍ତୁ ଜ୍ଞାନମଣ୍ଡଳ ଆଉ ବିନୋଦ କାନୁନ୍‌ଗୋ ସ୍ମୃତି ସଂସଦର ନିତ୍ୟ ନୈମିତିକ କାର୍ଯ୍ୟରେ ତାଙ୍କର ମୂଲ୍ୟବୋଧ ପରାମର୍ଶ ଓ ଉପସ୍ଥିତି ତାଙ୍କ ଅଙ୍ଗୀକାରବଦ୍ଧତାର ପରିଚୟ ଦିଏ ।

ରାଜନୀତିର ଆବର୍ତ୍ତରେ ସେ ଝାସ ଦେବାକୁ ମନକଲେ ନାହିଁ । କିନ୍ତୁ ନିର୍ଲିପ୍ତ ଭାବରେ ଦୂରରୁ ପର୍ଯ୍ୟବେକ୍ଷଣ କରି ତାହାର ସମୀକ୍ଷା, ଆଲୋଚନା, ସମାଲୋଚନାର ଆୟୁଧ ରୂପେ ଖବର ବିଚାର ସାପ୍ତାହିକଟିର ସମ୍ପାଦନା ପ୍ରକାଶନରେ ମନୋନିବେଶ କରିଥିଲେ । ଅପସଂସ୍କୃତି ବିରୁଦ୍ଧରେ ସାଧାରଣ ଜୀବନରେ ଓ ନିର୍ଦ୍ଦିଷ୍ଟ କେତେକ ରାଜନୈତିକ କ୍ଷେତ୍ରରେ ସମସ୍ତ ସାମାଜିକ, ମାନବିକ ମୂଲ୍ୟବୋଧର ଅବକ୍ଷୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସୁସ୍ଥ ଜନମତ ସୃଷ୍ଟି କରିବାକୁ ତାଙ୍କର ପ୍ରୟାସକୁ ତାଙ୍କ ମର୍ମାନ୍ତିକ ମୃତ୍ୟୁ ଅଧୁରା କରିଦେଲା ।

ତାଙ୍କ ସ୍ମୃତି ପ୍ରତି ମୋର ଗଭୀର ଶ୍ରଦ୍ଧା ନିବେଦନ ।

ooo

# କମ୍ରେଡ୍ ପ୍ରବୀର ପାଲିତ - ସାର୍ଥକ ଏକ ରାଜନୈତିକ ଜୀବନର ଅବସାନ

ଆମ କେତେକଙ୍କର ସାମାଜିକ-ରାଜନୈତିକ ଜୀବନର ଶେଷ ପାହାଚରୁ ଗଡ଼ି ପଡ଼ିବାର ମୁହୂର୍ତ୍ତ ଗଡ଼ିଗଲାଣି । ଅଥଚ ସେପରି ଏକ ପରିବାରରେ ଥାଇ ସାମାଜିକ ରାଜନୈତିକ ଜୀବନର ପାହାଚଗୁଡ଼ିକର ଯିଏ ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ଉଠି ଚାଲିଥିଲେ, ମଝି ପାହାଚରୁ ସେ ଖସି ପଡ଼ିଲେ । ପ୍ରବୀର ପାଲିତ ଖାଲି କଟକରେ ନୁହଁ, ଓଡ଼ିଶାର ସର୍ବତ୍ର ପରିଚିତ ପ୍ରବୀରଦା । ଯିଏ ଆମ ପାଇଁ ଶେଷ ଲୋତକାଶ୍ରୁରେ ତର୍ପଣ କରିଥାନ୍ତେ ତାଙ୍କ ପାଇଁ ଆମର ଶୋକାଶ୍ରୁ । କେଡ଼େ ଅପ୍ରତ୍ୟାଶିତ, କେଡ଼େ ମର୍ମଭେଦୀ, କେତେ ବଡ ଟ୍ରାଜିଡ଼ି-କାରୁଣ୍ୟ ।

ଗଭୀର ଆତ୍ମପ୍ରତ୍ୟୟ, ଗମ୍ଭୀର ଆଶାବାଦର ପ୍ରତୀକ ଏକ ରାଜନୀତିଜ୍ଞ, ଏକ କଟ୍ଟର କମ୍ୟୁନିଷ୍ଟ, ଏକ ସର୍ବଜନ ସ୍ୱୀକୃତ ସମାଜସେବୀ, ଏକ ବିଶିଷ୍ଟ ଆଇନଜ୍ଞ- କିନ୍ତୁ ଭିନ୍ନ ଧରଣର ।

ନିଜର ମରଣାନ୍ତକ ବ୍ୟାଧି ସଂପର୍କରେ, ତା'ର ଅନ୍ତିମ ପରିଣତି ସଂପର୍କରେ ତାଙ୍କର ଯଥେଷ୍ଟ ଜ୍ଞାନ, ଏପରି ବ୍ୟାଧିର ପରିଣତି ସଂପର୍କରେ ଜୀବନରେ ପ୍ରଚୁର ଅଭିଜ୍ଞତା, ଅଥଚ ମୃତ୍ୟୁ ଯେ ଟାକି ରହିଛି, ତାଙ୍କୁ ଯିଏ ରୋଗ ଶଯ୍ୟାରେ ଶଂଖୋଳିବାକୁ ଯାଉଛି, ଜଣାପଡୁଥାଏ ସେଥିଲାଗି ସେ ଯେପରି ଭୀତତ୍ରସ୍ତ ନୁହନ୍ତି, ଚିନ୍ତିତ ନୁହନ୍ତି । ସେମିତି ହସ, ହାସ୍ୟଭରା ସମାଜର ଅଭ୍ୟର୍ଥନା ।

ପତ୍ନୀ ବାଣୀ ପାଲିତ, ପୁଅ ବୁଗି ଅବା ପୁତୁରା, ଝିଆରୀ, ବୋହୂଙ୍କୁ ବରାଦ ହେବ- ଆଗେ ଚା ଆଉ ମିଠା, ଚାଲିବ ଘଣ୍ଟା ଘଣ୍ଟା ଆଲୋଚନା ଓଡ଼ିଶା ରାଜଧାନୀ ଭୁବନେଶ୍ୱରଠାରେ ଦିଲ୍ଲୀ ଦରବାରର ନିତ୍ୟ ନୈମିତିକ ମୁହୂର୍ତ୍ତକେ ପରିବର୍ତ୍ତନଶୀଳ ଘଟଣାର ଅବତାରଣାଶ କରିବେ । ଅନ୍ୟମାନଙ୍କଠାରୁ ଶୁଣିବେ । ନିଜ ଦଳ ଠାରୁ ଆରମ୍ଭ କରି ସବୁ ରାଜନୈତିକ ଦଳଙ୍କ ସ୍ଥିତି ଆଉ ନୀତି, ଦେଶର ଘଡ଼ିସନ୍ଧିବେଳେ ବାମପନ୍ଥୀଦଳମାନଙ୍କର ଐକ୍ୟ, ସମାଜକୁ କଳଙ୍କିତ କରି ଚାଲିଥିବା ଦୁର୍ନୀତିର ରାକ୍ଷସ, ମାନବିକ ମୂଲ୍ୟବୋଧଗୁଡ଼ିକର ଅବକ୍ଷୟ- ଏମିତି କେଉଁ ସମସ୍ୟା ରୋଗ ଶଯ୍ୟାରେ ଥାଇ ସେ ଉଠାଉ ନ ଥିଲେ ।

ବସି ପଡ଼ିଛି- ଠିକ୍ ଯେମିତି ସେ ପୂର୍ବପରି ସୁସ୍ଥ, ପୂର୍ବପରି ଉଭୟ ଶାରିରୀକ ଓ ମାନସିକ ଭାବରେ ସକ୍ରିୟ, ଯେପରି ।

ଏପରି ଏକ ଆଶାବାଦୀ, ଆତ୍ମପ୍ରତ୍ୟହ ସମ୍ପନ୍ନ ରାଜନୀତିଜ୍ଞ, ଏପରି ଜଣେ କମ୍ୟୁନିଷ୍ଟ ପ୍ରବୀର ପାଳିତ ।

କାହିଁକି ବିଶ୍ୱାସ କରିବୁ । ସେ ହଠାତ୍ ଚାଲିଯିବେ । ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ସମ୍ବତ୍ସର- ଅଗଷ୍ଟ ୧୫ ଆଉ ମାତ୍ର ୧୪ ଦିନ ବାକି । ଅଗଷ୍ଟ ୧ରେ ସବୁ ଶେଷ । ଏଇତ ସେଦିନ ତାଙ୍କ ସାଥୀ ଶ୍ରମିକନେତା ଦୁର୍ଗାଚରଣ ମହାନ୍ତିଙ୍କ ଶେଷ ଦର୍ଶନ ଲାଗି ତାଙ୍କ ଘରେ ଉପସ୍ଥିତ । ଆମେ ସମସ୍ତେ ଆବାକ୍ ।

ସେ ଯେ କେବଳ କମ୍ୟୁନିଷ୍ଟ ପାର୍ଟି ପାଇଁ, କ'ଣ ଥିଲେ ତାହାର ବାଛ ବିଚାର ରହିଲାନି । ଶୋକାତୁରଙ୍କ ଅଛିଣ୍ଡା ଧାଡ଼ି । କଟକ ସହରର ସାମାଜିକ ଜୀବନର କେଉଁ କ୍ଷେତ୍ର ବାଦ ପଡ଼ିଲାନି । ସର୍ବୋଚ୍ଚ ଅଦାଲତ, ସମସ୍ତ ନ୍ୟାୟାଳୟର ବିଚାରପତି, ସହସ୍ର ଆଇନଜୀବୀ, ସାଇବସ୍ତିର ମୁରବୀ, ଯୁବକ, ମହିଳା, କଂଗ୍ରେସ, ଜନତା ଦଳ, ସୋସାଲିଷ୍ଟ ପାର୍ଟି, ଏସୟୁସିଆଇ, ବିଜେପି ଠାରୁ ଆରମ୍ଭ କରି ସିପିଆଇ (ଏମ୍), ସିପିଆଇ (ଏମ୍.ଏଲ୍) କମ୍ୟୁନିଷ୍ଟ ପାର୍ଟିର ନେତା, କର୍ମୀ, ମନ୍ତ୍ରୀ, ସାଂସଦ, ବିଧାୟକ । ଆଉ ସବୁଠାରୁ ଅଧିକ ମ୍ରିୟମାଣ ସେ ଜୀବନବ୍ୟାପୀ ଯାହାଙ୍କ ପକ୍ଷରେ ଲଢୁଥିଲେ ସେମାନଙ୍କ ଲମ୍ବାଧାଡ଼ି । ଶ୍ରମିକ ସଂଗଠନ, କର୍ମଚାରୀ ସଂଗଠନ, ଏଲ୍.ଆଇ.ସି. ବ୍ୟାଙ୍କ, ସରକାରୀ କର୍ମଚାରୀ ସଂଘର କର୍ମକର୍ତ୍ତାଙ୍କ ଶେଷ ଶ୍ରଦ୍ଧାଞ୍ଜଳି । ଦଳମତ, ଧନ୍ଦାବେଉଷା, ରାଜନୈତିକ ମତାଦର୍ଶରେ ଭିନ୍ନ ଭିନ୍ନ ସହସ୍ରାଧିକ ଶୋକାତୁରଙ୍କ ପକ୍ଷରେ ଶହୀଦ ଭବନରେ ସ୍ମୃତି ସଭାରେ ତାଙ୍କର ଅମ୍ଳାନ ବ୍ୟକ୍ତିତ୍ୱ, ବଳିଷ୍ଠ ନେତୃତ୍ୱ, ସମାଜସେବାର ଗୁଣ ଗାନ କରି ଅଶ୍ରୁଳ ନୟନରେ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ ହିଁ ତାଙ୍କ ସାମାଜିକ ଜୀବନରେ ପ୍ରତିଷ୍ଠାର ଏକ ନିଦର୍ଶନ । ଏହିପରି ଏକ ବ୍ୟକ୍ତିର, ଏହିପରି ଏକ ନିଷ୍ଠ କମ୍ୟୁନିଷ୍ଟ, ଦେଶ ପ୍ରେମୀଙ୍କର ଅନ୍ତର୍ଦ୍ଧାନ ହୋଇଗଲା ।

ତାଙ୍କ ଜୀବନର ଚର୍ଚ୍ଚା ଅନେକ କରିବେ । ସଂକ୍ଷେପରେ ତାଙ୍କ ରାଜନୈତିକ ଜୀବନର ଛବି କେତେକ ମନେ ପଡୁଛି ।

ସ୍ୱାଧୀନୋତ୍ତର ଯୁଗର ଏକ ଦେଶପ୍ରେମୀ, କମ୍ୟୁନିଷ୍ଟ ଆନ୍ଦୋଳନରେ, ଶ୍ରମିକ ଶ୍ରେଣୀର ସଂଗ୍ରାମରେ, ଗଣତାନ୍ତ୍ରିକ ମୂଲ୍ୟବୋଧ ଗୁଡ଼ିକ ଉପରେ ଆକ୍ରମଣକୁ ପ୍ରତିହତ କରିବା ସଂଗ୍ରାମରେ ସେ ତାଙ୍କର ଅନନ୍ୟ ସ୍ୱାକ୍ଷର ରଖି ଯାଇଛନ୍ତି ।

ତାଙ୍କୁ ଓଡ଼ିଶାର ରାଜନୈତିକ ଜୀବନରେ ପ୍ରଥମ ପ୍ରତିଷ୍ଠା ଆଣି ଦେଇଥିଲା ସାଂପ୍ରଦାୟିକତା ବିରୁଦ୍ଧରେ ତାଙ୍କର ସାହସିକ ସଂଗ୍ରାମ । କଟକକୁ ସାଂପ୍ରଦାୟିକତା-ବାଦୀମାନେ ସତୁରି ଦଶକରେ ଯେତେବେଳେ ଅଗ୍ନିକୁଣ୍ଡରେ ନିକ୍ଷେପ କରୁଥିଲେ, କମ୍ୟୁନିଷ୍ଟ ପାର୍ଟିର ତରୁଣ ନେତା ପ୍ରବୀର ସମସ୍ତ ଧମକକୁ ବେଖାତିର କରି ଯେପରି ସାଂପ୍ରଦାୟିକ ସଂପ୍ରତି ପ୍ରତିଷ୍ଠା କରିବାରେ ଅଗ୍ରଣୀ ଭୂମିକା ନେଲେ, ତାହା ତାଙ୍କୁ ଅଶେଷ ଖ୍ୟାତି ଆଣି ଦେଇଥିଲା ।

ସେହିଦିନଠାରୁ ତାଙ୍କ ରାଜନୈତିକ- ସାମାଜିକ ଉତ୍ତରଣ ଆରମ୍ଭ ହୋଇଗଲା । ଅବଶ୍ୟ ସୀମା ଆନ୍ଦୋଳନବେଳେ, ପ୍ରବୀରଙ୍କର ରାଜନୈତିକ ଜୀବନରେ ପ୍ରତିଷ୍ଠାର ଆଦ୍ୟକାଳ । ପୃଥିବୀ ବକ୍ଷରେ ପରମାଣୁ ଯୁଦ୍ଧର ବିଭୀଷିକା ଦୂର କରିବା ଲାଗି ବିଶ୍ୱବ୍ୟାପୀ ଯେଉଁ ଐତିହାସିକ ଆନ୍ଦୋଳନ ହେଲା, ଓଡ଼ିଶାରେ ତାହାର ସଫଳ ପ୍ରତିଧ୍ୱନିର ଅଗ୍ରଭାଗରେ ରହିଥିଲେ ପ୍ରବୀର । ସ୍ୱାଧୀନୋତ୍ତର ଯୁଗରେ ସାମାଜିକ ନ୍ୟାୟ ଦାନରେ ଆଇନଜୀବୀଙ୍କ ଭୂମିକାରେ ଅଗ୍ରଣୀ ହୋଇ ଓଡ଼ିଶାରେ ଭାରତୀୟ ଗଣତାନ୍ତ୍ରିକ ଆଇନଜୀବୀ ସମ୍ମିଳନୀର ମୁଖ୍ୟଭାଗରେ ସେ ରହିଲେ ।

କଟକରେ ତାଙ୍କର କର୍ମମୟ ଜୀବନ ସୀମିତ ନଥିଲା । ଶ୍ରମଜୀବୀ- ଶ୍ରମିକ ପରିବହନ କର୍ମଚାରୀଙ୍କ ଠାରୁ ବ୍ୟାଙ୍କ, ଖଣି, ପ୍ରେସ, କେଉଁ ଖଟିଖିଆ ଶ୍ରମିକଙ୍କ ଆନ୍ଦୋଳନରେ ସେ ନିଜକୁ ସାମିଲ କରିନଥିଲେ କ୍ଷେତମଜଦୁରଙ୍କ ଠାରୁ ବୁଦ୍ଧିଜୀବୀ ।

ସେଥି ସକାଶେ ତାଙ୍କ ଓକିଲାତି ଚେମ୍ବର ଥିଲା, ସବୁ ସହଯୋଗୀ ରାଜନୈତିକ ଦଳର ତୁଙ୍ଗ ନେତାଙ୍କ ଠାରୁ ଆରମ୍ଭ କରି ସଂଗ୍ରାମର ସବୁ ଶ୍ରେଣୀର ସାହିବସ୍ତିର ପରାମର୍ଶ ଆଲୋଚନା କେନ୍ଦ୍ର ।

କମ୍ୟୁନିଷ୍ଟ ପାର୍ଟି ଜୀବନରେ ଏବଂ ଶ୍ରମିକ-କର୍ମଚାରୀ ସଂଗ୍ରାମରେ ଜଣେ ପ୍ରତିଭାବାନ୍, ତୀକ୍ଷ୍ଣ ବୁଦ୍ଧି ସଂପନ୍ନ ନେତାର ଆସ୍ଥାନ ସେ ନେଇ ପାରିଥିଲେ ।

ଆଉ ଗୋଟିଏ କଥା ତାଙ୍କୁ ସ୍ମରଣ କଲାବେଳେ ମନେପଡ଼େ, ଏକ ବୁଦ୍ଧିଦୀପ୍ତ ଆଇନଜୀବୀ ପ୍ରବୀର ତାଙ୍କ ଚେମ୍ବରରେ ଯାହାଙ୍କୁ ସହଯୋଗୀ କରିଥିଲେ, ଅତ୍ୟୁକ୍ତି ହେବ ନାହିଁ, କହିଲେ, ପ୍ରାୟ ସମସ୍ତେ ଆଇନ ବ୍ୟବସାୟ ସାଙ୍ଗକୁ ସମାଜକୁ ବଦଳାଇବା, ପ୍ରତିଷ୍ଠିତ ଶୋଷଣ ବ୍ୟବସ୍ଥାକୁ ପରିବର୍ତ୍ତନ କରିବାର ସଂକଳ୍ପ ନେଇ ଆସିଛନ୍ତି । ତାଙ୍କ ନିଜ ଦଳରେ ନ ଥାଇ ମଧ୍ୟ ସମାଜ ପ୍ରତି ଅଙ୍ଗୀକାରବଦ୍ଧ ହୋଇ ଆଇନ ବ୍ୟବସାୟରେ ପ୍ରତିଷ୍ଠିତ ହୋଇ ସମାଜ ପ୍ରତି ନିଜର କର୍ତ୍ତବ୍ୟକୁ ପାଶୋରି ଯାଇ ନାହାନ୍ତି । କେତେ ଧର୍ମଘଟ, ବନ୍ଦ, ଜେଲ ଭରୋ ଆଉ ବନ୍ଦୀଜୀବନ ।

ଏହିପରି ଜଣେ କମ୍ୟୁନିଷ୍ଟ । ତେଣୁ ସବୁ ଦେଶପ୍ରେମୀ ରାଜନୈତିକ ଦଳର ତୁଙ୍ଗ ନେତାଙ୍କର, ସମାଜର ବିଭିନ୍ନ ସ୍ତରରେ ଥିବା ଶ୍ରମିକ ନେତାଙ୍କର ବୁଦ୍ଧିଜୀବୀଙ୍କର ଏକ ଆକର୍ଷଣୀୟ କେନ୍ଦ୍ର ବିନ୍ଦୁ ହୋଇଯାଇଥିଲେ ।

କମ୍ୟୁନିଷ୍ଟ ପାର୍ଟି ଅବା କମ୍ୟୁନିଷ୍ଟ ଓ ବାମପନ୍ଥୀ ଆନ୍ଦୋଳନ, କେବଳ ଜଣେ ବରିଷ୍ଠ, କର୍ତ୍ତୃତ୍ୱସମ୍ପନ୍ନ ନେତାଙ୍କୁ ହରାଇଲା ନୁହଁ, ଓଡ଼ିଶାର ସାମାଜିକ ରାଜନୈତିକ ଜୀବନରେ ଏକ ଶୂନ୍ୟତା ସୃଷ୍ଟି କଲା । ତାଙ୍କର ଅକାଳ ଦେହାବସାନ । ମୋର ତାଙ୍କ ସ୍ମୃତି ପ୍ରତି ଅଶ୍ରୁଳ ଶ୍ରଦ୍ଧା ନିବେଦନ ।

□□□

# ତମ ସ୍ମୃତିରୁ ଖିଏ

ଜୀବନ ଦୀପ ନିଷ୍ପ୍ରଭ, ଲିଭି ଲିଭି ଆସୁଛି । ଦୁକ୍ ଦୁକ୍ ମନ୍ଥର । ଡାକିଲେ ଆଖି ଖୋଲି ହୋଇଯାଉଛ । ଚିହ୍ନି ନାଁ ଧରି ଡାକିବାକୁ ଚେଷ୍ଟା । ସିଏ ଯିଏ ଯାଆନ୍ତୁ, ବହୁ ଦଳର ବିଶିଷ୍ଟ ନେତା, ସାମ୍ବାଦିକ, ସାଧାରଣ ଲୋକ, ଯାହାଙ୍କୁ ସେ ଅତୀତରେ ଜାଣନ୍ତି । ଆଉ ପାର୍ଟିର ପୁରୁଖା ଓ ନୂଆ ସାଥୀ ପାଖରେ ଛିଡ଼ା ହୋଇ ଡାକିଲେ ଚିହ୍ନୁଥାନ୍ତି । ଡାହାଣ ହାତଟି କୌଣସି ମତେ ଟେକି ସାଥୀଙ୍କୁ ଧରି କହନ୍ତି ପାର୍ଟି ପୁରି ଆଖି ବୁଜି ହୋଇଯାଏ । ପ୍ରାୟ ଦର୍ଶନାର୍ଥୀ ଅଧିକାଂଶ ସାଥୀଙ୍କ ଅଭିଜ୍ଞତା ଏହା । ପାର୍ଟି ଆଉ ପାର୍ଟି ।

ଦୃଷ୍ଟିଶକ୍ତି ପାଞ୍ଚ ଛ ବର୍ଷ ଧରି ଖୁବ୍ ଊଣା । ଅସ୍ତ୍ରୋପଚାର ବିଶେଷ କାମ ଦେଲାନି । ହୃଦ ରୋଗ । ଚତୁର୍ଥ ବାର ଆକ୍ରମଣ । ପରିଣତ ଜୀବନ କାଳ । ସରି ସରି ଆସୁଛି । ବହୁତ କିଛି ବାକି ରହିଗଲା ଅନୁଭବ । ଭାରତର ଚିରାୟତ ଦାର୍ଶନିକ ଚିନ୍ତା ସେଥିରେ ଯେଉଁଠି ମାନବତାର ସନ୍ଧାନ, ମାନବ ମୁକ୍ତିର ସନ୍ଧାନ ତା'ର ଅନ୍ୱେଷଣ ଏବଂ ସେହି ଦର୍ଶନରେ ଯାହା ସମାଜର ସ୍ଥିତାବସ୍ଥାକୁ, ଅନ୍ଧ ବିଶ୍ୱାସକୁ, ପ୍ରଭୂପଣକୁ ସାବ୍ୟସ୍ତ କରିବାର ପ୍ରୟାସର ପ୍ରତ୍ୟାଖ୍ୟାନ । ତାହାର ଗଭୀର ଅନୁଶୀଳନ କରି ମାନବର ସର୍ବାଙ୍ଗୀନ ମୁକ୍ତିର ମହାନ ସିଦ୍ଧାନ୍ତ ବିଜ୍ଞାନ ସମ୍ମତ ବିଶ୍ୱ ଦୃଷ୍ଟିକୋଣ ମାର୍କସବାଦର ଅପ୍ରତିଦ୍ୱନ୍ଦୀ ଶ୍ରେୟତା ପ୍ରତିପାଦନ କରିବେ ଓଡ଼ିଶାର ସୁଧୀମଣ୍ଡଳୀ ଆଗଳରେ, ମେହନତକାରୀ ଜନତାକୁ ପୁରାତନ ଧରାବନ୍ଧା ପଶ୍ଚାତଗାମୀ ଚିନ୍ତା ଭାବନାରୁ ମୁକ୍ତ କରିବେ । ଏହି ପ୍ରୟାସ ତାଙ୍କ ସାମାଜିକ ଓ ରାଜନୈତିକ ଜୀବନର ଶେଷାଂଶର ପ୍ରଧାନ ରୁଚି ବୋଲି ମନେହୁଏ । ଜୀବନବ୍ୟାପୀ ଦୈନନ୍ଦିନ ପାର୍ଟି କାମ, ଜନ ସଂଗ୍ରାମ, ଜନ ଆନ୍ଦୋଳନରେ, ଅଧିକାଂଶ ସମୟ ବିତିଥିଲା, ତେଣୁ ବସ୍ତୁତଃ ସେଥିରୁ ପଳାୟନ ନୁହଁ, ଅବସର ନୁହଁ । ଏହା ହିଁ ତାଙ୍କ ଶେଷ ଜୀବନର ଶେଷ ଅଧ୍ୟାୟ । ତେଣୁ ମୃତ୍ୟୁର ଡାକରା ଶୁଣି ନିଜର ଅତୀତର କୃତି ପୁଞ୍ଜିବାଦ ପୁସ୍ତକର ପୁନଃ ମୁଦ୍ରଣ ଲାଗି ପାଗଳାମି । ୧୯୪୬-୪୭ରେ ତାଙ୍କ ରଚିତ ଜମିଦାରୀ ଉଚ୍ଛେଦରେ ଉତ୍କଳର ନୂଆ କଳେବର ପୁସ୍ତକକୁ ଆଜିର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ପରିସ୍ଥିତି ଅନୁସାରେ ସଂଶୋଧନ, ସମୃଦ୍ଧ କରିବାର ଉତ୍କଣ୍ଠା । ପୁଣି ତୁଷାର ସ୍ମୃତି ସଦୃଶ ବୈପ୍ଲବିକ ପ୍ରଗତିପନ୍ଥୀ କବିତା ସଂଚୟନ ପ୍ରକାଶ । ଶେଷରେ ସେ କବିତର, କବି ପ୍ରାଣର

ପରିଚୟ ନେବେ । ଧରାବନ୍ଧା ନୁହଁ ଗତାନୁଗତିକ ନୁହଁ । ନୂତନ ଦିଗନ୍ତ, ଦିଗବଳୟ, ନୂତନ ପ୍ରଭାତର ଆବାହନୀ ସେଥିରେ ।

କଃ ରାମକୃଷ୍ଣ ପତି ସେ । ଓଡ଼ିଶାର ସାମାଜିକ ରାଜନୈତିକ ଜୀବନରେ ବିଭିନ୍ନ ଐତିହାସିକ କାଳରେ ସମାଜର ଅଗ୍ରଗତି ପାଇଁ; ସ୍ୱାଧୀନତାର, ସଂଗ୍ରାମରେ, ସମାଜର ଓ ସଂସ୍କୃତିର ବିକାଶ ଲାଗି ନିଜ ମତାଦର୍ଶ ଅନୁସାରେ ଅବଦାନ ଦେଇ ଅନ୍ତର୍ଦ୍ଧାନ ହୋଇଛନ୍ତି । କେବଳ ସ୍ୱାଧୀନତା ନୁହଁ, ସାମ୍ରାଜ୍ୟବାଦୀ ଗୋଲାମୀର ବିଲୋପ ନୁହଁ, ସମାଜର ବୈପ୍ଳବିକ ରୂପାନ୍ତର, ଶ୍ରେଣୀ ବିହୀନ, ଶୋଷଣ ବିରହିତ ସମାଜ ଦେଶରେ କାହିଁକି ସମଗ୍ର ଧରାବକ୍ଷରେ ଆଣିବାର ଏକମାତ୍ର ସଠିକ, ପରୀକ୍ଷିତ, କାଳୋତୀର୍ଣ୍ଣ ବିଜ୍ଞାନସମ୍ମତ ଓ ବିଜ୍ଞାନସିଦ୍ଧ ମତାଦର୍ଶ ବୈଜ୍ଞାନିକ ସମାଜବାଦ ପ୍ରତିଷ୍ଠାର ଅଭିଳାଷ ଘେନି ସଂଗ୍ରାମୀ । ବହୁ ସଂଗ୍ରାମୀ ଯୋଦ୍ଧା, କଃ ପତି ଯେଉଁ ପାର୍ଟିର, ସେହି ପାର୍ଟିର ପ୍ରତିଷ୍ଠାତା ସଦସ୍ୟ, ବହୁ ଜନପ୍ରିୟ ନେତା, ତାଙ୍କ ସାଥୀ-ସହକର୍ମୀ ଚାଲିଯାଇଛନ୍ତି । ସେମାନଙ୍କର ମହନୀୟ ଉତ୍ତରାଧୀକାରୀ କଃ ରାମକୃଷ୍ଣ ପତିଙ୍କ ଉତ୍ତରାଧିକାର । ଯାଇଛନ୍ତି ଭଗବତୀଚରଣ ପାଣିଗ୍ରାହୀ, ପ୍ରାଣେନାଥ ପଟ୍ଟନାୟକ, ଗୋବିନ୍ଦ ପ୍ରଧାନ, ସାଧୁ ଚରଣ ମହାନ୍ତି, ରାମଚନ୍ଦ୍ର ମିଶ୍ର, କୃପାସିନ୍ଧୁ ଖୁଣ୍ଟିଆ, ଦୟାନନ୍ଦ ଶତପଥୀ, ଲକ୍ଷ୍ମଣ ପୁଝାରୀ, ଯୁଧିଷ୍ଠିର ମିଶ୍ର, ହରିବନ୍ଧୁ ବେହେରା, ଫନୀପାଳ, ଗୁଣ୍ଡା ହାତରେ ନିହତ ଲକ୍ଷ୍ମଣ ମହାପାତ୍ର, ହୃଷୀ ପ୍ରଧାନ, ଉପେନ୍ଦ୍ର ଦାସ, ଅଧିକାରୀ ମହାନ୍ତି, କାଳୀଚରଣ ପଣ୍ଡା, ରବି ପଲେଇ ଏମିତି ପୁରାତନ, ନୂତନ ଅନେକ । ସମସ୍ତେ ସେହି ପାର୍ଟି ଆଉ ସେହି ପାର୍ଟି ଯେଉଁ ମେହନତୀ ଶ୍ରମିକ-କୃଷକ, ନିଷ୍ପେଷିତ ମଧ୍ୟବିତ୍ତ ଅର୍ଥାତ୍ ପୁଞ୍ଜି ସମାଜରେ ପୀଡ଼ିତ, ଲାଞ୍ଛିତ, ବଂଚିତ ସେମାନଙ୍କୁ ସେଥିରୁ ମୁକ୍ତି ପାଇଁ କାମ କରି ଚାଲିଗଲେ । ସାଥୀ ରାମକୃଷ୍ଣ ପତି ସେଇ ବାଟରେ ଗଲେ, ଯାଇଥାନ୍ତେ, ଆମେ ସିଏ ରହିଲୁ ଯିବୁ ।

ତେବେ ଏହି ବିପ୍ଳବୀ କମ୍ୟୁନିଷ୍ଟଙ୍କର ନିଶ୍ଚୟ କିଛି ବିଶେଷତ୍ୱ ଥିଲା, ଯାହାକି ତାଙ୍କୁ ଓଡ଼ିଶାର ଜନ ଜୀବନରେ ଦଳ ଊର୍ଦ୍ଧ୍ୱରେ ଏକ ଜନନେତାର ମର୍ଯ୍ୟାଦା ଦେଇଥିଲା । ତାହାର ପ୍ରମାଣ ତାଙ୍କ ମୃତ୍ୟୁରେ ଦଳ, ମତ, ମତାଦର୍ଶ ନିର୍ବିଶେଷରେ ଶୋକ, ଖେଦ, ଶୂନ୍ୟତାର ଉପଲବ୍ଧି ।

ପ୍ରକୃତ ପକ୍ଷେ କହିଲେ ୫୦ ବର୍ଷରୁ ସାମାନ୍ୟ ବର୍ଷ ଊଣା ତାଙ୍କ ସହିତ ଘନିଷ୍ଠତା, ଆମବୀୟତା, ଭ୍ରାତୃତ୍ୱ ଆଉ ସଂଗ୍ରାମ, ସଂଗଠନ, ଆଲୋଚନା, ଲେଖା ଲେଖିଲେ ସହଯୋଗିତା, ସାହାଯ୍ୟ । ସହକର୍ମୀ ଭାବରେ ଏବଂ ତାଙ୍କୁ ନେତା କରିନେଇ । ପୁଣି କୌଣସି ଜଟିଳ ରାଜନୈତିକ ଓ ସାଙ୍ଗଠନିକ ସମସ୍ୟା ଘେନି ଆଲୋଚନାବେଳେ ତୁମୁଳ ବିତର୍କ, ଟେବୁଲ ପିଟାପିଟି । ଯିଏ ଶୁଣେ କ'ଣ ମାଡ଼ପିଟ ହେବେ କି ? ମାତ୍ର ସେ ଆଶଙ୍କା ଦୂରୀଭୂତ ହୁଏ । ସେ ମତକୁ ଲଦି ଦିଅନ୍ତି ନାହିଁ, ଧମକ ଦିଅନ୍ତି ନାହିଁ ବା ଲାଲ ପଡ଼ିଯାନ୍ତି ନାହିଁ । ଧୈର୍ଯ୍ୟ ଧରି

ଶୁଣନ୍ତି, କ୍ରୁଦ୍ଧ ମନରେ ହେଲେ ବି ଆଘାତ ଦେବା ଭଳି କ୍ରୋଧ ପ୍ରକାଶ କରନ୍ତି ନାହିଁ । ଅନ୍ୟକୁ ବୁଝିବାକୁ ଚେଷ୍ଟା କରନ୍ତି । ନ ବୁଝଇବା ଯାଏ ଅଟଳ ରହନ୍ତି । ବୁଝିଲେ ମାନିଯାନ୍ତି ବା ଅପରକୁ ନିଜ ମତ ସହିତ ଏକ ମତ କରାନ୍ତି । ଅତି ଉଦ୍ର, ଅତି ମାର୍ଜିତ, ଉଚ୍ଚକୋଟୀର ଆଚରଣ, ବ୍ୟବହାର, ସ୍ନେହ ମମତା । ସମସ୍ତଙ୍କ ପ୍ରତି ସମ୍ମାନ । କାହାକୁ ଅକାରଣରେ ବ୍ୟକ୍ତିଗତ ଆଘାତ ଦେବା ତାଙ୍କ ରୁଚି ବିରୁଦ୍ଧ ।

ପାର୍ଟିର ଜଣେ ମୁଖପାତ୍ର ହୋଇ, ବହୁ ବର୍ଷ ରାଜ୍ୟ ପାର୍ଟିର ଶୀର୍ଷରେ ରହି କେନ୍ଦ୍ର ପାର୍ଟିର ଶୀର୍ଷ ସଂଗଠନରେ ସଭ୍ୟ ହୋଇ ତାଙ୍କୁ କେବଳ ତାଙ୍କ ପାର୍ଟିର ନୁହଁ, ବିପକ୍ଷ ବିଭିନ୍ନ ରାଜନୈତିକ ଦଳର ତୁଙ୍ଗ ନେତାଙ୍କ ସହିତ, ମନ୍ତ୍ରୀ ସହିତ ଜନତାର ସମସ୍ୟା ଘେନି, ଓଡ଼ିଶାର ଅର୍ଥନୈତିକ, ସାମାଜକ ସମସ୍ୟା ଘେନି ବିତର୍କ କରିବାକୁ ପଡ଼ିଛି । କଥା କଟା କଟି ଓ ଯୁକ୍ତି କରିବାକୁ ପଡ଼ିଛି । ମାତ୍ର ନୀତିସମ୍ମତ ଆସ୍ଥାନରୁ ଏବଂ ସମସ୍ତ ସର୍ବହରା ବିପ୍ଳବୀ ସୁଲଭ ଶାଳୀନତା, କଠୋରତା, ଭଦ୍ରତା ସହକାରେ । ଏହି ଅର୍ଦ୍ଧ ଶତାବ୍ଦୀ କାଳ କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ଏହି ତୁଙ୍ଗ ନେତା ଆପଣାର ବିଶ୍ୱାସ ଓ ଆଦର୍ଶରେ ନିଷ୍ଠାବାନ । ସଚ୍ଚୋଟ ସୈନିକ ହୋଇ ଜନସାଧାରଣଙ୍କ ବିଭିନ୍ନ ସମସ୍ୟାକୁ ସେହି ସମୟର ଉପଯୋଗୀ ସମାଧାନର ପଥ ଖୋଜି, ସଂଗ୍ରାମ, ଜେଲଜୀବନ ତ୍ୟାଗ ଓ ଆତ୍ମୋତ୍ସର୍ଗ ତାଙ୍କ ଜୀବନର ଧାରାଥିଲା । ତାଙ୍କୁ ଓ ତାଙ୍କ ପାର୍ଟି ଓ ସେହି ପାର୍ଟିର ମତାଦର୍ଶ ଓ କାମଦାମକୁ ନ୍ୟସ୍ତସ୍ୱାର୍ଥ ଶ୍ରେଣୀ, ଅନ୍ଧ କୁ-ସଂସ୍କାରବାଦୀ ଓ ରାଜନୈତିକ ବିଦ୍ୱେଷୀ ଓ କେହି କେହି ବିକୃତ, ବିକଳାଙ୍ଗ ଓ ଚରିତ୍ର ସଂହାରର ପର୍ଯ୍ୟାୟକୁ ଘେନି ଯାଇଥିଲେ । ମାତ୍ର ଓଡ଼ିଶାର ଜନସାଧାରଣ ଏସବୁ କୁତ୍ସାର ପ୍ରତ୍ୟାଖ୍ୟାନ କରିଛନ୍ତି ଏବଂ ତାଙ୍କୁ ଓଡ଼ିଶାର ଜଣେ ବରେଣ୍ୟ ନେତାର ଆସନ ଦେଇଛନ୍ତି ।

ତାଙ୍କର ଜୀବନ କାଳର ୫୦ ବର୍ଷ, ବ୍ୟକ୍ତିଗତ କେବଳ ନୁହଁ ସାମୂହିକ, ନିର୍ବ୍ୟକ୍ତିକ ନୁହଁ, ବହୁ ବ୍ୟକ୍ତିକ ଅର୍ଥାତ୍ ଓଡ଼ିଶାର ଜନସାଧାରଣଙ୍କ ଜୀବନର ଓ ସଂଗ୍ରାମର ଅଙ୍ଗ । ସ୍ୱାଧୀନତା ସଂଗ୍ରାମରେ କାରାବାସ, ଚାରି ଦଶକର ସାମ୍ରାଜ୍ୟବାଦ ବିରୋଧୀ ଯୁବ ଆନ୍ଦୋଳନ, ଆଦ୍ୟ ଶ୍ରମିକ ଆନ୍ଦୋଳନ, ପୁଣି ଉତ୍କଟ କୃଷକ ସମସ୍ୟାର ସମାଧାନ ଲାଗି ଜମିଦାରୀ ପ୍ରଥା ଉଚ୍ଛେଦ ଆନ୍ଦୋଳନ, ଭାଗଚାଷ ଆନ୍ଦୋଳନ, ଜମି ଦଖଲ ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନ ଏବଂ ସୀମା ଆନ୍ଦୋଳନ, ଶାନ୍ତି ଆନ୍ଦୋଳନରେ ନିଜେ କେଉଁଠି ପ୍ରତ୍ୟକ୍ଷ ଭାଗ ନେଇ ବା ପରୋକ୍ଷ ନେତୃତ୍ୱ ଦେଇ, ସଂଗ୍ରାମର କର୍ମକୌଶଳ ବା ସୂତ୍ର ବାହାର କରି ସାଥୀ ଓ ଜନସାଧାରଣଙ୍କୁ ସାମିଲ କରେଇଛନ୍ତି । ସେଥିରେ ଅଦ୍ଭୂତ ସଂଗଠନୀ ଶକ୍ତି, ଆକର୍ଷଣୀ ଶକ୍ତି ଓ କଷ୍ଟ ଓ ତ୍ୟାଗ କରିବାର ଦୃଷ୍ଟାନ୍ତ ଥୋଇ ଯାଇଛନ୍ତି । ୧୯୪୬-୪୭ରେ ସରକାର ଓ ଜମିଦାରଙ୍କ ପ୍ରତିରୋଧ-ଦମନ, ଗିରଫଦାରୀ ସତ୍ତ୍ୱେ ବିଖ୍ୟାତ ପଟିଆ ବନ୍ଧ ତା'ର ପ୍ରମାଣ ।

ରାମବାବୁ ଓ ତାଙ୍କ ପାର୍ଟି କାମ କରିଥିବା ପଟିଆବାସୀ ନିଜର ଦୃଢ଼ତାକୁ ଏକଦା

ଭାରତବର୍ଷରେ ଦେଖାଇଦେଲେ । ସର୍ବତ୍ର ଲକ୍ଷ ଲକ୍ଷ ଲୋକଙ୍କୁ ସଭାକୁ ଆକୃଷ୍ଟ କରୁଥିବା ଇନ୍ଦିରା ଗାନ୍ଧୀଙ୍କ ସଭାରେ କାଉ ଉଡ଼େଇଦେବା ଭଳି ଦୃଷ୍ଟାନ୍ତ । ଭାରତର ସମ୍ବାଦପତ୍ର ମହଲରୁ ବିସ୍ମିତ କରିଦେଇଥିଲେ । ରାମକୃଷ୍ଣ ପତିଙ୍କ ବିରୁଦ୍ଧରେ ପଟିଆରେ ଇନ୍ଦିରା ଗାନ୍ଧୀ ଭାଷଣ ଦେବେ, ହେବ ନାହିଁ ।

ସେ ଚାରିଥର, ଥରେ ବ୍ରିଟିଶ ଆଉ ୩ ଥଣ କଂଗ୍ରେସ କାରାବାସରେ ଦିନ ବିତାଇଛନ୍ତି । ୧୯୪୨ର ଆନ୍ଦୋଳନ ବେଳେ ଦେଢ଼ବର୍ଷରୁ ଊର୍ଦ୍ଧ୍ୱ, ସୀମା ଆନ୍ଦୋଳନ ବେଳେ ୨ ମାସରୁ ଊର୍ଦ୍ଧ୍ୱ, ଚୀନ ଭାରତ ସଂଘର୍ଷବେଳେ ୩ ମାସ ଯାଏ ଏବଂ ସାଲେଭଟ୍ଟା ବଲାଙ୍ଗୀର ମହାରଜା ଜମି ଦଖଲବେଳେ ମାସେ ଖଣ୍ଡେ ଜେଲଯିବା, ଏବଂ ୧୯୪୯ ରୁ ୧୯୫୨ ଯାଏ ପ୍ରାୟ ୩ ବର୍ଷ କାଳ ଅନ୍ୟ ତୁଙ୍ଗ ନେତା ଓ ଶହ ଶହ ସାଥୀଙ୍କ ସମେତ କଂଗ୍ରେସ ଶାସନର ଅବସାନ ଦାବୀ ହେତୁ ପ୍ରଚଣ୍ଡ ଆକ୍ରମଣର ଶିକାର ହୋଇ ଅଜ୍ଞାତବାସରେ ରହିବା ତଥା ତାଙ୍କ ଚୀନ, ରୁଷିଆ ଭ୍ରମଣ ଓ ସେଥି ସଂକ୍ରାନ୍ତରେ ସେ କାଳରେ ତାଙ୍କର ପର୍ଯ୍ୟବେକ୍ଷଣ, ଏସବୁ ସଂପର୍କରେ ଅନେକ ବନ୍ଧୁ, ଅନେକ ସାଥୀ, ଶୁଭାକାଂକ୍ଷୀ ଜାଣନ୍ତି ଓ ଲେଖିବେ ।

୧୯୩୫-୩୬ ବେଳେ ଓଡ଼ିଶାରେ ବେଆଇନ ହୋଇଥିବା ଏକ କମ୍ୟୁନିଷ୍ଟ ଗୋଷ୍ଠୀ ବା କମ୍ୟୁନିଷ୍ଟ ପାର୍ଟିର ଭିତ୍ତି ପତନ ସାଙ୍ଗେ ସାଙ୍ଗେ କଂଗ୍ରେସ ଅନୁଷ୍ଠାନ ଭିତରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଗଠନ ଓ ତତ୍‌ପରବର୍ତ୍ତୀ ଛାତ୍ର ଆନ୍ଦୋଳନ, ୧୯୩୮-୩୯ର ପ୍ରଥମ ଦଫା ଗଡ଼ଜାତ ପ୍ରଜା ଆନ୍ଦୋଳନ ସେ କାଳରେ ଦେଶର ସ୍ୱାଧୀନତା ଲାଗି ଯେକୌଣସି ତ୍ୟାଗ କରିବାକୁ ପ୍ରସ୍ତୁତ, ରେଭେନ୍‌ସା କଲେଜରେ ବିଏ ଓ ଆଇନ ଛାତ୍ର ଓ ବାଗ୍ମିତା, ପ୍ରଗତିଶୀଳ ମନୋଭାବ ଏବଂ ସଂସ୍କୃତିପ୍ରିୟତା ଯୋଗୁଁ ଆଦୃତ ରାମକୃଷ୍ଣ ପତି ନିଶ୍ଚୟ ନ ଥିଲେ । ଓଡ଼ିଶାର ରାଜନୈତିକ ପଟ୍ଟଭୂମିରେ ୧୯୩୬-୩୯ କାଳରେ ମହା ଆଲୋଡ଼ନ ସୃଷ୍ଟିକାରୀ ଏହି ନୂତନ ଶକ୍ତି, ନୂତନ ରାଜନୈତିକ ବ୍ୟକ୍ତି, ଏହି ନୂତନ ରାଜନୈତିକ ଚିନ୍ତା ଆଦର୍ଶ ସହିତ ସେ ପରିଚିତ ହେଉଥିଲେ । ଏ ସମସ୍ତଙ୍କ ସହିତ ସଂପର୍କ ରଖୁଥିଲେ । ମାତ୍ର ଗଭୀର ଅନୁଶୀଳନ, ପରୀକ୍ଷା ନିରୀକ୍ଷା ବିନା ବା କ୍ଷଣିକ ଉତ୍ତେଜନାରେ ବଶବର୍ତ୍ତୀ ନ ହୋଇ ସେ ସିଧାସଳଖ, ପ୍ରତ୍ୟକ୍ଷ ଝାମ୍ପ ଦେଇ ନ ଥିଲେ ।

ମୁକ୍ତିର ଦର୍ଶନ, ଶୋଷଣକୁ ଲୋପ କରିବାର ଅର୍ଥନୀତି ପାଶ୍ଚାତ୍ୟ ଦର୍ଶନ ଓ ପ୍ରାଚ୍ୟ ଦର୍ଶନ ସଂପର୍କରେ ସେ ଅନୁଧ୍ୟାନ କରି ସଠିକ୍ ପଥର ଅନ୍ୱେଷଣ କରୁଥିଲେ ।

ମାନବ ଓ ମାନବବାଦର ଏହି ସମୟରେ ସନ୍ଧାନ କରୁ କରୁ, ସନ୍ଦର୍ଭ ଲେଖୁ ଲେଖୁ, ସୁଧୀ ଆସରରେ ଭାଷଣ ଦେଉ ଦେଉ ବନ୍ଧୁମାନଙ୍କ ପକ୍ଷରୁ ବୌଦ୍ଧିକ ସମାଲୋଚନାରେ ନିଜର ଭାବବାଦୀ ମୋହକୁ ଲୋପ କରି ସେ ପହଞ୍ଚିଲେ ଚୂଡ଼ାନ୍ତ ନିର୍ଦ୍ଧାରଣରେ । ଏକମାତ୍ର ମାର୍କସବାଦୀ-ଲେନିନବାଦୀ ଦର୍ଶନ, ଅର୍ଥନୀତି, ସମାଜନୀତି ସଠିକ୍ । ଏହି ମତାଦର୍ଶକୁ ମେହନତୀ

ଜନସାଧାରଣ ଗ୍ରହଣ କଲେ, ସଂଗଠିତ ବୈପ୍ଳବିକ ଉପାୟରେ ଚିରନ୍ତନ ଶାନ୍ତି, ସାମାଜିକ ନିରାପତ୍ତା, ସାମାଜିକ କଳଙ୍କ ଦୂର ହେବ, ଯେହେତୁ ସମାଜ ଶୋଷଣ ମୁକ୍ତ ହେବ, ଶ୍ରେଣୀ ଶାସନ, ପ୍ରଭୂସତ୍ତାର ବିଲୋପ ହେବ ଏହି ପ୍ରତ୍ୟୟ ସେ ମନନ, ଚିନ୍ତନ ଦ୍ୱାରା ସିଦ୍ଧାନ୍ତରେ ପହଞ୍ଚିଲେ ବୋଲି କହିଥାନ୍ତି, କଂଗ୍ରେସର ସଦସ୍ୟ ହୋଇ ସାଧାରଣ କର୍ମୀମାନଙ୍କ ତୁଲ୍ୟ ସେ ଡିହସାହି ସୂତାକଟା ଶିବିରରେ ଯୋଗ ଦେଇ ନେତାମାନଙ୍କ ସ୍ୱାଧୀନତା ସଂଗ୍ରାମ ଓ ଲକ୍ଷ୍ୟ ସମ୍ପର୍କିତ ଆଲୋଚନାରେ ମ୍ରିୟମାଣ ହେଲେ । ମାନବ ମୁକ୍ତିର ସନ୍ଧାନ କଂଗ୍ରେସ ଆଦର୍ଶନରେ ନାହିଁ ବୋଲି ସିଦ୍ଧାନ୍ତରେ ପହଞ୍ଚିଲେ ।

ଏହି ମତାଦର୍ଶକୁ ରାମବାବୁ ୧୯୩୯ରେ ଚୂଡ଼ାନ୍ତ ଭାବେ ଗ୍ରହଣ କଲେ ନୁହଁ, ସେହି ମତାଦର୍ଶର ପାର୍ଟିରେ ଏକ ବଳିଷ୍ଠ ପ୍ରବକ୍ତା ହେଲେ, ନେତା ହେଲେ । ତାଙ୍କୁ ସେତେବେଳେ ଯେଉଁମାନେ ଶୁଣି ଭାବବାଦୀ, ଆକାଶ କୁସୁମ ତୋଳା ଦର୍ଶନର ଉପାସକ ଥିଲେ ବୋଲି ଖେଦ କରିଥିଲେ, ଠିକ୍ ସେହିମାନଙ୍କ ମଧ୍ୟରେ ସେ ଜଣେ ଦିଗଦର୍ଶକ ହେଲେ ।

ଆଉ ସେହିକାଳୁ ପଛଘୁଞ୍ଚା ନାହିଁ । ଜୀବନରେ ଯେତେ ଝଡ଼ ଝଞ୍ଜା ଆସୁ ପଛେ ତାଙ୍କ ଜୀବନର ଏକ ବ୍ୟକ୍ତିଗତ ଝଡ଼ର ପ୍ରତ୍ୟକ୍ଷ ଅଭିଜ୍ଞତା । ଆଖିରେ ଦେଖା । କାନରେ ବା କାହାଠାରୁ ଶୁଣା ନୁହେଁ ।

ବାପା ରାୟ ସାହେବ । ବ୍ରିଟିଶ ସାମ୍ରାଜ୍ୟବାଦ ନ ରହିଲେ ଭାରତଟା ରହିବ ନାହିଁ ଯେମିତି ତାଙ୍କର ବିଶ୍ୱାସ । ଖୁବ୍ ଖ୍ୟାତି ସମ୍ପନ୍ନ, ବିଦ୍ୱାନ, ବେଶ ବିତ୍ତଶାଳୀ । ରାମବାବୁ ଏକମାତ୍ର ପୁଅ । ବଡ଼ ହାକିମ ହେବେ । ସମାଜରେ ବାପା ରାୟ ସାହେବ ସେକାଳରେ ସମ୍ମାନିତ ମାନ୍ୟଗଣ୍ୟ । ପୁଅ ସେମିତି ହେବ । ଶକୁନ୍ତଳା ମଧ୍ୟ ଖାନଦାନ ଘରର ଝିଅ । ବିବାହ ଦେଲେ । ମାତ୍ର ସନ୍ତାନ ହେଲାନି । କ୍ରୋଧ ପୁଅ ଓ ବୋହୂ ଉପରେ । ପୁଅ କମ୍ୟୁନିଷ୍ଟ ହେଲା- ଆଉ ଗୋଟିଏ ବାହା ହୋଇ କୁଳ ରଖିବାକୁ ନାହିଁ କଲା ।

କଟକରେ ଡରଗପଡ଼ାରେ ଦୁଇ ବଖୁରିଆ ଖଣ୍ଡେ ଘର ଅଗଣା ଆଉ ୪ ଗୁଣ୍ଠ ଜାଗା । ପୁଅ ରାମ ସେଇଠି ଅଛି । ତା'ଠାରୁ ମାସିକ ଘରଭଡ଼ା ନିଆଯିବ । ବାପ ଲେଖନ୍ତି ପୁଅକୁ । ପ୍ରତି ମାସରେ ଆସି ଦୁଆର ମୁହଁରେ ଛିଡ଼ା ହୋଇ ଭଡ଼ା ମାଗନ୍ତି- ବୋହୂ ପାଦ ତଳେ ପଡ଼ିଲେ ମୁଦ ବୁଲାଇ ଘୃଣା କରନ୍ତି । ଅଭାବ ଯୋଗୁଁ ଭଡ଼ା ନ ଦେଇପାରିଲେ ତାଗିଦା କରନ୍ତି । କୌଣସି ମତେ ରାମବାବୁ ଭଡ଼ା ବାନ୍ଧନ୍ତି । ପାର୍ଟିର ଅର୍ଥ ନାହିଁ । ବିଶେଷ ଦରକାର । ବାପାଙ୍କୁ ମିନତିଭରା ଚିଠିରେ ପୁଅ ୧ ହଜାର ଟଙ୍କା ସୁଧଦିଆ ଧାର ମାଗିଲେ । ଟଙ୍କା ଆସିଲା । ମାତ୍ର ପ୍ରତ୍ୟେକ ମାସରେ ବାପ ସୁଧ ନିଅନ୍ତି ସମସ୍ତ ଟଙ୍କା ପରିଶୋଧ ନ ହେବା ଯାଏ ।

ପୁଣି ପ୍ରତ୍ୟକ୍ଷର କଥା । ସେ କାଳରେ କମ୍ୟୁନିଷ୍ଟ ପାର୍ଟି ଗଠନର ପ୍ରକ୍ରିୟା । କଂଗ୍ରେସର ଓ ଅନ୍ୟମାନଙ୍କର କୁତ୍ସା ପ୍ରଚାର । ସବୁ କୋଠ କରିଦେବେ, ଧର୍ମ ମାନିବେ ନାହିଁ । ମନ୍ଦିର,

ମସଜିଦ୍ ଚୁରମାର କରିଦେବେ, ବୁଢ଼ାକୁ ମାରିଦେବେ- ମା' ଭଉଣୀ ବିଚାର ରଖିବେନି, ଏମିତି କେତେ ଉଦ୍ଭଟ ପ୍ରଚାର । ପୁଣି ବ୍ରିଟିଶ ଦଲାଲ-ମସ୍କୋର ଦଲାଲ । ଆନନ୍ଦ ପତି ପୁଅ କଟକରେ ସୁଧୀବିଜ୍ଞ ରାଜନୈତିକ ମହଲରେ, ଚାନ୍ଦନିଚୌକର ଦୋକାନୀ, ପଡ଼ୋଶୀଙ୍କ ଭିତରେ ଖାତିର, ଘରୁ ଚାଉଳ ମୁଠେ ମିଳେନି । ଶଙ୍କରପୁରରୁ ସେ କାଳରେ ଅଜ୍ଞାତବାସ ପରେ ବେଳେବେଳେ ସାଥୀମାନେ ରସିଦ ପଠାନ୍ତି । ରାମବାବୁଙ୍କ ଘର ମଧ୍ୟରେ ଏକ କମ୍ୟୁନ । ବୈଦ୍ୟନାଥ ରଥ ସମେତ ଆମେ ପାଞ୍ଚ ଛଜଣ କଟକରେ ଥିଲାବେଳେ ଗଣ୍ଡେ ଖାଉ । ରାମବାବୁ ଆଉ ଶକୁନାନୀ ଏବଂ ସେତେବେଳେ ସେ ପାଳନ କରିଥିବା ଝିଅ ମଙ୍ଗୁକୁ ଦିନେ ଦୁଇଦିନ ଖାଡ଼ା ଉପବାସ ରହିବାକୁ ପଡ଼େ । ରାମ ସାହୁ, କାମିନୀନନ୍ଦା ଦୋକାନରୁ ଧାର କରି ବରା ବା ରୁଟିରେ ଦିନେ ଦିନେ ଗୁଜୁରାଣ ମେଣ୍ଟେ । କିନ୍ତୁ ପାର୍ଟି କାମଦାମରୁ ଅବ୍ୟାହତ ନ ଥାଏ । କ୍ଷୁଧାରେ ମୁହଁ ଶୁଖା ଦେଖି ପ୍ରଶ୍ନ କଲେ ଉତ୍ତର ମିଳେ ଆଜି ପତ୍ନୀ ପଲାଉ ବି ନ ଥିଲା । ଅର୍ଥାତ୍ ପଖାଳ ଗଣ୍ଡେ ନ ଥିଲା ।

ଅଥଚ ସେହି ରାମବାବୁଙ୍କର ଆତ୍ମୀୟସ୍ୱଜନ, ଶକୁନାନୀର ବାପଘର ମାଲ ମଠାଇ ଦେଲେ ଦେଖିବ ତାଙ୍କ ଛଟା । ସାଥୀମାନଙ୍କୁ ହୋଟେଲ ଡାକି ନେବେ- ପେଟପୁରା, ଅସଲ ଅସଲ ଜିନିଷ ଖୁଆଇବେ । ସବୁଠୁଁ ଦାମୀ ଚା' ତାଙ୍କ ଘରେ ହେବ । ବନ୍ଧୁ ବତ୍ସଳତା, ଆତିଥ୍ୟ ଓ ପଇସା ଥିଲେ ଅକାତରେ ବ୍ୟୟ । କାଲିକି ନାହିଁ । ପଚାରିଲେ କହନ୍ତି ଏହି ପେଟି ବୁର୍ଜୁୟା ଗୁମାନ ଛାଡ଼ି ହେଉନି । ଆମେ କ'ଣ ସଚ୍ଚା କମ୍ୟୁନିଷ୍ଟ ହେଲୁଣି ।

ଅନେକ ସ୍ମୃତି । ଅନେକେ ଲେଖେଇବେ । ତାଙ୍କର ବିଶେଷତ୍ୱ ଥିଲା ସମସ୍ୟା ଆସିଲାତ ସେଥିପ୍ରତି ଭସାଭସା ଦୃଷ୍ଟି ନୁହଁ, ଗଭୀର ଦୃଷ୍ଟି । ଯେମିତି ଅକାଟ୍ୟ ଯୁକ୍ତି କରି ହେବ ଗୋଟିଏ ଦୃଷ୍ଟାନ୍ତ ।

ସୀମା ଆନ୍ଦୋଳନ ବେଳ । ଆନ୍ଧ୍ର ପାର୍ଟି କାଗଜ ବିଶାଳ ଆନ୍ଧ୍ରରେ ବିଶାଳ ଆନ୍ଧ୍ରର ମାନଚିତ୍ରରେ ଆମ ସୋରଡ଼ା, ଛତ୍ରପୁର ଯାଏ ନକ୍ସା ବାହାରି ପଡ଼ିଲା । ଓଡ଼ିଶାର କମ୍ୟୁନିଷ୍ଟ ବିରୋଧୀମାନଙ୍କ ହାତରେ ପାଞ୍ଚଣ । ନାନାଦିଗରୁ ଆକ୍ରମଣ । କଥା ହେଲା, ଆନ୍ଧ୍ର ପାର୍ଟି ନେତାଙ୍କ ସହିତ ସୀମା ସଂକ୍ରାନ୍ତ ଆଲୋଚନା ହେବ । କଥାରେ ନୁହଁ ତଥ୍ୟ-ଅକାଟ୍ୟ ତଥ୍ୟ ଦେଇ ଆନ୍ଧ୍ର ପଟେ ଗୋଲନ୍ଥର ସେପଟେ ଇଚ୍ଛାପୁରମ, ସୋମପେଣ୍ଟ, ଟେକିଲି, ତଡେ଼ଲା, ଜଲନ୍ତର, ମଞ୍ଜୁଷା, ପାଥପାଟନାମ ଏବଂ ଆମ ଏ ପଟେ ପାରଳା, ଛତ୍ରପୁର, ସୋରଡ଼ା । ଉଭୟ ରାଜ୍ୟରେ ସବୁ ଅଞ୍ଚଳରେ ବଡ଼ ବଡ଼ ଓଡ଼ିଆ ତେଲଗୁ ଗାଁ' ମିଶାମିଶି । ଗାଁ'କୁ ଗାଁ' ସର୍ଭେ କଲୁ । ସେନସସ୍ ଦେଖାଗଲା ବର୍ତ୍ତମାନର ଅବସ୍ଥା ବୁଝିଲୁ । ଆମ ତଥ୍ୟ ଓ ଯୁକ୍ତି ଆନ୍ଧ୍ରର ସାଥୀମାନେ କାଟିପାରିଲେ ନାହିଁ । ରାମବାବୁ ଥିଲେ ଆମ ପ୍ରତିନିଧି ଦଳର ନେତୃତ୍ୱରେ ।

ସେମିତି ସିଂହଭୂମି । ରାଜେନ୍ଦ୍ର ପ୍ରସାଦଙ୍କ ଚାପ ଓ ଡକ୍ଟର ମହତାବଙ୍କ ନୀତି ।

ଷଢ଼େଇକଲା, ଖରସୁଆଁ ସମ୍ପର୍କରେ ସିପିଆଇ କ'ଣ କୁହେ ? ଜାମସେଦପୁରରେ ବିହାରପାର୍ଟି ଆମ ପାର୍ଟିର ମୁଖପତ୍ର । ସବୁ ତଥ୍ୟ, ନକସା ନେଇ ଆମେ ଉପସ୍ଥିତ । ମଳିତ ଇସ୍ତାହାର ବାହାରିଲ । ସିଂହଭୂମିର ଓଡ଼ିଶା ସୀମାନ୍ତକୁ ଲାଗିଥିବା ଓଡ଼ିଶା ଭାଷାଭଷୀ ବହୁଳ ଅଞ୍ଚଳ ଓଡ଼ିଶାରେ ମିଶିବା ଉଚିତ । ସଂକୀର୍ଣ୍ଣ ଓ ଉଦ୍ଧଟ ଜାତୀୟତାରୁ ଊର୍ଦ୍ଧ୍ୱରେ କମ୍ୟୁନିଷ୍ଟ ପାର୍ଟି ଏବଂ ମାର୍କସବାଦ-ଲେନିନବାଦର ମତାଦର୍ଶ ।

ଚୀନରେ ଯାହା ଦେଖି ଆସିଲି ତାଙ୍କର ପୁସ୍ତକ । ମାଓସେତୁଙ୍ଗ ଯେତେବେଳେ ଚୀନରେ ସଂକୀର୍ଣ୍ଣ ଜାତୀୟତାର ଆଶ୍ରା କରି ମାର୍କସବାଦ ଲେନିନବାଦର ଜଘନ୍ୟ ବିକୃତକରଣ କଲେ । ସୋଭିଏତ ବିରୋଧିତାରେ ଏବଂ ବିଶ୍ୱ ଯୁଦ୍ଧର ଆବାହନ କଲେ ଏମିତିକି ଭାରତବର୍ଷ ସହିତ ସଂଘର୍ଷ କରାଗଲା ଓ ଭିଏତନାମକୁ ମଧ୍ୟ ଛଡ଼ା ଗଲାନି, ଆମେରିକାକୁ ସୁହାଇବା ଭଳି ନୀତି ନିଆଗଲା । ସେତେବେଳେ ତାଙ୍କୁ ତାଙ୍କ ବହି କଥା ପଚାରିଲେ ସେ ହସି ଦିଅନ୍ତି । ତାତ୍ତ୍ୱିକ ଆଲୋଚନା କରି ଅତୀତରେ କିପରି ମାକର୍ସ ଏଙ୍ଗେଲସଙ୍କ ତତ୍ତ୍ୱକୁ ବିକୃତ କରାଯାଇଥିଲା ଏବଂ ଏବେ କିପରି ଦକ୍ଷଣପନ୍ଥୀ ନୁହେଁ, ଅଳୀକ ବାମପନ୍ଥୀ ଆସ୍ଥାନରୁ ମହାନ ମୁକ୍ତି ଆଦର୍ଶକୁ ବିକୃତ କରାଯାଇ ସାମ୍ରାଜ୍ୟବାଦର ଓ ପୁଞ୍ଜିବାଦର ପରୋକ୍ଷ ସେବା କରାଯାଉଛି ତାହା ସେ ଦର୍ଶାଇ ସେତେବେଳେ ତାଙ୍କ ପୁସ୍ତକ ରଚନାର ସଠିକତାକୁ ପ୍ରମାଣ କରନ୍ତି । କାରଣ ସେତେବେଳେ ଚୀନ ନେତୃତ୍ୱ ଅନେକାଂଶରେ ସଠିକ୍ ବାଟରେ ଥିଲା ।

ପୁଣି ୧୯୬୪ରେ ଚୀନ ନେତୃତ୍ୱର ନୀତି ଫଳରେ ଭାରତରେ କମ୍ୟୁନିଷ୍ଟ ପାର୍ଟିର ବିଭାଜନ ତାଙ୍କୁ ବ୍ୟଥିତ କରିଥିଲା ଆଉ ଆଲେଚନା ପ୍ରସଙ୍ଗରେ ସେ କହିଥିଲେ ଭାରତୀୟ ବୁର୍ଜୁୟା ଶ୍ରେଣୀ ପାଇଁ ଏହାଠାରୁ ବଳି ଆନନ୍ଦର ବିଷୟ କଣ ଥାଇପାରେ ?

ସ୍ଥାନ ସୀମିତ । ଲେଖା ବଡ଼ ହୋଇଯିବ । ଅନେକ ସ୍ମୃତି । ତାଙ୍କ ସ୍ମୃତି ପଖାଳିରେ ଦୀର୍ଘ ହେବ । ସେ ଯେ ପାର୍ଟି ଜୀବନରେ ମାର୍କସବାଦୀ- ଲେନିନବାଦୀ ସଙ୍ଗଠନିକ ନୀତି ସମ୍ପର୍କରେ ତ୍ରୁଟି ବିଚ୍ୟୁତି ବେଳେବେଳେ କରିଛନ୍ତି, ତାହା ସେ ମାନନ୍ତି । ଠିକ୍ କରିଛନ୍ତି ବୋଲି ସାବ୍ୟସ୍ତ କରନ୍ତି ନାହିଁ ।

୧୯୪୮ ପରବର୍ତ୍ତୀ ରଣଦିଭେଙ୍କ କାଳରେ ସେ ରାଜ୍ୟ ପାର୍ଟି ସମ୍ପାଦକ ଥାଇ ଅଜ୍ଞାତବାସରେ ନେତୃତ୍ୱ ଦେଇଥିଲେ । ସେହି ବାମପନ୍ଥୀ ବିଚ୍ୟୁତିର ସଂଶୋଧନ ଲାଗି ସେ ଯେପରି ପରବର୍ତ୍ତି ସମୟରେ ଦୃଢ଼ତା ଦେଖାଇଲେ, ତାହା ତାଙ୍କ ଶୃଙ୍ଖଳିତ ପାର୍ଟି ଜୀବନର ଏକ ବିଶେଷତ୍ୱ ।

ସେହି ଝଡ଼ଝଞ୍ଜାମୟ, ଦମନ, ଅର୍ଦ୍ଧାହାର ଅନାଟନ, ଅଜ୍ଞାତବାସ ଓ ବାରମ୍ବାର ଜେଲ ଜୀବନ ବେଳେ ପତ୍ନୀ ଶକୁନ୍ତଳା ଆମ ଅନେକଙ୍କର ନାନୀ ଓ ଆଉ କେତେକଙ୍କର ବୋଉ ଯଦି କମ୍ୟୁନିଷ୍ଟ ପାର୍ଟିକୁ ଆଦରି ନ ଥାନ୍ତା, ତେବେ ରାମବାବୁଙ୍କ କାମଦାମ ଅନେକ ବାଧା ପାଇଥାନ୍ତା ।

ତାହାରି ସ୍ୱୀକୃତି ସ୍ୱରୂପ ସାଥୀ ପତି ଅଜ୍ଞାତ ବାସରେ ତାଙ୍କ ଛଦ୍ମନାମ ରଖିଥିଲେ କୁଶ । ନେଉଟାଇ ଦେଲେ ହେବ ଶକୁ । ପରିଣତ ବୟସରେ ଶକୁନାନୀ ଆଜି ପତି ବିଧୁରା । କିଡ଼ି ତା'ର ପ୍ରିୟ ପିତାଙ୍କୁ ହରାଇଛି । ଆମେ ହରାଇଛୁ ଆମର ନେତାଙ୍କୁ, ଓଡ଼ିଶା ହରାଇଛି ଜଣେ ଦଳମତ ନିର୍ବିଶେଷରେ ଜନନେତାଙ୍କୁ ।

ସେ ଯାଇଛନ୍ତି । ତାଙ୍କର ଶେଷ କାମନା ପାର୍ଟି । ଆମ ଭିତରୁ ତାଙ୍କ ବୟସର ଓ ତାଙ୍କ ପାଖାପାଖି ବୟସଙ୍କ ପାଳି ପଡ଼ିବ । ପାର୍ଟି ଆଉ ମେହନତକାରୀ ଜନତାର ମୁକ୍ତିର ସଂଗ୍ରାମ ଅବ୍ୟାହତ ରହିବ; ସେହି ଉତ୍ତରାଧିକାର ସେ ଆମକୁ ଦେଇଗଲେ ।

❐❐❐

# କମ୍ରେଡ ରାମକୃଷ୍ଣ ପତିଙ୍କ ଶେଷ ଅଭିଳାଷ

ବର୍ଷଟି ପୁରିଯାଉଛି । ସାଥୀ ରାମକୃଷ୍ଣ ପତିଙ୍କୁ ଆଉ ସଶରୀରରେ ଦେଖିବାକୁ ମିଳୁନାହିଁ । ମିଳିବ ନାହିଁ । ଓଡ଼ିଶାରେ କମ୍ୟୁନିଷ୍ଟ ଆନ୍ଦୋଳନର ଅନ୍ୟତମ ଦିଗ୍‌ଗଜ ଥିଲେ ସେ ଯେଉଁମାନେ ସ୍ୱାଧୀନତା ସଂଗ୍ରାମ ସାଙ୍ଗକୁ ଓଡ଼ିଶାରେ ଶୋଷଣ ବିହୀନ, ଶ୍ରେଣୀ ବିହୀନ, ବିଜ୍ଞାନ ସମ୍ମତ ସମାଜବାଦୀ ଆନ୍ଦୋଳନର କର୍ଣ୍ଣଧାର ଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଚାଲିଗଲେଣି । ସେହି ଧାଡ଼ିରେ ସାଥୀ ପତିଙ୍କ ସ୍ଥାନ । ପ୍ରାୟ ୫୦ ବର୍ଷ କାଳ ତାଙ୍କର ସହକର୍ମୀ ହେବାର ସୌଭାଗ୍ୟ । କାଦୂଅପଡ଼ାରେ ୧୯୪୦ ସୂତାକଟା ଶିବିରରେ ଗାଁ' ଗହଳର କଂଗ୍ରେସ କର୍ମୀଙ୍କ ଗହଣରେ ପ୍ରତିଭାବାନ ଯୁବକ ରାମକୃଷ୍ଣ ଜଣେ ଶିକ୍ଷାର୍ଥୀ ଆଉ ପୁଣି ପ୍ରାଣକୃଷ୍ଣ ପଢ଼ିଆରୀ, ନବକୃଷ୍ଣ ଚୌଧୁରୀଙ୍କ ସାଙ୍ଗକୁ ଜଣେ ହିସାବରେ ତାଙ୍କ ଦେଖିଛି । ଦେଖିଛି କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମାକୁ ତଦ୍‌ବିର କରିବା, ପୁଣି ୧୯୪୩ରେ ସ୍ୱାଧୀନତା ସଂଗ୍ରାମ ବେଳେ ବ୍ରହ୍ମପୁର ଜେଲରେ ବନ୍ଦି ହେବା ଜେଲ୍ ମୁକ୍ତି ପରେ କୃଷକ ଆନ୍ଦୋଳନ, ପ୍ରେସ୍ ଶ୍ରମିକ ଆନ୍ଦୋଳନ, ଦରଜୀ ଆନ୍ଦୋଳନ,ଶଙ୍କରପୁରରେ ଖାଦ୍ୟ ଆନ୍ଦୋଳନ, ପଟିଆ ବନ୍ଧ ଆନ୍ଦୋଳନରେ ପ୍ରଥମ ଧାଡ଼ିର ନେତା ହେବା । ୧୯୪୮-୫୧ କଂଗ୍ରେସ ଶାସନ କମ୍ୟୁନିଷ୍ଟଙ୍କ ଉପରେ ନାହିଁ-ନଥିବା ଆକ୍ରମଣ କାଳରେ ରାଜ୍ୟ ପାର୍ଟି ସଂପାଦକ ହେବା ଚାନ୍ଦନିଚୌକରୁ ଗୁପ୍ତଚର ବାହୁ ବନ୍ଧନରୁ ଖସିଯିବା, ନିଜ ଅଜ୍ଞାତ ବାସରେ ଅନ୍ୟ ତୁଙ୍ଗ ସାଥୀଙ୍କ ସଙ୍ଗରେ ହାତୀ, ବାଘ, ଅହିରାଜ ସାପ ଘେରା ଶିବିରରେ, କଲିକତାର ଶ୍ରମିକ ବସ୍ତିରେ । ଆଦିବାସୀ କୁଟୀରରେ ଦିନ ଦିନ ଅଖିଆ ଅପିଆ ରହିବା କେତେକ ଦେଖିଛି ଓ ଜାଣିଛି । ଦେଖିଛି ନୂଆ ଦୁନିଆର ସଂପାଦକ ହେବା, ନବଯୁଗ ପ୍ରେସ୍‌ର ନବରୂପ ଦେବା ବେଳେର ଉଦ୍ଦାମତା ତାଙ୍କର । ଗୁରୁଚରଣ ପଟ୍ଟନାୟକ ମାତ୍ର ୪ ହଜାର ଟଙ୍କାରେ ପଶ୍ଚିମବଙ୍ଗ ପାର୍ଟିର ସ୍ୱାଧୀନତା କାର୍ଯ୍ୟାଳୟରୁ ଆଣିଥାନ୍ତି ଦୁଇଟି ଫ୍ଲାଟ ଛାପାଯନ୍ତ୍ର । ମାତ୍ର ସମ୍ବଳ କାହିଁ ତାକୁ ବସାଇବାକୁ ବର୍ଷ ବର୍ଷ କାଳ ପଡ଼ିରହିଲା । ଦାୟିତ୍ୱ ପଡ଼ିଲା ସାଥୀ ପତିଙ୍କ କାନ୍ଧରେ । ପ୍ରେସ୍‌କୁ ଛିଡ଼ା କରାଇବେ । ଆଜି ସିଏ ବିଖ୍ୟାତ ଗୋସ୍ୱାମୀ ପ୍ରେସ୍ ହୋଇଛି, ତା'ରି ମାଲିକ ମହନ୍ତ ମହାଶୟଙ୍କୁ ୬ ହଜାର ଟଙ୍କାରେ ଗୋଟିଏ

ମେସିନ ବିକି ଅନ୍ୟ ମେସିନଟି ପାଲିତପଡ଼ା ମିଆଁ ସାହେବଙ୍କ ଦୋ-ମହଲା କୋଠା ଭଡ଼ା ନେଇ ବସାଇବା ଓ ତା' ସାମନାରେ ମିଆଁ ସାହେବଙ୍କ ଜାଗାରେ ଆଜିର ପ୍ରେସ୍ ଘର ତୋଳିବା କଥା ସ୍ମରଣରେ ଅଛି । ଏହାକୁ ସ୍ମରଣ କରାଇବାର ତାତ୍ପର୍ଯ୍ୟ ହେଲା, ପାର୍ଟି ଦାୟିତ୍ୱ ତାକୁ ସବୁ ଅଭାବ ଅସୁବିଧା ତଥା ବିଘ୍ନ, ଅର୍ଥ ଅନାଟନ ସତ୍ତ୍ୱେ କାର୍ଯ୍ୟକାରୀ କରିବାର ସଙ୍କଳ୍ପ ।

ସ୍ମରଣରେ ଅଛି ସେ କେନ୍ଦ୍ର ପାର୍ଟିର କାର୍ଯ୍ୟକାରୀ କମିଟି ସଦସ୍ୟ ହେଲେ । ବିଭିନ୍ନ ଜିଲ୍ଲାର ବିଭିନ୍ନ ସ୍ଥାନରେ ଗସ୍ତ କଲେ । ଚାଷୀ ଅନ୍ଦୋଳନ ସତ୍ୟାଗ୍ରହ ୧୯୭୧ ବଲାଙ୍ଗୀର ଜମି ଦଖଲ ଆନ୍ଦୋଳନରେ ନେତୃତ୍ୱ ନେଲେ-ଗିରଫ ହେଲ । ଆନ୍ଧ୍ର ପାର୍ଟି ଓ ବିହାର ପାର୍ଟି ସହିତ ଓଡ଼ିଶା ପଡ଼ୋଶୀ ରାଜ୍ୟର ସୀମାନ୍ତ ସଂକ୍ରାନ୍ତରେ ଆଲୋଚନାର ନେତୃତ୍ୱ ନେଲେ ସିଂହଭୂମିର ଷଢ଼େଇକଳା-ଖରସୁଆଁ ଓଡ଼ିଶାରେ ରହିବା ଉଚିତ ବୋଲି ଓଡ଼ିଶା ଓ ବିହାର ପାର୍ଟି ଓ ସୀମା ଆନ୍ଦାଳନ ବେଳେ ରାଜି ହୋଇ ବିବୃତି ଦେଲେ । ଏମିତି ୫୦ ବର୍ଷ କାଳ ଜନସଂଗ୍ରାମର, ପାର୍ଟି ସଙ୍ଗଠନର ଅନେକ କର୍ତ୍ତବ୍ୟ ଅନ୍ୟମାନଙ୍କ ସହିତ ସହଯୋଗ କରି ତାଙ୍କୁ ତୁଲାଇବାକୁ ପଡ଼ିଥିଲା । ଚୀନ ଭାରତ ସଂଘର୍ଷ କାଳରେ ତାଙ୍କୁ କଂଗ୍ରେସ ସରକାର ଅନ୍ୟ କମ୍ୟୁନିଷ୍ଟଙ୍କ ସହ ପୁଣି ଗିରଫ କରି ବନ୍ଦି କରିଦେବା ସ୍ମରଣରେ ଅଛି ।

ସେତେବେଳେ କମ୍ୟୁନିଷ୍ଟମାନଙ୍କୁ କଂଗ୍ରେସବାଲାଙ୍କର କି ଘୃଣା । ମନେଅଛି କି ଅପପ୍ରଚାର-କି ବାସନ୍ଦ କିନ୍ତୁ ଓଡ଼ିଶାର ରାଜନୈତିକ ଓ ଜନ ଜୀବନରେ ପାର୍ଟି ବିଭାଜନ ହେତୁ ଖେଦ ।

ସାଥୀ ରାମକୃଷ୍ଣ ପତି ଏକ କର୍ତ୍ତୃତ୍ୱ ସଂପନ୍ନ ବ୍ୟକ୍ତିତ୍ୱ ବୋଲି ଶତ୍ରୁ ମିତ୍ର ମହଲରେ ବିବେଚିତ ହେଲେ । ଚାଷୀ, ଶ୍ରମିକ ଖଟିଖିଆଙ୍କର ପ୍ରିୟ ନେତା, ମୁଖପାତ୍ର, ସଂଗ୍ରାମର ଜଣେ ସାରଥୀ ହେବା ସଙ୍ଗେ ସଙ୍ଗେ ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ସେ ଖ୍ୟାତି ଅର୍ଜନ କରି ପାରିଥିଲେ । ଜୀବନର ପ୍ରାୟ ଶେଷ ୭/୮ ବର୍ଷ ଶାରୀରିକ ପୀଡ଼ା ଓ ପାରିବାରିକ ଜଞ୍ଜାଳ ତାଙ୍କୁ ପାର୍ଟିର ସକ୍ରିୟ କର୍ମ ପ୍ରବାହରୁ ଅଳ୍ପ ବହୁତ ଦୂରେଇ ନେଇଥିଲା । ମାତ୍ର ଓଡ଼ିଶାର ନିପୀଡ଼ିତ, ଲାଞ୍ଛିତ,ଶୋଷିତ, ଲୁଣ୍ଠିତ ଜନତାକୁ, ତାଙ୍କ ପ୍ରିୟ ଆଦର୍ଶ ମାର୍କସବାଦ-ଲେନିନବାଦ ଓ ତାଙ୍କ ପାର୍ଟିଠାରୁ ତାଙ୍କ ମନ, ବିବେକ, ହୃଦୟକୁ ଦୂରେଇ ନଥିଲା । ସ୍ମରଣରେ ଅଛି ରାଜ୍ୟରେ ଜମିଦାରୀ ପ୍ରଥା ଉଚ୍ଛେଦ ଲାଗି ସି.ପି.ଆଇ. ର ୧୯୪୬-୪୬-୪୮-୪୯ରେ ପ୍ରବଳ ଅଭିଯାନ । ଏହି ଆନ୍ଦୋଳନକୁ ତାତ୍ତ୍ୱିକ ଦିଗଦର୍ଶନ ଦେବାକୁ ହେବ । ସାଥୀ ପତିଙ୍କର ସଙ୍କଳ୍ପ ବହି ଲେଖିବେ । ମୋର ସାହାଯ୍ୟ ଲୋଡ଼ା । ମାଲ ମସଲା ଦରକାର । ସେ ନିଜେ ଯୋଗାଡ଼ କରୁଥାନ୍ତି । କଟକ ଇଂଲିଶ ଅଫସରୁ କେତେକ ଉପାଦାନ ଲୋଡ଼ା । ୧୯୦୬ ମସିହା ସେଟଲମେଣ୍ଟର ମାଡ଼କ୍ସ ରିପୋର୍ଟରେ ଅନେକ ତଥ୍ୟ ରହିଛି । ଅନୁରୋଧ ହେଲା ତାଙ୍କର । ସକାଳ ୧୦ ରୁ ସଂଧ୍ୟା ୫। ଯାଏ ଇଂଲିଶ ଅଫିସରେ ବସି ସେହି ବହିରୁ ତଥ୍ୟ ସଂଗ୍ରହ କରିବା ମୋର ହେଲା କାମ । ପାଣ୍ଡୁଲିପି ଲେଖା ସରିଲା । ସେ ନାହାନ୍ତି ପଚାରିଲେ ନାମ କ'ଣ ଦେବ । କହିଲି, ଜମିଦାରୀ

ଉଚ୍ଛ୍ୱାସରେ ଉତ୍କଳର ନୂଆ କଳେବର । ମନକୁ ପାଇଲା ତାଙ୍କର । ତାଙ୍କ ସହିତ କେତେ ତାତ୍ତ୍ୱିକ ସାଙ୍ଗଠିନିକ ଯୁକ୍ତି । ଦୁହିଁଙ୍କ ଭିତରେ ଟେବୁଲ ପିଟାପିଟି । ସତେ ଯେପରି ଝଗଡ଼ା ହୋଇଥିଲା । କିନ୍ତୁ ଆମଯିକ ବ୍ୟବହାର । ସାଥୀସୁଲଭ ସମାଲୋଚନା, ସାଥୀସୁଲଭ ସ୍ନେହମମତା, ସ୍ନେହଶ୍ରଦ୍ଧା ଭୁଲିବାର ନୁହେଁ । ତାଙ୍କ ପ୍ରତି ସମ୍ମାନ ମଧ୍ୟ କେବେହେଲେ ଊଣା ହୋଇନି । ତାଙ୍କ ଜୀବନ ଆଲେଖ୍ୟ ଲେଖିବା ଏହି କ୍ଷୁଦ୍ର ଲେଖାର ଅଭିପ୍ରାୟ ନାହିଁ ।

**କମ୍ୟୁନିଷ୍ଟ ହେବା ପାଇଁ ତାଙ୍କ ସାଧନାରୁ ଖିଏ**

ରାମକୃଷ୍ଣ ପତି ରେଭେନ୍‌ସା ମହାବିଦ୍ୟାଳୟରେ ସେତେବେଳେ ଜଣେ ସମ୍ମାନିତ ଛାତ୍ର ନେତା । ସେତେବେଳେ ଛାତ୍ରସଂଘର ଜନ୍ମ । କଲେଜ ଧର୍ମଘଟ, ତା'ପରେ ମେଡ଼ିକାଲ ସ୍କୁଲ ଧର୍ମଘଟ । ରାମବାବୁ ଏସବୁରେ ସିଧାସଳଖ ଜଡ଼ିତ ହୋଇନଥିଲେ । କିନ୍ତୁ ନିକଟରେ ରହି ସମସ୍ତଙ୍କ ସହିତ ମିଶି ଭବିଷ୍ୟତରେ କ'ଣ କରି କରିବେ ତାହା ହିଁ ସେ ଚିନ୍ତା, କରୁଥିଲେ ସମ୍ଭବତଃ ସ୍ୱାଧୀନତାର ନିଶା ଓ ସମାଜବାଦର ନିଶା ତାଙ୍କୁ ଘାରିଥାଏ । ମାତ୍ର ମାର୍କସବାଦ ଲେନିନବାଦକୁ ଗ୍ରହଣ କରିନଥାନ୍ତି । ତାଙ୍କର ତତ୍ତ୍ୱ ଥିଲା ଯେମିତି ରବୀନ୍ଦ୍ର ନାଥଙ୍କ ସବାର ଉପରେ ମନୁଷ୍ୟ ସତ୍ୟ – ତା'ର ଉପରେ ନାଇଁ, ଭଳି । 'ମ୍ୟାନ ଏବଂ ମ୍ୟାନିଜମ୍' ଅବା ମାନବ ଓ ମାନବତା ଏପରି ମତାଦର୍ଶରୁ ନିଜ ଅନୁଶୀଳନ ଓ ଅଭିଜ୍ଞତାରୁ ସେ ଲମ୍ଫ ଦେଲେ କମ୍ୟୁନିଷ୍ଟ ଆନ୍ଦୋଳନକୁ, କମ୍ୟୁନିଷ୍ଟ ପାର୍ଟିକୁ ।

କମ୍ୟୁନିଷ୍ଟ ହେବାରୁ ତାଙ୍କୁ କମ୍ ଯାତନା, ଦୁଃଖ ଭୋକ ଉପାସର ସମ୍ମୁଖୀନ ହେବାକୁ ପଡ଼ିନଥିଲା । ରାଏ ସାହେବ ଆନନ୍ଦ ଚନ୍ଦ୍ର ପତି ସେ କାଳରେ ଦନ୍ତା ହେଡ଼ମାଷ୍ଟରଙ୍କ ପୁଅ । ଅଗାଧ ସମ୍ପତ୍ତି । ସୁନା ଇଟା, ଶତାଧିକ ଏକର ଜମି, କଟକରେ କୋଠା । କ'ଣ ନାହିଁ । ରାମ ଗୋଟିଏ ମାତ୍ର ପୁଅ । ଆଉ ଦିଟି ଝିଅ । ସେମାନେ ବିଭା ହୋଇଥାନ୍ତି । ପୁଅକୁ ବିଭାକଲେ ଖାନଦାନ ଘରେ । ଗୋପିନାଥ ମିଶ୍ର ପୁଲିସ ଇନିସପେକ୍ଟରଙ୍କ ଝିଅ । ମାତ୍ର ସେ ସନ୍ତାନବତୀ ହେଲେନି । ରାଏ ସାହେବଙ୍କ କ୍ରୋଧ । ରାମକୁ ଆଦେଶ ଆଉ ଗୋଟିଏ ବାହା ହୁଅ । ରାମ କମ୍ୟୁନିଷ୍ଟ ମୂଲ୍ୟବୋଧର ମଣିଷ । ତା' ହେବ ନାହିଁ । ପୁଣି ବ୍ରିଟିଶ ଉପାଧିଧାରୀ ରାଏ ସାହେବଙ୍କ ପୁଅ ହେବ କମ୍ୟୁନିଷ୍ଟ । କାର୍ଯ୍ୟତଃ ତ୍ୟଜ୍ୟପୁତ୍ର ।

ଆଖି ଦେଖା, ଅଙ୍ଗେ ନିଭାଇବା କଥା । ଘରେ ଆମର ଫାଟି ପଡୁଛି । କଟକ କୋଠାରେ ରାମପତି । ପତ୍ନୀ ଶୁଭଙ୍କୁ ଚାଉଳ ଚୂଡ଼ା ମାଣେ, ନଡ଼ିଆ କଷିଟିଏ ମିଳିବ ନାହିଁ । ବାପାଙ୍କ ଘରେ ରହିଥିବା ହେତୁ ଘରଭଡ଼ା ଦେବାକୁ ପଡ଼ିବ । ପ୍ରତି ମାସରେ ରାଏସାହେବ ଘରଭଡ଼ା ନେବାକୁ ଆସି ଦୁଆର ମୁହଁରେ ଛିଡ଼ା–ବୋହୁ ପ୍ରଣାମ କଲେ ମୁହଁ ବୁଲାଇନେବେ । ଟଙ୍କା ପାଦତଳେ ନ ଥୋଇଲେ ତାରିଖ ଦେଇଯିବେ । ଗୋଟିଏ ମାତ୍ର ପୁଅକୁ କଥା କହିବେନି । ଦରକାର ପଡ଼ିଲେ ଚିଠି ଖଣ୍ଡେ ଲେଖିଦେବେ ତାଗିଦା କରି ।

ରାମପତି ପାର୍ଟିର ନେତା, ସଦାବେଲିଆ କର୍ମୀ, ପାର୍ଟି ଗଢ଼ାର ସମୟ । ପାର୍ଟି ଗଢ଼ିଲା ବେଳର ଅନ୍ୟ ସାଥୀମାନେ କମ୍ୟୁନ କରିଥାନ୍ତି । କୌଣସିମତେ ଚାଉଳ ଗଣ୍ଡେ ମିଳିଲେ ଓ ଶଙ୍କରପୁର ସାଥୀମାନଙ୍କ ପାଖରୁ କିଛି ପରିବା ଆସିଲେ ରୋଷେଇ । ଭାତ ଡାଲମା ବା ବରା ଗୁଲଗୁଲା । ରାମବାବୁ ପକ୍‌କା ଘରେ ପରିବାର ନେଇଥା'ନ୍ତି । କେତେ ଜଣ ଆମେ ତାଙ୍କ ଘରେ ଗଣ୍ଡାଏ ବେଳେ ବେଳେ ଖାଉ । ଦେବୁ କ'ଣ ? ଅଛି ବା କ'ଣ ? ଦିନ ଦିନ ରାମବାମୁ ଘରେ ଚୁଲୀ ଜଳେ ନାହିଁ । ପଖାଳ ଗଣ୍ଡେ ମିଳେନି । ରାମସାହୁ, କାମିନୀନନା, ଚାନ୍ଦିନିଚୌକାବାଲ ରାମବାବୁଙ୍କୁ ସୁଖପାଆନ୍ତି । ସେମାନଙ୍କ ଦୋକାନରୁ ବରା ଧରି ଆସେ । ମାଗଣା ବି ଦିଅନ୍ତି । ସେତକ ଖାଇ ଦୁଇ ପ୍ରାଣୀ ଖାଇ ଓ ଶଳାର ଝିଅ ସେତେବେଳେ ମଞ୍ଜୁକୁ ଝିଅ କରିଥା'ନ୍ତି, ତାକୁ ଖୁଆଇ ପାର୍ଟି କାମରେ ଲଗନ୍ତି । ମୁହଁ ଶୁଖିଯାଏ, ପେଟ ଜଳୁଥାଏ । କିନ୍ତୁ ସେ ଉପାସ ଅଛନ୍ତି ବୋଲି କାହାକୁ କହନ୍ତି ନାହିଁ । ଶ୍ୱଶୁରଘର ଓ ତାଙ୍କର ଥିଲାବାଲା ସାଙ୍ଗ ବନ୍ଧୁବାନ୍ଧବ ଧାରା ଦିଅନ୍ତି, ସେମାନେ ସାହାଯ୍ୟ କରନ୍ତି । ବର୍ଷ ବର୍ଷ କାଳ ଏମିତି ତାଙ୍କ ଜୀବନ କାହାଣୀ ପରି ଲାଗିବ । ମାତ୍ର ନିରାଟ ସତ୍ୟ ।

ରାମବାବୁ ସୌଖିନ ଖାଇବା ରହିବା, ଖାନଦାନୀ ଘର ପୁଅର ପୁରୁଣା ଅଭ୍ୟାସ । ଋଣ କରି ସେ ପିଇବେ ସବୁଠୁ ଦାମିକା ଚାହା । ସିଗାରେଟ ନିଶ୍ଚୟ ୩ ଥର ନିଭେଇ ସାଇତି, ଟାଣିବେ । କୁକୁରଟାଏ ଥିବ । ସେ ଖାଇବାକୁ ନପାଇ ଭୁକୁଥିବ । ଯିଏ ପାର୍ଟିବାଲା ଆସିବେ, ଧାର ହୋଇ ଚର୍ଚ୍ଚା ହେବେ ।

ପାର୍ଟିର ଏକାନ୍ତ ଦରକାର ପଡ଼ିଲା । କେଉଁଠୁ ହଜାରେ ଟଙ୍କା ମିଳିବ । ବାଟ ମିଳିଲାନି । ଅନିଚ୍ଛା ସତ୍ତ୍ୱେ ପୁଅ ଗୋଟିଏ ଚିଠି ଦେଲେ ରାଏସାହେବ ବାପାଙ୍କୁ ହଜାରେ ଟଙ୍କା ସୁଧ ଦିଅ ଋଣ । ଟଙ୍କା ଦେଲେ । ମାତ୍ର ପ୍ରତି ମାସରେ ସୁଖ ନେବାକୁ ପିତା ହାଜର ।

ଦୁଇ ଦୁଇ ଥର ସୁନାଇଟା, ନଗଦ ଟଙ୍କା, ଗହଣାଗାଣ୍ଠି ରାଏ ସାହେବଙ୍କ ଘରୁ ଡକାଏତ ନେଲେ । ମାତ୍ର ପୁଅକୁ ଚାହିଁଲେନି । ମୃତ୍ୟୁ ଆସନ୍ନ ଜାଣି ମୂଲ୍ୟବାନ ସମ୍ପତ୍ତି ସବୁ ଅନ୍ୟମାନଙ୍କୁ ଦେଇ ରାମଙ୍କୁ ଦେଲେ କଟକ ଘରଟି ଆଉ ଫୁଲନଖରା ପାଖରେ କୁଶ କଅଁଳୁ ନ ଥିବା ୨୫ ଏକର ପଡ଼ିଆ ଜମିକୁ । ତାକୁଇ ଉଠିଆକରି, କଟକ ଘର ବିକି ତାକୁ ଜଣକର ଟ୍ରକ କିଣାରେ ଲଗେଇ ତା'ରି ଆୟେରେ ନିଜେ ଆଉ ତାଙ୍କ ପାଳିତା ଦ୍ୱିତୀୟ କନ୍ୟା ଚଳିବେ ଓ ସେ ଚାଲିଗଲେ ପତ୍ନୀ ଶକୁ ଚଳିବେ ଏବଂ ଖାଇବା ରହିବା ନିଶ୍ଚିତ ହେଲେ ଜୋରରେ ପାର୍ଟି କାମ କରିବେ ବୋଲି ତାଙ୍କର ଅଭିଳାଷ ପୂରଣ ହୋଇ ନ ପାରିବା ହେତୁ ଜୀବନର ଖେଦ ସେ ଅନେକ ସାଥୀଙ୍କୁ କହି ମନମରା ହୋଇ ରହିଯାଆନ୍ତି ।

ଏସବୁ ସ୍ମରଣ ଯେ ଆସୁଛି । ଏହା ମଧ୍ୟ ପାର୍ଟିର ନିତ୍ୟନବକ୍ଷନ ସାଥୀମାନଙ୍କୁ କିଛିଟା ଦିଗଦର୍ଶନ ଦେବ । କମ୍ୟୁନିଷ୍ଟଙ୍କ ପାଇଁ ଗୋଲପ ଫୁଲର ଶଯ୍ୟା ନଥାଏ । ଥାଏ ଅଶେଷ

ଦୁଃଖ ଯାତନା, ତାଡ଼ନା ଏବଂ ସେଥିଲାଗି ଅସୀମ ସାଧନା । ଭୁଲଭଟକା କମ୍ୟୁନିଷ୍ଟଙ୍କର ହେବ । ନୂଆ ସମାଜ, ସଂପୂର୍ଣ୍ଣ ନୂଆ ଅର୍ଥନୀତି, ସଂପୂର୍ଣ୍ଣ ନୂତନ ସାମାଜିକ ସମ୍ପର୍କ ଗଢ଼ିବାର ସଂଗ୍ରାମ ଓ ଅତୀତର ଶୋଷଣ ସମାଜର ଅଚଳାୟତନକୁ ଚୂରମାର କରିବାର ସଂଗ୍ରାମ କରିବା ବେଳେ ସଂପୂର୍ଣ୍ଣ ଅଜଣା, ଅମଡ଼ା ବାଟରେ ଗଲାବେଳେ ଭୁଲ ନ ହେବା କିପରି ? ପୁଣି ଅଏସୀ ଭୋଗୀ, ଶୋଷକ ଶ୍ରେଣୀର ସମାଜରେ ଜନ୍ମ ହୋଇ ସେଇ କାଇନ୍ଦା କଟକଣାରେ ବଢ଼ି ଶୋଷିତ ଶ୍ରେଣୀର ଆଦର୍ଶ ନେବା, ତା' ସଙ୍ଗେ ଏକାକାର ହୋଇଯିବା ସହଜ ବ୍ୟାପାର ନୁହେଁ । ଯାହାକୁ କହନ୍ତି ଡିକ୍ଲାସ ହେବା ନିଜ ଶ୍ରେଣୀର ସ୍ୱାର୍ଥ ବିରୁଦ୍ଧରେ ଯାଇ ଶୋଷିତ ଶ୍ରେଣୀର ସ୍ୱାର୍ଥ ପାଇଁ ଲଢ଼ିବା । ଆମେ କେହି ଏପରି ଭୁଲଭ୍ରାନ୍ତିକୁ ବାଦ ପଡ଼ି ନ ପାରୁ । ମାତ୍ର ସଚେତନ ଭାବରେ ତାକୁ ଉପଲବ୍ଧି କରିବା ମାନିନେବା, ସଂଶୋଧନ କରିବା ଓ ସଚ୍ଚା କମ୍ୟୁନିଷ୍ଟ ହେବା ହିଁ ପ୍ରକୃତ ମାର୍କସବାଦୀ ଲେନିନବାଦୀ ପକ୍ଷରେ ସମ୍ଭବ ।

ତାଙ୍କ ଜୀବନର ଅଭିଳାସ ଏହି ଦିଗରୁ ବିଫଳ ହେଲା । ସେ ଭାବିଥିଲେ ପେଟପାଟଣାକୁ ନିଶ୍ଚିତ କରିଦେଲେ ଅଧିକ ତତ୍ପର ହୋଇ କାମ କରିବେ । ତାହା ନ ହୋଇ ପାରିବାରୁ ସେ ସାଥୀମାନଙ୍କ ସଙ୍ଗେ କଥାବାର୍ତ୍ତା ବେଳେ କମ୍ ଦୁଃଖ ପ୍ରକାଶ କରନ୍ତି ନାହିଁ । ମାର୍କସବାଦୀ ସାହିତ୍ୟ ଲେନିନଙ୍କ ଗ୍ରନ୍ଥ ଅଧ୍ୟୟନ କଲେ ଭାରତୀୟ ଦର୍ଶନର ଚିରାୟତ ଗ୍ରନ୍ଥ । ଭାବବାଦୀ ଆଦର୍ଶ, ଭାତରୀୟ ଦର୍ଶନରେ ବସ୍ତୁବାଦର ଭୂମିକା ସମ୍ପର୍କରେ ତାଙ୍କର ଅନୁଶୀଳନକୁ ସେ ପରବର୍ତ୍ତୀ କାଳରେ ଅବ୍ୟାହତ ରଖିଲେ ।

ମୃତ୍ୟୁର ୫/୬ ବର୍ଷ ପୂର୍ବରୁ ତାଙ୍କୁ ସଙ୍କେତ ମିଳିଗଲା । ସେ ଆଉ ରହିବେନି । ହୃଦରୋଗ ଏକାଧିକବାର ଶର୍ଯ୍ୟାଶାୟୀ, ଅଚେତ । ତା'ରି ଭିତରେ ସେ ଭାବିଲେ ଗୋଟିଏ ଶତାବ୍ଦୀର କାମ ଯେମିତି ସେ ଶେଷ କରି ଦେବେ ଅଳ୍ପ ଦନ ଭିତରେ, କିଛି ରଖି ଯିବାର ପ୍ରବଳ ଆକାଙ୍କ୍ଷା । ରାମକୃଷ୍ଣ ପତି ପୁଣି ବିପ୍ଳବି କବିତା ଗ୍ରନ୍ଥ 'ତୃଷାର ସ୍ୱତି' । ମୃତ୍ୟୁର ୬ ମାସ ପୂର୍ବରୁ ଚମକ ସୃଷ୍ଟି କଲା ତାଙ୍କ କବିତା ପ୍ରକାଶନ ।

ଚାରୋଟି ଚିଠିର ସାରମର୍ମ । ତାଙ୍କ ଜ୍ଞାନ ପିପାସାର ପରିଚୟ ଦେବ । ତାଙ୍କ ଶେଷ ଅଭିଳାଷର ସ୍ୱାକ୍ଷର ବହନ କରିଛି ତାଙ୍କର "ଜମିଦାରୀ ଉଚ୍ଛେଦରେ ଉତ୍କଳ ନୂଆ କଳେବର" ପରେ ତାଙ୍କର ଅନ୍ୟତମ ଅକ୍ଷୟ କୀର୍ତ୍ତି "ପୁଞ୍ଜିବାଦ ପୁସ୍ତକ । ବହୁ ତରୁଣକୁ କମ୍ୟୁନିଷ୍ଟ କରିବାରେ ସାହାଯ୍ୟ କରିଛି । ବହୁଦିନୁ ବଜାରରେ ମିଳୁନି । ତାକୁ ପ୍ରକାଶ କରିବେ । ତେଣୁ ଚିଠିରେ ଅନୁରୋଧ ମୋତେ ଚିଠି ଚାରୋଟି ବ୍ୟକ୍ତିଗତ । ମାତ୍ର ସାଥୀ ରାମପତିଙ୍କ ଶେଷ ଅଭିଳାଷ ସେଥିରେ ପ୍ରକାଶିତ । ସେତକ ଉଦ୍ଧାର କରୁଥିବାରୁ ମୁଁ କ୍ଷମଣୀୟ । ସେଇ କେତୋଟି ଚିଠିରେ କି ମାର୍ମିକତା କି ଅଗାଧ ସ୍ନେହ ଓ ଅଳି ।

ତାଙ୍କର ପ୍ରଥମ ଚିଠିଟି ହେଲା - ତମେ ସାଙ୍ଗେ ତ ଆଦୌ ଦେଖାହୁଏ ନାହିଁ । ଯଦି ବା

କେତେବେଳେ ବିଜୁଳି ଭଳିଆ କେବେ ହଠାତ୍ ଦେଖାହୁଏ କଥାବାର୍ତ୍ତା ପ୍ରାୟ ହୁଏନି । ବହୁତ କଥା କହିବାର ଥିଲେ ମଧ୍ୟ ଭାଷା ପାଇଲେ ନାହିଁ ।

ତମକୁ ଗୋଟାଏ କଷ୍ଟ ଦେବା ପାଇଁ ବହୁଦିନରୁ ଚେଷ୍ଟା କଲିଣି । ଲେଖିବି ଲେଖିବି ବୋଲି ଲେଖି ପାରୁନାହିଁ । ମୋର ପୁଞ୍ଜିବାଦ ବହିଟି ଦରକାର । ମୋ' ପାଖରେ ନାହିଁ । ମିଳିଲେ ଛାପି ଦେବି । ଜଣେ ଛାପି ଦେବା ପାଇଁ ଆଦର ଓ କରୁଣା ଦେଖାଇଛନ୍ତି । କେବେ ତମମାନଙ୍କୁ ଛାଡ଼ି ଚାଲିଯିବି ଜାଣେନା । ଚାଲି ଯିବାକୁ ଇଚ୍ଛା ନାହିଁ । କାରଣ ବିଚିତ୍ରା (ବହୁ ପ୍ରକାରର ବହି) ଆରମ୍ଭ କରିଛି । ଛାପା ବହି ଦେଖି ମରିଗଲେ ଶାନ୍ତି ଲାଗିବ । ଯାହା ରହିଯିବ ଯଦି ଛାପାଯୋଗ୍ୟ ବୋଲି ମନେକର ତେବେ ମୋ' ପରେ ଛାପିବ । ଯଦି ପୁଞ୍ଜିବାଦ ପାଖରେ କେଉଁଠି ଥାଏ ପଠାଇବ, ନଚେତ୍ ନୂଆ ଦୁନିଆରେ ଛାପି ଦିଅ, ଯାହା ପାଖରେ ଥିବ ସେ ଦେବା ପାଇଁ ଆଶା ଭଲଥିବ । ପିଲାଏ ମଧ୍ୟ ଭଲ ଥିବ । ଶରତକୁ ସ୍ନେହାପ୍ଲୁତ ଭଲ ପାଇବା ଜଣାଇବ । ଉତ୍ତର ଅପକ୍ଷୋରେ ବାଉ (ଗରୁଚରଣ ପଟ୍ଟନାୟକ) କିପରି ?

– **ରାମକୃଷ୍ଣ ପତି**

ବହିଟି ଯୋଗାଡ଼କରି ଦିଆଗଲା । ଯିଏ ଛାପିଲେ ଏପରି କଦର୍ଯ୍ୟ କଲେ ଯେ ସେଥିପାଇଁ ତାଙ୍କ ମନ ଭାଙ୍ଗି ପଡ଼ିବା ସେ ଅନେକଙ୍କୁ କହିଲେ କିନ୍ତୁ ବହିଟି ପାଇ ଲେଖିଲେ ଦ୍ୱିତୀୟ ଚିଠି ।

ବାସ୍ତବିକ କିପରି ଓ କେଉଁ ଭାଷାରେ ମୋ' ହୃଦୟର ଉଲ୍ଲାସକୁ ପ୍ରକାଶ କରିବି ବୁଝିପାରୁନାହିଁ ।

ବହି ତ ପାଇଲି, କିନ୍ତୁ ଆହୁରି ଭଲ ଲାଗିଲା ତମର ହସ୍ତାଙ୍କିତ କଥା ମନେ ପଡିଯାଉଛି, ବହୁତ କଥା ଅଙ୍କୁରିତ ହେଉଛି ।

ଆଶା ତମେ ଭଲ ଥିବ । ଶରତ ଓ ପିଲାମାନେ ଭଲ ଥିବେ । କେବେ ଆସୁଛ । ଥରେ ଦେଖା ହେଲେ ଭଲ ହୁଅନ୍ତା । ଆଜି ପାହାନ୍ତାରେ ଅତି ଖରାପ ଲାଗିଲା । ଖରାପ ମାନେ ଖରାପ । ଆଉ ଟିକିଏ ପୋଲଙ୍ଗ କରିଥିଲେ ଶେଷ । ବର୍ତ୍ତମାନ ଭଲ ଅଛି । ଶୁଣିଲି ବାଉ ଦେହ ଭଲ ନାହିଁ । ଖରାପ ଲାଗୁଛି ଶୁଣି–ସ୍ନେହ ନବ ।

– **ରାମକୃଷ୍ଣ ପତି**

ତାଙ୍କୁ ଭଗବତୀ ସଂଖ୍ୟା ନୂଆ ଦୁନିଆ ଲାଗି ଏକ କବିତା ଲେଖିବାକୁ ଅନୁରୋଧ କରନ୍ତେ ଥରେ ସେ ୬/୯/୮୫ରେ ଲେଖିଥିଲେ-

"ଏ ଆଦେଶ କାହିଁକି ? ଗୋଟାଏ ଅପବାଦ ନାଗରା ବାଜୁଛି ଯେ ମୁଁ କବି । ହାସ୍ୟାସ୍ପଦ କଥା । ପ୍ରଥମ କଥା କବିତାମାନେ କବିତା ବରାଦ ଦେଲେ ହୁଏନା । ଯେଉଁମାନେ କବି ସେମାନେ କଲମ ଧରିଲେ ଲେଖିଲେ ।

ମୁଁ ତ ଅକବି ପୁଣି ବ୍ଲଡ଼ପ୍ରେସର ବହୁତ କଷ୍ଟ ହେଉଛି । ଭାବିଥିଲି ଗଦ୍ୟ ଲେଖିବି

ବୋଲି । ତା' ବି ସମ୍ଭବ ହେବ ନାହିଁ । ପୁଣି ଆଠ ଦିନ ଭିତରେ ହାଜିର କରିବାକୁ ହେବ ମହା ମୁସ୍କିଲ ।

– ରାମକୃଷ୍ଣ ପତି

"ଟାଟାନଗର ବା ଜାମସେଦପୁର ବିଷୟରେ ତମର ଜ୍ଞାନ ଅଛି । ମୁଁ କେବଳ ଥରେ ଯାଇଥିଲି ଉଦୟକର ମିଶ୍ର ଥିବାବେଳେ ।

ଟାଟା ନଗରରେ ଶ୍ରମିକମାନେ କେଉଁ ସେକ୍ଟରରେ ରହନ୍ତି ? ଓଡ଼ିଆମାନେ କେଉଁଠି ରହନ୍ତି ? ସେକ୍ଟରମାନଙ୍କର ନାମ କ'ଣ ? ଗ୍ରାଫିକ ନ ହେଲେ ମଧ୍ୟ ଗୋଟାଏ ମୋଟାମୋଟି ଚିତ୍ର ମୋ' ପାଇଁ ପଠାଇବ । କଷ୍ଟ ଦେଲି କ୍ଷମା ଦେବ । ଆଶା ସମସ୍ତେ ଭଲ ଥିବ । ସ୍ନେହ ଶ୍ରଦ୍ଧା ଜାଣିବ ।

- ରାମ ପତି

ସେ ଚାଲିଯାଉଛନ୍ତି ଅଥଚ ତାଙ୍କ କାମ ସରିନାହିଁ । ସକ୍ରିୟ ଭାବରେ ଆଉ କିଛି କରିବାକୁ ଅସମର୍ଥ । କିନ୍ତୁ ଲେଖି ରଖିଯିବେ, କିଛି ଛାପି ଦେଇ ନିଜେ ଦେଖିବେ । ଏହି ଅଭିଳାଷ ଥିଲା ତାଙ୍କର । ଶେଷ ଅଭିଳାଷ ।

କ'ଣ ଲେଖିଛନ୍ତି, କି ପାଣ୍ଡୁଲିପି ଅଛି, କି କି ଉପାଦାନ ସଂଗ୍ରହ କରିଛନ୍ତି, ତାକୁ ସଂଗ୍ରହ କରି ଯେତେଦୂର ସମ୍ଭବ ଉପଯୋଗ କରାଗଲେ, ତାଙ୍କ ସ୍ମୃତିପ୍ରତି ଶ୍ରଦ୍ଧାଞ୍ଜଳିର ନିଦର୍ଶନ ହେବ ବୋଲି ଭାବୁଛି ।

□□□

# ସ୍ୱାଧୀନତା ସଂଗ୍ରାମ କାଳରେ
# ହରେକୃଷ୍ଣ ମହତାବଙ୍କ ଭୂମିକା
## (ଏକ ଝଲକ)

ଆମ ବିଶ୍ୱ ତୃତୀୟ ସହସ୍ରାବ୍ଦର ଦ୍ୱାର ଦେଶରେ । ଅପସରି ଯାଉଥିବା ଦ୍ୱିତୀୟ ସହସ୍ରାବ୍ଦର ଅନ୍ତିମ ଶତକ ସମାପ୍ତ ହେବାବେଳକୁ ଓଡ଼ିଶା ଭୂଇଁରେ ଏକ ଇତିହାସ ପୁରୁଷଙ୍କ ଜନ୍ମ ଶତବାର୍ଷିକୀର ସମାରୋହ । ସେହି ବ୍ୟକ୍ତି ପୁରୁଷ ହେଲେ ହରେକୃଷ୍ଣ ମହତାବ ।

ଏହି ଶତକରେ ଓଡ଼ିଶା ତଥା ଭାରତବର୍ଷରେ ଲକ୍ଷଲକ୍ଷ ବ୍ୟକ୍ତିଙ୍କ ଜୀବନ କାଳ କଟିଛି । ସେମାନେ ମୃତ୍ୟୁକୁ ମଧ ଆଲିଙ୍ଗନ କରିଛନ୍ତି । ମୃତ୍ୟୁ ପରେ ସେପରି ଯେ କୌଣସି ବ୍ୟକ୍ତି କିଛିକାଳ ଲାଗି ନିଜ ପରିବାର, ଆତ୍ମୀୟ ସ୍ୱଜନଙ୍କ ଲାଗି ସ୍ମରଣୀୟ ହୋଇରହିବେ, ଏହା ସ୍ୱାଭାବିକ । ମାତ୍ର ଏହି ଶତକରେ ଏପରି କେତେକ ବ୍ୟକ୍ତି କେବଳ ଜୀବନ କାଳ ମଧରେ ନୁହଁ, ମୃତ୍ୟୁ ପରେ ବି କାଳକାଳ ସ୍ମରଣୀୟ ହୋଇ ରହିବେ । ସେପରି ବ୍ୟକ୍ତିମାନେ ଅତିମାନବ ନୁହନ୍ତି ଅବା ନିଜ ଜୀବନ କାଳରେ ସଂପୂର୍ଣ୍ଣ ନିର୍ବିବାଦୀୟ ନୁହନ୍ତି । କିନ୍ତୁ ତାତ୍କାଳିକ ସମାଜ ପାଇଁ ଆପଣାର ସ୍ୱାର୍ଥର ଉର୍ଦ୍ଧ୍ୱରେ ରହି ସେମାନେ ଯେଉଁ ଅବଦାନ ଦେଇଯାନ୍ତି, ଯେପରି ବିଦ୍ୟମାନ ବାଧା ପ୍ରତିବନ୍ଧକର ସାମନା କରି ଯଶସ୍ୱୀ ହୋଇଥା'ନ୍ତି ସେଥିପାଇଁ ସେମାନେ ଯୋଗଜନ୍ମା ରୂପେ ଅଭିହିତ ହୋଇଥାନ୍ତି ।

ଆମ ଓଡ଼ିଶାରେ ସେହିପରି ଏକ ଯୋଗଜନ୍ମା ହରେକୃଷ୍ଣ ମହତାବ । ଦୁଇ ଶହ ବର୍ଷବ୍ୟାପୀ ବ୍ରିଟିଶ ସାମରିକବାଦୀ, ଉପନିବେଶବାଦୀ ଦାସତ୍ୱରୁ ଭାରତବର୍ଷକୁ ମୁକ୍ତ କରିବାର ଦୁର୍ବାର ସଂଗ୍ରାମରେ ଓଡ଼ିଶାରେ ସେ ହୋଇଗଲେ ଅନ୍ୟ ଏକ କାଣ୍ଡାରୀ । ସ୍ୱାଧୀନତା ସଂଗ୍ରାମ କାଳରେ ତାଙ୍କ ଅନ୍ତରଙ୍ଗ ସଂପର୍କରେ ଆସିବା ବେଳକୁ ତାଙ୍କ ସହିତ ବୟସର ବ୍ୟବଧାନ ସତର ବର୍ଷ । ମୋ'ଭଳି ସମଧର୍ମା କନିଷ୍ଠମାନଙ୍କ ପାଇଁ ସେ ଅପହଞ୍ଚ ବୋଧ ହେଉଥିଲେ । କେତେ ସଂଗ୍ରାମ, ଶତବର୍ଷର ଦାଉ ସମ୍ଭାଳି ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ରଥୀମାନେ ଭାରତବର୍ଷର ଦୃଶ୍ୟପଟ୍ଟରେ ଖ୍ୟାତିର ଉଚ୍ଚସୋପାନ ଆରୋହଣ କରିଥିଲେ ହରେକୃଷ୍ଣ ମହତାବ । ସେପରି ଏକ ଶୀର୍ଷ ସ୍ଥାନୀୟ ନେତାରୂପେ ବିବେଚିତ ହେଉଥିଲେ । ଯୌବନର ପ୍ରାରମ୍ଭରୁ ହିଁ ତାଙ୍କ ରାଜନୈତିକ, ସାମାଜିକ ଜୀବନରେ ଉତ୍ତରଣର ପର୍ଯ୍ୟାୟମାନ ଆରମ୍ଭ ହେବାର ମୋର ଉପଲବ୍ଧି ।

ଏପରି ଏକ ଜୀବନର ଆକଳନ କଲାବେଳେ କେଉଁଠୁ ଆରମ୍ଭ କରିବି – ଏପରି ଧର୍ମ ସଂକଟରେ ପଡ଼ିବା ମୋ' ପକ୍ଷରେ ସ୍ୱାଭାବିକ ।

କ'ଣ ଆରମ୍ଭ କରିବି - ବାଲେଶ୍ୱର ଜିଲ୍ଲା ଅଗରପଡ଼ାଠାରୁ ? ସେଠାରେ ହିଁ କଟକ ଜିଲ୍ଲା ସାଲେପୁରର ଅସୁରେଶ୍ୱର - ନିଶ୍ଚିନ୍ତକୋଇଲିରେ ନାତି ରୂପେ ଜନ୍ମ ହୋଇ ଅଗରପଡ଼ା ଜମିଦାର ଜଗନ୍ନାଥ ମହତାବଙ୍କ ପୁତ୍ର ହେବାଠାରୁ ଚାରିଶହ ବର୍ଷ ପୂର୍ବେ ପଞ୍ଜାବର ଏହି ମହତାବ ବଂଶ ଓଡ଼ିଶାକୁ ନିଜର ଜନ୍ମାଟି ରୂପେ ବାଛି ନେବାଠାରୁ ? ହରେକୃଷ୍ଣ ମହତାବ ନିଜେ ଏପରି ପରିଚୟକୁ ଅତି ସଂକୀର୍ଣ୍ଣ ବୋଲି ବିଚାରୁଥିଲେ । ଓଡ଼ିଶା ଓ ଓଡ଼ିଆ ଭାଷା ସଂସ୍କୃତିରେ ପରିପୁଷ୍ଟ ଏହି ପରିଚୟ ତାଙ୍କୁ ଆମୋଦିତ କରିନଥିଲା ।

ଅଗରପଡ଼ାକୁ କେନ୍ଦ୍ରକରି ସେ ତାଙ୍କ ଜୀବନରେ ସମଗ୍ର ଓଡ଼ିଶାକୁ ଆଦରି ନେଲେ ହେଁ ପାରିବାରିକ ପ୍ରଥା ଅନୁଯାୟୀ ସେହି ଗ୍ରାମରେ ତାଙ୍କ ସଂଗ୍ରାମୀ ଜୀବନ କାଳରେ ସେ ଗଢ଼ିଥିବା କର୍ମ ମନ୍ଦିର ପ୍ରାଙ୍ଗଣରେ ତାଙ୍କର ଶେଷକୃତ୍ୟର ସେ ଦୃଶ୍ୟ ଆଜି ସ୍ମରଣରେ ଆସେ । ସମଗ୍ର ଓଡ଼ିଶା ସେଦିନ କ୍ରନ୍ଦନରତ ହେଲା ପରି ବୋଧ ହୋଇଥିଲା । ଭୁବନେଶ୍ୱରଠାରୁ କଟକ-ଭଦ୍ରଖ-ଅଗରପଡ଼ା ଯାଏ ପ୍ରାୟ ଦେଢ଼ଶହରୁ ଅଧିକ କିଲୋମିଟର ଦେଇ ଶବ ପଟୁଆର ଯିବାବେଳେ ସମଗ୍ର ରାଜପଥରେ ଲକ୍ଷାଧିକ ନରନାରୀ ଆବାଳବୃଦ୍ଧବନୀତା ତାଙ୍କୁ ଶେଷ ଶ୍ରଦ୍ଧାଞ୍ଜଳି ବାଷ୍ପାକୁଳିତ ନେତ୍ରରେ ଅର୍ପଣ କରିବାର ଅନୁଭୂତି ମନେପଡ଼େ । ତାଙ୍କର ଜଣେ ଘନିଷ୍ଠ ସହକର୍ମୀ ଜ୍ଞାନମଣ୍ଡଳର ପ୍ରଣେତା ବିନୋଦ କାନୁନଗୋଙ୍କ ସଂଗରେ ଯାଇ ଏହି ମହାଦୃଶ୍ୟ ଦେଖିବାର ଓ ତାଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧା ନିବେଦନ କରିବାର ସୌଭାଗ୍ୟ ଜୁଟିଥିଲା ଅତୀତର ଅନେକ ଘଟଣା ସ୍ମରଣ କରି ।

ତାଙ୍କ ଜୀବନ ଚର୍ଚ୍ଚା କଲାବେଳେ କ'ଣ ଆରମ୍ଭ କରିବି ଯେ ସେ ଓଡ଼ିଶାରେ ସ୍ୱାଧୀନତା ପରେ ଦୁଇଥର ମୁଖ୍ୟମନ୍ତ୍ରୀ ହୋଇଥିଲେ । କେନ୍ଦ୍ରରେ ଶିଳ୍ପମନ୍ତ୍ରୀ ହୋଇଥିଲେ ଅବା ବମ୍ବେ ପ୍ରଦେଶ (ସେତେବେଳେ ମହାରାଷ୍ଟ୍ର-ଗୁଜୁରାଟ)ର ରାଜ୍ୟପାଳ ହୋଇଥିଲେ, ସେଠାରୁ ? ଏପରି ପଦପଦବୀମାନଙ୍କରେ ଭାରତରେ ବା ଓଡ଼ିଶାରେ କ'ଣ ସେ କେବଳ ଅଧିଷ୍ଠିତ ହୋଇଛନ୍ତି ? ସେତିକି ପରିଚୟ କ'ଣ ଯଥେଷ୍ଟ ? ଅବଶ୍ୟ ସ୍ୱାଧୀନତା ପରବର୍ତ୍ତୀ କାଳରେ ଏପରି ପଦପଦବୀର ବୈଶିଷ୍ଟ୍ୟ ବିଶେଷତ୍ୱ ରହିଛି, ମାତ୍ର ଅତି ବିଶେଷତ୍ୱ ଏଥିରେ କ'ଣ ନିହିତ ?

**ଜୀବନର ଗତି ବଦଳିଲା**

ଜମିଦାରୀ ଉଆସଛଡ଼ା କାଳରୁ ହିଁ ତାଙ୍କ ନବ ଜୀବନର ଆରମ୍ଭ । ଏଣିକି ଜୀବନ ସଂଘର୍ଷମୟ । ପିତା ଓ ପରିବାରର ଇପ୍‌ସିତ ଜୀବନର ବିପରୀତ । ଏପରି ବେଦୁଇନ ସମ ଜୀବନର ଆରମ୍ଭ ୧୯୧୯-୨୦ରେ କଟକରେ କଲେଜ ପାଠ ଛାଡ଼ିବା କାଳରୁ । ସଂଘରେ ଶତାଧିକ ଜନନେତା ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନଗୋଙ୍କ ପରି କେତେକ ଦୃଢ଼

ସ୍ୱାଧୀନ ଚିନ୍ତାଧାରୀ ଯୁବକ ଦେଶ ମାତୃକାର ମୁକ୍ତି ପାଇଁ ଆତ୍ମୋତ୍ସର୍ଗ କଲେ । ଆଉ ପଛକୁ ଅନାଇଲେ ନାହିଁ । ଦେଶବତ୍ସଳ ଯୁବକମାନେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଆଗ୍ନେୟ ପଥ ବାଛିନେଲେ । ସାହସ କଲେ ଏକ ସଂଗଠନ ଗଢ଼ିବାକୁ । ନାମ ତା'ର ଭାରତୀ ମନ୍ଦିର । ମହତାବ ହେଲେ ଅନ୍ୟତମ ମୁଖ୍ୟ ସୂତ୍ରଧର, ଏହା ସେ କାଳର ଛାତ୍ର ଓ ବୁଦ୍ଧିଜୀବୀ ମହଲରେ ଚାଞ୍ଚଲ୍ୟ ସୃଷ୍ଟିକଲା । ୧୯୨୦ ନାଗପୁର କଂଗ୍ରେସ ଅଧିବେଶନର ଆହ୍ୱାନ ଆସିଲା ବ୍ରିଟିଶ ସହିତ ଅସହଯୋଗ; ଉଦାତ୍ତ ଆନ୍ଦୋଳନର ଅୟମାରମ୍ଭ । ଏକଦା କଂଗ୍ରେସର ଓଡ଼ିଶା ପ୍ରଦେଶ ଗଠନର ଆନ୍ଦୋଳନର ତୁଙ୍ଗ, ଅପ୍ରତିଦ୍ୱନ୍ଦୀ ଜନନେତା ଉତ୍କଳ ଗୌରବ ମଧୁସୂଦନଙ୍କୁ ତାଙ୍କର ଏକ ଭିନ୍ନମତ ଯୋଗୁଁ ଏହି ଅର୍ବାଚୀନ ଯୁବକମାନେ ତାଙ୍କର ସମାଲୋଚନା କରିବାର ସାହସିକତା ଦେଖାଇ ଆଗାମୀ ଦିନରେ ଯେ ଏମାନେ ଅମାନିଆ ହେବେ ତାହା ସୂଚନା ଦେଇଦେଲେ । ମହତାବ ଥିଲେ ଏହି ପ୍ରତିବାଦର ଅଗ୍ରଭାଗରେ ।

୧୯୨୧ କାଠଯୋଡ଼ି ବାଲୁକା ଶଯ୍ୟାରେ ଉତ୍କଳମଣି ଗୋପବନ୍ଧୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ମହାଜନସମାବେଶରେ ଗାନ୍ଧିଜୀଙ୍କ ଡାକରା ହିଁ ତାଙ୍କ ଭବିଷ୍ୟତ ଜୀବନର ମାର୍ଗକୁ ଅଣଲେଉଟା କରିଦେଲା । ୧୯୪୭ ଅଗଷ୍ଟ ୧୫ର ମହାନ୍ ପାର୍ବଣ ଓ ତା' ପରବର୍ତ୍ତୀ କାଳ ଲାଗି । ଓଡ଼ିଶାରେ ଅସହଯୋଗ ଆନ୍ଦୋଳନର ଆଦ୍ୟ ପର୍ବରେ ଅନ୍ୟମାନଙ୍କ ସଂଗରେ କାରାବାସ ଓ ସେଥିରୁ ମୁକ୍ତି ପରେ ତାଙ୍କର ବହୁମୁଖୀ କର୍ମଧାରାର ସୂଚନା ମିଳିଗଲା ।

ପ୍ରାୟ ସବୁ ଜମିଦାରଙ୍କ ଜମିଦାରିରେ ସେ କାଳରେ ଅତ୍ୟାଚାର ଶୋଷଣର ଶୀର୍ଷରେ ଉଠିଥାଏ । କଟକ, ବାଲେଶ୍ୱର ସଂଲଗ୍ନ କନିକା ଜମିଦାରିରେ ଏହି ଜମିଦାରୀ ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରି ଉତ୍କଳମଣି ଗୋପବନ୍ଧୁଙ୍କୁ ଏକ ବର୍ଷ ସଶ୍ରମ କାରାଦଣ୍ଡ ମିଳିଥାଏ । କାରାବାସରେ ହିଁ ତାଙ୍କ କଲମରୁ ବନ୍ଦୀର ଆତ୍ମକଥା ସମଗ୍ର ଓଡ଼ିଆ ଜାତିକୁ ଆଜି ବି ଉଦ୍ଦୀପିତ କରିଚାଲିଛି । ତରୁଣ ମହତାବ ନିଜେ ଜମିଦାରଙ୍କ ଉତ୍ତରାଧିକାରୀ । ମାତ୍ର ଜୀବନ ଧର୍ମ ବଦଳିଯାଇଛି ଅନ୍ୟ ଅନେକଙ୍କ ପରି । ବିଶ୍ରୁ ଓ ବିସୁନି ଦ୍ୱୟ କନିକା ରାଜ ଅତ୍ୟାଚାରରେ ସହିଦ ହୋଇଛନ୍ତି । ସେହି ପ୍ରଜା ଆନ୍ଦୋଳନର ନେତା ଚକ୍ରଧର ବେହେରାଙ୍କୁ ଓ ପ୍ରଜା ଆନ୍ଦୋଳନକୁ ଯେପରି ସେ ନେତୃତ୍ୱ ଦେଲେ, ସେଇଥିରୁ ହିଁ ତାଙ୍କ ଭବିଷ୍ୟତ ପ୍ରତିଷ୍ଠାର ସୁରାକ ମିଳିଲା ।

ସଂବାଦପତ୍ର ପ୍ରକାଶନ ଓ ସତ୍ୟ ସମ୍ବାଦ ପରିବେଷଣର ଅଧିକାର ଭାରତବାସୀଙ୍କ ଶକ୍ତି ବୋଲି ଦର୍ଶାଇ ବାଳଗଙ୍ଗାଧର ତିଳକଙ୍କ 'କେଶରୀ' ପତ୍ରିକା ପ୍ରକାଶନ ଓ ସେହି ଦେଶରୁ ଦୁଇଦୁଇ ବାର ଆଠବର୍ଷ କାଳ ଜେଲଦଣ୍ଡର ନଜିର ତଥା ଉତ୍କଳମଣି ଗୋପବନ୍ଧୁଙ୍କ ସତ୍ୟବାଦୀ ଓ 'ସମାଜ' ସାପ୍ତାହିକ ପତ୍ରିକା ପ୍ରକାଶନର ଆଦର୍ଶରେ ଅନୁପ୍ରାଣିତ ଯୁବ ସ୍ୱାଧୀନତା ସଂଗ୍ରାମର ସୈନିକ ମହତାବ କଟକରୁ ମୁକୁର ପ୍ରେସ୍‌ରୁ ପ୍ରଜାତନ୍ତ୍ର ପତ୍ରିକା ପ୍ରକାଶ ଆରମ୍ଭ କରିଦେଲେ ।

ସାମ୍ବାଦିକତା କ୍ଷେତ୍ରରେ ଆଦ୍ୟ ସାଫଲ୍ୟ ଭବିଷ୍ୟତରେ ତାଙ୍କୁ ବଳିଷ୍ଠ ସାମ୍ବାଦିକରୂପେ ବିବେଚିତ ହେବାର ଦ୍ୱାର ଉନ୍ମୋଚନ କରିଦେଲା । ସେଥିଲାଗି ଜୋରିମାନା ଓ କଟକଣାକୁ ହେୟ ହୀନ କରି ୧୯୩୦-୩୧ରେ ଜେଲ୍ ମୁକ୍ତି ପରେ ବାଲେଶ୍ୱରରୁ ତାହାର ପ୍ରକାଶନ ତାଙ୍କ ସାଙ୍ଗଠନିକ ଶକ୍ତିର ପରିଚୟ ଦିଏ ।

ଯେଉଁ କାମ ଧରିବେ, ତାକୁ ତା'ର ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇବାର ସଂକଳ୍ପ ହେତୁ ହିଁ ଅଗଷ୍ଟ ଆନ୍ଦୋଳନର ଦୀର୍ଘ କାରାଦଣ୍ଡ ଭୋଗି ମୁକ୍ତି ପରେ ୧୯୪୭ ଅଗଷ୍ଟ ୮ ତାରିଖରେ ହିଁ ଦୈନିକ ପ୍ରଜାତନ୍ତ୍ର ସେ କଟକର ଦାଶରଥି ପ୍ରେସ୍‌ରୁ ପ୍ରକାଶ କଲେ ପ୍ରଜାତନ୍ତ୍ର ଦୈନିକ, ତା'ର ସହଯୋଗୀ ଇଂରେଜୀ ଦୈନିକ 'ଇଷ୍ଟର୍ଣ୍ଣ ଟାଇମ୍ସ' ଏବଂ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିବା 'ଝଙ୍କାର' ପତ୍ରିକା ତାଙ୍କ ସାଙ୍ଗଠନିକ ଏବଂ ତାଙ୍କ ସାହିତ୍ୟ ସଂସ୍କୃତି ପ୍ରୀତିର ନିଦର୍ଶନ ହେଲା ।

ସେହି ତରୁଣ ବୟସରେ ଓଡ଼ିଶାର ଯୁବପିଢ଼ିକୁ ରାଜନୈତିକ ସାହିତ୍ୟ ସୃଷ୍ଟି ମାଧ୍ୟମରେ ସ୍ୱାଧୀନତା ସଂଗ୍ରାମର ଯଜ୍ଞବେଦୀକୁ ଉତ୍ତରିବା ପାଇଁ ଆହ୍ୱାନ ଦେଲା ତାଙ୍କ ରଚିତ 'ପଲାସୀ ଅବସାନ' ଆଉ ଉପନ୍ୟାସ 'ପ୍ରତିଭା' । ୧୭୫୭ରେ ପଲାସୀ ସମରରେ ବ୍ରିଟିଶ ଭାରତର ଉପନିବେଶବାଦୀ ସୈନ୍ୟଙ୍କ ବୀରତ୍ୱପୂର୍ଣ୍ଣ ମୁକାବିଲାରେ କାହିଁକି ସିରାଜଉଦ୍ଦୌଲାଙ୍କ ୧୮ ହଜାର ଅଶ୍ୱାରୋହୀ ସୈନ୍ୟ ପରାସ୍ତ ହେଲେ ସେଥିରୁ ଶିକ୍ଷା ଘେନି ବ୍ରିଟିଶ ଦାସତ୍ୱର ବନ୍ଧନ ଛିଣ୍ଡାଇବାକୁ ସେଥିରେ ସେ ଦେଶବାସୀଙ୍କୁ ଆବେଦନ କରିଥିଲେ ।

ଏହିସବୁ ସାହିତ୍ୟିକ, ସାମ୍ବାଦିକତାର ସାଧନା ହିଁ ତାକୁ ଅନୁପ୍ରାଣିତ କଲା ଓଡ଼ିଶାର ଅତୀତ ଇତିହାସକୁ ଓଡ଼ିଶାବାସୀ ଓ ଭାରତବାସୀଙ୍କୁ ଅବଗତ କରାଇବା ପାଇଁ ।

ଓଡ଼ିଶାର ପୂର୍ବସୂରୀ ଐତିହାସିକ ପ୍ୟାରୀମୋହନ ଆଚାର୍ଯ୍ୟ, କୃପାସିନ୍ଧୁ ମିଶ୍ର, କେଦାରନାଥ ମହାପାତ୍ରଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାର ବିଳାସ ନୁହଁ, ସେମାନଙ୍କ କୃତ ଓଡ଼ିଶା ଇତିହାସକୁ ଅଧିକ ତଥ୍ୟପୂର୍ଣ୍ଣ ସାବଲୀଳ ଓ ବିସ୍ତାରିତ କରିବାର ସ୍ୱପ୍ନକୁ ରାଷ୍ଟ୍ରନୀତିଜ୍ଞ ମହତାବ ସାକାର କଲେ । ବ୍ରିଟିଶ କାରାବାସରେ ପଣ୍ଡିତ ନେହେରୁ ଯେପରି ତାଙ୍କର ବିଶ୍ୱବିଖ୍ୟାତ ରଚନାବଳୀ, ଜନ୍ମ ଇତିହାସ, ଆତ୍ମ ଜୀବନୀ, ଭାରତ ଆବିଷ୍କାର, ୟୁରୋପରେ ୧୮ ମାସ ଓ କନ୍ୟାକୁ ପିତାର ଚିଠି ଲେଖିବାର ସୁଯୋଗ ପାଇଥିଲେ, ସେହିପରି ୧୯୪୨ ଭାରତଛାଡ଼ ଆନ୍ଦୋଳନ କାଳରେ ଅହମ୍ମଦନଗର ଦୁର୍ଗରେ ବନ୍ଦୀଶାଳାରେ ସର୍ବ ଭାରତୀୟ ନେତା ନେହେରୁ, ପଟେଲ, ଆଜାଦ୍ ପ୍ରମୁଖଙ୍କ ଗହଣରେ ଥାଇ ଓଡ଼ିଶାର ଇତିହାସ ରଚନା କଲେ । ଏଥିଲାଗି କାଳକାଳ ଲାଗି ସେ ସ୍ମରଣୀୟ ହୋଇରହିବେ ।

**ସଂଗ୍ରାମ ପରେ ସଂଗ୍ରାମର ନାୟକ**

୧୯୩୦ ଏପ୍ରିଲ ୬ରୁ ୧୩ । ମହାତ୍ମା ଗାନ୍ଧୀଙ୍କ ବିଶ୍ୱବିଖ୍ୟାତ ଦାଣ୍ଡିଯାତ୍ରା, ଲବଣ

ସତ୍ୟାଗ୍ରହ । ଓଡ଼ିଶାରେ ତାହାର ପ୍ରତିଧ୍ୱନି । ଆମ ଓଡ଼ିଶାର ଦାଣ୍ଡି ହେଲା ବାଲେଶ୍ୱରର ଇଂଚୁଡ଼ି । ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର, ଜୀବନ ପଟ୍ଟନାୟକ, ଗୌରାଙ୍ଗ ଦାସ, କୃପାସିନ୍ଧୁ ହୋତା, ଦୟାନନ୍ଦ ଶତପଥୀ ପ୍ରମୁଖ ଓଡ଼ିଶାର ବଛାବଛା ସତ୍ୟାଗ୍ରହୀ କଟକରୁ ଯିବେ ଚାଲିଚାଲି । ତାହା ଏକ ରୋମାଞ୍ଚକର ଅଭିଯାନ । କିନ୍ତୁ ଇଂଚୁଡ଼ିର ପ୍ରଧାନ ପୁରୋଧା, ଶୀର୍ଷନେତା ଥିଲେ ମହତାବ । ବାଲେଶ୍ୱରରେ ତାଙ୍କ ଦ୍ୱାରା ପ୍ରଭାବିତ, ଉତ୍ସାହିତ ମୁକ୍ତିଯୋଦ୍ଧା ନିଳାମ୍ବର ଦାସ, ସର୍ଦ୍ଦାର ସୁରେନ୍ଦ୍ର ଦାସ, ମହମ୍ମଦ ହନିଫ, କରୁଣାକର ପାଣିଗ୍ରାହୀ, ଗୋକୁଳାନନ୍ଦ ମହାନ୍ତି ଓ ଶତାଧିକ ମୁକ୍ତିସେନାନୀଙ୍କୁ ସଂଗଠିତ କରି ସେ ଯେପରି ଇଂଚୁଡ଼ି ସତ୍ୟାଗ୍ରହକୁ ସଫଳ କରାଇଲେ, ତାଦ୍ୱାରା ତାଙ୍କର ସାଂଗଠନିକ ଦକ୍ଷତା ପ୍ରତିପାଦିତ ହୋଇଥିଲା । ଏହି ଆନ୍ଦୋଳନ ଇଂଚୁଡ଼ି ବାସୁଦେବପୁରରୁ ପାରାଦ୍ୱୀପ, ଅସ୍ତରଙ୍ଗ, କୁହୁଡ଼ି, ରମ୍ଭା ଯାଏ; ସହସ୍ର ସହସ୍ରଙ୍କ କାରାବରଣ, ଲାଠି, ବନ୍ଧୁକ ମୂନର ଦମନ ଲୀଳା ।

୧୯୩୫ ଶାସନ ଖସଡ଼ାରେ ଭାରତର ଆଠଟି ରାଜ୍ୟରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ । ୬୦ଟି ଆସନରୁ କଂଗ୍ରେସ ୩୨ଟି ଆସନ ଲାଭ କରିଥାଏ ଓଡ଼ିଶାରେ ।

ମନେପଡ଼େ, ସେ କାଳର ଏକ ଘଟଣା । ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳ ସ୍ଥାପନାରେ ତାଙ୍କର ଓ ତାଙ୍କର ସହକର୍ମୀଙ୍କର ଭୂମିକା । ମାତ୍ର କଂଗ୍ରେସ ଭିତରେ ଗୋଷ୍ଠୀକନ୍ଦଳ ପଦାକୁ ବାହାରି ଆସେ । ବ୍ରିଟିଶ ସପକ୍ଷବାଦୀ ସାମନ୍ତ-ଜମିଦାରୀଙ୍କ ବିରୋଧ ସାଙ୍ଗକୁ କଂଗ୍ରେସ ନେତୃତ୍ୱର ଏକ ପ୍ରଭାବଶାଳୀ ଅଂଶ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶଙ୍କ ବିରୋଧୀ । ଅବସ୍ଥା ଅସମ୍ଭାଳ । କଂଗ୍ରେସ ମନ୍ତ୍ରୀମଣ୍ଡଳଙ୍କୁ କଂଗ୍ରେସର ଚିରାଚରିତ ଶତ୍ରୁ ଏବଂ ଆଭ୍ୟନ୍ତରୀଣ ଭିନ୍ନ ପ୍ରଜାବଲମ୍ବୀଙ୍କ ପ୍ରଚଣ୍ଡ ଆଘାତରୁ ରକ୍ଷା କରିବା କ୍ଷେତ୍ରରେ କ୍ଷମତାସୀନ ଅଂଶରେ ଅନ୍ୟତମ ବଳିଷ୍ଠ ନେତୃତ୍ୱ ହୋଇଥିଲେ ମହତାବ । ଫଳରେ ତତ୍କାଳୀନ କଂଗ୍ରେସ ଦ୍ୱିଧାବିଭକ୍ତ ହୋଇଥିଲା । ଭିନ୍ନ ଗୋଷ୍ଠୀ ବସ୍ତୁତଃ କଂଗ୍ରେସ ପରିତ୍ୟାଗ କଲେ । ୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହ ଓ ୧୯୪୨ ଭାରତଛାଡ଼ ଆନ୍ଦୋଳନରୁ ଅପରଗୋଷ୍ଠୀ ଦୂରେଇ ରହିଲେ କେବଳ ନୁହେଁ, ଅନ୍ୟମାନଙ୍କୁ ଧରି ପାରଳା ମହାରାଜଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଗଢ଼ିଲେ । ୧୯୩୮ରେ ମହତାବ ପ୍ରଥମ ଥର ପାଇଁ ସୁବାଷବୋଷଙ୍କ ଦ୍ୱାରା ଗଠିତ କଂଗ୍ରେସ କାର୍ଯ୍ୟକାରୀ କମିଟିର ଓଡ଼ିଶାର ପ୍ରଥମ ସଦସ୍ୟ ରୂପେ ଗୃହୀତ ହେଲେ । ଭାରତୀୟ ପରିସରରେ ତାଙ୍କୁ ମାନ୍ୟତା ମିଳିଲା ।

ସେହି ସମୟରେ ଓଡ଼ିଶାର ଷଢ଼େଇକଳା ଓ ଖରସୁଆଁ ସମେତ ୨୬ଟି ଗଡ଼ଜାତରେ ସାମନ୍ତବାଦୀ ଘୋର ଅତ୍ୟାଚାରୀ ରାଜଶାସନ ବିରୋଧରେ ଦୁର୍ବାର ଗଣ ବିଦ୍ରୋହ, ଗଣ ଅଭ୍ୟୁତ୍ଥାନର ଜୁଆର ଛୁଟିଯାଏ । ଓଡ଼ିଶା ଗଡ଼ଜାତଗୁଡ଼ିକରେ ରାଜ ଅତ୍ୟାଚାରର ତଦନ୍ତ ଲାଗି କଂଗ୍ରେସ ଦ୍ୱାରା ପ୍ରତିଷ୍ଠିତ ବଳବନ୍ତ ରାୟ ମେହେଟା କମିଟିର ସଦସ୍ୟ ତଥା ସଭାରେ ସଭାପତି ପଦରେ ମହତାବ ରହିଲେ । ଏହି ତଦନ୍ତ କମିଟିର ରିପୋର୍ଟ ସେତେବେଳେ ରାଜନୈତିକ

ମହଲରେ ଚହଳ ସୃଷ୍ଟି କରିଥିଲା । ଓଡ଼ିଶା ଗଡ଼ଜାତ ପ୍ରତି ଆନ୍ଦୋଳନ କାଳରେ ତିନୋଟି ପ୍ରଭାବଶାଳୀ ରାଜନୈତିକ ଆଭିମୁଖ୍ୟ ବହନ କରୁଥିବା ନେତାମାନଙ୍କ ମଧ୍ୟରେ ମହତାବ ଏକ ନିୟାମକ ଭୂମିକା ଗ୍ରହଣ କରିଥିଲେ । ଗୋଟିଏ ଆଭିମୁଖ୍ୟ ଥିଲା ବୈପ୍ଳବିକ ବାମପନ୍ଥୀ ଆଭିମୁଖ୍ୟ । ରାଜାରାଜୁଡ଼ା ପ୍ରଥାର ସଂପୂର୍ଣ୍ଣ ଉଚ୍ଛେଦ ସାଧନ ରାଜାମାନଙ୍କ ରାଜନୈତିକ କ୍ଷମତା କେବଳ ନୁହଁ, ତାଙ୍କର ସାମାଜିକ, ଅର୍ଥନୈତିକ ପ୍ରତିପତ୍ତିର ସଂପୂର୍ଣ୍ଣ ବିଲୋପ ସାଧନ । ସେମାନଙ୍କ ସମସ୍ତ ବିପୁଳ ସ୍ଥାବର, ଅସ୍ଥାବର ସଂପତ୍ତିର ବାଜ୍ୟାପ୍ତିକରଣ ଏବଂ ଓଡ଼ିଶାରେ ତାହାକୁ ସଂପୂର୍ଣ୍ଣ ମିଶ୍ରଣ । ଏହାର ବିପରୀତରେ ଥିଲା କେବଳ ରାଜାରାଜୁଡ଼ାଙ୍କ ପ୍ରତ୍ୟକ୍ଷ ରାଜନୈତିକ କ୍ଷମତା ବିଲୋପ, ପ୍ରତ୍ୟେକ ଗଡ଼ଜାତ ପ୍ରତିନିଧି ଆଇନ ପ୍ରବର୍ତ୍ତନ । ମାତ୍ର ଓଡ଼ିଶାରେ ସଂପୂର୍ଣ୍ଣ ରାଜନୈତିକ, ଭୌଗୋଳିକ, ଅର୍ଥନୈତିକ ମିଶ୍ରଣ ସଂପର୍କରେ ନୀରବତା; ମହତାବ ବାବୁ ଏହି ଦୁଇ ସଂପୂର୍ଣ୍ଣ ବିପରୀତମୁଖୀ ଆଭିମୁଖ୍ୟ ମଧ୍ୟରେ ସମନ୍ୱୟ ଆଣିବାକୁ ଉଦ୍ୟମ କରିଥବଲେ । ତାଙ୍କର ଆଭିମୁଖ୍ୟ ଥିଲା ଗଡ଼ଜାତ ରାଜାରାଜୁଡ଼ା ଆସନର ସଂପୂର୍ଣ୍ଣ ସତ୍ତାଲୋପ ଏବଂ ଓଡ଼ିଶା ସହିତ ସେଗୁଡ଼ିକର ସଂପୂର୍ଣ୍ଣ ମିଶ୍ରଣ ।

ତାଳଚେରର ଲକ୍ଷାଧିକ ପ୍ରଜାଙ୍କ ୯ ମାସ କାଳ ହିଜ୍‌ରତ୍ କାଳରେ ସେମାନଙ୍କୁ ଗାନ୍ଧିଜୀଙ୍କ ଦ୍ୱାରା ପ୍ରେରିତ ଆଣ୍ଡ୍ରୁଜଙ୍କ ସହଯୋଗରେ ଥଇଥାନ ଓ ରାଜ୍ୟକୁ ଫେରାଇବା କାର୍ଯ୍ୟରେ ତାଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ । ନୀଳଗିରିରେ ୧୯୩୮/୩୯ ଏବଂ ୧୯୪୭ ତାଙ୍କର ଭୂମିକା ମଧ୍ୟ ସ୍ମରଣୀୟ । ନବକୃଷ୍ଣ ଚୌଧୁରୀ, ରାଜସ୍ୱମନ୍ତ୍ରୀ ଏବଂ ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ନୀଳଗିରି ରାଜାଙ୍କ ଗୁଣ୍ଡାବାହିନୀର ସଶସ୍ତ୍ର ଆକ୍ରମଣର ମୁକାବିଲା କରିବା ପାଇଁ ନୀଳଗିରି ପ୍ରଜାମଣ୍ଡଳର କଂଗ୍ରେସ ଓ କମ୍ୟୁନିଷ୍ଟ ନେତାମାନଙ୍କୁ ଉତ୍ସାହ ଓ ଓଡ଼ିଶା ସରକାରଙ୍କ ଦ୍ୱାରା ସହଯୋଗିତା ପ୍ରଦାନ ହେତୁ ସାରା ଭାରତର ୫୬୪ଟି ଗଡ଼ଜାତ ମଧ୍ୟରୁ ନୀଳଗିରି ସର୍ବ ପ୍ରଥମ ଭାରତବର୍ଷର ରାଜନୈନିକ ମାନଚିତ୍ରରେ ପ୍ରଥମ ମିଶ୍ରଣ ଦେଶୀୟ ରାଜ୍ୟ ରୂପେ ଖ୍ୟାତି ପାଇଲା ।

ବେଜେଲଗେଟ ହତ୍ୟା କାଳରେ ତାଙ୍କର ସାହସିକତା ଓ ତାଙ୍କୁ ରଘୁଦିବାକରଙ୍କ ପରି ଫାଶି ଖୁଣ୍ଟରେ ଚଢ଼ାଇବାର ଷଡ଼ଯନ୍ତ୍ରକୁ ମହାତ୍ମା ଗାନ୍ଧୀଙ୍କ ହସ୍ତକ୍ଷେପ ଫଳରେ ବ୍ୟର୍ଥ କରିଦିଆଗଲା । ତାହା ଏକ ଦୀର୍ଘ କାହାଣୀ । ଅବଶ୍ୟ ଗଡ଼ଜାତଗୁଡ଼ିକ ଓଡ଼ିଶାରେ ମିଶିଲେ । ରାଜାମାନେ ସେମାନଙ୍କର ବିପୁଳ ଭୂସଂପତ୍ତି, ଧନରତ୍ନର ମାଲିକ ରହିଲେ ବରଂ ନିଜ ସଂପତ୍ତିର ନିରାପତ୍ତା ପାଇଲେ । ମାତ୍ର ୨୪ଟି ଯାକ ଦେଶୀୟ ରାଜ୍ୟର ଶାସକମାନଙ୍କ ପ୍ରବଳ ବିରୋଧ, କୋଶଳ ରାଜ୍ୟ ଗଠନର ସେମାନଙ୍କ ମସୁଧାକୁ ପଣ୍ଡ କରିଦିଆଗଲା ।

ଏହି କାରଣରୁ ସର୍ବଭାରତୀୟ ଗଡ଼ଜାତ ପ୍ରଜାମୁକ୍ତି ଆନ୍ଦୋଳନରେ ତାଙ୍କର ଭୂମିକା ସ୍ୱୀକୃତି ଲାଭ କରିଥିଲା ।

୧୯୪୦ରେ ଏହିସବୁ ଅଭିଜ୍ଞତାକୁ ଆଧାର କରି ସେ ଗାନ୍ଧିଜୀଙ୍କ ହରିଜନ ପତ୍ରିକାର

ଢାଞ୍ଚାରେ କଂଗ୍ରେସ କର୍ମୀମାନଙ୍କୁ ତତ୍କାଳୀନ ରାଜନୈତିକ, ଗଠନମୂଳକ କାର୍ଯ୍ୟକ୍ରମରେ ବୌଦ୍ଧିକ ପ୍ରୋତ୍ସାହନ ଦେବା ପାଇଁ 'ରଚନା' ନାମକ ସାପ୍ତାହିକ ପ୍ରକାଶ କରିଥିଲେ । ତାଙ୍କ ଦ୍ୱାରା ଉତ୍ସାହିତ ହୋଇ ଏହି ଲେଖକ ସେଥିପାଇଁ ମଧ୍ୟ ସନ୍ଦର୍ଭ ଦେଇଥିଲା । ଏହିପରି ଭାବରେ ପ୍ରାକ୍ ସ୍ୱାଧୀନତା ଓ ସ୍ୱାଧୀନତା ପରବର୍ତ୍ତୀ କାଳରେ ସେ ଏକ ଦେଶପ୍ରେମୀ ସାମ୍ବାଦିକ ପରିବାର ଗଠନରେ ଅଗ୍ରଣୀ ଭୂମିକା ନେଇଥିଲେ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ତାଙ୍କର ଦୀର୍ଘ ପ୍ରଶାସନିକ କାର୍ଯ୍ୟକଳାପର ଆକଳନ ଦୀର୍ଘ ହେବ । ତେବେ ସ୍ୱାଧୀନତା ପରେ ଓଡ଼ିଶାର ବିକାଶ ଲାଗି ଶୈକ୍ଷିକ, ଭିତ୍ତିଭୂମି ପ୍ରତିଷ୍ଠା ସୃଷ୍ଟି କରିବା କ୍ଷେତ୍ରରେ ଏବଂ ସାମାଜିକ ସଂସ୍କାର କ୍ଷେତ୍ରରେ ଅନେକ ଭିତରୁ ମୁଖ୍ୟ ଦୁଇ ତିନୋଟି ସାଫଲ୍ୟର ବର୍ଣ୍ଣନା କରି ଏ ଲେଖା ସାଙ୍ଗ କରିବି । ନୂତନ ଓଡ଼ିଶାର ରାଜଧାନୀ କେଉଁଠି ହେବ, ସେଥିଲାଗି ପ୍ରବଳ ମତଭେଦ ସୃଷ୍ଟି ହୋଇଥାଏ । କଟକ ଚୌଦ୍ୱାର, ରଙ୍ଗେଇଲୁଣ୍ଡା ପ୍ରଭୃତି ସ୍ଥାନର ନାମ ଉଠିଥାଏ । ଦୃଢ଼ମନା ମହାତାବ ସମସ୍ତ ବିରୋଧ ଓ କଟାକ୍ଷ ସତ୍ତ୍ୱେ ଭୁବନେଶ୍ୱର ହିଁ ରାଜଧାନୀ ହେବ ବୋଲି ନିଷ୍ପତ୍ତି ନେଲେ ଏବଂ ତାକୁ କାର୍ଯ୍ୟାନ୍ୱିତ କଲେ ।

ଦ୍ୱିତୀୟରେ ଓଡ଼ିଶାର ପ୍ରଚୁର ଖଣିଜ ସଂପଦ ଓ ମାନବ ସମ୍ବଳ ଉପଯୋଗ କରିବା ଲାଗି ରାଉରକେଲା ଇସ୍ପାତ ଶିଳ୍ପ ପ୍ରତିଷ୍ଠାରେ ତାଙ୍କର ଅବଦାନ ନିଶ୍ଚିତ ରୂପେ ଉଲ୍ଲେଖନୀୟ ।

ପଞ୍ଜାବରେ ଭାକ୍ରାନଙ୍ଗଲ୍ ପରି ନଦୀବନ୍ଧ, ଡ୍ୟାମ ତିଆରି କରିବାର ସଂକଳ୍ପ ନେଇ ମହାନଦୀରେ ହୀରାକୁଦ ବନ୍ଧ ନିର୍ମାଣ ଉଦ୍ୟମ ବେଳେ ତାଙ୍କୁ ପ୍ରବଳ ଜନବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଜନବିରୋଧର ସଂଗତ କାରଣ ଥିଲା ୨୨ ହଜାର ପରିବାରଙ୍କ ବାସଚ୍ୟୁତି । ଥଇଥାନ, କ୍ଷତିପୂରଣ ଭଳି ମାନସିକ ସମସ୍ୟା । ନିର୍ମିତ ବିରାଟ ହୀରାକୁଦ ବନ୍ଧ କେବଳ ବନ୍ୟା ନିୟନ୍ତ୍ରଣ, ଜଳସେଚନର ସୁଯୋଗ ସୃଷ୍ଟି କଲା ନାହିଁ, ଭବିଷ୍ୟତରେ ଓଡ଼ିଶାର ଶିଳ୍ପାୟନ ଲାଗି ବିଦ୍ୟୁତ୍ ଉତ୍ପାଦନ ମୁଖ୍ୟ କେନ୍ଦ୍ର ହେଲା । ଅବଶ୍ୟ ଏ ଯାଏ ୨୨ ହଜାର ବାସଚ୍ୟୁତ ପରିବାର ମଧ୍ୟରୁ ସଂପତ୍ତିବାନ ଲୋକଙ୍କ ବ୍ୟତୀତ ପ୍ରାୟ ୧୧ ହଜାର ଗରିବ, ରେକର୍ଡ଼ଭୁକ୍ତ ନ ହୋଇଥିବା ଚାଷୀ, ଭାଗଚାଷୀ କ୍ଷତିପୂରଣରୁ ଏବେ ବି ବଂଚିତ ରହିଛନ୍ତି । ସମସ୍ତ ବାସଚ୍ୟୁତଙ୍କୁ ଉପଯୁକ୍ତ ଥଇଥାନର ତାଙ୍କ ଦୃଷ୍ଟିକୋଣ ଓ ପ୍ରଚେଷ୍ଟା ସଫଳ ହୋଇପାରିନାହିଁ ଏଠି ।

ରାଜନୈତିକ, ସାଂସ୍କୃତିକ କ୍ଷେତ୍ରରେ ତାଙ୍କର ପ୍ରତିଷ୍ଠାର ଆଉ ଏକ ଦୃଷ୍ଟାନ୍ତ ହେଲା ବିଷୁବମିଳନର ପ୍ରତିଷ୍ଠା । ଆଜି ବିଷୁବ ମିଳନ ପର୍ବପାର୍ବଣ ରୂପେ ଓଡ଼ିଶାର ସାଂସ୍କୃତିକ ଜୀବନରେ ଏକ ବିଶେଷ ଅଙ୍ଗ ପାଲଟି ଯାଇଛି । ମନେପଡ଼େ ଦଶହରା ନବମୀ ଦିନ କଟକଚଣ୍ଡୀଠାରେ ସହସ୍ରାଧିକ ଛେଳିଙ୍କ ବଳିଦାନ । ଚଣ୍ଡୀଛକ ରକ୍ତରେ ରଂଜିତ ହୋଇଯାଏ । ବିକଳରେ ବଳି ପଡୁଥିବା ପଶୁଗୁଡ଼ିକ କାକୁତି କରନ୍ତି । ସେପରି ସହସ୍ର ସହସ୍ର ଦର୍ଶକ ଭକ୍ତଙ୍କ ସମ୍ମୁଖରେ ଏହି ବଳିଦାନ ପ୍ରଥାକୁ ବନ୍ଦ କରିବା ସେତେବେଳେ ଅଚିନ୍ତନୀୟ । କଟରପନ୍ଥୀମାନଙ୍କ ପ୍ରବଳ

ବିରୋଧ । ମାତ୍ର ମହତାବବାବୁଙ୍କ ଆବେଦନ, ତାଙ୍କ ବ୍ୟକ୍ତିତ୍ୱ ପ୍ରଭାବର ଜୟ ହେଲା ।

**ତାଙ୍କ ସହିତ ଦୀର୍ଘ ସଂପର୍କରେ କେତେକ ମୁହୂର୍ତ୍ତ**

ସ୍ୱାଧୀନତା ସଂଗ୍ରାମ କାଳରେ ଓଡ଼ିଶାର ବହୁ ସ୍ୱାଧୀନତା ସଂଗ୍ରାମୀଙ୍କର ବେଳେବେଳେ ମିଳନ ହୁଏ ସଭା ସମାବେଶରେ । କଟକ ସାହେବଜାଦା ବଜାରରେ ସ୍ୱରାଜ୍ୟାଶ୍ରମରେ ଓ କିଛିକାଳ ଗଙ୍ଗା ମନ୍ଦିର ଜାନକୀ ନାଥ ସ୍ୱରାଜ ଭବନରେ ତାଙ୍କ ସହିତ ଅନ୍ୟ ଅନେକଙ୍କ ପରି ଏକତ୍ର ରହିବାର ସୁଯୋଗ ମିଳିଛି । ସକାଳୁ ନିତ୍ୟକର୍ମ ସାରି ବାରଣ୍ଡାରେ ସମସ୍ତେ ଏକାଠି ବସି ମୁଢ଼ିଉଖୁଡ଼ା ଗୋଟାଏ କାଗଜଫର୍ଦ୍ଦ ଉପରେ ବିଛାଇ ପାଟିରେ ପକାଇ ଜଳଖିଆ କାମ ସରେ । ଆଜିର ଚା' ଅଭ୍ୟାସ ବା ସିଗାରେଟର କିନ୍ତୁ ଆଦର ନଥାଏ । ଦୁଇବେଳା ସ୍ୱରାଜ୍ୟାଶ୍ରମ ପଛ ପଟେ ଚାଳ ରୋଷେଇ ଘର ଅଗଣାରେ ରନ୍ଧା ହୋଇ ଆସିଥିବା ଭାତ, ଡାଲମା ଖିଆ ଚାଲେ । ସବୁଠାରେ ରାଜନୈତିକ ଆଲୋଚନା, ହାଣ୍ଡିଶାଳଠାରୁ ଢେଙ୍କାନାଳ ଯାଏ ଆମ ଓଡ଼ିଶାର ସମଗ୍ର ଦେଶ ଓ ବିଦେଶର ଘଟଣାବଳୀ । ସାମ୍ରାଜ୍ୟବାଦ ବିରୋଧରେ ପୃଥିବୀବ୍ୟାପୀ ବିପ୍ଳବ, ଆନ୍ଦୋଳନ ସଂପର୍କରେ । ତା'ପରେ ସ୍ୱାଧ୍ୟୟନ ଏବଂ ସଭାସମିତିର କଂଗ୍ରେସ ଅଫିସ୍ କାମ ଉଦ୍ୟମ ।

ତାଙ୍କ ସଙ୍ଗରେ ସାଲେପୁର, ପଟ୍ଟାମୁଣ୍ଡାଇ, କେନ୍ଦ୍ରାପଡ଼ା, ରାଜନଗର, ଢେଙ୍କାନାଳ, ଅନୁଗୋଳ ଏବଂ ବାଲିନ୍ଦ୍ରପୁର, ବିରିଡ଼ି ଇତ୍ୟାଦି ସଭାସମିତିର ଯୋଗଦାନର ସ୍ମୃତି ଏବେବି ମନରେ ଆନନ୍ଦ ଦିଏ ।

ମନେପଡ଼େ କଂଗ୍ରେସର କାମ ସରିବା ଲାଗି ମୋତେ ତାଙ୍କର ହମ୍ବର ସାଇକେଲଟି ବ୍ୟବହାର କରିବାକୁ ଅର୍ପଣ କରିବାର କଥା । ପୁଣି ମନେପଡ଼େ ୧୯୪୦ରେ ବ୍ରହ୍ମପୁରରେ ଏକତ୍ର କରାବାସ କଥା । ବଡ଼ବଡ଼ ନେତାଙ୍କ ସହିତ ଏକତ୍ର ରହିବାର ସୁଯୋଗର ଦିନଗୁଡ଼ିକ ।୧୯୪୨କୁ ସେ ଆଉ ଆମମାନଙ୍କ ସଂଗତରେ ରହିଲେନି । ମନେପଡ଼େ ସନ୍ଧ୍ୟା ଅବସରରେ ସ୍ୱରାଜ୍ୟାଶ୍ରମରେ କେତେ ଘରୋଇ ପାରିବାରିକ ବୃତ୍ତାନ୍ତ ତାଙ୍କଠାରୁ ଶୁଣିବା କଥା ।

ବାଗୁଡ଼ି ଖେଳ, ସାତ ନମ୍ବର ଓ୍ୱାର୍ଡ଼ରେ ତାସ୍ ଖେଳ ଓ ବ୍ରହ୍ମପୁର ପୁରୁଣା ହଲ ସମ୍ମୁଖରେ ବୋହୂଚୋରୀ ଖେଳକଥା । ସେତେବେଳକୁ ୧୯୩୭ରୁ କଂଗ୍ରେସ ସରକାର ଆସିଥିବାରୁ ଆଉ ଲୁହା ତସଲାରେ ଖାଇବା ପରିବର୍ତ୍ତେ ପିତଳଥାଳି ମିଳିଥାଏ । ଜେଲର ବା ସୁପରିଟେଣ୍ଡେଣ୍ଟ ପରିଦର୍ଶନରେ ଆସିବା ବେଳେ ଠିଆ ହୋଇ ନିଜ ଦାନ୍ତ ଓ ନଖ ସଫା ଅଛି କି ନାହିଁ ଦେଖାଇବାର ରୀତିକୁ ଭାଙ୍ଗି ଦିଆଗଲା ।

ଆଉ ଏମିତି ଅନେକ ସ୍ମୃତି । ପରବର୍ତ୍ତୀ କାଳରେ ରାଜନୈତିକ ଆଦର୍ଶରେ ଭିନ୍ନପନ୍ଥୀ ଓ ପରସ୍ପରର ରାଜନୈତିକ ସମାଲୋଚକ ହେଲେ ହେଁ ବ୍ୟକ୍ତିଗତ ଆନ୍ତରିକତା, ସ୍ନେହ, ଶ୍ରଦ୍ଧାର ଅଣୁମାତ୍ର ହ୍ରାସ ହେବାର ଲକ୍ଷଣ ପ୍ରକାଶ ପାଇନାହିଁ ।

□□□

# ଜାତୀୟ କବି ବାଞ୍ଛାନିଧି ଏକ ଅମଳିନ ସ୍ମୃତି

୧୯୪୨ ସେପ୍ଟେମ୍ବର ୨୮ । ସହସ୍ର ସହସ୍ର କଣ୍ଠରେ ସଂଗ୍ରାମର ସଂଗୀତ । ବ୍ରିଟିଶ ଭାରତ ଛାଡ଼ – ମହାତ୍ମା ଗାନ୍ଧୀକୀ ଜୟ, ଭାରତ ମାତାକୀ ଜୟ ଧ୍ୱନୀରେ ନାରୀ ପୁରୁଷ ଆବାଳବୃଦ୍ଧ ବନିତା ଦୋହରାଉଛନ୍ତି ଏକ ଦେଶପ୍ରେମୀ ଗୀତ ।

"ସ୍ୱାଧୀନ ଭାରତ ସ୍ୱାଧୀନ ଭାରତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନ ରେ
ଗାଏ ସାଗର ଭୂଧର ଅମ୍ବର ଚୁମ୍ବିତ
ଭାଲ ହିମାଚଳ ଗିରିବର କମ୍ପିତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନ ରେ"

ସହିଦ ତୀର୍ଥ ହୋଇଗଲା ସେଦିନ ଇରମ । ଶ୍ୟାମଳ ବନାନୀ ଘେରା ମହୋଦଧି ତଟ, ଏକ ଦ୍ୱୀପ ସଦୃଶ ଇରମ ଅଞ୍ଚଳ । ଜାଲିଆନୱାଲବାଗ ପରି ଚାରିପଟୁ ଚାଲିଲା ଗୁଳି । ୨୯ ଜଣ ସହିଦ ହେଲେ । ୫୮ ଜଣ ଗୁରୁତର ଆଘାତ ପାଇଲେ । ଅନ୍ୟମାନଙ୍କ ଉପରେ ଗୋଗଛବାଡ଼ିଆ ଲାଠି । ତଥାପି ଜୀବନ ଧରି ଏଣେତେଣେ ଧାଉଁଥିବା ସଂଗ୍ରମୀ ଉପରେ ଗୋଡ଼େଇ ଗୋଡ଼େଇ ବ୍ରିଟିଶ ପୋଷା ପୁଲିସଙ୍କ ଆକ୍ରମଣ । ଏଇ ମାଟିରେ ଜନ୍ମ ନେଇଥିଲା ସେମାନଙ୍କଠାରୁ ଝଂକୃତ ଦେଶପ୍ରେମୀ ଗାନ । କି ଅବିସ୍ମରଣୀୟ ଅତୀତର ସେ ଇତିବୃତି । ଏହି ଦେଶପ୍ରେମୀ ସଂଗୀତର ସ୍ରଷ୍ଟା ଏଇ ଇରମ ମାଟିର ବାଞ୍ଛାନିଧି ମହାନ୍ତି । ସଶରୀରେ ସେଦିନ ସେ ଏହି ନରହତ୍ୟା ତାଣ୍ଡବରେ ରହିପାରିନଥିଲେ । ଦେଶବତ୍ସଳ ଯୁବକ ଏହିପରି ଶତଶତ ଗାନ ରଚନା କରି ୧୯୩୮ ରେ ଅକାଳରେ ଇହଧାମ ଛାଡ଼ି ଚାଲି ଯାଇଥିଲେ ।

ବାଞ୍ଛାନିଧଙ୍କ ଦେଶପ୍ରେମୀ ଗାନର ଉନ୍ମାଦନା ଇରମର ସେଦିନ ସମବେତ ସ୍ୱାଧୀନତା ସଂଗ୍ରାମର ଯୋଦ୍ଧାମାନଙ୍କ ପାଇଁ ପ୍ରେରଣା ଯୋଗାଇଥିଲା । ତାଙ୍କ ଜାତୀୟତାବୋଧ କବିତା, ଗୀତ, ଗାଁ'ର ଓ ଆଖପାଖର ଯୁବକମାନଙ୍କୁ ଦେଶ ମୁକ୍ତି ଲାଗି ଗାଁ' ଗାଁ'ରେ ବୁଲି ସେ ଯେଉଁ ଅଭିଯାନ କବିଙ୍କର ଦିନ ଦିନ, ମାସ ମାସ, ବର୍ଷ ବର୍ଷ ଧରି ଚଳାଇଥିଲେ ତାହାହିଁ ସ୍ୱାଧୀନତା ଯଜ୍ଞରେ ଆତ୍ମାହୁତି ଦେବା ଲାଗି ଏତେ ବ୍ୟକ୍ତିଙ୍କୁ ସହିଦ କରିଦେଲା । କେତେବର୍ଷ ଧରି ସହିଦ ତୀର୍ଥ ଯାତ୍ରୀ ସଂଘର ଆନୁକୂଲ୍ୟରେ ଅନୁଷ୍ଠିତ ସହିଦ ସ୍ମୃତି ସମାବେଶରେ ଯୋଗ ଦେବାର

ସୌଭାଗ୍ୟ ଲାଭ କରି ଇରମର ସହିଦ ସ୍ମୃତି ସ୍ତମ୍ଭର ସାନ୍ନିଧ୍ୟ ଲାଭକଲା ବେଳେ ସମବେତ ସମସ୍ତଙ୍କର ଉଦ୍ଦେଶ୍ୟରେ ଅଲକ୍ଷ୍ୟରେ, ପରୋକ୍ଷରେ ହେଲେ ବି ଅଶରୀରୀ ବାଞ୍ଛାନିଧି ହିଁ ସେହି ସହିଦମାନଙ୍କ ଶୀର୍ଷରେ, ସେଦିନ ଗୁଳିରେ ନିହତ ନ ହେଲେ ହେଁ ।

ନିଜର କଷ୍ଟୋପାର୍ଜିତ ସାମାନ୍ୟ ଆୟରେ ବାଞ୍ଛାନିଧିଙ୍କୁ ପାଠ ପଢ଼ାଇ ବାପା ଯେଉଁ ସୁନେଲି ସ୍ୱପ୍ନ ଦେଖିଥିଲେ, ତାହା ଭଙ୍ଗ ହୋଇଗଲା । ଅଥଚ ଦେଶପ୍ରେମୀ ଯୁବକ ବାଞ୍ଛାନିଧି ଶିକ୍ଷକତା ସମେତ ଅନ୍ୟ କେତୋଟି କର୍ମ ନିଯୁକ୍ତିରେ ଆବଦ୍ଧ ହୋଇ ରହିପାରିଲେନି । କେଉଁଠି କୋଡ଼ିଏ ମାସ ମାତ୍ର ଧରିଲେ ସ୍ୱାଧୀନତା ସଂଗ୍ରାମର ଝୁଲି–ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ସେଥିଲାଗି ତତ୍କାଳୀନ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ ଉପଲକ୍ଷେ ଉଦ୍‌ବୋଧନୀ ସଂଗୀତର ରଚୟିତା ଗାୟକ ହେଲେ ବାଞ୍ଛାନିଧି । ସହସ୍ର ସହସ୍ର ଶ୍ରୋତାଙ୍କୁ ମନ୍ତ୍ର ବିମୋହିତ କରି ଦେଉଥିଲା ।

ସେ କଂଗ୍ରେସର ବଡ଼ କର୍ମୀ ହୋଇନଥିଲେ । କିନ୍ତୁ ସେକାଳର ଯେତେ ସ୍ୱାଧୀନତା ସଂଗ୍ରାମୀ ଦେଶପ୍ରେମୀ ଜନନେତା, ସଂଗଠକର ମର୍ଯ୍ୟାଦା ପାଇଥିଲେ, ସେ ସମସ୍ତଙ୍କର ଆକର୍ଷଣ ଥିଲେ ଦୁଇଜଣ ଦେଶପ୍ରେମୀ କବି, ଜାତୀୟ କବି ବୀରକିଶୋର ଆଉ ଜାତୀୟ କବି ବାଞ୍ଛାନିଧି ।

ସେମାନଙ୍କ ଦେଶପ୍ରେମୀ ସଂଗୀତ ଗାଇ ଗାଇ ବାନର ସେନାମାନେ ବିଦେଶୀ ଲୁଗା ପୋଡୁଥିଲେ, ମଦଦୋକାନ ଆଗରେ ପିକେଟିଂ କରୁଥିଲେ – ବେତମାଡ଼ରେ ହାତଗଣ୍ଠି ଫାଟି ଅଚଳ ହୋଇପଡୁଥିଲା । ୧୯୩୦ରେ ଭାରତ ବିଖ୍ୟାତ ଇଂଚୁଡ଼ି ଲବଣ ସତ୍ୟାଗ୍ରହରେ ପ୍ରବଳ ପୁଲିସ ଆକ୍ରମଣରେ ସାମନା କରି ସହସ୍ର ସହସ୍ର ଆଇନ ଅମାନ୍ୟକାରୀ ଲୁଣ ମାରୁଥିବା ବେଳେ ବାଞ୍ଛାନିଧି ନିଜେ ତାଙ୍କ ଉଦ୍ଦୀପନାମୟୀ ଗାନ ଗାଇ ବିଶାଳ ଜନସମୁଦ୍ରକୁ ଉଦ୍ଦୀପିତ କରୁଥିଲେ । ସେ ସୌଖୀନ କବି ନ ଥିଲେ – ଚାରଣ କବି ଥିଲେ ସ୍ୱାଧୀନତା ସଂଗ୍ରାମର । ବାଲେଶ୍ୱର, ଭଦ୍ରକ, ବାସୁଦେବପୁର ବା ବସ୍ତା ଜଳେଶ୍ୱର ଇତ୍ୟାଦି ଜିଲ୍ଲାର ପରିସୀମା ମଧ୍ୟରେ ସଂଗ୍ରାମୀମାନଙ୍କୁ ଉଦ୍‌ବୁଦ୍ଧ କରିବା ଲାଗି ତାଙ୍କର ଗାନ ସୀମିତ ନଥିଲା । ଓଡ଼ିଶାର ବିଭିନ୍ନ ରାଜନୈତିକ ସମ୍ମିଳନୀରେ ତାହା କଟକରେ ହେଉ ବା ଅନ୍ୟତ୍ର ହେଉ ମଂଚ ଉପରୁ ବାଞ୍ଛାନିଧିଙ୍କ ଜାତୀୟ ଗାନ ପରିବେଷଣ କରିବା ତାଙ୍କୁ ଉପସ୍ଥିତ ବାଗ୍ମୀ, ବକ୍ତା, ଜନନେତାଙ୍କଠାରୁ ସମ୍ମାନ ଆଣିଦେଇଥିଲା ।

ସେ ସ୍ୱାଧୀନତା ଦେଖିପାରିଲେ ନାହିଁ । ମାତ୍ର ତାଙ୍କ ସ୍ୱପ୍ନର ସ୍ୱାଧୀନତା ତାଙ୍କ ରଚିତ ଏକ ଗୀତରେ ପରିଲକ୍ଷିତ ।

'କି ହେବ ଏ ସ୍ୱରାଜ୍ୟ ଘେନି ଯଦି ମୋର ନ ପୁରେ ପେଟ
ଖଟି ଖଟି ମଲେଣି ମୂଲିଆ ଚାଷୀ ଚଷି ଦାନା କନା ନିଅଣ୍ଟ ।'

ଏହି କବିତାରେ ବହୁ ଆକାଂକ୍ଷିତ ସ୍ୱାଧୀନତା ହେଉ ଖଟିଖିଆଙ୍କ ଚାଷୀ ମୂଲିଆଙ୍କର, ଲୁଟିଖିଆ, ଠକ, ପ୍ରତାରକ ଶୋଷକ ଶ୍ରେଣୀର ନ ହେଉ ବୋଲି ସେ ସତର୍କବାଣୀ ଶୁଣାଇଥିଲେ ।

କବି ବିଦେଶରୁ ଯେଉଁମାନେ ଆମ ଦେଶକୁ ବେପାର ବାଣିଜ୍ୟ ଆଳରେ ସର୍ବସ୍ୱାନ୍ତ କରନ୍ତି, ତାହାର ଇଙ୍ଗିତ ଦେଇଥିଲେ । ତାଙ୍କ ଗାନ

"କାହୁଁ ଆଇଲେ ବିଦେଶରୁ ବେପାରୀ
ସବୁ ସାଇଲେ ହେଲୁ ଆମେ ଭିକାରୀ ।"

ଆଜି ଏହି ଇଙ୍ଗିତ କେତେ ପ୍ରାସଙ୍ଗିକ ଆଜି ନୂଆ ରୂପରେ ଅଦୃଶ୍ୟ ଅଥଚ ସର୍ବଗ୍ରାସୀ ଆର୍ନ୍ତଜାତିକ ମୁଦ୍ରାପାଣ୍ଠି, ବିଶ୍ୱବ୍ୟାଙ୍କ, ଜି. ସାତ ଦେଶ, ୟୁରୋପୀୟ ୟୁନିଅନ ଓ ଜାପାନର ବିଦେଶୀ ବ୍ୟବସାୟୀଙ୍କ ରାହୁଗ୍ରାସକୁ ଆମନ୍ତ୍ରଣ କରା ଯାଉଛି ବିନା ବାଛ ବିଚାରରେ, ଅନାବଶ୍ୟକ, ଅବାଂଛିତ ଦେଶଘାତୀ ଅର୍ଥନୈତିକ କ୍ଷେତ୍ରରେ ।

ସେ ତାଙ୍କ ଦେଶପ୍ରେମୀ କବିତାରେ ବ୍ୟଙ୍ଗ କରିଥିଲେ ସେ କାଳର ଗୋଲଟେବୁଲ ବୈଠକକୁ

'ଭଲ ଗୋଲ ଟେବୁଲ ପାଲା ଲାଗିଲାରେ
କାନ୍ଦି କାନ୍ଦି ଗାନ୍ଧୀ ବୁଢ଼ା ଫେରିଲାରେ ।'

ପଂକ୍ତି ଗୁଡ଼ିକରେ ବ୍ରିଟିଶ ସରକାରର ଚାଲ, ବିଶ୍ୱାସଘାତକତାକୁ ଏହି ଗାନରେ ରୂପଦେଇ ସାଲିସବିହୀନ ସଂଗ୍ରାମ ଲାଗି ସେ ଆହ୍ୱାନ ଦେଇ ଲେଖିଲେ –

"କହ କହ କେଉଁ ଜାତି ପାଇଛି ମୁକତି
କରି ହାରି ହୁରି ଗୁହାରି
କହ ପାଇଛି କେ ସୁଖ ଲିଭାଇଛି ଦୁଃଖ
ମାଗି ମାଗି ପଥ ଭିଖାରୀ"

ଏହି ପଂକ୍ତିରେ ସେ ସ୍ୱାଧୀନତା ଲାଗି ଆପୋଷହୀନ, ପ୍ରାଣମୂର୍ଚ୍ଛା ସଂଗ୍ରାମ ଲାଗି ଆହ୍ୱାନ ଦେଇଛନ୍ତି ।

'ପତାକା ଗୀତ'ଠାରୁ 'ଦୁଃଖିନୀ କନିକା' ଏବଂ 'ମୁଁ ଯଦି ମନ୍ତ୍ରୀ ହୁଏ', 'ଇଣ୍ଡିଆନ ବ୍ୟୁରୋକ୍ରେସୀ' ଆଦି ଅଗଣିତ ଦେଶପ୍ରେମୀ ସଂଗୀତ ଏବଂ ବ୍ୟଙ୍ଗ ରାଜନୈତିକ ଗାନ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଅନୁପ୍ରେରଣା ଯୋଗାଇବା ସହ ଭବିଷ୍ୟତ ଲାଗି ଥିଲା ସତର୍କଘଣ୍ଟି । ସେଥିଲାଗି ଜାତିର ଜୀବନରେ, ବର୍ତ୍ତମାନ ଯେତେ ଅବାଞ୍ଛିତ ଅବକ୍ଷୟକୁ ନ୍ୟସ୍ତସ୍ୱାର୍ଥ, ଦେଶୀ ବିଦେଶୀମାନେ ସୃଷ୍ଟି, ଉତ୍ସାହିତ କଲେ ବି ଜାତୀୟ କବି ବାଞ୍ଛାନିଧି ଅବା ବୀରକିଶୋରଙ୍କୁ ଜନମାନସରୁ ଅପସୃତ କରିପାରିବ ନାହିଁ । ଦୁଇ ଜାତୀୟ କବିଙ୍କର ଶତବାର୍ଷିକ ପୁଣି ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତି ଅବସରରେ । ସେମାନଙ୍କର ଓଡ଼ିଆ ଜାତିକୁ, ଓଡ଼ିଶାର ଜାତୀୟ ସାହିତ୍ୟକୁ ଅବଦାନ ଅମ୍ଳାନ ଅକ୍ଷୟ ହୋଇ ରହିବ । ଜାତୀୟ କବି ବାଞ୍ଛାନିଧି ଅମର ରହେ ।

□□□

# ସୁବିଧାବାଦୀ ରାଜନୀତିର ପ୍ରଲୋଭନ ଛୁଇଁନଥିବା
# ଏକ ବିଶିଷ୍ଟ ଜନନେତା

ବିଶ୍ୱନାଥ ପଣ୍ଡିତ । ଏକବିଂଶ ଶତାବ୍ଦୀ ପ୍ରାକ୍କାଳ ସମୟର ଏହି ପୁରୁଷଟି ଅଶି ବର୍ଷରେ ପାଦ ଦେବାକୁ ଯାଉଛନ୍ତି । ପାଦ ଦେଉଛନ୍ତି ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ମହିମାନ୍ୱିତ ସ୍ୱାଧୀନତା ସଂଗ୍ରାମର ତଥା ସ୍ୱାଧୀନତା ପରବର୍ତ୍ତୀ ଅର୍ଦ୍ଧଶତାବ୍ଦୀ କାଳର ଉଠାପଡ଼ା ଅନେକ ଜନ ସଂଗ୍ରାମର ଅଭିଜ୍ଞତା ବହନ କରି ।

ନିଜସ୍ୱ ପରିବାର ବିହୀନ ଏହି ବ୍ୟକ୍ତିଟି ତାଙ୍କ ରାଜନୈତିକ କାର୍ଯ୍ୟକଳାପର ଫଳ ଭାବରେ ଲାଭ କଲେ ଦୂର ଦୂରାନ୍ତ ପରିବ୍ୟାପ୍ତ ଏକ ସଂଗ୍ରାମଶୀଳ ପରିବାର ।

ବର୍ଷର ପ୍ରତିଦିନ ପରି ୧୯୯୯ ଜାନୁଆରୀ ୩ ତାରିଖରେ ନିକଟ ସଂପର୍କୀମାନେ ଏପରି ବ୍ୟକ୍ତିମାନଙ୍କୁ କିଏ କିଏ ଆଶୀର୍ବାଦ କରୁଥିବେ । ପ୍ରଣତି ଜଣାଉଥିବେ, ଶୁଭକାମନା କରୁଥିବେ । ମାତ୍ର ତାଙ୍କ ସ୍ୱନକ୍ଷତ୍ର ପାଳନଟି ସ୍ୱତନ୍ତ୍ର ଧରଣର । ନିଜସ୍ୱ ପରିବାର ବସ୍ତୁତଃ ନାହିଁ । କିନ୍ତୁ ପାଳନ କରୁଛନ୍ତି ଆମ ଓଡ଼ିଶାର ଅସଂଖ୍ୟ ଶୁଭେଚ୍ଛୁ । ତାହାର କାରଣ ଖୋଜିଲେ ଏହି ବ୍ୟକ୍ତିଙ୍କର ବୈଶିଷ୍ଟ୍ୟ ଜଣାପଡ଼େ ।

ତାଙ୍କର ଏହି ବୈଶିଷ୍ଟ୍ୟ ସଂପର୍କରେ ମୋର ଅନୁଭବ, ଅନୁଭୂତି ଅଭିଜ୍ଞତାରୁ ସଂକ୍ଷେପରେ କିଛି ଉଲ୍ଲେଖ କରି ତାଙ୍କୁ ମୋର ଶୁଭେଚ୍ଛା ଜଣାଇବି ।

୧୯୪୧ ଅଗଷ୍ଟ ୯ ତାରିଖରେ ଭାରତଛାଡ଼ ଆନ୍ଦୋଳନରେ ଜନ୍ମ ଦେଲେ ସହସ୍ର ସହସ୍ର । ଦୀର୍ଘ କାରାବାସ ଭୋଗିଲେ, କିଏ ଗୁଳିରେ ମଲେ, କିଏ ଫାଶୀ ପାଇଲେ । ବିଶ୍ୱନାଥ ମଧ ଦୀର୍ଘ କାରାଦଣ୍ଡ ଭୋଗିଲେ, ଏଥିରେ ସ୍ୱତନ୍ତତା କ'ଣ ? ଅଛି, ସେହିପରି ସ୍ୱାତନ୍ତ୍ର୍ୟ । କଟକ ସହରରେ ସାରା ପ୍ରଦେଶରେ ସଂଗ୍ରାମ ଚଳାଇବା ଲାଗି ଯେଉଁ ଗୋପନକେନ୍ଦ୍ର ଉନ୍ମୋଚିତ ହେଲା, ସେଥିରେ ତାଙ୍କର ବିଶେଷ ଅବଦାନ । ସେସବୁଙ୍କର ନାମ ଓ କାମ କଥା ଉଲ୍ଲେଖ କଲେ ଦୀର୍ଘ ହେବ । ତେବେ ନିଜବନ୍ଧୁଙ୍କୁ ଧରିଆଣି ତାଙ୍କ ଘରେ ଗୋପନକେନ୍ଦ୍ର ସ୍ଥାପନ କରିବା, ବେଆଇନ ପ୍ରଚାରପତ୍ର, ନିର୍ଦ୍ଦେଶନାମା, ଖବରାଖବର ପ୍ରକାଶନ ପାଇଁ ତତ୍କାଳୀନ ଲିଥୋ, ସାଇକ୍ଲୋଯନ୍ତ ଯୋଗାଡ଼ କରିବା, କଟକ ସହରରେ ନୂତନ ନୂତନ ସଂଗ୍ରାମୀ ଯୁବକଙ୍କୁ

ଘେନି ସଂଗ୍ରାମବାହିନୀ ଗଢ଼ିବାରେ ତାଙ୍କର ଭୂମିକା ଏବେବି ମାନସପଟରେ ଜାଗ୍ରତ । ଭବିଷ୍ୟତ୍‌ର ସୁଦୀର୍ଘ ଜୀବନ ଲାଗି ଏହା ଥିଲା ତାଙ୍କର ପ୍ରଥମ ଚାଟଶାଳୀ ପାଠ ।

କହିରଖେ, ସ୍ୱାଧୀନତା ସଂଗ୍ରାମ କାଳର ସମଧର୍ମିତା ପରେ ସ୍ୱାଧୀନତୋର କାଳର ଜନସଂଗ୍ରାମର ଆଦର୍ଶ, କର୍ମକୌଶଳରେ ଭିନ୍ନଭିନ୍ନ ହେଲେ ହେଁ ତାଙ୍କ ସହିତ ଏକାନ୍ତରେ ଅନେକ ଅଭିଜ୍ଞତାର ବିନିମୟ ହୁଏ । ଶ୍ରମିକ ସମାବେଶରେ ତାଙ୍କ ଘରେ ଏବଂ ଟାଉନ୍ ହଲ, ଶ୍ରୀରାମଚନ୍ଦ୍ର ଭବନ, କଳାବିକାଶ କେନ୍ଦ୍ର, ରାଷ୍ଟ୍ରଭାଷା ଭବନ ପରି ରାଜନୈତିକ ଆଲୋଚନାଚକ୍ରରେ ଅବା ପରିବର୍ତ୍ତେ ଅନେକ ଥର ପ୍ରୟାତ ନେତାମାନଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇବା ବେଳେ ଗୁଣନିଧି ଭବନ, ସତୀଚଉରା ଅବା ଖାନନଗର ଶ୍ମଶାନ ଭୂଇଁରେ ଗରମାଗରମ ଆଲୋଚନା । ସେ କଥା କଟାକଟି ମାତ୍ର ସହୋଦର ସୁଲଭ ରୀତିରେ । କେତେକ ବିଷୟରେ ସେ ମୋ' ମତବାଦକୁ କଟାକ୍ଷ କରନ୍ତି । କିନ୍ତୁ କହନ୍ତି ସବୁ ସମାଜବାଦୀ ଚିନ୍ତାର ଲୋକେ ଏକାଠି ନ ହେଲେ ଦେଶର ତ୍ରାଣ ନାହିଁ । ଅସଂଖ୍ୟ ସ୍ୱାଧୀନତା ସଂଗ୍ରାମୀଙ୍କ ପରି ବିଶ୍ୱନାଥବାବୁ ଉପଲବ୍ଧି କଲେ ଯେ ସଂଗ୍ରାମ ସରିନାହିଁ । ସ୍ୱାଧୀନତାର ସୁଫଳଗୁଡ଼ିକ ଶତାବ୍ଦୀ ଶତାବ୍ଦୀ ବ୍ୟାପୀ କୋଟିକୋଟି ସଂଖ୍ୟାଗରିଷ୍ଠ ପାଖରେ ପହଞ୍ଚିବ ନାହିଁ ।

ସେଥିଲାଗି ସ୍ୱତନ୍ତ୍ର ରାଜନୈତିକ ସଂଗଠନ, ସ୍ୱତନ୍ତ୍ର ଆଦର୍ଶ, ସ୍ୱତନ୍ତ୍ର ରଣ କୌଶଳ ଆବଶ୍ୟକ । ସୋସାଲିଷ୍ଟ ଆନ୍ଦୋଳନ ଓ ସୋସାଲିଷ୍ଟ ପାର୍ଟିର ଦୃଢ଼ ସଂଗଠନ । ସେଥିରେ ତାଙ୍କର ଭୂମିକା ଅବିସଂବାଦିତ ।

ସେ ଖେଦ କରନ୍ତି, ଆଖି ଛଳ ଛଳ କରି ଅତୀତକୁ ସ୍ମରଣ କରନ୍ତି । ଓଡ଼ିଶାରେ ତଥା ଭାରତରେ ଏକଦା ଚାଞ୍ଚଲ୍ୟ ସୃଷ୍ଟି କରିଥିବା ଏହି ଆନ୍ଦୋଳନର ଦୁର୍ଗତି ବର୍ଣ୍ଣନା କରି । ଓଡ଼ିଶାରେ ପ୍ରଜା ସୋସାଲିଷ୍ଟ ପାର୍ଟି ଓ ତା'ର କାର୍ଯ୍ୟାଳୟ, କୃଷକ ପତ୍ରିକାର ଅଫିସ୍‌କୁ ଯେପରି ଭାବରେ ବିଲୁପ୍ତ କରି ଦିଆଗଲା, ଯେଉଁମାନେ ଏଥିଲାଗି ଦାୟୀ, ଆଦର୍ଶକୁ ବିଚ୍ୟୁତି ହେଲେ, ସଂଗ୍ରାମର ପଥଛୁଡ଼ି ବ୍ୟକ୍ତିଗତ ପ୍ରସିଦ୍ଧି ସ୍ୱାର୍ଥକୁ, ରାଜନୈତିକ ସୁବିଧାବାଦକୁ ଆଶ୍ରୟ କଲେ, ତାଙ୍କର ପରିଣତି ଏହା ହିଁ ହୁଏ ବୋଲି ସେ ମତ ଦିଅନ୍ତି ।

ଜେଲ୍ ମୁକ୍ତି ପରେ ଗଡ଼ଜାତ ପ୍ରଜା ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ, ଜମିଦାରୀ ବିରୋଧୀ ଚାଷୀ ଆନ୍ଦୋଳନ, ଯାହା ପ୍ରଜା ସୋସାଲିଷ୍ଟ ପାର୍ଟିକୁ କଂଗ୍ରେସର ବିକଳ୍ପ କରିଦେବ ବୋଲି ତାଙ୍କର ଧାରଣ ଥିଲା, ତାହାର ସର୍ବଭାରତୀୟ ବିପର୍ଯ୍ୟୟ ତାଙ୍କୁ କିପରି ବିବ୍ରତ କରିଛି ତାହା ଆଲୋଚନା ବେଳେ ଉଲ୍ଲେଖ କରନ୍ତି ।

ଓଡ଼ିଶାରେ ଗଡ଼ଜାତ ପ୍ରଜା ଆନ୍ଦୋଳନର ପ୍ରବାଦ ପୁରୁଷ 'ଅଜା' ସାରଙ୍ଗଧର ଦାସ ତାଙ୍କର ସଂପତ୍ତିକୁ ଟ୍ରଷ୍ଟ କରିଦେଇ ତା'ର ଅର୍ଥ ଜନସଂଗ୍ରାମ କାର୍ଯ୍ୟରେ ବିନିଯୋଗ ହେବ ବୋଲି ଉକ୍ତି କରିଥିଲେ । ତାକୁ ଅକାମି କରିବାର ଉଦ୍ୟମ କିପରି ଚାଲିଛି ତାହା ସେ ଦର୍ଶାଇଥାନ୍ତି ।

ଓଡ଼ିଶାରେ ୧୯୩୫-୩୬ରେ ପୁରୀରେ ମାହାର ୟୁନିୟନ ଓ ବ୍ରିଟିଶ ଅମଳରେ ତା'ର ସଂଗ୍ରାମର ଉତ୍ତରାଧିକାରୀ ଭାବରେ ବିଶ୍ୱନାଥ ପଣ୍ଡିତ ହିଁ ପ୍ରଥମେ କଟକରେ ବିଶାଳ ସଂଗ୍ରାମଶୀଳ ମେହେନ୍ତର ସଂଘକୁ ସାରା ଓଡ଼ିଶାରେ ଏକ ଶକ୍ତିଶାଳୀ ସଂଗଠନ ଭାବରେ ଗଢ଼ିଦେଲେ । ତାହା ତାଙ୍କର ସାଂଗଠନିକ ଦକ୍ଷତାର ପରିଚୟ ଦିଏ । ଅନେକ ଦକ୍ଷତା ମଧ୍ୟରୁ ଆଉ ଏକ ଦକ୍ଷତା ହେଲା, ଓଡ଼ିଶାର ସର୍ବତ୍ର ବିଛାଇ ହୋଇପଡ଼ିଥିବା ଗରିବ ଆଦିବାସୀ କେନ୍ଦୁପତ୍ର ତୋଳାଳିଙ୍କ ସଂଗଠନ । ଏହି କେନ୍ଦୁପତ୍ର ତୋଳାଳୀ ସଂଗଠନ ଆନ୍ଦୋଳନ କେନ୍ଦୁପତ୍ର ଜାତୀୟକରଣକୁ ଅଶେଷ ଅବଦାନ ହେଲା । ପଣ୍ଡିତ ଏହି ଗୌରବର ଅଧିକାରୀ ।

ବାମପନ୍ଥୀ ହୋଇ ସୋସାଲିଷ୍ଟ ମତବାଦକୁ ନିଜର ପରମ ଆଦର୍ଶ ରୂପେ ଗ୍ରହଣ କରି ସେଥିରୁ ସେ ଆଜିଯାଏ ବିଚ୍ୟୁତ ହୋଇନାହାନ୍ତି । ସେ କାଳର ନାମଜାଦାମାନେ ଏହାକୁ ପାସୋରି ଦେଇଛନ୍ତି ବୋଲି ସେ ଦୁଃଖ ପ୍ରକାଶ କରିଛନ୍ତି । ଚାହିଁଥିଲେ ସେ କ୍ଷମତାର ଉଚ୍ଚପଦ ପାଇଥାନ୍ତେ । କିନ୍ତୁ ଭୋଗ ଅପେକ୍ଷା ସେ ସେବାକୁ ଶ୍ରେୟସ୍କର ମଣିଲେ ।

ବିଧାନସଭାକୁ କଟକବାସୀ ତାଙ୍କୁ ପଠାଇଲେ । ବିଧାନସଭା ତାଙ୍କୁ କିନ୍ତୁ ଆରାମର ଅନ୍ୱେଷୀ କରିନଥିଲା । ତାହା ହିଁ ତାଙ୍କୁ ଭିନ୍ନ ଧରଣର ବିଧାୟକ ରୂପେ ଗଣ୍ୟ କରିଥିଲା । ତାଙ୍କୁ ଜନତା ପାର୍ଟିର ସର୍ବୋଚ୍ଚ ପଦବୀ ଦିଆଗଲା । ହେଲେ ତାଙ୍କୁ ସଖୀ କଣ୍ଢେଇ କରିବାର ଚକ୍ରାନ୍ତକୁ ଜାଣିପାରି ସେ ସେଥିରୁ ବାହାରି ଆସିଲେ । ପଦ ବଡ଼ ନା ଆଦର୍ଶନ ବଡ଼ ଏହାହିଁ ତାଙ୍କ ପାଇଁ ଜଟିଳ ପରିସ୍ଥିତିର ମାପକାଠି ଥିଲା ।

ଚନ୍ଦ୍ରଶେଖର ଯେପରି କଂଗ୍ରେସ ସମର୍ଥନରେ ପ୍ରଧାନମନ୍ତ୍ରୀ ହେଲେ ତାକୁ ସେ ନାପସନ୍ଦ କଲେ । ଯଦିଓ ଚନ୍ଦ୍ରଶେଖର ତାଙ୍କର ଘନିଷ୍ଠ ବନ୍ଧୁ । ଐତିହ୍ୟବାହୀ ସୋସାଲିଷ୍ଟ ଆନ୍ଦୋଳନ ଓ ତାଙ୍କ ପୁରୁଣା ପାର୍ଟିର ପୁନଃ ଜୀବନ୍ୟାସ ପାଇଁ ସେ ସଦା ପ୍ରୟାସରତ । ନିଜ ବିଶ୍ୱାସରେ ଅଟଳ ରହି ବର୍ତ୍ତମାନର ପରିସ୍ଥିତିରେ ବାମପନ୍ଥୀ ସମାଜବାଦୀ ଐକ୍ୟ ତାଙ୍କର ପ୍ରଥମ ପ୍ରାଥମିକତା । ଦେଶର ଐକ୍ୟ ସଂହତିକୁ ଧୂଳିସାତ୍ କରୁଥିବା ଓ ଶୋଷକ ଶ୍ରେଣୀର ହାତ ବାରିସୀ ହୋଇଥିବା ମୌଳବାଦୀ ସଂଗଠନର ସେ ଘୋର ବିରୋଧୀ ଓ ସେଇଥିପାଇଁ ପ୍ରଗତିଶୀଳ ଶକ୍ତିମାନଙ୍କର ଐକ୍ୟରେ ଏକାନ୍ତ ବିଶ୍ୱାସୀ । ଦର୍ଶବର୍ଷ ହେଲା ଶାରୀରିକ ପିଡ଼ା ତାଙ୍କୁ ନିଜ ଆଦର୍ଶ ଓ କର୍ମରୁ ବିଚ୍ୟୁତ କରିନାହିଁ । ତାଙ୍କର ଦୀର୍ଘ ଜୀବନ କାମନା କରୁଛି ।

❑❑❑

# A Tribute to the Memory of the Father of Indian Renaissance

Mother India, when was being brutally and systematically chained into the slavery of British Colonialism, gave birth to a son in the Soil of Bengal, named Rammohan Roy, whom Modern Indian history holds as the pioneer of the great renaissance movement which ultimately led the nation to launch the historic struggle for Independence.

He was born just fifteen years after the battle of Paiassey of 1757, where a valiant soldiery of eighteen thousand horsemen could be defeated by merely three thousand British and mercenary Indian Sepoys. That because of the betrayal of Sirajoddoula's Commander Mirjaffer who leaked all the secrets of our army's manoevers on the one hand and also by the treachery of monopoly food grains trader, Jagat Seth, entrusted to supply rations to Indian soldiers, refusing deliver on the other.

This heinous betrayal of these two led to the defeat at Paiassey, must have left deep imprint of anguish in Rammohan's young mind and in the then obtaining situation he began searching the ways for raising the morale and consciousness of our people to face the challenges of the time in a dignified way holding their heads high.

Rammohan in his early childhood, besides learning his mother tongue Bengali in village Pathasola and also the then prevalent official language Parsi, iater on mastered Sanskrit and Hind: institutions of the day at Patna and KasL But it is a miracle that he could master Urdu, Pali, Prakrit Languages of Indian origin and Hibru, Arabic, Latin, Greek and lastly English by self study, to understand the World Culture, to appreciate the humane and liberating aspects his own Hindu religion and so also of faiths of Buddhism, Islam and Christianity.

It seems, that made him a rebel against orthodoxy and obscuranitism which had crept into social life. For that he had to face tremendous opposition and attacks from his opponents who were no less important persons in those days. But he won the day.

Even he earned the ire or his beloved father and mother. He was twice banished from his home by his father for his uncommon radical views of religion and his own mother, instigating her step son, instituted a case against him to deprive him from the paternal property because Rammohan did not follow the prescribed rituals while performing his father's last rites. All these could not deter this radical reformer from his chosen path.

The days of brickbats for him receded and the days praises and accolades set in till his' sad demise in 1833 at Bristol in England, His life's great achievements got world recognition.

With indomitable courage and conviction Rammohan: took up the fights against social evils, deliberately upheld by the vested interests of the then society and organised Crusade against brutal and inhuman. Practice of widow burning at the pyre of the deceased husband, which was a social scourge that brought hatred in the then world for our great culture. So also he stood up against child marriage in vouge, just at the age of 4 & 5 for girls and 7 or 8 for boys. Not only that. In certain section of the upper, castes a man could marry as many as twelve to twenty girls of lower caste in different village as a custom besides his married wife. The poor girls did not see the face of their husbands again in life. He was himself a victim of this. Before the age of 12 he married three girls, one dying earher and other two surviving according to the custom-followed by his parents and this abominable practice later on goaded him to take up the cause of womanhood. Sn those days new born girls Were thrown into the river Ganges as unwanted and Rammohan was instrumental for the abolition of this evil, anti-life practice. Thereby he in those days, upheld the fundamental right of life of human being. He upheld the dignity of womanhoods; Even, he sfctrted schools for education to girls. He founded a social organisation named Brahmo Samaj in 1928 which befame the first of its kind in India to take up the social, political problems of the day.

Being the pioneer in bringing out a news paper 'Sambad

Koumudi' in Indian Language he fought for the freedom of expression when restrictions were imposed on such papers by the British.

His attention shifted to the problems that afflicted the people during the foreign rule. He had the gut in those days to bring to the notice of the foreign authorities about the heavy rent, about the Landless people, about the hunger and starvation caused by the export of rice from our country and against the high price of salt and so on.

All these issues which he took-up in ihose days became the initial demands of the freedom struggle in subsequent years till independence.

The nation owes to him and to the first socio-political organisation of Brahmo Samaj because this was followed in all parts of India in the establishment of organisations such as Indian Association in 1843 in Bengal, Pune Sarvajanin Sabha in 1870, Bombay Presidency Association in 1885, Madras Mahajan Sabha in 1884 and East India Association in 1866 and subsequently Indian National Congress in 1885 and thereafter many political groups and organisations.

Here-in lies the great contribution of the-foundation of Brahmo Samaj.

Therefore, not only the freedom fighters of different political persuations but the entire nation pay respect to the pioneer of the renaissance movement, Raja Rammohan Roy.

❑❑❑

-1999

# ପ୍ରାକ୍‌କଥନ

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ମହୋତ୍ସବ ଉପଲକ୍ଷେ ଢେଙ୍କାନାଳ ପ୍ରଜା ଆନ୍ଦୋଳନ ସଂକ୍ରାନ୍ତ ଏହି ପୁସ୍ତକଟି ମୋର ଏକ ଅର୍ଘ୍ୟ ।

ଆମ ଓଡ଼ିଶାର ପ୍ରତ୍ୟେକଟି ଗଡ଼ଜାତ ପ୍ରଜାମୁକ୍ତି ଆନ୍ଦୋଳନର ସ୍ୱାତନ୍ତ୍ର୍ୟ ରହିଛି, ବୈଶିଷ୍ଟ୍ୟ ରହିଛି । ସେସବୁ ସ୍ୱୀକାର କରି ଢେଙ୍କାନାଳ ପ୍ରଜା ମୁକ୍ତି ସଂଗ୍ରାମର ବୈଶିଷ୍ଟ୍ୟ ହିଁ ଏହି ପୁସ୍ତକଟିର ଉପଜୀବ୍ୟ । ସେ କାଳରେ ଢେଙ୍କାନାଳ ଶାସନ କଥା ପଡିଲେ ଓଡ଼ିଶା ଚିହିଙ୍କି ଉଠୁଥିଲା । ଓଡ଼ିଶାର ତତ୍କାଳୀନ ରାଜନୈତିକ ମହଲରେ, ସାଂସ୍କୃତିକ ମହଲରେ, ବୁଦ୍ଧିଜୀବୀ ମହଲରେ ଏବଂ ସମଗ୍ର ଜନମାନସରେ ସେ କାହାଣୀ ଘୃଣା, ଉଦ୍‌ବେଗ, ଉତ୍କଣ୍ଠା ସୃଷ୍ଟି କରୁଥିଲା । ସେହି ଢେଙ୍କାନାଳର ପ୍ରଜାମଣ୍ଡଳ ନେତୃତ୍ୱରେ ରକ୍ତକ୍ଷୟୀ ସଂଗ୍ରାମର ଗୋଟିଏ ଦିନ, ୧୯୪୭ ଡିସେମ୍ବର ସାତ, ଏକ ନିଷ୍ପତ୍ତିମୂଳକ ପରିସ୍ଥିତି ସୃଷ୍ଟି କରିଥିଲା । ଏହାହିଁ ଢେଙ୍କାନାଳ ପ୍ରଜା ଆନ୍ଦୋଳନର ସ୍ୱତନ୍ତ୍ର ବୈଶିଷ୍ଟ୍ୟ ।

ସେହି ଆନ୍ଦୋଳନର ଏକ ଧାରାବାହିକ, ବିଧିବଦ୍ଧ, ପ୍ରାମାଣିକ, ତଥ୍ୟଭିତ୍ତିକ ଇତିହାସ ଲେଖିବାବେଳେ ସେହି ସଂଗ୍ରାମରେ ପ୍ରତ୍ୟକ୍ଷ ଭାଗ ନେଇ ଯେଉଁମାନେ ଅଭିଜ୍ଞତା ଅର୍ଜନ କରିଥିଲେ, ସେପରି ବ୍ୟକ୍ତିମାନଙ୍କ ଅଭିଜ୍ଞତାର ମଧ୍ୟ ସାହାଯ୍ୟ ନିଆଯାଇଛି ।

ଢେଙ୍କାନାଳ ଓଡ଼ିଶାର ଅନ୍ୟ ଗଡ଼ଜାତଠାରୁ ଭିନ୍ନ ନୁହେଁ । ଓଡ଼ିଶାର ଗଡ଼ଜାତଗୁଡ଼ିକ ଭାରତବର୍ଷର ୫୬୨ଟି ଗଡ଼ଜାତଠାରୁ ଭିନ୍ନ ନୁହନ୍ତି । ସେମାନଙ୍କର ସଂଗ୍ରାମ ଯେମିତି ଅଭିନ୍ନ, ଭାରତର ସ୍ୱାଧୀନତା ସଂଗ୍ରାମଠାରୁ ତାହା ମଧ୍ୟ ସେମିତି ଅଭିନ୍ନ । ସମସ୍ତେ ଅଙ୍ଗାଙ୍ଗୀଭାବେ ସଂଶ୍ଳିଷ୍ଟ । ତେଣୁ ଢେଙ୍କାନାଳ ପ୍ରଜା ଆନ୍ଦୋଳନର ଗରିମାମୟ ଇତିହାସ ଲେଖିଲାବେଳେ ସେ କାଳରେ ସାମଗ୍ରିକ ଭାରତର ତଥା ଓଡ଼ିଶାର ରାଜନୈତିକ ପରିସ୍ଥିତି ଏବଂ ସେହି ପରିସ୍ଥିତିରେ ଘନଘନ ପରିବର୍ତ୍ତନ ଏବଂ ରାଜନୈତିକ, ସାମାଜିକ ଉଦ୍‌ବେଳନର ପରିପ୍ରେକ୍ଷୀରେ ଢେଙ୍କାନାଳ ଆନ୍ଦୋଳନକୁ ତଉଲିବାକୁ ହୋଇଛି, ବର୍ଣ୍ଣନା କରିବାକୁ ପଡ଼ିଛି ।

ରାଜନୈତିକ ଜୀବନର ଆଦ୍ୟକାଳରେ ଢେଙ୍କାନାଳ ପ୍ରଜା ଆନ୍ଦୋଳନ ମାନସପଟରେ ଗଭୀର ରେଖାପାତ କରିଛି । ଭବିଷ୍ୟତ୍ ଜୀବନକୁ ପ୍ରଭାବିତ କରିଛି, ପ୍ରେରଣା ଦେଇଛି । ତେଣୁ ଏହି ପୁସ୍ତକଟି ସେହି ଆନ୍ଦୋଳନର ଶତଶତ ନେତା, ଅଗଣିତ ଶହୀଦଙ୍କ ପ୍ରତି ଏକ କୃତଜ୍ଞତା ପ୍ରକାଶର ମାଧ୍ୟମ ବୋଲି ବିଚାରିଛି ।

ପୁସ୍ତକଟି ରଚନା କରିବାକୁ ଯେଉଁମାନେ ନିର୍ଦ୍ଦେଶ ଦେଇଛନ୍ତି, ଯେଉଁମାନେ ଅନୁରୋଧ କରିଛନ୍ତି, ସେମାନଙ୍କ ପ୍ରତି କୃତଜ୍ଞତା ପ୍ରକାଶ ନକଲେ ଅକୃତଜ୍ଞ ହେବି । ସେମାନେ ହେଲେ - ଓଡ଼ିଶାର ସାହିତ୍ୟିକ, ରାଜନୈତିକ ଜୀବନରେ ସୁପ୍ରତିଷ୍ଠିତ, ସ୍ୱାଧୀନତା ସଂଗ୍ରାମର ଯୋଦ୍ଧା ଗୁରୁଚରଣ ପଟ୍ଟନାୟକ, ଓଡ଼ିଶାର ବିଶିଷ୍ଟ ଜନନେତା ଲୋକନାଥ ଚୌଧୁରୀ, ଶିକ୍ଷକ ମହାସଂଘ ନେତା ଅଧ୍ୟାପକ ଅବନୀ କୁମାର ବରାଳ, ପ୍ରଜାମଣ୍ଡଳ ନେତା ସ୍ୱାଧୀନତା ସଂଗ୍ରାମୀ ବୈଷ୍ଣବ ଚରଣ ପଟ୍ଟନାୟକ, ନନ୍ଦ କିଶୋର ପଟ୍ଟନାୟକ ଓ ବନମାଳୀ ଦାସ । ଯେଉଁମାନେ ପ୍ରଜା ଆନ୍ଦୋଳନ ଇତିହାସରେ ଆଗ୍ରହୀ ସେପରି ବହୁ ଶିକ୍ଷକ, ଅଧ୍ୟାପକ, ଲେଖକ, ଯୁବସାଥୀ ସହକର୍ମୀ, ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀର ଉତ୍ସାହ ଓ ଅନୁରୋଧ ମୋତେ ଅନୁପ୍ରେରିତ କରିଛି ।

ବହୁ ନଥିପତ୍ର, ଦଲିଲ୍, ପତ୍ରପତ୍ରିକା ଓ ପୁସ୍ତକର ସାହାଯ୍ୟ ନିଆଯାଇଛି । ସେପରି ସାହାଯ୍ୟରେ ଆସିଥିବା ବ୍ୟକ୍ତିମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି । ପରିଶେଷରେ ଯଦି ସୁସ୍ଥମନ ଓ ସୁସ୍ଥ ଶରୀରରେ ଆଉ କିଛିକାଳ ଜୀବିତ ରହେ, ତେବେ ଓଡ଼ିଆ ଭାଷାରେ ମହିମାମଣ୍ଡିତ ଦୁଇଶହ ବର୍ଷବ୍ୟାପୀ ସ୍ୱାଧୀନତା ସଂଗ୍ରାମର ଇତିବୃତ୍ତ ଲେଖିବା ପାଇଁ ସଂଗୃହୀତ ଉପାଦାନଗୁଡ଼ିକୁ ରୂପ ଦେବାର ସ୍ୱପ୍ନ ଦେଖୁଛି ।

- ଲେଖକ

# ନିଖିଳ ଉତ୍କଳ ଗଡଜାତ ଦିବସ

## ଆସନ୍ତା ୨୯ ତାରିଖ ଦିନ ସାରା ଓଡିଶାର ପୁର ପଲ୍ଲୀ, ଦୋକାନ ବଜାର ଓ ସ୍କୁଲ କଲେଜମାନଙ୍କରେ ହରତାଳ ପାଳିତ ହେବ।

## ଛାତ୍ର ଭାଇ ଓ ଭଉଣୀମାନଙ୍କୁ ନିବେଦନ

ପ୍ରିୟ ଭଉଣୀମାନେ !

ଢେଙ୍କାନାଳରେ ଆଜ ଯେ ଅତ୍ୟାଚାର ଓ ବୀଭତ୍ସ ତାଣ୍ଡବ ଚାଲିଛି, ତାହା କାହାରିକୁ ଅଜଣା ନାହିଁ। ବହୁକାଳ ଧରି ଦୁଃଖ କଷ୍ଟ ଓ ଦରବାରର ଦମନ ଅତ୍ୟାଚାର ସହିସାରିବା ପରେ ସେଠାକାର ଲୋକେ ମୁକ୍ତିର ଉଦ୍ୟମ ଆରମ୍ଭ କରିଛନ୍ତି। ଯେତେବେଳେ ପୃଥିବୀରେ ପ୍ରଜାତନ୍ତ୍ର ରାଜ୍ୟ ପ୍ରତିଷ୍ଠିତ ହେଉଛି, ସେତେବେଳେ ଆମ ଦେଶର ଲୋକେ ପୁରୁଣା କାଳର ସାମନ୍ତବାଦୀ ଶାସନ ତଳେ ପଡି ହୋଇ ରହିଛନ୍ତି। ତାଙ୍କୁ ଦରବାରର ସବୁ ଅତ୍ୟାଚାର ସହି ରହିବାକୁ ପଡୁଛି — ତାଙ୍କର କୌଣସି ଅଧିକାର ବଳ ନାହିଁ। ଏଥିରେ ସାମ୍ରାଜ୍ୟବାଦୀ ବ୍ରିଟିଶ ସରକାର ଗୋରା ପଲଟନ ଦେଇ ଦରବାରକୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ତା ଶାସନ ଓ ଶୋଷଣକୁ ଏ ଦେଶରେ ଦୃଢତର କରୁଛି।

କଟକର ପ୍ରିୟ ଭାଇ ଭଉଣୀମାନେ ଦେଖିଥିବେ ଯେ କେବଳ ଢେଙ୍କାନାଳର ନୁହେଁ, ସମସ୍ତ ଓଡିଶାର ମୁକ୍ତି-ଆନ୍ଦୋଳନର ପ୍ରଥମ ସବୁ ସହିଦ୍‌ମାନଙ୍କ ଶବ କଟକ ହସ୍ପିଟାଲରେ ଦେଖାଯାଇଥିଲା। ସେମାନଙ୍କ ମଧ୍ୟରୁ କେତେକ ମଧ୍ୟ ସେ ହସ୍ପିଟାଲରେ ରହିଥିଲେ।

ଭାଇ ଓ ଭଉଣୀମାନେ, ଆଜି ଆମର ଆମରଣ ଯୁବକ ଓ ବାଳକମାନଙ୍କର ସବୁ ଦେଖି ଆମେ କଣ ଚୁପ୍ ହୋଇ ବସିଥିବା ? ବାର ବର୍ଷର **ବାଜି ରାଉତ** ଆମ ପରି ପାଠ ପଢି ନ ଥିଲା ସତ; କିନ୍ତୁ ଏ ଦେଶର ସମସ୍ତ ଶିଶୁ ଯେପରି ଶିକ୍ଷିତ ହେବେ, ସେଥିପାଇଁ ହସି ହସି ଅକାତରରେ ପ୍ରାଣ ବଳି ଦେଇଥିଲା। ଆମେ ଶିକ୍ଷା ପାଇ ତା ଠାରୁ କେଉଁ ଗୁଣରେ ଅଧିକ ହୋଇ ପାରିଲେ ? ଆମେ ଶିକ୍ଷା ପାଇ ମୁକ୍ତିର ଆହ୍ୱାନ ଅନ୍ୟକୁ ଶୁଣାଇ ଆସିବେ ଗିଲା କଥା। ଆମ ଉପରେ ଏତେବେଳେ ଚୁପ୍ ହୋଇ ବସି ରହିଲେ ଶୋଭା ପାଏ କି ?

ଢେଙ୍କାନାଳର ଲଢେଇ କେବଳ ଢେଙ୍କାନାଳରେ ନୁହେଁ, ସମସ୍ତ ଓଡିଆ ଜାତି ସଙ୍ଗେ ଜଡିତ। ଆମର ମୁଲକରେ ପଡିଥିବା ଲୋକେ ଆଜ ଆସ୍ତେ ଆସ୍ତେ ଦାସତ୍ୱ ବନ୍ଧନରୁ ମୁକ୍ତି ପାଇଲେ ଓଡିଶାର ମୁଖ ଉଜ୍ଜ୍ୱଳ ହେବ ନାହିଁ କି ?

ଏତେବେଳେ ଏହି ମୁକ୍ତି ଆନ୍ଦୋଳନକୁ ସାହାଯ୍ୟ କରିବା ପ୍ରତ୍ୟେକ ଛାତ୍ର ଓ ଛାତ୍ରୀର କର୍ତ୍ତବ୍ୟ। ତେଣୁ ଆମ ସମସ୍ତଙ୍କୁ ନିବେଦନ, ସମସ୍ତେ ଆସନ୍ତା **ତା ୨୯ ରିଖ, ଶନିବାର** ଦିନ ପାଳିତ ହେଉଥିବା **ଗଡଜାତ ଦିବସଟିକୁ** ସଫଳ କରିବା ସକାଶେ ଓ ଗଡଜାତବାସୀଙ୍କ ଆନ୍ଦୋଳନ ସପକ୍ଷରେ ପ୍ରବଳ ଜନମତ ସୃଷ୍ଟି କରି ତାକୁ ସବୁ ପ୍ରକାର ସାହାଯ୍ୟ କରିବା ନିମନ୍ତେ ଆଗେଇ ଆସନ୍ତୁ। **ସେଦିନ ସ୍କୁଲ, କଲେଜ ବନ୍ଦ କରି ଚାରିଆଡେ ସମିତି ଓ ସଭାଆର କରି ପ୍ରତିକ୍ରିୟାଶୀଳ ଶାସନ ବିରୁଦ୍ଧରେ ଚାଲିଥିବା ଏହି ମୁକ୍ତି ଆନ୍ଦୋଳନର ପ୍ରକୃତ ଅର୍ଥ ଓ ସ୍ୱରୂପ ଜନସାଧାରଣଙ୍କୁ ବୁଝାଇ ଦିଅନ୍ତୁ ଏବଂ ପାଣ୍ଠି ସଂଗ୍ରହ କରନ୍ତୁ।** ଯେପରି ସମସ୍ତ ଓଡିଶାରେ ଗଡଜାତ ଦିବସ ସଫଳତାର ସହିତ ପାଳିତ ହୁଏ ସେଥିପାଇଁ ଆମ ପ୍ରିୟ ଭାଇ ଭଉଣୀମାନେ ଉଦାସୀନ ରହିଲେ ଗୌରବର କଥା ହେବ ନାହିଁ। ଆଶାକରୁଁ, ସମସ୍ତେ ଯେପରି ପୂର୍ଣ୍ଣ ପ୍ରାଣରେ ଗଡଜାତ ଦିବସ ପାଳନ କରି ଗଡଜାତ ଆନ୍ଦୋଳନର ସବୁ ସୈନିକ ଓ ମୃତ ସହିଦ୍‌ମାନଙ୍କ ଆତ୍ମାକୁ ସମ୍ମାନ କରିବା ସଙ୍ଗେ ସଙ୍ଗେ ଦେଶରେ ସବୁଠାରୁ ପ୍ରବଳ ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ପ୍ରବଳ ଜନମତ ସୃଷ୍ଟି କରିବେ।

[illegible]

ଜଗନ୍ନାଥ ଘୋଷ
ସଭାପତି, ନିଖିଳ ଉତ୍କଳ ଛାତ୍ର

ନବଯୁଗ ପ୍ରେସ , କଟକ

# ସୂଚୀ

| ବିଷୟ | ପୃଷ୍ଠା |
|---|---|


**ପ୍ରଥମ ଅଧ୍ୟାୟ** — ୭୧୩
ଢେଙ୍କାନାଳ ଗଣବିଦ୍ରୋହ - ପୃଷ୍ଠଭୂମି

**ଦ୍ୱିତୀୟ ଅଧ୍ୟାୟ** — ୭୧୯
ଗଡ଼ଜାତ ପ୍ରଜାଙ୍କ ରାଜନୈତିକ ସଂଗଠନରେ ଓଡ଼ିଶା

**ତୃତୀୟ ଅଧ୍ୟାୟ** — ୭୨୪
ଢେଙ୍କାନାଳ ପ୍ରଜା ଅଭ୍ୟୁତ୍ଥାନର ପ୍ରଚ୍ଛଦପଟରେ

**ଚତୁର୍ଥ ଅଧ୍ୟାୟ** — ୭୩୩
ଆଗ୍ନେୟ ଉଦ୍‌ଗୀରଣର ପୂର୍ବାଭାଷ

**ପଞ୍ଚମ ଅଧ୍ୟାୟ** — ୭୪୭
ରକ୍ତରଞ୍ଜିତ 'ମୁକ୍ତିଦିବସ' ସେପ୍ଟେମ୍ବର ୧୨

**ଷଷ୍ଠ ଅଧ୍ୟାୟ** — ୭୫୩
କଟକରେ ଶହୀଦ୍‌ମାନଙ୍କ ମରଣତୂରୀର ପ୍ରତିଧ୍ୱନୀ

**ସପ୍ତମ ଅଧ୍ୟାୟ** — ୭୬୫
ରକ୍ତର ହୋରିଖେଳ ଅନ୍ତହୀନ

**ଅଷ୍ଟମ ଅଧ୍ୟାୟ** — ୭୭୧
ମୋଗଲବନ୍ଦୀ ନେତାଙ୍କ ସତ୍ୟାଗ୍ରହ

| ବିଷୟ | ପୃଷ୍ଠା |
|---|---|


ନବମ ଅଧ୍ୟାୟ ୭୭୬
'ରଣଭେରୀ'ର ରଣ ଡାକ

ଦଶମ ଅଧ୍ୟାୟ ୭୮୦
ମୋଗଲବନ୍ଦୀରେ ତିନୋଟି କ୍ୟାମ୍ପ

ଏକାଦଶ ଅଧ୍ୟାୟ ୭୮୩
ଢେଙ୍କାନାଳ ଜେଲ୍ : ରବି ଘୋଷ - ଅନନ୍ତ ପଟ୍ଟନାୟକ

ଦ୍ୱାଦଶ ଅଧ୍ୟାୟ ୭୮୫
ମଡ଼ି ଥାନା ଦଖଲ : ଐତିହାସିକ ସଶସ୍ତ୍ର ସଂଗ୍ରାମ

ତ୍ରୟୋଦଶ ଅଧ୍ୟାୟ ୭୯୦
କ୍ୟାବିନେଟ୍ ମିଶନ୍ ପ୍ରସ୍ତାବରେ ଦେଶୀୟ ରାଜ୍ୟ ପ୍ରସଙ୍ଗ

ଚତୁର୍ଦ୍ଦଶ ଅଧ୍ୟାୟ ୭୯୭
ଢେଙ୍କାନାଳ ପ୍ରଜା ଆନ୍ଦୋଳନ ୧୯୪୬-୪୭

ପଞ୍ଚଦଶ ଅଧ୍ୟାୟ ୮୦୨
ଢେଙ୍କାନାଳ ରାଜବାଟି ଦଖଲ ଡାକରା

ଷୋଡ଼ଷ ଅଧ୍ୟାୟ ୮୦୫
ଓଡ଼ିଶା ପ୍ରଦେଶରେ ଗଡ଼ଜାତ ମିଶ୍ରଣ

ଉପସଂହାର ୮୧୨


□□□

## ପ୍ରଥମ ଅଧ୍ୟାୟ

# ଢେଙ୍କାନାଳ ଗଣବିଦ୍ରୋହ - ପୃଷ୍ଠଭୂମି

ବ୍ରିଟିଶ ସାମ୍ରାଜ୍ୟର ଔପନିବେଶିକ ଶୃଙ୍ଖଳରୁ ଆମ ଦେଶର ମୁକ୍ତି ଓ ସ୍ୱାଧୀନତା ଲାଗି ଦୁଇଶହ ବର୍ଷବ୍ୟାପୀ ସଂଗ୍ରାମ। ସେହି ଦୀର୍ଘ ରୋମାଞ୍ଚକର ସଂଗ୍ରାମରେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ, ନିଷ୍ପତ୍ତିମୂଳକ, ଐତିହାସିକ ଅଂଶ ହେଉଛି ଗଡ଼ଜାତ ପ୍ରଜାମୁକ୍ତି ଆନ୍ଦୋଳନ। ୧୯୩୮-୩୯ରୁ ଆରମ୍ଭ ୧୯୪୭ ଯାଏ ଦଶ ବର୍ଷକାଳ ଉନ୍ମାଦନାଭରା ଦେଶବ୍ୟାନୀ ଗଡ଼ଜାତ ପ୍ରଜା ଆନ୍ଦୋଳନ ଆମ ସ୍ୱାଧୀନତା ସଂଗ୍ରାମର ଏକ ଜାଜ୍ୱଲ୍ୟମାନ ପର୍ଯ୍ୟାୟ।

ଷାଠିଏ ବର୍ଷ ପରେ ଆଜି ସେହି ଗରିମାମଣ୍ଡିତ ଗଡ଼ଜାତ ପ୍ରଜା ମୁକ୍ତି ଆନ୍ଦୋଳନ ଓ ତା' ସହିତ ବିଶେଷଭାବରେ ଢେଙ୍କାନାଳ ପ୍ରଜା ଆନ୍ଦୋଳନର ଆଲୋଚନା, ପର୍ଯ୍ୟାଲୋଚନା କଲାବେଳେ ଏହାର ପୃଷ୍ଠଭୂମି ପ୍ରତି ଦୃଷ୍ଟି ଫେରାଇବା ଅତ୍ୟନ୍ତ ପ୍ରୟୋଜନ। ତାହାହେଲେ ଆଜିର ଓ ଆଗାମୀକାଲିର ବଂଶଧରଙ୍କ ଆଗରେ ଏକ ସ୍ପଷ୍ଟ ଚିତ୍ର ଆଙ୍କି ହୋଇଯିବ। ଯେଉଁ ସାମାଜିକ, ଅର୍ଥନୈତିକ, ରାଜନୈତିକ ପରିସ୍ଥିତି ସେତେବେଳେ ବିରାଜୁଥିଲା, ତାହାର ସବିଶେଷ ନହେଲେ ହେଁ ଏକ ସ୍ଥୁଳ, ସୂକ୍ଷ୍ମ ବର୍ଣ୍ଣନା ଅପରିହାର୍ଯ୍ୟ।

ସମଗ୍ର ଭାରତ ଦଖଲ କଲାପରେ ନିଜ ଶାସନକୁ ସୁଦୃଢ଼ କରିବା ପାଇଁ ଇଷ୍ଟଇଣ୍ଡିଆ କଂପାନୀ ଓ ତା'ପରେ ଖୋଦ ବ୍ରିଟିଶ ସରକାର ସାମ୍ରାଜ୍ୟବାଦୀ ଶାସନର ଦେଶୀ ଟାଣୁଆ ଖୁଣ୍ଟିମାନ ଖଞ୍ଜିଦେଲା। ପୂର୍ବରୁ ମୋଗଲ ସମ୍ରାଟ ବା ଆମ ଓଡ଼ିଶାରେ ମରହଟ୍ଟା ଶାସନବେଳେ ଯେଉଁମାନେ ସମ୍ରାଟ ଓ ଶାସକଙ୍କର କରଦ୍ ରାଜ୍ୟର ସ୍ୱୀକୃତି ପାଇଥିଲେ ସେମାନଙ୍କ ସେହି ସାମନ୍ତବାଦୀ ପ୍ରଥାକୁ ବ୍ରିଟିଶ ଶାସନ ବଜାୟ ରଖି ଆମ ଦେଶରେ ୫୬୨ଟି ଗଡ଼ଜାତକୁ ତା' ସାମ୍ରାଜ୍ୟ ରକ୍ଷାର ଖୁଣ୍ଟି ତିଆରି କଲା। ତାକୁ ଏକ ନୂଆ ରୂପ ଦେଲା। ହିମାଳୟ ଶିଖରରେ ଜାମ୍ମୁ-କାଶ୍ମୀରଠାରୁ ଦକ୍ଷିଣରେ କୋଚିନ ତ୍ରିବାଙ୍କୁଡ଼, ମହୀଶୂର, ହାଇଦ୍ରାବାଦ, ମଧ୍ୟ ଓ ଉତ୍ତର ଓ ପଶ୍ଚିମ ଭାରତରେ ଜୟପୁର, ଯୋଧପୁର, ଉଦୟପୁର, ବିକାନୀର, ଇନ୍ଦୋର, ଭାୱାଲପୁର,

ପାତିଆଲା, ଜୁନାଗଡ଼, ରାଜକୋଟ, ଭୋପାଳ, ବସ୍ତର ତଥା ପୂର୍ବରେ ତ୍ରିପୁରା, କୁଚବିହାର, ମଣିପୁର, ଏମିତି ୫୬୨ ଦେଶୀୟ ରାଜ୍ୟ । ତା' ମଧ୍ୟରେ ଆମ ଓଡ଼ିଶାର ଷଢ଼େଇକଲା, ଖରାସୁଆଁ ସମେତ ଛବିଶଟି ଗଡ଼ଜାତ ବା ଦେଶୀୟ ରାଜ୍ୟ ସାମ୍ରାଜ୍ୟବାଦର ସାମନ୍ତବାଦୀ ସ୍ତମ୍ଭ ହୋଇ ରହିଲେ । ଭାରତବର୍ଷ ଭିତରେ ଥାଇ ଅବଶିଷ୍ଟ ଭାରତଠାରୁ ସେଗୁଡ଼ିକ ଭିନ୍ନ ।

ସାମନ୍ତବାଦକୁ ବ୍ରିଟିଶ ସାମ୍ରାଜ୍ୟବାଦ ପୁନଃବିନ୍ୟାସ କରି ଭାରତ ମାଟିରେ ରାଜା, ମହାରାଜା, ରାଣା, ନବାବ, ନିଜାମ, ତାଲୁକଦାର ଇତ୍ୟାଦି ଉପାଧିରେ ଭୂଷିତ ରଖି ପରାଧୀନତାର ଶୃଙ୍ଖଳକୁ ମଜବୁତ କରିଥିଲା । ବ୍ରିଟିଶ ଶାସିତ ଭାରତରେ ସାମନ୍ତବାଦୀ ଜମିଦାର, ମକଦମ, ଦେଶମୁଖ, ଲାଖରାଜଦାର, ସୁର୍ବରାକାର, ଇନାମଦାର ଏମିତି ଶହ ଶହ ପ୍ରକାର ସାମନ୍ତବାଦୀ ଖୁଣ୍ଟିଗୁଡ଼ିକୁ ନିଜ ଅକ୍ତିଆରରେ ରଖି ଭାରତର କୋଟି କୋଟି ଜନତାଙ୍କ ବିରୁଦ୍ଧରେ ପ୍ରୟୋଗ କରୁଥିଲା ।

ଅତୀତରେ ଏହିସବୁ ଦେଶୀୟ ରାଜ୍ୟର ଶାସନ ତଥା ଜମିଦାରମାନଙ୍କ ବିରୁଦ୍ଧରେ ଅନେକ ଖଣ୍ଡ ଆନ୍ଦୋଳନ ଆମ ଇତିହାସ ବହନ କରେ ।

ତେବେ ବ୍ରିଟିଶ ଶାସିତ ଭାରତବର୍ଷରେ ସ୍ୱାଧୀନତା ଆନ୍ଦୋଳନର ଏକ ପର୍ଯ୍ୟାୟରେ ବିଶେଷ ଭାବରେ ୧୯୩୦ ଦଶକ ପରେ ଜମିଦାରମାନଙ୍କ ବିରୁଦ୍ଧରେ ସଂଗଠିତ ଚାଷୀ ଆନ୍ଦୋଳନର ଜୁଆର ଛୁଟିଲା । ସାମନ୍ତବାଦ ବିରୁଦ୍ଧରେ ବ୍ରିଟିଶ ଭାରତରେ ଯେଉଁ ଚାଷୀ ଆନ୍ଦୋଳନମାନ ହେଲା, ତାହାକୁ ବ୍ରିଟିଶ ସରକାର ଜମିଦାରମାନଙ୍କ ପକ୍ଷରେ ଯାଇ ଦୃଢ଼ ହସ୍ତରେ ଦମନ କରୁଥିଲା । ତେଣୁ ଗଡ଼ଜାତମାନଙ୍କର ପ୍ରଜା ମୁକ୍ତି ଆନ୍ଦୋଳନ ବ୍ରିଟିଶ ଭାରତରେ ଚାଲିଥିବା ଜମିଦାରବିରୋଧୀ ଆନ୍ଦୋଳନର ଖାଲି ପରିପୂରକ ହେଲାନାହିଁ; ତାହା ସାମନ୍ତବାଦୀ ପ୍ରଥା ବିରୁଦ୍ଧରେ ଏକ ପ୍ରଚଣ୍ଡ ଆନ୍ଦୋଳନର ରୂପ ନେଲା ।

ବ୍ରିଟିଶ ଭାରତରେ ସାମନ୍ତବାଦର ବିରୋଧୀ ଚାଷୀ ଆନ୍ଦୋଳନ ଓ ଗଡ଼ଜାତ ମୁକ୍ତି ଆନ୍ଦୋଳନ ସ୍ୱଭାବତଃ ଆମ ସ୍ୱାଧୀନତା ସଂଗ୍ରାମର ଏକ ବିଶିଷ୍ଟ, ଅଭିନ୍ନ ଅଂଶ ହୋଇଗଲା । କାରଣ ଏହି ଦୁଇ ଗଣ ଆନ୍ଦୋଳନର ଅସଲ ଆଘାତ ପଡୁଥିଲା ବ୍ରିଟିଶ ସାମ୍ରାଜ୍ୟବାଦ ଉପରେ । ସେହେତୁ ନିର୍ମ୍ମମ ଭାବରେ ଏସବୁ ଆନ୍ଦୋଳନକୁ ଦମନ କରାଯାଉଥିଲା ।

ଢେଙ୍କାନାଳ ସମେତ ଓଡ଼ିଶାର ଗଡ଼ଜାତ ଓ ସାରା ଭାରତରେ ଥିବା ଦେଶୀୟ ରାଜ୍ୟଗୁଡ଼ିକରେ ୧୯୩୮-୩୯ରେ ପ୍ରଜା ଆନ୍ଦୋଳନ ବେଳକୁ ଦେଶର ରାଜନୈତିକ ପରିସ୍ଥିତିରେ କେତେକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟିଥାଏ । ୧୯୩୫ ଶାସନ ଖସଡ଼ା ଅନୁସାରେ ସୀମିତ ଭୋଟଦାନ ବ୍ୟବସ୍ଥାରେ ବିଭିନ୍ନ ବ୍ରିଟିଶ ଶାସିତ ପ୍ରଦେଶରେ ନିର୍ବାଚନ ୧୯୩୭ ମସିହାରେ ଅନୁଷ୍ଠିତ ହୋଇଥିଲା । ବ୍ରିଟିଶ ସାମ୍ରାଜ୍ୟବାଦର ସମସ୍ତ ଚକ୍ରାନ୍ତ ଏବଂ ଦେଶର ପ୍ରତିକ୍ରିୟାଶୀଳ ଜମିଦାର ଓ ପୁଂଜିବାଦୀ ବର୍ଗର ବିରୋଧ ସତ୍ତ୍ୱେ ୭ଟି ରାଜ୍ୟରେ କଂଗ୍ରେସ

ବିଧାନସଭାମାନଙ୍କରେ ସଂଖ୍ୟାଗରିଷ୍ଠତା ଲାଭ କରିପାରିଥିଲା । ମାତ୍ର ଉକ୍ତ ଶାସନ ଖସଡ଼ାରେ କେତେକ ଅଗଣତାନ୍ତ୍ରିକ ବ୍ୟବସ୍ଥା ନ ଉଠିଲେ କଂଗ୍ରେସ ପ୍ରଥମେ ସରକାର ଗଢ଼ିବ ନାହିଁ ବୋଲି ଅଡ଼ି ବସିଲା । ପରେ କେତେକ ପ୍ରତିଶ୍ରୁତି ପରେ ସାତଟି ରାଜ୍ୟରେ କଂଗ୍ରେସ ଦ୍ୱାରା ମନ୍ତ୍ରିମଣ୍ଡଳ ଗଠିତ ହେଲା । ଓଡ଼ିଶା ବିଧାନସଭାର ୬୦ଟି ଆସନରୁ କଂଗ୍ରେସ ୩୭ଟି ଆସନ ଜିଣି ସଂଖ୍ୟାଗରିଷ୍ଠତା ହାସଲ କରିଥିଲା । ପ୍ରଥମେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନରୁ ବିରତ ରହିଲା । ବ୍ରିଟିଶ ସରକାର ଦ୍ୱାରା ଚଂଚକତା ଦ୍ୱାରା ଚଂଚକତା ଦ୍ୱାରା ସ୍ଥାପିତ ପାରଳା ମହାରାଜାଙ୍କ କ୍ଷଣକାଳର ମନ୍ତ୍ରିମଣ୍ଡଳ ବଦଳରେ କଂଗ୍ରେସ ମନ୍ତ୍ରିମଣ୍ଡଳ ପ୍ରତିଷ୍ଠିତ ହେଲା । ଉତ୍ତରପ୍ରଦେଶ, ବମ୍ବେ, ସୀମାନ୍ତ ପ୍ରଦେଶ, ମାନ୍ଦ୍ରାଜ, ବିହାର, ଆସାମ ରାଜ୍ୟରେ ମଧ୍ୟ ଲୋକପ୍ରତିନିଧି କଂଗ୍ରେସ ଶାସନ ଚାଲିଲା । ଭାରତରେ ଗଣତାନ୍ତ୍ରିକ ଆନ୍ଦୋଳନକୁ ଏହା ଜୋରଦାର କରିବାରେ ସାହାଯ୍ୟ କଲା । ଗଡ଼ଜାତଗୁଡ଼ିକରେ ପ୍ରଜାମାନଙ୍କ ଭିତରେ ଆଶାର ସଂଚାର ହେଲା । ସବୁ ଗଡ଼ଜାତରେ ପ୍ରଜା ଆନ୍ଦୋଳନ ମୁଣ୍ଡ ଟେକିଲା ।

ସମଗ୍ର ଭାରତ ଦଖଲ କଲାପରେ ନିଜ ଶାସନକୁ ସୁଦୃଢ଼ କରିବା ପାଇଁ ଇଷ୍ଟଇଣ୍ଡିଆ କଂପାନୀ ଓ ତା'ପରେ ଖୋଦ ବ୍ରିଟିଶ ସରକାର ସାମ୍ରାଜ୍ୟବାଦୀ ଶାସନର ଦେଶୀ ଟାଣୁଆ ଖୁଣ୍ଟିମାନ ଖଞ୍ଜି ଦେଲା । ପୂର୍ବରୁ ମୋଗଲ ସମ୍ରାଟ ବା ଆମ ଓଡ଼ିଶାରେ ମରହଟ୍ଟା ଶାସନବେଳେ ଯେଉଁମାନେ ସମ୍ରାଟ ଓ ଶାସକଙ୍କର କରଦ୍ ରାଜ୍ୟର ସ୍ୱୀକୃତି ପାଇଥିଲେ ସେମାନଙ୍କ ସେହି ସାମନ୍ତବାଦୀ ପ୍ରଥାକୁ ବ୍ରିଟିଶ ଶାସନ ବଜାୟ ରଖି ଆମ ଦେଶରେ ୫୬୨ଟି ଗଡ଼ଜାତକୁ ତା' ସାମ୍ରାଜ୍ୟ ରକ୍ଷାର ଖୁଣ୍ଟି ତିଆରି କଲା । ତାକୁ ଏକ ନୂଆ ରୂପ ଦେଲା । ହିମାଳୟ ଶିଖରରେ ଜାମ୍ମୁ-କାଶ୍ମୀରଠାରୁ ଦକ୍ଷିଣରେ କୋଚିନ ତ୍ରିବାଙ୍କୁଡ଼, ମହୀଶୂର, ହାଇଦ୍ରାବାଦ, ମଧ୍ୟ ଓ ଉତ୍ତର ଓ ପଶ୍ଚିମ ଭାରତରେ ଜୟପୁର, ଯୋଧପୁର, ଉଦୟପୁର, ବିକାନୀର, ଇନ୍ଦୋର, ଭାୱାଲପୁର, ପାତିଆଲା, ଜୁନାଗଡ଼, ରାଜକୋଟ, ଭୋପାଳ, ବସ୍ତର ତଥା ପୂର୍ବରେ ତ୍ରିପୁରା, କୁଚବିହାର, ମଣିପୁର, ଏମିତି ୫୬୨ ଦେଶୀୟ ରାଜ୍ୟ । ତା' ମଧରେ ଆମ ଓଡ଼ିଶାର ଷଢ଼େଇକଳା, ଖରସୁଆଁ ସମେତ ଛବିଶଟି ଗଡ଼ଜାତ ବା ଦେଶୀୟ ରାଜ୍ୟ ସାମ୍ରାଜ୍ୟବାଦର ସାମନ୍ତବାଦୀ ସ୍ତମ୍ଭ ହୋଇ ରହିଲେ । ଭାରତବର୍ଷ ଭିତରେ ଥାଇ ଅବଶିଷ୍ଟ ଭାରତଠାରୁ ସେଗୁଡ଼ିକ ଭିନ୍ନ ।

ସାମନ୍ତବାଦକୁ ବ୍ରିଟିଶ ସାମ୍ରାଜ୍ୟବାଦ ପୁନଃବିନ୍ୟାସ କରି ଭାରତ ମାଟିରେ ରାଜା, ମହାରାଜା, ରାଣା, ନବାବ, ନିଜାମ, ତାଲୁକଦାର ଇତ୍ୟାଦି ଉପାଧିରେ ଭୂଷିତ ରଖି ପରାଧୀନତାର ଶୃଙ୍ଖଳକୁ ମଜବୁତ କରିଥିଲା । ବ୍ରିଟିଶ ଶାସିତ ଭାରତରେ ସାମନ୍ତବାଦୀ ଜମିଦାର, ମକଦମ, ଦେଶମୁଖ, ଲାଖରାଜଦାର, ସୁର୍ବରାକାର, ଇନାମଦାର ଏମିତି ଶହ ଶହ ପ୍ରକାର ସାମନ୍ତବାଦୀ ଖୁଣ୍ଟଗୁଡ଼ିକୁ ନିଜ ଅକ୍ତିଆରରେ ରଖି ଭାରତର କୋଟି କୋଟି ଜନତାଙ୍କ ବିରୁଦ୍ଧରେ ପ୍ରୟୋଗ କରୁଥିଲା ।

ଅତୀତରେ ଏହିସବୁ ଦେଶୀୟ ରାଜ୍ୟର ଶାସକ ତଥା ଜମିଦାରମାନଙ୍କ ବିରୁଦ୍ଧରେ ଅନେକ ଖଣ୍ଡ ଆନ୍ଦୋଳନ ଆମ ଇତିହାସ ବହନ କରେ।

ତେବେ ବ୍ରିଟିଶ ଶାସିତ ଭାରତବର୍ଷରେ ସ୍ୱାଧୀନତା ଆନ୍ଦୋଳନର ଏକ ପର୍ଯ୍ୟାୟରେ ବିଶେଷ ଭାବରେ ୧୯୩୦ ଦଶକ ପରେ ଜମିଦାରମାନଙ୍କ ବିରୁଦ୍ଧରେ ସଂଗଠିତ ଚାଷୀ ଆନ୍ଦୋଳନର ଜୁଆର ଛୁଟିଲା। ସାମନ୍ତବାଦ ବିରୁଦ୍ଧରେ ବ୍ରିଟିଶ ଭାରତରେ ଯେଉଁ ଚାଷୀ ଆନ୍ଦୋଳନମାନ ହେଲା, ତାହାକୁ ବ୍ରିଟିଶ ସରକାର ଜମିଦାରମାନଙ୍କ ପକ୍ଷରେ ଯାଇ ଦୃଢ଼ ହସ୍ତରେ ଦମନ କରୁଥିଲା। ତେଣୁ ଗଡ଼ଜାତମାନଙ୍କର ପ୍ରଜା ମୁକ୍ତି ଆନ୍ଦୋଳନ ବ୍ରିଟିଶ ଭାରତରେ ଚାଲିଥିବା ଜମିଦାରବିରୋଧୀ ଆନ୍ଦୋଳନର ଖାଲି ପରିପୂରକ ହେଲାନାହିଁ; ତାହା ସାମନ୍ତବାଦୀ ପ୍ରଥା ବିରୁଦ୍ଧରେ ଏକ ପ୍ରଚଣ୍ଡ ଆନ୍ଦୋଳନର ରୂପ ନେଲା।

ବ୍ରିଟିଶ ଭାରତରେ ସାମନ୍ତବାଦର ବିରୋଧୀ ଚାଷୀ ଆନ୍ଦୋଳନ ଓ ଗଡ଼ଜାତ ମୁକ୍ତି ଆନ୍ଦୋଳନ ସ୍ୱଭାବତଃ ଆମ ସ୍ୱାଧୀନତା ସଂଗ୍ରାମର ଏକ ବିଶିଷ୍ଟ, ଅଭିନ୍ନ ଅଂଶ ହୋଇଗଲା। କାରଣ ଏହି ଦୁଇ ଗଣ ଆନ୍ଦୋଳନର ଅସଲ ଆଘାତ ପଡୁଥିଲା ବ୍ରିଟିଶ ସାମ୍ରାଜ୍ୟବାଦ ଉପରେ। ସେହେତୁ ନିର୍ମ୍ମମ ଭାବରେ ଏସବୁ ଆନ୍ଦୋଳନକୁ ଦମନ କରାଯାଉଥିଲା।

ଢେଙ୍କାନାଳ ସମେତ ଓଡ଼ିଶାର ଗଡ଼ଜାତ ଓ ସାରା ଭାରତରେ ଥିବା ଦେଶୀୟ ରାଜ୍ୟଗୁଡ଼ିକରେ ୧୯୩୮-୩୯ରେ ପ୍ରଜା ଆନ୍ଦୋଳନ ବେଳକୁ ଦେଶର ରାଜନୈତିକ ପରିସ୍ଥିତିରେ କେତେକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟିଥାଏ। ୧୯୩୫ ଶାସନ ଖସଡ଼ା ଅନୁସାରେ ସୀମିତ ଭୋଟଦାନ ବ୍ୟବସ୍ଥାରେ ବିଭିନ୍ନ ବ୍ରିଟିଶ ଶାସିତ ପ୍ରଦେଶରେ ନିର୍ବାଚନ ୧୯୩୭ ମସିହାରେ ଅନୁଷ୍ଠିତ ହୋଇଥିଲା। ବ୍ରିଟିଶ ସାମ୍ରାଦ୍ୟବାଦର ସମସ୍ତ ଚକ୍ରାନ୍ତ ଏବଂ ଦେଶର ପ୍ରତିକ୍ରିୟାଶୀଳ ଜମିଦାର ଓ ପୁଂଜିବାଦୀ ବର୍ଗଙ୍କ ବିରୋଧ ସତ୍ତ୍ୱେ ୭ଟି ରାଜ୍ୟରେ କଂଗ୍ରେସ ବିଧାନସଭାମାନଙ୍କରେ ସଂଖ୍ୟାଗରିଷ୍ଠତା ଲାଭ କରିପାରିଥିଲା। ମାତ୍ର ଉକ୍ତ ଶାସନ ଖସଡ଼ାରେ କେତେକ ଅଗଣତାନ୍ତ୍ରିକ ବ୍ୟବସ୍ଥା ନ ଉଠିଲେ କଂଗ୍ରେସ ପ୍ରଥମେ ସରକାର ଗଢ଼ିବ ନାହିଁ ବୋଲି ଅଡ଼ି ବସିଲା। ପରେ କେତେକ ପ୍ରତିଶ୍ରୁତି ପରେ ସାତଟି ରାଜ୍ୟରେ କଂଗ୍ରେସ ଦ୍ୱାରା ମନ୍ତ୍ରିମଣ୍ଡଳ ଗଠିତ ହେଲା। ଓଡ଼ିଶା ବିଧାନସଭାର ୬୦ଟି ଆସନରୁ କଂଗ୍ରେସ ୩୭ଟି ଆସନ ଜିଣି ସଂଖ୍ୟାଗରିଷ୍ଠତା ହାସଲ କରିଥିଲା। ପ୍ରଥମେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନରୁ ବିରତ ରହିଲା। ବ୍ରିଟିଶ ସରକାର ଦ୍ୱାରା ଚଂଚକତା ଦ୍ୱାରା ସ୍ଥାପିତ ପାରଳା ମହାରାଜାଙ୍କ କ୍ଷଣକାଳର ମନ୍ତ୍ରିମଣ୍ଡଳ ବଦଳରେ କଂଗ୍ରେସ ମନ୍ତ୍ରିମଣ୍ଡଳ ପ୍ରତିଷ୍ଠିତ ହେଲା। ଉତ୍ତରପ୍ରଦେଶ, ବମ୍ବେ, ସୀମାନ୍ତ ପ୍ରଦେଶ, ମାନ୍ଦ୍ରାଜ, ବିହାର, ଆସାମ ରାଜ୍ୟରେ ମଧ୍ୟ ଲୋକପ୍ରତିନିଧି କଂଗ୍ରେସ ଶାସନ ଚାଲିଲା। ଭାରତରେ ଗଣତାନ୍ତ୍ରିକ ଆନ୍ଦୋଳନକୁ ଏହା ଜୋରଦାର କରିବାରେ ସାହାଯ୍ୟ କଲା।

ଗଡ଼ଜାତଗୁଡ଼ିକରେ ପ୍ରଜାମାନଙ୍କ ଭିତରେ ଆଶାର ସଂଚାର ହେଲା । ସବୁ ଗଡ଼ଜାତରେ ପ୍ରଜା ଆନ୍ଦୋଳନ ମୁଣ୍ଡ ଟେକିଲା ।

ଭାରତର ରାଜନୈତିକ ପରିସ୍ଥିତିରେ ସେତେବେଳେ ନୂତନ ପୁନଃବିନ୍ୟାସ ଘଟିଲା । ୧୯୩୦-୩୨ ଆନ୍ଦୋଳନ ପରେ ଅଧିକ ଭାବରେ ଏହି ପୁନଃବିନ୍ୟାସର ପ୍ରକ୍ରିୟା ଦେଖାଦେଲା । କଂଗ୍ରେସ ସଂଗଠନ ଭିତରେ ବିଭିନ୍ନ ରାଜନୈତିକ ମତାଦର୍ଶରେ ବିଶ୍ୱା ସ କରୁଥିବା ଗୋଷ୍ଠୀମାନଙ୍କ ଯେ ଉଦ୍‌ଭବ ହେଲା କେବଳ ନୁହଁ, ସେସବୁ କଂଗ୍ରେସ ଭିତରେ ଥାଇ ନିଜ ନିଜ ରାଜନୈତିକ ଦଳ ଗଠନ କଲେ। କଂଗ୍ରେସ ଭିତରେ ସୋସାଲିଷ୍ଟ, କମ୍ୟୁନିଷ୍ଟମାନେ ନିଜ ନିଜ ଦଳ ଗଢ଼ି ସ୍ୱାଧୀନତା ସଂଗ୍ରାମ ସାଙ୍ଗକୁ ଶ୍ରମିକ, ଚାଷୀ, ଛାତ୍ର ଯୁବକମାନଙ୍କ ସ୍ୱତନ୍ତ ଦାବୀମାନ ବାଢ଼ି ଚାଲିଲେ। ୧୯୨୫ରେ ଗଠିତ କମ୍ୟୁନିଷ୍ଟ ପାର୍ଟିକୁ ବ୍ରିଟିଶ ସରକାର ବେଆଇନ କରିଥାଏ । ଓଡ଼ିଶାରେ କଂଗ୍ରେସର ମନ୍ତ୍ରିମଣ୍ଡଳ ଗଠନ ବେଳକୁ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠିତ ହୋଇଥାଏ । ତୁଙ୍ଗ କଂଗ୍ରେସ ନେତା କେତେଜଣ ଏହି ପାର୍ଟିର କର୍ଣ୍ଣଧାର ହୋଇଥାନ୍ତି । ଏହି ପାର୍ଟିରେ କଂଗ୍ରେସର ସୋସାଲିଷ୍ଟ, କମ୍ୟୁନିଷ୍ଟ ମତାଦର୍ଶରେ ଅନୁପ୍ରାଣିତ ଯୁବକମାନେ ସାମିଲ ହୋଇଥାନ୍ତି । ଏହି ପାର୍ଟିର ନେତା, କର୍ମୀମାନେ ଢେଙ୍କାନାଳ ଆନ୍ଦୋଳନକୁ ବିଶେଷ ସାହାଯ୍ୟ କରିଥିଲେ ।

ଏହି ନବଗଠିତ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ତୁଙ୍ଗନେତା ନବକୃଷ୍ଣ ଚୌଧୁରୀଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇ କଂଗ୍ରେସର ତୁଙ୍ଗନେତା ହରେକୃଷ୍ଣ ମହତାବଙ୍କ ଉଦ୍ଧାର କରିବା ପ୍ରାସଙ୍ଗିକ ହେବ ।

ନବକୃଷ୍ଣ ଚୌଧୁରୀଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ନିଜ ସ୍ୱାକ୍ଷରରେ ପ୍ରଜାତନ୍ତ୍ରରେ ୨୫.୫.୮୪ ଦୈନିକ ସଂସ୍କରଣରେ ମହତାବ ଲେଖିଥିଲେ "ସେ ଥିଲେ ଓଡ଼ିଶା କଂଗ୍ରେସ ଇତିହାସର ଏକ ଅଧ୍ୟାୟର ପ୍ରଧାନ ନାୟକ । ଆଜି କେହି ବିଶ୍ୱାସ କରିବେନି, ଏହାର ପୁରୋଧା ଥିଲେ ନବ ଚୌଧୁରୀ। ୧୯୩୪ରୁ ୧୯୪୭ ଯାଏ କଂଗ୍ରେସ ସୋସାଲିଷ୍ଟ ପାର୍ଟି ହିଁ ଓଡ଼ିଶା କଂଗ୍ରେସ ଥିଲା । ନବବାବୁଙ୍କ ଜୀବନ ଥିଲା ସମାଜବାଦୀ ଜୀବନ । ଢେଙ୍କାନାଳରେ ଆନ୍ଦୋଳନକୁ ସେ ସମାଜବାଦୀ ଆଇନରେ ପରିଚାଳନା କରୁଥିଲେ। ସେତେବେଳେ ତାଙ୍କ ସହିତ ଯେଉଁ ଯୁବକମାନେ ସମାଜବାଦୀ ଥିଲେ, ସେମାନେ ପରେ କମ୍ୟୁନିଷ୍ଟ ହୋଇଗଲେ।"

ଓଡ଼ିଶାରେ ଜମିଦାର ବିରୋଧୀ ଚାଷୀ ଆନ୍ଦୋଳନ ମୁଖ୍ୟତଃ ଏହି ଦଳର ନେତାନେତ୍ରୀଙ୍କ ଦ୍ୱାରା ପରିଚାଳିତ ହେଉଥାଏ । ଓଡ଼ିଶାରେ ଜମିଦାର, ମଠମହନ୍ତ, ମକଦମ, ମହାଜନ, ଗୌନ୍ତିଆ, ସର୍ବରାକରମାନଙ୍କ ବିରୁଦ୍ଧରେ ରାଜ୍ୟସାରା ସୁନିଆ, ଦଶହରା ଭେଟି ବନ୍ଦ, ଗଛମାଛରେ ଅଧିକାର ଦାବୀ ସହ ଦଖଲ ଖାରଜ ରୋଷମ ଓ ବେଆଇନ୍ ଜମିଦାରୀ ପାଉଣା ଲୋପ ବିରୁଦ୍ଧରେ ପ୍ରଥମେ ଆନ୍ଦୋଳନ ଆରମ୍ଭ ହୋଇଯାଇଥାଏ ।

ସେହି ସମୟରେ ମଧ୍ୟ ସର୍ବଭାରତୀୟ କ୍ଷେତ୍ରଭଳି ଓଡ଼ିଶାରେ ସାମ୍ରାଜ୍ୟବାଦ ବିରୋଧୀ ବିଶାଳ ଛାତ୍ର ଆନ୍ଦୋଳନ ଗଢ଼ି ଉଠିଲା । ଅଖିଳ ଭାରତ ଛାତ୍ର ସଂଘ ଗଠିତ ହୋଇଥାଏ । ଏହି ଛାତ୍ର ଆନ୍ଦୋଳନ ପ୍ରତି ଓଡ଼ିଶାରେ ଥିବା ବିଭିନ୍ନ ଗଡ଼ଜାତର ଛାତ୍ର ସମାଜ ଆକୃଷ୍ଟ ହେଉଥାନ୍ତି । ନୀଳଗିରି, ଆଠଗଡ଼, ଢେଙ୍କାନାଳ, ରଣପୁର ଓ ଅନ୍ୟାନ୍ୟ ଗଡ଼ଜାତର ଆଗୁଆ ଲଢୁଆ ଛାତ୍ର କେବଳ ଛାତ୍ର ଆନ୍ଦୋଳନରେ ସାମିଲ ହୋଇନଥାନ୍ତି ।" ନିଜ ନିଜ ରାଜ୍ୟର ମୁକ୍ତି ଓ ସ୍ୱାଧୀନତା ସଂଗ୍ରାମ ପାଇଁ ସେମାନଙ୍କ ମଧ୍ୟରେ ଉଦ୍‌ବେଳନ ସୃଷ୍ଟି ହେଉଥାଏ ।

ସାଲିସ୍‌ବିହୀନ, ସାମ୍ରାଜ୍ୟବାଦ ଓ ସମାନ୍ତବାଦ ବିରୋଧୀ ଆନ୍ଦୋଳନରେ ଉଦ୍‌ବୁଦ୍ଧ ହେବା ପାଇଁ ନଗଗଠିତ କଂଗ୍ରେସ ସୋସାଲିଷ୍ଟ ପାର୍ଟିରର ମୁଖପାତ୍ର 'କୃଷକ' ଓ ପ୍ରଗତିଶୀଳ ମାସିକ ପତ୍ରିକା 'ଆଧୁନିକ' ସେମାନଙ୍କର ଆଦର୍ଶଗତ ଅସ୍ତ୍ର ହେଲା ।

ଢେଙ୍କାନାଳ ପ୍ରଜା ଆନ୍ଦୋଳନର ଏହି ପର୍ଯ୍ୟାୟର ପୃଷ୍ଠଭୂମି ଆଲୋଚନା କଲାବେଳେ ଏସବୁ ରାଜନୈତିକ, ସାଂସ୍କୃତିକ, ସାମାଜିକ ଉପାଦାନଗୁଡ଼ିକୁ ଧ୍ୟାନରେ ନେବା ଅପରିହାର୍ଯ୍ୟ । ସେତେବେଳେ ସାରା ଦେଶରେ ରଜା, ନବାବ, ନିଜାମ ପ୍ରଥାର ଉଚ୍ଛେଦ ପାଇଁ ଯେଉଁ ସଂଗ୍ରାମର ମଂଚ ଗଢ଼ି ଉଠିଥିଲା, ସେଥିରେ ସ୍ୱାଧୀନତା ସଂଗ୍ରାମର ଭିନ୍ନ ଭିନ୍ନ ରାଜନୈତିକ ଓ ସାମାଜିକ ମତାଦର୍ଶ ପୋଷଣ କରୁଥିବା ଗୋଷ୍ଠୀ ଓ ବ୍ୟକ୍ତିବିଶେଷ ମିଳିତ ହୋଇଥିଲେ । ରାଜନୈତିକ ଦୃଷ୍ଟିକୋଣ, କର୍ମନୀତି, କର୍ମ କୌଶଳ, ସଂଗଠନ ଓ ପ୍ରଚାର ଅଭିଯାନ ସଂପର୍କରେ ସେମାନଙ୍କ ଭିତରେ ଭିନ୍ନ ଭିନ୍ନ ଦୃଷ୍ଟିକୋଣ ଥିଲା । ଭିନ୍ନ ଭିନ୍ନ ପନ୍ଥା ମଧ୍ୟ ଅନୁସୃତ ହେଉଥିଲା ।



# ଦ୍ୱିତୀୟ ଅଧ୍ୟାୟ

## ଗଡ଼ଜାତ ପ୍ରଜାଙ୍କ ରାଜନୈତିକ ସଂଗଠନରେ ଓଡ଼ିଶା

ଢେଙ୍କାନାଳ ଅବା ଓଡ଼ିଶାର ଗଡ଼ଜାତ ସହିତ ଭାରତବ୍ୟାପୀ ଗଡ଼ଜାତ ପ୍ରଜାମୁକ୍ତି ଆନ୍ଦୋଳନର ସଂଚାଳନ ଲାଗି କଂଗ୍ରେସଠାରୁ ସ୍ୱତନ୍ତ୍ର ଏକ ସର୍ବଭାରତୀୟ ସଂଗଠନ ଗଢ଼ିଉଠିଲା ।

୧୯୨୦-୨୧ ଅସହଯୋଗ ଆନ୍ଦୋଳନ ପୂର୍ବରୁ ପଶ୍ଚିମ ଓ ଦକ୍ଷିଣ ଭାରତରେ ଥିବା ଗଡ଼ଜାତଗୁଡ଼ିକରେ ତତ୍କାଳୀନ ଦେଶପ୍ରେମୀମାନେ ଏପରି ଏକ ପ୍ରଜା ସଂଗଠନ ଗଢ଼ିଥିଲେ । ପଶ୍ଚିମ ଭାରତରେ ସୌରାଷ୍ଟ୍ର ସେବା ସମିତି; ମଧ୍ୟ ଭାରତରେ ରାଜସ୍ଥାନ ସେବା ସଂଘ; ଦକ୍ଷିଣରେ ଡେକାନ ଗଡ଼ଜାତ ପ୍ରଜା ସମ୍ମିଳନୀ ତଥା ଆଉ କେତେକ ରାଜ୍ୟରେ ପ୍ରଜା ପରିଷଦ, ପ୍ରଜାମଣ୍ଡଳ ନାମରେ ସଂଗଠନ ପ୍ରତିଷ୍ଠିତ ହୋଇଥିଲା । ୧୯୨୭ରେ ବମ୍ବେଠାରେ ଭାରତୀୟ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ ଓ ସେହିବର୍ଷ ମାନ୍ଦ୍ରାଜଠାରେ ନିଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏସବୁର ମିଶ୍ରଣରେ ୧୯୩୬ ଅନୁଷ୍ଠିତ ଭାରତୀୟ ଗଡ଼ଜାତ ପ୍ରଜା ସମ୍ମିଳନୀରେ ଡକ୍ଟର ପର୍ଟ୍ଟାଭି ସୀତାରାମାୟା ସଭାପତି ହୋଇଥିଲେ ।

ଗାନ୍ଧିଜୀଙ୍କ ନେତୃତ୍ୱରେ ଭାରତୀୟ କଂଗ୍ରେସ ଦ୍ୱାରା ପରିଚାଳିତ ସ୍ୱାଧୀନତା ସଂଗ୍ରାମର ପରିପୂରକ ଭାବରେ ଭାରତୀୟ ଗଡ଼ଜାତ ପ୍ରଜା ସମ୍ମିଳନୀ ବସ୍ତୁତଃ ସାମନ୍ତବାଦ ବିରୋଧୀ ପ୍ରଜା ଆନ୍ଦୋଳନର ମୁଖପାତ୍ର ହେଲା । ତାହା ବ୍ରିଟିଶ ସାମ୍ରାଜ୍ୟବାଦର ସାମନ୍ତବାଦୀ ଟାଣୁଆ ଖୁଣ୍ଟଗୁଡ଼ିକୁ ଦୋହଲାଇ ଦେଲା ।

୧୯୩୯ରେ ଲୁଧିଆନା ଅଧିବେଶନରେ ପଣ୍ଡିତ ଜବାହାରଲାଲ ନେହେରୁ ଏହାର ସଭାପତି ହୋଇଥିଲେ । ୧୯୪୫ରେ ମଧ୍ୟ ନେହେରୁ ପୁନଶ୍ଚ ଏହାର ସଭାପତି ହୋଇ ଉଦୟପୁର ଅଧିବେଶନରେ ଅଧ୍ୟକ୍ଷତା କରିଥିଲେ । ୧୯୪୭ରେ ଜାମ୍ମୁ-କାଶ୍ମୀରର ଜନପ୍ରିୟ ନେତା ଶେଖ୍ ଅବଦୁଲ୍ଲା ଏହାର ସଭାପତି ନିର୍ବାଚିତ ହେଲେ । ମାତ୍ର କାଶ୍ମୀର ମହାରାଜାଙ୍କ ଜେଲରେ ଥିବାରୁ ତାଙ୍କ ସ୍ଥାନରେ ଗ୍ୱାଲିଅରଠାରେ ଅନୁଷ୍ଠିତ ଭାରତୀୟ ଗଡ଼ଜାତ ପ୍ରଜା ସମ୍ମିଳନୀରେ ପର୍ଟ୍ଟଭିସୀତାରାମାୟା ଅଧ୍ୟକ୍ଷତା କରିଥିଲେ ।

୧୯୩୧ ବମ୍ବେଠାରେ ଅନୁଷ୍ଠିତ ଭାରତୀୟ ଗଡ଼ଜାତ ପ୍ରଜା ସମ୍ମିଳନୀରେ ଓଡ଼ିଶାରୁ ତିନିଜଣ ପ୍ରତିନିଧି ଯୋଗ ଦେଇଥିଲେ। ସେଥିରେ ଥିଲେ ବିଶିଷ୍ଟ ସମାଜସେବୀ ଭାରତ ସେବକ ସମାଜ (ଏବେ ହିନ୍ଦ ସେବକ ସମାଜ)ର ଲକ୍ଷ୍ମୀନାରାୟଣ ସାହୁ, କଟକର ବିପିନ ବିହାରୀ ଚୌଧୁରୀ ଓ ମୟୁରଭଂଜର ଶରତ ଚନ୍ଦ୍ର ଦାସ।

ବମ୍ବେ ସମ୍ମିଳନୀର ପ୍ରଭାବରେ ସେହିବର୍ଷ ଓଡ଼ିଶାର ଖୋଦ ଗଡ଼ଜାତଗୁଡ଼ିକର ପ୍ରତିଷ୍ଠିତ ବ୍ୟକ୍ତି ଆଠଗଡ଼ର ରାଧାନାଥ ରଥ, ହିନ୍ଦୋଳର କବିରାଜ ବାଲୁକେଶ୍ୱର ଆଚାର୍ଯ୍ୟ, ଦଶପଲ୍ଲାର ଗୋବିନ୍ଦ ଚନ୍ଦ୍ର ମିଶ୍ର, ତିଗିରିଆର ମଧୁସୂଦନ ପଟ୍ଟନାୟକ ପ୍ରମୁଖଙ୍କ ଉଦ୍ୟମରେ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଏବଂ ତତ୍କାଳୀନ କଂଗ୍ରେସ ସାଂସଦ ବିଖ୍ୟାତ ଇଂଜିନିୟର ଭୁବନାନନ୍ଦ ଦାସ ସେଥିର ଅଧକ୍ଷତା କରିଥିଲେ। ମାତ୍ର ତାହା ବସ୍ତୁତଃ ନିଷ୍କ୍ରିୟ ରହିଲା। ଗୃହୀତ ପ୍ରସ୍ତାବଗୁଡ଼ିକୁ କାର୍ଯ୍ୟକାରୀ କରିବା ଲାଗି କୌଣସି ନିର୍ଦ୍ଦିଷ୍ଟ ପଦକ୍ଷେପ ବା ଆନ୍ଦୋଳନର ପନ୍ଥା ନିଆଯାଇପାରିନଥିଲା।

୧୯୩୭ରେ ଓଡ଼ିଶାରେ ନିର୍ବାଚନ ପରେ ରାଜନୈତିକ ପରିବେଶ ଅନୁକୂଳ ହେଲା। କଂଗ୍ରେସର ସଂଖ୍ୟାଗରିଷ୍ଠତା ଲାଭ, କଂଗ୍ରେସ ମନ୍ତ୍ରିମଣ୍ଡଳ ପ୍ରତିଷ୍ଠା, ମୋଗଲବନ୍ଦୀ ଓଡ଼ିଶାରେ ବିଶାଳ କୃଷକ ଆନ୍ଦୋଳନ ପ୍ରଭୃତି ଓଡ଼ିଶାର ଗଡ଼ଜାତ ପ୍ରଜାମାନଙ୍କ ଭିତରେ ନୂଆ ଆଲୋଡ଼ନ, ସାହସ ସୃଷ୍ଟି କଲା।

ସେହି ବର୍ଷ ଡକ୍ଟର ପଟ୍ଟଭିସୀତାରାମାୟାଙ୍କ ସଭାପତିତ୍ୱରେ ଓଡ଼ିଶା ଶାଖାର ଦ୍ୱିତୀୟ, ଐତିହାସିକ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀ ବସିଲା। ଓଡ଼ିଶାର ରାଜା ମହାରାଜାମାନେ ଆତଙ୍କ ଆଣି ଚାରିଆଡ଼େ ନିଜ ନିଜ ରାଜ୍ୟରେ ଜଗୁଆଳ, ଗୋଇନ୍ଦା ନିଯୁକ୍ତ କଲେ। ଏସବୁ କଟକଣା ସତ୍ତ୍ୱେ ୨୬ଟି ରାଜ୍ୟର ଶତାଧିକ ପ୍ରତିନିଧି କଟକ ସମ୍ମିଳନୀରେ ଉପସ୍ଥିତ ହୋଇଥିଲେ।

ଏକ ବିଧିବଦ୍ଧ କାର୍ଯ୍ୟସୂଚୀ ସାଙ୍ଗକୁ ଗୁଡ଼ିକ ରାଜନୈତିକ ପ୍ରସ୍ତାବ ଗୃହୀତ ହେଲା। ନିର୍ବାଚିତ କାର୍ଯ୍ୟକାରୀ କମିଟିରେ ସର୍ବଶ୍ରୀ ଡକ୍ଟର ପିଟ୍ଟଭିସୀତାରାମାୟ ସଭାପତି, ସାରଗଂଧର ଦାସ, ସାଧାରଣ ସଂପାଦକ, ନୟାଗଡ଼ର ଡକ୍ଟର ବିଶ୍ୱମ୍ଭର ରଥ, କୋଷାଧ୍ୟକ୍ଷ ପଦରେ ଏବଂ ଆଠଗଡ଼ର ରାଧାନାଥ ରଥ. ହିନ୍ଦୋଳର ବାଲୁକେଶ୍ୱର ଆଚାର୍ଯ୍ୟ, ଆଠଗଡ଼ର ମଧୁସୂଦନ ମହାନ୍ତି, ରଣପୁରର ଗଂଗାଧର ମିଶ୍ର, ଦଶପଲ୍ଲାର ଗୋବିନ୍ଦ ଚନ୍ଦ୍ର ମିଶ୍ର, ମୟୁରଭଂଜର ଲାଲମୋହନ ପତି, ତିଗିରିଆର ମଧୁସୂଦନ ପଟ୍ଟନାୟକ ଓ ଢେଙ୍କାନାଳର ହରମୋହନ ପଟ୍ଟନାୟକ କାର୍ଯ୍ୟକାରୀ କମିଟିକୁ ନିର୍ବାଚିତ ହେଲେ।

ଗଡ଼ଜାତଗୁଡ଼ିକରେ ଯେଉଁ ଅନ୍ଧାରୀ, ଏକଛତ୍ରବାଦୀ, ମନମୁଖୀ ଶାସନ ଚାଲିଛି, ସେସବୁର ତଦନ୍ତ କରି ଏକ ରିପୋର୍ଟ ପ୍ରସ୍ତୁତ କରିବାକୁ ଏକ ତଦନ୍ତ କମିଟି ମଧ ଗଠିତ ହେଲା।

ଏହି ତଦନ୍ତ କମିଟିର କେତେଜଣ ସଦସ୍ୟ ଯେମିତିକି ବ୍ରଜସୁନ୍ଦର ଦାସ, ସତୀଶ ଚନ୍ଦ୍ର ବୋଷ କର୍ମକ୍ଷମ ନହେବାରୁ ୧୯୩୮ ଜୁନ୍ ୬ ତାରିଖ କାର୍ଯ୍ୟକାରୀ କମିଟି ଏହାର ପୁନର୍ଗଠନ କଲେ। ସର୍ବଶ୍ରୀ ହରେକୃଷ୍ଣ ମହତାବ, ଲାଲମୋହନ ପଟ୍ଟନାୟକ, ହିନ୍ଦ ସେବକ ସମାଜର ପ୍ରଖ୍ୟାତ ନେତା ବଲବନ୍ତ ରାୟ ମେହେଟ୍ଟାଙ୍କୁ ଘେନି ଗଠିତ ଏହି କମିଟିରେ ହରେକୃଷ୍ଣ ମହତାବ ଚେୟାରମ୍ୟାନ୍ ରହିଲେ।

ଏହି ତଦନ୍ତ କମିଟିର ବୈଠକମାନ ସମ୍ବଲପୁର, ଅନୁଗୋଳ, କଟକ ଓ ପୁରୀଠାରେ ଅନୁଷ୍ଠିତ ହେଲା। କୌଣସି ଗଡ଼ଜାତରେ ଏହାର ବୈଠକ ସମ୍ଭବପର ନଥିଲା। ଅତ୍ୟାଚାରିତ, ପ୍ରପୀଡ଼ିତ ପ୍ରଜାମାନେ ଲୁଚି ଲୁଚି ଆସି ନିଜ ନିଜର କରୁଣ ମର୍ମାନ୍ତିକ କାହାଣୀ ସାକ୍ଷ୍ୟ ଆକାରରେ ଲିପିବଦ୍ଧ କରିଥିଲେ।

ଓଡ଼ିଶାର ଢେଙ୍କାନାଳ ସମେତ ସବୁ ଗଡ଼ଜାତରେ ଯୁଗ ଯୁଗ ଧରି ପ୍ରଜାମାନଙ୍କ ଉପରେ ନାରକୀୟ, ଲୋମହର୍ଷଣକାରୀ ଦମନ, ଅତ୍ୟାଚାର, ଶୋଷଣ ବିରୁଦ୍ଧରେ ଅତୀତରେ ଅନେକ ମେଳି ହୋଇଛି। ଦରବାରଗୁଡ଼ିକ ସେସବୁକୁ ନିର୍ମ୍ମମଭାବରେ ଦମନ କରିଛନ୍ତି।

ସେପରି କେତେକ ମେଳିର ଦୃଷ୍ଟାନ୍ତ: ୧୮୮୨ ଏବଂ ୧୮୯୨ରେ କେଉଁଝରରେ ଭୂୟାଁପୀଡ଼ିରେ ଧରଣୀଧର ନାୟକଙ୍କ ନେତୃତ୍ୱରେ ଭୂୟାଁ ବିଦ୍ରୋହ ଓ ୧୮୯୪ରେ କନ୍ଧ ଆଦିବାସୀ ବିଦ୍ରୋହ; କଳାହାଣ୍ଡିରେ ୧୮୭୮-୧୮୮୨ରେ କନ୍ଧ ବିଦ୍ରୋହ; ବିଂଶ ଶତାବ୍ଦୀର ଆଦ୍ୟଭାଗରେ ଦଶପଲ୍ଲା ବିଦ୍ରୋହ, ୧୯୦୧ରେ ବିଶ୍ରା ମୁଣ୍ଡାଙ୍କ ନେତୃତ୍ୱରେ ମୁଣ୍ଡା ବିଦ୍ରୋହ। ଏହାଛଡ଼ା ବାମଡ଼ା, ବଡ଼ାମ୍ବା, ରେଢ଼ାଖୋଲ ପ୍ରଜା ମେଳି ତଥା ୧୯୨୧-୨୨ରେ ଢେଙ୍କାନାଳ ପରଜଂଗରେ ମେଳି। ରାଜ ଦରବାର ଓ ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍ସି ଏସବୁ ମେଳିକୁ ନିର୍ମ୍ମମ ଭାବରେ ଦମନ କରିଥିଲେ।

ରାଜ ଦରବାରଗୁଡ଼ିକ ବିଶେଷତଃ ଢେଙ୍କାନାଳ ଦରବାର ଏପରି ତଦନ୍ତକୁ ଭଣ୍ଡୁର କରିବାକୁ ଏବଂ ଢେଙ୍କାନାଳ ପ୍ରଜା ଆନ୍ଦୋଳନ ବିରୁଦ୍ଧରେ କୁତ୍ସା ଅଭିଯାନ ଚଳେଇବାକୁ ବିଭିନ୍ନ ଉପାୟ ଅବଲମ୍ବନ କରିଥିଲା।

ଢେଙ୍କାନାଳ ଦରବାରରେ ପୁଲିସ ଅଧିକାରୀ କମିଶନର ରୂପେ କାର୍ଯ୍ୟ କରିଥିବା ବୃନ୍ଦାବନ ଧଳ ନାମକ ଏକ ବ୍ୟକ୍ତି। ସେ ନିଜକୁ ପ୍ରଜାପକ୍ଷର ବୋଲି ବିଶ୍ୱାସ ଜନ୍ମାଇ ସହାୟତା କରିବା ଆଳରେ କଟକସ୍ଥ ତଦନ୍ତ କମିଟି ଅଫିସରେ ରହିଲେ। ତଦନ୍ତ କମିଟିର ଢେଙ୍କାନାଳ ଓ ଯେଉଁମାନେ ସାକ୍ଷ୍ୟ ଦେଇଥିଲେ, ସେମାନଙ୍କ ନାମ କେଉଁଝର ଓ ଢେଙ୍କାନାଳ ଦରବାର କେଉଁଝର ଫାଇଲଗୁଡ଼ିକୁ ହରଣଚାଲ କରିନେଲେ। ପାଇଗଲା ପରେ ସାକ୍ଷୀମାନଙ୍କୁ ନାନା ଅତ୍ୟାଚାର ଓ ଜେଲ୍‌ଦଣ୍ଡ ଭୋଗିବାକୁ ପଡ଼ିଥିଲା।

ଢେଙ୍କାନାଳ ଦରବାର ଓଡ଼ିଶାର କେତେକ ଅନାମଧେୟ ସମ୍ବାଦପତ୍ର ଓ ପତ୍ରିକା ମାଧ୍ୟମରେ ପ୍ରଜା ଆନ୍ଦୋଳନ ବିରୁଦ୍ଧରେ ଲେଖାମାନ ପ୍ରକାଶ କରାଉଥିଲା। କଟକର ବି.ଏନ୍.ବାନାର୍ଜୀ, ବି.ଏ. ନାମକ ବ୍ୟକ୍ତିଙ୍କ ନାମରେ "ଢେଙ୍କାନାଳରେ ଅଶାନ୍ତି, ଏକ ପର୍ଯ୍ୟାଲୋଚନା" ନାମକ ଇଂରାଜୀ ପୁସ୍ତିକା ପ୍ରକାଶ କରାଯାଇ ବଣ୍ଟନ କରାଯାଇଥିଲା। ଏହାର ପ୍ରକାଶକ ନ୍ୟାସନାଲ ପବ୍ଲିସିଟି ବ୍ୟୁରୋ, କଟକ ବୋଲି ଲେଖଯାଇଥିଲା।

ଗଡ଼ଜାତ ପ୍ରଜା ଆନ୍ଦୋଳନ ପ୍ରତି ଜାତୀୟ କଂଗ୍ରେସ ୧୯୨୮ରେ କଲିକତା ଅଧିବେଶନରେ ସମର୍ଥନସୂଚକ ପ୍ରସ୍ତାବ ଗ୍ରହଣ କରିଥିଲା। ମାତ୍ର ୧୯୩୮ ହରିପୁରା କଂଗ୍ରେସର ଏହି ପ୍ରସ୍ତାବକୁ କୋହଳ କରି କଂଗ୍ରେସ ନୈତିକ ସମର୍ଥନ ଦେବ ବୋଲି କର୍ମନୀତି ଗ୍ରହଣ କରିବାରୁ ଅସନ୍ତୋଷ ଦେଖାଦେଇଥିଲା। ହରିପୁରା ଅଧିବେଶନରେ ଗୃହୀତ ପ୍ରସ୍ତାବରେ ଥିଲା, ଭାରତୀୟ ଦେଶୀୟ ରାଜ୍ୟଗୁଡ଼ିକରେ କୌଣସି କଂଗ୍ରେସ କମିଟି ଗଢ଼ାଯାଇ ପାରିବ ନାହିଁକି ଦେଶୀୟ ରାଜ୍ୟମାନଙ୍କରେ ଚାଲିଥିବା ଆଭ୍ୟନ୍ତରୀଣ ଆନ୍ଦୋଳନ କଂଗ୍ରେସ ନାମରେ ଚାଲିପାରିବ ନାହିଁ। ହରିପୁରାରେ ୫୧ତମ କଂଗ୍ରେସ ଅଧିବେଶନ ପୂର୍ବରୁ ୱାର୍ଦ୍ଧାଠାରେ ଗାନ୍ଧିଜୀଙ୍କ ଉପସ୍ଥିତିରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଏପରି ପ୍ରସ୍ତାବ ନେଲେ। ଭାରତୀୟ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀର ସଭାପତି ପଟ୍ଟଭିସୀତାରାମାୟା ଓ ସଂପାଦକ ବଳବନ୍ତ ରାୟ ମେହେଟ୍ଟା ପ୍ରମୁଖ ଏପରି କର୍ମନୀତିର ବିରୋଧ କରିଥିଲେ।

ଏଥି ଭିତରେ ଭାରତର ବିଭିନ୍ନ ଗଡ଼ଜାତରେ ନାହିଁ ନଥିବା ପ୍ରଜା ଆନ୍ଦୋଳନର ଜୁଆର ଛୁଟିଲା। ୧୯୩୯ ମାର୍ଚ୍ଚରେ ତ୍ରିପୁରାଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନ ବେଳେ କଂଗ୍ରେସ ଭିତରେ ବାମପନ୍ଥୀ ମତବାଦ ଏପରି କର୍ମନୀତିରେ ବିରୋଧ କରିଥିଲେ। ସଭାପତି ସୁବାଷ ବୋଷ ତାଙ୍କ ସଭାପତି ଅଭିଭାଷଣରେ କହିଥିଲେ ଯେ, ଦେଶୀୟ ରାଜ୍ୟମାନଙ୍କରେ ଚାଲିଥିବା ଆନ୍ଦୋଳନକୁ କଂଗ୍ରେସ ପକ୍ଷରୁ ଚଳାଇବା ସଂପର୍କରେ ଲାଗୁ କଟକଣାକୁ ଉଠାଇ ଦିଆଯାଉ।

ପରେ ଦେଶୀୟ ରାଜ୍ୟମାନଙ୍କରେ ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ଆନ୍ଦୋଳନର ତୀବ୍ରତା ଦେଖି ହରିପୁରା କଂଗ୍ରେସରେ ଗଡ଼ଜାତଗୁଡ଼ିକ ସଂପର୍କରେ ଗୃହୀତ ପ୍ରସ୍ତାବ ସଠିକ ବୋଲି କୁହାଗଲେ ବି ଗଡ଼ଜାତର ପ୍ରଜାମାନଙ୍କୁ ସାହାଯ୍ୟ କରିବାକୁ ଓ ଆପଣାର ପ୍ରଭାବକୁ ନିୟୋଗ କରିବାକୁ କଂଗ୍ରେସର ଅଧିକାର ରହିଛି ବୋଲି ଘୋଷଣା କରାଗଲା। ଗାନ୍ଧିଜୀ ମଧ୍ୟ ତାଙ୍କର ପୂର୍ବ ଅଭିମତରେ ପରିବର୍ତ୍ତନ ଆଣିଥିଲେ।

ଅ.ଭା.ଗଡ଼ଜାତ ରାଜ୍ୟ ସମ୍ମିଳନୀର ଲୁଧିଆନା ଅଧିବେଶନରେ ସଭାପତି ପଣ୍ଡିତ ଜବାହାରଲାଲ ନେହେରୁ ଗଡ଼ଜାତ ପ୍ରଜାମାନଙ୍କର ଏହି ସଂଗ୍ରାମ ଭାରତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ଚାଲିଥିବା ବ୍ୟାପକ ସଂଗ୍ରାମର ଏକ ଅଂଶ ଏବଂ ଜାତୀୟ କଂଗ୍ରେସ ସହିତ ଏହାର ଘନିଷ୍ଠ ଯୋଗାଯୋଗ ରହିବ ବୋଲି ମତ ଦେଇଥିଲେ।

ଗଡ଼ଜାତ ପ୍ରଜା ମୁକ୍ତି ଆନ୍ଦୋଳନ ପ୍ରତି ପ୍ରଥମାବସ୍ଥାରେ କଂଗ୍ରେସର ଏପରି ଅସ୍ପଷ୍ଟ ଦୋଦୋପାଞ୍ଚ କର୍ମନୀତିକୁ ଖୋଦ ଗଡ଼ଜାତଗୁଡ଼ିକରେ ସଂଗ୍ରାମରତ ନେତା ଓ କର୍ମୀମାନେ ଦୁର୍ଭାଗ୍ୟଜନକ ବୋଲି ବିଚାରିବା ସେତେବେଳେ ସ୍ୱାଭାବିକ । ମାତ୍ର ସର୍ବଭାରତୀୟ କ୍ଷେତ୍ରରେ ବିଭିନ୍ନ ଦେଶୀୟ ରାଜ୍ୟରେ ଏବଂ ଆମ ଓଡ଼ିଶାରେ କଂଗ୍ରେସ ଭିତରେ ଥିବା ସୋସାଲିଷ୍ଟ କମ୍ୟୁନିଷ୍ଟମାନେ ଓ ଅଗ୍ରଗାମୀ କଂଗ୍ରେସ ନେତାମାନେ କଂଗ୍ରେସର ଏପରି କଟକଣାକୁ ପ୍ରତ୍ୟାଖ୍ୟାନ କରି ରାଜରାଜୁଡ଼ା ପ୍ରଥା, ସାମନ୍ତବାଦୀ ପ୍ରଥାକୁ ସମୂଳେ ଲୋପ କରିବା ପାଇଁ ସଂଗ୍ରାମରେ ପୂର୍ଣ୍ଣପ୍ରାଣରେ ସହଯୋଗ, ସମର୍ଥନ କରିଥିଲେ । ଗଡ଼ଜାତଗୁଡ଼ିକରୁ ରାଜଶାସନ ଯିବ, ରାଜାମହାରାଜାଙ୍କ ସମସ୍ତ ସ୍ଥାବର ଅସ୍ଥାବର ସଂପତ୍ତି ବାଜ୍ୟାପ୍ତ ହେବ, ମୋଗଲବନ୍ଦୀ ଓଡ଼ିଶା ଓ ଭାରତ ସହିତ ସବୁ ଦେଶୀୟ ରାଜ୍ୟର ମିଳନ ହେବ ଏହି ଲକ୍ଷ୍ୟ ଆଦର୍ଶରେ ସେମାନେ ଗଡ଼ଜାତ ବାହାରୁ ଓ ଭିତରୁ ପ୍ରଜାମୁକ୍ତି ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ ।



# ଢେଙ୍କାନାଳ ପ୍ରଜା ଅଭ୍ୟୁତ୍ଥାନର ପ୍ରଚ୍ଛଦପଟରେ

ଭାରତବର୍ଷରେ ୧୯୩୮-୩୯ରେ ଐତିହାସିକ ଦେଶୀୟ ରାଜ୍ୟ ମୁକ୍ତି ଆନ୍ଦୋଳନର ରାଜନୈତିକ ଓ ସାମାଜିକ ପୃଷ୍ଠଭୂମିରେ ଓଡ଼ିଶାରେ ଛବିଶ ଗଡ଼ଜାତରେ ନାହିଁନଥିବା ପ୍ରଜା ଅଭ୍ୟୁତ୍ଥାନ। ଢେଙ୍କାନାଳରେ ମହତ୍ତ୍ୱପୂର୍ଣ୍ଣ ପ୍ରଜା ଆନ୍ଦୋଳନ ବିଚାର କଲାବେଳେ ଢେଙ୍କାନାଳ ରାଜ୍ୟ ଓ ଏହାର ଶାସନର ଅତୀତ ସଂପର୍କରେ ଅବଗତ ହେବା ପ୍ରୟୋଜନ।

ଏହି ଅଭ୍ୟୁତ୍ଥାନ ଆରମ୍ଭ ହେବା ବେଳକୁ ଢେଙ୍କାନାଳର କ୍ଷେତ୍ରଫଳ ୧୪୩୬ ବର୍ଗ ମାଇଲ, ଲୋକସଂଖ୍ୟା ୨,୮୪,୩୨୮ ଏବଂ ଆୟ ଥିଲା ୫ଲକ୍ଷ ୩୧ ହଜାର ଟଙ୍କା।

୧୮୦୩ରେ ନାଗପୁରର ଭୋଁସଲା ମରହଟ୍ଟା ଶାସକଙ୍କୁ ପରାସ୍ତ କରି ବ୍ରିଟିଶ ଇଷ୍ଟଇଣ୍ଡିଆ କଂପାନୀ ଓଡ଼ିଶା ଦଖଲ କଲା। ଭୋଁସଲାଙ୍କ ଲୋମହର୍ଷଣକାରୀ ବର୍ଗୀ ଶାସନଠାରୁ ଶତଗୁଣ ଅଧିକ, ବର୍ବରୋଚିତ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନର ଆବର୍ଭାବ ଘଟିଲା। ଗଜପତି ମହାରାଜାଙ୍କ କରଦ ରାଜ୍ୟଗୁଡ଼ିକ ଭୋଁସଲା ରାଜୁତିରେ ମଧ୍ୟ କରଦ ରାଜ୍ୟ ହୋଇ ରହିଥିଲେ। ଢେଙ୍କାନାଳର ନାମ ଢେଙ୍କା ନାମକ ଏକ ବ୍ୟକ୍ତିଙ୍କ ନାମରେ ଢେଙ୍କାନାଳ ରୂପେ ନାମିତ ହୋଇଛି। ଗଜପତି ରାଜା ପ୍ରତାପରୁଦ୍ର ଦେବଙ୍କଠାରୁ ଖୋର୍ଦ୍ଧାର ଗୋବିନ୍ଦ ବିଦ୍ୟାଧରଙ୍କ ଭାଇ ହରିସିଂହ ବିଦ୍ୟାଧର କଣମେଲା ବିଶର ଜାଗିରୀ ପାଇଥିଲେ। ପରେ ସେ ଓ ତାଙ୍କ ବଂଶଧରମାନେ ଢେଙ୍କାନାଳ କିଲ୍ଲା ପ୍ରତିଷ୍ଠା କରିଥିଲେ।

୧୯୩୮-୩୯ରେ ଢେଙ୍କାନାଳ ପ୍ରଜା ଆନ୍ଦୋଳନ ଅଗ୍ନେୟ ରୂପ ନେବାବେଳେ ଶଙ୍କର ପ୍ରତାପ ଏହାରା ରାଜା ହୋଇଥିଲେ। ତାଙ୍କ ପିତାଙ୍କ ଅନ୍ତେ ତାଙ୍କର ନାବାଳକିପଣିଆ କଟିଗଲାପରେ ଇଷ୍ଟର୍ଣ୍ଣଷ୍ଟେଟସ୍ ଏଜେନ୍ସି ତାଙ୍କୁ ୧୯୨୫ରେ ଗାଦୀନସୀନ କରାଇଥିଲେ।

ପ୍ରଥମେ ଇଷ୍ଟଇଣ୍ଡିଆ କଂପାନୀ ଓ ତା'ପରେ ବ୍ରିଟିଶ ସାମ୍ରାଜ୍ୟବାଦୀ ସରକାର ଓଡ଼ିଶାର ଏହି ଗଡ଼ଜାତଗୁଡ଼ିକୁ ତଥା ଭାରତରେ ଅନ୍ୟାନ୍ୟ ଗଡ଼ଜାତ ରାଜା ନବାବମାନଙ୍କୁ ସନନ୍ଦ ପ୍ରଦାନ କରିଥିଲା ଏବଂ ଏହି ସନନ୍ଦଗୁଡ଼ିକୁ ମଝି ମଝିରେ ସାନି ସନନ୍ଦରେ ପରିଣତ କରାଯାଉଥିଲା। ଢେଙ୍କାନାଳ କ୍ଷେତ୍ରରେ ବ୍ରିଟିଶ ସରକାର ୧୧୮୬୨, ୧୮୯୪, ୧୯୦୮, ୧୯୧୫ ଏବଂ ୧୯୩୭ରେ ଏପରି ସନନ୍ଦମାନ ପ୍ରଦାନ କରିଥିଲା।

ବ୍ରିଟିଶ ସାମ୍ରାଜ୍ୟବାଦର ପହରାଦାର ହୋଇଥିବା ଏହି ଦେଶୀୟ ରାଜ୍ୟଗୁଡ଼ିକର ତଥାକଥିତ ରଜା ମହାରାଜା ଉପାଧିପ୍ରାପ୍ତ ଶାସକମାନଙ୍କ ଅଖଣ୍ଡ, ନିର୍ମ୍ମମ, ନିଷ୍ଠୁର, ବ୍ୟଭିଚାରୀ ଶାସନରେ ପ୍ରଜାମାନେ ମଣିଷ ନୁହଁ ପଶୁତୁଲ୍ୟ ରହୁଥିଲେ ।

ପ୍ରତ୍ୟକ୍ଷ ଶତାଧିକ କର, ସେସ ସାଙ୍ଗକୁ ଭେଟି, ବେଠି, ମାଗଣ, ରସଦ, ଅବାବ୍ ପ୍ରଭୃତି ମାଧ୍ୟମରେ ପ୍ରଜାମାନେ ନିଃସ୍ୱ ହୋଇଯାଉଥିଲେ । ଉଁ ଚୁଁ କରିବାକୁ ଚାରା ନ ଥିଲା ।

**ଅନ୍ତହୀନ ଖଜଣାର କିସମ୍ :**

ଢେଙ୍କାନାଳରେ ଜମିବାଡ଼ିର କିସମ ନିର୍ଣ୍ଣୟ କରି ଖଜଣା ଧାର୍ଯ୍ୟ କରାଯାଉଥିଲା । ଏହି ରାଜ୍ୟରେ ପାଳଜମିକୁ ୧୯ ଭାଗରେ ବିଭକ୍ତ କରି ୮ଟି ରେଟ୍ ବାନ୍ଧି ଖଜଣା ବସାଯାଉଥିବାବେଳେ, ପାଳ ଜମି ଛଡ଼ା ବାଜେ କିସମର ଜମିରୁ ୨୪ ପ୍ରକାର ରେଟରେ ଖଜଣା ନିଆଯାଉଥିଲା । ଗାଁଗୁଡ଼ିକୁ କ ଓ ଖ ଏପରି ଦୁଇ ଶ୍ରେଣୀରେ ଭାଗ କରାଯାଇ ଖୋଲା ଜମି ଓ ଜଙ୍ଗଲ ଜମି ଆଖ୍ୟା ଦିଆଗଲା ଏବଂ ସେଗୁଡ଼ିକୁ ପୁଣି ଆଉ କେତେକ ଭାଗରେ ବିଭକ୍ତ କରାଯାଇ ଖଜଣାର ବିଭିନ୍ନ ରେଟ ଧାର୍ଯ୍ୟ କରାଯାଉଥିଲା । ଆବାଦ ବା ଚାଷ ହେଉଥିବା ଜମି ମଧ୍ୟରୁ ଶାରଦ ଚାଷ ଜମିକୁ ୩ ଭାଗରେ ଓ ପାଳ ଜମିକୁ ୩ ଭାଗରେ ବିଭକ୍ତ କରାଯାଉଥିଲା ଓ ତଦନୁସାରେ ଖଜଣାର ରେଟ୍ ଭିନ୍ନ ଭିନ୍ନ ହେଉଥିଲା । ବାଜେ ଫସଲ ଜମିକୁ ପୁଣି ଦୁଇ ଭାଗରେ ଓ ଘରବାଡ଼ିକୁ ମଧ୍ୟ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇ ଖଜଣା ବସାଯାଉଥିଲା ।

ଖଜଣା, ସଲାମି, କର, ଟିକସ, ଫିସ, ଏକଚାଟିଆ ବ୍ୟବସାୟ, ସେସ ପ୍ରଭୃତି ନାନାପ୍ରକାର ବ୍ୟବସ୍ଥା ଜରିଆରେ ଢେଙ୍କାନାଳର ଆଦିବାସୀ, ଅଣଆଦିବାସୀ, ଚାଷୀପ୍ରଜାଙ୍କୁ ନିର୍ମ୍ମମ ଭାବରେ ଲୁଣ୍ଠନ କରାଯାଉଥିଲା ।

ନିସ୍ତାର ଖଜଣା ଏପରି ଏକ ଦୃଷ୍ଟାନ୍ତ । ଢେଙ୍କାନାଳ ଅନେକାଂଶରେ ପାହାଡ଼ିଆ ଓ ଜଙ୍ଗଲ ପରିପୂର୍ଣ୍ଣ ଥିଲା । ପ୍ରଜାମାନେ ବଂଚି ରହିବା ପାଇଁ ବିଶେଷତଃ ଜଙ୍ଗଲ ପାଖରେ ରହୁଥିବା ଆଦିବାସୀ ଜୁଆଙ୍ଗ ଶବର ପ୍ରଭୃତି ଜାତିର ଲୋକେ ଜଙ୍ଗଲଜାତ ଦ୍ରବ୍ୟ ଉପରେ ନିର୍ଭର କରୁଥିଲେ । ସେମାନେ ଶତକଡ଼ା ୯୦ ଭାଗ ଭୂମିହୀନ । ରାଜଦରବାର ଜଙ୍ଗଲରୁ ଘାସ, ଜଙ୍ଗଲ କଣ୍ଟା, କେନ୍ଦୁ, ଲାଖ, ଖଇର, ଚମଡ଼ା, ଖୋସା, ମହୁ ସଂଗ୍ରହ ଉପରେ ମନଇଚ୍ଛା ସେସ୍ ବସାଉଥିଲା ।

ଜଙ୍ଗଲ, ଗାଁ ପାଖ ବଣବୁଦାରେ ଗାଈ ବଳଦ, ମଇଁଷି, ଛେଳି, ମେଣ୍ଢା ଚରିବା ପାଇଁ ବିଭିନ୍ନ ରକମର ସେସ ଦେବାକୁ ପଡୁଥିଲା । ମହିଷି ପିଛା ଆଠ ଅଣା (ଆଜିର ମୂଲ୍ୟରେ ୨୦ ଟଙ୍କାରୁ ଅଧିକ) ଛେଳି ମେଣ୍ଢା ପିଛା ଦୁଇଅଣା କରି ସେସ ବାନ୍ଧିବାକୁ ପଡୁଥିଲା । ସେସ ଆଦାୟ କରୁଥିବା ରାଜକର୍ମଚାରୀ ନାନାପ୍ରକାର ଜୁଲମ କରି ଶହଶହ ମିଥ୍ୟା ମୋକଦ୍ଦମା ଗାଈ, ମଇଁଷି ଚରାଳିଙ୍କ ଉପରେ ଲଦି ଦେଉଥିଲେ ।

ଢେଙ୍କାନାଳ ପ୍ରଜାଙ୍କ ମଧ୍ୟରୁ ଶହେକେ ପଚାଶ ଭାଗରୁ ଊର୍ଦ୍ଧ୍ୱ ଲୋକ ମହାଜନୀ ଋଣ, ଯାହାର ସୁଧ ହାର ଶହେ ଟଙ୍କାରେ ଚାଳିଶ, ପଚାଶ ଟଙ୍କା ତାହା ପୁଣି ଚକ୍ରବୃଦ୍ଧି ହାରରେ, ତହିଁରେ ସର୍ବସ୍ୱାନ୍ତ ହେଉଥିଲେ।

ଜଙ୍ଗଲ ସେସ ସାଙ୍ଗକୁ ହାସପାତାଳ ସେସ, ଶିକ୍ଷା ସେସ, ପଥକର, ଚାଉଳ ପ୍ରଭୃତି ଖାଉଟି ପଦାର୍ଥ ରାଜ୍ୟ ବାହାରକୁ ଚାଲାଣ କଲେ ସେସ ବସୁଥିଲା। କମ୍ଭାର, କୁମ୍ଭାର, ତନ୍ତୀ, ଆଖୁପେଡ଼ା ମେସିନ୍ ଉପରେ ସେସ, ଚୌକିଦାରୀ ଟିସକ ସାଙ୍ଗକୁ ମନୋପଲିର ବ୍ୟବସାୟର ଉପଦ୍ରବ। ପ୍ରଜାର ନିଜସ୍ୱ ଘରକୁ ଲଗା ବାଡ଼ିବଗିଚା ଆମ୍ବ ପଣସ ଥିବା ଅନ୍ୟାନ୍ୟ ଗଛର ସ୍ୱତ୍ତ୍ୱ ଉପରେ ଓ ତାହାର ବ୍ୟବହାର ଉପରେ ନାନା କଟକଣା ଜାରି କରାଯାଉଥିଲା। ନିଜ ପୋଖରୀର ମାଛ ଉପରେ ମଧ୍ୟ ଏପରି କଟକଣା। ରାଜ୍ୟ ବାହାରୁ ଆସୁଥିବା ନିତ୍ୟ ବ୍ୟାବହାରିକ ପଦାର୍ଥ କିରାସିନି, ପାନ, ବିଡ଼ି, ନଡ଼ିଆ ବ୍ୟବସାୟକୁ ମନୋପଲି ବ୍ୟବସାୟରେ ପରିଣତ କରାଗଲା। ମନୋପଲି ନେଇଥିବା ରାଜଅନୁଗତ ବ୍ୟବସାୟୀ ରାଜଦରବାରର ମୋହରମାରି ମନଇଚ୍ଛା ଚଢ଼ା ଦରରେ ସେଗୁଡ଼ିକୁ ବିକ୍ରୟ କରିବାର ଏକଚାଟିଆ ଅଧିକାର ପାଇଲେ। ଏହି ପାନ ଉପରେ ଏକଚାଟିଆ କାରବାର ପ୍ରଜା ଆନ୍ଦୋଳନର ଏକ ବଡ଼ ଅସ୍ତ୍ରରେ ପରିଣତ ହୋଇଥିଲା। ବନ୍ଧାବାନ୍ଧବ ଘରୁ ରାଜ୍ୟ ବାହାରକୁ କେହି ପାନ କଡ଼ାଏ ଦି'କଡ଼ା ଆଣିଲେ ଏମିତିକି ନଆଣିଲେ ମିଥ୍ୟାରେ ମୋକଦ୍ଦମା କରି ସଂପୃକ୍ତ ପ୍ରଜାମାନଙ୍କଠାରୁ ଜୋରିମାନା ଆଦାୟ କରାଯାଉଥିଲା।

ଘାସ ଚାରଣ ଆଇନ ଲଙ୍ଘଂନ କରିବା ଆଳରେ ଶହଶହ ପ୍ରଜାଙ୍କଠାରୁ ଯାହା ଆଦାୟ ହେବାର କଥା ତାହାର ଦଶଗୁଣ ଜୋରିମାନା ଦେବାକୁ ପଡୁଥିଲା। ଢେଙ୍କାନାଳର ସମସ୍ତ ଚାଷୀ ମୂଲିଆ କାରିଗର ଏପରି ଦୁର୍ବିସହ କର ଟିକସ, ସେସ ମହାଜନୀ ସୁଧ, ଜୋରିମାନା, ଧମକ, ମାଡ଼ ଓ ଅନ୍ୟାନ୍ୟ ଦଣ୍ଡରେ ଅତିଷ୍ଠ ହୋଇ ସୁଦ୍ଧା ଭୟରେ ପାଟି ଖୋଲିପାରୁ ନଥିଲେ।

**ବେଠି ଭେଟି ମାଗଣ, ରସଦ :**

ଉପରଲିଖିତ ଯାବତୀୟ ଖଜଣା, ଟିକସ, ସେସ ସାଙ୍ଗକୁ ବିନା ପାରିଶ୍ରମିକରେ, ଜୋରଜବରଦସ୍ତ, ଅଲଘନୀୟ ବେଠି ଭେଟି, ରସଦ, ମାଗଣ ବୋଝ ଉପରେ ଲଳିତା ବିଡ଼ା ପରି ପ୍ରଜାମାନଙ୍କ ମୁଣ୍ଡ ଉପରେ ଲଦା ହୋଇଥିଲା।

ରଜାଙ୍କ ନଅର, ବଂଗଳା, ଖମାର ଘର, ଥାନା, ଅଫିସ କୋଠାବାଡ଼ି, ପ୍ରମୋଦ ଉଦ୍ୟାନ ସାଙ୍ଗକୁ ବଡ଼ ବଡ଼ ହାକିମଙ୍କ ଘର ଓ ବଗିଚାରେ ପ୍ରଜାମାନଙ୍କୁ ବେଠି ଖଟିବାକୁ ପଡୁଥିଲା। ସ୍କୁଲ ଘର, ହାସାପାତାଳ, ପୋଲ, ରାସ୍ତାଘାଟ ତିଆରିରେ ବେଠି ଖଟିବା ବାଧ୍ୟତାମୂଳକ।

ରାଜା ବା ରାଜାଙ୍କ ପରିବାରର ଲୋକ, ଅବା ବ୍ରିଟିଶ ହାକିମ ବାଘ, ହରିଣ, କୁଟୁରା ଶିକାର କରିବାକୁ ଗଲେ ସଂପୃକ୍ତ ଅଞ୍ଚଳର ପ୍ରଜାମାନଙ୍କୁ ଢାଲ ଢୋଲ, ଧନୁଶର, ତରବାରୀ ଧରି ପାରିଧି ମୁହଁକୁ ଶିକାର ପଶୁଙ୍କୁ ଘଉଡ଼ାଇବାକୁ ପଡୁଥିଲା। ରାତି ଦିନ, ଜଙ୍ଗଲରେ ଶୀତକାକର ବର୍ଷାରେ ସେମାନଙ୍କୁ ଘରୁ ଖାଦ୍ୟ ନେଇ ଜଗି ରହିବାକୁ ହୁଏ। ପୁଣି ରଜାଘର ହାତୀଖେଦା କରି

ହାତୀପଲ ଧରିବାବେଳେ ଖେଦା ବେଠିରେ ବେଠିଆ ପ୍ରଜାଙ୍କୁ ୧୦/୧୫ ଦିନ ଘରଦ୍ୱାର ଛାଡ଼ିବାକୁ ପଡ଼େ । ହାତୀଖେଦା ସାଧାରଣତଃ ଶୀତଦିନେ ବସେ । ସେତେବେଳେ ଫସଲ ଅମଳର ବେଳ । ମାତ୍ର ପ୍ରଜା ଶିକାର ବେଠି ଖଟି ନିଜର ଫସଲ ଉଜାଡ଼ି ଦେଇ ନିଃସ୍ୱ ହୋଇଯାଏ ।

ଏପରି ବେଠିରେ ଢେଙ୍କାନାଳ ସଦର ସବ୍‌ଡ଼ିଭିଜନରେ କଙ୍କଡ଼ାହାଡ଼ ଓ ମଇଁଷିଆପାଟର ବିସ୍ତୃତ ଗହୀରରେ ଜମି ପୁନରୁଦ୍ଧାର କରାଯାଇଥିଲା । ମେଣ୍ଢାପଡ଼ା ଘାଇକୁ ବନ୍ଦ କରିବାରେ ସହସ୍ର ସହସ୍ର ପ୍ରଜାଙ୍କୁ ବେଠି ଖଟିବାକୁ ପଡ଼ିଥିଲା । ଏପରି ଦୃଷ୍ଟାନ୍ତ ଅନେକ ।

ମାତ୍ର ୧୯୩୨ରେ ଢେଙ୍କାନାଳ ଗଡ଼ ନିକଟସ୍ଥ ଠକ୍‌କର ନାଳୀ ନାମକ ପାହାଡ଼ ଉପରେ ରାଜା ଶଙ୍କର ପ୍ରତାପଙ୍କ ତଳଭାଇ ପଟ୍ଟାୟତଙ୍କର ଯତନ ନଗର ପ୍ରାସାଦର ନିର୍ମାଣ ବେଳର ବେଠି ଅତି ଲୋମହର୍ଷଣକାରୀ, ବର୍ଣ୍ଣନା ବାହାରେ । ପାହାଡ଼ ଶିଖରରେ ୯୨ଟି ବଖରା ଓ ବିସ୍ତୃତ ଚଉତରା ସହ ମେଘନାଦ ପାଚେରୀ ଘେରା ପ୍ରାସାଦ ନିର୍ମିତ ହେବ । ବିସ୍ତୀର୍ଣ୍ଣ ପ୍ରାସାଦ ଉପରେ ବାଡ଼ମିଣ୍ଟନ, ଭଲିବଲ ଫିଲଡ଼ ରହିବ, ସନ୍ତରଣ ପୁଷ୍କରିଣୀ ରହିବ । ଏପରି ଏକ ପ୍ରାସାଦ ହେବ ତାଙ୍କ ପତ୍ନୀ ଯତନ କୁମାରୀଙ୍କ ନାମରେ । ଟନ୍‌ଟନ୍ ଓଜନ ପଥର କଟା ହୋଇ ହାତୀ ଦ୍ୱାରା ଓ ମଣିଷମାନଙ୍କ ଦ୍ୱାରା ଉପରକୁ ବୁହାଯିବ । କାଠ, ବାଲି, ପାଣି, ଚୁନସବୁ ମୁଣ୍ଡରେ ବୋଝ ହୋଇ ଉପରକୁ ଦିନରାତି ଉଠିବ । ହଜାର ହଜାର ପ୍ରଜାଙ୍କୁ ବେଠି ଖଟିବାକୁ ହେବ । ଟିକିଏ ଓଳମ ବିଳମ୍ବ ହେଲେ, ଟିକିଏ କିଏ ଥକ୍କାମାରିଲେ ନାନା ପ୍ରକାରର ଦୈହିକ ଯନ୍ତ୍ରଣା ଭୋଗିବାକୁ ପଡୁଥିଲା । ଗାଁ ଗାଁରେ ପ୍ରଜାଙ୍କ ଘରେ କାନ୍ଦବୋବାଳି ଓ ଆତଙ୍କ । କେତେବେଳେ କିଏ ଧରା ହୋଇଯିବ ।

ଆଉ ଏକ ବେଆଇନ ବ୍ୟବସ୍ଥା ଥିଲା ଭେଟି । ରାଜାଘର ବାହାବ୍ରତ, କର୍ଣ୍ଣବେଧବେଳେ ପନିପରିବା, ସରୁଚାଉଳ, ଦୁଧ, ଘିଅ, ପାଚିଲା କଦଳୀ, ପାଟ ମଠା ଓ ଅର୍ଥ ଆକାରରେ ଭେଟିଦେବା ବାଧତାମୂଳକ । ଏହାଛଡ଼ା ରଜାଙ୍କ ସୁନିଆଭେଟି, ଦଶହରା ଭେଟି କାର୍ଯ୍ୟତଃ ବାଧତାମୂଳକ ହୋଇଯାଇଥିଲା । ପ୍ରଜାମାନେ ସ୍ୱଇଛାରେ, ଏସବୁ ଭେଟି ଦେଉନଥିଲେ । ଭେଟି ଯିଏ ନଦେଇଥିବ ତାହା ଉପରେ ରାଜ ଦରବାର ଓ ରାଜକର୍ମଚାରୀମାନଙ୍କର ଯେଉଁ କୋପ ଦୃଷ୍ଟି ପଡ଼ିବ ସେହି ଭୟରେ ଭେଟି ଦେବାକୁ ପ୍ରଜାମାନେ ବାଧ ହେଉଥିଲେ ।

ମାଗଣ ଅନ୍ୟ ଏକ ପ୍ରଜା ଶୋଷଣର ପ୍ରଥା । ଏହା ବାଧ୍ୟତାମୂଳକ । ରାଜା, ରାଜପୁତ୍ର, ରାଜକୁମାରୀମାନଙ୍କ ବିବାହ ବେଳେ, ରାଜାଙ୍କ ପାଠପଢ଼ା ଖର୍ଚ୍ଚ ତୁଳାଇବାକୁ ମାଗଣ ଧାର୍ଯ୍ୟ କରାଯାଏ । ଦୃଷ୍ଟାନ୍ତ ସ୍ୱରୂପ ଶଙ୍କର ପ୍ରତାପଙ୍କ ପିତା ରାଜ ସୁରପ୍ରତାପଙ୍କ ବିବାହ ଲାଗି ୧୯୦୩ରେ ଖଜଣାର ଅର୍ଦ୍ଧେକ ଭାଗ ମାଗଣ ଧାର୍ଯ୍ୟ ହୋଇଥିଲା । ୧୯୧୨ରେ ଦୁଇ ରାଜକୁମାରଙ୍କ କର୍ଣ୍ଣବେଧ ଓ ପଇତାଲଗା ଉତ୍ସବ ଲାଗି ଖଜଣାର ଏକ ଚତୁର୍ଥାଂଶ ମାଗଣ ଧାର୍ଯ୍ୟ କରାଯାଇଥିଲା । ୧୯୨୮ରେ ଶଙ୍କର ପ୍ରତାପଙ୍କ ଏକ ଭାଇ ବିଲାତରେ ପଢ଼ିବାକୁ ଗଲାବେଳେ ପ୍ରାୟ ୮ ହଜାର

ଟଙ୍କା ମାଗଣ ବାବଦରେ ଆଦାୟ ହୋଇଥିଲା । ମାଗଣର ଆଉ ଏକ ରୂପ ରହିଛି । ତାହାହେଲା ଯାହା ଉଚିତ ଦର ତା'ଠାରୁ ଊଣାରେ ପ୍ରଜାକୁ ନିଜ ଉତ୍ପାଦିତ ପଦାର୍ଥକୁ ବ୍ରିକ୍ରି କରିବାକୁ ବାଧ କରାଯାଉଥିଲା । ଏସବୁର ହିସାବ ନ ଥାଏ, କି ରସିଦ ନଥାଏ । ଏହା ରାଜକୋଷକୁ ଯାଏନାହିଁ ।

ରଜାଙ୍କର ହଜାର ହଜାର ଏକର ଖମାର ଜମି ଥାଏ । ରାଣୀମା ଖମାର, ରାଜମାତା ଖମାର, ରାଜବଂଶର ଅନ୍ୟ ମୁଖ୍ୟଙ୍କର ଖମାର ଜମି ଥାଏ । ଦେବୋତ୍ତର ନାମରେ ଜମି ଥାଏ । ଏସବୁ ଜମିରେ ଚାଷ ମୂଳତଃ ବେଠିରେ କରାଯାଇ ଉତ୍ପନ୍ନ ଶସ୍ୟ ରାଜ ଖମାର ଭର୍ତ୍ତି କରାଯାଏ ।

ରାଜ ଦରବାରର ହାକିମ, ପୁଲିସ, ତହସିଲଦାର ଖମାର ରକ୍ଷକ, ଏମାନେ ଛୋଟ ଛୋଟ ରାଜା । ସେମାନଙ୍କ ଅତ୍ୟାଚାର ସହିବାର ସୀମା ରହେ ନାହିଁ ।

ଏହା ବାଦ ରହିଛି ରସଦ । ରାଜା ବା ହାକିମହୁକୁମା ଅବା ଗୋରା ଅଫିସର ଗସ୍ତରେ ଗଲାବେଳେ, ସେମାନଙ୍କ ରହଣି ବଙ୍ଗଳାରେ ସ୍ଥାନୀୟ ପ୍ରଜାମାନଙ୍କଠାରୁ ମାଂସ, କୁକୁଡ଼ା, ମାଛ, ସରୁ ଚାଉଳ, ଘିଅ, ଦୁଧ ରସଦ ହିସାବରେ ଆଦାୟ କରାଯାଏ ।

**ଅନ୍ଧାରୀ ଶାସନର ଢୋଲଘର :**

ଆଇନକାନୁନ୍ ପୁସ୍ତକ, ମାନୁଆଲ୍ ଅନୁସାରେ ନୁହଁ, ରାଜାଙ୍କ ମର୍ଜି, ଇଚ୍ଛା, ହୁକୁମ ଅନୁସାରେ ମାଜିଷ୍ଟ୍ରେଟ, ପୁଲିସ ହାକିମ, କର୍ମଚାରୀ ପରିଚାଳିତ ହୁଅନ୍ତି । ତଥାକଥିତ କୋର୍ଟ, କଚେରୀ ବିଚାରରେ ରାୟ ପ୍ରାୟ ସବୁବେଳେ ପ୍ରଜାଙ୍କ ବିରୁଦ୍ଧରେ ଯାଏ । ଅପିଲ ଯାଏ ତଥାକଥିତ ଢେଙ୍କାନାଳ ହାଇକୋର୍ଟକୁ । ଖୋଦ ରାଜା ସର୍ବୋଚ୍ଚ ନ୍ୟାୟପତି । ଏହାଛଡ଼ା ଆଉ ଏକ ପ୍ରକାର କଚେରୀ ଥାଏ । ତାହାର ନାମ ନଥାଏ । ତାହା ଅନ୍ଧାରୀ କଚେରୀ ବା ଢୋଲଘର । କାନକୁହାମାନଙ୍କଠାରୁ ମିଛ ସତ ଅଭିଯୋଗ ଆସିଲେ, ସଂପୃକ୍ତ ପ୍ରଜାଙ୍କୁ ରଜାଙ୍କ ଲୋକ ଅନ୍ଧାରୀ କଚେରୀକୁ ଟାଣି ଆଣନ୍ତି । କିଏ ମେଳିଆ ପ୍ରଜା, କିଏ ଅମାନିଆ ପ୍ରଜା, ତାଙ୍କୁ ନନ୍ଦ ପେଷ୍କାରଙ୍କ ଭଳି କେତେକ କାନକୁହା ଲୋକଙ୍କ ପରାମର୍ଶରେ ଢୋଲଘରେ ଅଟକ ରଖାଯାଏ । ରଜା ଓ ବଛାବଛା ପାରିଷଦ ବସନ୍ତି । ତାର ସେଇଠି ବିଚାର ହୁଏ । ତାକୁ ଘେରିଯାଇ ନାନାପ୍ରକାର ଦୈହିକ, ପାଶବିକ ନିର୍ଯ୍ୟାତନା ଦିଆଯାଏ । ନିଶ, ଦାଢ଼ି ଓ ଗାଲ ଓ ଗୁପ୍ତାଙ୍ଗରୁ କେଶ ଉପୁଡ଼ାଠାରୁ ନିର୍ଘାତ ମାଡ଼ ଓ ଅନ୍ୟପ୍ରକାର ବର୍ବର ଯାତନାର ଅଭିଯୁକ୍ତକୁ ଶିକାର ହେବାକୁ ପଡ଼େ । ଦୈହିକ ନିର୍ଯାତନା ଦିଆଗଲାବେଳେ ତାହାର ଆର୍ତ୍ତ ଚିତ୍କାରକୁ ଢୋଲବାଦ୍ୟ ବଜେଇ ଉପଭୋଗ କରାଯାଏ ।

ଗଡ଼ଜାତମାନଙ୍କରେ ରାଜା ଓ ରାଜ ପରିବାରର ଲୋକଙ୍କ ଯୌନ ପିପାସାରୁ ରାଜ୍ୟର ସୁନ୍ଦର ଯୁବତୀ ଝିଅ ବୋହୂ ରକ୍ଷା ପାଆନ୍ତି ନାହିଁ । ଗଡ଼ଜାତ ତଦନ୍ତ କମିଟି ଆଗରେ ଏପରି ଅତ୍ୟାଚାରର ସାକ୍ଷ୍ୟମାନ ବିଭିନ୍ନ ଗଡ଼ଜାତରୁ ଆସିଥିଲା । ସବାରୀ ପଠାଇ ସୁନ୍ଦରୀ ଝିଅବୋହୂଙ୍କୁ ଉଆସକୁ ନେଇଯିବା ସାକ୍ଷ୍ୟମାନ ଲିପିବଦ୍ଧ ନ କରି ଜାଣି ରଖିବାକୁ ସାକ୍ଷ୍ୟଦାନକାରୀ ପ୍ରଜା ଅନୁରୋଧ କରିଥିଲେ ।

ଢେଙ୍କାନାଳ ରାଜ ଦରବାର ମଧ୍ୟ ପ୍ରଜାମାନଙ୍କୁ ଲୁଣ୍ଠନ କରିବା ପାଇଁ କେତେକ ପ୍ରତାରଣାମୂଳକ ପଦକ୍ଷେପ ନେଇଥାଏ। ୧୯୩୬ରେ ବେଠି ଉଠିଗଲା ବୋଲି ଘୋଷଣା କରାଗଲା। ମାତ୍ର ବେଠି ବଦଳରେ ଏକ ସ୍ଥାନୀୟ ସେସ ସବୁ ପ୍ରଜାଙ୍କ ଉପରେ ଧାର୍ଯ୍ୟ କରାଗଲା। ରାଜସ୍ୱର ପ୍ରତି ଟଙ୍କାର ଚଉଠ ଭାଗ ବେଠି ବାବଦରେ ସ୍ଥାନୀୟ ସେସ ବସାଗଲା। ମାତ୍ର ଅନ୍ୟ ଅନେକ କାମରେ ବେଠି ପ୍ରଚଳିତ ରହିବ ବୋଲି ଆଦେଶ ଜାରି କରାଗଲା। ରାଜ୍ୟରେ ରଥଯାତ୍ରା ଓ ଅନ୍ୟାନ୍ୟ ଯାନିଯାତ୍ରାରେ ସ୍ୱେଚ୍ଛାରେ ନୁହେଁ, ଜବରଦସ୍ତ ପ୍ରଜା ବେଠି କରିବେ। ରାଜପରିବାରରେ ବିବାହବ୍ରତ ଆଦି ସାମାଜିକ ଅନୁଷ୍ଠାନରେ, ହାତୀ ଖେଦାରେ, ବନାଗ୍ନିବେଳେ ବେଠି କରିବା ବାଧ୍ୟତାମୂଳକ କରାଗଲା। ପ୍ରଜାମାନେ ଏହି ବେଠି ଉଠାକୁ ଏକ ପ୍ରହସନ ଓ ଅଧିକ ଅର୍ଥଦଣ୍ଡ ରୂପେ ବିଚାର କଲେ।

ଏହି ରାଜା, ମହାରାଜାଙ୍କଠାରୁ ସନନ୍ଦ ବଳରେ ଯାହା ବ୍ରିଟିଶ ରାଜକୋଷକୁ ନିଆଯାଉଥିଲା, ତାହାଠାରୁ ବହୁଗୁଣ ଅଧିକ ଅର୍ଥ ଏହି ଗଡ଼ଜାତ ରାଜାମାନଙ୍କୁ ପ୍ରଜାବିଦ୍ରୋହରୁ ରକ୍ଷା କରିବା ଲାଗି ବ୍ୟୟ କରାଯାଉଥିଲା। ଓଡ଼ିଶାର ରାଜା ମହାରାଜାମାନଙ୍କଠାରୁ ନିଆଯାଉଥିବା ସଲାମି ତାର ଦୃଷ୍ଟାନ୍ତ।

ଆଠଗଡ଼ ୨୮୦୦ ଟଙ୍କା, ଆଠମଲ୍ଲିକ ୪୩୦ ଟଙ୍କା, ବାମଡ଼ା ୭୫୦୦ ଟଙ୍କା, ବଡ଼ମ୍ବା ୧୯୯୭ ଟଙ୍କା ପନ୍ଦର ଅଣା ପାଞ୍ଚ ପଇସା, ବୌଦ ୮ଶହ ଟଙ୍କା, ବଣାଇ ୨୭୦୦ ଟଙ୍କା, ଦଶପଲ୍ଲା ୬୬୧ ଟଙ୍କା ସାତଅଣା ଏଗାର ପଇସା, ଢେଙ୍କାନାଳ ୫୦୯୯ ଟଙ୍କା ୯ ପଇସା, ହିନ୍ଦୋଳ ୫୫୧ ଟଙ୍କା ତିନିଅଣା ଏଗାର ପଇସା, କଳାହାଣ୍ଡି ୧୬ଶହ, କେଉଁଝର ୧୭୧୦ ଟଙ୍କା ଅଣାଏ ତିନିପଇସା। ଖଣ୍ଡାପଡ଼ା ୪୨୧୧ଟଙ୍କା ଆଠଅଣା ଆଠ ପଇସା, ନରସିଂହପୁର ୧୪୫୫ ଟଙ୍କା ଆଠଅଣା ତିନିପଇସା, ନୟାଗଡ଼ ୫୫୨୫ ଟଙ୍କା ଚାରିଅଣା ଏକ ପଇସା, ନୀଳଗିରି ୩୯୦୦ ଟଙ୍କା ସାତଅଣା ଆଠ ପଇସା, ପାଲ ଲହଡ଼ା ୨୬୬ ଟଙ୍କା ଦଶଅଣା ଆଠ ପଇସା, ରେଢ଼ାଖୋଲ ୨ହଜାର ଟଙ୍କା, ରଣପୁର ୧୪ଶହଟଙ୍କା ତେର ଅଣା ଦୁଇପଇସା, ତାଳଚେର ୧୦୩୯ ଟଙ୍କା ଦଶଅଣା ୫ ପଇସା, ତିଗିରିଆ ୮୦୨ ଟଙ୍କା। ମୟୁରଭଞ୍ଜ ୧୦୬୭ ଟଙ୍କା ଏଗାର ଅଣା ୯ ପଇସା ସଲାମି ଦେଉଥିଲା। କେବଳ ଗାଂଗପୁର ୧୦ ହଜାର ଟଙ୍କା, ସୋନପୁର ୧୨ ହଜାର ଟଙ୍କା ସ ପାଟନା ୧୩ ହଜାର ଟଙ୍କା ସଲାମି ବାନ୍ଧୁଥିଲା।

ଏତକ ବ୍ରିଟିଶ ସରକାରକୁ ପୈଠ କରିବା ପରେ ଏହି ରାଜାମାନେ ଯାବତୀୟ ରାଜସ୍ୱ ଓ ବେଆଇନ ଅର୍ଥ ଆଦାୟ କରି ବିଳାସବ୍ୟସନରେ ମସଗୁଲ ରହୁଥିଲେ।

ଢେଙ୍କାନାଳରେ ଶୋଷଣ, ଅତ୍ୟାଚାର ଏପରି ପ୍ରବଳ ହେଲା ଯେ ଦରିଦ୍ର, ନିଃସ୍ୱ, ନିର୍ଯ୍ୟାତିତ ପ୍ରଜାମାନେ କଟକ, ଅନୁଗୋଳ ଅଂଚଳକୁ ପଳାଇ ଆସି ଅତିକମ୍ ମୂଲରେ ଗୋତି

ଖଟିଲେ। ଏ ଅଂଚଳର ମୂଲିଆମାନଙ୍କ ଭିତରେ ଭାଳେଣି ପଡ଼ିଥିଲା। ସେମାନଙ୍କୁ କାମ ମିଳିଲାନି ଅବା ଯାହା ପାଉଥିଲେ ତା'ଠାରୁ ଯଥେଷ୍ଟ କମ ମଜୁରୀ ପାଇଲେ। ମୋଗଲବନ୍ଦୀର ଲୋକେ ସେମାନଙ୍କୁ ଢେଙ୍କାନାଳିଆ, ଅତି ନିରୀହ, ଶସ୍ତା ଓ ବୋଲକରା ବୋଲି ଆଖ୍ୟା ଦେଇ ହେୟଜ୍ଞାନ କଲେ। ରାଜ ଅତ୍ୟାଚାର ଯୋଗୁଁ ଢେଙ୍କାନାଳ ଛାଡ଼ି ପ୍ରାଣ ବଞ୍ଚାଇବାକୁ କୁଲି, ମୂଲିଆ, ମୋଟିଆ ହୋଇ କାମ କରୁଥିବା ଲୋକଙ୍କ ସରଳତା, ନିଷ୍କପଟତା ଓ ନିରୀହତା ଯୋଗୁଁ ଓ ସେମାନେ ଭୋକିଲା ଥିବାରୁ ସେମାନଙ୍କୁ କମ ମଜୁରୀ ଦେଇ ଖଟେଇବା ସହଜ ହେଲା। ଏଥିଲାଗି ଯେ କେହି ଗରୀବ ନିରୀହ, ମୂଲିଆ, ମୋଟିଆଙ୍କୁ ମଧ୍ୟ 'କିରେ ଢେଙ୍କାନାଳିଆ' ବୋଲି ପରିହାସ କରାଯାଉଥିଲା।

ଏହା ଢେଙ୍କାନାଳର ସଂଗ୍ରାମକୁ ମଧ ଖୋରାକ ଯୋଗାଇଲା। ରାଜ ଅତ୍ୟାଚାର ଯୋଗୁଁ ସେମାନେ ଏପରି ନିନ୍ଦିତ ହେଉଛନ୍ତି ବୋଲି ଢେଙ୍କାନାଳବାସୀ ଅଧିକ ଉପଲବ୍ଧି କଲେ ଏବଂ ରାଜ ଶାସନ ବିରୁଦ୍ଧରେ କ୍ରୋଧ, ଅସନ୍ତୋଷ ଫାଟି ପଡ଼ିବା ଅବସ୍ଥାକୁ ଆସିଗଲା।

୧୯୩୬ ବେଳକୁ ରାଜ ପ୍ରଶାସନ ଏହି କ୍ରୋଧ ଓ ଅସନ୍ତୋଷକୁ କିପରି ପ୍ରଶମିତ କରିବ ବୋଲି ଗୋଟିଏ ଚାଲ୍ ଖେଳିଲା। ରାଜା ନୁହନ୍ତି ଏକ ଏକ୍ସକ୍ୟୁଟିଭ୍ କାଉନ୍‌ସିଲ ରାଜ୍ୟ ଶାସନର ମୁଖ୍ୟ ବୋଲି ଏକ ଭ୍ରମ ଶଠତାପୂର୍ଣ୍ଣ ଧାରଣା ସୃଷ୍ଟି କରିବା ଉଦ୍ୟମ କରାଗଲା। ତଥାକଥିତ ଏକ୍ସକ୍ୟୁଟିଭ୍ କାଉନ୍‌ସିଲର ମୁଖ୍ୟ ହେଲେ ଖୋଦ୍ ରାଜା ଶଙ୍କର ପ୍ରତାପ। ଅନ୍ୟ ଦୁଇଜଣ ସଭ୍ୟ ରହିଲେ ତାଙ୍କ ସାନ ଭାଇ ଦୁଇଭାଇ। ପ୍ରଜାମଣ୍ଡଳ ଏପରି ଶଠତାର ସ୍ୱରୂପ ପ୍ରକାଶ କରି ଅଭିଯାନ ଚଳେଇଲା। ପ୍ରଜାମାନେ ମଧ୍ୟ ଏହି ଏକ୍ସକ୍ୟୁଟିଭ୍ କାଉନ୍‌ସିଲକୁ ପରିହାସ କଲେ। ତିନିମୁଣ୍ଡିଆ ନାଗ ସାପ ଆଖ୍ୟା ଦେଲେ।

**ବୀଭତ୍ସ, ବିଭୀଷିକାମୟ ଅତ୍ୟାଚାରର କେତେକ ନମୁନା :**

ଢେଙ୍କାନାଳର ରାଜଗାଦୀରେ ବ୍ରିଟିଶ କୃପାରେ ୧୯୨୫ରେ ଅବସ୍ଥାପିତ ହେବାପରେ ରାଜା ଶଙ୍କର ପ୍ରତାପଙ୍କ ଦ୍ୱାରା ଚିରାଚରିତ ଗଡ଼ଜାତୀ ନିର୍ଯ୍ୟାତନା ବ୍ୟତୀତ ଅଭିନବ ଧରଣର, ବୀଭତ୍ସ, ବିଭୀଷିକାମୟ, ଦୈହିକ, ଆର୍ଥିକ, ମାନସିକ ଅତ୍ୟାଚାରର ସୀମା ରହିନଥିଲା। ଏକଦା ରାଜକର୍ମଚାରୀ ଓ ରାଜକର୍ମଚାରୀର ମୋହ ତ୍ୟାଗ କରି ପ୍ରଜାମଣ୍ଡଳର ଅନ୍ୟତମ ନେତା ହୋଇଥିଲେ ବ୍ରଜ କିଶୋର ଧଳ। ତାଙ୍କର ଆତ୍ମଜୀବନୀ ମୂଳକ ଲେଖା 'ଭୁଲିବୁନାହିଁ'ରେ ସେ ରାଜ ଅତ୍ୟାଚାରର ଅନେକ ବିବରଣୀ ଦେଇଛନ୍ତି।

ସେଥି ଭିତରୁ ସଂକ୍ଷେପରେ କେତୋଟି ନମୁନା ଅତ୍ୟାଚାର ଶୁଣିଲେ ଯେ କୌଣସି ବ୍ୟକ୍ତିର ଲୋମ ଟାଙ୍କୁରି ଉଠିବ।

ଦୁଇଜଣ ସାଧୁଙ୍କୁ ରାଜରାସ୍ତାରେ ରାଜାଙ୍କ ଆଗରେ ଉଲଗ୍ନ କରାଗଲା। ହାତ ଟେକି ରଖିବାକୁ ଆଦେଶ ହେଲା। ଉଲଗ୍ନାବସ୍ଥାରେ ରାଜାଙ୍କ ମଟର ଆଲୁଅ ପକେଇ ରଖାଗଲା। ମଲ୍ଲୀ

ନାମକ ଏକ ବିଧବା ଶବରୁଣୀକୁ ଗୁଡ଼ିଆନାଳି ଶଅର ସାହିରୁ ଧରିଆଣି ଉଲଗ୍ନ କରାଯାଇ ବାବାଜୀ ଦୁଇଜଣଙ୍କୁ ତଳେ ଶୁଆଇ ମଲ୍ଲୀକୁ ନିଜ ପରିସ୍ରାଦ୍ୱାର ବାବାଜୀଙ୍କ ମୁହଁରେ ଘଷିବାକୁ ହୁକୁମ ହେଲା । ସିପାହୀମାନେ ଲାଗିଗଲେ ଏ କାମରେ । ପୁଣି ମଲ୍ଲୀକୁ ଚିତ କରି ଶୁଆଇ ଉଲଗ୍ନ ବାବାଜୀଙ୍କୁ ବିଚାରୀ କ୍ରନ୍ଦନରତା ମଲ୍ଲୀ ଉପରେ ଶୁଆଇ ଦିଆଯାଉଥାଏ ପୁଣି ବାବାଜୀଙ୍କ ଉପରେ ଉଲଗ୍ନ ମଲ୍ଲୀକୁ ଶୁଆଇ ଦିଆଯାଉଥାଏ । ସିପାହୀ ସାହାଯ୍ୟରେ ଏହି କ୍ରିୟାକୁ ଟର୍ଚ୍ଚ ଲାଇଟ୍ ପକେଇ ଉପଭୋଗ କରାଯାଉଥିଲା । ଶ୍ରୀ ଧଳ ନିଜେ ପୁଲିସ ଥାଇ ମଲ୍ଲୀକୁ ଆଣିବାର ହୁକୁମ ଖୋଦ୍ ରାଜାଙ୍କଠାରୁ ପାଇଥିଲେ । ସେ ଚିହ୍ନି ନଥିବା କହିବାରୁ ଅନ୍ୟ ଦୁଇଜଣଙ୍କୁ ପଠାଯାଇ ମଲ୍ଲୀକୁ ଅଣାଗଲା ବୋଲି ତାଙ୍କର ପ୍ରତ୍ୟକ୍ଷ ଅଭିଜ୍ଞତା ।

ଶ୍ରୀ ଧଳଙ୍କ ନିଜ ଗାଁର ଝିଅ ସୁନ୍ଦରୀ ଲାବଣ୍ୟ । ଢେଙ୍କାନାଳ ଗଡ଼ ବନ୍ଧୁଘରକୁ ଆସି ହାବୁଡ଼ରେ ପଡ଼ିଲା ରାଜାଙ୍କ ଅନୁଚରମାନଙ୍କ କବଳରେ । ବିଚାରୀ ଲାବଣ୍ୟକୁ ରାଜାଙ୍କ ବୈଠକଖାନାକୁ ନିଆଯାଇ ଅର୍ଥ ଉପାର୍ଜନର ଉପାୟ ଖଞ୍ଜା ହେଲା । ତାର ଇଜ୍ଜତ ନିଆଯାଇଛି ବୋଲି ଖୋଦ୍ ଧଳ ଓ ତାଙ୍କ ଦାଦାପୁଅ, ପିଉସୀପୁଅଙ୍କୁ ମିଥ୍ୟା ଅଭିଯୁକ୍ତ କରାଗଲା । ଏମାନଙ୍କ ଉପରେ ଅର୍ଥଦଣ୍ଡ ଧାର୍ଯ୍ୟ ହେଲା ଓ ବାପା ଦାଦାଙ୍କଠାରୁ ପ୍ରଚୁର ଅର୍ଥଦଣ୍ଡ ଆଦାୟ କରାଗଲା । ତତ୍କାଳୀନ ବିଲାତ ବାର୍ଲାମେଣ୍ଟରେ ମିସ୍ ଆଗାଥା ହରିସନ୍ ଏହି ପ୍ରସଙ୍ଗ ଉତ୍ଥାପନ କରିଥିଲେ ।

ଲାବଣ୍ୟକୁ ଉଲଗ୍ନ ଅବସ୍ଥାରେ ଠିଆ କରାଯାଇଥିଲା । ବହୁ ଭଦ୍ରବ୍ୟକ୍ତିଙ୍କୁ ଲାବଣ୍ୟ ସହିତ ବାଧ୍ୟ କରି ଦୈହିକ ଭାବରେ ଜଡ଼ିତ କରାଯାଇଥିଲା । ଶେଷରେ ତାକୁ ଜେଲ୍‌ରେ ରଖାଗଲା । ଏହା ୧ ୯୩୩ ମସିହାର ଘଟଣା ।

୧ ୯୩୩ରେ ଦୁଇଜଣ ବଂଗୀୟ ତରୁଣୀ ଟ୍ରେନରୁ ଓହ୍ଲାଇ ଢେଙ୍କାନାଳ ଷ୍ଟେସନରେ ବୁଲୁଥିବାବେଳେ ସେମାନଙ୍କୁ ଧରି ନଅରକୁ ନିଆଗଲା । ସମସ୍ତ ଅଳଙ୍କାର ଓ ଜିନିଷପତ୍ର ସେମାନଙ୍କଠାରୁ ଛଡ଼େଇ ନେଇ ଉଲଗ୍ନ କରାଗଲା । ଖୋଦ୍ ପଟାଏତ୍ ଥାନାକୁ ଆସି କେତେକ ସିପାହୀ ଓ ସାଧାରଣ ଲୋକଙ୍କୁ ସେମାନଙ୍କୁ ଧର୍ଷଣ କରିବାକୁ ପଠାଇଲେ । ସିପାହୀ କେତେକ ଅରାଜି ହେବାରୁ ବେତମାଡ଼ ଖାଇଲେ । ଆର୍ତ୍ତନାଦ କରୁଥିବା ରମଣୀଦ୍ୱୟ ଧର୍ଷଣରେ ବେହୋସ ହୋଇଗଲେ । ଡାକ୍ତର ଆସି ଚିକିତ୍ସା କଲାବେଳେ କାତର ହୋଇ ଯୁବତୀଙ୍କୁ ମୁକ୍ତି ଦେବାପାଇଁ ନିବେଦନ କରିବାରୁ ରାଜା ତାଙ୍କୁ ମାଡ଼ ଓ ଜେଲ୍ ଧମକ ଦିଆଇଲେ । ଦିନେ ମଧ୍ୟରାତ୍ରିରେ ସେମାନଙ୍କୁ କେଉଁ ଅଜ୍ଞାତ ସ୍ଥାନରେ ଛାଡ଼ି ଦିଆଗଲା ।

ଏପରି ବୀଭତ୍ସତାର ଅନ୍ତ ନାହିଁ । ରାଜା ନିଜ ଚାକରମାନଙ୍କୁ କାହାକୁ ଦଣ୍ଡ ଦେବାକୁ ଇଚ୍ଛା କଲେ ହୁକୁମ୍ ହୁଏ ତା'ର 'ଦାନ୍ତ ଘଷେଇ ଦିଅ' ଅବା ଗୁଡ଼ାଖୁ ଲଗେଇ ଦିଅ । ଏହାପରେ ହୁକୁମ ତାଲିମ କରାଯାଏ । ଦଣ୍ଡିତ ବ୍ୟକ୍ତିର ପାଟିରେ ବିଷ୍ଠା ଭର୍ତ୍ତି କରାଯାଏ । ତାଙ୍କ ସାନଭାଇ ସାନ ସାହେବ ହାଇସ୍କୁଲ ଶିକ୍ଷକଙ୍କ ଘରେ ପାଠ ପଢ଼ିଲାବେଳେ ତାଙ୍କର କ'ଣ ଚୋରି ହୋଇଗଲା ।

ତେଣୁ କେତେକ ଛାତ୍ରଙ୍କୁ ବେତମାଡ଼ ହେଲା । ମାତ୍ର କିଛି ସନ୍ଧାନ ନ ମିଳିବାରୁ ସେମାନଙ୍କୁ ଜେଲ୍‌ରେ ରଖାଗଲା ଓ ସେଠାରେ ରାଜଭୟରେ ସଶସ୍ତ୍ର ପୋଲିସ କର୍ମଚାରୀଙ୍କୁ ନିଜ ବିବେକ ବିରୁଦ୍ଧରେ ଛାତ୍ରଙ୍କୁ ବିଷ୍ଠା ଖୁଆଇବାକୁ ପଡ଼ିଥିଲା ।

ଛକ ବେଜିତ୍ ଆଉ ଏକ ପ୍ରକାର ରାଜଦଣ୍ଡ । ଦଣ୍ଡ ଦିଆଯାଉଥିବା ବ୍ୟକ୍ତିଙ୍କୁ ରାସ୍ତାରେ ଛିଡ଼ା କରାଇ ଚାରିପଟୁ ନିମ୍ନସ୍ତରର ଚାକିରିଆଙ୍କ ଦ୍ୱାରା ତାଙ୍କୁ ଅଶ୍ଳୀଳ ଭାଷାରେ ବେଜିତ୍ କରାଯାଏ । ଯେମିତି ଚାଲିଯାଉଥିବା ଲୋକେ ତାହା ଦେଖି ଭୟଭୀତ ହୋଇଯିବେ । ରାଜଶାସନକୁ ହର୍ତ୍ତା, କର୍ତ୍ତା, ଦୈବ ବିଧାତା ରୂପେ ଜ୍ଞାନ କରିବେ । ସମ୍ମାନାସ୍ପଦ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ମଧ୍ୟ ରାଜଦଣ୍ଡ ଭୋଗିବାକୁ ପଡ଼ିଥିଲା । ତାଙ୍କୁ ଆଦର ସମ୍ବର୍ଦ୍ଧନା ଦେବା ଛଳରେ ରାଜା ତାଙ୍କୁ କଳିକାସ ମନ୍ଦିର ନେଲେ । ଗାଡ଼ି ଖରାପ ହେଲା ବୋଲି କହି ବାଘଭାଲୁ ଘେରା ଅଧାବାଟରେ ଏକାକୀ ପ୍ରହରାଜଙ୍କୁ ଛାଡ଼ି ଦେଇ ଗାଡ଼ି ଗଡ଼େଇ ଆଣିଲେ । ରାତି ହୋଇଯାଇଥାଏ । ପ୍ରହରାଜଙ୍କ ପାଖରେ ରଖାଯାଇଥିବା ଭୃତ୍ୟମାନେ ତାଙ୍କୁ 'ଅଜା' 'ଅଜା' ଡାକି କିଏ କୁଆଡ଼େ ଉଭାନ ହୋଇଗଲେ । ହିଂସ୍ରଜନ୍ତୁଙ୍କ ଦାଉରୁ ରକ୍ଷା ପାଇବା ପାଇଁ ପ୍ରହରାଜ ମହାଶୟ ଗୋଟିଏ ଗଛ ଉପରେ ଚଢ଼ି ବସି ରହିଲେ । ବହୁ ସମୟ ପରେ ତାଙ୍କୁ ଅଣାଗଲା । ଭାଷାକୋଷ ପ୍ରଣେତା ପ୍ରହରାଜ ଏହି ତିକ୍ତ ଅଭିଜ୍ଞତାକୁ ତାଙ୍କ 'ସ୍ୱପ୍ନରେ ରାଜଯୋଗ' ଲେଖାରେ ପ୍ରତିବିମ୍ବିତ କରିଛନ୍ତି ।

ନଅରରେ ଉଲଗ୍ନ ନାଚ କରେଇବା ଓ ସେଥିରେ କୌଣସି ଅଫିସର ଉଲଗ୍ନ ନର୍ତ୍ତକୀ ସହ ଉଲଗ୍ନ ହୋଇ ନୃତ୍ୟ ନ କଲେ ଦଣ୍ଡବିଧାନ ମଧ୍ୟ ରାଜାଙ୍କ କୃପାରୁ ସହିବାକୁ ପଡୁଥିଲା ।

ଅଧିକ ଅର୍ଥାଗମ ପାଇଁ ସ୍ୱଚ୍ଛଳ ପ୍ରଜାଙ୍କୁ ଧରିଆଣି ତାଙ୍କୁ ହାତୀ କିଣି ପୋଷିବାକୁ ବାଧ୍ୟ କରାଯାଉଥିଲା । ଅସାମର୍ଥ୍ୟ ପ୍ରକାଶ କଲେ ହାତୀର ମୂଲ୍ୟ ଆଦାୟ କରାଯାଉଥିଲା । ତହିଁରୁ ଗୋଟିଏ ଦୃଷ୍ଟାନ୍ତ ଦିଆଗଲା । ନୂଆଗାଁର ଲକ୍ଷ୍ମଣ ବେହେରା ନାମକ ବ୍ୟକ୍ତିଙ୍କୁ ହାତୀ ନେଲେ ବେକରେ ଫୁଲମାଳ ପକେଇ ଗଡ଼ ଦାଣ୍ଡରେ ବୁଲାଯିବ ବୋଲି କୁହାଗଲା । ସେ ବିନୀତ ଭାବରେ ଅସାମର୍ଥ୍ୟ ପ୍ରକାଶ କଲେ । ତାଙ୍କ ବେକରେ କୁକୁଡ଼ା ମାଳ ପକେଇ ବୁଲାଗଲା । ଶେଷରେ ବିଚରା ବାଧ୍ୟ ହୋଇ ହାତୀ ଦାମ ଦେଇ ହାତୀ କିଣିଲେ । ଯାହାଙ୍କୁ ଏପରି ଭାବରେ ହାତୀ ବିକାଯାଏ ପରେ ତାଙ୍କୁ ଧମକ ଦେଇ ହାତୀ ଫେରାଇ ଅଣାଯାଉଥିଲା ।

ଉଆସରେ ଭଦ୍ର ଘରର ଝିଅବୋହୂଙ୍କୁ ଘେନିଯାଇ ଉଲଗ୍ନ କରି ବଳାତ୍କାର କରାଯାଉଥିଲା । ଏଥିରେ କେତେକ ଅଫିସର ମଧ୍ୟ ଅପଦସ୍ତ ହେଉଥିଲେ । ସେମାନଙ୍କୁ ଉଲଗ୍ନ ହୋଇ ଉଲଗ୍ନ ଯୁବତୀଙ୍କ ସହ ନୃତ୍ୟ କରିବାକୁ ବାଧ୍ୟ କରାଯାଉଥିଲା । ରାଜାଙ୍କ ଭୟରେ ପ୍ରାଣ ଓ ଚାକିରୀ ଯିବା ଆଶଙ୍କାରେ ଏସବୁ ବୀଭତ୍ସତାରେ ସେମାନେ ଭାଗ ନେବାକୁ ବାଧ୍ୟ ହେଉଥିଲେ ।

ଏପରି ନାରକୀୟ, ବୀଭତ୍ସ କାନ ନଶୁଣିବା, ଆଖି ନ ଦେଖିବା ଭଳି କାହାଣୀ ଏଠ ଗ୍ରନ୍ଥ ହେବ ।

□□□

## ଚତୁର୍ଥ ଅଧ୍ୟାୟ

# ଆଗ୍ନେୟ ଉଦ୍‌ଗୀରଣର ପୂର୍ବାଭାସ

୧୯୩୮ରେ ଓଡ଼ିଶା ଗଡ଼ଜାତ ସମୂହରେ ତଥା ଢେଙ୍କାନାଳରେ ପ୍ରଜାମୁକ୍ତି ଆନ୍ଦୋଳନ ସ୍ୱତଃସ୍ଫୂର୍ତ୍ତ ନୁହଁ। ୧୯୨୮ରେ କୋର୍ଟ ଅଫ୍ ୱାର୍ଡ଼ ଉଠିଲାପରେ ଶଙ୍କର ପ୍ରତାପଙ୍କ ଶାସନର କଷାଘାତରେ ଢେଙ୍କାନାଳ ପ୍ରଜା ଜର୍ଜ୍ଜରିତ ହୋଇପଡ଼ିଲେ। ୧୮୭୭ରୁ ୧୯୦୬ ଯାଏ ଢେଙ୍କାନାଳ ବ୍ରିଟିଶ ପଲିଟିକାଲ ଏଜେଣ୍ଟଙ୍କ କର୍ତ୍ତୃତ୍ୱରେ କୋର୍ଟ ଅଫ୍ ୱାର୍ଡ଼ ଥିବାବେଳେ ୧୮୯୬ରେ ପ୍ରତିଷ୍ଠିତ ଢେଙ୍କାନାଳ ହାଇସ୍କୁଲ (ରାଜ୍ୟରେ ଗୋଟିଏ ମାତ୍ର ପରେ ଏହା ବ୍ରଜନାଥ ବଡ଼ଜେନା ଉଚ୍ଚ ବିଦ୍ୟାଳୟ ନାମରେ ନାମିତ)ରେ ଅଧ୍ୟୟନରତ ଛାତ୍ରମାନଙ୍କ ମଧ୍ୟରେ ୧୦୩୦-୩୨ବେଳକୁ ସ୍ୱାଧୀନତା ଆନ୍ଦୋଳନର ପ୍ରେରଣା ଅନୁଭୂତ ହେଲା। କେତେକ ସହାନୁଭୂତିଶୀଳ ଶିକ୍ଷକ ଯେପରି ରାଜେନ୍ଦ୍ର ଲାଲ ଦତ୍ତ, ମନମୋହନ ଘୋଷ ଏପରି ଚିନ୍ତାଚେତନାର ଛାତ୍ରମାନଙ୍କୁ ସୁଖ ପାଉଥିଲେ, ଉତ୍ସାହିତ କରୁଥିଲେ। ଏହି ଛାତ୍ରମାନଙ୍କ ମଧ୍ୟରୁ ଆଗକୁ ବାହାରି ଆସିଲେ ହରମୋ‍ ପଟ୍ଟନାୟକ, ଗତିକୃଷ୍ଣଭଂଜ, ଲକ୍ଷ୍ମୀଧର ସାହୁ ଓ ବୈଷ୍ଣବ ଚରଣ ପଟ୍ଟନାୟକ ପ୍ରମୁଖ।

ଏମାନେ ଛାତ୍ରମାନଙ୍କ ଭିତରେ ଦେଶପ୍ରୀତି ଓ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର କରିବାରୁ ରାଜ ଦରବାରର କୋପ ଦୃଷ୍ଟିରେ ପଡ଼ିଲେ। ରାଜ ଶାସନ ଏମାନଙ୍କୁ ବିଦ୍ୟାଳୟରୁ ବହିଷ୍କାର କରିଦେବାର ଷଡ଼ଯନ୍ତ୍ର କଥା ସହାନୁଭୂତିଶୀଳ ଶିକ୍ଷକମାନଙ୍କଠାରୁ ଅବଗତ ହୋଇ ଏମାନେ ବାଧ୍ୟ ହୋଇ ଟ୍ରାନ୍ସଫର ସାର୍ଟିଫିକେଟ୍ ଆଣି ଅନ୍ୟତ୍ର ପଢ଼ିଲେ। କେବଳ ବୈଷ୍ଣବ ୧୦ମ ଶ୍ରେଣୀରୁ ପାଠଛାଡ଼ି ୧୯୨୭ରେ ପ୍ରତିଷ୍ଠିତ କଟକ-ତାଳଚେର ରେଳ ଲାଇନ୍‌ରେ ପେଣ୍ଟର କାମ ଧରିଲେ।

ଏତେବେଳକୁ ଢେଙ୍କାନାଳ ପ୍ରଜାଙ୍କ ମଧ୍ୟରୁ ଆମେରିକାରେ ପାଠପଢ଼ି କୃଷି ବିଶାରଦ ହୋଇ ସାରଙ୍ଗଧର ଦାସ ଢେଙ୍କାନାଳରେ ନିଜର ଏକ ଫାର୍ମ ପ୍ରତିଷ୍ଠା କରିଥିଲେ। ସେ ଜଣେ ଦେଶପ୍ରେମୀ ଜାଣି ରାଜ ଶାସନ ପକ୍ଷରୁ ତାଙ୍କୁ ନାନାପ୍ରକାର ହଇରାଣ ହରକତ କରାଗଲା। ଯାହା ଫଳରେ ସେ ଢେଙ୍କାନାଳ ଛାଡ଼ି କଟକରେ ରହି ସ୍ୱାଧୀନତା ଆନ୍ଦୋଳନରେ ଜଡ଼ିତ ହୋଇ ଗଡ଼ଜାତ ପ୍ରଜାମାନଙ୍କ ମୁକ୍ତି ଆନ୍ଦୋଳନର ସ୍ୱପ୍ନ ଦେଖିଲେ। ୧୯୩୭ରେ ଓଡ଼ିଶା

ଗଡ଼ଜାତ ପ୍ରଜା ସମ୍ମିଳନୀର ଅଧିବେଶନରେ ସେ ଏହାର ପ୍ରାଦେଶିକ ସଂପାଦକ ହେବା ଢେଙ୍କାନାଳ ପ୍ରଜାମାନଙ୍କ ଭିତରେ ପ୍ରଚାର ହେଲା ।

ସ୍ୱାଧୀନତା ପିପାସୁ ଏହି ଛାତ୍ରମାନେ ସେତେବେଳେ ଓଡ଼ିଶାରେ ସଂଗଠିତ ସାମ୍ରାଜ୍ୟବାଦ ବିରୋଧୀ ଛାତ୍ରସଂଘ, କଂଗ୍ରେସ, କଂଗ୍ରେସ ସୋସାଲିଷ୍ଟ ନେତାମାନଙ୍କ ସହିତ ଢେଙ୍କାନାଳର ପ୍ରଜା ଆନ୍ଦୋଳନ ସଂପର୍କରେ ଆଲୋଚନା କରିବାରେ ଲାଗିଲେ । ନବକୃଷ୍ଣ ଚୌଧୁରୀ, ମାଳତୀଦେବୀ, ଭଗବତୀ ଚରଣ ପାଣିଗ୍ରାହୀ, ସୁରେନ୍ଦ୍ର ଦ୍ୱିବେଦୀ, ଗୁରୁଚରଣ ପଟ୍ଟନାୟକ, ଛାତ୍ରସଂଘ ନେତା ଅନନ୍ତ ପଟ୍ଟନାୟକ, ରବିଘୋଷ, ବିଶ୍ୱନାଥ ପଶାଏତ୍, ବୈଦ୍ୟନାଥ ରଥ, ସଚ୍ଚି ରାଉତରା, ନୀଳଗିରିର ଯୁବ ପ୍ରଜାମଣ୍ଡଳ ଓ ଛାତ୍ରନେତା ବନମାଳୀ ଦାସ ପ୍ରମୁଖଙ୍କ ସହିତ ଘନିଷ୍ଠ ଯୋଗାଯୋଗ ପ୍ରତିଷ୍ଠା କଲେ ।

ପରବର୍ତ୍ତୀ ସମୟରେ ଢେଙ୍କାନାଳ ରାଜ୍ୟରେ ପ୍ରତ୍ୟେକ୍ଷ ଆନ୍ଦୋଳନ କାଳରେ ଏହି ଛାତ୍ରସଂଘ ନେତା ଓ କର୍ମୀମାନେ ତଥା ଉଲ୍ଲିଖିତ ବରିଷ୍ଠ ବାମପନ୍ଥୀ ନେତୃବୃନ୍ଦ ପ୍ରତ୍ୟକ୍ଷ, ଶାରୀରିକ, ମାନସିକ ଭାବରେ ଢେଙ୍କାନାଳ ନୀଳଗିରି, ରଣପୁର, ଆଠଗଡ଼ ଓ ଅନ୍ୟାନ୍ୟ ଗଡ଼ଜାତର ପ୍ରଜା ଆନ୍ଦୋଳନରେ ସାମିଲ ହୋଇଥିଲେ ।

୧୯୩୮ ଜୁନ୍ ୨୭ରେ ଅସ୍ଥାୟୀ ପ୍ରଜାମଣ୍ଡଳ କମିଟି ଗଠନ ପୂର୍ବରୁ ଏହି ବର୍ଷ ମାର୍ଚ୍ଚ ମାସରେ ହରିପୁରାଠାରେ ଅନୁଷ୍ଠିତ ହେଉଥିବା କଂଗ୍ରେସ ଅଧିବେଶନକୁ ସ୍ୱାଗତ ଜଣାଇ ବୈଷ୍ଣବ ଓ ହରମୋହନ ଢେଙ୍କାନାଳ ପ୍ରଜାମଣ୍ଡଳ ନାମରେ ବାର୍ତ୍ତା ପଠାଇବା ପରେ ପରେ ଏହି ଯୁବକମାନଙ୍କର ପ୍ରଜାମଣ୍ଡଳ ଗଠନର ପ୍ରୟାସ ଓ ପ୍ରଚେଷ୍ଟା ତ୍ୱରାନ୍ୱିତ ହୋଇଥିଲା ।

କୃଷକ ସାପ୍ତାହିକର ଭୂମିକା ଢେଙ୍କାନାଳ ପ୍ରଜା ଆନ୍ଦୋଳନ ଓ ପ୍ରଜାମଣ୍ଡଳ ଗଠନରେ ବିଶେଷ ସହାୟକ ହୋଇଥିଲା । ଏଥିରେ ପ୍ରକାଶ ପାଉଥିବା ସମ୍ବାଦ ଓ ଲେଖାମାନଙ୍କ ସାଙ୍ଗକୁ 'ଲଣ୍ଡା ଦେହୁରୀ' ପରି ଛଦ୍ମ ନାମରେ ସାରଙ୍ଗଧର ଦାସଙ୍କ ରୀତିମତ ପ୍ରକାଶିତ ସ୍ତମ୍ଭ ଗଡ଼ଜାତରେ ଅତ୍ୟାଚାରର ନିପୁଣ ଚିତ୍ର ବହନ କରିଚାଲିଥିଲା ।

କୃଷକ ସାପ୍ତାହିକ ଶହ ଶହ କପି ଧରି ବୈଷ୍ଣବ ଢେଙ୍କାନାଳ, ଆଠଗଡ଼, ତାଳଚେରର ବିଭିନ୍ନ ଅଂଚଳରେ ତାଳଚେର ରେଳଲାଇନରେ ପେଣ୍ଟର ହିସାବରେ ଯାଇ ବିକ୍ରୟ କରି ପ୍ରଜାମାନଙ୍କ ଭିତରେ ସାହସ, ଉଦ୍ଦୀପନା ଆଣି ଦେଉଥିଲେ । ଢେଙ୍କାନାଳର ବିଭିନ୍ନ ଗ୍ରାମରେ ଭାଗବତ ଟୁଙ୍ଗିରେ ଭାଗବତ ପଢ଼ା ସାଙ୍ଗକୁ ବୈଷ୍ଣବଙ୍କ ଉଦ୍ୟମରେ କୃଷକ ପତ୍ରିକା ପଢ଼ାଯାଉଥିଲା । ରାତ୍ରିର ବିଳମ୍ବିତ ପ୍ରହର ଯାଏ ପ୍ରଜାମଣ୍ଡଳ ଗଠନ, ସେଥିଲାଗି ଉଦ୍ୟମ ଓ ଆଗାମୀ ସଂଗ୍ରାମର ଓ ସଂଗଠନର ରୂପରେଖ ସଂପର୍କରେ ଆଲୋଚନା ଏକ ରାଜନୈତିକ ଚେତନା ସୃଷ୍ଟି କଲା ।

**ଅସ୍ଥାୟୀ ପ୍ରଜାମଣ୍ଡଳ ଗଠନ:**

୧୮୩୮ ଜୁନ୍ ୨୬/୨୭ରେ ଅନୁଗୋଳଠାରେ ଗଡ଼ଜାତ ତଦନ୍ତ କମିଟି ବସିଲାବେଳକୁ ସାରା ଢେଙ୍କାନାଳରେ ସୃଷ୍ଟି ହୋଇଥାଏ ଏକ ନୂତନ ବାତାବରଣ। ତଦନ୍ତ କମିଟିରେ ପ୍ରଜାମାନେ ଯେପରି ସାକ୍ଷ୍ୟ ଦେଇ ନପାରିବେ, ସେଥିଲାଗି ଦରବାର ପକ୍ଷରୁ ଚାରିଆଡ଼େ ପହରା ମୁତୟନ କରାଯାଇଥାଏ। ଏହା ସତ୍ତ୍ୱେ ଅନୁଗୋଳ ନିକଟବର୍ତ୍ତୀ ଢେଙ୍କାନାଳର ପରଜଙ୍ଗ, ପଳାଶୁଣି ଓ ଉରରବିଶ ଅଂଚଳର ବିଭିନ୍ନ ଗାଁରୁ ତିନିଶତାଧିକ ପ୍ରଜା ଲୁଚି ଲୁଚି ଯାଇ ସାକ୍ଷ୍ୟ ପ୍ରଦାନ କରିଥିଲେ। ରାଜ ଦରବାର ଅତ୍ୟାଚାର ଏଡ଼ିବାକୁ ସେମାନଙ୍କ ନାମ ଗୋପନ ରଖାଯାଇଥିଲା।

ସେହି ଅନୁଗୋଳ ଠାରେହିଁ ଢେଙ୍କାନାଳର ଏକ ଅସ୍ଥାୟୀ ପ୍ରଜାମଣ୍ଡଳ କମିଟି ଗଠିତ ହେଲା। ଢେଙ୍କାନାଳର ବହୁ ପୁରୁଣା ଓ ନୂତନ ନେତା ଉପସ୍ଥିତ ହୋଇ ପାରିନଥିଲେ। ପରେ ଏକ ସ୍ଥାୟୀ ପ୍ରଜାମଣ୍ଡଳ କମିଟି ପ୍ରତିଷ୍ଠା କରାଯିବାର ନିଷ୍ପତ୍ତି ନେଇ ଏକ ୧୩ ଜଣିଆ କାର୍ଯ୍ୟକାରୀ କମିଟି ଗଠିତ ହେଲା। ସର୍ବଶ୍ରୀ ଆର୍ତ୍ତତ୍ରାଣ ପାତ୍ର (ମାଣିକମରା) ସଭାପତି, ପୂର୍ଣ୍ଣଚନ୍ଦ୍ର ମହାପାତ୍ର (ଆମ୍ବପଳାସ) ସଂପାଦକ ନିର୍ବାଚିତ ହେଲେ। ବଡ଼ଝରାର କୃତିବାସ ସୁବୁଦ୍ଧି, ରଘୁନାଥପୁରର ଜୟଦେବ ସାହୁ, କଳାଙ୍ଗର ଧର୍ମାନନ୍ଦ ବିଶ୍ୱାଳ, ଝିଲ୍ଲିର ତ୍ରିଲୋଚନ ପ୍ରଧାନ, କମରର ବୀରବର ଆଏଚ. ଖଡ୍ଗପ୍ରସାଦର ରାମଚନ୍ଦ୍ର ପଣ୍ଡା, କୁଆଁଳାର ଶ୍ୟାମସୁନ୍ଦର ସାହୁ ପ୍ରମୁଖ କାର୍ଯ୍ୟକାରୀ କମିଟିରେ ରହିଲେ।

**ରାଜାଙ୍କ ମୋଟୁଙ୍ଗା ସଭା ଭଣ୍ଡୁର :**

ଅସ୍ଥାୟୀ ପ୍ରଜାମଣ୍ଡଳ ଗଠନ ପରେ ପରେ ୧୯୩୮ ଜୁଲାଇ ମାସ ଆରମ୍ଭରୁ ଢେଙ୍କାନାଳର ବିଭିନ୍ନ ବିଶର ଗାଁ ଗୁଡ଼ିକରେ ରାଜ ପ୍ରଶାସନକୁ ବେଖାତିର କରି ଖୋଲାଖୋଲି ସଭା ସମିତିମାନ ଅନୁଷ୍ଠିତ ହେଲା। ଗାଁ ଗୁଡ଼ିକରେ ସ୍ୱେଚ୍ଛାସେବକ ବାହିନୀ ଗଢ଼ାଗଲା। ବିଶ ଓ ଗାଁ ପ୍ରଜାମଣ୍ଡଳ କମିଟି ଗଢ଼ିବା କାର୍ଯ୍ୟ ଆରମ୍ଭ ହୋଇଗଲା। ଜୁଲାଇ ୨ରେ ପରଜଙ୍ଗର ଅନ୍ନପୂର୍ଣ୍ଣା ହାଟ ସଭାକୁ ରାଜାଙ୍କ ପକ୍ଷରୁ ଯେତେ ବିରୋଧ ଆସିଲେ ବି ତାହା ସଫଳ ହୋଇନଥିଲା।

ସେହି ସଭାରେ ମହେଶ ଚନ୍ଦ୍ର, ସୁବାସ ସିଂହ, ବୈଷ୍ଣବ ପଟ୍ଟନାୟକ, ପୂର୍ଣ୍ଣ ଚନ୍ଦ୍ର ମହାପାତ୍ର ଉଦ୍‌ବୋଧନ ଦେଇଥିଲେ। ଏହିଠାରୁ ଚାଲିଲା ସଭା ସମାବେଶ।

ପ୍ରଜାମଣ୍ଡଳର ନିର୍ଦ୍ଦେଶ ହେଲା ପାନଖିଆ ଛାଡ଼ - ପାନଖିଆ ଛାଡ଼ିବା ଓ ପ୍ରମାଣ କରିଦେବ ଯେ ପ୍ରଜାମାନେ ଢେଙ୍କାନାଳ ରାଜ ରାଜପରିବାର ଶାସନକୁ ଆଉ ମାନନ୍ତି ନାହିଁ। ଓଡ଼ିଆ ଘରେ ପାନଛଡ଼ା ! ଘରେ ଘରେ କହନ୍ତି "ଭାତ ପଛକେ ଛାଡ଼ି ଦେବି ପାନ ଅମଳ ଛାଡ଼ି ପାରିବିନି"।

କିନ୍ତୁ କି ଅପୂର୍ବ ଉନ୍ମାଦନା । ରାଜ ପ୍ରଶାସନର ପାନ ମନୋପଲି କାରବାରକୁ ଓ ଶୋଷଣକୁ ବନ୍ଦ କରିଦେଲା ଏହି ପାନ ବୟକଟ ଆନ୍ଦୋଳନ । ଗାଁକୁ ଗାଁ ପାନ ବଏକଟ ଆନ୍ଦୋଳନ ବ୍ୟାପିଗଲା । ଏକ ବିରାଟ ଜନଜାଗରଣ ସୃଷ୍ଟି ହୋଇଗଲା ।

ରାଜ ଦରବାର ଗୋପନ ସଭା ସମିତିକୁ ଅଟକାଇ ନପାରି ଓ ପାନ ବୟକଟ୍‌ର ସଫଳତା ଦେଖି ପ୍ରଜାମାନଙ୍କୁ ପ୍ରତାରିତ କରିବା ଲାଗି ଏକ ଉପାୟ ଧରିଲା । ରାଜା ନିଜେ ଭେଟି ଖୋଦ୍ ପ୍ରଜାମାନଙ୍କଠାରୁ ସେମାନଙ୍କ ଆପତ୍ତି ଅଭିଯୋଗ ଶୁଣିବେ କହି ସଭା ଡକାଗଲା । ସେଥିଲାଗି ଅସଲ ବିଦ୍ରୋହୀ ଅଂଚଳ ପରଜଙ୍ଗ ବିଶର ମୋଟୁଙ୍ଗାଠାରେ ରାଜା ବିଜେ କରିବେ ବୋଲି ଚାରିଆଡେ ପ୍ରଚାର ଚଳାଗଲା । ରାଜ ଦରବାରର କର୍ମଚାରୀ, ହାକିମ ଓ ପୁଲିସକୁ ଲୋକ ଜମାଏତ କରିବା ଲାଗି ଦାୟିତ୍ୱ ଦିଆଗଲା ।

୧୯୩୮ ଅଗଷ୍ଟ ୭ ତାରିଖରେ ମୋଟୁଙ୍ଗା ବଂଗଳାରେ ରାଜା ଓ ତାଙ୍କ ପାରିଷଦବର୍ଗ ଢେଙ୍କାନାଳର ଜଜ୍ ଜୟକୃଷ୍ଣ ମିଶ୍ର (ଯିଏ ମିଶ୍ରଣ ପରେ ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି ହେଲେ) ଏବଂ ତତ୍କାଳୀନ ଢେଙ୍କାନାଳ ହାଇକୋର୍ଟର ଜଜ୍ ରାଜାଙ୍କ ଭାଇ ନିନି ସାହେବ ଉପସ୍ଥିତ ହେଲେ । ମହେଶ୍ୱର ସୁବାହୁ ସିଂହଙ୍କୁ ଆଣିବା ପାଇଁ ରଜାଘର ହାତୀ ଗଲା । ମାତ୍ର ସେଥିରେ ସେ ଆସିଲେ ନାହିଁ । ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କୁ ରଜା ମଟରଯାନ ପଠାଇ ନେଇ ଆସିଲେ ।

ପ୍ରାୟ ୧୦ ହଜାରରୁ ଅଧିକ ଲୋକଙ୍କ ସମାବେଶ । ପ୍ରଜାମଣ୍ଡଳ ନେତାମାନେ ପ୍ରଥମେ ପ୍ରଥମେ ନିଜ ଭିତରେ କିଛି ଆଲୋଚନା ନ କରି କିଛି କହିବା ଠିକ୍ ନୁହଁ, ଆମକୁ ସମୟ ଦିଅବୋଲି ଆପତ୍ତି ଜଣେଇଲେ । ସେଥିପ୍ରତି କର୍ଣ୍ଣପାତ କରାନଯିବାରୁ ପ୍ରଥମେ ପୂର୍ଣ୍ଣ ମହାପାତ୍ର କିଛି କହିଲେ । ରାଜ୍ୟରେ ମଗୁଡ଼ିରେ ଲୋକେ ସନ୍ତୁଳି ହେଉଛନ୍ତି, ତାର ପ୍ରତିକାର ନାହିଁ ବୋଲି ସୁବାହୁ ସିଂହ ଅଭିଯୋଗ କଲେ । ଆଉ କେତେଜଣ କିଛି ଆପତ୍ତି ଜଣାଇବା ପରେ ଜନଗହଳି ଭିତରୁ ଜଣେ ଗର୍ଜିଉଠି ଉଚ୍ଚ ସ୍ୱରରେ କହିଲେ, "ଏପରି ଅବସ୍ଥାରେ ଆମ ଦୁଃଖ ଦୁର୍ଦ୍ଦଶା ଶୁଣିବା ଅର୍ଥ ଆମ ପ୍ରଜାମାନଙ୍କୁ ଅପମାନ କରିବା । ଚାରିଆଡ଼େ ସଶସ୍ତ୍ର ପୁଲିସ୍ ବାହିନୀ ସଜେଇ ଆମକୁ ସମୟ ନ ଦେଇ ଆମର ଆପତ୍ତି ଅଭିଯୋଗ ଶୁଣିବା ପାଇଁ ଜୋର ଜବରଦସ୍ତ କରିବା ଅର୍ଥ ଆମକୁ ତଣ୍ଟିଆ ମାରି, ବନ୍ଧୁକ ଆମ ଛାତି ଉପରେ ରଖି ଆମ ମୁହଁରୁ କଥା ଆଦାୟ କରିବା । ଚାଲ ଭାଇ ଉଠ ।" ଏହି ଯୁବକ ଜଣକ ଥିଲେ ବୈଷ୍ଣବ ପଟ୍ଟନାୟକ । ଏହା ଶୁଣିବା ମାତ୍ରେ ହଜାର ହଜାର ସଭା ଛାଡ଼ି ଚାଲିଗଲେ । ରାଜାଙ୍କ ଚାଲ୍ ଭଣ୍ଡୁର ହୋଇଗଲା । ରାଜା, ରାଜ କର୍ମଚାରୀ ରାଗରେ ଜର୍ଜ୍ଜରିତ ହୋଇଗଲେ । ଏପରି ଅପମାନ ହେବ ତାହା ରାଜା ଚିନ୍ତା କରିନଥିଲେ ।

ଏହି ସମ୍ବାଦ ସାରା ରାଜ୍ୟରେ ଚହଳ ସୃଷ୍ଟି କରିଦେଲା । ଆଗାମୀ ଦିନର ଆନ୍ଦୋଳନ ଲାଗି ଏହି ଘଟଣା ବିଶେଷ ଅନୁପ୍ରେରଣା ଯୋଗାଇଲା ।

ରଜାଙ୍କୁ ମୋଟୁଙ୍ଗାରେ ପ୍ରଜାମାନେ ଅପଦସ୍ତ କରିବା ପରେ ୧୯୩୮ ଅଗଷ୍ଟ ୧୦ ତାରିଖରେ କୁଆଁଳୋଠାରେ ପ୍ରଜାମଣ୍ଡଳର ଏକ ଜରୁରୀ ବୈଠକ ବସିଲା । ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ରଜାଙ୍କ ଗାଡ଼ିରେ ମୋଟୁଙ୍ଗା ସଭାକୁ ଯାଇଥିବାରୁ ତାଙ୍କୁ ସଂପାଦକ ପଦରୁ ଅନ୍ତର କରାଗଲା । ପ୍ରଜାମଣ୍ଡଳର ବିଧିଥିଲା, ଯେଉଁ ନେତା ବା କର୍ମୀ କୌଣସି ପ୍ରକାରେ ପ୍ରଶାସନଙ୍କୁ ସାହାଯ୍ୟ କରିବେ ତାଙ୍କୁ ବହିଷ୍କାର କରାଯିବ, ସେ କ୍ଷମା ମାଗିଲେ ପୁଣି ନିଆଯିବ । ୧୯୨୧-୨୨ରେ ଦୀର୍ଘ କାରାବରଣ କରିଥିବା ଓ ଅସ୍ଥାୟୀ ପ୍ରଜାମଣ୍ଡଳର ସଂପାଦକ ହୋଇଥିବା ବ୍ୟକ୍ତିଙ୍କୁ ସଂଗଠନର ଶୃଙ୍ଖଳା ଦୃଷ୍ଟିରୁ ଏପରି ଦଶା ଭୋଗିବାକୁ ପଡ଼ିଥିଲା । ପ୍ରସଙ୍ଗକ୍ରମେ କୁହାଯିବ ଯେ ପରେ ପୂର୍ଣ୍ଣ ମହାପାତ୍ର କ୍ଷମା ମାଗି ସତ୍ୟାଗ୍ରହ ଆନ୍ଦୋଳନର ଡିରେକ୍ଟର ହୋଇଥିଲେ । ଅଗଷ୍ଟ ୭ ତାରିଖରେ ମୋଟୁଙ୍ଗାର ସଭାରେ ରାଜଦରବାର ସମବେତ ପ୍ରଜାମାନଙ୍କ ଦ୍ୱାରା ଅପଦସ୍ତ ହେବା ପରେ ସେହି ମାସ ୧୦ ତାରିଖରେ ପରଜଂଗ ଠାରେ ପ୍ରଜାମଣ୍ଡଳ ପକ୍ଷରୁ ଏକ ବିରାଟ ସଭା ଆହୂତ ହେଲା । ସେହି ସଭାରେ ୧୪୪ ଧାରା ଜାରି କରାଯାଇ ପ୍ରଜାମଣ୍ଡଳର କୁଆଁଳୋଠାରେ ନିର୍ବାଚିତ ସଭାପତି ହରମୋହନ ପଟ୍ଟନାୟକଙ୍କୁ ଭାଷଣ ଦେବା ଉପରେ ନିଷେଧାଦେଶ ହେଲା । ସେ ୧୪୪ ଧାରା ଭଂଗ ନକରି ପ୍ରଜାମଣ୍ଡଳର ନିଷ୍ପତ୍ତିକୁ ଅପେକ୍ଷା କଲେ ।

ଜେନାପୁରରେ ପୂର୍ଣ୍ଣାଙ୍ଗ ପ୍ରଜାମଣ୍ଡଳ କମିଟି ଗଠନ ପୂର୍ବରୁ କୁଆଁଳୋ ବୈଠକରେ ହରମୋହନ ପଟ୍ଟନାୟକ ସଭାପତି, ଲକ୍ଷ୍ମୀଧର ସାହୁ ସଂପାଦକ, ବୈଷ୍ଣବ ପଟ୍ଟନାୟକ, ଗତିକୃଷ୍ଣ ଭଂଜ ଯୁଗ୍ମ ସଂଗଠନ ସଂପାଦକ, ଶ୍ରୀକାନ୍ତ ରାଉତ ସ୍ୱେଚ୍ଛାସେବୀ ବାହିନୀର କପ୍ତାନ ନିର୍ବାଚିତ ହେଲେ ।

**ପ୍ରଜାମଣ୍ଡଳର ଦାବୀପତ୍ର :**

୧୯୩୮ ଅଗଷ୍ଟ ୧୧ ତାରିଖରେ ପରଜଙ୍ଗ ଠିକଣାରୁ ଢେଙ୍କାନାଳ ପ୍ରଜାମଣ୍ଡଳ ପକ୍ଷରୁ ଯେଉଁ ଦାବୀପତ୍ର ପ୍ରକାଶ ପାଇଥିଲା ତାହାର ଅବିକଳ ନକଲ ପ୍ରକାଶ କରାଗଲା । ପ୍ରତ୍ୟେକ ଗାଁରେ ୫ଖଣ୍ଡ କରି ବଣ୍ଟାଯିବାର ବ୍ୟବସ୍ଥା କରାଗଲା ଏବଂ ଏହାର କାର୍ବନ ନକଲ କରି ବହୁଳ ସଂଖ୍ୟାରେ ପ୍ରଜାମାନଙ୍କ ଭିତରେ ପ୍ରଚାର କରିବାକୁ ନିର୍ଦ୍ଦେଶ ଦିଆଯାଇଥିଲା ।

ଭାଇମାନେ,

ଦୁନିଆରେ ଯେତେସବୁ କଷ୍ଟଭୋଗିଲା ଲୋକ, ସମସ୍ତେ ନିଜ ଅବସ୍ଥା ବଦଳାଇବା ଲାଗି ଅଣ୍ଟାଭିଡ଼ିଛନ୍ତି । ସେଥିଲାଗି ତାଙ୍କ କଷ୍ଟ କ୍ରମେ ଉଭେଇ ଯାଉଛି । ଆମ ଅବସ୍ଥା କ'ଣ ?

ଆମ ଭଳି ଆଉ କେଉଁଠି ଲୋକେ ଏମିତି ଦହଗଞ୍ଜ ହେଉନାହାନ୍ତି । ତା'ର କାରଣ କ'ଣ ? ଆମେ ନିଜ କଷ୍ଟ ଘୁଞ୍ଚାଇବା ପାଇଁ ଅଣ୍ଟାଭିଡ଼ିନୁ । ଆମେ ସବୁବେଳେ ଭାଗ୍ୟକୁ ଦୋଷ ଦେଇ ରହିଚୁ; ଆମର ଏ ମନ ଅବସ୍ଥା ପାଇଁ ପୂର୍ବଜନ୍ମର କର୍ମକୁ ଦାୟୀ କରିଚୁ । କିନ୍ତୁ ଭାଇମାନେ, ଟିକିଏ ଭାବି ଦେଖିଲେ ଜଣା ପଡ଼ିଯିବ ଆମର ଅବସ୍ଥା ଏପରି କାହିଁକି । ଆମେ ଖଟି ଖଟି ଲହୁ ଲୁହାଣ ହେଲେବି ଆମ ପେଟ ପୁରୁନାହିଁ । ତା ଉପରେ ପୁଣି ଆମକୁ ବେଠି କରିବାକୁ ହେଉଛି, ଭେଟି ଦେବାକୁ ପଡୁଛି । ଜମି ଖଜଣା ଦେଇ ଦେଇ ଆମେ ନାକେଦମ୍ ହେଲୁଣି, ତା ଉପରେ ପୁଣି ପାନ ବିଡ଼ି ଇତ୍ୟାଦି ପାଇଁ ଆମକୁ ଅଧିକା ସେସ ଦେବାକୁ ହେଉଛି । ଜଙ୍ଗଲ ଆଇନ ଆମର ସର୍ବନାଶ କଲାଣି ତାକୁ ଟିକିଏ ହୁଗୁଳା କରିବା ତ ଦୂରର କଥା, କ୍ରମେ ତାହା ଆହୁରି କଡା ହେଉଛି । ଜମି ଉପରେ ଆମର କଛି ନାହିଁ । ଆମଠାରୁ ଯେତେ ସବୁ ଖଜଣା ଟିକସ ଆଦାୟ ହୁଏ, ଆମ ଭଲ ପାଇଁ ସେଥିରୁ କେତେ ଖର୍ଚ୍ଚ ହୁଏ ଆମେ ଜାଣୁନାହିଁ । ସିପେହୀ, ପୁଲିସ, ଦାରୋଗା ହାକିମ ଯେଉଁମାନେ ସବୁ ଅଛନ୍ତି, ସେମାନେ ଆମ ଭଲ ପାଇଁ ଅଛନ୍ତି ନା ଆମକୁ ଡରାଇ ରଖିବାକୁ ଅଛନ୍ତି ? ସେମାନେ ଯେଉଁ ଦରମା ସବୁ ପାଆନ୍ତି ସେ କେଉଁଠୁ ଆସେ ? ଆମେ ହାଡ଼ଭଙ୍ଗା ପରିଶ୍ରମ କରି, ମୁଣ୍ଡଝାଳ ତୁଣ୍ଡରେ ମାରି ଯାହା ଉପୁଜାଉଁ, ତାହା ଟିକସ ଖଜଣା ରୂପରେ ଆମଠାରୁ ଶୋଷି ନେଇ ସେଥିରେ ରାସ୍ତାରେ ଗାଡ଼ି ଚାଲେ, କୋଠାଘର ତିଆରି ହୁଏ । ସେହି ଟଙ୍କାରୁ ଏମାନେ ଦରମା ପାଇ ଆମ ଉପରେ ହାକିମୀ ଜାରି କରନ୍ତି । ଆମରି ଆୟରୁ ସବୁ ହୁଏ କିନ୍ତୁ କିଛି କରିବାକୁ ଆମର ଉପାୟ ନାହିଁ । ଦୁନିଆର ଚାରିଆଡୁ ମନମୁଖୀ ଶାସନ ଉଠିଯାଉଛି । ଏବେ ପ୍ରଜା ସାଧାରଣଙ୍କ ମତରେ ଶାସନ ଚଳୁଛି । ତେବେ ଆମେ କାହିଁକି ପଛରେ ପଡ଼ି ରହିଛୁ ? ଆମ ଆୟ କି କି ବାଟରେ ଖର୍ଚ୍ଚ ହେବ, ଆମେ ତାହା ଠିକ୍ କରିବାକୁ ଚାହୁଁ । ଆମ ଭଲ ପାଇଁ କିପରି ଜଙ୍ଗଲ ଆଇନ, ପ୍ରଜାସତ୍ତ୍ୱ ଆଇନ ଓ ଅନ୍ୟାନ୍ୟ ଆଇନ ହେବା ଉଚିତ, ତାହା ଆମେ ବିଚାର କରି ଠିକ୍ କରିବାକୁ ଚାହୁଁ । ମୋଟ ଉପରେ ଆମେ ଲୋକପ୍ରତିନିଧିମୂଳକ ଶାସନ ଚାହୁଁ ।

ଭାଇମାନେ, ଏହା ଆମେ କିପରି କରିପାରିବା ? ଆମେ ଯଦି ସମସ୍ତେ ଏକମନ ନ ହେବା, ତେବେ ନିଜର କିଛି ଭଲ କରି ପାରିବା ନାହିଁ । ସେଥିଲାଗି ସଂଗଠନ କରିବାକୁ ହେବ; ସମସ୍ତ ପ୍ରଜାଙ୍କୁ ନେଇ ପ୍ରଜାମଣ୍ଡଳକୁ ଟାଣ କରି ଗଢ଼ିବାକୁ ହେବ; ସଭାସମିତି କରି ସେଥିରେ ନିଜ କଥା ବିଚାର କରିବାକୁ ହେବ ଏବଂ ଆମର ଦାବୀମାନ ହାସଲ କରିବାଲାଗି ଉପାୟମାନ ସ୍ଥିର କରିବାକୁ ହେବ । କିନ୍ତୁ ସଭାସମିତିମାନ କରି ନିଜ ନିଜ ଭିତରେ ଆଲୋଚନା କରିବାର ଆମର ଅଧିକାର ନାହିଁ । ଏଇଥିଲାଗି ଆମର ନୀଳଗିରି ଭାଇମାନେ ସତ୍ୟାଗ୍ରହ ଲଢ଼େଇ ଚଳାଇଛନ୍ତି, ଶହ ଶହ ଟଙ୍କା ଜୋରିମାନା ଆଦି ଦଣ୍ଡମାନ ଭୋଗୁଛନ୍ତି । ଆହୁରି କେତେ ଲୋକଙ୍କ

ମୁଣ୍ଡ ଫାଟି ଯାଇଛି । ଆଜି ଆମେ ଭାଇ ଭାଇ ଭିତରେ ମୁହଁ ଖୋଲି ନିଜ ବିଷୟ ବିଚାର କରିବାକୁ ଆରମ୍ଭ କରିବାରୁ, ଦରବାର ପକ୍ଷରୁ ସଭାସମିତିମାନ ଆୟୋଜନ ହେଉଅଛି । ଏହି ସଭାମାନଙ୍କୁ ପାଇକ ଚୌକିଆଙ୍କ ଦ୍ୱାରା ଆମକୁ ଘଉଡ଼େଇ ନେଇ, ହୁକୁମ ହେଉଛି ଆମ ଦୁଃଖ ହାଲ ଜଣାଇବାକୁ । ଏପରି ଭାବରେ କି ମୁହଁ ଖୋଲି କଥା କୁହାଯାଇପାରେ ? ଯେଉଁ ଦରବାରଙ୍କର ସିପେହୀଙ୍କୁ ଦେଖିଲେ ଆମ ପିଳେହି ପାଣି, ତାଙ୍କ ସାମନାରେ ଆମେ ଅଲଗା ଅଲଗା ନିଜର ଦାବୀ ଜଣାଇବା ପାରିବା ଅସମ୍ଭବ ।

"ଭାଇମାନେ, ଆମେ ସେଥିଲାଗି ଚାହୁଁ ସଂଗଠନ କରିବାକୁ, ଆମର ଢେଙ୍କାନାଳ ପ୍ରଜାମଣ୍ଡଳକୁ ଟାଣ କରି ଗଢ଼ିବାକୁ ଏବଂ ଏହି ପ୍ରଜାମଣ୍ଡଳ ଜରିଆରେ ଦାବୀମାନ ଜଣାଇବାକୁ । ତଳେ ଆମର ଦାବୀମାନ ଦିଆଗଲା । ଏହି ଦାବୀ ପାଇଁ ଆମମାନଙ୍କୁ ଏକଜୁଟ ହୋଇ ଶାନ୍ତିପୂର୍ଣ୍ଣ ଭାବରେ ଆନ୍ଦୋଳନ କରିବାକୁ ହେବ । ଏଥିଲାଗି ଦିନିକିଆ ମନଭୁଲାଣିଆ କଥାରେ ନଭୁଲି, ଯେପରି ଆମର ଚିରକାଳ ପାଇଁ ଭଲ ହେବ, ଆମର ପୁଅ ନାତି ବଂଶପରମ୍ପରା ଯେପରି ଭଲରେ ରହିପାରିବେ ସେଥିପାଇଁ ତିଆରି ହେବା ଦରକାର ।

ଏ ନିବେଦନ ପତ୍ର ଓ ଦାବୀ ତାଲିକାକୁ ଅଳ୍ପ ଛାପିଛୁ । ଗାଁକେ ଚାରିପାଞ୍ଚ ଖଣ୍ଡ କରି ବଣ୍ଟା ହେବ । ଏ ଦାବୀଗୁଡ଼ିକ ପ୍ରତ୍ୟେକ ଭାଇଙ୍କର ଜାଣିବା ଆବଶ୍ୟକ । ଅତଏବ ଅନୁରୋଧ କରୁଛୁ ଅନ୍ୟାନ୍ୟ ଭାଇମାନେ ଖଣ୍ଡିଏ ଖଣ୍ଡିଏ ନକଲ କରିନେଇ ରଖିବେ ।

ନିକଟରେ ଢେଙ୍କାନାଳ ପ୍ରଜାମଣ୍ଡଳ ଗୋଟିଏ ମହା ସମ୍ମିଳନୀ ଡାକିବେ । ସେଥିରୁ ପ୍ରତ୍ୟେକ ଗାଁରୁ ଅତି କମ୍‌ରେ ଦଶ ବାରଜଣ ଭାଇ ଆସିବେ । ଦାବୀଗୁଡ଼ିକୁ ମହାସମ୍ମିଳନୀ ଆଲୋଚନା କରିବେ । ସ୍ଥାନ ଓ ତାରିଖ ଏହା ପରେ ଆଉ ଖଣ୍ଡିଏ ନିବେଦନରେ ଜଣାଇ ଦିଆଯିବ ।

ଗଡ଼ପରଜଙ୍ଗ — ନିବେଦନ
ଢେଙ୍କାନାଳ — ଢେଙ୍କାନାଳ ପ୍ରଜାମଣ୍ଡଳ
ତା.୧୧.୦୮.୧୯୩୮

ଢେଙ୍କାନାଳ ପ୍ରଜାମଣ୍ଡଳର ନିମ୍ନତମ ଦାବୀ

**ନାଗରିକ ସ୍ୱାଧୀନତା :**

(କ) ପ୍ରକାଶ୍ୟ ଭାବରେ ସବୁ ପ୍ରକାର ସଭାସମିତି, ଶୋଭାଯାତ୍ରା ଆଦି କରିବା ଅଧିକାର ।

(ଖ) ସବୁପ୍ରକାର ସଂଘ, ସଂଗଠନ ଓ ସମିତି ଆଦି ଗଢ଼ିବାର ଏବଂ କୌଣସି ସାଧାରଣ କାର୍ଯ୍ୟ ପାଇଁ ମେମ୍ବର କରିବାର ଓ ଚାନ୍ଦା ଆଦି ଅସୁଲ କରିବାର ଅଧିକାର ।

(ଗ) ଯେ କୌଣସି ଖବରକାଗଜ ଓ ପ୍ରଚାରପତ୍ର ପ୍ରକାଶ କରିବାର ଓ ପଢ଼ିବାର ଅଧିକାର ।

ବେଠି ପ୍ରଥା ରଦ୍ଦ ହେବା -

(କ) ବିନା ପଇସାରେ ବା ଅଳ୍ପ ପଇସାରେ ନିଆଯାଉଥିବା ରସଦ ପ୍ରଥା ବନ୍ଦ ହେବା ।

(ଖ) ବିବାହ, ବ୍ରତ, ଉତ୍ସବ ପ୍ରଭୃତିରେ ନିଆଯାଉଥିବା ମାଗଣ ବନ୍ଦ ହେବ ।

(ଗ) ସୁନିଆ ଭେଟି ବନ୍ଦ ହେବା ।

ପ୍ରଜାସତ୍ତ୍ୱ ଆଇନ ଗଢ଼ିବା -

ପ୍ରଜାମାନଙ୍କର ଭୂମି ଉପରେ ନ୍ୟାୟସଙ୍ଗତ ସ୍ୱତ୍ୱ ଆଇନ ଭାବେ ବିଧିବଦ୍ଧ କରାଯିବା

(କ) ଜମି ହସ୍ତାନ୍ତର ସମ୍ପର୍କରେ ଦାଖଲଖାରଜ ଫିସ୍ ଓ ପେନାଲିଟ୍ ଉଠାଇ ଦିଆଯିବା ।

(ଖ) ଉତ୍ତରାଧିକାରୀମାନଙ୍କଠାରୁ ଯେଉଁ ଦାଖଲଖାରଜ ଫିସ୍ ନିଆଯାଉଛି ତାହା ଫେରାଇ ଦିଆଯିବା ।

(ଗ) ଖଜଣା ଅସୁଲ ଓ ମହାଜନୀ ଦେଣା ଆଦାୟ ସକାଶେ ମୋଗଲବନ୍ଦୀରେ ଚଳୁଥିବା ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ ଓ ଦେଓ୍ୟାନି କାର୍ଯ୍ୟବିଧି ଆଇନର ବିଧାନ ଗ୍ରହଣ କରାଯିବା ।

(ଘ) ଆଜିକାଲି ଯେପରି ଚାଷୋପକରଣ ଓ କଂସାବାସନ କ୍ରୋକ କରି ନିଆଯାଉଛି ତାହା ବନ୍ଦ କରାଯିବା ।

(ଙ) ବାକୀ ଖଜଣା ସକାଶେ ଆଜିକାଲି ଯେପରି ସମସ୍ତ ଜମି ଉଚ୍ଛେଦ କରାଯାଉଛି ତାହା କରା ନ ଯାଇ, ବାକୀ ଖଜଣା ଅନୁପାତରେ ଜମି ନିଲାମ କରାଯାଇ ଉଚିତ ରାଜସ୍ୱ ନେବାପରେ ବାକୀ ଯେ ଉଦ୍‌ବୃତ୍ତ ଟଙ୍କା ବଳିବ ତାହା ଓ୍ୟାପସ୍ ଦେବା । ଜମି ଯେପରି ଉଚିତ ଦରରେ ନିଲାମ ହୁଏ ଓ ସେପରି କୌଣସି ଷ୍ଟେଟ କର୍ମଚାରୀ ଏ ଜମି ନ ନିଅନ୍ତି ସେଥିପ୍ରତି ଦୃଷ୍ଟି ଦେବା ।

୫. ଶଉରିକ, ପଳାଶୁଣି ଏବଂ ଅନ୍ୟାନ୍ୟ ଅନାର୍ଯ୍ୟବସ୍ତିବହୁଳ ବିଶମାନଙ୍କରେ ଅନାର୍ଯ୍ୟ ପ୍ରଜାଙ୍କର ଅବସ୍ଥା ପ୍ରତି ଦୃଷ୍ଟି ନ ଦେଇ ଜୋର ଜୁଲମ୍ କରି ବକେୟା ଖଜଣା ଅସୁଲ କରିବା ସକାଶେ ହଳ ବଳଦ, ଗାଈ ଗୋରୁ ଇତ୍ୟାଦି କ୍ରୋକ ନିଲାମ କରିବାରୁ ଓ ତାଙ୍କ ପ୍ରତି ଜଙ୍ଗଲ କଟକଣା କଠିନ ଭାବରେ ଲଗାଇବାରୁ ସେମାନେ ଘରଦ୍ୱାର ଛାଡ଼ି ଛିନ୍‌ଛତ୍ର ହୋଇ ପଳାଇ ଯାଇଛନ୍ତି ଓ ମୌଜା ଭାଙ୍ଗିଯିବାରୁ ଜମିବାଡ଼ି ପଡ଼ିଆ ହୋଇଯାଇଛି । ସେହି ପ୍ରଜାମାନଙ୍କୁ ଭରଣପୋଷଣ କିମ୍ୱା ଅନ୍ୟ ପ୍ରଜାଙ୍କୁ ଅର୍ଥ ସାହାଯ୍ୟ ଦେଇ ମୌଜାମାନଙ୍କୁ ପୁନରାୟ ଉଠିଆ କରିବା ।

ଫରେଷ୍ଟ ଆଇନ ବଦଳାଯିବା -

(କ) ସ୍ୱର୍ଗୀୟ ରଜା ସୁରପ୍ରତାପ ମହୀନ୍ଦ୍ର ବାହାଦୂରଙ୍କ ଦ୍ୱାରା ୧୯୦୬ ମସିହାରେ ପ୍ରବର୍ତ୍ତିତ ଫରେଷ୍ଟ ଆଇନ ଚଳାଯାଉ ।

(ଖ) ଉକ୍ତ ରାଜଙ୍କ ସମୟରେ ବାହାର ଜଙ୍ଗଲ ଗ୍ରେଜିଙ୍ଗ୍ ଫିସ୍ ନିଆଯାଉ ନଥିଲା । ବିଶେଷରେ ପ୍ରଜାଙ୍କର ବର୍ତ୍ତମାନ ଦୁରବସ୍ଥା ବିବେଚନାରେ ରିଜର୍ଭ ଓ ବାହାର ଜଙ୍ଗଲ ଉଭୟରେ ଗ୍ରେଜିଙ୍ଗ୍ ଫିସ୍ ଉଠାଇ ଦେବା ।

(ଗ) ଆନନ୍ଦ ବାବୁ ଫରେଷ୍ଟ ଅଫିସରଙ୍କ ସମୟରୁ ଫରେଷ୍ଟ ଅଫିସର ଆଦି କର୍ମଚାରୀମାନଙ୍କୁ ଇଚ୍ଛାନୁସାରେ ଘର ଖାନତଲାସ କରିବା ଆଦି ଯେଉଁ ବେଆଇନ୍ କ୍ଷମତା ଦିଆଯାଇଛି ସେ କ୍ଷମତା ଉଠାଇ ନେବା ।

(ଘ) ଜମି କରିବାକୁ ଜଙ୍ଗଲ ଛାଡ଼ି ଦେଲେ ତହିଁରେ ଥିବା କାଠର ମୂଲ୍ୟ କବୁଲିଅତକାରୀଠାରୁ ବାଧ୍ୟ କରାଇ ଅସୁଲ କରା ନଯାଇ, ପୂର୍ବପରି ସାଧାରଣତଃ ନିଲାମ କରାଯିବା ।

୬. ପ୍ରଜାଙ୍କର ଚଳାଚଳ ସକାଶେ ଯେଉଁ ବାହାର ଜଙ୍ଗଲ ଥିଲା ସେଥିରୁ ଅନେକ ଅଂଶ କାଢ଼ିନେଇ ରାଜପରିବାରମାନଙ୍କ ଖମାର ସାମିଲ କରି ସେମାନଙ୍କୁ ଲାଖରାଜ ସ୍ୱତ୍ୱରେ ଦିଆଯାଇଛି । ରାଜପରିବାରମାନେ ସେ ଜଙ୍ଗଲରେ କ୍ଳପ୍‌ମାନ କରି କାଠ ଇତ୍ୟାଦି ବିକ୍ରି କରୁଛନ୍ତି ଓ ପ୍ରଜାଙ୍କ ଗୋରୁଗାଈ ଚରିବା ପାଇଁ ସ୍ୱତନ୍ତ୍ର ମାସୁଲ ଆଦାୟ କରୁଛନ୍ତି । ଏ ପ୍ରଥା ଘୋର ଅନ୍ୟାୟ ଓ ସମ୍ପୂର୍ଣ୍ଣ ବେଆଇନ ଅଟେ । ଏ ଜଙ୍ଗଲ ସବୁ ରାଜପରିବାରମାନଙ୍କଠାରୁ ଫେରସ୍ତ ଆଣି ପୂର୍ବ ପ୍ରଜାଙ୍କ ଚଳାଚଳ ସକାଶେ ବାହାର ଜଙ୍ଗଲ କରି ରଖିବା ।

**ଆମଦାନୀ ଓ ରପ୍ତାନୀ ଉପରୁ କଟକଣା ଉଠିବା –**

କୃଷିଜାତ ଦ୍ରବ୍ୟ ଓ ଅନ୍ୟାନ୍ୟ ପଣ୍ୟଦ୍ରବ୍ୟର ଆମଦାନୀ ଓ ରପ୍ତାନୀ ଉପରେ କୌଣସି ରକମର କଟକଣା ନ ରହିବା ।

**ଦୋକାନ ଲାଇସେନ୍‌ସ ଉଠିଯିବା –**

ମାଂସ ଆଦି ନିତ୍ୟବ୍ୟବହାର୍ଯ୍ୟ ଜିନିଷ ଉପରେ ଥିବା କଟକଣା ଉଠିଯିବା ।

ବନ୍ୟଜନ୍ତୁ ଉପଦ୍ରବରୁ ଫସଲ ରକ୍ଷା କରିବା ନିମନ୍ତେ ବିନା ଫିସ୍‌ରେ ଜନ୍ତୁ ମାରିବାକୁ ଅନୁମତି ଦିଆଯିବା ।

ଆଖୁ ଖାଇ ମାହାସୁଲ ଉଠିଯିବା;

ଗୁଲିଖଟି ଆଦି ଉଠାଇ ଦିଆଯିବା;

**ଚାନ୍ଦନା ପ୍ରଜାମାନଙ୍କର ପୂର୍ବ ଅଧିକାର ଫେରାଇ ଦିଆଯିବା –**

(କ) ଯେଉଁମାନଙ୍କର ଜମି ନାହିଁ, ସେମାନଙ୍କୁ ଡିହ ଖଜଣା, ଜଙ୍ଗଲ କର ଓ ଅନ୍ୟାନ୍ୟ ସମସ୍ତ ପ୍ରକାର କର ଛାଡ଼ି ଦିଆଯିବା ।

(ଖ) ବିନା ମହାସୁଲରେ ଜଙ୍ଗଲରୁ ଟୋଲ, ମହୁଲ, ଟଙ୍ଗା, କଡ଼ବା ଆଦି ଆଣି ଖାଇବାର ଓ ଜାଳକାଠ ମୁଣ୍ଡରେ ବୋହିଆଣି ବିକ୍ରୀ କରିବାର ଅଧିକାର ଦିଆଯିବା ।

**କର୍ମଚାରୀମାନଙ୍କ ଉପରେ କଟକଣା କରାଯିବା -**

କୌଣସି ଷ୍ଟେଟ୍‌କର୍ମଚାରୀ ଷ୍ଟେଟ ଭିତରେ କୌଣସି ପ୍ରକାର ବ୍ୟବସାୟ କରିପାରିବେ ନାହିଁ।

ଅନ୍ୟାୟ ଭାବରେ ଆଦାୟ ହୋଇଥିବା ଟଙ୍କା ଇତ୍ୟାଦି ଫେରସ୍ତ ଦିଆଯିବା ସକାଶେ ନିରପେକ୍ଷ ତଦନ୍ତ କମିଟି ବସାଇବା -

**ତଦନ୍ତ କମିଟି ବସୁ**

ଗଲା ୧୨ବର୍ଷ ମଧ୍ୟରେ ଯେଉଁ ଷ୍ଟେଟ୍ କର୍ମଚାରୀମାନେ ପ୍ରଜାମାନଙ୍କ ଉପରେ ଜୋର ଜୁଲମ୍ କରି ବେଆଇନ୍ ଭାବରେ ଟଙ୍କା ଓ ଜମିବାଡ଼ି ନେଇଯାଇଅଛନ୍ତି, ସେ ସବୁ ଅତ୍ୟାଚାରର ତଦନ୍ତ କରିବା ନିମନ୍ତେ ଗୋଟିଏ ତଦନ୍ତ କମିଟି ବସୁ ଏବଂ ସେ କମିଟି ଦ୍ୱାରା ଲୋକମାନଙ୍କଠାରୁ ପ୍ରମାଣ ନେଇ କର୍ମଚାରୀଙ୍କୁ ଉପଯୁକ୍ତ ଦଣ୍ଡ ଦିଆଯାଉ ଏବଂ ଅନ୍ୟାୟଭାବରେ ଆଦାୟ ହୋଇଥିବା ଟଙ୍କା ଓ ଜମିବାଡ଼ି ଫେରସ୍ତ ମିଳୁ।

(କ) ଫରେଷ୍ଟ ପୋଲିସ ଓ ଅନ୍ୟାନ୍ୟ ଷ୍ଟେଟ୍ କର୍ମଚାରୀମାନେ ଗତ ୧୨ ବର୍ଷ ମଧ୍ୟରେ ଅନ୍ୟାୟ ଭାବରେ ଯେଉଁ ସବୁ ଅର୍ଥ ପ୍ରଜାଙ୍କଠାରୁ ନେଇ ଯାଇଅଛନ୍ତି ତାହା ପ୍ରଜାଙ୍କଠାରୁ ପ୍ରମାଣ ନିଆଯାଇ ଫେରସ୍ତ ଦିଆଯିବ।

(ଖ) ଢେଙ୍କାନାଳ ଗଡ଼ ଓ ଅନ୍ୟାନ୍ୟ ଗ୍ରାମମାନଙ୍କର ପୁନର୍ଗଠନ ନିମନ୍ତେ, ରାଜପରିବାରମାନଙ୍କ ଖମାର ଜମିର ଆୟତନ ବୃଦ୍ଧି କରିବା ନିମନ୍ତେ ଓ ବାକୀ ଖଜଣା ଆଦାୟ କରିବା ଉଦ୍ଦେଶ୍ୟରେ ପ୍ରଜାମାନଙ୍କଠାରୁ ଅନ୍ୟାୟ ଭାବରେ ଜୋରଜୁଲମ କରି ସେସବୁ ଘର ଭାଙ୍ଗି ଡିହବାଡ଼ି ନିଆଯାଉଛି ଓ ଯେତେ ଜମି ନିଆଯାଇଛି, ତାହା ଫେରସ୍ତ ଦିଆଯିବା।

(ଗ) ଗତ ୧୨ ବର୍ଷ ମଧ୍ୟରେ ମଢ଼ିଠାରୁ ଭୁବନ, ଢେଙ୍କାନାଳ ଓ ପରଜଙ୍ଗ ପର୍ଯ୍ୟନ୍ତ ଏବଂ ଷ୍ଟେଟର ଅନ୍ୟାନ୍ୟ ଅଞ୍ଚଳରେ ଯେଉଁସବୁ ରାସ୍ତାମାନ ପ୍ରଜାମାନେ ତିଆରି କରିଛୁ ସେ ବାବଦ ଆମକୁ କୌଣସି ମଜୁରୀ ଆଜି ପର୍ଯ୍ୟନ୍ତ ଦିଆଯାଇନାହିଁ। ସେଥିପାଇଁ ଉପଯୁକ୍ତ ମଜୁରୀ ଦିଆଯିବା।

**ପ୍ରାଥମିକ ଶିକ୍ଷାବିଭାଗର ପରିଚାଳନା -**

ପ୍ରଜାମାନେ ଶିକ୍ଷା ପାଇଁ ଯେଉଁ ସ୍କୁଲ ଚାନ୍ଦା ଦେଉଛନ୍ତି ତାହାର ଆୟବ୍ୟୟ ଭାର ଏବଂ ଶିକ୍ଷା ବିଭାଗର ପରିଚାଳନା ଭାର ପ୍ରଜାଙ୍କ ତରଫରୁ ନିଯୁକ୍ତ କମିଟି ହାତରେ ଛାଡ଼ି ଦିଆଯିବା।

**ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା କରିବା -**

ନାଗରିକ ସ୍ୱାଧୀନତା ରକ୍ଷା କରିବା ସକାଶେ, ଆଇନ ଅନୁସାରେ ଶାସନ ଚଳାଇବା

ସକାଶେ ଲୋକପ୍ରତିନିଧିମାନଙ୍କ ଦ୍ୱାରା ପୂର୍ଣ୍ଣ ଦାୟିତ୍ୱମୂଳକ ଶାସନ ଏକାନ୍ତ ଆବଶ୍ୟକ। ଅର୍ଥାତ୍ ଭିନ୍ନ ଭିନ୍ନ ଅଞ୍ଚଳର ଲୋକେ ଭୋଟ ଦ୍ୱାରା ପ୍ରତିନିଧି ବାଛି ଯେଉଁ ଲୋକପ୍ରତିନିଧି ସଭା ଗଢ଼ିବେ, ସେହି ସଭା ନୂଆ ନୂଆ ଲୋକ ହିତକର ଆଇନ କରିବେ, ରାଜ୍ୟର ଆୟବ୍ୟୟ ବୁଝିବେ ଏବଂ ରାଜାଙ୍କ ଅଧୀନରେ ସମସ୍ତ ଶାସନ ଚଳାଇବେ। ରାଜା ପ୍ରଜା ଉଭୟଙ୍କର ହିତ ନିମିତ୍ତ ଏହି ପୂର୍ଣ୍ଣ ଦାୟିତ୍ୱମୂଳକ ଶାସନ ଶୀଘ୍ର ଅନୁଷ୍ଠିତ ହେବା ଆମର ଶେଷ ଓ ସର୍ବୋଚ୍ଚ ଦାବୀ।

ପ୍ରଜାମଣ୍ଡଳର ଦାବୀପତ୍ର ଢେଙ୍କାନାଳର ପ୍ରତ୍ୟେକ ଗାଁରେ ବଣ୍ଟା ହେଲା। ଏହା ପ୍ରଜାମାନଙ୍କ ମଧ୍ୟରେ ବିପୁଳ ଉତ୍ସାହ ଆଣିଦେଲା। ସାହସ ମଧ୍ୟ ଆଣିଦେଲା। ରଜାଙ୍କ ପ୍ରତି, ରାଜକର୍ମଚାରୀ ପ୍ରତି ଯେଉଁ କୋକୁଆଭୟରେ ସେମାନେ ଥରହର ହେଉଥିଲେ, ତାହା ବହୁ ପରିମାଣରେ ଭାଂଗିଗଲା। ଏପରି ଉତ୍ସାହ, ଉଦ୍ଦୀପନାକୁ ଭାଙ୍ଗିବା ଲାଗି ରାଜ ଦରବାର ଏକ ପେଞ୍ଚ ଖେଳିଲା। ସଭାପତି ହରମୋହନ ପଟ୍ଟନାୟକଙ୍କୁ ପ୍ରଜାମାନଙ୍କ ଦାବୀ ସଂପର୍କରେ ଆଲୋଚନା କରିବାକୁ ଦରବାର ପକ୍ଷରୁ ଡକାଗଲା। ଚକ୍ଷୁକୁଟା ଆଲୋଚନା ଚାଲିଲା। ସେପରି ଆଲୋଚନା ବିଫଳ ହେବା ଦେଖି ରାଜଦରବାର ଆଉ ଏକ ଚାଲ୍ ଖେଳିଲା। ଢେଙ୍କାନାଳ ପ୍ରଜାଙ୍କ ସର୍ବମାନ୍ୟ ନେତା ମହେଶ୍ୱର ସୁବାହୁସିଂହଙ୍କ ଯଦି ରାଜା କୌଣସି ମତେ ମଂଗେଇ ନେବେ, ପ୍ରଜାମଣ୍ଡଳ ଆଣ୍ଠୁ ଭାଙ୍ଗିଯିବା ବୋଲି ମନ୍ତ୍ରଣା ଚାଲିଲା। ଅବଶ୍ୟ ସୁବାହୁ ସିଂହଙ୍କ ଆଲୋଚନା ପାଇଁ ଡକା ହେବାରୁ ସାରା ଢେଙ୍କାନାଳରେ ଆନନ୍ଦ ଉଲ୍ଲାସ ଦେଖାଦେଲା। ଢେଙ୍କାନାଳର ଚାରିକୋଣରୁ ଲୋକେ ଧାଇଁଲେ, ଲୋକ ଯେପରି ନ ଆସିବେ ସେଥିଲାଗି ଧମକ ଚମକ ଦିଆଗଲା। ରାଜକର୍ମଚାରୀମାନେ ଲୋକଙ୍କୁ ଭୟଭୀତ କଲେ। ବାଟ ଓଗାଳିଲେ। ମାତ୍ର ପ୍ରଜାମାନେ ସେଥିରେ ଦବିଗଲେ ନାହିଁ।

ପ୍ରାୟ ୪୦ ହଜାର ପ୍ରଜା ଢେଙ୍କାନାଳ ଗଡ଼ରେ ହାଜର। କ'ଣ ଆମ ନେତାଙ୍କ ସହିତ ରଜାଙ୍କର ଆଲୋଚନା ହେବ, ସେଥିଲାଗି ଉତ୍କଣ୍ଠା।

ରାଜ ଦରବାର ପକ୍ଷରୁ ଲୋକଙ୍କୁ ଫେରିଯିବାକୁ ଯେତେ ପ୍ରବର୍ତ୍ତାଗଲା ତାହା ଅସଫଳ ହେଲା। "ଆମେ ଚାହୁଁ ରଜା ନିଜେ ଆସି ଆମ ଦାବୀ ପୂରଣ କରିବା କଥା କୁହନ୍ତୁ" ଧ୍ୱନି ଉଠିଲା।

ସଙ୍ଗରେ ଶ୍ୱଶୁର ଷଢ଼େଇକଳାର ରାଜା, ଆଉ ହାଁମଣିମା, ହଁ, ହଜୁର କରୁଥିବା ପାରିଷଦବର୍ଗ। ବନ୍ଧୁକଧାରୀ ପୁଲିସ। ରାଜା ଶଙ୍କର ପ୍ରତାପ ବିଜେ କଲେ। ଶୁଣାଓ ଦେଲେ, ତାଙ୍କ ଶାସନରେ ଖଜଣା, ଟିକସ ସବୁ ରାଜ୍ୟଠାରୁ କମ୍। ତାଙ୍କ ଶାସନକୁ ବଦନାମ କରିବାକୁ ପ୍ରଜାମଣ୍ଡଳ ନେତା ଓ ବାହାରର ସ୍ୱାର୍ଥାନ୍ଧ କେତେକ ନେତା ଲାଗିଛନ୍ତି। ପ୍ରଜାମାନେ ସେମାନଙ୍କ କଥା ଶୁଣନ୍ତୁ ନାହିଁ। ଯାହା ଆପତ୍ତି ହେବ, ଆଜି ଦରବାରରେ ପେଶ କରନ୍ତୁ।

ଏତିକିରେ ଆଲୋଚନା ଶେଷ । ପ୍ରଜାମାନେ ଖାଲି ଚକିତ ନୁହନ୍ତି, କ୍ରୋଧାନ୍ୱିତ । ପ୍ରଜାମଣ୍ଡଳର ଜୟଧ୍ୱନି, ହୁକାପିଟା ଶାସନ ଲୋପ କର ଧ୍ୱନିରେ ସଭାସ୍ଥଳ ମୁଖରିତ ।

ଆଲୋଚନାକୁ ଡାକି ରାଜାଙ୍କର ପ୍ରତାପଙ୍କ ଶଠତା, ପ୍ରତାରଣାକୁ ବୁଝିପାରି ଉପସ୍ଥିତ ଚାଳିଶ ହଜାର ପ୍ରଜା ସଭାସ୍ଥଳ ଛାଡ଼ି ବାହାରିଗଲେ ।

୧୯୩୮ ଅଗଷ୍ଟ ୧୧ରେ ପ୍ରଜାମଣ୍ଡଳର ଦାବୀପତ୍ର ପାଇବା ପରେ ଢେଙ୍କାନାଳ ଦରବାର ପ୍ରଜା ଆନ୍ଦୋଳନର ମୁକାବିଲା କରିବା ଲାଗି ଦ୍ୱିବିଧ କୌଶଳ ଅବଲମ୍ବନ କଲେ । ସେହି ମାସ ୧୩ ତାରିଖରେ ଏକ ଗେଜେଟ୍ ନୋଟିଫିକେସନ୍ ବାହାର କରାଗଲା । ସେଥିରେ କଣ କଣ ସୁବିଧା ଦିଆଗଲା, ତାହା କୁହାଯାଇଥିଲା । ମାତ୍ର ଉକ୍ତ ଘୋଷଣାନାମା ଏକ ନିରର୍ଥକ, ଘୋଷଣା ବୋଲି ପ୍ରଜା ଓ ପ୍ରଜାମଣ୍ଡଳ ଅନୁଭବ କଲା । ତେଣେ ରାଜ ଦରବାର ପକ୍ଷରୁ ଚାରିଆଡ଼େ ସଭାର ଆୟୋଜନ କରାଗଲା । ସେସବୁ ସଭାରେ ଲୋକେ ଯୋଗ ଦେଲେ ନାହିଁ । ଢେଙ୍କାନାଳର ଲାଖରାଜ ପ୍ରଜାମାନଙ୍କୁ ଆନ୍ଦୋଳନଠାରୁ ଦୂରେଇ ରଖିବା ଲାଗି ଚେଷ୍ଟା କରାଗଲା । ୧୯୩୮ ଅଗଷ୍ଟ ୨୪ରେ ଏପରି ଏକ ସଭାରେ ମାତ୍ର ସଦର ଢେଙ୍କାନାଳର ୧୫୦ଜଣ ଯୋଗ ଦେଇଥିଲେ । ଅଥଚ ୧୪୦୦ ଗାଁରୁ ଅନ୍ତତଃ ଦୁଇଜଣ ଲେଖାଏଁ ପ୍ରଜା ଆସିବେ ବୋଲି ଦରବାରର ହୁକୁମ ଥିଲା । ସେମାନେ ଅଧିକାଂଶ ବ୍ରାହ୍ମଣ ଲାଖରାଜଦାର । ଏହି ସଭାରେ ପ୍ରଜାମାନଙ୍କୁ ସାବାଡ଼ କରିବା ଲାଗି ବ୍ରାହ୍ମଣମାନଙ୍କୁ କିଛି ସୁଯୋଗ ଦେଇ ବ୍ରାହ୍ମଣ ସମିତି ଗୁଡ଼ିକ ସାମାଜିକ ନ୍ୟାୟ ଯାହାଦେବେ ତାହା ଶିରୋଧାର୍ଯ୍ୟ ହେବ ବୋଲି ନିର୍ଦ୍ଦେଶିତ ହେଲା । ପ୍ରଜାମାନଙ୍କ ଭିତରେ ଜାତିଆଣ, ଉଚ୍ଚନୀଚ ଭାବ ବଢ଼େଇ ପ୍ରଜାମଣ୍ଡଳକୁ ଭାଙ୍ଗିବାର ଉଦ୍ୟମ ବ୍ୟର୍ଥ ହେଲା ।

**ଜେନାପୁର କୃଷକ ଦିବସ ଓ ଢେଙ୍କାନାଳ**

ଏପରି ଏକ ସରଗରମ ପରିସ୍ଥିତିରେ କଟକ ଜିଲ୍ଲା (ଏବେ ଯାଜପୁର) ଜେନାପୁରଠାରେ ପ୍ରାଦେଶିକ କୃଷକ ସଭା ପକ୍ଷରୁ ସେପ୍ଟେମ୍ବର ୧ରେ କୃଷକ ଦିବସରେ ମୋଗଲବନ୍ଦୀର ହଜାର ହଜାର କୃଷକଙ୍କ ସହିତ ଢେଙ୍କାନାଳର ଅନ୍ତତଃ ୨୦ ହଜାର ପ୍ରଜା ଯେପରି ଯୋଗ ଦେବେ ତାହା ସୁନିଶ୍ଚିତ କରିବାକୁ ପ୍ରଜାମଣ୍ଡଳ ଲାଗିପଡ଼ିଲା । କୃଷକ ପତ୍ରିକା କୃଷକ ଦିବସ ଉପଲକ୍ଷେ ଢେଙ୍କାନାଳ ପ୍ରଜାମାନଙ୍କ ସମସ୍ୟା ଓ ସେମାନଙ୍କ ଦାବ ଓ ଆନ୍ଦୋଳନ ସଂକ୍ରାନ୍ତରେ ବିଶେଷ ବିଶେଷ ଲେଖା ପ୍ରକାଶ କଲା ।

ମୋଗଲବନ୍ଦୀର ସେତେବେଳେ କଂଗ୍ରେସ ସରକାର । ଓଡ଼ିଶାରେ ଜମିଦାର ମହାଜନମାନଙ୍କର ଅତ୍ୟାଚାର ଶୋଷଣ ବିରୁଦ୍ଧରେ ଚାଷୀ ଆନ୍ଦୋଳନ ପ୍ରଖର ହୋଇଥାଏ । ସର୍ବଶ୍ରୀ ଗୌରାଙ୍ଗ ଚରଣ ଦାସ, ଅକ୍ଷୟ କୁମାର ଚକ୍ରବର୍ତ୍ତୀ, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ,

ନବକୃଷ୍ଣ ଚୌଧୁରୀ, ଫନୀ ପାଲ୍, ମାଳତୀ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ନାମରେ ମୁଦ୍ରିତ ପ୍ରଚାରପତ୍ରରେ କଂଗ୍ରେସ ସରକାରକୁ ଚରମବାଣୀ ଶୁଣାଇ ଦିଆଯାଇ ଲେଖାଥିଲା, "ଆଜି ଚାଷୀ ଶ୍ରେଣୀର ପ୍ରତିନିଧିସ୍ୱରୂପ ଭୋଟ ନେଇ ଯେଉଁ ମନ୍ତ୍ରିମଣ୍ଡଳ ଗଠିତ ହୋଇଛି, ସେଥିରେ ଯଦି ବାସ୍ତବିକ କିଛି ନ ହେଲା, ପ୍ରଜାସ୍ୱତ୍ୱ ସଂଶୋଧନ ଆଇନ ଆଦି ଅସାଧାରଣ ଦାବୀ ଆଦି ଯଦି ଗୃହୀତ ନହେଲା ତେବେ ସେ ମନ୍ତ୍ରିମଣ୍ଡଳ ଭାଙ୍ଗି ଦେବାକୁ ଚାଷୀ ବାଧ୍ୟ ହେବେ।"

ଜେନାପୁରରେ କୃଷକ ଦିବସରେ ୫୦ ହଜାର ଚାଷୀ ସମବେତ। ତନ୍ମଧ୍ୟରେ ପ୍ରାୟ ୨୦ ହଜାର ଢେଙ୍କାନାଳର ବିଭିନ୍ନ ଦିଗରୁ ଆସିଥିବା ପ୍ରଜା ଓ ପ୍ରଜାମଣ୍ଡଳ ନେତାମାନଙ୍କର ଯୋଗଦାନ ଏକ ଅଭୂତପୂର୍ବ ଘଟଣା। ଜେନାପୁରଠାରେ ଏପରି ବିଶାଳ ଚାଷୀ ସମାବେଶ ଓ ବିରାଟ ପଟୁଆର ଢେଙ୍କାନାଳ ପ୍ରଜାଙ୍କ ମଧରେ ନୂଆ ଜାଗରଣ ଆଣିଦେଲା। ଫନୀ ପାଲ, ବଳଦେବ ଲାଲାଙ୍କ ନେତୃତ୍ୱରେ ଓ ସ୍ୱେଚ୍ଛାସେବକ ବାହିନୀର ଶୃଙ୍ଖଳା ସେମାନଙ୍କୁ ମୁଗ୍ଧ କରିଦେଲା।

ସଭାରେ ଜମିଦାରୀ ପ୍ରଥା ଉଚ୍ଛେଦ, ଦେଶୀୟ ରାଜ୍ୟଗୁଡ଼ିକରୁ ରାଜଶାସନ ଲୋପର ଦାବୀମାନ ପ୍ରତିଧ୍ୱନିତ ହେଲା, ନେତାମାନଙ୍କ ଭାଷଣରେ।

ନବକୃଷ୍ଣ ଚୌଧୁରୀ, ସାରଙ୍ଗଧର ଦାସ, ଭାଗବତୀ ଚରଣ ପାଣିଗ୍ରାହୀ, ପ୍ରାଣନାଥ ପଟ୍ଟନାୟକ, ଗୌରାଙ୍ଗ ଚରଣ ଦାସ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ମୋହନ ଦାସ, ପ୍ରାଣକୃଷ୍ଣ ପଡ଼ିହାରୀ ଭାଷଣ ଦେଇ କଂଗ୍ରେସ ମନ୍ତ୍ରିମଣ୍ଡଳକୁ ଚାଷୀମାନଙ୍କ ଦାବୀ ତୁରନ୍ତ ପୂରଣ କରିବାକୁ ଆହ୍ୱାନ ଦେଲେ। ଏଇଠି ଗଡ଼ଜାତ ରଜାମାନଙ୍କୁ ଚରମବାଣୀ ଶୁଣାଇ ଦିଆଗଲା। ଜେନାପୁର କୃଷକ ସମ୍ମିଳନୀ ଢେଙ୍କାନାଳରେ ତଥା ସବୁ ଗଡ଼ଜାତରେ ରାଜତନ୍ତ୍ର ବିରୋଧୀ ଆନ୍ଦୋଳନ ପ୍ରତି ସମର୍ଥନ ଜଣାଇ ପ୍ରସ୍ତାବ ଧାର୍ଯ୍ୟ କଲା।

ଏହି ବିଶାଳ ସମାବେଶ ଉପଲକ୍ଷେ କୃଷକ ପତ୍ରିକାର ଏକ ବିଶେଷାଙ୍କ ହଜାର ହଜାର ସଂଖ୍ୟାରେ ପ୍ରକାଶ କରାଯାଇଥିଲା। କୃଷକ ବିଶେଷାଙ୍କର ବାର୍ତ୍ତା ଯେପରି ଆଖପାଖ ଗଡ଼ଜାତରେ ତଥା ଜମିଦାରୀ ଅଞ୍ଚଳରେ ପହଞ୍ଚି ବ ତାହାର ବ୍ୟବସ୍ଥା ହୋଇଥାଏ। ପରିଚାଳନା ସଂପାଦକ ଗୁରୁଚରଣ ପଟ୍ଟନାୟକ କଟକରୁ ଛାତ୍ରସଂଘର ଛାତ୍ରନେତାମାନଙ୍କୁ ଧରି କୃଷକ ପାଇଁ ଗ୍ରାହକ ସଂଗ୍ରହ ଓ କୃଷକ ପତ୍ରିକାର ବିକ୍ରୟ ବ୍ୟବସ୍ଥା କରିଥାନ୍ତି। ଅଣାଏ ଦାମ (ଆଜିକା ପଇସା) ଅଳ୍ପ ସମୟ ମଧ୍ୟରେ ସବୁ ବିକ୍ରି ହୋଇଗଲା।

ପ୍ରସଙ୍ଗକ୍ରମେ 'କୃଷକ' ସଂପର୍କରେ ଏକ ଘଟଣା ଏଠାରେ ଉଲ୍ଲେଖଯୋଗ୍ୟ। ତତ୍କାଳୀନ କଂଗ୍ରେସ ମନ୍ତ୍ରିମଣ୍ଡଳର ସ୍ୱରାଷ୍ଟ୍ର ମନ୍ତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ସରକାରଙ୍କ ପକ୍ଷରୁ ବିଶେଷ ତଥ୍ୟ

ବହନ କରିଥିବା ଏହି ସଂଖ୍ୟା "କୃଷକ" ଏକଶହ କପି କ୍ରୟ କରିଦେବାକୁ ଲୋକ ପଠାଇଥିଲେ।

ଏହି ସମାବେଶ ଉପସ୍ଥିତ ଢେଙ୍କାନାଳ ପ୍ରଜାଙ୍କ ମଧ୍ୟରେ ଉଦ୍‌ବେଳନ ଆଣିଲା। ପ୍ରଜାମଣ୍ଡଳର ନେତାମାନଙ୍କ ଅନୁରୋଧ ଶୁଣି ସେମାନେ ତହିଁପରଦିନ ଯାଏ ଜେନାପୁରରେ ପଡ଼ି ରହିଲେ।

ତହିଁପରଦିନ କେବଳ ଢେଙ୍କାନାଳ ପ୍ରଜାମାନଙ୍କର ଏକ ସ୍ୱତନ୍ତ୍ର ସମ୍ମିଳନୀ ବସିଲା। ଏହି ସମ୍ମିଳନୀରେ ଢେଙ୍କାନଳ ପ୍ରଜାମଣ୍ଡଳର ସ୍ଥାୟୀ କର୍ମକର୍ତ୍ତାଙ୍କ ନିର୍ବାଚନ ହେଲା। କାର୍ଯ୍ୟକାରୀ କମିଟି, କେନ୍ଦ୍ର କମିଟି, ସଭାପତି, ସଂପାଦକଭାବେ ଖୋଦ୍ ଢେଙ୍କାନାଳର ନେତା ନିର୍ବାଚିତ ହେଲେ। ମାତ୍ର ଢେଙ୍କାନାଳର ପ୍ରଜା ଆନ୍ଦୋଳନକୁ ଉପଦେଶ ଦେବା ଲାଗି ମୋଗଲବନ୍ଦୀର କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନେତାମାନଙ୍କୁ ଘେନି ଏକ ଉପଦେଷ୍ଟାମଣ୍ଡଳୀ ଗଠନ କରାଗଲା।

କାର୍ଯ୍ୟକାରୀ କମିଟିରେ ରହିଲେ ସଭାପତି ହରମୋହନ ପଟ୍ଟନାୟକ (ଟାଉନ), ଲକ୍ଷ୍ମୀଧର ସାହୁ (ଟାଉନ), ସଂପାଦକ; ମହେଶ ଚନ୍ଦ୍ର ସୁବାହ ସିଂହ (ପରଜଂଗ) ଉପସଭାପତି, ବୈଷ୍ଣବ ଚରଣ ପଟ୍ଟନାୟକ - (ଟାଉନ) ସଂଗଠନ ସଂପାଦକ, ଭଜନ ସାହୁ (ନାଟିମା) କୋଷାଧ୍ୟକ୍ଷ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର (ଆମ୍ବପଲାସ) ନରୋତ୍ତମ ଦାସ (ବଳୁରିଆ), ରାମକୃଷ୍ଣ ପଟ୍ଟନାୟକ (କନ୍ଦରସିଂହା), ବ୍ରଜ ପଟ୍ଟନାୟକ (ମହୁରିପାଳ), କୃତ୍ତିବାସ ପ୍ରଧାନ (ଭାଲିଆପାଟ), ବେଣୁଧର ଦେଓ (ସଁପୁର), ରାଧାମୋହନ ପଟ୍ଟନାୟକ (ବିଦି) ରତ୍ନାକର ରଥ (ମନ୍ଦାର) କିଶୋର ଚନ୍ଦ୍ର ବେହେରା ପ୍ରଧାନ (ପଙ୍ଗାତିରା) ଈଶ୍ୱର ନ୍ଦ୍ର ଜେନା (ନିହଲପ୍ରସାଦ) ସଭ୍ୟ, ଏପରି ୧୫ ଜଣିଆ କାର୍ଯ୍ୟକାରୀ କମିଟି ଗଠିତ ହେଲା।

କେନ୍ଦ୍ର କମିଟିରେ ରହିଲେ ଦଶ ଜଣ ଯଥା - ଦାଶରଥି ଶତପଥୀ, କୃଷ୍ଣ ଚନ୍ଦ୍ର ଦାସ, ଦିବାକର ବିଶ୍ୱାଳ, ସତ୍ୟବାଦୀ ଦାସ, ଶ୍ୟାମ ସାହୁ, ବିଶ୍ୱମ୍ବର ସାହୁ, ଇନ୍ଦ୍ରମଣି ପଣ୍ଡା, ଗୋବିନ୍ଦ ଚନ୍ଦ୍ର ରାଉତ, ରତ୍ନାକର ମହାନ୍ତି ଓ ଶ୍ରୀକାନ୍ତ ରାଉତ।

ଉପଦେଷ୍ଟା ମଣ୍ଡଳୀରେ ରହିଲେ - ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ମାଳତୀ ଚୌଧୁରୀ ଓ ସାରଙ୍ଗଧର ଦାସ।



## ରକ୍ତରଂଜିତ 'ମୁକ୍ତି ଦିବସ' ସେପ୍ଟେମ୍ବର ୧୨

ଜେନାପୁର ସମାବେଶ ପରେ ଏକ ପକ୍ଷରେ ରାଜଦରବାର ପକ୍ଷରୁ ଆଲୋଚନା ଲାଗି ଆସିଲେ, ତାହା ପ୍ରତ୍ୟାଖ୍ୟାନ କରାଯିବ ନାହିଁ ବୋଲି ନିଷ୍ପତ୍ତି ସାଙ୍ଗକୁ ରାଜ ଦରବାର ବାହାରୁ ବ୍ରିଟିଶ ଓ ଶିଖ ଗୁର୍ଖା ପୁଲିସ ମଗାଇ ଥିବାରୁ ତାହାର ଶାନ୍ତିପୂର୍ଣ୍ଣ ଦୃଢ଼ ମୁକାବିଲାର କର୍ମକୌଶଳ ନିଆଗଲା ।

ରାଜଦରବାର ପକ୍ଷରୁ ଅଗଷ୍ଟ ୨୩ରେ ଯେଉଁସବୁ ସୁଯୋଗ ଦିଆଗଲା ବୋଲି ଡିଣ୍ଡିମ ପିଟାଯାଇଥିଲା, ସେସବୁକୁ ଉଲ୍ଲେଖ କରି ଏହା ପ୍ରତାରଣାପୂର୍ଣ୍ଣ ବୋଲି ପ୍ରଜାମଣ୍ଡଳ ପକ୍ଷରୁ ପ୍ରଚାରପତ୍ର ସେପ୍ଟେମ୍ବର ୫ ତାରିଖରେ ବଣ୍ଟାଗଲା । ତହିଁପରଦିନ ନୁଆଖାଇ । ରାଜାଙ୍କ ଉଆସରେ ବିଭିନ୍ନ ଦେଶର ରାଜାଙ୍କ କଚେରୀଠାରେ ଚିରାଚରିତ ନୁଆଖାଇ ଭେଟିକୁ ପ୍ରଜାମାନେ ସଂପୂର୍ଣ୍ଣ ବାସନ୍ଦ କରିଦେଲେ । ସେପ୍ଟେମ୍ବର ୯ ତାରିଖରେ ପ୍ରଜାମଣ୍ଡଳପକ୍ଷରୁ ଦରବାରକୁ ଏକ ସ୍ମାରକଲିପି ଦିଆଗଲା । ସେଥିରେ ପ୍ରଜାମଣ୍ଡଳର ଦାବୀଗୁଡ଼ିକ ପୂରଣ ଘେନି ଆଲୋଚନା କରିବା ପାଇଁ ପାଞ୍ଚଜଣ ପ୍ରତିନିଧିଙ୍କୁ ସାକ୍ଷାତ୍‌କାର ଲାଗି ଅନୁମତି ମଗାଯାଇଥିଲା ।

ରାଜଦରବାର ସେପ୍ଟେମ୍ବର ୧୫ ତାରିଖ ସଂଧ୍ୟାରେ ପ୍ରତିନିଧି ଦଳକୁ ସାକ୍ଷାତକାର ଲାଗି ଅନୁମତି ଦେଲେ । ମାତ୍ର ଚାରୋଟି ସର୍ତ୍ତ ଆରୋପ କଲେ ।

ଯଥା ପ୍ରଜାମଣ୍ଡଳ କୌଣସି ସଭାସମିତି, ପଟୁଆର, ସାଧାରଣ ସଭା କରିବ ନାହିଁ କି ଆଗକୁ ନୂଆ ନୂଆ ଦାବୀ ବାଢ଼ିବ ନାହିଁ । ମାତ୍ର ଏପରି ସର୍ତ୍ତକୁ ପ୍ରଜାମଣ୍ଡଳ ଗ୍ରହଣ କରିବା ନାହିଁ ବୋଲି ରୋକଠୋକ ଜଣାଇ ଦିଆଗଲା । ଏହି ସମୟ ମଧ୍ୟରେ ରାଜପକ୍ଷରୁ ସାହାଯ୍ୟ କରିବାକୁ ବଲାଙ୍ଗିର ପାଟନା ମହାରାଜଙ୍କର ଦେବାନ କୁନଓ୍ୱାର ସିଂହ ଓ ଶ୍ୱଶୁରାଳୟ ଷଢ଼େଇକଳାର ଦେବାନ ଡକା ହୋଇ ଆସିଲେ । ଆଲୋଚନା ପାଇଁ ପ୍ରଜାମଣ୍ଡଳର ପ୍ରତିନିଧିମାନେ ଉପସ୍ଥିତ ଥିବା ଦେଖି ପ୍ରଶାସନ ଆଲୋଚନା ପରିବର୍ତ୍ତେ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ କରିଦେଲା । ୧୧ ସେପ୍ଟେମ୍ବର ସଂଧ୍ୟା ପୂର୍ବରୁ ପ୍ରଜାମଣ୍ଡଳର ସଭାପତି, ଉପସଭାପତି ଯଥାକ୍ରମେ ହରମୋହନ ପଟ୍ଟନାୟକ ଓ ସୁବାହୁ ସିଂହ, ସଂପାଦକ ଲକ୍ଷ୍ମୀଧର ସାହୁ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର, କାଶିନାଥ ମିଶ୍ର ଏମିତି ୧୨ଜଣଙ୍କୁ ଗିରଫ କରାଗଲା । ପ୍ରଜାମଣ୍ଡଳ ଅଫିସ ଉପରେ ପୁଲିସ ଚଢ଼ଉ କଲା ।

ବିଜୁଳି ପରି ସହର ଓ ଆଖପାଖ ଅଞ୍ଚଳରେ ସଂବାଦ ବ୍ୟାପିଗଲା । ପ୍ରତ୍ୟେକ ଗିରଫ ବ୍ୟକ୍ତିଙ୍କ ଗଳାରେ ଶହ ଶହ ଫୁଲମାଳ ଦେଇ ପ୍ରଜାମାନେ ଜେଲ ଫାଟକ ପାଖକୁ ପାଛୋଟି ନେଉଥାନ୍ତି । ପୁଲିସ ଲୋକଙ୍କୁ ଘଉଡ଼ାଉଥାଏ । ତେବେ ଆହତ ହେଲେ । ନବୀନ ସ୍ୱାଇଁଙ୍କ ମୁଣ୍ଡରେ ବେୟୋନେଟ ଭୁଷାରେ ସେ ରକ୍ତାକ୍ତ ହେଲେ । ଏହାପରେ ଚାଲିଲା ଅନ୍ଧାଧୁନିଆ ଲାଠିମାଡ଼ । ହାତୀ ଘୋଡ଼ା ଲଗେଇ ଲୋକଙ୍କୁ ଘଉଡ଼ାଇବା, ହାତୀ ମଡ଼ାଇବା । ମାତ୍ର ଜନତାର କ୍ରୋଧ ଏସବୁ ପ୍ରତି ଖାତିର କଲାନାହିଁ । ପ୍ରଜାମଣ୍ଡଳ ନେତାମାନଙ୍କ ଗିରଫ ସମ୍ୱାଦ ସେଦିନ ମଧ୍ୟରାତ୍ର ବେଳକୁ କେବଳ ଢେଙ୍କାନାଳର ୨୪ ଦିଶର ଗାଁମାନଙ୍କରେ ନୁହଁ, ପାଖ ପଡ଼ୋଶୀ ଗଡ଼ଜାତ, ଆଠଗଡ଼ ତିଗରିଆ, ତାଳଚେର, ହିନ୍ଦୋଳ, ବଡ଼ମ୍ବା, ନରସିଂହପୁରରେ ବ୍ୟାପିଗଲା । ପ୍ରଜାମଣ୍ଡଳକୀ ଜୟ, ଆମ ନେତାମାନଙ୍କୁ ଖଲାସ କର, ହୁଙ୍କାପିଟା ଶାସନ ଲୋପ ହେଉ, ମହାତ୍ମାଗାନ୍ଧୀକୀ ଜୟ ଧ୍ୱନିରେ ଆକାଶ ପବନ ମୁଖରିତ ହୋଇ ଉଠିଲା ।

ପ୍ରଶାସନ ପକ୍ଷରୁ ଚାରିଆଡୁ ସହରକୁ ପୁଲିସ ଘେରରେ ନିବୁଜ କରି ରଖିବାର ଚେଷ୍ଟା ବିଫଳ ହେଲା । ଏସବୁ ସଂବାଦ ଜେଲରେ କାମ କରୁଥିବା ତଳିଆ କର୍ମଚାରୀମାନେ ବନ୍ଦୀ ନେତାମାନଙ୍କୁ ଜଣାଉଥାନ୍ତି ।

ଅନେକ ଅଫିସର କର୍ମଚାରୀ ଆତଙ୍କିତ ହୋଇ ଲୁଚିବାକୁ ଆରମ୍ଭ କଲେ । ରାତିରେ ବନ୍ଦୀପ୍ରଜାମଣ୍ଡଳ ନେତାଙ୍କୁ ରାଜଦରବାରରେ ଦୂତ ପହଂଚି କ୍ଷମା ମାଗିଲେ ମୁକ୍ତି ଦିଆଯିବ ବୋଲି ସର୍ତ୍ତ ବାଢ଼ିଲେ । ବନ୍ଦୀମାନେ ଏହି ସର୍ତ୍ତକୁ ପରିହାସ କରି ଉଡ଼େଇ ଦେଲେ । ବନ୍ଦୀ ସଭାପତି ହରମୋହନ ପଟ୍ଟନାୟକ ତାଙ୍କ କ୍ଷୁଦ୍ର ପୁସ୍ତିକାରେ ସେ ରାତିର ଜେଲ ଜୀବନର ବିବରଣୀରେ ଲେଖିଛନ୍ତି "ଜେଲ ଭିତରେ ପ୍ରଜାମଣ୍ଡଳ ବନ୍ଦୀମାନେ ଅତି ଆନନ୍ଦରେ କଂଗ୍ରେସ କମ୍ୟୁନିଷ୍ଟ ଗୀତଗାଇ ବିଭୋର । ବୁଢ଼ା ମହେଶ୍ୱର ସୁବାହୁ ସିଂହ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର, କାଶୀନାଥ ଟିକିଏ ଶାନ୍ତ । ଅନ୍ୟମାନେ ଗୀତ ଗାଇ ନାଚକୁଦରେ ବ୍ୟସ୍ତ ।"

ଏଣେ ସଭାକୁ ଆସିଥିବା ସହସ୍ର ସହସ୍ର ଲୋକ ଅଳସୁଆ ହାଟ ପଡ଼ିଆରେ ବର୍ଷା ପବନରୁ ବେଖାତିର ଉଜାଗର ଥାଆନ୍ତି । ୧୨ ତାରିଖ ସକାଳଠାରୁ ଢେଙ୍କାନାଳ ରେଳଷ୍ଟେସନ ନିକଟସ୍ଥ ଅଳସୁଆ ହାଟରେ ଜନ ସମୁଦ୍ର । ସବୁ ପୁଲିସ ଘେର ଫସରଫାଟି ଯାଇଥିଲା । ଆମ ବନ୍ଦୀମାନଙ୍କୁ ଖଲାସ କର, ପ୍ରଜାମଣ୍ଡଳ ଦାବୀ ମାନି ନିଅ, ଇତ୍ୟାଦି ଧ୍ୱନି ଗଗନକୁ ପ୍ରକମ୍ପିତ କଲା । ନେତାମାନେ ଭାଷଣ ଦେଉଥାନ୍ତି । ପାଖଗାଁମାନଙ୍କରୁ ଓ ଢେଙ୍କାନାଳର ଘରୁ ଘରୁ ଏହି ବିରାଟ ଜନ ସମୁଦ୍ର ପାଇଁ ଖାଇବା ପଦାର୍ଥ ମୁଢ଼ି ଚୂଡ଼ା କଦଳୀ, ଯିଏ ଯାହା ପାରେ ପଠାଉଥାନ୍ତି ।

ସଶସ୍ତ୍ର ପୁଲିସ, ହାତୀ ଘୋଡ଼ା ସବାର ଓ ବନ୍ଧୁକ ତରବାରୀ ଧରି ଜନସମୁଦ୍ର ଉପରେ ଝାମ୍ପି ପଡ଼ିଲେ । ଲୋକମାନଙ୍କୁ ହଟିଯିବାକୁ କଡ଼ା ଆଦେଶ ଦିଆଗଲା । ବଦ୍ଧପରିକର ପ୍ରଜା

ପରିଣତିକୁ ପରବାୟ ନକରି କେହି ହଟିଗଲେ ନାହିଁ । ସେ ଦିନ ପୁଲିସ ପକ୍ଷରୁ ତିନିଥର ଗୁଳି ଫାଏର କରାଗଲା । ସହସ୍ର ସହସ୍ର ସଂଖ୍ୟାରେ ଚାରିଆଡୁ ଢେଙ୍କାନାଳ ସହରରେ ପ୍ରବେଶ କରୁଥିବା ଲୋକଙ୍କୁ ୨ ଥର ଗୁଳି ଚଳାଇ ଅନେକଙ୍କୁ ଆହତ କଲେବି ଲୋକସ୍ରୋତ ବନ୍ଦ କରି ହେଲାନି । ତୃତୀୟବାର ଅନ୍ଧାଧୁନିଆ, ଆଖିବୁଜା ଆକ୍ରମଣ । ହାତୀ ମଡ଼ା, ଘୋଡ଼ା ମଡ଼ା ଓ ଗୁଳିରେ ପ୍ରାୟ ଶହେରୁ ଅଧିକ ବ୍ୟକ୍ତି ଆହତ ହେଲେ ଓ କଣ୍ଟିଆ ଗାଁର ଜଣେ ବ୍ୟକ୍ତି ନିହତ ହେଲେ । ତାଙ୍କ ଶବ ମିଳିଲା । ମାତ୍ର ଆଉ ଯେଉଁମାନେ ମୃତ୍ୟୁବରଣ କଲେ ଅନ୍ଧାର ରାତିରେ ସେମାନଙ୍କ ଟ୍ରକ ଯୋଗେ ବୋହି ନେଇ କୁଆଡ଼େ ଫିଙ୍ଗି ଦିଆଗଲା । ଆତ୍ମରକ୍ଷା ଲାଗି ପ୍ରଜାଙ୍କ ପକ୍ଷରୁ ମଧ ପ୍ରତିରୋଧ ହେଲା । କ୍ରେଫିଲଡ଼ ନାମକ ସହକାରୀ ପୁଲିସ କମିଶନର ଏକ ହାତରେ ବନ୍ଧୁକ ଓ ଅନ୍ୟ ହାତରେ ରାଜାଙ୍କ ଅଷ୍ଟଧାତୁ ନିର୍ମିତ 'ଜୟ ତରବାରୀ' ଧରି ଆକ୍ରମଣ କରୁଥାନ୍ତି । ଜନତାର ପ୍ରତିରୋଧରେ ତାଙ୍କ ହାତରୁ ଅଷ୍ଟାଧାତୁ ନିର୍ମିତ 'ଜୟ ତରବାରୀ' ଭୂଲୁଣ୍ଠିତ ହେଲା । ଧ୍ୱନି ଉଠିଲା "ପ୍ରଜାମଣ୍ଡଳର ଜୟ, ଅଷ୍ଟଧାତୁ ଜୟ ତରବାରୀରେ ପରାଜୟ ।"

ଆକ୍ରମଣ ଶେଷ କରି ଲୋକଙ୍କ ମନୋବଳ ଦେଖି ଭୟଭୀତ ହୋଇ ସେଦିନ ଅନେକ ରାଜ କର୍ମଚାରୀ ଘରଦ୍ୱାର ଛାଡ଼ି ଲୁଚିଗଲେ । ଛଣଭାଡ଼ି, ପାଇଖାନାରେ ଲୁଚିବା ଆରମ୍ଭ କରିଦେଲେ । କାଳେ ଲୋକେ ମାଡ଼ି ଆସିବେ ଆଶଙ୍କାରେ ।

ଆହତ ଲୋକମାନଙ୍କୁ ପ୍ରଜାମଣ୍ଡଳର ସ୍ୱେଚ୍ଛାସେବକ ଓ ପ୍ରଜାମାନେ ପ୍ରାଥମିକ ଚିକିତ୍ସା ଯିଏ ଯାହା ଜାଣି ଥିଲା, ଦେଲେ । ଅ୪ ସାଂଘାତିକ ଭାବରେ ଆହତ ଲୋକଙ୍କୁ କଟକ ଡାକ୍ତରଖାନା ପଠାଇବା ଉଦ୍ଦେଶ୍ୟରେ ଷ୍ଟେସନକୁ ବୁହାଗଲା । ଠିକ୍ ସେହିଦିନ ପରଂଜଗ ବିଶରେ ଏକ ବଡ଼ ସଭା ଶେଷ କରି ମାଳତୀ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ ଓ ବୈଷ୍ଣବ ପଟ୍ଟନାୟକ ତାଳଚେର ଗାଡ଼ିରେ ଫେରିଲାବେଳେ ଏ ଦୃଶ୍ୟ ଦେଖିଲେ । କିଛି ସମୟ ରେଳ ଅଟକାଇବା ଲାଗି ଅନୁରୋଧ କଲେ ଏବଂ ଆହତ ଲୋକମାନଙ୍କୁ ଗାଡ଼ିରେ କଟକ ନେଇଗଲେ । ବୈଷ୍ଣବଙ୍କୁ ଛାଡ଼ିଦେଇ ସେମାନେ କଟକରେ ପହଂଚି ସର୍ବତ୍ର ସଂବାଦ ପ୍ରଚାର କରିଦେଲେ । ଓଡ଼ିଶା ସରକାରଙ୍କୁ ଜଣେଇଲେ ଏବଂ ସମସ୍ତେ ଠୁଳ ହୋଇ ଆଗାମୀ କର୍ମପନ୍ଥା ବିଚାରି ତହିଁପରଦିନ ଢେଙ୍କାନାଳରେ ପହଂଚିବାକୁ ସ୍ଥିର କଲେ ।

ଏଣେ ପୂର୍ବରୁ ଆକ୍ରମଣ ପରେ ଜନସମୁଦ୍ରର ଟାଣପଣ ଦେଖି ରାଜଦରବାର ମଧ ଛାଟିଆ ହୋଇଗଲା । ସହକାରୀ ପୁଲିସ କମିଶନର ବର୍ମନ ଜେଲଖାନାକୁ ଯାଇ ବନ୍ଦୀ ମୁକ୍ତି ପାଇଁ ସର୍ତ୍ତ ବାଢ଼ିଲେ । ବନ୍ଦୀମାନେ କ୍ଷମା ମାଗିବେ, ଆନ୍ଦୋଳନ, ସଭାସମିତି କରିବେ ନାହିଁ ଇତ୍ୟାଦି ହେଲା ସର୍ତ୍ତ । ବନ୍ଦୀ ନେତାମାନେ ସେସବୁ ସର୍ତ୍ତକୁ ପ୍ରତ୍ୟାଖ୍ୟାନ କରି ଦେବା ପରେ ମଧ ରାତ୍ରରେ

ସେମାନଙ୍କୁ ବିନା ସର୍ତ୍ତରେ ଖଲାସ କରାଗଲା । ବନ୍ଦୀମାନେ ସିଧାସଳଖ ଅଳସୁଆ ହାଟରେ ବର୍ଷାପାଣିରେ ଭିଜି ତଳେ ଶୋଇଥିବା ସହସ୍ର ସହସ୍ର ଜନତାଙ୍କ ପାଖରେ ପହଞ୍ଚନ୍ତେ ଆନନ୍ଦ ଉଲ୍ଲାସ ଓ ପ୍ରଜାମଣ୍ଡଳର ଜୟଧ୍ୱନି ରାତ୍ରିର ନୀରବତାକୁ ଭଙ୍ଗ କରିଦେଲା ।

ସେପ୍ଟେମ୍ବର ୧୩ ମଧ୍ୟାହ୍ନ ବେଳକୁ କଟକରୁ ସାରଙ୍ଗଧର ଦାସ, ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ରବି ଘୋଷ ପ୍ରମୁଖ ନେତା ଓ ଅନେକ ଛାତ୍ରସଂଘ କର୍ମୀ ଉପସ୍ଥିତ ହେଲେ । 'ସମାଜ' ପକ୍ଷରୁ କଟକରୁ ରାଧାନାଥ ରଥ, ଅମୃତ ବଜାର ପତ୍ରିକାର ପ୍ରତିନିଧି ମୋହିତ ବାନାର୍ଜୀ ଏବଂ ପିଟିଆଇର ପ୍ରତିନିଧି ଏନ.ଆର.ସ୍ୱାମୀ ଆସି ତଥ୍ୟ ସଂଗ୍ରହ କରିଥିଲେ । ନେତୃବର୍ଗ ସେମାନଙ୍କ ଭାଷଣରେ ସଂଗ୍ରାମ ଶେଷ ହୋଇନାହିଁ, ରାଜତନ୍ତ୍ରକୁ ଓଡ଼ିଶା ମାଟିରୁ ଓ ଭାରତବର୍ଷରୁ ନିର୍ମୂଳ କରିବା ଲାଗି ଅହିଂସ, ଶାନ୍ତିପୂର୍ଣ୍ଣ, ସଂଗଠିତ, ଶୃଙ୍ଖଳିତ ଆନ୍ଦୋଳନ ଲାଗି ଅଧିକ ପ୍ରସ୍ତୁତ ହେବାକୁ ଆହ୍ୱାନ ଦେଲେ । ତିନିଦିନ ଦିନ ଧରି ସହସ୍ର ସହସ୍ର ପ୍ରଜା ଢେଙ୍କାନାଳଗଡ଼ର ଅବରୋଧ ଉଠାଇ ଦେଇ ନିଜ ନିଜ ଗାଁକୁ ଫେରିଯାଇ ଆଗାମୀ ଦିନର ସଂଗ୍ରାମ ପାଇଁ ପ୍ରସ୍ତୁତି ଚଳେଇଲେ ।

ସେପ୍ଟେମ୍ବର ୧୫ ତାରିଖରେ ଗଡ଼ ମଧୁବନ ତୋଟାରେ ଛାତ୍ର ସଂଘର ଡାକରାରେ ୧୨ ତାରିଖର ପୁଲିସ ଦମନର ପ୍ରତିବାଦ କରି ଏକ ବଡ଼ ଧରଣର ଛାତ୍ର ସଭାରେ ଯୋଗ ଦେଲେ କଟକରୁ ଛାତ୍ର ସଂଘ ସଂପାଦକ ବିଶ୍ୱନାଥ ପଶାଏତ୍ ଓ ଗୋବିନ୍ଦ ଚନ୍ଦ୍ର ମହାନ୍ତି । ଏହି ସଭାରେ ଢେଙ୍କାନାଳରେ ରାଜ ଶାସନକୁ ଲୋପ କରିବା ଲାଗି ଢେଙ୍କାନାଳର ଛାତ୍ରମାନେ ପ୍ରଜାମଣ୍ଡଳକୁ ମଜବୁତ କରିବୁ ବୋଲି ଶପଥ ନେଇଥିଲେ ।

**ଗୋଟିଏ ହାତରେ ଶାନ୍ତିବାର୍ତ୍ତା ଅନ୍ୟ ହାତରେ କଟୁରୀ :**

ସେହି ସେପ୍ଟେମ୍ବର ୧୩ ତାରିଖରେ ପ୍ରଜାମଣ୍ଡଳ କର୍ତ୍ତୃପକ୍ଷଙ୍କୁ ଏକ ଶାନ୍ତିବାର୍ତ୍ତା ଆସିଲା । ପ୍ରଜାମଣ୍ଡଳର ନ୍ୟାଯ୍ୟ ଦାବୀଗୁଡ଼ିକୁ ରାଜଦରବାର ବିଚାର କରିବାକୁ ପ୍ରସ୍ତୁତ ବୋଲି ସେଥିରେ ଉଲ୍ଲେଖ ଥିଲା ଏବଂ ପ୍ରଜାମଣ୍ଡଳକୁ ରାଜ ଦରବାର ସ୍ୱୀକାର କରେ ବୋଲି କୁହାଯାଇଥିଲା ।

ମାତ୍ର ୧୪ ତାରିଖରେ ରାଜଦରବାର ପକ୍ଷରୁ ବିଜ୍ଞପ୍ତି ପ୍ରକାଶ କରାଗଲାଯେ ୧୨ ତାରିଖରେ ଗୁଳି କରାଯାଇନାହିଁ । ପ୍ରଜାମଣ୍ଡଳ ଓ ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀର ପ୍ରଚାର ତାହା ମିଛ । ୧୪ ତାରିଖରେ ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ କମିଟି ସଭ୍ୟ ହରେକୃଷ୍ଣ ମହତାବ ଓ କଟକରୁ ବରିଷ୍ଠ ଆଇନଜୀବୀ ସତ୍ୟନାରାୟଣ ସେନଗୁପ୍ତ ଢେଙ୍କାନାଳଗଡ଼ରେ ପହଞ୍ଚିଲେ । ୧୨ ତାରିଖର ଘଟଣାବଳୀ ସଂକ୍ରାନ୍ତରେ ଏକ ତଦନ୍ତ କମିଟି ବସାଇବାକୁ ପ୍ରଶାସନ ପକ୍ଷରୁ ପ୍ରସ୍ତାବ ଦିଆଯିବା ସଙ୍ଗେ ସଙ୍ଗେ ମହତାବ ଉକ୍ତ କମିଟିରେ ରହନ୍ତୁ

ବୋଲି ଦରବାର ପକ୍ଷରୁ ଅନୁରୋଧ କରାଗଲା । ମହତାବ ଉକ୍ତ କମିଟିରେ ରହିବାକୁ ନାହିଁ କଲେ । କିନ୍ତୁ ରାଜଦରବାର ଓ ପ୍ରଜାମଣ୍ଡଳ ମଧ୍ୟରେ କୌଣସି ଏକ ରାଜିନାମା କଥାବାର୍ତ୍ତାକୁ ସାହାଯ୍ୟ କରିବାକୁ ସେ ପ୍ରତିଶ୍ରୁତି ଦେଲେ । ପ୍ରଜାମଣ୍ଡଳର ବିଶ୍ୱାସ ହେଲାଯେ କୌଣସି ଏକ ସମାଧାନରେ ପହଞ୍ଚିବାକୁ ରାଜ ଦରବାର ଚାହେଁ । ତେଣୁ ଏହି ଆଲୋଚନାରେ ଭାଗ ନେବା ପାଇଁ ହରେକୃଷ୍ଣ ମହତାବଙ୍କୁ ପ୍ରଜାମଣ୍ଡଳର ୧୦ ଜଣ ପ୍ରତିନିଧିଙ୍କ ତାଲିକା ଦିଆଗଲା ଏବଂ ୧୨ ତାରିଖରେ ରାଜ ଦରବାରକୁ ବାସନ୍ଦ କରିବା ଲାଗି ଯେଉଁ ନିର୍ଦ୍ଦେଶ ଦିଆଯାଇଥିଲା ତାହାକୁ ପ୍ରତ୍ୟାହାର କରି ନିଆଗଲା । ରାଜ ଦରବାର ସହିତ ପ୍ରଜାମଣ୍ଡଳର ପ୍ରତିନିଧିଦଳର ଆଲୋଚନା ସେପ୍ଟେମ୍ବର ୧୬/୧୭ ଦୁଇଦିନ କାଳ ଚାଲିଲା । ହଠାତ୍ ରାଜା ଆଲୋଚନା ବନ୍ଦ କରିଦେଇ ସେପ୍ଟେମ୍ବର ୨୦ରେ ପୁଣି ଆଲୋଚନା ଚାଲିବ ବୋଲି ବୈଠକ ଭାଙ୍ଗି ଦେଲେ । ପ୍ରଜାମଣ୍ଡଳର ନେତାମନେ ରାଜଦରବାରର ଚାଲ ସଂପୂର୍ଣ୍ଣ ବୁଝିପାରିଲେ । ଏହି ଆଲୋଚନା ଭାଙ୍ଗି ଦେଇ ସେପ୍ଟେମ୍ବର ୨୨ ତାରିଖରେ ଦରବାର ପ୍ରଜାମଣ୍ଡଳକୁ ବେଆଇନ ଘୋଷଣା କରି ଦେଇ ଗେଜେଟ ପ୍ରକାଶ କଲା । ତହିଁପୂର୍ବରୁ ସେପ୍ଟେମ୍ବର ୧୫ ତାରିଖରେ ଢେଙ୍କାନାଳରେ ପଲିଟିକାଲ ଏଜେଣ୍ଟ ଆସି ରାଜଦରବାରକୁ ଆଗାମୀ ମୁକାବିଲା ପାଇଁ ନିର୍ଦ୍ଦେଶ ଦେଲେ । ବିଭିନ୍ନ ଆଡୁ ସୈନ୍ୟସାମନ୍ତ ଆଣି ଢେଙ୍କାନାଳରେ ମୁତୟନ କରିଦେଲେ । ପ୍ରଜାମଣ୍ଡଳକୁ ବେଆଇନ ଘୋଷଣା କରିଦେବା ସଙ୍ଗେ ସଙ୍ଗେ ଚାରିଆଡ଼େ ବ୍ୟାପକ ଗିରଫଦାରୀ ଚାଲିଲା । ରାଜ୍ୟର ବିଭିନ୍ନ ଅଞ୍ଚଳରେ ସଶସ୍ତ୍ର ବାହିନୀକୁ ନିୟୋଗ କରାଗଲା ।

ପ୍ରଜାମଣ୍ଡଳ ସଭାପତି ହରମୋହନ ପଟ୍ଟନାୟକଙ୍କୁ ବ୍ରିଟିଶ ରେଳବାଇ ପୁଲିସ ଦ୍ୱାରା ଟ୍ରେନ୍‌ରୁ ଗିରଫ କରି ନେଇ ମୋଗଲବନ୍ଦୀ କଟକ ଜେଲରେ ନିକ୍ଷେପ କରିଦିଆଗଲା । ବାଙ୍କି ପଟ୍ଟ ବ୍ରଜ କିଶୋର ଧଳଙ୍କୁ ଗିରଫ କରି କଟକ ଜେଲରେ ଭର୍ତ୍ତି କରାଗଲା । ଢେଙ୍କାନାଳ ସଂପର୍କରେ ଗାନ୍ଧିଜୀଙ୍କୁ ଭେଟି ଜଣାଇବାକୁ ଗଲାବେଳେ ବାଟରେ ବାଙ୍କନିଧି ଭୂତିଆ, ବିଶ୍ୱମୋହନ ପଟ୍ଟନାୟକ, ବାଳକୃଷ୍ଣ ଦାସ ଏବଂ ଆଉ ଅନେକଙ୍କୁ ଗିରଫ କରାଗଲା । ତତ୍କାଳୀନ ଆଇନଗତ ବ୍ୟବସ୍ଥା ହେତୁ ମୋଗଲବନ୍ଦୀ ଓଡ଼ିଶାରେ ଗଡ଼ଜାତରେ ପ୍ରଜାଙ୍କୁ ସେ ରାଜ୍ୟର ପ୍ରଶାସନ ଦ୍ୱାରା ଗିରଫ ବ୍ୟକ୍ତିଙ୍କୁ ରଖାଯିବାରୁ ଓଡ଼ିଶାର ରାଜନୈତିକ ମହଲରେ ଘୋର ଅସନ୍ତୋଷ ପ୍ରକାଶ ପାଇଥିଲା । ବିଶେଷତଃ କଂଗ୍ରେସରେ ଥିବା ଅନେକ ଗଣତନ୍ତ୍ରବାଦୀ ନେତା ଓ କର୍ମୀ କଂଗ୍ରେସ ମନ୍ତ୍ରିମଣ୍ଡଳର ସମାଲୋଚନା କରିଥିଲେ । ବିନା ବିଚାରରେ ଗଡ଼ଜାତ ନେତାମାନଙ୍କୁ ମୋଗଲବନ୍ଦୀ ଜେଲରେ ବନ୍ଦୀ ରଖିବା ଉଚିତ ନୁହେଁ ବୋଲି ଓଡ଼ିଶା ସରକାର ସେମାନଙ୍କୁ ମୁକ୍ତ କରିଦେଲେ ।

ସମସ୍ୟା କେବଳ କଂଗ୍ରେସ ମନ୍ତ୍ରିମଣ୍ଡଳ ଶାସିତ ଓଡ଼ିଶାରେ ନୁହେଁ । ସାରା ଭାରତରେ ଗଡ଼ଜାତ ପ୍ରଜା ଆନ୍ଦୋଳନ କାଳରେ ସଂପୃକ୍ତ ପ୍ରଦେଶର କଂଗ୍ରେସ ମନ୍ତ୍ରିମଣ୍ଡଳ ପାଇଁ ଏହା ଏକ ସମସ୍ୟା ହୋଇଥିଲା ।

ଢେଙ୍କାନାଳର ଏହି ସମସ୍ୟାକୁ ଘେନି ମହାତ୍ମାଗାନ୍ଧୀ ୧୯୩୮ ଡିସେମ୍ବର ୩ରେ "ଦେଶୀୟ ରାଜ୍ୟ ସମୂହ ଓ ପ୍ରଜାଗଣ" ନାମକ ପ୍ରବନ୍ଧରେ ଉପସଂହାରରେ ଲେଖି ଥିଲେ। ++ "ଆଉ ଏକ ବିଷୟ ଅଛି, ସେଥିପ୍ରତି ଦେଶୀୟ ରାଜ୍ୟଗୁଡ଼ିକର ଓ ସେମାନଙ୍କର ପରାମର୍ଶଦାତାମାନଙ୍କ ଜରୁରୀ ଦୃଷ୍ଟି ଦେବା ଆବଶ୍ୟକ କରୁଛି। ସେମାନେ କଂଗ୍ରେସ ନାଁ ଶୁଣିଲେ ଚିହିଁକି ଉଠୁଛନ୍ତି। କଂଗ୍ରେସ ଲୋକଙ୍କୁ ସେମାନେ ବାହାରର ଲୋକ, ବିଦେଶୀ ଲୋକ ଏମିତି ଆଉ କ'ଣ ବିଚାରୁଛନ୍ତି। ଏହା ଆଇନରେ ଥାଇପାରେ। ମାତ୍ର ମଣିଷକୃତ ଆଇନ ସଂପୂର୍ଣ୍ଣ ଅକାମୀ ହୋଇଯାଏ ଯେତେବେଳେ ପୂରାଦମରେ ପ୍ରାକୃତିକ ଆଇନ କାର୍ଯ୍ୟ କରେ। ସେମାନଙ୍କ ସ୍ୱାର୍ଥ ଜଡ଼ିତ ସବୁ ବିଷୟ ଲାଗି ଦେଶୀୟ ରାଜ୍ୟର ଲୋକେ କଂଗ୍ରେସକୁ ଚାହାନ୍ତି। ସେମାନଙ୍କ ମଧ୍ୟରୁ ଅନେକେ କଂଗ୍ରେସର ସଦସ୍ୟ। ଦେଶୀୟ ରାଜ୍ୟ ଓ ତଥାକଥିତ ବ୍ରିଟିଶ ଭାରତର ସଭ୍ୟମାନଙ୍କ ମଧ୍ୟରେ କଂଗ୍ରେସ ସଂଗଠନରେ ପ୍ରଭେଦ ନଥାଏ। ++"

ଢେଙ୍କାନାଳର ପ୍ରଜାମାନଙ୍କ ସଂଗ୍ରାମ ସଂପର୍କରେ ଆଲୋଚନା କରି ସେ ଲେଖିଥିଲେ, "ମୁଁ ଅନୁଭବ କରେ, ପ୍ରଦେଶମାନଙ୍କରେ ଥିବା ମନ୍ତ୍ରୀମାନେ ସେମାନଙ୍କ ସୀମାକୁ ଲାଗି ଥିବା ଦେଶୀୟ ରାଜ୍ୟଗୁଡ଼ିକରେ ଚାଲିଥିବା ଘୋର ଅପଶାସନ ପ୍ରତି ଦୃଷ୍ଟି ଦେବାକୁ ନୈତିକଭାବରେ ବାଧ୍ୟ ଏବଂ ସର୍ବୋଚ୍ଚ ଶକ୍ତି (ପାରମାଉଟ୍‌ପାୱାର) କ'ଣ କରିବାକୁ ହେବ, ସେପରି ଅଭିମତ ଦେବା ଉଚିତ। ଯଦି ବନ୍ଧୁତ୍ୱପୂର୍ଣ୍ଣ ସଂପର୍କ ରଖିବାକୁ ଚାହାନ୍ତି ତେବେ ସର୍ବୋଚ୍ଚ ଶକ୍ତିକୁ ସେମାନଙ୍କ ପରାମର୍ଶକୁ ସହାନୁଭୂତି ସହିତ ଶୁଣିବାକୁ ହେବ।++"

□□□

# କଟକରେ ଶହୀଦମାନଙ୍କ ମରଣତୂରୀର ପ୍ରତିଧ୍ୱନି

ସହସ୍ର ବର୍ଷର କଟକ ରାଜଦଣ୍ଡ ଶତ ସହସ୍ର ଶବ ପଟୁଆରେ ବହନ କରିଥିବ । ଆତ୍ମୀୟସ୍ୱଜନ, ଗୁଣଗ୍ରାହୀମାନଙ୍କ କ୍ରନ୍ଦନ, ଅନୁଶୋଚନାର ସୀମା ନଥିବ । ମାତ୍ର ଢେଙ୍କାନାଳର ଛ'ଟି ବୀର ଶହୀଦଙ୍କ ଶବ ପଟୁଆରରେ ଏକ ବୈଶିଷ୍ଟ୍ୟ ରହିଛି । ତାହା ଅନୁଶୋଚନା ସାଙ୍ଗକୁ ସେ କାଳର ଓଡ଼ିଶାର ଜନମାନସରେ ସଂଗ୍ରାମର ସଂକଳ୍ପ ଆଣିଦେଇଛି । ଛ'ଟି ପରିବାର ପାଇଁ ସମବେଦନା ପ୍ରକାଶରେ ତାହା ସୀମିତ ରହି ନାହିଁ । ସମଗ୍ର ଢେଙ୍କାନାଳର ଲକ୍ଷ ଲକ୍ଷ ପ୍ରଜାଙ୍କ ପ୍ରତି କେବଳ ନୁହଁ, ଓଡ଼ିଶାର ୨୬ଟି ଗଡ଼ଜାତରେ ସେ କାଳରେ ମଣିଷ ଭଳି ବଂଚିବା ପାଇଁ ଯେଉଁ ସଂଗ୍ରାମ ଚାଲିଥିଲା, ସେଥିପ୍ରତି ଏହି ପଟୁଆର ଆପଣାର ସଂହତି ପ୍ରକାଶ କରିଛି । ସେମାନଙ୍କ ପ୍ରତି ଓଡ଼ିଶାବାସୀଙ୍କ ସମର୍ଥନ ପ୍ରକାଶ କରିଛି ।

୧୯୩୮ ଅକ୍ଟୋବର ଏଗାର ତାରିଖ । କଟକର ଗଙ୍ଗା ମନ୍ଦିର ଓଡ଼ିଆ ବଜାର ଦୋଛକିରେ ଏକ କୋଠା । କୋଠାଟି ନେତାଜୀ ସୁଭାଷଙ୍କ ଭାଇ ଆଇନଜୀବୀ ସତୀଶ ବୋଷଙ୍କର । ଭଡ଼ା ନିଆଯାଇ ସେଠାରେ ନବଗଠିତ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ପ୍ରାଦେଶିକ ଅଫିସ୍ ଖୋଲିଥାଏ । ଚାଷୀ ଆନ୍ଦୋଳନ ଓ ଗଡ଼ଜାତ ପ୍ରଜା ଆନ୍ଦୋଳନର ମୁଖପତ୍ର ସାପ୍ତାହିକ କୃଷକର ସଂପାଦନାମଣ୍ଡଳୀର ତାହାହିଁ କାର୍ଯ୍ୟାଳୟ । ସ୍ୱାଧୀନତା ସଂଗ୍ରାମର ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟରେ ଜନ୍ମ ନେଇଥିବା ଛାତ୍ରସଂଘର କାର୍ଯ୍ୟକଳାପ ମଧ୍ୟ ସେଠାରୁ ଛାତ୍ରସଂଘ ନେତାମାନଙ୍କ ଦ୍ୱାରା ପରିଚାଳିତ ହୁଏ । ଏହି ସମୟରେ ଗଡ଼ଜାତଗୁଡ଼ିକରେ ପ୍ରଜାମାନଙ୍କ ଐତିହାସିକ ଉଦ୍‌ବେଳନ ।

ସେହି ଗଙ୍ଗା ମନ୍ଦିର ରାସ୍ତାରେ ନେତାଜୀଙ୍କ ଜନ୍ମସ୍ଥଳୀ । ଗୋଟିଏ ବର୍ଷକ ଲାଗି ତାହା ଜାନକୀନାଥ ସ୍ୱରାଜ ଭବନ ନାମରେ ନାମିତ ହୋଇ ପ୍ରାଦେଶିକ କଂଗ୍ରେସର କାର୍ଯ୍ୟାଳୟ ହୋଇଥାଏ । ହରେକୃଷ୍ଣ ମହତାବ ସେଠାରେ ରହୁଥାନ୍ତି । ଏବେ ତାହା ନେତାଜୀ ସେବାସଦନରେ ପରିଣତ ହୋଇଛି ।

କଂଗ୍ରେସ ସୋସାଲିଷ୍ଟ ପାର୍ଟି ଓ କୃଷକ ଅଫିସ୍ ସେତେବେଳେ ଚଳଚଞ୍ଚଳ । ଢେଙ୍କାନାଳ, ନୀଳଗିରି, ରଣପୁର, ତାଳଚେର, ଖଣ୍ଡପଡ଼ା, ଦଶପଲ୍ଲା, ଆଠଗଡ଼, ନୟାଗଡ଼, ବଡ଼ମ୍ବା, ନରସିଂହପୁର ପ୍ରଭୃତି ଆଖପାଖ ଗଡ଼ଜାତ ଆନ୍ଦୋଳନର ନେତାମାନେ ମୁହୁର୍ମୁହୁଃ ସଲ୍ଲା ପରାମର୍ଶ କରିବାକୁ ଏଠାରେ ଆସି ପହଞ୍ଚନ୍ତି । ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ରବି ଘୋଷ, ବନମାଳୀ ଦାସ, ଗୌରାଙ୍ଗ ଚରଣ ଦାସ, ପ୍ରାଣନାଥ ପଟ୍ଟନାୟକ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଗୁରୁଚରଣ ପଟ୍ଟନାୟକ, ଗୋକୁଳମୋହନ ରାୟ ଚୂଡ଼ାମଣି, ମନମୋହନ ଚୌଧୁରୀ, ଗତିକୃଷ୍ଣ ସ୍ୱାଇଁ, ଗୌରଚନ୍ଦ୍ର ଦାସ ଏବଂ ପ୍ରାଦେଶିକ ଗଡ଼ଜାତ ପ୍ରଜା ସମ୍ମିଳନୀର ସଂପାଦକ ସାରଙ୍ଗଧର ଦାସ ଏବଂ ଛାତ୍ର ଯୁବନେତାମାନେ ଅନେକ ସମୟରେ ପ୍ରାୟ ଏଠାରେ ମିଳିତ ହୁଅନ୍ତି ।

ଗଡ଼ଜାତ ପ୍ରଜା ଆନ୍ଦୋଳନଗୁଡ଼ିକର ବିବରଣୀ ପାଇଁ ସମସ୍ତେ ଅପେକ୍ଷାରତ । ବିଶେଷତଃ ଢେଙ୍କାନାଳ, ନୀଳଗିରି, ରଣପୁର, ଆଠଗଡ଼ ପ୍ରଭୃତି ଗଡ଼ଜାତ ପ୍ରଜା ଆନ୍ଦୋଳନର ନେତାମାନେ କଟକ ନିକଟ ହୋଇଥିବାରୁ ଏଠାରେ ପହଂଚି ଏହି ନେତାମାନଙ୍କ ସହିତ ପ୍ରତ୍ୟକ୍ଷ ପରାମର୍ଶ କରନ୍ତି । ସେମାନେ ମଧ୍ୟ ଗଡ଼ଜାତ ତଦନ୍ତ କମିଟିର ଅଧ୍ୟକ୍ଷ ମହତାବଙ୍କ ପାଖକୁ ଯାଆନ୍ତି ।

୧୯୩୮ ସେପ୍ଟେମ୍ବର ୧୨ ତାରିଖରେ ଢେଙ୍କାନାଳ ଗଡ଼ ଅଳସୁଆ ହାଟରେ ଜମାଏତ୍ ଚାଳିଶ ହଜାର ପ୍ରଜାଙ୍କ ଉପରେ ଅମାନୁଷିକ ଦମନ ଲୀଳା ପରେ ଢେଙ୍କାନାଳରେ କ'ଣ କ'ଣ ଘଟିଲା ତାହାର ସମ୍ବାଦ କୃଷକ ଅଫିସ୍‌ରେ ପହଞ୍ଚେ । ଆଜି ୧୯୩୮ ଅକ୍ଟୋବର ୧୧ର କି ସମ୍ବାଦ ଆସିବ, ନେତୃବର୍ଗ ଉତ୍କଣ୍ଠିତ ହୋଇବସିଛନ୍ତି ।

ହଠାତ୍ ବାର୍ତ୍ତାବହ ପହଞ୍ଚିଗଲା । ବିଗତକାଲି ଅକ୍ଟୋବର ୧୦ରେ ଭୁବନ ଓ ନୀଳକଣ୍ଠପୁରରେ ଗୁଳିକାଣ୍ଡରେ ୭ଜଣ ନିହତ ହୋଇଛନ୍ତି । ଅନେକ ଆହତ । ସେହି ଶବଗୁଡ଼ିକୁ ରେଳଗାଡ଼ି ଯୋଗେ କଟକ ପଠାଇବା ବ୍ୟବସ୍ଥା କରାଯାଉଛି । ସେଠାରେ ହିଁ ଶବ ବ୍ୟବଚ୍ଛେଦ କରାଯିବ ।

ସ୍ଥିର ହେଲା, କଟକରେ ଏହି ଶବ ପଟୁଆର ହେବ । ଏକ ରାଜନୈତିକ ଅଭିଯାନର ପଟୁଆର । ଶହୀଦମାନଙ୍କୁ ଗଭୀର ବୈପ୍ଲବିକ ଶ୍ରଦ୍ଧାଞ୍ଜଳି ଏପରି ଭାବରେ ଅର୍ପଣ କରାଯିବ, ଯାହା ସାରା ଓଡ଼ିଶାରେ ବିଶେଷତଃ ଗଡ଼ଜାତଗୁଡ଼ିକରେ ପ୍ରଜାଙ୍କ ମଧ୍ୟରେ ସାହସ, ଉତ୍ସାହ, ଉଦ୍ଦୀପନାକୁ ବହୁଗୁଣିତ କରିବ । ଓଡ଼ିଶା ବାହାରେ ପ୍ରଜା ଆନ୍ଦୋଳନର ବାର୍ତ୍ତା ପହଞ୍ଚିବ ।

କଟକ ସହରର ଗଳିକନ୍ଦିରେ, ବିଶେଷତଃ, ସ୍କୁଲ, କଲେଜ, ହଷ୍ଟେଲଗୁଡ଼ିକରେ ପ୍ରଚାର ଚାଲିବ । ସେ କାଳରେ ଡାକବାଜି ଯନ୍ତ୍ର ନଥାଏ । କଟକ ସହରରେ ବିଜୁଳି ଆଲୁଅ

ସାତସପନ। ନାଲି ଗୋଡ଼ିର ରାସ୍ତା। କମ୍ୟୁନିଷ୍ଟ, ସୋସାଲିଷ୍ଟ ଆଦର୍ଶରେ ଅନୁପ୍ରାଣୀତ ଛାତ୍ର ସଂଘର ନେତା ଓ କର୍ମୀଙ୍କ ଉପରେ ପ୍ରଚାରର ଦାୟିତ୍ୱ ପଡ଼ିଲା। ଟିଣରେ ତିଆରି ପୁଙ୍ଗା ୭/୮ଟି ପୁଙ୍ଗା ଧରି ସନ୍ଧ୍ୟାବେଳକୁ ସହର ସାରା ପ୍ରଚାର ଚାଲିଲା। "କାଲି ସକାଳୁ ଚାଲ, ଷ୍ଟେଷନ୍! ଶବଗୁଡ଼ିକୁ ପାଛୋଟି ଆଣ! ଢେଙ୍କାନାଳ ପ୍ରଜାମଣ୍ଡଳକୀ ଜୟ!" କଟକ ସହରର ବାତାବରଣ ସରଗରମ। ସମ୍ବାଦ ପାଇ ନିକଟ ଗଡ଼ଜାତଗୁଡ଼ିକରୁ ମଧ ପ୍ରଜାମଣ୍ଡଳ ନେତା ଆସି ତହିଁ ପରଦିନ କଟକରେ ହାଜର।

ତେଣେ ଚାଲନ୍ତୁ, ଶହୀଦ ତୀର୍ଥ ଢେଙ୍କାନାଳର ନୀଳକଣ୍ଠପୁର ଉଛୁଳା ବ୍ରାହ୍ମଣୀ ନଦୀତଟକୁ, ଭୁବନ ଓ ଆଖପାଖ ପ୍ରଜାମଣ୍ଡଳର ଦୁର୍ଗଗୁଡ଼ିକୁ। କିପରି ଗୋଟିକ ପରେ ଗୋଟିଏ ନରସଂହାରୀ ବିଭୀଷିକା ସଂଘଟିତ ହେଲା ତାହାର ଲୋମହର୍ଷଣକାରୀ କାହାଣୀ ଜାଣିବା।

୧୯୩୮ ସେପ୍ଟେମ୍ବର ୧୨ ଘଟଣା ପରେ ଢେଙ୍କାନାଳ ପ୍ରଶାସନ କିପରି ଚାଲ୍ ଖେଳିଥିଲା; ତଦନ୍ତ କମିଟି କରିବ, ପ୍ରଜାନେତାମାନେ ସଙ୍ଗେ ଆଲୋଚନା କରିବ ବୋଲି ପ୍ରହସନ କରିଥିଲା ତାହା ଆଗରୁ କୁହାଯାଇଛି।

ଅଳସୁଆ ହାଟର ବିଭୀଷିକା ପରେ ଢେଙ୍କାନାଳର ପ୍ରଜା ଆନ୍ଦୋଳନ ଦବିଯିବା ପରିବର୍ତ୍ତେ ଆହୁରି ପ୍ରଖର ହୋଇ ଉଠିଲା। ବ୍ରାହ୍ମଣୀ ନଦୀ ଢେଙ୍କାନାଳ ରାଜ୍ୟକୁ ଭୌଗୋଳିକ ଭାବରେ ଦୁଇଭାଗ କରିଛି। ବ୍ରାହ୍ମଣୀ ସେପଟେ ପରଜଂଗ, ପଳାସୁଣି, ମଢ଼ି, ଭୁବନ ଉପନିବେଶ, କୁଆଁଲୋ, ଖଡ଼ଗପ୍ରସାଦ ପ୍ରଭୃତି ଅଞ୍ଚଳରେ ପ୍ରଜାମଣ୍ଡଳର ସଂଗଠନ, ପ୍ରଭାବ, ଆନ୍ଦୋଳନ ଅନ୍ୟସ୍ଥାନ ଅପେକ୍ଷା ଅପେକ୍ଷାକୃତ ସୁଦୃଢ଼। ରାଜ ଶାସନର ସିଦ୍ଧାନ୍ତ ଯେ, ସେହି ଅଞ୍ଚଳକୁ ଦମନ କରିଆରେ ଜବତ କରାଯିବ। କଲିକତାରୁ ବ୍ରିଟିଶ୍ ବଡ଼ଲାଟଙ୍କ ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍ସି (କେ.ଓ.ଏସ୍.ବି.)ର ୨ ଶହ ଗୋରା ପଲଟନ, ଶିଖ୍ ଡୋଗ୍ରା ପଲଟନ ଆଉ ଗୁର୍ଖା ପଲଟନ ପଠାଇ ଦେଲା। ରାଜାଙ୍କ ସାଙ୍ଗ ଭାଇ ବିରାଦର, ଶ୍ୱଶୁର, ରାଜାମାନେ ପଛରେ ପଡ଼ିଲେ ନାହିଁ। ଶ୍ୱଶୁର ଷଢ଼େଇକଳା ରାଜାଙ୍କ ସଶସ୍ତ୍ର ପୁଲିସ୍, ପାଟନାର ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ, କଳାହାଣ୍ଡିର ମହାରାଜା ପ୍ରତାକ କେଶରୀ ଦେଓ, କେଉଁଝରର ମହାରାଜା ଭଂଜଦେଓଙ୍କ ସଶସ୍ତ୍ର ପୁଲିସ୍‌ଙ୍କ ସଙ୍ଗରେ ମିଶିଲେ ବୌଦ, ତଥା ଛତିଶଗଡ଼ ରାଜ୍ୟର ଯଶପୁର, ବସ୍ତର, ଖଇରାଗଡ଼ ସମସ୍ତ ରାଜାଙ୍କ ସଶସ୍ତ୍ର ପୁଲିସ୍। ଏହି ସୈନ୍ୟ ଫଉଜଙ୍କୁ ଧରି ରାଜଭକ୍ତ ଟିକଟ ବିକ୍ରି ଅଭିଯାନ ଆରମ୍ଭ କରାଯିବ।

ଢେଙ୍କାନାଳ ପ୍ରଜା ଆନ୍ଦୋଳନକୁ ନିର୍ମ୍ମୂଳ କର ଦେଲେ, ନିଜ ନିଜ ରାଜ୍ୟର ପ୍ରଜାମାନେ ଭୟଭୀତ, ଆତଙ୍କିତ ହୋଇଯିବେ। ସେମାନେ ଅଖଣ୍ଡ ରାଜୁଡି ଜାହିର କରିବେ। ଏହା ଥିଲା ସାଙ୍ଗ ରାଜା ମହାରାଜାମାନଙ୍କ ଭାଇଚାରା ପ୍ରୀତି।

୧୯୩୮ ସେପ୍ଟେମ୍ବର ୨୨ରେ ଢେଙ୍କାନାଳ ପ୍ରଜାମଣ୍ଡଳ ସଭାପତି ହରମୋହନଙ୍କ ସହ କେତେକ ନେତାଙ୍କୁ ଧରିନେବା ପରେ ସୁବାହୁ ସିଂହ, ବୈଷ୍ଣବ ଓ ଅନ୍ୟମାନେ ଆତ୍ମଗୋପନ କରି ଆନ୍ଦୋଳନ ଅବ୍ୟାହତ ରଖିଲେ ।

ରାଜଭକ୍ତ ଟିକଟ ବିକ୍ରି ଅଭିଯାନ ଓ ଦମନର ଅବାରିତ ସୁଅ ଛୁଟିଲା । ରାଜ ଶାସନ ପକ୍ଷରୁ ବ୍ରାହ୍ମଣୀ ନଦୀ ସେପଟେ ରାଜଭକ୍ତ ଟିକଟ ବିକ୍ରି, ନରସଂହାର, ଲୁଟ୍‌ପାଟର ଦାୟିତ୍ୱରେ ରହିଲେ ସବ୍‌ଡ଼ିଭିଜନାଲ୍ ମାଜିଷ୍ଟ୍ରେଟ୍ ଗୋବିନ୍ଦ ମହାପାତ୍ର ଆଉ ଗଙ୍ଗାଧରର ମିଶ୍ର ।

୧୯୩୮ ସେପ୍ଟେମ୍ବର ୨୦ ତାରିଖ । ଗଡ଼ ପରଜଙ୍ଗ ଅଞ୍ଚଳ ଭାରି ଅମାନିଆ, ମେଳିଆ । ୧୯୨୦-୨୧ରେ ଅସହଯୋଗ ଆନ୍ଦୋନଳ କାଳରେ ପ୍ରଜାମେଳି କରାଇଥିବାରୁ ମହେଶଚନ୍ଦ୍ର ସୁବାହୁ ସିଂହ ଓ ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କୁ ଗିରଫ କରି ଦୀର୍ଘ କାରାଦଣ୍ଡ ଦିଆଯାଇଥିଲା । ଆକ୍ରମଣର ସନ୍ଧାନ ପାଇ ସୁବାହୁ ସିଂହ ସପରିବାର ଅନ୍ୟତ୍ର ଥାଆନ୍ତି । ସଶସ୍ତ୍ର ବାହିନୀ ଝାମ୍ପିପଡ଼ିଲା ତାଙ୍କ ଘର ଉପରେ । ହାତୀଗୁଡ଼ିକୁ ଲଗେଇ ତାଙ୍କ ଘରକୁ ଧୂଳିରେ ମିଶାଇ ଦିଆଗଲା । ଧାନ, ଚାଉଳ, ଗହଣାଗାଣ୍ଠି, ଖଟମାଠ ସବୁ ଲୁଟି ନିଆଗଲା । ତାପରେ ଗାଁର ମେଳିଆ ପ୍ରଜାଙ୍କୁ ଧରି ରାଜଭକ୍ତ ଟିକଟ ନ କିଣିଲେ ଗୋଗଛବାଡ଼ିଆ କରାଗଲା । ଘରକୁ ଘର ଲୁଟି କରାଗଲା । ହାତୀପଲ ଲଗେଇ ବିଲ ଫସଲକୁ ଉଜାଡ଼ି ଦିଆଗଲା । ତାପରେ ଚାଲିଲା ଅନ୍ୟ ଗାଁ ଉପରେ ଅନୁରୂପ ଆକ୍ରମଣ ।

"ରାଜଭକ୍ତ ଟିକଟ ନିଅ, ନୋହିଲେ ଲାଠିଗୁଳି ମୁହଁରେ ଶୁଅ" ଚିତ୍କାର କରି କହୁଥାନ୍ତି ଅଫିସରମାନେ । ଅତୀତରେ ତୈମୁରଲଙ୍ଗ ବାହିନୀ ଭାରତର ଗାଁଗଣ୍ଡାରେ ଅଗ୍ନିଦାହ, ଲୁଟତରାଜ ହତ୍ୟାଲୀଳା ଚଳାଇବା ଭଳି ଢେଙ୍କାନାଳର ସଶସ୍ତ୍ର ପୁଲିସ୍ ଏପରି ତାଣ୍ଡବ ଚଳେଇ ଏ ଅଞ୍ଚଳର ଆଉ ଏକ ବଡ଼ ମେଳିଆ ଗାଁ ଭୁବନ ଉପରେ ଶ୍ୱାନ ଶୃଗାଳର ଆଖି ପକେଇଲା । ଭୁବନ ଓଡ଼ିଶା ଭିତରେ ଗୋଟିଏ ବଡ଼ ଗାଁ ବୋଲି ପରିଚିତ ହୋଇଥାଏ । ସେ କାଳରେ ସେ ଗାଁର ଲୋକ ସଂଖ୍ୟା ୮ ହଜାରରୁ ଅଧିକ । ଏବେ ସେହି ଗାଁଟି ଏକ ବଡ଼ ଏନ୍.ଏ.ସି. ।

୧୯୩୮ ସେପ୍ଟେମ୍ବର ୨୪ ତାରିଖ । ସଙ୍ଗରେ ୪ଟି ହାତୀ ସହ ସଶସ୍ତ୍ର ବାହିନୀ ବନ୍ଧୁକ ଧରି ଭୁବନରେ ପ୍ରବେଶ କଲେ । ନିର୍ବିକାରରେ, ନିର୍ବିଚାରରେ ଚଢ଼ଉ ଚାଲିଲା । ଘର ପରେ ଘର । ହାତୀ ଲଗେଇ ଘର ଭଙ୍ଗାଠାରୁ ଧାନ ଚାଉଳ, ବାସନକୁସନ, ତନ୍ତ, କମାରଶାଳ ଲୁଟ୍‌ପାଟ୍ । ଫସଲ ଉଜାଡ଼ି ଦିଆଗଲା । ଆକ୍ରମଣର ସୂଚନା ପାଇ କେବଳ ଗାଁ ଜଗିବା ପାଇଁ ଅଳ୍ପ କେତେକ ରହିଥିଲେ । ବୁଢ଼ାବୁଢ଼ୀ ସମସ୍ତଙ୍କ ଉପରେ ଅକଥନୀୟ ମାଡ଼ ଅତ୍ୟାଚାର । ରାଜଭକ୍ତ ଟିକଟ କିଣିବାକୁ ମନା କଲେ ବା ଅସାମର୍ଥ୍ୟ ପ୍ରକାଶ କଲେ ନାରକୀୟ ଯନ୍ତଣା ଭୋଗିବାକୁ ହେଉଥିଲା । କିନ୍ତୁ ପ୍ରଜା ନଉଁ ନଥାନ୍ତି ।

**ହିଞ୍ଜାରତ୍ ଓ ସତ୍ୟାଗ୍ରହ :**

ଏପରି ଦମନ, ଅତ୍ୟାଚାରରେ ପ୍ରଜାମାନେ ଦବି ଯାଇ ନଥିଲେ। ପ୍ରଜାମଣ୍ଡଳର ନିର୍ଦ୍ଦେଶରେ ପ୍ରଥମେ ସେମାନେ ଗାଁଗଣ୍ଡା ଛାଡ଼ି ଅନ୍ୟତ୍ର ଚାଲିଯିବା ସ୍ଥିର କଲେ। ବିଶେଷତଃ କୁଆଁଳୋ ଗ୍ରାମରେ ଏକ ସଭା ବସିବା ଖବର ପାଇ ପୁଲିସ୍ ଧାଇଁଲେ। ପୁରୁଷ ଲୋକେ ଗାଁ ଛାଡ଼ି ବଣଜଙ୍ଗଲରେ ଲୁଚି ରହିଲେ। ନେତାମାନଙ୍କୁ ନପାଇ ରକ୍ତମୁହାଁ ପୁଲିସ୍ ମହିଳାମାନଙ୍କ ଉପରେ ଯାବତୀୟ ଅତ୍ୟାଚାର, ଧର୍ଷଣ ଚଳେଇଲେ।

ଅତ୍ୟାଚାର, ନାରୀ ଧର୍ଷଣ, ଲୁଟପାଟରୁ ବଞ୍ଚିବା ପାଇଁ ଏହି ସମଗ୍ର ଅଞ୍ଚଳର ପ୍ରଜା ଘରଦ୍ୱାର ଛାଡ଼ି, ସାମାନ୍ୟ ସମ୍ବଳ ଧରି ଆଖପାଖ ମୋଗଲବନ୍ଦୀ (ଅର୍ଥାତ୍ ପ୍ରତ୍ୟକ୍ଷ ବ୍ରିଟିଶ୍ ଶାସିତ ଓଡ଼ିଶା)କୁ ପଳେଇ ଗଲେ। ଘୋର ବର୍ଷା କାଳ। ଢେଙ୍କାନାଳର ସତୁରି ଅଶି ହଜାର ପ୍ରଜା ପିଲାକବିଲା ଧରି ଆଖାପାଖ ସୁକିନ୍ଦା, ଚଉଷଠିପଡ଼ା, ଜେନାପୁର, ବଳରାମପୁର, ମଧୁପୁର, କଳକଳା, ପଛିକୋଟ ବାଙ୍କି ଓ ସେପଟେ ଅନୁଗୋଳରେ ବନ୍ଧୁବାନ୍ଧବଙ୍କ ଘରେ ଆଶ୍ରୟ ନେଲେ। କିନ୍ତୁ ପ୍ରଜାମଣ୍ଡଳର ନିର୍ଦ୍ଦେଶ ଗଲା ସମସ୍ତେ ନିଜ ନିଜ ଗାଁକୁ ବାହୁଡ଼ନ୍ତୁ। ଗାଁରେ ପ୍ରତିରୋଧ କରନ୍ତୁ। ବାସ୍ତବରେ ହିଜାରତ୍‌ର ତିନି ଚାରି ଦିନ ପରେ ଘରଦ୍ୱାର ଛାଡ଼ି ଚାଲିଯାଇଥିବା ୭୦/୮୦ ପ୍ରଜା ସ୍ୱ ସ୍ୱ ଅଞ୍ଚଳକୁ ବାହୁଡ଼ି ଆସିଲେ।

ପ୍ରଜାମଣ୍ଡଳ କମିଟି ଓ ସଙ୍ଗଠନ ପ୍ରତ୍ୟେକ ଅଞ୍ଚଳରେ ପୁନଶ୍ଚ ସକ୍ରିୟ ହୋଇ ଉଠିଲା। ବ୍ୟାପକ ସତ୍ୟାଗ୍ରହ ସଂଗ୍ରାମର ପ୍ରସ୍ତୁତି ଚାଲିଲା। ବିଭିନ୍ନ ବିଶ (ଢେଙ୍କାନାଳରେ ୨୪ଟି ବିଶ ବା ପ୍ରଗଣା ଥିଲା)ରେ ସତ୍ୟାଗ୍ରହ ଲାଗି ତାଲିମ ଶିବିର, ସ୍ୱେଚ୍ଛାସେବକ, ସତ୍ୟାଗ୍ରହୀ ସଂଗ୍ରହ ଚାଲିଲା। ହଜାର ହଜାର ଚାଷୀପୁଅ, ଆଦିବାସୀ, ମୂଲିଆ ଯୁବା ସ୍ୱେଚ୍ଛାସେବକ ହୋଇ ବାହାରିଲେ। ପ୍ରଜାମଣ୍ଡଳରେ ନିର୍ଦ୍ଦେଶ ହେଲା, ରାଜପୁଲିସ୍ ହାକିମ, ରଜାଙ୍କ କାନକୁହା ଦଲାଲ୍‌ମାନଙ୍କୁ ସାମାଜିକ ବାସନ୍ଦ କର। ସତ୍ୟାଗ୍ରହୀମାନେ ଦଳବଦ୍ଧ ଭାବରେ କୋଡ଼ିଏ, ପଚିଶ ଏମିତି ବିଭିନ୍ନ ଦଳରେ ବିଭକ୍ତ ହୋଇ ନିଜିଗଡ଼ ଢେଙ୍କାନାଳଠାରେ ସତ୍ୟାଗ୍ରହ କରିବାକୁ ଲାଗିଲେ। ରାଜ ଦରବାରର କ୍ରୋଧ ବଢ଼ିଚାଲିଲା। ଏପରି ୨୦ ଦିନ କାଳ ସତ୍ୟାଗ୍ରହ, ଗିରଫଦାରୀ ସାରା ରାଜ୍ୟରେ ଚହଳ ସୃଷ୍ଟିକଲା।

ଏତେ ଦମନ ସତ୍ତ୍ୱେ ବ୍ରାହ୍ମଣୀ ନଦୀ ଏପଟେ ପ୍ରଜା ଆନ୍ଦୋଳନର ବ୍ୟାପକତାକୁ ରୋକିବା ପାଇଁ ୧୯୩୮ ସେପ୍ଟେମ୍ବର ୭ ତାରିଖରେ ପୁନଶ୍ଚ ଭୁବନ ଗାଁରେ ସଶସ୍ତ୍ର ପୁଲିସ୍ ପହଞ୍ଚି ଗାଁକୁ ଘେରାଉ କଲେ ଏବଂ ବହୁ ଲୋକଙ୍କୁ ଧରି ଥାନାରେ ବନ୍ଦୀ କଲେ। ଗୋପନରେ ବୈଷ୍ଣବ ଓ ଶ୍ରୀକାନ୍ତ ଦୁଇଶହ ପ୍ରଜାଙ୍କୁ ଠୁଳ କରି ଭୁବନ ଥାନା ଘେରାଉ କଲେ। ଲୋକବଳ ପାଖରେ

ପୁଲିସ୍ ପଛଘୁଞ୍ଚା ଦେଲା । ପ୍ରଜାମାନଙ୍କ ମୁହଁରେ ଜୟଜୟକାର ଧ୍ୱନି । ଥାନା ଛାଡ଼ିଯିବାକୁ ପୁଲିସ୍‌କୁ ବାଧ୍ୟ କରାଗଲା ।

**ବ୍ରାହ୍ମଣୀ ଜଳରେ ଶହୀଦ ପ୍ରଜା ରକ୍ତର ସୁଅ :**

ଭୁବନ ଥାନା ଘେରାଉ ସଂବାଦ ନିଜିଗଡ଼ରେ ପହଂଚିବା ପରେ ଗୋରା ପଲଟନ, ଗୁର୍ଖା ଓ ଶିଖ୍ ପଲଟନ ସଜ ହୋଇ ତୃତୀୟ ଥର ୧୯୩୮ ଅଗଷ୍ଟ ୧୦ ତାରିଖ ରାତିରେ ଭୁବନକୁ ଘେରାଉ କରିଦେଲେ । କୌଣସି ଗାଁ ଉପରେ ପୁଲିସ୍ ଚଢ଼ାଉ କଲେ ବା କେଉଁ ଗାଁକୁ ପୁଲିସ୍ ଆସୁଥିଲେ ସ୍ୱେଚ୍ଛାସେବକମାନେ ଏକାଠି ମହିଁଷି ଶିଙ୍ଘ ବଜେଇ ଅନ୍ୟ ଗାଁଗୁଡ଼ିକୁ ସତର୍କ କରି ଦିଅନ୍ତି । ଭୁବନରେ ସଶସ୍ତ୍ର ପୁଲିସ୍ ରାତି ଅଧରେ ଅତର୍କିତ ଆକ୍ରମଣ କରିବା ଫଳରେ ବହୁ ଲୋକ ଆହତ ହେଲେ । ପୁଲିସ୍ ଗୁଳିରେ ଦୁଇଜଣ ନିହତ ହେଲେ । ବାଛି ବାଛି ଆଠ ଜଣ ପ୍ରଜାଙ୍କୁ ବାନ୍ଧି ନିଆଗଲା । ଆହତମାନେ ଯନ୍ତ୍ରଣାରେ ଚିତ୍କାର କରୁଥାନ୍ତି । ମୃତ ଆହତଙ୍କ ପ୍ରତି ନୃଶଂସ ପୁଲିସ୍‌ର ପରିହାସର ହସ । କାଳେ ଏପରି ବର୍ବରତା କଥା ଶୁଣି ସକାଳ ହେଲେ ଚାରିଆଡ଼ୁ ବିଦ୍ରୋହୀ ପ୍ରଜାପ୍ରତି ଆକ୍ରମଣ କରିବାକୁ ଧାଇଁ ଆସିବେ, ସେଥିଲାଗି ସଶସ୍ତ୍ର ପୁଲିସ୍ ଓ ହାକିମଙ୍କ ଭୟ । ମୃତ ଆହତମାନଙ୍କୁ ଫିଙ୍ଗିଦେଇ ଗିରଫ ବ୍ୟକ୍ତିମାନଙ୍କୁ ବାନ୍ଧି ସଶସ୍ତ୍ର ପୁଲିସ୍ ବ୍ରାହ୍ମଣୀ ନଦୀ ଘାଟ, ନୀଳକଣ୍ଠପୁରକୁ ଚାଲିଲେ ।

ଭୁବନରୁ ନୀଳକଣ୍ଠପୁର ବ୍ରାହ୍ମଣୀଘାଟ ୩ ମାଇଲ୍ ହେବ । ନୀଳକଣ୍ଠପୁର ପ୍ରଜାମାନେ ଶିଙ୍ଘା ଶବ୍ଦ ଶୁଣି ସାରିଛନ୍ତି । ବ୍ରାହ୍ମଣୀ ଘାଟରେ ସରକାରୀ ଡଙ୍ଗାକୁ ବୁଡ଼େଇ ଦେଇଥାନ୍ତି । ଗାଁର ନିଜସ୍ୱ ଡଙ୍ଗାକୁ ଘାଟଠାରୁ ଦୂରେଇ ରଖି ଜଗୁଆଳ ମୁତୟନ କରିଥାନ୍ତି । ସମସ୍ତେ ପ୍ରଜାମଣ୍ଡଳର ଲୋକ । ପୁଲିସ୍ ଦେଖିଲେ ନିଜ ଡଙ୍ଗା ତ ବୁଡ଼ିଛି । ଟିକିଏ ଦୂରରେ ପ୍ରଜାଙ୍କ ଡଙ୍ଗା । ଗୋରା, ଗୋର୍ଖା, ଶିଖ, ସଶସ୍ତ୍ର ବାହିନୀର ହୁକୁମ୍ ହେଲା – "ଆରେ ବଜାତ୍, ବଦମାସ୍ ଡଙ୍ଗା ଆଣ ନଚେତ୍ ଗୁଳି ମୁହଁରେ ମର । ଜଗୁଆଳମାନଙ୍କ ମଧ୍ୟରୁ ବାଜିର କୁହାଟ ହେଲା – "ପ୍ରଜାମଣ୍ଡଳର ଆଦେଶ, ଡଙ୍ଗା ଦେବୁ ନାହିଁ ।" ସମସ୍ତଙ୍କ କଣ୍ଠରେ ଗୋଟିଏ ଧ୍ୱନି – "ପ୍ରଜାମଣ୍ଡଳର ଆଦେଶ ଡଙ୍ଗା ଛାଡ଼ିବୁନି ।"

ତାର ଉତ୍ତରରେ ଚାଲିଲା ଆଖିବୁଜା ଗୁଳିବାଜି, ହୁରୁଷି ସମେତ ଚାରିଜଣ ଟଳି ପଡ଼ିଲେ । ଏତିକିରେ ରକ୍ତ ମୁହାଁ ସଶସ୍ତ୍ର ବାହିନୀର ମନବୋଧ ହେଲାନି । ସଂଗୀନ ମୁନରେ ଶୁକୁଶୁକୁ ହେଉଥିବା ବାଜିର ମୁଣ୍ଡକୁ ଭୁଷି ଦିଆଗଲା ।

ଧାଇଁଲେ ନଦୀକୂଳକୁ ନୀଳକଣ୍ଠପୁର ଭୁବନ ଆଖପାଖର ଶୋକାର୍ତ୍ତ ଜନତା । ଶହୀଦମାନଙ୍କୁ କଟକ ନେବାକୁ ହେବ । ନଦୀ ସେପଟେ ଜେନାପୁର ରେଳଷ୍ଟେସନ୍ ।

କୋକେଇରେ ବାନ୍ଧି ପ୍ରଜାମଣ୍ଡଳ କର୍ମୀମାନେ ବୈଷ୍ଣବ, ରବିଘୋଷ, କଂଗ୍ରେସ ନେତା ସୁଧୀର ଘୋଷଙ୍କ ନେତୃତ୍ୱରେ ଜେନାପୁରରେ ପହଞ୍ଚିଲେ । ଫନୀ ପାଲ ନିଜ ବୈପ୍ଳବିକ କାର୍ଯ୍ୟ ଫଳରେ ସୁକିନ୍ଦା, ଧର୍ମଶାଳା, ଯାଜପୁର, ଅଂଚଳରେ କିମ୍ବଦନ୍ତୀ ପୁରୁଷର ମାନ୍ୟତା ପାଉଥାନ୍ତି । ଫନୀପାଲ, ବିଶିଷ୍ଟ ଚାଷୀନେତା ବଳଦେବ ଲାଲା ଚାନ୍ଦା ସଂଗ୍ରହ କରି ମାଲଡ଼ବାର ଭଡ଼ା ବାନ୍ଧିଦେଲେ । ଶବବାହୀ ଓ୍ୟାଗନ କଟକ ବାଟ ଧରିଲା ।

**ଉତ୍କଣ୍ଠା, କ୍ରୋଧ ଅସମ୍ଭାଳ :**

ତହିଁ ପରଦିନ ସକାଳ ଆଠଟା ବେଳକୁ କଟକ ରେଲଷ୍ଟେସନରେ ଉତ୍କଣ୍ଠିତ ଜନତା । କଂଗ୍ରେସ ସୋସାଲିଷ୍ଟ ପାର୍ଟିର ତୁଙ୍ଗ ନେତୃବୃନ୍ଦ, ଗଡ଼ଜାତ ପ୍ରଜାମଣ୍ଡଳଗୁଡ଼ିକର ଅନେକ ନେତା, କଂଗ୍ରେସ କର୍ମୀ ଓ ନେତା ଶହ ଶହ ଛାତ୍ରଛାତ୍ରୀ, ପୁଷ୍ପଗୁଚ୍ଛ ଧରି ହାତରେ କଂଗ୍ରେସ ପତାକା, ଛାତ୍ରସଂଘ ପତାକା ଓ ଲାଲ୍ ପତାକା ଧରି ଅପେକ୍ଷାରତ ।

ଗାଡ଼ିର ହୁଇସିଲ୍ ବାଜିଲା । ଡବା ଭିତରୁ ଧ୍ୱନି ଉଠିଲା "ଢେଙ୍କାନାଳ ପ୍ରଜାମଣ୍ଡଳ ଜିନ୍ଦାବାଦ, ଶହୀଦବାଜି, ଲକ୍ଷ୍ମଣ, ହୁରୁଷି, ନଟ, ରଘୁ ଗୁରି ଜିନ୍ଦାବାଦ । ଢେଙ୍କାନାଳ ରାଜା ଶଙ୍କର ପ୍ରତାପ ମୁର୍ଦ୍ଦାବାଦ ।" ଏପଟୁ ସହସ୍ର କଣ୍ଠରେ କ୍ରୋଧ ଜର୍ଜ୍ଜରିତ ପ୍ରତିଧ୍ୱନି ।

ଶବ ବହନ କରିନେବାକୁ ଶଗଡ଼ିଆମାନେ ଶଗଡ଼ ଦେବା କ୍ୱଚିତ ଦେଖାଯାଏ । ମାତ୍ର ନେତାମାନେ କଟକରେ ଶଗଡ଼ିଆମାନଙ୍କୁ ନିବେଦନ କରନ୍ତେ, ସେମାନେ ଅତି ଉତ୍ସାହରେ ଶଗଡ଼ ୬ଟି ଆଣି ରଖିଦେଲେ । ସେତେବେଳେ ଓଡ଼ିଶାର ରାଜଧାନୀ କଟକରେ କଂଗ୍ରେସ ମନ୍ତ୍ରିମଣ୍ଡଳ । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ବୋଧରାମ ଦୁବେ ମନ୍ତ୍ରୀ । ଆଉ ତିନିଜଣ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ । କଟକରେ ପୌରପିତା ଥାଆନ୍ତି କଂଗ୍ରେସ ନେତା ଭାଗିରଥୀ ମହାପାତ୍ର ।

ଆନୁଷ୍ଠାନିକ ଭାବରେ ଶବ ପଟୁଆରର ବ୍ୟବସ୍ଥା କରୁଥିବା ନେତୃବୃନ୍ଦ ସାରଙ୍ଗଧର, ନବକୃଷ୍ଣ, ଭଗବତୀ ସେମାନଙ୍କୁ ସନ୍ଦେଶ ପଠାଇଲେ । ଆଶା କରାଯାଉଥିଲା, କଂଗ୍ରେସ ସରକାର ପକ୍ଷରୁ ଶବାଧାରରେ ପୁଷ୍ପାର୍ଘ୍ୟ ଅର୍ପିତ ହେବ । ହେଲା ନାହିଁ । ଶବଗୁଡ଼ିକ କଟକ ବଡ଼ ଡାକ୍ତରଖାନାକୁ ନିଆଯାଇ ଚଞ୍ଚଳ ବ୍ୟବଚ୍ଛେଦ ବ୍ୟବସ୍ଥା କରାଇ ଦିଆଗଲା । ଦିବା ୪ଟା ପୂର୍ବରୁ ଶବ ପଟୁଆର ବଡ଼ ଡାକ୍ତରଖାନାରୁ ବାହାରିବ ବୋଲି ଘୋଷଣା କରାଯାଇଥାଏ ।

ଅସମ୍ଭାଳ ଭିଡ଼ । ସାରଙ୍ଗଧର ଦାସ, ନବକୃଷ୍ଣ ଚୌଧୁରୀ, ଭଗବତୀ ପାଣିଗ୍ରାହୀ, ଗୌରାଙ୍ଗ ଚରଣ ଦାସ, ପ୍ରାଣକୃଷ୍ଣ ପଡ଼ିଆରୀ, ପ୍ରାଣନାଥ ପଟ୍ଟନାୟକ, ସୁଧୀର ଘୋଷ ବୈଷ୍ଣବ ପଟ୍ଟନାୟକ, ସୁରେନ୍ଦ୍ର ଦ୍ୱିବେଦୀ, ଗୁରୁଚରଣ ପଟ୍ଟନାୟକ ପ୍ରମୁଖ ନେତାମାନେ ଆଗ ଧାଡ଼ିରେ ଚାଲିଛନ୍ତି । ସାହି ବସ୍ତିରୁ ଆସି ଲୋକେ ପୁଷ୍ପବୃଷ୍ଟି କରୁଥାନ୍ତି । ଗଗନ ପବନ ଭେଦୀ ରଣଧ୍ୱନି ଉଠୁଥାଏ ।

ଛଅଟି ଶଗଡ଼ରେ ଶବ; ପ୍ରଥମେ ବାଜି ରାଉତ । ନେତାମାନଙ୍କ ନିଷ୍ପତ୍ତି, ଛାତ୍ରସଂଘର କର୍ମୀମାନେ ଶଗଡ଼ିଆ ହେବେ । ଛାତ୍ର ଯୁବକମାନେ ଶବ ପଟୁଆର ପରିଚାଳନା କରିବେ । ବିଶ୍ୱନାଥ ପଶାୟତ, ରବି ଘୋଷ, ଅନନ୍ତ ପଟ୍ଟନାୟକ, ସଚିରାଉତରାୟ, ମୋତିଲାଲ ତ୍ରିପାଠୀ, ଗୋବିନ୍ଦ ଚନ୍ଦ୍ର ମହାନ୍ତି ଶହୀଦ ଶବବାହୀ ଶଗଡ଼ର ଶଗଡ଼ିଆ ହେଲେ ।

ଧ୍ୱନି ଉଠୁଥାଏ, "ଢେଙ୍କାନାଳ ଶହୀଦ ଜିନ୍ଦାବାଦ୍, ମହାତ୍ମାଗାନ୍ଧୀଙ୍କ ଜୟ, ଢେଙ୍କାନାଳ ପ୍ରଜାମଣ୍ଡଳ ଜିନ୍ଦାବାଦ୍, ଗଡ଼ଜାତ ଶାସନ ଲୋପ କର । ବ୍ରିଟିଶ ସାମ୍ରାଜ୍ୟବାଦ ମୁର୍ଦ୍ଦାବାଦ-ଶଙ୍କର ପ୍ରତାପ ମୁର୍ଦ୍ଦାବାଦ ।" ପଟୁଆର ସଙ୍ଗରେ ଚାଲିଛନ୍ତି ଅମୃତ ବଜାର ପ୍ରତିକା, ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ଼, ସମାଜ, ମାତୃଭୂମି, ନବ ଭାରତ, ପ୍ରେସ ଟ୍ରଷ୍ଟ, ୟୁଏନପିଆଇର କଟକ ପ୍ରତିନିଧିବୃନ୍ଦ ।

ଛାତ୍ରଛାତ୍ରୀମାନଙ୍କୁ ଶୃଙ୍ଖଳିତ ପଟୁଆରରେ ଯିବାପାଇଁ ସ୍କୁଲ କଲେଜ ଛାତ୍ରସଂଘର ନେତୃବନ୍ଦ ଗିରିଜାଶଙ୍କର ବହିଦାର, ବିଜୟ ଚନ୍ଦ୍ର ଦାସ, ଗଙ୍ଗାଧର ରଥ, ଜଗତକୃଷ୍ଣ ଦାସ, ଦୁର୍ଗା ଚରଣ ମହାନ୍ତି ନିଶାମଣି ଖୁଣ୍ଟିଆ, କୃଷ୍ଣ ପ୍ରସାଦ ପଟ୍ଟନାୟକ, ନୀଳମଣି ରାଉତରାୟ ପ୍ରମୁଖ । ଶୈଳବାଳା ବାଳିକା ବିଦ୍ୟାଳୟର ଛାତ୍ରୀମାନେ ନିରୁପମା (ରଥ) ନଳିନୀ (ରାଉତରାଏ) ପ୍ରମୁଖ ଉଦାତ୍ତ କଣ୍ଠରେ ଧ୍ୱନିମାନ ଦେଇ ଚାଲିଥାନ୍ତି ।

ମଙ୍ଗଳାବାଗ, ବକ୍ସି ବଜାର, ଚୌଧୁରୀ ବଜାର, ନୟାସଡ଼କ, ବାଲୁ ବଜାର ଦେଇ ଲାଲବାଗ୍ ଥାନା ନିକଟରେ ଶବ ପଟୁଆର ପହଞ୍ଚି ସେଠାରେ ଥାନାରେ ରେକର୍ଡ଼ କରାଇ ମୁହଁ ସଞ୍ଜ ହେଲାବେଳକୁ ପଟୁଆର ଖାନ୍‌ନଗର ଶଶ୍ମାନରେ ପହଞ୍ଚିଗଲା । ଶେଷ ବିଦାୟ ଜଣାଇ ବିରାଟ ଜନତା ବାହୁଡ଼ିଲେ । ରହିଗଲେ କେବଳ ଛ'ଜଣ ଶଗଡ଼ିଆ ।

କିଟିକିଟି ଅନ୍ଧାରୁଆ ଜାଗା । ବର୍ତ୍ତମାନ ଭଳି ସେଠାରେ ପୂଜାପାର୍ବଣ ନଥିଲା । ଝଲମଲ ଆଲୋକ ନଥିଲା । ଶଶ୍ମାନରେ ବାବାଜୀ ଆଉ ମରାଚଣ୍ଡିଆ ଭାଇମାନେ ଶବଗୁଡ଼ିକୁ ନିଜର ଭାଇ ବିରାଦର ଶବର ମାନ୍ୟତା ଦେଲେ । ପଇସା ଦେଇ କାଠଗର କିଣାଗଲା । ସେମାନେ କାଠ ବୋହି ଆଣିଲେ । ଗୋଟିଏ ବିରାଟ ଚିତା ପ୍ରସ୍ତୁତ କଲେ । ଗୋଟିକ ପରେ ଗୋଟିଏ ଶବ । ସବା ଉପରେ ବାର ବରଷର ବାଜି ରାଉତର ଶବ । ସେମାନେ ଅଭୟ ଦେଉଥାନ୍ତି ବାବୁମାନେ, ଆମର ପଇସା ପତ୍ର ଲୋଡ଼ା ନାହିଁ, ଆମେ ସବୁ କରିଦେବୁ । ତମେସବୁ ନିଶ୍ଚିତ ରୁହ । ବାବାଜୀ ମଧ୍ୟ ଶଗଡ଼ିଆମାନଙ୍କୁ ଆଶ୍ୱାସନା ଦେଉଥାନ୍ତି । ଚିତା ପ୍ରସ୍ତୁତ । ମଶାଣୀର ମରାଚଣ୍ଡିଆମାନେ ଓ ବାବାଜୀ ପ୍ରତ୍ୟେକ ଗୋଟିଏ ଲେଖାଏଁ ଛଣ ବିଡ଼ା ଧରିଲେ । ଶଗଡ଼ିଆ ଛ'ଜଣଙ୍କୁ ଛଣ ବିଡ଼ା ବଢ଼ାଇ ଦେଲେ । ସମସ୍ତେ ମୁଖାଗ୍ନି ଦେବେ । ସମୂହ ମୁଖାଗ୍ନିରେ ବୀର ଶହୀଦଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ।

ଚିତା ହୁତ ହୁତ ଜଳି ଉଠିଲା । ତଣ୍ଟି ଶୁଖି ଶୁଖି ଯାଉଥାଏ । ପାଖରେ ତ ଶୁନଶାନ

ଜାଗା । ଚା'କପେ ମିଳିବନି । କୂଅରୁ ପାଣି ଆଣି ଦେଲେ ବାବାଜୀ । ଅନନ୍ତ ପଟ୍ଟନାୟକ ଆଉ ରବି ଘୋଷଙ୍କର ଅମଳ, ବିଡ଼ି ଟାଣିବା । ଦୁଇ ବଣ୍ଡିଲ ବିଡ଼ି ଉଡ଼ିଗଲା ।

ସଚ୍ଚି ରାଉତରା ଗୋଟିଏ କୋଣକୁ ଚିତାର ଆଲୁଅ ଦେଖି ସେଠି ବସିପଡ଼ିଲେ । ପକେଟରୁ କାଗଜ ବାହାର କରି କବିତା ରଚନା କରି କେତୋଟି ପଂକ୍ତି ଶୁଣେଇଲେ ।

"ନୁହେଁ ବନ୍ଧୁ, ନୁହେଁ ଏହା ଚିତା
ଏ ଦେଶ ତିମିର ତଳେ ଏ ଅଲିଭା ମୁକ୍ତି ସଳିତା,
ନୁହେଁ ଏହା ଜଳିବାର ପାଇଁ
ଏହାର ଜନମ ଏଥି ଜାଳିପୋଡ଼ି ଦେବାକୁ ଧସାଇ ।
ଏ ଶିଖା ଦେଇଛି ଆଜି
ଇତିହାସେ ହାତ ଟେକି ଦାନ
ଶତାବ୍ଦୀର ଶ୍ରେଷ୍ଠ ଫୁଲ
ମୁକୁଳିତ, ମୃତ୍ୟୁହୀନ ପ୍ରାଣ ।
ନିରନ୍ନ ଏ ଜନତାକୁ ଦେଇଛି ଏ
ତାହାର ଚାଳକ
କ୍ଷୁଦ୍ର ଏକ ନାଉରୀ ବାଳକ -
ବାହିବାକୁ ଏ ଦେଶର ତରୀ
ଭିଡ଼ି ନାହିଁ ନାଆ ଘାଟେ
ନାଉରିଆ ପାରେକିରେ ମରି ।"

ଗୋଟି ଗୋଟି ହୋଇ ଶହୀଦ ଶବ ପାଉଁଶ ହୋଇଗଲା । ଶେଷ ବିଦାୟ ନେଇ ଭାରାକ୍ରାନ୍ତ ମନରେ ଶଗଡ଼ିଆ ଛଜଣ ଯାକ ଗଙ୍ଗା ମନ୍ଦିର କାର୍ଯ୍ୟାଳୟରେ ବିଶ୍ରାମ ନେଲେ । କଟକ ସେ କାଳରେ ଏପରି ଶବ ପଟୁଆର ଦେଖି ନଥିଲା । ୧୯୩୪ ମସିହା ଫେବୃଆରୀ ୪ ତାରିଖରେ ଉତ୍କଳ ଗୌରବ ମଧୁସୂଦନଙ୍କ ଅଭୁଲା ଶବ ପଟୁଆର ଠାରୁ ଏହା ବହୁ ଗୁଣ ବୃହତ୍ତର । ଆଉ ଏହା ସୁଦୂର ପ୍ରସାରୀ ରାଜନୈତିକ ତାତ୍ପର୍ଯ୍ୟସମ୍ପନ୍ନ । ଏହି ହତ୍ୟାଲୀଳା ଓ ଶବ ପଟୁଆରର ବିବରଣୀ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଲାପରେ ଭାରତରେ ତଥା ମୋଗଲବନ୍ଦୀ ଓଡ଼ିଶାରେ ଗଡ଼ଜାତ ପ୍ରଜା ଆନ୍ଦୋଳନ ପ୍ରତି ସଂହତି, ସମର୍ଥନ, ବୃଦ୍ଧି ପାଇଲା । ଏହା ଏକ ନୂତନ ରାଜନୈତିକ ବାତାବରଣ ସୃଷ୍ଟି କଲା । ସାହିତ୍ୟ, ସଂସ୍କୃତି ଉପରେ ଏହି ଆନ୍ଦୋଳନ ଓ ଢେଙ୍କାନାଳର ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଗଭୀର ପ୍ରଭାବ ପକାଇଲା ।

କବି ସଚ୍ଚି ରାଉତରାୟ ତାଙ୍କର ଅମରକୀର୍ତ୍ତୀ ବାଜି ରାଉତ ଲାଗି ସାରା ଭାରତରେ ଖ୍ୟାତ ହେଲେ । ଓଡ଼ିଆ ସାହିତ୍ୟର ରଥୀ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର ଲେଖନୀରୁ ଝଂକୃତ ହେଲା :

"... କୋଣାରକ ଠାରୁ ଟେକିଲା ଦେଉଳ ବଡ଼
ନମାନିଲାତ ସେ ଗୁଳିବନ୍ଧୁକ ଝଡ଼,
ଏଡ଼େ ଅବିନତୀ ଟୋକା
ଢେଙ୍କାନାଳର କଙ୍କାଳ ଟାଣି
ବଜାଇଲା ଜୟ ଢକ୍କା
ବଜାଇଲା ତ ସେ ଦୁନିଆ ଆଗରେ ବାଜା,
ନାହିଁ ରାଜା, ନାହିଁ ରାଜା
କାହୁଁ ଶିଖିଲୁ ଏ କଥା, କହ କହ ବାଜି
କାହା ଲାଗି ଆଜି ବଳିଦେଲୁ ତୋର ମଥା ।
ଆସ ଲକ୍ଷ୍ମଣ, ଆସ ନଟ, ରଘୁ, ଗୁରି
ହୁରୁଷି ପଧାନ, ବଜାରେ ମରଣ ତୂରୀ
ବେଳ ଏହି ବେଳ ଏହି
ବାର ବରଷର ବାଜି ରାଉତ ସେ
ମରି ନାହିଁ ମରିନାହିଁ ।

ବିପ୍ଳବୀ କବି ଅନନ୍ତ ପଟ୍ଟନାୟକ ଲେଖିଲେ :

"++ କି କଥା କହିଲୁ, ଆଣିବୁନି ନାହା ଭାଇର ଆଦେଶ ନାହିଁ
ଆରେ ବଜ୍ଜାତ, ଆରେ ବଦମାସ୍ ଟୋକା,
ମଣିଛୁକି ଆମେ ଅନ୍ଧ, ନିକମା ବୋକା,
ଦେଖ ତେବେ ଆମ ରାଜ ଆଦେଶର
ଦେଖ ଦେଖ କରାମତି
ଦେଖ ଡୋଳା ଲେଉଟାଇ ।"

କବି ମନମୋହନ ମିଶ୍ର ବାଜିକୁ ଶ୍ରଦ୍ଧାଞ୍ଜଳି ଦେଇ ଲେଖିଗଲେ -

ବାଜି ରାଉତ ପୁକାରେ
ତାହାର ଲୁହ ବୋଳା-କ୍ରାନ୍ତିର ଜୟମାଳା
କପିଳାସ, ମେଘାସନ ଉଠାରେ ।"++

ଢେଙ୍କାନାଳର ବୀର ଶହୀଦ ବାଜି ରାଉତଙ୍କୁ ଘେନି ରଚିତ ହୋଇଛି କେତେ କାବ୍ୟ କବିତା। ମଂଚସ୍ଥ ହୋଇଛି ନାଟକ ବାଜି ରାଉତ। ଲେଖିଛନ୍ତି ବୈକୁଣ୍ଠ ନାଥ ମହାନ୍ତି। ବିପ୍ଳବିଣୀ ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ଶହୀଦ ବାଜିର ସ୍ମାରକୀ ରୂପେ ଅନୁଗୁଳଠାରେ ବାଜି ରାଉତ ଛାତ୍ରବାସ ପ୍ରତିଷ୍ଠା କରିଛନ୍ତି। ନିପୀଡ଼ିତ, ନିର୍ଯାତିତ ପ୍ରଜାମାନଙ୍କ ପ୍ରଜା ଆନ୍ଦୋଳନର କୃତଜ୍ଞ ଉତ୍ତରାଧିକାରୀମାନେ ଐତିହାସିକ ଅଲସୁଆ ହାଟ ନିକଟ ଚଉମୁଖୀ ରାସ୍ତାରେ ବାଜି ରାଉତ ସ୍ମୃତି ସ୍ତମ୍ଭ ସ୍ଥାପନ କରିଛନ୍ତି। ଭୁବନରେ ବାଜିରାଉତଙ୍କୁ ଉତ୍ସର୍ଗିତ ଏକ ମହାବିଦ୍ୟାଳୟ ସ୍ଥାପିତ ହୋଇଛି। ଚଳିତ ୧୯୯୭ରେ ଢେଙ୍କାନାଳ ଆଇନ୍ ମହାବିଦ୍ୟାଳୟର କର୍ମକର୍ତ୍ତା, ଅଧ୍ୟାପକ, ଅଧ୍ୟାପିକା, ଛାତ୍ରଛାତ୍ରୀ ଏକ ମନୋଜ୍ଞ ସମାବେଶରେ ବାଜି ରାଉତର ଆବକ୍ଷ ମୂର୍ତ୍ତି ଉନ୍ମୋଚନ କରାଇଛନ୍ତି।

**ପଚାଶ ବର୍ଷ ପରେ ଏକ ହୀନ ଚକ୍ରାନ୍ତ :**

ଢେଙ୍କାନାଳ ପ୍ରଜା ଆନ୍ଦୋଳନ କେବଳ ନୁହେଁ, ସମଗ୍ର ଓଡ଼ିଶାର ଗଡ଼ଜାତ ପ୍ରଜାଆନ୍ଦୋଳନ ତଥା ସ୍ୱାଧୀନତା ଆନ୍ଦୋଳନର ବିରୋଧୀ ନ୍ୟସ୍ତସ୍ୱାର୍ଥ ଶକ୍ତିମାନେ ଏହି ମହିମାନ୍ୱିତ ଘଟଣାକୁ ବିକୃତ କରିବାର ହୀନ ଉଦ୍ୟମ ଚଳାଇ ଆସିବା ଦେଖାଦେଇଛି।

ଢେଙ୍କାନାଳର ତଥାକଥିତ ରାଜ ଉଆସରୁ ରାଷ୍ଟ୍ରପତିଙ୍କ ନିକଟକୁ ଏକ ଆବେଦନ କରାଯାଇ ବାଜି ରାଉତ ଓ ଅନ୍ୟମାନଙ୍କ ଶହୀଦତ୍ୱକୁ ପ୍ରକାରାନ୍ତରେ ଆହ୍ୱାନ କରାଯାଇଛି। ଢେଙ୍କାନାଳରେ ଆନ୍ଦୋଳନର ୫୦ ବର୍ଷ ପରେ ଓଡ଼ିଶାର ଜଣେ କୃତୀ ସାହିତ୍ୟିକ ତାଙ୍କ ଜୀବନୀରେ ବାଜି ରାଉତ ଶହୀଦ ନୁହେଁ, ପଚାଶବର୍ଷ ପରେ ଯାଇ ନିଜେ ତଥ୍ୟ ସଂଗ୍ରହ କରି ଏପରି ସତ୍ୟରେ ଉପନୀତ ହୋଇଛନ୍ତି ବୋଲି ଉଲ୍ଲେଖ କରି ଢେଙ୍କାନାଳ ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନ, ସମସ୍ତ ମହିମାମୟ ଇତିହାସକୁ ବିକୃତ କରିବା ଉଦ୍ୟମ କରିଛନ୍ତି। ଅବଶ୍ୟ ସେହି ସାହିତ୍ୟିକଙ୍କ ଜୀବଦଶାରେ ତାଙ୍କର ଏପରି ହୀନ ଉଦ୍ୟମର ସ୍ୱରୂପ ପ୍ରକାଶ କରାଯାଇଛି। ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି, ସ୍ୱାଧୀନତା ସଂଗ୍ରାମର ମୂଲ୍ୟବୋଦଗୁଡ଼ିକ ପ୍ରତି ବିମୁଖ ହୋଇ ରଜାମାନଙ୍କ ଦଳ ଗଣତନ୍ତ୍ର ପରିଷଦରେ ଦେଇଥିଲେ।

ଯେଉଁ ପାଟନା ମହାରାଜା, କଳାହାଣ୍ଡି ମହାରାଜା ପ୍ରମୁଖ ନିଜର ସଶସ୍ତ୍ର ପୋଲିସ୍ ପଠାଇ ଢେଙ୍କାନାଳ ରାଜାଙ୍କ ନରସଂହାରରେ ସାହାଯ୍ୟ କରିଥିଲେ, ସେହି ରାଜାମାନଙ୍କ ଦଳରେ ଯୋଗଦେଇ ସେ ରାଜନୀତି କଲେ। ଏଣୁ ଇତିହାସକୁ ବିକୃତ କରିବାକୁ ସେ ଚେଷ୍ଟା କରିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ଢେଙ୍କାନାଳ ରାଜାଙ୍କ ଏବର ଦାୟାଦ ତାଙ୍କ ପୂର୍ବପୁରୁଷଙ୍କ ଗୌରବ, ତାଙ୍କ ଅମଳର ସ୍ୱର୍ଣ୍ଣଯୁଗ, ପାଇକ ଆଖଡ଼ା, ଢେଙ୍କାନାଳର ପ୍ରଥମ ସ୍ୱାଧୀନତା ସଂଗ୍ରାମ

(ମରହଟ୍ଟା-ବ୍ରିଟିଶ୍ ଅମଳ) ଇତ୍ୟାଦିର ଦ୍ୱାହି ଦେଇ ଢେଙ୍କାନାଳ ପ୍ରଜା ଆନ୍ଦୋଳନକୁ ନ୍ୟୂନ ପ୍ରତିପନ୍ନ କରିବାର ସୁଚତୁର ସୂକ୍ଷ୍ମ ଉଦ୍ୟମ କରିଚାଲିଛନ୍ତି। ଦେଶପ୍ରେମୀମାନେ, ସାହିତ୍ୟିକ ତଥା ଇତିହାସ ଗବେଷକମାନେ ଏଥିପ୍ରତି ସାବଧାନ ହେବାର ବେଳ ଆସିଛି। କେବଳ ଢେଙ୍କାନାଳ ଆନ୍ଦୋଳନ ନୁହେଁ ଆମ ଦେଶର ସ୍ୱାଧୀନତା ସଂଗ୍ରାମର ଗରିମାମୟ ଇତିହାସକୁ ସ୍ୱାଧନୀତାର ଶତ୍ରୁ ଦେଶ ବିଦେଶୀ ତଥା ସଂକୀର୍ଣ୍ଣତାବାଦୀମାନେ, ସାମ୍ପ୍ରଦାୟିକତାବାଦୀ, ବିଚ୍ଛିନ୍ନତାବାଦୀମାନେ ବିକୃତ କରି ନୂତନ ପୀଢ଼ିକୁ ଦିଗଭ୍ରଷ୍ଟ କରିବାକୁ ବସିଛନ୍ତି। ଏଠାରେ ଅନେକ ଦୃଷ୍ଟାନ୍ତ ରହିଛି।

ଜାତିର ଗୌରବମୟ ଐତିହ୍ୟକୁ ବିକୃତ, କଳଙ୍କିତ କରିବାକୁ ଏହା ଏକ ହୀନ ପ୍ରଚେଷ୍ଟା।



# ରକ୍ତର ହୋରିଖେଳ ଅନ୍ତହୀନ

**ହିନ୍ଦୋଳରୋଡ଼ - ୧୯୩୮ ଅକ୍ଟୋବର ୧୭ :**

ବାଜି, ଲକ୍ଷ୍ମଣ, ନଟ, ହୁରୁଷି, ରଘୁଗୁରି ଶହୀଦ ହୋଇଥିବା ଭୁବନ ଓ ନୀଳକଣ୍ଠପୁରରେ ହତ୍ୟାର ତାଣ୍ଡବ ସୀମିତ ରହିଲା ନାହିଁ। ଏପରି ବୀଭତ୍ସ ନରସଂହାରର ଆଠ ଦିନ ପରେ ହିନ୍ଦୋଳରୋଡ଼ରେ ଲାଠି ଓ ବନ୍ଧୁକର ଆକ୍ରମଣ ଚାଲିଲା। ସଶସ୍ତ୍ର ପୁଲିସ ପୂର୍ବପରି ଗାଁକୁ ଗାଁ ପଶି ଆକ୍ରମଣ ଚଳାଇଲେ। ବଳରାମ ପ୍ରସାଦ ଓ ମୃଦଙ୍ଗାପଲ୍ଲୀ ଗାଁରେ ପଶି ରାଜଭକ୍ତ ଟିକଟ ନେଇ ଶରଣ ପଶ ବୋଲି ହୁକୁମ ଜାରି କରି ଘରୁ ଘରୁ ଲୋକଙ୍କୁ ଟାଣି ଅଣାଗଲା। ଦମ୍ଭର ସହ ଠୁଳ ଗ୍ରାମବାସୀମାନେ "ଭାଇର ଆଦେଶ ନାହିଁ (ଭାଇ ବୋଇଲେ ପ୍ରଜାମଣ୍ଡଳ) ବୋଲି ଧ୍ୱନି ଉଠାଇଲେ। ଚାଲିଲା ଲାଠି ପ୍ରହାର - ଅନେକ ଆହତ ହେଲେ। ରାତି ତିନିପ୍ରହରରେ, ଲୋକେ ଯେତେବେଳେ ଘରେ ଶୋଇ ରହିଛନ୍ତି, ସେତେବେଳେ ସଶସ୍ତ୍ର ପୁଲିସ ଗୋଡ଼ିଡିହ ଗାଁରେ ପ୍ରବେଶ କଲା ଓ ଲୋକଙ୍କୁ ନିଦରୁ ଉଠାଇ ଠୁଳ କରି ରାଜଭକ୍ତ ଟିକଟ ନ କିଣିବାରୁ ଲାଠି ଚଳେଇ ଅନେକଙ୍କୁ ଆହତ କଲା।

ପାଖରେ ହିନ୍ଦୋଳରୋଡ଼ ଷ୍ଟେସନ। ତାହା ରେଳବାଇ ଅଧୀନ ଜମି। ପୁଲିସ ଆକ୍ରମଣରୁ ରକ୍ଷା ପାଇବା ପାଇଁ ଆଖପାଖ ବିଭିନ୍ନ ଗାଁର ଲୋକେ ସେହିସ୍ଥାନକୁ ନିରାପଦ ମଣିଲେ। ମାତ୍ର ରକ୍ତମୁହାଁ ସଶସ୍ତ୍ର ବାହିନୀ ସେମାନଙ୍କ ପିଛା ଧରି ଅବାରିତ ଗୁଳି ବର୍ଷଣ କଲା। ଫଳରେ ଦୁଇଜଣ ବାରବର୍ଷର ବାଳକ ସମେତ ୬ଜଣ ଗୁରୁତର ଆହତ ହୋଇ ଷ୍ଟେସନ ପାଖରେ ପଡ଼ି ରହିଲେ। ଲୋକେ ଛତ୍ରଭଂଗ ଦେଇ ଜୀବନ ବିକଳରେ ଯିଏ ଯୁଆଡ଼େ ଧାଇଁଲେ। ଦୈବାତ୍ ତାଳଚେର ଟ୍ରେନ୍ ହିନ୍ଦୋଳରୋଡ଼ରେ ପହଁଚିଲା। ଷ୍ଟେସନ ପ୍ଲାଟଫର୍ମରେ ଆହତମାନଙ୍କୁ ଦେଖି ରେଳ କର୍ମଚାରୀମାନେ ମାନବିକତାର ନିଦର୍ଶନ ରଖିଲେ। ଆହତମାନଙ୍କୁ କଟକ ବଡ଼ ଡାକ୍ତରଖାନାରେ ପହଞ୍ଚାଇ ସେମାନଙ୍କ ଜୀବନ ରକ୍ଷା କଲେ।

**ଅକ୍ଟୋବର ୨୧ ଡୁମୁସିଂହା ଶିରିମୂଳା:**

ସଶସ୍ତ୍ର ପୁଲିସ ଏ ଦିନ ସିରିମୂଳା, ଡୁମୁସିଂହା ଓ ପୁଟୁସାହିର ଲୋକଙ୍କୁ ଭୟଭୀତ କରାଇ ଗୋଟିଏ ସ୍ଥାନରେ ଠୁଳ କରାଗଲା। ଚାରିଆଡୁ ସେମାନଙ୍କୁ ସଶସ୍ତ୍ର ପୁଲିସ ଘେରରେ ରଖି ରାଜଭକ୍ତ ଟିକଟ କିଣିବାକୁ ଆଦେଶ ହେଲା। "ନାଁ କିଣିବୁ ନାହିଁ, ଭାଇର ଆଦେଶ ନାହିଁ" ଧ୍ୱନି

ଉଠିଲା । କ୍ରୋଧ ଜର୍ଜ୍ଜରିତ ସଶସ୍ତ୍ର ବାହିନୀ ଚାରିଆଡୁ ଆକ୍ରମଣ ଆରମ୍ଭ କରିଦେଲା । ପ୍ରଥମେ ୫ ଜଣ ମୁଖିଆ ବ୍ୟକ୍ତିଙ୍କୁ ଗିରଫ କରାଗଲା । ତଥାପି ଲୋକେ ଅଟଳ । ଚାଲିଲା ଗୁଳି । ତିନିଜଣ ପ୍ରଜା ସଙ୍ଗେ ସଙ୍ଗେ ଶହୀଦ ହେଲେ ଆଉ ୧୦ଜଣ ଗୁରୁତର ଭାବରେ ଆହତ ହେଲେ । ଆହତ ବ୍ୟକ୍ତିଙ୍କ ମଧ୍ୟରୁ ଜଣକର ପ୍ରାଣବାୟୁ ଡାକ୍ତରଖାନାରେ ଉଡ଼ିଗଲା । ରାଜଭକ୍ତ ଟିକଟ କିଣିବାକୁ ରାଜଦରବାର ପକ୍ଷରୁ 'ସୁବର୍ଣ୍ଣ ସୁଯୋଗ' ଆଖ୍ୟା ଦିଆଯାଇଥିଲା ।

**୧୯୩୮ ନଭେମ୍ବର ୨ କୁଟୁମୁଣ୍ଡା**

ତାଳଚେରର ସିପୁର ପୋଲିସ ଥାନା ଇଲାକାରେ ଏକ ଚୋରୀ ହୋଇଛି ଏବଂ ଏଥିରେ କୁଟୁମୁଣ୍ଡାର କେତେକ ସଂପୃକ୍ତ ବୋଲି ଏକ ମିଥ୍ୟା ଅଭିଯୋଗ ପ୍ରସ୍ତୁତ କରାଗଲା । ତାଳଚେରକୁ ଲାଗି ଢେଙ୍କାନାଳର ଏକ ଅଭ୍ୟନ୍ତର ଗାଁ କୁଟୁମୁଣ୍ଡା । ଆଖପାଖ ଅଂଚଳରେ ରହୁଥିବା ପାଣ ଜାତିର ପ୍ରଜାମାନେ ପ୍ରଜାମଣ୍ଡଳର ଟାଣୁଆ ସମର୍ଥକ । ସେମାନଙ୍କୁ ଜବତ୍ କରିବାର ଉପାୟ ସ୍ୱରୂପ ଏପରି ଏକ ଷଡ଼ଯନ୍ତ୍ର କରି ଉଭୟ ଢେଙ୍କାନାଳ ଓ ତାଳଚେରର ପୁଲିସ ଉକ୍ତ ଗାଁ ଉପରେ ଆକ୍ରମଣ କଲେ । ଅସଲ କଥା ହେଲା, ଢେଙ୍କାନାଳ ପରି ତାଳଚେରର ପବିତ୍ର ମୋହନ ପ୍ରଧାନ, ମଦନମୋହନ ପ୍ରଧାନ, ବିଛନ୍ଦ ପ୍ରଧାନ ପ୍ରମୁଖଙ୍କ ନେତୃତ୍ୱରେ ପ୍ରବଳ ପ୍ରଜା ଆନ୍ଦୋଳନ ଫାଟି ପଡ଼ିଥାଏ । ତାଳଚେର ପ୍ରଜାମାନଙ୍କ ଉପରେ ଏପରି ଆକ୍ରମଣ ହେଲା ଯେ, ପ୍ରଜାମଣ୍ଡଳ ନିର୍ଦ୍ଦେଶରେ ଦମନ ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ପଚାଶ ହଜାରରୁ ଊର୍ଦ୍ଧ୍ୱ ତାଳଚେର ପ୍ରଜା ପାଖ ଅନୁଗୋଳ ଓ ଛେଣ୍ଡିପଦାରେ କୁଡ଼ିଆ ପାତି ୯ ମାସରୁ ଅଧିକ କାଳ ହିଜରତ କରିଥାନ୍ତି । ସେଠାକୁ ଗାନ୍ଧିଜୀଙ୍କ ପ୍ରତିନିଧି ଠାକ୍କରବାପା ଓ ବ୍ରିଟିଶ ମହିଳା ଆଗାଥା ହାରିସନ, ଦୀନବନ୍ଧୁ ଆଣ୍ଡ୍ରୁଜ୍ ହରେକୃଷ୍ଣ ମହତାବ, ସାରଙ୍ଗଧର ଦାସ ପ୍ରମୁଖ ନେତାମାନେ ଯାଉଥାନ୍ତି । ଢେଙ୍କାନାଳର ଆନ୍ଦୋଳନରତ ପ୍ରଜାମାନେ ତାଳଚେରର ପ୍ରଜାମାନଙ୍କ ପ୍ରତି ସହାନୁଭୂତି ଓ ସମର୍ଥନ ଜଣାଉଥାନ୍ତି । ନିଜେ ଆନ୍ଦୋଳନରେ ରତ ଥାଇ ନୀଳଗିରି ରାଜ ଅତ୍ୟାଚାରର ଦମନ ବିରୋଧୀ, ନୀଳଗିରି ଦିବସ ପାଳନ ବେଳେ ଢେଙ୍କାନାଳ ପ୍ରଜାମଣ୍ଡଳ ଖଡ଼ଗପ୍ରସାଦ, ଭୁବନ ଓ ଅନ୍ୟତ୍ର ଉକ୍ତ ଦିବସ ପାଳନ କରିଥିଲା । ସେ ରାଜ୍ୟର ନିର୍ଯାତିତ ପ୍ରଜାଙ୍କ ଲାଗି ସଭାରେ ଚାନ୍ଦା ସଂଗ୍ରହ କରି ପଠାଇଥିଲା । ନୀଳଗିରିର ଆନ୍ଦୋଳନକୁ ଦବେଇବା ପାଇଁ ଢେଙ୍କାନାଳ, ମୟୂରଭଂଜ, କେଉଁଝରର ରାଜାଙ୍କ ଦ୍ୱାରା ସଶସ୍ତ୍ର ପୁଲିସ ବାହିନୀ ପ୍ରେରଣକୁ ନିନ୍ଦା କରିଥିଲା ।

ଏସବୁ କାରଣରୁ କୁଟୁମୁଣ୍ଡାର ପାଣ ଜାତିର ପ୍ରଜାମଣ୍ଡଳ ସମର୍ଥକଙ୍କୁ ଦମନ କରିବା ଲାଗି ଢେଙ୍କାନାଳ ଦରବାରକୁ ତାଳଚେର ଦରବାର ସଶସ୍ତ୍ର ପୁଲିସ ପ୍ରେରଣ କରିଦେଲା ।

କୁଟୁମୁଣ୍ଡାରେ ଲୋକଙ୍କୁ ଘରୁ ବାହାରକୁ ଆଣି ଠୁଳ କରାଇ ନିର୍ମମ ପିଟା ଚାଲିଲା । କେବଳ ପାଣ ଜାତିର ନୁହଁନ୍ତି ଅନ୍ୟ ଜାତିର ଲୋକଙ୍କ ଉପରେ ଚାଲିଲା ଦମନ । ଏଥିରେ ପ୍ରଜାମାନେ ଦବି ନଯିବାରୁ ଗୁଳି ଚାଲିଲା ଓ ଦୁଇଜଣ ନିହତ ଓ ଅନେକ ଆହତ ହେଲେ ।

**୧୦ ନଭେମ୍ବର ୧୯୩୮ କନ୍ଦରସିଂହା :**

ରାଜା ଶଙ୍କର ପ୍ରତାପ ତାଙ୍କ ମାଜିଷ୍ଟ୍ରେଟ ଓ ପୁଲିସ ବାହିନୀକୁ ଧରି କନ୍ଦରସିଂହା ଗାଁରେ ଡେରା ପକେଇଲେ। ନିଜିଗଡ଼, ନୀଳକଂଠପୁର, ଭୁବନ, ହିନ୍ଦୋଳରୋଡ଼, ତୁମୁସିଂହା, କୁଟୁମୁଣ୍ଡା ପ୍ରଭୃତିରେ ଗୁଳି ଲାଠି ଖାଇ ପ୍ରଜାମାନେ ଦବି ଯାଇଥିବେ ବିଚାରି ସଦଳବଳ ରାଜାଙ୍କ ଡେରା ପଡ଼ିଲା। କାରଣ ପ୍ରଜାମଣ୍ଡଳର ଏହା ଏକ ସୁଦୃଢ଼ ଘାଟୀ ଗାଁ। ଏଠାରେ ସ୍ୱେଚ୍ଛାସେବକମାନଙ୍କୁ ତାଲିମ ଦିଆଯାଇ ସତ୍ୟାଗ୍ରହ କରିବାକୁ ପଠାଯାଉଥିଲା।

ପ୍ରଜାମାନଙ୍କୁ ପ୍ରଜାମଣ୍ଡଳ ସହିତ ସଂପର୍କ ତୁଟାଇ ରାଜଭକ୍ତ ଟିକଟ କିଣିବାକୁ ଧମକ ଦିଆଗଲା। ମାତ୍ର ଫଳ କିଛି ହେଲାନାହିଁ। ତହୁଁ ନଭେମ୍ବର ୧୧ରେ ସଶସ୍ତ୍ର ବାହିନୀ ଗାଁରେ ପ୍ରବେଶ କଲେ। ଗାଁର ଲୋକେ ଏକାଠି ଠୁଳ ହୋଇଯିବା ଦେଖି ଚାଲିଲା ଆଖିବୁଜା ଲାଠିମାଡ଼। ଲୋକେ ଏଥିରେ ଦବିଗଲେ ନାହିଁ। ଗୁଳି ଚାଲିଲା। ୩ଜଣ ବ୍ୟକ୍ତି ଗୁଳିରେ ନିହତ ହେଲେ। ଅନେକ ଖଣ୍ଡିଆଖାବରା ହେଲେ।

୧୯୪୨ରେ ଢେଙ୍କାନାଳରେ ଆନ୍ଦୋଳନରେ ଦମନ ଗିରଫଙ୍କୁ ବାଦ୍ ଦେଲେ ୧୯୩୮ ସେପ୍ଟେମ୍ବର ୧୯୩୯ ମାର୍ଚ୍ଚ-ଏପ୍ରିଲ ଯାଏ କେତେ ଯେ ପ୍ରଜା ପୁଲିସ ଓ ସୈନ୍ୟବାହିନୀର ଆକ୍ରମଣରେ ଆହତ ହୋଇଛନ୍ତି ତାହାର ଇୟତ୍ତା ନାହିଁ। ରାଜ୍ୟର ଚବିଶଟି ବିଶର ବିଭିନ୍ନ ଗାଁରେ ବିଶେଷତଃ ପରଜଂଗ, ପଳାଶୁଣି, ନିଜିଗଡ଼, ଭୁବନ, ନୀଳକଣ୍ଠପୁର, ବଳରାମପ୍ରସାଦ, ଛଦେଶ, ଉପର ବିଶର, ପାରିମାଳ ଇତ୍ୟାଦି ଅଂଚଳର ଶହ ଶହ ଗାଁ ଉପରେ କୌଣସି ନା କୌଣସି ପ୍ରକାର ପୁଲିସ ଉପଦ୍ରବ ହୋଇଛି। ଶହ ଶହ ସଂଖ୍ୟାରେ ଗିରଫ ହୋଇଛନ୍ତି। ଗିରଫ ହୋଇଥିବା ବ୍ୟକ୍ତିଙ୍କ ସଂଖ୍ୟା ହଜାରରୁ କମ୍ ନୁହେଁ। ସେ ସମସ୍ତଙ୍କ ନାମ ଓ ଠିକଣା ନାହିଁ।

ଗୁଳିରେ ନିହତ ହୋଇଥିବା ସମସ୍ତ ବ୍ୟକ୍ତି ଓ ସେମାନଙ୍କ ନାମ ସଂପୂର୍ଣ୍ଣ ଭାବରେ ଜଣାପଡ଼ିନାହିଁ। ଯେମିତି ଯେଉଁମାନଙ୍କୁ ହତ୍ୟା କରି ବିଶାଳ ଜନ ସମୁଦ୍ର ଭିତରୁ ବୋହି ନେଇ ଅନ୍ୟତ୍ର ଫିଙ୍ଗି ଦେଇଥିଲା। ସମୁଦାୟ ୧୭ ଜଣ ନିହତଙ୍କ ନାମ ଜଣାଯାଇଛି। ଏଥିରେ ମଢ଼ି ଦଖଲ ବେଳର ନିହତଙ୍କ ସଂଖ୍ୟା ମିଶିନାହିଁ।

ନୀଳକଣ୍ଠପୁର ଫଗୁ ଓ ଭୁବନ ଗୁଳିକାଣ୍ଡରେ ନିହତ ଛଅଜଣ ଶହୀଦଙ୍କ ନାମ ଦିଆଯାଇଛି। ଆଉ ଯେଉଁମାନେ ଶହୀଦ ହୋଇଥିଲେ ସେମାନେ ହେଲେ ଦାସିଆ ସାହୁ, ନରହରି ତନ୍ତୀ, ଶମ୍ଭୁ ନାୟକ, ଦୀନା ବେହେରା (ତୁମୁସିଂହା); ଧୋବେଇ ନାୟକ, କାଳୀ ନାୟକ (କୁଟୁମୁଣ୍ଡା), ନାଥ ବିଶ୍ୱାଳ, କାଳିଆ ବିଶ୍ୱାଳ, ପଦନ ବିଶ୍ୱାଳ (କନ୍ଦର ସିଂହା), ୧୯୩୯ ଏପ୍ରିଲ ୧୦ ତାରିଖରେ ଜେଲଖାନାରେ ଶହୀଦ ଦୀନବନ୍ଧୁ ମଲିକ। ଅନୁସୂଚିତ ଜାତିର ଦୀନବନ୍ଧୁ ପୁଲିସ

ଗୁଳିରେ ଆହତ ହୋଇଥିଲେ । ଢେଙ୍କାନାଳର ଶହ ଶହ ଗାଁ ଉପରେ ସେହିଦିନ ଗୁଡ଼ିକରେ ଗୋରା, ଶିଖ, ଫଉଜ ଓ ଢେଙ୍କାନାଳ ପୁଲିସର ନିର୍ମମ ଅତ୍ୟାଚାରର ସୀମା ନଥିଲା ।

ଯେଉଁ ଶହ ଶହ ଗ୍ରାମ ଉପରେ ଦମନଲୀଳା, ଲୁଟପାଟ ଧର୍ଷଣ ଚାଲିଥିଲା – ସେପରି କେତେକ ଗ୍ରାମ ହେଲେ ଖଡ଼ଗପ୍ରସାଦ, ଆମ୍ବ ପଳାସ, ବଜୁରିଆ, ପିଙ୍ଗୁଆ, ଷଡ଼ଙ୍ଗୀ, ନିହଲପ୍ରସାଦ, ମାଣିକମରା, କୁଆଁଳୋ, ଗୋଡ଼ା, ଜକା, ଖାଲିପାଳ, ଭାଲିଆପାଟ, ଭୁବନ, ନୀଳକଣ୍ଠପୁର, ମଙ୍ଗଳପୁର, ନରେନ୍ଦ୍ରପୁର, ମଢ଼ି, ପଜିରା, ପଳାଶୁଣି, ସୌରିକ, ଡିହଡୋଳ, ମଠ କରମଳା, ପିତିରି, ଖଇରାମୁଣ୍ଡା, ଟମ୍ପେଇ, ଗଡ଼ ପଳାଶୁଣି, ଜଗନ୍ନାଥପୁର, ବାଲିଗୋରଡ଼, ମୋଟା, ପଙ୍ଗାତିରା, କମଳାଙ୍ଗ, ଡମୋଳ, କନ୍ଦୁରୁ, ଜଉତୁକ ପଶି, ତୁମୁସିଂହା, କନ୍ଦର ସିଂହା, ଗଁଦିଆ, ଯୋରନ୍ଦା, ଗୁନଦେଇ, ବଉଳପୁର, ବଣସିଂହା, ପଥରଖୁମ୍ବ, ରାୟପୁର, ମନ୍ଦାର, ଦେଓଗାଁ, ଗୋପାଳପୁର, କବାଟବନ୍ଧ, କାଶିପୁର, କାଲୁଣିଗୋଡ଼ା, ବଡ଼ ସୁଆଣି, ତୋଲାରପଶି, ନିମିଧା, ଗଦାଶିଳା, ମାଣିପୁର, ସରଦେଇପୁର, ସନ୍ତସରା, ବରଦା, ବରପଦା, ସିମିନେଇ, ପୁରୁଣା ଅମାଙ୍ଗ, କରନ୍ଦା, ବଣିସିଂହ, ବଳରାମପୁର, ବଲଭ, ମହୁଲପୁଞ୍ଜି, ବିଷ୍ଣୁପୁର, ବେଗୁନିଆପାଳ, ସମିଳିପାଟଣା, ଘଟିପିର, ବାଲିଆମ୍ବା, କଣ୍ଟାପାଟଣା, ଓ୍ୱାଉଖମା । ସବୁ ଗାଁରୁ ତଥା ରାଜ୍ୟସାରା ବିଭିନ୍ନ ଗାଁରୁ ପ୍ରଜାମଣ୍ଡଳ କର୍ମୀ ଓ ନେତାମାନଙ୍କୁ ଗିରଫ କରାଯାଇ ଜେଲଖାନାରେ ନାନା ଦମନ ଅତ୍ୟାଚାରର ଶିକାର କରାଯାଉଥିଲା । ବ୍ୟଭିଚାର, ଲୁଣ୍ଠନର ପ୍ରତିବାଦ କରି ବିଭିନ୍ନ ସ୍ଥାନରେ ସମବେତ ହୋଇ ପ୍ରଜା ତାର ବିରୋଧ କରୁଥିଲେ । ପୁଲିସକୁ ଘଉଡ଼ାଉଥିଲେ ଅଫିସର ଓ ରଜାଘରର ଲୋକମାନଙ୍କ ପ୍ରତି ସାମାଜିକ ବାସନ୍ଦ ପ୍ରୟୋଗ କରୁଥିଲେ ।

**ଗିରଫଦାରୀ ଲାଗି ପୁରସ୍କାର ଘୋଷଣା :**

ଗିରଫ କରି ନିଆଯିବା ନେତା ଓ କର୍ମୀମାନେ ଜେଲ୍‌ରେ ଥିବାବେଳେ ଯେଉଁ ବିଶିଷ୍ଟ ନେତାମାନେ ଗୋପନରେ ରହି ଆନ୍ଦୋଳନ ପରିଚାଳନା କରୁଥିଲେ, ସେମାନଙ୍କୁ ଯିଏ ଧରେଇ ଦେବ ବା ସମ୍ବାଦ ଦେବ କାହା ପିଛା କେତେ ପୁରସ୍କାର ଦିଆଯିବ ତାହା ଘୋଷଣା କରାଗଲା । ଏପରି ଏକ ଆଦେଶର ଅବିକଳ ନକଲ ନିମ୍ନ ରୂପ –

**ନୋଟିସ୍**

ମହାମାନ୍ୟ ଦରବାରଙ୍କ ତା ୨୯.୧୧.୧୯୩୮ ରିଖ ଆଦେଶରେ ସର୍ବସାଧାରଣଙ୍କୁ ଜଣାଇ ଦିଆଯାଉଛି ଯେ କୌଣସି ବ୍ୟକ୍ତି ନିମ୍ନଲିଖିତ ଦୋଷୀପଳାତକମାନଙ୍କ ମଧ୍ୟରୁ କାହାକୁ ଏହି ନୋଟିସର ପ୍ରଚାର ତାରିଖ ଠାରୁ ୧୫ ଦିନ ମଧ୍ୟରେ ଧରିନେଇ ବା ସମ୍ବାଦ ଦେଇ ଧରାଇ ଦେଇପାରିବ ସେ ନିମ୍ନୋକ୍ତ ଭାବେ ପୁରସ୍କୃତ ହେବ । ଧାର୍ଯ୍ୟ ସମୟର ସମାପ୍ତି ପରେ ମଧ୍ୟ

କୌଣସି ବ୍ୟକ୍ତି ଏମାନଙ୍କ ମଧ୍ୟରୁ କାହାରିକୁ ଧରି ଦେଲେ, ଧୃତକାରୀଙ୍କୁ କେତେକ ପ୍ରକାର ପାରିତୋଷିକ ମିଳିବ । ଫୌଜଦାରୀ କାର୍ଯ୍ୟବିଧି ଆଇନର ୮୭ଧାରା ଦ୍ୱାରା ସାଧାରଣ ବ୍ୟକ୍ତିମାନେ ଏମାନଙ୍କୁ ଧୃତ କରିବାକୁ ସକ୍ଷମ ବୋଲି ଜଣାଇ ଦିଆଗଲା ।

ବାମଦେବ ରଥ,

ପ୍ରାଇଭେଟ୍ ସେକ୍ରେଟାରୀ

## ତଫସିଲ

| ପଳାତକ | | ପୁରସ୍କାରର ପରିମାଣ |
|---|---|---|
| ୧. ମହେଶଚନ୍ଦ୍ର ସୁବାହୁସିଂହ | ଗଡ଼ପର୍ଜଙ୍ଗ | ଟ.୨୦୦ |
| ୨. ଶ୍ରୀକାନ୍ତ ରାଉତ | ମଙ୍ଗଳପୁର | ଟ.୧୦୦ |
| ୩. ବୈଷ୍ଣବ ଚରଣ ପଟ୍ଟନାୟକ | ନିଜିଗଡ଼ | ଟ.୧୦୦ |
| ୪. କୃତ୍ତିବାସ ପ୍ରଧାନ | ଭାଲିଆପାଟ | ଟ.୧୦୦ |
| ୫. ବ୍ରଜ କିଶୋର ପଟ୍ଟନାୟକ | ମହୁଲପାଳ | ଟ.୧୦୦ |
| ୬. ଦାଶରଥୀ ଶତପଥି | କାଶୀପୁର | ଟ.୫୦ |
| ୭. ନରୋତ୍ତମ ଦାସ | ବାଜୁରିଆ | ଟ.୫୦ |
| ୮. ଦେବରାଜ ପାତ୍ର | ମାଣିକମରା | ଟ.୫୦ |
| ୯. ବ୍ରଜବନ୍ଧୁ ମହାନ୍ତି | ଗଦାଶୀଳା | ଟ.୫୦ |
| ୧୦. ବେଣୁଧର ଦିଅଁ | ଗଡ଼-ଗଁପୁର | ଟ.୫୦ |
| ୧୧. ଗଙ୍ଗାଧର ମିଶ୍ର | ଭୁବନ ଶାସନ | ଟ.୫୦ |
| ୧୨. ରାମକୃଷ୍ଣ ପଟ୍ଟନାୟକ | କନ୍ଦରସିଂହା | ଟ.୫୦ |
| ୧୩. କାହ୍ନୁଚରଣ ନନ୍ଦ | ଟୁଭିନାଳୀ | ଟ.୫୦ |
| ୧୪. ଅଇଣ୍ଠୁ ବିକ୍ରମ ସିଂହ | କନ୍ଦରସିଂହା | ଟ.୫୦ |
| ୧୫. କିଶୋର ଚନ୍ଦ୍ର ସାହୁ | ପଙ୍କାତିରା ସର୍ବରାକାର | ଟ.୫୦ |
| ୧୬. ଆର୍ତ୍ତତ୍ରାଣ ପାତ୍ର | ମାଣିକମାରା ସର୍ବରାକାର | ଟ.୫୦ |
| ୧୭. କାଶୀନାଥ ମିଶ୍ର | ନିଜିଗଡ଼ | ଟ.୫୦ |
| ୧୮. ରତ୍ନାକର ସାମନ୍ତସିଂହାର | କନ୍ତୋର ସର୍ବରାକାର | ଟ.୨୫ |

| ପଳାତକ | | | ପୁରସ୍କାରର ପରିମାଣ |
|---|---|---|---|
| ୧୯. | ଦିବାକର ବିଶ୍ୱାଳ | କୁଆଁଲୁ ସର୍ବରାକାର | ଟ.୨୫ |
| ୨୦. | ଶ୍ୟାମସୁନ୍ଦର ସାହୁ | କୁଆଁଳ | ଟ.୨୫ |
| ୨୧. | ତ୍ରିଲୋଚନ ପ୍ରଧାନ | ଝୀଲ୍ଲୀ | ଟ.୫୦ |
| ୨୨. | ଶ୍ରୀବନ୍ତ ସାହୁ | ମଢ଼ି ସର୍ବରାକାର | ଟ.୨୫ |
| ୨୩. | ଶ୍ୟାମ ସାହୁ | ଖଡ଼ଗପ୍ରସାଦ (ମହାଜନ) | ଟ.୨୫ |
| ୨୪. | ରତ୍ନାକର ରଥ | ରାୟପୁର | ଟ.୨୫ |
| ୨୫. | ସତ୍ୟବାଦୀ ମିଶ୍ର | କମଙ୍ଗରା | ଟ.୨୫ |
| ୨୬. | ନିତ୍ୟାନନ୍ଦ ମିଶ୍ର | ଦକ୍ଷିଣପଣି | ଟ.୨୫ |
| ୨୭. | କପିଳ ବେହେରା | ଜଗନ୍ନାଥପୁର | ଟ.୨୫ |
| ୨୮. | ଇନ୍ଦ୍ରମଣି ସାହୁ | ସୁରପ୍ରତାପପୁର | ଟ.୨୫ |
| ୨୯. | ଈଶ୍ୱର ଜେନା | ନିହ୍ଲଳପ୍ରସାଦ | ଟ.୨୫ |
| ୩୦. | କୁଞ୍ଜ ମିଶ୍ର | କାଳିସାହୀ | ଟ.୨୫ |

□□□

# ମୋଗଲବନ୍ଦୀ ନେତାଙ୍କ ସତ୍ୟାଗ୍ରହ

**ଢେଙ୍କାନାଳରେ ପି.ସି. ଯୋଷୀ :**

ଢେଙ୍କାନାଳରେ ଏପରି ଦମନ ଓ ହତ୍ୟା, ଧର୍ଷଣ, ଲୁଟ ତରାଜର ତାଣ୍ଡବଲୀଳାର ମୁକାବିଲା କରିବା ଲାଗି ମୋଗଲବନ୍ଦୀ ଅଂଚଳରେ ଥାଇ ସେଥିରେ ଘନିଷ୍ଠ ଭାବରେ ଜଡ଼ିତ ରାଜନୈତିକ ମହଲରେ କର୍ମକୌଶଳର ପୁନଃବିନ୍ୟାସର ଚିନ୍ତା ଦେଖାଦେଲା ।

ସେହିବର୍ଷ ନଭେମ୍ବର ମଧ୍ୟ ଭାଗରେ ଏକ ରାଜନୈତିକ ଘଟଣା ଘଟିଗଲା । ଢେଙ୍କାନାଳ ଦରବାର ନିଜ ସପକ୍ଷରେ ପ୍ରଚାର କରିବା ଲାଗି ବିଭିନ୍ନ ସମ୍ବାଦପତ୍ରର ବ୍ୟକ୍ତିଙ୍କ ପାଖରେ ପହଂଚୁଥାନ୍ତି । ଏହାରି ସୁଯୋଗ ଘେନି ବମ୍ବେରୁ ପ୍ରକାଶିତ ନାସନାଲ ଫ୍ରଣ୍ଟର ସଂପାଦକ ପି.ସି.ଯୋଷୀ ଦରବାରକୁ ସାକ୍ଷାତକାରର ଅନୁମତି ମାଗିଲେ । ପୂରନଚନ୍ଦ୍ର ଯୋଷୀ ଥିଲେ ବେଆଇନ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସଂପାଦକ । ଢେଙ୍କାନାଳ ପ୍ରଜା ଆନ୍ଦୋଳନକୁ ଦିଗଦର୍ଶନ ଦେଇଥିବା ନେତାମାନେ ଜ୍ଞାତସାରରେ ଅତି ଚତୁରତା ସହକାରେ ଯୋଷୀ ରାଜାଙ୍କ ସଙ୍ଗେ ସାକ୍ଷାତ କରି ସେ କିପରି ଆନ୍ଦୋଳନକୁ ଦମନ କରୁଛନ୍ତି ଓ କିପରି ତାଙ୍କୁ ବ୍ରିଟିଶ ପଲିଟିକାଲ ଏଜେଣ୍ଟ ଓ ଗଡ଼ଜାତ ରାଜାମାନଙ୍କ ସାହାଯ୍ୟ ସହଯୋଗ ମିଳୁଛି ତାହା ରାଜା ତାଙ୍କୁ ବର୍ଣ୍ଣନା କରିଥିଲେ । ବହୁ ଭିତିରି ତଥ୍ୟ ଯୋଷୀ ତାଙ୍କଠାରୁ ଆଦାୟ କରିଥିଲେ ।

ସାକ୍ଷାତକାର ପରେ ପୂର୍ବରୁ ନିର୍ଦ୍ଧାରିତ କର୍ମସୂଚୀ ଅନୁସାରେ ପି.ସି.ଯୋଷୀ ସିଧାସଳଖ କାଠଯୋଡ଼ି କୂଳ ନବକୃଷ୍ଣ ଚୌଧୁରୀଙ୍କ ଘରେ ପହଂଚିଲେ । ବିଭିନ୍ନ ଗଡ଼ଜାତ ପ୍ରଜାମଣ୍ଡଳର କେତେକ ନେତା ତଥା କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନେତା ଓ କର୍ମୀମାନଙ୍କ ବୈଠକରେ ଯୋଷୀଙ୍କ ସାକ୍ଷାତକାର ବିବରଣୀ ଶୁଣିବା ପରେ ଭବିଷ୍ୟତ କର୍ମପନ୍ଥା ସ୍ଥିର ହେଲା । କଂଗ୍ରେସର ନିର୍ଦ୍ଦେଶ ଯାହା ଥାଉନା କାହିଁକି ଢେଙ୍କାନାଳ ତଥା ଆବଶ୍ୟକ ହେଉଥିବା ଅନ୍ୟାନ୍ୟ ଗଡ଼ଜାତର ପ୍ରଜା ଆନ୍ଦୋଳନରେ ମୋଗଲବନ୍ଦୀର ନେତାମାନେ ପରୋକ୍ଷ ନୁହଁ, ପ୍ରତ୍ୟକ୍ଷ ଭାବରେ ଅଂଶଗ୍ରହଣ କରିବେ ବୋଲି ନିର୍ଣ୍ଣୟ ନିଆଗଲା । ଢେଙ୍କାନାଳରେ ମୋଗଲବନ୍ଦୀର ନେତାମାନେ ଯାଇଁ ସତ୍ୟାଗ୍ରହ କରିବେ ବୋଲି ସ୍ଥିର ହେଲା । ସେ ସଂପର୍କରେ ଗୃହୀତ ପ୍ରସ୍ତାବରେ ଥିଲା, "ହରିପୁରା କଂଗ୍ରେସ ପ୍ରସ୍ତାବ ଅନୁସାରେ ଆମେ କଂଗ୍ରେସ କର୍ମୀ ବ୍ୟକ୍ତିଗତ ଭାବରେ ଆମ ସାଧ୍ୟମତେ

ସାହାଯ୍ୟ କରିଆସୁଛୁ । ମାତ୍ର ଏବର ଅସ୍ୱାଭାବିକ ପରିସ୍ଥିତିରେ ବାହାରେ ରହି ଅଧିକ ଫଳପ୍ରଦ ସାହାଯ୍ୟ ଦେବା ଅସମ୍ଭବ ବୋଲି ଆମେ ଅନୁଭବ କରୁଛୁ । ତେଣୁ ଆମ ଆଗରେ ଏକମାତ୍ର ପନ୍ଥା ହେଲା ରାଜ୍ୟ ଭିତରକୁ ଯାଇ ସେଠାରେ ଲୋକଙ୍କ ସଂଗ୍ରାମରେ ସାମିଲ ହେବା ।"

ପଣ୍ଡିତ ଜବାହାରଲାଲ ନେହେରୁଙ୍କୁ ଭେଟି ଏହି ନିଷ୍ପତ୍ତିକୁ ଜଣେଇ ତାଙ୍କ ସହିତ ପରାମର୍ଶ କରାଯିବା ସ୍ଥିର ହେଲା । ଏଥିଲାଗି ନବକୃଷ୍ଣ ଚୌଧୁରୀ ଏହ୍ଲାବାଦ ଯାଇଁ ନେହେରୁଙ୍କୁ ସାକ୍ଷାତ କଲେ । ଢେଙ୍କାନାଳରେ 'ରଣ ଭେରୀରେ ଏହା ପ୍ରକାଶ କରାଯାଇ ଢେଙ୍କାନାଳବାସୀଙ୍କୁ ଅବଗତ କରାଗଲା । ଢେଙ୍କାନାଳର ଜନତା ମଧ୍ୟରେ ଆଶା, ଆନନ୍ଦ, ଉଲ୍ଲାସ ଖେଳିଗଲା । ପ୍ରଥମ ତିନିଜଣ ସତ୍ୟାଗ୍ରହୀ ହେବେ ଯଥାକ୍ରମେ ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ ଓ ଗୌରାଙ୍ଗ ଚରଣ ଦାସ । ଏହାପରେ ଅନ୍ୟ ସତ୍ୟାଗ୍ରହୀ ଦଳଗୁଡ଼ିକ ଢେଙ୍କାନଳରେ ନିର୍ଦ୍ଧାରିତ ଦିନଗୁଡ଼ିକରେ ସତ୍ୟାଗ୍ରହ କରିବେ ସ୍ଥିର ହେଲା । ସେହି ତିନିଜଣ ପ୍ରଥମ ସତ୍ୟାଗ୍ରହୀଙ୍କର ଏକ ମିଳିତ ଫଟୋ ନବଚୌଧୁରୀଙ୍କର ଅଗଣାରେ ଉଠାଗଲା ।

ଏହି ତିନିଜଣ ପ୍ରଥମ ସତ୍ୟାଗ୍ରହୀଙ୍କ ସତ୍ୟାଗ୍ରହର କାର୍ଯ୍ୟସୂଚୀ ଢେଙ୍କାନାଳ ସାରା ତୁଣ୍ଡବାଇଦ ପରି ପ୍ରଚାରିତ ହୋଇଗଲା । ୧୯୩୮ ଡିସେମ୍ବର ୩ରେ ମୋଗଲବନ୍ଦୀର ମେରାମଣ୍ଡଳୀ ଷ୍ଟେସନ ଠାରେ ରାତିରୁ ଢେଙ୍କାନାଳର ସତ୍ୟାଗ୍ରହୀମାନେ ଛପିଛପି ଡେରା ପକେଇଥାନ୍ତି । ପ୍ରଥମ ସତ୍ୟାଗ୍ରହୀ ଚୌଧୁରୀଙ୍କୁ ପାଛୋଟି ନେଲେ ପରଜଙ୍ଗ ପଳାଶୁଣି, ଭୁବନ ତଥା ଅନ୍ୟ ଅଂଚଳର ସହସ୍ର ସହସ୍ର ଜନତା । ସତ୍ୟାଗ୍ରହୀମାନେ ଶାନ୍ତିପୂର୍ଣ୍ଣ ଭାବରେ ଢେଙ୍କାନାଳ ସୀମାରେ ପ୍ରବେଶ କରିବା ମାତ୍ରେ ନବବାବୁଙ୍କୁ ଗିରଫ କରି ନିଆଗଲା । ଅନ୍ୟ ସତ୍ୟାଗ୍ରହୀମାନଙ୍କ ମୋଟୁଙ୍ଗା ଥାନାରୁ ଜେଲ୍‌ଖାନାକୁ ନେଇଯାଇ ଚୌଧୁରୀଙ୍କୁ ପୁଲିସଗାଡ଼ିରେ କଟକରେ ଛାଡ଼ି ଦିଆଗଲା ।

ଏଥିରେ ଲୋକେ ଅଧିକ ଉଲ୍ଲସିତ, ଉତ୍ସାହିତ ହୋଇ ଭଗବତୀ ଚରଣ ପାଣିଗ୍ରାହୀ ସତ୍ୟାଗ୍ରହ କଲାଦିନ ବହୁ ସଂଖ୍ୟାରେ ରୁଣ୍ଡ ହୋଇଗଲେ । ଚୌଧୁରୀଙ୍କୁ ଗିରଫ କରି କଟକରେ ଛାଡ଼ିଦେବା ଭଳି ପାଣିଗ୍ରାହୀଙ୍କୁ ମଧ୍ୟ ଗିରଫ କରି କଟକ ପଠାଇ ଦିଆଗଲା ।

ତୃତୀୟ ସତ୍ୟାଗ୍ରହୀ ଗୌରାଙ୍ଗ ଚରଣ ଦାସ ବଳିଷ୍ଠ, ବପୁବନ୍ତ । ମାତ୍ର ତାଙ୍କ ଡାହାଣ ହାତ କେମ୍ପା ଥିଲା । ହାତଟି ନଥିଲା କହିଲେ ଚଳେ । ସହସ୍ର ଜନତାଙ୍କ ଉଦ୍‌ବୋଧନ ଦେଇ ତାଙ୍କ ବାମ ବାହାରେ ସେ ନିର୍ଦ୍ଦେଶ ଦେଉଥାନ୍ତି । ଏତିକିବେଳେ ପୁଲିସ ତାଙ୍କୁ ଘେରି ଭିତରୁ ଘୋଷାରି ନେଇ ଚାଲିଗଲେ । ଅନ୍ୟ ସତ୍ୟାଗ୍ରହୀମାନଙ୍କୁ ଗିରଫ କରାଗଲା । ଗୌରାଙ୍ଗ ବାବୁଙ୍କୁ ଏକ ନିଛାଟିଆ ଜାଗାକୁ ନିଆଯାଇ ଏପରି ମାଡ଼ ଦିଆଗଲାଯେ, ସେ ଅଚେତ ହୋଇଗଲେ । ସେ

ମରିଗଲେ ବୋଲି ପ୍ରଚାର ହୋଇଗଲା । ଚାରିଦିନ ପରେ ତାଙ୍କୁ ମଧ୍ୟ କଟକ ଷ୍ଟେସନରେ ପୁଲିସ ପହରାରେ ଛାଡ଼ି ଦିଆଗଲା ।

ଏଣିକି ଚାରିଆଡୁ ସତ୍ୟାଗ୍ରହ କରିବ ଲାଗି ସ୍ୱେଚ୍ଛାସେବକ ନେତା ଓ କର୍ମୀମାନଙ୍କ ଆଗ୍ରହ ବଢ଼ି ଚାଲିଲା । ବିଖ୍ୟାତ କୃଷକ ନେତା ଗୋକୁଳମୋହନ ରାୟଚୂଡ଼ାମଣି ଖୋର୍ଦ୍ଧାରୁ ତାଙ୍କ ସହଯୋଗୀ ସତ୍ୟାଗ୍ରହୀମାନଙ୍କୁ ଧରି ଢେଙ୍କାନାଳଗଡ଼ରେ ସତ୍ୟାଗ୍ରହ କରି ଗିରଫ ହେଲେ । ତାଙ୍କୁ ମଧ୍ୟ ଅନୁରୂପ ଭାବରେ କଟକରେ ଛାଡ଼ି ଦିଆଗଲା । ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ର, ଯେକି ଏ.ଆଇ.ସି.ସି.ର ସଭ୍ୟ ଥିଲେ, ସେ ମଧ୍ୟ କଂଗ୍ରେସର କଟକଣାକୁ ଏଡ଼ି ସମ୍ବଲପୁରରୁ ସତ୍ୟାଗ୍ରହୀ ଦଳରେ ଆସି ସତ୍ୟାଗ୍ରହ କଲେ ଓ ପରେ ଛାଡ଼ ପାଇଲେ । ନୀଳଗିରି ପ୍ରଜାମଣ୍ଡଳର ନେତା ବନମାଳୀ ଦାସ ସଂହତି ସ୍ୱରୂପ ଏକ ସତ୍ୟାଗ୍ରହୀ ଦଳ ପ୍ରେରଣ କଲେ । ପ୍ରାଣବନ୍ଧୁ ଅଗସ୍ତି, ଗିରିଧାରୀ ପଣ୍ଡା, ଡାକ୍ତର ଚୈତନ୍ୟ ମିଶ୍ର ପ୍ରମୁଖ ନୀଳଗିରି ପ୍ରଜା ଆନ୍ଦୋଳନର ନେତାମାନେ ଏଥିରେ ଭାଗ ନେଇ ଗିରଫ ହୋଇଥିଲେ ।

ବାହାରୁ ନେତାମାନେ ସତ୍ୟାଗ୍ରହ ଆନ୍ଦୋଳନ ଦେଖି ଦରବାର ସମସ୍ତ କୋର୍ଟ କଚେରୀ କାମ ବନ୍ଦ କରିଦେଲା । ସାରା ରାଜ୍ୟରେ ସଶସ୍ତ୍ର ପୁଲିସ ବାହିନୀ ନିୟୋଗ କରି ପ୍ରଜାଙ୍କୁ ଅଧିକ ଭୟଭୀତ କରାଇ ଆନ୍ଦୋଳନରୁ ନିବୃତ୍ତ କରିବା ଚେଷ୍ଟା ଚଳେଇଲା ।

**କାହିଁକି ସତ୍ୟାଗ୍ରହ ପ୍ରତ୍ୟାହୃତ**

ବାହାରୁ ସତ୍ୟାଗ୍ରହୀମାନଙ୍କ ସତ୍ୟାଗ୍ରହ, ଗିରଫଦାରୀ ସାରା ଓଡ଼ିଶାରେ ଏକ ନୂତନ ବାତାବରଣ ସୃଷ୍ଟି କରୁଥାଏ । ତାଳଚେର, ରଣପୁର, ନୟାଗଡ଼, ଦଶପଲ୍ଲା, ଆଠଗଡ଼, ତିଗିରିଆ, ହିନ୍ଦୋଳ, କେଉଁଝର, କଳାହାଣ୍ଡି, ଆଠମଲ୍ଲିକ, ପାଲଲହଡ଼ା, ଗାଙ୍ଗପୁର, ସୋନପୁର, ନୀଳଗିରି, ମୟୂରଭଂଜ, ଖଣ୍ଡପଡ଼ା, ପାଟନା, ବଣେଇ, ରେଢ଼ାଖୋଲ, ବଡ଼ାମ୍ବା, ବାମଡ଼ା, ନରସିଂହପୁର ଏମିତି ପ୍ରତ୍ୟେକଟି ଗଡ଼ଜାତରେ ପ୍ରଜାମଣ୍ଡଳ ନେତୃତ୍ୱରେ ଆନ୍ଦୋଳନ ଅଗ୍ରଗତି କରୁଥାଏ । ୧୯୩୮ ଡିସେମ୍ବର ମଧ୍ୟ ଭାଗରେ ଓ୍ୱାର୍ଦ୍ଧାଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ବସିଥିଲା । ଗାନ୍ଧିଜୀଙ୍କ ପରାମର୍ଶରେ ଏକ ନିର୍ଦ୍ଧାରଣ ହେଲା । କଂଗ୍ରେସ କାର୍ଯ୍ୟକାରୀ କମିଟି ସଦସ୍ୟ ଡଃ ହରେକୃଷ୍ଣ ମହତାବଙ୍କ ଠାରୁ ଢେଙ୍କାନାଳ ଆନ୍ଦୋଳନ ଓ ବାହାରୁ ସତ୍ୟାଗ୍ରହର ବିବରଣୀ ଅବଗତ ହେଲାପରେ ଯେଉଁ ନିଷ୍ପତ୍ତି ହେଲା, ତାହା ଗଡ଼ଜାତ ପ୍ରଜା ଆନ୍ଦୋଳନର କର୍ମୀ ମହଲରେ ତଥା ମୋଗଲବନ୍ଦୀରୁ ଯେଉଁମାନେ ପ୍ରତ୍ୟକ୍ଷ ଭାବରେ ଭାଗ ନେଉଥିଲେ ସେମାନଙ୍କ ମଧ୍ୟରେ ବିସ୍ମୟ ଓ ଅସନ୍ତୋଷ ସୃଷ୍ଟି କଲା । ଢେଙ୍କାନାଳରେ ବାହାରୁ କୌଣସି କଂଗ୍ରେସ କର୍ମୀ ସତ୍ୟାଗ୍ରହ କରିପାରିବେ ନାହିଁ, ମାତ୍ର ନୈତିକ ସାହାଯ୍ୟ ସମର୍ଥନ ଦେବେ

ବୋଲି ନିର୍ଦ୍ଦେଶ ଆସିଲା । ଏ ସଂପର୍କରେ ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ ଓ ପି.ସି. ଯୋଷୀଙ୍କ ମଧ୍ୟରେ ଚାଲିଥିବା ପତ୍ରାଳାପକୁ ବ୍ରିଟିଶ ପୁଲିସ ବାଟମାରଣା କରିଦେଲା ।

ଏହିପରି ପରିସ୍ଥିତି ବେଳେ ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍ସିର ଉନ୍ନତ ପଲିଟିକାଲ ଏଜେଣ୍ଟ ଆର.ଏସ. ବେଜେଲ୍‌ଗେଟ୍ ତାଳଚେରରୁ ଢେଙ୍କାନାଳ ଓ ଢେଙ୍କାନାଳରୁ ଯାଇ ରଣପୁରରେ ପ୍ରଜାମଣ୍ଡଳ ଦ୍ୱାରା ଆୟୋଜିତ ଜନସମାବେଶ ଉପରେ ଗୁଳିଚାଳାଇ ଆକ୍ରମଣ କଲେ । ୧୯୩୯ ଜାନୁଆରୀ ୫ ତାରିଖ ଉତ୍ୟକ୍ତ ଜନତାର ପ୍ରତି ଆକ୍ରମଣରେ ବେଜେଲ୍‌ଗେଟ୍ ନିହତ ହେଲେ । ରଘୁ ଦିବାକରଙ୍କୁ ଫାଶି ହେଲା । ମହତାବଙ୍କୁ ଓ ଅନ୍ୟ ପ୍ରଜାମଣ୍ଡଳ ନେତାଙ୍କୁ ମଧ୍ୟ ଉକ୍ତ ମକଦ୍ଦମାରେ ଜଡ଼ିତ କରିବା ଚେଷ୍ଟା ହୋଇଥିଲା । ରଣପୁରରେ ସଶସ୍ତ୍ର ପୁଲିସଙ୍କ ତାଣ୍ଡବ ଚାଲିଲା । ଏହା ଏକ ସ୍ୱତନ୍ତ୍ର ବିଷୟ ।

ଆନୁଷ୍ଠାନିକ ଭାବରେ କଂଗ୍ରେସ ବେଜେଲ୍‌ଗେଟ୍ ହତ୍ୟାର ନିନ୍ଦା କଲା । ମାତ୍ର ସଂଗ୍ରାମରତ ପ୍ରଜାମଣ୍ଡଳର ଅଗଣିତ ନେତା ଓ କର୍ମୀ ଏପରି ନିନ୍ଦାସୂଚନ ଅଭିମତକୁ ହୃଦୟରେ ମାନି ନେଇ ନଥିଲେ ।

ଗାନ୍ଧିଜୀଙ୍କ ନିର୍ଦ୍ଦେଶ ଏବଂ ବେଜେଲ୍‌ଗେଟ୍ ହତ୍ୟା ଘଟଣା ପରେ ଗଡ଼ଜାତ ପ୍ରଜା ସମ୍ମିଳନୀ ବର୍ତ୍ତମାନ ପାଇଁ କୌଣସି ପ୍ରତ୍ୟକ୍ଷ ଆନ୍ଦୋଳନ ନ କରିବାକୁ ନିଷ୍ପତ୍ତି ନେଲା । ବେଜେଲ୍‌ଗେଟ ହତ୍ୟାପରେ ବ୍ରିଟିଶ ସରକାର ଗଡ଼ଜାତଗୁଡ଼ିକର ପ୍ରଶାସନକୁ ଅଧିକ ସାହାଯ୍ୟ ଦେଇ ପ୍ରଜା ଆନ୍ଦୋଳନଗୁଡ଼ିକୁ ଜବତ୍ କରିବାର ଉପାୟ ଖଞ୍ଜିଦେଲା ।

ଢେଙ୍କାନାଳ ଆନ୍ଦୋଳନ ସଂପର୍କରେ ପି.ସି. ଯୋଷୀ ନାସନାଲ ଫ୍ରଣ୍ଟର ୨୨ ଜାନୁଆରୀ ୧୯୩୯ ସଂଖ୍ୟାରେ "ଢେଙ୍କାନାଳ ମୃତ୍ୟୁକୁ ଖାତିର କରେ ନା" ନାମକ ପ୍ରବନ୍ଧରେ ଚାଲିଥିବା ଅତ୍ୟାଚାର ଓ ପ୍ରଜାଙ୍କ ମରଣଜୟୀ ଆନ୍ଦୋଳନର ନିଖୁଣ ଚିତ୍ର ପ୍ରକାଶ କରିଥିଲେ । ପୁନଶ୍ଚ - "କର୍ମବୀର ଓ ଶହୀଦ" ଶିରୋନାମାରେ ସେ ସେହିମାସ ୨୯ ତାରିଖ ସଂଖ୍ୟାରେ ଏକ ପ୍ରବନ୍ଧ ପ୍ରକାଶ କରିଥିଲେ । ସେଥିରେ ମାଳତୀ ଚୌଧୁରୀ, ବୈଷ୍ଣବ ପଟ୍ଟନାୟକ ଓ ସାରଙ୍ଗଧର ଦାସ, ନବକୃଷ୍ଣ ଚୌଧୁରୀଙ୍କ ଅବଦାନର ଅବତାରଣା କରାଯାଇଥିଲା ।

ଢେଙ୍କାନାଳ ଆନ୍ଦୋଳନ ସଂପର୍କରେ ଭଗବତ ଚରଣ ପାଣିଗ୍ରାହୀ କଲିକତାରୁ ପ୍ରକାଶିତ ଇଂରେଜୀ ଦୈନିକ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡରେ ୧୯୩୯ ମାର୍ଚ୍ଚ ୧୦ ତାରିଖ ସଂସ୍କରଣରେ "ଢେଙ୍କାନାଳ ଆନ୍ଦୋଳନ" ଶିରୋନାମାରେ ଏକ ଦୀର୍ଘ ବିବରଣୀ ପ୍ରକାଶ କରିଥିଲେ । ପ୍ରତ୍ୟକ୍ଷ ଆନ୍ଦୋଳନ ବସ୍ତୁତଃ ପ୍ରତ୍ୟାହୃତ ହେବାପରେ ଆନ୍ଦୋଳନକୁ ଉଜ୍ଜୀବିତ କରି ରଖିବା ଲାଗି ଏହି ପ୍ରକାର ପ୍ରକାଶନ ସାହାଯ୍ୟ କରିଥିଲା ।

ଢେଙ୍କାନାଳ ପ୍ରଜା ଆନ୍ଦୋଳନର ଏକ ବିସ୍ତୃତ ବିବରଣୀ ଦେଇ ସାରଙ୍ଗଧର ଦାସ ଏକ ଦଲିଲ କେନ୍ଦ୍ର ଓ ପ୍ରଦେଶ ସରକାରଙ୍କୁ ଏବଂ ପ୍ରଧାନମନ୍ତ୍ରୀ ନେହେରୁ, ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ପଟେଲ୍‌ଙ୍କ ନିକଟକୁ ପଠାଇଥିଲେ ।

ଓଡ଼ିଶାରେ ସମାଜ, ମାତୃଭୂମି, କଲିକତାର ଅମୃତବଜାର ପତ୍ରିକା, ହିନ୍ଦୁସ୍ତାନ ଟାଇମ୍‌ସ, ହିନ୍ଦୁସ୍ତାନ ଷ୍ଟାଣ୍ଡାର୍ଡ ପ୍ରଭୃତି ସମ୍ବାଦପତ୍ରରେ ତାଳଚେର, ଢେଙ୍କାନାଳ ନୀଳଗିରି, ରଣପୁର ପ୍ରଭୃତି ଗଡ଼ଜାତ ପ୍ରଜା ଆନ୍ଦୋଳନର ସମ୍ବାଦମାନ ପ୍ରକାଶ ପାଉଥିଲା । ଦମନ ଅତ୍ୟାଚାରର ବିବରଣୀମାନ ବାହାରୁଥିଲା । ବ୍ରିଟିଶ ମାଲିକାନାର ସମ୍ବାଦପତ୍ର "ଷ୍ଟେଟ୍ସମ୍ୟାନ" ରୀତିମତ ଧାରାବାହିକ ଭାବରେ ପ୍ରଜାମାନଙ୍କ ଆନ୍ଦୋଳନର କୁତ୍ସା କରି ରାଜା ଓ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ଦମନ ନୀତିର ଯଥାର୍ଥତା ଦେଖାଉଥିଲା ।

ଏପରି ପରିସ୍ଥିତି ବେଳେ ୧୯୩୯ ସେପ୍ଟେମ୍ବରରେ ଦ୍ୱିତୀୟ ମହାସମର ଆରମ୍ଭ ହୋଇଗଲା । ଭାରତର ସମଗ୍ର ରାଜନୈତିକ ପରିସ୍ଥିତିରେ ପରିବର୍ତ୍ତନମାନ ଘଟିଥିଲା । ବହୁ ନେତା ବିଶେଷତଃ ବାମପନ୍ଥୀ, କମ୍ୟୁନିଷ୍ଟ ସୋସାଲିଷ୍ଟ ନେତାଙ୍କୁ ଗିରଫ କରି ନିଆଗଲା । ଯେଭଳି ଓ ଅନ୍ୟାନ୍ୟ କାରାଗାରରେ ନିକ୍ଷେପ କରାଗଲା । କଂଗ୍ରେସ ୭ଟିଯାକ ପ୍ରଦେଶର ଶାସନ ତ୍ୟାଗ କଲା । ବ୍ୟକ୍ତିଗତ ସତ୍ୟାଗ୍ରହ ଚାଲିଲା, ଆସିଲା ୧୯୪୨ ଅଗଷ୍ଟ ୯ ତାରିଖ । ବମ୍ବେ ଏ.ଆଇ.ସି.ସି. ଅଧିବେଶନରେ ଭାରତଛାଡ଼ ଆନ୍ଦୋଳନର ଡାକରା ଗାନ୍ଧିଜୀ ଦେଲେ ।

ବ୍ରିଟିଶ ସରକାର ଗାନ୍ଧିଜୀଙ୍କ ସମେତ କଂଗ୍ରେସର ସମସ୍ତ ତୁଙ୍ଗନେତାଙ୍କୁ ଅଗଷ୍ଟ ୮ ତାରିଖ ରାତିରେ ଗିରଫ କରିନେବାପରେ ସାରା ଦେଶରେ ବିଦ୍ରୋହର, ପ୍ରତିରୋଧର, ପ୍ରତି ଆକ୍ରମଣର ଦାବାଗ୍ନି ଜଳି ଉଠିଲା । ବ୍ରିଟିଶ ଦମନ, ଗିରଫ, ଗୁଳି, ସୀମା ଟପି ଚାଲିଲା । ତାହାର ଏକ ପ୍ରତିଫଳନ ହେଲା ଭାରତର ସବୁ ଦେଶୀୟ ରାଜ୍ୟରେ । ଦମନ, ଅତ୍ୟାଚାର, ଜେଲ ଜୋରିମାନାରେ ଶିକାର ହୋଇଥିବା ପ୍ରଜାମାନେ ପୁନଷ୍ଟ ରାଜତନ୍ତ୍ର ବିରୁଦ୍ଧରେ, ସଂଗ୍ରାମରେ ଅବତୀର୍ଣ୍ଣ ହେଲେ । ଢେଙ୍କାନାଳରେ ତାହାର ପ୍ରତିଧ୍ୱନି ଉଠିଲା ।



# 'ରଣଭେରୀ'ର ରଣଡାକ

'କୃଷକ' ବ୍ୟତୀତ ଢେଙ୍କାନାଳର ଆଉ ଏକ ପ୍ରଚାର ମାଧ୍ୟମ ଥିଲା 'ରଣଭେରୀ'। 'କୃଷକ' ଗଡ଼ଜାତ ପ୍ରଜା ଆନ୍ଦୋଳନର ସଂଗ୍ରାମୀ ମୁଖପତ୍ରର ମର୍ଯ୍ୟାଦାର ଲାଭ କଲା ପାଠକମାନଙ୍କ ଭିତରେ। 'କୃଷକ'ର ପ୍ରଜା ଆନ୍ଦୋଳନ ସଂପର୍କରେ ମତ ସହିତ ଭିନ୍ନମତ ପୋଷଣ କରୁଥିବା ନେତାମାନଙ୍କ ଦ୍ୱାରା ଆଉ ଏକ ପତ୍ରିକା ପ୍ରକାଶ ପାଇଲା। ତାର ନାମ ଗଡ଼ଜାତ ସମାଚାର ଓ ତାହାର ସଂପାଦକ ଥିଲେ ବାସୁଦେବ ମହାପାତ୍ର। ମାତ୍ର କୃଷକର ଆଦର ସର୍ବତ୍ର ପ୍ରକାଶ ପାଇଥିଲା।

ଢେଙ୍କାନାଳ ଆନ୍ଦୋଳନରେ ବିଜୁଳି ବେଗରେ ଘଟୁଥିବା ଘଟଣାବଳୀ ପ୍ରକାଶ କରିବ ଓ ସେ ସଂକ୍ରାନ୍ତରେ ନିର୍ଦ୍ଦେଶ ଦେବାଲାଗି ଆଉ ଏକ ବିଶେଷ ବୁଲେଟିନର କଳ୍ପନା କରାଗଲା। ରଣଭେରୀ ନାମକ ବୁଲେଟିନ ଲିଥୋ ମେସିନରେ ହାତଲେଖା ପ୍ରଚାରପତ୍ରର ତାହା କାମ ଦେଲା। ଏପରି ମାତ୍ର ୨ଟି ଲିଥୋକରା 'ରଣଭେରୀ' ଢେଙ୍କାନାଳର ପ୍ରଜାମଣ୍ଡଳ ନାମରେ କଟକରୁ ପ୍ରକାଶ କରାଗଲା। କୃଷକର ଅନ୍ୟତମ ସଂପାଦକ ଗୁରୁଚରଣ ପଟ୍ଟନାୟକଙ୍କ ଏହି କାର୍ଯ୍ୟରେ ତତ୍କାଳୀନ ବିଖ୍ୟାତ ପ୍ରକାଶକ ଓ ସାହିତ୍ୟିକ ବାଳକୃଷ୍ଣ କରଙ୍କ ସାରସ୍ୱତ ପ୍ରେସର କର୍ମଚାରୀ ଧନେଶ୍ୱର ମହାନ୍ତି ସାହାଯ୍ୟ କରୁଥିଲେ। ମାତୃଭୂମି ମଧ୍ୟ ଢେଙ୍କାନାଳ ଆନ୍ଦୋଳନର ବିବରଣୀ ଦେଉଥିଲା। ଏପରି ଲିଥୋ କରା ରଣଭେରୀ ଅକୁଳାଣ ହେବାରୁ ଢେଙ୍କାନାଳ ପ୍ରଜାମଣ୍ଡଳର କର୍ମକର୍ତ୍ତାମାନଙ୍କ ସ୍ୱାକ୍ଷରରେ ବହୁଳ ସଂଖ୍ୟାରେ ଏହା କଟକରେ ମୁଦ୍ରିତ ହୋଇ ଢେଙ୍କାନାଳର ନେତା କର୍ମୀ ଓ ଗାଁମାନଙ୍କ ଭିତରେ ବଣ୍ଟନ କରାଗଲା ଓ ତାହା ଆନ୍ଦୋଳନକୁ ଅନେକ ସାହାଯ୍ୟ କଲା।

ଦମନ ଅତ୍ୟାଚାରର ମୁକାବିଲା କରିବା ପାଇଁ ସଭାପତି ହରମୋହନ ପଟ୍ଟନାୟକ ଓ ସଂପାଦକ ଲକ୍ଷ୍ମୀଧର ସାହୁଙ୍କ ସ୍ୱାକ୍ଷରରେ ୨୯.୦୯.୩୮ 'ରଣଭେରୀ' ସଂଖ୍ୟାରେ ଥିଲା - "ବେଳକୁବେଳ ଢେଙ୍କାନାଳ ଦରବାରର ଅତ୍ୟାଚାର ପ୍ରବଳ ହେଲା। ଗାଁ ଗାଁରେ ପୁଲିସ ଓ ଗୋରା ସୈନ୍ୟ ଫଉଜ ଆସି ଟଙ୍କା ପଇସା ଜିନିଷପତ୍ର ଲୁଟ କରୁଛନ୍ତି। ପଳାଶୁଣି, ମଂଗଳପୁର, ଗଡ଼ଗପ୍ରସାଦ ଆଦି ଗାଁର ଲୋକଙ୍କୁ ମାରି ଶୁଆଇ ଦେଉଛନ୍ତି। ମହେଶ୍ୱର ସୁବାହୁ ସିଂହଙ୍କ ଘରକୁ ଫୌଜ ଚୂନା କରି ମାଟିରେ ମିଶେଇ ଦେଇଛନ୍ତି। ମଂଗଳପୁରରେ ଶ୍ରୀକାନ୍ତ ରାଉତଙ୍କ ଘରର

ସେଇ ଅବସ୍ଥା" - ଢେଙ୍କାନାଳ ଛାଡ଼ି ଚାଲିଯିବା ହିଜାରତ କରିବାର ନିର୍ଦ୍ଦେଶ ଦେଇ ଲେଖାଅଛି, "ଏ ଆଦେଶ ଶୁଣିବା ମାତ୍ରକେ ଗାଁ ଗଣ୍ଡା ଖାଲି କରିଦେଇ ସମସ୍ତେ ଢେଙ୍କାନାଳ ଛାଡ଼ି ଚାଲିଯିବେ । ଆଉ ଡେରି ନକରି ସଂଗେ ସଂଗେ ଦଳକୁ ଦଳ ଢେଙ୍କାନାଳ ଛାଡ଼ି ମୋଗଲବନ୍ଦୀ ଅଂଚଳକୁ ଚାଲି ଆସନ୍ତୁ । ଦେଖାଯାଉ ରାଜା କାକୁ ନେଇ ରାଜ୍ୟ ଚଳାଇବ - କାହାକୁ ଆଉ ଶୋଷିବ ଓ ସଂଗୀନ ମୂନରେ କେଞ୍ଚିବ ।"

ଅଳ୍ପ କେତୁଟା ଦିନ ପରେ ପ୍ରଜାମଣ୍ଡଳ ନିଷ୍ପତ୍ତି ନେଲା ଯେ ହିଜାରତ ଉଠାଇ ଦେଇ ବିରାଟ ସତ୍ୟାଗ୍ରହ ଦ୍ୱାରା ରାଜ୍ୟର ଅତ୍ୟାଚାର ଦମନକୁ ମୁକାବିଲା କରାଯିବ ।

ଶ୍ରୀ ମହେଶ ଚନ୍ଦ୍ର ସୁବାହୁସିଂହଙ୍କ ସ୍ୱାକ୍ଷରରେ ମୁଦ୍ରିତ ରଣଭେରୀର ନିର୍ଦ୍ଦେଶ ଥିଲା "ଆମକୁ ହିଜାରତ ବନ୍ଦ କରି ରାଜ୍ୟକୁ ଫେରିବାକୁ ହେବ ଓ ରାଜ୍ୟ ଭିତରେ ସତ୍ୟାଗ୍ରହ ଚଳାଇବାକୁ ହେବ । ସେଥିରେ "ରାଜ କର୍ମଚାରୀମାନଙ୍କ କଥାକୁ ଶୁଣନ୍ତୁ ନାହିଁ, ଗାଁ ଗାଁରେ ସତ୍ୟାଗ୍ରହୀ ସଂଗ୍ରହ କରନ୍ତୁ, ସଂଗଠନକୁ ମଜବୁତକରନ୍ତୁ, ସଂଗୃହୀତ ଚାନ୍ଦା କଟକ ଓ କେନ୍ଦ୍ର ଅଫିସରକୁ ପଠାନ୍ତୁ" ବୋଲି ନିର୍ଦ୍ଦେଶ ଥିଲା । ତୃତୀୟ ରଣଭେରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କ ସ୍ୱାକ୍ଷରରେ ପ୍ରକାଶ ପାଇଲା । ଦୀର୍ଘ ନିବେଦନରେ ଥିଲା "ବାର ତାରିଖରେ ଦରବାର ପକ୍ଷରୁ ଡକା ଯାଇଥିବା ସଭାକୁ ବାସନ୍ଦ କରି ଆମେ ଦରବାରର ଫନ୍ଦିକୁ ପଣ୍ଡ କରି ଦେଇଛୁ - ଆମ ଉପରେ ହୁଙ୍କାପିଟା ଶାସନ ଚଳାଇ ପାରିବ ନାହିଁ । ତିନିଲକ୍ଷ ପ୍ରଜା ମଣିଷ ଭଳି ମରିବୁ ପଛକେ ଅତ୍ୟାଚାରୀ ଶାସନକୁ ମାନି ପଶୁ ଭଳି ରହିବୁ ନାହିଁ ।"

"ଏପର୍ଯ୍ୟନ୍ତ ଗଏର ଜିଲ୍ଲାରେ କ୍ୟାମ୍ପ କରି ଆମେ ଲଢ଼େଇ ଚଳେଇ ଆସିଲେ । ଏଥିରେ ଅନ୍ୟର ସାହାଯ୍ୟ ଓ ନିଜକୁ ନିରାପଦରେ ରଖିପାରିବାର ସୁବିଧା ପାଇଲେ । କିନ୍ତୁ ସତ୍ୟାଗ୍ରହ ଲଢ଼େଇ ଚଳାଇବାକୁ ହେଲେ ଆମମାନଙ୍କୁ ଏ ସୁବିଧାତକ ଛାଡ଼ିବାକୁ ହେବ - ଗାଁ ଗାଁରେ ପ୍ରଜାମଣ୍ଡଳ ଗଢ଼ି ପ୍ରତି ଗାଁରେ ସ୍ୱେଚ୍ଛାସେବକ ବାହିନୀ ଗଢ଼ିବାକୁ ହେବ । ଏଣିକି ପ୍ରଜାମଣ୍ଡଳ ପକ୍ଷରୁ ଜଣେ ଡିକ୍ଟେଟର ବା ସେନାଧକ୍ଷ ହୋଇ ଲଢ଼େଇ ଚଳେଇବେ । ସେ ଗିରଫ ହେଲେ ତାଙ୍କ ଜାଗାରେ ଆଉ ଜଣକୁ ନିଯୁକ୍ତ କରିବେ ।" ରଣଭେରୀର ଗୋଟିଏ ସଂଖ୍ୟାରେ ସୁଭାଷ ବୋଷ ଓ ନେହେରୁଙ୍କ ଫଟୋ ଓ ସେମାନଙ୍କ ଗଡ଼ଜାତ ପ୍ରଜା ଆନ୍ଦୋଳନକୁ ସମର୍ଥ ସୂଚକ ବକ୍ତବ୍ୟ ପ୍ରକାଶ କରାଯାଇଥିଲା । ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଡିକ୍ଟେଟର, ଢେଙ୍କାନାଳ ପ୍ରଜାମଣ୍ଡଳ ନାମରେ ଏହା ମୁଦ୍ରିତ ହୋଇଥିଲା । ରାଜାଙ୍କ ଅତ୍ୟାଚାର ଓ ଦମନରେ ଭୟଭୀତ ହୋଇ କେତେକ ସଂପତ୍ତିଶାଳୀ ବ୍ୟକ୍ତି ରାଜଭକ୍ତ ଟିକଟ କିଣିବାକୁ ଲକ୍ଷ୍ୟ କରି ସେଥିରେ ଲେଖାଥିଲା "ଆମ ମେଣ୍ଟ ଭାଙ୍ଗିବା ପାଇଁ ଦରବାର ନାନା ପ୍ରକାର ଅନ୍ୟାୟ ଉପାୟ ଧରିଛି । ଗାଁ ଗାଁରେ ବୁଲି ଫୌଜ

ଦ୍ୱାରା ଲାଠିମାଡ଼ ଦେଉଛି – ଆମର ସମ୍ପତ୍ତିକୁ ଲୁଟ କରି ନେଉଛି । ମା’ ଭଉଣୀଙ୍କ ଇଜ୍ଜତ ମହତ ନେଉଛି । ଶହ ଶହ ବର୍ଷ ଧରି ଭାରତର ଆଠକୋଟି ଲୋକ ଦେଶୀୟ ରାଜ୍ୟମାନଙ୍କରେ ଯେଉଁ ବନ୍ଧନରେ ପଡ଼ିଥିଲେ, ସେହି ଶାଙ୍କୋଳିକୁ ଛିଣ୍ଡାଇ ଆଜି ଏ ଆନ୍ଦୋଳନ ଚାଲିଛି । ଏପରି କେହି ଜଣେ ହତଭାଗା ଅଛି ଯେ, ଏହି ଲଢ଼େଇକୁ ସାହାଯ୍ୟ କରିବାକୁ କୁଣ୍ଠିତ ହେବ ।”

୧୯୩୮ ଅକ୍ଟୋବର ୧୫ରେ ପ୍ରକାଶିତ ନବମ ସଂଖ୍ୟା ରଣଭେରୀରେ ଥିଲା “ଆମେ ଛୋଟିଆ କଥା ପାଇଁ ଲଢ଼େଇ କରୁନଥିଲେ । ଖାଲି ବେଠି, ମାଗଣା ରସଦ ଉଠିଯିବା ପାଇଁ ହୃରୁଷି, ବାଜି, ନଟ, ରଘୁ, ଗୁରି, ଲକ୍ଷ୍ମଣ ଏବଂ ଫଗୁ ଏପରି ବାରଜଣ ବୀର ପ୍ରାଣ ଦେଇନାହାନ୍ତି । ଆମେ ଛେଳି ମେଣ୍ଢାଭଳି ଏ ସବୁ ମୂକ ହୋଇ ବରଦାସ୍ତ କରି ଆସିଛୁ ।” ରାଜ ଦରବାର ୨୭ ତାରିଖରେ ସଭାରେ ଆପତ୍ତି ଅଭିଯୋଗ ଜଣାଇବାକୁ ଯେଉଁ ସଭା ଡାକିଛି, ସେ ସଭାକୁ ବର୍ଜନ କରିବାକୁ” ସେଥିରେ ନିର୍ଦ୍ଦେଶ ଥିଲା । ରଣଭେରୀର ୧୦ମ ସଂଖ୍ୟାରେ ଲେଖାଥିଲା “ ୧୨ତାରିଖ ଦରବାର ସଭାକୁ ଆମେ ବାସନ୍ଦ କରିଥିଲେ । ଦ୍ୱିତୀୟ ଥର ପାଇଁ ୨୭ ତାରିଖ ସଭାକୁ ବାସନ୍ଦ କରି ପଣ୍ଡ କରିଦେଲେ । ତିନି ଲକ୍ଷ ଲୋକଙ୍କ ଭିତରୁ ଅମଲା ପୁଲିସଙ୍କୁ ମିଶେଇ ଦରବାରର ସଭାକୁ ମାତ୍ର ତିନିଶହ ସିରିକି ଲୋକ ଯାଇଥିଲେ । ଏହା ଫଳରେ ଦରବାରର ମୁହଁ କଳା ପଡ଼ିଯାଇଛି । ତଥାପି ମେ ୩୧ ତାରିଖକୁ ସଭା ଡକେଇଛି । ଗାଁ ଗାଁରେ ବୁଲି ଆମ ମେଣ୍ଟ ଭାଂଗିବାକୁ ଷ୍ଟେଟ ଉଦ୍ୟମ କଲାଣି । ୩୧ ତାରିଖ ସଭାକୁ ପୂରାପୂରି ବାସନ୍ଦ କରିବାକୁ ହେବ ।”

ଏକାଦଶ ସଂଖ୍ୟା ରଣଭେରୀରେ ୩୧ ତାରିଖ ରାଜ ଦରବାର ସଭାକୁ ବାସନ୍ଦ କରିଥିବାରୁ ପ୍ରଜାମାନଙ୍କୁ ବଧେଇ ଜଣାଇ ଭାରତ ସରକାର (ବ୍ରିଟିଶ) କିପରି ଢେଙ୍କାନାଳ ଦରବାରକୁ ବଂଚେଇ ରଖିଛି ତାହାର ଉଲ୍ଲେଖ ଅଛି । ସେଥିରେ ଅଛି, “ଆମର ଯେଉଁ ଭାଇମାନେ ମୋଗଲବନ୍ଦୀରେ ଆଶ୍ରୟ ନେଇଛନ୍ତି ସେମାନଙ୍କ ନାମରେ ରାଜ୍ୟ ଭିତରେ ମିଥ୍ୟା ମକଦ୍ଦମା କରି ମୋଗଲବନ୍ଦୀ ପୁଲିସ ଦ୍ୱାରା ସେମାନଙ୍କୁ ଗିରଫ କରାଇ ଢେଙ୍କାନାଳ ଅଣାଇବାକୁ ବସିଛନ୍ତି । ମୋଗଲବନ୍ଦୀରୁ କେତେଜଣ ଭାଇଙ୍କୁ ଧରିନେଲେ ମଧ୍ୟ ଆମର ଟାଣ ଭାଂଗି ଯିବନାହିଁ । ରାଜ୍ୟର ଶାସନ କ୍ଷମତା ନିଶ୍ଚୟ ପ୍ରଜାମାନଙ୍କ ହାତକୁ ଆସିବ । ଆମେ ଯୁଗଯୁଗର ଅତ୍ୟାଚାରକୁ ଧ୍ୱଂସ କରିବା ପାଇଁ ଏବଂ ଚିରକାଳ ପାଇଁ ସୁଖ ଶାନ୍ତିର ବାଟ ଫିଟେଇବା ପାଇଁ ଲଢୁଥାଏ ।”

ରଣଭେରୀ ୧୩ଶ ସଂଖ୍ୟାରେ ଅଛି “ନେହେରୁ ଲଣ୍ଡନରୁ ଫେରି ଢେଙ୍କାନାଳ ସଂପର୍କରେ ଜାଣିବା ଲାଗି ସାରଙ୍ଗଧର ବାବୁ ଓ ମାଳତୀ ଦେବୀଙ୍କୁ ଯିବା ପାଇଁ ତାର କରିଛନ୍ତି । ନବକୃଷ୍ଣ ଚୌଧୁରୀ ଓ ମୋଗଲବନ୍ଦୀର ଆଉ ନେତାମାନେ ସତ୍ୟାଗ୍ରହ କରିବାକୁ ଆସିବେ ।” ରାଜା ପକ୍ଷରୁ ପ୍ରଜାମାନଙ୍କୁ ଧୋବା ଭଣ୍ଡାରୀ ବାସନ୍ଦ ସଂପର୍କରେ ସେଥିରେ ଅଛି, “ଧୋବା

ଭଣ୍ଡାରୀ ଦରବାର ଭୟରେ ଆମର କାମ ନକଲେ ଆମେ ନିଜେ ନିଜନିଜର ସବୁକାମ ହାତରେ କରିନେବା, ଧୋବା ଭଣ୍ଡାରୀ ଜାଣିବେ ଯେ ଦରବାର ତାଙ୍କୁ ଚିରକାଳ ପୋଷିବ ନାହିଁ। ସୋଡ଼ା ଖାର ବା ସାବୁନ ଦେଇ ସ୍ତ୍ରୀ ପୁରୁଷ ସମସ୍ତେ ନିଜ ନିଜର ଲୁଗାପଟା ପରିଷ୍କାର କରନ୍ତୁ।"

ଦ୍ୱିତୀୟ ଡିକ୍ଟେଟର ବ୍ରଜ ପଟ୍ଟନାୟକଙ୍କ ସ୍ୱାକ୍ଷରରେ ୧୪ଶ ସଂଖ୍ୟା ରଣଭେରୀରେ ଅଛି, "ନବକୃଷ୍ଣ ଚୌଧୁରୀ ଏଲ୍ଲାବାଦରେ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ସହିତ ଢେଙ୍କାନାଳ ଲଢ଼େଇ ବିଷୟରେ ପରାମର୍ଶ କରି ଆସିଲେ। ଆମକୁ ଅନ୍ୟ କେଉଁ ଆଡ଼କୁ ନ ଅନେଇ ଜୋରସୋର ଲଢ଼େଇ ଚଳେଇବାକୁ ହେବ।"

ଆଉ ଏକ ରଣଭେରୀରେ ଢେଙ୍କାନାଳରେ ପୈଶାଚିକ ନିଷ୍ଠୁରତା, ଓଡ଼ିଶା ମନ୍ତ୍ରୀମାନଙ୍କ ନୈତିକ ଦାୟିତ୍ୱ ଓ କଂଗ୍ରେସର ନୀତି ସଂପର୍କରେ ଡିସେମ୍ବରରେ ହରିଜନ ପତ୍ରିକାରେ ପ୍ରକାଶିତ ମହାତ୍ମାଗାନ୍ଧୀଙ୍କ ଲେଖା ଓଡ଼ିଆରେ ଅନୁବାଦ କରି ପ୍ରକାଶ କରାଯାଇଛି।

□□□

# ମୋଗଲବନ୍ଦୀରେ ତିନୋଟି କ୍ୟାମ୍ପ

୧୯୩୮ ରେ ଢେଙ୍କାନାଳ ପ୍ରଜାମଣ୍ଡଳ ନେତୃତ୍ୱରେ ଆନ୍ଦୋଳନ ପରିଚାଳନା ଖୋଦ୍ ଢେଙ୍କାନାଳ ଗଡ଼ରୁ ସମ୍ଭବପର ହେଉ ନଥିଲା । ପୁଲିସ ଓ ରାଜା ଦଲାଲମାନଙ୍କ ଦୌରାତ୍ମ୍ୟ ଏବଂ ନେତା ଓ କର୍ମୀମାନଙ୍କୁ ସହଜରେ ଗିରଫ କରି ନେବାର ବିପଦକୁ ଯେତେଦୂର ସମ୍ଭବ ଏଡ଼ାଇବାକୁ ହେବ । ସେଥି ସକାଶେ କଟକ କେନ୍ଦ୍ର ବ୍ୟତୀତ ଢେଙ୍କାନାଳରୁ ଲାଗିଥିବା ମୋଗଲବନ୍ଦୀ ଅଂଚଳର ତିନିପଟେ ତିନୋଟି କ୍ୟାମ୍ପ ପ୍ରତିଷ୍ଠା କରାଯାଇଥିଲା ।

ଏହି କ୍ୟାମ୍ପଗୁଡ଼ିକ ହେବ, ନେତା ଓ କର୍ମୀମାନଙ୍କର ଗୋପନରେ ରହିବା ଆଶ୍ରୟସ୍ଥଳ । ଏହା ହେବ ରାଜ୍ୟରୁ ନିର୍ଯ୍ୟାତିତ ହୋଇ ବିକଳାଙ୍ଗ ଲୋକଙ୍କ ଥଇଥାନ ସାମୟିକ ଥଇଥାନ କେନ୍ଦ୍ର । କେନ୍ଦ୍ର ସଂଗଠନ ସହିତ ଯୋଗାଯୋଗ ରଖି ବିଭିନ୍ନ ଅଂଚଳକୁ ନିର୍ଦ୍ଦେଶନା, ଉପଦେଶ ପଠାଇ ସଂଗ୍ରାମକୁ ଅବ୍ୟାହତ ରଖିବାର କେନ୍ଦ୍ର ।

ଅନୁଗୋଳ ସହର ଓ ମେରାମଣ୍ଡଳୀ ଷ୍ଟେସନ ମଧ୍ୟବର୍ତ୍ତୀ ସ୍ଥାନ କଟକ ସମ୍ବଲପୁର ରାସ୍ତା ପାର୍ଶ୍ୱରେ ବୁଢ଼ାପଙ୍କ ଗାଁ । ଏଠାରେ ଥାଏ ବିସ୍ତୃତ ଏକ ପଡ଼ିଆ । ଏହା ଲାଗିଛି ପ୍ରଜା ଆନ୍ଦୋଳନର ହୃତପିଣ୍ଡ ପରଜଂଗ, ପଳାଶୁଣି, ମଢ଼ି ଅଂଚଳକୁ ଭୁବନ ଯାଏ ସଂଯୋଗ କରୁଥିବା ସଡ଼କ ରାସ୍ତା । ଏଠାରେ ବାଉଁଶ ନଡ଼ାରେ ଗୋଟିଏ ବଡ଼ ଘର ତିଆରି ହୋଇଗଲା । ପ୍ରଜା ଆନ୍ଦୋଳନ ଚାଲିଥିବା ତାଳଚେରକୁ ସ୍ଥାନଟି ଲାଗିଛି । ତେଣୁ ଏହାହିଁ ତିନୋଟି କ୍ୟାମ୍ପ ମଧ୍ୟରୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ କ୍ୟାମ୍ପର ସ୍ଥାନ ଗ୍ରହଣ କରିଥିଲା । ପ୍ରଜାମଣ୍ଡଳର ନେତା ସୁବାହୁସିଂହ, ବୈଷ୍ଣବ ଚରଣ ପଟ୍ଟନାୟକ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର ପ୍ରମୁଖ ଗୋପନରେ ଖସିଆସ ଏଠାରେ ରାତ୍ରିଯାପନ କରୁଥିଲେ । ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ସାରଙ୍ଗଧର ଦାସ ଅନେକ ସମୟରେ ଏଠାରେ ପହଞ୍ଚୁଥିଲେ । ଗୋଟାଏ ଛୋଟିଆ କୁଡ଼ିଆରେ ମାଳତୀ ଦେବୀ ତାଙ୍କ ୨ ମାସର ଶିଶୁକନ୍ୟା (ଚିନୁ)କୁ ଧରି ଏହାର ଦେଖାଶୁଣାରେ ମୁଖ୍ୟ ଦାୟିତ୍ୱରେ ଥିଲେ । କଟକରୁ ଛାତ୍ର କର୍ମୀ, ସାମ୍ବାଦିକ, ସମାଜସେବୀ ଏହି ମୁଖ୍ୟ କ୍ୟାମ୍ପକୁ ଯାଉଥିଲେ ।

ଏଠାରେ ଏକ ଛୋଟ ଚିକିତ୍ସାଳୟ ଖୋଲାଯାଇଥିଲା, ରାଜାଙ୍କ ଅତ୍ୟାଚାରରେ ମାଡ଼ ଖାଇ ଖଣ୍ଡିଆଖାବରା ହେବା ଲୋକ ତଥା ଧର୍ଷିତା ମହିଳାମାନଙ୍କର ଘା ଘାଉଡ଼ ଚିକିତ୍ସା ଏଠାରେ

କରାଯାଉଥିଲା । ଛାତ୍ର ସଂଘର ଡାକ୍ତରୀ ଛାତ୍ର ରବିଘୋଷ ମୋତିଲାଲ ତ୍ରିପାଠୀ ପ୍ରଭୃତି ଏମାନଙ୍କର ଚିକିତ୍ସା କରୁଥିଲେ । କେନ୍ଦ୍ର କ୍ୟାମ୍ପ ପାଖକୁ ଲାଗି ବହୁ ଝୁମ୍ପୁଡ଼ି କୁଡ଼ିଆ ଘର ତିଆରି କରି ଦମନ ନିର୍ଯ୍ୟାତନାରୁ ରକ୍ଷା ପାଇବା ପାଇଁ ରାଜ୍ୟ ଛାଡ଼ି ଆସିଥିବା ଲୋକେ ରହୁଥିଲେ । ଏଠାରେ ସ୍ୱେଚ୍ଛାସେବକମାନଙ୍କୁ ତାଲିମ ଦିଆଯାଇ ସତ୍ୟାଗ୍ରହ କରିବାକୁ ପଠାଯାଉଥିଲା ।

ଦ୍ୱିତୀୟ କ୍ୟାମ୍ପଟି ଥିଲା ଜେନାପୁର ନିକଟ ମୋଗଲବନ୍ଦୀର କଳାଣ୍ଡୋ ଗାଁରେ । ଚଉଷଠିପଡ଼ା, ବଳରାମପୁର ଅଂଚଳରେ ଚାଷୀ ଆନ୍ଦୋଳନ ଜୋରଦାର ଥାଏ । ବ୍ରାହ୍ମଣୀ ନଦୀ ସେ ପଟେ ଭୁବନ, ନୀଳକଣ୍ଠପୁର ଅଂଚଳ । ସେ ଅଂଚଳରେ ପ୍ରଜା ଆନ୍ଦୋଳନ ପ୍ରଖର । ସେସବୁ ଅଂଚଳରେ ରାଜ ଦରବାର ପକ୍ଷରୁ ବାରମ୍ବାର ଗୁଳି, ଗିରଫ, ଲୁଟ୍‌ତରାଜ ଚାଲେ । ସେସବୁ ଘଟଣାର ମୁକାବିଲା କରିବା ପାଇଁ ଅତ୍ୟାଚାର ଏଡ଼ିବା ଓ ପ୍ରାଣ ବଞ୍ଚାଇବା ଲାଗି, ରାଜ୍ୟ ଛାଡ଼ି ଆସିବା ପ୍ରଜାଙ୍କୁ ସାମୟିକ ଆଶ୍ରୟ ଦେବାଲାଗି, ତଥା ଲଢ଼େଇ ପରିଚାଳନା କରିବା ପାଇଁ ଏହି କେନ୍ଦ୍ରଟି ଖୋଲାଯାଇଥିଲା । ଯୁବନେତା ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ ମୁଖ୍ୟତଃ ଏହାର ଦାୟିତ୍ୱରେ ଥିଲେ । ଡାକ୍ତର ଫନୀ ପାଲ, ରବି ଘୋଷ, ବଳଦେବ ଲାଲା, ସୁଧୀର ଘୋଷ ପ୍ରମୁଖ ଶରଣାର୍ଥୀମାନଙ୍କ ଥଇଥାନରେ ଢେଙ୍କାନାଳରର ସାଥୀମାନଙ୍କୁ ସାହାଯ୍ୟ କରୁଥିଲେ । ଏଠାରୁ ହିଁ ସେପଟେ ବୁଢ଼ାପଙ୍କ କ୍ୟାମ୍ପ୍ ସହିତ ଯୋଗାଯୋଗ ରଖାଯାଉଥିଲା ଓ କଟକ କେନ୍ଦ୍ରକୁ ଓ କୃଷକ ତଥା ଅନ୍ୟାନ୍ୟ ପତ୍ରପତ୍ରିକାକୁ ସମ୍ବାଦ ପଠାଯାଇଥିଲା । ବ୍ରାହ୍ମଣୀ ନଦୀ ଏପଟେ ଢେଙ୍କାନାଳ ଦରବାରର ଗୋଟିଏ ଖା କବାଟବନ୍ଧ । ନଭେମ୍ବର ୧୯୩୮ ଆଦ୍ୟ ଭାଗରେ ଏହି କ୍ୟାମ୍ପରୁ ଆନ୍ଦୋଳନର ସମସ୍ତ ତଥ୍ୟ ବହନ କରି ବୈଦ୍ୟନାଥ ରଥଙ୍କ ସଙ୍ଗରେ ଅନନ୍ତ ପଟ୍ଟନାୟକ ଦୁଇଟି ସାଇକେଲ ଯୋଗେ ଜେନାପୁର ରେଳଷ୍ଟେସନକୁ ଆସୁଥାନ୍ତି । ହଠାତ୍ ଢେଙ୍କାନାଳ ପୁଲିସ ବୁଦାମୂଳୁ ଝାମ୍ପି ପଡ଼ିଲେ । ବୈଦ୍ୟନାଥ ରଥ ଜୋରରେ ସାଇକେଲ ଚଳାଇ ଢେଙ୍କାନାଳର ଗାଁ କବାଟବନ୍ଧ ଟପି ମୋଗଲବନ୍ଦୀ ଅଂଚଳରେ ପହଞ୍ଚି ଅନନ୍ତଙ୍କୁ ଅପେକ୍ଷା କଲେ । ମାତ୍ର ଦରବାରର ବାହିନୀ ଅନନ୍ତ ପଟ୍ଟନାୟକଙ୍କୁ ମାଡ଼ି ବସିଲେ ଏବଂ ଚାଲିଲା ବିଧା ଗୋଇଠା । ବୈଦ୍ୟନାଥ ରଥ ଫେରି କଟକରେ ଏ ସମ୍ବାଦ ପହଞ୍ଚାଇ ଦେଲେ । ଅନନ୍ତଙ୍କ ଜୀବନ ପ୍ରତି ଆଶଙ୍କା କରି ଚହଳ ପଡ଼ିଗଲା ।

ଏଠାରୁ ମଧ ସତ୍ୟାଗ୍ରହୀମାନଙ୍କୁ ଏକାଠି କରୁଥିଲେ ବୈଷ୍ଣବ, ଶ୍ରୀକାନ୍ତ ଓ ସ୍ଥାନୀୟ ନେତାମାନେ । କଳାଣ୍ଡୋ ଓ ଆଖପାଖର ଚାଷୀମାନେ ହିଜାରତ କରିଥିବା ହଜାର ହଜାର ଲୋକଙ୍କ ଲାଗି ଚାଉଳ, ପନିପରିବା ଯୋଗାଉଥିଲେ । ଏହିପରି ଭାବରେ ଗଡ଼ଜାତ ପ୍ରଜା ଓ ମୋଗଲବନ୍ଦୀର ଚାଷୀଙ୍କ ମଧ୍ୟରେ ସଂଗ୍ରାମୀ ବନ୍ଧୁତା ଓ ଐକ୍ୟ ଗଢ଼ି ଉଠିଥିଲା ।

ମୋଗଲବନ୍ଦୀ ଅଂଚଳ ବାଙ୍କିର ଘୋଡ଼ାବାର, କନ୍ତପହରା, ଘୋଳପୁର, ରତାଗଡ଼, ସୁବର୍ଣ୍ଣପୁର ମହାନଦୀର ସେପଟେ, ଏପଟେ ଚର୍ଚ୍ଚିକା, କାଳିକା ପ୍ରସାଦ, ଡମପଡ଼ା ପ୍ରଭୃତି। ଘୋଳପୁର ଲାଗିଛି ଆଠଗଡ଼କୁ। ଆଠଗଡ଼ରେ ମଧ୍ୟ ପ୍ରଜା ଆନ୍ଦୋଳନ ପ୍ରଖର। ରାଧାନାଥ ରଥ, ବ୍ରଜ କିଶୋର ପଟ୍ଟନାୟକ, ଲିଙ୍ଗରାଜ ଜେନା, ଅଚ୍ୟୁତାନନ୍ଦ ଦାଶ, ବିବେକାନନ୍ଦ ରଥ, ମାୟାଧର ସାମନ୍ତ ପ୍ରମୁଖ ଆଠଗଡ଼ର ନେତା। ଆଠଗଡ଼କୁ ଲାଗିଛି ଢେଙ୍କାନାଳର ଛଦେଶ ବିଶ, ଲକ୍ଷ୍ମୀ ପ୍ରସାଦ। ଏପଟେ ଢେଙ୍କାନାଳ ଦରବାରର ଅତ୍ୟାଚାର, ନିର୍ଯ୍ୟାତନାରୁ ଉଦ୍ଧାର ପାଇବା ଲାଗି ଆଶ୍ରୟସ୍ଥଳ ରୂପେ ଘୋଳପୁର କ୍ୟାମ୍ପଟି ଏକ ସ୍କୁଲଘରେ ପ୍ରଥମେ ସ୍ଥାପନ କରାଗଲା। ପ୍ରଜାମଣ୍ଡଳର ଅନ୍ୟତମ ନେତା ଓ ଛଦେଶ ବିଶ ପ୍ରଜାମଣ୍ଡଳ ସଭାପତି ବ୍ରଜ କିଶୋର ଧଳ ପ୍ରଜାମଣ୍ଡଳ ପକ୍ଷରୁ ଏଠାରେ ରହିଲେ। ରାଜନୈତିକ ଓ ସ୍ୱେଚ୍ଛାସେବକ ତାଲିମ ଦେବାର ଦାୟିତ୍ୱ ପଡ଼ିଥିଲା, ଛାତ୍ର ସଂଘର ରାଜ୍ୟ ସଂପାଦକ ବିଶ୍ୱନାଥ ପଶାଏତ୍ ଓ ଗୋବିନ୍ଦ ଚନ୍ଦ୍ର ମହାନ୍ତିଙ୍କ ଉପରେ। ଆଠଗଡ଼ର ପ୍ରଜାମାନେ ଢେଙ୍କାନାଳର ଶରଣାର୍ଥୀମାନଙ୍କ ଥଇଥାନରେ ବହୁତ ସାହାଯ୍ୟ କରୁଥାନ୍ତି।

ଘୋଳପୁରକୁ ଲାଗି ଆଠଗଡ଼ ଦରବାରର ଜାଗିଆପଡ଼ା ନାମକ ବଡ଼ ଗାଁଟିଏ। ତା ସେପଟେ ମୋଗଲବନ୍ଦୀ ଅଂଚଳର ଏକ ପାହାଡ଼। ତାକୁ ନୈମିଶ୍ୟାରଣ ପାହାଡ଼ କହନ୍ତି। ଦଳକୁ ଦଳ ସ୍ୱେଚ୍ଛାସେବକ ଯୁବକ ଏଠାରେ ପହଞ୍ଚନ୍ତି। ସେହି ପାହାଡ଼ ଉପରେ ସେମାନଙ୍କୁ ସାମରିକ ଡ୍ରିଲ ଓ ଆତ୍ମରକ୍ଷାର କାଏଦା ଶିକ୍ଷା ଦିଆଯାଏ। ବାଙ୍କି କଂଗ୍ରେସ ନେତା ଗୋଲକ ମହାରଣା ଏହି ତାଲିମ ଦାନରେ ମୁଖ୍ୟ ଭୂମିକା ନିଅନ୍ତି। ଆଠଗଡ଼ର ଜାଗିଆପଡ଼ା ଗାଁକୁ ଆଠଗଡ଼ ପ୍ରଜାମଣ୍ଡଳର ସ୍ୱେଚ୍ଛାସେବକମାନେ ପହରା ଦିଅନ୍ତି। ନିରାପଦରେ ସେହି ବାଟେ ଢେଙ୍କାନାଳର ସ୍ୱେଚ୍ଛାସେବୀମାନଙ୍କୁ ତାଲିମ ଦେବା ପାଇଁ ଉକ୍ତ ପାହାଡ଼ ଉପରକୁ ନିଆଯାଏ ଓ ଅଣାଯାଏ। ଏଠାରୁ ବ୍ରଜ କିଶୋର ଧଳଙ୍କ ନିର୍ଦ୍ଦେଶରେ ତିନିଟି ଦଳ ସ୍ୱେଚ୍ଛାସେବକ ବାହିନୀ ଯାଇ ଗଡ଼ ଢେଙ୍କାନାଳରେ ସତ୍ୟାଗ୍ରହ କରି ଅଶେଷ ନିର୍ଯ୍ୟାତନାର ସମ୍ମୁଖୀନ ହୋଇଥିଲେ। ତିନିଜଣଙ୍କ ଗୋଡ଼ହାତ ଭାଙ୍ଗି ଚୂନଚୂନ ହୋଇଯାଇଥିଲା। ଏମାନଙ୍କୁ ଅଣାଯାଇ ସୁବର୍ଣ୍ଣପୁରଠାରେ କଂଗ୍ରେସ କର୍ମୀ ଫକୀର ପଣ୍ଡା ପ୍ରଭୃତିଙ୍କ ସାହାଯ୍ୟ କ୍ରମେ ଡଙ୍ଗା ଯୋଗେ ରାତିରେ କଟକ ଅଣାଯାଇ ଡାକ୍ତରଖାନାରେ ଭର୍ତ୍ତି କରାଯାଇଥିଲା।

❐❐❐

# ଏକାଦଶ ଅଧ୍ୟାୟ

## ଢେଙ୍କାନାଳ ଜେଲ : ରବିଘୋଷ-ଅନନ୍ତ ପଟ୍ଟନାୟକ

୧ ୯୩୮-୩୯ ଆନ୍ଦୋଳନ ବେଳେ ଢେଙ୍କାନାଳର ପ୍ରାୟ ଚାରିଶହ ନେତା ଓ କର୍ମୀଙ୍କୁ ଦରବାରର ଜେଲ୍‌ରେ ବନ୍ଦୀ ହେବାକୁ ପଡ଼ିଛି । ଢେଙ୍କାନାଳ ସହରରେ ଥିବା ଜେଲ୍ ଓ ଥାନାରେ ଥିବା ଲକଅପ ଶାରୀରିକ ଓ ମାନସିକ ଯନ୍ତ୍ରଣା ଦେବାର ଯମଶାଳା ହୋଇଥାଏ । ଢେଙ୍କାନାଳ ଜେଲରେ ରାଜବନ୍ଦୀ ତଥା ଦଣ୍ଡିତ ଅପରାଧୀଙ୍କୁ ଗୋରୀ ଗାଈର ଖାଦ୍ୟ ଦିଆଯାଏ । ସକାଳେ ଟିଫିନ୍ ବୋଲି ଯାହାକୁ କୁହାଯାଏ ତାହା ହେଲା ଲୁହା ତାଟିଆରେ ପଖାଳ ଓ ତିନ୍ତୁଳି ଖଟା । ଦିନ ବେଳା ଓ ଖୁଆଡ଼ରେ ସନ୍ଧ୍ୟାରେ ଭର୍ତ୍ତି କରାଯିବା ଆଗରୁ ଦିଆଯାଉଥିବା ପଚରା ପାଣିଚିଆ ଡାଲି, ଭାତ । ରଜାଘର ଅମାରମାନଙ୍କରେ ବର୍ଷ ବର୍ଷ ଧରି ଜମା ରହୁଥିବା ଧାନ, ସବୁ ଛତୁ ଫୁଟିଯାଏ । କଳା ହଳଦିଆ ରଙ୍ଗ ପାଲଟେ । ରଜାଘରର ହାତୀ ଭଲ ଧାନ ଖାଆନ୍ତି । ଯେଉଁ ସଢ଼ା ଧାନ ତାହା ରାଜାଙ୍କ ଖୋଦ ସଂପଦ । ତାହାକୁ ଦରବାର ପ୍ରଶାସନ ବଜାର ମୂଲ୍ୟରେ ଭଲ ଧାନ ରୂପେ କ୍ରୟ କରିନିଏ । ସେ ଅର୍ଥ ଆଉ ରାଜସ୍ୱକୁ ଆସେ ନାହିଁ । ସିଧାସଳଖ ରାଜ ଉଆସକୁ ଯାଏ । ଏହି ଧାନରୁ ଚାଉଳ ବନ୍ଦୀମାନଙ୍କ ଖାଦ୍ୟ । ଜେଲ୍‌କୁ ଏହି ଚାଉଳ ଯୋଗାଯାଏ ।

ରାଜନୈତିକ ବନ୍ଦୀମାନଙ୍କୁ ମଧ୍ୟ ସାଧାରଣ କଏଦୀଙ୍କ ଭଳି ଦୈହିକ ଯନ୍ତ୍ରଣା ଦିଆଯାଏ । ଓ୍ୟାର୍ଡ଼ରମାନେ ଏମିତି ତାଲିମ ନେଇଥାନ୍ତି ଯେ ପ୍ରଥମେ କିଛି ଗୋଇଠା ବିଧା ଚାଲେ - ତାପରେ ନିଭୃତ ଜାଗାକୁ ଘେନି ଯାଇ ପ୍ରହାର । ଜେଲରଙ୍କ ପାଖକୁ ନିଆଯାଇ ତାଙ୍କ ଦ୍ୱାରା ମାଡ଼ । କେହି ଉଁଚୁଁ କରିପାରିବେ ନାହିଁ । ଆଙ୍ଗୁଠି ସନ୍ଧିରେ ବାଡ଼ି ପୂରେଇ ଚାପୁଆଣି ଚାପ ।

ଆଗରୁ କୁହାଯାଇଛି ଅନନ୍ତ ପଟ୍ଟନାୟକଙ୍କୁ କବାଟବନ୍ଧ ପାଖରେ ମାଡ଼ି ବସି ପେଙ୍ଗୁଆ ଥାନାରେ ରଖି, ତାଙ୍କ ଉପରେ ଦୈହିକ ନିର୍ଯ୍ୟାତନା ଦେଇ ଢେଙ୍କାନାଳଠାରୁ ସ୍ୱତନ୍ତ୍ର ଭାବରେ ଗୋଟିଏ କ୍ୱାର୍ଟରକୁ ଜେଲ୍‌ରେ ପରିଣତ କରି ରଖାଗଲା । ତାଙ୍କ ନାମରେ ଢେଙ୍କାନାଳ କଚେରୀରେ ମକଦ୍ଦମା ରୁଜୁ କରାଗଲା । କଟକରୁ ପ୍ରସିଦ୍ଧ ଓକିଲ ଦୀନବନ୍ଧୁ ସାହୁ ତାଙ୍କ ମକଦମାରେ ଲଢୁଥିଲେ ସୁଦ୍ଧା ଅନନ୍ତଙ୍କୁ ଦୁଇବର୍ଷ ଜେଲ ଦଣ୍ଡ ମିଳିଲା । ୧ ୯୩୯ ମାର୍ଚ୍ଚ ଦ୍ୱିତୀୟ ସପ୍ତାହରେ ତ୍ରିପୁରୀ କଂଗ୍ରେସରେ ଯୋଗ ଦେବାପରେ ରବିଘୋଷ ବୁଢ଼ାପଙ୍କ ଆସିବାବେଳେ ତାଙ୍କୁ ଢେଙ୍କାନାଳ ପୁଲିସ ଢେଙ୍କାନାଳ ସୀମା ପାର ହେଉ ହେଉ ମାଡ଼ିବସିଲା ।

ପ୍ରଥମ ପର୍ଯ୍ୟାୟ ଢେଙ୍କାନାଳ ଆନ୍ଦୋଳନ ଉପରିଲିଖିତ କାରଣରୁ ମଳିନ ପଡ଼ି ଆସିବାବେଳେ ତ୍ରିପୁରୀ କଂଗ୍ରେସରେ ନେତାମାନଙ୍କୁ ପ୍ରଭାବିତ କରି କଂଗ୍ରେସର ଗଡ଼ଜାତ ନୀତି ବଦଳାଇବା ବିଚାରବିମର୍ଶ ଚାଲିଥାଏ । ଭଗବତୀ ଚରଣ ପାଣିଗ୍ରାହୀ, ରବିଘୋଷ ଯିବା ସ୍ଥିର

କରିଥାନ୍ତି । ମହେଶ୍ୱର ସୁବାହୁସିଂହ ଜିଦ ଧରିଲେ ସେ ଯିବେ । ତାଙ୍କୁ ଢେଙ୍କାନାଳରୁ ନେବା ସହଜସାଧ ନୁହଁ । ଭଗବତୀଙ୍କ ପରାମର୍ଶ କ୍ରମେ ତାଙ୍କର ଛଦ୍ମବେଶର ବ୍ୟବସ୍ଥା କରାଗଲା । ତାଙ୍କ ଦାଢ଼ି ନିଶ କାଟି ଦିଆଗଲା । ଗଳାରୁ ମାଳ ଛିଣ୍ଡାଇ ଦିଆଗଲା । ରାତିରେ ସଂବଲପୁର ଯାଉଥିବା ମଟର ଗାଡ଼ିରେ ତାଙ୍କୁ ସବା ପଛ ସିଟରେ ବସେଇ ଭଗବତୀ, ରବିଘୋଷ ଆଗ ସିଟରେ ବସି କୌଣସି ମତେ ତାଙ୍କୁ ଢେଙ୍କାନାଳ ପାର କରେଇ ତ୍ରିପୁରୀ କଂଗ୍ରେସରେ ପହଞ୍ଚାଇଲେ ।

ତ୍ରିପୁରୀ କଂଗ୍ରେସରୁ ଏକାକୀ ଅନୁଗୋଳରୁ କଟକ ଆସିବା ବାଟରେ ମେରାମଣ୍ଡଳୀ ଠାରେ ବିପ୍ଳବୀ ରବି ଘୋଷଙ୍କୁ ଢେଙ୍କାନାଳ ପୋଲିସ ମାଡ଼ି ବସିଲେ । ରବିଘୋଷଙ୍କୁ ହାତକଡ଼ି, ଅଣ୍ଟାରେ ଦଉଡ଼ି ବାନ୍ଧି ମେରାମଣ୍ଡଳୀରୁ ଢେଙ୍କାନାଳ ନେଇ ରାତିସାରା କଚେରୀ ଗାରଦରେ ଠୁଙ୍କି ଦିଆଗଲା । କେତେଦିନ ଧରି ବଡ଼ ଗୋରା କଳା ହାକିମ ତାଙ୍କୁ ବାନ୍ଧିଆଣି ଜେରା କଲେ । ତାଙ୍କ ଟାଣପଣ ଦେଖି ସେମାନେ ରାଗରେ ବିରି ଚାଉଳ ଚୋବାଇଲେ । ଦେଉ ଦେଖିଦେବୁ ବୋଲି ତାଙ୍କୁ ଧମକ ଦେଲେ । ଅଖାଦ୍ୟ ଓ ବ୍ୟଭିଚାରର ପ୍ରତିବାଦ କରି ସେ ଅନଶନ ଆରମ୍ଭ କରନ୍ତେ, ଜେଲ କଏଦୀମାନଙ୍କ ଭିତରେ ଚହଳ ପଡ଼ିଗଲା । ରବି ଘୋଷଙ୍କୁ ନାନାପ୍ରକାର ଧମକ ଚମକ ଦିଆଗଲା । କାରଣ ତାଙ୍କ ଦେଖାଦେଖି ଅନ୍ୟ ରାଜବନ୍ଦୀମାନେ ଅନଶନରେ ଯୋଗ ଦେଲେ । ବ୍ରିଟିଶ ଗ୍ରିଗୋରୀ ସାହେବ ପ୍ରମୁଖ ଏସବୁର ନିଶ୍ଚୟ ପ୍ରତିକାର କରାଯିବ ବୋଲି ପ୍ରତିଶ୍ରୁତି ଦେବା ପରେ ରବିଘୋଷ ଓ ବନ୍ଦୀମାନେ ଅନଶନ ଭଙ୍ଗ କଲେ ।

ଠିକ୍ ସେହିଦିନ ଅନନ୍ତ, ରବିଘୋଷ, ଲକ୍ଷ୍ମୀଧର ସାହୁଙ୍କୁ ବାଛିବାଛି ଢେଙ୍କାନାଳ ଜେଲରୁ ଘେନିଯାଇ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର ବନ୍ଦୀ ହୋଇ ରହିଥିବା ମଢ଼ି ସବଜେଲରେ ଠୁଙ୍କି ଦିଆଗଲା । ପ୍ରସଙ୍ଗକ୍ରମେ ରବିଘୋଷଙ୍କୁ ଦୁଇବର୍ଷ ଦଶମାସ ଜେଲ ଦଣ୍ଡ ମିଳିଲା । ବରାଦୀ ସାକ୍ଷୀମାନେ କିଏ କହିଲା ସେ ଡକେଇତି କରିଛି, କିଏ କହିଲା ସେ ଲୋକଙ୍କୁ ରଜାଙ୍କ ବିରୁଦ୍ଧରେ ମତାଉଚି । ଠିକ୍ ସେହିଦିନ ମଧ୍ୟ ଅନନ୍ତଙ୍କୁ ୬ ମାସ ଆଗରୁ ଗିରଫ କଲେ ମଧ୍ୟ ବିଚାର ହୋଇ ଦୁଇବର୍ଷ ଜେଲ ଦଣ୍ଡ ବିଧାନ କରାଗଲା ।

ମଢ଼ି ଜେଲରେ ଅନନ୍ତ ପଟ୍ଟନାୟକ ଉପରେ ଜଣେ ଶିଖ ପୁଲିସ ଘୋର ଶାରୀରିକ ନିର୍ଯ୍ୟାତନା ଓ ତାଙ୍କର ଯନ୍ତ୍ରଣାପୂର୍ଣ୍ଣ ଚିତ୍କାର ସହବନ୍ଦୀ ଲକ୍ଷ୍ମୀଧର ସାହୁ, ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କୁ କ୍ରୋଧ ଓ ଶୋକ ବିହ୍ୱଳିତ କରିଥିଲା ।

ଏହି ଜେଲଖାନା ଜୀବନରେ ୧୯୩୮ରେ ଗୁଳିରେ ଆହତ କାରାବନ୍ଦୀ ଦୀନବନ୍ଧୁ ମଳିକର ମୃତ୍ୟୁ ହୋଇଯାଇଥିଲା । ଅନେକେ ଅସୁସ୍ଥ ହୋଇ ପଡ଼ିଥିଲେ ।

ରବିଘୋଷ ଢେଙ୍କାନାଳ ଆନ୍ଦୋଳନ ସଂକ୍ରାନ୍ତରେ ତାଙ୍କ ଅନୁଭୂତି, ତାଙ୍କ ଗିରଫଦାରୀ, ବିଚାର, ଜେଲରେ ଅନଶନ ସଂପର୍କରେ ମୃତ୍ୟୁପୂର୍ବରୁ ଲେଖିଥିବା ଦୀର୍ଘ ବିବରଣୀଟି "ଜନ" ନାମକ ପତ୍ରିକାର ଦୁଇଟି ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।



# ଦ୍ୱାଦଶ ଅଧ୍ୟାୟ

## ମଢ଼ି ଥାନା ଦଖଲ : ଐତିହାସିକ ସଶସ୍ତ୍ର ସଂଗ୍ରାମ

୧୯୪୨ ଅଗଷ୍ଟ ଆହୁରି ବସ୍ତୁତଃ ୨ ବର୍ଷ ବାକି ଅଛି । ୧୯୩୯ରେ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯିବା ମାତ୍ରେ ଭାରତ ରକ୍ଷା ଆଇନ ପ୍ରୟୋଗ କରି ବ୍ରିଟିଶ ଭାରତରେ ଶହ ଶହ ବାମପନ୍ଥୀ ନେତାଙ୍କୁ ଗିରଫ କରି ଦେଓଳି ଓ ଅନ୍ୟାନ୍ୟ କ୍ୟାମ୍ପରେ ବନ୍ଦୀ କରାଗଲା । ୧୯୪୦ରେ କଂଗ୍ରେସ ପକ୍ଷରୁ ବ୍ୟକ୍ତିଗତ ସତ୍ୟାଗ୍ରହ ଆନ୍ଦୋଳନ କାଳରେ ନେହେରୁ, ବିନୋବାଙ୍କ ସମେତ ଓଡ଼ିଶାର ପୂର୍ବତନ ପ୍ରଧାନମନ୍ତ୍ରୀ, ମନ୍ତ୍ରୀ, ଏମ.ଏଲ.ଏ., ତୃଣନେତା, କର୍ମୀମାନଙ୍କୁ ଜେଲ ଦଣ୍ଡରେ ଦଣ୍ଡିତ କରାଗଲା ।

ଏଥିଭିତରେ ଓଡ଼ିଶାର ଗଡ଼ଜାତ ରାଜାମାନଙ୍କୁ ରକ୍ଷା କରିବା ପାଇଁ ପୂର୍ବାଞ୍ଚଳ ମିଳିତ ପୁଲିସ ବାହିନୀ ଗଠନ କରି ଛତିଶଗଡ଼ ଏବଂ ଓଡ଼ିଶାର ରାଜନ୍ୟମଣ୍ଡଳୀଙ୍କୁ ଅଭୟ ଦିଆଯାଇଥାଏ ।

୧୯୪୦ ଜୁନ୍ ୨୯ରେ ଢେଙ୍କାନାଳ ଦରବାର ଆକ୍ରମଣ ଆରମ୍ଭ କରିଦେଲା । ମହେଶ୍ୱର ସୁବାହୁ ସିଂହ ଏବଂ ବୈଷ୍ଣବ ଚରଣ ପଟ୍ଟନାୟକଙ୍କୁ ଧରି ନେଇ ୧୯୪୨ ଏପ୍ରିଲ ୨୮ ଯାଏ ବନ୍ଦୀ କରାଗଲା । ଆଉ ପ୍ରମୁଖନେତାଙ୍କୁ ମଧ୍ୟ ଗିରଫ କରାଗଲା ।

ଏସବୁ ଦମନର ପ୍ରତିବାଦ ଚାଲିଲା । ଢେଙ୍କାନାଳର ସହସ୍ର ସହସ୍ର ପ୍ରଜା ମୋଗଲ ବନ୍ଦୀ ଅନୁଗୋଳର ବୁଢ଼ାପଙ୍କ ଠାରେ ସଭା କରି ବେଠି, ସେସ ବନ୍ଦ କରିବାକୁ ଡାକରା ଦେଲେ । ରାଜ୍ୟର ବିଭିନ୍ନ ସ୍ଥାନରେ ପୁନର୍ବାର ସଭାସମିତି, ପ୍ରତିବାଦ ପ୍ରତିରୋଧ ଆରମ୍ଭ ହୋଇଗଲା । ଜକା, କନ୍ଦର ସିଂହା, ମେଣ୍ଢାପଡ଼ା, କାଟେଣି ପ୍ରଭୃତି ସ୍ଥାନରେ ସଭାମାନ ହୋଇ ଗିରଫ ଓ ଦମନର ପ୍ରତିବାଦ ଚାଲିଲା ।

୧୯୪୨ରେ ଭାରତ ଛାଡ଼ ଆନ୍ଦୋଳନର ପ୍ରସ୍ତାବ ପରେ ଚାରିଆଡ଼େ ବ୍ୟାପକ ଗିରଫଦାରୀ ଚାଲିଲା । ଢେଙ୍କାନାଳ ପ୍ରଶାସନ ୧୯୪୨ ଅଗଷ୍ଟ ୧୧ ତାରିଖରେ ଢେଙ୍କାନାଳରେ ଜରୁରୀକାଳୀନ ଅବସ୍ଥା ଜାରି କରି ସେହି ମାସ ୧୬ ତାରିଖରେ ପ୍ରଜାମଣ୍ଡଳକୁ ବେଆଇନ୍ ଘୋଷଣା କଲା । ସଭାସମିତି, ସମାବେଶ ଉପରେ କଟକଣା ଜାରି ହୋଇଗଲା । ୧୭ ଅଗଷ୍ଟରେ ବହୁ ନେତାଙ୍କୁ ଗିରଫ କରିବାର ପରୱାନା ଜାରି ହେଲା । ମହେଶ୍ୱର ସୁବାହୁ ସିଂ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ହରମୋହନ ପଟ୍ଟନାୟକ, ନରୋତ୍ତମ ଦାସ, ବ୍ରଜକିଶୋର ଧଳ, ଶ୍ରୀକାନ୍ତ ରାଉତ,

ପ୍ରମୁଖଙ୍କୁ ଗିରଫ କରି ନିଆଗଲା । ମାତ୍ର ବୈଷ୍ଣବ ପଟ୍ଟନାୟକଙ୍କ, କିଶୋରୀ ସାହୁ, ଭାଗିରଥୀ ସାହୁ, ଦିବାକର ବିଶ୍ୱାଳ, ଏମିତି ଅନେକେ ଆତ୍ମଗୋପନ କରି ରହିଗଲେ । ମୂଷା ମଲିକ ଓ ଦେବରାଜ ପାତ୍ରଙ୍କ ଚଳାଚଳ ଉପରେ ନିଷେଧାଜ୍ଞା ଜାରି ହେଲା । ଗିରଫ ପରୱାନା ମଡ଼ି ଅଞ୍ଚଳରେ ପହଂଚିବା ଡେରିରେ ସୁଯୋଗ ଘେନି ସେ ଅଞ୍ଚଳର ପ୍ରଜାମଣ୍ଡଳ ନେତାମାନେ ସହଜରେ ଆତ୍ମଗୋପନ କରିପାରିଲେ । ରଙ୍ଗଥାଳି ଜଙ୍ଗଲରେ ବିଭିନ୍ନ ଗ୍ରାମର ୩୧ ଜଣ ପ୍ରଜାମଣ୍ଡଳ ନେତା ଆତ୍ମଗୋପନ କରି ରହିଥିଲେ । ଗିରଫଦାରୀ ଏଡ଼ି ବୈଷ୍ଣବ କଟକରେ ନବକୃଷ୍ଣ ଚୌଧୁରୀ ଓ ଭଗବତୀ ଚରଣ ପାଣିଗ୍ରାହୀଙ୍କୁ ଭେଟିଲେ । ସେଠାରୁ ଫେରି ସେ ଏହି ରଙ୍ଗଥାଳି ଜଙ୍ଗଲରେ ଭବିଷ୍ୟତ କର୍ମପନ୍ଥା ସଂପର୍କରେ ଆଲୋଚନା କରିବା ପରେ ଏକ ମରଣ ବାହିନୀ ଗଠନର ନିଷ୍ପତ୍ତି ନେଲେ । ଏଥିରେ ୨୧ ଜଣଙ୍କ ନାମ ଥିଲା । ଅଗଷ୍ଟ ୨୪ରେ ପରଜଙ୍ଗ ଥାନା ଉପରେ ଚଢ଼ାଉ କରିବା ନିଷ୍ପତ୍ତି ଘେନି ପରଜଙ୍ଗରେ ପହଂଚିବାକ୍ଷଣି ଏଠାରେ ସଶସ୍ତ୍ରବାହିନୀ ମୁତଏନ କରାଯାଇଛି ବୋଲି ଏକ ସଂବାଦ ପାଇଲେ । ତହୁଁ ମଡ଼ି ଥାନା ଉପରେ ଚଢ଼ଉ କରାଯିବ ବୋଲି ସଙ୍ଗେ ସଙ୍ଗେ ନିଷ୍ପତ୍ତି ନିଆଗଲା । ମରଣ ବାହିନୀର ୧୯ ଜଣ ଯଥା ବୈଷ୍ଣବ ପଟ୍ଟନାୟକ (ନିଜିଗଡ଼) ବାଲିଗୋରଡ଼ାର ମୂଷା ମଲିକ, ଆନନ୍ଦ ସ୍ୱାଇଁ ବାଇଧର ସ୍ୱାଇଁ, ମୋଟୁଗାଁର କୁଳମଣି ପ୍ରଧାନ; ଖଟଖୁରାର ପଦ୍ମନାଭ ସାହୁ, କନ୍ଦର ସିଂହାର ହରେକୃଷ୍ଣ ସାହୁ, ମହାବିରୋଡ଼ର ହରେକୃଷ୍ଣ ସାହୁ, ଖଇରାମୁଣ୍ଡାର ସଂପଦ ସାହୁ, ପିତରୀର ନବଘନ ବେହେରା ଓ ରାଧାନାଥ ଭୂତିଆ, କୁଆଁଳୋର ଦିବାକର ବିଶ୍ୱାଳ ଓ ତୀର୍ଥ ସାହୁ, ମାଣିକମରାର ଲକ୍ଷ୍ମଣ ନାୟକ, ରଘୁନାଥପୁରର ଜୟଦେବ ସାହୁ, ବାଘମୁଣ୍ଡାର ଲୋଚନ ସିଂହ, ପଙ୍ଗାତିରାର ରଘୁନାଥ ଦେହୁରୀ ଓ କିଶୋରଚନ୍ଦ୍ର ବେହେରା ପ୍ରଧାନ ଓ ବାଙ୍ଗୁରି ଗାଁର ଅନୁକୂଳ ସାହୁହାତରେ ଯିଏ ପାରିଲା, ଅସ୍ତ୍ର ତରବାରୀ ଧନୁଶର ଠେଙ୍ଗାବାଡ଼ି ଧରି ମଡ଼ି ଅଭିମୁଖେ ଚାଲିଲେ । ସଙ୍ଗରେ ଥାଏ ୧୨ବର୍ଷର ବିଦ୍ୟାଧର ସ୍ୱାଇଁ ନାମକ ବାଳକ । ତାରି ଜିମା ଥାଏ ସଶସ୍ତ୍ର ସଂଗ୍ରାମୀମାନଙ୍କ ବଳକା ଅସ୍ତ୍ରଶସ୍ତ୍ର, ଲୁଗାପୁଟୁଳା ରଖିବା ଦାୟିତ୍ୱ ।

**"ଜୟ ପ୍ରଜାମଣ୍ଡଳୀୟ ଜୟ" :**

ମଡ଼ି ଥାନାକୁ ମାତ୍ର ୨ ଜଣ ସଶସ୍ତ୍ର ପୁଲିସ ଓ ଦୁଇଜଣ ଚୌକିଦାର ଜଗିଥାଆନ୍ତି । ପାଖରେ ପୁଲିସ ଛାଉଣୀ ଓ ଅଫିସରମାନଙ୍କ କ୍ୱାଟର । ରାତି ପାହାନ୍ତାରେ ଏହି ଚଢ଼ଉ । ସଂଗ୍ରାମୀ ଯୋଦ୍ଧାମାନେ ଦୁଇଜଣ ସଶସ୍ତ୍ର ପୁଲିସ ଓ ଚୌକିଦାରଙ୍କୁ କିଛି କରିବା ପୂର୍ବରୁ ମାଡ଼ିବସି, ପୋଲିସ ହାଜତରେ ବନ୍ଦ କରିଦେଲେ । ଅସ୍ତ୍ରାଗାର ଭାଙ୍ଗି ମହଜୁତ କାର୍ତ୍ରିଜ୍ ଘେନି ଆସିଲେ । ମାତ୍ର ଟ୍ରେଜେରୀ ଭାଙ୍ଗି ନ ପାରି ଲୁହା ବାକ୍ସରେ ଥିବା ହଜାରେ ଟଙ୍କା ଜବତ୍ କଲେ ।

ସକାଳ ହୋଇ ଆସୁଛି । ଥାନା ଦଖଲ କଲାପରେ ସେମାନେ ଫାଙ୍କା ଗୁଳି ଆବାଜ କରି ମହାତ୍ମା ଗାନ୍ଧୀଙ୍କୀ ଜୟ, ଢେଙ୍କାନାଳ ପ୍ରଜାମଣ୍ଡଳ ଜିନ୍ଦାବାଦ ଧ୍ୱନିରେ ଗଗନ କମ୍ପେଇ ଜାତୀୟ ପତାକା ଥାନାରେ ଉତ୍ତୋଳନ କରିଦେଲେ । ପ୍ରଜାମାନେ ବହୁଳ ସଂଖ୍ୟାରେ ସମବେତ ହୋଇ ଜୟ ଜୟକାର କରୁଥାନ୍ତି । କ୍ୱାଟରରୁ ପୁଲିସମାନେ ବାହାରି ଏସବୁ କଅଣ ଘଟିଗଲା ଦେଖି ଅବାକ ଓ ଭୟଭୀତ ହୋଇଗଲେ । ସେମାନଙ୍କ ହାତରେ ବନ୍ଧୁକ ନାହିଁ । ସେମାନଙ୍କୁ ନିର୍ଦ୍ଦେଶ ହେଲା ୧୫ ମିନିଟ ଭିତରେ ଘରଦ୍ୱାର ଛାଡ଼ି ଦିଅ । ସରକାରୀ ଫାଇଲ, ଆସବାବପତ୍ରକୁ ପୋଡ଼ି ଦିଆଗଲା । କିନ୍ତୁ କୌଣସି କର୍ମଚାରୀଙ୍କ ଉପରେ ଆକ୍ରମଣ କରାଗଲା ନାହିଁ । ଉପସ୍ଥିତ ବିଶାଳ ଜନତାଙ୍କୁ କୁହାଗଲା, ସେମାନେ କେବଳ ସାଧାରଣ ସଭାରେ ଯୋଗ ଦିଅନ୍ତୁ । ଚାରିଜଣ ପୁଲିସଙ୍କୁ ଲକଅପରୁ ମୁକ୍ତ କରି ଦିଆଗଲା । ଅଫିସରମାନେ ଘରଖାଲି କରିଦେବା ପରେ ସେମାନଙ୍କ କ୍ୱାଟର, ତହସିଲ ଅଫିସ, ଫରେଷ୍ଟ ଅଫିସ, ରାଜସ୍ୱ ଓ ଏସ୍.ଡ଼ି.ଓ ଅଫିସକୁ ପୋଡ଼ି ଦିଆଗଲା । କେବଳ ଶିକ୍ଷାୟତନ ଓ ହାସପାତାଳକୁ ବାଦ ଦିଆଯାଇଥିଲା । ଉପରବେଳା ଦଶହଜାର ଜନତାଙ୍କ ସଭାରେ ଢେଙ୍କାନାଳରେ ସ୍ୱାଧୀନ ସରକାର ଗଢ଼ାଗଲା ବୋଲି ବୈଷ୍ଣବ ଘୋଷଣା କଲେ ।

ବିଜୟ ଉଲ୍ଲାସରେ ସଂଗ୍ରାମୀ ଯୋଦ୍ଧାମାନେ ଗାଁକୁ ଗାଁ ପରିକ୍ରମା କଲେ । ମାଳପୁରା ଗାଁରେ ରାଜାଘର ଧାନ ଅମାର । ରଜାଘର ନିଅଣ୍ଟିଆ ପ୍ରଜାଙ୍କୁ ଧାନ କରଜ ଦେଇ ଦେଢ଼ଗୁଣ ଆଦାୟ କରେ । ତାହାକୁ ଦଖଲ କରି ଅମାରର ସବୁ ଧାନ ନିଅଣ୍ଟିଆ ପ୍ରଜାଙ୍କୁ ବାଣ୍ଟି ଦିଆଗଲା । ପଳାଶୁଣି ବିଶରେ ପଶି ସେପ୍ଟେମ୍ବର ୨ ତାରିଖରେ ଚାନ୍ଦପୁର ଥାନା ଓ ତହସିଲ ଅଫିସ ପୋଡ଼ି ଦିଆଗଲା ।

ପରଜଂଗ ଥାନା ଦଖଲ ଅଭିମୁଖେ ଅଗଷ୍ଟ ଆନ୍ଦୋଳନକାରୀମାନେ ଆଗେଇଥିବା ବେଳେ ଢେଙ୍କାନାଳଗଡ଼ରୁ ସଶସ୍ତ୍ର ପୁଲିସ ଫଉଜ ପହଂଚିଗଲେ । ପରଜଂଗ ଯିବା ବାଟରେ ପଡ଼ିଲା ଜନ୍ମପଡ଼ା ଗାଁ । ସଙ୍ଗରେ ହଜାରରୁ ଅଧିକ ଲୋକ ଚାଲିଥାନ୍ତି । ସଶସ୍ତ୍ର ପୁଲିସ ହଠାତ୍ ଘେରି ଆସିଲେ । ସେଠାରେ ଚାଲିଲା ଉଭୟଙ୍କ ପକ୍ଷରୁ ଆକ୍ରମଣ ଓ ପ୍ରତି ଆକ୍ରମଣ । ଆଧୁନିକ ମାରଣାସ୍ତ୍ରରେ ସଜ୍ଜିତ ସଶସ୍ତ୍ର ବାହିନୀର ଗୁଳିରେ କୁସୁମୁଣ୍ଡା ଗାଁର ବେଣୁ ସାହୁ ଓ ତୋରଡ଼ାନଳୀ ଗାଁର ବୀର ସାହୁ ସଙ୍ଗେ ସଙ୍ଗେ ଟଳିପଡ଼ିଲେ । ବୈଷ୍ଣବ ପଟ୍ଟନାୟକ ଗୁରୁତର ଆହତ ହୋଇ ଥିଲେ ହେଁ ବଂଚିଗଲେ ଓ ସାଥୀ ନବଘନ ବେହେରାଙ୍କୁ ସଙ୍ଗରେ ଧରି ଗୁଳି ଲୁଗା ଦେହକୁ ଧରି କଟକରେ ପହଂଚିଲେ । ଗୋପନରେ ଦେହରୁ ଗୁଳି ବାହାର କରି ଚିକିତ୍ସା ଲାଗି କଟକ ଆନ୍ଦୋଳନ କେନ୍ଦ୍ର ତାଙ୍କୁ କଲିକତା ପଠାଇଦେଲା ।

ଜନ୍ମପଡ଼ାରେ ପୁଲିସ ଓ ସଂଗ୍ରାମୀମାନଙ୍କ ମଧ୍ୟରେ ମୁହାଁମୁହିଁ ଖଣ୍ଡ ସମର । ପରଦିନ ଦେବରାଜ ପାତ୍ରଙ୍କ ନେତୃତ୍ୱରେ ଗଂଗତିଆ ଫାଣ୍ଡି ଓ ଫରେଷ୍ଟବିଟ ଘରକୁ ଜାଳି ଦିଆଗଲା ।

**ସମୂହ ଜରିମାନା ଫାଶୀ ଦଣ୍ଡାଦେଶ :**

ଏହା ପରେ ପରେ ପଲିଟିକାଲ ଡ଼ିପାର୍ଟମେଣ୍ଟର ଖୋଦ ତତ୍ତ୍ୱାବଧାନରେ ଢେଙ୍କାନାଳରେ ଯେଉଁପ୍ରକାର ଦମନନୀତି ଅବଲମ୍ବନ କରାଯିବ ତାହାକୁ କାର୍ଯ୍ୟକାରୀ କରାଗଲା । ପଲିଟିକାଲ ଏଜେଣ୍ଟ ଅଗଷ୍ଟ ମାସ ୩୧ ଏବଂ ସେପ୍ଟେମ୍ବର ୧୨ରେ ଢେଙ୍କାନାଳ ଆସି ବୈଷ୍ଣବଙ୍କୁ ଆଗରୁ ଗିରଫ ନ କରିବାରେ ପ୍ରଶାସନର ଅପାରଗତାକୁ ସମାଲୋଚନା କରି ଦୃଢ଼ ହସ୍ତରେ ଦମନ ଚଳାଇବାକୁ ନିର୍ଦ୍ଦେଶ ଦେଇଗଲେ । ମଢ଼ି, ପରଜଂଗ, ଭୁବନ ନିହାଲଲ ପ୍ରସାଦ, ଚାନ୍ଦପୁର ପ୍ରଭୃତି ସ୍ଥାନରେ ସୈନ୍ୟ ସାମନ୍ତ ସହ ମାଜିଷ୍ଟ୍ରେଟମାନେ ନିଯୁକ୍ତ ହେଲେ । ରାତି ପହରା ଚାରିଆଡ଼େ ବ୍ୟବସ୍ଥା କରାଗଲା । ବଣୁଆ ହାତୀ, ବାଘ ଘଉଡ଼େଇବା ପାଇଁ କେହି କେହି ଯେଉଁ ବନ୍ଧୁକ ଲାଇସେନ୍ସ ପାଇଥିଲେ ତାହାକୁ ରଦ୍ଦ କରି ବନ୍ଧୁକ ଜବତ୍ କରି ନିଆଗଲା । ଉପଦ୍ରବକାରୀ ବିଚାର କରାଯିବା ଗ୍ରାମଗୁଡ଼ିକ ଉପରେ ୫୬୩୦୦ ଟଙ୍କା ସମୂହ ଜରିମାନା ବସାଗଲା । ପ୍ରତିଗାଁରୁ ଜୋରଜବରଦସ୍ତ ଆଦାୟ କରାଗଲା । ସମୂହ ଜରିମାନା ଧାର୍ଯ୍ୟ ହୋଇଥିବା ଗାଁ ଓ ପରିମାଣ ହେଲା – କୁଆଁଳୋ ୬ ହଜାର, ମାଳପୁରା ୪ ହଜାର, ପଙ୍ଗାତିରା ଓ ଆଲୁଡ଼ୋମା ପ୍ରତ୍ୟେକ ୩ ହଜାର, ମଢ଼ି ଅଢ଼େଇ ହଜାର, ପଳାଶୁଣି ଓ ମହାବିରୋଡ଼ ପ୍ରତ୍ୟକ ୨ ହଜାର, ସରବେରିଣୀ ୧୫ ଶହ, କମଳାଙ୍ଗ ଓ ଡ଼ମୋଳ ପ୍ରତ୍ୟେକ ୧ ହଜାର, ବିରିବୋରେଇ, ଚାନ୍ଦପୁର ପ୍ରତ୍ୟେକ ୬ ଶହ ଓ ଝିଲି ୫ ଶହ ଟଙ୍କା । ଗାଁକୁ ଗାଁରେ ସଶସ୍ତ୍ର ପୁଲିସ ପଶି ସମୂହ ଚାନ୍ଦା ଆଦାୟ କଲାବେଳେ ଡାମୋଳ ପରଂଜଗ ପ୍ରଭୃତି ଅଂଚଳରେ ଘରଦ୍ୱାର ଭାଙ୍ଗି ଦିଆଯାଇଥିଲା । ପୁଣି ବେଠି ପ୍ରବର୍ତ୍ତନ କରାଯାଇ ରାସ୍ତାଘାଟ, ଥାନା, ସରକାରୀ ଦପ୍ତରଗୁଡ଼ିକୁ ନିର୍ମାଣ କରାଗଲା ।

୧୯୪୨ ସେପ୍ଟେମ୍ବର ୧୮ରେ ବୈଷ୍ଣବ ପଟ୍ଟନାୟକଙ୍କୁ ଧରାଇ ଦେବାକୁ ୩୬୦୦ ଟଙ୍କା ପୁରସ୍କାର ଘୋଷଣା କରି ହୁଲିଆଜାରି କରାଗଲା । ମହମ୍ମଦ ବସିର ନାମକ ଆସିଷ୍ଟାଣ୍ଟ କମିଶନରଙ୍କ ସ୍ୱାକ୍ଷରରେ ତାଙ୍କ ଉଚ୍ଚତା, ରଙ୍ଗ, ମୁଖଭଙ୍ଗୀ, ଦାଗ ଚିହ୍ନର ବର୍ଣ୍ଣନା ଥାଇ ସେ ନାରୀବେଶ, ମୂଲିଆ ବେଶ ଧାରଣ କରୁଥିବା ସୂଚନା ଦିଆଯାଇ ଚାରିଆଡ଼େ ପ୍ରଚାରପତ୍ର ବଣ୍ଟାଗଲା । ମୂଷା ମଲିକ, ଆନନ୍ଦ ସ୍ୱାଇଁ ଅନୁକୂଳ ସାହୁ ଓ ବାଇଧର ସ୍ୱାଇଁଙ୍କ ଧରିଦେବା ପାଇଁ ତିନିଶହ ଟଙ୍କା ଲେଖାଏଁ ପୁରସ୍କାର ଘୋଷଣା କରାଗଲା । ମଢ଼ି ଦଖଲରେ ମୂଷାମଲିକ ସମେତ ଭାଗ ନେଇଥିବା ସଂଗ୍ରାମୀମାନଙ୍କୁ ଗିରଫ କରି ନିଆଗଲା । ବିଚାରର ପ୍ରହସନ ଚାଲିଲା । ମୂଷା ମଲିକ, ଆନନ୍ଦ ସ୍ୱାଇଁ, ଅନୁକୂଳ ସାହୁଙ୍କୁ ଫାଶି ଦଣ୍ଡ ହୁକୁମ ହେଲା । ୧୨ ବର୍ଷର ବାଳକ ବାଇଧର ସ୍ୱାଇଁଙ୍କୁ ୬ ବର୍ଷ ସଶ୍ରମ କାରାଦଣ୍ଡ ମିଳିଲା । ପରେ ଅପିଲରେ ମୂଷା ମଲିକ ବ୍ୟତୀତ ଅନ୍ୟ ତିନିଜଣଙ୍କୁ ଆଜୀବନ କାରାଦଣ୍ଡାଦେଶ ମିଳିଲା । ବୈଷ୍ଣବ ଖସି ଯାଇଥିବାରୁ ନିଶ୍ଚିତ ଓ

ତୁରନ୍ତ ଫାଶିରୁ ରକ୍ଷା ପାଇଲେ। ବୈଷ୍ଣବ କଲିକତାରେ ଜଣେ ଅଗଷ୍ଟ ଆନ୍ଦୋଳନାକାରୀଙ୍କ ପାଖରେ ପହଞ୍ଚି ଡାକ୍ତରଖାନାରେ ଭର୍ତ୍ତି ହେଲେ। ତାଙ୍କ କାଖସନ୍ଧିରୁ ଗୁଳି ବାହାର କରିଗଲା। ପରେ ବଙ୍ଗଳାରେ କମ୍ୟୁନିଷ୍ଟପାର୍ଟି ଓ ପି.ସି. ଯୋଷୀ ତାଙ୍କୁ ଗୋପନରେ ୧୯୪୬ ମସିହା ପର୍ଯ୍ୟନ୍ତ ଆତ୍ମଗୋପନରେ ରଖାଇ ଫାଶୀ ମୁହଁରୁ ରକ୍ଷା କଲେ। ମିଶ୍ରଣ ପରେ ମୂଷାମଳିକ ଫାଶିଦଣ୍ଡରୁ ମୁକ୍ତି ପାଇଲେ। ଅଳ୍ପଦିନ ପରେ ମୃତ୍ୟୁ ମୁଖରେ ପଡ଼ିଲେ।

ଆନ୍ଦୋଳନ ବେଳେ ଯେଉଁମାନେ ଢେଙ୍କାନାଳ ଜେଲରେ ରହିଥିଲେ ପୂର୍ବରୁ ବର୍ଣ୍ଣିତ ନାମଗୁଡ଼ିକ ଛଡ଼ା ୧୯୪୨ରେ ଦେବରାଜ ପାତ୍ର; ତ୍ରିଲୋଚନ ପ୍ରଧାନ ରାଜକିଶୋର ଦାସ, ଗିରୀଶଚନ୍ଦ୍ର ସିଂହ, ମହନ୍ତ ପ୍ରଧାନ, ଶ୍ରୀଧର ସାହୁ, ନାରାୟଣ ପାଣି, ମନୁସିଂହ, ବ୍ରଜ ସିଂ, ବ୍ରଜ ମହାନ୍ତି, କପିଳେଶ୍ୱର ବେହେରା, ପାର୍ବତୀ ଚରଣ ମହାପାତ୍ର, ଗୋଲକ ପାତ୍ର, ଶ୍ୟାମ ହାତୀ, ବାଲକୃଷ୍ଣ ଦଳେଇ, ରଘୁରାମ ଦେହୁରୀ, ସତ୍ୟବାଦୀ ଦାସ, ବଳଭଦ୍ର ପାଣି, ହରେକୃଷ୍ଣ ବିଶ୍ୱାଳ, ଫକୀର ସାହୁ, ବୈରାଗୀ ସିଂହ, ଗୌରାଙ୍ଗ ବେହେରା, ଗୋପବନ୍ଧୁ ସାହୁ, ଭଗବାନ ପାତ୍ର, ବିଦ୍ୟାଧର ବେହେରା, କପିଳେଶ୍ୱର ବେହେରା, ଧନେଶ୍ୱର ପଣ୍ଡା, କାହ୍ନୁ ସାହୁ, ଦିବାକର ବିଶ୍ୱାଳ, ଭାଗିରଥୀ ସାହୁ, ଦିବାକର ସାମଲ, କିଶୋର ଚନ୍ଦ୍ର ବେହେରା ପ୍ରଧାନ ପ୍ରମୁଖ, ଆଉ ଅନେକ।

ଗଡ଼ଜାତ ଗଡ଼ଜାତ ମଧରେ ବନ୍ଦୀ ବିନିମୟ ବୁଝାମଣା ହୋଇ ଆଠଗଡ଼ ଜେଲକୁ ଢେଙ୍କାନାଳ ଜେଲରୁ କେତେକ ବନ୍ଦୀଙ୍କୁ ପଠାଯାଇଥିଲା। ଆଠଗଡ଼ ଜେଲରୁ ମଧ ସେଠାରେ ପ୍ରଜାମଣ୍ଡଳ ନେତା ବ୍ରଜକିଶୋର ପଟ୍ଟନାୟକ ତାଙ୍କ ଭାଇ ନନ୍ଦକିଶୋର ପଟ୍ଟନାୟକଙ୍କୁ ତଥା ଅଚ୍ୟୁତାନନ୍ଦ ଦାଶ, ବିବେକାନନ୍ଦ ରଥ, ଲିଙ୍ଗରାଜ ଜେନା, ପ୍ରଭୃତି ରାଜବନ୍ଦୀଙ୍କୁ ଢେଙ୍କାନାଳ ଜେଲରେ ଆଣି ରଖାଯାଇଥିଲା।

ଢେଙ୍କାନାଳର ପ୍ରଜା ଆନ୍ଦୋଳନରେ ମଡ଼ି ଦଖଳର ଗରିମାକୁ ଜନମାନସରୁ ଲିଭେଇ ଦେବା ଲାଗି ଢେଙ୍କାନାଳର ରଜା ନିଜ ପୁଅ ନାମରେ ତାହାର ନାମ କାମାକ୍ଷାନଗର ଦେଇଦେଲେ। ମାତ୍ର ଇତିହାସରେ ମଡ଼ିର ଗରିମାକୁ ଲିଭେଇ ହେବ ନାହିଁ। ଦିନେନା ଦିନେ ଓଡ଼ିଶା ଓ ଭାରତବାସୀ ଏହାର ମଡ଼ି ନାମ ଉଦ୍ଧାର କରିବାକୁ ଉଦ୍ୟମ କରି ଯଶସ୍ୱୀ ହେବେ।



# କାବିନେଟ ମିଶନ ପ୍ରସ୍ତାବରେ ଦେଶୀୟ ରାଜ୍ୟ ପ୍ରସଙ୍ଗ

କେଉଁ ପରିସ୍ଥିତିର ବ୍ରିଟିଶ ସରକାର ଭାରତକୁ କାବିନେଟ ମିଶନ ପଠାଇଲା ଏବଂ ଭାରତର ସ୍ୱାଧୀନତା ପ୍ରଶ୍ନ ସହିତ ଦେଶୀୟ ରାଜ୍ୟଗୁଡ଼ିକଙ୍କ ପ୍ରଶ୍ନ ଓ ସମସ୍ୟା ସଂକ୍ରାନ୍ତରେ କାବିନେଟ ମିଶନର କ'ଣ ଯୋଜନା ଥିଲା, ତାହାର ସଂକ୍ଷେପ ଉଲ୍ଲେଖ ଆବଶ୍ୟକ।

୧୯୪୫ ଦ୍ୱିତୀୟାର୍ଦ୍ଧରେ ଦ୍ୱିତୀୟ ବିଶ୍ୱ ଯୁଦ୍ଧର ସମାପ୍ତି ଘଟିଥିଲା। ମାନବ ସଭ୍ୟତା ଓ ମାନବଜାତିର ପରମ ଶତ୍ରୁ ଫାସିବାଦ ପରାଜିତ ହୋଇଥାଏ। ୧୯୪୫ ମଧ୍ୟଭାଗରେ ଭାରତଛାଡ଼ ଆନ୍ଦୋଳନ କାଳରେ ବ୍ରିଟିଶ ଭାରତ ଓ ଗଡ଼ଜାତଗୁଡ଼ିକର ଜେଲରେ ଥିବା ରାଜନୈତିକ ବନ୍ଦୀମାନଙ୍କ ମୁକ୍ତି ହୋଇଗଲା।

ଦ୍ୱିତୀୟ ବିଶ୍ୱଯୁଦ୍ଧରେ ମିତ୍ର ପକ୍ଷରେ ଥିବା ସାମ୍ରାଜ୍ୟବାଦୀ ଉପନିବେଶବାଦୀ ଦେଶମାନେ ବିଚାରିଲେ ଯେ, ସେମାନେ ପୂର୍ବପରି ପରାଧୀନ ଦେଶଗୁଡ଼ିକୁ ଶୋଷଣ ଲୁଣ୍ଠନ କରି ଚାଲିବେ। ବ୍ରିଟିଶ ସରକାର ଓ ଗଡ଼ଜାତର ରାଜା, ନବାବ, ମହାରାଜାମାନେ ବିଚାରିଥିଲେ ଯେ ସେମାନଙ୍କ ଦମନ, ଗୁଳି, ଫାଶି ସମୂହ ଜୋରିମାନା ଓ ଦୀର୍ଘଦିନ କାରାଦଣ୍ଡ ଭାରତରେ ସ୍ୱାଧୀନତା ସଂଗ୍ରାମୀ ଓ ଗଡ଼ଜାତ ପ୍ରଜାମାନଙ୍କ ଅଣ୍ଟା ଭାଙ୍ଗି ଦେଇଛି।

ମାତ୍ର ଯୁଦ୍ଧ ପରବର୍ତ୍ତୀ କାଳରେ ପୃଥିବୀରେ ଶକ୍ତି ଭାରସାମ୍ୟ ବଦଳିଗଲା। ପୃଥିବୀରେ ଯେତେଯେତେ ପରାଧୀନ ଦେଶ ଥିଲେ, ସେଠାରେ ମୁକ୍ତି ଓ ସ୍ୱାଧୀନତାର ଆନ୍ଦୋଳନ ମୁଣ୍ଡ ଟେକିଲା। ତତ୍କାଳୀନ ସୋଭିଏତ୍ ୟୁନିୟନ୍ ଏସବୁ ପରାଧୀନ ଦେଶର ସ୍ୱାଧୀନତା ସଂଗ୍ରାମକୁ ନୈତିକ, ରାଜନୈତିକ ଏମିତିକି କେତେକ କ୍ଷେତ୍ରରେ ବୈଷୟିକ ସାହାଯ୍ୟ ଦେଲା। ଚୀନରେ ବିପ୍ଳବ ଅଧିକ ପ୍ରଖର ହେବାରେ ଲାଗିଲା। ବିଲାତ, ଫ୍ରାନ୍ସ, ଇଟାଲୀ, ହଲାଣ୍ଡ ଯେଉଁସବୁ ଉପନିବେଶକୁ ଯୁଦ୍ଧରେ ହରାଇଥିଲେ, ତାହାକୁ ପୁନର୍ବାର ଦଖଲ କରିବା ଉଦ୍ୟମର ବିରୋଧ କରି ଇଣ୍ଡୋନେସିଆ, ମାଳୟ, ବର୍ମା, ଇଣ୍ଡୋଚୀନ ପ୍ରଭୃତି ଦେଶରେ ଲୋକଙ୍କ ସଶସ୍ତ୍ର ପ୍ରତିରୋଧ ଆରମ୍ଭ ହୋଇଗଲା।

ଭାରତବର୍ଷର ସ୍ୱାଧୀନତା ସଂଗ୍ରାମରେ ଠିକ୍ ଏହି ସମୟରେ ଚମକ୍‌ପ୍ରଦ ଦୁଇଟି ଘଟଣା ଘଟିଲା। ତାହାହିଁ ବ୍ରିଟିଶ ସାମ୍ରାଜ୍ୟବାଦର ଭାରତକୁ ପରାଧୀନ କରି ରଖିବାର ଅହଂକାର ଓ ଆଶାକୁ ଧୂଳିସାତ୍ କରିଦେଲା। ନେତାଜୀ ସୁବାଷ ବୋଷଙ୍କ ଭାରତୀୟ ଜାତୀୟ ବାହିନୀ

(ଆଇ.ଏନ୍.ଏ)ର ବୀରମାନଙ୍କୁ ଯୁଦ୍ଧ ପରେ ବ୍ରିଟିଶ ସରକାର ଲାଲ୍‌କିଲାରେ ବନ୍ଦୀ କରିଦେଲା । ସେମାନଙ୍କ ବିରୁଦ୍ଧରେ ଦେଶଦ୍ରୋହ ମକଦ୍ଦମା ଚଳେଇ ସେମାନଙ୍କୁ ଶୂଳିରେ ଚଢ଼ାଇବାର ଦାମ୍ଭିକତା ଦେଖାଉଥିଲା ।

ସାରା ଭାରତରେ ତାହାର ପ୍ରତିବାଦର ସୁଅ ଛୁଟିଲା । କଲିକତା, ଦିଲ୍ଲୀ, ବମ୍ବେ ସବୁ ନଗରନଗରୀର ଜାତୀୟ ମୁକ୍ତିବାହିନୀର ନେତାମାନଙ୍କ ଖଲାସ ଦାବୀ କରି ଲକ୍ଷ ଲକ୍ଷ ଭାରତବାସୀ ଯୁବକ ଛାତ୍ର, ଶ୍ରମିକ, ବୁଦ୍ଧିଜୀବୀ, ମହିଳା ରାସ୍ତା ଉପରକୁ ଆସିଗଲେ । ଗୁଳିକୁ ପରବାୟ କଲେ ନାହିଁ । ରସିଦ୍ ଅଲି, ଶାହା ନବାଜ, ଧିଲନ, ଲକ୍ଷ୍ମୀ ସାଇଗଲ ପ୍ରଭୃତିଙ୍କ ମୁକ୍ତି ଦାବୀ ଏକ ନାହିଁ ନଥିବା ଗଣ ଆନ୍ଦୋଳନରେ ପରିଣତ ହୋଇଗଲା ।

୧୯୪୬ ଫେବୃଆରୀ ୧୯ ତାରିଖ । ସେହି ଦିନଟି ଥିଲା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଆମ ଦୁଇଶହ ବର୍ଷରର ସ୍ୱାଧୀନତା ସଂଗ୍ରାମରେ ନିୟାମକ, ନିଷ୍ପତ୍ତିମୂଳକ । ବମ୍ବେରେ ନୌବାହିନୀର ବିଦ୍ରୋହ । ଶିଖ, ମୁସଲମାନ, ହିନ୍ଦୁ ସବୁ ଭାରତୀୟ ନୌସେନାନୀ ବ୍ରିଟିଶ କମାଣ୍ଡକୁ ଅସ୍ୱୀକାର କଲେ । ସେମାନଙ୍କ ଉପରେ ଦମନ ଚାଲିଲା । ତାର ପ୍ରତିବାଦରେ ବମ୍ବେ ନଗରୀ ଓ ଅନ୍ୟତ୍ର ଲକ୍ଷ ଲକ୍ଷ ଭାରତବାସୀଙ୍କ ବିଦ୍ରୋହ, ବିକ୍ଷୋଭ । କଂଗ୍ରେସ, ମୁସ୍‌ଲିମ୍ ଲିଗ୍, କମ୍ୟୁନିଷ୍ଟମାନଙ୍କ ପତାକା ଧରି ନୌସୈନ୍ୟ ଓ ଜନତା ରାଜରାସ୍ତାରେ ଏକ ହୋଇଗଲେ । ଗୁଳି ଚାଲିଲା । ବମ୍ବେରେ ଦୁଇ ଶତାଧିକ ଭାରତବାସୀ ଶହୀଦ୍ ହେଲେ । ଏଥି ସଙ୍ଗେ ସଙ୍ଗେ ଠିକ ସେହି ସମୟରେ ଦିଲ୍ଲୀରେ ବ୍ରିଟିଶ ପୁଲିସ ବାହିନୀ ଧର୍ମଘଟ କରିଦେଲେ – ତାହା ଅନ୍ୟ ସହରକୁ ବ୍ୟାପି ଚାଲିଲା ।

ଆଉ ବ୍ରିଟିଶ ସାମ୍ରାଜ୍ୟବାଦର ନିସ୍ତାର ନାହିଁ । ତାର ଶେଷ ସମ୍ବଳ, ତାର ଆଶାବାଡ଼ି ସେନା ଓ ପୁଲିସ । ସେମାନଙ୍କ ବିଦ୍ରୋହ ଓ ସାରା ଭାରତବାସୀଙ୍କର ସେମାନଙ୍କୁ ସମର୍ଥନ । ଠିକ୍ ସେହି ୧୯୪୬ ଫେବୃଆରୀ ୧୯ ତାରିଖ ରାତିରେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଅଟଲି ଏକ ଘୋଷଣା କଲେ । ଭାରତକୁ କ୍ଷମାତ ହସ୍ତାନ୍ତର ସଂପର୍କରେ ଭାରତୀୟ ନେତାମାନଙ୍କ ସହିତ ଆଲୋଚନା କରିବାକୁ ଏକ କାବିନେଟ ମିଶନ ପଠାଯାଉଛି ବୋଲି ଘୋଷିତ ହେଲା ।

ନୌବାହିନୀ ବିଦ୍ରୋହର ପଞ୍ଚମ ଦିନ ୧୯୪୬ ଫେବୃଆରୀ ୨୪ ତାରିଖରେ ଭାରତରେ କାବିନେଟ ମିଶନ ପହଞ୍ଚିଗଲା ।

ବିଶ୍ୱଯୁଦ୍ଧ କାଳରେ ଭାରତକୁ ସ୍ୱାୟତ୍ତଶାସନ ଦିଆଯିବ, ଏହି ପ୍ରକାର ପ୍ରସ୍ତାବ ଘେନି ସାର ଷ୍ଟାଫୋର୍ଡ କ୍ରିପ୍ସଙ୍କ ନେତୃତ୍ୱରେ ଏକ ମିଶନ ଆସିଥିଲା । ୧୯୪୮ ଜୁନ୍ ମାସରେ ଭାରତକୁ ସ୍ୱାୟତ୍ତ ଶାସନ ଦିଆଯିବ, ସେଥିଲାଗି ଯେଉଁ ସମ୍ବିଧାନ ସଭା ହେବ, ସେଥିକୁ ବ୍ରିଟିଶ ଭାରତର ରାଜନୈତିକ ଦଳଗୁଡ଼ିକର ପ୍ରତିନିଧିଙ୍କ ସାଙ୍ଗକୁ ରାଜା ମହାରାଜାମାନଙ୍କ ପ୍ରତିନିଧି ରହିବେ ବୋଲି କ୍ରିପ୍ସଙ୍କ ପ୍ରସ୍ତାବ ଥିଲା । ୧୯୪୨ ଏପ୍ରିଲ ୨ ତାରିଖରେ ଅଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀ କ୍ରିପ୍ସ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଲା । ଗଡ଼ଜାତଗୁଡ଼ିକର ପ୍ରତିନିଧି ରାଜା, ମହାରାଜା

ନବାବ, ନିଜାମ ନୁହଁନ୍ତି, ପ୍ରତିନିଧି ହେବେ ପ୍ରଜା, ସେମାନଙ୍କ ପ୍ରଜାମଣ୍ଡଳ ବୋଲି ବ୍ରିଟିଶ ସରକାରକୁ ଚେତେଇ ଦିଆଗଲା ।

ଏଥର ଦେଶୀୟ ରାଜ୍ୟଗୁଡ଼ିକର ଭାଗ୍ୟଭବିଷ୍ୟତ୍ କ'ଣ ହେବ ସେ ସଂପର୍କରେ କାବିନେଟ ମିଶନ ୧୯୪୬ ମଇ ୨୨ ତାରିଖରେ ତାହାର ନୀତି ବୟାନ କରିଥିଲା । ଭବିଷ୍ୟତରେ ଭାରତକୁ କ୍ଷମତା ହସ୍ତାନ୍ତରବେଳେ ବ୍ରିଟିଶ ସମ୍ରାଟଙ୍କର ଦେଶୀୟ ରାଜ୍ୟଗୁଡ଼ିକ ଉପରେ ଯେଉଁ ସର୍ବୋଚ୍ଚ କ୍ଷମତା (ପାରାମାଉଣ୍ଟସି) ଅଛି, ତାହା ଆଉ ରହିବ ନାହିଁ । ଅନ୍ୟ ପକ୍ଷରେ ଏହି ସର୍ବୋଚ୍ଚ କ୍ଷମତା ମଧ୍ୟ ଭାରତରେ ଗଢ଼ା ହେବାକୁ ଥିବା ସରକାରକୁ ହସ୍ତାନ୍ତର କରାଯିବ ନାହିଁ । ଏହି ଦେଶୀୟ ରାଜାମାନେ ପ୍ରତିରକ୍ଷା, ପରରାଷ୍ଟ୍ର ନୀତି ଓ ଯୋଗାଯୋଗ ଏହି ତିନୋଟି ବିଷୟକୁ ଭାରତ ସରକାରକୁ ହସ୍ତାନ୍ତର କରିବେ ।

ଏଥର ଅର୍ଥ ରାଜନୈତିକ, ପ୍ରଶାସନିକ ଭାରତବର୍ଷ ଭିତରେ ଆଉ ଏକ ରାଜନୈତିକ ପ୍ରଶାସନିକ ଭାରତବର୍ଷ ରହିବ । କର୍ତ୍ତୃତ୍ୱ ରହିବ ପୂର୍ବର ରାଜନ୍ୟବର୍ଗଙ୍କ ହାତରେ । ସେମାନେ ସ୍ୱାଧୀନ, ସାର୍ବଭୌମ । ସେମାନଙ୍କ ଉପରେ କାହାର ପାରାମାଣ୍ଟସି ବା ସର୍ବୋଚ୍ଚ କ୍ଷମତା ରହିବ ନାହିଁ ।

ଏହା ହିଁ ଥିଲା ବ୍ରିଟିଶ ସାମ୍ରାଜ୍ୟବାଦୀ ଚାଲ୍ । ଭାରତକୁ କ୍ଷମତା ହସ୍ତାନ୍ତରକୁ ପଙ୍ଗୁ କରି ଦିଆଯିବ ଓ ବ୍ରିଟିଶ ସରକାରଙ୍କୁ ସାହାଯ୍ୟ କରିବାରେ ଏହି ଦେଶୀୟ ରାଜ୍ୟଗୁଡ଼ିକର ଶାସକମାନେ ପ୍ରଧାନ ଅବଲମ୍ବନ, ହାତବାରିସୀ ଓ ବଚସ୍କର ହୋଇ ରହିବେ । ପ୍ରଜାମଣ୍ଡଳଗୁଡ଼ିକ ଦଶାବ୍ଦୀ ଦଶାବ୍ଦୀ କାଳ ଯେଉଁ ଦାବୀ କରି ଆସିଛନ୍ତି, ସେସବୁ ଦାବୀ  ଅଗ୍ରାହ୍ୟ ହେବ । ଦେଶୀୟ ରାଜ୍ୟଗୁଡ଼ିକର ପ୍ରଜାମାନେ ପୂର୍ବପରି ରାଜା ମହାରାଜା ନବାବ ନିଜାମଙ୍କ ଶାସନ ପ୍ରଜା ହୋଇରହିବେ । ସେମାନେ ଭାରତୀୟ ପଦବାଚ୍ୟ ହେବେ ନାହିଁ କି ତାହାର ଷୋଳଣା ନାଗରିକ ହେବେ ନାହିଁ ।

କାବିନେଟ ମିଶନର ଏପରି ପ୍ରସ୍ତାବକୁ ଦେଶୀୟ ରାଜ୍ୟ ସମୂହର ରାଜନ୍ୟମଣ୍ଡଳୀ ସ୍ୱାଗତ କଲେ । ଯେତିକି ସାମାନ୍ୟ ସୁଯୋଗ ସୁବିଧା ହରାଇବେ, ସେଥିଲାଗି ସେମାନେ ବ୍ରିଟିଶ ସରକାରଙ୍କ ପାଖରେ ଅଳି, ଖୁସାମତ୍ କରିବା ସଂଗେ ସଂଗେ ବିବିଧ ଚାପ ସୃଷ୍ଟି କଲେ ।

କାବିନେଟ ମିଶନର ଏହି ଖଳ ଯୋଜନାକୁ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ ପ୍ରତ୍ୟାଖ୍ୟାନ କରି ବିବୃତି ଦେଲା । ୧୯୪୬ ମଇ ୨୪ କଂଗ୍ରେସ କାର୍ଯ୍ୟକାରୀ କମିଟି ମଧ୍ୟ ଏହାର ବିରୋଧ କଲା । ଦେଶର ବାମପନ୍ଥୀ ପ୍ରଗତିଶୀଳ ଦଳମାନେ ବ୍ରିଟିଶର ଏହି ଚାଲ ବିରୁଦ୍ଧରେ ପ୍ରତିବାଦ ଧ୍ୱନିତ କଲେ ।

କାବିନେଟ ମିଶନର ଏହି ପ୍ରସ୍ତାବଟିରେ ଆଉ ଏକ ଗୂଢ଼ ଚକ୍ରାନ୍ତ ନିହିତ ଥିଲା । ଏକ ଦିଗରେ ସବୁ ଦେଶୀୟ ରାଜାଙ୍କୁ ଭବିଷ୍ୟତ ଭାରତ ବିରୁଦ୍ଧରେ [illegible] ାରିବ । ଅନ୍ୟ

ଦିଗରେ ପଡ଼ୋଶୀ ପ୍ରଦେଶଗୁଡ଼ିକ ସହିତ ଦେଶୀୟ ରାଜ୍ୟଗୁଡ଼ିକ ମିଶିବେ ବୋଲି ଯେଉଁ ପ୍ରଜା ଆନ୍ଦୋଳନ ନିର୍ଦ୍ଧାରଣ କରିଥିଲା, ସେଥିରେ କେତେକ ପ୍ରଜାମଣ୍ଡଳର ନେତା ଅମତ ଥିଲେ। ସେପରି ପ୍ରଜାମଣ୍ଡଳଗୁଡ଼ିକର ନେତାମାନଙ୍କ ମଧ୍ୟରେ ମତଭେଦ ବଢ଼ିବ। ସତକୁ ସତ ଏପରି ମତଭେଦ ପ୍ରକାଶ ପାଇଲା।

ଏହି ପ୍ରକାର ପରିସ୍ଥିତିର ସୁଯୋଗ ନେଲେ କେତେକ ଦେଶୀୟ ରାଜ୍ୟର ଶାସକ। କାଶ୍ମୀରର ମହାରାଜା, ତିବ୍ରାଙ୍କୁଡ଼କୋଚିନର ମହାରାଜା, ହାଇଦ୍ରାବାଦର ନିଜାମ ଓ ଭୋପାଳର ନବାବ ଏହାର ବିରୋଧ କରିଥିଲେ। ସେମାନେ ସ୍ୱାଧୀନ ରହିବେ; ପଡ଼ୋଶୀ ପ୍ରଦେଶରେ ମିଶିବେ ନାହିଁ ବୋଲି ଘୋଷଣା କରିଦେଲେ। ଅନ୍ୟାନ୍ୟ ଦେଶୀୟ ରାଜ୍ୟର ଶାସକ ବିଭିନ୍ନ ସର୍ତ୍ତ ଆରୋପ କରି ସନ୍ନିକଟ ପ୍ରଦେଶରେ ମିଶିବାକୁ ବାଧ୍ୟ ହୋଇଥିଲେ ହେଁ ଜାମ୍ମୁକାଶ୍ମୀରର ମହାରାଜା ହରିସିଂହ ଭାରତ ସହିତ ମିଶିବେ ନାହିଁ ବୋଲି କହିଲେ ଏବଂ ପାକିସ୍ତାନ ସହିତ ଏକ ଷ୍ଟାଣ୍ଡଷ୍ଟିଲ (ସ୍ଥିତାବସ୍ଥା) ରାଜିନାମା ଲାଗି ଆଲୋଚନା ଚଳାଇଲେ। ଭାରତୀୟ ଦେଶୀୟ ରାଜ୍ୟ ପ୍ରଜାମଣ୍ଡଳୀର ଜାମ୍ମୁକାଶ୍ମୀରର ଜାତୀୟ ସମ୍ମିଳନୀର ନେତା ଶେଖ୍ ଅବଦୁଲ୍ଲାଙ୍କ ନେତୃତ୍ୱରେ ମହାରାଜାଙ୍କ ଡୋଗ୍ରା ଶାସନ ବିରୁଦ୍ଧରେ ପ୍ରଚଣ୍ଡ ଆନ୍ଦୋଳନ ହୋଇଥିଲା। ନବଗଠିତ ପାକିସ୍ତାନ ମହାରାଜାଙ୍କ ଏପରି ନୀତିର ସୁଯୋଗ ଘେନି କାଶ୍ମୀରରେ ପାକିସ୍ତାନର ସୈନ୍ୟ ପ୍ରବେଶ କଲେ। ଶେଖ୍ ଅବଦୁଲ୍ଲାଙ୍କ ଜାତୀୟ ବାହିନୀର ସ୍ୱେଚ୍ଛାସେବୀ ବାହିନୀ ଅସ୍ତ୍ରଶସ୍ତ୍ର ଧରି ପାକିସ୍ତାନର ବିରୋଧ କଲେ। ବାଧହୋଇ ମହାରାଜା ହରି ସିଂହ ଭାରତ ସହିତ ମିଶ୍ରଣରେ ରାଜି ହେଲେ। ଏହାପରେ ଯାଇ ଭାରତର ସୈନ୍ୟ କାଶ୍ମୀରରେ ପ୍ରବେଶ କରିପାରିଲେ। ଉପତ୍ୟକାର ବହୁ ଅଂଶକୁ ପାକିସ୍ତାନ ଦଖଲରୁ ମୁକ୍ତ କଲେ। ସେହିଦିନଠୁଁ ଜାମ୍ମୁ ଓ କାଶ୍ମୀର ଭାରତ ପାକିସ୍ତାନ ମଧ୍ୟରେ ତିକ୍ତତାର କାରଣ ହୋଇ ରହିଆସିଛି।

ହାଇଦ୍ରାବାଦର ନିଜାମ, ଯିଏ କାଳ କାଳ ବ୍ରିଟିଶ ସରକାରକୁ ସାହାଯ୍ୟ କରିଥିଲେ, ସେ ମଧ ତୀବ୍ର ବିରୋଧ ହେଲା। ବିଶାଳ ଆନ୍ଧ୍ର ମହାସଭା ଓ ସେଥି ସହିତ ସଂଶ୍ଳିଷ୍ଟ ସେଠାର କମ୍ୟୁନିଷ୍ଟ ପାର୍ଟି ନିଜାମଙ୍କ ଦୁର୍ଦ୍ଧର୍ଷ ରାଜକର ସଶସ୍ତ୍ର ବାହିନୀର ସଶସ୍ତ୍ର ମୁକାବିଲା କଲା। ଚାରିହଜାର ପ୍ରଜା ପ୍ରାଣ ଦେଲେ। ତାହାପରେ ଭାରତ ସରକାର ସଶସ୍ତ୍ର ହସ୍ତକ୍ଷେପ କରି ହାଇଦ୍ରାବାଦ ଶାସନକୁ ଭାରତ ସରକାରଙ୍କ କର୍ତ୍ତୃତ୍ୱାଧୀନ କଲେ।

ସେମିତି ତ୍ରିବାଙ୍କୁଡ଼ କୋଚିନ ମହାରାଜାଙ୍କ ବିରୁଦ୍ଧରେ ପ୍ରଜା ଆନ୍ଦୋଳନ ଓ ସେଠାର କମ୍ୟୁନିଷ୍ଟ ପାର୍ଟି କଠୋର ସଂଗ୍ରାମ କଲେ। ଦୁଇଶହ ପ୍ରଜାଙ୍କୁ ମହାରାଜା ପୁନ୍ନାପ୍ର ଭାୟାଲରରେ ନିହତ କରିଥିଲେ।

ଠିକ୍ ଏହିପରି ନହେଲେ ହେଁ ଓଡ଼ିଶାର ୨୬ଟି ଦେଶୀୟ ରାଜ୍ୟର ଶାସକମାନେ ମିଶ୍ରଣର ତୀବ୍ର ବିରୋଧ କରିଥିଲେ। ପ୍ରଜାମଣ୍ଡଳଗୁଡ଼ିକ ସେମାନଙ୍କ ଚକ୍ରାନ୍ତକୁ ପଣ୍ଡ କରିବା

ଲାଗି ଆନ୍ଦୋଳନ ଚଳେଇଲେ । ଏହି ପର୍ଯ୍ୟାୟରେ ନୀଳଗିରି ଓ ଢେଙ୍କାନାଳର ପ୍ରଜା ଆନ୍ଦୋଳନର ଭୂମିକା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

**କାବିନେଟ ମିଶନ ଆସିବାପରେ**

ଭାରତର ବଡ଼ ବଡ଼ ୧୪୦ଟି ଦେଶୀୟ ରାଜ୍ୟର ଶାସକମାନେ ଚେମ୍ବରର୍ସ ଅଫ୍ ପ୍ରିନସେସ୍ ନାକ ଏକ ସଂଗଠନ ଗଢ଼ି ଭାରତ ସହିତ ମିଶ୍ରଣର ବିରୋଧ କରିବା ଆରମ୍ଭ କରିଦେଲେ । ପ୍ରସ୍ତାବିତ ସମ୍ବିଧାନ ସଭାକୁ ରାଜନ୍ୟବର୍ଗଙ୍କ ପ୍ରତିନିଧି ପ୍ରେରଣର ପଦ୍ଧତି ନ ବଦଳିଲେ, ସେମାନେ ସମ୍ବିଧାନ ସଭାକୁ ବର୍ଜନ କରିବେ ବୋଲି ଧମକ ଦେଲେ ।

୧୪୦ଟି ଦେଶୀୟ ରାଜ୍ୟର ଶାସକମାନଙ୍କ ଦ୍ୱାରା ଗଠିତ ଚେମ୍ବରର୍ସ ଅଫ୍ ପ୍ରିନ୍‌ସେସ୍ ସଦୃଶ ବିଭିନ୍ନ ରାଜ୍ୟର ରାଜାମାନେ ମିଳିତ ହୋଇ ଏପରି ସଂଗଠନମାନେ ଗଢ଼ିଲେ । ରାଜପୁତନାର ଦେଶୀୟ ରାଜ୍ୟର ଶାସକବର୍ଗ ଏକ ୟୁନିଅନ ଗଠନ କଲେ । ଗୁଜରାଟର କାଠିଆବାଡ଼ ଠାକୁରମାନେ ସେମାନଙ୍କର ଏକ ୟୁନିୟନ ଗଠନ କଲେ । ମଧ୍ୟ ଭାରତରେ ଥିବା ଦେଶୀୟ ରାଜ୍ୟର ଶାସକବର୍ଗ ସେମାନଙ୍କର ଏକ ୟୁନିଅନ ଗଢ଼ିଲେ ।

ଓଡ଼ିଶାର ରାଜାମାନେ ସେଥିରୁ ବାଦ୍ ପଡ଼ିଲେ ନାହିଁ । ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣର ବିରୋଧ ଲାଗି ଓଡ଼ିଶା ଓ ଛତିଶଗଡ଼ର ଦେଶୀୟ ରାଜ୍ୟଗୁଡ଼ିକୁ ଧରି ଇଷ୍ଟର୍ଣ୍ଣ ଷ୍ଟେଟସ୍ ୟୁନିଅନ୍ ଗଠନ କରାଗଲା । ୧୯୪୭ ଅଗଷ୍ଟ ୧ରେ ଓଡ଼ିଶା ଓ ଛତିଶଗଡ଼ର ରାଜାମାନେ ରାୟପୁରଠାରେ ଏପରି ୟୁନିଅନ ଗଠନ ଲାଗି ମିଳିତ ହୋଇଥିଲେ । ଏଥିରେ ମୟୁରଭଂଜ ଓ ବସ୍ତାରର ଶାସକ ଯୋଗ ଦେଇନଥିଲେ । ମୟୁରଭଂଜ ମହାରାଜାଙ୍କ ଚାଲ ପରେ ଜଣାପଡ଼ିଲା । ଆଠଗଡ଼ର ରାଜା ଅନୁଗୋଳକୁ ବ୍ରିଟିଶ ଭାରତରୁ କାଢ଼ି ନେଇ ଆଉସବୁ ଗଡ଼ଜାତ ଓଡ଼ିଶା ଭିତରେ ରହି ଅନ୍ୟ ଏକ ପ୍ରଦେଶ ହେଉ ବୋଲି ମତ ପ୍ରକାଶ କରିଥିଲେ । ପାଟନାର ମହାରାଜାଙ୍କ ନେତୃତ୍ୱରେ କୋଶଳ ରାଜ୍ୟ ଗଠନର ଦାବୀ ଉଠାଯାଇଥିଲା । ସେପରି କୋଶଳ ରାଜ୍ୟରେ ପାଟନା (ବଲାଙ୍ଗୀର), କଳାହାଣ୍ଡି, ସୋନପୁର, ବୌଦ୍ଧ, ଗାଙ୍ଗପୁର, ବାମଣ୍ଡା, ବଣେଇ ପ୍ରଭୃତି ରାଜ୍ୟ ରହିବେ ବୋଲି କୁହାଗଲା ।

ଓଡ଼ିଶାର ଯେଉଁ ରାଜାମାନେ ୟୁନିଅନ ଗଠନ କରିଥିଲେ ସେଥିରେ ଜଣେ ପ୍ରଧାନମନ୍ତ୍ରୀ, ଚିଫ୍ ସେକ୍ରେଟାରୀ, ମିଳିତ ପୁଲିସ ବାହିନୀ ଏବଂ ଅପିଲ ଅଦାଲତ ରହିବ ବୋଲି ନିଷ୍ପତ୍ତି ନେଇଥିଲେ । ଏମିତିକି ବହୁ ସଂଖ୍ୟକ ଶିଖ ଓ ମୁସଲମାନଙ୍କୁ ନିଯୁକ୍ତି ଦେଇ ଏକ ପୁଲିସ ବାହିନୀ ଗଠନ କରି ତାହାକୁ ଜଣେ ପୁଲିସ ଇନ୍ସପେକ୍ଟର ଜେନେରାଲଙ୍କ ଅଧୀନରେ ରଖିଲେ ।

କାବିନେଟ ମିଶନ ଆସିବା ପରେ ୧୯୪୭ ଜୁନ୍ ୨୭ରେ ଭାରତ ସରକାର ଏକ ଦେଶୀୟ ରାଜ୍ୟ ବିଭାଗ ସୃଷ୍ଟି କଲେ । ସର୍ଦ୍ଦାର ପଟେଲ କଂଗ୍ରେସ ପକ୍ଷରୁ ଏବଂ ଅବଦୁଲ୍ଲ ରବ ନିସ୍ତାର ମୁସଲିମ୍ ଲିଗ୍ ପକ୍ଷରୁ ଏଥିରେ ସଦସ୍ୟ ରହିଲେ ।

ପୂର୍ବରୁ ଚେମ୍ବରର୍ସ ଅଫ୍ ପ୍ରିନ୍‌ସେସ୍‌ଙ୍କ ଧମକ କଥା କୁହାଯାଇଛି । ଏହି ଧମକର ଚଡ଼ା ଉତ୍ତର ଓ ଚେତାବନୀ ଦେଇଥିଲେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ । ସେ ୧୯୪୭ ଜାନୁଆରୀ ୧୯ରେ ନିଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀରେ ଗ୍ୱାଲିଅର ଅଧିବେଶନରେ ସଭାପତିତ୍ୱ କରିଥିଲେ । ସେଠାରେ ସେ ଘୋଷଣା କରିଥିଲେ ଯେ, ଦେଶୀୟ ରାଜ୍ୟର ଶାସକମାନେ ଯଦି ସମ୍ବିଧାନ ସଭାକୁ ବର୍ଜନ କରିବେ, ତେବେ ସେମାନଙ୍କୁ ଶତ୍ରୁ ବୋଲି ବିଚାର କରାଯିବ ।

ଅନ୍ୟପକ୍ଷରେ ଦେଶୀୟ ରାଜ୍ୟଗୁଡ଼ିକ ସଂପର୍କରେ ମହମ୍ମଦ ଅଲ୍ଲି ଜିନ୍ନା ୧୯୪୭ ଜୁନ୍ ୧୮ରେ ଘୋଷଣା କଲେଯେ, "ଦେଶୀୟ ରାଜ୍ୟଗୁଡ଼ିକ ସାମ୍ବିଧାନିକ ଓ ଆଇନଗତ ବିଚାର ଦୃଷ୍ଟିରୁ ସ୍ୱାଧୀନ ଓ ସାର୍ବଭୌମ ।" ଜିନ୍ନାଙ୍କର ଲକ୍ଷ୍ୟ ଥିଲା, ଏହା ଗୃହୀତ ହେଲେ କେବଳ ଜୁନାଗଡ଼ ନୁହେଁ ଜାମ୍ମୁ ଓ କାଶ୍ମୀର ଓ ଅନ୍ୟ କେତେକ ଦେଶୀୟ ରାଜ୍ୟ ପାକିସ୍ତାନରେ ସାମିଲ ହେବାର ବାଟ ଫିଟିଯିବ ଓ ଭାରତରେ ନିଜାମ, ନବାବମାନେ ସ୍ୱାଧୀନ, ସାର୍ବଭୌମ ହୋଇ ରହିବେ ।

**ସର୍ଦ୍ଦାର ପଟେଲଙ୍କ ସୂତ୍ର**

୧୯୪୭ ଜୁନ୍ ୨୭ରେ ଗଠିତ ମଧ୍ୟବର୍ତ୍ତୀକାଳୀନ ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗ ପକ୍ଷରୁ ଦେଶୀୟ ରାଜ୍ୟଗୁଡ଼ିକ ସଂପର୍କିତ ନୀତି ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ପଟେଲ ଘୋଷଣା କରିଥିଲେ । ତାହାର ମର୍ମ୍ମ ହେଲା - ଭାରତ ୟୁନିୟନକୁ ଦେଶୀୟ ରାଜ୍ୟଗୁଡ଼ିକ ପରରାଷ୍ଟ୍ର ନୀତି, ପ୍ରତିରକ୍ଷା ଓ ଯୋଗାଯୋଗ, ଏହି ତିନୋଟି ବିଷୟକୁ ହସ୍ତାନ୍ତର କରି ୟୁନିୟନ ସହିତ ସାମିଲ ହେବେ । ଏହି ସର୍ତ୍ତଗୁଡ଼ିକ କେବଳ ୧୪୦ଟି ଦେଶୀୟ ରାଜ୍ୟ, ଯେଉଁମାନେ ଚେମ୍ବରର୍ସ ଅଫ୍ ପ୍ରିନ୍‌ସେସ୍ ଗଠନ କରିଛନ୍ତି, ସେମାନଙ୍କ ପ୍ରତି ପ୍ରଯୁଜ୍ୟ ହେବ । ଅନ୍ୟ ଦେଶୀୟ ରାଜ୍ୟଗୁଡ଼ିକ ପାଇଁ ନୁହେଁ ।

୧୯୪୭ ଅଗଷ୍ଟ ୧୫ ପୂର୍ବରୁ ଏହି ଦେଶୀୟ ରାଜ୍ୟମାନେ ତାଙ୍କ ପ୍ରସ୍ତାବକୁ ଗ୍ରହଣ କରିନେବାକୁ ପଟେଲ ଆହ୍ୱାନ ଦେଇଥିଲେ । ଚେମ୍ବର ଅଫ୍ ପ୍ରିନ୍‌ସେସ୍‌ର ୩ଟି ସଦସ୍ୟ ହାଇଦ୍ରାବାଦ୍‌ର ନିଜାମ, କାଶ୍ମୀରର ମହାରାଜା ଓ ଜୁନାଗଡ଼ର ନବାବ ଏହି ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ ।

ସର୍ଦ୍ଦାର ପଟେଲଙ୍କ ଏପରି ଘୋଷଣା ଭାରତର ତତ୍କାଳୀନ ରାଜନୈତିକ ମହଲରେ ଓ ବିଶେଷ ଭାବରେ ଗଡ଼ଜାତଗୁଡ଼ିକର ପ୍ରଜାମଣ୍ଡଳର ନେତାମାନଙ୍କ ଭିତରେ ବିସ୍ମୟ, ବିଭ୍ରାନ୍ତି ଓ ଅସନ୍ତୋଷ ସୃଷ୍ଟି କଲା । କାବିନେଟ ମିଶନର ପ୍ରସ୍ତାବକୁ ବସ୍ତୁତଃ ଗ୍ରହଣ କରି ନିଆଗଲା ବୋଲି ଦେଶର ବାମପନ୍ଥୀ, ପ୍ରଗତିଶୀଳ, ସାମନ୍ତବାଦ ବିରୋଧୀ ରାଜନୈତିକ ମତବାଦୀମାନେ ବିଚାରି ତାହାର ବିରୋଧ ପ୍ରକାଶ କଲେ ।

କଂଗ୍ରେସରେ ଥିବା ପ୍ରଗତିପନ୍ଥୀ, ସୋସାଲିଷ୍ଟ, କମ୍ୟୁନିଷ୍ଟ, ଫରୱାର୍ଡ ବ୍ଲକ୍ ପ୍ରଭୃତି ଦଳ ଏହାର ସମାଲୋଚନା କଲେ ।

୧୯୪୬ ମାର୍ଚ୍ଚ ୨୪ରେ ଭାରତକୁ କାବିନେଟ୍ ମିଶନ ଆସିବା ପରେ ୧୯୪୭ ଅଗଷ୍ଟ ୧୫ ଯାଏ, ଦୀର୍ଘ ୧ବର୍ଷ ୬ମାସ କାଳ ଯେଉଁ ରାଜନୈତିକ ତନାଘନା ଘଟି ଚାଲିଲା, ତାହାର ପ୍ରଭାବ ଓ ପ୍ରତିକ୍ରିୟା ବିଭିନ୍ନ ଭାବରେ ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନ ଉପରେ ପଡ଼ିଲା । ପ୍ରଜାମଣ୍ଡଳ ଗୁଡ଼ିକରେ କେତେକ ରକ୍ଷଣଶୀଳ, ଦକ୍ଷିଣପନ୍ଥୀ, ସୁବିଧାବାଦୀ ବ୍ୟକ୍ତିଙ୍କର କାର୍ଯ୍ୟକୁ ପ୍ରଜାମାନେ ତଥା ପ୍ରଜାମଣ୍ଡଳ ଗୁଡ଼ିକର ଅଗ୍ରଗାମୀ କର୍ମକର୍ତ୍ତା ତୀବ୍ର ବିରୋଧ କଲେ ।

କାବିନେଟ ମିଶନର ରହଣୀ କାଳରେ ଦେଶୀୟ ରାଜାମାନେ ଆଉ ଏକ କୌଶଳ ନେଲେ । ନିଜ ନିଜ ରାଜ୍ୟରେ ଦାୟିତ୍ୱସଂପନ୍ନ ପ୍ରତିନିଧିମୂଳକ ଶାସନ ଗଢ଼ିବେ, ମନ୍ତ୍ରିମଣ୍ଡଳର ଶାସନ ତାହାରି ନେତୃତ୍ୱରେ ଚାଲିବ, ସଭା ସମିତି କରିବାର ଅଧିକାର ଦିଆଯିବ, ଏପରି କେତେକ ପ୍ରଲୋଭନ ଦେଖାଇ ପ୍ରଜାମଣ୍ଡଳର ନେତାମାନଙ୍କୁ ହାତ କରିବାକୁ ଉଦ୍ୟମ କଲେ । ସେମାନଙ୍କର କୌଶଳ ଥିଲା, ଏହି ପ୍ରଲୋଭନରେ ପ୍ରଜାମଣ୍ଡଳ ଭିତରେ ଭାଗଭାଗ ହୋଇଯିବ । ଭିତରୁ ତାହା ଖଣ୍ଡବିଖଣ୍ଡିତ ହେବ । ସେମାନଙ୍କର ଏପରି ଅପକୌଶଳ କେତେକାଂଶରେ କେତେକ ରାଜ୍ୟରେ ପ୍ରଜା ଆନ୍ଦୋଳନର ଏକ ଅଂଶକୁ ପ୍ରଭାବିତ କରିଥିଲା । କିନ୍ତୁ ତତ୍କାଳୀନ ରାଜନୈତିକ ଚେତନାର ବୃଦ୍ଧି ପୁନର୍ବାର ଗଡ଼ଜାତଗୁଡ଼ିକରେ ପ୍ରଜା ଆନ୍ଦୋଳନକୁ ପ୍ରଜ୍ୱଳିତ କଲା । ଏହା କେବଳ ଓଡ଼ିଶା ଗଡ଼ଜାତ ୁଡ଼ିକରେ ନୁହଁ, ସାରା ଭାରତର କ୍ଷୁଦ୍ର ବୃହତ୍ ଦେଶୀୟ ରାଜ୍ୟରେ ନୂତନ ଉଦବେଳନ ସୃଷ୍ଟି କଲା । ବ୍ରିଟିଶ କାବିନେଟ ମିଶନର ପ୍ରସ୍ତାବ ଓ ରାଜା, ମହାରାଜା, ନବାବଙ୍କ ଷଡ଼ଯନ୍ତ୍ର ଓ ସ୍ୱରାଷ୍ଟ୍ର ବିଭାଗର ଫର୍ମୁଲାକୁ ସେମାନେ ପରାସ୍ତ କଲେ । ତାହା ଏକ ଦୀର୍ଘ ଇତିହାସ । ପରିଶେଷରେ ୟୁନିଅନରେ ଜୁନାଗଡ଼କୁ ଛାଡ଼ିଦେଲେ ସବୁ ଦେଶୀୟ ରାଜ୍ୟ ସ୍ୱାଧୀନ ଭାରତବର୍ଷର ଅଂଶ ହେଲେ । ଭାରତକୁ ଭୌଗୋଳିକ, ରାଜନୈତିକ, ପ୍ରଶାସନିକ ଭାବରେ ବିଭକ୍ତ କରିବାର ବ୍ରିଟିଶ ଷଡ଼ଯନ୍ତ୍ର ପରାଭୂତ ହେଲା ।

□□□

## ଚତୁର୍ଦ୍ଦଶ ଅଧ୍ୟାୟ

## ଢେଙ୍କାନାଳ ପ୍ରଜା ଆନ୍ଦୋଳନ : ୧୯୪୬-୪୭

୧୯୪୨ ଆନ୍ଦୋଳନରେ ମଢ଼ି ଦଖଲକାଳରୁ ଢେଙ୍କାନାଳର ପ୍ରଜାମଣ୍ଡଳର ନେତା ଓ କର୍ମୀଙ୍କୁ ଢେଙ୍କାନାଳ ଆଠଗଡ଼ ଓ ଅନ୍ୟାନ୍ୟ ଜେଲରେ ବନ୍ଦୀ କରି ରଖାଯାଇଥିଲା। ଢେଙ୍କାନାଳରେ ୧୯୪୫ ମଧ୍ୟଭାଗରେ ସମସ୍ତ ରାଜବନ୍ଦୀ ଖଲାସ ହେଲେ।

ପ୍ରଜାମାନଙ୍କ କୋପ ଓ କ୍ରୋଧରୁ ରକ୍ଷା କରିବା ଲାଗି ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍ସି ଠିକଣାମତେ ଶାସନ କରି ନପାରିବାର ଆଳରେ ଢେଙ୍କାନାଳ ରାଜାଙ୍କ କେତେକ କ୍ଷମତା ଉପରେ କଟକଣା ୧୯୪୪ ଜାନୁଆରୀ ୧୭ ତାରିଖଠାରୁ ଜାରି କରିଥିଲେ। ତାଙ୍କୁ ପ୍ରତ୍ୟକ୍ଷ ଶାସନ କାର୍ଯ୍ୟରୁ ୧୯୪୪ ଜାନୁଆରୀ ୧୭ ତାରିଖଠାରୁ ଦୂରେଇ ରଖାଗଲା। ଇଷ୍ଟର୍ଣ୍ଣ ଷ୍ଟେଟ୍ସ ଏଜେନ୍ସି ପକ୍ଷରୁ ସିକନ୍ଦର ମିର୍ଜା ପ୍ରଶାସନ ନିଯୁକ୍ତ ହୋଇଥିଲେ। ରାଜା ଶଙ୍କରପ୍ରତାପ କିଛିକାଳ ଢେଙ୍କାନାଳ ଛାଡ଼ି ଅନ୍ୟତ୍ର ରହିଲେ।

ଓଡ଼ିଶା ପ୍ରଦେଶରେ ୧୯୪୬ ନିର୍ବାଚନ ପରେ ହରେକୃଷ୍ଣ ମହତାବଙ୍କ ପ୍ରଧାନମନ୍ତ୍ରିତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥାଏ। ନବକୃଷ୍ଣ ଚୌଧୁରୀ ଥାଆନ୍ତି ରାଜସ୍ୱମନ୍ତ୍ରୀ। ଉଭୟ ୧୯୩୮-୩୯ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଘନିଷ୍ଠ ଭାବରେ ସଂପୃକ୍ତ ଥାଇ ସ୍ୱ ସ୍ୱ ରାଜନୈତିକ ଦୃଷ୍ଟିଭଙ୍ଗୀରୁ ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଉଥିଲେ।

ଢେଙ୍କାନାଳ ପ୍ରଜା ଆନ୍ଦୋଳନ ପ୍ରତି ଉକ୍ତ ଗଡ଼ଜାତର ନୂଆ ନୂଆ ଯୁବକ ଆକୃଷ୍ଟ ହେଉଥାନ୍ତି। କେବଳ ଢେଙ୍କାନାଳ ନୁହଁ, ଅନ୍ୟାନ୍ୟ ଗଡ଼ଜାତରେ ପ୍ରଗତିପନ୍ଥୀ ଛାତ୍ରମାନଙ୍କ ମଧ୍ୟରେ ପ୍ରଜାମୁକ୍ତି ଆନ୍ଦୋଳନ ପ୍ରତି ବିଶେଷ ଆକର୍ଷଣ ପ୍ରକଟିତ ହେଉଥାଏ। ନିଖିଳ ଭାରତ ଛାତ୍ର ସଂଘର ଅନୁପ୍ରେରଣାରେ ବିଭିନ୍ନ ଗଡ଼ଜାତରେ ଛାତ୍ର ନେତାମାନେ ଏକ ଗଡ଼ଜାତ ଛାତ୍ରସଂଘ ସଂଗଠନ ଗଢ଼ିବାର ଉଦ୍ୟମ କଲେ। ୧୯୪୨ ଆନ୍ଦୋଳନ ବେଳେ ଗିରଫ ହୋଇ ଜେଲମୁକ୍ତି ପରେ ଗଡ଼ଜାତ ଛାତ୍ର ନେତା କମ୍ୟୁନିଷ୍ଟ ମତବାଦୀ ରାମଚନ୍ଦ୍ର ରାମ, ନନ୍ଦ କିଶୋର ପଟ୍ଟନାୟକ ବିଭିନ୍ନ ଦେଶୀୟ ରାଜ୍ୟର ଛାତ୍ରନେତାମାନଙ୍କ ସହିତ ଯୋଗାଯୋଗ କଲେ। କଟକରେ ୧୯୪୬ ମାର୍ଚ୍ଚ ମାସରେ ଗଡ଼ଜାତ ଛାତ୍ର ସମ୍ମିଳନୀରେ ଗଡ଼ଜାତଗୁଡ଼ିକର ଦୁଇ ଶତାଧିକ ଛାତ୍ର ଯୋଗ ଦେଇଥିଲେ। ଢେଙ୍କାନାଳର ଦୟାନିଧି ପଟ୍ଟନାୟକ (ପରେ ଅଧ୍ୟାପକ), ବସନ୍ତ ମିଶ୍ର (ପରେ ଡାକ୍ତର), ଦେବେନ୍ଦ୍ର ଶତପଥୀ (ପରେ ସାଂସଦ), ଶ୍ରୀବସ ନାୟକ (ପରେ ବିଧାୟକ), ରଣପୁରର

ଗୋପାଳ ମିଶ୍ର (ପରେ ଅଧ୍ୟାପକ) ପ୍ରମୁଖ ଛାତ୍ର ଏକ ନୂତନ ସୁଦୃଢ଼ ଛାତ୍ର ସଂଗଠନ ଗଢ଼ିଲେ । ବଲାଙ୍ଗୀରରର ପ୍ରଜା ଆନ୍ଦୋଳନର କୃଷକ ସଂଘର ନେତା ଯୁଧିଷ୍ଠିର ମିଶ୍ର (ପରେ କୁଳପତି) ନୀଳଗିରିର ପ୍ରଜାମଣ୍ଡଳ ନେତା ବନମାଳୀ ଦାସ ପ୍ରମୁଖ ଏହି ଗଡ଼ଜାତ ଛାତ୍ର ସମ୍ମିଳନୀରେ ଉଦ୍‌ବୋଧନ ଦେଇ ରାଜତନ୍ତ୍ରକୁ ଲୋକ କରିବା ସଂଗ୍ରାମରେ ଗଡ଼ଜାତ ଛାତ୍ରମାନଙ୍କୁ ଯୋଗଦେବାକୁ ଆହ୍ୱାନ ଦେଇଥିଲେ ।

ଗଡ଼ଜାତ ଛାତ୍ର ସମ୍ମିଳନୀ ଦାବୀ କଲା ଯେ, ଓଡ଼ିଶାର ସମସ୍ତ ଗଡ଼ଜାତ ଓଡ଼ିଶା ପ୍ରଦେଶ ସହିତ ମିଶିବ । ରାଜତନ୍ତ୍ରୀ ଶାସନକୁ ସଂପୂର୍ଣ୍ଣ ବିଲୋପ କରାଯିବ । ଶତାବ୍ଦୀ ଶତାବ୍ଦୀ ଧରି ଲୁଣ୍ଠନ କରି ସେମାନେ ଯେଉଁ ଅମାପ ସମ୍ପତ୍ତି, ଭୂମି, ଉଦ୍ୟାନ, ରାଜପ୍ରାସାଦ, ପ୍ରମୋଦ ନିବାସ ଠୁଳ କରିଛନ୍ତି ତାହାସବୁ ବାଜ୍ୟାପ୍ତ ହେବ ।

ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ମଧ୍ୟ ଏତେବେଳକୁ ନୂତନ ବିନ୍ୟାସ ଘଟିଥାଏ । ୧୯୩୮-୩୯ରେ କଂଗ୍ରେସ ସାଙ୍ଗକୁ ପ୍ରଜା ଆନ୍ଦୋଳନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଉଥିବା କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ପରିବର୍ତ୍ତନ ଘଟିଥାଏ । ୧୯୩୯ରେ ପ୍ରଖ୍ୟାତ ସୋସାଲିଷ୍ଟ ନେତା ଜୟପ୍ରକାଶ ନାରାୟଣ କଟକ ଆସି ଯୁଦ୍ଧକାଳୀନ ପରିସ୍ଥିତିରେ ପାର୍ଟି ସଂଗଠନ ଜାଗାରେ ନବକୃଷ୍ଣ ଚୌଧୁରୀଙ୍କୁ ପାର୍ଟିରେ ଡିକ୍ଟେଟର ନିଯୁକ୍ତି କରିଥାନ୍ତି । ବସ୍ତୁତଃ ଉକ୍ତ ପାର୍ଟିର ସାଂଗଠନିକ ସତ୍ତା ରହିଲା ନାହିଁ । ସେଥିରେ ଥିବା କମ୍ୟୁନିଷ୍ଟ ମତାବାଦୀମାନେ ଖୋଷଲାଖୋଲି କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ନିଜସ୍ୱ ରାଜନୈତିକ କାର୍ଯ୍ୟକଳାପ ଚଳେଇଲେ । ସୋସାଲିଷ୍ଟ ମତବାଦୀମାନେ ପ୍ରଥମେ କଂଗ୍ରେସରେ ସାମିଲ ହୋଇ କିଛି ମାସପରେ ସ୍ୱତନ୍ତ୍ର ଭାବରେ ପ୍ରଜା ସୋସାଲିଷ୍ଟ ପାର୍ଟି ଗଠନ କଲେ ।

ବ୍ୟକ୍ତିଗତ ଭାବରେ କଂଗ୍ରେସର ନେତା ଓ କର୍ମୀ ଏହି ଦ୍ୱିତୀୟ ପର୍ଯ୍ୟାୟ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଯୋଗଦେବା ପୂର୍ବପରି ଅବ୍ୟାହତ ରହିଲା । କଂଗ୍ରେସ ଏକ ରାଜନୈତିକ ଅନୁଷ୍ଠାନ ଭାବରେ ପ୍ରତ୍ୟକ୍ଷ ଭାବରେ ଗଡ଼ଜାତ ଆନ୍ଦୋଳନ ସହିତ ସାମିଲ ନହେଲେ ହେଁ ପ୍ରଜାମଣ୍ଡଳ ଗୁଡ଼ିକରେ ଅନେକ କଂଗ୍ରେସ ମତବାଦୀ ନେତାଥିଲେ ।

ଢେଙ୍କାନାଳ ଓ ଅନ୍ୟାନ୍ୟ ଦେଶୀୟ ରାଜ୍ୟରେ ପ୍ରଜାମଣ୍ଡଳର ଆନ୍ଦୋଳନକୁ ସମର୍ଥନ ଜଣାଇ ଶକ୍ତିଶାଳୀ କରିବାକୁ ବାମପନ୍ଥୀ ଉଭୟ ଦଳର ନେତା ଓ କର୍ମୀମାନେ ବିଭିନ୍ନ ଗଡ଼ଜାତର ପ୍ରଜା ଆନ୍ଦୋଳନକୁ ପ୍ରଭାବିତ କରିବା ଲାଗି ଉଦ୍ୟମ କଲେ ।

ଢେଙ୍କାନାଳରେ ପ୍ରଜା ଆନ୍ଦୋଳନକୁ ସାହାଯ୍ୟ କରିବା ଲାଗି ପ୍ରଜା ସୋସାଲିଷ୍ଟ ପାର୍ଟିର ସାରଙ୍ଗଧର ଦାସ, ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସାଙ୍ଗକୁ ନୂତନ ଯୁବକ ବିଶ୍ୱନାଥ ପଣ୍ଡିତ, ଧୂଳେଶ୍ୱର ବସ୍ତିଆ, ବାଙ୍କବିହାରୀ ଦାସ ପ୍ରମୁଖ ଉଦ୍ୟମ କଲେ । ଶ୍ରୀମତୀ ମାଳତୀ ଚୌଧୁରୀ ଅନୁଗୋଳରୁ

ଆସି ପ୍ରଜାମାନଙ୍କୁ ନୂତନ ରାଜନୈତିକ ପରିସ୍ଥିତିରେ ଚୂଡ଼ାନ୍ତ ଆନ୍ଦୋଳନ କରିବାକୁ ଆହ୍ୱାନ ଦେଇଥିଲେ।

କମ୍ୟୁନିଷ୍ଟ ପାର୍ଟିର ତୁଙ୍ଗନେତା ଗୁରୁଚରଣ ପଟ୍ଟନାୟକ, ପ୍ରାଣନାଥ ପଟ୍ଟନାୟକ, ରାମକୃଷ୍ଣ ପତି, ରାମଚନ୍ଦ୍ର ମିଶ୍ର, ସାଧୁଚରଣ ମହାନ୍ତି, ଦୁର୍ଗାଚରଣ ମହାନ୍ତି, ଶରତ ପଟ୍ଟନାୟକ ପ୍ରମୁଖ ଢେଙ୍କାନାଳ କର୍ମୀମାନଙ୍କୁ ପୁନଃ ସଂଗଠିତ କରିବାରେ ଲାଗିଲେ।

ଚାରିବର୍ଷ କାଳ ଅଜ୍ଞାତବାସ ପରେ ମଡ଼ି ଦଖଲର ନେତା ବୈଷ୍ଣବ ପଟ୍ଟନାୟକ ନିଜ ରାଜ୍ୟ ଢେଙ୍କାନାଳକୁ ୧୯୪୬ ପ୍ରଥମ ଭାଗରେ ଆସି ପହଞ୍ଚନ୍ତେ ଢେଙ୍କାନାଳର ପ୍ରଜା ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଲେ। କଟକରେ ତାଙ୍କୁ ଏକ ବିରାଟ ପଟୁଆର କରି ସମ୍ବର୍ଦ୍ଧନାର ବ୍ୟବସ୍ଥା କଲା କମ୍ୟୁନିଷ୍ଟ ପାର୍ଟି। ଫାଶିଦଣ୍ଡ ପାଇଥିବା ମଷା ମଳିକଙ୍କୁ ନୂତନ ରାଜନୈତିକ ପରିସ୍ଥିତିରେ ରାଜଦରବାର ଫାଶି ଦେବାକୁ ସାହସ କରିପାରିଲା ନାହିଁ।

ଢେଙ୍କାନାଳରେ ଏପରି ରାଜନୈତିକ କାର୍ଯ୍ୟକଳାପ ଦେଖି ପ୍ରଶାସନ ଆତଙ୍କିତ ହେଲା। ଢେଙ୍କାନାଳ ରାଜ ଦରବାର ପକ୍ଷରୁ ପ୍ରଜାମାନଙ୍କୁ ଭାଗ ଭାଗ କରିବାର ଶେଷ ଉଦ୍ୟମ କରାଗଲା। କେତେକ ଦେଶୀୟ ରାଜ୍ୟର ଶାସକ ଦାୟିତ୍ୱମୂଳକ ଶାସନ ପ୍ରବର୍ତ୍ତନର ଘୋଷଣାରେ କେତେକ ପ୍ରଜାମଣ୍ଡଳର ନେତା ଉଲ୍ଲସିତ ହେବାର ଦେଖାଗଲା। ଆଠଗଡ଼ରେ ଶ୍ରୀ ବିଶ୍ୱନାଥ ରଥଙ୍କ ପ୍ରଧାନମନ୍ତ୍ରିତ୍ୱରେ, ବଡ଼ମ୍ବାରେ ବନମାଳୀ ପଣ୍ଡାଙ୍କ ପ୍ରଧାନମନ୍ତ୍ରିତ୍ୱରେ, ତିଗିରିଆରେ ବିପିନ ପଟ୍ଟନାୟକଙ୍କ ପ୍ରଧାନମନ୍ତ୍ରିତତ୍ୱରେ, ମୟୁରଭଂଜରେ ଶରତଚନ୍ଦ୍ର ଦାସଙ୍କ ପ୍ରଧାନମନ୍ତ୍ରିତ୍ୱରେ ତଥାକଥିତ ଦାୟିତ୍ୱ ନଥାଇ ରାଜାଙ୍କ ଅଧୀନରେ ଦାୟିତ୍ୱମୂଳକ ସରକାର ଗଢ଼ାଗଲା। ଏମିତି ପ୍ରକ୍ରିୟା ଆଉ କେତେକ ରାଜ୍ୟରେ ଚାଲିଲା। ଏହି ପ୍ରକ୍ରିୟାରେ ଓଡ଼ିଶାର ୨୬ଟି ଗଡ଼ଜାତରେ ୨୬ ଜଣ ପ୍ରଧାନମନ୍ତ୍ରୀ ହୋଇଥାନ୍ତେ। ଏପରି ପ୍ରଲୋଭନ ଢେଙ୍କାନାଳ, ନୀଳଗିରି ଓ ଅନ୍ୟ ଗଡ଼ଜାତ ଗୁଡ଼ିକରେ କାମ ଦେଲା ନାହିଁ।

ଢେଙ୍କାନାଳ ପ୍ରଶାସନ ପକ୍ଷରୁ ପ୍ରଜାମାନଙ୍କୁ ଜାତିଆଣ, ସବର୍ଣ୍ଣ ଅସବର୍ଣ୍ଣ, ଆଦିବାସୀ-ଅଣଆଦିବାସୀ ଭାବରେ ବିଭକ୍ତ କରିବାକୁ ପୁନଶ୍ଚ ପ୍ରଚଣ୍ଡ ଉଦ୍ୟମ ଚାଲିଲା। ପ୍ରଶାସନ କଡ଼ରୁ ପ୍ରଜାମଣ୍ଡଳ ବିରୁଦ୍ଧରେ ପ୍ରଜା ପରିଷଦ ନାମରେ ଏକ ଅନୁଷ୍ଠାନ ଗଢ଼ାଗଲା। ରାଜଭକ୍ତମାନେ ସେଥିରେ ପ୍ରତିନିଧି ରହିବେ, ସେମାନେ ହିଁ ପ୍ରଜାମାନଙ୍କର ପ୍ରତିନିଧି ହେବେ, ପ୍ରଜାମଣ୍ଡଳକୁ ଅକାମୀ କରି ଦିଆଯିବାର ଏପରି ଖଳ ଯୋଜନା ପ୍ରସ୍ତୁତ କରାଗଲା। ବ୍ରାହ୍ମଣମାନଙ୍କୁ ରାଜ ପ୍ରଶାସନ ପକ୍ଷରେ ରଖିବା ଲାଗି ସେମାନେ ଦେବୋତ୍ତର ଜମି ବଂଶାନୁକ୍ରମେ ଭୋଗ କରିବେ ବୋଲି ଦରବାର ପକ୍ଷରୁ ବିଜ୍ଞପ୍ତି ପ୍ରକାଶ ପାଇଲା। ପ୍ରଜାମାନଙ୍କୁ ଭାଗ ଭାଗ କରିବାର ଉଦ୍ୟମ ମଧ୍ୟ ନୀଳଗିରି, ଷଢ଼େଇକଳା, ବାମଡ଼ା ପ୍ରଭୃତିର ଶାସକମାନେ କରିଥିଲେ। ପ୍ରଜାମଣ୍ଡଳର କେତେକ ଦକ୍ଷିଣପନ୍ଥୀ ନେତା ଏପରି ପ୍ରଲୋଭନରେ ପ୍ରଭାବିତ ହେବା ପ୍ରକାଶ ପାଇଲା।

ଏହାରି ବିରୁଦ୍ଧରେ ପରଜଂଗର ଅନ୍ନପୂର୍ଣ୍ଣା ହାଟରେ ୧ ୯ ୪ ୭ ଜାନୁଆରୀ ୬ ତାରିଖରେ ଏକ ବିଶାଳ ସଭା ହେଲା । ଏହି ସଭାରେ ବୈଷ୍ଣବ ପଟ୍ଟନାୟକ, ଲକ୍ଷ୍ମୀଧର ସାହୁ ଓ ଅନ୍ୟ ନେତାମାନେ ଦରବାରର ସମସ୍ତ ଷଡ଼ଯନ୍ତ୍ରକୁ ପଣ୍ଡ କରି ଦିଆଯିବ ବୋଲି ଘୋଷଣା କଲେ । ଦୋହଲମୋହଲ ହେଉଥିବା ପ୍ରଜାମଣ୍ଡଳ ନେତାମାନଙ୍କୁ ଏହି ସଭାରେ ବକ୍ତାମାନେ ସତର୍କ କରାଇ ଦେବାବେଳେ ବିପୁଳ ଜନତାର କରତାଳି ଏହାକୁ ସ୍ୱାଗତ କରିଥିଲା ।

ରାଜଦରବାରର ଏହି ଷଡ଼ଯନ୍ତ୍ରର ମୁକାବିଲା କରିବା ଲାଗି ପ୍ରଜାମଣ୍ଡଳର ନେତା ଲକ୍ଷ୍ମୀଧର ସାହୁଙ୍କ ନେତୃତ୍ୱରେ ଏକ ସ୍ୱେଚ୍ଛାସେବକ ବାହିନୀ ଗଢ଼ାଗଲା । ପ୍ରଥମେ ମାତ୍ର ୪୦ଜଣ ସ୍ୱେଚ୍ଛାସେବକ । ମରଣବାହିନୀର ସଭ୍ୟ ମାସକ ଭିତରେ ଦୁଇ ହଜାରରୁ ଅଧିକ ହୋଇଗଲେ । ପ୍ରତ୍ୟେକ ବିଶ, ପ୍ରତ୍ୟେକ ଅଂଚଳରେ ସ୍ୱେଚ୍ଛାସେବକ ବାହିନୀର ଶାଖା ଖୋଲିଲା, ରାଜନୈତିକ ତାଲିମ ଦିଆଗଲା ।

ନବଗଠିତ ସ୍ୱେଚ୍ଛାସେବକ ବାହିନୀ ରାଜ ପ୍ରଶାସନର ଚକ୍ରାନ୍ତକୁ ପଣ୍ଡ କରିଦେଲେ । ବିଭିନ୍ନ ସ୍ଥାନରେ ସବର୍ଣ୍ଣ-ଅସବର୍ଣ୍ଣଙ୍କର ଏକତ୍ର ପଂକ୍ତି ଭୋଜନ ବ୍ୟବସ୍ଥା କରାଗଲା । ଅସବର୍ଣ୍ଣମାନଙ୍କୁ ମନ୍ଦିରମାନଙ୍କରେ ପ୍ରବେଶ କରାଗଲା । ରାଜତନ୍ତ୍ର ଗଲେ ସେମାନେ ଜମି, ଘରଡ଼ିହ, ଜଙ୍ଗଲରେ ଅଧିକାର ଓ ବାଛବିଚାରରୁ ମୁକ୍ତି ପାଇବାର ସୁଯୋଗ ମିଳିବ ବୋଲି ଭରସା ଦିଆଗଲା । ଅନ୍ନପୂର୍ଣ୍ଣା ହାଟର ବିଶାଳ ସଭା ପରେ ସେହି ମାସ ୧୦ ତାରିଖରେ ଧଳପୁରଠାରେ ଆଉ ଏକ ବିଶାଳ ଜନସଭା ହେଲା । ପ୍ରବୀଣ ପ୍ରଜାମଣ୍ଡଳ ନେତା ମହେଶ୍ୱର ସୁବାହୁ ସିଂହ, ନରୋତ୍ତମ ଦାସ ପ୍ରମୁଖ ରାଜ ଦରବାରର ସମସ୍ତ ଷଡ଼ଯନ୍ତ୍ରର ମୁଖା ଖୋଲିଦେଲେ ।

୧ ୯ ୪ ୭ ମାର୍ଚ୍ଚ ମାସରେ ଖଡ୍ଗପ୍ରସାଦଠାରେ ସ୍ୱତନ୍ତ୍ର ଭାବରେ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ଢେଙ୍କାନାଳ ପ୍ରଜା ଆନ୍ଦୋଳନର ଲକ୍ଷ୍ୟ ଆଦର୍ଶକୁ ସମର୍ଥନ କରି ଏକ ବିରାଟ ସଭା ଅନୁଷ୍ଠିତ ହେଲା । କେନ୍ଦ୍ର କମ୍ୟୁନିଷ୍ଟ ପାର୍ଟିର ତୁଙ୍ଗ ନେତା ବିଶ୍ୱନାଥ ମୁଖାର୍ଜୀ ରାଜ୍ୟ ପାର୍ଟିର ସଂପାଦକ ଶରତ ପଟ୍ଟନାୟକ, ବୈଷ୍ଣବ ଚରଣ ପଟ୍ଟନାୟକ, ରାଜ ଦରବାର ସୃଷ୍ଟ ପ୍ରଜା ପରିଷଦର ମୁଖାଖୋଲି ଢେଙ୍କାନାଳ ରାଜଶାସନକୁ ସଂପୂର୍ଣ୍ଣ ଭାବରେ ଗାଦିଚ୍ୟୁତ କରିବାକୁ ଆହ୍ୱାନ ଜଣେଇଥିଲେ ।

## ନୀଳଗିରି ଘଟଣାର ପ୍ରଭାବ

ଏହିପରି ଭାବରେ ଢେଙ୍କାନାଳ ପ୍ରଜା ଆନ୍ଦୋଳନ ଏକ ବାରୁଦ ସ୍ତୁପରେ ପରିଣତ ହେଉଥିବାବେଳେ ନୀଳଗିରିରେ ଏକ ଐତିହାସିକ ଘଟଣା ଘଟିଥିଲା ।

ଢେଙ୍କାନାଳ ଦରବାର ଓ ଅନ୍ୟ ରାଜାମାନେ ଯେପରି ନିଜ ପ୍ରଜାମାନଙ୍କୁ ଭାଗଭାଗ କରିବାର ଉଦ୍ୟମ ଚଳେଇଥିଲେ, ନୀଳଗିରି ରାଜା ସେ ଦିଗରେ ଆଗୁଆ ହୋଇଗଲେ । ନୀଳଗିରିରେ ଆଦିବାସୀମାନଙ୍କ ଭିତରେ ଥିବା କେତେକ ମୁଖିଆଙ୍କୁ ଧରି ଅଣଆଦିବାସୀ

ପ୍ରଜାମାନେ ହିଁ ଆଦିବାସୀଙ୍କ ଦୁର୍ଦ୍ଦଶା ଲାଗି ଦାୟୀ ବୋଲି ପ୍ରଚାର ଚଳେଇ ଏକ ସଂଗଠନ ଗଢ଼ିଲେ। ଆଦିବାସୀ ସାନ୍ଦିଆ ସିଂହ ନାମକ ସର୍ଦ୍ଦାର ନେତୃତ୍ୱରେ ଦୁର୍ଦ୍ଧର୍ଷମାନେ ରାଜଦରବାରର ସାହାଯ୍ୟରେ ଅଣଆଦିବାସୀ ଗାଁଗୁଡ଼ିକ ଉପରେ ଆକ୍ରମଣ ଚଳେଇଲେ। ଲୁଟପାଟ ଚାଲିଲା। ଅଣ ଆଦିବାସୀଙ୍କ ଘରଦ୍ୱାର ଜଳାଗଲା।

ଏହାର ଦୃଢ଼ ମୁକାବିଲା କଲା ସେ ରାଜ୍ୟର ପ୍ରଜାମଣ୍ଡଳ। କଂଗ୍ରେସ ମତବାଦୀ ବରିଷ୍ଠ ନେତା କୈଳାସ ଚନ୍ଦ୍ର ମହାନ୍ତି ଓ କମ୍ୟୁନିଷ୍ଟ ନେତା ବନମାଳୀ ଦାସଙ୍କର ରାଜ ଦରବାରର ଷଡ଼ଯନ୍ତ୍ରକୁ ମୁକାବିଲା କରିବାରେ ଐକ୍ୟମତ ଦୃଢ଼ ଥିଲା। ରାଜାଙ୍କର ଷଡ଼ଯନ୍ତ୍ରକୁ ପଣ୍ଡ କରିଦେବା ଲାଗି ନୀଳଗିରି ଭିତରର ଓ ବାହାରର କମ୍ୟୁନିଷ୍ଟ ସଶସ୍ତ୍ର ବାହିନୀ ଓ ସାନ୍ଦିଆ ସିଂହ ଗୁଣ୍ଡା ବାହିନୀର ସଶସ୍ତ୍ର ମୁକାବିଲା ହେଲା।

ଓଡ଼ିଶା ପ୍ରଦେଶର ସୀମାକୁ ଲାଗିଥିବା ଏହି ରାଜ୍ୟରେ ଅଶାନ୍ତି ଓ ବିଶୃଙ୍ଖଳା ପ୍ରଦେଶ ପକ୍ଷରେ ବିପଜ୍ଜନକ ବୋଲି ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ ଘୋଷଣା କରି ଓଡ଼ିଶା ପ୍ରଦେଶ ସରକାର ଉକ୍ତ ରାଜ୍ୟର ପ୍ରଶାସନ ହାତକୁ ନେବ ବୋଲି ନିର୍ଦ୍ଦେଶ ଦେଲେ।

୧୯୪୭ ନଭେମ୍ବର ୧୨ ତାରିଖରେ ସାନ୍ଦିଆ ସିଂହ ବାହିନୀ ସହିତ ସଶସ୍ତ୍ର କମ୍ୟୁନିଷ୍ଟ ବାହିନୀଙ୍କ ମୁକାବିଲା ହେଲା। ମାଳତୀ ଚୌଧୁରୀ ନୀଳଗିରିରେ ପ୍ରବେଶ କଲେ ଓ କମ୍ୟୁନିଷ୍ଟମାନଙ୍କୁ ଗୋଟିଏ ରାଇଫଲ ଦେଲେ ଓ ନଭେମ୍ବର ୧୪ ତାରିଖରେ ବାଲେଶ୍ୱରରେ ଅବସ୍ଥାନ କରିଥିବା ରାଜସ୍ୱ ମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ନିର୍ଦ୍ଦେଶରେ ଓଡ଼ିଶା ପୁଲିସ ନୀଳଗିରିରେ ପ୍ରବେଶ କଲେ। ଏହା ଏକ ସ୍ୱତନ୍ତ୍ର ଐତିହାସିକ ବିଷୟବସ୍ତୁ।

ଭାରତବର୍ଷର ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଓଡ଼ିଶାର ନୀଳଗିରି ହିଁ ପ୍ରଥମ ଗଡ଼ଜାତ, ଯାହା ସର୍ବପ୍ରଥମେ ଗଡ଼ଜାତ ଗୁଡ଼ିକର ମିଶ୍ରଣ ପୂର୍ବରୁ ପ୍ରାଦେଶିକ ସରକାରର ପ୍ରଶାସନାଧୀନ ହେଲା। ନିଳଗିରି ଘଟଣାର ଏକ ମାସ ମଧ୍ୟରେ ସେହି ଓଡ଼ିଶାର ଢେଙ୍କାନାଳ ପ୍ରଜାମଣ୍ଡଳର ରାଜବାଟୀ ଦଖଲ ଆହ୍ୱାନ ସମସ୍ତ ଗଡ଼ଜାତର ଭାରତ ୟୁନିୟନ ସହିତ ମିଶ୍ରଣର ଦ୍ୱାର ଖୋଲିଦେଲା।



# ଢେଙ୍କାନାଳ ରାଜବାଟି ଦଖଲ ଡାକରା

ଆପୋଷହୀନ, ରୋକଠୋକ ପ୍ରତ୍ୟକ୍ଷ ସଂଗ୍ରାମ (ଡାଇରେକ୍ଟ ଆକ୍ସନ) ଲାଗି ଢେଙ୍କାନାଳ ପ୍ରଜାମଣ୍ଡଳର ପ୍ରସ୍ତୁତି ଆଗେଇଲା। ସଂଗୃହୀତ ପ୍ରଥମ ଦୁଇହଜାର ସ୍ୱେଚ୍ଛାସେବକଙ୍କ ସଂଖ୍ୟା ବିଭିନ୍ନ ଦିଗରେ ବଢ଼ିବାକୁ ଲାଗିଲା। ଢେଙ୍କାନାଳ ଭିତରର ଲଢୁଆ ପ୍ରଜାମଣ୍ଡଳ ନେତା ଓ କର୍ମୀମାନଙ୍କୁ ସହାୟତା କରିବାକୁ କଟକରୁ ବହୁଛାତ୍ର ଯୁବନେତା ଢେଙ୍କାନାଳ ସାରା ଡେରା ପକେଇଲେ। ଢେଙ୍କାନାଳ ପ୍ରଜାମଣ୍ଡଳର ଆଗୁଆ ନେତାମାନଙ୍କ ନିମନ୍ତ୍ରଣରେ କମ୍ୟୁନିଷ୍ଟ ପାର୍ଟି ନିର୍ଦ୍ଦେଶରେ ଅନେକ ଯୁବକ ଏହି ଶେଷ ସଂଗ୍ରାମର ପ୍ରସ୍ତୁତିରେ ସାହାଯ୍ୟ କରିବାକୁ ହାଜର ହୋଇଗଲେ, ଲୋକନାଥ ଚୌଧୁରୀ, ପ୍ରହ୍ଲାଦ ସେଠୀ, ଜଗତକୃଷ୍ଣ ଦାସ, ଗିରିଜାଭୂଷଣ ପଟ୍ଟନାୟକ, ବିପିନ ବିହାରୀ ମହାନ୍ତି, କେଶବାନନ୍ଦ ଦାସ ପ୍ରଭୃତିଙ୍କ ସାଙ୍ଗକୁ ଢେଙ୍କାନାଳର କମ୍ୟୁନିଷ୍ଟ ମତବାଦୀ ଓ ସମର୍ଥକ ପଦ୍ମଚରଣ ଧଳ, ବ୍ରଜ କିଶୋର ମହାପାତ୍ର, ବସନ୍ତ ମିଶ୍ର, ସାରଙ୍ଗ ମହାପାତ୍ର, ଦେବେନ୍ଦ୍ର ଶତପଥୀ, ଶୀବସ୍ୱ ନାୟକ ପ୍ରମୁଖ ଦଳକୁ ଦଳ ବାଣ୍ଟି ହୋଇ ଢେଙ୍କାନାଳର ବିଭିନ୍ନ ଅଂଚଳରେ ସଭାସମିତି ସଂଗଠନରେ ଲାଗିଗଲେ। ସେମାନଙ୍କୁ ବୈଷ୍ଣବ ପଟ୍ଟନାୟକ, ଲକ୍ଷ୍ମୀଧର ସାହୁ, ନରୋତ୍ତମ ଦାସ, ଶ୍ରୀକାନ୍ତ ରାଉତ, ହରମୋହନ ପଟ୍ଟନାୟକ, ବ୍ରଜ କିଶୋର ଧଳ ପ୍ରମୁଖ ବିଭିନ୍ନ ଜାଗାରେ ରଖାଇ ପ୍ରଚାର ଅଭିଯାନ ଚଳେଇବାର ସାହାଯ୍ୟ କଲେ। ମହିଳାମାନଙ୍କୁ ଜାଗ୍ରତ କରାଇବା ଲାଗି କଟକରୁ ନିରୂପମା ରଥ, ସାବିତ୍ରୀ ମିଶ୍ର ପ୍ରମୁଖ ନାରୀନେତ୍ରୀ ଢେଙ୍କାନାଳର କେତେକ ଗାଁରେ ପ୍ରଚାର ଚଳେଇଲେ ନିନ୍ଦିନି ପାଣିଗ୍ରାହୀ।

କାଳିନ୍ଦୀ ଚରଣ ପାଣିଗ୍ରାହୀ, ସଚ୍ଚିରାଉତରା, ମନମୋହନ ମିଶ୍ର, ଅନନ୍ତ ପଟ୍ଟନାୟକଙ୍କ ବିପ୍ଳବୀ ଗାନ ଏବଂ ସେତେବେଳେ ଚାଞ୍ଚଲ୍ୟ ସୃଷ୍ଟି କରିଥିବା ଘନଶ୍ୟାମ ମହାନ୍ତିଙ୍କ ଦଶହରା ଭେଟିର ଗାନ ଗାଇଗାଇ ଏମାନେ ଗାଁ ମାନଙ୍କରେ ପ୍ରବେଶ କରନ୍ତି। ଗାଁ ଦାଣ୍ଡ ଭରପୁର ହୋଇଯାଏ। ପ୍ରଜାମଣ୍ଡଳ ନେତା ଓ ଏମାନେ ଭାଷଣ ଦେଇ ପ୍ରତ୍ୟକ୍ଷ ସଂଗ୍ରାମ ଲାଗି ପ୍ରସ୍ତୁତ ହେବାକୁ ଡାକରା ଦିଅନ୍ତି। ଆଠଗଡ଼ରୁ ଏକ ରାଜନୈତିକ ପାଲାଦଳ, ଯାହାର ସ୍ରଷ୍ଟା ଆଠଗଡ଼ ପ୍ରଜାମଣ୍ଡଳର ସଂପାଦକ ବ୍ରଜ କିଶୋର ପଟ୍ଟନାୟକ, ତାହାର ପ୍ରସିଦ୍ଧ ଗାୟକ ଚକ୍ରଧର ବେହେରା ଗାଁ ଗାଁରେ ବିପ୍ଳବୀ ପାଲା ଗାନକରି ପ୍ରଜାଙ୍କୁ ଉଦ୍ଦୀପିତ କରୁଥାନ୍ତି।

ପ୍ରଶାସନ ପକ୍ଷରୁ ଯେଉଁ ସଶସ୍ତ୍ର ବାହିନୀ ଅଣାଯାଇଥିଲା ତାହା ମଧ୍ୟରେ ଗୋପନରେ ପ୍ରଜାମଣ୍ଡଳର ନେତାମାନେ ପ୍ରବେଶ କରି ସେମାନେ ଯେପରି ରାଜଶାସନର ଆଦେଶରେ ରାଜବାଟୀ ଦଖଲ ବେଳେ ଅନ୍ଧାଧୁନ୍ଦିଆ ଦମନ ନ ଚଳାନ୍ତି ସେଥିଲାଗି ପ୍ରବର୍ତ୍ତାଉଥିଲେ । ମୁସଲମାନ ସୈନ୍ୟମାନଙ୍କ ମଧ୍ୟରେ ଗୋପନରେ ପ୍ରଜାମଣ୍ଡଳର ଲଡୁଆ କର୍ମୀ ମହମ୍ମଦ ତାଯେବ (ଫୁଟାମିଆଁ)ଙ୍କ ସାହସିକ ପ୍ରଚାର ଅଭିଯାନ ଅବିସ୍ମରଣୀୟ । ତାଙ୍କ ବଡ଼ଭାଇ ମହମ୍ମଦ ଯାକୁବ୍ ମଧ୍ୟ ତାଙ୍କୁ ଏ କାର୍ଯ୍ୟରେ ସାହାଯ୍ୟ କରୁଥିଲେ ।

ରାଜବାଟି ଦଖଲ ଲାଗି ଦଶ ହଜାରରୁ ଅଧିକ ସ୍ୱେଚ୍ଛାସେବକ ନାମ ଲେଖାଇଲେ । ରାଜବାଟି ଦଖଲର ବ୍ୟାପକ ପ୍ରସ୍ତୁତି ଚାଲିଥିବାବେଳେ ନଭେମ୍ବର ୧୭ ତାରିଖରେ ପ୍ରଜାମଣ୍ଡଳର କାର୍ଯ୍ୟକାରୀ କମିଟି ବସି ଚରମପତ୍ର ପ୍ରସ୍ତୁତ କଲା । ଡିସେମ୍ବର ୨୦ ତାରିଖରେ ପ୍ରଶାସନକୁ ଏକ କଡ଼ା ଚେତାବନୀ ଦିଆଗଲା । ସେଥିରେ କୁହାଗଲା ଯେ ନଭେମ୍ବର ୨୩ ସକାଳ ସୁଦ୍ଧା ରାଜ୍ୟରେ ବାହାରୁ ଆଣି ମୁତୟନ କରାଯାଇଥିବା ସଶସ୍ତ୍ର ବାହିନୀକୁ ଅନ୍ତର କରିଦିଅ । ନଚେତ୍ ପରିଣତି ଭୟାବହ ହେବ ।

ଢେଙ୍କାନାଳରେ ସେତେବେଳେ ସମଗ୍ର ଶାସନ ଅଚଳ ହୋଇ ପଡ଼ିଥାଏ । ରାଜା ଶଙ୍କର ପ୍ରତାପ ଯାଇ କଲିକତାରେ ଥାଆନ୍ତି । ସେଠାରେ ଅନ୍ୟାନ୍ୟ ରାଜାଙ୍କ ସଙ୍ଗେ ପରାମର୍ଶ କରୁଥାନ୍ତି ଏବଂ ସର୍ଦ୍ଦାର ପଟେଲଙ୍କ ନିକଟକୁ ଯାଇ ଫେରାଦ ହେବା ପ୍ରସ୍ତୁତି ଚଳାଇଥାନ୍ତି । କଲିକତାରୁ ତାଙ୍କଠାରୁ ଖବର ଆସିଲା ଯେ ଡିସେମ୍ବର ୭ ତାରିଖରେ ସେ ପ୍ରଜାମାନଙ୍କୁ କ୍ଷମତା ଅର୍ପଣ କରିବେ । ପ୍ରଜାମଣ୍ଡଳ ରାଜାଙ୍କ ଚାଲ ବୁଝିପାରିଲା । ତଥାପି ପ୍ରଜାମଣ୍ଡଳ ପ୍ରଶାସନକୁ କ୍ଷମତା ହସ୍ତାନ୍ତର ନହେଲେ, ରଜା ନହଟିଲେ ପରିଣାମ ଭୟାବହ ହେବ ବୋଲି ପୁନର୍ବାର ସୂଚେଇ ଦେଲା ।

ଢେଙ୍କାନାଳ ସାରା ସରଗରମ୍ ବାତାବରଣ । ସାତ ତାରିଖ ଦିନ କ୍ଷମତା ହସ୍ତାନ୍ତର, ନଚେତ୍ ରାଜବାଟି ଦଖଲ । ସବୁ କୋର୍ଟ କଚେରୀ, ଅମାର ଦଖଲର ଡାକରା ଦିଆଗଲା । କୋଡ଼ିଏ ହଜାରରୁ ଅଧିକ ସ୍ୱେଚ୍ଛାସେବୀ ସେଦିନ ଢେଙ୍କାନାଳ ଗଡ଼ ଅଳସୁଆ ହାଟ ପଡ଼ିଆରେ ହାଜର ହେଲେ । ସ୍ୱେଚ୍ଛାସେବକମାନେ ଚରମ ସଂଗ୍ରାମ ପାଇଁ ଯିଏ ଯେଉଁ ଆୟୁଧ ପାଇଲା, କୋଡ଼ି, କାଙ୍କଠାରୁ ଧନୁତୀର ତଲବାର ଧରି ହାଜର । ସ୍ୱେଚ୍ଛାସେବକମାନେ ପାଇକଛା ଭିଡ଼ି ମୁଣ୍ଡରେ ଚନ୍ଦନ ସିନ୍ଦୂର ଲଗେଇ ରଣଡାକ ଦେଉଥାନ୍ତି । କଟକ ଓ ବାହାରୁ ଆସିଥିବା ଛାତ୍ର ଯୁବକନେତାମାନେ ସେମାନଙ୍କୁ ଉତ୍ସାହିତ କରୁଥାଆନ୍ତି ।

ଏହି ସମୟ ଭିତରେ ଢେଙ୍କାନାଳ ରାଜା ଦିଲ୍ଲୀରେ ସର୍ଦ୍ଦାର ପଟେଲଙ୍କୁ ଏବଂ ସ୍ୱରାଷ୍ଟ୍ର ବିଭାଗର ସେକ୍ରେଟାରୀ ଭି.ପି. ମେନନ୍‌ଙ୍କୁ ଭେଟି ହସ୍ତକ୍ଷେପ କରିବାକୁ ନିବେଦନ କରିଥାନ୍ତି ।

ଡିସେମ୍ବର ୪ ତାରିଖରେ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ ପକ୍ଷରୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ନିକଟକୁ ଏକ ସନ୍ଦେଶ ଆସିଥିଲା ଓ ସର୍ଦ୍ଦାର ପଟେଲ୍ ୧୩ ତାରିଖରେ ଓଡ଼ିଶା ଆସୁଛନ୍ତି ଏବଂ ସେ ଦୃଷ୍ଟିରୁ ଢେଙ୍କାନାଳର ପ୍ରତ୍ୟକ୍ଷ ସଂଗ୍ରାମକୁ ବନ୍ଦ କରିବାକୁ ସେଥିରେ ପରାମର୍ଶ ଥିଲା।

ଆନୁଷ୍ଠାନିକ ଭାବରେ ଢେଙ୍କାନାଳ ପ୍ରଜାମଣ୍ଡଳ ପାଖରେ ଏପରି ପରାମର୍ଶ ପହଞ୍ଚି ନଥିଲା।

ସ୍ୱେଚ୍ଛାସେବକ ବାହିନୀ ଓ ଉପସ୍ଥିତ ଜନତା ଡିସେମ୍ବର ୭ରେ ରଜା ଦେଇଥିବା ପ୍ରତିଶ୍ରୁତି ପାଳନ ନକଲେ ରାଜବାଟୀ ଦଖଲ ଅଭିଯାନ ଚଳେଇବେ। ଉତ୍କଣ୍ଠା ସହିତ ସମସ୍ତେ ସେ ମୁହୂର୍ତ୍ତ ଲାଗି ପ୍ରସ୍ତୁତ।

ପ୍ରଜାମଣ୍ଡଳର ନେତା ଗତିକୃଷ୍ଣ ଭଂଜଙ୍କ ସଭାପତିତ୍ୱରେ ଅଳସୁଆ ହାଟର ସଭାରେ ବୈଷ୍ଣବ ପଟ୍ଟନାୟକ, ଲକ୍ଷ୍ମୀଧର ସାହୁ ଓ ଅନ୍ୟମାନେ ଆହ୍ୱାନ ଦେଇସାରିଲା ପରେ ସଭାପତି ଗତିକୃଷ୍ଣ ଭଂଜ 'ହୁସେନ୍ ମରିଗଲା, ହୁସେନ୍ ମରିଗଲା'ର ଏକ ରହସ୍ୟପୂର୍ଣ୍ଣ ଉପାଖ୍ୟାନ କହିଲାବେଳେ ରାଜ ପ୍ରଶାସନ ପକ୍ଷରୁ ଏକ ବାର୍ତ୍ତାବହ ଆସିଲେ। ଢେଙ୍କାନାଳ ଦରବାରର କୁଖ୍ୟାତ ଏସ.ପି. ନୀଳମଣି ଧଳ ଓଡ଼ିଶା ସରକାରଙ୍କ ବାର୍ତ୍ତା ଓ ଢେଙ୍କାନାଳ ରାଜାଙ୍କ ବାର୍ତ୍ତା ଶୁଣେଇବେ ବୋଲି ସଭାପତିଙ୍କଠାରୁ ଅନୁମତି ନେଲେ। ରାଜାଙ୍କ ପକ୍ଷରୁ କୁହାଗଲା, ସେ ତାଙ୍କର ଦାୟିତ୍ୱ ସର୍ଦ୍ଦାର ପଟେଲ୍‌ଙ୍କୁ ଭେଟି ଦେଇ ଆସିଛନ୍ତି, ଆଉ ଢେଙ୍କାନାଳର ଶାସନଭାର ଓଡ଼ିଶାର ପ୍ରଧାନମନ୍ତ୍ରୀ (ହରେକୃଷ୍ଣ ମହତାବ)ଙ୍କୁ ଅର୍ପଣ କରିଛନ୍ତି। ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ପଟେଲ ଏଥିଲାଗି ଏହି ମାସ ୧୩ ତାରିଖରେ ଓଡ଼ିଶା ଆସୁଛନ୍ତି।

ଏହି ପ୍ରକାର ଘୋଷଣା ପରେ ସଭାରେ ଚହଳ ସୃଷ୍ଟି ହେଲା। ଏପରି ପରିସ୍ଥିତିରେ ରାଜବାଟୀ ଦଖଲ କରାଯିବ କି ନାହିଁ - ରଜା ପ୍ରତାରଣା କରୁଛନ୍ତି କି ନାହିଁ - ଏମିତି ବିଭିନ୍ନ ପ୍ରକାର ଭ୍ରାନ୍ତିରେ ସଭା ମଉଳି ଗଲା। ଉତ୍କଣ୍ଠା, ଆଶା, ନୈରାଶ୍ୟର ବାତାବରଣ ସୃଷ୍ଟି ହେଲା। ଭବିଷ୍ୟତରେ କ'ଣ ହେବାକୁ ଯାଉଛି, ସେଥିଲାଗି ଢେଙ୍କାନାଳର ପ୍ରଜାକୁଳ ଅପେକ୍ଷା କରି ରହିଲେ।

□□□

# ଓଡ଼ିଶା ପ୍ରଦେଶରେ ଗଡ଼ଜାତ ମିଶ୍ରଣ

ଓଡ଼ିଶା ପ୍ରଦେଶ ସହିତ ଗଡ଼ଜାତଗୁଡ଼ିକର ମିଶ୍ରଣ ପ୍ରକ୍ରିୟା ଆରମ୍ଭ ପୂର୍ବରୁ ଓଡ଼ିଶା ପ୍ରଦେଶ ଗଠନ ଓ ଓଡ଼ିଶା ଗଡ଼ଜାତ ସଂପର୍କିତ କେତେକ ଗୁରୁତ୍ୱପୂର୍ଣ୍ଣ ଘଟଣାର ଉଲ୍ଲେଖ ପ୍ରୟୋଜନ।

୧୮୦୩ରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଓଡ଼ିଶାକୁ ଦଖଲ କଲାପରେ ଭୌଗୋଳିକ ଓଡ଼ିଶାକୁ ବିଭିନ୍ନ ସମୟରେ ବିଭିନ୍ନ ଭାବରେ ବିଭକ୍ତ କରିଆସିଥିଲା। ଭାଗଭାଗ କରିବା ଶେଷ ପର୍ଯ୍ୟାୟରେ ବିହାର ସହିତ ଓଡ଼ିଶାକୁ ମିଶେଇ ପ୍ରଦେଶ ଗଢ଼ାଯାଇଥିଲା। ଓଡ଼ିଶାର ଗୋଟିଏ ଅଂଶ ମାନ୍ଦ୍ରାଜ ପ୍ରେସିଡ଼େନ୍ସି ଓ ଆଉ ଏକ ଅଂଶ ମଧ୍ୟ ପ୍ରଦେଶରେ ଅନ୍ତର୍ଭୁକ୍ତ କରାଯାଇଥିଲା।

୧୯୦୧ଠାରୁ ଓଡ଼ିଶା ମିଶ୍ରଣର ଆନ୍ଦୋଳନ ଓଡ଼ିଶାର ଜାତୀୟ ଆନ୍ଦୋଳନର ରୂପ ନେଇଥିଲା। ୧୯୩୦ରେ ଭାରତକୁ ସାଇମନ କମିଶନ ଆସିଲାବେଳେ ସାରା ଭାରତରେ କଂଗ୍ରେସ ଆହ୍ୱାନରେ ସାଇମନ କମିଶନ ଫେରିଯାଅ ଆନ୍ଦୋଳନ ହୋଇଥିଲା। ଉକ୍ତ ସାଇମନ କମିଶନ ସଂଶ୍ଲିଷ୍ଟ ଅଟଲି ସବକମିଟି ଓଡ଼ିଶା ପ୍ରଦେଶ ସ୍ୱତନ୍ତ୍ରଭାବରେ ଗଠିତ ହେଲେ ଓଡ଼ିଶାର ଗଡ଼ଜାତଗୁଡ଼ିକର ସ୍ଥିତି କଣ ହେବ, ସେ ସଂକ୍ରାନ୍ତରେ ଏକ ମନ୍ତବ୍ୟ ଦେଇଥିଲା। ଉକ୍ତ ମନ୍ତବ୍ୟ ହେଲା "ଓଡ଼ିଶା ଲାଗି ଯେଉଁ ପ୍ରଶାସନିକ ବ୍ୟବସ୍ଥା ହେବ, ତାହା ସହିତ ବ୍ରିଟିଶ ଭାରତର ଅଂଗ ନହୋଇଥିବା ଓଡ଼ିଶାର ଦେଶୀୟ ରାଜ୍ୟଗୁଡ଼ିକର ଏକ ପ୍ରକାରର ସଂପର୍କ ଆଣିବାକୁ ହେବ।"

୧୯୩୬ ଏପ୍ରିଲ ୧ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କାଳରେ ଓଡ଼ିଶାର ୨୬ଟି ଗଡ଼ଜାତକୁ ପ୍ରଦେଶ ଠାରୁ ରାଜନୈତିକ, ପ୍ରଶାସନିକ ତଥା ଅର୍ଥନୈତିକ କ୍ଷେତ୍ରରୁ ଅଲଗା କରି ରଖାଗଲା।

କାବିନେଟ ମିଶନ ୧୯୪୬ରେ ତାଙ୍କ ପ୍ରସ୍ତାବ ଦେଲାପରେ ଓଡ଼ିଶାର ଦେଶୀୟ ରାଜ୍ୟ ଶାସକମାନେ କିପରି ଓଡ଼ିଶା ପ୍ରଦେଶ ସହିତ ଗଡ଼ଜାତଗୁଡ଼ିକଙ୍କ ମିଶ୍ରଣକୁ ବିରୋଧ କରିଥିଲେ, ତାହା ଆଗରୁ ଦର୍ଶାଯାଇଛି। କାବିନେଟ ମିଶନକୁ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀ ଓ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ପ୍ରଦେଶ ସହିତ ଗଡ଼ଜାତଗୁଡ଼ିକର ମିଶ୍ରଣ ଦାବୀ କରି ସ୍ମାରକଲିପି ଦେଇଥିଲେ।

ଓଡ଼ିଶାର ପ୍ରଧାନମନ୍ତ୍ରୀ ଭାବେ ହରେକୃଷ୍ଣ ମହତାବ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟକୁ ଦେଇଥିବା ସ୍ମାରକଲିପିରେ ବର୍ମା ଦେଶ ସହିତ ସାନ ରାଜ୍ୟଗୁଡ଼ିକର ମିଶ୍ରଣର ନଜିର ଦେଇ କହିଥିଲେ,

"ଓଡ଼ିଶାରେ ଅନୁରୂପ ଯୋଜନା ନିଆଯାଉ ଏବଂ ଓଡ଼ିଶାର ଦେଶୀୟ ରାଜ୍ୟଗୁଡ଼ିକର ଏକ ଫେଡ଼େରେସନ ଗଠତ ହେଉ ଏବଂ କେତେକ ସାମୂହିକ ଉଦ୍ଦେଶ୍ୟରେ ଓଡ଼ିଶା ପ୍ରଦେଶ ସହିତ ମିଳିତ ଭାବରେ ଶାସନ ପ୍ରତିଷ୍ଠା ହେଉ।"

୧୯୪୬ ଏପ୍ରିଲ ୨୩ରେ ସେ ଦେଶୀୟ ରାଜ୍ୟର ଶାସକମାନଙ୍କୁ ଏକ ଚିଠି ଦେଇଥିଲେ। ସେଥିରେ ଥିଲା, "ମୁଁ ଚାହୁଁ ନାହିଁ ଯେ ଶାସକମାନଙ୍କର ବଂଶ ମର୍ଯ୍ୟାଦା ଏବଂ ପ୍ରିଭିପର୍ସ (ରାଜନ୍ୟ ଭତ୍ତା) ଲୋପ କରାଯିବ ଏବଂ ଭବିଷ୍ୟତ ପ୍ରଦେଶରେ ସେମାନେ ଯେ କୌଣସି ସାଧାରଣ ବ୍ୟକ୍ତି ହିସାବରେ ରହିବେ।"

ଓଡ଼ିଶା ସରକାରଙ୍କ ଗଡ଼ଜାତ ରାଜାମାନଙ୍କ ପ୍ରତି ଏପରି ଦରଦ ଓ ସୁବିଧା ସୁଯୋଗ ପ୍ରଦାନର ପ୍ରତିଶ୍ରୁତିର ତୀବ୍ର ବିରୋଧ ସେତେବେଳେ ପ୍ରକାଶ ପାଇଥିଲା। ଓଡ଼ିଶା ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ - ସଂଯୁକ୍ତ ଓଡ଼ିଶା ଛତିଶଗଡ଼ ଆଂଚଳିକ ପରିଷଦ ଓଡ଼ିଶା ଓ ଛତିଶଗଡ଼ ରାଜାମାନଙ୍କ ୟୁନିଅନ ଗଠନ ନିଷ୍ପତ୍ତିକୁ ବିରୋଧ କଲା ଓ ସବୁ ଗଡ଼ଜାତ ଓଡ଼ିଶା ସହିତ ମିଶ୍ରଣର ଦାବୀ କଲା। କଟକଠାରେ ୧୯୪୭ ଅଗଷ୍ଟ ୧୦ରେ ଓଡ଼ିଶା ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀରେ ଏକ ନିଷ୍ପତ୍ତି ଗ୍ରହଣ କରାଗଲା। ଉକ୍ତ ନିଷ୍ପତ୍ତି ରାଜନ୍ୟବର୍ଗଙ୍କୁ ଚେତାବନୀ ଦେଇ କହିଥିଲା ଯେ, ସେମାନେ ଯଦି ୧୯୪୮ ଏପ୍ରିଲ ସୁଦ୍ଧା ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣର ବିରୋଧିତାରୁ କ୍ଷାନ୍ତ ନହୁଅନ୍ତି, ତେବେ ସେମାନଙ୍କ ବିରୁଦ୍ଧରେ ପ୍ରବଳ ଆନ୍ଦୋଳନ କରାଯିବ। କିନ୍ତୁ ନୀଳଗିରି ଓ ଢେଙ୍କାନାଳର ଐତିହାସିକ ଘଟଣାବଳୀ ୧୯୪୮ ଏପ୍ରିଲ ଯାଏ ଅପେକ୍ଷା କରିବାକୁ ଦେଲା ନାହିଁ। ମହତାବ ଯେଉଁ ଫେଡ଼େରେସନ ଗଠନର ପ୍ରସ୍ତାବ ଦେଇଥିଲେ, ତାହା ଆଉ କାମ ଦେଲା ନାହିଁ।

ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ପଟେଲ ଆସିବା ପୂର୍ବରୁ ଓଡ଼ିଶା ଗଡ଼ଜାତ ପ୍ରଜାମଣ୍ଡଳର କେତେକ ତୁଙ୍ଗନେତା ଅନ୍ୟ ଏକ ପନ୍ଥା ଧରିଲେ। କେତେକ ପ୍ରଜାମଣ୍ଡଳ ନେତା ଓଡ଼ିଶା ପ୍ରଦେଶ ସହିତ ଗଡ଼ଜାତଗୁଡ଼ିକର ମିଶ୍ରଣର ବିରୋଧ କରି ରାଜାମାନଙ୍କ ଅଧୀନରେ ଦାୟିତ୍ୱମୂଳକ ଶାସନ ଦାବୀ କରୁଥିଲେ। ସେମାନଙ୍କର ଯୁକ୍ତିଥିଲା, ଗଡ଼ଜାତଗୁଡ଼ିକ ଅନଗ୍ରସର। ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ହେଲେ ଗଡ଼ଜାତଗୁଡ଼ିକର ବିକାଶ ବାଧା ପାଇବ। ଏହାର ପ୍ରଧାନ ଉଦ୍ୟୋକ୍ତା ଥିଲେ ତାଳଚେରର ପବିତ୍ର ମୋହନ ପ୍ରଧାନ। ଏପରି ଅଭିମତ ରାଧାନାଥ ରଥ (ଆଠଗଡ଼), ତିଗିରିଆର ପ୍ରଧାନମନ୍ତ୍ରୀ ବିପିନ ବିହାରୀ ପଟ୍ଟନାୟକ, ବଡ଼ମ୍ବାର ପ୍ରତାପ ଚନ୍ଦ୍ର ପଟ୍ଟନାୟକ, ନୟାଗଡ଼ର ଶ୍ରୀଧର ଦାଶ ପ୍ରମୁଖ ପୋଷଣ କରୁଥିଲେ।

ଯେଉଁଦିନ ବଲ୍ଲଭ ଭାଇ ପଟେଲ ଓଡ଼ିଶା ଆସି ପହଂଚିବେ ଠିକ ସେହିଦିନ ୧୯୪୭ ଡିସେମ୍ବର ୧୩ ତାରିଖରେ ପବିତ୍ରମୋହନ ପ୍ରଧାନ କଟକଠାରେ ଏପରି ମତାବଲମ୍ବୀ ପ୍ରଜାମଣ୍ଡଳ ନେତାମାନଙ୍କ ଏକ ସମ୍ମିଳନୀ ଆହ୍ୱାନ କଲେ ।

ଏପରି ସମ୍ମିଳନୀ ଆହ୍ୱାନକୁ ଓଡ଼ିଶା ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ, ବିଭିନ୍ନ ପ୍ରଗତିଶୀଳ ରାଜନୈତିକ ଦଳ ଓ ବ୍ୟକ୍ତି, ବିଶେଷରେ ଅନେକ ପ୍ରଜାମଣ୍ଡଳର ନେତା ନିନ୍ଦା କଲେ । ହରେକୃଷ୍ଣ ମହତାବ କଡ଼ା ଚେତାବନୀ ଦେଲେ । ଶେଷରେ ଏପରି ସମ୍ମିଳନୀ ପ୍ରତ୍ୟାହୃତ କଲେ ।

**ରାଜନ୍ୟବର୍ଗଙ୍କୁ ପଟେଲଙ୍କ ପ୍ରତିଶ୍ରୁତି ଓ ଚେତାବନୀ :**

ଓଡ଼ିଶା ସରକାର ନୀଳଗିରିର ପ୍ରଶାସନର ଦାୟିତ୍ୱ ନେବାପରେ ଓଡ଼ିଶାର ରାଜାମାନଙ୍କ ଭିତରେ ଛାନିଆ ପଶିଗଲା । ନୀଳଗିରି ଘଟଣା ପରେ ପରେ ୧୯୪୭ ନଭେମ୍ବର ମାସରେ ଓଡ଼ିଶା ରାଜାମାନେ ମିଳିତ ହୋଇ ଭବିଷ୍ୟତ କର୍ମପନ୍ଥା ସ୍ଥିର କଲେ । ୧୯୪୭ ଡିସେମ୍ବର ୧ ତାରିଖରେ ଦିଲ୍ଲୀରେ ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କୁ ଭେଟି ସେମାନେ ଗଠନ କରିଥିବା ୟୁନିଅନକୁ ସ୍ୱୀକୃତି ଦେବାକୁ ଅନୁରୋଧ କଲେ । ଏଥିପୂର୍ବରୁ ଓଡ଼ିଶାର ରାଜାମାନଙ୍କ ମତିଗତି ସଂପର୍କରେ ନୂତନ ଭାବରେ ଜାଗ୍ରତ ପ୍ରଜାମାନଙ୍କ କ୍ରୋଧରୁ କେବଳ ଭାରତ ସରକାର ସେମାନଙ୍କୁ ରକ୍ଷା କରିପାରିବ ।" ସେ ୟୁନିଅନକୁ ସ୍ୱୀକୃତି ଦେବାକୁ ମନା କରିଦେଲେ । ଓଡ଼ିଶାର ରାଜାମାନଙ୍କୁ ଶୁଣାଇ ଦେଲେଯେ, ଓଡ଼ିଶାର "ଖ" ଓ "ଗ" ଶ୍ରେଣୀଭୁକ୍ତ ରାଜ୍ୟଗୁଡ଼ିକ ପ୍ରଦେଶ ସହିତ ମିଶିବ । ମାତ୍ର 'କ' ଶ୍ରେଣୀଭୁକ୍ତ ରାଜ୍ୟଗୁଡ଼ିକ କେତେକ ବିଷୟବସ୍ତୁ ଘେନି ପ୍ରଦେଶ ସହିତ ମିଳିତ ଶାସନରେ ସାମିଲ୍ ହେବ ।"

ଢେଙ୍କାନାଳରେ ଡିସେମ୍ବର ୭ ତାରିଖ ଘଟଣାପରେ ଓଡ଼ିଶା ଗଡ଼ଜାତଗୁଡ଼ିକର ପ୍ରଦେଶରେ ମିଶିବାର ଆଖର ମୁହୂର୍ତ୍ତ ପହଂଚିଗଲା । ୧୯୪୭ ଡିସେମ୍ବର ୧୩ ତାରିଖରେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଏବଂ ସ୍ୱରାଷ୍ଟ୍ର ବିଭାଗର ସଚିବ ଭି.ପି. ମେନନ କଟକରେ ପହଂଚିଲେ । ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ, ରାଜସ୍ୱମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓ ଅନ୍ୟାନ୍ୟ ମନ୍ତ୍ରୀଙ୍କ ସହିତ ସେମାନଙ୍କର ଆଲୋଚନା ଚାଲିଲା । ସ୍ଥିର ହେଲାଯେ, 'ଖ' ଓ 'ଗ' ଶ୍ରେଣୀଭୁକ୍ତଙ୍କ ସହିତ 'କ' ଶ୍ରେଣୀଭୁକ୍ତ ଦେଶୀୟ ରାଜ୍ୟବୃନ୍ଦ ଓଡ଼ିଶାରେ ମିଶିବେ । ସ୍ୱରାଷ୍ଟ୍ରମନ୍ତ୍ରୀ ପରିବର୍ତ୍ତିତ ପରିସ୍ଥିତିରେ 'କ' ଶ୍ରେଣୀଭୁକ୍ତ ରାଜ୍ୟଙ୍କ ସମ୍ପର୍କରେ ପୂର୍ବମତ ପରିବର୍ତ୍ତନ କଲେ ।

ତହିଁପର ଦିନ ୧୪ ତାରିଖରେ ଖ ଓ ଗ ଶ୍ରେଣୀର ୧୨ଟି ଦେଶୀୟ ରାଜ୍ୟର ରାଜାଙ୍କ ସହିତ ଆଲୋଚନା ଚାଲିଲା । ତିନିଟି ଦେଶୀୟ ରାଜ୍ୟର ଶାସକ ଅସୁସ୍ଥତା ଓ ଅନ୍ୟାନ୍ୟ କାରଣ ଦର୍ଶାଇ ସେଦିନ ବୈଠକରେ ଯୋଗ ଦେଇନଥିଲେ ।

ସର୍ଦ୍ଦାର ପଟେଲ ମିଶ୍ରଣ ପ୍ରସ୍ତାବ ବାଢ଼ି ଏଥିରେ ସମ୍ମତ ନ ହେଲେ ଭବିଷ୍ୟତ୍ କ'ଣ ହେବ ତାହା ସୂଚେଇ ଦେଇଥିଲେ । ସେ ଚେତାବନୀ ଦେଲେଯେ, "ଶାସକମାନେ ନିଜ ନିଜ ପ୍ରଜାମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ହୁଏତ ଶେଷରେ ଦିଲ୍ଲୀରେ ପହଂଚିବେ । ସେତେବେଳକୁ ଘଟଣା ଏତେଦୂର ଯାଇଥିବ ଯେ, ସେମାନଙ୍କୁ ସାହାଯ୍ୟ ଦେବା ଅବସ୍ଥାରେ ସେ ନଥିବେ । ସେମାନେ ରାଜନ୍ୟ ଭତ୍ତା ହରେଇବେ ।" ପ୍ରକୃତରେ ଗଡ଼ଜାତମାନଙ୍କରେ ପ୍ରଜା ଆନ୍ଦୋଳନ ସେପରି ଅବସ୍ଥାରେ ପହଂଚିଥିଲା । ଆଉ ରାଜାମାନଙ୍କର ଶାସନ ରହିବ ନାହିଁକି ସେମାନଙ୍କର ସାମାଜିକ ଅର୍ଥନୈତିକ, ପ୍ରତିପତ୍ତି, ଅଧିକାର, ଧନ ସଂପଦ ରହିବ ନାହିଁ, ଏପରି ଅବସ୍ଥା ଉପୁଜି ଥିଲା । ସେଥିରୁ ରକ୍ଷା ପାଇବାକୁ ହେଲେ ତାଙ୍କ ସର୍ତ୍ତ ମାନି ନିଅ ବୋଲି ସେ ସତର୍କ କରିଦେଲେ ।

ଭବିଷ୍ୟତରେ ସବୁ ହରାଇବାର ଜଳଜଳ ବିପଦ, ଏଣେ ସ୍ୱରାଷ୍ଟ୍ରମନ୍ତ୍ରୀଙ୍କ ସେମାନେ ସହିତ ମିଶିଲେବି ଯେଉଁ ସୁବିଧା ସୁଯୋଗ ପାଇବେ, ତାହାର ପ୍ରତିଶ୍ରୁତି । ଏହିପରି ପରିସ୍ଥିତିରେ ଉପସ୍ଥିତ ୧୨ଟି ରାଜ୍ୟର ଶାସକ ମିଶ୍ରଣ ରାଜିନାମାରେ ସ୍ୱାକ୍ଷର କରିଦେଲେ ।

**ଢେଙ୍କାନାଳ ରାଜା ମୁଣ୍ଡ ନୋଇଁଲେ :**

ତା ପରେ 'କ' ଶ୍ରେଣୀଭୁକ୍ତ ଶାସକମାନଙ୍କ ସହିତ ଆଲୋଚନା ଚାଲିଲା । ଏମାନେ ଟିକିଏ ଖେଳ ଖେଳିବା ଆରମ୍ଭ କରିଦେଲେ । ମୟୂରଭଂଜ ମହାରାଜା କହିଲେ ଯେ, ସେ ତାଙ୍କ କ୍ଷମତା ଲୋକ ପ୍ରତିନିଧିଙ୍କୁ ହସ୍ତାନ୍ତର କରି ଦେଇଛନ୍ତି । ସେମାନଙ୍କ ସହିତ ପରାମଶ ବିନା ସେ କୌଣସି କଥାରେ ସମ୍ମତ ହେବେ ନାହିଁ । ଢେଙ୍କାନାଳ ମଧ୍ୟ "କ" ଶ୍ରେଣୀଭୁକ୍ତ ରାଜ୍ୟ । ଯାହାଙ୍କ ଶାସନକୁ ପ୍ରଜାମଣ୍ଡଳ ଉଚ୍ଛେଦ କରିବା ଡାକରା ଡିସେମ୍ବର ୭ରେ କାର୍ଯ୍ୟକାରୀ କରିବ ବୋଲି ଘୋଷଣା କରିଥିଲା । ଭି.ପି. ମେନନ ସେହି ଢେଙ୍କାନାଳ ରାଜା ଶଙ୍କର ପ୍ରତାପ ସିଂହଦେଓଙ୍କୁ ୧୩ ତାରିଖ ରାତିରେ ଭବିଷ୍ୟତ୍ ତାଙ୍କର କ'ଣ ହେବ ତାହା ସୂଚେଇ ଦେଲେ । ଶଙ୍କର ପ୍ରତାପ ସିଂହଦେଓଙ୍କ ଆଣ୍ଠୁ ଭାଙ୍ଗିଗଲା । ସେ ସଂଗେସଂଗେ ରାଜି ହୋଇ ସ୍ୱାକ୍ଷର କରିଦେଲେ । ଢେଙ୍କାନାଳ ରାଜାଙ୍କ ନତି ସ୍ୱୀକାର ପରେ ତହିଁପରଦିନ ୧୪ ଡିସେମ୍ବରରେ ମୟୁରଭଂଜ ବ୍ୟତୀତ ଅନ୍ୟସବୁ 'କ' ଶ୍ରେଣୀଭୁକ୍ତ ରାଜା ସ୍ୱାକ୍ଷର କଲେ । ମୟୁରଭଂଜ ପ୍ରଜାମଣ୍ଡଳ ପକ୍ଷରୁ ଶରତ ଚନ୍ଦ୍ର ଦାସ ତଥାକଥିତ ଲୋକ ପ୍ରତିନିଧିମୂଳକ ଶାସନର ପ୍ରଧାନମନ୍ତ୍ରୀ ଥାଆନ୍ତି । ବର୍ଷକ ପରେ ୧୯୪୮ ଅକ୍ଟୋବର ୧୭ ତାରିଖରେ ମୟୁରଭଂଜ ଶାସକ ରାଜିନାମାରେ ସ୍ୱାକ୍ଷର କରିଥିଲେ ।

ଡିସେମ୍ବର ୧୪ରେ ଆଲୋଚନାବେଳେ ପାଟନା ମହାରାଜା, ଗାଙ୍ଗପୁର, ଷଢେଇକଳା ରାଜାମାନେ ପଟେଲଙ୍କ ସହିତ ଦର କଷାକଷି କରିବାକୁ ଉଦ୍ୟମ କରି ୪ଟି ପ୍ରସ୍ତାପ ରଖିଲେ ।

ସେଥିରେ ଥିଲା, ମିଶ୍ରଣ ହେଲେବି ରାଜାମାନଙ୍କର ପ୍ରଦେଶ ଶାସନରେ ସର୍ବବିଧ ବୈଧାନିକ ସୁଯୋଗ ରହିବ। ଓଡ଼ିଶାର ୨୬ ଗଡ଼ଜାତର ଶାସକମାନଙ୍କୁ ଘେନି ଭବିଷ୍ୟତ୍ ଓଡ଼ିଶା ବିଧାନ ସଭାର ଏକ ଉପର ସଦନ ରହିବ। ରାଜାମାନଙ୍କୁ ଉତ୍ତରାଧିକାରୀ ସୂତ୍ରରେ ଯାବତ୍ ଚନ୍ଦ୍ରାର୍କେ ରାଜନ୍ୟଭତ୍ତା ସୁନିଶ୍ଚିତ କରାଯିବ। ସେମାନଙ୍କର ପୂର୍ବର ରାଜକୀୟ ଅଧିକାର ଓ ସୁବିଧାସୁଯୋଗଗୁଡ଼ିକ ଅକ୍ଷତ ରହିବ।

ରାଜିନାମା ସ୍ୱାକ୍ଷରର ପରବର୍ତ୍ତୀ କାଳରେ ଏସବୁ ବିଷୟ ବିଚାରକୁ ନିଆଯିବ ବୋଲି ପଟେଲଙ୍କ ପକ୍ଷରୁ ପ୍ରତିଶ୍ରୁତି ପରେ ସେମାନେ ରାଜିନାମାରେ ଦସ୍ତଖତ୍ କଲେ। ୧୯୪୮ ଜାନୁଆରୀ ୧ ତାରିଖରୁ ଏହି ଦେଶୀୟ ରାଜ୍ୟଗୁଡ଼ିକ ଓଡ଼ିଶା ପ୍ରଦେଶ ସହିତ ମିଶ୍ରିତ ହେବେ ସ୍ଥିର ହେଲା। ସ୍ମରଣ କରିବାର କଥା ଓଡ଼ିଆ ବହୁଳ ଷଢ଼େଇକଳା, ଖରସୁଆଁରେ ଓଡ଼ିଆ ରାଜାଙ୍କ ଶାସନ ଥିଲେ ବି ଏବଂ ତାହା ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍ସିର ଅନ୍ତର୍ଭୁକ୍ତ ହୋଇଥିଲେ ବି ବିହାରର ସିଂହଭୂମି ଜିଲ୍ଲାରେ ଥିଲେ। ୧୯୪୮ ଜାନୁଆରୀ ୧ ରୁ ତାହା ଓଡ଼ିଶା ପ୍ରଦେଶ ସହିତ ମିଶିଲା। ମିଶ୍ରଣ ପରେ ଷଢ଼େଇକଳା, କଳାହାଣ୍ଡି, ବଲାଙ୍ଗୀର, ମୟୁରଭଂଜ, ଢେଙ୍କାନାଳ, କେଉଁଝର, ସୁନ୍ଦରଗଡ଼ ଓଡ଼ିଶାର ନୂଆ ଜିଲ୍ଲାରେ ପରିଣତ ହେଲେ।

ଏହି ରାଜିନାମାପରେ ୧୯୪୭ ଡିସେମ୍ବର ୨୩ରେ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ବିଜ୍ଞପ୍ତି ପ୍ରକାଶ ପାଇଲା। ଓଡ଼ିଶାରେ ଆଗରୁ ଥିବା ଜିଲ୍ଲାମାନଙ୍କ ସଂଗେ ମିଶାଇ ଏସବୁ ଗଡ଼ଜାତକୁ ଓଡ଼ିଶା ସରକାର ଶାସନ କରିବେ ବୋଲି ସେଥିରେ ନିର୍ଦ୍ଦେଶ ଥିଲା। ଏହିପରି ଭାବରେ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ସଂଘଟିତ ହେବାପରେ ଡିସେମ୍ବର ୧୭ ତାରିଖରେ କଟକଠାରେ ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ପଟେଲ ଏକ ବିଶାଳ ଜନସଭାରେ ଭାଷଣ ଦେଇଥିଲେ। ଉକ୍ତ ସଭା କଟକ ମ୍ୟୁନିସିପାଲଟି ପଡ଼ିଆରେ ଅନୁଷ୍ଠିତ ହୋଇଥିଲା। କ୍ୟାବିନେଟ ମିଶନର ଗଡ଼ଜାତ ଗୁଡ଼ିକ ସଂର୍ପକରେ ଯାହା ପ୍ରସ୍ତାବ ଥିଲା ତାହାର ସେ ବର୍ଣ୍ଣନା କରି ଓଡ଼ିଶାର ରାଜାମାନେ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ଲାଗି ସମ୍ମତ ହୋଇଥିବାରୁ ସେମାନଙ୍କୁ ବଧେଇ ଜଣେଇ ସେମାନେ ବିଜ୍ଞତା ଦର୍ଶାଇଛନ୍ତି ବୋଲି ଉଲ୍ଲେଖ କରିଥିଲେ। ଗଡ଼ଜାତଗୁଡ଼ିକର ଶାସନ ଚୋରଙ୍କ ହାତରୁ ଯାଇ ଡାକୁଙ୍କ ହାତରେ ପଡ଼ିଥାନ୍ତା ବୋଲି ମନ୍ତବ୍ୟ ଦେଇଥିଲେ। ଚୋର ଯଦି ରଜା, ତେବେ ରଜାଙ୍କ ଉଚ୍ଛେଦ ଚାହୁଁଥିବା ପ୍ରଜାମଣ୍ଡଳ କ'ଣ ଡାକୁ? ଏପରି ଧାରଣା ସୃଷ୍ଟି ହେଲା।

ଏପରି ମନ୍ତବ୍ୟ ଗଡ଼ଜାତ ପ୍ରଜାମଣ୍ଡଳର ଅଗ୍ରଗାମୀ ନେତା ଏବଂ ଓଡ଼ିଶାର ରାଜନୈତିକ ମହଲରେ ବିସ୍ମୟ ଓ ଅସନ୍ତୋଷ ସୃଷ୍ଟି କରିଥିଲା।

ଏହିସବୁ ଦୀର୍ଘ ପ୍ରକ୍ରିୟା ମାଧ୍ୟମରେ ଓଡ଼ିଶାରେ ୨୬ ଗଡ଼ଜାତଗୁଡ଼ିକର ମିଶ୍ରଣ ହେଲା। ଷଢ଼େଇକଳା ଖରସୁଆଁ ଓଡ଼ିଶା ପ୍ରଦେଶରେ ଅଳ୍ପକାଳ ରହିବାପରେ ଭାରତ ସରକାରଙ୍କ ନିଷ୍ପତ୍ତି

କ୍ରମେ ତାହା ବିହାର ରାଜ୍ୟ ଅନ୍ତର୍ଭୁକ୍ତ ହେଲା । ତାହା ଆଉ ଓଡ଼ିଶାର ଜିଲ୍ଲା ବା ଅଂଚଳ ହୋଇ ରହିଲା ନାହିଁ । ତାହା ଏକ ସ୍ୱତନ୍ତ୍ର ରାଜନୈତିକ ଘଟଣା ।

ମୟୂରଭଂଜର ଓଡ଼ିଶା ସହିତ ମିଶ୍ରଣ ପରେ ପୂର୍ବର ଓଡ଼ିଶାରେ ମୟୂରଭଂଜ, କଳାହାଣ୍ଡି, ବଲାଙ୍ଗୀର, କେଉଁଝର, ସୁନ୍ଦରଗଡ଼, ଢେଙ୍କାନାଳ ଓ ବୌଦଫୁଲବାଣୀ ନୂତନ ଜିଲ୍ଲା ଭାବରେ ପରିଗଣିତ ହେଲେ । ଓଡ଼ିଶା ପ୍ରଦେଶ ସେତେବେଳେ ୧୩ଟି ଜିଲ୍ଲାକୁ ଘେନି ଗଠିତ ହେଲା ।

୧୯୪୭ ଅଗଷ୍ଟ ୧୫ ସ୍ୱାଧୀନତା ପରେ ୧୯୫୦ରେ ସମ୍ବିଧାନ ସଭା ଭାରତୀୟ ଗଣତନ୍ତ୍ରର ଶାସନ ଖସଡ଼ା ପ୍ରସ୍ତୁତ କଲା । ତାହାରି ଭିତ୍ତିରେ ସ୍ୱାଧୀନ ଭାରତର ସମ୍ବିଧାନ ଅନୁସାରେ ସାବାଳକ ଭୋଟ ପ୍ରଥାରେ ସଂସଦ ଓ ପ୍ରଦେଶଗୁଡ଼ିକର ବିଧାନସଭାକୁ ନିର୍ବାଚନ ଅନୁଷ୍ଠିତ ଥିଲା ।

ଓଡ଼ିଶାର ଗଡ଼ଜାତଗୁଡ଼ିକ ମିଶ୍ରଣ ପରେ ପ୍ରଦେଶରେ ୧୯୪୬ର ନିର୍ବାଚନରେ ପ୍ରତିଷ୍ଠିତ ପ୍ରାଦେଶିକ ସରକାର ସହିତ ଏହି ନୂତନ ଜିଲ୍ଲାଗୁଡ଼ିକର ପ୍ରଶାସନକୁ ଲୋକ ପ୍ରତିନିଧିମାନଙ୍କ ସହଯୋଗରେ ସଂଯୁକ୍ତ କରିବା ଲାଗି ଏକ ଷ୍ଟେଟ୍ କାଉନ୍‌ସିଲ ୧୯୪୮ରେ ଗଠିତ ଥିଲା । ନିର୍ବାଚନ ନୁହଁ, ମନୋନୟନ ପ୍ରଥାରେ କାଉନସିଲ ସଭ୍ୟମାନେ ମନୋନୀତ ହୋଇଥିଲେ । ସେମାନେ ସମସ୍ତେ ବିଭିନ୍ନ ପ୍ରଜାମଣ୍ଡଳର ଦେଶୀୟ ରାଜ୍ୟର ନେତା । କାଉନ୍‌ସିଲର ହେଲେ ବଲାଙ୍ଗୀରର କପିଳ ପ୍ରସାଦ ନନ୍ଦ, ଆଠଗଡ଼ର ରାଧାନାଥ ରଥ, ତାଳଚେରର ପବିତ୍ରମୋହନ ପ୍ରଧାନ, ନୀଳଗିରିର କୈଳାସ ଚନ୍ଦ୍ର ମହାନ୍ତି । ଏହି କାଉନ୍‌ସିଲର ବୈଠକରେ ଓଡ଼ିଶା ପ୍ରଧାନମନ୍ତ୍ରୀ ଅଧ୍ୟକ୍ଷତା କରୁଥିଲେ । କାଉନସିଲ ସଭ୍ୟ ହେଲେ ଢେଙ୍କାନାଳରୁ ମନେଶ୍ୱର ସୁବାହୁସିଂହ ଓ ବ୍ରଜ କିଶୋର ଧଳ, ବଲାଙ୍ଗୀରରୁ ନରସିଂହ ପ୍ରସାଦ ନନ୍ଦ, ଚିନ୍ତାମଣି ରଥ, ଦିବାକର ବହିଦାର, କଳାହାଣ୍ଡିର ଗଣାଧିପ ଭୋଇ, ଆପୁତ୍ର ସାହୁ, ସୋନପୁରର ଲକ୍ଷ୍ମଣ ଶତପଥୀ ଓ ଗୌରୀଶଙ୍କର ରାୟଗୁରୁ, ତାଳଚେରର ମଦନମୋହନ ପ୍ରଧାନ, ତିଗିରିଆର ବିପିନ ବିହାରୀ ପଟ୍ଟନାୟକ, ବଡ଼ମ୍ବାର ବନମାଳୀ ପଣ୍ଡା, ନରସିଂହପୁରର ବିଦ୍ୟାଧର ନାୟକ, ନୟାଗଡ଼ର ଶ୍ରୀଧର ଦାଶ, ଖଣ୍ଡପଡ଼ାର ଅନ୍ତର୍ଯ୍ୟାମୀ ସାହୁ, ଦଶପଲ୍ଲାର ଗୋବିନ୍ଦ ଚନ୍ଦ୍ର ମିଶ୍ର, ବୌଦର ଦଶରଥ ପ୍ରଧାନ, କେଉଁଝରର ନଟବର ପାଣ୍ଡେ, ରଣପୁରର ମୂରଲୀଧର ଦାସ, ରେଢ଼ାଖୋଲର ଶଶୀଭୂଷଣ ପ୍ରଧାନ, ନୀଳଗିରିର ହାଡ଼ିବନ୍ଧୁ ରାଜ, ଆଠମଲ୍ଲିକର ଭଗବାନ ବେହେରା ଏବଂ ପାଲଲହଡ଼ାର ଫକୀର ଚରଣ ପ୍ରଧାନ ।

୧୯୫୧ ନିର୍ବାଚନ ପରେ ଷ୍ଟେଟ୍ କାଉନ୍‌ସିଲର କାର୍ଯ୍ୟକାଳ ସମାପ୍ତ ହେଲା । ସମଗ୍ର ରାଜ୍ୟ ପାଇଁ ସାମ୍ବିଧାନିକ ଭାବରେ ଗୋଟିଏ ବିଧାନସଭା ଗଠିତ ହେଲା ।

ସ୍ୱାଧୀନତା ପୂର୍ବ ଓଡ଼ିଆ ବିଧାନସଭା ଲାଗି ମାତ୍ର ୬୦ଟି ଆସନ ଥିଲା । ସଂବିଧାନ ଗୃହୀତ ହେବା ପରେ ଓ ଗଡ଼ଜାତଗୁଡ଼ିକର ମିଶ୍ରଣ ଅନ୍ତେ ୧୪୦ଟି ଆସନ ବିଶିଷ୍ଟ ବିଧାନସଭା (ବର୍ତ୍ତମାନ ୧୪୭ ଆସନ) ଗଠିତ ହେଲା । ରାଜନୈତିକ, ଭୌଗୋଳିକ, ପ୍ରଶାସନିକ, ସଂବିଧାନ ସମ୍ମତ ଏକୀଭୂତ ନୂତନ ଓଡ଼ିଶା ପ୍ରଦେଶର ଆବିର୍ଭାବ ହେଲା ।

୧୯୪୭ ଅଗଷ୍ଟ ୧୫ରେ ଭାରତର ସ୍ୱାଧୀନତା ଦିବସରେ ସର୍ବତ୍ର ୟୁନିୟନ୍ ଜ୍ୟାକ୍ ପତାକା ହଟେଇ ଆମ ରାଷ୍ଟ୍ରୀୟ ପତାକା ଉତ୍ତୋଳିତ ହୋଇଥିଲେ ହେଁ ୫୬୨ଟି ଗଡ଼ଜାତରେ ତାହା ଉଡ଼ିପାରିନଥିଲା । ଗଡ଼ଜାତଗୁଡ଼ିକର ପ୍ରଜାମାନଙ୍କୁ ସ୍ୱାଧୀନ ଭାରତର ସାମିଲ୍ ହେବାକୁ ପୁନର୍ବାର କଠୋର, ରକ୍ତକ୍ଷୟୀ ସଂଗ୍ରାମ କରିବାକୁ ପଡ଼ିଥିଲା । ଓଡ଼ିଶାର ସବୁ ଗଡ଼ଜାତର ପ୍ରଜାମାନଙ୍କୁ ଭାରତୀୟ ନାଗରିକ ହେବାକୁ ୧୯୪୭ ଅଗଷ୍ଟ ପରେ ମଧ୍ୟ ଏ ସଂଗ୍ରାମରେ ଅବତୀର୍ଣ୍ଣ ହେବାକୁ ପଡ଼ିଥିଲା । କାବିନେଟ୍ ମିଶନ ଓ ତତ୍କାଳୀନ ବ୍ରିଟିଶ ଭାଇସ୍‌ରାୟ ମାଉଣ୍ଟବ୍ୟାଟେନ୍‌ଙ୍କ ଚକ୍ରାନ୍ତ ପରାଭୂତ ହେଲା । ଭାରତବର୍ଷ ଭିତରେ ଆଉ ଏକ ଗଡ଼ଜାତ ଭାରତ ଭୂଖଣ୍ଡ ସ୍ଥାପନ କରିବାର ଖଳ ଯୋଜନା କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

୧୯୪୮ ଜାନୁଆରୀ ୧ ତାରିଖରେ ଓଡ଼ିଶାର ୨୬ଟି ଗଡ଼ଜାତର ଓଡ଼ିଆ ପ୍ରଦେଶ ସହିତ ମିଶ୍ରଣ ପରେ ସେହି ମାସ ୭ ତାରିଖରେ ଓଡ଼ିଶା ବିଧାନ ସଭାର ସ୍ୱତନ୍ତ୍ର ଅଧିବେଶନରେ ଏହି ମିଶ୍ରଣର ଆନୁଷ୍ଠାନିକ ଘୋଷଣା ହେଲା । ରେଭେନ୍‌ସା ମହାବିଦ୍ୟାଳୟର ଏକ ହଲ୍‌ରେ ବିଧାନସଭାର ଏହି ଅଧିବେଶନରେ ରାଜ୍ୟପାଳ ଡକ୍ଟର କୈଳାସ ନାଥ କାଟଜୁ ତାଙ୍କ ଅଭିଭାଷଣରେ ଏହାର ଉଲ୍ଲେଖ କରିଥିଲେ । ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ମିଶ୍ରଣ ସଂକ୍ରାନ୍ତରେ ଏକ ପ୍ରସ୍ତାବ ଆଗତ କରିଥିଲେ । ପ୍ରସ୍ତାବର ମୂଳ ମର୍ମକୁ ସ୍ୱାଗତ କରି ଏଥିରେ ରାଜାମାନଙ୍କ ଦେଶପ୍ରେମକୁ ପ୍ରଶଂସା କରାଯାଇଥିବା ଅନୁଚ୍ଛେଦକୁ ବାଦ ଦେବାଲାଗି ସେ ଯୁକ୍ତି କଲେ । ସେ କହିଲେ, ରାଜାମାନେ ଯଦି ଦେଶପ୍ରେମୀ ହେଲେ, ତେବେ ରାଜାମାନଙ୍କ ଅତ୍ୟାଚାର ବିରୁଦ୍ଧରେ ଓଡ଼ିଶାରେ ମିଶିବା ପାଇଁ ଯେଉଁମାନେ ସଂଗ୍ରାମ କରିଛନ୍ତି, ସେମାନେ କ'ଣ ? ଏପରି ରାଜ ପ୍ରଶସ୍ତି ପ୍ରଜା ଆନ୍ଦୋଳନ ପ୍ରତି ଉପହାସ । ଏହାକୁ ବାଦ୍ ଦିଆଯାଉ ।

ସର୍ବସମ୍ମତିକ୍ରମେ ପ୍ରସ୍ତାବ ଗ୍ରହଣ କରିବା ଉଦ୍ଦେଶ୍ୟରେ ସଂଶୋଧନ ପ୍ରସ୍ତାବକୁ ପ୍ରତ୍ୟାହାର କରିନେବାକୁ ତାଙ୍କୁ ଅନୁରୋଧ କରାଗଲା । ସେ ଅମତ ହେବାରୁ ଭୋଟ ନିଆଗଲା । ଶାସକ କଂଗ୍ରେସ ଦଳ ଓ ବିରୋଧୀ ଦଳ ତାଙ୍କ ସଂଶୋଧନର ବିରୋଧ କଲେ । ସଂଶୋଧନ ପ୍ରସ୍ତାବଟି ଏହିପରି ଭାବରେ କାଟ ଖାଇଲା ।

ା ା ା

# ଉପସଂହାର

ଓଡ଼ିଶା ସମେତ ଭାରତବ୍ୟାପୀ ଗଡ଼ଜାତ ପ୍ରଜା ଆନ୍ଦୋଳନ ଆମ ମହିମାନ୍ୱିତ ସ୍ୱାଧୀନତା ସଂଗ୍ରାମର ଏକ ନିଷ୍ପତ୍ତିମୂଳକ, ଗୁରୁତ୍ୱପୂର୍ଣ୍ଣ ଅଂଗ ରୂପେ ପ୍ରମାଣିତ ହେଲା। କାବିନେଟ ମିଶନର ଦେଶୀୟ ରାଜ୍ୟଗୁଡ଼ିକ ଘେନି ଚକ୍ରାନ୍ତକୁ ଓଡ଼ିଶା ସମେତ ୫୬୨ଟି ଗଡ଼ଜାତର ପ୍ରଜା ଆନ୍ଦୋଳନ ପଣ୍ଡ କରିଦେଲା। ତାହାହିଁ ସମସ୍ତ ଗଡ଼ଜାତକୁ ଭାରତ ପ୍ରଜାତନ୍ତ୍ରର ଅଂଗୀଭୂତ ହେବାର ପ୍ରକ୍ରିୟାକୁ ସୁଗମ କରିଦେଲା।

ଅନ୍ୟଦିଗରେ ଗଡ଼ଜାତଗୁଡ଼ିକରୁ ରାଜନ୍ୟବର୍ଗଙ୍କ ଶାସନର ଅବସାନ ହେଲେହେଁ, ସମାନ୍ତବାଦର ସାମାଜିକ, ଅର୍ଥନୈତିକ ଓ ଭାଗବତ ଭିତ୍ତି ଉଚ୍ଛେଦ ପାଇଁ ପ୍ରଜାମଣ୍ଡଳଗୁଡ଼ିକର ଯେଉଁ ଦାବୀ ଥିଲା, ତାହା ସଂପୂର୍ଣ୍ଣ ପୂରଣ ହୋଇପାରିଲା ନାହିଁ।

ରାଜା, ମହାରାଜା, ନିଜାମ, ନବାବମାନଙ୍କୁ ପ୍ରଚୁର ପ୍ରିଭିପର୍ସ (ରାଜନ୍ୟ ଭତ୍ତା) ଦିଆଗଲା। ସେତିକିରେ ତାହା ସୀମିତ ରହିଲା ନାହିଁ। ସେମାନଙ୍କ ନିକଟ ଆତ୍ମୀୟ ସ୍ୱଜନ ଏମିତିକି ସେମାନଙ୍କ କନ୍ୟା ବିବାହ ଲାଗି ମୋଟା ଅନୁଦାନ ଭାରତର ରାଜସ୍ୱରୁ ଦିଆଗଲା। ସେମାନଙ୍କ ରାଜବଂଶୀୟ ସାମନ୍ତବାଦୀ ଆଧିବିଧିକୁ, ଥାଟବାଟକୁ ବଜାୟ ରଖାଗଲା।

ସେମାନଙ୍କ ଦିଗନ୍ତପ୍ରସାରୀ ପ୍ରମୋଦ ଉଦ୍ୟାନ, ମନୋରମ ସନ୍ତରଣ ପୁଷ୍କରିଣୀ, କେଉଁ ରାଜାଙ୍କର ହଜାର ହଜାର, ଅନ୍ୟ କେତେକଙ୍କର ଲକ୍ଷ ଲକ୍ଷ ଏକର ଜମି, ଯୁଗ ଯୁଗ ଧରି ପ୍ରଜାଙ୍କ ଲୁଣ୍ଠନରୁ ଅର୍ଜିତ ହୀରା, ନୀଳା, ମୋତିମାଣିକ୍ୟ ସେମାନଙ୍କର ହୋଇ ରହିଲା। ସେମାନେ ପରବର୍ତ୍ତୀ ଭୂ-ସଂସ୍କାର ଆଇନକୁ ଫାଙ୍କିବା ପାଇଁ ସେସବୁକୁ ବିଭିନ୍ନ ଟ୍ରଷ୍ଟ ନାମରେ ନିଜ ଅକ୍ତିଆରରେ ରଖିଲେ ଅବା ବିକ୍ରୟ କରିଦେଲେ। ଫଳରେ ଯେଉଁ ଲକ୍ଷ ଲକ୍ଷ ଭୂମିହୀନ ଭୂମି ପାଇଥିଲେ ଆଜି ବେକାରଙ୍କ ସଂଖ୍ୟା ଏତେ ବଢ଼ିନଥାନ୍ତା। ତାହା କିଛି ପରିମାଣରେ ସଂକୁଚିତ ହୋଇଥାନ୍ତା। ନିଃସ୍ୱ ପ୍ରଜାମାନେ ପୂର୍ବପରି ବନ୍ଧକ ମୂଲିଆ, ଭାଗଚାଷୀ ହୋଇ ରହିଲେ। ବହୁ ଆନ୍ଦୋଳନ ଫଳରେ ୧୯୭୨ରେ ରାଜନ୍ୟ ଭତ୍ତା କାଟ ହେଲା। ଏତେବେଳକୁ ଏହି ସାମନ୍ତବାଦୀ ରାଜନ୍ୟବର୍ଗ ନିଜର ସାମାଜିକ, ରାଜନୈତିକ ପ୍ରତିପତ୍ତିକୁ ନୂଆ ପରିସ୍ଥିତିରେ ବଜାୟ ରଖିବାକୁ ଉଦ୍ୟମ କଲେ। ସ୍ୱତନ୍ତ୍ର ଦଳ ଅବା ଆମ ଓଡ଼ିଶାରେ ଗଣତନ୍ତ୍ର ପରିଷଦ ଗଠନ କଲେ। ସ୍ୱାଧୀନତା ପରବର୍ତ୍ତୀ କାଳରେ ସେମାନେ ଦେଶର ବିଭିନ୍ନ ରାଜନୈତିକ ଦଳରେ ପ୍ରବେଶ କରି ଚାଲିଲେ। କିଏ କଂଗ୍ରେସ ଅବା କିଏ ବିଜେପି ପରି ଦଳକୁ ବାଛିଲେ। ଗଣତାନ୍ତ୍ରିକ, ପ୍ରଗତିଶୀଳ, ବାମପନ୍ଥୀ ଶକ୍ତି ଓ ଆନ୍ଦୋଳନ ବିରୁଦ୍ଧରେ ଯାଇ ନୂତନ ପୋଷାକରେ ସେମାନେ ଭାରତର ଅଗ୍ରଗତିର ପଥକୁ ରୋଧ କରିବାର ସୁଯୋଗ ପାଇଲେ। ପ୍ରଜାମାନଙ୍କ ଆଶା ଆକାଙ୍କ୍ଷା ଅପୂରଣ ରହିଲା।

ଅନ୍ୟପକ୍ଷରେ ଗଡ଼ଜାତ ଆନ୍ଦୋଳନରେ ସ୍ୱ ସ୍ୱ ରାଜ୍ୟରେ ଅଗ୍ରଣୀ ଭୂମିକା ନେଇଥିବା ପ୍ରଜାମଣ୍ଡଳର ନେତାମାନଙ୍କ ପ୍ରତି ରାଜନୈତିକ ସଂଗଠନ ନିର୍ବିଶେଷରେ ପ୍ରଜାମାନେ କୃତଜ୍ଞତା ପ୍ରକାଶ କରି ସେମାନଙ୍କ ସାଂସଦ, ବିଧାନସଭାକୁ ପଠାଇଛନ୍ତି । ଓଡ଼ିଶାର ଗଡ଼ଜାତ ପ୍ରଜାମାନେ ବ୍ୟତିକ୍ରମ ନୁହଁନ୍ତି । ଓଡ଼ିଶା ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀର ନେତା ପରବର୍ତ୍ତୀକାଳରେ ପ୍ରଜା ସୋସଲିଷ୍ଟ ନେତା ସାରଙ୍ଗଧର ଦାସଙ୍କୁ ଢେଙ୍କାନାଳର ପ୍ରଜା ସର୍ବାଧିକ ସଂଖ୍ୟାରେ ଭୋଟଦେଇ ପଶ୍ଚିମ କଟକ ପାର୍ଲିଆମେଣ୍ଟ ଆସନରୁ ବିଜୟ ମଣ୍ଡିତ କରିଥିଲେ । ଏହି ପାର୍ଟିର ପ୍ରଜାମଣ୍ଡଳର ନେତା ଗିରୀଶ ଚନ୍ଦ୍ର ରାୟ, ଯିଏ ପରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ ତାଙ୍କୁ ମୟୁରଭଂଜ ପ୍ରଜାମାନେ ବିଧାନସଭାକୁ ନିର୍ବାଚିତ କରିଥିଲେ । କଂଗ୍ରେସ ପ୍ରାର୍ଥୀ ତାଳଚେର ପ୍ରଜାମଣ୍ଡଳ ନେତା ପବିତ୍ରମୋହନ ପ୍ରଧାନଙ୍କୁ, ଆଠଗଡ଼ରେ ପ୍ରଜାମଣ୍ଡଳ ନେତା ରାଧାନାଥ ରଥ ଓ ଅଚ୍ୟୁତାନନ୍ଦ ଦାସଙ୍କୁ ଢେଙ୍କାନାଳର ପ୍ରଜାମଣ୍ଡଳ ନେତା ମହେଶ୍ୱର ସୁବାହୁ ସିଂହଙ୍କୁ, ଆଠମଲ୍ଲିକ ପ୍ରଜାମଣ୍ଡଳ ନେତା ଭଗବାନ ବେହେରାଙ୍କୁ କୃତଜ୍ଞ ପ୍ରଜାମାନେ ବିଧାନସଭାକୁ ପ୍ରେରଣ କରିଥିଲେ । ଏପରି ଆହୁରି ଦୃଷ୍ଟାନ୍ତ ରହିଛି । ଢେଙ୍କାନାଳରେ କମ୍ୟୁନିଷ୍ଟ ପାର୍ଟିର ପ୍ରାର୍ଥୀ ପ୍ରଜାମଣ୍ଡଳର ନେତା ବୈଷ୍ଣବ ପଟ୍ଟନାୟକ ଓ ମୂଷା ମଲିକଙ୍କ ଦ୍ୱୈତ ନିର୍ବାଚନମଣ୍ଡଳୀରେ ବିଜୟୀ କରାଇଥିଲେ । ଏକଦା ନୀଳଗିରିର ପ୍ରଖ୍ୟାତ ପ୍ରଜାମଣ୍ଡଳ ନେତା କମ୍ୟୁନିଷ୍ଟ ପାର୍ଟି (ମାର୍କ୍ସବାଦୀ) ପ୍ରାର୍ଥୀ ବନମାଳୀ ଦାସଙ୍କୁ ଏବଂ ରଣପୁର ପ୍ରଜାମଣ୍ଡଳର ନେତା କମ୍ୟୁନିଷ୍ଟ ପ୍ରାର୍ଥୀ ରାମଚନ୍ଦ୍ର ରାମଙ୍କୁ ସେସବୁ ରାଜ୍ୟର ପ୍ରଜା ବିଧାନସଭାକୁ ନିର୍ବାଚିତ କରିଥିଲେ ।

ଲେଖକ :

ସାତପୁରା, ଜଗତସିଂହପୁର

୧୯୯୭, ୧୫ ଅଗଷ୍ଟ



# ଆବେଦନ

ସ୍ୱାଧୀନତା ଅର୍ଜିତ ନ ହୋଇଥିଲେ, ଭାରତଭୂମି କେଉଁ ତିମିରରେ ଥାଆନ୍ତା, ତାହା ଆଜିର ପୀଢ଼ି କଳ୍ପନା କରିବା ସହଜସାଧ୍ୟ ନୁହେଁ।

ସେହି ସ୍ୱାଧୀନତାର କୃତିକୃତିତ୍ୱ ଆମ ସମସ୍ତଙ୍କର ଗର୍ବ ସତ, ମାତ୍ର ସ୍ୱାଧୀନତା ସଂଗ୍ରାମର ଅନେକ ପ୍ରତିଶ୍ରୁତି ଅପୂରଣ ରହିଛି। ସ୍ୱାଧୀନତା ସଂଗ୍ରାମର କୃତିକୃତିତ୍ୱ ଓ ସୁଫଳ ଗୁଡ଼ିକର ଅମାପ ବାଟମାରଣା ହୋଇଚାଲିଛି। ଫଳରେ ନାନା ଉତ୍କଟ, ଆର୍ଥିକ, ସାମାଜିକ, ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ସମସ୍ୟାରେ ଦେଶ ଜର୍ଜରିତ। ରକ୍ଷକ ଭକ୍ଷକ ହୋଇଛନ୍ତି, ସୋଚ୍ଚାର, ମନୋମୁଗ୍ଧକର ଘୋଷଣା, ବିବୃତି, ପ୍ରଦତ୍ତ ଅଂଗୀକାରସବୁ ପ୍ରତାରଣା, ପ୍ରବଞ୍ଚନାରେ ପରିଣତ ହୋଇ ଚାଲିଛି। ସେମାନଙ୍କୁ ଚିହ୍ନଟ କରିବା ଓ ଦୁଃସାଧ; ମାତ୍ର କରିପାରିଲେ ସଠିକ ମାର୍ଗ ଉନ୍ମୋଚିତ ହେବ। ସେସବୁକୁ ଦୂର କରିବାର ଦାୟିତ୍ୱ ଓ କର୍ତ୍ତବ୍ୟ ନୂତନ ପୀଢ଼ିମାନଙ୍କର। ସେମାନଙ୍କର ଅନ୍ତରର ଅଭିଳାଷକୁ ପୂରଣ କରିବା ସଂଗ୍ରାମର ସଠିକ ପଥ ଓ ପନ୍ଥା; ନୀତି ଓ ଆଦର୍ଶ ସେମାନେ ନିର୍ଣ୍ଣୟ କରିବା ବେଳେ ଅତୀତରୁ ଉତ୍ତରାଧିକାର ରୂପେ ପାଇଥିବା ସ୍ୱାଧୀନତା ସଂଗ୍ରାମର ଶିକ୍ଷା ସେମାନଙ୍କୁ ସହାୟକ ହେଉ। ଅଧୁନାତନ ବିଶ୍ୱ ଓ ଦେଶର ଜଟିଳ ପରିସ୍ଥିତିରେ ସମାଜର ପ୍ରଗତିଶୀଳ, ଉର୍ଦ୍ଧ୍ୱଗାମୀ ରୂପାନ୍ତରରେ ସଂଗ୍ରାମ ଅଧିକ କଠୋର ହେବ।

ଆମ ସ୍ୱାଧୀନତା ସଂଗ୍ରାମର ଶିକ୍ଷା ସେମାନଙ୍କୁ ସମାଜର ରୂପାନ୍ତର ଆଣିବା ଲାଗି କର୍ମ ପ୍ରେରଣା ଯୋଗାଉ, ସଠିକ ସଂଗ୍ରାମର ପଥ ଅନ୍ୱେଷଣରେ ପଥ ପ୍ରଦର୍ଶକ ହେଉ, ଏହାହିଁ କାମନା କରି ମୋର ନମ୍ର ଆବେଦନ ସାଙ୍ଗ କରୁଛି।

□□□

# ନୈବେଦ୍ୟ

ଭାରତୀୟ ମହାଜାତିର ଜୀବନରେ ଦୁଇ ଶତାଧିକ ବର୍ଷ ବିସ୍ତାରୀ, ଦୁଇ ହଜାର ପାଞ୍ଚଶତ ପୂର୍ଣ୍ଣିମା ଆଉ ସମସଂଖ୍ୟାର ଅମାବାସ୍ୟା, ଏକ ଲକ୍ଷ ପଞ୍ଚାଶ ସହସ୍ର ଦିବା ଥିଲା ଅମା ଅନ୍ଧକାରାଚ୍ଛନ୍ନ। ବ୍ରିଟିଶ ସାମ୍ରାଜ୍ୟବାଦୀ ଦାସତ୍ୱ, ପରାଧୀନତାର ନିଗଡ଼ ବନ୍ଧନକୁ ଛିନ୍ନ କରିବା ଲାଗି ଅଗଣିତ, ଅଭୂତପୂର୍ବ, ଅର୍ନିବଚନୀୟ ଜନ ସଂଗ୍ରାମର କାହାଣୀ ବହନ କରେ ଏହି ଦୀର୍ଘ କାଳ।

ପରାଧୀନତାର ଘନ ତମସାଚ୍ଛନ୍ନ ଗଗନରେ ସ୍ୱାଧୀନତାର ସୂର୍ଯ୍ୟାଲୋକ ସୃଷ୍ଟିର ସଂକଳ୍ପ ନେଲେ ଆମ ପୂର୍ବ ପୁରୁଷଙ୍କ ପୀଢ଼ି ପରେ ପୀଢ଼ିର ଭାରତୀୟ।

ଏହି ଆଲୋକର ଅନ୍ୱେଷଣ ପଥରେ ଅଗ୍ରସର ଲକ୍ଷ ଲକ୍ଷ ଆମର ଭାଇ ବିରାଦର ପୂର୍ବସୂରୀମାନେ ବ୍ରିଟିଶ ଗୁଳି କମାଣ ମୁହଁରେ ଜୀବନ ଅଜାଡ଼ି ଦେଲେ। ସହସ୍ର ସହସ୍ର ମୁକ୍ତି ସୈନିକ ଫାଶି ମଂଚରେ ଗଳାରେ ନିଦାରୁଣ ରଜ୍ଜୁ ବନ୍ଧା ପ୍ରକ୍ରିୟାରେ ନିମ୍ନର ମରଣ କୂପରେ ଲଟକି ଶେଷ ନିଃଶ୍ୱାସ ଛାଡ଼ିଲେ। କିଏ ଆଜୀବନ ମୃତ୍ୟୁ ପର୍ଯ୍ୟନ୍ତ, କିଏ ତିରିଶ, କୋଡ଼ିଏ, ପନ୍ଦର, ଦଶ, ପାଞ୍ଚ ଅବା ତା ଠାରୁ ନ୍ୟୂନ ବର୍ଷକାଳ ମେଘନାଦ ପାଚେରୀ ଘେରା ସହସ୍ରାଧିକ କାରାବାସରେ ଅବା ମହୋଦଧିର ନିର୍ଜନ ଦ୍ୱୀପ ଆନ୍ଦାମାନର ସେଲୁଲାର ଜେଲରେ ନିଃସଙ୍ଗ କାଳ କଟେଇଲେ।

ଦୁଇଟି ହାତ ଛନ୍ଦା ହୋଇ ଲୁହାର କଡ଼ି, ଦୁଇପାଦ ବନ୍ଧା କଡ଼ି, ଅଣ୍ଟାରୁ ଗଳାଯାଏ ଲମ୍ବିଥିବା ଲୁହାକଡ଼ିର ବନ୍ଧନରେ ଥାଇ ମଶା ଡାଆଁସ, ଜନ୍ଦା ପିମ୍ପୁଡ଼ି, ଛାରପୋକର ଦଂଶନରେ ଛଟପଟ ହୋଇ ସଂକଳ୍ପରେ ଅଟଳ ରହିଲେ। ମଥା ନୋଇଁଲେ ନାହିଁ। ସେମାନଙ୍କ ସଂଖ୍ୟା ଲକ୍ଷ ଲକ୍ଷ।

ଆମ ମହନୀୟ ସ୍ୱାଧୀନତା ସଂଗ୍ରାମର ସ୍ମୃତି ଆଲେଖ୍ୟ ବାଢ଼ିବାବେଳେ ଅଗଣିତ ଅନମନୀୟ ସେହି ବୀରଯୋଦ୍ଧା, ଶହୀଦମାନଙ୍କ ଉଦ୍ଦେଶ୍ୟରେ ପ୍ରଥମ ନୈବେଦ୍ୟ ଅଞ୍ଜଳି ଅର୍ପଣ କରୁଛି।

ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଦେଶମାନଙ୍କ ଦ୍ୱାରା ପରାଧୀନ ଆଫ୍ରିକା, ଏସିଆ, ଲାଟିନ ଆମେରିକା ଦେଶ ସମୂହର ସ୍ୱାଧୀନତା ସଂଗ୍ରାମରୁ ଆମ

ସ୍ୱାଧୀନତା ସଂଗ୍ରାମ ଅନୁପ୍ରେରିତ କରିଥିଲା, ଉଦ୍‌ବୁଦ୍ଧ କରିଥିଲା। ଅନୁରୂପ ଭାବରେ ସେ ସବୁ ଦେଶବାସୀଙ୍କ ମୁକ୍ତି ସଂଗ୍ରାମ ଆମ ଦେଶର ମୁକ୍ତିଯୋଦ୍ଧାମାନଙ୍କୁ ଅନୁପ୍ରେରଣା ଯୋଗାଇଥିଲା।

ଆମ ସମସ୍ତଙ୍କ ସାମୂହିକ ଲକ୍ଷ୍ୟ ସାଧନରେ ସେସବୁ ଦେଶର ଶହୀଦ ଗତାୟୁ ସ୍ୱାଧୀନତା ସଂଗ୍ରାମୀଙ୍କୁ ମଧ୍ୟ ଶ୍ରଦ୍ଧା ସମ୍ମାନର ସହ ନୈବେଦ୍ୟ ଅର୍ପଣ କରୁଛି।

ଗୌରବୋଜ୍ଜ୍ୱଳ ଆମର ଐତିହାସିକ ସ୍ୱାଧୀନତା ସଂଗ୍ରାମ ବହୁ ଘାତପ୍ରତିଘାତ, ବାଧାବିଘ୍ନ, କ୍ଷଣିକ ପଶ୍ଚାତ୍‌ଗତିକୁ ସଦମ୍ଭେ ଅତିକ୍ରମ କରି ଉତ୍ଥାନ, ଅଭ୍ୟୁଦୟ ମାର୍ଗରେ ଗତି କରିଛି।

ଏହି ବିଶାଳ ଭୂଖଣ୍ଡ, ଭାରତବର୍ଷର ଏପରି କୌଣସି ଅଂଚଳବାସୀ ନାହାନ୍ତି ଯେଉଁମାନେ କି ଏହି ସଂଗ୍ରାମର ମଇଦାନରେ ଅବତୀର୍ଣ୍ଣ ହୋଇନାହାନ୍ତି।

ବିଭିନ୍ନ ଭାଷା, ମହାଭାରତୀୟ ସଂସ୍କୃତିର ଅଭିନ୍ନ ଅଂଶରୂପ ସ୍ୱକୀୟ ସଂସ୍କୃତି ସହ ଆମ ଦେଶବାସୀ ଜାତି, ଧର୍ମ, ବର୍ଣ୍ଣ, ନାରୀ ପୁରୁଷ ନିର୍ବିଶେଷରେ ସ୍ୱାଧୀନତା ସଂଗ୍ରାମର ମହାଯଜ୍ଞରେ ନିଜକୁ ଆହୂତି ଦେଇଛନ୍ତି।

ହିନ୍ଦୁ, ମୁସଲମାନ ଶିଖ, ପାର୍ଶୀ, ଜୈନ, ବୌଦ୍ଧ ଧର୍ମ ନିର୍ବିଶେଷରେ ସହସ୍ର ସହସ୍ର ସଂଖ୍ୟାରେ ଦେଶର କୋଣେ ଅନୁକୋଣେ ମୁକ୍ତି ସଂଗ୍ରାମର ସୈନିକ ହୋଇଛନ୍ତି।

ଆମ ଦେଶର ସହସ୍ରାଧିକ ଆଦିମ ଆଦିବାସୀ ସଂପ୍ରଦାୟର ନିଗୃହୀତ, ନିଷ୍ପେଷିତ, ଶୋଷିତ, ପ୍ରବଂଚିତ, ପ୍ରତାରିତ ଜନଗୋଷ୍ଠୀଙ୍କର ବ୍ରିଟିଶ ବିରୋଧୀ ସଂଗ୍ରାମରେ ପଟାନ୍ତର ନାହିଁ। ସେମାନେ ବିଦେଶୀ ଶାସକ ଓ ସେହି ଶାସକବର୍ଗଙ୍କ ଚର ସାଜି ସେମାନଙ୍କୁ ସମର୍ଥନ କରୁଥିବା ସ୍ୱଦେଶୀ ଶୋଷକଙ୍କ ବିରୁଦ୍ଧରେ ସଂଗ୍ରାମ କରି ଆମ ସଂଗ୍ରାମର ଇତିହାସକୁ କୀର୍ତ୍ତିମାନ କରିଛନ୍ତି।

ଦୁଇ ଶତାଧିକ ବର୍ଷବ୍ୟାପୀ ସଂଘଟିତ ଅଗଣିତ ସଂଗ୍ରାମରେ ଇତିହାସ ମଧ୍ୟରୁ ପ୍ରତ୍ୟେକଟି ହୁଏତ କ୍ଷୁଦ୍ର ଅବା ମଧ୍ୟମ, ଏମିତିକି ବୃହତ୍ ଗ୍ରନ୍ଥ ହୋଇପାରିବ।

ଆମ ଭାଷାରେ ଓଡ଼ିଶାର କେତେକ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଇତିହାସ ଅଧ୍ୟାପକ, ଗବେଷକଙ୍କ ଦ୍ୱାରା ରଚିତ ପୁସ୍ତକ ସ୍ୱାଧୀନତା ସଂଗ୍ରାମର ଗୋଟିଏ ଗୋଟିଏ ପର୍ବ ଅବା ଘଟଣାକୁ ବର୍ଣ୍ଣନା କରିଛି। ଆଜିର ଓ ଭବିଷ୍ୟତ

ପୀଢ଼ିର ଆଗ୍ରହୀ ପାଠକଙ୍କ ସମୀପରେ ଆମ ସଂଗ୍ରାମ ଇତିହାସର ଏକ ସାମଗ୍ରିକ ରୂପ ଏକ ଚିତ୍ର ଦେବାକୁ ଏହି ପୁସ୍ତକରେ ମୁଁ ପ୍ରୟାସ କରିଛି।

ଏହା ଏକ ବିଶାଳ ଗ୍ରନ୍ଥ ନୁହଁ। ଏହା ସମଗ୍ର ସ୍ୱାଧୀନତା ସଂଗ୍ରାମର ବିହଙ୍ଗାବଲୋକନ ବୋଲି ମୁଁ ବିଚାରିଛି। କିନ୍ତୁ ସଂଗ୍ରାମର କୌଣସିଟି ବିଶିଷ୍ଟ ଘଟଣା ଯେପରି ବାଦ ନ ପଡେ, ସେଥିଲାଗି ପାରୁପର୍ଯ୍ୟନ୍ତ ଉଦ୍ୟମ କରିଛି।

ଆମ ସଂଗ୍ରାମର ଇତିହାସକୁ କାଳଚକ୍ରରେ ଭାଗଭାଗ କରି ସେହି ସେହି ନିର୍ଦ୍ଦିଷ୍ଟ କାଳର ମୁଖ୍ୟ ବୈଶିଷ୍ଟ୍ୟସଂପନ୍ନ ଘଟଣାକୁ ଅଭ୍ରାନ୍ତ ଭାବରେ ଦର୍ଶାଇବାକୁ ଉଦ୍ୟମ କରାଯାଇଛି। ସେଥି ସକାଶେ ନିର୍ଦ୍ଦିଷ୍ଟ ତାରିଖ, ନିର୍ଦ୍ଦିଷ୍ଟ ସମୟ, ନିର୍ଦ୍ଦିଷ୍ଟ ବର୍ଷର ଉଲ୍ଲେଖ କରାଯାଇଛି।

ସଂଗ୍ରାମରେ ନେତୃତ୍ୱକାରୀ ବ୍ୟକ୍ତି ବିଶେଷଙ୍କର ସଂଗ୍ରାମରତ ସଂଗଠନଗୁଡ଼ିକଙ୍କ ନିର୍ଦ୍ଧାରଣ, ବୟାନ, ବିବୃତି ଓ ଅଭିମତକୁ ତଥା ଏହି ସଂଗ୍ରାମକୁ ବିଭିନ୍ନ ଭାବରେ ବିରୋଧ କରୁଥିବା ବାହ୍ୟ ଓ ଆଭ୍ୟନ୍ତରୀଣ ଶକ୍ତି ଓ ବ୍ୟକ୍ତିଙ୍କ ବକ୍ତବ୍ୟ, ବିବୃତିକୁ ଅବିକଳ ଉଦ୍ଧୃତି ମାଧମରେ ଦର୍ଶାଯାଇଛି।

ବିଶାଳ ଭାରତର ପଟ୍ଟଭୂମିରେ ସଂଗ୍ରାମର ପ୍ରତ୍ୟେକଟି ପର୍ବରେ ଓଡିଶାର ଅବଦାନକୁ ବିସ୍ତାରିତ ଭାବରେ ନ ହେଲେହେଁ ଯଥାଯଥ ସଂକ୍ଷିପ୍ତ ରୂପରେ ବର୍ଣ୍ଣନା କରିବାକୁ ଉଦ୍ୟମ କରିଛି। ଆନୁପାତିକ ଦୃଷ୍ଟିରୁ ଅଧିକ ପୃଷ୍ଠାରେ ଓଡିଶା ସ୍ଥାନ ପାଇଛି।

ଜୀବନର ୩୦ଟି ବର୍ଷ ପରାଧୀନତାର ଅନ୍ଧକାରରେ କଟିଛି। ସେହି କାଳରେ ଭାରତର ତଥା ଓଡ଼ିଶାର ଅଗଣିତ ମୁକ୍ତି ସୈନିକଙ୍କୁ ଦେଖିବାର, ଜାଣିବାର ଅନେକଙ୍କ ସଂସ୍ପର୍ଶରେ ଆସିବାର ଓ ସେମାନଙ୍କର ସହଯାତ୍ରୀ, ସହବନ୍ଦୀ ହେବାର ସୌଭାଗ୍ୟ ହୋଇଛି। ଅଧିକାଂଶ ଆଉ ନାହାନ୍ତି। ଯେଉଁମାନେ ଏବେ ବି ଜୀବିତ ଓ ଯେଉଁମାନେ ଆମକୁ ଛାଡି ଚାଲିଗଲେଣି, ସେମାନଙ୍କ ଛବି ଏବେବି ମାନସପଟରେ ଉଦ୍‌ଭାସିତ। ଗତାୟୁ ଯୋଦ୍ଧା, ନେତା, ସାଥୀ ସହକର୍ମୀଙ୍କ ଉଦ୍ଦେଶ୍ୟରେ ଆନ୍ତରିକ ଶୋକାପ୍ଲୁତ ନୈବେଦ୍ୟ ଅର୍ପଣ କରୁଛି। ସମଗ୍ର ଦେଶର ତଥା ଆମ ଓଡିଶାର ଶତଶତ ଯୋଦ୍ଧାଙ୍କ ନାମ ପୁସ୍ତକରେ ଆଣି ନପାରିବାରୁ ମନରେ ଖେଦ ରହିଛି।



# ସୂଚୀ

| *ବିଷୟ* | *ପୃଷ୍ଠା* |
|---|---|


**ପ୍ରଥମ ଅଧ୍ୟାୟ** ୮୨୩

ଏହି ଆମ ଦେଶ - ଭାରତବର୍ଷ

**ଦ୍ୱିତୀୟ ଅଧ୍ୟାୟ** ୮୨୭

ଭାରତ ବ୍ରିଟିଶ ଉପନିବେଶରେ ପରିଣତ

**ତୃତୀୟ ଅଧ୍ୟାୟ** ୮୩୧

ବ୍ରିଟିଶ ବିରୁଦ୍ଧରେ ମେଳି ବିଦ୍ରୋହ, ସଶସ୍ତ୍ର ଖଣ୍ଡସଂଗ୍ରାମ

**ଚତୁର୍ଥ ଅଧ୍ୟାୟ** ୮୪୧

୧୮୫୭ ପ୍ରଥମ ସ୍ୱାଧୀନତା ସମର

**ପଞ୍ଚମ ଅଧ୍ୟାୟ** ୮୪୬

ସମର ଆରମ୍ଭ ମିରଟ୍ ଆଉ ଦିଲ୍ଲୀ

**ଷଷ୍ଠ ଅଧ୍ୟାୟ** ୮୫୨

ବ୍ରିଟିଶ ବଣିକପୁଂଜି ଦାସତ୍ୱରୁ ଶିଳ୍ପପୁଂଜି,

ଅର୍ଥପୁଂଜିର ରାହୁଗ୍ରାସ

**ସପ୍ତମ ଅଧ୍ୟାୟ** ୮୫୮

ସଂଗ୍ରାମର ଏକ ଉଚ୍ଚତର ପର୍ଯ୍ୟାୟ

ପୁନଃଜାଗରଣ ଯୁଗ

**ଅଷ୍ଟମ ଅଧ୍ୟାୟ** ୮୬୩

ଭାରତୀୟ ଜାତୀୟ କଂଗ୍ରେସର ଜନ୍ମ ୧୮୮୫

ମୁକ୍ତି ସଂଗ୍ରାମରେ ଏକ ଗୁରୁତ୍ୱପୂର୍ଣ୍ଣ ଦିଗମୋଡ଼

**ନବମ ଅଧ୍ୟାୟ** ୮୬୯

ପରବର୍ତ୍ତୀ ୨୦ ବର୍ଷ

ଆବେଦନ ନିବେଦନ ପର୍ଯ୍ୟାୟ, ରାଜନୈତିକ ଅଭିଯାନ

**ଦଶମ ଅଧ୍ୟାୟ** ୮୭୬

ବଂଗଭଂଗ ଚକ୍ରାନ୍ତ-ସ୍ୱଦେଶୀ ଆନ୍ଦୋଳନ

କଂଗ୍ରେସର ବିଭାଜନ

**ଏକାଦଶ ଅଧ୍ୟାୟ** ୮୮୫

ଭାରତରେ ଗାନ୍ଧିଜୀଙ୍କ ଆବିର୍ଭାବ -
ପ୍ରଥମ ମହାସମର, ଜାଲିଆନାବାଗ ନରସଂହାରୟ
(୧୯୧୨ ରୁ ୧୯୧୯)

**ଦ୍ୱାଦଶ ଅଧ୍ୟାୟ** ୮୯୬

ଅସହଯୋଗ ଆନ୍ଦୋଳନ - କଂଗ୍ରେସ ଖିଲାଫତ
ଐକ୍ୟ, ସ୍ୱରାଜ ପାର୍ଟି ଗଠନ, ପୂର୍ଣ୍ଣସ୍ୱରାଜ ଘୋଷଣା
(୧୯୨୦ ରୁ ୧୯୨୯)

**ତ୍ରୟୋଦଶ ଅଧ୍ୟାୟ** ୯୧୩

ପୁନଶ୍ଚ ବୈପ୍ଳବିକ ସନ୍ତ୍ରାସବାଦୀ କାର୍ଯ୍ୟକଳାପ

**ଚତୁର୍ଦ୍ଦଶ ଅଧ୍ୟାୟ** ୯୧୯

ଆଇନ ଅମାନ୍ୟ, ଲବଣ ସତ୍ୟାଗ୍ରହ,
ଗୋଲଟେବୁଲ ବୈଠକ, ଆନ୍ଦୋଳନ ପ୍ରତ୍ୟାହାର
(୧୯୩୦-୧୯୩୪)

**ପଞ୍ଚଦଶ ଅଧ୍ୟାୟ** ୯୩୪

ନୂତନ ଶାସନ ଖସଡାରେ ମନ୍ତ୍ରୀତ୍ୱ ଗ୍ରହଣ ଓ ଇସ୍ତଫା
(୧୯୩୪-୧୯୪୦)

**ଷୋଡ଼ଶ ଅଧ୍ୟାୟ** ୯୪୮

ଦ୍ୱିବିଧ କର୍ମଧାରା

**ସପ୍ତଦଶ ଅଧ୍ୟାୟ** ୯୬୦

ବ୍ୟକ୍ତିଗତ ସତ୍ୟାଗ୍ରହ, ଅଗଷ୍ଟ ବିପ୍ଳବ
ଯୁଦ୍ଧୋତ୍ତର ମହା-ଅଭ୍ୟୁତ୍ଥାନ (୧୯୪୦-୧୯୪୬)

**ଅଷ୍ଟାଦଶ ଅଧ୍ୟାୟ** ୯୭୮

ଅଗଷ୍ଟ ପନ୍ଦରର ଆଗମନ ପର୍ବ

**କୃତଜ୍ଞ ରହିଲି** ୯୮୭

□□□

# ଏହି ଆମ ଦେଶ – ଭାରତବର୍ଷ

## ଅତୀତରୁ ବର୍ତ୍ତମାନ

ଉତ୍ତରରେ ନଭଶ୍ଚୁମ୍ବୀ ଗିରିରାଜ ହିମାଳୟ, ଦକ୍ଷିଣରେ ମହୋଦଧି – ବଂଗୋପସାଗରଠାରୁ ଦିଗନ୍ତବିସ୍ତାରୀ ଭାରତ ମହାସାଗର, ପଶ୍ଚିମରେ ଆରବସାଗର ଏବଂ ପୂର୍ବରେ ଆରାକାନର ପର୍ବତମାଳା। ଏହାକୁ ଆବୋରିଥିବା ଭୂଖଣ୍ଡ ଭାରତବର୍ଷ। ଏହାହିଁ ଭାରତ ଭୂମିର ଆଦ୍ୟ ପରିଚିତ। ଭୂତାତ୍ତ୍ୱିକ ଗବେଷଣାଲବ୍ଧ ଜ୍ଞାନ ସୂଚାଏ ଯେ ଏକଦା ଭାରତବର୍ଷ ଆଫ୍ରିକା, ପଶ୍ଚିମ ଏସିଆ ଓ ଭାରତ ଭୂଖଣ୍ଡ ସୁବିଶାଳ ଗଣ୍ଡୱାନା ଭୂମିର ଅଂଶବିଶେଷ ଥିଲା। ସାଗର, ମହାସାଗର, ସ୍ଥଳଭାଗ, ଜଳଭାଗ, ପାହାଡପର୍ବତ, ସମତଳ ଭୂମି ସୃଷ୍ଟିର ପ୍ରକ୍ରିୟାରେ କେଉଁ ଦୂର ଅତୀତରେ ଭାରତ ଭୂଖଣ୍ଡ ପୂର୍ବର ନାହିନାଡ଼ ଛିଣ୍ଡାଇ ଦେଲା, ଜମ୍ବୁଦ୍ୱୀପ ନାମରେ ନାମିତ ହେଲା।

ଭାରତ ଭୂଖଣ୍ଡ ମୂଳ, ଆଦି ଅଧିବାସୀ ଦ୍ରାବିଡ, ନିଷାଦ, କିରାଟ, ଅଷ୍ଟ୍ରିକ ନୃଜାତିଙ୍କ ବାସଭୂମି। କାସ୍ପିଆନ ସାଗର ତଟରୁ ଆର୍ଯ୍ୟ ନୃଜାତିଙ୍କର ବିସ୍ତାର ପ୍ରକ୍ରିୟାରେ ପଶ୍ଚିମରେ ୟୁରୋପ ଓ ପ୍ରାଚ୍ୟରେର ଭାରତ ଭୂଖଣ୍ଡରେ ସେମାନଙ୍କର ପ୍ରବେଶ ଘଟେ। ପୂର୍ବ ପଟକୁ ଆସିଥିବା ଭାରତୀୟମାନେ ଇଣ୍ଡୋ-ଏରିଆନ ଭାବରେ ଚିହ୍ନିତ ହୁଅନ୍ତି।

ଭାରତବର୍ଷର ଅଧିବାସୀଙ୍କ ମଧ୍ୟରେ ଅଛନ୍ତି ବହୁ ନୃଜାତି, ଉପଜାତି, ବହୁବିଧ ସ୍ୱତନ୍ତତାସଂପନ୍ନ ଜନଗୋଷ୍ଠୀ, ଟ୍ରାଇବ। ପ୍ରତ୍ୟେକଟିର ଶାରୀରିକ ଗଠନରେ ରହିଛି ତାରତମ୍ୟ, ଭିନ୍ନତା, ଦେହର ରଙ୍ଗ-କୃଷ୍ଣକାୟ, ଗୌର ହରିତ ବର୍ଣ୍ଣର ଭିନ୍ନତା। ଉନ୍ନତ ନାସିକା ଆଉ ଚେପ୍ଟା, ମଣ୍ଡାଳିଆ ନାସିକାର ଭିନ୍ନତା।

ଏମାନେ ଗଢିଲେ, ବାସ କଲେ ନଦୀ, ସାଗର ତଟରେ ପଲ୍ଲୀରେ। ସମତଳ ଭୂମିରେ ପଲ୍ଲିବାସୀଙ୍କ ସାଙ୍ଗକୁ ପର୍ବତକନ୍ଦର, ଗିରିଗୁହା, ଅରଣ୍ୟାନୀ ମଧ୍ୟରେ ବାସ କରିବା ଅଧିବାସୀ। ଏମାନେ ହିଁ ଆଦି ଭାରତୀୟ।

ଏହି ପ୍ରକ୍ରିୟାରେ ପରବର୍ତ୍ତୀ କାଳରେ ଭାରତ ଭୂଖଣ୍ଡ ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟ ଏହିପରି ଦୁଇଟି ବିଶିଷ୍ଟ ଅଂଗରୂପେ ବିରାଜିତ ହୁଏ। ଗଂଗା ଯମୁନା ସିନ୍ଧୁ ଅବବାହିକାରୁ ବିନ୍ଧ୍ୟାଚଳ ଯାଏ ଅର୍ଯ୍ୟାବର୍ତ୍ତ ଓ ମଧ୍ୟଦେଶ ଏବଂ ତାପରେ ଭାରତ ମହାସାଗର ତଟ ଛୁଇଁଥିବା ଭୂଖଣ୍ଡ ଦକ୍ଷିଣାତ୍ୟ

ନାମରେ ପରିଚିତ ହୁଏ । ପୁନଶ୍ଚ ଏହି ଭାରତକୁ ପୂର୍ବସୂରୀମାନେ ମଧ୍ୟ, ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ରୂପେ ଚିହ୍ନିତ କରିଥିଲେ ।

କାଳକ୍ରମେ ଏହିପରି ଭାବରେ ଚିହ୍ନିତ ଭାରତର ବିଭିନ୍ନ ଅଂଚଳକୁ ବିଭିନ୍ନ ଭାଷା-ହିନ୍ଦୀ, ଅସମୀୟା, ବଙ୍ଗଳା, ଗୁଜୁରାଟୀ, ମରାଠୀ, ଗୁରୁମୁଖୀର ଜନ୍ମ-ତାହା ସାଙ୍ଗକୁ କାଶ୍ମିରୀ, ଉର୍ଦ୍ଦୁ, ନେପାଳୀ ଭାଷା । ଦକ୍ଷିଣରେ ଦ୍ରାବିଡ ଭାଷାରୁ ତାମିଲ, ତେଲୁଗୁ, ମାଲୟାଲମ, କନ୍ନାଡ ଭାଷା । ଏମିତି ଷୋହଳଟି ପ୍ରମୁଖ ଭାଷା । ସେହିସବୁ ଭାଷା ମଧ୍ୟ ଦେଇ ମୂଳ ଭାଷାକୁ ଧରି ଗଢି ଉଠିଛି ମାଗଧୀ, ମୈଥିଳୀ, ବ୍ରଜଭାଷା, ଭୋଜପୁରୀ, କୋଙ୍କଣି, ହରିୟାଣୀ, ମାରୱାରୀ, ବାଂଗାଲ, ତ୍ରିପୁରୀ, ମଣିପୁରୀ, ଛତିଶଗଡ଼, ଗୁର୍ଖା, ନେପାନୀ, ଏମିତି ଅନେକ କଥିତ ଓ ଲିପିଛନ୍ଦା ଭାଷା । ଇଂରେଜୀ ଭାଷା ପ୍ରବେଶ କରି ବୃଦ୍ଧି ପାଇଛି ।

ଏହା ବ୍ୟତୀତ ଭାରତ ଭୂଖଣ୍ଡରେ ଲିପି ନଥାଇ ଶତାବ୍ଦୀ ଶତାବ୍ଦୀ ଧରି ଚଳିଆସିଛି ସହସ୍ରାଧିକ ଭାଷା । ଉପଜାତିମାନଙ୍କର ଭାଷା, କନ୍ଧ, ସାନ୍ତାଳ, କୋୟା, ପରଜା, କୋହ୍ଲ, ମୁଣ୍ଡା, ହୋ, ଜୁଆଙ୍ଗ, ନାଗା, ଶଉରା ପ୍ରଭୃତିଙ୍କର ଶତଶତ କଥିତ ଭାଷା । ଏମିତି ଭାରତରେ ୧୬୫୨ଟି ଭାଷା, ଉପଭାଷା, କଥିତଭାଷା, ବୋଲିର ପ୍ରସାର ଥିବାର ଜଣାଯାଇଛି ।

ଏହି ଭୂଖଣ୍ଡରେ କାଳର ପ୍ରବାହରେ ବିଭିନ୍ନ ଦାର୍ଶନିକ ଚିନ୍ତା, ଶାସ୍ତ୍ର, ମହାକାବ୍ୟର ଆବିର୍ଭାବ ଘଟିଛି । ସାହିତ୍ୟ, ସଂସ୍କୃତି, କଳା, ଭାସ୍କର୍ଯ୍ୟ, ଚିକିତ୍ସାବିଦ୍ୟାର ଗନ୍ତାଘର ହୋଇ ଆସିଛି ଆମର ଏହି ଦେଶ ।

ଆମ ଏଇ ଭୂଖଣ୍ଡରେ ବହୁ ଧର୍ମର ଆବିର୍ଭାବ ଘଟିଛି । ଆମ ଏ ଭୂଖଣ୍ଡରୁ ଅଢେଇ ହଜାର ବର୍ଷ ପୂର୍ବେ ଜନ୍ମଲାଭ କରିଥିବା ବୌଦ୍ଧଧର୍ମ ପ୍ରାଚ୍ୟ ଭୂଖଣ୍ଡର ଶତାଧିକ କୋଟି ଲୋକଙ୍କର ଧର୍ମରେ ପରିଣତ ହୋଇଛି । ପ୍ରାଚୀନତମ ହିନ୍ଦୁ ଧର୍ମାଚରଣ ସାଙ୍ଗକୁ ବୌଦ୍ଧ, ଜୈନ, ଶିଖ ଧର୍ମର ଅଭ୍ୟୁଦୟ ଘଟିଛି । ଅପର ପକ୍ଷରେ ଇସଲାମ, ଜୋରାଷ୍ଟ୍ରିୟ, ଖ୍ରୀଷ୍ଟିଆନ ଧର୍ମର ମଧ୍ୟ ପ୍ରବର୍ତ୍ତନ ହୋଇଛି ।

ପୁନଶ୍ଚ ପ୍ରତ୍ୟେକଟି ମୂଳ ଧର୍ମରେ କେତେ କେତେ ସୁନିର୍ଦ୍ଦିଷ୍ଟ ଧର୍ମଗୋଷ୍ଠୀ, ଧର୍ମ ସଂପ୍ରଦାୟର ଉଦ୍‌ଭବ ଘଟିଛି ।

ଏହି ବିଶାଳ ଦେଶର ବିଭିନ୍ନ ପ୍ରାନ୍ତରେ ଆଦିମ କାଳରୁ ଶତଶତ ଆଦିମ ଅଧିବାସୀ କୌଣସି ସଂଗଠିତ ଧର୍ମର ଅନୁସରଣ ନକରି ଯୁଗ ଯୁଗ ଧରି ପ୍ରକୃତିର ଉପାସକ (ଏନିମିଷ୍ଟ) ହୋଇ ସରଳ ପ୍ରାଣ ନେଇ ବୃକ୍ଷ, ପ୍ରସ୍ତର, ଜୀବଜନ୍ତୁର ଉପାସନା କରିଆସୁଛନ୍ତି ।

ଅଂଚଳ ଭେଦରେ ଗଢି ଉଠିଛି ନିଜ ନିଜର ବୈଶିଷ୍ଟ୍ୟସଂପନ୍ନ ସଂସ୍କୃତି, ଆଚାର ଧର୍ମାଚରଣ, ଭାଷା, କଳା, ସଂଗୀତ, ସ୍ଥାପତ୍ୟ, ଭାସ୍କର୍ଯ୍ୟକୁ ଆବୋରି ଏକ ସର୍ବଭାରତୀୟ ସମନ୍ୱିତ ସଂସ୍କୃତି-ମହାନ-ଭାରତୀୟ ସଂସ୍କୃତି । ଅଧୁନାକାଳର ଭାରତବର୍ଷ ସହସ୍ର ସହସ୍ର ବର୍ଷ

ଧରି କ୍ରିୟା, ପ୍ରତିକ୍ରିୟା, ବହୁ ଘାତ ପ୍ରତିଘାତ, ଉତ୍ଥାନପତନ, ପୁନଃ ଅଭ୍ୟୁଦୟ ମାଧ୍ୟମରେ ମହା ଭାରତୀୟ ଜାତିର ରାଷ୍ଟ୍ରରେ ପରିଣତ ହୋଇଛି । ଏହି ପ୍ରକାରର ପ୍ରକ୍ରିୟା ମାଧ୍ୟମରେ ସ୍ଥାନୀୟ ବୈଶିଷ୍ଟ୍ୟରେ ସମୃଦ୍ଧ ହୋଇ ସାରା ପୃଥିବୀରେ ନେସନ ଷ୍ଟେଟ ବା ଜାତୀୟ ରାଷ୍ଟ୍ରଗୁଡ଼ିକର ଆବିର୍ଭାବ ଘଟିଛି । ଭାରତ ଏପରି ଏକ ଜାତୀୟ ରାଷ୍ଟ୍ର ।

**ସାମନ୍ତବାଦୀ ଯୁଗରେ ଭାରତବର୍ଷ**

ଆଦିମ ଗଣସମାଜ, ଜନପଦରୁ ପ୍ରଭୁ ଦାସ ସମାଜର ଉଦ୍‌ଭବ । ପରେ ସାମନ୍ତବାଦୀ ସମାଜ ବ୍ୟବସ୍ଥା କେବଳ ଭାରତବର୍ଷରେ ଦେଖା ଦେଇନାହିଁ । ଏହା ଏକ ବିଶ୍ୱ ପ୍ରକ୍ରିୟା । ସମଗ୍ର ପୃଥିବୀ ବକ୍ଷରେ ଏହାର ଉଦ୍‌ଭବ ବିକାଶ ଓ ବିଲୟ ଘଟିଛି । ୟୁରୋପ ଭୂଖଣ୍ଡରେ ଓ ମଧ୍ୟ ପ୍ରାଚ୍ୟରେ ଉଦ୍‌ଭବ ଘଟେ ଗ୍ରୀକ, ରୋମ, ଅଟୋମାନ, ଏସୀରିୟ, ଅଷ୍ଟ୍ରୋ-ଜର୍ମାନ, ରୁଷ ସାମ୍ରାଜ୍ୟ ଓ ପୂର୍ବରେ ଚୀନ ସାମ୍ରାଜ୍ୟ ।

ସେହିପରି ସାମ୍ରାଜ୍ୟ ବିସ୍ତାର କରିବାକୁ ଅତୀତରେ ଭାରତକୁ ଆସିଥିଲେ ଆଲେକଜାଣ୍ଡରଙ୍କରର ଗ୍ରୀକ୍ ସୈନ୍ୟମାନେ । ସେମାନେ ପରେ ଚାଲିଗଲେ । ମାତ୍ର ଭାରତ ଭୂଖଣ୍ଡକୁ ଶକ, ହୁନ, କୁଷାଣମାନେ ଆସି ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ପରେ ପଠାଣ, ମୋଗଲ, ଆସିଲେ - ଖୋରାସାନ, ଆଫଗାନିସ୍ତାନ, ଫରଘନା ପ୍ରଭୃତି ଅଂଚଳରୁ । ମଙ୍ଗୋଲ ଚେଙ୍ଗିସ ଖାଁ ଭାରତ ଓ ମଧ୍ୟପ୍ରାଚ୍ୟ, ୟୁରୋପ ଅଂଚଳରେ ଅଭିଯାନ କରି ଲୁଣ୍ଠନ, ପୋଡାଜଳା, ହତ୍ୟାର ତାଣ୍ଡବ ସୃଷ୍ଟି କରି ଚାଲିଯାଇଥିଲେ । ପାରସ୍ୟର ନାଦିର ଶାହା ମଧ୍ୟ ଏହି ଯୁଗରେ ଭାରତ ଆକ୍ରମଣ କରି ଲୁଟପାଟ ଧ୍ୱଂସ ଲୀଳା ଚଳେଇ ସ୍ୱଦେଶକୁ ଚାଲିଯାଇଥିଲେ । ଶକ, ହୁନ, କୁଷାଣ, ପଠାଣ, ମୋଗଲମାନେ ସ୍ୱଦେଶକୁ ନ ଫେରି ଏହି ଏହି ଭୂଖଣ୍ଡରେ ରହିଲେ ।

ଭାରତ ଭୂଖଣ୍ଡରେ କେବଳ ଏମାନଙ୍କ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା, ନୁହଁ । ମଗଧ, ମୌର୍ଯ୍ୟ, ଗୁପ୍ତ, ଅଶୋକ ସାମ୍ରାଜ୍ୟ, ଆମ ଓଡ଼ିଶାର ଐର, ଖାରବେଳ, କଳିଙ୍ଗ ସାମ୍ରାଜ୍ୟ ଦାକ୍ଷିଣାତ୍ୟ ଓ ପୂର୍ବପଟେ ବଙ୍ଗଳାର କେତେକ ଅଂଶ ଯାଏ ବିସ୍ତାରିତ ହେଲା । ବଙ୍ଗଳାର ଗୌଡ଼ ସାମ୍ରାଜ୍ୟ ଓଡ଼ିଶାର ପୂର୍ବ ଉପକୂଳବର୍ତ୍ତୀ ଅଞ୍ଚଳ ଯାଏ ପ୍ରସାରିତ ଥିଲା ।

ଦକ୍ଷିଣାଞ୍ଚଳରେ ସେମିତି କାକତୀୟ, ଚୋଳ, ପାଣ୍ଡ୍ୟ, ହୟାସନ, ଯାଦବ ରାଜ୍ୟ ପରେ ବାହାମନୀ ସାମ୍ରାଜ୍ୟ । ପଶ୍ଚିମରେ ଚାଲୁକ୍ୟ, ଚିତ୍ରକୂଟ ରାଜ୍ୟ । ଏକ ଭାଷାଭାଷୀ ଏକ ଅଂଚଳର ସାମନ୍ତବାଦୀ ରାଜା - ମହାରାଜା ଅନ୍ୟ ଅଂଚଳକୁ ଦଖଲ କରି ସାମ୍ରାଜ୍ୟ ବିସ୍ତାର କରୁଥିଲେ । ସେହିପରି ମରହଟ୍ଟା ସାମ୍ରାଜ୍ୟ ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । ଯାହାକି ପରେ ଭୋଁସଲା ପେଶବା, ହୋଲକାର, ଗାଏକୋୱାଡ ରାଜ୍ୟରେ ପରିଣତ ହେଲା ।

ମାନବ ସମାଜର ବିକାଶ ପ୍ରକ୍ରିୟାରେ ଏହା ସାମନ୍ତବାଦୀ ସାମ୍ରାଜ୍ୟ ଓ ରାଜ୍ୟ ପ୍ରତିଷ୍ଠାର ଯୁଗ ବୋଲି ଚିହ୍ନିତ । ରାଜା-ମହାରାଜା, ସମ୍ରାଟ, ଜାର, ଏକାଙ୍ଗ ଚକ୍ରବର୍ତ୍ତୀ, ବାଦଶାହ ହେବାର ଯୁଗ ରୂପେ ଏହା ସମାଜ ବିଜ୍ଞାନ ଇତିହାସରେ ଚିହ୍ନିତ ।

## ପୁଂଜିବାଦୀ-ସାମ୍ରାଜ୍ୟବାଦୀ ଯୁଗହିଁ ଉପନିବେଶ ଓ ପରାଧୀନତା ଯୁଗ

ଦିଗ୍‌ବିଜୟ ଓ ସାମନ୍ତବାଦୀ ସାମ୍ରାଜ୍ୟ ପ୍ରତିଷ୍ଠାର ଦୀର୍ଘ-ପ୍ରସାରୀ ଯୁଗ ପରେ, ସାମାଜିକ, ଅର୍ଥନୈତିକ ବିକାଶ ଫଳରେ ଏକ ନୂତନ ଯୁଗର ଆବିର୍ଭାବ ଘଟେ। ଇତିହାସ ଦୃଷ୍ଟିରୁ ସତର ଶହ ଖ୍ରୀଷ୍ଟାବ୍ଦରୁହିଁ ଏହି ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ଯୁଗର ଆରମ୍ଭ ହୁଏ। ପ୍ରଭୁଦେଶ (ମେଟ୍ରୋପଲି) ଓ ଉପନିବେଶଗୁଡିକର ଆବିର୍ଭାବ ଘଟେ। ପ୍ରଭୁଦେଶ ଦ୍ୱାରା ଅଧିକୃତ ଭୂଖଣ୍ଡ, ଅଂଚଳ, ଦେଶଗୁଡିକ ସଂପୂର୍ଣ୍ଣଭାବରେ ପରାଧୀନ ହୋଇଯାନ୍ତି। ପ୍ରଭୁ ଦେଶର ଉପନିବେଶରେ ପରିଣତ ହୁଅନ୍ତି। ସାମନ୍ତବାଦୀ ଅର୍ଥନୀତି ପୁଂଜିବାଦୀ ଅର୍ଥନୀତିରେ ପରିଣତ ହେବା ପ୍ରକ୍ରିୟାରେ ପ୍ରଭୁଦେଶଗୁଡିକ ପୁଂଜିବାଦୀ ରାଷ୍ଟ୍ରରେ ପରିଣତ ହୁଅନ୍ତି। ସ୍ୱଦେଶରେ ପୁଂଜିର ବିକାଶ ଲାଗି, ଶିଳ୍ପର ବିକାଶ ଲାଗି ଅନ୍ୟ ଭୂଖଣ୍ଡକୁ ଉପନିବେଶ କରାଯାଏ। ସେହି ଅଧିକୃତ ଦେଶର ସମସ୍ତ ସଂପଦ, ଭୂପୃଷ୍ଠ, ଭୂଗର୍ଭ, ସ୍ଥଳ, ଜଳ ସଂପଦକୁ ପ୍ରଭୁଦେଶର ନୂତନ ପୁଂଜିପତି, ବଣିକ ଗୋଷ୍ଠୀର ସ୍ୱାର୍ଥ ଲାଗି ଆୟତ୍ତାଧୀନ କରାଯାଏ। ଉପନିବେଶର ଲୋକେ ନିଜର ଏସବୁ ସମ୍ବଳ ସଂପଦରୁ ବଂଚିତ ହୁଅନ୍ତି। ୟୁରୋପ ଭୂଖଣ୍ଡରେ ଏହି ପ୍ରକ୍ରିୟାରେ ହିଁ ଶିଳ୍ପ ବିପ୍ଳବର ସୂତ୍ରପାତ ହୁଏ। ପ୍ରଥମେ ବଣିକ ପୁଂଜିର ସୃଷ୍ଟି। ବଜାର ଦଖଲ ପାଇଁ ବଣିକ ପୁଂଜି ପରାଧୀନ ଦେଶଗୁଡିକରେ ଏକଚାଟିଆ ବାଣିଜ୍ୟ ଜରିଆରେ ପ୍ରଭୂତ ପୁଂଜି ସଂଚୟ କରି ଶିଳ୍ପ ପୁଂଜିରେ ପରିଣତ ହୁଏ। ଶିଳ୍ପ ପୁଂଜିରୁ ଅର୍ଥପୁଂଜିର ଉଦ୍‌ଭବ ଘଟେ। ଅଧିକୃତ ଉନନିବେଶକୁ ପ୍ରଭୁଦେଶର ବଣିକ ପୁଂଜି, ଶିଳ୍ପ ପୁଂଜି ଓ ଅର୍ଥପୁଂଜିରେ ବିକାଶ ଲାଗି ଶୋଷଣ କରାଯାଏ। ଏହି ପ୍ରକ୍ରିୟାରେ ଅଧିକୃତ ଦେଶରେ ପରଦେଶୀ ଶିଳ୍ପ ପୁଂଜି, ଅର୍ଥପୁଂଜିର ଶାସନ ପ୍ରତିଷ୍ଠା କରାଯାଏ। ଅଧିକୃତ ଦେଶରେ ଶିଳ୍ପପୁଂଜିର ସ୍ୱାର୍ଥରେ ଆଇନକାନୁନ, ପୁଲିସ, ଅଦାଲତ, ବିଚାରାଳୟ ଗଢାଯାଏ; ସୈନ୍ୟ ସାମନ୍ତ ମୁତଏନ କରାଯାଏ। ଏହି ପୁଂଜିବାଦୀ ସାମ୍ରାଜ୍ୟବାଦୀ ଅର୍ଥନୈତିକ ବ୍ୟବସ୍ଥା ପ୍ରବର୍ତ୍ତନ ଫଳରେ ପ୍ରଥମେ ଶିଳ୍ପ ବିପ୍ଳବର ଯୁଗ ଆରମ୍ଭ ହୋଇଥିବା ୟୁରୋପୀୟ ଦେଶମାନେ ଉପନିବେଶ ଦଖଲ କରିବାକୁ ସାରା ପୃଥିବୀକୁ ଖେଦିଯାଆନ୍ତି। ପ୍ରଥମେ ସେପରି ଦେଶ ହେଲେ ବ୍ରିଟେନ୍, ଫ୍ରାନ୍ସ, ପର୍ତ୍ତୁଗାଲ, ହଲାଣ୍ଡ, ଦିନାମାର ଦେଶ।

ଏହି ଦେଶର ବଣିକମାନେ ଭାରତବର୍ଷରେ ପ୍ରବେଶ କରନ୍ତି। ଏଇ ମାଟିରେ ନିଜ ନିଜ ମଧ୍ୟରେ କେତେ ଯୁଦ୍ଧ କରନ୍ତି। ଶେଷରେ ବ୍ରିଟିଶ ବଣିକ ଗୋଷ୍ଠୀର କାୟା ଦେଶର ଏମୁଣ୍ଡରୁ ସେମୁଣ୍ଡ ଯାଏ ବିସ୍ତାରିତ ହୁଏ।



# ଭାରତ ବ୍ରିଟିଶ ଉପନିବେଶରେ ପରିଣତ

ୟୁରୋପରେ ବଣିକ ପୁଂଜିର ବଜାର ଅନ୍ୱେଷଣ ଆରମ୍ଭ ହୋଇଯାଏ । ଭାରତବର୍ଷରେ ୧୫୦୦ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗୀଜ ବଣିକମାନଙ୍କ ପ୍ରବେଶ ହୁଏ । କେରଳର କାଲିକାଟଠାରେ ରାଜା ଜାମୋରିନ୍‌ଙ୍କଠାରୁ ବାଣିଜ୍ୟ ଘାଟୀ ନିର୍ମାଣ ଲାଗି ଅନୁମତି ହାସଲ କଲେ ପର୍ତ୍ତୁଗୀଜମାନେ । ଦିନମାର (ଡଚ)ମାନେ ୧୬୦୨ରେ, ଫରାସୀ ବଣିକମାନେ ୧୬୬୪ରେ ଏବଂ ବ୍ରିଟେନର ବଣିକମାନେ ୧୭୦୦ ଖ୍ରୀଷ୍ଟାବ୍ଦରେ ଭାରତବର୍ଷରେ ପ୍ରବେଶ କଲେ ।

ଆମେ ଦେଶର ସାମନ୍ତବାଦୀ ରାଜାମାନଙ୍କ ସନନ୍ଦ ଲାଭ କରି ଫରାସୀ ଇଷ୍ଟ ଇଣ୍ଡିଆ କଂପାନୀ, ଦିନାମାର ଇଷ୍ଟ ଇଣ୍ଡିଆ କଂପାନୀ, ବ୍ରିଟିଶ ଇଷ୍ଟ ଇଣ୍ଡିଆ କଂପାନୀ ଗଠିତ ହେଲା । ଏହି କଂପାନୀଗୁଡ଼ିକ ଭାରତରେ ଥିବା ସାମନ୍ତବାଦୀରାଜା ମହାରାଜା, ନବାବ ତଥା ଦିଲ୍ଲୀ ମୋଗଲ ସମ୍ରାଟ ପ୍ରଭୃତିଙ୍କଠାରୁ କଳେବଳେ କୌଶଳରେ ବାଣିଜ୍ୟ କରିବାର ଅଧିକାର ହାସଲ କଲେ ।

ଫରାସୀମାନେ ମାନ୍ଦ୍ରାଜରେ ସେଣ୍ଟ ଜର୍ଜ ଫୋର୍ଟ (ଦୁର୍ଗ). ବାଣିଜ୍ୟ ଘାଟୀ ନିର୍ମାଣ କଲେ । ପର୍ତ୍ତୁଗୀଜମାନେ ବମ୍ବେରେ ବାଣିଜ୍ୟ ଘାଟୀ ନିର୍ମାଣ କଲେ । କଲିକତା ହୁଗୁଳି, ନଦୀ ତଟରେ ବ୍ରିଟିଶମାନେ ଫୋର୍ଟ ଉଇଲିୟମ ବାଣିଜ୍ୟ ଘାଟୀ ନିର୍ମାଣ କଲେ ।

ଆଜି ବି ଓଡ଼ିଶାରେ ଏ ସବୁ ବଣିକ ଗୋଷ୍ଠୀଙ୍କ ବାଣିଜ୍ୟ ଦୁର୍ଗର ଅବଶେଷ ରହିଛି । ବାଲେଶ୍ୱରରେ ଫରାସୀ ଡିଙ୍ଗା, ଜଗତସିଂହପୁରରେ ଫିରିଙ୍ଗିକୁଦ, ଗଂଜାମରେ ଦିନାମାରମାନଙ୍କ ପୋତାଗଡ ବାଣିଜ୍ୟ ଦୁର୍ଗ ଏପରି କେତେକ ନମୁନା ।

ଭାରତ ଭୂଇଁରେ ଏହି ବିଦେଶୀ ବଣିକ ପୁଂଜି ଭିତରେ ଅନେକ ଯୁଦ୍ଧ, କନ୍ଦଳ ଦଖଲ, ବେଦଖଲ କାହାଣୀ ଇତିହାସ ବହନ କରେ । ଅନ୍ୟ ଦିଗରେ ଭାରତର ବିଭିନ୍ନ ନରପତି, ଶାସକ, ନବାବ, ରାଜା ମହାରାଜା ଗୋଟିଏ ବିଦେଶୀ କଂପାନୀ ପକ୍ଷରେ ଅନ୍ୟ ବିଦେଶୀ କଂପାନୀ ବିରୁଦ୍ଧରେ ସାମରିକ ସାହାଯ୍ୟ ଦେବାର ଭୂରିଭୂରି ଦୃଷ୍ଟାନ୍ତ ରହିଛି ।

ୟୁରୋପରେ ଫ୍ରାନ୍ସ-ବ୍ରିଟେନ ମଧ୍ୟରେ ସାତବର୍ଷିଆ ଯୁଦ୍ଧର ଘନଘଟା ମଧ୍ୟ ଭାରତ ଭୂମିକୁ ପ୍ରସାରିତ ହୋଇଥିଲା । ୧୭୪୬ରୁ ୧୭୬୩ ଯାଏ ଭାରତ ଭୂଇଁରେ ଇଂରେଜ ଫ୍ରାନ୍ସ ଯୁଦ୍ଧ ହୋଇଥିଲା । ଫ୍ରାନ୍ସର ପରାଜୟ ପରେ ମାନ୍ଦ୍ରାଜର ଫରାସୀ ସେଣ୍ଟ ଜର୍ଜ ଦୁର୍ଗ ଚୁକ୍ତିବଳରେ ବ୍ରିଟିଶ ଇଷ୍ଟ ଇଣ୍ଡିଆ କଂପାନୀର କର୍ତ୍ତୃତ୍ୱାଧୀନ ହେଲା । ପଣ୍ଡିଚେରୀ, ମାହେ, ଚନ୍ଦନନଗର ପରି କ୍ଷୁଦ୍ର ଅଂଚଳଗୁଡ଼ିକ କେବଳ ରହିଲା ଫରାସୀ ଅଧୀନରେ ।

ଅନ୍ୟ ପକ୍ଷରେ ପର୍ତ୍ତୁଗାଲର ବମ୍ବେରେ ପ୍ରତିଷ୍ଠିତ ବାଣିଜ୍ୟ ଦୁର୍ଗଟି ବ୍ରିଟିଶ ରାଜପୁତ୍ର ପର୍ତ୍ତୁଗୀତ ରାଜ କନ୍ୟାଙ୍କ ସହିତ ବିବାହରେ ଯୌତୁକ ରୂପରେ ବ୍ରିଟିଶ କର୍ତ୍ତୃତ୍ୱାଧୀନ ହେଲା । ପର୍ତ୍ତୁଗାଲ ହାତରେ ରହିଗଲା କେବଳ ଗୋଆ, ଦାମନ, ଦିଉ ଭଳି ଛୋଟ ଛୋଟ ଦ୍ୱୀପ । ବଂଗଳାର ଶ୍ରୀରାମପୁରଠାରେ ଦିନାମାରଙ୍କର ଗୋଟିଏ କ୍ଷୁଦ୍ର ଦୁର୍ଗ ବ୍ୟତୀତ ଭାରତବର୍ଷ ସଂପୂର୍ଣ୍ଣ ଭାବରେ ଫିରିଙ୍ଗି ଇଷ୍ଟ ଇଣ୍ଡିଆ କଂପାନୀ କବଳରେ ଆସିବାକୁ ସମସ୍ତ ସୁଯୋଗ ସୃଷ୍ଟି ହୋଇଗଲା । ଆରବସାଗର କୂଳରେ ବମ୍ବେ, ଭାରତ ମହାସାଗର ତଟ ନିକଟ ବଂଗୋପସାରଗ କୂଳରେ ମାନ୍ଦ୍ରାଜ ଏବଂ ହୁଗୁଳିଠାରେ ବ୍ରିଟିଶର ଆଧିପତ୍ୟ ପ୍ରତିଷ୍ଠିତ ହେଲା । ଭାରତକୁ ଘେରି ସମଗ୍ର ଜଳପଥ ବ୍ରିଟିଶ ଇଷ୍ଟ ଇଣ୍ଡିଆ କଂପାନୀର କର୍ତ୍ତୃତ୍ୱାଧୀନ ହେଲା ।

ଓଲନ୍ଦାଜମାନେ କରମଣ୍ଡଳ ଉପକୂଳରେ ନାଗାପଟି ଓ ବଂଗଳାର ଢାକା ଓ ଚୁଚୁଡ଼ାଠାରେ ନିର୍ମାଣ କରିଥିବା ବାଣିଜ୍ୟ ଘାଟୀ ମଧ୍ୟ କାଳକ୍ରମେ ବ୍ରିଟିଶ କର୍ତ୍ତୃତ୍ୱକୁ ଆସିଗଲା ।

ଐତିହାସିକ ପଲାସୀ ସମର - ୧୭୫୭

ମୋଗଲ ସାମ୍ରାଜ୍ୟର ପତନ ଆରମ୍ଭ ହୋଇଯାଉଥାଏ । ସମ୍ରାଟଙ୍କ ଅଧୀନ ସୁବେଦାର, ନବାବ, ନିଜାମ, ରାଜା ମହାରାଜାଙ୍କର କେନ୍ଦ୍ର ଦିଲ୍ଲୀ ଶାସନ ପ୍ରତି ପୂର୍ବ ଆନୁଗତ୍ୟ ହ୍ରାସ ପାଇବାରେ ଲାଗିଥାଏ । ଏହାର ଫଳସ୍ୱରୂପ ବିଦେଶୀ ବଣିକ କଂପାନୀ ଗୁଡ଼ିକଙ୍କର ଆଧିପତ୍ୟକୁ ସମୂହ ପ୍ରତିରୋଧ ଅସମ୍ଭବ ହୋଇପଡେ ।

ଏହିପରି ପରିସ୍ଥିତିରେ ପ୍ରବଳ ଶକ୍ତିଶାଳୀ ହୋଇ ଉଠିଥିବା ବ୍ରିଟିଶ ଇଷ୍ଟ ଇଣ୍ଡିଆ କଂପାନୀର କର୍ତ୍ତୃତ୍ୱକୁ ଲୋକ କରିବା ଲାଗି ଯେଉଁ ଐତିହାସିକ ଯୁଦ୍ଧ ୧୭୫୭ରେ ବଂଗଳା ଭୂଇଁରେ ସଂଘଟିତ ହେଲା, ତାହା ଭାରତର ସ୍ୱାଧୀନତା ସଂଗ୍ରାମର ଭବିଷ୍ୟତ ଲାଗି ଏକ ପଥ ନିର୍ଦ୍ଦେଶକ, ଏକ ଜଳଛାୟା ରୂପେ ବିବେଚିତ ହୁଏ ।

ବଂଗଳାର ନବାବ ସିରାଜ ଉଦ୍ଦୌଲା । ଇଷ୍ଟଇଣ୍ଡିଆ କଂପାନୀର ସର୍ବମୟ କର୍ତ୍ତା କ୍ଲାଇଭଙ୍କ ସୈନ୍ୟବାହିନୀକୁ ପରାସ୍ତ କରି ବଂଗଳାକୁ ଫିରିଙ୍ଗି ଦଖଲରୁ ମୁକ୍ତ କରିବାର ଯୁଦ୍ଧ ସଜ୍ଜା କରନ୍ତି ।

୧୮ ହଜାର ଅଶ୍ୱାରୋହୀ, ୫୦ ହଜାର ପଦାତିକ ବାହିନୀକୁ ଘେନି ସିରାଜ ଉଦ୍ଦୌଲା ବ୍ରିଟିଶ କବଳରୁ କାଶିମ ବଜାରକୁ ମୁକ୍ତ କରି କଲିକତା ଦଖଲ ଯାତ୍ରା ଆରମ୍ଭ କରନ୍ତି। କ୍ଲାଇଭାଙ୍କର ସୈନ୍ୟବାହିନୀରେ ମାତ୍ର ୩ହଜାର ସୈନିକ। ତନ୍ମଧ୍ୟରୁ ୨୨ଶହ ଗୋରା ଓ ୮ଶହ ଭାରତୀୟ ସିପାହୀ। କ୍ଲାଇଭଙ୍କ ସୈନ୍ୟବାହିନୀର ପତ୍ତା ଉଡିଯାଇଥାନ୍ତା। ମାତ୍ର କ୍ଲାଇଭଙ୍କ କୂଟକୌଶଳର ଜୟ ହେଲା। ସିରାଜ ଉଦ୍ଦୌଲାଙ୍କ ବିଶ୍ୱସ୍ତ ସେନାପତି ମିର୍ଜାଫର ବିଶ୍ୱାସଘାତକତା କରି ପଲାସୀ ଯୁଦ୍ଧକ୍ଷେତ୍ରର ସମସ୍ତ ସୈନ୍ୟ ସମାବେଶ, ଯୁଦ୍ଧକୌଶଳକୁ କ୍ଲାଇଭଙ୍କୁ ଜଣେଇଦେଲେ। ଅନ୍ୟପକ୍ଷରେ ଏହି ଚକ୍ରାନ୍ତ ଫଳରେ ଜଗତ ଶେଠ ନାମକ ଜଣେ ମାରୱାଡି ସୌଦାଗର ଯାହାଙ୍କ ପାଖରେ ସମସ୍ତ ଖାଦ୍ୟ ପଦାର୍ଥ ଠୁଳ, ସେ ସିରାଜ ଉଦ୍ଦୌଲାଙ୍କ ସୈନ୍ୟବାହିନୀକୁ ରସଦ ଯୋଗାଣ ବନ୍ଦ କରିଦେଲେ। ଏହି ଜଗତ୍ ଶେଠଙ୍କୁ ମୁର୍ଶିଦାବାଦର ନବାବ ମୁର୍ଶିଦ ଅଲିଖାଁନ ନିଜ ରାଜ୍ୟର ସମସ୍ତ ଖାଦ୍ୟ ପଦାର୍ଥର ଏକଚାଟିଆ କାରବାରର କ୍ଷମତା ଦେଇଥିଲେ।

କ୍ଲାଇଭଙ୍କ କୂଟଚକ୍ରାନ୍ତ, ହିନ୍ଦୁ ମୁସଲମାନ ବୋଲାଉଥିବା ଜଗତ ଶେଠ ଓ ମିର୍ଜାଫରଙ୍କ ବିଶ୍ୱାସଘାତକତା ଯୋଗୁହିଁ ସିରାଜ ଉଦ୍ଦୌଲାଙ୍କ ବୀରତ୍ୱପୂର୍ଣ୍ଣ ଯୁଦ୍ଧ ପରାଭୂତ ହେଲା। ବ୍ରିଟିଶ ଇତିହାସକାରମାନେ ସିରାଜ ଉଦ୍ଦୌଲାଙ୍କୁ ବଦନାମ କରିବା ଲାଗି ଅନ୍ଧକୂପ ହତ୍ୟାର କାହାଣୀ ରଚନା କରିବା ପ୍ରମାଣିତ ହେଲା।

ପଲାସୀ ଯୁଦ୍ଧରେ ପରାଜୟ ପରେ ମିର୍ଜାଫର କିଛି କାଳ ନବାବ ହୋଇ ଗାଦିଚ୍ୟୁତ ହେଲେ। ତାପରେ ମିରକାଶିମ୍, ତାଙ୍କ ଜାମାତା, ନବାବ ହେଲେ। କ୍ଲାଇଭଙ୍କ ହାତରେ ସେ ଅର୍ପଣ କରିଦେଲେ ମେଦିନୀପୁର, ଢାକା, ଚଟ୍ଟଗ୍ରାମକୁ। କ୍ଲାଇଭ ହେଲେ ବଂଗଳାର ଗଭର୍ଣ୍ଣର।

ପାଇକ ଯୁଦ୍ଧବେଳେ ବିଶ୍ୱାସଘାତକ ଚରଣ ପଟ୍ଟନାୟକ, ଶିଖି ମନେଇଙ୍କ ବିଶ୍ୱାସଘାତକତା ପରି ଫିରିଙ୍ଗି ଶାସନ ପ୍ରତିଷ୍ଠାରେ ଭାରତବର୍ଷର ସେ କାଳର ଅନେକ ରାଜା, ନବାବ୍ ଦେଶ ପ୍ରତି ବିଶ୍ୱାସଘାତକତା କରିଥିବାର ଅଜସ୍ର ପ୍ରମାଣ ବିଦ୍ୟମାନ।

ପରିଶେଷରେ ୧୭୬୪ରେ ଇଂରେଜମାନଙ୍କ ସଂଗରେ ମିର କାଶିମ, ଅଯୋଧ୍ୟାର ନବାବ ଓ ମୋଗଲ ସମ୍ରାଟଙ୍କ ମିଳିତ ବାହିନୀ ଯୁଦ୍ଧ କରି ପରାସ୍ତ ହୁଅନ୍ତି। ଶକ୍ତିହୀନ ମୋଗଲ ସମ୍ରାଟ ଶାହା ଆଲମଙ୍କଠାରୁ ଇଷ୍ଟଇଣ୍ଡିଆ କଂପାନୀ ବଂଗ, ବିହାର ଓଡିଶାର ଦେବାନୀ ହାସଲ କରେ। ଅର୍ଥାତ୍ ଖଜଣା ବସେଇବା, ଖଜଣା ଅସୁଲ କରିବାର ଅଧିକାର। ଏପରି ଅଧିକାର ଆଣି ଦିଏଷ ଅନ୍ୟ ଯାବତୀୟ ଅଧିକାର।

ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ କାବୁଲର ଇମାମ ଶାହା, ମହୀଶୂରରେ ଟିପୁ ସୁଲତାନ, ସିନ୍ଧିଆ ଏବଂ ଅବଧର ନବାବ ସମ୍ମିଳିତ ଭାବରେ ବ୍ରିଟିଶର ବିରୋଧ କରି ପରାଜିତ ହୁଅନ୍ତି।

ଲର୍ଡ ହେଷ୍ଟିଙ୍ଗଙ୍କର କୂଟ ଚକ୍ରାନ୍ତର ବିଜୟ ହେଲା । ବ୍ରିଟିଶ ଇଷ୍ଟ ଇଣ୍ଡିଆ କଂପାନୀ ଏହାପରେ ଦକ୍ଷିଣରେ କର୍ଣ୍ଣାଟକ, ତ୍ରିବାଙ୍କୁଡ଼ ଓ ଉତ୍ତରରେ ଅବଧ ଉପରେ ହସ୍ତକ୍ଷେପ କଲା । ୧୭୯୮ରେ ହାଇଦ୍ରାବାଦର ନିଜାମ, ୧୮୧୫ରେ ନେପାଳର ଗୁର୍ଖା ଶାସନ ଓ ପରେ ନାଗପୁରର ଭୋଁସଲା,ଲ ଗ୍ୱାଲିଅରର ସିନ୍ଧିଆ, ଇନ୍ଦୋରର ହୋଲକାର ପ୍ରଭୃତିଙ୍କୁ ଇଷ୍ଟ ଇଣ୍ଡିଆ କଂପାନୀ ସହିତ ଅସମ ଚୁକ୍ତିରେ ଆବଦ୍ଧ ହେବାକୁ ପଡ଼ିଲା । ଇଷ୍ଟ ଇଣ୍ଡିଆ କଂପାନୀ ପ୍ରତ୍ୟେକଟି ଦେଶୀୟ ରାଜ୍ୟରେ ଗୋରା ରେସିଡ଼େଣ୍ଟ ନିଯୁକ୍ତ କଲା । ଦେଶୀୟ ରାଜ୍ୟଟିର ସୈନ୍ୟବାହିନୀ ବ୍ରିଟିଶ ରେସିଡେଣ୍ଟଙ୍କ ଅଧୀନସ୍ଥ ହେଲା । ଏମିତିକି ଯେକୌଣସି ଦେଶୀୟ ରାଜ୍ୟର ଶାସକଙ୍କ ମୃତ୍ୟୁ ପରେ କିଏ ଉତ୍ତରାଧିକାରୀ ହେବ, ତାହାର ନିଷ୍ପତ୍ତି ରେସିଡେଣ୍ଟଙ୍କ ହାତରେ ରହିଲା । ଶେଷରେ ଚୁକ୍ତି ଭଂଗ ଅଭିଯୋଗରେ ନାଗପୁରର ଭୋଁସଲାଙ୍କୁ ପରାସ୍ତ କରି ୧୮୦୩ରେ ଇଷ୍ଟ ଇଣ୍ଡିଆ କଂପାନୀ ଓଡିଶା ଦାଖଲ କଲା । ୧୮୦୬ରେ ପଂଜାବକୁ ଦଖଲ କରି ନିଆଗଲା ।

ସମଗ୍ର ଭାରତବର୍ଷ ବ୍ରିଟିଶ ଉପନିବେଶରେ ପରିଣତ ହେଲା । ଭାରତବର୍ଷ ପରାଧୀନ ଦେଶରେ ପରିଣତ ହେଲା । ଭାରତବର୍ଷକୁ ଉପନିବେଶ କରିବା ସଂଗେ ସଂଗେ ଭାରତକୁ ଶୋଷଣ କରି ବ୍ରିଟିଶ ସାମ୍ରାଜ୍ୟବାଦର ପୃଥିବୀବ୍ୟାପୀ ପ୍ରସାର ଘଟିଲା । ଆଫ୍ରିକା ମହାଦେଶର ମିଶର, ଦକ୍ଷିଣ ଆଫ୍ରିକା, ରୋଡ଼େସିଆ ପ୍ରଭୃତି ଦେଶଠାରୁ ଆରମ୍ଭ କରି ସିଂହଳ, ମାଲେସିଆ, ବର୍ମା, କାନାଡା, ଅଷ୍ଟ୍ରେଲିଆ, ନିଉଜିଲ୍ୟାଣ୍ଡ ଓ ଦକ୍ଷିଣ ଆମେରିକାର ୱେଷ୍ଟ ଇଣ୍ଡିଜ, ବ୍ରିଟିଶ ଗାଇନା ଦେଶଗୁଡିକ ପର୍ଯ୍ୟନ୍ତ ବ୍ରିଟିଶ ସାମ୍ରାଜ୍ୟ ବ୍ୟାପିଗଲା ।

ପୂର୍ବପଟେ ସେମିତି ଫ୍ରାନ୍ସର ଉପନିବେଶ ହେଲା ଇନ୍ଦୋଚୀନ, ଶ୍ୟାମ । ଦିନାମାରମାନଙ୍କ ଉପନିବେଶ ହେଲା ଇନ୍ଦୋନେସିଆ । ସାରା ପୃଥିବୀରେ ୟୁରୋପୀୟ ପୁଂଜିବାଦୀ ସାମ୍ରାଜ୍ୟବାଦୀ ଦେଶଗୁଡିକ ଅନ୍ୟ ଦେଶର ସ୍ୱାଧୀନତା ଅପହରଣ କରି ସେଗୁଡିକୁ ଔପନିବେଶିକ ଶୋଷଣର ଚରାଭୂଇଁ କରିଦେଲେ । ଆମେରିକା ଭୂଖଣ୍ଡ ସେଥିରୁ ବାଦ ପଡିଲା ନାହିଁ ।



# ବ୍ରିଟିଶ ବିରୁଦ୍ଧରେ ମେଳି, ବିଦ୍ରୋହ, ସଶସ୍ତ୍ର ଖଣ୍ଡସଂଗ୍ରାମ

ସାମ୍ରାଜ୍ୟବାଦୀ ଇତିହାସବିଦ୍‌ମାନେ ପ୍ରଥମ ସ୍ୱାଧୀନତା ସଂଗ୍ରାମକୁ ବିକୃତ କରି "ସିପାହୀ ବିଦ୍ରୋହ" ବୋଲି ଅଭିହିତ କରିଆସିଛନ୍ତି । ଏହି ମହାନ୍ ସଂଗ୍ରାମରେ ଲକ୍ଷ ଲକ୍ଷ ଭାରତବାସୀ ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷଭାବରେ ଜଡ଼ିତ ଥିଲେ । ତାହାକୁ ନ୍ୟୂନ କରିଦେଇ ଅସନ୍ତୁଷ୍ଟ ସୈନିକ ହିନ୍ଦୁ ମୁସଲମାନ ସିପାହୀଙ୍କ ବିଦ୍ରୋହ ବୋଲି ସେମାନେ ଦର୍ଶାଇଥାନ୍ତି । ୧୮୫୭ର ଏହି ସ୍ୱାଧୀନତା ସମରର କାଳ ଅନ୍ୟୂନ ଏକ ଶହ ବର୍ଷ ବାକି ଅଛି । ସେହି ଦୀର୍ଘ କାଳରେ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ଭାରତବର୍ଷର କୋଣେ ଅନୁକୋଣେ ଅସଂଖ୍ୟ ମେଳି, ବିଦ୍ରୋହ, ଖଣ୍ଡ-ସଶସ୍ତ୍ର ସଂଗ୍ରାମ ଅନୁଷ୍ଠିତ ହୋଇଛି ଏବଂ ୧୮୫୭ ପରେ ମଧ୍ୟ ଏପରି ମେଳି, ପ୍ରତିରୋଧ ବିଭିନ୍ନ ଅଂଚଳରେ ଫାଟି ପଡ଼ିଛି ।

ଏହିସବୁ ମେଳି, ବିଦ୍ରୋହର ମୂଳ ଆଧାର ହୋଇଛନ୍ତି ବ୍ରିଟିଶ ଇଷ୍ଟ ଇଣ୍ଡିଆ କଂପାନୀର ଶୋଷଣ ଅତ୍ୟାଚାର, ଲୁଣ୍ଠନରେ ସର୍ବସ୍ୱାନ୍ତ, ବ୍ୟତିବ୍ୟସ୍ତ ଚାଷୀ, କାରିଗର ଓ ଆଦିମ ଅଧିବାସୀ । ଅବଶ୍ୟ ବେଶ କେତେକ ସ୍ଥାନରେ ଏହି ବିଦ୍ରୋହ, ମେଳିର ନେତୃତ୍ୱରେ ପରଦେଶୀ ଶାସନରେ ନିଗୃହିତ କ୍ଷମତାଚ୍ୟୁତ ସାମନ୍ତବାଦୀ ବର୍ଗର ସାମନ୍ତଶାହୀ ଶାସକ, ରାଜାମହାରାଜା, ନବାବ ଥିଲେ । ସେ କାଳର ଲୋକଙ୍କ ଚେତନାର ସ୍ତର ଯାହା ଥିଲା, ସେ ଦୃଷ୍ଟିରୁ ଏପରି ହେବା ସ୍ୱାଭାବିକ । କିନ୍ତୁ ଏପରି ଅସଂଖ୍ୟ ମେଳି ରହିଛି, ଏପରି ସବୁ ବିଦ୍ରୋହ ରହିଛି, ଯାହାର ନେତୃତ୍ୱ ନେଇଛନ୍ତି ସେ ସମୟର ଚାଷୀନେତା ଓ ସଂପୃକ୍ତ ଅଂଚଳର ଜନତା ଦ୍ୱାରା ମନୋନୀତ ନେତା, ବିଦ୍ରୋହୀ ସର୍ଦ୍ଦାରମାନେ ।

ଆମ ସ୍ୱାଧୀନତା ସଂଗ୍ରାମର ଏହି ପର୍ଯ୍ୟାୟଟି ବିଦେଶୀ ଶାସନର ପ୍ରତିରୋଧର ପର୍ଯ୍ୟାୟ ରୂପେ ବିବେଚିତ ହୋଇଛି । ଏସବୁ ମେଳି ବିଦ୍ରୋହ ସ୍ୱତଃସ୍ଫୂର୍ତ୍ତ ଭାବରେ ଗଢ଼ିଉଠିଛି । ଏପରି ସଂଗ୍ରାମରେ ମୁଷ୍ଟିମେୟ ମେଳିଆ ନୁହନ୍ତି, ହଜାର ହଜାର, ଲକ୍ଷ ଲକ୍ଷ ଲୋକ ଭାଗ ନେଇଛନ୍ତି ।

ଏସବୁ ମେଳି, ବିଦ୍ରୋହର ସାମଗ୍ରିକ ଚିତ୍ର ବାଢ଼ିବା ପାଇଁ ୧୭୫୭ ପଲାସୀ ଯୁଦ୍ଧ ପରଠାରୁ ଆରମ୍ଭ କରି ୧୮୫୭ ଏବଂ ତା ପରବର୍ତ୍ତୀ କାଳର ବିଦ୍ରୋହ ଓ ମେଳିଗୁଡ଼ିକୁ ସଂକ୍ଷେପରେ ନିମ୍ନରେ ଲିପିବଦ୍ଧ କରାଯାଇଛି।

ବିଂଶ ଶତାବ୍ଦୀର ସ୍ୱାଧୀନତା ସଂଗ୍ରାମରେ ଅଗଣିତ ସ୍ୱାଧୀନତା ସଂଗ୍ରାମୀ ବ୍ରିଟିଶ ଗୁଳିରେ ପ୍ରାଣ ଦେଇଛନ୍ତି। ଲକ୍ଷାଧିକ ସଂଖ୍ୟାରେ ସଶ୍ରମ ଜେଲଦଣ୍ଡ ଭୋଗିଛନ୍ତି। ଶତଶତ ସଂଖ୍ୟାରେ ଆନ୍ଦାମାନ ନିର୍ଜନ ଦ୍ୱୀପରେ ଦୀର୍ଘକାଳ ଅବା ଆଜୀବନ ବନ୍ଧନରେ ରହିଛନ୍ତି। ଦେଶର ବିଭିନ୍ନ ପ୍ରଦେଶରେ ଅନେକ ଫାଶି କାଠରେ ଝୁଲିଛନ୍ତି। କିନ୍ତୁ ୧୭୫୭ ପରେ ଯେଉଁସବୁ ମେଳି, ବିଦ୍ରୋହ ହୋଇଛି, ତହିଁରେ ବ୍ରିଟିଶ ଦ୍ୱାରା ନିହତଙ୍କ ସଂଖ୍ୟା ଲକ୍ଷ ଲକ୍ଷ। ଫାଶି ପାଇଛନ୍ତି ଶତଶତ।

ଏହି ମେଳି, ବିଦ୍ରୋହର ସଂକ୍ଷିପ୍ତ ବର୍ଣ୍ଣନା କଲାବେଳେ ଯେ ନିହତ ହୋଇଛନ୍ତି, ଫାଶିମଂଚରେ ଝୁଲିଛନ୍ତି - ତାହାର ସାମଗ୍ରିକ ଚିତ୍ର ଏ ଯାଏ ସଂକଳିତ ହୋଇ ନାହିଁ। ନିମ୍ନୋକ୍ତ ବିବରଣୀରୁ ସେଥିରୁ କେତେକ ଦୃଷ୍ଟାନ୍ତ ମିଳିବ ମାତ୍ର ସାମଗ୍ରିକ ଚିତ୍ର ନୁହଁ।

ଏହି ମେଳି ଓ ବିଦ୍ରୋହର ଚିତ୍ରକୁ ଦେଲାବେଳେ ଦାକ୍ଷିଣାତ୍ୟ, ମଧ୍ୟ ଭାରତ, ଉତ୍ତର ପଶ୍ଚିମ ଭାରତ, ଉତ୍ତର ଭାରତ, ପୂର୍ବ ଭାରତ, ଉତ୍ତରପୂର୍ବ ଭାରତ ଏହିପରି ଭାବରେ ଦର୍ଶାଇବାକୁ ଚେଷ୍ଟା କରାଯାଇଛି।

## ଦାକ୍ଷିଣାତ୍ୟ

**ମହୀଶୂର-ଟିପୁ ସୁଲତାନଙ୍କ ବ୍ରିଟିଶବିରୋଧୀ ସମର ୧୭୮୭-୧୭୮୯ :** ହାଇଦ୍ରାବାଦର ନବାବ ବ୍ରିଟିଶ ପକ୍ଷ ନେଲେ। ଶ୍ରୀରଂଗପତ୍ତନ ଯୁଦ୍ଧରେ ଟିପୁ ନିହତ। ବହୁ ମହୀଶୂର ସୈନ୍ୟଙ୍କ ଜୀବନଦାନ। ତାଙ୍କ ଦୁଇ ପୁଅଙ୍କ ବ୍ରିଟିଶ ବନ୍ଦୀଶାଳାରେ ମୃତ୍ୟୁ। ଚମକ ସୃଷ୍ଟିକାରୀ ଏହି ସମର। ଅପୂର୍ବ ବୀରତ୍ୱର କାହାଣୀ ସାଙ୍ଗକୁ ବିଶ୍ୱାସଘାତକତାର ନଗ୍ନତା। ଏହାର ଇତିହାସ ସୁଦୀର୍ଘ। ହାଇଦ୍ରାବାଦର ନିଜାମ ଓ ଅନ୍ୟ ରାଜା କମ୍ପାନୀ ପକ୍ଷ ନେଲେ।

**ପୋଲିଗାର ବିଦ୍ରୋହ ତାମିଲନାଡୁର ଚେନେଭେଲି ଅଂଚଳ ୧୭୯୯-୧୮୦୧:** ସଶସ୍ତ୍ର ସଂଗ୍ରାମରେ ବହୁ ଭାରତୀୟ ନିହତ। ଏହାର ନେତା ପାଣ୍ଡ୍ୟମ କୋଟାବୋମନଙ୍କୁ ଫାଶି। ପୋଲିଗାରମାନେ ଭୂସ୍ୱାମୀ ଥିଲେ। ସେମାନଙ୍କ ଉପରେ ଅକଥନୀୟ ଦମନ ଅତ୍ୟାଚାର କରି ଭୂସଂପତ୍ତିର ସ୍ୱତ୍ୱାଧିକାରରୁ ବଂଚିତ କରାଯାଇଥିଲା।

**କିଟୁର ବିଦ୍ରୋହ-କର୍ଣ୍ଣାଟକର ଏକ ଅଂଚଳ - ୧୮୨୬-୧୮୩୦ :** ବିଦ୍ରୋହୀ ନେତା - ଏକ ଦରିଦ୍ର ଚୌକିଦାର - ରାନ୍ନାୟା - ତାଙ୍କୁ ଫାଶି ପ୍ରଚଣ୍ଡ ଦମନ କଲା।

**ତ୍ରିବାଙ୍କୁଡ ଅଭ୍ୟୁତ୍ଥାନ - ମାଲାବାର - ୧୮୦୮ :** ବ୍ରିଟିଶ ଆକ୍ରମଣର ପ୍ରତିରୋଧର ନେତା; ଦେବାନ୍ ଭେଲୁଥାମ୍ପି। ଏହି ପ୍ରତିରୋଧରେ ଚାଷୀ କାରିଗରମାନଙ୍କ ଯୋଗଦାନ।

**ରମ୍ପା ବିଦ୍ରୋହ - ଆନ୍ଧ୍ର ଅଂଚଳ ୧୯୨୨-୨୪ :** ଚାଷୀମାନଙ୍କ ନେତୃତ୍ୱ ନେଲେ ଆଲୁରି ସୀତାରାମ ରାଜୁ। ଅନ୍ୟନେତା କୋରା ଓ ପାରୋଲା ପ୍ରଭୃତିଙ୍କୁ ଫାଶୀ; ଅନ୍ୟମାନଙ୍କୁ ଆଜୀବନ ଦ୍ୱୀପାନ୍ତର ଦଣ୍ଡ।

**ଭେଲୋର ବିଦ୍ରୋହ ୧୮୦୬ ଜୁଲାଇ ୧୦ :** ବ୍ରିଟିଶ ଅସ୍ତ୍ରାଗାର ଦଖଲ, ୧୮ଶହ ଭାରତୀୟ ସିପାହୀଙ୍କ ବିଦ୍ରୋହ ଫଳରେ ବହୁ ଇଂରେଜ ସୈନ୍ୟ ନିହତ। ବିଦ୍ରୋହୀମାନଙ୍କୁ କୋର୍ଟ ମାର୍ଶାଲ ଓ ଦଣ୍ଡ।

**ମୋପଲା ବିଦ୍ରୋହ:** ମାଲାବାର ଦୁଇଟି ପର୍ଯ୍ୟାୟ ୧୮୭୮ରୁ ୧୮୭୯ ଏବଂ ୧୯୨୧ରୁ ୧୯୨୪ : ବ୍ରିଟିଶପୁଷ୍ଟ ଜେନମି (ଜମିଦାର)ମାନଙ୍କ ଅକଥନୀୟ ଶୋଷଣ ଅତ୍ୟାଚାର ବିରୁଦ୍ଧରେ ମୁସଲମାନ ଚାଷୀମାନଙ୍କର ପ୍ରଚଣ୍ଡ ଅଭିଯାନ। ବ୍ରିଟିଶ ବାହିନୀର ସଶସ୍ତ୍ର ଆକ୍ରମଣରେ ୧୦ ହଜାର ଚାଷୀ ନିହତ। ତିନି ହଜାର ବିଦ୍ରୋହୀ ଚାଷୀଙ୍କୁ ଦୀର୍ଘ କାରାଦଣ୍ଡ ଓ ଦ୍ୱିପାନ୍ତର ନିର୍ବାସନ। ଦ୍ୱିତୀୟ ପର୍ଯ୍ୟାୟରେ ହିନ୍ଦୁ ମୁସଲମାନ ମଧ୍ୟରେ ଦଙ୍ଗା ଲଗେଇ ଦେବାର ବ୍ରିଟିଶର ମନ୍ତ୍ରଣା ଓ ହାତ।

**ବିଜୟନଗର ଅଭ୍ୟୁତ୍ଥାନ ଓ ସଶସ୍ତ୍ର ପ୍ରତିରୋଧ ୧୭୯୪ :** ଏହି ଅଭ୍ୟୁତ୍ଥାନକୁ ଇଷ୍ଟଇଣ୍ଡିଆ କଂପାନୀ ଅତି ନିର୍ମ୍ମମଭାବରେ ଦମନ କଲା।

## ମଧ୍ୟଭାରତ ଓ ପଶ୍ଚିମ ଭାରତ

| | |
|---|---|
| ବୁନ୍ଦେଲ ବିଦ୍ରୋହ - ଜବଲପୁର | ୧୮୪୨ |
| ଗଦକାରୀ ବିଦ୍ରୋହ | ୧୮୪୧ |
| ଭିଲ ବିଦ୍ରୋହ | ୧୮୧୮ ରୁ ୧୮୩୧ |
| ବିଳାସପୁର ବିଦ୍ରୋହ | ୧୮୦୫ |
| ରାଜପୁତ୍ ବିଦ୍ରୋହ | ୧୮୧୧ |

ପୁନେ ଓ ଅହମେଦନଗରରେ ପ୍ରଚଣ୍ଡ ଚାଷୀ ବିଦ୍ରୋହ - ୧୮୭୫ : ମହାଜନମାନଙ୍କ ଅତ୍ୟାଚାରରେ ସର୍ବସ୍ୱ ହରାଇ ଚାଷୀମାନଙ୍କର ମେଳି। ସେମାନେ ସଂଗଠିତ ଭାବରେ ମହାଜନମାନଙ୍କ ଘର ଉପରେ ଆକ୍ରମଣ କରି ବନ୍ଧକ କବଲା ସବୁ ପୋଡ଼ି ଧ୍ୱଂସ କରିଦେଲେ।

**ଖାନ୍ଦେଶ ବିଦ୍ରୋହ ୧୮୫୨ :** ଖାନ୍ଦେଶ ଚାଷୀମାନେ ବ୍ରିଟିଶ ପୁଲିସ, ହାକିମ ଓ ଜମିଦାରମାନଙ୍କ ବିରୁଦ୍ଧରେ ବିରାଟ ବିଦ୍ରୋହ କରିଥିଲେ।

ସତାରା ବିଦ୍ରୋହ - ଚାଷୀମାନଙ୍କର ବିଶାଳ ଅଭ୍ୟୁତ୍ଥାନ। ଏହି ସବୁ ବିଦ୍ରୋହ ଓ ପ୍ରତିରୋଧର ଉତ୍ତରରେ ବ୍ରିଟିଶ ଶାସନ ସନ୍ତ୍ରାସରାଜ ଚଳାଇଥିଲା। ବନ୍ଦୀମାନଙ୍କୁ ହତ୍ୟା କରାଯାଇଥିଲା।

**ଠଗ ଓ ପିଣ୍ଡାରୀ ବିଦ୍ରୋହ :** ପିଣ୍ଡାରୀମାନଙ୍କୁ ଦସ୍ୟୁ ଆଖ୍ୟା ଦେଇ ନିର୍ମ୍ମମ ଭାବରେ ଦମନ କରାଗଲା । ବ୍ରିଟିଶ ଶାସନରେ, ଶୋଷଣରେ ଅସ୍ତବ୍ୟସ୍ତ ହୋଇ ପଶ୍ଚିମ ଭାରତରେ ପିଣ୍ଡାରୀମାନେ ସଂଗଠନ ଗଢ଼ି ଉଠେ । ଏମାନେ ଦଳ ଦଳ ହୋଇ ବ୍ରିଟିଶ, ଖଜଣାଖାନା, ପୁଲିଚ ଚୌକ ଓ ବ୍ରିଟିଶ ବାଣିଜ୍ୟ ପେଣ୍ଠ ଓ ଦପ୍ତରମାନଙ୍କ ଉପରେ ଚଢାଉ କରନ୍ତି, ଲୁଣ୍ଠନ କରନ୍ତି ଓ ଲୁଟଧନ ଦରିଦ୍ର ଲୋକଙ୍କ ଭିତରେ ବାଣ୍ଟି ଦିଅନ୍ତି । ଠଗ ଓ ପିଣ୍ଡାରୀମାନଙ୍କ ଅତର୍କିତ ଆକ୍ରମଣ ବ୍ରିଟିଶ ପ୍ରଶାସନକୁ ଅସ୍ତବ୍ୟସ୍ତ କରି ଦେଇଥିଲା । ସେମାନଙ୍କୁ ନିର୍ମମ ଭାବରେ ଦମନ କରାଯାଇଥିଲା ।

## ଉତ୍ତର ଭାରତ-ଗୁଜୁରାଟ

**ବାରାଣସୀ ବିଦ୍ରୋହ** - ୧୭୮୧ରୁ ଆରମ୍ଭ । କ୍ଷମତାଚ୍ୟୁତ ବାରଣାସୀ ରାଜାଙ୍କ ସପକ୍ଷରେ ବ୍ରିଟିଶ ଆକ୍ରମଣ ବିରୁଦ୍ଧରେ ପ୍ରବଳ ବିଦ୍ରୋହ । ଅଯୋଧ୍ୟା ଯାଏ ପ୍ରସାରିତ ।

**କୋହ୍ଲି ବିଦ୍ରୋହ** - ଗୁଜରାଟର ସୌରାଷ୍ଟ୍ର ଅଂଚଳ ୧୮୨୫-୨୮ ଓ ୧୮୩୯-୧୮୪୯ ସୌରାଷ୍ଟ୍ରର ଚାଷୀମାନଙ୍କ ଅଦ୍‌ଭୁତ ଅଭ୍ୟୁତ୍ଥାନ । ପ୍ରଥମ ଦଫାର କିଛିକାଳ ବିରତି ପରେ ପୁଣି ୨ୟ ଦଫାରେ ଗାଁ ଗାଁରେ ମେଳି ଓ ବ୍ରିଟିଶ ପକ୍ଷରୁ ନିର୍ମ୍ମମ ଦମନଲୀଳା ।

**କୁକା ବିଦ୍ରୋହ-ପଂଜାବ-୧୮୬୬-୧୮୭୨** । ବିଦ୍ରୋହୀ ନେତା ଗୁରୁରାମ ସିଂହଙ୍କ ସଶସ୍ତ୍ର ଲଢ଼େଇ । ଅନ୍ୟ ବିଦ୍ରୋହୀ ନେତା ଲେହସିଂହ, ହୀରାସିଂହ, ଗୁରୁଚରଣ ସିଂହ - ୧୮୭୨ରେ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ଦ୍ୱାରା ୪୯ଜଣ କୁକା ବିଦ୍ରୋହୀଙ୍କୁ ଧରି ନେଇ କମାଣ ମୁହଁରେ ହତ୍ୟା । ଏହା ପୂର୍ବରୁ ୧୮୪୫-୪୬ରେ ଭାଇ ମହାରାଜା ସିଂହଙ୍କ ଡାକରାରେ ବହୁ ଶିଖ ଯୁବକ ବିଦ୍ରୋହ କଲେ । ହିନ୍ଦୁ-ଶିଖ ବିଭେଦ ଲାଗି ବ୍ରିଟିଶ ଚକ୍ରାନ୍ତ । କିନ୍ତୁ ମହାରାଜ ସିଂହ ସୀମାନ୍ତରେ ପଠାଣ ଓ ଆଫଗାନିସ୍ତାନର ଅମୀରମାନଙ୍କୁ ନିଜ ପକ୍ଷକୁ ଆଣିବାରେ ସଫଳ । ବ୍ରିଟିଶ ସହିତ ରକ୍ତାକ୍ତ ଯୁଦ୍ଧ । ମହାରାଜ ସିବନ୍ଦୀ । ସିଙ୍ଗାପୁର ଜେଲରେ ୧୮୫୬ ଜୁଲାଇ ୫ରେ ତାଙ୍କର ମୃତ୍ୟୁ ।

ଆଲିଗଡ - ତାଲୁକଦାର ବିଦ୍ରୋହ - ୧୮୪୧-୧୮୧୭ । କ୍ଷମତାଚ୍ୟୁତ ତାଲୁକଦାରମାନେ ପ୍ରଜାମାନଙ୍କୁ ଏକାଠି କରି ସେ ଅଂଚଳରେ ବ୍ରିଟିଶ ସରକାରୀ କଳକୁ ଅଚଳ କରିଦେଇଥିଲେ । ନିଠୁର ଦମନର ଶିକାର ହେଲେ ।

## ପୂର୍ବଭାରତ

**ଜ୍ୱଳନ୍ତ ଅଗ୍ନିପିଣ୍ଡ**-ବଂଗଳା ବିହାର : ବିହାର ଛୋଟନାଗପୁର ଅଂଚଳରେ ବିଭିନ୍ନ ଆଦିମ ଅଧିବାସୀ, ବନବାସୀ ବ୍ରିଟିଶ ଶାସନରେ ଅତିଷ୍ଠ । ଜଙ୍ଗଲ ପାହାଡ ଯାହା ଉପରେ ସେମାନଙ୍କ ଜୀବିକା ନିର୍ଭର କରେ । ଯେଉଁଠି ଘନ ଜଙ୍ଗଲରେ ସେମାନେ ବାସ କରି ଖଣ୍ଡ ଖଣ୍ଡିକା ଜମି ଭାଂଗନ୍ତି, କିଛି ଚାଷ କରନ୍ତି, ସେଥିରୁ ସେମାନେ ହେଲେ ଉଚ୍ଛେଦ । ପୁଲିସ,

ସରକାରୀ କର୍ମଚାରୀ ଦ୍ୱାରା ଓ ମହାଜନୀ ସୁଧ ଇତ୍ୟାଦିରେ ଜମି ହରାନ୍ତି । ବନ୍ଧା ହୋଇ ଜେଲରେ ପଡନ୍ତି । ତାହାରି ବିରୁଦ୍ଧରେ ବିଦ୍ରୋହ ଗୁଡିକର ଦାବାନଳ ପ୍ରଜ୍ୱଳିତ ହୋଇଥିଲା । ଅତି ସଂକ୍ଷେପରେ ତାହାର ବିବରଣୀ ।

**ବନବାସୀ ବିଦ୍ରୋହ - ୧୭୮୦ ରୁ ୧୭୮୫ :** ବଂଗ ବିହାର ସୀମାରେ ସଂଘଟିତ ବିଦ୍ରୋହ । ବାବା ତାଲିକା ମାଝି ନାମକ ଆଦିବାସୀ ବିଦ୍ରୋହର ନେତା । ବହୁ ବିଦ୍ରୋହୀଙ୍କୁ ନିର୍ମମ ହତ୍ୟା । ବାବା ତିଲକା ମାଝିଙ୍କୁ ବିଚାର କରିବା ଆଳରେ ଘୋଡାରେ ବାନ୍ଧି ଭାଗଲପୁର ଯାଏ ଘୋଷଡାରେ ତାଙ୍କ ପ୍ରାଣହାନି । ବନବାସୀଙ୍କୁ ଭୟଭୀତ କରିବା ଲାଗି ବିକଳାଙ୍ଗ ମୃତ ତିଲକାଙ୍କୁ ସମସ୍ତେ ଦେଖିବା ଭଳି ଗଛରେ ଲଟକା ଗଲା ।

**ଦରଭଙ୍ଗା-ଚମ୍ପାରଣ ଚାଷୀ, ବିଦ୍ରୋହ - ୧୮୬୬ରୁ ୬୮ ।** ନୀଳଚାଷୀମାନେ ବ୍ରିଟିଶ ନୀଳ ବଣିକମାନଙ୍କ ବିରୁଦ୍ଧରେ ବିଦ୍ରୋହାଗ୍ନି ଜାଣିଥିଲେ । ବଙ୍ଗଳାର ଯଶୋରରେ ଚାଷୀ ବିଦ୍ରୋହ ୧୮୮୩ରୁ ୧୮୯୦ କରଟିକସ ବୃଦ୍ଧି ବିରୁଦ୍ଧରେ ଯଶୋର ଓ ଉତ୍ତର ବଂଗର ଚାଷୀମାନଙ୍କ ସଂଘବଦ୍ଧ ଆନ୍ଦୋଳନ ।

**ସାନ୍ତାଳ ବିଦ୍ରୋହ - ୧୮୫୫ ଜୁନ୍‌ରୁ ଆରମ୍ଭ :** ଏହାର ଡାକରା ଥିଲା "ସତ୍ୟଯୁଗ, ନ୍ୟାୟଯୁଗର ପ୍ରତିଷ୍ଠା" । ବ୍ରିଟିଶ ସରକାର, ଜମିଦାର, ସୁଧଖୋର ମହାଜନ, ଅତ୍ୟାଚାରୀ ପୁଲିସ ଓ ହାକିମଙ୍କ ବିରୁଦ୍ଧରେ ବିରାଟ ଅଭ୍ୟୁତ୍ଥାନ ତେଜି ଉଠିଲା । ୧୮୫୫ ଜୁନ ୩୦ ତାରିଖରେ ସାନ୍ତାଳ ପ୍ରଗଣାର ଭଗ୍ନଡିହ ଗାଁରେ ଧନୁତୀର ବଲମ ଧରି ଚାରିଶହ ଗାଁର ଦଶ ହଜାର ସାନ୍ତାଳଙ୍କ ସମାବେଶ । ସିଦ୍ଧୁ, କାନୁ ନେତା ନିର୍ବାଚିତ । ତେଲି, କମାର, ଭଣ୍ଡାରୀ, କୁମାର, ବଢେଇ, ଧୋବା, ପୁରୋହିତ, ଘରୋଇଚାକର, ସେବାକାରୀଙ୍କୁ ସ୍ପର୍ଶ ନକରିବାକୁ ନିର୍ଦ୍ଦେଶ । ଗୋରାକଳା ନିର୍ବିଶେଷରେ ଅତ୍ୟାଚାରୀ-ମହାଜନ, ପୁଲିସ, ସରକାରୀ କର୍ମଚାରୀଙ୍କ ବିରୁଦ୍ଧରେ ଅଭିଯାନ ଓ ଘେରାଉ, ଧନୁଶର ଧରି ଆକ୍ରମଣ ଥିଲା ସେମାନଙ୍କର ରଣକୌଶଳ । ଠାକୁର ଦୁର୍ଗ ଦଖଲ କରି ବିଦ୍ରୋହୀ ବାହିନୀ ବୀରଭୂମି ଭାଗଲପୁର ଦେଇ ମୁର୍ଶିଦାବାଦକୁ ଯାତ୍ରା । ବିପୁଳ ଲୋକ ସମର୍ଥନ ଲାଭ । କିଛିକାଳ ଲାଗି ସମଗ୍ର ଅଂଚଳ ସାନ୍ତାଳ ବିଦ୍ରୋହୀଙ୍କ କର୍ତ୍ତୃତ୍ୱରେ । ୧୮୫୫ ନଭେମ୍ବରରେ ବ୍ରିଟିଶ ପକ୍ଷରୁ ପ୍ରଚଣ୍ଡ ଆକ୍ରମଣ । ୩୦ ହଜାର ସାନ୍ତାଳ ବିଦ୍ରୋହୀ ସଶସ୍ତ୍ର ସଂଗ୍ରାମରେ ନିହତ ହେଲେ । ୧୫ ହଜାର ସାନ୍ତାଳ ବିଦ୍ରୋହୀଙ୍କୁ ବାନ୍ଧି କମାଣ ଦ୍ୱାରା ହତ୍ୟା କରାଗଲା । ବିଦ୍ରୋହୀ ନେତାମାନଙ୍କ ଧରାଇ ଦେବା ଲାଗି ପ୍ରତ୍ୟେକଙ୍କ ଲାଗି ୧୦ ହଜାର ଟଙ୍କା ପୁରସ୍କାର ଘୋଷଣା । ବୀର ସିଦ୍ଧୁ ନିହତ । କାନୁ ଧରାପଡି ଜେଲରେ ମୃତ୍ୟୁ । ଏବେ କଲିକତା କେନ୍ଦ୍ରସ୍ଥଳରେ ସେମାନଙ୍କ ସ୍ମୃତି ଲାଗି ସିଦ୍ଧୁ-କାନୁ ଡହର ନାମିତ ରାଜରାସ୍ତା ବିଦ୍ୟମାନ ।

**କୋହ୍ଲ ବିଦ୍ରୋହ - ୧୮୨୦ରୁ ୧୮୩୭ :** ଛୋଟନାଗପୁର ଓ ସିଂହଭୂମିଯାଏ ଏହାର ପ୍ରସାର । ସହସ୍ର ସହସ୍ର କୋହ୍ଲ ବିଦ୍ରୋହୀଙ୍କୁ ବ୍ରିଟିଶ ସୈନ୍ୟଙ୍କ ହତ୍ୟା । କୋହ୍ଲଙ୍କ ବିଦ୍ରୋହ ରାଞ୍ଚି, ପାଲାମୌ, ହଜାରିବାଗ ମାନଭୂମିଯାଏ ବ୍ୟାପିଗଲା ।

**ମୁଣ୍ଡା ବିଦ୍ରୋହ-ବିହାର-ଓଡିଶା ସୀମାନ୍ତ ୧୮୯୫-୧୯୦୦ :** ଅଧୁନା ସୁନ୍ଦରଗଡ଼ ରାଉରକେଲା ବିଦ୍ରୋହର କେନ୍ଦ୍ରସ୍ଥଳୀ। ୨୧୭ ଜଣ ମୁଣ୍ଡା ବିଦ୍ରୋହୀ ନେତାଙ୍କ ବିଚାର। ୪ଜଣଙ୍କୁ ଫାଶି। ୪୪ଜଣଙ୍କୁ ଆଜୀବନ କାରାଦଣ୍ଡ। ଅନ୍ୟମାନଙ୍କୁ ୮ରୁ ୧୦ ବର୍ଷ ଜେଲଦଣ୍ଡ। ଧରାହୋଇ ବୀର ବିର୍ଶାମୁଣ୍ଡାଙ୍କ ଜେଲଖାନାରେ ଦୟନୀୟ ମୃତ୍ୟୁ। ଜାଗିରଦାର ଠିକାଦାର, ସୁଧଖୋର ମହାଜନ ବ୍ରିଟିଶ ପୁଲିସ-ପ୍ରଶାସନର ଅତ୍ୟାଚାର ବିରୋଧୀ ବିଦ୍ରୋହ।

**ଚୁହାର ବିଦ୍ରୋହ ୧୭୬୬ରୁ ୧୭୭୨ ଓ ୧୭୯୫ ରୁ ୧୮୧୬ :** ଦୀର୍ଘ କାଳ ବ୍ୟାପୀ ଦୁଇ ଦଫାରେ ଏହି ବିଦ୍ରୋହ ଥିଲା ଚୁହାର ବୋଲାଯାଉଥିବା ଏକ ଆଦିମ ଅଧିବାସୀ, ଉପଜାତିଙ୍କର। ଦୁର୍ଜନ ସିଂ ଏହାର ନେତା। ଏହାଙ୍କ ନେତୃତ୍ୱରେ ୧୫ଶହ ବିଦ୍ରୋହୀଙ୍କର ବ୍ରିଟିଶ ବାହିନୀ ସହିତ ସଶସ୍ତ୍ର ସମର। ଅନେକ ନିହତ। ମେଦିନୀପୁର, ଧଳଭୂମ, ବାଙ୍କୁଡାର ମହିଳା ବିଦ୍ରୋହୀଙ୍କ ସହିତ ଧନୁତୀର ଧରି ଚୁହାର ବିଦ୍ରୋହୀଙ୍କ ଅଭିଯାନ।

**ଲାଇକ ବିଦ୍ରୋହ ୧୮୦୬ ରୁ ୧୮୧୬ :** ଅଚଳ ସିହ୍ନାଙ୍କ ନେତୃତ୍ୱରେ ମେଦିନୀପୁରର ଗଡବେତାର ଲାଇକ ବିଦ୍ରୋହୀମାନଙ୍କ ବ୍ରିଟିଶ ବିରୁଦ୍ଧରେ ସଶସ୍ତ୍ର ଅଭିଯାନ। ଶତାଧିକ ଲାଇକ ବିଦ୍ରୋହୀ ନିହତ।

**ସନ୍ନ୍ୟାସୀ ଆନ୍ଦୋଳନ - ୧୭୬୦ରୁ ୧୮୦୦** ବଂଗଳା ଓ ସନ୍ନିକଟ ବିହାରର ବଂଗଭାଷା ଭାଷୀ ଗ୍ରାମଗୁଡିକରେ ଚାଳିଶ ବର୍ଷବ୍ୟାପୀ ଏକ ଅଦ୍‌ଭୁତ ଧରଣର ଆନ୍ଦୋଳନ। ବାଉଳ ସନ୍ନ୍ୟାସୀମାନେ ଧର୍ମୀୟ ବାଉଲଗାନ ଗାଇଲେ ସମସ୍ତ ଗ୍ରାମବାସୀ ଏକଜୁଟ ହୁଅନ୍ତି। ଏହି ସନ୍ନ୍ୟାସୀମାନେ ଏଣିକି ଧର୍ମୀୟ ବାଉଲ ଗାନ ଗାଇବା ବାହାରେ ବ୍ରିଟିଶ ବିରୋଧୀ, ଚାଷୀ ପକ୍ଷପାତୀ ବଉଲ ଗାନ ଗାଇ ବିରାଟ ଜନଜାଗରଣ ସୃଷ୍ଟି କଲେ। ଏମାନଙ୍କୁ ବ୍ରିଟିଶ ପକ୍ଷରେ ଦମନ କରିବା ଦୁଃସାଧ ହୋଇଗଲା। କାରଣ ପ୍ରତ୍ୟେକ ଅଂଚଳରେ, ପଲ୍ଲୀପ୍ରାନ୍ତରେ ବାଉଲ ସନ୍ନ୍ୟାସୀ। ବଂଗଳା ଓ ବିହାରର ୫ଟି ଜିଲ୍ଲାର ଶହଶହ ଗ୍ରାମରେ ବାଉଲ ସନ୍ନ୍ୟାସୀଙ୍କ ଅଭିଯାନକୁ ପରେ ଦୃଢ଼ ହସ୍ତରେ ଦମନ କରାଗଲା। ଲର୍ଡ ହେଷ୍ଟିଙ୍ଗ ବିଦ୍ରୋହୀମାନଙ୍କୁ ଧରିଆଣି ନିଜ ନିଜ ଗାଁରେ ଫାଶି ଦେଇଥିଲେ।

**ଓ୍ୟାହାବି ଆନ୍ଦୋଳନ ୧୭୮୬ରୁ ୧୮୩୧** ବାଉଲ ସନ୍ନ୍ୟାସୀମାନଙ୍କର ଅଭିଯାନ ପ୍ରଜା, ଚାଷୀ, କାରିଗର ଭିତରେ ଯେପରି ଜାଗରଣ ଆଣିଦେଲା, ଧର୍ମୀୟ ଓ୍ୟାହାବି ଆନ୍ଦୋଳନ ମଧ୍ୟ ମୁସଲମାନ ଚାଷୀଙ୍କୁ ବ୍ରିଟିଶ ଶାସନ ବିରୁଦ୍ଧରେ ମତେଇଲା।

ସୁଦୂର ଆରବ ଭୂଖଣ୍ଡରେ ଏକ ଧର୍ମୀୟ ଆଦର୍ଶରେ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଓ୍ୟାହାବି ଆଦର୍ଶର ସୂତ୍ରପାତ। ଆମ ଦେଶର ବେରିଲିର ସୟଦ ଅହମ୍ମଦ ଏହି ଭାବାଦର୍ଶକୁ ଘେନି ବ୍ରିଟିଶ ଶାସନ ବିରୁଦ୍ଧରେ ପ୍ରଚାର କଲେ। ଏହାର ପ୍ରଭାବ ବଂଗଳା ଓ ବିହାର ଅଂଚଳକୁ ବ୍ୟାପିଗଲା। ଚବିଶ ପ୍ରଗଣାର ବାଦୁରିଆଠାରେ ଟିପୂ ମିର ଏହି ଆନ୍ଦୋଳନର ନେତା ମନୋନୀତ।

ବିଦ୍ରୋହୀମାନଙ୍କର ବାରାସତ୍‌ରେ ଏକ ଦୁର୍ଗ ନିର୍ମାଣ । ୧୮୩୧ ନଭେମ୍ବର ୧୪ରେ ବ୍ରିଟିଶ ସେନାନୀର ବିଦ୍ରୋହୀମାନଙ୍କ ଉପରେ ପ୍ରବଳ ଆକ୍ରମଣ । ଟିପୁ ମିର ଯୁଦ୍ଧରେ ନିହତ । ତାଙ୍କ ପୁତୁରା ଗୁଲାମ ରସୁଲଙ୍କୁ ଫାଶି । ୮ଶହ ବିଦ୍ରୋହୀଙ୍କୁ କଳାପାଣି ଦ୍ୱୀପାନ୍ତର ।

**ଫରାଜୀ ଆନ୍ଦୋଳନ ୧୮୩୮ - ୧୮୪୮** ଫରିଦପୁର, ଢାକା, ଖୁଲନା, ଚବିଶ ପ୍ରଗଣାରେ ଜମିଦାର ଓ ବ୍ରିଟିଶ ଜୁଲମ ବିରୁଦ୍ଧରେ ଡାକରା - "ଆମେ ସମସ୍ତେ ସମାନ, ସବୁ ଜମି ଆଲ୍ଲାଙ୍କର ।" ଏହି ଆନ୍ଦୋଳନରେ ହିନ୍ଦୁ ମୁସଲମାନ ସବୁ ଚାଷୀ ପ୍ରଜାଙ୍କ ଯୋଗଦାନ । ଏହାର ନେତା ଥିଲେ ସିରିଆତଲ୍ଲା ଓ ତାଙ୍କ ପୁଅ ଦୁଦୁ ମିଆଁ । ପ୍ରଚଣ୍ଡ ଦମନ ହେତୁ ବ୍ୟାପକ ଆନ୍ଦୋଳନରେ ଭଟ୍ଟା ପଡିଲା । ୧୮୫୬ରେ ଦୁଦୁ ମିଆଁଙ୍କୁ ଧରି ଜେଲରେ ରଖାଗଲା । ୧୮୬୦ ସେପ୍ଟେମ୍ବର ୨୪ରେ ଜେଲଖାନାରେ ତାଙ୍କ ମୃତ୍ୟୁ ପରେ ଏ ଆନ୍ଦୋଳନର ସମାପ୍ତି ଘଟିଲା ।

**ନୀଳ ବିଦ୍ରୋହ ୧୮୫୯** ବଂଗଳା ଓ ଆଖପାଖ ବିହାର ଅଂଚଳରେ ବିଶେଷତଃ ମାଲଦା, ଢାକା, ପାବନା, ଫଂରିଦପୁର, ଚବିଶ ପ୍ରଗଣା ଏବଂ ଚମ୍ପାରଣ, ଦରଭଂଗା ଯାଏ ସହସ୍ର ସହସ୍ର ହିନ୍ଦୁ ମୁସଲମାନ, ବଂଗାଳୀ ବିହାରୀ ଚାଷୀଙ୍କ ଚମକପୂର୍ଣ୍ଣ ଆନ୍ଦୋଳନ । ଫିରିଙ୍ଗି ନୀଳ (ରଂଗ) ବଣିକମାନେ ମାଡପିଟ କରି, ବେଆଇନ ଭାବରେ ଚାଷୀଙ୍କ କ୍ଷେତରେ ଧାନ, ଝୋଟ, ଡାଲି ପରିବର୍ତ୍ତେ ନୀଳ ଚାଷ କରନ୍ତି । ଋଣ ଦେଇ ଅଧିକ ସୁଧ ହାଙ୍କି ନୀଳଚାଷୀଙ୍କ ଜମି ବାଜ୍ୟାପ୍ତ, ନିଲାମ କରନ୍ତି । ନୀଳଚାଷୀଙ୍କ ସମସ୍ତ ପରିବାରକୁ ଫିରିଙ୍ଗି ମାଲିକ ମଣିଷ ଗୁହାଳରେ ବାନ୍ଧିରଖି ରାତିଦିନ କାମ କରିବାକୁ ବାଧ କରନ୍ତି । ଘୋଡା ଚାବୁକରେ ପିଟା ଚାଲେ । ମହିଳାମାନଙ୍କ ଉପରେ ଧର୍ଷଣ ଚାଲେ । ନୀଳଚାଷୀମାନଙ୍କ ନାହିଁ ନଥିବା ଅଭ୍ୟୁତ୍ଥାନ ଗୋରା ମାଲିକଙ୍କ ଭିତରେ ଆତଙ୍କ ସୃଷ୍ଟିକରେ । ତାର ନେତୃତ୍ୱ ନେଇଥିଲେ ଅକ୍ଷୟ କୁମାର ଦତ୍ତ । ଦୀନବଂଧୁ ମିତ୍ରଙ୍କ ରଚିତ ନୀଳଦର୍ପଣ ନାଟକ ସର୍ବତ୍ର ମଂଚସ୍ଥ ହୋଇ ଚମକ ସୃଷ୍ଟି କରିଥିଲା । ଏହାକୁ ସେ କାଳରେ ହରିଶଚନ୍ଦ୍ର ଚାଟାର୍ଜୀ ହିନ୍ଦୁ ପାଟ୍ରିୟଟରେ ପ୍ରବଳ ସମର୍ଥନ କରିଥିଲେ । ନିର୍ମ୍ମମ ପାଶବିକ ଅତ୍ୟାଚାର, ଦମନ ଚାଲିଲା -

**ଗାରୋ ବିଦ୍ରୋହ - ୧୮୨୫** ଟିଟୁ ମିର - ଏହାର ନେତା । ଏହାକୁ ପାଗଳପନ୍ଥୀ ଆନ୍ଦୋଳନ କୁହାଯାଏ । ଗାରୋ ଟିଟୁଙ୍କର ବ୍ରିଟିଶ ବିରୋଧୀ ଡାକରା ହେଲା "ଭଗବାନଙ୍କର ସୃଷ୍ଟିରେ କେହି ଅତ୍ୟାଚାରିତ ହେବେ ନାହିଁ ।" ୧୮୨୬ରୁ ରଂଗପୁରରୁ ବାହାରି ଜମାଲପୁର ଯାଏ ଟିଟୁଙ୍କ ଗୋରୋ ବାହିନୀର ବିଶାଳ ଅଭିଯାନ ଚାଲିଲା । ପ୍ରଚଣ୍ଡ ବ୍ରିଟିଶ ଦମନଲୀଳା ପରେ ଟିଟୁ ଗାରୋଙ୍କୁ ଆଜୀବନ କାରାଦଣ୍ଡ । ଜେଲଖାନାରେ ତାଙ୍କର ମୃତ୍ୟୁ ।

**ଆସାମ ବିଦ୍ରୋହ ୧୮୨୮ରୁ ୧୮୩୦ ୧୮୫୭ ୧୮୨୬**ରେ ଆସାମକୁ ଦଖଲ କଲାପରେ ବ୍ରିଟିଶ ଅଧିକାର ବିରୁଦ୍ଧରେ ପ୍ରବଳ ପ୍ରତିରୋଧରେ ଆନ୍ଦୋଳନ । ୧୮୫୭ରେ ଅହମ ରାଜପୁତ୍ର ଗୋମଧର କୁନଓ୍ୱାରଙ୍କ ନେତୃତ୍ୱରେ ବିଦ୍ରୋହ । ଅନ୍ୟାନ୍ୟ

ନେତା ପିଓଲି ଫୁଂକନ, ଜିୟୁରାମ, ଦୁଲୁକା ବରୁଆ, ଫରମୁଦ ଅଲ୍ଲୀ, ମନିରାମ ଦେବାନ। ପିଓଲି ବରୁଆଙ୍କୁ ମୃତ୍ୟୁଦଣ୍ଡ। ପରବର୍ତ୍ତୀ କାଳରେ କୁଶଳ କନୱାର, କନକଲତା, କମଳା ଗିରି, ମଦନ କଚେରି, ମୁକୁନ୍ଦ କାକୋଟି, ଭୋଗେଶ୍ୱରୀ ଫୁକନ ଓ ତିଳକ ଡେକାଙ୍କୁ ଗୁଳି ଅବା ଫାଶି ଦେଇ ହତ୍ୟା କରାଗଲା।

ବ୍ରିଟିଶ ଦ୍ୱାରା ୧୮୨୬ରେ ଆସାମ ଦଖଲପରେ ଅହମୀୟ ଚାଷୀଙ୍କର ପ୍ରତିରୋଧ ଆନ୍ଦୋଳନକୁ ନାଗା, ଖାମିତି, ଖାସି, ଗାରୋ, ସଂଗପଂର ଉପଜାତିମାନେ ସମର୍ଥନ କରିଥିଲେ। ୧୮୨୮ରୁ ୧୯୩୦ର ଏହି ପ୍ରତିରୋଧର ନେତା ପାଲିଗଡ ପୁଙ୍ଖା ଓ ଜେଉ ରାମଙ୍କୁ ଫାଶି ଦଣ୍ଡରେ ହତ୍ୟା କରାଯାଇଥିଲା।

**ଜୟନ୍ତିୟା ବିଦ୍ରୋହ ୧୮୬୨-୬୪** : ବ୍ରିଟିଶ ଟିକସ ନୀତି, ଖଣିପଟା, ଆୟକର ପ୍ରବର୍ତ୍ତନ, ଶ୍ମଶାନରେ ଶବଦାହ ଉପରେ ଓ ଜୟନ୍ତିଆଙ୍କ ନୃତ୍ୟଗୀତ ଉପରେ କଟକଣା ଓ ଅତ୍ୟାଚାର ବିରୁଦ୍ଧରେ ଜୟନ୍ତିଆ ବିଦ୍ରୋହ। ନେତା ୟୁ-କିଆଙ୍ଗ ନୋଙ୍ଗବାହ। ୧୮୬୨ରେ ବିଦ୍ରୋହୀ ବାହିନୀଙ୍କ ଦ୍ୱାରା ବ୍ରିଟିଶ ଘାଟୀ ଗୁଡିକ ଦଖଲ। ପ୍ରବଳ ରକ୍ତାକ୍ତ ଯୁଦ୍ଧ। ଉଭୟ ପକ୍ଷରୁ ବହୁ ମୃତାହତ। ନେତା ନୋଙ୍ଗବାହ ଧୃତ ଓ ତାଙ୍କୁ ଫାଶିଦଣ୍ଡ।

**ମଣିପୁରର ମେଇଟିମାନଙ୍କ ବିଦ୍ରୋହ** ନେତାଥିଲେ ଟିକେଲ ଜିତସିଂହ। ବିଦ୍ରୋହୀମାନଙ୍କୁ ଶହ ଶହ ସଂଖ୍ୟାରେ ହତ୍ୟାକରାଗଲା। ଖାସି ସର୍ଦ୍ଦାର ତିରୋତସିଂଙ୍କ କଚାଟି ଉପଜାତିର ଲୋକେ ତୁଲାମେ ସେନାପତିଙ୍କ ନେତୃତ୍ୱରେ ବିଦ୍ରୋହ କରିଥିଲେ। ୧୮୯୨-୯୩ରେ ନାଗାମାନଙ୍କ ବିଦ୍ରୋହ ସଂଘଟିତ ହୋଇଥିଲା।

ପାବନା ଚାଷୀ ବିଦ୍ରୋହ ୧୮୭୩ ବ୍ରିଟିଶପୁଷ୍ଟ ଜମିଦାରମାନଙ୍କ ଦ୍ୱାରା ପ୍ରତ୍ୟକ୍ଷ କରଟିକସ ଆଦାୟ କୋରଖ - ଜମି ନିଲାମ ବିରୁଦ୍ଧରେ ବିରାଟ ଖଜଣା ବନ୍ଦ ଆନ୍ଦୋଳନ ପାବନାରେ ସଂଘଟିତ ହେଲା। ଛୋଟ ଛୋଟ ଜମିମାଲିକ ଚାଷୀଙ୍କ ନେତା ଥିଲେ ଈଶାନ ଚନ୍ଦ୍ର ରାୟ। ଏହି ଚାଷୀ ଆନ୍ଦୋଳନ ଲହୁଆ ଓ ରକ୍ତକ୍ଷୟୀ ହେଲା। ଚାଷୀମାନଙ୍କ ଦୁର୍ଦ୍ଦଶା ଓ ବ୍ରିଟିଶ ଦମନର ଚିତ୍ର ଦେଇ ମୁସରଫ ହୋସେନ ଲେଖିଲେ ଜମିଦାରୀ ଦର୍ପଣ ଓ ଅଭୟଚରଣ ଦାସ "ଭାରତୀୟ ଚାଷୀ"। ଏହି ବର୍ଷ ଦିନାଜପୁରରେ ଦେବୀସିଂହଙ୍କ ନେତୃତ୍ୱରେ ପରିଚାଳିତ ଇଜାରାଦାରମାନଙ୍କ ବିଦ୍ରୋହକୁ ଦୃଢ଼ହସ୍ତରେ ଦମନ କରାଗଲା। ୟୁସୁଫଶାହୀ ପ୍ରଗଣାରେ ୩୬୯ ଗାଁର ଚାଷୀ ହିନ୍ଦୁ ମୁସଲମାନ ଏକାଠି ହୋଇଥିଲେ। ନେତା ଥିଲେ ଶମ୍ଭୁନାଥ ପାଲ। ଜମିଦାରମାନେ ଥିଲେ କଲିକତାର ଠାକୁର ପରିବାର, ଢାକାର ବାନାର୍ଜୀ ପରିବାର, ପୋରଜନାର ଭାଦୁଡି ପରିବାର, ସାଲୁକର ସାନ୍ୟାଲ ପରିବାର। ଜମିଦାରମାନଙ୍କ ସ୍ୱାର୍ଥରେ ଇଂରେଜଙ୍କ ପ୍ରଚଣ୍ଡ ଦମନ ଲୀଳା।

**ରଂଗପୁର ଚାଷୀ ବିଦ୍ରୋହ - ୧୭୮୩** ରଂଗପୁରରୁ ଦିନାଜପୁର ଯାଏ ଚାଷୀ ବିଦ୍ରୋହ ବ୍ୟାପିଗଲା। ନେତା ଥିଲେ ଶିବଚନ୍ଦ୍ର ନନ୍ଦୀ। ହିନ୍ଦୁ-ମୁସଲମାନ ଚାଷୀଙ୍କ ଉପରେ ବ୍ରିଟିଶର

ଦମନ ଲୀଳାର ଅନ୍ତ ରହିଲା ନାହିଁ । ଦିନାଜପୁର ଚାଷୀ ବିଦ୍ରୋହ- ୧୭୮୩ ଇଜରାଦାର ଦେବୀ ସିଂହଙ୍କ ନେତୃତ୍ୱରେ ଚାଷୀ ବିଦ୍ରୋହରେ ବ୍ରିଟିଶ ପ୍ରଶାସନ ଅସ୍ତବ୍ୟସ୍ତ ହୋଇପଡିଥିଲା ।

**ଓଡ଼ିଶାର ପାଇକ ବିଦ୍ରୋହ ୧୮୧୪-୧୭ ।** ୧୮୧୭ରେ ଘୁମୁସରରୁ ଚାରିଶହ ବିଦ୍ରୋହୀ କନ୍ଧ ଆସି ଖୋର୍ଦ୍ଧାର ପାଇକମାନଙ୍କ ସହ ମିଶିଲେ । ବାଣପୁରରେ ଥାନା ଲୁଟ କରି ୧୫ ହଜାର ଟଙ୍କା ବାଜ୍ୟାପ୍ତ କଲେ । ବ୍ରିଟିଶ ଗୁପ୍ତଚର ଚରଣ ପଟ୍ଟନାୟକଙ୍କୁ ହତ୍ୟା କରାଗଲା । ୧୮୧୭ ଏପ୍ରିଲ ୧ରେ ପାଇକ ବିଦ୍ରୋହୀମାନଙ୍କୁ ଦମନ କରିବାକୁ କଟକରୁ ଫିରିଙ୍ଗି ସୈନ୍ୟଙ୍କ ଅଭିଯାନ ଆରମ୍ଭ । ଗଂଗପଡାଠାରେ ହଜାର ହଜାର ପାଇକଙ୍କ ପକ୍ଷରୁ ଧନୁତୀର କାତି ଧରି ପଥ ଅବରୋଧ ଓ ପ୍ରବଳ ଯୁଦ୍ଧ । ପ୍ରଥମେ ପରାଜୟ ଲଭି ପାଇକ ବାହିନୀର ଆକ୍ରମଣରେ ବ୍ରିଟିଶଙ୍କ ପଛଘୁଂଚା । ବ୍ରିଟିଶ ସୈନ୍ୟ ପୁରୀରୁ ଆସି ଗାଁକୁ ଗାଁ ଜଳେଇ ଦେଲେ - ମୁକୁନ୍ଦ ଦେବଙ୍କୁ କଟକରେ ବନ୍ଦୀ କଲେ । ପାଇକମାନେ ବହୁ ଅଂଚଳକୁ ନିଜ ଅକ୍ତିଆରରେ ଆଣିଥିଲେ । ପୁରୀ ଜିଲ୍ଲା ସାରଗଂଗଡ, ଗୋପ ଓ କଟକର କନିକା, କୁଜଂଗ, ହରିଶପୁର ଅସୁରେଶ୍ୱର ଯାଏ ପାଇକମାନଙ୍କ ବିଦ୍ରୋହ ବ୍ୟାପିଥିଲା ।

ସେହି ୧୯୧୭ରେ ଖୋର୍ଦ୍ଧା ବରୁଣେଇ ପାହାଡରେ ପାଇକ ଓ ବ୍ରିଟିଶ ସୈନ୍ୟଙ୍କ ପ୍ରବଳ ଲଢେଇ ଚାଲିଲା । ଜୟି ରାଜଗୁରୁ (ଜୟକୃଷ୍ଣ ରାଜଗୁରୁ ମହାପାତ୍ର)ଙ୍କ ବୀରତ୍ୱପୂର୍ଣ୍ଣ ଲଢେଇ । ତାଙ୍କୁ ମୃତ୍ୟୁଦଣ୍ଡ ମିଳିଲା ।

ବକ୍ସି ଜଗବଂଧୁ ବିଦ୍ୟାଧର ମହାପାତ୍ର, କୃତ୍ତିବାସ ପାଟଶାଣୀଙ୍କ ନେତୃତ୍ୱରେ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚାଲିଲା । ଅନ୍ୟ ବିଦ୍ରୋହୀ ପାଇକ ନେତାଙ୍କ ମଧ୍ୟରେ ଥିଲେ କୁଜଂଗର ନାରାୟଣ ପରମଗୁରୁ ଓ କନିକାର ବାମଦେବ ପାଟଯୋଷୀ ।

ବିପ୍ଳବୀ ନେତାମାନଙ୍କୁ ହତ୍ୟା କରାଗଲା । ଗିରଫ୍ କରାଗଲା । ଦୀର୍ଘ କାରାଦଣ୍ଡ ଦିଆଗଲା ।

**ଘୁମୁସର କନ୍ଧ ବିଦ୍ରୋହ - ୧୮୨୫** ରେ ପେରିଆ ଏଜେନ୍ସିରେ ମେରିଆ କନ୍ଧଙ୍କ ବିଦ୍ରୋହ ପ୍ରଜ୍ୱଳିତ ହୋଇଥିଲା । ବହୁ କନ୍ଧଙ୍କୁ ହତ୍ୟା କରାଗଲା ।

**ପାରଳାଖେମଣ୍ଡି ପାଇକ ବିଦ୍ରୋହ ୧୭୯୮-୯୯** ଜଗନ୍ନାଥ ଦେଓଙ୍କ ନେତୃତ୍ୱରେ ବ୍ରିଟିଶ ବିରୋଧୀ ବିରାଟ ଅଭ୍ୟୁତଥାନ । ପାରଳା ଖେମଣ୍ଡିର ଅନେକ ଅଂଚଳ ପାଇକମାନଙ୍କ ଦ୍ୱାରା ଦଖଲ ହୋଇଥିଲା ।

**ନୟାଗଡ କଳାହାଣ୍ଡି କନ୍ଧ ବିଦ୍ରୋହ :** ୧୮୯୪ରେ ନୟାଗଡରେ ଏବଂ ୧୮୭୮ ଓ ୧୮୮୦-୮୨ରେ କଳାହାଣ୍ଡିରେ ବ୍ରିଟିଶ ଓ ରାଜଶାସନ ବିରୁଦ୍ଧରେ କନ୍ଧ ବିଦ୍ରୋହ ସଂଘଟିତ ହୋଇଥିଲା ।

**କେଉଁଝରର ଭୂୟାଁ ବିଦ୍ରୋହ ୧୮୮୨ ଓ ୧୮୯୨** କେଉଁଝର ରାଜ୍ୟର ସମଗ୍ର ଭୂୟାଁ ପୀଢ ଅଂଚଳ ବିଦ୍ରୋହୀମାନଙ୍କ ଦଖଲରେ ଆସିଗଲା । ସମସ୍ତ ପ୍ରଶାସନ ଅଚଳ । ବ୍ରିଟିଶ ବାହିନୀ

ଦ୍ୱାରା କେଉଁଝରର ରାଜ୍ୟଙ୍କୁ ସାହାଯ୍ୟ । ଶହଶହ ଭୂୟାଁ ନିହତ । ନେତା ଥିଲେ ଧରଣୀଧର ନାୟକ । ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ଏବେ ଧରଣୀଧର ମହାବିଦ୍ୟାଳୟ ପ୍ରତିଷ୍ଠିତ ।

ଘେଁସ ବିଦ୍ରୋହ-ସଂବଲପୁର ୧୮୫୭-୫୮ ମାଧୋ ସିଂହ ଥିଲେ ଏହି ବିଦ୍ରୋହର ନେତା । ଘେଂସର ଜମିଦାର ପରିବାର ୧୮୫୭ ପୂର୍ବରୁ ବ୍ରିଟିଶ ଶାସନର ବିରୋଧ କରି ଆସୁଥିଲା । ବୀର ସୁରେନ୍ଦ୍ର ସାଏ ତାଙ୍କୁ ଉତ୍ସାହିତ କରିଥିଲେ । ୧୮୫୭ ଜୁଲାଇ ୩୦ରେ ହଜାରିବାଗ ଜେଲରୁ ସୁରେନ୍ଦ୍ର ସାଏଙ୍କୁ ମୁକ୍ତ କରିବାରେ ସଫଳ ନେଇ ବିଶ୍ୱାସଘାତକତା କରିଥିବା ଦେଓରି ଜମିଦାରଙ୍କୁ ହତ୍ୟା କରାଗଲା । ବ୍ରିଟିଶ ସୈନ୍ୟଙ୍କ ପ୍ରତି ଆକ୍ରମଣରେ ମାଧୋ ସିଂ ଗିରଫ ହେଲେ । ଆନ୍ଦାମାନ ଦ୍ୱୀପରେ ବନ୍ଦୀ ହୋଇ ତାଙ୍କର ମୃତ୍ୟୁ ହେଲା । ନୃଶଂସ ବ୍ରିଟିଶ ଶାସକମାନେ ମାଧୋ ସିଂହଙ୍କ ପୁଅ ଅଟେ ସିଂହ, ବୈରୀ ସିଂ, ନାରାୟଣ ସିଂଙ୍କୁ ଫାଶିକାଠରେ ଝୁଲେଇ ଦେଲେ । ୧୮୬୫ଯାଏ ବିଚାର ଚାଲି ଜାନୁଆରୀ ୨୦ରେ ମୃତ୍ୟୁଦଣ୍ଡ ଦିଆଗଲା ।

ଓଡିଶାରେ ଇଂରେଜ ଶାସନର ଆଦ୍ୟ ପ୍ରତିରୋଧ ମଧ୍ୟ ବାଙ୍କି, ଅନୁଗୋଳ, ରାଇବଣିଆରେ ମୁଣ୍ଡ ଟେକିଥିଲା । ୧୮୫୭ ପ୍ରଥମ ସ୍ୱାଧୀନତା ସଂଗ୍ରାମର ବିବରଣୀରେ ବୀର ସୁରେନ୍ଦ୍ର ସାଏଙ୍କ ଅବଦାନ ସ୍ଥାନ ପାଇବ ।



# ୧୮୫୭ ପ୍ରଥମ ସ୍ୱାଧୀନତା ସମର

୧୯୯୮ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଏବଂ ଆମ ଦେଶର ମୁକ୍ତି ଓ ସ୍ୱାଧୀନତା ଲାଗି ୧୮୫୭ରେ ସଂଘଟିତ ପ୍ରଥମ ସ୍ୱାଧୀନତା ସଂଗ୍ରାମ ମଧ୍ୟରେ ୧୪୧ ବର୍ଷ ସମୟର ବ୍ୟବଧାନ। ତାହାର ଠିକ ଶହେ ବର୍ଷ ପୂର୍ବେ ଐତିହାସିକ ପଲାସୀ ଯୁଦ୍ଧରେ ପରାଜୟର ଗ୍ଲାନି। ଏହି ପରାଜୟ ଓ ଗ୍ଲାନିର ପ୍ରତିଶୋଧର ଆଗ୍ନେୟ ରୂପ ନେଲା ୧୮୫୭। ଉନ୍ମାଦନା-ଉଦ୍ଦୀପନାଭରା, ରୋମାଞ୍ଚକ, ସ୍ୱଦେଶୀ ଭାବନାର ସେ ସମରର ମଧ୍ୟ ସାମୟିକ ପରାଜୟ ହେଲା। ମାତ୍ର ପରାଜୟ ହିଁ ଏହି ସମର କାଳର ଅଙ୍କୁରକୁ ଏକ ମହାଦ୍ରୁମରେ ପରିଣତ କରିଦେଲା ପରବର୍ତ୍ତୀ କାଳରେ। ମୁକ୍ତି ଓ ସ୍ୱାଧୀନତା ଅବଶ୍ୟମ୍ଭାବୀ ହେଲା। ଭାରତ ମାଟିରୁ ଔପନିବେଶିକବାଦୀ ସାମ୍ରାଜ୍ୟବାଦର ଅପସାରଣ ହେଲା।

୧୮୫୭ରେ ସମର ଏକ ଅସମ ସମର। ଏକ ପକ୍ଷରେ ପ୍ରଭୂତ ଶକ୍ତିଶାଳୀ, ବିତ୍ତଶାଳୀ, ଅପରିମିତ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଏକ ପ୍ରକାଣ୍ଡ ସଂଗଠିତ ଯୁଦ୍ଧଯନ୍ତ୍ର ଓ ସାମ୍ରାଜ୍ୟକୁ ରକ୍ଷା କରିବା ଲାଗି ତାଲିମ ପ୍ରାପ୍ତ ମୁସଲମାନ, ବିଭିନ୍ନ ଭାଷାଭାଷୀ, ଅଂଚଳବାସୀ ଭାରତର ବିଦ୍ରୋହୀ ଜନତା।

ଏପରି ଏକ ଅସମ ଯୁଦ୍ଧରେ ଦେଢଶହ ବର୍ଷ ପୂର୍ବେ ଏ ବମହାଜାତିର ପୂର୍ବ ପୁରୁଷ ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ଅପରିସୀମ, ଅପୂର୍ବ, ଅଲୌକିକ, ଅବିସଂବାଦିତ ବୀରତ୍ୱ, ଦୃଢ ପ୍ରତ୍ୟୟ, ଆତ୍ମୋତ୍ସର୍ଗର ନିଦର୍ଶନ ରଖିଯାଇଛନ୍ତି।

୧୭୫୭ ପରବର୍ତ୍ତୀ ପୂର୍ବବର୍ଣ୍ଣିତ ଅଗଣିତ ମେଳି, ଖଣ୍ଡ ବିଦ୍ରୋହ, ସଶସ୍ତ୍ର ମୁକାବିଲା ବେଳର ସାମାଜିକ ଭିତ୍ତିର ପରିବର୍ତ୍ତନ ଘଟିଥାଏ ୧୮୫୭ ବେଳକୁ। ପୂର୍ବର ସାମନ୍ତିଆ ବର୍ଗ ଅପମାନିତ, ଲାଂଛିତ, କ୍ଷମତାଚ୍ୟୁତ ବ୍ୟକ୍ତି ବିଶେଷଙ୍କ ସାଙ୍ଗକୁ ୧୮୫୭ ସମରରେ ବିଭିନ୍ନ ସାମାଜିକ ବର୍ଗ ସାମିଲ ହୋଇଗଲେ। କଂପାନୀ ଶାସନରେ କୌଳିକ ଧନ୍ଦାବେଉଷାକୁ ବଂଚିତ, ଅତ୍ୟାଚାର ଓ ଲୁଣ୍ଠନରେ ଜର୍ଜ୍ଜରିତ ଗାଁଗହଳର ଚାଷୀ, କରିଗର ସାଙ୍ଗକୁ ଏ ସମରରେ ଯୋଗ ଦେଲେ ହିନ୍ଦୁ, ମୁସଲମାନ, ସବୁ ସଂପ୍ରଦାୟ ଓ ଧର୍ମ ବିଶ୍ୱାସର ସିପାହୀ। ସେମାନେ ଆସିଥିଲେ ଚାଷୀ ଓ କାରିଗରଙ୍କ ପରିବାରରୁ। ଯେହେତୁ ୧୮୫୭ର ପ୍ରଧମ ସ୍ୱାଧୀନତା ସମର ବ୍ୟାପକ ସାମାଜିକ ରୂପ ନେଲା; ଉଚ୍ଚତର ସଂଗ୍ରାମର ଆକାଶ ଗ୍ରହଣ କଲା।

**"ଅସଭ୍ୟ, ଶୂଅରକା ବଚା ଭାରତୀୟ":**

ଖଣ୍ଡଖଣ୍ଡ କରି ଭାରତବର୍ଷକୁ ଦଖଲ କଲାବେଳେ ବ୍ରିଟିଶ ଉପନିବେଶବାଦୀମାନେ, ସେମାନଙ୍କ ସମର୍ଥକ ତଥାକଥିତ ବିଦ୍ୱାନମାନେ ଭାରତୀୟମାନେ ଏକ ଅସଭ୍ୟ ଜାତି, ବ୍ରିଟିଶ ଲୋକେ ସେମାନଙ୍କୁ ସଭ୍ୟ କରିଛନ୍ତି ବୋଲି ବଡିମା କଲେ। ଭାରତୀୟମାନଙ୍କୁ ଘୃଣାବ୍ୟଞ୍ଜକ ଭାଷାରେ ନିଗ୍ଗାର, ନିମ୍ନସ୍ତରର ନୃଜାତି ଆଖ୍ୟା ଦେଇଥିଲେ। ସୈନ୍ୟ ଛାଉଣୀମାନଙ୍କରେ, କଂପାନୀର ବାଣିଜ୍ୟ ଦପ୍ତରରେ ଅବା ପୁଲିସ ବା ପ୍ରଶାସନରେ ତଳିଆ ଭାରତୀୟ ସିପାହୀ, କିରାଣୀ, ମାଳି, ବେହେରା, ଚପରାଶିମାନଙ୍କୁ ହୀନ ଚକ୍ଷୁରେ ଦେଖାଯାଉଥିଲା। କଥାକଥାକେ ଭାରତୀୟମାନଙ୍କ ହାରାମଜାଦା, ଶୂଅରକା ବଚ୍ଚା, ଗାଳିଗୁଲଜ କରାଯାଉଥିଲା।

ବ୍ରିଟିଶ ଇତିହାସକାରମାନେ ଠିକ୍ ଏଇ ଦୃଷ୍ଟିକୋଣରୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମକୁ ସମଗ୍ର ଭାରତବାସୀଙ୍କର ନୁହଁ ସିପାହୀମାନଙ୍କ ବିଦ୍ରୋହର ଆଖ୍ୟା ଦେଇଥିଲେ। ଏହି ସମରରେ ଭାରତୀୟ ସିପାହୀମାନେ ଯେ ପ୍ରଚଣ୍ଡ ଆଘାତକାରୀ ଶତ୍ରୁ ଉପରେ ମରଣମାଡ ଚଢାଇବାର ଅଗ୍ରଭାଗରେ ଥିଲେ, ଏହା ନିଃସନ୍ଦେହ। କିନ୍ତୁ ଏହାର ପରିସର କେବଳ ଛାଉଣୀମାନଙ୍କରେ ସୀମିତ ନଥିଲା। ଏକ ସୁବିଶାଳ, ପ୍ରଶସ୍ତ, ସୁଦୂରପ୍ରସାରୀ ସମର ଭୂଇଁରେ ଶତ୍ରୁର ମୁକାବିଲା କରାଯାଉଥିଲା।

ବଂଗଳାର ବାରାକପୁରରୁ ବିହାରର ଦାନପୁର, ବନାରସ, ଲକ୍ଷ୍ନୌ (ଅବଧ) କାନପୁର, ଫୈଜାବାଦ, ମିରଠରୁ ଦିଲ୍ଲୀ-ଜଲନ୍ଧର, ଲାହୋରଯାଏ ଦୁଇ ସହସ୍ରାଧିକ କିଲୋମିଟରର ରଣକ୍ଷେତ୍ର। ଗଂଗା ଯମୁନା ତଟରୁ ନର୍ମଦା ତଟ ଯାଏ ରଣକ୍ଷେତ୍ର ଡେଇଁ ଝାନସି, ଗ୍ୱାଲିଅର, ଚମ୍ବଲ ଉପତ୍ୟକା ଯାଏ ବିସ୍ତାରିତ। ଛିଟିକି ଚାଲିଲା ଓଡିଶାର ସଂବଲପୁରକୁ। ଅସଂଖ୍ୟ ବ୍ରିଟିଶ ସୈନ୍ୟ ଛାଉଣୀ ଏହି ବିଶାଳ ରଣଭୂଇଁରେ। ସେକାଳର ଅତ୍ୟାଧୁନିକ ମାରଣାସ୍ତ୍ରରେ ସଜ୍ଜିତ ସୈନ୍ୟ ଛାଉଣୀ।

ଇତିହାସ ଏହି ମହା ସଂଗ୍ରାମର ଅଗଣିତ ବୀରଯୋଦ୍ଧାଙ୍କ ମଧ୍ୟରୁ ସଭିଁଙ୍କ ନାମ ଲିପିବଦ୍ଧ କରିପାରିନାହିଁ ସତ, ତଥାପି ଯେଉଁମାନେ ଏହି ସମରରେ ଇତିହାସ ପୁରୁଷ ରୂପେ ଏବେ ବି ସ୍ମରଣରେ ଅଛନ୍ତି, ସେମାନଙ୍କ ଅଗ୍ର ଭାଗରେ ଥିଲେ ନାନା ସାହେବ, ଝାନସୀ ରାଣୀ ଲକ୍ଷ୍ମୀବାଇ, ତାନ୍ତ୍ୟା ଟୋପେ, ଅଯୋଧାର ବେଗମ ହଜରତମଲ, ଦିଲ୍ଲୀର ସମ୍ରାଟଙ୍କ ପତ୍ନୀ ଜିନ୍ନତମହଲ, ଶାହାବାଦର କୁନୱାର ସିଂହ, ମୌଲବୀ ଅହମ୍ମଦ, ଶାହା, ଓ୍ୱାଜିର ଅଲ୍ଲିଖାଁ, ନାନା ସାହେବଙ୍କ ଭାଇ ବାଲା ସାହେବ, ଅମରସିଂହ, ଅଭିମୁଲ୍ଲା ଖାଁ ଓ ବକ୍‌ତଖାଁ।

ଶତଶତ ନେତୃତ୍ୱକାରୀ ସିପାହୀଙ୍କ ମଧ୍ୟରୁ ମଂଗଳ ପାଣ୍ଡେ, ଗୋବିନ୍ଦ ପାଣ୍ଡେ ଅଗ୍ରଗଣ୍ୟ। "ଫିରିଙ୍ଗି ହଟଯାଓ" ଥିଲା ରଣଡାକ। ସଂଗ୍ରାମର ଆହ୍ୱାନ ହେଲା "ଆମ ସ୍ୱଧର୍ମ, ଆମ ସଭ୍ୟତା ସଂସ୍କୃତିର ରକ୍ଷା।" ଆମ "ରାଜ୍ୟ" ଆମର "ସ୍ୱରାଜ୍ୟ"।

ଏହି ସମରର ବାର୍ତ୍ତାବାହୀ ସଂକେତ ଥିଲା ଚପାଟି (ରୁଟି) କେଉଁଠି କେଉଁଠି ପଦ୍ମଫୁଲ । ଗୋଟିଏ ଛାଉଣୀରେ ବିଦ୍ରୋହୀମାନେ କ'ଣ ନିଷ୍ପତ୍ତି ନେଲେ, କେଉଁଦିନ ବିଦ୍ରୋହ ଆରମ୍ଭ ହେବ ଏ ସଂବାଦ ଚପାଟିକୁ ସଂକେତ କରି ପଠାଯାଉଥିଲା ଏକ ଶିବିରରୁ ଅନ୍ୟ ଶିବିରକୁ । ସେଠାରେ ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହେଉଥିଲା । ତାହାର ବାର୍ତ୍ତା ଚପାଟି ଯୋଗେ ଅନ୍ୟ ଛାଉଣୀକୁ ପଠାଯାଉଥିଲା ।

**ସିପାହୀ ଅଭ୍ୟୁତ୍ଥାନ ଉଦବେଳନର ପୃଷ୍ଠଭୂମି -**

ସାମ୍ରାଜ୍ୟବାଦୀ ପ୍ରଚାର ହେଲା, ଏହି ବିଦ୍ରୋହର କାରଣ ବ୍ରିଟିଶ ବାହିନୀରେ ଅନ୍ତର୍ଭୁକ୍ତ ନୂଆ ଏନଫିଲଡ୍ ବନ୍ଧୁକ । ଏହାର ଗୋଳି ବା ଟୋଟାକୁ ଦାନ୍ତରେ ଛିଣ୍ଡାଇବାକୁ ପଡେ । ଟୋଟାରେ ଗୋରୁ ଓ ଘୁଷୁରୀର ଚର୍ବି ଲଗାଯାଇ ପ୍ରସ୍ତୁତ କରାଯାଏ । ମୁସଲମାନମାନେ ଘୁଷୁରୀ ଓ ହିନ୍ଦୁମାନେ ଗୋରୁ ଚର୍ବିକୁ ଘୃଣା କରି ଏହି ବିଦ୍ରୋହ ସଂଘଟିତ କଲେ । ଏହାର ଅନ୍ୟ କୌଣସି କାରଣ ନଥିଲା । ମାତ୍ର ଏହା ଅପପ୍ରଚାର, ଅସତ୍ୟ, ଅର୍ଦ୍ଧସତ୍ୟ ଉପରେ ଆଧାରିତ । ଏହା ଠିକଯେ ଏହି ଟୋଟାର ବ୍ୟବହାର ବିଦ୍ରୋହ ଆରମ୍ଭ କରିଦେବା ଲାଗି ଏକ ନିଆଁକାଠି ସଦୃଶ କାମ କଲା ।

ସିପାହୀମାନଙ୍କୁ ଗୋରା ସୈନିକଙ୍କ ସହିତ ସମାନ ବିଚାର କରାଯାଉ ନଥିଲା । କଂପାନୀ କର୍ତ୍ତୃପକ୍ଷ କୌଣସି ରାଜ୍ୟକୁ ଦଖଲ କଲାବେଳେ ପ୍ରଥମ ମରଣ ମୁହଁରେ ହିନ୍ଦୁ ମୁସଲିମ ଭାରତୀୟ ସିପାହୀଙ୍କୁ ପଠାଯାଉଥିଲା । ସେମାନେ ବାଟ ସଫା କଲେ ଇଂରେଜ ସୈନିକଙ୍କୁ ପଠାଯାଉଥିଲା । ଭାରତୀୟ ସିପାହୀମାନଙ୍କ ପାଇଁ ସୈନ୍ୟ ବିଭାଗରେ ବଡ ପାହ୍ୟାକୁ ଯିବାର ବାଟ ବନ୍ଦ କରାଯାଇଥିଲା । ସେନାଧ୍ୟକ୍ଷ, କର୍ଣ୍ଣେଲ, ଲେଫନାଣ୍ଟ କର୍ଣ୍ଣେଲ, କପ୍ତାନ ଇତ୍ୟାଦି ବଡ ଆସନ ସୁଦକ୍ଷ ଭାରତୀୟମାନଙ୍କ ଲାଗି ନିଷିଦ୍ଧ । ଖୁବ ହେଲେ ହାବିଲଦାର ଯାଏ ପଦୋନ୍ନତି ।

ଭାରତୀୟ ସିପାହୀମାନଙ୍କୁ ଅଲଗା ନିମ୍ନମାନର, ଅଳ୍ପ ସୁବିଧା ଥିବା ଛାଉଣୀରେ ରଖାଯାଉଥିଲା । ଏକ ପାହ୍ୟାର ଗୋରା ସୈନିକଙ୍କ ତୁଳନାରେ କମ ଦରମା ଦିଆଯାଉଥିଲା । ପୋଷାକପତ୍ରରେ ମଧ୍ୟ ବାଛବିଚାର ଥିଲା । ସେମାନେ ଦାବୀ କଲେ ବିଦ୍ରୋହୀ ଆଖ୍ୟା ଦେଇ ସାମରିକ ବିଚାରରେ କଠିନ ଦଣ୍ଡ ଦିଆଯାଉଥିଲା । ୧୮୨୪ରେ ୧୮୫୭ ବିଦ୍ରୋହର ୩୩ବର୍ଷ ଆଗରୁ କଲିକତାର ବାରାକପୁରରେ ଭାରତୀୟ ସିପାହୀମାନଙ୍କୁ ନାହିଁନଥିବା ବିଦ୍ରୋହକୁ ଅତି ନିର୍ମମ ଭାବରେ ଦମନ କରାଯାଇଥିଲା । ସେହିଦିନରୁ ବାରାକପୁର ଶିବିର ମାର୍କାମରା ହୋଇଗଲା । ଭାରତୀୟ ସିପାହୀମାନେ ଛୁଟିରେ ଗାଁକୁ ଗଲାବେଳେ ଅବା କୌଣସି ରଣକ୍ଷେତ୍ରକୁ ଅବା ବଜାରହାଟକୁ ଗଲାବେଳେ ଏହି ନିର୍ମମ ଅତ୍ୟାଚାରର ବର୍ଣ୍ଣନା କରି ବେସାମରିକ ଚାଷୀ ଭାଇ ଓ ଅନ୍ୟ ଧନ୍ଦାର ଲୋକଙ୍କୁ ଉତ୍ତେଜିତ କରି ଆସୁଥିଲେ । ୧୮୫୭ରେର ମଧ୍ୟ ଏହି ବାରାକପୁର ବିଦ୍ରୋହରେ ଐତିହାସିକ ଭୂମିକା ନେଇଥିଲେ ।

ସୈନ୍ୟ ଛାଉଣୀମାନଙ୍କରେ ବର୍ଷ ବର୍ଷ ଧରି ଅସନ୍ତୋଷ ଜମାଟ ବାନ୍ଧିଚାଲିଥିଲା । ଭାରତୀୟ ସିପାହୀମାନଙ୍କ ଅସନ୍ତୋଷ ଓ ବିଦ୍ରୋହଗୁଡ଼ିକ ୧୮୩୮ରେ ସୋଲାପୁର, ୧୮୪୬ରେ ସିକନ୍ଦରାବାଦ ଓ ହାଇଦ୍ରାବାଦ, ସାଲଗାଁଓ, କୋଟ୍‌ହ ସୈନ୍ୟଛାଉଣୀରେ ସଂଘଟିତ ହୋଇ ଦବିଯାଇଥିଲା । ଏହି ସିପାହୀ ବିଦ୍ରୋହୀମାନଙ୍କ ମଧ୍ୟରୁ ଗୋବିନ୍ଦ ପାଣ୍ଡେ ବିଦ୍ରୋହ-ବହ୍ନି ଜାଳିବାର ଭୂମିକା ନେଲେ । ୧୮୩୯ରେ ସିନ୍ଧୁ ପ୍ରଦେଶକୁ କଂପାନୀ ଦଖଲ କଲାବେଳେ ଉତ୍ତର ପ୍ରଦେଶ ବାଲିଆର ସୁବେଦାର ଗୋବିନ୍ଦ ପାଣ୍ଡେ ବନ୍ଧୁକ ଧାରଣ କରିବାକୁ ନାସ୍ତି କଲେ । ସାମରିକ ବିଚାରରେ ତାଙ୍କୁ ଦଣ୍ଡ ବିଧାନ କରାଗଲା । ଗିରଫ ଏଡ଼ି ସେହିଦିନୁଁ ଗୋବିନ୍ଦ ପାଣ୍ଡେ ଦୂର ନିକଟ ବିଭିନ୍ନ ଛାଉଣୀ ଏମିତିକି ବାରାକପୁର ଛାଉଣୀରେ ପହଂଚି ବିଦ୍ରୋହର ମଞ୍ଜି ରୋପଣ କରୁଥିଲେ । ବାରାକପୁରର ବୀର ସିପାହୀ ମଂଗଳ ପାଣ୍ଡେଙ୍କ ସହିତ ତାଙ୍କର ଘନିଷ୍ଠ ଯୋଗାଯୋଗ ହେଲା । ବାରାକପୁର ଶିବିରରେ ବିଦ୍ରୋହର ମଂଜି ରୋପିତ ହେଲା । ସୈନ୍ୟ ଛାଉଣୀମାନଙ୍କରେ ଏହିପରି ଅସନ୍ତୋଷର ବହ୍ନି ପ୍ରଜ୍ୱଳିତ ହେଲାବେଳେ କଂପାନୀର ଆଉ ଏକ କୂଟକୌଶଳ ବହୁ ଦେଶୀୟ ରାଜା, ନବାବଙ୍କୁ ଉତକ୍ଷିପ୍ତ କରିଦେଲା ।

ପୂର୍ବରୁ ପ୍ରତିଶ୍ରୁତି ଚୁକ୍ତିକୁ ଲର୍ଡ଼ ଡେଲାହାଉସି ଲଙ୍ଘନ କରି ଏଣିକି ଦେଶୀୟ ରାଜ୍ୟଗୁଡ଼ିକୁ ପୂର୍ବର ଶାସକଙ୍କ ପ୍ରତ୍ୟକ୍ଷ ଶାସନରୁ କାଢ଼ି ଆଣି ସାମ୍ରାଜ୍ୟ ସହିତ ମିଶ୍ରଣ ଆରଂଭ କରିଦେଲେ । କେଉଁ ରାଜ୍ୟର ଶାସକ ନାବାଳକ, କାହାର ସନ୍ତାନ ନାହିଁ, ସେ ପୋଷ୍ୟପୁତ୍ର ଗ୍ରହଣ କରିପାରିବ ନାହିଁ, ଏହିପରି ଆଳ ଦେଖାଇ ରାଜ୍ୟମାନଙ୍କୁ ସାମ୍ରାଜ୍ୟ ସହ ମିଶ୍ରଣ କରାଗଲା ୧୮୧୪ରେ ନେପାଳ, ୧୭୮୫ରେ କର୍ଣ୍ଣାଟକ, ୧୭୯୯ରେ ହାଇଦ୍ରାବାଦକୁ ଦଖଲ କରାଗଲା । ତୃତୀୟ ମରହଟ୍ଟା ସମରରେ ମରହଟ୍ଟା ରାଜ୍ୟଗୁଡ଼ିକୁ ଦଖଲ କରି ନିଆଗଲା । ୧୮୪୮ରେ ପଂଜାବର ମହାରାଜା ଦୀଲ୍ଲୀପ ସିଂହଙ୍କୁ ଧମକ ଦେଇ ଦସ୍ତଖତ୍ ନିଆଯାଇ ପଂଜାବର ମହାରାଜା ଦୀଲ୍ଲୀପ ସିଂହଙ୍କୁ ଧମକ ଦେଇ ଦସ୍ତଖତ ନିଆଯାଇ ପଂଜାବର ମିଶ୍ରଣ ହେଲା । ୧୮୧୯ରେ ସତାରା, ୧୮୫୬ରେର ଅବଧ, ୧୮୧୭ରେ ବୁନ୍ଦେଲଖଣ୍ଡ, ୧୮୫୩ରେ ପେଶବାଙ୍କ ସୁବେଦାରୀ ଝାନସୀ ରାଜ୍ୟକୁ କଂପାନୀର ଷୋଳଣା ପ୍ରତ୍ୟକ୍ଷ ଶାସନାଧୀନ କରାଗଲା । ଏହିପରି ଭାବରେ ଜୟପୁର, ଉଦୟପୁର, ପଂଜାବର ଭଗତ ଏବଂ ଓଡ଼ିଶାର ସଂବଲପୁରକୁ ମିଶ୍ରଣ କରାଗଲା ।

ଏପରି ବିଶ୍ୱାସଘାତକତା କେବଳ କ୍ଷମତାଚ୍ୟୁତ ଦେଶୀୟ ରାଜା ନବାବଙ୍କ ମଧ୍ୟରେ ନୁହଁ, ସେସବୁ ରାଜ୍ୟରର ପ୍ରଜା ଚାଷୀ ଓ ଅନ୍ୟବର୍ଗର ଲୋକଙ୍କ ଭିତରେ ବିଦ୍ରୋହ ଭାବର ସୂତ୍ରପାତ କଲା । ସଂକ୍ଷେପରେ ଏହାହିଁ ଥିଲା ୧୮୫୭ ପ୍ରଥମ ସ୍ୱାଧୀନତା ସଂଗ୍ରାମର ସାମାଜିକ ଭିତ୍ତି ଓ କାରଣ । ପ୍ରସଙ୍ଗକ୍ରମେ ଦୁଇଟି ବିଶିଷ୍ଟ ଘଟଣା ଉଲ୍ଲେଖନୀୟ । ନାନା ସାହେବ କୌଣସି ରାଜ୍ୟର ରାଜା ନଥିଲେ । ସେ ବ୍ରାହ୍ମଣ ଦମ୍ପତି ମାଧବରାଓ, ଗଂଗା ବାଇଙ୍କ ପୁଅ । ବ୍ରିଟିଶ ପେନସନ ପାଇ ପେଶବା ପଦରେ ରହିଥିବା ବାଜିରାଓ ମୃତ୍ୟୁ ପୂର୍ବରୁ ନାନା ସାହେବଙ୍କୁ

୧୮୫୫ରେ ପୋଷ୍ୟପୁତ୍ର କରିଥିଲେ। କଂପାନୀ ସରକାର ତାହା ଗ୍ରହଣ କଲା ନାହିଁ। ନାନା ସାହେବ ତାଙ୍କ ଭାଇ ବାଲା ସାହେବ, ବିଶ୍ୱସ୍ତ ସହଯୋଗୀ ଅଜିମୁଲା, ତାନ୍ତିଆ ଟୋପେଙ୍କୁ ଧରି ବ୍ରିଟିଶ ବିରୁଦ୍ଧରେ ବିଦ୍ରୋହ ସଂଗଠନ କଲେ। ଦିଲ୍ଲୀ ବାଦଶାହଙ୍କ ଠାରୁ ଅଯୋଧ୍ୟାର ବେଗମ, ବାରାକପୁର ଓ ଅନ୍ୟ ଛାଉଣୀର ବିଦ୍ରୋହୀ ସିପାହୀ ନେତାମାନଙ୍କୁ ପାଖକୁ ସେ ଚିଠି ପଠାଇଲେ। ଫକୀର ଓ ସନ୍ନ୍ୟାସୀମାନଙ୍କୁ ତାଲିମ ଦେଇ ଚାରିଆଡ଼େ ପ୍ରଚାର ଅଭିଯାନ ଚଳେଇଲେ। ଗୋପନରେ ବିଭିନ୍ନ କେନ୍ଦ୍ରକୁ ଗଲାବେଳେ ଲକ୍ଷ୍ନୌରେ ହେଲାଭଳି ସହସ୍ର ସହସ୍ର ଲୋକ ତାଙ୍କୁ ସଂବର୍ଦ୍ଧନା ଜଣାଇ ପେଶବା ବୋଲି ଘୋଷଣା କଲେ।

ଝାନସି ରାଜ୍ୟଟି ପେଶବାଙ୍କ ସୁବେଦାରୀ ଥିଲା। ଝାନସୀର ମହାରାଜା ଗଂଗାଧର ରାଓଙ୍କ ମୃତ୍ୟୁପରେ ତାଙ୍କ ରାଣୀ ଲକ୍ଷ୍ମୀବାଇ ଦାମୋଦରଙ୍କୁ ପୁଅ କଲେ। ମାତ୍ର ଏହାକୁ ଅଗ୍ରାହ୍ୟ କରି ଲର୍ଡ ଡେଲାହାଉସି ଝାନସୀ ରାଜ୍ୟକୁ ସାମ୍ରାଜ୍ୟ ସଂଗରେ ମିଶେଇ ଦେଲେ।

ଝାନସୀର ରାଣୀ ଲକ୍ଷ୍ମୀବାଇ ନାନା ସାହେବଙ୍କ ପରି ପ୍ରଥମ ମହାସମର କାଳରେ ବୀରତ୍ୱ ଓ ଆତ୍ମତ୍ୟାଗର ପରାକାଷ୍ଠା ଦେଖାଇ ଇତିହାସରେ ଅମର ଯଶ ରଖିଗଲେ।



# ସମର ଆରମ୍ଭ ମିରଟ୍ ଆଉ ଦିଲ୍ଲୀ

୧୮୫୭ ମଇ ୧୦ ତାରିଖ, ସେଦିନ ଶନିବାର। ମିରଟ ଛାଉଣୀର ଭାରତୀୟ ସିପାହୀମାନେ ସକାଳ ପାରେଡ଼ରେ ଯୋଗ ଦେଲେ। ମାତ୍ର ଏମାନେ ଗୁଳିବନ୍ଧୁକକୁ ସ୍ପର୍ଶ କରିବାକୁ ନାସ୍ତି କରିଦେଲେ। ସଂଗେସଂଗେ ସାମରିକ ବିଚାର ଚାଲିଲା। ୨୬ ଜଣ ହିନ୍ଦୁ ଓ ୫୯ ମୁସଲମାନ ସିପାହୀଙ୍କର ହାତଗୋଡ଼ ବାନ୍ଧି ଦିଆଗଲା। ସୈନ୍ୟ ପୋଷାକ ଓ ଜୋତା କାଢି ଦେବାକୁ ହୁକୁମ ହେଲା।

ନିଆଁ ଜଳି ଉଠିଲା। ଛାଉଣୀ ଜଳିଲା, ଟେଲିଗ୍ରାଫ ଅଫିସ ଜଳିଲା, ଚାଲିଲା ଗୋରା ହାକିମଙ୍କ ଉପରେ ଆକ୍ରମଣ। ଫିରିଙ୍ଗିମାନେ ପ୍ରାଣ ବିକଳରେ ଯିଏ ଯୁଆଡ଼େ ପଳାଇଗଲେ। ମିରଟ ମୁକ୍ତ।

ବିଜୟ ଉଲ୍ଲାସରେ ମାତ୍ତ ୨ହଜାର ସିପାହୀ ଆଉ ମିରଟରେ ସାଧାରଣ ଲୋକ ମୁହାଁଇଲେ ୩୬ ମାଇଲ ଦୂର ଦିଲ୍ଲୀ ଅଭିମୁଖେ। ଯମୁନା ପାର ହୋଇ ବିଦ୍ରୋହୀ ବାହିନୀ ଦିଲ୍ଲୀ ନଗରୀରେ ରାତାରାତି ପହଁଚିଗଲେ। ଦିଲ୍ଲୀର ବାଦଶାହ, ବୃଦ୍ଧ ବାହାଦୂର ଶାହା ଜାଫର। ନାମକୁ ମାତ୍ର ସମ୍ରାଟ। କଂପାନୀର ଶାସନରେ ପେନସନଭୋଗୀ ବାଦଶାହଙ୍କୁ ଲାଲ କିଲ୍ଲାରେ କଡା ନଜରବନ୍ଦୀରେ ରଖାଯାଇଥିଲା।

୧୮୫୭ ମଇ ୧୧ରେ ବିଦ୍ରୋହୀ ସିପାହୀ ଓ ଦିଲ୍ଲୀ ଅଧିବାସୀ ସମସ୍ତ ବାଧା ପ୍ରତିବନ୍ଧକ ଏଡି ବାଦଶାହଙ୍କୁ ସାକ୍ଷାତ୍ କରି ତାଙ୍କୁ ଭାରତର ସମ୍ରାଟ ଘୋଷଣା କଲେ। ତାଙ୍କରି ନେତୃତ୍ୱରେ ଫିରିଙ୍ଗି ଶାସନକୁ ହଟେଇଦେବେ ଏବଂ ଦରବାରକୁ ଅର୍ଥ, ଖାଦ୍ୟ ସାମଗ୍ରୀ ଯୋଗାଦେବେ ବୋଲି ଅଂଗୀକାର ଜଣେଇଲେ। ଦିଲ୍ଲୀ ବିଦ୍ରୋହୀମାନଙ୍କ ଅଦ୍ୱିତୀୟ ନେତା ହେଲେ ବକତ୍ ଖାଁ।

ସମସ୍ତ ଦିଲ୍ଲୀ ନଗରୀ ତିନି ସପ୍ତାହକାଳ ଭାରତୀୟ ସିପାହୀ ଓ ଦିଲ୍ଲୀର ଜନତାଙ୍କ କର୍ତ୍ତୃତ୍ୱରେ ରହିଲା। ଫିରିଙ୍ଗମାନଙ୍କ ପତ୍ତା ରହିଲା ନାହିଁ। ମଇ ୨୯ରେ ସମସ୍ତ ବ୍ରିଟିଶ ସୈନ୍ୟ ଛତ୍ରଭଂଗ ଦେଇ ଯିଏ ଯୁଆଡ଼େ ପଳେଇଲେ। ଏଠାରୁ ବିଦ୍ରୋହ ବ୍ୟାପିଲା ଜଳନ୍ଧରକୁ ଓ ପଂଜାବର ଅନ୍ୟାନ୍ୟ ସ୍ଥାନକୁ। ଦିଲ୍ଲୀର ବିଦ୍ରୋହୀ ଜନତା ଓ ସିପାହୀଙ୍କୁ ସାହାଯ୍ୟ କରିବାକୁ ଲାହୋର, ଫିରୋଜପୁର, ଗ୍ୱାଲିଅର ପ୍ରଭୃତି ଅଂଚଳରୁ ବିଦ୍ରୋହୀମାନେ ପହଂଚିଗଲେ। ମୁକ୍ତ

ବାଦଶାହ ହାତୀରେ ନଗର ପରିକ୍ରମା କରି ଦୋକାନବଜାର ଖୋଲି ଜୀବନଯାତ୍ରାକୁ ସ୍ୱାଭାବିକ କରିବାକୁ ପରାମର୍ଶ ଦେଇଥିଲେ ।

ବିଦ୍ରୋହର ଦାବାଗ୍ନି ବ୍ୟାପିଚାଲିଲା । ୧୯୫୭ ମଇ ୩୧ ତାରିଖରେ ବନାରସରେ ବିଦ୍ରୋହାଗ୍ନି ଜଳି ଉଠିବା ସାଙ୍ଗକୁ ସେହିଦିନ ମଧ୍ୟ ରୋହିଲାଖଣ୍ଡର ବେରିଲିରେ ସିପାହୀ ଓ ଜନତା ଇଂରେଜ ଶାସନକୁ ପଙ୍ଗୁ କରିଦେଲେ ।

ବେରିଲିରୁ ମୋରଦାବାଦ ଯାଏ ଏବଂ ବନାରସରୁ ୬୦ ମାଇଲ ଦୂର ଆଜମଗଡ଼ ଓ ବନାରସଠାରୁ ୪୦ ମାଇଲ ଦୂର ଯବନପୁର ଛାଉଣୀ ପର୍ଯ୍ୟନ୍ତ ଅଂଚଳରେ ବିଦ୍ରୋହୀ ସିପାହୀ ବ୍ରିଟିଶ କର୍ତ୍ତୃତ୍ୱକ ଅଚଳ କରିଦେଲେ । ମାତ୍ର ବନାରସର ରାଜା ଓ ଦୁଇଜଣ ଧନୀବ୍ୟକ୍ତି ଗୋକୁଳାନନ୍ଦ ଦେଓ ନାରାୟଣ ସିଂହ ଇଂରେଜମାନଙ୍କୁ ସହାୟତା କରିଥିଲେ । ବନାରସରୁ ବିଜୟ ଉଲ୍ଲାସରେ ସିପାହୀମାନେ ଏଲ୍ଲାବାଦ ଅଭିମୁଖେ ଯାତ୍ରା କଲେ । ସତୁରି ମାଇଲ ଦୂର ଲକ୍ଷ୍ନୌରେ ପହଂଚି ବିଦ୍ରୋହୀମାନେ ଜେଲ ଭାଂଗିଦେଲେ । ସବୁ ବ୍ରିଟିଶ ବିଚରାଳୟରେ ନିଆଁ ଲଗାଇ ଦିଆଗଲା । ୧୮୫୭ ଜୁନ ମାସରେ ଆହ୍ଲାବାଦ ଦୁର୍ଗ ଉପରେ ଓ ଇଂରେଜମାନଙ୍କ ଅନ୍ୟାନ୍ୟ କେନ୍ଦ୍ରରେ ଆକ୍ରମଣ ଓ ପ୍ରତିଆକ୍ରମଣମୂଳକ ସଂଘର୍ଷ ଲାଗି ରହିଥିଲା । କାନପୁରରେ ମଧ୍ୟ ସେହି ଜୁନ ମାସରେ ବିଦ୍ରୋହ ବ୍ୟାପିଯାଇଥିଲା । ବ୍ରିଟିଶ ବାହିନୀ ଓ ନାନା ସାହେବଙ୍କ ସିପାହୀଙ୍କ ମଧ୍ୟରେ ଘମାଘୋଟ ଲଢେଇ ହୋଇଥିଲା । ନାନା ସାହେବଙ୍କ ପାଖରେ ୩ହଜାର ସିପାହୀ ଅସ୍ତ୍ରଶସ୍ତ୍ର ସଜ୍ଜିତ ହୋଇ ରହିଥାନ୍ତି । ତାନ୍ତ୍ୟା ଟୋପେ ତାଙ୍କ ଭାଇ ରାଓ ସାହେବ ଓ ବିଶ୍ୱସ୍ତ ଅଜିମୁଲ୍ଲାଙ୍କୁ ଘେନି ନାନା ସାହେବ ୧୮୫୭ ଜୁନ ୬ରୁ ୯ଯାଏ ପ୍ରବଳ ଯୁଦ୍ଧ ଚଳେଇଥିଲେ ।

ବ୍ରିଟିଶ ପକ୍ଷର ପ୍ରବଳ ପ୍ରତିରୋଧ ସମ୍ଭାଳି ହେଲାନି । ନାନା ସାହେବ ଆତ୍ମସମର୍ପଣ କରିବେ ବୋଲି ଏକ ଚତୁର ଚାଲ ଖେଳି, ତାଙ୍କର ସୈନ୍ୟସାମନ୍ତ, ଧନରତ୍ନ ଧରି ନେପାଳ ଚାଲିଗଲେ । ମାତ୍ର ମେଲେରିଆରେ ସେ ମୃତ୍ୟୁବରଣ କଲେ । କାନପୁର ଯୁଦ୍ଧ ପରେ ନାନା ସାହେବଙ୍କ ବିଶିଷ୍ଟ ସହଯୋଗୀ ତାନ୍ତ୍ୟା ଟୋପେ ଖସିଯାଇ ଝାନସୀ ରାଣୀଙ୍କ ସଂଗରେ ମିଶି ଯୁଦ୍ଧ ଚଳେଇଲେ ।

ମଇ ୩୦ ତାରିଖରେ ଅବଧର ରାଜଧାନୀ ଲକ୍ଷ୍ନୌରେ ଖୋଲାଖୋଲି ବିଦ୍ରୋହାଗ୍ନି ଜଳି ଉଠିଲା । ଲକ୍ଷ୍ନୌ ନିକଟ ସୀତାପୁର ସହରରେ ମଧ୍ୟ ବ୍ରିଟିଶ ସରକାରଙ୍କ ଅଫିସ, ବାସଭବନକୁ ପୋଡି ପାଉଁଶ କରିଦିଆଗଲା । ଲକ୍ଷ୍ନୌ ସନ୍ନିକଟ ଫୈଜାବାଦରେ ମଇ ୨୭ରୁ ବିଦ୍ରୋହ ଆରମ୍ଭ ହୋଇଗଲା ଓ ଲକ୍ଷ୍ନୌର ଆଖପାଖ ଜିଲ୍ଲା ବାରବେଙ୍ଗଚ, ସିକୋରା, ଗୋଣ୍ଡା, ମେଲାପୁରକୁ ସିପାହୀମାନେ ସ୍ୱାଧୀନ କଲେ । ମୌଲବୀ ଅହମ୍ମଦଶାହାଙ୍କୁ ବିଦ୍ରୋହୀମାନେ ସର୍ବମାନ୍ୟ ନେତାରୂପେ ପାଇଥିଲେ । ଲକ୍ଷ୍ନୌ ପୁନଃଦଖଲ କଲାବେଳେ ଜନପ୍ରିୟ ମୌଲବୀ ଅହମ୍ମଦ ଶାହାଙ୍କୁ ଗିରଫ କରି ଫାଶି ହୁକୁମ ହେଲା । ବନ୍ଦୀଶାଳାରୁ ବିଦ୍ରୋହୀମାନେ ପ୍ରିୟ ମୌଲବୀଙ୍କୁ ମୁକ୍ତ

କରି ଆଣିଲେ । ଆକ୍ରମଣବେଳେ ବ୍ରିଟିଶ ତାଙ୍କୁ ଧରିଆଣି ତାଙ୍କ ମୁଣ୍ଡକୁ ଗଣ୍ଡିରୁ କାଟି ଦେଇ ବ୍ରିଟିଶ କର୍ତ୍ତୃପକ୍ଷଙ୍କୁ ଉପହାର ଦିଆଯାଇଥିଲା ।

୧୮୫୭ ମଇ ୨୩ରେ ଝାନସୀ ରାଣୀଙ୍କ ଦୁର୍ଗରୁ ବିଦ୍ରୋହର ଝଣ୍ଡା ଉଡିଲା। ଲକ୍ଷ୍ମୀବାଈଙ୍କୁ ବ୍ୟାପକ ଭାବରେ ପ୍ରଜାକୁଳ ଓ ବୁନ୍ଦେଲଖଣ୍ଡର ସର୍ଦ୍ଦାରମାନେ ଓ କାନପୁର ଶାହାଗଡର ରାଜା ଓ ରାଜପୁତ୍ ପ୍ରମୁଖ ସାହାଯ୍ୟ ଯୋଗଇ ଦେଲେ । ଜୁନ ୪ରୁ ସଶସ୍ତ୍ର ଯୁଦ୍ଧ ଆରମ୍ଭ ହୋଇଗଲା । ଅପୂର୍ବ ବୀରତ୍ୱର ସହ ଅନେକ ସ୍ଥାନରେ ଯୁଦ୍ଧ କରି ଅନେକ ଜାଗାରେ ବ୍ରିଟିଶ ବାହିନୀକୁ ପଛଘୁଂଚା ଦେବାକୁ ଲକ୍ଷ୍ମୀବାଈ ବାଧ କରିଥିଲେ । ଶତ୍ରୁର ତରବାରୀ ତାଙ୍କର ଆଖି ଓ ମୁଣ୍ଡରୁ କିଛି ଅଂଶ କାଟିଦେଲା ଓ ଛାତିରେ ତରବାରୀ ଭୂଷା ସତ୍ତ୍ୱେ ସେ ରକ୍ତାକ୍ତ ଅବସ୍ଥାରେ ଆକ୍ରମଣ ଅବ୍ୟାହତ ରଖିଲେ । ଶେଷରେ ଘୋଡ଼ା ଉପରୁ ଭୂତଳରେ ଲୋଟିପଡିଲେ । ୧୮୫୮ ଜୁନ ୧୭ରେ ଲକ୍ଷ୍ମୀବାଈ ଶହୀଦ ହୋଇଗଲେ । ତାଙ୍କ ପରେ ନାନା ସାହେବଙ୍କ ବିଶ୍ୱସ୍ତ ବୀର ଯୋଦ୍ଧା ତାନ୍ତିଆ ଟୋପେ ବ୍ରିଟିଶ ବାହିନୀର ମୁକାବିଲା କଲେ । ସମରକ୍ଷେତ୍ର ବ୍ୟାପିଗଲା ସୁଦୂର ଭରତପୁର ଓ ନର୍ବଦା ତଟ ଚମ୍ବଲ ଉପତ୍ୟକାକୁ ।

ଅସୀମ ବୀରତ୍ୱ ସହକାରେ ତାନ୍ତ୍ୟା ଟୋପେ ବ୍ରିଟିଶ ବାହିନୀର ମୁକାବିଲା କରିବାବେଳେ ତାଙ୍କୁ ବନ୍ଦୀ କରି ନିଆଗଲା ଏବଂ ତାଙ୍କୁ ଫାଶିରେ ଲଟକାଇ ଦିଆଗଲା । ଗରିଲା ଯୁଦ୍ଧ କୌଶଳରେ ଧୂରନ୍ଧର ବିହାରରେ ଶାହାବାଦର କୁନୱାର ସିଂହ ଅଜମଗଡ, ଜଗଦୀଶପୁର, ଘାଜିପୁର ପ୍ରଭୃତି ଇଲାକାରେ ବ୍ରିଟିଶ ବାହିନୀ ସହିତ ଅଭୂତପୂର୍ବ ଲଢେଇ କରିଥିଲେ । ବହୁ ରଣକ୍ଷେତ୍ରରେ ସେ ଇଂରେଜମାନଙ୍କୁ ପରାସ୍ତ କରିଥିଲେ । ତାଙ୍କର ନିର୍ଦ୍ଦେଶ ଥିଲା ଯେ ବ୍ରିଟିଶ ବାହିନୀରେ ଥିବା ଶିଖ ସୈନ୍ୟମାନଙ୍କୁ ଯେତେଦୂର ସମ୍ଭବ ଛାଡି କେବଳ ଫିରିଙ୍ଗିଙ୍କ ଉପରେ ଆକ୍ରମଣ କର। ସେତେବେଳେ ଶିଖ ସୈନ୍ୟମାନେ ବ୍ରିଟିଶ ବାହିନୀ ସହିତ ସହଯୋଗ କରିଥିଲେ। ଭାରତୀୟମାନଙ୍କୁ ଆହତ ନକରିବାକୁ ଥିଲା ତାଙ୍କର ନିର୍ଦ୍ଦେଶ। ବହୁ ସଂଗ୍ରାମରେ ବିଜୟୀ କୁୱାରସିଂହ ଛିନ୍ନ ବାହୁରେ ଯନ୍ତ୍ରଣା ଭୋଗୁଥିବାବେଳେ ନିଜକୁ ସ୍ୱାଧୀନ ଘୋଷଣା କରି ସିଂହାସନରେ ବସିଲେ ଓ ଟଳିପଡିଲେ ।

ତାଙ୍କ ପରେ ତାଙ୍କ ଭାଇ ଅମର ସିଂହ ବହୁଦିନ ଧରି ସିପାହୀମାନଙ୍କ ନେତୃତ୍ୱ ଗ୍ରହଣ କରି ସଶସ୍ତ୍ର ସଂଗ୍ରାମ ଅବ୍ୟାହତ ରଖିଥିଲେ । ହାତୀ ଉପରେ ବସି ଯୁଦ୍ଧ କରୁଥିବାବେଳେ ଆଘାତ ପାଇ ମୃତ ହାତୀ ପିଠିରୁ ଖସିଯାଇ ସେ ବିଦ୍ରୋହ ଜାରି ରଖିଲେ । ପରେ ତାଙ୍କର ପତ୍ତା ମିଳି ନଥିଲା । ଦେଶପ୍ରେମର ଆଉ ଏକ ଦୁଃଖାନ୍ତ ଦୃଷ୍ଟାନ୍ତ ଉଲ୍ଲେଖନୀୟ । ଜଗଦୀଶପୁର ବ୍ରିଟିଶ ହାତ୍‌ରେ ପୁନଷ୍ଚ ପଡିବାର ଆଶଙ୍କାରେ କୁନଓ୍ୟାର ସିଂହଙ୍କ ପରିବାରର ଦେଢଶହ ମହିଳା ବ୍ରିଟିଶ ହାତରୁ ରକ୍ଷା ପାଇବା ପାଇଁ କମାଣ ଆଗରେ ଛିଡା ହୋଇପ୍ରାଣ ବିସର୍ଜନ କରିଥିଲେ ।

**ଓଡିଶାରେ ପ୍ରତିଧ୍ୱନି :**

ବୀର ସୁରେନ୍ଦ୍ର ସାଏ, ଲୋକନାଥ ଗଡତିଆ, ପୁରୀ ପଣ୍ଡା ଚାଖି ଖୁଣ୍ଟିଆଙ୍କ ନାମ ୧୮୫୭ ବିଦ୍ରୋହ ସହିତ ଜଡିତ।

ସଂବଲପୁରର ରାଜା ଅପୁତ୍ରିକ ହେବାପରେ ସୁରେନ୍ଦ୍ର ସାଏ ଗାଦୀର ଦାବୀଦାର ଥିଲେ। ମାତ୍ର ବ୍ରିଟିଶ ଚକ୍ରାନ୍ତ ଯୋଗୁଁ ସେଥିରୁ ସେ ବଂଚିତ ହେବାରୁ ସଂବଲପୁରକୁ ବ୍ରିଟିଶ କର୍ତ୍ତୃପକ୍ଷରୁ ମୁକ୍ତ କରିବାର ସଂକଳ୍ପ ନେଇ ବିଦ୍ରୋହ ଆରମ୍ଭ କଲେ। ୧୮୪୦ରେ ତାଙ୍କୁ, ତାଙ୍କ ଭାଇ ଉଦନ୍ତ ଓ ବଡବାପା ବଳରାମ ସିଂହଙ୍କୁ ଧରି ନେଇ ହଜାରିବାଗ ଜେଲରେ ରଖାଯାଇଥିଲା। ୧୮୫୭ ବିଦ୍ରୋହ ଆରମ୍ଭରେ ବିଦ୍ରୋହୀମାନେ ଜେଲ ଭାଂଗି ସୁରେନ୍ଦ୍ର ସାଏ ପ୍ରମୁଖଙ୍କୁ ମୁକ୍ତ କରିଦେଲେ। ସୁରେନ୍ଦ୍ର ସାଏ ଜେଲରୁ ଆସି ଗଣ୍ଡ, ବିଂଝାର ଓ ଅନ୍ୟମାନଙ୍କ ସହଯୋଗରେ ମାସ ମାସ କାଳ ବ୍ରିଟିଶ ବିରୁଦ୍ଧରେ ଗରିଲା ସମର ଚଳାଇଲେ। ମାତ୍ର ପରିଶେଷରେ ସେ ଆତ୍ମ ସମର୍ପଣ କରିବାକୁ ବାଧ୍ୟ ହେଲେ। ତାଙ୍କୁ, ତାଙ୍କ ପୁଅ ମିତ୍ରଭାନୁ, ଭାଇ ଉଦୟସିଂହ, ଅନ୍ୟମାନଙ୍କୁ ଆଜୀବନ କାରାଦଣ୍ଡ ଦିଆଗଲା। ୧୮୮୪ରେ ଆଜମଗଡ ବନ୍ଦୀଶାଳାରେ ବୀର ସୁରେନ୍ଦ୍ର ସାଏ ଶେଷ ନିଃଶ୍ୱାସ ଛାଡିଲେ। ଏହି ମହା ବିଦ୍ରୋହରେ ଓଡିଶାର ଆଉ ଏକ ପ୍ରାତଃ ସ୍ମରଣୀୟ ବୀର ଥିଲେ, ପୁରୀର ଚାଖି ଖୁଣ୍ଟିଆ ବା ଚନ୍ଦନ ହଜୁରୀ। ପୁରୀ ପଣ୍ଡା ଚନ୍ଦନ ହଜୁରୀ ବିଦ୍ରୋହରତ ବିଭିନ୍ନ ଛାଉଣୀରେ ବିପ୍ଳବୀମାନଙ୍କ ସହିତ ଯୋଗାଯୋଗ ପ୍ରତିଷ୍ଠାରେ ଛଦ୍ମବେଶରେ ସାହସିକ ଭୂମିକା ନେଇଥିଲେ। ସେତେବେଳେ ସେ ସିପାହୀ ପଣ୍ଡା ନାମରେ ଖ୍ୟାତ ଥିଲେ। ଲକ୍ଷ୍ନୌ ଓ ଗୟାର ସୈନ୍ୟ ଶିବିରମାନଙ୍କରେ ପହଞ୍ଚିଥିଲେ। ତାଙ୍କୁ ବିହାରରେ ବନ୍ଦୀ କରାଗଲା ଓ ପୁରୀରେ ତାଙ୍କ ସଂପତ୍ତି ବାଜ୍ୟାପ୍ତ କରାଗଲା। ପରେ ସଂପତ୍ତି ଫେରସ୍ତ ମିଳିଥିଲା।

ଓଡ଼ିଶାର ଚକ୍ରଧରପୁର ପୋଡାହାଟର ରାଜା ଅଜୟ ସିଂହ ମଧ୍ୟ ବିଦ୍ରୋହର ଧ୍ୱଜା ଉଡାଇଥିଲେ। ମାତ୍ର ଅସମ ସମରରେ ସିଂହଙ୍କ ବିଦ୍ରୋହୀ ସେନାଙ୍କର ପରାଜୟ ହେଲା। ଅଜୟ ସିଂହଙ୍କ ସେନାପତି ଜଗୁଙ୍କୁ ଫାଶି ଦିଆଗଲା। ବ୍ରିଟିଶ ପକ୍ଷକୁ ଷଢେଇକଲା-ଖରସୁଆଁର ରାଜା ସାହାଯ୍ୟ କରିଥିବାରୁ ପୋଡାହାଟ ରାଜ୍ୟର କେତେକ ଅଂଶ ତାଙ୍କୁ ଉପହାର ଦିଆଗଲା। ଖୋର୍ଦ୍ଧା ପାଇକ ବିଦ୍ରୋହରେ ଯେପରି ବିଶ୍ୱାସଘାତକମାନଙ୍କୁ ନିମକ ହାରାମ ଜାଗିରୀ ଦିଆଯାଇଥିଲା ତାହାର ସର୍ବତ୍ର ପୁନରାବୃତ୍ତି କରିଥିଲା କଂପାନୀ ସରକାର।

ସେହି ୧୮୫୭ରେ ମଧ୍ୟ ସିପାହୀ ବିଦ୍ରୋହର ପତାକା ଆସାମରେ ଉଡିଥିଲା। ଏହି ବିଦ୍ରୋହର ନେତା ଗୋମଧର ଆସାମ ରାଜପୁତ୍ର କୁନଓ୍ୱାର, ଫରମୁଦ ଅଲି, ହିସୁରାମ, ପିଓଲି ଫୁଂକନ, ପିଓଲି ବରୁଆ। ଏମିତି ଅନେକଙ୍କୁ ପ୍ରାଣ ଦେବାକୁ ହୋଇଥିଲା।

**ପରାଜୟର କାରଣ ଓ ନରସଂହାର, ଦମନର ବିଭୀଷିକା:**

୧୮୫୭ର ରୋମାଞ୍ଚକ ଘଟଣାବଳୀର ଇତିହାସ ସୁଦୀର୍ଘ। ଏହାର ପରାଜୟର କେତୋଟି ମୁଖ୍ୟ କାରଣ ରହିଛି। ବିଦ୍ରୋହ, ହାତାହାତି ସଂଘର୍ଷରେ ଦେଶପ୍ରେମୀମାନଙ୍କ ହାତରେ ଯଥେଷ୍ଟ

ଯୁଦ୍ଧାସ୍ତ୍ର ନଥିଲା । ବ୍ରିଟିଶ ଛାଉଣୀଗୁଡିକରୁ ଯେତିକି ଅସ୍ତ୍ରଶସ୍ତ୍ର ବିଦ୍ରୋହୀମାନେ ଲୁଣ୍ଠନ କରି ଆଣୁଥିଲେ, ତାହାହିଁ ସେମାନଙ୍କର ଥିଲା ପ୍ରଧାନ ଆୟୁଧ । ମାତ୍ର ତୋପ କମାଣ, ଅନ୍ୟାନ୍ୟ ଯୁଦ୍ଧାସ୍ତ୍ରର ବିରାଟ ଭଣ୍ଡାରମାନ ଶତ୍ରୁ ବ୍ରିଟିଶ ହାତରେ ରହିଥିଲା ।

ଭାରତୀୟ ସିପାହୀ ଓ ବିଦ୍ରୋହୀମାନେ ଅନେକ ସମୟରେ ଖଣ୍ଡା, ତରବାରୀ, ବର୍ଚ୍ଛା, ଧନୁତୀର, କଟୁରୀ, କୁରାଢି, ଲାଠିରେ ଲଢୁଥିଲେ । ଆଉ ଏକ କାରଣ ହେଲା, ବିଦ୍ରୋହୀ ସଂଗଠନର ନେତାମାନେ ଏକ କମାଣ୍ଡ ବା ଯୁଦ୍ଧ ଚାଳନାର କେନ୍ଦ୍ରୀୟ ନେତୃତ୍ୱ ଗଠନ କରିବାରେ ଯଥାଯଥଭାବରେ ସମର୍ଥ ହେଲେ ନାହିଁ ।

ହିନ୍ଦୁ-ମୁସଲମାନ ସିପାହୀମାନଙ୍କ ମଧ୍ୟରେ ଅତୁଟ ଐକ୍ୟକୁ ବ୍ରିଟିଶ ପକ୍ଷ ଭାଂଗି ନପାରିଲେ ବି ପ୍ରତ୍ୟେକଟି ରଣକ୍ଷେତ୍ରରେ ବ୍ରିଟିଶ ପକ୍ଷର ଚରରୂପେ କେତେକ ହିନ୍ଦୁ ଓ ମୁସଲିମ ବିଶ୍ୱାସଘାତକ ଭିତିରି ସଂବାଦ ଶତ୍ରୁକୁ ପ୍ରେରଣ କରିଦେଉଥିଲେ । ପଂଜାବ ପାତିଆଲା ମହାରାଜା, ନାଭା ଓ ଝିଣ୍ଡର ରାଜା ବ୍ରିଟିଶକୁ ପ୍ରଚୁର ସୈନ୍ୟ ଓ ଅନ୍ୟାନ୍ୟ ଯୁଦ୍ଧ ସରଂଜାମ ଯୋଗାଇଦେଲେ । ତା ନ ହୋଇଥିଲେ ବ୍ରିଟିଶ ହାତରେ ଦିଲ୍ଲୀର ପତନ ସହଜ ସାଧ୍ୟ ହୋଇନଥାନ୍ତା । କାଶ୍ମୀର ମହାରଜା ଗୋଲାପ ସିଂ, ପାତିଆଲା ମହାରାଜାଙ୍କ ପ୍ରଶଂସାରେ ବ୍ରିଟିଶ କର୍ତ୍ତାମାନେ ଶତମୁଖ ହୋଇଥିଲେ । ବିଦ୍ରୋହକୁ ଦମନ କରିବାଲାଗି ଭାରତୀୟ ରାଜାମାନଙ୍କ ଏକ ଅଂଶ ରେବା, ଚିରକାରୀ, ରାମପୁର, ପାତିଆଲା, କାଶ୍ମୀର ଇତ୍ୟାଦି ଯଦି ଝଡକୁ ମଝିରେ ରୋକି ନଥାନ୍ତେ, ତେବେ ତାହା ଏକ ବିରାଟ ତରଙ୍ଗ ହୋଇ ଆମକୁ ଧୋଇ ଦେଇଥାନ୍ତା ।" କାଶ୍ମୀର ମହାରଜାଙ୍କୁ ପ୍ରଶଂସା କରି ଲରେନ୍ସ ସାହେବ ଲେଖିଥିଲେ "କୌଣସି ଅତିରଂଜନ ନ କରି କୁହାଯିବ ଯେ ପଂଜାବର ଆମର ସ୍ଥିତି ବହୁମାତ୍ରାରେ ମହାରାଜାଙ୍କ ଦୟା ଉପରେ ନିର୍ଭର କରୁଥିଲା । ଭାରତର ପରାଧୀନତା ଲାଗି ଭାରତର ରାଜନ୍ୟ ବର୍ଗ କିପରି ଦାୟୀ ସେ ସଂପର୍କରେ ୧୮୫୩ରେ କାର୍ଲମାର୍କ୍ସଙ୍କ ଏକ ଉକ୍ତି ସତ୍ୟରେ ପରିଣତ ହେଲା । ସେ ଲେଖିଥିଲେ "ସ୍ଥାନୀୟ ରାଜନ୍ୟ ବର୍ଗହିଁ ଏବର ଘୃଣିତ ବ୍ରିଟିଶ କଂପାନୀର ଦୁର୍ଗ ଏବଂ ଭାରତର ପ୍ରଗତି ପକ୍ଷରେ ସର୍ବାଧିକ ପ୍ରତିବନ୍ଧକ ।"

୧୮୫୭ ପ୍ରଥମ ସ୍ୱାଧୀନତା ସଂଗ୍ରାମ କାଳରେ ବ୍ରିଟିଶ ସୈନ୍ୟବାହିନୀରେ ଅନ୍ତର୍ଭୁକ୍ତ ଉଭୟ ହିନ୍ଦୁ-ମୁସଲମାନ ସିପାହୀମାନଙ୍କ ମଧ୍ୟରେ ଐକ୍ୟର ପ୍ରତିଫଳନ ଘଟିଥିଲା । ସେମାନେ ସଂଗ୍ରାମକୁ ସମର୍ଥନ କରି ନାନା ଉପାୟରେ ସହଯୋଗ କରୁଥିଲେ । ବ୍ରିଟିଶ ସେନାଧକ୍ଷମାନେ ଏହା ଦେଖି ବିସ୍ମିତ, ଚକିତ ଓ ଭୟଭୀତ ହୋଇପଡିଥିଲେ । ଜଣେ ସେନାଧକ୍ଷ ଲେଖିଥିଲେ "ଏଥର ଆମେ ହିନ୍ଦୁମାନଙ୍କୁ ମୁସଲମାନମାନଙ୍କ ବିରୁଦ୍ଧରେ ଏବଂ ମୁସଲମାନମାନଙ୍କୁ ହିନ୍ଦୁଙ୍କ ବିରୁଦ୍ଧରେର ଲଗେଇବାରେ ଅସମର୍ଥ ହେଲୁ ।"

ଏହି ମହାବିଦ୍ରୋହକୁ ଦମନ କରିବାକୁ ଯାଇ ବ୍ରିଟିଶ କର୍ତ୍ତୃପକ୍ଷ ଲକ୍ଷ ଲକ୍ଷ ବେସାମରିକ ନାଗରିକଙ୍କୁ ମଧ୍ୟ ହତ୍ୟା କରିଥିଲେ । ଅଯୋଧ୍ୟାରେ ହତ୍ୟା କରାଯାଇଥିବା ଦେଢଲକ୍ଷ ଲୋକଙ୍କ ମଧ୍ୟରୁ ଏକଲକ୍ଷ ବେସାମରିକ ନାଗରିକ ପୁଣି ଅଧିକ ସଂଖ୍ୟାରେ ମୁସଲମାନ ।

ଦିଲ୍ଲୀରେ ଇଂରେଜ ସୈନ୍ୟମାନେ ବାଛିବାଛି ଘରୁ ଟାଣି ଆଣି ୨୭ ହଜାର ମୁସଲମାନଙ୍କୁ ଫାଶିରେ ଟାଙ୍ଗି ଦେଲେ । ଲାଲକିଲ୍ଲା ଓ ଜୁମା ମସଜିଦ୍ ମଧ୍ୟବର୍ତ୍ତୀ ସ୍ଥାନରେ ଗୁଡିଏ ଫାଶିଖୁଣ୍ଟ ବସାଗଲା ଓ ସେଠାରେ ସହସ୍ର ସହସ୍ର ଭାରତୀୟଙ୍କୁ ଫାଶିରେ ଝୁଲାଗଲା ।

ପୁରୁଣା ଦିଲ୍ଲୀର ଶେଷଭାଗ ଅଧୁନା ନୂଆଦିଲ୍ଲୀରେ ଆରଂଗ ସ୍ଥଳ । ପାଖରେ ଫିରୋଜଶାହା କୋଟଲା ବର୍ଗ । ସେହି ସନ୍ଧିସ୍ଥଳରେ ପହଂଚିଲେ ତାକୁ କୁହାଯାଉଛି ଖୁନୀ ଦରୱାଜା । ସେହି ବିରାଟ ଫାଟକ ନିକଟରେ ତତ୍କାଳୀନ ସମ୍ରାଟ ବାହାଦୂର ଶାହା ଜାଫରଙ୍କ ପୁଅ, ନାତି, ଅତି ନିଟକ ସଂପର୍କୀୟ ପରିବାରଭୁକ୍ତ ଦୁଇ ଶତାଧିକ ଲୋକଙ୍କୁ ଗୁଳି କରି ମାରିଦିଆଗଲା ।

ବ୍ରିଟିଶ ସୈନ୍ୟମାନେ ବିଦ୍ରୋହାଗ୍ନି ଜଳିଥିବା ସହର ଓ ଗ୍ରାମମାନଙ୍କ ଉପକଂଠରେ ଏକ ବିଭତ୍ସ ନରସଂହାରର ଅଭିଯାନ ଚଳେଇଥିଲେ । ସହର ଓ ଗାଁପାଖ ବରଗଛ, ତେନ୍ତୁଳି ଗଛ, ଅଶ୍ୱତ୍ଥ ଗଛରେ ବିଦ୍ରୋହୀ ଜନତା ଓ ଭାରତୀୟ ସିପାହୀଙ୍କ ବେକରେ ଦଉଡି ଲଗାଇ ଲଟକେଇ ଦେଇ ହତ୍ୟା କରିଥିଲେ ।

ଦିଲ୍ଲୀ, ଜଗଦୀଶପୁର ପ୍ରଭୃତି ସ୍ଥାନରେ ମହା ବିପ୍ଳବକୁ ଦମନ କରିବା କାଳରେ ମୁସଲମାନମାନଙ୍କୁ ମନେଇ ନେବା ଲାଗି ହିନ୍ଦୁ ମନ୍ଦିରଗୁଡିକୁ ଓ ହିନ୍ଦୁମାନଙ୍କୁ ନିଜପଟକୁ ନେବା ଲାଗି ମସଜିଦଗୁଡିକୁ ଧୂଳିସାତ କରିବାର ହୀନ କୌଶଳ ଅବଲମ୍ବନ କରାଯାଇଥିଲା । ସମ୍ରାଟ ବାହାଦୂର ଶାହା ଜାଫରଙ୍କୁ ଓ ତାଙ୍କ ପତ୍ନୀ ଜିନ୍ନତ ମହଲଙ୍କୁ ଲାଲକିଲ୍ଲାର ଗୋଟିଏ ଛୋଟିଆ, ଅନ୍ଧାରୁଆ ବଖରାରେ ବନ୍ଦୀ ରଖାଗଲା । ବିଛଣା ବୋଇଲେ ଖଣ୍ଡେ ଦଉଡିଆ ଖଟ । ଖାଇବାକୁ ଦୈନିକ ଦୁଇଅଣା (ଆଜିର ମୁଦ୍ରାରେ ୧୨ ପଇସା) ମଂଜୁର କରାଗଲା । ଅଥଚ ମୋଗଲ ସମ୍ରାଟ ବଂଗ, ବିହାର ଓଡିଶାର ଦେବାନୀ କଂପାନୀକୁ ଦେଲାପରେ ଚୁକ୍ତି ଅନୁସାରେ ସମ୍ରାଟ କଂପାନୀଠାରୁ ବର୍ଷକୁ ୨୬ଲକ୍ଷ ଟଙ୍କା ସଲାମି ପାଉଥିଲେ । ଭାରତର "ସମ୍ରାଟ" କିପରି ବ୍ରିଟିଶ ସାମ୍ରାଜ୍ୟବାଦର କିଙ୍କର, ଦାସାନୁଦାସ ତାହାହିଁ ଲୋକେ ଦେଖନ୍ତୁ, ସେଥିଲାଗି ତାଙ୍କୁ ନାନା ଅପମାନ ଲାଞ୍ଛନା ଦିଆଯାଉଥିଲା ।

ସଂଗ୍ରାମକୁ ଦମନ କଲାପରେ ବାହାଦୂର ଶାହା ଜାଫରଙ୍କୁ ବ୍ରିଟିଶ ସାମ୍ରାଜ୍ୟର ଆଉ ଏକ ଭୂଖଣ୍ଡ ବର୍ମାର ରେଙ୍ଗୁନ ଜେଲରେ ଏକ ନିର୍ଜନ କୋଠରୀରେ ଆବଦ୍ଧ କରାଗଲା । ସେହି ନିର୍ଜନ କାରାବାସରେ କବିପ୍ରାଣ ବାହାଦୂର ଶାହା ଜାଫର କବିତା ଲେଖି ଜୀବନ କଟାଉଥିଲେ । ୧୮୬୨ରେ ସେଇ ବନ୍ଦୀଶାଳାରେ ତାଙ୍କର ମୃତ୍ୟୁ ହେଲା ।



# ବ୍ରିଟିଶ ବଣିକପୁଂଜି ଦାସତ୍ୱରୁ ଶିଳ୍ପପୁଂଜି ଅର୍ଥପୁଂଜିର ରାହୁଗ୍ରାସ

"ଆପଣଙ୍କ ଅଧସ୍ତନମାନଙ୍କୁ ବତେଇ ଦିଅ ଯେ ଗୋଟାଏ ନିକୃଷ୍ଟ ଜାତିକୁ (ଇନଫିରିଅର ରେସ) ଆମେ ବ୍ରିଟିଶ ଭଦ୍ରଲୋକମାନେ ଶାସନ କରିବା କ୍ଷେତ୍ରରେ ଚମତ୍କାର କାର୍ଯ୍ୟ କରିଚାଲିଛୁ।"

ପ୍ରଥମ ସ୍ୱାଧୀନତା ସମରକୁ ଦମନ କରାଯାଇଥାଏ। ୧୮୭୦ ମସିହାରେ ତତ୍କାଳୀନ ବ୍ରିଟିଶ ଭାଇସରାୟ ଏହି ମର୍ମରେ ଏକ ବାର୍ତ୍ତା ପଠାଇଥିଲେ ପଂଜାବର ଲେଫ୍ଟନାଣ୍ଟ ଗଭର୍ଣ୍ଣରଙ୍କୁ। ସେହି ନିକୃଷ୍ଟ ଜାତିକୁ ବ୍ରିଟିଶ ବଣିକ ପୁଂଜି ଦାସାନୁଦସ କରିଦେବାପରେ ବ୍ରିଟିଶ ଶିଳ୍ପପୁଂଜି ଓ ଅର୍ଥପୁଂଜିର ସର୍ବଗ୍ରାସୀ ଥାବା ଭାରତକୁ ଚାପି ଅଣନିଃଶ୍ୱାସୀ କରିଦେଲା।

ପଞ୍ଚ ମହାଦେଶରେ ବିସ୍ତାରିତ ସମସ୍ତ ବ୍ରିଟିଶ ଉପନିବେଶ ଓ ପରାଧୀନ ଦେଶ ମଧ୍ୟରେ ବ୍ରିଟିଶ ସାମ୍ରାଜ୍ୟର ଅମୂଲ୍ୟ ମଣିମାଣିକ୍ୟ ଭାରତବର୍ଷ। ତାହାର ଅସରନ୍ତି ସଂପଦକୁ ଲୁଣ୍ଠନ କରି ବ୍ରିଟିଶ ବଣିକ ପୁଂଜି ସ୍ୱଦେଶରେ ଶିଳ୍ପପୁଂଜିର ବିକାଶ ଘଟେଇଲା। ଭାରତରୁ ଲୁଣ୍ଠିତ ଧନରେ ଶିଳ୍ପ ବିପ୍ଳବ ହୋଇ ବିଲାତରେ ଏକ ଆଗୁଆ ଅର୍ଥନୈତିକ ଶ୍ରେଣୀର ଜନ୍ମ ହେଲା। ତାହା ହେଲା ବୁର୍ଜୁୟା ପୁଂଜିପତି ଶ୍ରେଣୀ। ଭାରତକୁ ଲୁଣ୍ଠନ କରିବା ଲାଗି ପୁରୁଣା ବଣିକ ପୁଂଜି ଓ ନୂଆ ଶିଳ୍ପପୁଂଜି ମଧ୍ୟରେ ବେଶ ସଂଘର୍ଷ ଓ ସଂଘାତ ଘଟିଲା। ଶିଳ୍ପ ବିଜ୍ଞାନର ଉପଯୋଗରେ ଏହି ନୂତନ ଶିଳ୍ପପୁଂଜିର ବୁର୍ଜୁୟା ଶ୍ରେଣୀ ରାଜନୈତିକ ଓ ସାମାଜିକ ଭାବରେ ପ୍ରଭାବଶାଳୀ ହେଲେ। ଫଳରେ ୧୮୧୩ ମସିହାରେ ଭାରତରେ ଇଷ୍ଟଇଣ୍ଡିଆ କଂପାନୀ ଉପଭୋଗ କରୁଥିବା ଏକଚାଟିଆ ବାଣିଜ୍ୟ ଅଧିକାରର ସମାପ୍ତି ଘଟିଲା। ବ୍ରିଟିଶ ପାର୍ଲାମେଣ୍ଟରେ ଭାରତରେ ବ୍ରିଟିଶ ଶିଳ୍ପପୁଂଜିର ପ୍ରବେଶକୁ ଅନୁମତି ମିଳିଗଲା। ଇଷ୍ଟଇଣ୍ଡିଆ କଂପାନୀ ସାଂଗକୁ କ୍ରମେ କ୍ରମେ ବ୍ରିଟିଶ ଶିଳ୍ପୋଦ୍ୟୋଗୀମାନେ ସେମାନଙ୍କ ଲୁଣ୍ଠନକୁ ଅତି ଚତୁରତା ସହିତ ଭାରତବର୍ଷ ଉପରେ ଲଦିଦେଲେ।

ଇଷ୍ଟଇଣ୍ଡିଆ କଂପାନୀର ଏକଚାଟିଆ ରାଜୁତି କାଳରେ ଚାଲିଥିବା ପ୍ରକ୍ରିୟା ଓଲଟରେ ଚାଲିଲା। ଭାରତରୁ ବିଲାତକୁ ରପ୍ତାନୀ କରାଯାଉଥିବା ଢାକା, ମୁର୍ଶିଦାବାଦ, ସୁରାଟ ଓ ଅନ୍ୟାନ୍ୟ ଅଂଚଳରୁ ଅତି ମନୋରମ, ସୂକ୍ଷ୍ମ ବସ୍ତ୍ର କପଡା, ପଶମକୁ ଓ ଭାରତର ଧାତୁ, ଜଙ୍ଗଲ, ଜଳ

ସଂପଦରୁ ଉତ୍ପନ୍ନ ପଦାର୍ଥ ଗୁଡ଼ିକୁ ବିଲାତର ନୂଆ କଳକାରଖାନାରେ ଉପଯୋଗ କରାଗଲା । ମେଞ୍ଚେଷ୍ଟରର କପଡା ବସ୍ତ୍ର ଓ ଲାଙ୍କାସାୟାରର ଧାତୁଜାତ ଦ୍ରବ୍ୟର ଓଲଟି ଚାଲାଣ ଚାଲିଲା ଭାରତକୁ । ଏହି ଓଲଟ କାରବାରରେ ଭାରତବାସୀଙ୍କ ଉପରେ ଲୁଣ୍ଠନକୁ ଅଧିକ ତୀବ୍ର ଓ ଅଦୃଶ୍ୟ କରି ବିଲାତ ଶିଳ୍ପ ପୁଂଜି ଫୁଲିଫୁଲି ଉଠିଲା । ସମଗ୍ର ଭାରତର ଭବିଷ୍ୟତର ବିଶାଳ ବଜାରକୁ ଆଖି ଆଗରେ ରଖି ବିଲାତୀ ଶିଳ୍ପପୁଂଜି ସ୍ୱଦେଶରୁ ଭାରତକୁ ମଧ୍ୟ ପ୍ରବେଶ କଲା । ବିଲାତର ଏହି ଶିଳ୍ପପୁଂଜି କେବଳ ରେଳବାଇ ଭଳି କେତେକ ଶିଳ୍ପକ୍ଷେତ୍ରରେ ନୁହେଁ, ଭାରତର କୃଷିକ୍ଷେତ୍ରକୁ ପ୍ରସାରିତ ହେଲା । ନୂତନ ବ୍ରିଟିଶ ବୁର୍ଜୁୟା-ପୁଂଜିପତି ଶ୍ରେଣୀ ଭାରତରେ ଅସଂଖ୍ୟ ଚାହା ବଗିଚା, ରବର ବଗିଚା, ଝୋଟ ଉତ୍ପାଦନ କ୍ଷେତ୍ର, କଫି ବଗିଚାମାନ ପ୍ରତିଷ୍ଠା କଲେ ।

ଏପରି ବଗିଚାଗୁଡ଼ିକର ପ୍ରତିଷ୍ଠା ହେତୁ ଲକ୍ଷ ଲକ୍ଷ ଚାଷୀ ଜମିରୁ ଉଚ୍ଛେଦ ହେଲେ ଏବଂ କୌଳିକ କାମଧନ୍ଦା ହରେଇଲେ ।

ଆସାମ, ଦାର୍ଜିଲିଂ, ଉତ୍ତର ବଂଗର ସହସ୍ର ସହସ୍ର ନୁହଁ ଲକ୍ଷ ଲକ୍ଷ ଏକରର ବାଘ, ଭାଲୁ, ସାପ ବାସ କରୁଥିବା ଜମିକୁ ଚାହା ବଗିଚାରେ ପରିଣତ କରିବାକୁ ପଡିଲା । ବ୍ରିଟିଶ ସରକାରୀ କଳ, ପୁଲିସ ଓ ଦଲାଲ ଲଗେଇ ଓଡିଶା, ବିହାର, ମଧ୍ୟପ୍ରଦେଶର ଛତିଶଗଡ ଅଂଚଳରୁ ଜବରଦସ୍ତି କରି ଏବଂ ପ୍ରଲୋଭନ ଦେଖାଇ ଅର୍ଦ୍ଧଭୁକ, ଭୂମିବାଡ଼ି ହରେଇଥିବା ଆଦିବାସୀ, ସମାଜର ନିମ୍ନସ୍ତରରେ ଥିବା ଲୋକଙ୍କୁ ନେଇ ସେସବୁ ବଗିଚାରେ ବନ୍ଧକ ରଖି ବଗିଚା ତିଆରି କରାଗଲା । ଯେଉଁମାନଙ୍କୁ କଫି, ରବର, ଚା ଚାଷ ଲାଗି ଧରି ନିଆଗଲା, ସେମାନେ ଜୀବନରେ ଆଉ ନିଜଗାଁ, ନିଜ ପରିବାରକୁ ଫେରିଯିବାର ବାଟ ପାଇଲେନି । କେହି ଚେଷ୍ଟା କଲେ ଜେଲ, ଗୁଳି । ବ୍ରିଟିଶ ଶିଳ୍ପପୁଂଜି ଏଣିକି ତାର ନିଜ ସ୍ୱାର୍ଥରେ ଭାରତରେ ଝୋଟକଳ, ରବରକଳ, ଚା'ପ୍ରେସେସିଂ ସଂସ୍ଥାମାନ ବସେଇବା ଆରମ୍ଭ କରିଦେଲା ।

ଏହି ଶିଳ୍ପପୁଂଜିର ବିସ୍ତାର ଭାରତବର୍ଷରେ ବ୍ରିଟିଶ ଅର୍ଥପୁଂଜିର ପ୍ରବେଶ ପଥକୁ ଖୋଲିଦେଲା । ଏହି ପ୍ରକ୍ରିୟାରେ ଭାରତର ବ୍ୟାଙ୍କ, ଜୀବନବୀମା, ଦେଣନେଣ କାରବାର, ବାଣିଜ୍ୟ, ମୁଦ୍ରା ବିନିମୟ, ସବୁଥିରେ ବ୍ରିଟିଶ ଶିଳ୍ପ ପୁଂଜି ପ୍ରବେଶ କଲା । ବିଲାତରେ ବିକାଶପ୍ରାପ୍ତ ପୁଂଜିବାଦ, ଅନ୍ୟସବୁ ସେ କାଳର ଶିଳ୍ପୋଦ୍ୟୋଗୀ ପୁଂଜିବାଦୀ ଦେଶ ପରି ସାମ୍ରାଜ୍ୟବାଦୀ ସ୍ତରରେ ଅବତୀର୍ଣ୍ଣ ହେଲା । ଖଣିଜ, ବନଜାତ, ଜଳଜାତ ପଦାର୍ଥରେ ବିଲାତରେ ପ୍ରସ୍ତୁତ ପଣ୍ୟଗୁଡ଼ିକ ଲାଗି ଭାରତର ବଜାରକୁ ବିଲାତର ଶିଳ୍ପପୁଂଜି ଦଖଲ କରିଚାଲିଲା ।

ଏହି ଶିଳ୍ପପୁଂଜି ଓ ଅର୍ଥପୁଂଜିର ପ୍ରବେଶ ଫଳରେ ଭାରତରେ ବ୍ରିଟିଶ ଲୁଣ୍ଠନର ମାତ୍ରା କିଭଳି ଅସମ୍ଭବ ଭାବରେ ପ୍ରତିନିୟତ, ପ୍ରତିମୁହୂର୍ତ୍ତରେ ସ୍ୱାଧୀନତା ପ୍ରାପ୍ତି ଯାଏ ବଢ଼ି ଚାଲିଥିଲା, ତାହାର ଶତଶତ ଦୃଷ୍ଟାନ୍ତ ମଧ୍ୟରୁ ଗୋଟିଏ ନଜୀର ଧରାଯାଉ ।

ପ୍ରାୟ ଶହେବର୍ଷ ଅର୍ଥାତ୍ ୧୭୬୫ରୁ ୧୮୫୮ ଯାଏ ଇଷ୍ଟଇଣ୍ଡିଆ କଂପାନୀ ଭାରତରୁ ୧୫କୋଟି ପାଉଣ୍ଡ ଲୁଣ୍ଠନ କରିଥିଲା । ମାତ୍ର ବ୍ରିଟିଶ ଶିଳ୍ପ ପୁଂଜି ଓ ଅର୍ଥପୁଂଜିର ପ୍ରବେଶର ଦୁଇ

ଦଶନ୍ଧି ମଧ୍ୟରେ ପ୍ରତ୍ୟେକଟି ବର୍ଷରେ ଭାରତକୁ ଲୁଣ୍ଠନ କରିବାର ମାତ୍ରା ହେଲା ୧୫କୋଟି ପାଉଣ୍ଡ । ଅତୀତରେ ପ୍ରାୟ ଦୁଇଶହ ବର୍ଷର ଲୁଣ୍ଠନ ସହିତ ଗୋଟିଏ ବର୍ଷର ଲୁଣ୍ଠନ ସମାନ । ଏଣିକି ସ୍ୱାଧୀନତା ଯାଏ କିପରି ବ୍ରିଟିଶ ଶିଳ୍ପ ପୁଂଜି ଓ ଅର୍ଥପୁଂଜି ଭାରତର ସମଗ୍ର ଜନଜୀବନକୁ ନିୟନ୍ତ୍ରଣାଧୀନ କରି ରଖିଥିଲା, ତାହା ସହଜରେ ଅନୁମେୟ ।

୧୭୫୭ର ପଲାସୀ ସମର ଓ ବଂଗଳା ବିହାର ଓଡିଶାର ଦେବାନୀ ଦଖଲ ଏବଂ ଭାରତୀୟ ଅନ୍ୟାନ୍ୟ ଅଂଚଳ ଅକ୍ତିଆର କଲାପରେ ଇଷ୍ଟଇଣ୍ଡିଆ କଂପାନୀର ଶାସନ ପକ୍ଷରୁ ଲର୍ଡ କର୍ଣ୍ଣୱାଲିସ ଦେଶରେ ବ୍ରିଟିଶ ଢାଞ୍ଚାରେ ପୁରୁଣା ସାମନ୍ତବାଦୀ ପ୍ରଥା ବଦଳରେ ନୂଆ ସାମନ୍ତବାଦୀ ଜମିଜମା, ବିଭିନ୍ନ ରକମର ସ୍ୱତ୍ୱ, ନୂତନ ଜମିଦାର ଶ୍ରେଣୀ ସୃଷ୍ଟି କରିଥିଲେ ।

ଫସଲ ହେଉ ନହେଉ ପୂର୍ବର ଭାରତୀୟ ରାଜସ୍ୱ ଆଦାୟର ବ୍ୟବସ୍ଥା ବଦଳରେ ବର୍ଦ୍ଧିତ ହାରରେ ନଗଦ ଅର୍ଥରେ ଖଜଣା ଧାର୍ଯ୍ୟ କରାଗଲା । ଆଦାୟ ଲାଗି ନାନା ଆଇନ କଟକଣା ପ୍ରୟୋଗ କରାଗଲା । ଗାଁ କୋଠମାନ ଭାଂଗିଗଲା । ଜଙ୍ଗଲଗୁଡିକରୁ ଉତ୍ପାଦିତ ପଦାର୍ଥରେ ଜୀବନ ବିତାଉଥିବା ଦେଶର କୋଟିକୋଟି ବନବାସୀ ବଂଚିବାର ସାମାନ୍ୟତମ ପ୍ରାକୃତିକ ସୁଯୋଗରୁ ବଂଚିତ ହେଲେ । ନଗଦ ଟଙ୍କାରେ, ଚଢ଼ା ଦରରେ ଖଜଣା ନ ଦେଇପାରି ଚାଷୀମାନଙ୍କର ଜମି ନିଲାମ ହୋଇଗଲା । ଫଳରେ ଗୋଟିଏ ଧନୀଚାଷୀ ସଂପ୍ରଦାୟର ଉଦଭବ ଘଟିଲା । ନୂତନଭାବରେ ବ୍ୟବସ୍ଥାପିତ ଜମିବାର ଓ ନୂତନ ଭୂସ୍ୱାମୀମାନେ ବ୍ରିଟିଶ ଶାସନର ସ୍ତମ୍ଭ ହୋଇଗଲେ । ଏକ ନୂତନ ଧରଣର ମହାଜନୀ ପ୍ରଥା ପ୍ରସାର ଲାଭ କରି ଚାଷୀ କୁଳକୁ ଋଣ ଜାଲରେ ଛନ୍ଦି ଦେଲା । ଚକ୍ରବୃଦ୍ଧି ହାରରେ ଚଢା ସୁଧ ଲଦାଗଲା । ଫସଲ ହାନି, ଅଧିକ ଖଜଣା ହାର ଓ ଚଢାସୁଧରେ ଋଣ ଗାଁ ଗାଁରେ ଚାଷୀଙ୍କୁ ସର୍ବସ୍ୱାନ୍ତ ନିଃସ୍ୱ, ଭୂମିହୀନ କରିଦେଲା । ଆଗର ରାଜା, ମହାରାଜା, ନବାବ, ନିଜାମମାନଙ୍କ ପୂର୍ବର ଅଖଣ୍ଡ କ୍ଷମତାକୁ ହ୍ରାସ କରି ନୂଆ ଢଙ୍ଗରେ ଥଇଥାନ କରାଗଲା । ବ୍ରିଟିଶ ସାମ୍ରାଜ୍ୟ ଅଧୀନରେ ସେମାନେ ବ୍ରିଟିଶ ମୁକୁଟକୁ ସମ୍ମାନ ଜଣେଇ ଭାରତବାସୀ ପ୍ରଜାଙ୍କୁ ଶୋଷଣ କରିବାର ଅଧିକାର ଲାଭ କଲେ ।

ଏହାର ପରିଣାମ ସ୍ୱରୂପ ଭାରତର କୋଟି କୋଟି ଚାଷୀ ଜମି ହରେଇଲେ । କାରିଗର, ଶିଳ୍ପୀ ନିଜ ଧନ୍ଦା ହରେଇଲେ । ଏହି ପ୍ରକ୍ରିୟା ଫଳରେ ଜମିହୀନ, ଗୃହହୀନ, ଧନ୍ଦାବେଉଷାରୁ ବଂଚିତ ଭାରତର ଏକ ବିରାଟ ଜନ ଅଂଶ କ୍ଷେତମୂଲିଆ, ବେକାର ଲୋକରେ ପରିଣତ ହେଲେ ।

ଏପରି କୃଷିନୀତି ଓ ବିଲାତୀ ଶିଳ୍ପ ବାଣିଜ୍ୟ ନୀତି ଫଳରେ ୧୭୫୭ରୁ ୧୯୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଅନ୍ୟାନ୍ୟ ଦୁଃଖ ଦୁର୍ବିପାକ ସାଂଗକୁ ଦୁର୍ଭିକ୍ଷରେ କେବଳ ଭାରତରେ ୨କୋଟି ଲୋକଙ୍କର ଶୋଚନୀୟ ମୃତ୍ୟୁଘଟିଲା । ଏ ସଂକ୍ରାନ୍ତରେ ୧୮୬୬ରେ ଓଡିଶାର ନଅଙ୍କ ଦୁର୍ଭିକ୍ଷ ଉଲ୍ଲେଖନୀୟ । ଲକ୍ଷଲକ୍ଷ ଓଡିଶାବାସୀ ଚାଷୀ, ଗରୀବ ଲୋକ, ଆଦିବାସୀ ଓ ଅନ୍ୟ ଦଳିତବର୍ଗର ପ୍ରାଣ ଯାଇଥିଲା ।

**ସ୍ୱଦେଶୀ ଶିଳ୍ପ ବିକାଶ ଉପରେ କଟକଣା**

ବ୍ରିଟିଶ ସାମ୍ରାଜ୍ୟବାଦର ବୁର୍ଜୁୟା ଓ ପୁଂଜିବାଦର ସମର୍ଥକ ଇତିହାସକାର ହୁଅନ୍ତୁ ଅବା ବ୍ରିଟିଶ ସରକାରର ବରିଷ୍ଠ ମୁଖପତ୍ର, ବ୍ରିଟିଶ ରାଜନୈତିକ ଦଳର ନେତା ହୁଅନ୍ତୁ, ଦାବୀ କରନ୍ତି ଯେଯ ଭାରତକୁ ବିଲାତ ସଭ୍ୟ କରିଦେଲା । ଏପରି ପ୍ରଚାରରେ ମଧ କେତେକ ଭାରତୀୟ ପ୍ରଭାବିତ ହୋଇ ବ୍ରିଟିଶ ଶାସନର ପ୍ରଶଂସା କରିଛନ୍ତି ।

ମାତ୍ର ତାହାର ବିପରୀତ ହିଁ ସତ୍ୟ । ଦଶ ସହସ୍ର ବର୍ଷରର ଭାରତର ସଭ୍ୟତା, ତାର କୃଷି, ଶିଳ୍ପ ସଂସ୍କୃତିର ସ୍ୱାଭାବିକ ବିକାଶରେ ବ୍ରିଟିଶ ଦାସତ୍ୱ ପ୍ରବଳ ପ୍ରତିବନ୍ଧକ ହୋଇଥିଲା ।

ମାନବ ସମାଜର ବିକାଶର ପ୍ରକ୍ରିୟାରେ ଅତୀତରେ ସବୁକ୍ଷେତ୍ରରେ ସମୃଦ୍ଧ ଭାରତ ଓ ପୂର୍ବ ଏସିଆର ଚୀନ ପ୍ରଭୃତି ଦେଶ ୟୁରୋପ ଠାରୁ ଖୁବ୍ ଆଗରେ ଥିଲେ । ଭାରତ ସ୍ୱାଧୀନ ଥିଲେ ଏବଂ ଚୀନପରି ସେ କାଳର ଦେଶ ଉପରେ ବିଦେଶୀ କବ୍ଜା ନଥିଲେ ହୁଏତ ଶିଳ୍ପ ବିପ୍ଳବ ଏସବୁ ଦେଶରେ ହୋଇଥାନ୍ତା । ଭାରତରେ ଶିଳ୍ପର ବିକାଶ ହେଲେ ବିଲାତର ପୁଂଜିପତି, ବୁର୍ଜୁୟା ଶ୍ରେଣୀର ଅବାଧ ଲୁଣ୍ଠନ ସଂକୁଚିତ ହୋଇଯିବ । ସେହେତୁ ସ୍ୱାଭାବିକ ଅର୍ଥନୈତିକ ପ୍ରକ୍ରିୟାରେ ଭାରତରେ ଯେଉଁ ଶିଳ୍ପର ବିକାଶ ଘଟିଥାନ୍ତା ତାହାକୁ ବ୍ରିଟିଶ ପୁଂଜି ସବୁପ୍ରକାରେ ଅଟକାଇବା ଉଦ୍ୟମ କଲା ।

ଆପଣାର ଶିଳ୍ପ ବାଣିଜ୍ୟ ବ୍ୟବସାୟକୁ ପ୍ରଖର କରି ଅଧିକ ମୁନାଫା ଉଠାଯିବ । ଅଧିକୃତ ଏତେ ବଡ ବିଶାଳ ଦେଶକୁ ଶାସନ କରିବା ଲାଗି ସବୁ ଦୂରଦୂରାନ୍ତ ଅଂଚଳ ସହିତ ଯୋଗାଯୋଗ ସ୍ଥାପନ କରିବାକୁ ହେବ । ବିଭିନ୍ନ ବଗିଚା ଓ ବ୍ରିଟିଶ ପୁଂଜିରେ ସ୍ଥାପିତ ଶିଳ୍ପର ଉତ୍ପାଦିତ ପଦାର୍ଥଗୁଡିକୁ ଦେଶଭିତରେ ବ୍ୟବସାୟ କରି ମୁନାଫା ଲୁଣ୍ଠନ କରାଯିବ । ସର୍ବୋପରି ଭାରତବର୍ଷରର କୋଣେଅନୁକୋଣରେ ବିଦେଶୀ ଶାସନ ବିରୁଦ୍ଧରେ ଘନ ଘନ ଘଟୁଥିବା ବିଦ୍ରୋହକୁ ଦମନ କରିବା ପାଇଁ ତୁରନ୍ତ ସୈନ୍ୟ, ଗୁଳିକମାଣ ପ୍ରେରିତ ହେବ । ଏଇଥିଲାଗି ହିଁ ବ୍ରିଟିଶ ଶାସକ ଗୋଷ୍ଠୀ ରେଳବାଇ, ଡାକତାର ଘର, ସୈନ୍ୟପୁଲିସ ଓ ପ୍ରଶାସକ ଚଳାଚଳ ପାଇଁ କିଛିକିଛି ରାସ୍ତାଘାଟ ନିର୍ମାଣ କରିବାକୁ ବାଧ ହେଲେ । ଜାହାଜ ତିଆରି ଯାର୍ଡ଼, ତାର ରକ୍ଷଣାବେକ୍ଷଣା ପାଇଁ ଉନ୍ନତ ବନ୍ଦର ବସାଇବାକୁ ପଡିଲା ।

ରେଳଇଂଜିନ, ଜାହାଜ ଇଂଜିନ, ଝୋଟ, ରବର କଳର ମୂଳ ଯନ୍ତପାତି ସିନା ବିଲାତରୁ ଆସିଲା ମାତ୍ର ଅସଜ ହେଲେ ତାର ମରାମତି କ'ଣ ସହସ୍ର ସହସ୍ର ମାଇଲ ଦୂର ଦରିଆପାରି ବିଲାତରେ ହେବ ? ସମୟ କେତେ ଲାଗିବ, କେତେ ଅଧିକ ଅର୍ଥ ଲାଗିବ । ଏଣେ ବ୍ୟବସାୟ ବନ୍ଦ ହୋଇଯିବ । ସେଥିଲାଗି ଏସବୁର ମରାମତି କାରଖାନା ତିଆରି ପ୍ରକ୍ରିୟାରେ ଭାରତରେ ନିଜସ୍ୱ ଶିଳ୍ପ ପ୍ରତିଷ୍ଠାର ସମ୍ଭାବନା ସୃଷ୍ଟିହେଲା ।

ମାତ୍ର ବ୍ରିଟିଶ ଅର୍ଥପୁଂଜି ଓ ଶିଳ୍ପପୁଂଜି ନାନା କଟକଣା ଓ ନାନା ଆଇନ ଖଞ୍ଜି ଏହାର ଗତିକୁ ରୋଧ କରିଚାଲିଲା । ନାନା ପ୍ରକାରର ଶୁଳ୍କ, କର ଭାରତୀୟ ଶିଳ୍ପ ଉପରେ ବସାଗଲା ।

ପୁଣି ଏସବୁ ଭାରତୀୟ ଶିଳ୍ପରୁ ଜାତ ପଦାର୍ଥଗୁଡିକର ବଜାରକୁ ନିଜ ଆୟତ୍ତରେ ରଖିବାକୁ ବ୍ରିଟିଶ ପୁଂଜିବାଦ ମେନେଜିଂ ଏଜେନିସ୍ ସୃଷ୍ଟି କଲା । ଭାରତରେ କେବଳ ଛୋଟ ଛୋଟ ସହାୟକ ଶିଳ୍ପ କାରଖାନା ହେବ । ଇଂଜିନ, ଜାହାଜ, ଲୁଗାକଳ, ଝୋଟକଳ, ମୁଦ୍ରଣଶିଳ୍ପର ମୂଳ, ଭାରି ଯନ୍ତ୍ରପାତି କାରଖାନା ଯେପରି ନବସିବ ସେଥିଲାଗି ବ୍ରିଟିଶ ଅର୍ଥ ଓ ଶିଳ୍ପପୁଂଜି ସମସ୍ତ କଟକଣା ଖଞ୍ଜିଲା । ଫଳରେ ଭାରତୀୟ ପୁଂଜିରେ ଗୁରୁ, ମୌଳିକ, ବିରାଟକାୟ ଯନ୍ତ୍ରପାତି ଉତ୍ପାଦନକାରୀ ଶିଳ୍ପ ପ୍ରତିଷ୍ଠିତ ହୋଇପାରିଲା ନାହିଁ । ଏ ସଂକ୍ରାନ୍ତରେ ଗୋଟିଏ ଦୃଷ୍ଟାନ୍ତ ଯଥେଷ୍ଟ ହେବ । ଏଡ଼େ ବିଶାଳଦେଶ ଭାରତବର୍ଷ ସ୍ୱାଧୀନ ହେବାବେଳକୁ ଏ ଦେଶରେ ମାତ୍ର ୯ ଲକ୍ଷ ଟନ ଲୌହ ଉତ୍ପାଦିତ ହେଉଥିଲା । ତାହାର ଅଧିକାଂଶ ଭାଗ ବାଧାବିଘ୍ନ ସତ୍ତ୍ୱେ ଜାମସେଦଜୀ ଟାଟାଙ୍କ ଦ୍ୱାରା ୧ ୯ ୧ ୪ରେ ପ୍ରତିଷ୍ଠିତ ଟାଟା କାରଖାନାରୁ ଉତ୍ପନ୍ନ ।

**"ଅସଭ୍ୟ ଭାରତକୁ" ସଭ୍ୟ କରାଗଲାର ସତ୍ୟତା**

ବ୍ରିଟିଶ ପୁଂଜିବାଦୀ ପ୍ରଚାର ଯେ ଇଂରେଜ ଭାଷାର ପ୍ରବର୍ତ୍ତନ ଓ ପାଶ୍ଚାତ୍ୟ ଶିକ୍ଷା ପ୍ରଣାଳୀରେ ଶିକ୍ଷାଦାନ ବ୍ୟବସ୍ଥା ଭାରତବର୍ଷକୁ ସଭ୍ୟ କରିଛି । ଏପରି ପ୍ରଚାରକୁ ଭାରତର ବେଶ କିଛି ଲୋକ ସତ ବୋଲି ମାନିନିଅନ୍ତି । ଯେମିତି ଭାରତ ଏକ ଅସଭ୍ୟ, ଅଶିକ୍ଷିତ ଦେଶ ହୋଇ ରହିଥିଲା । ଭାରତର ବିଭିନ୍ନ ପ୍ରାନ୍ତରେ ବ୍ରିଟିଶ ପରାଧୀନତା ପୂର୍ବରୁ ଭାଷା ଓ ସଂସ୍କୃତିର ଯେଉଁ ସ୍ୱାଭାବିକ ବିକାଶ ଘଟୁଥିଲା, ତାହା ବ୍ୟାହତ ହୋଇଗଲା । ଅନ୍ୟ ପକ୍ଷରେ କାହିଁକି ଇଂରେଜୀ ଭାଷା ଓ ପାଶ୍ଚାତ୍ୟ ଶିକ୍ଷା ଭାରତରେ ପ୍ରବର୍ତ୍ତନ କରିବାକୁ ପଡିଲା ତାହା ଦେଖାଯାଉ ।

କଂପାନୀ ଶାସନର ଆରମ୍ଭ ଓ ମଧ୍ୟଭାଗରେ ଆମ ଦେଶରେ ସମସ୍ତ ପ୍ରଶାସନିକ, ସାମରିକ ଓ ବାଣିଜ୍ୟ ବ୍ୟବସାୟର କାର୍ଯ୍ୟ ଖୋଦ ଗୋରା ବ୍ରିଟିଶ ଲୋକଙ୍କୁ ନିଯୁକ୍ତି ଦେଇ କରାଯାଉଥିଲା । ଭାଇସରାୟ, ଗଭର୍ଣ୍ଣର, ସେନାଧ୍ୟକ୍ଷ, ବିଚାରକ, ସକଳ ପୁଲିସ ହାକିମ, କିରାଣୀ, ହିସାବରକ୍ଷକ ଥିଲେ ଇଂରେଜୀ ଲୋକ ।

ଯେଉଁ ଭାରତୀୟଙ୍କୁ କଂପାନୀ ଶାସନ ନିଯୁକ୍ତ କରୁଥିଲେ, ସେମାନେ ଥିଲେ ଚପରାଶି, ମାଳି, ଝାଡୁଦାର, ମେହେନ୍ତର, ପିଅନ ଇତ୍ୟାଦି । ବିଲାତୀ ସାହେବଙ୍କ ଘରେ ଖାନସମା, ବବୁର୍ଚ୍ଚି, ଘରୋଇ ଭୃତ୍ୟ । ସେସବୁଙ୍କୁ ମଧ୍ୟ ଇଂରେଜୀ ଭାଷା ଅନ୍ତତଃ ଶିଖିବାକୁ ପଡୁଥିଲା । ଆଉ ଥିଲେ ସିପେହୀ ।

କଂପାନୀର ବାଣିଜ୍ୟ ବ୍ୟବସାୟ ବୃଦ୍ଧି ଓ ଭାରତରେ ବ୍ରିଟିଶ ଶିଳ୍ପପୁଂଜି ଓ ଅର୍ଥପୁଂଜିର ପ୍ରବେଶ ଫଳରେ ଆହୁରି ପ୍ରଚୁର ସଂଖ୍ୟକ ଇଂରେଜ ଜାଣିଥିବା, ନୂଆ ଶିଳ୍ପ, ଅର୍ଥ କାରବାର ସଂପର୍କରେ ଜ୍ଞାନଥିବା ଲୋକ ଆବଶ୍ୟକ ପଡିଲା । ଭାରତ ପରି ବିଶାଳ ଦେଶ ସାଂଗକୁ ସବୁ ମହାଦେଶରେ ବିଲାତର ଉନନିବେଶ । ଏହାର ଶାସନ ଚଳେଇବା ଲାଗି ବିଲାତରେ ଯେତେ ଲୋକସଂଖ୍ୟା, ସେତକ ମଧ୍ୟ ନିଅଣ୍ଟ ଧରିବ । ତେଣୁ ଭାରତରେ ଗୋଟିଏ କିରାଣୀ ମହଲ ସୃଷ୍ଟିଲାଗି ଇଂରେଜୀ ଭାଷାର ବିଦ୍ୟାଳୟ, ସାଧାରଣ କାରିଗରୀ ଜ୍ଞାନ ହାସଲ କରିବାକୁ କେତେକ

ଟେକନିକାଲ ଶିକ୍ଷାୟତନ ଗଢିବା ଅପରିହାର୍ଯ୍ୟ ହୋଇପଡିଲା। କିନ୍ତୁ ଏହି ଶିକ୍ଷାର ସୁଯୋଗ ଯେତେ କମ ହେଉପଛେ ଭାରତବାସୀ ଗ୍ରହଣ କରି ଯେ ଓଲଟି ବ୍ରିଟିଶ ଦାସତ୍ୱ ବିରୁଦ୍ଧରେ ସଂଗ୍ରାମରେ ଉତୁରିବେ ଏହା ବ୍ରିଟିଶ ପୁଂଜିପତି ବୁର୍ଜୁୟା ଶ୍ରେଣୀର ଚିନ୍ତାର ବାହାରେ ଥିଲା।

ଭାରତର ସମସ୍ତ ଗୌରବମୟ ପରଂପରା, ତାହାର ସଂସ୍କୃତି, ତାହାର ସମାଜ ବ୍ୟବସ୍ଥାକୁ ବ୍ରିଟିଶ ଦାସତ୍ୱ ଛିନ୍ନଭିନ୍ନ କରିବାରେ ଲାଗିଲା। ଏହାକୁ ଲକ୍ଷ୍ୟ କରି ଜଣେ ପୃଥିବୀ ବିଖ୍ୟାତ ସମାଜବିଜ୍ଞାନୀ ମାର୍କ୍ସ ଯେଉଁ ବର୍ଣ୍ଣନା କରିଛନ୍ତି ତାହାର କିଛି ଅଂଶ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ.... ସେ ଲେଖିଛନ୍ତି "ଭାରତୀୟ ସମାଜର ସମଗ୍ର ଗଠନପ୍ରଣାଳୀକୁ ଇଂଲଣ୍ଡ ଭାଙ୍ଗି ଚୁରମାର କରିଦେଇଛି। ତାହାର ପୁନର୍ଗଠନରେ କୌଣସି ଲକ୍ଷଣ ଏଯାଏ ଦେଖାଯାଉନାହିଁ। ନୂଆଦୁନିଆ ଲାଭ ନକରି ପୁରୁଣା ଦୁନିଆର ବିଲୟ ବର୍ତ୍ତମାନ  ହିନ୍ଦୋସ୍ଥାନର ଦୁଃଖଦୈନ୍ୟକୁ ବିଶେଷ ଧରଣର ଯନ୍ତ୍ରଣାଦାୟକ ରୂପ ଦେଇଛି।" ମାର୍କ୍ସଙ୍କ ଏହି ଉକ୍ତିକୁ ଆମ ଦେଶର ଆଦ୍ୟ ଜାଗରଣର ଅନ୍ୟତମ ବିଶିଷ୍ଟ ଜନନାୟକ ଦାଦାଭାଇ ନାରୋଜି ସାବ୍ୟସ୍ତ କରିଥିଲେ। ସେ ବ୍ରିଟିଶ ଶାସନର ଭାରତବାସୀଙ୍କ ଦୁଃଖ ଦୁର୍ଦ୍ଦଶା ସଂପର୍କରେ ଲେଖିଥିଲେ "ମୁଁ ସାହସର କହିବି ଯେ ତାହାର ଧନଜୀବନ ଲାଗି ଭାରତ ନିରାପତ୍ତା ପାଏ ନାହିଁ। ଭାରତର ନିୟୁତ ନିୟୁତ ଲୋକଙ୍କ ଜୀବନ ହେଲା ନିରାଟ ଅଧାଭେଜନ, ଅବା ଅନାହାର, ଅବା ଦୁର୍ଭିକ୍ଷ ଓ ରୋଗର ଜୀବନ।"

ଆଉ ଜଣେ ବିଖ୍ୟାତ ବ୍ରିଟିଶ ବିଦ୍ୱାନ, ଆର.କେ. ପାମିଦତ୍ତ। ବାପା ତାଙ୍କର ଭାରତୀୟ ଓ ମା ବ୍ରିଟିଶ ମହିଳା। ସେ ତାଙ୍କରର ପ୍ରସିଦ୍ଧ ଗ୍ରନ୍ଥ "ଇଣ୍ଡିଆ ଟୁଡ଼େ" ରେ ଭାରତର ପରାଧୀନତାର ଓ ବ୍ରିଟିଶ ଶୋଷର ନିଖୁଣ, ତଥ୍ୟଭିତ୍ତିକ ଚିତ୍ର ଦେଇ ଲେଖିଛନ୍ତି "୧୮୧୩ (କଂପାନୀର ଏକଚାଟିଆ ବାଣିଜ୍ୟ ଅଧିକାର ଲୋପ) ପରେ ଭାରତରେ ଶିଳ୍ପ ପୁଂଜିର ଆକ୍ରମଣ ତାହାର ସମସ୍ତ ଅର୍ଥନୈତିକ ବ୍ୟବସ୍ଥାକୁ ନିୟାମକ ଭାବରେ ଚୁନଭୂତ କରିଦେଲା।"

ବିଂଶ ଶତାବ୍ଦୀବେଳକୁ ଭାରତର ସ୍ୱାଧୀନତା ସଂଗ୍ରାମରେ ନୂତନ ଚିନ୍ତା, ନୂତନ ଆଭିମୁଖ୍ୟ, ନୂତନ ରାଜନୈତିକ, ସାମାଜିକ ଚେତନାର ଉଦଭବ ଘଟିଲା। ଏହି ନୂଆ ଚିନ୍ତା ଚେତନାର ବାହକ ହେଲେ ସେ କାଳର ଭାରତୀୟ ସମାଜରେ ଜନ୍ମ ନେଉଥିବା ଏକ ଶିକ୍ଷିତ ଜନଗୋଷ୍ଠୀ। ସେହି ଶିକ୍ଷିତ ଜନଗୋଷ୍ଠୀ ମଧ୍ୟରୁ ସେ କାଳର ନେତୃତ୍ୱକାରୀ ବ୍ୟକ୍ତି-ବିଶେଷଙ୍କ ଆବିର୍ଭାବ ଘଟିଲା। ସେମାନେ ବିଦେଶୀ ଶାସନରେ ଶାସିତ ଭାରତବାସୀ, କିପରି ଦୟନୀୟ, ଅମାନୁଷିକ ଜୀବନ ବିତାଉଛନ୍ତି ତାହାର ତଥ୍ୟଭିତ୍ତିକ ସମାଲୋଚନା କରି ତାର ପ୍ରତିକାର ଲାଗି ଆବାଜ ଉଠାଇଲେ। ସେଥିଲାଗି ପ୍ରାଥମିକ ସଂଗଠନମାନ ପ୍ରତିଷ୍ଠା କଲେ।



# ସଂଗ୍ରାମର ଏକ ଉଚ୍ଚତର ପର୍ଯ୍ୟାୟ ପୁନଃଜାଗରଣର ଯୁଗ

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧଠାରୁ ଏକ ଦିଗରେ ବ୍ରିଟିଶ ଶିଳ୍ପ ଓ ଅର୍ଥପୁଂଜିର ବିସ୍ତାର ଏବଂ ପ୍ରଭାବ ଭାରତବର୍ଷର ଅର୍ଥନୀତିକୁ ଅଧିକ ଦୃଢ଼ଭାବରେ କରାୟତ୍ତ କଲା । ଏପରି ଅର୍ଥନୀତିର ଉତ୍ତରୋତ୍ତର ବୃଦ୍ଧି ଲାଗି ବ୍ରିଟିଶ ସରକାର ନାନାପ୍ରକାର ଆଇନକାନୁନ ଲାଗୁ କରି କଠୋର ଶାସନ ପ୍ରବର୍ତ୍ତନ କଲା ।

ଠିକ୍ ତାର ବିପରୀତ ଦିଗରେ ପରିବର୍ତ୍ତିତ ପରିସ୍ଥିତିରେ ଭାତରରେ ଏକ ନୂଆ ପ୍ରକ୍ରିୟା ଭିତରେ ଦେଶରେ ଏକ ଶିକ୍ଷିତ, ମଧ୍ୟମ ବର୍ଗ ଜନସଂପ୍ରଦାୟର ଉଦ୍‌ଭବ ଘଟିଲା । ମହାନ୍ ଭାରତୀୟ ସାହିତ୍ୟ-ସଂସ୍କୃତି, ଶିଳ୍ପ ଭାସ୍କର୍ଯ୍ୟ ତୁଳନାରେ କ୍ଷୁଦ୍ର ବ୍ରିଟିଶ ଦେଶ କେତେ ଅନଗ୍ରସର ଥିଲା । ଅଥଚ ସେହି ଦେଶର ଶାସକ ବର୍ଗ ଭାରତକୁ ଏକ ନୀଚ ନିକୃଷ୍ଟ ଅସଭ୍ୟ ବର୍ବର ଅନ୍ଧବିଶ୍ୱାସୀ ଜାତିରୂପେ ନିନ୍ଦିତ କରି ଶାସନ କରୁଛନ୍ତି । ଏହି ନୂତନ ଶିକ୍ଷିତ ମଧ୍ୟମବର୍ଗରର ଲୋକେ ଫରାସୀ ବିପ୍ଳବ, ଆମେରିକାର ମୁକ୍ତି ସଂଗ୍ରାମ, ଆୟରଲ୍ୟାଣ୍ଡରେ ବ୍ରିଟିଶ ବିରୋଧୀ ଫିନଫେନ ସଂଗ୍ରାମର ଇତିହାସ ନୂତନ ପରିସ୍ଥିତିରେ କିପରି ପୁନଃ ପ୍ରତିଷ୍ଠିତ କରିବେ, ତାହାକୁ ନୂଆରଂଗ ଦେଇ ବିଦେଶୀ ଶାସକଙ୍କର ମୁକାବିଲା କରିବେ, ସେହିପଥ ସନ୍ଧାନ କରିବାରେ ଲାଗିଲେ ।

ଯେଉଁ ମାକଲେଙ୍କ ଶିକ୍ଷାପଦ୍ଧତିରେ ସେମାନେ ପାଶ୍ଚାତ୍ୟ ଶିକ୍ଷା ଲାଭ କରିଥିଲେ, ସେହି ମାକଲେ ସାହେବ ଭାରତୀୟମାନଙ୍କୁ ପରିହାସ କରି ଲେଖିଥିଲେ, "ଆମେ ଜାଣୁ ଭାରତ କେବେହେଲେ ଏକ ସ୍ୱାଧୀନ ଶାସନ ଲାଭ କରିବ ନାହିଁ । ଭାରତରେ ଆପଣାର କୌଣସି ପ୍ରତିନିଧିମୂଳକ ସଂସ୍ଥା ରହିପାରିବ ନାହିଁ ।"

ମନେହୁଏ ଠିକ୍ ତାର ଜବାବରେ ଭାରତରେ ସେତେବେଳେ ଭାରତବାସୀଙ୍କ ସ୍ୱାର୍ଥରକ୍ଷା କରିବା ଲାଗି ପ୍ରତିନିଧିମୂଳକ ସାମାଜିକ ସଂସ୍ଥା ସଂଗଠନମାନ ଗଢି ଉଠିଲା । ଭାରତୀୟ ଜାତୀୟତାର ଆଦର୍ଶ ଦାନା ବାନ୍ଧିବାକୁ ଲାଗିଲା । ବ୍ରିଟିଶ ଶାସନରେ ଭାରତବାସୀଙ୍କ ଦୁର୍ଦ୍ଦଶାର

ଏକ ନିଖୁଣ ଚିତ୍ର ଦେଲେ ଦାଦାଭାଇ ନାରୋଜି । ଯାହାଙ୍କୁ କୁହାଗଲା 'ଗ୍ରାଣ୍ଡ ଓଲଡ ମ୍ୟାନ୍ ଅଫ୍ ଇଣ୍ଡିଆ' ବା ପ୍ରବୀଣତମ ଭାରତୀୟ ।

ବ୍ରିଟିଶ ଶାସନର ବିଶ୍ଳେଷଣ କରି ତାହା ଭାରତବାସୀଙ୍କୁ କିପରି ଦେଖେ ତାହା ସେ ବର୍ଣ୍ଣନା କରି କହିଲେ "ଭାରତୀୟମାନେ ବ୍ରିଟିଶଙ୍କର ହୀନ ଦାସାନୁଦାସ (ହେଲଟ) । ସେମାନେ ଆମେରିକାର ଦାସ (ନିଗ୍ରୋ)ମାନଙ୍କଠାରୁ ହୀନ । କାରଣ ଆମେରିକାରେ ଦାସମାନଙ୍କ ପ୍ରଭୁ ମାଲିକମାନେ ସେମାନଙ୍କ ଯତ୍ନ ନିଅନ୍ତି । ବ୍ରିଟିଶ ଶାସନ ହେଲା ସଦାବେଳିଆ, ଉପରକୁ ଉପରକୁ ଯାଉଥିବା, ପ୍ରତି ନିୟତ ବଢୁଥିବା ବିଦେଶୀ ଆକ୍ରମଣ । ତାହା ପୂରାପୂରି ଭାବରେ ଦେଶକୁ ଧ୍ୱଂସ କରି ଚାଲିଛି ।"

ସାରା ଭାରତରେ ଏହି ମଧ୍ୟବିତ୍ତ-ଶିକ୍ଷିତ ବର୍ଗ, ନୂତନ ଶିଳ୍ପୋଦ୍ୟୋଗୀମାନଙ୍କ ଭିତରେ ତତ୍କାଳୀନ ବୁଦ୍ଧିଜୀବୀ ମହଲରେ ଏପରି ଧରଣର ନୂଆ ଚିନ୍ତା ସଂଚାର ହୋଇଥିଲା ।

ପରସ୍ପରଠାରୁ ସହସ୍ରାଧିକ ମାଇଲ ଦୂରରେ ଅବସ୍ଥିତ ଭାରତବର୍ଷର ବିଭିନ୍ନ ସ୍ଥଳରେ ପ୍ରଥମ କରି ନୂଆ ସାମାଜିକ ସାଂସ୍କୃତିକ ସଂଗଠନ ଗଢିଉଠି ଆଦ୍ୟ ରାଜନୈତିକ ସଂଗଠନର ରୂପ ନେଲା ।

ବ୍ରାହ୍ମ ସମାଜ ପୁନେ ସାର୍ବଜନିକ ସଭା, ବମ୍ବେ ପ୍ରେସିଡେନ୍ସି ଆସୋସିଏସନ୍, ମାନ୍ଦ୍ରାଜ ମହାଜନ ସଭା, ବ୍ରିଟିଶ ଇଣ୍ଡିଆ ଆସୋସିଏସନ, ଇଣ୍ଡିଆନ ଆସୋସିଏସନ, ତଥା ବିଲାତରେ ଇଷ୍ଟଇଣ୍ଡିଆ ଆସୋସିଏସନ

ଆଉ କେତେକ ଏପରି ସଂସ୍ଥା ସଂଗଠନ ଗଢ଼ି ଉଠିଲା । ପରବର୍ତ୍ତୀ କାଳରେ ଯେପରି ରାଜନୈତିକ ଆଦର୍ଶ, ରାଜନୈତିକ ଚିନ୍ତାଚେତନାକୁ ଧରି ଦେଶରେ ଅଗ୍ରଗାମୀ ରାଜନୈତିକ ସଂଗଠନ ଗଢିଉଠିଲା, ସେତେବେଳେ ଗଢି ଉଠିଥିବା ଏସବୁ ସଂଗଠନ ଓ ତାର ନେତାମାନେ ସେକାଳରେ ପରିସ୍ଥିତିରେ ସେପରି ସଂଗଠନ ଗଢି ପାରିନଥାନ୍ତେ । ମାତ୍ର ଏହି ସବୁ ସଂଗଠନ ଓ ସେଗୁଡିକର ସୀମିତ କାର୍ଯ୍ୟକଳାପ ହିଁ ଆଗାମୀ ସ୍ୱଦେଶୀ ଜାଗରଣର ଭିତ୍ତି ସୃଷ୍ଟି କରିଦେଲା ।

**ବ୍ରାହ୍ମ ସମାଜ ପ୍ରତିଷ୍ଠା ୧୮୨୮**

ବଂଗଳାରେ ରାଜା ରାମମୋହନ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି ସମାଜ ସଂସ୍କାରକ ସଂସ୍ଥା ନୂତନ ରାଜନୈତିକ ଚିନ୍ତା ଚେତନାର ବାହକ ହେଲା । କେଶବଚନ୍ଦ୍ର ସେନ, ଦ୍ୱିଜେନ୍ଦ୍ର ନାଥ ଠାକୁର ପ୍ରମୁଖ ଏହାର ନେତା ଥିଲେ । ଏହି କାଳରେ ମଧ୍ୟ ସମାଜ ସଂସ୍କାରକ, ଦୂରଦର୍ଶୀ ମନୀଷୀ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଇଂରେଜ ଶିକ୍ଷାର ପ୍ରସାର, ବାଲ୍ୟବିବାହ ନିରୋଧ, ବିଧବା ବିବାହ ପ୍ରଭୃତି ସମସ୍ୟାକୁ ଧରି ନୂଆ ପୀଢିର ଯୁବ ସଂପ୍ରଦାୟକୁ ଆଧୁନିକ ମାନବବାଦୀ ଚିନ୍ତାଧାରାରେ ଦୀକ୍ଷିତ କରାଇଲେ ।

ପ୍ରଥମ ଭାରତୀୟ ନେତା ରାଜା ରାମମୋହନ ରାୟ ହିନ୍ଦୁ ସମାଜରେ ଅନ୍ଧବିଶ୍ୱାସ, କୁସଂସ୍କାର ଦୂର କରିବା ଅଭିଯାନରେ କେବଳ ସୀମିତ ନଥିଲେ । ପ୍ରଥମେ ହିଁ ସେ ଭାରତର ବ୍ରିଟିଶ ଶାସନରେ ରାଜନୈତିକ ସଂସ୍କାରମାନ ଦାବୀ କରିଥିଲେ । ସେଥିରେ ଥିଲା, ସଂବାଦପତ୍ରର ସ୍ୱାଧୀନତା, ବିଚାରାଳୟମାନଙ୍କରେ କେବଳ ବ୍ରିଟିଶ ବିଚାରପତିମାନଙ୍କ ଦ୍ୱାର ବିଚାର ନହୋଇ ଜୁରିପ୍ରଥାର ପ୍ରବର୍ତ୍ତନ, କାର୍ଯ୍ୟନିର୍ବାହୀ (ଏକ୍ସକ୍ୟୁଟିଭ) ଠାରୁ ବିଚାରାଳୟର ପୃଥକୀକରଣ, ଉଚ୍ଚତର ଅଫିସରଗୁଡ଼ିକରେ ଭାରତୀୟମାନଙ୍କ ନିଯୁକ୍ତି, ଶିଳ୍ପ ଓ ବାଣିଜ୍ୟରେ ଭାରତୀୟମାନଙ୍କ ଉପରେ କଟକଣା ଦୂରୀକରଣ ଇତ୍ୟାଦି । ଜମିଦାରମାନେ ଅତ୍ୟାଚାର ବିରୁଦ୍ଧରେ ମଧ୍ୟ ସେ ପ୍ରଶ୍ନ ଉଠାଇଥିଲେ ।

ରାମମୋହନ ରାୟଙ୍କ ଅନ୍ତେ ବଂଗଳାରେ ଏକ ଅଗ୍ରଗାମୀ, ଦେଶବତ୍ସଳ ଶିକ୍ଷିତ ଯୁବଗୋଷ୍ଠୀ ବାହାରିଲେ । ତତ୍କାଳୀନ ଜଣେ ଆଙ୍ଗୋଇଣ୍ଡିଆନ ଶିକ୍ଷକ ଏଚ.ଭି. ଡେରେଜିଓଙ୍କ ଶିଷ୍ୟମାନେ ବିଭିନ୍ନ ସଂଗଠନ, ସଭା, ଆଲୋଚନା ଚକ୍ର କରି ଏକ ଦେଶପ୍ରେମୀ ବାୟୁମଣ୍ଡଳ ସୃଷ୍ଟି କରିଥିଲେ ।

**ଇଣ୍ଡିଆନ ଆସୋସିଏସନ**

୧୮୪୩ରେ ଇଣ୍ଡିଆନ ଆସୋସିଏସନ୍ ଓ ୧୮୫୧-୧୮୭୬ ଏକ ସଂଗଠନ ସ୍ଥାପିତ ହେଲା । ପରେ ଏହା ୧୮୫୧ରେ ଗଠିତ ବ୍ରିଟିଶ ଇଣ୍ଡିଆ ଆସୋସିଏସନ ସହିତ ମିଶିଗଲା । ପ୍ରତିଷ୍ଠା କାଳରେ ଏହି ସୋସାଇଟି ତାର ଲକ୍ଷ୍ୟ ଘୋଷଣା କରିଥିଲା ଯେ "ଆମ ଦେଶର ନାଗରିକ ଓ ସବୁ ଶ୍ରେଣୀର ନ୍ୟାୟସଂଗତ ଅଧିକାରକୁ ରକ୍ଷା କରିବାକୁ, ସେମାନଙ୍କ ସ୍ୱାର୍ଥକୁ ଆଗେଇନେବାକୁ ଓ ସେମାନଙ୍କର କଲ୍ୟାଣ ବିଧାନ" କରିବାକୁ ହେବ । ୧୮୫୨ରେ ନବଗଠିତ ବ୍ରିଟିଶ ଇଣ୍ଡିଆ ଆସୋସିଏସନ ବ୍ରିଟିଶ ପାର୍ଲିଆମେଣ୍ଟକୁ ଏକ ନିବେଦନ ପଠାଇ ପ୍ରଚଳିତ ରାଜସ୍ୱ ବ୍ୟବସ୍ଥାର ପରିବର୍ତ୍ତନ, ଶିକ୍ଷାର ପ୍ରସାର, ସରକାରୀ ଦପ୍ତରଗୁଡ଼ିକରେ ଭାରତୀୟଙ୍କୁ ନିଯୁକ୍ତିରେ ପାତର ଅନ୍ତର ବିଚାର ଦୂରୀକରଣ ପାଇଁ ଆବେଦନ କଲା ।

ଏହାର ନେତୃତ୍ୱରେ ଥିଲେ ରାଜେନ୍ଦ୍ର ଲାଲମିତ୍ର, ହରିଶଚନ୍ଦ୍ର ମୁଖର୍ଜୀ, ରାମ ଗୋପାଳ ଘୋଷ ପ୍ରମୁଖ ।

ମାତ୍ର ଏହି ସଂଗଠନଟି ମୁଖ୍ୟତଃ ଜମିଦାରମାନଙ୍କ ସ୍ୱାର୍ଥ ଉପରେ ଜୋର ଦେଉଥିଲା । ୧୮୭୬ରେ ଗଢ଼ି ଉଠିଲା ଇଣ୍ଡିଆନ ଆସୋସିଏସନ ନାମକ ଏକ ଆଗୁଆ ସଂଗଠନ । ଅଧିକ ଅଗ୍ରଗାମୀ କର୍ମସୂଚୀ ଏହା ଗ୍ରହଣ କଲା । ଅମୃତବଜାର ପତ୍ରିକାର ଶିଶିର ଘୋଷ, ସୁରେନ୍ଦ୍ର ନାଥ ବାନାର୍ଜୀ, ଆନନ୍ଦମୋହନ ବୋଷଙ୍କ ପରି ସେ କାଳର ପ୍ରଖ୍ୟାତ ବୁଦ୍ଧିଜୀବୀ ଏହାର ନେତୃତ୍ୱରେ

ରହିଲେ ଓ ଏହାର ଖ୍ୟାତି ପ୍ରସାରିତ ହେଲା । ଜାତୀୟତାବାଦୀ ପ୍ରଚାର ପ୍ରଖର ହେଲା ।

**ପୁନେ ସାର୍ବଜନିନ ସଭା ପ୍ରତିଷ୍ଠା ୧୮୭୦**

ଅନୁରୂପ ଆଗୁଆ ଚିନ୍ତା ଚେତନାକୁ ଧରି ମହାରାଷ୍ଟ୍ରର ପୁନେ ସାର୍ବଜନିନ ସଭା ସେତେବେଳେ ଖ୍ୟାତ ବିଶିଷ୍ଟ ବ୍ୟକ୍ତି ନ୍ୟାୟପତି ମହାଦେବ ଗୋବିନ୍ଦ ରାଣାଦେ, ଗଣେଶ ବସୁଦେବ ଯୋଷୀ, ଫାଡକେ ଦୁଇଭାଇଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଏହାର ବିଭିନ୍ନ ଶାଖା ଗଠିତ ହୋଇ ରାଜନୈତିକ ଶିକ୍ଷାପ୍ରଚାର କରାଯାଇଥିଲା ।

**ବମ୍ବେ ପ୍ରେସିଡେନ୍‌ସି ଆସୋସିଏସନ ପ୍ରତିଷ୍ଠା - ୧୮୮୫**

ଫିରୋଜ ଶାହା ମେହେଟା କେ.ଟି.ତଲାଙ୍ଗ, ବଦରୁଦ୍ଦିନ ତୟାବଜୀ ପ୍ରମୁଖଙ୍କ ଦ୍ୱାରା ଏହି ସଂଗଠନ ପଶ୍ଚିମ ଭାରତରେ ରାଜନୈତିକ ପ୍ରଚାର ଅଭିଯାନର ମୁଖପାତ୍ର ହୋଇଥିଲା ।

**ମାନ୍ଦ୍ରାଜ ମହାଜନ ସଭା ପ୍ରତିଷ୍ଠା ୧୮୮୪**

ଅନୁରୂପ ସାମାଜିକ ରାଜନୈତିକ ଦାବୀ ଓ ଆବେଦନ କରି ଏହି ସଂଗଠନ ଏମ.ଭାର୍ଗବାଚାରୀ, ଜି. ସୁବ୍ରମନ୍ୟମ ଆୟାର, ଆନନ୍ଦ ଚାରଲୁ ପ୍ରମୁଖଙ୍କ ନେତୃତ୍ୱରେ ପରିଚାଳିତ ହୋଇଥିଲା ।

**ଇଷ୍ଟ ଇଣ୍ଡିଆ ଆସୋସିଏନସ ପ୍ରତିଷ୍ଠା ୧୮୬୬**

ବ୍ରିଟିଶ ରାଜଧାନୀ ଇଂଲଣ୍ଡରେ ଭାରତୀୟମାନଙ୍କ ସମସ୍ୟାଗୁଡ଼ିକୁ ବ୍ରିଟିଶ ସରକାରର ନଜରକୁ ଆଣିବା ଲାଗି ଓ ସେଥିଲାଗି ବିଲାତରେ ଜନମତ ସୃଷ୍ଟି କରିବା ପାଇଁ ଏହି ସଂଗଠନଟି ବିଲାତରେ ବ୍ୟବସାୟ କରିଥିବା ଦାଦାଭାଇ ନାରୋଜିଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଭାରତରେ କେତେକ ସହରରେ ଏହାର ଶାଖାମାନ ମଧ୍ୟ ଖୋଲାଯାଇଥିଲା ।

ଏହି ପୁନଃଜାଗରଣ ଯୁଗରେ ଜାତୀୟ ସ୍ୱାଭିମାନ, ଆତ୍ମ ମର୍ଯ୍ୟାଦାର ରକ୍ଷା ଲାଗି ସ୍ୱାମୀ ବିବେକାନନ୍ଦଙ୍କ ଆହ୍ୱାନ ତତ୍କାଳୀନ ଜନମାନସରେ ଗଭୀର ରେଖାପାତ କରିଥିଲା । ଧର୍ମ ଓ ଆଧ୍ୟାତ୍ମିକତାର ମହତ୍ତ୍ୱ ପ୍ରଚାର ସାଂଗକୁ ସେ ଭାରତର ପରାଧୀନତା, ଦରିଦ୍ର ଜନତାର ଦୁର୍ଗତି ପ୍ରତି ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଊନବିଂଶ ଶତାବ୍ଦୀରେ ସେ ଭବିଷ୍ୟତବାଣୀ ଶୁଣାଇଥିଲେ ଯେ ଆଜିକୁ ୫୦ ବର୍ଷ ଅନ୍ତେ ଭାରତବର୍ଷ ସ୍ୱାଧୀନ ହେବ । "ଦୃଢ଼ମନା ହୋଇ ପୌରୁଷକାର" ଦର୍ଶାଅ ବୋଲି ୧୮୯୭ରେ ଦେଶବାସୀଙ୍କୁ ତାଙ୍କର ଉଦବୋଧନ ସ୍ୱଦେଶପ୍ରୀତି ସଂଚାରରେ ବିଶେଷ ଭୂମିକା ନେଇଥିଲା । ସେ କହିଥିଲେ "ନିଯୁତ ନିଯୁତ ଲୋକ ଅନାହାରରେ ମରୁଥିବାବେଳେ, ଅସ୍ପୃଶ୍ୟତା ଓ ନାରୀ ନିର୍ଯ୍ୟାତନା ଚାଲିଥିବାବେଳେ ଆଧ୍ୟାତ୍ମିକତା ନିରର୍ଥକ ।" ସେ ଆହୁରି ଘୋଷଣା କରିଥିଲେ "ଆଗାମୀ ସମାଜ ଦରିଦ୍ର ଓ ନିଷ୍ପେଷିତ ଜନତାର ହେବ ।"

ଭାରତୀୟ ସମାଜରେ ସାମାଜିକ କଳଙ୍କଗୁଡ଼ିକ ବିରୁଦ୍ଧରେ ଆର୍ଯ୍ୟ ସମାଜର ପ୍ରତିଷ୍ଠାତା ସ୍ୱାମୀ ଦୟାନନ୍ଦ ସରସ୍ୱତୀ ସମାଜରୁ ଅସ୍ପୃଶ୍ୟତା, ଜାତିଆଣ ପ୍ରଥା ବିରୁଦ୍ଧରେ ଆହ୍ୱାନ ଦେଇଥିଲେ ।

ସେହିପରି ମଧ୍ୟ ତତ୍କାଳୀନ ମୁସଲିମ ସଂପ୍ରଦାୟର ନେତା ସାର ସୟଦ ଅହମ୍ମଦ ଖାଁ ପରବର୍ତ୍ତୀ କାଳରେ କଂଗ୍ରେସ ବିରୋଧୀ, ବ୍ରିଟିଶ ପକ୍ଷପାତୀ ଆସ୍ଥାନ ଗ୍ରହଣ କଲେମଧ୍ୟ ଭାରତବାସୀଙ୍କୁ ଜାତିଧର୍ମ ବର୍ଣ୍ଣ ନିର୍ବିଶେଷରେ ଏକ ହେବା ଲାଗି ଆହ୍ୱାନ ଦେଇଥିଲେ । ସେ କହିଥିଲେ "ଆମେ କ'ଣ ଏକ ମାଟିରେ ବାସ କରୁନାହୁଁ । ଆମେ କଣ ଏକ ମାଟିରେ ପୋଡ଼ା ଅବା ପୋତା ହେଉନାହୁଁ । ମନେରଖ, ହିନ୍ଦୁ-ମୁସଲମାନ ଏ ଦୁଇଟି ପଦ ଧର୍ମ କ୍ଷେତ୍ରରେ ପ୍ରଯୁଜ୍ୟ । ନଚେତ୍ ଏ ଦେଶରେ ବାସ କରୁଥିବା ସବୁ ଲୋକ ହିନ୍ଦୁ-ମୁସଲମାନ ଖ୍ରୀଷ୍ଟିଆନ ସମସ୍ତେ ଗୋଟିଏ ଜାତିର ଲୋକ ।"

ବିଭିନ୍ନ ଧର୍ମ ସଂପ୍ରଦାୟର ଏସବୁ ବିଶିଷ୍ଟ ବ୍ୟକ୍ତିଙ୍କ ଆହ୍ୱାନ ଆଧୁନିକତାର ଆହ୍ୱନା । ଜନଚେତନାକୁ ଏହା ଉଜ୍ଜୀବିତ କରିଥିଲା ।

ଏହିପରି ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ଗଠିତ ଆଦ୍ୟ ରାଜନୈତିକ, ସମାଜ ସଂସ୍କାରମୂଳକ ସଂଠନ ଓ ସେଗୁଡ଼ିକ ଦ୍ୱାରା ଚାଳିତ ଜନଜାଗରଣକାରୀ ପ୍ରଚାର ଦେଶରେ ବ୍ରିଟିଶ ଶାସନ ଶୋଷଣର ଚିତ୍ରକୁ ଅଧିକରୁ ଅଧିକ ଲୋକଙ୍କ ପାଖରେ ପହଂଚାଇ ଦେଲା । ଜାତୀୟ ସ୍ୱାଭିମାନ, ଜାତୀୟ ଆତ୍ମ ମର୍ଯ୍ୟାଦାର ପୁନରୁଦ୍ଧାର କରି ବ୍ରିଟିଶ ବିରୋଧୀ ମାନସିକତା ସୃଷ୍ଟି କରିଥିବା ସଂଗଠିତ ଏହି ପ୍ରାଥମିକ ଆନ୍ଦୋଳନକୁ ସ୍ୱାଧୀନତା ସଂଗ୍ରାମର ଇତିହାସରେ ପୁନଃଜାଗରଣ (ରେନେଁସା)ର ଯୁଗ ରୂପେ ଅଭିହିତ କରାଯାଏ ।

ପରବର୍ତ୍ତୀ ପର୍ଯ୍ୟାୟର ସ୍ୱାଧୀନତା ସଂଗ୍ରାମ ଲାଗି ଏହି ପୁନଃ ଜାଗରଣ ଯୁଗର ଅବଦାନ ଅବିସ୍ମରଣୀୟ ।



# ଭାରତୀୟ ଜାତୀୟ କଂଗ୍ରେସର ଜନ୍ମ-୧୮୮୫ ମୁକ୍ତି ସଂଗ୍ରାମରେ ଏକ ଗୁରୁତ୍ୱପୂର୍ଣ୍ଣ ଦିଗମୋଡ଼

ଭାରତୀୟ ଜାତୀୟ କଂଗ୍ରେସର ଜନ୍ମ ଏକ ଆକସ୍ମିକ, ସ୍ୱତଃସ୍ଫୂର୍ତ୍ତ ଘଟଣା ନୁହଁ। ବ୍ରିଟିଶ ପରାଧୀନତାର ଶୃଙ୍ଖଳରେ ବନ୍ଧା ହେବା ପ୍ରଥମ ପର୍ଯ୍ୟାୟରେ ଅସଂଖ୍ୟ ମେଳି, ବିଦ୍ରୋହରୁ ଲବ୍ଧ ଅଭିଜ୍ଞତା ପରବର୍ତ୍ତୀ କାଳରେ ଉଚ୍ଚତର ସଂସ୍ଥା ସଂଗଠନର ଭିତ୍ତି ଥାପିଦେଲା। ଏହାହିଁ ପରବର୍ତ୍ତୀ ପର୍ଯ୍ୟାୟରେ ଆଣିଲା ନବଜାଗରଣ, ପୁନଃ ଜାଗରଣର ସଂସ୍ଥା ସଂଗଠନ। ଏହିସବୁ ସଂସ୍ଥା ସଂଗଠନର ଅଭିଜ୍ଞତାର ଉଚ୍ଚତର ସୋପାନରୂପେ ଭାରତୀୟ ନେତାମାନେ ଏକ ସର୍ବ ଭାରତୀୟ ସଂଗଠନର ସ୍ୱପ୍ନକୁ ସାକାର କଲେ। ପୂର୍ବରୁ ରଚିତ ଭିତ୍ତି ଭୂମିରୁ ଜନ୍ମ ହେଲା ଭାରତୀୟ ଜାତୀୟ କଂଗ୍ରେସ। ମାନ୍ଦ୍ରାଜ, ପୁନେ, ବମ୍ବେ, ଲଣ୍ଡନ ଓ ସର୍ବୋପରି ଆଦ୍ୟରେ ବଂଗଳାରେ ସଂଗଠିତ ଆସୋସିଏସନ ଗୁଡ଼ିକର ସମାନ ଲକ୍ଷ୍ୟ, ସମାନ ବିଚାର, ସମାନ ଚିନ୍ତାରୁ ଏକ ସର୍ବଭାରତୀୟ ସଂଗଠନର ଅଭିଳାଷ ଜାଗ୍ରତ ହେଲା।

୧୮୮୩ରେ କଲିକତାଠାରେ ଇଣ୍ଡିଆନ ଆସୋସିଏସନ ଉଦ୍ୟମରେ ଏକ ସମ୍ମିଳନୀରେ ବମ୍ବେ, ମାନ୍ଦ୍ରାଜ, ଯୁକ୍ତ ପ୍ରଦେଶ (ଉତ୍ତରପ୍ରଦେଶ)ର ତତ୍କାଳୀନ ଅଗ୍ରଗାମୀ ଚିନ୍ତାନାୟକ ସୁରେନ୍ଦ୍ର ନାଥ ବାନାର୍ଜୀ, ଆନନ୍ଦମୋହନ ବୋଷ (ସମ୍ମିଳନୀର ସଭାପତି) ପ୍ରମୁଖ ଭୂମିକା ନେଇଥିଲେ। ସଭାପତି ଆନନ୍ଦମୋହନ ଏହାକୁ ଜାତୀୟ ପାର୍ଲିଆମେଣ୍ଟ ଆଖ୍ୟା ଦେଇଥିଲେ। ୧୮୮୪ରେ ମାନ୍ଦ୍ରାଜଠାରେ ଅନୁଷ୍ଠିତ ହୋଇଥିବା ଥିଓଲୋଜିକାଲ ସୋସାଇଟି ଅଧିବେଶନରେ ୧୭ଜଣ ସେକାଳର ବୁଦ୍ଧିଜୀବୀ ଭାଗନେଇ ସାରା ଦେଶପାଇଁ ଜାତୀୟ ଆନ୍ଦୋଳନର ଚିନ୍ତା ପ୍ରକାଶ କରିଥିଲେ। ଠିକ୍ ଅଷ୍ଟାଦଶ ଶତାବ୍ଦୀର ଅଷ୍ଟଦଶକରେ କେତେକ ବିଶିଷ୍ଟ ଭାରତୀୟ ବ୍ରିଟିଶ ଶାସନରେ ଶୋଷିତ, ଶ୍ରମଜୀବୀ ଲୋକଙ୍କ ସ୍ୱାର୍ଥରକ୍ଷା ଲାଗି ପ୍ରାଥମିକ ଆନ୍ଦୋଳନର ସୂତ୍ରପାତ କରିଥିଲେ। ଏପରି ସଂଗ୍ରାମର ଅଗ୍ରଭାଗରେ ଥିଲେ ବମ୍ବେର ଶୋରାବଜୀ ସାପୁରଜୀ, ଏନ୍.ଏମ୍.ଲୋଖାଣ୍ଡେ ଏବଂ ବଂଗଳାର କାଳୀପଦ ବାନାର୍ଜୀ ପ୍ରମୁଖ। ଆସାମରେ ବ୍ରିଟିଶ ମାଲିକାଧୀନ ଚା' ବାଗାନଗୁଡିକରେ ଲୋମହର୍ଷଣକାରୀ ଅତ୍ୟାଚାରର ପ୍ରତିବାଦରେ ପ୍ରମୁଖ

ଭାଗ ନେଇଥିଲେ ଶିବନାଥ ଶାସ୍ତ୍ରୀ ଓ ଦ୍ୱାରିକାନାଥ ଗାଂଗୁଲି ପ୍ରମୁଖ। ଏତିକିବେଳେ ମଧ୍ୟ ଗୋପନ ସଂଗଠନର ଚିନ୍ତା ପ୍ରକାଶ ପାଇଥିଲା। ବ୍ରିଟିଶ ଶାସନର ଅତ୍ୟାଚାର ବିରୁଦ୍ଧରେ ନିଜ ରକ୍ତରେ ସ୍ୱାକ୍ଷର କରି ସଂଗ୍ରାମ କରିବାକୁ ଦ୍ୱିଜେନ୍ଦ୍ର ନାଥ ଠାକୁର ଏକ ସଂଗଠନ ଗଢିବାର ପ୍ରୟାସ କରିଥିଲେ। ବ୍ରିଟିଶ ପଦାର୍ଥଗୁଡିକୁ ବାସନ୍ଦ କରିବାର ଆଦ୍ୟ ଚିନ୍ତା ପ୍ରକାଶ କରିଥିଲେ ସୋମନାଥ ଚନ୍ଦର। ଗଢି ଉଠୁଥିବା ଭାରତୀୟ ଶିଳ୍ପଗୁଡିକୁ ବ୍ରିଟିଶ ପୁଞ୍ଜିପତିଙ୍କ ଆକ୍ରମଣରୁ ରକ୍ଷା ପାଇବା ଲାଗି ସେତେବେଳେ ଏପରି ଚିନ୍ତାର ଉଦ୍ରେକ ହୋଇଥିଲା।

୧୮୮୫ରେ କଂଗ୍ରେସର ଉଦବୋଧନୀ ସମ୍ମିଳନୀ ଆରଂଭ ପୂର୍ବରୁ ୧୮୮୫ ମାର୍ଚ୍ଚ ମାସରେ ପୂନେଠାରେ 'ଭାରତୀୟ ୟୁନିୟନ' ନାମକ ସଂସ୍ଥା ଏକ ପ୍ରସ୍ତୁତି ସମ୍ମିନଳୀ ଡାକିଥିଲା। ପୁନେ ଠାରେ ସେହି ବର୍ଷ ନଭେମ୍ବର ମାସରେ ସର୍ବ ଭାରତୀୟ ସମ୍ମଳନୀ ହେବ ବୋଲି ଚୂଡାନ୍ତ ନିଷ୍ପତ୍ତି ସେଠାରେ ନିଆଯାଇଥିଲା। ମାତ୍ର ପୁନେ ସହରରେ ପ୍ରବଳ ବିଶୂଚିକା ବ୍ୟାପିଲାରୁ ସମ୍ମିଳନୀ ବମ୍ବେକୁ ସ୍ଥାନାନ୍ତରିତ ହେଲା।

ଠିକ୍ ଏହି ବର୍ଷ ଡିସେମ୍ବର ମାସ ୨୫/୨୬/୨୭ରେ ୧୮୮୩ରେ ଇଣ୍ଡିଆନ ଆସୋସିଏସନ ଦ୍ୱାରା ଗଠିତ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ କଲିକତାଠାରେ ବସିଥିଲା। ଏହାକୁ ଡାକିଥିଲେ ମିଳିତ ଭାବରେ ଇଣ୍ଡିଆନ ଆସୋସିଏସନ, ବ୍ରିଟିଶ ଇଣ୍ଡିଆ ଆସୋସିଏସନ ଏବଂ ନବଗଠିତ ଜାତୀୟ ମହମଡିୟାନ ଆସୋସିଏସନ। ବମ୍ବେରେ ଏହାର ଦିନକ ପରେ ଅନୁଷ୍ଠିତ ହେବାକୁ ଯାଉଥିବା ସମ୍ମିଳନୀକୁ ଏହି ସମ୍ମିଳନୀ ତରଫରୁ ସ୍ୱାଗତ ଜଣାଇ ଏକ ଶୁଭେଚ୍ଛା ବାର୍ତ୍ତା ପ୍ରେରିତ ହୋଇଥିଲା। ତେଣୁ ଏହି ଦୁଇଟି ସମ୍ମିଳନୀ ସମାନ୍ତରାଳ ନଥିଲାକି ଏ ଦୁଇଟିର ଲକ୍ଷ୍ୟ ଓ ଆଦର୍ଶରେ କୌଣସି ଭିନ୍ନତା ନଥିଲା ବୋଲି ପ୍ରମାଣିତ ହୁଏ।

ବମ୍ବେର ଗୋକୁଳଦାସ ତେଜପାଲ ସଂସ୍କୃତ ମହାବିଦ୍ୟାଳୟରେ ୧୮୮୫ ଡିସେମ୍ବର ୨୮,୨୯,୩୦ ତିନିଦିନ ଧରି ଏକ ମହାସମ୍ମେଳନରେ ଅଧ୍ୟକ୍ଷତା କରିଥିଲେ ଡବଲ୍ୟୁ. ସି. ବାନାର୍ଜି।

ଏହି ଉଦବୋଧନୀ ସମ୍ମିଳନୀ ଓ ସେଥିରୁ ଉଦଭବ ଭାରତୀୟ ଜାତୀୟ କଂଗ୍ରେସ ସେତେବେଳର ରାଜନୈତିକ ପରିସ୍ଥିତି ଓ ସେ କାଳର ଚିନ୍ତା-ଚେତନା ଅନୁସାରେ ଅତି ସୀମିତ ରାଜନୈତିକ ଲକ୍ଷ୍ୟ ଘୋଷଣା କରିଥିଲା। ତାହା ବ୍ରିଟିଶ ଶାସନର ଅବସାନ ନୁହଁକି, ସ୍ୱରାଜ ନୁହଁକି, ମୁକ୍ତି, ପୂର୍ଣ୍ଣ ସ୍ୱାଧୀନତା ନୁହଁ। ବ୍ରିଟିଶ ପ୍ରଜା ଭାବରେ ବ୍ରିଟିଶ ଶାସନଠାରୁ ନ୍ୟାୟ ପାଇବା ଥିଲା ମୂଳମନ୍ତ୍ର। ସେଥିରେ ଗୃହୀତ ପ୍ରସ୍ତାବରେ ଥିଲା "ୟୁରୋପରେ ଯେଉଁ ପ୍ରକାର ଧ୍ୟାନଧାରଣା ଘେନି ଶାସନ ଚାଲିଛି, ସେପରି ଆକାଙ୍କ୍ଷାର ପ୍ରକାଶ ସହିତ ବ୍ରିଟିଶ ସରକାର ପ୍ରତି ସେମାନଙ୍କର (ଭାରତୀୟମାନଙ୍କର) ଆନୁଗତ୍ୟର କୌଣସି ଅଂସଗତି ନାହିଁ।"

ସମ୍ମିଳନୀ ଅନ୍ତେ ଏହି ସମ୍ମିଳନୀର ଆଉ ଏକ ଉଦ୍ୟୋକ୍ତା ୧୮୮୨ରେ ଅବସରପ୍ରାପ୍ତ ଉଚ୍ଚ ବ୍ରିଟିଶ ପଦାଧିକାରୀ ଏ.ଓ. ହ୍ୟୁମଙ୍କ ଉଦ୍ଦେଶ୍ୟରେର ତିନି ତିନି ଥର ଜୟକାର (ଚିୟରର୍ସ) ଧ୍ୱନି ଧ୍ୱନିତ ହୋଇଥିଲା। କାହିଁକି ହ୍ୟୁମ ଏପରି ଉଦ୍ୟମ କଲେ, କାହିଁକି ତତ୍କାଳୀନ ନେତାମାନେ ତାଙ୍କର ସାହାଯ୍ୟ ନେଲେ ତାହାର ତଥ୍ୟଭିତ୍ତିକ ବିଚାର ବିବେଚନା କରାଯାଉ।

**ଭାରତୀୟ ଜାତୀୟ କଂଗ୍ରେସ - ଏ.ଓ ହ୍ୟୁମଙ୍କ ଭୂମିକା:**

କେତେକ ଇତିହାସବିତ୍ ବ୍ରିଟିଶ ନାଗରିକ ଏ.ଓ.ହ୍ୟୁମଙ୍କୁ କଂଗ୍ରେସର ପ୍ରତିଷ୍ଠାତା ବୋଲି ଚିତ୍ରଣ କରିଥାଆନ୍ତି। ଏପରି ଧାରଣା ମଧ୍ୟ ଲୋକଙ୍କ ମନରେ ବଦ୍ଧମୂଳ କରାଇ ଦିଆଯାଇଛି। ଅଭିଜ୍ଞତା କହେ, ଏପରି ଧାରଣାର ବଶବର୍ତ୍ତୀ ହୋଇ ସ୍ୱାଧୀନତା ସଂଗ୍ରାମ କାଳରେ ଦେଶପ୍ରେମୀ ମୁକ୍ତି ସୈନିକମାନେ ମଧ୍ୟ ଏହାକୁ ପ୍ରଶ୍ନ କରିନାହାନ୍ତି। ତଦ୍ୱାରା ଅତୀତର ସମସ୍ତ ଆନ୍ଦୋଳନ ଓ ସଂଗଠନର ଅଭିଜ୍ଞତାରୁ ଯେ ଏପରି ସର୍ବ ଭାରତୀୟ ଜାତୀୟ ସଂଗଠନ ଗଢା ହେଲା, ଏହି ତାତ୍ପର୍ଯ୍ୟକୁ ନ୍ୟୂନ କରି ଦେଖାଯାଏ। ଏହା ମଧ୍ୟ ସତ୍ୟଯେ ଏ.ଓ.ହ୍ୟୁମ ଭାରତୀୟ କଂଗ୍ରେସ ଗଠନରେ ଏକ ବିଶିଷ୍ଟ ଭୂମିକା ନେଇଥିଲେ। କାହିଁକି ନେଇଥିଲେ, କିପରି ଏ ଭୂମିକା ନେଲେ ଓ ଠିକ୍ ତାର ପରବର୍ତ୍ତୀ କାଳରେ କଣ ସବୁ ଘଟିଲା ତାହାର ସଂକ୍ଷିପ୍ତ, ତଥ୍ୟଭିତ୍ତିକ ବିବରଣୀ ପ୍ରକୃତ ସତ୍ୟ ପ୍ରକାଶ କରି ଦେବ।

ଭାରତର ଘରୋଇ ବିଭାଗର ସେକ୍ରେଟେରୀ ହ୍ୟୁମ ଅବସର ପରେ ସିମଳାରେ ଅବସ୍ଥାନ କରିଥିଲେ। ଜଣେ ବିଶିଷ୍ଟ ଉଚ୍ଚପଦାଧିକାରୀ ଭାବରେ ଶାସନକାଳରେ ଭାରତରେ ସର୍ବତ୍ର ଯେଉଁ ଅସନ୍ତୋଷର ବହ୍ନି କୁହୁଳି ଉଠୁଥିଲା, ତାହା ସେ ଉପଲବ୍ଧି କରିଥିଲେ। କଟକଣା, ଦମନ, ଜେଲ ଜରିମାନା, ବ୍ରିଟିଶ ପ୍ରଣୀତ ଦଣ୍ଡବିଧି ଆଇନ, ପୁଲିସ ଆଇନ, ପ୍ରେସ ଆଇନ ସତ୍ତ୍ୱେ ୧୮୫୭ପରେ ଗଜୁରି ଉଠୁଥିବା ଅସନ୍ତୋଷ ଓ ବିକ୍ଷୋଭ ଆଗାମୀ ଦିନର ବ୍ରିଟିଶ ବିରୋଧୀ ମହାଦ୍ରୁମର ଅଙ୍କୁର ବୋଲି ସେ ଦେଖିପାରିଥିଲେ। ତାହାରି ଫଳଶ୍ରୁତି ଅନୁସାରେ ବିଭିନ୍ନ ସ୍ଥାନରେ ଆସୋସିଏସନମାନ ଗଢି ଉଠିଛି। ସେଦିନର ଗଢା ଆସୋସିଏନସନଗୁଡିକ ଆହୁରି ଆଗୁଆ ରୂପ ନେବ ତାହା ସେ ଉପଲବ୍ଧି କରିପାରିଥିଲେ। ଏହାକୁ ଆୟତରେ ରଖିବା ପ୍ରୟାସରେ ସେ ଅଗ୍ରସର ହେଲେ। ୧୮୮୪ରେ ବମ୍ବେ ଓ କଲିକତାରେ ଥିବା ବିଶିଷ୍ଟ ଭାରତୀୟମାନଙ୍କ ସହିତ ସେ ଯୋଗାଯୋଗ ପ୍ରତିଷ୍ଠା କଲେ। ଫଳରେ ଭାରତୀୟ ଜାତୀୟ ୟୁନିୟନ ଗଠନ କରାଯାଇ ପୁନେରେ ସର୍ବ ଭାରତୀୟ ସମ୍ମିଳନୀ ୧୮୮୫ରେ ବସିବ ଓ ତାହାର ନାମ ଭାରତୀୟ ଜାତୀୟ କଂଗ୍ରେସ ରଖାଯିବ ବୋଲି ନିଷ୍ପତ୍ତି ନିଆଗଲା। ଏଥିପୂର୍ବରୁ ସେ ତତ୍କାଳୀନ ଭାଇସରାୟ ଲର୍ଡ ଡଫରିନଙ୍କୁ ଭେଟି ତାଙ୍କ ଯୋଜନାକୁ ଜଣାଇଥିଲେ। ପ୍ରତିବର୍ଷ ଏପରି ସମ୍ମିଳନୀ ଥରେ ଲେଖାଁଏ ବସିବ ଓ ଏହି ସମ୍ମିଳନୀ ବିଭିନ୍ନ ସାମାଜିକ ସମସ୍ୟାର ଆଲୋଚନା କରିବ ଓ ସରକାରଙ୍କୁ ପ୍ରସ୍ତାବମାନ ପଠାଇବ, ଆବେଦନ ଜଣାଇବ, ଏହାହିଁ ଥିଲା ତାଙ୍କର ଯୋଜନା। ଲର୍ଡ ଡଫରିନ

ଏପରି ନିରୀହ ପ୍ରସ୍ତାବକୁ ଗ୍ରହଣ କରିନେଲେ । ଏହି ଯୋଜନା ସପକ୍ଷରେ ବିଲାତ ଯାଇ ବ୍ରିଟିଶ ପାର୍ଲାଆମେଣ୍ଟ ସଦସ୍ୟମାନଙ୍କୁ ଅବଗତ କରାଇବାକୁ ସେ ହ୍ୟୁମଙ୍କୁ ପରାମର୍ଶ ଦେଲେ । ହ୍ୟୁମ ସାହେବ ନିଜ ଯୋଜନାଟିର ପ୍ରକୃତ ଉଦ୍ଦେଶ୍ୟ ନିଜେ ବର୍ଣ୍ଣନା କରି କହିଥିଲେ ଯେ "ଆମ କାର୍ଯ୍ୟକଳାପ ଫଳରେ ଯେଉଁ ବିରାଟ ଓ ବର୍ଦ୍ଧିଷ୍ଣୁ ଶକ୍ତିଗୁଡ଼ିକ ଉଦଭବ ହୋଇଛନ୍ତି ସେମାନଙ୍କଠାରୁ ଖସି ଆସିବାର (ଏସକେପ) ଏହା ହେବ ଏକ ନିରାପଦ ରକ୍ଷାକବଚ ।" (ସେଫଯିଭାଲ୍‌ବ) ମାତ୍ର ତାହା ରକ୍ଷାକବଚ ନହେବା ଦେଖି ବ୍ରିଟିଶ ଶାସକମାନେ ଔଦ୍ଧତ୍ୟ ପ୍ରକାଶ କରି ଭାରତୀୟମାନଙ୍କ ପ୍ରତି କଟୂ କଟାକ୍ଷ କଲେ ।

୧୮୮୫ରେ କଂଗ୍ରେସର ଗଠନ ପରେ, ୧୮୬୬ରେ ଏହାର ଏକ ପ୍ରତିନିଧିଦଳ ଲର୍ଡ ଡଫରିନଙ୍କୁ ଭେଟି ଏକ ଆବେଦନ ପତ୍ର ଦେଇଥିଲେ । ୧୮୮୬ରେ ଏକ ଭାଷଣ ପ୍ରସଙ୍ଗରେ ଭାଇସରାୟ ଡଫରିନ ସ୍ୱଭାବସୁଲଭ ବ୍ରିଟିଶ ମିଜାଜ ଦେଖାଇ କହିଥିଲେ "ଭାରତ ଏପରି ଏକ ଦେଶ ନୁହଁ, ଯେଉଁଠିକି ୟୁରୋପୀୟ ଗଣତାନ୍ତିକ ଆନ୍ଦୋଳନର ଆୟୁଧକୁ ବିନା ବିଚାରରେ ପ୍ରୟୋଗ କରାଯାଇପାରିବ ।" ସେଥି ସଂଗେ ସଂଗେ ସେ ସତର୍କ କରାଇ ଦେଇଥିଲେ ଯେ "କିଛି କିଛି ସୁବିଧା ସୁଯୋଗ (କନସେନସନ) ଦିଆଯାଇପାରେ । ମାତ୍ର ସଭାସମାବେଶ ଓ ବିସ୍ଫୋରକ ଭାଷଣ ନିଷିଦ୍ଧ କରାଯାଉଛି ।"

୧୮୮୮ରେ ସେ କଂଗ୍ରେସକୁ "ଏକ କ୍ଷୁଦ୍ରାଦି କ୍ଷୁଦ୍ରତମ ସଂଖ୍ୟାନ୍ୟୁନଙ୍କ ସଂଗଠନ" ରୂପେ ଅଭିହିତ କରିଥିଲେ ।

ଏଇଥିରୁ ପ୍ରମାଣିତ ହୁଏଯେ ଲର୍ଡ ଡଫରିନ୍, ଭାଇସରାୟ ହିସାବରେ ଓ ଏ.ଓ.ହ୍ୟୁମ 'ଭାରତପ୍ରେମୀ' ହିସାବରେ ବ୍ରିଟିଶ ଶାସନର ଭବିଷ୍ୟତ୍ ସୁରକ୍ଷାର ଚିନ୍ତା ଘେନି ସଲ୍ଲା ପରାମର୍ଶ କରିଥିଲେ । "ଚରମପନ୍ଥୀ" ମାନଙ୍କ ହାତରୁ ଭାରତରେ ଜାଗ୍ରତ ହେଉଥିବା ଜନ ଅସନ୍ତୋଷ ଜନିତ ଆନ୍ଦୋଳନ ଅକ୍ତିଆର ବାହାରେ ନ ଯିବାର ଏହାହିଁ ଥିଲା ବ୍ରିଟିଶ କୂଟନୀତି ।

୧୯୧୩ରେ ତତ୍କାଳୀନ ବିଶିଷ୍ଟ ଜନନାୟକ ଗୋପାଳକୃଷ୍ଣ ଗୋଖଲେ କଂଗ୍ରେସର ପ୍ରତିଷ୍ଠା ଘେନି ହ୍ୟୁମ ଦେଇଥିବା ମନ୍ତବ୍ୟ ସଂପର୍କରେ କହିଲେ "କଂଗ୍ରେସ ଗଠନ କରିବାକୁ ଯଦି କେହି ଭାରତୀୟ ଆଗୁଆ ହୋଇଥାନ୍ତେ, ଶାସନ କର୍ତ୍ତୃପକ୍ଷ ତାହାକୁ କରାଇ ଦେଇ ନଥାନ୍ତେ । ଜଣେ ଇଂରେଜ ବ୍ୟକ୍ତି ଏବଂ ବିଶିଷ୍ଟ ଅବସରପ୍ରାପ୍ତ ପଦାଧିକାରୀ ଯଦି କଂଗ୍ରେସର ପ୍ରତିଷ୍ଠାତା ହୋଇ ନଥାନ୍ତେ, ତେବେ ସେ କାଳରେ ରାଜନୈତିକ ଆନ୍ଦୋଳନ ପ୍ରତି ଯେଉଁ ଅବିଶ୍ୱାସ ଥିଲା କର୍ତ୍ତୃପକ୍ଷମାନେ କୌଣସିନା କୌଣସି ଉପାୟରେ ଆନ୍ଦୋଳନକୁ ଦବେଇ ଦେଇଥାନ୍ତେ ।"

ପରିସ୍ଥିତିର ବିଚାର କରି ତତ୍କାଳୀନ ଦେଶପ୍ରେମୀ ଅଗ୍ରଣୀ ବ୍ୟକ୍ତିମାନେ ହ୍ୟୁମଙ୍କ ଉଦ୍ୟମରେ ସାମିଲ ହୋଇଥିଲେ । ହ୍ୟୁମଙ୍କ ଲକ୍ଷ୍ୟ ଓ ଭାରତୀୟ ନେତାମାନଙ୍କ ଅନ୍ତରର ଲକ୍ଷ୍ୟ ଯେ ଭିନ୍ନ ତାହାକୁ ପରବର୍ତ୍ତୀ କାଳରେ କଂଗ୍ରେସର ଇତିହାସ ପ୍ରମାଣ କରିଦେଲା ।

**ବ୍ରିଟିଶ ଔଦ୍ଧତ୍ୟର ସ୍ୱରୂପ:**

ବ୍ରିଟିଶ ସାମ୍ରାଜ୍ୟର ସୁବିଶାଳ ଉପନିବେଶ, ବ୍ରିଟିଶ ପୁଂଜିବାଦର ଶୋଷଣ ଲୁଣ୍ଠନର ହସ୍ତମୁଦି ମାହାଲ କାଳକାଳ ଲାଗି ବ୍ରିଟିଶ ସାମ୍ରାଜ୍ୟରେ ରହିବ ଓ ରଖିବାକୁ ହେବ, ଏହି ନୀତିର କେତେକ ଦୃଷ୍ଟାନ୍ତ ନିଆଯାଉ । ବ୍ରିଟିଶ ସାମ୍ରାଜ୍ୟକୁ ଶାସନ କରୁଥିବା ବିଲାତର ରାଜନୈତିକ ଦଳ, ତାହା ରକ୍ଷଣଶୀଳ (କନଜରଭେଟିଭ) ହୁଅନ୍ତୁ, ଉଦାରପନ୍ଥୀ (ଲିବରାଲ) ହୁଅନ୍ତୁ ଅବା ଲେବର (ଶ୍ରମିକ) ଦଳ ହୁଅନ୍ତୁ ସେସବୁର ନେତାଙ୍କ ଉକ୍ତି ଉଦ୍ଧାର କରାଗଲା । ଭାରତୀୟ ଜାତୀୟବାଦୀ ବୋଲି ଚିତ୍ରିତ କରାଯାଉଥିବା ମାକ୍‌ଲେ କହିଥିଲେ, "ଆମେ ଜାଣୁ ଭାରତୀୟ ଲୋକେ କେବେହେଲେ ସ୍ୱାଧୀନ ସରକାର ପାଇବେ ନାହିଁ । କିନ୍ତୁ ତାହା ପକ୍ଷରେ ଉତ୍କୃଷ୍ଟ ହେବ ଏକ ଦୃଢ଼ ନିରପେକ୍ଷ ସ୍ୱୈରତନ୍ତ୍ର (ଡେସପଟିଜିମ) "ଭାରତରେ ପ୍ରତିନିଧିମୂଳକ ସଂସ୍ଥାମାନ ରହିପାରେ ।" ତାଙ୍କର ଏହି ଉକ୍ତିକୁ ସମର୍ଥନ କରି ପ୍ରତିନିଧିମୂଳକ ସରକାରର ପ୍ରବକ୍ତା ବିଚାର କରାଯାଉଥିବା ଷ୍ଟୁଆର୍ଟ ମିଲ କହିଥିଲେ "ଏପରି ପ୍ରଶ୍ନ ସଂପୂର୍ଣ୍ଣ ଅବାନ୍ତର ।" ପରବର୍ତ୍ତୀ ୧୮୭୬-୮୦ରେ ଭାରତରେ ଭାଇସରାୟ ଥିବା ଲର୍ଡ ଲିଟନ ଏକ ଗୋପନୀୟ ଚିଠିରେ ଲେଖିଥିଲେ "ଆମେ ସମସ୍ତେ ଜାଣୁ, ଏସବୁ ଦାବୀ ଓ ପ୍ରତ୍ୟାଶା (ସରକାରୀ ଚାକିରୀରେ ଦପ୍ତରମାନଙ୍କରେ ସମାନତା) କଦାପି ପୂରଣ ହେବ ନାହିଁ ବା ହେବାକୁ ଦିଆଯିବ ନାହିଁ । ଆମେ ଏହା ବାରଣ କରିପାରିବୁ, ସେମାନଙ୍କୁ ଠକି (ଚିଟିଙ୍ଗ) ଦେଇପାରିବୁ ମାତ୍ର ଠକିଦେବା କଥାଟିକୁ ଠିକଣା ବାଟ ବାଛି ନେଇଛୁ ।" ଲର୍ଡ ସାଲିସବରି ଭାରତକୁ ବ୍ରିଟିଶ ଦେବା ପ୍ରତିଶ୍ରୁତିଗୁଡ଼ିକ "ରାଜନୈତିକ କୂଟ କୌଶଳ" ବୋଲି ଘୋଷଣା କରିଥିଲେ ।

ପରବର୍ତ୍ତୀ କାଳରେ ୧୯୦୮ ମିଣ୍ଟୋ ମର୍ଲେ ସଂସ୍କାର ସଂପର୍କରେ ଖୋଦ ଜନ ମର୍ଲେ ଏହି ସଂସ୍କାରର ଉଦ୍ଦେଶ୍ୟ ସଂପର୍କରେ ସ୍ପଷ୍ଟ କରିଦେଇଥିଲେ ଯେ "ଯଦି ଏ ସଂସ୍କାର ପ୍ରତ୍ୟକ୍ଷ ଅବା ଅପ୍ରତ୍ୟକ୍ଷଭାବରେ ଭାରତରେ ସଂସଦୀୟ ବ୍ୟବସ୍ଥା ଆଣିବ ବୋଲି କୁହାଯିବ ତେବେ ଏଥିରେ ମୁଁ ଆଦୌ ଜଡ଼ିତ ହେବି ନାହିଁ ।"

୧୯୧୦ରେ ଲର୍ଡ କ୍ରୋମର ତାଙ୍କ ରଚିତ ପୁସ୍ତକରେ ଲେଖିଲେ "ଏହି ଧାରଣା (ଭାରତରେ ସ୍ୱାୟତ୍ତ ଶାସନ) କେବଳ ଅବାନ୍ତର ନୁହେଁ, ଅସମ୍ଭବ ମଧ୍ୟ । ମୁଁ ଆହୁରି କହିବିଯେ ଏପରି ଧାରଣା ପୋଷଣ କରିବା ସଭ୍ୟତା ବିରୁଦ୍ଧରେ, ବିଶେଷ ଭାବରେର ଭାରତର ନିର୍ବାକ ନିୟୁତ ଲୋକ, ଯେଉଁମାନଙ୍କ ସ୍ୱାର୍ଥରକ୍ଷା ଆମର ଦାୟିତ୍ୱ, ସେମାନଙ୍କ ବିରୁଦ୍ଧରେ ହେବ ଅପରାଧ ।" ସେ ନିର୍ବାକ ଭାରତୀୟମାନଙ୍କ ପାଇଁ କୁମ୍ଭୀର କାନ୍ଦଣାର ଅଭିନୟ କରିଥିଲେ ।

କଂଗ୍ରେସର ପ୍ରତିଷ୍ଠାପରେ ୧୮୯୮ରେ ବ୍ରିଟିଶ ଭାଇସରାୟ ଲର୍ଡ ଏଲଗିନ ଭାରତୀୟମାନଙ୍କ ଆବେଦନ, ଦାବୀଗୁଡ଼ିକ ପ୍ରତି କଟାକ୍ଷ କରି କହିଥିଲେ, "ତରବାରୀ ଦ୍ୱାରା ଭାରତକୁ ଜୟ କରାଯାଇଛି ଏବଂ ତରବାରୀ ଦ୍ୱାରା ଭାରତକୁ ଅଧୀନସ୍ଥ ରଖାଯିବ ।"

ଭାରତକୁ ପରାଧୀନ କରି ରଖିବାର ଆଉ ଏକ ଆୟୁଧ ଥିଲା ବ୍ରିଟିଶ ଶାସନ ପୁଷ୍ଟ ଦେଶୀୟ ରାଜ୍ୟ। ୧୮୬୦ରେ ଭାଇସରାୟ ଲର୍ଡ କାନିଙ୍ଗଙ୍କ ଘୋଷଣା ଥିଲା, "ଆମେ ଯଦି ଭାରତକୁ ଜିଲ୍ଲା ଗୁଡିକରେ ପରିଣତ କରୁ ତେବେ ଆମ ସାମ୍ରାଜ୍ୟ ଆଉ ୫୦ବର୍ଷ ରହିନାହିଁ। କୌଣସି ରାଜନୈତିକ କ୍ଷମତା ନଦେଇ ମାତ୍ର ଆମ ଶାସନର ଆୟୁଧ ରୂପେ ଆମେ ଗୁଡ଼ିଏ ଦେଶୀୟ ରାଜ୍ୟ ରଖିଲେ ଆମ ଶାସନ ତିଷ୍ଠି ରହିବ। ହୁଁମଙ୍କ ଭାରତପ୍ରୀତିର ସ୍ୱରୂପକୁ ଏହି ଉଦ୍ଧୃତ ଘୋଷଣାମାନ ଅକାଟ୍ୟ ରୀତିରେ ପ୍ରକାଶ କରିଦେଲା।

□□□

# ପରବର୍ତ୍ତୀ ୨୦ ବର୍ଷ ଆବେଦନ, ନିବେଦନ ପର୍ଯ୍ୟାୟ ରାଜନୈତିକ ପ୍ରଚାର ଅଭିଯାନ

୧୮୮୫ରେ କଂଗ୍ରେସର ପ୍ରତିଷ୍ଠା ପରେ ୧୯୦୫ ଯାଏ କୋଡିଏ ବର୍ଷ କାଳ ଭାରତରେ ରାଜନୈତିକ କାର୍ଯ୍ୟକଳାପ ମୁଖ୍ୟତଃ ରାଜନୈତିକ ଚେତନା ସୃଷ୍ଟି କରିବା ଏବଂ ଭାରତବାସୀଙ୍କ ଅଭାବ ଅସୁବିଧା, ସେମାନଙ୍କ ଆଶା ଆକାଂକ୍ଷା ସଂପର୍କରେ ବ୍ରିଟିଶ ଶାସକ ଗୋଷ୍ଠୀଙ୍କୁ ଅବଗତ କରାଇ ନ୍ୟାୟ ପାଇବାର ଭରସା ରଖିବାରେ ମୁଖ୍ୟତଃ ସୀମିତ ଥିଲା। ଲୋକମତ ସୃଷ୍ଟି କରିବା ଥିଲା ପ୍ରଧାନ ରାଜନୈତିକ କାର୍ଯ୍ୟ। ତାହା ସଂଗେ ସଂଗେ ଭାରତରେ ଏହି ଦାବୀଗୁଡିକୁ ହାସଲ କରିବାଲାଗି ବିଭିନ୍ନ ସାମାଜିକ ଗୋଷ୍ଠୀ, ବିଭିନ୍ନ ଭାଷାଭାଷୀ, ବିଭିନ୍ନ ଧର୍ମ ବିଶ୍ୱାସୀ ଜନଗୋଷ୍ଠୀଙ୍କୁ ଜାତୀୟ ସ୍ରୋତରେ ସାମିଲ କରିବା ଲାଗି ପଦକ୍ଷେପ ନେବାର ଉଦ୍ୟମ କରାଯାଇଥିଲା।

କଂଗ୍ରେସ ପ୍ରତିଷ୍ଠାର ଆଦ୍ୟ ଭାଗରେ ଦେଖାଯାଇଛି ହିନ୍ଦୁ, ପାର୍ଶୀ, ମୁସଲମାନ ବୁଦ୍ଧିଜୀବୀ, ଦେଶବତ୍ସଳ ବ୍ୟକ୍ତିବିଶେଷ ବ୍ରିଟିଶ ବିରୋଧୀ ସର୍ବଭାରତୀୟ ରାଜନୈତିକ ସଂଗଠନ କଂଗ୍ରେସରେ ନେତୃତ୍ୱ ଗ୍ରହଣ କରିଛନ୍ତି ଓ ପ୍ରତ୍ୟେକ ସଂପ୍ରଦାୟରୁ କଂଗ୍ରେସ ଅଧିବେଶନଗୁଡ଼ିକରେ ପ୍ରତିନିଧି ଯୋଗ ଦେଇଛନ୍ତି। କଂଗ୍ରେସର ଭିତ୍ତି ପ୍ରସାରିତ ହୋଇଛି। ଦୃଷ୍ଟାନ୍ତ ସ୍ୱରୂପ ୧୮୮୫ରେ ବମ୍ବେ ଉଦବୋଧନୀ ଅଧିବେଶନରେ ସମଗ୍ର ଭାରତରୁ ମାତ୍ର ୭୨ ଜଣ ପ୍ରତିନିଧି ଭାଗ ନେଇଥିଲେ। ତହିଁରେ ଇ.ଆର.ଏ ସାହାନି ଏକମାତ୍ର ମୁସ୍‌ଲିମ ପ୍ରତିନିଧି ଥିଲେ। ୧୮୮୭ରେ ସେହିଁ କଂଗ୍ରେସ ଅଧିବେଶନର ସଭାପତି ହୋଇଥିଲେ।

ପରବର୍ତ୍ତୀ ବର୍ଷ କଲିକତା କଂଗ୍ରେସର ୪୩୪ଜଣ ପ୍ରତିନିଧିଙ୍କ ମଧ୍ୟରେ ୨୩ଜଣ ମୁସ୍‌ଲିମ ଥିଲେହେଁ ୧୮୮୭ରେର ମାନ୍ଦ୍ରାଜ କଂଗ୍ରେସବେଳକୁ ସମସ୍ତ ପ୍ରତିନିଧି ୬୦୭ଜଣଙ୍କ ମଧ୍ୟରେ ମୁସଲମାନ ପ୍ରତିନିଧିଙ୍କ ସଂଖ୍ୟା ବୃଦ୍ଧି ପାଇଲା। ଚତୁର୍ଥ କଂଗ୍ରେସ ଅଧିବେଶନ ଏଲ୍ଲାବାଦରେ ଉପସ୍ଥିତ ୧୨୪୮ ପ୍ରତିନିଧିଙ୍କ ମଧ୍ୟରେ ୨୨୧ଜଣ ବିଶିଷ୍ଟ ମୁସଲମାନ ପ୍ରତିନିଧି ଥିଲେ। ୧୮୮୯ରେ ବମ୍ବେ ଅଧିବେଶନରେ ୧୮୮୯ଜଣ ସମଗ୍ର ପ୍ରତିନିଧିଙ୍କ ମଧ୍ୟରେ ସେମାନଙ୍କ ସଂଖ୍ୟା ଥିଲା ୨୫୪ଜଣ। କଂଗ୍ରେସର ଏହି ପ୍ରଥମ ୨୦ ବର୍ଷ ଭିତରେ ରହମତଲାଲ

ସାୟାନି ଏବଂ ବଦରୁଦ୍ଦିନ ତୟାବଜୀ କଂଗ୍ରେସ ଅଧିବେଶନ ଗୁଡ଼ିକରେ ସଭାପତି ହୋଇଥିଲେ ୧୮୯୫ରେ ସୁରେନ୍ଦ୍ର ନାଥ ବାନାର୍ଜୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ରାଜନୈତିକ ପ୍ରସ୍ତାବ ଓ ଦାବୀମାନ ଗ୍ରହଣ କରିଥିଲା । ୧୯୦୬ରେ କଲିକତା କଂଗ୍ରେସ ଅଧିବେଶନରେ ଦାଦାଭାଇ ନାରୋଜି "ଆପଣାର ରାଜ, ସ୍ୱରାଜହିଁ" ଭାରତବାସୀଙ୍କ ଆକାଂକ୍ଷା ବୋଲି ପ୍ରକାଶ କରିଥିଲେ ।

ପରବର୍ତ୍ତୀ କାଳରେ ବାଳଗଙ୍ଗାଧର ତିଳକ "ସ୍ୱରାଜ ଆମର ଜନ୍ମଗତ ଅଧିକାର", ଏହା ଏକ ଭାଷା ନୁହଁ ବା ଅନୁଗ୍ରହ ନୁହଁ ବୋଲି କରିଥିବା ଘୋଷଣା ଜାତୀୟ ମୁକ୍ତି ଆନ୍ଦୋଳନରେ ଏକ ଉଦ୍ଦୀପନ ସୃଷ୍ଟିକାରୀ ଆହ୍ୱାନ ରୂପେ ମାନ୍ୟତା ପାଇଲା ।

ଏହି କୋଡ଼ିଏ ବର୍ଷ ଭିତରେ ବ୍ରିଟିଶ ଶାସନ ବିରୁଦ୍ଧରେ ପ୍ରତ୍ୟକ୍ଷ ସଂଗ୍ରାମର ଡାକରା କଂଗ୍ରେସ ଦେଇ ନଥିଲା । ପ୍ରତିବର୍ଷ ଥରେ ଭାରତର ଚାରିଆଡୁ ପ୍ରତିନିଧିମାନେ ଆସି କଂଗ୍ରେସ ଅଧିବେଶନରେ ମିଳିତ ହେଉଥିଲେ । ବ୍ରିଟିଶ ଶାସନରେ ଦେଶରେ ଗଢ଼ି ଉଠୁଥିବା ଶିଳ୍ପଗୁଡ଼ିକ ପ୍ରତି ଲାଗୁ କରାଯାଉଥିବା କଟକଣା, ଭାରତୀୟ ପଦାର୍ଥଗୁଡ଼ିକ ଉପରେ ଚଢ଼ା ଶୁଳ୍କ, ଦୁର୍ଭିକ୍ଷ, ମହାମାରୀ ଓ ପ୍ଲେଗ ପ୍ରଭୃତି ପ୍ରତି ଶାସକ ଗୋଷ୍ଠୀର ନିର୍ମ୍ମମ, ଦୃଷ୍ଟିଭଂଗୀ, ସଂବାଦପତ୍ରଗୁଡ଼ିକ ଉପରେ କଟକଣା, ସଭା ସମିତି ଉପରେ କଟକଣା, ଦମନମୂଳକ ପୁଲିସ ଆଇନ୍, ପ୍ରେସ ଆଇନ, ପୋଷ୍ଟ ଅଫିସ ଆଇନ, ଦୁର୍ନୀତି ଭ୍ରଷ୍ଟାଚାର, ଚାଷୀମାନଙ୍କ ଉପରେ ଖଜଣା ବୃଦ୍ଧି ଓ ଜମି ନିଲାମ ପ୍ରଭୃତି ଜନ ସମସ୍ୟାର ପ୍ରତିକାର ଲୋଡ଼ି ଆବେଦନ ନିବେଦନ କରିବା ଥିଲା ଆନ୍ଦୋଳନର ମୁଖ୍ୟ ରୂପ । ଉଚ୍ଚ ପଦପଦବୀ ଚାକିରୀରେ ଇଂରେଜ, ଭାରତୀୟଙ୍କ ମଧ୍ୟରେ ବାଛବିଚାର, ସିଭିଲ ସର୍ଭିସରେ ଭାରତୀୟମାନଙ୍କ ପ୍ରବେଶ ପକ୍ଷରେ ବାଧା ପ୍ରତିବନ୍ଧକଗୁଡ଼ିକର ମୃଦୁ ବା କଠୋର ସମାଲୋଚନା କରାଯାଉଥିଲା ।

ବସ୍ତୁତଃ ସେତେବେଳେ କଂଗ୍ରେସ ଭାରତର ଶିକ୍ଷିତ ସଂପ୍ରଦାୟକୁ ବିଶେଷ ଭାବେ ଆନ୍ଦୋଳିତ କରୁଥିଲା ।

୧୮୯୦ରେ କଂଗ୍ରେସ ଅଧିବେଶନରେ ସଭାପତିତ୍ୱ କରି ସାର ଫିରୋଜଶାହା ମେହେଟା ତତ୍କାଳୀନ କଂଗ୍ରେସର ଚରିତ୍ର ସଂପର୍କରେ କହିଥିଲେ "କଂଗ୍ରେସ ଜନତାର ଆବାଜ ନୁହଁ । ସେମାନଙ୍କ ଶିକ୍ଷିତ ଭାଇମାନେ ଜନତାର ଅଭାବ ଅଭିଯୋଗର ତର୍ଜମା କରିବେ ଏବଂ ସେଗୁଡ଼ିକୁ ଦୂର କରିବା ପାଇଁ ପ୍ରସ୍ତାବମାନ ଦେବେ ।" ଅର୍ଥାତ୍ ଏହି ମଧ୍ୟମ, ଶିକ୍ଷିତବର୍ଗ ନେତା ହୋଇ ରହିବେ ।

ମୋଟାମୋଟି କଂଗ୍ରେସର କାର୍ଯ୍ୟକଳାପ କୌଣସି ପ୍ରତ୍ୟକ୍ଷ ସଂଗ୍ରାମର ସୂଚନା ଦେଇ ନଥିଲେ ହେଁ କଂଗ୍ରେସର ପ୍ରତିଷ୍ଠା ପରେ ଭାରତରେ ନୂଆ ଜାଗରଣ ସୃଷ୍ଟି ହେଲା । ବିଭିନ୍ନ

ରାଜ୍ୟରେ ତତ୍କାଳୀନ ଦେଶପ୍ରେମୀମାନେ ରାଜନୈତିକ ସମ୍ମିଳନୀମାନ ସଂଗଠିତ କଲେ । ବିଭିନ୍ନ ପ୍ରଦେଶରେ ବିଭିନ୍ନ ରାଜନୈତିକ ଚକ୍ର, ଶିକ୍ଷିତ ସଂପ୍ରଦାୟଙ୍କ ଦ୍ୱାରା ସଂଗଠିତ ହେଲା ।

ୟୁରୋପ ଅବା ଖୋଦ ବିଲାତରେ ଥିବା ଭଳି ପ୍ରତିନିଧିମୂଳକ ଶାସନ ପ୍ରତିଷ୍ଠା ଓ ସେଥିରେ ଭାରତୀୟମାନଙ୍କର ଅଂଶଗ୍ରହଣ, ସେତେବେଳେ ମୁଖ୍ୟ ରାଜନୈତିକ ଦାବୀ ଭାବରେ ଉପସ୍ଥାପିତ ହେବାକୁ ଲାଗିଲା ।

ସାମ୍ରାଜ୍ୟବାଦୀ ଅର୍ଥନୈତିକ ବ୍ୟବସ୍ଥା, ତାର ଦମନକାରୀ ଶାସନ ନୀତି, ଭାରତୀୟ ସଂପଦକୁ ଇଂଲଣ୍ଡର ପୁଂଜିପତିମାନଙ୍କ ସ୍ୱାର୍ଥ ବଢାଇବା ଲାଗି ଚାଲାଣ ସଂପର୍କରେ ସମାଲୋଚନା, ପ୍ରତିବାଦ ବଢିବାରେ ଲାଗିଲା । ଆଦ୍ୟ କାଳର ଜାତୀୟତାବାଦୀମାନେ ଲୋକଙ୍କ ଭିତରେ ଶିକ୍ଷାର ପ୍ରସାର, ଡାକ୍ତରୀ ସ୍ୱାସ୍ଥ୍ୟ ସେବାର ସୁଯୋଗ ବୃଦ୍ଧି, କାରିଗରୀ ଓ ଉଚ୍ଚ ଶିକ୍ଷାର ପ୍ରସାର ଲାଗି ବ୍ୟବସ୍ଥା, ଭାରତୀୟ ଶିଳ୍ପ ଓ କୃଷିର ବିକାଶ ଲାଗି ପ୍ରସ୍ତାବ ଓ ଦାବୀମାନ ଉଠାଇଲେ । ଆଇନ ସମୀପରେ କି ୟୁରୋପୀୟ କି ଭାରତୀୟ ସଭିଏଁ ସମାନ ବିଚାର ପାଆନ୍ତୁ; କାର୍ଯ୍ୟପାଳିକା (ଏକ୍ସକ୍ୟୁଟିଭ) ଠାରୁ ନ୍ୟାୟପାଳିକା (ଜୁଡିସିଆରି)କୁ ଅଲଗା କରାଯାଉ ପ୍ରଭୃତି ଦାବୀମାନ ଉଠାଇ ଏହି ନେତାମାନେ ସଂବାଦପତ୍ରଗୁଡିକରେ ସନ୍ଦର୍ଭମାନ ପ୍ରକାଶ କରି ନୂଆଧରଣର ଜନ ଚେତନା ସୃଷ୍ଟି କଲେ ।

ଏଥି ସଂଗେ ସଂଗେ ଭାରତ ନାମରେ ବ୍ରିଟିଶ ସରକାର ଯେଉଁ ଆକ୍ରମଣମୂଳକ ପରରାଷ୍ଟ୍ର ନୀତି ଚଳେଇ ପଡୋଶୀ ଦେଶମାନଙ୍କୁ ଦଖଲ କରୁଥିଲା, ତାହାର ସମାଲୋଚନା କରୁଥିଲେ । ବର୍ମାକୁ ଦଖଲ କରିବା, ଆଫଗାନିସ୍ତାନ ଉପରେ ଆକ୍ରମଣ ଚଳାଇବା ଓ ଉତ୍ତରପଶ୍ଚିମ ଭାରତରେ ଆଦିବାସୀମାନଙ୍କ ଉପରେ ଦମନ ଚଳାଇବାର ବିରୋଧ କରୁଥିଲେ । ଅର୍ଥନୈତିକ ବିକାଶ କ୍ଷେତ୍ରରେ ଭାରତୀୟ ଶିଳ୍ପ ବିକାଶ ପାଇଁ ଓ ବ୍ରିଟିଶ ପୁଂଜିର ଭାରତକୁ ଚାଲାଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରାଯାଉଥିଲା । ବ୍ରିଟିଶ ଉପନିବେଶ, ଯେପରି ଦକ୍ଷିଣ ଆଫ୍ରିକା, ମରିସସ, ଫ୍ରିଜି, ବ୍ରିଟିଶ ଗାଇନା, ୱେଷ୍ଟଇଣ୍ଡିଜ ଦେଶମାନଙ୍କରେ ଥିବା ପ୍ରବାସୀ ଭାରତୀୟମାନଙ୍କ ଉପରେ ଚାଲିଥିବା ଦମନର ସମାଲୋଚନା କରାଯାଉଥିଲା ।

ଏହିପରି ଭାବରେ କୌଣସି ପ୍ରତ୍ୟକ୍ଷ ଆନ୍ଦୋଳନରେ ଡାକରା କଂଗ୍ରେସ ଦେଇନଥିଲେ ହେଁ, ଦେଶ ଭିତରେ ଓ ଦେଶବାହାର ପଡୋଶୀ ବ୍ରିଟିଶ ଉପନିବେଶମାନଙ୍କରେ ଔପନିବେଶିକ ଅତ୍ୟାଚାର ଓ ନିର୍ଯ୍ୟାତନାର ପ୍ରତିବାଦ ସେ କାଳରେ ଭାରତୀୟମାନଙ୍କ ଭିତରେ ଏକ ନୂଆଧରଣର ରାଜନୈତିକ ଦୃଷ୍ଟିଭଂଗୀ ସୃଷ୍ଟି କରିଥିଲା ।

ଏ କ୍ଷେତ୍ରରେ ଜାତୀୟତାବାଦୀ ବିଭିନ୍ନ ଭାଷାରେ ସଂବାଦପତ୍ର ବହୁ କଟକଣା ସତ୍ତ୍ୱେ ଏକ ବଳିଷ୍ଠ ଭୂମିକା ନେଇଥିଲେ ।

## ଭର୍ଣ୍ଣାକୁଲାର ସଂବାଦପତ୍ରଗୁଡିକ ଉପରେ ଆକ୍ରମଣ

ଦେଶର ଜାତୀୟତାବାଦୀମାନେ ବ୍ରିଟିଶ ସରକାରର ଅସତ୍ୟ ପ୍ରଚାରକୁ ରହିସହି, ସତର୍କତା ସହ ଖଣ୍ଡନ କରିଥିଲେ। ପଂଜାବ ଓ ଯୁକ୍ତ ପ୍ରଦେଶରେ ପ୍ରକାଶିତ ଏଡଭୋକେଟ, ହିନ୍ଦୁସ୍ଥାନୀ, ଆଜାଦ, ଟ୍ରିବ୍ୟୁନ, ଆଖବାରି ଆଇ ଆମ, କୋହିନୂର, ବମ୍ବେ ପ୍ରଦେଶରେ ପ୍ରକାଶିତ କେଶରୀ, ମରହଟ୍ଟା, ବମ୍ବେ ସମାଚାର, ଭୟସ ଅଫ୍ ଇଣ୍ଡିଆ, ନେଟିଭ ଓପିନିୟନ, ରାସ୍ତ ଗୋଫତର, ଇନ୍ଦୁପ୍ରକାଶ, ସୁଧାରକ; ବଂଗଳାରେ ପ୍ରକାଶିତ ଅମୃତବଜାର ପତ୍ରିକା, ଇଣ୍ଡିଆନ ମିରର, ସଂଜୀବନୀ, ଦକ୍ଷିଣାତ୍ୟରେ ପ୍ରକାଶିତ ହିନ୍ଦୁ, ସ୍ୱଦେଶ ମିତ୍ରମ, ଆନ୍ଧ୍ର ପ୍ରକାଶିକା କେରଳ ପତ୍ରିକା ବ୍ୟତୀତ ହିନ୍ଦୁ ପାଟ୍ରିୟଟ, ହେରାଲଡ, ରେଇଜ ଏଣ୍ଡ ରୟତ, ନବ ବିଭାବର, ଜାମ-ଆଇ-ଜାମସେଦ ପତ୍ରପତ୍ରିକାଗୁଡିକ ସ୍ୱଦେଶୀ ଭାବଧାରାର ଜାତୀୟତାବାଦୀ ପ୍ରବନ୍ଧ, ସଂବାଦ, ସମାଲୋଚନା ପ୍ରକାଶ କରି ବ୍ରିଟିଶ ଶାସନ ବିରୁଦ୍ଧରେର ଏକ ବାୟୁମଣ୍ଡଳ ସୃଷ୍ଟି କରିଥିଲେ।

ପ୍ରେସ ଆଇନ ବଳରେ ଏସବୁ ସଂବାଦପତ୍ର ଉପରେ ନାନା ପ୍ରକାର କଟକଣା, ଜରିମାନା ଲାଗୁ କରାଯାଉଥିଲା। ସେତିକି ନୁହଁ, ଭାରତର ବିଶିଷ୍ଟ ଜନନାୟକ ବାଳଗଂଗାଧର ତିଳକଙ୍କ କେଶରୀ ପତ୍ରିକାରେ ପ୍ରକାଶିତ ଏକ ବ୍ରିଟିଶ ସରକାର ବିରୋଧୀ ଲେଖା ହେତୁ ତାଙ୍କୁ ୧୮୯୭ରେ ଅଠର ମାସ ଜେଲଦଣ୍ଡରେ ଦଣ୍ଡିତ କରାଗଲା।

ବଂଗଳା ଭାଷାରେ ପ୍ରକାଶ ପାଉଥିବା ଅମୃତ ବଜାର ପତ୍ରିକା ଉପରେ ଆକ୍ରମଣ ହେବାରୁ ତାହା ସେହିଦିନଠାରୁ ବଂଗଳା ଭାଷା ଛାଡି ଇଂରେଜୀ ଭାଷାରେ ପ୍ରକାଶ ପାଇଲା। ପୁନେରେ ପ୍ରେସ ଆଇନ ଲଘଂନ ଅଭିଯୋଗରେ ନାଟୁ ବାଇ ଭାଇକୁ ଦ୍ୱୀପାନ୍ତର ଦଣ୍ଡ ଦିଆଗଲା। ଜାତୀୟତାବାଦୀମାନଙ୍କ କଂଠରୋଧ କରିବା ପାଇଁ ଅନ୍ୟାନ୍ୟ ଦମନମୂଳକ ବ୍ୟବସ୍ଥା ପ୍ରବର୍ତ୍ତନ କରାଗଲା।

ଜାତୀୟତାବାଦୀ ସମ୍ବାଦପତ୍ରଗୁଡିକର ଭୂମିକା ଉଚ୍ଚତର ରାଜନୈତିକ ସାଂଗଠନିକ ଚେତନା ସୃଷ୍ଟିକଲା। ବିଭିନ୍ନ ପ୍ରଦେଶରେ ଅଗ୍ରଗାମୀ ବୁଦ୍ଧିଜୀବୀ, ଆଇନଜୀବୀ, ସମାଜ ସଂସ୍କାରକମାନେ ରାଜନୈତିକ ସମ୍ମିଳନୀମାନ କରାଇଲେ। ଏପରି ସାଂଗଠନିକ ପ୍ରସାର ଫଳରେ ଜାତୀୟତାବାଦୀ ଆନ୍ଦୋଳନ ଭିତରକୁ ନୂଆ ନୂଆ ବ୍ୟକ୍ତି ଆକୃଷ୍ଟ ହେଲେ।

ସେତେବେଳେ କଂଗ୍ରେସର ଅତି ସାମାନ୍ୟ ଦାବୀ ଥିଲା ବ୍ରିଟିଶ ସରକାର ଦେଶରେ ୧୮୬୧ରେ ପ୍ରବର୍ତ୍ତିତ ଅନ୍ତଃସାରଶୂନ୍ୟ ଭାରତୀୟ କାଉନ୍ସିଲ ଆକ୍ଟକୁ ବଦଳାଉ। ସେଥିକି କେବଳ ବ୍ରିଟିଶ ସରକାର ଦ୍ୱାରା ମନୋନୀତ, ବ୍ରିଟିଶ ଶାସନର ଭାରତୀୟ ସମର୍ଥକମାନଙ୍କୁ ନିଆଯାଉଥିଲା। ୧୮୯୨ରେ ଯେଉଁ ନୂଆ ଭାରତୀୟ କାଉନ୍ସିଲ ଆକ୍ଟ ହେଲା, ତାହା ଅଧିକ ପ୍ରତାରଣାମୂଳକ ବୋଲି ଜାତୀୟତାବାଦୀମାନେ ଅଭିହିତ କଲେ। ଗୋରା ହାକିମ ଅଧିକ ଥିବା ଏହି କାଉନସିଲରେ ବେସରକାରୀ ସଭ୍ୟଙ୍କ ସଂଖ୍ୟା କିଛି ବଢାଗଲା ଓ କିଛି ଲୋକେ

ଅପ୍ରତ୍ୟକ୍ଷ ଭାବରେ ନିର୍ବାଚିତ ହେବେ ବୋଲି ବ୍ୟବସ୍ଥା ରଖାଗଲା । ଭାରତୀୟ ସଦସ୍ୟମାନେ କେବଳ ଚର୍ଚ୍ଚାରେ ଭାଗ ନେବେ, ବଜେଟ ଉପରେ ଭୋଟ ଦେଇ ପାରିବେ ନାହିଁ ବୋଲି କଟକଣା ରଖାଗଲା ।

ଜାତୀୟତାବାଦୀ ନେତାମାନଙ୍କର ସାମାନ୍ୟତମ ସର୍ବନିମ୍ନ ଦାବୀଗୁଡ଼ିକ ପ୍ରତି ତାଚ୍ଛିଲ୍ୟ କରି ସାମ୍ରାଜ୍ୟବାଦୀ ଶାସକମାନେ ଜାତୀୟ କଂଗ୍ରେସ ଓ ଅନ୍ୟାନ୍ୟ ଜାତୀୟତାବାଦୀ ମୁଖପାତ୍ରମାନଙ୍କୁ "ରାଜଦ୍ରୋହୀ" "ବିଦ୍ରୋହୀ ବ୍ରାହ୍ମଣ" "ହିଂସ୍ର ଖଳ ଜନ" "ଅସନ୍ତୁଷ୍ଟ ଆଇନଜୀବୀ" ବୋଲି ବିଦ୍ରୂପ କରିଚାଲିଲେ ।

ଏହି ପର୍ଯ୍ୟାୟରେ ଜାତୀୟବାଦୀ ଚେତନା ରାଜନୈତିକ କାର୍ଯ୍ୟକଳାପ, ହିନ୍ଦୁମୁସଲମାନ ଐକ୍ୟ, ବ୍ରିଟିଶ ଶାସନର ଖୋଲାଖୋଲି ପ୍ରତିବାଦ, ସଭାସମ୍ମିଳନୀ ସମାବେଶକୁ ଦେଖି ବଡିମା ଦେଖାଇ ପ୍ରତିଆକ୍ରମଣ କଲା ବ୍ରିଟିଶ ଶାସନ । ତାହାର ଦୃଢ଼ ମୁକାବିଲା କଲେ ଭାରତବାସୀ ।



# ବଂଗଭଂଗ ଚକ୍ରାନ୍ତ-ସ୍ୱଦେଶୀ ଆନ୍ଦୋଳନ
# କଂଗ୍ରେସର ବିଭାଜନ

ବିଂଶ ଶତାବ୍ଦୀର ଆରଂଭ, ୧୯୦୫ ବେଳକୁ ଭାରତରେ ବ୍ରିଟିଶ ଶାସନ ବିରୋଧୀ କାର୍ଯ୍ୟକଳାପ ଏକ ନୂଆ ମୋଡ ନେଇଥିଲା ।

ସାମ୍ରାଜ୍ୟବାଦୀ ସରକାର ବ୍ରିଟିଶ ପୁଂଜିକୁ ଭାରତରେ ଅଧିକ ଦୃଢ଼ କରିବା ଲାଗି ଗ୍ରହଣ କରିବା ଅର୍ଥନୀତି, କୃଷିନୀତି, ଶିକ୍ଷନୀତିର ପରିଣତି ସ୍ୱରୂପ ୧୮୬୬ ଦୁର୍ଭିକ୍ଷ ପରେ ଆଉ ତୁହାଏ ଦୁର୍ଭିକ୍ଷ ବହୁ ସ୍ଥାନରେ ଦେଖାଦେଲା । ୧୮୮୬-୯୭ରେ ୬କୋଟି ୨୦ଲକ୍ଷ, ୧୯୦୦ ଖ୍ରୀଷ୍ଟାବ୍ଦରେ ୨କୋଟି ୨୦ଲକ୍ଷ, ୧୯୦୧ରୁ ୧୯୦୬ଭିତରେ ୩୩ଲକ୍ଷ, ୧୯୦୬-୦୭ ମଧ୍ୟରେ ୧କୋଟି ୩୦ଲକ୍ଷ, ୧୯୦୭ରୁ ୧୯୦୮ ମଧ୍ୟରେ ୪କୋଟି ୯୬ଲକ୍ଷ ଜନସଂଖ୍ୟା ବାସ କରୁଥିବା ଦେଶର ବିଭିନ୍ନ ଅଂଚଳରେର ଦୁର୍ଭିକ୍ଷର କରାଳଛାୟା ଘୋଟିଥିଲା । ଲକ୍ଷ ଲକ୍ଷ ସଂଖ୍ୟାରେ ମୃତ୍ୟୁ ମୁଖରେ ପଡିଲେ । ଏହାଛଡ଼ା ବମ୍ବେ ଓ ଅନ୍ୟତ୍ର ପ୍ଲେଗ ରୋଗ ମହାମାରୀ ରୂପ ଧରି ୬୦ଲକ୍ଷ ଭାରତୀୟଙ୍କ ପ୍ରାଣ ନେଲା । ୧୮୯୬ରୁ ୧୯୦୮ ମଧ୍ୟରେ ପ୍ଲେଗ ସାଙ୍ଗକୁ ବିଶୂଚିକା ରୋଗ ଚାରିଆଡ଼େ ବ୍ୟାପିଗଲା ।

ଏପରି ଦୁର୍ବିପାକ କାଳରେ ଏସବୁ ସଂବାଦ ପ୍ରକାଶ କରିବାକୁ ଭାରତୀୟ ଭାଷାର ସଂବାଦପତ୍ରଗୁଡ଼ିକ ଉପରେ ଅଧିକ କଟକଣା ଜାରି କରାଗଲା । ଆୟକର ସୀମା ୫ଶହ ଟଙ୍କା ଥିଲାବେଳେ ୧୦୦ ଟଙ୍କା ଆୟ ଉପରେ କର ଧାର୍ଯ୍ୟ କରାଗଲା ।

ଏହି ପ୍ରକାର ବିବିଧ କର ଟିକସ ବୃଦ୍ଧି ଓ ଶିକ୍ଷାକୁ ସଂକୋଚନ କରିବା ଲାଗି ଛାତ୍ରଛାତ୍ରୀଙ୍କ ଶିକ୍ଷାଫି ବୃଦ୍ଧି, ନୂଆ ଆନ୍ଦୋଳନ ଲାଗି ଇନ୍ଧନ ଯୋଗାଇଲା ।

ଅନ୍ୟ ପକ୍ଷରେ ଆନ୍ତର୍ଜାତିକ କ୍ଷେତ୍ରରେ ସେତେବେଳେ ଘଟିଥିବା ଘଟଣାବଳୀ ଜାତୀୟ ମୁକ୍ତି ଆନ୍ଦୋଳନ ଉପରେ ଗଭୀର ପ୍ରଭାବ ପକାଇଲା । ଏକ ଅତ୍ୟାଚାରୀ ରୁଷର ଜାର ସାମ୍ରାଜ୍ୟ ବିରୁଦ୍ଧରେ ଏସିଆର ଏକ କ୍ଷୁଦ୍ର ଦେଶ ଜାପାନର ଯୁଦ୍ଧ ଏବଂ ରୁଷିଆର ପରାଜୟ ସାଂଗକୁ ରୁଷିଆରେ ୧୯୦୫ରେ ପ୍ରଥମ ମୁକ୍ତି ଓ ଗଣତନ୍ତ୍ର ଲାଗି ବିପ୍ଳବର ପ୍ରଭାବ ପ୍ରାଚ୍ୟରେ ଓ ମଧ

ପ୍ରାଚ୍ୟରେ ଜନ ଆନ୍ଦୋଳନକୁ ଉଦ୍ଦୀପିତ କଲା । ୧୯୦୬ରେ ପାରସ୍ୟରେ, ୧୯୦୮ରେ ତୁର୍କୀରେ, ୧୯୦୭ରେ ଚୀନରେ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ମୁଣ୍ଡ ଟେକିଲା । ଏହାର ସଂବାଦମାନ ଭାରତରେ ମୁକ୍ତି ଆନ୍ଦୋଳନକାରୀଙ୍କୁ ଉତ୍ସାହିତ କଲା । ଏହି ପରିପ୍ରେକ୍ଷୀରେ ଭାରତରେ ଏପରି ଏକ ଜନ ଆନ୍ଦୋଳନର ଉଦଗୀରଣ ଲାଗି ବ୍ରିଟିଶ ଶାସନ ବେଶ୍ ଅନୁକୂଳ ଖୋରାକ ଯୋଗାଇ ଦେଲା । ଲର୍ଡ କର୍ଜନ ସେତେବେଳକୁ ବଡ଼ଲାଟ ହୋଇଥାନ୍ତି । ଯାବତୀୟ ଦମନମୂଳକ, କରବୃଦ୍ଧି ନୀତି, ଗ୍ରହଣ କରି ଅବସ୍ଥାକୁ ଆୟତ୍ତ କରିବର ପ୍ରୟାସ ବ୍ୟର୍ଥ ହେବା ଦେଖି ଭାରତବାସୀଙ୍କୁ ଉଚିତ ଶିକ୍ଷା ଦେବା ଲାଗି ସେ ଅଣ୍ଟାଭିଡ଼ି ବାହାରିଲେ ।

ବ୍ରିଟିଶ ବିରୋଧୀ ଅସନ୍ତୋଷ ଓ ଜନ ବିକ୍ଷୋଭର କେନ୍ଦ୍ରବିନ୍ଦୁ ହୋଇଯାଇଥିବା ବଂଳାକୁ ହିନ୍ଦୁ-ମୁସଲମାନ, ଏପରି ଦୁଇ ଭାଗରେ ବିଭକ୍ତ କରି, ଉଭୟଙ୍କ ଭିତରେ ପରସ୍ପର ପ୍ରତି ତିକ୍ତତା, ଦ୍ୱେଷ ବଢ଼େଇଦେଲେ ଭାରତରେ ବ୍ରିଟିଶ ଶାସନ ନିରାପଦ ହେବ ବୋଲି ସେ ଏକ ଷଡ଼ଯନ୍ତ୍ରମୂଳକ ଯୋଜନା କଲେ ।

ବଂଗଳାକୁ ଦୁଇଭାଗ କରାଯିବ । ସଂଖ୍ୟାଧିକ ହିନ୍ଦୁ ଅଧ୍ୟୁଷିତ ପଶ୍ଚିମବଂଗ ସହିତ ବିହାର ଏବଂ ଓଡିଶା ମିଶି ଏକ ପ୍ରଦେଶ ହେବ ଏବଂ କଲିକତା ହେବ ତାର ରାଜଧାନୀ । ପୂର୍ବପଟେ ଢାକାକୁ ରାଜଧାନୀ କରି ପୂର୍ବବଂଗର ୬ଟି ଜିଲ୍ଲା ସହିତ ଆସାମ ରହି ଅନ୍ୟ ଏକ ପ୍ରଦେଶ ହେବ । ମୁସଲମାନ ସଂଖ୍ୟାଧିକ ପୂର୍ବବଂଗରେ ମୁସଲମାନ ସାମନ୍ତବର୍ଗଙ୍କୁ ହିନ୍ଦୁ ସାମନ୍ତବର୍ଗ ଓ ମୁସଲମାନ ଜନତାକୁ ହିନ୍ଦୁ ଜନତା ମଧ୍ୟରେ ଲଢ଼େଇ ନିରଙ୍କୁଶ ବ୍ରିଟିଷ ଶାସନ କାଏମ କରାଯିବ ତାହାହେଲେ ଭାରତରେ ଅନ୍ୟାନ୍ୟ ପ୍ରଦେଶର ଲୋକେ ମଧ୍ୟ ଆତଙ୍କିତ ହେବେ ।

**ସ୍ୱଦେଶୀ ଆନ୍ଦୋଳନର ଆରଂଭ:**

'ଭାଗଭାଗ କରି ଶାସନ କର' ବ୍ରିଟିଶ ସାମ୍ରାଜ୍ୟବାଦର ଘୋଷିତ ନୀତିର ଏହା ଜ୍ୱଳଜ୍ୱଳ ଦୃଷ୍ଟାନ୍ତ । ୧୯୦୩ ଡିସେମ୍ବର ମାସରେ କର୍ଜନଙ୍କ ଏହି ଯୋଜନା ପ୍ରକାଶର ୨ବର୍ଷ ପରେ ୧୯୦୫ ଅକ୍ଟୋବର ୧୬ ତାରିଖରେ ବଂଗଭଂଗର ହଠାତ୍ ଘୋଷଣା କରାଗଲା । ଯୋଜନାଟିର ପ୍ରକାଶନ ପରେ ପରେ ସାରା ବଂଗଳା ମାତି ଉଠିଲା । ଏହି ଦୁଇବର୍ଷ ମଧ୍ୟରେ ୨ ହଜାରରୁ ଅଧିକ ପ୍ରତିବାଦ ସଭା ସମାବେଶ ବଂଗଳାର ବିଭିନ୍ନ ଜିଲ୍ଲାରେ ଅନୁଷ୍ଠିତ ହେଲା । ଏହି ଯୋଜନାଟିକୁ ପରିହାର କରିବା ଲାଗି ଶହ ଶହ ସ୍ମାରକଲିପି ବ୍ରିଟିଶ ବଡଲାଟଙ୍କୁ ଦିଆଗଲା । କେବଳ ପୂର୍ବବଙ୍ଗ ଅଂଚଳର ୭୦ ହଜାର ଲୋକଙ୍କ ସାକ୍ଷର ସଂବଳିତ ପ୍ରତିବାଦପତ୍ର ସରକାରଙ୍କୁ ଦିଆଗଲା ।

'ବଂଗଳାକୁ ଶାନ୍ତ କର' ବୋଲି ବ୍ରିଟିଶ ସରକାରଙ୍କୁ ବିଲାତ ଯାଉ କଂଗ୍ରେସ ପ୍ରତିନିଧି ଦଳର ନେତା ଗୋଖଲେଙ୍କ ଆବେଦନ ପ୍ରତି କର୍ଣ୍ଣପାତ କରାଗଲା ନାହିଁ । ୧୯୦୫ ଅଗଷ୍ଟ ୭ରେ ବଂଗଳାର ନେତାମାନଙ୍କ ଏକ ବୈଠକରେ ସ୍ୱଦେଶୀ ଆନ୍ଦୋଳନର ଆହ୍ୱାନ ଦିଆଗଲା ।

ସେହିବର୍ଷ ୧୬ ତାରିଖରେ, ଯେଉଁଦିନଠାରୁ ବଂଗଭଂଗ କାର୍ଯ୍ୟକାରୀ ହେବ ବୋଲି ସ୍ଥିର ହୋଇଥିଲା, ସେଦିନ କଲିକତା ଓ ଅନ୍ୟ ବହୁ ସହର ଓ ଗାଁଗଣ୍ଡାର ଲୋକେ ଉପବାସ ପ୍ରତିବାଦ ଜଣେଇଲା । ଜୋତା ଚପଲ ନପିନ୍ଧି ଏକତା ଓ ସଂହତିର ପ୍ରତୀକ ଭାବରେ ହିନ୍ଦୁମାନେ ମୁସଲମାନ ଭାଇମାନଙ୍କ ହାତରେ ରାକ୍ଷି ବାନ୍ଧିଲେ । ବଂଗଳା ଏକ ଅଖଣ୍ଡ ରହିବ ବୋଲି ଶପଥ ନିଆଗଲା ।

ବଙ୍କିମଚନ୍ଦ୍ର ଚଟୋପାଧ୍ୟାୟଙ୍କ ଦ୍ୱାରା ରଚିତ ପ୍ରସିଦ୍ଧ 'ବନ୍ଦେ ମାତରମ' ଗାନ ଏବଂ ରବୀନ୍ଦ୍ରନାଥ ଠାକୁରଙ୍କ ରଚିତ ଗାନ ଅପୂର୍ବ ଉନ୍ମାଦନା ସୃଷ୍ଟି କଲା ।

୧୯୦୬ ଏପ୍ରିଲରେ ପୂର୍ବବଂଗର ବରିସାଲଠାରେ ବଂଗଳା ପ୍ରାଦେଶିକ ସମ୍ମିଳନୀ ଏ ରସୁଲ ନାମକ ମୁସଲମାନ ଦେଶପ୍ରେମୀଙ୍କ ଅଧକ୍ଷତାରେ ଅନୁଷ୍ଠିତ ହେଲା । ବଂଗଭଂଗ ଚକ୍ରାନ୍ତକୁ ବ୍ୟର୍ଥ କରାଯିବାରେ ଶପଥ ନିଆଗଲା । ସଂଖ୍ୟାଗରିଷ୍ଠ ମୁସଲମାନ ଅଧୁଷିତ ମଇମନସିଂ, ବରିସାଲ ପ୍ରଭୃତି ଅନ୍ୟାନ୍ୟ ଜିଲ୍ଲାରେ ସ୍ୱଦେଶୀ ଆନ୍ଦୋଳନର ବାର୍ତ୍ତା ପ୍ରଚାରିତ ହେଲା । ଏହି ସମ୍ମିଳନୀ ଉପରେ ପୁସିଲ ନିର୍ମମ ଭାବରେ ଆକ୍ରମଣ କରି ଭାଂଗିଦେଲା ଏବଂ ସୁରେନ୍ଦ୍ର ନାଥ ବାନାର୍ଜିଙ୍କୁ ଗିରଫ କରି ଜୋରିମାନା ଦଣ୍ଡ ଦେଲା । ବଂଗଳାର ସହର ପଲ୍ଲୀପ୍ରାନ୍ତରରେ ପ୍ରକାଣ୍ଡ ପ୍ରତିବାଦ ସଭାମାନ ଅନୁଷ୍ଠିତ ହୋଇ ସ୍ୱଦେଶୀ ଆନ୍ଦୋଳନର ବାର୍ତ୍ତା ପ୍ରଚାରିତ ହେଲା । ଏହି ସମ୍ମିଳନୀ ଉପରେ ପୁଲିସ ନିର୍ମମ ଭାବରେ ଆକ୍ରମଣ କରି ଭାଂଗିଦେଲା ଏବଂ ସୁରେନ୍ଦ୍ର ନାଥ ବାନାର୍ଜିଙ୍କୁ ଗିରଫ କରି ଜରିମାନା ଦଣ୍ଡ ଦେଲା । ବଂଗଳାର ସହର ପଲ୍ଲୀପ୍ରାନ୍ତରରେ ପ୍ରକାଣ୍ଡ ପ୍ରତିବାଦ ସଭାମାନ ଅନୁଷ୍ଠିତ ହୋଇ ସ୍ୱଦେଶୀ ଆନ୍ଦୋଳନ ବ୍ୟାପିଚାଲିଲା । ବଂଗଳାର ସୀମା ଭିତରେ ସୀମାବଦ୍ଧ ରହିଲା ନାହିଁ । ବଂଗଳାରେ ସ୍ୱଦେଶୀ ଆନ୍ଦୋଳନ ଚାଲିଥିବାବେଳେ ୫୦୦ ଯାଏ ରାଜନୈତିକ ମକଦ୍ଦମା ସ୍ୱଦେଶୀ ଆନ୍ଦୋଳନକାରୀମାନଙ୍କ ବିରୁଦ୍ଧରେ ଅଦାଲତରେ ବିଚାରାଧୀନ ଥିଲା । ବ୍ରିଟିଶ ସରକାର ଏହାକୁ ଦମକ କରିବା ଲାଗି ଅନ୍ୟାନ୍ୟ ଦମନମୂଳକ ବ୍ୟବସ୍ଥା ନେବା ସାଙ୍ଗକୁ ରାଜଦ୍ରୋହ ଆଇନ ପାଶ୍ କଲା ।

କର୍ଜନଙ୍କ ପରବର୍ତ୍ତୀ ବଡଲାଟ ଲର୍ଡ଼ ମିଣ୍ଟୋ ଦମନଲୀଳା ସାଙ୍ଗକୁ ଏକ ସଂସ୍କାର ଆଣିବେ ଓ ଭାରତବାସୀଙ୍କୁ ଶାସନରେ ଭାଗୀଦାର କରାଯିବାର ବ୍ୟବସ୍ଥା କରାଯିବ ବୋଲି କୂଟନୀତି ପ୍ରୟୋଗ କଲେ । ବଂଗଭଂଗ ଘୋଷଣା କାର୍ଯ୍ୟକାରୀ ହୋଇପାରିଲାନ ହିଁ । କେବଳ ବଂଗଳା ନୁହଁ, ଭାରତର ବିଭିନ୍ନ ସ୍ଥାନ ବିଶେଷତଃ ମହାରାଷ୍ଟ୍ର ଓ ପଂଜାବରେ ସ୍ୱଦେଶୀ ଆନ୍ଦୋଳନ କାଳରେ ଯେଉଁସବୁ ନୂଆ, ଏଯାଏ ଅଜଣା ଓ କଳ୍ପନାର ବାହାରେ, ସେପରି ଉଦ୍ଦୀପନା, ଉଦବେଳନ ବ୍ୟାପିଚାଲିଲା । ଯାହାଫଳରେ ୧୯୧୧ରେ ବଂଗଳା ବିଭାଜନ ଆଦେଶ ପ୍ରତ୍ୟାହୃତ ହେଲା । ଏହାକୁ ତତ୍କାଳୀନ କଂଗ୍ରେସ ସଭାପତି ପଣ୍ଡିତ ବିଷନ ନାରାୟଣ ଦର "ବିରାଟ ବିଜୟ" ବୋଲି ଅଭିହିତ କରିବା ସଂଗେ ସଂଗେ ବ୍ରିଟିଶ ମୁକୁଟ ପ୍ରତି ଭକ୍ତି ଓ ଅନୁରକ୍ତି ପ୍ରକାଶ କରିଥିଲେ ।

୧୯୦୯ରେ ମର୍ଲେ ମଣ୍ଟୋ ସଂସ୍କାର ଘୋଷଣା କରାଗଲା। ପୂର୍ବରୁ ୧୮୯୨ରେ ପ୍ରଚଳିତ କାଉନ୍ସିଲ ଆଇନ ଅପେକ୍ଷା ଏଥିରେ ଭାରତୀୟମାନଙ୍କ ପ୍ରତିନିଧିତ୍ୱ ଅଧିକ ହେବ ବୋଲି କୁହାଗଲା। ଏହି ପ୍ରତିନିଧିମାନେ ସିଧାସଳଖ ନୁହଁ, ଅପ୍ରତ୍ୟକ୍ଷ ନିର୍ବାଚନରେ ଆସିବେ। ରାଜରାଜୁଡ଼ା ଜମିଦାରମାନଙ୍କ ପ୍ରତିନିଧି ସ୍ୱତନ୍ତ୍ର ଭାବରେ ଆସିବେ। କେନ୍ଦ୍ର କାଉନ୍ସିଲରେ ଅପ୍ରତ୍ୟକ୍ଷଭାବରେ ନିର୍ବାଚିତ ସଦସ୍ୟ ସଂଖ୍ୟାନ୍ୟୁନ ରହିବ। ମାତ୍ର ପ୍ରାଦେଶିକ ଆସେମ୍ବ୍ଲିରେ ସେମାନେ ସଂଖ୍ୟାଗରିଷ୍ଠ ହେବେ। କିନ୍ତୁ ଏମାନେ କୌଣସି ବିଧିବିଧାନ ପ୍ରଣୟନ, ଅବା ଦେଶର ଅର୍ଥନୀତି, ପରରାଷ୍ଟ୍ରନୀତି, ଶିଳ୍ପ, କୃଷି, ଶିକ୍ଷା ବାଣିଜ୍ୟ ନୀତିର ପରିବର୍ତ୍ତନ କରିବା ପାଇଁ ବୈଧାନିକ ପଦକ୍ଷେପ ନେଇପାରିବେ ନାହିଁ। କେବଳ ସରକାରଙ୍କୁ ପରାମର୍ଶମାନ ଦେବେ।

ଔଦ୍ଧତ୍ୟ ଦେଖାଇ ଯେଉଁ ସରକାର ବଂଗଭଂଗ ଘୋଷଣା କରିଥିଲା ଏବଂ ତାକୁ କାର୍ଯ୍ୟକାରୀ କରିନପାରି ସଂସ୍କାରର ବାହାନା ନେଲା, ତାହାର କାରଣଗୁଡ଼ିକ କ'ଣ ? ତାହାର ଉଦ୍ଦେଶ୍ୟ ଓ ଲକ୍ଷ୍ୟଗୁଡ଼ିକ କ'ଣ ? ସେଥିରେ ତାହା କେତେଦୂର ସଫଳ ଓ ବିଫଳ ହେଲା ? ତାହାର ବିଶ୍ଳେଷଣ କରିବାକୁ ହେଲେ ସ୍ୱଦେଶୀ ଆନ୍ଦୋଳନ କାଳରେ ସଭାସମିତି, ପ୍ରତିବାଦ, ଉପବାସ, ରାକ୍ଷୀବନ୍ଧନ, ବ୍ୟତୀତ ଜାତୀୟ ମୁକ୍ତି ଆନ୍ଦୋଳନରେ ସଂଗ୍ରାମର ଏକ ନୂତନ ବୈପ୍ଳବିକ ରୂପକୁ ଦେଖିବାକୁ ହେବ। ବଂଗଭଂଗ କାର୍ଯ୍ୟକାରୀ କରିନପାରିଲେ ହେଁ ବ୍ରିଟିଶ ସରକାରର ଏହି ଖଳ ଯୋଜନା ହିନ୍ଦୁ-ମୁସଲମାନ ପ୍ରତିକ୍ରିୟାବାଦୀଙ୍କ ସାହାଯ୍ୟରେ ଆସିଲା। ୧୯୦୬ରେ ମୁସଲିମ ଲିଗ ଏବଂ ୧୯୦୯ରେ ହିନ୍ଦୁ ମହାସଭା ଭଳି ଦୁଇଟି ସାଂପ୍ରଦାୟିକତାବାଦୀ ସଂଗଠନକୁ ଗଢିବାରେ ବ୍ରିଟିଶ ଶାସକମାନେ ସମର୍ଥ ହେଲେ। ସେମାନଙ୍କ କୂଟ ନୀତି ଓ ସଂସ୍କାର ଘୋଷଣା ଓ ଦେଶରେ ମୁଣ୍ଡ ଟେକିଥିବା ସେହି ନୂଆ ବୈପ୍ଳବିକ ଆନ୍ଦୋଳନ କଂଗ୍ରେସକୁ ଦ୍ୱିଧା ବିଭକ୍ତ କରିଦେଲା।

**ପ୍ରଥମ ପର୍ଯ୍ୟାୟ ବୈପ୍ଳବିକ ସନ୍ତ୍ରାସବାଦୀ ଆନ୍ଦୋଳନ:**

ସ୍ୱଦେଶୀ ଆନ୍ଦୋଳନର ରାଜନୈତିକ ଆହ୍ୱାନରେ ଥିଲା ବିଦେଶୀ ବର୍ଜନର ଡାକ। ବଙ୍ଗଳାରେ ସ୍ୱଦେଶୀ ଆନ୍ଦୋଳନକୁ ବଳଶାଳୀ କଲା, ନବଉଦିତ ବୈପ୍ଳବିକ ସନ୍ତ୍ରାସବାଦର ଆଦ୍ୟ ସଂଗଠନ। ତାହା ପ୍ରଦେଶର ଚାରିଆଡ଼େ ଦେଖାଦେଲା। ଅନୁଶୀଳନ ନାମକ ସଂଗଠନର ୫ଶହରୁ ଅଧିକ ଶାଖା ବଂଗଳାର ସର୍ବତ୍ର ଗଢି ଉଠିଲା। କଲିକତା ସହରରେ ରାଜା ବଜାର ସମିତି, ମେଟ୍ରୁଆ ବଜାର ସମିତି, ମାନିକତାଲା ସମିତି ଏମିତି ଅନେକ କ୍ଲବ, ସମିତିର ଆବିର୍ଭାବ ଘଟିଲା।

"ଯୁଗାନ୍ତର" ଆଉ ଏକ ଗୁପ୍ତ ବୈପ୍ଳବିକ ସନ୍ତ୍ରାସବାଦ ସଂଗଠନର ରୂପନେଲା। ଏମାନେ ସ୍ୱେଚ୍ଛାସେବକ ସଂଗ୍ରହ କଲେ। ଅତ୍ୟାଚାରୀ ବିଦେଶୀ ଶାସକଙ୍କୁ ସମୁଚିତ ଦଣ୍ଡଦେବେ ବୋଲି ଶପଥ ନେଲେ। ପ୍ରଚାରପତ୍ରମାନ ଛାପି ବଣ୍ଟନ କରି ଜନତା ମଧ୍ୟରେ ନୂଆ ମନୋଭାବ

ସୃଷ୍ଟି କଲେ । ଏପରି ଗୋଟିଏ ଦୀର୍ଘ ପ୍ରଚାରପତ୍ରର କେତେକାଂଶ ବେଶ୍ ଖୁବ୍ ଉଦ୍ଦୀପନାକାରୀ । ସେଥିରେ ଶେଷରେ ଲେଖାଥିଲା :-

"ସେମାନେ ଆମର ଶୋଷଣକାରୀ । ଆମେ କାହିଁକି ଏହାକୁ ସହିନେବା ? ହିନ୍ଦୁ ଭାଇମାନେ, କାଳୀ, ଦୁର୍ଗା, ମହାଦେବ ଓ ଶ୍ରୀକୃଷ୍ଣଙ୍କ ନାମରେ ଶପଥ ନିଅନ୍ତୁ । ମୁସଲମାନ ଭାଇମାନେ ଆଲ୍ଲାଙ୍କ କସମ ଖାଆନ୍ତୁ ଏବଂ ଗାଁ ଗାଁରେ ଧ୍ୱନି ଉଠୁ ହିନ୍ଦୁ ମୁସଲମାନ କାନ୍ଧକୁ କାନ୍ଧ ମିଳେଇ ଦେଶର ସେବା କରିବୁ.... ଭାଇମାନେ ଉଠ, ଜାଗ ମାତୃଭୂମିର ସୁଯୋଗ୍ୟ ସନ୍ତାନର ପରିଚୟ ଦିଅ । ସାହସର ସହିତ ଲଢେଇ କର । ବଂଗ ଜନନୀ ପାଇଁ ପ୍ରାଣ ଦେବାକୁ ପ୍ରସ୍ତୁତ ହୁଅ ।"

ଢାକାରେ ମଧ୍ୟ ଅନୁଶୀଳନର ଅଫିସ ଖୋଲି ପୂର୍ବବଂଗ ଅଂଚଳରେ ବୈପ୍ଳବିକ ଆନ୍ଦୋଳନର ପ୍ରସାର ଘଟେଇଲା । ଦୈନିକ ଯୁଗାନ୍ତର, ଅରବିନ୍ଦ ଘୋଷଙ୍କ ବନ୍ଦେ ମାତରମ ପତ୍ରିକା ସ୍ୱଦେଶୀ ପ୍ରଚାର ସାଙ୍ଗକୁ ଏହି ସମିତିଗୁଡିକର ବୈପ୍ଳବିକ କାର୍ଯ୍ୟକୁ ଉତ୍ସାହିତ କଲା ।

୧୯୦୭ ପୂର୍ବ ଶେଷବେଳକୁ ଢାକାର ମାଜିଷ୍ଟ୍ରେଟଙ୍କ ପିଠି ଗୁଳିବିଦ୍ଧ ହେଲା । ଚନ୍ଦନନଗରର ଜଣେ ଫରାସୀଙ୍କ ଉପରେ ଆକ୍ରମଣ ହେଲା । କଲିକତାର ଚିଫ୍ ମାଜିଷ୍ଟ୍ରେଟ ଓ ଜିଲ୍ଲା ଜଜଙ୍କୁ ହତ୍ୟା କରିବା ଉଦ୍ୟମ କରାଯାଇଥିଲା । ଅଲିପୁର ଜେଲରେ ଜଣେ ବିଶ୍ୱାସଘାତକତା କରିଥିବା ବ୍ୟକ୍ତିଙ୍କୁ ବିପ୍ଳବୀମାନେ ହତ୍ୟା କଲେ ।

୧୯୦୮ରେ ଢାକା ସମିତିକୁ ବେଆଇନ ଘୋଷଣା କରାଯିବାରୁ ତାହା କଲିକତାରେ ଅଫିସ ଖୋଲିଲା ଓ ତାର ବୈପ୍ଳବିକ କାର୍ଯ୍ୟକୁ ପଂଜାବ, ମହାରାଷ୍ଟ୍ର ଓ ବିହାର ଏବଂ ଓଡିଶାକୁ ପ୍ରସାର କରାଗଲା । ପ୍ରସଙ୍ଗକ୍ରମେ ବାଲେଶ୍ୱର ରକ୍ତତୀର୍ଥ, ୧୯୧୫ରେ ଚଷାଖଣ୍ଡର ବାଘା ଯତୀନ ଓ ତାଙ୍କ ସାଥୀମାନଙ୍କ ବ୍ରିଟିଶ ବିରୋଧୀ ସଂଗ୍ରାମ ଏହି ବୈପ୍ଳବିକ ସମିତିର ଅନୁପ୍ରେରଣାରେ ସଂଘଟିତ ।

୧୯୦୬ଠାରୁ ୨୧୦ଟି ସଂଗଠିତ ବୈପ୍ଳବିକ କାର୍ଯ୍ୟ ମଧ୍ୟରୁ ବଂଗଳାରେ କେବଳ ୧୦୧ଟି ବୈପ୍ଳବିକ ଆକ୍ରମଣ ହୋଇଥିଲା ବୋଲି ପରେ ରାଓଲାଟ ରିପୋର୍ଟ ପ୍ରକାଶ କରିଥିଲା ।

ନାସିକରେ ଭି.ଡି. ସବରକରଙ୍କ ଘରେ, ଲାହୋରରେ ଭାଇ ପରମାନନ୍ଦଙ୍କ ଘରେ ଓ କଲିକତାରେ ବୋମା ପ୍ରସ୍ତୁତକାରୀ ଉଦ୍ୟମ ଚାଲିଥିଲା ଏବଂ ଏହି ବୈପ୍ଳବିକ କାର୍ଯ୍ୟକଳାପ ଗ୍ୱାଲିଅର, ଅହମ୍ମଦାବାଦ, ସତାରା, ପୁନାଯାଏ ପରିବ୍ୟାପ୍ତ ଥିଲା । ଇଣ୍ଡିଆନ ସୋସିଓଲଜିଷ୍ଟ ସଂଗଠନର କୃଷ୍ଣବର୍ମା, ତିଳକ ଓ ସଭରକରଙ୍କ ଅନୁଗାମୀମାନେ ଏସବୁଥିରେ ସଂପୃକ୍ତ ବୋଲି ଉକ୍ତ ରିପୋର୍ଟରେ ଉଲ୍ଲେଖ ଥିଲା । ନାସିକରେ ଏକ ବିଦାୟ ସଂବର୍ଦ୍ଧନା ସଭାରେ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଗୁଳି କରାଯାଇଥିଲା । ଏହା ପୂର୍ବରୁ ଏମ୍.ଏଲ. ଧିଙ୍ଗ୍ରା ଲଣ୍ଡନରେ ଇଣ୍ଡିଆ ଅଫିସ ଭିତରେ ପଶି ବ୍ରିଟିଶ ହାକିମ କର୍ଜନଓ୍ୱାଇଲିଙ୍କୁ ହତ୍ୟା କରିଥିଲେ । ଏହି ରିପୋର୍ଟରେ ବିପ୍ଳବୀ ସନ୍ତ୍ରାସବାଦୀମାନେ ରୁଷିଆର ନିହିଲିଷ୍ଟ ସନ୍ତ୍ରାଂସବାଦୀମାନଙ୍କ ପ୍ରେରଣାରେ ଅନୁପ୍ରାଣିତ ବୋଲି ଦର୍ଶାଯାଇଥିଲା ।

୧୮୯୭ରେ ପୁନେରେ ଦୁଇଭାଇ ଦାମୋଦର ଚାପକାରେ ଓ ବାଳକ୍ରିଷ୍ଣ ଚାପେକର ଦୁଇଜଣ ନୃଶଂସ ବ୍ରିଟିଶ ଅଫିସରଙ୍କୁ ହତ୍ୟା କରିଥିବାରୁ ଫାଶି ପାଇଥିଲେ । ଏହା ମହାରାଷ୍ଟ୍ରରେ ପ୍ରବଳ ଉତ୍ତେଜନା ସୃଷ୍ଟି କରିଥିଲା । ଅରବିନ୍ଦ ଘୋଷ ବଂଗଳାରେ ବୈପ୍ଳବିକ ସନ୍ତ୍ରାଂସବାଦକୁ ଏକ ରାଜନୈତିକ ଆୟୁଧ କରିବାକୁ ଆହ୍ୱାନ ଦେଇଥିଲେ । ବଂଗଳାରେ ପ୍ରସ୍ତୁତ ଏକ ବୋମା ଭାଇସରାୟ ଲର୍ଡ ହାର୍ଡିଙ୍ଗ ଉପରେ ୧୯୧୨ରେ ଦିଲ୍ଲୀ ପ୍ରବେଶ କଲାବେଳେ ଫିଙ୍ଗାଯାଇଥିଲା । ବିହାରର ମୁଜାଫରପୁରର ଜିଲ୍ଲାଜଜ କିଙ୍ଗସଫୋର୍ଡକୁ ଖୁଦୀରାମ ବୋଷ ଓ ପ୍ରଫୁଲ ଚାକି ବୋମା ଫିଙ୍ଗି ଥିଲେ । ମାତ୍ର ବୋମା ଲକ୍ଷ୍ୟ ହରାଇବାରୁ ଦୁଇଜଣ ବ୍ରିଟିଶ ମହିଳା ନିହତ ହୋଇଥିଲେ । ସେମାନଙ୍କ ବିରୁଦ୍ଧରେର କଲିକତାର ଆଲିପୁର କୋର୍ଟରେ ମକଦ୍ଦମା କରାଯାଇଥିଲା । ପ୍ରଫୁଲ ଚାକି ଗିରଫକୁ ଏଡି ଜାତୀୟ ମର୍ଯ୍ୟାଦା ରଖିବାକୁ ଆତ୍ମହତ୍ୟା କରିଦେଲେ । ଖୁଦୀରାମଙ୍କୁ ଫାଶିରେ ଝୁଲାଇ ଦିଆଗଲା । ମଂଚ ଚଢିଲାବେଳେ ଖୁଦୀରାମଙ୍କ ଉଦ୍ଦାମ ବାଣୀ ପରବର୍ତ୍ତୀ କାଳରେ ବିପ୍ଳବୀମାନଙ୍କୁ ବିମୋହିତ କରିଥିଲା । ଆଲିପୁର ଜେଲରେ ଜଣେ ବିଶ୍ୱାସଘାତକକୁ ହତ୍ୟା କରାଯିବା ଆଗରୁ କୁହାଯାଇଛି । ସେଥିରେ ଅରବିନ୍ଦ ଘୋଷ ଓ ତାଙ୍କ ଭାଇ ବାରିନ ଘୋଷ ସଂପୃକ୍ତ ବୋଲି ଷଡଯନ୍ତ୍ର ମକଦ୍ଦମା ଲାଗିଲା । ଅରବିନ୍ଦ ମୁକ୍ତ ହେଲେ ମାତ୍ର ତାଙ୍କ ଭାଇ ଓ ଅନ୍ୟ ତିନି ଜଣଙ୍କୁ କଳାପାଣି ଦଣ୍ଡ ଦିଆଗଲା । ମାନ୍ଦ୍ରାଜରେ ବିପିନଚନ୍ଦ୍ର ପାଲଙ୍କ ସଭାରେ ଚିଦାମ୍ବରମ ପିଲାଇ ଉତ୍ତ୍ୟକ୍ତ ଭାଷଣ ଦେବା ଅପରାଧରେ ତାଙ୍କୁ ଗିରଫ କରାଯିବାରୁ ବିପୁଳ ପ୍ରତିବାଦ ହେଲା । ପୁଲିସ ଗୁଳି ଚଳାଇଲା । ଗୁଳି ଚଳାଇବାକୁ ଆଦେଶ ଦେଇଥିବା ଅଫିସରକୁ ଭାରତମାତା ସଂଗଠନର ଭାଞ୍ଚି ଆୟାର ଭାଞ୍ଚି ଆୟାର ହତ୍ୟା କରିଦେଲେ । ସେ ଖସି ଯାଇନପାରି ଆତ୍ମବଳି ଦେଇଦେଲେ ।

ସ୍ୱଦେଶୀ ଆନ୍ଦୋଳନ ବଂଗଳାରେ ଅଶ୍ୱିନୀ କୁମାର ଦତ୍ତ, କୃଷ୍ଣକୁମାର ମିତ୍ର ଶ୍ୟାମ ସୁନ୍ଦର ଚକ୍ରବର୍ତ୍ତୀ, ସୁବୋଧଚନ୍ଦ୍ର ମଲିକ୍, ରାଜେନ୍ଦ୍ର ଲାଲ ମିତ୍ରଙ୍କ ପରି ଅନେକ ତତ୍କାଳୀନ ନେତାଙ୍କୁ ଜନ୍ମ ଦେଇଥିଲା । ୧୮୫୭ ସମରର ୫୦ତମ ସ୍ମାରକୀ ପାଳନ କାଳରେ ବିଦ୍ରୋହୀ ଶିଖ ରେଜିମେଣ୍ଟ ଉପରେ ଗୁଳି ଚାଲିଲା । ଲାଲ ଲାଜପତ ରାୟଙ୍କ ପତ୍ରିକା 'ପଂଜାବୀ' ଉପରେ ନିଷେଧାଦେଶର ପ୍ରତିବାଦ କରି ଲାହୋର ଓ ରାଉଲପିଣ୍ଡିରେ ଦଙ୍ଗା ହୋଇଗଲା । ଏହି ସଂଗ୍ରାମରେ ଅଜିତ ସିଂହଙ୍କୁ ଆଗା ହାଇଦର ଓ ସୟଦ ହାଇଦରର ରିଜୀ ସାହାଯ୍ୟ କରିଥିଲେ । ଲାଲ ଲାଜପତରାୟ ଓ ଅଜିତ ସିଂହଙ୍କୁ ସେଠାରୁ ବହିଷ୍କାର କରାଗଲା । ଡେରାଡୁନରେ କିରାନୀ ଥିବା ରାସବିହାରୀ ବୋଷ ବଂଗଳା ଓ ପଂଜାବ ବିପ୍ଳବୀମାନଙ୍କ ମଧ୍ୟରେ ଯୋଗସୂତ୍ର ରକ୍ଷା କରୁଥିଲେ । ୧୯୦୮ରେ ତିଳକଙ୍କ କେଶରୀ ପତ୍ରିକାରେ ବ୍ରିଟିଶ ବିରୋଧୀ ସନ୍ଦର୍ଭ ପ୍ରକାଶ ଅଭିଯୋଗରେ ୬ବର୍ଷ କାରାଦଣ୍ଡ ଓ ଜରିମାନା ଦଣ୍ଡରେ ଦଣ୍ଡିତ କରାଯାଇ ବର୍ମାର ମାଣ୍ଡାଲେ ଜେଲରେ ତାଙ୍କୁ ନିକ୍ଷେପ କରାଗଲା ।

କେତେକ ବିପ୍ଳବୀ ସନ୍ତ୍ରାସବାଦୀ ଗୋପନରେ ବିଦେଶ ଯାଇ ସେଠାରେ ବୈପ୍ଳବିକ ସଂଗଠନମାନ ଗଢ଼ିଲେ। ଶ୍ୟାମଜୀ କୃଷ୍ଣବର୍ମା, ଲାଲ ହରଦୟାଲ, ସଭରକର ଲଣ୍ଡନରେ ଏବଂ ମାଡାମ କାମା ଓ ଅଜିତ ସିଂହ ୟୁରୋପରେ ଗୁପ୍ତ ସଂଗଠନମାନ ଗଢିଲେ। ମାଡାମ କାଂମା, ହରଦୟାଲ ଓ ଶ୍ୟାମଜୀ କୃଷ୍ଣବର୍ମା ପରେ ୟୁରୋପରେ ଥିବା ସ୍ୱାମୀ ବିବେକାନନ୍ଦଙ୍କ ଭାଇ ଭୂପେନ୍ଦ୍ରନାଥ ବୋଷ ଓ ବୀରେନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟ (ଚାଟୋ) ୟୁରୋପରେ ବୁଲି ବୁଲି ଭାରତରେ ସ୍ୱାଧୀନତା ଲାଗି ଗୁପ୍ତ ସଂଗଠନ ଗଢିଲେ। ବର୍ଲିନରେ ଭାରତର ସ୍ୱାଧୀନତା କମିଟି ଗଠିତ ହେଲା। ମାଡାମ କାମା, ଶ୍ୟାମଜୀ କୃଷ୍ଣ ବର୍ମା ଏମାନେ ମିଶି ବିଦେଶରେ ବିପ୍ଳବୀ କମ୍ୟୁନିଷ୍ଟମାନଙ୍କ ସହିତ ଘନିଷ୍ଠ ଯୋଗାଯୋଗ କଲେ ଓ ସେହି ଆଦର୍ଶରେ ସ୍ୱାଧୀନତା ସଂଗ୍ରାମ ଚଳାଇଲେ।

ସ୍ୱଦେଶୀ ଆନ୍ଦୋଳନ ଜାତୀୟତାର ଭାବଧାରାକୁ ବ୍ୟାପକ ଭାବରେ ସୁଦୃଢ଼ ଓ ପ୍ରସାରିତ କଲା। ସର୍ବସାଧାରଣ ସ୍ଥାନମାନଙ୍କରେ ବିଦେଶୀ ପଦାର୍ଥ ପୋଡି, ବିଦେଶୀ ଜିନିଷ ବିକ୍ରୟକାରୀ ଦୋକାନମାନଙ୍କ ଆଗରେ ପିକେଟିଂ ଇତ୍ୟାଦି ଚାଲିଲା। ଛାତ୍ରମାନେ ବିଦେଶୀ କାଗଜ ବ୍ୟବହାର କରିବାକୁ ନାସ୍ତିକଲେ। ବଂଗଳା ଓ ଡେକାନର ମହିଳାମାନେ ବିଦେଶୀ କାଚ ଓ ବାସନ ବ୍ୟବହାର କରିବାକୁ ନାସ୍ତି କଲେ। ବମ୍ବେରେ ଶ୍ରମିକମାନେ ୧୯୦୫ରେ ଧର୍ମଘଟ କଲେ, ୧୯୦୬ରେ କଲିକତାରେ ଧର୍ମଘଟ ହେଲା।

ବିଭିନ୍ନ ସ୍ଥାନରେ ସ୍ୱଦେଶୀ ଲୁଗାକଳ, ଦିଆସିଲି, ସାବୁନ ମୃଣ୍ମୟପାତ୍ର, ଜୋତାତିଆରି ସଂସ୍ଥା ଗଢି ଉଠିଲା।

ଦୃଷ୍ଟାନ୍ତ ସ୍ୱରୂପ, ବିଶିଷ୍ଟ ବୈଜ୍ଞାନିକ ଆଚାର୍ଯ୍ୟ ପ୍ରଫୁଲଚନ୍ଦ୍ର ରାୟ ବେଙ୍ଗଲ କେମିକାଲ ଔଷଧ ଫାକ୍ଟରୀ ବସେଇଲେ। ରବୀନ୍ଦ୍ରନାଥ ଠାକୁର ଜାତୀୟତାବାଦୀ ଗୀତ ରଚନା ସାଙ୍ଗକୁ ଗୋଟିଏ ଜାତୀୟ ଦୋକାନ (ଷ୍ଟୋର) ସ୍ଥାପନ କଲେ।

ଜାମସେଦଜୀ ଟାଟା କୌଣସି ବିଦେଶୀ ଅର୍ଥ ନ ଆଣି ମାତ୍ର ତିନିମାସ ମଧ୍ୟରେ ଦେଶଭିତରୁ ସମଗ୍ର ପୁଂଜି ସଂଗ୍ରହ କରି ଲୁହା କାରଖାନା ବସେଇଲେ। ଜାତୀୟ ବିଦ୍ୟାଳୟ, ଜାତୀୟତାବାଦୀ ଶିକ୍ଷା, ଜାତୀୟତାବାଦୀ ସଂଗୀତ ରଚନାର ସ୍ରୋତ ଛୁଟିଲା। କେବଳ ବଂଗଳାରେ ନୁହଁ ଭାରତର ବିଭିନ୍ନ ଅଂଚଳରେ ସ୍ୱଦେଶୀ ଶିକ୍ଷା ଲାଗି ଆବେଗ ସୃଷ୍ଟିହେଲା। ସ୍ୱଦେଶୀ ଶିଳ୍ପ ବସାଇବାର ଜାତୀୟ ପ୍ରବଣତା ସୃଷ୍ଟି ହେଲା। ଷ୍ଟିମର କଂପାନୀ, ସ୍ୱଦେଶୀ ଶିଳ୍ପ ବସାଇବାର ଜାତୀୟ ପ୍ରବଣତା ସୃଷ୍ଟି ହେଲା। ଷ୍ଟିମର କଂପାନୀ, ସ୍ୱଦେଶୀ ବ୍ୟାଙ୍କ ଓ ବୀମା କଂପାନୀମାନ ପ୍ରତିଷ୍ଠା ଲାଭ କଲା। ବ୍ରିଟିଶ ପୁଂଜି ବିରୁଦ୍ଧରେ ଭାରତରେ ନୂତନ ପୁଂଜି ଯୋଗେ ଶିଳ୍ପ ବାଣିଜ୍ୟ ଅର୍ଥ କାରବାରର ଅଭ୍ୟୁଦୟ ଘଟିଲା। ଭାରତୀୟ ପୁଂଜିବାଦର ଆସ୍ଥାନ ଅଧିକ ପ୍ରସାରିତ ହେଲା।

ଆମ ଓଡିଶାରେ ସ୍ୱଦେଶୀ ଆନ୍ଦୋଳନର ପ୍ରଭାବରେ ଜାତୀୟତାବାଦୀ ଦେଶପ୍ରେମୀ ଶିକ୍ଷାର ପ୍ରାଣ ପ୍ରତିଷ୍ଠାତା ପଣ୍ଡିତ ଗୋପବଂଧୁ ଦାସ ପଞ୍ଚସଖାଙ୍କ ସହଯୋଗରେ ୧୯୧୨-୧୩ରେ ବିଖ୍ୟାତ୍ ସତ୍ୟବାଦୀ ବନବିଦ୍ୟାଳୟ ପ୍ରତିଷ୍ଠା କଲେ। ଏହି ବନ ବିଦ୍ୟାଳୟ ସେକାଳରେ ଓଡିଶାର ଶତଶତ ଛାତ୍ରଙ୍କୁ ଜାତୀୟବାଦୀ ଶିକ୍ଷା ଦେଲା ଏବଂ ଏହି ବିଦ୍ୟାଳୟର ଅଂସଖ୍ୟ ଛାତ୍ର ପରବର୍ତ୍ତୀ କାଳ ୧୯୨୦-୨୧, ୧୯୩୦-୩୨ରେ ଓଡ଼ିଶାରେ କଂଗ୍ରେସ ଓ ଅନ୍ୟାନ୍ୟ ବାମପନ୍ଥୀ ଆନ୍ଦୋଳନରେ, ତଥା ଶିକ୍ଷା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ଦେଲେ।

ସ୍ୱଦେଶୀ ଶିଳ୍ପ ପ୍ରତିଷ୍ଠାର ଆହ୍ୱାନରେ ମଧୁସୂଦନ ଦାସ ଅନୁପ୍ରାଣିତ ହୋଇ ଉତ୍କଳ ଟାନେରୀ ନାମକ ଜୋତା କାରଖାନା ବସେଇଲେ। ଯାହାର ସୁଖ୍ୟାତି ସେତେବେଳେ ଦେଶ ବାହାରେ କଲିକତାକୁ ଉଦ୍ଦୀପିତ କରିଥିଲା। ରୂପା ତରକସି ଶିଳ୍ପର ପ୍ରସାର ଓ ଗୁଣ ବୃଦ୍ଧିରେ ତାଙ୍କର ଅବଦାନ ଅଶେଷ। ଆମ ସମୁଦ୍ରର ଜଳରୁ ଲୁଣ ମାରିବାର ମୌଳିକ ଅଧିକାରରୁ ବଂଚିତ ହେବା ସଂର୍ପକରେ ସେ ମଧ ପ୍ରଥମ ସ୍ୱର ଉତ୍ତୋଳନ କରିଥିଲେ। ରବୀନ୍ଦ୍ର ନାଥ ଯେପରି କବିଗୁରୁ ଉପାଧିରେ, ବାଲଗଙ୍ଗାଧର ତିଳକ ଯେପରି ମହାମାନ୍ୟ ତିଳକ ଉପାଧିରେ, ଲାଜପତ ରାୟ ଯେପରି ପଂଜାବର ସିଂହ ଉପାଧିରେ ସମ୍ମାନିତ ହେଲେ ଓଡିଶାର ଏହି ଦୁଇ ବରପୁତ୍ର ସେମାନଙ୍କ ବହୁମୁଖୀ ଜାତୀୟତାବାଦୀ ମାନବତାବାଦୀ କାର୍ଯ୍ୟ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ଜାତୀୟତାବାଦୀ କବିତା ରଚନା ଯୋଗୁଁ ଯଥାକ୍ରମେ ଉତ୍କଳମଣି, ଉତ୍କଳ ଗୌରବ ଭାବରେ ଜନମାନସରେ କାଳକାଳ ଆଙ୍କି ହୋଇ ରହିଲେ।

**କଂଗ୍ରେସର ବିଭାଜନ - ନରମପନ୍ଥୀ ଚରମପନ୍ଥୀ:**

କଂଗ୍ରେସ ସଂଗଠନ ଭିତରେ ସ୍ୱଦେଶୀ ଆନ୍ଦୋଳନ ଓ ସ୍ୱରାଜ୍ୟ ଦାବୀ ଲକ୍ଷ୍ୟ ଘୋଷଣା ସଂପର୍କରେ ଏକ ପ୍ରକାର ସହମତି ଥିଲେ ମଧ ସେଥିଲାଗି ସଂଘଟିତ ଆନ୍ଦୋଳନ ଓ ସେଥିରେ ଶ୍ରମିକଙ୍କ ଠାରୁ ଆରମ୍ଭ କରି ନୂତନ ଯୁବ, ବୁଦ୍ଧିଜୀବୀ ସଂପ୍ରଦାୟର ଲଢୁଆ ଦୃଷ୍ଟିଭଂଗୀ ଓ କାର୍ଯ୍ୟକଳାପ ଘେନି ମତଭେଦ ଅତି ସ୍ପଷ୍ଟ ହେବାରେ ଲାଗିଲା। ନିବେଦନ ଆବେଦନ, ଆଇନର ପରିସର ଭିତରେ ବ୍ରିଟିଶ ସରକାରଙ୍କ ସୁଦୃଷ୍ଟି ଆକର୍ଷଣ କରି ସୁଯୋଗସୁବିଧା ହାସଲ କରିବା ଏକ ଗୋଷ୍ଠୀର ଦୃଷ୍ଟଭଙ୍ଗୀ। ଅନ୍ୟଦିଗରେ ଆନ୍ଦୋଳନ, ବାସନ୍ଦର ଦୃଷ୍ଟିଭଂଗୀ। ଏହି ଦୁଇଟି ଦୃଷ୍ଟିଭଂଗୀ ମଧ୍ୟରେ ଆଦର୍ଶଗତ ସଂଗ୍ରାମର ପରିପ୍ରେକ୍ଷୀରେ ୧୯୦୫ରେ ବନାରସଠାରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହେଲା। ଗୋପାଳ କୃଷ୍ଣ ଗୋଖଲେ ଥିଲେ ସଭାପତି। ବ୍ରିଟିଶ ରାଜପୁତ୍ର ପ୍ରିନ୍ସ ଅଫ୍ ୱେଲସଙ୍କ ଭାରତ ପରିଦର୍ଶନ କାଳରେ ତାଙ୍କୁ ସଂବର୍ଦ୍ଧନା ଦିଆଯିବା ପ୍ରସ୍ତାବ, କଂଗ୍ରେସର ବିଷୟ ନିର୍ବାଚନ କମିଟିରେ ନରମପନ୍ଥୀମାନଙ୍କ ପକ୍ଷରୁ ଆସିବାରୁ ତିଳକ, ଲାଜପତ୍ ରାୟ ପ୍ରମୁଖ ନେତାମାନେ ବିରୋଧ କଲେ। ସେହିପରି ସ୍ୱଦେଶୀ ଓ ବାସନ୍ଦ ବ୍ୟବସ୍ଥା କେବଳ

ବଂଗଳାରେ ସୀମିତ ରହିବ ବୋଲି ନରମପନ୍ଥୀମାନଙ୍କ ପ୍ରସ୍ତାବକୁ ସେମାନେ ବିରୋଧ କଲେ। ସାରା ଦେଶରେ ଏହା ଚାଲିବ ବୋଲି ଚରମପନ୍ଥୀମାନେ ଦୃଢ ଦାବୀ ଉତ୍ଥାପନ କଲେ। ଏହିପରି ଭାବରେ କଂଗ୍ରେସରେ ନରମପନ୍ଥୀ (ମଡରେଟ) ଏବଂ ଚରମପନ୍ଥୀ (ଏକସଟ୍ରିମିଷ୍ଟ) ଏହି ଦୁଇଟି ଭାଗରେ ବିଭାଜନ ସ୍ପଷ୍ଟଭାବରେ ଉତ୍ତାହେଲା।

୧୯୦୬ରେ କଂଗ୍ରେସ ଅଧିବେଶନ କଲିକତାରେ ଅନୁଷ୍ଠିତ ହେଲା। ଏତେବେଳକୁ କଂଗ୍ରେସର ବିଭାଜନ ବିପଦକୁ ଏଡିବା ଲାଗି ଦାଦାଭାଇ ନାରୋଜିଙ୍କୁ ବିଲାତରୁ ଆସିବାକୁ ଅନୁରୋଧ କରାଗଲା। ଏହି କଂଗ୍ରେସରେ ନରମପନ୍ଥୀମାନଙ୍କ ନେତୃତ୍ୱରେ ମୁଖ୍ୟ ବ୍ୟକ୍ତି ଥିଲେ ବଂଗଳାର ସୁରେନ୍ଦ୍ରନାଥ ବାନାର୍ଜି, ରାସବିହାରୀ ଘୋଷ, ଅମ୍ବିକା ଚରଣ ମଜୁମଦାର ଏବଂ ଚରମପନ୍ଥୀମାନଙ୍କ ଭିତରେ ଥିଲେ ବିପିନ ବିହାରୀ ପାଲ, ଅରବିନ୍ଦ ଘୋଷ, ବ୍ରହ୍ମବାନ୍ଧବ ଉପାଧ୍ୟାୟ ପ୍ରମୁଖ। ସର୍ବ ଭାରତୀୟ କ୍ଷେତ୍ରରେ ଚରମପନ୍ଥୀ ଥିଲେ ତିଳକ, ଲାଜପତ୍ ରାୟ ଏବଂ ନରମପନ୍ଥୀ ଥିଲେ ଫିରୋଜଶାହା ମେହେଟା, ଗୋଖଲେ ପ୍ରମୁଖ।

ଘୋର ବାଦ ବିବାଦ ମଧ୍ୟରେ ଦାଦାଭାଇ ନାରୋଜିଙ୍କ ବ୍ୟକ୍ତିତ୍ୱ ଯୋଗୁଁ ବିଭାଜନ ରକ୍ଷା ପାଇଗଲା। ଏକ ସାଲିସ ପ୍ରସ୍ତାବ ଗୃହୀତ ହେଲା। ମାତ୍ର ଏହି ସାଲିସ ପ୍ରସ୍ତାବକୁ ଦୁଇ ଗୋଷ୍ଠୀ ଭିନ୍ନ ଭିନ୍ନ ଭାବରେ ବ୍ୟାଖ୍ୟା କଲେ। ସ୍ୱରାଜ (ସ୍ୱୟଂଶାସିତ ବ୍ରିଟିଶ ଉପନିବେଶ) କଂଗ୍ରେସର ଲକ୍ଷ୍ୟ ଓ ବାସନ୍ଦ ଓ ସ୍ୱଦେଶୀ ଆନ୍ଦୋଳନକୁ ସମର୍ଥନ କରି ପ୍ରସ୍ତାବ ଗୃହୀତ ହେଲା। ଏଥିରୁ ପ୍ରମାଣିତ ହୁଏ ଯେ ସ୍ୱଦେଶୀ ଆନ୍ଦୋଳନକୁ ଅନୁଷ୍ଠାନିକଭାବେ କଂଗ୍ରେସ ଆରଂଭ କରିନଥିଲା। ଲଢୁଆ ଜନ ଆନ୍ଦୋଳନରେ ଆତଙ୍କିତ ହୋଇ ଗୋଖଲେ ଜାତୀୟତାବାଦୀଙ୍କ ମନରେ ଭୟ ସଂଚାର କରିବା ପାଇଁ ଘୋଷଣା କଲେ "ସରକାର ପାଖରେ ଯେଉଁ ବିପୁଳ ଶକ୍ତି ରହିଚି, ସେ ବିଷୟଟିକୁ ଉପଲବ୍ଧି କରୁନାହିଁ। ଆପଣମାନେ ଯେପରି କହୁଛନ୍ତି, କଂଗ୍ରେସ ସେପରି କଲେ ସରକାର ପାଞ୍ଚମିନିଟ ମଧ୍ୟରେ ତାହାକୁ ଦମନ କରିବାରେ କୌଣସି ଅସୁବିଧା ହେବ ନାହିଁ।" ଯେଉଁମାନେ ପ୍ରଥମ ଭାଗରେ ୧୮୮୫ ଓ ତାପୂର୍ବରୁ କଂଗ୍ରେସ ଗଠନରେ ବଳିଷ୍ଠ ଭୂମିକା ନେଇଥିଲେ, ଆନ୍ଦୋଳନ ସେମାନଙ୍କ ହାତଛଡା ହେବା ଦେଖିଲେ।

ଏହି ଅବସ୍ଥାରେ ୧୯୦୭ ମସିହାରେ ସୁରାଟଠାରେ କଂଗ୍ରେସ ଅଧିବେଶନ ବସିଲା। ଏଥିରେ ତିଳକ ଯେପରି ସଭାପତି ନହୋଇ ପାରିବେ ସେଥିଲାଗି ଚକ୍ରାନ୍ତ ଚାଲିଲା।

ଚରମପନ୍ଥୀ-ନରମପନ୍ଥୀମାନଙ୍କ ମଧ୍ୟରେ ରୀତିମତ ବାଦାନୁବାଦ ସଂଘର୍ଷରେ ପରିଣତ ହୋଇଗଲା। ଫିରୋଜଶାହା ମେହେଟା ଏବଂ ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ଉପରକୁ ପ୍ରେକ୍ଷାଳୟରୁ ଜୋତା ଫିଙ୍ଗାଗଲା। ବଂଗଳା, ମହାରାଷ୍ଟ୍ର ଓ ପଂଜାବର କିଛି ଚରମପନ୍ଥୀଙ୍କ ପକ୍ଷରେ ଅଛନ୍ତି, ଅନ୍ୟତ୍ର ସେମାନଙ୍କର ପ୍ରଭାବ ଅଧିକ ବିଚାରି ଫିରୋଜଶାହା ମେହେଟା କଂଗ୍ରେସକୁ ଦୁଇଭାଗ କରିଦେଲେ। ତିଳକ ବିପିନ-ଲାଲପତଙ୍କ ଚରମପନ୍ଥୀ ଗୋଷ୍ଠୀଙ୍କ ପାଇଁ କଂଗ୍ରେସ ଦ୍ୱାରା ରୁଦ୍ଧ

ହୋଇଗଲା । ୧୯୧୬ରେ ଯାଇ ତିଳକ ଓ ଚରମପନ୍ଥୀମାନଙ୍କ ବିଜୟ ହେଲା । ଏହା ଦେଖି ୧୯୧୮ରେ ନରମପନ୍ଥୀମାନେ କଂଗ୍ରେସ ଛାଡି ଲିବରାଲ ଫେଡେରେସନ ଗଠନ କଲେ ।

## ତିଳକ ଗିରଫ ଓ ରାଜନୈତିକ ଶ୍ରମିକ ଧର୍ମଘଟ ହରତାଳ

କୁହାଯାଇଛି ଯେ କେଶରୀ ପତ୍ରିକାରେ ବ୍ରିଟିଶର ସମାଲୋଚନାମୂଳକ ପ୍ରବନ୍ଧ ପ୍ରକାଶନ କାରଣରୁ ୧୮ ମାସ ଜେଲଦଣ୍ଡ ଭୋଗିଥିବା ଲୋକମାନ୍ୟ ତିଳକଙ୍କୁ ଉକ୍ତ କେଶରୀ ପତ୍ରିକାରେ ଆଉ ଏକ ବ୍ରିଟିଶ ବିରୋଧୀ ଲେଖାଯୋଗୁ ୬ବର୍ଷ ସଶ୍ରମ କାରାଦଣ୍ଡ ଦିଆଯାଇ ବର୍ମାର ମାଣ୍ଡେଲେ ଜେଲରେ ନିକ୍ଷେପ କରାଯାଇଥିଲା ।

କଂଗ୍ରେସକୁ ନରମପନ୍ଥୀ ଓ ଚରମପନ୍ଥୀ ଭାବରେ ବିଭକ୍ତ କରିବା ଲାଗି ବ୍ରିଟିଶର ଚକ୍ରାନ୍ତ ସଫଳ ହେଲା ଏବଂ ତିଳକ ପ୍ରଭୃତିଙ୍କୁ କଂଗ୍ରେସରୁ ବସ୍ତୁତଃ ଅନ୍ତର କରାଗଲା । ଜାତିର ସର୍ବମାନ୍ୟ ନେତାଙ୍କ ଗିରଫରେ ମହାରାଷ୍ଟ୍ର କ୍ରୋଧ ଜର୍ଜରିତ ହେଲା ।

ଭାରତରେ ଉଦଭବ ନୂତନ ଏକ ଶ୍ରେଣୀ, ବମ୍ବେର ଶ୍ରମିକ ଶ୍ରେଣୀ ୬ଦିନ କାଳ ବିରାଟ ପ୍ରତିବାଦ ଧର୍ମଘଟ କଲେ । କଲିକତାରେ ଏହିପରି ଧର୍ମଘଟ ଓ ହରତାଳର ପ୍ରତିଧ୍ୱନି ଉଠିଲା । ଭାରତର ସ୍ୱାଧୀନତା ସଂଗ୍ରାମରେ ପ୍ରଥମ ଥର ପାଇଁ ରାଜନୈତିକ ସଂଗ୍ରାମରେ ଶ୍ରମିକ ଶ୍ରେଣୀର ଅଗ୍ରଣୀ ଭୂମିକା ବ୍ରିଟିଶ ସାମ୍ରାଜ୍ୟବାଦକୁ ଭବିଷ୍ୟତ୍ ପାଇଁ ଆଉ ଏକ ଚେତାବନୀ ଦେଲା । ସେତେବେଳେ ଲେନିନ ଭାରତର ଶ୍ରମିକ ଶ୍ରେଣୀର ରାଜନୈତିକ ଧର୍ମଘଟରେ ଅଂଶଗ୍ରହଣକୁ ଶ୍ରମିକମାନଙ୍କର ରାଜନୈତିକ ପରିପକ୍ୱତା ବୋଲି ଅଭିହିତ କରିଥିଲେ । ଏହା ଚରମପନ୍ଥୀମାନଙ୍କୁ ବିଶେଷ ଉତ୍ସାହିତ କରିଥିଲା ।

୧୯୦୭ରେ କଂଗ୍ରେସ ବିଭାଜନ ପରେ ଏବଂ କଂଗ୍ରେସର ପୁନଃବିନ୍ୟାସ ଘଟି ଗାନ୍ଧିଜୀଙ୍କ ନେତୃତ୍ୱ ଆସିବାଯାଏ ରାଜନୈତିକ ଦୃଶ୍ୟପଟରେ ବାଲ, ଲାଲ, ପାଲଙ୍କ ପ୍ରଭାବ ବଢ଼ିଚାଲିଥିଲା । କୌଣସି ସାଂପ୍ରଦାୟିକ ମନୋଭାବ ଘେନି ନୁହଁ, ଜାତିକୁ ଜାଗ୍ରତ କରିବା ଲାଗି ସେତେବେଳେ ଜାତୀୟବାଦୀ ନେତାମାନେ, ତିଳକ ମହାରାଷ୍ଟ୍ରରେ ଗଣେଶ ପୂଜାକୁ ଗଣରୂପ ଦେଇ ବ୍ରିଟିଶ ବିରୋଧୀ ଜାଗରଣ ସୃଷ୍ଟି କରିଥିଲେ । ସେମିତି ମଧ୍ୟ କଲିକତାରେ କାଳୀଙ୍କ ଶପଥ ନେଇ ନିଜ ରକ୍ତରେ ବିପ୍ଳବୀମାନେ ସଂକଳ୍ପ ନେଉଥିଲେ । କେଉଁଠି ବୀରାଷ୍ଟମୀ ପାଳନ କରି ଦେଶପ୍ରେମୀମାନଙ୍କୁ ଉଦ୍‌ବୁଦ୍ଧ କରାଯାଉଥିଲା ।

ଭେଦ ସୃଷ୍ଟି କରି ଶାସନ କର ନୀତିକୁ ଆଶ୍ରୟ କରି ମୁସଲମାନ ଜମିଦାର ଓ ବୁଦ୍ଧିଜୀବୀମାନଙ୍କୁ କଂଗ୍ରେସ ଓ ସ୍ୱଦେଶୀ ଆନ୍ଦୋଳନ ହିନ୍ଦୁମାନଙ୍କର ବୋଲି ଦର୍ଶାଇ ବ୍ରିଟିଶ କର୍ତ୍ତୃପକ୍ଷ ହିନ୍ଦୁ-ମୁସଲମାନ ମଧ୍ୟରେ ତିକ୍ତତା ବଢ଼ାଇବା ଉଦ୍ୟମ କଲେ । ସାରା ସୟଦ ଅହମ୍ମଦଖାଁ କଂଗ୍ରେସର ବିରୋଧ କଲେ । ୧୯୦୬ରେ ଆଗାଖାଁ, ଢାକାର ନବାବ୍ ସଲିମୁଲାର, ନବାବ ମୋହାସିନ ଉଲମୁଲକ ଜମିଦାରମାନେ ମୁସଲିମ ଲିଗ ଗଢି ବ୍ରିଟିଶକୁ ସମର୍ଥନ ଦେଲେ ।

ଅନ୍ୟ ପକ୍ଷରେ ବନାରସର ରାଜା ଶିବ ପ୍ରସାଦ ହିନ୍ଦୁମାନେ ବ୍ରିଟିଶ ସରକାରକୁ ସମର୍ଥନ କରନ୍ତୁ କହି ହିନ୍ଦୁମାନଙ୍କୁ ଚେତେଇବାକୁ ଲାଗିଲେ।

ଏ ପ୍ରକାର ସାଂପ୍ରଦାୟିକତାବାଦୀ ମୁସଲମାନଙ୍କ ବିରୁଦ୍ଧରେ ହାକିମ ଅଜମଲ ଖାଁ, ମୌଲାନା ମହମ୍ମଦ ଅଲି, ମଜହର ଉଲହକ, ମୌଲାନା ଆବୁଲ କାଲାମ ଆଜାଦ, ଅରହର ଆଗେଇ ପ୍ରମୁଖ ଜାତୀୟତାବାଦୀ ଆସ୍ଥାନ ନେଲେ। ସେତେବେଳେ ତରୁଣ ବୁଦ୍ଧିଜୀବୀ ଆଇନଜ୍ଞ ମହମ୍ମଦ ଅଲି ଜିନ୍ନା କଂଗ୍ରେସରେ ଥାଇ ଏହି ନେତାମାନଙ୍କର ବ୍ରିଟିଶ ସରକାର ଓ ମୁସଲିମ ସାମ୍ପ୍ରଦାୟିକତାବାଦୀ ନେତାମାନଙ୍କ ସମସ୍ତ ଉଦ୍ୟମ ସତ୍ତ୍ୱେ ମୁସଲିମ ବୁଦ୍ଧିଜୀବୀ ବ୍ରିଟିଶ ବିରୋଧୀ ଆସ୍ଥାନ ନେଇଥିଲେ।

ଏପରି ଦେଶବ୍ୟାପୀ ସ୍ୱଦେଶୀ ଆନ୍ଦୋଳନ ଓ ହିନ୍ଦୁ-ମୁସଲମାନ ଉଭୟଙ୍କ ବ୍ରିଟିଶ ବିରୋଧୀ ଆସ୍ଥାନ ଆଗରେ ବ୍ରିଟିଶ ସରକାର ସାମୟିକଭାବେ କୌଶଳ ପରିବର୍ତ୍ତନ କରିବାକୁ ବାଧ ହେଲା। ବଂଗଭଂଗ ଆଦେଶ ୧୯୧୧ରେ ପ୍ରତ୍ୟାହୃତ ହେଲା। ସେତିକିବେଳେ ବଂଗଳା ପ୍ରେସିଡେନ୍‌ସିରୁ ବିହାର ଓ ଓଡିଶାକୁ କାଢି ଆଣି ବିହାର ଓଡିଶା ପ୍ରଦେଶ ଗଠନ କରାଗଲା। ଜ୍ୱାଳାମୁଖୀ କଲିକତାଠାରୁ ସୁଦୂର ଦିଲ୍ଲୀକୁ ନିରାପଦ ବିଚାରି ସେଠାରୁ ରାଜଧାନୀ ଦିଲ୍ଲୀକୁ ଉଠାଇ ନିଆଗଲା।



# ଭାରତରେ ଗାନ୍ଧିଜୀଙ୍କ ଆବିର୍ଭାବ - ପ୍ରଥମ ମହାସମର, ଜାଲିଆନାବାଗ ନରସଂହାର (୧୯୧୨ ରୁ ୧୯୧୯)

ସ୍ୱଦେଶୀ ଆନ୍ଦୋଳନର ଦେଶବ୍ୟାପୀ ସୁଦୂରପ୍ରସାରୀ ପ୍ରଭାବ ଏହି ପର୍ଯ୍ୟାୟରେ ଜାତୀୟ ମୁକ୍ତି ସଂଗ୍ରାମରେ ବିପୁଳ ଉନ୍ମାଦନା ସୃଷ୍ଟି କରିଥିଲା । ୧୯୧୨ରୁ ୧୯୧୯ ଯାଏଁ ଭାରତଭୂମିରେ ଘଟିଯାଇଥିବା ଘଟଣାବଳୀ ୧୯୨୦-୨୧ର ନୂତନ ପର୍ଯ୍ୟାୟ ମୁକ୍ତି ସଂଗ୍ରାମର ସିଂହଦ୍ୱାର ଉନ୍ମୋଚନ କରିଦେଲା । ମର୍ଲେ-ମିଣ୍ଟୋ ଶାସନ ସଂସ୍କାର ଘୋଷଣା କରି ବ୍ରିଟିଶ ସରକାର ଭାବିଥିଲା ଯେ ଜାତୀୟତାବାଦୀ ଆନ୍ଦୋଳନକୁ ଖଣ୍ଡବିଖଣ୍ଡିତ କରିବ । କଂଗ୍ରେସର ନରମପନ୍ଥୀମାନଙ୍କ ବିଜୟ ଓ ଚରମପନ୍ଥୀମାନଙ୍କ ବିଦାୟ ଓ କଂଗ୍ରେସ ବିଭାଜନର ତାହା ସୁଯୋଗ ନେବ । ସଂସ୍କାରରେ ମୁସଲମାନଙ୍କ ଲାଗି ସ୍ୱତନ୍ତ୍ର ସଂରକ୍ଷଣ ବ୍ୟବସ୍ଥା କରି ମୁସଲମାନ ସଂପ୍ରଦାୟର ଉଚ୍ଚଶ୍ରେଣୀ ଜମିଦାରବର୍ଗ ଓ ଧର୍ମୀୟ ନେତାମାନଙ୍କୁ କଂଗ୍ରେସ ବିରୁଦ୍ଧରେ, ଜାତୀୟତାବାଦୀ ଆନ୍ଦୋଳନ ବିରୁଦ୍ଧରେ ଲଗେଇଦେବ ।

ଗୋଟିଏ ହାତରେ ପ୍ରଲୋଭନ ଓ ଅନ୍ୟ ହାତରେ ଦମନ, ଚକ୍ରାନ୍ତର ଦଣ୍ଡ ଧରି, ଭାଗଭାଗ କରି ଶାସନ କରିବାର କୌଶଳକୁ ପ୍ରୟୋଗ କରାଗଲା । ମାତ୍ର ଭାରତରେ ତତ୍‌କାଳୀନ ରାଜନୈତିକ ଘଟଣାବଳୀ ବ୍ରିଟିଶ ସରକାରର ଗଣନାକୁ ଭଣ୍ଡୁର କରିଚାଲିଲା । ୧୯୧୨ରେ ଭାଇସରାୟ ହାର୍ଡିଂଜଙ୍କ ଉପରେ ବୋମା ନିକ୍ଷେପ ଓ ତାଙ୍କୁ ହତ୍ୟାର ଉଦ୍ୟମ କଥା ଆଗରୁ କୁହାଯାଇଛି । ସେ ସିନା ବର୍ତ୍ତିଗଲେ, ତାଙ୍କ ଅଂଗରକ୍ଷକଙ୍କ ମୃତ୍ୟୁ ଯୋଗୁଁ ରାସବିହାରୀ ବୋଷଙ୍କ ଅନ୍ତରଂଗ ସହଯୋଗୀମାନଙ୍କୁ ଫାଶି ଦିଆଗଲା । ଫାଶିଖୁଣ୍ଟରେ ପ୍ରାଣ ଦେଲେ ଅମିର ଚନ୍ଦ୍ର, ଅବଧ ବିହାରୀ, ବାଳମୁକୁନ୍ଦ ଏବଂ ବସନ୍ତ ବିଶ୍ୱାସ । ଏପରି ମର୍ମନ୍ତୁଦ ଫାଶିଦଣ୍ଡ ଦେଶରେ ବ୍ରିଟିଶ ଚାଲର ସ୍ୱରୂପକୁ ପ୍ରକାଶ କରିଦେଲା ।

ଏହି ସମୟରେ ଆଉ ଏକ ନାରକୀୟ ହତ୍ୟାଲୀଳା ଘଟିଲା । ସର୍ଦ୍ଦାର ଗୁରଦିତ ସିଂହଙ୍କ

ନେତୃତ୍ୱରେ ୧୯୧୧ ର ଆମେରିକାର ସାନଫ୍ରାନସିକୋଠାରୁ ୪୦୦ ପଂଜାବୀ ଶିଖ ଓ କିଛି ପଂଜାବୀ ମୁସଲମାନଙ୍କୁ ଧରି ଏକ ଭଡାକରା ଷ୍ଟିମର, ବିଖ୍ୟାତ "କାମାଗାତାମାରୁ" ଭାରତ ଅଭିମୁଖେ ଯାତ୍ରା କଲା । ସାନଫ୍ରାନସିସକୋରୁ ବ୍ରିଟିଶ ଉପନିବେଶ କାନାଡାର ଭାଙ୍କୋଭର ବନ୍ଦରରେ କାମାଗାତମାରୁରୁ ଭାରତୀୟ ଯାତ୍ରୀମାନଙ୍କୁ ଓହ୍ଲାଇବାକୁ ଦିଆଗଲା ନାହିଁ । ଦୁଇମାସ କାଳ ସେମାନେ ଷ୍ଟିମର ଭିତରେ ନାନା ଯନ୍ତ୍ରଣା ଭୋଗିଲେ । ତାପରେ ହଙ୍ଗକଙ୍ଗ ଓ ଜାପାନ ଦେଇ ଏହି ଷ୍ଟିମର କେତେକ ଜାପାନୀ ଯାତ୍ରୀଙ୍କୁ ଧରି ଆସି କଲିକତାର ବଜବଜଠାରେ ପହଞ୍ଚିଲା । ବ୍ରିଟିଶ କର୍ତ୍ତୃପକ୍ଷଙ୍କ ସୈନ୍ୟ ଓ ପୁଲିସ ଯାତ୍ରାମାନଙ୍କୁ ଘେରିଗଲେ । ସ୍ପେଶାଲ ରେଲଯୋଗେ ସେମାନଙ୍କୁ ପଂଜାବ ପଠାଇବା ବ୍ୟବସ୍ଥାକୁ ଗୁରଦିତ ସିଂହଙ୍କ ନେତୃତ୍ୱରେ ଯାତ୍ରୀମାନେ ପ୍ରତିରୋଧ କଲେ । ୧୮ ଜଣ ଯାତ୍ରୀଙ୍କୁ ହତ୍ୟା କରାଗଲା ଓ ୩୧ ଜଣଙ୍କୁ ଗିରଫ କରାଗଲା । ଏହି ଘଟଣା ଦେଶରେ, ବିଶେଷଭାବରେ ପଂଜାବରେ ବିକ୍ଷୋଭ ସୃଷ୍ଟିକଲା । 'କାମାଗାତାମାରୁ' ଘଟଣାର ସଂବାଦ ଆମେରିକାର ପ୍ରବାସୀ ଶିଖମାନଙ୍କ ହୃଦୟରେ ବିଦ୍ରୋହର ବହ୍ନି ପ୍ରଜ୍ୱଳିତ କଲା । ପଂଜାବର ତରୁଣ ବିପ୍ଳବୀ ସୋହାନ ସିଂ ବାଖନା (ଯିଏ ଜୀବନରେ ୨୭ବର୍ଷ ଜେଲ ଭୋଗିଥିଲେ) ତାରକନାଥ ଦାସ, ହରଦୟାଲ ପ୍ରବାସୀ ଶିଖମାନଙ୍କ ଭିତରେ ପ୍ରବଳ ବ୍ରିଟିଶ ବିରୋଧୀ ଜାଗରଣ ସୃଷ୍ଟି କଲେ । ୧୯୧୩ରେ ସାନଫ୍ରାନସିକୋଠାରେ ବିପ୍ଳବୀ ଗଦର ପାର୍ଟିର ପ୍ରତିଷ୍ଠା ହେଲା । ଏହି ବୈପ୍ଳବିକ ସଂଗଠନର ବାଣୀବାର୍ତ୍ତା ଥିଲା - ଏଥିରେ ଯୋଗଦେବା ବିପ୍ଳବୀମାନଙ୍କ "ଦରମା-ମୃତ୍ୟୁ", "ମୂଲ୍ୟ-ଶହୀଦତ୍ୱ", "ପେନସନ-ମୁକ୍ତି" ଆଉ "ସଂଗ୍ରାମଭୂଇଁ-ଭାରତବର୍ଷ ।"

୧୯୧୪ରେ ପ୍ରଥମ ମହାସମର ସଂଘଟିତ ହେଲା । ମିତ୍ରପକ୍ଷରେ ବିଶାଳ ସାମ୍ରାଜ୍ୟର ଅଧିକାରୀ ଗ୍ରେଟ ବ୍ରିଟେନ ଆଉ ସଂଗରେ ମୁଖ୍ୟତଃ ଫ୍ରାନ୍ସ ଏବଂ ଜାରଶାହୀ ରୁଷ ପ୍ରଭୃତି, ଅନ୍ୟ ଦିଗରେ ସାମ୍ରାଜ୍ୟ ଲାଗି ଉପନିବେଶ ଚାହୁଁଥିବା ଶକ୍ତିଶାଳୀ ପୁଞ୍ଜିବାଦୀ ଦେଶ ଜର୍ମାନୀ, ତାହାର ମୁଖ୍ୟ ମିତ୍ର ଜାପାନ ।

ଉପନିବେଶ ଭାରତକୁ ବ୍ରିଟିଶ ସାମ୍ରାଜ୍ୟର ସ୍ୱାର୍ଥରେ ଯୁଦ୍ଧରେ ଭର୍ତ୍ତି କରାଗଲା । ବନ୍ଧୁକ କମାଣର ପ୍ରଥମ ଶିକାର ହେବା ଲାଗି ଭାରତୀୟ ସିପାହୀଙ୍କୁ ଦୂରଦୂରାନ୍ତ ଅଗମ୍ୟ ଯୁଦ୍ଧକ୍ଷେତ୍ର ମେସୋପଟାମିଆ ଇତ୍ୟାଦି ଅଂଚଳକୁ ପଠାଗଲା ।

ଭାରତବର୍ଷରେ ଏହି ଯୁଦ୍ଧ ପ୍ରତି ଦୁଇ ପ୍ରକାର ଦୃଷ୍ଟିଭଂଗୀ ଜାତୀୟବାଦୀ ଆନ୍ଦୋଳନରେ ପରିଦୃଷ୍ଟ ହେଲା । ଦେଶର ଶତ୍ରୁ ବିପଦରେ ପଡିଛି । ତାର ସୁଯୋଗ ନେଇ ଶତ୍ରୁର ଶତ୍ରୁ ଜର୍ମାନୀର ସାହାଯ୍ୟ ଘେନି ବୈପ୍ଳବିକ କାର୍ଯ୍ୟକଳାପ-ସଶସ୍ତ୍ର ବିଦ୍ରୋହ, ଅଭ୍ୟୁତ୍ଥାନ - ଧର୍ମଘଟ । ଅନ୍ୟ ଦିଗରେ ଏହି ଯୁଦ୍ଧପ୍ରତି, ସକାରାତ୍ମକ ଦୃଷ୍ଟିକୋଣ ଓ ସେହି ଦୃଷ୍ଟିଭଂଗୀ ଗ୍ରହଣ କରି ଭାରତୀୟମାନଙ୍କ ସ୍ୱଶାସନର ଲକ୍ଷ୍ୟ ହାସଲ । ତେଣୁ ଯୁଦ୍ଧରେ ବ୍ରିଟିଶ ପକ୍ଷର ବିଜୟ କାମନା ।

**ଗଦ୍ଦର ପାର୍ଟି**ର କାର୍ଯ୍ୟକଳାପ ପଂଜାବରେ ବେଗବାନ ହୋଇଚାଲିଲା । ଭାରତୀୟ ବିପ୍ଲବୀମାନେ ଭାରତୀୟ ସିପାହୀମାନଙ୍କ ଅସନ୍ତୋଷର ସୁଯୋଗ ଗ୍ରହଣ କରି ସେମାନଙ୍କୁ ବିଦ୍ରୋହରେ ସାମିଲ କରିବାକୁ ଚେଷ୍ଟା କଲେ ।

୧୯୧୫ ଫେବୃଆରୀ ୨୧ ତାରିଖରେ ଏପରି ଏକ ବିଦ୍ରୋହ ସୃଷ୍ଟିର ସଂବାଦ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ପାଖରେ ପହଁଚି ଯାଇଥିଲା । ଏହି ଉଦ୍ୟମର ନେତା ଭି.ଜି. ପିଙ୍ଗଲେଙ୍କୁ ମିରଟଠାରେ ବୋମା ସହ ଗିରଫ କରି ନିଆଗଲା । ବିଦ୍ରୋହୀ ନେତାମାନଙ୍କୁ ଫାଶି ଦିଆଗଲା ଅବା ଆନ୍ଦାମାନ କଳାପାଣିକୁ ପଠାଗଲା । ବିଦ୍ରୋହରେ ଜଡିତ ଭାରତୀୟ ସୈନ୍ୟ ଶିବିରକୁ ଭାଂଗି ଦିଆଗଲା । ରାସବିହାରୀ ବୋଷ ଖସି ଜାପାନକୁ ଚାଲିଗଲେ । ସେହି ସମୟରେ ବଂଗଳାର ବିପ୍ଲବୀମାନେ ସେମାନଙ୍କ ବୈପ୍ଳବିକ କାର୍ଯ୍ୟକଳାପ ବୃଦ୍ଧି କରିଚାଲିଲେ । ଜର୍ମାନୀ ଷ୍ଟିମରରେ ଅସ୍ତ୍ରଶସ୍ତ୍ର ଧରି ବିପ୍ଲବୀମାନେ ସୁନ୍ଦରବଣ ଦେଇ କଳିକତାରୁ ହାଥିଆ, ପୁର୍ବବଂଗର ନୋହାଖାଲି ଏବଂ ଓଡିଶା ଉପକୂଳ ବାଲେଶ୍ୱରରେ ପହଂଚିବା ସ୍ଥିର ହୋଇଥିଲା । ରାସବିହାରୀ ବୋଷ ଖସି ଜାପାନକୁ ଚାଲିଗଲେ । ସେହି ସମୟରେ ବଂଗଳାର ବିପ୍ଲବୀମାନେ ସେମାନଙ୍କ ବୈପ୍ଳବିକ କାର୍ଯ୍ୟକଳାପ ବୃଦ୍ଧି କରିଚାଲିଲେ । ଜର୍ମାନୀ ଷ୍ଟିମରରେ ଅସ୍ତ୍ରଶସ୍ତ୍ର ଧରି ବିପ୍ଲବୀମାନେ ସୁନ୍ଦରବଣ ଦେଇ କଳିକତାକୁ ବିଚ୍ଛିନ୍ନ କରି ଦେଇ ଫୋର୍ଟ ଉଇଲିୟମ ଦଖଲ କରିବା ସ୍ଥିର ହୋଇଥିଲା । ରାଜମଙ୍ଗଳ ଏବଂ ବାଲେଶ୍ୱରକୁ ୨ଟି ଜର୍ମାନ ଜାହାଜ ଅସ୍ତ୍ରଶସ୍ତ୍ର ଘେନି ଆସିବା ଯୋଜନା ବ୍ୟର୍ଥ ହେଲା । ସଂବାଦଟି ପ୍ରକାଶ ପାଇବାପରେ କଳିକତା ଓ ବାଲେଶ୍ୱରରେ ୧୯୧୫ରେ ବିପ୍ଲବୀମାନଙ୍କ ଉପରେ ସଶସ୍ତ୍ର ଆକ୍ରମଣ ଚାଲିଲା । ବାଲେଶ୍ୱରର ଚଷାଖଣ୍ଡ ସମରରେ ପ୍ରଫୁଲ୍ଲ ଚାକି (ଚକ୍ରବର୍ତ୍ତୀ) ଧରାପଡିବା ଏଡି ଆତ୍ମହତ୍ୟା କଲେ ଏବଂ ସଂଗ୍ରାମରେ ଗୁଳିବିଦ୍ଧ, 'ବାଘା ଯତୀନ, ଯତୀନ ମୁଖାର୍ଜୀ ଦେଶ ପାଇଁ ପ୍ରାଣ ଦେଲେ ।

ସେମିତି ୧୯୧୪ ଅକ୍ଟୋବରରେ **'ତୋଷାମାରୁ'** ନାମକ ଷ୍ଟିମରରେ ଥିବା ୧୭୩ଜଣ ଶିଖ ବିପ୍ଲବୀଙ୍କୁ କଳିକତାରେ ଅଟକ କରାଯାଇ ୧୦୦ଜଣଙ୍କୁ ବନ୍ଦୀ କରି ନିଆଗଲା । ମାତ୍ର ୭୩ଜଣ ବିପ୍ଲବୀ ପୁଲିସ ହାତରୁ ଖସିଗଲେ ।

ବିପ୍ଲବୀମାନେ ୟୁରୋପରେ ରାଜା ମହେନ୍ଦ୍ର ପ୍ରତାପଙ୍କୁ ପ୍ରେସିଡେଣ୍ଟ ଏବଂ ଗଦ୍ଦର ପାର୍ଟିର ବରଖତ୍‌ଉଲ୍ଲାଙ୍କୁ ପ୍ରଧାନମନ୍ତ୍ରୀ ପଦରେ ମନୋନୀତ କରି ସ୍ୱାଧୀନ ଭାରତୀୟ ପ୍ରଜାତନ୍ତ୍ରର ସ୍ଥାପନା କଲେ । ଶତ୍ରୁର ଶତ୍ରୁ ଆମର ମିତ୍ର ଏହି ବିଚାରରେ ଭାରତୀୟ ବିପ୍ଲବୀମାନେ ବ୍ରିଟିଶ ବିରୁଦ୍ଧରେ ଜର୍ମାନ ଅସ୍ତ୍ରଶସ୍ତ୍ର ଯୋଗେ ସଶସ୍ତ୍ର ଅଭ୍ୟୁତ୍ଥାନ କରିବା ଲାଗି ନାନାପ୍ରକାର ଉଦ୍ୟମ କରିଚାଲିଲେ ।

**ଭାରତୀୟ ରାଜନୀତିରେ ଗାନ୍ଧିଜୀଙ୍କ ପ୍ରବେଶ**

୧୯୧୫ରେ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବୈଷମ୍ୟବାଦ ବିରୁଦ୍ଧରେ ଐତିହାସିକ ସଂଗ୍ରାମର ନେତା ମୋହନ ଦାସ କରମଚାନ୍ଦ ଗାନ୍ଧୀ ଏମ୍.କେ. ଗାନ୍ଧୀ ଭାରତୀୟ ରାଜନୈତିକ ମଂଚରେ

ଅବତୀର୍ଣ୍ଣ ହେଲେ ।

ସ୍ୱାଧୀନତା ସଂଗ୍ରାମର ଭବିଷ୍ୟତ କର୍ଣ୍ଣଧାର ଗାନ୍ଧିଜୀଙ୍କ ପ୍ରବେଶ ଘଟିଲା । ଭାରତର ରାଜନୈତିକ, ସାମାଜିକ ପରିସ୍ଥିତି, ତାହାର ଭୂଗୋଳ, ତାହାର ଗାଁଗହଳର ଜନତାର ଦୁର୍ଦ୍ଦଶାର ଅବସ୍ଥା ପ୍ରତ୍ୟକ୍ଷଭାବରେ ଉପଲବ୍ଧି କରିବା ପାଇଁ ସେ ଦେଶସାରା ଭ୍ରମଣ ଆରଂଭ କରିଦେଲେ । ବାରିଷ୍ଟରୀ ସାହେବୀ ପୋଷାକ ଛାଡ଼ି ଆଣ୍ଠୁଏ ଲମ୍ବା ଖଦୀ ପିନ୍ଧି, ରେଳଡବାର ତୃତୀୟ ଶ୍ରେଣୀରେ ଯାତ୍ରା କରି ତିଳକ, ରବୀନ୍ଦ୍ରନାଥ, ଗୋଖଲେ, ଲାଲପତରାୟ ଏମିତି ତୁଙ୍ଗନେତା, କବି ଲେଖକ, ଚାଷୀ, ଯୁବକ, ଛାତ୍ରମାନଙ୍କ ସହ ପ୍ରତ୍ୟକ୍ଷ ସଂର୍ପକ ସ୍ଥାପନ କଲେ ।

ଆଫ୍ରିକାରେ ବ୍ରିଟିଶ ବିରୋଧୀ ଅହିଂସ, ପ୍ରତିରୋଧ, ପ୍ରତିବାଦ ଆନ୍ଦୋଳନର କର୍ମକୌଶଳ ଧରି ବ୍ୟାପକ ଜନ ସମର୍ଥନରେ ଯେଉଁ ସାଫଲ୍ୟ ଅର୍ଜନ କରିଥିଲେ, ତାହାକୁ ଭାରତବର୍ଷରେ ପ୍ରୟୋଗ କରିବାକୁ ସେ ସଂକଳ୍ପ ନେଲେ । ତାଙ୍କ ସମୀପରେ ଉପସ୍ଥିତ ହେଲା ଗୋଟିଏ ବଡ ସମସ୍ୟା । ଭାରତବର୍ଷକୁ ବ୍ରିଟିଶ ସରକାରର ସାମନା କରି ଲକ୍ଷ୍ୟ ହାସଲ କରିବାକୁ ହେଲେ ବ୍ରିଟିଶ ଭାଗଭାଗ କରିଦେଇଥିବା ହିନ୍ଦୁ-ମୁସଲମାନଙ୍କ ଐକ୍ୟ ହେବ ପ୍ରଥମ ଅତ୍ୟାବଶ୍ୟକ ସର୍ତ୍ତ ।

ଦେଶବ୍ୟାପୀ ଓ ଦେଶବାହାରେ ପ୍ରଥମ ମହାସମର କାଳରେ ବୈପ୍ଳବିକ କାର୍ଯ୍ୟକଳାପ, ସଶସ୍ତ୍ର ବିଦ୍ରୋହ, ଅଭ୍ୟୁତ୍ଥାନ ବ୍ରିଟିଶ ସାମ୍ରାଜ୍ୟବାଦର ପରାଜୟ ଲାଗି ଉଦ୍ଦିଷ୍ଟ ଥିଲା ।

ମାତ୍ର ଦେଶରେ ସେ କାଳରେ ରାଜନୈତିକ ଦଳ, କଂଗ୍ରେସ ହେଉ, ମୁସଲିମ ଲିଗ ହେଉ, ସେମାନେ ଏ ଯୁଦ୍ଧରେ ବ୍ରିଟିଶର ପରାଜୟ ଲକ୍ଷ୍ୟ ଗ୍ରହଣ କରିନଥିଲେ । ଏ ଦେଶରେ ନିରଙ୍କୁଶ ବ୍ରିଟିଶ ଶାସନ ବଦଳରେ ବ୍ରିଟିଶ ସାମ୍ରାଜ୍ୟ ଭିତରେ ରହି ଭାରତାବାସୀଙ୍କ ସ୍ୱଶାସନର ଲକ୍ଷ୍ୟଗ୍ରହଣ କରିଥିଲେ । ଏହାର ଦୃଷ୍ଟାନ୍ତ ଅନେକ ।

୧ ୯ ୧ ୫ରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନର ସଭାପତି ଏସ.ପି. ସିହ୍ନା ଯୁଦ୍ଧକାଳରେ ବ୍ରିଟିଶ ସରକାର ପ୍ରତି କଂଗ୍ରେସର ଦୃଷ୍ଟିକୋଣରୁ ସ୍ପଷ୍ଟ କରିଦେଇ ଘୋଷଣା କଲେ "ମୋର ପ୍ରଥମ କର୍ତ୍ତବ୍ୟ, ପୁନର୍ବାର ଆମର ମହାମାନ୍ୟ ପ୍ରିୟ ସମ୍ରାଟଙ୍କ (କ୍ରାଉନ) ପାଦତଳେ ଆମର ଅବିଚଳ ଅନୁରକ୍ତି ଓ ଆମର ଉଲ୍ଲାସଭରା କୃତଜ୍ଞତା ଜ୍ଞାପନ କରିବା" । ୧ ୯ ୧ ୮ରେ ଲାଲ ଲାଜପତ୍‌ରାୟ ଓ ଜିନ୍ନା ସାମ୍ରାଜ୍ୟର ବିଜୟ କାମନା କିର ଚିଠି ଲେଖିଥିଲେ । ମାତ୍ର ଅନ୍ୟପକ୍ଷରେ ଅବେଦୁଲା ସିନ୍ଧେ ବ୍ରିଟିଶ ବିରୋଧୀ ପବିତ୍ର ଯୁଦ୍ଧରେ ଭାରତବାସୀ ସାମିଲ ହେବାକୁ ଆହ୍ୱାନ ଦେଇଥିଲେ । କଂଗ୍ରେସ ଯୁଦ୍ଧର ସଫଳ ସମାପ୍ତି ଲାଗି ବ୍ରିଟିଶ ସରକାରକୁ ଧନ୍ୟବାଦ ଜଣାଇଥିଲା । ଯୁଦ୍ଧ ଚାଲିଥିବା କାଳରେ ବିଲାତର ସେକ୍ରେଟେରୀ ଅଫ୍ ଷ୍ଟେଟସଙ୍କୁ ଚିଠିଲେଖି କଂଗ୍ରେସନେତା ଲାଜପତ୍‌ରାୟ, ଏସି.ପି.ସିହ୍ନା ଓ ମହମ୍ମଦ ଅଲି ଜିନ୍ନା "ସାମ୍ରାଜ୍ୟରେ ବିଜୟ" କାମନା କରିଥିଲେ । ତିଳକ ମଧ୍ୟ ଅନୁରୂପ ଚିନ୍ତା ପ୍ରକାଶ କରିଥିଲେ । ୧ ୯ ୧ ୩ରେ ଅନୁରୁପ ଅନୁରକ୍ତି ଜଣାଇ

ମୁସଲିମ୍ ଲିଗ୍ ପ୍ରସ୍ତାବରେ "ଭାରତବାସୀଙ୍କ ମଧ୍ୟରେ ବ୍ରିଟିଶ ମୁକୁଟ (କ୍ରାଉନ) ପ୍ରତି ଅନୁରକ୍ତି ବୃଦ୍ଧି, ମୁସଲମାନମାନଙ୍କର ସ୍ୱାର୍ଥରକ୍ଷା ଭାରତପାଇଁ ଉପଯୋଗୀ ସ୍ୱ-ଶାସନ" କଥା କୁହାଯାଇଥିଲା।

ଗାନ୍ଧିଜୀ ଅହିଂସ ଉପାୟରେ ଏହି ଯୁଦ୍ଧରେ ଭାରତବାସୀ ବ୍ରିଟିଶ ପକ୍ଷର ବିଜୟ ଚାହାଁନ୍ତି, ଲକ୍ଷ୍ୟ ଘୋଷଣା କରି ଦେଶର ବିଭିନ୍ନ ଅଂଚଳ ବୁଲି ଯୁଦ୍ଧହତମାନଙ୍କ ସେବାଚିକିତ୍ସା ଲାଗି ସ୍ୱେଚ୍ଛାସେବକ ସଂଗ୍ରହ କରିଥିଲେ। ସୈନ୍ୟବାହିନୀରେ ଯୋଗଦେବା ଲାଗି ସେ ଗୁଜରାଟର ଲୋକଙ୍କୁ ଉପଦେଶ ଦେଇଥିଲେ। ୧୯୧୭ରେ ଦିଲ୍ଲୀରେର ଭାଇସରାୟଙ୍କ ଦ୍ୱାରା ଆହୂତ ଯୁଦ୍ଧ ସମ୍ମିଳନୀରେ ଗାନ୍ଧିଜୀ ଯୋଗଦେଇଥିଲେ। ଯୁଦ୍ଧ ଅନ୍ତେ ଜର୍ମାନୀକୁ କାବୁ କରିଥିବା ଭର୍ସେଲି ଶାନ୍ତି ସମ୍ମିଳନୀରେ କଂଗ୍ରେସକୁ ପ୍ରତିନିଧିତ୍ୱ କରିବା ଲାଗି ପ୍ରେରିତ ତିଳକଙ୍କୁ ଆବଶ୍ୟକ ଅନୁମତିପତ୍ର ମିଳିଲା ନାହିଁ।

ବ୍ରିଟିଶ ସରକାରଙ୍କୁ ଯୁଦ୍ଧ ବିପଦରେ ଭାରତ ସମର୍ଥନ କଲେ, ଯୁଦ୍ଧପରେ ତାହା ସାମ୍ରାଜ୍ୟ ଭିତରେ ଭାରତବାସୀଙ୍କର ସ୍ୱଶାସନ ଲକ୍ଷ୍ୟ ଓ ଦାବୀକୁ ପୂରଣ କରିବ ବୋଲି ବିଶ୍ୱାସ ଘେନି ଭାରତୀୟ ନେତାମାନେ ଏପରି ଆସ୍ଥାନ ନେଇଥିଲେ।

**ଲକ୍ଷ୍ନୌ ଚୁକ୍ତି :**

ଏହି ସମୟ ଭିତରେ ବ୍ରିଟିଶ ସରକାର ପାଖରେ ଭାରତର ସମ୍ମିଳିତ ଦାବୀ ଉପସ୍ଥାପନା କରିବା ଲାଗି କଂଗ୍ରେସ ଓ ଲିଗ ମଧ୍ୟରେ ଉତ୍ସାହପ୍ରଦ ବୁଝାମଣା ହୋଇଥିଲା।

କଂଗ୍ରେସ ଓ ମୁସଲିମ ଲିଗ ଏଣିକି ପ୍ରାୟ ଏକ ସମୟରେ, ପ୍ରାୟତଃ ଏକ ସ୍ଥାନରେ ବାର୍ଷିକ ଅଧିବେଶନମାନ ବସେଇଲେ। ଏହି ସମୟରେ ବ୍ରିଟିଶ ମହିଳା ଆନି ବେସାନ୍ତଙ୍କ ହୋମରୁଲ ଆନ୍ଦୋଳନ ବିଶେଷ ଖ୍ୟାତି ଅର୍ଜନ କରିଥାଏ। ଏହାର ଶାଖା ପ୍ରଶାଖା ଦେଶର ବିଭିନ୍ନ ଆଡେ ଗଢି ଉଠିଥାଏ। ତିଳକ ମଧ୍ୟ ଏହି ଆନ୍ଦୋଳନରେ ଯୋଗ ଦେଇଥାନ୍ତି। ଗାନ୍ଧିଜୀ ମଧ୍ୟ ହୋମରୁଲ ଆନ୍ଦୋଳନ ପ୍ରତି ଏବଂ ଆନି୍ ବେସାନ୍ତଙ୍କ ଉଦ୍ୟମ ପ୍ରତି ବିଶେଷ ଶ୍ରଦ୍ଧାଶୀଳ ଥିଲେ।

ଭାରତପ୍ରେମୀ ବ୍ରିଟିଶ ମହିଳା ଆନି୍ ବେସାନ୍ତ ମାନ୍ଦ୍ରାଜଠାରେ ଥିଓସଫିକାଲ ସୋସାଇଟି ଗଠନରେ ସକ୍ରିୟ ଭାଗନେଇ ଚଳାଇଥିବା ହୋମରୁଲ ଆନ୍ଦୋଳନର ଖ୍ୟାତି ସେତେବେଳେ ପ୍ରସାରିତ ହୋଇଥିଲା।

ମୁସଲିମ ଲିଗ ଆନି୍ ବେସାନ୍ତଙ୍କ ହୋମରୁଲ ଯୋଜନାରେ ତର୍ଜମା ଲାଗି ଏକ କମିଟି ଗଠନ କରିଥିଲା। ଏହାପରେ ୧୯୧୬ ଡିସେମ୍ବର ଶେଷ ସପ୍ତାହରେ କଂଗ୍ରେସ ଓ ଲିଗ ମଧ୍ୟରେ ଲକ୍ଷ୍ନୌ ଚୁକ୍ତି ସଂପାଦିତ ହେଲା। ଏହାକୁ କଂଗ୍ରେସ ଲିଗ୍ ଯୋଜନା କୁହାଗଲା। ନିର୍ବାଚିତ କାଉନ୍ସିଲଗୁଡିକରେ ବ୍ରିଟିଶ ମନୋନୀତ ନୁହେଁ, ନିର୍ବାଚିତ ସଦସ୍ୟ ସଂଖ୍ୟାଗରିଷ୍ଠ ହେବେ,

ଭାଇସରାୟଙ୍କ ଏକ୍ସକ୍ୟୁଟିଭ କାଉନସିଲରେ ଅଧେ ଭାରତୀୟ ରହିବେ ଏବଂ ମୁସଲମାନମାନଙ୍କ ପାଇଁ ସଂରକ୍ଷଣ ରହିବ ବୋଲି ନିଷ୍ପତ୍ତି ନିଆଗଲା। ଯେଉଁ ପ୍ରଦେଶରେ ମୁସଲମାନମାନେ ସଂଖ୍ୟାନ୍ୟୂନ ସେଠାରେ ମୁସଲମାନ ଜନସଂଖ୍ୟା ଅନୁପାତଠାରୁ ଅଧିକ ଆସନ ସେମାନଙ୍କ ଲାଗି ସଂରକ୍ଷିତ ହେବ। ଅନ୍ୟପକ୍ଷରେ ମୁସଲମାନ ସଂଖ୍ୟାଗରିଷ୍ଠ ବଂଗଳା ଓ ପଂଜାବରେ ହିନ୍ଦୁମାନେ ଜନସଂଖ୍ୟା ଅନୁପାତ ଠାରୁ ଅଧିକ ଆସନ ପାଇବେ। ଲକ୍ଷ୍ନୌଚୁକ୍ତି ଅନୁମୋଦନ ସାଙ୍ଗକୁ ଲକ୍ଷ୍ନୌଠାରେ ୧୯୧୬ ଅଧିବେଶନରେ ତିଳକ ପୁନଶ୍ଚ କଂଗ୍ରେସରେ ପ୍ରବେଶ କଲେ। ନରମପନ୍ଥୀମାନଙ୍କୁ କଂଗ୍ରେସରେ ନେବାପାଇଁ ଯୁକ୍ତି ବାଢିଥିଲେ। ସେତେବେଳକୁ ଫିରୋଜ ଶାହା ମେହେଟା ଓ ଜି.କେ.ଗୋଖଲେଙ୍କର ଦେହାନ୍ତ ହୋଇଥାଏ ଏବଂ ତିଳକ ଜେଲରୁ ଫେରିଥାନ୍ତି। ମାତ୍ର ଉଭୟ ଗୋଷ୍ଠୀ କଂଗ୍ରେସରେ ରହିଲେ। ବିପିନଚନ୍ଦ୍ର ପାଲ ମୁସଲିମ ଲିଗର ଅଧିବେଶନରେ କଂଗ୍ରେସର ପ୍ରତିନିଧିରୂପେ ଉଦବୋଧନ ଦେଲେ।

ଏହି ସମୟ ମଧ୍ୟରେ ମୁସଲିମ୍ ଲିଗ୍ ବାହାରେ ପ୍ରଗତିଶୀଳ ମୁସଲମାନମାନଙ୍କ ପକ୍ଷରୁ ଜାତୀୟତାବାଦୀ, ସଂଗ୍ରାମ ଅଭିମୁଖୀ 'ଅହରର' ନାମକ ଆନ୍ଦୋଳନ ମୁଣ୍ଡ ଟେକିଲା। ମୁସଲିମ ଲିଗର ଆଦର୍ଶ ସହିତ ସେହି ସଂଗଠନର ଗୁରୁତର ଆଦର୍ଶଗତ ପାର୍ଥକ୍ୟ ଥିଲା। ଏହି ଆନ୍ଦୋଳନର ନେତାମାନଙ୍କ ମଧ୍ୟରେ ପ୍ରସିଦ୍ଧ ଥିଲେ ମୌଲାନା ମହମ୍ମଦ ଅଲ୍ଲି, ହାକିମ ଆଜମଲ ଖାଁ, ମଜହରଉଲ ହକ୍ ଓ ମୌଲାନା ଆବୁଲ କାଲାମ ଆଜାଦ। କଲିକତାରୁ ପ୍ରକାଶିତ ଆଜାଦଙ୍କ "ଆଲହିଲାଲ", ଲାହୋରରୁ ପ୍ରକାଶିତ 'ଜମିଦାର', ଅହମ୍ମଦ ଅଲିଙ୍କ ହମଦର୍ଦ ଏବଂ 'କମ୍ରେଡ' ପରି ଏହି ଗୋଷ୍ଠୀର ପତ୍ରିକାଗୁଡିକ ବ୍ରିଟିଶ ବିରୋଧୀ ଆସ୍ଥାନ ନେଲେ। ତିଳକଙ୍କ 'କେଶରୀ' ପତ୍ରିକା ଓ ଅମୃତ ବଜାର ପତ୍ରିକା ଉପରେ ଅତୀତର ଦଣ୍ଡ ପରି 'ଜମିଦାର' ପତ୍ରିକାର ଅମାନତ୍‌କୁ ବାଜ୍ୟାପ୍ତ କରାଗଲା। ଏ ଧରଣର ଅନ୍ୟାନ୍ୟ ପତ୍ରିକା ଉପରେ କଟକଣା ଜାରି କରାଗଲା। ବଲକାନ ସମରବେଳେ ତୁର୍କୀର ଅଟୋମାନ ସାମ୍ରାଜ୍ୟର ପତନ ପରେ ତୁର୍କୀର ଖଲିଫା ବ୍ୟବସ୍ଥାକୁ ବ୍ରିଟେନ ଉଠାଇଦେଲା। ଭାରତ ସମେତ ବହୁ ଦେଶର ମୁସଲମାନମାନେ ତୁର୍କୀର ସୁଲତାନଙ୍କୁ 'ଖଲିଫା' (ଧର୍ମଗୁରୁ)ର ମାନ୍ୟତା ଦେଉଥିଲେ। ଏହାରି ବିରୁଦ୍ଧରେ ଭାରତରେ ପ୍ରଗତିଶୀଳ ଜାତୀୟତାବାଦୀ ଧର୍ମପରାୟଣ ଏହି ମୁସଲମାନ ନେତୃବର୍ଗ ବ୍ରିଟିଶ ବିରୋଧୀ ବିଖ୍ୟାତ ଖିଲାଫତ୍ ଆନ୍ଦୋଳନ ଆରଂଭ କରିଦେଲେ।

ଏପରି ହିନ୍ଦୁ ମୁସଲମାନ ଐକ୍ୟ ଏବଂ କଂଗ୍ରେସ ଲିଗ ମଧ୍ୟରେ ଲକ୍ଷ୍ନୌ ଚୁକ୍ତି ବ୍ରିଟିଶ ସରକାରକୁ ଆତଙ୍କିତ କଲା। ଏହା ବ୍ୟତୀତ ଦେଶବ୍ୟାପୀ ଯେଉଁ ଲଢୁଆ ମନୋଭାବ ବଢିଚାଲିଛି, ସଶସ୍ତ୍ର ଆନ୍ଦୋଳନମାନ ମୁଣ୍ଡ ଟେକୁଛି, ତାହାକୁ ଖର୍ବ, ନିଶ୍ଚିହ୍ନ କରିବା ଲାଗି ବ୍ରିଟିଶ ପ୍ରଶାସନ ନାନା ଦମନମୂଳକ ଆଇନ ପ୍ରଣୟନ କଲା।

ଭାରତରେ ଦମନ ଲୀଳାକୁ ଆଇନଗତ ରୂପ ଦେବା ଲାଗି ଭାରତରକ୍ଷା ଆଇନ ନାମରେ ବିଶେଷ ଆଇନ ପ୍ରଣୟନ କରାଗଲା । ରେଗୁଲେସନ ତିନିର ବ୍ୟାପକ ପ୍ରୟୋଗ କରାଯାଇ ଗିରଫଦାରୀ, ଜେଲ, ଜରିମାନା, ଗୃହବନ୍ଦୀ, ଲାଠିଗୁଳିର ସ୍ରୋତ ଛୁଟିଲା । ବଂଗଳାରେ ରେଗୁଲେସନ ତିନି ପ୍ରୟୋଗ କରି ୧୦୦ଜଣଙ୍କୁ ଜେଲ ଓ ସାତଶହଙ୍କୁ ଗୃହବନ୍ଦୀ କରାଗଲା । ସବୁଆଡ଼େ ବିପ୍ଳବୀ ଯୁବକମାନଙ୍କୁ ଗିରଫ କରାଯାଇ ବନ୍ଦୀଶାଳାରେ ନିକ୍ଷେପ କରାଗଲା । 'ଅହରର' ଆନ୍ଦୋଳନର ମହମ୍ମଦ ଅଲି, ସୌକତ୍ ଅଲି, ହଜରତ୍ ମୋହାନି, ଆବୁଲ କାଲାମ ଆଜାଦ, ଯେଉଁମାନେ ପରେ କଂଗ୍ରେସ ଅଧିବେଶନଗୁଡ଼ିକର ସଭାପତି ଆସନ ଅଳଙ୍କୃତ କରିଥିଲେ, ସେମାନଙ୍କୁ ୪ବର୍ଷକାଳ କାରାଦଣ୍ଡ ଦିଆଯାଇଥିଲା । ସେମାନେ ୧୯୧୯ରେ ଖଲାସ ହେଲେ । ବ୍ରିଟିଶ ପକ୍ଷରୁ ଆଉ ଏକ ପ୍ରତାରଣାମୂଳକ ଅଭିଯାନ ଆରଂଭ ହୋଇଗଲା । ୧୯୧୭ରେ ମଣ୍ଟେଗ୍ୟୁ ଘୋଷଣାରେ ଦାୟିତ୍ୱମୂଳକ ଶାସନ ପ୍ରବର୍ତ୍ତନର କ୍ରମାଗତ ଉପଲବ୍ଧିକୁ ଦୃଷ୍ଟିରେ ରଖି ସ୍ୱାୟତ୍ତ ଶାସିତ ସଂସ୍ଥାଗୁଡିକର କ୍ରମଶଃ ବିକାଶ କରାଯିବ ।" ୧୯୧୮ରେ ଗ୍ରୀଷ୍ମକାଳରେ ବମ୍ବେରେ କଂଗ୍ରେସର ବିଶେଷ ଅଧିବେଶନରେ ସଭାପତି ଇମାମ ହାସନ ମଣ୍ଟେଗୁ ଚେମସଫୋର୍ଡ ରିପୋର୍ଟକୁ "ଅପ୍ରଚୁର, ଅସନ୍ତୋଷଜନକ ଓ ନୈରାଶ୍ୟଜନକ' ଆଖ୍ୟା ଦେଇ ତାହାର ସମାଲୋଚନା କରିଥିଲେ ।

ଗାନ୍ଧିଜୀ ୧୯୧୮ରେ ଚମ୍ପାରଣରେ ଚାଷୀମାନଙ୍କର ସତ୍ୟାଗ୍ରହ ଆନ୍ଦୋଳନ ଚଳାଇଥିଲେ । ବ୍ରିଟିଶ ସରକାର ସବୁ ଚାଷୀଙ୍କୁ ନିଜ ଜମିର ୨୦ ଭାଗରୁ ୩ଭାଗରେ ନୀଳଚାଷ କରିବାକୁ ବାଧ କରି ଏକ ଆଇନ ଗ୍ରହଣ କରିଥାଏ । ଏହାକୁ ତିନକଠିଆ ଆନ୍ଦୋଳନ କୁହାଯାଉଥିଲା । ଗାନ୍ଧିଜୀଙ୍କ ଅସହଯୋଗର ଚାଷୀ ଆନ୍ଦୋଳନ ବିଶେଷ ଉନ୍ମାଦନା ସୃଷ୍ଟି କଲା ଓ ତିନକଠିଆ ଆନ୍ଦୋଳନ ଜୟଯୁକ୍ତ ହେଲା । ରାଜେନ୍ଦ୍ର ପ୍ରସାଦ, ଜେ.ବି. କୃପାଳିନୀ, ମହାଦେବ ଦେଶାଇପ୍ରମୁଖ ଚମ୍ପାରଣ ସତ୍ୟାଗ୍ରହରେ ଗାନ୍ଧିଜୀଙ୍କ ଘନିଷ୍ଠ ସହଯୋଗୀ ଥିଲେ । ଠିକ ସେହି ସମୟରେ ଗୁଜରାଟର ଖୈଡାରେ ମରୁଡି ପଡିଥିଲେ ହେଁ ଚାଷୀମାନଙ୍କ ଠାରୁ ଜୋରଜବରଦସ୍ତ ଖଜଣା ଆଦାୟ କରାଯାଇ ହଳବଳଦ, ଘର-ଆସବାବ ନିଲାମ କରାଗଲା । ଗାନ୍ଧିଜୀଙ୍କ ପରାମର୍ଶରେ ବାରିଷ୍ଟର ଭାଇଦ୍ୱୟ ବଲ୍ଲଭବାଇ ପଟେଲ ଓ ବିଠଲଭାଇ ପଟେଲ ଗାନ୍ଧୀ ପ୍ରଦର୍ଶିତ ସତ୍ୟାଗ୍ରହ ଆନ୍ଦୋଳନ ଚଳାଇଲେ । ସରକାର ତଦନ୍ତ କରି ଯାହାଙ୍କର ମରୁଡିଯୋଗେ ଫସଲ ହାନି ହୋଇଛି, ସେମାନଙ୍କୁ ଟିକସ ଛାଡ କରିବାକୁ ବାଧ ହେଲା । ଉଭୟ ସ୍ଥାନରେ ବ୍ରିଟିଶ ଶାସନ ନାନା ଦମନ, ଗିରଫର ଆଶ୍ରୟ ନେଇଥିଲା ।

ଅହମେଦବାଦରେ ଲୁଗାକଳ ମାଲିକମାନଙ୍କ ଶ୍ରମିକ ନୀତିର ପରିବର୍ତ୍ତନ ଦାବୀ କରି ସେ "ମଜଦୁର ମହାଜନ" ନାମକ ସଂଗଠନ ଗଢିଥିଲେ । ଶ୍ରମିକମାନଙ୍କ ଶତକଡା ୩୫ଭାଗ

ମଜୁରୀ ବୃଦ୍ଧି ଗାନ୍ଧିଜୀଙ୍କ ପ୍ରଭାବକୁ ବିସ୍ତାର କଲା ।

ଯୁଦ୍ଧର ଅବସାନପରେ ମୁଣ୍ଡ ଟେକୁଥିବା ବିକ୍ଷୋଭଗୁଡ଼ିକୁ ଦମନ କରିବା ଲାଗି ସରକାର ରାଓଲାଟ ଆଇନ ଲାଗୁ କରିଦେଲା । ଏଥିରୁ ମଣ୍ଟେଗ୍ୟୁ ଚେମସଫୋର୍ଡ ସଂସ୍କାରର ଅସଲ ରୂପ ପ୍ରକାଶ ପାଇଗଲା । କେନ୍ଦ୍ର ଆସେମ୍ବ୍ଲିରେ ବ୍ରିଟିଶ ସରକାର ବସାଇଥିବା ସିଡ଼ିସନ କମିଟିର ରିପୋର୍ଟରେ ଆଲୋଚନା କାଳରେ ନିର୍ବାଚିତ ଓ ମନୋନୀତ ସବୁ ଭାରତୀୟ ସଦସ୍ୟ ବିରୋଧ କରିବା ସତ୍ତ୍ୱେ ତାହା ଗୃହୀତ ହୋଇ ରାଓଲାଟ ଆଇନ ଧାର୍ଯ୍ୟ କରାଗଲା ।

୧୯୧୯ରେ ବମ୍ବେରେ ଓ ଅନ୍ୟତ୍ର ଏହା ବିରୁଦ୍ଧରେ ଶ୍ରମିକ ଧର୍ମଘଟ ପ୍ରଚଣ୍ଡ ରୂପ ନେଲା । ଲକ୍ଷେ ପଚିଶ ହଜାର ଶ୍ରମିକ ଧର୍ମଘଟରେ ଯୋଗଦେଲେ । ରାଓଲାଟ ଆଇନ ବଳରେ ସେମାନଙ୍କ ଉପରେ ଦମନ ଓ ବିନା ବିଚାରରେ ଦଣ୍ଡ ଦେବାର ଆଇନ ବଳରେ ସେମାନଙ୍କ ଉପରେ ଦମନ ଓ ବିନା ବିଚାରରେ ଦଣ୍ଡ ଦେବାର ବ୍ୟବସ୍ଥା ପ୍ରୟୋଗ କରାଗଲା । ଏହି ଆଇନ ବିରୁଦ୍ଧରେ ଦେଶରେ ହିନ୍ଦୁ ମୁସଲମାନ ନିର୍ବିଶେଷରେ ବିପୁଳ ଜନତା ଛିଡ଼ା ହେଲେ । ଆର୍ଯ୍ୟ ସମାଜର ପ୍ରତିଷ୍ଠାତା ସ୍ୱାମୀ ଶ୍ରଦ୍ଧାନନ୍ଦ ଦିଲ୍ଲୀର ଜୁମା ମସଜିଦ ମଂଚରୁ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଲେ । ଅମୃତସର ସ୍ଥିତ ସ୍ୱର୍ଣ୍ଣମନ୍ଦିରର ଚାବିକାଠି ଡକ୍ଟର ସୈଫଉଦ୍ଦିନ କିଚଲୁଙ୍କୁ ଅର୍ପଣ କରାଗଲା । ହିନ୍ଦୁ ମୁସଲମାନ ଶିଖ ଐକ୍ୟରେ ବ୍ରିଟିଶ ସରକାରର ହୃତକମ୍ପ ହେଲା । ରାଓଲାଟ ଆଇନ ବିରୁଦ୍ଧରେ ବମ୍ବେ, କଲିକତା, ଦିଲ୍ଲୀ, ଅହମେଦାବାଦ ଓ ଅନ୍ୟ ସ୍ଥାନରେ ଅନୁଷ୍ଠିତ ବିକ୍ଷୋଭ ଉପରେ ପୁଲିସ ନିର୍ମ୍ମମ ଗୁଳି ଚାଳନା କଲା ।

୧୯୧୯ ଏପ୍ରିଲ ୬ ତାରିଖ । ଭାରତବର୍ଷର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏହା ଏକ ଦିଗବାରେଣୀ । ପ୍ରବଳ ପ୍ରତିରୋଧ ଓ ପ୍ରତିବାଦ ସତ୍ତ୍ୱେ ରାଓଲାଟ ଆଇନ ଗାନ୍ଧିଜୀଙ୍କ ସମସ୍ତ ଧୈର୍ଯ୍ୟ ଓ ସହନଶୀଳତାର ବନ୍ଧକୁ ଭାଂଗିଦେଲା । ତାଙ୍କର ବ୍ରିଟିଶ ନ୍ୟାୟ ପ୍ରତି ଥିବା ମୋହଭଂଗର ବଳିଷ୍ଠ ସୂଚନା ମିଳିଗଲା । ମାର୍ଚ୍ଚ ୩୦ ତାରିଖରେ ଦିଲ୍ଲୀରେ ରାଓଲାଟ ଆଇନ ବିରୁଦ୍ଧରେ ବିଶାଳ ବିକ୍ଷୋଭ ଉପରେ ପୁଲିସର ନିର୍ମ୍ମମ ଦମନ ତାଙ୍କ ଅନ୍ତରାତ୍ମାକୁ ବିହ୍ୱଳିତ କରିଦେଇଥିଲା ।

ସାରା ଦେଶ ଏପ୍ରିଲ ୬ ତାରିଖରେ ହରତାଳ ପାଳନ କରିବାକୁ ସେ ଉଦାତ୍ତ ଆହ୍ୱାନ ଜଣେଇଲେ । ଦେଶବ୍ୟାପୀ ଏହାର ପ୍ରତିପାଳନ ଗାନ୍ଧିଜୀ ଓ କଂଗ୍ରେସ ତଥା ଅନ୍ୟ ସକଳ ଜାତୀୟତାବାଦୀମାନଙ୍କଠାରେ ଆଣିଦେଲା ବିପୁଳ ଉତ୍ସାହ, ଉଦ୍ଦୀପନା ଓ ଆତ୍ମବିଶ୍ୱାସ ।

ଏପ୍ରିଲ ୧୦,୧୧ ଓ ୧୨ ତାରିଖରେ ପଂଜାବର ଅମୃତସର ଉତ୍ତାଳ । ପ୍ରତ୍ୟେକ ଦିନ ଦମନ, ଅତ୍ୟାଚାର ସତ୍ତ୍ୱେ ବିଶାଳ ବିକ୍ଷୋଭମାନ ଅନୁଷ୍ଠିତ ହୋଇଚାଲିଲା । ଜନପ୍ରିୟ ନେତା ଡକ୍ଟର ସତପାଲ ଓ ସୈଫଉଦ୍ଦିନ କିଚଲୁଙ୍କୁ ଗିରଫ କରିନେବାପରେ ବିକ୍ଷୋଭ ଅଧିକ ତୀବ୍ରତର ହେଲା । ବିକ୍ଷୋଭକାରୀମାନଙ୍କ ଉପରେ ଗୁଳି ଚାଲିଲାରୁ ଉତ୍ତ୍ୟକ୍ତ ଜନତାର ଆକ୍ରମଣରେ କେତେକ

ବ୍ରିଟିଶ କର୍ମଚାରୀ ନିହତ ଓ ଦୁଇଜଣ ବ୍ରିଟିଶ ମହିଳା ଆହତ ହେଲେ।

ଏପ୍ରିଲ ୧୩ ବୈଶାଖୀ ଦିବସ। ନବବର୍ଷର ଆରଂଭ। ଆମ ଓଡ଼ିଶାର ପଣା ସଂକ୍ରାନ୍ତିଭଳି ଉତ୍ସବ। ବୈଶାଖୀ ମେଳା ମନାଇବା ସଂଗେସଂଗେ ଜାଲିଆନାବାଗ ମଇଦାନରେ ପ୍ରତିବାଦ ସଭାର ଡାକରା ଦିଆଗଲା।

ସ୍ୱର୍ଣ୍ଣ ମନ୍ଦିରର ଅନତିଦୂର ଅତି ସଂକୀର୍ଣ୍ଣ ଗଳି। ଖୁବ୍ ହେଲେ ସେହି ଗଳି ରାସ୍ତାରେ ୪/ ୫ ଜଣ ହାତ ଧରାଧରି ଯାଇପାରିବେ। ଭିତରେ ଖୁବ୍ ଖୁନ୍ଦାଖୁନ୍ଦି ୩୦ହଜାର ଲୋକ ଧାରଣ କରିବ ଏହି ଉଦ୍ୟାନ। ଅନ୍ୟ ତିନିପାଖ ବନ୍ଦ, ଆବଦ୍ଧ।

କୌଣସି ସଭାସମିତି ସମାବେଶ ହୋଇପାରିବ ନାହିଁ, ଆଦେଶଦେଲେ ପଂଜାବର ସେତେବେଳ ଗଭର୍ଣ୍ଣର ଓଡାୟାର ଏବଂ ବ୍ରିଟିଶ ସେନାନୀର ଅଧକ୍ଷ ଜେନେରାଲ ଡାୟାର। ପବିତ୍ର ବୈଶାଖୀ ପର୍ବକୁ ହିନ୍ଦୁ ମୁସଲମାନ ଶିଖ ସଂପ୍ରଦାୟର ୩୦ ହଜାର ଯାଏ ନରନାରୀ, ଶିଶୁବୃଦ୍ଧ ମନାଇବାକୁ ସମବେତ ହୋଇଛନ୍ତି। ଜେନେରାଲ ଡାୟାର ସୈନ୍ୟସାମନ୍ ଗୁଳି ବନ୍ଧୁକ ଧରି ଚାରିପଟୁ ଘେରିଗଲେ। ଉଚ୍ଚା କୋଠାଗୁଡିକ ଉପରୁ ଚାଲିଲା ଗୁଳି। କ୍ଷୁଦ୍ର ପ୍ରବେଶ ଦ୍ୱାରକୁ ୯୦ଜଣ ସଶସ୍ତ୍ର ପୁଲିସ ଓ ଦୁଇଟି ସାଂଜୁଆ ଗାଡି ଜଗି ରହିଥାଏ। ଯେମିତି କେହି ବାହାରି ପାରିବେ ନାହିଁ। କେଉଁଠିକୁ ଦୌଡି ପଳାଇବାକୁ ଚାରା ନାହିଁ। ୧୬୫୦ ରାଉଣ୍ଡ ଗୁଳି ଫାଏର ହେଲା। ଆଉ ଗୁଳି ପାଖରେ ନାହିଁ ଦେଖି ଡାୟାର ଅନୁଶୋଚନା କଲେ। ଅଧିକ ବ୍ରିଟିଶଦ୍ରୋହୀ ଭାରତୀୟଙ୍କ ରକ୍ତ ନେଇପାରିଲେ ଂାହିଁ ବୋଲି କ୍ଷୋଭ ପ୍ରକାଶ କରୁଥାନ୍ତି। ଉଦ୍ୟାନ ଭିତରେ ଏକ ଗଭୀର ବାମ୍ପି। ପ୍ରାଣ ବଂଚାଇବା ଲାଗି ଶହଶହ ଲୋକ ତା ଭିତରକୁ ଝାମ୍ପି ଦେଇ ସଢିପଚିଗଲେ। ତାର ହିସାବ ରହିଲା ନାହିଁ। ହଜାରରୁ ଉର୍ଦ୍ଧ୍ୱ ନର, ନାରୀ, ଶିଶୁ ମରି ଶୋଇଲେ। ନିର୍ମ୍ମମ ବ୍ରିଟିଶ ଜେନେରାଲ ଡାୟାର ଆହତମାନଙ୍କୁ ଚିକିତ୍ସାଳୟକୁ ନୋବ ବାରଣ କରିଥିଲେ।

ଏପରି ଜଘନ୍ୟ ହତ୍ୟାକାଣ୍ଡର ବିବରଣୀକୁ ମାସ ମାସ ଧରି ଭାରତବାସୀଙ୍କ ଗୋଚରକୁ ଅଣାଗଲା ନାହିଁ। ଏହି ନରସଂହାରରୁ ବଂଚିଯାଇ ଗିରିଧାରୀ ଲାଲ, ପ୍ରତାପସିଂହ, ମିଆଁ ସିକନ୍ଦର ଅଲି, କରମଚାନ୍ଦ ହାସାନ, ଉତନ ଦେବୀ, ଅତର କାଉର, ଆସୋରାମଙ୍କ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ମର୍ମନ୍ତୁଦ। ନିହତ ଆହତଙ୍କ ଆତ୍ମୀୟ ସ୍ୱଜନମାନେ ଡିବିରି, ଲଣ୍ଠନ ଆଲୋକରେ ନିଜ ନିଜ ଆତ୍ମୀୟଙ୍କୁ ଅଣ୍ଡାଳୁଥାନ୍ତି। କ୍ରନ୍ଦନର ରୋଳ ଆକାଶ କମ୍ପାଉଥାଏ। ମୃତାର ମାର ଶୁଖିଲା ସ୍ତନକୁ ବଂଚିଯାଇଥିବା ଶିଶୁ ଅଣ୍ଡାଳି ରାବ ଛାଡୁଥାଏ। ମୁସଲମାନ ଶବ ପାଖରେ ପଡିଛି ଶିଖ, ହିନ୍ଦୁଙ୍କ ଶବ। ଶୀତଳ ମୃତ୍ୟୁବରଣ କଲାବେଳେ ଯନ୍ତ୍ରଣାରେ କିଏ ଅନ୍ୟକୁ ଧରି ଆଖି ବୁଜି ଦେଇଥାଏ। ହିନ୍ଦୁ-ମୁସଲମାନ-ଶିଖ ରକ୍ତ ଏକାକାର। ସେହିଦିନ ରାତିରେ ସାଂଘ ଆଇନ ଜାରି କରାଗଲା। ଖୋଦ ବ୍ରିଟିଶ ସରକାରଙ୍କ ଅନୁମୋଦିତ ରିପୋର୍ଟରୁ ଜଣାଯାଏ ଯେ ଏହି ସମୟର ଦମନରେ

୫୮୧ଜଣ ମୁକ୍ତିଯୋଦ୍ଧାଙ୍କୁ ଅପରାଧୀ ସାବ୍ୟସ୍ତ କରାଯାଇ ୧୦୯ଜଣଙ୍କୁ ଫାଶିଦଣ୍ଡ, ୨୬୫ଜଣଙ୍କୁ ଆଜୀବନ କାରାଦଣ୍ଡ, ପାଞ୍ଚଜଣଙ୍କୁ ୧୦ବର୍ଷ, ୮୫ଜଣଙ୍କୁ ୭ବର୍ଷ ଜେଲଦଣ୍ଡରେ ଏବଂ ଅନ୍ୟମାନଙ୍କୁ ଅଳ୍ପକାଳ ଜେଲଦଣ୍ଡରେ ଦଣ୍ଡିତ କରାଯାଇଥିଲା ।

**ବ୍ରିଟିଶ ବର୍ବରତାର ବୀଭତ୍ସରୂପ**

ସାଂଘ ଆଇନ ଜାରି ସାଙ୍ଗକୁ କ୍ରଲିଂ ଆଇନ ଲାଗୁ କରାଗଲା । ସାରା ପଂଜାବର ଜନତା ଯେପରି ବନ୍ଦୀ, ଅପରାଧୀ । ଲୋକେ ବ୍ରିଟିଶ ହାକିମହୁକୁମାଙ୍କୁ ଦେଖିଲେ, ସରକାରୀ ଦପ୍ତର, ଥାନା ଆଗରେ ଗଲେ, ସିଧାସଳଖ ନୁହଁ ନଇଁପଡି ଗୁରୁଣ୍ଡି ଗୁରୁଣ୍ଡି ଯିବେ । ନୋହିଲେ ଚାବୁକ, ବେତମାଡ, ଜେଲ୍ । ୧୯୧୯ ଏପ୍ରିଲ ୧୮ ତାରିଖରେ କସୁର ସହରର ଗୋରା ମାଜିଷ୍ଟ୍ରେଟଙ୍କ ଦ୍ୱାରା ଇସଲାମିଆ ସ୍କୁଲର ପ୍ରଧାନଶିକ୍ଷକଙ୍କୁ ଛାତ୍ରମାନଙ୍କୁ ଆଣି ପ୍ୟାରେଡ୍‌ରେ ଭାଗ ନେବାକୁ ହୁକୁମ ହେଲା । ଉପସ୍ଥିତ ପିଲାଙ୍କ ମଧ୍ୟରୁ ଛଟି ମୋଟାସୋଟା ପିଲାଙ୍କୁ ଧରିଆଣି, ସେମାନଙ୍କ ଲୁଗାପଟା ଖୋଲି ଦେଇ, ବ୍ରିଟିଶ ମହିଳାଙ୍କ ସାମନାରେ ଦେହ ଫାଟି ରକ୍ତଧାର ବୋହିବାଯାଏ ଚାବୁକ ଓ ବେତ୍ରାଘାତ କରାଗଲା ।

ଲାହୋର ସହର (ଏବେ ପାକିସ୍ତାନରେ) କାନ୍ଥବାଡରେ ଲଗାଯାଇଥିବା ସାଂଘଆଇନ ବିଜ୍ଞାପନକୁ ଚିରିଦେବା ଅପରାଧରେ ହିନ୍ଦୁ, ଶିଖ ଓ ମୁସଲମାନ ଛାତ୍ରମାନଙ୍କୁ କର୍ଣ୍ଣେଲ ଜନ୍‌ସନ ବାନ୍ଧିଆଣିଲେ । ମଇ ମାସର ପ୍ରଚଣ୍ଡ ରୌଦ୍ର । ଖାଲି ପାଦରେ ୧୬ମାଇଲ ପରେଡ୍ କରିବାର ବର୍ବର ଆଦେଶ କାର୍ଯ୍ୟକାରୀ କଲେ । ଗୋଡ ଫୋଟକା, ତଣ୍ଟିରେ ଶୋଷ, ଦେହ ଜଳିଯାଉଛି । ସେମିତି ଆଉ ଏକ ବିଦ୍ୟାଳୟର ୬ଜଣ ଛାତ୍ର ଓ ଶିକ୍ଷକଙ୍କୁ ଜନସନ ଗିରଫ କରି ଉଦୁଉଦିଆ ଖରାରେ ୩ମାଇଲ ଚଲେଇଲେ । ଗାଁରେ ଗାଁରେ ଲୋକଙ୍କ ସମ୍ପତ୍ତି ବାଜ୍ୟାପ୍ତ କରାଗଲା । ଟ୍ରକରେ ବୋଝେଇ କରି ବନ୍ଦୀମାନଙ୍କୁ ପନ୍ଦର ଘଣ୍ଟାକାଳ ପ୍ରଚଣ୍ଡ ଖରାରେ ନିଆଗଲା । ବ୍ରିଟିଶକୁ ଅମାନ୍ୟ କଲେ କଣ ଭୋଗିବାକୁ ପଡିବ ତାହା ସୂଚେଇ ଦିଆଗଲା । ମୁସଲମାନମାନଙ୍କ ଧର୍ମପୀଠ ବାଦଶାହୀ ମସଜିଦକୁ ୬ସପ୍ତାହ ଧରି ବନ୍ଦ କରି ପ୍ରାର୍ଥନା କରିବାକୁ ଅନୁମତି ଦିଆଗଲା ନାହିଁ । ଗୋଟିଏ ବରଯାତ୍ରୀ ଦଳ ଉପରେ ସାଂଘ ଆଇନ ଭାଂଗିବା ଅପରାଧରେ ଆକ୍ରମଣ କରାଗଲା । ପଞ୍ଜରା ଭିତରେ ଗିରଫ ବ୍ୟକ୍ତିମାନଙ୍କୁ ରଖି ଗାଁ ଓ ସହରରେ ବୁଲାଗଲା । ଗିରଫ କରାଯିବା ହିନ୍ଦୁ ଓ ଶିଖଙ୍କ ହାତରେ ଗିରଫ ମୁସଲମାନଙ୍କୁ ଏକାଠି ହାତକଡି ପକେଇ ରାସ୍ତାରେ ବୁଲାଗଲା । ଭାରତୀୟମାନଙ୍କ ଗାଡି ମଟର ଜବତ୍ କରି ଇଂରେଜ ଲୋକଙ୍କୁ ଦିଆଗଲା ।

ଜନ ପ୍ରତିରୋଧ ବଢିଚାଲିଲା । ପଂଜାବ ଅଗ୍ନିକୁଣ୍ଡ ପାଲଟିଲା । ପଂଜାବ ଘଟଣାବଳୀକୁ ବହୁଦିନ ଘୋଡାଇ ରଖି ହେଲା ନାହିଁ । ଗାନ୍ଧିଜୀଙ୍କ ଦ୍ୱାରା ମନୋନୀତ ଏକ କମିଟି ବସି ଅମୃତସର ଘଟଣାବଳୀର ତଦନ୍ତ ଆରଂଭ କଲା । ଏଥିରେ ଥିଲେ ସି.ଆର.ଦାସ, ତୟାବଜୀ ଓ ଜୟକାର ।

ଜାଲିୟାନାବାଗର ଘଟଣାବଳୀ ତଦନ୍ତ କରିବା ନାମରେ ବ୍ରିଟିଶ ସରକାର ବସେଇଥିବା ହଣ୍ଟର କମିଟିକୁ କଂଗ୍ରେସ ବାସନ୍ଦ କଲା। ଏହାଯେ ଏକ ପ୍ରହସନ ତାହା ଜଣା ପଡିଗଲା। ବ୍ରିଟିଶ ପାର୍ଲାଆମେଣ୍ଟରେ ଭାରତବର୍ଷର ପରିସ୍ଥିତିର ଆଲୋଚନା କାଳରେ ଗଭର୍ଣ୍ଣର ଓଡାୟାର ଓ ଜେନେରାଲ ଡାୟାରଙ୍କ ଦ୍ୱାରା ଅନୁସୃତ ଦମନ ପନ୍ଥାର ସମୀଚୀନତାକୁ ସ୍ୱୀକୃତି ଦିଆଗଲା। ଯେଉଁମାନେ ଏହାର ସମାଲୋଚନା କଲେ ସେମାନଙ୍କ ପ୍ରତି କର୍ଣ୍ଣପାତ କରାଗଲା ନାହିଁ।

କବିଗୁରୁ ରବୀନ୍ଦ୍ରନାଥଙ୍କ ସାର ଉପାଧି ପରିତ୍ୟାଗରେ ସାରା ଦେଶବାସୀଙ୍କ ରୋଷ ଓ ପ୍ରତିବାଦ ପ୍ରତିଫଳିତ ହେଲା। ଜାଲିଆନାବାଗର ନରସଂହାର, ରାଓଲାଟ ଆଇନ, କ୍ରଲିଂ ଆଇନ୍, ଅମାନୁଷିକ, ମଣିଷ ବିବେକର କଳ୍ପନାତୀତ ଦମନ ଅତ୍ୟାଚାରର ବିଭୀଷିକା ଦେଶର ପ୍ରତିକୋଣରେ ଆଗାମୀ ଦିନର ସ୍ୱାଧୀନତା ସଂଗ୍ରାମକୁ ଆଉ ଏକ ଉଚ୍ଚତର ସୋପାନକୁ ଘେନିଗଲା।

ପ୍ରଥମ ମହାସମର ଶେଷଆଡକୁ ପୃଥିବୀର ବିଭିନ୍ନ ଦେଶରେ ଯେଉଁ ବିପୁଳ ଅଭ୍ୟୁତ୍ଥାନ ଦେଖାଗଲା, ତାହାର ପ୍ରଭାବ ମଧ୍ୟ ଭାରତର ମୁକ୍ତିକାମୀ ବ୍ୟକ୍ତିମାନଙ୍କ ଉପରେ ପଡି ନିଜ ଉପରେ ଗଭୀର ଆତ୍ମପ୍ରତ୍ୟୟ ଆଣିଦେଲା ଏବଂ ବ୍ରିଟିଶ ସାମ୍ରାଜ୍ୟ ବିରୁଦ୍ଧରେ ସଂଗ୍ରାମକୁ ଦୃଢ଼ୀଭୂତ କରିବା ଲାଗି ଅନୁପ୍ରେରଣା ଯୋଗାଇଲା।

ରୁଷିଆର ଘୋର ଅତ୍ୟାଚାରୀ ଜାର ରାଜୁତି ବିରୁଦ୍ଧରେ ୧୯୧୭ ଅକ୍ଟୋବର ସମାଜବାଦୀ ବିପ୍ଲବର ବିଜୟ ଓ ଜାର ସାମ୍ରାଜ୍ୟଭୁକ୍ତ ବିଭିନ୍ନ ଜାତିଗୁଡିକର ନିଜ ଭାଗ୍ୟ ନିୟନ୍ତଣ କରିବାର ଅଧିକାର ଲାଭ ପୃଥିବୀରେ ଚମକ ସୃଷ୍ଟିକଲା। ଆଫ୍ରିକାର ମିଶର ଦେଶରେ ଓ୍ୱାଫଂଦ ପାର୍ଟି ଜଗଲୁଲ ପାଶାଙ୍କ ନେତୃତ୍ୱରେ ବ୍ରିଟିଶ ବିରୋଧୀ ସ୍ୱାଧୀନତା ସଂଗ୍ରାମ ଚଳାଇଲା। ତୁର୍କୀରେ କେମାଲ ପାଶାଙ୍କ ନେତୃତ୍ୱରେ ନୂତନ ଆଧୁନିକ ତୁର୍କୀ ଗଠନ ଆରଂଭ ହୋଇଗଲା। ଚୀନରେ ସୁନାୟତ୍ ସେନଙ୍କ ଜାତୀୟତାବାଦୀ ବିପ୍ଲବ ନୂତନ ପର୍ଯ୍ୟାୟରେ ପହଂଚି ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ପ୍ରଖର ହୋଇଚାଲିଲା।

ଏହି ପ୍ରକାର ପରିସ୍ଥିତିରେ ଭାରତରେ ଗାନ୍ଧିଜୀଙ୍କ ନେତୃତ୍ୱରେ କଂଗ୍ରେସ ଦ୍ୱାରା ଐତିହାସିକ ଅସହଯୋଗ ଆନ୍ଦୋଳନ ଆରଂଭ ହୋଇଗଲା। ଗାନ୍ଧିଜୀ ଏଣିକି ମହାତ୍ମା ଗାନ୍ଧୀରେ ପରିଣତ ହେବା, ଜାତୀୟ ପିତାରୂପେ ସ୍ୱୀକୃତ ହେବାର ଜାତିବ୍ୟାପୀ ବାତାବରଣ ସୃଷ୍ଟି ହୋଇଗଲା।



# ଅସହଯୋଗ ଆନ୍ଦୋଳନ - କଂଗ୍ରେସ ଖିଲାଫତ ଐକ୍ୟ, ସ୍ୱରାଜ ପାର୍ଟି ଗଠନ ପୂର୍ଣ୍ଣ ସ୍ୱରାଜ ଘୋଷଣା (୧୯୨୦ ରୁ ୧୯୨୯)

**ଅସହଯୋଗ ଆନ୍ଦୋଳନର ପ୍ରସ୍ତୁତିପର୍ବ :**

ଜାଲିଆନାବାଗର ହତ୍ୟା ବିଭୀଷିକାର ମର୍ମଭେଦୀ ସଂବାଦକୁ ବ୍ରିଟିଶ ସରକାର ଲୋକଙ୍କ ଗୋଚରରୁ ବହୁକାଳ ଅଟକାଇ ପାରିଲା ନାହିଁ । ଦେଶବ୍ୟାପୀ ବ୍ରିଟିଶ ଶାସନବିରୋଧୀ କ୍ରୋଧ, ପ୍ରତିବାଦ, ପ୍ରତିହିଂସାର ବାତାବରଣ ସୃଷ୍ଟି ହୋଇଗଲା । ମର୍ମାହତ ଗାନ୍ଧିଜୀ ମନ ସ୍ଥିର କରିନେଲେ । "ଏହି ସଇତାନୀ ସରକାରକୁ ସଂଶୋଧନ କରି ହେବ ନାହିଁ, ଏହାର ବିଲୋପ ସାଧନହିଁ ଭାରତୀୟମାନଙ୍କର ଏକମାତ୍ର କର୍ତ୍ତବ୍ୟ" ବୋଲି ସେ ଘୋଷଣା କଲେ । ଏହିପରି ଏକ ସଂଗ୍ରାମର ପରିକଳ୍ପନାରେ ସେ ଲାଗି ପଡ଼ିଲେ । ଏପରି ଏକ ଅଭିନବ, ସୁଦୂରପ୍ରସାରୀ ଆନ୍ଦୋଳନର ପୂର୍ବ ସର୍ତ୍ତ ସେ ସ୍ଥିର କରିଦେଲେ । ଭାରତର ଦୁଇ ସଂପ୍ରଦାୟ, ଯାହାକୁ ଇଷ୍ଟଇଣ୍ଡିଆ କଂପାନୀ ଆସିଲା ଦିନୁଁ ପରସ୍ପର ବିରୁଦ୍ଧରେ ଲଗେଇ ଆସିଛି, ସେମାନଙ୍କ ମଧ୍ୟରେ ସୁଦୃଢ଼ ଐକ୍ୟ ପ୍ରତିଷ୍ଠା କରିବାକୁ ହେବ । ଏହାହିଁ ଆନ୍ଦୋଳନର ପୂର୍ବସର୍ତ୍ତ ।

ସେ ନିର୍ଣ୍ଣୟରେ ପହଂଚିଲେ ଯେ ୧୯୧୬ର କଂଗ୍ରେସ ଓ ମୁସଲିମ ଲିଗ ମଧ୍ୟରେ ସଂପାଦିତ ଲକ୍ଷ୍ନୌ ଚୁକ୍ତି ଏଥିପାଇଁ ଯଥେଷ୍ଟ ନୁହଁ । ତେଣୁ ମୌଲନା ଆବୁଲ କାଲାମ ଆଜାଦ, ଆଜମଲ ଖାଁ, ହଜରତ୍ ମୋହନି ପ୍ରମୁଖଙ୍କ ନେତୃତ୍ୱରେ ଗଠିତ ଖିଲାଫତ୍ କମିଟିର ଲକ୍ଷ୍ୟ ଓ ବ୍ରିଟିଶ ବିରୋଧୀ ଆସ୍ଥାନକୁ ସେ ଗ୍ରହଣ କଲେ । ମହମ୍ମଦ ଅଲି, ସୌକତ୍ ଅଲି ଦୁଇଭାଇ ଖିଲାଫତ୍ ଆନ୍ଦୋଳନର ପ୍ରବାଦ ପୁରୁଷ । ସେମାନେ ଗାନ୍ଧିଜୀଙ୍କୁ ୧୯୧୯ରେ ଖିଲାଫତ୍ ସମ୍ମିଳନୀର ଅଧିବେଶନ ପାଇଁ ସଭାପତି ନିର୍ବାଚିତ କରାଇଲେ । ଏହି ସମ୍ମିଳନୀରେ ତୁର୍କୀ ସଂପର୍କରେ ବିଲାତ ସରକାର ତାର ନୀତି ନବଦଳେଇଲେ ସରକାର ସହିତ ଅସହଯୋଗ

କରାଯିବ ବୋଲି ନିଷ୍ପତ୍ତି ନିଆଗଲା । ଏହି ନିର୍ଦ୍ଧାରଣକ ଉଭୟ କଂଗ୍ରେସ୍ ଓ ମୁସଲିମ ଲିଗ ସମର୍ଥନ ଜଣେଇଲେ । ଏହି ଆନ୍ଦୋଳନକୁ ମୁସଲମାନ ସଂପ୍ରଦାୟର ଏକ ବିଶିଷ୍ଟ ଧର୍ମୀୟ ସଂସ୍ଥା, ଦେଓବନ୍ଦର ମୌଲାନାମାନେ ଓ ଲକ୍ଷ୍ନୌର ଉଲେମାମାନେ ସମର୍ଥନ ଜଣାଇଲେ । ସ୍ଥିର ହେଲା, ବିଲାତର ପ୍ରଧାନମନ୍ତ୍ରୀ ଲୟେଡ଼ ଜର୍ଜଙ୍କୁ ଭେଟିବା ପାଇଁ ହିନ୍ଦୁ-ମୁସଲମାନଙ୍କର ଏକ ପ୍ରତିନିଧିଦଳ ଯାଇ ଏହି ସମସ୍ୟାର ସମାଧାନ ଲୋଡ଼ିବେ । ୧ ୯ ୨ ୦ରେ ଏହି ପ୍ରତିନିଧି ଦଳ ବିଲାତ ଯାଇ ନିରାଶ ହୋଇ ଫେରିଲେ । ୧ ୯ ୨ ୦ ଅଗଷ୍ଟ ୩୧ ତାରିଖରେ ଗାନ୍ଧିଜୀ ଖିଲାଫତ୍ ଆନ୍ଦୋଳନର ଅସହଯୋଗ କର୍ମନୀତିକୁ ସମର୍ଥନ ଜଣେଇଲେ ।୧ ୯ ୨ ୦ ସେପ୍ଟେମ୍ବରରେ କଲିକତାଠାରେ, କଂଗ୍ରେସର ବିଶେଷ ଅଧିବେଶନ ପୂର୍ବରୁ ଗାନ୍ଧିଜୀ ତାଙ୍କ ପରିକଳ୍ପିତ ଅସହଯୋଗ ଆନ୍ଦୋଳନର ଅଯମାରମ୍ଭ କରିଦେଲେ । ଯୁଦ୍ଧକାଳରେ ସ୍ୱେଚ୍ଛାସେବୀ ବାହିନୀ ଗଢ଼ିଲାବେଳେ ମାନବ ସେବା ଲାଗି ତାଙ୍କୁ ବ୍ରିଟିଶ ସରକାର ଦ୍ୱାରା ପ୍ରଦତ୍ତ 'କାଇଜରି ଇ-ଆାଇ-ହିନ୍ଦ୍' ପଦବୀ ଫିଙ୍ଗି ଦେଲେ ।

୧ ୯ ୨ ୦ ଅଗଷ୍ଟ ୧ରେ ଲୋକମାନେ ତିଳକଙ୍କ ମୃତ୍ୟୁ ଦେଶବାସୀଙ୍କ ପାଇଁ, ତଥା ଗାନ୍ଧିଜୀଙ୍କ ଲାଗି ଏକ ଦୁର୍ବିସହ ଯନ୍ତ୍ରଣାଦାୟକ ପରିସ୍ଥିତି ସୃଷ୍ଟି କରିଥିଲା । କଂଗ୍ରେସର କଲିକତା ଅଧିବେଶନ ତିଳକଙ୍କ ସ୍ମୃତି ଉଦ୍ଦେଶ୍ୟରେ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ଭାବୀ ସଂଗ୍ରାମର କର୍ମସୂଚୀ ଗ୍ରହଣ କଲା । ବ୍ରିଟିଶ ସରକାର ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନର ପ୍ରସ୍ତାବକୁ ଖୋଦ୍ ଗାନ୍ଧିଜୀ ଆଗତ କଲେ । ଏହାକୁ ସମର୍ଥନ କଲେ ଡାକ୍ତ ସୈଫଉଦ୍ଦିନ କିଚଲୁ । କଲିକତାର ଏହି ବିଶେଷ ଅଧିବେଶନରେ ଖିଲାଫତ୍ ଓ ଜାଲିଆନାବାଗ ହତ୍ୟାଲୀଳାର ପ୍ରତିବାଦରେ ଅସହଯୋଗ ଆନ୍ଦୋଳନ କରାଯିବ ବୋଲି ଖିଲାଫତ୍ କମିଟିର ପ୍ରସ୍ତାବକୁ କଂଗ୍ରେସ ସମର୍ଥନ କଲା । ଏହିପରି ଭାବରେ ଗାନ୍ଧିଜୀଙ୍କ ପ୍ରେରଣା ଓ ନେତୃତ୍ୱରେ ଆଗାମୀ ଅସହଯୋଗ ଆନ୍ଦୋଳନର ନିର୍ଦ୍ଧାରଣ ମହା ଉତ୍ସାହ ଉଦ୍ଦୀପନାରେ ନିଆଯାଇଥିଲା ।

ଅସହଯୋଗ ଆନ୍ଦୋଳନର ରୂପରେଖ ମଧ୍ୟ ନିର୍ଣ୍ଣୀତ ହେଲା । ତ୍ରିବିଧ ବାସନ୍ଦ ବା ଅସହଯୋଗର କର୍ମସୂଚୀରେ ଥିଲା, (୧) ବିଧାନ ସଭା (ଲେଜିସଲେଟିଭ କାଉନ୍ସିଲର) ବର୍ଜନ; (୨) ଆଇନ ଅଦାଲତ, ବ୍ରିଟିଶ ବିଚରାଳୟଗୁଡ଼ିକର ବର୍ଜନ, (୩) ବିଦ୍ୟାଳୟ ଗୁଡ଼ିକର ବର୍ଜନ କରାଯିବ ।

ଅସହଯୋଗୀମାନେ ବିଲାତୀ, ବିଦେଶୀ ଦ୍ରବ୍ୟ ବର୍ଜନ କରିବେ । ସୂତାକାଟି ଖଦୀ ବସ୍ତ୍ର ପରିଧାନ କରିବେ । ସତ୍ୟାଗ୍ରହୀମାନେ ଅହିଂସ ଆଚରଣ କରିବେ । ଛୁଆଁ ଅଛୁଆଁ ବାରିରେ ନାହିଁ । ହିନ୍ଦୁ ମୁସଲମାନ ଓ ଅନ୍ୟ ସବୁ ସଂପ୍ରଦାୟ ମଧ୍ୟରେ ଭାଇଚାରା ସଦଭାବ ପ୍ରତିଷ୍ଠା କରିବେ ।

କଲିକତା ବିଶେଷ ଅଧିବେଶନରେ ଏହି ଅସହଯୋଗ କର୍ମନୀତିକୁ କିଛିକାଳ ସ୍ଥଗିତ ରଖିବାକୁ ମଧ୍ୟ ସ୍ୱର ଉତ୍ତୋଳିତ ହୋଇଥିଲା ଏବଂ ଏପରି ଏକ ସଂଶୋଧନ ପ୍ରସ୍ତାବ ପେଶ ହୋଇଥିଲା । ସେଥିରେ ଥିଲା, ସ୍ୱଶାସନ (ସେଲଫ ଗଭର୍ଣ୍ଣମେଣ୍ଟ) ଦେବା ପାଇଁ ଆଉ ଥରେ ବ୍ରିଟିଶ ସରକାର ପାଖରେ ଗୁହାରି କରାଯାଉ । ମାତ୍ର ପ୍ରସ୍ତାବ ସପକ୍ଷରେ ୮୮୩ଜଣ ପ୍ରତିନିଧି ଭୋଟ ଦେଇଥିଲେ ଓ ବିରୋଧରେ ୧୮୫ଟି ଭୋଟ ପଡିଥିଲା । ସଂଶୋଧନ ପ୍ରସ୍ତାବଟି କାଟ ଖାଇଲେ ହେଁ କଂଗ୍ରେସ ମଧ୍ୟରେ କୌଣସି ପ୍ରତ୍ୟକ୍ଷ ବ୍ରିଟିଶ ବିରୋଧୀ ଆନ୍ଦୋଳନ ପ୍ରତି କିପରି ଦ୍ୱିମତ ଥିଲା ଓ କେଉଁମାନେ ଏପରି ଆସ୍ଥାନ ନେଲେ ତାହା ସ୍ପଷ୍ଟ ହୋଇଗଲା ।

ଅସହଯୋଗ ଆନ୍ଦୋଳନର ନିର୍ଦ୍ଧାରଣକୁ ଧାରାବାହିକ କଂଗ୍ରେସ ଅଧିବେଶନର ଗୃହୀତ କରାଇବା ପାଇଁ ୧୯୨୦ ଡିସେମ୍ବର ନାଗପୁର କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହେଲା । ଏହି ଅଧିବେଶନରେ ଗାନ୍ଧିଜୀ ଘୋଷଣା କଲେ "ବ୍ରିଟିଶ ଲୋକେ ସତର୍କ ରୁହନ୍ତୁ । ସେମାନେ ଯଦି ନ୍ୟାୟ ନ ଦୋବକୁ ଚାହାନ୍ତି, ତେବେ ସାମ୍ରାଜ୍ୟକୁ ଭାଂଗିଦେବା (ଡେଷ୍ଟ୍ରୟ) ପ୍ରତ୍ୟେକ ଭାରତୀୟଙ୍କର ଅବଶ୍ୟମ୍ଭାବୀ କର୍ତ୍ତବ୍ୟ ହେବ ।" ମୌଲାନା ମହମ୍ମଦ ଅଲି ବିପୁଳ କରତାଳି ମଧ୍ୟରେ ଘୋଷଣା କଲେ "ସାମ୍ରାଜ୍ୟର ମୃତ୍ୟୁ ହୋଇଛି, ତାହା କବର ପାଇଛି ।"

ନାଗପୁର କଂଗ୍ରେସର ଅଭୂତପୂର୍ବ ସଂଖ୍ୟାର ପ୍ରତିନିଧି ଯୋଗ ଦେଇଥିଲେ । ସେମାନଙ୍କ ସଂଖ୍ୟା ୨୨ ହଜାର । ତଥାପି ଅସହଯୋଗ ଆନ୍ଦୋଳନର ଚରମ ଲକ୍ଷ୍ୟ ସୀମିତ ରହିଲା । ପୂର୍ଣ୍ଣ ସ୍ୱାଧୀନତା, ବ୍ରିଟିଶ ସାମ୍ରାଜ୍ୟର ବିଲୟ ବଦଳରେ ଲକ୍ଷ୍ୟ ଧାର୍ଯ୍ୟ ହେଲା, "ସାମ୍ରାଜ୍ୟ ଭିତରେ ଔପନିବେଶିକ ଶାସନ ।" "ଶାନ୍ତିପୂର୍ଣ୍ଣ ଓ ନ୍ୟାୟସଂଗତ ଉପାୟରେ ସ୍ୱରାଜ୍ୟ ହାସଲର ଲକ୍ଷ୍ୟ ।" ଏହି ଲକ୍ଷ୍ୟ ଅସ୍ପଷ୍ଟ (ଭେଗ୍) ବୋଲି ପଣ୍ଡିତ ଜବାହାରଲାଲ ନେହେରୁ ମନ୍ତବ୍ୟ ଦେଇଥିଲେ । ସୁବାଷଚନ୍ଦ୍ର ବୋଷ ଓ ଅନ୍ୟ ବାମପନ୍ଥୀ କଂଗ୍ରେସ ଲୋକ ମଧ୍ୟ ଏହାର ସମାଲୋଚନା କରିଥିଲେ । ଜବାହରଲାଲ ତାଙ୍କର ମତ ଜଣାଇବା ସଂଗେ ସଂଗେ ଗାନ୍ଧିଜୀଙ୍କୁ ଲକ୍ଷ୍ୟ କରି କହିଥିଲେ ଯେ, "ସେ ଏକ ମହାନ୍, ଅନନ୍ୟ ସାଧାରଣ ବ୍ୟକ୍ତି ଓ ଗୌରବୋଜ୍ଜ୍ୱଳ ନେତା । ଆମେ ତାଙ୍କ ଉପରେ ବିଶ୍ୱାସ ରଖି କିଛି ସମୟ ପାଇଁ ତାଙ୍କୁ ବ୍ଲାଙ୍କ ଚେକ୍ ଦେଉଛୁ ।"

ଅନ୍ୟ ପକ୍ଷରେ ପଣ୍ଡିତ ମଦନମୋହନ ମାଲବ୍ୟ ଏବଂ ମହମ୍ମଦ ଅଲି ଜିନ୍ନା ବିରୋଧ ମତ ପ୍ରକାଶ କରି "ସାମ୍ରାଜ୍ୟ ସହିତ କିପ୍ରକାର ସଂପର୍କ ରହିବ ତାହାର ଉଲ୍ଲେଖ ନାହିଁ" ବୋଲ ମନ୍ତବ୍ୟ ଦେଇଥିଲେ ।

ମାତ୍ର ଗାନ୍ଧିଜୀଙ୍କ ପ୍ରସ୍ତାବ ବିପୁଳ ଭୋଟରେ ଗୃହୀତ ହୋଇଥିଲା । ଏହା ବିରୁଦ୍ଧରେ ମାତ୍ର ୨ଟି ଭୋଟ ପଡିଥିଲା ।

ଏହି ବିରାଟ ଅସହଯୋଗ ଆନ୍ଦୋଳନକୁ ସଂଗଠିତ ରୂପରେ ଚଳାଇବା ଲାଗି କଂଗ୍ରେସ ଇତିହାସରେ ପ୍ରଥମ ଥର ପାଇଁ ଏକ ସାଂଗଠନିକ ବ୍ୟବସ୍ଥା ସ୍ଥିରୀକୃତ ହେଲା । ୧୯୨୦

ନାଗପୁର କଂଗ୍ରେସ ସ୍ଥିର କଲାଯେ ଏଣିକି ଦୈନନ୍ଦିନ କାର୍ଯ୍ୟ ଚଳାଇବା ଲାଗି ୧୫ ଜଣିଆ କାର୍ଯ୍ୟକାରୀ କମିଟି ରହିବ, ୫୦ ହଜାର କଂଗ୍ରେସ ସଭ୍ୟଙ୍କୁ ପ୍ରତିନିଧିତ୍ୱ କରୁଥିବା କଂଗ୍ରେସ ବ୍ୟକ୍ତିଙ୍କୁ ଘେନି ନିଖିଳ ଭାରତ କଂଗ୍ରେସ କମିଟି ଗଢାଯିବ। ପ୍ରତ୍ୟେକଟି ଭାଷାଭାଷୀ ପ୍ରଦେଶରେ ପ୍ରାଦେଶିକ କଂଗ୍ରେସ କମିଟି ରହିବ। ତାହାର ଅଧୀନରେ ଜିଲ୍ଲା କଂଗ୍ରେସ କମିଟି ଏବଂ ଜିଲ୍ଲା କଂଗ୍ରେସ କମିଟି ଅଧୀନରେ ତାଲୁକ ଓ ସେହି ସ୍ତରର କଂଗ୍ରେସ କମିଟିମାନ ରହିବ। କଂଗ୍ରେସର ନୀତି ଗ୍ରହଣ କରୁଥିବା ବ୍ୟକ୍ତିମାନେ ଚାରିଅଣା ଚାନ୍ଦା ଦେଇ ସଭ୍ୟ ହେବେ। ପ୍ରସଙ୍ଗକ୍ରମେ ଆମ ଓଡିଶା ସେତେବେଳେ ବିହାରରେ ଥିଲା। ଓଡ଼ିଶାର ପ୍ରତିନିଧିମାନଙ୍କର ନେତୃତ୍ୱ ଗ୍ରହଣ କରି ଗୋପବଂଧୁ ଦାସ ସ୍ୱତନ୍ତ୍ର ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଗଠନର ସ୍ୱୀକୃତି ହାସଲ କଲେ।

ଓଡିଶା ପକ୍ଷରେ ଏହା ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣା। ବ୍ରିଟିଶ ସରକାର ଭାଗଭାଗ ନୀତି ଅନୁସାରେ ଓଡିଶାକୁ ଖଣ୍ଡବିଖଣ୍ଡିତ କରିଥିଲା। ୧୯୩୬ରେ ଓଡ଼ିଶା ପ୍ରଦେଶ ଗଠନ ପୂର୍ବରୁ ଜାତୀୟ ସଂଗଠନ ଓଡ଼ିଶାକୁ ଏକ ସ୍ୱତନ୍ତ ପ୍ରଦେଶର ରାଜନୈତିକ ମର୍ଯ୍ୟାଦା ଦେଇଥିଲା।

**ତିଳକ ସ୍ୱରାଜ୍ୟ ପାଣ୍ଠି ସଂଗ୍ରହ ଓ ପରେ:**

ଭାରତରେ ତତ୍କାଳୀନ ୩୦-୩୨ କୋଟି ଲୋକଙ୍କ ମଧ୍ୟରୁ କୋଟିଏ ବ୍ୟକ୍ତି ଗୋଟିଏ ଟଙ୍କା ସ୍ୱରାଜ୍ୟ ପାଣ୍ଠିକୁ ଦେବେ; ଗୋଟିଏ ବର୍ଷରେ ସ୍ୱରାଜ ଆସିବ ଗାନ୍ଧିଜୀଙ୍କ ଯୋଜନା ଘୋଷିତ ହେଲା। ଏହାର ନାମ ତିଳକ ସ୍ୱରାଜ୍ୟ ପାଣ୍ଠି ରଖାଗଲା। ଏହି ପାଣ୍ଠି ସଂଗ୍ରହ ସେତେବେଳେ ସାରା ଭାରତରେ ସ୍ୱାଧୀନତା ଆନ୍ଦୋଳନ ଲାଗି ଅଶେଷ ପ୍ରଭାବ ପକେଇଲା। ମୁକ୍ତି ସୈନିକ, ଅସହଯୋଗୀମାନେ ସହର, ଶିଳ୍ପାଞ୍ଚଳ, ପଲ୍ଲୀପେଣ୍ଠ ଗୁଡିକରେ ସ୍ୱରାଜ୍ୟ ପାଣ୍ଠି ସଂଗ୍ରହର ଅଭିଯାନ ଚଳେଇଲେ। ଗରୀବ ଚାଷୀ, ସହରବାସୀ ମୂଲିଆଙ୍କଠାରୁ ଆରମ୍ଭ କରି ମହିଳାମାନେ ଅକାତରରେ ଏହି ପାଣ୍ଠିକୁ ଦାନ କଲେ। ମହିଳାମାନେ ନିଜ କାନ ବେକର ଗହଣା, ସୁନା ରୁପା ଚୁଡି ସ୍ୱରାଜ୍ୟ ପାଣ୍ଠିକୁ ଦେଲେ। ବର୍ଷ ନପୁରୁଣୁ କୋଟିଏରୁ ଅଧିକ ଟଙ୍କା ସ୍ୱରାଜ୍ୟ ପାଣ୍ଠିରେ ଜମା ପଡିଗଲା। ଯିଏ ସୂତା କାଟିଲା, ଯିଏ ଖଦଡ଼ ପିନ୍ଧିଲା, ଯିଏ ଚାରଣା ପଇସା ଦେଇ କଂଗ୍ରେସ ସଭ୍ୟ ହେଲା, ଆଉ ଯିଏ ସ୍ୱରାଜ୍ୟ ପାଣ୍ଠିକୁ ଦାନ କଲା, ସିଏ ନିଜକୁ ଦେଶପ୍ରେମୀ ବିଚାରିଲା। ଦେଶବ୍ୟାପୀ ବ୍ରିଟିଶ ସରକାର ସହିତ ଅସହଯୋଗ କରିବା ପାଇଁ ବିଭିନ୍ନ ପନ୍ଥାପଦ୍ଧତି ଅନୁସୃତ ହେଲା। ସାରା ଦେଶରେ ସ୍କୁଲ କଲେଜର ଛାତ୍ରମାନେ ବିଦ୍ୟାଳୟ ବର୍ଜନ କଲେ। ସରକାରୀ କଟକଣା, ଶିକ୍ଷକମାନଙ୍କର ତାଡନା, ଅଭିଭାବକମାନଙ୍କର କୁଣ୍ଠା ଓ ବିରୋଧକୁ ସେମାନେ ଗ୍ରହଣ କଲେ ନାହିଁ। ଅନେକ ସ୍ଥାନରେ ଛାତ୍ରମାନେ କେବଳ ବିଦ୍ୟାଳୟ ଛାଡିଲେ ନୁହଁ, ବିଦେଶୀ ବିଦ୍ୟା ବର୍ଜନ ନାମରେ ସ୍କୁଲ କଲେଜ ଉପରେ ଆକ୍ରମଣ କଲେ। ଯେଉଁ ଶିକ୍ଷକମାନେ ବ୍ରିଟିଶ ପକ୍ଷରେ ଗଲେ ସେମାନଙ୍କୁ ନାନା ହଇରାଣ ହରକତରେ ପକେଇଲେ। ସାରା ଭାରତ କଥା ସ୍ୱତନ୍ତ୍ର। ଆମ ଓଡିଶାରେ ମଧ୍ୟ ଏପରି କେତେକ ଘଟଣା ଘଟିଥିଲା। ବିକ୍ଷୁବ୍ଧ ଛାତ୍ରମାନେ ଢେଙ୍କାନାଳର

ଛାତ୍ର ମେସକୁ ୧୯୨୦ ଫେବୃଆରୀ ୨୬ ତାରିଖରେ ପୋଡି ଦେଇଥିଲେ । ୧୯୨୧ ମାର୍ଚ୍ଚ ୧ର ଉଦ୍ୟମ ବିଫଳ ହେବାପରେ ମାର୍ଚ୍ଚ ୯ ତାରିଖରେ ଖୋର୍ଦ୍ଧା ହାଇସ୍କୁଲକୁ ଛାତ୍ରମାନେ ପୋଡିଥିଲେ । ସେହିବର୍ଷ ମାର୍ଚ୍ଚ ୧୩ ତାରିଖରେ ଆଠଗଡ ହାଇସ୍କୁଲକୁ ପୋଡିବା ଉଦ୍ୟମ ଛାତ୍ରମାନେ କରିଥିଲେ ଏବଂ ୧୯୨୧ ମାର୍ଚ୍ଚ ୨୦ରେ ଆଠଗଡ ଛାତ୍ରାବାସ ଓ ଢେଙ୍କାନାଳ ଶିକ୍ଷକ ହଷ୍ଟେଲରେ ଅଗ୍ନି ସଂଯୋଗ କରାଯାଇଥିଲା । ୧୯୨୧ ଏପ୍ରିଲ ୮ରେ କଟକ ଏଡୁକେସନାଲ ଇନ୍ସପେକ୍ଟର ଅଫିସ ଏବଂ ଏପ୍ରିଲ ୧୪ରେ ରେଭେନ୍ସା କଲେଜ ପ୍ରିନ୍ସପାଲ ଅଫିସକୁ ପୋଡିଦେବାର ଉଦ୍ୟମ ହୋଇଥିଲା । ଖୋର୍ଦ୍ଧା ହାଇସ୍କୁଲର ହିନ୍ଦ ବ୍ଲକ ହଷ୍ଟେଲ ୧୯୨୧ ଏପ୍ରିଲ ୨୪ରେ ଏବଂ ମହମଡିୟାନ ହଷ୍ଟେଲ ବ୍ଲକ ଏପ୍ରିଲ ୨୨ରେ ପୋଡି ଦିଆଯାଇଥିଲା । ବ୍ରିଟିଶ ପକ୍ଷପାତୀ ଶିକ୍ଷକମାନଙ୍କୁ ଉଚିତ ଶିକ୍ଷା ଦେବା ଲାଗି ଖୋର୍ଦ୍ଧା ସ୍କୁଲ ଶିକ୍ଷକ ପଂଚାନନ ମୁଖାର୍ଜୀଙ୍କ ବାସଗୃହ ୧୯୨୧ ମଇରେ ଓ ରଘୁନାଥ ସିଂହଙ୍କ ବାସଗୃହ ମଇ ୧୬ରେ ଏବଂ ବୀରବିକ୍ରମ ପାତ୍ରଙ୍କ ବାସଗୃହ ଏପ୍ରିଲ ୨୧ରେ ଛାତ୍ରମାନେ ଜାଳି ଦେଇଥିଲେ ।

ଓଡିଶାର ଏହି ଘଟଣା ସୂଚାଇଦିଏ ଯେ ଅସହଯୋଗ ଆନ୍ଦୋଳନ କାଳରେ ସାରା ଭାରତରେ ଛାତ୍ରମାନେ କିପରି ବିଦେଶୀ ଶାସନ ବିରୁଦ୍ଧରେ ମାତି ଉଠିଥିଲେ ।

ଗାନ୍ଧିଜୀଙ୍କ ପ୍ରଦର୍ଶିତ ଅହିଂସା ମାର୍ଗ ସେମାନଙ୍କ ପକ୍ଷରେ ଗ୍ରହଣୀୟ ହୋଇନାହିଁ । ଏହାହିଁ ସାରା ଦେଶରେ ସେତେବେଳେ ଛାତ୍ର ବିକ୍ଷୋଭର ସ୍ୱରୂପ ଓ ଅନୁସୃତ ପନ୍ଥାର ଚିତ୍ର ଦିଏ ।

ବିଶିଷ୍ଟ ଆଇନଜୀବୀମାନେ ସେମାନଙ୍କ ଆଇନ ବ୍ୟବସାୟ ପରିତ୍ୟାଗ କରିବାର ଅଗ୍ରଭାଗରେ ରହିଲେ ପଣ୍ଡିତ ମୋତିଲାଲ ନେହେରୁ, ଚିତ୍ତରଂଜନ ଦାସ, ବଲ୍ଲଭଭାଇ ପଟେଲ, ବିଠଲଭାଇ ପଟେଲ, ଏମିତି ଶତଶତ ନାମଜାଦା ଆଇନଜୀବୀ । ମାନ୍ଦ୍ରାଜ, କଲିକତା, ଏହ୍ଲାବାଦ, ବମ୍ବେ, ଦିଲ୍ଲୀ ଏମିତି ବହୁ ନଗର ନଗରୀର ନାମଜାଦା ଓକିଲ ଓକିଲାତି ଛାଡ଼ିଦେଲେ । ସୁବାଷଚନ୍ଦ୍ର ବୋଷଙ୍କ ଭଳି ସେ କାଳର ଆଇ.ଏ.ଏସ ପଦବୀ ହାସଲ କରିଥିବା ବୁଦ୍ଧିଜୀବୀମାନେ ଭବିଷ୍ୟତ୍ ସୁଖ ସମ୍ଭୋଗକୁ ଜଳାଞ୍ଜଳି ଦେଇ ସେସବୁକୁ ପରିହାର କରିଥିଲେ । ଅନେକ ପୁଲିସ ଚାକିରୀ, ମାଜିଷ୍ଟ୍ରେଟ ପଦ, ଶିକ୍ଷକପଦ ପରିହାର କରିଦେଲେ ।

ଆମ ଓଡିଶାରେ ମଧ୍ୟ ଅନେକ ମୁକ୍ତି ସୈନିକ ପଦପଦବୀ, ଶିକ୍ଷକତା, ଚାକିରୀ ପରିତ୍ୟାଗ କରିଥିଲେ । ସ୍କୁଲ କଲେଜ ବର୍ଜନ କରିଥିଲେ । ତନ୍ମଧ୍ୟରୁ କେତୋଟି ମାତ୍ର ଦୃଷ୍ଟାନ୍ତ ହେଲା । ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ, ରାଜକୃଷ୍ଣ ବୋଷଙ୍କ ଭଳି ଅନେକ କଲେଜ ପାଠ ଛାଡିଦେଲେ । ଗୋପବଂଧୁ ଚୌଧୁରୀ ମାଜିଷ୍ଟ୍ରେଟ ପଦ, ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସ ପୁଲିସ ସବଇନ୍ସପେକ୍ଟର ପଦ, ପ୍ରାଣକୃଷ୍ଣ ପଡିଆରି ଶିକ୍ଷକ ପଦ ପରିତ୍ୟାଗ କରିଦେଲେ । ମୁକୁନ୍ଦ ଦାସ, ଭାଗିରଥୀ ମହାପାତ୍ର ପ୍ରମୁଖ ଓକିଲାତି ଛାଡି ଦେଲେ । ଏହା କେବଳ ନମୂନା ମାତ୍ର । ଓଡ଼ିଶାର ବହୁ ସ୍ଥାନରେ ଓକିଲ କୋର୍ଟ ବର୍ଜନ କଲେ । ଛାତ୍ର ବିଦ୍ୟାଳୟ ଛାଡ଼ିଲେ । ସମଗ୍ର ଭାରତବର୍ଷଟିର

ପ୍ରତ୍ୟେକ ପ୍ରଦେଶରେ ଶହଶହ ଓକିଲ, ଶହଶହ ସରକାରୀ କର୍ମଚାରୀ, ଶହ ଶହ ଶିକ୍ଷକ ଅସହଯୋଗ ଆନ୍ଦୋଳନରେ ଏହିପରି ଭାବରେ ଅଂଶଗ୍ରହଣ କରିଥିଲେ। ଅସହଯୋଗ ଆନ୍ଦୋଳନ କାଳରେ ଦେଶବ୍ୟାପୀ ଜାତୀୟତାବାଦୀ ଶିକ୍ଷାନୁଷ୍ଠାନମାନ ଭାରତର ସବୁ ପ୍ରଦେଶରେ ଗଢି ଉଠିଲା। ଉତ୍କଳମଣି ଗୋପବଂଧୁ ବହୁ ଆଗରୁ ଏପରି ଜାତୀୟ ବିଦ୍ୟାଳୟର ପ୍ରତିଷ୍ଠା କରିଥିବା ଉଲ୍ଲେଖ କରାଯାଇଛି। ପଣ୍ଡିତ ନୀଳକଂଠ, ଗୋଦାବରୀଶ, ଆଚାର୍ଯ୍ୟ ହରିହର, କୃପାସିନ୍ଧୁ ମିଶ୍ର ଲିଙ୍ଗରାଜ ମିଶ୍ର ଯେପରି ସରକାରୀ ବଡ ଚାକିରୀ ମୋହ ତୁଟାଇ ବନ ବିଦ୍ୟାଳୟର କଳ୍ପନା କରିଥିଲେ, ସେହିପରି ଜାତୀୟ ଖ୍ୟାତିସଂପନ୍ନ ଜାତୀୟ ବିଦ୍ୟାନୁଷ୍ଠାନ ପାଟନା, କାଶୀ, ଅହମେଦାବାଦ, କଲିକତା ଓ ଅନ୍ୟତ୍ର ପ୍ରତିଷ୍ଠିତ ହେଲା। ବିହାର ବିଦ୍ୟାପୀଠର ପ୍ରତିଷ୍ଠାତା ଓ ଶିକ୍ଷକ ହେଲେ ରାଜେନ୍ଦ୍ର ପ୍ରସାଦ, ଜେ.ବି. କୃପାଳିନୀ ପ୍ରମୁଖ। ବନାରସରେ କାଶୀ ବିଦ୍ୟାପୀଠର ପ୍ରତିଷ୍ଠାତା ଓ ଶିକ୍ଷକ ହେଲେ ମହାନ୍ ବିଦ୍ୱାନ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ରାଜାରାମ ଶାସ୍ତ୍ରୀ, ସଂପୂର୍ଣ୍ଣାନନ୍ଦ, ଶ୍ରୀପ୍ରକାଶ ପ୍ରମୁଖ। ଗୁଜୁରାଟ ବିଦ୍ୟାପୀଠର ପ୍ରତିଷ୍ଠାତା ମଧ୍ୟରେ ଥିଲେ ଗାନ୍ଧିଜୀଙ୍କ ପଟ୍ଟଶିଷ୍ୟ ଓ ବିଶ୍ୱସ୍ତ ସେକ୍ରେଟେରୀ ମହାଦେବ ଦେଶାଇ। କଲିକତା ଜାତୀୟ ବିଦ୍ୟାଳୟର ପ୍ରମୁଖ ପ୍ରତିଷ୍ଠାତା ସୁବାଷଚନ୍ଦ୍ର ବୋଷ ସେଥିରେ ଶିକ୍ଷକତା କଲେ। ଜାକିର ହୋସେନ ଦିଲ୍ଲୀରେ ବିଖ୍ୟାତ ଶିକ୍ଷାନୁଷ୍ଠାନ ଜାମିଆମିଲିଆ ପ୍ରତିଷ୍ଠା କଲେ।

ଭାରତରେ ବିଭିନ୍ନ ପ୍ରାନ୍ତରେ ଗଢି ଉଠିଥିବା ଏପରି ଜାତୀୟ ବିଦ୍ୟାଳୟଗୁଡିକ କେବଳ ଜାତୀୟତାବାଦୀ, ସାମ୍ରାଜ୍ୟବାଦ ବିରୋଧୀ ଚେତନାର ବାହକ ହେଲା ନାହିଁ କାଶୀ ବିଦ୍ୟାପୀଠ ପରି ଶିକ୍ଷାୟତନ ଭାରତରେ ଭବିଷ୍ୟତର ସମାଜବାଦୀ ଚିନ୍ତାଧାରା ପ୍ରଚାରର ବାହକ ହେଲା।

ଅସହଯୋଗ ଆନ୍ଦୋଳନର ସର୍ତ୍ତାବଳୀ ଅନୁସାରେ ନିର୍ବାଚନମାନଙ୍କରୁ କଂଗ୍ରେସ ଲୋକେ ଦୂରରେ ରହିଲେ।

**କର ଟିକସ ବନ୍ଦ:**

ଅସହଯୋଗ ଆନ୍ଦୋଳନ ନିଦ୍ରିତ ଭାରତର ମହାନିଦ୍ରା ଭାଂଗିଦେଲା। କେବଳ ଆଇନ ବ୍ୟବସାୟ, ସରକାରୀ ଚାକିରୀ, ବ୍ରିଟିଶ ପ୍ରଦତ୍ତ ଖେତାବ, ଉପାଧି ଓ ସ୍କୁଲ କଲେଜ ବର୍ଜନରେ ଆନ୍ଦୋଳନ ସୀମିତ ରହିଲା ନାହିଁ। ଯୁକ୍ତ (ଉତ୍ତର) ପ୍ରଦେଶରେ ତିନି ଜଣ ଆନ୍ଦୋଳନକାରୀ କୃଷକ ନେତାଙ୍କୁ ଗିରଫ କରିବାର ପ୍ରତିବାଦରେ ରାଏବେରିଲି ଠାରେ ୭୦ ହଜାର ଚାଷୀ ବିକ୍ଷୋଭ କଲେ। ପୁଲିସ ଗୁଳି ଚଳାଇ ୭ଜଣଙ୍କୁ ହତ୍ୟା କଲା ଓ ବହୁଚାଷୀ ଆହତ ହେଲେ। ୧୯୨୧ ଜାନୁଆରୀର ଏହି ବିଶାଳ ବିକ୍ଷୋଭ ଯୁକ୍ତ ପ୍ରଦେଶର ଚାଷୀ ଓ ଜନତାକୁ ଅସହଯୋଗ ଆନ୍ଦୋଳନର ପରିସରଭୁକ୍ତ କରିଦେଲା। ଫୈଜାବାଦ ଓ ରାଏବେରିଲି ଜିଲ୍ଲାର ଚାଷୀମାନେ ଖଜଣା ଦେବାକୁ ନାସ୍ତି କରିଦେଲେ। ବିହାରରେ ତାନା ଭଗତ୍ ଆନ୍ଦୋଳନ ଛୋଟନାଗପୁରର ଆଦିବାସୀମାନଙ୍କ ପକ୍ଷରୁ ଆରଂଭ ହୋଇ ଚୌକିଦାରୀ ଟିକସ, ଖଜଣା ବନ୍ଦ ଆନ୍ଦୋଳନ

ଚାଲିଲା। ମେଦିନୀପୁରର ଚାଷୀମାନେ ୟୁନିଅନ ବୋର୍ଡ ଟିକସ ଦେଲେ ନାହିଁ ଏବଂ ଏହି କାଳରୁ ବଂଗଳାରେ ଚାଷୀମାନେ ସଂଗଠିତ ହୋଇ ଚାଷୀ ସଂଘ ଗଠନ କଲେ। ଦକ୍ଷିଣରେ ଆନ୍ଧ୍ରର ଗୁଣ୍ଟୁରରେ ଏକ ଅଭିନବ ଆନ୍ଦୋଳନ ଦୁଗିଗିରଲା ଗୋପାଳକ୍ରିଷ୍ଣାୟାଙ୍କ ନେତୃତ୍ୱରେ ସଂଘଟିତ ହେଲା। ମ୍ୟୁନିସପାଲିଟି ଟିକସ ଦେବାକୁ ନାସ୍ତି କରି ଚିରଲାର ସମସ୍ତ ଅଧିବାସୀ ସେ ସ୍ଥାନ ଛାଡ଼ି ଏକ ନୂଆ ସହର ବସେଇଲେ। ବିଜୟଓ୍ୟାଡାରେ ଲୋକେ ଏକ ସମାନ୍ତରାଳ ମ୍ୟୁନିସପାଲ କାଉନ୍ସିଲ ଗଠନ କଲେ। କୃଷ୍ଣା, ଗୋଦାବରୀ, ଗୁଣ୍ଟୁର ଜିଲ୍ଲାରେ ଟିକସ ବନ୍ଦ ଆନ୍ଦୋଳନ ବ୍ୟାପକ ରୂପ ନେଲା। ପେଦାନିପାଦୁର ସବୁ ବ୍ରିଟିଶ ଗ୍ରାମ୍ୟ କର୍ମଚାରୀ ଇସ୍ତଫା ଦେଇଦେଲେ। ପାଲନାଦ ଅଂଚଳରେ ଚାଷୀମାନେ ଘାସ କର ବନ୍ଦ କରିଦେଲେ।

କେରଳରେ ମୋପାଲା ମୁସଲମାନ ଚାଷୀମାନେ ଜେନମି (ହିନ୍ଦୁ ଜମିଦାରବର୍ଗ)ଙ୍କ ଟିକସ ବନ୍ଦ କରିଦେଲେ। ଅବଶ୍ୟ ଏହି ଆନ୍ଦୋଳନବେଳେ ସାଂପ୍ରଦାୟିକ ଦଂଗା ସୃଷ୍ଟି ହୋଇଥିଲା। ତାହାକୁ ଗାନ୍ଧିଜୀ ନିନ୍ଦା କରିଥିଲେ ହେଁ ମୋପଲା ଚାଷୀମାନଙ୍କ ବ୍ରିଟିଶ ହାକିମ ହୁକୁମା କର୍ମଚାରୀମାନଙ୍କ ବିରୁଦ୍ଧରେ ଯିବାରୁ ଯେଉଁ ମର୍ମାନ୍ତିକ ଘଟଣା ଘଟିଥିଲା, ତାହା ଭାରତର ସମସ୍ତ ଅସହଯୋଗୀ ମୁକ୍ତି ସୈନିକଙ୍କୁ ବିକ୍ଷୁବ୍ଧ କରିଥିଲା।

ଇଂରେଜମାନଙ୍କୁ ହତ୍ୟା କରିଥିବା ଅଭିଯୋଗରେ ଶହେ ଜଣ ମୋପଲା ଚାଷୀଙ୍କୁ ଗୋଟିଏ ରେଲ ଓ୍ୟାଗନରେ ଭର୍ତ୍ତି କରି କାଲିକାଟରୁ ମାଡ୍ରାଜ ପଠାଗଲା। ବନ୍ଦ ଓ୍ୟାଗନରେ ଶ୍ୱାସରୁଦ୍ଧ ହୋଇ ୬୬ଜଣ ମୃତ୍ୟୁବରଣ କରିଥିଲେ। ଏହି ବର୍ବର ଇଛାକୃତ ହତ୍ୟା ଲୀଳା ମାଲବାରରେ ଓ ମାଡ୍ରାଜରେ ବିକ୍ଷୋଭ ସୃଷ୍ଟି କରିଥିଲା।

ସେହି ସମୟରେ ଓଡିଶାରେ ବିଖ୍ୟାତ କନିକା ପ୍ରଜାମେଳି ସଂଘଟିତ ହୋଇଥିଲା। କନିକା ରାଜାଙ୍କ ୬୪ କର, ଅତ୍ୟାଚାର ବିରୁଦ୍ଧରେ ଏହି ସଂଗ୍ରାମ। ଏହି ଆନ୍ଦୋଳନରେ ଅଗ୍ରଭାଗରେ ଥିଲେ ଚକ୍ରଧର ବେହେରା ପ୍ରମୁଖ। ବାସୁବିଷ୍ଣୁନିଙ୍କ ପ୍ରାଣ ବ୍ରିଟିଶ ଗୁଳିରେ ଉଡିଯାଇଥିଲା। ଏହି କନିକା ମେଳିରେ ଉତ୍କଳମଣି ଗୋପବଂଧୁ ଦାସଙ୍କୁ ଅଭିଯୁକ୍ତ କରି ୨ବର୍ଷ ସଶ୍ରମ ଜେଲଦଣ୍ଡ ଦିଆଯାଇଥିଲା।

ଏହି ୧୯୨୧ରେ ପଂଜାବରେ ବ୍ୟଭିଚାରୀ ଶିଖ ମହନ୍ତ ଏବଂ ସେମାନଙ୍କ ସମର୍ଥନରେ ଥିବା ବ୍ରିଟିଶ ସରକାର ବିରୁଦ୍ଧରେ ଅକାଳୀ ଦଳ ନେତୃତ୍ୱରେ ଚାଳିତ ଆନ୍ଦୋଳନ କାଳରେ ନିର୍ମମ ନରହତ୍ୟାର ତାଣ୍ଡବ ସୃଷ୍ଟି କରାଯାଇଥିଲା। ଶିଖ ଧର୍ମର ଦୁଇ ପବିତ୍ରତମ ଧର୍ମପୀଠ ଅମୃତସରର ସ୍ୱର୍ଣ୍ଣମନ୍ଦିର ଓ ଲାହୋର ନାନାକନା ସାହେବ। ମନ୍ଦିର ଦ୍ୱୟର ପ୍ରଚୁର ଐଶ୍ୱର୍ଯ୍ୟ। ମହନ୍ତମାନେ ବ୍ୟଭିଚାରୀ, ଲମ୍ପଟ। ଏହାରି ବିରୁଦ୍ଧରେ ୧୯୨୧ ମାର୍ଚ୍ଚ ୫ରେ ଏକ ବିଶାଳ ବିକ୍ଷୋଭ ସଂଘଟିତ ହେଲା। ନାନକନା ସାହେବ ଠାରେ ହଜାର ହଜାର ଶିଖ ଶ୍ରଦ୍ଧାଳୁଙ୍କ ଖାଇବା ବ୍ୟବସ୍ଥା କରୁଥିଲେ ୧୫୦ ଜଣ ଯାଏ ଶିଖ। ଏମାନେ ମନ୍ଦିର ଭିତରକୁ ପୂଜାପାଠ ଲାଗି

ପ୍ରବେଶ କଲାପରେ ମହନ୍ତଙ୍କ ନିର୍ଦ୍ଦେଶରେ ମୁଖ୍ୟ ଦରଜା ବନ୍ଦ କରିଦିଆଗଲା । ଶହେ ଜଣରୁ ଉର୍ଦ୍ଧ୍ୱ ଶ୍ରଦ୍ଧାଳୁଙ୍କୁ ମନ୍ଦିର ଭିତରେ କାଟିଦେଇ ପେଟ୍ରୋଲ ଢାଳି ଜଳେଇ ଦିଆଗଲା । ବ୍ରିଟିଶ ସରକାର ମହନ୍ତମାନଙ୍କ ପକ୍ଷରେ ଗଲା । ୧ ୯ ୨ ୨ ଅଗଷ୍ଟରେ ଶହୀଦମାନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇବା ପାଇଁ ସମବେତ ସହସ୍ର ସହସ୍ର ଶ୍ରଦ୍ଧାଳୁ ଗୁରୁଦ୍ୱାରକୁ ଗଲାବେଳେ ବ୍ରିଟିଶ ପୁଲିସ ସେମାନଙ୍କ ଉପରେ ଝାମ୍ପି ପଡିଲା । ସେମାନେ ଅହିଂସ ସଂକଳ୍ପ ନେଇ ନୀରବରେ ପ୍ରାର୍ଥନା ସମାପ୍ତ କରିଥିଲେ ।

ଅସହଯୋଗ ଆନ୍ଦୋଳନ କାଳରେ କେବଳ ଚାଷୀମାନେ କରଟିକସ ବନ୍ଦ କରି ନଥିଲେ । ୧ ୯ ୨ ୧ ମଇ ମାସରେ ଆସାମ ଚାବଗିଚା ଶ୍ରମିକମାନଙ୍କ ଉପରେ ବ୍ରିଟିଶ ବାଗାନ ମାଲିକମାନେ ଆକ୍ରମଣ କରି ବହୁ ଶ୍ରମିକଙ୍କୁ ବରଖାସ୍ତ କରିଦେଲେ । ସେମାନେ ବାସହୀନ ହୋଇ ଚାଲିଚାଲି ଚାନ୍ଦପୁର ଆସି ଷ୍ଟିମରରେ ଯିବା ପାଇଁ ବସିଲାରୁ ସେମାନଙ୍କ ଉପରେ ମାଡ଼ ଚାଲିଲା । ମହିଳା ଓ ପୁରୁଷ ଶ୍ରମିକଙ୍କୁ ଷ୍ଟିମରଗୁଡ଼ିକରୁ ଘୋଷାରି ଆଣି ଜଳକୁ ନିକ୍ଷେପ କରାଗଲା । ଏହାର ପ୍ରତିବାଦରେ ଆସାମ ବେଙ୍ଗଲ ରେଳବାଇ ଶ୍ରମିକ ଓ ଷ୍ଟିମର କର୍ମଚାରୀମାନେ ଚା' ବାଗାନ ଶ୍ରମିକଙ୍କ ପ୍ରତି ସଂହତି ଜଣାଇ ଧର୍ମଘଟରେ ଆଗ୍ରା ନେଲେ । କାଲିକଟଠାରେ ଏକ ଭାଷଣ ଦେବା ଅଭିଯୋଗରେ ୟାକୁବ ହାସାନଙ୍କୁ ଗିରଫ କରି ବମ୍ବେ ପଠାଗଲା । ଏହାର ପ୍ରତିବାଦରେ ୭୦ ହଜାର ବମ୍ବେ ଶ୍ରମିକ ଓ ଜନସାଧାରଣ ଠୁଳ ହୋଇ ତାଙ୍କୁ ସଂବର୍ଦ୍ଧିତ କଲେ । କଚାରୀ ଠାରେ ୧ ୯ ୨ ୧ ଜୁଲାଇରେ ଅଲ୍ଲିଭାଇ ଦ୍ୱୟଙ୍କ ବିଚାର କରାଯାଇ ସେମାନଙ୍କୁ ୨ ବର୍ଷ କାରାଦଣ୍ଡ ଶୁଣି ବିକ୍ଷୋଭର ଜୁଆର ଛୁଟିଥିଲା ।

**ଚୌରିଚୌରା ଆନ୍ଦୋଳନ ପ୍ରତ୍ୟାହୃତ :**

୧ ୯ ୨ ୧ ଜୁଲାଇ ୨୮ରେ ନିଖିଳ ଭାରତ କଂଗ୍ରେସ କମିଟି ବମ୍ବେରେ ବସି ପ୍ରିନ୍ସ ଅଫ୍ ୱେଲସ (ବ୍ରିଟିଶ ରାଜକୁମାର)ଙ୍କ ଭାରତ ପରିଦର୍ଶନକୁ ବାସନ୍ଦ କରିବାକୁ ନିଷ୍ପତ୍ତି ନେଲା । ନଭେମ୍ବର ୧ ୭ ତାରିଖରେ ବମ୍ବେରେ ରାଜକୁମାର ପଦାର୍ପଣ କରିବ ଦିନ ସାରା ଭାରତରେ ହରତାଳ ପାଳିତ ହେଲା । ଏହାର ବିରୋଧ କରିବାରୁ ୟୁରୋପୀୟ ଓ କେତେକ ପାର୍ଶିଙ୍କ ସହିତ ଉତ୍ତ୍ୟକ୍ତ ଜନତାର ସଂଘର୍ଷ ହେଲା । ଜନତା ଉପରେ ପୁଲିସ ଗୁଳିରେ ୫୫ଜଣ ଲୋକ ନିହତ ହେଲେ । କଲିକତାରେ ଜନଜୀବନ ସେଦିନ ପଙ୍ଗୁ ହୋଇଗଲା । ଦେଶସାରା ହରତାଳରେ ଲକ୍ଷଲକ୍ଷ ଗ୍ରାମ ଓ ସହରବାସୀ ଭାଗ ନେଲେ । କଂଗ୍ରେସ ଓ ଖିଲାଫତ୍ ଆନ୍ଦୋଳନର ମିଳିତ ସ୍ୱେଚ୍ଛାସେବୀ ବାହିନୀ ଉପରେ ବ୍ରିଟିଶ କଟକଣା ଲାଗୁ କଲା । ବମ୍ବେ ଘଣଣାବଳୀରେ ଗାନ୍ଧିଜୀ ବ୍ୟଥିତ ହୋଇ ଆନ୍ଦୋଳନ ଉପରେ ଆଙ୍କୁଶ ଲଗେଇବା ଚିନ୍ତା କଲେ ।

୧ ୯ ୨ ୧ରେ ଅହମେଦାବାଦ କଂଗ୍ରେସ ଅଧିବେଶନରେ ମୌଲାନା ହଜରତ୍ ମୋହାନୀ ପୂର୍ଣ୍ଣ ସ୍ୱାଧୀନତାର ପ୍ରସ୍ତାବ ଆଣିଲେ । ଗାନ୍ଧିଜୀ ତାର ବିରୋଧ କରି କହିଲେ, "ଆମର

ସୀମାବଦ୍ଧତାକୁ ଉପଲବ୍ଧି କରିବାକୁ ହେବ । ଆଗ ହିନ୍ଦୁ ଓ ମୁସଲମାନଙ୍କର ପରମ ଐକ୍ୟ ସ୍ଥାପିତ ହେଉ - ଜଳ କେତେ ଗଭୀର ନଜାଣି ଆମେ ତା ଭିତରେ ପ୍ରବେଶ କରିବା ନାହିଁ...." । ଏପରି ପ୍ରସ୍ତାବ "ଦାୟିତ୍ୱହୀନତା"ର ପରିଚୟ ବୋଲି ସେ ମତ ପ୍ରକାଶ କଲେ । ସେହି ସମୟରେ ଖିଲାପତ୍ କମିଟି ବସିଲା । "ପୂର୍ଣ୍ଣ ସ୍ୱାଧୀନତା" ପ୍ରସ୍ତାବ ଗ୍ରହଣ କରି ଅବସ୍ଥାକୁ ଜଟିଳ କରାନଯାଉ ବୋଲି ହାକିମ ଆଜମଲ ଖାଁ ମତ ବ୍ୟକ୍ତ କଲେ । ଅହମେଦାବାଦ କଂଗ୍ରେସ ବ୍ୟକ୍ତିଗତ ଓ ଗଣ ଆଇନ ଅମାନ୍ୟ ଲାଗି ନିଷ୍ପତ୍ତି ଗ୍ରହଣ କଲେ । ତଦନୁସାରେ ଗାନ୍ଧିଜୀ ଭାଇସରାୟଙ୍କୁ ୧୯୨୨ ଫେବୃଆରୀ ୨୨ରେ ଏକ ଚରମପତ୍ର ପ୍ରଦାନ କରି ଲେଖିଲେ ଯେ "ବାକ୍ ସ୍ୱାଧୀନତା, ସଂଗଠନ ଗଢିବାର ଓ ସଂବାଦପତ୍ରର ସ୍ୱାଧୀନତା ପରି ପ୍ରାଥମିକ ଦାବୀଗୁଡିକ ସମେତ ଦାବୀଗୁଡିକୁ ଗ୍ରହଣ ନକଲେ ଏଗୁଡିକୁ କାର୍ଯ୍ୟକାରୀ କରିବା ଲାଗି ଦେଶ ଆଗରେ ଅହିଂସ ପନ୍ଥା ଅବଲମ୍ବନ କରିବା ଛଡା ଅନ୍ୟ ପନ୍ଥା ନାହିଁ ।" ତଦନୁସାରେ ଗୁଜରାଟର ବର୍ଦ୍ଦୋଳିଠାରେ ପ୍ରଥମେ ଗଣ ଆଇନ ଅମାନ୍ୟ କରାଯିବ ବୋଲି ସ୍ଥିର ହେଲା । ୧୯୨୧ ଶେଷବେଳକୁ ଗାନ୍ଧିଜୀଙ୍କ ବ୍ୟତୀତ ସାରା ଦେଶର ତୁଙ୍ଗ ନେତାମାନେ ଜେଲରେ ଆବଦ୍ଧ ଥାଆନ୍ତି । ଆଇନ ଅମାନ୍ୟ ବର୍ଦ୍ଦୋଳିରେ ଆରଂଭ ହେବା ପୂର୍ବରୁ ଯୁକ୍ତ ପ୍ରଦେଶର ଛୋଟ ଗାଁ ଚୌରିଚୌରାରେ ଏକ ଘଟଣା ଘଟିଗଲା । ସମବେତ ବିକ୍ଷୁବ୍ଧ ଜନତା ଉପରେ ପୁଲିସ କନଷ୍ଟେବଲମାନେ ଗୁଳି ଚଳେଇଲେ । ଆକ୍ରମଣ କରି ସାରିବା ପରେ ସେମାନେ ଥାନାରେ ପହଂଚିଲେ । ସେତେବେଳକୁ ସେମାନଙ୍କ ପାଖରେ ଥିବା ସମସ୍ତ ଗୁଳି ଶେଷହୋଇଯାଇଥିଲା । ବିକ୍ଷୁବ୍ଧ ଜନତା ଥାନା ଉପରେ ଚଢଉ କରି ୨୨ଜଣ ପୁଲିସଙ୍କୁ ହତ୍ୟା କରିଦେଲେ ।

ଏହି ଘଟଣା ପରେ ପରେ ୧୯୨୨ ଫେବୃଆରୀ ୧୨ରେ ଗାନ୍ଧିଜୀ ଚୌରିଚୌରା ଘଟଣାକୁ "ତିକ୍ତ ଅପମାନ" "ହିମାଳୟ ତୁଲ୍ୟ ପ୍ରମାଦ" କହି "ଅହିଂସ ଉପାୟରେ ଆନ୍ଦୋଳନ କରିବାକୁ ଦେଶ ପ୍ରସ୍ତୁତ ନୁହଁ ବୋଲି ଘୋଷଣା କଲେ । ଚାଷୀମାନଙ୍କୁ ଜମିଦାରମାନଙ୍କ ଖଜଣା ପୈଠ କରିଦେବାକୁ ବର୍ଦୌଳିରେ ଅନୁଷ୍ଠିତ କଂଗ୍ରେସ କାର୍ଯ୍ୟକାରୀ କମିଟି ପରାମର୍ଶ ଦେଲା ।

ଆନ୍ଦୋଳନର ପ୍ରତ୍ୟାହାର ଭାରତରେ ବିସ୍ମୟ, ହତାଶା ସୃଷ୍ଟି କରିଦେଲା । ଜେଲଖାନା ଭିତରୁ ଦେଶବନ୍ଧୁ ଚିତ୍ତରଂଜନ, ମୋତିଲାଲ ନେହେରୁ, ଗାନ୍ଧିଜୀଙ୍କୁ ଚିଠି ଲେଖି ଅସନ୍ତୋଷ ପ୍ରକାଶ କଲେ । ସୁବାଷଚନ୍ଦ୍ର ବୋଏ ଏହାକୁ ଜାତୀୟ ବିପର୍ଯ୍ୟୟ ବୋଲି ଅଭିହିତ କଲେ । କଂଗ୍ରେସରେ ଥିବା ବାମପନ୍ଥୀମାନେ ଏପରି ନିର୍ଦ୍ଧାରଣ ଜନତା ପ୍ରତି ଏକ ଧୋକ୍କା ବୋଲି ଅଭିହିତ କଲେ । ଆନ୍ଦୋଳନକାରୀମାନଙ୍କ ମଧ୍ୟରେ ତୀବ୍ର ମତଭେଦ ଓ ଜନସାଧାରଣଙ୍କ ଭିତରେ ଅସନ୍ତୋଷର ସୁଯୋଗ ନେଇ ବ୍ରିଟିଶ ସରକାର ୧୯୨୨ ମାର୍ଚ୍ଚ ୧୦ ତାରିଖ ଅର୍ଥାତ୍ ବର୍ଦ୍ଦୋଳି ପ୍ରସ୍ତାବର ମାସକ ପରେ ଗାନ୍ଧୀଙ୍କୁ ଗିରଫ କରିନେଲା ଓ ୬ବର୍ଷ ଜେଲଦଣ୍ଡରେ ଦଣ୍ଡିତ କଲା । ଆପେଣ୍ଡିସାଇଟସ ଅପରେସନ ପରେ ସ୍ୱାସ୍ଥ୍ୟ କାରଣରୁ ୧୯୨୪ରେ ଗାନ୍ଧୀଙ୍କୁ ଖଲାସ କରାଯାଇଥିଲା ।

ଗାନ୍ଧିଜୀ ଅଦାଲତରେ ତାଙ୍କ ବୟାନରେ ସେ ଜଣେ ଅନୁରକ୍ତ ପ୍ରଜା, ବ୍ରିଟିଶର ପ୍ରଶଂସକ ହୋଇ କାହିଁକି ତାହାର ସାଲିସହୀନ ସମାଲୋଚକ ଓ ବ୍ରିଟିଶ ଶାସନର ବିରୋଧୀ ହେଲେ ତାହାର ଦୀର୍ଘ ବୟାନ ଦେଲେ। ତାଙ୍କ ବିରୁଦ୍ଧରେ ଦାଏର ଅଭିଯୋଗଗୁଡିକୁ ମାନି ନେଲେ ଓ ଚରମ ଦଣ୍ଡର ପ୍ରାର୍ଥନା କଲେ। ତାଙ୍କ ବିଚାର କରୁଥିବା ଜଜ ବ୍ରମଫିଲଡ ରାୟରେ "ଆପଣ ଆପଣଙ୍କ ନିୟୁତ ନିୟୁତ ଦେଶବାସୀଙ୍କ ଆଖିରେ ମହାନ ଦେଶପ୍ରେମୀ ଓ ବିରାଟ ନେତା" କହି ଆଇନର ଲଙ୍ଘନ ଓ ତାର ସ୍ୱୀକୃତି ଯୋଗୁଁ ଦଣ୍ଡ ଦିଆଗଲା ବୋଲି ଉଲ୍ଲେଖ କରିଥିଲେ।

**ଆନ୍ଦୋଳନ ପ୍ରତ୍ୟାହାରର ପରବର୍ତ୍ତୀ ପ୍ରତିକ୍ରିୟା:**

ଦେଶବ୍ୟାପୀ ଚାଲିଥିବା ଅସହଯୋ ଆନ୍ଦୋଳନର ଭଟ୍ଟା ପଡିଗଲା। ଏହାର ସୁଯୋଗ ନେଲେ ଏକ ପକ୍ଷରେ ବିଦେଶୀ ସରକାର ଓ ଅନ୍ୟପକ୍ଷରେ ଦେଶର ମୁଣ୍ଡ ଟେକିଥିବା ସାଂପ୍ରଦାୟିତାବାଦୀ ଶକ୍ତିମାନେ। ଉଭୟ ହିନ୍ଦୁ ଓ ମୁସଲମାନ ସାଂପ୍ରଦାୟିକତାବାଦୀମାନେ ସଂଯମ ହରାଇଲେ। ଅନ୍ୟପକ୍ଷରେ କଂଗ୍ରେସ ଭିତରେ ମଧ୍ୟ ସଂଗ୍ରାମର ଆଗାମୀ କର୍ମକୌଶଳ ସଂପର୍କରେ ତୀବ୍ର ମତ ପାର୍ଥକ୍ୟ ଘଟିଲା। କଂଗ୍ରେସରେ ସାଂଗଠନିକ ବିଭାଜନ ଘଟିଲା। ଆନ୍ଦୋଳନ ପ୍ରତ୍ୟାହୃତ ହେବାପରେ କଂଗ୍ରେସ ଖିଲାଫତ୍‌ର ଐକ୍ୟରେ ସଂଶୟ ସୃଷ୍ଟି ହେଲା। କଂଗ୍ରେସର କେତେକ ବିଚାରିଲେ ଯେ ଖିଲାଫତ୍ ଆନ୍ଦୋଳନଟି ଭୁଲ ଆନ୍ଦୋଳନ। ମହମ୍ମଦ ଅଲି ଜିନ୍ନା କଂଗ୍ରେସ ଛାଡିଦେଲେ। ଏକଦା ଯେଉଁ ସ୍ୱାମୀ ଶ୍ରଦ୍ଧାନନ୍ଦ ଜୁମା ମସଜିଦ୍‌ରୁ ହିନ୍ଦୁ ମୁସଲିମ ଐକ୍ୟର ଆହ୍ୱାନ ଦେଇଥିଲେ, ସେ ଶୁଦ୍ଧ ଜାତୀୟତା ନାମରେ ଶୁଦ୍ଧି ସଂଗଠନ ଗଢିଲେ। ସ୍ୱର୍ଣ୍ଣମନ୍ଦିରର ଯାହାଙ୍କୁ ଚାବି ଅର୍ପଣ କରାଯାଇଥିଲା ଓ ଯିଏ ଜାଲିଆନାବା ହତ୍ୟାଲୀଳାବେଳେ "ବୀର" ବିବେଚିତ ହୋଇଥିଲେ, ଡକ୍ଟର କିଚଲୁ ମୁସଲମାନଙ୍କୁ ଦୃଢ ସଂପ୍ରଦାୟରେ ପରିଣତ କରିବାକୁ ତନଜିମ ଓ ତବଲିଗ୍ ଆନ୍ଦୋଳନ ଆରଂଭ କରିଦେଲେ। ଭି.ଡି. ସରକାର, ଭାଇ ପରମାନନ୍ଦଙ୍କ ଭଳି ପୂର୍ବର ବିପ୍ଲବୀ ସନ୍ତ୍ରାସବାଦୀମାନେ ସାଂପ୍ରଦାୟିକତାବାଦୀ ଆସ୍ଥାନ ନେଲେ। ପରେ ମଦନମୋହନ ମାଲବ୍ୟ, ଲାଲପତରାୟଙ୍କ ଭଳି କଂଗ୍ରେସ ନେତା ହିନ୍ଦୁ ମହାସଭାର ଆଦର୍ଶ ପ୍ରତି ଆକୃଷ୍ଟ ହେଲେ।

**ଐକ୍ୟ ଲାଗି ଗାନ୍ଧିଜୀଙ୍କ ଅନଶନ:**

ଆନ୍ଦୋଳନର ଭଟ୍ଟା ପଡିଗଲା ପରେ, ଉଭୟ ସଂପ୍ରଦାୟର ସାଂପ୍ରଦାୟିକତାବାଦୀମାନଙ୍କ ଦ୍ୱାରା ଧର୍ମୀୟ ଉତ୍ତେଜନାମୂଳକ କାର୍ଯ୍ୟକଳାପ ଫଳରେ ୧୯୨୩ ବେଳକୁ ଗୁଡିଏ ଦଙ୍ଗା ଦେଶରେ ସଂଘଟିତ ହେଲା। ଦିଲ୍ଲୀ, ଏଲ୍ଲାବାଦ, ଜବଲପୁର, ନାଗପୁର, ଲକ୍ଷ୍ନୌ, କଲିକତା ପ୍ରଭୃତି ଜାଗାରେ ୧୯୨୬ ଯାଏ ଗୁଡିଏ ଭୟାବହ ଦଂଗା ସୃଷ୍ଟି ହୋଇଥିଲା। ୧୯୨୪ରେ ଉତ୍ତର ପଶ୍ଚିମ ସୀମାନ୍ତ ରାଜ୍ୟ କୋହଟଠାରେ ସୃଷ୍ଟ ଦଂଗାରେ ୧୫୫ଜଣ ନିହତ ହେଲେ। ଜେଲରୁ ମୁକ୍ତ ଗାନ୍ଧିଜୀ ହିନ୍ଦୁ ମୁସଲମାନ ଐକ୍ୟ ଲାଗି ମୌଲାନା ମହମ୍ମଦ

ଅଲିଙ୍କ ବାସଭବନରେ ୨୧ ଦିନ ଲାଗି ଅନଶନ ଆରଂଭ କରିଦେଲେ । ତାଙ୍କ ଶଯ୍ୟା ନିକଟରେ ଏକ ଐକ୍ୟ ସମ୍ମିଳନୀ ଅନୁଷ୍ଠିତ ହେଲା । ସେ ଅନଶନ ପ୍ରତ୍ୟାହାର କଲେ । ମାତ୍ର ଥରେ ସାଂପ୍ରଦାୟିକତାର ବିଷ ଚହଟିଲେ ତାହା ସହଜରେ ସ୍ତମିତ ହୁଏ ନାହିଁ । ସାମ୍ରାଜ୍ୟବାଦୀ ସରକାର ଏହାକୁ ବିଭିନ୍ନ ଉପାୟରେ ତେଜେଇବାକୁ ଲାଗିଲା । ଏହାପରେ ବାରଂବାର ଏପରି ଐକ୍ୟ ସମ୍ମିଳନୀ ଅନୁଷ୍ଠିତ ହେଲା । ମାତ୍ର ବିଶେଷ ଫଳପ୍ରସୂ ହେଲା ନାହିଁ । ଫଳବତୀ ନ ହେବାର ବହୁ ଦୃଷ୍ଟାନ୍ତ ଭିତରେ ଗୋଟିଏ ନିଆଯାଉ । ୧୯୨୩ରେ ମୁସଲିମ ଲିଗ ଲକ୍ଷ୍ନୌରେ ବସି ଗୋଟିଏ ଜାତୀୟ ଚୁକ୍ତିର ପ୍ରସ୍ତାବ ଦେଇଥିଲା । ୧୯୨୩ ସେପ୍ଟେମ୍ବରରେ ଦିଲ୍ଲୀରେ କଂଗ୍ରେସର ବିଶେଷ ଅଧିବେଶନ ମୌଲାନା ଆଜାଦଙ୍କ ଅଧ୍ୟକ୍ଷତାରେ ବସି ଲିଗ ପ୍ରସ୍ତାବକୁ ସମର୍ଥନ କଲା । ଏଥିଲାଗି ବସିଥିବା କମିଟିର ସୁପାରିଶ ଅନୁସାରେ ନିର୍ଣ୍ଣୀତ ଭାରତୀୟ ଜାତୀୟ ଚୁକ୍ତିରେ ଡକ୍ଟର ଆନସାରୀ ଓ ଲାଜପତ୍ ରାୟ କଂଗ୍ରେସ ପକ୍ଷରୁ ସ୍ୱାକ୍ଷର କରିଥିଲେ । ବଂଗଳା ପ୍ରାଦେଶିକ କଂଗ୍ରେସ କମିଟି ହିନ୍ଦୁ ମୁସଲମାନ ଐକ୍ୟ ଘେନି ବଂଗଳା ଚୁକ୍ତି ସଂପାଦନ କରିଥିଲା । ୧୯୨୩ କୋକିନାଡା କଂଗ୍ରେସ ଅଧିବେଶନରେ ମୌଲାନା ମହମ୍ମଦ ଅଲି ସଭାପତି ଥିଲେ । ଏହି ଚୁକ୍ତି ସପକ୍ଷରେ ୪୫୬ଟି ଓ ବିପକ୍ଷରେ ୬୭୮ ଭୋଟ ପଡିବାରୁ ଏହା କାଟ ଖାଇଯାଇଥିଲା । ଏହି ଚୁକ୍ତିରେ ମୁସଲମାନଙ୍କ ଲାଗି ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ଓ ଚାକିରୀରେ ସଂରକ୍ଷଣ ସର୍ତ୍ତଗୁଡିକୁ ଅଧିକାଂଶ ପ୍ରତିନିଧି ଗ୍ରହଣ ନ କରିବାରୁ ଐକ୍ୟ ଚୁକ୍ତି ଗୃହୀତ ହେଲା ନାହିଁ । ତାହା ମୁସଲିମ ଲିଗ୍ ଭିତରେ ସଂଦେହ ସୃଷ୍ଟି କଲା ।

**ସ୍ୱରାଜ ପାର୍ଟି ଗଠନ:**

ଅସହଯୋଗ ଆନ୍ଦୋଳନ ଓ ସତ୍ୟାଗ୍ରହ ସଂପର୍କରେ ତଦନ୍ତ କରିବାକୁ କଂଗ୍ରେସ ଏକ କମିଟି ଗଢିଥିଲା । ଏହି କମିଟି ରିପୋର୍ଟ ଦେଲାଯେ ଗଣ ଅସହଯୋଗ ଆନ୍ଦୋଳନ ଲାଗି ଦେଶ ଏବେ ପ୍ରସ୍ତୁତ ନୁହଁ, ଗଠନମୂଳକ କାମଦାମ ପ୍ରତି ଆବଶ୍ୟକ ସ୍ପୃହା, ସମର୍ଥନ ସୃଷ୍ଟି ହୋଇନାହିଁ ।

ପଣ୍ଡିତ ମୋତିଲାଲ, ଚିତ୍ତରଂଜନ ଦାସଙ୍କ ନେତୃତ୍ୱରେର କଂଗ୍ରେସ ନେତୃତ୍ୱର ଏକ ଅଂଶ କେନ୍ଦ୍ର ଓ ପ୍ରଦେଶଗୁଡିକରେ କାଉନ୍ସିଲ ବାସନ୍ଦ କରିବା, ନିର୍ବାଚନରେ ଭାଗ ନେବାକୁ ବାସନ୍ଦ କରିବାର ବିରୋଧ କଲେ । ବରଂ କାଉନ୍ସିଲରେ ପଶି ବ୍ରିଟିଶ ସରକାର ଯେଉଁ ସଂସ୍କାରମାନ ଆଣୁଛି, ତାହାକୁ ବିରୋଧ କରି ଅଚଳ ଅବସ୍ଥା ସୃଷ୍ଟି କରିବାର ସୁଯୋଗ ମିଳିବ ବୋଲି ସେମାନେ ମତ ଦେଲେ । ଅନ୍ୟପକ୍ଷରେ ସି. ରାଜଗୋପାଳଚାରୀ, ରାଜେନ୍ଦ୍ରପ୍ରସାଦ, ବଲ୍ଲଭଭାଇ ପଟେଲଙ୍କ ପରି ଗାନ୍ଧୀଙ୍କ ଏକନିଷ୍ଠ ଭକ୍ତ ଏହାର ତୀବ୍ର ବିରୋଧ କଲେ । ୧୯୨୨ ଡିସେମ୍ବର ଗୟା କଂଗ୍ରେସ ଅଧିବେଶନରେ ଚିତ୍ତରଂଜନ ଦାସ ସଭାପତି ଥାଇ କାଉନ୍ସିଲ ପ୍ରବେଶ ପାଇଁ ପ୍ରବଳ ଯୁକ୍ତି ବାଢିଲେ । ମାତ୍ର ରାଜାଜୀଙ୍କ ଗୋଷ୍ଠୀର ବିଜୟ ହେଲା । ଏହାର ପ୍ରତିବାଦରେ ଚିତ୍ତରଂଜନ ଦାସ ଇସ୍ତଫା ଦେଲେ । ମୋତିଲାଲ ନେହେରୁ, ମାଳବ୍ୟ ଓ

ଜୟକାର ମିଶି କଂଗ୍ରେସ ଖିଲାଫତ୍ ସ୍ୱରାଜ ପାର୍ଟି ଗଠନ କଲେ। ଚତ୍ତରଂଜନ୍ ଏହାର ସଭାପତି ଓ ମୋତିଲାଲ ଅନ୍ୟତମ ସଂପାଦକ ହେଲେ। ଖାଲି କେନ୍ଦ୍ର ସ୍ତରରେ ନୁହଁ, ପ୍ରଦେଶ ସ୍ତରରେ ମଧ୍ୟ କଂଗ୍ରେସ ଖିଲାଫତ୍ ସ୍ୱରାଜ ପାର୍ଟି ଗଠନ କଲେ। ଚିତ୍ତରାଜନ ଏହାର ସଭାପତି ଓ ମୋତିଲାଲ ଅନ୍ୟତମ ସଂପାଦକ ହେଲେ। ଖାଲି କେନ୍ଦ୍ର ସ୍ତରରେ ନୁହଁ, ପ୍ରଦେଶ ସ୍ତରରେ ମଧ୍ୟ କଂଗ୍ରେସ ଏହିପରି ଦୁଇ ଗୋଷ୍ଠୀରେ ବିଭକ୍ତ ହେଲା। ଉଭୟ କିନ୍ତୁ ଗାନ୍ଧିଜୀଙ୍କ ପ୍ରତି ଅନୁରକ୍ତି ପ୍ରକାଶ କରୁଥିଲେ। ଗାନ୍ଧୀ ସେତେବେଳେ ଜେଲରେ। ଜେଲରୁ ଖଲାସ ହେବାପରେ ୧୯୨୪ରେ ବେଲଗାଁ କଂଗ୍ରେସରେ ସେ ସଭାପତି ଥାଇ ସ୍ୱରାଜପନ୍ଥୀମାନଙ୍କୁ ଏକପ୍ରକାର ସମର୍ଥନ ଜଣାଇଥିଲେ। ଯେଉଁମାନେ ସ୍ଥିତାବସ୍ଥା ରହୁ, ସେମାନଙ୍କୁ ନୋ-ଚେଞ୍ଜର କୁହାଗଲା। ଯେଉଁମାନେ ନୀତିରେ ପରିବର୍ତ୍ତନ ଚାହିଁ ସ୍ୱରାଜ ପାର୍ଟି ଗଠନ କଲେ ସେମାନେ ପ୍ରୋ-ଚେଞ୍ଜର ଅର୍ଥାତ୍ ପରିବର୍ତ୍ତନକାମୀ ରୂପେ ପରିଗଣିତ ହେଲେ।

ସ୍ୱରାଜପନ୍ଥୀମାନେ ୧୯୨୩ରେ କେନ୍ଦ୍ର ଓ ପ୍ରାଦେଶିକ ଆସେମ୍ବ୍ଲିର ନିର୍ବାଚନରେ ଭାଗନେଇ ସେତେବେଳର ପରିସ୍ଥିତିରେ ବେଶ୍ ସଫଳତା ଅର୍ଜନ କରିଥିଲେ। କେନ୍ଦ୍ର ଆସେମ୍ବ୍ଲିରେ ଥିବା ୧୦୧ଟି ଆସନ ମଧ୍ୟରୁ ୪୨ଟି ଆସନ ଲାଭ କଲେ। କେନ୍ଦ୍ର ପ୍ରଦେଶ (ଏବର ମଧ୍ୟପ୍ରଦେଶ)ରେ ନିରଙ୍କୁଶ ସଂଖ୍ୟା ଗରିଷ୍ଠତା ଲାଭ କଲେ। ବଂଗଳାରେ ସେମାନେ ଦ୍ୱିତୀୟ ବୃହତ୍ତମ ପାର୍ଟିର ମର୍ଯ୍ୟାଦା ଲାଭ କଲେ। ଆସାମଯୁକ୍ତ ପ୍ରଦେଶରେ ସାଫଲ୍ୟ ମିଳିଲା। ଅନ୍ୟ ପ୍ରଦେଶମାନଙ୍କରେ ମଧ୍ୟ କିଛି କିଛି ସଫଳତା ମିଳିଲା। ଓଡିଶାରୁ ସେତେବେଳେ ଭୁବନାନନ୍ଦ ଦାସ ଓ ନୀଳକଣ୍ଠ ଦାଶ କେନ୍ଦ୍ର ଆସେମ୍ବ୍ଲିରେ ସଭ୍ୟ ହୋଇ ପାରିଥିଲେ। ସେହି କାଳରେ ମଧ୍ୟ ପଣ୍ଡିତ ଗୋପବନ୍ଧୁ ଦାସ, ନାରାୟଣ ବୀରବର ସାମନ୍ତ ଓଡିଶା ବିହାର କାଉନ୍ସିଲକୁ ଯାଇଥିଲେ। ପୂର୍ବରୁ ଏସବୁ କାଉନ୍ସିଲରେ ବ୍ରିଟିଶ ପକ୍ଷପାତୀ ଉଦାରପନ୍ଥୀମାନେ ଆଧିପତ୍ୟ ବିସ୍ତାର କରିଥିଲେ। ସେମାନଙ୍କର ଶୋଚନୀୟ ପରାଜୟ ହେଲା।

ସ୍ୱରାଜପନ୍ଥୀମାନେ କେନ୍ଦ୍ରରେର ନରମପନ୍ଥୀ ଓ ମୁସଲମାନ ସଦସ୍ୟଙ୍କୁ ଘେନି ଏକ ନାସନାଲିଷ୍ଟ ପାର୍ଟି ଗଠନ କଲେ ଏବଂ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ପ୍ରବଳ ବିରୋଧ ସତ୍ତ୍ୱେ କେନ୍ଦ୍ର ଆସେମ୍ବ୍ଲିର ପ୍ରେସିଡେଣ୍ଟ ପଦରେ ବିଠଲଭାଇ ପଟେଲଙ୍କୁ ନିର୍ବାଚିତ କରାଇପାରିଲେ। ପ୍ରାଦେଶିକ କାଉନ୍ସିଲରେ ମଧ୍ୟ ଏପରି ପନ୍ଥା ଅନୁସରଣ କରାଗଲା।

ରାଜନୈତିକ ବନ୍ଦୀମୁକ୍ତି, ଦମନମୂଳକ ଆଇନ ରଦ୍ଦ, ରାଜନୈତିକ ସ୍ୱାତନ୍ତ୍ର୍ୟ ଏବଂ କାଉନ୍ସିଲ ଗୁଡିକ ଉପରେ ପୂରା ନିୟନ୍ତ୍ରଣ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଗୋଲଟେବୁଲ ବୈଠକ ଆହ୍ୱାନ ପ୍ରଭୃତି ଦାବୀ ସେମାନେ ଉତ୍ଥାପନ ହାସଲ କଲେ। ଦେଶରେ ସାଂପ୍ରଦାୟିକ ଦଂଗାର ବିଷ କେତେକ ସ୍ୱରାଜପନ୍ଥୀ ନେତାଙ୍କୁ ସ୍ପର୍ଶ କଲା। ମଦନମୋହନ ମାଲବ୍ୟ, ଲାଲପତରାୟ, କେଲର୍କାର ସରକାର ସହିତ ସହଯୋଗ କରିବାର ଅଭିପ୍ରାୟ ପ୍ରକାଶ କରି "ରେସ୍‌ପନ୍‌ସିଭଷ୍ଟ"

(ସହଯୋଗୀ) ନାମକ ଗୋଷ୍ଠୀ ଗଠନ କଲେ। ଚିତ୍ତରଂଜନ ଓ ମୋତିଲାଲଙ୍କୁ ସେମାନେ ମୁସଲମାନ ପକ୍ଷପାତୀ ଭାବରେ ଚିତ୍ରିତ କଲେ। ୧୯୨୫ ଜୁନ ମାସରେ ଚିତ୍ତରଂଜନଙ୍କର ମୃତ୍ୟୁ ହେଲା।

ସ୍ୱରାଜପନ୍ଥୀମାନେ ୧୯୨୬ରେ କାଉନ୍ସିଲଗୁଡ଼ିକରୁ ବାହାରି ଆସିଲେ। ଆଗାମୀ ସଂଗ୍ରାମ ଲାଗି ପ୍ରସ୍ତୁତ ପର୍ବ ଆରଂଭ ହୋଇଗଲା।

**'ସାଇମନ କମିଶନ ଫେରିଯା':**

ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହାର ଏବଂ ସ୍ୱରାଜପନ୍ଥୀମାନଙ୍କ କାଉନ୍ସିଲ ପ୍ରବେଶ କରିଥିବାର ସୁଯୋଗ ଘେନି ବ୍ରିଟିଶ ସରକାର ହିନ୍ଦୁ ମୁସଲିମ ଐକ୍ୟକୁ ଭାଂଗିବା ଲାଗି ଉଭୟ ହିନ୍ଦୁ ଓ ମୁସଲମାନ ସାଂପ୍ରଦାୟିକତାବାଦୀମାନଙ୍କୁ ପ୍ରରୋଚିତ କରି ନୀରବ ରହିଲା ନାହିଁ। ଦେଶରେ ସରକାର ବିରୋଧୀ ଯେକୌଣସି ସଭାସମିତି, ସଂଗ୍ରାମ, ଧର୍ମଘଟ ହେଲା, ତା'ଉପରେ ଆକ୍ରମଣ କଲା। ୧୮୧୮ ରେଗୁଲେସନ ୩ ଧାରାରେ ସୁବାଷବୋଷଙ୍କୁ ଗିରଫ କରାଗଲା। ଜରୁରୀ କ୍ଷମତା ପ୍ରୟୋଗ କରି ଭାଇସରାୟ ତଥାକଥିତ ସଂତ୍ରାଂସବାଦୀ ଷଡଯନ୍ତ୍ର ନାମରେ ବିଚାରକାଳରେ ଜୁରି ପ୍ରଥାକୁ ସାମୟିକ ବାତିଲ କଲେ। ୧୯୨୪ରେ କମ୍ୟୁନିଷ୍ଟ ଚିନ୍ତାଧାରାରେ ଦୀକ୍ଷିତ ମୁକ୍ତି ସୈନିକଙ୍କ ବିରୁଦ୍ଧରେ କାନପୁର ଷଡଯନ୍ତ୍ର ମକଦ୍ଦମା ଚାଲିଲା। କାକୋରୀ ଷଡଯନ୍ତ୍ର ମକଦ୍ଦମା, ପେଶୱାର ଷଡଯନ୍ତ୍ର ମକଦ୍ଦମା, ଲାହୋର ଷଡଯନ୍ତ୍ର ମକଦମା, ମିରଟ ଷଡଯନ୍ତ୍ର ମକଦମାଗୁଡ଼ିକ ସଂପର୍କରେ ପରବର୍ତ୍ତୀକାଳରେ ଆଲୋଚନା କରାଯିବ।

ଦେଶର ରାଜନୈତିକ ପରିସ୍ଥିତି ସରଗରମ ହୋଇ ଉଠିଥିଲା। ବମ୍ବେରେ ୧୯୨୮ରେ ଗିରନି କାମାଗାର ଟ୍ରେଡ ୟୁନିଅନ ଡାକରାରେ ଦେଢ଼ ଲକ୍ଷ କପଡା କଲଶ୍ରମିକ ୧୦ମାସ କାଳ ଅତୁଳନୀୟ ଧର୍ମଘଟ କରିଥିଲେ। ରେଳବାଇ ଶ୍ରମିକ ଓ ବଂଗଳାରେ ବ୍ରିଟିଶ ଶିଳ୍ପପତି ବିରୋଧୀ ଶ୍ରମିକ ଆନ୍ଦୋଳନମାନ ଖୁବ୍ ଲଢୁଆ ରୂପ ନେଇଥିଲା।

ଏହାର ପ୍ରଭାବ ହିଁ କଂଗ୍ରେସ ଉପରେ ପଡିଲା। ଏତିକିବେଳେ ନିର୍ଯ୍ୟାତିତ ଅର୍ଥାତ୍ ପରାଧୀନ ଜାତିମାନଙ୍କର ୟୁରୋପର ବ୍ରୁସେଲ୍ସ ସମ୍ମିଳନୀରେ କଂଗ୍ରେସ ପକ୍ଷରୁ ଜବାହାରଲାଲ ଯୋଗ ଦେଇଥିଲେ। ସମାଜବାଦ ଗଢାଯାଉଥିବା ସୋଭିଏତ୍ ୟୁନିଅନ୍ ପରିଦର୍ଶନରେ ବାପପୁଅ ନେହେରୁ ଯାଇ ରୁଷ ବିପ୍ଳବର ସାଫଲ୍ୟ ସଂପର୍କରେର ପ୍ରଶଂସା କରିଥିଲେ। କଂଗ୍ରେସ ଭିତରେ ସେତେବେଳେ ଏକ ବାମପନ୍ଥୀ ଚିନ୍ତାଧାରା ଟାଣ ବାନ୍ଧି ଆସିଲା। ଏସବୁକୁ ପ୍ରତିରୋଧ କରିବା ଲାଗି ଭାରତରେ ଶାସନ ସଂସ୍କାର କରାଯିବା ଉଦ୍ଦେଶ୍ୟରେ ତଦନ୍ତ କମିଶନ ପଠାଯିବା ନିଷ୍ପତ୍ତି ନିଆଗଲା। ଲଣ୍ଡନରୁ ୧୯୨୭ ନଭେମ୍ବରରେ ସାଇମନ କମିଶନ ଆସିବାର ଘୋଷଣା ପ୍ରକାଶ ପାଇଲା।

୧୯୨୭ ଡିସେମ୍ବର ମାନ୍ଦ୍ରାଜ କଂଗ୍ରେସ ଅଧିବେଶନ ଏହି କମିଶନକୁ ବୟକଟ କରାଯିବ ବୋଲି ନିର୍ଦ୍ଧାରଣ ନେଲା । ଏହି କମିଶନରେ କେବଳ ଗୋରା ଇଂରେଜମାନେ ସଭ୍ୟ ଥିଲେ । କଂଗ୍ରେସ ପ୍ରସ୍ତାବରେ କୁହାଗଲା "ଏକ ଗୋଲଟେବୁଲ ବୈଠକରେ ଅବା ପାର୍ଲାଆମେଣ୍ଟ ଡାକି ଭାରତୀୟମାନେ (ସବୁ ସଂପୃକ୍ତ ଗୋଷ୍ଠୀଙ୍କୁ ଧରି) ଆପଣାର ସଂବିଧାନ ତିଆରି କରିବାକୁ ହକ୍‌ଦାର ।" କୌଣସି ଭାରତୀୟ ସଦସ୍ୟ ନଥିବା ଏହି କମିଶନ "ଭାରତୀୟମାନଙ୍କ ଆତ୍ମ-ସମ୍ମାନ ପ୍ରତି ଅପମାନ" ବୋଲି ମାନ୍ଦ୍ରାଜ କଂଗ୍ରେସ ଘୋଷଣା କଲା । ଏମ.ଏ. ଆନସାରି ଥିଲେ ସେବର୍ଷର କଂଗ୍ରେସ ସଭାପତି । କଂଗ୍ରେସରେ ବାପମନ୍ଥୀମାନଙ୍କ ପ୍ରଭାବରୁ ସ୍ୱୀକାର କରି ଜବାହାରଲାଲ ଓ ସୁବାଷ ବୋଷଙ୍କୁ ସେକ୍ରେଟେରୀ କରାଗଲା । କିନ୍ତୁ ପୂର୍ଣ୍ଣ ସ୍ୱାଧୀନତା ଦାବୀ ସଂପର୍କରେ ଆଲୋଚନା ନିଷ୍ପତ୍ତି ଆଗାମୀ ବର୍ଷ କଂଗ୍ରେସରେ ହେବ ବୋଲି କୁହାଗଲା । ଜବାହାରଲାଲଙ୍କ ପ୍ରସ୍ତାବ ଓ ସୁବାଷବୋଷଙ୍କ ସମର୍ଥନରେ ପୂର୍ଣ୍ଣ ସ୍ୱରାଜ ପ୍ରସ୍ତାବକୁ ଗ୍ରହଣ କରାଗଲେ ମଧ ତାହାକୁ ସ୍ଥଗିତ ରଖାଗଲା ।

କଂଗ୍ରେସ, ଲିବରାଲ ଫେଡେରେସନ ଓ ମୁସଲିମ ଲିଗ୍ ସାଇମନ କମିଶନକୁ ବୟକଟ କରିବାର ନିଷ୍ପତ୍ତି କଲେ । ହିନ୍ଦୁ ମହାସଭା ୧୯୨୬ରେ ପୁନଃ ଗଠିତ ହୋଇଥାଏ । ଏହା ଏଥିରୁ ଅଲଗା ରହିଲା ।

"ଫେରିଯା-ସାଇମନ କମିଶନ" ଡାକରା ଦେଶରେ, ପ୍ରଦେଶରେ, ସହର ଶିକ୍ଷାୟତନ, ଶିଳ୍ପାଞ୍ଚଳରେ ଉନ୍ମାଦନା ସୃଷ୍ଟି କଲା ' ୯୨୮ ଫେବୃଆରୀ ୩ତାରିଖରେ ବମ୍ବେରେ ସାଇମନ କମିଶନ ଅବତରଣ କରିବା ଦିନ ସାରା ଭାରତରେର ପ୍ରତିବାଦର ହରତାଳ । ଜୀବନଯାତ୍ରା ପଙ୍ଗୁ ହୋଇଗଲା । "ସାଇମନ ଫେରିଯା" ଧ୍ୱନି, କଳା ପତାକା ପ୍ରଦର୍ଶନର ତରଙ୍ଗ ଛୁଟିଲା । ବମ୍ବେର ଚୌପାଠୀ ମଇଦାନରେ ୫୦ ହଜାର ଲୋକଙ୍କ ସମାବେଶରେ ବୟକଟ ଡାକରା ଦେଇଥିବା ସବୁ ଦଳର ନେତା ବିଳାତ ମନ୍ତ୍ରୀମଣ୍ଡଳର ନିଷ୍ପତ୍ତିକୁ ନିନ୍ଦା କଲେ । ଦେଶର ବିଭିନ୍ନ ସ୍ଥାନରେ ପ୍ରଦର୍ଶନକାରୀଙ୍କ ଉପରେ ପୁଲିସର ନିର୍ମ୍ମମ ଲାଠି ଓ ପରେ ପରେ ତାଙ୍କର ଆଘାତଜନିତ ମୃତ୍ୟୁରେ ଦେଶରେ ବିଦ୍ରୋହର ବହ୍ନି ବ୍ୟାପିଗଲା । ଯୁକ୍ତ ପ୍ରଦେଶର ନେତା ଗୋବିନ୍ଦବଲ୍ଲଭ ପନ୍ଥଙ୍କ ଉପରେ ଲାଠିମାଡ ହେତୁ ସେ ଜୀବିତ ଥିବାଯାଏ ତାଙ୍କ ମୁଣ୍ଡ ଥରି ଚାଲିଲା ।

ଅସହଯୋ ଆନ୍ଦୋଳନ ପ୍ରତ୍ୟାହାରପରେ ଯେଉଁ ହତାଶା ଓ ଦ୍ୱିଧାଭାବ ଦେଖାଦେଇଥିଲା, ତାହା ଅନେକାଂଶରେ ଦୂର ହୋଇଗଲା ।

ଲକ୍ଷ୍ନୌଠାରେ ୧୯୨୮ ଅଗଷ୍ଟରେ କଂଗ୍ରେସ କାର୍ଯ୍ୟକାରୀ କମିଟି, ଲିବରାଲ ଫେଡେରେସନ ଓ ମୁସଲିମ ଲିଗ ଏକ ବୈଠକରେ ମିଳିତ ହେଲେ । ସ୍ୱରାଜ ପାର୍ଟି ନେତା ମୋତିଲାଲ ନେହେରୁଙ୍କ ଅଧକ୍ଷତାରେ ଗଠିତ କମିଟି ଦ୍ୱାରା ରଚିତ ଚିଠା ସଂବିଧାନକୁ ତାହା ଗ୍ରହଣ କଲା ।

ଏହି ସଂବିଧାନରେ ଥିଲା, (୧) ବ୍ରିଟିଶ ସାମ୍ରାଜ୍ୟରେ କାନାଡା, ଅଷ୍ଟ୍ରେଲିଆରେ ଥିବା ଭଳି ଡୋମିନିୟନ ପାର୍ଲିଆମେଣ୍ଟ ଗଢାଯିବ । ବ୍ରିଟିଶ ଭାରତର ଏହି ପାର୍ଲିଆମେଣ୍ଟର ସାର୍ବଭୌମତ୍ୱ ରହିବ (୨) କାର୍ଯ୍ୟପାଳିକା ଜନସାଧାରଣ ଦ୍ୱାରା ସ୍ଥାପିତା କାଉନ୍ସିଲରର କର୍ତ୍ତୃତ୍ୱରେ ରହିବ । ଦୁଇଟି ସଦନ ବିଶିଷ୍ଟ ପାର୍ଲିଆମେଣ୍ଟର ପ୍ରାଦେଶିକ କାଉନ୍ସିଲଗୁଡିକ ଦ୍ୱାରା ନିର୍ବାଚିତ ୨୦୦ ସଭ୍ୟ ସିନେଟରେ ରହିବେ । ପ୍ରତିନିଧିମୂଳକ ସଭାରେ ୫୦୦ ସଭ୍ୟ ରହିବେ (୩) ଉତ୍ତରପଶ୍ଚିମ ସୀମାନ୍ତ ଏବଂ ବଂଗଳା ବ୍ୟତିରେକ ଅନ୍ୟତ୍ର ସଂଖ୍ୟାନ୍ୟୁନଙ୍କ ଲାଗି ସ୍ୱତନ୍ତ୍ର ପ୍ରତିନିଧିତ୍ୱ ବ୍ୟବସ୍ଥା ରହିବ ନାହିଁ । (୪) ପ୍ରଦେଶ ଗୁଡିକରେ ଜନସଂଖ୍ୟା ଅନୁସାରେ ସଂଖ୍ୟାନ୍ୟୁନଙ୍କ ପାଇଁ ବିଶେଷ ପ୍ରତିନିଧିତ୍ୱ ବ୍ୟବସ୍ଥା ରହିବ । ମୁସଲମାନ ସଂଖ୍ୟାଧିକ ବଂଗଳା ଓ ପଂଜାବର ସାବାଳକ ଭୋଟ ପ୍ରଥା ଅନୁସାରେ ଭୋଟ ହେବ । ଏଠାରେ ସଂରକ୍ଷଣ ବ୍ୟବସ୍ଥା ରହିବ ନାହିଁ ।

ନେହେରୁ ରିପୋର୍ଟ ରକ୍ଷଣଶୀଳ, ଏହା ପୂର୍ଣ୍ଣ ସ୍ୱରାଜ ନୁହେଁ ବୋଲି କଂଗ୍ରେସର ବାମପନ୍ଥୀମାନେ ବିଚାର କଲେ ।

୧୯୨୮ ଡିସେମ୍ବରରେ ମୁସଲିମ ଲିଗ୍ ଏହାର ବିରୋଧ କଲା । କଲିକତାରେ କଂଗ୍ରେସ ଅଧିବେଶନ ପୂର୍ବରୁ ସର୍ବଦଳ ସମ୍ମିଳନୀ ବସି ନେହେରୁ ରିପୋର୍ଟକୁ ଗ୍ରହଣ କରିବାର ଥିଲା । ମାତ୍ର ୧୯୨୧ ଯାଏ କଂଗ୍ରେସରେ ଥିବା ଏବଂ ଏବେ ମୁସଲିମ୍ ନେତା ହୋଇଥିବା ଜିନ୍ନା ଏହାର ବିରୋଧ କଲେ । କେନ୍ଦ୍ର ଓ ପ୍ରାଦେଶିକ ଆସେମ୍ବ୍ଲି ଗୁଡିକରେ ମୁସଲମାନମାନଙ୍କ ପାଇଁ ଅଧିକ ଆସନ ଓ ବଂଗଳା ଓ ପଂଜାବରେ ଅଧିକ ପ୍ରତିନିଧିତ୍ୱ ଦାବୀ କଲେ । ମୁସଲମାନ ଜମିଦାର, ସମ୍ଭ୍ରାନ୍ତ ଓ ଶିଳ୍ପୋଦ୍ୟୋଗୀ ଯେମିତି ଅନ୍ୟ ସଂପ୍ରଦାୟ ବିଶେଷତଃ ହିନ୍ଦୁମାନଙ୍କ ତୁଳନାରେ ଉପରକୁ ଉଠିବେ, ସେହି ଦୃଷ୍ଟିରୁ ବ୍ରିଟିଶ ଅନୁରକ୍ତ ଆଗା ଖାଁ, ମୁସଲିମ ଜମିଦାର ଯୁକ୍ତ ପ୍ରଦେଶର ଆଲି ଆଲାମ, ମହମ୍ମଦାବାଦ ମହାରାଜା ପ୍ରମୁଖ ଜିନ୍ନାଙ୍କୁ ସମର୍ଥନ କଲେ । ଅନ୍ୟପକ୍ଷରେ ହିନ୍ଦୁ ଓ ଶିଖ ସାଂପ୍ରଦାୟିକତାବାଦୀମାନେ ମଧ୍ୟ ଏହି ରିପୋର୍ଟର ବିରୋଧ କଲେ । ସମ୍ମିଳନୀରୁ ଜିନ୍ନା ଏବଂ ଶିଖ ସାଂପ୍ରଦାୟିକତାବାଦୀମାନେ ବାହାରିଗଲେ ।

ଏହି ପରିପ୍ରେକ୍ଷୀରେ ୧୯୨୮ରେ ସେହି କଲିକତାଠାରେ କଂଗ୍ରେସ ଅଧିବେଶନ ବସିଲା । ସଭାପତି ଥିଲେ ମୋତିଲାଲ ନେହେରୁ । କଂଗ୍ରେସରେ ଥିବା ବାମପନ୍ଥୀମାନେ, କଂଗ୍ରେସର ଦୁଇ ସଂପାଦକ ଜବାହରଲାଲ ଓ ସୁବାଷବୋଷଙ୍କ ନେତୃତ୍ୱରେ ନେହେରୁ ରିପୋର୍ଟର 'ଡୋମିନିୟନ ଷ୍ଟାଟସ୍' ପ୍ରସ୍ତାବର ବିରୋଧ କଲେ ।

କଲିକତା ଅଧିବେଶନରେ ଏକ ନୂତନ ଅଭୂତପୂର୍ବ ଘଟଣା ଘଟିଗଲା । ଅଧିବେଶନ ଆରଂଭପୂର୍ବରୁ ପେଣ୍ଡାଲକୁ ୫୦ ହଜାର ଶ୍ରମିକ ମଧ୍ୟବିତ୍ତ, ଛାତ୍ର, ପେଜାଣ୍ଟ ପାର୍ଟି ନେତୃତ୍ୱରେ ଦଖଲ କରିଗଲେ । ସେମାନଙ୍କ ଦାବୀ ଥିଲା, କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନତା ତାହାର ଲକ୍ଷ୍ୟ ବୋଲି ଘୋଷଣା କରୁ । ସେମାନଙ୍କ ଦାବୀ ପ୍ରତି ସହାନୁଭୂତିଶୀଳ ଜବାହାରଲାଲ ଓ

ସୁବାଷବୋଷଙ୍କ କଥା ସେମାନେ ଗ୍ରହଣ ନକରି ପ୍ରତିଶ୍ରୁତି ନପାଇବା ପର୍ଯ୍ୟନ୍ତ ଶାନ୍ତିପୂର୍ଣ୍ଣଭାବରେ ବସି ରହିବେ ବୋଲି ଅଡି ବସିଲେ। ଶେଷରେ ଖୋଦ ଗାନ୍ଧିଜୀ ଓ ମୋତିଲାଲ ସେମାନଙ୍କ ଦାବୀର ସୁବିଚାର କରାଯିବ ବୋଲି ପ୍ରତିଶ୍ରୁତି ଦେଲେ ଓ ସେମାନେ ପେଣ୍ଡାଲ ଛାଡି ଧ୍ୱନିମାନ ଦେଇ ବାହାରି ଆସିଲେ। ଏହି ଘଟଣା ବିଶେଷ ଆନନ୍ଦଉଲ୍ଲାସ ସୃଷ୍ଟି କଲା। କିନ୍ତୁ ନେହେରୁ ରିପୋର୍ଟକୁ ଭିତ୍ତି କରି କଂଗ୍ରେସ ପକ୍ଷରୁ ଆଗତ ଆନୁଷ୍ଠାନିକ ପ୍ରସ୍ତାବରେ ବାନପନ୍ଥୀମାନଙ୍କ ସଂଶୋଧନ ଅର୍ଥାତ୍ ପୂର୍ଣ୍ଣ ସ୍ୱାଧୀନତା ଦାବୀ ଘୋଷଣା କାଟ ଖାଇଗଲା। ସଂଶୋଧନ ପ୍ରସ୍ତାବ ସପକ୍ଷରେ ୯୭୨ଟି ଓ ବିରୋଧରେ ୧୩୫୦ଟି ଭୋଟ ପଡିଲା। ଗାନ୍ଧିଜୀ ଏଥିରେ ହସ୍ତକ୍ଷେପ କରି ଆଗାମୀ କଂଗ୍ରେସ ଅଧିବେଶନରେ ଜବାହରଲାଲ ସଭାପତି ହେବେ ଏବଂ ଏହି ସମସ୍ୟାର ଚୂଡାନ୍ତ ନିଷ୍ପତ୍ତି ନିଆଯିବ ବୋଲି ପରାମର୍ଶ ଦେଲେ।

ବ୍ରିଟିଶ ସରକାର ନେହେରୁ ରିପୋର୍ଟକୁ ଓ କଂଗ୍ରେସର ଚରମପତ୍ରକୁ ପ୍ରତ୍ୟାଖ୍ୟାନ କରିଦେଲା। ଓଲଟି ୧୯୨୯ ଜାନୁଆରୀରେ ଭାଇସରାୟ ଲର୍ଡ ଇରଉଇନ ଭାରତରେ ସ୍ୱାଧୀନତା ସଂଗ୍ରାମକୁ ଜବତ କରିବା ଲାଗି କେନ୍ଦ୍ର ଆସେମ୍ବ୍ଲିରେ ଏକ ଘୋଷଣା କଲେ। "୧୯୨୮-୨୯ରେ ଭାରତ" ନାମକ ବ୍ରିଟିଶ ସରକାରର ରିପୋର୍ଟରେ କୁହାଗଲା ".... କମ୍ୟୁନିଷ୍ଟ ପ୍ରଚାର ଓ ପ୍ରଭାବ ବିଶେଷଭାବରେ କେତେକ ବଡ ବଡ ସହରରେ ଶିଳ୍ପ ଶ୍ରମିକ ଶ୍ରେଣୀମାନଙ୍କରେ ଦେଖାଦେଇ କର୍ତ୍ତୃପକ୍ଷଙ୍କ ପାଇଁ ଉଦ୍‌ବେଗ ସୃଷ୍ଟି କରିଛି।" ବିଲାତର ମାଞ୍ଚେଷ୍ଟର ଗାର୍ଡିୟନ ପ୍ରତିକା ଲେଖିଲା ଯେ "ନୀତିହୀନ କମ୍ୟୁନିଷ୍ଟମାନଙ୍କ ହାତରେ ବୃହତ୍ ଶିଳ୍ପ କେନ୍ଦ୍ରଗୁଡିକର ସରଳ ବିଶ୍ୱାସୀ ଶ୍ରମିକମାନେ ପଡିଯାଇଛନ୍ତ।"

୧୯୨୯ରେ "ଭାରତରେ କମ୍ୟୁନିଷ୍ଟ କାର୍ଯ୍ୟକଳାପ ଖର୍ବ କରିବା" ଲକ୍ଷ୍ୟରେ ଭାଇସରାୟ ଏକ ବିଶେଷ ଅଧାଦେଶ ଜାରି କଲେ। ଏପରି ଏକ ପ୍ରସ୍ତାବ ୧୯୨୮ରେ କାଉନ୍ସିଲରେ ଆଗତ ହୋଇଥିଲା। ମାତ୍ର କାଉନ୍ସିଲ ସଭାପତି ବିଠଲଭାଇ ପଟେଲ ତାଙ୍କ ସ୍ୱତନ୍ତ୍ର ଭୋଟ ଏହା ବିରୁଦ୍ଧରେ ଦେଇ ପ୍ରସ୍ତାବଟିକୁ ନାକଚ କରିଥିଲେ। ଏହାପରେ ପରେ ବିଲାତ ଓ ଭାରତର କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ ମିରଟ କମ୍ୟୁଟିଷ୍ଟ ଷଡଯନ୍ତ୍ର ମକଦମା ହୋଇ କଠୋର ଦଣ୍ଡ ଦିଆଯାଇଥିଲା। ଜେଲଖାନାରେ ଯତୀନ ଦାସଙ୍କ ୬୦ଦିନ କାଳ ଅନଶନପରେ ମୃତ୍ୟୁ ଦେଶରେ ଘୋର ବିକ୍ଷୋଭ ସୃଷ୍ଟି କରିଥିଲା।

୧୯୨୯ରେ ଲାହୋର ଷଡଯନ୍ତ୍ର ମକଦମା ଆରଂଭ ହୋଇ ଭଗତ୍‌ସିଂହ, ଜୟଗୁରୁ ଶୁକଦେବଙ୍କୁ ଫାଶିରେ ଝୁଲାଇ ଦିଆଗଲା। ସାରା ଦେଶରେ ନୂତନ ଉଦବେଳନ ଦେଖାଦେଲା। ଏହାରି ପ୍ରେକ୍ଷାପଟରେ ଲାହୋରର ରେବା ନଦୀ ତଟରେ ୧୯୨୯ରେ କଂଗ୍ରେସର ଅଧିବେଶନ ବସିଲା। କଂଗ୍ରେସ କାର୍ଯ୍ୟକାରୀ କମିଟି ଗାନ୍ଧିଜୀ ଏହାର ସଭାପତିତ୍ୱ କରିବେ ବୋଲି ସର୍ବସମ୍ମତ

ପ୍ରସ୍ତାବ ନେଇଥିଲା। ମାତ୍ର ଜବାହାରଲାଲ ନେହେରୁ ସଭାପତିତ୍ୱ କରିବେ କହି ଗାନ୍ଧିଜୀ ସେଥିରୁ ଓହରିଗଲେ।

ଲାହୋର କଂଗ୍ରେସ ଦେଶର ଲକ୍ଷ୍ୟ "ପୂର୍ଣ୍ଣ ସ୍ୱରାଜ" ବୋଲି ଘୋଷଣା କଲା ଏବଂ ଏହାର ଉପଲବ୍ଧି ପାଇଁ ଆଇନ ଅମାନ୍ୟ ଆନ୍ଦୋଳନର କର୍ମସୂଚୀ ଗ୍ରହଣ କଲା। ୧୯୨୯ ଡିସେମ୍ବର ୩୧ ତାରିଖ ମଧ୍ୟ ରାତ୍ରିରେ ଅସଂଖ୍ୟ ଜନତାର ସମୀପରେ ଜବାହାରଲାଲ ଜାତୀୟ ପତାକା ଉତ୍ତୋଳନ କଲେ।

୧୯୩୦ ଜାନୁଆରୀରେ ସାରା ଭାରତରେ ସ୍ୱାଧୀନତା ଦିବସ ପାଳିତ ହେଲା। "ବ୍ରିଟିଶ ଶାସନ ନିକଟରେ ଆଉ ମଥାନତ କରିବା ମଣିଷ ଓ ଭଗବାନଙ୍କ ନିକଟରେ ଅପରାଧ" ବୋଲି ନେହେରୁଙ୍କ ସେ ରାତିର ଘୋଷଣା ଆଗାମୀ ଆନ୍ଦୋଳନର ପଥ ଉନ୍ମୋଚନ କଲା।



## ତ୍ରୟୋଦଶ ଅଧ୍ୟାୟ

# ପୁନଶ୍ଚ ବୈପ୍ଳବିକ ସନ୍ତ୍ରାସବାଦୀ କାର୍ଯ୍ୟକଳାପ କ୍ରାନ୍ତିକାରୀ ରାଜନୈତିକ ସଂଗଠନଗୁଡ଼ିକର ଭୂମିକା, ଷଡ଼ଯନ୍ତ୍ର ମକଦ୍ଦମା (୧୯୨୪ରୁ ୧୯୪୦)

ଲାହୋର କଂଗ୍ରେସର ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟର ଘୋଷଣା ଏବଂ ୧୯୩୦ ଜାନୁଆରୀ ୨୬ ତାରିଖରେ ଭାରତୀୟ ଜାତୀୟ ପତାକା ଉତ୍ତୋଳନ କଂଗ୍ରେସ ପରିଚାଳିତ ସ୍ୱାଧୀନତା ସଂଗ୍ରାମର ଇତିହାସର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ। ଆଇନ ଅମାନ୍ୟ, ଲବଣ ସତ୍ୟାଗ୍ରହ ଆନ୍ଦୋଳନର ଇତିବୃତ୍ତ ବର୍ଣ୍ଣନା କରିବା ପୂର୍ବରୁ ସ୍ୱାଧୀନତା ସଂଗ୍ରାମର ଆଉ ଏକ ଉପାଦାନର ଉଲ୍ଲେଖ ପ୍ରୟୋଜନ।

ସ୍ୱାଧୀନତା ସଂଗ୍ରାମର ମୂଳ ସ୍ରୋତରେ ମିଶି ସେତେବେଳେ ଅନେକ ବୈପ୍ଳବିକ କାର୍ଯ୍ୟକଳାପ, ଦେଶ ବିଦେଶରେ ସ୍ୱାଧୀନତା ଲାଗି ବିଭିନ୍ନ ରାଜନୈତିକ ସଂଗଠନ, ଶ୍ରେଣୀ ସଂଗଠନର ଆବିର୍ଭାବ ଘଟିଥିଲା। ସେଗୁଡ଼ିକର କାର୍ଯ୍ୟକଳାପ, ଆତ୍ମବଳିଦାନ, ବିଭିନ୍ନ ଷଡଯନ୍ତ୍ର ମକଦମା ଯୋଗେ ମୁକ୍ତିଯୋଦ୍ଧାମାନଙ୍କୁ ଫାଶିଦଣ୍ଡ, ଦୀର୍ଘକାଳ କାରାବାସ, ଆନ୍ଦାମାନ ନିର୍ଜନ ଦ୍ୱୀପରେ ନିର୍ବାସନ ଜାତୀୟତାବୋଧକୁ ଉଜ୍ଜୀବିତ କରିଥିଲା। ସେସବୁର ସାମାନ୍ୟ ଚିତ୍ର ନଦେଲେ ସ୍ୱାଧୀନତା ସଂଗ୍ରାମର ଇତିହାସ ପରିପୂର୍ଣ୍ଣ ହେବନାହିଁ। ପୂର୍ବରୁ ବିପ୍ଳବୀ ଗଦ୍ଦର ପାର୍ଟିର ଉଲ୍ଲେଖ ରହିଛି। ୧୯୩୦ ଆଇନ ଅମାନ୍ୟ ପୂର୍ବରୁ ଦେଶର ବିଭିନ୍ନ ଅଂଚଳରେ ରାଜନୈତିକ ବିପ୍ଳବୀ ସଂଗଠନ ସାଧାରଣ ଜନତା, ଯୁବକ, ଶ୍ରମିକ, କୃଷକମାନଙ୍କୁ ସଂଗଠିତ କରି ସେମାନଙ୍କ ସମସ୍ୟାଗୁଡ଼ିକୁ ଘେନି ବ୍ରିଟିଶ ବିରୁଦ୍ଧରେ ନିଜନିଜ ମଂଚରୁ ଆନ୍ଦୋଳନ କରିଥିଲେ।

ବିଦେଶରେ ସ୍ୱାଧୀନତା ଲାଗି ବିପ୍ଳବୀମାନେ ବର୍ଲିନ କମିଟି ଓ ଜାପାନରେ ସ୍ୱାଧୀନତା ଲିଗ ଗଠନ କରିଥିଲେ। ସ୍ୱାଧୀନତା ସାଙ୍ଗକୁ ସମାଜବାଦ, ସାମ୍ୟବାଦରେ କେତେକ ବିଶ୍ୱାସ କରୁଥିଲେ।

ଭାରତରେ ମହାରାଷ୍ଟ୍ର, ପଂଜାବ, ଯୁକ୍ତ ପ୍ରଦେଶ ଓ ବଂଗଳାରେ ପେଜାଣ୍ଟ ଏଣ୍ଡ ଓ୍ୱାର୍କର୍ସ ପାର୍ଟି ଗଠିତ ହୋଇଥିଲା। ପଂଜାବରେ ସୋହାନ ସିଂ ଯୋଷ ପ୍ରମୁଖଙ୍କ ନେତୃତ୍ୱରେ କୀର୍ତ୍ତି

କିଷାନ ପାର୍ଟି ଗଠିତ ହୋଇଥିଲା । ପଂଜାବରେ ଭଗତ୍ ସିଂହ ଓ ତାଙ୍କ ସାଥୀମାନଙ୍କ ଦ୍ୱାରା ନବଜୀବନ ସଭା ନାମକ ବିପ୍ଳବୀ ସଂସ୍ଥା ଗଠିତ ହୋଇଥିଲା । ଦିଲ୍ଲୀର ଫିରୋଜଶାହା କୋଟଲାଠାରେ ହିନ୍ଦୁସ୍ଥାନ ସୋସଲିଷ୍ଟ ରିପବ୍ଲିକାନ ପାର୍ଟି ଗଠନ ବେଳେ ଭଗତ ସିଂ, ଚନ୍ଦ୍ରଶେଖର ଆଜାଦ ପ୍ରମୁଖ ଯୋଗ ଦେଇ ତାହାର କାର୍ଯ୍ୟକଳାପର ନେତୃତ୍ୱ ନେଇଥିଲେ । ୧୯୨୫ରେ କାନପୁରଠାରେ ଆନୁଷ୍ଠାନିକ ଭାବରେ କମ୍ୟୁନିଷ୍ଟ ପାର୍ଟି ଗଠିତ ହୋଇଥିଲା । ଅବଶ୍ୟ ୧୯୨୧ରେ ସୋଭିଏତ୍ ବିପ୍ଳବ ପରେ ତାସକନ୍ଦଠାରେ ବିଦେଶରେ କମ୍ୟୁନିଷ୍ଟ ପାର୍ଟି ଗଠନର ପ୍ରୟାସ ହୋଇଥିଲା । ଏମ.ଏନ୍.ରାୟ ପ୍ରମୁଖ ଦେଶପ୍ରେମୀମାନେ ସୋଭିଏତ୍ ରୁଷରେ କମ୍ୟୁନିଷ୍ଟ ଆନ୍ଦୋଳନ ସହିତ ସଂପୃକ୍ତ ହୋଇଥିଲେ ।

ଏହିସବୁ ବୈପ୍ଳବିକ ସାମ୍ୟବାଦୀ ଚିନ୍ତାଧାରାକୁ ଧରି ସେମାନଙ୍କ ମତାଦର୍ଶ ପ୍ରଚାର କରିବାକୁ ସେମାନେ କୀର୍ତ୍ତି, ମଜଦୁର, କୃଷକ, ଗଣବାଣୀ, ସ୍ପାର୍କ, କ୍ରାନ୍ତି, ସୋସାଲିଷ୍ଟ ପତ୍ରପତ୍ରିକାମାନ ପ୍ରକାଶ କରି ବ୍ରିଟିଶ ସରକାରକୁ ଦେଶରୁ ତଡିବା ଲାଗି ଜନମତ ସୃଷ୍ଟି କରୁଥିଲେ ।

ଏମାନଙ୍କୁ ଜବତ୍ କରିବା ଲାଗି ପେଶଓ୍ୱାର ଷଡଯନ୍ତ୍ର ମକଦ୍ଦମା, କାକୋରୀ ଷଡଯନ୍ତ୍ର ମକଦ୍ଦମା, କାନପୁର ବଲଶେଭିକ ଷଡଯନ୍ତ୍ର ମକଦ୍ଦମା, ଲାହୋର ଷଡଯନ୍ତ୍ର ମକଦ୍ଦମା, ମିରଟ କମ୍ୟୁନିଷ୍ଟ ଷଡଯନ୍ତ୍ର ମକଦ୍ଦମା, ଚିଟାଗଂଗ ଅସ୍ତ୍ରାଗାର ଲୁଣ୍ଠନ ଷଡଯନ୍ତ୍ର ମକଦ୍ଦମା କରାଯାଇ ଫାଶି ଓ ଦୀର୍ଘ କାରାବାସ ଦଣ୍ଡ ଦିଆଯାଇଥିଲା ।

**ପେଶାବାର ଷଡଯନ୍ତ୍ର ମକଦ୍ଦମା:**

ବ୍ରିଟିଶ ଅତ୍ୟାଚାରୀ ଶାସନରେ ଅତିଷ୍ଠ ହୋଇ ୩୦ ହଜାର ଯାଏ ଭାରତୀୟ କାବୁଲବାଟେ ସୋଭିଏତ୍ ରୁଷିଆର ତାସକନ୍ଦ ଯିବାବେଳେ କାବୁଲରେ ଆଫଗାନ ସରକାର ସେମାନଙ୍କ ଉପରେ ପ୍ରଚଣ୍ଡ ଦମନ କରି ଭାରତକୁ ତଡିଦେଲେ । ତଥାପି କେତେକ ଖସିଯାଇ ତାସକନ୍ଦରେ ପହଂଚିଥିଲେ । ସେମାନଙ୍କୁ ମୁଜାହିଦ୍ଦିନ କୁହାଯାଉଥିଲା । ଭାରତରେ ତିନି ଦଫାରେ ବ୍ରିଟିଶ ସରକାର ସେମାନଙ୍କୁ ଗିରଫ କରି କେତେକଙ୍କ ନାମରେ ପେଶାବାର ଷଡଯନ୍ତ୍ର ମକଦ୍ଦମା ୧୯୨୪ରେ ଆରଂଭ କଲା । ସେମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ ଫଇରୋଜଉଦ୍ଦିନ, ମନସୁର, ସୌକତ୍ ଉସମାନୀ, ଅବଦୁଲ ମସିଦ, ହବିବ ଅହମ୍ମଦ, ମହମ୍ମଦ, ରଫିକ । ଏମାନଙ୍କୁ ସାତବର୍ଷ ଜେଲଦଣ୍ଡ ଦିଆଗଲା ।

**କାନପୁର ବଲଶେଭିକ ଷଡଯନ୍ତ୍ର ମକଦ୍ଦମା:**

କମ୍ୟୁନିଷ୍ଟ ମନୋଭାବାପନ୍ନ ମୁକ୍ତିଯୋଦ୍ଧାମାନଙ୍କୁ ୧୯୨୪ରେ ଗିରଫ କରି ୪ରୁ ୧୦ବର୍ଷଯାଏ ଜେଲଦଣ୍ଡ ଦିଆଗଲା । ବମ୍ବେରୁ ଏସ.ଏ.ଡାଙ୍ଗେ, କଲିକତାରୁ ମୁଜାଫର ଅହମ୍ମଦ, ମାନ୍ଦ୍ରାଜରୁ ସିଙ୍ଗାରଭାଲୁ ଚେଟିୟାର ତଥା ଅନ୍ୟାନ୍ୟ ସ୍ଥାନରୁ ସୌକତ୍ ଉସମାନୀ, ନଳିନୀ ଗୁପ୍ତଙ୍କୁ ଏଥିରେ ଜଡିତ କରାଯାଇଥିଲା । ବିଖ୍ୟାତ ବିପ୍ଳବୀ ଗଣେଶ ଚନ୍ଦ୍ର ବିଦ୍ୟାର୍ଥୀ ଏମାନଙ୍କର

ମକଦ୍ଦମା ଲଢିବାର ଦାୟିତ୍ୱ ବହନ କରିଥିଲେ । ଗଣେଶଚନ୍ଦ୍ର ବିଦ୍ୟାର୍ଥୀ ହିନ୍ଦୁ ମୁସଲିମ୍ ଦଂଗା ଏଡିବାକୁ ଯାଇ ଶହୀଦ ହୋଇଥିଲେ ।

**କାକୋରି ଷଡଯନ୍ତ୍ର ମକଦ୍ଦମା:**

୧୯୨୫ରେ ବିପ୍ଳବୀ ସତ୍ରାଂଶବାସୀ ଚନ୍ଦ୍ରଶେଖର ଆଜାଦ, ରାମପ୍ରସାଦ ବିଶମିଲ, ରୋଷନ ଲାଲ, ଆସଫଉଲ୍ଲା ପ୍ରଭୃତିଙ୍କ ବିରୁଦ୍ଧରେ ଏହି ମକଦ୍ଦମା ଚାଲୁ ହୋଇଥିଲା । ଶେଷୋକ୍ତ ତିନିଜଣଙ୍କୁ ଫାଶି ଦିଆଗଲା । ଚନ୍ଦ୍ରଶେଖର ଆଜାଦ ପୁଲିସ ହାତରୁ ଖସିଗଲେ । ସେ ୧୯୩୧ ଯାଏ ଗୋପନରେ ବୈପ୍ଳବିକ କାର୍ଯ୍ୟ ଚଳାଇଲେ । ଏହ୍ଲାବାଦର ଆଲଫ୍ରେଡ ପାର୍କରେ ତାଙ୍କୁ ଜଣେ ବିଶ୍ୱାସଘାତକ ଧରାଇଦେଲା । ବ୍ରିଟିଶ ପୁଲିସ ସହିତ ଏକାକୀ ସଶସ୍ତ୍ର ପ୍ରତିରୋଧ କରି ଶେଷରେ ସେ ଶତ୍ରୁର ଗୁଳିରେ ଟଳିପଡିଲେ ।

**ଲାହୋର ଷଡଯନ୍ତ୍ର ମକଦ୍ଦମା:**

୧୯୨୯ରେ ଭାରତର ସ୍ୱାଧୀନତା ସଂଗ୍ରାମରେ ବିଖ୍ୟାତ ଷଡଯନ୍ତ୍ର ମକଦ୍ଦମା ଭଗତସିଂହ ଓ ତାଙ୍କ ସାଥୀମାନଙ୍କ ବିରୁଦ୍ଧରେ ଆରଂଭ କରାଯାଇଥିଲା । ଭଗତସିଂହ ପଂଜାବରେ ଗଠିତ ନବଜୀବନ ସଭାର ନେତା ଥିଲେ । ୧୯୨୮ରେ ନବଜୀବନ ସଭା ଆଉ ଏକ ବିପ୍ଳବୀ ସଂଗଠନ କୀର୍ତ୍ତି କିଷାନ ପାର୍ଟି ସହିତ ସଂପର୍କ ସ୍ଥାପନ କରିଥିଲେ । ହିନ୍ଦୁସ୍ଥାନ ସୋସଲିଷ୍ଟ ରିପବ୍ଲିକାନ ପାର୍ଟିରେ ସଦସ୍ୟ ହିସାବରେ ସେହି ବର୍ଷ ଅକ୍ଟୋବର ମାସରେ ଦିଲ୍ଲୀର ଫିରୋଜଶାହା କୋଟଲାରେ ଅନୁଷ୍ଠିତ ବୈଠକରେ ଭଗତ ସିଂହ ଶେଷ ଥର ପାଇଁ ଅଂଶଗ୍ରହଣ କରିଥିଲେ । ଲାଲ ଲାଜପତ୍ ରାୟଙ୍କୁ ମାଡ ଓ ତାଙ୍କ ମୃତ୍ୟୁ ପାଇଁ ଦାୟୀ ପୁଲିସ ସାହେବ ସନ୍ଦରର୍ସଙ୍କୁ ଗୁଳି କରି ହତ୍ୟା କରି ସେ ଆତ୍ମଗୋପନ କରିଥିଲେ । ଜନତା ଦ୍ୱାରା ଓ ଜନତାପାଇଁ ଗଣ ବିଦ୍ରୋହର ବିଶ୍ୱାସ କରି ସେ ଆତ୍ମ ଗୋପନରୁ ବାହାରି ଆସିଲେ । କେନ୍ଦ୍ର ଆସେମ୍ଲିରେ ୧୯୨୯ ଏପ୍ରିଲ ୮ ତାରିଖରେ ଇଂରେଜ ସରକାର ଦ୍ୱାରା ଦମନ ଲାଗି ବିଶେଷ ଅଧ୍ୟାଦେଶ ଆସିବାର ଦିନ ଭଗତ୍‌ସିଂହ, ବଟୁକିଶୋର ଦତ୍ତ ଗୋଟିଏ ନିରୀହ ବୋମା ଓ "ଲାଲ ପ୍ରଚାରପତ୍ର" ଧରି କୌଣସିମତେ କେନ୍ଦ୍ର କାଉନ୍ସିଲ ଉପର ଦର୍ଶକ ଗାଲେରୀରେ ପ୍ରବେଶ କଲେ । କାହାକୁ ନମାରି କେବଳ ସରକାରକୁ ଭୟଭୀତ କରିବା ଉଦ୍ଦେଶ୍ୟରେ ବୋମା ଓ ପ୍ରଚାରପତ୍ରଗୁଡିକୁ ସରକାରୀ ବେଞ୍ଚ ଉପରକୁ ଫିଙ୍ଗିଲେ । କେହି ନିହତ ଅବା ଆହତ ହେଲେ ନାହିଁ ।

ଲାହୋର ଷଡଯନ୍ତ୍ର ମକଦ୍ଦମା ଆରଂଭ ହୋଇଗଲା । ଫାଶି ପାଇବା ତିନିଜଣଙ୍କ ବ୍ୟତୀତ ଅନ୍ୟମାନଙ୍କ ଭିତରେ ଥିଲେ ଅଜୟ ଘୋଷ, ଯତୀନ ଦାସ ଅନ୍ୟମାନେ । ଏ ସମସ୍ତଙ୍କୁ ଦୀର୍ଘ କାରାବାସ ଦଣ୍ଡ ମିଳିଲା । 'ଫାଶି କାଠରେ ଝୁଲି ଶହୀଦ ହେଲେ ଭଗତ୍‌ସିଂହ, ରାଜଗୁରୁ ଓ ଶୁକଦେବ । ଫାଶି ମଂଚକୁ ହସି ହସି ଯିବାପୂର୍ବରୁ ସେ ଲେନିନଙ୍କ ରାଷ୍ଟ୍ର ଓ ବିପ୍ଳବ ବହି ପଢୁଥିଲେ । ପଢିବା ଶେଷ କରିବାକୁ କିଛି ସମୟ ଚାହିଁ ସେ ଫାଶିମଂଚକୁ ଉଠିଲେ ।

୧୯୩୧ ମାର୍ଚ୍ଚ ୨୩ରେ ଭଗତସିଂହ, ଶୁକଦେବ ଓ ରାଜଗୁରୁଙ୍କୁ ଫାଶି ଦିଆଗଲା । ତାଙ୍କରି ନବଜୀବନ ସଭାର ଶାଖାମାନ ଅମୃତସର, ଲାହୋର, ଲୁଧିଆନା, ଜଳନ୍ଧର, ଗୁଜରାନୱାଲା, ସରପୋଧ, ଟେଲିଫଂଜ, ଜାରନୱାଲା ସହର ଓ ଗ୍ରାମମାନଙ୍କରେର ଗଢି ଉଠିଲା । ସହବନ୍ଦୀ ଅଜୟ ଘୋଷ (ଯିଏ ପରେ କମ୍ୟୁନିଷ୍ଟପାର୍ଟିର ଦୁଇବର୍ଷ ସଂପାଦକ ହେଲେ) ତାଙ୍କ ବହି ଭଗତସିଂହ ଓ ତାଙ୍କ ସାଥୀମାନଙ୍କ ସଂପର୍କରେ ବର୍ଣ୍ଣନା କଲାବେଳେ ବିପ୍ଳବୀ ସହବନ୍ଦୀ ଯତୀନ ଦାସଙ୍କ ଅନଶନ ବେଳର ମର୍ମସ୍ପର୍ଶୀ ଘଟଣା ବର୍ଣ୍ଣନା କରିଛନ୍ତି । ଯତୀନ ଦାସ ଜେଲ ଜୀବନରେ ଅତ୍ୟାଚାର ବିରୁଦ୍ଧରେ ୬୦ ଦିନ କାଳ ଅନଶନ କରି ଶହୀଦ ହେଲେ ।

**ମିରଟ ଷଡଯନ୍ତ୍ର ମକଦ୍ଦମା:**

ବ୍ରିଟିଶ ସରକାରକୁ ହିଂସାତ୍ମକ ଉପାୟରେ ଶାସନଚ୍ୟୁତ କରିବା ଲାଗି କମ୍ୟୁନିଷ୍ଟମାନେ ଷଡଯନ୍ତ୍ର କରୁଛନ୍ତି ଅଭିଯୋଗ କରି ମକଦ୍ଦମାକୁ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା ନାମରେ ନାମିତ କରାଗଲା । ୧୯୨୮ ମାର୍ଚ୍ଚ ୨୦ ତାରିଖରେ ଭାରତର ବିଭିନ୍ନ ଅଂଚଳରୁ, ଯଥା ବମ୍ବେରୁ ଏସ.ସ.ଡାଙ୍ଗେ, ଏସ.ଭି.ଘାଟେ, ଏସ.ଏସ ମିରାଜକର, ଗଂଗାଧର ଅଧିକାରୀ, ଜେ.ଏନ.ଯୋଗଲେକର, ଆର.ଏସ ନିମକର ଏ ଆଲୁୟେ, ଭି.କାସଲେ, ଡି.ଠେଙ୍ଗଡି, ଏମ.ଜି. ଢାଭେଦଙ୍କୁ, ଯୁକ୍ତ ପ୍ରଦେଶରୁ ପି.ସି. ଯୋଷୀ, ବିଶ୍ୱନାଥ ମୁଖର୍ଜୀ, ଧର୍ମବୀର ସିଂହ, ଏଚ୍.କଦମ ଓ ସୌକତ୍ ଉସମାନୀଙ୍କୁ, ପଂଜାବର ସୋହାନସିଂ ଜୋଷ, ଅବଦୁଲ ମଜିଦ୍ ଓ କେଦାରନାଥ ସୈଗାଲଙ୍କୁ, ବଂଗଳାର ମୁଜଫର ଅହମ୍ମଦ, ଧରଣୀ ଗୋସ୍ୱାମୀ, ଗୋପେନ ଚକ୍ରବର୍ତ୍ତୀ, ଗୋପାଳ ବସାକ, ଶିବନାଥ ବାନାର୍ଜି, ସାମସୁଲ ହୋଦା, ରାଧାରଂଜନ ମିତ୍ର, କିଶୋର ଲାଲଘୋଷ ପ୍ରଭୃତିଙ୍କୁ ଗିରଫ କରାଗଲା । ଭାରତର ସ୍ୱାଧୀନତା ପାଇଁ ଗୋପନରେ ଆମ ଦେଶରେ କାର୍ଯ୍ୟ କରୁଥିବା ବିଲାତର ବ୍ରେନ ବ୍ରାଡଲେ, ଫିଲପ୍ସ ପ୍ରାଟ, ଲେଷ୍ଟର ହଟଙ୍ଗଟନଙ୍କୁ ଜଡିତ କରି ମକଦ୍ଦମା ଚାଲି ଦୀର୍ଘ କାରାଦଣ୍ଡ ଦିଆଗଲା । ୩୩ଜଣ ଅଭିଯୁକ୍ତଙ୍କ ମଧରୁ ମାତ୍ର ୧୮ଜଣ ସେକାଳରେ ଜଣାଶୁଣା କମ୍ୟୁନିଷ୍ଟ । ଏଥିରେ ଏମ.ଏନ.ରାୟ, ବିଲାତର ରଜନୀ ପାମିଦତ୍ତ, ହାରିପଲିଟ ପ୍ରଭୃତିଙ୍କୁ ସଂପୃକ୍ତ କରିବା ଉଦ୍ୟମ ସଫଳ ହୋଇନଥିଲା ।

ମହାତ୍ମା ଗାନ୍ଧୀ ଏହି ବନ୍ଦୀମାନଙ୍କୁ ଜେଲଖାନାରେ ଭେଟି ତାଙ୍କ ପ୍ରଦର୍ଶିତ ଅହିଂସ ମାର୍ଗରେ ସାମିଲ ହେବାକୁ ପରାମର୍ଶ ଦେଇଥିଲେ । ସେମାନେ ଗାନ୍ଧିଜୀଙ୍କୁ ଗଭୀର ସମ୍ମାନ ଜଣେଇ ବିନୟର ସହ ସେପରି ପନ୍ଥାରେ ଚାଷୀ, ମେହନତୀ ମଣିଷ, ଶ୍ରମିକଶ୍ରେଣୀର ଶୋଷଣ କଷଣ ଦୂର ହୋଇପାରିବ ନାହିଁ ବୋଲି ମତବ୍ୟକ୍ତ କରିଥିଲେ । ଜବାହାରଲାଲ ନେହେରୁ ଅଦାଲତରେ ସେମାନଙ୍କ ପକ୍ଷରେ ଲଢିବା ପାଇଁ ଏକ ଆଇନ ସହାୟକ କମିଟି ଗଢିଥିଲେ । ତାଙ୍କ ପିତା ମୋତିଲାଲ ନେହେରୁ ପ୍ରମୁଖ ଆସାମୀମାନଙ୍କ ପକ୍ଷରେ ଲଢୁଥିଲେ ।

ପୃଥିବୀର ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନଷ୍ଟାଇନ, ପ୍ରଖ୍ୟାତ ସାହିତ୍ୟିକ ରୋମାରୋଁଲା, ବିଲାତର ସ୍ୱନାମଧନ୍ୟ ରାଷ୍ଟ୍ରନୀତିଜ୍ଞ ଏବଂ ଐତିହାସିକ ଏଚ.ଜି. ଓ୍ୱେଲସ ବ୍ରିଟିଶ ସରକାରର ଏପରି କାର୍ଯ୍ୟକୁ ଭର୍ତ୍ସନା କରିଥିଲେ।

**ଚିତାଗଂଗ ଅସ୍ତ୍ରାଗାର ଲୁଣ୍ଠନ:**

ପୂର୍ବ ବଂଗର ଚିତାଗଂଗ ସହର। ବ୍ରିଟିଶ ସରକାରର ସୈନ୍ୟ ଛାଉଣୀରେ ଅସ୍ତ୍ରଶସ୍ତ୍ର ଲୁଟି କରି ସେହି ଅସ୍ତ୍ରଶସ୍ତ୍ରରେ ବ୍ରିଟିଶ ସୈନ୍ୟମାନଙ୍କୁ ପରାସ୍ତ କରାଯିବ ଏବଂ ଭାରତରେ ସ୍ୱାଧୀନତା ସଶସ୍ତ୍ର ବିପ୍ଳବ ଦ୍ୱାରା ସଂପାଦିତ ହେବ; ଏହି ସଂକଳ୍ପରେ ମହାନ୍ ବିପ୍ଳବୀ ସୂର୍ଯ୍ୟସେନ ଏପରି ଏକ ଯୋଜନା ପ୍ରସ୍ତୁତ କଲେ। ୧୯୩୦ ମଇମାସ ୨୨ ତାରିଖରେ ଅସ୍ତ୍ରାଗାର ଲୁଣ୍ଠନର କର୍ମସୂଚୀ ଆରଂଭ ହୋଇଗଲା। ୧୫ଜଣ ବିପ୍ଳବୀ ମୁକ୍ତିଯୋଦ୍ଧା ସୂର୍ଯ୍ୟସେନଙ୍କ ନେତୃତ୍ୱରେ ଅସ୍ତ୍ରାଗାର ଲୁଣ୍ଠନ ଅଭିଯାନ ଆରଂଭ କରିଦେଲେ। ଲୁଣ୍ଠନ ଉଦ୍ୟମ ଓ ସେଥିରେ ଆଂଶିକ ସଫଳତା ପରେ ସେମାନଙ୍କୁ ଗିରଫ କରାଗଲା। ପନ୍ଦର ଜଣ ଅସ୍ତ୍ରାଗାର ଲୁଣ୍ଠନକାରୀଙ୍କ ମଧ୍ୟରେ ଥିଲେ ଅମ୍ବିକା ଚକ୍ରବର୍ତ୍ତୀ, ଲୋକନାଥ ବଳ, ଗଣେଷ ଘୋଷ, ଆନନ୍ଦ ଗୁପ୍ତ, ଟେଗ୍ରା (ବାଘ) ବଳ, ଅନନ୍ତ ସିଂହ। ଆଉ ଥିଲେ ବିପ୍ଳବିଣୀ କଳ୍ପନା ଦତ୍ତ ଏବଂ ପ୍ରୀତିଲତା ଓ୍ୟାଦେକାର। ବିପ୍ଳବୀଙ୍କ ନେତା ସୂର୍ଯ୍ୟସେନଙ୍କୁ ଫାଶି ଦିଆଗଲା। ଅନ୍ୟମାନଙ୍କୁ ଦୀର୍ଘ ଜେଲଦଣ୍ଡ ଦେଇ କାରାଗାର ଏବଂ ଆଣ୍ଡାମାନ କଳାପାଣିରେ ନିକ୍ଷେପ କରାଗଲା। ଚିତାଗଂଗ ଅସ୍ତ୍ରାଗାର ଲୁଣ୍ଠନର ବୀରତ୍ୱପୂର୍ଣ୍ଣ ଘଟଣାବଳୀର ସଂବାଦପତ୍ରଗୁଡିକରେ ବର୍ଣ୍ଣନା ସେତେବେଳେ ସାରା ଦେଶରେ ମହା ଦେଶପ୍ରେମୀ ଆଲୋଡନ ସୃଷ୍ଟି କରିଥିଲା। ଏହି ସବୁ ଷଡଯନ୍ତ୍ର ମକଦମାରେ ସଂଶ୍ଳିଷ୍ଟ ବିପ୍ଳବୀମାନଙ୍କ ମଧ୍ୟରୁ ଅଧିକାଂଶ କମ୍ୟୁନିଷ୍ଟ ମତାଦର୍ଶ ଗ୍ରହଣ କରିଥିଲେ।

**କଟକ ଷଡ଼ଯନ୍ତ୍ର ମକଦ୍ଦମା:**

୧୯୪୦ରେ କୌଣସି ବିଚରାଳୟ ନୁହଁ, କଟକ ଜେଲ ଭିତରେ ଏକ ଷଡଯନ୍ତ୍ର ମକଦ୍ଦମାର ବିଚାର ହୋଇଥିଲା। ଏହାକୁ କଟକ କମ୍ୟୁନିଷ୍ଟ ଷଡଯନ୍ତ୍ର ମକଦ୍ଦମା କୁହାଗଲା। ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ, ଶରତ ପଟ୍ଟନାୟକ, ବନମାଳୀ ଦାସ, ବିଜୟ ଚନ୍ଦ୍ର ଦାସ, ଦୁର୍ଗାଚରଣ ମହାନ୍ତି ପ୍ରମୁଖଙ୍କ ବିରୁଦ୍ଧରେ ଏହି ମକଦମା ଚାଲିଥିଲା। କେତେକଙ୍କୁ ୬ବର୍ଷ ଓ ଅନ୍ୟ କେତେକଙ୍କୁ ୨ବର୍ଷ ସଜା ମିଳିଥିଲା। ଏମାନଙ୍କୁ ଆଇନ ସହାୟତା ଦେବା ପାଇଁ କଂଗ୍ରେସର ତୁଙ୍ଗ ନେତା ହରେକୃଷ୍ଣ ମହତାବ ଏବଂ ରାମକୃଷ୍ଣ ପତି, ଶ୍ୟାମସୁନ୍ଦର ମିଶ୍ର ଏକ କମିଟି ଗଠନ କରିଥିଲେ।

ବିଶିଷ୍ଟ ଆଇନଜୀବୀ ରାଜକିଶୋର ଦାସ (ଯିଏ ପରେ ହାଇକୋର୍ଟର ପ୍ରଧାନ ବିଚାରପତି) କଂଗ୍ରେସ ନେତା ଦୀନବଂଧୁ ସାହୁ, ଚନ୍ଦ୍ରକାନ୍ତ ଘୋଷ ପ୍ରମୁଖ ଆସାମୀମାନଙ୍କ ପକ୍ଷରୁ ଲଢିଥିଲେ।

**ଏ.ଆଇ.ଟି.ୟୁ.ସିର ଭୂମିକା:**

ସ୍ୱାଧୀନତା ଲାଗି ଅସହଯୋଗ ଆନ୍ଦୋଳନର ପ୍ରସ୍ତୁତିକାଳରେ ଭାରତବର୍ଷରେ ସାମ୍ରାଜ୍ୟବାଦୀ ପରାଧନତା ଓ ପୁଂଜିବାଦୀ ଶୋଷଣ ଅତ୍ୟାଚାର ବିରୁଦ୍ଧରେ ସର୍ବପ୍ରଥମ ଏକ ସର୍ବଭାରତୀୟ ଶ୍ରମିକ ସଂଗଠନ ଗଢି ଉଠିଲା । ଲାଲ ରାଜପତ୍ ରାୟଙ୍କ ସଭାପତିତ୍ୱରେ ଗଠିତ ବମ୍ବେର ତତ୍କାଳୀନ ଶ୍ରମିକ ସଂଗ୍ରାମ ଚଳାଉଥିବା ନେତା ଏନ.ଏମ.ଯୋଷୀ, ଏସ.ଏ.ଡାଙ୍ଗେ, ନିମକର ପ୍ରଭୃତିଙ୍କ ନେତୃତ୍ୱରେ ଏହି ସର୍ବଭାରତୀୟ ସଂଗଠନ ସ୍ୱାଧୀନତା ପର୍ଯ୍ୟନ୍ତ ଭାରତରେ ଏକମାତ୍ର ଲଢୁଆ ଶ୍ରମିକ ସଂଗଠନ ରୂପେ ବିଦ୍ୟମାନ ଥିଲା । ଏହା ଶ୍ରମିକଙ୍କ କାମ ସମୟ, ମଜୁରୀ, ଟ୍ରେଡୟୁନିଅନ ଅଧିକାର ହାସଲ ଲାଗି ସଂଗ୍ରାମ ସାଙ୍ଗକୁ କଂଗ୍ରେସ ଦ୍ୱାରା ପରିଚାଳିତ ଆନ୍ଦୋଳନ ସମର୍ଥନରେ ହରତାଳ, ଧର୍ମଘଟ, ବିକ୍ଷୋଭ ଗୁଡିକରେ ସକ୍ରିୟ ଭୂମିକା ନେଉଥିଲା । ଜବାହାରଲାଲ ନେହେରୁ, ସୁଭାଷଚନ୍ଦ୍ର ବୋଷ ପ୍ରମୁଖ କଂଗ୍ରେସ ନେତାମାନେ ଏ.ଆଇ.ଟିୟୁସିର କାର୍ଯ୍ୟକ୍ରମଗୁଡିକରେ ସକ୍ରିୟ ଭାଗ ନେଉଥିଲେ । କଂଗ୍ରେସ, କମ୍ୟୁନିଷ୍ଟ, ସୋସଲିଷ୍ଟ ମତବାଦ ପୋଷଣ କରୁଥିବା ବହୁ ବ୍ୟକ୍ତି ଏଥି ସହିତ ସଂପୃକ୍ତ ରହି ନେତୃତ୍ୱ ଗ୍ରହଣ କରୁଥିଲେ ।



# ଆଇନ ଅମାନ୍ୟ, ଲବଣ ସତ୍ୟାଗ୍ରହ, ଗୋଲଟେବୁଲ ବୈଠକ, ଆନ୍ଦୋଳନ ପ୍ରତ୍ୟାହାର (୧୯୩୦-୧୯୩୪)

## ସ୍ୱାଧୀନତାର ଶପଥ

ଅସହଯୋଗ ଆନ୍ଦୋଳନରୁ ଆଇନ ଅମାନ୍ୟ ଆନ୍ଦୋଳନ ଆହ୍ୱାନ ଏବଂ ପୂର୍ଣ୍ଣ ସ୍ୱରାଜ ହାସଲ ଘୋଷଣା ଦେଶରେ ବିପୁଳ, ଉତ୍ସାହ ଉଦ୍ଦୀପନା ସୃଷ୍ଟି କଲା । ୧୯୩୦ ଜାନୁଆରୀ ୨୬ ତାରିଖରେ ଶତଶତ ସ୍ଥାନରେ ସହସ୍ର ସହସ୍ର ଜନତା ଜାତୀୟ ପତାକା ଉତ୍ତୋଳନ କରି ସଂଗ୍ରାମର ଶପଥ ନେଲେ । ଶପଥଟି ହେଲା "ଆମେ ବିଶ୍ୱାସ କରୁଯେ ଅନ୍ୟ ଯେକୌଣସି ଜାତି ପରି ଭାରତବାସୀଙ୍କର ସ୍ୱାଧୀନତା ହାସଲ ଏବଂ ଆପଣା ଶ୍ରମର ସୁଫଳ ଉପଭୋଗ କରିବାର ଏବଂ ଜୀବନର ଆବଶ୍ୟକତା ପୂରଣ କରିବାର ଅଲଙ୍ଘନୀୟ ଅଧିକାର ରହିଛି । ତାହା ହେଲେ ବିକାଶର ସକଳ ସୁଯୋଗ ସେମାନେ ଉପଭୋଗ କରିବେ ।

"ଆମେ ଆହୁରି ବିଶ୍ୱାସ କରୁଯେ ଯଦି କୌଣସି ସରକାର ଲୋକଙ୍କୁ ଏସବୁ ଅଧିକାରରୁ ବଂଚିତ କରେ, ତେବେ ତାକୁ ବଦଳେଇ ଦେବାକୁ ଅବା ଉଚ୍ଛେଦ କରିବାକୁ ସେମାନଙ୍କର ଅଧିକାର ରହିଛି ।

"ଭାରତରେ ବ୍ରିଟିଶ ସରକାର ଭାରତବାସୀଙ୍କୁ କେବଳ ସ୍ୱାଧୀନତାରୁ ବଂଚିତ କରିନାହିଁ, ଏହା ଜନତାର ଶୋଷଣ ଉପରେ ତିଷ୍ଠି ରହିଛି ଏବଂ ଭାରତକୁ ରାଜନୈତିକ, ଆର୍ଥିକ ଓ ନୈତିକ ଭାବରେ ଧ୍ୱସ୍ତବିଧ୍ୱସ୍ତ କରିଦେଇଛି । ଆମେ ତେଣୁ ବିଶ୍ୱାସ କରୁ ଭାରତକୁ ବ୍ରିଟିଶ ସଂପର୍କ ଛିନ୍ନ କରିବାକୁ ହେବ ଏବଂ ପୂର୍ଣ୍ଣ ସ୍ୱରାଜ ଅବା ପୂର୍ଣ୍ଣ ସ୍ୱାଧୀନତା ଲାଭ କରିବାକୁ ହେବ ।"

ଉତ୍କଣ୍ଠିତ, ଉଦଗ୍ରୀବ ଜନତାଙ୍କର ବିଶ୍ୱାସ ହେଲାଯେ ଆଜିଠାରୁ ସଂଗ୍ରାମ ଆରଂଭ ହୋଇଯିବ । ମାତ୍ର ସେ ପର୍ଯ୍ୟନ୍ତ ସଂଗ୍ରାମର କମସୂଚୀ ନିର୍ଦ୍ଧାରିତ ହୋଇ ନଥିଲା ।

ସଂଗ୍ରାମର ସର୍ବୋଚ୍ଚ ନେତା ଗାନ୍ଧିଜୀ ତାଙ୍କର 'ୟଙ୍ଗ ଇଣ୍ଡିଆ' ପତ୍ରିକାରେ ୧୧ ଦଫାର ଏକ ଦାବୀ ସନନ୍ଦ ପ୍ରକାଶ କଲେ। ଏହା ଏକ ସାଲିସର ପ୍ରସ୍ତାବ। ଭାଇସରୟ ଲର୍ଡ ଇରଉଇନଙ୍କୁ ସେ ଉକ୍ତ ୧୧ଦଫା ଦାବୀ ସନନ୍ଦ ପଠାଇ ସୂଚିତ କଲେଯେ ସରକାର ଯଦି ଏହାକୁ ଗ୍ରହଣ କରିନେବେ, ତେବେ ପ୍ରସ୍ତାବିତ ଆଇନ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟାହାର କରି ନିଆଯିବ।

ଆନ୍ଦୋଳନର ଆହ୍ୱାନ ଦେଇ, ସଂଗ୍ରାମର ଶପଥ ନେଇ ଏପରି ସାଲିସ ପ୍ରସ୍ତାବରେ ଅନେକ କଂଗ୍ରେସ ନେତା ଓ କର୍ମୀ ବିସ୍ମିତ ହେଲେ। ଏ ସଂପର୍କରେ କବିଗୁରୁ ରବୀନ୍ଦ୍ରନାଥ ଗାନ୍ଧିଜୀଙ୍କୁ ଯେଉଁ ଚିଠି ଦେଇଥିଲେ, ତାହାର ଉତ୍ତରରେ ସେ ଲେଖିଲେ "ଦିନରାତି ଭୟଙ୍କର ଭାବରେ ମୁଁ ଚିନ୍ତା କରୁଛି। ମାତ୍ର ଅନ୍ଧାର ଭିତରୁ କୌଣସି ଆଲୋକ ଆସିବା ଦେଖି ପାରୁନାହିଁ।"

ଜାନୁଆରୀ ୩୦ରୁ ମାର୍ଚ୍ଚ ୧୨ଯାଏ ଦେଶସାରା ଉତ୍କଣ୍ଠାର ବାତାବରଣ। ୧୯୩୦ମାର୍ଚ୍ଚ ୬ ତାରିଖରେ ଗାନ୍ଧିଜୀ ଭାଇସରାୟଙ୍କୁ ତାଙ୍କ ୧୧ ଦଫା ଦାବୀ ସନନ୍ଦ ପଠାଇଲେ। ମାତ୍ର ଇରଉଇନଙ୍କ ଠାରୁ କୌଣସି ଜବାବ ମିଳିଲା ନାହିଁ।

**ଲବଣ ସତ୍ୟାଗ୍ରହ – ଦାଣ୍ଡିଯାତ୍ରା:**

ସାଲିସର ପ୍ରସ୍ତାବ ବସ୍ତୁତଃ ପ୍ରତ୍ୟାଖ୍ୟାତ ହୋଇଗଲା। ପ୍ରଥମେ ଗାନ୍ଧିଜୀ ଆଇନ ଅମାନ୍ୟର ନେତୃତ୍ୱ ନେଇ ସଂଗ୍ରାମର ଶୁଭାରଂଭ କରିବା ନିଷ୍ପତ୍ତି ନିଆଗଲା। ବ୍ରିଟିଶ ଗୋଲାମ, ଭାରତବାସୀ ତାଙ୍କ ନିଜ ସାଗର ଜଳରୁ ପ୍ରତିଟି କୁଟୀର, ପ୍ରାସାଦରେ ଆବଶ୍ୟକ ଲୁଣ ମାରିପାରିବେ ନାହିଁ। ବିଲାତର କାର୍ଡିଫରୁ ଲୁଣ ଆସିବ। ଭାରତବାସୀ ତାହା କିଣିବେ। ଏହାହିଁ ଥିଲା ଆଇନ।

ଆଇନ ଅମାନ୍ୟ କରି ଭାରତବାସୀ ଆଗ ନିଜ ଦରିଆ ଦଖଲ ଆରଂଭ କରିବେ। ସ୍ୱୟଂ ଗାନ୍ଧିଜୀ ତାହାର ନେତୃତ୍ୱ ନେବେ। ୧୯୩୦ ମାର୍ଚ୍ଚ ୧୨ତାରିଖରୁ ଗୁଜୁରାଟର ଅହମେଦାବାଦରେ ଅବସ୍ଥିତ ଗାନ୍ଧୀଙ୍କ ବିଖ୍ୟାତ ସାବରମତୀ ଆଶ୍ରମରୁ ୨୪୧ ମାଇଲ ପଥ ଅତିକ୍ରମ କରି ସମୁଦ୍ର ତଟ ଦାଣ୍ଡିରେ ପହଂଚିବାକୁ ହେବ। ଦିନକୁ ସର୍ବାଧିକ ୧୬ ମାଇଲ (ପ୍ରାୟ ୨୫ କିଲୋମିଟର) ଠାରୁ ଆରଂଭ କରି ଚାଲି ଚାଲି ଏପ୍ରିଲ ୬ ତାରିଖରେ ଦାଣ୍ଡିରେ ପହଂଚିବାକୁ କାର୍ଯ୍ୟକ୍ରମ ସ୍ଥିର ହୋଇଗଲା। ରହଣୀ ସ୍ଥାନମାନଙ୍କରେ ଶିବିର ସ୍ଥାପନ, ପ୍ରଚାର ଅଭିଯାନ ବିଦ୍ୟୁତ୍ ବେଗରେ ଚାଲିଲା।

ଗାନ୍ଧିଜୀ ଦାଣ୍ଡି ଯାତ୍ରାରେ ସଂଗରେ ନେବାପାଇଁ ୭୮ଜଣ ଆଇନ ଅମାନ୍ୟକାରୀଙ୍କୁ ବାଛିଲେ। ଦାଣ୍ଡିରେ ପହଂଚିବାକୁ ୨୫ଦିନ କାଳ ପଦଯାତ୍ରା ଚାଲିଲା। ଲମ୍ବା ବାଡି ଖଣ୍ଡିକୁ ଆଶ୍ରା କରି, ଆଣ୍ଠୁଲମ୍ବା ଖଦୀ ପିନ୍ଧି ଗାନ୍ଧିଜୀ ଆଗେ ଆଗେ ଚାଲିଥାନ୍ତି। ବାଟରେ ସହସ୍ର ସହସ୍ର ଜନତା ପଦଯାତ୍ରୀମାନଙ୍କୁ ସଂଖୋଳି ନେଉଥାନ୍ତି। ରହଣୀ ଶିବିରରେ ଖାଇବା ରହିବା ଠାରୁ ଯାବତୀୟ ସେବା କାର୍ଯ୍ୟ ଲୋକେ ନିଜ ହାତକୁ ନେଇଥାନ୍ତି। ବାଟରେ ନର୍ମଦା, କିମ ଓ ତପି ନଦୀକୁ ଡଙ୍ଗାରେ ପାରି ହେବାକୁ ପଡୁଥାଏ। ଦିନସାରା ଦଉଡ଼ାପ। ରାତିରେ ବିଶ୍ରାମ। ଏହି ୭୮ଜଣ

ଆଇନ ଅମାନ୍ୟକାରୀଙ୍କ ସହିତ ଗୋଟିଏ ଶିବିରରୁ ଅନ୍ୟ ଶିବିରକୁ ସହସ୍ର ସହସ୍ର ସ୍ୱେଚ୍ଛାସେବୀ ଆଇନ ଅମାନ୍ୟକାରୀ ଯୋଗ ଦିଅନ୍ତି ।

ଆରବସାଗର ତଟରେ ୧୯୩୦ ଏପ୍ରିଲ ୬ ତାରିଖରେ ସମୁଦ୍ର ସ୍ନାନ ସାରି ପ୍ରଥମେ ଗାନ୍ଧିଜୀ ମୁଠାଏ ଲବଣ ସଂଗ୍ରହ କଲେ । ବିଧିବଦ୍ଧ ଭାବରେ ଆଇନ ଅମାନ୍ୟ କରି ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଗଲା ।

ନିକଟସ୍ଥ ଧର୍ଷଣାଠାରେ ବ୍ରିଟିଶ ସରକାରର ଲୁଣ ଡିପୋ । ସେଠାରେ ଆଇନ ଅମାନ୍ୟ କରିବାକୁ ଗାନ୍ଧିଜୀ ଅଗ୍ରସର ହୁଅନ୍ତେ ତାଙ୍କୁ ଗିରଫ କରି ନିଆଗଲା । ତାଙ୍କୁ ଗିରଫ କରିବା ପରେ ଆବାସ ତୟାବଜୀଙ୍କୁ ଓ ଅନ୍ୟମାନଙ୍କୁ ଗିରଫ କରି ନିଆଗଲା ।

ଗାନ୍ଧିଜୀଙ୍କ ପଦଯାତ୍ରା କାଳରେ ଭାରତର ସୁମଧୁର କଣ୍ଠୀ ମହୀୟସୀ ନାରୀ ନେତ୍ରୀ ସରୋଜିନୀ ନାଇଡୁ ପଦଯାତ୍ରାରେ ଯୋଗ ଦେଇଥିଲେ । ତାଙ୍କୁ ଭାରତର ନାଇଟିଙ୍ଗେଲ କୁହାଯାଉଥିଲା । ୧୯୩୦ ମଇ ୨୧ ତାରିଖରେ ଧର୍ଷଣା ଲୁଣ ଡିପୋ ଆଗରେ ସେ ଆଇନ ଅମାନ୍ୟ କରିବେ ବୋଲି ସ୍ଥିର ହେଲା ।

**ଅହିଂସ ଆଇନ ଅମାନ୍ୟକାରୀଙ୍କ 'ରକ୍ତ' ଆବଶ୍ୟକ:**

ହିଂସ୍ର ସରକାର ଆହୁରି ଅଧିକ ହିଂସ୍ର ଆକ୍ରମଣ ଲାଗି ପ୍ରସ୍ତୁତି ଚଳାଇଲା । ଧର୍ଷଣାରେ ପହଂଚିଲା ପଥକୁ ଚାରିପଟୁ ଅବରୋଧ କରିବା ପାଇଁ ଖାଲ ଖୋଳାଯାଇ ପାଣି ଭର୍ତ୍ତି କରାଗଲା । ଚାରି ଶହ ସୁରାଟ ପୁଲିସକୁ ମୁତଏନ କରି ଅବରୋଧ ସୃଷ୍ଟି କରାଗଲା । ଗୁଳି ଚଳାଇବାକୁ ୨୫ଜଣ ଗୋରା ରାଇଫଲଧାରୀଙ୍କୁ ନିଯୋଗ କରାଗଲା ।

ସରୋଜିନୀ ନାଇଡୁ ଆଇନ ଅମାନ୍ୟ କରିବାକୁ ଯିବା ଆଗରୁ ସହକର୍ମୀମାନଙ୍କୁ ଅହିଂସ ରହିବେ, ମାଡ ହେଲେବି ହାତ ଉଠାଇ ନିଜକୁ ରକ୍ଷା କରିବାକୁ ଚେଷ୍ଟା କରିବେ ନାହିଁ ବୋଲି ନିର୍ଦ୍ଦେଶ ଦେଇଥାନ୍ତି ।

ସଂଗେସଂଗେ ହୁକୁମ ହେଲା, ୫ଜଣରୁ ଅଧିକ କେହି ଏକାଠି ରହିପାରିବେ ନାହିଁ । ମାତ୍ର ଏପରି ସତର୍କବାଣୀକୁ ନ ଶୁଣି ସରୋଜିନୀ ନାଇଡୁଙ୍କ ନେତୃତ୍ୱରେ ଆଇନ ଅମାନ୍ୟକାରୀମାନେ ଆଗେଇ ଚାଲିଲେ । ସରୋଜିନୀଙ୍କୁ ଗିରଫ କରି ନିଆଗଲା । ଚାଲିଲା ମଣିଷ ମୁଣ୍ଡ ମାଳ ଉପରେ ନିର୍ଘାତ୍ ଲାଠି ମାଡ । ଦୁଇ ତିନି ମିନିଟ ମଧ୍ୟରେ ଆହତ ଆଇନ ଅମାନ୍ୟକାରୀମାନେ ଅଚେତ ହୋଇ ମାଟିରେ ପଡିଯାଇଥାନ୍ତି । ମୁଣ୍ଡଗୁଡାକ ଫାଟିଯାଇଛି । ରକ୍ତଧାର ଛୁଟିଛି । ଗୁରୁତର ଭାବରେ ଆହତ ୧୮ଜଣଙ୍କୁ ପ୍ରଥମେ ଷ୍ଟ୍ରେଚରରେ ବୁହାଗଲା । ଆଉ ୪୨ଜଣ ଗୁରୁତର ଆଘାତ ପାଇଥିବା ବ୍ୟକ୍ତି ତଳେ ଲୋଟୁଥାନ୍ତି । ଏପରି ମର୍ମଭେଦୀ ଦୃଶ୍ୟ ଦେଖି ଜନତା ଅସମ୍ଭାଳ ହୋଇ ଉଠୁଥାନ୍ତି । ବିପୁଳ ଜନତାର ଧୈର୍ଯ୍ୟଚ୍ୟୁତି ଘଟିଲା । କ୍ରୋଧ ଓ ପ୍ରତିଶୋଧର ବହ୍ନି ପ୍ରଖରିତ ହେଲା । ସରୋଜିନୀ ନାଇଡୁଙ୍କ ଉପଦେଶ ନମାନି ସେମାନେ

ପୁଲିସ୍ ଘେର ଭାଂଗି ଆଗେଇ ଚାଲିଲେ। ପାଖରେ ଗୋଟିଏ ଉଚ୍ଚ ମୁଣ୍ଡିଆ। ଗୋରା ରାଇଫଲଧାରୀମାନେ ସେହି ଉଚ୍ଚ ସ୍ଥାନକୁ ଉଠି ଅବାରିତ ଗୁଳି ବର୍ଷଣ କଲେ। ୩୨୦ଜଣ ଗୁଳି ଖାଇ ଆହତ ହେଲେ। ଦୁଇଜଣଙ୍କର ସଂଗେସଂଗେ ମୃତ୍ୟୁ ଘଟିଲା। ୧୧୩ଡିଗ୍ରୀ ଫେରେନହିଟ୍‌ର ଉତ୍ତାପ। ଦେହ ଜଳିଯାଉଛି। ଶୋଷରେ ତଣ୍ଟି ଶୁଖିଯାଉଛି। ରକ୍ତର ତାଣ୍ଡବ। ତଥାପି ଜନସମୁଦ୍ର ହଟିଯାଉନି। ଏହାହିଁ ଇତିହାସପ୍ରସିଦ୍ଧ ଦାଣ୍ଡିଯାତ୍ରାର ବୀରତ୍ୱପୂର୍ଣ୍ଣ କାହାଣୀ।

ଦାଣ୍ଡିଯାତ୍ରା କାଳରେ ପରବର୍ତ୍ତୀ କର୍ମସୂଚୀ କ'ଣ ହେବ, ତାହାକୁ ଗାନ୍ଧିଜୀ ୟଙ୍ଗ ଇଣ୍ଡିଆ ପତ୍ରିକାରେ ପ୍ରକାଶ କରିଥିଲେ।

ମହିଳାମାନଙ୍କୁ ଘରକୋଣ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗଦେବାକୁ ସେ ଆହ୍ୱାନ ଦେଇ ଘରେ ଘରେ ସୂତା କାଟିବାକୁ ପରାମର୍ଶ ଦେଇଥାନ୍ତି। ଦେଶବାସୀ ଯୁବକ, ବୁଦ୍ଧିଜୀବୀମାନଙ୍କୁ ବିଦେଶୀ ଦ୍ରବ୍ୟ ବର୍ଜନ କର, ବିଦେଶୀ ବସ୍ତ୍ର ଓ ଅନ୍ୟାନ୍ୟ ପଦାର୍ଥ ବିକ୍ରୟ କରୁଥିବା ବିପଣୀ ଆଗରେ ଓ ସରକାରୀ ଦପ୍ତର ସମ୍ମୁଖରେ ପିକେଟିଂ କର, ସରକାର ବସାଇଥିବା ମଦ, ଗଂଜେଇ ଅଫିମ ଦୋକାନ ଆଗରେ ପିକେଟିଂ କର, ଏହାହିଁ ଥିଲା ତାଙ୍କର ନିର୍ଦ୍ଦେଶ।

ହିମାଳୟଠାରୁ କୁମାରୀକାଯାଏ ଆଇନ ଅମାନ୍ୟର ଓ ପିକେଟିଂର ସ୍ରୋତ ଛୁଟିଲା। ସେତେବେଳେ କେବଳ ଦିଲ୍ଲୀରେ ୧୬୦୦ ମହିଳାଙ୍କୁ ଏଥିଲାଗି ଗିରଫ କରାଗଲା।

ଆଇନ ଅମାନ୍ୟ କରିବାକୁ ଚାରିଆଡ଼େ ସ୍କୁଲ, କଲେଜର ଛାତ୍ର ଖାଲି କ୍ଲାସ୍ ବର୍ଜନ କଲେ ନାହିଁ; ଅନେକ ଛାତ୍ର ଚିରଦିନ ପାଇଁ ପାଠରେ ଡୋରି ବାନ୍ଧି ପିକେଟିଂ କରିବାକୁ ଡେଇଁ ପଡିଲେ। ଶିକ୍ଷକମାନଙ୍କ ବାରଣ ମାନିଲେ ନାହିଁ। ବାପାମାଙ୍କ ଅଳିକୁ ଚାହିଁଲେ ନାହିଁ। ସାରା ଭାରତରେ ଆଇନ ଅମାନ୍ୟ ଆନ୍ଦୋଳନର ପ୍ରସାର ଓ ଲାଠି, ବେତ ମାଡ, ଗୁଳିକାଣ୍ଡର ବର୍ଣ୍ଣନା ଦୀର୍ଘ ହେବ। କେତୋଟି ଗୁରୁତ୍ୱପୂର୍ଣ୍ଣ ଘଟଣାର ଉଲ୍ଲେଖ ଅତ୍ୟାବଶ୍ୟକ। ବମ୍ବେରେ ଭେଣ୍ଡିବଜାର ଏବଂ ଓ୍ୟାଦେଲାଠାରେ ବିକ୍ଷୋଭକାରୀଙ୍କ ଉପରେ ପୁଲିସ ପକ୍ଷରୁ ପ୍ରବଳ ଆକ୍ରମଣ ହୋଇଥିଲା। କଲିକତା ଜ୍ୱାଳାମୁଖୀ ହୋଇ ଉଠିଲା। ଉତ୍ତର ପ୍ରଦେଶ, ମାନ୍ଦ୍ରାଜ, କର୍ଣ୍ଣାଟକରେ ତଥା ଅନ୍ୟତ୍ର କେବଳ ପିକେଟିଂରେ ଆନ୍ଦୋଳନ ସୀମିତ ରହିଲା ନାହିଁ। ଉତ୍ତର ପ୍ରଦେଶର ବ୍ୟାପକ ଅଂଚଳରେ ଚାଷୀମାନେ ଜବାହାରଲାଲଙ୍କ ନେତୃତ୍ୱରେ ଟିକସ ବନ୍ଦ ଆନ୍ଦୋଳନ ଆରଂଭ କରିଦେଲେ। କେନ୍ଦ୍ର ପ୍ରଦେଶରେ ହଜାର ହଜାର ଆଦିବାସୀ ଜଙ୍ଗଲ ଆଇନ ଭଂଗ କଲେ। କର୍ଣ୍ଣାଟକରେ ବ୍ୟାପକ ଭାବରେ ଟିକସ ବନ୍ଦ ଆନ୍ଦୋଳନ ଚାଲିଲା।

ମହାରାଷ୍ଟ୍ରର ସୋଲାପୁରରେ ସ୍ଥାନୀୟ କଂଗ୍ରେସ କମିଟି ଏକ "ସମର ପରିଷଦ" ଗଠନ କଲା। ସାରା ପ୍ରଦେଶରେ ଜାତୀୟ ପତାକା ଗାଁ ଗାଁରେ, ସହର, ଶିଳ୍ପାଞ୍ଚଳରେ ଉତ୍ତୋଳନ କରାଗଲା। ୧୯୩୦ ମଇମାସ ୭ରେ ହିନ୍ଦୁ ମୁସଲମାନ ଜନତା, କପଡାକଳ ଶ୍ରମିକ ବ୍ୟାପକ ଧର୍ମଘଟ କରି ୩ଦିନ କାଳ ସୋଲାପୁରକୁ ସ୍ୱାଧୀନ କରି ରଖିଲେ। ମଇ ୧୨ ତାରିଖରେ

ସାମରିକ ଆଇନ ଜାରି କରାଗଲା । ୨ହଜାର ବ୍ରିଟିଶ ସୈନ୍ୟଙ୍କୁ ମୁତଏନ କରାଗଲା । ବିକ୍ଷୁବ୍ଧ ଜନତା ଉପରେ ଗୁଳି କରି ୫୦ ଜଣଙ୍କୁ ହତ୍ୟା କରାଗଲା, (୩୨ବର୍ଷ ବୟସ୍କ ମାଲପା ଧନଶେଠୀ, ୨୦ ବର୍ଷ ବୟସ୍କ ଅବଦୁଲ ରସିଦ, ୨୪ ବର୍ଷ ବୟସ୍କ ଜଗନ୍ନାଥ ସିନ୍ଧେ, ୨୭ବର୍ଷ ବୟସ୍କ ଶ୍ରୀକୃଷ୍ଣ ସାରସଙ୍କୁ ଫାଶି ଦିଆଗଲା ।

ମାନ୍ଦ୍ରାଜରେ ଏକ ଅଭିନବ ଧରଣର ଦମନ ନୀତି ପ୍ରୟୋଗ କରାଗଲା । ପିକେଟିଂ କରୁଥିବା ଓ ଟିସକ ବନ୍ଦ କରୁଥିବା ଲୋକମାନଙ୍କୁ ଧରିନେଇ ବହୁ ଦୂରଦୂରାନ୍ତ ଜଙ୍ଗଲିଆ ସ୍ଥାନରେ ରାତି ଅଧରେ ଛାଡି ଦିଆଯାଉଥିଲା । ପାଖରେ ଫେରିବାକୁ ପଇସା ନାହିଁକି, ଖାଇବାକୁ ହାତରେ କାଣି କଉଡି ନାହିଁ । ଘରକୁ ଫେରିବା ବାଟରେ ଭୋକ ଉପାସରେ ଆଇନ ଅମାନ୍ୟକାରୀମାନେ ବେହୋସ ହେଉଥାନ୍ତି । ବଂଗଳାର ମେଦିନୀପୁର, ଦୁର୍ଗାପୁର ଅଂଚଳରେ ମହିଳା ଆନ୍ଦୋଳନକାରୀଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚାଲିଲା । ପୂର୍ବରୁ ଆନ୍ଦୋଳନରେ କେବଳ ମୁଷ୍ଟିମେୟ ମହିଳା, ମୁକ୍ତିଯୋଦ୍ଧାଙ୍କ ପତ୍ନୀ, ଭଗିନୀ, ଆତ୍ମୀୟା ଯୋଗ ଦେଉଥିଲେ । ମାତ୍ର ୧୯୩୦ ଆନ୍ଦୋଳନ କାଳରେ ଗାଁଗଣ୍ଡାର ମହିଳାମାନେ ମଧ୍ୟ ଘରକୋଣ ଛାଡି ବହୁ ସଂଖ୍ୟାରେ ସଂଗ୍ରାମ ଭିତରକୁ ପ୍ରବେଶ କଲେ । ବ୍ରିଟିଶ ଦମନରେ ଉତ୍‌କ୍ଷିପ୍ତ ଯୁବକମାନେ ଅହିଂସ ଆନ୍ଦୋଳନରେ ସୀମିତ ରହିଲେ ନାହିଁ । ଆଗରୁ ଦ୍ୱିତୀୟ ପର୍ଯ୍ୟାୟ ବୈପ୍ଲବିକ ସଂତ୍ରାସବାଦର କେତେକ ଚମକପ୍ରଦ ଘଟଣା ଉଲ୍ଲେଖ କରାଯାଇଛି । ବଂଗଳାର ଢାକାରେ ୧୯୩୦ ଅଗଷ୍ଟରେ ଆଉ ଏକ ଦେଶପ୍ରେମୀ ବୀରତ୍ୱର ନିଦର୍ଶନ ମିଳିଲା । ଢାକା ହାସପାତାଳ ସ୍କୁଲର ଛାତ୍ର ବିନୟ ବୋଷ ଜଣେ ପୁଲିସ ହାକିମକୁ ହତ୍ୟା କରି ଖସିଯାଇଥିଲେ । ସେ ଆଉ ଦୁଇଜଣ ସାଥୀ ଦୀନେଶ ଓ ବାଦଲଙ୍କୁ ସଂଗରେ ଧରି ବଂଗଳାର ସରକାରୀ ମୁଖ୍ୟ ଦପ୍ତର ରାଇଟରର୍ସ ହର୍ମ୍ୟରେ ସେ ବର୍ଷ ଡିସେମ୍ବରରେ ପ୍ରବେଶ କରି ଇନ୍‌ସପେକ୍ଟର ଜେନେରାଲଙ୍କୁ ହତ୍ୟା କରିଦେଲେ । ଶତ୍ରୁ ହାତରେ ପଡିବା ପୂର୍ବରୁ ବାଦଲ ବିଷ ଖାଇ ପ୍ରାଣଦେଲେ । ବିନୟ ଓ ଦୀନେଶ ନିଜକୁ ନିଜେ ଗୁଳି କଲେ । ଦୀନେଶ ମୃତ୍ୟୁବରଣ କଲେ । ମାତ୍ର ବାଦଲ ଆହତ ହୋଇ ଧରାହେଲେ । ତାଙ୍କୁ ପରେ ଫାଶି ଦିଆଗଲା ।

**ସୀମାନ୍ତଗାନ୍ଧୀ ଓ ପେଶବାର ଅଭ୍ୟୁତ୍ଥାନ:**

ଆଇନ ଅମାନ୍ୟ ଆନ୍ଦୋଳନ ସୀମାନ୍ତ ପ୍ରଦେଶରେ ଖାଁ ଅବଦୁଲ ଗଫୁରଖାଁଙ୍କ ନେତୃତ୍ୱରେ ଉକ୍ତ ପ୍ରଦେଶରେ ବାସ କରୁଥିବା ବହୁ ଉପଜାତିଙ୍କ ଆନ୍ଦୋଳନ ଚାଲିଥିଲା । ପେଶାବାର ନିକଟ ଉତମାଲଗାଁର ମୁଖିଆ, ଖାଁ ଅବଦୁଲ ଗଫୁରଖାଁ ସାରା ଭାରତରେ ସ୍ୱାଧୀନତା ସଂଗ୍ରାମର ମହାନ୍ ରଥୀ ହୋଇ ସୀମାନ୍ତ ଗାନ୍ଧୀ ରୂପରେ ବିଦିତ ହେଲେ । ବ୍ରିଟିଶ ଅତ୍ୟାଚାରକୁ ଏଡିବା ପାଇଁ ସହସ୍ର ସହସ୍ର ମୁସଲମାନ ଦେଶରୁ ପଳାଇ ଯାଇ ସୋଭିଏତ୍ ଋଷିଆ ଆଡ଼େ ମୁହାଁଇବା କଥା ଉଲ୍ଲେଖ କରାଯାଇଛି । ଏମାନଙ୍କୁ ହିଜରତୀ କୁହାଯାଉଥିଲା । ଆଫଗାନିସ୍ତାନର ଜନତା ମଧ୍ୟ ବ୍ରିଟିଶ

ଆଧିପତ୍ୟ ବିରୁଦ୍ଧରେ ଆନ୍ଦୋଳନ କରୁଥିଲେ । ଏଥିପାଇଁ ବ୍ରିଟିଶ ଆଫଗାନ ଯୁଦ୍ଧ ହୋଇଥିଲା । ହିଜରତୀ ଏବଂ ଆଫଗାନବାସୀଙ୍କୁ ସାହାଯ୍ୟ କରିଥିବାରୁ ଗଫୁର ଖାଁଙ୍କୁ ନିର୍ବାସିତ କରାଯାଇଥିଲା । ୧୯୨୯ରେ ଦଶ ବର୍ଷପରେ ନିର୍ବାସନରୁ ଫେରି ସେ ଗାନ୍ଧୀ ପ୍ରଦର୍ଶିତ ଅହିଂସା ମାର୍ଗରେ ଖୁଦାୟିଖିଦମତଗାର (ଭଗବାନଙ୍କ ସେବକ) ନାମକ ସଂଗଠନ ଗଢିଲେ । ଏହି ସଂଗଠନର ସ୍ୱେଚ୍ଛାସେବକ ବାହିନୀକୁ **ଲାଲକୁର୍ତ୍ତା** ସେବାଦଳ ନାମରେ ନାମିତ କରାଗଲା । ୧୯୩୦ ବେଳକୁ ଲାଲକୁର୍ତ୍ତା ବାହିନୀରେ ୮୦ହଜାର ସ୍ୱେଚ୍ଛାସେବୀ ଦେଶର ମୁକ୍ତି ସଂଗ୍ରାମରେ ଭାଗ ନେବାକୁ ଶପଥ ନେଲେ ।

ସେଦିନ ୧୯୩୦ ଏପ୍ରିଲ ୨୦ ତାରିଖ । ଆଇନ ଅମାନ୍ୟର ଡାକରା ଦେଇଛନ୍ତି ଗଫୁରଖାଁ । ସେଦିନ ମଧ୍ୟ ଇଦପର୍ବ । ଇଦପର୍ବ ପାଳନ ଲାଗି ବହୁ ସଂଖ୍ୟାରେ ଶ୍ରଦ୍ଧାଳୁ ରୁଣ୍ଡ ହୋଇଛନ୍ତି । ଦୂରଦୂରାନ୍ତରେ କାମ କରି ଘରକୁ ଫେରୁଥିବା ଅସଂଖ୍ୟ ଆଦିମଜାତିର ଲୋକେ ସେହି ସମାବେଶରେ ଯୋଗ ଦେଇଥାନ୍ତି । ଇଦ ପର୍ବ ପାଳନ ପରେ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହୋଇଗଲା । ବ୍ରିଟିଶ ସୈନ୍ୟ ଝାମ୍ପି ପଡିଲେ । ଗିରଫଦାରୀ ଚାଲିଲା । ସମବେତ ମୁସଲମାନ ଚାଷୀ, ଆଦିମ ଅଧିବାସୀ ତାହାର ପ୍ରତିରୋଧ ଆରମ୍ଭ କରିଦେଲେ । ପୁଲିସ ଓ ସୈନ୍ୟ ମାଡି ଆସୁଥିବା ବାଟରେ ଓଗଳ ବା ବାରିକେଡ ବସେଇ ଦେଲେ ।

ବ୍ରିଟିଶ ସେନାଧ୍ୟକ୍ଷ ଉତ୍‌କ୍ଷିପ୍ତ ହୋଇ ସଂଗେ ସଂଗେ ଗୁଳି ଚଳାଇବାକୁ ଆଦେଶ ଦେଲେ । ସମୀପରେ ଆଇନ ଅମାନ୍ୟକାରୀ ମୁସଲିମ ଜନତା । ଚନ୍ଦରସିଂହ ଘରୱାଲି ଜଣେ ହିନ୍ଦୁ ରାଇଫଲମ୍ୟାନ । ମୁସଲମାନ ଭାଇମାନଙ୍କୁ ରକ୍ଷା କରିବା ଲାଗି ସେ ଅନ୍ୟାନ୍ୟ ରାଇଫଲଧାରୀଙ୍କୁ ଗୁଳି ନ ଚଳାଇବାକୁ ଆହ୍ୱାନ ଦେଲେ । ଆଉ ଗୁଳି ଫୁଟିଲା ନାହିଁ । ଘରୱାଲି ରାଇଫଲମେନ ସମସ୍ତେ ହିନ୍ଦୁ । ବ୍ରିଟିଶ ସେନାଧ୍ୟକ୍ଷଙ୍କ ହିନ୍ଦୁ ମୁସଲମାନ ମଧ୍ୟରେ ଭାଗ ଭାଗ କରିବାର କୌଶଳ ପରାସ୍ତ ହେଲା । ଘରୱାଲି ପୁଲିସ ବାହିନୀକୁ ବ୍ରିଟିଶ ଗୋରା ପୁଲିସ ଘେରିଗଲେ । ସେମାନଙ୍କୁ ଗିରଫ କରାଗଲା । କେତେ ଜଣଙ୍କୁ ଫାଶି ଦିଆଗଲା । ଚନ୍ଦରସିଂହ ଘରୱାଲି ସେଥିରୁ ଖସିଗଲେ । ପରେ ସେ ସକ୍ରିୟ ରାଜନୀତିରେ ଯୋଗଦେଇ କମ୍ୟୁନିଷ୍ଟ ମତବାଦ ଗ୍ରହଣ କଲେ ।

ଆଇନ ଅମାନ୍ୟ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହକୁ ଦମନ କରିବା ଲାଗି ବ୍ରିଟିଶ ସରକାର ଆହୁରି ଅନେକ ଦମନମୂଳକ ଅଧ୍ୟାଦେଶ ଜାରି କଲା । ଜାତୀୟତାବାଦୀସୀ ସଂବାଦପତ୍ରଗୁଡିକ ଉପରେ ଅତ୍ୟଧିକ ଅମାନତ୍ ଟଙ୍କା ଲାଗୁ କରାଗଲା । କଂଗ୍ରେସ ସଂଗଠନଗୁଡିକୁ ବେଆଇନ କରାଗଲା । ବିଭିନ୍ନ ସ୍ଥାନରେ ଆନ୍ଦୋଳନକାରୀଙ୍କ ସଂପତ୍ତି ବାଜ୍ୟାପ୍ତ କରାଗଲା । ଟିକସ ବନ୍ଦ କରୁଥିବା ଚାଷୀମାନଙ୍କ ଘର କ୍ରୋକ କରାଗଲା । କେବଳ କର୍ଣ୍ଣାଟକରେ ୩୨୦ଟି ଚାଷୀ ପରିବାରର ସମସ୍ତ ସଂପତ୍ତି ବାଜ୍ୟାପ୍ତ କରି ସେମାନଙ୍କୁ ଦାଣ୍ଡର ଭିକାରୀ କରି ଦିଆଗଲା । ଏପରି ଦୃଷ୍ଟାନ୍ତର ସୀମା ନାହିଁ ।

ଆଇନ ଅମାନ୍ୟକାରୀ, ଲବଣ ସତ୍ୟାଗ୍ରହୀ, ବିଦେଶୀ ଲୁଗା ଦୋକାନ, ଗଂଜେଇ, ଅଫିମ ଦୋକାନରେ ଦଳକୁ ଦଳ ହୋଇ ପିକେଟିଂ କରୁଥିବା ଛାତ୍ର, ଯୁବକ, ସତ୍ୟାଗ୍ରହୀ ସେ ସମୟରେ କଂଗ୍ରେସ ଅଫିସ ଓ କଂଗ୍ରେସ ଆଶ୍ରମଗୁଡ଼ିକରେ ଆଶ୍ରା ନିଅନ୍ତି । ଗାନ୍ଧିଜୀଙ୍କ ସାବରମତୀ ଆଶ୍ରମ ପରି ଦେଶବ୍ୟାପୀ ଏପରି ଆଶ୍ରମମାନ ଗଢ଼ି ଉଠିଥିଲା । ଏହ୍ଲାବାଦରେ ମୋତିଲାଲଙ୍କ ଦ୍ୱାରା ପ୍ରଦତ୍ତ ବିଶାଳ ପ୍ରସାଦ ସ୍ୱରାଜ ଭବନ, ବିହାରର ସଦାକତ୍ ଆଶ୍ରମ ଓ ଓଡିଶାର କଟକ ସାହେବଜାଦା ବଜାରସ୍ଥିତ ସ୍ୱରାଜ ଆଶ୍ରମ ପରି ଦେଶବ୍ୟାପୀ ଅସଂଖ୍ୟ ଆଶ୍ରମ ଘରେ ତାଲା ପକେଇ ଦିଆଗଲା । ସେଠାରେ ପହଂଚି ପିକେଟିଂକାରୀମାୀମାଙ୍କୁ କଟକ ସ୍ୱରାଜ୍ୟଶ୍ରମ ଭଳି କୋଠା ଉପରୁ ଫିଙ୍ଗି ପିଟା ଚାଲିଲା ।

ଭାରତର ଅନ୍ୟତ୍ର ଭଳି ଓଡିଶାରେ ବିଭିନ୍ନ ସ୍ଥାନରେ ଆଶ୍ରମମାନ ଗଢ଼ି ଉଠିଥିଲା । ସତ୍ୟବାଦୀ ଆଶ୍ରମ ପରେ, ଜଗତ୍‌ସିଂହପୁରଠାରେ ବିଖ୍ୟାତ ଅଳକାଶ୍ରମ, ବ୍ରହ୍ମପୁରରେ ଉତ୍କଳ ଆଶ୍ରମ, ଅଗରପଡାରେ କର୍ମମନ୍ଦିର, ବାଲେଶ୍ୱରରେ ସ୍ୱରାଜ୍ୟାଶ୍ରମ, ଡେଲାଙ୍ଗର ବେରବୋଇ ଆଶ୍ରମ, କାଦୁଆ ଆଶ୍ରମ, ବୋଲଗଡ ଆଶ୍ରମ, ଚମ୍ପାପୁର ଆଶ୍ରମ ପରି ଆଶ୍ରମ ମାନ ଗଢ଼ିଉଠିଥିଲା । ଏହା ପରେ ପରେ ବରୀ ଆଶ୍ରମ, ସୋରୋ ଆଶ୍ରମ ପଦ୍ମପୁରରେ ପାର୍ବତୀଗିରିଙ୍କ ଆଶ୍ରମ ଓ ଅନୁଗୁଳରେ ବାଜି ରାଉତ ଛାତ୍ରାବାସ, ଗଂଜାମରେ ନିମଖଣ୍ଡି ଆଶ୍ରମମାନ ପ୍ରତିଷ୍ଠିତ ହୋଇଥିଲା ।

**ଲବଣ ସତ୍ୟାଗ୍ରହ ଏବଂ ଓଡିଶା:**

୧୯୩୦-୩୨ ଆଇନ ଅମାନ୍ୟ ଆନ୍ଦୋଳନବେଳେ କଟକଠାରୁ ଆରଂଭ କରି ବିଭିନ୍ନ ସହରରେ ବିଦେଶୀ ବର୍ଜନର ଡାକରାରେ ଦଳକୁଦଳ କିଶୋର, ଯୁବକ ବାନରସେନା ହୋଇ ବାହାରିଲେ । କଟକରେ ପ୍ରତ୍ୟେକ ଦିନ ସ୍ୱରାଜ୍ୟାଶ୍ରମରୁ ଦଳକୁଦଳ ବାନରସେନା ପିକେଟିଂ କରିବାକୁ ଯାଆନ୍ତି । କାହାକୁ ଦଶ ବେତ୍, କାହାକୁ ୧୫ବେତ ମାଡ ହୁକୁମ ହୁଏ । ନିର୍ଭୟରେ ହାତ ଦେଖାନ୍ତି । ହାତ ପାପୁଲି ଫାଟିଯାଏ । ରକ୍ତ ଧାର ଛୁଟେ । ସେମାନଙ୍କୁ ସହାନୁଭୂତିଶୀଳ ଡାକ୍ତରମାନେ ଚିକିତ୍ସା କରନ୍ତି । ରମାଦେବୀ ମାଳତୀ ଦେବୀ ପରି ମହିଳା ସତ୍ୟାଗ୍ରହୀମାନେ ସେମାନଙ୍କୁ ଖୁଆଇ ପିଆଇ ଦିଅନ୍ତି । ପୁଣି ତହିଁ ପରଦିନ ସେମାନେ ପିକେଟିଂ କରିବାକୁ ଦୌଡନ୍ତି । ସାରା ଭାରତରେ ଏହି ଚିତ୍ର । ଓଡିଶାର ବିଭିନ୍ନ ସ୍ଥାନରେ ଏପରି ପିକେଟିଂ ଚାଲିଥିଲା ।

ଦାଣ୍ଡି ଓ ଧର୍ଷଣା ଲବଣ ସତ୍ୟାଗ୍ରହ ଯେପରି ସାରା ଭାରତରେ ଚହଳ ସୃଷ୍ଟି କରିଥିଲା । ସେହିପରି ଓଡିଶାର ଇଞ୍ଚୁଡି ଲବଣ ସତ୍ୟାଗ୍ରହ ଓ ତା ପରବର୍ତ୍ତୀ ସତ୍ୟାଗ୍ରହଗୁଡ଼ିକ ସମଗ୍ର ଭାରତରେ ସ୍ୱାଧୀନତା ସଂଗ୍ରାମର ଇତିହାସରେ ବିଶେଷ ସ୍ଥାନର ଅଧିକାରୀ ।

ଓଡିଶାରେ ଲବଣ ସତ୍ୟାଗ୍ରହର ପ୍ରସ୍ତୁତି ପାଇଁ ବାଲେଶ୍ୱରଠାରେ ୧୯୩୦ ମାର୍ଚ୍ଚ ୧୫ରେ ପ୍ରାଦେଶିକ କମିଟିର ବୈଠକ ବସିଲା । ଲବଣ ସତ୍ୟାଗ୍ରହ ବାଲେଶ୍ୱରର ଇଞ୍ଚୁଡିଠାରେ ଆରଂବ ହେବ ଓ ପ୍ରଥମେ ଗୋପବଂଧୁ ଚୌଧୁରୀଙ୍କ ନେତୃତ୍ୱରେ ଲବଣ ଆଇନ ଭଂଗ

କରାଯିବାର ନିଷ୍ପତ୍ତି ନିଆଗଲା । ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ବାଲେଶ୍ୱର ଜିଲ୍ଲା ବ୍ୟାପୀ ପ୍ରସ୍ତୁତି କାର୍ଯ୍ୟରେ ସୁରେନ୍ଦ୍ର ଦାସ, ନୀଳାମ୍ବର ଦାସ, ମହମ୍ମଦ ହନିଫ, କରୁଣାକର ପାଣିଗ୍ରାହୀ ପ୍ରମୁଖ ଅଗ୍ର ଭାଗରେ ଥିଲେ ।

ଲବଣ ସତ୍ୟାଗ୍ରହର ଘୋଷଣା କରିବାକୁ କଟକର ପୁରୀଘାଟଠାରେ ମାର୍ଚ୍ଚ ୨୩ତାରିଖରେ ସଭା ହେଲା । ସଭାରେ ଭାଷଣ ଦେବାକୁ ଥିବା ଗୋବଫଂଧୁ ଚୌଧୁରୀ, ଅଟଳବିହାରୀ ଆଚାର୍ଯ୍ୟ, ଭାଗିରଥୀ ମହାପାତ୍ର, ପ୍ରାଣକୃଷ୍ଣ ପଡ଼ିଆରୀ, ନବକୃଷ୍ଣ ଚୌଧୁରୀ, ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜଙ୍କ ଉପରେ ନିଷେଧାଦେଶ ଜାରି କରାଗଲା । ତାହାକୁ ଅମାନ୍ୟ କରି ଗୋପବଂଧୁ ଚୌଧୁରୀ ଓ ପୂର୍ଣ୍ଣଚନ୍ଦ୍ର ବୋଷ ଭାଷଣ ଦେଲେ । ସଂବଲପୁରରେ ୧୭ ମାର୍ଚ୍ଚରେ ଭାଷଣ ଦେବା ଅପରାଧରେ ଲକ୍ଷ୍ମୀନାରାୟଣ ମିଶ୍ରଙ୍କୁ ଏକ ବର୍ଷ ସଜା ଦିଆଯାଇଥିଲା ।

୧୯୩୦ ଏପ୍ରିଲ ୬ । ଏହିଦିନ ଦାଣ୍ଡିରେ ଗାନ୍ଧୀ ଲବଣ ଆଇନ ଭଂଗ କରିବେ । ଠିକ୍ ସେହିଦିନ ମହାନଦୀ ପାର ହୋଇ ଗୋପବଂଧୁ ଚୌଧୁରୀଙ୍କ ନେତୃତ୍ୱରେ ଆଚାର୍ଯ୍ୟ ହରିହର ଦାସ, ଗୌରାଙ୍ଗ ଚରଣ ଦାସ, ବାଲେଶ୍ୱରର ଗୋଲକ ନାଥ ଦେ, ଗୋକୁଳାନନ୍ଦ ମହାନ୍ତି, ପୁରୀର ମୁରାରୀ ତ୍ରିପାଠୀ, ରଘୁନାଥ ମିଶ୍ର, ସଂବଲପୁରରୁ ନୃସିଂହ ଗୁରୁ, ଦୟାନନ୍ଦ ଶତପଥୀ ପ୍ରମୁଖ ୨୦ ଜଣ କେନ୍ଦ୍ରାପଡା ଦେଇ ବାଲେଶ୍ୱର ଅଭିମୁଖେ ଯାତ୍ରା କଲେ । ସହସ୍ରାଧିକ କଟକ ଜନତା ସେମାନଙ୍କୁ ସଂବର୍ଦ୍ଧନା ଦଳରେ ଥିଲେ ମଦନ ପଟ୍ଟନାୟକ, ଗତିକୃଷ୍ଣ ସ୍ୱାଇଁ, ଗଂଜାମର ଜଗନ୍ନାଥ ମିଶ୍ର ପ୍ରମୁଖ ।

ବାଟରେ ଗୋପବଂଧୁ ଚୌଧୁରୀଙ୍କୁ ୧୪୪ଭଂଗ ଅପରାଧରେ ଗିରଫ କରି ୭ଦିନ ଜେଲରେ ରଖାଗଲା ।

୧୯୩୦ ଏପ୍ରିଲ ୧୩ରେ ହଜାର ହଜାର ବାଲେଶ୍ୱରର ଚାଷୀ, ପୁରୁଷ ମହିଳାଙ୍କ ଗଗଦଭେଦୀ ଧ୍ୱନିରେ ଇଞ୍ଚୁଡି ପ୍ରକଂପିତ ହେଲା । ଆଚାର୍ଯ୍ୟ ହରିହର ପ୍ରଥମେ ଲୁଣ ମାରିବାପରେ ଖାଲି ଲବଣ ସତ୍ୟାଗ୍ରହୀମାନେ ନୁହଁ, ଶହ ଶହ ଚାଷୀ, ଗାଁର ଲୋକ ଲୁଣ ମାରିଲେ । ମରା ଲୁଣକୁ ହାଟ ବଜାରରେ ବିକ୍ରି କରାଗଲା । ଉତ୍ସାହରେ ଲୋକେ କିଣିଲେ । କଟକ, ପୁରୀ, ସଂବଲପୁର, ବାଲେଶ୍ୱରର ଅନେକ କର୍ମୀ ଗିରଫ ହେଲେ । ତନ୍ମଧ୍ୟରେ ଥିରେ ରବୀନ୍ଦ୍ର ମୋହନ ଦାସ, ଗୌରଚନ୍ଦ୍ର ଦାସ, ବୈଦ୍ୟନାଥ ରଥ, ବିଶ୍ୱନାଥ ହୋତା, ବୀରକିଶୋର ଦାସ ଓ ବାସୁଦେବପୁର ଅଂଚଳରୁ ନନ୍ଦ କିଶୋର ଦାସ, ନିତ୍ୟାନନ୍ଦ ମହାପାତ୍ର । ଲବଣ ସତ୍ୟାଗ୍ରହ ବ୍ୟାପିଗଲା । ଇଂଚୁଡି ପରେ ବାଲେଶ୍ୱର ଜିଲ୍ଲାର ବନ୍ଧଦା, ଇରମ, ଚୂଡାମଣି, ବିଦେଇପୁରର ଲୋକେ ସଂଗଠିତ ଭାବରେ ଲବଣ ଆଇନ ଭାଂଗିଲେ । ଲାଠିମାଡରେ ଶହ ଶହ ଆହତ ହେଉଥାନ୍ତି । ତଥାପି ଭୟ ନଥାଏ । ଜେଲରୁ ଖଲାସ୍ ହୋଇ ବାଲେଶ୍ୱର ପହଂଚିବା ମାତ୍ରେ ଗୋପବଂଧୁ ଚୌଧୁରୀ, ହରେକୃଷ୍ଣ ମହତାବଙ୍କୁ ଗିରଫ କରି ନିଆଗଲା । ବାଲେଶ୍ୱର ନିକଟ

ଶ୍ରୀଜଙ୍ଗର ଘର ଭୁଆଷୁଣୀମାନେ ଘରୁ ବାହାରି ଆସି ଲୁଣ ମାରି ଗିରଫ ହେବାର ଦେଖାଗଲା । ମହିଳାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚାଲିଲା । ଦମନରୁ ରକ୍ଷା ପାଇବା ଲାଗି ପୁରୁଷମାନେ ଗାଁ ଛାଡି ଚାଲିଯାଇଥିଲେ । ସମଗ୍ର ଇଂଚୁଡି ଅଂଚଳ ଦ୍ୱିତୀୟ ଦାଣ୍ଡି ଅଭିଯାନର ରୂପ ନେଲା । କେବଳ ବାଲେଶ୍ୱରରେ ଲବଣ ସତ୍ୟାଗ୍ରହ ସୀମିତ ନଥିଲା । କଟକର କୁଜଙ୍ଗ, ପୁରୀର ଅସ୍ତରଙ୍ଗର କୁହୁଡି, ଗଂଜାମର ରମ୍ଭା ପ୍ରଭୃତି ସ୍ଥାନରେ ଶହ ଶହ ସତ୍ୟାଗ୍ରହୀ ଲବଣ ଆଇନ ଭଂଗ କଲେ । ମାଳତୀ ଦେବୀ ଓ ରମାଦେବୀଙ୍କ ନେତୃତ୍ୱରେ କୁଜଂଗର ପାରାଦୀପ ବନ୍ଦର ବେଳାଭୂମିରେ ୨୯ ମୌଜାର କୈବର୍ତ୍ତ ପୁରୁଷ ନାରୀ ଲବଣ ଆଇନ ଲଙ୍ଘଂନ କଲେ । ସେମାନଙ୍କୁ ଜଗନ୍ନାଥ ଶତପଥୀ, ନାରାୟଣ ବୀରବର ସାମାନ୍ତ, ଦୁର୍ଯ୍ୟୋଧନ ପଟ୍ଟନାୟକ, ବାବାଜୀ ଭୀମଦାସ ସଂଗଠିତ କରିଥିଲେ । ସେଠାରେ ମଧ୍ୟ ବ୍ୟାପକ ଗିରଫଦାରୀ ଚାଲିଲା । ଅସ୍ତରଂଗଠାରେ ଜଗନ୍ନାଥ ରଥ, ପୂର୍ଣ୍ଣାନନ୍ଦ ସ୍ୱାଇଁ ପ୍ରମୁଖଙ୍କ ନେତୃତ୍ୱରେ ଶହ ଶହ କାକଟପୁରବାସୀ ଲବଣ ଆଇନ ଭଂଗରେ ଅଂଶଗ୍ରହଣ କରିଥିଲେ । ଗଂଜାମରେ ଲବଣ ଆଇନ ଅମାନ୍ୟ କରିବାରୁ ନିରଂଜନ ପଟ୍ଟନାୟକ, ବିଶ୍ୱନାଥ ଦାସ, ଶଶି ଭୂଷଣ ରଥ, ଦିବାକର ପଟ୍ଟନାୟକ ପ୍ରମୁଖଙ୍କୁ ମାନ୍ଦ୍ରାଜର ଭେଲୋର ଜେଲରେ ରଖାଗଲା । ଜାତୀୟ କବି ବୀରକିଶୋର ଦାସଙ୍କୁ ବିଦ୍ରୋହୀ କବିତା ଯୋଗୁଁ ୧ବର୍ଷ ଜେଲ୍ ହେଲା । ସରଳା ଦେବୀ, ମାଳତୀ ଦେବୀ, ରମାଦେବୀ, ଗୁଣମଣିଦେବୀ, ଅନ୍ନପୂର୍ଣ୍ଣା ଚୌଧୁରୀ ଏମିତି ଅନେକ ମହିଳାଙ୍କୁ ଜେଲରେ ଆବଦ୍ଧ କରାଗଲା । ଓଡିଶାର ଶହ ଶହ ଆଇନ ଅମାନ୍ୟକାରୀଙ୍କୁ ପାଟନାର କ୍ୟାମ୍ପ ଜେଲରେ ଠୁଙ୍କି ଦିଆଗଲା । ସେଠାରେ ଘୋଡ ସବାର ପୁଲିସଙ୍କ ଆକ୍ରମଣରେ ବହୁ ବିହାରୀ ଓଡିଆ ବନ୍ଦୀ ଆହତ ହେଲେ । କ୍ୟାମ୍ପ ଜେଲରେ ଓଡ଼ିଶାର ନିରଂଜନ ଘୋଷ ଶହୀଦ ହେଲେ । ସେତେବେଳେ ଯେଉଁ ଛାତ୍ରମାନେ ସ୍କୁଲ ଛାଡିଥିଲେ ସେମାନେ ପରବର୍ତ୍ତୀ କାଳରେ ଓଡିଶାରେ ସ୍ୱାଧୀନତା ଆନ୍ଦୋଳନରେ ଅଗ୍ରଣୀ ଭୂମିକା ନେଲେ । ସେମାନଙ୍କ ମଧ୍ୟରେ କେତେକ ହେଲେ ସୁରେନ୍ଦ୍ର ପଟ୍ଟନାୟକ, ବିନୋଦ କାନୁନଗୋ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଆକୁଳାନନ୍ଦ ବେହେରା, ଗୁରୁଚରଣ ପଟ୍ଟନାୟକ, ବିପିନ ମହାନ୍ତି, ମନମୋହନ ଚୌଧୁରୀ ଏମିତି ଅନେକ । ଏହି ଆନ୍ଦୋଳନକାଳରେ ସଂବଲପୁରରେ ଜାତୀୟ ବିଦ୍ୟାଳୟ ଉନ୍ମୋଚିତ ହେଲା । ବୋଧରାମ ଦୁବେ, ଅଚ୍ୟୁତାନନ୍ଦ ପୁରୋହିତ, ପ୍ରମୁଖ ଓକିଲାତି ଛାଡିଦେଲେ । ପୁରୀ, ବ୍ରହ୍ମପୁରରେ ନିରଂଜନ ପଟ୍ଟନାୟକ, ଜଗବନ୍ଧୁ ସିଂହ, ଉମାଚରଣ ପଟ୍ଟନାୟକ ପ୍ରମୁଖ ଓକିଲାତି ପରିତ୍ୟାଗ କରିଦେଲେ ।

**ଗାନ୍ଧୀ ଇରଉଇନ ଚୁକ୍ତି, ଆନ୍ଦୋଳନ ପ୍ରତ୍ୟାହାର:**

ବ୍ୟାପକ ଦମନ, ଗିରଫଦାରୀ, ଗୁଳିକାଣ୍ଡର ତଦନ୍ତ କରିବା ଲାଗି କଂଗ୍ରେସ ପକ୍ଷରୁ ଏକ ତଦନ୍ତ କମିଟି ବସାଗଲା । ତଦନ୍ତର ରିପୋର୍ଟ ପାଇ ବ୍ରିଟିଶ ସରକାର ବିରୁଦ୍ଧରେ କଂଗ୍ରେସର ଅଭିଯୋଗ ବା "କଂଗ୍ରେସ ଇନଡିକ୍ଟମେଣ୍ଟ" ନାମକ ଇସ୍ତାହାର ପ୍ରକାଶ କରାଯାଇଥିଲା ।

କଂଗ୍ରେସ ବର୍ଜନ କରିଥିବା ସାଇମନ କମିଶନର ରିପୋର୍ଟକୁ ବିଚାର କରିବା ଲାଗି ଲଣ୍ଡନରେ ୧୯୩୦ ମଧ୍ୟ ଭାଗରେ ଏକ ଗୋଲଟେବୁଲ ବୈଠକ ବସିଲା । ସେତେବେଳେ ବ୍ରିଟିଶ ଲେବର ପାର୍ଟିର ସରକାର । ରାମସେ ମାକ୍‌ଡୋନାଲଡ୍ ପ୍ରଧାନମନ୍ତ୍ରୀ । କଂଗ୍ରେସ ଏହି ବୈଠକକୁ ବର୍ଜନ କରିଥିଲା । ଭାରତରେ ବ୍ରିଟିଶ ସାମ୍ରାଜ୍ୟ ଅଧୀନରେ ଏକ ସଂସଦୀୟ ବ୍ୟବସ୍ଥା କାଏମ କରାଯିବ; କେନ୍ଦ୍ରରେ ଓ ପ୍ରଦେଶମାନଙ୍କରେ ସୀମିତ ଭୋଟ ପ୍ରଥାରେ ନିର୍ବାଚନ ହେବ; ଏହିପରି କେତେ ପ୍ରତିଶ୍ରୁତି ସେଥିରେ ଥିଲା । ବୈଠକରେ ଉପସ୍ଥିତ ରାଜା ମହାରାଜା, ନବାବ, ନିଜାମଙ୍କ ଠାରୁ ଆରମ୍ଭ କରି ସ୍ୱାଧୀନତା ସଂଗ୍ରାମ ସହିତ ସଂଶ୍ଳିଷ୍ଟ ନଥିବା ଅଣକଂଗ୍ରେସ ଦଳମାନେ ଏହାକୁ ଗ୍ରହଣ କରିନେଲେ । ୧୯୩୦ ଡିସେମ୍ବରରେ ଆହ୍ଲାବାଦ ଅଧିବେଶନରେ ମୁସଲିମ ଲିଗ୍ ଖୋଲାଖୋଲି ଆଇନ ଅମାନ୍ୟକୁ ବିରୋଧ କଲା । ଥୋପ ପକାଇବା ଲକ୍ଷ୍ୟ ରଖି ବ୍ରିଟିଶ ସରକାର କଂଗ୍ରେସ ନେତାମାନଙ୍କୁ ଖଲାସ କରିଦେଲା । ଲଣ୍ଡନରୁ ଗୋଲଟେବୁଲ ବୈଠକରୁ ଫେରି ଉଦାରପନ୍ଥୀ ରାଜନୀତିଜ୍ଞ ତେଜ ବାହାଦୂର ସାପ୍ରୁ ଗାନ୍ଧିଜୀଙ୍କୁ ଭେଟି ସରକାର ସହ ଆଲୋଚନା କରିବାକୁ ପ୍ରବର୍ତ୍ତାଇଲେ ।

ଗାନ୍ଧିଜୀ ବ୍ରିଟିଶ ଭାଇସରୟଙ୍କ ସହିତ ଆଲୋଚନାରେ ମିଳିତ ହେବାକୁ ସମ୍ମତ ହେଲେ । ୧୯୩୧ ଫେବୃଆରୀ ୧୭ରୁ ମାର୍ଚ୍ଚ ୫ ଯାଏ ଗାନ୍ଧୀ ଇରଉଇନ କଥାବାର୍ତ୍ତା ଚାଲିଲା । ଇରଉଇନଙ୍କ ସହିତ ତାଙ୍କର ମତଭେଦ ଦେଖାଦେଲା । ତାପରେ ଗୋଲଟେବୁଲ ବୈଠକର ରାଜିନାମା ଭିତ୍ତିରେ ଆଲୋଚନା କରାଯିବ ବୋଲି ଇରଉଇନ ପ୍ରତିଶ୍ରୁତି ଦେଲେ । ଗାନ୍ଧିଜୀ ସେଥିରେ ସମ୍ମତି ପ୍ରକାଶ କଲେ ଏବଂ ଦେଶବ୍ୟାପୀ ଚାଲିଥିବା ଆନ୍ଦୋଳନକୁ ପ୍ରତ୍ୟାହାର କରିନେଲେ । ଜବାହରଲାଲ ନେହରୁଙ୍କ ନେତୃତ୍ୱରେ ବାମପନ୍ଥୀ କଂଗ୍ରେସ ନେତାମାନେ ଏଥିରେ ବ୍ୟଥିତ ହୋଇ ଉଠିଲେ । କଂଗ୍ରେସ କାର୍ଯ୍ୟକାରୀ କମିଟି ୧୯୩୧ ମାର୍ଚ୍ଚ ୫ ତାରିଖରେ ବସି ଗାନ୍ଧୀ ଇରଉଇନ ଆଲୋଚନାକୁ ବିଶ୍ଳେଷଣ କଲେ । କାର୍ଯ୍ୟକାରୀ କମିଟିରେ ଗୁରୁତର ମତଭେଦ ଦେଖାଦେଲା । ମାତ୍ର ଗାନ୍ଧିଜୀଙ୍କ ଆନ୍ଦୋଳନ ପ୍ରତ୍ୟାହାର ନିଷ୍ପତ୍ତି ଧାର୍ଯ୍ୟ ହୋଇଥିଲା । ଗାନ୍ଧୀ ଇରଉଇନ ଚୁକ୍ତି ଅନୁମୋଦିତ ହେଲା ।

ଗାନ୍ଧୀ ଇରଉଇନ ଆଲୋଚନାବେଳେ ବ୍ରିଟିଶ ସରକାର ଦମନମୂଳକ କାର୍ଯ୍ୟରୁ ନିବୃତ୍ତ ରହିବ ବୋଲି ଗାନ୍ଧିଜୀ ଦାବୀ କରିଥିଲେ । କେବଳ ହିଂସାତ୍ମକ ଅପରାଧ ବ୍ୟତୀତ ଆଉ କାହାକୁ ଦଣ୍ଡିତ କରାଯିବ ନାହିଁ ବୋଲି ଭାଇସରାୟ ପ୍ରତିଶ୍ରୁତି ଦେଇଥଲେ ।

ମାର୍ଚ୍ଚ ୫ ତାରିଖରେ ଏହି ଚୁକ୍ତି ସଂପାଦନ ପରେ ୧୯୩୧ ମାର୍ଚ୍ଚ ୨୩ରେ ଭଗତସିଂହ ଓ ସାଥୀମାନଙ୍କ ଫାଶି ହେତୁ ସାରା ଦେଶରେ ପ୍ରବଳ ପ୍ରତିବାଦ ଓ ବିକ୍ଷୋଭର ଜୁଆର ଛୁଟିଥିଲା । ଗାନ୍ଧୀ ଇରଉଇନ ଚୁକ୍ତିର ଘୋର ପ୍ରତିବାଦ ଚାଲିଲା ।

**କରାଚୀ କଂଗ୍ରେସ:**

ଭଗତସିଂହ ଶୁକଦେବ ରାଜଗୁରୁଙ୍କୁ ଫାଶି ହୋଇଗଲା । ସେମାନଙ୍କ ଶ୍ରାଦ୍ଧ ଯାଇ ନଥାଏ । ଏହି ପରିସ୍ଥିତିରେ ଫାଶିର ୬ଦିନ ପରେ ୧୯୩୧ ମାର୍ଚ୍ଚ ୨୯ରେ କରାଚୀ ଠାରେ କଂଗ୍ରେସର ଅଧିବେଶନ ବସିଲା । ଗାନ୍ଧିଜୀଙ୍କ ବିରୁଦ୍ଧରେ ପ୍ରଦର୍ଶନ ଦେଖାଦେଲା । ଭଗତସିଂହ ଓ ସାଥୀମାନଙ୍କ ଆତ୍ମ ବଳିଦାନକୁ ପ୍ରଶଂସା କରି କେତେକ ପ୍ରତିନିଧି ଅଧିବେଶନରେ ପ୍ରସ୍ତାବ ଆଗତ କଲେ । ପ୍ରସ୍ତାବରେ କେତେକ ସଂଶୋଧନ ଆସିଲା । ଗାନ୍ଧିଜୀ ସଂଶୋଧନକୁ ଗ୍ରହଣ କରି ପ୍ରସ୍ତାବକୁ ସମର୍ଥନ କଲେ । ସଂଶୋଧନ ପ୍ରସ୍ତାବରେ ଥିଲା "କଂଗ୍ରେସ କୌଣସି ରାଜନୈତିକ ହିଂସାରୁ ଦୂରରେ ରହିବା ଓ ତାହାକୁ ପ୍ରଶ୍ରୟ ନଦେବା ସଂଗେ ସଂଗେ ସାହସିକତା ଓ ତ୍ୟାଗକୁ ପ୍ରଶଂସା" କରୁଛି । ଏପରି ପ୍ରସ୍ତାବର ବିରୋଧ କଲେ ସୁବାଷବୋଷ ଓ ଅନ୍ୟ ଅନେକ ପ୍ରତିନିଧି । ଖୁବ୍ ଅଳ୍ପ ଭୋଟ ବ୍ୟବଧାନରେ ସେମାନଙ୍କ ସଂଶୋଧନ କାଟ ଖାଇଗଲା ।

ଲାହୋର କଂଗ୍ରେସର ପୂର୍ଣ୍ଣ ସ୍ୱରାଜ ଲକ୍ଷ୍ୟ ହାସଲକୁ କରାଚୀ କଂଗ୍ରେସ ଦୋହରାଇବା ସାଙ୍ଗକୁ ଗାନ୍ଧୀ ଇରଉଇନ ଚୁକ୍ତିକୁ ସମର୍ଥନ କଲା ।

ଭବିଷ୍ୟତରେ କଂଗ୍ରେସର ଅର୍ଥନୈତିକ, ସାମାଜିକ ଲକ୍ଷ୍ୟ କ'ଣ ହେବ ତାହା କରାଚୀ କଂଗ୍ରେସ ଘୋଷଣା କଲା ।

ଭବିଷ୍ୟତର ସମାଜ ବ୍ୟବସ୍ଥାରେ ଓ ଅର୍ଥନୈତିକ ବ୍ୟବସ୍ଥାରେ କୌଣସି ଆମୂଳଚୂଳ ପରିବର୍ତ୍ତନର ଇଙ୍ଗିତ ଓ ସୂଚନା ନଥିଲେ ମଧ୍ୟ ପ୍ରଥମ ଥର ପାଇଁ କରାଚୀ ଅଧିବେଶନ କେତେକ ଗୁରୁତ୍ୱପୂର୍ଣ୍ଣ ସାମାଜିକ ଲକ୍ଷ୍ୟ ଘୋଷଣା କଲା । କଂଗ୍ରେସର ବାମପନ୍ଥୀ ମତବାଦୀ ନେତା ଓ ପ୍ରତିନିଧିମାନଙ୍କ ପ୍ରବଳ ଚାପ କେତେକ ପରିମାଣରେ ସଫଳ ହେଲା ।

ସେହି ଘୋଷଣାରେ ରହିଲା -

(୧) ଭାରତର ଜନସାଧାରଣଙ୍କଠାରୁ ବିଦେଶୀ ଶାସନରେ ଅପହୃତ ମୌଳିକ ଅଧିକାରଗୁଡ଼ିକୁ କଂଗ୍ରେସ ଅର୍ପଣ କରିବ ଓ ସେଗୁଡ଼ିକର ସୁରକ୍ଷା କରିବ । ସଭାସମିତି, ସମାବେଶ, ସଂବାଦପତ୍ରଗୁଡ଼ିକର ସ୍ୱାଧୀନତା, ନାଗରିକ ଅଧିକାରଗୁଡ଼ିକ ସୁରକ୍ଷିତ ହେବ ।

(୨) ଜନତା ମଧ୍ୟରେ ଥିବା ଜାତିଆଣ ଓ ଧର୍ମୀୟ ଅସଂଗତିଗୁଡ଼ିକୁ ଦୂର କରାଯିବ,

(୩) ଜାତୀୟ ଭାଷାଗୁଡ଼ିକର ବିକାଶ କରାଯିବ ।

(୪) ଭାଷା ଭିତ୍ତିରେ ପ୍ରଦେଶମାନ ଗଠିତ ହେବ ।

(୫) କରଟିକସ ହ୍ରାସ କରାଯିବ;

(୬) ଜମିଦାର, ମହାଜନମାନଙ୍କ ଦ୍ୱାରା ଅନୁସୃତ ବେଠି, ବେଗାରୀ ଲୋପ ରାଯିବ ।

(୭) ଲବଣ କର ଉଠାଯିବ;

(୮) ଶ୍ରମିକମାନଙ୍କର ସ୍ୱାସ୍ଥ୍ୟ, କାମ କରିବାର ପରିବେଶ, ସର୍ବନିମ୍ନ ମଜୁରୀ, ବେକାରଙ୍କ ଲାଗି ବୀମା, ୮ ଘଣ୍ଟିଆ ଶ୍ରମ ଦିବସ, ବେତନ ସହ ଚୁଟି ସୁନିଶ୍ଚିତ କରାଯିବ ।

ବଡବଡ ଶିଳ୍ପ ଓ ପରିବହନ ବ୍ୟବସ୍ଥାର ଜାତୀୟକରଣ ହେବ, ଜମିଦାରୀ ପ୍ରଥା ସମୂଳେ ଉଚ୍ଛେଦ ହେବ, ରାଜରାଜୁଡା ପ୍ରଥାର ବିଲୋପ ହେବ, ପୁଁଜିବାଦୀ ଶୋଷଣର ଅବସାନ ପ୍ରଭୃତି ନିଷ୍ପେଷିତ ଭାରତବାସୀଙ୍କ ମୌଳିକ ସମସ୍ୟାର ସମାଧାନ ବିଷୟ ଏହି ଘୋଷଣାନାମାରେ ଉଲ୍ଲେଖ ନଥିଲେ ହେଁ, ପ୍ରଥମ ଥର ପାଇଁ ଆନୁଷ୍ଠାନିକ ଭାବରେ ଶ୍ରମିକ ଓ ଚାଷୀଙ୍କ ସମସ୍ୟା ପ୍ରତି କଂଗ୍ରେସର ଧ୍ୟାନ ଆକର୍ଷିତ ହେଲା ।

ସେହି କରାଚି କଂଗ୍ରେସ ଅଧିବେଶନ ଚାଲିଲା ସମୟରେ ସେହିଠାରେ ହିଁ ଯୁବସଂଘ ଓ କମ୍ୟୁନିଷ୍ଟ ଏବଂ ପେଜାଣ୍ଟ ଓ୍ୟାରକରର୍ସ ପାର୍ଟିର ମିଳିତ ବୈଠକରେ ଗାନ୍ଧୀ ଇରଉଇନ ଚୁକ୍ତିର ବିରୋଧ କରି ପ୍ରସ୍ତାବ ନିଆଯାଇଥିଲା ।

**ଦ୍ୱିତୀୟ ଗୋଲଟେବୁଲ ବୈଠକ; ମହାତ୍ମା ଗାନ୍ଧୀ ଗିରଫ :**

ଗାନ୍ଧୀ ଇରଉଇନ ଚୁକ୍ତି ଅନୁସାରେ ଦମନମୂଳକ କାର୍ଯ୍ୟକଳାପରୁ ବ୍ରିଟିଶ ଶାସନ ବିରତ ରହିବା ସର୍ତ୍ତକୁ ତିଳେ ମାତ୍ର ଖାତିର କରାଗଲା ନାହିଁ । ସୀମାନ୍ତ ପ୍ରଦେଶରେ ସୀମାନ୍ତ ଗାନ୍ଧୀ ଓ ତାଙ୍କ ବଡଭାଇ ଡକ୍ଟର ଖାଁ ସାହେବଙ୍କୁ ଗିରଫ କରାଗଲା । ବଂଗଳାର ମେଦିନୀପୁରସ୍ଥ ହିଜଳି ଜେଲରେ ରାଜବନ୍ଦୀମାନଙ୍କ ଉପରେ ଗୁଳି ଓ ଲାଠି ଚଳାଯାଇ ବହୁ ବନ୍ଦୀଙ୍କୁ ଆହତ କରାଗଲା । ଚିଟାଗଂଗରେ ଭାରତୀୟଙ୍କ ଘରଦ୍ୱାରକୁ ୟୁରୋପୀୟମାନେ ଲୁଟି କରିନେଲେ । ଉତ୍ତର ପ୍ରଦେଶରେ ଚାଷୀମାନଙ୍କ ଉପରେ ନାହିଁ ନଥିବା ଦମନ ଚାଲିଲା ।

ଏହିପରି ପରିସ୍ଥିତିବେଳେ ଲଣ୍ଡନରେ ଗୋଲଟେବୁଲ ବୈଠକ ଆହୂତ ହେଲା । କଂଗ୍ରେସ ପକ୍ଷରୁ ଏକମାତ୍ର ଗାନ୍ଧିଜୀ ଯୋଗଦେବେ ବୋଲି ନିର୍ଣ୍ଣୟ କରାଗଲା । ବ୍ରିଟିଶର ଚାଲ ବୁଝି ଅନ୍ୟତମ ବରିଷ୍ଠ କଂଗ୍ରେସ ନେତା, ଜଣେ ଜାତୀୟତାବାଦୀ ମୁସଲମାନ ଡକ୍ଟର ଆନସାରୀ ମଧ୍ୟ ତାଙ୍କ ସହିତ କଂଗ୍ରେସ ପ୍ରତିନିଧିଭାବରେ ଯୋଗଦେବାର ପ୍ରସ୍ତାବ ଗାନ୍ଧିଜୀ ଦେଲେ । ମାତ୍ର ଭାଇସରୟ ଲର୍ଡ ଉଇଲିଙ୍ଗଡନ ଏ ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ । କଂଗ୍ରେସ ମୁସଲମାନଙ୍କର ପ୍ରତିନିଧି ନୁହଁ, ଲିଗର ଏପରି ଦାବୀ ସପକ୍ଷରେ ଭାଇସରୟ ଆନସାରୀଙ୍କ ପ୍ରତିନିଧିତ୍ୱକୁ ଗ୍ରହଣ ନକରିବ ସ୍ପଷ୍ଟ ହୋଇଗଲା ।

ଅଥଚ ଏହି ବୈଠକରେ ସାଂପ୍ରଦାୟିତାବାଦୀ ହିନ୍ଦୁ, ଶିଖ, ମୁସଲମାନମାନଙ୍କୁ ସେମାନଙ୍କ ପ୍ରଭାବଠାରୁ ଅଧିକ ପ୍ରତିନିଧି ପଠାଇବାକୁ ସୁଯୋଗ ଦିଆଗଲା । ବିଶାଳ କଂଗ୍ରେସର ମାତ୍ର ଜଣେ ପ୍ରତିନିଧି । ସେ ହେଲେ ଗାନ୍ଧୀ ।

୧୯୩୧ ସେପ୍ଟେମ୍ବରରୁ ଡିସେମ୍ବର ମାସଯାଏ ଲଣ୍ଡନରେ ଏହି ବୈଠକ ଚାଲିଲା । ଏହି ବୈଠକରେ ସଂଖ୍ୟାଲଘୁଙ୍କ ପାଇଁ ଏକ କମିଟି ଗଢା ହୋଇଥିଲା । ସଂଖ୍ୟାନ୍ୟୁନ କମିଟିର ବୈଠକରେ ଖୋଦ ବ୍ରିଟିଶ ପ୍ରଧାନମନ୍ତ୍ରୀ ଅଧ୍ୟକ୍ଷତା କରି ପ୍ରସ୍ତାବ ଦେଇ କହିଲେ, ଏହି ପ୍ରଶ୍ନଟିର ମୀମାଂସା ସେ ନିଜେ କରିବେ । ଏଥିଲାଗି ସମସ୍ତେ ସ୍ୱାକ୍ଷର କରି ପ୍ରସ୍ତାବକୁ ଅନୁମୋଦନ କରନ୍ତୁ ।

ଗାନ୍ଧିଜୀ ଏଥିରେ ହସ୍ତକ୍ଷେପ କରି ସବୁ ପ୍ରତିନିଧି ଐକ୍ୟବଦ୍ଧ ଭାବରେ ଭାରତର ଦାବୀ ପେଶ କରିବାକୁ ନିବେଦନ କଲେ । ମାତ୍ର ଲିଗ ନେତା ଆଗାଖାଁ ଏହାର ବିରୋଧ କରି କଂଗ୍ରେସ ମୁସଲମାନମାନଙ୍କ ପ୍ରତିନିଧିତ୍ୱ କରେ ନାହିଁ ବୋଲି ଅଡି ବସିଲେ । ହିନ୍ଦୁ ମହାସଭା (ଯାହା ପରବର୍ତ୍ତୀ କାଳରେ ଭାରତୀୟ ଜନସଂଘ ଓ ବିଜେପିରେ ରୂପାନ୍ତରିତ)ର ପ୍ରତିନିଧି ଓ ଶିଖ ପ୍ରତିନିଧିମାନେ, ଗାନ୍ଧୀଙ୍କ ଐକ୍ୟ ଆହ୍ୱାନକୁ ଗ୍ରହଣ କଲେନାହିଁ ।

ଭାରତୀୟ ପ୍ରତିନିଧିମାନଙ୍କ ଆଚରଣ ବିଲାତ ସରକାରକୁ ବେଶ୍ ସୁହାଇଲା । ସେମାନଙ୍କ ଭାଗ ଭାଗ କରିବା ନୀତିର ସଫଳତା ଦେଖି ଶ୍ରମିକ ଦଳର ପ୍ରଧାନମନ୍ତ୍ରୀ ମାକଡୋନାଲ୍ଡ ପ୍ରସ୍ତାବିତ ଭାରତ ସରକାର ଆଇନକୁ ବୈଠକରେ ଆଗତ କଲେ । ଲଣ୍ଡନ ଗୋଲଟେବୁଲ ବୈଠକରୁ ଗାନ୍ଧିଜୀ ଖାଲି ହାତରେ ଫେରିଲେ ।

ଗୋଲଟେବୁଲ ବୈଠକରୁ ଫେରି ୧୯୩୨ ଜାନୁଆରୀ ୪ ତାରିଖରେ ବମ୍ବେରେ ପହଂଚିବା ପରେ ଗାନ୍ଧିଜୀଙ୍କୁ ଗିରଫ କରି ନିଆଗଲା । ସଂଗେସଂଗେ ଆଉ ଯେତେସବୁ ତୁଙ୍ଗ ନେତା ବାହାରେ ରହିଯାଇଥିଲେ, ସେମାନଙ୍କୁ ଗିରଫ କରି ନିଆଗଲା । ୧୯୩୦ଠାରୁ ଅଧିକ ଉଗ୍ରଭାବରେ କଂଗ୍ରେସ କାର୍ଯ୍ୟାଳୟ ଓ କଂଗ୍ରେସ ସଂପତ୍ତି ଉପରେ ଆକ୍ରମଣ କରି ସେସବୁକୁ ବାଜ୍ୟାପ୍ତ କରାଗଲା । ଗିରଫର ସଂଖ୍ୟା ୧ଲକ୍ଷ ୨୦ ହଜାରରୁ ଅଧିକ ହୋଇଗଲା ।

**କମ୍ୟୁନାଲ ଆୱାର୍ଡ, ଗାନ୍ଧୀଙ୍କ ଅନଶନ -ପୁନାଚୁକ୍ତି**

ଦ୍ୱିତୀୟ ଗୋଲଟେବୁଲ ବୈଠକ ଅନ୍ତେ ଏବଂ ଗାନ୍ଧୀ ଏବଂ ସମଗ୍ର ନେତୃମଣ୍ଡଳୀକୁ ଗିରଫ କରି ଜେଲରେ ଆବଦ୍ଧ କଲାପରେ କମ୍ୟୁନାଲ ଆୱାର୍ଡ ପ୍ରକାଶ ପାଇଲା । ଗୋଲଟେବୁଲ ବୈଠକରେ ଆଗତ ପ୍ରସ୍ତାବକୁ କଂଗ୍ରେସର ଏକମାତ୍ର ପ୍ରତିନିଧି ଗାନ୍ଧିଜୀଙ୍କ ବିରୋଧ ସତ୍ତ୍ୱେ ବ୍ରିଟିଶ ସରକାର ଏହାକୁ ପ୍ରକାଶ କରି ତାର ଭାଗ ଭାଗ କରିବା ନୀତିକୁ ପ୍ରୟୋଗ କଲା । ଏହି ଆୱାର୍ଡର ମୁଖ୍ୟ ବିଷୟବସ୍ତୁ ଥିଲା ନିମ୍ନପ୍ରକାରର । ମୁସଲମାନ ଓ ଅନୁସୂଚିତ ଜାତିକୁ ଦୁଇଟି ରାଜନୈତିକ ସତ୍ତା ରୂପେ ଗ୍ରହଣ କରାଯାଇଥିଲା । ସେମାନଙ୍କ ଲାଗି ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ରହିବ ବୋଲି କୁହାଯାଇଥିଲା । ଡକ୍ଟର ଆମ୍ବେଦକରଙ୍କ ନେତୃତ୍ୱରେ ପରିଚାଳିତ ରିପବ୍ଲିକାନ ପାର୍ଟି ଏହାକୁ ଗ୍ରହଣ କଲା । ଡକ୍ଟର ଆମ୍ବେଦକର ଅନୁସୂଚିତ ଜାତିମାନଙ୍କୁ "ହରିଜନ" ଆଖ୍ୟା ଦେବାର ବିରୋଧ କଲେ । ହିନ୍ଦୁ ସମାଜର ମନୁବାଦୀ ଚତୁର୍ବର୍ଣ୍ଣ ବ୍ୟବସ୍ଥା ଅନୁସାରେ ଅନୁସୂଚିତ ଜାତିକୁ ଅସ୍ପୃଶ୍ୟ ରଖି ହରିଜନ ଆଖ୍ୟା ଦେବା ଦର୍ଶାଇ କମ୍ୟୁନାଲ ଆୱାର୍ଡକୁ ସେ ସମର୍ଥନ କଲେ । ଭାରତୀୟ ସମାଜକୁ ଆହୁରି ଏହା ଭାଗଭାଗ କରିବ ଏବଂ ବ୍ରିଟିଶ ସରକାର ଏହାର ସୁଯୋଗ ନେବ, ଏହା ବିଚାରି ଗାନ୍ଧିଜୀ ୟେରୱାଡା ଜେଲରେ ୨୧ ଦିନିଆ ଅନଶନ ଆରଂଭ କରିଦେଲେ । ସାରା ଦେଶରେ ଗାନ୍ଧିଜୀଙ୍କ ସ୍ୱାସ୍ଥ୍ୟ ଓ ଜୀବନ ସଂକଟଗ୍ରସ୍ତ ବୋଲି ଚହଳ ପଡିଗଲା । ଗାନ୍ଧିଜୀଙ୍କ ସର୍ତ୍ତଥିଲା, ହିନ୍ଦୁ ନିର୍ବାଚନ ମଣ୍ଡଳୀଗୁଡିକ ଭିତରେ ହିଁ ଅନୁସୂଚିତ ଜାତିମାନଙ୍କ ଲାଗି

ସ୍ୱତନ୍ତ୍ର ସଂରକ୍ଷଣ ରହିବ । ପୁନାଠାରେ ଗାନ୍ଧୀ ଆମ୍ବେଦକର ଚୁକ୍ତି, ଯାହାକୁ ପୁନା ଚୁକ୍ତି କୁହାଯାଏ ତାହା ଗାନ୍ଧୀ ଏବଂ ଆମ୍ବେଦକରଙ୍କ ମଧ୍ୟରେ ସ୍ୱାକ୍ଷରିତ ହେଲା ଗାନ୍ଧିଜୀ ଅନଶନ ପ୍ରତ୍ୟାହାର କଲେ । ହିନ୍ଦୁ-ମୁସଲମାନ ବିବାଦ ଲଗେଇ ରାଜନୈତିକ ଭାବରେ ହିନ୍ଦୁ ସମାଜକୁ ଭାଗଭାଗ କରିବାର ବ୍ରିଟିଶ ନୀତି ସେତେବେଳେ ପରାସ୍ତ ହେଲା । ବାଧ ହୋଇ କମ୍ୟୁନାଲ ଆୱାର୍ଡରେ ପୁନା ଚୁକ୍ତିକୁ ବ୍ରିଟିଶ ପକ୍ଷରୁ ସ୍ୱୀକୃତି ଦିଆଗଲା ।

୧୯୩୩ ମଇ ମାସରେ ହରିଜନଙ୍କ ସମସ୍ୟାର ସମାଧାନ ପ୍ରଶ୍ନକୁ ଧରି "ଆତ୍ମଶୁଦ୍ଧି ଓ ଅଧିକ ସଜାଗତା" ଲକ୍ଷ୍ୟ ଘେନି ଗାନ୍ଧିଜୀ ଆଉ ଥରେ ଅନଶନ କଲେ । ସରକାର ତାଙ୍କୁ ବିନା ସର୍ତ୍ତରେ ଖଲାସ କରିଦେଲା । ଅସ୍ଥାୟୀ କଂଗ୍ରେସ ସଭାପତି ପଣ୍ଡିତ ମାଲବ୍ୟ ଗାନ୍ଧୀଙ୍କ ସହିତ ପରାମର୍ଶ କରି ଆନ୍ଦୋଳନ ପ୍ରତ୍ୟାହାର ହେଲା ବୋଲି ଘୋଷଣା କରିଦେଲେ । ୟୁରୋପରେ ଥାଇ ସୁବାଷବୋଷ ଓ ଭି.ଜେ.ପଟେଲ ଏକ ବିବୃତି ପ୍ରକାଶ କଲେ ।

ଗାନ୍ଧୀଙ୍କ ଦ୍ୱାରା ବ୍ୟର୍ଥତା ସ୍ୱୀକାର ହେତୁ "କଂଗ୍ରେସ ନୂଆ ନୀତି ନେଇ, ନଆ ନେତୃତ୍ୱରେ ନୂତନ ପନ୍ଥାରେ ଆନ୍ଦୋଳନ ଚଳାଉ" ବୋଲି ସେଥିରେ ଉଲ୍ଲେଖ ଥିଲା ।

୧୯୩୩ ଜୁଲାଇରେ ଭାଇସରାୟଙ୍କୁ ଗାନ୍ଧିଜୀ ଏକ ସାକ୍ଷାତ୍କାର ମାଗିଥିଲେ । ମାତ୍ର ଭାଇସରାୟ ତହିଁର ଉତ୍ତର ବି ଦେଲେ ନାହିଁ । ସେ ଗଣ ଆଇନ ଅମାନ୍ୟ ବଦଳରେ ବ୍ୟକ୍ତିଗତ ଆଇନ ଅମାନ୍ୟର ଡାକରା ଦେଲେ । ଗାନ୍ଧିଜୀଙ୍କୁ ୧୯୩୩ ଅଗଷ୍ଟ ମାସରେ ଗିରଫ କରି ସେହି ମାସରେ ଖଲାସ କରାଗଲା । ଗାନ୍ଧିଜୀ କଂଗ୍ରେସର ଚାରିଅଣା ସଦସ୍ୟ ପଦ ତ୍ୟାଗ କରି ରାଜନୀତିରୁ ଦୂରେଇ ରହି ହରିଜନ ପଦଯାତ୍ରା କରିବାର ସଂକଳ୍ପ ନେଲେ । ଏପରି ଅବସ୍ଥାରେ ଆନ୍ଦୋଳନ ଆଗେଇଲା ନାହିଁ କି ତାହାର ନେତୃତ୍ୱ ରହିଲା ନାହିଁ ।

୧୯୩୪ ମଇ ମାସରେ ପାଟନା ଠାରେ ଅଖିଳ ଭାରତ କଂଗ୍ରେସ କମିଟି ବସିବାକୁ ସରକାରୀ ଅନୁମତି ମିଳିଲା । ତାହା ବିନା ସର୍ତ୍ତରେ ଆଇନ ଅମାନ୍ୟ ଆନ୍ଦୋଳନକୁ ପ୍ରତ୍ୟାହାର କରି ନେଲା । ୧୯୩୪ ଜୁନରେ କଂଗ୍ରେସ ଉପରୁ ନିଷେଧାଦେଶ ଉଠାଇ ନିଆଗଲା । କିନ୍ତୁ ଉତ୍ତର ସୀମାନ୍ତ ପ୍ରଦେଶରେ ରେଡଗାର୍ଡ, ଲାଲକୁର୍ତ୍ତାଦଳ ଓ କଂଗ୍ରେସର ଅନ୍ୟାନ୍ୟ ସଂଶ୍ଳିଷ୍ଟ ସଂସ୍ଥା ଉପରୁ ନିଷେଧାଜ୍ଞା ଉଠିଲା ନାହିଁ । ତାହା ସାଙ୍ଗକୁ ୧୯୩୪ ଜୁଲାଇରେ କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ ଘୋଷଣା କରାଗଲା । ଆଉ ଏକ ଦଫା ଦମନ ଅତ୍ୟାଚାରର ଆଶ୍ରୟ ନିଆଗଲା ।

ଉଲେଖନୀୟଯେ ୧୯୩୨ ନଭେମ୍ବରରେ ଲଣ୍ଡନରେ ତୃତୀୟ ଗୋଲଟେବୁଲ ବୈଠକକୁ କଂଗ୍ରେସ ପ୍ରତିନିଧି ପଠାଇ ନଥିଲା । 'ଆମନ୍ତ୍ରଣ ରକ୍ଷା କରିବା ନାହିଁ' ବୋଲି କଂଗ୍ରେସ ସ୍ଥିର କରିଥିଲା । ଏହି ତୃତୀୟ ଗୋଲଟେବୁଲ ବୈଠକରେ "୧୯୩୫ ଭାରତ ଆଇନ" ଧାର୍ଯ୍ୟ କରାଯିବ ବୋଲି ନିଷ୍ପତ୍ତି ନିଆଗଲା ।

୧୯୨୨ରେ ଚୌରୀଚୌରା ଘଟଣାରେ ଅସହଯୋଗ ଆନ୍ଦୋଳନର ପ୍ରତ୍ୟାହାର ପରେ କଂଗ୍ରେସ ମହଲରେ ତଥା ଦେଶପ୍ରେମୀ ସାଧାରଣ ଲୋକଙ୍କ ଭିତରେ ଯେପରି ହତାଶା ଓ ନୈରାଶ୍ୟର ବାତାବରଣ ସୃଷ୍ଟି ହୋଇଥିଲା, ୧୯୩୪ରେ ବିନା ସର୍ତ୍ତରେ ବିରାଟ ଆଇନ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟାହାର ଅଧିକତର ହତାଶା ଓ ନୈରାଶ୍ୟ ସୃଷ୍ଟି କରିଥିଲା। ତାହା ସଂଗେସଂଗେ ଆହୁରି ଅଧିକ ଆତ୍ମପ୍ରତ୍ୟୟ ସହ ନୂତନ କର୍ମପଦ୍ଧତି, ନୂତନ ଚିନ୍ତାଧାରା ଓ ନୂତନ ରାଜନୈତିକ, ସାଂସ୍କୃତିକ, ସଂଗଠନଗୁଡ଼ିକର ଆବିର୍ଭାବ ଘଟିଲା। ସାମ୍ରାଜ୍ୟବାଦୀ ଶାସନକୁ ବିଲୋପ କରି ସ୍ୱାଧୀନ ଭାରତରେ ନୂତନ ଅର୍ଥନୈତିକ, ସାମାଜିକ, ସାଂସ୍କୃତିକ ପରିବର୍ତ୍ତନର କଳ୍ପନା କରାଗଲା। ଗାନ୍ଧିଜୀ ଓ କଂଗ୍ରେସର ଏକ ବଡ ଅଂଶ ଗଠନମୂଳକ, ସଂସ୍କାରମୂଳକ କାର୍ଯ୍ୟକ୍ରମ ଗ୍ରହଣ କଲେ। କଂଗ୍ରେସ ବହୁ ଦ୍ୱିଧା ବିରୋଧ କରି ଭିତର ଦେଇ ୧୯୩୫ର ଶାସନ ଖସଡାର ଭିତ୍ତିରେ ନିର୍ବାଚନ ଲଢ଼ିବାକୁ ଓ ପରେ ମନ୍ତ୍ରୀମଣ୍ଡଳଗୁଡ଼ିକରେ ଅଂଶଗ୍ରହଣ କରିବାକୁ ନିଷ୍ପତ୍ତି ନେଲା।

□□□

# ନୂତନ ଶାସନ ଖସଡାରେ ମନ୍ତ୍ରୀତ୍ୱ ଗ୍ରହଣ ଓ ଇସ୍ତଫା (୧୯୩୪-୧୯୪୦)

## ନୂତନ ଶାସନ ଖସଡ଼ା

ଦ୍ୱିତୀୟ ଗୋଲଟେବୁଲରେ କଂଗ୍ରେସ ପ୍ରତିନିଧିରୂପେ ଗାନ୍ଧିଜୀଙ୍କର ଶୂନ୍ୟହସ୍ତରେ ବାହୁଡା ଓ ପ୍ରତିହିଂସା ପରାୟଣ ବ୍ରିଟିଶ ସରକାର କର୍ତ୍ତୃକ ତାଙ୍କର ଗିରଫ ଏକ ପକ୍ଷରେ ଜନକ୍ରୋଧ ପ୍ରକାଶ କଲା। ଅନ୍ୟପକ୍ଷରେ ଲବଣ ସତ୍ୟାଗ୍ରହ ଓ ଆଇନ ଅମାନ୍ୟ ଦେଶବ୍ୟାପୀ ଯେଉଁ ଉଦବେଳନ ସୃଷ୍ଟି କରିଥିଲା, ତହିଁରେ ଭଟ୍ଟା ପଡିଗଲା। ଅବଶ୍ୟ ୧୯୩୨ର ଡାକରାରେ ବ୍ୟକ୍ତିଗତ ଭାବରେ ଆଇନ ଅମାନ୍ୟ ହେଲେହେଁ ତାହା ୧୯୩-୩୧ ଆନ୍ଦୋଳନର ବେଗ ଓ ବ୍ୟାପକତା ଲାଭ କରିପାରି ନଥିଲା। ଗାନ୍ଧିଜୀ ଓ କଂଗ୍ରେସ ୧୯୩୪ରେ ଆନ୍ଦୋଳନ ପ୍ରତ୍ୟାହାର କରି ନେଲେ। ଗାନ୍ଧିଜୀ ୧୧ ଦଫାର କର୍ମସୂଚୀ ବାଢି ମୁକ୍ତି-ସୈନିକମାନଙ୍କୁ ଗାଁକୁ ଫେରିଯାଇ ଗଠନମୂଳକ କାର୍ଯ୍ୟରେ ମନୋନିବେଶ କରିବାକୁ ଆକୁଳ ଆହ୍ୱାନ ଦେଲେ। କମ୍ୟୁନାଲ ଆୱାର୍ଡ ଓ ଗାନ୍ଧୀ ଆମ୍ବେଦକର ପୁନା ଚୁକ୍ତି ପରେ ବ୍ରିଟିଶ ସରକାର ୧୯୩୫ର ନୂତନ ଶାସନ ଖସଡା ପ୍ରଣୟନ କରି ପ୍ରକାଶ କଲା। ଏହି ଶାସନ ଖସଡା ଅନୁସାରେ ଫେଡେରାଲ ୟୁନିଅନରେ ଅର୍ଥାତ୍ କେନ୍ଦ୍ରରେ ଦେଶୀୟ ରାଜ୍ୟଗୁଡିକର ପ୍ରତିନିଧି ରହିବେ ବୋଲି ପ୍ରଥମ ଥର ନିର୍ଦ୍ଧାରଣ କରାଗଲା। ଦେଶୀୟ ରାଜ୍ୟର ପ୍ରତିନିଧିମାନେ ସୀମିତ ହେଉପଛେ ଦେଶୀୟ ରାଜ୍ୟ ଲୋକଙ୍କ ଭୋଟରେ ପ୍ରତିନିଧି ହେବେ ନାହିଁ। ରାଜନ୍ୟମାନେ ନିଜ ଭିତରୁ ସେପରି ପ୍ରତିନିଧି ମନୋନୟନ କରିବେ। କେନ୍ଦ୍ର ଓ ପ୍ରଦେଶ ଆସେମ୍ବ୍ଲି ଲାଗି ଭୋଟ ହେବ। ମାତ୍ର ଭୋଟଦାତା ସାବାଳକ ହେବେ ନାହିଁ; ସାର୍ବଜନୀନ ଭୋଟ ହେବ ନାହିଁ। ଯେଉଁମାନେ ମାଟ୍ରିକଯାଏ ଶିକ୍ଷା କରିଥିବେ, ଯେଉଁ ଲୋକ ଚୌକିଦାରୀ ଟିକସ ଅଧିକ ପରିମାଣରେ ଦେଉଥିବେ, ଜମିଦାର ହୋଇଥିବେ ସେମାନେ ହିଁ ଭୋଟ ଦେଇପାରିବେ। ତା ଅର୍ଥ ଦେଶ ଜନସଂଖ୍ୟାର ମାତ୍ର ଶତକଡା ୭/୮ ଭାଗ ବ୍ୟକ୍ତି ଶିକ୍ଷା ଓ ସଂପତ୍ତି ବିଚାରରେ ଭୋଟ ଦେଇପାରିବେ।

ଦେଶର ପ୍ରତିରକ୍ଷା ଓ ପରରାଷ୍ଟ୍ର ନୀତି କେନ୍ଦ୍ର ଆସେମ୍ବ୍ଲି ବା କେନ୍ଦ୍ର ସରକାର ଦ୍ୱାରା ନିୟନ୍ତ୍ରିତ ହେବ ନାହିଁ । ବ୍ରିଟିଶ ଗଭର୍ଣ୍ଣର ଜେନେରାଲଙ୍କ ତାହା ହେବ ହସ୍ତମୁଦି ମାହାଲ । ପ୍ରଦେଶର ଗଭର୍ଣ୍ଣର (ରାଜ୍ୟପାଳ)ମାନଙ୍କୁ ଖୋଦ ବ୍ରିଟିଶ ସରକାର ନିଯୁକ୍ତ କରିବ ।

ଗଭର୍ଣ୍ଣରମାନଙ୍କ ହାତରେ ବିଶେଷ କ୍ଷମତା ରହିବ । ସୀମିତ ଭୋଟରେ ନିର୍ବାଚିତ ପ୍ରତିନିଧି ଅର୍ଥାତ୍ ସେମାନେ ଗଠନ କରିଥିବା ପ୍ରାଦେଶିକ ସରକାର ଯେଉଁ ଆଇନକାନୁନ କରିବେ, ମନକୁ ନପାଇଲେ ସେଗୁଡ଼ିକୁ ଗୋରା ସାହେବ ଗଭର୍ଣ୍ଣର ରଦ୍ଦ କରିପାରିବେ । କେବଳ ସେତିକି ନୁହଁ, ସେ ମଧ୍ୟ ଅଧ୍ୟାଦେଶ ଜାରି କରିପାରିବେ । ମନ୍ତ୍ରୀମଣ୍ଡଳ ନିଷ୍ପତ୍ତିଗୁଡ଼ିକୁ ତଦ୍ୱାରା ବାତିଲ କରିହେବ । ସିଭିଲ ସର୍ଭିସ ଓ ପୁଲିସ ପ୍ରଶାସନ ଉପରେ ଗଭର୍ଣ୍ଣରଙ୍କ ନିୟନ୍ତ୍ରଣ ରହିବ ।

ସଂବିଧାନକୁ ପ୍ରଥମେ ପ୍ରଦେଶମାନଙ୍କରେ କାର୍ଯ୍ୟକାରୀ କରାଯିବା ପରେ କେନ୍ଦ୍ରରେ ଲାଗୁ ହେବ ।

୧୯୩୬ରେ ଯୁକ୍ତ ପ୍ରଦେଶ ଫୈଜପୁରଠାରେ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ସଭାପତିତ୍ୱରେ କଂଗ୍ରେସର ବାର୍ଷିକ ଅଧିବେଶନରେ ଏହି ଶାସନ ଖସଡ଼ା ଘେନି ଆଲୋଚନା ହେଲା । ଏହି ଖସଡ଼ା ସଂନ୍ତୋଷଜନକ ନୁହଁ, ଏହା ଭାରତବାସୀଙ୍କ ଆଶା ଆକାଂକ୍ଷା ପୂରଣ କରୁନାହିଁ ବୋଲି କୁହାଗଲା । ତଥାପି କଂଗ୍ରେସ ଆଗାମୀ ନିର୍ବାଚନରେ ଅଂଶଗ୍ରହଣ କରିବ ବୋଲି ସ୍ଥିର ହେଲା । ନିର୍ବାଚନପରେ କଂଗ୍ରେସ ଶାସନ ଭାର ନେବକି ନା ତାହା ନିର୍ଣ୍ଣୟ କରାଯିବ ବୋଲି ନିଷ୍ପତ୍ତି ନିଆଗଲା ।

ବ୍ରିଟିଶ ଶାସନକଳ ଓ କଂଗ୍ରେସ ବିରୋଧୀ ଶକ୍ତିମାନଙ୍କ ସକଳ ବିରୋଧ ସତ୍ତ୍ୱେ କଂଗ୍ରେସ ଓଡ଼ିଶା, ବମ୍ବେ (ଏଥିରେ ମହାରାଷ୍ଟ୍ର ଗୁଜରାଟ ଅନ୍ତର୍ଭୁକ୍ତ) ଯୁକ୍ତ ପ୍ରଦେଶ, ବିହାର, ମାଡ୍ରାଜ (ଏଥିରେ ଏବର ତାମିଲନାଡୁ, ଆନ୍ଧ୍ର, କର୍ଣ୍ଣାଟକ, କେରଳ ଅନ୍ତର୍ଭୁକ୍ତ) ସଂଖ୍ୟା ଗରିଷ୍ଠ ଆସନ ଲାଭ କଲା । (ପ୍ରସଙ୍ଗ କ୍ରମେ ୧୯୩୬ରେ ଓଡ଼ିଶା ପ୍ରଦେଶ ଓ ସିନ୍ଧୁ ପ୍ରଦେଶ ଗଠିତ ହୋଇଥାଏ । ବଂଗଳା, ଆସାମରେ, ସୀମାନ୍ତ ପ୍ରଦେଶରେ ସଂଖ୍ୟା ଗରିଷ୍ଠ ନହେଲେହେଁ କଂଗ୍ରେସ ଏକକ ଭାବରେ ଭଲ ଆସନ ପାଇଲା । କେବଳ ପଂଜାବ ଓ ସିନ୍ଧରେ କଂଗ୍ରେସର ପରାଜୟ ହେଲା । ମାଡ୍ରାଜରେ ଖୁବ୍ ଶକ୍ତିଶାଳୀ, ବ୍ରିଟିଶ ପକ୍ଷପାତୀ ଜଷ୍ଟିସ ପାର୍ଟିର ପରାଜୟ ହୋଇଥିଲା ।

ଏହି ନିର୍ବାଚନରେ ଆଉ ଏକ ଲକ୍ଷଣୀୟ ବିଷୟ ହେଲା, ପ୍ରଦେଶମାନଙ୍କରେ ମୁସଲମାନମାନଙ୍କ ଲାଗି ସଂରକ୍ଷିତ ଥିବା ୪୮୨ଟି ଆସନ ପାଇଁ କଂଗ୍ରେସ ମାତ୍ର ୫୮ଟି ଆସନରେ ପ୍ରତିଦ୍ୱନ୍ଦିତା କରି ୨୬ଟି ଆସନ ପାଇଲା । ତାହାର ଅର୍ଥ କଂଗ୍ରେସ ସେହି ସବୁ ସଂରକ୍ଷିତ ସ୍ଥାନରେ ବିଶେଷତଃ ମୁସଲମାନ ବହୁଳ ଯୁକ୍ତ ପ୍ରଦେଶରେ ବି ଯଥେଷ୍ଟ ପ୍ରାର୍ଥୀ ଦେବାକୁ ଅସମର୍ଥ ହୋଇଥିଲା । କଂଗ୍ରେସ ପାଇଥିବା ମୋଟ ୨୬ ଆସନରୁ ବୃହତ୍ତମ ସଂଖ୍ୟା

ଗରିଷ୍ଠ ମୁସଲମାନ ଅଧ୍ୟୁଷିତ ସୀମାନ୍ତ ପ୍ରଦେଶରୁ ୧୫ଟି ଆସନ ଓ ଅବଶିଷ୍ଟ ସମଗ୍ର ଦେଶରୁ ୧୧ଟି ଆସନ ପାଇଲା।

ନିର୍ବାଚନ ପରେ ୧୯୩୭ ମାର୍ଚ୍ଚରେ ନିଖିଳ ଭାରତ କଂଗ୍ରେସ କମିଟିରେ ମନ୍ତ୍ରୀତ୍ୱ ଗ୍ରହଣ ସଂପର୍କିତ ପ୍ରଶ୍ନର ବିବେଚନା ହେଲା। କଂଗ୍ରେସ ଏପରି ଶାସନ ଖସଡାକୁ ବର୍ଜନ କରୁ ଓ ମନ୍ତ୍ରୀତ୍ୱ ନ ହେଉ ବୋଲି ମଧ୍ୟ କେତେକ ପ୍ରତିନିଧି ମତ ଦେଲେ। ଗାନ୍ଧିଜୀ ଏ ସଂପର୍କରେ ଏକ ଫର୍ମୁଲା ଆଗତ କରିଥିଲେ। ସେହି ଫର୍ମୁଲା ସପକ୍ଷରେ ୧୨୭ଟି ଓ ବିପକ୍ଷରେ ୭୦ଟି ଭୋଟ ପଡିଲା। ସୁବାଷବୋଷ, ନେହେରୁ ଓ ଅନ୍ୟାନ୍ୟ  ବାମପନ୍ଥୀ ସୋସାଲିଷ୍ଟ କମ୍ୟୁନିଷ୍ଟ ପ୍ରତିନିଧି ସେହି ଫର୍ମୁଲା ବିରୁଦ୍ଧରେ ଭୋଟ ଦେଇଥିଲେ।

୧୯୩୭ ଏପ୍ରିଲ ପହିଲା। 'ସଭିଙ୍କ ବୋକା ଦିବସ' 'ଅଲଫୁଲ ଡେ'। ସେହିଦିନ ମନ୍ତ୍ରୀମଣ୍ଡଳଗୁଡିକ ଶପଥ ନିଅନ୍ତୁ ବୋଲି ବିଜ୍ଞପ୍ତି ପ୍ରକାଶ ପାଇଲା। ମାତ୍ର ଗଭର୍ଣ୍ଣରମାନଙ୍କ ବିଶେଷ କ୍ଷମତା ବାଦ ନ ଦିଆଗଲେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରିବ ନାହିଁ ବୋଲି ଜଣାଇ ଦେଲା। ଏକ ସାଂବିଧାନିକ ସଂକଟ ସୃଷ୍ଟି ହେଲା। କଂଗ୍ରେସ ସଂଖ୍ୟା ଗରିଷ୍ଠ ପ୍ରଦେଶମାନଙ୍କରେ ଗଭର୍ଣ୍ଣରମାନେ କଂଗ୍ରେସ ବ୍ୟତୀତ ଅନ୍ୟ ଏମଏଲଏମାନଙ୍କୁ ଥୋପ ପକେଇ ସେହି ଦିନ ସଂଖ୍ୟାଲଘୁ ସରକାରଗୁଡିକୁ ବସେଇଲେ।

ଓଡିଶାରେ ପାରଳାଖେମଣ୍ଡିର ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଦେଓଙ୍କ ନେତୃତ୍ୱରେ ଏକ ଅସ୍ଥାୟୀ ସରକାର ବସାଯାଇଥିଲା।

୧୯୩୭ ଜୁଲାଇରେ ଏହି ସାଂବିଧାନିକ ସଂକଟକୁ ଦୂର କରିବା ଲାଗି କଂଗ୍ରେସ ଓ ସରକାର ମଧ୍ୟରେ ଆଲୋଚନା ହେଲା। ବିଶେଷ କ୍ଷମତାକୁ ଗଭର୍ଣ୍ଣର ପ୍ରୟୋଗ କରିବେ ନାହିଁ ବୋଲି ଭାଇସରାୟଙ୍କ ସଂଗେ ଏକ ରାଜିନାମା ହେଲା। ଏହାର ବୈଧାନିକତା ନଥିବାରୁ ଏହାକୁ "ଭଦ୍ରଲୋକଙ୍କ ମଧ୍ୟରେ ରାଜିନାମା" (ଜେଣ୍ଟଲମେନସ ଏଗ୍ରିମେଣ୍ଟ) କୁହାଗଲା।

ଏହାର ଭିତ୍ତିରେ ୧୯୩୭ ଜୁନ ୨୨ ତାରିଖରେ କଂଗ୍ରେସ ୯ଟି ରାଜ୍ୟରେ ମନ୍ତ୍ରୀମଣ୍ଡଳ ଗଢିଲା। ତନ୍ମଧ୍ୟରୁ ସୀମାନ୍ତ ପ୍ରଦେଶରେ, ଆସାମରେ ଏବଂ ସିନ୍ଧୁ ପ୍ରଦେଶରେ ସଂଖ୍ୟା ଗରିଷ୍ଠ ନଥିବାରୁ କଂଗ୍ରେସ ଅନ୍ୟମାନଙ୍କୁ ଧରି ମନ୍ତ୍ରୀମଣ୍ଡଳ ଗଠନ କଲା। କେବଳ ପଂଜାବ ଓ ବଂଗଳାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ନଥିଲା। ମୁସଲିମ ଲିଗକୁ ବାଦ ଦେଇ କଂଗ୍ରେସ ଅନ୍ୟମାନଙ୍କୁ ନେଇ ମନ୍ତ୍ରୀମଣ୍ଡଳ ଗଢିବା ଘଟଣାକୁ କେନ୍ଦ୍ର କରି ବ୍ରିଟିଶ ସରକାର କଂଗ୍ରେସ ଓ ମୁସଲିମ ଲିଗ୍ ମଧ୍ୟରେ ବିବାଦ ବଢାଇବାକୁ ଖୋରାକ ପାଇଲା। ୧୯୩୭ର ନିର୍ବାଚନ ପ୍ରକ୍ରିୟା କଂଗ୍ରେସଠାରୁ ମୁସଲମାନ ଜନତାକୁ ବିଶେଷ ମାତ୍ରାରେ ଦୂରେଇ ଦେଲା।

୧୯୩୯ ମସିହା ସେପ୍ଟେମ୍ବର ୩୧ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରଂଭର ପରବର୍ତ୍ତୀ ୧୯୪୦ର କେତେ ମାସ ଯାଏ ଏହିସବୁ ମନ୍ତ୍ରୀମଣ୍ଡଳ ଶାସନରେ ଥିଲେ।

ଯୁକ୍ତ ପ୍ରଦେଶରେ ଗୋବିନ୍ଦ ବଲ୍ଲଭ ପନ୍ଥ, ବିହାରରେ ଶ୍ରୀକୃଷ୍ଣ ସିହ୍ନା, ଆସାମରେ ଗୋପୀନାଥ ବର୍ଦ୍ଦୋଲାୟି, ବମ୍ବେରେ ମୋରାରଜୀ ଦେଶାଇ, ମାନ୍ଦ୍ରାଜରେ ସିଂ.ରାଜଗୋପାଳଚାରୀ, ମଧ୍ୟଭାରତରେ ରବିଶଙ୍କର ଶୁକ୍ଲା, ସୀମାନ୍ତ ପ୍ରଦେଶରେ ଡକ୍ଟର ଖାଁ ସାହେବ, ଓଡିଶାରେ ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ହୋଇଥିଲେ। ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳରେ ନିତ୍ୟାନନ୍ଦ କାନୁନଗୋ ଓ ବୋଧରାମ ଦୁବେ ମନ୍ତ୍ରୀ ଏବଂ ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ, ଜଗନ୍ନାଥ ମିଶ୍ର (ପୁରୀ) ଓ ପ୍ୟାରୀଶଙ୍କର ରାୟ ପାର୍ଲିଆମେଣ୍ଟାରୀ ସେକ୍ରେଟେରୀ ଓ ମୁକୁନ୍ଦ ପ୍ରସାଦ ଦାସ ଆସେମ୍ବ୍ଲି ସ୍ପିକର ଥିଲେ।

**ଆନନ୍ଦ ଓ ହତାଶା:**

ସୀମିତ କ୍ଷମତା ହେଉ ପଛେ ୯ଟି ରାଜ୍ୟରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରିଥିବାରୁ ଜନସାଧାରଣଙ୍କ ମଧ୍ୟରେ ବିପୁଳ ଆନନ୍ଦ ଉଲ୍ଲାସ ପ୍ରକାଶ ପାଇଲା। ଚାରିଆଡ଼େ ବିଜୟ ଉଲ୍ଲାସର ଏକ ଅସ୍ତିବାଚକ ବାତାବରଣ ସୃଷ୍ଟି ହେଲା।

ପ୍ରତିଷ୍ଠିତ କଂଗ୍ରେସ ସରକାରଗୁଡିକ କ୍ଷମତାରେ ଆସିବାପରେ ସେସବୁର ବଡ଼ କୃତିତ୍ୱ ହେଲା, ଅପହୃତ ଗଣତାନ୍ତ୍ରିକ ଅଧିକାର ଗୁଡିକର ଉଲ୍ଲେଖନୀୟ ପୁନଃ ପ୍ରତିଷ୍ଠା। ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରାଗଲା। ସଭା ସମାବେଶ, ପ୍ରଗତିଶୀଳ ରାଜନୈତିକ ସଂଗଠନ ଗଢିବାର ସୁଯୋଗ ସୃଷ୍ଟି ହେଲା। ଆଗରୁ ବ୍ରିଟିଶ ସରକାର ବେଆଇନ ଘୋଷଣା କରିଥିବା ସଂସ୍ଥା ସଂଗଠନକୁ ଆଇନସୁପର୍ଦ୍ଦ କରାଗଲା। ମାତ୍ର ୧୯୩୪ରୁ ବ୍ରିଟିଶ ସରକାର ଦ୍ୱାରା ବେଆଇନ ଘୋଷିତ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଉପରୁ ତାହା ଉଠି ନଥିଲା।

ଆଉ ଏକ ଗଣତାନ୍ତ୍ରିକ କୃତିତ୍ୱଯେ ଜମିଦାରମାନେ ଆଇନ ବହିର୍ଭୂତ ଯେଉଁସବୁ ବେଆଇନ ପାଉଣା ନେଉଥିଲେ; ବେଠି, ବେଗାରି, ରସଦ ମାଗଣ ବସେଇ ପ୍ରଜାମାନଙ୍କୁ ହନ୍ତସନ୍ତ କରୁଥିଲେ, ତାହାକୁ ଆଇନଗତ ଭାବରେ ନିଷେଧ କରାଗଲା। ମହାଜନମାନେ ଚଢା ସୁଧରେ ଯେଉଁ ଋଣ ଦେଉଥିଲେ ତାହାର ସଂଶୋଧନ କରି ଆଇନ ଧାର୍ଯ୍ୟ କରାଗଲା। ବ୍ରିଟିଶ ଶାସିତ ଅଂଚଳରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢାଯିବାରୁ ୫୬୨ଟି ଗଡଜାତର ଲୋକଙ୍କ ମଧ୍ୟରେ ଆଶାର ସଂଚାର ଘଟିଲା।

ମାତ୍ର କଂଗ୍ରେସ ସରକାରଗୁଡିକ ପକ୍ଷରୁ ଜନତା ମୌଳିକ ସମସ୍ୟା, ଜମିଦାରୀ ପ୍ରଥା ଉଚ୍ଛେଦ, ମହାଜନୀ ପ୍ରଥା ଉଚ୍ଛେଦ, ଶ୍ରମିକମାନଙ୍କ ଉପରେ ଶିଳ୍ପପତିମାନଙ୍କ ଉତ୍କଟ ଶୋଷଣ ହ୍ରାସ ପ୍ରଭୃତି ସମସ୍ୟା ପ୍ରତି ଉଦାସୀନତା ପରିସ୍ଫୁଟ ହେଲା।

ଭାରତୀୟ ସ୍ତରରେ କଂଗ୍ରେସ ତାହାର ବିପୁଳ ଶକ୍ତି ପ୍ରଦର୍ଶନ କରିଥଲେ ହେଁ ପ୍ରାଦେଶିକ ସ୍ତରରେ ତାର ଶାସନ ଅନେକ କ୍ଷେତ୍ରରେ ତାହାର ସଦୁପଯୋଗ କରିପାରିଲା ନାହିଁ। ଚାଷୀ, ଶ୍ରମିକ, ଛାତ୍ର ତଥା ଅନ୍ୟାନ୍ୟ ଜନସଂପ୍ରଦାୟ ଆପଣାର ସ୍ୱାର୍ଥରକ୍ଷା ଦାବୀରେ ଯେଉଁସବୁ ଆନ୍ଦୋଳନ

କଲେ ଓ ଦାବୀମାନ ବାଢ଼ିଲେ, ବା ଶ୍ରମିକ ଓ ଛାତ୍ରମାନେ ନିଜ ନିଜ ଦାବୀ ହାସଲ ପାଇଁ ଆନ୍ଦୋଳନ କଲେ ସେଥିପ୍ରତି ସହାନୁଭୂତିଶୀଳ ନ ହେବାର ଲକ୍ଷଣମାନ ଦେଖାଦେଲା । କଂଗ୍ରେସ ଭିତରେ ପ୍ରତ୍ୟେକଟି ପ୍ରଦେଶରେ କ୍ଷମତା କନ୍ଦଳ ପରିଦୃଷ୍ଟ ହେଲା । ଓଡ଼ିଶାରେ ଏପରି କନ୍ଦଳ ତୀବ୍ର ରୂପ ଧାରଣା କଲା । ଏହାର ସମାଧାନ ଲାଗି ଡକ୍ଟର ପ୍ରଫୁଲ୍ଲ ଘୋଷ ଓ ରାଜେନ୍ଦ୍ର ପ୍ରସାଦଙ୍କ ଉଦ୍ୟମ ବିଫଳ ହେଲା । ପଣ୍ଡିତ ନୀଳକଂଠ ଦାସ, ପଣ୍ଡିତ ଗୋଦାବରୀଷ ମିଶ୍ର ପ୍ରମୁଖ କଂଗ୍ରେସରୁ ଅଲଗା ହୋଇଗଲେ । ୧୯୪୨ ଆନ୍ଦୋଳନ କାଳରେ ଏହି ଗୋଷ୍ଠୀ ପୁନଶ୍ଚ ପାରଳା ରାଜାଙ୍କୁ ପ୍ରଧାମନ୍ତ୍ରୀ କରି ଶାସନରେ ରହିଲେ ଏବଂ ୧୯୪୨ ଆନ୍ଦୋଳନ କାଳରେ ରାଜ୍ୟରେ ବ୍ରିଟିଶ ଦମନଲୀଳା ଏହି ମନ୍ତ୍ରୀମଣ୍ଡଳ ଦ୍ୱାରା କାର୍ଯ୍ୟକାରୀ ହେଲା । ପ୍ରତ୍ୟେକଟି କଂଗ୍ରେସ ଶାସିତ ରାଜ୍ୟରେ କ୍ଷମତାର କନ୍ଦଳ ଲାଗିଥିଲେ ହେଁ, ଓଡ଼ିଶା କନ୍ଦଳର ଅନୁରୂପ ହୋଇ ନଥିଲା ।

କଂଗ୍ରେସ ଶାସନରେ ଏସବୁ ଆନ୍ଦୋଳନ ପ୍ରତି କଠୋର ମନୋଭାବ, ଦମନ, ଗିରଫ ଓ ଗୁଳିଚାଳନାରେ ଦୃଷ୍ଟାନ୍ତମାନ ଦେଖାଦେଲା । ଅନେକ ମଧ୍ୟରୁ କେତୋଟି ଦୃଷ୍ଟାନ୍ତ ନିଆଯାଉ ।

କ୍ଷମତା ଗ୍ରହଣର ଅଳ୍ପଦିନ ପରେ ମାନ୍ଦ୍ରାଜରେ ଖ୍ୟାତନାମା ବାମପନ୍ଥୀ ନେତା ଏସ.ଏସ.ବଟଲିୱାଲାଙ୍କୁ ଶ୍ରମିକମାନଙ୍କୁ ମତାଉଥିବା ଅଭିଯୋଗରେ ଗିରଫ କରାଗଲା । ବମ୍ବେ ଓ ମାନ୍ଦ୍ରାଜରେ ଶ୍ରମିକମାନେ ମାଲିକଙ୍କ ଶୋଷଣ ବିରୁଦ୍ଧରେ ଧର୍ମଘଟ କଲେ । ସେମାନଙ୍କୁ ପୂର୍ବପରି ଦମନ କରାଗଲା । ବମ୍ବେରେ ଶ୍ରମିକ ଧର୍ମଘଟ ଉପରେ ମୋରାରଜୀ ସରକାର ଗୁଳିଚାଳନା କରି ଅନେକଙ୍କୁ ଆହତ କଲେ । ଜଣେ ଶ୍ରମିକ ମୃତ୍ୟୁବରଣ କଲା । ଓଡ଼ିଶାରେ ପଛିକୋଟ ଜମିଦାର ବିରୁଦ୍ଧରେ ଆନ୍ଦୋଳନ କରିବା କାରଣରୁ ଖ୍ୟାତିସଂପନ୍ନ ବିପ୍ଳବୀ ଚାଷୀ ନେତା ଫଂନୀ ପାଲଙ୍କୁ ଗିରଫ କରାଗଲା । କଟକରେ ମେଡ଼ିକାଲ ଛାତ୍ର ଧର୍ମଘଟବେଳେ ଛାତ୍ରମାନଙ୍କ ଦାବୀକୁ ପ୍ରତ୍ୟାଖ୍ୟାନ କରାଗଲା ଓ ଦମନ କରି ୧୦ଦିନ ଯାଏ ଶତଶତ ଛାତ୍ରଙ୍କୁ ଗିରଫ କରାଗଲା, ଜେଲରେ ଆବଦ୍ଧ କରାଗଲା ।

ଯେଉଁ ଉଲ୍ଲାସ, ଉଦ୍ଦୀପନାର ଅଚିନ୍ତନୀୟ ବାତାବରଣ ସୃଷ୍ଟି ହୋଇଥିଲା ତାହା କ୍ରମେ ମଉଳିଗଲା । କଂଗ୍ରେସ ଭିତରେ ଗାନ୍ଧିପନ୍ଥୀ, ଦକ୍ଷିଣପନ୍ଥୀ, ମଧ୍ୟମପନ୍ଥୀ, ବାମପନ୍ଥୀ, ଏହିପରି ଗୋଷ୍ଠୀ ମଧ୍ୟରେ ମତ ପାର୍ଥକ୍ୟ ଅଧିକ ବଢ଼ିବାର ଲକ୍ଷଣମାନ ପରିଦୃଷ୍ଟ ହେଲା ।

**ମୁସଲିମ ଲିଗ - କଂଗ୍ରେସରର ଆସ୍ଥାନ:**

୧୯୩୮ ଓ ତା ପରବର୍ତ୍ତୀ କାଳରେ କଂଗ୍ରେସ ଲିଗ୍ ଐକ୍ୟ ଲାଗି ବିଭିନ୍ନ ଉଦ୍ୟମ କରାଗଲା । ୧୯୩୫ରେ କଂଗ୍ରେସର ସଭାପତି ରାଜେନ୍ଦ୍ର ପ୍ରସାଦ ଓ ମୁସଲିମ ଲିଗ ନେତା ଜିହ୍ନାଙ୍କ ମଧ୍ୟରେ ଆଲୋଚନା ସଫଳ ହେଲା ନାହିଁ । ୧୯୩୭ରେ ମୁସଲିମ ଲିଗ ଅଧିବେଶନରେ ଲିଗ ହିଁ ଭାରତରେ ମୁସଲମାନମାନଙ୍କ ଏକମାତ୍ର ପ୍ରତିନିଧି ବୋଲି ଘୋଷଣା କରାଗଲା । ଏହାକୁ କଂଗ୍ରେସ ନ ମାନିନେଲେ କଂଗ୍ରେସ ସହିତ ଆଲୋଚନା କରାଯିବ ନାହିଁ, ନିର୍ଣ୍ଣୟ କରାଗଲା ।

ଏହାର ଗୂଢ଼ ଅର୍ଥହେଲା, କଂଗ୍ରେସ କେବଳ ହିନ୍ଦୁମାନଙ୍କର ସଂଗଠନ ବୋଲି ବ୍ରିଟିଶ ସାକାରକୁ ଦର୍ଶାଇବା । ଲିଗର ଏହି ଅଧିବେଶନ ତାର ଲକ୍ଷ୍ୟ "ପୂର୍ଣ୍ଣ ସ୍ୱାଧୀନତା" ବୋଲି ଘୋଷଣା କଲା । ମାତ୍ର ଏହି ସ୍ୱାଧୀନତାର ରୂପଚରିତ୍ର ହେବ "ମୁକ୍ତ ଓ ଗଣତାନ୍ତ୍ରିକ ପ୍ରଦେଶଗୁଡ଼ିକୁ ଘେନି ଏକ ଫେଡେରେସନ (ରାଷ୍ଟ୍ରସଂଘ) ଗଠିତ ହେବ, ଯେଉଁଠି ମୁସଲମାନ ଓ ଅନ୍ୟ ସଂଖ୍ୟାନ୍ୟୂନଙ୍କ ସ୍ୱାର୍ଥଗୁଡ଼ିକ ପ୍ରଚୁର ପରିମାଣ ଏବଂ ଫଳପ୍ରଦ ଭାବରେ ସୁରକ୍ଷିତ ହେବ ।" ଏ ପର୍ଯ୍ୟନ୍ତ ଲିଗ ଦୁଇ ଜାତି ଭିତ୍ତିରେ ଦୁଇ ସ୍ୱତନ୍ତ୍ର ରାଷ୍ଟ୍ର ଗଠନର ଦାବୀ ଉଠାଇ ନଥିଲା ।

୧୯୩୭ରେ ଲଣ୍ଡନ ଯାଇଥିବା କାଳରେ ଏକ ପ୍ରଶ୍ନର ଉତ୍ତର ଦେଇ ଜବାହାରଲାଲ ନେହେରୁ ମନ୍ତବ୍ୟ ଦେଲେ ଯେ ଭାରତରେ କେବଳ ଦୁଇଟି ପକ୍ଷ ରହିଛନ୍ତି । ଗୋଟିଏ ହେଲା କଂଗ୍ରେସ ଓ ଅନ୍ୟଟି ହେଲା ବ୍ରିଟିଶ ସରକାର । ଜିନ୍ନାଙ୍କ ସଂପର୍କରେ ସେ ଲଘୁ ମନ୍ତବ୍ୟ ଦେଇ କହିଲେ "ସେ ଏକ ନିଃଶେଷ ଶକ୍ତି", "ସ୍ପେଣ୍ଟ ଅଫ ଫୋର୍ସ ।"

ଏକଦା ଜିନ୍ନା କଂଗ୍ରେସର ସଭାପତି ଥିଲେ । ତିଳକଙ୍କ ମକଦ୍ଦମାରେ ସେ ତାଙ୍କ ସପକ୍ଷରେ ଓକିଲାତି କରିଥିଲେ । ଆଗଖାଁଙ୍କ ନେତୃତ୍ୱାଧୀନ ମୁସଲିମ ଲିଗରେ ସେ ନଥିଲେ । ବରଂ ବିରୋଧ କରୁଥିଲେ । କଂଗ୍ରେସରେ ତାଙ୍କୁ ଯଥାମାନ୍ୟ ନଦେବାରୁ ସେ ବମ୍ବେରେ ବିଖ୍ୟାତ ବାରିଷ୍ଟରୀ ଛାଡ଼ି, ତାଙ୍କର ରାଜକୀୟ ପ୍ରାସାଦ ବିକି ଲଣ୍ଡନରେ ଓକିଲାତି କଲେ । ୧୪ବର୍ଷ ପରେ ଲଣ୍ଡନରୁ ଫେରି ସେ ମୁସଲିମ ଲିଗର ନେତା ହେଲେ ।

୧୯୩୮ରେ ଜିନ୍ନା ଓ ନେହେରୁଙ୍କ ମଧ୍ୟରେ କଂଗ୍ରେସ ଓ ଲିଗ୍ ଐକ୍ୟର ପ୍ରଚେଷ୍ଟା ଅସଫଳ ହେଲା । ଜିନ୍ନା ତାଙ୍କ ୧୪ଦଫା ଦାବୀରେ ଅଟଳ ରହିଲେ । ସୁବାଷଚନ୍ଦ୍ର ବୋଷ ଓ ଜିନ୍ନାଙ୍କ ମଧ୍ୟରେ ଆଲୋଚନା ମଧ୍ୟ ବିଫଳ ହେଲା ।

ଅନ୍ୟ ପକ୍ଷରେ ଅନ୍ୟ ଯେଉଁ ଘଟଣାବଳୀ ବ୍ରିଟିଶ ବିରୁଦ୍ଧରେ କଂଗ୍ରେସ-ଲିଗ୍ ଐକ୍ୟରେ ବାଧକ ହୋଇଥିଲା, ତାହାର ସଂକ୍ଷିପ୍ତ ଆଲୋଚନା ଆବଶ୍ୟକ ।

**ହିନ୍ଦୁ ସାଂପ୍ରଦାୟିକବାଦୀଙ୍କ ଆସ୍ଥାନ:**

୧୯୩୮ରେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ଗୁରୁ ଗୋଲୱାଲକର ତାଙ୍କର "ଆୱାର ନେସନହୁଡ ଡିଫେନଣ୍ଡେଣ୍ଡ" ପୁସ୍ତକରେ ଲେଖିଲେ । "ହିନ୍ଦୁ ଜନତା ବିରାଟ ପୁରୁଷ ସର୍ବଶକ୍ତିମାନ (ଅଲମାଇଟି) ରୂପେ ନିଜକୁ ପ୍ରତିପନ୍ନ କରୁଛି । କାହିଁକି ? ବ୍ରାହ୍ମଣ ତାହାର ମସ୍ତିଷ୍କ; ନରପତି ହେଲେ ହସ୍ତ, ବୈଶ୍ୟ ହେଲେ ଜଙ୍ଘ ଏବଂ ଶୂଦ୍ର ହେଲେ ପାଦ ।....ହିନ୍ଦୁ ଲୋକେ ହିଁ ଆମର ଭଗବାନ ।" ମନୁଙ୍କର ଚତୁଃବର୍ଣ୍ଣକୁ ଅଧୁନା ସମାଜରେ ପ୍ରବର୍ତ୍ତନ କରାଯିବ ଏବଂ ଭାରତୀୟ ମହାନ୍ ଜାତୀୟତାରେ ଅନ୍ୟ କାହାର ସ୍ଥାନ ନାହିଁ, ଏହାହିଁ ଏହାର ଅର୍ଥ ।

କେ.ଏମ.ମୁନସୀ ସେତେବେଳେ କଂଗ୍ରେସର ବରିଷ୍ଠ ନେତା । ସେ ଅଖଣ୍ଡ ହିନ୍ଦୁସ୍ଥାନ ନାମକ କଂଗ୍ରେସର ବିକଳ୍ପ ରୂପେ ଏକ ଅନୁଷ୍ଠାନ ଗଠନ କଲେ । ତାହାର ଘୋଷଣାଗୁଡ଼ିକୁ

ଗାନ୍ଧିଜୀ ବିରୋଧ କରି ତାଙ୍କୁ କଂଗ୍ରେସରୁ ଇସ୍ତଫା ଦେବାକୁ କହିଥିଲେ । ତାଙ୍କୁ ଇସ୍ତଫା ଦେବାକୁ ପଡିଥିଲା ।

୧୯୨୭ରେ ସ୍ୱନାମଧନ୍ୟ ଦେଶପ୍ରେମୀ ଲାଲା ଲାଜପତ୍‌ରାୟ ଲେଖିଲେ, "ହିନ୍ଦୁ, ମୁସଲମାନ ଦୁଇଟି ଭିନ୍ନ ଭିନ୍ନ ସଂପ୍ରଦାୟ । ପଂଜାବ, ସିନ୍ଧୁ ଓ ସୀମାନ୍ତ ପ୍ରଦେଶକୁ ମୁସଲମାନମାନେ ଶାସନ କରିବେ । ଅନ୍ୟ ଭାଗରେ ହିନ୍ଦୁମାନେ ଶାସନ କରିବେ ।" ସ୍ୱାଧୀନତା ପ୍ରାପ୍ତିପରେ ହିନ୍ଦୁ ମୁସଲମାନ ଶିଖ, ଖ୍ରୀଷ୍ଟିଆନ ସଭିଁଏ ଏକତ୍ର ଶାସନରେ ଭାଗ ନେବେ, ଏପରି ବାର୍ତ୍ତା ଏଥିରୁ ମିଳେ ନାହିଁ ।

ଲାଲ ଲାଜପତ ରାୟଙ୍କ ୧୯୨୪ର ବୟାନ ତାଙ୍କ ନିଜସ୍ୱ ଟ୍ରିବ୍ୟୁନ ପତ୍ରିକାରେ ପ୍ରକାଶ ପାଇଥିଲା । ତାହା ଆହୁରି ସ୍ପଷ୍ଟ । ସେଥିରେ ଭାରତକୁ ଭାଗଭାଗ କରିବାର ବଳିଷ୍ଠ ସୂଚନା ଦିଆଯାଇଥିଲା । ସେଥିରେ ଥିଲା, "ପଂଜାବ ଦୁଇ ଭାଗରେ ବିଭକ୍ତ ହେବା ଆବଶ୍ୟକ, ସଂଖ୍ୟାଗରିଷ୍ଠ ପଶ୍ଚିମ ପଂଜାବ ଏକ ମୁସଲିମ ଶାସିତ ରାଜ୍ୟ ହେବ । ଏହି ନୀତି ମଧ୍ୟ ବଂଗଳା ପ୍ରତି ପ୍ରଯୁଜ୍ୟ ହେବ । ମୋ ଯୋଜନା ଅନୁସାରେ ମୁସଲମାନମାନେ ଚାରୋଟି ପ୍ରଦେଶ ପାଇବେ । ଉତ୍ତର ପଶ୍ଚିମ ସୀମାନ୍ତ, ପଶ୍ଚିମ ପଂଜାବ, ସିନ୍ଧୁ ଓ ପୂର୍ବବଂଗ । ସ୍ପଷ୍ଟ ଭାବରେ ବୁଝିବାକୁ ହେବ ଯେ ଏକ ଐକ୍ୟବଦ୍ଧ ଭାରତ ନୁହେଁ । ଏହାର ଅର୍ଥ ମୁସଲିମ ଭାରତ ଓ ଅଣ-ମୁସଲିମ ଭାରତ ଭାବରେ ଭାରତର ବିଭାଜନ ।" ଏହାହିଁ ଥିଲା ତାଙ୍କର ସ୍ପଷ୍ଟ ଘୋଷଣା ।

ଇତିହାସରେ ବିଡମ୍ବନାଯେ ଭାରତ ବିଭାଜନକାଳରେ ଲାଜପତ୍‌ରାୟଙ୍କ "ଯୋଜନା"ଟି ଅବିକଳ ରୂପରେ କାର୍ଯ୍ୟକାରୀ ହେଲା । ମୁସଲିମ ଲିଗ ଓ ବ୍ରିଟିଶ ସାମ୍ରାଜ୍ୟବାଦର ଯୋଜନା ରୂପାୟିତ ହେଲା । ।

ହିନ୍ଦୁ ମହାସଭାରେ ଯୋଗଦେଇ ଭି.ଡି. ସଭରକର କହିଲେ ଯେ "ଭାରତ ଦୁଇଟି ପରସ୍ପର ବିରୋଧୀ ଜାତିର ବାସଭୂମି ।" ହିନ୍ଦୁ ମୁସଲମାନ ଧର୍ମୀୟ ସଂପ୍ରଦାୟ ନୁହଁ, ଦୁଇ ଜାତିରେ ବିଭକ୍ତ ବୋଲି ସେ ଉଲ୍ଲେଖ କଲେ ।

ହିନ୍ଦୁ ମହାସଭାରେ ଯୋଗଦେଇ ଭି.ଡି. ସରକର କହିଲେ ଯେ "ଭାରତ ଦୁଇଟି ପରସ୍ପର ବିରୋଧୀ ଜାତିର ବାସଭୂମି ।" ହିନ୍ଦୁ ମୁସଲମାନ ଧର୍ମୀୟ ସଂପ୍ରଦାୟ ନୁହଁ, ଦୁଇ ଜାତିରେ ବିଭକ୍ତ ବୋଲି ସେ ଉଲ୍ଲେଖ କଲେ ।

ହିନ୍ଦୁ ମହାସଭାର ନେତା ହେଲାପରେ ଭାଇ ପରମାନନ୍ଦ ୧୯୨୩ରେ ରଚିତ ତାଙ୍କ ପୁସ୍ତକରେ ଲେଖିଲେ, "ସଂଖ୍ୟା ଗରିଷ୍ଠ ହିନ୍ଦୁ, ମୁସଲମାନ ସଂଖ୍ୟା ଗରିଷ୍ଠତା ଭିତ୍ତିରେ ପ୍ରଦେଶ ଗୁଡିକର ବିଭାଜନ ହେବ ।"

୧୯୧୩ରେ ବ୍ରିଟିଶ ଖେତାବଧାରୀ ରାୟବାହାଦୂର ଲାଲଚାନ୍ଦ ତାଙ୍କର "ସେଲଫ ଆବଗ୍ରେସନ" ନାମକ ପୁସ୍ତକରେ ଲେଖିଲେ, "ପ୍ରଥମରେ ଆମେ ହିନ୍ଦୁ ତାପରେ ଭାରତୀୟ ।"

"ସାରେ ଯାହାଁସେ ଆଚ୍ଛା, ହିନ୍ଦୁସ୍ଥାନ ହାମାରା" ଯାହା ଆଜିବି ପ୍ରାଣରେ ଉନ୍ମାଦନା ଆଣିଦିଏ ତାହାର ରଚୟିତା ଇକବଲ ମନ ବଦଳାଇଲେ ଏବଂ "ସଂଖ୍ୟା ଗରିଷ୍ଠତା ଭିତ୍ତିରେ ପ୍ରଦେଶ ଗଠନ" ହେଉ ବୋଲି ମତବ୍ୟକ୍ତ କଲେ।

ସଂପୃକ୍ତ ଏହି ଅଧ୍ୟାୟରେ ସାଂପ୍ରଦାୟିକତାର ରୂପ, କଂଗ୍ରେସ ଲିଗ ମତଭେଦ ଓ ଲିଗର ଆସ୍ଥାନ ବର୍ଣ୍ଣନା କଲାବେଳେ ଗାନ୍ଧିଜୀ ଦେଶର ଐକ୍ୟ ଓ ଭାରତୀୟ ଜାତୀୟତା ସଂପର୍କରେ ପରେ ଯାହା କହିଥିଲେ ତାହା ଏଠାରେ ଉଲ୍ଲେଖ କରାଯିବ ପ୍ରୟୋଜନ।

୧୯୪୨ ଅଗଷ୍ଟ ୯ରେ ହରିଜନ ପତ୍ରିକାରେ ସେ ଲେଖିଥିଲେ, "ଯେଉଁମାନେ ଏଠାରେ ଜନ୍ମଗ୍ରହଣ କରି ଲାଳିତ ପାଳିତ ହୋଇଛନ୍ତି, ସେମାନଙ୍କ ସମୀପରେ ଅନ୍ୟ କେଉଁ ଦେଶ ନାହିଁ ହିନ୍ଦୁସ୍ଥାନ ସେମାନଙ୍କର। ତେଣୁ ଏ ଦେଶ ହିନ୍ଦୁଙ୍କର ଯେମିତି, ସେମିତି ପାର୍ଶୀ, ଜେନେ ଇସ୍ରାଏଲଙ୍କଠାରୁ ଆରଂବ କରି ଭାରତୀୟ ଖ୍ରୀଷ୍ଟିଆନ, ମୁସଲମାନ ଏବଂ ଅଣ ହିନ୍ଦୁମାନଙ୍କର। ସ୍ୱାଧୀନ ଭାରତ ହିନ୍ଦୁ ରାଜ ହେବ ନାହିଁ। ଏହା ହେବ ଧର୍ମ ନିର୍ବିଶେଷରେ ସମଗ୍ର ଜନଦାର।"

ସ୍ୱାଧୀନତାର ଅବବ୍ୟହିତ ପୂର୍ବରୁ ୧୯୪୭ ମଇ ୨୬ତାରିଖ ସଂଖ୍ୟା ହରିଜନରେ ତାଙ୍କ କଳ୍ପିତ ରାମରାଜ୍ୟ କ'ଣ ସେ ଦର୍ଶାଇ ଲେଖିଥିଲେ "କେହି ଭୁଲରେ ଭାବନ୍ତୁ ନାହିଁ ଯେ ରାମରାଜ୍ୟ ଅର୍ଥ ହିନ୍ଦୁଙ୍କର ରାଜ। ମୋ ରାମ ହେଉଛନ୍ତି ଖୋଦା ଅବା ଈଶ୍ୱରଙ୍କ ଅନ୍ୟ ନାମ। ମୁଁ ଚାହେଁ ଖୋଦାରାଜ, ଯାହାକି ପୃଥିବୀରେ ଈଶ୍ୱରଙ୍କ ରାଜ।"

**କଂଗ୍ରେସରେ ଆଉ ଏକ ବିଭାଜନ:**

୧୯୩୫ ଶାସନ ଖସଡ଼ା ପରେ ଗଠିତ କଂଗ୍ରେସ ମନ୍ତ୍ରୀମଣ୍ଡଳଗୁଡ଼ିକର ଭୂମିକାର ମୂଲ୍ୟାୟନ କରିବା ଓ "ସଂପୂର୍ଣ୍ଣ ସ୍ୱରାଜ" ଲକ୍ଷ୍ୟ ସାଧନର ପନ୍ଥାପଦ୍ଧତି ବିଚାର କରିବା ଲାଗି ୧୯୩୮ରେ ହରିପୁରାଠାରେ କଂଗ୍ରେସ ଅଧିବେଶନ ନିର୍ବାଚିତ ସଭାପତି ସୁବାଷଚନ୍ଦ୍ର ବୋଷଙ୍କ ଅଧକ୍ଷତାରେ ବସିଲା। କଂଗ୍ରେସ ସଂଗ୍ରାମର ପଥ ପରିହାର କରି "ସାଂବିଧାନିକ ପନ୍ଥା" ଆଡ଼େ ଅଧିକ ଆଗେଇ ଚାଲିଛି ବୋଲି ସମାଲୋଚନା ପ୍ରକାଶ ପାଇଲା। ଏହି କଂଗ୍ରେସରେ ଜବାହାରଲାଲ ନେହେରୁ କଂଗ୍ରେସ ସଂଗଠନରେ ଅଧିକ ପ୍ରଗତିପନ୍ଥୀ ସଂଗଠନକୁ ସହଯୋଗୀ ସଦସ୍ୟର ମାନ୍ୟତା ଦେଇ ବ୍ୟାପକ ଭିତ୍ତି ଦେବାର ଏକ ପ୍ରସ୍ତାବ ଆଣିଲେ। ବିଭିନ୍ନ ବାମପନ୍ଥୀ ପ୍ରତିନିଧି ଏହାର ସମର୍ଥନ କଲେ। ଏପରି ସଂସ୍ଥା ଯାହା ସବୁର ବିକାଶ ଘଟିଥିଲା, ତାହା ହେଲା ଅ.ଭା.କୃଷକ ସଭା, ଗଡଜାତ ପ୍ରଜା ସମ୍ମିଳନୀ, ଟ୍ରେଡ୍ୟୁନିଅନ ଏବଂ ଆଉ କେତେକ ସାମ୍ରାଜ୍ୟବାଦ ବିରୋଧୀ ସଂଗଠନ। ମାତ୍ର କଂଗ୍ରେସର ନେତୃତ୍ୱର ଏକ ଅଂଶ ଏପରି ପ୍ରସ୍ତାବର ତୀବ୍ର ବିରୋଧ କଲେ। କଂଗ୍ରେସର ସାଧାରଣ ସଂପାଦକ ଜେ.ବି. କୃପାଳିନୀ ବ୍ୟଙ୍ଗ କରି କହିଲେ ଯେ ଯଦି ପତିତାମାନେ ଏକ ସଂଘ କରିବେ, ତେବେ କ'ଣ କଂଗ୍ରେସ ତାକୁ ସହଯୋଗୀ କରିନେବ।

କଂଗ୍ରେସରେ ଦକ୍ଷିଣପନ୍ଥୀଙ୍କ କର୍ତ୍ତୃତ୍ୱର ସୂଚନା ଏଥିରୁ ମିଳେ। ୧୯୩୯ ତ୍ରିପୁରା କଂଗ୍ରେସ ସଭାପତି ନିର୍ବାଚନ ଓ ତାହାର ପରବର୍ତ୍ତୀ ଘଟଣାବଳୀରୁ ଏହା ଅତି ସ୍ପଷ୍ଟ ହୋଇଗଲା। ଏଥର ପୁନଃ ନିର୍ବାଚିତ ହେବାଲାଗି ସୁବାଷଚନ୍ଦ୍ର ବୋଷ ପ୍ରାର୍ଥୀ ହେଲେ। ତାଙ୍କୁ କଂଗ୍ରେସର ଅନେକ ବାମପନ୍ଥୀ, ତଥା ସୋସଲିଷ୍ଟ, କମ୍ୟୁନିଷ୍ଟ ସଦସ୍ୟମାନେ ସମର୍ଥନ କଲେ। ତାଙ୍କର ପ୍ରତିଦ୍ୱନ୍ଦୀ ଥିଲେ ଡକ୍ଟର ପଟ୍ଟାଭି ସୀତାରାମାୟା। ଗାନ୍ଧିଜୀ ତାଙ୍କୁ ସମର୍ଥନ କଲେ ଏବଂ ଘୋଷଣା କଲେ ଯେ "ପଟ୍ଟାଭି ସୀତାରାମାୟଙ୍କ ପରାଜୟ ହେବ ମୋର ପରାଜୟ।"

ଗାନ୍ଧିଜୀଙ୍କ ଏପରି ସମର୍ଥନ ସତ୍ତ୍ୱେ ସୁବାଷଚନ୍ଦ୍ର ବୋଷ ଦ୍ୱିତୀୟ ଥର ପାଇଁ କଂଗ୍ରେସ ସଭାପତି ନିର୍ବାଚିତ ହେଲେ। ସୁବାଷଙ୍କ ସପକ୍ଷରେ କଂଗ୍ରେସର ବାମପନ୍ଥୀ ସୋସଲିଷ୍ଟ, କମ୍ୟୁନିଷ୍ଟ ଅଭିଯାନ ଚଳେଇଲେ। ଅତୀତରେ କଂଗ୍ରେସ ସଭାପତି ପଦ ପାଇଁ ଏପରି ସରଗରମ, ରାଜନୈତିକ ପ୍ରଚାର ଅଭିଯାନ ହୋଇ ନଥିଲା। ସବୁ ପ୍ରଦେଶର ପ୍ରାଦେଶିକ କଂଗ୍ରେସ କମିଟିର ସଦସ୍ୟମାନେ ଭୋଟଦାତା। ବୋଷ ୧୫୭୫ଟି ଏବଂ ସୀତାରାମାୟା ୧୩୭୬ଟି ଭୋଟ ପାଇଲେ। ଓଡିଶାରେ ବୋଷଙ୍କ ସପକ୍ଷରେ ସଂଖ୍ୟାଗରିଷ୍ଠ ଭୋଟ ପଡିଥିଲା। ଓଡିଶା ପ୍ରାଦେଶିକ କମିଟିର ସୋସାଲିଷ୍ଟ କମ୍ୟୁନିଷ୍ଟ ସଦସ୍ୟମାନେ ସୁବାଷଙ୍କ ପକ୍ଷରେ ପ୍ରଚାର ଅଭିଯାନ ଚଳେଇଥିଲେ। ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ସୀତାରାମାୟା ଓ ନବକୃଷ୍ଣ ଚୌଧୁରୀଙ୍କ ପ୍ରଭାବରେ ସୁବାଷଙ୍କ ପକ୍ଷରେ ଅଭିଯାନ ଚାଲିଥିଲା।

**ସୁବାଷବୋଷଙ୍କ ଉପରେ ଶାନ୍ତିବିଧାନ:**

ତ୍ରିପୁରା କଂଗ୍ରେସ ଅଧିବେଶନ ଅନ୍ତେ ସଭାପତି ବୋଷ କଂଗ୍ରେସର ବିଧିବିଧାନ ଅନୁସାରେ ୧୫ ଜଣିଆ କାର୍ଯ୍ୟକାରୀ କମିଟି ଗଠନ କଲେ। ମାତ୍ର ଗାନ୍ଧିଜୀଙ୍କ ଦ୍ୱାରା ମନୋନୀତ ସୀତାରାମାୟାଙ୍କ ପରାଜୟକୁ କେନ୍ଦ୍ର କରି ୧୫ଜଣ ମନୋନୀତ ସଦସ୍ୟଙ୍କ ମଧ୍ୟରୁ ୧୨ଜଣ, ଏମିତିକି ପଣ୍ଡିତ ଜବାହାରଲାଲ ଇସ୍ତଫା ଦେଇଦେଲେ। ସୁବାଷଙ୍କ ସହ ସହଯୋଗ କରିବେ ନାହିଁ ବୋଲି ସେମାନେ ନିଷ୍ପତ୍ତି କରିଦେଲେ। ଏହି ସଂକଟକୁ ଦୂର କରିବା ଲାଗି ଗାନ୍ଧିଜୀ ମଧ୍ୟ ପଦକ୍ଷେପ ନେଲେ ନାହିଁ। ଫଳରେ ଏକ ଅଚଳ ଅବସ୍ଥା ଓ ସଂକଟ ସୃଷ୍ଟି ହେଲା। ହରିପୁରା କଂଗ୍ରେସରେ ସୁବାଷ ବୋଷ ହରେକୃଷ୍ଣ ମହତାବଙ୍କୁ କାର୍ଯ୍ୟକାରୀ କମିଟିରେ ନେଇଥିଲେ। ସେ ମଧ୍ୟ ଏଥିରୁ ଇସ୍ତଫା ଦେଇଦେଲେ। ଏହି ସଂକଟର ସମାଧାନ ଲାଗି ୧୯୩୯ ମଇ ମାସରେ କଲିକତା ଠାରେ ନି. ଭା. କଂଗ୍ରେସ କମିଟି ବସିଲା। କୌଣସି ସମାଧାନର ସୂତ୍ର ବାହାରି ପାରିଲା ନାହିଁ। ସୁବାଷଙ୍କ ସହିତ ଅସହଯୋଗୀମାନେ ଅସହଯୋଗକୁ ଅଧିକ ଟାଣ କଲେ। ଫଳରେ ସଭାପତି ପଦରୁ ସୁବାଷ ବୋଷ ଇସ୍ତଫା ଦେଇଦେଲେ ଏବଂ ରାଜେନ୍ଦ୍ର ପ୍ରସାଦ ଅସ୍ଥାୟୀ ସଭାପତି ଭାବରେ ଅବସ୍ଥାପିତ ହେଲେ।

କଂଗ୍ରେସ ନେତୃତ୍ୱରେ ଏପରି କାର୍ଯ୍ୟର ବିରୋଧ କରି ସୁବାଷ ବୋଷଙ୍କ ଦ୍ୱାରା ସେହିବର୍ଷ ଜୁଲାଇ ୯ ତାରିଖରେ ବାମ ସଂହତି କମିଟି ଆନୁକୂଲ୍ୟରେ ଜନ ବିକ୍ଷୋଭ ପ୍ରଦର୍ଶନ କରାଗଲା । ଏହି କମିଟି ପକ୍ଷରୁ କଂଗ୍ରେସଠାରୁ ସ୍ୱତନ୍ତ୍ର ରହି ସ୍ୱାଧୀନତା ସଂଗ୍ରାମ ସଂଗଠିତ କରିବାକୁ ଖୋଲାଖୋଲି ଆହ୍ୱାନ ଦିଆଗଲା । ଦଳ ବିରୋଧୀ କାର୍ଯ୍ୟ ଅଭିଯୋଗରେ ସୁବାଷ ବୋଷ ଆଗାମୀ ତିନିବର୍ଷ ପାଇଁ କଂଗ୍ରେସର କୌଣସି ପଦପଦବୀରେ ରହିପାରିବେ ନାହିଁ ବୋଲି ଦଣ୍ଡବିଧାନ କରାଗଲା । ତାଙ୍କ ନିଜ ପ୍ରଦେଶ ବଙ୍ଗଳାରେ ସେ ପ୍ରାଦେଶିକ କମିଟିରେ ମଧ୍ୟ ରହିପାରିଲେ ନାହିଁକି କୌଣସି ତଳିଆ କମିଟିରେ ପଦାଧିକାରୀ ସ୍ଥାନରେ ରହିପାରିଲେ ନାହିଁ । ସୁବାଷ ଚନ୍ଦ୍ର ବୋଷ କଂଗ୍ରେସ ସହିତ ଅନୁଷ୍ଠାନିକ ସଂପର୍କ ଛିନ୍ନ କରିଦେଲେ ଏବଂ ଏକ ସ୍ୱତନ୍ତ୍ର ରାଜନୈତିକ ସଂଗଠନ ଗଢିଲେ । କଂଗ୍ରେସରେ ତୃତୀୟ ଥର ପାଇଁ ବିଭାଜନ ହେଲା ।

**ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରଂଭ, କଂଗ୍ରେସ ମନ୍ତ୍ରୀମଣ୍ଡଳର ଇସ୍ତଫା :**

୧୯୩୮ରେ ହରିପୁରା କଂଗ୍ରେସ ଅଧିବେଶନ ବେଳକୁ ପୃଥିବୀରେ ଯୁଦ୍ଧ ଘନଘଟାର କଳାବାଦଲ ଉଙ୍କି ମାରୁଥାଏ । ଏହା ବିରୁଦ୍ଧରେ ପୃଥିବୀରେ ଓ ଭାରତରେ ଯୁଦ୍ଧ ବିରୋଧୀ ଆନ୍ଦୋଳନ ମୁଣ୍ଡ ଟେକୁଥାଏ । ଭବିଷ୍ୟତର ସାମ୍ରାଜ୍ୟବାଦୀ ଯୁଦ୍ଧରେ ଭାଗ ନେବ ନାହିଁ ବୋଲି ହରିପୁରା କଂଗ୍ରେସ ଘୋଷଣା କରିଥିଲା । ଜବାହରଲାଲ ଓ ବାମପନ୍ଥୀମାନଙ୍କ ପ୍ରଭାବରେ କଂଗ୍ରେସ ଏକ ଆନ୍ତର୍ଜାତୀୟତାବାଦୀ ଆସ୍ଥାନ ଗ୍ରହଣ କଲା । କଂଗ୍ରେସ ସଂଗଠନରେ ଏକ ଆନ୍ତର୍ଜାତୀୟ ବିଭାଗ ଖୋଲାଗଲା । ନେହେରୁ ବାଛି ବାଛି ଆନ୍ତର୍ଜାତିକ ପରିସ୍ଥିତି ସଂପର୍କରେ ବିଶେଷ ଜ୍ଞାନସଂପନ୍ନ ବ୍ୟକ୍ତିଙ୍କୁ ଏହି ସଂଗଠନର ଦାୟିତ୍ୱ ଦେଲେ । କେ.ଏମ. ଅସରଫ, ସଜାଦ ଜହିର, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜେଡ.ଏ ଅହମ୍ମଦ ପରି ବାମପନ୍ଥୀ ମାର୍କ୍ସବାଦୀ ଚିନ୍ତାନାୟକମାନଙ୍କୁ ବିଶ୍ୱ ଘଟଣାବଳୀ ସଂପର୍କରେ କଂଗ୍ରେସର ଆସ୍ଥାନ କଣ ହେବ, ତାର ବିଚାର ଆଲୋଚନାର ଦାୟିତ୍ୱ ଦିଆଯାଇଥିଲା ଓ ପରାମର୍ଶ କରାଯାଉଥିଲା । ଏତେବେଳକୁ ପୃଥିବୀରେ ସାମ୍ରାଜ୍ୟବାଦର ବୀଭତ୍ସ ରୂପଧାରଣ କରି ଇଟାଲୀରେ ଫାସିଷ୍ଟବାଦ ଓ ଜର୍ମାନୀରେ ନାଜିବାଦ ଓ ଜାପାନରେ ସମରବାଦର ଅଭ୍ୟୁଦୟ ଘଟିଥାଏ । ନିଜ ଦେଶର ସବୁ ଗଣତାନ୍ତ୍ରିକ, ପ୍ରଗତିଶୀଳ ଦଳ, ଶ୍ରମିକ ଆନ୍ଦୋଳନକୁ ସେମାନେ ଦମନ କରି ନିର୍ବାଚିତ ପାର୍ଲିଆମେଣ୍ଟଗୁଡ଼ିକୁ ଭାଂଗି ଦେଇ ଫାସିଷ୍ଟବାଦୀ ଶାସନ ପ୍ରତିଷ୍ଠା କରିଥାନ୍ତି । ଫାସିଷ୍ଟବାଦର ଡାକରା ଥାଏ "ଆମର ନିଃଶ୍ୱାସ ମାରିବାକୁ ସ୍ଥାନ ନାହିଁ ।" ଆମେ ନିଶ୍ୱାସ ମାରିବାର ସ୍ଥାନ ଚାହୁଁ ।" ଏସିଆ, ଆଫ୍ରିକା, ମଧ୍ୟପ୍ରାଚ୍ୟ, ଅନ୍ୟତ୍ର ଆଗରୁ ବ୍ରିଟିଶ, ଫ୍ରାନ୍ସ ଡଚ ଓ ଅନ୍ୟମାନଙ୍କ ଦ୍ୱାରା ପରାଧୀନ ଦେଶଗୁଡ଼ିକୁ ବ୍ରିଟିଶ, ଫ୍ରାନ୍ସଙ୍କ କର୍ତ୍ତୃତ୍ୱରୁ ଛଡାଇ ନିଆଯିବ । ଅନ୍ୟ ପକ୍ଷରେ ସାମ୍ୟବାଦୀ ସୋଭିଏତ୍, ୟୁନିଅନକୁ ଧ୍ୱଂସ କରାଯିବ । ସେହି ଲକ୍ଷ୍ୟ ଘୋଷଣା କରି ହିଟଲର, ମୁସୋଲିନୀ, ଜାପାନର ଟୋଜୋ ନିଜ ଦେଶର ସବୁ ଗଣତନ୍ତ୍ରକାମୀ ଦଳକୁ ବେଆଇନ କରିଦେଲେ । ସୋସଲିଷ୍ଟ, କମ୍ୟୁନିଷ୍ଟମାନଙ୍କୁ ପିଟି ସାବାଡ୍ କରି ଦେଲରେ

ଠୁକି ଦେଲେ । ଯିହୁଦୀମାନେ ଆର୍ଯ୍ୟଜାତି ଜର୍ମାନୀର ଶତ୍ରୁ ବୋଲି ଘୋଷଣା କରି ହିଟଲରଙ୍କ ଆଦେଶରେ ୬୦ଲକ୍ଷ ଯିହଦୀଙ୍କୁ ହତ୍ୟା କରାଗଲା । ସ୍ୱସ୍ତିକ ଚିହ୍ନର ପତାକା ଆର୍ଯ୍ୟ ପତାକା ବୋଲି ଘୋଷଣା କରାଗଲା ।

ଫାସିଷ୍ଟବାଦ ଭାରତ ପ୍ରତି ମଧ୍ୟ ବିପଦ ବୋଲି ଅନୁଭବ କରି କଂଗ୍ରେସର ଦୃଷ୍ଟିଭଂଗୀରେ ପରିବର୍ତ୍ତନ ଆସିଲା ।

ଆଫ୍ରିକା ମହାଦେଶର ଆବସିନିଆ ଉପରେ ଇଟାଲୀର ଫାସିଷ୍ଟ ମୁସୋଲିନଙ୍କ ଆକ୍ରମଣକୁ କଂଗ୍ରେସ ନିନ୍ଦା କଲା । ୧୯୩୫ରେ ଚୀନ ଭୂଖଣ୍ଡର ମାଞ୍ଚୁରିଆକୁ ଜାପାନ ଦଖଲ କରିଯାଇଥିଲା । ୧୯୩୭-୩୮ରେ ଚୀନର ସାଂଘାଇ ଓ କୋରିଆ ଉପରେ ଜାପାନ ଆକ୍ରମଣ କରିଦେଲା । ଚୀନର ସ୍ୱାଧୀନତା ସଂଗ୍ରାମକୁ ସାହାଯ୍ୟ ଦେବା ଲାଗି କଂଗ୍ରେସ ଏକ ମେଡିକାଲ ମିଶନ ପଠାଇଲା । ଭାରତର ଖ୍ୟାତନାମା ଡକ୍ଟର ଅଟଳ, ଡକ୍ଟର କୋଟ୍‌ନିସ, ଡକ୍ଟର ବି.କେ. ବସୁ ଏହି ଚୀନ ମିଶନରେ ଯାଇ ଭାରତ ପାଇଁ ଯଶ ଅର୍ଜନ କରିଥିଲେ ।

ଫାସିଷ୍ଟ ଫ୍ରାଙ୍କୋ ସ୍ପେନରେ ସୋସଲିଷ୍ଟ ସରକାର ଓ ପାର୍ଲିଆମେଣ୍ଟକୁ ଭାଙ୍ଗି ଦେଇ କ୍ଷମତା ଦଖଲ କଲା । ସେଠାରେ ଚାଷୀ, ଶ୍ରମିକ ମଧ୍ୟବିତ୍ତଙ୍କ ପକ୍ଷରୁ ଫ୍ରାଙ୍କୋଙ୍କ ବିରୁଦ୍ଧରେ ପ୍ରଚଣ୍ଡ ଗୃହଯୁଦ୍ଧ ଆରଂଭ ହେଲା । ପୃଥିବୀର ବିଭିନ୍ନ ଦେଶରୁ ଆନ୍ତର୍ଜାତିକ ବ୍ରିଗେଡରେ ସାମିଲ ହୋଇ ସ୍ୱେଚ୍ଛାସେବୀ ବିପ୍ଳବୀମାନେ ଏହି ଗୃହଯୁଦ୍ଧରେ ଫାସିଷ୍ଟବାଦ ବିରୁଦ୍ଧରେ ଲଢ଼ିଲେ । ଭାରତରୁ ମଧ୍ୟ ଏହି ବ୍ରିଗେଡରେ ବିପ୍ଳବୀମାନେ ଭାଗ ନେଇଥିଲେ । ନେହେରୁ ସ୍ପେନ ଯାଇ ଯୁଦ୍ଧ ଟ୍ରେଞ୍ଚ ପାଖରେ ପହଂଚି ବିପ୍ଳବୀମାନଙ୍କୁ ଭାରତର ସମର୍ଥନ ଜ୍ଞାପନ କରିଥିଲେ ।

ଯୁଦ୍ଧ, ସାମ୍ରାଜ୍ୟବାଦ, ଫାସିଷ୍ଟବାଦ ବିରୁଦ୍ଧରେ ସେତେବେଳେ ଅନ୍ୟ ଦେଶପରି ଭାରତରେ ପ୍ରବଳ ଜନମତ, ସଭା ସମାବେଶ, ପ୍ରଗତିଶୀଳ ସାଂସ୍କୃତିକ କାର୍ଯ୍ୟକଳାପ ଚାଲିଥାଏ । ପ୍ରଦେଶମାନଙ୍କରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥିବାରୁ ଏପରି ପ୍ରଚାର ଅଭିଯାନ ସୁଗମ ହୋଇଥାଏ ।

୧୯୩୯ ସେପ୍ଟେମ୍ବର ୩ ତାରିଖରେ ମାନବ ସମାଜର ଇତିହାସରେ ପ୍ରଳୟଙ୍କରୀ ଦ୍ୱିତୀୟ ମହାସମର ଆରଂଭ ହୋଇଗଲା । ୧୯୩୯ ସେପ୍ଟେମ୍ବ ୩ରୁ ୧୯୪୨ ଜୁନ ୨୨ଯାଏ ଏହି ଯୁଦ୍ଧରେ ଏକ ପକ୍ଷରେ ଥିଲେ ଚିରାଚରିତ ସାମ୍ରାଜ୍ୟବାଦୀ ଦେଶ, ମିତ୍ରପକ୍ଷ ମୁଖ୍ୟତଃ ବ୍ରିଟେନ, ଫ୍ରାନ୍ସ ଓ ତାହାର ସହଯୋଗୀ ଦେଶ । ଅନ୍ୟ ପକ୍ଷରେ ଥିଲେ ଅକ୍ଷଶକ୍ତି, ନାଜୀ ଜର୍ମାନୀ, ଫାସିଷ୍ଟ ଇଟାଲୀ, ସମରବାଦୀ ଜାପାନ ।

ଭାରତର ୧୧ଟି ପ୍ରଦେଶରେ ନିର୍ବାଚିତ ମନ୍ତ୍ରୀମଣ୍ଡଳ । ତହିଁରୁ ୯ଟିରେ କଂଗ୍ରେସ ମନ୍ତ୍ରୀମଣ୍ଡଳ । ୧୯୩୫ ଶାସନ ଖସଡା ଅନୁସାରେ କେନ୍ଦ୍ରୀୟ ଅଂଶ କାର୍ଯ୍ୟକାରୀ ନ ହୋଇଥିଲେ ହେଁ କେନ୍ଦ୍ର ଆସେମ୍ବ୍ଲି ରହିଛି । ଦେଶରେ କଂଗ୍ରେସ ସମେତ ପ୍ରତିଷ୍ଠିତ ରାଜନୈତିକ ଦଳ ରହିଛନ୍ତି । ବ୍ରିଟିଶ ସରକାର ଏମାନଙ୍କ ମତାମତ ନେବାର ଦୂରର କଥା, ଏମାନଙ୍କ ଅଗୋଚରରେ ଭାରତବର୍ଷକୁ ଯୁଦ୍ଧରେ ଭର୍ତ୍ତି କରାଗଲା ବୋଲି ଘୋଷଣା କରିଦେଲା ।

କେବଳ ସେତିକି ନୁହେଁ, ଭାରତରେ ବିଭିନ୍ନ ଦମନମୂଳକ ଆଇନ ପ୍ରଣୟନ କରି ପ୍ରୟୋଗ କରାଗଲା । ଭାରତର ବିଭିନ୍ନ ପ୍ରାନ୍ତରୁ ସୋସଲିଷ୍ଟ, କମ୍ୟୁନିଷ୍ଟ ଓ ସାମ୍ରାଜ୍ୟବାଦୀ ଯୁଦ୍ଧ ବିରୋଧୀ ବିଶିଷ୍ଟ ବ୍ୟକ୍ତିଙ୍କୁ ଶହ ଶହ ସଂଖ୍ୟାରେ ଗିରଫ କରି ଦେଓଲି, ଆଲିପୁର ଓ ଅନ୍ୟାନ୍ୟ ଜେଲରେ ଭର୍ତ୍ତି କରାଗଲା । ଦେଓଲିରେ ଏକ କ୍ୟାମ୍ପ ଜେଲ ଗଠିତ ହେଲା । ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜୟପ୍ରକାଶ, ଡାଙ୍ଗେ, ଜି ଅଧିକାରୀ ଏମିତି ସୋସାଲିଷ୍ଟ, କମ୍ୟୁନିଷ୍ଟ ନେତା ଗିରଫ ହେଲେ । ଏହି ଯୁଦ୍ଧ ସାମ୍ରାଜ୍ୟବାଦୀ ଦେଶମାନଙ୍କର ଲକ୍ଷ୍ୟ । ଅନ୍ୟ ପକ୍ଷରେ ଅକ୍ଷ ଶକ୍ତି ଫାସିଷ୍ଟମାନଙ୍କର ଏସବୁ ଦେଶକୁ ତାର ପ୍ରତିପକ୍ଷ ସାମ୍ରାଜ୍ୟବାଦୀମାନଙ୍କ ହାତରୁ ଛଡେଇ ନେଇ ଦଖଲ କରିବାର ଲକ୍ଷ୍ୟ ।

ଶ୍ରମିକ ୟୁନିଅନ, ଚାଷୀ ସଂଘ, ଛାତ୍ର ଯୁବକ ସଂଗଠନ ପକ୍ଷରୁ ଏ ଯୁଦ୍ଧକୁ "ନ ଏକ ଭାଇ, ନ ଏକ ପାଯି" (ପଇସା) ବୋଲି ଧ୍ୱନି ଧ୍ୱନିତ ହେଲା । କେନ୍ଦ୍ର ଆସେମ୍ବ୍ଲିରେ ୧୯୩୯ ଗ୍ରୀଷ୍ମକାଳୀନ ଅଧିବେଶନରେ କଂଗ୍ରେସ ପାର୍ଟି ତାର ଆସ୍ଥାନ ଘୋଷଣା କଲା । କଂଗ୍ରେସ, ଭାରତୀୟ ସୈନ୍ୟମାନଙ୍କୁ ମାଲୟ ଓ ଦୂର ପ୍ରାଚ୍ୟକୁ ଜାପାନୀ ସୈନ୍ୟଙ୍କର ଶିକାର ହେବାକୁ ପଠାଯିବାର ବିରୋଧ କଲା ।

୧୯୩୯ ସେପ୍ଟେମ୍ବର ୧୪ ତାରିଖରେ କଂଗ୍ରେସ ଏକ ବିବୃତି ଦେଇ କହିଲା ଯେ – "ଏହି ଯୁଦ୍ଧର ଲକ୍ଷ୍ୟ ଯଦି ସ୍ଥିତାବସ୍ଥାକୁ ରକ୍ଷା କରିବାକୁ ଅଭିପ୍ରେତ, ସାମ୍ରାଦ୍ୟବାଦୀ ଉପନିବେଶ, ଅଧିକୃତ ଅଞ୍ଚଳ ଓ ନ୍ୟସ୍ତସ୍ୱାର୍ଥ ଓ ସୁଯୋଗସୁବିଧା ଉପଭୋଗ କରିବକୁ ଅଭିପ୍ରେତ, ତେବେ ଏ ଯୁଦ୍ଧରେ ଭାରତର କିଛି କରିବାର ନାହିଁ.... ଏକ ମୁକ୍ତ, ଗଣତାନ୍ତ୍ରିକ ଭାରତ ହିଁ ଆକ୍ରମଣ ବିରୁଦ୍ଧରେ ସମୂହ ପ୍ରତିରକ୍ଷା ଏବଂ ଅର୍ଥନୈତିକ ସହଯୋଗ ପାଇଁ ଅନ୍ୟାନ୍ୟ ମୁକ୍ତ ଜାତିମାନଙ୍କ ସହିତ ଆନନ୍ଦରେ ସହଯୋଗ କରିବ । ସେହେତୁ କାର୍ଯ୍ୟକାରୀ କମିଟି ବ୍ରିଟିଶ ସରକାରକୁ ଆହ୍ୱାନ କରୁଛି ଯେ ଗଣତନ୍ତ୍ର ଏବଂ ସାମ୍ରାଜ୍ୟବାଦ ସମ୍ବନ୍ଧରେ ଏବଂ ତାହା କଳ୍ପନା କରୁଥିବା ନୂଆ ବ୍ୟବସ୍ଥା ସଂପର୍କରେ ଏ ଯୁଦ୍ଧର ଲକ୍ଷ୍ୟ କଣ ତାହା ସ୍ୱଷ୍ଟ ଭାବରେ ଘୋଷଣା କରୁ । କିପରି ଏସବୁ ଭାରତ ଲାଗି ପ୍ରଯୁଜ୍ୟ ହେବ ଓ ବର୍ତ୍ତମାନ ତାହାକୁ କିପରି ପ୍ରୟୋଗ କରାଯିବ, ତାହା ଘୋଷଣା କରୁ... ।"

ମାସେରୁ ଅଧିକ କାଳ ବିତିଗଲା । ମାତ୍ର ଭାଇସରାୟ ତାର ଉତ୍ତର ଦେଲେ ନାହିଁ । ଶେଷରେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଯାହା କହିଛନ୍ତି ତାଠାରୁ ଅଧିକ କିଛି କୁହାଯିବ ନାହିଁ ବୋଲି କହିଲେ । ଖୁବ୍ ହେଲେ କେନ୍ଦ୍ରରେ ଥିବା ଏକ୍ସକ୍ୟୁଟିଭ କାଉନ୍ସିଲରେ ଆଉ କେତେ ଜଣ ଭାରତୀୟଙ୍କୁ ନିଆଯାଇପାରେ, ଯୁଦ୍ଧକାଳ ଭିତରେ ଆଉ କିଛି କରାଯିବା ଅସମ୍ଭବ ବୋଲି ଭାଇସରାୟ କଂଗ୍ରେସକୁ ଜଣାଇଦେଲେ । ଯୁଦ୍ଧପରେ ୧୯୩୫ ଶାସନ ଖସଡାରେ କିକି ସଂଶୋଧନ ଆବଶ୍ୟକ, ସେ ସଂପର୍କରେ ଦେଶର ବିଭିନ୍ନ ଗୋଷ୍ଠୀଙ୍କ ସହିତ ପରାମର୍ଶ କରାଯିବ

ଏବଂ ତାହାରି ଭିତ୍ତିରେ "ହୁଏତ ଭାରତ ବଡବଡ ଡୋମିନିୟନ ମଧ୍ୟରେ ତାହାର ସ୍ଥାନ ଲାଭ କରିବ" ବୋଲି ଭାଇସରାୟ କଂଗ୍ରେସକୁ ସୂଚନା ଦେଲେ।

୧୯୪୦ ମାର୍ଚ୍ଚ ମାସରେ ବିହାରର ରାମଗଡଠାରେ କଂଗ୍ରେସର ଅଧିବେଶନ ମୌଲାନା ଆବୁଲ କାଲାମ ଆଜାଦଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା। କଂଗ୍ରେସର ଯୁଦ୍ଧ ସଂପର୍କୀୟ ନୀତି ଓ ବ୍ରିଟିଶ ସରକାରଠାରୁ ଅସ୍ତିବାଚକ ପ୍ରତିଶ୍ରୁତି ପାଇଲେ ସାମ୍ରାଦ୍ୟବାଦୀ ଯୁଦ୍ଧକୁ କଂଗ୍ରେସ ସାହାଯ୍ୟ କରିବାର ଚିନ୍ତାକୁ ଅନେକ ପ୍ରତିନିଧି ବିରୋଧ କରିଥିଲେ।

ଅଧିବେଶନ ଚାଲିଥିବାବେଳେ ସୁବାଷବୋଷଙ୍କ ନେତୃତ୍ୱରେ ଠିକ ସେହି ରାମଗଡରେ "ସାଲିସ ବିରୋଧୀ" ସମାବେଶ ଅନୁଷ୍ଠିତ ହୋଇଥିଲା।

ଭାଇସରାୟଙ୍କ ନିରର୍ଥକ ପ୍ରତିଶ୍ରୁତି ସଂପର୍କରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଏକ ପ୍ରସ୍ତାବ ନେଲା। ସେଥିରେ ଥିଲା "ଏପରି ପରିସ୍ଥିତିରେ ଗ୍ରେଟ ବ୍ରିଟେନକୁ କମିଟି ସମର୍ଥନ ଦେବା ସମ୍ଭବପର ହେବ ନାହିଁ। ଦେଲେ ତାହାର ସାମ୍ରାଜ୍ୟବାଦୀ ନୀତିକୁ ସମର୍ଥନ ଦେବା ଭଳି ହେବ।"

ବ୍ରିଟିଶ ଶାସନକୁ ହଟାଇବା ଲାଗି ଦେଶରେ ପ୍ରବଳ ଜନମତ ଜାଗ୍ରତ ହୋଇଥାଏ। ଯୁଦ୍ଧ ବିରୋଧୀ, ବ୍ରିଟିଶ ବିରୋଧୀ ପ୍ରଦର୍ଶନ ଓ ଆନ୍ଦୋଳନର ବାୟୁମଣ୍ଡଳ ସୃଷ୍ଟି ହୋଇଥାଏ। ସେଥିଲାଗି ବ୍ୟାପକ ଗଣ ଆନ୍ଦୋଳନ କରି ସରକାରକୁ ଅଚଳ କରିଦେବା ଲାଗି ଦାବୀମାନ ଉଠୁଥାଏ। ଶ୍ରମିକ ଧର୍ମଘଟ, ଛାତ୍ର ବିକ୍ଷୋଭ ଚାଲିଥାଏ। ଯୁଦ୍ଧଯୋଗୁଁ ଚାଷୀମାନଙ୍କ ଉପରେ ଶୋଷଣ ବୋଝର ପ୍ରତିବାଦ ଚାଲିଥାଏ।

ଗଣ ଆନ୍ଦୋଳନ ଓ ବ୍ୟାପକ ସଂଗ୍ରାମ ସଂପର୍କରେ କଂଗ୍ରେସ ନେତୃତ୍ୱର ଏକାଂଶରେ ତାହାର ପରିଣତି ସଂପର୍କରେ ଭୀତି ସୃଷ୍ଟି ହେଲା। ୧୯୪୦ ଜାନୁଆରୀ ହରିଜନ ପତ୍ରିକାରେ କାହିଁକି ଗଣ ଆଇନ ଅମାନ୍ୟ ହେବା ବାଞ୍ଛନୀୟ ନୁହଁ, ତାହା ଗାନ୍ଧିଜୀ ପ୍ରକାଶ କରିଦେଲେ।

ତହିଁରେ ଥିଲା, "ବିପୁଳ ପ୍ରଭାବ ଥିବା ଜଣେ କଂଗ୍ରେସ ବ୍ୟକ୍ତି ମୋତେ ସୂଚନା ଦେଇଛନ୍ତି ଯେ ଆଇନ ଅମାନ୍ୟ ଘୋଷଣା କରି ଦେବାକ୍ଷଣି, ମୁଁ ଏଥର ଏକ ଭୟାବହ ଉତ୍ତର ପାଇବି। ସମଗ୍ର ଶ୍ରମିକ ଦୁନିଆ ଏବଂ ଭାରତର ଅନେକ ଅଂଚଳରେ କୃଷକମାନେ ଏକ ସମୟରେ ଧର୍ମଘଟ କରିବେ ନିଶ୍ଚିତ ବୋଲି ସେ ମୋତେ କହିଛନ୍ତି। ମୁଁ ତାଙ୍କୁ କହିଲି, ଏପରି ଘଟିଲେ ମୁଁ ବଡ ଅଡୁଆରେ ପଡିଯିବି ଓ ମୋର ସବୁ ଯୋଜନା ବିଗିଡିଯିବ.... ଯେଉଁ ସଂଗ୍ରାମ ଅରାଜକତା ଓ ଘୋର ବିଶୃଙ୍ଖଳାରେ ଶେଷ ହେବ ଭାବୁଛି, ଜାଣି ଜାଣି ମୁଁ ଏପରି ସଂଗ୍ରାମ ହାତକୁ ନେବି ନାହିଁ।"

ଏତେବେଳକୁ ନେହେରୁ ଲାହୋର, କରାଚୀ, ହରିପୁରା କଂଗ୍ରେସବେଳେ ଯେପରି ଆସ୍ଥାନ ନେଉଥିଲେ, ସେପରି ଅବସ୍ଥାନ ନେଉ ନଥାନ୍ତି। ସୁବାଷବୋଷ କଂଗ୍ରେସ ଛାଡିଲେଣି।

ଭାଇସରାୟଙ୍କ ପ୍ରସ୍ତାବକୁ ଅଗ୍ରାହ୍ୟ କରି କଂଗ୍ରେସ ମନ୍ତ୍ରୀମଣ୍ଡଳଗୁଡିକ ଇସ୍ତଫା ଦେଇ ତାର ପ୍ରତିବାଦ କରିବ ବୋଲି ସ୍ଥିର କଲା। ୧୯୪୦ ଅକ୍ଟୋବର ଶେଷ ସୁଦ୍ଧା ବିଭିନ୍ନ ପ୍ରଦେଶରୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଦେବେ ବୋଲି ନିର୍ଦ୍ଦେଶ ଦିଆଗଲା। କଂଗ୍ରେସ ଅବା ଗାନ୍ଧିଜୀ ଚାହୁଁ ନଥିଲେ ଯେ ବ୍ୟାପକ ଆଇନ ଅମାନ୍ୟ ଯୁଦ୍ଧ ଉଦ୍ୟମରେ ବାଧକ ହେଉ। ତେଣୁ ମନ୍ତ୍ରୀମଣ୍ଡଳଗୁଡିକର ଇସ୍ତଫା ପରେ କେବଳ ବ୍ୟକ୍ତିଗତ ସତ୍ୟାଗ୍ରହ କରି ବ୍ରିଟିଶ ନୀତିର ପ୍ରତୀକ ପ୍ରତିବାଦ କରାଯିବ ବୋଲି ନିଷ୍ପତ୍ତି ନିଆଗଲା। ଗାନ୍ଧିଜୀ ଏହି ବ୍ୟକ୍ତିଗତ ସତ୍ୟାଗ୍ରହର କର୍ମସୂଚୀ ଓ ଯୋଜନା ପ୍ରସ୍ତୁତ କରିବାର ଦାୟିତ୍ୱରେ ରହିଲେ।



# ଦ୍ୱିବିଧ କର୍ମଧାରା

## ରଚନାତ୍ମକ କାର୍ଯ୍ୟକ୍ରମ, ଗଣସଂଗଠନ ନୂତନ ରାଜନୈତିକ ଦଳ ଗଠନ

## (୧୯୩୪ରୁ ୧୯୪୦)

୧୯୩୪ରେ ଆଇନ ଅମାନ୍ୟ ଆନ୍ଦୋଳନ ପରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ ଓ ତାହାର କାର୍ଯ୍ୟକଳାପରେ ସ୍ୱାଧୀନତା ସଂଗ୍ରାମ ସୀମାବଦ୍ଧ ନଥିଲା। କଂଗ୍ରେସ ମନ୍ତ୍ରୀମଣ୍ଡଳଗୁଡିକର ଇସ୍ତଫା, ବ୍ୟକ୍ତିଗତ ସତ୍ୟାଗ୍ରହ, ଭାରତ ଛାଡ ଆନ୍ଦୋଳନ ପୂର୍ବରୁ ଦେଶରେ ସ୍ୱାଧୀନତା ଆନ୍ଦୋଳନର ଦ୍ୱିବିଧ କର୍ମଧାରା ଅନୁସୃତ ହୋଇଥିଲା। ଏହି ଦ୍ୱିବିଧ କର୍ମଧାରା, କର୍ମନୀତି, କର୍ମକୌଶଳକୁ ରୂପାୟିତ କରିବା ଲାଗି ମଧ୍ୟ ସଂସ୍ଥା ସଂଗଠନ ଗଢି ଉଠିଥିଲା ଓ ସେସବୁର ଅଧିକ ବିକାଶ ଘଟିଥିଲା।

ଏହି ଧାରା ମଧ୍ୟରୁ ଗୋଟିଏ ହେଉଛି ରଚନାତ୍ମକ କର୍ମଧାରା ଓ ଅନ୍ୟଟି ହେଉଛି ଗଣ ଆନ୍ଦୋଳନ, ଗଣ ସଂଗଠନର କର୍ମଧାରା। ଭାରତବାସୀ ଜନତାର ପରମ ଶତ୍ରୁ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏହି ଦୁଇଧାରା ଅଭିପ୍ରେତ। ଏହି ଦୁଇଧାରା ମଧ୍ୟରେ ସାମାଜିକ-ରାଜନୈତିକ ଚିନ୍ତା ଆଦର୍ଶର ଭିନ୍ନତା ଥିଲା। ପରସ୍ପର ପ୍ରତି ସର୍ବଦା ଅନୁକୂଳ ଭାବ ନ ଥିଲା ସତ, କିନ୍ତୁ ସାମ୍ରାଜ୍ୟବାଦ ବିରୋଧୀ, ସ୍ୱାଧୀନତା ସଂଗ୍ରାମର ମହାମେଣ୍ଟରେ ଏମାନେ ଅଂଶୀଦାର। ସେପରି ଦ୍ୱିବିଧ କର୍ମଧାରା ଓ ତାହାର ସଂଗଠନଗୁଡିକ ସଂପର୍କରେ ସଂକ୍ଷେପରେ ଆଲୋଚନା ସ୍ୱାଧୀନତା ସଂଗ୍ରାମ ଇତିହାସର ଅଭିନ୍ନ ଅଂଗ।

**ରଚନାତ୍ମକ କର୍ମସୂଚୀ :**

ଆଇନ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟାହାର ପରେ କଂଗ୍ରେସ କର୍ମୀମାନଙ୍କୁ ଭବିଷ୍ୟତ୍ ସଂଗ୍ରାମର ପ୍ରସ୍ତୁତି ଲାଗି "ଗାଁକୁ ଫେରିଯାଅ" ଆହ୍ୱାନ ଦେଲେ ଗାନ୍ଧିଜୀ। ଅହିଂସ, ଅସହଯୋଗ, ସ୍ୱାବଲମ୍ବନର ଆଦର୍ଶରେ ଦେଶବାସୀଙ୍କୁ ପ୍ରସ୍ତୁତ କରିବାକୁ ସେ ରଚନାତ୍ମକ କର୍ମସୂଚୀକୁ ମାଧ୍ୟମ କଲେ। ଗାଁଗହଳରେ କାର୍ଯ୍ୟ କରିବା ପାଇଁ ସେ ଏକାଦଶ ସୂତ୍ରୀ କର୍ମସୂଚୀ ପ୍ରକାଶ କଲେ।

ବ୍ରିଟିଶ୍ କର୍ତ୍ତୃତ୍ୱଧୀନ ଶାସନ ବ୍ୟବସ୍ଥାରେ କଂଗ୍ରେସ ନେତା ଓ କର୍ମୀ ଯେଉଁମାନେ ଅବସ୍ଥାପିତ, ଅର୍ଥାତ୍ ମନ୍ତ୍ରୀମଣ୍ଡଳ ଓ ଜିଲ୍ଲା ବୋର୍ଡ, ଲୋକାଲ ବୋର୍ଡ, ମ୍ୟୁନିସପାଲିଟି ପରି ସ୍ୱାୟତ୍ତ ଶାସିତ ସଂସ୍ଥାରେ ଅବସ୍ଥାପିତ, ସେମାନଙ୍କ ଲାଗି କଂଗ୍ରେସର ଆଦର୍ଶ ଅନୁଯାୟୀ ଆଚରଣ ବିଧି କ'ଣ ହେବ ତାହା ସେ ବାରଂବାର ଚେତେଇ ଦେଲେ । ସେମାନଙ୍କୁ ଛାଡି ଦେଶରେ ଅଗଣିତ କଂଗ୍ରେସ କର୍ମୀ, କଂଗ୍ରେସ ପ୍ରେମୀମାନଙ୍କୁ ଗୋଟିଏ ଗୋଟିଏ ଗାଁ, ଗୋଟିଏ ଗୋଟିଏ ଅଞ୍ଚଳକୁ ଭିତ୍ତି କରି ସଘନ ରଚନାତ୍ମକ କାମ କରିବାକୁ ସେ ଆହ୍ୱାନ ଦେଲେ ।

୧୯୨୦-୨୧ର ସାବରମତୀ ଆଶ୍ରମ ପରି ୱାର୍ଦ୍ଧାଠାରେ ପ୍ରତିଷ୍ଠିତ ଆଶ୍ରମ ରଚନାତ୍ମକ କର୍ମ ରୂପାୟନର ମୂଳ କେନ୍ଦ୍ର ହେଲା । ଏହି କର୍ମସୂଚୀର ବିଭିନ୍ନ ଦିଗକୁ କିପରି ଧ୍ୟାନ ଦିଆଯିବ ଓ କିପରି ବୌଦ୍ଧିକ, ତାତ୍ତ୍ୱିକ ଜ୍ଞାନ ଓ ଉପକରଣ ଯୋଗାଣର ବ୍ୟବସ୍ଥା କରାଯିବ, ସେଥିଲାଗି ଗାନ୍ଧିଜୀ ପ୍ରଖ୍ୟାତ ଅର୍ଥନୀତିଜ୍ଞ, ବିଶେଷଜ୍ଞ, ପତ୍ରକାରମାନଙ୍କୁ ସମବେତ କଲେ ଓ ସହକର୍ମୀ ରୂପେ ଗ୍ରହଣ କଲେ । ସେମାନେ ହେଲେ ବିନୋବା ଭାବେ, ଏସ. ଏସ୍ ମସ୍ରୁୱାଲା, ଆନ୍ନା ସାହେବ ସହସ୍ର ବୁଦ୍ଧେ, ପ୍ୟାରିଲାଲ, ମହାଦେଶ ଦେଶାଇ ପ୍ରମୁଖ । ହରିଜନ, ନବଜୀବନ ପ୍ରଭୃତି ପତ୍ରପତ୍ରିକା ଗାନ୍ଧୀ ଦର୍ଶନ, ଗାନ୍ଧୀ ଅର୍ଥନୀତି, ରଚନାତ୍ମକ କର୍ମସୂଚୀ ପ୍ରଚାରର ବାହନ ହେଲା ।

ଏକାଦଶ ସୂତ୍ରୀ କର୍ମସୂଚୀରେ ସମାଜର କଳଙ୍କ ଅସ୍ପୃଶ୍ୟତା ଦୂରୀକରଣ, ନିଶାନିବାରଣ, ସାଂପ୍ରଦାୟିକ ସଂପ୍ରୀତି, ସ୍ୱଦେଶୀ ଅର୍ଥନୀତି, ଗ୍ରାମୋଦ୍ୟୋଗ, ଶିକ୍ଷାର ଢାଞ୍ଚା ବଦଳାଇବା ଲାଗି ମୌଳିକ ଶିକ୍ଷା ପ୍ରବର୍ତ୍ତନ, ଖଦୀ, ନାରୀ ଜାଗରଣ ଓ ନାରୀ ଶକ୍ତି ଗଠନ, କୁଷ୍ଠ ନିବାରଣ, ଗ୍ରାମ ପରିମଳ, ରୋଗୀମାନଙ୍କୁ ପ୍ରାଥମିକ ଚିକିତ୍ସା ପ୍ରଦାନ, ସୂତାକଟା, ନିରକ୍ଷରତା ଦୂରୀକରଣ, କୃଷି କର୍ମ ଜରିଆରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର ଅନ୍ତର୍ଭୁକ୍ତ ।

ସେଥିଲାଗି ଦେଶର ବିଭିନ୍ନ ସ୍ଥାନରେ ଆଶ୍ରମ ପ୍ରତିଷ୍ଠା କରାଗଲା ଓ ପୂର୍ବରୁ ପ୍ରତିଷ୍ଠିତ ଶତଶତ ଆଶ୍ରମକୁ ରଚନାତ୍ମକ କାର୍ଯ୍ୟରେ ନିୟୋଗ କରାଗଲା ।

ଏହି ଆଶ୍ରମଗୁଡିକ ସ୍ୱାଧୀନତା ସଂଗ୍ରାମ ଲାଗି ଉତ୍ସର୍ଗୀକୃତ ଶତଶତ ନାରୀ ପୁରୁଷଙ୍କ ତାଲିମ କେନ୍ଦ୍ରରେ ପରିଣତ ହେଲା । ସେମାନଙ୍କୁ ସାଧାରଣ ଶିକ୍ଷା ଦେବା ସାଙ୍ଗକୁ ସ୍ୱାଧୀନତା ସଂଗ୍ରାମର ଇତିହାସ ସଂପର୍କରେ ଅବହିତ କରାଗଲା ।

ଚାଷୀମାନଙ୍କୁ ଉନ୍ନତ ଚାଷ କରି ଅଧିକ ଆତ୍ମନିର୍ଭରଶୀଳ ହେବା ଲାଗି ଆଶ୍ରମର କର୍ମୀମାନେ ନିଜେ ସେପରି ଚାଷରେ ଲାଗି ଗାଁଗହଳର ଚାଷୀମାନଙ୍କୁ ଶିକ୍ଷା ଦେଲେ ।

ସ୍ୱାବଲମ୍ବୀ ଗ୍ରାମ, ସ୍ୱାବଲମ୍ବୀ ଭାରତବର୍ଷ ଗଠନ ଲକ୍ଷ୍ୟରେ କୁଟୀର ଶିଳ୍ପ, ହସ୍ତଶିଳ୍ପ, ଜୋତା ତିଆରି, କାଠକୁଟା ମଣ୍ଡରୁ କାଗଜ ତିଆରି, କପା ଚାଷ, ତୂଳା ଭିଣା, ଉନ୍ନତ ଚରଖା, ଟକଲି ଭିଣା ସାହାଯ୍ୟରେ ଉନ୍ନତ ଖଦୀବସ୍ତ୍ର ତିଆରି, ମହୁଚାଷ, ପ୍ରଭୃତି ଶିକ୍ଷା ଦିଆଗଲା ।

ଖଜୁରୀ, ତାଳରସ ପ୍ରଭୃତି ଯାହାକୁ ଗରିବ ଲୋକେ ତାଡି କରି ପିଉଥିଲେ ନିଶାନିବାରଣର ପଦକ୍ଷେପ ହିସାବରେ ରସରୁ ଖଜୁରୀ ଓ ତାଳଗୁଡ ତିଆରି କରିବାର ଶିକ୍ଷା ଦିଆଗଲା ।

ଗାଁଗଣ୍ଡାରେ ପ୍ରାଥମିକ ଚିକିତ୍ସା ନପାଇ ମରୁଥିବା ଲୋକଙ୍କୁ ବଂଚାଇବା ପାଇଁ କଲେରା, ବସନ୍ତ କୁଷ୍ଠରୋଗର, ଚିକିତ୍ସା ପ୍ରଣାଳୀରେ କର୍ମୀମାନଙ୍କୁ ତାଲିମ ଦିଆଗଲା । ମହିଳାମାନଙ୍କୁ ସୂତାକଟା, ସିଲେଇ ଶିକ୍ଷା ଦେବା ସଂଗେସଂଗେ ଶିଶୁ ଜନ୍ମ, ଶିଶୁ ପରିଚର୍ଯ୍ୟା ସଂପର୍କିତ ଧାତ୍ରୀ ତାଲିମ ଦିଆଗଲା ।

ଅସ୍ପୃଶ୍ୟତା ଦୂରୀକରଣ କାର୍ଯ୍ୟକ୍ରମରେ ହରିଜନ ବସ୍ତି ସଫେଇ, ଗାଁ ପରିମଳ ବ୍ୟବସ୍ଥା, ପଂକ୍ତି ଭୋଜନ, ମନ୍ଦିର ପ୍ରବେଶର କାର୍ଯ୍ୟକ୍ରମ ନିଆଗଲା ।

ଏହି କାର୍ଯ୍ୟସୂଚୀକୁ ରୂପାୟନ କରିବା ଲାଗି ହରିଜନ ସେବକ ସଂଘ, କୁଷ୍ଠ ନିବାରିଣୀ ସଂଘ, ମୌଳିକ ଶିକ୍ଷା ସଂଗଠନ, ଖଦୀ ଓ ଗ୍ରାମୋଦ୍ୟୋଗ ସଂଘ ଗଢାଗଲା । ମୌଳିକ ଶିକ୍ଷାରେ ଆତ୍ମ ନିର୍ଭରଶୀଳ ଧନ୍ଦାମୂଳକ ଶିକ୍ଷାର ପ୍ରବର୍ତ୍ତନ କରାଗଲା ।

୧୯୩୪ରେ ଆନ୍ଦୋଳନ ପ୍ରତ୍ୟାହାର ପରେ ପରେ ଗାନ୍ଧିଜୀ ଦେଶରେ ହରିଜନ ପଦଯାତ୍ରା ଆରଂଭ କରିଥିଲେ । ଓଡିଶାରେ ଏହି ପଦଯାତ୍ରା ପୁରୀଠାରୁ ଭଦ୍ରଖ ଯାଏ ଚାଲିଥିବା ବେଳେ ନାନା ଶିବିର ଓ ରହଣୀ ସ୍ଥାନରେ ସେ ତାଙ୍କର ଅସ୍ପୃଶ୍ୟତା ନିବାରରଣ ସାଙ୍ଗକୁ ସ୍ୱଦେଶୀ, ସ୍ୱାବଲମ୍ବନ, ଅସହଯୋଗ ଓ ଅହିଂସ ମାର୍ଗର ତାତ୍ପର୍ଯ୍ୟ କ'ଣ ତାହା ଦର୍ଶାଉଥିଲେ ।

ବିନୋବାଜୀଙ୍କ ପୁନାର ଆଶ୍ରମ ଭଳି ଆମ ଓଡିଶାରେ ବରୀ ଆଶ୍ରମ ଗାନ୍ଧିଜୀଙ୍କ ଏକାଦଶସୂତ୍ରୀ କର୍ମସୂଚୀ ରୂପାୟନର ପ୍ରଧାନ କେନ୍ଦ୍ର ଥିଲା । ଓଡିଶାରେ ଆଗରୁ ପ୍ରତିଷ୍ଠିତ କଂଗ୍ରେସ ଆଶ୍ରମରେର ମଧ୍ୟ ରଚନାତ୍ମକ କର୍ମୀମାନେ ଏହି କର୍ମସୂଚୀରେ ଅଂଶଗ୍ରହଣ କରୁଥିଲେ । ଗାଁଗହଳରେ ଏହା ଲୋକଙ୍କ ଭିତରେ ସ୍ୱଦେଶୀ ଭାବନା, ସ୍ୱନିର୍ଭରଶୀଳତାର ଭାବନା ସୃଷ୍ଟି କରୁଥିଲା । ଗୋପବଂଧୁ ଚୌଧୁରୀ, ରମାଦେବୀ, ଆଚାର୍ଯ୍ୟ ହରିହର ଦାସ, କୃପାସିନ୍ଧୁ ହୋତାଙ୍କ ପରି ବିଶିଷ୍ଟ ଗାନ୍ଧିବାଦୀମାନେ ଓଡିଶାରେ ଏହି କାର୍ଯ୍ୟରେ ପ୍ରମୁଖ ଭୂମିକା ନେଇଥିଲେ । ଏହି କର୍ମସୂଚୀର ଭିତ୍ତିରେର ପରବର୍ତ୍ତୀ କାଳରେ ଭୂଦାନ ଯଜ୍ଞ, ସର୍ବୋଦୟ ଓ ଗ୍ରାମ ସ୍ୱରାଜ୍ୟର ପରିକଳ୍ପନା କରାଯାଇଥିଲା ।

**ଅଖିଳ ଭାରତ କୃଷକ ସଭା:**

ଶ୍ରମିକମାନଙ୍କୁ ସ୍ୱାଧୀନତା ସଂଗ୍ରାମ ପରିସରଭୁକ୍ତ କରିବା ଲାଗି ଅଖିଳ ଭାରତ ଟ୍ରେଡୟୁନିଅନ କଂଗ୍ରେସ ପରି ଭାରତୀୟ ସ୍ତରରେ କୃଷକ ସଭା ଗାଁ ଗହଳରେ ବ୍ୟାପକ ଚାଷୀ ଜନତାଙ୍କୁ ସଚେତନ କରାଇଥିଲା । ପୂର୍ବରୁ ଦୁଇଶହ ବର୍ଷ ବ୍ୟାପୀ ବ୍ରିଟିଶ ଶୋଷଣ ନିର୍ଯ୍ୟାତନା ଓ ଜମିଦାର, ସାମନ୍ତବାଦୀ ବର୍ଗଙ୍କ ଅତ୍ୟାଚାର ବିରୁଦ୍ଧରେ ଚାଷୀମାନେ କିପରି ନିଜେ ନିଜେ ସଂଗ୍ରାମ କରିଛନ୍ତି, ତାହାର ସଂକ୍ଷିପ୍ତ ବିବରଣୀ ଦିଆଯାଇଛି ।

ମାତ୍ର ସର୍ବଭାରତୀୟ କ୍ଷେତ୍ରରେ ଚାଷୀବର୍ଗଙ୍କର କୌଣସି ସଂଗଠନ ନଥିଲା। ସ୍ୱାଧୀନତା ସଂଗ୍ରାମ କାଳରେ ୧୯୩୬ରେ ଏପରି ଏକ ସର୍ବଭାରତୀୟ ସଂଗଠନ ଗଠିତ ହେଲା। ଫୈଜପୁରଠାରେ କଂଗ୍ରେସ ଅଧିବେଶନ ଚାଲିଥିବାବେଳେ କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିବା ବିଭିନ୍ନ ମତାଦର୍ଶରେ ବିଶ୍ୱାସୀ ବାମପନ୍ଥୀମାନେ ସେହିବର୍ଷ ଏପ୍ରିଲ ୧୧ରେ ନିଖିଳ ଭାରତ କୃଷକ ସଭାର ଭିତ୍ତି ସ୍ଥାପନ କଲେ। ପ୍ରତିବର୍ଷ ସେପ୍ଟେମ୍ବର ୧ ତାରିଖରେ କୃଷକ ଦିବସ ପାଳିତ ହେବ, ପ୍ରତ୍ୟେକ ପ୍ରଦେଶରେ କୃଷକ ସଭା ଓ ତାହାର ଜିଲ୍ଲା ଓ ପ୍ରାଥମିକ ଶାଖା ଗଠିତ ହେବ, ସ୍ଥିର ହେଲା। ଗାଁ ଗାଁରେ ଚାରି ପଇସା ଦେଇ ଚାଷୀମାନେ କୃଷକ ସଭାର ସଭ୍ୟ ହେବେ, ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ସାଙ୍ଗକୁ ଜମିଦାରୀ, ଦେଶମୁଖ, ଜାଗିରଦାର, ତାଲୁକଦାର, ମକଦମ, ଏପରି ସାମନ୍ତବାଦୀ ପ୍ରଥା ଉଚ୍ଛେଦ ଲାଗି ପ୍ରତ୍ୟକ୍ଷ ସଂଗ୍ରାମ ଚଳାଯିବ ବୋଲି ନିର୍ଣ୍ଣୟ କରାଗଲା। ଭାରତୀୟ ସ୍ତରରେ କୃଷକ କୂଳର ଏହି ସଂଗଠନ ପୂର୍ବରୁ ବଂଗଳା, ପଂଜାବ, ମାଲବାର, ବିହାର ଓ ମାନ୍ଦ୍ରାଜରେ କୃଷକ ସଂଘ ଗଠିତ ହୋଇଥାଏ। ଏସବୁ ଅଖିଳ ଭାରତ କୃଷକ ସଭାରେ ଅଂଗୀଭୂତ ହେଲେ। ସର୍ବ ଭାରତୀୟ ସ୍ତରରେ କୃଷକ ସଭା ଗଠନ କାଳରେ ଏହାର ବଳିଷ୍ଠ ନେତାମାନେ ଥଲେ ଏନ.ଜି.ରଂଗା ସହଜାନନ୍ଦ ସରସ୍ୱତୀ, ଯିଏ ଏହାର ଯଥାକ୍ରମେ ସଭାପତି ଓ ସାଧାରଣ ସଂପାଦକ ନିର୍ବାଚିତ ହେଲେ। ଗଠନ କାଳରେ ଭାଗ ନେଇଥିଲେ ଇନ୍ଦୁଲାଲ ଯାଜ୍ଞିକ, ଜେଡ୍. ଏ ଅହମ୍ମଦ, ମୋହନ ଲାଲ ଗୌତମ, ଜୟପ୍ରକାଶ ନାରାୟଣ, କେ.ଏମ.ଏସ ନମ୍ବୁଦ୍ରିପଦ, ନବକୃଷ୍ଣ ଚୌଧୁରୀ, କାର୍ଯ୍ୟାନନ୍ଦ ଶର୍ମା, ବଙ୍କିମ ମୁଖର୍ଜୀ, ସୋହାନ ସିଂ ଯୋଷ ପ୍ରମୁଖ। ଏମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ କମ୍ୟୁନିଷ୍ଟ ସୋସାଲିଷ୍ଟ ମତବାଦର ନେତା।

୧୯୩୬ଠାରୁ ଆରଂଭ କରି ସ୍ୱାଧୀନତା ପ୍ରାପ୍ତିଯାଏ ସାରା ଭାରତରେ କୃଷକ ସଭା ନେତୃତ୍ୱରେ ଜମିଦାରୀ ଅତ୍ୟାଚାର ଶୋଷଣ ନିର୍ଯ୍ୟାତନା ବିରୁଦ୍ଧରେ, ବେଠି, ବେଖାରୀ, ବେଆଇନ ପାଉଣା ବିରୁଦ୍ଧରେ ଅଦଭୂତ ଧରଣର ଆନ୍ଦୋଳନ ହେଲା। ବିନା କ୍ଷତିପୂରଣରେ ଜମିଦାରୀ ପ୍ରଥା ଉଚ୍ଛେଦ, ମୁସ୍ତାଦାରୀ, ସର୍ବରାକାରୀ ପ୍ରଥା, ଗୋତିଆ ପ୍ରଥା ଉଚ୍ଛେଦ, ମହାଜନୀ ଋଣ ବିରୁଦ୍ଧରେ ଭାରତରେ ଏମୁଣ୍ଡରୁ ସେ ମୁଣ୍ଡଯାଏ ବିରାଟ ଚାଷୀ ଆନ୍ଦୋଳନ ହୋଇଥିଲା। ଭାଗଚାଷୀ ପ୍ରଥା ଉଚ୍ଛେଦ, ଭୂମିହୀନଙ୍କୁ ଜମିପଟା, କୃଷିଋଣ ଖାରଜ, ପୁଲିସ ଜୁଲୁମ ବନ୍ଦ ଲାଗି ଚାଷୀମାନେ ଆନ୍ଦୋଳନ କଲେ। ବ୍ରିଟିଶ ପୁଲିସ ଓ ଜମିଦାରମାନେ ସେମାନଙ୍କ ଉପରେ ଆକ୍ରମଣ କଲେ। ବହୁ ଚାଷୀ ଗୁଳିରେ ନିହତ ହେଲେ। କୃଷକ ସଭାର ନେତା ଓ କର୍ମୀମାନଙ୍କୁ ଜେଲଦଣ୍ଡ ମଧ ଭୋଗିବାକୁ ପଡିଲା।

୧୯୩୭ ନିର୍ବାଚନରେ କଂଗ୍ରେସର ବିପୁଳ ବିଜୟ ଭାରତର ବିଭିନ୍ନ ପ୍ରଦେଶରେ କୃଷକ ଆନ୍ଦୋଳନର ପ୍ରଭାବରେ ସମ୍ଭବପର ହୋଇଥିଲା। ବ୍ରିଟିଶ ଶାସନକୁ ସମର୍ଥନ କରୁଥିବା ବଡ ବଡ ଜମିଦାର, ମଠମହନ୍ତ, ମହାଜନ କଂଗ୍ରେସର ବିରୋଧ କରୁଥିଲେ।

ଓଡିଶାରେ ନୀଳକଂଠ ଦାସ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥିଲେ । କୃଷକ ସଭାର ସମଗ୍ର କର୍ମସୂଚୀକୁ କଂଗ୍ରେସ ନିର୍ବାଚନୀ ଇସ୍ତାହାରରେ ସ୍ଥାନ ଦିଆଯାଇଥିଲା । ଏହା କଂଗ୍ରେସକୁ ଜିତାଇବା ଲାଗି କୃଷକମାନଙ୍କୁ ବିପୁଳ ପ୍ରେରଣା ଦେଇଥିଲା । ବିଧାନସଭାର ୬୦ଟି ଆସନକୁ ବ୍ରିଟିଶ ଶାସନ ଓ ଜମିଦାରଙ୍କ ମେଣ୍ଟ ସତ୍ତ୍ୱେ କଂଗ୍ରେସ ୩୭ଟି ଆସନ ପାଇଲା । କଂଗ୍ରେସ ପ୍ରାର୍ଥୀ ରୂପେ କୃଷକ ସଭାର ତୁଙ୍ଗ ନେତା ନବକୃଷ୍ଣ ଚୌଧୁରୀ, ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ, ଫକୀର ବେହେରା, ଗୋବିନ୍ଦ ପ୍ରଧାନ, ଭରତ ଦାସ ପ୍ରମୁଖ ବଡ ବଡ ଜମିଦାର, ମହନ୍ତ, ମହାଜନଙ୍କୁ ପରାସ୍ତ କରିଥିଲେ । ବିହାର, ଯୁକ୍ତପ୍ରଦେଶ, ମାନ୍ଦ୍ରାଜ, ବଂଗଳା ପ୍ରଭୃତିରେ ମଧ୍ୟ କୃଷକ ଆନ୍ଦୋଳନର ପ୍ରଭାବରେ କଂଗ୍ରେସର ପ୍ରାର୍ଥୀମାନେ ଅଧିକ ଭୋଟ ପାଇ ଜିତିଥିଲେ ।

ଓଡ଼ିଶାରେ ୧୯୩୬ରୁ ୧୯୪୭ଯାଏ କୃଷକ ସଭା ନେତୃତ୍ୱରେ ବିରାଟ ଚାଷୀ ଆନ୍ଦୋଳନ ଅନୁଷ୍ଠିତ ହୋଇଥିଲା । କଟକ, ପୁରୀ, ଗଂଜାମ, ବାଲେଶ୍ୱରରେ ମୁଖ୍ୟତଃ ବଡ ବଡ ଜମିଦାରଙ୍କ ବିରୁଦ୍ଧରେ, ଏହି ଆନ୍ଦୋଳନ ବିରାଟ ରୂପ ନେଇଥିଲା ।

କଂଗ୍ରେସ ଉପର ପାହ୍ୟାର ନେତୃତ୍ୱରେ ଏକ ଅଂଶ ଏହାର ଭିତିରି ଓ ପ୍ରତ୍ୟକ୍ଷ ବିରୋଧ କଲେହେଁ ବହୁ କଂଗ୍ରେସ କର୍ମୀ ଏଥିରେ ଯୋଗ ଦେଇଥିଲେ । ଏହି କୃଷକ ଆନ୍ଦୋଳନର ଅଗ୍ରଣୀ ଭୂମିକାରେ ସୋସାଲିଷ୍ଟ, କମ୍ୟୁନିଷ୍ଟ ନେତାମାନେ ଥିଲେ । ପରବର୍ତ୍ତୀ ପର୍ଯ୍ୟାୟର ସ୍ୱାଧୀନତା ଆନ୍ଦୋଳନକୁ କୃଷକ ଶ୍ରେଣୀ ବିପୁଳ ସମର୍ଥନ ଓ ସହଯୋଗ କରିଥିଲା ।

**ଅଖିଳ ଭାରତ ଗଡଜାତ ପ୍ରଜା ସମ୍ମିଳନୀ:**

୧୯୨୦ରେ ନାଗପୁରଠାରେ କଂଗ୍ରେସ ଅଧିବେଶନ, ଯେଉଁଠାରେ ଅସହଯୋଗ ଆନ୍ଦୋଳନର ନିର୍ଦ୍ଧାରଣ ନିଆଯାଇଥିଲା, ସେହି ଅଧିବେଶନ କାଳରେ ଗଡଜାତ ପ୍ରଜା ସମ୍ମିଳନୀର ପ୍ରତିଷ୍ଠା ହୋଇଥିଲା । ତତ୍କାଳୀନ ଭାରତର କେତୋଟି ଗଡଜାତରେ ପ୍ରଜା ସଂଘ, ପ୍ରଜା ପରିଷଦ ନାମରେ ସଂଗଠନ ଗଢି ଉଠିଥିଲା । ନାଗପୁର କଂଗ୍ରେସରେ ଯୋଗ ଦେଇଥିବା ବିଭିନ୍ନ ଗଡଜାତର ସାତ ଶହରୁ ଅଧିକ ପ୍ରତିନିଧି ୧୯୨୦ ଡିସେମ୍ବରରେ ଏକ ସ୍ୱତନ୍ତ୍ର ସମ୍ମିଳନୀରେ ଏକତ୍ର ହୋଇ ଗଡଜାତ ପ୍ରଜା ସମ୍ମିଳନୀ ଗଢି ତାହାର ଲକ୍ଷ୍ୟ ଘୋଷଣା କରିଥିଲେ ।

ଦେଶର ପୂର୍ଣ୍ଣ ସ୍ୱାଧୀନତା, ଗଡଜାତଗୁଡିକର ସତ୍ତା ଲୋପ କରି ଭାରତ ସହିତ ମିଶ୍ରଣ ଭଳି ରାଜନୈତିକ ପ୍ରଶ୍ନ ସାଙ୍ଗକୁ ଗଡଜାତଗୁଡ଼ିକରେ ଚାଲିଥିବା ଲୋମହର୍ଷଣକାରୀ ନିର୍ଯ୍ୟାତନା, ନିପୀଡନ ବିରୁଦ୍ଧରେ ପ୍ରସ୍ତାବମାନ ନିଆଯାଇଥିଲା । ତାହାପରେ ୧୯୨୭ରେ ବମ୍ବେଠାରେ ଏବଂ ସେହିବର୍ଷ ମାନ୍ଦ୍ରାଜଠାରେ ମଧ୍ୟ ବିଭିନ୍ନ ଗଡଜାତର ପ୍ରଜା ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ରାଜା ମହାରାଜା, ନବାବଙ୍କ ଦମନ ହେତୁ କୌଣସି ଗଡଜାତରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପହଂଚାଇବା ଦୁଃସାଧ, କଷ୍ଟକ ହେଉଥିଲା । ଆଇନ ଅମାନ୍ୟ ଆନ୍ଦୋଳନର ପ୍ରତ୍ୟାହାର ପରେ

୧୯୩୬ରେ ହିଁ ଗଡଜାତ ପ୍ରଜାଙ୍କୁ ଏକାଠି କରିବାଲାଗି ପୂର୍ବରୁ ହୋଇଥିବା ଉଦ୍ୟମକୁ ଏକ ଦୃଢ ସାଗଠନିକ ରୂପ ଦିଆଗଲା । ଡକ୍ଟର ପଟ୍ଟାଭି ସୀତାରାମାୟାଙ୍କ ସଭାପତିତ୍ୱରେ ଅଖିଳ ଭାରତ ଗଡଜାତ ପ୍ରଜା ସମ୍ମିଳନୀ ଗଠିତ ହେଲା । ତାହାର ପ୍ରାଦେଶିକ ଶାଖାମାନ ଗଠିତ ହେଲା ।

ଭାରତୀୟ ଜାତୀୟ କଂଗ୍ରେସର ନିର୍ଦ୍ଧାରଣ ହେଲା ଯେ ସାଂଗଠନିକ ଭାବରେ କଂଗ୍ରେସ ଗଡଜାତଗୁଡିକରେ କଂଗ୍ରେସ କମିଟି ଗଢିବ ନାହିଁ । ଦେଶୀୟ ରାଜ୍ୟଗୁଡ଼ିକର ଆଭ୍ୟନ୍ତରୀଣ ବ୍ୟାପାରରେ କଂଗ୍ରେସ ହସ୍ତକ୍ଷେପ କରିବ ନାହିଁ । କଂଗ୍ରେସ ପ୍ରଜାମଣ୍ଡଳଗୁଡିକର ଦାବୀ ପ୍ରତି ସହାନୁଭୂତିଶୀଳ ଓ ସେସବୁକୁ ସମର୍ଥନ କରିବ । କଂଗ୍ରେସ ସଦସ୍ୟମାନେ ବ୍ୟକ୍ତିଗତ ଭାବରେ ପ୍ରଜାମଣ୍ଡଳ କାର୍ଯ୍ୟ କରିପାରିବେ । ପ୍ରଜାମଣ୍ଡଳର ନେତାମାନେ, କଂଗ୍ରେସରେ ଥିବା ବାମପନ୍ଥୀମାନେ ଏପରି ନୀତିର ତୀବ୍ର ସମାଲୋଚନା କଲେ ।

ଦେଶରେ ୫୬୨ଟି ସୁବୃହତ୍ ବୃହତ, କ୍ଷୁଦ୍ର ଦେଶୀୟ ରାଜ୍ୟର ରାଜା, ମହାରାଜା, ନବାବ, ନିଜାମ, ସ୍ୱାଧୀନତା ସଂଗ୍ରାମକୁ ବିରୋଧ କରୁଥାନ୍ତି । ରାଜ୍ୟର କଂଗ୍ରେସ କର୍ମୀ, ଅନ୍ୟାନ୍ୟ ପ୍ରଜା ପକ୍ଷପାତୀ ବ୍ୟକ୍ତି ଓ ଗୋଷ୍ଠୀଙ୍କ ଉପରେ ଭୟଙ୍କର ଦମନ ଚଳାଯାଉଥାଏ ।

ଏସବୁ ସତ୍ତ୍ୱେ ୧୯୩୮ରେ ଓ୍ୱାର୍ଦ୍ଧାଠାରେ ଅନୁଷ୍ଠିତ କଂଗ୍ରେସ କାର୍ଯ୍ୟକାରୀ କମିଟି ଏପରି ପ୍ରସ୍ତାବ ନେଲେ । ୧୯୩୮ ହରିପୁରା କଂଗ୍ରେସ ପରେ ତ୍ରିପୁରି କଂଗ୍ରେସରେ ଏପରି କଟକଣା ଉଠାଇ ଦେବାକୁ ଗଡଜାତରୁ ଆସିଥିବା ପ୍ରତିନିଧି, ସୋସଲିଷ୍ଟ, କମ୍ୟୁନିଷ୍ଟମାନଙ୍କ ଦାବୀକୁ ସଭାପତି ଥିବା ସୁବାଷବୋଷ ସମର୍ଥନ କଲେ ସୁଦ୍ଧା ମୂଳ ନିର୍ଦ୍ଧାରଣ କାଏମ ରହିଲା । କେବଳ ଏତିକି ପ୍ରତିଶ୍ରୁତି ଦିଆଗଲା ଯେ "ଗଡଜାତର ପ୍ରଜାମାନଙ୍କୁ ସାହାଯ୍ୟ କରିବାକୁ ଓ ଆପଣାର ପ୍ରଭାବକୁ ନିୟୋଗ କରିବାକୁ କଂଗ୍ରେସର ଅଧିକାର ରହିଛି ।"

୧୯୩୭ବେଳକୁ ବିଭିନ୍ନ ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହୋଇଗଲା । ରାଜଶାସନ ବିରୁଦ୍ଧରେ ଦାୟିତ୍ୱମୂଳକ ଲୋକ ପ୍ରତିନିଧି ଶାସନର ଦାବୀ ଜଣେଇ ସାରା ଭାରତର ବିଭିନ୍ନ ଗଡଜାତରେ ପ୍ରବଳ ଜନ ବିକ୍ଷୋଭ ମେଳି, ଅସହଯୋଗ ସାଙ୍ଗକୁ ରାଜନ୍ୟବର୍ଗ ଓ ବ୍ରିଟିଶ ସୈନ୍ୟଙ୍କ ଆକ୍ରମଣ ବିରୁଦ୍ଧରେ ସଶସ୍ତ୍ର ପ୍ରତିଆକ୍ରମଣ ପ୍ରଥମ ପର୍ଯ୍ୟାୟ ଗଡଜାତ ପ୍ରଜା ଆନ୍ଦୋଳନର ଇତିହାସ ।

ବ୍ୟକ୍ତିଗତ ସତ୍ୟାଗ୍ରହ, ଅଗଷ୍ଟ ଆନ୍ଦୋଳନ ଓ ଯୁଦ୍ଧୋତ୍ତର ଅଭ୍ୟୁତ୍ଥାନ ସାଙ୍ଗକୁ ୧୯୪୬-୪୭ର ଅସାମାନ୍ୟ, ଅଭୂତପୂର୍ବ ଗଡଜାତ ପ୍ରଜା ଆନ୍ଦୋଳନ ଆମ ମାତୃଭୂମିର ମୁକ୍ତି ଓ ସ୍ୱାଧୀନତା ସଂଗ୍ରାମକୁ ଭାରତର ଏକ ତୃତୀୟାଂଶ ଭୌଗୋଳିକ ଅଂଚଳରେ ପରିପୁଷ୍ଟ କରିଥିଲା । କାଶ୍ମୀର, ପଂଜାବର ପାତିଆଲା, ଗୁଜୁରାଟର କାଠିଆବାଡ, ରାଜସ୍ଥାନ ଓ ମଧ୍ୟ ପ୍ରଦେଶର ଭୋପାଳ, ଉଦୟପୁର, ଭରତପୁର, ଇନ୍ଦୋର, ଗ୍ୱାଲିଅର, ବିକାନିର, ଜୟପୁର ପ୍ରଭୃତି ଦେଶୀୟ ରାଜ୍ୟଠାରୁ ଆରମ୍ଭ କରି ଦକ୍ଷିଣରେ ହାଇଦ୍ରାବାଦ, ମହୀଶୂର, ତ୍ରିବାଙ୍କୁଡ, ଏମିତି ପ୍ରତ୍ୟେକଟି ଗଡଜାତରେ

୧୯୩୭/୩୮/୩୯ରେ ପ୍ରବଳ ପ୍ରଜା ଆନ୍ଦୋଳନ ଆଗ୍ନେୟରୂପ ଧାରଣ କରିଥିଲା । କେତେ ପ୍ରଜାଯେଯ ନିହତ ହେଲେ, କେତେ ସହସ୍ର କର୍ମୀଯେ ଜେଲରେ ପଡିଲେ, କେତେ ସହସ୍ରଯେ ଘାଏଲା, ଅକର୍ମଣ୍ୟ ହେଲେ, କେତେଯେ ନିଜର ସଂପତ୍ତି ଘରଦ୍ୱାର ହରେଇଲେ ତାହା କଳାନତୀତ, କଳ୍ପନାତୀତ ।

ଆମ ଓଡ଼ିଶାରେ ୧୯୩୧ରେ ଗଠିତ ପ୍ରାଦେଶିକ ପ୍ରଜାମଣ୍ଡଳର ଦ୍ୱିତୀୟ ଅଧିବେଶନ ୧୯୩୭ରେ ଅନୁଷ୍ଠିତ ହେଲା । ବିଶିଷ୍ଟ କଂଗ୍ରେସ ନେତା ସାରଙ୍ଗଧର ଦାସ ତାହାର ସଭାପତି ହୋଇଥିଲେ । ଏହାରି ନେତୃତ୍ୱରେ ୧୯୩୮/୩୯ ପ୍ରଥମ ପର୍ଯ୍ୟାୟର ଗଡଜାତ ପ୍ରଜା ଆନ୍ଦୋଳନ ଓଡିଶାରେ ଚହଳ ସୃଷ୍ଟି କରିଥିଲା । ରଘୁ ଦିବାକର ଫାଶି ପାଇଲେ । ଶତାଧିକ ଶହୀଦଙ୍କ ମଧ୍ୟରେ ଥିଲେ ବାଜି ରାଉତ । ନୀଳଗିରି ରଣପୁର, ଢେଙ୍କାନାଳ, ତାଳଚେରର ପ୍ରଥମ ପର୍ଯ୍ୟାୟ ଗଡଜାତ ପ୍ରଜାମୁକ୍ତି ଆନ୍ଦୋଳନର ପ୍ରଭାବରେ ଅନ୍ୟ ସବୁ ଗଡଜାତରେ ରାଜନ୍ୟ ପ୍ରଥା ବିଲୋପ ସଂଗ୍ରାମ ପ୍ରଖର ହୋଇଥିଲା ।

**ସର୍ବଭାରତୀୟ ଛାତ୍ର ଆନ୍ଦୋଳନ:**

୧୯୨୦-୨୧ ଏବଂ ୧୯୩୦-୩୨ ପର୍ଯ୍ୟାୟର ସ୍ୱାଧୀନତା ସଂଗ୍ରାମ କାଳରେ ଅସହଯୋଗ, ଆଇନ ଅମାନ୍ୟ ଆନ୍ଦୋଳନରେ ଛାତ୍ରମାନେ ସ୍କୁଲ, କଲେଜ ଛାଡିବା, ଆଇନ ଅମାନ୍ୟ କରିବାରେ କିପରି ଭୂମିକା ନେଇଥିଲେ ତାହା ଦର୍ଶାଯାଇଛି । ସେତେବେଳେ ମଧ୍ୟ ବିଭିନ୍ନ ପ୍ରଦେଶରେ ତତ୍କାଳୀନ ଛାତ୍ରନେତାମାନେ ସ୍ୱତନ୍ତ୍ର ଛାତ୍ର ସଂଗଠନ ଗଢିବାର ପ୍ରଚେଷ୍ଟା କରିଥିଲେ । ଆମ ଓଡିଶାରେ ରେଭେନ୍ସା କଲେଜରେ ଓ ସ୍କୁଲମାନଙ୍କରେ ଏପରି ଛାତ୍ର ସଂଗଠନ ଗଢିବାର ଉଦ୍ୟମ ହୋଇଥିଲା । ଏହିସବୁ ଅଭିଜ୍ଞତାକୁ ଘେନି ସ୍ୱାଧୀନତା ସଂଗ୍ରାମର ଏକ ନିର୍ଦ୍ଦିଷ୍ଟ ସମୟରେ ସର୍ବ ଭାରତୀୟ ଛାତ୍ର ସଂଗଠନ ଗଢିବାର ଉଦ୍ୟମ ହେଲା ।

୧୯୩୫ ଅଗଷ୍ଟ ୧୨ ତାରିଖରେ ବିଭିନ୍ନ ପ୍ରଦେଶର ଛାତ୍ରନେତାମାନେ ଏକତ୍ର ହୋଇ ଲକ୍ଷ୍ନୌଠାରେ ଅଖିଳ ଭାରତ ଛାତ୍ରସଂଘ ଗଠନ କଲେ । ବିଭିନ୍ନ ପ୍ରଦେଶରେ ଏହି ସଂଗଠନର ଶାଖାମାନ ପ୍ରତିଷ୍ଠା କରାଗଲା । ସେ କାଳର ପ୍ରତ୍ୟେକ କଲେଜ ଓ ହାଇସ୍କୁଲରେ ମଧ୍ୟ ଏହାର ଶାଖା ଗଠିତ ହେଲା । ଓଡିଶାରେ ୧୯୩୭ରେ କଟକଠାରେ ଏକ ଛାତ୍ର ସମ୍ମିଳନୀ ହୋଇ ପ୍ରାଦେଶିକ ଛାତ୍ରସଂଘ ଗଠିତ ହୋଇଥିଲା । ତାହାର ପ୍ରଥମ ସଂପାଦକ ଥିଲେ ବିଶ୍ୱନାଥ ପଶାଏତ । ଗୁରୁ, ଗାଡିଏନ, ଗଭର୍ଣ୍ଣମେଣ୍ଟ ସେତେବେଳେ ଛାତ୍ରମାନଙ୍କୁ ସ୍ୱାଧୀନତା ସଂଗ୍ରାମରେ ଭାଗ ନେବାକୁ, ସଭାସମିତିକୁ ନ ଯିବାକୁ, ବିପ୍ଳବୀ ସାହିତ୍ୟ ପତ୍ରିକା ନ ପଢିବାକୁ ବାଧ୍ୟ କରୁଥିଲେ । ଗାର୍ଡିୟନଙ୍କ ସ୍ୱାର୍ଥ ଥିଲା ପୁଅ ପାଠ ପଢି ବ୍ରିଟିଶ ଶାସନର ଗୋଲାମ ହୋଇ ଟଙ୍କା ଅର୍ଜନ କରି ବଡ ଲୋକ ହେଉ । ବ୍ରିଟିଶ ସରକାର ଛାତ୍ରମାନଙ୍କୁ ସ୍ୱାଧୀନତା ସଂଗ୍ରାମରୁ ନିବର୍ତ୍ତାଇବା ପାଇଁ ଦମନମୂଳକ ଶିକ୍ଷା କୋଡ ପ୍ରଣୟନ କରିଥିଲା । ଚାକିରୀ ଭୟରେ ହେଡମାଷ୍ଟର ଓ କିଛି କିଛି

ଭୟାତୁର ଶିକ୍ଷକ ଛାତ୍ରମାନଙ୍କ ଉପରେ କଟକଣା ଜାରି କରି ଏପରି ଅପରାଧ କଲେ ବହିଷ୍କାର (ରଷ୍ଟିକେଟ) କରି ଦେଉଥିଲେ। ଛାତ୍ରମାନଙ୍କୁ ବା ନିଜ ଶିକ୍ଷାନୁଷ୍ଠାନରେ କୌଣସି ଗଣତାନ୍ତ୍ରିକ ଅଧିକାର ବିହୀନ ବନ୍ଦୀ ଭାବରେ ଜୀବନ କାଟିବାକୁ ପଡୁଥିଲା। ଶିକ୍ଷାଗତ ଦାବୀଗୁଡିକୁ ଧରି ପୂର୍ଣ୍ଣ ସ୍ୱାଧୀନତା, ସମାଜବାଦ, ସଂପ୍ରୀତି ଓ ବିଶ୍ୱଶାନ୍ତିର ଲକ୍ଷ୍ୟ ଛାତ୍ର ସଂଘ ଘୋଷଣା କଲା। ସେତେବେଳେ ପୃଥିବୀରେ ସାମ୍ରାଜ୍ୟବାଦର ନଗ୍ନ କୁତ୍ସିତ ଅବତାର ଫାସିଜିମ ମୁଣ୍ଡ ଟେକୁଥିଲା।

ଏହି ସଂଗଠନ ସାରା ଭାରତରେ ସାମ୍ରାଜ୍ୟବାଦ ବିରୋଧରେ, ଗଣତାନ୍ତ୍ରିକ ଶିକ୍ଷା ନୀତି ପ୍ରବର୍ତ୍ତନ ପାଇଁ ବହୁ ଆନ୍ଦୋଳନ ନିଜସ୍ୱ ମଞ୍ଚରୁ ଚଳାଇଥିଲା।

ଏହାର ଆନ୍ଦୋଳନ ଫଳରେ ଶହଶହ, ହଜାର ହଜାର ଦେଶପ୍ରେମୀ ଛାତ୍ର ବିଭିନ୍ନ ମାନବତାବାଦୀ ବିଭିନ୍ନ ମତାଦର୍ଶ ଗ୍ରହଣ କରିଥିଲେ। ସେତେବେଳେ କୃଷକ ଆନ୍ଦୋଳନରେ, କଂଗ୍ରେସ ସଭା ସମିତିରେ, ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଏହି ସଂଗଠନର ଯୁବକମାନେ ଭାଗ ନେଇଥିଲେ। ପରବର୍ତ୍ତୀକାଳ ଅଗଷ୍ଟ ଆନ୍ଦୋଳନ ଓ ଯୁଦ୍ଧୋତ୍ତର ଜନ ବିକ୍ଷୋଭରେ ଏମାନେ ଉଲ୍ଲେଖନୀୟ ଭୂମିକା ନେଇଥିଲେ।

ଓଡ଼ିଶାରେ ୧୯୩୮ରେ ରେଭେନ୍ସା କଲେଜ ଧର୍ମଘଟ ଓ ୧୯୩୯ରେ ବିଖ୍ୟାତ ମେଡିକାଲ ଛାତ୍ର ଧର୍ମଘଟରେ ଶହଶହ ଛାତ୍ର ସଂଘ କର୍ମୀ ଜେଲ ଯାଇଥିଲେ।

କମ୍ୟୁନିଷ୍ଟ ସୋସାଲିଷ୍ଟ ମତାବଲମ୍ବୀଙ୍କ ପ୍ରଥମ ଉଦ୍ୟମରେ ଗଠିତ ଏହି ଛାତ୍ର ସଂଗଠନ ବହୁ ଛାତ୍ରନେତା ପ୍ରସ୍ତୁତ କରିଥିଲା, ଯେଉଁମାନେ ପରବର୍ତ୍ତୀ କାଳରେ ସୋସଲିଷ୍ଟ ପାର୍ଟି, କଂଗ୍ରେସ ତଥା ଫରୱାର୍ଡବ୍ଲକ, କମ୍ୟୁନିଷ୍ଟପାର୍ଟିର ତୁଙ୍ଗନେତା ହେଲେ, କିଏ କିଏ ମୁଖ୍ୟ ମନ୍ତ୍ରୀ, ମନ୍ତ୍ରୀ ହେଲେ।

**ନୂତନ ସାଂସ୍କୃତିକ ଭାବଧାରା:**

ସ୍ୱାଧୀନତା ସଂଗ୍ରାମର ପୁନଃଜାଗରଣ (ରେନେଁସା) ଠାରୁ ହିଁ ଜାତୀୟତାବାଦୀ, ସ୍ୱାଧୀନତାକାମୀ ସାଂସ୍କୃତିକ ଅଭିଯାନ ଆରଂଭ ହୋଇ ୧୯୨୦ରୁ ୧୯୩୦-୩୨ରେ ନୂତନ ପର୍ଯ୍ୟାୟରେ ପହଂଚିଥିଲା। ଏତେବେଳେ ଅନେକ ଜାତୀୟବାଦୀ, ଲେଖକ, କବି ଜନ୍ମ ନେଇଥିଲେ। ତାହାର ଆଭାସ ଦିଆଯାଇଛି। ଓଡିଶାରେ ଗୋପବନ୍ଧୁ ଦାସ ବୀରକିଶୋର ଦାସ, ବାଞ୍ଛାନିଧି ମହାନ୍ତିଙ୍କ କବିତା, ତାହାର ଆବୃତ୍ତି କିପରି ଜନମାନସକୁ ଉଦବୁଦ୍ଧ କରିଥିଲା ତାହା ସୁବିଦିତ। ତାହା ଉର୍ଦ୍ଦୁ, ଗୁରୁମୁଖୀ, ହିନ୍ଦୀ, ବଙ୍ଗଳା, ତେଲୁଗୁ, ତାମିଲ, ମରାଠୀ, ମାଲାୟଲମ, କନ୍ନଡ ହେଉ ପ୍ରତ୍ୟେକଟି ଭାଷାର ଜାତୀୟତାବାଦୀ କବି, ଲେଖକଙ୍କର ସ୍ୱାଧୀନତା ସଂଗ୍ରାମକୁ ଅବଦାନ ଅବିସ୍ମରଣୀୟ।

୧୯୩୫-୩୬ ବେଳକୁ ଭାରତରେ ଏହି ଜାତୀୟତାବାଦୀ ସାହିତ୍ୟର ଉତ୍ତରାଧିକାର ରୂପରେ ଆତ୍ମପ୍ରକାଶ କଲା ପ୍ରଗତିଶୀଳ ଲେଖକ ସଂଘ। ସ୍ୱାଧୀନତା ଆଦର୍ଶ ସାଙ୍ଗକୁ ସମାଜବାଦର

ଆକର୍ଷଣ, ନବମାନବ ସୃଷ୍ଟିର ଆବେଦନ ପୃଥିବୀର ସାହିତ୍ୟ ରାଜ୍ୟରେ ଏକ ନବ ଜାଗରଣ ସୃଷ୍ଟି କରିଥାଏ। ଭାରତରେ ପ୍ରତିଷ୍ଠିତ ପ୍ରଗତିଶୀଳ ଲେଖକ ସଂଘ ତାହାର ପ୍ରତିଧ୍ୱନି।

ପୃଥିବୀ ବିଖ୍ୟାତ ହିନ୍ଦୀ ସାହିତ୍ୟିକ ମୁନସି ପ୍ରେମଚାନ୍ଦଙ୍କ ସଭାପତିତ୍ୱରେ ୧୯୩୬ରେ ସ୍ଥାପିତ ପ୍ରଗତିଶୀଳ ଲେଖକ ସଂଘ ସହିତ କବି ରବୀନ୍ଦ୍ରନାଥ ଠାକୁର, କବି ନଜରୁଲ, ଆନ୍ଧ୍ରର ମହାନ କବି ଶ୍ରୀଶ୍ରୀ, ମାଲବାରର ବିଖ୍ୟାତ କବି ଭାଲାଥୋଲ, ଓଡିଶାର ସାହିତ୍ୟ ରଥୀ କାଳିନ୍ଦୀଚରଣ ପାଣିଗ୍ରାହୀ, ଏମିତି ସବୁ ଭାଷାଭାଷୀର ସାହିତ୍ୟିକ ସଂପୃକ୍ତ ଥିଲେ।

ଭାରତକୁ ବ୍ରିଟିଶ ସାମ୍ରାଜ୍ୟ କବଳରୁ ମୁକ୍ତ କରାଯିବ, ପୃଥିବୀ ବକ୍ଷରେ କଳା ବାଦଲ ସୃଷ୍ଟି ହୋଇଥିବା ସମସ୍ତ ମାନବ ସଭ୍ୟତାକୁ ଧ୍ୱଂସ କରିବାକୁ ଉଦ୍ୟତ ଫାସିଷ୍ଟବାଦର ସାଂସ୍କୃତିକ କ୍ଷେତ୍ରରେ ବିରୋଧ କରାଯିବ, ମାନବତାବାଦୀ ସମାଜ, ସାଂପ୍ରଦାୟିକ ଐକ୍ୟ ଓ ସଂହତିର ଦେଶ ରୂପେ ଭାରତକୁ ଗଢାଯିବ, ଲୁଣ୍ଠିତ ସାମାଜିକ ନ୍ୟାୟ ପ୍ରତିଷ୍ଠା କରାଯିବ, ଏହି ଆଦର୍ଶକୁ ପାଥେୟ କରି ଏହି ସଂସ୍ଥା ସହିତ ସଂପୃକ୍ତ କବି, ସାହିତ୍ୟିକ, ପ୍ରବନ୍ଧକାର ବିଭିନ୍ନ ଭାଷାରେ ଅଗଣିତ ସାହିତ୍ୟକୃତି ସୃଷ୍ଟି କଲେ। କେବଳ ପ୍ରଗତିକାମୀ ବୁଦ୍ଧିଜୀବୀ ଜନସମୂହକୁ ନୁହେଁ; ଚାଷୀ, ଶ୍ରମିକ, ଛାତ୍ର ଯୁବକ, ମହିଳାମାନଙ୍କୁ ବ୍ରିଟିଶ ଶାସନ ଲୋପ କରିବାକୁ ଏହି ସାହିତ୍ୟ ଉଦବୁଦ୍ଧ କରିଥିଲା। ସେପରି ସାହିତ୍ୟିକ, କବିମାନଙ୍କ ସୃଷ୍ଟି ଆମ ସାହିତ୍ୟ ଭଣ୍ଡାରର ଅମୂଲ୍ୟ ରତ୍ନ ହୋଇଗଲା। ଏହା ଏକ ଅନନ୍ୟ ସାଧାରଣ ସାଂସ୍କୃତିକ ବିପ୍ଳବ। ସେହି କାଳରେ ଭାରତୀୟ ଗଣନାଟ୍ୟ ସଂଘ ଗଠିତ ହୋଇ ତାହା ଦ୍ୱାରା ବିଭିନ୍ନ ଭାଷାରେ ମାନବତାବାଦୀ ବୈପ୍ଳବିକ, ନାଟକ, ନୃତ୍ୟଗୀତ ରଚିତ ହୋଇ ପ୍ରଦର୍ଶିତ ହେଲା। ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଦେଶର ବିଭିନ୍ନ ସହର, ଶିଳ୍ପାଞ୍ଚଳ, ଶିକ୍ଷାୟତନରେ ସେଗୁଡିକର ଅଭିନୟ, ସଂଗୀତ ଆସର, ପ୍ରଥପ୍ରାନ୍ତ ପ୍ରଦର୍ଶନ ବ୍ରିଟିଶ ଶାସନକୁ ହଟେଇବା ପାଇଁ ଭାରତବାସୀଙ୍କୁ ଅନୁପ୍ରାଣିତ କଲା।

କ୍ରିଷନଚନ୍ଦର, ହାରେନ୍ଦ୍ରନାଥ ଚଟୋପାଧ୍ୟାୟ, ଖ୍ୱାଜା ମହମ୍ମଦ ଆବାସ, ତାରାଶଙ୍କର ବାନାର୍ଜୀ, ମାଣିକ ବନ୍ଦୋପାଧ୍ୟାୟ, ବିଷ୍ଣୁଦେ, ଅମର ଶେଖ, ଶମ୍ଭୁମିତ୍ର, ଅମୃତା ପ୍ରୀତମ, ସଜାଦ ଜହିର, ଭୂପେନ ହାଜାରିକା, ସଲୀଳ ଚୌଧୁରୀ, ଭୀଷ୍ମ ସାହାନି, ସୁବ୍ରମନ୍ୟମ ଭାରତୀ ଏମିତି ଅନେକ ପ୍ରଗତିଶୀଳ, ସାହିତ୍ୟିକ, କବି, କଳାକାର ଆମ ସ୍ୱାଧୀନତା ସଂଗ୍ରାମକୁ ଅବଦାନ ଦେଇଥିଲେ।

ଓଡିଶାରେ ସେହିକାଳରେ ସଚ୍ଚି ରାଉତରା, ଅନନ୍ତ ପଟ୍ଟନାୟକ, କାଳିନ୍ଦୀ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ, ରାଧାମୋହନ ଗଡନାୟକ ପ୍ରମୁଖ ଓଡିଆ ସାହିତ୍ୟ ରାଜ୍ୟରେ ନୂତନ ପ୍ରଗତିଶୀଳ ଚିନ୍ତାଚେତନାର ପୂର୍ବସୂରୀ ହୋଇଥିଲେ।

**କଂଗ୍ରେସ ସୋସାଲିଷ୍ଟ ପାର୍ଟି ପ୍ରତିଷ୍ଠା – ୧୯୩୬:**

ଆଇନ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟାହାର ପରେ ସେଥିରେ ଅସନ୍ତୋଷ ପ୍ରକାଶ ରି

କଂଗ୍ରେସରେ ଥିବା ଅନେକ ବାମପନ୍ଥୀ, ସମାଜବାଦୀ ଚିନ୍ତାର ବାହକ, ନେତା କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠନ କଲେ ।

୧୯୩୬ ଜାନୁଆରୀ ମାସରେ ଯୁକ୍ତ ପ୍ରଦେଶର ମିରଟରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ଉଦବୋଧନୀ ସମ୍ମିଳନୀ ବିଶିଷ୍ଟ ସମାଜବାଦୀ ବିଦ୍ୱାନ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଅଧକ୍ଷତାରେ ଅନୁଷ୍ଠିତ ହୋଇଥିଲା । ଦେଶର ସ୍ୱାଧୀନତା ସାଙ୍ଗକୁ ଶୋଷଣ ବିହୀନ ସମାଜବାଦର ପରିକଳ୍ପନା କରୁଥିବା ବହୁ ପ୍ରଦେଶର ତୁଙ୍ଗ କଂଗ୍ରେସ ନେତା ଏହି ସମ୍ମିଳନୀରେ ଅଂଶଗ୍ରହଣ କରିଥିଲେ । ଆଦର୍ଶଗତ ଦୃଷ୍ଟିରୁ ସମାଜବାଦରେ ଥିବା ଦୁଇଟି ଆଭିମୁଖ୍ୟର ସୋସଲିଷ୍ଟ, କମ୍ୟୁନିଷ୍ଟ ପ୍ରତିନିଧିମାନେ ଏହାର ଗଠନରେ ସକ୍ରିୟ ଭୂମିକା ନେଇଥିଲେ ।

ଜୟପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ, ଅଶୋକ ମେହେଟା, ମିନୁ ମାସାନୀ, ୟୁସୁଫ ମେହେର ଅଲି, ମୋହନ ଲାଲ ଗୌତମ, ନବକୃଷ୍ଣ ଚୌଧୁରୀ, ଇ.ଏମ.ଏସ. ନମ୍ବୁଦ୍ରିପଡ ପ୍ରମୁଖ ନେତାମାନେ ଆଦ୍ୟ ସମ୍ମିଳନୀରେ ଅଂଶଗ୍ରହଣ କରିଥିଲେ । ଜୟପ୍ରକାଶ ନାରାୟଣ ଏହାର ସାଧାରଣ ସଂପାଦକ ନିର୍ବାଚିତ ହେଲେ । ଉତ୍ତର ପ୍ରଦେଶ, ବଂଗଳା, ବିହାର, ବମ୍ବେ, ଆନ୍ଧ୍ର, ମାନ୍ଦ୍ରାଜ ପ୍ରଭୃତିର ତତ୍କାଳୀନ ବହୁ ବିଶିଷ୍ଟ କଂଗ୍ରେସ ନେତା ଏଥିରେ ଯୋଗ ଦେଇଥିଲେ । କମ୍ୟୁନିଷ୍ଟ ପାର୍ଟି ବେଆଇନ ଥାଏ । ଅନେକ କମ୍ୟୁନିଷ୍ଟ ମତାବଲମ୍ବୀ ନେତା ଓ କର୍ମୀ ମଧ ଏଥିରେ ଯୋଗ ଦେଇଥିଲେ ।

ପରବର୍ତ୍ତୀ କାଳରେ କେରଳ, ମାନ୍ଦ୍ରାଜ, ଆନ୍ଧ୍ରର ପ୍ରାୟ ସମଗ୍ର ପାର୍ଟି ଶାଖା କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଲେ । ଦ୍ୱିତୀ   ବିଶ୍ୱଯୁଦ୍ଧ ଆରଂଭ କାଳରେ ଜରୁରୀ ଅବସ୍ଥା ଉପୁଜିଲା ଦର୍ଶାଇ ପାର୍ଟିର ସାଂଗଠନିକ ବ୍ୟବସ୍ଥାକୁ ଭଂଗା ଯାଇ ପ୍ରତି ପ୍ରଦେଶରେ ଡିକ୍ଟେଟର ନିଯୁକ୍ତ କରାଗଲା । ୧୯୪୦ ଆଦ୍ୟ ଭାଗରେ ଜୟପ୍ରକାଶ ନାରାୟଣ, କଟକରେ କଂଗ୍ରେସ ସୋସଲିଷ୍ଟ ପାର୍ଟି ସମାବେଶରେ ପାର୍ଟି ଭାଂଗି ଦିଆଗଲା ବୋଲି ଘୋଷଣା କଲେ । ନବକୃଷ୍ଣ ଚୌଧୁରୀ ଡିକ୍ଟେଟର ମନୋନୀତ ହେଲେ । ଏହାର ପରେ ସ୍ପଷ୍ଟଭାବରେ କମ୍ୟୁନିଷ୍ଟ, ସୋସଲିଷ୍ଟ ଏପରି ଦୁଇ ଭାଗରେ ବିଭକ୍ତ ତାହା ବିଭକ୍ତ ହୋଇଗଲା ।

କଂଗ୍ରେସ ସୋସଲିଷ୍ଟ ପାର୍ଟି ଏହି କାଳ ଭିତରେ କୃଷକ ଆନ୍ଦୋଳନର ଅଗ୍ରଣୀ ଭୂମିକାରେ ଥିଲା । ଗଡଜାତ ପ୍ରଜା ଆନ୍ଦୋଳନରେ ଏହାର ନେତା ଓ କର୍ମୀମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ ।

ଓଡିଶାରେ ପ୍ରଥମେ ୧୯୩୪ରେ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀଙ୍କ ଉଦ୍ୟମରେ ସାମ୍ୟବାଦୀ କର୍ମୀସଂଘ ଗଠିତ ହୋଇଥିଲା । ୧୯୩୬ରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର ପ୍ରାଦେଶିକ ଶାଖା ପ୍ରତିଷ୍ଠିତ ହେଲା । ଉଦବୋଧନୀରେ ପ୍ରାଣନାଥ ପଟ୍ଟନାୟକ ଅଧକ୍ଷତା କରିଥିଲେ । ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ମନମୋହନ ଚୌଧୁରୀ, ରବିଘୋଷ, ଗୌରାଙ୍ଗ ଚରଣ ଦାସ, ଗୌରଚନ୍ଦ୍ର ଦାସ, ବନମାଳୀ ମହାରଣା, ଭଗବତୀ ଚରଣ

ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ଗୋକୁଳମୋହନ ରାୟ ଚୂଡ଼ାମଣି, ବିଶ୍ୱନାଥ ପଣ୍ଡାଏତ୍ ପ୍ରମୁଖ ସମାବର୍ତ୍ତନ ଉତ୍ସବରେ ଭାଗ ନେଇଥିଲେ । ଭଗବତୀଚରଣ ପାଣିଗ୍ରାହୀ ଏହାର ପ୍ରଥମ ସଂପାଦକ ହେଲେ । କୃଷକ ସାପ୍ତାହିକ ଏହାର ମୁଖପତ୍ର ହେଲା । ସଂପାଦକମଣ୍ଡଳୀରେ ଭଗବତୀ ଚରଣ ପାଣିଗ୍ରାହୀ ସଂପାଦକ, ଗୁରୁଚରଣ ପଟ୍ଟନାୟକ ପରିଚାଳନା ସଂପାଦକ, ଏବଂ ମାଳତୀ ଚୌଧୁରୀ, ସାରଙ୍ଗଧର ଦାସ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ସଦସ୍ୟ ରହିଲେ । ପରେ ମାଳତୀ ଚୌଧୁରୀ ମୁଖ୍ୟ ସଂପାଦିକା ହେଲେ । ୧୯୩୬ରୁ ଆରଂଭ ହୋଇଥିବା ଏହି ପତ୍ରିକା କୃଷକ ଆନ୍ଦୋଳନର ଗଡଜାତ ପ୍ରଜା ଆନ୍ଦୋଳନର ଆଦର୍ଶଗତ, ଆନ୍ଦୋଳନଗତ ଆୟୁଧ ରୂପେ କାର୍ଯ୍ୟ କରିଥିଲା ।

**ଭାରତୀୟ କମ୍ୟୁନିଷ୍ଟ ପାର୍ଟି:**

୧୯୩୪ରୁ ୧୯୪୦ ମଧ୍ୟରେ କ୍ଷୁଦ୍ର କମ୍ୟୁନିଷ୍ଟ ପାର୍ଟି ଏକ ସର୍ବ ଭାରତୀୟ ପାର୍ଟି ରୂପରେ ଆତ୍ମପ୍ରକାଶ କଲା । ୧୯୧୭ ବଲଶେଭିକ ବିପ୍ଳବର ବିଜୟ ପରେ ମାର୍କ୍ସୀୟ ଚିନ୍ତାଧାରାର ପ୍ରବେଶ କାଳରେ ଭାରତରେ ସମାଜବାଦର ଆଦର୍ଶରେ ସ୍ୱାଧୀନତା ସଂଗ୍ରାମୀ ଯୁବକମାନେ ଅନୁପ୍ରାଣିତ ହୋଇଥିଲେ । ବମ୍ବେ, କଲିକତା, ମାନ୍ଦ୍ରାଜ, କାନପୁର ପ୍ରଭୃତି ସ୍ଥାନରେ ଏପରି ଭାବାଦର୍ଶର ଛୋଟ ଛୋଟ ଗୋଷ୍ଠୀ ଗଠିତ ହୋଇଥିଲା । ୧୯୨୦ରେ ଅସହଯୋଗ ଆନ୍ଦୋଳନ କାଳରୁ ଏହି ଯୁବକମାନେ ଡୋମିନିୟନ ଷ୍ଟାଟସ ଓ ବ୍ରିଟିଶ ସହିତ ସାଲିସର ବିରୋଧ କରୁଥିଲେ । ୧୯୨୦ ନାଗପୁର କଂଗ୍ରେସରୁ ଆରମ୍ଭ କରି ଗୟା କଂଗ୍ରେସ, ଅହମେଦାବାଦ କଂଗ୍ରେସ, ମାନ୍ଦ୍ରାଜ କଂଗ୍ରେସ, କଲିକତା କଂଗ୍ରେସ ତଥା ୧୯୨୯ର ବିଖ୍ୟାତ ଲାହୋର କଂଗ୍ରେସ ଅଧିବେଶନରେ କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ଘୋଷଣା କରୁ ବୋଲି ଦାବୀ କରି ଆସୁଥିଲେ । କଂଗ୍ରେସର ଉପର ପାହ୍ୟା ନେତୃତ୍ୱର ଏମାନେ ଘୋର ସମାଲୋଚନ ଥିଲେ ଏବଂ ବୁର୍ଜୁୟା ଶ୍ରେଣୀର ଆଦର୍ଶକୁ ଏମାନେ ଅନୁସରଣ କରୁଛନ୍ତି ବୋଲି ଅଭିମତ ପ୍ରକାଶ କରୁଥିଲେ ।

ଶ୍ରମିକ ଓ ଚାଷୀଙ୍କର ସ୍ୱତନ୍ତ୍ର, ସ୍ୱାଧୀନ ସଂଗଠନ ଗଢ଼ି ଜାତୀୟ କଂଗ୍ରେସର ନୀତିକୁ ପ୍ରଭାବିତ କରିବାକୁ ଏମାନେ ଉଦ୍ୟମ ଆରଂଭ କରିଥିଲେ । ଅଖିଳ ଭାରତ ଟ୍ରେଡ ୟୁନିଅନ କଂଗ୍ରେସ, ୧୯୩୬ର କୃଷକ ସଭା, ଗଡଜାତ ପ୍ରଜା ସମ୍ମିଳନୀର କାମଦାମରେ କମ୍ୟୁନିଷ୍ଟମାନେ ଅଗ୍ରଗାମୀ ଭୂମିକା ନେଉଥିଲେ ।

୧୯୨୪ଠାରୁ ବ୍ରିଟିଶ ସରକାର କମ୍ୟୁନିଷ୍ଟମାନଙ୍କୁ ଜବତ କରିବା ଲାଗି ପେଶାଓ୍ୱାର, କାନପୁର, ମିରଟ କମ୍ୟୁନିଷ୍ଟ ଷଡଯନ୍ତ୍ର ମକଦମାମାନ କରି ଅଭିଯୁକ୍ତମାନଙ୍କୁ ଦୀର୍ଘ କାରାଦଣ୍ଡରେ ଦଣ୍ଡିତ କରିବା ଦର୍ଶାଯାଇଛି ।

ଅଧିକାଂଶ ଏପରି ତରୁଣ କମ୍ୟୁନିଷ୍ଟ ଜେଲରେ ଥିବା କାଳରେ କାନପୁରଠାରେ ୧୯୨୫ରେ ଗଠିତ କମ୍ୟୁନିଷ୍ଟ ପାର୍ଟିର ୧୯୩୪ରେ ପୁର୍ନଗଠନ ହେଲା । ପି.ସି. ଯୋଷୀ ୧୯୪୭ ଶେଷଯାଏ ଏହାର ସଂପାଦକ ହେଲେ । ସଂଗେ ସଂଗେ ବ୍ରିଟିଶ ସରକାର ଏହି

ପାର୍ଟିକୁ ବେଆଇନ ଘୋଷଣା କଲା । ବେଆଇନ ଘୋଷଣା ସତ୍ତ୍ୱେ ଏହି ପାର୍ଟିର ପ୍ରତ୍ୟେକଟି ପ୍ରଦେଶରେ ପ୍ରସାର ଘଟିଲା । ନାସନାଲ ଫ୍ରଣ୍ଟ ନାମକ ଇଂରେଜୀ ସାପ୍ତାହିକ ଏହାର ମୁଖପତ୍ର ହେଲା । ବିଭିନ୍ନ ଭାଷାରେ ପାର୍ଟିର ପତ୍ରପତ୍ରିକା ପ୍ରକାଶ ପାଇଲା ।

ଏହି କାଳରେ କମ୍ୟୁନିଷ୍ଟ ପାର୍ଟି କୃଷକ ସଭା, ଛାତ୍ର ସଂଘ ଏବଂ ଚାଷୀ ଓ ଗଣ ସଂଗଠନ ଗଢିବାରେ, ଗଡଜାତ ପ୍ରଜା ଆନ୍ଦୋଳନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲା । ସାମ୍ରାଜ୍ୟବାଦ ବିରୋଧୀ, ଫାସିଷ୍ଟବାଦ ବିରୋଧୀ ସାଂସ୍କୃତିକ ଅଭିଯାନର ଅଙ୍ଗରୂପେ ପ୍ରଗତିଶୀଳ ଲେଖକ ସଂଘ, ଭାରତୀୟ ଗଣନାଟ୍ୟ ସଂଘ, ପ୍ୟୁପଲ୍ସ ପବ୍ଲିସିଙ୍ଗ ସଦନ ଗଢିବାରେ ପ୍ରମୁଖ ଭୂମିକା ନେଇଥିଲା ।

ଲାହୋର ଷଡଯନ୍ତ୍ର ମକଦ୍ଦମା, କାକୋରୀ ଷଡଯନ୍ତ୍ର ମକଦ୍ଦମା, ଚିଟାଗଙ୍ଗ ଷଡଯନ୍ତ୍ର ମାମଲାରେ ଦଣ୍ଡିତ ବହୁ ବିପ୍ଳବୀ ଏବଂ ଆନ୍ଦାମାନ ସେଲୁଲାର ଜେଲରେ ଥିବା ବନ୍ଦୀମାନେ ମୁକ୍ତ ହେଲାପରେ ସେମାନଙ୍କ ମଧ୍ୟରୁ ଅନେକ ଏହି ସମୟରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ ।

କଂଗ୍ରେସର ମନ୍ତ୍ରୀମଣ୍ଡଳଗୁଡିକର ଅସ୍ତିବାଚକ ପଦକ୍ଷେପକୁ ସ୍ୱାଗତ କରି ତାହାର ଶ୍ରମିକ, ଚାଷୀ ଓ ଅନ୍ୟ ମେହନତୀ ଜନସାଧାରଣଙ୍କ ଉପରେ ଦମନର ଏହି ପାର୍ଟି ତୀବ୍ର ବିରୋଧ କଲା । ସାମ୍ରାଜ୍ୟବାଦ ଓ ଫାସିଷ୍ଟବାଦ ବିରୁଦ୍ଧରେ ଏହି ସମୟରେ କମ୍ୟୁନିଷ୍ଟ ପାର୍ଟି, ସୋସଲିଷ୍ଟ, ଫରୱାର୍ଡ ବ୍ଲକ ପ୍ରଭୃତି ଦଳ ଓ ଗଣତନ୍ତ୍ରକାମୀ ବ୍ୟକ୍ତିଙ୍କର ଜାତୀୟ ସାମ୍ମୁଖ୍ୟ (ନାସନାଲ ଫ୍ରଣ୍ଟ) ଗଠନ ଆହ୍ୱାନ ଦେଇଥିଲା ।

**ଫରୱାର୍ଡ ବ୍ଲକ୍ ପ୍ରତିଷ୍ଠା ୧୯୪୦:**

୧୯୩୯ରେ ତ୍ରିପୁରି କଂଗ୍ରେସ ଓ କଲିକତାରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନରେ ସୁବାଷଚନ୍ଦ୍ର ବୋଷ କଂଗ୍ରେସ ଦ୍ୱାରା ଲାଞ୍ଛିତ, ଅପମାନିତ ହୋଇ ସସପେଣ୍ଡ ହେଲେ । ସେ ଏକ ସ୍ୱତନ୍ତ୍ର ରାଜନୈତିକ ଦଳ ନଗଢି କଂଗ୍ରେସର ଅଗଣତାନ୍ତ୍ରିକ ନୀତି ବିରୁଦ୍ଧରେ ଲଢିବାକୁ ସୋସଲିଷ୍ଟ, କମ୍ୟୁନିଷ୍ଟମାନେ ଚାହୁଁଥିଲେ ।

୧୯୪୧ରେ ଗୋପନରେ ଦେଶ ଛାଡି ଯିବା ପୂର୍ବରୁ ସେ ଫରୱାର୍ଡ ବ୍ଲକ ଗଠନ କରିଥିଲେ । ବହୁ କଂଗ୍ରେସ ନେତା, ବିଭିନ୍ନ ପ୍ରଦେଶରୁ ଫରୱାର୍ଡ ବ୍ଲକରେ ଯୋଗଦେଲେ । ଶୀଭଦ୍ରଯାଜୀ, ନିହାରେନ୍ଦୁ ଦତ୍ତ ମଜୁମଦାର ପରି ତୁଙ୍ଗ ନେତାମାନେ ଏଥିରେ ଯୋଗ ଦେଲେ ।

ଫରୱାର୍ଡ ନାମକ ଇଂରେଜୀ ପତ୍ରିକା ଏହାର ମୁଖପତ୍ର ହୋଇଥିଲା । କଂଗ୍ରେସର ବ୍ରିଟିଶ ସହିତ ସାଲିସ ନୀତିର ତୀବ୍ର ବିରୋଧ କରି ଗଣ ଆନ୍ଦୋଳନ ଜରିଆରେ ପୂର୍ଣ୍ଣ ସ୍ୱାଧୀନତା ଓ ସମାଜବାଦ ପ୍ରତିଷ୍ଠାର ଲକ୍ଷ୍ୟ ଏହା ଗ୍ରହଣ କରିଥିଲା ।

□□□

# ବ୍ୟକ୍ତିଗତ ସତ୍ୟାଗ୍ରହ, ଅଗଷ୍ଟ ବିପ୍ଳବ

# ଯୁଦ୍ଧୋତ୍ତର ମହା-ଅଭ୍ୟୁତ୍ଥାନ

## (୧୯୪୦ ରୁ ୧୯୪୬)

### ବ୍ୟକ୍ତିଗତ ସତ୍ୟାଗ୍ରହ

କଂଗ୍ରେସର ନିଷ୍ପତ୍ତି ଅନୁସାରେ କଂଗ୍ରେସ ଶାସିତ ପ୍ରଦେଶଗୁଡ଼ିକର ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଦେଲେ । ଏପରି ସଂବିଧାନିକ ସଂକଟର ମୁକାବିଲା କରିବା ଲାଗି ବ୍ରିଟିଶ ଭାଇସରାୟ ଏକ ଖେଳ ଖେଳିଲେ । ବିରୋଧୀ ଦଳଗୁଡ଼ିକୁ ଧରି ଏବଂ ବ୍ୟକ୍ତିବିଶେଷ ଏମ.ଏଲ.ଏଙ୍କୁ ହାତ କରି ବିଭିନ୍ନ ପ୍ରଦେଶରେ ଥୁଆଥୋଇ ସରକାର ଗଢ଼ିଲେ । କେତେକ ସ୍ଥାନରେ କେତେକ କଂଗ୍ରେସ ବିଧାୟକ ଶୃଙ୍ଖଳା ଭଂଗ କରି ଏପରି ଅଗଣତାନ୍ତ୍ରିକ ସରକାର ଗଠନରେ ସାହାଯ୍ୟ କଲେ । ଆମ ଓଡ଼ିଶାରେ ମଧ୍ୟ ଏପରି ନିନ୍ଦନୀୟ ଘଟଣା ଘଟିଥିଲା ।

ଅହିଂସ ପନ୍ଥାରେ ବ୍ୟକ୍ତିଗତ ଭାବରେ ପ୍ରତୀକ ସତ୍ୟାଗ୍ରହ କରାଯିବା ପାଇଁ ଗାନ୍ଧିଜୀ ଅହିଂସ ମାର୍ଗର ସର୍ବଶ୍ରେଷ୍ଠ ପ୍ରତୀକ ରୂପରେ ଆଚାର୍ଯ୍ୟ ବିନୋବାଙ୍କୁ ମନୋନୟନ କଲେ, ରାଜନୈତିକ ରୂପେ ପଣ୍ଡିତ ଜବାହାରଲାଲଙ୍କୁ ବାଛିଲେ । ଏମାନଙ୍କ ପରେ ଇସ୍ତଫା ଦେଇଥିବା ପ୍ରଦେଶଗୁଡ଼ିକର ପ୍ରଧାନମନ୍ତ୍ରୀ ( ୧ ୯୩୫ ଶାସନ ଖସଡ଼ା ଅନୁସାରେ ଏମାନଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା ।) ମନ୍ତ୍ରୀ, ବିଧାୟକ, ସ୍ୱାୟତ୍ତ ଶାସିତ ସଂସ୍ଥାଗୁଡ଼ିକରେ ଥିବା କଂଗ୍ରେସ କର୍ମକର୍ତ୍ତା ଓ କଂଗ୍ରେସ କମିଟିଗୁଡ଼ିକର ନେତା ଓ କର୍ମୀ ଧ୍ୱନି ସତ୍ୟାଗ୍ରହ କରିବାର ନିଷ୍ପତ୍ତି ନିଆଗଲା ।

ନିର୍ଦ୍ଧାରିତ ସ୍ଥାନଗୁଡ଼ିକରେ କର୍ତ୍ତୃପକ୍ଷଙ୍କୁ ଅବଗତ କରାଇ ସତ୍ୟାଗ୍ରହୀମାନେ କୌଣସି ଭାଷଣ ନଦେଇ କେବଳ "ମୁଁ କାୟୋମନ ବାକ୍ୟରେ ଏ ଯୁଦ୍ଧରେ ବିରୋଧ କରୁଛି" ବୋଲି ଧ୍ୱନି ଦେବେ ।

ପ୍ରଥମ ସତ୍ୟାଗ୍ରହୀ ଓ ଦ୍ୱିତୀୟ ସତ୍ୟାଗ୍ରହୀ ବିନୋବା ଓ ନେହେରୁଙ୍କ ସତ୍ୟାଗ୍ରହ ଓ ଗିରଫ ପରେ ବିଭିନ୍ନ ପ୍ରଦେଶରେ, ପ୍ରଦେଶର ବିଭିନ୍ନ ଜିଲ୍ଲାର ସହର ଓ ପେଣ୍ଠସ୍ଥାନ ଗୁଡ଼ିକରେ ଏହିପରି

ସତ୍ୟାଗ୍ରହ ଅନୁଷ୍ଠିତ ହେଲା । ସତ୍ୟାଗ୍ରହୀମାନଙ୍କୁ ଛ'ମାସଠାରୁ ଆରଂଭ କରି ବର୍ଷାଧିକ କାଳ ଜେଲଦଣ୍ଡ ଦିଆଗଲା ।

ଏହି ବ୍ୟକ୍ତିଗତ ସତ୍ୟାଗ୍ରହ ଚାଲିଲାବେଳେ କେବଳ ସତ୍ୟାଗ୍ରହୀମାନଙ୍କୁ ବ୍ରିଟିଶ ସରକାର ଗିରଫ କରୁନଥିଲା । ଜୋରଜବରଦସ୍ତ ଯୁଦ୍ଧ ଚାନ୍ଦା ଆଦାୟର ଏବଂ ଗାଁ ଗହଳରୁ ଧାନ ସଂଗ୍ରହର ବିରୋଧ କରୁଥିବା ଦେଶପ୍ରେମୀମାନଙ୍କୁ ଗିରଫ କରି ନିଆଯାଉଥିଲା ।

ଏହ୍ଲାବାଦରେ ଗିରଫ ହୋଇ ବିଚାରାଳୟରେ ନେହେରୁ ଯେଉଁ ବିବୃତି ଦେଇଥିଲେ ତାହା କଂଗ୍ରେସ କର୍ମୀମାନଙ୍କ ଲାଗି ଏକ ଜଟିଳ ପରିସ୍ଥିତିରେ ଏକ ଦିଗଦର୍ଶନ ଦେଇଥିଲା । ଏହି ବିବୃତି ସଂବାଦପତ୍ରମାନଙ୍କରେ ପ୍ରକାଶିତ ଏକ ସରକାରୀ ଦଲିଲ ହେଲେବି ତାହାକୁ ବିଭିନ୍ନ ଭାଷାରେ ଛପାଇ ବଣ୍ଟନ କରିଥିବାରୁ ଓଡ଼ିଶା ଭଳି ଅନ୍ୟତ୍ର କଂଗ୍ରେସ କର୍ମୀମାନଙ୍କୁ ବର୍ଷେ ଦୁଇବର୍ଷ କାରାଦଣ୍ଡ ଦିଆଯାଇଥିଲା ।

ଦେଶସାରା ବ୍ୟକ୍ତିଗତ ସତ୍ୟାଗ୍ରହ କାଳରେ ୨୦ହଜାର ବ୍ୟକ୍ତିଙ୍କୁ ଗିରଫ କରି ଜେଲଖାନାରେ ଭର୍ତ୍ତି କରାଯାଇଥିଲା ।

ଓଡ଼ିଶାରେ ବ୍ୟକ୍ତିଗତ ସତ୍ୟାଗ୍ରହୀମାନଙ୍କୁ ବ୍ରହ୍ମପୁର, ପୁରୀ, ସଂବଲପୁର ବାଲେଶ୍ୱର ଜେଲମାନଙ୍କରେ ରଖାଯାଇଥିଲା । ଚାରିପାଞ୍ଚ ମାସ କାଳ ଦେଶର ବିଭିନ୍ନ ସ୍ଥାନରେ ବ୍ୟକ୍ତିଗତ ସତ୍ୟାଗ୍ରହ ଚାଲିବାପରେ ଏହା କ୍ରମଶଃ ନିସ୍ତେଜ ହୋଇପଡିଥିଲା ।

**କ୍ରିପ୍ସ ମିଶନର ବିଫଳତା:**

ଭାରତରେ ଏହିପରି ଦମନ ଓ ଗିରଫଦାରୀର ବାତାବରଣ କାଳରେ ବ୍ରିଟିଶ ସରକାର ଯୁଦ୍ଧକ୍ଷେତ୍ରରେ ଘୋର ବିପର୍ଯ୍ୟୟର ସମ୍ମୁଖୀନ ହୋଇଥାଏ । ହିଟଲର, ମୁସୋଲିନୀ ଜାପାନର ଅକ୍ଷଶକ୍ତି ୟୁରୋପର ପୋଲାଣ୍ଡ, ହଲାଣ୍ଡ, ନରବେ, ଫ୍ରାନସ କେବଳ ବ୍ରିଟେନକୁ ଛାଡି ପ୍ରାୟ ସମଗ୍ର ୟୁରୋପ ଦଖଲ କରିସାରିଥାଏ । ହିଟଲର ଆଗ ପୁଂଜିବାଦ-ସାମ୍ରାଜ୍ୟବାଦର ଶତ୍ରୁ ସୋଭିଏତ୍ ୟୁନିଅନ ଉପରେ ଆକ୍ରମଣ କରୁ ବୋଲି ବିଲାତ ଫ୍ରାନ୍ସ ଚକ୍ରାନ୍ତ କରି ମ୍ୟୁନିକ ଚୁକ୍ତିରେ ସୋଭିଏତ୍ ସୀମାନ୍ତ ଚେକୋସ୍ଲୋଭିଆକୁ ହିଟଲରକୁ ଅର୍ପଣ କରି ବିଫଳ ହୋଇଥାନ୍ତି । ବରଂ ହିଟଲର ଆଗ ବ୍ରିଟେନ୍ ଓ ଫ୍ରାନ୍ସ ଉପରେ ଆକ୍ରମଣ କଲା । ସ୍ପେନ, ପର୍ତ୍ତୁଗାଲ ପରି ଦେଶ ହିଟଲରର ମେଣ୍ଟ ଭୁକ୍ତ ଥାଆନ୍ତି ।

ବିଲାତ ଉପରେ ପ୍ରତିଦିନ କୋଡିକୋଡି ସଂଖ୍ୟାରେ ବୋମାରୁ ବିମାନ ଆକ୍ରମଣ କରି ଚାଲିଥାଏ ।

ପୂର୍ବପଟେ ଫିଲପାଇନ୍ସ, ଇନ୍ଦୋଚୀନ, ଇନ୍ଦୋନେସିଆ, ମାଳୟ, ବର୍ମାକୁ ଅର୍ଥାତ୍ ଇଂରେଜ, ଫ୍ରାନ୍ସ, ଡଚ୍ ସାମ୍ରାଜ୍ୟବାଦୀଙ୍କ ଉପନିବେଶଗୁଡିକୁ ଜାପାନ ଦଖଲ କରିନେଇଥାଏ । ୧୯୪୨ ମାର୍ଚ୍ଚ ମାସରେ ଭାରତ ସୀମାନ୍ତ ବର୍ମାର ରାଜଧାନୀ ରେଙ୍ଗୁନରେ ଜାପାନୀ ସୈନ୍ୟ ପହଂଚିଯାଇଥାନ୍ତି ।

ଏହି ପରିସ୍ଥିତିକୁ ଦେଖି ଭାରତକୁ ଭଣ୍ଡିବାକୁ କ୍ରିପ୍ସ ମିଶନ ୧୯୪୨ ମାର୍ଚ୍ଚ ମାସରେ ଭାରତରେ ପହଂଚିଲା । ସାର ଷ୍ଟାଫୋର୍ଡ କ୍ରିପ୍ସ ଭାରତପ୍ରେମୀ ବୋଲି ତାଙ୍କର ଖ୍ୟାତି ଥାଏ ।

କ୍ରିପ୍ସଙ୍କ ପ୍ରସ୍ତାବ ଏକ ଧୂଆଁବାଣରେ ପ୍ରମାଣିତ ହେଲା । ସେଥିରେ ଥିଲା, "ଯୁଦ୍ଧପରେ ଭାରତକୁ ଡୋମିନିୟନ ଷ୍ଟାଟସ ଦିଆଯିବ । ଭାରତ ନ ଚାହିଁଲେ ଡୋମିନିୟନରୁ ବାହାରିଯିବାର ଅଧିକାର ତାହାର ରହିବ ।"

"ଏହି ଚିଠା ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ଲାଗି ଯୁଦ୍ଧ ଶେଷ ହେବାପରେ ଏକ ସଂବିଧାନ ସଭା ବସିବ । ଏହି ସଂସ୍ଥାକୁ ପ୍ରତ୍ୟକ୍ଷ ବ୍ରିଟିଶ ଶାସିତ ଭାରତରୁ ତଥା ଦେଶୀୟ ରାଜ୍ୟଗୁଡ଼ିକରୁ ପ୍ରତିନିଧି ନିଆଯିବେ । ରାଜନ୍ୟବର୍ଗ ସେମାନଙ୍କ ପ୍ରତିନିଧି ମନୋନୀତ କରିବେ । ୧୯୩୫ ଶାସନ ଖସଡା ଅନୁସାରେ ନିର୍ବାଚିତ ପ୍ରାଦେଶିକ ବିଧାନସଭାଗୁଡ଼ିକର ପ୍ରତିନିଧି ତଳ ସଦନରେ ରହିବେ । ଏହି ଆସେମ୍ବ୍ଲି ସହିତ ବ୍ରିଟିଶ ସରକାର ଆଲୋଚନା କରିବ ।

"ଯଦି କୌଣସି ପ୍ରଦେଶ ଏଥିରେ ନ ରହିବାକୁ ଚାହେଁ, ସେଥିଲାଗି ତାକୁ ଅନୁମତି ମିଳିବ । ଆଲୋଚନା ଚାଲିଥିବାବେଳେ କୌଣସି ସାଂବିଧାନିକ ସଂଶୋଧନ ହେବ ନାହିଁ ଓ ଭାରତୀୟ ଦଳଗୁଡ଼ିକ ସରକାରରେ ସହଯୋଗ କରିବାକୁ ରାଜି ହେବେ ପ୍ରତିରକ୍ଷା ବ୍ରିଟିଶ ସେନାପତିଙ୍କ ହାତରେ ନ୍ୟସ୍ତ ହେବ । ସେଥିରେ ଜଣେ ଭାରତୀୟ ପ୍ରତିରକ୍ଷା ସଦସ୍ୟ ରହିବେ ।"

କ୍ରିପସଙ୍କ ପ୍ରସ୍ତାବରେ ଆହୁରି ଥିଲା, ସଂବିଧାନ ସଭାରେ ୧୫୮୮ ଜଣ ସଦସ୍ୟଙ୍କ ମଧ୍ୟରୁ ୫୦୦ ମନୋନୀତ ସଦସ୍ୟ ରହିବେ । ମୁସଲମାନ ସଂଖ୍ୟାଧିକ ପ୍ରଦେଶଗୁଡ଼ିକ ନିଜର ସଂବିଧାନ ଗଠନ କରିପାରିବେ ଓ ବ୍ରିଟିଶ ସରକାର ସହିତ ଚୁକ୍ତି ସଂପାଦନ କରିପାରିବେ ।

ସବୁ ଭବିଷ୍ୟତରେ ହେବ, ବର୍ତ୍ତମାନ କ୍ଷମତା ହସ୍ତାନ୍ତର ହେବ ନାହିଁ; ଜଣାପଡିଗଲା । ଜାତୀୟ ସରକାର ଗଠନର ଯେଉଁ ମୂଳ ପ୍ରସ୍ତାବ କ୍ରିପ୍ସ ଦେଇଥିଲେ, ସେଥିରୁ ସେ ଓହରି ଗଲେ । ବିଭିନ୍ନ କାରଣରୁ ଓ ଭିନ୍ନ ଭିନ୍ନ ରାଜନୈତିକ ଆସ୍ଥାନରୁ କଂଗ୍ରେସ, ମୁସଲିମ୍ ଲିଗ୍, ହିନ୍ଦୁ ମହାସଭା କ୍ରିପ୍ସ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଲେ । ୧୯୪୨ ଏପ୍ରିଲ ୨ ତାରିଖରେ ଅଖିଳ ଭାରତ ପ୍ରଜା ସମ୍ମିଳନୀ ମଧ୍ୟ କ୍ରିପ୍ସ ପ୍ରସ୍ତାବ ରାଜତନ୍ତ୍ରକୁ ରକ୍ଷା କରିବାକୁ ଅଭିପ୍ରେତ କହି ତାକୁ ପ୍ରତ୍ୟାଖ୍ୟାନ କଲା । ବ୍ରିଟିଶ ଜାଠଦଳର ପ୍ରଧାନମନ୍ତ୍ରୀ ଉଇଣ୍ଷ୍ଟସନ ଚର୍ଚ୍ଚିଲ ଦାମ୍ଭିକ ଘୋଷଣା କରି କହିଲେ, "ବ୍ରିଟିଶ ସାମ୍ରାଜ୍ୟର ବିଲୋପ ପ୍ରକ୍ରିୟାର ଅଧିନାୟକ ହେବାପାଇଁ ମୁଁ ମହାମହିମ ସମ୍ରାଟଙ୍କ ପ୍ରଥମ ସଦସ୍ୟ ହୋଇ ନାହିଁ ।"

ଏହି ସମୟରେ ତତ୍କାଳୀନ ଚୀନ ରାଷ୍ଟ୍ରପତି ଚ୍ୟାଙ୍ଗକୈସେକ ଭାରତ ପରିଦର୍ଶନରେ ଆସି ନେହେରୁ ଜିନ୍ନା ପ୍ରଭୃତିଙ୍କ ସହିତ ଆଲୋଚନା କରିଥିଲେ ଏବଂ ଭାରତକୁ କ୍ଷମତା ଅର୍ପଣ କରିବାକୁ ବ୍ରିଟିଶ ସରକାରକୁ ପରାମର୍ଶ ଦେଇଥିଲେ ।

କ୍ରିପ୍ସ ମିଶନର ବିଫଳତା ପରେ ଦେଶରେ ଏକ ଦିଗରେ କ୍ରୋଧ ଓ ଅନ୍ୟ ଦିଗରେ ହତାଶା ଦେଖାଦେଲା । କଂଗ୍ରେସ ମଧ୍ୟରେ ଭବିଷ୍ୟତ୍ କର୍ମପନ୍ଥା ଘେନି ମନ୍ଥନ ସୃଷ୍ଟି ହେଲା । ୧୯୪୨ ମଇ ମାସରେ କ୍ରିପ୍ସ ମିଶନର ବ୍ୟର୍ଥତା ପରେ ଗାନ୍ଧିଜୀ କହିଲେ, "ନିଶ୍ଚିତ ଭାବରେ ମୋର ସହାନୁଭୂତି ରୁଷିଆ ଓ ଚୀନ ସପକ୍ଷରେ । ବ୍ରିଟେନ ପ୍ରତି ମୋର ପୂର୍ଣ୍ଣ ସମର୍ଥନ ଅଛି ବୋଲି ମୁଁ କହି ଆସୁଥିଲି । ଦୁଃଖର ସହ ମୁଁ ସ୍ୱୀକାର କରୁଛି ଯେ ତାକୁ ନୈତକ ସମର୍ଥନ ଦେବାକୁ ମୋ ମନ ନାହିଁ କରୁଛି । ଭାରତ ପାଇଁ ବ୍ରିଟିଶ ଆଚରଣ ମୋ ପାଇଁ ବେଦନାଦାୟକ ହୋଇଛି । ବିଲାତ କୌଣସି ହୀନସ୍ଥା ଭୋଗୁ ବୋଲି ମୁଁ ନଚାହୁଁଥିଲେ ହେଁ ତାକୁ ନୈତିକ ସମର୍ଥନ ଦେବାକୁ ମୋ ମନ ବଳୁନାହିଁ ।"

ଜାପାନ ସଂପର୍କରେ ସତର୍କ କରାଇ ୧୯୪୨ ଜୁନରେ ଏକ ସାକ୍ଷାତ୍କାରରେ ସେ କହିଲେ, "ମନେ ରଖନ୍ତୁ, ଜାପାନକୁ ଦୂରେଇ ରଖିବା ଲାଗି ବ୍ରିଟିଶଠାରୁ ମୁଁ ଅଧିକ ଆଗ୍ରହୀ । ଭାରତୀୟ ଜଳରାଶିରେ ବିଲାତର ପରାଜୟ ଅବା ତା ହାତରୁ ଭାରତ ଯାଇ ଜାପାନ ଜିଣିବ, ତେବେ ଭାରତ ସବୁ କିଛି ହରାଇବ ।"

ସୁବାଷ ବୋଷଙ୍କୁ ଲକ୍ଷ୍ୟ କରି ୧୯୪୨ ଜୁନ ୨୧ ହରିଜନ ସଂଖ୍ୟାରେ ସେ ଲେଖିଲେ "ଅକ୍ଷ ଶକ୍ତିମାନଙ୍କର ବନ୍ଧୁତା ପ୍ରଦର୍ଶନ ପ୍ରତି ମୁଁ ଆଦୌ ଗୁରୁତ୍ୱ ଦେଉନାହିଁ । ସେମାନେ ଭାରତର ମୁକ୍ତି ପାଇଁ ଆସିବେ ନାହିଁ । ଆସିବେ ତାହାର ଶୋଷଣ ଲୁଣ୍ଠନରେ (ସ୍ୱଏଲ)ରେ ଅଂଶ ପାଇବା ପାଇଁ । ତେଣୁ ସୁବାଷ ବୋଷଙ୍କ ନୀତି ପ୍ରତି ମୋର ସମର୍ଥନର ପ୍ରଶ୍ନ ଉଠୁନାହିଁ ।"

୧୯୪୨ ଜୁନ ୧୬ରେ ଭାରତ ପ୍ରତି ଜାପାନୀ ବିପଦ ସଂପର୍କରେ ନେହେରୁ ଦେଶବାସୀଙ୍କୁ ସତର୍କ କରାଇ ଲେଖିଲେ "ଗତ ତିନି ଚାରି ମାସ ଭିତରେ ଦେଶରେ ଜାପାନ ପକ୍ଷପାତୀ ମନୋଭାବକୁ ଆମେ ପ୍ରତିହତ କରି ଆସିଛୁ; ମୁଖ୍ୟତଃ ଏହା ଜାପାନ ପକ୍ଷପାତୀ ନହେଲେ ହେଁ ଏତେ ଅଧିକ ବ୍ରିଟିଶ ବିରୋଧୀ ହୋଇ ଜାପାନ ପକ୍ଷପାତୀ ହୋଇ ଚାଲିଛି । ଜାପାନ ସହିତ ଶାନ୍ତି ଚାହିଁବା କଳ୍ପନାର ବାହାରେ ।"

୧୯୪୨ ଏପ୍ରିଲରେ ସେ ପୁଣି ଲେଖିଥିଲେ "ବାହାରୁ ଯେ କୌଣସି ଶକ୍ତି ଆସିବ, ତାହା ଜାପାନ ନେତୃତ୍ୱରେ ଏକ ଛଦ୍ମ (ଡମି) ବାହିନୀ ହେବ ।"

କ୍ରିପ୍ସ ମିଶନର ବ୍ୟର୍ଥତା ପରେ ଏବଂ ଦେଶରେ ଏହିପରି ଆଲୋଡନ, ମନ୍ଥନ ଚାଲିଥିବା ସମୟରେ ହିଟଲର ୧୯୪୨ ଜୁନ ୨୨ରେ ସୋଭିଏତ୍ ୟୁନିୟନ ଉପରେ ଆକ୍ରମଣ କରିଦେଲା । କଂଗ୍ରେସ ଏହି ଆକ୍ରମଣକୁ ନିନ୍ଦା କଲା ଓ ହିଟଲର ଓ ଜାପାନର ଆକ୍ରମଣ ଭାରତ ସମେତ ସମଗ୍ର ପୃଥିବୀ ପାଇ ବିପଦ ବୋଲି ଅଭିହିତ କଲା ।

ବିଶ୍ୱଯୁଦ୍ଧରେ ଜୟ କଲେ ଭାରତକୁ କିପରି ହିଟଲର ଓ ଜାପାନ ବାଣ୍ଟିନେବେ ସେଥିଲାଗି ଏକ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ତାହାକୁ 'ବାରବୋସା' ଚୁକ୍ତି କୁହାଯାଏ । ତଦନୁସାରେ

ସୋଭିଏତ୍ ୟୁନିୟନକୁ ସମଗ୍ର ଭାବରେ ଦଖଲ କଲାପରେ ଉତ୍ତର ପଶ୍ଚିମ ପଟେ ଇରାନ ଓ ଆଫଗାନିସ୍ତାନ ଦେଇ ହିଟଲର ନାଜାବାହିନୀ ଭାରତରେ ପ୍ରବେଶ କରିବ ଏବଂ ରେଙ୍ଗୁନ ଯାଏ ମାଡି ଆସିଥିବା ଜାପାନ ବାହିନୀ ଭାରତର ପୂର୍ବପଟେ ପ୍ରବେଶ କରିବ । ଭାରତର ଉତ୍ତର ପଶ୍ଚିମ ପଟ ଜର୍ମାନୀର ଓ ପୂର୍ବପଟ ଜାପାନର ଉପନିବେଶ ହେବ । କଂଗ୍ରେସ ଏହି ବିପଦକୁ ଲକ୍ଷ୍ୟ କରି ଅକ୍ଷ ଶକ୍ତି ପ୍ରତି ସତର୍କ ରହିବାକୁ କହିଆସୁଥିଲା । ଭାରତରେ କମ୍ୟୁନିଷ୍ଟ ପାର୍ଟି ଏହି ବିପଦକୁ ଦୂର କରିବା ଲାଗି ସାରା ପୃଥିବୀରେ ଫାସିଷ୍ଟବାଦ ବିରୁଦ୍ଧରେ ଲଢେଇ ଜନଯୁଦ୍ଧର ରୂପ ନେଇଛି ବୋଲି କହିଲା । ଭାରତ ସମେତ ସବୁ ଦେଶର ସ୍ୱାଧୀନତାକାମୀ, ମୁକ୍ତିକାମୀ, ଗଣତନ୍ତ୍ରକାମୀ ଶକ୍ତି ଓ ଦଳ ଏହା ବିରୁଦ୍ଧରେ ଐକ୍ୟବଦ୍ଧ ହେବାକୁ ଆବେଦନ କଲା ।

**ୱାର୍ଦ୍ଧା ପ୍ରସ୍ତାବ:**

କ୍ରିପ୍ସ ମିଶନର ବ୍ୟର୍ଥତା ଓ ବିଶ୍ୱଯୁଦ୍ଧର ଏହିପ୍ରକାର ଗତି ପରିବର୍ତ୍ତନର ପଟ୍ଟଭୂମିରେ ୧୯୪୨ ଜୁଲାଇ ୧୪ତାରିଖରେ ୱାର୍ଦ୍ଧାଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକରେ ନିମ୍ନୋକ୍ତ ପ୍ରସ୍ତାବ ଦେଲାବେଳେ ଯୁଦ୍ଧ ଚାଳନାରେ ଗ୍ରେଟ ବ୍ରିଟେନ ଓ ମିତ୍ରମାନଙ୍କୁ ହଇରାଣରେ ପକାଇବା କଂଗ୍ରେସର ଉଦ୍ଦେଶ୍ୟ ନୁହଁ ଅବା ଜାପାନ କିମ୍ବା ଅକ୍ଷଶକ୍ତି ସହିତ ମେଣ୍ଟ ବାନ୍ଧିଥିବା ଅନ୍ୟ କୌଣସି ଶକ୍ତିକୁ ଭାରତ ଉପରେ ଆକ୍ରମଣ କରିବାକୁ ଅବା ଚୀନ ଉପରେ ଅଧିକ ଚାପ ପ୍ରୟୋଗ କରିବାକୁ କୌଣସି ପ୍ରକାରେ କଂଗ୍ରେସ ଉତ୍ସାହିତ କରିବ ନାହିଁ । ମିତ୍ର ଶକ୍ତିମାନଙ୍କର ପ୍ରତିରକ୍ଷା କ୍ଷମତାକୁ ବିପଦପନ୍ନ କରିବାକୁ କଂଗ୍ରେସ ଚାହେଁ ନାହିଁ । ତେଣୁ ଜାପାନୀ ଆକ୍ରମଣକୁ ପ୍ରତିହତ କରିବାକୁ ଏବଂ ଚୀନକୁ ରକ୍ଷା ଓ ସାହାଯ୍ୟ କରିବାକୁ ଯଦି ମିତ୍ର ପକ୍ଷ ଭାରତରେ ଅବସ୍ଥାନ କରିବାକୁ ଚାହାନ୍ତି, କଂଗ୍ରେସ ସେଥିରେ ସମ୍ମତ ।

"ସିଂଗାପୁର, ମାଳୟ ଏବଂ ବର୍ମାର ଅଭିଜ୍ଞତାକୁ କଂଗ୍ରେସ ଏଡିବାକୁ ଚାହେଁ ଏବଂ ଜାପାନ ହେଉ ଅବା ଅନ୍ୟ ଯେ କୌଣସି ଆକ୍ରମଣକାରୀ ହେଉ, ଭାରତ ଉପରେ ତାହାର ଆକ୍ରମଣକୁ ପ୍ରତିରୋଧ କରିବାକୁ କଂଗ୍ରେସ ଚାହେଁ ।

"ଭାରତ ଯଦି ସ୍ୱାଧୀନତାର ଆଲୋକ ଅନୁଭବ କରେ, ତେବେ ଦେଶରେ ବ୍ରିଟିଶ ବିରୁଦ୍ଧରେ ବର୍ତ୍ତମାନ ଯେଉଁ ବୈରଭାବ ରହିଛି, ତାକୁ କଂଗ୍ରେସ ଦୂର କରିବାକୁ ଏବଂ ପୃଥିବୀର ସମସ୍ତ ଜାତି ଓ ଜନତାର ମୁକ୍ତି ହାସଲ କରିବାକୁ ଯେଉଁ ମିଳିତ ଉଦ୍ୟମ ହେବ, ତହିଁରେ ଆଗ୍ରହରେ ଯୋଗ ଦେଇ ସମସ୍ତ କଷ୍ଟ ଓ ତ୍ୟାଗ କରିବା ସମ୍ଭବପର ହେବ ।

"ଯଦି ତାହାର ଆବେଦନ ବ୍ୟର୍ଥ ହୁଏ, ତେବେ ଗାନ୍ଧିଜୀଙ୍କ ନେତୃତ୍ୱରେ ଅହିଂସ ଆନ୍ଦୋଳନ କରିବା ଛଡା ଅନ୍ୟ ପନ୍ଥା ନାହିଁ । ଏହି ପ୍ରଶ୍ନଟି ୧୯୪୨ ଅଗଷ୍ଟ ୭ ତାରିଖ ଏ.ଆଇ.ସି.ସି. ବୈଠକରେ ନିର୍ଦ୍ଧାରିତ ହେବ ।"

ଏହାକୁ ଜାତୀୟ ଦାବୀ ବୋଲି କୁହାଗଲା । ସେହି ପ୍ରସ୍ତାବରେ ସଂଘୀୟ ବ୍ୟବସ୍ଥା ସଂପର୍କରେ କୁହାଗଲା - "ସେମାନଙ୍କ ଘୋଷିତ ଓ ନିର୍ଦ୍ଧାରିତ ଇଚ୍ଛା ବିରୁଦ୍ଧରେ ଭାରତୀୟ ୟୁନିଅନରେ ରହିବାକୁ କୌଣସି ଅଂଚଳର ଜନତାକୁ ବାଧ କରାଯିବ ବୋଲି କମିଟି ଚିନ୍ତା କରିବ ନାହିଁ । ଏହା ରାଜନ୍ୟବର୍ଗଙ୍କ ଅଣପ୍ରତିନିଧିମୂଳକ ଲୋକଙ୍କୁ ବିରୋଧ କରେ ।"

କଂଗ୍ରେସ କାର୍ଯ୍ୟକାରୀ କମିଟିର ଆହ୍ୱାନ ପରେ ୧ ୯ ୪ ୨ ଜୁଲାଇରେ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ଗୃହୀତ ପ୍ରସ୍ତାବରେ କୁହାଗଲା - "ଏହି ଯୁଦ୍ଧରେ ଜିତିବା ପାଇଁ ଏହି ଯୁଦ୍ଧକୁ ଭାରତ ହାତକୁ ନେଇ ଦେଶକୁ ରକ୍ଷା କରିବାକୁ ହେବ ଏବଂ ମୁକ୍ତି ହାସଲ କରିବାକୁ ହେବ ।"

ବମ୍ବେ ଏ.ଆଇ.ସି.ସି. ଅଧିବେଶନ ପୂର୍ବରୁ କଂଗ୍ରେସ ନେତାମାନଙ୍କ ମଧ୍ୟରେ ଗମ୍ଭୀର ପରିସ୍ଥିତି ସଂପର୍କରେ ଘନ ଘନ ଆଲୋଚନା ବିମର୍ଶ ଚାଲିଲା । ନେହେରୁଙ୍କ ସହିତ ଦୀର୍ଘ ଆଲୋଚନା ଅନ୍ତେ ଗାନ୍ଧିଜୀ କହିଲେ, "ସେ ମୋ ଆହ୍ୱାନୀ ବିପକ୍ଷରେ ଏପରି ଆବେଗର ସହିତ କହିଲେ, ତାକୁ ବର୍ଣ୍ଣନା କରିବାକୁ ମୋର ଭାଷା ନାହିଁ ।"

ବମ୍ବେ ଏ.ଆଇ.ସି.ସି. ବୈଠକରେ ବିଶିଷ୍ଟ କଂଗ୍ରେସ ନେତା ସି.ରାଜଗୋପାଳଚାରୀ ମୁସଲିମ ଲିଗର ଦାବୀ ସଂପର୍କରେ କହିଲେ, "ଯଦି ଦାବୀ ଅବ୍ୟାହତ ରହେ, ତେବେ ବିଭାଜନ ପାଇଁ ମୁସଲିମ ଲିଗର ଦାବୀକୁ ମାନି ନେବାକୁ ହେବ ।" ତାଙ୍କ ପ୍ରସ୍ତାବ କାଟ ଖାଇଗଲା ଓ ସେ କଂଗ୍ରେସ ପରିତ୍ୟାଗ କଲେ ଏବଂ ଐକ୍ୟ ଲାଗି ମୁସଲିମ ଲିଗ ସହିତ ଆଲୋଚନା ଚଳାଇଲେ ।

**ଐତିହାସିକ ଭାରତ ଛାଡ ଆନ୍ଦୋଳନ ଓ ବର୍ବର ଦମନଲୀଳା:**

ଦେଶବ୍ୟାପୀ ଏହି ପ୍ରକାର ରାଜନୈତିକ ମନ୍ଥନ ପରିପ୍ରେକ୍ଷୀରେ ବମ୍ବେଠାରେ ୧ ୯ ୪ ୨ ଅଗଷ୍ଟ ୭ ତାରିଖରେ ଏ.ଆଇ.ସି.ସି.ର ଐତିହାସିକ ଅଧିବେଶନ ଅନୁଷ୍ଠିତ ହେଲା । ସାରା ଦେଶ ଉତ୍କଣ୍ଠିତ । ପ୍ରତ୍ୟେକ ପ୍ରଦେଶରେ କଂଗ୍ରେସ କର୍ମୀ ୯ ନେତାମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ ।

ୱାର୍ଦ୍ଧାଠାରେ ଗୃହୀତ କାର୍ଯ୍ୟକାରୀ କମିଟିର ପ୍ରସ୍ତାବ ଆଗତ ହେଲା । ବିଭିନେତାମାନେ ଜାତୀୟ ଓ ଆନ୍ତର୍ଜାତୀୟ ପରିସ୍ଥିତି ଉପରେ ଆଲୋକପାତ କଲେ ।

ଅଗଷ୍ଟ ୮ ପ୍ରସ୍ତାବରେ ଶେଷ ଭାଗରେ କୁହାଗଲା - "ସ୍ୱାଧୀନତାର ଘୋଷଣା ପରେ ଏକ ଅସ୍ଥାୟୀ ସରକାର ଗଠିତ ହେବ ଏବଂ ସ୍ୱାଧୀନ ଭାରତ ମିତ୍ର ଦେଶମାନଙ୍କର ମିତ୍ର ହେବ । ସଂଘୀୟ ବ୍ୟବସ୍ଥାରେ ଅଂଗୀଭୂତ ୟୁନିଟଗୁଡିକୁ ବୃହତ୍ତମ ମାତ୍ରାର ସ୍ୱତନ୍ତ୍ରତା ଅର୍ପଣ କରାଯିବ ଏବଂ ୟୁନିଟଗୁଡିକ ହାତରେ ରେସିଡ୍ୟୁଆରୀ (ଅବଶିଷ୍ଟ) କ୍ଷମତା ଅର୍ପିତ ହେବ ।

"ତେଣୁ କମିଟି ନିର୍ଦ୍ଧାରଣ କରେ ଯେ ବ୍ୟାପକତମ ଆକାରରେ ଏବଂ ଅହିଂସ ମାର୍ଗରେ ଏକ ଗଣ ଆନ୍ଦୋଳନ କରାଯିବ ଏବଂ ଅବଶ୍ୟମ୍ଭାବୀ ଭାବରେ ଏହା ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ହେବ ।"

ସମବେତ ଉତ୍କଣ୍ଠିତ ପ୍ରତିନିଧିମାନଙ୍କୁ ଉଦବୋଧନ ଦେଇ ଗାନ୍ଧିଜୀ କହିଲେ "ଠିକ୍ ଏଇ ମୁହୂର୍ତ୍ତରୁ ଆନ୍ଦୋଳନ ଆରଂଭ ହୋଇଯାଉନାହିଁ। ଆପଣମାନେ ମୋ ହାତରେ କ୍ଷମତା ଅର୍ପଣ କରିଛନ୍ତି। ମୋର ପ୍ରଥମ କାମ ହେବ, ମୁଁ ମହାମାନ୍ୟ ଭାଇସରୟଙ୍କୁ ଭେଟିବି ଏବଂ କଂଗ୍ରେସ ଦାବୀଗ୍ରହଣ କରି ନେବାକୁ ବୁଝାଇବି। ଏହା ଦୁଇ ତିନି ସପ୍ତାହ ନେଇପାରେ। ଏଥି ଭିତରେ ଆପଣମାନେ କ'ଣ କରିବେ ? ଚରଖା ଅଛି, ମାତ୍ର ଆଉ କିଛି କରିବାର ଅଛି। ଏଇ ମୁହୂର୍ତ୍ତରୁ ଆପଣମାନେ ନିଜକୁ ମୁକ୍ତ ପୁରୁଷ ଓ ନାରୀ ବୋଲି ଧରିନେଇ ଆଉ ସାମ୍ରାଜ୍ୟବାଦର ପାଦତଳେ ନାହାନ୍ତି ବୋଲି ବିଚାରିବେ।" ଦେଶର ମୁକ୍ତିପାଇଁ "କର ଅବା ମର" ର ପଣ ନେବାକୁ ଆବେଦନ କରି ସେ ତାଙ୍କର ଉଦବୋଧନ ସମାପ୍ତ କରିଥିଲେ। କଂଗ୍ରେସ ପ୍ରସ୍ତାବର ମୂଳ ଲକ୍ଷ୍ୟ ଓ ଉଦ୍ଦେଶ୍ୟ, ଅର୍ଥାତ୍ ମୁକ୍ତି ସ୍ୱାଧୀନତା ଘୋଷଣା ଓ ଅକ୍ଷ ଶକ୍ତିକୁ ପରାଭୂତ କରିବାର ସଂକଳ୍ପକୁ ସମର୍ଥନ କରିବା ସଂଗେ ସଂଗେ ସରକାର ଆକ୍ରମଣ କରି ଦେଶକୁ ନେତୃହରା କରିଦେବ ବୋଲି କମ୍ୟୁନିଷ୍ଟ ସଦସ୍ୟମାନେ ମତ ଦେଇଥିଲେ। ଜାପାନ ଓ ଅକ୍ଷଶକ୍ତିକୁ ଏହା ସାହାଯ୍ୟକାରୀ ହେବ ବୋଲି ଦର୍ଶାଇଥିଲେ। ପରେ ସେମାନେ ଏପରି କର୍ମକୌଶଳ ନେବା ଉଚିତ ନଥିଲା ବୋଲି ସ୍ୱୀକାର କରିଥିଲେ।

ବ୍ରିଟିଶ ସରକାର ଯେପରି ଏପରି ପ୍ରସ୍ତାବକୁ ଟାକି କରି ବସିଥିଲା। କ୍ରିପ୍ସ ମିଶନ ବ୍ୟର୍ଥତା ପରେ ଭାରତବାସୀ ମୁକ୍ତି ଓ ସ୍ୱାଧୀନତା ଦାବୀ କଲେ କିପରି ସେମାନଙ୍କୁ ଜବତ୍ କରାଯିବ, ସେଥିଲାଗି ବ୍ୟାପକ ପ୍ରସ୍ତୁତି ଚଳେଇ ସଜବାଜ ହୋଇବସିଥିଲା। କାହାକୁ କେତେବେଳେ ଗିରଫ କରାଯିବ, କେଉଁ କେଉଁ ଜେଲରେ ରଖାଯିବ, କେଉଁ କେଉଁ ଜେଲରେ ରଖାଯିବ, କେଉଁ କେଉଁ ଜାଗାରେ ପୁଲିସ୍, ମିଲିଟାରୀ ପ୍ରସ୍ତୁତ ରହିବେ, ତାହାର ବିଧିବଦ୍ଧ ଯୋଜନା ନିଆଯାଇଥିଲା।

ଆଠ ତାରିଖ ରାତି ନ ପାହୁଣୁ ଜାତିର ଜନକ ମହାତ୍ମାଗାନ୍ଧୀଙ୍କୁ ଗିରଫ କରି ଆଗଖାଁଙ୍କ ପ୍ରାସାଦରେ ବନ୍ଦୀ କରାଗଲା। ନେହେରୁ, ପଟେଲ, ଆଜାଦ, ମହତାବ ପ୍ରମୁଖ କାର୍ଯ୍ୟକାରୀ କମିଟି ସଦସ୍ୟମାନଙ୍କୁ ଅହମ୍ମଦନଗର ଫୋର୍ଟରେ ବନ୍ଦୀ କରାଗଲା। ପ୍ରତ୍ୟେକ ପ୍ରଦେଶରେ ଅଗଷ୍ଟ ୯ ସକାଳୁ ବଛାବଛା ନେତାଙ୍କୁ ଗିରଫ କରିନିଆଗଲା।

ସାରା ଦେଶରେ ବିଦ୍ରୋହର ନିଆଁ ଜଳି ଉଠିଲା। ଦିଲ୍ଲୀ, ବମ୍ବେ, କଲିକତା, ମାନ୍ଦ୍ରାଜ, ଲକ୍ଷ୍ନୌ, ଅହମେଦାବାଦ ଆଦି ସହରରେ ବିକ୍ଷୋଭକାରୀମାନେ ରାସ୍ତାକୁ ବାହାରି ଆସିଲେ।

ବିକ୍ଷୁବ୍ଧ ଜନତା ଉପରେ ରାଜଧାନୀ ଦିଲ୍ଲୀରେ ଅଗଷ୍ଟ ୧୧/୧୨ରେ ୪୭ଥର ଗୁଳି ଚଳାଇ ୭୬ଜଣଙ୍କୁ ହତ୍ୟା ଓ ଶତଶତଙ୍କୁ ଘାଏଲ କରାଗଲା। ନରସଂହାରର ଏହା ଏକ ଛୋଟ ଦୃଷ୍ଟାନ୍ତ। ଏମିତି କୌଣସି ପ୍ରଦେଶ ନାହିଁ, ଯେଉଁ ପ୍ରଦେଶର ବିଭିନ୍ନ ସ୍ଥାନରେ ବ୍ରିଟିଶ ପୁଲିସ ଓ ସେନାନୀ ଗୁଳି କରି ହତ୍ୟାର ତାଣ୍ଡବ ସୃଷ୍ଟି କରି ନାହାନ୍ତି। ସମଗ୍ର ଦେଶ ଏକ ପୁଲିସ ରାଷ୍ଟ୍ରରେ ପରିଣତ ହୋଇଗଲା।

ସମସ୍ତ ନେତୃସ୍ଥାନୀୟ ବ୍ୟକ୍ତି ଓ ଶତଶତ କର୍ମୀ ଗିରଫ ହୋଇଗଲେ । ପୁଲିସ ଘେରକୁ ଏଡି କେତେକ ନେତୃସ୍ଥାନୀୟ ବ୍ୟକ୍ତି ଓ କର୍ମୀ ଅସଂଗଠିତ ବିକ୍ଷୋଭଗୁଡ଼ିକୁ ସଂଗଠିତ କରି ଆନ୍ଦୋଳନ ଚଳାଇବାର ଉଦ୍ୟମ କରିଥିଲେ । ଏମାନଙ୍କ ମଧ୍ୟରେ ଭାରତୀୟ ସ୍ତରରେ ପ୍ରମୁଖ ଥିଲେ ଅରୁଣା ଅସଫ ଅଲି, ଜୟପ୍ରକାଶ ନାରାୟଣ, ରାମମୋହନର ଲୋହିଆ, ରାମନନ୍ଦନ ମିଶ୍ର ପ୍ରମୁଖ ସୋସଲିଷ୍ଟ ନେତା । ପ୍ରଦେଶମାନଙ୍କରେ ମଧ୍ୟ ଯେଉଁ ନେତାମାନେ ଆତ୍ମଗୋପନ କରିପାରିଲେ, ସେମାନେ ନିଜ ନିଜ ଜିଲ୍ଲା, ଅଂଚଳ ଅବା ପ୍ରଦେଶରେ ଗୋପନ କେନ୍ଦ୍ରମାନ ଖୋଲିବାକୁ ଉଦ୍ୟମ କଲେ ।

କିନ୍ତୁ ନେତା ଥାଉ ନଥାଉ, ବିଭିନ୍ନ ସ୍ଥାନରେ କ୍ରୋଧ ଜର୍ଜରିତ ଜନତା ଥାନା, ଡାକଘର, ରେଳଷ୍ଟେସନ, ସରକାରୀ ବଂଗଳା, ସରକାରୀ ଦପ୍ତର, ଗଂଜେଇ, ଅଫିମ ଅବକାରୀ ଦୋକାନ ଉପରେ ଆକ୍ରମଣ କଲେ । ପୋଡିଜାଳି ଦେଲେ । ଏହାଛଡା ବିଭିନ୍ନ ସ୍ଥାନରେ ଚାଷୀମାନେ ବିଦ୍ରୋହ କରି ଖଜଣା ଟିକସ ବନ୍ଦ ଆନ୍ଦୋଳନ କଲେ । ସୂତାହଟା, ସତାରା, କର୍ଣ୍ଣାଟକ ଇତ୍ୟାଦିରେ ବ୍ୟାପକ ଚାଷୀ ଆନ୍ଦୋଳନ ସଂଘଟିତ ହେଲା ।

ବିଭିନ୍ନ ସ୍ଥାନରେ ବିଦ୍ରୋହୀ ଜନତା ନିଜର ମୁକ୍ତି ଘୋଷଣା କରି ପତ୍ରୀ (ସମାନ୍ତରାଳ) ସରକାର ଅବା ସ୍ୱାଧୀନ ସରକାର ଘୋଷଣା କରିଦେଲେ । ସେତେବେଳେ ମହାରାଷ୍ଟ୍ରର ସତାରାରେ ନାନା ପାଟିଲଙ୍କ ନେତୃତ୍ୱରେ ଏବଂ ଯୁକ୍ତ ପ୍ରଦେଶର ବାଲିଆରେ ସରଯୂ ପାଣ୍ଡେଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ସ୍ୱାଧୀନ ସରକାର ଏବଂ ବିପ୍ଳବିଣୀ ମାତଙ୍ଗିନୀ ହାଜରାଙ୍କ ବୀରତ୍ୱ ଓ ବଳିଦାନ ଚମକ ସୃଷ୍ଟି କରିଥିଲା । ବିଭିନ୍ନ ଦେଶୀୟ ରାଜ୍ୟରେ ମଧ୍ୟ ଭାରତ ଛାଡ ଆନ୍ଦୋଳନ ପ୍ରଖର ହୋଇଥିଲା । ବିହାର, ଉତ୍ତର ପ୍ରଦେଶରେ ଭାରତ ଛାଡ ଆନ୍ଦୋଳନ ସବୁଠାରୁ ଅଧିକ ବ୍ୟାପକ ରୂପ ନେଇଥିଲା । ତିମ୍ଳୁର, ମେଦିନୀପୁର ନନ୍ଦୁରବାର, ପୁନା ଓ ଅହମେଦାବାଦରେ ବୋମା ଓ ମେସିନଗନ ଦ୍ୱାରା ପୁଲିସର ଆକ୍ରମଣ ହୋଇଥିଲା । ଶତଶତ ଗ୍ରାମ ଉପରେ ସମୂହ ଜରିମାନା ବସେଇ ସଂପତ୍ତି ବାଜ୍ୟାପ୍ତ କରାଯାଇଥିଲା । ଅଗଷ୍ଟ ଆନ୍ଦୋଳନର ବ୍ୟାପକତା ସତ୍ତ୍ୱେ ପ୍ରଚଣ୍ଡ ଦମନ ହେତୁ ଓ ସାଂଗଠନିକ ନେତୃତ୍ୱ ବିନା ଏହା ୧୯୪୨ ଶେଷ ଆଡକୁ ଧୀମେଇ ଗଲା ।

**ଦମନର ସ୍ୱରୂପ:**

ଏହି ଆନ୍ଦୋଳନରେ ବ୍ରିଟିଶ ଗୁଳିରେ ନିହତ ଶହୀଦଙ୍କ ସଂଖ୍ୟା କେତେ ତାହାର ପୂର୍ଣ୍ଣ ଚିତ୍ର ନଥିଲେ ହେଁ ୧୯୪୨ରେ କେନ୍ଦ୍ର ଆସେମ୍ବ୍ଲିରେ ବ୍ରିଟିଶ ଘରୋଇ ସଦସ୍ୟ ଦେଇଥିବା ବିବରଣୀ, ଯାହାକି ଅର୍ଦ୍ଧ ସତ୍ୟ, ତାହା ମଧ୍ୟ ବ୍ରିଟିଶ ବର୍ବରତାର ସ୍ୱରୂପ ଉଦଘାଟନ କରିଦିଏ ।

ସେଥିରେ ଅଛି, ଦେଶରେ ୬୦୨୨୯ ବ୍ୟକ୍ତିଙ୍କୁ ଗିରଫ କରାଯାଇଥିଲା । ୧୮ ହଜାର ବ୍ୟକ୍ତିଙ୍କୁ ଭାରତରକ୍ଷା ଆଇନ ବଳରେ ଅଟକବନ୍ଦୀ କରାଯାଇଥିଲା । ୯୪୦ ଜଣ ବ୍ୟକ୍ତି ନିହତ ଓ ୧୬୩୦ ଜଣ ଆହତ ହୋଇଥିଲେ । ୬୦ଟି ସ୍ଥାନରେ ସାମରିକ ବାହିନୀ ଆକ୍ରମଣ କରିଥିଲା ।

୫୩୮ ସ୍ଥାନରେ ଗୁଳି ଚାଳନା କରାଯାଇଥିଲା । ଲୋକଙ୍କୁ ଘଉଡେଇବା ପାଇଁ ୫ଟି ସ୍ଥାନରେ ଉଡାଜାହାଜ ଉପରୁ ଆକ୍ରମଣ ହୋଇଥିଲା ।

ଅନ୍ୟ ପକ୍ଷରେ ୨୫୦ଟି ରେଳବାଇ ଷ୍ଟେସନକୁ ପୋଡି ଦିଆଯାଇଥିଲା । ୫୦୦ଟି ପୋଷ୍ଟ ଅଫିସ ଉପରେ ଓ ୧୫୦ଟି ପୁଲିସ ଥାନା ଛଡା ବହୁ ସରକାରୀ ଦପ୍ତର ଉପରେ ଆକ୍ରମଣ କରାଯାଇଥିଲା ।

ଓଡିଶାରେ ଦମନର ଚିତ୍ର ଦେଖାଯାଉ । ୧୯୪୨ରେ ଓଡିଶାରେ କୋରାପୁଟରେ ମାଟିଲି, ପୋପଡାହାଣ୍ଡି ଅଂଚଳରେ ଗୁଳିକାଣ୍ଡ, ଲାଠିମାଡ ଓ ଜେଲରେ ବନ୍ଦୀ ଅବସ୍ଥାରେ ୭୩ଜଣ ଶହୀଦ ହୋଇଥିଲେ । ଲକ୍ଷ୍ମଣ ନାୟକଙ୍କୁ ବ୍ରହ୍ମପୁର ଜେଲରେ ୧୯୪୩ମାର୍ଚ୍ଚ ୨୩ରେ ଫାଶିରେ ଝୁଲାଇ ଦିଆଯାଇଥିଲା । କୋରାପୁଟରେ ଗୁଳିଚାଳନା ହେତୁ ୨୩ଜଣ ନିହତ ଓ ଲାଠି ମାଡରେ ମୃତ୍ୟୁବରଣ କରିଥିବା ସଂଗ୍ରାମୀଙ୍କ ସଂଖ୍ୟା ୨୨ଜଣ ଓ ଅନ୍ୟ ଅନେକ ଜେଲରେ ଚିକିତ୍ସା ଅଭାବରୁ ଶେଷ ନିଃଶ୍ୱାସ ଛାଡିଥିଲେ ।

ବାଲେଶ୍ୱରର ଇରମ ରକ୍ତସାଗରରେ ପରିଣତ ହୋଇଥିଲା । ଏହା ମୁହୂର୍ତ୍ତରେ ବିକ୍ଷୁବ୍ଧ ଜନତାଙ୍କ ଉପରେ ଗୁଳିରେ ମହିଳାଙ୍କ ସମେତ ୨୯ଜଣ ନିହତ ଓ ୫୮ଜଣ ଆହତ ହୋଇଥିଲେ । ଏହି ଜିଲ୍ଲାର ତୁଡିଗାଡିଆରେ ୯ଜଣ ଓ ଲୁଣିଆ କଟସାହିରେ ୮ଜଣ ଗୁଳିଖାଇ ଶହୀଦ ହୋଇଥିଲେ । ଲକ୍ଷ୍ମଣନାଥରେ ଗୁଳିଚାଳନା କରାଯାଇ ଅନେକଙ୍କୁ ଆହତ କରାଯାଇଥିଲା । ଭଣ୍ଡାରୀ ପୋଖରୀ ଥାନାରେ ୧୨ଟି ଗାଁ ଉପରେ ୬ ହଜାର ଟଙ୍କା ପିଟୁଣି ଟିକସ ବସାଯାଇ ଘର ଦ୍ୱାର କ୍ରୋକ କରାଗଲା । ବରୀ ନିକଟ ହାଟସାହିରେ ୪ଜଣ, ନିମାପଡାରେ ୧ଜଣ ଏବଂ ଗଡଜାତ ନୟାଗଡରେ ୧ଜଣ, ମଢିଥାନା ଦଖଲ କାଳରେ ୨ଜଣ ଏବଂ ତାଳଚେରରେ ୪ଜଣ ପ୍ରାଣଦେଇଥିଲେ । ବରୀ, ଏରସମା, ପାଣିମୋରା, ବାଗଲପୁର ଏମିତି ଗୋଟିଏ ଗୋଟିଏ ଅଂଚଳରୁ ଓ ଗୋଟିଏ ଗୋଟିଏ ଗାଁରୁ ବହୁ ଲୋକଙ୍କୁ ଗିରଫ କରି ନିଆଯାଇଥିଲା । ବ୍ରହ୍ମପୁର କେନ୍ଦ୍ର ଜେଲରେ ଚାରି ଶତାଧିକ କଂଗ୍ରେସ, ସୋସଲିଷ୍ଟ, ଗାନ୍ଧିବାଦୀ, କମ୍ୟୁନିଷ୍ଟ, ଫରୱାର୍ଡବ୍ଲକର ପ୍ରବୀଣ ନେତା ଓ କର୍ମୀଙ୍କୁ ଅଟକ ରଖାଯାଇଥିଲା । କୋରାପୁଟ, ସଂବଲପୁର, ପୁରୀ, ବାଲେଶ୍ୱର ତଥା ବିଭିନ୍ନ ଗଡଜାତ ଢେଙ୍କାନାଳ, ଆଠଗଡ, ନୟାଗଡ, ନୀଳଗିରି ପ୍ରଭୃତି ଜେଲରେ ଅନେକ ଅଟକବନ୍ଦୀ ଆବଦ୍ଧ ହୋଇଥିଲେ ।

ଅଗଷ୍ଟ ୯ ପ୍ରତ୍ୟୁଷରେ କଟକରୁ ନବକୃଷ୍ଣ ଚୌଧୁରୀ ଗିରଫ ହେବା ସମୟରେ ଓଡିଶାରେ ଭବିଷ୍ୟତ ଆନ୍ଦୋଳନ ସଂପର୍କରେ ଗୋପନ ନିର୍ଦ୍ଦେଶାବଳୀ ଏହି ଲେଖକଙ୍କୁ ପ୍ରେରଣ କରିଥିଲେ । ତାହାକୁ ଆଧାର କରି କିଶୋରନଗର ଥାନା ମଲିପୁର ଗାଁର ଏକ ବଣରେ ବିନୋଦ କାନୁନଗୋଙ୍କ ପ୍ରଯୋଯାଜନାରେ ପ୍ରଥମ ଗୋପନ କେନ୍ଦ୍ରରୁ ସେହି ନିର୍ଦ୍ଦେଶାବଳୀକୁ ସାଇକ୍ଲୋ କରି ବିଭିନ୍ନ ସ୍ଥାନକୁ ପଠାଯାଇଥିଲା । କଟକରେ ଏକ ସ୍ଥାୟୀ ଗୋପନ କେନ୍ଦ୍ରରୁ ୩/୪ମାସକାଳ ପ୍ରାଦେଶିକ

ସ୍ତରରେ ଆନ୍ଦୋଳନର ନିର୍ଦ୍ଦେଶାବଳୀ ପ୍ରସ୍ତୁତ ହେଉଥିଲା । ଏହାର ପ୍ରଧାନ ସଂଚାଳକ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଓ ଅନ୍ୟ ସହଯୋଗୀଙ୍କ ନାମରେ ଏକ ଷଡଯନ୍ତ୍ର ମକଦ୍ଦମା ରଚନା କରାଯାଇ ଦୀର୍ଘ କାରାଦଣ୍ଡ ଦିଆଯାଇଥିଲା । ଦ୍ୱିବେଦୀଙ୍କ ସମେତ ୧୬ଜଣଙ୍କୁ ଉକ୍ତ ମକଦ୍ଦମାରେ ଜଡିତ କରାଯାଇଥିଲା । ସେମାନଙ୍କ ମଧ୍ୟରେ ଥିଲେ ଭୈରବଚନ୍ଦ୍ର ମହାନ୍ତି, ନିଶାମଣି ଖୁଣ୍ଟିଆ, ବାଙ୍କବିହାରୀ ଦାସ, ବିଶ୍ୱନାଥ ପରିଡ଼ା, ନରସିଂହ ମହାନ୍ତି, ଲୋକନାଥ ମିଶ୍ର (ପାଟକୁରା) । କଟକର ସ୍ୱରାଜ୍ୟାଶ୍ରମରେ ତାଲା ପକାଯାଇଥିଲା । ବରୀ ଆଶ୍ରମ, ରାମଚନ୍ଦ୍ରପୁର ଖଦୀ ଘର ଏବଂ ପ୍ରଦେଶର ବିଭିନ୍ନ ଆଶ୍ରମ ଉପରେ ଚଢଉ କରାଯାଇଥିଲା । ବରୀର ବିଶାଳ ଆଶ୍ରମକୁ ମାଜିଷ୍ଟ୍ରେଟ ମୁସାଏବ ଖାଁଙ୍କ ଆଦେଶରେ ବସ୍ତୁତଃ ମାଟିରେ ମିଶେଇ ଦିଆଗଲା । ଫଳରେ ବରୀ ଅଂଚଳରେ ବ୍ୟାପକ ପ୍ରତିବାଦ ଓ ଡାକ ଘର ଇତ୍ୟାଦି ପୋଡାଯାଇଥିଲା ।

ବାଟେଶ୍ୱର ପରି କେତେକ ଘଟଣା ମଧ୍ୟ ଏହି ଆନ୍ଦୋଳନ ଆରଂଭକାଳରେ ବିଭିନ୍ନ ଅଂଚଳରେ ଦେଖାଗଲେବି ଆନ୍ଦୋଳନ ବେଶ ପ୍ରଖର ହୋଇ ଉଠିଥିଲା । ସଂଗ୍ରାମ ଭିତରକୁ ଆସି ଭୀରୁତା ପ୍ରଦର୍ଶନ କଲେ ସଚ୍ଚୋଟ ମୁକ୍ତି ଯୋଦ୍ଧାମାନେ କିପରି ଦଣ୍ଡିତ ହୁଅନ୍ତି ବାଟେଶ୍ୱର ଘଟଣା ତାହାର ଏକ ନିଦର୍ଶନ ।

ଯୁକ୍ତ ପ୍ରଦେଶରେ ବଟେଶ୍ୱର ଅଦାଲତରେ ୧୯୪୨ ଅଗଷ୍ଟ ୨୭ରେ ପ୍ରଦତ୍ତ ଏକ ସ୍ୱୀକାରୋକ୍ତି ନିମ୍ନ ପ୍ରକାରର ।

"୧୯୪୨ ଅଗଷ୍ଟ ୨୭ରେ ବାଟେଶ୍ୱର ବଜାରରେ ଅଲହ ଗାନର ଆବୃତ୍ତି ହେଉଥିଲା । ଦିନ ଦୁଇଟା ବେଳକୁ କାକୁଆ ବନାମ ଲୀଳାଧର ଏବଂ ମହୁଆ ଅଲହରେ ପହଂଚି ଭାଷଣ ଦେଲେ ଏବଂ ଜଙ୍ଗଲ ଆଇନ ଭଂଗ କରିବାକୁ ଲୋକଙ୍କୁ ପ୍ରବର୍ତ୍ତାଇଲେ । ଦୁଇ ଶହ ବ୍ୟକ୍ତି ଫରେଷ୍ଟ ଅଫିସକୁ ଗଲେ ଏବଂ ମୁଁ ଓ ମୋ ଭାଇ (ପ୍ରେମ ବିହାରୀ ଲାଲ) ଜନତାର ପଛେ ପଛେ ଚାଲିଲୁ । ବଟେଶ୍ୱର ଫରେଷ୍ଟ ଅଫିସରେ ପହଂଚିଲୁ । ମୁଁ ଓ ମୋ ଭାଇ ତଳେ ରହିଲୁ । ଅନ୍ୟମାନେ ଉପରକୁ ଉଠିଲେ । ମୁଁ ଆଉ କାହାର ନାମ ଜାଣେନା । କେବଳ ସେଠାରେ ଉପସ୍ଥିତ ମହୁଆ ଓ କାକୁଆକୁ ଜାଣେ ।

"ମୋତେ ଜଣାଗଲା ଇଟାଗୁଡାକ ଖସି ପଡୁଛି । କିଏ କାନ୍ଥ ତଳେ ଲେପଟାଇଛି ଜାଣେନା । ମାତ୍ର ଇଟା ଖସି ପଡୁଥାଏ ।"

"ମୁଁ ଓ ମୋ ଭାଇ ମଲ୍ଲପୁରା ଚାଲିଲୁ । ଜନତା ଆମ ପଛରେ ଚାଲିଥାନ୍ତି । ଉପର ବର୍ଣ୍ଣିତ ଲୋକେ କାଞ୍ଚିଆଗଦାରୁ ଢେଲିଗୁଡାକୁ ଘଉଡେଇ ଦେଲେ ଏବଂ ଜନତା ବିଚ୍‌କୋଲି ଚାଲିଲା । ଫରେଷ୍ଟ ଅଫିସରେ ୧୦/୧୨ଜଣ ଲୋକ ଥିଲେ । ମୁଁ ଶହେ ଗଜ ଦୂରରେ ଥିଲି । ମୁଁ କିନ୍ତୁ କ୍ଷୟକ୍ଷତି କରିନାହିଁ । ସରକାରୀ ଘର ଭଂଗାରେ ମୁଁ କୌଣସି ସାହାଯ୍ୟ କରିନାହିଁ । ତେଣୁ ଆମେ ଯେଝା ଘରକୁ ବାହୁଡିଲୁ ।"

ଏପରି ବୟାନ ଦେଇଥିବା ବ୍ୟକ୍ତି ଗିରଫ ହୋଇ ଛାଡ ପାଇଲେ । ମାତ୍ର ସେ ନାମ ଦେଇଥିବା ବ୍ୟକ୍ତି ମହୁଆ ଓ କାକୁଆକୁ ୫ ବର୍ଷ ଲେଖାଏଁ ଜେଲ ହେଲା ଏବଂ ଗାଁ ଉପରେ ୧୦ହଜାର ଟଙ୍କା ପିଟୁଣି ଟିକସ ବସିଲା ।

ଏହି ବୟାନ ଦେଇଥିବା ବ୍ୟକ୍ତିଥିଲେ ଅଟଳ ବିହାରୀ ବାଜପେୟ । ବୟାନରେ ତାଙ୍କ ଗାଁ, ବାପାଙ୍କ ନାମ ଦେଇ ସେ ତଳେ ସ୍ୱାକ୍ଷର କରିଥିଲେ । ସ୍ୱାଧୀନତା ସଂଗ୍ରାମକାଳରେ ଅତୀତରେ ଏବଂ ୧୯୪୨ରେ ମଧ୍ୟ ଏପରି କେତେକ ନିନ୍ଦନୀୟ ଆଚରଣ ପରିଦୃଷ୍ଟ ହୋଇଛି । ପୂର୍ବରୁ ତନ୍ମଧ୍ୟରୁ କେତେକର ବର୍ଣ୍ଣନା କରାଯାଇଛି ।

ଏହି ଅଗଷ୍ଟ ଆନ୍ଦୋଳନର ବନ୍ଦୀ ଗାନ୍ଧିଜୀଙ୍କ ପତ୍ନୀ କସ୍ତୁରବାଙ୍କର ବନ୍ଦୀଶାଳାରେ ରୋଗାକ୍ରାନ୍ତ ହୋଇ ମୃତ୍ୟୁ କରିବା ଘଟଣା ଦେଶବାସୀଙ୍କ ମନରେ ଗଭୀର ଦୁଃଖ ଆଣିଦେଇଥିଲା ।

ଗାନ୍ଧିଜୀ ୧୯୪୩ ଫେବୃଆରୀ ୯ତାରିଖରେ ବ୍ରିଟିଶ ଦମନ ଲୀଳାର ପ୍ରତିବାଦ କରି "ଶକ୍ତି ସାମର୍ଥ୍ୟ ଅନୁସାରେ" ୨୧ଦିନ ଅନଶନ ଆରମ୍ଭ କରିଦେଲେ ଏବଂ ମୃତ୍ୟୁମୁଖରୁ ବଂଚିଗଲେ ।

୧୯୪୩ରେ ବ୍ରିଟିଶ ଯୁଦ୍ଧନୀତି ଫଳରେ ଭାରତରେ ବିଶେଷତଃ ବଂଗଳା ଏବଂ ଓଡିଶାରେ ଦୁର୍ଭିକ୍ଷ, ଅନାହାରରେ ଲକ୍ଷ ଲକ୍ଷ ଜନତା ପୋକ ମାଛି ପରି ମୃତ୍ୟୁବରଣ କରିଥିଲେ । କଲିକତାର ରାସ୍ତା କଡରେ, ବଂଗଳାର ବିଭିନ୍ନ ଅଂଚଳରେ ୩୫ଲକ୍ଷ ଲୋକଙ୍କ କଂକାଳର କରୁଣ ଦୃଶ୍ୟ । ଓଡିଶାର ରମ୍ଭା ହୁମା ଏମିତିକି କଟକରେ ଦୁର୍ଭିକ୍ଷଜନିତ ମୃତ୍ୟୁର ସଂଖ୍ୟା ୪୦ହଜାରରୁ ଅଧିକ । ବ୍ରିଟିଶ ସରକାର ନୀରବ ଦ୍ରଷ୍ଟା । ଏହି ଦୁର୍ଦ୍ଦିନରେ ସମସ୍ତ କଟକଣା ସତ୍ତ୍ୱେ ଓ ବଂଗଳାର ଓ ଓଡିଶାର ସ୍ୱେଚ୍ଛାସେବୀ ସଂଗଠନ, ଖଲାସ ହୋଇଥିବା ରାଜବନ୍ଦୀ, କମ୍ୟୁନିଷ୍ଟ ସ୍ୱେଚ୍ଛାସେବକ, ବେସରକାରୀ ରିଲିଫ ସଂସ୍ଥା ମୃତ୍ୟୁର ମହାସ୍ରୋତକୁ ଅଟକାଇଥିଲା । ବଂଗଳାର ମୃତ୍ୟୁ ହେଲେ କିଏ ବଂଚିବ ଆହ୍ୱାନ ଦେଇଥିଲେ ପି.ସି. ଯୋଷୀ । ଗାନ୍ଧିଜୀଙ୍କ ଖଲାସ ପାଇଁ ଦେଶରେ ପ୍ରବଳ ଆନ୍ଦୋଳନ ଓ ଦାବୀ ପ୍ରତିଧ୍ୱନିତ ହେଲା । ଗାନ୍ଧିଜୀଙ୍କୁ ଅନଶନ ବେଳରେ ଜେଲରେ ଭେଟିବା ପାଇଁ ଆମେରିକା ରାଷ୍ଟ୍ରପତି ରୁଜଭେଲଟଙ୍କ ସ୍ୱତନ୍ତ୍ର ପ୍ରତିନିଧି ଉଇଲିୟମ ଫିଲସ୍‌କୁ ମଧ୍ୟ ବ୍ରିଟିଶ ସରକାର ଅନୁମତି ଦେଲାନାହିଁ ।

ମେଲେରିଆରେ ପୀଡିତ ହେବାପରେ ୧୯୪୪ ମଇ ୬ତାରିଖରେ ଗାନ୍ଧିଜୀ ଖଲାସ ହେଲେ । ଦୁର୍ଭିକ୍ଷରେ ଭାରତବାସୀଙ୍କ ଦୁର୍ଦ୍ଦଶା ବର୍ଣ୍ଣନା କରି ସେ ଭାଇସରାୟ ଲର୍ଡ ଲିନଲିଥଗୋଙ୍କୁ ଲେଖିଲେ, "ଯଦି ବିଶ୍ୱାସଯୋଗ୍ୟ ଜାତୀୟ ସରକାର ଥାଆନ୍ତା, ତେବେ ସଂପୂର୍ଣ୍ଣ ଭାବରେ ନିରୋଧ କରି ନହେଲେ ହେଁ ଏହାକୁ ବହୁ ପରିମାଣରେ ରୋକାଯାଇପାରିଥାନ୍ତା ।" ସେ ଆନ୍ଦୋଳନ ଆରଂଭ କରିବା ପୂର୍ବରୁ ବ୍ରିଟିଶ ସରକାର ଯେଉଁ ବର୍ବର ଦମନ ଲୀଳା ଚଳେଇଲା, ତାହାରି ପ୍ରତିବାଦ ଭାରତବାସୀ କରିଛନ୍ତି କହି ଲିଲିଥଗୋ ଗାନ୍ଧୀଙ୍କ ଉପରେ ଯେଉଁ ଆରୋପ କରିଥିଲେ ତାହାକୁ ସେ ଖଣ୍ଡନ କରିଥିଲେ ।

**ଗାନ୍ଧୀ ଜିନ୍ନା ଆଲୋଚନା:**

ଗାନ୍ଧିଜୀ ଓ ଜିନ୍ନାଙ୍କ ମଧ୍ୟରେ ଏହି ସମୟରେ ଆଲୋଚନା ଲାଗି ଅନୁକୂଳ ବାତାବରଣ ସୃଷ୍ଟି ହେଲା । ଖିଲାଫତ୍ ଓ କଂଗ୍ରେସ ଆନ୍ଦୋଳନରେ ଅଂଶଗ୍ରହଣ କରିଥିବା ଜମାଏତ-ଉଲ-ଉଲେମା ଏବଂ ଆଜାଦ ମୁସଲିମ ବୋର୍ଡ ଲିଗର ବିରୋଧୀ । ସେମାନେ ଜିନ୍ନା ଏକ ଅସମ୍ଭବ ଧରଣର ବ୍ୟକ୍ତି ବୋଲି କହିଲେ ମଧ୍ୟ ମୁସଲମାନ ଜନତାଠାରୁ କଂଗ୍ରେସର ବିଛିନ୍ନତା ଦୂର କରିବା ପାଇଁ ଆତ୍ମ ନିୟନ୍ତ୍ରଣ ଅଧିକାର କଂଗ୍ରେସ ମାନିନେବା ଉଚିତ ବୋଲି ମତ ଦେଲେ । ଅନ୍ୟ ପକ୍ଷରେ ମୁସଲିମ ଲିଗକୁ ସେମାନେ ପରାମର୍ଶ ଦେଇ କହିଲେ, "ହୀନ ବ୍ରିଟିଶ ସରକାର ଆମ ପ୍ରମାଦର ସୁଯୋଗ ନେଉଛି, କେବଳ କଂଗ୍ରେସ ସହିତ ମିଳିତ କର୍ମସୂଚୀ ମାଧ୍ୟମରେ ମୁସଲମାନଙ୍କ ସ୍ୱାଧୀନତା ଅର୍ଜିତ ହୋଇପାରିବ ।"

୧୯୪୩ ଏପ୍ରିଲରେ ଲିଗ ଅଧିବେଶନରେ ଜିନ୍ନା କହିଥିଲେ, "ଆମେ କ'ଣ ଏକାଠି, ଏକାଠି, ଏକାଠି ହୋଇପାରିବା ନାହିଁ ଏବଂ ବ୍ରିଟିଶକୁ ନିକାଲି ଦେଇପାରିବା ନାହିଁ ।"

ଏହି ପ୍ରକାରର ଆପାତ ସହାୟକ ମନୋଭାବର ଏବଂ ମନୋବୃତ୍ତିର ପରିବେଶରେ ଗାନ୍ଧୀ-ଜିନ୍ନା ଆଲୋଚନା ତିନି ସପ୍ତାହ ଧରି ଚାଲିଲା । ମାତ୍ର ବ୍ୟର୍ଥ ହେଲା ।

ଜିନ୍ନାଙ୍କ ଆତ୍ମ ନିୟନ୍ତ୍ରଣ ଦାବୀର ସମାଧାନ ଲାଗି ଗାନ୍ଧିଜୀଙ୍କ ସୂତ୍ରକୁ ଜିନ୍ନା ପ୍ରତ୍ୟାଖ୍ୟାନ କରିଦେଲେ । ଗାନ୍ଧୀଙ୍କର ପ୍ରସ୍ତାବଟି ନିମ୍ନରୂପ - "ଚାହିଁଲେ ଭାରତରୁ ଅଲଗା ହୋଇଯିବାକୁ ମୁସଲିମ ଅଧ୍ୟୁଷିତ ପ୍ରଦେଶଗୁଡ଼ିକର ଅଧିକାର ରହିବ । ମାତ୍ର ସେସବୁ ପ୍ରଦେଶର ସମସ୍ତ ସାବାଳକ (ହିନ୍ଦୁ ମୁସଲମାନ)ଙ୍କ ବହୁ ମତରେ ତାହା ନିର୍ଣ୍ଣୀତ ହେବ । ଆତ୍ମ ନିୟନ୍ତ୍ରଣ ଅଧିକାର ଏହା ଦ୍ୱାରା ସାବ୍ୟସ୍ତ ହେବ । ସମୂହ ସ୍ୱାର୍ଥ ରକ୍ଷା ଲାଗି ପରରାଷ୍ଟ୍ର ନୀତି, ପ୍ରତିରକ୍ଷା, ଆଭ୍ୟନ୍ତରୀଣ ଯୋଗାଯୋଗ, ଶୁଳ୍କ ଓ ବାଣିଜ୍ୟ ସଂପର୍କୀୟ ନୀତି ସନ୍ତୋଷଜନକ ଭାବରେ ଦୁଇ ରାଷ୍ଟ୍ର ମଧ୍ୟରେ ଚୁକ୍ତି ଦ୍ୱାର ସ୍ଥିରୀକୃତ ହେବ । ମାତ୍ର ଜିନ୍ନ ଏଥିରେ ସମ୍ମତ ହେଲେ ନାହିଁ । ଦ୍ୱିତୀରବାର ଦୁହେଁ ବସିବା ସ୍ଥିର ହେଲା । ମାତ୍ର ତାହା ଆଉ ସମ୍ଭବପର ହେଲା ନାହିଁ । ଜିନ୍ନା ଅମଙ୍ଗ ହେଲେ ।

**ସିମଳା ସମ୍ମିଳନୀ:**

ଦେଶରେ ହିନ୍ଦୁ-ମୁସଲମାନ ବିବାଦର ପ୍ରଧାନ ଗୁରୁ, ଭାଗ ଭାଗ କରି ଶାସନ କରିବାର ଧୂର୍ତ୍ତ କୌଟିଲ୍ୟ ବ୍ରିଟେନ ଏହାର ସୁଯୋଗ ନେଲା । ବିଶ୍ୱଯୁଦ୍ଧର ରଣାଙ୍ଗନରେ ପରିବର୍ତ୍ତନ ଘଟିଥାଏ । ଷ୍ଟାଲିନଗ୍ରାଦ ଯୁଦ୍ଧରେ ସୋଭିଏତ୍ ବାହିନୀ ଦ୍ୱାରା ହିଟଲର ବାହିନୀର ଶୋଚନୀୟ ପଛଘୁଂଚା ଆରଂଭ ହୋଇଥାଏ । ଜାପାନ ବାହିନୀ, ଯାହା ଭାରତର ଚିଂତାଭଂଗ, ଫେଣି ଓ କଲିକତାର ଗାର୍ଡେନରିଚ୍ ଉପରେ ବୋମା ପକେଇ ଭାରତ ଦ୍ୱାରା ଦେଶରେ ପହଂଚିଥିଲା, ତାହା ପଛକୁ ହଟିଥାଏ ।

ଉଲ୍ଲସିତ ହୋଇ ଭାରତ ଉପରେ ୱାଭେଲ ଯୋଜନା ଲଦି ଦେବାର ପ୍ରୟାସ କରାଗଲା। ୧୯୪୪ ଅଗଷ୍ଟରେ ଗାନ୍ଧୀଙ୍କୁ ଓ୍ୟାଭେଲ ଲେଖିଲେ ଯେ "ହିନ୍ଦୁ ଓ ମୁସଲମାନ ଏବଂ ସବୁ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିଙ୍କ ମଧ୍ୟରେ ରାଜିନାମା ଭିତ୍ତିରେ ହିଁ ଜାତୀୟ ସରକାର ପ୍ରତିଷ୍ଠା କରାଯିବ। ଅଥଚ ୧୯୪୪ ଫେବୃଆରୀରେ କେନ୍ଦ୍ର ଆସେମ୍ବ୍ଲିରେ ସେ କହିଥିଲେ ଯେ ଦୁଇଟି ଯାକ ମୁଖ୍ୟ ରାଜନୈତିକ ଦଳ ଯଦି ରାଜିନାମାରେ ନପହଂଚନ୍ତି, ତେବେ ତୁରନ୍ତ ସମାଧାନ ଆଶା ମୁଁ ଦେଖିପାରୁନାହିଁ।"

୧୯୪୫ ଜୁନ ଜୁଲାଇରେ ଓ୍ୟାଭେଲ ଯୋଜନାର ଆଲୋଚନା ଲାଗି ସିମଲା ସମ୍ମିଳନୀ ବସିବାବେଳକୁ ବ୍ରିଟିଶ ଆସ୍ଥାନର ପରିବର୍ତ୍ତନ ଘଟିଗଲା। ହିନ୍ଦୁ-ମୁସଲମାନ ଐକ୍ୟକୁ ଭାଂଗି ବିଭେଦ ସୃଷ୍ଟିର ଯୋଜନା ଅଣାଗଲା। ସିମଳା ସମ୍ମିଳନୀ ପୂର୍ବରୁ ଜେଲରେ ଥିବା କଂଗ୍ରେସ ନେତାମାନଙ୍କୁ ଖଲାସ କରାଯାଇଥିଲା। କେନ୍ଦ୍ର ସରକାରରେ କଂଗ୍ରେସ ଓ ଲିଗ୍‌ର ସମାନ ସଦସ୍ୟ ରହିବେ ବୋଲି ଦୁଇ ନେତା ଗାନ୍ଧୀ ଓ ଜିନ୍ନାଙ୍କ ରାଜିନାମା ବଦଳରେ ହିନ୍ଦୁ ଓ ମୁସଲମାନମାନଙ୍କର ସମାନ ପ୍ରତିନିଧି କେନ୍ଦ୍ର ସରକାରରେ ରହିବେ ବୋଲି ଓ୍ୟାଭେଲ ବ୍ରିଟିଶ ସରକାରଙ୍କ ମନ୍ତ୍ରୀ ଆମେରଙ୍କ ସହିତ ପରାମର୍ଶ କରି ସିମଳା ସମ୍ମିଳନୀରେ ଉପସ୍ଥାପିତ କଲେ।

ବ୍ରିଟିଶର ଏପରି ଚକ୍ରାନ୍ତକୁ ଖଣ୍ଡନ ନକରି କଂଗ୍ରେସ ଓ ଲିଗ ପରସ୍ପରକୁ ଦୋଷାରୋପ କଲେ। ବ୍ରିଟିଶ ଚତୁରତାର ଜୟ ହେଲା। କ୍ଷମତା ଦେବାକୁ ବ୍ରିଟିଶ ସରକାର ସମ୍ମତ ଅଛି, ମାତ୍ର ଭାରତୀୟ ଦଳମାନଙ୍କ ମଧ୍ୟରେ ଐକ୍ୟ ନଥିବାରୁ କ୍ଷମତା ହସ୍ତାନ୍ତର ହୋଇପାରିଲା ନାହିଁ ବୋଲି ତାହା ପ୍ରଚାର କରି ଭାରତର ପରାଧୀନତାର ଡୋରିକୁ ହାତରେ ରଖିବ ବୋଲି ତାହା ବିଚାର କଲା।

ମାତ୍ର ଭାରତରେ ଆକୁମାରୀ ହିମାଳୟ ଅଭୂତପୂର୍ବ ଅଭ୍ୟୁତ୍ଥାନ ବ୍ରିଟିଶ ଚକ୍ରାନ୍ତକୁ ବ୍ୟର୍ଥ କରିଦେଲା।

ନୌ ବିଦ୍ରୋହ, ଜାତୀୟ ବାହିନୀ ନେତାଙ୍କ ମୁକ୍ତି ଦାବୀ ବିକ୍ଷୋଭ ତଥା ୧୯୩୮-୩୯ ପରେ ଗଡଜାତଗୁଡିକରେ ଦ୍ୱିତୀୟ ଥର ପ୍ରଚଣ୍ଡ ଆନ୍ଦୋଳନ ଏହି ଯୁଦ୍ଧୋତ୍ତର ଅଭ୍ୟୁତ୍ଥାନର ଅଂଗ।

୧୯୪୨ ଅଗଷ୍ଟ ବିପ୍ଳବକୁ ଭାରତବର୍ଷର ଦୁଇଶହ ବର୍ଷ ବ୍ୟାପୀ ସ୍ୱାଧୀନତା ସଂଗ୍ରାମର ଚୂଡାନ୍ତ ଆନ୍ଦୋଳନ କହିଲେ ଅତିରଂଜିତ ହେବ ନାହିଁ ସତ୍ୟ ମାତ୍ର ଏହି ଚୂଡାନ୍ତ ସଂଗ୍ରାମର ଶେଷ ଅଧ୍ୟାୟହିଁ ହେବ, ଯୁଦ୍ଧୋତ୍ତର ଅଭ୍ୟୁତ୍ଥାନ। ସେହି ଅଭ୍ୟୁତ୍ଥାନ ପରେ ବ୍ରିଟିଶ ସାମ୍ରାଜ୍ୟବାଦ ଭାରତରେ ଆଉ ପୂର୍ବପରି ରହିପାରିବ ନାହିଁ, ତାକୁ ବିଦାୟ ନେବାକୁ ପଡିବହିଁ ପଡିବ, ତାହା ସୁନିଶ୍ଚିତ ହୋଇଗଲା।

**ସୁବାଷ ବୋଷ ଓ ଜାତୀୟ ମୁକ୍ତିବାହିନୀ:**

ବ୍ରିଟିଶ ଗୁଇନ୍ଦା ବାହିନୀର ବ୍ୟୁହକୁ ଭାଂଗି ନଜରବନ୍ଦୀ ଅବସ୍ଥାରେ କଲିକତା ନିବାସରୁ ୧୯୪୧ ଜାନୁଆରୀ ୨୬ରେ ସୁବାଷବୋଷ ତାଙ୍କର ବନ୍ଧୁ କମ୍ୟୁନିଷ୍ଟ ଏସ.ତଲଵାରଙ୍କ ଯୋଜନା ଅନୁସାରେ ଖସିଗଲେ। ପେଶାବାରରେ ତଲବାରଙ୍କ ପରିବାରରେ ରହି ସେ ଆଫଗାନିସ୍ଥାନ ଦେଇ ମସ୍କୋରେ ପହଂଚିଲେ। ୧୯୪୧ଜୁନରେ ହିଟଲରର ସୋଭିଏତ ଆକ୍ରମଣ ପରେ ସେ ସୋଭିଏତ୍ ୟୁନିଅନରୁ ଯାଇ ଜର୍ମାନୀରେ ପହଂଚିଲେ ଏବଂ ଭାରତ ପାଇଁ ଏକ ସ୍ୱାଧୀନ ସରକାର ଘୋଷଣା କଲେ। ଆଜାଦ ହିନ୍ଦ୍ ରେଡିଓରୁ ସୋଭିଏତ୍ ୟୁନିଅନ ବିରୁଦ୍ଧରେ ପ୍ରଚାର କରିବାକୁ ନାଜୀ ସରକାରର ଚାପକୁ ସେ ଏଡିଥିଲେ। ମାତ୍ର ଷ୍ଟାଲିନବାଦ ଯୁଦ୍ଧରେ ନାଜୀ ଜର୍ମାନୀର ପଛଘୁଂଚା ପରେ ଭାରତୀୟ ସୀମାନ୍ତରେ ସେ ମୁକ୍ତିର ସଂଗ୍ରାମ ପରିଚାଳନା କରିବାକୁ ସାଗରରେ ଦୁଃସାଧ ଯାତ୍ରା କରି ସିଂଗାପୁରରେ ପହଂଚିଗଲେ। ସେଠାରେ ଭାଂଗିଯାଇଥିବା ଜାତୀୟ ମୁକ୍ତି ବାହିନୀକୁ ପୁନର୍ଗଠନ କରି ତାର ନେତୃତ୍ୱ ନେଲେ। ଜାପାନ ଦ୍ୱାରା ବନ୍ଦୀ ସହସ୍ର ସହସ୍ର ଭାରତୀୟ ସୈନିକ ତଥା ବର୍ମା, ମାଲୟ, ସିଂଗାପୁରରେ ଅବସ୍ଥିତ ଲକ୍ଷଲକ୍ଷ ଭାରତବାସୀଙ୍କୁ ସଂଗଠିତ କଲେ। ହିନ୍ଦୁ, ମୁସଲମାନ ଶିଖ ସୈନିକ ଓ ବେସାମରିକ ହଜାର ହଜାର ସ୍ୱାଧୀନତାପ୍ରେମୀ ନାରୀ ପୁରୁଷ ତାଙ୍କ ଜାତୀୟ ବାହିନୀରେ ସାମିଲ ହୋଇ ତାଙ୍କୁ ଏହି ବାହିନୀର ପ୍ରଧାନ ସେନାପତି ପଦରେ ନିଯୁକ୍ତ କଲେ। ଭାରତର ମୁକ୍ତି ପାଇଁ ସମରବାଦୀ, ଅକ୍ଷଶକ୍ତିଭୁକ୍ତ ଜାପାନର ସାହାଯ୍ୟ ନେଲେହେଁ, ଭାରତୀୟ ଜାତୀୟ ବାହିନୀକୁ ସେ ସ୍ୱତନ୍ତ୍ର ରଖିଲେ। ଜାପାନୀ ସେନାଧକ୍ଷମାନେ ଭାରତୀୟମାନଙ୍କୁ ଯୁଦ୍ଧରେ ନିପାତ କରିବାକୁ ଯେଉଁ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରିବାକୁ ଚାହୁଁଥିଲେ, ସୁବାଷବୋଷ ତାହାକୁ ପ୍ରତ୍ୟାଖ୍ୟାନ କରିଦେଲେ। ତାଙ୍କରି ରଣଡାକ ଥିଲା "ଦିଲ୍ଲୀ ଚଲୋ", "ଜୟ ହିନ୍ଦ"।

୧୯୪୫ ଅଗଷ୍ଟ ମାସରେ ଏକ ବିମାନ ଦୁର୍ଘଟଣାରେ ତାଙ୍କର ଅନ୍ତର୍ଦ୍ଧାନ ହେଲା। ଏହାପରେ ଜାପାନ ଓ ହିଟଲରର ପରାଜୟ ପରେ ବ୍ରିଟିଶ ସରକାର ଭାରତୀୟ ଜାତୀୟବାହିନୀର ନେତାମାନଙ୍କୁ ଗିରଫ କରି ଦିଲ୍ଲୀ ଲାଲକିଲ୍ଲାରେ ବନ୍ଦୀ କରିଦେଲା। କିଲ୍ଲା ଭିତରେ ସେମାନଙ୍କର ଗୋପନୀୟ ବିଚାର ହୋଇ ଫାଶି ଦେବାର ଚକ୍ରାନ୍ତକୁ ବ୍ୟର୍ଥ କରିଦେଲେ ଭାରତ ଜନତା।

ରସିଦ ଅଲ୍ଲି, ସାହାନବାଜ, ଲକ୍ଷ୍ମୀବାଇ ସାଇଗଲ, ମୋହନ ସିଂହ ପ୍ରଭୃତି ପ୍ରଖ୍ୟାତ ଜାତୀୟ ମୁକ୍ତି ବାହିନୀ ନେତାଙ୍କ ମୁକ୍ତି ଦାବୀ ଦେଶବ୍ୟାପୀ ଏକ ଅଶ୍ରୁତପୂର୍ବ ଅଭ୍ୟୁତ୍ଥାନରେ ପରିଣତ ହେଲା। କଲିକତାର ରାଜରାସ୍ତାରେ ଥରକୁ ଥର ଲକ୍ଷ ଲକ୍ଷ ସଂଖ୍ୟାରେ ଛାତ୍ର, ଶ୍ରମିକ, ଯୁବକ ଯୁବତୀ ବିକ୍ଷୋଭ କଲେ। ଚାରିଜଣ କମ୍ୟୁନିଷ୍ଟ ଯୁବତୀଙ୍କ ସମେତ ଅନେକ ପ୍ରାଣବଳି ଦେଲେ।

ଜାତୀୟ ମୁକ୍ତିବାହିନୀର କାରାବାସରେ ଅବରୁଦ୍ଧ ନେତା ଓ ନେତାଜୀ ସୁବାଷଙ୍କ ବୀରତ୍ୱ ସେତେବେଳେ ଭାରତର ଜନମାନସରେ ଏକ ଏପରି ଆବେଗମୟ ଉଦ୍ଦୀପନା ସୃଷ୍ଟି କଲା ଯାହା ଏକ ବିରାଟ ଜନ ଆନ୍ଦୋଳନର ରୂପ ନେଲା । କଲିକତା କେବଳ ନୁହେଁ । ରାଜଧାନୀ ଦିଲ୍ଲୀ ଏକ ବାରୁଦ ସ୍ତୂପରେ ପରିଣତ ହେଲା । ବମ୍ବେ, ମାନ୍ଦ୍ରାଜ, ପାଟନା, ଏହ୍ଲାବାଦ, ଲକ୍ଷ୍ନୌ, ଅହମଦାବାଦ ସମେତ ଭାରତର ଏପରି କୌଣସି ସହର ନାହିଁ, ଯେଉଁଠାରେ ରଶିଦ ଅଲ୍ଲି, ଲକ୍ଷ୍ମୀ ସାଇଗଲ, ନେତାଜୀ ସୁବାଷ ବୋଷଙ୍କ ଜୟଧ୍ୱନି ଧ୍ୱନିତ ହୋଇ ନଥିଲା ।

ନିବୁଜ ଅଦାଲତରେ ସେହି ବନ୍ଦୀମାନଙ୍କ ସପକ୍ଷରେ ଲଢ଼ିବା ଲାଗି ନେହେରୁଙ୍କ ନେତୃତ୍ୱରେ ଏକ ପ୍ରତିରକ୍ଷା କମିଟି ଗଠିତ ହେଲା । ବିଶିଷ୍ଟ ଆଇନଜୀବୀ ତେଜ ବାହାଦୂର ସାପ୍ରୁ, ବୁଲାଭାଇ ଦେଶାଇ, କୈଳାସ ନାଥ କାଟ୍‌ଜୁ, ଆସଫ ଅଲି ଉକ୍ତ କମିଟିରେ ଥିଲେ । ଭାରତର ସ୍ୱାଧୀନତା ସଂଗ୍ରାମର ଅନ୍ତିମ ପର୍ଯ୍ୟାୟରେ ସୁବାଷବୋଷଙ୍କ ସଂଗ୍ରାମର କର୍ମକୌଶଳକୁ କଂଗ୍ରେସ, ଗାନ୍ଧୀଜୀ ବିରୋଧ କିପରି କରୁଥିଲେ ତାହା ଦର୍ଶାଯାଇଛି । କମ୍ୟୁନିଷ୍ଟମାନେ ବିଚାରୁଥିଲେ ଯେ ଅକ୍ଷ ଶକ୍ତି ସାରା ପୃଥିବୀର ଜନତା, ମାନବ ସଭ୍ୟତା, ଗଣତନ୍ତ୍ର ଓ ସମାଜର ଶତ୍ରୁ ସାହାଯ୍ୟରେ ଭାରତର ମୁକ୍ତି ହେବ ନାହିଁ । ଏହା ଆଣି ଦେବ ଭୟାବହ ପରାଧୀନତା । ଏହା ଦର୍ଶାଇ ସେମାନେ ସୁବାଷବୋଷଙ୍କ କର୍ମକୌଶଳର ପକ୍ଷରେ ନଥିଲେ । ସୁବାଷ ଚନ୍ଦ୍ର ବୋଷଙ୍କ ଇଚ୍ଛା ବିରୁଦ୍ଧରେ ହିଟଲର କିପରି ତାଙ୍କ ପ୍ରତି ବ୍ୟବହାର କରିଥିଲା ତାହାର ଏକ ଦୃଷ୍ଟାନ୍ତ ପ୍ରାସଙ୍ଗିକ ହେବ ।

ସୁବାଷଚନ୍ଦ୍ର ବୋଷଙ୍କ ନେତୃତ୍ୱରେ ଜର୍ମାନୀରେ ଥିବା ଭାରତୀୟମାନଙ୍କୁ ଘେନି ଏକ ସେନାବାହିନୀ ଗଢ଼ାଯାଇଥିଲା । ତାକୁ ଭାରତୀୟ ଲିଜିଅନ କୁହାଯାଉଥିଲା । ତାହାକୁ ଯେଉଁ ଶପଥ ନେବାକୁ ହେଉଥିଲା, ସେଥିରେ ହିଟଲରର ଉଦ୍ଦେଶ୍ୟ ଜଣାପଡିଯାଇଛି । ଅବସ୍ଥାଚକ୍ରରେ ପଡି ସୁବାଷ ବୋଷ ତାଙ୍କୁ ମାନି ନେବାକୁ ବାଧ ହୋଇଥିଲେ । ସେପରି ଶପଥ ହିନ୍ଦୀ ଅବା କୌଣସି ଭାରତୀୟ ଭାଷାରେ ନୁହେଁ ଜର୍ମାନ ଭାଷାରେ ନେବାକୁ ବାଧ କରାଗଲା । ଶପଥଟି ହେଲା, "ଭାରତର ସ୍ୱାଧୀନତା ଲାଗି ସଂଗ୍ରାମ, ଯେଉଁ ସଂଗ୍ରାମରେ ସୁବାଷଚନ୍ଦ୍ର ବୋଷ ନେତା ଓ ଜଣେ ନିର୍ଭୀକ ସୈନିକ, ସେହି ସଂଗ୍ରାମରେ ଜର୍ମାନ ଜାତିର ନେତା, ଜର୍ମାନୀ ସେନାଧକ୍ଷ ଆଡଲଫ ହିଟଲରଙ୍କ ନିର୍ଦ୍ଦେଶ ପାଳନ କରିବାକୁ ମୁଁ ଶପଥ କରୁଛି ।" ଭାରତରେ ମୁକ୍ତି ପାଇଁ କର୍ମକୌଶଳ ସଂକ୍ରାନ୍ତରେ ଗୁରୁତର ମତପାର୍ଥକ୍ୟ ସତ୍ତ୍ୱେ ସୁବାଷଚନ୍ଦ୍ର ବୋଷଙ୍କ ଅନୁପମ ଦେଶ ବତ୍ସଳତା, ତାଙ୍କର ବୀରତ୍ୱ, ତାଙ୍କର ଦୃଢ଼ ଆତ୍ମପ୍ରତ୍ୟୟ ଓ ଅପରିସୀମ ଆତ୍ମତ୍ୟାଗକୁ କେହି ଅସ୍ୱୀକାର କରିନାହିଁକି କରିପାରିବ ନାହିଁ । ତାଙ୍କର ଜୟ ହିନ୍ଦ୍ ହିଁ ଜାତୀୟ ଧ୍ୱନି ହେଲା ।

**ଗଡଜାତ ପ୍ରଜା ଅଭ୍ୟୁତ୍ଥାନ:**

କ୍ରିପ୍ସ ମିଶନର ପ୍ରସ୍ତାବାବଳୀକୁ ଅଖିଳ ଭାରତ ଗଡଜାତ ପ୍ରଜା ସମ୍ମିଳନୀ ପ୍ରତ୍ୟାଖ୍ୟାନ କରିଦେଇ ନିଶ୍ଚିନ୍ତ ରହିଲା ନାହିଁ । ବିଭିନ୍ନ ଗଡଜାତରେ ରାଜନ୍ୟବର୍ଗଙ୍କ ଶାସନକୁ କାଏମ

ରଖିବା ଲାଗି ବ୍ରିଟିଶ ଚକ୍ରାନ୍ତ ବିରୁଦ୍ଧରେ ୧୮୩୮/୩୯ ପରେ ଅଭୂତପୂର୍ବ, ଅପାର ରକ୍ତକ୍ଷୟୀ ପ୍ରଜା ଆନ୍ଦୋଳନ ଫାଟିପଡିଲା । ଏମିତିକି ପରବର୍ତ୍ତୀ କାଳରେ କାବିନେଟ ମିଶନ ଭାରତରେ ଆସି ଆଲୋଚନା କାଳରେ ମଧ୍ୟ କାଶ୍ମୀରରେ ଶେଖ ଅବଦୁଲ୍ଲାଙ୍କ ଜାତୀୟ ସମ୍ମିଳନୀ ନେତୃତ୍ୱରେ କାଶ୍ମୀରରେ ଡୋଗ୍ରା ଶାସନ ବିରୁଦ୍ଧରେ ବିରାଟ ପ୍ରଜା ଆନ୍ଦୋଳନ ସଂଘଟିତ ହେଲା । ହିନ୍ଦୁ ମହାସଭା ପ୍ରଭାବାଧୀନ ଜାମ୍ମୁକାଶ୍ମୀର ପ୍ରଜା ପରିଷଦର ମହାରାଜା ପକ୍ଷପାତୀ ବିରୋଧର ସମ୍ମୁଖୀନ ହୋଇ ଏହି ପ୍ରଜା ଆନ୍ଦୋଳନ ପରିଶେଷରେ କାଶ୍ମୀରରେ ଘୃଣ୍ୟ ଡୋଗ୍ରା ଶାସନର ଅବସାନ ଆଣିବାରେ ସଫଳକାମ ହୋଇଥିଲା ।

ହାଇଦ୍ରାବାଦର ନିଜାମ ବିରୁଦ୍ଧରେ ଆନ୍ଧ୍ର ପ୍ରଦେଶର କମ୍ୟୁନିଷ୍ଟମାନଙ୍କ ନେତୃତ୍ୱରେ ପରିଚାଳିତ ବିଶାଳ ଆନ୍ଧ୍ର ମହାସଭା ନିଜାମର ରକ୍ତମୁହାଁ, ଦୁର୍ଦ୍ଧର୍ଷ ରାଜକର ବାହିନୀ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ ଚଳେଇଲା । ଚାରି ହଜାରରୁ ଊର୍ଦ୍ଧ୍ୱ ମୁକ୍ତିଯୋଦ୍ଧା ପ୍ରାଣ ଦେଲେ । ନିଜାମ ଶାସିତ ହାଇଦ୍ରାବାଦରରେ ଘୋର ପ୍ରଭାବଶାଳୀ ଜମିଦାର ଦେଶମୁଖମାନଙ୍କର ଅଚଳାଚଳ ଭୂମି ଗରୀବ, ଭୂମିହୀନ ପ୍ରଜାଙ୍କୁ କମ୍ୟୁନିଷ୍ଟମାନେ ବାଣ୍ଟିଦେଲେ ।

ତ୍ରିବାଙ୍କୁଡ-କୋଚିନ ମହାରାଜାଙ୍କ ବିରୁଦ୍ଧରେ ପ୍ରବଳ ସଂଗ୍ରାମ ହେଲା । ପୁନାପ୍ରା ଓ ଭାୟାଲରଠାରେ ମହାରାଜା ଓ ବ୍ରିଟିଶ ପୁଲିସଙ୍କ ଗୁଳି ଚାଲିଲା । ତିନି ଶତାଧିକ କମ୍ୟୁନିଷ୍ଟ ସମର୍ଥକ ମୃତ୍ୟୁ ମୁଖରେ ପଡିଲେ । ଭୋପାଳ, ଇନ୍ଦୋର, ଗ୍ୱାଲିଅର ପ୍ରଭୃତି ମଧ୍ୟ ପ୍ରଦେଶ ଓ ରାଜସ୍ଥାନର ପ୍ରତ୍ୟେକଟି ଗଡଜାତରେ ପ୍ରଜାମଣ୍ଡଳର ନେତୃତ୍ୱରେ ରାଜତନ୍ତ୍ରର ଲୋପ ପାଇଁ ଆନ୍ଦୋଳନ ତୀବ୍ର ରୂପ ଧାରଣ କଲା ଏବଂ ଗୁଳି, ଲାଠିର ତାଣ୍ଡବ ଚାଲିଲା । ପଂଜାବର ପାଟିଆଲା ମହାରଜାଙ୍କ ବିରୋଧୀ ପ୍ରଜା ଆନ୍ଦୋଳନ ଶକ୍ତିଶାଳୀ ରୂପ ନେଲା । ଆମ ଓଡିଶାରେ ପୁଣି ଥରେ ସବୁ ଗଡଜାତରେ ଦ୍ୱିତୀୟ ଓ ଚୂଡ଼ାନ୍ତ ଦଫା ପ୍ରଜା ଆନ୍ଦୋଳନ ଉଗ୍ର ରୂପ ନେଲା । ନୀଳଗିରି ମିଶ୍ରଣ, ଢେଙ୍କାନାଳ ରାଜବାଟୀ ଦଖଲ ଉଦ୍ୟମ ତାର ପ୍ରକୃଷ୍ଟ ନମୁନା । ଯୁଦ୍ଧୋତ୍ତର ଅଭ୍ୟୁତ୍ଥାନବେଳେ ସାରା ଭାରତରେ ଶ୍ରମିକ ଆନ୍ଦୋଳନ, କୃଷକ ଆନ୍ଦୋଳନ ବ୍ରିଟିଶ ଶାସନକୁ ଅଥୟ କରି ଦେଇଥିଲା ।

୧୯୪୬ରେ ୨ହଜାରରୁ ଅଧିକ ଧର୍ମଘଟରେ ପ୍ରାୟ ୨୦ଲକ୍ଷ ଶ୍ରମିକ ଅଂଶଗ୍ରହଣ କରିଥିଲେ । ଦକ୍ଷିଣ ଭାରତ ରେଳ ଶ୍ରମିକ, ଉତ୍ତର ପଶ୍ଚିମ ରେଳବାଇ ଶ୍ରମିକଙ୍କ ସାଙ୍ଗକୁ ବଂଗଳା, ମାନ୍ଦ୍ରାଜ, କୋୟୋମ୍ବାଟୁର, ନାଗପୁର ପ୍ରଭୃତି ଶିଳ୍ପାଞ୍ଚଳରେ ଧର୍ମଘଟର ସ୍ରୋତ ବୋହିଥିଲା ।

ବଂଗଳାରେ ବିଶାଳ ତେଭାଗା ଚାଷୀ ଆନ୍ଦୋଳନ, ଯୁକ୍ତ ପ୍ରଦେଶର ବସ୍ତି ଓ ବାଲିଆ, ବିହାରରେ ତଥା ଓଡିଶାରେ ଜମିଦାର ବିରୋଧୀ ଆନ୍ଦୋଳନ ସଂଘଟିତ ହୋଇଥିଲା ।

**ଇତିହାସ ସୃଷ୍ଟିକାରୀ ନୌବାହିନୀ ବିଦ୍ରୋହଢ଼:**

ବ୍ରିଟିଶ ସାମ୍ରାଜ୍ୟବାଦର ପଦଲେହନକାରୀମାନଙ୍କୁ ଛାଡିଦେଲେ ସମଗ୍ର ଭାରତବାସୀଙ୍କଠାରୁ ତାହା ବିଚ୍ଛିନ୍ନ ହୋଇଗଲା। ବ୍ରିଟିଶ ଶାସନର ଏକମାତ୍ର ଭରସା ତାର ସୈନ୍ୟବାହିନୀ, ବିଶେଷତଃ ନୌବାହିନୀ ଓ ପୁଲିସ ବାହିନୀ।

୧୯୪୬ ଫେବୃଆରୀ ୧୯ତାରିଖ। ଏହାହିଁ ଭାରତର ଦୁଇଶହ ବର୍ଷ ସ୍ୱାଧୀନତା ସଂଗ୍ରାମପାଇଁ ବିଜୟ ଟୀକା ଆଣିବାରେ ପଥ ଉନ୍ମୋଚନ କରିଦେଲା।

୧୯୪୬ ଫେବୃଆରୀ ୧୯ ତାରିଖ। ସ୍ଥାନ ବମ୍ବେ ପୋତାଶ୍ରୟ। ଫେବୃଆରୀ ୧୮ ତାରିଖରେ ତଲବାର ନାମକ ଯୁଦ୍ଧପୋତର ନାବିକମାନେ ବିଦ୍ରୋହର ଧ୍ୱଜା ଉତ୍ତୋଳନ କଲେ। ଚବିଶ ଘଣ୍ଟା ମଧ୍ୟରେ ଅର୍ଥାତ୍ ଫେବୃଆରୀ ୧୯ରେ ବମ୍ବେ ପୋତାଶ୍ରୟରେ ଅବସ୍ଥାପିତ ସବୁ ଜାହାଜରେ ବିଦ୍ରୋହର ଅଗ୍ନି ପ୍ରଜ୍ୱଳିତ ହେଲା। ୨୦ହଜାର ନୌସେନା ବ୍ରିଟିଶ ନୌସେନାଧ୍ୟକ୍ଷଙ୍କ ଧମକକୁ ହେୟ ଜ୍ଞାନ କରି ଧର୍ମଘଟରେ ଯୋଗଦେଲେ। ସେମାନେ ଏକ ବିପ୍ଳବୀ କମିଟି ଗଠନ କଲେ ଏବଂ ବ୍ରିଟିଶ ଦାସତ୍ୱର ପ୍ରତୀକ ୟୁନିୟନ ଜ୍ୟାକକୁ କାଢି ଫିଙ୍ଗିଦେଇ ପୋତଗୁଡିକରେ କଂଗ୍ରେସ, ମୁସଲିମ ଲିଗ ଓ କମ୍ୟୁନିଷ୍ଟ ପତାକା ଉଡେଇଲେ। କରାଚୀ ବନ୍ଦରକୁ ମଧ୍ୟ ଏହି ନୌବିଦ୍ରୋହ ବ୍ୟାପିଗଲା।

ସେମାନଙ୍କ ସହିତ ଧର୍ମଘଟରେ ଯୋଗଦେଲେ ଭାରତୀୟ ବୈମାନିକମାନେ। ବ୍ରିଟିଶ କପ୍ତାନମାନଙ୍କ ଆଦେଶକୁ ସେମାନେ ମାନିଲେ ନାହିଁ। ବମ୍ବେ, କରାଚୀ, ବାଙ୍ଗାଲୋରରେ ଭାରତୀୟ ବୈମାନିକ ବିଦ୍ରୋହର ଧ୍ୱଜା ଉଡେଇଲେ। ଦିଲ୍ଲୀ ଏବଂ ଅନ୍ୟ ଅନେକ ସ୍ଥାନରେ ପୁଲିସ ବାହିନୀ ଧର୍ମଘଟ ଆରଂଭ କରିଦେଲେ। ଭାରତୀୟ ନାବିକ, ବୈମାନିକ ଓ ପୁଲିସ ବ୍ରିଟିଶ କର୍ତ୍ତୃତ୍ୱକୁ ବେଖାତିର କଲେ ମିଳିତ ଭାବରେ।

ବମ୍ବେରେ ଶ୍ରମିକ ଆନ୍ଦୋଳନ ଖୁବ୍ ଶକ୍ତିଶାଳୀ। ବମ୍ବେର ଛାତ୍ର, ଯୁବକ, ଶ୍ରମିକ, ନଗରବାସୀ ନୌବାହିନୀର ସମର୍ଥନରେ ଫେବୃଆରୀ ୨୨ରେ ହରତାଳର ଆହ୍ୱାନ ଦେଲେ। ୧୯ ତାରିଖ ନୌବିଦ୍ରୋହ ଆରଂଭ ହେବା ପରେ ପରେ ବମ୍ବେରେ ୨୦ ଓ ୨୧ ତାରିଖରେ ଓ ୨୨ ତାରିଖରେ ଜନବିକ୍ଷୋଭ ଅସମ୍ଭାଳ ହୋଇପଡିଲା। ସଂପୂର୍ଣ୍ଣ ହରତାଳ। ଶତ ଶତ ବିରାଟ କାରଖାନା ବନ୍ଦ। ବିପଣୀ ବଜାର, ଶିକ୍ଷାୟତନ ଶୂନଶାନ ହୋଇଗଲା। ରାଜରାସ୍ତାରେ ଲକ୍ଷ ଲକ୍ଷ ଲୋକ। ହିନ୍ଦୁ, ମୁସଲିମ, ପାର୍ଶି, ଶିଖ ସବୁ ସଂପ୍ରଦାୟର ଶ୍ରମିକ, ବୁଦ୍ଧିଜୀବୀ, ଛାତ୍ରଙ୍କ ସଂଗେ ଯୋଗ ଦେଲେ ଧର୍ମଘଟକାରୀ ନୌ ସୈନିକ। ହାତରେ କଂଗ୍ରେସ ଲିଗ କମ୍ୟୁନିଷ୍ଟ ପତାକା। ବ୍ରିଟିଶ ହଟୋ ଧ୍ୱନିରେ ଆକାଶ ଉଚ୍ଛୁଳି ଉଠୁଥାଏ। କରାଚୀ ବନ୍ଦରକୁ ବିଦ୍ରୋହ ଦମନ କରିବା ପାଇଁ ପ୍ରେରିତ ଭାରତୀୟ ସୈନିକମାନେ ଧର୍ମଘଟକାରୀମାନଙ୍କ ଉପରେ ଗୁଳି କରିବାକୁ ନାସ୍ତି କରିଦେଲେ।

ଏହି ବିକ୍ଷୁବ୍ଧ ଜନତା ଉପରେ ବ୍ରିଟିଶ ସୈନ୍ୟଙ୍କ ପକ୍ଷରୁ ଅବାରିତ ଗୁଳି ଚାଲିଲା। ୨୫୦ ଜଣରୁ ଅଧିକ ଭାରତୀୟ ଜନତା ନିହତ ହେଲେ। ଧର୍ମଘଟ ଓ ଆନ୍ଦୋଳନକାରୀମାନଙ୍କ ଭିତରୁ ୬ଶହ ବ୍ୟକ୍ତିଙ୍କୁ ଗିରଫ୍ କରାଗଲା। ସରକାରୀ ବିବରଣୀରେ ପ୍ରକାଶ ପାଇଛି ଯେ ବମ୍ବେରେ ୪୮ ଘଣ୍ଟା କାଳ ଗୁଳି ଚାଲିଥିଲା। ବିଦ୍ରୋହୀ ନାବିକମାନେ ଅସ୍ତ୍ରଶସ୍ତ୍ରଧରି ସାତ ଘଣ୍ଟା କାଳ ବ୍ରିଟିଶ ବାହିନୀର ମୁକାବିଲା କଲେ। ଏହି ସଂଗ୍ରାମକୁ ଦିଗଦର୍ଶନ ଦେବା ଉଦ୍ଦେଶ୍ୟରେ କେନ୍ଦ୍ରୀୟ ନାବିକ ଧର୍ମଘଟ କମିଟି କଂଗ୍ରେସ ଓ ମୁସଲିମ ଲିଗ୍ ନେତାଙ୍କ ଠାରୁ ପରାମର୍ଶ ଚାହିଁଲେ। ସେମାନଙ୍କ ଆବେଦନରେ ଲେଖାଥିଲା, "ପ୍ରଥମ ଥର ପାଇଁ ସେନା ବାହିନୀରେ ଥିବା ବ୍ୟକ୍ତି ଓ ରାଜରାସ୍ତାର ଲୋକଙ୍କ ରକ୍ତ ସମୂହ ଲକ୍ଷ୍ୟ ଲାଗି ଏକତ୍ର ବୋହିଲା। ଆମେ ସେନା ବାହିନୀରେ ଥିବା ଲୋକେ କଦାପି ଏକଥା ଭୁଲିଯିବୁ ନାହିଁ। ଆମେ ଜାଣୁ, ଆମ ଭାଇ ଭଉଣୀମାନେ ମଧ୍ୟ କଦାପି ଏହାକୁ ଭୁଲିବେ ନାହିଁ। ଆମେ ପାଶୋରିବୁ ନାହିଁ। ଆମ ମହାନ ଜନତା ଦୀର୍ଘଜୀବୀ ହେଉ। ଜୟହିନ୍ଦ।"

ଦେଶପାଇଁ ଏପରି ଅପରିସୀମ ବୀରତ୍ୱ ଦେଖାଉଥିବା ନୌ ବିଦ୍ରୋହୀଙ୍କୁ ଉଭୟ କଂଗ୍ରେସ ଓ ଲିଗର ପରାମର୍ଶ ହେଲା ଆତ୍ମ ସମର୍ପଣ କର।

ସେମାନେ ଆତ୍ମ ସମର୍ପଣ କଲେ। ଅସ୍ତ୍ରଶସ୍ତ୍ର ସମର୍ପି ଦେବାବେଳେ "ଆମେ ଭାରତ ପାଖରେ ଆତ୍ମ ସମର୍ପଣ କରୁଛୁ ବ୍ରିଟେନ ପାଖରେ ନୁହେଁ" ବୋଲି ଘୋଷଣା କଲେ। ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏହା ହେଲା ଏକ ଦୀପ୍ତିମାନ ଆଲୋକବର୍ତ୍ତିକା। ସମସ୍ତ ଦମନ ଅତ୍ୟାଚାର ସତ୍ତ୍ୱେ ବ୍ରିଟିଶ କର୍ତ୍ତୃପକ୍ଷ ସେମାନଙ୍କର ମୃତ୍ୟୁଘଣ୍ଟି ବାଜିଗଲା ଜାଣି ସେଥିରୁ ଉଦ୍ଧାର ପାଇଁ ଓ ସବୁ ହରାଇବା ପୂର୍ବରୁ ଭାରତକୁ କିପରି ମୁକାବିଲା କରିବ ସେଥିଲାଗି ଏକ ଘୋଷଣା ପ୍ରକାଶ କଲା।

୧୯୪୬ ଫେବୃଆରୀ ୧୯ ତାରିଖ ନୌବିଦ୍ରୋହ ଦିନ, କାବିନେଟ ମିଶନ ଘୋଷଣା ଏକ କାକତାଳିକ ଘଟଣା ନୁହେଁ। ଏହା ବ୍ରିଟିଶ ସାମ୍ରାଜ୍ୟବାଦର ପରାଜୟର ସ୍ୱୀକୃତି। ତଥାପି ସାମ୍ରାଜ୍ୟବାଦ ହିଁ ସାମ୍ରାଜ୍ୟବାଦ। ୧୯୪୭ ଅଗଷ୍ଟ ୧୫ରେ ଲାଲକିଲ୍ଲାରେ ରାଷ୍ଟ୍ରୀୟ ଧ୍ୱଜା ଉଡିବାର ମହୋତ୍ସବ ଅବଶ୍ୟମ୍ଭାବୀ ହୋଇଗଲା। ତଥାପି ସାମ୍ରାଜ୍ୟବାଦ ଶ୍ୟେନର ଚକ୍ରାନ୍ତ ଶେଷ ମୁହୂର୍ତ୍ତଯାଏ ଅବ୍ୟାହତ ରହିଲା।



# ଅଗଷ୍ଟ ପନ୍ଦରର ଆଗମନ ପର୍ବ

ଫେବୃଆରୀ ଉଣେଇଶ, ନୌବିଦ୍ରୋହର ରାତିରେ ଲଣ୍ଡନରୁ ଘୋଷିତ କ୍ୟାବିନେଟ୍ ମିଶନ ସେହି ବର୍ଷ ୧୯୪୬ ମାର୍ଚ୍ଚ ୧୫ ତାରିଖରେ ଭାରତରେ ପହଞ୍ଚିଲା। ବିଶ୍ୱଯୁଦ୍ଧରେ ତ ତା'ର ବିଜୟ ହୋଇଛି। ଏଣିକିତ ବିଲାତ ତା'ର ଉପନିବେଶଗୁଡ଼ିକୁ ଆହୁରି ଦୃଢ଼ତା ସହକାରେ ଲୁଣ୍ଠନ କରିପାରିଥାନ୍ତା। ମାତ୍ର ଆମ ଭାରତବର୍ଷର ଐତିହାସିକ ସ୍ୱାଧୀନତା ସଂଗ୍ରାମ, ଯୁଦ୍ଧ ପରବର୍ତ୍ତୀ ପରିସ୍ଥିତି ଏବଂ ପୃଥିବୀରେ ଯେତେ ଯେତେ ଦେଶ ବିଲାତ, ଫରାସୀ ପ୍ରଭୃତି ସାମ୍ରାଜ୍ୟବାଦୀଙ୍କ ଉପନିବେଶ ଥିଲା, ସେସବୁ ଉପନିବେଶରେ ମୁକ୍ତି ସଂଗ୍ରାମ ବ୍ରିଟିଶ୍ ସାମ୍ରାଜ୍ୟବାଦର ସୁଖସ୍ୱପ୍ନକୁ ଧୂଳିସାତ୍ କରିଦେଲା।

ସୋଭିଏତ୍ ଓ ମିତ୍ର ବାହିନୀ ଦ୍ୱାରା ପରାଜିତ ହୋଇ ହିଟଲର ଆତ୍ମହତ୍ୟା କରିଦେଲା। ଜର୍ମାନୀ ଆତ୍ମ ସମର୍ପଣ କରିଦେଲା। ଜାପାନ ବସ୍ତୁତଃ ପରାଜିତ ହୋଇ ଆତ୍ମସମର୍ପଣ କରିବାକୁ ପ୍ରସ୍ତୁତ ହେଉଥାଏ।

ଅଥବା ମାନବ ଜାତିର ଇତିହାସରେ ଅଚିନ୍ତନୀୟ କଳଙ୍କ ଲେପି ହୋଇଗଲା। ସାମ୍ରାଜ୍ୟବାଦୀ ଆମେରିକା ଜାପାନର ହୀରୋସିମା-ନାଗାସାକି, ଦୁଇ ସହରର ଗଭୀର ରାତ୍ରିରେ ନିଦ୍ରିତ ଥିବା ଲକ୍ଷ ଲକ୍ଷ ନିରୀହ ଜନତାକୁ ପରମାଣୁ ବୋମାରେ ପାଉଁଶ କରିଦେଲା।

ଏପରି ଯାବତୀୟ ସାମ୍ରାଜ୍ୟବାଦୀ ବିଭୀଷିକା ସତ୍ତ୍ୱେ ଭାରତରେ ଅଗଷ୍ଟ ଆନ୍ଦୋଳନ ଓ ତା ପରବର୍ତ୍ତୀ ଅଭ୍ୟୁତ୍ଥାନକୁ ଦେଖି ବ୍ରିଟିଶ ସରକାର ସବୁ ହରାଇବା ଭୟରେ ଆତଙ୍କିତ ହେଲା। କ୍ୟାବିନେଟ୍ ମିଶନ ପଠାଇବାକୁ ବାଧ ହେଲା। କିପରି ଭାରତରେ ତା'ର କିଛି ସ୍ଥିତି ରହିବ, ସେହିପରି କୌଶଳ ଧରି କ୍ୟାବିନେଟ ମିଶନ ପ୍ରସ୍ତାବ ଧରି ପହଂଚିଲା। ଏଥିରେ ଥିଲେ ବ୍ରିଟିଶ୍ ସରକାରଙ୍କ ଭାରତ ସଚିବ ଲର୍ଡ ପେଥିକ ଲରେନ୍ସ, ନୌବାହିନୀର ସେନାପତି ଏ.ଭି. ଆଲେକଜାଣ୍ଡର ଏବଂ ବ୍ରିଟିଶ ବାଣିଜ୍ୟ ବୋର୍ଡ଼ର ସଭାପତି କ୍ରିପ୍ସ।

ଏତେବେଳକୁ ଜାଠ ଦଳ ସରକାର ବଦଳରେ ଲେବର ପାର୍ଟି କ୍ଷମତାକୁ ଆସିଥାଏ। ଆଟ୍ଲି ପ୍ରଧାନମନ୍ତ୍ରୀ ହୋଇଥାନ୍ତି। ୧୯୪୬ ମାର୍ଚ୍ଚ ୧୫, ଯେଉଁଦିନ କ୍ୟାବିନେଟ୍ ମିଶନ ଭାରତରେ

ପହଂଚିଲା, ସେହିଦିନ ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ନୁହଁ ଡୋମିନିୟନ ଷ୍ଟାଟ୍ସ ଦିଆଯିବ ବୋଲି ଅଟଲି ଘୋଷଣା କଲେ।

୧୯୩୫ ଶାସନ ଖସଡ଼ା ଅନୁସାରେ ୧୯୪୬ରେ ପ୍ରଦେଶଗୁଡ଼ିକରେ ନିର୍ବାଚନ ଅନୁଷ୍ଠିତ ହେଲା। କେବଳ ଶତକଡ଼ା ୧୩ ଭାଗ ଲୋକ ଭୋଟ ଦେବାକୁ ଯୋଗ୍ୟ ଥିଲେ। ପ୍ରାଦେଶିକ ବିଧାନସଭା ଆସନଗୁଡ଼ିକରୁ କଂଗ୍ରେସ ୯୮୧ଟି ଏବଂ ମୁସଲିମ୍ ଲିଗ୍ ୪୨୫ଟି ଆସନରେ ବିଜୟୀ ହେଲା। କମ୍ୟୁନିଷ୍ଟମାନଙ୍କୁ କଂଗ୍ରେସ ବହିଷ୍କାର କରିଦେଇଥାଏ। ସେମାନେ ୧୦୮ଟି ଆସନରେ ପ୍ରାର୍ଥୀ ଦେଇ ୯ଟି ଆସନରେ ଜୟୀ ହୋଇଥିଲେ।

ଏହି ନିର୍ବାଚନ ଦୁଇଟି କଥା ଦର୍ଶାଇଲା। ସଂଖ୍ୟା ଗରିଷ୍ଠ ଭାରତବାସୀ ଦେଶର ଐକ୍ୟ ଚାହାନ୍ତି ଓ କଂଗ୍ରେସକୁ ସମର୍ଥକ କରନ୍ତି। ଅନ୍ୟଟି ହେଲା, ମୁସଲମାନ ସଂଖ୍ୟା ଗରିଷ୍ଠ ପ୍ରଦେଶମାନଙ୍କରେ ଲିଗ ହିଁ ସେମାନଙ୍କର ପ୍ରତିନିଧି। ଏହା କ୍ୟାବିନେଟ ମିଶନ ଓ ବ୍ରିଟିଶ ସରକାରକୁ ଖେଳ ଖେଳିବାକୁ ସାହାଯ୍ୟକାରୀ ହେଲା।

ପ୍ରାଦେଶିକ ନିର୍ବାଚନର ଫଳାଫଳ ପ୍ରକାଶ ପରେ ୧୯୪୬ ମଇ ମାସ ୧୬ ତାରିଖରେ କ୍ୟାବିନେଟ୍ ମିଶନ ତାର ପ୍ରସ୍ତାବାବଳୀ ଆଗତ କଲା। ଏଣିକି ମାଉଣ୍ଟବେଟନ ଆୱାର୍ଡ଼ ଯାହା ନାନା ସ୍ତରରେ କ୍ୟାବିନେଟ୍ ମିଶନ ସହିତ କଂଗ୍ରେସ ଓ ଲିଗ୍ ନେତାମାନଙ୍କର ବୈଠକମାନ ବସିଲା।

**କ୍ୟାବିନେଟ୍ ମିଶନ ପ୍ରସ୍ତାବାବଳୀର ମର୍ମ**

(୧) ଭାରତରେ ସମ୍ଭାବିତ ସର୍ବାଧିକ ସ୍ୱାୟତ୍ତ ଶାସିତ ପ୍ରଦେଶ ଗଠିତ ହେବ।

(୨) ବ୍ରିଟିଶ ଶାସିତ ଭାରତରେ ପ୍ରଦେଶଗୁଡ଼ିକୁ ତିନୋଟି ଇଲାକା କରି ଗଠନ କରାଯିବ। ହିନ୍ଦୁ ପ୍ରଧାନ ଉତ୍ତର, ମଧ୍ୟ ଓ ଦକ୍ଷିଣ ଭାରତର ପ୍ରଦେଶ ସମୂହ ହେବ ପ୍ରଥମ ଇଲାକା। ଦ୍ୱିତୀୟ ହେଲା, ଉତ୍ତର ପଶ୍ଚିମ ସୀମାନ୍ତ ଇଲାକା ଏବଂ ତୃତୀୟ ଅଧିକ ସଂଖ୍ୟକ ମୁସଲମାନ ରହୁଥିବା ବଂଗଳା ଓ ଆସାମ।

(୩) ବ୍ରିଟିଶ୍ ଭାରତ ଏହିପରି ୩ଟି ଇଲାକାରେ ବିଭକ୍ତ ହେବେ ଓ ଦେଶୀୟ ରାଜ୍ୟଗୁଡ଼ିକ କୌଣସି ଇଲାକାରେ ଯୋଗ ନ ଦେଇ ସ୍ୱତନ୍ତ୍ର ସତ୍ତା ରୂପେ ରହିବେ। କେନ୍ଦ୍ରରେ ଯେଉଁ ସରକାର ହେବ, ତାହା ହାତରେ କେବଳ ପ୍ରତିରକ୍ଷା, ପରରାଷ୍ଟ୍ର ନୀତି ଓ ଯୋଗାଯୋଗ ବିଭାଗ ରହିବ।

(୪) ପ୍ରାଦେଶିକ ବିଧାନ ସଭାଗୁଡ଼ିକର ନିର୍ବାଚିତ ପ୍ରତିନିଧି ଏବଂ ଦେଶୀୟ ରାଜ୍ୟଗୁଡ଼ିକର ମନୋନୀତ ପ୍ରତିନିଧିମାନଙ୍କୁ ଘେନି ସଂବିଧାନ ପ୍ରଣୟନ ସଭା ଗଠିତ ହେବ।

(୫) ତିନୋଟି ଇଲାକାର ସଂବିଧାନ ସଦସ୍ୟଭୁକ୍ତ ପ୍ରତିନିଧିମାନେ ବସି ନିଜ ନିଜ ଇଲାକାର ସଂବିଧାନ ଗଢ଼ିବେ।

(୬) ହିନ୍ଦୁ, ମୁସଲମାନ ଓ ଶିଖ ଏହି ତିନୋଟି ଧର୍ମଭିତ୍ତିରେ ନିର୍ବାଚନୀ ଇଲାକାକୁ ଧରି ସଂବିଧାନ ସଭାର ନିର୍ବାଚନ ଅନୁଷ୍ଠିତ ହେବ। ପ୍ରତି ଦଶ ଲକ୍ଷ ଲୋକଙ୍କ ଭିତ୍ତିରେ ଜଣେ ପ୍ରତିନିଧି ଆସିବେ।

(୭) ସଂବିଧାନର ଖସଡ଼ା ପ୍ରସ୍ତୁତି କାଳରେ ପ୍ରତିଟି ଧାରା ପୂର୍ଣ୍ଣାଙ୍ଗ ଅଧିବେଶନରେ କେବଳ ନିରଙ୍କୁଶ ସଂଖ୍ୟାଗରିଷ୍ଠ ଭୋଟରେ ଗୃହୀତ ହୋଇପାରିବ ନାହିଁ। ଏଥିପାଇଁ ଅଧିକାଂଶ ହିନ୍ଦୁ ଓ ମୁସଲମାନ ପ୍ରତିନିଧିଙ୍କ ସମର୍ଥନ ଆବଶ୍ୟକ ହେବ।

ମୁସଲିମ୍ ଲିଗ୍ ଏହି ପ୍ରସ୍ତାବକୁ ସଂଗେ ସଂଗେ ଗ୍ରହଣ କରିନେଲା ଏବଂ କ୍ୟାବିନେଟ୍ ମିଶନ ପ୍ରସ୍ତାବ ଅନୁସାରେ ମଧ୍ୟବର୍ତ୍ତୀକାଳୀନ କେନ୍ଦ୍ର ସରକାରରେ ଭାଗ ନେବ ବୋଲି ସମ୍ମତ ହୋଇଗଲା।

କଂଗ୍ରେସ କାର୍ଯ୍ୟକାରୀ କମିଟି ୧୯୪୬ ମଇ ୨ ତାରିଖରେ ବସି "ଆମେ ଏଇ ମୁହୂର୍ତ୍ତରେ ଚୂଡ଼ାନ୍ତ ମତ ଦେବାକୁ ଅକ୍ଷମ" ବୋଲି କହିଥିଲେ ହେଁ ୨୦ଦିନ ପରେ ପ୍ରସ୍ତାବକୁ ଗ୍ରହଣ କରି ନେଲା।

ଏହି ପ୍ରସ୍ତାବ ସାମ୍ପ୍ରଦାୟିକ ଭିତ୍ତିରେ ରଚିତ ବୋଲି କହି କଂଗ୍ରେସ ପ୍ରସ୍ତାବକୁ ଗ୍ରହଣ ନ କରି ଏହାର ସଂଶୋଧନ ଚାହିଁଲା। କଂଗ୍ରେସର ପ୍ରତିନିଧି ଦଳ କ୍ୟାବିନେଟ୍ ମିଶନର ସଦସ୍ୟମାନଙ୍କୁ ଏବଂ ବଡ଼ଲାଟଙ୍କୁ ଭେଟିଲେ। ଆଲୋଚନାରୁ କୌଣସି ସୁଫଳ ମିଳିଲା ନାହିଁ। ବରଂ ଓଲଟା କୁହାଗଲା, କ୍ୟାବିନେଟ୍ ପ୍ରସ୍ତାବକୁ ଗ୍ରହଣ କରିନିଅ, ନଚେତ୍ ବର୍ଜନ କର। କଂଗ୍ରେସ କ୍ୟାବିନେଟ୍ ପ୍ରସ୍ତାବକୁ ଗ୍ରହଣ କରିନେଲେ ହେଁ ମଧ୍ୟବର୍ତ୍ତୀକାଳୀନ ସରକାରରେ ଭାଗ ନେବ ନାହିଁ, ଜଣାଇ ଦେଲା। କାରଣ ହେଲା, କ୍ୟାବିନେଟ୍ ମିଶନ ପ୍ରସ୍ତାବ ଅନୁସାରେ ବଡ଼ଲାଟଙ୍କ ନେତୃତ୍ୱରେ ହିଁ ମଧ୍ୟବର୍ତ୍ତୀ କାଳରେ କାର୍ଯ୍ୟକାରୀ ପରିଷଦ ଗଠିତ ହେବ। କଂଗ୍ରେସ ଏଥିରେ ସମ୍ମତ ନଥିଲା।

ବଡ଼ଲାଟଙ୍କ ନେତୃତ୍ୱରେ କାର୍ଯ୍ୟକାରୀ ପରିଷଦ (ଏକ୍ସିକ୍ୟୁଟିଭ୍ କାଉନ୍‌ସିଲ) ଗଠିତ ହେଲେ ବି ଲିଗ୍ ସେଥିରେ ରହିବ ବୋଲି ରାଜି ହେଲା। କଂଗ୍ରେସ ଗ୍ରହଣ କରୁନଥିବାରୁ ଲିଗ୍‌ର ସମ୍ମତିକୁ ବଡ଼ଲାଟ ଗ୍ରହଣ କଲେ ନାହିଁ। ଏପରି ପରିସ୍ଥିତିର ସୁଯୋଗ ନେଇ ବଡ଼ଲାଟ୍ କେବଳ ସରକାରୀ ଲୋକଙ୍କୁ ଘେନି ଏକ ଏକ୍ସିକ୍ୟୁଟିଭ କାଉନ୍‌ସିଲ ଗଠନ କରିଦେଲେ।

୧୯୪୬ ଜୁନ୍‌ରେ କ୍ୟାବିନେଟ୍ ମିଶନର ସୁପାରିଶ ଅନୁସାରେ ସଂବିଧାନ ପ୍ରଣୟନ ସଂସ୍ଥା ଲାଗି ନିର୍ବାଚନରେ ଲିଗ୍ ଭାଗ ନେବ ନାହିଁ ବୋଲି ଜଣାଇଲା। ତାହାର ବିଶେଷ କାରଣ ଥିଲା ସେତେବେଳେ ଧର୍ମୀୟ ଭିତ୍ତିରେ ପ୍ରଦେଶ ଗଠନ ପ୍ରସ୍ତାବର ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶ ଓ ଆସାମ ବିରୋଧୀ ଥିଲେ। ଲିଗ୍ ଦେଖିଲା, ଏତେବେଳେ ସଂବିଧାନ ସଭା ଲାଗି ନିର୍ବାଚନ ହେଲେ, ଲିଗ୍ ପକ୍ଷରେ ଏ ଦୁଇ ପ୍ରଦେଶରେ ଅଡୁଆ ଅବସ୍ଥା ସୃଷ୍ଟି ହେବ।

ପରେ କଂଗ୍ରେସ ମଧ୍ୟବର୍ତ୍ତୀକାଳୀନ କେନ୍ଦ୍ର ସରକାରରେ ଭାଗ ନେବାକୁ ସ୍ଥିର କଲା । ମୁସଲିମ୍ ଲିଗ୍ ପ୍ରଥମେ ଭାଗ ନେଲା ନାହିଁ ।

୧୯୪୬ ଜୁନ୍‌ରେ ମୌଲାନା ଆଜାଦଙ୍କ ସ୍ଥାନରେ ଜବାହରଲାଲ ନେହେରୁ କଂଗ୍ରେସର ସଭାପତି ହେଲେ ।

କେନ୍ଦ୍ରରେ ବଡ଼ଲାଟ୍ ପ୍ରଧାନମନ୍ତ୍ରୀ ରହିବେ ଓ ନେହେରୁ ଉପ-ପ୍ରଧାନମନ୍ତ୍ରୀ ହେବେ, ଏହି ପ୍ରସ୍ତାବକୁ କଂଗ୍ରେସ ଗ୍ରହଣ କରିନେଲା ।

ଏହି ମନ୍ତ୍ରୀମଣ୍ଡଳରେ କଂଗ୍ରେସ ପକ୍ଷରୁ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଓ ରାଜେନ୍ଦ୍ର ପ୍ରସାଦ ସଦସ୍ୟ ରହିଲେ । ଖ୍ରୀଷ୍ଟିଆନ ଓ ଶିଖ ସଂପ୍ରଦାୟର ପ୍ରତିନିଧି ମଧ୍ୟ ଏଥିରେ ମନ୍ତ୍ରୀ ରହିଲେ । କଂଗ୍ରେସ ମଧ୍ୟବର୍ତ୍ତୀକାଳୀନ ସରକାରରେ ରହିବା ଓ ଲିଗ୍ ଚାହିଁଥିବା ଓ କଂଗ୍ରେସ ନ ଚାହିଁଥିବାବେଳେ ତାକୁ ମଧ୍ୟବର୍ତ୍ତୀ ସରକାର ଗଠନରେ ଭାଗ ନେବାକୁ ନ ଦିଆଯାଇଥିବାରୁ ଲିଗ୍ ଡିରେକ୍ଟ ଆକ୍ସନ୍ (ପ୍ରତ୍ୟକ୍ଷ ଆନ୍ଦୋଳନ) ଚଳାଇବ ବୋଲି ନିଷ୍ପତ୍ତି ନେଲା ।

**ଲିଗ୍‌ର ପ୍ରତ୍ୟକ୍ଷ ଆନ୍ଦୋଳନ ଡାକରା ଭୟାବହ ଦଂଗା**

କ୍ୟାବିନେଟ୍ ମିଶନର ପ୍ରସ୍ତାବାବଳୀ ଓ ସେଥି ସଂକ୍ରାନ୍ତରେ କଂଗ୍ରେସର ଆଭିମୁଖ୍ୟ ଓ ଅନ୍ୟ ଦିଗରେ ଲିଗର ଆଭିମୁଖ୍ୟ ଘେନି ଜନସାଧାରଣଙ୍କ ମଧ୍ୟରେ ଆଲୋଚନା ଚାଲିଥାଏ ।

ଘଟଣାବଳୀ ଦୁଇ ସଂପ୍ରଦାୟର ଲୋକଙ୍କୁ ଭିନ୍ନ ଭିନ୍ନ ଭାବରେ ପ୍ରଭାବିତ କରିଥାଏ । ବ୍ରିଟିଶ୍ କୂଟନୀତିର ପ୍ରଭାବରେ ଦେଶରେ ଏକ ଅଭବନୀୟ ପରିସ୍ଥିତିର ଉଦ୍‌ଭବ ଘଟିଥାଏ । ୧୯୪୬ ଅଗଷ୍ଟ ୧୬ରେ ମୁସଲିମ୍ ଲିଗ୍‌ର ପ୍ରତ୍ୟକ୍ଷ କାର୍ଯ୍ୟସୂଚୀର ଡାକରା ସୃଷ୍ଟି କଲା ଭୟାବହ ଦଂଗା । ଲିଗ୍‌ର ପ୍ରତ୍ୟକ୍ଷ ଆନ୍ଦୋଳନର ଆହ୍ୱାନ ହିଂସାମୁଖୀ ହୋଇଗଲା । କଲିକତା ରାଜରାସ୍ତାରେ ଦଂଗାର ତାଣ୍ଡବ । ବିହାର, ଉତ୍ତର ପ୍ରଦେଶ, ଦିଲ୍ଲୀ, ପଞ୍ଜାବ, ସିନ୍ଧରେ ହିନ୍ଦୁ-ମୁସଲମାନ ଦଂଗାକାରୀମାନେ ସମସ୍ତ ମାନବିକତା, ହିତାହତ ଜ୍ଞାନ, ଦୟା, କରୁଣା, ବିବେକକୁ ଜଳାଞ୍ଜଳି ଦେଇଦେଲେ । କଲିକତା, ବିହାର ସରିଫ, ଦିଲ୍ଲୀ, ତେଣେ ଲାହୋର ଓ କରାଚୀରେ ଦଂଗାରେ ସହସ୍ର ସହସ୍ରଙ୍କ ପ୍ରାଣ ଗଲା । ଦରୋଟି ହସ ହସୁଥିବା ଶିଶୁ, ମା'ଝିଅ ଭଉଣୀ କେହି ଦଂଗାକାରୀମାନଙ୍କ ହାତରୁ ରକ୍ଷା ପାଇଲେ ନାହିଁ । ଆଲ୍ଲା ହୋ ଆକବର ହେଲା ମୁସଲମାନ ଦଂଗାକାରୀଙ୍କ ରଣଧ୍ୱନି । ଜୟ ଶିବଶଙ୍କର ହେଲା ହିନ୍ଦୁ ସାଂପ୍ରାଦୟିକତାବାଦୀମାନଙ୍କ କୁହାଟ ।

ମାତ୍ର ଏପରି ସବୁ ଦୃଷ୍ଟାନ୍ତ ମିଳିଲା ଯେ ହିନ୍ଦୁ ପୁରୁଷ, ମହିଳା ନିଜ ଧର୍ମର ଦଂଗାକାରୀଙ୍କ ହାତରୁ ମୁସଲମାନ ପରିବାରକୁ ରକ୍ଷା କଲେ ଏବଂ ସେମିତି ମୁସଲମାନ ମଧ୍ୟ ହିନ୍ଦୁ ପରିବାରକୁ ରକ୍ଷା କଲେ ।

ମାରମୁଖୀ ହିଂସ୍ର ଦଂଗାକାରୀମାନଙ୍କୁ ମଝିରେ ବାଟ ଓଗାଳି ଉଭୟ ସଂପ୍ରଦାୟର ବିବେକବାନ ଲୋକ, ଦେଶପ୍ରେମୀ, ଧର୍ମ ନିରପେକ୍ଷ ବ୍ୟକ୍ତି ସାହସିକତା ଦେଖାଇବାର ମଧ୍ୟ ଅସୁମାରୀ ଦୃଷ୍ଟାନ୍ତ ଦେଖାଗଲା ।

ମହାତ୍ମା ଗାନ୍ଧୀ ବ୍ୟଥିତ ପ୍ରାଣରେ ଜୀବନକୁ ବାଜି ରଖି ସଂଗରେ କେତେକ ହିନ୍ଦୁ ମୁସଲମାନ ସହକର୍ମୀଙ୍କୁ ଧରି ପୂର୍ବବଂଗର ନୋହାଖାଲିର ଗାଁ ଗାଁରେ ବୁଲିଲେ। ଉଭୟ ସଂପ୍ରଦାୟର ଲୋକ ବିପୁଳ ସଂଖ୍ୟାରେ ତାଙ୍କୁ ପାଛୋଟି ନେଲେ। କମ୍ୟୁନିଷ୍ଟମାନେ ଏହି ଦଂଗା ରୋଧ କରିବାକୁ ଗାଁ ଓ ସହରରେ ଯେଉଁ ଆତ୍ମରକ୍ଷା ବାହିନୀ ଗଢ଼ିଥିଲେ ସେମାନଙ୍କୁ ଅହିଂସ ମାର୍ଗରେ ଆଗେଇଯିବାକୁ ଗାନ୍ଧିଜୀ ଆଶୀର୍ବାଦ କଲେ। ବଂଗଳାରେ ସେତେବେଳେ ବିଭିନ୍ନ ସ୍ଥାନରେ ହିନ୍ଦୁ-ମୁସଲମାନ ଯୁବକଯୁବତୀଙ୍କୁ ଧରି ଦଂଗା ନିରୋଧ କରିବାକୁ ଆତ୍ମରକ୍ଷା ସମିତିମାନ ଗଢ଼ା ହେଲା। ମହାତ୍ମା ଗାନ୍ଧୀଙ୍କ ଦଂଗା ବିଧ୍ୱସ୍ତ ପୂର୍ବ ବଂଗ ଗସ୍ତ କାଳରେ ଓଡ଼ିଶାରୁ ତାଙ୍କ ସଂଗେ ମାଳତୀ ଚୌଧୁରୀ ଯୋଗ ଦେଇଥିଲେ।

ସେ ମୁସଲମାନ ହୁଅନ୍ତୁ ବା ହିନ୍ଦୁ ବା ଶିଖ ହୁଅନ୍ତୁ, ଦଂଗାରୁ ମୁଖିଆମାନେ ବା ଚାଳକମାନେ ନିରାପଦରେ ରହିଲେ। ନିହତ ହେଲେ ତିନି ସଂପ୍ରଦାୟର ଅଗଣିତ ନିରୀହ, ନିଷ୍ପାପ ଜନତା।

**ମାଉଣ୍ଟବାଂଟେନ୍ ଆୱାର୍ଡ୍, ଭାରତ ବିଭାଜନ**

ମୁସଲିମ୍ ଲିଗର ପ୍ରତ୍ୟକ୍ଷ ସଂଗ୍ରାମର ଡାକରା, ଦେଶରେ ଅଶ୍ରୁତପୂର୍ବ ସାଂପ୍ରଦାୟିକ ଦଂଗା ପରେ ମୁସଲିମ୍ ଲିଗ୍ ତାହାର କର୍ମ କୌଶଳ ବଦଳାଇଲା। ଆଗରୁ ମଧ୍ୟବର୍ତ୍ତୀକାଳୀନ ସରକାରରେ ଯୋଗ ନ ଦେବାର କର୍ମକୌଶଳକୁ ପରିତ୍ୟାଗ କରି ଏହି ସରକାରରେ ୧୯୪୬ ସେପ୍ଟେମ୍ବର ମାସରେ ଯୋଗ ଦେଲା। କେନ୍ଦ୍ରୀୟ ମନ୍ତ୍ରୀମଣ୍ଡଳରେ କଂଗ୍ରେସ ଓ ଲିଗ୍ ମଧ୍ୟରେ ତୀବ୍ର ଛକାପଂଝା ଚାଲିଲା। ଲିଗ୍ ମନ୍ତ୍ରୀମାନଙ୍କ ଆଚରଣରେ କଂଗ୍ରେସ ଅତିଷ୍ଠ ହୋଇଗଲା।

୧୯୪୭ ଫେବୃଆରୀ ୨୦ ତାରିଖରେ ବିଲାତର ପ୍ରଧାନମନ୍ତ୍ରୀ ଅଟଲି ଘୋଷଣା କଲେ କି "୧୯୪୮ ଜୁଲାଇ ପୂର୍ବରୁ ବ୍ରିଟେନ୍ ଭାରତ ଛାଡ଼ିବ। ଇତିମଧ୍ୟରେ କେନ୍ଦ୍ରୀୟ ସରକାର ଗଠିତ ନ ହେଲେ ବିଭିନ୍ନ ପ୍ରାଦେଶିକ ସରକାରକୁ କ୍ଷମତା ଅର୍ପଣ କରାଯିବ।" ଏହା ଆଉ ଏକ ବ୍ରିଟିଶ୍ ଧମକ ଓ ଖଳ ଚାଲ।

୧୯୪୭ ଜାନୁଆରୀରେ ବଡ଼ଲାଟଙ୍କୁ ଦେଶୀୟ ରାଜ୍ୟରୁ ସଂବିଧାନ ସଭାକୁ ପ୍ରତିନିଧି ପ୍ରେରଣ ସଂକ୍ରାନ୍ତରେ କଂଗ୍ରେସ ଜଣେଇଲା ଯେ, ଦେଶୀୟ ରାଜ୍ୟଗୁଡ଼ିକରୁ ସମସ୍ତ ସଦସ୍ୟ ମନୋନୀତ ନ ହୋଇ ଅଧେ ସେଥିରୁ ନିର୍ବାଚିତ ସଦସ୍ୟ ଆସନ୍ତୁ। ମାତ୍ର ତାହା ଗୃହୀତ ହେଲା ନାହିଁ।

ବିଲାତରେ ବ୍ରିଟିଶ୍ ମନ୍ତ୍ରୀମଣ୍ଡଳ ସହିତ ପରାମର୍ଶ କରି ଓ୍ୟାଭେଲଙ୍କ ସ୍ଥାନରେ ଅବସ୍ଥାପିତ ବଡ଼ଲାଟ୍ ଲର୍ଡ୍ ମାଉଣ୍ଟବେଟନ୍ ୧୯୪୭ ଏପ୍ରିଲ୍‌ରେ ଭାରତରେ ପହଂଚିଲେ ଏବଂ ତାଙ୍କର ଯୋଜନା ବାଢ଼ିଲେ। ଭାରତକୁ ଦୁଇ ଭାଗରେ ବିଭକ୍ତ କରାଯିବାର ଯୋଜନାରେ ଥିଲା -

(୧) ଦୁଇଟି ଡୋମିନିୟନ ଗଢ଼ାଯିବ । ଗୋଟିଏ ହିନ୍ଦୁସ୍ଥାନ ପ୍ରଜାତନ୍ତ୍ର ଓ ଅନ୍ୟଟି ପାକିସ୍ତାନ ପ୍ରଜାତନ୍ତ୍ର ।

(୨) ପଂଜାବ ଓ ବଂଗଳାକୁ ଧର୍ମୀୟ ଭିତ୍ତିରେ ଭାଗଭାଗ କରିବା ପ୍ରଶ୍ନଟି ବ୍ୟାପକ ସଂଖ୍ୟକ ହିନ୍ଦୁ ଓ ମୁସଲମାନ ବାସିନ୍ଦାଙ୍କ ଦୃଷ୍ଟିରୁ ସଂପୃକ୍ତ ପ୍ରଦେଶ ଦୁଇଟିର ବିଧାନସଭା ସଦସ୍ୟମାନେ ହିନ୍ଦୁ-ମୁସଲମାନ ଭାବରେ ଅଲଗା ଅଲଗା ଭୋଟ୍ ଜରିଆରେ ସ୍ଥିର କରିବେ ।

(୩) ମୁସଲମାନ ପ୍ରଧାନ ଉତ୍ତର ସୀମାନ୍ତ ପ୍ରଦେଶରେ ଏବଂ ଆସାମ ପ୍ରଦେଶର ଶୀହଟ (ସିଲହଟ) ଜିଲ୍ଲାରେ ଗଣ ଭୋଟ୍ ହେବ ।

(୪) ପ୍ରାଦେଶିକ ବିଧାନସଭାରେ ଭୋଟ ମାଧମରେ ସିନ୍ଧୁ ପ୍ରଦେଶର ଭବିଷ୍ୟତ ସ୍ଥିର କରାଯିବ ।

(୫) ସଂବିଧାନ ସଭା ଦୁଇଟି ଡୋମିନିୟନର ଗୋଟିଏ ଗୋଟିଏ ସଂସଦକୁ ଘେନି ଗଠିତ ହେବ । ଏମାନେ ଦୁଇ ଦେଶର ମର୍ଯ୍ୟାଦା କ'ଣ ହେବ ତାହା ସ୍ଥିର କରିବେ ।

(୬) ଭାରତରେ ଥିବା ଦେଶୀୟ ରାଜ୍ୟମାନଙ୍କର ଶାସକମାନେ ଗଠିତ ହେବାକୁ ଥିବା କେଉଁ ଡୋମିନିୟନ, ଅର୍ଥାତ୍ ଭାରତ ବା ପାକିସ୍ତାନରେ ରହିବେ, ଅବା ଆଦୌ ନ ରହିବେ, ତାହା ସେମାନେ ସ୍ଥିର କରିବେ । କାରଣ ସେମାନଙ୍କ ଉପରୁ ବ୍ରିଟିଶ ପାରାମାଉଣ୍ଟସି (ଅଧିକାର) ତୁଟିଗଲା । ସେମାନେ ଏବେ ସ୍ୱାଧୀନ ନିଷ୍ପତ୍ତି ନେବେ ।

ମାଉଣ୍ଟବେଟନ ଆୱାର୍ଡ଼କୁ ବିଚାର କରିବା ଲାଗି ୧୯୪୭ ଜୁନ୍‌ରେ କଂଗ୍ରେସ ଏ.ଆଇ.ସି.ସି.ର ଅଧିବେଶନ ବସିଲା । ଏହକୁ ଗ୍ରହଣ କରିବା ଓ ନ କରିବା ସଂପର୍କରେ ତୁମୂଳ ବିତର୍କ ହେଲା । ଏଥିପାଇଁ ଭୋଟ୍ ହେଲା । ଗ୍ରହଣ କରି ନେବା ସପକ୍ଷରେ ୧୫୭ଟି ଏବଂ ବିପକ୍ଷରେ ୬୧ ଟି ଭୋଟ୍‌ରେ ପ୍ରସ୍ତାବ ଗୃହୀତ ହୋଇଗଲା ।

ମୁସଲିମ୍ ଲିଗ୍ ପକ୍ଷରୁ ପଂଜାବ ଓ ବଂଗଳା ସଂପୂର୍ଣ୍ଣ ରୂପେ ପାକିସ୍ତାନରେ ରହୁ ବୋଲି ଦାବୀ କରାଯାଇଥିଲା ।

ପଂଜାବ ଓ ବଙ୍ଗଳା ପ୍ରଦେଶର ବିଧାନ ସଭାରେ ଭୋଟ୍ ନିଆଗଲା । ହିନ୍ଦୁ, ଶିଖ ସଂଖ୍ୟାଧିକ ଅଞ୍ଚଳର ସଦସ୍ୟମାନେ ଓ ମୁସଲିମ୍ ଅଞ୍ଚଳର ସଦସ୍ୟମାନେ ପଞ୍ଜାବରେ ଯଥାକ୍ରମେ କଂଗ୍ରେସ ଓ ମୁସଲିମ୍ ଲିଗ୍ ସପକ୍ଷରେ ଭୋଟ୍ ଦେଲେ । ବଙ୍ଗଳାରେ ମଧ ଅନୁରୂପ ଭାବରେ ଭୋଟ ହେଲା । ବଂଗଳା, ପଂଜାବ ଭାଗଭାଗ ହେଲା ।

ସିନ୍ଧୁ ପ୍ରଦେଶ, ସୀମାନ୍ତ ପ୍ରଦେଶ ଏବଂ ଶ୍ରୀହଟ୍ଟ ଜିଲ୍ଲାରେ ଗଣଭୋଟ୍ ପାକିସ୍ତାନ ସପକ୍ଷରେ ଗଲା । ଭାରତ ଦୁଇ ଭାଗରେ ବିଭକ୍ତ ହେବାର ବ୍ରିଟିଶ୍ କୂଟନୀତି ସଫଳ ହେଲା । ସୀମାନ୍ତ ଗାନ୍ଧୀ ଖାଁ ଅବ୍‌ଦୁଲ ଗଫୁରଖାଁ ସୀମାନ୍ତ ପ୍ରଦେଶରେ ଅଧିକ ସଂଖ୍ୟାରେ ବାସ କରୁଥିବା

ପୁସ୍ତୁମାନଙ୍କ ପାଇଁ ପୁସ୍ତନିସ୍ଥାନ ଦାବୀ ବାଢ଼ିଲେ। ଭାରତୀ ଧର୍ମୀୟ ଭିତ୍ତିରେ ବିଭାଜନ ଓ ସୀମାନ୍ତ ପ୍ରଦେଶ ଧର୍ମୀୟ ଭିତ୍ତିରେ ଗଠିତ ପାକିସ୍ତାନକୁ ପୁସ୍ତୁ ଉପଜାତିର ମୁସଲମାନେ ଚାହୁଁ ନ ଥିଲେ। ଗଫୁର ଖାଁ ଥିଲେ କଂଗ୍ରେସର ତୁଙ୍ଗ ନେତା। ମାତ୍ର ମାଉଣ୍ଟବେଟେନ ତାଙ୍କର ଏ ପ୍ରସ୍ତାବକୁ ନାକଚ କରିଦେଲେ। ଜିନ୍ନା ଏହାର ବିରୋଧ କଲେ। ଶ୍ରୀହଟ ପରି ଗଣଭୋଟ ହୋଇଥିଲେ ଏହି ଅଂଚଳ ଭାରତରେ ହିଁ ରହିଥାନ୍ତା, ପାକିସ୍ତାନକୁ ଯାଇ ନଥାନ୍ତା। ତେଣୁ ବ୍ରିଟିଶ୍ ଚାଲ ଜିତିଲା।

ମୌଲାନା ଆବୁଲ୍ କାଲାମ ଆଜାଦ ଏପରି ବିଭାଜନର ଘୋର ବିରୋଧୀ ଥିଲେ। ଗାନ୍ଧିଜୀ କହିଥିଲେ, "କଂଗ୍ରେସ ଯଦି ଦେଶ ବିଭାଜନକୁ ଗ୍ରହଣ କରେ ତେବେ ମୋର ଶବ ଉପରେ ଗ୍ରହଣ କରିବ।" କିନ୍ତୁ କଂଗ୍ରେସ ଗ୍ରହଣ କରିନେଲା।

ଭାରତ ବିଭାଜନ ଓ ସେଥିଘେନି କଂଗ୍ରେସର ମନୋଭାବ ଓ ନିର୍ଦ୍ଧାରଣ ସଂପର୍କରେ ତାଙ୍କ ବିରୋଧକୁ ମୌଲାନା ଆଜାଦ ଲେଖି ସେଥିରେ ଜଉମୁଦ ଦେଇଥିଲେ। ତାଙ୍କ ମୃତ୍ୟୁ ପରେ ତାହା ପ୍ରକାଶ କରାଯିବ ବୋଲି ତାଙ୍କର ମତ ଥିଲା।

ସେଥିରୁ ଜଣାଯାଏ ଯେ ମଧ୍ୟବର୍ତ୍ତୀକାଳୀ ନ ସରକାରରେ ଲିଗ୍ ଯୋଗ ଦେଇ ଯେପରି ଆଚରଣ କଲା, ସେଥିରେ ସର୍ଦ୍ଦାର ପଟେଲ୍ ଅତିଷ୍ଠ ହୋଇ ନେହେରୁଙ୍କୁ ମାଉଣ୍ଟବେଟନ୍ ପ୍ରସ୍ତାବକୁ ଗ୍ରହଣ କରି ନେବାକୁ ଚାପ ପ୍ରୟୋଗ କରିଥିଲେ।

କଂଗ୍ରେସର ଉପର ମହଲର ନେତାମାନେ ଭାରତ ଖଣ୍ଡିତ ହେଉ ପଛେ କ୍ଷମତାକୁ ହାତଛଡ଼ା କରି ଦେବାକୁ ଚାହୁଁ ନଥିଲେ। କ୍ଷମତା ହସ୍ତାନ୍ତର ନ ହୋଇଥିଲେ ଭାରତରେ କ'ଣ ପରିସ୍ଥିତି ହୋଇଥାନ୍ତା ଏବଂ ବ୍ରିଟିଶ୍ ସରକାର କିପରି ହଟିବାକୁ ପଡ଼ିଥାନ୍ତା, ତାହାକୁ କ୍ୟାବିନେଟ୍ ମିଶନ ସଦସ୍ୟ ଭି.ଏନ୍. ଆଲେକ୍‌ଜାଣ୍ଡାର ବର୍ଣ୍ଣନା କରିଛନ୍ତି - ତାଙ୍କର ବକ୍ତବ୍ୟ ହେଲା -

"ସାରା ପୃଥିବୀରେ ବିଶେଷତଃ ପ୍ରାଚ୍ୟ-ଭୂଖଣ୍ଡରେ ରାଜନୈତିକ ଜାଗରଣର ପରିସ୍ଥିତିକୁ ଚାହିଁ ଆମକୁ ବିଚାର କରିବାକୁ ହେବ। ଆମେ ଏ ଯାଏ ଉଦ୍ୟମ କରି ଭାରତ ସହିତ ଯଦି ରାଜିନାମାରେ ନ ପହଂଚିଥାନ୍ତୁ, ମୁଁ ନିଶ୍ଚିତ ଯେ ବର୍ତ୍ତମାନ ଭାରତରେ ଯେପରି ଅଭ୍ୟୁତ୍ଥାନ, ରକ୍ତପାତ ଓ ଗଣ୍ଡଗୋଳ ଚାଲିଛି ଏବଂ ଭବିଷ୍ୟତରେ କି ପ୍ରକାର ସାମରିକ କାର୍ଯ୍ୟ କରିବାକୁ ପଡ଼ିଥାନ୍ତା, ତାକୁ ଏଇ ମୁହୂର୍ତ୍ତରେ କେହି ଆଗତୁରା କହିପାରିବ ନାହିଁ।" ଏହାର ଅର୍ଥ ଭାରତବାସୀ ଜବରଦସ୍ତ ଭାରତକୁ ବ୍ରିଟିଶ୍ କବଳରୁ ମୁକ୍ତ କରି ଦେଇଥାନ୍ତେ।

ଭାରତକୁ ଦୁଇ ନୁହେଁ, ବସ୍ତୁତଃ ୩ ଭାଗରେ ବିଭକ୍ତ କରିଦିଆଗଲା। ଅଗଷ୍ଟ ୧୪ରେ ପାକିସ୍ତାନ ଓ ଅଗଷ୍ଟ ୧୫ରେ ଭାରତ ଆନୁଷ୍ଠାନିକ ଭାବରେ ଦୁଇ ଭାଗରେ ବିଭକ୍ତ ହୋଇଗଲା।

**ଲାଲ କିଲ୍ଲା ଉପରେ ରାଷ୍ଟ୍ରୀୟ ଧ୍ୱଜ ଗାନ୍ଧିଜୀ ଭଗ୍ନ କୋଠରୀରେ:**

୧୯୪୭ ଅଗଷ୍ଟ ୧୫ ତାରିଖ। ଭାରତବାସୀ ଆହ୍ଲାଦ ସତ, ମାତ୍ର ଭାରତ ଭୂଖଣ୍ଡରେ,

ସହର, ଶିଳ୍ପାଞ୍ଚଳ, ପଲ୍ଲୀ ପ୍ରାନ୍ତରରେ ମହୋତ୍ସବ । ଏଇ କେତେ ମାସ ପୂର୍ବେ ଭୟାବହ ଦଂଗାବିଧ୍ୱସ୍ତ କଲିକତାର ରାଜରାସ୍ତାରେ ହିନ୍ଦୁ-ମୁସଲମାନ ଜନତାର ଭିଡ଼ । ପରସ୍ପରକୁ କୋଳାକୋଳି । ସର୍ବତ୍ର ଏପରି ମହାଦୃଶ୍ୟ । ରାଜଧାନୀ ଦିଲ୍ଲୀ ଉତ୍ସବ ମୁଖରିତ । କେବଳ ପଞ୍ଜାବରେ ନୀରବତା ।

ଠିକ୍ ମଧ୍ୟରାତ୍ର । ଭାରତର ଭାବୀ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ ବିପୁଳ ଜୟଧ୍ୱନି ଭିତରେ ବ୍ରିଟିଶ ଗୋଲାମିର ଘୃଣ୍ୟ ସଂକେତ ୟୁନିୟନ ଜ୍ୟାକକୁ ଓହ୍ଲାଇ ଦେଲେ । ଗଗନରେ ଉତ୍ତୋଳିତ ହେଲା ରାଷ୍ଟ୍ରୀୟ ଧ୍ୱଜ । ଗୁରୁଗମ୍ଭୀର କଣ୍ଠରେ ଦେଶବାସୀ ଓ ପୃଥିବୀବାସୀଙ୍କୁ ଉଦ୍‌ବୋଧନ ଦେଲେ ନେହେରୁ -

ଠିକ୍ ମଧ୍ୟରାତ୍ର । ଭାରତର ଭାବୀ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ବିପୁଳ ଜୟଧ୍ୱନି ଭିତରେ ବ୍ରିଟିଶ୍ ଗୋଲାମିର ଘୃଣ୍ୟ ସଂକେତ ୟୁନିଅନ ଜ୍ୟାକକୁ ଓହ୍ଲାଇ ଦେଲେ । ଗଗନରେ ଉତ୍ତୋଳିତ ହେଲା ରାଷ୍ଟ୍ରୀୟ ଧ୍ୱଜ । ଗୁରୁଗମ୍ଭୀର କଣ୍ଠରେ ଦେଶବାସୀ ଓ ପୃଥିବୀବାସୀଙ୍କୁ ଉଦ୍‌ବୋଧନ ଦେଲେ ନେହେରୁ -

"ବହୁକାଳ ହେଲା ଆମେ ଭାଗ୍ୟ ସହିତ ଏକ ଗୋପନ ମିଳନର ମୁହୂର୍ତ୍ତ ନିର୍ଣ୍ଣୟ କରିଥିଲୁ । ବର୍ତ୍ତମାନ ସମୟ ଆସିଛି, ଆମେ ଆମ ଶପଥକୁ ସାମଗ୍ରିକ ଭାବରେ ଅବା ପୂର୍ଣ୍ଣମାତ୍ରାରେ ନୁହେଁ, ମାତ୍ର ବହୁ ମାତ୍ରାରେ ପାଳନ କରିଛୁ । ମଧ୍ୟରାତ୍ର ହୋଇଯିବାବେଳେ, ଯେତେବେଳେ ପୃଥିବୀ ନିଦ୍ରାରତ ଥିବ, ଭାରତ ଜୀବନ୍ୟାସ ପାଇବ, ମୁକ୍ତି ଲାଭ କରିବ ।"

ଜୀବନବ୍ୟାପୀ ହିନ୍ଦୁ-ମୁସଲିମ ଐକ୍ୟ ଲାଗି ସଂଗ୍ରାମ କରିଥିବା ଜାତିର ପିତା ମହାତ୍ମାଗାନ୍ଧୀ ସେହି ରାତ୍ରିରେ କଲିକତାରେ ଜଣେ ମୁସଲମାନ ବନ୍ଧୁଙ୍କର ପୁରୁଣା କୋଠରୀରେ ଉଜାଗର ରହି ଅଶ୍ରୁ ବିସର୍ଜନ କରୁଥିଲେ ।

ଭାରତ ସ୍ୱାଧୀନ ହେଲା । ନେହେରୁଙ୍କ ନିଜ ଭାଷାରେ ସାମଗ୍ରିକ ନୁହଁ କି ପୂର୍ଣ୍ଣ ମାତ୍ରାରେ ନୁହଁ, ବହୁ ମାତ୍ରାରେ ।

ଭାରତର କୋଣେ ଅନୁକୋଣେ ରାଷ୍ଟ୍ରୀୟ ଧ୍ୱଜର ବନ୍ଦନା କରାଯାଉଥିବାବେଳେ ସେହି ଭୂଖଣ୍ଡର ଯେଉଁଠି ଶତକଡ଼ା ୨୫ ଭାଗ ଲୋକ ବାସ କରନ୍ତି, ସେଠାରେ ଏହାର ବନ୍ଦନା ହୋଇପାରିନଥିଲା । ଏହି ଭୂଭାଗ ହେଲା ଭାରତବର୍ଷର ଗଡଜାତ ରାଜ୍ୟ ସମୂହ ।

ମାଉଣ୍ଟବେଟନ ଆୱାର୍ଡ ୫୬୨ଟି ରାଜ୍ୟ, ମହାରାଜା ନବାବ, ନିଜାମଙ୍କୁ ସ୍ୱାଧୀନ କରି ଦେଇଥିଲା ।

ବ୍ରିଟିଶ ସେନାନୀ, ବ୍ରିଟିଶ ସେନାପତି ରହିଲେ । କେନ୍ଦ୍ର ଆସେମ୍ବ୍ଲିରେ ପ୍ରଧାନ ସେନାପତି ଅର୍ଚିନଲେକ କହିଥିଲେ ଯେ "ସୈନ୍ୟବାହିନୀକୁ ଭାରତୀୟକରଣ କରିବା ଲାଗି ଦଶ, କୋଡିଏ ଅବା ତା'ଠାରୁ ଅଧିକ କାଳ ଲାଗିଯାଇପାରେ ।"

ଭାରତର ପ୍ରଚୁର ସଂପଦ ଷ୍ଟାରଲିଙ୍ଗ ବାଲାନ୍ସ ଆହୁରି କେତେ ବର୍ଷଯାଏ ବିଲାତରେ ଟ୍ରେଜେରୀରେ ରହିଲା । ବ୍ରିଟିଶ ସେନାପତି ଓ ବ୍ରିଟିଶ ସେନା ଭାରତରେ ଆଉ କିଛିକାଳ ରହିଲେ ।

ଏହିସବୁ କାରଣରୁ ବହୁ ସ୍ୱାଧୀନତା ସଂଗ୍ରାମୀ ଓ ଦେଶପ୍ରେମୀ ସ୍ୱାଧୀନତାକୁ ଖଣ୍ଡିତ ବୋଲି ବିଚାର କଲେ। କମ୍ୟୁନିଷ୍ଟମାନେ "ଏ ଆଜାଦୀ ଝୁଟା ହେି" ବା ସ୍ୱାଧୀନତା ଅଳୀକ ବୋଲି ଅଭିହିତ କରିଥିଲେ।

ସ୍ୱାଧୀନତା ଅବ୍ୟବହିତ ପରେ ଛ'ମାସ ନ ପୁରୁଣୁ ଗାନ୍ଧିଜୀଙ୍କ ମୁସଲମାନ ବେଶଧାରୀ ହିନ୍ଦୁ ଯୁବକ, ରାଷ୍ଟ୍ରୀୟ ସ୍ୱଂୟଂ ସେବକ ସଂଘର ନାଥୁରାମ ଗଡସେ ହତ୍ୟା କରିଦେଲେ।

କାଶ୍ମୀରର ମହାରାଜା ଭାରତ ସହିତ ମିଶ୍ରଣର ବିରୋଧ କରିବା ଫଳରେ ପାକିସ୍ତାନ ତାର ସୁଯୋଗ ନେଲା। ବାଧ ହୋଇ ଅକ୍ଟୋବର ୨୭ରେ ମହାରାଜା ମିଶ୍ରଣ ପାଇଁ ସମ୍ମତ ହେଲା। ମାତ୍ର ବିଳମ୍ବ ମିଶ୍ରଣର ହିଁ କାଶ୍ମୀରକୁ ଏକ ଗୁରୁତର ବିବାଦୀୟ ସମସ୍ୟାରେ ପରିଣତ କଲା। ଭୋପାଳର ନବାବ ଓ ହାଇଦ୍ରାବାଦର ନିଜାମ ସ୍ୱାଧୀନ ରହିବେ ବୋଲି ଘୋଷଣା କଲେ।

ଦେଶୀୟ ରାଜ୍ୟ ମିଶ୍ରଣ କ୍ଷେତ୍ରରେ ସର୍ଦ୍ଦାର ପଟେଲଙ୍କ ଦୃଢତା ଓ ଗଡଜାତ ପ୍ରଜାମାନଙ୍କର ଅହିଂସ ତଥା ସଶସ୍ତ୍ର ସଂଗ୍ରାମ ଫଳରେ ଅନେକ ଦେଶୀୟ ରାଜ୍ୟ ଭାରତରେ ମିଶିଲେ। ମାତ୍ର ୧୯୪୯ରେ ସର୍ଦ୍ଦାର ପଟେଲଙ୍କ ମୃତ୍ୟୁପରେ ମଧ ଆହୁରି ୪୪୯ଟି ଦେଶୀୟ ରାଜ୍ୟ ଭାରତରେ ଅଂଗୀଭୂତ ହୋଇନଥିଲେ। ସେଥିରେ ଥିଲେ ପାତିଆଲା ଓ ପୂର୍ବ ପଂଜାବ ଦେଶୀୟ ରାଜ୍ୟ, ତ୍ରିବାଙ୍କୁଡ କୋଚିନ, ରାଜସ୍ଥାନରେ ୧୪ଟି, ମତ୍ସ୍ୟଦେଶର ୪ଟି, ମଧ ପ୍ରଦେଶରେ ୨୨ଟି, ବିନ୍ଧ୍ୟରେ ୩୩ଟି, ହିମାଚଳ ପ୍ରଦେଶରେ ୨୪ଟି ଏବଂ ସୌରାଷ୍ଟ୍ରରେ ଥିବା ଦେଶୀୟ ରାଜ୍ୟ। ୧୯୫୭ରେ ରାଜ୍ୟ ପୁନର୍ଗଠନ କମିଟିର ସୁପାରିଶ କାର୍ଯ୍ୟକାରୀ ହେବାଯାଏ ଏହି ଦେଶୀୟ ରାଜ୍ୟଗୁଡିକ ଭାରତୀୟ ପ୍ରଜତନ୍ତ୍ରର ଅଂଗ ହୋଇ ନଥିଲେ।

ଓଡିଶାର ଗର୍ବ ଓ ଗୌରବ ଯେ ଭାରତରେ ଗଡଜାତ ମିଶ୍ରଣର ପର୍ବ ଓଡିଶାରୁ ହିଁ ଆରମ୍ଭ ହୋଇଥିଲା। ନୀଳଗିରି ଆନ୍ଦୋଳନର ପରିଣତି ସ୍ୱରୂପ ୧୯୪୭ ସେପ୍ଟେମ୍ବର ୧୪ ତାରିଖରେ ଓଡିଶାର କଂଗ୍ରେସ ସରକାର ନୀଳଗିରି ଶାସନକୁ ହାତକୁ ନେଲେ ଏବଂ ଢେଙ୍କାନାଳ ବିଦ୍ରୋହବେଳେ ସ୍ୱାଧୀନ ଭାରତରେ ସ୍ୱରାଷ୍ଟ୍ର ମନ୍ତ୍ରୀ ପଟେଲ ଓଡ଼ିଶାରେ ପହଂଚିଲେ। ୧୯୪୭ ନଭେମ୍ବର ୧୪ରୁ ଓଡିଶା ଗଡଜାତଗୁଡିକର ଭାରତରେ ମିଶ୍ରଣ ଆରଂଭ ହୋଇଗଲା।

ପାକିସ୍ତାନରେ ଯୋଗଦେଇଥିବା ଏକମାତ୍ର ଜୁନାଗଡ ବ୍ୟତୀତ ସବୁ ଦେଶୀୟ ରାଜ୍ୟ ଭାରତ ପ୍ରଜାତନ୍ତ୍ରର ଅଭିନ୍ନ ଅଂଗ ହୋଇଗଲେ।

୧୯୪୭ ଅଗଷ୍ଟ ୧୫ତାରିଖ ସ୍ୱାଧୀନତା ପରେ ଭାରତକୁ ୩ଖଣ୍ଡରେ ବିଭକ୍ତ କରି ଦେଶୀୟ ରାଜ୍ୟମାନଙ୍କୁ ସ୍ୱତନ୍ତ୍ର ସ୍ଥିତି ଦେବାର ଚକ୍ରାନ୍ତ ପରାଭୂତ ହେଲା।

ଏହାହିଁ ଆଜିର ରାଜନୈତିକ, ଭୌଗୋଳିକ, ସାଂବିଧାନିକ ଓ ପ୍ରଶାସନିକ ଭାରତବର୍ଷ।

□□□

# କୃତଜ୍ଞ ରହିଲି

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ ୧୯୯୭ରେ ଭଗବତୀ ଚରଣ ପାଣିଗ୍ରାହୀ ସ୍ମୃତିନ୍ୟାସ ଦ୍ୱାରା ପ୍ରକାଶିତ ମୋର "ଢେଙ୍କାନାଳର ଗଣ ବିଦ୍ରୋହ" ପୁସ୍ତକଟିର ପ୍ରାକ୍‌କଥନରେ, ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସ ରଚନା କରିବାର ସ୍ୱପ୍ନ ଦେଖୁଛି ବୋଲି ଲେଖିଥିଲି। ସୁବର୍ଣ୍ଣ ଜୟନ୍ତୀ ସମ୍ବତ୍ସର ସମାପ୍ତି ପୂର୍ବରୁ ସେପରି ପୁସ୍ତକଟି ପ୍ରକାଶ ନ ହେବାରୁ ବନ୍ଧୁ ଶୁଭେଚ୍ଛୁଙ୍କ ଚାପ ପଡ଼ିଲା, କେତେକ ସମବୟସୀ ବନ୍ଧୁ ଅନୁରୋଧ କଲେ। ଆଉ କେତେକ ନିର୍ଦ୍ଦେଶ ଆଦେଶ ଦେଲେ। ସେପରି ଚାପ, ଅନୁରୋଧ ଓ ନିର୍ଦ୍ଦେଶ ନ ହୋଇଥିଲେ ପରିଣତ ୮୨ ବର୍ଷରେ ମୋର ସ୍ୱପ୍ନ ସଫଳ ହୋଇ ନଥାନ୍ତା। ସାମଗ୍ରିକ ଭାବେ ସେମାନଙ୍କ ନିକଟରେ ଗଭୀର କୃତଜ୍ଞତା ପ୍ରକାଶ କରୁଛି।

ସେପରି ଏକ ନିୟାମକ ପ୍ରେରଣାମୂଳକ ନିର୍ଦ୍ଦେଶ ଦେଲେ ଓଡ଼ିଶାର ବିଶିଷ୍ଟ ମାର୍କ୍ସବାଦୀ ଦାର୍ଶନିକ, ସାହିତ୍ୟ ସମାଲୋଚକ, ସ୍ୱାଧୀନତା ସଂଗ୍ରାମର ବରିଷ୍ଠ ନେତା, ଗୁରୁଚରଣ ପଟ୍ଟନାୟକ। ତାଙ୍କର ଆଦେଶ ଥିଲା, "ମରିବା ପୂର୍ବରୁ ବହିଟି ଲେଖି ଦେଉ"। ଶିରୋଧାର୍ଯ୍ୟ ହେଲା ତାଙ୍କର ନିର୍ଦ୍ଦେଶ।

ବହୁ ବର୍ଷରୁ ଏପରି ସ୍ୱପ୍ନ ଦେଖୁଥିଲି। ପ୍ରସଙ୍ଗକ୍ରମେ କହିବାକୁ ପଡୁଛି, ଓଡିଶାର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ରାଜନୈତିକ ଶିକ୍ଷା ଶିବିରମାନଙ୍କରେ ଆୟୋଜକମାନେ ଆମ ସ୍ୱାଧୀନତା ସଂଗ୍ରାମର ଇତିହାସ ସଂପର୍କରେ କହିବାକୁ ଡାକିଥାନ୍ତି।

କୌଣସି କୌଣସି ଶିକ୍ଷା ଶିବିର ଛାତ୍ର, ଯୁବକ, ରାଜନୈତିକ କର୍ମୀ, ଅଧ୍ୟାପକ, ବୁଦ୍ଧିଜୀବୀଙ୍କ ଦ୍ୱାରା ଆୟୋଜିତ ହୋଇଥାଏ।

ଗୋଟିଏ ଦିନର ସାତ ଘଣ୍ଟା ଧରି ସଂଗ୍ରାମର ଇତିହାସର ବର୍ଣ୍ଣନା ପରେ ଦୁଇଘଣ୍ଟା ପ୍ରଶ୍ନୋତ୍ତର, ତର୍କବିତର୍କରେ ଅତିବାହିତ ହୁଏ। ସେହି ଆଲୋଚନାର ସିଲାବସକୁ ଧରି ଏକ ପୁସ୍ତକ ରଚନା କରିବାକୁ ଆଗ୍ରହୀ ଯୁବକ-ଛାତ୍ର, ଶିକ୍ଷକ, ଅଧ୍ୟାପକ ପରାମର୍ଶ ଦେଇଥାନ୍ତି।

ସେମାନଙ୍କ ପରାମର୍ଶ ମୋ ପାଇଁ ପରାମର୍ଶରେ ହିଁ ରହିଯାଇଥିଲା। ଏ ପୁସ୍ତକଟି ପ୍ରକାଶ କରି ସେମାନଙ୍କୁ କୃତଜ୍ଞତା ଜଣାଉଛି; ସେପରି ବନ୍ଧୁ ଅନେକ।

ସ୍ୱାଧୀନତା ସଂଗ୍ରାମୀ କେତେକ ବନ୍ଧୁ ମଧ ମୋତେ ଅନୁପ୍ରେରିତ କରିଛନ୍ତି। ତନ୍ମଧ୍ୟରେ ଅନ୍ତର୍ଭୁକ୍ତ ପୁରୀର ଭଗବାନ ପ୍ରତିହାରୀ, ନିକଟରେ ଗତାୟୁ ଜଗତ୍‌ସିଂହପୁରର ଲୋକନାଥ ରାୟ, ଢେଙ୍କାନାଳ ଓ ଆଠଗଡ ପ୍ରଜା ଆନ୍ଦୋଳନର ନେତା ଯଥାକ୍ରମେ ବୈଷ୍ଣବ ପଟ୍ଟନାୟକ, ନନ୍ଦକିଶୋର ପଟ୍ଟନାୟକ ପ୍ରମୁଖ।

ଇତିହାସ ଅଧ୍ୟାପକ ଡକ୍ଟର ଜଗନ୍ନାଥ ପଟ୍ଟନାୟକ, ଓଡିଶା ଅଭିଲେଖାଗାରର ପ୍ରାକ୍ତନ ସୁପରିଟେଣ୍ଡେଣ୍ଟ, ଶ୍ରୀ ପ୍ରହ୍ଲାଦ ସାହୁ, ଏହି ସଂସ୍ଥାର ସହକାରୀ କ୍ୟୁରେଟର ଶ୍ରୀ ଶରତ୍ କୁମାର ଜେନା, ଯୁନିଭର୍ସର ପ୍ରତିଷ୍ଠାତା ଓ ବିଶିଷ୍ଟ ସମାଜସେବୀ ଗିରିଜା ଭୂଷଣ ପଟ୍ଟନାୟକ, ଏଥିପାଇଁ ମୋତେ ଉତ୍ସାହିତ କରିଛନ୍ତି। ଜ୍ଞାନମଣ୍ଡଳ ଫାଉଣ୍ଡେସନର ଅଧ୍ୟାପକ ପାବକ କାନୁନଗୋ ଓ ଦୀପକ କାନୁନଗୋ; ଗୌରାଙ୍ଗ ଚରଣ ଦାସ ସ୍ମୃତି ସଂସଦର ପ୍ରଶାନ୍ତ ଦାସ ଓ ଦର୍ପନାରାୟଣ ଦାସ, ପୁସ୍ତକଟିର ରଚନାକାଳରେ ସାହାଯ୍ୟ ସହଯୋଗ କରିଛନ୍ତି।

ନବଯୁଗ ଗ୍ରନ୍ଥାଳୟର ପରିଚାଳକ ବିଜୟକୁମାର ପଢ଼ିଆରୀଙ୍କର ପ୍ରକାଶନ କାର୍ଯ୍ୟରେ ଅକୁଣ୍ଠିତ ସହଯୋଗ ଭୁଲିବାର ନୁହେଁ।

ଅଧ୍ୟାପକ ଅବନୀକୁମାର ବରାଳ ଓ ବିଶିଷ୍ଟ ଜନନେତା ଲୋକନାଥ ଚୌଧୁରୀଙ୍କ ଠାରୁ ଉତ୍ସାହ ପାଇ କୃତଜ୍ଞତା ଜଣାଉଛି।

ପରିଶେଷରେ କୃତଜ୍ଞତା ଜଣାଇବି ଗଂଜାମର ଚମାଖଣ୍ଡିଠାରେ ଅନୁଷ୍ଠିତ ଏକ ଶିକ୍ଷାଶିବିର ଶିକ୍ଷାର୍ଥୀ ଯୁବକମାନଙ୍କୁ ଏବଂ ଏହାର ମୁଖ୍ୟ ସଂଗଠନଙ୍କୁ।

ଶିକ୍ଷା ଶିବିର ସମାପ୍ତି ପରେ ଏମାନେ ହିଁ ବ୍ୟୟବହୁଳ ପୁସ୍ତକଟିର ପ୍ରକାଶନ ଲାଗି ପ୍ରାଥମିକ ଆର୍ଥିକ ଅନୁଦାନ ଚମାଖଣ୍ଡି ସିପିଆଇ ଆଂଚଳିକ କମିଟି ବହନ କରିବ ଶୀଘ୍ର ପୁସ୍ତକଟି ପ୍ରକାଶ କରନ୍ତୁ ବୋଲି ଚାପ ପ୍ରୟୋଗ କଲେ। ଚମାଖଣ୍ଡି ଗଣସଂଗ୍ରାମ କମିଟିର ନେତା ଏନ. ନାରାୟଣ ରେଡି ଏଥିଲାଗି ୫ହଜାର ଟଙ୍କା ପ୍ରେସ ହାତରେ ଅର୍ପଣ କରିଦେଲେ।

ସେମାନଙ୍କୁ ଅଶେଷ କୃତଜ୍ଞତା ଜ୍ଞାପନ କରୁଛି।

ଯୋଗେନ୍ଦ୍ର ମହାନ୍ତି

# ସୂଚୀପତ୍ର


| *ଘଟଣାପ୍ରବାହ* | *ମସିହା* | *ପୃଷ୍ଠା* |
|---|---|---|
| ପ୍ରାକ୍ କଥନ | -- | ୯୯୨ |
| କୃତଜ୍ଞତା | -- | ୯୯୫ |
| ବଂଗଭଗ ସୁପାରିଶ୍‌ର ଏକ ଦଲିଲ୍ | ୧୯୦୫ | ୯୯୭ |
| ଜାତୀୟପତାକା ଅଭ୍ୟୁଦୟର ଇତିବୃତ୍ତ | ୧୯୦୬ | ୯୯୯ |
| ଦକ୍ଷୀଣଆଫ୍ରିକାରେ ମହାତ୍ମାଗାନ୍ଧୀଙ୍କ ପ୍ରଥମ କାରାଦଣ୍ଡ | ୧୯୦୭ | ୧୦୦୧ |
| ଲୋକମାନ୍ୟ ତିଳକଙ୍କ ଗିରଫ | ୧୯୦୮ | ୧୦୦୨ |
| କାବୁଲ୍‌ରେ ପ୍ରତିଷ୍ଠିତ ଭାରତର ଅସ୍ଥାୟୀ ସରକାର | ୧୯୧୫ | ୧୦୦୮ |
| ସାତଜଣ ଗଦ୍ଦର ବିପ୍ଳବୀଙ୍କୁ ଫାଶି | ୧୯୧୫ | ୧୦୧୦ |
| ଜାଲିଆନା ୱାଲାବାଗ୍‌ର ବିଭତ୍ସ ନରସଂହାର | ୧୯୧୯ | ୧୦୧୩ |
| ଏ.ଆଇ.ଟି.ୟୁ.ସି.ର ଜନ୍ମ | ୧୯୨୦ | ୧୦୧୯ |
| ସ୍ୱାଧୀନତା ପ୍ରସ୍ତାବ ଦେବା ଏକ ଅପରାଧ | ୧୯୨୧ | ୧୦୨୩ |
| 'ମାନୁଛି ମୁଁ ଅପରାଧୀ' - ଗାନ୍ଧିଜୀ | ୧୯୨୨ | ୧୦୨୪ |
| ଦ୍ୱାତୀୟ ପେଶବାର କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦମା | ୧୯୨୨ | ୧୦୨୬ |
| ଚୌରିଚୌରା ଘଟଣା | ୧୯୨୨ | ୧୦୨୭ |
| କାନ୍‌ପୁର ବଲଶେଭିକ୍ ଷଡ଼ଯନ୍ତ୍ର ମକଦମା | ୧୯୨୪ | ୧୦୨୮ |
| ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଗଠନ ପ୍ରକ୍ରିୟା | ୧୯୨୫ | ୧୦୩୦ |
| କକୋରୀ ଷଡ଼ଯନ୍ତ୍ର ମକଦମା | ୧୯୨୭ | ୧୦୩୭ |
| ସାଇମନ୍ କମିଶନ ବାସନ୍ଦ | ୧୯୨୮ | ୧୦୪୨ |
| ମିରଟ୍ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦମା | ୧୯୨୯ | ୧୦୪୩ |
| "ଆମ ଭାଇମାନଙ୍କୁ ଗୁଳି କରିବୁନି" | ୧୯୩୦ | ୧୦୪୭ |
| ଚିଟାଗଂଗ ଅସ୍ତ୍ରାଗାର ଲୁଣ୍ଠନ | ୧୯୩୦ | ୧୦୫୦ |
| ଗାନ୍ଧିଜୀଙ୍କ ଗିରଫ ପରେ ସୋଲାପୁର ଅଭ୍ୟୁତ୍ଥାନ | ୧୯୩୦ | ୧୦୫୩ |

| ଘଟଣାପ୍ରବାହ | ମସିହା | ପୃଷ୍ଠା |
|---|---|---|
| ଲାହୋର ଷଡ଼ଯନ୍ତ୍ର ମକଦମା | ୧୯୩୧ | ୧୦୫୫ |
| 'ମୁଁ ଜଣେ ନାସ୍ତିକ କାହିଁକି' - ଭଗତ୍ ସିଂହ | ୧୯୩୧ | ୧୦୬୧ |
| ଅଖିଳଭାରତ ଗଡ଼ଯାତ ପ୍ରଜା ସମ୍ମିଳନୀ | ୧୯୩୧ | ୧୦୭୦ |
| ଗାନ୍ଧି ଉରୱିନ୍ ଚୁକ୍ତିର ଦଫାସମୂହ | ୧୯୩୧ | ୧୦୭୫ |
| କଂଗ୍ରେସ ସୋସାଲିଷ୍ଟ୍ ପାର୍ଟିର ଗଠନ ପ୍ରକ୍ରିୟା | ୧୯୩୪-୩୬ | ୧୦୭୮ |
| ଅଖିଳଭାରତ କୃଷକସଭାର ଜନ୍ମ | ୧୯୩୬ | ୧୦୮୨ |
| ଅଖିଳଭାରତ ଛାତ୍ର ସଂଘର ପ୍ରତିଷ୍ଠ ସମ୍ମିଳନୀ | ୧୯୩୬ | ୧୦୮୬ |
| ସେଲୁଲାର ଜେଲ୍‌ରେ ବିପ୍ଳବୀ ବନ୍ଦୀଙ୍କ ଅନଶନ | ୧୯୩୭ | ୧୦୮୮ |
| କଂଗ୍ରେସରୁ ସୁଭାଷ ବୋଷଙ୍କ ଇସ୍ତଫା ଓ ବହିଷ୍କାର | ୧୯୩୯ | ୧୦୯୧ |
| ସୁଭାଷ ବୋଷଙ୍କ ମହା-ଅନ୍ତର୍ଦ୍ଧାନ | ୧୯୪୦ | ୧୦୯୬ |
| ଭାରତ ବିଭାଜନ ବିରୁଦ୍ଧରେ ମୁସଲିମ୍ ସମ୍ମିଳନୀ | ୧୯୪୦ | ୧୦୯୮ |
| ଅଖିଳ ଭାରତ ଗଣନାଟ୍ୟ ସଂଘ | ୧୯୪୦ | ୧୧୦୦ |
| କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦମା | ୧୯୪୦ | ୧୧୦୧ |
| ଦାକ୍ଷିଣାତ୍ୟରେ ମୁସ୍‌ଲିମ୍ ସମ୍ମିଳନୀ | ୧୯୪୧ | ୧୧୦୪ |
| କ୍ରିପ୍ସ ମିଶନ୍ | ୧୯୪୨ | ୧୧୦୭ |
| ଭାରତଛାଡ଼ ପ୍ରସ୍ତାବ | ୧୯୪୨ | ୧୧୦୯ |
| ୧୯୪୨ ଅଗଷ୍ଟ ଆନ୍ଦୋଳନର କେତେକ ଫଳଶ୍ରୁତି | ୧୯୪୨ | ୧୧୧୩ |
| କେରଳର କାୟୁର୍ ହତ୍ୟା ତାଣ୍ଡବ | ୧୯୪୩ | ୧୧୧୬ |
| ଭାରତୀୟ ମୁକ୍ତି ଲିଗ୍ ଓ ଜାତୀୟ ବାହିନୀ (ଆଇ.ଏନ୍.ଏ) | ୧୯୪୪ | ୧୧୧୮ |
| ଭାରତୀୟ ନୌସେନା ବିଦ୍ରୋହ | ୧୯୪୬ | ୧୧୨୪ |
| ଭାରତର ସ୍ୱାଧୀନତା ବିଲ୍‌କୁ ସ୍ୱୀକୃତି | ୧୯୪୭ | ୧୧୨୭ |
| ଫରାସୀ ଉପନିବେଶରେ ସ୍ୱାଧୀନତା ଆନ୍ଦୋଳନ | ୧୯୪୭ | ୧୧୨୯ |
| ମହାତ୍ମାଗାନ୍ଧିଜୀଙ୍କ ମହାପ୍ରୟାଣ | ୧୯୪୮ | ୧୧୩୪ |


ooo

# ସ୍ୱାଧୀନତା ସଂଗ୍ରାମକାଳର କାହାଣୀ

ବିଂଶ ଶତାବ୍ଦୀରେ ବିଶେଷତଃ, ଆମ ଦେଶବାସୀ ବ୍ରିଟିଶ୍ ସାମ୍ରାଜ୍ୟବାଦୀ ଔପନିବେଶିକ ଦାସତ୍ୱରୁ ମୁକ୍ତ ହେବାଲାଗି ଅଜସ୍ର ସଂଗ୍ରାମ କରିଛନ୍ତି । ଲକ୍ଷ ସଂଖ୍ୟାରେ ପ୍ରାଣ ଦେଇଛନ୍ତି ମାତୃଭୂମିର ସ୍ୱାଧୀନତା ଲାଗି, ସମାଜ ଜୀବନର ନବ ରୂପାନ୍ତର ପାଇଁ ।

ଏକାବିଂଶ ଶତାବ୍ଦୀର ଆରମ୍ଭ ୨୦୦୧ରେ ସେମାନଙ୍କର ଅଭୁଲା ପବିତ୍ରସ୍ମୃତି ପ୍ରତି ଅନ୍ତରର ଗଭୀରତମ ପ୍ରଦେଶରୁ ଶ୍ରଦ୍ଧା ନିବେଦନ କରୁଛି ।

୧୯୦୫ରୁ ବିଶେଷତଃ ଜାଲିଆନାୱାଲାବାଗ୍ ନରସଂହାର ପରଠାରୁ ଆମ ସ୍ୱାଧୀନତା ଆନ୍ଦୋଳନରେ ବହୁ ପ୍ରବାହ ମିଳିତ ହୋଇଛି । ୧୯୪୮ ପର୍ଯ୍ୟନ୍ତ ଭାରତବର୍ଷର ରାଜନୈତିକ ଦୃଶ୍ୟପଟରେ ବହୁ ବୈପ୍ଳବିକ ଘଟଣା ଘଟିଛି । ବିବିଧ ରାଜନୈତିକ ମତାଦର୍ଶକୁ ଆଶ୍ରା କରି ବହୁ ରାଜନୈତିକ ସଂଗଠନର ଉଦ୍ଭାବ ଘଟିଛି । ଦେଶର ଶତ୍ରୁ ବ୍ରିଟିଶ ସାମ୍ରାଜ୍ୟବାଦ ଦ୍ୱାରା ବହୁ ଷଡ଼ଯନ୍ତ୍ର ମକଦମା ରୁଜୁ କରାଯାଇ ଅସଂଖ୍ୟ ଯୋଦ୍ଧାଙ୍କୁ ଫଶିକାଠରେ ଝୁଲାଯାଇଛି, ଦୀର୍ଘ କରାଦଣ୍ଡ ଦିଆଯାଇଛି ।

ସେସବୁକୁ ଏକତ୍ର ଗୁନ୍ଥି ଗୋଟିଏ ପୁସ୍ତକରେ ସଂକ୍ଷିପ୍ତ ରୂପରେ ଲିପିବଦ୍ଧ କରାଯାଇଛି ।

ପାଠକମାନଙ୍କଠାରୁ କ୍ଷମା ଚାହେଁ । ମୋର କୌଣିସ ମୌଳିକ କୃତିତ୍ୱ ଏଥିରେ ନାହିଁ । ସ୍ୱକୀୟ ସୃଜନଶୀଳତା ବୋଇଲେ ଯାହା ବୁଝାଏ, ସେପରି ସୃଜନଶୀଳତା ଏଥିରେ ନାହିଁ, କି ମୋର ସେପରି ଶକ୍ତିସାମର୍ଥ୍ୟ ନାହିଁ । ମୁଁ କେବଳ ଏକ ସଂଗ୍ରାହକ ମାତ୍ର । ବିଭିନ୍ନ ସୂତ୍ରରୁ ସଂଗ୍ରହର ଏହା ଏକ କ୍ଷୁଦ୍ର ସମାହାର । କାହିଁକି ଏ ପ୍ରୟାସ ? ପୁଣି ଜୀବନର ଶେଷ ଦଶା ପଞ୍ଚାଅଶୀ ବର୍ଷ ବୟସରେ ? ସ୍ୱାଧୀନତା ସଂଗ୍ରାମର ସେହି ପୂର୍ବସୂରୀମାନଙ୍କ ଆତ୍ମୋତ୍ସର୍ଗର ମର୍ମକୁ ଏକ ପୀଢ଼ିର ପାଠକମାନଙ୍କ ପାଖରେ ପହଞ୍ଚାଇବାର ଖିଆଲ ଯୋଗୁଁ ଏପରି ଉଦ୍ୟମ । କେବଳ ଆମ ମାତୃଭୂମିର ନୁହଁ, ପ୍ରତ୍ୟେକଟି ଦେଶର, ପ୍ରତ୍ୟେକଟି ଜାତିର ଅତୀତ ବର୍ତ୍ତମାନକୁ ଘଢ଼ିବାରେ ସାହାଯ୍ୟ କରେ ଏବଂ ତାହାର ବର୍ତ୍ତମାନ ଭବିଷ୍ୟତର ଦେଶ ଅଟ୍ଟାଳିକା ନିର୍ମାଣ କରିବାର ପଥ ନିର୍ଦ୍ଦେଶ କରେ । ସେଥିଲାଗି ଭ୍ରାନ୍ତିହୀନ, ସଠିକ ପନ୍ଥାପଦ୍ଧତି ଅବଲମ୍ୱନର ମାର୍ଗ-ଦର୍ଶନ ଦିଏ । ଏହି ସତ୍ୟକୁ ଅତୀତର

ସତ୍ୟସନ୍ଧିତ୍ସୁ, ମାନବତାବାଦୀ ଦାର୍ଶନିକ, ମନିଷୀ, ରାଷ୍ଟ୍ରନୀତିଜ୍ଞ ସୂଚିତ କରିଯାଇଛନ୍ତି । ନିତ୍ୟ ପରିବର୍ତ୍ତନଶୀଳ ସମାଜରେ ପ୍ରଚଳିତ ସାମାଜିକ ବ୍ୟବସ୍ଥାରେ ଭଲ ମନ୍ଦ ଉଭୟ ଘଟିଥାଏ । ଯାହା ମନ୍ଦ ତାକୁ ଦୂର କରିବା ଲାଗି ଓ ଖଳର ପ୍ରାବଲ୍ୟକୁ ରୋଧ କରିବାପାଇଁ ସଂଗ୍ରାମ ଚାଲେ । ପରିଶେଷରେ ଖଳର ପରାଜୟ ହୁଏ । ଶୁଭଙ୍କର, ଭଲର ବିଜୟ ହୁଏ । ଯାହା ଖଳ ତାହା ଆପାତ ଦୃଷ୍ଟିରେ କିଛିକାଳ ଲାଗି କେତେକ ମହଲରେ ଲୋଭନୀୟ ହୁଏ । ମାତ୍ର ତା'ର ଅବସାନ ସମାଜ ଜୀବନକୁ, ମାନବ ଜୀବନକୁ ମହତ୍ତର କରେ । ଥରେ ଖଳଗୁଡ଼ିକୁ ଚିହ୍ନିଗଲେ, ଖଳର ବିଲୁପ୍ତିପାଇଁ ତତ୍କାଳୀନ ସମାଜର ଅଗ୍ରଗାମୀ ଜନଅଂଶ ତାହା ବିରୁଦ୍ଧରେ ଦୁର୍ବାର ସଂଗ୍ରାମ ଚଳାନ୍ତି ।

ଆମଦେଶ ପାଇଁ ଏକ ଭୟାବହ ଖଳ ଥିଲା ଦେଶର ପରାଧୀନତା । ସେଥିରୁ ମୁକ୍ତି ଲାଗି ବିଂଶଶତାବ୍ଦୀରେ ଚାଲିଥିଲା ନିୟାମକ ସଂଗ୍ରାମ । ଦୁଇଶହ ବର୍ଷର ସଂଗ୍ରାମ ଓ ଲକ୍ଷ ଲକ୍ଷ ଭାରତବାସୀ ହିନ୍ଦୁ, ମୁସଲ୍‌ମାନ୍, ବୌଦ୍ଧ, ଶିକ୍ଷ୍, ଖ୍ରୀଷ୍ଟିଆନ୍, ଆଦିବାସୀ, ପଲ୍ଲୀ ନଗରବାସୀଙ୍କ ଆତ୍ମବଳିଦାନ ହିଁ ପରାଧୀନତାର ଖଳକୁ ବିନାଶ କରିଥିଲା ।

ଏହି ଗରିମାମୟ ସଂଗ୍ରାମର କେତୋଟି ଝଲକ ଏହି ସଂଗ୍ରହଟିରେ ସ୍ଥାନ ପାଇଛି । ଏହି ସଂଗ୍ରହଟିରେ ୧୯୦୫ରୁ ୧୯୪୮ ଜାନୁଆରୀ ୩୦ ତାରିଖ ଯାଏ ଦେଶର ମୁକ୍ତି ଓ ସ୍ୱାଧୀନତା ଲାଗି, ବହୁ ଭାଷା, ବହୁ ଧର୍ମ, ବହୁ ସଂସ୍କୃତିରୁ ଗଢ଼ିଉଠିଥିବା ସମନ୍ୱିତ ସଂସ୍କୃତିର ସୁରକ୍ଷା ପାଇଁ, ଦେଶର ଐକ୍ୟ ସଂହତିକୁ ଦୃଢ଼ରୁ ଦୃଢ଼ତର କରିବା ପାଇଁ ଯେଉଁସବୁ ବିଶେଷ ବିଶେଷ ଘଟଣା ଘଟିଛି, ତାର ସଂକ୍ଷିପ୍ତ ଆଭାଷ ଦିଆଯାଇଛି । ଏହି ମହାନ ଲକ୍ଷ୍ୟକୁ ବିଘ୍ନିତ କରିବା ଲାଗି ଦେଶ ଭିତରେ ଯେଉଁ ଖଳ ପ୍ରବୃତ୍ତିମାନ ଉଦ୍ଭବ ହୋଇଥିଲା, ସେସବୁର ଉଲ୍ଲେଖ, ଏହି ପୁସ୍ତକଟିର ପରିସର ଭିତରକୁ ଆଣାଯାଇପାରି ନାହିଁ । ଦେଶ ଭିତରର ତଥା ଦେଶ ବାହାରର କେତେକ ଗୋଷ୍ଠି ଏହି ସଂଗ୍ରାମ ପ୍ରତି ବିଶ୍ୱାସଘାତକତା କରିଥିଲେ । ଦେଶର ଯିଏ ଶତ୍ରୁ ତାହାର ପକ୍ଷ ନେଇଥିଲେ । ୧୯୦୫ ପୂର୍ବ ଏବଂ ୧୯୪୮ ପରବର୍ତ୍ତୀ ପର୍ଯ୍ୟାୟର ସଂଗ୍ରାମ ଏହି ବହିଟିର ପରିସରଭୁକ୍ତ ହୋଇନାହିଁ ।

ସ୍ୱାଧୀନତା ସଂଗ୍ରାମର ସୁବର୍ଣ୍ଣ ଜୟନ୍ତୀ ଅବସରରେ "ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସ", ଅର୍ଥାତ୍ ଦୁଇଶହବର୍ଷ ବ୍ୟାପି ସଂଗ୍ରାମର ବିହାଙ୍ଗାବଲୋକନ ପୁସ୍ତକଟି ମୋର ପ୍ରକାଶ ପାଇଥିଲା । ସେହି ସମୟରେ ମଧ୍ୟ ଭାରତର ୫୬୨ଟି ଗଡ଼ଜାତର ପ୍ରଜାମାନଙ୍କୁ ମୁକ୍ତି ସମରକାଳରେ ଢେଙ୍କାନାଳର ବାଜି ରାଉତ ଓ ତା'ର ସାଥୀ ଶହୀଦ୍‌ମାନଙ୍କ ସ୍ମରଣରେ "ଢେଙ୍କାନାଳ ଗଣବିଦ୍ରୋହ" ପୁସ୍ତକଟି ନୂଆ ପିଢ଼ିର ଦେଶପ୍ରେମୀ, ଅଗ୍ରଗାମୀ ପାଠକମାନଙ୍କ ହାତରେ ଅର୍ପଣ କରିଥିଲି ।

ତୃତୀୟ ସହସ୍ରାବ୍ଦ ଆଉ ଏକବିଂଶ ଶତାବ୍ଦୀର ଜାନୁଆରୀ ୨୬ ତାରିଖ । ଦୁଇଶହ ବର୍ଷ ବ୍ୟାପି ଅଗଣିତ ଜନଆନ୍ଦୋଳନର ଅଭିଜ୍ଞତାକୁ ଆଶ୍ରୟ କରି ୧୯୨୯ରେ ଲାହୋରଠାରେ କଂଗ୍ରେସର ଅଧିବେଶନ ପୂର୍ଣ୍ଣ ସ୍ୱାଧୀନତା ହିଁ ଦେଶବାସୀଙ୍କର ପରମ ଚରମ ଲକ୍ଷ୍ୟ ବୋଲି ଧାର୍ଯ୍ୟ କରିଥିଲା । ସ୍ୱାଧୀନତା ପରବର୍ତ୍ତୀ କାଳରେ ଆମର ସମ୍ବିଧାନ ସଭା ଜାନୁଆରୀ ୨୬ ତାରିଖକୁ ଧାର୍ଯ୍ୟ କରିଛି । ଭାରତ ଏକ ପ୍ରଜାତାନ୍ତ୍ରିକ ସଂଘୀୟ ରାଷ୍ଟ୍ରରେ ପରିଣତ ହୋଇଛି । ଗଣତାନ୍ତ୍ରିକ ରାଷ୍ଟ୍ର ପ୍ରତିଷ୍ଠାର ସୁବର୍ଣ୍ଣ ଜୟନ୍ତୀ ଅବସରରେ ଆମ ରାଜ୍ୟର ପାଠକମାନଙ୍କୁ ମୋର ଏହି ଅର୍ଘ୍ୟ ।

ସେହି କଷ୍ଟଲବ୍ଧ ସ୍ୱାଧୀନତା ଓ ଗଣତନ୍ତ୍ରକୁ ରକ୍ଷା କରିବା, ତାକୁ ପ୍ରସାର କରିବା ଓ ସ୍ୱାଧୀନତା ସଂଗ୍ରାମର ଯେଉଁସବୁ ଅଙ୍ଗୀକାର ଏଯାବତ୍ ପୂରଣ ହୋଇନାହିଁ, ସେଗୁଡ଼ିକୁ ପୂରଣ କରିବାର ଅଭିଳାଷ ଓ ସଂଗ୍ରାମକୁ ଅଧିକ ଶାଣିତ କରିବା ଲାଗି ଅତୀତର ଏହିସବୁ ସଂଗ୍ରାମ ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କରିବ ବୋଲି କାମନା କରିବା ସ୍ୱାଭାବିକ । ସବୁ ବାହ୍ୟ ଚାକଚକ୍ୟ, ବାଗାଡ଼ମ୍ବରପୂର୍ଣ୍ଣ, ମନଭୁଲାଣିଆ ଉଦ୍‌ଘୋଷଣାଗୁଡ଼ିକର ଆଢୁଆଳରେ ଆମର ତ୍ୟାଗପୂତ ଗଣତନ୍ତ୍ର, ଦେଶର ସ୍ୱାଧୀନତା, ଅଖଣ୍ଡତା, ଧର୍ମନିରପେକ୍ଷ ରାଷ୍ଟ୍ରନୀତି, ଅର୍ଥନୈତିକ ସ୍ୱାବଲମ୍ବନଶୀଳତା, ସ୍ୱଦେଶିକତା, ସର୍ବଶେଷରେ ସାର୍ବଭୌମତ୍ୱ ବିପଦପୂର୍ଣ୍ଣ ବୋଲି ଚିନ୍ତାଶୀଳ, ଦେଶବତ୍ସଳ ମହଲରେ ଆଶଙ୍କା ଖାଲି ଜନ୍ମିନାହିଁ, ଦୃଢ଼ୀଭୂତ ହୋଇଚାଲିଛି । ଏହାରି ବିରୁଦ୍ଧରେ ଜନସଚେତନତା ସୃଷ୍ଟି ଓ ଐକ୍ୟବଦ୍ଧ ସଂଗ୍ରାମ ହିଁ ଦେଶ ଭିତରୁ ଓ ଦେଶ ବାହାରୁ ଅର୍ଥନୈତିକ, ରାଜନୈତିକ ଶ୍ୱେନମାନଙ୍କ ଆସୁଥିବା ମହାବିପଦକୁ ପରାସ୍ତ କରିପାରିବ । ସତ୍ୟର ଜୟ ହେବ । ଖଳର ପରାଭବ ଘଟିବ । ଅତୀତ ବଂଶଧରଙ୍କ କୃତି କୃତିତ୍ୱର ଅନୁଶୀଳନ ଓ ସେଥିରୁ ଶିକ୍ଷା ହିଁ ଏଥିପାଇଁ ଆତ୍ମପ୍ରତ୍ୟୟ ଆଣିଦେବ ।



# କୃତଜ୍ଞତା

ସଂଗ୍ରାମକାଳର ବନ୍ଧୁ ସାଥୀ, ଶୁଭେଚ୍ଛୁ ମୋର ପ୍ରସ୍ତାବନାଟିକୁ ଶୁଣି ମୋତେ ଉତ୍ସାହିତ କରିଛନ୍ତି । ଜଣେ ବିଶିଷ୍ଟ ସମାଜସେବୀ ଓ ଶ୍ରମିକ ଆନ୍ଦୋଳନର ନେତା ତାଳଚେରର ବନ୍ଧୁ ଦ୍ୱାରିକାମୋହନ ମିଶ୍ର ପୁସ୍ତକଟିର ପ୍ରକାଶନର ଏକାଂଶ ବ୍ୟୟ ଅଯାଚିତ ଭାବରେ ମୋତେ ଅର୍ପଣ କରିଛନ୍ତି ।

ଉତ୍କଳ ମହିଳା ସମିତିର ସଭାନେତ୍ରୀ, ଯାହାଙ୍କୁ ମୁଁ ନୂଆବୋଉ ସମ୍ବୋଧନ କରେ, ଶ୍ରୀମତୀ ନିରୋଦ ପ୍ରଭା ପଟ୍ଟନାୟକ ଏବଂ ତାଙ୍କର ଦିଅର ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ମାର୍କ୍ସୀୟ ଚିନ୍ତାନାୟକ ଓ ସୁପ୍ରସିଦ୍ଧ ସାହିତ୍ୟିକ ଗୁରୁଚରଣ ପଟ୍ଟନାୟକଙ୍କ ତଥା ଇସ୍‌ପଫ୍‌ର ସାଧାରଣ ସମ୍ପାଦକ ଘନଶ୍ୟାମ ପଟ୍ଟନାୟକ ଆବଶ୍ୟକ ସୂତ୍ର, ପୁସ୍ତକାବଳୀ ଯୋଗାଇଛନ୍ତି । ଅନ୍ୟତମ ବିଶିଷ୍ଟ ସାହିତ ରାଜ୍ୟ ସରକାରଙ୍କ ଶିକ୍ଷା ବିଭାଗର ଉଚ୍ଚ ପଦାଧୀକାରୀ ଥିବା ପୁତ୍ର ସମ ବୈଷ୍ଣବ ଚରଣ ମହାନ୍ତି କଲମ ଧରିବା ଲାଗି ମୋତେ ଅତିଷ୍ଠ କରିଦେଇଛନ୍ତି ।

ବିପ୍ଳବୀ ସ୍ୱାଧୀନତା ସଂଗ୍ରମୀ ଗୌରାଙ୍ଗ ଚରଣ ଦାସଙ୍କ ସ୍ମୃତି ସଂସଦ ଦ୍ୱାରା ପ୍ରତିଷ୍ଠିତ ସଂଗ୍ରାମୀ ଫୋରମ୍‌ର କର୍ମକର୍ତ୍ତା, ଓଡ଼ିଶା ସାହିତ୍ୟ ରାଜ୍ୟର ସୁପରିଚିତ ପ୍ରାବନ୍ଧିକ, ଚିତ୍ତରଞ୍ଜନ ଦାସ ତଥା ଏହା ସମ୍ପାଦକ ଦର୍ପନାରାୟଣ ଦାସ ଓ ପ୍ରଶାନ୍ତ କୁମାର ଦାସ ପୁସ୍ତକଟି ସଂଗ୍ରାମୀ ଫୋରମର ପ୍ରକାଶନ ହେବ ବୋଲି ନିର୍ଣ୍ଣୟ କରିଛନ୍ତି । ଏ ସମସ୍ତଙ୍କ ପାଖରେ ମୁଁ କୃତଜ୍ଞ ।

ପୁସ୍ତକଟିର ଅକ୍ଷର ସଜ୍ଜା ଅର୍ଥାତ୍ ଡିଟିପି କରିଥିବା ଯୁବକଟି ପ୍ରତି ମୋର ମାର୍ମିକ କୃତଜ୍ଞତା ନଜଣାଇ ରହିପାରୁନି । ମାତ୍ର ୧୮ ବର୍ଷ ବୟସରେ କାନ୍‌ସର ରୋଗାକ୍ରାନ୍ତ ହୋଇ ପିତାଠାରୁ ଗୋଟିଏ

ଗୋଡ଼ କଟେଇ ସେ ଜୀବନକୁ ସରଳ ଭାବରେ ନେଇ, ଘରେ କଲେଜ୍ ପାଠପଢ଼ା ସାଙ୍ଗକୁ ଡିଟିପି ଯନ୍ତ୍ର ଯୋଗେ ନିଜର ଭବିଷ୍ୟତ ଜୀବନ ବିତେଇବା ପ୍ରୟାସ କରୁଛନ୍ତି । ଯୁବକଟି ନାମ ସୁଦୀପ୍ତ ସୂର୍ଯ୍ୟକାନ୍ତ ।

ନମଯୁଗ ଗ୍ରନ୍ଥାଳୟ ସଂସ୍ଥାଟି ୧୯୪୫-୪୬ଠାରୁ ମୋର ପୁସ୍ତକ ପୁସ୍ତିକାର ମୁଦ୍ରଣ ଓ ବଣ୍ଟନର ଦାୟୀତ୍ୱ ନେଇଆସୁଛି । ତାହା ପାଖରେ ତା'ର ପରିଚାଳକ ବନ୍ଧୁ ବିଜୟ କୁମାର ପଢ଼ିହାରୀଙ୍କୁ କୃତଜ୍ଞତା ଜଣାଉଛି ।

ପରିଶେଷରେ ଯେଉଁ ପୁସ୍ତକ, ପୁସ୍ତିକାର ଲେଖକ ଓ ସ୍ତମ୍ଭକାରମାନଙ୍କଠାରୁ ସାହାଯ୍ୟ ନିଆଯାଇଛି, ତାହାର ସ୍ୱୀକାରୋକ୍ତି ଆବଶ୍ୟକ ।

ସେମାନଙ୍କ ମଧ୍ୟରେ ଅଛନ୍ତି କାକୋରୀ ଷଡ଼ଯନ୍ତ୍ର ମକଦ୍ଦମାରେ ଜଡ଼ିତ, ଶହୀଦ ଚନ୍ଦ୍ରଶେଖର ଆଜାଦଙ୍କ ସାଥୀ, ନିକଟରେ ମୃତ୍ୟୁ ବରଣ କରିଥିବା ମନ୍ମଥନାଥ ଗୁପ୍ତଙ୍କ 'They Lived Dangerously' ପୁସ୍ତକ; ମିରଟ ଷଡ଼ଯନ୍ତ୍ର ମକଦ୍ଦମାର ଅନ୍ୟତମ ଆସାମୀ ବିପ୍ଳବୀ ସୋହନ ସିଂହ ଯୋଷ୍ଙ୍କ 'The Great Attach' ପୁସ୍ତକ, ଭାରତର ବିଶିଷ୍ଟ ଐତିହାସିକ ଦ୍ୱୟ ବିପିନ୍ ଚନ୍ଦ୍ର ଓ ଅଖିଳେଶ ତ୍ରିପାଠୀଙ୍କ 'Freedom Struggle' ପୁସ୍ତକ, ଭାରତର ଅନ୍ୟତମ ଖ୍ୟାତନାମା ରାଷ୍ଟ୍ରନୀତିଜ୍ଞ ଓ ଇତିହାସବିତ୍ ଅଧ୍ୟାପକ ହୀରେନ୍ ମୁଖାର୍ଜୀଙ୍କ 'Indian Struggle for Freedom' ପୁସ୍ତକ ନ୍ୟୁ ଏଜ୍ ପତ୍ରିକାର ଧାରାବାହିକ ସ୍ତମ୍ଭକାର ଶ୍ରୀ ବାଲକ୍ରିଷ୍ଣନ୍; ବି.ଆର୍. ଅଗ୍ରୱାଲଙ୍କ 'Trial of Independence' ପୁସ୍ତକ । ସର୍ବଶେଷରେ 'ସମାଜ'ରେ ପ୍ରକାଶିତ, ଡକ୍ଟର ନିତ୍ୟାନନ୍ଦ ସ୍ୱାଇଁଙ୍କ ଦ୍ୱାରା ଭାଷାନ୍ତରିତ ଭଗତ୍ ସିଂହଙ୍କ 'Why I am Atheist' ପ୍ରବନ୍ଧ ।

ଗୋବିନ୍ଦଚନ୍ଦ୍ର ମହାନ୍ତି
ସାତପୁରା, ଜଗତ୍‌ସିଂହପୁର

## ବଂଗଭଂଗ ସୁପାରିଶ କରିଥିବା ଏକ ଦଲିଲ୍
## ୧୯୦୫ ଫେବୃଆରୀ ୨ ତାରିଖ

ବଂଗଳାକୁ ଭାଗ ଭାଗ କରିବାର ଲକ୍ଷ୍ୟ କ'ଣ, ତାହାକୁ ତତ୍କାଳୀନ ଗଭର୍ଣ୍ଣର ଜେନେରାଲ୍ ଲର୍ଡ କର୍ଜନ ବ୍ରିଟିଶ୍ ସାମ୍ରାଜ୍ୟର ସେକ୍ରେଟେରୀ ଅଫ୍ ଷ୍ଟେଟ୍ ସେଣ୍ଟ୍ ଜନ୍ ବ୍ରୋଡ୍ରିକ୍‌ଙ୍କୁ ୧୯୦୫ ଫେବୃଆରୀ ୨ ତାରିଖରେ ଲିଖିତ ପତ୍ରରେ ଜଣାଇଥିଲେ । ପତ୍ରରେ ଥିଲା -

"କଲିକତାକୁ କେନ୍ଦ୍ର କରି ସାରା ବଂଗଳାକୁ ଏବଂ ପ୍ରକୃତ ପକ୍ଷେ ସାରା ଭାରତକୁ କଂଗ୍ରେସ ପାର୍ଟି ନଚଉଛି । ଏହିଠାରେ ଏହାର ମୁଖ୍ୟ ଚକ୍ରାନ୍ତ - ଜାଲ ବିସ୍ତାରକାରୀ ଏବଂ ନିୟନ୍ତ୍ରଣକାରୀମାନେ ବାସ କରନ୍ତି । ଏହି ଚକ୍ରାନ୍ତକୁ ଯଥୋଚ୍ଚାଟାଗିରିତାକୁ ଏପରି ଉନ୍ନତ କରାଯାଇଛି, ଯାହାର ପ୍ରୟୋଗ ଅତ୍ୟନ୍ତ ବିପଜ୍ଜନକ । ସେମାନେ କଲିକତାର ଜନମତ ଉପରେ ପ୍ରାଧାନ୍ୟ ବିସ୍ତାର କରିଛନ୍ତି । ହାଇକୋର୍ଟକୁ ସେମାନେ ଆଘାତ କରୁଛନ୍ତି । ସେମାନେ ସ୍ଥାନୀୟ ସରକାରଙ୍କୁ ଭୟଭୀତ କରାଉଛନ୍ତି । ବେଳେବେଳେ ସେମାନେ କେବଳ ଭାରତ ସରକାରଙ୍କ ଉପରେ ଗୁରୁତର ପ୍ରଭାବ ଯେ ପକାଉଛନ୍ତି, ସେତିକି ନୁହଁ । ସେମାନଙ୍କର ସକଳ କାର୍ଯ୍ୟକଳାପର ଲକ୍ଷ୍ୟ ହେଲା, ଏକ ଶକ୍ତିଶାଳୀ ସଂସ୍ଥା ଗଢ଼ି ସରକାରଙ୍କୁ ବାଧ କରିବେ । ଏହାକୁ ନିବାରଣ କରିବା ଲାଗି ଯଦି ବଂଗଳା ଭାଷାଭାଷୀ ଲୋକଙ୍କୁ ଭାଗ ଭାଗ କରାଯାଏ, ତେବେ କଲିକତାକୁ ସଫଳ ଚକ୍ରାନ୍ତର ଆସ୍ଥାନରୁ ହଟାଯାଇପାରିବ । ସେମାନଙ୍କ କର୍ଯ୍ୟକଳାପର ପ୍ରଭାବ ବିସ୍ତରର ସ୍ୱତନ୍ତ୍ର କେନ୍ଦ୍ରଗୁଡ଼ିକୁ ଅନୁମତି ନଦେଲେ, ଅବା ଯେଉଁମାନଙ୍କ ହାତରେ ସମଗ୍ର ସଂଗଠନ ପଡ଼ିଛି, ସେହି ନିମ୍ନଶ୍ରେଣୀର ପ୍ରଭାବକୁ ଦୁର୍ବଳ କରିବାକୁ ଉଦ୍ୟମ କଲେ, ସେମାନେ ଏହାର ପ୍ରବଳ ବିରୋଧ କରିବେ । ଅତି ଭୀଷଣ ଓ ଉଚ୍ଚ ପ୍ରତିବାଦ ଉଠିବ । ମାତ୍ର ଜଣେ ସ୍ଥାନୀୟ (ନେଟିଭ୍) ଅଧିବାସୀ ମୋତେ କହିଛନ୍ତି ଯେ, "ମୋ ଦେଶବାସୀ ଗୋଟିଏ ବିଷୟ ଦାନା ନବାନ୍ଧିବା ଯାଏ ପାଟିତୁଣ୍ଡ କରନ୍ତି; ତା'ପରେ ସେମାନେ ତାକୁ ମାନିନିଅନ୍ତି" ।

ବଂଗଭଂଗ ଲାଗି ଲର୍ଡ କର୍ଜନଙ୍କ ଏହି ଆକଳନକୁ ବ୍ରିଟିଶ ସରକାର ଅତି ଗୁରୁତର ସହ ବିଚାର କରି ଅନୁମୋଦନ କଲା । ବଂଗଳାକୁ ଦୁଇଖଣ୍ଡ କରାଯିବା ବୋଲି ସ୍ଥିର ହେଲା । ସଂଖ୍ୟାଧିକ ମୁସଲ୍‌ମାନ ରହିଥିବା ଜିଲ୍ଲା ଢାକା, ଖୁଲନା, ଚିଟାଗଂଗ, ମୈମନସିଂ ପ୍ରଭୃତି ଜିଲ୍ଲାକୁ ନେଇ

ପୂର୍ବବଂଗ ଗଠିତ ହେବ। ହିନ୍ଦୁ ସଂଖ୍ୟାଧିକ ଜିଲ୍ଲାଗୁଡ଼ିକୁ ଘେନି ପଶ୍ଚିମବଂଗ ଗଠିତ ହେବ। ତାହାହେଲେ ହିନ୍ଦୁ-ମୁସଲମାନଙ୍କୁ ଭାଗ ଭାଗ କରି ସେମାନଙ୍କୁ ପରସ୍ପର ବିରୁଦ୍ଧରେ ଲଢ଼େଇ କଲିକତାକୁ ଜବତ କରାଯିବ। ମାତ୍ର ଫଳ ବିପରୀତ ହେଲା। ବଂଗଳା ଓ ସମଗ୍ର ଦେଶରେ ବିଦ୍ରୋହ ଓ ପ୍ରତିରୋଧ ସଫଳ ହେଲା। ସେତେବେଳ ବ୍ରିଟିଶ୍ କର୍ତ୍ତୃପକ୍ଷ ବଂଗଳାକୁ ଦୁଇଖଣ୍ଡ କରିପାଲା ନାହିଁ। ବଂଗଭଂଗ ବିରୋଧୀ ସଂଗ୍ରାମର ଇତିହାସ ଦୀର୍ଘ।



# ଜାତୀୟ ପତାକା ଅଭ୍ୟୁଦୟର ଇତିବୃତ୍ତ ୧୯୦୬

ଆଜିର ଆମ ଜାତୀୟ ପତାକା ବା ରାଷ୍ଟ୍ରୀୟ ଧ୍ୱଜର ଉତ୍ତୋଳନ ଏହି ପତାକାର ଅଭ୍ୟୁଦୟର ଇତିହାସକୁ ସ୍ମରଣ କରାଇଦିଏ । ତିନୋଟି ରଂଗ ଓ ଅଶୋକ ଚକ୍ର ଚିହ୍ନ ବହନ କରିଥିବା ଆମ ଜାତୀୟ ପତାକାଟିର ପ୍ରସ୍ତାବ ଜବାହାରଲାଲ ନେହେରୁ ଦେଇଥିଲେ । ଆମ ସଂବିଧାନ ସଭା ତାହାକୁ ଗ୍ରହଣ କରିଥିଲା । ୧୯୦୬ରେ ଏହି ପତାକାର ଆଦ୍ୟ ଜନ୍ମ । ତିନୋଟି ରଂଗର ଏହି ପତାକା ହରିତ୍, ବାଦାମୀ ଅଂଶରେ ତାରକାପୁଂଜ, ଶ୍ୱେତ ଅଂଶରେ ବନ୍ଦେ ମାତରମ୍ ଅଙ୍କିତ ଥିଲା ଏବଂ ସବୁଜ ଅଂଶର ଡାହାଣ ପଟେ ଚନ୍ଦ୍ର ଓ ବାଁପଟେ ଚନ୍ଦ୍ର ଚିହ୍ନରେ ଚିହ୍ନିତ ହୋଇଥିଲା । ଆମ ଦେଶ ଭିତରେ ନୁହେଁ, ଦେଶ ବହାରେ ଅର୍ଥାତ୍ ବିଲାତ ଓ ଜର୍ମାନୀରେ ରହୁଥିବା ଦେଶପ୍ରେମୀମାନେ ଏହାର କଳ୍ପନା କରିଥିଲେ । ମାଡାମ୍ ଖେମ୍‌ଜି କାମା ହିଁ ଏହାର ମୂଳ କଳ୍ପନା କରିଥିଲେ । ନିକଟରେ ୧୯୯୯ରେ ବମ୍ବେଠାରେ ତାଙ୍କର ତିରେଧାନ ହେଲା । ଏହାକୁ ସେମାନେ ଜାତୀୟ ପତାକା ବୋଲି ଚିନ୍ତା କରିଥିଲେ ମାତ୍ର ଦେଶ ଭିତରେ ତତ୍କାଳୀନ ଭାରତୀୟମାନେ ଏହାକୁ ଗ୍ରହଣ କଲେ ନାହିଁ ।

ଦ୍ୱିତୀୟଟି ହେଲା, ଲାଲ୍ ଓ ସବୁଜ ଦୁଇ ରଂଗର ପତାକା । ଦେଶରେ ହୋମରୁଲ୍ ଆନ୍ଦୋଳନ ବେଳେ ଏହାର ପ୍ରଚଳନ ଥିଲା । ଏଥିରେ ପାଞ୍ଚଟି ଲାଲ୍ ଓ ଚାରୋଟି ସବୁଜ ଗାର ଥିଲା । ଏକ ବଡ଼ ଭାଲୁର ଚିତ୍ର ଥିଲା । ୟୁନିଅନ୍ ଜ୍ୟାକ୍‌ଟି ଉପରେ ଅଙ୍କିତ ହୋଇଥିଲା ।

ଗାନ୍ଧିଜୀଙ୍କ ଦ୍ୱାରା ତୃତୀୟଟ ରୂପ ନେଲା ୧୯୨୧ରେ । ଆନ୍ଧ୍ରପ୍ରଦେଶର ବିଜୟାୱାଡ଼ାଠାରେ ଅଖିଳଭାରତ କଂଗ୍ରେସ କମିଟି ଅଧିବେଶନ କାଳରେ ଗାନ୍ଧିଜୀଙ୍କ ଦ୍ୱାରା ପ୍ରସ୍ତାବିତ ଶ୍ୱେତ, ସବୁଜ ଓ ଲାଲ ଓ ସବୁରଂଗକୁ ଧରି ମଝିରେ ଚରଖାର ଚିହ୍ନର ପତାକା । କତାକଟି ଆନୁଷ୍ଠାନିକ ସ୍ୱୀକୃତି ନପାଇ ୧୯୩୧ ଯାଏ ବ୍ୟବହୃତ ହେଉଥିଲା ।

ଆଉଥରେ ୧୯୩୧ରେ ଏହାର ପରିବର୍ତ୍ତନକୁ କଂଗ୍ରେସ କାର୍ଯ୍ୟକାରୀ କମିଟି ଗ୍ରହଣ କରିନଥିଲା । ଏହକ ପତାକାର ପରିବର୍ତ୍ତନର ଚିହ୍ନ ଥିଲା, ହରିତ୍ ଅଂଶଟି ବାମ ପାର୍ଶ୍ୱର ଉର୍ଦ୍ଧରେ ରହିବ ।

ଏହାପରେ ଅଥାତ୍ ୧୯୩୧ରେ ଗାନ୍ଧିଜୀଙ୍କ ଦ୍ୱାରା ପ୍ରସ୍ତାବିତ ଓ କାର୍ଯ୍ୟକାରୀ କମିଟି ଦ୍ୱାରା ଅନୁମୋଦିତ ପତାକା ଆନୁଷ୍ଠାନିକ ମର୍ଯ୍ୟାଦା ପାଇଲା । ଏହାର ତିନୋଟି ରଂଗ ହେଲା

ହରିତ୍, ଶ୍ୱେତ ଓ ସବୁଜ । ଚରଖା ରହିବ ମଝିରେ; ଆକାର ହେବ ୩.୨ ଭାଗ । ରଂଗ ଓ ଚରଖାର ସ୍ଥାନକୁ ଏହି ପତାକାରେ ସାମାନ୍ୟ ପରିବର୍ତ୍ତନ କରାଯାଇଥିଲା । ବମ୍ବେରେ ଏ.ଆଇ.ସି.ସି. ଅଧିବେଶନରେ ଏହି ପ୍ରସ୍ତାବ ଅନୁମୋଦିତ ହୋଇଥିଲା ।

ତିନୋଟି ରଂଗ କ'ଣ ସୂଚାଏ - ଯଥା ହରିତ୍ ହେଉଚି ସାହସ ଓ ତ୍ୟାଗ, ଶ୍ୱେତ ହେଉଚି ସତ୍ୟ ଓ ଶାନ୍ତି; ସବୁଜ ହେଉଚି ବିଶ୍ୱାସ ଓ ଶକ୍ତି । ଚରଖା ସୂଚିତ କରେ ଜନଗଣଙ୍କ ମଂଗଳ ।



# ଦକ୍ଷିଣ ଆଫ୍ରିକାରେ ଗାନ୍ଧିଜୀଙ୍କୁ ପ୍ରଥମ କାରାଦଣ୍ଡ
# ୧୯୦୭ ଡିସେମ୍ବର ୨୭

ବ୍ରିଟିଶ୍ ସାମ୍ରାଜ୍ୟର ଆଉ ଏକ ବୃହତ ଉପନିବୋଶ ଦକ୍ଷିଣ ଆଫ୍ରିକା । ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ଆଫ୍ରିକାର କଳା ଲୋକଙ୍କୁ ମଣିଷ ନୁହଁ, ମଣିଷରୂପକ ପଶୁ ବୋଲି ବିଚାରୁଥିଲେ । ଦକ୍ଷିଣ ଆଫ୍ରିକାରେ ସେ କାଳରେ ଭାରତ, ଚୀନ ପ୍ରଭୃତି ଦେଶରୁ ଯାଇ ରହୁଥିବା ଲୋକଙ୍କୁ ମଧ ହୀନ ଚକ୍ଷୁରେ ଦେଖୁଥିଲେ । ସ୍ୱଦେଶବାସୀ ଆଫ୍ରିକୀୟ ଓ ଅନ୍ୟମାନଙ୍କୁ ବ୍ରିଟିଶ୍ ଗୋରା ଲୋକ ରହୁଥିବା ଜାଗାଠାରୁ ଦୂରରେ ରଖାଯାଉଥିଲା । ଗୋରାଙ୍କ ସହିତ ବସ୍ ଗାଡ଼ିରେ ବା ଟ୍ରେନ୍‌ରେ ଯିବାଆସିବାକୁ ଅପରାଧ ବୋଲି ଧରାଯାଉଥିଲା । ଗାନ୍ଧୀ ବାରିଷ୍ଟରୀ କରି ଟ୍ରେନ୍‌ରେ ଗୋରାଲୋକ ଥିବା ରେଳଡବାରେ ବସିବାରୁ ତାଙ୍କୁ ଡବାରୁ ଧକ୍କା ଦେଇ ବାହାର କରାଯାଇଥିଲା । ସେ ଏକ ଦୀର୍ଘ ଇତିହାସ ।

ସେହି ଦକ୍ଷିଣ ଆଫ୍ରିକାରେ ଗାନ୍ଧଜୀଙ୍କ ସଂଗ୍ରାମୀ ଜୀବନର ଆରମ୍ଭ । ତାଙ୍କୁ କାହିଁକି ଜେଲ୍‌ଦଣ୍ଡ ହୋଇଥିଲା ତାହାର ବିବରଣୀ ହେଲା - ଦକ୍ଷିଣ ଆଫ୍ରିକାରେ ବ୍ରିଟିଶ୍ ପୁଲିସ୍‌ଠାରୁ ୧୯୦୭ ଡିସେମ୍ବର ୨୭ ତାରିଖରେ ଟ୍ରାନ୍ସଭାଲ୍‌ର ମାର୍ଲବରୋ ହାଉସ୍‌ରେ ହାଜର ହେବା ଲାଗି ଗାନ୍ଧିଜୀ ସମନ ପାଇଲେ । ଚୀନ୍ ଆଧିବାସୀଙ୍କ ଦେତା କ୍ୱିନ୍‌ଙ୍କ ସମେତ ଅନ୍ୟ ୨୪ଜଣଙ୍କୁ ଗିରଫ କରାଯାଇ ବିଭିନ୍ନ ମାଜିଷ୍ଟ୍ରେଟ୍‌ଙ୍କ ଅଦାଲତରେ ହାଜର ହେବାକୁ ପଡ଼ିବ ବୋଲି ସେ ମଧ ସମ୍ବାଦ ପାଇଲେ । ଏମାନଙ୍କୁ ଦକ୍ଷିଣ ଆଫ୍ରିକା ଉପନିବେଶକୁ ଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ମାତ୍ର ସେମାନେ ବ୍ରିଟିଶ୍ ଉପନିବେଶକୁ ନଛାଡ଼ିବା ଦୋଷରେ ଅଭିଯୁକ୍ତ ହୋଇଥିଲେ ।

ଦକ୍ଷିଣ ଆଫ୍ରିକାର ପ୍ରିଟୋରିଆଠାରେ ଅନ୍ୟ ଅଭିଯୁକ୍ତମାନଙ୍କୁ ଅଦେଶ ଉଲଂଘନ ଅଭିଯୋଗରେ ୩ମାସ ଲେଖାଏଁ ସଶ୍ରମ କାରାଦଣ୍ଡ ଦିଆଯିବାବ କଥା ଗାନ୍ଧିଜୀ ଅବଗତ ହୋଇଥିଲେ । ଅଦାଲତରେ ସେ ଦୋଷ ସ୍ୱୀକାର କରି ବିଚାରକଙ୍କୁ କହିଲେ ଯେ, "ଯଦି ସେମାନେ ଅପରାଧ କରିଛନ୍ତି ତେବେ ସେମାନଙ୍କଠାରୁ ମୋର ଅପରାଧ ଅଧିକ ଓ ମୋତେ କଠୋର ଦଣ୍ଡ ଦିଆଯାଉ ।" ଗାନ୍ଧିଜୀଙ୍କୁ ୨ମାସ ସଶ୍ରମ କାରାଦଣ୍ଡ ମିଳିଲା ।



# ଲୋକମାନ୍ୟ ତିଳକ ଗିରଫ, ଦେଶବ୍ୟାପୀ ଅଭୁଲା ପ୍ରତିବାଦ, ଶ୍ରମିକଶ୍ରେଣୀର ପ୍ରଥମ ରାଜନୈତିକ ଧର୍ମଘଟ ୧୯୦୮ ଜୁନ୍ ୨୪

ସ୍ୱାଧୀନତା ସଂଗ୍ରାମର ଅନନ୍ୟ ଯୁଗପୁରୁଷ ବାଳ ଗଂଗାଧ ତିଳକଙ୍କୁ ତାଙ୍କ ଦ୍ୱାରା ପ୍ରକାଶି କେଶରୀ ପତ୍ରିକାରେ ବ୍ରିଟିଶ୍ ବିରୋଧି ଲେଖା ଲେଖିଥିବା ଅଭିଯୋଗରେ ୧୮୯୭ରେ ପ୍ରଥମ ଦଫାରେ ଗିରଫ କରି ୧୮ମାସ ଜେଲଦଣ୍ଡ ଦିଆଯାଇଥିଲା । ୧୯୦୫ରୁ ଆରମ୍ଭ ସ୍ୱଦେଶୀ ଆନ୍ଦୋଳନ କାଳରେ ୧୯୦୮ ଜୁନ୍ ୨୪ ତରିଖରେ ପୁଣି କୋଶରୀ ପତ୍ରିକାରେ ବ୍ରିଟିଶ୍ ବିରୋଧୀ ଲୋଖା ପ୍ରକାଶ କରିବା ଅଭିଯୋଗରେ ତାଙ୍କୁ ଗିରଫ କରାଗଲା ଏବଂ ୬ବର୍ଷ କରାଦଣ୍ଡ ଦେଇ ବର୍ମା (ସେତେବେଳେ ବ୍ରିଟିଶ ଅଧୀନ)ର ମାଣ୍ଡାଲା ଜେନଲ୍‌କୁ ପଠାଗଲା । ସ୍ୱଦେଶୀ ଆନ୍ଦୋଳନ କାଳରେ ଚରମପନ୍ଥୀ ଓ ନରମପନ୍ଥୀ ଏପରି ଦୁଇ ଭାଗରେ କଂଗ୍ରେସ ବିଭକ୍ତ ହୋଇଥାଏ । ତିଳକଙ୍କୁ ନରମପନ୍ଥୀମାନେ କଂଗ୍ରେସରୁ ବହିଷ୍କାର କରିଥାନ୍ତି । ଏତେବେଳକୁ ଭାରତବାସୀଙ୍କ ରାଜନୈତିକ ଚେତନାରେ ଲକ୍ଷଣୀୟ ପରିବର୍ତ୍ତନ ଘଟିନଥାଏ ।

ତାଙ୍କ ଗିରଫ ଓ ଦଣ୍ଡାଦେଶ ପ୍ରଚାରିତ ହେବମାତ୍ରେ ବମ୍ବେରେ ନରନାରୀ କେବଳ ନୁହନ୍ତି, ବିଭିନ୍ନ ଲୁଗାକଳ ଓ ଅନ୍ୟାନ୍ୟ କାରଖାନାରେ କାମ କରୁଥିବା ଶ୍ରମିକମାନେ ରାଜରାସ୍ତାକୁ ସହ୍ଲେଇଆସିଲେ । ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଜାତୀୟ ନେତାଙ୍କ ଗିରଫ ସ ଜେଲ୍‌ଦଣ୍ଡ ବିରୁଦ୍ଧରେ ପ୍ରଥମଥର ପାଇଁ ଶ୍ରମିକ ଓ ନାଗରିକମାନଙ୍କ ପକ୍ଷରୁ ରାଜନୈତିକ ଧର୍ମଘଟ ଓ ହରତାଳ ସଂଘଟିତ ହେଲା । ସେହିକାଳରୁ ହରତାଳ ଓ ଧର୍ମଘଟ ସାମ୍ରାଜ୍ୟବାଦ-ପୁଞ୍ଜିବାଦ ବିରୋଧୀ ଏକ ରାଜନୈତିକ ଅସ୍ତ୍ରରୂପେ ବ୍ୟବହୃତ ହେଲା ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଭାରତରେ ପୁଞ୍ଜିବାଦର ଅଭିବୃଦ୍ଧି ସାଙ୍ଗକୁ ସେଥିରେ ସନ୍ତୁଳିତ, ଶୋଷିତ, ନିର୍ଯ୍ୟାତିତ ହେଉଥିବା ଶ୍ରମିକଶ୍ରେଣୀର ସ୍ୱତଃସ୍ଫୂର୍ତ୍ତ ଆନ୍ଦୋଳନ ଆରମ୍ଭ ହୋଇଗଲା । ଲୋକମାନ୍ୟ ତିଳକ ଥିଲେ ସେ କାଳର ଶିକ୍ଷିତ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ସ୍ୱାଧୀନତାପ୍ରେମୀ ଯୋଦ୍ଧା । ସାମ୍ରାଜ୍ୟବାଦୀ ବ୍ରିଟିଶ୍

ଶାସନ ଓ ପୁଞ୍ଜିବାଦୀ ଶୋଷଣର ତିକ୍ତ ଅଭିଜ୍ଞତା ସେକାଳରେ ଅନେକ ଶିକ୍ଷିତ ବୁଦ୍ଧିଜୀବୀଙ୍କୁ ସଂଗ୍ରାମପଥରେ ଅବତୀର୍ଣ୍ଣ କରାଇଥିଲା । ବିଂଶ ଶତାବ୍ଦୀର ଆଦ୍ୟକାଳର ଶ୍ରମିକ ଶୋଷଣର ଚିତ୍ର ଦେକାଯାଉ । ଶ୍ରମିକାମାନଙ୍କୁ ପୁଞ୍ଜିପତିମାନଙ୍କ କାରଖାନାରେ ଦିନକୁ ୧୨ରୁ ୧୪ ଘଣ୍ଟା କାମକରିବାକୁ ବାଧ୍ୟ କରାଯାଉଥିଲା ।

ବାଳ ଗଙ୍ଗାଧର ତିଳକ ତାଙ୍କର ମରାଠୀ ଭାଷାରେ ପ୍ରକାଶିତ 'କେଶରୀ' ଏବଂ ଇଂରାଜୀରେ ପ୍ରକାଶିତ 'ମରାଠୀ'ରେ ବ୍ରିଟିଶ୍ ସରକାରର ଅତ୍ୟାଚାର, ଦେଶର ଦାସତ୍ୱ, ସେଥିରୁ ମୁକୁଳିବାର ବାଟ ଓ ସେଥିପାଇଁ ଆନ୍ଦୋଳନର ବାର୍ତ୍ତା, ପ୍ରବନ୍ଧ, ଅଗ୍ରଲେଖା ପ୍ରକାଶ କରୁଥିଲେ । ସେତେବେଳେ ଦେଶରେ କୌଣସି ସଂଗଠିତ ଟ୍ରେଡ୍ ୟୁନିଅନ୍ କାର୍ଯ୍ୟକଳାପ ଜନ୍ମ ନେଇନଥାଏ । ତିଳକ ଓ ତାଙ୍କ ସହଯୋଗୀ, ସମ ଆଦର୍ଶବାହୀ ସାଥୀମାନେ କେତେକ କାର୍ଯ୍ୟକ୍ରମ ନିର୍ଣ୍ଣୟ କରିଥିଲେ । କାର୍ଯ୍ୟସୂଚିରେ ଅନ୍ତର୍ଭୁକ୍ତ ଥିଲା ସ୍ୱଦେଶୀ, ସ୍ୱରାଜ, ଜାତୀୟ ଶିକ୍ଷା ଏବଂ ଅମଲାତନ୍ତ୍ରୀ ହାକିମ, ପୁଲିସ୍ ଏବଂ ଅତ୍ୟାଚାରୀ ଶୋଷକମାନଙ୍କ ବିରୁଦ୍ଧରେ ଅନ୍ଦୋଳନ । ବରୋଦାର ଦେବାନଙ୍କ ଅତ୍ୟାଚାର ବିରୁଦ୍ଧରେ ସେ ଅଭିଯାନ ଚଳେଇଥିଲେ । ତାଙ୍କର ଏପରି ରାଜନୈତିକ କାର୍ଯ୍ୟରୁ ବୁଦ୍ଧିଜୀବୀ ନୁହନ୍ତି, ଚାଷୀ ଓ ଶ୍ରମିକମାନେ ମଧ୍ୟ ସ୍ୱାଧୀନତା ଓ ମୁକ୍ତ ହାସଲ ଲାଗି ଅନୁପ୍ରେରଣା - ପାଇବାରେ ଲାଗିଲେ । ଏହି ପ୍ରେରଣା ପାଇ ବମ୍ବେର ଶ୍ରମିକମାନେ କାମ ସମୟ କମାଇବା, ମଜୁରୀ ବୃଦ୍ଧି କରିବା ଭଳି ବଞ୍ଚିବାର କେତେକ ମୌଳିକ ଦାବୀ ଘେନି ଧର୍ମଘଟମାନ ଆରମ୍ଭ କରିଦେଲେ ।

ତିଳକଙ୍କ ଗିରଫ ଓ ବ୍ରିଟିଶ ଅଦାଲତରେ ବିଚାର କାଳରେ ବମ୍ବେ ଜନତାଙ୍କ ମଧ୍ୟରେ ବିକ୍ଷୋଭ ଓ ପ୍ରତିବାଦର ପ୍ରବାହ ଛୁଟିଲା । ବିଚାର ଅଦାଲତର ପରିସରରେ ୧୯୦୮ ଜୁନ୍ ୨୯ ତାରିଖରେ ସହସ୍ର ସହସ୍ର ଜନତାର ପ୍ରତିବାଦ ଉପରେ ପୁଲିସ୍ ଚଢ଼ାଉ କଲା । ଅସଲ ସଂଘର୍ଷ ଜୁଲାଇ ୧୩ ତାରିଖରେ ସଂଘଟିତ ହେଲା । ସେଦିନ ତିଳକଙ୍କ ବିଚାରର ଆଖିର୍ ଦିନ । ବ୍ରିଟିଶ ପୁଲିସ୍‌ବାହିନୀକୁ ବିଚାରାଳୟର ସମ୍ମୁଖ ରାସ୍ତାଠାରୁ ଆରମ୍ଭ କରି ବମ୍ବେ ସହର ଓ ସହରତଳିରେ ସବୁ ମିଲ୍‌କୁ ପଡ଼ିଥିବା ରାସ୍ତାରେ ମୁତୟନ କରାଗଲା । ଯେମିତି ଶ୍ରମିକ ବା ଅନ୍ୟମାନେ ବିଚାରାଳୟ ଦୁର୍ଗ ପାଖକୁ ଆସିନପାରିବେ ।

ବମ୍ବେ ପୁଲିସ୍ କମିଶନର୍ ମିଲ୍ ମାଲିକମାନଙ୍କୁ ସତର୍କ କରାଇ ସରକାର କଳକୁ ସମର୍ଥନ କରିବାକୁ ନିର୍ଦ୍ଦେଶ ଦେଲେ । ଶ୍ରମିକମାନେ ଯେମିତି ବିକ୍ଷୋଭରେ ନବାହାରନ୍ତି, ତାହା ଦେଖିବାକୁ ସେ କଡ଼ା ଚେତାବନୀ ଶୁଣାଇଦେଲେ ।

ମାତ୍ର ତିଳକଙ୍କ ଲୋକପ୍ରିୟତା ପ୍ରତି ସମ୍ମାନ ଦର୍ଶାଇ ଏବଂ ଅତ୍ୟାଚାର

ନିର୍ଯ୍ୟାତନାର ବିରୋଧ କରି ଶ୍ରମିକମାନେ ରାଜରାସ୍ତାକୁ ବାହାରିପଡ଼ିଲେ ।

ସେଦିନ ପ୍ରତ୍ୟୁଷରୁ ହିଁ ଗ୍ରଭ୍‌ସ, କଟ୍ ଏଣ୍ଡ୍ କୋ କାରଖାନାଗୁଡ଼ିକର ଶ୍ରମିକମାନେ ପ୍ରବଳ ଆକ୍ରମଣ ସତ୍ତ୍ୱେ ସନ୍ଧ୍ୟାବେଳକୁ ବିକ୍ଷୁବ୍ଧ ଶ୍ରମିକଙ୍କ ଏକ ଅଂଶ ଓ ଜନତା ଦୁର୍ଗ ଭିତରେ ପ୍ରବେଶ କରିଗଲେ । ରାସ୍ତାରେ ଶ୍ରମିକ ଓ ସାଧାରଣ ଜନତା ପଟୁଆର ବାହାର କଲେ । ପୁଲିସ୍ ସେମାନଙ୍କ ଉପରେ ଚଢ଼ଉ ଆରମ୍ଭ କଲାରୁ ପ୍ରଥମ ସଂଘର୍ଷ ଆରମ୍ଭ ହୋଇଗଲା ।

ଜୁଲାଇ ୧୮ରେ ବମ୍ବେରୁ ପ୍ରେରିତ ରଏଟର୍ ସମ୍ବାଦ ସରବରାହ ସଂସ୍ଥା ରିପୋର୍ଟ ଅନୁସାରେ ପାରେଲ୍ ଜିଲ୍ଲାର ପ୍ରଧାନ ପ୍ରଧାନ ରାସ୍ତାରେ ଥିବା ୨୨ଟି ମିଲ୍‌ରେ କାମ କରୁଥିବା ୨୫ ହଜାର ଶ୍ରମିକଙ୍କ ମଧ୍ୟରୁ ୨୦ ହଜାର ଶ୍ରମିକ କାମ ବନ୍ଦ କରିଦେଲେ ଏବଂ ପରେ ଅନ୍ୟାନ୍ୟ ମିଲ୍‌ର ଶ୍ରମିକମାନଙ୍କ ସହିତ ମିଳିତ ହେଲେ । ୧୭ ଜୁଲାଇରେ ପାରେଲ୍ ଜିଲ୍ଲା ଓ ସମଗ୍ର ବମ୍ବେ ମହାନଗରୀର ଅନ୍ୟାନ୍ୟ ଶ୍ରମିକ ଧର୍ମଘଟରେ ଯୋଗ ଦେଲେ । ପାରେଲ ଜିଲ୍ଲା ହିଁ ବିଶାଳ ବିକ୍ଷୋଭର କେନ୍ଦ୍ରସ୍ଥଳୀ ହେଲା । ପୁଲିସ୍, ପ୍ରଶାସନ ଓ ମିଲ୍ ମାଲିକମାନଙ୍କ ଧମକ ଚମକ ବ୍ୟର୍ଥ ହୋଇଗଲା ।

## ଗୁଳି ଚାଲିଲା, ୨୦୦ ମୃତ

୧୯୦୮ ଜୁଲାଇ ୧୮ରେ ଧର୍ମଘଟକାରୀ, ହରତାଳକାରୀ, ବିକ୍ଷୋଭକାରୀମାନଙ୍କ ଉପରେ ବ୍ରିଟିଶ୍ ନୃଶଂସତାର ଚରମ ନିଦର୍ଶନ ମିଳିଲା । ଚାଲିଲା ଅବାରିତ ଗୁଳି । ତତ୍କାଳୀନ ବମ୍ବେରେ ଥିବା ରୁଷ କନ୍‌ସଲ୍ ଅଫିସ୍‌ର ତଥ୍ୟ ଅନୁସାରେ ଭାରତର ୨୦୦ ବ୍ୟକ୍ତି ଗୁଳିର ଶିକାର ହୋଇ ପ୍ରାଣବଳି ଦେଲେ । ଏହି ଜଘନ୍ୟ ନରସଂହାର ଓ ପୁଲିସ୍‌ମାନଙ୍କ ଅତ୍ୟାଚାର ହିଁ ବମ୍ବେ ଶ୍ରମିକ ସମୁଦାୟର ଓ ଜନତାର ପୂର୍ବର ସମସ୍ତ ମୋହ ଭଙ୍ଗ କରିଦେଲା ଏବଂ ସେମାନଙ୍କର ରକ୍ଷଣଶୀଳ ଦୃଷ୍ଟିଭଙ୍ଗୀ ଦୂର ହେବାକୁ ଲାଗିଲା । ବମ୍ବେ ରାଜରାସ୍ତା ରାଜନୈତିକ ସଂଗ୍ରମସ୍ଥଳୀରେ ପରିଣତ ହେଲା । ୧୯୦୮ ଜୁଲାଇ ୧୯ ତାରିଖରେ ପୁଣି ଶ୍ରମିକମାନେ ଧର୍ମଘଟ କଲେ । ପାରେଲ୍‌ରେ ଥିବା ୨୨ଟି ମିଲ୍ ମଧ୍ୟରୁ ମାତ୍ର ୫ଟି ମିଲ୍‌ରେ ଶ୍ରମିକ କାମରେ ଯୋଗ ଦେଇଥିଲେ । ତା'ର ଅର୍ଥ ପାରେଲ୍‌ର ୨୦ ହଜାର ଶ୍ରମିକ ଧର୍ମଘଟରେ ଲିପ୍ତ ହୋଇଥିଲେ । ପାରେଲ୍‌ର ଉତ୍ତରରେ ଥିବା ୪୫ଟି ମିଲ୍ ମଧ୍ୟରୁ ୨ଟିକୁ ଛାଡ଼ିଦେଲେ ସେସବୁ ମିଲ୍‌ର ୪୦ ହଜାର ଶ୍ରମିକ ପ୍ରତିବାଦ ଧର୍ମଘଟରେ ସାମିଲ୍ ହୋଇଥିଲେ । ଜାତୀୟ ନେତା ତିଳକଙ୍କ ବିଚାର ଓ ଦଣ୍ଡବିଧାନ ବିରୁଦ୍ଧରେ ବମ୍ବେ ମହାନଗରୀରେ ପ୍ରାୟ ୬୦ଟି ମିଲ୍‌ର ଅଧିକାଂଶ ଶ୍ରମିକ ରାଜନୈତିକ ଧର୍ମଘଟରେ ଯୋଗ ଦେବା ସ୍ୱାଧୀନତା ସଂଗ୍ରାମର ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ।

୨୦ ଜୁଲାଇ ବେଳକୁ ଆଉ ଯେତୋଟି ମିଲ୍‌ର ଶ୍ରମିକ ଯିଏ ବାଦ୍ ପଡ଼ିଯାଇଥିଲେ, ସେସବୁ ମିଲ୍‌ରେ ମଧ୍ୟ ଧର୍ମଘଟ ଆରମ୍ଭ ହୋଇଗଲା । ଉଦାହରଣ ସ୍ୱରୂପ ବ୍ରିଟିଶ୍ ମାଲିକଙ୍କ ଜାକୋଭ୍ ସାସୋନ୍ ମିଲ୍‌ରେ ସକାଳ ସିଫ୍ଟରେ ମୋଟ ୩୨୬୫ ଶ୍ରମିକଙ୍କ ମଧ୍ୟରୁ ମାତ୍ର ୧୨୫ଜଣ କାମକୁ ଆସିଥିଲେ । ମିଲ୍ ଆଗରେ ୬/୭ ହଜାର ଶ୍ରମିକ ଠୁଳହୋଇ ପ୍ରଦର୍ଶନ କଲାବେଳେ ବିଟିଶ୍ ସୈନ୍ୟବାହିନୀ ପହଞ୍ଚି ସ୍ଥାନ ଛାଡ଼ିଯିବାକୁ ଆଦେଶ ଦେଲେ । ମାତ୍ର ଶ୍ରମିକମାନେ ଅପସରି ନଯିବାରୁ ଗୁଳି ଚାଳିଲା । ଜଣେ ଶ୍ରମିକ ନିହତ ଓ ଅନେକ ଘାଏଲ ହେଲେ ।

## ଧର୍ମଘଟର ବ୍ୟାପକ ରୂପ

ମିଲ୍ ଶ୍ରମିକମାନଙ୍କ ସହିତ ଜୁଲାଇ ୨୧ରେ ବନ୍ଦର ଶ୍ରମିକ ଧର୍ମଘଟରେ ସାମିଲ୍ ହେଲେ । ସେହିଦିନ ଆଉ ୨୦ ହଜାର ମିଲ୍ ଶ୍ରମିକ ଧର୍ମଘଟ ଆରମ୍ଭ କରିଦେଲେ । ଜୁଲାଇ ୧୯-୨୦ରୁ ୨୨ ତାରିଖ ଭିତରେ ୭୦ରୁ ୮୦ ହଜାରରେ ଧର୍ମଘଟକାରୀଙ୍କ ସଂଖ୍ୟା ପହଞ୍ଚି ୨୩ ତାରିଖ ବେଳକୁ ୧ ଲକ୍ଷ ଟପିଗଲା । ବ୍ୟବସାୟ ପ୍ରତିଷ୍ଠାନ, ଦୋକାନ ବଜାର ଏବଂ ଷ୍ଟକ୍ ମାର୍କେଟ୍ ବା ଫଟକା ବଜାରର ଲୋକେ କାରବାର ଛାଡ଼ି ହରତାଳରେ ସାମିଲ୍ ହେଲେ । ୧୯୦୮ ଜୁଲାଇ ୨୩ ତାରିକରେ ବମ୍ବେରେ ସମ୍ପୂର୍ଣ୍ଣ ହରତାଳ । ଏଥିରେ ମଧ୍ୟବିତ୍ତ ଶ୍ରେଣୀର ଲୋକେ ମଧ୍ୟ ଯୋଗ ଦେଲେ ।

୨୩ ଜୁଲାଇରେ ତିଳକଙ୍କୁ ଏକ ଟ୍ରେନ୍ ଯୋଗେ ଅହମଦାବାଦ ଜେଲ୍‌କୁ ନିଆଗଲା । ସଙ୍ଗେ ସଙ୍ଗେ ବମ୍ବେ ପ୍ରଦେଶ (ସେତେବେଳେ ମହାରାଷ୍ଟ୍ର, ଗୁଜୁରାଟ ବମ୍ବେ ପ୍ରଦେଶ ରୂପେ ପରିଚିତ ଥିଲା)ର କେବଳ ନୁହଁ ଭାରତର ଅନ୍ୟତ୍ର ନଗର ନଗରୀରେ ପ୍ରତିବାଦ, ପ୍ରଦର୍ଶନ, ବିକ୍ଷୋଭ ଅନୁଷ୍ଠିତ ହେଲା । ସାରା ଭାରତବର୍ଷର ଜନତା ତିଳକଙ୍କ ଗିରଫ ଦଣ୍ଡାଦେଶର ପ୍ରତିବାଦ କରିଥିଲେ । ବମ୍ବେ ପ୍ରଦେଶର ଶ୍ରମିକଶ୍ରେଣୀ ହିଁ ଏପରି ସୁବିଶାଳ ରାଜନୈତିକ ପ୍ରତିବାଦର ଉଦ୍‌ଗାତା ହୋଇଥିଲା ।

ଜୁଲାଇ ୨୪ ତାରିଖରେ ସମସ୍ତ ମିଲ୍ ବନ୍ଦ । ସେହିଦିନ ପାରେଲ୍ ଜିଲ୍ଲାରେ ସାକାଳ ୭ରୁ ଦିନ ୧୧ଟା ଯାଏଁ ଶ୍ରମିକ ଓ ବ୍ରିଟିଶ ପୁଲିସ୍ ବାହିନୀ ମଧ୍ୟରେ ସଂଘର୍ଷ ହେଲା । ପ୍ରାୟ ୫ ହଜାର ଶ୍ରମିକ ଚିଚଂପୋଖଲି କାଲ୍‌ଚୌକି ଇଲାକାରେ ଗୁଣ୍ଡ ହୋଇ ପଟୁଆର କରି ଆଉ ଏକ ବଡ଼ଧରଣର ରାଲା ଅଭିମୁଖେ ଯାତ୍ରା କଲେ । ଦୁଇଜଣ ଗୋରା ଅଫିସର ଓ ପୁଲିସ୍ ବାହିନୀ ଚିଚଂପୋଖଲି ଏବଂ କାଲ୍‌ଚୌକି ଛକରେ ସେମାନଙ୍କୁ ଅଟକାଇ ଫେରସ୍ତ ଯିବାକୁ ଧମକ ଦେଲେ । ମାତ୍ର ଶ୍ରମିକମାନେ ଏପରି ଆଦେଶକୁ ଅମାନ୍ୟ କରି ଗୋରା ସାହେବଙ୍କୁ ଟାହି ଟାପରା କଲେ । ଚାଳିଲା ଗୁଳି । ଗୁଳିମାରି, ହତ୍ୟା କରି ବ୍ରିଟିଶ୍ ପୁଲିସ୍ ପଳାୟନ କଲା । ବହୁଲୋକ ମୃତାହତ ହେବାରୁ

ପ୍ରଦର୍ଶନକାରୀମାନେ କିଛି ସମୟ ପଛକୁ ହଟିଗଲେ ସତ, ମାତ୍ର ପୁନଶ୍ଚ ଆଉ ଦୁଇଟି ଯାଗାରେ ସମବେତ ହେଲେ ।

ଏତେବେଳେକୁ ୧୨ ହଜାର ଶ୍ରମିକ ଏକତ୍ର ହୋଇଗଲେ । ପୁଣି ମାଡ଼ିଆସିଲା ରକ୍ତ ପିପାସୁ ବ୍ରିଟିଶ୍ ପୁଲିସ୍ । ଏଇଠି ଚାଲିଲା ସଂଘର୍ଷ । ଲୋକଙ୍କ ପକ୍ଷରୁ ପଥରମାଡ଼ ହେଲା ବ୍ରିଟିଶ୍ ପୁଲିସ୍ ଉପରେ । ମାତ୍ର ଆଗ୍ନେୟାସ୍ତ୍ରରେ ସଜ୍ଜିତ ବ୍ରିଟିଶ୍ ପୁଲିସ୍ ଗୁଳିରେ ବହୁ ଶ୍ରମିକ ନିହତ ହେଲେ । ଶତ ଶତ ଖଣ୍ଡିଆ ଖାବରା ହେଲେ । ବମ୍ବେ ନଗରୀର ସ୍ୱାଭାବିକ ଜୀବନଯାତ୍ରା ପ୍ରତିବାଦରେ ପଙ୍ଗୁ ହୋଇଗଲା । ବ୍ୟବସାୟ ବାଣିଜ୍ୟ, ବନ୍ଦର, ଯାନବହନ ସବୁ ବନ୍ଦ ହୋଇଗଲା ।

ଏହି ଘଟଣା ପ୍ରଚାରିତ ହୋଇଯିବା ମାତ୍ରେ ବହୁସ୍ଥାନରେ ଶ୍ରମିକ ଓ ପୁଲିସ୍ ମଧରେ ସଂଘର୍ଷ ବଢ଼ିଚାଲିଲା । ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ସୈନ୍ୟବାହିନୀକୁ ପଠାଇବାବେଳେ ଦିନ ୨ଟାରେ କରିରୋଡ୍‌ରେ ଶ୍ରମିକମାନେ ବାଟ ଓଗାଳିଲେ । ଚାଲିଲା ବଡ଼ ଧରଣର ସଂଘର୍ଷ । ଶ୍ରମିକମାନେ ଗଛ ଓ କୋଠା ଉପରୁ, ମୁଖ୍ୟ ରାସ୍ତା ସଂଯୋଗ କରୁଥିବା ଗଳି ରାସ୍ତାମାନଙ୍କରୁ ପଥର ଫିଙ୍ଗା ଆରମ୍ଭ କଲେ । ଶିଳ୍ପ ଶ୍ରମିକମାନଙ୍କ ସହିତ ମିଶିଗଲେ ଜି.ଆଇ.ପି ରେଳବାଇ ୱାର୍କସପ୍‌ର ଶ୍ରମିକମାନେ । ଗୁଳିଗୋଳା ଆଗରେ ଟେକା ପଥର ସମକକ୍ଷ ହୁଅନ୍ତା ବା କିପରି ? ପୁଣି ବହୁ ଶ୍ରମିକ ମୃତାହତ ହେଲେ । ଧର୍ମଘଟକାରୀମାନେ ଏଥିରେ ଦିବନଯାଇ ରେଳଲାଇନ୍ କଡ଼େ କଡ଼େ ଯାଇ ନୂନେ ରେଳକୁ ଅଟକାଇଲେ । ସେଥିରେ ବ୍ରିଟିଶ ବାହିନୀ ସୈନ୍ୟ ଛାଉଣୀକୁ ଫେରୁଥିଲେ । ପୁଲିସ୍ ପକ୍ଷରୁ ପୁଣି ଗୁଳି ଚାଲିଲା ଓ ଆହୁରି ଅନେକ ଶ୍ରମିକ ନିହତ ଓ ଆହତ ହେଲେ । ସେମାନେ ପଛଘୁଞ୍ଚ ଦେବାକୁ ବାଧ ହେଲେ ହେଁ ପାରେଲ ଓ ମହିମ୍ ଜିଲ୍ଲାମାନଙ୍କରେ ଶ୍ରମିକମାନଙ୍କ ଉତ୍ତେଜନା ଅଧିକ ବୃଦ୍ଧିପାଇଲା । ବମ୍ବେରେ ଶ୍ରମିକ ଓ ଜନସାଧାରଣଙ୍କ ଏହି ଅଭୂତପୂର୍ବ ହରତାଳ ଓ ଧର୍ମଘଟରେ ଆତଙ୍କିତ ବ୍ରିଟିଶ କର୍ତ୍ତୃପକ୍ଷ ପୁଞ୍ଜିପତିମାନଙ୍କ ସାହାଯ୍ୟ ସହଯୋଗରେ ଶ୍ରମିକମାନଙ୍କ ଐକ୍ୟ, ଦୃଢ଼ତା ଓ ଦେଶବତ୍ସଳତାକୁ ଚରମାର୍ କରିବାକୁ ବ୍ୟବସ୍ଥା କଲା । ଜୁଲାଇ ୨୪ ତାରିଖରେ ମାଲିକମାନଙ୍କର ଏକ ବୈଠକ ଆହ୍ୱାନ କଲେ ବ୍ରିଟିଶ କର୍ତ୍ତୃପକ୍ଷ । ଏଠାରେ କିପରି ଶ୍ରମିକମାନଙ୍କୁ ଜବତ୍ କରାଯିବ, ତାହାର ଯୋଜନା ନିଆଯାଇଥିଲା ।

ତଥାପି ଧର୍ମଘଟ ଥମିଲାନାହିଁ । ବରଂ ବମ୍ବେର କୋଲାବା ଅଞ୍ଚଳଗୁଡ଼ିକୁ ଅନ୍ଦୋଳନ ବ୍ୟାପିଲା । ସେ ଅଞ୍ଚଳଟି ୧୮ ହଜାର ଶ୍ରମିକଙ୍କ କର୍ମସ୍ଥଳୀ । ଜୁଲାଇ ୨୭ ତାରିଖରେ ପୁଣି ନୂଆ ସଂଘର୍ଷମାନ ସଂଘଟିତ ହେଲା । ପୁଲିସ୍ ଓ ସୈନ୍ୟବାହିନୀଙ୍କ ସହିତ ଶ୍ରମିକମାନଙ୍କର ମୁହାଁମୁହିଁ, ମୁକାବିଲା ହେଲା ।

ପୁଲିସ୍ ଓ ମିଲିଟାରୀମାନଙ୍କ ଗୁଳିଲାଠିରେ ଶହଂଶହଙ୍କ ମୃତ୍ୟୁ ଓ ଅଗଣିତ ଲୋକଙ୍କର ଖଣ୍ଡିଆ ଖାବରା ଓ ଆତଙ୍କରାଜ, ମାଲିକମାନଙ୍କ ଚାପ ଓ ଶ୍ରମିକମାନଙ୍କ ଅନାହାର-ଅର୍ଦ୍ଧାହାର; ଏସବୁ କାରଣରୁ ଶ୍ରମିକ ବିଦ୍ରୋହ କ୍ରମେ ପ୍ରଶମିତ ହେଲା । ଯେଉମାନଙ୍କୁ ଗିରଫ କରାଯାଇଥିଲା, ଅଦାଲତରେ ସେମାନଙ୍କର ବିଚାର କରାଗଲା ଓ ଜେଲ ଜରିମାନା ଦଣ୍ଡରେ ଦଣ୍ଡିତ କରାଗଲା ।

ସ୍ୱାଧୀନତା ସଂଗ୍ରାମର ଇତିହାସରେ ଶ୍ରମିକ ଶ୍ରେଣୀ ସଂଗଠିତ ଭାବରେ ତିଳକଙ୍କ ଗିରଫର ପ୍ରତିବାଦରେ ଯେଉଁ ଧର୍ମଘଟ ଓ ହରତାଳ କଲେ ଏବଂ ଯେପରି ଭାବରେ ନୃଶଂସ ହତ୍ୟା ଓ ନିର୍ଯ୍ୟାତନାର ଶିକାର ହେଲେ, ତାହା ପ୍ରମାଣିତ କଲା ଯେ ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସନ ବିରୁଦ୍ଧରେ ଜାତୀୟ ସଂଗ୍ରାମରେ ଶ୍ରମିକ ଶ୍ରେଣୀ ଏକ ବଡ଼ ଅଂଶୀଦାର ।

ପରାଧୀନ ଏସିଆ ଭୂଖଣ୍ଡର ଅନ୍ୟ କୌଣସି ଦେଶରେ ସେ କାଳରେ ସ୍ୱାଧୀନତା ପାଇଁ ରାଜନୈତିକ ସଂଗ୍ରାମରେ ଶ୍ରମିକମାନେ ଅଂଶଗ୍ରହଣ କରିବା, ଏହା ପ୍ରଥମ ଦୃଷ୍ଟାନ୍ତ । ଦେଶକୁ ପରାଧୀନ କରିଥିବା ବିଲାତର ଶ୍ରମିକ ଶ୍ରେଣୀ ଓ ଅନ୍ୟାନ୍ୟ ଦେଶର ଶ୍ରମିକ ଆନ୍ଦୋଳନ ପରାଧୀନ ଦେଶଗୁଡ଼ିକର ସ୍ୱାଧୀନତା ସଂଗ୍ରାମକୁ ସମର୍ଥନ କରିବା ଦୃଷ୍ଟାନ୍ତମାନ ପରେ ପରେ ଦେଖାଗଲା । ତିଳକଙ୍କ ଗିରଫର ପ୍ରତିବାଦ କରି ଭାରତର ଶ୍ରମିକ ଶ୍ରେଣୀ ଯେଉଁ ଧର୍ମଘଟ ଓ ହରତାଳ କରିଥିଲା, ତାହାକୁ ସେତେବେଳେ ରୁଷିଆର ବଲଶେଭିକ୍ ନେତା ଭି.ଆର.ଲେନିନ୍ ଉଚ୍ଚ ପ୍ରଶଂସା କରି ଲେଖା ଲେଖିଥିଲେ ।



# କାବୁଲ୍‌ରେ ପ୍ରତିଷ୍ଠିତ ଭାରତର ଅସ୍ଥାୟୀ ସରକାର
# ୧୯୧୫ - ଡିସେମ୍ବର ୧ ତାରିଖ

ସ୍ୱାଧୀନତା ସଂଗ୍ରାମର ଅସହଯୋଗ ଆନ୍ଦୋଳନ ପର୍ବ ଆରମ୍ଭ ହେବାକୁ ଆଉ ପାଞ୍ଚବର୍ଷ ବାକି ଥାଏ । ଭାରତର ସ୍ୱାଧୀନତା ଲାଗି ସଂଗ୍ରାମରତ ବହୁ ବିପ୍ଳବୀ ଦେଶରୁ ଗୋପନରେ ବାହାରି ଯାଇ ୟୁରୋପର ପର୍ଲିନ୍ ସହରରେ, ଜେନେଭାରେ, ବିଲାତରେ, ଆମେରିକାରେ ତଥା ଜାପାନରେ, ଆଫଗାନିସ୍ତାନର କାବୁଲ୍‌ରେ ସଂଗଠନ ଗଢ଼ିଥାନ୍ତି । ଜାଲିଅନାବାଗ ହତ୍ୟାକାଳରେ ଭାରତରୁ ବହୁ ବିପ୍ଳବୀ, ଯେଉଁମାନଙ୍କୁ ମୁହାଜିର କୁହାଯାଏ, ସେମାନେ ନବଗଠିତ ସୋଭିଏତ୍ ଦେଶର ତାସକନ୍ଦଠାରେ ମଧ୍ୟ ଏପରି ସଂସ୍ଥା ଗଠନ କରିଥିଲେ ।

ଆଫଗାନିସ୍ଥାନର ରାଜଧାନୀ କାବୁଲ୍‌ଠାରେ ବିଦେଶରେ ରହିଥିବା ଭାରତୀୟ ବିପ୍ଳବୀମାନେ ମିଳିତ ହୋଇ ଏକ ଅସ୍ଥାୟୀ ଭାରତ ସରକାର ପ୍ରତିଷ୍ଠା କରିଥିଲେ । ୧୯୧୫ ଡିସେମ୍ବର ୧ ତାରିଖରେ ଏହି ଅସ୍ଥାୟୀ ଭାରତ ସରକାର ପ୍ରତିଷ୍ଠିତ ହୋଇଥିଲା । ଯେଉଁମାନେ ଏପରି ସରକାର ଗଠନ କରିଥିଲେ, ସେମାନଙ୍କ ସଂକ୍ଷିପ୍ତ ପରିଚୟ ନିମ୍ନ ପ୍ରକାରର ।

ରାଜା ମହେନ୍ଦ୍ର ପ୍ରତାପ ଉତ୍ତରପ୍ରଦେଶରେ ଆଲିଗଡ଼ ସହରରେ ୧୮୩୬ ଡିସେମ୍ବର ୧ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ୧୯୦୬ରେ ସେ କଲିକତା କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ । ୧୯୧୪ରେ ଡିସେମ୍ବରରେ ସ୍ୱେଚ୍ଛାକୃତ ନିର୍ବାସନକୁ ଆଦରି ନେଇ ସେ ୟୁରୋପ ଯାଇ ଜେନେଭାରେ ପହଞ୍ଚଲେ । ସେଠାରେ ସେ ଆଉ ଦୁଇଜଣ ଭାରତୀୟ ବିପ୍ଳବୀ ଶ୍ୟାମଜୀ କୃଷ୍ଣବର୍ମା ଏବଂ ବୀରେନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟ ବା ଚାର୍ଟୋ (ସ୍ୱାମୀ ବିବେକାନନ୍ଦଙ୍କ ଭାଇ)ଙ୍କ ସହିତ ମିଳିତ ହେଲେ । ସେ ୧୯୧୫ରେ ଜର୍ମାନୀର କାଇଜରଙ୍କୁ ଭେଟିଥିଲେ ।

ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ ଓ ବର୍ଲିନ୍ କମିଟିର ନିଷ୍ପତ୍ତି ଅନୁସାରେ ରାଜା ମହେନ୍ଦ୍ର ପ୍ରତାପ ଓ ମୌଲାନା ବରକତୁଲ୍ଲା ୧୯୧୫ ଏପ୍ରିଲ ୧୦ ତାରିଖରେ ଆଫଗାନିସ୍ଥାନରେ ପହଞ୍ଚିଲେ । କାବୁଲ୍‌ରେ ବନ୍ଦୀ ହୋଇ ରହିଥିବା ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଖଲାସ କରିବାରେ ଏହି ସରକାର ସାହାଯ୍ୟ କରିଥିଲା ।

ବର୍ଲିନ୍ କମିଟିର ସଦସ୍ୟ ଓ ଅସ୍ଥାୟୀ ଭାରତ ସରକାରର ପ୍ରତିନିଧି ଭାବରେ ରାଜା ମହେନ୍ଦ୍ର ପ୍ରତାପ ୧୯୧୯ ଆଦ୍ୟ ଭାଗରେ ସୋଭିଏତ୍ ୟୁନିଅନ୍ ଯାଇ ଲେନିନ୍‌ଙ୍କୁ ଭେଟିଥିଲେ ।

ମୌଲାନା ବରକତୁଲ୍ଲା ୧୯୦୭ରୁ ୧୯୧୪ ଯାଏଁ ଜାପାନରେ ନିର୍ବାସନରେ ଥିବାବେଳେ ଅନେକଙ୍କୁ ଉର୍ଦ୍ଦୁ, ପାର୍ଶୀ ଶିକ୍ଷା ଦେଇଥିଲେ । ସେ ଜାପାନରୁ ଆମେରିକାର ସାନ୍‌ଫ୍ରାନ୍‌ସିସ୍‌କୋକୁ ଗଲେ । ରାଜା ମହେନ୍ଦ୍ର ପ୍ରତାପ ବରକାତୁଲ୍ଲାଙ୍କୁ ତାଙ୍କ କାର୍ଯ୍ୟରେ ସାହାଯ୍ୟ କରିବାକୁ ପରାମର୍ଶ ଦେଇଥିଲେ ।



# ସାତଜଣ ଗଦ୍ଦର ବିପ୍ଳବୀଙ୍କୁ ଫାଶିଦଣ୍ଡ
# ପ୍ରଥମ ଲାହୋର ଷଡ଼ଯନ୍ତ୍ର ମକଦମା : ୧୯୧୪-୧୫

ବ୍ରିଟିଶ ଶାସନକାଳରେ ସ୍ୱାଧୀନତା ସଂଗ୍ରାମୀ ବିପ୍ଳବୀମାନଙ୍କୁ ଫାଶି ଓ ଜେଲ୍ ଦଣ୍ଡରେ ଦଣ୍ଡିତ କରାଯାଉଥିବା ଷଡ଼ଯନ୍ତ୍ର ମକଦମାମାନଙ୍କ ମଧ୍ୟରେ ପ୍ରଥମ ଲାହୋର ଷଡ଼ଯନ୍ତ୍ର ମକଦମା ଅନ୍ୟତମ । ୧୯୨୯-୩୦ ଲାହୋର ଷଡ଼ଯନ୍ତ୍ର ମକଦମାରେ ବହୁ ବିପ୍ଳବୀଙ୍କୁ ଫାଶି ଓ ଦୀର୍ଘ କାରାବାସ ଦଣ୍ଡ ଦିଆଯାଇଥିଲା । ପ୍ରଥମ ଲାହୋର ଷଡ଼ଯନ୍ତ୍ର ମକଦମାରେ ୨୪ଜଣ ବିପ୍ଳବୀଙ୍କୁ "ସେମାନେ ମରିବା ପର୍ଯ୍ୟନ୍ତ ବେକଳରେ ରଶି ଟଣାଯିବ", ୨୭ଜଣଙ୍କୁ ଆଜୀବନ କାରାଦଣ୍ଡ ଭୋଗିବାକୁ ପଡ଼ିବ ଓ ଅନ୍ୟମାନେ ତା'ଠାରୁ ଊଣା ବର୍ଷ ଜେଲ୍‌ରେ ବନ୍ଧାହୋଇ ରହିବେ ବୋଲି ବ୍ରିଟିଶ ଅଦାଲତର ରାୟ । ପଞ୍ଜାବରେ ଗଦ୍ଦର ପାର୍ଟି ଏକ ବିପ୍ଳବୀ ସଂଗଠନ । ସ୍ୱାଧୀନତା ସଂଗ୍ରାମ କାଳର ମୁଖ୍ୟ ସଂଗଠନ କଂଗ୍ରେସ ହେଲେ ହେଁ ଗଦ୍ଦର ପାର୍ଟି ପରି ସାରା ଦେଶରେ ବହୁ ଗୁପ୍ତ ବିପ୍ଳବୀ ସଂଗଠନର ଉଦ୍‌ଭବ ହୋଇଥିଲା ।

ଗଦ୍ଦର ପାର୍ଟିର ଗୁପ୍ତ ବୈଠକମାନ ମୁଖ୍ୟତଃ ଗୁରୁଦ୍ୱାରଗୁଡ଼ିକରେ ଅନୁଷ୍ଠିତ ହେଉଥିଲା । ଏହା କିନ୍ତୁ କେବଳ ଶିଖ ବିପ୍ଳବୀମାନଙ୍କ ସଂଗଠନ ନଥିଲା । ଏହି ଗଦ୍ଦର ସଂଗଠନରେ ଶିଖ, ହିନ୍ଦୁ, ମୁସଲମାନ ବିପ୍ଳବୀମାନେ ଥିଲେ । ଏହା ଏକ ଧର୍ମ-ନିରପେକ୍ଷ ବିପ୍ଳବୀ ସଂଗଠନ । ପଂଜାବର ଚାଷୀମାନଙ୍କ ମଧ୍ୟରେ କାମ କରି ସେମାନେ କିପରି ବ୍ରିଟିଶ ଦ୍ୱାରା ଶୋଷିତ ହେଉଛନ୍ତି ତାହା ପ୍ରଚାରକରି ଓ ସଂଗଠନ ଗଢ଼ି ଏହି ପାର୍ଟିର ନେତାମାନେ ଚାଷୀଙ୍କୁ ବ୍ରିଟିଶ ବିରୋଧୀ ଆନ୍ଦୋଳନରେ ସାମିଲ କରାଉଥିଲେ । ଗଦ୍ଦର ପାର୍ଟିର ଏକ ମୁଖ୍ୟ ଅଂଶ ଆମେରିକାରେ ବିଶେଷତଃ ସାନଫ୍ରାନସିସକୋରେ ଥିଲା । ଏହିଠାରୁ ଗଦ୍ଦର ବିପ୍ଳବୀମାନେ ଗୋପନରେ ଭାରତର ବିପ୍ଳବୀମାନଙ୍କ ଲାଗି ଅସ୍ତ୍ରଶସ୍ତ୍ର ପଠାଉଥିଲେ । ୧୯୧୧ରେ ଆମେରିକାରେ, ଗଦ୍ଦର ପାର୍ଟିର ୪୦୦ ବିପ୍ଳବୀ କାମାଗାତାରୁ ଷ୍ଟିମରରେ ଗୋପନରେ ଭାରତକୁ ଅସ୍ତ୍ରଶସ୍ତ୍ର ଆଣିବାବେଳେ କିପରି କାନାଡ଼ା ଓ କଲିକତାରେ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ହତ୍ୟା କରାଗଲା ଓ କିପରି ନିର୍ଯ୍ୟାତନା ଦିଆଯାଉଥିଲା, ତାହାର ବିବରଣୀ ପଢ଼ିଲେ ଦେହ ଶୀତେଇ ଉଠେ ଓ ଦେଶ ପ୍ରେମ ଉଜ୍ଜୀବିତ ହୁଏ ।

ଗଦ୍ଦର ଆନ୍ଦୋଳନ ସଂକ୍ରାନ୍ତରେ ବ୍ରିଟିଶ ଅଫିସର ସ୍ଲାଟେଲୀଙ୍କ ଏକ ରିପୋର୍ଟରେ ଅଛି ଯେ ଗଦ୍ଦର ପାର୍ଟିର ସର୍ବମୋଟ ୪୬ଜଣ ବିପ୍ଳବୀଙ୍କୁ ଫାଶି ଦିଆଯାଇଥିଲା ଏବଂ ୨୭୯ ଜଣ "ଷଡ଼ଯନ୍ତ୍ରକାରୀ'ଙ୍କ ମଧ୍ୟରୁ ଫାଶି ପାଇଥିବା ବ୍ୟକ୍ତିଙ୍କ ଅତିରିକ୍ତ ୬୪ ଜଣ ବିପ୍ଳବୀଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଓ ୧୨୫ ଜଣଙ୍କୁ ଦୀର୍ଘ ବର୍ଷ ଲାଗି କାରାଦଣ୍ଡ ଦିଆଯାଇଥିଲା ।

ଏହି ଗଦ୍ଦର ପାର୍ଟିରେହିଁ ବାବ୍‌ର ନାମକ ଏକ ଅକାଳୀ ସନ୍ତ୍ରାସବାଦୀ ବିପ୍ଳବୀ ସଂଗଠନ ଜନ୍ମ ନେଇଥିଲା । ପଂଜାବର ଚାଷୀମାନଙ୍କ ମଧ୍ୟରେ ସେତେବେଳେ ବାବ୍‌ର ସଂଗଠନ ବିପୁଳ ପ୍ରଭାବ ବିସ୍ତାର କରିଥିଲା । ସ୍ୱାଧୀନତା ସଂଗ୍ରାମର ପରବର୍ତ୍ତୀ ଅଧ୍ୟାୟରେ ଏହି ସଂଗଠନ ବାମପନ୍ଥୀ ଚିନ୍ତା ଚେତନାର ବାହକ ହେଲା ଏବଂ ଏହାହିଁ କୀର୍ତ୍ତି କିଷାନ ପାର୍ଟି ଓ କମ୍ୟୁନିଷ୍ଟ ପାର୍ଟିର ପୂର୍ବସୂରୀ ରୂପେ ଇତିହାସରେ ବିବେଚିତ ହୁଏ ।

୧୯୧୨ରେ ଲର୍ଡ ହାଡ଼ିଙ୍ଗଙ୍କ ଉପରେ ବୋମା ଫିଙ୍ଗିବା ଘଟଣାରେ ଅଭିଯୁକ୍ତ କରାଯାଇ ଅମୀରଚାନ୍ଦ, ଅବଧ ବିହାରୀ, ବାଲମୁକୁନ୍ଦ, ବସନ୍ତ ବିଶ୍ୱାସଙ୍କୁ ଫାଶି ଦିଆଯାଇଥିଲା ।

## ଶହୀଦ ପିଙ୍ଗଲେ - କର୍ତ୍ତାରସିଂହ ଓ ସାଥୀ : ୧୯୧୪-୧୫

ପ୍ରଥମ ଲାହୋର ଷଡ଼ଯନ୍ତ୍ର ମକଦ୍ଦମାଟି ୧୯୧୪ରେ ସଂଘଟିତ । ଭାରତୀୟ ପ୍ରତିରକ୍ଷା ଆଇନ ଅନୁସାରେ ଏକ ବିଶେଷ ଅଦାଲତ ଗଢ଼ାଯାଇ ୬୧ ଜଣ ଗଦ୍ଦର ବିପ୍ଳବୀଙ୍କୁ ଗିରଫ କରାଯାଇଥିଲା । ୧୯୧୫ ସେପ୍ଟେମ୍ବର ୧୩ ତାରିଖରେ ପ୍ରାୟ ପ୍ରକାଶିତ ହୋଇଥିଲା ।

ଏଥିରେ ୨୪ ଜଣ ଫାଶିଦଣ୍ଡ ପାଇଥିବା ବ୍ୟକ୍ତିମାନଙ୍କର ସଂପତ୍ତି ବାଜ୍ୟାପ୍ତ କରାଯାଇଥିଲା । ଫାଶିଦଣ୍ଡ ପାଇଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ୧୭ ଜଣଙ୍କୁ ଭାଇସରାୟ ଯାବଜ୍ଜୀବନ କାରାଦଣ୍ଡ ଦେଇଥିଲେ । ଅନ୍ୟ ୭ଜଣଙ୍କୁ ଫାଶି ଦିଆଯାଇଥିଲା । ଫାଶିଦଣ୍ଡ ଭୋଗ କରିଥିଲେ ସର୍ବଶ୍ରୀ ବିଷ୍ଣୁ ଗଣେଶ ପିଙ୍ଗଲେ, ୫୯ ନମ୍ବର ଅଭିଯୁକ୍ତ କର୍ତ୍ତାର ସିଂହ, ହରନାମ ସିଂହ, ସିଆଲକୋଟ, ବକଶିଷ ସିଂହ ଗିଲାୱାଲି; ସୁରେନସିଂହ ଗିଲୱାଲି ଏବଂ ସୁରଜସିଂହ ଗିଲୱାଲି ।

ପିଙ୍ଗଲେଙ୍କ ବିରୁଦ୍ଧରେ ସାକ୍ଷୀମାନଙ୍କର କିଛି ଅଭିଯୋଗ ନଥିଲା । ତାଙ୍କର ଏକମାତ୍ର ଅପରାଧ ବୋଲି କୁହାଗଲା ଯେ, ସେ ବହୁ ସଭାସମିତିରେ ଭାଗ ନେଇଛନ୍ତି । ସେ ପଂଜାବୀ ଓ ବଂଗାଳୀମାନଙ୍କ ମଧ୍ୟରେ ସଂପର୍କ ସ୍ଥାପନର ସେତୁ ଥିଲେ । ବିପ୍ଳବୀ ରାସବିହାରୀ ବୋଷଙ୍କ ସହ ତାଙ୍କର ସଂପର୍କ ରହିଥିଲା, ବୋମା ତିଆରି ବିଦ୍ୟା ସେ ତାଙ୍କ ଠାରୁ ଶିଖିଥିଲେ । ସେ ନିଜେ ଗଦ୍ଦର ପାର୍ଟିର ସଦସ୍ୟ ନ ଥିଲେ ମଧ୍ୟ ବହୁ ବିପ୍ଳବୀଙ୍କ ସହିତ ତାଙ୍କର ସଂପର୍କ ଥିଲା ।

୬୧ ଜଣ ଅଭିଯୁକ୍ତ ମଧ୍ୟରେ କର୍ତ୍ତାରସିଂହ ମୁଖ୍ୟ ଥିଲେ ବୋଲି ବିଚାରକ ରାୟରେ ଉଲ୍ଲେଖ କରିଛନ୍ତି । ଗଦ୍ଦର ବିପ୍ଳବୀମାନଙ୍କ ଖବରକାଗଜ ପାଇଁ ସେ ଡକାଏତି କରି ଅର୍ଥ

ଯୋଗାଡ଼ କରୁଥିଲେ । ବହୁ ସଭାସମିତିରେ ସେ ଭାଗ ନେଉଥିଲେ । ତାଙ୍କୁ ବ୍ରିଟିଶ ବିରୋଧୀ ବିଦ୍ରୋହ ପ୍ରଚାର ପାଇଁ ଫିରୋଜପୁର, ମିରଟ ଓ ଅନ୍ୟ ସ୍ଥାନରେ ଥିବା ସୈନ୍ୟ ଶିବିରକୁ ପଠାଯାଉଥିଲା । ଅସ୍ତ୍ରଶସ୍ତ୍ର କ୍ରୟ କରିବାକୁ ତାଙ୍କୁ ବଂଗଳା ପଠାଯାଇଥିଲା । ସେ ଏକ ବିପ୍ଲବୀ ଗୁପ୍ତଚର ବୋଲି ବିଚାର କରାଯାଉଥିଲା ।

ଗଦ୍ଦର ପାର୍ଟି ସେ କାଳରେ **ଗର୍ଦି ଫୁଂଗ ବା ଗଦ୍ଦର ସନ୍ଦେଶ** ନାମକ ଏକ ପତ୍ରିକା ପ୍ରକାଶ କରୁଥିଲା ।

ଏମାନଙ୍କୁ ଫାଶିଦର୍ଡ ଓ ଯାବଜ୍ଜୀବନ କାରାଦଣ୍ଡ ଦେବାପରେ ପଂଜାବରେ ଓ ଅନ୍ୟତ୍ର ବ୍ରିଟିଶ ବିରୋଧୀ ମନୋଭାବ ଆହୁରି ତୀବ୍ରରୁ ତୀବ୍ରତର ହେଲା । ଅଧିକରୁ ଅଧିକତର ସଂଖ୍ୟାରେ ଯୁବକମାନେ ଦେଶର ମୁକ୍ତି ପାଇଁ ପ୍ରାଣ ଦେବାକୁ ଆଗଭର ହେଲେ ।



# ଜାଲିଆନାୱାଲାବାଗର ବୀଭତ୍ସ ନରସଂହାର
# ୧୯୧୯ ଏପ୍ରିଲ ୧୩

ପଂଜାବର ଅମୃତସରରେ ଜାଲିଆନାୱାଲାବାଗ ଏକ ପାର୍କ । ଅନତିଦୂରରେ ଶିଖ ସଂପ୍ରଦାୟର ବିଶ୍ୱବିଖ୍ୟାତ ସ୍ୱର୍ଣ୍ଣମନ୍ଦିର । ୧୯୧୯ ଏପ୍ରିଲ ୧୩ ତାରିଖ ପହିଲା ବୈଶାଖ । ବ୍ରିଟିଶ ପୁଲିସ ୧୦,୧୧,୧୨ ତାରିଖରେ ପଂଜାବ ସାରା ଓ ଅମୃତସରରେ ଦମନର ତାଣ୍ଡବଲୀଳା ଚଳେଇଥାଏ । ଅମୃତସରବାସୀ ତାହାର ପ୍ରତିବାଦ କରିବେ ଏବଂ ପାରଂପରିକ ବୈଶାଖୀ ପର୍ବ ପାଳନ କରିବେ । ସ୍ଥିର ହେଲା, ଜାଲିଆନାୱାଲାବାଗରେ ୧୩ ତାରିଖ ଉପରଓଳି ବୈଶାଖୀ ମହୋତ୍ସବ ପାଳିତ ହେବ ।

ଜାଲିଆନାୱାଲାବାଗ ପାର୍କଟିର ତିନି ପଟେ ଉଚ୍ଚ ପାଚେରୀ । ମଣିଷ ଡେଙ୍ଗିକରି ସେ ବାଟେ ଆସିବା ଖୁବ୍ ଦୁରୂହ । ପ୍ରବେଶ ପଥଟି ଅତି ସଂକୀର୍ଣ୍ଣ ଗଳି ରାସ୍ତା । ଏଇ ପାର୍କରେ ହିଁ ସେ ଦିନ ଘଟିଥିଲା ବୀଭତ୍ସ ନରସଂହାର । କିଏ ଏ ନରସଂହାରର କର୍ତ୍ତା ? କେଉଁଥି ପାଇଁ ଏପରି ବର୍ବରତା ?

ସ୍ମରଣ କରିବାକୁ ପଡ଼େ ୧୯୧୪-୧୮ର ବିଶ୍ୱଯୁଦ୍ଧ । ବ୍ରିଟିଶ ସାମ୍ରାଜ୍ୟବାଦ ତା'ର ସାମ୍ରାଜ୍ୟଗୁଡ଼ିକୁ ଜର୍ମାନୀ ସାମ୍ରାଜ୍ୟବାଦୀଙ୍କ ଆକ୍ରମଣ ଓ ଦଖଲରୁ ରକ୍ଷା କରିବା ଲାଗି ଯୁଦ୍ଧ କରୁଥାଏ । ଏହି ସମରରେ ସହସ୍ର ସହସ୍ର ସଂଖ୍ୟାରେ ଭାରତୀୟ ସୈନ୍ୟଙ୍କୁ ନିୟୋଗ କରାଯାଇଥାଏ । ଭାରତୀୟମାନେ ବ୍ରିଟିଶ ସରକାରକୁ ସୈନ୍ୟବଳ, ଜନବଳ, ଅର୍ଥବଳରେ ଏ ବିପଦରେ ସାହାଯ୍ୟ କଲେ, ସେମାନଙ୍କୁ ନିଜ ଦେଶକୁ ଶାସନ କରିବାର କ୍ଷମତା ଦିଆଯିବ ବୋଲି ପ୍ରତିଶ୍ରୁତିମାନ ଦିଆଯାଇଥାଏ ।

ଭାରତୀୟ ସୈନ୍ୟମାନଙ୍କ ମଧ୍ୟରେ ଅତି ସାହାସୀ ସୈନ୍ୟ ଥିଲେ ଶିଖ, ଗୁର୍ଖା, ରାଜପୁତ୍ ବାହିନୀ । ସହସ୍ର ସହସ୍ର ଭାରତୀୟ ସୈନ୍ୟଙ୍କୁ ରଣ କ୍ଷେତ୍ରରେ ଆଗ ଧାଡ଼ିରେ ରଖାଯାଏ । ତା'ପରେ ବ୍ରିଟିଶ ଗୋରାସୈନ୍ୟ ରହନ୍ତି । ମଧ୍ୟପ୍ରାଚ୍ୟ ରଣଭୂଇଁରେ ଏବଂ

ଅନ୍ୟ ରଣାଙ୍ଗନରେ ପ୍ରଥମେ ଶତ୍ରୁପକ୍ଷର ଗୁଳିର ଶିକାର ହୁଅନ୍ତି ଭାରତୀୟମାନେ । ଏହି ଭାରତୀୟ ସୈନିକମାନେହିଁ ନିଜ ଦେଶର ସ୍ୱାର୍ଥ ପାଇଁ ନୁହେଁ, ବ୍ରିଟିଶ ସାମ୍ରାଜ୍ୟର ସ୍ୱାର୍ଥରକ୍ଷା ଲାଗି ଶତଶତ ସଂଖ୍ୟାରେ ପ୍ରାଣ ଦେଉଥାନ୍ତି ।

ଦେଶରେ ତତ୍କାଳୀନ ରାଜନୈତିକ ନେତୃବୃନ୍ଦ ବ୍ରିଟିଶ ପ୍ରତିଶ୍ରୁତି ପାଇ ଯୁଦ୍ଧରେ ବ୍ରିଟିଶ ପକ୍ଷକୁ ସମର୍ଥନ ଦେଉଥାନ୍ତି । ଯୁଦ୍ଧାରଣ ଦେଉଥାନ୍ତି ।

ଦକ୍ଷିଣ ଆଫ୍ରିକାରୁ ଗାନ୍ଧିଜୀ ଫେରି ସ୍ୱଦେଶରେ ପହଂଚିଥାନ୍ତି । ସେ ସମୟରେ କଂଗ୍ରେସ ଏକ ପ୍ରସ୍ତାବ ଗ୍ରହଣକରି ଯୁଦ୍ଧକୁ ସମର୍ଥନ କରିଥାଏ । କଂଗ୍ରେସର ପ୍ରସ୍ତାବଟିରେ ଥିଲା ଏହା "ସବୁ ସଂକଟରେ ଏବଂ ସମସ୍ତ ମୂଲ୍ୟ ଦେଇ ବ୍ରିଟିଶ ସାମ୍ରାଜ୍ୟ ପକ୍ଷରେ ଛିଡ଼ା ହେବ ।" ଇଂରେଜୀ ହେଲା "To Stand by British empire at all the hazards and at all costs"

ଗାନ୍ଧିଜୀ ତାଙ୍କ ଅହିଂସା ନୀତିକୁ ଅନୁସରଣ କରି କହିଲେଯେ ସେ ନିଜେ ଯୁଦ୍ଧଲାଗି ସୈନ୍ୟ ସଂଗ୍ରହ ବା ଯୁଦ୍ଧ ଚାନ୍ଦା ଆଦାୟରେ ସାହାଯ୍ୟ କରିବେ ନାହିଁ । ମାତ୍ର ଯୁଦ୍ଧରେ ବ୍ରିଟିଶ ପକ୍ଷର ମୃତାହତ ସୈନ୍ୟମାନଙ୍କ ସେବା ଶୁଶ୍ରୂଷାର ବ୍ୟବସ୍ଥା କରିବେ । ଏଥିଲାଗି ସେ ନିଜେ ଏକ ସ୍ୱେଚ୍ଛାସେବକ ପୋଷାକ ପିନ୍ଧି ସ୍ୱେଚ୍ଛାସେବକ ସଂଗ୍ରହ କରିଥିଲେ । ସେଥିଲାଗି ବ୍ରିଟିଶ ସରକାର ତାଙ୍କୁ କାଇଜର ଇ-ହିନ୍ଦ୍ ଉପାଧିରେ ଭୂଷିତ କରିଥିଲେ । ଏହି ଉପାଧିକୁ ଗାନ୍ଧିଜୀ ଜାଲିଆନାୱାଲାବାଗ ହତ୍ୟାଲୀଳା ପରେ ପ୍ରତ୍ୟାଖ୍ୟାନ କରିଥିଲେ । ଉଦାର ହୋଇ, ନିରାମିଷାଷୀ ହୋଇ ବାଘ ମଣିଷ ଖାଇବ ନାହିଁ ବୋଲି ଭାବିବ ଯାହା, ସାମ୍ରାଜ୍ୟବାଦ ସ୍ୱରାଜିରେ ପରାଧୀନ କରିଥିବା ଭାରତ ଓ ଅନ୍ୟ ଦେଶମାନଙ୍କୁ, ମୁକ୍ତିଦେବ, ଏପରି ବିଶ୍ୱାସ କରିବା ତାହା । ତାହାହିଁ ଯୁଦ୍ଧ ସରିବା ସଂଗେସଂଗେ ପ୍ରମାଣିତ ହେଲା । ଜର୍ମାନ ବିରୁଦ୍ଧରେ ଯୁଦ୍ଧ ଜୟ କରିବା ମାତ୍ରେ ବ୍ରିଟିଶ ସରକାର ତା'ର ଅସଲ ସ୍ୱରୂପ ପ୍ରକାଶ କରିଦେଲା । ଯୁଦ୍ଧ ଜିତିବା ପରେ ଭାରତର ଲୋକେ ଯେପରି ଅମାନିଆ ହେବେ ନାହିଁ, ଜବତ୍‌ରେ ରହିବେ, ଉଁ ଚୁଁ କରିବେ ନାହିଁ, ସେଥିଲାଗି ଏକ ଦମନମୂଳକ, କଠୋର ଆଇନ କେନ୍ଦ୍ର ଆସେମ୍ବ୍ଲିରେ ପାଶ୍ କରାଗଲା । ସେତେବେଳର କେନ୍ଦ୍ର ଆସେମ୍ବ୍ଲିଟି ବ୍ରିଟିଶ ପକ୍ଷପାତୀ ଲୋକ, ରାଜା- ଜମିଦାର, ଗୋରା ସାହେବଙ୍କ ଦ୍ୱାରା ଭରପୂର । ଏହି ଆଇନର ନାମ ରାଓଲାଟ ଆଇନ । କୌଣସି ସଭା, ସମାବେଶ, ବିକ୍ଷୋଭ କେହି କଲେ, ସେମାନଙ୍କୁ ବିନା ବିଚାରରେ ଜେଲ ଜରିମାନା ଦଣ୍ଡ ଦିଆଯିବ ବୋଲି ଅତି କଠୋର ବ୍ୟବସ୍ଥାମାନ ସେଥିରେ ଖଞ୍ଜା ଯାଇଥିଲା ।

ଏହି ଯୁଦ୍ଧର ସମାପ୍ତି କାଳରେ ରୁଷିଆରେ ଲେନିନଙ୍କ ନେତୃତ୍ୱରେ ବଲଶେଭିକ ବିପ୍ଳବ ଜୟଯୁକ୍ତ ହୋଇଥାଏ । ବଲଶେଭିକ ବିପ୍ଳବପରେ ଜାରଶାହୀ ସାମ୍ରାଜ୍ୟକୁ ଲୋପ କରାଯାଇଥାଏ । ପୃଥିବୀର ସବୁ ପରାଧୀନ ଦେଶ ମୁକ୍ତି ଓ ସ୍ୱାଧୀନତା ଲାଗି ଯେଉଁ ସଂଗ୍ରାମ କରୁଛନ୍ତି ବା କରିବେ, ତାକୁ ଏହି ନୂଆରାଷ୍ଟ୍ର ସବୁ ମତେ ସାହାଯ୍ୟ କରିବ ବୋଲି ଘୋଷଣା କରିଥାଏ ଓ ସାହାଯ୍ୟ କରୁଥାଏ ।

ଏହାରି ପ୍ରଭାବ ଯେମିତି ଭାରତରେ ନପଡ଼ିବ, ସେଥିଲାଗି ଭାରତବାସୀଙ୍କୁ କ୍ଷମତା ଦିଆଯାଉଛି ବୋଲି ଏକ ଚାଲ ଖେଳାଗଲା । ୧୯୦୮ରେ ବଂଗଭଂଗ ଆନ୍ଦୋଳନ କାଳରେ ମର୍ଲେ-ମିଣ୍ଟୋ ଶାସନ ସଂସ୍କାର ନାମରେ ଯେପରି ଏକ ଚରମ ପ୍ରତାରଣା କରାଯାଇଥିଲା, ସେପରି ଏକ ପ୍ରତାରଣାମୂଳକ ସଂସ୍କାର ଘୋଷଣା କରାଗଲା । ତାହାର ନାମ ହେଲା ମଣ୍ଟେଗ୍ୟୁ-ଚେମସ୍‌ଫୋର୍ଡ଼ ଶାସନ ସଂସ୍କାର । ଏହି ସଂସ୍କାରର ଲକ୍ଷ୍ୟ ଘୋଷଣା କରି କୁହାଯାଇଥିଲା ଯେ

"ବ୍ରିଟିଶ ସାମ୍ରାଜ୍ୟର ଏକ ଅଭିନ୍ନ-ଅବିଚ୍ଛେଦ୍ୟ ଅଂଶ ଭାବରେ ଭାରତବର୍ଷରେ ଦାୟିତ୍ୱପୂର୍ଣ୍ଣ ସରକାରର କ୍ରମବର୍ଦ୍ଧିଷ୍ଣୁ ଉପଲବ୍ଧିକୁ ଦୃଷ୍ଟିରେ ରଖି ସ୍ୱାୟତ୍ତ ଶାସିତ ସଂସ୍ଥାଗୁଡ଼ିକର କ୍ରମଶଃ ବିକାଶ କରାଯିବ ।"

ଅନ୍ତଃସାରଶୂନ୍ୟ ଏହି ପ୍ରସ୍ତାବଟିକୁ କଂଗ୍ରେସ ସମୀକ୍ଷା କଲା । ଏହି ପ୍ରସ୍ତାବ ସପକ୍ଷରେ କେତେକ ମତ ଦେଇଥିଲେ । ମଣ୍ଟେଗ୍ୟୁ-ଚେମସ୍‌ଫୋର୍ଡ଼ ରିପୋର୍ଟ "ସଂପୂର୍ଣ୍ଣ ଅପ୍ରଚୁର, ଅସନ୍ତୋଷ ଜନକ ଏବଂ ନୈରାଶ୍ୟପଦ" କହି କଂଗ୍ରେସର ବହୁମତ ଏହାକୁ ଅଗ୍ରାହ୍ୟ କରିଦେଲା । ଏହାକୁ ଯେଉଁମାନେ ମାନିନେବା ପକ୍ଷରେ ଥିଲେ, ସେମାନେ କଂଗ୍ରେସ ଛାଡ଼ି 'ଲିବ୍‌ରାଲ ଫେଡ଼େରେସନ' ନାମକ ଏକ ସ୍ୱତନ୍ତ୍ର ଦଳ ଗଠନ କଲେ ।

ସ୍ମରଣ ରଖିବାକୁ ହେବ, କଂଗ୍ରେସ ସେତେବେଳେ ପୂର୍ଣ୍ଣ ସ୍ୱାଧୀନତା ଦାବୀ ଗ୍ରହଣ କରିନଥାଏ । ହୋମରୁଲ ଧ୍ୱନି ଦେଇଥାଏ । ବ୍ରିଟିଶ ସାମ୍ରାଜ୍ୟରେ କାନାଡ଼ା, ଅଷ୍ଟ୍ରେଲିଆ, ଦକ୍ଷିଣ ଆଫ୍ରିକା ଭଳି ଦେଶ ଯେମିତି ରହିଛନ୍ତି ସେମିତି ଭାରତ ରହିବ । ମାତ୍ର ସ୍ୱାୟତ୍ତଶାସନର ଅଧିକାର (ଡୋମିନିୟନ ଷ୍ଟାଟସ୍) ପାଇବ ବୋଲି କଂଗ୍ରେସ ଦାବୀ କରୁଥାଏ । ବହୁ ଦାବୀ, ବହୁ ଆନ୍ଦୋଳନପରେ ୧୯୨୯ରେ ଯାଇ କଂଗ୍ରେସର ଲାହୋର ଅଧିବେଶନହିଁ ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ, ଘୋଷଣା କଲା ।

କଂଗ୍ରେସ ଏହି ରିପୋର୍ଟକୁ ପ୍ରତ୍ୟାଖାନ କରିଦେବାପରେ ଦେଶବ୍ୟାପୀ ବ୍ରିଟିଶ୍ ବିରୁଦ୍ଧରେ ଧର୍ମଘଟ, ବିକ୍ଷୋଭମାନ ସଂଘଟିତ ହୋଇଚାଲିଲା । ଅନ୍ୟପକ୍ଷରେ ରାଓଲାଟ ଆଇନକୁ ପ୍ରୟୋଗକରି ସାରା ଦେଶରେ ବ୍ରିଟିଶ୍ ପକ୍ଷରୁ ପ୍ରଚଣ୍ଡରୁ ପ୍ରଚଣ୍ଡତର ଦମନ ଲୀଳା, ଜେଲ ଜରିମାନା, ଗୁଳି ଫଏର ଓ ହତ୍ୟା ବଢ଼ି ଚାଲିଲା । ଏପରି ଦମନ ଅତ୍ୟାଚାର ବିରୁଦ୍ଧରେ ଗାନ୍ଧିଜୀ ସତ୍ୟାଗ୍ରହ ଲିଗ ଗଠନ କଲେ ଏବଂ ଅପ୍ରତିରୋଧୀ ବା ନିଷ୍କ୍ରିୟ ଅହିଂସ ସତ୍ୟାଗ୍ରହର ଡାକରା ଦେଲେ । ଏଥି ସଂଗେସଂଗେ ହିନ୍ଦୁ ମୁସଲମାନ, ଶିଖ ଜୈନ ସମସ୍ତଙ୍କର ଐକ୍ୟ ପ୍ରତିଷ୍ଠା ପାଇଁ ଆହ୍ୱାନ ଦେଲେ । ଏହି ଆନ୍ଦୋଳନକୁ "Passive Resistance" ବୋଲି ସେ ଆଖ୍ୟା ଦେଇଥିଲେ । ଅଭୁତପୂର୍ବ ଭାବରେ ଦେଶରେ ହିନ୍ଦୁ ମୁସଲମାନ ଐକ୍ୟ ପ୍ରତିଷ୍ଠା ହେଲା । କଂଗ୍ରେସ ଓ ଖିଲାଫତ ଆନ୍ଦୋଳନର ନେତାମାନେ ଉଭୟ ବ୍ରିଟିଶ୍ ସଂସ୍କାର ବିରୁଦ୍ଧରେ ଏକତ୍ର ଦଣ୍ଡାୟମାନ ହେଲେ । ହିନ୍ଦୁମାନଙ୍କର ଆର୍ଯ୍ୟ ସମାଜର ପ୍ରତିଷ୍ଠାତା ସ୍ୱାମୀ ଶ୍ରଦ୍ଧାନନ୍ଦ ଦିଲ୍ଲୀରୁ ବିଖ୍ୟାତ ଜୁମା ମସଜିଦରେ ପହଂଚି ସମବେତ ମୁସଲମାନଙ୍କୁ ଉଦବୋଧନ ଦେଲେ । ଦିଲ୍ଲୀର ପ୍ରଖ୍ୟାତ

ନେତା ଡକ୍ଟର ସୈଫଉଦ୍ଦିନକିଚଲୁଙ୍କୁ ଶିଖ ଧର୍ମଗୁରୁମାନେ ସ୍ୱର୍ଣ୍ଣ ମନ୍ଦିରର ଚାବି ଅର୍ପଣ କଲେ, ଐକ୍ୟର ଏକ ସଂକେତଭାବରେ ।

## ଦେଶବ୍ୟାପୀ ହରତାଳ, ଜାଲିଆନାୱାଲାବାଗ ନରହତ୍ୟା

ଗାନ୍ଧିଜୀଙ୍କ ସତ୍ୟାଗ୍ରହ ଆହ୍ୱାନରେ ବମ୍ବେ, କଲିକତା, ଅହମ୍ମେଦାବାଦ ପ୍ରଭୃତି ସ୍ଥାନରେ ସମବେତ ଜନତା ଉପରେ ଅବିଚାରିତ ଅତ୍ୟାଚାର ଚାଲିଲା । ଗୁଳି, ଲାଠିମାଡ଼ରେ ଅନେକ ହତାହତ ହେଲେ । ଏହାରି ପ୍ରତିବାଦରେ ୧୯୧୯ ଏପ୍ରିଲ ୬ ତାରିଖରେ ଦେଶବ୍ୟାପୀ ହରତାଳ ପାଳନ କରିବାକୁ ଗାନ୍ଧିଜୀ ଡାକରା ଦେଲେ । ଦେଶବ୍ୟାପୀ ଅଭୂତପୂର୍ବ ହରତାଳ ପାଳିତ ହେଲା । ଶ୍ରମିକମାନେ କଳକାରଖାନାକୁ ଗଲେ ନାହିଁ । ଚାଷୀମାନେ ହଳକାମ କଲେ ନାହିଁ । ସ୍କୁଲ, କଲେଜ୍ ଛାତ୍ରମାନେ ଶିକ୍ଷାୟତନଗୁଡ଼ିକୁ ବସ୍ତୁତଃ ଶୂନ୍ୟ କରିଦେଲେ । ବ୍ୟବସାୟୀମାନେ ଦୋକାନ, ବଜାର, ହାଟ ବନ୍ଦ କରିଦେଲେ । ଦିଲ୍ଲୀରେ ସେ ଦିନ ନାହିଁ ନଥିବା ହରତାଳ ଏବଂ ବିଶାଳ ପ୍ରତିବାଦ ସଭା ହେଉଥାଏ । ଏଥିରେ ଯୋଗ ଦେବାଲାଗି ଗାନ୍ଧିଜୀ ରାତିରେ ବମ୍ବେରୁ ରେଳଯୋଗେ ଆସୁଥିଲେ । ତାଙ୍କୁ ରେଳଡ଼ବାରେ ଅଟକାଇ ଅନ୍ୟ ଗାଡ଼ିରେ ବମ୍ବେକୁ ଫେରସ୍ତ କରି ଦିଆଗଲା । ଏ ସଂବାଦ ଦିଲ୍ଲୀରେ ପହଂଚିଗଲା । ବ୍ରିଟିଶ୍ ପୁଲିସ ରକ୍ତମୁଖା ହୋଇ ସମାବେଶରେ ଥିବା ହରତାଳକାରୀମାନଙ୍କ ଉପରେ ଗୁଳି ଚଳେଇଲା । ଦିଲ୍ଲୀର ପ୍ରିୟ ଜନନେତା ଡକ୍ଟର ସତ୍ୟପାଲ ଓ ଡକ୍ଟର ସୈଫଉଦ୍ଦିନକିଚଲୁଙ୍କୁ ଗିରଫକରି ନିଆଗଲା । ଏହି ଗିରଫଦାରୀର ସଂବାଦ ଓ ଗୁଳିଗୁଳାରେ ଆହତ ନିହତଙ୍କ ସଂବାଦ ପଂଜାବର ଗାଁ ଗାଁରେ ପହଂଚିଲାପରେ ସର୍ବତ୍ର ବିକ୍ଷୋଭ ବଢ଼ି ଚାଲିଲା ।

ବିଶେଷତଃ ସ୍ୱର୍ଣ୍ଣମନ୍ଦିରର ପୀଠସ୍ଥଳୀ ଅମୃତସରରେ ଏପ୍ରିଲ ୧୦,୧୧,୧୨ ତିରଖରେ ବିଶାଳ ବିଶାଳ ବିକ୍ଷୋଭ ଅନୁଷ୍ଠିତ ହେଲା । ମଦମତ୍ତ ବ୍ରିଟିଶ୍ ପୁଲିସ ସହିତ ଏକ ସଂଘର୍ଷବେଳେ ଏପ୍ରିଲ୍ ୧୨ରେ କେତେକ ଗୋରା ଲୋକ ମଧ୍ୟ ନିହତ ହେଲେ । ଦୁଇଜଣ ବ୍ରିଟିଶ୍ ମହିଳା ଆହତ ହୋଇଥିଲେ । ଏହାର ପ୍ରତିଶୋଧ ନେବା ପାଇଁ ପଂଜାବର ଘୋର ଅତ୍ୟାଚାରୀ ଗଭର୍ଣ୍ଣର ଓଡେୟାର ସଜବାଜ ହେଲେ ।

ତହିଁ ପରଦିନ ଏପ୍ରିଲ ୧୩, ପହିଲା ବୈଶାଖ, ଦେଶସାରା ବୈଶାଖୀ ପର୍ବ ପାଳନର ଦିବସ । ପଣା ସଂକ୍ରାନ୍ତି ସେଦିନ । ଉତ୍ସବର ଦିନ । ଅମୃତସହରବାସୀ ଏହି ପର୍ବକୁ ପାଳନ କରିବେ, ଏବଂ ଦମନଲୀଳାର ପ୍ରତବାଦ କରିବେ ବୋଲି ଜାଲିଆନାୱାଲାବାଗରେ ରୁଣ୍ଡ ହେଲେ ।

ପାର୍କର ତିନିପଟେ ଉଚ୍ଚପାଚେରୀ ଡେଇଁ ହେବନାହିଁ । ଗୋଟିଏ ପଟେ ସଂକୀର୍ଣ୍ଣ ବାଟ ଦେଇ ସହସ୍ରସହସ୍ର ନରନାରୀ ହିନ୍ଦୁ-ମୁସଲମାନ, ଶିଖ ସେଠାରେ ଉପସ୍ଥିତ ହୋଇଗଲେ । ମାଆମାନେ ଶିଶୁକୁ ଧରି ମେଳା ମଉଛବରେ ଚାଲିଛନ୍ତି । ସଂଧ୍ୟା ନଇଁ ନଇଁ ଆସୁଛି ।

ହଠାତ୍ ଶତଶତ ବନ୍ଧୁକ, ପିସ୍ତଲଧାରୀ ସୈନ୍ୟ ଜେନେରାଲ ଡାୟାରଙ୍କ ନିର୍ଦ୍ଦେଶରେ, କୌଣସି ସତର୍କବାଣୀ ନ ଶୁଣେଇ, ନିରସ୍ତ୍ର ଜନତା ଉପରେ ଗୁଳି ଚଳେଇଲେ । ତିନିପଟ ଉଚ୍ଚ ପାଚେରୀକୁ ଡେଇଁ ସେମାନେ ଆଖିବୁଜା ଗୁଳି ଚାଳନା କଲେ । କୁଡ଼ କୁଡ଼ ଶବ; ଆହତମାନଙ୍କ କରୁଣ ଆର୍ତ୍ତନାଦ । ରକ୍ତର ସ୍ରୋତ ଛୁଟିଥାଏ । ହିନ୍ଦୁ ପାଖରେ ମୁସଲମାନ, ଶିଖଙ୍କ ଶବ । ମା' ମାନେ ମରି ପଡ଼ିଛନ୍ତି । ବଂଚିଯାଇଥିବା କୋଳର ଛୁଆ କ୍ଷୁଧା ଜ୍ୱାଳାରେ ମା'ର ସ୍ତନ ଅଣ୍ଡାଳୁଛି । ଛୋଟ ବାଟ ଦେଇ ଖୁନ୍ଦା ଖୁନ୍ଦିରେ ପଳାଇ ଯାଇ ନପାରି ଅନେକ ପ୍ରାଣ ବଂଚେଇବା ଚେଷ୍ଟା କଲେ । ସେଠାରେ ଥିବା ଏକ ଗଭୀର ବାମ୍ଫିକୁ ଡେଇଁ ପଡ଼ିଲେ । ବଂଚିବା ପରିବର୍ତ୍ତେ ଶତାଧିକ ବ୍ୟକ୍ତି ସେଥିରେ ଜଳସମାଧି ଲାଭ କଲେ । ଗୁଳିଗୁଳା ସରିଗଲାପରେ ଶହଶହ ଶବକୁ ଦେଖି ଉଲ୍ଲାସରେ ବ୍ରିଟିଶ ନରହନ୍ତାମାନେ ବାହୁଡ଼ିଗଲେ ନିଜ ନିଜ ଶିବିରକୁ । ହତ୍ୟା ତାଣ୍ଡବର ମୁଖ୍ୟକର୍ତ୍ତା ଜେନେରାଲ ଡାୟାରଙ୍କ ବନ୍ଧୁକରୁ ଗୁଳି ଶେଷ ହୋଇଗଲା– ଆଉ ଅଧିକ ହତ୍ୟା କରିପାରିଲେ ନାହିଁ ବୋଲି ସେ ଦୁଃଖ ପ୍ରକାଶ କଲେ ।

ଆତ୍ମୀୟ ସ୍ୱଜନମାନେ ଗଭୀର ରାତିରେ ଲଣ୍ଠନ ଧରି କିଏ ମଲାଗଲା ତାହା ଅଣ୍ଡାଳି ଚାଲିଲେ । ଏହାହିଁ ସେ ଦିନ ବିଭୀଷିକାମୟ ନରସଂହାରର ମର୍ମ୍ମଭେଦୀ, ଅନ୍ତର୍ଦାହୀ କାହାଣୀ । ମାତ୍ର ଏଇଠି ସେ କାହାଣୀର ଅବସାନ ନୁହଁ ।

## ଅଧିକ ପାଶବିକ ଅତ୍ୟାଚାର

ଏହି ନରସଂହାରର ସବିଶେଷ ବିବରଣୀ ଯେପରି ଦେଶ ଭିତରେ ଓ ଦେଶ ବାହାରେ ଜଣା ନ ପଡ଼ିବ, ସେଥିପାଇଁ ସମସ୍ତ ଉଦ୍ୟମ କରାଯାଇଥିଲା । ନରସଂହାରପରେ ବିକ୍ଷୁବ୍ଧ, ବିଦ୍ରୋହୀ ଜନତାକୁ ଯେପରି ନିର୍ମ୍ମମ ଦମନର ଶିକାର କରାଗଲା, ସେପରି ଅସୁମାରୀ ଘଟଣା ମଧ୍ୟରୁ କେତେକ ଅତି ପାଶବିକ, ନିଦାରୁଣ ।

ଏହାର ଦିନଠାରୁ ପଂଜାବ ବିଶେଷତଃ ଅମୃତସରବାସୀଙ୍କ ଜୀବନ ଯାତ୍ରା ଅସମ୍ଭବ ହୋଇପଡ଼ିଲା । ରାସ୍ତାରେ ଚଳାଚଳ ହେଲେ ଯାହାକୁ ପାଇଲେ ସେମାନଙ୍କୁ ଗୋଡ଼େଇ ଗୋଡ଼େଇ ପିଟା ଚାଲିଲା । କ୍ରଲିଙ୍ଗ ଆଦେଶ ଜାରି କରାଗଲା । ସାହେବ ଲୋକ, ଅବା ହାକିମ ହୁକୁମା, ପଲଟନ ରାସ୍ତାରେ ଗଲାବେଳେ ଅବା ସେମାନଙ୍କ କ୍ୱାଟରଥିବା ରାସ୍ତା ଦେଇ ଗଲାବେଳେ ଲୋକେ ଚାଲି କରି ନୁହେଁ, ଗୁରୁଣ୍ଡି ଗୁରୁଣ୍ଡି ଯିବା ଆଦେଶ କାର୍ଯ୍ୟକାରୀ କରାଗଲା । ଏହାକୁ ଅମାନ୍ୟକଲେ ବେତମାଡ଼ରେ ପିଠି ଫଟାଗଲା ।

ଶହ ଶହ ସଂଖ୍ୟାରେ ଶିଖ, ହିନ୍ଦୁ, ମୁସଲମାନଙ୍କୁ ଗିରଫକରି ହଳହଳକରି ବନ୍ଧାଗଲା । ଏହି ହଳରେ କେଉଁଠି ଜଣେ ହିନ୍ଦୁ ହାତ ସହିତ ମୁସଲମାନ ହାତକୁ, ଅନ୍ୟ କେଉଁଠି ଶିଖ ସହିତ ମୁସଲମାନଙ୍କ ହାତକୁ ଏକାଠିକରି ହ୍ୟାଣ୍ଡକପ କରାଯାଇ ଅଣ୍ଟାରେ ଦଉଡ଼ି ଲଗେଇ ଜେଲଖାନାକୁ ନିଆଗଲା, ଅଥବା ରାସ୍ତାରେ ମାର୍ଚ୍ଚିଂ କରାଗଲା ।

ଏପ୍ରିଲ ମାସର ପ୍ରଚଣ୍ଡ ଖରାରେ ରୋଲ କଲ ପାଇଁ ସହସ୍ର ସହସ୍ର ଶିଖ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ ଛାତ୍ରଙ୍କୁ ୧୬ ମାଇଲ ଚଲେଇ ଚଲେଇ ନିର୍ଦ୍ଧାରିତ ସ୍ଥାନକୁ ନିଆଗଲା । ପାଞ୍ଚରୁ ଛ' ହଜାର ଅଧ୍ୟାପକ, ଛାତ୍ରଙ୍କୁ ପାରେଡ଼ କରେଇ ବ୍ରିଟିଶ ୟୁନିଅନ ପତାକାକୁ ସଲାମ କରିବାକୁ ବାଧ କରାଗଲା । ବରଯାତ୍ରୀଦଳମାନଙ୍କ ଉପରେ ଏକାଠି ଯାଉଥିବାରୁ ପିଟା ଚାଲିଲା । ଇସମାଲିଆ ସ୍କୁଲର ଛ'ଜଣ ବଡ଼ ଛାତ୍ରଙ୍କୁ ଧରିଆଣି ଅନ୍ୟ ଛୋଟଛୋଟ ଛାତ୍ରଙ୍କ ଭିତରେ ଭୟସଂଚାର କରିବା ଲାଗି ଆଖିବୁଜା ବେତ୍ରାଘାତ କରାଗଲା । ମୁସଲମାନମାନଙ୍କୁ ଠିକଣା ଶିକ୍ଷା ଦେବାଲାଗି ଅମୃତସରରେ ଥିବା ବାଦଶାହୀ ମସ୍‌ଜିଦ୍‌କୁ ଛ' ସପ୍ତାହ ପାଇଁ ବନ୍ଦ କରିଦିଆଗଲା, ଯେମିତି ସେମାନେ ନମାଜ କରିପାରିବେ ନାହିଁ ।

ସହରର ବିଭିନ୍ନ ସ୍ଥାନରେ ଲୋକଙ୍କ ଘର ଭାଂଗି ଚୂରମାର କରିଦିଆଗଲା । ସେମାନଙ୍କ ଧନସଂପଦ ଲୁଟ କରିନିଆଗଲା । ଅନେକ ଲୋକଙ୍କ ସଂପତ୍ତି ବାଜ୍ୟାପ୍ତ କରି ନିଆଗଲା । ଯୁଦ୍ଧଋଣ, ଖଜଣା, ଟିକସ ନ ଦେଇଥିବା ଦର୍ଶାଇ ସଂପତ୍ତିବାଡ଼ି ନିଲାମ କରାଗଲା । ଗିରଫ କରାଯାଇଥିବା ଦଳ ଦଳ ଲୋକଙ୍କୁ ଟ୍ରକ ଭିତରେ ଖୁନ୍ଦିଖାନ୍ଦି ୫ ଘଣ୍ଟା କାଳ ଠିଆ କରାଗଲା । ଯେଉଁ ଭାରତୀୟଙ୍କର ମଟରଗାଡ଼ି ବା ଅନ୍ୟ ଯାନବାହାନ ଥିଲା, ସେଗୁଡ଼ିକୁ ଛଡ଼େଇ ନେଇ ଗୋରା ସାହେବଙ୍କୁ ଦିଆଗଲା ।

ଏପରି ବର୍ବରତାରେ ମର୍ମ୍ମାହତ ହୋଇ କବିଗୁରୁ ରବୀନ୍ଦ୍ରନାଥ ଠାକୁର ବ୍ରିଟିଶ ସରକାର ତାଙ୍କୁ ଦେଇଥିବା ନାଇଟବୁଡ଼ ପଦବୀ ପ୍ରତ୍ୟାହାର କରିଦେଲେ । ଦେଶବ୍ୟାପୀ ପ୍ରତିବାଦ, ପ୍ରତିଧ୍ୱନିତ ହେଲା ।

ଏହି ନରସଂହାର ତଦନ୍ତ କରିବା ଲାଗି ଗାନ୍ଧିଜୀ, ସି.ଆଇ.ଦାସ, ଆବାସ ତୟାବଜି ଏବଂ ଜୟକାରଙ୍କୁ ଘେନି ଏକ କମିଟି ଗଢ଼ା ହୋଇଥିଲା । ଗଭର୍ଣ୍ଣର ଓଡ଼େୟେର ଏବଂ ଜେନେରାଲ ଡାୟାରଙ୍କୁ ଘଣ୍ଟ ଘୋଡ଼େଇ ରଖିବାଲାଗି ବ୍ରିଟିଶପକ୍ଷରୁ ହଣ୍ଟର କମିଟି ବସିଥିଲା । ମାତ୍ର ଏହାର ରିପୋର୍ଟ କୁ କଂଗ୍ରେସ ପ୍ରତ୍ୟାଖ୍ୟାନ କରିଥିଲା ।

ଜାଲିଆନାଓ୍ୱାଲାବାଗ ଘଟଣାପରେ ଦେଶରେ ନୂଆଧରଣର ରାଜନୈତିକ ଚେତନା ସୃଷ୍ଟି ହେଲା । ଆମ ଦେଶର ମୁକ୍ତି ଓ ସ୍ୱାଧୀନତା ସଂଗ୍ରାମର ପୂର୍ବରୂପ ଚରିତ୍ର ବଦଳିବାରେ ଲାଗିଲା । ଏହାହିଁ ୧୯୨୦-୨୧ର ଅସହଯୋଗ ଆନ୍ଦୋଳନର ପୃଷ୍ଠଭୂମି ।



## ଏ.ଆଇ.ଟି.ୟୁ.ସି - ଭାରତରେ ସର୍ବପ୍ରଥମ ଶ୍ରମିକ ସଂଗଠନର ଜନ୍ମ - ୧୯୨୦

ସ୍ୱାଧୀନତା ସଂଗ୍ରାମର ଏକ ଗୁରୁତ୍ୱପୂର୍ଣ୍ଣ, ଦିଗ-ପ୍ରବର୍ତ୍ତନକାରୀ କାଳ ୧୯୨୦-୨୧ ମସିହା । ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଆରଂଭ ହେବା ଏହି ଘଡ଼ିସନ୍ଧିବେଳେ ଭାରତରେ ପ୍ରଥମ ଶ୍ରମିକ ସଂଗଠନର ଜନ୍ମ କାଳ । ସ୍ୱାଧୀନତା ସଂଗ୍ରାମ କାଳରେ, ଯେଉଁ ଯୁଗ ପୁରୁଷଙ୍କୁ ଗାନ୍ଧୀ, ନିଜର ରାଜନୈତିକ ଗୁରୁ ବୋଲି ଗ୍ରହଣ କରିଥିଲେ, ସେହି ମହାନ୍ ସ୍ୱାଧୀନତା ସେନାନୀ ବାଳ ଗଂଗାଧର ତିଳକଙ୍କ ଏହା ମାନସ ପୁତ୍ର । ନିଜେ ବାଳ ଗଙ୍ଗାଧର ତିଳକ ମଧ୍ୟ ଥିଲେ ଶ୍ରମିକ ଆନ୍ଦୋଳନର ନେତା । ସ୍ମରଣ କରାଯାଇପାରେ, ୧୯୦୮ରେ ବ୍ରିଟିଶ ସରକାର ତାଙ୍କୁ ଗିରଫ କରି ୬ବର୍ଷ ଜେଲଦଣ୍ଡ ଦେଇ ବର୍ମାର ମାଣ୍ଡାଲେ ବନ୍ଦୀ ଗୃହରେ ନିକ୍ଷେପ କଲାବେଳେ ଭାରତରେ ଯେଉଁମାନେ କଳକାରଖାନାରେ ଶ୍ରମିକ ଥିଲେ, ସେମାନେ ସର୍ବପ୍ରଥମ ଦେଶବ୍ୟାପୀ ହରତାଳ, ଧର୍ମଘଟ କରିଥିଲେ । ତା' ପୂର୍ବରୁ ତାଙ୍କୁ ୧୮ ମାସ ଜେଲଦଣ୍ଡ ଦିଆଯାଇଥିଲା ।

ଭାରତରେ ସର୍ବଭାରତୀୟ ସ୍ତରରେ ଶ୍ରମିକ ସଂଗଠନ ପୂର୍ବରୁ ଯେଉଁଠି ଯେଉଁଠି କଳକାରଖାନା ଗଢ଼ି ଉଠିଥିଲା ସେ ସବୁ ସ୍ଥାନରେ ନିଜ ବଂଚିବାର ବାଦୀ ଘେନି ଶ୍ରମିକମାନେ ୟୁନିଅନ ଗଠନକରି ଆନ୍ଦୋଳନ କରୁଥିଲେ ।

୧୯୧୭ରେ ଋଷିଆରେ ଆକ୍ଟୋବର ବିପ୍ଳବର କଥା ଶୁଣି ଓ ସେଥିରେ ଉଦବୁଦ୍ଧ ହୋଇ ଭାରତର ଶ୍ରମିକମାନଙ୍କ ମନରେ ନୂତନ ରାଜନୈତିକ ଓ ସାଂଗଠନିକ ଚେତନାର ଉଦ୍‌ଭବ ଘଟିଲା । ୧୯୧୮ ଓ ୧୯ରେ ଭାରତର ବିଭିନ୍ନ କଳକାରଖାନାର ଶ୍ରମିକମାନେ ୟୁନିୟନ ଗଢ଼ି ଧର୍ମଘଟର ଆଶ୍ରୟ ନେଇଥିଲେ ।

ମୁଖ୍ୟତଃ କଂଗ୍ରେସର ନେତାମାନେ ଏସବୁ ଶ୍ରମିକ ଧର୍ମଘଟ ଓ ୟୁନିୟନକୁ ସଂଗଠିତକରି ପରିଚାଳନା କରୁଥିଲେ ।

୧୯୧୪-୧୮ ପ୍ରଥମ ମହାସମର କାଳରେ ଅଧିକାଂଶ ବ୍ରିଟିଶ ତଥା ମୁଷ୍ଟିମେୟ ଭାରତୀୟ ଶିଳ୍ପପତିଙ୍କ ପକ୍ଷରୁ ଶ୍ରମିକମାନଙ୍କ ଉପରେ ଜୁଲୁମ ବଢ଼ି ଚାଲିଲା ।

ଏହାର ପ୍ରତିରୋଧ କରିବା ପାଇଁ ବିଭିନ୍ନ ଶିଳ୍ପରେ ଶ୍ରମିକ ୟୁନିଅନ ଗଠନର ପ୍ରକ୍ରିୟା ଦ୍ରୁତଗତିରେ ଆଗେଇ ଚାଲିଲା । ପ୍ରଥମେ ଗୁଜୁରାଟର ଅହମେଦାବାଦରେ ଥିବା ତନ୍ତକଳଗୁଡ଼ିକରେ ୧୯୧୭ରେ ୟୁନିଅନ ଗୁଡ଼ିକର ଆବିର୍ଭାବ ଘଟିଲା । ୧୯୧୮ ଏପ୍ରିଲ ୨୭ରେ ବି.ପି. ୱାଦିୟାଙ୍କ ନେତୃତ୍ୱରେ ମାନ୍ଦ୍ରାଜର ଲୁଗାକଳଗୁଡ଼ିକରେ ୟୁନିଅନ ଗଠିତ ହେଲା । ୟୁନିଅନର ସଭ୍ୟପତ, ସଭ୍ୟଚାନ୍ଦା, ୟୁନିଅନ ପରିଚାଳନାର ସାଂଗଠନିକ କର୍ମକର୍ତ୍ତା ନିର୍ବାଚନ ପ୍ରଥା ପ୍ରବର୍ତ୍ତନ କରାଗଲା । ବମ୍ବେରେ ବାଳ ଗଂଗାଧର ତିଳକ ଶ୍ରମିକମାନଙ୍କୁ ସଂଗଠିତ କରୁଥିଲେ । ଏହି ସମୟ ଭିତରେ ଶ୍ରମିକ ସଂଗଠନର ପରିସର ଦ୍ରୁତ ଗତିରେ ବୃଦ୍ଧି ପାଇଲା । ତନ୍ମଧ୍ୟରୁ ଖୁବ୍ ପ୍ରଭାବଶାଳୀ ୟୁନିଅନଙ୍କ ମଧ୍ୟରେ ଥିଲା; ୧୯୧୮ରେ ଗଠିତ ଭାରତୀୟ ନାବିକ ୟୁନିଅନ (ଜାହାଜ ଶ୍ରମିକ) ; ୧୯୧୮ରେ ଜି.ଆଇ.ପି. ରେଳବାଇ ୟୁନିଅନ, ୧୯୧୯ରେ ଅହମେଦାବାଦ କପଡ଼ାକଳ ୟୁନିଅନ, ୧୯୨୦ରେ ଉତ୍ତର ପଶ୍ଚିମ ରେଳବାଇ ୟୁନିଅନ, ୧୯୨୦ରେ ଭାରତୀୟ କୋଇଲା ଖଣି ଶ୍ରମିକ ୟୁନିଅନ ୧୯୨୦ରେ ଜାମସେଦପୁର ଶ୍ରମିକ ୟୁନିଅନ ଏବଂ ବି.ବି.ସି.ଆଇ. ରେଳବାଇ ୟୁନିଅନ ।

ଭାରତର ବିଭିନ୍ନ ପ୍ରଦେଶରେ ଥିବା ବିବିଧ ଶିଳ୍ପର ଏହି ୟୁନିଅନମାନଙ୍କୁ ଏକତ୍ରକରି ଏହାର ସର୍ବଭାରତୀୟ ମୁଖପାତ୍ର ରୂପେ ଏକ ସଂସ୍ଥା ଗଠନର ପ୍ରୟାସ ଆରଂଭ ହେଲା । ଦେଶ ଓ ଜାତି ପାଇଁ ଦୁର୍ଭାଗ୍ୟ ଯେ ଏ.ଆଇ.ଟି.ୟୁ.ସି ଗଠନର ପ୍ରଧାନ ପ୍ରବକ୍ତା ବାଳ ଗଂଗାଧର ତିଳକଙ୍କର ୧୯୨୦ ଅଗଷ୍ଟ ୧ ତାରିଖରେ ଦେହାନ୍ତ ହେଲା । କିନ୍ତୁ କେନ୍ଦ୍ରୀୟ ଶ୍ରମିକ ସଂଗଠନ ପ୍ରତିଷ୍ଠା ଲାଗି ସେ ଯେଉଁ ଦିଗଦର୍ଶନ ଦେଇ ପ୍ରସ୍ତୁତି ଚାଳଇଥିଲେ, ତାହା ତାଙ୍କ ମୃତ୍ୟୁପରେ ସେହି ବର୍ଷ ସେପ୍ଟେମ୍ବର ୩୧ ତାରିଖରେ ଜୀବନ୍ୟାସ ପାଇଲା ।

ବମ୍ବେ ମହାନଗରୀର ଏମ୍ପାୟର ଥିଏଟର ହଲରେ ସେଦିନ ଭାରତର ବିଭିନ୍ନ ଶ୍ରମିକ ୟୁନିଅନର ନେତାଙ୍କ ବିପୁଳ ସମାଗମ । ଆନନ୍ଦ, ଉଲ୍ଲାସ ଉଦ୍ଦୀପନାମୟ ଏହି ସମ୍ମିଳନୀରେ ବମ୍ବେର ବିଶିଷ୍ଟ ବ୍ୟକ୍ତିଙ୍କୁ ଘେନି ଗଠି ଅଭ୍ୟର୍ଥନା ସମିତିର ନେତୃବୃନ୍ଦ ଦୂରାଗତ ଅତିଥିମାନଙ୍କୁ ପାଛୋଟି ନେଉଥାନ୍ତି । ୱେଜଲଡ଼୍, ଜେ.ବାପିଟ୍‌ସ୍ତା, ଆନ୍ନି ବେସାନ୍ତ, ଏମ.ଏ.ଜିନ୍ନା ଓ ତାଙ୍କ ପତ୍ନୀ, ପଣ୍ଡିତ ମଦନମୋହନ ମାଲବ୍ୟ, ବି.ପି. ଓ୍ୱାଦିୟା, ଭି.ଆଇ. ପଟେଲ, ସମଲଦାସ, ବି.ପି.ବରୁଚା, ଯମୁନା ଦାସ ଦ୍ୱାରିକା ଦାସ, ଭି.ଜେ.ପଟେଲ, ମିଲର, ଏସ୍.ଏ.ବ୍ରେଲ୍‌ଭି, ଆଇ.ଆର.ଟେୟାରସେ, ଶ୍ରୀମତୀ ଯୋଷୀ, ଶ୍ରୀମତୀ ଅବନ୍ତିକା ଗୋଖଲେ, ଶ୍ରୀମତୀ ଚମନଲାଲ, କେ.ଏମ.ନରିମାନ, ହଂସରାଜ, ପି.ଥାକ୍କରେ, ଲାଲୁଭାଇ ଡି.ଜାଭେରୀ, ଏସ.ଜି.ବଙ୍କର, ପି.ନାନାବତୀ, ଛଗନଲାଲ, ଅହମ୍ମଦ ହାଜି

ସଦିକ, ଲାଲଜୀ ନାରଙ୍ଗୀ, ମାଭଜୀ ଗୋବିନ୍ଦଜୀ, ସି.ଏଫ, ଆନ୍ଦ୍ରୁଜ, ଏନ.ଏମ.ଯୋଷୀ, ଭି.ଏମ.ପାୱାର ପ୍ରଭୃତି ସେ କାଳର ନାମଜାଦା ଶ୍ରମିକ ନେତା ଓ ନେତ୍ରୀ ଏକତ୍ର ହୋଇଥିଲେ ।

ମହାତ୍ମାଗାନ୍ଧୀ ଅହମେଦାବାଦରେ ଏଥିପୂର୍ବରୁ ୨ଟି ଲୁଗାକଳରେ ସଫଳ ଧର୍ମଘଟ କରିସାରିଥାନ୍ତି । ଗୁଜୁରାଟରେ ଗାନ୍ଧିଜୀଙ୍କ ଦ୍ୱାରା ଗଠିତ ୟୁନିଅନର ନାମ ଥିଲା, ମଜଦୁର ମହାଜନ ।

ଅଭ୍ୟର୍ଥନା ସମିତିର ଚେୟାରମେନ ଜୋସେଫ ବାପିତ୍‌ସା ଏକ ଦୀର୍ଘ ଉଦବୋଧନୀ ଭାଷଣରେ ପୁଂଜିପତିମାନଙ୍କ ଦ୍ୱାରା ବ୍ରିଟିଶ ଶାସନର ସହାୟତାରେ କିପରି ଶ୍ରମିକମାନଙ୍କୁ ଶୋଷଣ କରାଯାଉଛି, ତାହାର ଏକ ସମ୍ୟକ ଚିତ୍ର ଦେଇଥିଲେ ।

ମାନ୍ଦ୍ରାଜର ବିଶିଷ୍ଟ ଶ୍ରମିକ ନେତା ବି.ପି. ଓ୍ୟାଦିୟାଙ୍କ ପ୍ରସ୍ତାବ ଓ ବମ୍ବେର ଶ୍ରମିକ ନେତା ଏନ.ଏମ.ଯୋଷୀଙ୍କ ସମର୍ଥନକ୍ରମେ ବିପୁଳ କରତାଳି ମଧ୍ୟରେ ଲାଲା ଲାଜପତ୍‌ରାୟ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ।

ସଭାପତି ଲାଜପତ୍‌ରାୟଙ୍କ ଓଜସ୍ୱିନୀ, ଗଣତାନ୍ତ୍ରିକ ଓ ଟ୍ରେଡ ୟୁନିଅନ ଅଧିକାର ସଂକ୍ରାନ୍ତ ସମସ୍ୟାକୁ ଘେନି ଗୁଡ଼ିଏ ପ୍ରସ୍ତାବ ଗୃହୀତ ହୋଇଥିଲା ।

## କର୍ମକର୍ତ୍ତା ନିର୍ବାଚନ

ଏହି ସଂଗଠନର ନାଂ ଅଖିଳ ଭାରତ ଟ୍ରେଡ୍‌ୟୁନିଅନ କଂଗ୍ରେସ (ଏ.ଆଇ.ଟି.ୟୁ.ସି) ରହିବ ବୋଲି ସିଦ୍ଧାନ୍ତ ନିଆଯାଇ ଏହାର କର୍ମକର୍ତ୍ତା ନିର୍ବାଚନ ଅନୁଷ୍ଠିତ ହେଲା । ଲାଲା ଲାଜପତ୍‌ରାୟ ସଭାପତି; ଉପସଭାପତି ମଣ୍ଡଳୀରେ ଜୋସେଫ ବାପିସ୍ତା, ସି.ଏଫ. ଆନ୍ଦ୍ରୁଜ, ଏସ୍.ଏ. ବ୍ରେଲଭି ରହିଲେ । ଆନି ବେସାନ୍ତ ଏବଂ ଭି.ଏମ.ପାୱାର ସାଧାରଣ ସଂପାଦକ ପଦରେ ରହିଲେ । ସହକାରୀ ସଂପାଦକ ଭାବରେ ଜି.କେ, ଗାଦଗିଲ, ଏମ.ଡି.ଦାଲଭି, ଅନନ୍ତ ରାମ ଏବଂ ବୈକୁଣ୍ଠ ରାମ ରହିଲେ । ଆର.ଆର.ଚୈରସେ କୋଷାଧ୍ୟକ୍ଷ ପଦରେ ନିର୍ବାଚିତ ହେଲେ ।

ଜେନେଭାରେ ବସୁଥିବା ଆଇ.ଏଲ.ଓ (ଆନ୍ତର୍ଜାତିକ ଶ୍ରମିକ ସଂଗଠନ)ର ସମ୍ମିଳନୀରେ ପ୍ରତିନିଧିତ୍ୱ କରିବା ପାଇଁ ଲାଲା ଲାଜପତରାୟ, ବି.ପି.ୱାଦିୟା, ଦେବାନ ଚମନଲାଲ ଏବଂ ଏନ.ଏମ.ଯୋଷୀଙ୍କୁ ବଛାଗଲା ।

୧୯୨୧ ଏପ୍ରିଲ ୫ରେ ଏହାର କାର୍ଯ୍ୟକାରୀ କମିଟି ବୈଠକରେ ଦେବାନ ଚମନ ଲାଲ ସାଧାରଣ ସଂପାଦକ ପଦରେ ଅବସ୍ଥାପିତ ହେଲେ ।

ଏ.ଆଇ.ଟି. ୟୁ.ସି.ର ପ୍ରଥମ ଇସ୍ତାହାରଟିକୁ ନୂତନ ସାଧାରଣ ସଂପାଦକ ଘୋଷଣା କରିଥିଲେ । ଇସ୍ତାହାର ହେଲା । :-

# ଭାରତର ଶ୍ରମିକଗଣ

"ଆପଣମାନେ ଆପଣମାନଙ୍କ ଦେଶର ଭାଗ୍ୟ ନିୟନ୍ତା ହେବା ଲାଗି ସମୟ ଉପନୀତ । ଜାତୀୟ ଜୀବନରୁ ଆପଣମାନେ ଅଲଗା ହୋଇ ରହି ପାରିବେ ନାହିଁ । ଆଜି ଭାରତରେ ଯେଉଁ ସବୁ ଘଟଣାବଳୀ ଇତିହାସ ସୃଷ୍ଟି କରୁଛି, ସେଗୁଡ଼ିକର ସମ୍ମୁଖୀନ ହେବା ଲାଗି ନାସ୍ତି କରିପାରିବେ ନାହିଁ । ଆପଣମାନେହିଁ, ବିଶାଳ ଜନଗଣ । ଆପଣମାନଙ୍କ ଦେଶର ରାଜନୈତିକ କ୍ରୀଡ଼ାଙ୍ଗନରେ ଘଟୁଥିବା ପ୍ରତ୍ୟେକଟି ଘଟଣା ତଥା ଆର୍ଥିକ ଓ ଅର୍ଥନୈତିକ ବ୍ୟବସ୍ଥାରେ ନିଆ ହେଉଥିବା ପ୍ରତ୍ୟେକଟି ପଦକ୍ଷେପ ଅନ୍ୟାନ୍ୟ ଶ୍ରେଣୀଠାରୁ ଆପଣମାନଙ୍କୁ ଅଧିକ ଆଘାତ କରୁଛି । ଆପଣାର ଦାୟିତ୍ୱ ସଂପର୍କରେ ଆପଣମାନେ ସଚେତନ ହେବା ଉଚିତ । ଆପଣମାନଙ୍କର କ'ଣ, କ'ଣ ଅଧିକାର ତାହା ଉପଲବ୍ଧି କରିବା ଆବଶ୍ୟକ । ଆପଣମାନଙ୍କ ଭାଗ୍ୟକୁ ନିଜ ହାତକୁ ନେବାକୁ ଆପଣମାନେ ପ୍ରସ୍ତୁତ ହୁଅନ୍ତୁ ।

"ଭାରତର ଶ୍ରମିକଗଣ, ଆପଣମାନଙ୍କର ୟୁନିଅନ ସଭ୍ୟପଦ ଥାଇ ଭାତରୀୟ ଜାତୀୟ କଂଗ୍ରେସରେ ଯୋଗ ଦେବାର କିଛି ବାଧା ନାହିଁ ।

"ଭାରତବର୍ଷର ଶ୍ରମିକଗଣ, ଆପଣମାନଙ୍କୁ କେବଳ ଗୋଟିଏ କଥା କରିବାକୁ ପଡ଼ିବ । ଆପଣମାନଙ୍କୁ ଐକ୍ୟକୁ ଉପଲବ୍ଧ କରିବାକୁ ହେବ । ଆପଣମାନଙ୍କ ସଂଗଠନକୁ ସୁଦୃଢ଼ କରିବାକୁ ହେବ । ଫାକୁରୀ ଆଇନରେ ମୁକ୍ତିର ବାଟକୁ ଖୋଜନ୍ତୁ ନାହିଁ । ଆଇନ ଆପଣମାନଙ୍କୁ ଏକତା ଆଣିଦେବ ନାହିଁ । ଆଇନ ଆପଣମାନଙ୍କ ଭିତରେ ଭ୍ରାତୃତ୍ୱ ଆଣିଦେବ ନାହିଁ । ଆପଣମାନଙ୍କ କାମହିଁ ତାହା ଆଣିବ । ଏପରି କଥା କହିଥାନ୍ତି, କ୍ଷେତବାଡ଼ି ଓ କଳକାରଖାନାରେ ଶୋଷଣ କରୁଥିବା ପୁଂଜିପତିମାନେ । ଆପଣମାନଙ୍କ ସଂଗଠନର ଶକ୍ତି ଉପରେହିଁ ଆପଣମାନଙ୍କ ତ୍ରାଣ ନିର୍ଭର କରେ । - ସକଳ ଦୁର୍ବଳତା, ଭୟଭ୍ରାନ୍ତିକୁ ପରିହାର କରନ୍ତୁ । ତାହା ହେଲେ ନିଶ୍ଚିତ ଭାବରେ ଆପଣମାନେ କ୍ଷମତା ଓ ମୁକ୍ତିର ପଥରେ ବିଚରଣ କରିବେ ।"



# ସ୍ୱାଧୀନତା ପ୍ରସ୍ତାବ ଦେବା ଏକ ଅପରାଧ - ୧୯୨୧

୧୯୨୧ରେ ଅହମେଦାବାଦଠାରେ କଂଗ୍ରେସ ଅଧିବେଶନ ଚାଲିଥାଏ । ଏହି ଅଧିବେଶନରେ ମୌଲାନା ହଜରତ ମୋହାନି ପୂର୍ଣ୍ଣ ସ୍ୱାଧୀନତା ଦାବୀ ଜଣାଇ ଏକ ଇସ୍ତାହାର ପ୍ରତିନିଧିମାନଙ୍କ ମଧ୍ୟରେ ବଣ୍ଟନ କରିଥିଲେ । ସେହି ଇସ୍ତାହାରଟିର ନାମଥିଲା - "ଅହମେହାବାଦ କଂଗ୍ରେସକୁ କମ୍ୟୁନିଷ୍ଟ ଇସ୍ତାହାର । ଏହି କଂଗ୍ରେସରେ ପୂର୍ଣ୍ଣ ସ୍ୱାଧୀନତା ଦାବୀ ଘେନି ସେ ଏକ ପ୍ରସ୍ତାବ ଆଣିଥିଲେ । ଏହି ଅପରାଧରେ ବ୍ରିଟିଶ ପୁଲିସ ତାଙ୍କ ବିରୁଦ୍ଧରେ ଅହମେଦାବାଦ ଜିଲ୍ଲା ମାଜିଷ୍ଟ୍ରେଟ ଚାଟ୍ ଫିଲ୍ଡଙ୍କ ଇଜଲାସରେ ୧୯୨୨ ଏପ୍ରିଲ ୨୬ ତାରିଖରେ ମକଦମା ରଜୁ କରିଥିଲା । ବିଚାରର ବିବରଣୀରେ ଲିପିବଦ୍ଧ କେତେକ ଅଂଶ ପ୍ରଦତ୍ତ ହେଲା ।" ସ୍ୱାଧୀନତା ଶବ୍ଦ ଉଚ୍ଚାରଣ କଲେ ସେତେବେଳେ ରାଜଦ୍ରୋହ ମକଦମା କରାଯାଉଥିଲା ।

"ଜିଲ୍ଲା ମାଜିଷ୍ଟ୍ରେଟ୍ ଚାଟ୍‌ଫିଲ୍ଡ ଆଜି ସକାଳେ ବିଚାର ଆରମ୍ଭ କରି ମୌଲାନା ହଜରତ୍ ମୋହାନିଙ୍କୁ ଭାରତୀୟ ପିଂଙ୍ଗଲ କୋଡ଼ର ୧୨୪କ ଧାରା ଅନୁସାରେ ଦୌରା ସୁପର୍ଦ୍ଦ କଲେ । ସେଥିରେ କଂଗ୍ରେସ ଅଧିବେଶନରେ ଏପରି ଏକ କମ୍ୟୁନିଷ୍ଟ ଇସ୍ତାହାର ବଣ୍ଟନ କରିବା ଅଭିଯୋଗ ଥିଲା । ଦ୍ୱିତୀୟ ଅଭିଯୋଗ ଥିଲା, ସେ ମୁସଲିଗ ଲିଗର ସଭାପତି ଅଭିଭାଷଣରେ ପୂର୍ଣ୍ଣ ସ୍ୱାଧୀନତା ଦାବୀକରି ଭାଷଣ ଦେଲେ ତଥା ସଂବାଦପତ୍ରକୁ ଏହାର ବିବରଣୀ ବଣ୍ଟନ କଲେ । ତେଣୁ ବିଭିନ୍ନ ଦଫାରେ ସେ ଅଭିଯୁକ୍ତ ହେଲେ ବୋଲି ମାଜିଷ୍ଟ୍ରେଟ ଚାଟ୍ ଫିଲ୍ଡ ଉଲ୍ଲେଖ କରିଥିଲେ । କେବଳ ସେତିକି ନୁହେଁ, ମୁସଲିମ ଲିଗ ସମ୍ମିଳନୀରେ ହିଂସାତ୍ମକ ଉପାୟରେ ପୂର୍ଣ୍ଣ ସ୍ୱାଧୀନତା ହାସଲ ଲାଗି ସେ ଡାକରା ଦେଇଥିଲେ ବୋଲି ଅଭିଯୋଗ କରାଯାଇଥିଲା । ଅଦାଲତରେ ହଜରତ ମୋହାନି ଜମାନବନ୍ଦୀ ଦେଇ କହିଲେ - ଏହି ଅଦାଲତ ଏକ ନ୍ୟାୟପାଳିକା ବୋଲି ମୁଁ ସ୍ୱୀକାର କରେ ନାହିଁ-" । ତାଙ୍କୁ ଜେଲଦଣ୍ଡ ଦିଆଗଲା ।



# "ମାନୁଛି ମୁଁ ଅପରାଧୀ", ଗାନ୍ଧିଜୀଙ୍କୁ ଛ'ବର୍ଷ ଜେଲଦଣ୍ଡ
# ୧୯୨୨

ମୋହନ ଦାସ କରମ ଚାନ୍ଦ ଗାନ୍ଧୀଙ୍କ ଦ୍ୱାରା ପ୍ରତିଷ୍ଠିତ ସାବରମତି ଆଶ୍ରମ । ସେଠାରୁହିଁ ୧୯୨୦-୨୧ରେ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରୁଥାଏ, ତାଙ୍କ ଇଂରାଜୀ ସାପ୍ତାହିକ **ୟଙ୍ଗ ଇଣ୍ଡିଆ** । ତାଙ୍କ ଦ୍ୱାରା ଲିଖିତ ତିନୋଟି ପ୍ରବନ୍ଧ ସେଥିରେ ପ୍ରକାଶ ପାଇଥିଲା । ତିନୋଟି ପ୍ରବନ୍ଧର ସମୟକ୍ରମ ହେଲା ୧୯୨୧ ସେପ୍ଟେମ୍ବର ୨୯, ଡିସେମ୍ବର ୧୫ ଏବଂ ୧୯୨୨ ଫେବୃଆରୀ ୨୩ ତାରିଖ ।

ବ୍ରିଟିଶ କର୍ତ୍ତପକ୍ଷ ତାଙ୍କ ବିରୁଦ୍ଧରେ ରାଜଦ୍ରୋହ ମକଦମା ଆରଂଭ କରିଦେଲା । ଦକ୍ଷିଣ ଆଫ୍ରିକାରେ ତାଙ୍କୁ ପ୍ରଥମ ଜେଲଦଣ୍ଡ ହେଲାବେଳେ, ବ୍ରିଟିଶ ଶାସକବର୍ଗଙ୍କ ଦୃଷ୍ଟିରେ ଅନ୍ୟ ଭାରତୀୟ ଓ ଚୀନ ଅପରାଧୀଙ୍କଠାରୁ ତାଙ୍କର ଅପରାଧ ଅଧିକ, ତେଣୁ ତାଙ୍କୁ କଠୋର ଦଣ୍ଡ ଦେବାଲାଗି ବିଚାର ଅଦାଲତକୁ ସେ ଆବେଦନ କରିଥିଲେ ।

ଭାରତବର୍ଷକୁ ୧୯୧୫ରେ ଆସିବାପରେ କଂଗ୍ରେସର କେବଳ ନୁହେଁ ସାରା ଭାରତ ଅଦ୍ୱିତୀୟ ଜନନେତାର ସ୍ୱୀକୃତି ପାଇ ମହାତ୍ମା ଗାନ୍ଧୀ ବୋଲି ସର୍ବତ୍ର ସେ ସଂବର୍ଦ୍ଧିତ ହେଉଥାନ୍ତି । ତାଙ୍କରି ବିରୁଦ୍ଧରେ ରାଜଦ୍ରୋହ ଅଭିଯୋଗ ।

ଏହି ତିନୋଟି ପ୍ରବନ୍ଧ ରାଜଦ୍ରୋହମୂଳକ ବୋଲି ବିଦେଶୀ ଶାସକ ଗୋଷ୍ଠୀ ବିଚାରି ୧୯୨୨ ମାର୍ଚ୍ଚ ୧୮ରେ ଏକ ମକଦମା ଚାଲୁକଲା । ବିଚାରକ ଥାଆନ୍ତି ଗୋରା ଆଇ.ସି.ଏସ୍. - ସି.ଏନ.ବ୍ରମ୍ସଫିଲଡ୍ ।

ତାଙ୍କରି ଅଦାଲତରେ ମହାତ୍ମା ଗାନ୍ଧୀ ଏକ ବିବୃତି ଦେଇ କହିଥିଲେ "ହିଂସାକୁ ଆଶ୍ରୟ ନ ଦେବାକୁ ମୁଁ ଚାହିଁଥିଲି । ଅହିଂସାହିଁ ମୋ ବିଶ୍ୱାସର ପ୍ରଥମ ଆଧାର । ତେଣୁ ଏକ ଲଘୁ ଦଣ୍ଡ ପାଇଁ ନୁହେଁ, ଏକ କଠୋର ଦଣ୍ଡ ପାଇଁ ମୁଁ ଆବଦେନ କରୁଛି । ମୁଁ କରୁଣା ଚାହୁଁ ନାହିଁ । ମୋ ପ୍ରତି କୋହଳ ହେବା ମୁଁ ଲୋଡୁ ନାହିଁ । ଯାହାକୁ ଉଦ୍ଦେଶ୍ୟମୂଳକ ଅପରାଧ ବୋଲି ଆଇନରେ ଗଣ୍ୟ କରାଯାଏ ଏବଂ ଏକ ନାଗରିକ ଭାବରେ ଯାହା ମୋତେ ସର୍ବାଧିକ ଅନୁମତି ହୁଏ, ସେପରି ସର୍ବୋଚ୍ଚ ଦଣ୍ଡକୁ ଆନନ୍ଦ

ଉଲ୍ଲାସରେ ମୁଁ ବରଣ କରିନେବି, ଏହାହିଁ ମୁଁ ପ୍ରାର୍ଥନା କରୁଛି । ମୋର ସାଧାରଣ ଜୀବନ ୧୮୯୩ରେ ଏକ ଝଞ୍ଜାମୟ ବାତାବରଣରେ ଆରଂଭ ହୋଇଥିଲା । ଉକ୍ତ ଶତାବ୍ଦୀରେ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ସହ ମୋର ପ୍ରଥମ ସଂପର୍କ ଆନନ୍ଦଦାୟକ ଚରିତ୍ରର ନଥିଲା । ଏକ ମଣିଷ ଏବଂ ଏକ ଭାରତୀୟ, ତେଣୁ ମଣିଷ ହିସାବରେ ମୋର କୌଣସି ଅଧିକାର ନଥିଲା ।"

ଅହିଂସା, ଅସହଯୋଗର ମର୍ମ୍ମ ଓ ପରିସର ସଂପର୍କରେ ସେ ବୟାନ ଦେଇଥିଲେ । ବିଚାରକଙ୍କୁ ଲକ୍ଷ୍ୟକରି ସେ କହିଥିଲେ, "ଖଳ ସହିତ ଅସହଯୋଗ କରିବା ପାଇଁ ଦଣ୍ଡବିଧାନକୁ ସ୍ୱେଚ୍ଛାକୃତ ଭାବରେ ଗ୍ରହଣ କରି ନେବା ଅହିଂସାର ମର୍ମ୍ମବାଣୀ । ବିଚାରକ ମହୋଦୟ, ଆପଣଙ୍କ ସମୀପରେ ଦୁଇଟି ବାଟ ଉନ୍ମୁକ୍ତ । ଯଦି ଆପଣ ଅନୁଭବ କରିବେ ଯେ ଯେଉଁ ଆଇନ ପ୍ରୟୋଗ କରିବାକୁ ଆପଣଙ୍କୁ କୁହାଯାଇଛି, ତାହା ଏକ ଖଳ, ତେବେ ଆପଣ ଇସ୍ତଫା ଦେବେ । ନଚେତ୍ ଯଦି ଆପଣ ବିଚାରନ୍ତିଯେ ଯେଉଁ ବ୍ୟବସ୍ଥା ଓ ଆଇନକୁ ପ୍ରୟୋଗ କରିବାକୁ ଆପଣଙ୍କୁ କୁହାଯାଇଛି ତାହା ଏହି ଦେଶବାସୀଙ୍କ ପକ୍ଷରେ କଲ୍ୟାଣକର ଏବଂ ଯେହେତୁ ମୋ କାର୍ଯ୍ୟକଳାପ ସାଧାରଣ କଲ୍ୟାଣ ପାଇଁ କ୍ଷତିକାରକ, ତେବେ ମୋତେ କଠୋରତମ ଦଣ୍ଡ ଦେବେ ।"

ବିଚାରକ ମହାତ୍ମା ଗାନ୍ଧୀଙ୍କୁ ଛ' ବର୍ଷ ଜେଲଦଣ୍ଡ ଦେବା ସଂଗେସଂଗେ ରାୟଟିରେ ଗାନ୍ଧିଜୀଙ୍କ ଉଚ୍ଛ୍ୱସିତ ପ୍ରଶଂସା କରି ଲେଖିଥିଲେ -

"ମିଷ୍ଟର ଗାନ୍ଧୀ, ଆପଣ ଅଭିଯୋଗକୁ ସ୍ୱୀକାର କରି ମୋ କାମକୁ ସହଜ କରି ଦେଇଛନ୍ତି । ଆଇନ, ବ୍ୟକ୍ତିମାନଙ୍କର ପ୍ରଶଂସକ ନୁହଁ । ମାତ୍ର ଯେତେ ଲୋକଙ୍କର ବିଚାର କରିଛି ବା ବିଚାର କରିବାକୁ ପଡ଼ିପାରେ ସେପରି ଯେ କୌଣସି ବ୍ୟକ୍ତିଙ୍କଠାରୁ ଆପଣଯେ ଏକ ଭିନ୍ନ ବର୍ଗର ବ୍ୟକ୍ତି, ଏହାକୁ ଅବଜ୍ଞା କରିବା ଅସମ୍ଭବ । ଆପଣଙ୍କ ନିୟୁତ ନିୟୁତ ଦେଶବାସୀଙ୍କ ଚକ୍ଷୁରେ ଆପଣ ଯେ ଏକ ମହାନ୍ ଦେଶପ୍ରେମୀ ଓ ବିରାଟ ନେତା ଏହାକୁ ଅବଜ୍ଞା କରିବା ଅସମ୍ଭବ । ଏମିତିକି ଯେଉଁମାନେ ରାଜନୀତି କ୍ଷେତ୍ରରେ ଆପଣଙ୍କଠାରୁ ଭିନ୍ନ ମତ ପୋଷଣ କରନ୍ତି, ସେମାନେ ମଧ୍ୟ ଆପଣଙ୍କୁ ଉଚ୍ଚ ଓ ମହତ୍ ଆଦର୍ଶର ବ୍ୟକ୍ତି ବୋଲି, ଏକ ସନ୍ଥ ଜୀବନଧାରୀ ବ୍ୟକ୍ତିରୂପେ ବିଚାରନ୍ତି ।"



# ଦ୍ୱିତୀୟ ପେଶାବାର କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦମା ୧୯୨୨

୧୯୨୨ ଠାରୁ ୧୯୨୭ ଠାରୁ ୧୯୨୭ ପର୍ଯ୍ୟନ୍ତ ଭାରତୀୟ ବିପ୍ଳବୀ, ସ୍ୱାଧୀନତା ସଂଗ୍ରାମୀମାନଙ୍କ ବିରୁଦ୍ଧରେ ୫ଟି ଲାହୋର ଷଡ଼ଯନ୍ତ୍ର ମକଦମାକରି ବ୍ରିଟିଶ ସରକାର ସଂଗ୍ରାମୀମାନଙ୍କୁ ଦୀର୍ଘ କାରାଦଣ୍ଡ ଦେଇଥିଲା । ଉତ୍ତର ଭାରତରୁ ସହସ୍ର ସହସ୍ର ସ୍ୱାଧୀନତା ସଂଗ୍ରାମୀ ରୁଷିଆରେ ବଲଶେଭିକ ବିପ୍ଳବ ପରେ ଦୁର୍ଗମ ହିମାଳୟର ହିନ୍ଦୁକୁଶ ପର୍ବତମାଳା ଗିରିସଂକଟ ଦେଇ ରୁଷିଆର ତାସକନ୍ଦ ସହରକୁ ଗଲେ । ସେଠାରେ ଭାରତକୁ ବ୍ରିଟିଶ ଶାସନକୁ ହଟାଇବାକୁ ସଂଗଠନ ଗଢ଼ିଥିଲେ । ସେମାନଙ୍କୁ ମୁହାଜିର କୁହାଯାଉଥିଲା ।

ତାସକନ୍ଦରେ ପୂର୍ବ ଏସିଆର ପରାଧୀନ ଦେଶ (ବ୍ରିଟିଶ, ଫରାସୀ, ସାମ୍ରାଜ୍ୟବାଦ) ମାନଙ୍କର ବିପ୍ଳବୀମାନଙ୍କୁ ଘେନି ଏକ ବିଶ୍ୱବିଦ୍ୟାଳୟ ଖୋଲାଯାଇ ତାଲିମ ଦିଆଯାଉଥିଲା । ୧୯୨୨ ମଧ୍ୟଭାଗରେ ବ୍ରିଟିଶ ଗୁଇନ୍ଦା ଖବର ପାଇଲା ଯେ ୨୦/ ୨୫ ଜଣ ଭାରତୀୟ ମୁଜାହିର ତାଲିମ ପାଉଛନ୍ତି । ଏହି ମୁଜାହିରମାନେ ଗୋପନରେ ଭାରତ ଫେରିବା ପରେ ସେମାନଙ୍କ ବିରୁଦ୍ଧରେ ବ୍ରିଟିଶ ରାଜୁତିକୁ ହଟାଇବା ଷଡ଼ଯନ୍ତ୍ର କରୁଥିବା ଅଭିଯୋଗ ଅଣାଯାଇ ଦଣ୍ଡ ବିଧାନ କରାଯାଇଥିଲା ।

ଦ୍ୱିତୀୟ ପେଶାଦାର ଷଡ଼ଯନ୍ତ୍ର ମକଦ୍ଦମାକୁ ମସ୍କୋ – ତାସକନ୍ଦ ଷଡ଼ଯନ୍ତ୍ର ମକଦମା ବୋଲି ମଧ୍ୟ ଅଭିହିତ କରାଯାଇଥିଲା । ୧୯୨୨ ମାର୍ଚ୍ଚ ମାସରେ ଦ୍ୱିତୀୟ ପେଶାବାର ମକଦମା ରଜୁ କରାଗଲା । ଏହି ମକଦମାର ମୁଖ୍ୟ ଆସାମୀ, ମହମ୍ମଦ ଆକବରଙ୍କୁ (ହରିପୁର) ୩ ମାସ ଏକାକୀ ବନ୍ଦୀଜବନ ସହ ୭ବର୍ଷ ସଶ୍ରମ କାରାଦଣ୍ଡ, ଗୁଲାମ ହାସାନ (ବେଲୁଚିସ୍ଥାନ)ଙ୍କୁ ୩ମାସ ଏକାକୀ ବନ୍ଦୀ ଜୀବନ (ଅର୍ଥାତ୍ ସେଲ ଭିତରେ ଦିନରାତି ଆବଦ୍ଧ) ସହିତ ୫ବର୍ଷ ଏବଂ ଗୁଲାମ ମେହବୁବ (ପେଶାବାର) ସମକାଳୀନ ନିର୍ଜନ କାରଦଣ୍ଡ ଓ ୫ ବର୍ଷ ସଶ୍ରମ କାରାଦଣ୍ଡ ଦିଆଗଲା ।

ସେସନ୍ସ ଜଜ ଫ୍ରେଜର ତାଙ୍କ ଦୀର୍ଘ ରାୟରେ ଉଲ୍ଲେଖ କରିଛନ୍ତି ଯେ "ସେମାନେ ନିରେଳା କମ୍ୟୁନିଜିମ ଗ୍ରହଣ କଲେ ବୋଲି ଦଣ୍ଡ ଦିଆଗଲା, ନୁହଁ । ସେମାନେ ବଲଶେଭିକ ଓ ରାୟ (ମାନବେନ୍ଦ୍ର ରାୟ)ଙ୍କ ଦ୍ୱାରା ଗୃହୀତ କମ୍ୟୁନିଜିମର ପ୍ରତିନିଧି । ଭାରତୀୟମାନଙ୍କୁ ପ୍ରଚାରକ ରୂପେ ତାଲିମ ଦେବା ଥିଲା ବଲଶେଭିକମାନଙ୍କର ଉଦ୍ଦେଶ୍ୟ । ଭାରତକୁ ଆସି ସେମାନେ ଯେଉଁ ତତ୍ତ୍ୱ ପ୍ରଚାର କରିବେ, ତାହା ସଶସ୍ତ୍ର ବିଦ୍ରୋହ ସୃଷ୍ଟି କରିବ ଏବଂ ତାହା ଫଳରେ ବ୍ରିଟିଶ ସରକାର ଗାଦିଚ୍ୟୁତ ହେବ..."



# ଚୌରିଚୌରା ଘଟଣା ଓ ଆନ୍ଦୋଳନ
# ପ୍ରତ୍ୟାହାର ୧୯୨୨

୧୯୨୦-୨୨ ମହାନ ଅସହଯୋଗ ଆନ୍ଦୋଳନର ଭାରତବ୍ୟାପୀ ସହସ୍ର ସହସ୍ର ହିନ୍ଦୁ-ମୁସଲମାନ, ଶିଖ, ବୁଦ୍ଧୀଜୀବୀ, ଆଇନଜୀବୀ, ଛାତ୍ର ଯୁବକ ଓ ସରକାରୀ କାମ ଛାଡ଼ିଥିବା ବହୁ ବ୍ୟକ୍ତି ଅଂଶ ଗ୍ରହଣ କରିଥିଲେ । ଉତ୍ତର ପ୍ରଦେଶର ଚୌରିଚୌରି ଘଟଣା ପରେ ଗାନ୍ଧିଜୀ ଆନ୍ଦୋଳନକୁ ପ୍ରତ୍ୟାହାର କରିଥିଲେ ।

୧୯୨୨ ଫେବୃଆରୀ ୫ ତାରିଖରେ ଚୌରିଚୌରାରେ ଏକ ସୁଶୃଙ୍ଖଳିତ କଂଗ୍ରେସ ପଟୁଆର ବାହାରିଥିଲା । ବାଟରେ କେତେକ ବ୍ରିଟିଶ ପୁଲିସ ଶୋଭାଯାତ୍ରାକାରୀମାନଙ୍କୁ ଲକ୍ଷ୍ୟକରି ଟାହି ଟାପରା କଲେ । ଏହାପରେ ପଟୁଆରକାରୀମାନେ ଅଧିକ ଉତ୍ସାହରେ ରଣଧ୍ୱନି ଦେଇ ପଟୁଆର ଚଳେଇ ରଖିଲେ । ଏହା ଦେଖି ବ୍ରିଟିଶ ପୁଲିସ ଅଧିକ ମାତ୍ରାରେ ଟାହିଟାପରା ଚଳେଇଲା । ଫଳରେ ସଂଘର୍ଷ ଆରଂଭ ହୋଇଗଲା । ଚୌରିଚୌରା ଥାନାରେ ମାତ୍ର ୨୩ଜଣ ସିପାହୀ ଥିଲେ । ସେମାନେ ଲୋକଙ୍କ ଘେରରେ ପଡ଼ିଗଲେ । ପୁଲିସ ଉତ୍‌କ୍ଷିପ୍ତ ହୋଇ ଗୁଳି ଚାଳନା କଲା । ମାତ୍ର କେହି ନିହତ ହୋଇନଥିଲେ । ସିପାହୀମାନଙ୍କ ଗୁଳିଗୁଳା ଶେଷ ହୋଇଗଲାପରେ ସେମାନେ ଥାନା ଭିତରକୁ ପଶିଗଲେ । ଉତ୍‌କ୍ଷିପ୍ତ ଜନତା ଥାନାରେ ନିଆଁ ଲଗେଇ ଦେଲେ । ନିଆଁ ଦେଖି ସିପାହୀମାନେ ଥାନାରୁ ଖସି ପଳାଇବାକୁ ବସିଲେ । ଉତ୍ତ୍ୟକ୍ତ ଜନତା ସେମାନଙ୍କୁ ହତ୍ୟା କରିଦେଲେ ଏବଂ ସେମାନଙ୍କ ଖଣ୍ଡବିଖଣ୍ଡିତ ଅଂଗକୁ ଜଳନ୍ତା ନିଆଁ ଭିତରକୁ ନିକ୍ଷେପ କଲେ ।

ଗାନ୍ଧିଜୀ ଏଥିରେ ବ୍ୟଥିତ ହୋଇ ନିଜେ ସେଥିଲାଗି ଦୋଷୀ କହି ଅନୁତାପ ମୂଳକ ଅନଶନ କଲେ ଏବଂ ଆନ୍ଦୋଳନକୁ ପ୍ରତ୍ୟାହାର କରିନେଲେ ।

ଅପ୍ରତ୍ୟାଶିତ ଭାବରେ ଆନ୍ଦୋଳନକୁ ପ୍ରତ୍ୟାହାର କରାଯିବାରୁ ବହୁ କଂଗ୍ରେସ ନେତା ଓ ସହସ୍ର ସହସ୍ର ଅସହଯୋଗ ଆନ୍ଦୋଳନକାରୀ ବ୍ୟଥିତ ହେଲେ । ଏହା ସତ୍ତ୍ୱେ ଆନ୍ଦୋଳନ ସ୍ୱତଃ ଚାଲୁ ରହିଲା । ୧୯୨୨ ମାର୍ଚ୍ଚ ୧୦ ତାରିଖରେ ଗାନ୍ଧିଜୀଙ୍କୁ ଗିରଫ କରି ନିଆଗଲା ଏବଂ ଚାରିବର୍ଷ ଜେଲଦଣ୍ଡ ଦିଆଗଲା ।



# କାନପୁର ବଲଶେଭିକ ଷଡ଼ଯନ୍ତ୍ର ମକଦମା ୧୯୨୩-୨୪

୧୯୨୩ ମଇ ଆଠ ତାରିଖରେ କାନପୁରରୁ ସୌକତ ଉସମାନୀଙ୍କୁ, ମଇ ୧୯ରେ କଲିକତାକୁ ମୁଜାଫର ଅହମ୍ମଦଙ୍କୁ ଏବଂ ସେହି ସମୟ ଭିତରେ ଲାହୋର ଠାରୁ ଗୁଲାମ ହୁସେନଙ୍କୁ ସୋଭିଏତ୍ ୟୁନିଅନର ବିଦେଶୀ ଚର ଆଖ୍ୟା ଦେଇ ଗିରଫ କରାଗଲା ।

୧୯୨୩ ଡିସେମ୍ବର ୨୦ ତାରିଖରେ କଲିକତାରୁ ନଳିନୀ ଗୁପ୍ତଙ୍କୁ ଗିରଫ କରାଗଲା । ଏମାନଙ୍କ ବିରୁଦ୍ଧରେ ପରିଚାଳିତ ମକଦମାଟି କାନପୁର ବଲଶେଭିକ ଷଡଯନ୍ତ ମକଦମା ରୂପେ ଖ୍ୟାତ । ମସ୍କୋରୁ ଏମ୍.ଏନ୍.ରାୟ ଦେଇଥିବା ପତ୍ରକୁ ବ୍ରିଟିଶ ଗୁଇନ୍ଦା ସାକ୍ଷ୍ୟଭାବରେ ଉତ୍ଥାପନ କଲା । ନଳିନୀ ଗୁପ୍ତ ୧୯୨୩ ଡିସେମ୍ବରରେ ୨୩ ପୃଷ୍ଠାବ୍ୟାପୀ ଏକ ମୁଦ୍ରିତ ବୟାନ ପୁଲିସକୁ ଦେଇଥିଲେ । ପୁଲିସ ସମସ୍ତ ଗୁଇନ୍ଦା ଖବରଥିବା ଫାଇଲକୁ ଦେଖାଇବାକୁ ମୁଜଫର ଅହମ୍ମଦ ତାଙ୍କର ବୟାନ ଦେଇଥିଲେ ବୋଲି ନିଜ ରଚିତ ପୁସ୍ତକରେ ଉଲ୍ଲେଖ କରିଯାଇଛନ୍ତି ।

୧୯୨୪ ଫେବୃୟାରୀ ୨୦ରେ ଏହି ମକଦମା କରିବାର ନିଷ୍ପତ୍ତି ନିଆଗଲା । ଗିରଫ କରାଯାଇନଥିଲେବି ବମ୍ବେରୁ ଏସ୍.ଏ.ଡାଙ୍ଗେ ଏବଂ ମାନ୍ଦ୍ରାଜର ସିଙ୍ଗରଭେଲୁ ଚେଟିଆରଙ୍କ ନାମ ଅଭିଯୋଗ ପତ୍ରରେ ଉଲ୍ଲେଖ କରାଗଲା ।

ଭାରତୀୟ ଦଣ୍ଡବିଧି ଆଇନର ୧୨୧କ ଓ ୧୨୪କ ଧାରାରେ ଏମାନଙ୍କ ନାମରେ ମକଦମା କରାଯିବ ବୋଲି ଭାରତ ସରକାର ବ୍ରିଟିଶ ପରରାଷ୍ଟ୍ର ସଚିବଙ୍କୁ ଜଣାଇଦେଲେ । ତତ୍‌ସହିତ ଏକ ତାରବାର୍ତ୍ତା ପଠାଗଲା । ଗୁଲାମ ହୋସେନ ଷଡ଼ଯନ୍ତରେ ଜଡ଼ିତ ଥିଲେ ବି ରାଜକ୍ଷମା ଚାହିଁଲେ । ସେ ଷଡ଼ଯନ୍ତ୍ର ସଂପର୍କରେ ତଥ୍ୟ ଯୋଗାଇଦେବାରୁ ତାଙ୍କୁ ଛାଡକରି ମୋଟ ୧୩ଜଣଙ୍କ ନାମରେ ଷଡ଼ଯନ୍ତ୍ର ମକଦମା ଚଳାଇବାକୁ ସୁପାରିଶ କରାଗଲା । ମାତ୍ର ବ୍ରିଟିଶ କାଉନ୍ସିଲ ଏହାର ବିଚାର କରି ୫ଜଣଙ୍କ ନାମ ବାଦ ଦେଲେ । ସେମାନେ ହେଲେ ଶ୍ୟାମସୁନ୍ଦିନ, ଏମ.ପି.ଏସ ଭେଲାୟୁଧନ, ଡକ୍ଟର ମନିଲାଲ ସଂପୂର୍ଣ୍ଣାନନ୍ଦ ଓ ସତ୍ୟବ୍ରତ । ଡାଙ୍ଗେଙ୍କୁ ଗିରଫ କରାଗଲା । ଅଭିଯୁକ୍ତ ମଧ୍ୟରୁ ଏମ.ଏନ.ରାୟ ଜର୍ମାନୀରେ ଏବଂ ଆର.ସି.ଏଲ. ଶର୍ମା ଫରାସୀ ଶାସିତ ପଣ୍ଡିଚେରୀରେ ଥିଲେ । ଏମ୍.ସିଙ୍ଗରାଭେଲୁଙ୍କୁ ଗିରଫ ପରେ ୧୯୨୪ ମାର୍ଚ୍ଚ ୬ ତାରିଖରେ ଜାମିନ ଦିଆଗଲା । ଓ ତାଙ୍କୁ ତାଙ୍କ ଘରେ ନଜରବନ୍ଦୀରେ ରଖାଗଲା । ଅବଶିଷ୍ଟ ୪ ଜଣ ନାମରେ ମକଦମା ଚାଲିଲା ।

ଅଭିଯୋଗ ପତ୍ରରେ ଥିଲା, "ୟୁରୋପରେ କମ୍ୟୁନିଷ୍ଟ ଇଣ୍ଟରନାସନାଲ ନାମକ ଏକ ସଂଗଠନ ରହିଛି । ତାହା ଭାରତରେ ଏମ୍.ଏନ.ରାୟଙ୍କ ନିୟନ୍ତ୍ରଣରେ ଏକ ଶାଖା ଖୋଲିବାକୁ ବଦ୍ଧ-ପରିକର । ଏହାର ଏକମାତ୍ର ଲକ୍ଷ୍ୟ ହେଲା, ହିଂସାତ୍ମକ ବିପ୍ଳବ ଦ୍ୱାରା ଭାରତର ସମ୍ରାଟଙ୍କ ସାର୍ବଭୌମତ୍ୱକୁ ଉଚ୍ଛେଦ କରିବା..... ।"

ଦୁଇ ସପ୍ତାହ କାଳ ମାଜିଷ୍ଟ୍ରେଟଙ୍କ ତଦନ୍ତ ଚାଲିଲା ଏବଂ ୧୯୨୪ ଏପ୍ରିଲ ୨୨ରେ ସଂଗଠନ ଠାରେ ଏଚ.ଇ.ହେମ୍ସଙ୍କ ଅଦାଲତରେ (ଏହାର ବିଚାରକ ମଧ୍ୟ ଚୋରିଚୌରା ମକଦମାର ବିଚାରକ ଥିଲେ) ବିଚାର ଚାଲିଲା । ଏହି ମକଦମାକୁ ବମ୍ବେକୁ ଅବା କଲିକତା ଉଠାଇନେବାକୁ ଅଭିଯୁକ୍ତମାନଙ୍କ ଆବେଦନକୁ ଅଗ୍ରାହ୍ୟ କରାଗଲା । ଚାରି ସପ୍ତାହ କାଳ ବିଚାର ଚାଲିଲାପରେ ୧୯୨୪ ମଇ ୨୦ ତାରିଖରେ ରାୟ ପ୍ରକାଶିତ ହେଲା । ତଥାକଥିତ ଅପରାଧୀ ପ୍ରତ୍ୟେକଙ୍କୁ ଚାରିବର୍ଷ ସଶ୍ରମ କାରାଦଣ୍ଡ ମିଳିଲା । ୧୯୨୪ ନଭେମ୍ବରରେ ହାଇକୋର୍ଟରେ ଏହାର ଅପିଲ ହେଲା ।

ଅଭିଯୁକ୍ତମାନଙ୍କ ସପକ୍ଷରେ ଲଢ଼ିବା ଲାଗି ଭି.ଏନ.ଯୋଷୀ, ଟି.ଭି.ପାର୍ବତୀ ଏବଂ କେ.ଏନ, ଯୋଗଲେକରଙ୍କୁ ଘେନି "ଭାରତୀୟ କମ୍ୟୁନିଷ୍ଟ ଡିଫେନ୍ସ କମିଟି" ଗଢ଼ାଯାଇ ପାଣ୍ଠି ସଂଗ୍ରହ କରାଗଲା । ଅପିଲଟି ହାଇକୋର୍ଟରେ ଖାରଜ ହୋଇଗଲା । କମ୍ୟୁନିଷ୍ଟ ପାର୍ଟି ନାମରେ ସଂଗଠନ ଗଢ଼ିବାର ଅଧିକାର ରହିଛି ବୋଲି ଆସାମୀମାନେ ଅଦାଲତରେ ବୟାନ ଦେଇଥିଲେ ।

କାନପୁର ବଲଶେଭିକ ଷଡ଼ଯନ୍ତ୍ର ମକଦମାରେ ଅଭିଯୁକ୍ତ ଓ ୪ ବର୍ଷ ଲାଗି କାରାଦଣ୍ଡରେ ଦଣ୍ଡିତ ଡାଙ୍ଗେ, ମୁଜଫର ଅହମ୍ମଦ, ନଳିନୀଗୁପ୍ତ, ମହମ୍ମଦ ଉସମାନୀଙ୍କୁ ୧୯୨୪ ମଇ ମାସରେ ଜେଲକୁ ପଠାଇଲା ପରେ ବ୍ରିଟିଶ ସରକାର ଦମ୍ଭର ସହ ଘୋଷଣା କରିଥିଲା ଯେ "କାନପୁର କମ୍ୟୁନିଷ୍ଟମାନଙ୍କୁ ନିଶ୍ଚିହ୍ନ କରିଦେଇଛି ।" ମାତ୍ର ବିଦେଶୀ ସରକାର ପକ୍ଷରେ ବିଡ଼ମ୍ବନା ଯେ ଠିକ୍ ଏକବର୍ଷ ପରେ ଏମାନେ ଜେଲରେ ଥିବାବେଳେ କାନପୁର ଠାରେହିଁ ଏକ ସମ୍ମିଳନୀରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଭାରତ ମାଟିରେ ତାହାର ସାଂଗଠନିକ ରୂପ ନେଇଥିଲା ।



# ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଗଠନ ପ୍ରକିୟା
# କାନପୁରରେ ପ୍ରତିଷ୍ଠା ସମ୍ମିଳନୀ ୧୯୨୫

ସ୍ୱାଧୀନତା ସଂଗ୍ରାମରେ ଅଗ୍ରଦୂତ ଭାରତୀୟ ଜାତୀୟ କଂଗ୍ରେସର ପ୍ରତିଷ୍ଠାର ୩୦ ବର୍ଷ ପରେ, ୧୯୨୫ରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପ୍ରତିଷ୍ଠା ସମ୍ମିଳନୀ କାନପୁରଠାରେ ଅନୁଷ୍ଠିତ ହୋଇଥିଲା । ଏଥିପୂର୍ବରୁ କିପରି ଏବଂ କେଉଁ ରାଜନୈତିକ ଓ ସାମାଜିକ, ପରିସ୍ଥିତି ଦେଇ ଏହାର ଉଦଭବ ହେଲା, ତାହାର ସଂକ୍ଷିପ୍ତ ସୂଚନା ପ୍ରୟୋଜନ ।

କଂଗ୍ରେସ ଯେପରି ଏକ ଦୀର୍ଘ ପ୍ରକ୍ରିୟା ଦେଇ ଗଠିତ ହୋଇଥିଲା, ସେହିପରି ଏକ ଐତିହାସିକ ପୃଷ୍ଠଭୂମିରେ ସ୍ୱାଧୀନତା ସଂଗ୍ରାମ ଭିତରୁ ସ୍ୱାଧୀନତାକାମୀ ଅନେକ ରାଜନୈତିକ ସଂଗଠନ ଓ ଗଣ ସଂଗଠନ ଉଦଭବ ହେବାପରି ଏହି ପାର୍ଟିର ଉଦ୍‌ଭବ ଘଟିଥିଲା ।

ବ୍ରିଟିଶ ସାମ୍ରାଜ୍ୟବାଦ ଦ୍ୱାରା ନାରାକୀୟ ଜାଲିଆନାବାଗ ନର ସଂହାର ୧୯୧୯ରେ ସଂଘଟିତ ହେବା ପରେ ମୁକ୍ତି ସଂଗ୍ରାମ ଏକ ନୂଆ ମୋଡ଼ ନେଲା । ୧୯୨୦ରେ ନାଗପୁର କଂଗ୍ରେସ ଅଧିବେଶନରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନର ଆହ୍ୱାନ ଦିଆଗଲା । ସେତେବେଳକୁ ପୃଥିବୀରେ ଆଉ ଏକ ଯୁଗାନ୍ତକାରୀ ବିପ୍ଳବ ସଂଘଟିତ ହୋଇଥାଏ । ୧୯୧୭ରେ ରୁଷରେ ବଲଶେଭିକ ପାର୍ଟି ଓ ତା'ର ନେତା ଲେନିନଙ୍କ ନେତୃତ୍ୱରେ ଏହି ବିପ୍ଳବ ଶୋଷଣ-ବିହୀନ, ସମାଜ ପ୍ରତିଷ୍ଠାର ଲକ୍ଷ୍ୟ ଗ୍ରହଣକରି ଜୟଯୁକ୍ତ ହୋଇଥାଏ । ଏହି ବିପ୍ଳବର ପ୍ରଭାବରେ ସାରା ପୃଥିବୀରେ ବିଭିନ୍ନ ଦେଶରେ ସମାଜବାଦୀ-ସାମ୍ୟବାଦୀ ସାମାଜିକ ବ୍ୟବସ୍ଥା ଆଣିବା ଲାଗି କମ୍ୟୁନିଷ୍ଟ ପାର୍ଟିର ଗଠନ ଚାଲିଥାଏ ।

ଭାରତର ସ୍ୱାଧୀନତା ସଂଗ୍ରାମ ଉପରେ ମଧ୍ୟ ଏହି ମହା-ବିପ୍ଳବର ପ୍ରଭାବ ପଡ଼ିଥାଏ । ପୂର୍ବରୁ ସ୍ୱାଧୀନତାକାମୀ ଅନେକ ତରୁଣ ଭାରତରୁ ଖସି ଯାଇ ଆମେରିକା, ୟୁରୋପର କେତେକ ଦେଶକୁ ଯାଇ ବିଦେଶରେ ଭାରତର ସ୍ୱାଧୀନତା ଲାଗି ଜନମତ ସୃଷ୍ଟି କରୁଥାଆନ୍ତି । ରୁଷ ବିପ୍ଳବପରେ ଭାରତରୁ ସହସ୍ର ସହସ୍ର ବ୍ୟକ୍ତି କାବୁଲ ବାଟେ ରୁଷର ତାସକନ୍ଦରେ ପହଂଚିଥାନ୍ତି । ସେମାନଙ୍କୁ ମୋହାଜିର ବା ହଜରତୀ କୁହାଯାଉଥିଲା ।

ତାସକନ୍ଦରେ ରୁଷ ବଲଶେଭିକ ପାର୍ଟି ଏକ ବିଶ୍ୱ ବିଦ୍ୟାଳୟ ଖୋଲିଥାଏ । ଏସିଆ ଓ ମଧ୍ୟପ୍ରାଚ୍ୟର ଦେଶ ସମୂହ, ଯେଉଁମାନେ ବିଭିନ୍ନ ସାମ୍ରାଜ୍ୟବାଦୀ ଦେଶଙ୍କ ଦ୍ୱାରା ପରାଧୀନ ହୋଇଥାନ୍ତି, ସେସବୁ ଦେଶର ସ୍ୱାଧୀନତା କାମୀ ଯୁବକମାନଙ୍କୁ ଏହି ବିଶ୍ୱ ବିଦ୍ୟାଳୟରେ ତାଲିମ ଦିଆଯାଉଥାଏ । ଭାରତରୁ ଦୁଇଜଣ ଯୁବକ୍ ମାନବେନ୍ଦ୍ରନାଥ ରା (ଏମ୍.ଏନ୍.ରାୟ) ଓ ନଳିନୀ ଗୁପ୍ତ ସେ ଦେଶକୁ ଯାଇ ସେତେବେଳେ ଆନ୍ତର୍ଜାତିକ ସ୍ତରରେ ବିଶିଷ୍ଟ କମ୍ୟୁନିଷ୍ଟ ଭାବରେ ଖ୍ୟାତ ହୋଇଥାନ୍ତି । ନଳିନୀ ଗୁପ୍ତ ଏମ.ଏନ.ରାୟଙ୍କ ଦ୍ୱାରା ପ୍ରେରିତ ହୋଇ ଗୋପନରେ ଭାରତକୁ ଆସି ଅକ୍ଟୋବର ବିପ୍ଳବ ସଂପର୍କରେ ବହୁ ଭାରତୀୟ ସ୍ୱାଧୀନତା ସଂଗ୍ରାମୀଙ୍କୁ ଅବହିତ କରାଉଥାନ୍ତି ।

ଭାରତର ଆଉ ଅନେକ ସ୍ୱାଧୀନତା ସଂଗ୍ରାମୀ ବିଲାତ ଓ ଜର୍ମାନୀ ଯାଇ କମ୍ୟୁନିଷ୍ଟ ମତବାଦ ଗ୍ରହଣ କରିଥାନ୍ତି । ସେମାନଙ୍କ ମଧ୍ୟରେ ଲଣ୍ଡନରେ ଶ୍ୟାମଜୀ କୃଷ୍ଣ ବର୍ମା ଓ ବିପ୍ଳବିଣୀ ମାଡ଼ାମ କାମା ସୁପ୍ରସିଦ୍ଧ । ଜର୍ମାନୀରେ ସ୍ୱାମୀ ବିବେକାନନ୍ଦଙ୍କ ଭାଇ ଭୂପେନ୍ଦ୍ର ନାଥ ଦତ୍ତ ଏବଂ ବୀରେନ ଚଟ୍ଟୋପାଧ୍ୟାୟ (ଚଶାଟୋ ନାମରେ ଖ୍ୟାତ) ଦେଶର ସ୍ୱାଧୀନତା ଲାଗି ବର୍ଲିନ କମିଟି ଗଢ଼ି କମ୍ୟୁନିଷ୍ଟ ମତବାଦକୁ ଗ୍ରହଣ କରିଥାନ୍ତି । ମାଡ଼ାମ କାମାଙ୍କର ନିକଟରେ ବମ୍ବେରେ ଦେହାବସାନ ଘଟିଛି ।

ଖୋଦ ବିଲାତରେ ଗଠିତ କମ୍ୟୁନିଷ୍ଟ ପାର୍ଟି ହିଁ କେବଳ ବ୍ରିଟିଶ ସାମ୍ରାଜ୍ୟରୁ ଭାରତ ସମେତ ସବୁ ବ୍ରିଟିଶ ପରାଧୀନ ଦାବୀ କରୁଥାଏ । ଭାରତରୁ ଯାଇ ଯେଉଁମାନେ ବିଲାତରେ ବସବାସ କରି କମ୍ୟୁନିଷ୍ଟ ମତବାଦକୁ ଗ୍ରହଣ କରିଥାନ୍ତି, ସେମାନେ ସେ ଦେଶରେ ଶ୍ରମିକ ଆନ୍ଦୋଳନରେ ବିଶେଷ ଭୂମିକା ନେଉଥାନ୍ତି । ଭାରତୀୟ ଶ୍ରମିକ ନେତା ସାପୁ ସକଲତୱାଲାଙ୍କୁ ବ୍ରିଟିଶ କମ୍ୟୁନିଷ୍ଟପାର୍ଟି ପାର୍ଲିଆମେଣ୍ଟକୁ ପ୍ରାର୍ଥୀ କରାଇ ଜିତେଇ ଥାଏ । ସେ ବ୍ରିଟିଶ ଏମ.ପି. ଭାବରେ ଭାରତକୁ ଆସ ଅଗ୍ରଗାମୀ ଯୁବ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଭେଟି ସେମାନଙ୍କ ଭିତରେ କମ୍ୟୁନିଷ୍ଟ ଆଦର୍ଶ ପ୍ରଚାର କରୁଥାନ୍ତି ।

ବ୍ରିଟିଶ କମ୍ୟୁନିଷ୍ଟ ପାର୍ଟି ଭାରତକୁ ବ୍ରେନ ବ୍ରାଡ଼ଲେ, ଫିଲିପ ସ୍ପାର୍ଟ, ହଟଚିଙ୍ଗସନ ଓ କାସଲେଙ୍କୁ ପଠେଇଥାଏ । ଏମାନେ ବିଲାତର ବିଖ୍ୟାତ କମ୍ୟୁନିଷ୍ଟ । ଏମାନେ ଭାରତକୁ ଆସି ଭାରତର ବିଭିନ୍ନ ସ୍ଥାନରେ ଶ୍ରମିକ ସଂଗଠନ ଗଢ଼ିବାରେ ଲାଗି ପଡ଼ିଥାନ୍ତି । ଆମ ଓଡିଶାର କଟକ ନିକଟସ୍ଥ ସୁନ୍ଦରଗ୍ରାମର ବଂଶୀଧର ମିଶ୍ର, ବିଲାତରେ ସୁରତ ଅଲି ବୋଲି ଗୋପନ ନାମ ନେଇ କମ୍ୟୁନିଷ୍ଟ କାର୍ଯ୍ୟ କରୁଥାନ୍ତି । ପରବର୍ତ୍ତୀ କାଳରେ ଭାରତୀୟ ବଂଶୋଦ୍ଭବ ବିଖ୍ୟାତ କମ୍ୟୁନିଷ୍ଟ ଚିନ୍ତାନାୟକ, ରଜନୀ ପାମି ଦତ୍ତ 'ଇଣ୍ଡିଆ ଟୁଡ଼େ' (ଆଜିର ଭାରତ) ନାମକ ଏକ ବିରାଟ ପୁସ୍ତକ ରଚନା କରିଥିଲେ । ଭାରତକୁ କିପରି ବ୍ରିଟିଶ ସାମ୍ରାଜ୍ୟବାଦ ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଭାବରେ ପରାଧୀନ କରି ସର୍ବସ୍ୱାନ୍ତ

କରିଛି, ତାହାର ତଥ୍ୟପୂର୍ଣ୍ଣ ବର୍ଣ୍ଣନା ସେଥିରେ ରହିଛି । କଂଗ୍ରେସର ବହୁ ପ୍ରଗତିଶୀଳ ନେତା ଓ ଦେଶର ବୁଦ୍ଧିଜୀବୀ ଏହି ଗ୍ରନ୍ଥଟିକୁ ସଂଗ୍ରାମର ଏକ ବୌଦ୍ଧିକ ଅସ୍ତ୍ରରୂପେ ବିବେଚନା କରୁଥିଲେ ।

## ଭାରତରେ କମ୍ୟୁନିଷ୍ଟ ଗୋଷ୍ଠୀଗୁଡ଼ିକର ଉଦ୍‌ଭବ

ଗାନ୍ଧିଜୀଙ୍କ ନେତୃତ୍ୱରେ ୧୯୨୦-୨୨ରେ ଅସହଯୋଗ ଆନ୍ଦୋଳନର ଆଦ୍ୟ ଭାଗରେ ଭାରତର ସ୍ୱାଧୀନତା ସଂଗ୍ରାମରେ ଉଦ୍‌ବୁଦ୍ଧ ଯୁବକମାନେ ସାମ୍ୟବାଦୀ ଚିନ୍ତାଧାରା ପ୍ରତି ଆକୃଷ୍ଟ ହେବାରେ ଲାଗିଲେ । ପରସ୍ପର ସହିତ ପରିଚୟ ବା ସଂପର୍କ ନଥିଲେବି ଲାହୋର, ବମ୍ବେ, ମାନ୍ଦ୍ରାଜ, କଲିକତା-କାନପୁର-ମିରଟ ପ୍ରଭୃତି ଅଂଚଳରେ କ୍ଷୁଦ୍ର କ୍ଷୁଦ୍ର କମ୍ୟୁନିଷ୍ଟ ଗୋଷ୍ଠୀଙ୍କର ଆବିର୍ଭାବ ଘଟିଲା ।

ବମ୍ବେରେ ଏସ.ଏ.ଡାଙ୍ଗେ, ଏସ.ଭି.ଘାଟେ, ମନସୁର, ଆର.ଏସ.ନିମକର, କେ.ଏନ.ଯୋଗଲେକରଙ୍କ ପରି କେତେକ ବିପ୍ଳବୀ ଯୁବକ ଏକ କମ୍ୟୁନିଷ୍ଟ ଗୋଷ୍ଠୀ ଗଠନ କରିଥିଲେ । ଏସ୍.ଏ.ଡାଙ୍ଗେ ସଂପାଦକ ଥାଇ ୧୯୨୧ରେ ଇଂରେଜୀରେ 'ସୋସଲିଷ୍ଟ' ନାମକ ସାପ୍ତାହିକ ପ୍ରକାଶିତ ହେଲା । ଗାନ୍ଧୀ ବନାମ ଲେନିନ ନାମକ ଏକ ପୁସ୍ତକ ଡାଙ୍ଗେ ରଚନା କରିଥିଲେ ।

କଲିକତାରେ ମୁଜାଫର ଅହମ୍ମଦଙ୍କ ନେତୃତ୍ୱରେ ଏକ ଶକ୍ତିଶାଳୀ କମ୍ୟୁନିଷ୍ଟ ଗୋଷ୍ଠୀର ଆବିର୍ଭାବ ହେଲା । ମାନ୍ଦ୍ରାଜରେ ସିଙ୍ଗାରାଭାଲୁ ଚେଟିୟାରଙ୍କ ନେତୃତ୍ୱରେ ଏକ କମ୍ୟୁନିଷ୍ଟ ଗୋଷ୍ଠୀ ଗଠିତ ହେଲା । ପ୍ରଥମ ଥର ପାଇଁ ଭାରତ ଭୂଇଁରେ ମାନ୍ଦ୍ରାଜଠାରେ ସିଙ୍ଗାରାଭାଲୁ ଚେଟିୟାରଙ୍କ ନେତୃତ୍ୱରେ ଶ୍ରମିକମାନେ ଧର୍ମଘଟ କରିଥିଲେ ଏବଂ ୧୯୨୩ରେ ମଇ ଦିବସ ପାଳନ ସହ ଲାଲଝଣ୍ଡା ଉତ୍ତୋଳନ କରିଥିଲେ ।

ଲାହୋରରେ ଲୋଟାଭାଲା, ଗୁଲାମ ହୁସେନ, ମହମ୍ମଦ ଅଲି ପ୍ରଭୃତିଙ୍କୁ ଘେନି ଏକ କମ୍ୟୁନିଷ୍ଟ ଗୋଷ୍ଠୀ ଗଠିତ ହୋଇଥିଲା । କାନପୁର, ମିରଟ ପ୍ରଭୃତି ଉତ୍ତର ପ୍ରଦେଶରେ କେତେକ ସ୍ଥାନରେ ଏପରି ଗୋଷ୍ଠୀମାନ ଗଠନ କରାଯାଇଥିଲା ।

୧୯୨୧ରେ ଅହମେଦାବାଦ କଂଗ୍ରେସ ଅଧିବେଶନରେ କମ୍ୟୁନିଷ୍ଟମାନଙ୍କ ପକ୍ଷରୁ ପୂର୍ଣ୍ଣ ସ୍ୱାଧୀନତା ବାଦୀ ହଜରତ ମୋହାନି ଆଗତ କରିଥିଲେ । ୧୯୨୨ ଗୟା କଂଗ୍ରେସ ଅଧିବେଶନରେ ଡୋମିନିୟନ ଷ୍ଟାଟସ ନୁହଁ ପୂର୍ଣ୍ଣ ସ୍ୱାଧୀନତାର ପ୍ରସ୍ତାବ କମ୍ୟୁନିଷ୍ଟ ମତବାଦୀ କଂଗ୍ରେସ ପ୍ରତିନିଧି ଆଗତ କରିଥିଲେ ।

କମ୍ୟୁନିଷ୍ଟ ପାର୍ଟିର ଗଠନ ନ ହେବା ପୂର୍ବରୁ ବ୍ରିଟିଶ ଶାସକମାନେ କମ୍ୟୁନିଷ୍ଟ ମତାବଲମ୍ବୀ ଓ ଅନ୍ୟ ବିପ୍ଳବୀମାନଙ୍କ ବିରୁଦ୍ଧରେ ବ୍ରିଟିଶ ସରକାରକୁ ଧ୍ୱଂସ କରିବାକୁ ଚାହୁଁଛନ୍ତି, ଅଭିଯୋଗ କରି ଷଡ଼ଯନ୍ତ୍ର ମକଦମା ଆରଂଭ କରିଦେଇଥାଏ । ତାସକନ୍ଦରୁ ଫେରିଥିବା

ଭାରତୀୟ ନେତାମାନଙ୍କୁ କମ୍ୟୁନିଷ୍ଟ ଆଖ୍ୟା ଦେଇ ପେଶବାର ଷଡ଼ଯନ୍ତ୍ର ମକଦମାରେ ଅନେକଙ୍କୁ ସାତବର୍ଷ ଜେଲଦଣ୍ଡ ଦିଆଯାଇଥିଲା ।

କାନପୁର ବଲଶେଭିକ ଷଡ଼ଯନ୍ତ୍ର ମକଦମା କରି ଚାରିଜଣଙ୍କୁ ଦୀର୍ଘ ୪ବର୍ଷ ଜେଲ ଦଣ୍ଡ ଦିଆଯାଇଥିଲା ।

## କାନପୁରରେ ପ୍ରତିଷ୍ଠା ସମ୍ମିଳନୀ - ୧୯୨୫

କାନପୁରରେ ଇଣ୍ଡିୟାନ କମ୍ୟୁନିଷ୍ଟ ପାର୍ଟି ନାମକ ଏକ ସଂଗଠନ ସତ୍ୟଭକ୍ତ ଗଠନ କରିଥିଲେ । ସେ ଭାରତରେ ଗଢ଼ି ଉଠିଥିବା କମ୍ୟୁନିଷ୍ଟ ଗୋଷ୍ଠୀମାନଙ୍କର ପ୍ରତିନିଧିଙ୍କୁ ଘେନି ଏକ ସମ୍ମିଳନୀର ବ୍ୟବସ୍ଥା କରିଥିଲେ । ୧୯୨୫ ଡିସେମ୍ବର ୨୬ ତାରିଖରୁ ୨୮ ଯାଏ ଏହି ପ୍ରତିଷ୍ଠା ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିଲାଗି ଗଠିତ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଥିଲେ ହଜରତ୍ ମୋହାନି । ସଭ୍ୟମାନଙ୍କ ମଧ୍ୟରେ ଥିଲେ ବିପ୍ଳବୀ ବୀର ଗଣେଶ ଚନ୍ଦ୍ର ବିଦ୍ୟାର୍ଥୀ । ୧୯୨୮ରେ 'ସାଇମନ କମିଶନ ଫେରିଯାଅ' ଆନ୍ଦୋଳନ କାଳରେ ଆନ୍ଦୋଳନକୁ ଦବେଇ ଦେବାକୁ ବ୍ରିଟିଶ ଶାସନ ହିନ୍ଦୁ-ମୁସଲିମ, ଦଂଗା ଲଗେଇଲା । ତାହାକୁ ବନ୍ଦ କରିବାକୁ ଯାଇ ଗଣେଶ ଚନ୍ଦ୍ର ବିଦ୍ୟାର୍ଥୀ ହିନ୍ଦୁ ଦଂଗାବାଜଙ୍କ ଦ୍ୱାରା ନିହତ ହୋଇଥିଲେ ।

ଏହି ଉଦ୍‌ଘାଟନୀ ସମ୍ମିଳନୀରେ ବମ୍ବେ, ପଂଜାବ, ମାନ୍ଦ୍ରାଜ, ବଂଗଳା ପ୍ରଭୃତିରୁ ୬୦ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ୧୫୦୦ ଯାଏ ଦର୍ଶକ ଉପସ୍ଥିତ ଥିଲେ । ଏସ.ଭି.ଘାଟେ, କେ.ଏନ୍.ଯୋଗଲେକର, କେ.ଏସ୍.ଆୟାଙ୍ଗାର, ଆର.ଏସ.ନିମକର ପ୍ରଭୃତି ଆଲୋଚନାରେ ପ୍ରମୁଖ ଭୂମିକା ନେଇଥିଲେ । ଅନ୍ୟ ବିଶିଷ୍ଟ କମ୍ୟୁନିଷ୍ଟ ଡାଙ୍ଗେ ମୁଜାଫର ଅହମଦ ପ୍ରଭୃତି ଜେଲରେ ଥିଲେ । ପାର୍ଟିର ନାମ କମ୍ୟୁନିଷ୍ଟ ପାର୍ଟି ଅଫ ଇଣ୍ଡିଆ ରହୁ ବୋଲି ଅଧିକାଂଶ ପ୍ରତିନିଧି ମତ ଦେଇଥିଲେ । ମାତ୍ର ସତ୍ୟଭକ୍ତ ଆଗରୁ ଗଢ଼ିଥିବା ଇଣ୍ଡିୟାନ କମ୍ୟୁନିଷ୍ଟ ପାର୍ଟି ରହୁ ବୋଲି ପ୍ରସ୍ତାବ କରିଥିଲେ । ପୂର୍ଣ୍ଣ ସ୍ୱାଧୀନତା ଓ ସମାଜବାଦ ପ୍ରତିଷ୍ଠାର ଲକ୍ଷ୍ୟ ହାସଲ ଲାଗି ଏହି ନୂତନ ଦଳ ସଂଗ୍ରାମ କରିବ ବୋଲି ନିର୍ଣ୍ଣୟ ନିଆଗଲା । ବ୍ରିଟିଶ କର୍ତ୍ତୃପକ୍ଷ କମ୍ୟୁନିଷ୍ଟ ଆଖ୍ୟା ଦେଇ ବିପ୍ଳବୀ ଯୁବକମାନଙ୍କୁ ଗିରଫ କରୁଥିବାରୁ ପାର୍ଟିର ଏକ ଖୋଲା ମଂଚ ରହିବ ବୋଲି ସ୍ଥିର ହେଲା । ତାହାର ନାମ ପେଜାଣ୍ଟ ଏଣ୍ଡ ଓ୍ୱାର୍କରର୍ସ ପାର୍ଟି ହେବ । ଏହି ନାମରେ ପାର୍ଟି କାର୍ଯ୍ୟ କରିବ ଏବଂ ସବୁ ପ୍ରଦେଶରେ ଏହାର ଶାଖା ପ୍ରତିଷ୍ଠା କରାଯିବ ବୋଲି ନିଷ୍ପତ୍ତି ନିଆଗଲା । ସଂପାଦକ ଭାବରେ ଏସ.ଭି.ଘାଟେ ଏବଂ କାଳୀ ପ୍ରସାଦ ବାଗେରେଟ୍ଟା ନିର୍ବାଚିତ ହୋଇଥିଲେ । ପାର୍ଟି ଗଢ଼ାଯିବାର ଚାରିଦିନ ପରେ ସତ୍ୟଭକ୍ତ ପାର୍ଟି ପରିତ୍ୟାଗ କରି ତାଙ୍କ ଇଣ୍ଡିୟାନ କମ୍ୟୁନିଷ୍ଟ ପାର୍ଟିରେ ରହିବେ ବୋଲି ନିଷ୍ପତ୍ତି ନେଲେ । ମାତ୍ର ଅଳ୍ପକାଳ ମଧ୍ୟରେ ତାଙ୍କ

ଇଣ୍ଡିୟାନ କମ୍ୟୁନିଷ୍ଟ ପାର୍ଟିର ସଭା ରହିଲା ନାହିଁ । ତାଙ୍କ ଅନୁଗାମୀମାନେ ଓ୍ୱାରକର୍ସ ଏଣ୍ଡ ପେଜାଣ୍ଟ ପାର୍ଟିରେ ମିଶିଲେ । କାଳୀ ପ୍ରସାଦଙ୍କ ଗତିବିଧିରେ ଅନେକଙ୍କର ଯଥାର୍ଥ ସନ୍ଦେହ ହେବାରୁ ସେ ସଂପାଦକ ପଦରୁ ଓହରିଗଲେ । ଏସ.ଭି.ଘାଟେ ସାଧାରଣ ସଂପାଦକ ଭାବରେ ଦାୟିତ୍ୱ ବହନ କଲେ ।

ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଖୋଲାମଂଚ ପେଜାଣ୍ଟ ଏଣ୍ଡ ଓ୍ୱାର୍କରର୍ସ ପାର୍ଟିର ସଂଗଠନ ବିଭିନ୍ନ ପ୍ରଦେଶରେ ଆରଂଭ ହୋଇଗଲା ।

ବଂଗଳା ପ୍ରଦେଶର ନଦିୟା ଜିଲ୍ଲାର କିଶନନଗର ଠାରେ ୧୯୨୬ ଫେବୃୟାରୀରେ ପେଜାଣ୍ଟ ଏଣ୍ଡ ଓ୍ୱାର୍କରର୍ସ ପାର୍ଟିର ସମ୍ମିଳନୀ ଅନୁଷ୍ଠିତ ହେଲା । ପୂର୍ବରୁ ଗଠିତ ଲେବର ସ୍ୱରାଜ ପାର୍ଟିର ନାମ ଉଠାଇ ଦିଆଗଲା । ମୁଜଫର ଅହମ୍ମଦ ବଂଗଳା ପାର୍ଟିର ନେତା ଓ ଗଣବାଣୀ ପତ୍ରିକାର ସଂପାଦକ ହେଲେ । ୧୯୨୬ ଅଗଷ୍ଟ ୧୨ ତାରିଖରେ ଏହି ପତ୍ରିକା ପ୍ରଥମେ ପ୍ରକାଶିତ ହୋଇ କମ୍ୟୁନିଜିମ ଆଦର୍ଶର ପ୍ରଚାର କଲା । ବଂଗଳାରେ ପାର୍ଟିର ଦ୍ରୁତ ଅଗ୍ରଗତି ଚାଲିଲା ।

୧୯୨୮ରେ କଲିକତାଠାରେ ଜାତୀୟ କଂଗ୍ରେସର ଅଧିବେଶନ ବସୁଥାଏ । ପଣ୍ଡିତ ମୋତିଲାଲ ନେହେରୁ ସଭାପତିତ୍ୱ କରିବାକୁ ନିର୍ବାଚିତ ହୋଇଥାନ୍ତି । ବିଶାଳ କଂଗ୍ରେସ ମଣ୍ଡପକୁ ଅଧିବେଶନ ବସିବା ଆଗରୁ ପଚାଶ ହଜାର ଯାଏ କଲିକତାର ଶ୍ରମିକ, ଯୁବକ, ଛାତ୍ର, ବୁଦ୍ଧିଜୀବୀ ଦଖଲ କରିଗଲେ । ସେମାନେ ଅଡ଼ି ବସିଲେଯେ ପୂର୍ଣ୍ଣ ସ୍ୱାଧୀନତା ପ୍ରସ୍ତାବ ଏହି ଅଧିବେଶନ ଗ୍ରହଣ କରୁ । ନଚେତ୍ ସେମାନେ ମଣ୍ଡପ ଛାଡ଼ିବେ ନାହିଁ । ସେମାନଙ୍କୁ ବୁଝେଇବାକୁ କଂଗ୍ରେସର ତୁଙ୍ଗ ନେତାମାନେ ଆସି ବ୍ୟର୍ଥ ହେଲେ । ଶେଷରେ ମହାତ୍ମାଗାନ୍ଧୀ ଆସିଲେ । ସେମାନେ ଉଠାଉଥିବା ଦାବୀ ପ୍ରତି କଂଗ୍ରେସ ସମୁଚିତ ଧ୍ୟାନ ଦେବ ବୋଲି ପ୍ରତିଶ୍ରୁତି ଦେବାରୁ ସେମାନେ କକ୍ଷ ତ୍ୟାଗ କଲେ ।

ବଂଗଳାର ପେଜାଣ୍ଟ ଏଣ୍ଡ ଓ୍ୱାର୍କରର୍ସ ପାର୍ଟି ଦ୍ୱାରାହିଁ ଏପରି ଏକ ବିଶାଳ ପ୍ରଦର୍ଶନ ସଂଗଠିତ ହୋଇଥିଲା । ୧୯୨୮ରେ କଲିକତା ଅଧିବେଶନରେ ପୂର୍ଣ୍ଣ ସ୍ୱାଧୀନତା ଦାବୀ ଗୃହୀତ ହୋଇ ନଥିଲା । ୧୯୨୯ ଲାହୋର କଂଗ୍ରେସ ଅଧିବେଶନରେହିଁ ପୂର୍ଣ୍ଣ ସ୍ୱାଧୀନତା ପ୍ରସ୍ତାବ ଗୃହୀତ ହୋଇଥିଲା ।

ବମ୍ବେରେ ଥିବା ଲେବର ପାର୍ଟିର ନେତାମାନେହିଁ ନିଜ ପାର୍ଟିର ନାମ ବଦଳେଇ ପେଜାଣ୍ଟ ଏଣ୍ଡ ଓ୍ୱାର୍କରର୍ସ ପାର୍ଟି ଗଠନ କଲେ । ଆର୍.ଏସ୍.ନିମକର, ଏସ.ଭି.ଘାଟେ, ଆର.ଏମ୍.ନିମକର ପ୍ରଭୃତି ଏହି ପାର୍ଟି ଗଠନରେ ପ୍ରମୁଖ ଭୂମିକା ନେଇଥିଲେ ଏବଂ ଏସ.ଏସ. ମିରାଜକର ଏହି ଶାଖାର ସଂପାଦକ ହୋଇଥିଲେ ।

ବମ୍ବେର ଏହି ପାର୍ଟିର ଦୁଇଜଣ ଅଖିଳ ଭାରତ କଂଗ୍ରେସ କମିଟିକୁ ପ୍ରତିନିଧି ନିର୍ବାଚିତ

ହୋଇ ବମ୍ବେ ଅଧିବେଶନରେ ପୂର୍ଣ୍ଣ ସ୍ୱାଧୀନତା କଂଗ୍ରେସର ଲକ୍ଷ୍ୟ ହେଉ ବୋଲି ଦାବୀ କରିଥିଲେ ।

ପଂଜାବର ଅମୃତସର ଠାରେ ପୂର୍ବରୁ କୀର୍ତ୍ତି ପାର୍ଟିର ସଦ୍ୟସ୍ୟମାନେ ପେଜାଣ୍ଟ ଏଣ୍ଡ ଓ୍ୟାକରର୍ସ ପାର୍ଟିର ସମ୍ମିଳନୀ କରିଥିଲେ । ଆଗରୁ ଗଠିତ କୀର୍ତ୍ତିକିଷାନ ପାର୍ଟିର ସଭ୍ୟମାନେ ଏହି ପାର୍ଟିରେ ସାମିଲ ହେଲେ ।

ଉତ୍ତର ପ୍ରଦେଶରେ ଓ୍ୟାରକର୍ସ ପାର୍ଟି ଗଠିତ ହୋଇ ପି.ସି. ଯୋଷୀ ତାହାର ସଂପାଦକ ହୋଇଥିଲେ । ୧୯୩୪ରେ ଏହି ପାର୍ଟିର ଏକ ସମ୍ମିଳିତ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ବର୍ଲିନରେ ରସାୟନ ବିଦ୍ୟାରେ ଡକ୍ଟର ଉପାଧି ଲାଭ କରିଥିବା ଜି.ଗଂଗାଧର ଅଧିକାରୀ ଏହାର ସାଧାରଣ ସଂପାଦକ ନିର୍ବାଚିତ ହେଲେ । ୧୯୩୪ରେ ହିଁ କମ୍ୟୁନିଷ୍ଟ ପାର୍ଟିକୁ ବ୍ରିଟିଶ ସରକାର ବେଆଇନ ଘୋଷଣା କରିଦେଲା । ପରବର୍ତ୍ତୀ ସମୟରେ ପି.ସି.ଯୋଷୀ ବେଆଇନ ପାର୍ଟିର ସାଧାରଣ ସଂପାଦକ ହୋଇଥିଲେ । ନାସନାଲ ଫ୍ରଣ୍ଟ ନାମକ ଏକ ଇଂରେଜୀ ସାପ୍ତାହିକ ଏହାଙ୍କ ସଂପାଦକତ୍ୱରେ ପ୍ରକାଶ କରାଯାଉଥିଲା । ୧୯୩୮ରେ ଢେଙ୍କାନାଳ ପ୍ରଜା ଆନ୍ଦୋଳନ ବେଳେ ପି.ସି.ଯୋଷୀ ସାଂବାଦିକ ଭାବରେ ଓଡ଼ିଶାରେ ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ପ୍ରାଣନାଥ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକଙ୍କୁ ଭେଟି ଢେଙ୍କାନାଳ ଯାଇ ପ୍ରଜା ଆନ୍ଦୋଳନ ସଂପର୍କରେ ଅବହିତ ହୋଇଥିଲେ । ସେ ବିଭିନ୍ନ ଇଂରାଜୀ ପତ୍ରିକାରେ ଓଡ଼ିଆ ଗଡ଼ଜାତ ପ୍ରଜା ଆନ୍ଦୋଳନ ସଂକ୍ରାନ୍ତ ସନ୍ଦର୍ଭମାନ ପ୍ରକାଶ କରିଥିଲେ । ଆଇନ ସଂଗତ ହେବାପରେ ୧୯୩୪ରେ ହିଁ ବମ୍ବେ ଠାରେ ଆନୁଷ୍ଠାନିକ ଭାବରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ପାର୍ଟି କଂଗ୍ରେସ ଅନୁଷ୍ଠିତ ହୋଇଥିଲା । ପି.ସି.ଯୋଷୀ ସାଧାରଣ ସଂପାଦକ ହୋଇଥିଲେ । ଏକ ପଲିଟି ବ୍ୟୁରୋ ଗଠିତ ହୋଇଥିଲା ।

ଉକ୍ତ ପାର୍ଟିର ପ୍ରଥମ କଂଗ୍ରେସ ବମ୍ବେରେ ବସିବାବେଳେ ଏହାର ସଭ୍ୟସଂଖ୍ୟା ୬ ହଜାର ଥିଲା । ଚାରିହଜାର ଶ୍ରମିକ ଏହି ପାର୍ଟିର ସଦସ୍ୟ ଥିଲେ । ସମୁଦାୟ ୧୩୯ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ସଂପାଦକମଣ୍ଡଳୀକୁ ବି.ଟି. ରଣଦିଭେ ଓ ଗଂଗାଧର ଅଧିକାରୀ ନିର୍ବାଚିତ ହୋଇଥିଲେ ।

ଏହି ପାର୍ଟିରେ ଗଦ୍ଦର ପାର୍ଟିର ନେତା ବାବା ସୋହାନ ସିଂ ବାଖନା, ସନ୍ତୋକ ସିଂହ, କର୍ତ୍ତାର ସିଂ, ସରଳା ଗୁରୁମୁଖ ସିଂହଙ୍କପରି ବହୁ ଖ୍ୟାତନାମା ବିପ୍ଳବୀ ଯୋଗ ଦେଲେ । ଭଗତସିଂହ ଓ ଚନ୍ଦ୍ରଶେଖର ଆଜାଦଙ୍କ ସାଥୀ ଅଜୟ ଘୋଷ, ସୋହାନ ସିଂ ବାଖନା, ଚିଟାଗଂଗ ଅସ୍ତ୍ରାଗାର ଲୁଣ୍ଠନ ମକଦମାରେ ଦଣ୍ଡିତ ଗଣେଷ ଘୋଷ, କଳ୍ପନା ଦତ୍ତ ତଥା ବିପ୍ଳବୀ ଅମ୍ବିକା ଚକ୍ରବର୍ତ୍ତୀ ପ୍ରମୁଖ ଏହି ପାଟିରେ ମିଶିଲେ । ୧୯୪୨ ଅଗଷ୍ଟ ଆନ୍ଦୋଳନର ଖ୍ୟାତନାମା ବିପ୍ଳବିଣୀ ଅରୁଣା ଆସଫ ଅଲି, ମହାରାଷ୍ଟ୍ରରେ ଅଗଷ୍ଟ ଆନ୍ଦୋଳନ କାଳରେ ସମାନ୍ତରାଳ

ସରକାର ଗଢ଼ିଥିବା - ନାନାପଟିଲ, ଉତ୍ତର ପ୍ରଦେଶରେ ସମାନ୍ତରାଳ ସରକାର ଗଢ଼ିଥିବା ସରଯୂ ପାଣ୍ଡେ, ବିଶିଷ୍ଟ କଂଗ୍ରେସ ସୋସଲିଷ୍ଟ ନେତା ଝାଡ଼ଖଣ୍ଡ ରାୟ ଏହି ପାର୍ଟିରେ ଯୋଗ ଦେଇଥିଲେ । କେରଳରେ ସମଗ୍ର କଂଗ୍ରେସ ସୋସଲିଷ୍ଟ ପାର୍ଟି ଓ ତାହାର ପ୍ରତିଷ୍ଠାତା ଇ.ଏମ.ଏସ. ନମ୍ବୁଦ୍ରିପଦ, କୃଷ୍ଣ ପିଳେଇ ଏବଂ ତେଲେଙ୍ଗାନା ସଶସ୍ତ୍ର ସଂଗ୍ରାମର ନେତା ପି.ସୁନ୍ଦରାୟା, ରବି ନାରାୟଣରେଡ଼ି, ୟେଲା ରେଡ଼ି, ସି. ରାଜେଶ୍ୱର ରାଓ ପ୍ରମୁଖ ତଥା ଗଡ଼ଜାତ ପ୍ରଜା ଆନ୍ଦୋଳନର ଅନେକ ପ୍ରଖ୍ୟାତ ନେତା ମଧ୍ୟ ଏହି ପାର୍ଟିରେ ସାମିଲ ହୋଇଥିଲେ । ଏହାହିଁ ଭାରତରେ କମ୍ୟୁନିଷ୍ଟ ପାର୍ଟି ଗଠନର ସଂକ୍ଷିପ୍ତ ଇତିବୃତ୍ତ ।



# କକୋରୀ ଷଡ଼ଯନ୍ତ୍ର ମକଦମା - ଚାରିଜଣଙ୍କୁ ଫାଶି
# ୧୯୨୭

୧୯୨୦-୨୧ ମହାତ୍ମାଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନର ବେଳ । ଚୌରିଚୌରା ଘଟଣାପରେ ଗାନ୍ଧିଜୀ ଆନ୍ଦୋଳନକୁ ପ୍ରତ୍ୟାହାର କରିଦେଇଥାନ୍ତି । ଆନ୍ଦୋଳନ ପ୍ରତ୍ୟାହାର କଲେବି ବ୍ରିଟିଶ ସରକାର ତାଙ୍କୁ ଗିରଫ କରି ଜେଲଦଣ୍ଡ ଦେଇଥାଏ । ଏହି କାଳରେ ହିଁ ସମସ୍ତ ଉପାୟ ଧରି ବ୍ରିଟିଶ ସାମ୍ରାଜ୍ୟବାଦକୁ ଦେଶରୁ ହଟାଇବା ଲାଗି ବହୁ ବିପ୍ଳବୀ ଯୁବକ ବାହାରିପଡ଼ିଲେ । ଏହି ଯୁବକମାନେ ବିଭିନ୍ନ ଦେଶରେ ଯେଉଁ ବିପ୍ଳବ ହୋଇଛି ଓ ସ୍ୱାଧୀନତା ପାଇଁ ଯେଉଁ ସଂଗ୍ରାମମାନ ହୋଇଛି ସେ ସଂପର୍କରେ ଅଧ୍ୟୟନ, ଅନୁଶୀଳନ କରିବାରେ ଲାଗିଲେ । ଭଗତସିଂହ ପ୍ରମୁଖ ବିପ୍ଳବୀ ଯୁବକମାନେ ସ୍ୱାଧୀନତା ହାସଲ ସାଙ୍ଗକୁ ଦେଶରେ ସମାଜବାଦ ପ୍ରତିଷ୍ଠା କରିବାର ସଂକଳ୍ପ ନେଇ ହିନ୍ଦୁସ୍ଥାନ ରିପବ୍ଲିକାନ ସୋସଲିଷ୍ଟ ପାର୍ଟି ଏବଂ ଏହାର ସଶସ୍ତ୍ର ଶାଖା ହିନ୍ଦୁସ୍ଥାନ ରିପବ୍ଲିପାନ ଆର୍ମି ଗଠନ କରିଥିଲେ । ତାହାର ଇତିହାସ ସୁଦୀର୍ଘ । ବଂଗଳା, ପଂଜାବ, ଉତ୍ତର ପ୍ରଦେଶ, କେନ୍ଦ୍ର ପ୍ରଦେଶ ପ୍ରଭୃତିରେ ଏହି ଯୁବକମାନେ ପାର୍ଟିର ଜିଲ୍ଲା ଶାଖାମାନ ଗଠନ କରୁଥିଲେ । ଅନେକ ସମୟରେ ବନାରସରେ ମଧ୍ୟ ଏମାନେ ଗୋପନରେ ଏକତ୍ର ହେଉଥିଲେ ଓ କର୍ମପନ୍ଥା ନିର୍ଦ୍ଧାରଣ କରୁଥିଲେ ।

ବ୍ରିଟିଶ ସୈନ୍ୟ ଓ ପୋଲିସ ହାତରେ ପ୍ରଚୁର ଅସ୍ତ୍ରଶସ୍ତ୍ର ଗଛିତ । ସେମାନଙ୍କ ସହିତ ସଶସ୍ତ୍ର ସଂଘର୍ଷ ଲାଗି ଅସ୍ତ୍ରଶସ୍ତ୍ର ଆବଶ୍ୟକ । ଆଣିବେ କିପରି ? ସେଥିପାଇଁ ଅର୍ଥ କାହିଁ ? ନିଷ୍ପତ୍ତି ନେଲେ ଅତ୍ୟାଚାରୀ, ଧନୀ, ବ୍ୟଭିଚାରୀ ବ୍ରିଟିଶଙ୍କ ଗୋଲାମଙ୍କ ଧନକୁ ଏହି ବୈପ୍ଳବିକ କାର୍ଯ୍ୟରେ ଲଗାଯାଇପାରେ । ପୁଣି ସ୍ଥିର କଲେ ଦେଶକୁ ଲୁଣ୍ଠନକରି କାଙ୍ଗାଳ କରିଦେଇଥିବା ବ୍ରିଟିଶ ଟ୍ରେଜରୀରେ ଜମା ହୋଇଥିବା ଧନକୁ ଆଣି ଏହି ବୈପ୍ଳବିକ କାର୍ଯ୍ୟରେ ଲଗେଇବେ । ବ୍ରିଟିଶ ପରିଚାଳିତ ରେଳ ଉପରେ, ରେଳଷ୍ଟେସନ ଉପରେ ଚଢ଼ାଉକରି ଧନ ସଂଗ୍ରହ କରିବେ ।

ଉତ୍ତର ପ୍ରଦେଶର କାକୋରୀ ରେଳଷ୍ଟେସନରେ ରେଳଗାଡ଼ି ଉପରେ ସେମାନେ ଚଢ଼ଉ କରିଥିଲେ । ବ୍ରିଟିଶ ପୁଲିସ ଏମାନଙ୍କ ଭିତରୁ ଅନେକଙ୍କୁ ଧରିନେଲା । ବିଖ୍ୟାତ୍ ବିପ୍ଳବୀ ଚନ୍ଦ୍ରସିଂହ ଆଜାଦ ପୁଲିସ ହାବୁଡ଼ରୁ ଖସିଗଲେ ।

ଏମାନଙ୍କ ବିରୁଦ୍ଧରେ କାକୋରୀ ଷଡ଼ଯନ୍ତ୍ର ମକଦମା ଦାଏର କରାଗଲା । ଅଠରମାସ କାଳ ଏମାନଙ୍କୁ ପଶୁଭଳି ଜେଲରେ ବିଚରାଧୀନ ବନ୍ଦୀ କରି ରଖାଗଲାପରେ ୧୯୨୭ ଜାନୁଆରୀ ମାସରେ ରାୟ ପ୍ରକାଶ ପାଇଲା । ରାମପ୍ରସାଦ ବିଶିମିଲ, ରାଜେନ୍ଦ୍ର ନାଥ ଲାହିଡ଼ି, ଠାକୁର ରୋଷନ ଲାଲ ସିଂହ ଓ ଆସଫଂଉଲ୍ଲାଙ୍କୁ ଫାଶି ହୁକୁମ ହେଲା । ୧୯୨୭ ସେପ୍ଟେମ୍ବର ୧୯ରେ ଉତ୍ତର ପ୍ରଦେଶର ଫୈଜାବାଦ ଜେଲରେ ଆସଫଉଲ୍ଲାଙ୍କୁ, ସେଦିନର ରାମପ୍ରସାଦ ବିଶମିଲଙ୍କୁ ଗୋରଖପୁର ଜେଲରେ ଏବଂ ରୋଷନ ଲାଲସିଂ ଓ ରାଜେନ୍ଦ୍ର ଲାହିଡିଙ୍କୁ ଆହ୍ଲାବାଦ ଜେଲରେ ଫାଶି ଦିଆଗଲା । ଫାଶିଦଣ୍ଡ ପାଇଥିବା ଓ ଦୀର୍ଘ କରାଦଣ୍ଡ ପାଇଥିବା ବିପ୍ଳବୀମାନଙ୍କୁ ପରସ୍ପରଠାରୁ ଦୂରେଇ ରଖିବାକୁ ବ୍ରିଟିଶି କର୍ତ୍ତୃପକ୍ଷ ସେମାନଙ୍କୁ ବିଭିନ୍ନ ଜେଲରେ ଆବଦ୍ଧ କରିଥିଲେ ।

ଅନ୍ୟ ଯେଉଁ ବିପ୍ଳବୀମାନେ ଦୀର୍ଘ ଜେଲ ଦଣ୍ଡ ପାଇଥିଲେ, ସେମାନଙ୍କ ମଧ୍ୟରେ ଥିଲେ, ମନ୍ମଥ ନାଥ ଗୁପ୍ତ, ପ୍ରଣବେଶ ଚାଟାର୍ଜି, ରାମକୃଷ୍ଣ କ୍ଷତ୍ରି, ହରଗୋବିନ୍ଦ, ଯୋଗେଶ ଚାଟାର୍ଜି, ସୁରେଶ ଭଟାଚାର୍ଯ୍ୟ, ରାମ ଦୁଲାରେ ତ୍ରିବେଦୀ, କୁନ୍ଦନ ଲାଲ, ଭୂପେନ୍ଦ୍ର ନାଥ ସାନ୍ୟାଲ, ଯୋଗେନ୍ଦ୍ର ଶୁକ୍ଳ, ଅଜୟ କୁମାର ଘୋଷ ପ୍ରମୁଖ ।

ଏହି ପାର୍ଟିରେ ଭଗତସିଂହ, ଅଜୟ କୁମାର ଘୋଷ, ଗଣେଶ ଚନ୍ଦ୍ରବିଦ୍ୟାର୍ଥୀ, ଶୁକ ଦେବ, ରାଜଗୁରୁ ପ୍ରଭୃତି ବହୁ ବିପ୍ଳବୀ ଥିଲେ । ଗଣେଶ ଚନ୍ଦ୍ର ବିଦ୍ୟାର୍ଥୀ ହିନ୍ଦୁ-ମୁସଲମାନ ଦଂଗା ଏଡ଼ିବାକୁ ଯାଇ ସାଂପ୍ରଦାୟିକତାବାଦୀମାନଙ୍କ ହାତରେ ପ୍ରାଣ ଦେଇଥିଲେ । ଚନ୍ଦ୍ରସିଂହ ଆଜାଦଙ୍କ ସଂପର୍କରେ ସ୍ୱତନ୍ତ୍ର ବିବରଣୀ ଦିଆଯାଇଛି । ବିପ୍ଳବୀ ମନ୍ମଥନାଥ ଗୁପ୍ତ ଚଳିତ ୨୦୦୦ ନଭେମ୍ବରରେ ପ୍ରାଣତ୍ୟାଗ ଗଲେ । କାକୋରୀ ସାଥୀ ଓ ସେମାନଙ୍କ ବୈପ୍ଳବିକ କାର୍ଯ୍ୟର ବିବରଣୀ ଦେଇ "କିପରି ବିପଦ ସଂକୁଳ ଅବସ୍ଥାରେ ଥିଲେ" ନାମରେ ଏକ ଦୀର୍ଘ ପୁସ୍ତକ ସେ ଲେଖି ଯାଇଛନ୍ତି । ଫାଶି ପାଇବା ପୂର୍ବରୁ ଆସଫ ଉଲ୍ଲା ଦେଶବାସୀଙ୍କୁ ଯେଉଁ ଦୀର୍ଘ ଆବେଦନ କରି ବ୍ରିଟିଶକୁ ହଟାଇବା ପାଇଁ ଓ ବ୍ରିଟିଶ ସୃଷ୍ଟି କରିଥିବା ହିନ୍ଦୁ-ମୁସଲମାନ ବିଦ୍ୱେଷରୁ ମୁକ୍ତ ହେବା ଲାଗି ଆହ୍ୱାନ କରିଛନ୍ତି ସେହି ଆବେଦନଟି ଏଥି ସହିତ ସଂଯୁକ୍ତ ହୋଇଛି । ଶିରୋନାମା ଥିଲା **"ଦେଶବାସୀଙ୍କ ପ୍ରତି"** । "ମୋ ମାତୃଭୂମିର ସମ୍ମାନ ଓ ମର୍ଯ୍ୟାଦା ରକ୍ଷା କରିବା ପାଇଁ ତିନୋଟି ଦିନ ଓ ଚାରୋଟି ରାତ୍ରିପରେ ମାତୃଭୂମି ଭାରତବର୍ଷ କୋଳରେ ଚିର ନିଦ୍ରା ଯିବି । ଆମ ବିରୁଦ୍ଧରେ ଅଣାଯାଇଥିବା ଅଭିଯୋଗ ପତ୍ରରେ ଆମକୁ ନରହନ୍ତା ଓ ଡକାଏତରୂପେ ଚିତ୍ରଣ କରାଯାଇଛି । ଏଥିରେ ଆଚମ୍ୱିତ ହେବାର କିଛି ନାହିଁ ।" ବନ୍ଧୁକର ଶକ୍ତିଠାରୁ ମୁକ୍ତି ଓ ସ୍ୱାଧୀନତାର ଶକ୍ତି ଅଧିକ ସୁଦୃଢ଼ । ଏ କଥାକୁ ଆମେ ବିଦେଶୀ ଶାସକମାନଙ୍କୁ ଚେତେଇ ଦେବା, ଆମର ଦେଶପ୍ରେମୀ କର୍ତ୍ତବ୍ୟ ବୋଲି ଆମେ ବିଚାର କରୁ । ମୁଷ୍ଟିମେୟ କେତେକ

ଆମ ବିରୁଦ୍ଧରେ ଯେଉଁ ଅଭିଯୋଗ ବାଢୁଛନ୍ତି ଓ କୁତ୍ସାଭିଯାନ ଚଳେଇଛନ୍ତି, ସେଥିରେ ମୁଁ ଆଦୌ ବିବ୍ରତ ନୁହଁ ।

"ମୋ ଦେଶମାତୃକା ନାମରେ ମୁଁ ଦେଶପାଇଁ ପ୍ରାଣବଳି ଦେବିବୋଲି ଶପଥ ନେଇଛି । ମୋର ଦେଶବାସୀଙ୍କୁ ନିବେଦନ କରୁଛି ଯେ ନିରୀହ ଜନତା ଉପରେ ବ୍ରିଟିଶ ଓ ତାଙ୍କର ଦଲାଲମାନେ ନିତ୍ୟ ପ୍ରତ୍ୟହ ଯେଉଁ ଅତ୍ୟାଚାର କରୁଛନ୍ତି, ସେ କଥା ସେମାନେ ଉପଲବ୍ଧି କରନ୍ତୁ । ଆପଣା ମାତୃଭୂମିରେ ଭାରତୀୟମାନେ ପରଦେଶୀ ରୂପେ ବିବେଚିତ ହୁଅନ୍ତି । ତିରିଶ କୋଟି ହିନ୍ଦୁ-ମୁସଲମାନଙ୍କୁ ମେଣ୍ଢାପଲ ତୁଲ୍ୟ ବ୍ୟବହାର କରାଯାଉଛି । ବ୍ରିଟିଶ ଶାସକମାନଙ୍କ ଦ୍ୱାରା ଆକ୍ରାନ୍ତ ହେଲେହେଁ କାହିଁକି ଆମ ଲୋକେ ଓଲଟି ଚଢ଼ାଉ କରୁନାହାନ୍ତି ? ଭାରତରେ ବିଦେଶୀ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାରୁ ସମବେତ ନିରସ୍ତ୍ର ଜନତା ଉପରେ ଜେନେରାଲ ଡାୟାର ଗୁଳି ଚଳାଇ ଶହ ଶହ ଲୋକଙ୍କୁ ହତ୍ୟାକରି ଜାଲିଆନାବାଲ୍ଲ ମୃତ୍ୟୁର ଉପତ୍ୟକାରେ ପରିଣତ କରିଦେଲା । ଆମ ମା' ମାନଙ୍କୁ ଅପମାନିତ କରାଗଲା । ଏପରି ଦମନ ଲୀଳା ପ୍ରତି ଆମେ କେତେକାଳ ନୀରବ ଦର୍ଶକ ହୋଇରହିବା ? ତେଣୁ ସରକାର ଦମନମୂଳକ ନୀତି ବିରୁଦ୍ଧରେ ବିଦ୍ରୋହର ମନୋଭାବ ନେଇ କାର୍ଯ୍ୟକରି ଚାଲିଲୁ । ଦେଶପ୍ରେମର ଭାବନା ଯୁବକୁଳର ଗର୍ବ । କାରଣ ସେ ଜାଣେ ଯେ ତରୁଣ ବ୍ୟକ୍ତିର ଧମନୀର ରକ୍ତ କାଳକାଳ ଲାଗି ତା'ର ଧମନୀରେ ପ୍ରବାହିତ ହେବ ନାହିଁ ।"

ନ୍ୟସ୍ତସ୍ୱାର୍ଥମାନଙ୍କ ଦ୍ୱାରା ସାଂପ୍ରଦାୟିକ ଘୃଣା ସୃଷ୍ଟି ସଂପର୍କରେ ଆସଫଉଲ୍ଲା ଉଲ୍ଲେଖ କରି ଲେଖିଲେ, "କେତେକ ଅଛନ୍ତି, ଯେଉଁମାନେ ଇସଲାମ ବାର୍ତ୍ତା ପ୍ରସାର କରିବା କଥା କହନ୍ତି ଏବଂ ଆଉ କେତେକ କହନ୍ତି ଧର୍ମାନ୍ତରୀକରଣହିଁ ମୁକ୍ତିର ମାର୍ଗ । ଉଭୟଙ୍କ ପ୍ରତି ମୋର ଦୟା ଆସେ । କାରଣ ଧର୍ମର ଅସଲ ନିର୍ଯ୍ୟାସ ସଂପର୍କରେ ସେମାନେ ଅଜ୍ଞ । ମୁଁ ଅନୁଭବ କରେ, ଏମାନେ ମିଶରର (ଇଜିପ୍ଟ) ସ୍ୱାଧୀନତା ସଂଗ୍ରାମ ସଂପର୍କରେ ଅଧ୍ୟୟନ କରନ୍ତୁ । ସେମାନେ ମିଶର ଓ ଭାରତର ବିଦ୍ୟମାନ ରାଜନୈତିକ ପରିସ୍ଥିତିକୁ ତୁଳନା କରନ୍ତୁ । ତାହା କଲେ ହିଁ ସ୍ୱାଧୀନତା ଜାତିର ଗୁରୁତ୍ୱ କ'ଣ ତାହା ଉପଲବ୍ଧି କରିପାରିବେ । ସାଧାରଣ ଜନାତାକୁ ଧର୍ମୀୟ ମତାନ୍ଧତାର ଶିକାର କରାଯାଉଛି । ଭାଗ ଭାଗ କରି ଶାସନ କର ରୂପକ ବ୍ରିଟିଶ ନୀତିକୁ ଅନୁସରଣ କରି ସରକାରର ଏଜେଣ୍ଟମାନେ ସାଂପ୍ରଦାୟିକ ବିଦ୍ୱେଷ କରୁଛନ୍ତି ।

"ଏ ସଂପର୍କରେ ଦୀର୍ଘ ବୟାନ କରିବାକୁ ଏବଂ ବ୍ରିଟିଶ ଓ ସେମାନଙ୍କ ଦଲାଲମାନଙ୍କ ଘୃଣ୍ୟ ଭୂମିକାର ମୁଖା ଖୋଲିବାକୁ ମୋର ସମୟ ନାହିଁ ।"

"ମୋର ହିନ୍ଦୁ ଓ ମୁସଲମାନଭାଇମାନଙ୍କୁ ମୁଁ କହିବାକୁ ଚାହେଁ ଯେ ସି.ଆଇ.ଡ଼ିର

# ସାଇମନ କମିଶନ ବାସନ୍ଦ - ୧୯୨୮

୧୯୨୮ ଫେବୃୟାରୀ ୩ ତାରିଖରେ ପ୍ରଥମ ଥର ସାଇମନ କମିଶନ (ସଦସ୍ୟମାନେ ବ୍ରିଟିଶ ବ୍ୟକ୍ତି) ବମ୍ବେରେ ପହଂଚି ମାର୍ଚ୍ଚ ୩ ତାରିଖ ଯାଏ ଭାରତରେ ଅବସ୍ଥାନ କରିଥିଲେ । ଗ୍ରୀଷ୍ମକାଳ ସମ୍ଭାଳି ନପାରି ବିଲାତକୁ ଫେରସ୍ତ ଯାଇ ଏହା ଦ୍ୱିତୀୟ ବାର ଅକ୍ଟୋବର ୧୧ ତାରିଖରେ ପହଂଚିଲା । ପୁନେଠାରୁ ଦିଲ୍ଲୀଯାଏ ଯାତ୍ରାକରି ବିଭିନ୍ନ ସଂଗଠନ, ବ୍ୟକ୍ତିବିଶେଷ, ପ୍ରାଦେଶିକ ସରକାରଗୁଡ଼ିକର ଅଫିସରମାନଙ୍କଠାରୁ ଏହା ସାକ୍ଷ୍ୟ ଗ୍ରହଣ କରିଥିଲା । କଂଗ୍ରେସ ଓ ଗାନ୍ଧିଜୀ ସାଇମନ କମିଶନକୁ ବାସନ୍ଦ କରିବାକୁ ଆହ୍ୱାନ ଦେଇଥିଲେ ।

ଏହି କମିଶନର ସଦସ୍ୟମାନେ ବମ୍ବେରେ ପହଂଚିବାବେଳେ ସାରା ଦେଶରେ "ସାଇମାନ କମିଶନ" ଫେରିଯା, ଧ୍ୱନି ଦେଇ ବିଶାଳ ବିକ୍ଷୋଭମାନ ଅନୁଷ୍ଠିତ ହୋଉଥିଲା । ବିଶେଷ ଭାବରେ ବମ୍ବେ, କଲିକତା, ଦିଲ୍ଲୀ, ସୁରଟ ଓ ଦକ୍ଷିଣର ଶିଳ୍ପାଞ୍ଚଳର ଶ୍ରମିକମାନେ ଧର୍ମଘଟ, ବିକ୍ଷୋଭରେ ସାମିଲ ହୋଇଥିଲେ । ଖାଲି ସେତିକି ନୁହେଁ ବିପୁଳ ସଂଖ୍ୟାରେ ଛାତ୍ର ଓ ଯୁବକ ଅତି ଲଢୁଆ ବିକ୍ଷୋଭମାନ ପ୍ରଦର୍ଶନ କରିଥିଲେ । ଦେଶବ୍ୟାପୀ ବିଶାଳ ବିକ୍ଷୋଭ କଂଗ୍ରେସ ନେତାମାନଙ୍କୁ ମଧ ଚମକିତ କରିଥିଲା । ପୁଲିସ ଲାଠି, ଗୁଳିକୁ ଭାରତବାସୀ ଉପହାସ କରି ସହସ୍ର ସହସ୍ର ସଂଖ୍ୟାରେ ଖଣ୍ଡିଆଖାବରା ହୋଇଥିଲେ । "ସାଇମନ କମିଶନ ଫେରିଯା" ଧ୍ୱନି ଦେଇ ବିଶାଳ ବିକ୍ଷୋଭର ନେତୃତ୍ୱ-ନେଉଥିବାବେଳେ ପଂଜାବ କେଶରୀ ଲାଲା ଲାଜପତ୍‌ରାୟଙ୍କ ଉପରେ ଏପରି ମାଡ଼ ହେଲା, ଯାହା ଫଳରେ ସେ କିଛିଦିନ ଗୁରୁତର ଅସୁସ୍ଥ ହୋଇ ପ୍ରାଣତ୍ୟାଗ କଲେ । ସାରା ଭାରତରେ ଲାଲା ଲାଜପତ୍‌ରାୟଙ୍କ ମୃତ୍ୟୁ ଖରବ ପାଇ ପ୍ରତିବାଦ, ବିକ୍ଷୋଭ, ପ୍ରଦର୍ଶନମାନ ଅନୁଷ୍ଠିତ ହୋଇଥିଲା ।

ଭଗତ ସିଂହ ଓ ତାଙ୍କ ସାଥୀମାନେ କିପରି ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ, ତାହା ଅନ୍ୟତ୍ର ପ୍ରକାଶିତ ।



# ମିରଟ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦ୍ଦମା
## ୧୯୨୯-୧୯୩୩

ବ୍ରିଟିଶ ଶାସିତ ବିଭିନ୍ନ ରାଜ୍ୟର ଗଭର୍ଣ୍ଣରମାନେ କେନ୍ଦ୍ର ସରକାରଙ୍କୁ ନିଜ ପ୍ରଦେଶରେ କମ୍ୟୁନିଷ୍ଟମାନଙ୍କ ପ୍ରଭାବ ବୃଦ୍ଧି ସଂପର୍କରେ ରିପୋର୍ଟ ପଠାଉଥାନ୍ତି। ବ୍ରିଟିଶ ଭାଇସରାୟ ଏ ସଂପର୍କରେ ବିଲାତ ସରକାରଙ୍କୁ ରୀତିମତ ଅବଗତ କରାଉଥାନ୍ତି। ୧୯୨୭ରେ କେନ୍ଦ୍ର ଆସେମ୍ବ୍ଲିରେ କମ୍ୟୁନିଷ୍ଟ ଆଦର୍ଶର ପ୍ରଚାର ବିରୁଦ୍ଧରେ ଯେଉଁ ପବ୍ଲିକ ସେଫ୍‌ଟି ଆଇନ ଆଣିବାକୁ ଉଦ୍ୟମ ହେଲା ତାହାକୁ କେନ୍ଦ୍ର ଆସେମ୍ବ୍ଲିରେ ସଂଖ୍ୟାଗରିଷ୍ଠ ଥିବା କଂଗ୍ରେସର ତୁଙ୍ଗ ନେତାମାନେ ବିରୋଧ କରିଥିଲେ। ତାହା ଫଳରେ ଅଣାଯାଉଥିବା ଆଇନ ପାଶ ହୋଇପାରି ନଥିଲା।

ଏହା ପରେପରେ ଦେଶର କମ୍ୟୁନିଷ୍ଟମାନଙ୍କୁ ଏକ ଷଡ଼ଯନ୍ତ୍ର ମକଦ୍ଦମାରେ ସଂଶ୍ଲିଷ୍ଟକରି ଗିରଫକରି ନେବା ଲାଗି ବ୍ରିଟିଶ ସରକାର ନିର୍ଣ୍ଣୟ କଲା।

୧୯୨୯ ମାର୍ଚ୍ଚ ୨୦ ତାରିଖ। ସେହି ଦିନ ବ୍ରିଟିଶ ପୁଲିସ କମ୍ୟୁନିଷ୍ଟମାନଙ୍କର ପ୍ରଭାବ ଥିବା ଓ ଆଡ୍ଡାସ୍ଥଳୀ ହୋଇଥିବା ପ୍ରଦେଶଗୁଡ଼ିକରେ ଛାଇ ହୋଇଗଲେ। ବମ୍ବେ, ବଂଗଳା, ପଂଜାବ ଓ ଉତ୍ତରପ୍ରଦେଶର ବିଭିନ୍ନ ସ୍ଥାନ ଉପରେ ପୁଲିସ ଚଢ଼ଉ ଆରଂଭ କରିଦେଲା। ଗିରଫ କମ୍ୟୁନିଷ୍ଟମାନଙ୍କ ଭିତରେ ମଧ୍ୟ କେତେ ଜଣ ବିଲାତର କମ୍ୟୁନିଷ୍ଟ ଥିଲେ। ସେମାନେ ବିଦେଶୀ ହେଲେବି ଭାରତୀୟ ଦଣ୍ଡବିଧି ଆଇନ ସେମାନଙ୍କ ବିରୁଦ୍ଧରେ ପ୍ରୟୋଗ କରାଯିବ ବୋଲି ସ୍ଥିର କରାଗଲା। ସମୁଦାୟ ୩୧ ଜଣଙ୍କୁ ଗିରଫ କରାଗଲା। ଏହାକୁ ମିରଟ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦମା ନାମରେ ନାମିତ କରାଗଲା।

ବଂଗଳାରୁ ଫିଲିପଂସ୍ପ୍ରାଟ, ମୁଜଫର ଅହମ୍ମଦ, ଧରଣୀ ଗୋସ୍ୱାମୀ, ଗୋପେନ ଚକ୍ରବର୍ତ୍ତୀ, ଗୋପାଳ ବସାକ, ରାଧାରଂଜନ ମିଶ୍ର, ଶିବନାଥ ବାନାର୍ଜୀ, ଶାମକୁଲ ହୋଦା, କିଶୋରିଲାଲ ଘୋଷଙ୍କୁ ଗିରଫ କରାଗଲା।

ମହାରାଷ୍ଟ୍ର ଅବା ପୂର୍ବର ବମ୍ବେ ପ୍ରଦେଶରୁ ବି.ପି.ବ୍ରାଡ଼ଲେ, ଏସ.ଏ.ଡାଙ୍ଗେ, ଗଂଗାଧର ଅଧିକାରୀ, ଏସ.ଭି.ଘାଟେ, ଏସ.ଏ.ମିରାଜକର, କେ.ଏନ ଯୋଗଲେକର, ଆର.ଏସ.ନିମକର, ଏ.ଏ.ଆଲୋକ, ସି.ଆର.କାସଲେ, ଡି.ଥେଙ୍ଗାଡ଼େ, ଏମ.ଜି.ଦେଶାଇ, ଏସ.ଏନ.ଝାବଲା, ଏବଂ ହଚିନ୍‌ସଙ୍କୁ ଗିରଫ କରାଗଲା। ଏହି ଇଂରେଜ ବ୍ୟକ୍ତି ବିଲାତରୁ ୧୯୨୮ରେ ଆସି ସାଂବାଦିକତା କରୁଥିଲେ।

ଉତ୍ତରପ୍ରଦେଶର ପି.ସି.ଯୋଷୀ, ଅଯୋଧ୍ୟା ପ୍ରସାଦ, ଗୌରୀଶଙ୍କର, ବିଶ୍ୱନାଥ ମୁଖାର୍ଜୀ, ଧରମବୀର ସିଂହ, ଏଲ.କଦମ ଓ ସୌକତ୍ ଉସ୍‌ମାନିଙ୍କୁ ଗିରଫ କରାଗଲା।

ଗୋପନ ଅର୍ଥଯୋଗାଣ ସାହାଯ୍ୟରେ ଭାରତବାସୀଙ୍କ ବିରୁଦ୍ଧରେ ଏହି ତାମସା ଚାଲିଛି । ଫାଶି ଖୁଣ୍ଟକୁ ଯିବା ପୂର୍ବରୁ ମୋ ଦେଶବାସୀଙ୍କୁ କହିଯାଉଛି, ଧର୍ମକୁ ଧରି ମତାଣ ଉଭୟ ହିନ୍ଦୁ ଓ ମୁସଲମାନମାନଙ୍କର କ୍ଷତି ସାଧନ କରିବ ।"

"ସାତ କୋଟି ମୁସଲମାନ ଓ ୨୨ କୋଟି ହିନ୍ଦୁକୁ ଅନ୍ୟ ଧର୍ମର ଦୀକ୍ଷିତ କରାଇବା ଅସମ୍ଭବ । ମାତ୍ର ଧର୍ମୀୟ ଭାବଭାବନାକୁ ଅପପ୍ରୟୋଗ କରି ଏବଂ ପରସ୍ପର ଭିତରେ ଝଗଡ଼ା ସୃଷ୍ଟିକରି ଭାରତବାସୀଙ୍କୁ ବ୍ରିଟିଶ ଶରକାର ଦାସକରି ରଖିବା ସମ୍ଭବପର ହୋଇଛି । ଦୁର୍ଭାଗ୍ୟେଯେ ୩୦ କୋଟି ଲୋକ ଅଧ୍ୟୁଷିତ ଦେଶର ନିଜସ୍ୱ ଜାତୀୟ ପତାକା ନାହିଁ । ନିଜ ମାତୃଭୂମିରେ ସେମାନେ ପରଦେଶୀ ରୂପେ ବ୍ୟବହାର ପାଆନ୍ତି । ସେମାନେ ଭାରି ଟିକସ ବୋଝରେ ଭାଂଗି ପଡୁଛନ୍ତି । ଲୋକେ ଦାରିଦ୍ର୍ୟ, କ୍ଷୁଧା ଓ ରୋଗରେ ମରୁଛନ୍ତି । ଅନ୍ୟମାନଙ୍କ ଦୟା ଉପରେ କୌଣସି ଦେଶ ତିଷ୍ଠି ନ ପାରେ । ଆମେ ଆମର ନିଜର ଭୁଲତ୍ରୁଟି ହେତୁ ଦାସ ହୋଇ ପଡ଼ିଛୁ । ପୁନର୍ବାର ସେପରି ପ୍ରମାଦ ଆମେ କରିବା ଉଚିତ ନୁହେଁ । ଯଦି ତାହା ଆମେ କରୁ, ତେବେ ଆଗାମୀ ବଂଶଧର ଗୋଲାମ ଓ ପରାଧୀନ ହୋଇରହିବେ । ଧର୍ମ ବିଶ୍ୱାସୀ ଏବଂ ଯେଉଁମାନେ କୌଣସି ଧର୍ମ ଅନୁସରଣ କରନ୍ତି ନାହିଁ, ସେମାନଙ୍କୁ ବିବେକ ନାମରେ ନିବେଦନ କରିବି ଯେ କାକୋରୀ ଷଡ଼ଯନ୍ତ୍ର ମକଦମାରେ ଯେଉଁମାନେ ଦେଶ ପାଇଁ ଫାଶି ଖୁଣ୍ଟକୁ ଆବୋରିବାକୁ ଯାଉଛନ୍ତି, ସେମାନଙ୍କ ପ୍ରତି କିଛି ସୁବିଚାର କରନ୍ତୁ । ୧୯୨୦-୨୧ ସମୟ ଯାହାକି ହିନ୍ଦୁ ଓ ମୁସଲମାନଙ୍କ ଭିତରେ ଐକ୍ୟ ପ୍ରତ୍ୟକ୍ଷ କରିଥିଲା, ମୋ ଦେଶବାସୀ ସେପରି ସମୟକୁ ଫେରାଇ ଆଣନ୍ତୁ । ଜାତୀୟ କଂଗ୍ରେସର ଅହମେଦାବାଦ ଅଧିବେଶନ ଏପରି ଜାତୀୟ ଐକ୍ୟ ପ୍ରତ୍ୟକ୍ଷ କରିଥିଲା । ନିଜର ଚିହ୍ନ ବର୍ଣ୍ଣ ନରଖି ବ୍ରିଟିଶ ଭାରତ ଛାଡ଼ୁ, ଏପରି ଚରମ ପତ୍ର ଦେବାର ସମୟ ଆସିଯାଇଛି । ସାଂପ୍ରଦାୟିକତାବାଦୀ ଶକ୍ତିମାନଙ୍କ ଖଳ ଯୋଜନାଗୁଡ଼ିକର ଶିକାର ହେବାକୁ ଲୋକେ ଅଗ୍ରାହ୍ୟ କରି ଦିଅନ୍ତୁ ଏବଂ ଜାତୀୟ ମୁକ୍ତି ଲାଗି ଉଦ୍ୟମ କରନ୍ତୁ । କାରଣ ଦାସର ଧର୍ମ ବୋଲି କିଛି ନାହିଁ । ମୁକ୍ତି, ମାନବିକ ସମ୍ମାନ ଓ ମର୍ଯ୍ୟାଦାର ପୁନରୁଦ୍ଧାର ଏକମାତ୍ର ପଥ । ଭାଗ୍ୟ ଆମ ପାଇଁ ଏହାକୁହିଁ ବାଛି ନେଇଛି ।

ସାଥୀମାନଙ୍କୁ ମୋର ନିବେଦନ

ବୈପ୍ଳବିକ ଆନ୍ଦୋଳନର ମୋ ସାଥୀମାନଙ୍କୁ ମୁଁ କିଛି କହିବାକୁ ଚାହେଁ । ସେମାନେ ଆନନ୍ଦିତ ହେବେଯେ ତାଙ୍କର ଜଣେ ସାଥି ହସି ହସି ଫାଶି ଖୁଣ୍ଟରେ ଚଢ଼ିବ । ମୁକ୍ତି ଆନ୍ଦୋଳନର ମୁଁ ଜଣେ ସୈନିକ ମାତ୍ର । ମୁକ୍ତିର ବେଦୀରେ ପ୍ରାଣ ଦେବା ଲାଗି ଗୁଳି ମୁହଁକୁ ଯାଉଥିଲି । ହୁଏତ ଆମ ପଥରେ ବହୁ ବାଧା ପ୍ରତିବନ୍ଧକ ଆସିବ । କିନ୍ତୁ ଜୀବନ ଦେବାକୁ ପଡ଼ିଲେବି ଜାତୀୟ ମୁକ୍ତିର ସଂଗ୍ରାମକୁ ଚଳେଇ ଯିବାକୁ ହେବ ।

ତମମାନଙ୍କ ଜଣେ ସାଙ୍ଗ ଫାଶିଖୁଣ୍ଟ ଆଲିଙ୍ଗନ କରିବାକୁ ଯାଉଛି ଜାଣି ଆନନ୍ଦିତ ହେବ । ଯେଉଁ କାମ ଅଧୁରା ରହିଗଲା, ତାହାକୁ ତୁମେମାନେ ପୂରଣ କରିବ । ସ୍କୁଲ ଓ କଲେଜର ଛାତ୍ରମାନେ ମୁକ୍ତି ସଂଗ୍ରାମରେ ଯୋଗ ଦେଉଛନ୍ତି । ତେଣୁ ଆଉ ବାଧାପ୍ରତିବନ୍ଧକ ରହିବ ନାହିଁ ।" ଉଦାତ୍ତ ଆହ୍ୱାନ ଦେଇ ସେ ଲେଖିଲେ, "କାହିଁକି ଶୋଇ ରହିଚ ? ମୁକ୍ତିର ଉଦାତ୍ତ ଆହ୍ୱାନକୁ ଶୁଣୁନାହିଁ ? ଉଠ, ଜାଗ, ଆଗେଇ ଚାଲ - କିଏ ତମ ଗନ୍ତବ୍ୟ ପଥକୁ ନିରେଖି ଦର୍ଶାଉଛି । ମୁଁ ଆଉ ଅଧିକ କିଛି ଲେଖୁନାହିଁ । କେବଳ ମୋ ଦେଶବାସୀଙ୍କଠାରୁ ବିଦାୟ ନେଇ ସଜାଗ ରହିବାକୁ ନିବେଦନ କରୁଛି । ରାଜନୈତିକ ନେତାମାନଙ୍କୁ ନିବେଦନ କରୁଛି ଯେ ଆମ ଦେଶର ଶତ୍ରୁ ଯେପରି ଆମ୍ଭମାନଙ୍କୁ ଦେଖୁଥିଲା, ସେପରି ଦୃଷ୍ଟିରେ ସେମାନେ ଆମ୍ଭମାନଙ୍କୁ ନ ଦେଖନ୍ତୁ । ଆମେ ଡକାଏତ ନୁହଁକି ନରହନ୍ତା ନୋହୁଁ ।

"କୋହିନୂର ହୀରକ କୁଆଡ଼େ ଗଲା ? ମୋ ଦେଶର ସଂପଦ କିପରି ନିଃଶୂନ ହେଲା ? ଯେଉଁମାନେ ଆମ ସମସ୍ତଙ୍କୁ ଲୁଣ୍ଠନ କଲେ ସେମାନେହିଁ ଆମ୍ଭମାନଙ୍କୁ ଡକାଏତ୍ ଆଖ୍ୟା ଦେଉଛନ୍ତି ।

ଚିରକାଳ ଲାଗି ଆପଣମାନଙ୍କଠାରୁ ମୁଁ ବିଦାୟ ନେଉଛି । ଗୋଟିଏ କ୍ଷୁଦ୍ର କବିତା ରୂପରେ କେତେକ ଶବ୍ଦ କହିବି । କବିତାର ମର୍ମହେଲା -

"ଧରାବକ୍ଷରେ ସଅଳ ଅବା ବିଳମ୍ବରେ ମୃତ୍ୟୁ ସଭିଙ୍କୁ ଆବୋରେ ଏବଂ ତା'ର ଈଶ୍ୱରଙ୍କ ମନ୍ଦିର ମାତ୍ର ପୂର୍ବପୁରୁଷଙ୍କ ଚିତାଭସ୍ମରେ, ଈଶ୍ୱରଙ୍କ ମନ୍ଦିରରେ ତା'ର ସ୍ମରଣ ହୁଏ ।"



# ସାଇମନ କମିଶନ ବାସନ୍ଦ - ୧୯୨୮

୧୯୨୮ ଫେବୃୟାରୀ ୩ ତାରିଖରେ ପ୍ରଥମ ଥର ସାଇମନ କମିଶନ (ସଦସ୍ୟମାନେ ବ୍ରିଟିଶ ବ୍ୟକ୍ତି) ବମ୍ବେରେ ପହଂଚି ମାର୍ଚ୍ଚ ୩ ତାରିଖ ଯାଏ ଭାରତରେ ଅବସ୍ଥାନ କରିଥିଲେ । ଗ୍ରୀଷ୍ମକାଳ ସମ୍ଭାଳି ନପାରି ବିଲାତକୁ ଫେରସ୍ତ ଯାଇ ଏହା ଦ୍ୱିତୀୟ ବାର ଅକ୍ଟୋବର ୧୧ ତାରିଖରେ ପହଂଚିଲା । ପୁନେଠାରୁ ଦିଲ୍ଲୀଯାଏ ଯାତ୍ରାକରି ବିଭିନ୍ନ ସଂଗଠନ, ବ୍ୟକ୍ତିବିଶେଷ, ପ୍ରାଦେଶିକ ସରକାରଗୁଡ଼ିକର ଅଫିସରମାନଙ୍କଠାରୁ ଏହା ସାକ୍ଷ୍ୟ ଗ୍ରହଣ କରିଥିଲା । କଂଗ୍ରେସ ଓ ଗାନ୍ଧିଜୀ ସାଇମନ କମିଶନକୁ ବାସନ୍ଦ କରିବାକୁ ଆହ୍ୱାନ ଦେଇଥିଲେ ।

ଏହି କମିଶନର ସଦସ୍ୟମାନେ ବମ୍ବେରେ ପହଂଚିବାବେଳେ ସାରା ଦେଶରେ "ସାଇମାନ କମିଶନ" ଫେରିଯା, ଧ୍ୱନି ଦେଇ ବିଶାଳ ବିକ୍ଷୋଭମାନ ଅନୁଷ୍ଠିତ ହୋଉଥିଲା । ବିଶେଷ ଭାବରେ ବମ୍ବେ, କଲିକତା, ଦିଲ୍ଲୀ, ସୁରଟ ଓ ଦକ୍ଷିଣର ଶିଳ୍ପାଞ୍ଚଳର ଶ୍ରମିକମାନେ ଧର୍ମଘଟ, ବିକ୍ଷୋଭରେ ସାମିଲ ହୋଇଥିଲେ । ଖାଲି ସେତିକି ନୁହେଁ ବିପୁଳ ସଂଖ୍ୟାରେ ଛାତ୍ର ଓ ଯୁବକ ଅତି ଲଢୁଆ ବିକ୍ଷୋଭମାନ ପ୍ରଦର୍ଶନ କରିଥିଲେ । ଦେଶବ୍ୟାପୀ ବିଶାଳ ବିକ୍ଷୋଭ କଂଗ୍ରେସ ନେତାମାନଙ୍କୁ ମଧ୍ୟ ଚମକିତ କରିଥିଲା । ପୁଲିସ ଲାଠି, ଗୁଳିକୁ ଭାରତବାସୀ ଉପହାସ କରି ସହସ୍ର ସହସ୍ର ସଂଖ୍ୟାରେ ଖଣ୍ଡିଆଖାବରା ହୋଇଥିଲେ । "ସାଇମନ କମିଶନ ଫେରିଯା" ଧ୍ୱନି ଦେଇ ବିଶାଳ ବିକ୍ଷୋଭର ନେତୃତ୍ୱ- ନେଉଥିବାବେଳେ ପଂଜାବ କେଶରୀ ଲାଲା ଲାଜପତ୍‌ରାୟଙ୍କ ଉପରେ ଏପରି ମାଡ଼ ହେଲା, ଯାହା ଫଳରେ ସେ କିଛିଦିନ ଗୁରୁତର ଅସୁସ୍ଥ ହୋଇ ପ୍ରାଣତ୍ୟାଗ କଲେ । ସାରା ଭାରତରେ ଲାଲା ଲାଜପତ୍‌ରାୟଙ୍କ ମୃତ୍ୟୁ ଖରବ ପାଇ ପ୍ରତିବାଦ, ବିକ୍ଷୋଭ, ପ୍ରଦର୍ଶନମାନ ଅନୁଷ୍ଠିତ ହୋଇଥିଲା ।

ଭଗତ ସିଂହ ଓ ତାଙ୍କ ସାଥୀମାନେ କିପରି ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ, ତାହା ଅନ୍ୟତ୍ର ପ୍ରକାଶିତ ।



# ମିରଟ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦମା
# ୧୯୨୯-୧୯୩୩

ବ୍ରିଟିଶ ଶାସିତ ବିଭିନ୍ନ ରାଜ୍ୟର ଗଭର୍ଣ୍ଣରମାନେ କେନ୍ଦ୍ର ସରକାରଙ୍କୁ ନିଜ ପ୍ରଦେଶରେ କମ୍ୟୁନିଷ୍ଟମାନଙ୍କ ପ୍ରଭାବ ବୃଦ୍ଧି ସଂପର୍କରେ ରିପୋର୍ଟ ପଠାଉଥାନ୍ତି । ବ୍ରିଟିଶ ଭାଇସରାୟ ଏ ସଂପର୍କରେ ବିଲାତ ସରକାରଙ୍କୁ ରୀତିମତ ଅବଗତ କରାଉଥାନ୍ତି । ୧୯୨୭ରେ କେନ୍ଦ୍ର ଆସେମ୍ବ୍ଲିରେ କମ୍ୟୁନିଷ୍ଟ ଆଦର୍ଶର ପ୍ରଚାର ବିରୁଦ୍ଧରେ ଯେଉଁ ପବ୍ଲିକ ସେଫ୍‌ଟି ଆଇନ ଆଣିବାକୁ ଉଦ୍ୟମ ହେଲା ତାହାକୁ କେନ୍ଦ୍ର ଆସେମ୍ବ୍ଲିରେ ସଂଖ୍ୟାଗରିଷ୍ଠ ଥିବା କଂଗ୍ରେସର ତୁଙ୍ଗ ନେତାମାନେ ବିରୋଧ କରିଥିଲେ । ତାହା ଫଳରେ ଅଣାଯାଇଥିବା ଆଇନ ପାଶ ହୋଇପାରି ନଥିଲା ।

ଏହା ପରେପରେ ଦେଶର କମ୍ୟୁନିଷ୍ଟମାନଙ୍କୁ ଏକ ଷଡ଼ଯନ୍ତ୍ର ମକଦ୍ଦମାରେ ସଂଶ୍ଳିଷ୍ଟକରି ଗିରଫକରି ନେବା ଲାଗି ବ୍ରିଟିଶ ସରକାର ନିର୍ଣ୍ଣୟ କଲା ।

୧୯୨୯ ମାର୍ଚ୍ଚ ୨୦ ତାରିଖ । ସେହି ଦିନ ବ୍ରିଟିଶ ପୁଲିସ କମ୍ୟୁନିଷ୍ଟମାନଙ୍କର ପ୍ରଭାବ ଥିବା ଓ ଆଡ୍ଡାସ୍ଥଳୀ ହୋଇଥିବା ପ୍ରଦେଶଗୁଡ଼ିକରେ ଛାଇ ହୋଇଗଲେ । ବମ୍ବେ, ବଂଗଳା, ପଂଜାବ ଓ ଉତ୍ତରପ୍ରଦେଶର ବିଭିନ୍ନ ସ୍ଥାନ ଉପରେ ପୁଲିସ ଚଢ଼ଉ ଆରଂଭ କରିଦେଲା । ଗିରଫ କମ୍ୟୁନିଷ୍ଟମାନଙ୍କ ଭିତରେ ମଧ୍ୟ କେତେ ଜଣ ବିଲାତର କମ୍ୟୁନିଷ୍ଟ ଥିଲେ । ସେମାନେ ବିଦେଶୀ ହେଲେବି ଭାରତୀୟ ଦଣ୍ଡବିଧି ଆଇନ ସେମାନଙ୍କ ବିରୁଦ୍ଧରେ ପ୍ରୟୋଗ କରାଯିବ ବୋଲି ସ୍ଥିର କରାଗଲା । ସମୁଦାୟ ୩୧ ଜଣଙ୍କୁ ଗିରଫ କରାଗଲା । ଏହାକୁ ମିରଟ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦମା ନାମରେ ନାମିତ କରାଗଲା ।

ବଂଗଳାରୁ ଫିଲିପଂସ୍ପ୍ରାଟ, ମୁଜଫର ଅହମ୍ମଦ, ଧରଣୀ ଗୋସ୍ୱାମୀ, ଗୋପେନ ଚକ୍ରବର୍ତ୍ତୀ, ଗୋପାଳ ବସାକ, ରାଧାରଂଜନ ମିଶ୍ର, ଶିବନାଥ ବାନାର୍ଜୀ, ଶାମକୁଲ ହୋଦା, କିଶୋରିଲାଲ ଘୋଷଙ୍କୁ ଗିରଫ କରାଗଲା ।

ମହାରାଷ୍ଟ୍ର ଅବା ପୂର୍ବର ବମ୍ବେ ପ୍ରଦେଶରୁ ବି.ପି.ବ୍ରାଡ଼ଲେ, ଏସ.ଏ.ଡାଙ୍ଗେ, ଗଂଗାଧର ଅଧିକାରୀ, ଏସ.ଭି.ଘାଟେ, ଏସ.ଏ.ମିରାଜକର, କେ.ଏନ ଯୋଗଲେକର, ଆର.ଏସ.ନିମକର, ଏ.ଏ.ଆଲୋକ, ସି.ଆର.କାସଲେ, ଡି.ଥେଙ୍ଗାଡ୍ରେ, ଏମ.ଜି.ଦେଶାଇ, ଏସ.ଏନ.ଝାବଲା, ଏବଂ ହଟଚିନ୍‌ସଙ୍କୁ ଗିରଫ କରାଗଲା । ଏହି ଇଂରେଜ ବ୍ୟକ୍ତି ବିଲାତରୁ ୧୯୨୮ରେ ଆସି ସାଂବାଦିକତା କରୁଥିଲେ ।

ଉତ୍ତରପ୍ରଦେଶର ପି.ସି.ଯୋଷୀ, ଅଯୋଧ୍ୟା ପ୍ରସାଦ, ଗୌରୀଶଙ୍କର, ବିଶ୍ୱନାଥ ମୁଖାର୍ଜୀ, ଧରମବୀର ସିଂହ, ଏଲ.କଦମ ଓ ସୌକତ୍ ଉସ୍‌ମାନିଙ୍କୁ ଗିରଫ କରାଗଲା ।

ପଂଜାବରୁ ଅବଦୁଲ ମଜିଦ, ସୋହାନ ସିଂ ଯୋଷ ଏବଂ କେଦାରନାଥ ସିଂଗାଲ ଗିରଫ ହେଲେ ।

ଏମାନଙ୍କ ମଧ୍ୟରୁ ଏସ.ଏସ. ମିରାଜକର ଥବଲେ ବମ୍ବେ ଓ୍ୱାର୍କରସ ଏଣ୍ଡ ପେଜାଣ୍ଟ ପାର୍ଟିର ସଂପାଦକ । ମୁଜଫର ଅହମ୍ମଦ ଥିଲେ ବଂଗ ପେଜାଣ୍ଟ ଏଣ୍ଡ ଓ୍ୱାର୍କର୍ସ ପାର୍ଟିର ସଂପାଦକ । ଉଭୟ ଧରଣୀ ଗୋସ୍ୱାମୀ ଓ ଗୋପେନ ଚକ୍ରବର୍ତ୍ତୀ ଯୁବଲିଗର ସଂପାଦକ । ସେମାନେ ମଧ୍ୟ ଓ୍ୱାର୍କର୍ସ ପେଜାଣ୍ଟ ପାର୍ଟିର ସଦସ୍ୟ । ଜି.ଅଧିକାରୀ ବର୍ଲିନରୁ ବିଜ୍ଞାନରେ ଡକ୍ଟର ଉପାଧି ଲାଭକରି ଗିରଫର ମାତ୍ର ଶହେଦିନ ପୂର୍ବରୁ ଭାରତରେ ପହଂଚିଥିଲେ । ଏମ୍.ଜି.ଦେଶାଇଙ୍କ ଦ୍ୱାରା ପ୍ରକାଶିତ "ସ୍ଫୁଲିଙ୍ଗ" ପତ୍ରିକାର ଅଧିକାରୀ ସ୍ତମ୍ଭ ଲେଖକ ଥିଲେ । ଶିବନାଥ ବାନାର୍ଜି ଜଣେ ପ୍ରମୁଖ ଶ୍ରମିକ ସଂଗଠକ ଓ ପରେ ସୋସଲିଷ୍ଟ ପାର୍ଟିର ନେତା ହେଲେ ।

ବିଲାତର ଯେଉଁମାନଙ୍କୁ ଗିରଫ କରାଗଲା ତନ୍ମଧ୍ୟରୁ ଫିଲିପ ସ୍ପ୍ରାଟ କଲିକତାରେ ଟ୍ରେଡ୍ ୟୁନିୟନ ଗୁଡ଼ିକର ନେତା ଓ ଭାରତ ଓ ଚୀନ ପୁସ୍ତକର ଲେଖକ । ହଟଚିନସନ ନୂତନ ସ୍ଫୁଲିଙ୍ଗ ପତ୍ରିକାର ସଂପାଦକ । ବେନ ବ୍ରାଡ଼ଲେ ଜି.ଆଇ.ପି ରେଲ ଶ୍ରମିକ ୟୁନିଅନ ଓ ବମ୍ବେ ଗିରନି କାମକାର ୟୁନିଅନର ନେତା ଥିଲେ ।

ସୋହାନ ସିଂ ଯୋଷ ପଂଜାବରେ ଅନୁଷ୍ଠିତ ସର୍ବ ଭାରତୀୟ ଓ୍ୱାର୍କର୍ସ ଏଣ୍ଡ ପେଜାଣ୍ଟ ସମ୍ମିଳନୀର ସଭାପତି ଏବଂ ପଂଜାବ ଶାଖାର ସଂପାଦକ ଥିଲେ । ସେ ମଧ୍ୟ ଭଗତ୍‌ସିଂହ ପଂଜାବ ନବଜୀବନ ଭାରତ ସଭାର ସଭାପତି ଥିଲେ । ଅବଦୁଲ ମଜିଦ୍ ପ୍ରେସ୍ କର୍ମଚାରୀମାନଙ୍କ ନେତା ଥିଲେ ଏବଂ ସୌକତ ଉସମାନୀ ଆଗରୁ ପେଶାବାର କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦମାରେ ଦଣ୍ଡିତ ହୋଇଥିଲେ ।

ପି.ସି. ଯୋଷୀ ଆହ୍ଲାବାଦ ବିଶ୍ୱ ବିଦ୍ୟାଳୟର ଛାତ୍ର ଥାଇ ଉତ୍ତର ପ୍ରଦେଶ ଓ୍ୟାର୍କର୍ସ ଏବଂ ପେଜାଣ୍ଟ ପାର୍ଟିର ସେକ୍ରେଟେରୀ ଓ ଏହାର ମୁଖପତ୍ର "କ୍ରାନ୍ତିକାରୀ" ପ୍ରତିକାର ସଂପାଦକ ଥିଲେ ।

ପଂଚଷଠି ବର୍ଷର ଥେଙ୍ଗଡ଼େ ଓ ଅନ୍ୟ ଅଭିଯୁକ୍ତମାନେ ବିଭିନ୍ନ ଟେଡ଼ ୟୁନିଅନର ନେତାଥିଲେ ।

ମିରଟର ବିଶେଷ ମାଜିଷ୍ଟ୍ରେଟ ମିଲନର ହ୍ୱାଇଟଙ୍କ ଇଜଲାସରେ ଲାଙ୍ଗଫୋର୍ଡ଼ ହେମ୍ସଙ୍କ ଦ୍ୱାରା ୧୯୨୯ ଜୁନ୍ ୧୨ ତାରିଖରେ ଷଡ଼ଯନ୍ତ୍ର ମକଦମା ରୁଜୁ କରାଗଲା ।

## ଜେଲରେ ମିରଟ ବନ୍ଦୀମାନଙ୍କ ସହିତ ମହାତ୍ମାଗାନ୍ଧୀଙ୍କ ଭେଟ

ବନ୍ଦୀମାନଙ୍କ ପକ୍ଷରୁ ମକଦମା ଲଢ଼ିବା ଲାଗି ଭାରତୀୟ ଜାତୀୟ କଂଗ୍ରେସ ଏକ ଡିଫେନ୍ସ କମିଟି ପଣ୍ଡିତ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ ଏବଂ ପଣ୍ଡିତ ଜବାହାର ଲାଲ ନେହେରୁଙ୍କ ସଂପାଦକତ୍ୱରେ ଗଠନ କରିଥିଲା । ବଂଗଳାର ବିଶିଷ୍ଟ କଂଗ୍ରେସ ନେତା

ସତ୍ୟେନ୍ଦ୍ର ଚନ୍ଦ୍ର ମିତ୍ର ମିରଟ ଯାଇ ବନ୍ଦୀମାନଙ୍କ ସହିତ ମକଦମା ସଂକ୍ରାନ୍ତରେ ଆଲୋଚନା କରିଥିଲେ ଏବଂ ଦେଶବାସୀଙ୍କୁ ଏହି ମକଦମାରେ ଆସାମୀମାନଙ୍କୁ ସମର୍ଥନ କରିବାକୁ ଆହ୍ୱାନ ଜଣାଇଥିଲେ । ମକଦମାଟି ଦୌରାଜଜଙ୍କ ଅଦାଲତକୁ ଯିବାବେଳକୁ କଂଗ୍ରେସ ଆଇନଅମାନ୍ୟ ଆନ୍ଦୋଳନ କରିବାକୁ ଯାଉଥିବାରୁ ଆଉ ସେମାନଙ୍କୁ ସାହାଯ୍ୟ କରିହେବନାହିଁ ଏବଂ ବନ୍ଦୀମାନେ ଦୋଷ ସ୍ୱୀକାର କରିଦେବାକୁ କଂଗ୍ରେସ ପରାମର୍ଶ ଦେଇଥିଲେ । ମାତ୍ର ବନ୍ଦୀମାନେ ଅସ୍ୱୀକାର କରିଥିଲେ ।

୧୯୩୦ ଏପ୍ରିଲରେ ମହାତ୍ମାଗାନ୍ଧୀ ମିରଟ ଜେଲକୁ ଯାଇ ବନ୍ଦୀମାନଙ୍କୁ ଭେଟି ଆଲୋଚନା କରିଥିଲେ । ଆଚାର୍ଯ୍ୟ ଜେ.ବି.କୃପାଳିନୀ ଓ ଅନେକଙ୍କ ସହ ଜେଲ କର୍ତ୍ତୃପକ୍ଷ ଧାର୍ଯ୍ୟ କରିଥିବା ସମୟ ୩ଟା ବେଳେ ଗାନ୍ଧିଜୀ ପହଂଚିଲାବେଳକୁ ଜେଲର ଅନୁପସ୍ଥିତ ଥିଲେ । ଓ୍ୱାର୍ଡ଼ରଠାରୁ ଫୋନ୍ ପାଇ ଜେଲର ଆସିବାପରେ ମୁଖ୍ୟ ଦରଜା ଓ ପରବର୍ତ୍ତୀ ଭିତର ଦରଜା ଖୋଲାଗଲା । ବନ୍ଦୀମାନଙ୍କ ପାଖକୁ ନ ନେଇ ଜେଲର ମହାତ୍ମାଗାନ୍ଧୀ ଓ ଅନ୍ୟମାନଙ୍କୁ ଜେଲ ଭିତରେ ଏଣେତେଣେ ବୁଲାଇଲେ ।

ମହତ୍ମାଗାନ୍ଧୀ ଏହା ଅନୁଭବକରି ବନ୍ଦୀମାନେ କେଉଁଠି ଅଛନ୍ତି, ସେମାନଙ୍କ ପାଖକୁ ନେବା ପାଇଁ କହିଲେ । ସଂଗରେ ଯାଉଥିବା ସୁପରିଟେଡ଼େଣ୍ଟ ତାଙ୍କୁ ଜେଲ ବୁଲାଇ ଦେଖାଉଛନ୍ତି ବୋଲି ଉତ୍ତର ଦେବାରୁ ସେ କେବଳ ବନ୍ଦୀମାନଙ୍କୁ ଦେଖିବାକୁ ଆସିଛନ୍ତି ବୋଲି କହିଲେ ।

ବନ୍ଦୀମାନେ ଏକତ୍ର ମିଳି ମହାତ୍ମା ଗାନ୍ଧୀଙ୍କୁ ଭବ୍ୟ ସଂବର୍ଦ୍ଧନା ଜଣେଇ ଆଳାପ ଆଲୋଚନାରେ ନିମଗ୍ନ ହେଲେ । ମହାତ୍ମା ଗାନ୍ଧୀ କହିଲେ- "ଦେଖନ୍ତୁ ମୁଁ ଏବେ ଏକ ଆନ୍ଦୋଳନ ଆରଂଭ କରିବାକୁ ଯାଉଛି । ମୁଁ ସବୁଲୋକଙ୍କ ସାହାଯ୍ୟ ନେବାକୁ ଚାହେଁ । ମୁଁ କୌଣସି ପ୍ରତିବନ୍ଧକ ଚାହେଁ ନାହିଁ । ଆପଣମାନଙ୍କର ମତ କ'ଣ ?" ବନ୍ଦୀମାନଙ୍କ ପକ୍ଷରୁ ତାଙ୍କୁ କହିଲେ ଯେ "ହିଂସା ହୋଇଗଲା ବା କିଏ ହତ୍ୟା ହେଲା, ଏଥିଯୋଗୁଁ ଯଦି ଆନ୍ଦୋଳନକୁ ପ୍ରତ୍ୟାହାର ନ କରାଯିବ, ତେବେ ଆମେ ନିଶ୍ଚୟ ଆନ୍ଦୋଳନରେ ସାମିଲ ହେବୁ । ଆମେ ଏପରି ପ୍ରତିଶ୍ରୁତି ଚାହୁଁ ।" ଗାନ୍ଧିଜୀ ଏପରି ପ୍ରତିଶ୍ରୁତି ଦେଇଥିଲେ ।

ଏମାନଙ୍କୁ ଗିରଫ କଲା ପରଦିନ ନେହେରୁ ଏକ ବିବୃତି ଦେଇ କହିଥିଲେ, "ଏପରି ଗରିଫ ମୁଖ୍ୟତଃ ଶ୍ରମିକ ଆନ୍ଦୋଳନ ଓ ଯୁବ ଲିଗ ବିରୁଦ୍ଧରେ ଅଭିପ୍ରେତ ।" ସେତେବେଳେ ବିଲାତରେ ଲେବର ପାର୍ଟିର ଶାସନ ଥିଲା ଏବଂ ସାର ହେନରି ମାକଡ଼ୋନାଲ୍ଡ଼ ପ୍ରଧାନମନ୍ତ୍ରୀ ଥିଲେ । ଚାରିବର୍ଷରୁ ଅଧିକ କାଳ ଏପରି ବିଚାର ଚାଲିଥିଲା ।

ବିଚାରର ବିଭିନ୍ନ ପର୍ଯ୍ୟାୟରେ ବିନା ଫିସରେ ସ୍ୱେଚ୍ଛାକୃତ ଭାବରେ ଭାରତର ବିଶିଷ୍ଟ ଆଇନଜୀବୀ ଗିରଫ ବ୍ୟକ୍ତିମାନଙ୍କ ପକ୍ଷରୁ ଅଦାଲତରେ ଲଢ଼ିଥିଲେ । ବାପ ପୁଅ ନେହେରୁଙ୍କ

ବ୍ୟତୀତ ପ୍ରସିଦ୍ଧ ଆଇନ ଜୀବୀଙ୍କ ମଧ୍ୟରେ ଥିଲେ ଟି.ଏନ.ସାପ୍ର. କେ.ଏଫ.ନରିମାନ, ଡ଼ିପି - , ଏମ.ସି.ଚଗଲା, ସି.ବି.ଗୁପ୍ତ, କେ.ସି.ଚକ୍ରବର୍ତ୍ତୀ ଓ ଅନ୍ୟମାନେ ।

ଏମାନଙ୍କୁ ଗିରଫ କରିବାପରେ ସାତ ମାସ କାଳ ତଦନ୍ତ ଚାଲିଲା ଓ ୧୯୨୯ ଡ଼ିସେମ୍ବର ୧୫ରେ ତଦନ୍ତ ଶେଷ ହେଲା । ପ୍ରଥମେ ସ୍ପେଶାଲ ମାଜିଷ୍ଟ୍ରେଟଙ୍କ ଇଜଲାସରେ ବିଚାର ଚାଲିଲା ଏହ୍ଲାବାଦର ହାଇକୋର୍ଟରେ ମକଦମାଟିକୁ ଅନ୍ୟ ଅଦାଲତକୁ ପଠାଯିବା ଲାଗି ଆବେଦନ କରାଗଲା । ମିରଟ ଦୌରା ଅଦାଲତରେ ବିଚାର ହେବ ବୋଲି ହାଇକୋର୍ଟ ଆଦେଶ ଦେଲେ । ଦୀର୍ଘ ପାଞ୍ଚ ମାସ କାଳ ବିଚାର ପରେ ଦୌରା ଅଦାଲତ ରାୟ ଦେଲେ । ୩୧ ଜଣ ଆସାମୀଙ୍କ ମଧ୍ୟରୁ ଶିବନାଥ ବାନାର୍ଜୀ, କିଶୋରୀଲାଲ ଘୋଷ୍ ଏବଂ ବିଶ୍ୱନାଥ ମୁଖର୍ଜୀଙ୍କୁ ଛାଡ଼ କରାଗଲା । ଡକ୍ଟର ଆର.ଥେଙ୍ଗଡ଼େ ବନ୍ଦୀଶାଳାରେ ମୃତ୍ୟୁ ବରଣ କରିସାରିଥିଲେ । ମୁଜାଫର ଅହମଦଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଓ ଅନ୍ୟମାନଙ୍କୁ ୩ ରୁ ୫ ବର୍ଷ ଯାଏ ଜେଲ ଦଣ୍ଡ ଦିଆଗଲା ।

୧୯୨୩ ଜୁଲାଇ ୨୪ ତାରିଖରେ ଦଣ୍ଡିତ ବ୍ୟକ୍ତିମାନେ ଏହ୍ଲାବାଦ ହାଇକୋର୍ଟରେ ଅପିଲ କଲେ । ଯେଉଁ ମକଦମା ଚାରିବର୍ଷ ଛ'ମାସ କାଳ ଚାଲିଥିଲା, ତାହାର ହାଇକୋର୍ଟ ରାୟ ୧୯୩୩ ଅଗଷ୍ଟ ୧୩ ତାରିଖରେ ପ୍ରକାଶ ପାଇଲା । ବିଚାରକମାନେ ଆଠଟି କାର୍ଯ୍ୟକାରୀ ଦିନ ଏଥିଲାଗି ନେଇଥିଲେ । ଆସାମୀମାନେ ଚାରି ବର୍ଷରୁ ଅଧିକ କାଳ ଜେଲରେ ରହିଥିବା ଦର୍ଶାଇ ପ୍ରଧାନ ବିଚାରପତି ଡକ୍ଟର ସୁଲେମାନ ଏବଂ ବିଚାରପତି ଡଗଲାସୟଙ୍ଗ ବହୁ ମାତ୍ରାରେ ଆସାମୀମାନଙ୍କ ଜେଲଦଣ୍ଡକୁ କମେଇ ଦେଇଥିଲେ ।

ଆସାମୀମାନଙ୍କୁ ବିଚାରପତିମାନେ ଚାରି ଭାଗରେ ବିଭକ୍ତ କରିଥିଲେ । ଯଥା- (୧) ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ, (୨) ଗ୍ରେଟ ବ୍ରିଟେନ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ, (୩) ବିଶ୍ୱାସରେ କମ୍ୟୁନିଷ୍ଟ ମାତ୍ର ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ ନୁହନ୍ତି, (୪) ପେଜାଣ୍ଟ ଏଣ୍ଡ ଓ୍ୟାରକରର୍ସ ପାର୍ଟି, ଟ୍ରେଡ ୟୁନିଅନ ଓ କଂଗ୍ରେସର ବ୍ୟକ୍ତି ଓ ଯେଉଁମାନେ କମ୍ୟୁନିଷ୍ଟ ପାର୍ଟିର କେବେ ସଦସ୍ୟ ନୁହନ୍ତି ବୋଲି କହିଥିବା ଆସାମୀ ।

ଏହି ବିଚାରବେଳେ ଶ୍ରୀପଦ ଅମୃତ ଡାଙ୍ଗେ ଏକ ଦୀର୍ଘ ବିବୃତି ଦେଇଥିଲେ । ଅନ୍ୟ କମ୍ୟୁନିଷ୍ଟମାନେ ସୋହାନସିଂହଙ୍କ ସହ ମିଶି ଏକ ବିବୃତି ଅଦାଲତରେ ଦେଇଥିଲେ । ପରବର୍ତ୍ତୀ କାଳରେ ଏହି ବିବୃତି ଗୁଡ଼ିକ ପୁସ୍ତକ ଆକାରରେ ପ୍ରକାଶ ପାଇଥିଲା । ଡାଙ୍ଗେଙ୍କ ଦୀର୍ଘ ବିବୃତି ଏବଂ ମିଳିନ ବିବୃତି ମାର୍କ୍ସବାଦୀ ତାତ୍ତ୍ୱିକ ଦଲିଲରୂପେ ବିବେଚିତ ହେଉଥିଲା ।



# "ଆମ ଭାଇମାନଙ୍କୁ ଗୁଳି କରିବୁନି"
# ଚନ୍ଦ୍ରସିଂହ ଘରୱାଲି

ବ୍ରିଟଶ ଶାସକଙ୍କ ଆଦେଶଯେ ସେମାନଙ୍କୁ ଗୁଳିକରି ଉଡ଼େଇ ଦିଅ । କେଉଁଠି ? ସେ କାଳରେ ଭାରତବର୍ଷ ଅନ୍ତର୍ଭୁକ୍ତ ସୀମାନ୍ତ ପ୍ରଦେଶରେ । ପଠାଣ ପ୍ରଧାନ ଏହି ପ୍ରଦେଶଟି ମଧ୍ୟ ଆଫ୍ରିଡ଼ିସ, ମୋମାଡ଼ିସ ଏବଂ ଆଉ ଅନେକ ଉପଜାତିଙ୍କ ବାସସ୍ଥଳୀ ।

ସୀମାନ୍ତ ଗାନ୍ଧୀ ନାମରେ ସ୍ୱାଧୀନତା ସଂଗ୍ରାମ କାଳରେ ବିଦିତ ଖାଁ ଅବ୍ଦୁଲ ଗଫୁର ଖାଁ ଗଢ଼ିଥାନ୍ତି ଖୁଦାଇ ଖିଜମତ୍‌କାର ନାମକ ସ୍ୱେଚ୍ଛାସେବୀ ମୁକ୍ତିଯୋଦ୍ଧା ବାହିନୀ । ଦଶ ହଜାରରୁ ଅଧିକ ପଠଣ ଓ ଆଉସବୁ ଉପଜାତିର ଲୋକେ ଏହି ବାହିନୀର ସେନାନୀ । ଅହିଂସ ପନ୍ଥା ଅବଲମ୍ବନକରି ସ୍ୱାଧୀନତା ସଂଗ୍ରାମ ଚଳାଇବାକୁ ସୀମାନ୍ତ ଗାନ୍ଧୀଙ୍କର ନିର୍ଦ୍ଦେଶ ।

ସେହି ପ୍ରଦେଶର ରାଜଧାନୀ ପେଶାବାର । ସେହି ପେଶାବାରରେ ୧୯୩୦, ଏପ୍ରିଲ ୨୩ରେ ବିଶାଳ ଜନବିକ୍ଷୋଭ, ଜନପ୍ରଦର୍ଶନ ଅନୁଷ୍ଠିତ ହେଲା । ଜନତା ବ୍ରିଟିଶ ଅତ୍ୟାଚାରର ମୁକାବିଲା କରିବାକୁ ପ୍ରସ୍ତୁତ ହୋଇଥାନ୍ତି । କଂଗ୍ରେସ ନେତାମାନେ ଏପରି ପ୍ରଦର୍ଶନ ନ କରିବାକୁ ପରାମର୍ଶ ଦେଲେବି ବିକ୍ଷୁବ୍ଧ ଜନତା ଉପରେ ଗୁଳି ବର୍ଷଣ କରିବାକୁ ବ୍ରିଟିଶ ହାକିମ ଆଦେଶ ଦେଲେ । ସୈନ୍ୟମାନେ ହେଉଛନ୍ତି ପଂଜାବର ଘରୱାଲି ସେନାବାହିନୀରେ ଅନ୍ତର୍ଭୁକ୍ତ । ଚନ୍ଦ୍ରସିଂହ ଘରୱାଲି ସେହି ବାହିନୀର ଅନ୍ୟତମ ସୈନ୍ୟ । ଆଉସବୁ ଘରୱାଲି ସୈନିକ ମଧ୍ୟରେ ସେ ଅନ୍ୟତମ । ଘରୱାଲି ସୈନ୍ୟମାନେ ଜନତା ଉପରେ ଗୁଳି ଚଳାଇବାକୁ ସେନାଧ୍ୟକ୍ଷଙ୍କ ଆଦେଶକୁ ଅମାନ୍ୟ କଲେ । ଚନ୍ଦ୍ରସିଂହଙ୍କ ନିର୍ଦ୍ଦେଶକୁ ସେମାନେ ଗ୍ରହଣକରି ଗୁଳି ଚଳେଇବାକୁ ରୋକଠୋକ ମନା କରିଦେଲେ ।

୧୯୩୦ ଲବଣ ସତ୍ୟାଗ୍ରହ କାଳରେ ପେଶାବାରଠାରେ ଚନ୍ଦ୍ର ସିଂହଙ୍କ ବାଟାଲିୟନକୁ ମୁତୟନ କରାଯାଇଥାଏ । ଚନ୍ଦ୍ରସିଂହ ନିଜ ସାଥୀମାନଙ୍କୁ ବେଆଇନ ଘୋଷଣା କରାଯାଇଥିବା ସଂବାଦପତ୍ର ଗୋଟାଇ ଆଣି ପଢ଼ି ଶୁଣାଉଥିଲେ । ରାତିରେ ଶୋଇଲାବେଳେ ପେଶାବାରରେ ବ୍ରିଟିଶ ବିରୁଦ୍ଧରେ ସଂଗ୍ରାମୀମାନେ କିପରି ଆନ୍ଦୋଳନ କରୁଛନ୍ତି ତାହା ବୁଝାନ୍ତି । କିପରି ହିନ୍ଦୁ ଓ ମୁସଲମାନ ବିବାଦ ଓ ସଂଘର୍ଷ ବ୍ରିଟିଶ ହାକିମମାନେ ମତାଉଛନ୍ତି, ତାହା ବର୍ଣ୍ଣନା

କରନ୍ତି । ନିଜ ସାଥୀମାନଙ୍କୁ ସତର୍କ କରାଇ ଦିଅନ୍ତି ଯେ ବ୍ରିଟିଶ କର୍ତ୍ତୃପକ୍ଷ ହିନ୍ଦୁ-ମୁସଲମାନ ବିବାଦ ଲଗେଇବା ପାଇଁ ସ୍ଥାନୀୟ ହିନ୍ଦୁମାନଙ୍କୁ ରକ୍ଷା କରିବା ନାମରେ ସ୍ୱାଧୀନତା ସଂଗ୍ରାମରତ ମୁସଲମାନମାନଙ୍କ ପ୍ରଦର୍ଶନ ଉପରେ ଗୁଳି ଚଳାଇବା ପାଇଁ ହୁକୁମ ଦେଇପାରନ୍ତି । ଘରୱାଲି ବାହିନୀର ବିଭିନ୍ନ ପ୍ରତିନିଧିଙ୍କୁ ସେ ଗୋପନରେ ଏକତ୍ର କରାଇ ଶପଥ ନିଆଇଥିଲେ ଯେ ମୁସଲମାନମାନଙ୍କ ଉପରେ ଘରୱାଲି ସୈନିକମାନେ ଗୁଳି ଚଳେଇବେ ନାହିଁ ।

୧୯୩୦ ଏପ୍ରିଲ ୨୩ରେ ପେଶାବାର କିସ୍ସଖାଁ ବଜାରରେ କପ୍ତାନ ରିକକେଟଙ୍କ ନେତୃତ୍ୱରେ ୭୨ ଜଣ ଘରୱାଲି ସୈନ୍ୟଙ୍କୁ ଅବସ୍ଥାପିତ କରାଗଲା । ମାତ୍ର ଚନ୍ଦ୍ରସିଂହଙ୍କୁ ସେଥିରେ ନିଆଯାଇନଥିଲା । ଏହା ଜାଣି ଚନ୍ଦ୍ରସିଂହ ଏକ ପେଖନା କଲେ । ସୈନ୍ୟମାନଙ୍କ ପାଖରେ ପିଇବା ପାଣି ଅଭାବ ରହିଛି କହି ପିଇବା ପାଣି ଧରି ସୈନ୍ୟ ଦଳ ପାଖରେ ପହଂଚିଲେ । ଘରୱାଲି ସୈନିକମାନେ ଦୁଇଟି ଫାଇଲରେ ଭାଗ ଭାଗ ହୋଇ କିସ୍ୱାଖାଁ ବଜାର ଫାଟକ ପାରିହେଲେ । ସେତେବେଳକୁ ସହସ୍ର ସହସ୍ର ସଂଖ୍ୟାରେ ପଠାଣ ରୁଣ୍ଡ ହୋଇଥାନ୍ତି ଏବଂ ଖାଁ, ଅବଦୁଲ ଗଫୁର ଖାଁଙ୍କ ଖୁଦାୟିଖିଦମଦକାର ସ୍ୱେଛାସେବକମାନେ ଦୋକାନଗୁଡ଼ିକ ଆଗରେ ବିଦେଶୀ ବର୍ଜନ ଧ୍ୱନି ଦେଇ ପିକେଟିଂ କରୁଥାନ୍ତି ।

ରିକ୍‌କେଟ ଜନତାକୁ ଛତ୍ରଭଂଗ ଦେବାକୁ ଆଦେଶ ଦେଲେ । ମାତ୍ର ଜନତା ଇଂଚେ ଘୁଂଚିଲେ ନାହିଁ । ଏହାପରେ ବ୍ରିଟିଶ ପ୍ଲାଟୁନ ବ୍ଲାଙ୍କ ଫାୟାର ଆରଂଭ କରି ଲୋକଙ୍କୁ ଭୟଭୀତ କରିବାକୁ ଉଦ୍ୟମ କଲେ । କିନ୍ତୁ ଜନତା ଅଟକ ।

ଏହାପରେ ରିକ୍କେଟ ଘରୱାଲି ସୈନ୍ୟମାନଙ୍କୁ ଗୁଳି ଚଳାଇବାକୁ ହୁକୁମ ଦେଲେ । ତାଙ୍କ ବାମ ପାଖରେ ଚନ୍ଦ୍ରସିଂହ ଛିଡ଼ା ହୋଇଥାନ୍ତି । ସେ ତତ୍‌କ୍ଷଣାତ୍ ଡାକରା ଦେଲେ "ଘରୱାଲିଭାଇମାନେ ଗୁଳି ଚଳାଅ ନାହିଁ ।"

ଘରୱାଲି ସୈନ୍ୟମାନେ ହିନ୍ଦୁ । ସେମାନେ ମୁସଲମାନଙ୍କ ଉପରେ ଗୁଳି ଚଳାଇ ହତ୍ୟାର ତାଣ୍ଡବ କଲେ ବ୍ରିଟିଶ କର୍ତ୍ତୃପକ୍ଷ ହିନ୍ଦୁ ମୁସଲିମ ଦଂଗା ସୃଷ୍ଟି କରିବା ଲାଗି ଯେଉଁ ଚକ୍ରାନ୍ତ କରିଥିଲା ତାହାକୁ ଚନ୍ଦ୍ରସିଂହଙ୍କ ନିର୍ଦ୍ଦେଶରେ ଘରୱାଲି ସୈନ୍ୟମାନେ ପରାସ୍ତ କରିଦେଲେ ।

ଏହାର ସାମରିକ ବିଚାର, କୋର୍ଟ ମାର୍ଶାଲ ଚାଲିଲା । ଘରୱାରି ସୈନ୍ୟମାନେ ଏକସ୍ୱରରେ କହିଲେ, "ଆମର ନିରସ୍ତ ଭାଇମାନଙ୍କୁ ଆମେ ଗୁଳି କରିବୁ ନାହିଁ । ଚାହୁଁଛ ତ ଆମକୁ ବନ୍ଧୁକରେ ଉଡ଼ାଇଦିଅ ।"

ବିଚାରରେ ୬୭ଜଣ ସୌନ୍ୟଙ୍କୁ ବରଖାସ୍ତ କରାଗଲା । ୧୬ଜଣ ର୍ୟାଙ୍କ୍ ହୋଲ୍ଡର୍ସ (ସୈନ୍ୟ ପଦପଦବିରେ ଭୂଷିତ)ଙ୍କ ୩ ବର୍ଷରୁ ୨୦ବର୍ଷ ଯାଏ ଜେଲ୍ ଦଣ୍ଡ ଦିଆଗଲା ।

ଚନ୍ଦ୍ରସିଂହ ଘରୱାଲିଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା । ପରେ ତାହାକୁ ଆଜୀବନ କାରାଦଣ୍ଡକୁ ଖସାଇଦିଆଗଲା ।

ଚନ୍ଦ୍ରସିଂହ ଘରୱାଲି ଜେଲ୍‌ରୁ ଖଲାସ ହେବାପରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇ ମୃତ୍ୟୁ ପର୍ଯ୍ୟନ୍ତ କମ୍ୟୁନିଷ୍ଟ କାର୍ଯ୍ୟରେ ସମ୍ପୃକ୍ତ ଥିଲେ । ବ୍ରିଟିଶ୍ ଶାସକମାନେ ହିନ୍ଦୁଙ୍କୁ ମୁସଲ୍‌ମାନଙ୍କ ବିରୁଦ୍ଧରେ ଏବଂ ମୁସଲ୍‌ମାନଙ୍କୁ ହିନ୍ଦୁଙ୍କ ବିରୁଦ୍ଧରେ ଲାଗାଇବାର ଶତ ଶତ ଦୃଷ୍ଟାନ୍ତ ମଧ୍ୟରୁ ଏହି ଘଟଣା ଅନ୍ୟତମ । ସାମ୍ପ୍ରଦାୟିକ ଐକ୍ୟକୁ ରକ୍ଷା କରିବା ଲାଗି ଦେଶପ୍ରେମୀମାନଙ୍କ ଆତ୍ମୋତ୍ସର୍ଗ କରିବାର ବହୁ ଦୃଷ୍ଟାନ୍ତ ମଧ୍ୟରୁ ପେସାବାରରେ ଚନ୍ଦ୍ରସିଂହଙ୍କ ଦୃଷ୍ଟାନ୍ତ ଅନ୍ୟତମ । ଏହା ହିଁ ସମୁଜ୍ଜଳ ଭାରତୀୟ ପରମ୍ପରା ।



# ଚିଟାଗଂଗ ଅସ୍ତ୍ରାଗାର ଲୁଣ୍ଠନ ସୂର୍ଯ୍ୟସେନ, ଦସ୍ତିଦାରଙ୍କୁ ଫାଶି ଅନ୍ୟମାନଙ୍କୁ ଆଜୀବନ କାରାଦଣ୍ଡ - ୧୯୩୦

ଭାରତର ସ୍ୱାଧୀନତା ଲକ୍ଷ୍ୟ ଘେନି ସଂଗ୍ରାମରେ ଚିଟାଗଂଗ ଅସ୍ତ୍ରାଗାର ଲୁଣ୍ଠନ କାଳରେ ବ୍ରିଟିଶ ସେନାନୀଙ୍କ ସହିତ ସଶସ୍ତ୍ର ସଂଘର୍ଷର ଅବଧି ୧୯୩୦ରୁ ୧୯୩୪ ଯାଏ ବ୍ୟସ୍ତ । ୧୯୨୮ରେ ବଂଗଳାର ବିପ୍ଳବୀ ସୂର୍ଯ୍ୟ ସେନ, ଅନନ୍ତ ସିଂହ, ଗଣେଶ ଘୋଷ, ଦସ୍ତିଦାର ପ୍ରମୁଖ ଅଟକବନ୍ଦୀ ଥାଇ ଜେଲ୍‌ରୁ ମୁକ୍ତି ଲାଭ କଲେ । ଏମାନେ ସମସ୍ତେ ଚିଟାଗଙ୍ଗକୁ ନିଜର ସମର ଭୂଇଁ ବାଛିନେଲେ । ସୂର୍ଯ୍ୟସେନ, ଯିଏ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ମାଷ୍ଟରଦା ନାମରେ ପରିଚିତ, ତାଙ୍କରି ନେତୃତ୍ୱରେ ଚିଟାଗଂଗ ରିପବ୍ଲିକାନ ଆର୍ମି ନାମକ ସଂଗଠନ ଗଲାଗଲା । ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ବ୍ରିଟିଶ୍ ବିରୁଦ୍ଧରେ ସଂଗ୍ରାମ କରିବାର ସଂକଳ୍ପ ନିଆଗଲା ।

୧୯୩୦ ଏପ୍ରିଲ୍ ମାସ ୧୮ ତାରିଖ । ସେହିଦିନ ସଂଧ୍ୟାରେ ସୂର୍ଯ୍ୟ ସେନଙ୍କ ନେତୃତ୍ୱରେ ବ୍ରିଟିଶ ବିରୁଦ୍ଧରେ ସଶସ୍ତ୍ର ଆକ୍ରମଣ ଚଳାଇ ଚିଟାଗଙ୍ଗରୁ ବ୍ରିଟିଶ କର୍ତ୍ତୃପକ୍ଷଙ୍କଠାରୁ ପ୍ରାୟତଃ ମୁକ୍ତ କରିନିଆଗଲା । ସରକାରୀ କଳ ପ୍ରାୟ ନିଶ୍ଚିହ୍ନ ହୋଇଗଲା । ଦୁଇଟି ସରକାରୀ ଅସ୍ତ୍ରଭଣ୍ଡାର, ଟେଲି ଯୋଗାଯୋଗ, ରେଳଷ୍ଟେସନ, ଚିଟାଗଙ୍ଗ ବନ୍ଦରକୁ ଦଖଲ କରାଗଲା । ସାରା ଭାରତ ସହିତ ରେଳ ଯୋଗାଯୋଗକୁ ବିଚ୍ଛିନ୍ନ କରିଦିଆଗଲା ।

ଅସ୍ତ୍ରାଗାର ଦାୟିତ୍ୱରେ ଥିବା ମେଜର ଫେରୋଲ୍ ଓ ଆଉ ଦୁଇଜଣ ଜଗୁଆଳ ସଂଘର୍ଷରେ ନିହତ ହେଲେ । ସୈନ୍ୟଛାଉଣୀକୁ ଦଖଲ କରିବାବେଳେ, ଖବର ପାଇ ଜିଲ୍ଲା ମାଜିଷ୍ଟ୍ରେଟ ପହଂଚିବାରୁ ତାଙ୍କୁ ଲକ୍ଷ୍ୟ କରି ବିପ୍ଳବୀମାନେ ଗୁଳି କଲେ । ମାତ୍ର ସେମାନଙ୍କ ଲକ୍ଷ୍ୟଭ୍ରଷ୍ଟ ହୋଇଗଲା ।

ସଶସ୍ତ୍ର ସଂଗ୍ରାମର ଅସଲ ଘାଟୀ ହୋଇଥାଏ ଜଲାଲାବାଦ ପାହାଡ଼, ଗରିଲା ଯୁଦ୍ଧର କ୍ଷେତ୍ର । ଏଠାରେ ଏକ ବିଶାଳ ଜନସମାବେଶରେ ଚିଟାଗଂଗରେ ଏକ ସ୍ୱାଧୀନ ସରକାର ଗଢ଼ାଗଲା ବୋଲି ସୂର୍ଯ୍ୟସେନ ଘୋଷଣା କଲେ ।

ସଶସ୍ତ୍ର ଅଭିଯାନରେ ଗୋଟିଏ ଚଉଦବର୍ଷର ବାଳକକୁ ମିଶେଇ ୫୮ଜଣ ବିପ୍ଳବୀ ଭାଗ ନେଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଚିଟାଗଂଗରେ ରହୁଥିବା ଦୁଇଜଣ ଓଡ଼ିଆ ବିପ୍ଳବୀ ଲୋକନାଥ ବଳ ଓ ତାଙ୍କ ୧୪ ବର୍ଷ ବୟସ୍କ ଭାଇ, ତାକ ନାମ ଟେଗରା । ବଳ ବିପ୍ଳବୀ ଟେଗରାର ଅସ୍ତ୍ରରେ ୩ଜଣ ବ୍ରିଟିଶ ସୈନିକ ଅହତ ହୋଇଥିଲେ ।

ସମଗ୍ର ସହର ବିପ୍ଳବୀମାନଙ୍କ ହାତରେ । କିନ୍ତୁର ବନ୍ଦରର ଜେଟିରେ ବ୍ରିଟିଶ ସୈନ୍ୟ ଥା'ନ୍ତି । ଚାରିଦିନ ପପରେ ବ୍ରିଟିଶ୍ ସୈନ୍ୟଙ୍କୁ ଜେଟିରୁ ଓ ଅନ୍ୟ ସ୍ଥାନରୁ ଅଣାଗଲା । ବ୍ରିଟିଶ ପକ୍ଷରୁ ଏକ ବଡ଼ ସଶସ୍ତ୍ର ବାହିନୀ ଆସି ପହଞ୍ଚିଗଲେ । ସଶସ୍ତ୍ର ସଂଘର୍ଷ ଆରମ୍ଭ ହୋଇଗଲା । ବିପ୍ଳବୀମାନଙ୍କ ଆକମଣରେ ବ୍ରିଟିଶ ସେନାନୀ କିଛି ସମୟ ପଛକୁ ହଟି ଚିଟାଗଂଗ ସହରରେ ଆଶ୍ରୟ ନେଇ ପୁନର୍ବାର ଆକ୍ରମଣ କରିବାକୁ ପ୍ରସ୍ତୁତି ଚଳାଇଲେ ।

ବିପ୍ଳାବୀମାନେ ଜଲାଲାବାଦ ପାହାଡ଼ ଆଉ ନିରାପଦ ନୁହଁ ସ୍ଥିର କରି ଅନ୍ୟତ୍ର ଖେଳାଇ ହୋଇଯାଇ ସଶସ୍ତ୍ର ଆକ୍ରମଣ ଅବ୍ୟାହତ ରଖିଲେ । ଲୁଟ ହୋଇଥିବା ଅସ୍ତ୍ରଶସ୍ତ୍ର ସେମାନେ ସଙ୍ଗରେ ନେଇଗଲେ । ଯେଉଁସବୁ ଅସ୍ତ୍ର ନେଇପାରିଲେ ନାହିଁ ସେଗୁଡ଼ିକୁ ଓ ଅସ୍ତ୍ରାଗାରକୁ ପେଟ୍ରୋଲ୍ ଢାଳି ଜଳାଇଦେଲେ । ଚିଟାଗଂଗ ବିପ୍ଳବୀମାନଙ୍କ ପ୍ରଭାବ ଆଖପାଖ କୋମିଲା, ଢାକା ଓ ଅନ୍ୟ ଜିଲ୍ଲାଗୁଡ଼ିକରେ ପଡ଼ିଲା । ସୂର୍ଯ୍ୟସେନଙ୍କ ନେତୃତ୍ୱରେ ବିଭିନ୍ନ ସ୍ଥାନରେ ବ୍ରିଟିଶ୍ ବିରୁଦ୍ଧରେ ଗରିଲା ଯୁଦ୍ଧ ହେଲା । ଦୁଇବର୍ଷ କାଳ ଏପରି ସଶସ୍ତ୍ର ଲଢ଼େଇ ଚାଲିଥିଲା ।

୧୯୩୧ ବେଳକୁ ବ୍ରିଟିଶ ସରକାର ଗରିଲା ବାହିନୀର ମୁକାବିଲା ପାଇଁ ବ୍ୟପକ ପ୍ରସ୍ତୁତି ଚଳାଇଲେ ସୁଦ୍ଧା ଦୀର୍ଘ ଦୁଇବର୍ଷ କାଳ ସାଶସ୍ତ୍ର ମୁହାଁମୁହିଁ ଘଟି ଚାଲିଥିଲା । କୌଣସି ଏକ ଦେଶଦ୍ରୋହୀ, ବିଶ୍ୱାସଘାତକଠାରୁ ଖବର ପାଇଁ ୧୯୩୩ ଫେବୃଆରୀରେ ଏକ ଗୋପନ ବୈଠକରୁ ବିପ୍ଳବୀମାନଙ୍କୁ ଗିରଫ କରାଗଲା ।

ଏହାପରେ ଚାଲିଲା ଚିଟାଗଂଗ ଅସ୍ତ୍ରାଗାର ଲୁଣ୍ଠନର ମକଦମା । ବିପ୍ଳବୀମାନଙ୍କ ମଧ୍ୟରୁ ୧୬ଜଣଙ୍କୁ ଅଦାଲାତ ବିନା ସର୍ତ୍ତରେ ଖଲାସ କଲେ ସୁଦ୍ଧା ସେମାନଙ୍କୁ ବେଙ୍ଗଲ ଅର୍ଡିନାନ୍ସ ବଳରେ ଜେଲ୍‌କୁ ପଠାଇଦିଆ ଯାଇଥିଲା । ପ୍ରଥମ ଦଫା ବିଚାରରେ ସୂର୍ଯ୍ୟ ସେନ (ମାଷ୍ଟରଦା), ଅନନ୍ତ ସିଂହ, ଗଣେଶ ଘୋଷ ଓ ଆଉ ୧୦ଜଣଙ୍କୁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା ।

ଏତିକିରେ ଏହି ଷଡ଼ଯନ୍ତ୍ର ମକଦମାର ଅନ୍ତ ଘଟିଲା ନାହିଁ । ୧୯୩୩ ଜୁନ୍ ମାସରେ ଦ୍ୱିତୀୟ ଦଫା ବିଚାର ଚାଲିଲା । ଏହାକୁ ଚିଟାଗଂଗ ଅସ୍ତ୍ରାଗାର ଲୁଣ୍ଠନ ମକଦମାର ସପ୍ଲିମେଣ୍ଟାରି (ଅତିରିକ୍ତ) ମାମଲା ନାମ ଦିଆଗଲା ।

ସେଦିନ ୧୯୩୪ ଜାନୁଆରୀ ୧୨ ତାରିଖ - ପ୍ରତ୍ୟୁଷ । ଫାଶି ମଞ୍ଚ ମଜାମଜି ହୋଇ ପ୍ରସ୍ତୁତ । ହାତକଡ଼ି, ଗୋଡ଼କଡ଼ିରେ ଛନ୍ଦି ଫାଶି ମଞ୍ଚ ନିକଟକୁ ସୂର୍ଯ୍ୟ ସେନ ଓ ତାରେକେଶ୍ୱର ଦସ୍ତିଦାରଙ୍କୁ ନିଆଗଲା । ବେକରେ ରଶି ଲଗାଇ ଫାଶିମଞ୍ଚ ନିକଟକୁ ସେମାନଙ୍କୁ ପଠାଇ ଦିଆଗଲା । ସେମାନଙ୍କ ମରଶରୀରକୁ ଅପଣାର ଆତ୍ମୀୟ ସ୍ୱଜନଙ୍କୁ ଦିଆଗଲା ନାହିଁ । ଜାହାଜରେ ଶହୀଦ ବୀର ଦୁଇଜଣଙ୍କ ଶବକୁ ରଖାଯାଇ ଚିଟାଗଂଗଠାରୁ ୧୦୦ରୁ ଅଧିକ ମାଇଲ୍ ଦୂରରେ ବଙ୍ଗୋପ ସାଗରର ନୀଳ ଜଳରାଶିରେ ନିକ୍ଷେପ କରାଗଲା ।

ସ୍ୱାଧୀନତା ପରେ ଆଜୀବନ କାରାଦଣ୍ଡ ପାଇଥିବା ବ୍ୟକ୍ତିମାନେ ଖଲାସ ହେଲେ । ସେଥିମଧ୍ୟରୁ ଅନେକ କମ୍ୟୁନିଷ୍ଟ ପାର୍ଟିରେ ମିଶିଲେ । କଳ୍ପନା ଦତ୍ତ କମ୍ୟୁନିଷ୍ଟ ପାର୍ଟିର ତତ୍କାଳୀନ ସମ୍ପାଦକ, ମହାନ ମାର୍କ୍ସବାଦୀ ଚିନ୍ତାନାୟକ ପୁରଣଚାନ୍ଦ ଯୋଷୀଙ୍କୁ ବିବାହ କରିଥିଲେ ।

ଏହି ମକଦମାରେ ୫ବର୍ଷ ପାଇଁ ଦଣ୍ଡିତ ଅନୀଲ ବନ୍ଧୁ ଦାସ ଓ ୩ବର୍ଷ ପାଇଁ ଦଣ୍ଡିତ ଅନନ୍ତ ସିଂହଙ୍କ ଭାଇ ଜେଲ୍ ଦଣ୍ଡ ଭୋଗି ସ୍ୱାଧୀନତା ପୂର୍ବରୁ ଖଲାସ ହୋଇଥିଲେ ।



# ଗାନ୍ଧିଜୀଙ୍କ ଗିରଫ ପରେ ସୋଲାପୁ ଅଭ୍ୟୁତ୍ଥାନ ଓ ସମାନ୍ତରାଳ ସରକାର, ୧୯୩୦ ମଇ ୬ ତାରିଖ

ମହାରାଷ୍ଟ୍ରର ସୋଲାପୁର ଶିଳ୍ପାଞ୍ଚଳରେ ୫ଟି ଲୁଗାକଳରେ ୩୦ ହଜାର ଶ୍ରମିକ କାମ କରୁଥାନ୍ତି । ଏଥିମଧ୍ୟରୁ ୨ଟି କାରଖାନା ବ୍ରିଟିଶ ପୁଞ୍ଜିପତିଙ୍କର । ଶ୍ରମିକମାନଙ୍କ ଜମାଟ ବାନ୍ଧିଥିବା ଅସନ୍ତୋଷ ୧୯୩୦ରେ ଗାନ୍ଧିଜୀଙ୍କ ଗିରଫ ପରେ ଫାଟିପଡ଼ିଲା । ବ୍ରିଟିଶ ସାମ୍ରାଜ୍ୟବାଦୀମାନଙ୍କର ଦମନ, ଗିରଫ, ଅତ୍ୟାଚାର ବିରୁଦ୍ଧରେ ବିକ୍ଷୋଭ କରିବେ ବୋଲି ଶ୍ରମିକମାନେ ନିର୍ଣ୍ଣୟ କଲେ । ମିଲ୍ ଫାଟକ ପାଖରେ ପ୍ରଦର୍ଶନକାରୀ ଶ୍ରମିକମାନେ ଏକାଠି ହେଲେ । ସମବେତ ପ୍ରଦର୍ଶନାକରୀ ଶ୍ରମିକମାନଙ୍କ ଉପରେ ବ୍ରିଟିଶ ପୁଲିସ ନିର୍ମମ ଲାଠି ଚାଳନା କରି ସେମାନଙ୍କ ଘେରଉ କରି ରହିଲା । ଶ୍ରମିକମାନେ ଏହାର ମୁକାବିଲା କରି ଠେଲାପେଲା କରିବାରୁ କେତେକ ସରକାରୀ ପୁଲିସ ଓ ହାକିମ ଆହତ ହେଲେ । ତା'ପରେ ଶ୍ରମିକମାନେ ବିରାଟ ପଟୁଆର ବାହାର କରି ବଜାରରେ ଥିବା ମଦ, ଗଞ୍ଜେଇ ଦୋକାନଗୁଡ଼ିକୁ ଚୁରମାର କରିଦେଲେ । ଶ୍ରମିକମାନଙ୍କ ସହିତ ସହରର ବହୁ ଯୁବକ ସାମିଲ୍ ହେଲେ । ଶ୍ରମିକ ଓ ଯୁବକମାନେ ସରକାରୀ ପୋଲିସ ଓ ହାକିମମାନେ ଯେମିତି ନ ଆସି ପାରିବେ, ସେଥିଲାଗି ଓଗଳ ବା ବ୍ୟାରିକେଡ୍‌ମାନ ସହରତଳି ଅଞ୍ଚଳରେ ବସାଇଲେ ।

ପ୍ରାୟ ୧୦ ହଜାର ବିକ୍ଷୁବ୍ଧ ଜନତା । ସେମାନଙ୍କ ଉପରେ ଗୁଳି ଚାଳନା କରିବାକୁ ଆଦେଶ ଦିଆଗଲା । ଅନେକ ବ୍ୟକ୍ତି ନିହତ ହେଲେ ସତ, ମାତ୍ର ବିକ୍ଷୁବ୍ଧ ଜନତା ଆଗକୁ ମାଡ଼ିଚାଲିଲେ । ଶ୍ରମିକ ଓ ଯୁବକମାନଙ୍କ ଘେରାଉରୁ ରକ୍ଷା ପାଇବା ପାଇଁ ମାଜିଷ୍ଟ୍ରେଟ୍ ଓ ପୁଲିସ ସ୍ଥାନ ଛାଡ଼ି ପଳାୟନ କଲେ । ସରକାରୀ ଦପ୍ତର ଓ ଥାନା ଖାଲି ପଡ଼ିଗଲା । ବିକ୍ଷୁବ୍ଧ ଜନତା ଜିଲ୍ଲା ସହେବଙ୍କ ଦପ୍ତର, ଥାନା, ଅନ୍ୟ ସରକାରୀ କାର୍ଯ୍ୟାଳୟକୁ ପୋଡ଼ି ଧ୍ୱଂସ କରିଦେଲେ । ଅଫିସକୁ ପୋଡ଼ିବା ନିରୋଧ କରିବା ଲାଗି ଜିଲ୍ଲା କଲେକ୍ଟରଙ୍କ ନିର୍ଦ୍ଦେଶରେ ବ୍ରିଟିଶ ଗୋରା ସୈନ୍ୟ ପ୍ରବଳ ଭାବରେ ବନ୍ଧୁକଚାଳନା କଲେ । ପୁଣି ଅନେକଙ୍କୁ ହତାହତ କଲେ । ନିରସ୍ତ୍ର ଜନତାଙ୍କୁ ଦମନ କରିବାକୁ ବିଟିଶ ଫୌଜ ଉଦ୍ୟମ କଲାବେଳକୁ ସମଗ୍ର ସହରର ପ୍ରଶାସନ ସମ୍ପୂର୍ଣ୍ଣ

ଅକାମୀ ହୋଇଗଲା । ବିକ୍ଷୁବ୍ଧ ଜନତାଙ୍କ ଭୟରେ ଜିଲ୍ଲା ସାହେବ, ଏସ୍‌ପି, ଆଉ ସବୁ କର୍ମଚାରୀ ପିଲାଛୁଆ ଧରି ସହର ଛାଡ଼ି ପଳାଇଲେ ।

୧୯୩୦ ଏପ୍ରିଲ୍ ୧୦ରୁ ୧୨ ଯାଏଁ ସମଗ୍ର ସହର ଶ୍ରମିକ ଓ ଜନତାଙ୍କ କର୍ତ୍ତୃତ୍ୱରେ ରହିଲା । ଏହି ସମାନ୍ତରାଳ ସରକାରର ପ୍ରତିଷ୍ଠା ପାଇଁ ଉଦ୍ୟମ କରାଗଲା । ସୋଲାପୁରରେ ତିରଙ୍ଗା ପତାକାର ରାଜତ୍ୱ ପ୍ରତିଷ୍ଠା ହେଲା ବୋଲି ଘୋଷଣା କରାଗଲା । 'ଟାଇମ୍ସ ଅପ୍ ଇଣ୍ଡିଆ' ଦୈନିକ ଲେଖିଥିଲା "ବ୍ରିଟିସ୍ ଶାସନ ଖତମ ହୋଇଛି । ଗାନ୍ଧୀରାଜ ପ୍ରତିଷ୍ଠା ହୋଇଛି । ସେଲାପୁରରେ ମିଲ୍ ଶ୍ରମିକ, ଚାଷି ଓ ଛୋଟ ବ୍ୟବସାୟୀଙ୍କ ଶାସନ ପ୍ରତିଷ୍ଠା ହୋଇଛି । ସରକାରୀ ବଙ୍ଗଳା, ଅଫିସ, ଥାନାରେ ପୁଲିସ୍‌ବାଲା କେହି ନାହାନ୍ତି । ରାସ୍ତାଗୁଡ଼ିକରେ କେବଳ କଂଗ୍ରେସ କର୍ମୀମାନେ ରହି ଗମନାଗମନ ଓ ନାଗରିକ ସୁରକ୍ଷା ବ୍ୟବସ୍ଥା କରୁଛନ୍ତି ।" ଏହାକୁ ଗାନ୍ଧୀରାଜ ବୋଲି 'ଟାଇମ୍ସ ଅଫ୍ ଇଣ୍ଡିଆ' ବର୍ଣ୍ଣନା କରିଥିଲା ।



## ଲାହୋର ଷଡ଼ଯନ୍ତ୍ର ମକଦମା - ଫାଶିକାଠାରେ
## ଶହୀଦ ଭଗତସିଂହ-ଶୁକଦେବ-ରାଜଗୁରୁ
## ୧୯୩୧ ମାର୍ଚ୍ଚ ୨୩, ସଂଧ୍ୟା ସାତଘଣ୍ଟା

ସ୍ୱାଧୀନତା ସଂଗ୍ରାମର ଆଇନ୍ ଅମାନ୍ୟ ଆନ୍ଦୋଳନପର୍ବ ଆହୁରି ବାକି ଅଛି । କୌଣସି ଭାରତୀୟ ପ୍ରତିନିଧି ନଥିବା "ସାଇମନ୍ କମିଶନ୍ ଫେରିଯାଅ" ମହା ଆନ୍ଦୋଳନ ପର୍ବର ବେଳ । ସେହି କାଳରେ ଭାରତର ଏପରି ଏକ ବିପ୍ଳବୀଙ୍କ ଆବିର୍ଭାବ ଘଟିଥିଲା, ଯିଏ ଗୋଟିଏ କମଦମାରେ ଜେଲ୍‌ରେ ଥାଇ ଆଜୀବନ କାକରାବାସ ଦଣ୍ଡ ପାଇଁ ସାଂଗକୁ ଆଉ ଏକ ଷଡ଼ଯନ୍ତ୍ର ମକଦମାରେ ତାଙ୍କୁ ଓ ତାଙ୍କ ସାଥୀମାନଙ୍କ ଫାଶିଦଣ୍ଡ ଓ ଦୀର୍ଘ କରାଦଣ୍ଡ ମିଳିଥିଲା । ସେ ହେଲେ ଚିରସ୍ମରଣୀୟ, ଭାଗ୍ୟବାନ୍ ବିପ୍ଳବୀ ଭଗତ୍‌ସିଂହ ।

ଲାଲା ଲାଜପତ୍ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ଲାହୋର ନାସ୍‌ନାଲ୍ କଲେଜ୍‌ରୁ ସ୍ନାତକ ହୋଇ ଭଗତ୍‌ସିଂହ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଗାନ୍ଧିଜୀଙ୍କ ଦ୍ୱାରା ପ୍ରଦର୍ଶିତ ସଂଗ୍ରାମର ପନ୍ଥା ତାଙ୍କୁ ପସନ୍ଦ ନହେବାରୁ ସେ 'ନବଜୀବନ ଭାରତ ସଭା', 'ହିନ୍ଦୁସ୍ଥାନ୍ ସୋସାଲିଷ୍ଟ୍ ରିପବ୍ଲିକାନ୍ ପାର୍ଟି' ଓ 'ହିନ୍ଦୁସ୍ଥାନ ରିପବ୍ଲିକାନ୍ ଆର୍ମି' ଗଠନରେ ମୁଖ୍ୟ ଭୂମିକା ନେଇଥିଲେ । ଶୁକଦେବ, ଯଶପାଳ, ଚନ୍ଦ୍ରଶେଖର ଆଜାଦ୍, ଗଣେଶଚନ୍ଦ୍ର ବିଦ୍ୟାର୍ଥୀ, ଯତିନ୍ଦ୍ରମୋହନ ଦାସ (ଯିଏ ଜେଲ୍‌ଖାନାରେ ଅନସନ କରି ପ୍ରାଣ ଦେଇଥିଲେ) ପ୍ରମଖ ତାଙ୍କର ମୁଖ୍ୟ, ଆଦ୍ୟ ସହଯୋଗୀ, ସହଯୋଦ୍ଧା ଥିଲେ । ଭଗତ୍‌ସିଂହ ମଧ ସୋହାନ୍‌ସିଂହ ଯୋଷ ଓ ସୋହାନ୍ ସିଂହ ବାଖନାଙ୍କ କିର୍ତ୍ତିକିଷାନ ପାର୍ଟି ସହ ସମ୍ପର୍କ ସ୍ଥାପନ କରିଥିଲେ । ୧୯୨୮ରେ ଶେଷଥର ପାଇଁ ଦିଲ୍ଲୀ ଫିରୋଜ୍‌ଶାହା କୋଟ୍‌ଲାରେ ଅନୁଷ୍ଠିତ ତାଙ୍କ ସୋସାଲିଷ୍ଟ ରିପବ୍ଲିକାନ୍ ପାର୍ଟିର ଏକ ଅଧିବେଶନରେ ସେ ଯୋଗଦେଇଥିଲେ ।

୧୯୨୮ ଫେବୃଆରୀ ୩ ତାରିଖ । କଂଗ୍ରେସ ଓ ଗାନ୍ଧିଜୀଙ୍କ ଆହ୍ୱାନରେ ବ୍ରିଟିଶ ପ୍ରେରିତ ସାଇମନ୍ କମିଶନକୁ ବାସନ୍ଦ କରିବାର ଦିନ । ଲାହୋରରେ ଲାଲା ଲାଜ୍‌ପତ୍ ରାୟ, ତରୁଣ ଭଗତ୍‌ସିଂହ ପ୍ରମୁଖଙ୍କ ନେତୃତ୍ୱରେ ବିଶାଳ ବିକ୍ଷୋଭ ଓ ପଟୁଆର ସଂଗଠିତ ହୋଇଥାଏ । ଧ୍ୱନି ଉଠୁଥାଏ, "ସାଇମନ୍ କମିଶନ୍ ଫେରିଯାଅ", "ଭାରତ,

ଭାତବାସୀଙ୍କର" । ସମ୍ପୂର୍ଣ୍ଣ ନିରସ୍ତ୍ର ଜନତା ଓ ଶାନ୍ତିପୂର୍ଣ୍ଣ ପ୍ରତିବାଦ । ଅଥଚ ପୁଲିସ୍ ସାହେବ ସ୍କଟ୍ ଏବଂ ଡେପୁଟି ପୁଲିସ୍ ସୁପରିଟେଣ୍ଡେଣ୍ଟ୍ ଜେ.ପି. ସାଣ୍ଡରର୍ସଙ୍କ ନିର୍ଦ୍ଦେଶରେ ଆକ୍ରମଣ ଆରମ୍ଭ ହୋଇଗଲା । ପ୍ରବଳ ଲାଠିମାଡ଼ ଦ୍ୱାରା ଲାଜପଦ୍ ରାୟ ଗୁରୁତର ଭାବରେ ଆହତ ହେଲେ । ସେହି ଆଘାତରେ ଲାଲା ଲାଜପତ୍ ରାୟଙ୍କ ୧୯୨୮ ନଭେମ୍ବର ୧୭ରେ ମୃତ୍ୟୁ ଘଟିଥିଲା । ସାରା ଦେଶରେ କ୍ରୋଧର ବହ୍ନି ପ୍ରଜ୍ୱଳିତ ହୋଇଗଲା । ବିଭିନ୍ନ ସ୍ଥାନରେ ବିକ୍ଷୋଭ ଓ ପ୍ରତିବାଦର ସ୍ରୋତ ଛୁଟିଲା ।

ଲାଲା ଲଜପତ୍ ରାୟଙ୍କ ହତ୍ୟାର ପ୍ରତିଶୋଧ ନେବାପାଇଁ ଭଗତ୍‌ସିଂହ, ରାଜଗୁରୁ ଓ ଚନ୍ଦ୍ରଶେଖର ଆଜାଦ୍‌ଙ୍କ ମଧ୍ୟରେ ଆଲୋଚନା ହୋଇ ଯୋଜନା ପ୍ରସ୍ତୁତ ହେଲା । ପୁଲିସ୍ ସାହେବ୍ ସ୍କଟଙ୍କୁ ତାଙ୍କ ଅଫିସ୍‌ରେ ହିଁ ହତ୍ୟା କରାଯିବ ବୋଲି ନିର୍ଣ୍ଣୟ କରାଗଲା । ପଞ୍ଜାବ କେନ୍ଦ୍ର ସେକ୍ରେଟେରିଏଟ୍‌ରେ ପୁଲିସ୍ ସାହେବ ସ୍କଟଙ୍କ ଅଫିସ୍ । ଚତୁରତା ସହକାରେ ଉକ୍ତ ଅଫିସ୍‌ର ଗୋଟିଏ କଣରେ ତିନିଜଣ ବିପ୍ଳବୀ ଲୁଚିରହିଲେ । ସେଦିନ ୧୯୨୮ ଡିସେମ୍ବର ୨୭ ତାରିଖ, ସନ୍ଧ୍ୟା ୪.୨୦ ମିନିଟ୍ । ମଟରସାଇକେଲ୍‌ରେ ଅଫିସ୍ ଛାଡ଼ି ଜଣେ ସାହେବ ଯାଉଥିବାର ଇଙ୍ଗିତ ଦେଲେ ଜୟଗୋପାଳ । ତତ୍‌କ୍ଷଣାତ ରାଜଗୁରୁଙ୍କ ପିସ୍ତଲରୁ ଗୁଳିଟି ମୋଟରସାଇକେଲରେ ଯାଉଥିବା ପୁଲିସ୍ ସାହେବଙ୍କ କାନରେ ବାଜିଲା । ଗାଡ଼ିରୁ ସେ ଖସିପଡ଼ିଲା ମାତ୍ରେ ଭଗତ୍‌ସିଂହ ତାଙ୍କ ମୁଣ୍ଡକୁ ଲକ୍ଷ୍ୟ କରି ଗୁଳି ଚଳେଇ ଲାଲାଜୀଙ୍କ ମୃତ୍ୟୁର ପ୍ରତିଶୋଧ ନେଲେ । ମାତ୍ର ଜଣଗଲା ଯେ ସେ ସ୍କଟ୍ ନୁହନ୍ତି; ସାଣ୍ଡରର୍ସ । ଦୁହେଁ ତ ଲାଲାଜୀଙ୍କୁ ବାଡ଼େଇ ମାରିଥିଲେ । ସାଣ୍ଡରର୍ସଙ୍କୁ ହତ୍ୟା କରି ଭଗତ୍‌ସିଂହ, ଜୟଗୋପାଳ ଓ ରାଜଗୁରୁ ଅନ୍ତର୍ଦ୍ଧାନ ହୋଇଗଲେ ।

ଏହା ସଂତ୍ରାସ ନୁହେଁ କି ହିଂସା ନୁହେଁ, ବରଂ ଲାଲା ଲଜପତ୍ ରାୟଙ୍କୁ ସମ୍ମାନ ଓ ତାହା ସହିତ ସମଗ୍ର ଜାତିକୁ ପ୍ରଦର୍ଶନ କରାଯାଉଛି ବୋଲି ଭାରତର ମୁକ୍ତିକାମୀ ଜନତା ଅନୁଭବ କରିଥିଲେ ।

## କେନ୍ଦ୍ର ଆସେମ୍ବ୍ଲିରେ ବୋମା ନିକ୍ଷେପ

ଲାଜପତ୍ ରାୟଙ୍କ ନିଦାରଣ ହତ୍ୟାର ପ୍ରତିଶୋଧ ନେଇ ଭଗତ୍‌ସିଂହ ଓ ତାଙ୍କ ସାଥୀମାନେ ନିଜ ପ୍ରାଣ ପାଇଁ ଭୀରୁ ହୋଇ ଆତ୍ମଗୋପନ କରିନଥିଲେ । ଠିକ୍ ଏହାର ଚାରିମାସ ଅନ୍ତର ।

ବ୍ରିଟିଶ୍ ସରକାର ସ୍ୱାଧୀନତା ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ, ବୈପ୍ଳବିକ କାର୍ଯ୍ୟକଳାପ ବିରୁଦ୍ଧରେ କେନ୍ଦ୍ର ଆସେମ୍ବ୍ଲିରେ ଆଇନ୍‌ମାନ ପାସ୍ କରାଇ ଚାଲିଥାଏ ।

୧୯୨୯ ଏପ୍ରିଲ୍ ଆଠ ତାରିଖରେ କେନ୍ଦ୍ର ଆସେମ୍ବ୍ଲିରେ ପ୍ରଥମ ଟ୍ରେଡ୍ ଡିସ୍‌ପ୍ୟୁଟ୍ (ଶ୍ରମିକ ବିବାଦ) ବିଲ୍ ବହୁମତରେ ପାସ୍ କରାଇ ନିଆଗଲା । ଆଉ ଏକ ବିଲ୍ ଆସିଲା ।

ତା'ର ନାମ ପବ୍ଲିକ୍ ସେଫ୍ଟି ଆକ୍ଟ (ସାଧାରଣ ନିରାପତ୍ତା ଆଇନ୍)। ଏହି ଆଇନ୍‌ଟିର ଉଦ୍ଦେଶ୍ୟ ଥିଲା, ଭାରତରେ କମ୍ୟୁନିଷ୍ଟ ମତବାଦର ପ୍ରସାର ନିରୋଧ କରିବା। ସେତେବେଳେ କେନ୍ଦ୍ର ଆସେମ୍ବ୍ଲିରେ ଥିବା ସ୍ୱରାଜ (କଂଗ୍ରେସ୍) ପାର୍ଟିର ବହୁ ସଦସ୍ୟ ଏହି ବିଲ୍‌ର ବିରୋଧ କରିଥିଲେ।

ଠିକ୍ ଏହି ବିଲ୍ ଗୃହରେ ଅଣାଯିବା ପୂର୍ବରୁ ଦର୍ଶକ ଗ୍ୟାଲେରୀରୁ ସଦନର ଖୋଲା ଜାଗାକୁ ଲକ୍ଷ୍ୟ କରି ଗୋଟିକ ପରେ ଆଉ ଗୋଟିଏ, ଏପରି ଦୁଇଟି ବୋମା ପଡ଼ିଲା। କାହାକୁ ହତ୍ୟା କରିବା ପାଇଁ ନୁହେଁ। ଫାଙ୍କା ସ୍ଥାନରେ କେବଳ ଧୂଆଁରେ ଅନ୍ଧକାରାଚ୍ଛନ୍ନ କରିଦେବା ଉଦ୍ଦେଶ୍ୟରେ ଏହି ବୋମା ଦୁଇଟିକୁ ଫିଙ୍ଗିଦେଲେ ଭଗତ୍‌ସିଂହ ଓ ସାଥୀ ବଟୁ କିଶୋର ଦତ୍ତ। ଯେପରି ସେମାନେ ଦର୍ଶକ ଗ୍ୟାଲେରୀକୁ ଗୋପନରେ ଆସିଥିଲେ, ସେମିତି ଗୋପନରେ ସେମାନେ ସହରରେ ଆତ୍ମଗୋପନ କରିପାରିଥାନ୍ତେ। ମାତ୍ର ନିଜେ ପୁଲିସ୍ ହାତରେ ଧରାଇଦେଇ ଘୋଷଣା କଲେ ଯେ ସେମାନେ ଏହାଦ୍ୱାରା ବ୍ରିଟିଶ୍ ବିରୁଦ୍ଧରେ ଦେଶର ମନୋଭାବ, ଅସନ୍ତୋଷ ଓ କ୍ରୋଧକୁ ଜଣାଇଦେଲେ।

ଦୁଇଜଣଙ୍କୁ ଗିରଫ କରି ସେମାନଙ୍କ ବିରୁଦ୍ଧରେ ମକଦମା ଚାଲିଲା। ଦିଲ୍ଲୀର ତରୁଣ ଆଇନ୍‌ଜୀବୀ ଆସଫ୍ ଅଲ୍ଲି (କଂଗ୍ରେସ ନେତା ଏବଂ ସ୍ୱାଧୀନତା ପରେ ଓଡ଼ିଶାର ରାଜ୍ୟପାଳ, ବିପ୍ଳବିଣୀ ଅରୁଣା ଆସଫ୍ ଅଲ୍ଲିଙ୍କ ସ୍ୱାମୀ) ଅସାମୀ ଦ୍ୱୟଙ୍କ ପକ୍ଷରୁ ମକଦମା ଚଳାଇବାକୁ ବାହାରି ପଡ଼ିଥିଲେ।

ମକଦମା ଶୁଣାଣିବେଳେ ସେମାନେ ବୈପ୍ଳବିକ ଧ୍ୱନିମାନ ଦେଉଥାନ୍ତି, ହସୁଥାନ୍ତି। ମକଦମାତଳ କୋର୍ଟରୁ ଯାଇ ଦୌରା ଅଦାଲତରେ ୧୯୨୯ ଜୁନ୍ ପ୍ରଥମ ସପ୍ତାହରୁ ଆରମ୍ଭ ହେଲା। ଦୁହିଁଙ୍କୁ ଆଜୀବନ କାରାଦଣ୍ଡ ଦିଆଗଲା। ହାଇକୋର୍ଟ ମଧ୍ୟ ଆଜୀବନ କାରାଦଣ୍ଡ ରାୟକୁ କାଏମ୍ ରଖିଲେ। ହାଇକୋର୍ଟରେ ଆସାମୀମାନଙ୍କ ପକ୍ଷରୁ ଆସଫ୍ ଅଲ୍ଲି ଅଢ଼େଇ ଦିନ କାଳ ଜବାସ ସୁଆଲ କରିଥିଲେ। ମାତ୍ର ସେସବୁକୁ ଅଗ୍ରାହ୍ୟ କରି ଉଚ୍ଚ ଅଦାଲତ ୧୯୩୦ ଜାନୁଆରୀ ୧୩ ତାରିଖରେ ତାଙ୍କ ରାୟ ଶୁଣାଇଥିଲେ।

## ଦ୍ୱିତୀୟ ବିଚାର - ଲାହୋର

ଲାହୋର ପୁଂଜ୍ ହାଉସ୍‌ରେ ବିଶେଷ ଅଦାଲତ ୧୯୩୦ ମଇ ୫ ତାରିଖରୁ ଲାହୋର ଷଡ଼ଯନ୍ତ୍ର ମକଦମାର ବିଚାର ଆରଂଭ କରିଥିଲେ। ବିଚାର ଏକ ପ୍ରହସନ ବୋଲି ଭଗତ୍‌ସିଂହ ଘୋଷଣା କରି ଆତ୍ମପକ୍ଷ ସମର୍ଥନ କରି କିଛି କହିବାକୁ ଅସ୍ୱୀକାର କରିଥିଲେ। ଏହି ବିଚାରରେ ତାଙ୍କୁ ଫାଶି ହେବ ଅନୁଭବ କରି ତାଙ୍କ ବାପା କିଷନ ସିଂହ, ଅଦାଲତକୁ ଓ ଭାଇସରାୟଙ୍କୁ ଏକ ଆବେଦନ କରିଥିଲେ। ସନ୍ଦରର୍ସଙ୍କ ହତ୍ୟାବେଳେ ଭଗତ୍‌ସିଂହ ଲହୋରରେ ନଥିଲେ, ତେଣୁ ତାଙ୍କୁ ଦଣ୍ଡ ନ ଦିଆଯାଉ ବୋଲି

ସେ ଲେଖିଥିଲେ । ଭଗତ୍ ସିଂହ ଏହା ଜାଣି ବାପାଙ୍କୁ କଡ଼ା ଭାଷାରେ ଉତ୍ତର ଦେଇଥିଲେ । ଅବଶ୍ୟ ତାଙ୍କ ବାପା ମଧ୍ୟ ଜଣେ ସ୍ୱାଧୀନତା ସଂଗ୍ରାମୀ ଥିଲେ । ମାତ୍ର ପୁତ୍ରସ୍ନେହ ତାଙ୍କୁ ବିବ୍ରତ କରିଦେଇଥିଲା ।

ରାୟରେ ଅଭିଯୁକ୍ତମାନଙ୍କ ମଧ୍ୟରୁ ଭଗତ୍‌ସିଂହ, ଶୁକଦେବ ଓ ରାଜଗୁରୁଙ୍କୁ ଫାଶି ଦଣ୍ଡରେ ଦଣ୍ଡିତ କରାଗଲା । କୁନ୍ଦନ ଲାଲଙ୍କୁ ୭ବର୍ଷ ଓ ପ୍ରେମଲାଲ୍‌ଙ୍କୁ ୫ବର୍ଷ କାରାବାସ ଦଣ୍ଡ ଦିଆଗଲା । ଅଜୟ ଘୋଷ, ଜେ.ଏନ୍. ସାନ୍ୟାଲ୍, ଦେଶରାଜଙ୍କୁ ଆବଶ୍ୟକ ପ୍ରମାଣ ଅଭାବ ହେତୁ ଛାଡ଼ କରାଗଲା । ଦୁଇଜଣ ଅଭିଯୁକ୍ତ ଧରା ପଡ଼ିନଥିଲେ । ଆତ୍ମଗୋପନବେଳେ ଏକ ଦୁର୍ଘଟଣାରେ ବିପ୍ଳବୀ ଭଗବତୀ ଚରଣ ମୃତ୍ୟୁର ସମ୍ମୁଖୀନ ହୋଇଥିଲେ । ବିପ୍ଳବୀ ଚନ୍ଦ୍ରଶେକର ଆଜାଦ କାକୋରୀ ଷଡ଼ଯନ୍ତ ମକଦମାରେ ଆସାମୀ ଥାଇ ଯେମିତି ଆତ୍ମଗୋପନ କରି ବାହାରେ ବୈପ୍ଳବିକ କାର୍ଯ୍ୟ କରୁଥିଲେ, ସେମିତି ଏଥର ମଧ୍ୟ ପୁଲିସ୍‌କୁ ଭୂଆଁ ବୁଲେଇଦେଲେ । ୧୯୩୧ ଫେବୃଆରୀରେ ଏହ୍ଲାବାଦ ଆଲ୍‌ଫ୍ରେଡ୍ ପାର୍କରେ ପୁଲିସ୍‌ର ମୁକାବିଲା କଲାବେଳେ ନିଜେ ନିଜକୁ ଗୁଳି ମାରି ସେ ମୃତ୍ୟୁବରଣ କରିଥିଲେ ।

ଭଗତ୍‌ସିଂହଙ୍କୁ ଭାରତୀୟ ବିଙ୍ଗଳ ଆଇନ୍‌ର ୧୨୧, ୩୦୨, ୧୨୦ (ବି) ଏବିତି ବିଭିନ୍ନ ଦଫାରେ ଅଭିଯୁକ୍ତ କରାଯାଇଥିଲା । ୧୯୩୦ ଅକ୍ଟୋବର ୭ ତାରିଖରେ ରାୟ ପ୍ରକାଶ ପାଇଲା ।

ମୃତ୍ୟୁଦଣ୍ଡ ପେପେର ମଧ୍ୟ ଆଇନ୍ ସଂକ୍ରାନ୍ତ ଲଢ଼େଇ ବନ୍ଦ ହୋଇନଥିଲା । ପଣ୍ଡିତ ମଦନମୋହନ ମାଲବ୍ୟ ୧୯୩୧ ଫେବୃଆରୀ ୧୪ରେ ମୃତ୍ୟୁଦଣ୍ଡ ପରିବର୍ତ୍ତେ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରବା ପାଇଁ ଭାଇସରାୟଙ୍କୁ ଆବେଦନ କରିଥିଲେ । ମାତ୍ର ଭାଇସରାୟ ସେଥିପ୍ରତି କର୍ଣ୍ଣପାତ କରିନଥିଲେ ।

୧୯୩୦ ଅକ୍ଟୋବରରେ ଏହି ତିନି ବିପ୍ଳବୀଙ୍କ ଫାଶି ଦେବା କାଳ ଅତିକ୍ରାନ୍ତ ହୋଇଥିବାରୁ ଏବଂ ବିଚାର କରିଥିବା ଟାଇବୁନାଲ୍‌ର ସ୍ଥିତି ନଥିବାରୁ ମୃତ୍ୟୁଦଣ୍ଡ କାର୍ଯ୍ୟକାରୀ ହୋଇପାରିବ ନାହିଁ ବୋଲି ହାଇକୋର୍ଟରେ ପଣ୍ଡିତମାନଙ୍କ ପକ୍ଷରୁ ସର୍ବଶ୍ରୀ ଜୀବନ ଲାଲ, ବଲଜିତ୍ ଓ ଶାମଲାଲ୍ ଏକ ରିଟ୍ ଆବେଦନ କଲେ । ମାତ୍ର ତାହାକୁ ହାଇକୋର୍ଟ ଅଗ୍ରାହ୍ୟ କରିଦେଲେ ।

ସେତେବେଳେ ବିଲାତରେ ଲେବର (ସୋସଲିଷ୍ଟ) ସରକାର ଥିଲା । ସାମ୍ରାଜ୍ୟବାଦୀ ସ୍ୱାର୍ଥ ରକ୍ଷା ଓ ଭାରତକୁ ଓ ଅନ୍ୟ ବିଭିନ୍ନ ଦେଶକୁ ପରାଧୀନ କରି ରଖିବା ସମ୍ପର୍କରେ ଉଭୟ ରକ୍ଷଣଶୀଳ ଓ ଦଳିତ ଶ୍ରମିକ (ଲେବର) ଦଳ ମଧ୍ୟରେ ବିଶେଷ ପାର୍ଥକ୍ୟ ନଥିଲା ।

# ତିନୋଟି ଫାଶିଖୁଣ୍ଟ

"ଦିଲ୍ ସେ ନ ନିକ୍‌ଲେଗି ମରକର ଭି ବତନ୍ କି ଉଲଫତ୍,
ମେରି ମିଟ୍ଟି ସେ ଭି ଖୁସ୍‌ବୋ ବତନ "ଆଏଗ" ।

ଅର୍ଥାତ୍ ମୋର ମୃତ୍ୟୁ ପରେ ମଧ୍ୟ ମୋ ମନରେ ଦେଶ ମାତୃକା ଲାଗି ପ୍ରେମ ଲାଖି ରହିବ । ମୋ ମୃତ ଶରୀର ମାତୃଭୂମିର ସୁଗନ୍ଧିକୁ ବିଚ୍ଛୁରିତ କରିବ ।

ଫାଶିକାଠାରେ ଝୁଲିବା ପୂର୍ବରୁ ଏହି ଘୋଷଣା କରିଥିଲେ ଭଗତ୍‌ସିଂହ । ଫାଶି ମଞ୍ଚକୁ ଯିବା ପୂର୍ବରୁ ସେ ଲେନିନ୍‌ଙ୍କ ରଚିତ ରାଷ୍ଟ୍ର ଓ ବିପ୍ଳବଟି ପଢ଼ା ଶେଷ କରିବାକୁ ଆତତାୟୀମାନଙ୍କୁ ଅପେକ୍ଷା କରିବା ଲାଗି କହିଥିଲେ । ସାଥୀମାନଙ୍କ ସହ ଜେଲ୍‌ରେ ମାର୍କ୍ସୀୟ ପୁସ୍ତକଗୁଡ଼ିକୁ ଅଧ୍ୟୟନ କରୁଥିଲେ । ବନ୍ଦୀଶାଳାରେ ସେ ବୈପ୍ଳବିକ ପ୍ରବନ୍ଧମାନ ଲେଖୁଥିଲେ ।

ବ୍ରିଟିଶ ଶାସକମାନେ ଫାଶିଦଣ୍ଡରେ ଦଣ୍ଡିତ ବ୍ୟକ୍ତିମାନଙ୍କୁ ବଡ଼ିଭୋରରୁ ଫାଶିକାଠରେ ଝୁଲାଉଥିଲେ । ଏହା ହିଁ ଥିଲା ଫାଶି ଦେବାର ମୁହୂର୍ତ୍ତ । ମାତ୍ର ଭଗତ୍‌ସିଂହ, ରାଜଗୁରୁ ଓ ଶୁକଦେବଙ୍କୁ ଫାଶିଦେବାର ସମୟକୁ ବଦଳାଇ ସନ୍ଧ୍ୟା ୭ଘଣ୍ଟା ୩୩ ମିନିଟ୍‌ରେ କାର୍ଯ୍ୟକାରୀ କରାଯାଇଥିଲା ।

ଗାନ୍ଧୀ-ଇରୱଇନ୍ ଚୁକ୍ତି ୧୯୩୧ ମାର୍ଚ୍ଚ ୪ ତାରିଖରେ ସ୍ୱାକ୍ଷରିତ ହୋଇଥିଲା । ଭାଗତ୍‌ସିଂହ ପ୍ରମୁଖଙ୍କୁ ଫାଶିଦଣ୍ଡରୁ ମୁକ୍ତ କରିବା ଲାଗି ଗାନ୍ଧିଜୀ ଭାଇସ୍‌ରାୟଙ୍କୁ ନିବେଦନ କରିଥିଲେ । ତାହା ବିଚାର କରିବେ ବୋଲି ଭାଇସ୍‌ରାୟ ଇର୍‌ଉଇନ୍ ଜବାବ ଦେଇଥିଲେ । ଅଥଚ ଏହାର ୧୯ ଦିନ ପରେ ଏ ଜାତିର ଗର୍ବ, ଭଗତ୍‌ସିଂହ, ରାଜଗୁରୁ, ଶୁକଦେବ ହସି ହସି ମାତୃଭୂମିର ଜୟଗାନ କରି ବେକରେ ଫାଶି ଦଉଡ଼ି ବାନ୍ଧିବାକୁ ଗ୍ରିବା ବଢ଼ାଇଦେଇଥିଲେ ।

ଏହି ଘଟଣାକୁ ଗୋପନରେ ରଖିବାକୁ ସନ୍ଧ୍ୟାରେ ଫାଶି ଦିଆଗଲା । ମାତ୍ର ଜେଲ୍‌ରେ ଅନ୍ୟ ବନ୍ଦୀମାନେ ଜାଣିପାରି ସ୍ଳୋଗାନ ଦେଇ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ମୃତ ଶରୀରଗୁଡ଼ିକୁ ଜେଲ୍ ଫାଟକ ବାଟରେ ନେଲେ ବାହାରେ ଜନତା ଜାଣି ଉତ୍‌କ୍ଷିପ୍ତ ହୋଇଉଠିବେ; ଏହି ଆଶଙ୍କାରେ ଜେଲ୍‌ଟିର ମେଘନାଦ ପାଚେରୀକୁ ଗୋଟିଏ କୋଣକୁ ଭାଙ୍ଗି ଶହୀଦ୍‌ମାନଙ୍କ ଶବକୁ ଫିରୋଜପୁରକୁ ନିଆଗଲା । ତମସାଚ୍ଛନ୍ନ ଗଭୀର ରାତିରେ ଗୋଟିଏ ମାତ୍ର ଜୁଇରେ ତିନୋଟି ଶବକୁ ରଖି ଜଳାଇ ଦିଆଗଲା ଏବଂ ଦଗ୍ଧ ଶରୀରଗୁଡ଼ିକୁ ଶତଦ୍ରୁ ନଦୀରେ ଜଳରେ ନିକ୍ଷେପ କରାଗଲା ।

ପୁଲିସ୍ ଦଳ ଚାଲିଗଲା ପରେ ଗ୍ରାମବାସୀମାନେ ଜଳରୁ ଶହୀଦମାନଙ୍କ ଦଗ୍ଧ ହାଡ଼କୁ ଗୋଟେଇ ଆପଣାର ବିଧି ବିଧାନ ଅନୁସାର ଦାହ କରିଥିଲେ । ତତ୍କାଳୀନ ପଞ୍ଜାବ

ସରକାର କେନ୍ଦ୍ର ସରକାରଙ୍କୁ ଯେଉଁ ତାରବାର୍ତ୍ତା ଦେଇଥିଲେ ସେଥିରେ ଥିଲା "ଭଗତ୍‌ସିଂହ, ରାଜଗୁରୁ, ଶୁକଦେବଙ୍କୁ ମାର୍ଚ୍ଚ ୨୩ ତାରିଖ ସନ୍ଧ୍ୟା ୭।୮ଟାରେ ଫାଶି ଦିଆଯିବ । ମାର୍ଚ୍ଚ ୨୪ ସକାଳେ ଏହି ସମ୍ବାଦ ଲାହୋରରେ ପ୍ରଚାରିତ ହେବ ।"

ଫାଶି ଦେବାପରେ ପଞ୍ଜାବ ସରକାରଙ୍କ ପକ୍ଷରୁ ପ୍ରଚାର କରାଗଲା ଯେ, "ଏତଦ୍ୱାରା ଜନସାଧାରଣଙ୍କୁ ଜଣାଇଦିଆଯାଉଛି ଯେ, ଗତ ସନ୍ଧ୍ୟାରେ ଫାଶି ପାଇଥିବା ଭଗତ୍‌ସିଂହ, ରାଜଗୁରୁ, ଶୁକଦେବଙ୍କ ଶବକୁ ଶତଦ୍ରୁ ନଦୀ ତଟରେ ଶିଖ୍ ଓ ହିନ୍ଦୁ ପରମ୍ପରା ଅନୁଯାୟୀ ଦାହ କରାଯାଇଛି ଏବଂ ଚିତାଭସ୍ମକୁ ନଦୀରେ ନିକ୍ଷେପ କରାଯାଇଛି ।" ଫାଶି ପରେ ସାରାଦେଶରେ ଚାରିଆଡ଼େ ବିକ୍ଷୋଭ, ପ୍ରତିବାଦ ପ୍ରତିଧ୍ୱନୀତ ହେଲା । "ଭଗତ୍‌ସିଂହ କରେ ଆବାଜ - ଇନ୍‌କିଲାବ୍ ଜିନ୍ଦାବାଦ୍" ଧ୍ୱନୀ ଗଗନ ପବନକୁ ମୁଖରିତ କରିଚାଲିଲା ।

ନେହେରୁ ୧୯୩୦ ଅକ୍ଟୋବରର ଏକ ଜନସଭାରେ ଭାଇସ୍‌ରାୟଙ୍କୁ ଲକ୍ଷ କରି କହିଥିଲେ -

"ତାଙ୍କ ସହିତ ମୁଁ ଏକମତ କି ଅମତ ତାହା ବିଚାର୍ଯ୍ୟ ନୁହେଁ । ଭଗତ୍‌ସିଂହଙ୍କ ସାହସ ଓ ଆତ୍ମୋତ୍ସର୍ଗ ଲାଗି ପ୍ରଶଂସାରେ ମୋର ହୃଦୟ ଭରପୁର । ଭଗତ୍‌ସିଂହଙ୍କ ସାହସ ଅତ୍ୟନ୍ତ ବିରଳ । ଏହି ଅଭୂତ ସାହସ ଓ ତା' ପଛରେ ଉଦ୍ଦେଶ୍ୟକୁ ପ୍ରଶଂସା କରିବାକୁ ଆମେ ନିବୃତ୍ତ ହେବୁ ବୋଲି ଯଦି ଭାଇସ୍‌ରାୟ ଭାବୁଥାନ୍ତି ତେବେ ସେ ପ୍ରମାଦ କରୁଛନ୍ତି । ସେ ତାଙ୍କ ନିଜ ହୃଦୟକୁ ପଚାରନ୍ତୁ, ଯଦି ଭଗତ୍‌ସିଂହ ଜଣେ ଇଂରେଜ ଲୋକ ହୋଇଥାନ୍ତେ ଏବଂ ଇଂଲଣ୍ଡ ପାଇଁ କାର୍ଯ୍ୟ କରିଥାନ୍ତେ, ତେବେ ସେ କିପରି ନିଜ ହୃଦୟରେ ଅନୁଭବ ପରିଥାନ୍ତେ ।"

ତା'ପରେ ସେ ଲେଖିଥିଲେ -

"ଶହୀଦୌଁ କା ଚିନ୍ତନ୍ ପର ଲଗେଙ୍ଗେ
ହର ବରଷ ମେଲେ
ବତନ୍ ପର ମରନେୱାଲୋଁ କା
ଯହ ବାକି ନିଶାନ ହୋଗା",

ଅର୍ଥାତ୍ "ଶହୀଦଙ୍କ ମୁକ୍ତି ପାଇଁ ପ୍ରତିବର୍ଷ ମେଳା ହେବ ।
ଦେଶପାଇଁ ପାଣ ଦେବାବାଲାଙ୍କ ଲାଗି ଏହା ହିଁ ହେବ ଶେଷ ନିଶାଣ ।"



# ମୁଁ ଜଣେ ନାସ୍ତିକ କାହିଁକି - ଭଗତ୍‌ସିଂହ

୧୯୨୫ ମସିହା ପର୍ଯ୍ୟନ୍ତ ମୁଁ ଥିଲି ଜଣେ କଳ୍ପନାପ୍ରବଣ, ଆଦର୍ଶବାଦୀ ରାଷ୍ଟ୍ର ବିପ୍ଳବୀ। ସେତେବେଳ ଯାଏଁ ଆମେ ସବୁ ଥିଲୁ କେବଳ ଅଦେଶ ପାଳନକାରୀ ବା ଗୋଡ଼ାଣିଆ। ଆମର ନେତାମାନେ ଯାହା କହୁଥିଲେ, ଆମେ ସେହି ଅନୁସାରେ କାମ କରିଚାଲିଥିଲୁ। ଏବେ ଦାୟୀତ୍ୱ ଆସି ପଡ଼ିଲା ନିଜ କାନ୍ଧରେ। ସମସ୍ତ ଦାୟିତ୍ୱ ନିଜେ ତୁଲାଇବାର ସମୟ ପହଞ୍ଚିଗଲା। କେତେକ ଅନିବାର୍ଯ୍ୟ ପ୍ରତିକ୍ରିୟାର ପ୍ରତିଫଳନ ଯୋଗୁଁ ଆମ ପାର୍ଟି (ହିନ୍ଦୁସ୍ଥାନ ସୋସିଆଲିଷ୍ଟ ରିପବ୍ଲିକାନ୍ ପାର୍ଟି)ର ସ୍ଥିତି ପ୍ରତି ବିପଦ ଘନେଇଆସିଲା। ଏପରିକି ପାର୍ଟିକୁ ଅକ୍ଷତ ରଖିବା ଅସମ୍ଭବ ବୋଧ ହେଲା। ଉତ୍ସାହୀ ସାଥୀମାନେ ବା ନେତାମାନେ ଆମକୁ ବିଦ୍ରୂପ କରିବାରେ ଲାଗିଲେ। ଏପରିକି ଆମ କାର୍ଯ୍ୟକ୍ରମ ଏକ ବ୍ୟର୍ଥ କସରତ ବୋଲି ମୋ ମନରେ ମଧ୍ୟ ସଂଶୟ ଉଙ୍କିମାରିଲା। ମୋ' ସଂଗ୍ରାମୀଜୀବନର ତାହା ଥିଲା ଏକ ସନ୍ଧିକ୍ଷଣ। ସେହି ସଂକଟକୁ କିପରି ଟାଳିଦେବି, ସେ ବିଷୟରେ ଅନେକ ଚିନ୍ତା କଲି। ହଠାତ୍ ମୋ ମନ ଅଗଣାରେ ଶୁଣିବାକୁ ପାଇଲି ଏକ ପ୍ରତିଧ୍ୱନୀ। ଉକ୍ତ ପ୍ରତିଧ୍ୱନୀ ଥିଲା - 'ଅଧ୍ୟୟନ' - ଅର୍ଥାତ୍ 'ପଢ଼ାପଢ଼ି ଆରମ୍ଭ କରିଦେ'। ତୋ'ର ବିରୋଧୀମାନଙ୍କୁ ଚୁପ୍ କରିଦେବା ପାଇଁ ପଢ଼ିବା ଅପରିହାର୍ଯ୍ୟ। ସେମାନଙ୍କର ଯୁକ୍ତି ଖଣ୍ଡନ କରିବାକୁ ସମର୍ଥ ହେବା ନିମନ୍ତେ ଜ୍ଞାନ ହିଁ ଏକମାତ୍ର ସାହା। ଜ୍ଞାନ ଅର୍ଜନ କରିପାରିଲେ ହିଁ ତୋର ଦୃଷ୍ଟିକୋଣକୁ ଉପଯୁକ୍ତ ଭାବରେ ଅନ୍ୟମାନଙ୍କ ସମ୍ମୁଖରେ ଉପସ୍ଥାପନ କରିପାରିବୁ।

ମୁଁ ଅଧ୍ୟୟନ ଆରମ୍ଭ କରିଦେଲି। ପଢ଼ାପଢ଼ି କରିବାରୁ ମୋର ପୂର୍ବ ଧାରଣା ଓ ପୂର୍ବରୁ ଦୃଢ଼ୀଭୂତ ହୋଇ ରହିଥିବା ବିଶ୍ୱାସ ଅସାଧାରଣ ଭାବରେ ରୂପାନ୍ତରିତ ହେବାରେ ଲାଗିଲା। ଆମର ପୂର୍ବସୁରୀମାନେ ହିଂସାତ୍ମକ ପ୍ରଣାଳୀ ଅବଲମ୍ବନ କରିବା ନିମନ୍ତେ ଯେଉଁ ପରାମର୍ଶ ଦେଇଥିଲେ, ମୁଁ ତାହା ଗ୍ରହଣ କରିପାରିଲିନି। ମୋ ଅନ୍ତର ଭିତରୁ ଈଶ୍ୱର ଦର୍ଶନବାଦ କ୍ରମେ ଅପସରି ଗଲା। ନବୁଝି ନଶୁଝି ଅନ୍ଧ ଭାବରେ ସବୁକିଛି ଗ୍ରହଣ କରିନେବା ମୋତେ ଯୁକ୍ତିସଂଗତ ବୋଧ ହେଲାନାହିଁ। ଆମେ କେତେଜଣ ହୋଇଉଠିଲୁ ବେଶି ବେଶି ବାସ୍ତାବବାଦୀ। ଜନ ଆନ୍ଦୋଳନ ପାଇଁ ଅହିଂସା ମାର୍ଗ ଅପରିହାର୍ଯ୍ୟ ବୋଲି

ଆମର ପ୍ରତ୍ୟୟ ହେଲା । ନିହାତି ଦରକାର ନପଡ଼ିଲେ ବଳ ପ୍ରୟୋଗ ନକରିବା ପାଇଁ ଆମେ ପ୍ରତିଶ୍ରୁତିବଦ୍ଧ ହେଲୁ । କେଉଁ ଆଦର୍ଶକୁ ଅଶ୍ରୟକରି ଆମେ ସଂଗ୍ରାମ ଚଳାଇବୁ, ସେ ବିଷୟରେ ଆଗେ ସ୍ପଷ୍ଟ ଧାରଣା କରିନେବା ପାଇଁ ଆମେ ନିଷ୍ପତ୍ତି କଲୁ । ସେତେବେଳେ ଆମ ହାତରେ କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ନଥିଲା । ତେଣୁ ବିଶ୍ୱର ବିଭିନ୍ନ ରାଷ୍ଟ୍ରରେ ଦେଖାଦେଇଥିବା ବିପ୍ଲବ ତଥା ଆନ୍ଦୋଳନର ଇତିହାସ ଅନୁଧ୍ୟାନ କରିବାରେ ମୁଁ ଲାଗିପଡ଼ିଲି । ମୋ ହାତରେ ଥିଲା ପର୍ଯ୍ୟାପ୍ତ ସମୟ । ମୁଁ ବିପ୍ଲବୀ ନେତା ବାକୁନିନ୍‌ଙ୍କ ଜୀବନୀ ପଢ଼ିନେଲି । ସାମ୍ୟବାଦର ଜନକ କାର୍ଲମାର୍କ୍ସଙ୍କ ଭାବଧାରା ବିଷୟରେ ଅବଗତ ହେଲି । ନିଜ ଦେଶରେ ସଫଳତାର ସହ ଆନ୍ଦୋଳନ ଚଳାଇଆସିଥିବା ଲେନିନ୍, ଟ୍ରଟସ୍କି ଓ ଅନ୍ୟମାନଙ୍କ ବିଷୟରେ ମଧ୍ୟ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ କଲି । ସେମାନେ ପ୍ରତ୍ୟେକ ଥିଲେ ନାସ୍ତିକ । ୧୯୨୬ ମସିହା ଶେଷବେଳକୁ ମୁଁ ଦୃଢ଼ନିଶ୍ଚିତ ହୋଇଗଲି ଯେ, ସର୍ବଶକ୍ତିମାନ ପୁରୁଷୋତ୍ତମଙ୍କ ସ୍ଥିତି ସମ୍ବନ୍ଧରେ ରହିଆସିଥିବା ଧାରଣା ସମ୍ପୂର୍ଣ୍ଣ ଭିତ୍ତିହୀନ । ସେ ବିଶ୍ୱର ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଏବଂ ସଂହାରକର୍ତ୍ତା ବୋଲି ଯେଉଁ ମତବାଦ ପ୍ରଚଳିତ, ତାହା ଅମୂଳକ । ମୁଁ ଏ ବିଷୟରେ ମୋ'ର ସାଥୀମାନଙ୍କ ସହ ଆଲୋଚନା କଲି । ମୋ'ର ମତକୁ ଅତି ପ୍ରଞ୍ଜଳ ଏବଂ ସ୍ୱଚ୍ଛ ଭାବରେ ସେମାନଙ୍କ ସମ୍ମୁଖରେ ଉପସ୍ଥାପନ କଲି । ମୁଁ ହୋଇଗଲି ଜଣେ ଅସନ୍ଦିଗ୍ଧ ନାସ୍ତିକ ।

୧୯୨୭ ମସିହା ମଇ ମାସରେ ଲାହୋରରେ ମୋତେ ଗିରଫ କରିନିଆଗଲା । ଏହି ଗିରଫଦାରି ମୋ ପାଇଁ ଥିଲା ଏକ ବିସ୍ମୟ । ସେମାନେ ମୋତେ ଜଣାଇଦେଲେ ଯେ, ବିପ୍ଲବୀମାନଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ମୁଁ ତଥ୍ୟ ଯୋଗାଇଦେଲେ ମତେ ବନ୍ଦୀ ଜୀବନଯାପନ କରିବାକୁ ପଡ଼ିବନି । ପକ୍ଷାନ୍ତରେ ଅଭିଯୋଗ ସ୍ୱୀକାର କରିଛି ବୋଲି ମୋତେ ମୁକ୍ତ କରିଦିଆଯିବ; ଏପରି ପୁରସ୍କୃତ କରାଯିବ ମଧ୍ୟ । ଏଭଳି ପ୍ରସ୍ତାବ ଶୁଣି ମୁଁ ନହସି ରହିପାରିଲିନି । କାରଣ ତାହା ଥିଲା ଏକ ପ୍ରବଞ୍ଚନା । ଆମ ଆଦର୍ଶରେ ଅନୁପ୍ରାଣିତ କୌଣସି ବ୍ୟକ୍ତି ନିଜ ଦେଶରେ ନିରିହ ଜନସାଧାରଣଙ୍କ ଉପରକୁ ବୋମା ନିକ୍ଷେପ କରବା ଥିଲା କଳ୍ପନାତୀତ ।

ଦିନେ ସକାଳୁ ସକାଳୁ ଆସି ପହଞ୍ଚିଗଲେ ମିଷ୍ଟର ନିଉମ୍ୟାନ୍ । ନିଉମ୍ୟାନ୍ ଥିଲେ ଗୁଇନ୍ଦା ବିଭାଗର ବରିଷ୍ଠ ଅଧ୍ୟକ୍ଷକ । ପ୍ରଥମେ ପ୍ରଥମେ ସେ ମୋ ପ୍ରତି ଖୁବ୍ କୋମଳ ବ୍ୟବହାର ପ୍ରଦର୍ଶନ କଲେ । କିଛି ସମୟ ଧରି ବେଶ୍ ଅନୁକମ୍ପାଶୀଳ ବାକ୍ୟମାନ ଉଚ୍ଚାରଣ କରି ତା'ପରେ ପ୍ରକାଶ କଲେ ନିଜର ଅସଲ ରୂପ । ସେ ମୋତେ ଜଣାଇଦେଲେ ଯେ, ମୁଁ ଯଦି ତାଙ୍କ କହିବା ମୁତାବକ ବିବୃତ୍ତି ନଦିଏ, ତେବେ କାକୋରୀ ମକଦମା ଏବଂ ଦଶହରା ସମୟର ବୋମା ଫିଙ୍ଗା ଜନିତ ମୃତ୍ୟୁ ପାଇଁ

ମୋତେ ଦାୟୀ କରି ମାମଲା ରୁଜୁ କରାହେବ । ସେ ପୁଣି ମୋତେ ସତର୍କ କରିଦେଲେ ଯେ, ମୋତେ କାରାଦଣ୍ଡ ବା ଫାଶି ଦେବା ପାଇଁ ତାଙ୍କ ହାତରେ ଯଥେଷ୍ଟ ବଳିଷ୍ଠ ପ୍ରମାଣମାନ ରହିଛି । ମୁଁ ଜାଣିଥିଲି ଯେ, ମୁଁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ; କିନ୍ତୁ ସେତେବେଳେ ପୁଲିସ ଯାହା ଚାହୁଁଥିଲା, ତାହା କରିପାରୁଥିଲା । ସେଦିନ ଆଉଜଣେ ପୁଲିସ୍ ଅଫିସର ମୋତେ ସାକ୍ଷାତ କଲେ । ସେ ମୋତେ ପ୍ରବର୍ତ୍ତାଇଲେ ଯେ, ମୁଁ ଏଣିକି ନିୟମିତ ଭାବରେ ଦିନକୁ ଯେପରି ଦୁଇଥର ଲେଖାଏ ଈଶ୍ୱରଙ୍କୁ ପ୍ରାର୍ଥନା କରେ । ମୁଁ ତାଙ୍କର ପ୍ରରୋଚନାରେ ଭଳିଗଲିନି । ବର୍ତ୍ତମାନ ତ ମୁଁ ଜଣେ ନାସ୍ତିକ । ତେଣୁ ମୋ ପାଇଁ ପରୀକ୍ଷାର ବେଳ ଆସି ପହଞ୍ଚିଗଲା । ମୋତେ ବର୍ତ୍ତମାନ ନିର୍ଣ୍ଣୟ କରିବାକୁ ପଡ଼ିବ ଯେ, ମୁଁ କେବଳ ଶାନ୍ତିରେ ଏବଂ ମଉଜରେ କଟିଯାଉଥିବା ଦିନଗୁଡ଼ିକ ପାଇଁ ନାସ୍ତିକ ନା ମୋ ମୁଣ୍ଡ ଉପରକୁ ବିପଦ ମାଡ଼ିଆସୁଥିଲାବେଳେ ମଧ୍ୟ ମୋର ନାସ୍ତିକତା ବଜାୟ ରହିବ ? ଏବିଷୟରେ ମୁଁ ବହୁତ ସମୟ ଧରି ଚିନ୍ତା କଲି । ଏହାର ଭଲ ମନ୍ଦ ପରିଣାମ ବିଷୟରେ ମନ ଭିତରେ ତଉଲି ନେଲି । ତା' ପରେ ମୁଁ ନିଷ୍ପତ୍ତି ନେଲି ଯେ, ପରିଣାମ ଯାହା ହେଉ ପଛେ ମୁଁ ଭଗବାନଙ୍କ ଉପରେ ବିଶ୍ୱାସ ସ୍ଥାପନ କରିବିନି କି ତାଙ୍କୁ ପ୍ରାର୍ଥନା କରିବିନି ବାସ୍ । ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କଲିନି । ତାହା ଥିଲା ମୋ ପାଇଁ ଏକ ଚରମ ପରୀକ୍ଷା । ମୁଁ ସେହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଗଲି । ଅନ୍ୟ କିଛିର ବିନିମୟରେ ମୁଁ ମୋ'ର ଜୀବନ ରକ୍ଷା ପାଇଁ ଆଦୌଂ ଲାଳାୟିତ ହେଲିନାହିଁ । ମୁଁ ଅତି ଦୃଢ଼ ଭାବରେ ଈଶ୍ୱରଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କଲି ଏବଂ ଆଜିପର୍ଯ୍ୟନ୍ତ କରିଚାଲିଛି ମଧ୍ୟ । ଏଭଳି ଏକ ପରୀକ୍ଷାରେ ଦୃଢ଼ମନା ରହିପାରିବା ଆଦୌଂ ସହଜସାଧ୍ୟ ନଥିଲା । କାରଣ ଏହା ଅତି ଜଣାଶୁଣା କଥା ଯେ 'ଈଶ୍ୱରବିଶ୍ୱାସ' ଦୁର୍ଦ୍ଦଶାକୁ ଲାଘବ କରିଦିଏ । ଏପରିକି ଜୀବନଯାତ୍ରାକୁ ପ୍ରୀତିକର କରିଦିଏ । ଈଶ୍ୱରଙ୍କ ଉପରେ ଅସ୍ଥା ସ୍ଥାପନ କଲେ ମଣିଷ ପାଏ ସାନ୍ତ୍ୱନା, ପାଏ ଭରସା । ତାଙ୍କର ସହାୟତା ନମିଳିଲେ ମଣିଷ ନିଜ ଉପରେ ନିର୍ଭର କରିବାକୁ ବାଧ୍ୟ ହୁଏ । ପ୍ରବଳ ଝଡ଼ ଏବଂ ବାତ୍ୟାରୂପକ ସମସ୍ୟାଗୁଡ଼ିକୁ ନିଜେ ନିଜେ ମୁକାବିଲା କରିବା କିଛି ପିଲାଖେଳ ନୁହେଁ । ଏଭଳି କଠିନ ପରୀକ୍ଷାଗୁଡ଼ିକର ସମ୍ମୁଖୀନ ହେଲେ ମନ ଭିତରେ ଯଦି କିଛି ଅହଂକାର ଥାଏ, ତାହା ମିଳେଇଯାଏ । ମଣିଷ ସାଧାରଣ ବିଶ୍ୱାସକୁ ଅସ୍ୱୀକାର କରିବା ନିମନ୍ତେ ସାହସ ସଞ୍ଚୟ କରିପାରେନି । ଦୁର୍ଦ୍ଦିନରେ ଯେଉଁ ବ୍ୟକ୍ତି ଈଶ୍ୱରଙ୍କ ଶରଣ ହେବାରେ ବିମୁଖ, ସେ କ୍ଷେତ୍ରରେ ହୁଏତ ଧରିନିଆଯାଇପାରେ ଯେ ନିଜର ଅହଂକାରକୁ ଛାଡ଼ି ସେ ହୁଏତ ଅନ୍ୟ କୌଣସି ଉତ୍ସରୁ ଶକ୍ତି ଆହରଣ କରିପାରୁଛି । ବର୍ତ୍ତମାନ ମୋ ପାଇଁ ସେହିଭଳି ଏକ ସମୟ ଉପନୀତ । ମକଦମାରେ ଅଦାଲତ କି ରାୟ ଦେବେ, ତାହା ସମସ୍ତେ ଭଲଭାବରେ

ଜାଣନ୍ତି । ଆଉ ମାତ୍ର ସପ୍ତାହକ ଭିତରେ ରାୟ ପ୍ରକାଶ ପାଇବ । ମୋତେ ମିଳିବ ଫାଶିଦଣ୍ଡ; କିନ୍ତୁ ଏକ ମହତ ଉଦ୍ଦେଶ୍ୟ ପାଇଁ ଯେ ମୁଁ ବଳି ପଡ଼ିବାକୁ ଯାଉଛି, ଏହାଠାରୁ ବଳି ଆଉ କି ସାନ୍ତ୍ୱନା ଅଛି ମୋ ନିମନ୍ତେ ? ମରିଗଲା ପରେ ଜଣେ ଈଶ୍ୱରବିଶ୍ୱାସୀ ହିନ୍ଦୁ ହୁଏତ ରାଜପରିବାରରେ ଜନ୍ମ ନେଇ ରାଜା ହେବାର ସୌଭାଗ୍ୟ ଉପଭୋଗ କରିପାରେ । ଜଣେ ନୈଷ୍ଠିକ ମୁସଲ୍‌ମାନ କି ଖ୍ରୀଷ୍ଟିଆନ ନିଜର ଯାତନା ଏବଂ ତ୍ୟାଗର ପ୍ରତିଦାନ ସ୍ୱରୂପ ସ୍ୱର୍ଗସୁଖ ଲାଭ କରିପାରେ; କିନ୍ତୁ ମୁଁ ପାଇବି କ'ଣ ? ମୁଁ ତ ଭଗବାନଙ୍କ ଉପରେ ବିଶ୍ୱାସ ରଖେନି । ତେଣୁ ମୋ ଗଳାରେ ଫାଶିଦଉଡ଼ିର ଫାସକୁ ଭିଡ଼ି ଦେଇ ମୋ ଗୋଡ଼ ତଳୁ କାଠପଟାକୁ ଘୁଞ୍ଚେଇ ନେବା ମାତ୍ରେ ତାହା ହିଁ ହେବ ମୋ'ର ଶେଷ ମୁହୂର୍ତ୍ତ । ଆଧ୍ୟାତ୍ମ ବିଦ୍ୟାରେ ଉଲ୍ଲେଖ ରହିଥିବା ମୋ'ର ସେହି ଆତ୍ମା ସେହି ମୁହୂର୍ତ୍ତରେ ହିଁ ଲଭିବ ଅନ୍ତିମ ସମାଧି । ବାସ୍, ଏହା ବାହାରେ ଆଉକିଛି ସମ୍ଭବ ନୁହଁ । ମୁଁ ଯଦି ତାକୁ ଠିକ୍ ଭାବରେ ନିଏ, ତେବେ ମୋ'ର ସେହି ବିପ୍ଳବୀ ଜୀବନର ଏହି ଅନରାଡ଼ମ୍ବର ଅନ୍ତିମ ପରିଣତି ହିଁ ହେବ ମୋ'ର ଅବଦାନର ପୁରସ୍କାର । ଏହାକୁ ଛାଡ଼ି ଓ ଏହା ବାହାରେ ମୁଁ ଅନ୍ୟ କୌଣସି ପ୍ରକାର ପୁରସ୍କୃତ ହେବାର ଲାଳଷା ପୋଷଣ କରୁନି । ଭାରତମାତାର ସ୍ୱାଧୀନତା ପାଇଁ ମୁଁ ମୋର ଜୀବନ ଉତ୍ସର୍ଗ କରିଛି । ଏହାକୁ ଛାଡ଼ି ମୁଁ ଅନ୍ୟକିଛି କରି ପାରିନଥାନ୍ତି । ଯେଉଁଦିନ ଅଗଣିତ ନରନାରୀ ମଣିଷର ସେବାରେ ନିଜକୁ ସମ୍ପୂର୍ଣ୍ଣ ବିନିଯୋଗ କରିପାରିବେ ଏବଂ ଦୁର୍ଦ୍ଦଶାଗ୍ରସ୍ତ ମାନବକୁ ଦାସତ୍ୱ ଶୃଙ୍ଖଳରୁ ମୁକ୍ତ କରିବା ନିମନ୍ତେ ଯତ୍ନବାନ ହେବେ, ସେହିଦିନ ହିଁ ମୁକ୍ତିଯୁଗର ଉଦ୍‌ଘାଟନୀ ଉତ୍ସବ ପାଳିତ ହେବ ।

ତୁମେ ଯେତେବେଳେ କୌଣସି ପ୍ରଚଳିତ ବିଶ୍ୱାସ ବିରୋଧରେ ସ୍ୱର ଉତ୍ତୋଳନ କର, ତୁମେ ଯେତେବେଳେ ବେଶ୍ ମହତ ଓ ସମାଲୋଚନାର ଉର୍ଦ୍ଧ୍ୱରେ ବୋଲି ସ୍ୱୀକୃତ, କୌଣସି ନେତା କିମ୍ବା ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିକୁ ସମାଲୋଚନା କରିବାରେ ପ୍ରୟାସୀ ହୁଅ, ସେତେବଳେ ତୁମ ଯୁକ୍ତିର ସାରବତ୍ତାକୁ ଗ୍ରହଣ କରିନପାରି ଅନେକେ ତୁମକୁ ବୃଥା ଅହଂକାରୀ ଏବଂ ବଡ଼ିମା ପ୍ରଦର୍ଶନକାରୀ ବୋଲି ନିନ୍ଦା କରିଥା'ନ୍ତି; କିନ୍ତୁ ଏହା କେବଳ ସେମାନସିକ ସ୍ଥାଣୁତାକୁ ହିଁ ପ୍ରମାଣ କରିଥାଏ । ସମାଲୋଚନା ଏବଂ ମୁକ୍ତ ଚିନ୍ତା ଏହି ଦୁଇଟି ଗୁଣ ପ୍ରତ୍ୟେକ ବିପ୍ଳବୀ ପାଇଁ ଅପରିହାର୍ଯ୍ୟ । 'ମହାତ୍ମାଜୀ ଏକ ମହାନ ପୁରୁଷ, ତାଙ୍କୁ ସମାଲୋଚନା କରାଯାଇ ପାରିବ ନାହିଁ । ରାଜନୀତି ହେଉ, ଧର୍ମନୀତି ହେଉ, ଅର୍ଥନୀତି ହେଉ କି ଆଚରଣବିଧି ହେଉ, ତାଙ୍କର ମତ ହିଁ ଶିରଧାର୍ଯ୍ୟ । ତାଙ୍କ କଥାରେ ତୁମର ହୃଦ୍‌ବୋଧ ହେଉଅଛି – 'ହଁ, ମହାତ୍ମାଜୀ ଯାହା କହୁଛନ୍ତି, ତାହା ଠିକ୍' ଏଭଳି ମନୋବୃତ୍ତି କିନ୍ତୁ ପ୍ରଗତିର ପରିପନ୍ଥି; ବରଂ ସୁସ୍ପଷ୍ଟ ଭାବରେ ପ୍ରତିକ୍ରିୟାତ୍ମକ ।

ଆମର ପୂର୍ବପୁରୁଷମାନେ କୌଣସି ଏକ ନୈର୍ବ୍ୟକ୍ତିକ ପୁରୁଷୋତ୍ତମଙ୍କୁ ସର୍ବଶକ୍ତିମାନ ଈଶ୍ୱର ବିଚାରି ତାଙ୍କଠାରେ ଅଶେଷ ବିଶ୍ୱାସ ସ୍ଥାପନ କରିଥିଲେ । ଏହା ବୋଲି ଯଦି କେହି ଏହି ବିଶ୍ୱାସର ପ୍ରାସଙ୍ଗିକତା ସମ୍ବନ୍ଧରେ ପ୍ରଶ୍ନ କରେ ବା ତଥାକଥିତ ସେହି ଭଗବାନଙ୍କର ସ୍ଥିତିକୁ ଆହ୍ୱାନ ଜଣାଏ, ସେସେ ହେବ ପାପିଷ୍ଠ, ସେ ହେବ ସ୍ୱଧର୍ମଦ୍ରୋହୀ ? ତା'ର ଯୁକ୍ତି ଯଦି ଅକାଟ୍ୟ ପ୍ରମାଣିତ ହୁଏ, ସେ ଯଦି ପ୍ରତିଯୁକ୍ତି ନିକଟରେ ବଶ୍ୟତା ସ୍ୱୀକାର ନକରେ, ସର୍ବଶକ୍ତିମାନ ଈଶ୍ୱରଙ୍କର ପ୍ରଚଣ୍ଡ ଶାସ୍ତି ପ୍ରତି ଭ୍ରୂକ୍ଷେପ ନକରେ, ତାହା ହେଲେ କ'ଣ ଆମେ ତାକୁ ଅହଂକାରୀ କହି ଅପବାଦ ଦେବା ? ତା'ର ସମଗ୍ର ସତ୍ତାକୁ 'ବୃଥା ଦାମ୍ଭିକତା' ଭିତରେ ସୀମିତ କରିଦେବା ?

ମୁଁ ପ୍ରଥମେ ପରିଷ୍କାର ଭାବରେ କହିରଖେ ଯେ, ମୋ'ର ଅହଂକାର ବା ଦାମ୍ଭିକତା, ମୋ'ର ନାସ୍ତିକତା ପାଇଁ ଆଦୌ ଦାୟୀ ନୁହେଁ । ମୋ'ର ଯୁକ୍ତିର ଧାରା ସନ୍ଦେହମୋଚନ କରିପାରୁଛି କି ନା, ତାହା ମୁଁ ତ ବିଚାର କରିପାରିବିନି, ପାଠକମାନେ ହିଁ ତା'ର ବିଚାରକ । ମୁଁ ଜାଣେ ଯେ ସାମ୍ପ୍ରତିକ ପରିସ୍ଥିତିରେ ମୋ'ର ଭଗବତ୍ ବିଶ୍ୱାସ ମୋ' ଜୀବନର କିଛି ସ୍ୱାଚ୍ଛନ୍ଦ୍ୟ ଆଣିପାରନ୍ତା ଓ ମୋ'ର ଦୁର୍ଦ୍ଦଶା ଲାଘବ କରିଦିଅନ୍ତା । ମୁଁ ଈଶ୍ୱରଙ୍କ ଉପର ଆସ୍ଥା ସ୍ଥାପନ କରୁନଥିବାରୁ ପରସ୍ଥିତି ଅଧିକ ନିରସ ଓ କର୍କଶ ବୋଧ ହୋଇପାରୁଥାଏ । ସାମାନ୍ୟ ଆଧ୍ୟାତ୍ମିକତା ମଧ୍ୟ ଜୀବନକୁ କାବ୍ୟିକ କରିଦେଇ ପାରନ୍ତା; କିନ୍ତୁ ଭାଗ୍ୟର ସମ୍ମୁଖୀନ ହେବାପାଇଁ ମୋ'ର କୌଣସି ଉଲ୍ଲାସର ପ୍ରୟୋଜନ ନାହିଁ । ମୁଁ ଜଣେ ସମ୍ପୂର୍ଣ୍ଣ ବାସ୍ତବବାସୀ । ମୁଁ ପ୍ରବୃତ୍ତିର ଦାସ ହେବାକୁ ଚାହେଁନା । ବିଚାରଶକ୍ତି ପ୍ରୟୋଗ କରି ମୁଁ ପ୍ରବୃତ୍ତି ଉପରେ ପ୍ରଭୁତ୍ୱ ବିସ୍ତାର କରିବାର ପ୍ରୟାସୀ । ଏହି ପ୍ରୟାସରେ ସବୁବେଳେ ଯେ ମୋତେ ସଫଳତା ମିଳେ, ତାହାନୁହେଁ; କିନ୍ତୁ ପ୍ରଯତ୍ନ କରିବା ଏବଂ ପ୍ରଚେଷ୍ଟା ଅବ୍ୟାହତ ରଖିବା ହେଉଛି ମଣିଷର କର୍ତ୍ତବ୍ୟ । ହେଲେ ସଫଳତା ନିର୍ଭର କରେ ଆକସ୍ମିକତା ଏବଂ ପରିବେଶ ଉପରେ ।

ଯେଉଁ ବ୍ୟକ୍ତି ପ୍ରଗତି ପ୍ରତି ଅଙ୍ଗୀକାରବଦ୍ଧ, ସେ ପୁରାତନ ଚଳଣି ଏବଂ ବିଶ୍ୱାସକୁ ଅବିଶ୍ୱାସ କରିବା, ଆହ୍ୱାନ୍ ଜଣେଇବା ଓ ସମାଲୋଚନା କରିବାକୁ ବାଧ୍ୟ । ପ୍ରତ୍ୟେକ ପ୍ରଚଳିତ ବିଶ୍ୱାସକୁ ପୁଙ୍ଖାନୁପୁଙ୍ଖ ଭାବରେ ଅନୁଶୀଳନ କରି ତା'ର ସାରବତ୍ତା ବା ଅସାରତା ସାବ୍ୟସ୍ତ କରିବା ତ'ର କର୍ତ୍ତବ୍ୟ । ବିଚାରସିଦ୍ଧ ତାଥା ଯୁକ୍ତିସମ୍ମତ କୌଣସି ତତ୍ତ୍ୱ ବା ଦର୍ଶନକୁ ବିଶ୍ୱାସ କରିନେବା ସ୍ୱାଗତଯୋଗ୍ୟ । କିନ୍ତୁ ବେଳେବେଳେ ବିଚାରରେ ବିଭ୍ରାଟ ଘଟିବା ସମ୍ଭବ, ବିଭ୍ରାନ୍ତିର ଅନୁପ୍ରବେଶ ମଧ୍ୟ ଅସ୍ୱାଭାବିକ ନୁହେଁ । କିନ୍ତୁ ଯୌକ୍ତିକତା ଅନୁଗାମୀ ହୋଇଥିବାରୁ ସେ ଅବିଳମ୍ବେ ନିଜକୁ ସଂଶୋଧନ କରିନେଇପାରେ । ହେଲେ କେବଳ ମାତ୍ର ବିଶ୍ୱାସ ଅଥବା ଅନ୍ଧବିଶ୍ୱାସ ଖୁବ୍ ମାରାତ୍ମକ । ଏହା ମସ୍ତିଷ୍କକୁ ସ୍ଥାଣୁ

କରିଦିଏ, ବ୍ୟକ୍ତିକୁ କରିଦିଏ ପ୍ରତିକ୍ରିୟାଶୀଳ । ଯେଉଁ ବ୍ୟକ୍ତି ନିଜକୁ ବାସ୍ତବବାଦୀ ବୋଲି ଦାବି କରେ, ସେ ସମସ୍ତ ପୁରାତନ୍ ବିଶ୍ୱାସକୁ ଅନୁଶୀଳନ କରିବାରେ ପ୍ରୟାସୀ ହେବା ଉଚିତ୍ । ଯୁକ୍ତିସଙ୍ଗତ ପ୍ରମାଣିତ ନହେଲେ ସେଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିବା ସ୍ପୃହଣୀୟ । ତେଣୁ ସେ ପ୍ରଥମେ ନିଜ ମନରୁ ପୁରାତନକୁ ପରିହାର କରି ଏକ ନୂତନ ଦର୍ଶନ ପାଇଁ ସ୍ଥାନ ବରିନେବା ଦରକାର । ତେବେ ସକାରାତ୍ମକ ଦୃଷ୍ଟିକୋଣ ନେଇ କାର୍ଯ୍ୟରମ୍ଭ କଳାପରେ ପ୍ରାସଙ୍ଗିକତାକୁ ଚାହିଁ ଏବଂ ଉପଯୋଗିତାକୁ ବିଚାରକୁ ନେଇ କେତେକ ପୁରାତନ ବିଶ୍ୱାସକୁ ଗ୍ରହଣ କରାଯାଇପାରେ ।

ମୋ' ବିଷୟରେ ଅବତାରଣା କଲେ, ମୁଁ ପ୍ରଥମରୁ ସ୍ୱୀକାର କରିନେଉଛି ଯେ ମୁଁ ଏହି ଦିଗଟି ଉପରେ ବେଶ୍ କିଛି ଅନୁଧ୍ୟାନ କରିଛି । ପ୍ରାଚ୍ୟ ଦର୍ଶନ ଅନୁଧ୍ୟାନ କରିବା ପାଇଁ ମୋ'ର ଖୁବ୍ ଇଚ୍ଛା ଥିଲା; କିନ୍ତୁ ସେଥିପାଇଁ ମୋତେ ସୁଯୋଗ ମିଳିଲାନି । ତେବେ ନାସ୍ତିବାଚକ ଅନୁଧ୍ୟାନ କଥା ଆଲୋଚନା କଲେ ମୁଁ ଏତିକି କହିବି ଯେ ପୁରାତନ ବିଶ୍ୱାସଗୁଡ଼ିକର ଅକାଟ୍ୟତା ସନ୍ଦେହଜନକ । ଆମେ ପ୍ରକୃତି ଉପରେ ବିଶ୍ୱସ କରୁ । ପ୍ରକୃତି ଉପରେ ମଣିଷର ପ୍ରଭୁତ୍ୱ ସ୍ଥାପନା ହିଁ ପ୍ରଗତିକୁ ବେଗଗାମୀ କରାଇଚାଲିଛି । ପ୍ରକୃତି ଉପରେ ନିୟନ୍ତ୍ରଣ ଜାହିର କରୁଛି ମଣିଷ । 'କୌଣସି ଅଦୃଶ୍ୟ ସଚେତନ ଶକ୍ତି ପଶ୍ଚାତରେ ରହି ପକୃତି ନିର୍ଦ୍ଦେଶ ଦେଇଚାଲିଛି' - ଏଭଳି ମତବାଦକୁ ମୁଁ ଗ୍ରହଣ କରିପାରୁନି ।

ମୁଁ ପଚାରୁଛି ଯେ, କୌଣସି ବ୍ୟକ୍ତି ପାପକାର୍ଯ୍ୟରେ ଲିପ୍ତ ରହିବା ବା ଅପରାଧରେ ଜଡ଼ିତ ହେଲାବେଳେ ତୁମର ସେହି ସର୍ବଶକ୍ତିମାନ ଈଶ୍ୱର ତା'ର କୁକାର୍ଯ୍ୟରେ ବାଧା ଦିଅନ୍ତିନି କାହିଁକି ? ସେ'ତ ନିର୍ବିଘ୍ନରେ ତା'ର କାର୍ଯ୍ୟ ସମ୍ପାଦନ କରିଦିଏ । ଈଶ୍ୱର ତ ଖୁବ୍ ସହଜରେ ତା'ର କାର୍ଯ୍ୟକୁ ବନ୍ଦ କରିଦେଇପାରନ୍ତେ ? ସେ କାହିଁ ଯୁଦ୍ଧଖୋର ବ୍ୟକ୍ତିମାନଙ୍କୁ ନିହତ କରିଦେଉନାହାନ୍ତି; ନିଧନ୍ କରିଦେଉନାହାନ୍ତି ସେମାନଙ୍କ ଅନ୍ତରରେ ଅସ୍ଥାନ ଜମେଇଥିବା ଯୁଦ୍ଧ ତେଜେଇରଖିବାର ମନୋବୃତ୍ତିକୁ ? ଏପରି କରିଦେଲେତ ଲକ୍ଷ ଲକ୍ଷ ନିରୀହ ବ୍ୟକ୍ତିଙ୍କର ଜୀବନ ରକ୍ଷାହୋଇଯାଆନ୍ତା ? ଇଂରେଜ ଶସକମାନଙ୍କ ମନରେ ଭାରତକୁ ସ୍ୱାଧୀନତା ଦେବାର କାମନା ଜାଗ୍ରତ କରାଇବାକୁ କିଏ ଈଶ୍ୱରଙ୍କୁ ମନା କରୁଛି ? ପୁଞ୍ଜିପତିମାନଙ୍କଠାରେ ଶ୍ରମିକାମାନଙ୍କର ଉପକାର କରିବାର ଉତ୍କଣ୍ଠା ଜାତ କରେଇଦେଲେ ତ ଅକାତରେ ନିଜର ଧନ ବିତରଣ କରିଚାଲନ୍ତେ । ଫଳରେ ସମଗ୍ର ମାନବ ସମାଜ ପୁଞ୍ଜିପତିମାନଙ୍କର ଶୋଷଣରୁ ମୁକ୍ତି ପାଇଯାଆନ୍ତା । ତୁମ୍ଭେମାନେ ଯଦି ସାମ୍ୟାବଦର ଉପଯୋଗିତାକୁ ସ୍ୱାଗତ କରୁଥାଅ, ତେବେ ଏହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ତୁମର ସେହି ସର୍ବଶକ୍ତିମାନ ଈଶ୍ୱରଙ୍କୁ ଆହ୍ୱାନ ଜଣାଅ । ଜନମଙ୍ଗଳ ଦୃଷ୍ଟିରୁ ବିଚାର କଲେ ସାମ୍ୟାବାଦର ପ୍ରତିଷ୍ଠା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ; କିନ୍ତୁ ଏହା ଅସାଧ

ବୋଲି କେହି କେହି ବିଚାର କରୁଛନ୍ତି । ତାହା ହେଲେ ଭଗବାନ ତଳକୁ ଓହ୍ଲେଇଆସି ଏ’ ଦିଗରେ ଥିବା ଭୁଲ୍‌ଭଟକା ଏବଂ ସମସ୍ୟାଗୁଡ଼ିକୁ ସୁଧାରି ଦେଉନାହାନ୍ତି ? ମୁଁ ତୁମ୍ଭମାନଙ୍କୁ କହିରଖୁଛି ଯେ ଭଗବାନ ଚାହୁଁଛନ୍ତି ବୋଲି ଇଂରେଜମାନେ ଆମ ଉପରେ ପ୍ରଭୁତ୍ୱ ବିସ୍ତାର କରିଚାଲିଛନ୍ତି, ଏପରି ଧାରଣା କରିନେବା ଭୁଲ୍ । ବରଂ ସତକଥାଟା ହେଉଛି ଯେ, ସେମାନେ ହେଉଛନ୍ତି କ୍ଷମତାଶାଳୀ । ଅମେ ଭୀରୁଦଳ ତାଙ୍କୁ ବିରୋଧ କରିବା ନିମନ୍ତେ ସାହସ ପ୍ରଦର୍ଶନ କରିପାରୁନୁ । ଈଶ୍ୱରଙ୍କ ବଳରେ ବଳିଆନ ହୋଇ ସେମାନେ ଆମକୁ ପରାଧୀନ କରି ରଖିନାହାନ୍ତି । ବରଂ ବନ୍ଧୁକ, କମାଣ, ବୋମା, ଗୁଳି, ପୁଲିସ୍ ଏବଂ ସୈନ୍ୟବାହିନୀର ବଳରେ ବଳିଆନ ହୋଇ ଆମକୁ ପରାଧୀନ କରି ରଖିପାରଛନ୍ତି ସେମାନେ । ଆମର ଉଦାସୀନତା ଏବଂ ନିସ୍ପୃହ ଭାବ ହିଁ ଆମକୁ ଶୋଷଣ କରିବା ନିମନ୍ତେ ସେମାନଙ୍କୁ ପ୍ରୋତ୍ସାହନ ଦେଉଛି । କାହାନ୍ତି ତୁମର ସେ ସର୍ବଶକ୍ତିମାନ ଈଶ୍ୱର ? କେଉଠି ଅଛନ୍ତି ସେ ? କରୁଛନ୍ତି କ’ଣ ? ଭାରତୀୟମାନଙ୍କର ଏହି ନିର୍ଯାତନାକୁ ସେ କ’ଣ ମନଭରି ଉପଭୋଗ କରିଚାଲିଛନ୍ତି ? ସେ କ’ଣ ଜଣେ ନିରୋ ? ସେ କ’ଣ ଜଣେ ଚେଙ୍ଗିଜ୍ ଖାଁ ?

ଏ ପୃଥିବୀ କିପରି ସୃଷ୍ଟି ହେଲା ଏବଂ ପୃଥିବୀ ପୃଷ୍ଠରେ ମଣିଷର ଆବିର୍ଭାବ ହେଲା କିପରି, ସେ ବିଷୟରେ କିଛି କହେ ବୋଲି ମୋତେ ପଚାରୁଛ ତ ? ଏ ସମ୍ପର୍କରେ ତ ଚାର୍ଲସ୍ ଡାର୍‌ଉଇନ୍ ବେଶ୍ କିଛି ଆଲୋକପାତ କରିଛନ୍ତି । ତେଣୁ ତାଙ୍କର ଲେଖାକୁ ଅନୁଧ୍ୟାନ କର । ସୋହନ ସ୍ୱାମୀଙ୍କ ଦ୍ୱାରା ପ୍ରଣିତ ‘କମନ୍ ସେନ୍ସ’ ପୁସ୍ତକ ପାଠ କର । ସେଥିରୁ ତୁମେ ତୁମ ପ୍ରଶ୍ନର ଉତ୍ତର ପାଇଯିବ । ଏହା ହେଉଛି ପ୍ରକୃତିର ବୈଚିତ୍ର୍ୟ, ତା’ରି ଲିଳାଖେଳା । ବିଭିନ୍ନ ପଦାର୍ଥର ଏକ ଆପତ୍ସିକ ମିଶ୍ରଣ ଘଟିଗଲା ନିହାରୀକା ରୂପ ଧାରଣ କରି । ସେଇଥିରୁ ଜନ୍ମ ନେଲା ଏଇ ପୃଥିବୀ । କେବେ ଏପରି ଘଟଣା ଘଟିଲା ବୋଲି ଜାଣିବାକୁ ଚାହଁ ? ତାହେଲେ ଇତିହାସର ପୃଷ୍ଠା ଓଲଟାଅ । ଏହିସବୁ ପ୍ରକ୍ରିୟା ଫଳରେ ଜନ୍ମ ନେଲେ ଭିନ୍ନ ଧରଣର ଜୀବ । ସର୍ବଶେଷରେ ଓ ବହୁଦିନର ବ୍ୟବଧାନ ପରେ ଆବିର୍ଭାବ ଘଟିଲା ମଣିଷର । ଡାର୍‌ଉଇନ୍‌ଙ୍କ ଦ୍ୱାରା ଲିଖିତ ‘ଓର୍‌ଜିନ୍ ଅଫ୍ ସ୍ପେସିଜ୍’ ବା ‘ଜୀବଜାତିର ସୃଷ୍ଟି’ ଶୀର୍ଷକ ପୁସ୍ତକଟିକୁ ମଧ୍ୟ ପଢ଼ିନିଅ । ତା’ ପରେ ପରେ ଯେଉଁସବୁ ପ୍ରଗତି ସାଧିତାହୋଇଛି, ତା’ର ସ୍ରଷ୍ଟା ହେଉଛି ମଣିଷ । ସେ ସତତ ପ୍ରକୃତି ସହିତ ସଂଗ୍ରାମରତ ରହିଆସିଛି । ନିମନ୍ତେ ପ୍ରୟାସ ଚଳେଇଛି । ତା’ର ପରିଣାମରେ ପରିଦୃଷ୍ଟ ହେଉଛି ପ୍ରଗତି ।

ଏହାପରେ ତୁମେ ହୁଏତ ନିହାତି ପିଲାଳିଆ ଏକ ପ୍ରଶ୍ନ ପଚାରିବସିବ । ତୁମ ପ୍ରଶ୍ନର ସାରମର୍ମ ହେଉଛି - ଈଶ୍ୱରଙ୍କ ଯଦି ସତ୍ତା ନଥିଲା, ତେବେ ଲୋକେ ତାଙ୍କୁ

ବିଶ୍ୱାସ କରିବାରେ ଲାଗିଲେ କିପରି ? ମୋ'ର ଉତ୍ତର ଖୁବ୍ ସ୍ପଷ୍ଟ ଓ ସଂକ୍ଷିପ୍ତ । ଯେଉଁପ୍ରକାରେ ସେମାନେ ଭୂତପ୍ରେତ ବା ରାକ୍ଷାସମାନଙ୍କ ସ୍ଥିତିକୁ ବିଶ୍ୱାସ କରିନେଇଥିଲେ, ଠିକ୍ ସେହିପ୍ରକାର ବିଶ୍ୱାସ କରିନେଇଛନ୍ତି ଈଶ୍ୱରଙ୍କୁ । ତେବେ ଉଭୟ ପ୍ରକାର ବିଶ୍ୱାସରେ ରହିଛି ଏକ ମୌଳିକ ପାର୍ଥକ୍ୟ । ପାର୍ଥକ୍ୟଟି ହେଲା, ଈଶ୍ୱର ବିଶ୍ୱାସ ଏକ ସାର୍ବଜନୀନ ବ୍ୟାପାର ଓ ଭଗବତ ଦର୍ଶନ ବେଶ୍ ବିକଶିତ । କେତେକ ଚରମପନ୍ଥୀ ଯୁକ୍ତି କରନ୍ତି ଯେ, କତିପୟ ଚତୁର ବ୍ୟକ୍ତିଙ୍କ କୁଶଳୀ ମସ୍ତିଷ୍କରୁ ଈଶ୍ୱରଙ୍କ ସ୍ଥିତି ସମ୍ପର୍କିତ କଳ୍ପନା ଜନ୍ମ ନେଇଛି । ତଥାକଥିତ ସେହି ମହାନ ସତ୍ତାଙ୍କ ବିଷୟରେ ଧାରଣା ପ୍ରଚାର କରି ସର୍ବସାଧାରଣଙ୍କ ଉପରେ ନିଜର କର୍ତ୍ତୃତ୍ୱ ଜାହିର କରିବା ପାଇଁ ସେମାନଙ୍କର ଏ ଚାଲବାଜି । ମୁଁ ସେମାନଙ୍କର ଏ ଯୁକ୍ତିକୁ ସମ୍ପୂର୍ଣ୍ଣ ସ୍ୱୀକାର କରିନେଇପାରୁନି; କିନ୍ତୁ ସେମାନଙ୍କ ଯୁକ୍ତି ସାରମର୍ମ ପ୍ରତି ମୋ'ର କୌଣସି ବିରୋଧ ନାହିଁ । ସମସ୍ତ ଧର୍ମ, ସମସ୍ତ ପ୍ରକାର ବିଶ୍ୱାସ, ସମସ୍ତ ସମ୍ପ୍ରଦାୟ କୌଣସି ନା କୌଣସି ଯଥେଚ୍ଛାଚାରୀ, ଶୋଷଣକାରୀ ମଣିଷ ଏବଂ ଗୋଷ୍ଠୀର ପୃଷ୍ଠପୋଷକତା ଲାଭ କରିଆସିଛି । ରାଜାଜ୍ଞା ପାଳନ ନକରିବା ପାପ ବା ଦୋଷାବହ ବୋଲି କେତେକ ଧର୍ମଶାସ୍ତ୍ରରେ ଯେ ଉଲ୍ଲେଖ କରାଯାଇଛି, ଏହାତାହାର ପ୍ରମାଣ ।

ଈଶ୍ୱରବାଦ ସମ୍ବନ୍ଧରେ ମୋ'ର ଧାରଣା ଭିନ୍ନ । ମୋ'ର ଯୁକ୍ତ ହେଲା, ମଣିଷ ଯେତେବେଳେ ନିଜର ପରିସୀମା, ନିଜର ଅକ୍ଷମତା ଏବଂ ନିଜର ତ୍ରୁଟି ତଥା ଦୁର୍ବଳତା ସମ୍ବନ୍ଧରେ ନିଶ୍ଚିତ ହୋଇଗଲା, ସେ କଳ୍ପନା କଲା, ଈଶ୍ୱରଙ୍କଠାରୁ ସେ ଭରସା ପାଇଲା । ନିଜର ବିପଦ ଆପଦ ଓ ଭଲ ମନ୍ଦ ପାଇଁ ତାଙ୍କୁ ଦାୟୀ କରି ନିଜର ବଞ୍ଚିବା ପ୍ରକ୍ରିୟାକୁ ସହଜ କରିପାରିଲା । ତେଣୁ ମଣିଷ ହିଁ ହେଲା ଈଶ୍ୱରଙ୍କର ଜନକ । ସେ ହିଁ ବର୍ଣ୍ଣନା କଲା ତାଙ୍କର ସବିଶେଷ ରୂପରେଖ, ତାଙ୍କର ଚରିତ୍ର ଓ କାର୍ଯ୍ୟକ୍ଷମତା । ସେହି ଈଶ୍ୱରଙ୍କୁ ନିଜ କାର୍ଯ୍ୟକଳାପର ତତ୍ତ୍ୱାବଧାରକ ରୂପେ ଉପସ୍ଥାପନା କଲା ସେ । ତେଣୁ ଈଶ୍ୱରଙ୍କ କ୍ରୋଧ ଓ ଅସନ୍ତୋଷରୁ ନିଜକୁ ମୁକ୍ତ ରଖିବା ମନସରେ ସେ ହୋଇଉଠିଲା ଅଧିକ ସାମାଜିକ । ସେ ହେଲା କର୍ତ୍ତବ୍ୟନିଷ୍ଠ । ପିତା, ମାତା, ଭ୍ରାତା, ଭଗ୍ନୀ, ସଖା, ସହକର୍ମୀ ଇତ୍ୟାଦିର ଭୂମିକାରେ ସେ ସଫଳତାର ସହ କାର୍ଯ୍ୟନିର୍ବାହ କରିବା ନିମନ୍ତେ ଅଙ୍ଗୀକାରବଦ୍ଧ ହେଲା । କର୍ତ୍ତବ୍ୟଚ୍ୟୁତ ହେବାକୁ ଭୟ କଲା । ଦୁର୍ଦ୍ଦଶାଗ୍ରସ୍ତ ହୋଇପଡ଼ିଲେ, ବିଶ୍ୱାସଘାତକତାର ଶିକାର ହେଲେ, ସାଙ୍ଗସାଥୀ ତଥା ଆତ୍ମୀୟମାନଙ୍କ ଦ୍ୱାରା ଉପେକ୍ଷିତ ହେଲେ ସେ ଆଶ୍ରୟ ନେଲା, ତଥାକଥିତ ନିଜ କଳ୍ପନା ପ୍ରସୂତ ସେହି ଈଶ୍ୱରଙ୍କର । ସେ ବିଶ୍ୱାସ କରିନେଲା ଯେ, ଈଶ୍ୱର ହିଁ ତା' ଦୁର୍ଦ୍ଦିନର ସାହା । କାରଣ ସେ ହିଁ ସର୍ବଶକ୍ତିମାନ ଏବଂ ସର୍ବନିୟନ୍ତା । ବାସ୍ତବରେ ଆଦିମ ଯୁଗର ସମାଜ ପାଇଁ ଈଶ୍ୱରବିଶ୍ୱାସ ଥିଲା ଖୁବ୍ ଉପଯୋଗୀ ।

ତେବେ ସମାଜ ପିତୁଳାପୂଜା ବିରୋଧରେ ସ୍ୱର ଉତ୍ତୋଳନ କରିଛି । ଧର୍ମ ନାମରେ ସଂକୀର୍ଣ୍ଣତାକୁ । ତେଣୁ ଈଶ୍ୱରଙ୍କ ସ୍ଥିତିକୁ ସେ ଆହ୍ୱାନ ଜଣାଇବାରେ ଅସ୍ୱାଭାବିକତା କିଛି ନାହିଁ । ମଣିଷ ଯେତେବେଳେ ନିଜ ଗୋଡ଼ରେ ଠିଆ ହେବାକୁ ସକ୍ଷମ ହୋଇପାରିବ ଓ ନିଜ ଶକ୍ତି ଉପରେ ଆସ୍ଥା ସ୍ଥାପନ କରି ବାସ୍ତବବାଦୀ ଦୃଷ୍ଟିକୋଣ ପୋଷଣ କରିବ, ସେତେବେଳେ ହୁଏତ ତଥାକଥିତ ଈଶ୍ୱରବିଶ୍ୱାସ କ୍ରମେ ଉପେକ୍ଷିତ ହେବାକୁ ଆରମ୍ଭ କରିବ । ନିଜର କ୍ଷମତା ଉପରେ ଭରଷା ରଖି ସେ ଦୁଃଖ, ଦୁର୍ଦ୍ଦିନ ଓ ଯାତନାର ସାମ୍ନା କରିବ । ମୋ' କ୍ଷେତ୍ରରେ ଠିକ୍ ଏୟା ହିଁ ଘଟିଛି । ବନ୍ଧୁଗଣ, ମୁଁ ବଡ଼େଇ କରୁନି, ପ୍ରଦର୍ଶନ କରୁନି ଆତ୍ମୟରିତା । ଏହା ହିଁ ମୋର ଚିନ୍ତାଧାରା । ଏହି ଚିନ୍ତାଧାରା ପ୍ରତି ବିଶ୍ୱାସ ରହିଥିବାରୁ ମୁଁ ଆଜି ନାସ୍ତିକ । ମୋ' କ୍ଷେତ୍ରରେ ବିଚାର କରନ୍ତୁ ତ । ମୁଁ ଯଦି ଈଶ୍ୱରଙ୍କ ଉପରେ ଆସ୍ଥା ସ୍ଥାପନ କରନ୍ତି ଓ ପ୍ରତିଦିନ ପୂଜାପାଠ କରନ୍ତି, ଏହା ମୋତେ ସାହାଯ୍ୟ କରନ୍ତା ନା ମୋ'ର ଦୁର୍ଦ୍ଦଶାକୁ ଆହୁରି ବଢ଼େଇଦିଆନ୍ତା, ତାହା ମୁଁ ଜାଣିନି । ତେବେ ମୁଁ ଏତିକି ଜାଣେ ଯେ, ଏଭଳି ଏକ ଆଚରଣ ସମ୍ପୂର୍ଣ୍ଣ ସ୍ୱାର୍ଥପରତା ଉପରେ ପର୍ଯ୍ୟବଶିତ । ତାହାଛଡ଼ା ଏହି ନୈତିକ ଅଧଃପତନର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ମୋ'ର ପଢ଼ାପଢ଼ିରୁ ମୁଁ ଜାଣିଛି ଯେ, ନାସ୍ତିକମାନେ ନିଜର ଦୁଃଖ ଦୁର୍ଦ୍ଦଶା ଓ ବିପଦ ଆପଦକୁ ଖୁବ୍ ସାହସର ସହ ମୁକାବିଲା କରିଥାନ୍ତି । ସେମାନଙ୍କ ଭଳି ମୁଁ ମଧ୍ୟ ପୁରୁଷୋଚିତ ଦୃଢ଼ତା ପ୍ରଦର୍ଶନ କରି ମୋ'ର ଶେଷ ଜୀବନ ପର୍ଯ୍ୟନ୍ତ ମୁଣ୍ଡ ଟେକି ଚାଲିବା ନିମନ୍ତେ ପ୍ରଯତ୍ନ ଚଳେଇଛି । ଏପରିକି ଫାଶିଖୁଣ୍ଟରେ ଠିଆ ହୋଇଥିଲାବେଳେ ମଧ୍ୟ ମୋ' ଦୃଢ଼ତାରେ ଦୁର୍ବଳତା ପ୍ରକାଶ ପାଇବନି ।

ଏବେ ମୁଁ କିପରି ଏହି ଦୁଃସ୍ଥିତିର ସମ୍ମୁଖୀନ ହେଉଛି, ତାହା ଦେଖିବାକୁ ବାକି ରହିଲା । ମୋ'ର ଜଣେ ବନ୍ଧୁ ମୋତେ ନିୟମିତ ପ୍ରାର୍ଥନା କରିବା ନିମନ୍ତେ ପରାମର୍ଶ ଦେଇଥିଲେ; କିନ୍ତୁ ସେ ଯେତେବେଳେ ଶୁଣିଲେ ଯେ, ମୁଁ ନାସ୍ତିକ ପାଲଟିଯାଇଛି, ସେ କହିଲେ - "ଏବେ ସିନା ଭଗବାନଙ୍କ ନାଁ ନେଉନ; କିନ୍ତୁ ଫାଶିଖୁଣ୍ଟରେ ଝୁଲିବାର ଦିନ ପାଖେଇ ଆସିଲେ ତୁମେ ଭଗବାନଙ୍କୁ ବିଶ୍ୱାସ କରିବା ଆରମ୍ଭ କରିଦେବ ।" ମୁଁ ଉତ୍ତର ଦେଲି - "ନାଁ, ଏହା ଆଦୌ ସମ୍ଭବ ନୁହଁ । କାରଣ ମୋ ବିଚାରରେ ତାହା ହେବ ବଡ଼ ଅମର୍ଯ୍ୟାଦାକର ତଥା ଅନୈତିକ କାର୍ଯ୍ୟ । ସ୍ୱାର୍ଥ ପରିଚାଳିତ ଅଭିପ୍ରାୟ ରଖି ମୁଁ ଈଶ୍ୱର ଉପାସନା କରିବି ନାହିଁ । ମୋ'ର ଏଭଳି ଆଚରଣକୁ ତୁମେ ଯଦି ଅତ୍ୟଧିକ ଅହମିକା ବୋଲି ମନେକର, ତଥାପି ମୁଁ ମୋ' ମତରେ ଦୃଢ଼ ରହିବି ।"



# ଅଖିଳ ଭାରତ ଗଡ଼ଜାତ ପ୍ରଜାସମ୍ମିଳନୀ
# (ଏ.ଆଇ.ଏସ୍.ପି.ସି)

ଜାତୀୟ କଂଗ୍ରେସ ଜନ୍ମ ନେବାର ୨୨ ବର୍ଷ ପରେ ସ୍ୱାଧୀନତା ସଂଗ୍ରାମର ମହା ସ୍ରୋତସ୍ୱିନୀରେ ଆଉ ଏକ ବିଶାଳ ସ୍ରୋତସ୍ୱିନୀର ମିଳନ ଘଟିଲା । ଅସହଯୋଗ ଆନ୍ଦୋଳନ ଏବଂ ଆଇନ୍ ଅମାନ୍ୟ ଆନ୍ଦୋନଳନର ମଧ୍ୟବର୍ତ୍ତୀ କାଳରେ ଏହି ମନ୍ଦାକିନୀର ନାମ, ଅଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀ । ଏପରି ଏକ ସଂଗଠନ ଗଢ଼ିଉଠିବାର ସାମାଜିକ, ରାଜନୈତିକ ଆବଶ୍ୟକତା କ'ଣ ଥିଲା ? ଏ ପ୍ରଶ୍ନର ଉତ୍ତର ହେଲା, ଭାରତକୁ ଦଖଲ କରି ବ୍ରିଟିଶ୍ ସାମ୍ରାଜ୍ୟବାଦ ଶାସନ କରିବା ଲାଗି ଏ ଭୂଖଣ୍ଡକୁ ଦୁଇଭାଗ କରିଥିଲା । ଗୋଟିଏ ଭାଗକୁ ବ୍ରିଟିଶ ଭାରତ କୁହାଯାଉଥିଲା ଅନ୍ୟଟିକୁ ଇଣ୍ଡିଆନ୍ ଷ୍ଟେଟ୍ସ ବା ଭାରତୀୟ ଦେଶୀୟ ରାଜ୍ୟସମୂହ କୁହାଯାଉଥିଲା । ବ୍ରିଟିଶ ଭାରତରେ ଦୈନନ୍ଦିନ ପ୍ରଶାସନର କାର୍ଯ୍ୟ ଖୋଦ୍ ବ୍ରିଟିଶ ହାକିମ, ପୁଲିସ୍ଙ୍କ ଦ୍ୱାରା ଚଳା ଯାଉଥିଲା । ଦେଶୀୟ ରାଜ୍ୟଗୁଡ଼ିକରେ ବ୍ରିଟିଶ୍ ସାମ୍ରାଜ୍ୟବାଦର ରକ୍ଷକ ଭାବରେ ଦେଶୀୟ ରାଜା, ମହାରାଜା, ନବାବ, ନିଜାମ୍, ସୁଲତାନ, ସୋଲାଙ୍କି ଉପାଧିଧାରୀ ସାମନ୍ତବାଦୀମାନେ ପ୍ରଶାସନର କ୍ଷମତା ପାଇଥିଲେ । ବ୍ରିଟିଶ ଭାରତରେ ରହିଥିବା ରାଜା, ମହାରାଜା ଉପାଧିଧାରୀମାନେ ବଡ଼ବଡ଼ ଜମିଦାର ହୋଇ ବ୍ରିଟିଶ୍ ପ୍ରତି ପରମ ଅନୁରକ୍ତ ଭୃତ୍ୟ ପରି କାର୍ଯ୍ୟ କରୁଥିଲେ । ଦେଶରେ ଏହିପ୍ରକାର ୫୬୨ଟି ବୃହତ, ମଧ୍ୟମ, କ୍ଷୁଦ୍ର ଦେଶୀୟ ରାଜ୍ୟ ଥିଲା । ଏହି ୫୬୨ଟି ଦେଶୀୟ ରାଜ୍ୟ କର୍ତ୍ତୃତ୍ୱରେ ଭାରତ ଭୂଖଣ୍ଡର ଅର୍ଦ୍ଧେକରୁ କିଛି କମ୍ ଅଞ୍ଚଳ ରହିଥିଲା । ଏକ ଦେଶରେ ବ୍ରିଟିଶ୍ ଶାସନରେ ଦୁଇପ୍ରକାରର ପ୍ରଜା । ବ୍ରିଟିଶ୍ ଭାରତର ପ୍ରଜାଙ୍କ ସହିତ ଦେଶୀୟ ରାଜ୍ୟଗୁଡ଼ିକର ପ୍ରଜା ଯେମିତି ଏକାଠି ହୋଇନପାରିବେ, ସେଥିଲାଗି ବ୍ରିଟିଶ୍ ସରକାର ବହୁ କଟକଣା ଲଗାଇଥାଏ । ସେମିତି ଗୋଟିଏ ଦେଶୀୟ ରାଜ୍ୟର ପ୍ରଜା ଅନ୍ୟ ଦେଶୀୟ ରାଜ୍ୟର ପ୍ରଜାଙ୍କ ସହିତ ଯେମିତି ଏକାଠି ହୋଇ ନପାରିବ, ସେଥିଲାଗି ବିବିଧ ଉପାୟ ବ୍ରିଟିଶ ସରକାର ଖଞ୍ଜିଥାଏ ।

ମାଡ଼, ଅତ୍ୟାଚାର, ଗିରଫ ସତ୍ତ୍ୱେ ବିଭିନ୍ନ ଗଡ଼ଜାତ ବା ଦେଶୀୟ ରାଜ୍ୟରେ ବେଳେବେଳେ ପ୍ରଜାମେଳି ବା ବିଦ୍ରୋହ ହେଉଥିଲା । ମାତ୍ର ବ୍ରିଟିଶ୍ ସରକାର ଓ ରଜା, ନବାବ, ମହାରାଜାମାନେ ଏହାକୁ ନିର୍ମମ ଭାବରେ ଦମନ କରୁଥିଲେ । ମୂଳ ଭାରତଭୂଖଣ୍ଡ ବା ତଥାକଥିତ ବ୍ରିଟିଶ୍ ଭାରତରେ ବ୍ରିଟିଶ ସରକାର ବିରୁଦ୍ଧରେ ଯେଉଁ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଗଲା, ତାହାଠାରୁ ଗଡ଼ଜାତଗୁଡ଼ିକର ପ୍ରଜାମାନଙ୍କୁ ଦୂରେଇ ରଖିବା ଲାଗି ରାଜନ୍ୟବର୍ଗ ଓ ବ୍ରିଟିଶ୍ ସରକାର ଯାବତୀୟ ପନ୍ଥା ଅବଲମ୍ବନ କରିଥିଲେ ।

ବ୍ରିଟିଶ୍ ଭାରତରେ ଚାଲିଥିବା ଜନଆନ୍ଦୋଳନର ପ୍ରଭାବରେ ଦେଶୀୟ ରାଜ୍ୟଗୁଡ଼ିକରେ ମଧ୍ୟ ଆଗୁଆ କର୍ମୀ ଓ ନେତାଙ୍କ ଉଦ୍ଭବ ଘଟିଲା । ସେମାନେ ବହୁ କଟକଣା, ଅତ୍ୟାଚାର, ଦମନ ମଧ୍ୟ ଦେଇ ନିଜ ନିଜ ଗଡ଼ଜାତରେ ରାଜା, ମହାରାଜାଙ୍କ ଅତ୍ୟାଚାରୀ ଶାସନ ବିରୁଦ୍ଧରେ ସଂଗଠନମାନ ତିଆରି କଲେ ।

ଉତ୍ତରଭାରତର ସୌରାଷ୍ଟ୍ର (ଗୁଜୁରାଟ)ର ଦେଶୀୟ ରାଜ୍ୟ ପ୍ରଜାମାନେ ସୌରାଷ୍ଟ୍ର ସେବା ସମିତି ଗଠନ କଲେ । ଏଥିରେ ଗୁଜୁରାଟ ଅଞ୍ଚଳରେ ଥିବା ସବୁ ଦେଶୀୟ ରାଜ୍ୟର ଅଗ୍ରଗାମୀ ବ୍ୟକ୍ତିମାନେ ଐକ୍ୟବଦ୍ଧ ହେଲେ । ରାଜସ୍ଥାନରେ ଥିବା ଗଡ଼ଜାତଗୁଡ଼ିକର ଆଗୁଆ ବ୍ୟକ୍ତି ରାଜସ୍ଥାନ ସେବା ସଂଗଠନ କରିଥିଲେ । ଦାକ୍ଷିଣାତ୍ୟ ଅଞ୍ଚଳରେ ଡେକାନ୍ ପ୍ରଜାସମ୍ମିଳନୀ ନାମକ ସଂଗଠନ ଗଢ଼ିଉଠିଲା । ବିଭିନ୍ନ ଗଡ଼ଜାତରେ କେଉଁଠି ପ୍ରଜା ପରିଷଦ, କେଉଁଠି ପ୍ରଜା ସଭା ଅବା ପ୍ରଜାମଣ୍ଡଳ ପରି ପ୍ରାଥମିକ ରାଜନୈତିକ ସଂଗଠନର ଆବିର୍ଭାବ ଘଟିଲା । ଦକ୍ଷିଣଭାରତରେ ଥିବା କୋଚିନ୍, ତ୍ରିବାଙ୍କୁଡ଼, ହାଇଦ୍ରାବାଦ୍, ମହିଶୂର ପ୍ରଭୃତିରେ ମଧ୍ୟ ଅନୁରୂପ ପ୍ରଜା ସଂଗଠନ ଆବିର୍ଭୂତ ହେଲା ।

## ଅଖିଳ ଭାରତ ପ୍ରଜା ସମ୍ମିଳନୀର ଜନ୍ମ

ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନଗୁଡ଼ିକରେ ଗୋପନରେ କୌଣସିମତେ ନିଜ ରାଜ୍ୟରୁ ଆସି ଏହିସବୁ ପ୍ରଜା ସଂଗଠନର ନେତାମାନେ ମିଳିତ ହୁଅନ୍ତି । ପରସ୍ପରର ଅଭିଜ୍ଞତା ବିନିମୟ କରନ୍ତି । କଂଗେସ ନେତାମାନଙ୍କ ସହିତ ପରାମର୍ଶ କରନ୍ତି । ତେତେବେଳେ ପୂର୍ଣ୍ଣ ସ୍ୱାଧୀନତା କଂଗ୍ରେସର ରାଜନୈତିକ ଦାବୀ ନଥିଲା । ବ୍ରିଟିଶ ସାମ୍ରାଜ୍ୟରେ ରହି ଡୋମିନିଅନ୍ ଷ୍ଟାଟସ୍ ବା ସ୍ୱାୟତ୍ତ ଶାସନ ଥିଲା ରାଜନୈତିକ ଦାବୀ । ଗଡ଼ଜାତରେ ଯେଉଁ ସବୁ ପ୍ରଜା ସଂସ୍ଥା ଗଢ଼ିଉଠିଥିଲା, ସେମାନେ ନିଜ ନିଜ ଗଡ଼ଜାତର ଶାସନରେ କିପରି ଭାଗ ନେବେ, ଏକଛତ୍ରବାଦୀ ଶାସନ ଉପରେ କିପରି ଅଙ୍କୁଶ ଲାଗାଇବେ, ତାହା ହିଁ ଚିନ୍ତା କରୁଥିଲେ । ଅର୍ଥାତ୍ ଗଡ଼ଜାତଗୁଡ଼ିକର ବିଲୋପ, ରାଜରାଜୁଡ଼ା ଶାସନର ଅବସାନ, ଗଡ଼ଜାତଗୁଡ଼ିକର ଅବଶିଷ୍ଟ ଭାରତ ସହିତ ରାଜନୈତିକ, ଭୌଗୋଳିକ ଓ ପ୍ରଶାସନିକ ମିଳନର ଚେତନା ସେଯାଏ ଦାନା ବାନ୍ଧିନଥିଲା ।

କିନ୍ତୁ ବିଭିନ୍ନ ଗଡ଼ଜାତରେ ଯେଉଁସବୁ ପ୍ରଜାସଂଗଠନ ଗଢ଼ିଉଠିଛି ଓ ଉଠୁଛି, ସେ ସବୁର ଏକ ମିଳନ ପୀଠର ପ୍ରୟୋଜନୀତାକୁ ପ୍ରଜା ନେତାମାନେ ଉପଲବ୍ଧି କଲେ । ୧୯୨୭ ଡିସେମ୍ବର ୧୭ ତାରିଖରେ ବମ୍ବେଠାରେ ଗୁଜରାଟ, କାଠିଆବାଡ଼, ପୁନେ, ଡେକାନ ଅଂଚଳର ପ୍ରଜା ନେତାମାନେ ଏକତ୍ର ହୋଇ ଭାରତୀୟ ଗଡ଼ଜାତ ପ୍ରଜା ସମ୍ମିଳନୀ ଅନୁଷ୍ଠିତ କରାଇଥିଲେ । ଏହି ସମ୍ମିଳନୀର ଆୟୋଜକ ଥିଲା, ଭାରତ ସେବକ ସମାଜ । ବଳବନ୍ତ

ରାୟ ମେହେଟା, ଠକ୍କର ବାପା, ସୁମନ ମେହେଟା, ମଣିଶଙ୍କର ତ୍ରିବେଦୀ, ମଣିଲାଲ କୋଠରୀ, ପି.ଏଲ. ଚୁଦଗାର ପ୍ରମୁଖ ଏହି ସମ୍ମିଳନୀର ନେତୃତ୍ୱ ନେଇଥିଲେ । ରଜା, ମହାରାଜାଙ୍କ ଅନ୍ଧାରୀ ଶାସନ ପରିବର୍ତ୍ତେ ଗଡ଼ଜାତଗୁଡ଼ିକରେ ରାଜାମାନଙ୍କ ଅଧୀନରେ ଦାୟିତ୍ୱପୂର୍ଣ୍ଣ ସରକାର ଭଳି ରାଜନୈତିକ ଦାବୀ ଉତ୍ଥାପନ କରାଯାଇଥିଲା । ମହୀଶୂରର ଉଦାରପନ୍ଥୀ ପୂର୍ବତନ ଦେବାନ ରାମାରାଓ ଏହି ସମ୍ମିଳନୀରେ ଅଧ୍ୟକ୍ଷତା କରିଥିଲେ ।

ଠିକ୍ ଏହାର ୧୦ ଦିନ ପରେ ସେହିବର୍ଷ ଡିସେମ୍ବର ୨୭ ତାରିଖରେ ମାଦ୍ରାଜ ଠାରେ ଦକ୍ଷିଣାଞ୍ଚଳର ଦେଶୀୟ ରାଜ୍ୟଗୁଡ଼ିକର ପ୍ରଜା ନେତାମାନେ ଅଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ ଅନୁଷ୍ଠିତ କରାଇଥିଲେ । ଡକ୍ଟର ସତ୍ୟମୂର୍ତ୍ତି ଅଭ୍ୟର୍ଥନା ସମିତିର ସଭାପତି ହୋଇଥିଲେ ।

୧୯୩୧ରେ ହିଁ ବିଭିନ୍ନ ଗଡ଼ଜାତ ପ୍ରଜା ସଂଗଠନର ମିଳନ ଘଟିଲା ଏବଂ ସର୍ବଭାରତୀୟ ସ୍ତରରେ ଅଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀର ଜନ୍ମ ହେଲା । ଏହାରି ନେତୃତ୍ୱରେ ବିଭିନ୍ନ ଦେଶୀୟ ରାଜ୍ୟରେ ଲଢୁଆ ପ୍ରଜା ଆନ୍ଦୋଳନ ଆରଂଭ ହେବାକୁ ଲାଗିଲା । ପଟ୍ଟାଭିସୀତାରାମାୟା ଏହାର ସଭାପତି ହୋଇଥିଲେ ।

୧୯୪୭ରେ ଗ୍ୱାଲିଅରଠାରେ ଏହାର ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ କାଶ୍ମୀରର ପ୍ରଖ୍ୟାତ ପ୍ରଜାନେତା, ଶେରଇ କାଶ୍ମୀର ନାମରେ ଖ୍ୟାତ ଶେଖ ଅବଦୁଲ୍ଲା ନିର୍ବାଚିତ ହୋଇଥିଲେ । ମାତ୍ର କାଶ୍ମୀର ମହାରାଜାଙ୍କ ଜେଲରେ ଥିବାରୁ ସେ ଜେଲରୁ ଫେରିବା ଯାଏ ଡକ୍ଟର ପଟ୍ଟାଭିସୀତାରାମାୟା ସଭାପତିଙ୍କ କାର୍ଯ୍ୟ ନିର୍ବାହ କରିଥିଲେ ।

ଅଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ ହିଁ ୫୨୬ଟି ଗଡ଼ଜାତ ପ୍ରଜାମାନଙ୍କର ପ୍ରତ୍ୟକ୍ଷ ରାଜନୈତିକ ମୁଖପାତ୍ର ରୂପେ ବିବେଚିତ ହେଉଥିଲା ।

## ଓଡ଼ିଶାରେ ପ୍ରତିଧ୍ୱନି

୧୯୩୧ ଜୁନ୍ ୨୦ରେ ପ୍ରଥମ ଥର ପାଇଁ ଓଡ଼ିଶାର ଗଡ଼ଜାତ ପ୍ରଜାମାନଙ୍କର ଏକ ସଂଗଠନ ଗଢ଼ାଯାଇଥିଲା । ବିଶିଷ୍ଟ କଂଗ୍ରେସ ନେତା ଭୁବନାନନ୍ଦ ଦାସଙ୍କ ଅଧ୍ୟକ୍ଷତାରେ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀ କଟକଠାରେ ଅନୁଷ୍ଠିତ ହୋଇଥିଲା । ବିଭିନ୍ନ ଗଡ଼ଜାତରେ କିପରି ରାଜା ଅତ୍ୟାଚାର ଚାଲିଛି, ତାହାର ବିଶଦ ଆଲୋଚନା ହୋଇ ଏହାର ନିରାକରଣ ଦାବୀ କରାଯାଇଥିଲା । ପ୍ରତ୍ୟେକଟି ଗଡ଼ଜାତରେ ପ୍ରଜାମଣ୍ଡଳ ଭଳି ସଂସ୍ଥା ଗଢ଼ିବାର ନିଷ୍ପତ୍ତି ନିଆଗଲା । ସର୍ବଭାରତୀୟ ସମ୍ମିଳନୀକୁ ୩ଜଣ ପ୍ରତିନିଧି ବଛା ଯାଇଥିଲେ । ହିନ୍ଦ୍ ସେବକ ସମାଜର ଓଡ଼ିଶା ଶାଖାର ମୁଖ୍ୟ, ସମାଜସେବୀ ଲକ୍ଷ୍ମୀ ନାରାୟଣ ସାହୁ, କଟକର ବିପିନ ବିହାରୀ ଚୌଧୁରୀ ଓ ମୟୁରଭଂଜର ଶରତଚନ୍ଦ୍ର ଦାସ ଏଥିଲାଗି ମନୋନୀତ ହୋଇଥିଲେ ।

ବାଲୁକେଶ୍ୱର ଆଚାର୍ଯ୍ୟ, ରାଧାନାଥ ରଥ, ମଧୁସୂଦନ ପଟନାୟକ, ଗୋବିନ୍ଦ ଚନ୍ଦ୍ର ମିଶ୍ର ପ୍ରମୁଖ ପ୍ରଥମ ସମ୍ମିଳନୀରେ ମୁଖ୍ୟ ଭାଗ ନେଇଥିଲେ ।

୧୯୩୭ରେ ନୂତନ ଶାସନ ଖସଡ଼ା (୧୯୩୫) ଅନୁସାରେ ବ୍ରିଟିଶ ଓଡ଼ିଶାରେ କଂଗ୍ରେସର ବିପୁଳ ବିଜୟ ହୋଇଥାଏ । କଂଗ୍ରେସ କ୍ଷମତା ଗ୍ରହଣ କରିବାର ନିଷ୍ପତ୍ତି ପରେ ଆମପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥାଏ ।

ଏହି ସମୟରେ ଗଡ଼ଜାତଗୁଡ଼ିକରେନବ ଜାଗରଣ ସୃଷ୍ଟି ହେବାର ଲାଗିଲା । କଟକଠାରେ ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀର ଅତି ଗୁରୁତ୍ୱପୂର୍ଣ୍ଣ ଅଧିବେଶନ ଅନୁଷ୍ଠିତ ହେଲା । ଡକ୍ଟର ପଟ୍ଟାଭି ସୀତାରାମାୟା ମଧ ଓଡ଼ିଶା ଶାଖାର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ସର୍ବଶ୍ରୀ ସାରଙ୍ଗଧର ଦାସ, ସାଧାରଣ ସଂପାଦକ, ବିଶ୍ୱମ୍ଭର ରଥ (ନୟାଗଡ଼) କୋଷାଧ୍ୟକ୍ଷ ପଦରେ ଅଧିଷ୍ଠିତ ହୋଇଥିଲେ । କମିଟିର ଅନ୍ୟ ସଦସ୍ୟମାନେ ହେଲେ ସର୍ବଶ୍ରୀ ରାଧାନାଥ ରଥ (ଆଠଗଡ଼) ଗୋବିନ୍ଦ ଚନ୍ଦ୍ର ମିଶ୍ର (ଦଶପଲ୍ଲା) ଲାଲମୋହନ ପତି (ମୟୁରଭଂଜ), ବାଲୁକେଶ୍ୱର ଆଚାର୍ଯ୍ୟ (ହିନ୍ଦୋଳ), ଗଂଗାଧର ମିଶ୍ର (ରଣପୁର) ମଧୁସୂଦନ ପଟ୍ଟନାୟକ (ତିଗିରିଆ), ହରମୋହନ ପଟ୍ଟନାୟକ (ଢେଙ୍କାନାଳ), ମଧୁସୂଦନ ମହାନ୍ତି (ଆଠଗଡ଼) ।

## କଂଗ୍ରେସ ଓ ପ୍ରଜା ସମ୍ମିଳନୀ ମଧ୍ୟରେ ସଂପର୍କ

ଗଡ଼ଜାତ ପ୍ରଜାମାନଙ୍କ ଆନ୍ଦୋଳନ ପ୍ରତି କଂଗ୍ରେସର ସହାନୁଭୂତି ଓ ସମର୍ଥନ ରହିବ । ବ୍ରିଟିଶ ଭାରତର କଂଗ୍ରେସ ବ୍ୟକ୍ତିବିଶେଷ ଗଡ଼ଜାତ ପ୍ରଜାଙ୍କ ଆନ୍ଦୋଳନରେ ଭାଗ ନେଇପାରିବେ । ମାତ୍ର ୫୨୬ଟି ଗଡ଼ଜାତର ଆଭ୍ୟନ୍ତରୀଣ ବ୍ୟାପାରରେ କଂଗ୍ରେସ ହସ୍ତକ୍ଷେପ କରିବ ନାହିଁ । ଏହି ପ୍ରକାର ନୀତିକୁ ଗାନ୍ଧିଜୀ ଗ୍ରହଣ କରିଥିଲେ । ସ୍ୱତନ୍ତ୍ର ଭାବରେ ଗଡ଼ଜାତର ପ୍ରଜାମାନେ ନିଜେ ନିଜେ ସଂଗଠିତ ହୋଇ, ନିଜ ଗୋଡ଼ରେ ଛିଡ଼ା ହୁଅନ୍ତୁ ବୋଲି ଗାନ୍ଧିଜୀ ଗଡ଼ଜାତ ନେତାମାନଙ୍କୁ ପରାମର୍ଶ ଦେଉଥିଲେ । କଂଗ୍ରେସ ଏହି ନୀତିକୁ ଅନୁସରଣ କରୁଥିଲା । ମାତ୍ର କଂଗ୍ରେସରେ ବାମପନ୍ଥୀମାନେ ଏହି ପ୍ରକାର ନୀତିର ସମାଲୋଚନା କରୁଥିଲେ । ପଣ୍ଡିତ ଜବାହାରଲାଲ ନେହ୍ରୁର, ସୁବାଷ ବୋଷ, ସୋସଲିଷ୍ଟ, କମ୍ୟୁନିଷ୍ଟ ମତବାଦୀ ନେତୃବୃନ୍ଦ ଏହାର ଉତ୍କଟ ସମାଲୋଚକ ଥିଲେ । ମାତ୍ର କଂଗ୍ରେସ ନେତୃତ୍ୱର ଦକ୍ଷିଣପନ୍ଥୀ ପ୍ରଭାବଶାଳୀ ନେତାମାନେ ଆହୁରି କେତେକ କଟକଣା ପ୍ରୟୋଗ କରିଥିଲେ । ଦେଶୀୟ ରାଜ୍ୟଗୁଡ଼ିକରେ କଂଗ୍ରେସ କମିଟି ରହିବ ନାହିଁକି; ସେ ସବୁଠାରେ କଂଗ୍ରେସ ସଭ୍ୟ ସଂଗ୍ରହ ସଂଗ୍ରହ କରାଯିବ ନାହିଁ ବୋଲି ପନ୍ଥା ଅବଲମ୍ବନ କରାଯାଇଥିଲା ।

ଜବାହାରଲାଲ ନେହେରୁ ତାଙ୍କ ଆତ୍ମଜୀବନୀରେ ମଧ ଗଡ଼ଜାତଗୁଡ଼ିକ ସଂପର୍କରେ କଂଗ୍ରେସ ଓ ଗାନ୍ଧିଜୀ ନେଇଥିବା ନୀତିର ସମାଲୋଚନା କରିଥିଲେ ।

୧୯୩୮ ହରିପୁରା କଂଗ୍ରେସରେ ସଭାପତି ସୁଭାଷବୋଷ ଏପ୍ରକାର ନୀତିର ସମାଲୋଚନା କରି କରିଥିଲେ, "ଦେଶୀୟ ରାଜ୍ୟଗୁଡ଼ିକର ବ୍ୟାପାରରେ କଂଗ୍ରେସକୁ ଗଭୀର ଧ୍ୟାନ ଦେବାକୁ ହେବ ଏବଂ ଅଧିକ ସକ୍ରିୟ ନୀତି ଅନୁସରଣ କରିବାକୁ ହେବ ।"

ଆଭ୍ୟନ୍ତରୀଣ ତର୍କ, ବିତର୍କ ମଧ୍ୟଦେଇ ଓ ଗଠନ କାଳରେ ନାନା ବାଧାପ୍ରତିବନ୍ଧକକୁ ଦୂର କରି ସ୍ୱାଧୀନତା ସଂଗ୍ରାମକୁ ଦେଶୀୟ ରାଜ୍ୟର ପ୍ରଜାମାନଙ୍କର ଅବଦାନ ଅବିସ୍ମରଣୀୟ । ବିଭିନ୍ନ ଦେଶୀୟ ରାଜ୍ୟରେ ପ୍ରଜାମଣ୍ଡଳ ନେତୃତ୍ୱରେ ସଂଗ୍ରାମ କରି ସହସ୍ର ସହସ୍ର ଶହୀଦ ହୋଇଛନ୍ତି, ଫାଶି ପାଇଛନ୍ତି । ହାଇଦ୍ରାବାଦର ନିଜାମ ବିରୁଦ୍ଧରେ ବିଖ୍ୟାତ ତେଲେଙ୍ଗନା ସଶସ୍ତ୍ର ସଂଗ୍ରାମରେ ଚାରି ହଜାର ପ୍ରଜା ନିହତ ହୋଇଛନ୍ତି । ସେମାନେ ବିଶାଳ ଆନ୍ଧ୍ର ଆନ୍ଦୋଳନର କମ୍ୟୁନିଷ୍ଟ ମତବାଦୀ । ଦକ୍ଷିଣରେ କୋଚିନ ତ୍ରିବାଙ୍କୁର ଉତ୍ତରରେ କାଶ୍ମୀର, ପାତିଆଲା, କାଠିଆବାଡ଼ ଏବଂ ମଧ୍ୟ ଭାଗରେ ଜୟପୁର, ଯୋଧପୁର, ଭୋପାଳ ଇନ୍ଦୋର, ଉଦୟପୁର, ବସ୍ତର ପ୍ରଭୃତି ରାଜ୍ୟ ଏବଂ ପୂର୍ବରେ ଆମ ଓଡ଼ିଶାର ଗଡ଼ଜାତ ପ୍ରଜାମାନଙ୍କ ସଂଗ୍ରାମ ଇତିହାସ ସୃଷ୍ଟି କରିଛି । ଓଡ଼ିଶାରେ ରଘୁଦିବାକର ଫାଶି ସାଂଗକୁ ବାଜିରାଉତ ଆଉ ଶତଶତ ଶହୀଦଙ୍କ କାହାଣୀ ଏହି ସଂଗ୍ରାମର ଇତିହାସ ବହନ କରେ ।

ଭାରତକୁ ୩ ଭାଗ କରିବାର ବ୍ରିଟିଶ ଯୋଜନାକୁ ୫୬୨ଟି ଗଡ଼ଜାତର ପ୍ରଜା ଆନ୍ଦୋଳନହିଁ କୁଠାରଘାତ କରିଛି । ଭାରତ-ପାକିସ୍ଥାନ ସାଂଗକୁ ୫୬୨ଟି ଗଡ଼ଜାତ ରାଜା ମହାରାଜାଙ୍କର ତୃତୀୟ ଖଣ୍ଡ ଭାରତ ଗଠନର ବ୍ରିଟିଶ ଚକ୍ରାନ୍ତକୁ ବ୍ୟର୍ଥ କରାଯାଇଛି । ଦେଶୀୟ ରାଜ୍ୟଗୁଡ଼ିକର କୋଟି କୋଟି ସଂଖ୍ୟାରେ ପ୍ରଜା ଯଦି ସଂଗ୍ରାମ କରିନଥାନ୍ତେ, ପ୍ରାଣବଳି ଦେଇନଥାନ୍ତେ, ତେବେ କ'ଣ ସ୍ୱାଧୀନ ଭାରତ ସରକାର ସହଜରେ ରାଜାରାଜୁଡ଼ା ଶାସନ ଲୋପ କରିପାରିଥାନ୍ତେ ? ଓଡ଼ିଶାର ନୀଳଗିରି, ଢେଙ୍କାନାଳ, ତାଳଚେର ପ୍ରଭୃତି ୨୬ଟି ଗଡ଼ଜାତର ପ୍ରଜାମାନଙ୍କ ଆନ୍ଦୋଳନ ସ୍ମରଣରେ ଆସେ । କାରଣ ନୀଳଗିରିହିଁ ସମଗ୍ର ଭାରତର ୫୨୬ଟି ଦେଶୀୟ ରାଜ୍ୟ ଭିତରୁ ପ୍ରଥମେ ଓଡ଼ିଶା ସରକାରର ଶାସନାଧୀନ ହେଲା । ୧୯୪୭ ଅକ୍ଟୋବରରେ ହିଁ ଗଡ଼ଜାତ ପ୍ରଜା ଆନ୍ଦୋଳନ ଓ ଭାରତ ଭୂଖଣ୍ଡ ସହିତ ସବୁ ଦେଶୀୟ ରାଜ୍ୟ ମିଶ୍ରଣର ରକ୍ତ ରଂଜିତ ଇତିହାସ ଏକ ସ୍ୱତନ୍ତ୍ର ଅଧ୍ୟାୟ ହେବ । ଓଡ଼ିଶା ମାଟିରେହିଁ ଭାରତ ଭୂଖଣ୍ଡ ସହିତ ଗଡ଼ଜାତ ଗୁଡ଼ିକର ମିଶ୍ରଣ ପର୍ବ ଆରଂଭ ହୋଇଥିଲା । ୧୯୪୭ ଅକ୍ଟୋବର ପ୍ରଜାମାନଙ୍କ ପକ୍ଷରୁ ଢେଙ୍କାନାଳ ରାଜବାଟୀ ଦଖଲ ଉଦ୍ୟମ କାଳରେ ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କ କଟକ ଆଗମନ ଓ ମୟୁରଭଞ୍ଜ ବ୍ୟତୀତ ସବୁ ଗଡ଼ଜାତର ଶାସକଙ୍କ ନିତି ସ୍ୱୀକାର ସାରା ଭାରତର ଗଡ଼ଜାତ ପ୍ରଜା ଆନ୍ଦୋଳନକୁ ସ୍ମରଣ କରାଇଦିଏ ।



# ଗାନ୍ଧୀ-ଇରଉଇନ ଚୁକ୍ତିର ଦଫାସମୂହ - ୧୯୩୧

ଐତିହାସିକ ଆଇନ ଅମାନ୍ୟ, ଦାଣ୍ଡିଯାତ୍ରା, ଦେଶବ୍ୟାପୀ ଲବଣ ସତ୍ୟାଗ୍ରହ, ପିକେଟିଂ, ବିଦେଶୀ ବସ୍ତ୍ରପୋଡ଼ା, ସ୍କୁଲ, କଲେଜ ପରିତ୍ୟାଗ ପ୍ରଭୃତି ଦେଶବ୍ୟାପୀ ବିଶାଳ ଜନ ଆନ୍ଦୋଳନ ବ୍ୟାପୁଥିବାର ସମୟ । ୧୯୩୧ ଜାନୁଆରୀ ୧୭ ତାରିଖରେ ତତ୍କାଳୀନ ଭାଇସରାୟ ଲର୍ଡ ଇରଉଇନ କେନ୍ଦ୍ର ବିଧାନ ସଭାରେ ଭାଷଣ ଦେଇ କହିଲେ, "ଭାରତରେ ସଂଘଟିତ ଆଇନଅମାନ୍ୟ ଆନ୍ଦୋଳନ ଏବଂ ଇଂଲଣ୍ଡରେ ଗୋଲଟେବୁଲ ବୈଠକ ବସୁଥିବାର ନୂତନ ପରିସ୍ଥିତିରେ କଂଗ୍ରେସ କ'ଣ ଏକ ଭିନ୍ନ ପନ୍ଥା ନେଇ ପାରନ୍ତା ନାହିଁ ।"

ଏହି ଭାଷଣର ୭ ଦିନ ପରେ ୧୯୩୧ ଜାନୁଆରୀ ୨୬ରେ ଗାନ୍ଧିଜୀ ଏବଂ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟମାନଙ୍କୁ ଖଲାସ କରି ଦିଆଗଲା । କଂଗ୍ରେସ କାର୍ଯ୍ୟକାରୀ କମିଟି ଉପରୁ ନିଷେଧଆଜ୍ଞା ପ୍ରତ୍ୟାହାର କରି ନିଆଗଲା ।

ଯେରୱାଡ଼ା ଜେଲରୁ ମୁକ୍ତି ପାଇ ମହାତ୍ମା ଗାନ୍ଧୀ ବମ୍ବେରେ ଘୋଷଣାକଲେ ଯେ "ସମ୍ମାନର ସହିତ ଯଦି ପ୍ରସ୍ତାବ ଆସେ ତେବେ ମୁଁ ଶାନ୍ତି ପାଇଁ ବ୍ୟାକୁଳ ।"

୧୯୩୧ ଫେବୃଆରୀଠାରୁ ମଝି ମଝିରେ ବିରତି ଥାଇ ମାର୍ଚ୍ଚ ୫ ତାରିଖ ଯାଏ ଗାନ୍ଧୀ-ଇରଉଇନ ବାର୍ତ୍ତାଳାପ ଚାଲିଥିଲା ଓ ୪ ତାରିଖ ରାତିରେ ଦୁହେଁ ରାଜିନାମାରେ ପହଂଚି ତହିଁ ପରିଦିନ ଏହା ସ୍ୱାକ୍ଷରିତ ହୋଇଥିଲା । ଏହି ରାଜିନାମାରେ ୧୫ଟି ଦଫା ରହିଥିଲା, ଯଥା -

(୧) ସାଂବିଧାନିକ ପ୍ରଶ୍ନାବଳୀ ସଂକ୍ରାନ୍ତରେ ଫେଡ଼େରେସନହିଁ ଅତ୍ୟାବଶ୍ୟକ ଭିତ୍ତି ଏବଂ ରକ୍ଷାକବଚ । ସେଥିରେ ଭାରତୀୟଙ୍କ ଦାୟିତ୍ୱ ରହିବ ବୋଲି ସ୍ୱୀକାର କରାଗଲା ।

(୨) ସମ୍ମିଳନୀର ଆଲୋଚନାରେ ଭାଗ ନେବା ପାଇଁ କଂଗ୍ରେସକୁ ଆମନ୍ତ୍ରଣ କରାଯିବ ।

(୩) ଆଇନ ଅମାନ୍ୟ, ଯାହାର ଅର୍ଥ ଆଇନକାନୁନର ସଂଗଠିତ ଉଲ୍ଲଙ୍ଘନ, ଭୂରାଜସ୍ୱ ଆଦାୟ ବନ୍ଦ ଓ ଅନ୍ୟାନ୍ୟ ଆଇନଗତ ଦେୟ ବନ୍ଦ, ଆଇନଅମାନ୍ୟ ସମର୍ଥନରେ ପ୍ରଚାରପତ୍ର ପ୍ରକାଶନ, ସରକାରଙ୍କ ବିରୁଦ୍ଧରେ ବେସାମରିକ ଓ ସାମରିକ କର୍ମଚାରୀଙ୍କୁ ଏବଂ ଗ୍ରାମୀଣ କର୍ମଚାରୀଙ୍କୁ ପ୍ରଭାବିତ କରିବା ଉଦ୍ୟମ ରହିତ କରାଯିବ ।

(୪) ବ୍ରିଟିଶ ପଣ୍ୟ ବାସନ୍ଦ ସଂପର୍କରେ ସ୍ଥିର ହେଲାଯେ ଭାରତୀୟ ଶିଳ୍ପଗୁଡ଼ିକୁ ଉତ୍ସାହିତ କରାଯିବ । ମାତ୍ର ବାସନ୍ଦକୁ ଏକ ରାଜନୈତିକ ଅସ୍ତ୍ରରୂପେ ବ୍ୟବହାର କରାଯାଇପାରିବ ନାହିଁ ।

(୫) ଆଇନ ଦ୍ୱାରା ନିର୍ଦ୍ଦିଷ୍ଟ ପରିସୀମା ବାହାରେ ବିଦେଶୀ ପଦାର୍ଥ ବର୍ଜନ ପାଇଁ ଅବା ମଦ୍ୟପାନ ବିରୁଦ୍ଧରେ ପିକେଟିଂକୁ ଅନୁମତି ଦିଆଯିବ ନାହିଁ ।

(୬) ପୁଲିସର ମାତ୍ରାଧିକ କାର୍ଯ୍ୟର ତଦନ୍ତ ପାଇଁ ଗାନ୍ଧିଜୀଙ୍କ ପ୍ରସ୍ତାବ-ଅନାବଶ୍ୟକ ବୋଲି ବିଚାର କରାଗଲା ।

(୭) ଆଇନ ଅମାନ୍ୟ ଆନ୍ଦୋଳନ ସଂକ୍ରାନ୍ତରେ ପ୍ରୟୋଗ ହୋଇଥିବା ଅଧ୍ୟାଦେଶ (ଅର୍ଡିନାନ୍ସ) ଗୁଡ଼ିକୁ ପ୍ରତ୍ୟାହାର କରାଯିବ ।

(୮) ସଂଗଠନକୁ ବେଆଇନ ଘୋଷଣା କରାଯାଇଥିବା ବିଜ୍ଞପ୍ତିକୁ ପ୍ରତ୍ୟାହାର କରାଯିବ ।

(୯) ହିଂସାଜଡ଼ିତ ଅପରାଧଗୁଡ଼ିକ ବ୍ୟତୀତ ଅନ୍ୟାନ୍ୟ ମକଦମାକୁ ପ୍ରତ୍ୟାହାର କରାଯିବ ।

(୧୦) ହିଂସା ସହିତ ଜଡ଼ିତ ନଥିବା ବନ୍ଦୀମାନଙ୍କୁ ଖଲାସ କରାଯିବ ।

(୧୧) ଜରିମାନାଗୁଡ଼ିକୁ ଛାଡ଼ କରାଯିବ ।

(୧୨) ଆନ୍ଦୋଳନ ସଂକ୍ରାନ୍ତରେ ଜବତ୍ ହୋଇଥିବା ଅସ୍ଥାବର ସଂପତ୍ତି ଯଦି ସରକାରଙ୍କ ପାଖରେ ଥାଏ, ଅବା ବାଜ୍ୟାପ୍ତ ହୋଇଥାଏ ଅବା ଭୂରାଜସ୍ୱ ପୈଠ ନକରିବାରୁ ଜବତ କରାଯାଇଥାଏ, ତେବେ ତାହା ସବୁ ଫେରାଇ ଦିଆଯିବ ।

(୧୩) ଅସ୍ଥାବର ସଂପତ୍ତି ପ୍ରତ୍ୟାହାର କରାଯିବ । ମାତ୍ର ଯଦି ତାହା ତୃତୀୟ ପକ୍ଷକୁ ବିକ୍ରି କରାଯାଇଥାଏ, ତେବେ ତାହାର ଚୂଡ଼ାନ୍ତ ନିଷ୍ପତ୍ତି ହୋଇଯାଇଛି ବୋଲି ଧରାଯିବ ।

(୧୪) ଇସ୍ତଫା ଦେଇଥିବା ସରକାରୀ କର୍ମଚାରୀଙ୍କ କଥାର ପୁନର୍ବିଚାର କରାଯିବ, ମାତ୍ର ଯଦି ତାଙ୍କ ସ୍ଥାନ ସ୍ଥାୟୀ ଭାବରେ ପୂରଣ ହୋଇଯାଇଥାଏ ତେବେ ଚୂଡ଼ାନ୍ତ ନିଷ୍ପତ୍ତି ସରିଛି ବୋଲି ଧରାଯିବ ।

(୧୫) ଯାହାସବୁ ଚିକ୍ତି ହେଲା ଯଦି କଂଗ୍ରେସ ସେ ସବୁକୁ ପୂର୍ଣ୍ଣଭାବରେ କାର୍ଯ୍ୟକାରୀ ନ କରେ, ତେବେ ସରକାର ଯାହା ଆବଶ୍ୟକ ମନେ କରିବେ, ସେପରି କର୍ମାନୁଷ୍ଠାନ କରିପାରିବେ ।

ଏହି ପ୍ରକାର ରାଜିନାମାରେ ସ୍ୱାକ୍ଷର କରିବା ପରେ ଗାନ୍ଧିଜୀ ଆନ୍ଦୋଳନ ପ୍ରତ୍ୟାହାର କରିବା ପାଇଁ ସମ୍ମତ ହେଲେ ଏବଂ ଆଗାମୀ ଗୋଲଟେବୁଲ ବୈଠକରେ ଅଂଶ

ଗ୍ରହଣ କରିବାକୁ ରାଜିହେଲେ । ଅନ୍ୟ ପକ୍ଷରେ ତୁରନ୍ତ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରିବାକୁ, ଜରୁରୀ ଅଧ୍ୟାଦେଶଗୁଡ଼ିକୁ ଉଠାଇଦେବାକୁ ଏବଂ କରବିହୀନ ଲୁଣ ମାରିବାକୁ ଇରଉଇନ ସମ୍ମତ ହେଲେ ।

ଭଗତସିଂହ ଓ ତାଙ୍କ ସାଥୀ ଏବଂ ବନ୍ଦୀ ଥିବା ଅନ୍ୟାନ୍ୟ କଂଗ୍ରେସ କର୍ମୀ ଓ କମ୍ୟୁନିଷ୍ଟ କର୍ମୀମାନଙ୍କ ମୁକ୍ତି ସଂପର୍କରେ ଦାବୀ ଉତ୍ଥାପିତ ହୋଇନଥିଲା । ରାଜିନାମାରେ ଉଲ୍ଲେଖ ବା ଅର୍ନ୍ତଭୁକ୍ତ ହୋଇନଥିଲା ।

ଭଗତସିଂହ ଓ ତାଙ୍କ ସାଥୀମାନଙ୍କୁ ଫାଶି ନଦେବା ଲାଗି ଏବଂ ଅନ୍ୟାନ୍ୟ ବନ୍ଦୀଙ୍କୁ ଖଲାସ କରିବାକୁ ଗାନ୍ଧିଜୀ ବିନୀତ ଅନୁରୋଧ କରିଥିଲେ । ଭାଇସରାୟ ସେସବୁର ବିଚାର କରିବେ ବୋଲି ମୌଖିକ ପ୍ରତିଶ୍ରୁତି ଦେଇଥିଲେ । ମାତ୍ର ଗାନ୍ଧୀ ଇରଉଇନ ଚୁକ୍ତି ସ୍ୱାକ୍ଷରର କାଳି ଶୁଖିନାହିଁ । ୧୯୩୧ ମାର୍ଚ୍ଚ ୨୩ରେ ଭଗତସିଂହ, ରାଜଗୁରୁ ଓ ଶୁକଦେବଙ୍କୁ ଫାଶି ଦିଆଗଲା ।

ପ୍ରଥମ ଗୋଲଟେବୁଲ ବୈଠକରେ କଂଗ୍ରେସ ଭାଗ ନେଇ ନଥିଲା । ଗାନ୍ଧୀ-ଇରଉଇନ ଚୁକ୍ତିପରେ ଦ୍ୱିତୀୟ ଗୋଲଟେବୁଲ ବୈଠକରେ କଂଗ୍ରେସ ପକ୍ଷରୁ ଗାନ୍ଧିଜୀ ଯୋଗ ଦେଇଥିଲେ । କଂଗ୍ରେସ ପ୍ରତିନିଧିଭାବରେ କୌଣସି ମୁସଲମାନ ଯିବାକୁ ନିଷେଧ କରାଗଲା । ଗାନ୍ଧିଜୀ ବୈଠକରୁ ରିକ୍ତ ହସ୍ତରେ ଫେରିଲେ ପୁଣି ତାଙ୍କୁ ଗିରଫ କରି ନିଆଗଲା ।

ଏହି ଚୁକ୍ତିକୁ ଅନେକ କଂଗ୍ରେସ ନେତା ଓ ବାମପନ୍ଥୀ ମତବାଦୀ ନେତା ସେତେବେଳେ ବିରୋଧ କରିଥିଲେ ।



# ପାଟନା, ବମ୍ବେ ଓ ମିରଟ୍
# କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଗଠନ ପ୍ରକ୍ରିୟା
# (୧୯୩୪ରୁ୧୯୩୬)

ସ୍ୱାଧୀନତା ସଂଗ୍ରାମର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ୧୯୩୦-୩୨ । ପିକେଟିଂ, ଲବଣ ସତ୍ୟାଗ୍ରହ, ଆଇନ ଅମାନ୍ୟ ଓ ଗାନ୍ଧୀ-ଇରଉଇନ ଚୁକ୍ତିପରେ ଆନ୍ଦୋଳନର ସାମୟିକ ପ୍ରତ୍ୟାହାରର କାଳ । ଏହି ଇତିହାସ ପ୍ରସିଦ୍ଧ ସଂଗ୍ରାମ ପରେପରେ ବନ୍ଦୀମୁକ୍ତ ଅନେକ ସ୍ୱାଧୀନତା ସଂଗ୍ରାମୀଙ୍କ ଚିନ୍ତାର ମନ୍ଥନ ଆରଂଭ ହୋଇଗଲା । ସ୍ୱାଧୀନତା ଅର୍ଜନ ଲାଗି ଅନୁସୃତ ପନ୍ଥାପଦ୍ଧତି ସମ୍ବନ୍ଧରେ ତଥା ସ୍ୱାଧୀନତା ସଂଗ୍ରାମର ଅର୍ଥନୈତିକ, ସାମାଜିକ ଲକ୍ଷ୍ୟହାସଲ ଲାଗି ବ୍ୟାପକତାର ଜନଜାଗରଣ ସୃଷ୍ଟି ସଂପର୍କରେ ଏହି ଚିନ୍ତନ ତୀବ୍ରତର ହେଲା । କଂଗ୍ରେସ ଓ ଗାନ୍ଧିଜୀ ଯେଉଁ ପନ୍ଥାପଦ୍ଧତିରେ ସଂଗ୍ରାମ ପରିଚାଳନା କରିଆସୁଛନ୍ତି, ତାହା ଯଥେଷ୍ଟ କି ବୋଲି ସେମାନଙ୍କ ମନରେ ସଂଶୟ ପ୍ରକାଶିତ ହେଲା ।

୧୯୦୫ ବେଳୁ ଆରଂଭ ବିପ୍ଳବୀ ସନ୍ତ୍ରାଂସବାଦୀମାନଙ୍କ ବୈପ୍ଳବିକ - କାର୍ଯ୍ୟକଳାପ ୧୯୨୦ ଅସହଯୋଗ ଆନ୍ଦୋଳନ ଯାଏ ଚାଲିଥିଲେ ମଧ୍ୟ ତା' ପରବର୍ତ୍ତୀ କାଳରେ ଅଧିକ ତୀବ୍ର ହେଉଥିଲା । ଫଳରେ ସେମାନଙ୍କ ବିରୁଦ୍ଧରେ ଅନେକ ଷଡ଼ଯନ୍ତ୍ର ମକଦମା, ଫାଶିଦଣ୍ଡ, ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ବିଧାନ କରାଯାଇଥିଲା । ଏମାନଙ୍କ ମଧ୍ୟରୁ ଅନେକ କଂଗ୍ରେସରେ ଥାଇ ମଧ୍ୟ ମାର୍କ୍ସୀୟ ଚିନ୍ତା ପ୍ରତି ଆକୃଷ୍ଟ ହୋଇ, ଲେବର ପାର୍ଟି, କୀର୍ତ୍ତିକିଷାନ ପାର୍ଟି, ଗଦ୍ଦର ପାର୍ଟି, ପେଜାଣ୍ଟ ଏବଂ ଓ୍ୟାର୍କରସପାର୍ଟି ପ୍ରଭୃତି ଗଠନ କରିଥିଲେ । ବିଧିବଦ୍ଧ କମ୍ୟୁନିଷ୍ଟ ପାର୍ଟି ଗଠିତ ହୋଇଥିଲା । ଭଗତ୍‌ସିଂହ, ଚନ୍ଦ୍ରଶେଖର ଆଜାଦପ୍ରମୁଖଙ୍କ ହିନ୍ଦୁସ୍ଥାନ ରିପବ୍ଲିକାନ ପାର୍ଟିର ଯୁବକମାନେ ସମାଜବାଦ ପ୍ରତି ଆକୃଷ୍ଟ ହୋଇଥିଲେ ।

୧୯୩୦-୩୨ ବନ୍ଦୀଶାଳାରୁ ମୁକ୍ତ ଅନେକ ଯୁବକ ତଥା ନେତୃସ୍ଥାନୀୟବ୍ୟକ୍ତି ସମାଜବାଦୀ ଚିନ୍ତାଧାରା ପ୍ରତି ଆକୃଷ୍ଟ ହୋଇ କଂଗ୍ରେସ ଭିତରେ ଥାଇ ଆଉ ଏକ ପାର୍ଟି ଗଠନ କରିବା ପ୍ରୟୋଜନ ମନେ କଲେ ।

ସେହି ମୁକ୍ତି ସୈନିକମାନେ ପରସ୍ପର ସହିତ ଯୋଗାଯୋଗ ପ୍ରତିଷ୍ଠା କଲେ ଏବଂ ପାଟନା ଠାରେ ଏ.ଆଇ.ସି.ସି. ବୈଠକ ବେଳେ ମିଳିତ ହେଲେ । ୧୯୩୪ ମଇ ମାସରେ ଏମାନଙ୍କର ପ୍ରାରଂଭିକ ବୈଠକ ବସିଲା । ସେମାନେ କଂଗ୍ରେସରେ ଥାଇ ଜମିଦାର ବିରୋଧୀ ଚାଷୀ ଆନ୍ଦୋଳନ କରୁଥିଲେ । ତେଣୁ ଏହି ବୈଠକରେ ଦେଶବ୍ୟାପୀ ଚାଲିଥିବା କୃଷକ ଓ ଶ୍ରମିକ ଆନ୍ଦୋଳନର ସମୀକ୍ଷା ହୋଇଥିଲା । କେବଳ ସେତିକିରେ ସମୀକ୍ଷା ସୀମିତ ନଥିଲା । କଂଗ୍ରେସ ଆଇନ ଅମାନ୍ୟ ଆନ୍ଦୋଳନକୁ ପ୍ରତ୍ୟାହାର କରିନେଇ ବିଧାନସଭାମାନଙ୍କରେ ପ୍ରବେଶ କରିବା ମନୋଭାବ ସଂକ୍ରାନ୍ତରେ ମଧ ଏହି ବୈଠକରେ ସମୀକ୍ଷା କରାଯାଇଥିଲା ।

ଏସବୁର ବିସ୍ତାରିତ ଆଲୋଚନା ପରେ ସ୍ଥିର କରାଗଲାଯେ ସୋସଲିଷ୍ଟମାନେ କଂଗ୍ରେସ ଭିତରେ ଥାଇ ଏକ ସ୍ୱତନ୍ତ୍ର ରାଜନୈତିକ ପାର୍ଟି ହିସାବରେ କାର୍ଯ୍ୟ କରିବେ । ଜୟପ୍ରକାଶ ନାରାୟଣଙ୍କୁ ଆବାହକ ନିଯୁକ୍ତି କରାଗଲା । ଏକ ଚିଠା କାର୍ଯ୍ୟକ୍ରମର ରଚନା ଓ ନୂତନ ପାର୍ଟିର ଏକ ସଂବିଧାନ ରଚନା କରିବା ଲାଗି ଏକ ଚିଠା କମିଟି ନିର୍ବାଚନ କରାଗଲା । ଏହି ଚିଠାଗୁଡ଼ିକୁ ଗ୍ରହଣ କରିବାକୁ ଏବଂ ଏକ କାର୍ଯ୍ୟକାରୀ କମିଟି ନିର୍ବାଚନ କରିବାକୁ କଂଗ୍ରେସର ଅଧିବେଶନବେଳେ ବ୍ୟାପକ ଧରଣର ସମ୍ମିଳନୀ ଡକାଯିବ ବୋଲି ନିଷ୍ପତ୍ତି ନିଆଗଲା ।

ଅବଶ୍ୟ ପାଟନାରେ ଅନୁଷ୍ଠିତ ଏହି ବୈଠକ ପୂର୍ବରୁ ବମ୍ବେ, କଲିକତା, କେରଳ, ଓଡ଼ିଶା ପ୍ରଭୃତି ସ୍ଥାନରେ ପ୍ରାଦେଶିକ ସ୍ତରରେ ସୋସାଲିଷ୍ଟ ପାର୍ଟି ଗଠିତ ହୋଇଥିଲା । କେରଳର କାଲିକଟଠାରେ ଏହି ପାର୍ଟିର ସମ୍ମିଳନୀ କେ.କେଲାଗନଙ୍କ ଅଧକ୍ଷତାରେ ଅନୁଷ୍ଠିତ ହୋଇ ଏକ କମିଟି ଗଠନ କରାଯାଇଥିଲା । ତାହାର ସଭାପତି ଥିଲେ ସି.କେ.ଗୋବିନ୍ଦନ ନାୟାର ଓ.ପି.କ୍ରିଷ୍ଣ ପିଲାଇ ଥିଲେ ସଂପାଦକ । ପାଟନା ସମ୍ମିଳନୀରେ ଏହି କେରଳ ପାର୍ଟି ପକ୍ଷରୁ ଇ.ଏମ୍.ଏସ୍. ନମ୍ବୁଦ୍ରିପଦ ଏବଂ ଏ.ମାଧବନ ପ୍ରତିନିଧିତ୍ୱ କରିଥିଲେ । ପରବର୍ତ୍ତୀ କାଳରେ ଏମାନେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଂଗଠକ ହେଲେ । ଓଡ଼ିଶାରେ ସାମ୍ୟବାଦୀ କର୍ମୀସଂଘ ଗଠିତ ହୋଇଥିଲା । ନବକୃଷ୍ଣ ଚୌଧୁରୀ ମୁଖ୍ୟତଃ ଏହାର ଆୟୋଜକ ଥିଲେ ।

ଆଚାର୍ଯ୍ୟ ନରେନ୍ଦ୍ରଦେବ, ସଂପୂର୍ଣ୍ଣାନନ୍ଦ, କମଳାଦେବୀ ଚଟ୍ଟୋପାଧ୍ୟାୟଙ୍କ ପରି ବାମପନ୍ଥୀ କଂଗ୍ରେସ ବ୍ୟକ୍ତିମାନେ ଏହି ପାର୍ଟିର ମୁଖପାତ୍ର ବିବେଚିତ ହେଉଥିଲେ । ନୂତନ- ଏହି ପାର୍ଟିର ମୁଖ୍ୟ ସଂଗଠକଙ୍କ ମଧରେ ଥିଲେ, ଜୟପ୍ରକାଶ ନାରାୟଣ ଓ ମିନୁ ମାଶାନୀ ପ୍ରମୁଖ ବହୁ ଯୁବକ ।

ପାଟନା ସମ୍ମିଳନୀରେ ମଧ କମ୍ୟୁନିଷ୍ଟ ପାର୍ଟିର ଏମ୍.ଏନ୍.ରାୟଙ୍କ ଅନୁଗାମୀ ବହୁ ନେତା ଯୋଗଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । କମ୍ୟୁନିଷ୍ଟ ଏବଂ ରାୟପନ୍ଥୀମାନେ ନିଜ ନିଜ ମତାଦର୍ଶକୁ ପ୍ରତିନିଧିମାନଙ୍କ ସମୀପରେ ଉପସ୍ଥାପନ କରିଥିଲେ ।

ଏହି ଅଧିବେଶନରେ ମୁଖ୍ୟ ରାଜନୈତିକ ଦୃଷ୍ଟିକୋଣ କ'ଣ ହେବ ତାହାର ବ୍ୟାଖ୍ୟା କରାଯାଇଥିଲା । ଭାରତରେ ସଂଗ୍ରାମର ପ୍ରଧାନ ସଂଗଠନ କଂଗ୍ରେସ, ତେଣୁ ସମସ୍ତ ସୋସଲିଷ୍ଟ କଂଗ୍ରେସର ସଦସ୍ୟ ହେବେ ଏବଂ ବିପ୍ଳବ ଦିଗରେ କଂଗ୍ରେସକୁ ମୁହାଁଇନେବା ଲାଗି ଉଦ୍ୟମ କରିବେ । ଏହି ଅଧିବେଶନରେ ଗାନ୍ଧିବାଦୀ କାର୍ଯ୍ୟକ୍ରମର ତୀବ୍ର ସମାଲୋଚନା କରାଯାଇଥିଲା ତଥା ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ କଂଗ୍ରେସର କର୍ମଶୈଳୀ ସମାଲୋଚିତ ହୋଇଥିଲା ।

କଂଗ୍ରେସ ସୋସଲିଷ୍ଟ ପାର୍ଟିର ନେତାମାନେ ଦାବୀ କରୁଥିଲେ ଯେ ସେମାନେ ନେହେରୁଙ୍କ ଚିନ୍ତା ଓ ଅଭିମତକୁ କାର୍ଯ୍ୟକାରୀ କରୁଛନ୍ତି । ମାତ୍ର ନେହେରୁ କହିଲେ ଯେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଦୃଷ୍ଟିକୋଣଠାରୁ ତାଙ୍କ ଦୃଷ୍ଟିଭଂଗୀ ଅଲଗା ।

ଗାନ୍ଧିଜୀଙ୍କ ସହିତ ସଂଘର୍ଷରେ ଆସିବା ଲାଗି ନେହେରୁ ପ୍ରସ୍ତୁତ ନଥିଲେ । ସେ କଂଗ୍ରେସବାଲାଙ୍କୁ ଧରି କଂଗ୍ରେସ କାର୍ଯ୍ୟକ୍ରମରେ ସମାଜବାଦୀ ଆଭିମୁଖ୍ୟକୁ କାର୍ଯ୍ୟକାରୀ କରିବେ ବୋଲି ନିର୍ଣ୍ଣୟ କରିଥିଲେ । ନେହେରୁ ତାଙ୍କର ଅନେକ କମ୍ୟୁନିଷ୍ଟ ଓ ସୋସଲିଷ୍ଟ ବନ୍ଧୁଙ୍କୁ ଚିଠି ଲେଖିଲେ । ସେଥିରେ ସେ କହିଥିଲେ ଯେ କଂଗ୍ରେସର ମତାଦର୍ଶଗତ ପଛୁଆପଣ ସତ୍ତ୍ୱେ ତାହାହିଁ ଏକମାତ୍ର ବିକାଶପ୍ରାପ୍ତ ବୈପ୍ଳବିକ ସଂଗଠନ । ତେଣୁ ତାହା ଠାରୁ ଦୂରରେ ରହିବା ଉଚିତ ନୁହେଁ । ତେଣୁ କଂଗ୍ରେସ ଭିତରେ ସୋସଲିଷ୍ଟ ପାର୍ଟି ଗଠନକୁ ସେ ପସନ୍ଦ କରିନଥିଲେ ।

ମାତ୍ର ନୂତନ ଭାବରେ ପ୍ରତିଷ୍ଠିତ କଂଗ୍ରେସ ସୋସଲିଷ୍ଟ ପାର୍ଟି ବିରୁଦ୍ଧରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଏକ ପ୍ରସ୍ତାବ ଗ୍ରହଣ କଲା । କିନ୍ତୁ ନେହେରୁ ଜେଲଖାନାରେ ଥାଇ ଏପରି ପ୍ରସ୍ତାବ ଗ୍ରହଣର ସଂବାଦ ଶୁଣି ଖୁବ୍ କ୍ରୋଧାନ୍ୱିତ ହେଲେ ଓ ମହାତ୍ମାଗାନ୍ଧୀଙ୍କୁ ଏ ସଂପର୍କରେ ଏକ ଚିଠି ପଠାଇଲେ ଏବଂ ପ୍ରସ୍ତାବର ତୀବ୍ର ସମାଲୋଚନା କଲେ ।

## ସଭାପତି ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଅଭିଭାଷଣର ଏକାଂଶ

ଆଚାର୍ଯ୍ୟ ନରେନ୍ଦ୍ର ଦେବ ତାଙ୍କ ଅଧ୍ୟକ୍ଷ ଅଭିଭାଷଣରେ କହିଲେ, "ଆମ ପ୍ରିୟ ନେତା ପଣ୍ଡିତ ଜବାହାରଲାଲ ନେହେରୁଙ୍କ ଅନୁପସ୍ଥିତି ମୋ କାମକୁ ଅଧିକ ଦୁରୂହ କରି ଦେଇଛି । ଆଜି ତାଙ୍କର ଅନୁପସ୍ଥିତିକୁ ଆମେ ଗଭୀର ଭାବରେ ଅନୁଭବ କରୁଛୁ । ତାଙ୍କର ମୂଲ୍ୟବାନ ପରାମର୍ଶ ଓ ନିର୍ଦ୍ଦେଶ ଏହି ଅନୁଷ୍ଠାନକୁ ସାହାଯ୍ୟକାରୀ ହୋଇପାରିଥାନ୍ତା ।

"ସମାଜବାଦ ଦିଗରେ ଆମର ଜାତୀୟ ଆନ୍ଦୋଳନକୁ ପ୍ରଭାବିତ କରିବାର ଉଦ୍ୟମବେଳେ, ଆମେ ସଂଗେସଂଗେ ସମାଲୋଚନାର ଶରବ୍ୟ ହୋଇଛୁ । କୁହାଯାଉଛିଯେ ଜାତୀୟତା ସଂଗରେ ସମାଜବାଦକୁ ଯୋଡ଼ିବା କଷ୍ଟକର ଏବଂ ଆମେ ଯଦି ଆମ ଦେଶରେ ସମାଜବାଦ ନିର୍ମାଣ କରିବାକୁ ଚାହୁଁ, ତେବେ କଂଗ୍ରେସ ବାହାରେ

ଆମେ କାହିଁକି ଏକ ସ୍ୱାଧୀନ ଗୋଷ୍ଠୀ ଗଢୁନାହୁଁ, ତାହାଠାରୁ ଆମେ ଏକ ସ୍ୱତନ୍ତ୍ର ନୀତି ଗ୍ରହଣ କରୁନାହୁଁ ଏବଂ ଏଥି ସଂଗେସଂଗେ ଏକ ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ସଂଗଠନର ପ୍ରତିକ୍ରିୟାଶୀଳ ପ୍ରଭାବରୁ ଆପଣାକୁ ମୁକ୍ତ କରୁନାହୁଁ।"

"ଏହାର ଉତ୍ତର ହେଲା, ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ମହାନ୍ ସ୍ୱାଧୀନତା ସଂଗ୍ରାମ, ଯାହାକି ଆଜି କଂଗ୍ରେସରେ ପ୍ରତିଫଳିତ, ତାହାଠାରୁ ଆମେ ବିଚ୍ଛିନ୍ନ ରହିବାକୁ ଚାହୁଁ ନାହୁଁ।"

"କଂଗ୍ରେସର ଦୋଷ ଦୁର୍ବଳତା ଅଛି, ଆମେ ସ୍ୱୀକାର କରୁଛୁ। ମାତ୍ର ତାହାହିଁ ସହଜରେ ଦେଶର, ଦର୍ସବୃହତ୍ ବୈପ୍ଳବିକ୍ ଶକ୍ତି ହୋଇପାରିବ। ଆମ ବିରୁଦ୍ଧରେ ଅଭିଯୋଗ କରାଯିବଯେ ଶ୍ରେଣୀ ସଂଗ୍ରାମର ତତ୍ତ୍ୱ ପ୍ରଚାରକରି ଆମେ ଶ୍ରେଣୀ ସଂଘର୍ଷକୁ ବଢ଼ାଇବୁ। ସ୍ୱାଧୀନତା ହାସଲ ଲାଗି ସବୁ ଶ୍ରେଣୀ ଓ ସବୁ ଜନ ସଂପ୍ରଦାୟ ସାମୂହିକ ଉଦ୍ୟମ କରିବା ଅତ୍ୟନ୍ତ ପ୍ରୟୋଜନ। ଶତ୍ରୁ ବିରୁଦ୍ଧରେ ମିଳିତ ସାମ୍ମୁଖ୍ୟ ଆବଶ୍ୟକ। - ମାତ୍ର ନିଷ୍ପେଷିତ ଶ୍ରେଣୀଗୁଡ଼ିକୁ ସଚେତନ କରିବା ଉଦ୍ୟମକୁ ଏମାନେ କାହିଁକି ବିରୋଧ କରୁଛନ୍ତି, ତାହା ମୁଁ ବୁଝିପାରୁନି?"

ସେ କହିଲେ, "ସମାଜବାଦ ଧ୍ୱନି ସର୍ବତ୍ର ବିସ୍ତାରିତ। ଏହାଠାରୁ ଆମେ ଅଲଗା ରହି ନପାରୁ। ଏକ ନୂତନ ଚିନ୍ତାଧାରା ଉପସ୍ଥିତ ହୋଇଛି। ଅବଶ୍ୟ ହଠାତ୍ ନୁହେଁ। ଆଗାମୀ ଦିନମାନଙ୍କରେ ଯେମିତି ଅନ୍ୟରାଜନୀତିଜ୍ଞମାନେ କହିବେ, ସେମିତି ଅଧିକରୁ ଅଧିକ ଅଗ୍ରଗାମୀ ଆର୍ଥିକ କାର୍ଯ୍ୟକ୍ରମ ସଂପର୍କରେ କଂଗ୍ରେସ ମଧ୍ୟ କହିବ.... ।"

## ବମ୍ବେ ସମ୍ମିଳନୀ

ପାଟନାରେ ଏହି ଉଦବୋଧନୀ ସମ୍ମିଳନୀର ୬ମାସ ମଧ୍ୟରେ ବମ୍ବେରେ ଦଳର ପ୍ରଥମ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। ପାର୍ଟିର ଚରମ ଲକ୍ଷ୍ୟ ହେବ ବ୍ରିଟିଶ ସାମ୍ରାଜ୍ୟବାଦ କବଳରୁ ଦେଶର ମୁକ୍ତି ଓ ସମାଜବାଦୀ ବ୍ୟବସ୍ଥାର ପ୍ରବର୍ତ୍ତନ। ପାର୍ଟି ସମାଜବାଦୀ ସମାଜ ପ୍ରତିଷ୍ଠା ପାଇଁ ପନ୍ଦରଟି ଦଫାର କର୍ମସୂଚୀ ନେଇଥିଲା।

୧୯୩୬ ଜାନୁଆରୀରେ ମିରଟଠାରେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଆନୁଷ୍ଠନିକ ରୂପ ନେଲା।

ଜୟପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ, ଅଶୋକ ମେହେଟା, ମିନୁ ମାସାନି, ଅଚ୍ୟୁତ ପଟ୍ଟବର୍ଦ୍ଧନ, ୟୁସୁଫ ମେହେର ଅଲି, ମୋହନ ଲାଲ ଗୌତମ, ନବକୃଷ୍ଣ ଚୌଧୁରୀ, ଇ.ଏମ୍.ଏସ୍.ନମ୍ବୂଦ୍ରିପଦ ପ୍ରଭୃତି ଏଥିରେ ପ୍ରତିନିଧିତ୍ୱ କରିଥିଲେ। ବମ୍ବେରୁ ୟୁସୁଫ ମେହେର ଅଲିଙ୍କ ସଂପାଦକତ୍ୱରେ ଏହି ପାର୍ଟିର ମୁଖପତ୍ର ରୂପେ ଏକ ଇଂରାଜୀ ସାପ୍ତାହିକ "କଂଗ୍ରେସ ସୋସଲିଷ୍ଟ" ପ୍ରକାଶ ପାଉଥିଲା।



# ଅଖିଳଭାରତ କୃଷକ ସଭାର ଜନ୍ମ ୧୯୩୬ ଏପ୍ରିଲ ୧୧

ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ୧୯୩୬ ଏପ୍ରିଲରେ ଉତ୍ତର ପ୍ରଦେଶର ଫୈଜପୁରଠାରେ ଅନୁଷ୍ଠିତ ହୋଇଥାଏ । ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରୁ ଅନେକ ଆଗୁଆ ନେତା ଓ କର୍ମୀ ଚାଷୀମାନଙ୍କ ଉପରେ ଚାଲିଥିବା ଶୋଷଣ, ଅତ୍ୟାଚାର ବିରୁଦ୍ଧରେ ସେମାନଙ୍କୁ ଏକତ୍ର କରୁଥାନ୍ତି । ଏମିତିକି ନିଜନିଜ ଅଂଚଳ ବା ପ୍ରଦେଶରେ କୃଷକ ସଂଗଠନ ଗଢୁଥାନ୍ତି । ଫୈଜପୁର ନିକଟସ୍ଥ ବାରାବାଙ୍କିଠାରେ ସର୍ବଭାରତୀୟ କୃଷକକର୍ମୀ ସମ୍ମିଳନୀ ସ୍ୱତଃସ୍ଫୂର୍ତ୍ତ ଭାବରେ ଅନୁଷ୍ଠିତ ହୋଇନାହିଁ । ଏପରି କୃଷକ ସଂଗଠନ ବଂଗଳା, ପଂଜାବ, ଉତ୍ତର ପ୍ରଦେଶ, ମାଲବାର, ମାନ୍ଦ୍ରାଜ ପ୍ରଭୃତି ବିଭିନ୍ନ ସ୍ଥାନରେ ଗଢ଼ି ଉଠିଥାଏ । ସେସବୁ ସଂଗଠନର ନେତା ଓ ସର୍ବ ଭାରତୀୟ ସ୍ତରରେ କଂଗ୍ରେସ ଭିତରେ ଥିବା ଯେଉଁସବୁ ନେତା ଚାଷୀମାନଙ୍କର ନିଜସ୍ୱ ଶ୍ରେଣୀ ସଂଗଠନ ରହିବା ଶ୍ରେୟ ମଣୁଥିଲେ, ସେମାନେ ଆଗରୁ ପରସ୍ପର ସହ ଯୋଗାଯୋଗ ରଖି ଏପରି ଏକ ବିଶେଷ ସମ୍ମିଳନୀର ବ୍ୟବସ୍ଥା କରିଥିଲେ । ୧୯୨୦ରେ ଯେପରି ଭାରତରେ ଶ୍ରମିକ ଆନ୍ଦୋଳନର ନେତାମାନେ ସର୍ବଭାରତୀୟ ଟ୍ରେଡ ୟୁନିଅନ କଂଗ୍ରେସ ଗଠନ କରିଥିଲେ, ସେମିତି ସାରା ଭାରତରେ ବିଛାଡ଼ି ହୋଇ ରହିଥିବା ଚାଷୀମାନଙ୍କର ଏକ ସ୍ୱତନ୍ତ୍ର ଶ୍ରେଣୀ ସଂଗଠନ ରହିବ ବୋଲି ଏମାନେ ଏକମତ ହୋଇଥିଲେ ।

ଅବଶ୍ୟ କଂଗ୍ରେସ ଅନୁଷ୍ଠାନର ବହୁ ପ୍ରମୁଖ ନେତା ଏପରି ଏକ ସ୍ୱତନ୍ତ୍ର ସଂଗଠନର ଆବଶ୍ୟକତା ନାହିଁ ବୋଲି ମତ ଦେଉଥିଲେ । କଂଗ୍ରେସ ନେତୃତ୍ୱର ଏକ ବଳିଷ୍ଠ ଅଂଶ, ବିଚାରୁଥିଲେ ଯେ କଂଗ୍ରେସହିଁ ଚାଷୀ, ଶ୍ରମିକ, ଯୁବକ, ସବୁ ସମ୍ପ୍ରଦାୟର ନେତୃତ୍ୱ କରୁଛି । ତେଣୁ ଏସବୁ ସଂସ୍ଥା ସଂଗଠନର ଆବଶ୍ୟକତା ନାହିଁ । ଏହାଦ୍ୱାରା ସ୍ୱାଧୀନତା ସଂଗ୍ରାମ ଦୁର୍ବଳ ହୋଇଯିବ ବୋଲି ସେମାନଙ୍କର ଯୁକ୍ତିଥିଲା । ମାତ୍ର କଂଗ୍ରେସରେ ନୂତନ ପୀଢ଼ିର ନେତା ଓ କର୍ମୀମାନଙ୍କ ଭିତରୁ ଅନେକ ଦୃଢ଼ ବିଶ୍ୱାସ କରୁଥିଲେ ଯେ ଏପରି ଶ୍ରେଣୀ ସଂଗଠନ କଂଗ୍ରେସର ସ୍ୱାଧୀନତା ଆନ୍ଦୋଳନକୁ ଅଧିକ ପ୍ରସାରିତ କରିବ । ଲକ୍ଷଲକ୍ଷ ସଂଖ୍ୟାରେ ଚାଷୀ ନିଜର ଦାବୀଗୁଡ଼ିକ ପାଇଁ ଆନ୍ଦୋଳନ କରି କଂଗ୍ରେସକୁ ଓ ସ୍ୱାଧୀନତା ସଂଗ୍ରାମକୁ ଅଧିକ ସୁଦୃଢ଼ କରିବେ । ଏପରି ବାମପନ୍ଥୀ, ପ୍ରଗତିବାଦୀ, ସମାଜବାଦୀ-

ସାମ୍ୟବାଦୀ ଚିନ୍ତାଧାରାର ବାହକମାନେ ହିଁ ସକଳ ବିରୋଧ ସତ୍ତ୍ୱେ ଅଖିଳ ଭାରତ କୃଷକ ସଭା ଗଠନ କରିଥିଲେ । ଉତ୍ତରପ୍ରଦେଶର ବିଶିଷ୍ଟ ଚାଷୀନେତା ସ୍ୱାମୀ ସରଜାନନ୍ଦ ସରସ୍ୱତୀ, ସ୍ୱାଧୀନତା ସଂଗ୍ରାମ କାଳରେ ଗାନ୍ଧିଜୀଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସି ଆଶ୍ରମ ଛାଡ଼ି ଚାଷୀ ଆନ୍ଦୋଳନ ଚଳାଉଥିଲେ । ତାଙ୍କରି ଅଧ୍ୟକ୍ଷତାରେ ଅ.ଭା. କୃଷକ ସଭାରେ ଉଦ୍‌ବୋଧନୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ସର୍ବଭାରତୀୟ ସମ୍ମିଳନୀରେ ଯେଉଁମାନେ ଉପସ୍ଥିତ ହୋଇଥିଲେ ଏବଂ କର୍ମକର୍ତ୍ତା ନିର୍ବାଚିତ ହୋଇଥିଲେ, ସେମାନେ ୧୯୨୦-ରୁ ୧୯୩୦-୩୨ ଯାଏ ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ କାରାବରଣ କରିଥିଲେ ଏବଂ ବିଶିଷ୍ଟ ନେତାର ମାନ୍ୟତା ପାଇଥିଲେ ।

ଏହି ଉଦ୍‌ବୋଧନୀ ସମ୍ମିଳନୀ ଅଖିଳ ଭାରତ କୃଷକ ସଭାକୁ ଆନୁଷ୍ଠାନିକ ରୂପ ଦେଇଥିଲା । ଏହାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ତଥା ଏହା ସାଂଗଠନିକ ରୂପରେଖ ନିର୍ଦ୍ଧାରିତ ହୋଇଥିଲା ।

ସ୍ୱାମୀ ସହଜାନନ୍ଦ ସରସ୍ୱତୀ ଏହାର ସଭାପତି ଏବଂ ଆନ୍ଧ୍ରର ପ୍ରସିଦ୍ଧ କୃଷକ ନେତା ଏନ୍.ଜି.ରଂଗା ଏହାର ସାଧାରଣ ସଂପାଦକ ପଦରେ ନିର୍ବାଚିତ ହେଲେ ।

ଅଖିଳ ଭାରତ କୃଷକ ସଭାର ପ୍ରାଦେଶିକ ଶାଖାମାନ ଖୋଲାଗଲା । କଂଗ୍ରେସ ସଂଗଠନପରି ଏହାର ଜିଲ୍ଲା ଶାଖା ଓ ପ୍ରାଥମିକ କମିଟି ଗଢ଼ାଗଲା । କଂଗ୍ରେସ ଅନୁଷ୍ଠାନ ଭିତରେ ରହି ବହୁ କଂଗ୍ରେସ କର୍ମୀ ସମାଜବାଦୀ ଭାବଧାରାରେ ଅନୁପ୍ରାଣୀତ ହୋଇ କୃଷକମାନଙ୍କୁ ଜମିଦାର, ପୁଲିସ, ମହାଜନ, ତଥା ବିପୁଳ ସଂପତ୍ତିବାନ ମଠ ମହନ୍ତଙ୍କ ଅତ୍ୟାଚାର ବିରୁଦ୍ଧରେ ଏକାଠି କଲେ । ଯେଉଁ ଚାଷୀମାନେ ଏହି ସଂଗଠନରେ ଯୋଗ ଦେଲେ, ସେମାନେ ବର୍ଷକୁ ଏକ ଅଣା (ସେତେବେଳେ ଟଙ୍କାଟି ୧୬ ଅଣା ଥିଲା ଓ କଂଗ୍ରେସ ସଭ୍ୟ ଚାନ୍ଦା ଚାରିଅଣା ଥିଲା) ଚାନ୍ଦା ଦେଉଥିଲେ ।

ବ୍ରିଟିଶ ସାମ୍ରାଜ୍ୟବାଦ ତା'ର ରାଜୁତିକୁ ଦୃଢ଼ କରିବା ଲାଗି ଯେଉଁ ବ୍ୟବସ୍ଥା ଖଞ୍ଜିଥିଲା, ସେହି ବ୍ୟବସ୍ଥା ଥିଲା ରାଜ-ନବାବ ମହାରାଜା ପ୍ରଭୃତିଙ୍କ ଦ୍ୱାରା ଶାସିତ ଗଡ଼ଜାତଗୁଡ଼ିକ ସାଂଗକୁ ସାମନ୍ତବାଦର ଆଉ ଏକ ବ୍ୟବସ୍ଥା । ସେ ବ୍ୟବସ୍ଥାରେ ଥିଲେ ଜମିଦାର, ଠିକେଦାର, ତାଲୁକଦାର, ଲାଖରାଜଦାର, ଇନାମଦାର, ଦେଶମୁଖ, ବାହେଲଦାର, ମକଦମ, ଗୌନ୍ତିଆ, ପ୍ରଧାନ, ମୁସ୍ତାଦାର ଏମିତି ନାନାବିଧ ମଧ୍ୟ-ସତ୍ତ୍ୱାଧିକାରୀ । ସେମାନେ ହିଁ ବେଠି, ବେଗାରୀ, ରସଦ, ମାଗଣ, କ୍ରୋକ ନିଲାମ ପ୍ରଭୃତି ଯାବତୀୟ ଅତ୍ୟାଚାରକରି ଖଜଣା ବଢ଼େଇ, ନାନା ଟିକସ ବସେଇ ଚାଷୀମାନଙ୍କୁ ତଳିତଳାନ୍ତ କରୁଥିଲେ । ବ୍ରିଟିଶ ପୁଲିସ, ହାକିମ, ଅଦାଲତ ଚାଷୀମାନଙ୍କ ଉପରେ ଚାଲିଥିବା ଅତ୍ୟାଚାରକୁ ସାହାଯ୍ୟ ସମର୍ଥନ କରୁଥିଲେ । ଚାଷୀ ନିଜ ଜମି, ଘରଦ୍ୱାର ହରାଇ ଦାଣ୍ଡର ଭିକାରୀ ପାଲଟୁଥିଲା ।

ଭାରତର ପୁରାତନ କୃଷି ବ୍ୟବସ୍ଥା ଯାହାଥିଲା ତାହା ଭୁଷୁଡ଼ି ପଡ଼ିଲା । ବ୍ରିଟିଶ ଶାସନ କାଳରେ ବାରଂବାର ଦୁର୍ଭିକ୍ଷ ଘଟି ଦୁଇକୋଟିରୁ ଉର୍ଦ୍ଧ୍ୱ ଲୋକ, ଅର୍ଥାତ୍ ଚାଷୀ, କାରିଗର, ଆଦିବାସୀ ଗରୀବ ଭୂମିହୀନ ଓ ନିମ୍ନମଧ୍ୟବିତ୍ତ ଦୁର୍ଭିକ୍ଷରେ ପ୍ରାଣ ହରାଇଥିଲେ ।

ଦେଶରେ କଂଗ୍ରେସ ବା ଅନ୍ୟ କୌଣସି ରାଜନୈତିକ ଦଳ ଆସିବା ପୂର୍ବରୁ ବିଶାଳ ଭାରତବର୍ଷର ଚାଷୀମାନେ ନିଜନିଜ ଇଲାକାରେ ଏହା ବିରୁଦ୍ଧରେ ଅଜସ୍ର ମେଳି, ବିଦ୍ରୋହ କରିଥିଲେ । ସେତେବେଳେ ରାସ୍ତାଘାଟ ନଥିଲା, କି ରେଳ ଯୋଗାଯୋଗ ନଥିଲା, କି କଳକାରଖାନା ନଥିଲା, କି ଖବରକାଗଜ ନଥିଲା । କିନ୍ତୁ ଚାଷୀ ଗୋଟିଏ ଜାଗରେ ବ୍ରିଟିଶ ଓ ଜମିଦାର ବିରୁଦ୍ଧରେ ବିଦ୍ରୋହ କଲେ, ତୁଣ୍ଡବାଇଦ ପରି ସହସ୍ର କୋଶ ତେଙ୍ଗି ସଂବାଦ ପହଂଚୁଥିଲା ।

ବଂଗଳାରେ ନୀଳବିଦ୍ରୋହ, ମାଲବାରରେ ଜେନମିମାନଙ୍କ ବିରୁଦ୍ଧରେ ମୋପଲା ବିଦ୍ରୋହପରି ଚାଷୀମାନଙ୍କ ଆନ୍ଦୋଳନର ଶତଶତ ଦୃଷ୍ଟାନ୍ତ ରହିଛି ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବର୍ଦ୍ଦୋଲି ସତ୍ୟାଗ୍ରହ, ଦୁର୍ଭିକ୍ଷ ବିରୁଦ୍ଧରେ ଖେଡ଼ା ଆନ୍ଦୋଳନ, ବିହାରର ଚମ୍ପାରଣରେ ଗାନ୍ଧିଜୀଙ୍କ ଦ୍ୱାରା ପରିଚାଳିତ ତିନି କଠିଆ ଆନ୍ଦୋଳନ, ଆମ ଓଡ଼ିଶାରେ ୧୯୨୦-୨୧ରେ କନିକା ପ୍ରଜାମେଳି ସେ କାଳର ଚାଷୀ ଆନ୍ଦୋଳନର କେତେକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ଅଖିଳ ଭାରତ କୃଷକ ସଭା ଗଠନକାରୀ ନେତାମାନେ ଅତୀତର ଏସବୁ ଆନ୍ଦୋଳନରୁ ଶିକ୍ଷା ଗ୍ରହଣ କରି ସାମନ୍ତବାଦୀ ପ୍ରଥାର ବିଲୋପ, ଏକମାତ୍ର ସମାଧାନ ବୋଲି ସ୍ଥିରକରି କାର୍ଯ୍ୟସୂଚୀ ଗ୍ରହଣ କରିଥିଲେ ।

ଅ.ଭା. କୃଷକ ସଭାର ପରମ ଲକ୍ଷ୍ୟ ହେବ, ଦେଶର ପୂର୍ଣ୍ଣ ସ୍ୱାଧୀନତା ଓ ସାମନ୍ତବାଦୀ ପ୍ରଥାର ବିଲୋପ ବୋଲି ଘୋଷଣା କରାଗଲା ।

ପ୍ରତିବର୍ଷ ସେପ୍ଟେମ୍ବର ୧ରେ ଭାରତସାରା କୃଷକ ଦିବସ ପାଳନ କରାଯିବ ଏବଂ ବିଭିନ୍ନ ପ୍ରଦେଶରେ ଚାଷୀ ଆନ୍ଦୋଳନର ଅଗ୍ରଗତି ସଂପର୍କରେ ସମୀକ୍ଷା କରାଯିବ ବୋଲି ନିଷ୍ପତ୍ତି ନିଆଗଲା ।

ଚାଷୀମାନଙ୍କ ଭିତରେ ଅଧିକ ଜାଗରଣ ଆଣିବା ଲାଗି କୃଷକ ସଭାର କର୍ମୀମାନଙ୍କୁ ରାଜନୈତିକ ଶିକ୍ଷାରେ ତାଲିମ ଦେବାକୁ ଓ ଚାଷୀ ସମସ୍ୟାବଳୀ ସଂକ୍ରାନ୍ତରେ ପୁସ୍ତକ ପୁସ୍ତିକା, ପ୍ରଚାରପତ୍ର ପ୍ରକାଶ କରିବା ଲାଗି ନିଷ୍ପତ୍ତି ନିଆଗଲା ।

ଅଖିଳ ଭାରତ କୃଷକସଭାର ସର୍ବଭାରତୀୟ ନେତୃବୃନ୍ଦଙ୍କ ମଧ୍ୟରେ ଥିଲେ ତତ୍କାଳୀନ ରାଜନୈତିକ, ସାଂସ୍କୃତିକ, ସାମାଜିକ ଜୀବନର ପ୍ରଖ୍ୟାତ ବ୍ୟକ୍ତିଗଣ ।

ମହାପଣ୍ଡିତ ରାହୁଲ ସାଂକୃତ୍ୟାୟନ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଇନ୍ଦୁଲାଲ ଯାଜ୍ଞିକ, ଇ.ଏମ.ଏସ. ନମ୍ବୁଦ୍ରିପଦ, ଜୟ ପ୍ରକାଶ ନାରାୟଣ, ଜେଡ଼.ଏ ଅହମ୍ମଦ, ମୋହନ ଲାଲ ଗୌତମ, କେ.ଏମ.ଅସରଫ, ରାମ ମନୋହର ଲୋହିଆ, ଅବଦୁଲା ରସୁଲ, ସୋହାନ ସିଂ ବାଖନା (ସିଏ ୨୭ ବର୍ଷ ଜେଲରେ ଥିଲେ), ବଙ୍କିମ ମୁଖାର୍ଜୀ, ଜେଡ଼.ଏ.ଅହମ୍ମଦ, ନବକୃଷ୍ଣ ଚୌଧୁରୀ, ବାବା ଗୁରୁମୁଖ ସିଂହ, ହର୍ଷଦେବ ମାଳବ୍ୟ ପ୍ରଭୃତି ଖ୍ୟାତନାମା ଜନନେତା ଏହି ସଂଗଠନରେ ସାମିଲ ହୋଇଗଲେ। କଂଗ୍ରେସ ଭିତରେ ଥିବା ଚାଷୀ ପ୍ରାଣ ନେତାଙ୍କ ସାଙ୍ଗକୁ ଏମାନଙ୍କ ମଧ୍ୟରେ ଅନେକେ ଥିଲେ ସୋସାଲିଷ୍ଟ-କମ୍ୟୁନିଷ୍ଟ ମତବାଦର।

ଏହାହିଁ ପ୍ରଦେଶମାନଙ୍କରେ ଗଢ଼ି ଉଠିଥିବା କୃଷକସଭାରେ ପ୍ରତିଫଳିତ ହୋଇଥିଲା।

୧୯୩୬ପର ଠାରୁ ସ୍ୱାଧୀନତା ପ୍ରାପ୍ତିଯାଏ କୃଷକ ସଭାର ବ୍ରିଟିଶ ବିରୋଧୀ, ସାମନ୍ତବାଦୀ ପ୍ରଥା ବିରୋଧୀ ଆନ୍ଦୋଳନ ସାରା ଭାରତରେ ଚାଷୀମାନଙ୍କୁ ସ୍ୱାଧୀନତା ସଂଗ୍ରାମ ପାଇଁ ଉଦ୍‌ବୁଦ୍ଧ କରିଥିଲା।

ଏପରିକି ଯେଉଁମାନେ କୃଷକ ସଭା ଏକ ସ୍ୱତନ୍ତ୍ର ଶ୍ରେଣୀ ସଂଗଠନ ନହେଉ ବୋଲି ଯୁକ୍ତି କରୁଥିଲେ ସେମାନଙ୍କ ମଧ୍ୟରୁ ଅନେକ କଂଗ୍ରେସ ନେତା ତତ୍କାଳୀନ କୃଷକ ମହାସମାବେଶରେ ଓ ଆନ୍ଦୋଳନରେ ବାଧ୍ୟ ହୋଇ ମିଳିତ ହେଉଥିଲେ। ଏହି ଅଖିଳ ଭାରତ କୃଷକ ସଭା ବିନା କ୍ଷତିପରଣରେ ଜମିଦାରୀ ପ୍ରଥା ଉଚ୍ଛେଦ, ଜମିଦାରମାନଙ୍କ ହାତରେ ରହିଥିବା ଲକ୍ଷଲକ୍ଷ ଏକ୍‌ର ଜମି ଗରୀବ ଓ ଭୂମିହୀନ ଚାଷୀଙ୍କ ମଧ୍ୟରେ ବଣ୍ଟନର ଦାବୀ ଉଠାଇ ଆନ୍ଦୋଳନ କରିଚାଲିଥିଲା।



# ଅଖିଳ ଭାରତ ଛାତ୍ର ସଂଘର ପ୍ରତିଷ୍ଠା ସମ୍ମିଳନୀ
# ୧୯୩୬-ଲକ୍ଷ୍ନୌ

ଅଖିଳ ଭାରତ ଛାତ୍ରସଂଘର ପ୍ରତିଷ୍ଠା ସମ୍ମିଳନୀକୁ କଂଗ୍ରେସ ସଭାପତି ପଣ୍ଡିତ ଜବାହାରଲାଲ ନେହେରୁ ଉଦ୍‌ଘାଟନ କରିଥବଲେ ଏବଂ ମୁସଲିମ ଲିଗର ନେତା ମହମ୍ମଦ ଅଲି ଜିନ୍ନା, ଏଥିରେ ସଭାପତିତ୍ୱ କରିଥିଲେ । ୧୯୩୬ ଅଗଷ୍ଟ ୧୨ ରୁ ୧୪ ଯାଏ ଲକ୍ଷ୍ନୌଠାରେ ଏହି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ମହାତ୍ମାଗାନ୍ଧୀ, ରବୀନ୍ଦ୍ରନାଥ ଠାକୁର, ସୁଭାଷଚନ୍ଦ୍ର ବୋଷ ଏବଂ ଆଉ ଅନେକ ନେତା ଏହାର ସଫଳତା କାମନାକରି ବାର୍ତ୍ତା ପଠାଇଥିଲେ । ଏହି ସମ୍ମିଳନୀହିଁ ଭାରତୀୟ ସ୍ତରରେ ପ୍ରଥମ ଛାତ୍ର ସଂଗଠନ; ଏ.ଆଇ.ଏସ.ଏଫ କୁ ଜନ୍ମ ଦେଇଥିଲା । ୧୯୩୬ଟି ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଅନ୍ୟ ଏକ ସ୍ମରଣୀୟ ବର୍ଷ । ଏହି ବର୍ଷଟି ଆଉ କେତେକ ସଂଗଠନକୁ ଜନ୍ମ ଦେଇଥିଲା ଏବଂ ନେହେରୁ ହିଁ ସେହି ବର୍ଷ କଂଗ୍ରେସର ସଭାପତିରୂପେ ସର୍ବ ପ୍ରଥମ ନିର୍ବାଚିତ ହୋଇଥିଲେ । ଏହି ବର୍ଷ କଂଗ୍ରେସରେ ସୋସଲିଷ୍ଟ ମତବାଦୀମାନେ ଖୁବ୍ ପ୍ରମୁଖ ହୋଇ ବାହାରିଥିଲେ ।

ଏହି ସମ୍ମିଳନୀକୁ ଉଦ୍‌ଘାଟନ କରି ପଣ୍ଡିତ ନେହେରୁ କହିଥିଲେ ଯେ, "ଆପଣମାନଙ୍କ ଅନୁରୋଧକ୍ରମେ ମୁଁ ଏଠାକୁ ଆସିଛି । କିନ୍ତୁ ମୁଁ ସ୍ୱୀକାର କରିବିଯେ ଆମ ପ୍ରେସିଡ଼େଣ୍ଟ ଏମ.ଏ.ଜିନ୍ନାଙ୍କ ଭଳି ମୁଁ ପ୍ରମୁଖ ନୁହେଁ । ସେ ଜଣେ ପ୍ରଖ୍ୟାତ ନେତା ଏବଂ ସେ ଆପଣମାନଙ୍କୁ ଆଲୋଚନାରେ ସାହାଯ୍ୟ କରିବେ । ମୋ ସଂପର୍କରେ ଆପଣମାନେ ଯେଉଁ ପ୍ରଶଂସାପୂର୍ଣ୍ଣ କଥା କହିଛନ୍ତି ସେଥି ସକାଶେ ମୁଁ ଧନ୍ୟବାଦ ଅର୍ପଣ କରୁଛି-" ସେ ଆହୁରି କହିଲେ, "ଅଧୁନା ପୃଥିବୀର ପ୍ରଗତିଶୀଳ ଅଂଶ ଏବଂ ପୃଥିବୀର ପ୍ରତିକ୍ରିୟାଶୀଳ ଅଂଶ ମଧ୍ୟରେ ସଂଘର୍ଷ ଦେଖାଦେଇଛି । ଏସବୁକୁ କେହି ଅବଜ୍ଞାକରି ଏଡ଼େଇ ଦେଇପାରିବ ନାହିଁ । ଭାରତୀୟ ନାଗରିକ ଭାବରେ ଆପଣମାନଙ୍କର କର୍ତ୍ତବ୍ୟ ହେବ, ଏ କଥାଟିକୁ ପ୍ରଚାରାତ୍ମକ ଦୃଷ୍ଟିକୋଣ ନନେଇ ଉପଲବ୍ଧି କରିବା ଏବଂ କେଉଁ ପକ୍ଷରେ ଆପଣମାନେ ଯିବେ ତାହା ବିଚାର ବିବେଚନା କରିବା...."

ସାଂପ୍ରଦାୟିକତା ସଂପର୍କରେ ସେ କହିଲେ, "ଆଧିପତ୍ୟ ପ୍ରତିଷ୍ଠାର ସାଂପ୍ରଦାୟିକ ପ୍ରଶ୍ନଟି ଭାରତୀୟ ପ୍ରଶ୍ନ ନୁହେଁ । ସାମ୍ରାଜ୍ୟବାଦ ଆଧିପତ୍ୟ ପ୍ରତିଷ୍ଠା କରିଥିବା ଦେଶରେହିଁ ଏସବୁ ସମସ୍ୟା ଉଠୁଥିବାର ଆପଣମାନେ ଜାଣିପାରିବେ । ଏସବୁ ସମସ୍ୟାର ମୂଳ କାରଣ ହେଲା, ଦେଶ ଉପରେ ସାମ୍ରାଜ୍ୟବାଦର ଆଧିପତ୍ୟ ଜାହିର ରଖିବାର ଏବଂ ଜାତୀୟ ଐକ୍ୟକୁ ବିଘ୍ନିତ କରିବାର ଅଭିଳାଷ ।"

ସଭାପତିତ୍ୱ ଭାଷଣରେ ଜିନ୍ନା କହିଥିଲେ, "ଆପଣମାନଙ୍କ ସମ୍ମିଳନୀରେ ବିଭିନ୍ନ ସଂପ୍ରଦାୟର ବିଶେଷ ବିଶେଷ ପ୍ରତିନିଧିତ୍ୱ ଥିବା ଦେଖି ମୁଁ ଆନନ୍ଦିତ । ଆପଣମାନଙ୍କଠାରୁ ଯେଉଁମାନେ ଅଧିକ ଅଭିଜ୍ଞ, ସେମାନେ ତାହା ଅନୁସରଣ କରିବେ, ଏହି କାରଣରୁହିଁ କେବଳ ମୁଁ ଏହି ସଂଗଠନ କୁ ସ୍ୱାଗତ କରୁଛି ।.... ଆନ୍ତର୍ଜାତିକ ଘଟଣାବଳୀ ସହିତ ଆପଣମାନେ ତାଳ ଦେଇ ଚାଲିବା ଉଚିତ । ଯେକୌଣସି ସମସ୍ୟା ଉପୁଜିବ, ସେ ସଂପର୍କରେ ଆଲୋଚନା ଓ ବିତର୍କ କରିବାର ଛାତ୍ରମାନଙ୍କ ପୂର୍ଣ୍ଣ ସ୍ୱାଧୀନତାକୁ ସେ ସଂପର୍କରେ ଆଲୋଚନା ଓ ବିତର୍କ କରିବାର ଛାତ୍ରମାନଙ୍କ ପୂର୍ଣ୍ଣ ସ୍ୱାଧୀନତାକୁ ସଂକୁଚିତ କରିବାକୁ ମୁଁ ଚାହେଁନା । ଆପଣମାନେ ଚାହିଁଲେ, କମ୍ୟୁନିଷ୍ଟଧରଣର ସରକାର ଠିକଣା ବୋଲି ଆଲୋଚନା କରିପାରିବେ; ସାମ୍ରାଜ୍ୟବାଦ ଓ ପୁଁଜିବାଦକୁ ସଂଗେସଂଗେ ଧ୍ୱଂସ କରି ଦେବା ଉଚିତ ହେବ ନାହିଁ, ସେକଥା ମଧ୍ୟ ଆପଣମାନଙ୍କ ଆଲୋଚନା କରିପାରିବେ । ମୁଁ ସେ ସଂପର୍କରେ ତର୍କ କରୁ ନାହିଁ ।"

ଭାଷଣର ପରିଶେଷରେ ସେ କହିଲେ "କିଏ କେଉଁ ସଂପ୍ରଦାୟର ଓ କିଏ କେଉଁ ଧର୍ମର ହୁଅନ୍ତୁ ନା କାହିଁକି ସମସ୍ତଙ୍କ ସହିତ ବନ୍ଧୁତା ଆଚରଣ ଓ ପ୍ରତିଷ୍ଠା କରିବାର ପନ୍ଥାପଦ୍ଧତି ଅନୁସରଣ କଲେହିଁ ଦେଶର ସେବା କରିପାରିବେ ବୋଲି ମୁଁ ଆପଣମାନଙ୍କୁ କହିବି ।"

ଏହି ସମ୍ମିଳନୀରେ ସବୁ ପ୍ରଦେଶର ପ୍ରତିନିଧି ଓ ସବୁ ବିଦ୍ୟାଳୟର ପ୍ରତିନିଧି ଯୋଗ ଦେଇଥିଲେ । ଏହି ସମ୍ମିଳନୀହିଁ ଅଖିଳ ଭାରତ ଛାତ୍ର ସଂଘ ପ୍ରତିଷ୍ଠା କରିବାର ନିର୍ଦ୍ଧାରଣ ନେଇଥିଲା । ଏମ.ଏ.ଗାନ୍ଧୀ, ଏମ.ଏସ୍.ବଟଲିୱାଲା (ବମ୍ବେ) ପ୍ରବୋଧ ଚନ୍ଦ୍ର (ଲାହୋର) ବିଶ୍ୱନାଥ ଦୁବେ, (ବଂଗଳା) ଜେ.ଏସ.ପାଣ୍ଡେ (ନାଗପୁର) ଏବଂ ପ୍ରେମ ନାରାୟଣ ଭାର୍ଗବଙ୍କୁ ଘେନି ଏ.ଆଇ.ଏସ.ଏଫର ସଂବିଧାନ ରଚନା କମିଟି ଗଠିତ ହେଲା ।

## ଗୃହୀତ ପ୍ରସ୍ତାବ ଓ ସାଂଗଠନିକ ବ୍ୟବସ୍ଥା

ମୁକ୍ତି ଓ ସ୍ୱାଧୀନତାର ଧ୍ୱଜାଧରି ରାଜନୀତିରେ ଅଂଶ ଗ୍ରହଣ କରିବା ଏବଂ ସ୍ୱାଧୀନତା ସଂଗ୍ରାମରେ ପ୍ରତ୍ୟକ୍ଷ, ସକ୍ରିୟ ଭାଗ ନେବାଲାଗି ଏକ ପ୍ରସ୍ତାବରେ ଆହ୍ୱାନ ଦିଆଯାଇଥିଲା । ଅ.ଭା ଛାତ୍ରସଂଘର ଆଗାମୀ ସମ୍ମିଳନୀ ପର୍ଯ୍ୟନ୍ତ କର୍ମକର୍ତ୍ତା ନିର୍ବାଚନ ହୋଇଥିଲା । ପ୍ରେମ ନାରାୟଣ ଭାର୍ଗବ ସାଧାରଣ ସଂପାଦକ ପଦରେ ରହିଲେ ଏବଂ ସହକାରୀ ସଂପାଦକ ମଣ୍ଡଳୀରେ ରହିଲେ ଏମ.ଏନ.ଗାନ୍ଧୀ, ପ୍ରମୋଦ ସେନ୍, ରୋଷନ ଲାଲ, ଏସ.କ୍ରିଷ୍ଣସ୍ୱାମୀ ଏବଂ ଜେ.ଏସ୍.ପାଣ୍ଡେ - କାର୍ଯ୍ୟନିର୍ବାହୀ କମିଟିରେ ଉତ୍ତର ପ୍ରଦେଶରୁ କୈଳାସ ନାଥ ବର୍ମା, ଏଲ.ସି.ଖାନ୍ନା ଏବଂ ଆର.ସି.ସିହ୍ନା; ବମ୍ବେରୁ ଏସ.ଏନ.ମାଷ୍ଟର, ଗୁଲାମ ସ୍ୱୋଫ ଏବଂ ଏମ.ଏଫ ଖଣ୍ଡେରିଆ; ବଂଗଳାରୁ କେ.ଚନ୍ଦ୍ରଦାସ, ଜେ. ସରକାର, ନନ୍ଦଲାଲ ବୋଷ; ପଂଜାବରୁ ପ୍ରବୋଧ ଚନ୍ଦ୍ର, ତିଲକ ରାଜ, ରାମଲାଲ; କେନ୍ଦ୍ର ପ୍ରଦେଶରୁ ଜି.ବୈଦ୍ୟ. ଡିଡି.ପାରାଞ୍ଜେପେ ଏବଂ ଜେ.ଗକ୍ୟ ।



# ସେଲୁଲାର ଜେଲରେ ବିପ୍ଳବୀ ବନ୍ଦୀଙ୍କ ଅନଶନ
# ୧୯୩୭ ଜୁଲାଇ ୨୪ରେ ଆରଂଭ
## (ଗାନ୍ଧୀ, ନେହେରୁ, ରବୀନ୍ଦ୍ରନାଥ ପ୍ରମୁଖଙ୍କ ବାଣୀ)

ସଂତ୍ରାଂସବାଦୀ ନାମରେ ଅଭିହିତ ୧୮୭ ଜଣ ରାଜବନ୍ଦୀ, ସ୍ୱାଧୀନତା ସଂଗ୍ରାମ କାଳରେ ଆଣ୍ଡାମାନ ଜେଲରେ ୧୯୩୭ରେ ଜୁଲାଇ ୨୪ ତାରିଖରେ ପ୍ରତିବାଦ ଅନଶନ ଧର୍ମଘଟ କରିଥିଲେ । ଅନଶନ ପୂର୍ବରୁ ପ୍ରାୟ ୨୫୦ ବିପ୍ଳବୀ ବନ୍ଦୀ ବ୍ରିଟିଶ ସରକାରକୁ ସେମାନଙ୍କର ଦାବୀଗୁଡ଼ିକୁ ଜଣେଇ ସେହି ବର୍ଷ ଜୁଲାଇ ୯ରେ ଏକ ଆବେଦନ କରିଥିଲେ । ଦାବୀଗୁଡ଼ିକ ହେଲା-

"(୧) ସାଧାରଣ କ୍ଷମା (ଆମନେଷ୍ଟି) ଘୋଷଣା କରାଯାଉ । ତାହାର ଅର୍ଥ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିବା ହେତୁ ଯେଉଁମାନେ ଦଣ୍ଡ ପାଇ ଅଟକବନ୍ଦୀ ହୋଇଛନ୍ତି ଓ ବିଚାରାଧୀନ ବନ୍ଦୀ ହୋଇ ରହିଛନ୍ତି, ସେମାନଙ୍କୁ ବିନା ସର୍ତ୍ତରେ ଖଲାସ କରାଯାଉ ।

(୨) ଗୃହବନ୍ଦୀ ଓ ଦେଶରୁ ନିର୍ବାସିତ ରାଜନୈତିକ କର୍ମୀଙ୍କ ଉପରେ ଜାରିହୋଇଥିବା ଆଦେଶ ପ୍ରତ୍ୟାହାର କରାଯାଉ । ସକଳ ପ୍ରକାର ଦମନମୂଳକ ଆଇନ, ନିୟମ, ବିଧିବିଧାନ ରଦ୍ଦ କରାଯାଉ ।

(୩) ଆଣ୍ଡାମାନକୁ ରାଜନୈତିକ ବନ୍ଦୀମାନଙ୍କୁ ପଠାଇବା ବ୍ୟବସ୍ଥାକୁ ପୂର୍ଣ୍ଣ ଉଚ୍ଛେଦ କରାଯାଉ । ବନ୍ଦୀମାନଙ୍କୁ ଖଲାସକରି ଆଣ୍ଡାମାନ ଦ୍ୱୀପପୁଂଜରୁ ଦେଶର ମୂଳ ଭୂଖଣ୍ଡକୁ ପ୍ରେରଣ କରାଯାଉ ।

(୪) ଜେଲ କୋଡ଼ର ଅଂଗ ହିସାବରେ ସ୍ଥାୟୀ ନିୟମ ଓ ବିଧି ପ୍ରଣୟନ କରାଯାଉ । ସବୁ ରାଜବନ୍ଦୀଙ୍କୁ ଗୋଟିଏ ଶ୍ରେଣୀଭୁକ୍ତ କରାଯାଉ ଏବଂ ସେମାନଙ୍କର ବୌଦ୍ଧିକ ପ୍ରୟୋଜନୀୟତା ପୂରଣ କରିବା ସମେତ ବର୍ତ୍ତମାନ ପ୍ରଚଳିତ "କ" ଡିଭିଜନର ସୁଯୋଗ ସୁବିଧା ସମସ୍ତଙ୍କୁ ଦିଆଯାଉ ।"

ଶେଷରେ ଏହି ପ୍ରତିବେଦନରେ ଥିଲା, "ସରକାର ଏହି ସବୁ ଦାବୀ ଗ୍ରହଣ କରି ତାଙ୍କର କର୍ତ୍ତବ୍ୟ ପାଳନ କରିବେ ଓ ଆମ ଧୈର୍ଯ୍ୟକୁ ଅଧିକ ହରାଇବାକୁ ଦେବେନାହିଁ ।"

ଏହାର କୌଣସି ଉତ୍ତର ନମିଳିବାରୁ ଜୁଲାଇ ୧୮ରେ ଆଉ ଏକ ପ୍ରତିବେଦନ ଦିଆଗଲା । ତାହାର କିଛି ଉତ୍ତର ନମିଳିବାରୁ ଜୁଲାଇ ୨୪ରେ ଅନଶନ ଆରଂଭ ହୋଇଗଲା ।

ଅନଶନର ୧୦/୨୦ ଦିନପରେ ବଂଗଳାର ପ୍ରଧାନମନ୍ତ୍ରୀ ଫଜଲୁଲ ହକ୍ ତାରବାର୍ତ୍ତାକୁ ଚିଫ୍ କମିଶନର ଅନଶନକାରୀମାନଙ୍କୁ ଜଣେଇଦେଲେ । ବନ୍ଦୀମାନଙ୍କ ଦାବୀକୁ ସମର୍ଥନକରି ବଂଗଳାର ଛାତ୍ରସଂଘ ବିରାଟ ବିକ୍ଷୋଭକରି ଫଂଜଲୁଲ ହକଙ୍କୁ ଦାବୀପତ୍ର ଦେଇଥିଲେ । ଭାରତର ରାଜନୈତିକ ମହଲରେ, କଂଗ୍ରେସ ତଥା କମ୍ୟୁନିଷ୍ଟ ପାର୍ଟି ଓ ଅନ୍ୟାନ୍ୟ ବାମପନ୍ଥୀ, ବ୍ୟକ୍ତି ବିଶେଷ ଓ ନେତା ସେମାନଙ୍କ ଅନଶନକୁ ସମର୍ଥନ କରିଥିଲେ । ଦ୍ୱିତୀୟ ତାରବାର୍ତ୍ତା ଆସିଥିଲା କଂଗ୍ରେସ କାର୍ଯ୍ୟକାରୀ କମିଟି ତରଫରୁ, ପଣ୍ଡିତ ଜବାହାରଲାଲ ନେହେରୁଙ୍କ ପାଖରୁ । ଅନେକ ଅନଶନକାରୀଙ୍କ ସ୍ୱାସ୍ଥ୍ୟରେ ଦ୍ରୁତ ଅବନତି ଘଟୁଥିବା ଜାଣି ନେହେରୁ ସେମାନଙ୍କୁ ଅନଶନ ଭଂଗ କରିବାକୁ ଆବେଦନ କରିଥିଲେ । ସେତେବେଳେ ଅନେକ ଡାକ୍ତର ମୂଳ ଭୂଖଣ୍ଡରୁ ଯାଇ ଅନଶନକାରୀମାନଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରିଥିଲେ ।

ଅନଶନର ଚତୁର୍ଥ ସପ୍ତାହରେ ବଂଗଳା ପ୍ରାଦେଶିକ ସରକାରଙ୍କଠାରୁ ଆସିଥିବା ଚିଠି ଅନଶନକାରୀମାନଙ୍କୁ ପଢ଼ି ଶୁଣାଇ ଦିଆଗଲା । ସେଥିରେ ଅନଶନ ଭଂଗ କରିବାକୁ କୁହାଯାଇ, ଅନଶନକାରୀଙ୍କ ବିରୁଦ୍ଧରେ ଦଣ୍ଡ ବିଧାନ କରାଯିବ ନାହିଁ ବୋଲି ପ୍ରତିଶ୍ରୁତି ଥିଲା ।

ବିହାରର ପ୍ରାଦେଶିକ ସରକାର (ଶ୍ରୀ କୃଷ୍ଣ ସିହ୍ନା ଥିଲେ ପ୍ରଧାନମନ୍ତ୍ରୀ) ମଧ୍ୟ ଅନଶନ ଭଂଗ କରିବାକୁ ଆବେଦନ କରିଥିଲେ ।

ପରେ କେନ୍ଦ୍ର ଆସେମ୍ବ୍ଲିର ପ୍ରମୁଖ ସଦସ୍ୟ ଦେଶାଇ, ସତ୍ୟମୂର୍ତ୍ତି ଓ ସାକସେନାଙ୍କ ପାଖରୁ ବାର୍ତ୍ତା ଆସିଲା । ସେଥିରେ ସେମାନେ ଲେଖି ଜଣାଇଥିଲେ ଯେ ବନ୍ଦୀମାନଙ୍କୁ ମୂଳ ଭୂଖଣ୍ଡକୁ ପ୍ରେରଣ କରିବା ଲାଗି ସେମାନେ ଏକ ପ୍ରସ୍ତାବ କେନ୍ଦ୍ର (ବ୍ରିଟିଶ) ସରକାର ଆଗରେ ଆସେମ୍ବ୍ଲିରେ ଆଗତ କରିଛନ୍ତି । ଅନଶନକାରୀମାନେ ଅନଶନ ଭଂଗ କରନ୍ତୁ ବୋଲି ସେମାନେ ଅନୁରୋଧ କରିଥିଲେ । କବିଗୁରୁ ରବୀନ୍ଦ୍ରନାଥ ମଧ୍ୟ ଅନୁରୂପ ନିବେଦନ କରିଥିଲେ ।

ମହାତ୍ମାଗାନ୍ଧୀ ତାଙ୍କ ତାରବାର୍ତ୍ତାରେ ଲେଖିଥିଲେ "ଗୁରୁଦେବ ଠାକୁର ଏବଂ କାର୍ଯ୍ୟକାରୀ କମିଟିର ପରାମର୍ଶ ସହ ମୋର ପରାମର୍ଶ ଯୋଡୁଛି । ଆପଣମାନଙ୍କ ପାଇଁ ସୁବିଚାର (ରିଲିଫ) ଆଣିବା ଲାଗି ଚେଷ୍ଟିତ ଆମ୍ଭମାନଙ୍କ ଉପରେ ବିଶ୍ୱାସ ରଖି ଆପଣମାନେ ଅନଶନ ପ୍ରତ୍ୟାହାର କରନ୍ତୁ । ସମଗ୍ର ଜାତିର ଅନୁରୋଧକୁ ଆପଣମାନେ

ରକ୍ଷା କରିବା ସୁନ୍ଦର ହେବ । ଯେଉଁମାନେ ସନ୍ତ୍ରାସବାଦୀ ପକ୍ଷପନ୍ଥର୍ତିରେ ବିଶ୍ୱାସ କରୁଥିଲେ ସେମାନେ ଆଉ ସେଥିରେ ବିଶ୍ୱାସ କରୁନାହାନ୍ତି, ସେମାନେ ତାହାକୁ ପରିହାର କରି ଅହିଂସାହିଁ ସର୍ବଶ୍ରେଷ୍ଠ ଅସ୍ତ୍ର ବୋଲି ବିଶ୍ୱାସ କରନ୍ତି, ଏପରି ଯଦି ପ୍ରତିଶ୍ରୁତି ପାଏ, ବ୍ୟକ୍ତିଗତ ଭାବରେ ଏହା ମୋତେ ସାହାଯ୍ୟ କରିବ । ମୁଁ ଏହା କହୁଛି କାରଣ କେତେକ ନେତା କହୁଛନ୍ତି ଯେ ଅଟକବନ୍ଦୀମାନେ ସନ୍ତ୍ରାସବାଦକୁ ପରିହାର କରିଛନ୍ତି । କିନ୍ତୁ ଏହାର ଓଲଟା ଅଭିମତ ମଧ୍ୟ ପ୍ରକାଶ ପାଉଛି ।"

ଏସବୁ ତାରବାର୍ତ୍ତା ଶୁଣାଇ ଚିଫ କମିଶନର ଅଟକବନ୍ଦୀମାନଙ୍କୁ ଉପଯୋଗୀ ଡାକ୍ତରୀ ବ୍ୟବସ୍ଥା ଯୋଗାଇ ଏକତ୍ର ମିଳିତ ହେବା ଲାଗି ଅନୁମତି ଦେଲେ ।

ସମଗ୍ର ଜାତିର ଉଦ୍‌ବେଗ ଓ ଅନୁରୋଧକୁ ବିଚାରକୁ ନେଇ ୭ଜଣଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଅନାନ ପ୍ରତ୍ୟାହାର କରିନେଲେ । ଗାନ୍ଧିଜୀଙ୍କ ସହିତ ତାର ଯୋଗେ ବାର୍ତ୍ତାଳାପକରି ଆଉ କେତେଦିନ ପରେ ଅନ୍ୟ ସାତଜଣ ମଧ୍ୟ ଅନଶନ ଭଂଗ କଲେ ।

ଏହାପରେ ଗାନ୍ଧିଜୀ ୧୯୩୭ ସେପ୍ଟେମ୍ବର ୧ ତାରିଖରେ ସେମାନଙ୍କୁ ଏକ ତାରବାର୍ତ୍ତା ପଠାଇଲେ । ସେଥିରେ ଥିଲା "ବନ୍ଦୀମାନଙ୍କୁ ଜଣାଇଦିଅ । ମୋର ଆବେଦନ ପ୍ରତି ପୂର୍ଣ୍ଣ ସମର୍ଥନ ମିଳିଥିବାରୁ ମୁଁ କୃତଜ୍ଞ । ଅନଶନ ପ୍ରତ୍ୟାହାର କରିବା ଲାଗି ସମଗ୍ର ଦେଶର ଆବେଦନକୁ ଗ୍ରହଣ କରିବାରୁ ସାରା ଦେଶ ଉଲ୍ଲସିତ । ଆପଣମାନଙ୍କୁ ସହାୟତା ଦେବା ଲାଗି ମୁଁ ଯାହା ସମ୍ଭବ କରିବି । ଏଥିଲାଗି ମୋ ଉପରେ ବିଶ୍ୱାସ ରଖିବେ । ଆଶା କରୁଛି, ଆବଶ୍ୟକ ସେବା ଓ ଚିକିତ୍ସା ପାଇ ଆପଣମାନେ ସୁସ୍ଥ ଥିବେ ।"



# କଂଗ୍ରେସ ସଭାପତି ପଦରୁ ସୁଭାଷବୋଷଙ୍କ ଇସ୍ତଫା ଓ ବହିଷ୍କାର ୧୯୩୯

ଦ୍ୱିତୀୟ ଥର ପାଇଁ କଂଗ୍ରେସର ସଭାପତି ସୁଭାଷଚନ୍ଦ୍ର ବୋଷଙ୍କ ପ୍ରାର୍ଥୀତ୍ୱ ସଂପର୍କରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ୧୯୩୮ ଶେଷରେ ଅନୁଷ୍ଠିତ ବୈଠକରେ ସରଗରମ ଆଲୋଚନା ହୋଇଥିଲା । ସେତେବେଳେ କଂଗ୍ରେସରେ ବାମପନ୍ଥୀ ଓ ଦକ୍ଷିଣପନ୍ଥୀ ନେତାମାନଙ୍କ ମଧ୍ୟରେ ମତଭେଦ ଚୂଡ଼ାନ୍ତ ରୂପ ନେଉଥିଲା । ସେହି ବୈଠକରେ ବିତର୍କର ବିଷୟ ଥିଲା ହରିପୁରା (୧୯୩୮) କଂଗ୍ରେସରେ ସଭାପତି ସୁଭାଷଚନ୍ଦ୍ର ବୋଷ, ଦ୍ୱିତୀୟ ଥର ପାଇଁ ଉକ୍ତ ଆସନ ଲାଗି ପ୍ରାର୍ଥୀ ହେବେ କି ନାହିଁ । କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଥିବା ସୋସଲିଷ୍ଟ, ବାମପନ୍ଥୀ ମତବାଦୀମାନେ ବିତର୍କ ବେଳେ ଅସନ୍ତୁଷ୍ଟ ହୋଇ କମିଟିର ବୈଠକ ତ୍ୟାଗ କରି ଚାଲି ଆସିଥିଲେ ।

ସୁଭାଷଚନ୍ଦ୍ର ବୋଷଙ୍କୁ ଦ୍ୱିତୀୟ ଥର ସଭାପତି କରାଯାଉ ବୋଲି ପ୍ରସ୍ତାବ ଆସିବାରୁ ସେତେବେଳେ କଂଗ୍ରେସରେ ଦକ୍ଷିଣପନ୍ଥୀ ବୋଲି ବିବେଚନା କରାଯାଉଥିବା ସଦସ୍ୟମାନେ ମୌଲାନା ଆଜାଦଙ୍କ ନାମ ପ୍ରସ୍ତାବ କଲେ । ସେମାନଙ୍କର ଯୁକ୍ତି ଥିଲା, ସେତେବେଳେ ଲିଗ ତରଫରୁ କଂଗ୍ରେସ ମୁସଲମାନଙ୍କର ପ୍ରତିନିଧିତ୍ୱ କରୁନାହିଁ ବୋଲି ଜୋରରେ ପ୍ରଚାର ଚାଲିଥିଲା । ତେଣୁ ମୌଲାନା ଆଜାଦଙ୍କୁ ପ୍ରାର୍ଥୀ କରାଯାଉ । ମାତ୍ର ମୌଲାନା ଆବୁଲକାଲାମ ଆଜାଦ ପ୍ରାର୍ଥୀ ହେବାକୁ ନାରାଜ ହେଲେ । ସେ ରାଜି ନହେବାରୁ ସେମାନଙ୍କ ପକ୍ଷରୁ ଡକ୍ଟର ପଟ୍ଟାଭି ସୀତାରାମାୟାଙ୍କ ନାମ ପ୍ରସ୍ତାବ କରାଗଲା । ମହାତ୍ମାଗାନ୍ଧୀ ମଧ୍ୟ ପଟ୍ଟାଭିଙ୍କ ପରାଜୟ ମୋର (ଗାନ୍ଧିଜୀଙ୍କର) ପରାଜୟ ବୋଲି କହିଥିଲେ ।

ଏପରି ପରିସ୍ଥିତିରେ ତ୍ରିପୁରୀ କଂଗ୍ରେସର ସଭାପତି ପଦ ପାଇଁ ସୁଭାଷଚନ୍ଦ୍ର ବୋଷ ଓ ପଟ୍ଟାଭି ସୀତରାମାୟାଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ହେଲା । କଂଗ୍ରେସ ସଭାପତି ନିର୍ବାଚନରେ ବିଭିନ୍ନ ପ୍ରଦେଶରେ ଥିବା ପ୍ରାଦେଶିକ କଂଗ୍ରେସ କମିଟିର ସଦସ୍ୟମାନେ ଭୋଟ ଦେବାର ବିଧି । ସୁବାଷଚନ୍ଦ୍ର ବୋଷଙ୍କୁ ବିଭିନ୍ନ ପ୍ରାଦେଶିକ କଂଗ୍ରେସ କମିଟିରେ ଥିବା ଅନେକ କଂଗ୍ରେସ ସଦସ୍ୟ, ସୋସାଲିଷ୍ଟ, କମ୍ୟୁନିଷ୍ଟ ସଦସ୍ୟ ଭୋଟଦେଇ ଜୟଯୁକ୍ତ କରାଇଲେ । ସୁଭାଷବୋଷ ୧୫୭୫ ଏବଂ ପଟ୍ଟାଭି ୧୩୭୬ଟି ଭୋଟ ପାଇଥିଲେ । ନିର୍ବାଚିତ ହେବା

ପରେ ବୋଷ କଂଗ୍ରେସର କାର୍ଯ୍ୟକାରୀ କମିଟିର ସଦସ୍ୟମାନଙ୍କୁ ମନୋନୀତ କଲେ । ମାତ୍ର ଜବାହାରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଜେ.ବି. କୃପାଳିନୀ ପ୍ରମୁଖ ଇସ୍ତଫା ଦେଇଦେଲେ । ସୁବାଷ ବୋଷଙ୍କ ପକ୍ଷରେ ଅଧିକ ସଭ୍ୟ ଥିଲେ । ଇସ୍ତଫା ପରେ ଅପରପକ୍ଷରୁ ଏକ ବିକଳ୍ପ ପ୍ରସ୍ତାବ ଆସିଲା । ଗାନ୍ଧିଜୀଙ୍କ ସହିତ ପରାମର୍ଶ କରି ସେ କାର୍ଯ୍ୟକାରୀ କମିଟି ଗଢ଼ନ୍ତୁ ବୋଲି ପ୍ରସ୍ତାବ ଅନୁସାରେ ସୁଭାଷବୋଷ ଓ ଗାନ୍ଧିଜୀଙ୍କ ମଧ୍ୟରେ କୌଣସି ବୁଝାମଣା ହୋଇପାରିଲା ନାହିଁ । ସେପରି ପରିସ୍ଥିତିରେ ପଡ଼ି ସୁବାଷବାବୁ ସଭାପତି ପଦରୁ ଇସ୍ତଫା ଦେଇଦେଲେ ।

ଏହାପରେ କଂଗ୍ରେସର ଶୃଙ୍ଖଳାଭଂଗ ଅଭିଯୋଗରେ ତାଙ୍କୁ କଂଗ୍ରେସରୁ ବହିଷ୍କାର କରାଗଲା । କିପରି ପରିସ୍ଥିତିରେ ତାଙ୍କୁ ବହିଷ୍କାର ଆଦେଶ ହେଲା, ତାହାର ବିବରଣୀ ନିମ୍ନରେ ।

## କୈଫିୟତର ଜବାବରେ ବୋଷଙ୍କ ଦ୍ୱାରା କୈଫିୟତ୍‌ର ଜବାବ ୧୯୩୯ ଜୁନ୍

ଏପରି ପରିସ୍ଥିତିର ମୁକାବିଲା କରିବା ପାଇଁ ବମ୍ବେଠାରେ ୧୯୩୯ ଜୁନ ମାସରେ ଅଖିଳ ଭାରତ କଂଗ୍ରେସ କମିଟିର ଏକ ଅଧିବେଶନ ଅନୁଷ୍ଠିତ ହେଲା । ଏଠାରେ ଦୁଇଟି ପ୍ରସ୍ତାବ ଗ୍ରହଣ କରାଗଲା । ଏହି ପ୍ରସ୍ତାବ ମଧ୍ୟରୁ ଗୋଟିଏ ପ୍ରସ୍ତାବଟି ଅନୁସାରେ କଂଗ୍ରେସ କର୍ମୀ ଓ ତଳ ସ୍ତରରେ ଥିବା କଂଗ୍ରେସ କମିଟି (ଯେମିତି ଜିଲା ଅବା ପ୍ରାଇମେରୀ କଂଗ୍ରେସ କମିଟି) ଉପରେ ବୋଷଙ୍କ ଏପରି ସବୁ ଆନ୍ଦୋଳନ ଉପରେ କଟକଣା ଜାରିକାରି କୁହାଗଲା । "ଯେକୌଣସି ଉଦ୍ଦେଶ୍ୟରେ ସତ୍ୟାଗ୍ରହ ପ୍ରାଦେଶିକ କଂଗ୍ରେସ କମିଟିର ନିର୍ଦ୍ଦେଶରେ ଓ ନିୟନ୍ତ୍ରଣରେହିଁ କରିବାକୁ ହେବ ।" ଆଉ ଏକ ପ୍ରସ୍ତାବରେ କୁହାଗଲାଯେ "ପ୍ରଶାସନ ସଂକ୍ରାନ୍ତ ବ୍ୟାପାରରେ ମନ୍ତ୍ରୀମଣ୍ଡଳ କାର୍ଯ୍ୟରେ ପ୍ରାଦେଶିକ କଂଗ୍ରେସ କମିଟି ହସ୍ତକ୍ଷେପ କରିପାରିବେ ନାହିଁ । କିନ୍ତୁ କୌଣସି ସମସ୍ୟା ଅବା କ୍ଷମତାର ଉପବ୍ୟବହାର ସଂପର୍କରେ ପ୍ରାଦେଶିକ କଂଗ୍ରେସ କମିଟିର କାର୍ଯ୍ୟକାରୀ କମିଟି ଘରୋଇ ଭାବରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ଚାଲିବ ।" ଯଦି ନିତିଗତ ସମସ୍ୟାରେ "ପି.ସି.ସି. ଏବଂ ମନ୍ତ୍ରୀମଣ୍ଡଳ ମଧ୍ୟରେ ମତଭେଦ ଉପୁଜିବ, ତାହାକୁ ପାଲିଆମେଣ୍ଟାରୀ ବୋର୍ଡ଼ର ଦୃଷ୍ଟିକୁ ଆଣିବାକୁ ହେବ । ଖୋଲାଖୋଲି ଆଲୋଚନା କରାଯିବ ନାହିଁ ।"

ସୁଭାଷବୋଷଙ୍କ ନେତୃତ୍ୱାଧୀନ ବାମପନ୍ଥୀମାନେ କଂଗ୍ରେସର ଏହି ପ୍ରସ୍ତାବକୁ ପସନ୍ଦ କଲେ ନାହିଁ । ୧୯୩୯ ଜୁଲାଇ ୯ ତାରିକରେ ଏପରି ପ୍ରସ୍ତାବର ସେମାନେ ବିରୋଧକରି ବିଭିନ୍ନ ସ୍ଥାନରେ ସାଧାରଣ ସଭା ସଂଗଠିତ କଲେ । ଏହି ସଭାଗୁଡ଼ିକରେ ଏ.ଆଇ.ସି.ସି. ଏବଂ ପିସିସିଗୁଡ଼ିକର ବହୁ ସଂଖ୍ୟକ ସଦସ୍ୟ ମଧ୍ୟ ଯୋଗ ଦେଉଥିଲେ । ଏପରି ବଡ଼ ବଡ଼

ସଭା ଉତ୍ତର ପ୍ରଦେଶ, ମଧ୍ୟ ପ୍ରଦେଶ ବଂଗଳାରେ ସଂଗଠିତ ହୋଇଥିଲା । ବିଶେଷତଃ ଛାତ୍ରମାନେ ସୁବାଷବୋଷଙ୍କ ପକ୍ଷରେ ପ୍ରତିବାଦ ସମାବେଶ କରୁଥିଲେ ।

ଏପରି ପ୍ରତିବାଦ ସଭାଗୁଡ଼ିକୁ ଅଖିଳ ଭାରତ କଂଗ୍ରେସ କମିଟି ଶୃଙ୍ଖଳାଭଂଗ ବୋଲି ବିଚାର କଲେ ଏବଂ କଂଗ୍ରେସ ପକ୍ଷରୁ ସୁବାଷଚନ୍ଦ୍ର ବୋଷଙ୍କ ଆଚରଣଲାଗି ତାଙ୍କୁ କୈଫିୟତ୍ ମଗାଗଲା । କଂଗ୍ରେସ କମିଟି ପକ୍ଷରୁ ଆସିଥିବା ଏହି ଅଭିଯୋଗ ପାଇବା ପରେ ଉତ୍ତର ସୁଭାଷ ବୋଷ ପାଇବାପରେ ନିମ୍ନୋକ୍ତ ଉତ୍ତର ପଠାଇଲେ । "ଜୁଲାଇ ୧୮ରେ ରାଞ୍ଚିଠାରୁ ଆସିଥିବା ଆପଣଙ୍କ ଚିଠିର ଉତ୍ତର ଦେବା ବିଳମ୍ବ ହୋଇଥିବାରୁ ମୁଁ ଅତ୍ୟନ୍ତ ଦୁଃଖିତ । ବମ୍ବେରେ ଗୃହୀତ ଏ.ଆଇ.ସି.ସିର କେତେକ ପ୍ରସ୍ତାବର ପ୍ରତିବାଦ କରିଥିବା କାରଣରୁ ଆପଣ ମୋତେ କୈଫିୟତ ତଲବ କରିଛନ୍ତି ।

"ପ୍ରଥମତଃ କେତେକ ପ୍ରସ୍ତାବର ବିରୋଧ କରିବା ଏବଂ ଉକ୍ତ ପ୍ରସ୍ତାବଗୁଡ଼ିକୁ କାର୍ଯ୍ୟରେ ଉଲଂଘନ କରିବା ମଧ୍ୟରେ ପାର୍ଥକ୍ୟ ଦେଖାଯିବା ଉଚିତ । ଯାହା ଘଟିଛି ତାହା ହେଲା, ଏ.ଆଇ.ସି.ସିରେ ଗୃହୀତ ଦୁଇଟି ପ୍ରସ୍ତାବର ମୁଁ ବିରୋଧ କରିଛି ।

"ଏ.ଆଇ.ସି.ସି. ଦ୍ୱାରା ଗୃହୀତ ଯେକୌଣସି ପ୍ରସ୍ତାବ ସଂପର୍କରେ ଭିନ୍ନମତ ଦେବା ମୋର ସାଂବିଧାନିକ ଅଧିକାର । କମିଟି ଦ୍ୱାରା ଗୃହୀତ ପ୍ରସ୍ତାବଗୁଡ଼ିକ ସଂପର୍କରେ ଆପଣାର ଅଭିମତଯେ ବହୁ ସଂଖ୍ୟକ କଂଗ୍ରେସ ଲୋକେ ବରାବର ଦେଇଥାନ୍ତି, ଏ କଥାରେ ସମ୍ଭବତଃ ମୋ ସହିତ ଆପଣ ଏକମତ ହେବେ । କମିଟି ଦ୍ୱାରା ଗୃହୀତ ପ୍ରସ୍ତାବଗୁଡ଼ିକ ସଂପର୍କରେ ଅଭିମତ ଦେବାର ଅଧିକାର ଯଦି ଆପଣ ଦିଅନ୍ତି, ତେବେ ଖାଲି ଅନୁକୂଳ ଅଭିମତମାନ ଆସିବ ଏବଂ ପ୍ରତିକୂଳ ମନ୍ତବ୍ୟଗୁଡ଼ିକ ନିଷେଧ କରାଯିବ, ଏପରି ସୀମାରେଖା ଆପଣ ଟାଣି ପାରିବେ ନାହିଁ । ଆପଣ ଦେଇଥିବା ଚିଠିରୁ ସୂଚିତ ହୁଏ ଯେ ପ୍ରତିକୂଳ ମତ ଦେବା ନିଷିଦ୍ଧ ।

"ଆମେ ଏତେ କାଳ ହେଲା ବ୍ରିଟିଶ ସରକାର ବିରୁଦ୍ଧରେ ନାଗରିକ ଅଧିକାର ପାଇଁ ଲଢ଼େଇ କରି ଆସିଛୁ । ମୁଁ ଭାବୁଛି, ନାଗରିକ ଅଧିକାରରେ ବାକ୍ ସ୍ୱାଧୀନତା ଅନ୍ତର୍ଭୁକ୍ତ । ଆପଣଙ୍କ ଅଭିମତ ଅନୁସାରେ ଯଦି କଂଗ୍ରେସ ଅବା ଏ.ଆଇ.ସି.ସି.ର ସଂଖ୍ୟାଧିକ ମତ ସହିତ ଆମେ ଏକମତ ନୋହୁଁ, ତେବେ ଆମର ବାକ୍ ସ୍ୱାଧୀନତା ନାହିଁ । ବ୍ରିଟିଶ୍ ସରକାର ବିରୁଦ୍ଧରେ ବାକ୍ ସ୍ୱାଧୀନତାର ଅଧିକାର ଆମର ରହିଛି । କିନ୍ତୁ କଂଗ୍ରେସ ବା ତା'ର ଅନ୍ତର୍ଭୁକ୍ତ ଅନ୍ୟ କୌଣସି ସଂସ୍ଥା ସଂପର୍କରେ ଆମର ବାକ୍ ସ୍ୱାଧୀନତା ରହିବ ନାହିଁ, ତେବେ ଏହା ଏକ କିମ୍ଭୂତକିମ୍ଭାକାର ପରିସ୍ଥିତି ହେବ । ଦେଶର ସ୍ୱାର୍ଥ ପ୍ରତି କ୍ଷତିକାର ହେବ ବୋଇଲେ ଆମେ ଯାହା ବିଚାରୁ, ଏ.ଆଇ.ସି.ସିର ସେପରି ପ୍ରସ୍ତାବଗୁଡ଼ିକ ସଂପର୍କରେ ପ୍ରତିକୂଳ ଅଭିମତ ଦେବାର ଅଧିକାରରୁ ଯଦି ବଂଚିତ କରାଯାଏ, ତେବେ ତାହା ହେବ ଗଣତାନ୍ତ୍ରିକ ଅଧିକାରର ନାସ୍ତି । ମୁଁ ସମସ୍ତ ଗମ୍ଭୀରତା ସହ ଆପଣଙ୍କୁ ପଚାରିବି ଯେ ଗଣତାନ୍ତ୍ରିକ ଅଧିକାର କେବଳ ବାହାର ଉପଭୋଗ କରାଯାଇପାରିବ, କଂଗ୍ରେସ ଭିତରେ ନୁହେଁ ?

"ଏ.ଆଇ.ସି.ସି ଦ୍ୱାରା କୌଣସି ପ୍ରସ୍ତାବ ଗୃହୀତ ହେଲେ, ତାହାକୁ ପରବର୍ତ୍ତୀକାଳରେ ଠିକ୍ ଏହି ସଂସ୍ଥାରେ ବିବେଚନା କରାଯାଏ ଅବା ସଂଶୋଧନ କରାଯାଏ, ଅବା ପରିବର୍ତ୍ତନ କରାଯାଏ ଅବା ଖାରଜ କରାଯାଏ । ମୋର ଆଶା, ଆପଣ ଏଥିରେ ମୋ ସହିତ ଏକମତ ହେବେ । ସଂଖ୍ୟା ବରିଷ୍ଠଙ୍କୁ ଆପଣା ମତରେ ମିଳିତ ହେବାକୁ ସଂଖ୍ୟାନ୍ୟୂନଯେ ପ୍ରଚାର ଚଳାନ୍ତି, ଏ କଥାରେ ମୋ ସହିତ ଆପଣ ଏକମତ ହେବେ ବୋଲି ଆଶା କରେ । ସାଧାରଣ ସଭା ଜରିଆରେ ଅବା ଲେଖାଲେଖି ବ୍ୟତିରେକ ଆମେ କଂଗ୍ରେସ ବ୍ୟକ୍ତିମାନଙ୍କୁ କିପରି ଆବେଦନ କରିପାରିବୁ ?

"କଂଗ୍ରେସ ଆଜି ମୁଷ୍ଟିମେୟ ବ୍ୟକ୍ତିଙ୍କର ସଂଗଠନ ନୁହେଁ । ମୋର ବିଶ୍ୱାସ, ଏହାର ସଦସ୍ୟ ସଂଖ୍ୟା ପ୍ରାୟ ୪୫ଲକ୍ଷ । ଆମେ ଯଦି ସଂବାଦପତ୍ରରେ ଲେଖିପାରିବୁ ଅବା ସାଧାରଣ ସଭାମାନ କରିପାରିବୁ, ତେବେ ସାଧାରଣ କଂଗ୍ରେସ ମତାବଲମ୍ବୀମାନଙ୍କୁ ଆମ ମତରେ ସହମତ କରିପାରିବୁ । ସାଧାରଣ କଂଗ୍ରେସ କର୍ମୀମାନଙ୍କ ପାଖରେ ପହଂଚିବାର ଏହାହିଁ ଉପାୟ ଓ ଆମେ ସେପରି କରିବାର ଅନୁମତି ଲାଭ କରିବା ଉଚିତ । ଯଦି ଆପଣ ଧରି ନିଅନ୍ତି ଯେ ଏ.ଆଇ.ସି.ସି. ଥରେ ଏକ ପ୍ରସ୍ତାବ ଗ୍ରହଣ କଲେ, ତାହା କାଳକାଳ ଲାଗି ଅଲଙ୍ଘନୀୟ ଏବଂ ପବିତ୍ର, ତେବେ ଆପଣ ନିଷେଧ କରିବାର ଯଥାର୍ଥତା ରହିବ । ଆଉ ଯଦି କୌଣସି ଏକ ସଂସ୍ଥା ଦ୍ୱାରା ଅବା କଂଗ୍ରେସର ଖୋଲା ଅଧିବେଶନ ମାଧ୍ୟମରେ ଏ.ଆଇ.ସି.ସିର କୌଣସି ଏକ ନିର୍ଦ୍ଦିଷ୍ଟ ପ୍ରସ୍ତାବର ପର୍ଯ୍ୟାଲୋଚନା କରିବା ଅବା ବଦଳାଇବା ଅବା ପରିହାର କରିବା ପ୍ରଚାରର ଅଧିକାର ଦିଅନ୍ତି, ତେବେ ଆପଣ ଆମ ସମାଲୋଚନାକୁ ବନ୍ଦ କରୁଛନ୍ତି କାହିଁକି ?

"ଶୃଙ୍ଖଳା" ଶବ୍ଦଟିକୁ ଆପଣ ଯେପରି ଅର୍ଥ କରୁଛନ୍ତି, ତାହାକୁ ମୁଁ ଗ୍ରହଣକରି ପାରିବି ନାହିଁ । ମୁଁ ନିଜକୁ କଠୋର ଶୃଙ୍ଖଳାବଦ୍ଧ ବୋଲି ଭାବେ । ମୁଁ ଭାବୁଛି ଯେ ଶୃଙ୍ଖଳା ନାମରେ ଆପଣ ସୁସ୍ଥ ସମାଲୋଚନାକୁ ବନ୍ଦ କରିବାକୁ ଚେଷ୍ଟା କରୁଛନ୍ତି । ଜଣକୁ ତାହାର ସାଂବିଧାନିକ ଓ ଗଣତାନ୍ତ୍ରିକ ଅଧକାରରୁ ବଂଚିତ କରିବା, ଶୃଙ୍ଖଳାର ଅର୍ଥ ନୁହେଁ ।

"ଆମେ ଯାହାକୁ ଅଲଙ୍ଘ୍ୟ ଅଧିକାର ବୋଲି ବିଚାରୁ, ତାହାକୁ ଆପଣ ଯେପରି ଦେଖିଛନ୍ତି, ସେଥିରେ ମୁଁ ପ୍ରକୃତରେ ଆଚମ୍ବିତ । ମୁଁ ଆଶା କରେ, ମୋର କୈଫିୟତ୍ ସନ୍ତୋଷଜନକ ବୋଲି ବିଚାରିବେ ।"

"ପରିଶେଷରେ ଯଦି ଜୁଲାଇ ୯ ତାରିଖରେ ଘଟଣାଗୁଡ଼ିକ ଘେନି କୌଣସି ବ୍ୟକ୍ତି ଦଣ୍ଡିତ ହୁଅନ୍ତି, ତେବେ ମୋ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ମୁଁ ଅନୁରୋଧ କରିବି । ଯଦି ଜୁଲାଇ ୯ର ଅଖିଳ ଭାରତ ପ୍ରତିବାଦ ଦିବସର ପ୍ରତିପାଳନ ଅପରାଧ ବୋଲି ବିବେଚିତ ହୁଏ, ତେବେ ମୁଁ ହେଉଚି ଚରମ ଅପରାଧୀ ।"

"ପରିଶେଷରେ ଯଦି ଜୁଲାଇ ୯ତାରିଖରେ ଘଟଣାଗୁଡ଼ିକ ଘେନି କୌଣସି ବ୍ୟକ୍ତି ଦଣ୍ଡିତ ହୁଅନ୍ତି, ତେବେ ମୋ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ମୁଁ ଅନୁରୋଧ କରିବି ।

ଯଦି ଜୁଲାଇ ୯ର ଅଖିଳ ଭାରତ ପ୍ରତିବାଦ ଦିବସର ପ୍ରତିପାଳନ ଅପରାଧ ବୋଲି ବିବେଚିତ ହୁଏ, ତେବେ ମୁଁ ହେଉଚି ଚରମ ଅପରାଧୀ ।"

ତାଙ୍କ କୈଫିୟତ୍ ସନ୍ତୋଷଜନକ ନୁହଁ ବୋଲି କଂଗ୍ରେସ କାର୍ଯ୍ୟକାରୀ କମିଟି ବିଚାର କଲା । କଂଗ୍ରେସ ସଭାପତିଙ୍କ ନିର୍ଦ୍ଦେଶଗୁଡ଼ିକୁ ଅକ୍ଷରେ ଅକ୍ଷରେ ମାନିନେବା ବୋଷଙ୍କର କର୍ତ୍ତବ୍ୟ ବୋଲି ତାହା ନିର୍ଣ୍ଣୟ କଲା । ଏହି ନିଷ୍ପତ୍ତିରେ ବୋଷ ଅସନ୍ତୁଷ୍ଟ ହେଲେ କଂଗ୍ରେସ କାର୍ଯ୍ୟକାରୀ କମିଟି ଅବା ଏ.ଆଇ.ସି.ସିକୁ ଲେଖି ପାରିବେ ବୋଲି ତାଙ୍କୁ ଜଣାଇ ଦିଆଗଲା ।

ଦୁଇ ଥର କଂଗ୍ରେସ ସଭାପତି ଭାବରେ ନିର୍ବାଚିତ ବୋଷଙ୍କ ବିରୁଦ୍ଧରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଏକ ପ୍ରସ୍ତାବ ନେଇ ବଂଗଳା ପ୍ରଦେଶିକ କଂଗ୍ରେସ କମିଟିର ସଭାପତି ପଦରୁ ତାଙ୍କୁ ଅନ୍ତର କଲା । ୧୯୩୯ ଅଗଷ୍ଟଠାରୁ ୩ ବର୍ଷ ଲାଗି ସେ କଂଗ୍ରେସର କୌଣସି ନିର୍ବାଚିତ ସଂସ୍ଥାକୁ ଯାଇପାରିବେ ନାହିଁ ବୋଲି ନିର୍ଦ୍ଧାରଣ ନେଲା । ଏ.ଆଇ.ସି.ସିର ବମ୍ବେ ଅଧିବେଶନ ଯେଉଁ ପ୍ରସ୍ତାବ ନେଲା, ସେଥିରେ ସ୍ପଷ୍ଟ ଇଙ୍ଗିତ ଥିଲାଯେ ଯେହେତୁ କେତେକ ପ୍ରଦେଶରେ କଂଗ୍ରେସ କ୍ଷମତାରେ ରହିଛି, ସେସବୁ ପ୍ରଦେଶରେ ଲୋକେ ଆନ୍ଦୋଳନ କରିବା ଉଚିତ ନୁହଁ, ଆଉ ଯଦି ସେପରି ଆନ୍ଦୋଳନ ହୁଏ, ସେଥିରେ କଂଗ୍ରେସର ଲୋକେ ଅଂଶ ଗ୍ରହଣ କରିବେ ନାହିଁ ।

ସୁଭାଷ ବୋଷ ଓ ଅନ୍ୟାନ୍ୟ ବାମପନ୍ଥୀ କଂଗ୍ରେସ ବ୍ୟକ୍ତିଙ୍କ ବିରୁଦ୍ଧରେ ଶାସ୍ତିବିଧାନ କରାଯିବାର ଅଳ୍ପ କାଳପରେ ଦ୍ୱିତୀୟ ମହାସମର ଆରଂଭ ହୋଇଗଲା । ତାହା ଭାରତରେ ରାଜନୈତିକ ପରିସ୍ଥିତିକୁ ସଂପୂର୍ଣ୍ଣ ବଦଳାଇଦେଲା ।

ସୁଭାଷଚନ୍ଦ୍ର ବୋଷ ଏହାପରେ ଫରଓ୍ୱାର୍ଡ଼ ବ୍ଲକ ଗଠନ କଲେ । ଭାରତର ବିଭିନ୍ନ ପ୍ରାନ୍ତରେ ଫରଓ୍ୱାର୍ଡ଼ ବ୍ଲକର ଶାଖାମାନ ଗଠିତ ହେଲା । ଫରଓ୍ୱାର୍ଡ଼ ବ୍ଲକରେ ଯେଉଁମାନେ ସଭ୍ୟ ହେବେ, ସେମାନେ କଂଗ୍ରେସର ସାଧାରଣ ସଦସ୍ୟ ହେବେ, ମଧ୍ୟ ହେବେ ବୋଲି ନିର୍ଣ୍ଣୟ ନିଆଯାଇଥିଲା ।



# ସୁଭାଷବୋଷଙ୍କ ମହା-ଅନ୍ତର୍ଦ୍ଧାନ, ୧୯୪୧ ଜାନୁଆରୀ ୧୬ ତାରିଖ

୧୯୩୯ ସେପ୍ଟେମ୍ବରରେ ଦ୍ୱିତୀୟ ବିଶ୍ୱ ଆରଂଭ ହେବା ମାତ୍ରେ ବ୍ରିଟିଶ ସରକାର ସୁଭାଷ ବୋଷଙ୍କୁ ଏବଂ ବହୁ ସୋସଲିଷ୍ଟ, କଂଗ୍ରେସ ନେତା ଓ ବଛା ବଛା କମ୍ୟୁନିଷ୍ଟଙ୍କୁ ଧରି ଜେଲରେ ଭର୍ତ୍ତି କରିଥିଲା । କଲିକତାର ଏଲଗିନ ରୋଡ଼ରେ ଅବସ୍ଥିତ ପୈତୃକ ବାସଗୃହରେ ଜେଲରୁ ଅସୁସ୍ଥତା କାରଣରୁ ମୁକ୍ତ ହୋଇ କଡ଼ା ପୁଲିସ ନଜରବନ୍ଦୀରେ ରହିଥାନ୍ତି ସୁଭାଷଚନ୍ଦ୍ର ବୋଷ । ୧୯୪୧ ଜାନୁଆରୀ ୧୬ ତାରିଖ ମଧ୍ୟରାତ୍ରି -୧୭ରେ ତାରିଖର ପ୍ରବେଶ ମାତ୍ର । ବଡ଼ ଭାଇ ଶରତଚନ୍ଦ୍ର ବୋଷଙ୍କ ପୁତ୍ର, ନିଜ ପୁତୁରା ଶିଶିର ବୋଷଙ୍କ କାରରେ ସୁଭାଷ ଅନ୍ତର୍ଦ୍ଧାନ ହୋଇଗଲେ । ଅନ୍ତର୍ଦ୍ଧାନ ହୋଇଯିବାର କାହାଣୀ ଅତ୍ୟନ୍ତ ଚମକପ୍ରଦ । ଏଥିଲାଗି ବହୁ ଉଦ୍ୟମ, ପରିକଳ୍ପନା ହୋଇଥିଲା । କିପରି, କାହା ସାହାଯ୍ୟରେ ସେ ଅନ୍ତର୍ଦ୍ଧାନ ହୋଇଗଲେ ସେହି ସଫଳ, ଦୀର୍ଘ ପ୍ରୟାସର ସଂକ୍ଷିପ୍ତ, ସାରମର୍ମ୍ମ ତଥ୍ୟ ନିମ୍ନରୂପରେ ପ୍ରଦତ୍ତ ହେଲା ।

ବ୍ରିଟିଶ ସରକାରକୁ ଭାରତରୁ ନିକାଲିବା ଲାଗି ନଜରବନ୍ଦୀରୁ ଖସିଯାଇ ଦେଶ ବାହାରକୁ ଚାଲିଯିବେ । ସେଠାରେ ସ୍ୱାଧୀନତା ସଂଗ୍ରାମର ନୂଆ କୌଶଳ ଅନ୍ୱେଷଣ କରିବେ । ତାଙ୍କର ଏହି ଅଭିଳାଷକୁ ସାର୍ଥକ କରିବା ପାଇଁ ସୁଭାଷଚନ୍ଦ୍ର ବୋଷ, ପଂଜାବର କୀର୍ତ୍ତିକିଷାନ ପାର୍ଟିର ସାହାଯ୍ୟ ଲୋଡ଼ିଲେ । କଲିକତାରେ "ଦେଶ ଦର୍ପଣ" ନାମକ ପତ୍ରିକାର ସଂପାଦକ ଥିଲେ ସର୍ଦ୍ଦାର ନିରଂଜନ ସିଂ ତାଲିବ । ବୋଷଙ୍କର ସେ ବନ୍ଧୁ । କୀର୍ତ୍ତି କିଷାନ (କମ୍ୟୁନିଷ୍ଟ ପାର୍ଟି) ମାଧ୍ୟମରେ ସୋଭିଏତ୍ ୟୁନିୟନକୁ କିପରି ଖସିଯିବେ, ଏହି ବନ୍ଧୁଙ୍କୁ ସେଦିଗରେ ସାହାଯ୍ୟ କରିବାକୁ ବୋଷ ଅନୁରୋଧ କଲେ ।

ସର୍ଦ୍ଦାର ନିରଂଜନ ସିଂହ ତାଲିବ କଲିକତାରେ ଆତ୍ମଗୋପନ କରି ରହୁଥିବା କମ୍ୟୁନିଷ୍ଟ ନେତା ଆଚାର ସିଂହଙ୍କୁ ଏ କଥା ଜଣେଇଲେ । ଆଚାର ସିଂହ ବୋଷଙ୍କ ସହିତ ସାକ୍ଷାତ୍‌କରି ଏହି କାର୍ଯ୍ୟର ରାଜନୈତିକ ଦିଗ ଆଲୋଚନା କରିବାକୁ ଚାହିଁଲେ । ତାହା ଜାଣିଲେ, ଆଚାର ସିଂହ ପାର୍ଟିକୁ ଏ ଦାୟିତ୍ୱ ବହନ କରିବାକୁ କହିବେ । ଉଭୟଙ୍କର ଗୋପନ ଭେଟ ଓ ଆଲୋଚନା ବ୍ୟବସ୍ଥିତ ହେଲା ।

ଆଚାର ସିଂହଙ୍କୁ ସୁଭାଷଚନ୍ଦ୍ର ବୋଷ ସମସ୍ତ ପରିସ୍ଥିତି ଅବଗତ କରାଇ କହିଥିଲେ ଯେ,

(୧) ତାଙ୍କୁ କଂଗ୍ରେସ ସଭାପତିତ୍ୱରୁ କଗ୍ରେସର ଦକ୍ଷିଣପନ୍ଥୀମାନେ ନିକାଲି ଦେବାରେ ସମର୍ଥ ହୋଇଛନ୍ତି ।

(୨) କଂଗ୍ରେସର ବାମପନ୍ଥୀମାନେ କଂଗ୍ରେସର ଦକ୍ଷିଣପନ୍ଥୀମାନଙ୍କ ବିରୁଦ୍ଧରେ ଏକତ୍ରିତ ହୋଇପାରି ନାହାନ୍ତି କି ବ୍ରିଟିଶ ସରକାର ବିରୁଦ୍ଧରେ ସଂଗଠିତ ହୋଇ ପାରିନାହାନ୍ତି ।

(୩) ତାଙ୍କର ଦୃଢ଼ ବିଶ୍ୱାସ ଯେ ଭାରତରେ ସଶସ୍ତ୍ର ଅଭ୍ୟୁତ୍ଥାନ ନ ହେଲେ ବ୍ରିଟିଶଙ୍କୁ ହଟେଇ ହେବ ନାହିଁ ।

(୪) ଏପରି ଏକ ଅଭ୍ୟୁତ୍ଥାନ ପାଇଁ ଦ୍ୱିତୀୟ ମହାସମର ଉତ୍ତମ ସୁଯୋଗ ସୃଷ୍ଟି କରିଛି । ଏକ ବନ୍ଧୁତ୍ୱସଂପନ୍ନ, ସାମ୍ରାଜ୍ୟବାଦ-ବିରୋଧୀ ଦେଶ, ଅର୍ଥାତ୍ ସୋଭିଏତ୍ ୟୁନିଅନଠାରୁ ଅସ୍ତ୍ରଶସ୍ତ୍ର ସଂଗ୍ରହ କରିବା ନିଷ୍ପତ୍ତିରେ ସେ ପହଂଚିଛନ୍ତି । ତାଙ୍କର ବିଶ୍ୱାସ ଯେ କେବଳ କମ୍ୟୁନିଷ୍ଟ ପାର୍ଟି ଦେଶରୁ ଖସିଯିବା ଲାଗି ତାଙ୍କୁ ସାହାଯ୍ୟ କରିପାରିବ ।

ସୁଭାଷ ବୋଷଙ୍କ ସହିତ ଏପରି କଥୋପକଥନପରେ ଆଚାର ସିଂହ ସମସ୍ତ ବିବରଣୀ ପାର୍ଟିକୁ ଜଣେଇଲେ । କୀର୍ତ୍ତି କିଷାନ ପାର୍ଟି ଏହି ପ୍ରସ୍ତାବର ବିଶେଷ ଆଲୋଚନା କରି ସୁଭାଷଚନ୍ଦ୍ର ବୋଷଙ୍କ ସାମ୍ରାଜ୍ୟବାଦ ବିରୋଧୀ ଆସ୍ଥାନ, ପାର୍ଟି ନୀତି ସହିତ ସଂଗତିସଂପନ୍ନ ବୋଲି ସ୍ଥିର କଲା । ସେତେବେଳେ ପାର୍ଟିର ତୁଙ୍ଗ ନେତା ତେଜାସିଂ ସ୍ୱାତନ୍ତ୍ୟ ଜେଲଖାନାରେ ବନ୍ଦୀ । ତାଙ୍କୁ ଗୋପନରେ ପରାମର୍ଶ କରାଗଲା । ସୁଭାଷବୋଷଙ୍କ ଉଦ୍ୟମକୁ ସବୁପ୍ରକାର ସାହାଯ୍ୟ କରିବାକୁ ତେଜାସିଂହ ସ୍ୱାତନ୍ତ୍ୟ ପାର୍ଟିକୁ ପରାମର୍ଶ ଦେଲେ । ସେ ଚେତାବନୀ ଦେଇଥିଲେ ଯେ ସୁଭାଷ ବୋଷ ଏକ ବିରାଟ ନେତା । ତାଙ୍କୁ ଖସେଇ ନେବାବେଳେ ସେ ଯଦି ପୁଲିସ ଦ୍ୱାରା ଧରା ପଡ଼ନ୍ତି, ତେବେ ତାହା ଆମ ପାର୍ଟି ଉପରେ ଆଞ୍ଚ ଆଣିବ । ତାଙ୍କର ଅନ୍ତର୍ଦ୍ଧାନର ଯୋଜନା ପ୍ରସ୍ତୁତ କରିବା ଲାଗି ପାର୍ଟିର ନେତା ରାମ କିଶାନ୍, ଆଚାର ସିଂହ ଓ ଭଗତରାମ ତଲବାରଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ ହେଲା ।

କଲିକତାଠାରୁ ତାଙ୍କୁ ଖସେଇ ନେଇ ଭଗତ ରାମ ତଲବାର ତାଙ୍କ ଘର ପେଶାବାରକୁ ନେଲେ । ସେଠାରୁ କାବୁଲରେ ଗୋପନରେ ପହଂଚିଲେ । କାବୁଲରେ ଅବସ୍ଥିତ ସୋଭିଏତ୍ ଦୂତାବାସ ସହିତ ଯୋଗାଯୋଗ କରିବାକୁ ବହୁଥର ଉଦ୍ୟମକରି ବିଫଳ ହେଲେ । ବାଧ ହୋଇ କାବୁଲରେ ଥିବା ଜର୍ମାନୀ ଦୂତାବାସ ସହିତ ଯୋଗାଯୋଗ କଲେ । ଏହାର କର୍ମଚାରୀମାନେ ଇଟାଲୀର ଦୂତାଳୟ ସହିତ ସଂପର୍କ ସ୍ଥାପନ କଲେ ।

୧୯୪୧ ମାର୍ଚ୍ଚ ୧୮ ତାରିଖରେହିଁ କାବୁଲରୁ ଖସି ଯିବାକୁ ସୁଭାଷବୋଷ ସଫଳ ହେଲେ । ସୋଭିଏତ୍ ୟୁନିଅନ ବାଟ ଦେଇ ସେ ଗୋପନରେ ଜର୍ମାନୀରେ ପହଂଚିଲେ ।



# ଭାରତ ବିଭାଜନ ବିରୁଦ୍ଧରେ ମୁସଲିମ ସମ୍ମିଳନୀ

୧୯୪୦ ଏପ୍ରିଲ ୨୭ରୁ ୩୦ ଯାଏ ନୂଆଦିଲ୍ଲୀରେ ଭାରତ ବିଭାଜନ ବିରୁଦ୍ଧରେ ଏକ ସ୍ୱତନ୍ତ୍ର ମୁସଲିମ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସେହିବର୍ଷ ମୁସଲିମ ଲିଗ ଭାରତକୁ ଦୁଇଗଣ୍ଡକରି ପାକିସ୍ଥାନ ପ୍ରତିଷ୍ଠା କରିବା ପ୍ରସ୍ତାବ ଗ୍ରହଣ କରିଥିଲା । ଏପରି ପ୍ରସ୍ତାବର ମାରାତ୍ମକତାର ବିରୋଧକରି ଏହି ଦିଲ୍ଲୀ ସମ୍ମିଳନୀରେ ଦେଶପ୍ରେମୀ, ଜାତୀୟତାବାଦୀ ମୁସଲମାନମାନେ ଏକ ମିଳିତ ମଂଚ ଗଠନ କରିଥିଲେ ।

ଏହି ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ଖାଁ ବାହାଦୂର ଆଲ୍ଲା ବକ୍ସ । ଭାଷଣରେ ସେ ମୁସଲିମ ଲିଗର ପାକିସ୍ଥାନ ଦାବୀ ପ୍ରସ୍ତାବକୁ ଏବଂ ମୁସଲିମ ଲିଗ ଭାରତର ସବୁ ମୁସଲମାନଙ୍କର ପ୍ରତିନିଧିତ୍ୱ କରୁଥିବା ଦାବୀଙ୍କୁ ଖଣ୍ଡନ କରିଥିଲେ । ସାତଟି ପ୍ରଦେଶରେ କଂଗ୍ରେସ ସରକାର ଓ ୮ଟି ପ୍ରଦେଶରେ ନିୟନ୍ତ୍ରକାରୀ ଶକ୍ତିରୂପେ କଂଗ୍ରେସର ପ୍ରତିନିଧିତ୍ୱମୂଳକ ଚରିତ୍ର ସୁସ୍ପଷ୍ଟ ବୋଲି ସେ ଉଲ୍ଲେଖ କରିଥିଲେ ।

ମୁସଲିମ ଲିଗର ମୁଖା ଖୋଲିଦେଇ ସେ କହିଥିଲେ, କେତେ କୋଟି ଉତ୍ତର ପଶ୍ଚିମ ଭାରତର ପଂଜାବୀ, ପଠାଣ ଓ ବେଲୁଚି ମୁସଲମାନ ଏବଂ ହଜାରେ ମାଇଲ ଦୂରରେ ଥିବା ପୂର୍ବପଟେ ଅଢ଼େଇ କୋଟି ଅସମୀୟା ଓ ବଂଗାଳୀ ମୁସଲମାନଙ୍କୁ ଘେନି ଏକ ଅପ୍ରାକୃତିକ ସାର୍ବଭୌମ ରାଷ୍ଟ୍ର ଗଠନ କରିବା ଦାବୀ ହାସ୍ୟାସ୍ପଦ ।" ସେ ଅଧିକ ବ୍ୟାଖ୍ୟାକରି କହିଲେ :-

"ଭାରତୀୟ ମୁସଲମାନମାନଙ୍କ ମଧ୍ୟରୁ ସଂଖ୍ୟାଧିକ ୯୦ ଭାଗ ମୁସଲମାନ ଭାରତର ପ୍ରାଚୀନ ଅଧିବାସୀମାନଙ୍କର ସନ୍ତାନସନ୍ତତି । ପୁରାତନ ଯୁଗରେ ସମସ୍ତଙ୍କର ଏହି ବାସଭୂମିରେ, ଦ୍ରାବିଡ଼ ଓ ଆର୍ଯ୍ୟମାନେ ଯେପରି ଭୂମିପୁତ୍ର ସେମିତି ମୁସଲମାନମାନେ ମଧ୍ୟ ଭୂମିପୁତ୍ର । କୌଣସି ବିଭାଜିତ ଅବା ବିଭିନ୍ନ ଅଂଚଳ ନୁହଁ, ସମଗ୍ର ଭାରତହିଁ ସବୁ ମୁସଲମାନଙ୍କର ବାସଭୂମି । କୌଣସି ହିନ୍ଦୁଙ୍କର ଅବା ମୁସଲମାନଙ୍କର ସେମାନଙ୍କୁ ସେଥିରୁ ବଂଚିତ କରିବାର ଅଧିକାର ନାହିଁ ।" ଦୁଇଦିନ କାଳ ପ୍ରତିନିଧିମାନେ ଆଲୋଚନାରେ ଭାଗ ନେବାପରେ ତୃତୀୟ ଦିନ ଅଧିବେଶନରେ ମୁସଲିମ ଲିଗର ପାକିସ୍ଥାନ ସୃଷ୍ଟି ଯୋଜନାକୁ ଅବାସ୍ତବ ଓ କ୍ଷତିକାରକ ବୋଲି ବର୍ଣ୍ଣନା କରାଗଲା । ଏହା ଦେଶ ଓ

ମୁସଲମାନ ଉଭୟଙ୍କ ପକ୍ଷରେ ହାନିକାରକ ବୋଲି ପ୍ରସ୍ତାବରେ ଧାର୍ଯ୍ୟ ହେଲା । ମୌଲାନା ହବିବୁର ରହମାନ ଏହି ପ୍ରସ୍ତାବ ଆଗତ କରିଥିଲେ । ପ୍ରସ୍ତାବର ଶେଷରେ କୁହାଗଲା । "ଭାରତକୁ ହିନ୍ଦୁ ଭାରତ ଓ ମୁସଲିମ ଭାରତ ଯୋଜନାର ଅର୍ଥ ବ୍ରିଟିଶଠାରୁ ଭାରତର ସ୍ୱାଧୀନତା ହାସଲ ପଥରେ ଅନ୍ତରାୟ ସୃଷ୍ଟି କରିବା ।"

ଜିନ୍ନାଙ୍କୁ ଆହ୍ୱାନଦେଇ ପ୍ରସ୍ତାବରେ କୁହାଗଲାଯେ "ଆମେ ଚାହୁଁ ଏକ ଗଣତାନ୍ତ୍ରିକ ସରକାର, ଯେଉଁଥିରେ ସବୁ ସଂପ୍ରଦାୟ ଓ ସ୍ୱାର୍ଥର ପ୍ରତିନିଧି ରହିବେ । ଆମେ ଚାହୁଁ, ଭାରତୀୟ ଜନତାର ସରକାର, ବ୍ରିଟିଶର ନୁହେଁ; ରାଜା ମହାରାଜା, ନବାବ ଓ କୌଣସି ଧର୍ମୀୟ ଗୋଷ୍ଠୀର ନୁହଁ ।"

ପ୍ରସ୍ତାବକ ମୌଲାନା ହବିବୁର ରହମନ କହିଲେ "କେବଳ ମୁସଲମାନ ନୁହନ୍ତି, ହିନ୍ଦୁମାନେ ମଧ୍ୟ ସାଂପ୍ରଦାୟିକ ସୃଷ୍ଟି କରୁଛନ୍ତି । ୧୯୩୦ରେ ସୀମାନ୍ତ ପ୍ରଦେଶରେ ମୁସଲମାନମାନେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ଧାଡ଼ିରେ ଥିଲେ । -କୁହାଯାଉଛି ବର୍ତ୍ତମାନର ୧୯୩୫ ସଂବିଧାନ ବଳରେ କଂଗ୍ରେସ ମୁସଲମାନମାନଙ୍କ ଉପରେ ଅତ୍ୟାଚାର କରୁଛି । ମାତ୍ର ଏହି ସଂବିଧାନକୁ ଅଣ-କଂଗ୍ରେସର ଲୋକମାନେ ତିଆରି କରିଛନ୍ତି, ଯେଉଁମାନେ କି ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଏବଂ ସଂଖ୍ୟାନ୍ୟୂନଙ୍କ ଲାଗି ରକ୍ଷାକବଚ ଦାବୀ କରିଥିଲେ । ଜିନ୍ନାଙ୍କୁ ଆହ୍ୱାନ ଦେଇ ସେ କହିଲେ ସେ ଆସି ଶ୍ରୋତୃମଣ୍ଡଳୀ ଆଗରେ ବକ୍ତବ୍ୟ ବାଢ଼ନ୍ତୁ ।

ଜିନ୍ନା ଅବା ଆମେ ମୁସଲମାନମାନଙ୍କ ସ୍ୱାର୍ଥରକ୍ଷା କରୁଛୁ, ତାହାର ରାୟ ଲୋକେ ଦେବେ । ପାକିସ୍ଥାନ ଦାବୀକରି ଇସଲାମ ବିପଦାପନ୍ନ କୁହାଯାଉଛି - କିନ୍ତୁ କୌଣସି ବିବେକୀ ମୁସଲମାନ ଏହାକୁ ଗ୍ରହଣ କରିବ ନାହିଁ । ସେ ଅଭିଯୋଗକରି କହିଲେ ଯେ ହିନ୍ଦୁମାନେ ହିଁ ମୁସଲିମ ଲିଗକୁ ଶକ୍ତିଶାଳୀ କରେଇଛନ୍ତି । ହିନ୍ଦୁ ସଂବାଦପତ୍ରମାନେ ଜିନ୍ନାଙ୍କ ପ୍ରଚାର କଲେ ଓ ଜାତୀୟତାବାଦୀ ମୁସଲମାନଙ୍କ ସ୍ୱାର୍ଥରେ ହାନି ପହଂଚେଇଲେ ।

ଉପସ୍ଥିତ ବିରାଟ ମୁସଲିମ ଜନତାକୁ ସେ ପ୍ରଶ୍ନ କଲେ, କିଏ ପାକିସ୍ଥାନ ପକ୍ଷରେ ଅଛନ୍ତି କୁହନ୍ତୁ । ମାତ୍ର ଏହା ପକ୍ଷରେ କେହି ହେଲେ କହିଲେ ନାହିଁ ।



# ଅଖିଳ ଭାରତ ଗଣନାଟ୍ୟ ସଂଘ - ୧୯୪୩ ମଇ ୨୫

ଆମ ସ୍ୱାଧୀନତା ସଂଗ୍ରାମର ଏକ ନିୟାମକ ପର୍ଯ୍ୟାୟରେ ଗୋଟିଏ ଯୁଗାନ୍ତକାରୀ ସାଂସ୍କୃତିକ ସଂଗଠନର ଉଦ୍‌ଭବ ହୋଇଥିଲା । ଏହି ସଂଗଠନଟିର ନାମ ଭାରତୀୟ ଗଣନାଟ୍ୟ ସଂଘ (ଇପଟା) ।

ବମ୍ବେ ମହାନଗରୀର ପାରେଲ । ଏହି ପାରେଲ ଉପନଗରୀରେ ଦାମୋଦର ହିଲ୍ ଅଂଚଳ । ସେଠାରେ ଅବସ୍ଥିତ ମାରୱାଡ଼ି ହାଇସ୍କୁଲ ପ୍ରେକ୍ଷାଗୃହରେ ୧୯୪୩ ମଇ ୨୫ ତାରିଖରେ ଏହାର ଉଦବୋଧନୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ଭାରତର ବିଭିନ୍ନ ପ୍ରଦେଶରୁ ସଂସ୍କୃତି କ୍ଷେତ୍ରରେ ନିଜନିଜ ପ୍ରଦେଶରେ ସୁନାମ ଅର୍ଜନ କରିଥିବା ଦେଶପ୍ରେମୀ କଳାକାରମାନେ ଆସି ଏଥିରେ ଭାଗ ନେଇଥିଲେ । ଉଦବୋଧନୀ ସମ୍ମିଳନୀରେ ଅଧକ୍ଷତା କରିଥିଲେ ବିଶିଷ୍ଟ ଅଧ୍ୟାପକ ହୀରେନ ମୁଖର୍ଜୀ ।

ବିଭିନ୍ନ ପ୍ରଦେଶରୁ ଆସିଥିବା ପ୍ରତିନିଧିମାନେ ନିଜନିଜ ପ୍ରଦେଶରେ ଦେଶପ୍ରେମୀ, ସାମ୍ରାଜ୍ୟବାଦ ବିରୋଧୀ, ସାମନ୍ତବାଦ ବିରୋଧୀ, ପୁଂଜିବାଦୀ ଶୋଷଣ ବିରୋଧୀ ସାଂସ୍କୃତିକ କାର୍ଯ୍ୟକଳାପର ବିବରଣୀ ପ୍ରଦାନ କରିଥିଲେ ।

ଅନୀଲ ଦେ ସିଲଭାଙ୍କ ଦ୍ୱାରା ଆଗତ ପ୍ରଥମ ପ୍ରସ୍ତାବରେ ଏହି ସଂଗଠନର ଲକ୍ଷ୍ୟ, ଉଦ୍ଦେଶ୍ୟ ଓ କର୍ମସୂଚୀର ଉଲ୍ଲେଖ ଥିଲା । ଏହି ପ୍ରସ୍ତାବର ମୁଖ୍ୟ ଅଂଶରେ ଥିଲା :-

"ନାଟ୍ୟମଂଚ ଓ ପାରଂପରିକ କଳାରାଜିକୁ ବଳିଷ୍ଠ କରିବା ଲାଗି ଏବଂ ଆମ ଜନାତର ସ୍ୱାଧୀନତା, ସାଂସ୍କୃତିକ ପ୍ରଗତି ଓ ଅର୍ଥନୈତିକ ନ୍ୟାୟ ପାଇଁ ସଂଗ୍ରାମର ଏକ ସାଂସ୍କୃତିକ ଆୟୁଧ ରୂପରେ ସମଗ୍ର ଭାରତବର୍ଷରେ ଏହି ସଂଗଠନ, 'ଇପଟା' ଗଠିତ ହେଉଛି ।"

ତେଣୁ ଭାରତୀୟ ନାଟ୍ୟସଂଘ ଆନ୍ଦୋଳନର କର୍ତ୍ତବ୍ୟ ହେଲା ନାଟ୍ୟମଂଚ ଓ ଅନ୍ୟାନ୍ୟ ପାରଂପରିକ କଳା ମାଧମରେ ନୂତନ ଜନଜାଗରଣ ସୃଷ୍ଟି କରିବା । ସେ କାଳର ବିଶିଷ୍ଟ ଆଇନଜୀବୀ ସ୍ନେହାଂଶୁ ଆଚାର୍ଯ୍ୟ ଏକ ପ୍ରସ୍ତାବ ଆଣି କହିଥିଲେ ଯେ "ସ୍ୱତଃସ୍ଫୁର୍ତ୍ତ ଭାବରେ ଦେଶସାର ଗଢ଼ି ଉଠୁଥିବା ଏହି ଆନ୍ଦୋଳନକୁ ସର୍ବ ଭାରତୀୟ ସ୍ତରରେ ସଂଗଠିତ ଓ ସମନ୍ୱିତ କରିବା ଅତ୍ୟାବଶ୍ୟକ ।

ଭାରତର ବିଭିନ୍ନ ପ୍ରଦେଶରେ ପ୍ରଗତିଶୀଳ କଳାଶିଳ୍ପୀମାନଙ୍କ ଦ୍ୱାରା ଗଣନାଟ୍ୟ ସଂଘର ଶାଖାମାନ ସଂଗଠିତ ହେଲା । ମହାନ୍ ଭାରତୀୟ ସଂସ୍କୃତିକୁ ଇପଟା ଦ୍ୱାରା ସୃଷ୍ଟ ନାଟକ, ଗାନ, ଅଭିନୟ କାବ୍ୟ କବିତା, ଗଦ୍ୟ ସାହିତ୍ୟ ସମଗ୍ରଦେଶରେ ସ୍ୱାଧୀନତା ପାଇଁ, ଶୋଷଣ ଅତ୍ୟାଚାର ଓ ନିର୍ଯ୍ୟାତନାରୁ ମାନବର ମୁକ୍ତି ପାଇଁ ନବ ଜାଗରଣ ସୃଷ୍ଟି କରିଥିଲା । କେବଳ

ନୂତନ ଧରଣର ନାଟକ ମଂଚଯେ ଗଢ଼ି ଉଠିଲା, ସେତିକି ନୁହଁ । ସେ କାଳର ଚଳଚ୍ଚିତ୍ରରେ ଏହାର ପ୍ରଭାବ ପଡ଼ିଲା । ଇପଟା ସଂସ୍ଥା ଅନୁରାଗୀ ମଂଚ କଳାକାର, ଚିତ୍ର ତାରକା, ସଂଗୀତଜ୍ଞମାନେ ଦେଶରେ ଏକ ନବଯୁଗର ସାଂସ୍କୃତିକ ମାନସ ସୃଷ୍ଟି କରିବାରେ ସମର୍ଥ ହୋଇଥିଲେ । ସାରା ଦେଶର ସାଂସ୍କୃତିକ କ୍ଷେତ୍ରରେ ଦେଶପ୍ରେମୀ ଉନ୍ମାଦନା ସୃଷ୍ଟି କରିଥିଲେ ।

ଭାରତର ସଂସ୍କୃତି ଓ ବିଭିନ୍ନ କଳା ପ୍ରତି ଭାରତୀୟ ଗଣନାଟ୍ୟ ସଂଘର ଅବଦାନ ଅବିସ୍ମରଣୀୟ ପଥପ୍ରାନ୍ତଠାରୁ ପ୍ରେକ୍ଷାଳୟ, ନାଟ୍ୟମଂଚ, ସାହିତ୍ୟ ସଂଗୀତ ଯାଏ ଏହାର ପ୍ରଭାବ ବିସ୍ତାରିତ ହେଲା ।



# କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମକଦମା
# ୧୯୪୦ ଜୁଲାଇ ୧୨

ବ୍ରିଟିଶ ସରକାର ୧୯୩୪ ଜୁଲାଇରୁ ଭାରତରେ କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ କରିଥାଏ । ଆଗରୁ ୧୯୨୪ ଠାରୁ କମ୍ୟୁନିଷ୍ଟମାନଙ୍କୁ ପେଶବାର, କାନପୁର, ମିରଟ ପ୍ରଭୃତି ଷଡ଼ଯନ୍ତ୍ର ମକଦମାରେ [illegible] ଯାଇଥିଲା । ନାନା ଦମନ ସତ୍ତ୍ୱେ କମ୍ୟୁନିଷ୍ଟମାନଙ୍କର ପ୍ରଭାବ ବଢ଼ିବାରୁ ଏହାକୁ ବେଆଇନ ଘୋଷଣା କରାଗଲା ।

୧୯୩୯ ସେପ୍ଟେମ୍ବରରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରଂଭ ହେଲା । ଯୁଦ୍ଧର ପ୍ରଥମ ପର୍ଯ୍ୟାୟରେ ପୁଂଜିବାଦ ଓ ସାମ୍ରାଜ୍ୟବାଦକୁ ଲୋପ କରିଥିବା ସୋଭିଏତ୍ ରୁଷ ବିରୁଦ୍ଧରେ ହିଟଲର-ମୁସୋଲିନୀ ଫାସିଷ୍ଟବାଦ ଆକ୍ରମଣ ଆରଂଭ କରିନଥାଏ ।

ପ୍ରଥମ ପର୍ଯ୍ୟାୟର ଦ୍ୱିତୀୟ ବିଶ୍ୱ ସମରକୁ ଆମ ଦେଶରେ ସ୍ୱାଧୀନତା ସଂଗ୍ରାମର ମୁଖ୍ୟଧାରା କଂଗ୍ରେସ ଓ କମ୍ୟୁନିଷ୍ଟମାନେ ବିରୋଧ କରୁଥିଲେ । କଂଗ୍ରେସ ପକ୍ଷରୁ ଯୁଦ୍ଧର ବିରୋଧ କରି, ସ୍ୱାଧୀନତା ଦାବୀକରି ବ୍ୟକ୍ତିଗତ ସତ୍ୟାଗ୍ରହ କରିବାର ପ୍ରସ୍ତୁତି ଚାଲିଥାଏ । ଭାରତରେ କମ୍ୟୁନିଷ୍ଟମାନେ ଦୁଇ ସାମ୍ରାଜ୍ୟବାଦୀ ଗୋଷ୍ଠୀଙ୍କ ମଧରେ ପୃଥିବୀର ଭାଗବଣ୍ଟା ଲାଗି ଚାଲିଥିବା ଯୁଦ୍ଧର ବିରୋଧ କରି, ବିଟ୍ରିଶଠାରୁ ପୂର୍ଣ୍ଣ ସ୍ୱାଧୀନତା ଦାବୀ କରି ଏବଂ ଯୁଦ୍ଧକୁ "ନ ଏକ ପାୟ, ନ ଏକ ଭାଇ" ଧ୍ୱନି ଦେଇ ଆନ୍ଦୋଳନ କରୁଥାନ୍ତି ।

ଠିକ୍ ଏହି କାଳରେ ୧୯୪୦ ଜୁଲାଇ ୧୨ ତାରିଖରେ କଟକ କମ୍ୟୁନଷ୍ଟ ଷଡ଼ଯନ୍ତ୍ର ମକଦମା ଆରଂଭ ହେଲା ଓ ତେଣେ ଦେଶବ୍ୟାପୀ ବ୍ୟକ୍ତିଗତ ସତ୍ୟାଗ୍ରହ ଆରଂଭ ହୋଇଗଲା ।

ଏହି ଷଡ଼ଯନ୍ତ୍ର ମକଦମାର ଗିରଫ ଆସାମୀମାନଙ୍କ ମଧ୍ୟରେ ଥିଲେ ଭଗବତୀଚରଣ ପାଣିଗ୍ରାହୀ, ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ବନମାଳୀ ଦାସ, ବିଜୟଚନ୍ଦ୍ର ଦାସ, ଶରତ ପଟ୍ଟନାୟକ, ଦୁର୍ଗା ଚରଣ ମହାନ୍ତି, ରାମଚନ୍ଦ୍ର ମିଶ୍ର, ପୂର୍ଣ୍ଣ ମହାନ୍ତି, ଏବଂ ଅନନ୍ତ ଗୁରୁଚରଣଙ୍କ ଦାଦାଙ୍କର ସାଗର ସାବୁନ କାରଖାନାର କର୍ମଚାରୀ ସିଦ୍ଧେଶ୍ୱର ମହାନ୍ତି ଓ ଗଣେଶ୍ୱର ମହାନ୍ତି । ସେତେବେଳେ ବିଦେଶରୁ କୌଣସି କମ୍ୟୁନିଷ୍ଟ ପ୍ରତପତ୍ରିକା କମ୍ୟୁନିଷ୍ଟମାନଙ୍କ ପାଖରେ ବା ଦେଶରେ ପହଂଚିବା ଉପରେ ଘୋର କଟକଣା ରହିଥାଏ । କମ୍ୟୁନିଷ୍ଟମାନଙ୍କ ପାଖକୁ କେଉଁଠୁ ଚିଠିପତ୍ର ବା ପତ୍ରପତ୍ରିକା ଆସୁଛି, ତାକୁ ଧରିବା ଲାଗି ଡାକଘରମାନଙ୍କରେ ଗୁଇନ୍ଦା ପୁଲିସ ବସି ଯାଞ୍ଚ କରନ୍ତି ।

ଓଡ଼ିଶାରେ ଯେଉଁମାନେ କଂଗ୍ରେସ, କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଥାଇ କମ୍ୟୁନିଷ୍ଟ ମତବାଦୀ ଯୁବକ ଥିଲେ, ସେମାନେ ଗୋପନ ପାର୍ଟିପାଇଁ ଗୋପନ ଡାକ ବ୍ୟବସ୍ଥା କରିଥାନ୍ତି । ବିଶିଷ୍ଟ ଦନ୍ତ ଚିକିତ୍ସକ ଜର୍ଜ ପଟ୍ଟନାୟକ (ବିଜୁ ପଟ୍ଟନାୟକ ଭାଇ) ଓ ବିଖ୍ୟାତ ଡାକ୍ତର ବନବିହାରୀ ପଟ୍ଟନାୟକଙ୍କ ନାମରେ ଏବଂ ସାଗର ସାବୁନ କାରଖାନା, ଗୋଲାମ ହୁସେନ ନାମକ ଦୋକାନୀ, ଏମିତି ଆଉ କେତେକଙ୍କ ନାମରେ ଚିଠିପତ୍ର ଓ ବେଆଇନ ଘୋଷଣା କରାଯାଇଥିବା କମ୍ୟୁନିଷ୍ଟ ବହି ପତ୍ରପତ୍ରିକା ଅଣାଯାଉଥିଲା ।

ସେତେବେଳେ ବିଶିଷ୍ଟ ଇଂଜିନିୟର ଓ କଂଗ୍ରେସର କେନ୍ଦ୍ର ଆସେମ୍ବ୍ଲିରେ ସଦସ୍ୟ ଭୁବନାନନ୍ଦ ଦାସ (ଯାଁଆଳା ଭାଇ ସ୍ୱାମୀ ବିଚିତ୍ରାନନ୍ଦ ଦାସ)ଙ୍କ ପାଖକୁ ବିଦେଶରୁ ଆସୁଥିବା ପତ୍ରପତ୍ରିକା, ମିରଟ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲାର ରାୟ ଓ କମ୍ୟୁନିଷ୍ଟନେତା ଡାଙ୍ଗେ ଓ ଅନ୍ୟ ଅଭିଯୁକ୍ତମାନଙ୍କ ମିଳିତ ବୟାନ ଥିବା ପୁସ୍ତକକୁ ଆଣି ଏହି ଯୁବକମାନେ ପାଠ କରୁଥିଲେ ।

ବ୍ରିଟିଶ ସରକାର ପକ୍ଷରୁ ପୁଲିସ ସାହେବ ମନବୋଧ ପଣ୍ଡା ଓ ଇନ୍ସପେକ୍ଟର ଗଙ୍ଗାଧର ଦ୍ୱିବେଦୀ ମକଦମା ଦାଏର କରିଥିଲେ । ରଣପୁରରେ ଫାଶି ପାଇଥିବା ରଘୁଦିବାକରଙ୍କୁ ବିରୁଦ୍ଧରେହିଁ ଏହି ଦୁଇଜଣ ପୁଲିସ ଅଫିସର ମକଦମା ଦାଏର କରିଥିଲେ । ରାମଚନ୍ଦ୍ର ମିଶ୍ର ଓ ପୂର୍ଣ୍ଣ ମହାନ୍ତିଙ୍କୁ ଗିରଫପରେ ଛାଡ଼ି ଦିଆଗଲା ।

ଖୋଲା ଅଦାଲତରେ ନୁହେଁ, କଟକ ଜେଲର ନିଭୃତ କୋଠରୀ ହେଲା ବିଚାରାଳୟ । ୧୨୦ (ଖ) ରାଜଦ୍ରୋହ ଓ କ୍ରିମିନାଲ ସଂଶୋଧନ ଆଇନ ଅନୁସାରେ ପ୍ରଥମ ଶୁଣାଣି ୧୦, ୯, ୪୦ରେ ଆରଂଭ ହେଲା । ପ୍ରତିବାଦୀମାନଙ୍କ ପକ୍ଷରୁ କଲିକତାର ବିଶିଷ୍ଟ ବାରିଷ୍ଟର ଏସ୍.ମୁଖର୍ଜୀ, ଓଡ଼ିଶାର ରାଜକିଶୋର ଦାସ (ଯିଏ ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି ହେଲେ), ଦୀନବନ୍ଧୁ ସାହୁ (ଯିଏ କଂଗ୍ରେସର ମନ୍ତ୍ରୀ ହୋଇଥିଲେ), ବିଶ୍ୱନାଥ ପଶାଏତ, ବିପ୍ଳବୀ ରବି ଘୋଷଙ୍କ ଭାଇ ଚନ୍ଦ୍ରକାନ୍ତ ଘୋଷ ବିନା ପାରିଶ୍ରମିକରେ ମକଦମା ଲଢୁଥିଲେ ।

ଏହି ମକଦ୍ଦମା ଲଢ଼ିବା ଲାଗି ଏକ ଡିଫେନ୍ସ କମିଟି ଗଠିତ ହୋଇଥିଲା । ସ୍ୱନାମଧନ୍ୟ ସମାଜସେବୀ, ଜନନାୟକ ଲକ୍ଷ୍ମୀ ନାରାୟଣ ସାହୁ ଓ ହିନ୍ଦି ସେବକ ସମାଜର ସଦସ୍ୟ, ଭଗବତୀଙ୍କ ସହପାଠୀ ଶ୍ୟାମସୁନ୍ଦର ମିଶ୍ର ପ୍ରମୁଖ ଏହାର ସଂଗଠକ ଥିଲେ । କଂଗ୍ରେସର ବରିଷ୍ଠ ନେତା ହରେକୃଷ୍ଣ ମହତାବ ଏହି କମିଟିର ଅଧ୍ୟକ୍ଷ ଥିଲେ ।

ଭଗବତୀଙ୍କ ବିରୁଦ୍ଧରେ ଅଭିଯୋଗରେ ସେ "କମ୍ୟୁନିଷ୍ଟ" ନାମକ ପତ୍ରିକା ପ୍ରକାଶ କରୁଥିଲେ ଓ ବମ୍ବେରେ ଗ୍ରୀଷ୍ମକାଳୀନ ଶିକ୍ଷା ଶିବିରରେ ଯୋଗ ଦେଇଥିଲେ । ବୈଦ୍ୟନାଥ "ସର୍ବହରାର ପଥ" ନାମକ ପତ୍ରିକାର ଓଡ଼ିଆକରି 'ଆଗ ଚାଲ' ନାମକ ସାଇକ୍ଲୋଷ୍ଟାଇଲ ପୁସ୍ତକ ପ୍ରକାଶ କରିଥିଲେ । ଗୁରୁଚରଣ "ଯୁଦ୍ଧ ବିରୁଦ୍ଧରେ ଯୁଦ୍ଧ"ର ଓଡ଼ିଆ ଅନୁବାଦ କରିଥିଲେ ଓ "ଫ୍ରାନ୍ସର ବିଶ୍ୱାସଘାତକତା" ପ୍ରବନ୍ଧ ପ୍ରକାଶ କରିଥିଲେ । ବନମାଳୀଙ୍କ ସହିତ ଭଗବତୀଙ୍କର ଚିଠିପତ୍ର ଆଦାନ ପ୍ରଦାନ ଚାଲିଥିଲା । ଏହି ମକଦ୍ଦମାରେ ପୁଲିସ ୪୯ ଜଣଙ୍କୁ ଧରି ଆଣି ଆସାମୀମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେବା ବ୍ୟବସ୍ଥା କରିଥିଲା ।

ବିଚାରକ ଥିଲେ, ହରବଂଶ ଲାଲ, ଆଇ.ସି.ଏସ । ଭଗବତୀ, ଗୁରୁଚରଣ, ଅନନ୍ତ, ବୈଦ୍ୟନାଥ ଓ ବନମାଳୀ ଷଡ଼ଯନ୍ତ୍ରରେ ଘନିଷ୍ଠ ଭାବରେ ଲିପ୍ତ ଥିଲେ ବୋଲି କୁହାଗଲା । ଷଡ଼ଯନ୍ତ୍ର ଦଫାରେ ଭଗବତୀ, ଅନନ୍ତ, ଗୁରୁଚରଣ, ବୈଦ୍ୟନାଥଙ୍କୁ ୧୮ ମାସ ଜେଲ ଓ ଜରିମାନା କରାଗଲା । ଶରତ୍ ପଟ୍ଟନାୟକ ଓ ବିଜୟ ଦାସଙ୍କୁ ଅନ୍ୟ ଏକ ଦଫାରେ ପକେଇ ୬ ମାସ କାରାଦଣ୍ଡ ଦିଆଗଲା । ଆଉ ଏକ ଦଫାରେ ଏ ସମସ୍ତଙ୍କୁ ଅଧିକ ୪ ମାସ କାରାଦଣ୍ଡ ଏକ ସଂଗରେ ଭୋଗ କରିବା ଆଦେଶ ହେଲା । ସିଦ୍ଧେଶ୍ୱର ଓ ଗଣେଶଙ୍କୁ ମୁକ୍ତ କରାଗଲା ।

କଟକ ଜେଲରେ ୧୭ ନମ୍ବର ୱାର୍ଡରେ ଏମାନେ ରହୁଥିଲେ । ଅନୁଗୋଳ ଜେଲକୁ ନେଲାବେଳେ ବାଟରେ ବୈପ୍ଳବିକ ଧ୍ୱନି ଦେବାରୁ ଗୁରୁଚରଣ ପଟ୍ଟନାୟକ, ବନମାଳୀ ଦାସ ଓ ବୈଦ୍ୟନାଥ ରଥଙ୍କର ବିଚାର ହୋଇ ଆଉ ଚାରିମାସ ଲେଖାଁଏ ଜେଲଦଣ୍ଡ ଦିଆଯାଇଥିଲା । ଦୁର୍ଗାଚରଣ ମହାନ୍ତିଙ୍କୁ ନିର୍ଦ୍ଦୋଷକହି ଛାଡ଼ି ଦିଆଯାଇଥିଲା ।



# ଦାକ୍ଷିଣାତ୍ୟରେ ମୁସଲିମ ସମ୍ମିଳନୀ ୧୯୪୧

ବ୍ରିଟିଶ ଶାସିତ ତତ୍କାଳୀନ ମାନ୍ଦ୍ରାଜ ପ୍ରଦେଶ ଅଧୁନା ତାମିଲନାଡୁର କୁମ୍ଭକୋନମ ସହର। ସେଠାରେ ୧୯୪୧ ଜୁନ୍ ୮ ତାରିଖରେ ଦକ୍ଷିଣାଞ୍ଚଳ ମୁସଲମାନ ଦେଶପ୍ରେମୀମାନଙ୍କର ଏକ ସମ୍ମିଳନୀ କେନ୍ଦ୍ର ପ୍ରଦେଶର ପୂର୍ବତନ ମନ୍ତ୍ରୀ ମହମ୍ମଦ ୟୁସୁଫଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା। ଅଧ୍ୟକ୍ଷ ଅଭିଭାଷଣରେ ସେ ଘୋଷଣା କରିଥିଲେ ଯେ, "ଭାରତକୁ ହିନ୍ଦୁ ଓ ମୁସଲିମ ରାଜ୍ୟ ଭାବରେ ଭାଗଭାଗ କରିବା ଉଦ୍ୟମ ଦେଶକୁ ଶାନ୍ତ ଓ ସୁଦୃଢ଼ କରିବା ପରିବର୍ତ୍ତେ କାଳକାଳ ଲାଗି ଆଭ୍ୟନ୍ତରୀଣ ଗଣ୍ଡଗୋଳ ତଥା ଉତ୍ତେଜନା ସୃଷ୍ଟିକାରୀ ଆକ୍ଷେପ ଓ ପ୍ରତି-ଆକ୍ଷେପ ଆଣିଦେବ। ଏହା ଭାଇଭାଇ ମଧ୍ୟରେ କନ୍ଦଳ, ସଂଘର୍ଷ ସୃଷ୍ଟି କରିବ। ଆଉ କେତେକାଳ ପାଇଁ ଦେଶର ସ୍ୱାଧୀନତା ଅପହୃତ ହୋଇ ରହିବ? ଭାରତ ଭାଗଭାଗ ହେଲେ ସମଗ୍ର ଦେଶର ପ୍ରଭୂତ କ୍ଷତି ହେବ ତଥା ଭିନ୍ନ ଭିନ୍ନ ସଂପ୍ରଦାୟଭାବରେ ଭାରତ ଯେତେ ଅଧିକ ଚିନ୍ତା କରିବ, ସେତେ ଅଧିକ ସାଂପ୍ରଦାୟିକ ଅବିଶ୍ୱାସ ବୃଦ୍ଧି ପାଇବ।

"ଏହି ପରିକଳ୍ପନାଟି ଦେଶର ଉତ୍ତର ପଶ୍ଚିମ ଓ ଉତ୍ତରପୂର୍ବରେ ବାସ କରୁଥିବା ମୁସଲମାନଙ୍କ ସମସ୍ୟା ବ୍ୟତିରେକ ଅନ୍ୟ କୌଣସି ସମାଧାନ ଆଣି ଦେବ ନାହିଁ। ହିନ୍ଦୁ-ମୁସଲମାନ ସମସ୍ୟା ଦେଶର ଏକ ତୃତୀୟାଂଶ ମୁସଲମାନଙ୍କୁ ହଇରାଣରେ ପକେଇବ ଏବଂ କଂଗ୍ରେସର ଅବା ସଂଖ୍ୟାଗରିଷ୍ଠଙ୍କ ଅତ୍ୟାଚାର ବୋଲି ଯାହା କୁହାଯାଉଛି, ତାହାକୁ ଯଦି ସତ ବୋଲି ଧରି ନିଆଯାଏ, ତେବେ ପ୍ରସ୍ତାବିତ ବିଭାଜନ ବରଂ ଅତ୍ୟାଚାରକୁ ଘନୀଭୂତ କରିବ। ଅନ୍ୟ କଥାରେ କହିଲେ, ଦୁଇ ଜାତି ଯୋଜନା ରୋଗଠାରୁ ଅଧିକ ଖରାପ ଅବସ୍ଥା ଆଣିଦେବ।"

ଭାରତ ବିଭାଜନ ଚିନ୍ତାର ଆରମ୍ଭ କେଉଁଠୁ, ତାହା ଦର୍ଶାଇ ସେ କହିଲେ, "ସାତଟି କଂଗ୍ରେସ ଶାସିତ ପ୍ରଦେଶରେ ପ୍ରାଦେଶିକ ସ୍ୱତନ୍ତ୍ରତା କାର୍ଯ୍ୟକାରୀ ହେବାର ପ୍ରାୟ ବର୍ଷକେ ପରେ ୧୯୩୮ରେ ମୁସଲିମ ଲିଗ୍ ମୁଣ୍ଡରେ ଏପରି ଚିନ୍ତା ପ୍ରବେଶ କଲା। ୧୯୩୮ ଡିସେମ୍ବର ୨୬ ତାରିଖରେ ପାଟନାରେ ଅନୁଷ୍ଠିତ ଲିଗର ୨୬ତମ ଅଧିବେଶନରେ ଜିନ୍ନା କହିଲେ ଯେ ଭାରତର ୯ କୋଟି ମୁସଲମାନ ଏକ ଜାତି ଏବଂ ହିନ୍ଦୁ ମୁସଲିମ

ସମସ୍ୟାର ସମାଧାନ ଆଣିବାର ସକଳ ଆଶାକୁ କଂଗ୍ରେସ ନଷ୍ଟ କରିଦେଉଛି । ଓ୍ୟାର୍ଦ୍ଧା ଶିକ୍ଷା ଯୋଜନା ଏବଂ ବିଦ୍ୟାମନ୍ଦିର ଯୋଜନାର ସମାଲୋଚନା କରି ସେ କହିଲେ, ଏହା ଅଧିକରୁ ଅଧିକ ମୁସଲମାନମାନଙ୍କୁ ଦବେଇ ରଖିବାକୁ ଅଭିପ୍ରେତ । ସେ ମଧ୍ୟ ବନ୍ଦେମାତରମ ଗାନ, ତ୍ରିରଙ୍ଗା ପତାକା ଉତ୍ତୋଳନକୁ ବିରୋଧ କରି ଉର୍ଦ୍ଦୁ ଭାଷାକୁ ଦବେଇଦେବା ଅଭିଯୋଗ କରିଥିଲେ । କଂଗ୍ରେସରେ ଅନେକ ବନ୍ଦେ ମାତରମ ଗାନ ଓ ବିଦ୍ୟା ମନ୍ଦିର ଯୋଜନାକୁ ପସନ୍ଦ କରନ୍ତି ନାହିଁ । ସମସ୍ତଙ୍କୁ ସନ୍ତୁଷ୍ଟ କରିବା ଭଳି ଶିକ୍ଷା ବ୍ୟବସ୍ଥାରେ ଏହି ସମସ୍ୟାର ସମାଧାନ ବାହାରିପାରିବ । ଏଥିକାରଣରୁ ଭାରତର ବିଭାଜନ ଯୁକ୍ତିଯୁକ୍ତ ନୁହଁ ।"

ସେ କହିଥିଲେ, ଯେକୌଣସି ପ୍ରଦେଶର ସବୁ ହିନ୍ଦୁ ଓ ମୁସଲିମ ଜନତାକୁ ସ୍ଥାନାନ୍ତର କରିବା ଅସମ୍ଭବ । ସେ ପୁଣି କହିଲେ, "ଯଦିବା ଏହାକୁ କାର୍ଯ୍ୟକାରୀ କରାଯାଏ, ତେବେ କ'ଣ ଉତ୍ତର ପଶ୍ଚିମ ଓ ଉତ୍ତର ପୂର୍ବ ମୁସଲମାନ ରାଜ୍ୟଗୁଡ଼ିକ ଏବଂ ଉତ୍ତର ଏବଂ କେନ୍ଦ୍ରାଂଚଳ ଏବଂ ଦକ୍ଷିଣର ହିନ୍ଦୁ ପ୍ରଧାନ ରାଜ୍ୟଗୁଡ଼ିକ ଅର୍ଥନୈତିକ କ୍ଷେତ୍ରରେ ସ୍ୱନିର୍ଭରଶୀଳ ହୋଇପାରିବେ ଏବଂ ଆଭ୍ୟନ୍ତରୀଣ ଆକ୍ରମଣକୁ ପ୍ରତିରୋଧ କରିବା ଲାଗି ଯଥେଷ୍ଟ ରାଜନୈତିକ କ୍ଷମତା ଲାଭ କରିପାରିବେ ?"

ସେ ଆହୁରି ଉଲ୍ଲେଖ କଲେ, "ଯଦି ଏକ ପକ୍ଷରେ ଚିନ୍ତା କରାଯାଏ ଯେ ସଂଖ୍ୟାନ୍ୟୂନମାନେ ଯେଉଁଠି ଅଛନ୍ତି, ସେଠରେ ରହିବେ ଓ ସେମିତି ରାଜ୍ୟମାନ ଗଠିତ ହେବ, ମାତ୍ର ଏମିତି କୌଣସି ପ୍ରଦେଶ ନାହିଁ, ଯେଉଁଠିକି ଏହି ସଂପ୍ରଦାୟ ସମଗ୍ର ଇଲାକାର ବିଚାରରେ ସଂଖ୍ୟା ଗରିଷ୍ଠ ହୋଇ ରହିଛନ୍ତି । ପଂଜାବ କଥା ନିଆଯାଉ । ପଂଜାବର ଉତ୍ତର ପଶ୍ଚିମାଞ୍ଚଳରେ ଥିବା ଜିଲ୍ଲାଗୁଡ଼ିକରେ ମୁସଲମାନମାନେ ସଂଖ୍ୟା ଗରିଷ୍ଠ ଏବଂ ଦକ୍ଷିଣ ପୂର୍ବ ଆଡ଼େ ହିନ୍ଦୁ ଓ ଶିଖମାନେ ମୁସଲମାନଙ୍କଠାରୁ ଯଥେଷ୍ଟ ଅଧିକ । କେତେକ ବଂଗଳାର ପ୍ରଶ୍ନ ଉଠାଇଛନ୍ତି । ଅବଶ୍ୟ ଲିଗ ପ୍ରସ୍ତାବରେ ସଂବିଧାନରେ ସଂଖ୍ୟାନ୍ୟୂନମାନଙ୍କ ସ୍ୱାର୍ଥରକ୍ଷା ଲାଗି ପ୍ରଚୁର ବ୍ୟବସ୍ଥା ନେବା କଥା କୁହାଯାଇଛି । ମାତ୍ର ତାହା କିଛି ପରିବର୍ତ୍ତନ ଆଣିବ ନାହିଁ । ଲିଗ ପ୍ରସ୍ତାବ ଅନୁସାରେ ମୁସଲିମ ଓ ହିନ୍ଦୁ ପ୍ରଦେଶ ସବୁ ଗଠିତ ହେଲେବି ସଂଖ୍ୟାନ୍ୟୂନଙ୍କ ସମସ୍ୟା ଆଜି ଯେମିତି ଅଛି, ସେମିତି ରହିବ ।

"ସ୍ୱୀକାର କରିବାକୁ ହେବଯେ ଭୟ ଓ ସନ୍ଦେହକୁ ହିଁ ସାଂପ୍ରଦାୟିକତାବାଦ ଭିତ୍ତିକରେ । ଯେଉଁମାନେ ଏକ ସଂପ୍ରଦାୟକ ଉପରେ ନେତୃତ୍ୱ ପ୍ରତିଷ୍ଠା କରିବାକୁ ଚାହାନ୍ତି, ସେମାନେ ହିଁ ଏହି ଭୟ ଓ ସନ୍ଦେହର ହାଓ୍ୱା ସୃଷ୍ଟି କରନ୍ତି । ଊନବିଂଶ ଶତାବ୍ଦୀରେହିଁ ଲୋକଙ୍କ ମଧ୍ୟରେ ଏପରି ଭୟ ଓ ସନ୍ଦେହର ବାତାବରଣ ସୃଷ୍ଟି କରାଯାଇଛି ।

"ଭାଷା, ସାହିତ୍ୟ, ବିଜ୍ଞାନ, ଦର୍ଶନ ଏବଂ ଧର୍ମ ସଂପର୍କିତ ଉପାଦାନାଗୁଡ଼ିକର ଭିତ୍ତିରେ ନିଷ୍ଠିତ କୁହା ଯାଇପାରିବଯେ ଭାରତରେ ହିନ୍ଦୁ ଓ ମୁସଲମାନ ଦୀର୍ଘକାଳ ଏକତ୍ର ରହଣିରେ ଏକ ସାମୂହିକ ଦୃଷ୍ଟିଭଙ୍ଗୀ ପ୍ରକାଶ କରିଛନ୍ତି; ଏକ ମିଳାମିଶାର ଜୀବନଧାରା ଗ୍ରହଣ କରିଛନ୍ତି ଏବଂ ସମୂହ ଅପରାଧ ପ୍ରବଣତା ମଧ ହାସଲ କରିଛନ୍ତି । ଦେଶର ସାଧାରଣ ମୁସଲମାନ ଜନତାଙ୍କ ପକ୍ଷରେ ପ୍ରସ୍ତାବିତ ଭାରତ ବିଭାଜନ କ୍ଷତିକାରକ । ଦୁଇ ସଂପ୍ରଦାୟ ମଧ୍ୟରେ ସ୍ନେହସୌହାର୍ଦ୍ଦ୍ୟ ଉପରେ ପ୍ରତିଷ୍ଠିତ ସଂପର୍କ ପ୍ରତିଷ୍ଠା କରିବା ଏକମାତ୍ର କାର୍ଯ୍ୟ ।"

ହିନ୍ଦୁ ସଂପ୍ରଦାୟ ସଂପର୍କରେ ସେ କହିଲେ "ଏହି ସଂପ୍ରଦାୟ ସଂଖ୍ୟାରେ, ସଂପଦରେ ଓ ଶିକ୍ଷା କ୍ଷେତ୍ରରେ ଅନ୍ୟ ସଂପ୍ରଦାୟଙ୍କ ତୁଳନାରେ ପ୍ରମୁଖ ସ୍ଥାନରେ ରହିଛି । ତେଣୁ ସେମାନଙ୍କର କର୍ତ୍ତବ୍ୟ ଓ ସୁଯୋଗ ହେଲା, ଯେଉଁମାନେ ଦୁର୍ବଳ ସେମାନଙ୍କ ଭିତରେ ନିରାପତ୍ତା ସଂକ୍ରାନ୍ତରେ ପ୍ରତ୍ୟୟ ଆଣିଦେବା । ଏକଥା ସ୍ପଷ୍ଟଭାବରେ ବୁଝିବାକୁ ହେବଯେ ହିନ୍ଦୁ ମୁସଲିମ ସମସ୍ୟା କେବଳ ରାଜନୈତିକ ସମସ୍ୟା ନୁହେଁ, ଏହା ଏକ ସାଂସ୍କୃତିକ ସମସ୍ୟା ମଧ । କୃତ୍ରିମ ଭାବରେ ହିନ୍ଦୁ-ମୁସଲିମ ପ୍ରଦେଶରୂପେ ବିଭାଜନ କୌଣସି ସଂପ୍ରଦାୟର ଅବା ଦେଶର ହିତ ସାଧନ କରିବ ନାହିଁ ।"

ସମ୍ମିଳନୀରେ ତାଙ୍କର ଏହି ପ୍ରସ୍ତାବ ଗୃହୀତ ହୋଇଥିଲା ।

ଏହି ସମ୍ମିଳନୀରେ ଆଗତ ମୁଖ୍ୟ ପ୍ରସ୍ତାବ ଉପରେ ଭାରତର ବିଭାଜନ ଓ ଭାରତ ଓ ପାକିସ୍ଥାନ ଏପରି ଦୁଇଟି ରାଷ୍ଟ୍ରରୂପେ ବିଭାଜନ ଯୋଜନାର ବିରୋଧ କରାଯାଇଥିଲା ।

ତୃତୀୟ ପ୍ରସ୍ତାବରେ ମୁସଲିମ ଲିଗ୍ ଦେଶର ସବୁ ମୁସଲମାନଙ୍କର ପ୍ରତିନିଧିତ୍ୱ କରୁଛି ଦାବୀକୁ ଖଣ୍ଡନ କରାଯାଇଥିଲା, ପ୍ରସ୍ତାବରେ ଥିଲା-

"ନିଖିଳ ଭାରତ ମୁସଲିମ ଲିଗ ସମଗ୍ର ମୁସଲିମ ସଂପ୍ରଦାୟର ପ୍ରତିନିଧିତ୍ୱ କରୁଥିବା ଦାବୀକୁ ଏହି ସମ୍ମିଳନୀ ଦୃଢ଼ ଭାବରେ ଖଣ୍ଡନ କରୁଛି । ମୁସଲିମ ସଂପ୍ରଦାୟର ବୃହତ ଅଂଗଗୁଡ଼ିକ ମୁସଲିମ ଲିଗର ସେ ଆସ୍ଥାନକୁ କେବେ ମାନିନେଇ ନାହାନ୍ତି ।"



# କ୍ରିପ୍ସ ମିଶନ

ବିଲାତରେ ହାଉସ ଅଫ କମନ୍ସରେ ୧୯୪୨ ମାର୍ଚ୍ଚ ୧୧ ତାରିଖରେ ପ୍ରଧାନମନ୍ତ୍ରୀ ଉଇଣ୍ଟସନ ଚର୍ଚ୍ଚିଲ ଭାରତକୁ ପ୍ରେରଣ କରାଯାଉଥିବା କ୍ରିପ୍ସ ମିଶନର ଉଦ୍ଦେଶ୍ୟ କ'ଣ ତାହା ଘୋଷଣା କରିଥିଲେ।" ଦ୍ୱିତୀୟ ବିଶ୍ୱଯୁଦ୍ଧର ଆରଂଭରେ ହିଟଲର ମୁସୋଲିନଙ୍କ ଅକ୍ଷଶକ୍ତି ଅନ୍ତର୍ଭୁକ୍ତ ସମରବାଦୀ ଜାପାନ ବ୍ରିଟିଶ ଉପନିବେଶ ସିଙ୍ଗାପୁରକୁ ଦଖଲକରି ନେଇଥାଏ। ଆମେରିକାର ପ୍ରେସିଡ଼େଣ୍ଟ ରୁଜଭେଲଟ୍ ଅନିଚ୍ଛୁକ ଚର୍ଚ୍ଚିଲଙ୍କୁ ଭାରତ ସଂପର୍କରେ ବିଲାତର ନୀତି ପରିବର୍ତ୍ତନ କରିବାକୁ ଚାପ ପକାଉଥିଲେ। ପରିଶେଷରେ ଭାରତକୁ ଏକ ବ୍ରିଟିଶ ମିଶନ ପଠାଯିବ ବୋଲି ବ୍ରିଟିଶ ସରକାର ସ୍ଥିର କଲା। ବିଲାତର ଯୁଦ୍ଧକାଳୀନ ସରକାରରେ ଥିବା ମନ୍ତ୍ରୀ ସାର୍ ଷ୍ଟାଫୋର୍ଡ଼ କ୍ରିପ୍ସ ଏହି ମିଶନର ମୁଖ୍ୟ ହେବେ ବୋଲି ଘୋଷଣା କରାଗଲା। କ୍ରିପ୍ସ ଥିଲେ ଲେବର ପାର୍ଟିର ସଦସ୍ୟ ଓ ଭାରତର ବନ୍ଧୁ ବୋଲି ସେତେବେଳେ ତାଙ୍କର ଖ୍ୟାତି ଥିଲା।

ଭାରତର ରାଜନୈତିକ ସମସ୍ୟାର ସମାଧାନର ପ୍ରସ୍ତାବ ଘେନି କ୍ରିପ୍ସ ୧୯୪୨ ମାର୍ଚ୍ଚ ୨୩ ତାରିଖରେ ଦିଲ୍ଲୀରେ ପହଂଚିଲେ।

ମୁଖ୍ୟତଃ ଯୋଜନାଟି ହେଲା, "ଏକ ନୂଆ ଭାରତୀୟ ୟୁନିଅନ ଗଠିତ ହେବ। ତାହା ଏକ ଡ଼ୋମିନିୟନର ରୂପ ନେବ। ଏହା ୟୁନାଇଟେଡ଼ କିଙ୍ଗଡ଼ମ୍‌ରେ ଅନ୍ୟସବୁ ଡୋମିନିୟନ ସହ ମିଳିତ ହେବ। ଏମାନଙ୍କର ସମ୍ରାଟ (କ୍ରାଉନ)ଙ୍କ ପ୍ରତି ମଳିତ ଆନୁଗତ୍ୟ ରହିବ। ଏମାନେ ସମସ୍ତେ ସବୁ କ୍ଷେତ୍ରରେ ସମାନ ବିବେଚିତ ହେବେ। ଘରୋଇ ଓ ବାହ୍ୟ ବ୍ୟାପାରରେ କେହି କାହାର ଅନୁଗତ ହେବେ ନାହିଁ।"

ଏହି ଯୋଜାନାର ଦୁଇଟି ଭାଗ ଥିଲା। ପ୍ରଥମଟି ହେଲା, ସବୁ ପ୍ରାଦେଶିକ ବିଧାନସଭାର ନିର୍ବାଚନ ହେବ। ଦ୍ୱିତୀୟଟି ହେଲା ନବ ନିର୍ବାଚିତ ପ୍ରାଦେଶିକ ବିଧାନସଭାଗୁଡ଼ିକର ସଦସ୍ୟଙ୍କୁ ଏବଂ ଦେଶୀୟ ରାଜ୍ୟ ସମୂହର ପ୍ରତିନିଧିମାନଙ୍କୁ ଘେନି ଏକ ନିର୍ବାଚନୀ କଲେଜ ସ୍ଥାପିତ ହେବ। ତାହାହିଁ ଏକ ସଂବିଧାନ ସଭା ଗଢ଼ିବ।

ଏପରି ଏକ ସଂବିଧାନ ସଭା ଭାରତୀୟ ୟୁନିଅନ ପାଇଁ ସଂବିଧାନ ରଚନା କରିବ। କିନ୍ତୁ ସଂବିଧାନ ପ୍ରସ୍ତୁତିର ଅନ୍ତିମ କାଳରେ ଯଦି କୌଣସି ପ୍ରଦେଶ ତା'ର

ବିଧାନସଭାର ଭୋଟ ନେଇ ୟୁନିଅନରେ ସାମିଲ ହେବାକୁ ଚାହିଁବ ନାହିଁ, ତେବେ ତାହା ନିଜସ୍ୱ ସଂବିଧାନ ଗଢ଼ିବ ।

ଏପରି ସଂବିଧାନ ବା ସଂବିଧାନଗୁଡ଼ିକୁ ମହାମାନ୍ୟ ସମ୍ରାଟଙ୍କ ସରକାର ଗ୍ରହଣ କରିବେ ଏବଂ ସାମ୍ରାଜ୍ୟରୁ ବାହାରି ଯିବାର ଅଧିକାର ଡୋମିନିୟନର ରହିବ ।

ଭାରତକୁ ଭାଗଭାଗ କରିବାର ଓ ଲିଗ୍‌କୁ ସମର୍ଥନ କରିବାର ଚକ୍ରାନ୍ତ ଏଥିରେ ନିହିତ ଥିଲା । କ୍ରିପ୍ସ ଭାରତରେ କଂଗ୍ରେସ, ମୁସଲିମ ଲିଗ୍ ପ୍ରକୃତି ଦଳଙ୍କ ସହିତ ଆଲୋଚନା କଲେ । ମାର୍ଚ୍ଚ ୨୭ ତାରିଖରେ ମହାତ୍ମା ଗାନ୍ଧୀଙ୍କ ସହିତ ତାଙ୍କର ଆଲୋଚନା ହେଲା । କ୍ରିପ୍ସ ଆଣିଥିବା ଚିଠା ପ୍ରସ୍ତାବ ଅତିରିକ୍ତ ଯଦି ଆଉ କିଛିନାହିଁ ତେବେ ଭାରତରେ ତାଙ୍କର ରହିବାର ଅବଶ୍ୟକତା ନାହିଁ ବୋଲି ଗାନ୍ଧିଜୀ ତାଙ୍କୁ ଜଣାଇଦେଲେ । ପରବର୍ତ୍ତୀ ବିମାନରେ କ୍ରିପ୍ସ ଲଣ୍ଡନ ଫେରି ଯାଆନ୍ତୁ ବୋଲି ଗାନ୍ଧିଜୀ ରୋକଠୋକ୍ ଉପଦେଶ ଦେଲେ ।

ଏହି ପ୍ରସ୍ତାବରେ ଭାରତକୁ ଭାଗ ଭାଗ କରିବାର ସୂଚନା ଥିଲା । ପରବର୍ତ୍ତୀ କାଳରେ ସ୍ୱାଧୀନତା ସାଂଗକୁ ଏହାହିଁ ଘଟିଥିଲା । କ୍ରିପ୍ସ ମିଶନ ଅସଫଳ ହେଲା । ବ୍ରିଟିଶ ଚାଲ ପରାଭତ ହୋଇଥିଲା । ଅଗଷ୍ଟ ଆନ୍ଦୋଳନର ଏହାହିଁ ଏକ ପୃଷ୍ଠଭୂମି ।



# ଭାରତ ଛାଡ଼ ପ୍ରସ୍ତାବ
# (୧୪ ଜୁଲାଇ ଏବଂ ୭ ଅଗଷ୍ଟ-୧୯୪୨)

୧୯୪୨ ଜୁଲାଇ ୧୪ରେ ଓ୍ୱାର୍ଦ୍ଧାରେ ଅନୁଷ୍ଠିତ କଂଗ୍ରେସ କାର୍ଯ୍ୟକାରୀ କମିଟି ଦ୍ୱାରା ଗୃହୀତ ଚିଠା ପ୍ରସ୍ତାବଟି ବମ୍ବେଠାରେ ଅଗଷ୍ଟ ୭ରେ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନରେ ଦୁଇଦିନ କାଳ ଆଲୋଚିତ ହୋଇ ବହୁମତରେ ଗୃହୀତ ହୋଇଥିଲା ।

ପ୍ରସ୍ତାବଟିରେ ଅଛି "ଓ୍ୱାର୍ଦ୍ଧା ପ୍ରସ୍ତାବକୁ କମିଟି ଅନୁମୋଦନ କରି ଗ୍ରହଣ କରୁଛି ଓ ଏହାର ଅଭିମତଯେ (ଓ୍ୱାର୍ଦ୍ଧା ପ୍ରସ୍ତାବରେ) ପରବର୍ତ୍ତୀ ଘଟଣାବଳୀ ଏହାର ଯଥାର୍ଥତା ପ୍ରତିପାଦନ କରିଛି ଏବଂ ସ୍ପଷ୍ଟ କରିଦେଇଛି ଯେ ଉଭୟ ଭାରତ ପାଇଁ ତଥା ଜାତିସଂଘର ସ୍ୱାର୍ଥର ସଫଳତା ଲାଗି ଭାରତରୁ ବ୍ରିଟିଶ ସକାରର ତୁରନ୍ତ ଅପସାରଣ ଆବଶ୍ୟକ ।

"ଆଜିର ବିପଦ ଭାରତର ସ୍ୱାଧୀନତା ଓ ବ୍ରିଟିଶ ଆଧିପତ୍ୟର ଅବସାନ ଚାହେଁ । ବର୍ତ୍ତମାନର ପରିସ୍ଥିତିକୁ ଭବିଷ୍ୟତ ଲାଗି କୌଣସି ପ୍ରତିଶ୍ରୁତି ଅବା ଗ୍ୟାରେଣ୍ଟି ପ୍ରଭାବିତ କରି ପାରିବ ନାହିଁ କି ବର୍ତ୍ତମାନର ବିପଦକୁ ସାମାନ୍ୟ କରିପାରିବ ନାହିଁ । ସେ ସବୁ (ପ୍ରତିଶ୍ରୁତି ଓ ଗ୍ୟାରେଣ୍ଟି) ଭାରତୀୟ ଜନତାର ମନରେ ଆବଶ୍ୟକ ମାନସିକ ପ୍ରଭାବ ପକାଇବ ନାହିଁ । କେବଳ ସ୍ୱାଧୀନତାର ଆଭାହିଁ ନିୟୁତ ନିୟୁତ ଜନତା ଭିତରେ ଶକ୍ତି ଓ ଆଗ୍ରହ ସଂଚାର କରିବ । ଆଉ ତାହାହିଁ ସଂଗେସଂଗେ ଯୁଦ୍ଧର ଚରିତ୍ରକୁ ରୂପାନ୍ତରିତ ସକଳ ଗୁରୁତ୍ୱ ଦେଉଛି ।"

"ଗାନ୍ଧୀଙ୍କ ନେତୃତ୍ୱରେ ଅହିଂସାମାର୍ଗରେ ବ୍ୟାପକତାର ଗଣ ଆନ୍ଦୋଳନ ଆରଂଭ କରିବାକୁ" ଏ.ଆଇ.ସି.ସ ପ୍ରସ୍ତାବରେ ନିର୍ଦ୍ଦେଶିତ ହୋଇଥିଲା । ପ୍ରସ୍ତାବଟିରେ ଆହୁରି କୁହାଯାଇଥିଲା, "ଏପରି ସମୟ ଆସିପାରେ, ଯେତେବେଳେ କୌଣସି କଂଗ୍ରେସ କମିଟି କାମ କରିପାରିବ ନାହିଁ ଏବଂ ନିର୍ଦ୍ଦେଶାବଳୀ ଦେବା ଅବା ତାହା ଜନସାଧାରଣଙ୍କ ନିକଟରେ ପହଂଚିବା ସମ୍ଭବପର ହେବ ନାହିଁ । ଏପରି ପରିସ୍ଥିତି ଉପୁଜିଲେ, ଏହି ଆନ୍ଦୋଳନରେ ଅଂଶ ନେଉଥିବା ପ୍ରତ୍ୟେକଟି ନର ଏବଂ ନାରୀ ସାଧାରଣ ନିର୍ଦ୍ଦେଶାବଳୀର ପରିସର ଭିତରେ ରହି କାର୍ଯ୍ୟ କରିବେ । ପ୍ରତ୍ୟେକଟି ଭାରତୀୟ, ଯିଏ ମୁକ୍ତି ଚାହାନ୍ତି, ଏବଂ ସେଥିଲାଗି ଉଦ୍ୟମ କରନ୍ତି, ସିଏ ନିଜେ ନିଜର ପଥ ପ୍ରଦର୍ଶକ ହେବ ଏବଂ ବିଶ୍ରାମ ବିହୀନ କଠୋର ପଥରେ ଅଗ୍ରସର ହେବେ- ଯାହାକି ପରିଶେଷରେ ଭାରତକୁ ମୁକ୍ତି ଓ ସ୍ୱଧୀନତା ଆଣିଦେବ ।"

୧୯୪୨ ଜୁଲାଇ ୧୪ରେ ଓ୍ୱାର୍ଦ୍ଧାଠାରେ ଏ.ଆଇ.ସି.ସି ଗ୍ରହଣ କରିଥିବା ଦୀର୍ଘ ପ୍ରସ୍ତାବକୁ 'ଭାରତ ଛାଡ଼' ପ୍ରସ୍ତାବ ରୂପେ ବର୍ଣ୍ଣନା କରାଯାଏ । ଏହି ପ୍ରସ୍ତାବ ଗୃହୀତ ହେବା

ପରେ ଗାନ୍ଧିଜୀ କହିଥିଲେ, "ଏହି ପ୍ରସ୍ତାବର ପ୍ରତ୍ୟାହାର ଅବା ଆଳାପଆଲୋଚନା କଥା ଉଠୁ ନାହିଁ । ଏହା ଏକ ଖୋଲାଖୋଲି ବିଦ୍ରୋହ । ଆଉ ଗୋଟିଏ ସୁଯୋଗ ଦେବା କଥା ନାହିଁ ।" ତା'ପରେ ଗାନ୍ଧିଜୀ କହିଥିଲେ ଯେ "ସଂଯତ ଭାବରେ ଆନ୍ଦୋଳନ ଚଳାଇବା ଲାଗି ଯାହା କରିବାର ଆବଶ୍ୟକ ମୁଁ କରିବି । ବ୍ରିଟିଶ ସରକାର ଅବା ମିତ୍ର ଶକ୍ତି ସମୂହ ଉପରେ ଏହାର କିଛି ପ୍ରଭାବ ନ ପଡ଼ିବାର ଦେଖିଲେ ମୁଁ ଚରମ ସୀମା ପର୍ଯ୍ୟନ୍ତ ଯିବି ।"

ବମ୍ବେଠାରେ ପ୍ରସ୍ତାବ ଗୃହୀତ ହେବାପରେ ସେ ପୁଣି କହିଥିଲେ "ଏହି ମୁହୂର୍ତ୍ତରୁ ଆମେ ଆପଣାକୁ ଯେ ସ୍ୱାଧୀନ, ସେହିପରି ପ୍ରତ୍ୟେକଟି ନର ଅବା ନାରୀ ନିଜକୁ ବିଚାର କରିବେ - ପୂର୍ଣ୍ଣ ସ୍ୱାଧୀନତା ବ୍ୟତିରେକ ମୁଁ କେଉଁଥିରେ ସନ୍ତୁଷ୍ଟ ହେବି ନାହିଁ । -ଆମେ କରିବୁ ଅବା ମରିବୁ, ଆମେ ଭାରତକୁ ସ୍ୱାଧୀନ କରିବୁ । ନଚେତ୍ ଏଥିଲାଗି ଉଦ୍ୟମ କରି କରି ପ୍ରାଣ ଦେବୁ ।"

ପୂର୍ବରୁ ଗାନ୍ଧିଜୀ ଚଳାଇ ଆସିଥିବା ଆନ୍ଦୋଳନରେ ସେ ଯେପରି ପନ୍ଥା ଓ ପଦ୍ଧତିମାନ ଅନୁସରଣ କରୁଥିଲେ, ଭାରତ ଛାଡ଼ ଆନ୍ଦୋଳନର ଆହ୍ୱାନ ଦେଇ ସେ ମଧ୍ୟ ଯେପରି କେତେକ ପଦ୍ଧତି ଅନୁସରଣ କରିଥିଲେ ।

ଭାରତ ଛାଡ଼ ଡାକରାଦେବା ପରେପରେ ହିଁ ଗାନ୍ଧିଜୀ ଭାଇସରାୟଙ୍କ ସହିତ ଯୋଗାଯୋଗ କରିବା ପାଇଁ ମୀରାବେନଙ୍କୁ ପଠାଇଥିଲେ । ଉଭୟ ଜୁଲାଇ ୧୪ରେ କାର୍ଯ୍ୟକାରୀ କମିଟି ଏବଂ ଅଗଷ୍ଟ ୭ର ଏ.ଆଇ.ସି.ସି ଦ୍ୱାରା ଗୃହୀତ ପ୍ରସ୍ତାବର ଆଲୋଚନା କରିବା ଲାଗି ଦ୍ୱାର ଉନ୍ମୁକ୍ତ ଥିଲା ।

ବ୍ରିଟେନରେ ଥିବା ଅଗ୍ରଗାମୀ ଅଂଶ ଓ ମିତ୍ରଶକ୍ତିମାନଙ୍କୁ ସେଥିରେ ଆବେଦନ ଥିଲା । କଂଗ୍ରେସର ଯୁକ୍ତି ଥିଲା ଯେ, କଂଗ୍ରେସ ଆନ୍ଦୋଳନ କରିବାକୁ ବାଧ୍ୟ ହେଉଛି । କାରଣ ଭାରତକୁ ତାହାର ଅଧିକାର ନ ଦେବାକୁ ବ୍ରିଟିଶ ଅଟଳ ରହିଛି । ଅଥଚ ଏହି ଅଧିକାରଗୁଡ଼ିକୁ ଦିଆଗଲେ, ଯେଉଁ ଯୁଦ୍ଧରେ ବିଦେଶୀ ବନ୍ଧୁବର୍ଗ ସଂଶ୍ଳିଷ୍ଟ, ସେଥିଲାଗି କଂଗ୍ରେସ ବ୍ୟାପକ ଜନଜାଗରଣ ସୃଷ୍ଟି କରିବା ପାଇଁ ଭିତ୍ତି ସୃଷ୍ଟି ହେବ । ଆଲୋଚନା ଲାଗି ଏହିପରି ଦୃଷ୍ଟିଭଂଗୀ ଉଦ୍ଦିଷ୍ଟ ଥିଲା । କଂଗ୍ରେସ ପାଇଁ ନୁହେଁ, ସମଗ୍ର ଦେଶ ପାଇଁ ବ୍ରିଟିଶ ଭାରତ ଛାଡ଼ୁ ବୋଲି ଉଭୟ ଗାନ୍ଧିଜୀ, କଂଗ୍ରେସ ସଭାପତି ମୌଲାନା ଆବୁଲକାଲାମ ଆଜାଦ ସ୍ପଷ୍ଟ କରିଦେଇଥିଲେ ।

ଗାନ୍ଧିଜୀଙ୍କ ଦ୍ୱାରା ପରିଚାଳିତ ପୂର୍ବବର୍ତ୍ତୀ ସଂଗ୍ରାମ ସମୂହ ଓ ବର୍ତ୍ତମାନର ସଂଗ୍ରାମ ଭିତରେ ପାର୍ଥକ୍ୟ ହେଲା, ଏହା ଜନ ସାଧାରଣଙ୍କର ବ୍ୟାପକତର ସଂଗ୍ରାମ ହେବ । ତେଣୁ ସେ କହିଲେ "ଭଗବାନଙ୍କ ଉପରେ ଭାରତକୁ ଛାଡ଼ି ଦିଅ ।"

ଅପର ପକ୍ଷରେ ବ୍ରିଟିଶ ଶାସକବର୍ଗ ଉପଲବ୍ଧି କରୁଥିଲେ ଯେ ସାମୟିକ ଭାବରେ

ଆନ୍ଦୋଳନକୁ ଦମନ କରିଦେଲେବି ଅଧିକ କାଳ ଲାଗି ସେମାନେ ଭାରତରେ ରହିପାରିବେ ନାହିଁ ।

କଂଗ୍ରେସର କାର୍ଯ୍ୟକଳାପ, ତା'ର ଗତିବିଧିକୁ ବ୍ରିଟିଶ ସରକାର ନିବିଡ଼ ଭାବରେ ଅନୁଶୀଳନକରି ଆନ୍ଦୋଳନକୁ କିପରି ଆରଂଭରୁ ଦବେଇଦେବ ସେଥିଲାଗି ବ୍ୟାପକ ପ୍ରସ୍ତୁତି ଚଳାଇଥିଲା । ଏ.ଆଇ.ସି.ସି. ବୈଠକ ବିଳମ୍ବିତ ରାତ୍ରିରେ ଶେଷ ହେଲା । ସକାଳ ହେବା ପୂର୍ବରୁ ପୁଲିସ ଗାନ୍ଧୀ ଓ ଆଜାଦ, ନେହେରୁ, ପଟେଲ, ପନ୍ଥ, ମହତାବ ପ୍ରଭୃତି ନେତୃବର୍ଗଙ୍କୁ ଧରିନେଲା ।

ଅଗଷ୍ଟ ୯ ତାରିଖ ସକାଳୁ ମଧ ବିଭିନ୍ନ ପ୍ରଦେଶର ବହୁ ନେତା ଓ ଲଢୁଆ କର୍ମୀଙ୍କୁ ଧରି ନିଆଗଲା । ୯ ତାରିଖ ସକାଳେ ଓଡ଼ିଶାରେ ନବକୃଷ୍ଣ ଚୌଧୁରୀଙ୍କୁ ଧରି ନେଇ ଅନ୍ୟମାନଙ୍କୁ ଖୋଜା ଚାଲିଲା । ଓଡ଼ିଶାରେ ପ୍ରଥମ ଦଫାରେ ସେଦିନ ୨୯ ଜଣଙ୍କୁ ଅଟକ କରିବା ପରଓ୍ୱାନା ବାହାରି ଥିଲା । ତାଲିକାଟି ନବକୃଷ୍ଣ ଚୌଧୁରୀଙ୍କୁ ଦେଖାଇଦିଆଗଲା । ସପ୍ତାହକ ମଧରେ ପ୍ରତ୍ୟେକଟି ପ୍ରଦେଶରୁ ବହୁ ନେତାଙ୍କୁ ଗିରଫ କରି ଭାରତ ରକ୍ଷା ଅଧ୍ୟାଦେଶ ବଳରେ ଅଟକବନ୍ଦୀ କରାଗଲା ।

ଏ.ଆଇ.ସି.ସି. ସମେତ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ବ୍ୟତୀତ ସବୁ ପ୍ରାଦେଶିକ କଂଗ୍ରେସ କମିଟିକୁ ବେଆଇନ ଘୋଷଣା କରାଗଲା । କଂଗ୍ରେସ କାର୍ଯ୍ୟାଳୟଗୁଡ଼ିକୁ ଖାନତଲାସ କରାଗଲା ।; ତାଲା ପକେଇ ଦିଆଗଲା । ଏହ୍ଲାବାଦରେ ଥିବା କଂଗ୍ରେସର ମୁଖ୍ୟ କାର୍ଯ୍ୟାଳୟକୁ ବନ୍ଦ କରିଦିଆଗଲା ଓ କଂଗ୍ରେସ ପାଣ୍ଠିକୁ ବାଜ୍ୟାପ୍ତି କରାଗଲା । ଗାନ୍ଧିଜୀଙ୍କ ହରିଜନ ସମେତ ବିଭିନ୍ନ ସଂବାଦପତ୍ର ଉପରେ କଟକଣା ଜାରି କରାଗଲା । କଟକରେ ସାହେବଜାଦାବଜାରରେ ଅବସ୍ଥିତ ଐତିହାସିକ ସ୍ୱରାଜ ଆଶ୍ରମ ପୋଲିସ ତାଲା ପକାଇ ଦେଲା । ପତ୍ରିକା ପ୍ରକାଶନ ବନ୍ଦ ହୋଇଗଲା । ଖବର କାଗଜଗୁଡ଼ିକ ଉପରେ କଟକଣା ଜାରି କରାଗଲା ।

ବ୍ରିଟିଶ ସରକାର ସବୁ ନେତାଙ୍କୁ ଗିରଫକରି ନେବ ବୋଲି ଗାନ୍ଧିଜୀ ଜାଣିଥିଲେହେଁ ନେତାମାନେ ଗୋପନରେ ଭୂମିଗତ ହୋଇ ଗିରଫ ଦାରୀ ଏଡ଼ିବାକୁ କୌଣସି ବ୍ୟବସ୍ଥା କରିନଥିଲେ କି ସୂଚନା ଦେଇ ନ ଥିଲେ । ବମ୍ବେ ଏ.ଆଇ.ସି.ସି. ଅଧିବେଶନରେ ସ୍ପଷ୍ଟ ଭାବରେ ଗାନ୍ଧିଜୀ ଏପରି ଉଦ୍ୟମ ପ୍ରତି ବିରୋଧିତା ପ୍ରକାଶକରି ଏହା ଏକ ଖୋଲାଖୋଲି ବିଦ୍ରୋହ (Open Revolt) ହେବ ବୋଲି ଘୋଷଣା କରିଥିଲେ ।

କଂଗ୍ରେସ କମିଟିଗୁଡ଼ିକୁ ବେଆଇନ କରିବା ଏବଂ ଦେଶବ୍ୟାପୀ ସବୁ ବଡ଼ବଡ଼ ନେତାଙ୍କୁ ଗିରଫ କରିନେବା ଦେଖି ଲୋକେ ବିସ୍ମିତ ଓ କ୍ରୋଧ ଜର୍ଜରିତ ହୋଇଥିଲେ । ଏପରି ଦମନ ଜନତାକୁ ବିକ୍ଷୁବ୍ଧ କରିଦେଲା । ୧୯୪୨ ଅଗଷ୍ଟ ୯ ତାରିଖରେ

ଗିରଫଦାରୀର ସଂବାଦ ପହଂଚିଗଲା ମାତ୍ର ବମ୍ବେ, ଅହମ୍ମେଦାବାଦ, ପୁନେରେ ପ୍ରଦର୍ଶନ, ପଟୁଆର, ଜନ ସମାବେଶର ଜୁଆର ଛୁଟିଲା । ଏପରି ପ୍ରତିବାଦ, ପଟୁଆର, ବିକ୍ଷୋଭ ଦେଶର ବିଭିନ୍ନ ନଗରନଗରୀ, ସହର, ଗାଁଗଣ୍ଡାକୁ ବ୍ୟାପିଗଲା । ଉତ୍ତର ଭାରତରେ ପ୍ରଥମେ ବିଶାଳ ବିଶାଳ ବିକ୍ଷୋଭ ପ୍ରଦର୍ଶିତ ହୋଇଚାଲିଲା । ଏହି ବିଶାଳ, ବିକ୍ଷୁବ୍ଧ ଜନତାକୁ ଘଉଡ଼େଇବା ପାଇଁ ଚଳିଲା ଅବାରିତ, ଅବର୍ଣ୍ଣନୀୟ ଦମନ ଲୀଳା । ଲାଠି, ଗୁଳି ଗୋଇଠାମାଡ଼ ଇତ୍ୟାଦି ଯାବତୀୟ ଦମନର ନାନାବିଧ ଉପାୟ ଉପଯୋଗ କରାଗଲା । ଏପରି ଦମନ ଜନତାକୁ ଆହୁରି ଅଧିକ ବିକ୍ଷୁବ୍ଧ କଲା । ବିଦ୍ରୋହର ରୂପ ନେଲା । ସ୍ୱତଃସ୍ଫୂର୍ତ୍ତ ଭାବରେ ଲୋକେ ବିଭିନ୍ନ ସ୍ଥାନରେ ପ୍ରତିବାଦ ଓ ଦମନ ପ୍ରତିରୋଧର ପନ୍ଥା ଅବଲମ୍ବନ କରିଥିଲେ । ରାସ୍ତା ରେଳବାଇ, ସରକାରୀ ଦପ୍ତର, ଡାକଘର, ଡାକତାର ବ୍ୟବସ୍ଥା ଓ ପୁଲିସ ଥାନା, ଫାଣ୍ଡିଗୁଡ଼ିକ ଉପରେ ଲୋକେ ଆକ୍ରମଣ କଲେ ।

ଅଖିଳ ଭାରତ କଂଗ୍ରେସ କମିଟି ଦ୍ୱାରା ଗୃହୀତ ଭାରତ ଛାଡ଼ ପ୍ରସ୍ତାବଟି ବ୍ରିଟିଶ ଶାସକ ବର୍ଗଙ୍କ ବିରୁଦ୍ଧରେ ଏକଜୁଟ ହେବା ଲାଗି ଦେଶର ଚାଷୀ, ଶ୍ରମିକ ଛାତ୍ର, ଛୋଟବ୍ୟବସାୟୀ, କାରିଗର ଓ କର୍ମଚାରୀମାନଙ୍କ ସାହାଯ୍ୟ କଲା । ଦେଶର ବିଭିନ୍ନ ଅଂଚଳରେ ଓ ପ୍ରଦେଶରେ ବେଶ କେତେକ କଂଗ୍ରେସ ନେତା ଓ କର୍ମୀ ଗୋପନରେ ରହି ଆନ୍ଦୋଳନକୁ ସଂଗଠିତ ରୂପଦେବା ଲାଗି ଉଦ୍ୟମ କରିଥିଲେ । ଗିରଫ, ଗୁଳି, ଲାଠି ଓ ଯାବତୀୟ ଦମନ ଯୋଗୁଁ ଅଗଷ୍ଟ ଆନ୍ଦୋଳନର ବେଗ ଓ ତୀବ୍ରତା ୪/୫ ମାସପରେ ଧୀମେଇ ଗଲା । ଲକ୍ଷେରୁ ଅଧିକ ଆନ୍ଦୋଳନକାରୀଙ୍କୁ ଜେଲରେ ଅଟକ ରଖାଗଲା । ଶହ ଶହ ସ୍ଥାନରେ ଗୁଳି ଚାଲିଲା । ହଜାର ସଂଖ୍ୟାରେ ଗୁଳିରେ ମଲେ ।

ବିଭିନ୍ନ ପ୍ରଦେଶରେ, ବିଭିନ୍ନ ସ୍ଥାନରେ ଏହି ଆନ୍ଦୋଳନ ବ୍ୟାପକ ରୂପ ନେଇଥିଲା । ଏପରି ଗୁଳି, ଅତ୍ୟାଚାର ବର୍ଣ୍ଣନାତୀତ ।

ଉତ୍ତର ପ୍ରଦେଶରେ, ବଂଗଳାର ତମଲୁକ, ମହାରାଷ୍ଟ୍ରର ସତାରା ପ୍ରଭୃତି ବହୁ ସ୍ଥାନରେ ଜନତା ସମାନ୍ତରାଳ ସରକାର ଗଠନ କରି ବ୍ରିଟିଶ ଶାସନକୁ ୩/୪ ମାସ ଲାଗି ନିଶ୍ଚିହ୍ନ କରିଦେଇଥିଲେ । ବିହାରରେ ଏହି ଆନ୍ଦୋଳନ ଆଗ୍ନେୟରୂପ ନେଇଥିଲା । ଓଡ଼ିଶା ସମେତ ବିଭିନ୍ନ ପ୍ରଦେଶରେ ବିଭିନ୍ନ ଅଂଚଳରେ ବିଦ୍ରୋହୀ ଜନତାର ସରକାରମାନ ଗଠିତ ହୋଇଥିଲା । ଅର୍ଥାତ୍ କିଛିକାଳ ଲାଗି ସେସବୁ ଅଂଚଳରୁ ବ୍ରିଟିଶ ପୁଲିସ ଓ ପ୍ରଶାସନ ଭୟାତୁର ହୋଇ ପଳାଇ ଯାଇଥିଲେ । ଓଡ଼ିଶାରେ ଇରମ, ହଟସାହି ଲୁଣିଆ କାଇମାଟିଆ, ମାତିଲି, ପାପଡ଼ାହାଣ୍ଡି, ନିମାପଡ଼ା, ମଢ଼ି ପ୍ରଭୃତି ସ୍ଥାନରେ ଗୁଳିରେ ଶତାଧିକ ମୃତ୍ୟୁବରଣ କରିଥିଲେ ।



# ୧୯୪୨ ଅଗଷ୍ଟ ଆନ୍ଦୋଳନର କେତେକ ଫଳଶ୍ରୁତି

ବଂଗଳାର ମେଦିନୀପୁର ଜିଲ୍ଲା ତମଲୁକ ସବ ଡ଼ିଭିଜନ ବା ଉପଖଣ୍ଡରେ ଏକ ଜାତୀୟ ସରକାର ୧୯୪୨ ଡିସେମ୍ବର ୧୭ରୁ ୧୯୪୪ ଅଗଷ୍ଟ ୮ ପର୍ଯ୍ୟନ୍ତ ତିଷ୍ଠିଥିଲା । ବ୍ରିଟିଶ ପୁଲିସ ଓ ପ୍ରଶାସନକୁ ତମଲୁକର ଜନତା ଅସ୍ୱୀକାର କରିଥିଲେ । ପରେ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ତାହାକୁ ଭାଙ୍ଗି ଦିଆଯାଇଥିଲା । ତମଲୁକ ସମାନ୍ତରାଳ ସରକାରର ପ୍ରମୁଖ ନେତା ରୋବି ରାୟ, ନରେନ ଜେନା ଆଉ ଅନେକ ସିପିଆଇରେ ମିଶିଲେ । ଉତ୍ତର ପ୍ରଦେଶର ବଲିଆରେ ପ୍ରାଦେଶିକ ପ୍ରଶାସନଠାରୁ ଏହି ଜିଲ୍ଲା ପ୍ରଶାସନର ସଂପର୍କ ୧୯୪୨ ଅଗଷ୍ଟଠାରୁ ଛିନ୍ନ ହୋଇଗଲା । ବାଂଶଡ଼ିହ ଥାନା ଦଖଲକରି ଜନତା ତହସିଲ ଆକ୍ରମଣ କଲେ । ସମସ୍ତ ଥାନା ଓ ସହକାରୀ କର୍ମକର୍ତ୍ତା ଆତ୍ମ ସମର୍ପଣ କରିଦେଲେ । ବାଂଶଡ଼ିହ ସହରର କଂଗ୍ରେସ କମିଟିର ନେତା ଗଦାଧର ଲୋହାର ତହସିଲଦାର ପଦରେ ଅଧୀରୂଢ଼ ହେଲେ । ସେ ତହସିଲ କର୍ମଚାରୀମାନଙ୍କୁ ବରଖାସ୍ତ କରି ସ୍ଥାନ ଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦେଲେ । ସହରରେ ଏକ ସମାନ୍ତରାଳ ସରକାର ପ୍ରତିଷ୍ଠାର ଯୋଜନା ନିଆଗଲା । ମାତ୍ର ବହୁ ସଂଖ୍ୟକ ବ୍ରିଟିଶ ସୈନ୍ୟ ଆସି ପହଂଚିବା ଫଳରେ ତାହା ସମ୍ଭବପର ହୋଇପାରିଲା ନାହିଁ । ଉତ୍ତର ପ୍ରଦେଶର ବାଲିଆ ଜିଲ୍ଲାରେ ସରଯୂ ପାଣ୍ଡେଙ୍କ ନେତୃତ୍ୱରେ, ଏକ ଟାଣୁଆ ଅସ୍ଥାୟୀ ସରକାର ଲୋକେ ପ୍ରତିଷ୍ଠା କରିଥିଲେ ।

ଉତ୍ତର ଭାଗଲପୁର (ବିହାର)ରେ ଏବଂ ବିହାରର ବିଭିନ୍ନ ସ୍ଥାନରେ ମଧ୍ୟ ଅଳ୍ପ କାଳ ପାଇଁ ହେଲେହେଁ ପତ୍ରି (ସମାନ୍ତରାଳ) ସରକାର ପ୍ରତିଷ୍ଠିତ ହୋଇଥିଲା ।

ମହାରାଷ୍ଟ-ବମ୍ବେର ସତାରାଠାରେ ଏକ ପତ୍ରି ଅର୍ଥାତ୍ ସମାନ୍ତରାଳ ସରକାର ପ୍ରତିଷ୍ଠିତ ହୋଇଥିଲା । ଏହାର ନେତା ଥିଲେ ନାନା ପଟିଲ ନାମକ-ଯୁବକ । ମୁଖ୍ୟତଃ କୃଷ୍ଣା ଉପତ୍ୟକାର ପାର୍ବତ୍ୟାଂଚଳରେ ଚାଷୀମାନଙ୍କ ମଧ୍ୟରେ ସେ ବେଶ୍ ଖ୍ୟାତି ଅର୍ଜନ କରିଥିଲେ । ଚାଷୀଘରର ଏହି ଯୁବକ ସାହୁକାର ଓ ଭତଗିଜଙ୍କ ପରି ଶୋଷକମାନଙ୍କ ବିରୁଦ୍ଧରେ ଚାଷୀମାନଙ୍କୁ ଏକତ୍ର କରୁଥିଲେ । ୧୯୪୨ରେ ଗୋପନ ରହି ସତାରାରେ ଖଣ୍ଡ ପ୍ରଳୟପରି ଏକ ଆନ୍ଦୋଳନର ନେତୃତ୍ୱ ନେଲେ । ସେ ସତାରାରେ ଏକ ସମାନ୍ତରାଳ ସରକାର ପ୍ରତିଷ୍ଠା କରିଥିଲେ ।

୧୯୪୪ ମଇ-ଜୁନ ମାସ ମଧ୍ୟରେ ନାନା ପଟିଲ ଗାନ୍ଧିଜୀଙ୍କୁ ଭେଟିଥିଲେ । ସେତେବେଳକୁ ଗାନ୍ଧିଜୀ ଜେଲରୁ ଖଲାସ ହୋଇଥାନ୍ତି । ଗାନ୍ଧିଜୀଙ୍କ ସହିତ ତାଙ୍କ ଆଲୋଚନାର ମର୍ମ୍ମ ବେଶ ଶିକ୍ଷାପ୍ରଦ । କିପରି ସେ ସଂଗ୍ରାମ ଚଳାଉଥିଲେ ଓ ତାହା ଗାନ୍ଧିଜୀଙ୍କୁ ଜଣେଇ କହିଲେ "ଜିଲ୍ଲାରେ ମୁଁ ଓ ମୋ ସହକର୍ମୀମାନେ ଯେପରି ଆନ୍ଦୋଳନ ଚଳାଇଥିଲୁ, ତାହା ଆପଣଙ୍କ ଦର୍ଶନ ସହିତ କେତେ ମେଳ ଖାଉଛି ମୁଁ ଜାଣେନା । ଆପଣଙ୍କ ସତ୍ୟ ଓ ଅହିଂସାର ଦର୍ଶନକୁ ଆମେ ଏହିପରି ଭାବେର ଅନୁସରଣ କରିଥିଲୁ । ରେଳଗାଡ଼ି ଉପରେ ଆକ୍ରମଣକରି ସେଗୁଡ଼ିକୁ ଧ୍ୱଂସ କରୁଥିଲୁ, ମାତ୍ର କୌଣସି ଯାତ୍ରୀଙ୍କୁ ହତ୍ୟା ନ କରି ଗାଡ଼ିରୁ ଓହ୍ଲାଇ ଦେଉଥିଲୁ । ଯାତ୍ରୀବାହୀ ରେଳଗାଡ଼ିକୁ ଆଘାତ କରୁନଥିଲୁ ମାତ୍ର ଯିଏ ହତ୍ୟାକରୀ, ଧର୍ଷଣକାରୀ ଅବା ଚୋର, ଡକାଏତ ସେମାନଙ୍କ ହାତ ଭାଂଗି ଦେଉଥିଲୁ । ଆମେ ପୁଲିସର ଗୁଇନ୍ଦା କାମ କରୁଥିବା ଲୋକଙ୍କୁ ପିଟୁଥିଲୁ । ଏହା ନ କରିଥିଲେ ଆମେ ଆନ୍ଦୋଳନ ଚଳାଇ ପାରି ନଥାନ୍ତୁ । ୧୯୪୨ ଅଗଷ୍ଟରେ ଆପଣ 'କର ଅବା ମର' ଆହ୍ୱାନ ଦେଇ ପରାମର୍ଶ ଦେଇଥିଲେ ଯେ କଂଗ୍ରେସ ନେତୃବର୍ଗ ଗିରଫ ହୋଇଗଲେ ପ୍ରତ୍ୟେକ କଂଗ୍ରେସ କର୍ମୀ ବ୍ରିଟିଶକୁ ତଡ଼ିବା ଲାଗି ନିଜ ଉପଲବ୍ଧି ଅନୁସାରେ ଆନ୍ଦୋଳନ ଚଳାଇଯିବେ । ଶିବାଜୀ ମହାରାଜାଙ୍କ ଗରିଲା ପଦ୍ଧତି ଅନୁସରଣ କରିଆମେ ଆନ୍ଦୋଳନ କରୁଥିଲୁ ।"

ଗାନ୍ଧିଜୀଙ୍କ ଉତ୍ତର - "ନାନା କଟିଲ, ତମ ଆନ୍ଦୋଳନ ମୋ ଦର୍ଶନ ସହିତ ଖାଇ ଖାଉଛି କି ନାହିଁ ତାହା ଗୁରୁତ୍ୱପୂର୍ଣ୍ଣ କଥା ନୁହେଁ । ତମେ ୧୯୪୨ରେ ସ୍ୱାଧୀନତା ଆନ୍ଦୋଳନକୁ ଜାରି ରଖିଲ ଏବଂ ଏହି ଆନ୍ଦୋଳନରେ ସତ୍ୟର ସୁରକ୍ଷା କଲ, ତାହାହିଁ ଗୁରୁତ୍ୱପୂର୍ଣ୍ଣ । ମୁଁ ସେମାନଙ୍କ ମଧ୍ୟରୁ ଜଣେ ଯିଏ ଅନୁଭବ କରେଯେ କାପୁରୁଷଙ୍କ ଅହିଂସା ଠାରୁ ସାହାସୀଙ୍କ ହିଂସା ଉତ୍ତମ ।"

ପରେ ଏହି ନାନା ପଟିଲ, ତାଙ୍କର ଅନେକ ସହଯୋଗୀଙ୍କ ସହିତ ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ ।

ଅଗଷ୍ଟ ଆନ୍ଦୋଳନବେଳେ ପ୍ରତ୍ୟେକଟି ପ୍ରଦେଶରେ ଗୋପନରେ ରହି ଅନେକ କଂଗ୍ରେସ କର୍ମୀ ଓ ନେତା ସୋସାଲିଷ୍ଟ, ଫରୱାର୍ଡ଼ ବ୍ଲକ ମତବାଦୀ କର୍ମୀ ନିଜ ନିଜ ସ୍ଥାନରେ ଆନ୍ଦୋଳନ କରିଚାଳନା କରୁଥିଲେ । ଏହି ଆନ୍ଦୋଳନର ପୁରୋଭାଗରେ ସର୍ବଭାରତୀୟ ସ୍ତରରେ ଥିଲେ ଖ୍ୟାତନାମା ସୋସାଲିଷ୍ଟ ନେତା ଜୟ ପ୍ରକାଶ ନାରାୟଣ, ଅରୁଣା ଆସଫ ଅଲ୍ଲି, ରାମ ମନୋହର ଲୋହିଆ, ରାମନନ୍ଦନ ମିଶ୍ର, ଅଶୋକ ମେହେଟା, ଝାଡ଼ଖଣ୍ଡ ରାୟ ପ୍ରମୁଖ ।

ଅରୁଣା ଆସଫ ଅଲି ଓ ଝାଡ଼ଖଣ୍ଡ ରାୟ ପରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ ।

ଓଡ଼ିଶାର ଇରମରେ ବାଞ୍ଛାନିଧି ଚକଡ଼ା ନାମରେ ଏକ ସମାନ୍ତରାଳ ସରକାର ଘୋଷଣା କରାଯାଇଥିଲା । ଢେଙ୍କାନାଳର ମିଢ଼ିରେ ଓ ବରୀ ପରି ଅନେକ ଅଂଚଳର ଲୋକେ ସ୍ୱାଧୀନ ବୋଲି କିଛି ଦିନ ଅନୁଭବ କରିଥିଲେ । ବ୍ରିଟିଶ ସୈନ୍ୟ ପୁଲିସ, ଅଫିସର ନିଜନିଜ ଆସ୍ଥାନ ଛାଡ଼ି ପଳାଇଯାଉଥିଲେ ।

ଓଡ଼ିଶାରେ ଅଗଷ୍ଟ ଆନ୍ଦୋଳନରେ ବାଲେଶ୍ୱର, କଟକ, ପୁରୀ, ଢେଙ୍କାନାଳ ତାଳଚେର ପ୍ରଭୃତି ବିଭିନ୍ନ ଜାଗାରେ ଏବଂ କୋରାପୁଟର ମାତିଲି, ପାପଡ଼ାହାଣ୍ଡି ସମେତ ବିଭିନ୍ନ ସ୍ଥାନରେ ବ୍ରିଟିଶ ଗୁଳିରେ ଶତାଧିକଙ୍କର ପ୍ରାଣ ଯାଇଥିଲା-ଲକ୍ଷ୍ମଣ ନାଏକ ୧୯୪୩ ମାର୍ଚ୍ଚ ୨୯ରେ ବ୍ରହ୍ମପୁର ଜେଲରେ ଫାଶି ପାଇଥିଲେ ।

ଅଗଷ୍ଟ ଆନ୍ଦୋଳନ ଓଡ଼ିଶାର ୨୬ଟି ଗଡ଼ଜାତକୁ ବ୍ୟାପିଥିଲା । କଟକ, ବ୍ରହ୍ମପୁର, କୋରାପୁଟ, ପୁରୀ, ବାଲେଶ୍ୱର, ସଂବଲପୁର ପ୍ରଭୃତି ବଡ଼ ବଡ଼ ଜେଲରେ ଅଟକବନ୍ଦୀମାନେ ଯେ ଥିଲେ, ସେତିକି ନୁହଁ ତାଳଚେର ଢେଙ୍କାନାଳ, ଆଠଗଡ଼, ନୀଳଗିରି, ମୟୁରଭଞ୍ଜ, ବଲାଙ୍ଗିର, ନୟାଗଡ଼, ରଣପୁର, ଦଶପଲ୍ଲା, ଖଣ୍ଡପଡ଼ା, କେଉଁଝର, କଳାହାଣ୍ଡି, ସୋନପୁର, ଆଠମଲ୍ଲିକ ପ୍ରଭୃତି ସବୁ ଗଡ଼ଜାତ ରଜାଙ୍କ ଜେଲ ଅଗଷ୍ଟ ବିପ୍ଳବୀମାନଙ୍କ ଦ୍ୱାରା ଭରପୂର ହୋଇଥିଲା ।

ଅଗଷ୍ଟ ଆନ୍ଦୋଳନ କାଳରେ ବ୍ରିଟିଶ ଦମନ ଅତ୍ୟାଚାରରେ ବିକ୍ଷୁବ୍ଧ ଜନତା ଭାରତର ବିଭିନ୍ନ ସ୍ଥାନରେ ୨୫୦ରୁ ଅଧିକ ରେଳଷ୍ଟେସନ ଉପରେ ଆକ୍ରମଣକରି ସେଗୁଡ଼ିକୁ ଅଚଳ କରିଦେଇଥିଲେ । ପାଞ୍ଚଶହରୁ ଅଧିକ ଡାକଘର ଉପରେ ଚଢ଼ଉ କରାଯାଇଥିଲା । ତନ୍ମଧ୍ୟରୁ ୫୦ଟି ଡାକଘର ସଂପୂର୍ଣ୍ଣ ବିଧ୍ୱସ୍ତ ହୋଇଥିଲା । ସପ୍ତାହ ସପ୍ତାହକାଳ ବିହାର ଏବଂ ଉତ୍ତର ପ୍ରଦେଶର ପୂର୍ବଭାଗରେ ରେଳଗାଡ଼ି ଚାଲି ପାରିନଥିଲା । ଦେଶରେ ଦେଢ଼ଶହରୁ ଅଧିକ ଥାନା ଉପରେ ଆକ୍ରମଣ ହୋଇଥିଲା ।

ଦେଶବ୍ୟାପୀ ଗିରଫଦାରୀରେ ୬୦,୨୨୯ ଜଣକୁ ଗିରଫକରି ନିଆ ଯାଇଥିଲା । ସେମାନଙ୍କ ମଧ୍ୟରୁ ୧୮ ହଜାରରୁ ଅଧିକ ସଂଗ୍ରାମୀକୁ ଭାରତ ରକ୍ଷା ଆଇନବଳରେ ବିନା ବିଚାରରେ, ଦୀର୍ଘକାଳ ଅଟକ ରଖାଗଲା ।

ଦେଶର ୫୩୮ ଜାଗାରେ ଜନତା ଉପରେ ଗୁଳି କରାଯାଇଥିଲା । ସରକାରୀ ହିସାବରେ ୯୪୦ ଜଣ ଗୁଳିରେ ନିହତ ଓ ୧୬୩୦ ଜଣ ଆହତ ହୋଇଥିଲେ । କେନ୍ଦ୍ର ଆସେମ୍ବ୍ଲିରେ ତତ୍କାଳୀନ ବ୍ରିଟିଶ୍ ଘରୋଇ ସଚିବ, ହୋରେସ୍ ଆଲେକଜାଣ୍ଡର ଏପରି ତଥ୍ୟ ପ୍ରକାଶ କରିଥିଲେ ।



# କେରଳର କାୟୁର ହତ୍ୟାତାଣ୍ଡବ-ଚାରିଜଣଙ୍କୁ ଫାଶି

ସ୍ୱାଧୀନତା ଆସିବାକୁ ଆହୁରି ୪ ବର୍ଷ ବାକିଥାଏ। କେରଳର କାନ୍ନୁର ଜିଲ୍ଲା କେନ୍ଦ୍ର ଜେଲରେ ସେମାନେ ଚାରିଜଣ ବନ୍ଦୀ। ୧୯୪୩ ମାର୍ଚ୍ଚ ୨୯ ତାରିଖରେ ଫାଶିଖୁଣ୍ଟରେ ଲଟକି ପଡ଼ିଲେ ସେ ଚାରିଜଣ ବୀର ଶହୀଦ।

ମାର୍ଚ୍ଚ ୨୮ ତାରିଖରେ ହିଁ ସେମାନଙ୍କୁ ଅବଗତ କରାଗଲାଯେ କାଲି ତମେମାନେ ଫାଶି ଖୁଣ୍ଟରେ ଚଢ଼ିବ। ଅନୁତାପ ନାହିଁ। ରାତିସାରା ଜେଲ ପ୍ରାଙ୍ଗଣ ସେମାନଙ୍କ ବୈପ୍ଳବିକ ଧ୍ୱନିରେ ମୁଖରିତ ହେଲା। "ସ୍ୱାଧୀନ ଭାରତ ଜିନ୍ଦାବାଦ" କମ୍ୟୁନିଷ୍ଟ ପାର୍ଟି ଜିନ୍ଦାବାଦ ଧ୍ୱନିଗୁଡ଼ିକରେ କାୟୁର ଗାଁର ଚାରିଜଣ ଶହୀଦ, ମାଡ଼ାଥିଆପ୍ପୁ, କୁନମ୍ବୁ ନାୟାର, ଚିରୁକାଣ୍ଡାନ ଏବଂ ଆବୁ ବେକର, ହିନ୍ଦୁ, ମୁସଲମାନ ଫାଶି ପାଇଲେ।

ସେମାନଙ୍କର ଅପରାଧ ହେଲା, ବ୍ରିଟିଶ ପ୍ରତିପାଳିତ ଅତ୍ୟାଚାରୀ, ସର୍ବସ୍ୱ ଲୁଣ୍ଠନକାରୀ ଜମିଦାରମାନଙ୍କ ବିରୁଦ୍ଧରେ କୃଷକ ସଭା ନେତୃତ୍ୱରେ ସେମାନେ ଆନ୍ଦୋଳନ କରୁଥିଲେ।

ଏହି ଅଂଚଳରେ ଦୁର୍ଦ୍ଧର୍ଷ ମାଲବାର ପୁଲିସ ବାହିନୀକୁ ମୁତଏନ କରାଯାଇ ଘରଘର ଖାନତଲାସ କରାଯାଇଥିଲା। ଚାଷୀମାନଙ୍କ ଧନସଂପଦ ଲୁଟପାଟ କରାହେଉଥିଲା।

ତାରି ବିରୁଦ୍ଧରେ ୧୯୪୧ ମାର୍ଚ୍ଚ ୨୯ ତାରିଖରେ ଏହି ଗାଁରେ ଏକ ବିଶାଳ ପ୍ରତିବାଦ ସଭା ବସିଲା। ପଟୁଆର ଚାଲିଲାବେଳେ ସୁବାୟାନ ନାମକ ପୁଲିସ ମଦପିଇ ପଟୁଆର ଭିତରେ ପଶି ଲୋକଙ୍କୁ ଗାଳିଗୁଲଜ କଲା। ପ୍ରଦର୍ଶନକାରୀମାନେ ତାକୁ ମାରି ଗୋଡ଼େଇଲାରୁ ସେ ଦୌଡ଼ି ପଳାଇବାବେଳେ ଗୋଟିଏ ନଦୀ ଭିତରକୁ ଡେଇଁପଡ଼ି ବୁଡ଼ିଗଲା। ଏହାକୁ ହତ୍ୟା ବୋଲି ଚିତ୍ରଣକରି ରକ୍ତମୁହାଁ ପୁଲିସ ୬୪ଜଣ କୃଷକ କର୍ମୀଙ୍କ ନାମରେ ହତ୍ୟା ମକଦମା ରୁଜୁ କଲା। ସେମାନଙ୍କ ମଧ୍ୟରୁ ୨୨ ଜଣଙ୍କୁ ବିବିଧ ଦଣ୍ଡ ଦିଆଗଲା। ତନ୍ମଧ୍ୟରୁ ୫ ଜଣଙ୍କୁ ମୃତ୍ୟୁଦଣ୍ଡ, ଜଣକୁ ଯାବଜ୍ଜୀବନ କାରାଦଣ୍ଡ ଓ ଅନ୍ୟମାନଙ୍କୁ ୨ରୁ ୫ ବର୍ଷ ଯାଏ ସଶ୍ରମ କାରାଦଣ୍ଡ ଦିଆଗଲା। ଫାଶିଦଣ୍ଡ ପାଇଥିବା ୧୪ ବର୍ଷର ବାଳକକୁ ଦୌରାଜଜ ଯାବଜ୍ଜୀବନ କାରାଦଣ୍ଡ ଦେଲେ। ଦୌରାଜଜ୍ ତାଙ୍କ ରାୟରେ

ଉଲ୍ଲେଖ କରିଥିଲେଯେ କିଏ ପୁଲିସକୁ ମରଣାନ୍ତକ ଆଗାତ ଦେଲା, ତାହା ଅଦାଲତ ଆଗରେ ସରକାର ପକ୍ଷରୁ ବଢ଼ାଯାଇନାହିଁ । ତଥାପି ଅଦାଲତ ପକ୍ଷରୁ ଏମାନଙ୍କୁ କାହାକୁ ଫାଶି ହୁକୁମ, କାହାକୁ ଦୀର୍ଘ କାରାବାସ ଆଦେଶ ଦିଆଗଲା ।

ସାରା କେରଳରେ ଏହାର ପ୍ରତିବାଦ ହେଲା । ମାନ୍ଦ୍ରାଜ ହାଇକୋର୍ଟ ଅପିଲକୁ ଖାରଜ କରିଦେଲେ । କଂଗ୍ରେସ, କମ୍ୟୁନିଷ୍ଟ ଓ ଅନ୍ୟାନ୍ୟ ପାର୍ଟିର ନେତାମାନେ ମାନ୍ଦ୍ରାଜର ବ୍ରିଟିଶ ରାଜ୍ୟପାଳଙ୍କୁ ନିବେଦନ କଲେ । ତାହା ମଧ୍ୟ ଅଗ୍ରାହ୍ୟ ହେଲା । ଭାରତୀୟ କମ୍ୟୁନିଷ୍ଟ ପାର୍ଟି ବିଲାତର ପ୍ରଖ୍ୟାତ ଆଇନଜୀବୀ ଓ କମ୍ୟୁନିଷ୍ଟ ଡି.ଏନ.ପ୍ରିଟଙ୍କ ଜରିଆରେ ପ୍ରିଭି କାଉନ୍ସିଲ (ବ୍ରିଟିଶ ସାମ୍ରାଜ୍ୟର ସର୍ବୋଚ୍ଚ ଅଦାଲତ) ଆବେଦନ କଲେ । କିଛି ଫଳ ଫଳିଲା ନାହିଁ ।

ସିପିଆଇର ସାଧାରଣ ସଂପାଦକ ପି.ସି. ଯୋଷୀ ଜେଲଖାନାରେ ବନ୍ଦୀମାନଙ୍କୁ ଭେଟି ବୈପ୍ଳବିକ ଅଭିନନ୍ଦନ ଜଣାଇଥିଲେ । "ଦେଶର ସ୍ୱାଧୀନତା ଓ ପୃଥିବୀର ସୁଖ ସମୃଦ୍ଧି ଲାଗି ସଂଗ୍ରାମରେ ଆପଣମାନେ ଶହୀଦ ହୋଇଛନ୍ତି" ବୋଲି କହି ସେମାନଙ୍କୁ ଅଭିନନ୍ଦନ କରିଥିଲେ । ଫାଶିପରେ ଶହୀଦମାନଙ୍କ ଶବ ନେବାକୁ ତିନି ସହସ୍ରାଧିକ ଜନତା ସମବେତ ହୋଇଥିଲେ । ମାତ୍ର ସେମାନଙ୍କୁ ଶବ ଦେବା ପରିବର୍ତ୍ତେ ବ୍ରିଟିଶ ପୁଲିସ ହୃଦୟହୀନ ଭାବରେ ମାଡ଼ ଦେଇ ଜନତାକୁ ଘଉଡ଼ାଇ ଦେଇଥିଲା ।



# ଭାରତୀୟ ମୁକ୍ତିଲିଗ
# ଭାରତୀୟ ଜାତୀୟ ବାହିନୀ (ଆଇ.ଏନ.ଏ)ର
# ଜନ୍ମ ଇତିହାସ ୧୯୪୨ ରୁ ୧୯୪୪

ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ଭାରତର ସ୍ୱାଧୀନତା ହାସଲର ଲକ୍ଷ୍ୟ ଘେନି ବ୍ରିଟିଶ ବିରୋଧୀ ସଂଗ୍ରାମ ଚଳାଇବା ଲାଗି ୟୁରୋପର ବର୍ଲିନପରି ଏସିଆର ଟୋକିଓଠାରେ ଭାରତୀୟମାନଙ୍କ ଦ୍ୱାରା କେନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା । ଆମେରିକା ଯୁକ୍ତରାଷ୍ଟ୍ର ଓ ବ୍ରିଟେନ ବିରୁଦ୍ଧରେ ଜାପାନ ଯୁଦ୍ଧ ଘୋଷଣା କରିବା ପର୍ଯ୍ୟନ୍ତ ବର୍ଲିନ ହିଁ ଏପରି ଗୋଟିଏ ମୁଖ୍ୟ କେନ୍ଦ୍ର ଥିଲା । ପରେ ଜାପାନର ସୈନ୍ୟବାହିନୀ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଦେଶଗୁଡ଼ିକଙ୍କ ଉପନିବେଶ ହୋଇଥିବା ବହୁ ଏସୀୟ ଦେଶକୁ ଦଖଲ କରି ବିଜୟୀ ହେଲା । ସେତେବେଳେ ଟୋକିଓ ଭାରତୀୟମାନଙ୍କର ଅନ୍ୟଏକ ମୁଖ୍ୟ କେନ୍ଦ୍ର ଥିଲା ।

ପ୍ରଥମ ମହାସମର କାଳରେ ଭାରତୀୟ ବିପ୍ଳବୀ ରାସ ବିହାରୀ ବୋଷ ଦେଶ ଛାଡ଼ି ଟୋକିଓରେ ରହି ଆସୁଥିଲେ । ଜାପାନୀ ସରକାରଙ୍କ ସାହାଯ୍ୟରେ ପୂର୍ବ-ଏସୀୟ ଦେଶଗୁଡ଼ିକରେ ବାସ କରୁଥିବା ଭାରତୀୟମାନଙ୍କ ସହ ସେ ଯୋଗାଯୋଗ ସ୍ଥାପନ କଲେ । ପ୍ରୀତମ ସିଂ ଏକଦା ଭାରତୀୟ ସୈନ୍ୟ ବାହିନୀରେ ପଦସ୍ଥ ଅଫିସର ଥିଲେ । ଜାପାନର ଗୁଇନ୍ଦା ବାହିନୀ ପ୍ରୀତମ ସିଂହଙ୍କ ଜରିଆରେ ଏସିଆରେ ରହୁଥିବା ଭାରତୀୟ ସୈନ୍ୟମାନଙ୍କ ଭିତରେ ପଶି ସେମାନଙ୍କୁ ନିଜ ପଟକୁ ନେବା ଉଦ୍ୟମ କଲେ ।

୧୯୪୨ରେ ଜାପାନ ସେନାନୀର ମାଳୟ ଯୁଦ୍ଧାଭିଯା ଚାଲିଥିଲା । ସେହି ଅଭିଯାନ କାଳରେ ଭାରତୀୟ କପ୍ତାନ ମୋହନ ସିଂ ଜାପାନ ବାହିନୀ ପାଖରେ ଆତ୍ମସମର୍ପଣ କରିଦେଲେ । ସେତିକି ନୁହଁ ସେ ମଧ ୬୦ ହଜାର ଯାଏ ଭାରତୀୟ ସୈନ୍ୟ ଓ ସେମାନଙ୍କ ପାଖରେ ଅକ୍ଷତ ଥିବା ସକଳ ଯୁଦ୍ଧାସ୍ତ୍ର, ସାଜ ସରଂଜାମକୁ ଘେନି ଏକ ବ୍ରିଟିଶ ବିରୋଧୀ ସୈନ୍ୟ ୟୁନିଟ ଗଠନର ସୂଚନା ଜାପାନୀ କର୍ତ୍ତୃପକ୍ଷଙ୍କୁ ଦେଲେ । ଜାପାନ ଏଥବରେ ସଂଗେସଂଗେ ଏକମତ ହେଲା । ବ୍ରିଟିଶ ବିରୁଦ୍ଧରେ ଲଢ଼େଇରେ ଭାରତୀୟ ସୈନ୍ୟଙ୍କ ନିୟୋଗର ରଣକୌଶଳକୁ ଜାପାନ କାର୍ଯ୍ୟକାରୀ କରିବାକୁ ଲାଗିଲା । ସାମରିକ କ୍ଷେତ୍ରରେ ପ୍ରୀତମ ସିଂହ ଓ ମୋହନ ସିଂହ ବ୍ରିଟିଶ ବିରୁଦ୍ଧରେ ଜାପାନକୁ ଏପରି ସାହାଯ୍ୟ ଦେବାବେଳେ ରାସବିହାରୀ ବୋଷ ରାଜନୈତିକ କ୍ଷେତ୍ରରେ ସାହାଯ୍ୟ ପ୍ରଦାନ କରିଥିଲେ । ଏହାହିଁ ଭାରତୀୟ ଜାତୀୟ ବାହିନୀ ପ୍ରତିଷ୍ଠାର ମୂଳଦୂଆ ହେଲା । ରାସବିହାରୀ ବୋଷ ଟୋକିଓରେ ଇଣ୍ଡିଆ ଇନଡ଼ିପେଣ୍ଡେନ୍ସ ଲିଗ ନାମକ ଏକ ରାଜନୈତିକ ସଂଗଠନ ଗଠନକରି ଦକ୍ଷିଣ ପୂର୍ବ ଏସିଆ ଦେଶମାନଙ୍କରେ ରହୁଥିବା ଭାରତୀୟମାନଙ୍କୁ ରାଜନୈତିକ

ଭାବରେ ସଂଗଠିତ କରିବାର ଉଦ୍ୟମ କରିଥିଲେ । ଜାପାନୀ ସରକାର ଏମାନଙ୍କୁ ସବୁମତେ ସାହାଯ୍ୟ ସହଯୋଗ ଓ ଉତ୍ସାହ ଦେଲା ।

ଦୃଷ୍ଟାନ୍ତସ୍ୱରୂପ, ଜାପାନର ଆକାସାକାରେ ଥିବା ସାନ୍ନୋ ହୋଟେଲରେ ଜାପାନ ସରକାର ଭାରତୀୟ ସ୍ୱାଧୀନତା ସମ୍ମିଳନୀ ସଂଗଠିତ କରିଥିଲା । ଏହି ସମ୍ମିଳନୀରେ ଦକ୍ଷିଣ ପୂର୍ବ ଏସିଆରେ ବାସ କରୁଥିବା ବିଶିଷ୍ଟ ବ୍ୟକ୍ତିମାନେ ଏକତ୍ର ହୋଇଥିଲେ । ଏଥିରେ ଯୋଗ ଦେଇଥିବା ନାମଜାଦା ଭାରତୀୟ ହେଲେ, ମାଳୟ କେନ୍ଦ୍ର ଭାରତୀୟ ଆସୋସିଏସନର ସଭାପତି ତଥା ପେନାଙ୍ଗର ସୁପ୍ରିମକୋର୍ଟ ଅଧିବକ୍ତା ଏନ.ରାଘବନ; ସିଙ୍ଗାପୁର ସୁପ୍ରିମକୋର୍ଟର ଅଧିବକ୍ତା କେ.ପି.କେଶବ ମେନନ; ସିଂଗାପୁରର ଅନ୍ୟତମ ସୁପ୍ରିମକୋର୍ଟ ଏଡ୍‌ଭୋକେଟ ତଥା ସିଙ୍ଗାପୁର ଯୁବ୍‌ଲିଗର ପ୍ରେସିଡେଣ୍ଟ ଏସ.ସି.ପୋଲୋ । ଏହି ସମ୍ମିଳନୀରେ ଭାରତୀୟ ସୈନ୍ୟ ବାହିନୀର ପ୍ରତିନିଧିତ୍ୱ କରୁଥିଲେ କପ୍ତାନ ମୋହନ ସିଂ, ଲେଫ୍‌ଟନାଣ୍ଟ କର୍ଣ୍ଣେଲ ଏନ.ଏସ.ଗିଲ ଓ ଅନ୍ୟମାନେ । ରାସବିହାରୀ ବୋଷ ଏହି ସମ୍ମିଳନୀକୁ ସଫଳ କରିବା ଲାଗି ବିଶେଷ ପରିଶ୍ରମ କରିଥିଲେ ।

ଭାରତୀୟ ପ୍ରତିନିଧିମାନଙ୍କ ମଧ୍ୟରେ ଦୁଇ ପ୍ରକାରର ଦୃଷ୍ଟିଭଂଗୀ ପ୍ରକାଶ ପାଇଥିଲା । ଜାପାନ ସରକାର ପକ୍ଷରୁ ପ୍ରସ୍ତାବ ଥିଲା ଯେ ଦକ୍ଷିଣପୂର୍ବ ଏସିଆରେ ରହୁଥିବା ଭାରତୀୟମାନେ ଭାରତ ସ୍ୱାଧୀନତା ଲିଗ ଗଠନ କରନ୍ତୁ ଏବଂ ଜାପାନ ସହତ ସହଯୋଗ କରନ୍ତୁ । ରାସ ବିହାରୀ ବୋଷ ଏଥିରେ ଦ୍ୱିଧା ନରଖି ସହମତ ହେଲେହେଁ ମାଳୟରୁ ଆସିଥିବା ଭାରତୀୟ ପ୍ରତିନିଧିମାନେ ଜାପାନର ମତଲବ ଓ ଲକ୍ଷ୍ୟ ଉଦ୍ଦେଶ୍ୟ ସଂପର୍କରେ ଅବଗତ ହେବାକୁ ଚାହିଁ ସତର୍କ ରହିଲେ । ନୂତନକରି ଭାରତୀୟ ଜାତୀୟ ବାହିନୀ ଗଠିତ ହେଲା । ମାତ୍ର ସଂଗଠନ ଭିତରେ ମତ ପାର୍ଥକ୍ୟ ଜାରି ରହିଲା । ବିଶେଷତଃ କପ୍ତାନ ମୋହନସିଂହ ଜାପାନୀ ମତଲବକୁ ସନ୍ଦେହ କଲେ । ଚୀନ କୋରିଆରେ ଜାପାନ ଯାହା କରିଆସିଛି, ତାହାହିଁ ତାଙ୍କୁ ସନ୍ଦେହରେ ପକାଇଥିଲା ।

ପ୍ରଥମ ସମ୍ମିଳନୀଟି ଏକ ଉଦବୋଧନୀ ସମ୍ମିଳନୀ ହୋଇଥିଲା । ୧୯୪୨ ଜୁନ ୧୫ ତାରିଖରେ ଶ୍ୟାମଦେଶ ରାଜଧାନୀ (ଜାପାନ ଅଧିକୃତ)ଠାରେ ବଡ଼ ଧରଣର ସମ୍ମିଳନୀ ଅନୁଷ୍ଠିତ ହେଲା । ଏଥିରେ ଦୁଇ ହଜାର ଭାରତୀୟ ଯୋଗ ଦେଇଥିଲେ । ସାଧାରଣ ଜନତା ଲାଗି ସମ୍ମିଳନୀର ଦ୍ୱାର ଉନ୍ମୁକ୍ତ ଥିଲା । ଏହି ସମ୍ମିଳନୀକୁ ହିଟଲର ଜର୍ମାନୀ, ମୁସୋଲିନଙ୍କ ଇଟାଲୀର ପ୍ରତିନିଧି, ଜାପାନର ଟୋଜୋ ସରକାରଙ୍କ ପ୍ରତିନିଧି, ଓ ଶାମଦେଶ ପ୍ରତିନିଧି ଯୋଗ ଦେଇଥିଲେ ।

ଏହି ସମ୍ମିଳନୀରେ ତ୍ରିରଙ୍ଗା ପତାକା ଉତ୍ତୋଳିତ ହୋଇଥିଲା ଏବଂ ପୂର୍ଣ୍ଣ ସ୍ୱାଧୀନତା ହାସଲ ଭାରତର ଲକ୍ଷ୍ୟବୋଲି ବିଘୋଷିତ ହୋଇଥିଲା । ସମ୍ମିଳନୀରେ ରାସ ବିହାରୀ ବୋଷ ଅଧକ୍ଷତା କରିଥିଲେ ଓ ବହୁ ବକ୍ତା ଆଲୋଚନାରେ ଭାଗ ନେଇଥିଲେ । ଭାଷଣ ପ୍ରସଙ୍ଗରେ

ଅନେକ ପ୍ରତିନିଧି ଜାପାନର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ଘେନି ସନ୍ଦେହ ପ୍ରକାଶ କରିଥିଲେ । କେତେକ, ଶତ୍ରୁପକ୍ଷର ଭାଷା ଇଂରେଜୀରେ ଆଲୋଚନା ଚାଲିବାର ପ୍ରତିବାଦ କରିଥିଲେ ।

ସମ୍ମିଳନୀ ଭାରତୀୟ ସ୍ୱାଧୀନତା ଲିଗର ଅଧ୍ୟକ୍ଷରୂପେ ରାସ ବିହାରୀ ବୋଷଙ୍କୁ ନିର୍ବାଚିତ କରିଥିଲା । ଏକ କର୍ତ୍ତୃତ୍ୱସଂପନ୍ନ ସଂଗ୍ରାମ କମିଟି ହାତରେ ସମସ୍ତ କର୍ତ୍ତୃତ୍ୱ ଅର୍ପିତ ହୋଇଥିଲା । ଏଥିରେ ରହିଲେ ରାଘବନ, କେଶବ ମେନନ, କପ୍ତାପ ମୋହନ ସିଂହ ଏବଂ ଲେପ୍ଟନାଣ୍ଟ କର୍ଣ୍ଣେଲ ଗିଲାନି ।

ଐକ୍ୟ, ବିଶ୍ୱାସ ଓ ତ୍ୟାଗ ଏହି ମର୍ମବାଣୀ ଘେନି ସ୍ୱାଧୀନତା ସଂଗ୍ରାମ ଚଳାଇବାର ଶପଥ ନିଆଗଲା । ଆଉ ଏକ ରାଜନୈତିକ ପ୍ରସ୍ତାବରେ ଘୋଷଣା ହେଲା ଯେ, "ଭାରତୀୟ ଜାତୀୟ କଂଗ୍ରେସ ଦ୍ୱାରା ପ୍ରତିନିଧିତ୍ୱ କରୁଥିବା ଜନତାଙ୍କ ଇଚ୍ଛା ବିରୁଦ୍ଧରେ କୌଣସି କାର୍ଯ୍ୟକଳାପ କରାଯିବ ନାହିଁ ।"

ଭାରତୀୟମାନଙ୍କୁ ନେତୃତ୍ୱ ଦେବା ଲାଗି ପୂର୍ବ ଏସିଆକୁ ସୁଭାଷ ବୋଷ ଆସିବାକୁ ସମ୍ମିଳନୀ ପକ୍ଷରୁ ପ୍ରସ୍ତାବ ପାଶକରି ନିମନ୍ତ୍ରଣ କରାଗଲା । ସୁଭାଷ ଚନ୍ଦ୍ର ବୋଷଙ୍କୁ ରାସ ବିହାରୀ ବୋଷ ସମ୍ମିଳନୀ ସଂପର୍କରେ କୌଣସି ସୂତ୍ରରେ ଅବଗତ କରାଇଥିଲେ । ଜର୍ମାନୀରୁ ସେ ମଧ୍ୟ ସମ୍ମିଳନୀକୁ ବାର୍ତ୍ତା ପଠାଇଥିଲେ ।

ସୁଭାଷ ବୋଷଙ୍କ ବାର୍ତ୍ତାରେ ଥିଲା "ବିଦେଶରେ ଅଠର ମାସ ଅବସ୍ଥାନ ଭିତରେ ମୋର ଅଭିଜ୍ଞତା କହେଯେ ବ୍ରିଟିଶ ବିରୋଧୀ ଆମ ସଂଗ୍ରାମରେ ଜର୍ମାନୀ, ଇଟାଲୀ, ଜାପାନ ଆମର ମିତ୍ର ।"

"ମାତ୍ର ଭାରତର ସ୍ୱାଧୀନତା ଆମ ନିଜ ହାତରେ ଅର୍ଜିତ ହେବ । ମୋର ବିଶ୍ୱାସ ସ୍ୱାଧୀନତା ଲାଗି ଆମ ସଂଗ୍ରାମର ଚୂଡ଼ାନ୍ତ ପର୍ଯ୍ୟାୟରେ, ଆମକୁ ଅସ୍ତ୍ରଶସ୍ତ୍ର ଧାରଣ କରିବାକୁ ହେବ । ବିଜୟ ଅର୍ଜନ ଲାଗି ଲଢ଼ିବା ପାଇଁ ଏହି ସମ୍ମିଳନୀ ଏକ ମାଇଲ ଖୁଣ୍ଟ ହେବ ବୋଲି ମୁଁ କାମନା କରୁଛି ।"

ନୂତନ ଭାବରେ ଗଠିତ ଏହି ସଂଗଠନରେ କେତେକ ମତ ପାର୍ଥକ୍ୟର ଉଦଭବ ଘଟିଲା । ଜାତୀୟ ବାହିନୀ ଓ ଭାରତୀୟ ସ୍ୱାଧୀନତା ଲିଗ ମଧ୍ୟରେ ସ୍ପଷ୍ଟ ରୀତିରେ ପାର୍ଥକ୍ୟ ପରିଦୃଷ୍ଟ ହେଲା । ଆନ୍ଦୋଳନଟି ଦ୍ୱିଧା ବିଭକ୍ତ ହୋଇଯିବା ବିପଦ ଦେଖାଦେବାରୁ ଏହାର ନେତୃତ୍ୱ ନେବା ଲାଗି ସୁଭାଷ ବୋଷଙ୍କୁ ନିମନ୍ତ୍ରଣ ପଠାଗଲା । ଦୃଶ୍ୟପଟରେ ସୁଭାଷ ବୋଷ ଆର୍ବିଭୂତ ହୁଅନ୍ତୁ ବୋଲି ଜାପାନ ବ୍ୟଗ୍ର ଥିଲା ।

ଏହି ସମୟରେ ଦ୍ୱିତୀୟ ମହାସମରର ଗତି ଭିନ୍ନ ମୋଡ଼ ନେଉଥାଏ । (ମିତ୍ରଶକ୍ତି ବ୍ରିଟେନ, ଆମେରିକା, ଫ୍ରାନ୍ସ, ସୋଭିଏତ ୟୁନିଅନ) ଉଭୟ ବମାନ ଓ ନୌଯୁଦ୍ଧରେ ଆଗେଇ ଚାଲନ୍ତି । ଜର୍ମାନୀ ନିଜର ଖୁବ୍ ନାମଜାଦା ଇ-ବୋଟ କମାଣ୍ଡର ଓ ନୌ କର୍ମଚାରୀଙ୍କୁ

ନିଯୋଜିତ କରି ଆଫ୍ରିକା ଦେଇ ସୁଭାଷଚନ୍ଦ୍ର ବୋଷଙ୍କୁ ଜାପାନୀ ବୁଡ଼ାଜାହାଜରେ ଟୋକିଓକୁ ପ୍ରେରଣ କରିଥିଲା ।

୧୯୪୩ ମଇ ୨୧ ତାରିଖରେ ସୁବାଷ ବୋଷ ଟୋକିଓରେ ପହଂଚି ଜାପାନ ପ୍ରଧାନମନ୍ତ୍ରୀ ଟୋଜୋଙ୍କ ସହ ସାକ୍ଷାତ୍ କରିବା ଉଦ୍ୟମ କଲେ । ମାତ୍ର ସେହିବର୍ଷ ଜୁନ ୧୦ ତାରିଖ ଯାଏ ଜାପାନ ପ୍ରଧାନମନ୍ତ୍ରୀଙ୍କୁ ସେ ଭେଟି ପାରିନଥିଲେ । ଜୁନ୍ ୧୪ରେ ଜାପାନ ପ୍ରଧାନମନ୍ତ୍ରୀଙ୍କ ସହିତ ସେ ସାକ୍ଷାତ୍ କଲେ । ଜାପାନୀ ପାର୍ଲିଆମେଣ୍ଟ (ଡାଏଟ)କୁ ଜୁନ୍ ୧୬ ତାରିଖରେ ସୁବାଷବୋଷଙ୍କୁ ଆମନ୍ତ୍ରଣ କରାଗଲା । ସୁବାଷ ବୋଷଙ୍କ ପରିଚୟ ଦେଇ ଟୋଜୋ କହିଲେ ଯେ "ଭାରତୀୟ ମାନେ ସ୍ୱାଧୀନତା ହାସଲକରି ମୁକ୍ତି ଓ ସମୃଦ୍ଧି ଉପଭୋଗ କରିବାର ଦିନ ବିଳମ୍ବ ହେବ ନାହିଁ, ଆମର ବିଶ୍ୱାସ ।"

୧୯୪୩ ଜୁନ୍ ୧୯ରେ ଏକ ସାଂବାଦିକ ସମ୍ମିଳନୀକୁ ଉଦବୋଧନ ଦେଇ ସୁଭାଷ ଚନ୍ଦ୍ର ବୋଷ କହିଲେ, "କେବଳ ଏକ ସଶସ୍ତ୍ର ସଂଗ୍ରାମହିଁ ଭାରତକୁ ସ୍ୱାଧୀନତା ଆଣିଦେବ । ତରବାରୀ ଦ୍ୱାରା ତିଷ୍ଠିଥିବା ବ୍ରିଟିଶ ଶାସନକୁ କେବଳ ଅହିଂସ ସଂଗ୍ରାମ ନିକାଲି ଦେବାକୁ ଯଥେଷ୍ଟ ନୁହଁ । ବିଲାତ ହିଁ ପ୍ରଥମେ ତରବାରୀ ପ୍ରୟୋଗ କରିଛି ଏବଂ ତରବାରୀ ଦ୍ୱାରାହିଁ ତାହାର ଧ୍ୱଂସ ସାଧିତ ହେବ ।"

ଜାପାନରେ ସୁଭାଷବୋଷ ମାତ୍ର ୪୦ଦିନ ରହିଥିଲେ । ସେଠାରେହିଁ ସେ ଭାରତର ଅସ୍ଥାୟୀ ସରକାରର ରୂପରେଖ କଣ ହେବ ତାହାର ଚିତ୍ର ଆଙ୍କିଥିଲେ । ଟୋକିଓ ଛାଡ଼ିବା ପୂର୍ବରୁ ସେ ଏକ ବାର୍ତ୍ତା ରେକର୍ଡ଼ କରାଇଥିଲେ । ବାର୍ତ୍ତାଟି ହେଲା, "ଜାପାନକୁ ଆସିଲା ଦିନୁ ମୁଁ ଯେଉଁଠିକି ଯାଇଛି ସେଠାରେ ମୋତେ ଉଚ୍ଛୁସିତ ସମର୍ଦ୍ଧନା ଅର୍ପିତ ହୋଇଛି । ଏହି ଉଷ୍ମ ସମର୍ଦ୍ଧନାକୁ ବ୍ରିଟିଶ ବିରୁଦ୍ଧରେ ସଂଗ୍ରାମ କରୁଥିବା ଭାରତର ୪୦ କୋଟି ଲୋକଙ୍କ ପ୍ରତି ଜାପାନୀ ଲୋକଙ୍କ ସହାନୁଭୂତି ବୋଲି ମୁଁ ବିଚାରେ ।"

୧୯୪୩ ଜୁଲାଇ ୩ ତାରିଖରେ ସିଙ୍ଗାପୁରରେ ସୁଭାଷବୋଷ ଓ ରାସବିହାରୀ ବୋଷ ପହଂଚିଲେ । ସେଠାରେ ଉଚ୍ଛ୍ୱସିତ ସଂବର୍ଦ୍ଧନା ସେମାନଙ୍କୁ ଜ୍ଞାପନ କରାଯାଇଥିଲା । ଜୁଲାଇ ୫ ତାରିଖରେ ରାସବିହାରୀ ବୋଷ ଆନୁଷ୍ଠାନିକ ଭାବରେ ଭାରତୀୟ ସ୍ୱାଧୀନତା ଲିଗର ସଭାପତି ପଦ ଏବଂ ଜାତୀୟ ମୁକ୍ତିବାହିନୀର ପ୍ରଧାନ ସେନାଧକ୍ଷ ପଦ ସୁଭାଷଚନ୍ଦ୍ର ବୋଷଙ୍କୁ ଅର୍ପଣ କରିଥିଲେ । ରାସବିହାରୀ ବୋଷ ଏତେବେଳକୁ ଖୁବ୍ ଅସୁସ୍ଥ ଥିଲେ ।

ବିପ୍ଳବୀ ରାସବିହାରୀ ବୋଷ ୧୯୧୧ରେ ତାଙ୍କ ବୈପ୍ଳବିକ କାର୍ଯ୍ୟ ଆରଂଭ କରି ତତ୍କାଳୀନ ଭାଇସରାୟଙ୍କ ଉପରକୁ ଗୁଳିବର୍ଷଣ କରିଥିଲେ । ସୁଭାଷ ବୋଷଙ୍କୁ ଦାୟିତ୍ୱ ହସ୍ତାନ୍ତର କରିବାର କେତେ ମାସ ମଧ୍ୟରେ ତାଙ୍କର ଦେହାବସାନ ହେଲା ।

ଦକ୍ଷିଣପୂର୍ବ ଏସିଆ ଦେଶମାନଙ୍କରେ ସେତେବେଳେ ତିନି ଲକ୍ଷ ଭାରତୀୟ

ରହୁଥିଲେ । ନରନାରୀ ନିର୍ବିଶେଷରେ ସେମାନଙ୍କୁ ସଂଗଠିତ ହେବାକୁ ଓ ସମସ୍ତ ପ୍ରକାର ସମ୍ବଳ ଯୋଗାଇ ଦେବାକୁ ସୁବାଷ ବୋଷ ଆହ୍ୱାନ ଜଣେଇଲେ । ସୁଭାଷ ବୋଷଙ୍କ ବ୍ୟକ୍ତିତ୍ୱକୁ ସେମାନେ ସମ୍ମାନ ପ୍ରଦର୍ଶନକରି ତାଙ୍କୁ ସବୁମତେ ସାହାଯ୍ୟ କରିଥିଲେ ।

ଖାକି ପୋଷାକ ପିନ୍ଧି ୧୯୪୩ ଜୁଲାଇ ୫ରେ ବୋଷ ଭାରତୀୟ ଜାତୀୟ ବାହିନୀଠାରୁ ସଲାମି (ଗାର୍ଡ଼ ଅଫ ଅନର) ଗ୍ରହଣ କରିଥିଲେ । ଏହି ସଲାମି ପାରେଡ଼ର ନେତୃତ୍ୱ ନେଇଥିଲେ, କମାଣ୍ଡର ଭୌଁସଲେ ।

ସଲାମି ଉତ୍ସବ ଅନ୍ତେ ସୈନ୍ୟମାନଙ୍କୁ ଉଦବୋଧନ ଦେଇ ସୁଭାଷ ବୋଷ କହିଥିଲେ, "ଆଜି ଭାରତୀୟ ଜାତୀୟ ମୁକ୍ତି ବାହିନୀରେ ଥାଇ ମୋ ଜୀବନର ମହା ଗର୍ବର ଦିବସ । ଆଜି ମୋତେ ଭାଗ୍ୟ ସଦୟ ହୋଇ ଏକ ଅନନ୍ୟ, ଅତୁଳନୀୟ ସୁଯୋଗ ଓ ସମ୍ମାନ ଦେଇଛି ଯେ ମୁଁ ସାରା ପୃଥିବୀକୁ ଭାରତୀୟ ଜାତୀୟ ମୁକ୍ତିବାହିନୀର ଜନ୍ମ କଥା ଜଣାଇବି । ସାଥୀଗଣ, "ଦିଲ୍ଲୀ ଚଲୋ" ହେଉ ଆପଣମାନଙ୍କର ରଣଡ଼ାକ । ଅନ୍ଧାରରେ ଅବା ଆଲୋକରେ, ଦୁଃଖ ଅବା ଆନନ୍ଦରେ, ଯାତନାରେ ଅବା ବିଜୟରେ ମୁଁ ଆପଣମାନଙ୍କ ସଂଗରେ ରହିବି ବୋଲି ପ୍ରତିଶ୍ରୁତି ଦେଉଛି । ବର୍ତ୍ତମାନ କ୍ଷୁଧା, ପିପାସା, ଯନ୍ତ୍ରଣା ଭରା କଡ଼ା ମାର୍ଚ୍ଚିଂ ଆଦେଶ ଦେଉଛି । ମୃତ୍ୟୁ ବ୍ୟତିରେକ ଆଉ କିଛି ଦେଇପାରୁନାହିଁ ।"

୧୯୪୩ ଜୁଲାଇ ୯ ତାରିଖରେ ଏକ ବିଶାଳ ଜନ ସମାବେଶ ସଂଗଠିତ ହେଲା । ସେଠାରେ ଜନତାଠାରୁ ସୁଭାଷବୋଷ ୩ ଲକ୍ଷ ସୈନିକ ଓ ୩ କୋଟି ଡଲାର ଚାହୁଁଛନ୍ତି ବୋଲି ଆବେଦନ କରିଥିଲେ ।

## ମହିଳା ବାହିନୀ ଗଠନ

ଲକ୍ଷ୍ମୀ ଶେଗଲଙ୍କ ଉକ୍ତି ଅନୁସାରେ ପ୍ରଥମ ସାଧାରଣ ସଭାରେ ସୁଭାଷବୋଷ ରାଣୀ ଝାନସି ରେଜିମେଣ୍ଟର ମହିଳା ବାହିନୀ ଗଠନ କରିବାକୁ ଆହ୍ୱାନ ଦେଇଥିଲେ । ସଭାମଂଚ ଆଡ଼କୁ ସହସ୍ର ସହସ୍ର ମହିଳା ମାଡ଼ି ଆସି ସଂଗେସଂଗେ ସ୍ୱେଚ୍ଛାସେବିକା ହେବା ଲାଗି ପ୍ରସ୍ତୁତି ଜଣେଇଲେ । ଭାରତର ମହିଳାମାନେ ଯାହା ଜାଣନ୍ତି ତାହା ବ୍ୟତିରେକ ଆଉ କିଛି ମୁଁ ମାଗୁ ନାହିଁ ବୋଲି କହି ଝାନ୍‌ସି ରାଣୀ ଲକ୍ଷ୍ମୀ ବାଈ ଏବଂ ଅସ୍ୱଧାରଣ କରି ବ୍ରିଟିଶ ବିରୁଦ୍ଧରେ ଲଢ଼ିଥିବା ଅନ୍ୟ ମହିଳାମାନଙ୍କ ନାମ ଘୋଷଣା କଲେ । ବଂଗଳାର ତରୁଣୀ ବିପ୍ଳବିନୀ କୋମିଲାର ଶାନ୍ତି ଓ ସୁନୀତି, ଚିଟାଗଂଗର କଳ୍ପନା ଦତ୍ତ (ଯୋଷୀ) ଏବଂ ପ୍ରୀତିଲତା ଓ୍ୱାଦିୟାରଙ୍କ ଦୃଷ୍ଟାନ୍ତ ବାଢ଼ିଥିଲେ ବୋଷ । ମହାତ୍ମାଗାନ୍ଧୀଙ୍କୁ ଜାତିର ପିତା ବୋଲି ମାନନ୍ତି ବୋଲି ସେ ଉପସ୍ଥିତ ଜନତାକୁ ଜଣାଇବା ସଂଗେସଂଗେ କହିଲେ ଯେ ମାତ୍ର ଏପରି ସମୟ ଜୀବନରେ ଆସେ, ଯେତେବେଳେକି ନୀତିଗତ ବ୍ୟାପାରରେ ଜଣେ ପୁତ୍ର ପିତାଙ୍କ ଠାରୁ ଭିନ୍ନ ମତ ପୋଷଣ କରେ । ସେପରି ସମୟ ଆସିଛି । କେବଳ ସଶସ୍ତ୍ର ସଂଗ୍ରାମ ମାଧ୍ୟମରେହିଁ

ଭାରତରେ ବ୍ରିଟିଶ ଶାସନ ଉପରେ ଚରମ ଆଘାତ ଦେବା ସମ୍ଭବ, ଏହା ମୋର ଦୃଢ଼ ବିଶ୍ୱାସ । ଭାରତୀୟ ଜାତୀୟ ବାହିନୀ ଆଇ.ଏନ.ଏ ହିଁ ଏହି ମସରର ଦୁନ୍ଦୁଭି ।

ଝାନସୀ ରାଣୀ ରେଜିମେଣ୍ଟ ଏକ ପଦାତିକ ରେଜିମେଣ୍ଟ । ୧୯୪୪ ମସିହାର ପ୍ରଥମ ଭାଗରେ ସିଂଗାପୁରରୁ ଏହି ରେଜିମେଣ୍ଟକୁ ବର୍ମା ପଠାଯାଇଥିଲା । ଏଠାରେ ଆଉ ଏକ ଶାଖା ତାଲିମ ନେଲା । ଇମ୍ଫାଲ ଉପରେ ଅଭିଯାନ କରିବା ଲାଗି ପ୍ରଥମ ଶାଖାକୁ ପଠାଗଲା । କିନ୍ତୁ ସଅଳ ମୌସୁମୀ ବର୍ଷା ଆସିଯିବାରୁ ଏହି ଶାଖାର ଅଭିଯାନ ସଫଳ ହେଲା ନାହିଁ ।

"ଚିଟାଗଂଗ ପାର୍ବତ୍ୟାଂଚଳ ଦେଇ ଭାରତରେ ପ୍ରବେଶ କରିବାର ସୁଯୋଗ ଜାପାନ ଦେବାଲାଗି ସୁଭାଷବୋଷ ବହୁ ଉଦ୍ୟମ କରିଥିଲେ" ବୋଲି ଲକ୍ଷ୍ମୀ ସାଇଗଲ ଲେଖିଥିଲେ । ନେତାଜୀ ଭାବିଥିଲେ, ଏହି ଅଚଂଳରେ ବ୍ରିଟିଶ ପକ୍ଷରୁ ଦୁର୍ବଳତା ରହିଛି । ଭାରତ ମାଟିରେ ଆଇ.ଏନ.ଏ ବାହିନୀ ପ୍ରବେଶ କଲେ ସମଗ୍ର ଭାରତ, ବିଶେଷ ଭାବରେ ବଂଗଳା ଉପରେ ମାନସିକ ପ୍ରଭାବ ପଡ଼ିବ । ଏହାହିଁ ନେତାଜୀ ବିଚାରୁଥିଲେ ବୋଲି ଲକ୍ଷ୍ମୀ ଶେଗଲଙ୍କ ମତ । ମାତ୍ର ଜାପାନ ଏପରି ସୁଯୋଗ ଦେଇନଥିଲା । ଯୁଦ୍ଧାଭିଯାନ ଚଳେଇ ୪ ହଜାର ଭାରତୀୟ ମୁକ୍ତିବାହିନୀର ସୈନ୍ୟ ପ୍ରାଣବଳି ଦେଇଥିଲେ । ଭାରତର ପୂର୍ବସୀମାନ୍ତରେ ପହଂଚିବାକୁ ମାତ୍ର ଦେଢ଼ଶହ ମାଇଲଥାଏ, ଏତିକିବେଳେ ବିଶ୍ୱଯୁଦ୍ଧ ଏକ ଭିନ୍ନ ମୋଡ଼ ନେଲା । ଇମ୍ଫାଲହିଁ ଆଇ.ଏନ.ଏର ପ୍ରଥମ ଲକ୍ଷ୍ୟ ଥିଲା । ମାତ୍ର ଜାପାନ ଅସ୍ତ୍ରଶସ୍ତ୍ର ଓ ଆବଶ୍ୟକ ପଦାର୍ଥ ଯୋଗାଇ ନ ପାରିବାରୁ ଅଭିଯାନ ଅସଫଳ ହେଲା । ଅବଶ୍ୟ ବର୍ଷାକାଳ ଆରଂଭ ହୋଇଗଲା ।

ଭାରତରେ ଏଣେ ଦମନ, ଗିରଫ, ଗୁଳି ଯୋଗେ ବ୍ରିଟିଶ କର୍ତ୍ତୃପକ୍ଷ ଅଗଷ୍ଟ ଆନ୍ଦୋଳନକୁ ଦବେଇ ଦେଇଥିଲା । ବ୍ରିଟିଶ ବାହିନୀ ଜାପାନକୁ ପରାସ୍ତକରି ପୁଣି ବର୍ମା, ମାଲୟ ଓ ସିଂଗାପୁରକୁ ଦଖଲ କରିଗଲା । ଭାରତ ସମେତ ଏହି ସବୁ ଦେଶପରେ ବହୁ ସଂଗ୍ରାମକରି ସ୍ୱାଧୀନ ହେଲେ । ତାହା ଏକ ଦୀର୍ଘ ଇତିହାସ । ବର୍ମା, ମାଲୟ, ସିଙ୍ଗାପୁର ଅଧିବାସୀ ମଧ୍ୟ ଜାପାନୀ ଅଧିକାର ଓ କର୍ତ୍ତୃତ୍ୱ ବିରୁଦ୍ଧରେ ସଂଗ୍ରାମ କରୁଥିଲେ । ବ୍ରିଟିଶ ସାମ୍ରାଜ୍ୟବାଦ ହାତରୁ ଯାଇ ଜାପାନର କର୍ତ୍ତୃତ୍ୱାଧୀନ ହେବାର ସେମାନେ ବିରୋଧ କରିଥିଲେ ।

ଆଇ.ଏନ.ଏ ର ଅଭିଜ୍ଞତା ମଧ୍ୟ ବ୍ରିଟିଶ କର୍ତ୍ତୃପକ୍ଷଙ୍କୁ ସତର୍କବାଣୀ ଶୁଣାଇଦେଲା- ଯେଉଁ ଭାରତୀୟ ସୈନ୍ୟଙ୍କୁ ବ୍ରିଟିଶ ସାମ୍ରାଜ୍ୟବାଦ ଭଡ଼ାଟିଆ, ଦରମାଖିଆ ସୈନିକ ବୋଲି ବିଚାରୁଥିଲା, ସେହି ସୈନ୍ୟମାନେ ବ୍ରିଟିଶ ବିରୁଦ୍ଧରେ ବନ୍ଧୁକ ଧରିଲେ । ମୁକ୍ତି ଆନ୍ଦୋଳନରେ ଆଇ.ଏନ.ଏ ବୀର ସୈନିକମାନଙ୍କର ଅବଦାନ, ଆଇ.ଏନ.ଏ. ବନ୍ଦୀମାନଙ୍କ ଲାଲକିଲ୍ଲାରେ ବିଚାର ଓ ସାରା ଭାରତରେ ଏହି ବିଚାର-ବିରୋଧୀ ଜନ ବିକ୍ଷୋଭର ବୃତାନ୍ତ ଅବିସ୍ମରଣୀୟ ।



# ଭାରତୀୟ ନୌସେନା ବିଦ୍ରୋହ, ୧୯୪୬ ଫେବୃଆରୀ ୧୮

ପୃଥିବୀବ୍ୟାପୀ ଖ୍ୟାତିଲାଭ କରିଥିବା ଭାରତର ନୌବିଦ୍ରୋହ ୧୪୪୬ ଫେବୃଆରୀ ୧୮ ତାରିଖରେ ବମ୍ବେରେ ଆରଂଭ ହୋଇଥିଲା । ବ୍ରିଟିଶ ସାମ୍ରାଜ୍ୟବାଦୀ ଦାସତ୍ୱ ଉପରେ ଏହା ଥିଲା ଚରମ ଆଘାତ । ଏ ଯାଏ ବ୍ରିଟିଶ ସାମରିକ ବାହିନୀରେ ଥିବା ଭାରତୀୟ ସ୍ଥଳ ସେନା ଓ ଜଳ ସେନା (ନୌ)ଙ୍କୁ ଆମ ଦେଶବାସୀଙ୍କଠାରୁ ଅଲଗା ରଖାଯାଉଥିଲା ।

ବମ୍ବେ ବନ୍ଦରରେ ଅବସ୍ଥାପିତ ତଲବାର ନାମକ ପୋତର ନାବିକମାନେ ପ୍ରଥମେ ବିଦ୍ରୋହର ଧ୍ୱଜା ଉତ୍ତୋଳନ କଲେ । ବିଦ୍ରୋହୀ ନାବିକମାନଙ୍କର ଦାବୀଗୁଡ଼ିକରେ ଥିଲା-

(୧) ଗିରଫ କରାଯାଇଥିବା ନୌସୈନିକଙ୍କ ସମେତ ଭାରତର ସବୁ ରାଜନୈତିକ ବନ୍ଦୀଙ୍କ ମୁକ୍ତି;

(୨) ନାବିକମାନଙ୍କୁ ଅଭଦ୍ର ଭାଷାରେ ଗାଳିଗୁଲଜ କରିଥିବା ତଲବାର ଜାହାଜର କମାଣ୍ଡରଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ;

(୩) ତୁରନ୍ତ ନାବିକମାନଙ୍କୁ ଯୁଦ୍ଧ କାମରୁ ଅବ୍ୟାହତି ଏବଂ ଶାନ୍ତିକାଳୀନ ପୁନଃ ଥଇଥାନର ବ୍ୟବସ୍ଥା ଗ୍ରହଣ;

(୪) ରୟଲ ନୌବାହିନୀର ଗୋରାକଳା ନିର୍ବିଚାରରେ ସମାନ ଦରମା ଓ ଭତ୍ତା;

(୫) ଏନ.ଏ.ଏ.ଏଫ୍.ଆଇ କାଣ୍ଟିନ୍‌କୁ ଭାରତୀୟ ନୌସେନାଙ୍କ ପ୍ରବେଶାଧିକାର;

(୬) ଉତ୍ତମ ଖାଦ୍ୟ;

(୭) କାମରୁ ଅବ୍ୟାହତି ନେବାବେଳ ପୋଷାକପତ୍ର ଫେରସ୍ତ ପ୍ରଥା ବନ୍ଦ ।

(୮) ଇନ୍ଦୋନେସିଆରୁ ଭାରତୀୟ ସୈନ୍ୟମାନଙ୍କ ପ୍ରତ୍ୟାହାର ।

ଏସବୁ ଦାବୀକୁ ପୂରଣ କରିବା ଦୂରେ ଥାଉ, ବ୍ରିଟିଶ 'ସେନା କର୍ତ୍ତୃପକ୍ଷ' ସେମାନଙ୍କୁ ନେଇ କାସେଲ ବାରାକ୍‌ରେ ଅଟକ କଲା ଓ ସେମାନଙ୍କ ଆତ୍ମ ସମର୍ପଣ ଦାବୀ କଲା ।

ନାବିକମାନେ ଆତ୍ମ ସମର୍ପର କରିବାକୁ ନାସ୍ତି କରିଦେଲେ । ସେମାନଙ୍କ ଦ୍ୱାରା ଏକ କେନ୍ଦ୍ରିୟ ଧର୍ମଘଟ କମିଟି ଗଢ଼ାଗଲା ଓ ଭାରତର ଜନତାକୁ ଓ ଦେଶର

ରାଜନୈତିକ ନେତାମାନଙ୍କୁ ସମର୍ଥନ ଓ ସହାୟତା ଲାଗି ନିବେଦନ କରାଗଲା । ବିଶେଷଭାବରେ ଭାରତୀୟ ଜାତୀୟ କଂଗ୍ରେସ, କମ୍ୟୁନିଷ୍ଟ ପାର୍ଟି ଓ ମୁସଲିମ ଲିଗକୁ ସେମାନେ ଆବେଦନ କଲେ ।

ନାବିକମାନଙ୍କୁ ସମର୍ଥନ ଜଣାଇ ଭାରତୀୟ ବିମାନବାହିନୀ ଏବଂ ପଶ୍ଚିମ ବଂଗର ଯଶୋରଠାରେ ଅବସ୍ଥିତ ବିମାନବାହିନୀର ୧୦ମ ୟୁନିଟ ମଧ୍ୟ ଦାବୀପତ୍ର ପେଶ କଲେ ।

କଂଗ୍ରେସ କାର୍ଯ୍ୟକାରୀ କମିଟିର ଏକ ବୈଠକରେ ଅରୁଣା ଆସଫଅଲିହିଁ କେବଳ ନୌବାହିନୀରେ ବିଦ୍ରୋହକୁ ପୂର୍ଣ୍ଣ ସମର୍ଥନ କରି ବିବୃତି ଦେଲେ । ସର୍ଦ୍ଦାର ପଟେଲ ଏହାକୁ ନିନ୍ଦା କରି ବିବୃତି ଦେଇ କହିଲେ ଯେ "ଏହା ଅରାଜକତା, ତୁରନ୍ତ ବନ୍ଦ ହେବା ଉଚିତ । ନୌବାହିନୀ ବିଦ୍ରୋହକୁ ସମର୍ଥନ କରୁଥିବା ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଦେଶକୁ ଏକ ଭୁଲ ନେତୃତ୍ୱ ଦେଉଛି । ସୈନ୍ୟବାହିନୀ ଭିତରେ ଶୃଙ୍ଖଳା ରକ୍ଷା କଥାରେ ମୁଁ ସେନାଧ୍ୟକ୍ଷଙ୍କ ସହିତ ଏକମତ ।"

ସର୍ଦ୍ଦାର ପଟେଲଙ୍କ ଉକ୍ତିକୁ ଉଦ୍ଧାରକରି ଭାଇସରାୟ ଲର୍ଡ଼ ଓ୍ୟାଭେଲଙ୍କୁ ୧୯୪୬ ଫେବୃଆରୀ ୨୬ରେ ବମ୍ବେର ଗଭର୍ଣ୍ଣର କୋଲଭିଲେ ଲେଖିଲେ ଯେ "ଆର.ଆଇ.ଏନ. ବିଦ୍ରୋହୀମାନଙ୍କୁ ଦଣ୍ଡ ଦେବା ଉଚିତ ବୋଲି ବଲ୍ଲଭଭାଇ ସ୍ୱୀକାର କରିଛନ୍ତି । କଂଗ୍ରେସ ନେତାମାନଙ୍କର ଦୃଢ଼ ବିଶ୍ୱାସରେ ଗଣ୍ଡଗୋଳିଆ ଅବସ୍ଥା ସୃଷ୍ଟି କରିବା କମ୍ୟୁନିଷ୍ଟମାନଙ୍କର ମତଲବ । ବାମପନ୍ଥୀମାନଙ୍କ ଉପରେ ନିୟନ୍ତ୍ରଣ ହରାଇବା ବିପଦରେ ପଡ଼ିଛି ବୋଲି କଂଗ୍ରେସ ଅନୁଭବ କରେ ।"

ଲିଗ ନେତା ମହମ୍ମଦ ଅଲି ଜିନ୍ନା କହିଲେ, "ଏହା ସମୟୋପଯୋଗୀ ନୁହଁ, ବରଂ ଏହା ଦାୟିତ୍ୱହୀନତା ।"

ବମ୍ବେ ରାଜ ରାସ୍ତାରେ ତିନି ଶତାଧିକ ନିହତ

ଅରୁଣା ଆସଫ ଅଲି ଏହାକୁ ଦେଶବ୍ୟାପୀ ଏକ ବିଦ୍ରୋହରେ ପରିଣତ କରିବାକୁ ଆହ୍ୱାନ ଦେଲେ । ନୌବାହିନୀର ବିଦ୍ରୋହୀମାନେ କରାଚୀ, କଲିକତା ଓ ବମ୍ବେରେ ବାରିକେଡ଼ମାନ ତିଆରି କଲେ । ଗାନ୍ଧିଜୀ "ବାରିକେଡ଼ଗୁଡ଼ିକ ଉଠାଇ ଦିଅ" ଆହ୍ୱାନ ଦେବା ସଂଗେସଂଗେ ମତ ଦେଲେଯେ "ଏହା ସ୍ୱରାଜର କଫିନରେ ଏକ କଣ୍ଟା । ହିଂସାତ୍ମକ କାର୍ଯ୍ୟକଳାପ ଲାଗି ହିନ୍ଦୁ, ମୁସଲମାନ ଓ ଅନ୍ୟମାନଙ୍କ ମେଣ୍ଟ ଅସାଧୁ ଓ ଭାରତ ପାଇଁ ହିତକର ନୁହଁ ।" କିନ୍ତୁ ଏସବୁ ସତ୍ତ୍ୱେ ନୌସେନାମାନେ ଅଟଳ ରହିଲେ ।

ନୌବିଦ୍ରୋହୀମାନଙ୍କ ସମର୍ଥନରେ ବମ୍ବେ, କରାଚୀ, କଲିକତା ପ୍ରଭୃତିରେ ବିଶାଳ ବିଶାଳ ବିକ୍ଷୋଭ ହୋଇଥିଲା । ବମ୍ବେରେ ସର୍ବାତ୍ମକ ଶ୍ରମିକ ଧର୍ମଘଟ ହୋଇଥିଲା ।

ନାବିକମାନଙ୍କ ସମର୍ଥନରେ ହଜାର ହଜାର ସଂଖ୍ୟାରେ ଶ୍ରମିକ, ଯୁବକ, ଛାତ୍ର ବିଦ୍ରୋହୀ ନାବିକମାନଙ୍କ ସହ ଏକତ୍ର ମିଶି ହାତରେ କଂଗ୍ରେସ, ମୁସଲିମ ଲିଗ ଓ କମ୍ୟୁନିଷ୍ଟ ପତାକା ଧରି ରାସ୍ତାଘାଟ ଅବରୋଧ କରି ଦେଲେ । ବ୍ରିଟିଶ ସୈନ୍ୟବାହିନୀ ରକ୍ତମୁଖା ହୋଇ ଅବାରିତ ଗୁଳି ଚଳାଇଲା । "ବମ୍ବେ ମହାନଗରୀରେ ସେ ଦିନ ଗୁଳିରେ ୩ଶହ ଭାରତୀୟ ନିହତ ହେଲେ । ଶିଖ, ହିନ୍ଦୁ, ମୁସଲମାନ, ପାର୍ଶି ସବୁ ସଂପ୍ରଦାୟର ଏ.ଯୁବକ, ଶ୍ରମିକ, ଛାତ୍ର, କର୍ମଚାରୀମାନଙ୍କର ରକ୍ତ ମିଶି ଏକାକାର ହୋଇଗଲା ।

ଖାଲି ଭାରତୀୟ ନୌସେନା ଯେ ଧର୍ମଘଟ କଲେ, ସେତିକି ନୁହଁ । ଠିକ୍ ସେତେବେଳେ ଦିଲ୍ଲୀରେ ପୁଲିସ କନେଷ୍ଟବଳ ବାହିନୀ ଓ କରାଚୀରେ ବିମାନବାହିନୀର ଭାରତୀୟମାନେ ଧର୍ମଘଟ କଲେ । ଏ ଯାଏ ଭାରତରେ ବ୍ରିଟିଶ କର୍ତ୍ତୃତ୍ୱ ବିରୁଦ୍ଧରେ ୧୮୫୭ପରେ ସୈନ୍ୟ ଓ ପୁଲିସ ବିଦ୍ରୋହ କରିନଥିଲେ । ଲଣ୍ଡନରେ ବ୍ରିଟିଶ କର୍ତ୍ତୃପକ୍ଷ ବିବ୍ରତ ହୋଇପଡ଼ିଲେ ।

ଫେବୃଆରୀ ୧୯ ତାରିଖ ମଧ୍ୟରାତ୍ରିରେ ବିଲାତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଅଟଲି ଏକ ଘୋଷଣାକଲେ ଯେ କ୍ଷମତା ହସ୍ତାନ୍ତର ସଂପର୍କରେ ଭାରତୀୟମାନଙ୍କ ସହିତ ଆଲୋଚନା କରିବା ଲାଗି ଭାରତକୁ ଏକ କାବିନେଟ ମିଶନ ଯାଉଛି ।

କଂଗ୍ରେସ ଓ ମୁସଲିମ ଲିଗର ନେତାମାନେ ନୌବାହିନୀକୁ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ପାଖରେ ଆତ୍ମ-ସମର୍ପଣ କରିବା ଲାଗି ପରାମର୍ଶ ଦେଲେ ।

ଏହିପରି ପରିସ୍ଥିତିରେ ନାବିକମାନେ ଆତ୍ମସମର୍ପଣ କରିବାର ନିଷ୍ପତ୍ତି ନେଲେ । ମାତ୍ର ବ୍ରିଟିଶ କର୍ତ୍ତୃପକ୍ଷଙ୍କ ପାଖରେ ନୁହେଁ-

"ଆମେ ଭାରତମାତାର ପାଦତଳେ ଆତ୍ମସମର୍ପଣ କରୁଛୁ" ଧ୍ୱନି ଦେଇ ସେମାନେ ଅସ୍ତ୍ରଶସ୍ତ୍ର ସମର୍ପଣ କରିଥିଲେ । ଏହାହିଁ ସେମାନଙ୍କ ଦେଶପ୍ରୀତିର ଅଲିଭା ସ୍ୱାକ୍ଷର । ବରଂ ଭାରତରେ ନୌବିଦ୍ରୋହ ବ୍ରିଟିଶ କଫିନରେ ଶେଷ କଣ୍ଟା ସଦୃଶ କାର୍ଯ୍ୟ କଲାବୋଲି ଇତିହାସ ଇଙ୍ଗିତ ଦିଏ ।



# ଭାରତର ସ୍ୱାଧୀନତା ବିଲକୁ ବ୍ରିଟିଶ ଦରକାରର ସ୍ୱୀକୃତି ୧୯୪୭-ଜୁଲାଇ ୧୯ ତାରିଖ

ବିଲାତର ପାର୍ଲିଆମେଣ୍ଟର ହାଉସ ଅଫ୍ କମନ୍ସ ସଭାରେ ଏହି ବିଲ୍‌ଟି ପେଶ ହେବାବେଳେ ଗ୍ରେଟ ବ୍ରିଟେନର ଉଭୟ ସରକାରୀ ଓ ବିରୋଧୀଦଳ ଏହାକୁ ସ୍ୱାଗତ କରିଥିଲେ । ଏଥିଲାଗି ବିଲାତ ପ୍ରଧାନମନ୍ତ୍ରୀ ଅଟଲି ଭାରତର ତତ୍‌କାଳୀନ ବ୍ରିଟିଶ ଭାଇସରାୟ ମାଉଣ୍ଟବେଟନଙ୍କୁ ପ୍ରଶଂସା କରିଥିଲେ । ୧୯୪୭ ଜୁଲାଇ ୧୫ ତାରିଖ ଓ ତହିଁ ପରଦିନ ଲର୍ଡ଼ ସଭାରେ ଏହି ବିଲ୍ ଅନୁମୋଦିତ ହେଲାପରେ ଜୁଲାଇ ୧୯ରେ ରାଜଦରବାରର ସ୍ୱୀକୃତି ମିଳିଲା ।

ଏହି ବିଲ୍‌ର ମୁଖ୍ୟ ମୁଖ୍ୟ ବ୍ୟବସ୍ଥା ନିମ୍ନରୂପ :-

(୧) ଭାରତ ଓ ପାକିସ୍ଥାନ ଭାବରେ ଦୁଇଟି ସ୍ୱାଧୀନ ଡୋମିନିଅନ ୧୯୪୭ ଅଗଷ୍ଟ ୧୫ରୁ ସୃଷ୍ଟି କରାଯିବ ।

(୨) ପାକିସ୍ଥାନରେ ସିନ୍ଧ, ବ୍ରିଟିଶ ବେଲୁଚିସ୍ଥାନ, ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ, ପଶ୍ଚିମ ପଂଜାବ ଏବଂ ପୂର୍ବ ବଂଗ ରହିବ । ପଶ୍ଚିମ ପଂଜାବ ଓ ପୂର୍ବବଂଗର ସୀମା ସରହଦ ଦୁଇଟି ସୀମା କମିଶନ ଦ୍ୱାରା ନିର୍ଦ୍ଧାରିତ ହେବ । ଏହି କମିଶନ ଦୁଇଟିରେ ୨ଜଣ କଂଗ୍ରେସର, ୨ଜଣ ମୁସଲିମ ଲିଗର ପ୍ରତିନିଧି ରହିବେ । ଦୁଇଟି ଯାକର ଚେୟାରମେନ ହେବେ ବ୍ରିଟିଶ ସରକାରଙ୍କ ପ୍ରତିନିଧି ସାର୍ ସିରିଲ ରାଡ଼କ୍ଲିଫ । କଂଗ୍ରେସ ଓ ଲିଗ ଏହି ଦୁଇପକ୍ଷ ଏକମତ ନହେଲେ ଚେୟାରନେ ଚୂଡ଼ାନ୍ତ ରାୟ ଦେବ ।

(୩) ଦୁଇଟି ଯାକ ଡୋମିନିୟନ ପାଇଁ ଜଣେ ଗଭର୍ଣ୍ଣର ଜେନେରାଲ ରହିବେ । ଡୋମିନିୟନର ପ୍ରଶାସନ ଲାଗି ତାଙ୍କୁ ବ୍ରିଟିଶ ସମ୍ରାଟ ନିଯୁକ୍ତ କରିବେ । ନୂଆ ଡୋମିନିୟନର କୌଣସି ଗୋଟିକର ବିଧାନ ସଭା ଦ୍ୱାରା ଗୃହୀତ ଅନ୍ୟ ପ୍ରସ୍ତାବ ନଆସିବା ଯାଏ, ନିଯୁକ୍ତ ସେହି ବ୍ୟକ୍ତି ଦୁଇଯି ଡୋମିନିୟନର ଗଭର୍ଣ୍ଣର ଜେନେରାଲ ହୋଇରହିବେ ।

(୪) ପ୍ରତ୍ୟେକଟି ଡୋମିନୟନର ନିଜ ଡୋମିନୟନ ଲାଗି ଆଇନ ପାଶ୍ କରିବାର ପୂର୍ଣ୍ଣ ଅଧିକାର ରହିବ । ଗ୍ରେଟ ବିଟ୍ରେନର ପାଲିଆମେଣ୍ଟର ଅବା କାଉନ୍ସିଲର ଯେକୌଣସି ଆଇନ ଅଗଷ୍ଟ ୧୫ ପରେ ଦୁଇଟିଯାକ ଡୋମିନିୟନରେ ଯଥାର୍ଥତା ହରାଇବ । ଏହାର ଅର୍ଥ, ଏହି ଦିନଠାରୁ ଏମାନେ ବ୍ରିଟିଶ ପାର୍ଲିଆମେଣ୍ଟର ପରିସର ଭୁକ୍ତ ନୁହଁନ୍ତି ।

(୫) ୧୯୪୭ ଅଗଷ୍ଟ ୧୫ଠାରୁ ମହାମାନ୍ୟ ସମ୍ରାଟଙ୍କ ସରକାରଙ୍କ ଉପରେ ଭାରତ ପ୍ରଶାସନର ଯେଉଁ ଦାୟିତ୍ୱ ଥିଲା, ତାହାର ଅବସାନ ଘଟିଲା ଏବଂ ମହାମାନ୍ୟ ସରକାରଙ୍କର ଭାରତୀୟ ରାଜ୍ୟ (ଗଡ଼ଜାତ) ମାନଙ୍କ ସହ ଅବା ଆଦିବାସୀ ଅଂଚଳର କର୍ତ୍ତୃପକ୍ଷଙ୍କ ସହିତ ଯେଉଁସବୁ ଚୁକ୍ତି ଅବା ରାଜିନାମା ଥିଲା, ତାହାର ମିଆଦ ଅପସରିଗଲା । (ଅର୍ଥାତ୍ ଭାରତ ଓ ପାକିସ୍ଥାନ ସୃଷ୍ଟି ସାଂଗକୁ ଭାରତରେ ଥିବା ୫୬୨ଟି ଗଡ଼ଜାତର ରାଜା, ନବାବ, ମହାରାଜା ମଧ୍ୟ ସ୍ୱାଧୀନ ରାଜ୍ୟର ଶାସକ ହୋଇ ରହିଲେ ।)

"ଭାରତର ସମ୍ରାଟ, ସାମ୍ରାଜ୍ଞୀ ଶବ୍ଦଗୁଡ଼ିକ ଆଉ ବ୍ୟବହୃତ ହେବ ନାହିଁ ।

(୬) ପ୍ରତ୍ୟେକଟି ଡୋମିନିୟନର ସଂବିଧାନ ସଭା କେନ୍ଦ୍ର ଆସେମ୍ବ୍ଲିର କ୍ଷମତା ପ୍ରୟୋଗ କରିବ ଏବଂ ବିଦ୍ୟାମାନ କେନ୍ଦ୍ର ବିଧାନସଭା ଓ କାଉନ୍ସିଲ ଅଫ୍ ଷ୍ଟେଟସ ସ୍ୱଭାବିକ ଭାବେର ଭାଂଗିଯିବେ । ଉପରିବର୍ଣ୍ଣିତ ବ୍ୟବସ୍ଥା ଅନୁସାରେ ଲର୍ଡ଼ ମାଉଣ୍ଟବେଟନ ଭାରତୀୟ ଡୋମିନିୟନର ଗଭର୍ଣ୍ଣର ଜେନେରାଲ ରହିଲେ ଏବଂ ପାକିସ୍ଥାନର ଗଭର୍ଣ୍ଣର ଜେନେରାଲ ହେଲେ ମହମ୍ମଦ ଅଲି ଜିନ୍ନା ।

ଦେଶର ବିଭାଜନ କାର୍ଯ୍ୟ ସମାପନ କରିବା ଲାଗି ବିଭାଜନ କମିଶନ ଗଢ଼ାଗଲା । ତା'ପରେ ଏକ ବିଭାଜନ କାଉନ୍ସିଲ ଗଠିତ ହେଲା । ଏହି କାଉନ୍ସିଲର ଚେୟାରମେନ ହେଲେ ଲର୍ଡ଼ ମାଉଣ୍ଟବେଟନ ଏବଂ ଏଥିରେ କଂଗ୍ରେସ ଓ ମୁସଲିମ ଲିଗର ସମାନ ସମାନ ସଦସ୍ୟ ରହିଲେ । ୧୯୪୭ ଅଗଷ୍ଟ ୧୫ପରେ ମଧ୍ୟ, ଅର୍ଥାତ୍ ଡୋମିନିୟନ ଦୁଇଟିର ସୃଷ୍ଟିପରେ ମଧ୍ୟ ଏହି କାଉନ୍ସିଲ କାର୍ଯ୍ୟରତ ଥିଲା ।



# ଭାରତରେ ଫରାସୀ ଉପନିବେଶରେ
# ସ୍ୱାଧୀନତା ସଂଗ୍ରାମ

ଅଗଷ୍ଟ ପନ୍ଦର, ୧୯୪୭ର ସ୍ୱାଧୀନତା ଦିବସ ପାଳନରୁ ଭାରତର ଫରାସୀ ଅଧିକୃତ ପଣ୍ଡିଚେରୀ, କାରାୟିକାଲ, ମାହେ, ଚନ୍ଦନନଗର, ଆନନ ବିଂଚିତ ଥିଲେ । ସେମିତି ବଂଚିତ ଥିଲେ ପର୍ତ୍ତୁଗୀଜ ସାମ୍ରାଜ୍ୟବାଦୀ ଅଧିକୃତ ଅଂଚଳ ଗୋଆ, ଦାମନ ଓ ଦିୟୁ । ରାଜା, ମହାରାଜା, ନିଜାମ, ନବାବ, ସୁଲତାନମାନଙ୍କ ୫୨୬ଟି ଗଡ଼ଜାତରେ ଆମ ରାଷ୍ଟ୍ରୀୟ ଧ୍ୱଜ ଉଡ଼ିପାରିନଥିଲା । ଗଡ଼ଜାତଗୁଡ଼ିକର ମୁକ୍ତି ଓ ସ୍ୱାଧୀନତା ସଂଗ୍ରାମ ଅବ୍ୟାହତ ରହିଥିଲା । ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମ ସେ ସବୁ ଉପନିବେଶ ଓ ଗଡ଼ଜାତବାସୀଙ୍କୁ ନିଜନିଜ ମୁକ୍ତି ସଂଗ୍ରାମ ଚଳେଇବାକୁ ସାହସ ଦେଲା, ସାହାଯ୍ୟ ଦେଇଥିଲା ଏବଂ ଅନୁପ୍ରାଣିତ କରିଥିଲା ।

ପ୍ରଥମରେ ୧୪୯୮ରେ ପର୍ତ୍ତୁଗାଲ, ଦ୍ୱିତୀୟରେ ୧୬୦୨ରେ ଦିନମାର, ତୃତୀୟ ୧୬୬୪ରେ ଫ୍ରାନ୍ସର ସାମ୍ରାଜ୍ୟବାଦୀମାନେ ଭାରତକୁ ବାଣିଜ୍ୟ କରିବା ଲାଗି ଆସି ଆମ ଦେଶ ଦଖଲରେ ମାତିଥିଲେ । ସପ୍ତଦଶ ଶତାବ୍ଦୀର ଆରଂଭରେ ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କର ଅନୁପ୍ରବେଶ ଘଟିଲା । ଭାରତକୁ ପୂର୍ଣ୍ଣଦଖଲରେ ରଖିବା ପାଇଁ ସେମାନଙ୍କ ମଧ୍ୟରେ ଭାରତମାଟିରେ ଯେତେ ଯୁଦ୍ଧ ହୋଇଛି, ତାହାର ଇତିହାସ ଦୀର୍ଘ ।

ୟୁରୋପରେ ଫ୍ରାନ୍ସ ଓ ଲଂଡନ ମଧ୍ୟରେ ସାତ ବର୍ଷିଆ ଯୁଦ୍ଧ ଓ ଭାରତରେ ତାହାର ପ୍ରସାର ଘଟିଲା । ଫ୍ରାନ୍‌ସର ପରାଜୟପରେ ଆମ ଦେଶର ଦକ୍ଷିଣାଞ୍ଚଳର ପଣ୍ଡିଚେରୀ ସମେତ ଅନ୍ୟ ତିନୋଟି ଅଂଚଳ ଫରାସୀ ଅଧୀନରେ ରହିଗଲା । ଉଭୟ ଫ୍ରାନ୍ସ ଓ ବ୍ରିଟେନ ମଧ୍ୟରେ ଚୁକ୍ତିର ଏହାହିଁ ପରିଣତି । ତଦ୍ରୂପ ଚୁକ୍ତି ଫଳରେ ବଂଗଳାର ଶ୍ରୀରାମପୁର ଦିନାମାର (ଡଚ) ଆଧୀନସ୍ଥ ହେଲା । ଗୋଆ, ଦାମନ, ଦିଉ ଏହି ୩ଟି ଦ୍ୱୀପ ପର୍ତ୍ତୁଗାଲର ଉପନିବେଶ ହେଲା । ପଣ୍ଡିଚେରୀଠାରୁ ସୁଦୂର ବଂଗଳାର ଚନ୍ଦନ ନଗରରେ ମଧ ଫ୍ରାନ୍ସର ଆଧିପତ୍ୟ ରହିଲା ।

ଆମ ଦେଶର ଏହି କେତୋଟି ଅଂଚଳରେ ଥିବା ଦୁଇଶହ ଚାଳିଶ ବର୍ଷର ଫରାସୀ ଶାସନ ଆପଣା ଛାଏଁ ଛାଏଁ ଅପସରି ଯାଇନାହିଁ । ସେମିତି ମଧ ଇଣ୍ଡୋଚୀନ ବା

ଭିଏତ୍‌ନାମ-କାମ୍ବୋଡ଼ିଆ, ଲାଓସ ଏବଂ ଆଫ୍ରିକା ମହାଦଶେର କେତେକ ସ୍ଥାନରେ ଥିବା ଫରାସୀ ଶାସନ ଆପେ ଆପେ ଯାଇନାହିଁ । ଅଧିକୃତ ଦେଶଗୁଡ଼ିକର ଲୋକେ ଆପଣାର ମୁକ୍ତି ଓ ସ୍ୱାଧୀନତା ଲାଗି ପ୍ରାଣପାତ ସଂଗ୍ରାମ କରିଛନ୍ତି ।

ଫରାସୀ ଶାସନ କାଳରେ ପଣ୍ଡିଚେରୀ ତଥା ତାହାର ଅନ୍ୟାନ୍ୟ ଭାରତୀୟ ଉପନିବେଶରେ ଲୋକଙ୍କୁ ଭୟଭୀତକରି ରଖାଯାଇଥିଲା । କେହି କୌଣସି ସଂଗଠନ ଗଢ଼ିପାରିବେ ନାହିଁ ବୋଲି କଡ଼ା ନିଷେଧାଜ୍ଞା ଜାରି କରାହୋଇଥିଲା । ଏପରି ସଂଗଠନ ଗଢ଼ିବାର ସୁରାକ ପାଇଲେ ଲୋକଙ୍କ ଘର ଖାନତଲାସକରି ଗିରଫକରି ନିଆଯାଉଥିଲା । ସଭାସମିତି ଉପରେ କଠୋର ବାରଣ ରହିଥିଲା ।

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତୀୟ ଜାତୀୟ କଂଗ୍ରେସ ଦ୍ୱାରା ବ୍ରିଟିଶ ଭାରତରେ ଚାଲିଥିବା ସ୍ୱାଧୀନତା ସଂଗ୍ରାମ ପଣ୍ଡିଚେରୀର ଅଧିବାସୀ ଜନତାକୁ ଅପୂର୍ବ ଦମ୍ଭ ଓ ସାହାସ ଆଣିଦେଲା । ପଣ୍ଡିଚେରୀର ଯୁବକମାନଙ୍କ ମଧରେ ନବଜାଗରଣ ସୃଷ୍ଟି ହେଲା । ୧୯୩୦ରେ ଆଇନ ଅମାନ୍ୟ ଆନ୍ଦୋଳନର ପ୍ରଭାବରେ ପଣ୍ଡିଚେରୀରେ ଭି.ସୁବେ୍‌ଚାୟା ନାମକ ଗାନ୍ଧୀଭକ୍ତ ଯୁବକଙ୍କ ନେତୃତ୍ୱରେ ପ୍ରଥମଥର ପାଇଁ ସ୍ୱାଧୀନତା ଦାବିକରି ଏକ ଯୁବକ ସମାବେଶ ହେଲା । ତା’ ପରବର୍ତ୍ତୀ ବର୍ଷ ମଧ ଅନୁରୂପ ଯୁବ ସମ୍ମିଳନୀ ଅନୁଷ୍ଠିତ ହୋଇ ଏକ ଯୁବଲିଗ ଗଠିତ ହେଲା । ଏହି ଯୁବକମାନେ ତାମିଲନାଡୁ ହରିଜନ ଯୁବକ ସଂଘର ଏକ ଶାଖା ପଣ୍ଡିଚେରୀରେ ଗଠନକରି ରାଜନୈତିକ ଓ ସମାଜ ସଂସ୍କାରର ଚେତନା ଜାଗ୍ରତ କରାଇଲେ । ୧୯୩୪ ଫେବୃଆରୀ ୧୭ ତାରିଖରେ ହରିଜନ ପଦଯାତ୍ରା କାଳରେ ମହାତ୍ମା ଗାନ୍ଧୀ ପଣ୍ଡିଚେରୀ ଓ କରାଇକାଲରେ ପହଂଚିବାବେଳେ ଏହି ଉଭୟ ଅଂଚଳର ସହସ୍ର ସହସ୍ର ଜନତା ସେଥିରେ ଯୋଗ ଦେଇଥିଲେ । ଫରାସୀ ସରକାର ବିରୁଦ୍ଧରେ ଧ୍ୱନିମାନ ଦେଇ ମୁକ୍ତି ଦାବୀ କରିଥିଲେ । ଯୁବ ସଂଘ ଓ ହରିଜନ ସେବକ ସଂଘ ସାଂଗକୁ ୧୯୩୪ରେ ମଧ ଫରାସୀ ଅଧିକୃତ ପଣ୍ଡିଚେରୀରେ ଶ୍ରମିକମାନଙ୍କର ଏକ ସଂଗଠନ ଗଢ଼ି ଉଠିଲା ଏବଂ ସ୍ୱାଧୀନଥିରନ ନାମକ ଏକ ରାଜନୈତିକ ମାସିକ ପତ୍ରିକା ପ୍ରକାଶ ପାଇଲା । ଏହି ଶ୍ରମିକ ସଂଘ ଆହ୍ୱାନରେ ୧୯୩୫ ଫେବୃଆରୀରୁ ଅପ୍ରିଲ ୨୧ ତାରିଖ ଯାଏ ଦୀର୍ଘ କାଳବ୍ୟପୀ ଅଭାନା ଲୁଗାକଳର ଶ୍ରମିକମାନେ ଧର୍ମଘଟ ଚଳାଇଲେ ଏବଂ ଫରାସୀ ଶାସନର ଅବସାନ ଦାବୀ କଲେ ।

ଏହି ସମୟ ଭିତରେ ମାନ୍ଦ୍ରାଜରୁ ଇଂଜିନିୟରିଙ୍ଗ କଲେଜ ଛାତ୍ରମାନଙ୍କ ସଂସ୍ପର୍ଶରେ ଆସିଲେ ଯୁବନେତା ସୁବେୟା । ୧୯୩୪ରେ ଅମିର ହାଇଦର ଖାଁ (ଛଦ୍ମନାମ) ଶଙ୍କର ଏବଂ ପି.ସୁନ୍ଦରାୟାଙ୍କ ସଂସ୍ପର୍ଶରେ ଆସି ଗାନ୍ଧୀଭକ୍ତ ସୁବେ୍‌ବୟା କମ୍ୟୁନିଷ୍ଟ ମତବାଦକୁ

ଗ୍ରହଣ କରିନେଲେ । ମାତ୍ର ଗାନ୍ଧୀଙ୍କୁ ସ୍ୱାଧୀନତା ସଂଗ୍ରାମର ଶୀର୍ଷ ନେତା ରୂପେ ସମ୍ମାନ ହେଉଥିଲେ ।

ପଣ୍ଡିଚେରୀର ଶ୍ରମିକ ଧର୍ମଘଟ ଉପରେ ଫରାସୀ ସରକାରର ଅବର୍ଣ୍ଣନୀୟ ଦମନଲୀଳା, ଦୁଇଶହ ଶ୍ରମିକଙ୍କୁ ବରଖାସ୍ତ ଓ ଗିରଫ୍‌ର ସଂବାଦ ପାଇ ବ୍ରିଟିଶ ଭାରତର ସ୍ୱାଧୀନତା ସଂଗ୍ରାମୀ ଓ ଶ୍ରମିକ ନେତାମାନେ ପଣ୍ଡିଚେରୀର ସଂଗ୍ରାମରତ ଜନତାଙ୍କୁ ସାହାଯ୍ୟ କରିବାକୁ ଆଗଭର ହେଲେ । ଭାରତର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଶ୍ରମିକ ନେତାମାନେ ପଣ୍ଡିଚେରୀର ସଂଗ୍ରାମରତ ଜନତାଙ୍କୁ ସାହାଯ୍ୟ କରିବାକୁ ଆଗଭର ହେଲେ । ଭାରତର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଶ୍ରମିକ ନେତା ଭି.ଭି.ଗିରି. (ଭାରତର ଏକଦା ରାଷ୍ଟ୍ରପତି) ଏବଂ ଏସ୍. ଗୁରୁସ୍ୱାମୀଙ୍କ ପଣ୍ଡିଚେରୀରେ ପ୍ରବେଶ କରିବା ଉପରେ ଫରାସୀ କର୍ତ୍ତୃପକ୍ଷ ନିଷେଧାଦେଶ ଜାରିକଲା । ସକଳ ପ୍ରକାର ଦମନ ସତ୍ତ୍ୱେ ୧୯୩୬ରେ ପଣ୍ଡିଚେରୀର ତିନୋଟି ଲୁଗାକଳ ଶ୍ରମିକଙ୍କ ଧର୍ମଘଟ ହେଲା ଏବଂ ଫରାସୀ ସରକାରର ଗୁଳିରେ ୧୨ଜଣ ନିହତ ହେଲେ ।

ସାରା ଭାରତରେ ପ୍ରତିବାଦ ପ୍ରତିଧ୍ୱନିତ ହେଲା ଏବଂ ୧୯୩୬ ଅକ୍ଟୋବର ୧୭ ତାରିଖରେ ପଣ୍ଡିଚେରୀ ଆସି ପଣ୍ଡିତ ଜବାହାରଲାଲ ନେହେରୁ ଏକ ବିଶାଳ ସମାବେଶରେ ଉଦବୋଧନ ଦେଲେ । ଏହି ସମାବେଶ ପରେ ପଣ୍ଡିଚେରୀରେ ଫ୍ରାନ୍ସ ବିରୋଧୀ ଜନଜାଗରଣ ଲକ୍ଷଣୀୟ ଭାବରେ ବୃଦ୍ଧି ପାଇଲା ।

ସ୍ୱାଧୀନତା ସଂଗ୍ରାମକୁ ଚଳାଇବା ଲାଗି ଏହି ଯୁବକମାନେ **ମହାଜନ ସଭା** ନାମକ ପ୍ରଥମ ରାଜନୈତିକ ସଂଗଠନ ପ୍ରତିଷ୍ଠା କଲେ । ବିଭିନ୍ନ ରାଜନୈତିକ ମତାଦର୍ଶ ଓ ଗଣତନ୍ତ୍ରକାମୀ, ଦେଶପ୍ରେମୀ ବ୍ୟକ୍ତିମାନଙ୍କୁ ଘେନି ଗଠିତ ଏହି ସଂଗଠନ, ଫ୍ରାନ୍ସ ସାମ୍ରାଜ୍ୟବାଦକୁ ସମର୍ଥନ କରୁଥିବା ଫ୍ରି-ଇଣ୍ଡିଆ ପାର୍ଟି ବିରୁଦ୍ଧରେ ଲଢ଼ି ୧୯୩୭ ପୌର ନିର୍ବାଚନରେ ସୁବିପୁଳ ଜନ ସମର୍ଥନ ପାଇଲା । ମାତ୍ର ଫରାସୀ କର୍ତ୍ତୃପକ୍ଷ ପକ୍ଷରୁ ନିର୍ବାଚନ ଫଳାଫଳ ଘୋଷଣା ତାହାର ବିପରୀତ ଚିତ୍ରଦେଲା । ଫଳରେ ଫରାସୀ ଶାସିତ ଅଂଚଳଗୁଡ଼ିକରେ ଜନତା ଅଧିକ କ୍ଷୁବ୍ଧ ଓ ମୋହମୁକ୍ତ ହେଲେ ।

## ମହାଜନ ସଭାର ଅସହଯୋଗ ଆନ୍ଦୋଳନ

ମହାଜନ ସଭା ଫରାସୀ ଶାସନ ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନର ଆହ୍ୱାନ ଦେଲା । ଲୋକେ ପୁଲିସ, ପ୍ରଶାସନ, କର୍ମଚାରୀ ସମସ୍ତଙ୍କୁ ପୂର୍ଣ୍ଣ ବାସନ୍ଦ କଲେ । ସରକାର ବସ୍ତୁତଃ ଅଚଳ ହୋଇଗଲା । ୧୯୩୭ ଶେଷବେଳକୁ ଫରାସୀ ଗଭର୍ଣ୍ଣର ମହାଜନ ସଭାର ନେତା ସୁବେ୍‌ବୟାଙ୍କ ସହିତ ଆଲୋଚନା କରି ଏକ ମଧ୍ୟବର୍ତ୍ତୀକାଳୀନ ନିଷ୍ପତ୍ତିରେ ପହଂଚିଥିଲେ ।

ଅସାଧୁ, ଚଂଚଳତାପୂର୍ଣ୍ଣ ନିର୍ବାଚନକୁ ରଦ୍ଦ କରାଗଲା । ବିଭିନ୍ନ ନିର୍ବାଚିତ ସଂସ୍ଥାର ସଦସ୍ୟମାନେ ଇସ୍ତଫା ଦେବାକୁ ବାଧ୍ୟ ହେଲେ ଏବଂ ମହାଜନ ସଭା ଦ୍ୱାରା ମନୋନୀତ ପ୍ରତିନିଧିମାନେ ଦାୟିତ୍ୱ ଗ୍ରହଣ କଲେ । ମାତ୍ର ଫରାସୀ କର୍ତ୍ତୃପକ୍ଷ ଏପରି ପରାଜୟକୁ ସହଜରେ ଗ୍ରହଣ କରିପାରିଲା ନାହିଁ । ଗଣତାନ୍ତ୍ରିକ, ମୁକ୍ତିକାମୀ ଆନ୍ଦୋଳନର ଅଗ୍ରଣୀ ବ୍ୟକ୍ତିମାନଙ୍କୁ କେବଳ ନୁହଁ, ବିଭିନ୍ନ ମ୍ୟୁନିସପାଲଟି ଓ ୩୦ଟି ଗ୍ରାମ ପଂଚାଏତ୍‌ର କର୍ମକର୍ତ୍ତାମାନଙ୍କୁ ଗିରଫକରି ନିଆଗଲା । ପୁଲିସ୍ ଓ ସାମରିକ ବାହିନୀ ଲୋକଙ୍କ ଉପରେ ନାନାବିଧ ଦମନ-ଅତ୍ୟାଚାର ଚଳେଇଲା । ସୁବେ୍‌ବୟାଙ୍କୁ ଫରାସୀ ଶାସିତ ଅଂଚଳରୁ ବହିଷ୍କାର କରାଗଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରଂଭ ହେବାପରେ ପଣ୍ଡିଚେରୀରେ ରାଜନୈତିକ କାର୍ଯ୍ୟକଳାପ ଓ ମୁକ୍ତିସମର ଏକ ନିୟାମକ ରୂପନେଲା । ପଣ୍ଡିଚେରୀର ରାଜନୈତିକ ସ୍ୱତନ୍ତ୍ରତା ଦାବୀରେ ଜନ ଅସନ୍ତୋଷକୁ ପ୍ରଶମନ କରିବା ଲକ୍ଷ୍ୟରେ ଫରାସୀ କର୍ତ୍ତୃପକ୍ଷ ସାମାନ୍ୟ କୋହଳ ନୀତି ଅବଲମ୍ବନ କଲା ।

ପଣ୍ଡିଚେରୀର ଥିବା କମ୍ୟୁନିଷ୍ଟ ମତାବଲମ୍ବୀ, କଂଗ୍ରେସ ମତାବଲମ୍ବୀ ଓ ଅନ୍ୟାନ୍ୟ ଗଣତାନ୍ତ୍ରିକ ସଂଗଠନ, ଛାତ୍ରସଂଘ, ଟ୍ରେଡ ୟୁନିଅନ, ଯୁବସଂଘ, କୃଷକ ସମିତିର ପ୍ରତିନିଧିମାନେ ମିଶି ଏକ ଜାତୀୟ ଗଣତାନ୍ତ୍ରିକ ସାମ୍ମୁଖ୍ୟ ଗଠନକରି ଆନ୍ଦୋଳନକୁ ତୀବ୍ରତର କଲେ । ଫରାସୀ ପାର୍ଲିଆମେଣ୍ଟକୁ ଭାରତରେ ଥିବା ତାହାର ଉପନିବେଶରୁ ନିର୍ବାଚିତ ହେଉଥିବା ୩ଜଣଯାକ ପ୍ରାର୍ଥୀ ସମସ୍ତେ ଏହି ଜାତୀୟ ଗଣତାନ୍ତ୍ରିକ ସଂଘର ପ୍ରାର୍ଥୀ ହୋଇ ବିଜୟ ଲାଭକଲେ ।

୧୯୪୭ ଅଗଷ୍ଟ ୯ ତାରିଖରେ ଭାରତରେ ଅବସ୍ଥିତ ଫରାସୀ ଅଂଚଳଗୁଡ଼ିକୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯାଉ ବୋଲି ଘୋଷଣା କରିବାକୁ ଚରମପତ୍ର ଦିଆଗଲା ଓ ପଣ୍ଡିଚେରୀରେ ସୁବିଶାଳ ବିକ୍ଷୋଭ ପ୍ରଦର୍ଶିତ ହେଲା । ଅବସ୍ଥା ଏପରି ହେଲା ଯେ ଏଥିରୁ ନିସ୍ତାର ପାଇବା ପାଇଁ ସରକାରର ମୁଖ୍ୟ ସମସ୍ତେ ପାରିସ ଅଭିମୁଖେ ଯାତ୍ରା କଲେ ଏବଂ କର୍ତ୍ତୃପକ୍ଷଙ୍କ ସହିତ ପରାମର୍ଶ କରି ଅଗଷ୍ଟ ୧୨ ତାରିଖରେ ବାହୁଡ଼ିଲେ ।

୧୯୪୭ ଅଗଷ୍ଟ ୧୫ରେ ସରକାରୀ ସବୁ ଦପ୍ତର ଭିତରେ ପ୍ରବେଶକରି ଭାରତୀୟ ଜାତୀୟ ପତାକା ଉଡ଼ାଇବାକୁ ଗଣତାନ୍ତ୍ରିକ ସାମ୍ମୁଖ୍ୟ ଆହ୍ୱାନ ଦେଲା । ଏହି ଡାକରାରେ ଜନତା ଦଳକୁ ଦଳ ଏକାଠି ହୋଇ ସବୁ ସରକାରୀ ଦପ୍ତରରେ ଜାତୀୟ ପତାକା ଉତ୍ତୋଳନ କଲେ । ବିଶାଳ ଭାରତ ଭୂମିର କୋଣେ କୋଣେ ସେଦିନ ସ୍ୱାଧୀନତା ଦିବସ ମହା ଉତ୍ସାହ ଉଦ୍ଦୀପନାରେ ପାଳିତ ହେଉଥାଏ ।

ସେହି ଅଗଷ୍ଟ ୧୫ରେ କଲିକତା ମହାନଗରୀ ସନ୍ନିକଟ ଫରାସୀ ଅଂଚଳ ଚନ୍ଦନନଗର ଜନତା କଂଗ୍ରେସ, କମ୍ୟୁନିଷ୍ଟପାର୍ଟି ଓ ଫରାୱାର୍ଡ଼ ବ୍ଲକର ଡାକରାରେ ସମସ୍ତ ଶାସନ ଭାର ହାତକୁ ନେଇଗଲେ । ସେଠାର ପ୍ରଶାସନ କଲିକତା ପଳେଇ ଆସି ଗାନ୍ଧିଜୀଙ୍କୁ ନିଜ ଦୁର୍ଦ୍ଦଶା ଅବଗତ କରାଇଲେ । ଆନ୍ଦୋଳନକାରୀମାନଙ୍କୁ ସଂପୂର୍ଣ୍ଣ ସ୍ୱାଧୀନତା ଲାଭର ଭରସା ରଖି ସଂଯମ ଆଚରଣ କରିବାକୁ ଗାନ୍ଧିଜୀ ପରାମର୍ଶ ଦେଇଥିଲେ ।

ମାହେର ମହାଜନ ସଭାର ନେତା ଆଇ.କେ.କୁମାର ଏବଂ ସି.ଇ. ଭରଥନଙ୍କ ନେତୃତ୍ୱରେ ଆନ୍ଦୋଳନ ତେଜି ଉଠିଲା ।

କରେଇକାଲରେ ଜାତୀୟ କଂଗ୍ରେସ ୧୯୪୮ରେ ମ୍ୟୁନିସପାଲିଟ୍ ନିର୍ବାଚନକୁ ବାସନ୍ଦ କରିବା ପରଠାରୁ ମୁକ୍ତିସଂଗ୍ରାମ ପ୍ରଖରତର ହେଲା । ୧୯୪୯ରେ ଆନ୍ଦୋଳନ ଖୁବ୍ ତୀବ୍ର ହେବାରୁ ସରକାର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଗିରଫକରି ସେମାନଙ୍କ ଘର ପୋଡ଼ି ଦେଲା । ସ୍ଥାନୀୟ କମ୍ୟୁନିଷ୍ଟପାର୍ଟିର ଅଫିସକୁ ଜାଳିଦେଲା ଏବଂ ମୁଦାଲିୟରପେଟ ମ୍ୟୁନିସ୍‌ପାଲିଟର କମ୍ୟୁନିଷ୍ଟ ମେୟର ଆର.ବୈଥଲିଙ୍ଗମଙ୍କୁ ଗିରଫ କରିନେଲା ।

ବଂଗଳାର ଅଭ୍ୟନ୍ତରରେ ଥିବା ଚନ୍ଦନନଗରର ଜନତା ଭାରତ ସହିତ ମିଶ୍ରଣ ସପକ୍ଷରେ ଜନମତ ସଂଗ୍ରହ କାଳରେ ରାୟ ଦେଲେ । ଫରାସୀ ସରକାର ୧୯୫୧ ଫେବୃଆରୀ ୧୭ ତାରିଖରେ ସ୍ୱାଧୀନ ଭାରତ ସରକାରଙ୍କ ସହିତ ଚୁକ୍ତି କରିବାକୁ ବାଧ ହେଲା ଏବଂ ୧୯୫୨ ଜୁନ୍ ୨ ତାରିଖରେ ଆଇନସମ୍ମତ ଭାବରେ ଚନ୍ଦନନଗର ଭାରତ ଅନ୍ତର୍ଭୁକ୍ତ ହେଲା ।

ବଂଗୋପସାଗର ତଟ ପଣ୍ଡିଚେରୀ ଏବଂ କାରାଇକାଲ, ମାହେ ଓ ଆନନରେ ଫରାସୀ ଦାସତ୍ୱର ବିଲୋପ ପାଇଁ ସେସବୁ ଅଂଚଳର ନେତୃବର୍ଗ ଦୃଢ଼ ସଂଗ୍ରାମ କରିବାକୁ ଆହ୍ୱାନ ଦେଲେ । ବିକ୍ଷୋଭ, ସମାବେଶ, ପ୍ରତିବାଦ ସଭା, ବାସନ୍ଦର ସୁଅ ଛୁଟିଲା । ଫ୍ରାନ୍ସ ଭାରତ ଛାଡ଼ ଧ୍ୱନିରେ ଏସବୁ ଅଂଚଳର ବିକ୍ଷୋଭକାରୀମାନେ ଗଗନ ପବନକୁ ମୁଖରିତ କରିଦେଲେ । ପୁଣି ଗିରଫର ସ୍ରୋତ ଛୁଟିଲା । କେ.ବିବେକାନନ୍ଦ, ଟି.ଥୁଲାସିଂଗମପରି ବହୁ ନେତାଙ୍କୁ ଗିରଫ କରିନିଆଗଲା । ଏହାପରେ ଯାଇଁ ଭାରତ ସରକାର ଓ ଫ୍ରାନ୍ସ ସରକାର ମଧ୍ୟରେ ପ୍ୟାରିସଠାରେ ଆଲୋଚନା ହେଲା । ୧୯୫୪ ଅକ୍ଟୋବର ୩୧ରେ ଭାରତ ମାଟିରୁ ୨୪୦ବର୍ଷ ଫରାସୀ ସାମ୍ରାଜ୍ୟଶାହୀ ଶାସନର ଅବସାନ ଘଟିଲା ।



# ମହାତ୍ମାଗାନ୍ଧୀଙ୍କ ମହାପ୍ରୟାଣର ମୁହୂର୍ତ୍ତ
# ୧୯୪୮ ଜାନୁୟାରୀ ୩୦ ତାରିଖ ସଂଧ୍ୟା ୫ ଘଟିକା

୧୯୪୭ ଅଗଷ୍ଟ ୧୫ରେ ଭାରତର ଲାଲକିଲ୍ଲାରେ ରାତି ୧୨ ବାଜିବାମାତ୍ରେ ବ୍ରିଟିଶ ସାମ୍ରାଜ୍ୟବାଦର ଧ୍ୱଜ, ୟୁନିଅନ ଜ୍ୟାକ ସ୍ଥାନରେ ଉଡ଼ିଲା ରାଷ୍ଟ୍ରୀୟ ଧ୍ୱଜ-ତ୍ରିରଙ୍ଗା ପତାକା । ଜାତି ପକ୍ଷରୁ ଉଡାଇଥିଲେ ପଣ୍ଡିତ ଜବାହାରଲାଲ ନେହେରୁ । ଅଥଚ ଜାତିର ପିତାରୂପେ କୋଟିକୋଟି ଭାରତବାସୀଙ୍କ ଦ୍ୱାରା ପୂଜିତ ମହାତ୍ମାଗାନ୍ଧୀ ଦିଲ୍ଲୀର ଏହି ମହୋତ୍ସବରୁ ଅଲଗା ରହିଥିଲେ । କଲିକତାର ଜଣେ ମୁସଲମାନ ସ୍ୱାଧୀନତା ସଂଗ୍ରାମୀଙ୍କ ଭଂଗାକୋଠା ଘରେ ଭାରତ ବିଭାଜନ ଦୁଃଖରେ ସେ ଅଶ୍ରୁ ବିସର୍ଜନ କରୁଥିଲେ । ଦିଲ୍ଲୀକୁ ଫେରି ବିରଳା ଭବନରେ ଏକ କୋଠରୀରେ ରହି ପ୍ରତ୍ୟେକ ଦିନ ସଂଧ୍ୟା ୫ଟାବେଳେ ପ୍ରାର୍ଥନା ସଭାରେ ଉପସ୍ଥିତ ହେଉଥିଲେ ଓ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଉଥିଲେ । ପ୍ରତ୍ୟେକ ଦିନ ଶ୍ରୋତାଙ୍କ ଭିଡ଼ ଭାଂଗୁଥିଲା ।

ନିର୍ମ୍ମମ, ନିଦାରୁଣ ମୁହୂର୍ତ୍ତଟି ପହଂଚିଗଲା । ତାଙ୍କୁ ହତ୍ୟା କରାଯିବ, ଏକଥା ଭାରତର କେବଳ ନୁହେଁ, ପୃଥିବୀର କୌଣସି ବ୍ୟକ୍ତି ଭାବି ପାରିନଥିଲେ ।

ପ୍ରାର୍ଥନା ସଭାରେ ଗାନ୍ଧିଜୀ ବସିବାମାତ୍ରେ ପୂର୍ବ ପ୍ରସ୍ତୁତି ଅନୁସାରେ ଜଣେ ବ୍ୟକ୍ତି ଲୋକ ଗହଳି ଭାଙ୍ଗି ପିସ୍ତଲ ଧରି ପହଂଚିଗଲେ । ତାଙ୍କ ଗୁଳିର ଲକ୍ଷ୍ୟ ଅବ୍ୟର୍ଥ । ଛାତିରେ ଗୁଳିବଦ୍ଧ ହୋଇ "ହାରାମ" କହି ଗାନ୍ଧିଜୀ ଟଳିପଡ଼ିଲେ । ୮୦ ବର୍ଷର ମହାପୁରୁଷ । ସାରା ଦେଶ ସ୍ତବ୍ଧ, କ୍ରନ୍ଦନରତ । ମାତ୍ର ଗୋଟିଏ ଶିବିରରେ ଉଲ୍ଲାସ, ଆନନ୍ଦ । ସେପରି ଭାବ ଓ ଉଲ୍ଲାସ ଏବେବି ଉକ୍ତ ମହଲରେ ପ୍ରତିଧ୍ୱନିତ ।

ହତ୍ୟାକାରୀ, ହେଲେ ନାଥୁରାମ ଗଡ଼ସେ; ମହାରାଷ୍ଟ୍ରର ପୁନେ ହିନ୍ଦୁ ମହାସଭାର ସଂପାଦକ ।

ଜନସ୍ରୋତ ଛୁଟିଲା, ମହାତ୍ମାଗାନ୍ଧୀଙ୍କ ରକ୍ତରଂଜିତ ପାର୍ଥିବ ଶରୀରକୁ ଦେଖି ଶେଷ ଶ୍ରଦ୍ଧାଞ୍ଜଳି ଜଣେଇବା ପାଇଁ । ପହଂଚିଗଲେ ତତ୍କାଳୀନ ମନ୍ତ୍ରିମଣ୍ଡଳର ମୁଖ୍ୟ ପଣ୍ଡିତ ଜବାହାରଲାଲ ନେହେରୁ, ଘରୋଇମନ୍ତ୍ରୀ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏମିତିକି ଭାରତ ବିଭାଜନର ଅନ୍ୟତମ ବ୍ରିଟିଶକର୍ତ୍ତା ପତିପତ୍ନୀ ମାଉଣ୍ଟବେଟନ । ପ୍ରଥମେ ପହଂଚିଥିଲେ ଗାନ୍ଧିଜୀଙ୍କ ପୁତ୍ର ଦେବଦାସ ଗାନ୍ଧୀ ଓ ମୌଲାନା ଆବୁଲକାଲାମ ଆଜାଦ ପ୍ରମୁଖ ।

ଏହି ଘୋର ଦୁଃଖାବହ ମୁହୂର୍ତ୍ତରେ ଦେଶବାସୀଙ୍କୁ ଧୈର୍ଯ୍ୟ ଓ ସଂଯମ ଆଚରଣ କରିବାକୁ ସର୍ଦ୍ଦାର ପଟେଲ ଆବେଦନ କରିଥିଲେ । ପଣ୍ଡିତ ନେହେରୁ ଭାବବିହ୍ୱଳ ହୋଇ ଦେଶବାସୀଙ୍କୁ ବାର୍ତ୍ତା ଦେଇ କହିଲେ "ବନ୍ଧୁ ଓ ସାଥୀଗଣ, ଆମ ଜୀବନ ପଥରୁ ଆଲୋକ ଉଭାନ ହୋଇଯାଇଛି । ଚାରିଆଡ଼େ ଅନ୍ଧକାର । ଆପଣମାନଙ୍କୁ କ'ଣ କହିବି, କିପରି କହିବି, ଜାଣିପାରୁନାହିଁ । ଆମ ପ୍ରିୟତନ ନେତା, ଯାହାଙ୍କୁ ଆମେ ବାପୁ ସଂବୋଧନକରୁ, ଜାତିର ପିତା ବୋଲି କହୁ, ସେ ଆଉ ନାହାନ୍ତି । ବର୍ଷ ବର୍ଷ ଧରି ଆମେ ତାଙ୍କୁ ଯେପରି ଦେଖି ଆସୁଥିଲେ, ଆଉ ତାଙ୍କୁ ଦେଖିପାରିବୁ ନାହିଁକି ତାଙ୍କଠାରୁ ଉପଦେଶ ନେଇପାରିବୁ ନାହିଁକି, ତାଙ୍କଠାରୁ ପ୍ରବୋଧନା ଲାଭ କରିପାରିବୁ ନାହିଁ । ଏହା କେବଳ ମୋ ପାଇଁ ନୁହଁ; ଦେଶର କୋଟି କୋଟି ଲୋକଙ୍କ ପାଇଁ ଦାରୁଣ ଆଘାତ ଆଣି ଦେଇଛି ।"

କିଛି ସମୟରେ ନାଥୁରାମ ଗଡ଼ସେଙ୍କୁ ଗିରଫ କରାଗଲା ଏବଂ ନିକଟସ୍ଥ ତୁଗଲକାବାଦ ରୋଡ଼ ଥାନାକୁ ନିଆଗଲା । ତାଙ୍କ ବୟସ ୨୫ ବର୍ଷ, ସେ ପୁନେରେ ରହନ୍ତି ବୋଲି କହିଲେ । ମାତ୍ର ତାଙ୍କ ପ୍ରକୃତ ବୟସ ୩୭ ବର୍ଷ ।

ଗାନ୍ଧିଜୀଙ୍କୁ ହତ୍ୟା କରିବାର କିପରି ଷଡ଼ଯନ୍ତ୍ର ହୋଇଥିଲା ତାହା ଅଭିଯୁକ୍ତ ଗଡ଼ସେ, ଆପ୍‌ଟେ ଓ ସଭରକରଙ୍କ ବିଚାରକାଳରେ ଉଦ୍‌ଘାଟିତ ହେଲା । ଅନ୍ୟସବୁ ଷଡ଼ଯନ୍ତ୍ରକାରୀଙ୍କ ଭୂମିକା ନ୍ୟୂନ ଥିଲା । ଗଡ଼ସେଙ୍କ ବୟାନ ଅନୁସାରେ ଅଗଷ୍ଟ ୧୯୪୭ରେ ଭାରତ ବିଭାଜନ ହେବା କାଳରେ ଗାନ୍ଧୀଙ୍କୁ ହତ୍ୟା କରିବାର ନିଷ୍ପତ୍ତି ନିଆଯାଇଥିଲା, କାରଣ ଏପରି ବିପର୍ଯ୍ୟୟ ଲାଗି ଗାନ୍ଧୀହିଁ ଏକମାତ୍ର ଦାୟୀ ବୋଲି ସେ ନିଶ୍ଚିତ ଥିଲେ ।

୧୯୪୮ ଜାନୁଆରୀ ୩୦ ତାରିଖ ଅପରାହ୍ଣ ୪.୩୦ରେ ସେ ଗୋଟିଏ ଟାଙ୍ଗା (ଗୋଟିଏ ଘୋଡ଼ା ଦ୍ୱାରା ଟଣାଗାଡ଼ି) ଭଡ଼ାକରି ଏକାକୀ ବିରଳା ଭବନରେ ପହଂଚି ସମବେତ ଶହେଯାଏ ଲୋକଙ୍କ ଭିତରେ ମିଶି ବୁଲିଲେ । କିଛି ସମୟରେ ଆପ୍‌ଟେ ଓ ସବରକର ଆଉ ଏକ ଟାଙ୍ଗାରେ ଆସି ଲୋକ ଗହଳିରେ ମିଶିଲେ ।

ଅଣନାତୁଣୀଙ୍କ କାନ୍ଧରେ ହାତ ଭରାଦେଇ ୫.୩୦ରେ ବିରଳା ଭବନରୁ ପ୍ରାର୍ଥନା ସ୍ଥଳ ଆଡ଼େ ଗାନ୍ଧିଜୀ ବାହାରିଲେ । ପାହାଚ ପାର ହୋଇ କିଛି ବାଟ ଗାନ୍ଧିଜୀ ଆଗେଇ ଗଲାବେଳେ ଲୋକ ଗହଳି ଭିତରୁ ମନୁବେହେନଙ୍କୁ ଠେଲି ଆଗକୁ ଚାଲିଯାଇ ଗଡ଼ସେ ନିକଟରୁ ଗାନ୍ଧିଜୀଙ୍କ ଉପରେ ୩ଟି ଗୁଳି ଫୁଟେଇଲେ । ଏହି ମର୍ମନ୍ତୁଦ ହତ୍ୟାର ପ୍ରାୟ ଚାରି ମାସପରେ ୧୯୪୮ ମଇ ୨୭ ତାରିଖରେ ଗାନ୍ଧୀ ହତ୍ୟା ମକଦ୍ଦମା ଆରମ୍ଭ କରାଯାଇଥିଲା ।

ହତ୍ୟାର ନ ମାସ ପରେ ଗଡ଼ସେ ୨୭ ପୃଷ୍ଠାବ୍ୟାପୀ ତାଙ୍କର ଇଂରେଜୀରେ ହାତଲେଖା ବିବୃତିକୁ ପଢ଼ି ଶୁଣାଇଲେ । ନାଥୁରାମଙ୍କ କହିବା ଅନୁସାରେ ୩୨ ବର୍ଷ କାଳର ପୁଞ୍ଜୀକୃତ ପ୍ରରୋଚନାପରେ ତାଙ୍କର (ଗାନ୍ଧିଜୀଙ୍କର) ଶେଷ ମୁସଲମାନ ପକ୍ଷପାତୀ

ଅନଶନହିଁ ତାଙ୍କୁ ନିଷ୍ପତ୍ତିରେ ପହଂଚାଇଲାଯେ "ଗାନ୍ଧୀର ଅବସ୍ଥିତିକୁ ତୁରନ୍ତ ସମାପ୍ତ କରିବାକୁ ହେବ ।"

୧୯୪୯ ଫେବୃୟାରୀ ୧୦ ତାରିଖ ବିଚାରଳାୟର ରାୟ ପ୍ରକାଶିତ ହେଲା । ନାଥୁରାମ ଗଡ଼ସେ ଏବଂ ନାରାୟଣ ଆପ୍‌ତେଙ୍କୁ ମୃତ୍ୟୁ ଦଣ୍ଡ ହୁକୁମ ହେଲା । ଏଥି ଅତିରିକ୍ତ ସେମାନଙ୍କୁ ୭ ବର୍ଷ ସଶ୍ରମ କାରାଦଣ୍ଡ ଆଦିଷ୍ଟ ହେଲା । ସଭରକର କୌଣସି ଅଭିଯୋଗରେ ଦୋଷୀ ସାବ୍ୟସ୍ତ ନ ହୋଇ ଛାଡ଼ ପାଇଲେ ମାତ୍ର ତାଙ୍କ ଜୀବନର ନିରାପତ୍ତା ଲାଗି ଲାଲକିଲ୍ଲାରେ ତାଙ୍କୁ ରହିବାର ନିର୍ଦ୍ଦେଶ ଦିଆଗଲା ।

(ଗାନ୍ଧୀ ହତ୍ୟା ମାମଲାରେ ଦୋଷୀ ସାବ୍ୟସ୍ତ ନାଥୁରାମ ଗଡ଼ସେ ଫାଶି ପାଇବାର ଅର୍ଦ୍ଧଶତାବ୍ଦୀପରେ ବି ଗାନ୍ଧୀ ଦେଶର ଶତ୍ରୁ, ତାଙ୍କୁ ହତ୍ୟା କରିବା ଠିକ୍ ହୋଇଛି ନାଥୁରାମ ଗଡ଼ସେ ହିଁ ଦେଶର ମହାନ୍ ବୀର ଶହୀଦ ବୋଲି ଅହରହ ପ୍ରଚାର ଚାଲିଛି । ଗାନ୍ଧୀ ହତ୍ୟାକାରୀ ନାଥୁରାମଙ୍କୁ ମହାନାୟକ ରୂପେ ଦର୍ଶାଇ 'ମୁଁ ନାଥୁରାମ ଗଡ଼ସେ କହୁଛି' ବୋଲି ନାଟକ ମଂଚସ୍ଥ ହୋଇଛି । ଭାରତର ସବୁ ପ୍ରଗତିଶୀଳ, ମାନବତାବାଦୀ ବ୍ୟକ୍ତି, ରାଜନୈତିକ ଦଳଗୁଡ଼ିକ ଏହାର ବିରୋଧକରି ଆସୁଛନ୍ତି । ମାତ୍ର ହିନ୍ଦୁ ମହାସଭାର ଏହି ଗାନ୍ଧୀ ହତ୍ୟାକାରୀଙ୍କ ପ୍ରଶସ୍ତିଗାନ ଆର.ଏସ୍.ଏସ୍. ଶିବିରମାନଙ୍କରେ କରାଯାଏ । ନାଥୁରାମ ଜିନ୍ଦାବାଦ, ଗାନ୍ଧୀ ମୁର୍ଦ୍ଦାବାଦ ଧ୍ୱନି ଦିଆଯାଏ । ପୂର୍ବର ଜନସଂଘ ଓ ତା'ର ସଂଶୋଧିତ ନାମଧାରୀ ବିଜେପି ଓ ତା'ର ସହଯୋଗୀ ସଂଗଠନ ବିଶ୍ୱହିନ୍ଦୁ ପରିଷଦ, ହିନ୍ଦୁ ଜାଗରଣ ମଞ୍ଚ, ବିଦ୍ୟାର୍ଥୀ ପରିଷଦ ଇତ୍ୟାଦି ଡଜନରୁ ଅଧିକ ସଂଗଠନ ନାଥୁରାମଙ୍କ ପ୍ରଶଂସକ । କେବେହେଲେ ଗାନ୍ଧୀ ହତ୍ୟାର ନିନ୍ଦାକରି ନାହାନ୍ତିକି ତାଙ୍କୁ ଜାତୀୟ ପିତା ବୋଲି ମାନନ୍ତି ନାହିଁ । ଦୁଇହଜାର ମସିହା ନଭେମ୍ବର ୧୬ରେ ନାଥୁରାମ ଗଡ଼ସେଙ୍କ ଭାଇ ଗୋପାଳ ଗଡ଼ସେ ବମ୍ବେର ପାରେଲଠାରେ ଏକ ସଭାରେ ନାଥୁରାମ ଫାଶି ଦିବସକୁ ସଂକଳ୍ପ ଦିବସ ପାନଳକରି ଗାନ୍ଧିଜୀଙ୍କୁ ଉପହାସ କରିଛନ୍ତି । ମୁସଲମାନ ଓ ଖ୍ରୀଷ୍ଟିଆନମାନଙ୍କ ବିରୁଦ୍ଧରେ "ଯେସାକୁ ତେସା"ର ଧମକ ଦେଇଛନ୍ତି । ଗନ୍ଧିଜୀଙ୍କ ସଂପର୍କରେ ସେ କହିଛନ୍ତି ଯେ "ଗାନ୍ଧୀ କହୁଥିଲେ ଯେ ସେ ୧୨୫ ବର୍ଷ ବଂଚିବାକୁ ଚାହାନ୍ତି । ଏହାହିଁ ଥିଲା ତାଙ୍କର ଦାମ୍ଭିକତା । ମାତ୍ର ଘଟଣାବଳୀ ନାଥୁରାମ ଗଡ଼ସେ ନାମକ ଯୁବକକୁ ଏପରି ପ୍ରଭାବିତ କଲାଯେ ଗାନ୍ଧୀଙ୍କ ଏପରି ଦାମ୍ଭିକତାକୁ ଭୁଲ ବୋଲି ସେ ପ୍ରମାଣିତ କରିଦେଲେ । ଆଜିର ଯୁବକମାନେ ନାଥୁରାମଙ୍କୁ ଅନୁସରଣକରି ଯେସାକୁ ତେସା ନୀତି ଅନୁସରଣ କରନ୍ତୁ ।"

ଏହି ପ୍ରକାରର ଆଦର୍ଶବାହୀମାନେ ହିନ୍ଦୁତ୍ୱ ନାମରେ ମସଜିଦ, ଗୀର୍ଜା ଭଂଗା, ଦଂଗା, ସାଂପ୍ରଦାୟିକ ବିଦ୍ୱେଷକୁ ଆୟୁଧକରି ଭାରତର ମହାନ୍ ସଂସ୍କୃତିକୁ କଳଙ୍କିତ କରି ଚାଲିଛନ୍ତି ।



ପରାଧୀନ ଭାରତର ଛାତ୍ର ଆନ୍ଦୋଳନ, ସ୍ୱାଧୀନତା ସଂଗ୍ରାମ, ସାମ୍ୟବାଦୀ ଆନ୍ଦୋଳନ, ସମାଜସେବା, ସାହିତ୍ୟ ସେବା, ପତ୍ରିକା ସମ୍ପାଦନା ଏବଂ ସାମ୍ବାଦିକତାର ଏକ ସହଜ ସରଳ ସାବଲୀଳ ସମନ୍ୱୟର ସ୍ୱରୂପ ସ୍ୱର୍ଗତ ଗୋବିନ୍ଦଚନ୍ଦ୍ର ମହାନ୍ତି। ଉପାଧି, ଉପାୟନ, କ୍ଷମତା, ପ୍ରତିପତ୍ତି ଏବଂ ଆତ୍ମବିଜ୍ଞାପନବିମୁଖ ଏକ ବିରଳ ବ୍ୟକ୍ତିତ୍ୱର ଅଧିକାରୀ ସ୍ୱର୍ଗତ ମହାନ୍ତି ରାଜନୀତି ଓ ସମାଜନୀତି ସହିତ ପ୍ରତ୍ୟକ୍ଷ ସମ୍ପୃକ୍ତ ଥିଲେ ସୁଦ୍ଧା କୌଣସି ପଦପଦବୀ, ଆସନଠାରୁ ଆପଣାକୁ ଯଥାସମ୍ଭବ ଦୂରେଇ ରଖୁଥିଲେ।

ସ୍ୱାଧୀନତା ସଂଗ୍ରାମ ଇତିହାସର ସେ ଥିଲେ ସତେଅବା ଏକ ବାଙ୍ମୟ ପ୍ରତିରୂପ। ଦିନ, ବାର, ତାରିଖ, ଘଟଣା, ଦୁର୍ଘଟଣା, ସ୍ଥାନ, କାଳ, ପାତ୍ରର ସେ ଥିଲେ ପ୍ରକୃତରେ ଏକ କଥାକୁହା ଦସ୍ତାବିଜ୍। ଆପଣାର ପ୍ରଜ୍ଞା, ପ୍ରତିଭା ଓ ପରୋପକାର ଭାବକୁ ନେଇ ସର୍ବଦା ଆତ୍ମଲୀନ ରହୁଥିବା ମଣିଷଟିଏ ଥିଲେ ସେ।

ପିତା ତାଙ୍କର ସ୍ୱର୍ଗତ ରାମଚନ୍ଦ୍ର ମହାନ୍ତି ଏବଂ ମାତା ଶ୍ରୀମତୀ ଜମ୍ବୁବତୀ ଦେବୀ। ଜନ୍ମ ତାଙ୍କର ଅଧୁନା ଜଗତ୍‌ସିଂହପୁର ଜିଲ୍ଲାର ତରିକୁଣ୍ଡ ନିକଟବର୍ତ୍ତୀ ସାତପୁରା ଗ୍ରାମରେ ୧୮ ଅକ୍ଟୋବର, ୧୯୧୬ ଏବଂ ତାଙ୍କ ଦେହାନ୍ତର ତାରିଖ ୪ ଜୁନ୍, ୨୦୦୨।